

# ଜଳନ୍ଧର ଦେବ ଗ୍ରନ୍ଥାବଳୀ

# ଜଳନ୍ଧର ଦେବ ଗ୍ରନ୍ଥାବଳୀ

ସଂଗ୍ରହ ଓ ସମ୍ପାଦନା

**ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ**

ପ୍ରକାଶକ



ଓଡ଼ିଆ ଷ୍ଟୁଡେଣ୍ଟସ୍ ଷ୍ଟୋର

# ଜଳନ୍ଧର ଦେବ ଗ୍ରନ୍ଥାବଳୀ

ସଂଗ୍ରହ ଓ ସଂପାଦନା
**ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ**

ମୁଖ୍ୟ ଉପଦେଷ୍ଟା :
**ଶ୍ରୀ ରଘୁନାଥପ୍ରସାଦ ମିଶ୍ର**

ପ୍ରଚ୍ଛଦ:
**ଶ୍ରୀ ଶଶୀକାନ୍ତ ରାଉତ**

ପ୍ରକାଶକ :
**ଶ୍ରୀ ନୃସିଂହପ୍ରସାଦ ମିଶ୍ର**
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ଦେବସ୍ନାନ ପୂର୍ଣ୍ଣମୀ, ୨୦୧୨

ମୁଦ୍ରଣ : **ମୀନାକ୍ଷୀ ଡି.ଟି.ପି. ଏବଂ ଶ୍ରୀ ନୀଳକଣ୍ଠ ପ୍ରେସ୍**, କଟକ

ମୂଲ୍ୟ : ଟ.୯୦୦.୦୦ ମାତ୍ର

## JALANDHARA DEB GRANTHABALI

Collected & Edited by
**Dr. Fanindra Bhusan Nanda**

Publisher :
**Sri N. P. Misra**
Cuttack Students' Store
Balubazar, Cuttack - 753002

Principal Adviser :
**Sri R. P. Misra**

First Edition : June, 2012

Cover designed by

Sri Sashikanta Rout

Printers : **Minakshi D.T.P. & Shree Neelakantha Press,** Cuttack

Price : Rs.900.00 only

# ସୂଚୀପତ୍ର

# ମୁଖଶାଳା

ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରସ୍ତୁତି ପର୍ବର ଜଣେ କୃତବିଦ୍ୟ ସାଧକ ଜଳନ୍ଧରଦେବ। ସମାଜ ଓ ଜୀବନକୁ ପରିପୁଷ୍ଟ କରିବାକୁ ସାହିତ୍ୟର ଦାୟିତ୍ୱ ସର୍ବାଧିକ। ଏଣୁ ଏକ ଆଦର୍ଶବାଦୀ, କର୍ମଅଭିମୁଖୀ ସାହିତ୍ୟ ସର୍ଜନା ଉପରେ ସେ ଗୁରୁତ୍ୱ ଦେଇଥିଲେ। ସାହିତ୍ୟକୁ ସମର୍ଥ ଓ ପ୍ରାଣବାନ୍ କରିବା ତାଙ୍କର ଉଦ୍ଦେଶ୍ୟ। ସାହିତ୍ୟ ସ୍ଥିର ନ ରହି ଗତିଶୀଳ ହେବା ଉଚିତ। ଏକ ଗତିଶୀଳ ସାହିତ୍ୟ ହିଁ ସମୃଦ୍ଧିର ଦିଗନ୍ତ ସ୍ପର୍ଶ କରେ। ଭାଷା ଓ ସାହିତ୍ୟକୁ ସେ ସଭ୍ୟତା ଉନ୍ନତିଦ୍ୱାରର କଷ୍ଠିରୂପେ ସ୍ୱୀକାର କରିଛନ୍ତି।

ପରାଧୀନ ଭାରତର ଜ୍ୱାଳା ତାଙ୍କୁ ସର୍ପର ଦଂଶନ ଦେଇଛି। ପରାଧୀନତାପାଇଁ ଇଂରେଜମାନଙ୍କ ପ୍ରତି ଅଭିସମ୍ପାତ ବର୍ଷଣ କରି ସେ ନିଜର କର୍ତ୍ତବ୍ୟ ସମାପ୍ତ କରିଯାଇ ନାହାନ୍ତି ବରଂ ସେ ଜାତୀୟ ଜୀବନର ଅଧୋଗତିର କ୍ରମ ବିବରଣୀ ପ୍ରଦାନ କରିଛନ୍ତି। ତୁଳନାତ୍ମକ ଚିତ୍ର ମାଧ୍ୟମରେ ପାଶ୍ଚାତ୍ୟ ଜୀବନର ଅଗ୍ରଗତି ଓ ଆମର ସ୍ଥାଣୁ ଜୀବନଚର୍ଯ୍ୟାକୁ ପ୍ରଦର୍ଶାଇଛନ୍ତି।

ଜଳନ୍ଧରଙ୍କ ସାହିତ୍ୟ ପ୍ରକୃତିରୁ ଜୀବନ୍ୟାସ ପାଇ ସମାଜରେ ସଞ୍ଚରଣଶୀଳ। ଶୁଦ୍ଧ ବାୟୁ ପରି, ଅରଣ୍ୟର ରସଘନ ମାଦକତା ପରି, କୋଇଲିର କୁହୁ ପରି, ସୂର୍ଯ୍ୟର ପ୍ରଚଣ୍ଡତା ପରି ତାଙ୍କ ସାହିତ୍ୟ ସତ୍ୟର ରୂପକୁ ସ୍ୱାଗତ କରିଛି। ଜୀବନକୁ ସେ ଯେମିତି ଦେଖିଛନ୍ତି, ଅନୁଭବିଛନ୍ତି ସେମିତି ପ୍ରକାଶ କରିଛନ୍ତି। ସ୍ୱପ୍ନ ଓ କଳ୍ପନାର ଅଳୀକ ଅନୁସଙ୍ଗରେ ସେ ନିଜର ସାହିତ୍ୟକୁ ଉଦ୍ଦୀପିତ କରି ନାହାନ୍ତି ବରଂ ବାସ୍ତବବୋଧ ଓ ହେତୁବାଦୀ ଦୃଷ୍ଟିଭଙ୍ଗୀରେ ସଚ୍ଚୋଟ ସୁନାରୀ ପରି ଜଗତକୁ, ସାହିତ୍ୟକୁ ପରଖିଛନ୍ତି। ଯାହା ମାନବ ସମାଜର କଲ୍ୟାଣକର ତାହା ପରଷି ଦେଇଛନ୍ତି।

ଜଳନ୍ଧର ଜଣେ ସଂସ୍କାରକ। ସଂସ୍କାରକ ମାନସିକତା ସାହିତ୍ୟର ପ୍ରତିଟି ବିଭାଗକୁ ସ୍ପର୍ଶ କରିଛି। ବାମଣ୍ଡା ରାଜା ବାସୁଦେବ ସୁଢଳଦେବଙ୍କ ପ୍ରୋତ୍ସାହନ, ସାରସ୍ୱତକ୍ଷେତ୍ର ବାମଣ୍ଡାର ଅନୁପ୍ରେରଣା ଜଳନ୍ଧର ପ୍ରତିଭାର ପ୍ରସୂତି ଭୂମି। ଏହି ମାଟିର ଅନଶ୍ୱର ସାରସ୍ୱତ ଧାରା ତାଙ୍କରି ଯୋଗଦାନଦ୍ୱାରା ମହିମାମଣ୍ଡିତ। ଓଡ଼ିଆ ସାହିତ୍ୟକୁ ଗଳ୍ପ, ପ୍ରବନ୍ଧ, ଭ୍ରମଣ ବିବରଣୀର ଅନବଦ୍ୟ ଦାନଦ୍ୱାରା ସେ ଋଦ୍ଧିମନ୍ତ କରିଛନ୍ତି। 'ଆଲୋଚନା' ଓ 'ଶଙ୍ଖ' ପତ୍ରିକାର ସମ୍ପାଦନା ତାଙ୍କୁ ସମ୍ମାନର ଶିଖରରେ ବସାଇଛି। ସମକାଳୀନ ପ୍ରାୟ ପ୍ରତ୍ୟେକଟି ପତ୍ରିକାରେ ତାଙ୍କର ସ୍ୱାକ୍ଷର ସୁସ୍ପଷ୍ଟ।

ପ୍ରବନ୍ଧରେ ସେ ନବଦିଗନ୍ତର ସନ୍ଧାନ ଦେଇଛନ୍ତି। ବେଦ, ବେଦାନ୍ତ, ମହାଭାରତ, ରାମାୟଣର ବିଜ୍ଞାନସିଦ୍ଧ ଆଲୋଚନା ସେ କରିଛନ୍ତି। ଅକ୍ଷତଯୋନି ବିଧବା ବିବାହ ସପକ୍ଷରେ ଶାସ୍ତ୍ରୀୟ ସିଦ୍ଧାନ୍ତ ଶୁଣାଇଛନ୍ତି। ମିଥ୍ୟା ଓ ଛଳନାର ଊର୍ଦ୍ଧ୍ୱରେ ଏକ ଶୁଦ୍ଧ ପ୍ରବନ୍ଧ ସାହିତ୍ୟର ପ୍ରତିଷ୍ଠା କରିଛନ୍ତି। ଗଳ୍ପ କ୍ଷେତ୍ରରେ ସେ ପ୍ରଥମେ ନିମ୍ନବର୍ଗର ଚିତ୍ର ସହିତ ଆଦିବାସୀ ସଂସ୍କୃତିକୁ ସନ୍ନିବେଶିତ କରିଛନ୍ତି।

ଏପରି ଏକ କୃତବିଦ୍ୟ ବ୍ରହ୍ମପ୍ରସୂ ସାହିତ୍ୟସାଧକର ସୃଷ୍ଟି ଶିଳ୍ପ ଉପଯୁକ୍ତ ସମ୍ମାନ ଲଭି ନାହିଁ। ଇତସ୍ତତଃ ପ୍ରକାଶିତ ରଚନା ମଧ୍ୟରୁ ତାଙ୍କର ମୂଲ୍ୟାୟନ କରିବାରେ ପରଶ୍ରମକାତର ଆମର ଗବେଷକ ପରାଙ୍ମୁଖ। ଜଳନ୍ଧରଙ୍କ ଅଜସ୍ର ସୃଷ୍ଟି, ଉତ୍କଳ ସାହିତ୍ୟ, ସହକାର, ଆଲୋଚନା, ଶଙ୍ଖ, ଭଞ୍ଜପ୍ରଦୀପ, ଉପହାର, ରସଚକ୍ର, ସମ୍ବଲପୁର ହିତୈଷିଣୀ, ବୀଣା ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ। ତାଙ୍କର ଏହି ବିକ୍ଷିପ୍ତ ରଚନାବଳୀକୁ ସଂକଳିତ କରିବାରେ କତିପୟ କ୍ଷୀଣ ଉଦ୍ୟମ ହୋଇଥିଲା ଏବଂ କିଛି ପୁସ୍ତକାକାର ପ୍ରକାଶିତ ହୋଇଥିଲା। ସେଗୁଡ଼ିକ ନିମ୍ନପ୍ରକାରେ ତାଲିକାଭୁକ୍ତ କରାଯାଇପାରେ।

(୧) ବିବାହ ବିଚାର (୧୯୨୯) ଉତ୍କଳ ସାହିତ୍ୟ ପ୍ରେସ, କଟକ।

(୨) ବର୍ଣ୍ଣ, ଜାତି ଓ ସାହିତ୍ୟ- ଉତ୍କଳ ସାହିତ୍ୟ ପ୍ରେସ୍‌ଦ୍ୱାରା ପ୍ରକାଶିତ। ବିଶ୍ୱନାଥ କରଙ୍କଦ୍ୱାରା ସମ୍ପାଦିତ ଉତ୍କଳ ସାହିତ୍ୟରେ ପ୍ରକାଶିତ।

(୩) ବେଦ ଓ ହିନ୍ଦୁଧର୍ମ: ଉତ୍କଳ ସାହିତ୍ୟ ପ୍ରେସ୍‌ଦ୍ୱାରା ପ୍ରକାଶିତ। ବିଶ୍ୱନାଥ କରଙ୍କଦ୍ୱାରା ସମ୍ପାଦିତ ଉତ୍କଳ ସାହିତ୍ୟରେ ପ୍ରକାଶିତ ବେଦ ଓ ହିନ୍ଦୁଧର୍ମ ଆଲୋଚନାର ପୁସ୍ତକ ରୂପ। ସଂଗ୍ରାହକ ଓ ପ୍ରକାଶକ- ଉତ୍କଳ ସାହିତ୍ୟ ବିକାଶ, କାଳୀଗଳି, କଟକ-୨ (ପ୍ରକାଶ କାଳ ନାହିଁ)।

(୪)ଡାଏରୀର କିୟଦଂଶ (ଲଙ୍କା ଭ୍ରମଣ), ପ୍ରକାଶକ- ହରପ୍ରସାଦ ଦେବ। (୧୯୫୧)।

(୫) ଜଳନ୍ଧର ରଚନାବଳୀ (୧୦ଟି ଗଳ୍ପ, ୨ଟି ଏକାଙ୍କିକା, ୨ଟି ନାଟକ) ଜଳନ୍ଧରଙ୍କ ପୁତ୍ରମାନଙ୍କଦ୍ୱାରା ୧୯୭୭ରେ ପ୍ରକାଶିତ।

(୬) ଜଳନ୍ଧରଦେବ ରଚନାବଳୀ (୧ମଖଣ୍ଡ, ୧୯୮୬) ସଙ୍କଳନ-ରାମଚନ୍ଦ୍ର ବ୍ରହ୍ମା, ଓଡ଼ିଶା ସାହିତ୍ୟ ଏକାଡେମୀ; ଏଥିରେ ଭାଷା ସାହିତ୍ୟ ଶୀର୍ଷକରେ ୧୩ଟି ଏବଂ ଧର୍ମ ଓ ସଂସ୍କୃତି ଶୀର୍ଷକରେ ୧୭ଟି ପ୍ରବନ୍ଧ ସ୍ଥାନିତ।

ଏହି ପାଞ୍ଚୋଟି ପ୍ରକାଶିତ ସଂକଳନରେ ଜଳନ୍ଧରଙ୍କ ସମସ୍ତ ରଚନା ସ୍ଥାନିତ ହୋଇପାରି ନାହିଁ। ଏତଦ୍‌ବ୍ୟତୀତ ଡକ୍ଟର ଉପେନ୍ଦ୍ରନାଥ ମହାନ୍ତିଙ୍କ ରଚିତ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ 'ଜଳନ୍ଧରଦେବ' (୧୯୯୫) ଏବଂ ଶ୍ରୀଯୁକ୍ତ ରାମଚନ୍ଦ୍ର ବ୍ରହ୍ମାଙ୍କ ରଚିତ ଓ କେନ୍ଦ୍ର ସାହିତ୍ୟ ଏକାଡେମୀ ପ୍ରକାଶିତ 'ଜଳନ୍ଧରଦେବ' (୧୯୯୯) ପୁସ୍ତକ ଦୁଇଟିରେ ଜଳନ୍ଧରଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟ ଉପରେ ଆଲୋକପାତ କରାଯାଇଛି। ଡକ୍ଟର ମହାନ୍ତିଙ୍କ ପୁସ୍ତକରେ ଅଣଚାଳିଶଟି ପ୍ରବନ୍ଧ, ଉଣେଇଶଟି ଗଳ୍ପ, ତିନୋଟି କବିତା, ଗୋଟିଏ ନାଟକ, ଦୁଇଟି ଏକାଙ୍କିକା ଓ ଡାଏରୀର କିୟଦଂଶର ଆଲୋଚନା ମାଧ୍ୟମରେ ଜଳନ୍ଧରଙ୍କ ଅବଦାନର ମୂଲ୍ୟାୟନ କରାଯାଇଛି। ଜଳନ୍ଧରଙ୍କ ଅନ୍ୟାନ୍ୟ ବହୁ ରଚନା ଡକ୍ଟର ମହାନ୍ତିଙ୍କ ଦୃଷ୍ଟି ଅଗୋଚରରେ ରହିଯାଇଛି। 'ସାହିତ୍ୟିକ ଜଳନ୍ଧର ଦେବ' କ୍ରମରେ ସେ ଜଳନ୍ଧରଙ୍କ ଜୀବନୀର ଏକ କ୍ଷୀଣ ଝଲକ ପ୍ରଦାନ କରିଛନ୍ତି। ଶ୍ରୀଯୁକ୍ତ ବ୍ରହ୍ମା ବ୍ୟାପକ ଭାବେ ଜଳନ୍ଧରଙ୍କୁ ଆଲୋଚନା କରିଛନ୍ତି। କିନ୍ତୁ କେତେକ ତଥ୍ୟଗତ ତ୍ରୁଟି ପୁସ୍ତକର ପ୍ରାମାଣିକତାକୁ କ୍ଷୁଣ୍ଣ କରିଛି। ବାମଣ୍ଡାରୁ ପ୍ରକାଶିତ ସାମୟିକ ପତ୍ରିକା 'ଅନୁକୂଳ'ର କୋଷାଧକ୍ଷ ଜଳନ୍ଧର ଥିବାର ସେ ଘୋଷଣା କରନ୍ତି। ପ୍ରକୃତରେ ସମ୍ବଲପୁର ହିତୈଷିଣୀ (୨୧/୪) ୧୩-୧୧-୧୯୦୯ରେ 'ଅନୁକୂଳ' ଶୀଘ୍ର ପ୍ରକାଶ ପାଇବାର ସମ୍ବାଦ ପ୍ରକାଶିତ ହୋଇଥିଲା କିନ୍ତୁ ପତ୍ରିକାଟି ଲୋକଲୋଚନକୁ ଆସି ନାହିଁ। 'ଭାରତୀୟ ରମଣୀମାନଙ୍କ ଦୁରବସ୍ଥା ଦାମୋଦର ମିଶ୍ରଙ୍କ ରଚିତ କିନ୍ତୁ ଶ୍ରୀଯୁକ୍ତ ବ୍ରହ୍ମା ଏହାକୁ ଜଳନ୍ଧରଙ୍କ ରଚନା ରୂପେ ଭୁଲ୍‌ବଶତଃ ଗ୍ରହଣ କରିଛନ୍ତି। ସେ ଦର୍ଶାଇଛନ୍ତି ଜଳନ୍ଧର ପ୍ରଥମେ ଶଙ୍ଖର ସହସମ୍ପାଦକ ପରେ ସମ୍ପାଦକ ହୋଇଥିଲେ କିନ୍ତୁ ଜଳନ୍ଧର ଶଙ୍ଖର ସହସମ୍ପାଦକ କେବେ ନ ଥିଲେ ବରଂ ମାନସିଂହଙ୍କ ପରେ ୨ୟ ବର୍ଷ ୩ୟ ସଂଖ୍ୟାଠାରୁ ସେ ସମ୍ପାଦକତ୍ୱ ଗ୍ରହଣ କରିଥିଲେ। ଜଳନ୍ଧରଙ୍କ ଶିଶୁଗଳ୍ପ ସମୂହ, ଦେବସଭା ନାଟକ ଅନେକ କବିତା, ଗଳ୍ପ ନାଟକ ଓ ପ୍ରବନ୍ଧ ଶ୍ରୀଯୁକ୍ତ ବ୍ରହ୍ମାଙ୍କ ଦୃଷ୍ଟି ଅନ୍ତରାଳରେ ରହିଯାଇଛି।

ଜଳନ୍ଧରଙ୍କ ଅନେକ ପ୍ରବନ୍ଧ, ଗଳ୍ପ, କବିତା, ଭ୍ରମଣ କାହାଣୀ, ସମ୍ପାଦକୀୟ ପ୍ରଭୃତି ବିଭିନ୍ନ ପତ୍ରପତ୍ରିକା ଅନ୍ତରାଳରେ ରହିଯାଇଛି। ସେହି ସବୁକୁ ଏକତ୍ରିତ କରି ସଂକଳିତ କରିବା ଏକ ଐତିହାସିକ କର୍ତ୍ତବ୍ୟ। ଊନବିଂଶ ଶତାବ୍ଦୀରେ ତଥା ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଗଢ଼ି ଉଠିଥିବା ସାହିତ୍ୟର ନବ ଜାଗରଣ ଯୁଗର ସାରସ୍ୱତ ଆବେଦନକୁ ସ୍ପଷ୍ଟ କରିବାକୁ ଜଳନ୍ଧର ଗ୍ରନ୍ଥାବଳୀ ସଂକଳନ ଅପରିହାର୍ଯ୍ୟ। ଏଣୁ ଜଳନ୍ଧରଙ୍କ ସମସ୍ତ ରଚନାକୁ ଏକତ୍ରିତ କରି ପ୍ରକାଶ କରିବା ଏକ ଐତିହାସିକ ଆବଶ୍ୟକତା। ଏହି ଆବଶ୍ୟକତା ପୂରଣପାଇଁ ମୋର ମନୋଭାବ ବ୍ୟକ୍ତ କରିବାରୁ ସମ୍ଭ୍ରାନ୍ତ ପ୍ରକାଶନ ସଂସ୍ଥା କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରର ସ୍ୱତ୍ୱାଧିକାରୀ ସମ୍ମାନାସ୍ପଦ ଶ୍ରୀଯୁକ୍ତ ନୃସିଂହ ପ୍ରସାଦ ମିଶ୍ର ମହୋଦୟ ଜଳନ୍ଧରଦେବ ଗ୍ରନ୍ଥାବଳୀକୁ ପ୍ରକାଶ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ। ତାଙ୍କରି ସଦୁତ୍ସାହ ଯୋଗୁଁ ଏହି ଗ୍ରନ୍ଥାବଳୀ ସୂର୍ଯ୍ୟାଲୋକ ଦେଖିପାରିଛି। ଓଡ଼ିଆ ସାହିତ୍ୟର ଏହି ଅନନ୍ୟ ସେବାପାଇଁ ନୃସିଂହବାବୁଙ୍କୁ ମୁଁ କୃତଜ୍ଞତା ଜଣାଉଛି।

ସଂସିତ ଗ୍ରନ୍ଥାବଳୀରେ ଅନ୍ତର୍ଭୁକ୍ତ ବିଭାଗ ପ୍ରକାଶ କାଳ ଅନୁସାରେ କ୍ରମାନ୍ୱୟରେ ସଜ୍ଜିତ। ପ୍ରଥମ କବିତା ୧୮୯୪ରେ ପ୍ରକାଶିତ, ପ୍ରଥମ ପ୍ରବନ୍ଧ ଓ ଆଲୋଚନା ୧୮୯୫ର ପ୍ରକାଶିତ ଭ୍ରମଣ କାହାଣୀଗୁଡ଼ିକ ୧୯୧୦ ରୁ ପ୍ରକାଶିତ, ପ୍ରଥମ ଗଳ୍ପ ଓ ପ୍ରଥମ ରମ୍ୟରଚନା ୧୯୧୪ରେ ପ୍ରକାଶିତ। କିନ୍ତୁ ଗଳ୍ପ 'ଗୋଟିଏ କଥା' ରମ୍ୟ ରଚନା 'ଭୂତ ପ୍ରେତ' ଅପେକ୍ଷା ପୂର୍ବରୁ ପ୍ରକାଶିତ ହୋଇଥିବାରୁ ଗଳ୍ପ ବିଭାଗକୁ ରମ୍ୟରଚନା ପୂର୍ବରୁ ଦିଆଯାଇଛି। ଜଳନ୍ଧରଙ୍କ ଶିଶୁଗଳ୍ପଗୁଡ଼ିକ ଯଦିଓ ୧୯୩୩ରେ ପ୍ରକାଶିତ ତଥାପି ଅଧ୍ୟୟନର ସୁବିଧା ଦୃଷ୍ଟିରୁ ସେଗୁଡ଼ିକୁ ଗଳ୍ପ ବିଭାଗ ସହିତ ସଂଯୋଜିତ କରାଯାଇଛି। ଦେବସଭା ନାଟକର ରଚନାକାଳ ୧୯୩୦, ଏଣୁ ପ୍ରଥମ ପ୍ରକାଶିତ ନାଟକ ରୂପେ ଏହାକୁ ଗ୍ରହଣ କରାଯାଇଛି। ପ୍ରତିଟି ବିଭାଗର ରଚନାଗୁଡ଼ିକ ମଧ୍ୟ କାଳାନୁକ୍ରମରେ ସଜ୍ଜିତ କରାଯାଇଛି। ପ୍ରତ୍ୟେକ ବିଭାଗର ଐତିହାସିକ ପୃଷ୍ଠଭୂମିକୁ ସ୍ପଷ୍ଟ କରିବାପାଇଁ ପ୍ରାକ୍‌ସୂଚନା ପ୍ରଦତ୍ତ ହୋଇଛି। ଗ୍ରନ୍ଥାବଳୀକୁ ତଥ୍ୟପୂର୍ଣ୍ଣ କରିବାପାଇଁ 'ଜଳନ୍ଧର ଜୀବନାୟନ' କ୍ରମରେ ଜଳନ୍ଧରଦେବଙ୍କର ଜୀବନଚର୍ଯ୍ୟାର ପ୍ରାମାଣିକ ଚିତ୍ର ପ୍ରଦତ୍ତ ହୋଇଛି। 'ଜଳନ୍ଧରଦେବଙ୍କ ସୃଷ୍ଟି ସଂଭାର' (ପରିଶିଷ୍ଟ-୧) ଶୀର୍ଷକରେ ତାଙ୍କର ରଚନାଗୁଡ଼ିକର କାଳାନୁକ୍ରମିକ ବିବରଣୀ ଓ ପ୍ରକାଶକାଳ ଦିଆଯାଇଛି।

ଏହି ଗ୍ରନ୍ଥାବଳୀ ସଂକଳନ ସମୟେ ରାଜ୍ୟ ଅଭିଲେଖାଗାର ଭୁବନେଶ୍ୱରର କର୍ମକର୍ତ୍ତା, କଟକର ଉତ୍କଳ

ସାହିତ୍ୟ ସମାଜର ଗ୍ରନ୍ଥଗାରିକ ସ୍ନେହର କୁମାରୀ ଲକ୍ଷ୍ମୀପ୍ରିୟା ଜେନାଙ୍କ ସାହାଯ୍ୟକୁ ସ୍ମରଣ କରୁଛି। ବନ୍ଧୁ ସନ୍ତୋଷ କୁମାର ମହାପାତ୍ର, ସୁବାସ ଚନ୍ଦ୍ର ମୋଦି ଓ ଡକ୍ଟର ବିଜୟାନନ୍ଦ ସିଂହଙ୍କ ସମୟୋଚିତ ପ୍ରେରଣା ଓ ସାହାଯ୍ୟ ମୋତେ ଆଗେଇବାକୁ ପଥ ପରିଷ୍କାର କରିଛି। ସେମାନଙ୍କୁ ମୋର ଧନ୍ୟବାଦ ଅର୍ପଣ କରୁଛି।

ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶଙ୍କ ମହାର୍ଘ ଉପଦେଶ ବୈଜ୍ଞାନିକ ଭିତ୍ତିରେ ଗ୍ରନ୍ଥାବଳୀ ସମ୍ପାଦନାପାଇଁ ମୋତେ ପ୍ରୋତ୍ସାହିତ କରିଛି। ଏହି ଅବସରରେ ତାଙ୍କୁ ପ୍ରଣାମ ଜଣାଉଛି। ପୂଜାସ୍ପଦ ଡକ୍ଟର ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ସମୟୋଚିତ ସାହାଯ୍ୟ ଓ ଶୁଭାଶିଷକୁ ସ୍ମରଣ କରୁଛି। ଡକ୍ଟର ଗୌରାଙ୍ଗ ଚରଣ ଦାଶଙ୍କ ଦିଗ୍‌ଦର୍ଶନ ମୋତେ ଆହ୍ଲାଦିତ କରିଛି। ପ୍ରାବନ୍ଧିକ ନକୁଳ ଚନ୍ଦ୍ର ସାହୁ ଗ୍ରନ୍ଥାବଳୀ ସମ୍ପାଦନା ସମୟରେ ନିଜର ଉତ୍ସାହବାଣୀଦ୍ୱାରା ମୋ କାର୍ଯ୍ୟକୁ ତ୍ୱରାନ୍ୱିତ କରିଛନ୍ତି। ଏହି ସାରସ୍ୱତ ଅଗ୍ରଜମାନଙ୍କୁ ପ୍ରଣାମ କରୁଛି।

ଜଳନ୍ଧରଙ୍କ ଇତସ୍ତତଃ ରଚନାବଳୀକୁ ମୋର ବହି ଗଦା ଭିତରୁ ଠାବ କରି ପାଠ୍ୟପ୍ରସ୍ତୁତ କରିବା, ମୂଳ ପ୍ରକାଶନ ସହିତ ପୁସ୍ତକ ପାଠର ତୁଳନା କରିବା ଦିଗରେ ରିଙ୍କି, ବାଉଲ, ମାମୀ, ରୋଜିଙ୍କ ସହଯୋଗପାଇଁ ସେମାନଙ୍କୁ ଆଶୀର୍ବାଦ କରୁଛି। ଘରର ଯାବତୀୟ ଜଞ୍ଜାଳ ଭିତରେ ମୋ ପାଇଁ ଲେଖିବାର ସୁଯୋଗ ସୃଷ୍ଟି କରିଥିବାରୁ ପ୍ରିୟତମା ପତ୍ନୀ ଶୈଳବାଳାଙ୍କୁ ଆନ୍ତରିକ ସ୍ନେହ ପ୍ରଦାନ କରୁଛି। ମୋ କାର୍ଯ୍ୟକୁ ସଫଳକାମ କରିବାରେ ଏମାନଙ୍କ ଯୋଗଦାନ ଭୁଲିବାର ନୁହେଁ।

ସର୍ବଶେଷରେ ଏହି ପୁସ୍ତକର ମୁଦ୍ରଣ ଦାୟିତ୍ୱ ନେଇଥିବା ମୀନାକ୍ଷୀ ଡି.ଟି.ପି. ଏବଂ ସଙ୍ଗୀତା ପ୍ରିଣ୍ଟର୍ସ, କଟକର କର୍ମକର୍ତ୍ତାଙ୍କୁ ପରିଚ୍ଛନ୍ନ ମୁଦ୍ରଣପାଇଁ ଧନ୍ୟବାଦ ଜଣାଉଛି।

ଏହି ସଂକଳନ ପ୍ରକାଶନଦ୍ୱାରା ଜଳନ୍ଧର ସାହିତ୍ୟ ଅଧିକ ଚର୍ଚ୍ଚିତ ହେବ ଏହାହିଁ କାମନା।

**ଦେବଗଡ଼ (ବାମଣ୍ଡା)** **ଡକ୍ଟର ଫଣୀନ୍ଦ୍ରଭୂଷଣ ନନ୍ଦ**
**ମକର ସଂକ୍ରାନ୍ତି**
**ତା. ୧୪.୦୧.୨୦୦୫**



# ଜଳନ୍ଧର ଜୀବନାୟନ

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ଏକ ବିସ୍ମୟ ପ୍ରତିଭା ଜଳନ୍ଧରଦେବ। ସାର୍ ବାସୁଦେବ ସୁଢଳଦେବ କର୍ତ୍ତୃକ ବାମଣ୍ଡାରେ ସମ୍ଭୂତ ନବଜାଗରଣର ନୂତନ ଚିନ୍ତା ଓ ଚେତନାର ପୁଷ୍ପିତ ଉଦ୍ୟାନର ମହୀୟାନ୍ ଫଳ ଜଳନ୍ଧର। ଜଳନ୍ଧର ସ୍ରଷ୍ଟା ମାନସ ବାମଣ୍ଡାରେ ପୃଷ୍ଟ ଓ ବିକଶିତ ହୋଇ ସାମଗ୍ରିକ ଭାବେ ମାନବବାଦର ପ୍ରତିଷ୍ଠାରେ ସଫଳକାମ। ଦେଶ ଓ ଜାତିପ୍ରତି ତାଙ୍କର ସତ୍ୟଶୀଳ ପ୍ରତିବଦ୍ଧତା ପ୍ରକଟିତ। ସ୍ୱାଧୀନମନସ୍କ ଜଳନ୍ଧର ଧର୍ମୀୟ କୁସଂସ୍କାରପୂର୍ଣ୍ଣ ଶୃଙ୍ଖଳ ମୋଚନ କରି ଏକ ଉଦାର ମାନବବାଦର ପ୍ରଚାର ସହିତ ଜୀବନ ଓ ସମାଜପ୍ରତି ଯୁକ୍ତିନିଷ୍ଠ ସତ୍ୟବଦ୍ଧ ଦୃଷ୍ଟିକୋଣ ପ୍ରକାଶ କରିଛନ୍ତି। ତାଙ୍କ ସୃଷ୍ଟିରେ ପରମ୍ପରାପୁଷ୍ଟ ପୌତ୍ତଳିକତା ପ୍ରତି ତୀବ୍ର ବିଦ୍ରୂପ ସହିତ ସ୍ୱାଧୀନ ମତବାଦ ପ୍ରତିଷ୍ଠାର ଚରମ ଉତ୍କଣ୍ଠା ପ୍ରକାଶ ପାଏ। ବିଗତ ଶତାବ୍ଦୀର ପାଶ୍ଚାତ୍ୟ ଶିକ୍ଷା ଫଳରେ ଯେଉଁ ବିରାଟ ଚିତ୍ତ ବିପ୍ଳବ ସୃଷ୍ଟି ହେଲା, ତାହା ଏ ଦେଶର ଜନଜୀବନକୁ ଅସମ୍ଭବ ଚିନ୍ତନରେ ଏକ ବାସ୍ତବବାଦୀ, ବିଚାରସିଦ୍ଧ ଯୁକ୍ତିସମ୍ମତ ଦୃଷ୍ଟିକୋଣ ପ୍ରକାଶରେ ବାଧକଲା। ଏହି କ୍ରାନ୍ତିକାରୀ ପ୍ରେକ୍ଷାରେ ଦେଶ ଓ ଜାତିକୁ ମୋହାଚ୍ଛନ୍ନ କରି ରଖିବାର ରୀତିନୀତି, ଆଚାର ବ୍ୟବହାର, ସମାଜବନ୍ଧନ, ଅନ୍ଧବିଶ୍ୱାସ, କୁସଂସ୍କାରର ଅନ୍ଧକାରକୁ ବିଦୀର୍ଣ୍ଣ କରି ଜ୍ଞାନଦୀପ ପ୍ରଜ୍ଜ୍ୱଳିତ କରିବା ଅପରିହାର୍ଯ୍ୟ ହୋଇଉଠିଥିଲା। ସେହି ଦୀପଶିଖା ପ୍ରତ୍ୟେକ ସ୍ୱାଧୀନ ଚିନ୍ତକ, ଦେଶପ୍ରେମୀ ସୁଧୀମଣ୍ଡଳୀର ଆତ୍ମିକ ଆଲୋକରେ ଭାସ୍ୱର ହୋଇ ମୁକ୍ତିର ପଥ ପ୍ରଦର୍ଶନରେ ନିୟୋଜିତ ହେଲା। ଏପରି ଏକ ଆତ୍ମିକ ଆଲୋକର ଅନୁବର୍ତ୍ତନ ଜଳନ୍ଧରଙ୍କ ଜୀବନଚର୍ଯ୍ୟାରେ ସୁସ୍ପଷ୍ଟ।

ଜଳନ୍ଧରଦେବ ଏକାଧାରରେ ଜଣେ କବି, ଗାଳ୍ପିକ, ନାଟ୍ୟକାର ଓ ପ୍ରାବନ୍ଧିକ। ସେ ଓଡ଼ିଆ ସାହିତ୍ୟର ପ୍ରତିଟି ବିଭାଗକୁ ନିଜସ୍ୱ ଦାନରେ ଋଦ୍ଧିମନ୍ତ କରିଛନ୍ତି। ସମକାଳୀନ ପତ୍ରପତ୍ରିକାରେ ତାଙ୍କର ଅଜସ୍ର ରଚନା ପ୍ରକାଶିତ; କିନ୍ତୁ ଓଡ଼ିଆ ସାହିତ୍ୟର ଇତିହାସରେ ତାଙ୍କୁ ସେତେଟା ସମ୍ମାନ ପ୍ରଦାନ କରାଯାଇ ନାହିଁ। ଜଳନ୍ଧରଙ୍କ ନାମୋଚ୍ଚାରଣ କରି କତିପୟ ସମାଲୋଚକ ନିଜର କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି। କେବଳ ମାୟାଧର ମାନସିଂ ଓ ଶ୍ରୀନିବାସ ମିଶ୍ର ଜଳନ୍ଧରଙ୍କ ପ୍ରାବନ୍ଧିକ ପ୍ରତିଭାକୁ ଓ ବୈଷ୍ଣବ ଚରଣ ସାମଲ ତାଙ୍କର ଗଳ୍ପ ସତ୍ତାକୁ ଆନ୍ତରିକ ନିରୀକ୍ଷଣର ପ୍ରଚେଷ୍ଟା କରିଛନ୍ତି। ଏହି ସମାଲୋଚକଙ୍କ ମନ୍ତବ୍ୟ ଅନ୍ତରାଳରେ ଜଳନ୍ଧରଙ୍କ ବିଶେଷତ୍ୱ ଅନ୍ୱେଷଣ କରାଯାଇପାରେ।

**(୧) ମାନସିଂ :** ''ଗତ ଶତାବ୍ଦୀରେ, ଆରଣ୍ୟକ ରାଜ୍ୟ ବାମଣ୍ଡାରେ ପୁଣି ରାଜବଂଶର ଜାତ ହୋଇ ମଧ୍ୟ, ଜଳନ୍ଧରଦେବ ଯେଉଁ ବଳିଷ୍ଠ ସ୍ୱାଧୀନଚିନ୍ତା ଓ ବୈଜ୍ଞାନିକ ଦୃଷ୍ଟିକୋଣ ଦେଖାଇ ଯାଇଛନ୍ତି ତାହା ପ୍ରକୃତରେ ବିସ୍ମୟକର। ସେ ଏ ଦେଶର ସର୍ବମାନ୍ୟ ଓ ଜନପ୍ରିୟ ପ୍ରାଚୀନ ମହାକାବ୍ୟ ଯୁଗ୍ମ ରାମାୟଣ ଓ ମହାଭାରତର ସମାଲୋଚନା କରି ଓଡ଼ିଶାରେ କୁସଂସ୍କାରଗ୍ରସ୍ତ ଜନତାର ପ୍ରିୟ ପ୍ରତିମାଗୁଡ଼ିକୁ ପ୍ରଥମ କରି ଭାଙ୍ଗି ଧୂଳିସାତ୍ କରିଯାଇଛନ୍ତି।''

(ଓଡ଼ିଆ ସାହିତ୍ୟର ଇତିହାସ-୧୯୬୭)

**(୨) ଶ୍ରୀନିବାସ ମିଶ୍ର :** ''ବିଦ୍ୟା ଓ ସଂସ୍କୃତି ସଚେତନ ବାମଣ୍ଡାର ପରିବେଶ ଲେଖକଙ୍କ ଚିତ୍ତରେ ଆଶ୍ଚର୍ଯ୍ୟଜନକ ଭାବେ ଜୀବନ ପ୍ରତି ଏକ ବୈଜ୍ଞାନିକ ହେତୁବାଦୀ ଦୃଷ୍ଟିଭଙ୍ଗୀର ବିକାଶ ଘଟାଇଥିଲା। ରାମାୟଣ ଓ ମହାଭାରତର ବିଚାର, ଭଗବଦ୍‌ଗୀତାର ମହତ୍ତ୍ୱ ନିରୂପଣମୂଳକ ପ୍ରବନ୍ଧରେ ଲେଖକଙ୍କ ବହୁ ଶାସ୍ତ୍ରଦର୍ଶିତା, ବିଶ୍ଳେଷଣପାଟବ ଓ ସ୍ୱାଧୀନ ଚିନ୍ତାର ପ୍ରକାଶ ଦେଖିବାକୁ ମିଳେ।''

(ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟ-୧୯୭୮)

**(୩) ବୈଷ୍ଣବ ଚରଣ ସାମଲ :** ''ପଶ୍ଚିମ ଓଡ଼ିଶାର ଦେବଗଡ଼ ରାଜପରିବାରରେ ଜନ୍ମଗ୍ରହଣ କରି, ରାଜକବିମାନଙ୍କର ସମ୍ପର୍କରେ ଆସି ଜଳନ୍ଧରଦେବଙ୍କର ସାରସ୍ୱତ ପ୍ରତିଭାର ବିକାଶ ହୋଇଥିଲା। ସେ ଏକାଧାରରେ ଥିଲେ ଜଣେ ଗାଳ୍ପିକ, ପ୍ରାବନ୍ଧିକ, ସମୀକ୍ଷକ ଓ ଚିତ୍ରକର। ଗାଳ୍ପିକ ଭାବରେ ଆପଣାର ସ୍ୱତନ୍ତ୍ର ଧାରାଟିଏ ସେ ସୃଷ୍ଟି କରି ଦେଇଥିଲେ। ସମାଜକୁ ସୁସ୍ଥ, ସୁନ୍ଦର, ନିରାମୟ କରିବାପାଇଁ ଓ ଜୀବନରୁ ସକଳ ଫାଙ୍କି, ଛଳନା ଓ ପ୍ରବଞ୍ଚନାକୁ ଦୂରେଇ ଦେବାପାଇଁ ସେ ଗଳ୍ପ ମାଧ୍ୟମରେ ପ୍ରେରଣା ଦେଇଛନ୍ତି।''

[ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ (୧୯୨୦-୧୯୫୦)
୨ୟ ଭାଗ୧୯୯୦]

ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ଆଲୋଚକମାନେ ଜଳନ୍ଧରଙ୍କ ଉପରେ ଆଲୋକପାତ କଲାବେଳେ ଯେଉଁ କେତୋଟି ଦିଗପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରନ୍ତି ସେଗୁଡ଼ିକ ଉଦ୍ଧୃତ ତିନୋଟି ପ୍ରସଙ୍ଗରେ ପ୍ରାୟତଃ ସମାନ। ସେଗୁଡ଼ିକ ହେଲା ବାମଣ୍ଡାର ରାଜପରିବାରରେ ଜନ୍ମିତ ଜଳନ୍ଧରଙ୍କ ଉପରେ ବାମଣ୍ଡା ସାରସ୍ୱତ ପରିବେଶର ପ୍ରଭାବ, ଜଳନ୍ଧରଙ୍କ ଯୁକ୍ତିନିଷ୍ଠ ବୈଜ୍ଞାନିକ ଦୃଷ୍ଟିକୋଣ ଓ ସଂସ୍କାରକ ଭାବେ ସମାଜର ପୁନଃ ନିର୍ମାଣ ପ୍ରେକ୍ଷାରେ ଶାସ୍ତ୍ରପୁରାଣ ଓ ସାହିତ୍ୟର ସଂସ୍କାର ସାଧନର ପ୍ରଚେଷ୍ଟା। ଏହି ତିନୋଟି ପ୍ରସଙ୍ଗର ବିଶ୍ଳେଷଣ କରି ଜଳନ୍ଧର ମାନସର ପୃଷ୍ଠଭୂମି ଗଠନରେ ତାଙ୍କର ଜୀବନ ପ୍ରସ୍ଥର ପର୍ଯ୍ୟାଲୋଚନା ସର୍ବାଦୌ କର୍ତ୍ତବ୍ୟ।

ଦ୍ୱାଦଶ ଶତାବ୍ଦୀଠାରୁ ବାମଣ୍ଡା ରାଜ୍ୟକୁ ଗଙ୍ଗବଂଶ ରାଜାମାନେ ଶାସନ କରୁଥିବାର ଜଣାପଡ଼େ। ଏହି ରାଜବଂଶର ପ୍ରତିଷ୍ଠାତା ଥିଲେ ସରଯୂଦେବ। ଏହାଙ୍କର ରାଜଧାନୀ ପ୍ରଥମେ ବାମଣ୍ଡା ଗ୍ରାମରେ ଥିବାରୁ ଗ୍ରାମକୁ ବାମଣ୍ଡାଗଡ଼ ଓ ତାଙ୍କ ଦ୍ୱାରା ଶାସିତ ଭୂଖଣ୍ଡକୁ ବାମଣ୍ଡା ରାଜ୍ୟ ନାମରେ ଅଭିହିତ କଲେ। ଏହି ବଂଶର ଷୋଡ଼ଶ ରାଜା ରଘୁନାଥ ଦେବଙ୍କ ବଂଶଧର ବୀରବର (ବିରୋଦ୍) ଦେବଙ୍କର ତୃତୀୟ ପୁତ୍ର ଜଳନ୍ଧର। ଦେବଗଡ଼ ନିକଟସ୍ଥ 'ବଣିଆ କିଲିଣ୍ଡା' ଗ୍ରାମର ଏକ ସମ୍ଭ୍ରାନ୍ତ କ୍ଷତ୍ରିୟ ପରିବାରରେ ଜଳନ୍ଧର ଦେବ ୧୮୭୨ ମସିହା ଅକ୍ଟୋବର ୧୫ ତାରିଖରେ ଜନ୍ମଲାଭ କରିଥିଲେ। ଶୈଶବରୁ ମାତୃହୀନ ଏହି ଶିଶୁକୁ ପିତା ବୀରବର ଦେବ ରାଜା ବାସୁଦେବ ସୁଢ଼ଳଦେବଙ୍କ ମାତା ବିଜୟ କୁମାରୀଙ୍କ ହସ୍ତରେ ଅର୍ପଣ କରିଦେଲେ। ସୁଢ଼ଳଦେବଙ୍କ ପ୍ରଥମାପତ୍ନୀ ଗିରିରାଜକୁମାରୀ ସଚ୍ଚିଦାନନ୍ଦ ଦେବଙ୍କୁ ଜନ୍ମଦେଇ ପରଲୋକ ଗମନ କରିଥିଲେ। ଫଳତଃ, ସଚ୍ଚିଦାନନ୍ଦ ଓ ଜଳନ୍ଧରଙ୍କ ଲାଳନପାଳନ ରାଜମାତା ବିଜୟକୁମାରୀଙ୍କ ହସ୍ତରେ ନ୍ୟସ୍ତ ଥିଲା। ଜଳନ୍ଧର ଶୈଶବରୁ ରାଜପ୍ରାସାଦରେ ବଢ଼ିଥିଲେ। ସଚ୍ଚିଦାନନ୍ଦ ଥିଲେ ଜଳନ୍ଧରଙ୍କ ପ୍ରଧାନ ସହାଧ୍ୟାୟୀ।

କୃଷ୍ଣାତ୍ରେୟ ଗୋତ୍ର ଅଙ୍ଗୀରା ପ୍ରବରରେ ଜଳନ୍ଧରଙ୍କ ଜନ୍ମ। ବାସୁଦେବ ସୁଢ଼ଳଦେବଙ୍କ ଜନ୍ମିତ ମାତା ବିଜୟକୁମାରୀ ତାଙ୍କୁ ପାଳନ କରିଥିଲେ। ଜଳନ୍ଧର ଗଙ୍ଗବଂଶୀ କ୍ଷତ୍ରିୟ ଥିଲାବେଳେ ମାତୁଳାଳୟ ଥିଲେ କେନ୍ଦୁଝରର ଭଞ୍ଜବଂଶୀ କ୍ଷତ୍ରିୟ। ତାଙ୍କ ଧମନୀରେ ପବିତ୍ର କ୍ଷତ୍ରିୟରସ ପ୍ରବାହିତ ହେଉଥିଲା। ସେ ଆଜୀବନ ବୀର ପରି ସାମାଜିକ ସମସ୍ୟାକୁ ସାମ୍ନା କରିଥିଲେ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଉଚ୍ଚଶିକ୍ଷାର ସୁବିଧା ପାଇଁ ୧୮୮୨ ରେ 'ରାଜକୁମାର ଉଚ୍ଚବିଦ୍ୟାଳୟ' (ବର୍ତ୍ତମାନ ରାଜା ବାସୁଦେବ ଉଚ୍ଚବିଦ୍ୟାଳୟ) ଦେବଗଡ଼ଠାରେ ସ୍ଥାପନ କରନ୍ତି। ଏହି ବିଦ୍ୟାଳୟରେ ସାଧାରଣ ଛାତ୍ରଙ୍କ ସହିତ ଏକାସନରେ ବସି ଯୁବରାଜ ସଚ୍ଚିଦାନନ୍ଦ ଓ ଜଳନ୍ଧର ଅଧ୍ୟୟନ କରନ୍ତି। ସମକାଳରେ ବାଙ୍କୀ ସୁବର୍ଣ୍ଣପୁରର ଜଗନ୍ନାଥ ପଟ୍ଟନାୟକ, ରାମଲାଲ୍ ମୈତ୍ର, ବାଲେଶ୍ୱରର ଭୋଳାନାଥ ସାମନ୍ତରାୟ, ଗିରୀଶଚନ୍ଦ୍ର ଘୋଷ ପ୍ରମୁଖ ଶିକ୍ଷକଙ୍କ ଅଧ୍ୟାପନା ଜଳନ୍ଧରଙ୍କ ଛାତ୍ର ଜୀବନକୁ ପ୍ରଭାବିତ କରିଥିଲା। ୧୮୮୫ ବେଳକୁ ସୁଢ଼ଳଦେବ ବାମଣ୍ଡାରେ ଶିକ୍ଷକତା କରିବାପାଇଁ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପରାମର୍ଶକ୍ରମେ ବିଜୟ ଚନ୍ଦ୍ର ମଜୁମଦାରଙ୍କୁ ଆମନ୍ତ୍ରଣ କରିଥିଲେ। ବିଜୟଚନ୍ଦ୍ର ମଜୁମଦାରଙ୍କ ତୀକ୍ଷ୍ଣ ଅନ୍ତର୍ଦୃଷ୍ଟି, କୁସଂସ୍କାରମୁକ୍ତ ଆଧୁନିକ ଶିକ୍ଷାପ୍ରଣାଳୀ ଜଳନ୍ଧରଙ୍କ ଉପରେ ଗଭୀର ରେଖାପାତ କରିଥିଲା। ୧୮୮୬ରୁ ବିଜୟଚନ୍ଦ୍ର ରାଜକୁମାର ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ ନିର୍ବାହ କରନ୍ତି। ବିଜୟ ଚନ୍ଦ୍ର ପୁରାତନ ଅନ୍ଧବିଶ୍ୱାସ, ପୌତ୍ତଳିକତା ଓ ଅଶିକ୍ଷାକୁ ଦୂର କରିବାରେ ସତତ ଯତ୍ନବାନ୍ ଥିଲେ। ତାଙ୍କରି ପ୍ରଭାବରେ ମୁଖ୍ୟତଃ ବାମଣ୍ଡାର ଛାତ୍ରଗଣ ସୃଜନଶୀଳ ମାନସର ଅଧିକାରୀ ହୋଇପାରିଥିଲେ।

ଜଳନ୍ଧର ଜଣେ ଆଦର୍ଶ ଓ ମେଧାବୀ ଛାତ୍ର ଥିଲେ। ପୁଣି ଥିଲେ ଅଧ୍ୟବସାୟୀ ଏବଂ କର୍ମଠ। ଜୀବନବ୍ୟାପୀ ଓଡ଼ିଆ ସାହିତ୍ୟ ସାଧନା କରିଛନ୍ତି। ଏଥି ସହିତ ରାଜନୀତି, ସମାଜନୀତି, ସଂସ୍କୃତଶିକ୍ଷା, ବିଜ୍ଞାନଶିକ୍ଷା ଗ୍ରହଣ କରି ସେ ଜଣେ ସ୍ୱୟଂସମ୍ପୂର୍ଣ୍ଣ ଆଦର୍ଶ ପୁରୁଷରୂପେ ପ୍ରତିଭାତ ହୋଇଥିଲେ। ଆଧୁନିକ ଶିକ୍ଷା ସହିତ ପ୍ରାଚୀନ ଶାସ୍ତ୍ରସମୂହର ଅଧ୍ୟୟନପାଇଁ ସେ ସଂସ୍କୃତ ଶିକ୍ଷା ଉପରେ ସମଧିକ ଧ୍ୟାନ ଦେଇଥିଲେ। ବାମଣ୍ଡାର ପଣ୍ଡିତ ମଣ୍ଡଳୀଙ୍କ ସହାୟତାରେ ସେ ସଂସ୍କୃତ କାବ୍ୟ, ନାଟକ, ଅଳଙ୍କାର ପ୍ରଭୃତି ଶିକ୍ଷା କରିଥିଲେ। ଭୁବନେଶ୍ୱର ବଡ଼ପଣ୍ଡା, ମଧୁସୂଦନ, ତର୍କ ବାଚସ୍ପତି, କାଳୀଚରଣ ଦ୍ୱିବେଦୀ, ସୁଦର୍ଶନ ନ୍ୟାୟରତ୍ନ ପ୍ରମୁଖ ତାଙ୍କର ସଂସ୍କୃତ ଜ୍ଞାନକୁ ପରିପୁଷ୍ଟ ଓ ସମୃଦ୍ଧ କରିଥିଲେ।

୧୮୯୨ ମସିହା ଫେବୃୟାରୀ ମାସରେ ଇନ୍ଦ୍ରୋଦର ପଟ୍ଟନାୟକ ଓ ଜଳନ୍ଧରଦେବ ରାଜକୁମାର ସ୍କୁଲ୍‌ର ଏଣ୍ଟ୍ରାନ୍ସ

ପରୀକ୍ଷାପାଇଁ ସମ୍ବଲପୁର ଯାତ୍ରା କରିଥିଲେ ଏବଂ ଉତୀର୍ଣ୍ଣ ହୋଇଥିଲେ। ଘରୋଇ ଭାବେ ସେ ସଂସ୍କୃତ ଶିକ୍ଷା କରିଥିଲେ। ବଳରାମ ବିଦ୍ୟାରତ୍ନ 'ସିଦ୍ଧାନ୍ତ ଚନ୍ଦ୍ରିକା', ବିଶ୍ୱନାଥ ମହାପାତ୍ର 'ମୁଗ୍ଧବୋଧ ବ୍ୟାକରଣ' କାଳୀଚରଣ ବିଦ୍ୟାଭୂଷଣ 'କୁମର ବ୍ୟାକରଣ' ପ୍ରଭୃତି ବ୍ୟାକରଣଶାସ୍ତ୍ର ତାଙ୍କୁ ଶିକ୍ଷାପ୍ରଦାନ କରିଥିଲେ। ପଣ୍ଡିତ ଚିନ୍ତାମଣି ମିଶ୍ର ତାଙ୍କୁ ରଘୁବଂଶ, କୁମାର ସମ୍ଭବ ଓ ପ୍ରକାଶ ଚନ୍ଦ୍ରୋଦୟ ପ୍ରଭୃତି ସଂସ୍କୃତ କାବ୍ୟସଂଭାର ଶିକ୍ଷା ଦେଇଥିଲେ। ପଣ୍ଡିତ ମଧୁସୂଦନ ତର୍କବାଚସ୍ପତି 'ଅଭିଜ୍ଞାନ ଶକୁନ୍ତଳା', ସାହିତ୍ୟ ଦର୍ପଣ, ଅଳଙ୍କାର ଚନ୍ଦ୍ରିକା, ମୁରାରି ଚନ୍ଦ୍ରାଲୋକ ଓ ବେଦାନ୍ତ ପରିଭାଷା ପ୍ରଭୃତି ଅଳଙ୍କାର ଓ ଦର୍ଶନ ଶାସ୍ତ୍ରରେ ତାଙ୍କୁ ସୁଶିକ୍ଷିତ କରିଥିଲେ। ଭୁବନେଶ୍ୱର ବଡ଼ପଣ୍ଡା ସମୟକ୍ରମେ ଉପନିଷଦର ଗଭୀର ତତ୍ତ୍ୱକୁ ଜଳନ୍ଧରଙ୍କ ସାମ୍ନାରେ ଉନ୍ମୋଚନ କରିଥିଲେ। ସଂସ୍କୃତର ବିଭିନ୍ନ ଶାସ୍ତ୍ରରେ ଜଳନ୍ଧରଙ୍କ ଗଭୀର ପ୍ରବେଶ ଏହି ପଣ୍ଡିତମାନଙ୍କର ସହଯୋଗ ଓ ନିଜର ଐକାନ୍ତିକ ସାଧନା ଫଳରେ ସମ୍ଭବ ହୋଇଥିଲା। ବେଦ, ବେଦାନ୍ତ, ଉପନିଷଦ, ପୁରାଣ, ବ୍ରାହ୍ମଣ, ସମୂହର ପ୍ରତି ଶ୍ଳୋକକୁ ଗଭୀର ଅନ୍ତର୍ଦୃଷ୍ଟି ନେଇ ସେ ନିରୀକ୍ଷଣ କରିଥିଲେ ଯା' ଫଳରେ ରାମାୟଣ, ମହାଭାରତ, ଗୀତା ଓ ବେଦ ଉପରେ ଯୁକ୍ତିନିଷ୍ଠ ବିଶ୍ଳେଷଣ କରିବାରେ ସେ ସମର୍ଥ ହୋଇଥିଲେ।

ବାମଣ୍ଡାରୁ 'ସମ୍ବଲପୁର ହିତୈଷିଣୀ' ପତ୍ରିକାର ପ୍ରକାଶ (୧୮୮୯) ଓ ବିଦ୍ୟାରତ୍ନ, ନାରାୟଣ ଚନ୍ଦ୍ର ଦାସ, ଭୋଳାନାଥ ସାମନ୍ତରାୟ, ବିଜୟ ମଜୁମଦାର ତଥା ସୁଢଳଦେବଙ୍କ ସାରସ୍ୱତ ପ୍ରଭାବ ଜଳନ୍ଧରଙ୍କ କିଶୋର ପ୍ରାଣକୁ ଆକୃଷ୍ଟ କରିଥିଲା। ତାଙ୍କର ପରମ ସହାଧ୍ୟାୟୀ ସଚ୍ଚିଦାନନ୍ଦ, ବଳଭଦ୍ରଦେବ, ଦାମୋଦର ମିଶ୍ରଙ୍କ ସହିତ ସେ ନିଜସ୍ୱ ଦାନ ଫଳରେ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠା ଲାଭ କରିଥିଲେ।

ଯୁବରାଜ ସଚ୍ଚିଦାନନ୍ଦଙ୍କ ବିଜ୍ଞାନ ପାଠ ପ୍ରତି ଆକର୍ଷଣ ଦେଖି ସୁଢଳଦେବ ଅଜସ୍ର ଟଙ୍କା ବ୍ୟୟରେ ଏକ 'ବିଜ୍ଞାନ ମନ୍ଦିର' ଦେବଗଡ଼ଠାରେ ପ୍ରତିଷ୍ଠା କରିଥିଲେ। ବିଜ୍ଞାନ ଗବେଷଣାପାଇଁ ଏଠାରେ ଅନେକ ଆଧୁନିକ ଯନ୍ତ୍ରପାତି ସଂଯୁକ୍ତ ହୋଇଥିଲା। ଢାକା ଜିଲ୍ଲା ନିବାସୀ ଯୋଗେନ୍ଦ୍ର ମୋହନ ରାୟ ବିଜ୍ଞାନ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ। ରେଭେନ୍ସା କଲେଜର ବିଜ୍ଞାନ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ସୁଢଳଦେବଙ୍କ ଅନୁରୋଧକ୍ରମେ ବାରମ୍ବାର ଆସି ଶିକ୍ଷାନବିସମାନଙ୍କ ବିଜ୍ଞାନ ସମ୍ପର୍କିତ ସନ୍ଦେହକୁ ଦୂର କରୁଥିଲେ। ୧୮୯୯ ରେ ଏକ ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ର ଏହି ବିଜ୍ଞାନାଗାରରେ ସଂଯୁକ୍ତ ହୋଇଥିଲା। ଫଳରେ ଗ୍ରହନକ୍ଷତ୍ରଗଣଙ୍କ ଗତିବିଧି ନିରୀକ୍ଷଣ କରିବା ସହଜ ହୋଇଥିଲା।"ଏହି ସମସ୍ତ ଉପକରଣର ସଦ୍‌ବିନିଯୋଗ କରି ଜଳନ୍ଧର ଓ ସଚ୍ଚିଦାନନ୍ଦ ଜ୍ୟୋତିର୍ବିଦ୍ୟା ସମ୍ବଳିତ ଅନେକ ରଚନା ସୃଷ୍ଟି କରିଯାଇଛନ୍ତି। ଜଳନ୍ଧରଙ୍କ 'ଜ୍ୟୋତିର୍ବିଦ୍ୟାର ଜୟ', 'ନକ୍ଷତ୍ର', 'ଧ୍ରୁବ', 'ବାର', 'ଗ୍ରହଣ ବିଚାର' ପ୍ରଭୃତି ପ୍ରବନ୍ଧ ଏହି ଜ୍ଞାନର ଫଳପ୍ରସୂ।

ଜଳନ୍ଧର ଏଣ୍ଟ୍ରାନ୍ସ ପର୍ଯ୍ୟନ୍ତ ବିଧିବଦ୍ଧ ଶିକ୍ଷାଲାଭ କରିଥିଲେ ମଧ ପ୍ରକୃତି ଓ ସାହିତ୍ୟର ସେ ଥିଲେ ଆଜୀବନ ଶିଷ୍ୟ। ଅନୁଭୂତି ଓ ଅଭ୍ୟାସ ବଳରେ ସେ ଆୟତ୍ତ କରିଥିଲେ ବିଭିନ୍ନ ବିଦ୍ୟା। ସାରା ଜୀବନ ଉପଯୁକ୍ତ ପୁସ୍ତକ ପଠନ ଥିଲା ତାଙ୍କର ସର୍ବଶ୍ରେଷ୍ଠ ରୁଚି। ରାଜକୁମାର ସ୍କୁଲ ତଥା ଦେବଗଡ଼ ଛାତ୍ରସମାଜର ଉନ୍ନତି ପାଇଁ 'ଛାତ୍ର ସମିତି' 'ଆଲୋଚନା ସଭା' ଗଠନରେ ସେ ପ୍ରମୁଖ ଭୂମିକା ସମ୍ପାଦନ କରିଥିଲେ। ୧୮୯୦ ରେ ସ୍ଥାପିତ 'ଛାତ୍ର ସମିତି'ରେ ସଭାପତି ଥିଲେ ସଚ୍ଚିଦାନନ୍ଦଦେବ ଓ ସମ୍ପାଦକ ଜଳନ୍ଧରଦେବ। ଶିକ୍ଷକମାନେ ପ୍ରତ୍ୟେକ ସୋମବାର ଛାତ୍ରମାନଙ୍କୁ ରଚନାପାଇଁ ଏକ ବିଷୟ ଦେବେ ଏବଂ ଛାତ୍ରମାନେ ଉକ୍ତ ବିଷୟରେ ନିବନ୍ଧ ପ୍ରସ୍ତୁତ କରି ରବିବାର ପାଠ କରିବେ। ଶିକ୍ଷକମାନେ ଆବଶ୍ୟକସ୍ଥଳେ ରଚନାଟିକୁ ସଂଶୋଧନ କରି ମାର୍ଗଦର୍ଶନ କରିବେ। ଜଳନ୍ଧରଙ୍କ ଏହି ଉଦ୍ୟମ ବାମଣ୍ଡାରେ ଅନେକ ନବୀନ ସାହିତ୍ୟିକ ସୃଷ୍ଟି କରିଥିଲା। ବାମଣ୍ଡାର ଶିକ୍ଷକ ସମାଜ ଏହି ସୃଜନାତ୍ମକ କାର୍ଯ୍ୟକୁ ଆତ୍ମିକ ସମର୍ଥନ ଜଣାଇଥିଲେ।

ଜଳନ୍ଧର ବାମଣ୍ଡାର ଶିକ୍ଷାବ୍ୟବସ୍ଥା ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ଥିଲେ। ୧୮୯୨ ରେ ସେ ବାମଣ୍ଡାର ଦେୱାନୀ କାର୍ଯ୍ୟ ନିର୍ବାହ ସହିତ ଉଚ୍ଚ ପ୍ରାଥମିକ ଶ୍ରେଣୀର 'ପ୍ରାକୃତିକ ଭୂଗୋଳ' ବିଷୟର ପରୀକ୍ଷକ ନିଯୁକ୍ତ ହୋଇଥିଲେ। ୧୯୧୩ର ପ୍ରାଜ୍ଞ ପରୀକ୍ଷାରେ 'ଅଭିବ୍ୟକ୍ତିବାଦ' ଓ 'ପୃଥିବୀ ଇତିହାସ' ବିଷୟର ପରୀକ୍ଷକ ରୂପେ ମଧ ସେ ନିଜର କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିଥିଲେ। 'ପ୍ରାଜ୍ଞ ସ୍କୁଲ୍' ସଚ୍ଚିଦାନନ୍ଦ ଦେବଙ୍କ ଏକ ଅଭିନବ ପ୍ରୟୋଗ। ୧୯୯୦ରେ ଏହା ଦେବଗଡ଼ରେ ସ୍ଥାପିତ ହୋଇ ୧୯୨୦ ପର୍ଯ୍ୟନ୍ତ ଚାଲିଥିଲା। ୧୯୨୦ରେ ଏହା ଗୁରୁଟ୍ରେନିଂ ସ୍କୁଲ୍‌ରେ ରୂପାନ୍ତରିତ ହୋଇଥିଲା। ଇଂରେଜୀ ଶିକ୍ଷାର ପ୍ରତିଦ୍ୱନ୍ଦ୍ୱୀ ଏକ ଦେଶୀୟ ଶିକ୍ଷା ସଂସ୍ଥାନ ରୂପେ 'ପ୍ରାଜ୍ଞସ୍କୁଲ୍'ର ପରିକଳ୍ପନା। ଉଚ୍ଚ ପ୍ରାଥମିକ ପରେ ୬ ବର୍ଷ ଅଧ୍ୟୟନ ପରେ ପ୍ରାଜ୍ଞ ଉପାଧି ମିଳିଥାଏ। ଇଂରାଜୀ ବ୍ୟତିରେକେ ସମସ୍ତ ବିଷୟ ମାତୃଭାଷାରେ ଶିକ୍ଷାଦାନ

କରାଯାଏ । ପ୍ରାଙ୍କ ସ୍କୁଲରେ ଓଡ଼ିଆ, ଗଣିତ, ବିଜ୍ଞାନ, ସଂସ୍କୃତ, ଭୂଗୋଳ, ଇତିହାସ ପ୍ରଭୃତି ପାଠ୍ୟ ବିଷୟ ରୂପେ ଗୃହୀତ ହୋଇଥିଲା । ପ୍ରତ୍ୟେକ ଶ୍ରେଣୀ ନିମନ୍ତେ ପ୍ରାଚୀନ, ଆଧୁନିକ ଓଡ଼ିଆ ପୁସ୍ତକ, କାବ୍ୟ କବିତାଦି ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା । ଭଞ୍ଜ, ରାଧାନାଥ, ଗଙ୍ଗାଧର, ସଚ୍ଚିଦାନନ୍ଦ ପ୍ରମୁଖଙ୍କ କାବ୍ୟ କବିତା ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ପଣ୍ଡିତ ସୁଦର୍ଶନ ମିଶ୍ର ନ୍ୟାୟରତ୍ନ ଏହି ଅନୁଷ୍ଠାନର ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ ପରିଚାଳନା କରୁଥିଲେ ।

ବିଭିନ୍ନ ସମୟରେ ଜଳନ୍ଧର ଛାତ୍ର ସମାଜ ସହିତ ସମ୍ପୃକ୍ତ ରହି ସେମାନଙ୍କୁ ସୃଜନାତ୍ମକ କାର୍ଯ୍ୟରେ ଭାଗନେବାକୁ ଉପଦେଶ ପ୍ରଦାନ କରୁଥିଲେ । ୧୯୦୫ରେ 'ଶିକ୍ଷାତତ୍ତ୍ୱ ସମିତି' ବାମଣ୍ଡାରେ ଗଠିତ ହୋଇ ଶିକ୍ଷାର ଉନ୍ନତିସାଧନପାଇଁ ସଂକଳ୍ପବଦ୍ଧ ହୁଏ । ଏଥିରେ ସଭାପତିତ୍ୱ କରନ୍ତି ଜଳନ୍ଧର । ବିଭିନ୍ନ ସମୟରେ ଶିକ୍ଷା ସଂସ୍କାର ଏବଂ ଛାତ୍ରଙ୍କ ଭବିଷ୍ୟତ ଗଠନ ସମ୍ପର୍କରେ ଜଳନ୍ଧର ଗଠନମୂଳକ ଉପଦେଶ, 'ଛାତ୍ରସମିତି', 'ଛାତ୍ରବନ୍ଧୁ ସମିତି' ତଥା 'ଶିକ୍ଷାତତ୍ତ୍ୱ ସମିତି'ରେ ପ୍ରଦାନ କରନ୍ତି ।

ଜଳନ୍ଧରଦେବ ଏଣ୍ଟ୍ରାନ୍ସ ପରୀକ୍ଷା ଦେବା ପୂର୍ବରୁ ୧୮୯୨ରେ ବଣେଇ ରାଜବଂଶୀୟ ଗୋଛରା ଗ୍ରାମର ଖରପୋଷଦାର ଅଭିରାମ ଦେଓଙ୍କର କନ୍ୟା ସତ୍ୟଭାମାଙ୍କର ପାଣିଗ୍ରହଣ କରି ସେ ପାଞ୍ଚଟି ପୁତ୍ର ଓ ଛଅଟି କନ୍ୟାର ଜନକ ହୋଇଥିଲେ । ୧୮୯୩ରେ ତାଙ୍କର ଜ୍ୟେଷ୍ଠପୁତ୍ର ଶଶିଭୂଷଣ ଦେବଙ୍କର ଜନ୍ମ । ପରେ ପରେ ହରିପ୍ରସାଦ, ହରପ୍ରସାଦ, ଗିରିଜା ଶଙ୍କର ଓ ମଞ୍ଜୁଶ୍ରୀ ତଥା ଗିରିବାଳା, ହେମନଳିନୀ, ମାନକୁମାରୀ, ସରୋଜିନୀ, ଇନ୍ଦିରା କୁମାରୀ ଓ ଗଗନକୁମାରୀ ପ୍ରମୁଖ କନ୍ୟାଙ୍କ ଜନ୍ମ ହୁଏ । ସେ ନିଜର ପୁତ୍ର ଓ କନ୍ୟାମାନଙ୍କୁ ବିଭିନ୍ନ ଅଞ୍ଚଳରେ ସମ୍ଭ୍ରାନ୍ତ ରାଜା ଓ ଜମିଦାର ବଂଶରେ ବିବାହ କରାଇଥିଲେ । ଜ୍ୟେଷ୍ଠା କନ୍ୟା ଗିରିବାଳା ମୟୂରଭଞ୍ଜ ରାଜା ରାମଚନ୍ଦ୍ର ଭଞ୍ଜଙ୍କ ଭାଇ ହରିଶ୍ଚନ୍ଦ୍ର ଭଞ୍ଜଙ୍କୁ ୧୯୧୩ ନଭେମ୍ବର ମାସରେ ବିବାହ କରିଥିଲେ । ଏପ୍ରିଲ୍ ୧୯୧୪ରେ ଶ୍ୱଶୁରାଳୟରେ ତାଙ୍କର ଦେହାନ୍ତ ହୁଏ । ଏହି ଘଟଣା ସ୍ଥିତପ୍ରଜ୍ଞ ଜଳନ୍ଧରଙ୍କ ପ୍ରାଣତନ୍ତ୍ରୀକୁ ଦୋହଲାଇ ଦିଏ । ପିତୃପ୍ରାଣର ଅମୂର୍ତ୍ତ ଭାବନା 'ଅନୁତପ୍ତର ସାନ୍ତ୍ୱନା' ରମ୍ୟରଚନାରେ ପରିଦୃଶ୍ୟମାନ । ହେମନଳିନୀ ଖରସୁଆଁର ବିଟାପୁରଠାରେ, ମାନସକୁମାରୀ କଳାକୁରୀ, ସରୋଜିନୀ ଲାଞ୍ଜିଗଡ଼, ଇନ୍ଦିରା ଟାମ୍ପରଗଡ଼ ଜମିଦାର ବଂଶରେ ବିବାହ କରିଥିଲେ । ଗଗନକୁମାରୀ ଅବିବାହିତ ଥିଲେ ।

ଶୈଶବରୁ ଜଳନ୍ଧର ସୁଡଳଦେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଗଢ଼ିଉଠିଥିଲେ । କିନ୍ତୁ ଶେଷ ପର୍ଯ୍ୟନ୍ତ ଜଣେ ପିତୃ ସେବାକାରୀ ପୁତ୍ରଭାବେ ପିତା ବୀରବର ଦେବଙ୍କର ସେବା କରିଥିଲେ । ସେ ଜନ୍ମିତ ପିତାଙ୍କ ପରି ସୁଡଳଦେବଙ୍କୁ ମଧ୍ୟ ପିତୃତ୍ୱର ଆସନରେ ଉପାସନା କରୁଥିଲେ । ଜଳନ୍ଧରଙ୍କ ସେବା ଓ ଭକ୍ତିରେ ଶେଷଜୀବନ ସୁଖଶାନ୍ତିରେ ଅତିବାହିତ କରି ପିତା ବୀରବର ଦେବ ୪ ଜାନୁୟାରୀ ୧୯୦୫ ରେ ଇହଧାମ ତ୍ୟାଗ କରନ୍ତି । ୧୯୦୫ର ମାର୍ଚ୍ଚ ୨୩ ତାରିଖରେ ଜ୍ୟେଷ୍ଠପୁତ୍ର ଶଶିଭୂଷଣଙ୍କ ବ୍ରତୋତ୍ସବ ମହାସମାରୋହରେ ପାଳନ କରନ୍ତି ଜଳନ୍ଧର ।

ଜଳନ୍ଧରଙ୍କ ସାଂସାରିକ ଜୀବନ ସୁଖ ଦୁଃଖର ସମାହାରରେ ସମତୁଳ ଥିଲା । ପ୍ରଶାସନିକ କାର୍ଯ୍ୟ, ସାମାଜିକ ବ୍ୟସ୍ତତା, ବିରାଟ ପାରିବାରିକ ଜଞ୍ଜାଳ ମଧ୍ୟରେ ଜଣେ ନିର୍ବିକଳ୍ପ ସାଧକ ପରି ସେ ସାରସ୍ୱତ ସାଧନାକୁ ଅବ୍ୟାହତ ରଖିପାରିଥିଲେ ।

ଜଳନ୍ଧର ଥିଲେ ପ୍ରକୃତ ବିଦ୍ୟାର ଅଧିକାରୀ । ପୋଥିଗତ ବିଦ୍ୟା ଅପେକ୍ଷା ବ୍ୟାବହାରିକ ଜ୍ଞାନକୁ ସେ ଅଗ୍ରାଧିକାର ଦେଇଥିଲେ । ବାସ୍ତବଜ୍ଞାନ ଆହରଣପାଇଁ ସେ ବିଭିନ୍ନ ସ୍ଥାନ ଭ୍ରମଣରେ ଯାଇଥିଲେ । ସେ ବିଶ୍ୱାସ କରିଥିଲେ ଭ୍ରମଣ ବ୍ୟକ୍ତି ଚେତନାକୁ ପରିବ୍ୟାପ୍ତ କରେ । ପ୍ରତ୍ୟକ୍ଷ ଜ୍ଞାନ ମଣିଷର କୂପମଣ୍ଡୂକତ୍ୱକୁ ଦୂରେଇ ଜ୍ଞାନଚକ୍ଷୁକୁ ସମ୍ପ୍ରସାରିତ କରିଥାଏ । ୧୮୯୦ରେ ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ସହିତ ଜଳନ୍ଧର ଦାକ୍ଷିଣାତ୍ୟ ଭ୍ରମଣରେ ଯାଇଥିଲେ । ସମ୍ବଲପୁରଠାରୁ ନାଗପୁର ପଥରେ ମୁମ୍ବାଇ ପହଞ୍ଚିଥିଲେ ।

ମୁମ୍ବାଇର ଏଲିଫ୍ୟାଣ୍ଟ ପର୍ବତ ଗୁହା, ବାଣିଜ୍ୟପୋତ, ରାଜୋଦ୍ୟାନ ପ୍ରଭୃତି ଜଳନ୍ଧରଙ୍କୁ ଆକୃଷ୍ଟ କରିଥିଲା । ଏହି ଭ୍ରମଣକାରୀ ଦଳର ନେତୃତ୍ୱ ନେଇଥିଲେ ସୁଡଳଦେବ । ସେ ନିଜର ଜ୍ୟେଷ୍ଠପୁତ୍ର ସଚ୍ଚିଦାନନ୍ଦଙ୍କ ସହିତ ଜଳନ୍ଧରଙ୍କ ଜ୍ଞାନ ସାମ୍ରାଜ୍ୟକୁ ବିସ୍ତାରିତ କରିବାକୁ ଚାହୁଁଥିଲେ । ମୁମ୍ବାଇର ସମକାଳୀନ ସମାଜର ସର୍ବଶ୍ରେଷ୍ଠା ପଣ୍ଡିତା ଓ ସଂସ୍କାରିକା ରମାବାଈଙ୍କ ସହିତ ସୁଡଳଦେବଙ୍କ କଥୋପକଥନ ଜଳନ୍ଧରଙ୍କ କିଶୋର ପ୍ରାଣରେ ମହତାଦର୍ଶ ଖେଳାଇ ଦେଇଥିଲା । ମୁମ୍ବାଇରୁ ଅହମଦାବାଦ ଯାଇ ଦେଶୀୟ ଲୋକଙ୍କ ପରିଚାଳିତ କପଡ଼ା ଶିଳ୍ପ, ପୁନାଠାରେ ଶିବାଜୀଙ୍କ କୀର୍ତ୍ତି ଓ ନାରୀ ସ୍ୱାଧୀନତାର ସାମାଜିକ ବିଧି ଜଳନ୍ଧରଙ୍କ ସଂସ୍କାରକ ପ୍ରାଣରେ ରେଖାପାତ କରିଥିଲା । ପୁନାପରେ ବାଙ୍ଗାଲୋର,

ମହୀଶୂର, ତ୍ରିଭାଙ୍କୋର, ରାମେଶ୍ବର, ତାଞ୍ଜୋର, ତ୍ରିଚିନାପଲ୍ଲୀ, ଚେନ୍ନାଇ, କାଞ୍ଚି, ମଦୁରାଇର ମୀନାକ୍ଷୀ ମନ୍ଦିର, ରାଜମହେନ୍ଦ୍ରୀ, ଓ୍ଵାଲଟିୟରର ସୀମାଞ୍ଚଳ ମନ୍ଦିର ଦର୍ଶନ କରି ବିଜୟଓ୍ଵାଡ଼ା ଦେଇ ହାଇଦ୍ରାବାଦ ପହଞ୍ଚିଥିଲେ। ହାଇଦ୍ରାବାଦରେ ରାଜ୍ୟଶାସନ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଯୁବରାଜ ସଚ୍ଚିଦାନନ୍ଦ ଓ ଜଳନ୍ଧରଙ୍କୁ ପ୍ରଦାନ କରିଥିଲେ। ଗୋଲକୁଣ୍ଡାର ହୀରାଖଣି ଦେଖି ଭୁଷାବାଲି ଦେଇ ଜଗଦଲପୁର, କଟନି ଓ ବିଳାସପୁର ପଥରେ ଏହି ଭ୍ରମଣକାରୀ ଦଳ ଦେବଗଡ଼ ପ୍ରତ୍ୟାବର୍ତ୍ତନ କରିଥିଲେ।

ଏହି ଭ୍ରମଣ ଜଳନ୍ଧରଙ୍କ ମାନସଭୂମିକୁ ବ୍ୟାପ୍ତ ଓ ସର୍ଜନଶୀଳ କରିଥିଲା। ବିଭିନ୍ନ ସ୍ଥାନର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥାର ଅନୁଧ୍ୟାନ ତାଙ୍କର କଳ୍ପନାର ଦିଗ୍‌ବଳୟକୁ ପ୍ରସାରିତ କରିଥିଲା।

୧୯୦୨ ରେ ଜଳନ୍ଧର ରାଜକୁମାରୀ ଓ ରାଜକୁମାରମାନଙ୍କ ନେତୃତ୍ୱ ନେଇ ବୃନ୍ଦାବନ ପ୍ରଭୃତି ତୀର୍ଥ ଭ୍ରମଣ କରିଥିଲେ। ବିଭିନ୍ନ ସମୟରେ ସେ ତାଳଚେର, କଳାହାଣ୍ଡି, ପୁରୀ, ସମ୍ବଲପୁର ଓ କଳିକତା ଭ୍ରମଣରେ ଯାଉଥିଲେ। ୧୯୧୦ରେ ସ୍ୱାସ୍ଥ୍ୟର ଉନ୍ନତିପାଇଁ ସେ ଶ୍ରୀଲଙ୍କା ଯାତ୍ରା କରିଥିଲେ। କଳିକତାରୁ ମାନ୍ଦ୍ରାଜ ମେଲଦ୍ୱାରା ଖୋର୍ଦ୍ଧା, ମଧ୍ୟପ୍ରଦେଶ, ଓ୍ଵାଲଟିୟର, ବିଶାଖାପଟନମ୍ ଦେଇ ମାନ୍ଦ୍ରାଜ; ପୁଣି ତାଞ୍ଜୋର, ମଦୁରାଇ, ପରମାକୁଡ଼ି ଦେଇ ରାମେଶ୍ୱର ପହଞ୍ଚିଥିଲେ। ଜଳନ୍ଧର ଏହି ଭ୍ରମଣଦ୍ୱାରା ବିଭିନ୍ନ ସ୍ଥାନ ର ଭୌଗୋଳିକ ଓ ପ୍ରାକୃତିକ ଦୃଶ୍ୟ ସହିତ ଧର୍ମ, ସଂସ୍କୃତି, ରୀତିନୀତିକୁ ଗଭୀରଭାବେ ନିରୀକ୍ଷଣ କରିଥିଲେ। କୃଷି, ଶିଳ୍ପ କିପରି ମଣିଷର ଅର୍ଥନୀତିକୁ ବଦଳାଇଦିଏ ତା'ର ଦୃଷ୍ଟାନ୍ତ ପ୍ରତ୍ୟକ୍ଷ କରିଥିଲେ। ଶ୍ରୀଲଙ୍କାରେ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାରର ଆଭିମୁଖ୍ୟକୁ ହୃଦୟଙ୍ଗମ କରିଥିଲେ। ପ୍ରାୟ ଛଅ ମାସର ଏହି ଭ୍ରମଣ ଜଳନ୍ଧରଙ୍କ ଅନୁଭୂତିକୁ ସୁଦୃଢ଼ କରିଥିଲା। ପରେ ପରେ ଜଳନ୍ଧର ଅଜନ୍ତା ଓ ଏଲୋରା ଭ୍ରମଣରେ ଯାଇ ସେଠାରେ ଶିଳ୍ପଭାସ୍କର୍ଯ୍ୟର ଅନନ୍ୟତାକୁ ଅନୁଭବ କରିଥିଲେ।

ଜଳନ୍ଧର ୧୮୯୨ରେ ଏଣ୍ଟ୍ରାନ୍ସ ପରୀକ୍ଷା ଦେବା ପରେ ପରେ ହିଁ ସୁଢଳଦେବ ତାଙ୍କୁ ଦେବାନୀ କାର୍ଯ୍ୟରେ ନିଯୁକ୍ତି ଦେଇଥିଲେ। ୧୮୯୫ ରେ କିଛି ସମୟପାଇଁ ସେ ବାମଣ୍ଡା ଜେଲ ଓ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ରୂପେ କାର୍ଯ୍ୟ କରିଥିଲେ। ୧୯୦ ଜୁଲାଇରେ ଅସ୍ଥାୟୀଭାବେ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ ଓ ପରେ ପରେ ସ୍ଥାୟୀ ପଦରେ ନିଯୁକ୍ତ ହୋଇଥିଲେ।

୧୯୦୩ରେ ସୁଢଳଦେବଙ୍କ ଦେହାନ୍ତ ପରେ ସଚ୍ଚିଦାନନ୍ଦ ଦେବ ରାଜପଦରେ ଅଭିଷିକ୍ତ ହେଲେ। ସଚ୍ଚିଦାନନ୍ଦ ଜଳନ୍ଧରଙ୍କୁ ଦେଓ୍ଵାନ ପଦରେ ଅଭିଷିକ୍ତ କରିଥିଲେ। ସଚ୍ଚିଦାନନ୍ଦଙ୍କ ଅନୁପସ୍ଥିତିରେ ଜଳନ୍ଧର ରାଜ୍ୟଭାର ବହନ କରୁଥିଲେ। ସଚ୍ଚିଦାନନ୍ଦଙ୍କ ରାଜତ୍ୱ (୧୯୦୩-୧୯୧୬) ସମୟରେ ଜଳନ୍ଧର ଥିଲେ ବାମଣ୍ଡାର ବିଶିଷ୍ଟ ପ୍ରଶାସନିକ ବ୍ୟକ୍ତି। ତାଙ୍କର କର୍ତ୍ତବ୍ୟନିଷ୍ଠା ପାଇଁ ନଭେମ୍ବର ୧୧, ୧୯୧୧ରେ ସୁଢଳଦେବଙ୍କ ସ୍ମୃତି ସଭାରେ ସଚ୍ଚିଦାନନ୍ଦ ତାଙ୍କୁ ସୁନାର ଘଡ଼ି ଓ ସୁନାର ଗାର୍ଡ଼ଚେନ ପ୍ରଦାନ କରିଥିଲେ। ୧୯୨୦ରେ ବିହାର, ଓଡ଼ିଶା ଛୋଟଲାଟଙ୍କଦ୍ୱାରା ପ୍ରଥମଶ୍ରେଣୀ ମାଜିଷ୍ଟ୍ରେଟ୍ ରୂପେ ଜଳନ୍ଧର ମନୋନୀତ ହୋଇଥିଲେ।

ସଚ୍ଚିଦାନନ୍ଦଙ୍କ ତିରୋଧାନ (୧୯୧୬) ପରେ ତାଙ୍କ ପୁତ୍ର ଦିବ୍ୟଶଙ୍କର ବାମଣ୍ଡାର ରାଜା ହେଲେ। ଦିବ୍ୟଶଙ୍କରଙ୍କ ସମୟରେ ମଧ୍ୟ ଜଳନ୍ଧର ବାମଣ୍ଡାର ଜଣେ ପ୍ରତିପତ୍ତିଶାଳୀ ପ୍ରଶାସକର ମାନ୍ୟତା ପାଇଥିଲେ। ଜଳନ୍ଧରଙ୍କୁ ସଚ୍ଚିଦାନନ୍ଦ 'କାକାବାବୁ' ବୋଲି ସମ୍ବୋଧନ କରୁଥିଲେ। ଦିବ୍ୟଶଙ୍କର ତାଙ୍କୁ 'ଅଜା' ବୋଲି ଡାକୁଥିଲେ। ଜାନୁୟାରୀ ୧, ୧୯୨୦ରେ ଦିବ୍ୟଶଙ୍କରଙ୍କ ପ୍ରୟାଗ ତୀର୍ଥରେ ଦେହାନ୍ତ ହୋଇଥିଲା। ଦିବ୍ୟଶଙ୍କରଙ୍କ ପୁତ୍ର ଭାନୁଗଙ୍ଗ (ଜନ୍ମ ୧୯୧୪) ନାବାଳକ ଥିବାରୁ ବାମଣ୍ଡା ରାଜ୍ୟ Court of words ଅଧୀନରେ ପରିଚାଳିତ ହେଲା। ଏହି ସମୟରେ ବିହାର, ଓଡ଼ିଶା ଛୋଟଲାଟ ହୃଦୟନାଥ ଦେବ (ସଚ୍ଚିଦାନନ୍ଦଙ୍କ ଦ୍ୱିତୀୟ ପୁତ୍ର)କୁ ବାମଣ୍ଡାର ସୁପରିଣ୍ଟେଣ୍ଡେଣ୍ଟ, ବଳଭଦ୍ରଦେବଙ୍କୁ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ, ଜଳନ୍ଧରଦେବଙ୍କୁ ପ୍ରଥମଶ୍ରେଣୀ ମାଜିଷ୍ଟ୍ରେଟ ପଦରେ ମନୋନୀତ କରିଥିଲେ। ପ୍ରଥମ ଦୁଇ ଜଣଙ୍କ ଅନୁପସ୍ଥିତିରେ ଜଳନ୍ଧର ନିଜ କାର୍ଯ୍ୟସହ ଉପରୋକ୍ତ ଅତିରିକ୍ତ ଦାୟିତ୍ୱ ମଧ୍ୟ ତୁଲାଉଥିଲେ।

ବିଭିନ୍ନ ସମୟରେ ବାମଣ୍ଡା-ବଣେଇ, ବାମଣ୍ଡା-ପାଲଲହଡ଼ା ଓ ବାମଣ୍ଡା-ରେଢ଼ାଖୋଲ ସୀମା ନିର୍ଦ୍ଧାରଣ କମିଟୀମାନଙ୍କରେ ଜଳନ୍ଧର ବାମଣ୍ଡା ରାଜାଙ୍କ ପ୍ରତିନିଧି ରୂପେ ନିଜ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିଥିଲେ। ଗଡ଼ଜାତ ମିଶ୍ରଣ ପରେ ବାମଣ୍ଡା ରାଜ୍ୟରୁ ବିଧାନସଭା ସଦସ୍ୟ ରୂପେ ୧.୧.୪୮ ରୁ ୨.୨.୫୨ ପର୍ଯ୍ୟନ୍ତ ଜଳନ୍ଧର ମନୋନୀତ ହୋଇଥିଲେ। (ପରିଶିଷ୍ଟ-୨ ଦ୍ରଷ୍ଟବ୍ୟ) ବିଧାନସଭାରେ ଓଡ଼ିଶାର ଭାଷା, ସଂସ୍କୃତି ଓ ସାମାଜିକ ଉନ୍ନତି ସମ୍ପର୍କରେ ତାଙ୍କର ବକ୍ତବ୍ୟ ପ୍ରଣିଧାନଯୋଗ୍ୟ। ଜଳନ୍ଧରଦେବ ଓଡ଼ିଶା ବିଧାନସଭାର ଜଣେ ସକ୍ରିୟ ସଭ୍ୟରୂପେ ସମସ୍ତ

ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ । ତାଙ୍କର ଅନୁଭୂତିସମ୍ପନ୍ନ ଚିନ୍ତାଧାରାକୁ ଅନ୍ୟ ସଭ୍ୟମାନେ ସମ୍ମାନ ଜଣାଉଥିଲେ । ୧୦ ଅକ୍ଟୋବର ୧୯୪୯ ଦିନ ସେ ବିଧାନସଭାରେ ଶପଥ ଗ୍ରହଣ କରିଥିଲେ ଏବଂ ୨ ଫେବୃୟାରୀ ୧୯୫୨ ପର୍ଯ୍ୟନ୍ତ କାର୍ଯ୍ୟ ତୁଲାଇଥିଲେ । ସ୍ୱଳ୍ପକାଳ ମଧ୍ୟରେ ସେ The Orissa Private Forest Bill ଯାଞ୍ଚ କମିଟିର ସଭ୍ୟ ଏବଂ Standing Committee for Agriculture ଓ Standing Committee for Health ର ସଭ୍ୟ ଥିଲେ ।

ଜଳନ୍ଧରଙ୍କ ପ୍ରଧାନ ଆଗ୍ରହ ଥିଲା କୃଷି । କୃଷି ସମ୍ପର୍କିତ ବିଭିନ୍ନ ପୁସ୍ତକ ଅଧ୍ୟୟନ ସହିତ ବାସ୍ତବ ଜ୍ଞାନ ଆହରଣରେ ସେ ଉଦ୍ୟମରତ ଥିଲେ । ଗବେଷଣାଲବ୍ଧ ଜ୍ଞାନକୁ ସେ ଚାଷୀମାନଙ୍କ ମଧ୍ୟରେ ବିତରଣ କରି ଉନ୍ନତ ଚାଷ ପ୍ରଣାଳୀ ଦ୍ୱାରା ଦେଶ ଓ ଜାତିକୁ ସମୃଦ୍ଧ କରିବାକୁ ଆହ୍ୱାନ ଦେଉଥିଲେ । ତାଙ୍କ ରଚିତ କୃଷି ପ୍ରବନ୍ଧରେ ଚାଷ କାର୍ଯ୍ୟକୁ ମହତ୍‌ରୂପେ ବର୍ଣ୍ଣନା କରି ସେ ଘୋଷଣା କରିଛନ୍ତି– "ମୁଁ ଚଷାଜାତି ନାମକାବାସ୍ତେ କ୍ଷତ୍ରିୟ ଏବଂ ପ୍ରଧାନ ରାଜକର୍ମଚାରୀ ଥାଇ ବାମଣ୍ଡାର ଭାଗ୍ୟ ନିୟନ୍ତ୍ରଣରେ ମନପ୍ରାଣ ଦେଇଥିଲେ ମଧ୍ୟ ମୁଁ ଚଷା । ଆବାଲ୍ୟ କାଳରୁ ଚଷା । ରାଜକାର୍ଯ୍ୟରୁ ଅବସର ପାଇଲାକ୍ଷଣି ଯାଇ ମାଟି ଚକଟିବାରେ ବ୍ୟୟ କରେ ଓ ଅପାର ଆନନ୍ଦ ଅନୁଭବ କରେ । ପୁସ୍ତକ ପାଠ ଓ ଚାଷକାର୍ଯ୍ୟ ମୋର ଏକମାତ୍ର ଆନନ୍ଦୋତ୍ପାଦକ ।" (ଶଙ୍ଖ-କାର୍ତ୍ତିକ-୧୯୪୭)

ବାମଣ୍ଡାରାଜାଙ୍କ ପ୍ରଧାନ ଅବଲମ୍ବନ କୃଷି । ରାଜ୍ୟ କୃଷିର ଉନ୍ନତିପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଥିଲେ । ପ୍ରଜାଙ୍କୁ ଉନ୍ନତି କୃଷି ସମ୍ପର୍କରେ ଶିକ୍ଷା ଦେବାକୁ ବଳମ୍ (ଦେବଗଡ଼ରୁ ୧୪ କି.ମି. ଦୂର) ଠାରେ ସୁଢଳଦେବ ଏକ ଆଦର୍ଶ କୃଷିକ୍ଷେତ୍ର ପ୍ରତିଷ୍ଠା କରିଥିଲେ । ଏଠାରେ କୃଷି ସମ୍ପର୍କରେ ବିଭିନ୍ନ ପରୀକ୍ଷା-ନିରୀକ୍ଷା କରାଯାଉଥିଲା । କେଉଁ ଜମିପାଇଁ କେଉଁ ସାର ଓ କେଉଁ ବିହନ ଉପଯୋଗୀ ପରୀକ୍ଷା ପରେ ନିର୍ଦ୍ଦିଷ୍ଟ କରି ଲୋକଙ୍କୁ ବୁଝାଇ ଦିଆଯାଉଥିଲା । ଏତଦ୍‌ବ୍ୟତୀତ ପୁରୁଣା ଚାଷୀଙ୍କ ଅଭିଜ୍ଞତା ଲବ୍ଧ ଉପାଦେୟ ଚାଷ ପ୍ରଣାଳୀକୁ ମଧ୍ୟ ଆଲୋଚନା ମାଧ୍ୟମରେ ସମସ୍ତ ଚାଷୀଙ୍କୁ ଅବଗତ କରାଯାଉଥିଲା । ୧୮୯୭ ରେ ସୁଢଳଦେବଙ୍କ ପ୍ରେରଣା ଫଳରେ ଜଳନ୍ଧର ବିଲାତିଆଳୁ ଆମଦାନୀ କରି ପ୍ରଥମେ ନିଜ ଜମିରେ ପରୀକ୍ଷା ସ୍ୱରୂପ ଲଗାଇଥିଲେ । ସଫଳ ହେଲାପରେ ବିଲାତି-ଆଳୁ ଚାଷ ସମ୍ପର୍କରେ ଇଚ୍ଛୁକ ପ୍ରଜାଙ୍କୁ ବିହନ ଯୋଗାଇ ଚାଷ ପଦ୍ଧତି ବୁଝାଇ ଦିଆଯାଇଥିଲା । ଜଳନ୍ଧର ନିଜର ପ୍ରତ୍ୟକ୍ଷ କୃଷି ଜ୍ଞାନକୁ ସର୍ବସାଧାରଣଙ୍କ ଉପଯୋଗିତା ପାଇଁ ପ୍ରବନ୍ଧ ରୂପେ ପ୍ରକାଶ କରିଥିଲେ । କୃଷି ଶୀର୍ଷକରେ (ଶଙ୍ଖ ପତ୍ରିକାରେ ଚାରୋଟି ଓ 'ଭଞ୍ଜ ପ୍ରଦୀପ'ରେ ଗୋଟିଏ ପ୍ରବନ୍ଧ ପ୍ରକାଶପାଇ ଜଳନ୍ଧରଙ୍କ କୃଷିଜ୍ଞାନକୁ ଜନମୁଖୀ କରିଥିଲା ।

ଜଳନ୍ଧର ଖୁବ୍ ନିରାଡ଼ମ୍ବର ଜୀବନଯାପନ କରୁଥିଲେ । ଦୈନନ୍ଦିନ ପୋଷାକ ଭିତରେ ଖାକିପେଣ୍ଟ ଓ କୋର୍ଟ ପରିଧାନ କରୁଥିଲେ । ବିଚାରାଳୟକୁ ଗଲାବେଳେ ଧଳାପୋଷାକ ପିନ୍ଧୁଥିଲେ । ବାଦୀ ପ୍ରତିବାଦୀଙ୍କ ବୟାନକୁ ଲିପିବଦ୍ଧ କରି ଗୋଟିଏ ଦିନ ଭିତରେ ନ୍ୟାୟ ପ୍ରଦାନ କରୁଥିଲେ । ଫଳରେ ସାଧାରଣ ଲୋକେ ଅଯଥା ଖର୍ଚ୍ଚାନ୍ତରୁ ରକ୍ଷା ପାଉଥିଲେ । ବାମଣ୍ଡାରେ ଘରପୋଡ଼ିରେ 'ବିପନ୍ନ ଲୋକଙ୍କୁ ସାହାଯ୍ୟ, ଶୀତଦିନରେ ଗରିବ ଲୋକଙ୍କୁ ବସ୍ତ୍ରଦାନ, ଗାଁଗହଳ ସହର ବଜାରରେ ବୃକ୍ଷରୋପଣ କାର୍ଯ୍ୟରେ ଜଳନ୍ଧର ନେତୃତ୍ୱ ନେଉଥିଲେ । ଦରିଦ୍ର ଛାତ୍ରମାନଙ୍କୁ ଉଚ୍ଚଶିକ୍ଷା ପାଇଁ ଆର୍ଥିକ ସାହାଯ୍ୟ କରୁଥିଲେ । ବାମଣ୍ଡାର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ତଳଶ୍ରେଣୀ (ଆଦିବାସୀ, ହରିଜନ)ର ପ୍ରତିନିଧିତ୍ୱ କରୁଥିଲେ ।

ତତ୍‌କାଳୀନ ବାମଣ୍ଡା ଥିଲା ଘୋର ଜଙ୍ଗଲରେ ପରିପୂର୍ଣ୍ଣ । ଅନେକ ସମୟରେ ମଣିଷଖିଆ ବାଘ ଗାଁ ଗହଳିରେ ଲୋକଙ୍କ ଜୀବନ ଦୁର୍ବିଷହ କରି ତୋଳୁଥିଲା । ଗୃହପାଳିତ ପଶୁଙ୍କ ପ୍ରତି ବିପଦ ଲାଗି ରହିଥିଲା । ଏପରି ସୂଚନା ମିଳିଲେ ଜଳନ୍ଧର ବାଘ ଶିକାର କରିବାକୁ ଯାଉଥିଲେ । ୨୮.୧୦.୧୯୦୫ରେ ଏକ ପ୍ରକାଣ୍ଡ ବାଘ ଏବଂ ୧୦.୧.୧୯୧୨ ରେ ଏକ ବାଘ ଓ ଚିତାବାଘ ବଧ କରିଥିଲେ ।

ଅବସର ସମୟରେ ବନ୍ଧୁକ ଧରି ବଣ ଜଙ୍ଗଲରେ ବୁଲିବା ଭୂୟାଁ, କୋହ୍ଲ, ବାଥୁଡ଼ି ପ୍ରଭୃତି ଆଦିବାସୀ ସମ୍ପ୍ରଦାୟଙ୍କ ସହିତ ମିଶିବା ତାଙ୍କର ପ୍ରଧାନ ରୁଚି । ଶିକାର ସମୟରେ ଏହି ଜନଜାତିର ଯୁବକ ଯୁବତୀମାନେ ତାଙ୍କର ପ୍ରଧାନ ସାଥୀ । ସେମାନଙ୍କ ସହିତ ଜଳନ୍ଧର ଆତ୍ମିକ ସମ୍ପର୍କ ଯୋଡ଼ିଥିଲେ । ସେମାନେ ଜଳନ୍ଧରଙ୍କୁ ନିଜର ପରିବାର ତୁଲ୍ୟ ବ୍ୟବହାର କରୁଥିଲେ । ଆଦିବାସୀମାନଙ୍କର ସାମାଜିକ ଅନୁଷ୍ଠାନମାନଙ୍କରେ ଆଗ୍ରହର ସହିତ ଜଳନ୍ଧର ଯୋଗ ଦେଉଥିଲେ । ଶିକାର ସମୟରେ ମରାଯାଉଥିବା ଜନ୍ତୁର ଅର୍ଦ୍ଧାଧିକ ମାଂସ ସେ ଏହିମାନଙ୍କୁ ବାଣ୍ଟି ଦେଉଥିଲେ । ଜଳନ୍ଧର ଜାତିଭେଦ ମାନୁ ନ ଥିଲେ । ସେ ହରିଜନ ଆଦିବାସୀ ସମସ୍ତଙ୍କ

ଛୁଆଁ ଖାଦ୍ୟ ଖାଉଥିଲେ । ଏହି ଅନୁଭବର ଶାଶ୍ୱତ ପ୍ରକାର ତାଙ୍କର 'ଗୌରୀ ଓ କାହ୍ନୁ', 'ଅତିଥିସତ୍କାର', 'ବିବାହଭୋଜି', 'ଏହାକି ଆତ୍ମହତ୍ୟା' ପ୍ରଭୃତି ଗଳ୍ପରେ ପରିଦୃଶ୍ୟମାନ ।

ଜାତିଭେଦ ବିରୋଧରେ ଜଳନ୍ଧର ଆଜୀବନ ସଂଗ୍ରାମ କରିଛନ୍ତି । ଅବହେଳିତ, ନିମ୍ନବର୍ଗର ଲୋକଙ୍କ ସହିତ ସେ ପ୍ରତ୍ୟକ୍ଷ ସମ୍ପର୍କ ରକ୍ଷା କରୁଥିଲେ । ଶିକାର ସମୟରେ ସେମାନଙ୍କ ସହିତ ଖାଦ୍ୟଗ୍ରହଣ ଓ ରାତ୍ରିଯାପନ କରୁଥିଲେ । ହାତୀଧରା କେମ୍ପମାନଙ୍କରେ ସେ ହରିଜନଦ୍ୱାରା ନିଜର ଜଳଖିଆ ପ୍ରସ୍ତୁତ କରୁଥିଲେ । ଏତଦ୍‌ବ୍ୟତୀତ ବାମଣ୍ଡାର ବିଭିନ୍ନ ଅନୁଷ୍ଠାନ ସମୟେ ସେ ଦଳିତ ଓ ଇତର ଶ୍ରେଣୀର ସଭ୍ୟରୂପେ ଯୋଗ ଦିଅନ୍ତି ।

ହାତୀଧରାଦ୍ୱାରା ବାମଣ୍ଡାର ମୁଖ୍ୟ ରାଜସ୍ୱ ଆଦାୟ ହୁଏ । ବାମଣ୍ଡା ହାତୀଧରାର ନେତୃତ୍ୱ ଜଳନ୍ଧର ନେଉଥିଲେ । ଜଙ୍ଗଲରେ ହାତୀଥିବାର ଶୁଣାଗଲେ ଜଳନ୍ଧର ସଦଳବଳେ ସେଠାରେ କେଂପ୍ କରୁଥିଲେ । ଏଥିରେ ଦକ୍ଷ ଲୋକଙ୍କ ସହିତ କିଛି କବି, ପଣ୍ଡିତ ମଧ୍ୟ ଜଙ୍ଗଲର ଶୋଭା ନିରୀକ୍ଷଣପାଇଁ ଯୋଗ ଦେଉଥିଲେ । ଗୋଲାକାର ଭାବରେ ତମ୍ବୁ ପଡୁଥିଲା । ବ୍ରାହ୍ମଣଠାରୁ ଶୂଦ୍ର ପର୍ଯ୍ୟନ୍ତ ସମସ୍ତ ଜାତିର ଲୋକେ ଏଠାରେ ଯୋଗ ଦେଉଥିଲେ । ଏ ସମ୍ପର୍କରେ ଏକ ମଜାକଥା ଶୁଣାଯାଏ । ଗୋଟିଏ କାଗଜରେ ପଣ୍ଡିତମାନଙ୍କୁ ଉପଲକ୍ଷ୍ୟ କରି ଏକ ମଜାଳିଆ ବ୍ୟଙ୍ଗ କବିତା ସହିତ ଜଣେ ବାଳକ ଜଳନ୍ଧରଙ୍କ ଜଳଖିଆ ବାକୁଧରି ପ୍ରତି ତମ୍ବୁକୁ ଯାଉଥିଲା । ସମସ୍ତେ ସେହି କାଗଜଟି ବାଳକକୁ ସ୍ପର୍ଶ କରି ପଢୁଥିଲେ ଏବଂ ତା'ପରେ ଜଳନ୍ଧର ନିଜର ଜଳଖିଆ ଗ୍ରହଣ କରୁଥିଲେ । ଏଥିରେ ବ୍ରାହ୍ମଣମାନେ ଉତ୍‌କ୍ଷିପ୍ତ ହେଲେ ମଧ୍ୟ ଜଳନ୍ଧରଙ୍କୁ କିଛି କହିପାରୁ ନ ଥିଲେ । ଜଳନ୍ଧର ଆବ୍ରାହ୍ମଣ-ଚଣ୍ଡାଳ ସମସ୍ତଙ୍କ ସ୍ପର୍ଶରେ ପବିତ୍ର ଖାଦ୍ୟକୁ ମହାପ୍ରସାଦ ବୋଲି ଅଭିହିତ କରୁଥିଲେ ।

ବାମଣ୍ଡାରେ ମୁଖ୍ୟତଃ ପାଉଡ଼ି, ମଣ୍ଡାଶିଳା, କଂସର, ରମ୍ଭାଦେବୀ ପ୍ରଭୃତି ଜଙ୍ଗଲରୁ ହାତୀ ଧରା ହେଉଥିଲା । ବାମଣ୍ଡାର ଜଙ୍ଗଲ ସମୂହ ସମ୍ବଲପୁରର ଉଷାକୋଠୀ, ପାଲଲହଡ଼ା ଓ ବଣେଇର ଘଞ୍ଚ ଜଙ୍ଗଲ ଦେଇ ବିହାରର ସୁବୃହତ୍ ସରଣ୍ଡା ଶାଳ ଜଙ୍ଗଲକୁ ସଂଯୁକ୍ତ କରୁଥିଲା । ଏହା ଥିଲା ହାତୀମାନଙ୍କର ପ୍ରଧାନ କ୍ରୀଡ଼ାସ୍ଥଳ ।

ସାଧାରଣତଃ ବଣୁଆ ହାତୀମାନଙ୍କୁ ଚାରିପ୍ରକାର ଉପାୟରେ ଧରା ଯାଇଥାଏ । ଖେଦା, ଫାସ, ଖାତ ଓ ପୋଷା ହାତୁଣୀଦ୍ୱାରା ସମୟ ସୁବିଧା ଓ ସ୍ଥାନର ପ୍ରକାର ନେଇ ହାତୀ ଧରାଯାଇଥାଏ ।

**(୧) ଖେଦା :** ଖେଦାରେ ଗ୍ରାମବାସୀଙ୍କ ସାହାଯ୍ୟ ନିଆଯାଏ । ଏ ଦିଗରେ ଗାତ ଖୋଳି ବା ଖୁଣ୍ଟି ପୋତି ଏକ କୋଟ ପ୍ରସ୍ତୁତ ହୁଏ । କୋଟର ଏକ ପାଖେ ଦ୍ୱାର ଥାଏ ତା' ଉପରେ ଏକ ବିରାଟ କବାଟ ଝୁଲୁଥାଏ । ହାତୀ କୋଟ ଭିତରେ ପ୍ରବେଶ କଲେ ଜଣେ କବାଟ ଝୁଲୁଥିବା ରଶିକୁ କାଟି ପକାଏ ଓ କୋଟର ଦ୍ୱାର ବନ୍ଦ ହୋଇଯାଏ । କବାଟ ଭିତରେ ପଟେ ଲୁହାକଣ୍ଟା ଲାଗିଥାଏ ଫଳରେ ହାତୀ ଏହାକୁ ନଷ୍ଟ କରିପାରେ ନାହିଁ । ଲୋକମାନେ ଜଙ୍ଗଲର ବିଭିନ୍ନ ପଟୁ ଖେଦାକରି ହାତୀକୁ କୋଟରେ ପ୍ରବେଶ କରିବାକୁ ବାଧ୍ୟ କରନ୍ତି ।

**(୨) ଫାସ :** ତାଲିମପ୍ରାପ୍ତ ୨/୩ଟି ପୋଷାହାତୀ ଉପରେ ବସି ମାହୁନ୍ତମାନେ ଜଙ୍ଗଲ ହାତୀକୁ ଫାସ ପକାଇ ଧରନ୍ତି ।

**(୩) ଖାତ :** ହାତୀର ଯିବା ଆସିବା ରାସ୍ତାରେ ଗାତ ଖୋଳି ଡାଳପତ୍ରଦ୍ୱାରା ଘୋଡ଼ାଇ ଦିଆଯାଏ । ହାତୀ ଏହି ଗାତରେ ପଡ଼ିଯାଏ ।

**(୪) ପୋଷା ହାତୀ :** ଏକାଣିଆ ଦନ୍ତାହାତୀକୁ ୨/୩ଟି ପୋଷା ହାତୁଣୀମାନେ ଦୁଇ ତିନି ଦିନ ଧରି ଗୋଡ଼ାନ୍ତି ଫଳରେ ସେ ଖାଇ ନ ପାରି କ୍ଳାନ୍ତ ହୋଇ ଗାଢ଼ ନିଦରେ ଶୋଇଯାଏ । ଏହି ସମୟରେ ମାହୁନ୍ତମାନେ ତା'ର ପଛଗୋଡ଼କୁ ମୋଟା ରଶିରେ ବାନ୍ଧି ଗଛରେ ବାନ୍ଧିଦିଅନ୍ତି । ଧରା ହୋଇଥିବା ହାତୀକୁ ଓପାସରେ ରଖି ଧୀରେ ଧୀରେ ପୋଷା ମନାଯାଏ ।

ହାତୀ ଥିବା ଜଙ୍ଗଲର ପ୍ରାକୃତିକ ଅବସ୍ଥାକୁ ଅନୁଧ୍ୟାନ କରି ଜଳନ୍ଧର ଉପାୟ ନିର୍ଦ୍ଧାରଣ କରନ୍ତି । ପାଉଡ଼ି ଜଙ୍ଗଲରେ ହାତୀଥିବାର ସମ୍ବାଦ ପାଇ ସେ ୧୮.୧୧.୧୯୦୮ ରେ ଜଙ୍ଗଲକୁ ଯାଇ ଚାରିଟି ହାତୀ ଧରିଥିଲେ । ତା. ୨୨.୧୨.୧୯୧୦ରେ କଂସର ଜଙ୍ଗଲରୁ ୨ଟି ହାତୀ ତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଧରା ହୋଇଥିଲା । ୧୯୧୪ ନଭେମ୍ବରରେ ୨ଟିରୁ ଅଧିକ ହାତୀ ଧରିଥିବାର ସମ୍ବାଦ ମିଳେ । ଜଳନ୍ଧରଙ୍କ ହାତୀଧରା ବାମଣ୍ଡାର ଏକ ଲୋକପ୍ରିୟ ଉତ୍ସବ ଥିଲା । ତାଙ୍କ ସହିତ ହାତୀ ଧରା କେଂପକୁ ମାହୁନ୍ତ, ବଢ଼େଇ ପ୍ରଭୃତି କର୍ମୀଙ୍କ ସହିତ ବ୍ରାହ୍ମଣ, ପଣ୍ଡିତ, ସାହିତ୍ୟିକ, ଗୌନ୍ତିଆ, ରାଜପୁରୁଷ ସମସ୍ତେ ସାମିଲ ହେଉଥିଲେ । ହାତୀ

କେଂପରେ ମଧ୍ୟ ରସାଳ ଗପ, କବିତା, ଗୀତର ଆସର ଜମୁଥିଲା ।

ଜଳନ୍ଧର ଜଣେ ସମାଜ ସଂସ୍କାରକ । କୁସଂସ୍କାର ଦୂରୀକରଣ ମାଧ୍ୟମରେ ସମାଜକୁ ସମୃଦ୍ଧ କରି ଗଢ଼ିତୋଳିବା ତାଙ୍କର ପରମ ଲକ୍ଷ୍ୟ । ସମାଜର ବିରାଟ ଅଂଶ ଶୂଦ୍ର । ଏମାନଙ୍କୁ ଶିକ୍ଷାର ସୁଯୋଗ ଦିଆ ନ ଯାଇ ପଦଦଳିତ କରି ରଖାଗଲା । ନାରୀମାନଙ୍କୁ ମଧ୍ୟ ଶିକ୍ଷାରୁ ଦୂରେଇ ରଖାଗଲା । ନାରୀମାନଙ୍କର ଉନ୍ନତିର ପଥକୁ ରୁଦ୍ଧ କରାଗଲା । ବାଲ୍ୟବିବାହ, ସତୀଦାହ ପ୍ରଥା ଅନ୍ତରାଳରେ ନାରୀମାନଙ୍କୁ ନିର୍ଯାତିତ କରାଗଲା । ଶାସ୍ତ୍ର ପୁରାଣରେ ନିଜର କୁତ୍ସିତ ଅଭିଳାଷ ପୂରଣପାଇଁ ଭ୍ରାନ୍ତିମୂଳକ ଶ୍ଳୋକ ସଂଯୋଜନା କରାଗଲା । ବେଦାଧ୍ୟୟନରେ ଶୂଦ୍ର ଓ ନାରୀର ଅଧିକାର ନାହିଁ । ବ୍ରାହ୍ମଣମାନେ ଉଦ୍ଦେଶ୍ୟମୂଳକ ଭାବେ ବେଦର ବ୍ୟାଖ୍ୟା କରି ନିଜର ଲକ୍ଷ୍ୟ ସାଧନ କଲେ । ବେଦର ଅଗ୍ରେକୁ 'ଅଗ୍ନେ' ବୋଲି ବ୍ୟାଖ୍ୟା କରି ବିଧବାମାନଙ୍କୁ ଅଗ୍ନିରେ ପ୍ରବେଶ କରିବାର ଦୁର୍ବାର ନିର୍ଦ୍ଦେଶ ଦିଆଗଲା । ବିଧବା ନାରୀଟିର କରୁଣ ଆର୍ତ୍ତନାଦକୁ ସମାଜର ବଡ଼ପଣ୍ଡାଗଣ ଖୁସିରେ ଉପଭୋଗ କରୁଥିଲେ । ସମାଜର ଏହି କଳଙ୍କ ବିରୋଧରେ ଜଳନ୍ଧର ସଂଗ୍ରାମ ଜାରି ରଖିଥିଲେ ।

ବାମଣ୍ଡାର ବ୍ରାହ୍ମଣ ସମାଜ ୨୭.୫.୧୯୨୮ରେ ସମ୍ମିଳିତ ହୋଇ ବାଳବିଧବାମାନଙ୍କ ଦୁର୍ଦ୍ଦଶା ଦୂର କରିବା ଉଦ୍ଦେଶ୍ୟରେ ଉପାୟ ନିର୍ଦ୍ଧାରଣ କଳ୍ପେ ଆଲୋଚନା କରିଥିଲେ । ଏକ ସମିତି ଗଠନ କରି ସର୍ବସମ୍ମତିକ୍ରମେ ଜଳନ୍ଧରଙ୍କୁ ସଭାପତି ନିଯୁକ୍ତ କରାଗଲା । ସମିତିର ନିଯୁକ୍ତି ପତ୍ର ଏକ ଐତିହାସିକ ଦଲିଲ । ପଇଁତିରିଶ ଜଣ ବାମଣ୍ଡା ବ୍ରାହ୍ମଣଙ୍କ ସ୍ୱାକ୍ଷରିତ ନିମ୍ନ ପତ୍ରଟି ଜଳନ୍ଧରଙ୍କୁ ପ୍ରଦତ୍ତ ହୋଇଥିଲା ଯାହାକୁ ଆନନ୍ଦର ସହିତ ଜଳନ୍ଧର ଗ୍ରହଣ କରିଥିଲେ ।

''ହିନ୍ଦୁ ବ୍ରାହ୍ମଣ ସମାଜକୁ ବିଧବାମାନଙ୍କର ଦୁର୍ଦ୍ଦଶା ଦୂର କରିବା ଉଦ୍ଦେଶ୍ୟରେ ବର୍ତ୍ତମାନ ସମୟର ଗତି ଲକ୍ଷ୍ୟ କରି ଗୋଟାଏ କିଛି ପନ୍ଥା ଅବଲମ୍ବନ କରିବା ନିତାନ୍ତ ଆବଶ୍ୟକ ହୋଇଅଛି । ଏ ସମ୍ପର୍କରେ ଗତ ୨୭.୫.୧୯୨୮ ଦିନ ଦେବଦୁର୍ଗର ସମସ୍ତ ବ୍ରାହ୍ମଣ ସମାଜ ଆମ୍ଭେମାନେ ଗୋପାଳଜୀ ମନ୍ଦିରରେ ସମ୍ମିଳିତ ହୋଇ ଅନେକ ଆଲୋଚନା ପରେ ସ୍ଥିର କରୁଅଛୁଁ । ଏ ବିଷୟରେ ଆଲୋଚନାର ପୀଠସ୍ୱରୂପ ଗୋଟିଏ ସମିତି ରହିବା ଆବଶ୍ୟକ । ଉକ୍ତ ସମିତିରେ ଦେବଦୁର୍ଗର ମୋଫସଲର ଶାସନମାନଙ୍କର ବିଶିଷ୍ଟ ବ୍ରାହ୍ମଣମାନେ ମେମ୍ବର ସ୍ୱରୂପ ରହିବେ । କାର୍ଯ୍ୟ କି ଗତିରେ ଚାଳିଲେ ଆମ୍ଭମାନଙ୍କର ଉଦ୍ଦେଶ୍ୟ ସିଦ୍ଧ ହେବ । ସେ ବିଷୟ ଉକ୍ତ କମିଟି ନିଶ୍ଚୟ କରିବ ।

ଏହି ସମିତିରେ ଆମ୍ଭେମାନେ ସମସ୍ତେ ଏକମତ ହୋଇ ସର୍ବାଂଶରେ ଉପଯୁକ୍ତ ମନେକରି ଆପଣଙ୍କୁ ସ୍ଥାୟୀ ସଭାପତି ରୂପେ ବରଣ କରୁଅଛୁଁ । ଆଶା କରୁଁ, ଆମ୍ଭମାନଙ୍କର ଏହି ଅନୁରୋଧ ଉପେକ୍ଷିତ ହେବ ନାହିଁ । ତା ୨୮.୦୫.୧୯୨୮'' ।

ଜଳନ୍ଧରଙ୍କ ସଭାପତିତ୍ୱରେ ଏହି ବ୍ରାହ୍ମଣ ସମାଜର ଅନେକ ଅଧିବେଶନର ଆଲୋଚନା ପରେ ଏଗାରଟି ମୌଳିକ ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା । ସଂକ୍ଷେପରେ ସେଗୁଡ଼ିକ ଉଦ୍ଧୃତ କରାଯାଇପାରେ ।

୧. ସନାତନ ଆର୍ଯ୍ୟଧର୍ମର ସମ୍ମାନ ରକ୍ଷାକଳ୍ପେ ସମୟାନୁଯାୟୀ ପ୍ରାଚୀନ ଋଷିଗଣ ବେଦୋକ୍ତ ଧର୍ମଭିତ୍ତିକ ନୂତନ ଶାସ୍ତ୍ର ଓ ବ୍ୟବସ୍ଥା ପ୍ରଣୟନ କରୁଥିଲେ ।

୨. ପରାଧୀନ ଦେଶରେ ଜାତୀୟ ଏକତାର ଅଭାବ କାଳାନୁସାରେ ନୂତନ ଶାସ୍ତ୍ର ଓ ବ୍ୟବସ୍ଥା ପ୍ରଣୟନ ହେଉ ନାହିଁ । ଅଲକ୍ଷ୍ୟରେ ସମାଜ ବ୍ୟବସ୍ଥା ଉଚ୍ଛେଦ ହେଉଥିଲେ ମଧ୍ୟ ଏଥିପ୍ରତି ନେତୃମଣ୍ଡଳୀର ଦୃଷ୍ଟି ନାହିଁ ।

୩. ଜାତିର ଉନ୍ନତି ଓ ଧର୍ମର ରକ୍ଷା ନିମନ୍ତେ ଆଚରଣଗତ ବ୍ୟବହାରରେ କାଳୋଚିତ ସଂସ୍କାର ଓ ପରିବର୍ତ୍ତନର ଆବଶ୍ୟକ ।

୪. ବେଦୋକ୍ତ ବୈବାହିକ ମନ୍ତ୍ର ସମୂହ ଯୁବତୀ ବିବାହ ପକ୍ଷପାତୀ ।

୫. ଗୃହ୍ୟ ସୂତ୍ର ଯୁବତୀ ବିବାହର ସ୍ପଷ୍ଟ ସୂଚକ ।

୬. ସ୍ମୃତି ଶାସ୍ତ୍ର ଅନେକ । ମତଦ୍ୱୈଧ ମଧ୍ୟରେ ଯୁବତୀ ବିବାହ ସପକ୍ଷ ମତ ବଳବତ୍ତର ।

୭. ଯୁବତୀ ବିବାହ ଶାସ୍ତ୍ରସମ୍ମତ; ଏଣୁ ଏହାର ପ୍ରଚଳନ ଦୂଷଣୀୟ ନୁହେଁ ।

୮. ରାଜା ବାସୁଦେବ ସୁଢଳଦେବଙ୍କ ନିର୍ଦ୍ଦେଶ ଅନୁଯାୟୀ କନ୍ୟାର ବାର ବର୍ଷ ପରେ ବିବାହ କାର୍ଯ୍ୟ ହେବା ବିଧେୟ । ଏହା ଯୁବତୀ ବିବାହର ମୂଳଭିତ୍ତି ।

୯. ଅକ୍ଷତଯୋନି ବିଧବା ବିବାହ ଶାସ୍ତ୍ରସମ୍ମତ ।

୧୦. ବୈଦିକ ବୈବାହିକ ମନ୍ତ୍ର କନ୍ୟା ସଦୃଶ ବିଧବା ନିମିତ୍ତ ପ୍ରଯୁଜ୍ୟ ।

୧୧. ଅକ୍ଷତଯୋନି ବାଳ ବିଧବା ଅବିବାହିତ କନ୍ୟା ତୁଲ୍ୟ ।

ଏହି ମତ ସମୂହର ବହୁଳ ପ୍ରଚାର ଓ କାର୍ଯ୍ୟକାରିତା ଦିଗରେ ଜଳନ୍ଧର ଆପ୍ରାଣ ଚେଷ୍ଟା କରିଥିଲେ। ଏହାର ଫଳସ୍ୱରୂପ ୧୯୨୯ରେ ତାଙ୍କର 'ବିବାହ ବିଚାର' ପୁସ୍ତକ ପ୍ରକାଶ ପାଇଥିଲା।

ଜଳନ୍ଧର ସମାଜରେ ଜାତିଭେଦର ଥିଲେ ଘୋର ବିରୋଧୀ। ସେ ଅବସର ସମୟରେ ହରିଜନ ଆଦିବାସୀମାନଙ୍କ ସହିତ ମିଳାମିଶା କରି ତାଙ୍କ ସମସ୍ୟାର ସମାଧାନ କରୁଥିଲେ। ପ୍ରଥମ ଶ୍ରେଣୀ ବିଚାରପତି ଥାଇ ମଧ କୌଣସି ଦରିଦ୍ର ଅସହାୟ ବ୍ୟକ୍ତି ଅଦାଲତକୁ ଆସିବାରେ ଅସମର୍ଥ ହେଲେ ସେ ଅଦାଲତକୁ ତା'ପାଖକୁ ନେଇ ନ୍ୟାୟ ପ୍ରଦାନ କରୁଥିଲେ। କେବଳ ଶିକାର ସମୟରେ ଆଦିବାସୀମାନଙ୍କ ସହିତ ମିଳାମିଶା କରୁଥିଲେ ତା' ନୁହେଁ, ସେମାନଙ୍କ ବିବାହାଦି ଅନୁଷ୍ଠାନରେ ଯୋଗ ଦେଉଥିଲେ। 'ଅତିଥି ସତ୍କାର', 'ବିବାହ ଭୋଜି' ପ୍ରଭୃତି ଗଳ୍ପରେ ବର୍ଣ୍ଣିତ ବିଷୟ ତାଙ୍କର ଅଙ୍ଗେନିଭା ଘଟଣା।

ନିମ୍ନ ବର୍ଗର ଲୋକଙ୍କ ଉପଯୁକ୍ତ ଶିକ୍ଷା ନିମନ୍ତେ ସଚ୍ଚିଦାନନ୍ଦଙ୍କୁ ସେ ପରାମର୍ଶ ଦେଇଥିଲେ। ଯାହାର ଫଳସ୍ୱରୂପ ବାମଣ୍ଡାରେ 'ଅନାର୍ଯ୍ୟ ସ୍କୁଲ' (୧୯୦୪) ପ୍ରତିଷ୍ଠା ହୋଇଥିଲା। ଏହି ସ୍କୁଲର ପ୍ରଧାନ ଶିକ୍ଷକ ପଦ ଗ୍ରହଣ କରିଥିଲେ ବିଶ୍ୱନାଥ ଶତପଥୀ। ସେ ବିଶିଷ୍ଟ କମ୍ୟୁନିଷ୍ଟ ନେତା ଦୟାନନ୍ଦ ଶତପଥୀଙ୍କ ପିତା ତଥା ଜଣେ ପ୍ରଗତିବାଦୀ ବ୍ରାହ୍ମଣ। ୧୯୨୫ରେ ବିଶ୍ୱନାଥ ଜଳନ୍ଧରଙ୍କ ଆତ୍ମିକ ସମର୍ଥନ ବଳରେ ହରିଜନମାନଙ୍କୁ ଦେବଗଡ଼ର ଗୋକର୍ଣ୍ଣେଶ୍ୱର ମନ୍ଦିରରେ ପ୍ରବେଶ କରାଇ ପୂଜାର୍ଚ୍ଚନା କରିଥିଲେ। ଜଳନ୍ଧର ବିଶ୍ୱନାଥଙ୍କ ଏହି ଅକୁତୋଭୟ କାର୍ଯ୍ୟକୁ ସ୍ୱାଗତ କରି ଉପଦେଶ ଦେଇଥିଲେ– ''ହରିଜନଙ୍କୁ ମନ୍ଦିରରେ ପ୍ରବେଶ କରାଇ ଦେଲେ ସମସ୍ୟାର ସମାଧାନ ହେବ ନାହିଁ। ଆମ୍ଭମାନଙ୍କୁ ତାଙ୍କ ସହିତ ମିଳିତ ହୋଇ କାର୍ଯ୍ୟ କରିବାକୁ ପଡ଼ିବ। ଦଳିତ ଓ ନିମ୍ନବର୍ଗର ଲୋକଙ୍କୁ ସମାଜର ମୁଖ୍ୟ ସ୍ରୋତରେ ସାମିଲ କରିବାକୁ ପଡ଼ିବ।'' ଜଳନ୍ଧରଙ୍କ ଏହି ଉଦାର ଆହ୍ୱାନ ତାଙ୍କର ଅନେକ ପ୍ରବନ୍ଧ ଓ ଗଳ୍ପରେ ପ୍ରତିଫଳିତ।

୧୮୯୫ ବାମଣ୍ଡାର ଆଲୋଚନା ସଭାରେ ଜାତିଭେଦ ସମ୍ପର୍କରେ ବାଦାନୁବାଦ ହୁଏ। ୩.୬.୧୮୯୫ ଅଧିବେଶନରେ ବିଶ୍ୱନାଥ କର ଭାଗ ନେଇ ଜାତିଭେଦକୁ ସମାଜର କଳଙ୍କ ଓ ପ୍ରଗତିର ପରିପନ୍ଥୀ ବୋଲି ଅଭିହିତ କରିଥିଲେ। ପଣ୍ଡିତ ମଧୁସୂଦନ ମିଶ୍ର ତର୍କ ବାଚସ୍ପତି ପ୍ରମୁଖ ବିଶ୍ୱନାଥଙ୍କ ମତକୁ ଖଣ୍ଡନ କରିଥିଲେ। ୨୯.୯.୧୮୯୫ ଅଧିବେଶନରେ ପୁରୀର ପଣ୍ଡିତ ମାର୍କଣ୍ଡେୟ ତର୍କ ପଞ୍ଚାନନ 'ପୌରାଣିକତା ଓ ଜାତିଭେଦ ବିରୁଦ୍ଧେ' ବକ୍ତୃତା ପ୍ରଦାନ କରିଥିଲେ। ଏହି ଉଭୟ ଅଧିବେଶନରେ ଜଳନ୍ଧର ନିଜସ୍ୱ ଯୁକ୍ତିଦ୍ୱାରା ଜାତିଭେଦ ବିରୁଦ୍ଧ ବକ୍ତବ୍ୟକୁ ପ୍ରତିଷ୍ଠିତ କରିଥିଲେ। ଋଗ୍‌ବେଦର ପୁରୁଷ ସୂକ୍ତରେ ବର୍ଣ୍ଣିତ ନିମ୍ନୋକ୍ତ ଶ୍ଳୋକକୁ ଜଳନ୍ଧର ଦେବ ତଥା ବାମଣ୍ଡାର ଆଲୋଚନା ସଭା ଖଣ୍ଡନ କରି ଜାତିଭେଦ ମୂଳରେ କୁଠାରାଘାତ କରିଥିଲା।

''ବ୍ରାହ୍ମଣୋଽସ୍ୟ ମୁଖମାସୀଦ ବାହୁ ରାଜନ୍ୟକୃତଃ
ଉରୂତଦସ୍ୟ ଯଦ୍ ବୈଶ୍ୟଃ ପଦ୍‌ଭ୍ୟାଂ ଶୂଦ୍ରୋ ଅଜାୟତ।''

ନିଶା ବିରୋଧରେ ସୁଢଳଦେବଙ୍କ ଅଭିଯାନକୁ ସୁଦୃଢ଼ କରିଥିଲେ ଜଳନ୍ଧର। ବାମଣ୍ଡା ଜେଲର ସୁପରିଣ୍ଟେଣ୍ଡେଣ୍ଟ ଭାବେ ଖୁବ୍ କମ୍ ସମୟପାଇଁ ଦାୟିତ୍ୱରେ ଥିଲେ ମଧ ସେ କଏଦୀମାନଙ୍କୁ ଭଲ ମଣିଷଭାବେ ଗଢ଼ିବାକୁ ଚେଷ୍ଟା କରିଥିଲେ। ସେମାନଙ୍କପାଇଁ ଜେଲଖାନା ମଧରେ ବିଭିନ୍ନ ବୈଷୟିକ ଶିକ୍ଷାର ସୁବନ୍ଦୋବସ୍ତ କରାଯାଇଥିଲା। ଶିକ୍ଷିତ କଏଦୀମାନଙ୍କଦ୍ୱାରା ହିତୈଷିଣୀ ପ୍ରେସ୍ ତଥା ଅନ୍ୟାନ୍ୟ ସମ୍ମାନଜନକ କାର୍ଯ୍ୟ କରାଉଥିଲେ। କଏଦୀମାନଙ୍କର ଅପରାଧ ମଧ୍ୟରୁ ଅଧିକାଂଶ ନିଶାସେବନଦ୍ୱାରା ହେଉଥିବାରୁ ସେମାନଙ୍କୁ ନିଶାଠାରୁ ଦୂରେଇ ରହିବାକୁ ସେ ପରାମର୍ଶ ଦେଉଥିଲେ।

ବିଚାରପତି ଥାଇ ଜଳନ୍ଧର ନିଶାସେବୀଙ୍କ ମାନସିକ ପରିବର୍ତ୍ତନପାଇଁ ଚାରି ପ୍ରକାର ଉପାୟ ଅବଲମ୍ବନ କରୁଥିଲେ। ଏହି ଚାରି ପ୍ରକାର ଉପାୟର ଆବିଷ୍କର୍ତ୍ତା ସୁଢଳଦେବ। ନିଶାସେବୀକୁ ବେତ୍ରାଘାତ, ଅର୍ଥଦଣ୍ଡ, ସାମାଜିକ ବାସନ୍ଦ ବା ପଦୋନ୍ନତି ଦିଆଯାଉଥିଲା। ପ୍ରାଥମିକ ନିଶା ସେବନକାରୀକୁ ବେତ୍ରାଘାତ ଓ ଅର୍ଥଦଣ୍ଡ କରାଯାଉଥିଲା। ନିଶା ପରିତ୍ୟାଗ ନ କଲେ ସାମାଜିକ ବାସନ୍ଦ ନଚେତ ରାଜା ବା ବିଚାରପତିଙ୍କ ନିକଟ କର୍ମଚାରୀ ରୂପେ ପଦୋନ୍ନତି ଦିଆଯାଉଥିଲା। ଜଳନ୍ଧର ବା ସୁଢଳଦେବଙ୍କ ପରି ମହୀୟାନ୍ ପ୍ରତିଭା ସାମ୍ନାରେ ମହା ମହା ନିଶା ସେବନକାରୀ ବାଟକୁ ଆସିଯାଉଥିଲେ।

ଜଳନ୍ଧର ଭୂମିଷ୍ଠ ହେବାର ସତର ବର୍ଷ ପରେ 'ସମ୍ବଲପୁର ହିତୈଷିଣୀ' ଓ ଏକୋଇଶ ବର୍ଷ ପରେ 'ବିଜୁଳି'

ପତ୍ରିକା ତାଙ୍କର ଜନ୍ମମାଟି ଦେବଗଡ଼ରୁ ପ୍ରକାଶ ଲଭେ। ଏହି ପତ୍ରିକା ଦୁଇଟି ଜଳନ୍ଧରଙ୍କ ସାରସ୍ୱତ ପ୍ରାଣକୁ ଲାଳିତ ପାଳିତ ଓ ପରିବ୍ୟାପ୍ତ କରେ। ସୁବଳଦେବଙ୍କ ଜ୍ଞାନ ଲିପ୍ସା ଓଡ଼ିଆ, ହିନ୍ଦୀ, ବଙ୍ଗଳା ଓ ଇଂରେଜୀରେ ପ୍ରକାଶିତ ଅନେକ ପତ୍ରିକାକୁ ବାମଣ୍ଡା ଆଣିବାର ସୁଯୋଗ ଦେଇଥିଲା। ହିତୈଷିଣୀ ଅଫିସର ବିଭିନ୍ନ ପତ୍ରପତ୍ରିକାର ପୁଙ୍ଖାନୁପୁଙ୍ଖ ଆଲୋଚନା ହେଉଥିଲା। ଏହି ସମସ୍ତ ପତ୍ରିକା ଅଧ୍ୟୟନର ସୁଯୋଗ ଛାତ୍ର ସମୟରୁ ଜଳନ୍ଧର ଲାଭ କରିଥିଲେ। 'ସମ୍ବଲପୁର ହିତୈଷିଣୀ'ରେ ଓଡ଼ିଶାର ସମସ୍ତ କୃତବିଦ୍ୟ ସାଧକଙ୍କ ଲେଖା ସ୍ଥାନିତ ହେଉଥିଲା। ବାମଣ୍ଡା ଦରବାରର ପଣ୍ଡିତ ସଭା, ସୁବଳଦେବଙ୍କ ନେତୃତ୍ୱରେ ଶାସ୍ତ୍ର ଆଲୋଚନା, ଆଧ୍ୟାତ୍ମିକ ବିତର୍କ ଜଳନ୍ଧରଙ୍କ କୋମଳ ପ୍ରାଣକୁ ଏକ ବିରାଟ ଦାୟିତ୍ୱ ବହନପାଇଁ ପ୍ରସ୍ତୁତ କରିଥିଲା। ସାରସ୍ୱତ ବାଦାନୁବାଦ, ଯୁକ୍ତିତର୍କ ମଧ୍ୟରେ ସତ୍ୟ ଶିବ ଓ ସୁନ୍ଦରର ହେଉଥିଲା ଶୁଚି ଶୁଭ୍ର ପ୍ରତିଷ୍ଠା ଏବଂ ଅଜାଣତରେ ଅନେକ ନବୀନ ପ୍ରତିଭା ଭବିଷ୍ୟତର କର୍ଣ୍ଣଧାର ସାଜିବାକୁ ସଂକଳ୍ପବଦ୍ଧ ଥିଲେ। ଏହି ନବୀନ ପ୍ରତିଭାଙ୍କ ମଧ୍ୟରେ ଜଳନ୍ଧର ଥିଲେ ସର୍ବଶ୍ରେଷ୍ଠ।

ଜଳନ୍ଧରଙ୍କ ସମ୍ପାଦନାରେ 'ଆଲୋଚନା' ପତ୍ରିକା ମାର୍ଚ୍ଚ ୧୯୦୦ରେ ଦେବଗଡ଼ରୁ ପ୍ରକାଶ ଲଭିଲା। ଏହି ପତ୍ରିକାର ସ୍ୱରୂପ ସମ୍ପର୍କରେ 'ସମ୍ବଲପୁର ହିତୈଷିଣୀ' (୧୨/୩) ତା-୨୩-୫-୧୯୦୦ ରେ ନିମ୍ନୋକ୍ତ ବିଜ୍ଞାପନରୁ ଜଣାପଡ଼େ।

ବିଜ୍ଞାପନ (ଆଲୋଚନା)

ବାମଣ୍ଡା ଆଲୋଚନା ସଭାର ତତ୍ତ୍ୱାବଧାନରେ ଗତ ମାର୍ଚ୍ଚ ମାସଠାରୁ 'ଆଲୋଚନା' ନାମ୍ନୀ ଖଣ୍ଡିଏ ମାସିକ ପତ୍ରିକା ଆରମ୍ଭ ହୋଇଅଛି। ପତ୍ରିକାର କଳେବର ଡିମାଇ ଆଠପେଜି ୨୪ ପୃଷ୍ଠା ବାର୍ଷିକ ମୂଲ୍ୟ ମାସୁଲ ସମେତ ଏକ ଟଙ୍କା ମାତ୍ର। ଏହି ପତ୍ରିକାରେ ରାଜନୀତି ବ୍ୟତୀତ ଅନ୍ୟ ସକଳ ବିଷୟର ଆଲୋଚନା ହୋଇଥାଏ। ସାଧାରଣଙ୍କ ସୁବିଧା ସକାଶେ ପତ୍ରିକାର ମୂଲ୍ୟ ଆଶାତୀତ ସୁଲଭ କରାଯାଇଅଛି। ଯେଉଁମାନେ ନମୁନା ସ୍ୱରୂପ ଏକ ସଂଖ୍ୟାର କାଗଜ ପାଇବାକୁ ଇଚ୍ଛା କରନ୍ତି, ସେମାନେ ଦେଢ଼ଅଣା ମୂଲ୍ୟର ଏକ ବା ଦୁଇ ପଇସିଆ ଡାକଟିକଟ ପଠାଇଲେ ନମୁନା ପଠାଯିବ।

ଦେବଗଡ଼ ପୋ : ଶ୍ରୀ ଜଳନ୍ଧରଦେବ
ବାମଣ୍ଡା ଆଲୋଚନା,
ସମ୍ପାଦକ

ଏହି ପତ୍ରିକା ପ୍ରକାଶନର ତିନି ମାସ ପରେ ୧୯୦୦ ଜୁନ୍‌ରେ ବାମଣ୍ଡାର ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ 'ଉତ୍କଳ ମଧୁପ' ମାସିକ ପତ୍ର ଆତ୍ମପ୍ରକାଶ କଲା। 'ସମ୍ବଲପୁର ହିତୈଷିଣୀ', 'ଉତ୍କଳ ମଧୁପ' ଓ 'ଆଲୋଚନା'ର କୋଷାଧ୍ୟକ୍ଷ ଥିଲେ ଜଳନ୍ଧର ଦେବ। ଏହି ତିନି ପତ୍ରିକାର ସମସ୍ତ ଦେୟ ଜଳନ୍ଧରଙ୍କ ନାମରେ ପ୍ରେରଣ କରିବାକୁ ହିତୈଷିଣୀ ପୃଷ୍ଠାରେ ଅନୁରୋଧ କରାଯାଇଥିଲା।

ଉତ୍କଳ ମଧୁପ ଏକ ଡାଇଜେଷ୍ଟ ପତ୍ରିକା ଥିଲାବେଳେ ବିଜୁଳି ଓ ଆଲୋଚନା ଥିଲେ କ୍ଷଣସ୍ଥାୟୀ। ସମ୍ବଲପୁର ହିତୈଷିଣୀ ୧୯୨୩ ପର୍ଯ୍ୟନ୍ତ ପ୍ରକାଶ ପାଇ ବନ୍ଦ ହୋଇଥିଲା। ହିତୈଷିଣୀ ପରେ ବାମଣ୍ଡା ଶିକ୍ଷକ ସମାଜ ଉପହାର (୧୯୩୪) ନାମକ ଏକ ତ୍ରୈମାସିକ ପତ୍ରିକା ପ୍ରକାଶ କଲେ। ୧୯୪୫ରେ ଏହି ପତ୍ରିକା ବାମଣ୍ଡା ଦରବାରର ଆର୍ଥିକ ସହାୟତାରେ ପ୍ରକାଶିତ 'ଶଙ୍ଖ' ପତ୍ରିକା ସହିତ ସଂଯୁକ୍ତ ହୋଇଥିଲା। ଉପହାର ସହିତ ଜଳନ୍ଧର ପରୋକ୍ଷଭାବେ ସଂଶ୍ଳିଷ୍ଟ ଥିଲାବେଳେ ଶଙ୍ଖର ୨ ବର୍ଷ ୩ୟ ସଂଖ୍ୟାଠାରୁ ସମ୍ପାଦନା ଗ୍ରହଣ କରନ୍ତି। ମାନସିଂହଙ୍କ ସମ୍ପାଦକତ୍ୱରେ ଓଡ଼ିଶାର ଏକ ବିଶିଷ୍ଟ ମାସିକ ପତ୍ରରୂପେ 'ଶଙ୍ଖ' ପ୍ରତିଭାତ ହୋଇଥିଲା। ତାଙ୍କର ସ୍ଥାନାନ୍ତର ଯୋଗୁଁ ଜଳନ୍ଧର ସମ୍ପାଦନା ଭାର ଗ୍ରହଣ କରିଥିଲେ। ଏହି ସମସ୍ତ ସାହିତ୍ୟ ପତ୍ରିକା ସହିତ ସମ୍ପୃକ୍ତି ତାଙ୍କୁ ଓଡ଼ିଆ ଭାଷା ସାହିତ୍ୟର ସେବା ପାଇଁ ସୁଯୋଗ ପ୍ରଦାନ କରିଥିଲା। ଜଳନ୍ଧରଙ୍କ ସମ୍ପାଦକତ୍ୱରେ ଶଙ୍ଖର ଯେଉଁ କେତୋଟି ସଂଖ୍ୟା ପ୍ରକାଶିତ ହୋଇଥିଲା ସେ ସବୁରେ ତାଙ୍କର ସଂସ୍କାରାଚ୍ଛନ୍ନ ହୃଦୟର ସ୍ୱାକ୍ଷର ସୁସ୍ପଷ୍ଟ। ଏହାର ସମ୍ପାଦକୀୟରେ ଉତ୍କଳୀୟ ସମସ୍ୟା, ଭାରତୀୟ ସମସ୍ୟା ଓ ଆନ୍ତର୍ଜାତୀୟ ସମସ୍ୟା ଉପରେ ସେ ଲେଖନୀ ଚାଳନା କରିଥିଲେ। ଉତ୍କଳୀୟ ସମସ୍ୟାରେ ଗଡ଼ଜାତ ମିଶ୍ରଣ, ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ, ଭାଷା ସଂସ୍କୃତିର ସମସ୍ୟା ସ୍ଥାନ ପାଇଥିଲା। ଭାରତୀୟ ସମସ୍ୟାରେ ଦେଶ ଓ ଜାତିର ଉନ୍ନତି ସହିତ ପରାଧୀନତାର ଜ୍ୱାଳା ଓ ସ୍ୱାଧୀନତାର ସ୍ୱପ୍ନର ସଫଳ ରୂପାୟନ ଘଟିଛି।

ଜଳନ୍ଧର ଦୂରରେ ରହିଥିଲେ ମଧ୍ୟ ଉତ୍କଳ ସାହିତ୍ୟ ଓ ସହକାରର ସମ୍ପାଦକ ତାଙ୍କୁ ପରିବାର ତୁଲ୍ୟ ମନେ କରୁଥିଲେ।

ଜଳନ୍ଧର ଆଜୀବନ ନିଷ୍ଠାପର ସାହିତ୍ୟ ସେବକ। ସେ ଅନେକ ସୃଜନଶୀଳ ସାରସ୍ୱତ କୀର୍ତ୍ତି ସ୍ଥାପନ କରିଯାଇଛନ୍ତି। ନିରୋଳାରେ ସାହିତ୍ୟ ସୃଷ୍ଟି କରିବା ବ୍ୟତିରେକେ ସେ ଅନେକ

ସାହିତ୍ୟ ସଭାରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ତାଙ୍କର ଏହି ସାରସ୍ୱତ ସେବାର ଏକ ସୂକ୍ଷ୍ମ କ୍ରମ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

୧. ତା. ୧୩. ୧୧. ୧୮୯୩ରେ ରାଧାନାଥଙ୍କ ବାମଣ୍ଡା ଆଗମନ ଯୋଗୁଁ ଏକ ସମ୍ବର୍ଦ୍ଧନା ସଭା କରାଯାଇଥିଲା । ଏଥିରେ ଜଳନ୍ଧର ରାଧାନାଥ ସାହିତ୍ୟ ସମ୍ପର୍କରେ ବକ୍ତୃତା ଦେଇଥିଲେ ।

୨. ୧୧.୭.୧୮୯୫ ଆଲୋଚନା ସଭାରେ 'ଭକ୍ତି' ଶୀର୍ଷକରେ ବକ୍ତୃତା ପ୍ରଦାନ କରିଥିଲେ ।

୩. ୪.୨.୧୮୯୭ ଆଲୋଚନା ସଭାରେ 'ବିବିଧ ସମ୍ପ୍ରଦାୟର ଧର୍ମଶାସ୍ତ୍ର ଆଲୋଚନା' ଉପରେ ବକ୍ତବ୍ୟ ପ୍ରଦାନ କରିଥିଲେ । ପଣ୍ଡିତ ମଧୁସୂଦନ ତର୍କ ବାଚସ୍ପତି ଜଳନ୍ଧରଙ୍କ ମତକୁ ବିରୋଧ କରିଥିଲେ । ଜଣେ ବଙ୍ଗୀୟ ପଣ୍ଡିତ ଜଳନ୍ଧରଙ୍କ ମତକୁ ସମର୍ଥନ କରିଥିଲେ । ବାଦାନୁବାଦ ପରେ ସଭାରେ ଜଳନ୍ଧରଙ୍କ ମତ ଗୃହୀତ ହୋଇଥିଲା ।

୪. ରାଧାନାଥଙ୍କ 'ରାୟ ବାହାଦୂର' ଉପାଧି ପ୍ରାପ୍ତିରେ ତା. ୨୬.୬.୧୮୯୭ ଦିନ ବାମଣ୍ଡାରେ ଏକ ସମ୍ବର୍ଦ୍ଧନା ସଭା ହୋଇଥିଲା । ଏଥିରେ ଜଳନ୍ଧର ରାଧାନାଥଙ୍କ ପ୍ରତିଭାର ମୂଲ୍ୟାୟନ କରିଥିଲେ ।

୫. ତା. ୭.୨.୧୮୯୮ରେ ରାଧାନାଥଙ୍କ ଆଗମନରେ ଦେବଗଡ଼ଠାରେ ଏକ ସ୍ୱାଗତ ସଭା ହୋଇଥିଲା । ଏଥିରେ ଜଳନ୍ଧର ସ୍ୱାଗତ ଭାଷଣ ଦେଇଥିଲେ ।

୬. ଫେବୃୟାରୀ-୧୯୦୪ରେ ଦେଶ ମିଶ୍ରଣ ସଭାରେ ଜଳନ୍ଧର ସଭାପତିତ୍ୱ କରିଥିଲେ । ଲୋକମାନେ କେଉଁ ରାଜ୍ୟରେ ମିଶିବାକୁ ଇଚ୍ଛୁକ ଆଲୋଚନା କରି ନିର୍ଦ୍ଧାରଣ କରିବାକୁ ଆହ୍ୱାନ ଦେଇଥିଲେ ।

୭. ୧୯.୧୧.୧୯୦୪ରେ ସୁଢଳଦେବଙ୍କ ପ୍ରଥମ ସାମ୍ବତ୍ସରିକ ସଭାରେ ଜଳନ୍ଧର ସୁଢଳଦେବଙ୍କ ଲୋକହିତକର କାର୍ଯ୍ୟ ସମ୍ପର୍କରେ ଆଲୋକପାତ କରିଥିଲେ ।

୮. ୧୭.୫.୧୯୦୫ ଦେବଗଡ଼ ସ୍କୁଲ ଶିକ୍ଷା ତତ୍ତ୍ୱ ସମିତିର ଅଧିବେଶନରେ ଜଳନ୍ଧର ସଭାପତିତ୍ୱ କରିଥିଲେ ।

୯. ୨୫.୩.୧୯୦୯ ଛାତ୍ର ସମିତିର ବାର୍ଷିକ ଅଧିବେଶନରେ ଜଳନ୍ଧରଦେବ ଆଦର୍ଶ ଶିକ୍ଷା ସମ୍ପର୍କରେ ବକ୍ତୃତା ଦେଇଥିଲେ ।

୧୦. ୧୭.୧୦.୧୯୦୯ରେ ବାମଣ୍ଡା କ୍ଲବ ଉଦ୍‌ଘାଟିତ ହୁଏ । ଏଥିରେ ଜଳନ୍ଧର ଏକ ସୁଦୀର୍ଘ ହୃଦୟସ୍ପର୍ଶୀ ବକ୍ତୃତା ଦିଅନ୍ତି ।

୧୧. ୩୦.୧୨.୧୯୦୯ ଦେବଗଡ଼ ଛାତ୍ର ସମିତିର ବାର୍ଷିକ ଅଧିବେଶନରେ ଜଳନ୍ଧର ବିଦ୍ୟାର ପ୍ରୟୋଜନୀୟତା, ମାତାର ଶ୍ରେଷ୍ଠତ୍ୱ ଓ ନିଶା ଦ୍ରବ୍ୟର ଅପକାରିତା ଉପରେ ଭାଷଣ ଦେଇଥିଲେ ।

୧୨. ୨୦.୪.୧୯୧୦ରେ ଦେବଗଡ଼ଠାରେ ଏକ ସ୍ୱତନ୍ତ୍ର ସଭା ହୋଇଥିଲା । ଏଥିରେ ଜଳନ୍ଧର ବାଲ୍ୟ ବିବାହର ଅପକାରିତା ସମ୍ବନ୍ଧେ ବକ୍ତୃତା ଦେଇଥିଲେ । ସେ ସମସ୍ତ ଜାତିର ଲୋକଙ୍କୁ ନିଜର ଜାତି ସଭାରେ ବାଳକ ବାଳିକାମାନଙ୍କର ବିବାହର ଉପଯୁକ୍ତ ବୟସ ନିର୍ଦ୍ଧାରଣ କରିବାକୁ ଆହ୍ୱାନ ଦେଇଥିଲେ ।

୧୩. ୭.୯.୧୯୧୨ରେ ତାଳଚେର ବ୍ରାହ୍ମଣ ସମିତିରେ ବାଲ୍ୟବିବାହ ବିରୁଦ୍ଧରେ ଭାଷଣ ପ୍ରଦାନ ।

୧୪. ବାରିଷ୍ଟର ବିଶ୍ୱନାଥ ମିଶ୍ରଙ୍କ ଆଗମନରେ ସମ୍ବର୍ଦ୍ଧନା ସଭା ୧୦.୧୦.୧୯୧୩ରେ ହୋଇଥିଲା । ଜଳନ୍ଧରଦେବ ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ ।

୧୫. ୧୫.୧୨.୧୯୧୬ ବାମଣ୍ଡା ଛାତ୍ର ସମିତି ବାର୍ଷିକ ଅଧିବେଶନରେ ସଚ୍ଚିଦାନନ୍ଦ ସଭାପତି ଏବଂ ଜଳନ୍ଧରଦେବ ବକ୍ତା ରୂପେ ଭାଷଣ ପ୍ରଦାନ କରିଥିଲେ ।

୧୬. ୨୭.୧୧.୧୯୧୭ ଦେବଗଡ଼ କ୍ଲବ ଗୃହରେ ଏକ ସାନ୍ଧ୍ୟ ସମ୍ମିଳନୀ ବସିଥିଲା । ମୁଖ୍ୟ ଆଲୋଚ୍ୟ ବିଷୟ ଥିଲା, 'ମାନବ ଜୀବନରେ ଚିରସ୍ଥାୟୀ ସମ୍ଭବ କି ନା' ? ଏଥିରେ ଜଳନ୍ଧର ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

୧୭. ୨୧.୧୨.୧୯୧୭ ବାମଣ୍ଡା ଛାତ୍ର ସମିତିରେ ମୁଖ୍ୟ ବକ୍ତାର ଆସନ ଅଳଙ୍କୃତ କରିଥିଲେ ।

୧୮. ୨୧.୨.୧୯୨୩ ସଚ୍ଚିଦାନନ୍ଦଙ୍କ ସ୍ମୃତିରେ ଜଳନ୍ଧରଙ୍କ ସଭାପତିତ୍ୱ ଏବଂ ଶ୍ରଦ୍ଧାଞ୍ଜଳି ଜ୍ଞାପନ ।

୧୯. ୧୬.୯.୧୯୩୩ କଟକରେ ଉତ୍କଳ ସାହିତ୍ୟ ସମାଜର ଅଷ୍ଟାବିଂଶ ଅଧିବେଶନରେ ସଭାପତିରୂପେ ଅଭିଭାଷଣ ପ୍ରଦାନ କରିଥିଲେ ।

୨୦. ୩ ଓ ୪ ମାର୍ଚ୍ଚ ୧୯୩୫ ବାରିପଦା ସାହିତ୍ୟ ସମାଜର ପ୍ରଥମ ସଭାରେ ସଭାପତିତ୍ୱ କରି ବକ୍ତବ୍ୟ ରଖିଥିଲେ।

୨୧. ଅଗଷ୍ଟ ୧୫, ୧୯୪୭ ଦିନ ଦେବଗଡ଼ର ବସାଲଇଠାରେ ସମସ୍ତ ସ୍ୱାଧୀନତା ସଂଗ୍ରାମୀଙ୍କ ଗହଣରେ ମହାସମାରୋହରେ ତ୍ରିରଙ୍ଗା ପତାକା ଉତ୍ତୋଳନ କରି ଜନତାଙ୍କୁ ସ୍ୱାଧୀନ ଭାରତରେ ନାଗରିକର କର୍ତ୍ତବ୍ୟ ସମ୍ପର୍କେ ସଚେତନ କରିଥିଲେ।

ଏତଦ୍‌ବ୍ୟତୀତ ପ୍ରତିବର୍ଷର ସୁଢଳ ଓ ସଚ୍ଚିଦାନନ୍ଦ ସ୍ମୃତି ସଭାରେ ସେ ବକ୍ତାରୂପେ ଆସନ ଗ୍ରହଣ କରୁଥିଲେ। ଅନେକ ସାମାଜିକ, ସାଂସ୍କୃତିକ ଓ ଧର୍ମୀୟ ଅନୁଷ୍ଠାନରେ ଜଳନ୍ଧର ଯୋଗ ଦେଉଥିବାର ଜଣାପଡ଼େ। ଏସବୁ ଅନୁଷ୍ଠାନରୁ ତାଙ୍କର ଉଦାରଚେତା ମାନବିକତା, ବହୁ ଶାସ୍ତ୍ରଦର୍ଶିତା ଓ ଗଭୀର ଅନ୍ତର୍ଦୃଷ୍ଟି ତଥା ଦୂରଦୃଷ୍ଟିର ସନ୍ଧାନ ମିଳେ।

ବାମଣ୍ଡା ସଙ୍ଗୀତ ସମାଜ ଓ ବାମଣ୍ଡା ଥିଏଟର ସଙ୍ଗୀତ ଓ ନାଟକର ଉନ୍ନତିରେ ବ୍ରତୀ ଥିଲା। ସଙ୍ଗୀତ ସମାଜର କିଛି ସମୟପାଇଁ ସଭାପତି ଥିଲେ ଜଳନ୍ଧରଦେବ। ଏହାର ସମ୍ପାଦକ ଥିଲେ ବିଶିଷ୍ଟ ସଙ୍ଗୀତଜ୍ଞ ସୀତାକାନ୍ତଦେବ। ଦୁଷ୍ମନ୍ତଦେବଙ୍କ ଉଦ୍ୟମରେ ଉତ୍କୃଷ୍ଟ ନାଟକ ମଞ୍ଚସ୍ଥ କରିବାର ଆଭିମୁଖ୍ୟ ନେଇ 'ବାମଣ୍ଡା ଥିଏଟର' ୧୯୧୦ ରେ ଗଠିତ ହୋଇଥିଲା। ଏଇ ଥିଏଟରର ଅନ୍ୟତମ ପରାମର୍ଶଦାତା ଜଳନ୍ଧରଦେବ। ବାମଣ୍ଡା ଥିଏଟରର ଜଳନ୍ଧରଙ୍କ ରଚିତ 'ଉଦୟ ସିଂହ' ନାଟକକୁ ଅନେକ ରାତ୍ରୀ ମଞ୍ଚାୟନ କରିଥିଲେ। 'ରାଣା ସଙ୍ଗଙ୍କର ମହାପ୍ରୟାଣ' ନାଟକ ମଧ ବାମଣ୍ଡାର ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ ହୋଇଥିଲା। ଜଳନ୍ଧରଙ୍କ ସୁପୁତ୍ର ଶଶିଭୂଷଣ ଦେବ ନାଟକ ନିର୍ଦ୍ଦେଶନା ସହିତ ଅଧିକ ଘନିଷ୍ଠ ହୋଇଥିବାରୁ ଜଳନ୍ଧରଙ୍କ ସମ୍ପୃକ୍ତି କମି ଆସିଥିଲା। ବରଂ ସେ ବିଭିନ୍ନ ସାହିତ୍ୟାଲୋଚନାରେ ନିମଗ୍ନ ରହିଲେ। ତାଙ୍କ ନାଟକରେ ଜାତୀୟ ଚେତନା ଉଦ୍ରେକ ଓ ସାମାଜିକ ପ୍ରତିବଦ୍ଧତାର ଅନନ୍ୟ ଚିତ୍ରପଟ ସନ୍ନିବେଶିତ।

ଜଳନ୍ଧର ଜଣେ ବହୁମୁଖୀ ପ୍ରତିଭା। ସେ ସାହିତ୍ୟଠାରୁ କୃଷି, ରାଜନୀତିଠାରୁ ସମାଜନୀତି, ସ୍ଥାପତ୍ୟବିଦ୍ୟାଠାରୁ ଡାକ୍ତରୀ ବିଦ୍ୟା ପର୍ଯ୍ୟନ୍ତ ନିପୁଣ ଥିଲେ। ଯୋଗ ପ୍ରାଣାୟାମ ଓ ପ୍ରାକୃତିକ ପଦ୍ଧତିରେ ଚିକିତ୍ସା କରି ଅନେକ ରୋଗୀଙ୍କୁ ଚିର ସ୍ୱାସ୍ଥ୍ୟ ପ୍ରଦାନ କରିଥିଲେ। ବାମଣ୍ଡାର ବିଭିନ୍ନ ଅଞ୍ଚଳରେ ଉଦ୍ୟାନ ପାର୍କ ପ୍ରଭୃତି ନିର୍ମାଣରେ ତାଙ୍କର ସୌନ୍ଦର୍ଯ୍ୟ ପ୍ରୀତିର ପରିଚୟ ମିଳେ। ୧୯୧୪ରେ କୁଚିଣ୍ଡା ନିକଟସ୍ଥ ଝୁଲେନ ପୋଲ ତେର ହଜାର ଟଙ୍କା ବ୍ୟୟରେ ନିର୍ମାଣ କରିଥିଲେ। ଏହା ହାଓଡ଼ା ପୋଲ ସଦୃଶ ବୈଜ୍ଞାନିକ ପଦ୍ଧତିରେ ଝୁଲା ଭାବରେ ନିର୍ମିତ। ଏହି ପୋଲ ଏ ପର୍ଯ୍ୟନ୍ତ କୁଚିଣ୍ଡାଠାରେ ବିଦ୍ୟମାନ। ପରବର୍ତ୍ତୀ ପର୍ଯ୍ୟାୟରେ ଝୁଲା ପୋଲ ତଳେ ସ୍ତମ୍ଭ କେବଳ ନିର୍ମାଣ କରାଯାଇଛି କିନ୍ତୁ ପୋଲଟି ଜଳନ୍ଧରଙ୍କ ମସ୍ତିଷ୍କ ପ୍ରସୂତ। ଏହି ପୋଲ ଡିସେମ୍ବର ୧୯୧୩ ରୁ ଆରମ୍ଭ ହୋଇ ମେ ୧୯୧୪ ରେ ସମ୍ପୂର୍ଣ୍ଣ ହୋଇଥିଲା। ଏହାର ମୁଖ୍ୟ ତତ୍ତ୍ୱାବଧାରକ ଥିଲେ ଜଳନ୍ଧରଦେବ।

ବାମଣ୍ଡାର ଦୁଇଟି ପ୍ରଧାନ ସାମାଜିକ ଅନୁଷ୍ଠାନ ଦିବ୍ୟଶଙ୍କର ଦେବଙ୍କ ବ୍ରତୋତ୍ସବ (୧୯୦୫) ଏବଂ ସୁରତରଙ୍ଗିଣୀଙ୍କ ବିବାହୋତ୍ସବ (୧୯୧୬)। ଏହି ଦୁଇଟି ଉତ୍ସବରେ ମଧ ଜଳନ୍ଧର ପ୍ରମୁଖ ଭୂମିକା ନିର୍ବାହ କରିଥିଲେ। ବ୍ରତୋତ୍ସବ ଉପଲକ୍ଷେ ବିଭିନ୍ନ ରାଜ୍ୟର ରାଜା, ଜମିଦାର, କବି, ପଣ୍ଡିତ ତଥା ବିଶିଷ୍ଟ ବ୍ୟକ୍ତି ବାମଣ୍ଡାକୁ ଆଗମନ କରିଥିଲେ। ପ୍ରତିଦିନ ପଣ୍ଡିତ କବି ଲେଖକଙ୍କ ସମାବେଶରେ ସାହିତ୍ୟ ସଭା ଅନୁଷ୍ଠିତ ହେଉଥିଲା। ୨୯.୧.୧୯୦୫ର ସାନ୍ଧ୍ୟ ସଭାରେ ବିଜୟଚନ୍ଦ୍ର ମଜୁମଦାର 'ସମାଜ ସଂସ୍କାର' ଉପରେ ବକ୍ତୃତା ଦେଇଥିଲେ। ଏହି ସଭା ରାଜକବି ସଚ୍ଚିଦାନନ୍ଦ ଦେବଙ୍କୁ 'ବିଜ୍ଞାନ ବିନୋଦ' ଓ 'ହିନ୍ଦୁସ୍ଥାନୀ ପଣ୍ଡିତ ନନ୍ଦଲାଲ ଦୁବେଙ୍କୁ 'ପଦ୍ୟ ଭୂଷଣ' ଉପାଧିରେ ସମ୍ମାନିତ କରିଥିଲା। ଏହି ଉତ୍ସବର ମୁଖ୍ୟ ଆକର୍ଷଣ ଥିଲା ବିଦ୍ୟୁତାଲୋକର ସାଜସଜ୍ଜା।

ସଚ୍ଚିଦାନନ୍ଦ ଦେବଙ୍କ ଜେମା ସୁରତରଙ୍ଗିଣୀ ୧୯୧୬ରେ କଳାହାଣ୍ଡି ଯୁବରାଜ ବ୍ରଜମୋହନ ଦେବଙ୍କୁ ବିବାହ କରନ୍ତି। ଏହି ବିବାହ ଉତ୍ସବକୁ ଓଡ଼ିଶା ତଥା ଓଡ଼ିଶା ବାହାରୁ ଅନେକ କବି, ଲେଖକ ଓ ପଣ୍ଡିତ ଯୋଗ ଦିଅନ୍ତି। ଏହି ଉତ୍ସବର ପ୍ରମୁଖ ଆକର୍ଷଣ ହେଲା ବୃଦ୍ଧ କବି ଫକୀରମୋହନଙ୍କୁ 'ସରସ୍ୱତୀ' ଉପାଧିରେ ସମ୍ମାନ ପ୍ରଦାନ। ଏହି ଦୁଇଟି ଉତ୍ସବର ସଫଳ ରୂପାୟନ ଦିଗରେ ଜଳନ୍ଧରଙ୍କ କର୍ତ୍ତବ୍ୟନିଷ୍ଠା ସ୍ମରଣୀୟ।

ଜଳନ୍ଧର ଜୀବନର ଅନ୍ତିମ କ୍ଷଣ ପର୍ଯ୍ୟନ୍ତ କର୍ମକ୍ଷମ ଓ ସୃଜନଶୀଳ ଥିଲେ। ଜୀବନର ଅନ୍ତିମ ପର୍ଯ୍ୟାୟରେ କୃଷି ଉପରେ ସେ ଅଧିକ ଧ୍ୟାନ ଦେଇଥିଲେ। ସେଥି ସହିତ ସାହିତ୍ୟ ସେବାରେ ସେ ଅନାବିଳ ଆନନ୍ଦ ଲାଭ କରୁଥିଲେ। ସାହିତ୍ୟ ସେବାରେ ନିମଗ୍ନ ରହି ଏହି ସ୍ୱାଧୀନ ଚିନ୍ତକ ଅକ୍ଟୋବର ମାସ ୨୬ ତାରିଖ ୧୯୫୨ ରେ ନଶ୍ୱର ଶରୀରକୁ ତ୍ୟାଗ କଲେ। ଏଥି ସହିତ ଏକ ପ୍ରଲୟମାନ ସାରସ୍ୱତ ଧାରା ସ୍ତବ୍ଧ ହୋଇଗଲା। କର୍ମମୁଖର ଜୀବନରେ ଯବନିକାପାତ ହେଲା। ଓଡ଼ିଆ

ସାହିତ୍ୟରେ ସ୍ୱାଧୀନ ଚିନ୍ତା, ଅକୁତୋଭୟ ସମାଲୋଚନାର ଦୃପ୍ତବାଣୀ ନିରବୀ ଗଲା।

ମୃତ୍ୟୁର କିଛି ମାସ ପୂର୍ବରୁ ଝଙ୍କାର ସମ୍ପାଦକୀୟରେ ହରେକୃଷ୍ଣ ମହତାବଙ୍କ ସାରସ୍ୱତ ସମ୍ମାନ ଏବଂ ତିରୋଧାନରେ ସମାଜ ସମ୍ପାଦକ ରାଧାନାଥ ରଥଙ୍କ ଶୋକତର୍ପଣ ତାଙ୍କ ପ୍ରତି ଏ ଜାତିର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି। ଏଠାରେ ସେହି ଦୁଇଟି ଶ୍ରଦ୍ଧାଞ୍ଜଳିକୁ ପାଠକଙ୍କ ଅବଗତିପାଇଁ ଉଦ୍ଧୃତ କରାଗଲା।

''ଶ୍ରୀଯୁକ୍ତ ଜଳନ୍ଧର ଦେବ ଏକ ସମୟରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ସୁପ୍ରସିଦ୍ଧ ଲେଖକ ରୂପେ ଖ୍ୟାତି ଅର୍ଜନ କରିଥିଲେ। ପୁରୁଣା 'ଉତ୍କଳ ସାହିତ୍ୟ' ବାହାର କଲେ ତାଙ୍କର ସାହିତ୍ୟ ଚର୍ଚ୍ଚାର ପ୍ରଭୂତ ନିଦର୍ଶନ ମିଳିବ। କାଳକ୍ରମେ ସେ ସାହିତ୍ୟ କ୍ଷେତ୍ରରୁ ଅପସରି ଯାଇଛନ୍ତି। ଅତି ଆନନ୍ଦର ବିଷୟ ଯେ ତାଙ୍କର ସୁଯୋଗ୍ୟ ପୁତ୍ରମାନେ ତାଙ୍କର ଲେଖାଗୁଡ଼ିକୁ ପୁସ୍ତକାକାରରେ ପ୍ରକାଶ କରିବାର ଉଦ୍ୟମ କରୁଛନ୍ତି। ଇତି ମଧ୍ୟରେ ତାଙ୍କର ଡାଏରିର କିୟଦଂଶ 'ସିଂହଳ ଭ୍ରମଣ' ପ୍ରକାଶିତ ହୋଇସାରିଛି ଓ ଅନ୍ୟ ଲେଖାମାନ ପ୍ରକାଶିତ ହେବାର ବ୍ୟବସ୍ଥା କରାହୋଇଛି। ପ୍ରକାଶିତ ପୁସ୍ତକଟି ପାଠକଲେ ଶ୍ରୀ ଜଳନ୍ଧରଦେବଙ୍କର ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠା ସହଜରେ ଅନୁଭୂତ ହେବ। ଶ୍ରୀ ଜଳନ୍ଧରଦେବଙ୍କ ପରେ ଏକ ଯୁଗ ବିତି ଗଲାଣି ମନେ ହୁଏ ଯେପରି ସେ ଯୁଗର ନିଷ୍ଠା ଆଉ ନାହିଁ। ହୁଏତ ବର୍ତ୍ତମାନ ଯୁଗ ଦରକାର କରୁଛି ଆହୁରି ବେଶୀ ଅଧ୍ୟବସାୟ ଓ ନିଷ୍ଠା। ଯାହା ହେଉ ଶ୍ରୀ ଜଳନ୍ଧରଦେବଙ୍କ ଭଳି ପୂର୍ବଜମାନଙ୍କ ସାହିତ୍ୟନିଷ୍ଠା ଆଜି ନବୀନ ସାହିତ୍ୟିକମାନଙ୍କ ପଥ ପ୍ରଦର୍ଶକ; ହେଉ, ଏହାହିଁ ଆମ୍ଭମାନଙ୍କର କାମନା।''

(ସମ୍ପାଦକୀୟ-ଝଙ୍କାର ୪/୪, ଜୁଲାଇ ୧୯୫୧)

''ଓଡ଼ିଶାର ପ୍ରବୀଣ ସାହିତ୍ୟିକ ଶ୍ରୀଯୁକ୍ତ ଜଳନ୍ଧରଦେବ ଆଉ ଇହଧାମରେ ନାହାନ୍ତି। ଅକ୍ଟୋବର ଛବିଶ ତାରିଖ ସକାଳ ଦଶ ଘଣ୍ଟା ବେଳେ ତାଙ୍କ ହୃତ୍‌ପିଣ୍ଡ କ୍ରିୟା ହଠାତ୍ ବନ୍ଦ ହୋଇଯିବା ହେତୁ ତାଙ୍କର ତିରୋଧାନ ଘଟିଛି। ଶ୍ରୀଯୁକ୍ତ ଜଳନ୍ଧରଦେବଙ୍କର ଜନ୍ମ ବାମଣ୍ଡାର ରାଜପରିବାରରେ। ସେ ନିଜର ସାରା ଜୀବନ ସାହିତ୍ୟ ସେବା ଓ ଦେଶସେବାପାଇଁ ଉତ୍ସର୍ଗ କରିଥିଲେ। ଓଡ଼ିଆ ପତ୍ରପତ୍ରିକାଗୁଡ଼ିକରେ ଜଣେ ଧାରାବାହିକ ଲେଖକ ରୂପେ ସେ ସର୍ବତ୍ର ପରିଚିତ। ତାଙ୍କ ଜୀବନରେ ସେ ବହୁ ପତ୍ରପତ୍ରିକା ମଧ୍ୟ ସମ୍ପାଦନ କରି ଓଡ଼ିଆ ସାହିତ୍ୟକୁ ବଳିଷ୍ଠ ନେତୃତ୍ୱ ଦେଇଛନ୍ତି। ତାଙ୍କର ସାହିତ୍ୟ ସାଧନା ନିର୍ଭୀକ, ସାହିତ୍ୟ ସମାଲୋଚନା ଉଚ୍ଚକୋଟୀର ପ୍ରବନ୍ଧ ଓ ଭ୍ରମଣ ବୃତ୍ତାନ୍ତ ପ୍ରତ୍ୟେକ ସାହିତ୍ୟିକଙ୍କ ଅନୁକରଣୀୟ। ମୃତ୍ୟୁର ଅଳ୍ପ କେତେ ମାସ ପୂର୍ବରୁ ତାଙ୍କ ପ୍ରଣୀତ 'ସିଂହଳ ବୃତ୍ତାନ୍ତ' ପୁସ୍ତକ ପ୍ରକାଶିତ ହୋଇଅଛି। ସାହିତ୍ୟ ସେବା ସଙ୍ଗେ ସଙ୍ଗେ ଶ୍ରୀଯୁକ୍ତ ଜଳନ୍ଧରଦେବ ଜଣେ ସମାଜସେବୀ ରାଜନୀତିଜ୍ଞ ରୂପେ ମଧ୍ୟ ସୁପରିଚିତ। ଗଡ଼ଜାତ ମିଶ୍ରଣ ପରେ ଓଡ଼ିଶା ବ୍ୟବସ୍ଥାସଭାର ଜଣେ ବିଶିଷ୍ଟ ସଭ୍ୟ ଥିଲେ। ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଓଡ଼ିଆ ସାହିତ୍ୟର ଜଣେ ବଳିଷ୍ଠ କର୍ଣ୍ଣଧାର ରୂପେ ଦେଶକୁ ନେତୃତ୍ୱ ଦେବା ପରେ ଆଜି ସେ ମରଧାମ ତ୍ୟାଗ କରିଅଛନ୍ତି ସତ୍ୟ କିନ୍ତୁ ତାଙ୍କର ସେହି ଅନାବିଳ ସାରସ୍ୱତ ସେବା ତାଙ୍କୁ ଚିରକାଳ ଅମର କରିରଖିବ। ସ୍ୱର୍ଗତ ସାହିତ୍ୟରଥୀ ଜଳନ୍ଧରଙ୍କ ଉଦ୍ଦେଶ୍ୟରେ ଆମେ ଆଜି ଦେଶର ଶତ ଶତ ସାହିତ୍ୟିକ ବନ୍ଧୁମାନଙ୍କ ସହିତ ନିଜର ନମ୍ର ପ୍ରଣତି ଜଣାଉଛୁ। ସାହିତ୍ୟିକ ଜଳନ୍ଧରଙ୍କ ଆଦର୍ଶ ଦେଶରେ ଚିର ଅମ୍ଳାନ ରହୁ।'' (ସମାଜ-ରାଧାନାଥ ରଥ)

ଜଳନ୍ଧରଙ୍କ ସାରସ୍ୱତ ଉଡ଼ାଣ ଓଡ଼ିଆ ସାରସ୍ୱତ ଆକଶରେ ଏକ ଅମ୍ଳାନ ସ୍ୱାକ୍ଷର। ସେହି ଅନନ୍ୟ ଉଡ଼ାଣକୁ ମୁଗ୍ଧ ଚକିତ ଦୃଷ୍ଟିରେ ଚାହିଁବା ଭିନ୍ନ ଏ ଲେଖକ ଅନ୍ୟ କିଛି କରି ନ ପାରେ। ଜଳନ୍ଧର ଏକ ମାର୍ଜିତ ଜୀବନ ଭୋଗ ସହିତ ସାର୍ବଜନୀନ ସାହିତ୍ୟ ସୃଷ୍ଟି କରି, ସମଗ୍ର ମଣିଷ ଜାତି ପ୍ରତି ନିଜସ୍ୱ ନିର୍ଭେଜାଳ ଅନୁଭବକୁ ଦାନ କରିଯାଇଛନ୍ତି। ଓଡ଼ିଆ ସାହିତ୍ୟର ଜଣେ ସତ୍ୟନିଷ୍ଠ ନିର୍ଭୀକ ପ୍ରଜ୍ଞାପୁରୁଷ ରୂପେ ତାଙ୍କର ସ୍ଥାନ ସୁନିର୍ଦ୍ଦିଷ୍ଟ।

**ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ**

**ସମ୍ପାଦକ**

●

# ପ୍ରାକ୍ ସୂଚନା

ପ୍ରାବନ୍ଧିକ ଜଳନ୍ଧର ଦେବଙ୍କ ନିଷ୍ଠା ଓ ଖ୍ୟାତି ସମ୍ମୁଖରେ କବି ଜଳନ୍ଧର ନିଷ୍ପ୍ରଭ ନୁହନ୍ତି। ଅନେକ ସମାଲୋଚକ ଏହି ପ୍ରତିଭାର କାବ୍ୟମୂଲ୍ୟ ନିରୂପଣରେ ଅସମର୍ଥ। ଜଳନ୍ଧରଙ୍କ କବିତା ସୃଷ୍ଟି ସୀମିତ କିନ୍ତୁ ଏହି ସୀମିତ ସୃଷ୍ଟି ଜୀବନ ଓ ଜଗତର ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟକୁ ଅଭିବ୍ୟଞ୍ଜିତ କରେ। ତାଙ୍କର ପ୍ରତିଟି କବିତା ଏକ ଏକ ମହନୀୟ ସ୍ମୃତିର ସ୍ମାରକୀ। ଜଳନ୍ଧରଙ୍କ ସଂଗୃହୀତ ମୁଷ୍ଟିମେୟ କବିତାର ପୃଷ୍ଠଭୂମି ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ।

'ଗ୍ରୀଷ୍ମ' ଓ 'ଶିଶିର' କବିତା 'ପାରିଜାତ ମାଳା' ପୁସ୍ତକରୁ ଗୃହୀତ। ଓଡ଼ିଶାର ସାରସ୍ୱତ ପରମ୍ପରାରେ ପାରିଜାତମାଳା ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ। ଋତୁଚର୍ଯ୍ୟାର ବର୍ଣ୍ଣନାରେ ସୁରଭିତ ଏହି ପୁସ୍ତକ ଓଡ଼ିଶାର ପ୍ରଥମ ଯୌଥ କବିତାର ପରମ୍ପରା ସୃଷ୍ଟି କରେ। ସଚ୍ଚିଦାନନ୍ଦଦେବଙ୍କ ସମ୍ପାଦନାରେ ବାମଣ୍ଡା ଜଗନ୍ନାଥ ବଲ୍ଲଭ ପ୍ରେସରେ ୧୮୯୪ରେ ପାରିଜାତମାଳା ପ୍ରକାଶିତ। କବି ଦାମୋଦର ମିଶ୍ରଙ୍କ ବସନ୍ତ ଓ ବର୍ଷା, ଜଳନ୍ଧର ଦେବଙ୍କ ଗ୍ରୀଷ୍ମ ଓ ଶିଶିର ଏବଂ ସଚ୍ଚିଦାନନ୍ଦଦେବଙ୍କ ଶରତ ଓ ହେମନ୍ତ କବିତା ପାରିଜାତମାଳାରେ ସଙ୍କଳିତ। ତିନି ଜଣ କବିଙ୍କ ଗୋଟିଏ ଭାବପିଣ୍ଡରେ ନିର୍ମିତ କାବ୍ୟ କୋଣାର୍କ ପାରିଜାତମାଳା। ଏହିଠାରୁ ଓଡ଼ିଆ ଯୌଥ କବିତା ରଚନାର ଧାରା ଉତ୍ସରିତ।

୧୮୯୫ରେ ସମ୍ବଲପୁର ଅଞ୍ଚଳରୁ ଓଡ଼ିଆ ଭାଷାର ଉଚ୍ଛେଦ ସାଧନ ବିରୋଧରେ କବି ସ୍ୱର ଉତ୍ତୋଳନ କରିଥିଲେ। ସମ୍ବଲପୁର ହିତୈଷିଣୀ ପୃଷ୍ଠାରେ ଶ୍ରୀ-ଜ- ଛଦ୍ମନାମରେ 'ଉତ୍କଳ ଭାରତୀଙ୍କ କ୍ଷୋଭ' ଓ ସ୍ୱନାମରେ 'ନିବେଦନ' କବିତା ପ୍ରକାଶ ପାଇଥିଲା। ଓଡ଼ିଶାର କୃତି ସନ୍ତାନମାନଙ୍କୁ ମାତୃଦୁଃଖ ଅପନୋଦନପାଇଁ ସେ ଆହ୍ୱାନ ଦେଇଥିଲେ।

୧୯୦୩ରେ ବାମଣ୍ଡା ରାଜା ସୁବଳଦେବଙ୍କ ସମ୍ପାଦନାରେ 'ଜହ୍ନମାମୁ' କବିତା ସଙ୍କଳନ ପ୍ରକାଶ ପାଇଥିଲା। ଏଥିରେ ବାର ଜଣ କବିଙ୍କ ଜହ୍ନମାମୁ ସମ୍ପର୍କିତ ୧୦୪ ପଂକ୍ତି ସଙ୍କଳିତ। ଏହି ପୁସ୍ତକରେ ଜଳନ୍ଧରଦେବଙ୍କ ରଚିତ ଚାରି ପଦ ଅନ୍ତର୍ଭୁକ୍ତ।

୧୯୦୯ ବେଳକୁ ରାଜକବି ସଚ୍ଚିଦାନନ୍ଦଦେବ ବାମଣ୍ଡାର ପ୍ରଧାନ ପାଟ ପାଦଦେଶରେ 'ବସନ୍ତ ନିବାସ' ଓ 'ଲଳିତ ବସନ୍ତ' ନାମରେ ଦୁଇଟି ଶୈଳନିବାସ ନିର୍ମାଣ କରନ୍ତି। ବସନ୍ତ ନିବାସର ପ୍ରତିଟି ସ୍ତମ୍ଭରେ ବିଭିନ୍ନ କବିଙ୍କ ବସନ୍ତ ବୃତ୍ତରେ ରଚିତ ବସନ୍ତ ନିବାସ ଶୀର୍ଷକ କବିତା ମାର୍ବଲରେ ଖୋଦିତ ହୋଇ ସଂଯୁକ୍ତ ହୋଇଥିଲା। ଜଳନ୍ଧରଙ୍କ ବସନ୍ତ ନିବାସ କବିତାଟି ଏହିଠାରୁ ଗୃହୀତ।

'ମେଘ ଭାବନା' ଓ 'ଅସ୍ପୃଶ୍ୟା' କବିତା ଦୁଇଟି ଉତ୍କଳ ସାହିତ୍ୟରୁ ସଂଗୃହୀତ। ମେଘ ଭାବନାରେ ପ୍ରକୃତିର ଅନଶ୍ୱର ରୂପ ପ୍ରତିଫଳିତ ହେଲାବେଳେ 'ଅସ୍ପୃଶ୍ୟା'ରେ ଜୀବନବାଦୀ ସ୍ୱର ସୁରକ୍ଷିତ। ଜାତିଭେଦ ବିରୋଧରେ ଅଜସ୍ର ଗଳ୍ପ ଓ ପ୍ରବନ୍ଧ ସୃଷ୍ଟି କରିଥିବା ସଂସ୍କାରକାମୀ ସ୍ରଷ୍ଟା ଜଳନ୍ଧର ଏହି କବିତା ମାଧ୍ୟମରେ ବଦ୍ଧମୂଳ କୁସଂସ୍କାର ମୂଳରେ କୁଠାରାଘାତ କରିଛନ୍ତି।

ବିଶ୍ୱନାଥ କରଙ୍କ ତିରୋଧାନରେ ଶୋକମୂଳକ କବିତା 'ବିଶ୍ୱନାଥଙ୍କ ପ୍ରତି' ରଚିତ ହୋଇ ସହକାରରେ ପ୍ରକାଶ ପାଇଥିଲା। ସେହିପରି କୌଣସି ଆତ୍ମୀୟଙ୍କ ମୃତ୍ୟୁରେ ଶୋକାଭିଭୂତ କବିପ୍ରାଣ 'ଶୋକଗୀତି' କବିତା ରଚନା କରିଛି। ଏହି କବିତାଟି 'ଶଙ୍ଖ' ପୃଷ୍ଠା ମଣ୍ଡନ କରିଥିଲା।

ଶଙ୍ଖସ୍ୱନ କବିତାଟି ଚିତ୍ରୀ ଛଦ୍ମନାମରେ ଓ ମୁକ୍ତିପତାକା କବିତାଟି ଶଙ୍ଖର ପ୍ରଚ୍ଛଦ ପଟରେ ମୁଦ୍ରିତ ହୋଇଥିଲା। 'ଜହ୍ନମାମୁ' କବିତାଟି ଜହ୍ନମାମୁ ଶିଶୁପତ୍ରିକାରୁ ସଂଗୃହୀତ।

'ଦୟାଳୁପକ୍ଷୀ' ଓ 'ପ୍ରତୀକ୍ଷା' କବିତା ଦୁଇଟି ଜଳନ୍ଧରଙ୍କ ଅପ୍ରକାଶିତ ରଚନା।

ଜଳନ୍ଧରଙ୍କ ସଂଗୃହୀତ ଏହି ପନ୍ଦରଟି କବିତା କବିଙ୍କ ଅପରୂପ ସ୍ୱାକ୍ଷର ବହନ କରେ। ଜାତୀୟବାଦୀ ଚେତନା ଓ ପ୍ରକୃତିପ୍ରୀତିର ଅପୂର୍ବ ପରାକାଷ୍ଠା ସହିତ ଜୀବେଦୟା ଓ ସଂସ୍କାରାଚ୍ଛନ୍ନ ଦୃଷ୍ଟିଭଙ୍ଗୀର ଅପୂର୍ବ ପ୍ରତିଫଳନ ହିଁ ତାଙ୍କର କବିତା।

**ସମ୍ପାଦକ**

●

## ଗ୍ରୀଷ୍ମ

ଆସିଲା ମଧୁ ଶେଷେ ନିଦାଘ କାଳ
ପ୍ରଖର ହେଲା ରବି କିରଣ ଜାଳ
ଉତପ୍ତ ହେଲା ଏବେ ଧରଣୀ ଅଙ୍ଗ
କୁସଙ୍ଗେ ସାଧୁ ଯଥା ହୁଏ ଆତଙ୍କ।
ଉଡ଼ାଏ ଧୂଳି ରାଶି ତପ୍ତ ପବନ
ଲମ୍ପଟ ହୃଦେ ପାପ, ସ୍ରୋତ ଯେସନ
ହୋଇଲେ ପତ୍ରହୀନ ତରୁ ବଲ୍ଲରୀ
ଦସ୍ୟୁ ଲୁଣ୍ଠିତ ଗୃହ ଧନିକ ପରି।
ଦାବାଗ୍ନି ବନେ ବନେ ହେଲା ପ୍ରକାଶ
କାଳ କରାଳ ଲୋକ ଜିହ୍ୱା ପ୍ରକାଶ
ଜଳ ବିନା ଆକୁଳ ଜଗତ ପ୍ରାଣୀ
ବିଭୁ ଦର୍ଶନ ବିନା ଯଥା ସୁଜ୍ଞାନୀ।
ଚନ୍ଦ୍ର ଚନ୍ଦନ ହେଲା ଲୋକ ଆଦର
ପୂଜ୍ୟ ଏପରି ସିନା ପଣ୍ଡିତ ନର
ଶୁଖିଲା ଦିନୁ ଦିନୁ ସର ସରିତ
ଅସତୀ ହସ୍ତୁ କିବା ନିଃଶେଷ ବିତ।
ସୁପକ୍ୱ ଫଳଦେଲେ ପାଦପ ଗଣ
ସ୍ୱକାର୍ଯ୍ୟେ ଦିଏ ଯଥା ଦାତା ସ୍ୱଧନ
ଘନାଗମେ ନିଦାଘ ଚଳିଲା ଖେଦେ
ସୁନୀତି ରାଜା ଭୟେ ଯଥା ତସ୍କରେ।

•

## ଶିଶିର

ଜଲା ଶିଶିର ଆଧିପତ୍ୟ ଜଗତେ
ଅବିଦ୍ୟାରାଜ୍ୟେ ମୂର୍ଖରାଜା ଯେମନ୍ତେ
ଜଳିଲା ପ୍ରତି ପୁରୋଦରେ ହସନ୍ତି
ନିର୍ଗୁଣ ନ୍ୟାୟେ ବୁଧେ ଯଥା ହସନ୍ତି।
ପ୍ରମଦା ପ୍ରୀତିହେଲା ରସିକ ଧନ
ପାପ କାର୍ଯ୍ୟରେ ପାପୀ ତୁଷ୍ଟ ଯେସନ
ବ୍ୟାପେ କୁହେଳି ପ୍ରତି ଗିରି କାନନ
ନାଶଇ ପାପୀ, ଧର୍ମୀ ଧର୍ମ ଯେସନ।
ପକ୍ଷ ସଙ୍କୋଚି ପକ୍ଷୀଛନ୍ତି ପାଦପେ
ନିର୍ଭୀକ ସାଧୁ ଯଥା ଦେଖି ମଦ୍ୟପେ
କୁଜ୍‌ଝଟୀ ଦେଖି ଶିଖୀ ବାରିଦ ଭ୍ରମେ
ଟେକି କଳାପ ଛତ୍ର ନାଚେ ଆଶ୍ରମେ।
ଏ ରୂପେ ସିନା ମାୟା ମୋହନ ପାଶେ
ସାଧୁ ଭୁଲନ୍ତି ଛାର ସୁଖ ସକାଶେ
ଭଜିଛି ମ୍ଲାନଭାବ ପ୍ରକୃତି ସତୀ
କୁସ୍ୱାମୀ ସଙ୍ଗେ ଯଥା ପତ୍ନୀ ଦୁର୍ଗତି।
ବିଳାସେ ରତ ହିଂସ୍ର ଜନ୍ତୁ କାନନେ
ବିଷୟ ସୁଖେ ଯଥା କାମୁକ ଜନେ।
ପ୍ରକୃତି ମ୍ଳାନ ହେଲା ସୌନ୍ଦର୍ଯ୍ୟ ବିନା
ସୁଖ ଦୁଃଖ ଆବୃରି ଏ ରୂପେ ସିନା।

•

(ସମ୍ବଲପୁର ଜିଲ୍ଲାରୁ ଉତ୍କଳଭାଷା ଉଠିଯାଇ ହିନ୍ଦୀ ଭାଷା ପ୍ରଚଳିତ ହେବା ସମ୍ବାଦରେ)

## ଉତ୍କଳ ଭାରତୀଙ୍କର କ୍ଷୋଭ

(ରାଗ-ବଙ୍ଗଳାଶ୍ରୀ)

କାନ୍ଦଇ ଉତ୍କଳା ପାଇ ଅବହେଳା ହସନ୍ତି ଦେଖି ଭଗାରି;
ରାଜରାଜେଶ୍ୱର ପ୍ରତିନିଧିମାନେ ଶୁଣନ୍ତି ନାହିଁ ଗୁହାରି।
ଭାରତ ରାଜ୍ୟରେ ଭାରତୀଙ୍କ ମେଳା ସର୍ବେ ଆଜି ଭାଗ୍ୟଶାଳୀ
ସମସ୍ତେ ଉନ୍ନତା ଗର୍ବେ ମଦମତ୍ତା ସବୁରି ଜୟ କାହାଳି।
ବଙ୍ଗଳା ତେଲଙ୍ଗୀ ହିନ୍ଦୀ ମହାରାଷ୍ଟ୍ରୀ ଦ୍ରାବିଡ଼ ଆଦି ଶୁଭରେ
ପରମାୟୁ ଘେନି ବଢୁଛନ୍ତି ସର୍ବେ ସବୁରି ଆଶା ଊର୍ଦ୍ଧ୍ୱରେ।
ମୁଁ ଯେ ଦୀନହୀନା ଆଦର ବିହୀନା ଅଙ୍ଗୁ କ୍ଷତ ଯାଇ ନାହିଁ
ଯାଇ ନାହିଁ ପ୍ରାସ ପୁଣି ଖଣ୍ଡେ ଗ୍ରାସ ଦେଖିଥିଲି କିଏ କାହିଁ।
ମୋର କଳେବର ଦକ୍ଷିଣୁ ଉତ୍ତର ପୂର୍ବ ପଶ୍ଚିମକୁ ଲାଗି
ଥିଲା ଯେ ତ୍ରିବେଳେ ଏହି ରବିତଳେ ମୋ ସନ୍ତାନେ ଥିଲେ ଜଗି।
ଉତ୍ତର ଦକ୍ଷିଣେ ଗଙ୍ଗା ଗୋଦାବରୀ ବେନି ସହୋଦରା ମୋର
ଲାଗି ରହିଥିଲେ ଅଙ୍ଗେ ଅଙ୍ଗେ ମିଶି କାଳକୁ ହେଲେ ଅନ୍ତର।
ତାଙ୍କର ବିଚ୍ଛେଦ ପାଦ ଶିରଚ୍ଛେଦ ଗଣ୍ଡି ଖଣ୍ଡ ଅଛି ରହି
ତେଣା କାଟୁଅଛି ହିନ୍ଦୀ ସପତଣୀ ରଖିପାରିବ କି କେହି।
କିଛିଦିନ ପୂର୍ବେ ବଙ୍ଗ ବିହାରିଣୀ ଗ୍ରାସୁଥିଲା କଳେବର
ଆଁ ଆଁ କରିଥିଲା ଉଦ୍ଧାରି ରଖିଲେ ଥିଲେ ମୋ ଯୋଗ୍ୟ କୁମର।
ବିଚିତ୍ର, ଗଉରୀ, ସଙ୍ଗେ ଥିଲା ହରି ଘେନି ମୋ ପୂର୍ବ ଆୟୁଧ
ଦେଖାଇ ଶତ୍ରୁକୁ ଘଉଡାଇ ଦେଲେ କରିଥିଲେ କେତେ ଯୁଦ୍ଧ।

ଆଜି ସେ ତୁମରେ ଥିଲେ ମୋ କୋଳରେ ହିନ୍ଦୀ ପଶନ୍ତା କି ପୁରେ
ଦେଖାଇ ମୋହୋର ଉତ୍କଳ ସମ୍ପତ୍ତି ପକାଇ ଦିଅନ୍ତେ ଦୂରେ।
ଗଲାଦିନୁ ନନ୍ଦ ହେଲି ମୁହିଁ ଅନ୍ଧ ବିଧାତା ହେଲା ମୋ ବାମ
ଏ ସଙ୍କଟୁ ମୋତେ ରଖିପାରିବେ କି ? ଗୋପାଳ ରାଜା ସୁଦାମ।
ହେବ ବା ସୁଫଳ କଲେ କଉଶଳ ସୁଢଳ ରତନମଣି
ଝାଡ଼ ବିନୋଦିୟା ନୃପକୁଳ୍ ଚନ୍ଦ୍ର ପଣ୍ଡିତରେ ଅଗ୍ରେ ଗଣି।
ଉତ୍କଳ ତୁମ୍ଭର ପୈତୃକ ସମ୍ପତ୍ତି ହେଉଅଛି ଛାରଖାର
ଯୋଗ୍ୟପୁତ୍ର ହୋଇ ସମ୍ପାଦି ରଖିବା ନୁହେଁ କି ? କୁଳ ବେଭାର
ନୁହଇ ମୁଁ ଦୀନା ସମ୍ପତ୍ତି ବିହୀନା ଅଛି ମୋ ଭଣ୍ଡାରେ ବିତ୍ତ
ଦେଖାଇ ସାମ୍ରାଜ୍ଞୀ ସମୁଝାଇ ଦିଅ ସନ୍ତୋଷ କରାଇ ଚିତ୍ତ।
ବ୍ରିଟିଶ ରାଜ୍ୟରେ ପରାପର ନାହିଁ ନ୍ୟାୟର ଅଧୀନ ସର୍ବେ,
ଏ କି ବିପରୀତ ମୋହୋର ଭାଗ୍ୟକୁ ଅନ୍ୟାୟର ବଶ ସର୍ବେ।
ମାତୃଭାଷା ପାଇଁ କେବେ ଅନାଦର ହେବାର ତ ଦେଖା ନାହିଁ।
ଚରଣରେ ଏବେ ଠେଲି ଦେଉଛନ୍ତି ଦେଖିଥିଲ କିଏ କାହିଁ।
ରାଜାଙ୍କ ବିଧାନ ସମସ୍ତେ ସମାନ ବିଚାରଇ ଅନ୍ତଃପାତି
ପକ୍ଷପାତ କରି ବିଷମେ ଦେଖିଲେ ରାଜାର ସିନା ଅଖ୍ୟାତି।
ସମ୍ବଲପୁରରୁ ଉତ୍କଳ ନିର୍ମୂଳ ହେବାର କାରଣ ଏହି
ରାଜକର୍ମଚାରୀ ହିନ୍ଦୀ ବାନାଧରି ମହାରାଷ୍ଟ୍ରି ଛନ୍ତି ରହି।
ସେମାନଙ୍କ ଜ୍ଞାନ ଉତ୍କଳରେ ଶୂନ୍ୟ ହେବାରୁ ହେଲା ସଙ୍କଟ
ଏଥିପାଇଁ ଏବେ ଉତ୍କଳ ନିର୍ମୂଳ ହିନ୍ଦୀ ହୋଇବ ପ୍ରକଟ।
ସମ୍ବଲପୁରର ଅଧିବାସୀମାନେ ଉତ୍କଳ ଚିର ସନ୍ତାନ
ହିନ୍ଦୀ ଆଧିପତ୍ୟ ହୋଇବ ସେଠାରେ ଶୁଣି ସର୍ବେ ହତଜ୍ଞାନ।
ଉତ୍କଳ ସମ୍ପତ୍ତି ସଦା ଆଶ୍ରେ କରି ନେଉଥିଲେ ସୁଖେ ଦିନ
କେମନ୍ତେ ବଞ୍ଚିବେ ଉପାୟେ ରଚିବେ ଭାଳୁ ନ ସରଇ ଦିନ
ଦେଖ ଆର୍ଯ୍ୟାବର୍ତ୍ତ ଭାଷା ବିମଣ୍ଡିତ ଯେଝା ସ୍ଥାନେ ଛନ୍ତି ରହି
ନାହିଁ ପରିବାର କରନ୍ତି ବିହାର ପରିବର୍ତ୍ତ ମୋହ ପାଇଁ।
ଚୂହାଣ ବଂଶଜ ସୋନପୁର ରାଜ ବରପଲ୍ଲୀ ଅଧୀଶ୍ୱର
ପାଟଣା ନରେନ୍ଦ୍ର ଦେବ ରାମଚନ୍ଦ୍ର ପୃଥୁରାୟ ବଂଶଧର
ଯେ ବଂଶର ଖ୍ୟାତ ଅଗ୍ନିଠାରୁ ଜାତ ଗୌରବର ଆଦରଶ
କର ପ୍ରତିକାର ହେବଟି ସତ୍କାର ରହିବ ନାହିଁ କି ଯଶ।
ପର ଉପକାର ବ୍ରତ ଯେ ତୁମ୍ଭର କଳାହାଣ୍ଡି ଅଧୀଶ୍ୱର
କୁଳାବିରା ଆଦି ଜମିଦାର ସଙ୍ଗେ ମୋ କାର୍ଯ୍ୟେ ହୁଅ ତତ୍ପର।
ବାବୁ ଶ୍ରୀଧରଣୀ ଘେନି ଚିନ୍ତାମଣି ବିଦ୍ୟାଭୂଷଣକୁ ମୋର
କୃଷ୍ଣ ନୀଳାମ୍ବର ଲକ୍ଷ୍ମଣକୁ ନେଇ ସମ୍ମୁଖେ କର ସମର।
ରାମ ବନମାଳୀ, ଦାଶ ଦୀନବନ୍ଧୁ ତୁମ୍ଭେ ତ ଯୋଗ୍ୟ ନନ୍ଦନ
ପଣ୍ଡା ଜନାର୍ଦ୍ଦନ ହେ ବ୍ରଜମୋହନ କର ଶତ୍ରୁ ବିମର୍ଦ୍ଦନ।
ନ କରରେ ହେଳା କରରେ ଯତନ ନ ହରାଅ ପିତୃଧନ
ପାହିଯିବ, ବାବୁ ! ତାମସୀ ରଜନୀ ପୋତି ବସନା ବଦନ।
ରାୟ ରାଧାନାଥ ଉତ୍କଳରେ ଖ୍ୟାତ ସମ୍ପାଦୁଚ ମୋର ଧନ
ଅନ୍ତର ନୋହିବି ସମ୍ବଲପୁରରୁ କରିପାର କି ? ଯତନ
ଯୁଦ୍ଧ ଜୟୀବୀର ଗଉରୀଶଙ୍କର ପାରିବ କି ? କିଛିକରି
ବଙ୍ଗଳା ଯୁଦ୍ଧରେ ଜାଣିଛି ତୁମ୍ଭଙ୍କୁ ଥିଲ ତୁମ୍ଭେ ଶସ୍ତ୍ରଧାରୀ।
ବାବୁ ! ନୀଳମଣି ତୋଠାରେ ମାଗୁଣି ଉପାୟେ କରୁଛୁ ଯେତେ
ତୋହଠାରୁ ବଳି ସନ୍ତାନେ ଅଛନ୍ତି ଭାଳୁଛନ୍ତି କିଏ ? କେତେ।
ହେ ଉଦ୍ଧବରନ ମୋ ବିନତି ଘେନ ବିଚାର ଥରେ ମନରେ
କରୁଛି ଗୁହାରି କର ଯୋଡ଼ି କରି ଶୁଣ ମୋ ଦୁଃଖ କର୍ଣ୍ଣରେ।

●

## ନିବେଦନ

ଏ କି ଅଦଭୁତ ଶୁଣିଲିରେ ଆଜ ମାତାସମ ମାତୃଭାଷା ଆମ୍ଭର
ସପତ୍ନୀକୁ ନିଜ ଶିଶୁଗଣ ଦେଇ ନିଜେ ଦେଶୁଁ
ଦୁଃଖେ ହେବେ ଅନ୍ତର।
ଅତି ଯତ୍ନେ ପାଳିଥିଲେରେ ଆମ୍ଭକୁ ସକ୍ଷ ଅନୁସାରେ ସମ୍ପତ୍ତି ଦେଇ,
ଗଳହସ୍ତ ହୋଇ ତଡ଼ା ଯାଉଛନ୍ତି ସହାୟ କି ତାଙ୍କୁ ନୋହିବ କେହି।
ଏବେ ମାତୃହୀନ ହୋଇବ ସକଳେ ବିମାତାରେ କୋଳେ ହେବ ପାଳିତ
ବିମାତା ନନ୍ଦନେ ଦୁଃଖରେ ପାଳିବେ ଏଥିରେ କି ତୁମ୍ଭେ ନୁହ ଲଜ୍ଜିତ।
ନ୍ୟାୟ ପରାୟଣ ବିଟ୍ରିଶ ଶାସନ ସମସ୍ତଙ୍କ ଦୁଃଖ ଶୁଣାତ ଯାଏ
ଯେ ଦୁଃଖ ପାଇଲା ତା'ର ଲାଭ ହେଲା ତେବେ
କିପାଁ ସ୍ଥିର ପିଠୁଳା ପ୍ରାୟେ।
କି ବିଚାରେ ପ୍ରତିନିଧ ବୀରବର ଉତ୍କଭାଷା ପ୍ରତି ହେଲେ ବିମନ
ଆପରି କଲେ ବା ସଂହରି ପାରନ୍ତି ଆପଣା ଆଦେଶ ହୋଇ ପ୍ରସନ୍ନ।
ଇଂରାଜ ଶାସନ ଆଦର୍ଶର ସ୍ଥଳ ସୁଖୀ ଦୁଃଖୀ ସର୍ବେ ନ୍ୟାୟେ ସମାନ।
ନିର୍ଦ୍ଧନୀ କି ପାପୀ ଉପେକ୍ଷିତ ନୁହେଁ ଧନୀ ପାଏ ନାହିଁ ବେଶି ସମ୍ମାନ।
ବଳିଷ୍ଠର ବଳ ବଢ଼ାଉଛନ୍ତି କି ନିର୍ବଳର ବଳ କରନ୍ତି ହ୍ରାସ ?
ପୁଣି ବଳିଷ୍ଠର ହସ୍ତରେ କି କେବେ ନିର୍ଦ୍ଧନୀକୁ ଦେଉଅଛନ୍ତି ତ୍ରାସ।
ବରଞ୍ଚ ଯେ ଅଟେ ଅତି ଅପାରଗ ତାକୁ ଯତ୍ନେ କରୁଛନ୍ତି ପାଳନ
ରକ୍ଷା କରୁଛନ୍ତି ନାନା ଯତ୍ନ କରି ଯେପରି ନୋହିବ ତାକୁ କଷଣ।
ତେବେ କି ବିଚାରେ ଅନାଥ ଉତ୍କଳ-ଭାଷା ପ୍ରତି ତାଙ୍କ ଦୟା ନୋହିବ
ହିନ୍ଦୀଭାଷା ଅତି ଉନ୍ନତ ହୋଇଣ ଆମ୍ଭ ଭାଷାକୁ କି ପଦେ ଦଳିବ ?
ଜଣକ ଅନିଷ୍ଟେ ଅନ୍ୟକୁ ରଖିବା ଏ ତ ନୁହେ ଇଙ୍ଗରାଜଙ୍କ ପ୍ରଥା
ଏକ ଜାତି ଆଧିପତ୍ୟ ବିସ୍ତାରିବି ? ଅନ୍ୟ ଜାତି
ଖେଦେ ପୋତିବ ମଥା।
ଏପରି ଶାସନ ପ୍ରଥା ଥାଉ ଥାଉ ଆମ୍ଭେମାନେ
କି ହେ ହୋଇବା ଦୁଃଖୀ

ଆମ୍ଭମାନଙ୍କୁ କି ଦୁଃଖରେ ଭସାଇ ପଶ୍ଚିମାମାନଙ୍କୁ କରିବେ ସୁଖୀ ।
ଅଗ୍ରସର ହୁଅ ଆହେ ଭ୍ରାତାଗଣ ଉଡ଼ବର୍ଣ୍ଣ ପରି ନୀତି ନିପୁଣ
ଶାସନ କରତା ଥାଉ ଥାଉ ତୁମ୍ଭ ଦୁଃଖ କହିବାକୁ କି ଭୟ ପୁଣ ?
ଅତ୍ୟନ୍ତ ସୁଶୀଳ ଅଟନ୍ତି ଏ ଜନ ଶତ୍ରୁ ମିତ୍ରଠାରେ ସମଦର୍ଶନ
କୃତାଞ୍ଜଳି ହୋଇ ଦୁଃଖ ଜଣାଇଲେ ଅବଶ୍ୟ କରିବେ ବାଞ୍ଛା ପୂରଣ ।
କି ବଡ଼ ଯାଚନା କରିଛୁଁ କି ତାଙ୍କୁ କିମ୍ବା ଜଗତର ମହତ ବିତ
ଯାହା କରିବାକୁ ଅସାଧ ହୋଇବ କିମ୍ବା ଦେବାପାଇଁ ହେବେ କୁଣ୍ଠିତ ।
ମାଗୁଛୁଁ କେବଳ ନିଜର ସମ୍ପତ୍ତି ନ କରିବେ ବୋଲି କଷ୍ଟ କିଛିତେ ।
ନ ଦଳିବେ ଆମ୍ଭ ଅନାସ୍ଥା ଭାଷାକୁ ଅଞ୍ଚ ଶତ୍ରୁଙ୍କର ନେତ୍ର ଇଙ୍ଗିତେ ।
ସମ୍ବଲପୁରର ଶିକ୍ଷିତମଣ୍ଡଳୀ ଉଠ ଉଠ ସର୍ବେ ପ୍ରସ୍ତୁତ ହୁଅ
ପ୍ରତିନିଧି ପାଶେ ଦୁଃଖ ଗାଇବାକୁ ମନରେ କଦାପି କୁଣ୍ଠିତ ନୁହଁ ।
ନିଜ ଭାଷା ଥିଲେ ତୁମ୍ଭମାନଙ୍କର ସର୍ବଦା କାଳରେ ଥିବ ଗୌରବ
ଅନ୍ୟ ଭାଷା ଶିଖି ଯଶ ଲଭିବାକୁ ତିଳେ କିହେ କରୁଅଛ ସମ୍ଭବ ?
ଆହେ କଳାହାଣ୍ଡି ପାଟଣା ନରେଶ ନିଜ ଭାଷା ପ୍ରତି ଫେରାଅ ସୁଖ
ଙ୍ଗରାଜ ଭାଷାର ସେବାକଲ ବୋଲି ନିଜ
ଭାଷାର କି ନ ନେବ ଦୁଃଖ ? ତୁମ୍ଭମାନଙ୍କର ପାଶେ
ଏ ଦେଶର ରହିଅଛି ଅତି ଜାଗ୍ରତ ଆଶା ।
କିଛିତ ଅଯତ୍ନେ ନିଜ ଭାଷା ପ୍ରତି ଜନ୍ମାଅ ସ୍ୱଦେଶୀ ମନେ ନିରାଶା ।
ହେ ପ୍ରତାପରୁଦ୍ର ସ୍ୱର୍ଣ୍ଣପୁର ପତି ଏ ରୂପେ ତୁମ୍ଭେ କି କାଟିବ କାଳ ?
ନ ଦେଖିବ ନେତ୍ର ଉନ୍ମୀଳନ କରି ନିଜ ଭାଷା ପରେ ଏଡ଼େ ଜଞ୍ଜାଳ
ବାମଣ୍ଡା ନରେଶ ପଣ୍ଡିତ ସୁକବି ଏଥିରେ ତୁମ୍ଭେ କି ନୁହଁ ଦୁଃଖିତ ?
ଚିତ୍ରୋତ୍ପଳା ନିଜ ସଖି ହରାଉଛି ଆନ ଭାଷା ଦ୍ୱାରା ହୋଇ ପୀଡ଼ିତ ।
ହେ ସଚ୍ଚିଦାନନ୍ଦ କୁମାର ପ୍ରତିମ ଉତ୍କଳ ଭାଷାର ସୁସେବାକାରୀ
କ୍ରମେ ତୁମ୍ଭ ସେବ୍ୟ ଦେବୀ ନିର୍ବାସନ ଶୁଣି ଦୁଃଖମନେ ନୁହକି ଘାରି ?
ରାଧାନାଥ ରାୟ ଆହେ କବିବର ଉତ୍କଳ ଭାରତୀ ଯୋଗ୍ୟ ସନ୍ତାନ
ପୁସ୍ତକ ଲେଖିଣ କାହାକରେ ଦେବ କ୍ରମେ
କ୍ଷୟ ହେଲେ ଏ ଭାଷାପ୍ରାଣ । ନ କହିବ ପଦେ ପଦେ
କିହେ ତୁମ୍ଭେ ଉତ୍କଳର ଯେତେ ଯୋଗ୍ୟ ନନ୍ଦନ । ଓଡ଼ିଆ ଭାଷାର
ହସ୍ତ କାଟୁଅଛି ହିନ୍ଦୀଭାଷା ଏବେ ଆସି ବହନ ।
ଆହେ ନୀଳମଣି ସ୍ୱଦେଶ ସେବକ ଯାହାପାଇଁ ଏଡ଼େ ଯଶ ତୁମ୍ଭର
ନିଜ ଭାଇ ସଙ୍ଗେ ଅଗ୍ରସର ହୋଇ ଆପଣା ଭାଷାକୁ ଉଦ୍ଧାର କର ।
ହେ ବିଜୟଚନ୍ଦ୍ର ବଙ୍ଗବାସୀ ହେଲେ କି ହେବ ଉତ୍କଳ ତୋତେ ପ୍ରସନ୍ନ
ସ୍ନେହେ ରଖିଅଛି, ତା' ପ୍ରତିରେ ତୁମ୍ଭେ କିଛିତେ କି ନ କରିବ ଯାତନ ।
ଆଉ ଯେତେ ଯୋଗ୍ୟ ବ୍ୟକ୍ତିମାନେ ଅଛ
ଜଣାଉଛି ମୁହିଁ ଯୋଡ଼ି କର ନିଜ ଭାଷାପାଇଁ
ପ୍ରାଣପଣେ ଚେଷ୍ଟା କରିବା ସକାଶେ ନୁହଁ କାତର ।
ହେ ଧରଣୀଧର ବନମାଳୀ ମିଶ୍ର ମିଶ୍ର ତ୍ରିଲୋଚନ ହେ
ଗଙ୍ଗାଧର ଅନ୍ୟାନ୍ୟ ସୁଯୋଗ୍ୟ ଜନେ ନେଇ ତୁମ୍ଭେ ନିବେଦନ
ପତ୍ର କର ଦାଏର ।
ଅବଶ୍ୟ ଶୁଣିବେ ଚିଫ୍ କମିଶନର ଏଥିରେ ତିଳେ ହେଁ ସନ୍ଦେହ ନାହିଁ
ଶୁଦ୍ଧ ଜନ ଦୟାବାନ ବ୍ୟକ୍ତି କେବେ ଦୁଃଖ ନ ଶୁଣିବେ ଶୁଣିଛ କାହିଁ ?
ମୁଁ ନୁହଇ ଧନୀ କି ଅବା ବିଦ୍ୱାନ ଯିବି ନାଗପୁର ଲେଖିବି ପଦେ
ଥିଲେ ଏ କ୍ଷମତା ଏ କାର୍ଯ୍ୟ ସାଧନେ ଡରି ନ ଥାନ୍ତି ମୁଁ କେବେ
ବିପଦେ ।

●

## ଜହ୍ନମାମୁ

ମୁଁ ସୁନ୍ଦର ତୁମ୍ଭେ ହୋଇଅଛ କଳା
ବୋଲି ବିଷ୍ଣୁଙ୍କୁ ମାମୁ ଟିହାଇଲା,
ତୋ ସୁନ୍ଦର ପଣ ଦେବି ଛଡ଼ାଇ
ଶଳା ବୋଲି କଳାଦେଲେ ଲଗାଇ,
ଅଦ୍ଭୁତ କୌତୁକ
ସେ କଳା ନ ଛାଡ଼େ ଜନମ ଯାକ ।୧।
ଅତ୍ୟନ୍ତ କୋମଳ ମାମୁ ଶରୀର
ଶୋଭୁଥିଲା ଭଜି ଶିବଙ୍କ ଶିର,
ପ୍ରସ୍ରବଣ ପରି ସ୍ୱର୍ଗରୁ ଗଙ୍ଗା
ତା'ପରେ ପଡ଼ନ୍ତେ ହୋଇଲା ଭଙ୍ଗା,
ନ ଜାଣି ଏ କଥା
କଳଙ୍କୀ ବୋଲନ୍ତି ମାମୁଙ୍କୁ ବୃଥା ।୨।
ପୁଷପୁନି ରାତି ବଡ଼ କାକର
ତେଣୁ ଶୀତେ ମାମୁ ହେଲା କାତର,
ଖରା ତାପିବାକୁ ବଳାଇ ମନ
ସିଂହ ରାଶିକୁ ଯାଆନ୍ତେ ବହନ,
ସିଂହ କି ଚାବିଲା
ତେଣୁ ମାମୁ ଦେହ ପଚା ପଡ଼ିଲା ।୩।
ଆକାଶେ ଦିଶୁଛି ବିଜୁଳି ରେଖା
ଜହ୍ନମାମୁ କିପାଁ ନ ଦିଏ ଦେଖା,
ଜାଣ ତ ହେ ମାତା ଦାନ ନିପୁଣା
ମାମୁ କିପାଁ ହେବ ସେ ଗୁଣେ ଊଣା,
ଥିଲା ଯା ତାହାର
ବିତରି ଗୋପନେ କରେ ବିହାର ।୪।

●

## ବସନ୍ତ ନିବାସ

(ବସନ୍ତ ବୃତ୍ତ)

ବସନ୍ତ ଆଗମେ ଶକୁନ୍ତ କୂଜନ
ମୁଖରିତ ଯେଉଁ ଭବନ
ପ୍ରପାତ ମସ୍ତକେ ଜଳ-ଜ୍ୟୋତିରୂପେ
ଦର୍ଶାଇ ଶକ୍ର ଶରାସନ,
ଯା କକ୍ଷୁ
ସମୋଷ୍ଣ-ଶୀତଳ ଏ ବାସ
'ବସନ୍ତ-ନିବାଶ' 'ବସନ୍ତ-ନିବାଷ'
ଏ ଯୋଗ୍ୟ 'ବସନ୍ତ ନିବାସ।'

●

## ମେଘଭାବନା

ଉର୍ଦ୍ଧ୍ୱେ ଅନାଇ ଦେଖଗୋ କୁନ୍ଦଦନ୍ତି
ଖେଳା ଚପଳା ସହ ବାରିଦ ପନ୍ତି।
ଶୁଣି ଗୁରୁଗମ୍ଭୀର ମେଘର ସ୍ୱନ।
ମାନସକୁ ମରାଳେ କଲେ ଗମନ।
ନବାମ୍ବୁ ମତ୍ତ ହୋଇ ବରହିଗଣ
କରନ୍ତି ନୃତ୍ୟେ ପ୍ରିୟା ମନହରଣ।
ଡାକନ୍ତି ଘନ ଘନ ମତ୍ତ ଡାହୁକ
ମଧୁ କ୍ରୀଡ଼ା ପ୍ରମୋଦୀ କୋକିଳ ମୂକ।
ଅସ୍ୱଚ୍ଛ ହୃଦସମ ମ୍ଳାନ ଆକାଶ
ଦେଖି ପାପୀ ମାନସେ ପାଏ ଉଲ୍ଲାସ।
ନିଶାରେ ସୁଧାକର ସୁଧାକିରଣ
ନ ଲଭି ବିରସ ତୋ କୁମୁଦାନନ।
କ୍ଷଣକ ସନ୍ତାପରେ କ୍ଷଣକ ପ୍ରୀତି
ଅଦ୍ଭୁତ ନୁହେଁ କି ଗୋ ସଂସାର ରୀତି।

●

## ଅସ୍ପୃଶ୍ୟା

ଏ କି? ଏ କିଏ
ସମ୍ମୁଖେ ମୋର?
ଯୁବକ ସୁନ୍ଦର
ଧୂଳିଧୂସରିତ,
ଅଧୋମୁଖ,
ହସ୍ତ ପ୍ରସାରିତ,
ଜୀବିତ କି ମୃତ?
କାହିଁକି ଏ ଦଶା?
କେ ଦେଲା ଏ ଦଶା?
ନିକଟରେ ନାହିଁ କେହି,
ଡାକିବି କାହାକୁ
ଗ୍ରାମ ବହୁଦୂର,
ଏକାକିନୀ ମୁହିଁ।
ଆଶୁ ପ୍ରତିକାର
କରିବା ଉଚିତ।
କି କରିବି ଆହା!
ଛୁଇଁବି କି?
ଉଠାଇବି,
ମୁଖେ ଜଳ ଦେବି?
ଚେତା କରାଇବି?
ବୃକ୍ଷଛାୟା ତଳେ
ନେଇ ଶୁଆଇବି?
ପଲ୍ଲବ ବ୍ୟଜନେ
ସୁସ୍ଥ ହେବ ପ୍ରାଣ।
ମୁଁ ଯେ ଅନାର୍ଯ୍ୟ ଯୁବତୀ,
ଯୁବା ନିଶ୍ଚେ ଉଚ୍ଚ ଜାତି।
ବାଲ୍ୟକାଳେ ଦିନେ
ବୃକ୍ଷର ଶାଖାରୁ
ପଡ଼ିଥିଲି ତଳେ
ନିରାଶ୍ରୟା ମୁହିଁ,
ଅତି କଷ୍ଟେ ମୋର
ଉଠିବାକୁ ନ ଥିଲା ଶକତି।
ପାଣି ପାଇଁ ବିକଳ ପ୍ରାଣ।
ପ୍ରୌଢ଼ ବିପ୍ରବର
ସମ୍ମୁଖରେ ମୋର
ଆସି ଉପଗତ।
ଦେଖି ମୋତେ ଏ ଦଶାରେ
କହିଲେ ଗୋସାଇଁ-
ଯଥା କର୍ମ ତଥା ଫଳ!
କାହିଁ ଆମ୍ବ କାହିଁ ଜାମୁ
ଦେଖିଲେ ବୃକ୍ଷରେ
ସବୁ ନିଜଲାଗି
ତୋଳିବାର ପାଇଁ

ଏ ଗଛେ ସେ ଗଛେ
ଉଠିବା ଅଭ୍ୟାସ ଯାର,
ନିଶ୍ଚେ ତା' ପତନ।
ଅନିଷ୍ଟ ଘଟନା।
ନାରୀ ଜାତି
ବୃକ୍ଷେ ଉଠିବାର
ଅଛି କାହିଁ ରୀତି ?
ଅପକର୍ମ ଅନାର୍ଯ୍ୟ ଜାତିର !
ଶୁଣି ଏହି ତିରସ୍କାର
କି ସାହସେ ମାଗନ୍ତି ମୁଁ ଜଳ ?
ହସ୍ତ ଧରି ଉଠାଇବାପାଇଁ
କହିବାକୁ ଶକ୍ତି ମୋର କାହିଁ ?
ମାତ୍ର କହିଲି ଏତିକି !
ପେଟ ପାଇଁ ସିନା ଏହି ଦଶା !
ସାହାଯ୍ୟ ନ କରି
ଚାଲିଗଲେ ବିପ୍ରବର।
ମୁଁ ଯେ ଅସ୍ପୃଶ୍ୟା ବାଳିକା !
ପ୍ରଭୁ ନୈଷ୍ଠିକ ବ୍ରାହ୍ମଣ !
ଆର୍ଯ୍ୟ ମତେ ସ୍ପର୍ଶ କି କରନ୍ତେ ?
ଆର୍ଯ୍ୟ ଆଜି
ଭୂମିରେ ପତିତ,
ନିଃସହାୟ।
ଜୀବନରୁ ମୂଲ୍ୟବାନ
ଅଟେ କି ଆର୍ଯ୍ୟତ୍ୱ ?
ନୁହେଁ ପରା !
ନିଶ୍ଚେ ସାହାଯ୍ୟ କରିବି।
ନ କଲେ ଶୁଶ୍ରୂଷା।
ପ୍ରାଣ ଯିବ ନାଶ।
ଅସହ୍ୟ ମୋ ପ୍ରତି
ଏ କରୁଣ ଦୃଶ୍ୟ।
ହେଲେ ବା ଅସ୍ପୃଶ୍ୟା-
ହେଲେ ବା ଅନାର୍ଯ୍ୟା,
ହେଲେ ଘୃଣ୍ୟ ଜାତି,
ଲାଞ୍ଛନା ତ ଦେହର ଭୂଷଣ,
ଭୟ ମୋ କାହିଁକି ?
ଉଠାଇବି,
ଚେତା କରାଇବି–
ବଞ୍ଚାଇବି ପ୍ରାଣ।
ମାତ୍ର ମୋର ସ୍ପର୍ଶ କଳୁଷିତ,
ମୋର ଜଳ ଦୋଷଯୁକ୍ତ,
ମୋର ଛାୟାପାତ,
ତାଙ୍କ ପକ୍ଷେ ଅପବିତ୍ର,
ନିଶ୍ୱାସ ତ ସର୍ପଶ୍ୱାସ ସମ
ଲାଗିବ ତାହାଙ୍କୁ।
ହେଲା ବିପତ୍‌ପାତ,
ଜାଣି ମୋତେ ଅନାର୍ଯ୍ୟ ଯୁବତୀ
ଘୃଣା ସେ କରିବେ।
ଦେବେ ତିରସ୍କାର,
ପଦାଘାତ ସହିବି ତାଙ୍କର,
ପାଦତଳେ ଦେଇ ମୋର ମଥା
ନେବି ମୁଁ ବିଦାୟ।
ଏଥିରେ କି ଅଛି ପାପ ?
ଥାଏ ଯେବେ ଥାଉ।
ମୁଁ ତ ଅନାର୍ଯ୍ୟ ଯୁବତୀ,
ମୋର ମୁକ୍ତି କାହିଁ ଲେଖା ?
ଅଧୋଗତି ଭାଗ୍ୟଲିପି।
ଘଟୁ ଯାହା ଘଟିବାର
କିବା ମୋର ଚିନ୍ତା,
ମୁଁ ସହିବି ସବୁ ପର ଲାଗି।
ଉଠ ପ୍ରଭୁ, ଉଠ।
ସୂର୍ଯ୍ୟତେଜେ ତପ୍ତ ପଥଧୂଳି,
ନିଶ୍ଚେ ବାଧୁଛି ଅଙ୍ଗକୁ।
ଶୁଣିଲେ ତ ନାହିଁ।
କି କରିବି ମୁହିଁ ?
ଛୁଇଁବାକୁ ଥରୁଅଛି କର,
ଛାତି କରେ ଦୁରୁଦୁରୁ
ଦୀର୍ଘ ଅଭ୍ୟାସରୁ।
ଅସ୍ପୃଶ୍ୟା ନ ଛୁଏଁ ଉଚ୍ଚ ଜାତି,
ଏ ଧାରଣା ବଦ୍ଧମୂଳ ହେତୁ
ଆଜି କର୍ତ୍ତବ୍ୟକାତରା ମୁହିଁ।
ଛି ଛି ଛି ଛି,
ସଂସ୍କାର ଆବଦ୍ଧ ହୋଇ
କର୍ତ୍ତବ୍ୟ ଛାଡ଼ିବି ?
ନାହିଁ, ନାହିଁ, ନାହିଁ,

କାଳକ୍ଷେପେ ଅନିଷ୍ଟ ନିଶ୍ଚୟ ।
କର ଧରି ଅତି ଯତ୍ନ କରି
ଉଠାଇଲା ବାଳା,
କାନିରେ ପୋଛିଲା ମୁଖ ।
କୋଳ କରି ଘେନିଗଲା,
ପଲ୍ଲବ ଶଯ୍ୟାରେ
ଯତ୍ନେ ଶୁଆଇଲା,
ନାସାରେ ଥୋଇଲା ହାତ,
"ପ୍ରାଣ ଅଛି, ମାତ୍ରକ ମୂର୍ଚ୍ଛିତ ।"
ନୂତନ ପଲ୍ଲବେ ଆଣି ଜଳ
ଧୋଇଦେଲା ମୁଖ,
ଚେତା କରାଇଲା,
ଯୁବା ପାଇଲା ଚେତନା ।
ତୃଷା ଆତୁର ସେ,
ଜଳପାଇଁ ଇଙ୍ଗିତେ ମିନତି
ଜଣାଇଲା ଯୁବା ।
ପାଣି ପିଆଇଲା ।
କହିଲା ଯୁବତୀ–
ଶ୍ୱାପଦସଙ୍କୁଳ ନୁହେଁ ସ୍ଥାନ,
ଶୋଇଥାଅ ନିଶ୍ଚିନ୍ତରେ ।
ମୁଁ ଯାଇ ଗ୍ରାମକୁ
ଡାକି ଆଣେ ଲୋକ
ନେବାକୁ ତୁମ୍ଭକୁ ।
ଗ୍ରାମେ ଗଲେ ନିଶ୍ଚେ
ଗ୍ରାମେ ଗଲେ ନିଶ୍ଚେ
ବିଶ୍ରାମ ଲଭିବ ।
ଜୀବନରେ ନାହିଁ ଶଙ୍କା ।
ସନ୍ତୁଷ୍ଟ ନୟନେ ଥରେ ଚାହିଁ
ତ୍ୟାଗ କଲା ସ୍ଥାନ ।
ତରତରେ ଗ୍ରାମେ ପ୍ରବେଶିଲା,
ସାଶ୍ରୁନେତ୍ରେ ସକାତରେ
ଗ୍ରାମବାସୀଙ୍କୁ ସେ
ଜଣାଇଲା ଯୁବାର ଅବସ୍ଥା,
ଆଶୁ ପ୍ରତିକାର ପାଇଁ
ପ୍ରାର୍ଥନା ସେ କଲା,
ନିଜ କାର୍ଯ୍ୟ ରଖିଲା ଗୋପନେ ।
ଲୋକ ସଙ୍ଗେ ନେଇ
ଯୁବାକୁ ଦେଖାଇ ଦେଲା ।
ସେବାକାର୍ଯ୍ୟେ ଲୋକେ ଲାଗିଗଲେ ।
ଯୁବା ମୁଖ ଦେଖି ଥରେ
ତୁଷ୍ଟ ମାନସରେ
ଲୋକଙ୍କର ଅତର୍କିତେ
ସ୍ଥାନ ତ୍ୟାଗ କଲା ।
ଗୃହେ ଫେରିଥିଲା ।
ଚକ୍ଷୁହୀନା ବୃଦ୍ଧା ତା' ଜନନୀ,
ଧରି ତା'ର କର
କହିଲା ବିନୟେ–
ଚାଲ ମା' ଗୋ, ଏ ଗ୍ରାମରୁ ଯିବା ।
ଧରି ତା' ଜନନୀ କର
ଧୀରେ ଧୀରେ ହେଲା ଅଗ୍ରସର,
ବୃକ୍ଷ ଉହାଡ଼ରେ ଥାଇଁ
ଦେଖିଲା ଯୁବାକୁ,
ନତ କରି ଶିର
କହିଲା ଏତିକି–
ମୋର ସ୍ପର୍ଶେ କଳଙ୍କିତ
ହୋଇବ କାହିଁକି ?
ତୁମ୍ଭ ଉପଯୁକ୍ତ ନୁହେ
ସାହାଯ୍ୟ ମୋହର,
ଉଚ୍ଚର ସାହାଯ୍ୟ ଦୟାଗୁଣେ,
ନୀଚର ସାହାଯ୍ୟ ଲାଭାଶାରେ,
ଏହା ଅଟେ ଲୋକଙ୍କ ବିଶ୍ୱାସ ।
ମୋ ସାହାଯ୍ୟ ହେତୁ
ଜଗେ ତୁମ୍ଭେ ଅନୁଗ୍ରହ
ପାଇବ କଳଙ୍କ,
ଏଣୁ ନେଉଛି ବିଦାୟ ।
ନୋହୁ ଦେଖା ଜୀବନରେ ଆଉ,
ଥାଅ ସୁଖେ ଦୀର୍ଘଜୀବୀ ହୋଇ ।

●

## ସ୍ୱର୍ଗତ ବିଶ୍ୱନାଥଙ୍କ ପ୍ରତି

[ପ୍ରବୀଣ ସାହିତ୍ୟିକ ଓ ସମ୍ପାଦକ ବିଶ୍ୱନାଥ କର ଉତ୍କଳର ସାହିତ୍ୟ-ମଞ୍ଚରେ ଦୀର୍ଘକାଳବ୍ୟାପୀ ଅଭିନୟ ସାଙ୍ଗ କରି ଚାଲିଗଲେ । ତାଙ୍କ ସ୍ଥାନରେ ସାହିତ୍ୟିକ ଅଭିନୟ ଆରମ୍ଭ କରିବାକୁ କିଏ ଯବନିକା ଉତ୍ତୋଳନ କରିବ, ତାହା ଜଣାଯାଉ

ନାହିଁ । ବର୍ତ୍ତମାନ ଉତ୍କଳ ଦେଶ ଯେ ବହୁଦିନଯାଏ ତାଙ୍କର ଅଭାବ ବୋଧ କରିବ, ଏଥିରେ ସନ୍ଦେହ ନାହିଁ ।

'ଉତ୍କଳ ସାହିତ୍ୟ' ତାଙ୍କର ସମୁଜ୍ଜ୍ୱଳ କୀର୍ତ୍ତି । ଓଡ଼ିଶାରେ 'ଉତ୍କଳ ସାହିତ୍ୟ' ପରି କୌଣସି ମାସିକ ପତ୍ର ଦୀର୍ଘଜୀବୀ ହୋଇ ନାହିଁ । ବିଶ୍ୱନାଥ ଅଧ୍ୟବସାୟ ଓ ସ୍ୱାର୍ଥତ୍ୟାଗଦ୍ୱାରା ଏହାକୁ ବଞ୍ଚାଇ ରଖିଥିଲେ । ଆମ୍ଭମାନଙ୍କର ଚିର ଆଦରର 'ଉତ୍କଳସାହିତ୍ୟ'ର ଦଶା କ'ଣ ହେବ, ତାହା ଆମ୍ଭେମାନେ ବର୍ତ୍ତମାନ ବୁଝିବାକୁ ଅକ୍ଷମ ।

ଯେଉଁମାନେ ବିଶ୍ୱନାଥବାବୁଙ୍କୁ ଭଲ ଭାବରେ ଆଜୀବନ ଜାଣନ୍ତି, ସେମାନେ ଅବଶ୍ୟ ସ୍ୱୀକାର କରିବେ ଯେ, ବିଶ୍ୱନାଥ ଜଣେ ନିର୍ଭୀକ ଯୋଦ୍ଧା, ସୁବକ୍ତା ଏବଂ ଯୁବକ ବନ୍ଧୁ ଥିଲେ । ତାହାଙ୍କୁ ହରାଇ ଆଜି ଉତ୍କଳ କ୍ଷତିଗ୍ରସ୍ତ ।

ଶେଷ ପଥ ସୁପ୍ରଶସ୍ତ । ସେହି ପଥରେ ବିଶ୍ୱନାଥ ଚାଲିଗଲେ । ଆମ୍ଭେମାନେ ତାଙ୍କ ପଛେ ପଛେ ଚାଲିବାକୁ ପ୍ରସ୍ତୁତ । ସଙ୍ଗୀର ଲୋଡ଼ା ନାହିଁ– କେବଳ ପାଥେୟ ଦରକାର । ସୁନାମ, ଯଶ, ଆତ୍ମପ୍ରସାଦ ଉପଯୁକ୍ତ ପାଥେୟ । ମୃତ୍ୟୁବେଳେ ଯେଉଁ ବ୍ୟକ୍ତି ଏହା ଲାଭ କରିବାକୁ କ୍ଷମ ହୋଇଅଛି, ସେ ଯାତ୍ରୀମାନଙ୍କ ମଧ୍ୟରେ ସୁଖୀ । ବିଶ୍ୱନାଥଙ୍କର ସ୍ଥାନ ପୂରଣର ନାମାନ୍ତର ତାଙ୍କର ସମ୍ମାନ । ନବ୍ୟମାନେ ତାଙ୍କର ସ୍ଥାନ ପୂରଣ କରି ତାଙ୍କର ସମ୍ମାନ ରକ୍ଷା କରିବେ, ଏହାହିଁ ଆମ୍ଭମାନଙ୍କର କାମନା ।]

ଗଲ ଭାଇ ବିଶ୍ୱନାଥ, ଦେଖା ହେବ ନାହିଁ
ପୁନର୍ଜନ୍ମ ଦେଖା ଆଶେ ଭୁଲିବି ମୁଁ କାହିଁ ।
ଲୀଳାଖେଳା ସ୍ଥାନ ଅଟେ ଏ ମର୍ତ୍ତ୍ୟଭୁବନ
ସ୍ନେହ ପ୍ରୀତି ଅର୍ଜିଥିଲେଁ, ମିଳିଥିଲା ମନ ।
ପବିତ୍ର ସୋଦର ଭାବ ବିରୋଧ-ବର୍ଜିତ
ସାହିତ୍ୟ ଉଦ୍ୟାନେ ହୋଇଥିଲା ବିକଶିତ ।
ସହସା ବିଚ୍ଛିନ୍ନ ହେଲା ତବ ଅଦର୍ଶନେ
ପାଇବି ମୁଁ କାହୁଁ ତାହା ବୃଥା ଅନ୍ୱେଷଣେ ।
ସତ ତବ ରୂପ ଆଉ ଦେଖା ନ ପଡ଼ିବ
ଗୁଣ କର୍ମ ମାତ୍ର ମୋର ହୃଦେ ବିରାଜିବ ।
ମିଶିଗଲ ବେଳ ଜାଣି ଶାଶ୍ୱତ ସାଗରେ
ଅବିଳମ୍ବେ ଚାଲିବି ମୁଁ ତୁମରି ପଛରେ ।
ବର୍ଦ୍ଧିଷ୍ଣୁ ପ୍ରେମ-ଶୃଙ୍ଖଳ କେବେ ନ ଛିଡ଼ିବ
ଯେତେ ଦିନଯାଏ ଏ ପିଣ୍ଡରେ ପ୍ରାଣ ଥିବ ।

●

## ଜହ୍ନମାମୁ

ଜହ୍ନମାମୁ ତୁ ମୋ ମାଆର ଭାଇ
ମୁଁ ଅଛି ତା'ଠାରେ ତୁ ଅଛୁ କାହିଁ ।
ଏଡ଼େ ଦୂର ଦେଶେ ଗଲୁ କାହିଁକି
ଫେରିବାକୁ ତୋର ବାଟ ନାହିଁ କି ।
ଯିବା ବାଟ ତୋତେ ଥିବ ତ ଜଣା
ତେବେ କିପାଁ କହ ହୋଇଲୁ ବଣା ।
ଦିନ ରାତ୍ରି ତୁହି ଭ୍ରମୁ କି ପାଇଁ
ଟିକେ ହେଲେ ତୋର ବିଶ୍ରାମ ନାହିଁ ।
ପୁନେଇ ରାତିରେ ତୋହର ଶୋଭା
ଦେଖି ମନପ୍ରାଣ ହୁଅଇ ଲୋଭା ।
ମାଆ ଡାକୁଥାନ୍ତି 'ସରଗ ଶଶି'
ମୋ କାହ୍ନୁହାତରେ ପଡ଼ରେ ଖସି ।
ଆଶା ଖେଳିବାକୁ ତୋର ସଙ୍ଗରେ
ହାତ ପାତିଥାଏ ବଡ଼ ଆଦରେ ।
ଆରଦିନ ତୋତେ ସେହି ବେଳରେ
ନ ଦେଖେ ମାମୁ ମୋ ସେହି ସ୍ଥାନରେ ।
ନିଦ ହେବାଯାଏ ଅନେଇ ଥାଏ
ଆକାଶରେ ତୋର ଦେଖା ନ ପାଏ ।
ଟିକେ ଟିକେ ହୋଇ ତୁ ଛିଡୁଥାଉ
ଉଆଁସ ଦିନକୁ ଉଭେଇ ଯାଉ ।
ବଢ଼ିବା ଛିଡ଼ିବା ବିଧି ତୋହର
ବାଳକ ବୁଦ୍ଧିକୁ ନୁହେଁ ଗୋଚର ।
ମୋ ମନେ ଯେମନ୍ତ ହୁଏ ବେଦନା
ମାମୁ ଗୋ ତୋତେ ତା' ଅଛି କି ଜଣା ।
କାହୁଁ ତୁ ବୁଝିବୁ ଦୁଃଖ ମୋହର
ଜାଣିଲି ପାଷାଣ ହୃଦ ତୋହର ।
ତୋତେ ଚିହ୍ନିବାକୁ ପାଠ ପଢ଼ିବି
ତୋର ଗତିବିଧି ନିତି ଦେଖିବି ।
ଯେବେ ମୁଁ ପାଠୁଆ ପୁଅ ହୋଇବି
ନିଶ୍ଚୟ ରହସ୍ୟ ତୋ'ର ଜାଣିବି ।



## ଶଙ୍ଖ ସ୍ୱନ

ପର୍ବତ ଉପରେ ଯୁବା କରେ ଶଙ୍ଖସ୍ୱନ
ସ୍ୱାର୍ଥତ୍ୟାଗୀ-ସେବା କାର୍ଯ୍ୟେ ବଳାଇଛି ମନ ।
ଧର୍ମକ୍ଷେତ୍ରେ କୃଷ୍ଣମୁଖେ ଶଙ୍ଖ ପାଞ୍ଚଜନ୍ୟ
ପାଣ୍ଡବେ ମତାଇ କଲା କର୍ମ ସଂସ୍ଥାପନ,
କର୍ମକର କର୍ମକର କର୍ମକର ଭାଇ
କର୍ମ ବିନା ମନୁଷ୍ୟର ଗତ୍ୟନ୍ତର ନାହିଁ ।
ରାମ, ବୁଦ୍ଧ, ଚନ୍ଦ୍ରଗୁପ୍ତ, ଅଶୋକ ଜନମି
ସୁ-ପବିତ୍ର କରିଥିଲେ ଏ ଭାରତ ଭୂମି ।
ସେ ପବିତ୍ର ଭୂମି ଏବେ କଳୁହାଙ୍କ ବାସ
ଏଣୁ ଛିଣ୍ଡୁ ନାହିଁ ପରା ଦାସତ୍ୱର ପାଶ,
ଧର୍ମ ଅର୍ଥ ପ୍ରେମ ଏହା ଶାସ୍ତ୍ରର ବଚନ
ନ ମାନି ସ୍ୱେଚ୍ଛାରେ କଲେ ଅନ୍ୟଥାଚରଣ,
ପରଦତ୍ତ ହିନ୍ଦୁ ଆଖ୍ୟା କରିଣ ଗ୍ରହଣ
ଅପକର୍ମ କଲେ ଦେଶେ କ୍ଷତ୍ରିୟ ବ୍ରାହ୍ମଣ,
ଏକତାର ମୂଳମନ୍ତ୍ର କେହି ନ ବୁଝିଲେ
ସ୍ୱାର୍ଥରକ୍ଷା ପାଇଁ ଜାତି ଭେଦ ଭିଆଇଲେ
ପ୍ରେମ ସିନା ଲୋକ ମଧ୍ୟେ ଏକତା ଆଣଇଁ
ପ୍ରେମଡୋର ଛିନ୍ନହେଲେ ଏକତା ଭାଙ୍ଗଇ,
ଏକତା ଭାଙ୍ଗିଲେ ଜାତି ହୁଅଇ ଦୁର୍ବଳ
ଦୁର୍ବଳ ଜାତି ପିନ୍ଧଇ ଦାସତ୍ୱ-ଶୃଙ୍ଖଳ
ଭାରତ ଗୌରବ-ରବି କିପାଁ ଅସ୍ତମିତ
ଦେଶବାସୀ ଜାଣିବାକୁ ନ ହେଲେ ଚିନ୍ତିତ,
ନିତ୍ୟକର୍ମ କାମ୍ୟକର୍ମ ସ୍ୱଛନ୍ଦେ ଚାଲିଛି
ନାମମାତ୍ର ଦାସତ୍ୱକୁ କିବା ଭୟଅଛି ।
ଶୂଦ୍ରପ୍ରତି ହେୟଜ୍ଞାନ ନାରୀ ନିର୍ଯାତନ
ସେ ଅଭ୍ୟାସ ବଢ଼ି କଲା କଳୁଷିତ ମନ,
ନିତ୍ୟାଚାରକୁ ଭାବିଲେ ସ୍ୱର୍ଗର ସୋପାନ,
ଆଚାର ଭ୍ରଷ୍ଟମାନଙ୍କୁ କଲେ ଅପମାନ,
ଉଚ୍ଚ ନୀଚ ଭେଦ ବୁଦ୍ଧି କ୍ରମରେ ବଢ଼ିଲା
ହିଂସା ଈର୍ଷା ଦ୍ୱେଷ-ବୁଦ୍ଧି ଏକତା ଭାଙ୍ଗିଲା
ଅର୍ଥଲୋଭେ ଦେଶବାସୀ ମର୍ଯ୍ୟାଦା ବିକିଲେ
ଶତ୍ରୁର ବାହୁ ଛାୟାକୁ ବିଭବ ମଣିଲେ
ଏପରି ଜାତି ଜଗତେ ଅଛନ୍ତି କି କାହିଁ
ଦାସତ୍ୱ ଅପମାନକୁ ତିଳେ ଚିନ୍ତା ନାହିଁ ?
ସିରାଜଦୁଲ୍ଲାର ଶିର କେ କାଟିଲା କହ
କେଉଁମାନେ ବନ୍ଦ କଲେ ସିପାହୀ ବିଦ୍ରୋହ ?
ଏ ଦେଶର ସ୍ୱାଧୀନତା ନାଶ ହେବାପାଇଁ
କେବଳ ଇଙ୍ଗରାଜମାନେ ଅଟନ୍ତି କି ଦାୟୀ ?
ପରପାଇଁ ନ୍ୟାଯ୍ୟଦାବୀ ବିଦ୍ରୋହ ଦମନ
ଦେଶବାସୀ କରିଛନ୍ତି ଦେଇ ପ୍ରାଣମନ
ସେଥିପାଇଁ ପୁରସ୍କାର ଅତ୍ୟନ୍ତ ସାମାନ୍ୟ,
ଉପାଧି ଲୋଲୁପ ମଣେ ତାହାହିଁ ମହାନ,
ଦାସତ୍ୱ ଶୃଙ୍ଖଳ ପାଇଁ ଦେଶବାସୀ ଦାୟୀ
ଅଦ୍ୟାପି ସେ ମନୋବୃତ୍ତି ନାଶ ହେଉ ନାହିଁ;
ଦାସତ୍ୱ ହେଲାଣି ପରା ପୈତୃକ ସମ୍ପତ୍ତି
ଏଣୁ ଦାସତ୍ୱରୁ ମୁକ୍ତ ମଣନ୍ତି ବିପତ୍ତି,
ଭାଇ ଭାଇ ପରସ୍ପର ହେଲେ ହାଣକାଟ,
ପାଇବେ କି ଦେଶବାସୀ କେବେ ମୁକ୍ତିବାଟ,
ଏ ପାପ କଳୁଷ ତନ୍ଦ୍ରା କେବେ ନ ତୁଟିବ
ସ୍ୱାଧୀନ ଶଙ୍ଖ ଶବଦ ହୃଦେ ନ ପଶିବ
ଏଣୁ ଶଙ୍ଖ ବାଜ ବାଜ ଉଠନ୍ତୁ ସରବେ
ବିଦ୍ୱେଷ ଛାଡ଼ି ମାତନ୍ତୁ ସ୍ୱଦେଶ ଗୌରବେ ।
ବାଜ ଶଙ୍ଖ ଜନ ମନ କର ଉତ୍ତେଜିତ
ଏକତା ମନ୍ତ୍ରରେ ସର୍ବେ କରରେ ଦୀକ୍ଷିତ ।
ଦୁଃଖୀରଙ୍କୀଙ୍କ ଅବସ୍ଥା ହଇଲେ ସ୍ୱଚ୍ଛଳ
ଭାରତ ମାତାର ମୁଖ ହେବ ସମୁଜ୍ଜ୍ୱଳ ।
ବଜ୍ର ନାଦେ ବାଜଶଙ୍ଖେ ବାଜ କ୍ରମାଗତ
ଯାବତ ବିଶ୍ୱେ ସ୍ୱାଧୀନ ନୋହିଛି ଭାରତ ।



## ଶୋକଗୀତି

''ମାଆଙ୍କୁ ବାବାଙ୍କୁ କହିବୁରେ ଭାଇ
ମୋ ପାଇଁ କାନ୍ଦିବେ ନାହିଁ
ବହୁତ ଆଘାତ ଲାଗିଛି ଛାତିରେ
ଆଉ ମୁଁ ବଞ୍ଚିବି ନାହିଁ ।''
ପିତୃବ୍ୟ ତନୟ ହାତୁଁ ଜଳପିଇ
ଯେବେ ଚେତନା ପାଇଲା
ଏହି ପଦମାତ୍ର ଉଚ୍ଚାରଣ କରି
ଅନନ୍ତ ନିଦ୍ରା ଭଜିଲା ।
ମାତୃଭକ୍ତ ପୁଅ ମାଆକୁ କି ଦେବ
ଯେବେ ଜୀବନ ଛାଡ଼ିଲା

ବିନୀତ ସାନ୍ତ୍ୱନା ଯାହା କଷ୍ଟପ୍ରଦ
ତାହା ହୃଦେ ସଞ୍ଚିଥିଲା।
ପଦେ ହେଉପଛେ କରୁଣ କବିତା
ଯାର ନାହିଁ ପଟାନ୍ତର
ଦେଇଗଲୁ ବସ ମାତୃଭକ୍ତଙ୍କର
ଆର୍ଦ୍ର କରିବ ଅନ୍ତର।
ଅକାଳ ବିୟୋଗ ବଡ଼ ମର୍ମନ୍ତୁଦ
ନାଶୁଛି ସିନା ଧୃତିକି
ଆଗପଛ ହୋଇ ଦୂରେ ବା ନିକଟେ
ଲଭିବୁଁ ତର ଗତିକି।

●

## ମୁକ୍ତି ପତାକା

ଦେଶ ଭକ୍ତ ବିପ୍ଳବୀଙ୍କ ରକ୍ତେ ସୁରଞ୍ଜିତ
ବିପ୍ଳବରୁ ମୁକ୍ତି ଏହା କରଇ ସୂଚିତ।
ସାହସ ଓ ତ୍ୟାଗ ଅଟେ ବିପ୍ଳବୀର ବ୍ରତ
ପତାକାର ଊର୍ଦ୍ଧ୍ୱ ଅଂଶ କରାଏ ବିଦିତ।
ଶୁଦ୍ଧ ଶୁକ୍ଳ ସତ୍ୱର ପ୍ରତୀକ ମଧ୍ୟଭାଗ
ଜନମାଏ ସତ୍ୟଶାନ୍ତି ପ୍ରତି ଅନୁରାଗ।
ମଧ୍ୟେ ବୁଦ୍ଧ ଧର୍ମଚକ୍ର ବିଦ୍ୟମାନ ଥାଇ
ଭେଦବୁଦ୍ଧି ନାଶୁ ଐକ୍ୟ ଆଣିବାର ପାଇଁ।
ନିମ୍ନଦେଶେ ଐଶ୍ୱର୍ଯ୍ୟ ପ୍ରତୀକ ଶ୍ୟାମବର୍ଣ୍ଣ
ଐଶ୍ୱର୍ଯ୍ୟ ବୃଦ୍ଧିକାରଣ ବିଶ୍ୱାସ ସ୍ଥାପନ।
ଭାରତ ମୁକ୍ତି ନିଶାଣ ତ୍ରିବର୍ଣ୍ଣେ ରଞ୍ଜିତ
ରହୁ ଭାରତବାସୀଙ୍କ ଚିର ସୁପୂଜିତ।
ହେଲା ସ୍ୱାଧୀନତା, ଆଣୁ ଐକ୍ୟ ସୁଖଶକ୍ତି
ଆସ ଭାଇ ମଥା ନଇଁ କରୁଁ ତାକୁ ଭକ୍ତି।

●

## ଦୟାଳୁ ପକ୍ଷୀ

ଦୟାଳୁ ନାମଟି କେ ଦେଲା ତୋତେ
ଅତ୍ୟନ୍ତ ବିସ୍ମୟ ଲାଗୁଛି ମୋତେ।
ରୂପ ଦେଖି ତୋର ହେଲାକି ନାମ
ଭାବିଲା ଗୁଣରେ କି ଅଛି କାମ।
ପୃଥୁଳ ଅଟଇ କାୟା ତୋହର
ତା'ର ତୁଳନାରେ ତୋର ଉଦର।
କୀଟ ଧରି ତୁ ଯା କରୁ ଭକ୍ଷଣ
ଅଳପ ନୁହଇ ତା' ପରିମାଣ।
କ୍ରୂର ଭାବେ ଯାହା ମାରୁ କୀଟକୁ
ନିର୍ଦ୍ଦୟ ବୋଲିଣ ଆସେ ମନକୁ।
ତିଳେ ମାତ୍ର ଦୟା ନାହିଁ ତୋହର
ତଥାପି ଦୟାଳୁ ନାମ ତୋହର।

●

## ପ୍ରତୀକ୍ଷା

ସୁନିର୍ମଳ ସରୋବରେ ଏକଇ କହ୍ଲାର
ମେଘଶୂନ୍ୟ ଆକାଶରେ ଏକ ଶଶଧର
ସଜ ମଲ୍ଲିକା କୁସୁମେ ଏକଇ ଭ୍ରମର
ଅଦ୍ୱୈତ ଦୁର୍ଲଭ ତେଣୁ ମନୋମୁଗ୍ଧକର
ଉଠ ସୂର୍ଯ୍ୟ ବିଳମ୍ବ ନ କର କ୍ଷଣେ ଆଉ
ସାଜସଜ୍ଜା ଅକାରଣ
ନ ଆସିବ ପୂର୍ବେ ଯେବେ ଉଷା ଥାଉ ଥାଉ।

●

# ପ୍ରାକ୍‌ସୂଚନା

ଊନବିଂଶ ଶତାବ୍ଦୀରେ ଯେଉଁ କେତେ ଜଣ କୃତବିଦ୍ୟ ସାଧକ ନିଜସ୍ୱ ଅନନ୍ୟଶୈଳୀ, ପ୍ରୟୋଗବାଦୀ ଚିନ୍ତାଧାରା ଓ ଅସ୍ତିତ୍ୱବାଦୀ ଚେତନାଦ୍ୱାରା ଓଡ଼ିଆ ଗଦ୍ୟ ସାହିତ୍ୟରେ ଯୁକ୍ତିନିଷ୍ଠ ଧାରା ପ୍ରଚଳନ କଲେ, ସେମାନଙ୍କ ମଧ୍ୟରେ ଜଳନ୍ଧରଦେବ ଅନ୍ୟତମ । ଜଳନ୍ଧରଙ୍କ ପ୍ରାବନ୍ଧିକ ପ୍ରତିଭା ସର୍ବସ୍ୱୀକୃତ । ତାଙ୍କର ଅନେକ କୃତି ଲୋକଲୋଚନର ଅଗୋଚରରେ ବିଭିନ୍ନ ପତ୍ରପତ୍ରିକା ପୃଷ୍ଠାରେ ରହିଯାଇଛି । ତେଣୁ ତାଙ୍କର ସାମଗ୍ରିକ ଗଦ୍ୟସୃଷ୍ଟିର ରସ ଗ୍ରହଣରେ ସାଧାରଣ ପାଠକ ବଞ୍ଚିତ । ସମକାଳୀନ ଅନେକ ପତ୍ରପତ୍ରିକା ସମ୍ପ୍ରତି ଦୁର୍ଲ୍ଲଭ/ବିନଷ୍ଟ । ସେକାଳର ଅନେକ ରଚନାରେ ଲେଖକର ନାମ ନ ଥାଏ ବା ଛଦ୍ମନାମ ପ୍ରଦତ୍ତ ହୋଇଥାଏ । ଏଣୁ ଜଳନ୍ଧରଙ୍କ ସମସ୍ତ ପ୍ରବନ୍ଧ ଉଦ୍ଧାର ସମ୍ଭବ ନୁହେଁ। ତଥାପି ଅନେକ ପ୍ରଚେଷ୍ଟା ଫଳରେ ଈପ୍ସିତ ସଙ୍କଳନଟି ପ୍ରସ୍ତୁତ କରାଯାଇଛି ।

ଜଳନ୍ଧରଙ୍କ 'ଭାରତୀୟ ରମଣୀ' ପ୍ରବନ୍ଧଟି ସମ୍ବଲପୁର ହିତୈଷିଣୀର ଉଦ୍ଦିଷ୍ଟ ସଂଖ୍ୟାଟି ନଷ୍ଟ ହୋଇଯାଇଥିବାରୁ ସଂଗ୍ରହ ହୋଇପାରି ନାହିଁ । ସେମିତି 'ବାଲ୍ୟବିବାହ'ର ପ୍ରଥମ ଅଂଶ ଓ 'ବେଦ'ର ପ୍ରଥମ ଓ ଶେଷ ଅଂଶ ଦୁଷ୍ପ୍ରାପ୍ୟ । 'ବାଲ୍ୟବିବାହ'ର ଶେଷ ଅଂଶଟି ସମ୍ବଲପୁର ହିତୈଷିଣୀ ପୃଷ୍ଠାରୁ ସଂଗ୍ରହ କରି ସ୍ଥାନିତ କରାଯାଇଛି । ଏଥିରୁ ଜଳନ୍ଧରଙ୍କ ପ୍ରାରମ୍ଭିକ ଗଦ୍ୟରଚନାର ସୂଚନା ସୁସ୍ପଷ୍ଟ । ଏହି ଲେଖାଟି ପଣ୍ଡିତ ମଧୁସୂଦନ ମିଶ୍ର ତାଙ୍କ ବାଚସ୍ପତିଙ୍କ 'ସମ୍ବଲପୁର ହିତୈଷିଣୀ'ରେ ଲିଖିତ 'ବାଲ୍ୟବିବାହ' ରଚନାର ପ୍ରତିବାଦ । ଏଥିରେ ପ୍ରଦତ୍ତ ଯୁକ୍ତି 'ବିବାହ ବିଚାର' ରଚନାବେଳକୁ ପରିବ୍ୟାପ୍ତ ଓ ପ୍ରାମାଣିକ ହୋଇଛି ।

ଜଳନ୍ଧରଦେବଙ୍କ 'ବେଦ' ଉପରେ ପ୍ରଥମଯୁକ୍ତି ସମ୍ବଳିତ ଆଲୋଚନା ସମ୍ବଲପୁର ହିତୈଷିଣୀ (୧୯୦୮)ରେ ପ୍ରକାଶ ପାଇଥିଲା । ଏହି ଦୀର୍ଘ ଆଲୋଚନାଟି ହିତୈଷିଣୀର ପ୍ରାୟ ଆଠଟି ସଂଖ୍ୟାରେ ପ୍ରକାଶ ପାଇଥିବାର ଜଣାଯାଏ। ସମ୍ବଲପୁର ହିତୈଷିଣୀର ଅନେକ ସଂଖ୍ୟା ବିନିଷ୍ଟ ହୋଇଯାଇଥିବାରୁ ଏହି ଉତ୍କୃଷ୍ଟ ଆଲୋଚନାଟିର ଆରମ୍ଭ ଓ ଉପସଂହାର ଅଂଶ ବହୁ ଉଦ୍ୟମ ସତ୍ତ୍ୱେ ସଂଗ୍ରହ କରାଯାଇପାରି ନାହିଁ । ସମ୍ବଲପୁର ହିତୈଷିଣୀ ୧୯।୧୮ ସଂଖ୍ୟାରେ ପ୍ରକାଶିତ 'ପୂର୍ବପ୍ରକାଶିତ ପର' ବୋଲି ସୂଚିତ ହୋଇଅଛି । ଏଣୁ ଅନୁମାନ କରାଯାଏ ୧୯।୧୭ ସଂଖ୍ୟାରୁ ଏହା ଆରମ୍ଭ ହୋଇଅଛି । ପୁନଶ୍ଚ ହିତୈଷିଣୀର ୧୯।୩୦ ଓ ୧୯।୩୧ ସଂଖ୍ୟା ନଷ୍ଟ ହୋଇଯାଇଥିବାରୁ ଏଥିରେ ତା'ର ଶେଷ ଅଂଶ ପତ୍ରସ୍ଥ ହୋଇଥିବାର ଅନୁମାନ କରାଯାଏ । ହିତୈଷିଣୀର ୧୯।୧୮, ୧୯।୨୦, ୧୯।୨୧, ୧୯।୨୪, ୧୯।୨୫ ଓ ୧୯।୨୯ ସଂଖ୍ୟାରେ ଧାରାବାହିକ ପ୍ରକାଶିତ ଅଂଶ ସଂଗ୍ରହ କରି ସ୍ଥାନିତ କରାଗଲା ।

ପ୍ରାରମ୍ଭିକ ପର୍ଯ୍ୟାୟର ଏହି ଲେଖାଟି ୧୯୩୨-୩୩ ବେଳକୁ ପରିବ୍ୟାପ୍ତ ରୂପ ଧାରଣ କରି 'ବେଦ ଓ ହିନ୍ଦୁଧର୍ମ' ଶୀର୍ଷକରେ ଉତ୍କଳ ସାହିତ୍ୟରେ ଧାରାବାହିକ ପ୍ରକାଶ ପାଇଥିଲା । ଆଠଟି ଅଂଶ ପ୍ରକାଶ ପାଇବା ପରେ ଶେଷ ଅଂଶଟି 'ସହକାର'ରେ ପ୍ରକାଶ ପାଇଥିଲା । 'ସହକାର' ପ୍ରକାଶିତ ନବମ ଅଂଶକୁ ନିଜ ପତ୍ରିକାରେ ପତ୍ରସ୍ଥକରି ବିଶ୍ୱନାଥ କର ଉତ୍କଳ ସାହିତ୍ୟ (୩୬।୩) ପୃ-୯୯ରେ ଏକ ଫୁଟନୋଟ ଦେଇଥିଲେ–

''ଏହି ପ୍ରବନ୍ଧଟି ଧାରାବାହିକ ରୂପେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇ ଆସୁଥିଲା । ୮ଥର ପ୍ରକାଶିତ ହେବା ପରେ ଶେଷ ଅଂଶଟି 'ସହକାର'ରେ ବାହାରିବାର ଦେଖି ବିସ୍ମିତ ହେଲୁଁ । ଲେଖକ ମହାଶୟଙ୍କୁ ଜଣାଇବାରେ ସେ ଅତ୍ୟନ୍ତ ବ୍ୟଥିତ ହୋଇ ଜଣାଇଲେ ଯେ, ଠିକଣା ଲେଖିବାରେ ଭୁଲ୍, ହୋଇଯିବାରୁ ଏପରି ଘଟିଅଛି । ପ୍ରବନ୍ଧଟି ଉତ୍କଳ ସାହିତ୍ୟ ଅଫିସ୍‌କୁ ପଠାଇବାପାଇଁ ସହକାର ସମ୍ପାଦକ ମହାଶୟଙ୍କୁ ପତ୍ର ଲେଖି ଲେଖକ ମହାଶୟ ଯେଉଁ ଉତ୍ତର ପାଇଲେ ତାହାର ମର୍ମ– 'ଭ୍ରମରେ ପ୍ରବନ୍ଧଟି ପତ୍ରିକାସ୍ଥ କଲେ ଏବଂ ଶେଷ ଅଂଶ ମଧ୍ୟ ଛାପିବାକୁ ଦେଇଅଛନ୍ତି ଏଣୁ ଆପଣଙ୍କୁ ଦେଇ ନ ପାରି ଦୁଃଖିତ । ଫୁଟନୋଟରେ ତହିଁର କୈଫିୟତ ଲେଖିବେ ।' ଏହା ଉପରେ ଆଉ କାହାରି କିଛି କହିବାର ଥାଇ ନ ପାରେ ।

ମାତ୍ର ପ୍ରବନ୍ଧଟି ଧାରାବାହିକ ରୂପେ 'ଉତ୍କଳ ସାହିତ୍ୟ'ରେ ୮ଟି ସଂଖ୍ୟାରେ ପ୍ରକାଶିତ ହୋଇଥିବା ସ୍ଥଳରେ ଶେଷ ଭାଗଟି ପ୍ରକାଶ ନ କଲେ ଆମ୍ଭମାନଙ୍କ ପାଠକମାନଙ୍କ ପ୍ରତି ଅବିଚାର ହେବ। ଏହି ବିବେଚନାରେ 'ସହକାର' ର ଜ୍ୟେଷ୍ଠ ଓ ଆଷାଢ଼ ସଂଖ୍ୟାରେ ପ୍ରକାଶିତ ଅଂଶମାନ ପ୍ରକାଶ କରିବାକୁ ବାଧ ହେଲୁ। ଆଶା କରୁ ଆମ୍ଭମାନଙ୍କର ଏହି ଜବରଦସ୍ତି ଅନ୍ୟାୟ ବା ଅସଙ୍ଗତ ବିବେଚିତ ହେବ ନାହିଁ। ସଂ''

ଏଥିରୁ ଜଳନ୍ଧରଦେବଙ୍କ ରଚନାର ମୂଲ୍ୟ କଳନା କରାଯାଇପାରେ। ଅନ୍ୟପକ୍ଷରେ ତାଙ୍କ ରଚନାକୁ ପତ୍ରସ୍ଥ କରିବାପାଇଁ ପତ୍ରିକାମାନଙ୍କ ଭିତରେ ପ୍ରତିଯୋଗିତା ଦେଖାଯାଉଥିଲା। ଉତ୍କଳସାହିତ୍ୟ ସମ୍ପାଦକଙ୍କ ସହିତ ତାଙ୍କର ସମ୍ପର୍କ, ବିଭିନ୍ନ ରଚନା ଓ ବ୍ୟକ୍ତିଗତ ଜୀବନକୁ ନେଇ ଜଳନ୍ଧରଙ୍କ ଏକ ପତ୍ର ୮-୮-୧୯୩୨ ରେ ବିଶ୍ୱନାଥଙ୍କ କରଙ୍କୁ ଲିଖିତ। ସେହି ବିରଳ ପତ୍ରଟି ପାଠକଙ୍କ ଉତ୍କଣ୍ଠା ଅପନୋଦନପାଇଁ 'ବିବିଧ ରଚନା' ପର୍ଯ୍ୟାୟରେ ସ୍ଥାନିତ କରାଗଲା। ପତ୍ରଟି ଉତ୍କଳ ସାହିତ୍ୟ ନୂଆପ୍ରସ୍ଥ ଅକ୍ଟୋବର-୧୯୫୫ ସଂଖ୍ୟାରେ ପ୍ରକାଶ ପାଇଥିଲା।

ଜଳନ୍ଧରଙ୍କ ପ୍ରବନ୍ଧ ଓ ଆଲୋଚନାଗୁଡ଼ିକୁ ପଠନ ଓ ଗବେଷଣାର ସୁବିଧା ଦୃଷ୍ଟିରୁ ପ୍ରସଙ୍ଗାନୁସାରୀ କରା ନ ଯାଇ କାଳାନୁକ୍ରମିକ ସନ୍ନିତ କରାଯାଇଛି । ସେହି କ୍ରମରେ 'କୃଷି' ଶୀର୍ଷକରେ ରଚିତ ତାଙ୍କର ପାଞ୍ଚଟି ପ୍ରବନ୍ଧକୁ କୃଷି ୧, ୨, ୩, ୪ ଓ ୫ ରୂପରେ ଯଥାସ୍ଥାନରେ ରଖାଯିବା କଥା କିନ୍ତୁ ପାଠର ସ୍ରୋତକୁ ଅବିଚ୍ଛିନ୍ନ ରଖିବାପାଇଁ ପ୍ରଥମ ପ୍ରବନ୍ଧ ସହିତ ଏକାଠି ଦିଆଗଲା ସେମିତି। ସୂର୍ଯ୍ୟ ଶୀର୍ଷକରେ ରଚିତ ପ୍ରବନ୍ଧ ଦୁଇଟି ଦଶ ବର୍ଷ ଅନ୍ତରରେ ରଚିତ ଏବଂ ସୂର୍ଯ୍ୟ-୧ ଓ ସୂର୍ଯ୍ୟ-୨ ରୂପେ ଏକତ୍ର ସ୍ଥାନିତ ।

'ସ୍ୱାଧୀନଚିନ୍ତା' ଶୀର୍ଷକରେ କିଛି ଲେଖା 'ଉତ୍କଳ-ସାହିତ୍ୟ'ରେ ଧାରାବାହିକ ପ୍ରକାଶିତ । ମନନଶୀଳ ସାମୟିକ ଚିନ୍ତା ସମ୍ବଳିତ ବିବିଧ ବିଷୟକ କ୍ଷୁଦ୍ର ରଚନାଗୁଡ଼ିକୁ 'ସ୍ୱାଧୀନଚିନ୍ତା' ରୂପେ ଜଳନ୍ଧର ପ୍ରକାଶ କରିଛନ୍ତି । ବହୁ ଆୟାସ ଦ୍ୱାରା ଯେଉଁ କେତୋଟି 'ସ୍ୱାଧୀନଚିନ୍ତା' ହସ୍ତଗତ ହୋଇଛି ତାକୁ ସଙ୍କଳିତ କରାଯାଇଛି । ସ୍ୱାଧୀନ ଚିନ୍ତା ପ୍ରଥମେ ଉତ୍କଳ ସାହିତ୍ୟ ୩୨।୪ ରେ ପ୍ରକାଶିତ । ଏଥିରେ ଏକ ତାରା ଚିହ୍ନିତ ଫୁଟନୋଟ୍‌ରେ ସମ୍ପାଦକ ଘୋଷଣା କରନ୍ତି— ''ଏହି ପ୍ରବନ୍ଧଟି ୧୯୨୫ ସାଲରେ ଲିଖିତ ହୋଇ ଆମ୍ଭମାନଙ୍କ ନିକଟକୁ ପ୍ରେରିତ ହୋଇଥିଲା । ଅନବଧାନତାବଶତଃ ଦୃଷ୍ଟିର ଅନ୍ତରାଳରେ ରହିଯାଇଥିବାରୁ ଯଥା ସମୟରେ ପ୍ରକାଶିତ ହୋଇପାରି ନାହିଁ । ଉ.ସା.ସଂ।'' ଏହି ରଚନାଟି ୧୯୨୮ରେ ପ୍ରକାଶିତ ହୋଇଥିଲେ ମଧ ରଚନାକାଳ ୧୯୨୫ । କିନ୍ତୁ ଜଳନ୍ଧରଦେବଙ୍କ ସୃଷ୍ଟି ସମ୍ଭାର (ପରିଶିଷ୍ଟ - ୧) ରେ ଏହାର ପ୍ରକାଶ କାଳକୁ ହିଁ ରଚନାକାଳ ରୂପେ ଦର୍ଶାଯାଇଛି । କାରଣ ରଚନାକାଳର ଠିକ୍ ବିବରଣୀ ନ ଥିବାରୁ ପ୍ରକାଶ କାଳକୁ ହିଁ ସୃଷ୍ଟି ସମ୍ଭାରରେ ରଚନାକାଳ ରୂପେ ଗ୍ରହଣ କରାଯାଇଛି ।

ବିବିଧ ରଚନା ଶୀର୍ଷକରେ ଜଳନ୍ଧରଙ୍କ ମହରମର ଇତିବୃତ୍ତ ପଣ୍ଡିତଙ୍କୁ ପ୍ରଶ୍ନ, ଉତ୍ତରର ଆଲୋଚନା, ଆଲୋଚନା ବିଜ୍ଞାପନ, ପ୍ରାଜ୍ଞ ବିଦ୍ୟାଳୟର ପ୍ରଶ୍ନ, ଉତ୍କଳ ସମ୍ମିଳନୀ ପ୍ରତି ଶୁଭେଚ୍ଛାପତ୍ର, ବିଶ୍ୱନାଥ କରଙ୍କୁ ପତ୍ର ସାହିତ୍ୟ ସନ୍ଦର୍ଭର ମୁଖବନ୍ଧ ଓ ଶଙ୍ଖ ସମ୍ପାଦକୀୟଗୁଡ଼ିକ ସ୍ଥାନିତ କରାଯାଇଛି । ମହରମର ଇତିବୃତ୍ତ କୁମଦବନ୍ଧୁ ଘୋଷଙ୍କ ବଙ୍ଗଳା ପୁସ୍ତକର ଓଡ଼ିଆ ମର୍ମାନୁବାଦ । ଏହା ଧାରାବାହିକ ସମ୍ବଲପୁର ହିତୈଷିଣୀରେ ପ୍ରକାଶ ପାଇଥିଲା । ବାମଣ୍ଡା ଆଲୋଚନା ସଭା (୪.୩.୧୮୯୭) ରେ ପଣ୍ଡିତ ମଧୁସୂଦନ ମିଶ୍ର ସ୍ୱର୍ଗନରକ ଅଛି କିନା, ଅଦୃଷ୍ଟ ଅଛି କି ନା ବେଦ ଈଶ୍ୱର ପ୍ରଣୀତ କି ନା ଉପରେ ଆଲୋଚନା କରିଥିଲେ। ପଣ୍ଡିତଙ୍କ ବକ୍ତୃତାଟି ଅଳୀକ ବିଶ୍ୱାସରେ ପୂର୍ଣ୍ଣଥିବାରୁ ଜଳନ୍ଧର 'ପଣ୍ଡିତଙ୍କୁ ପ୍ରଶ୍ନ' ଶୀର୍ଷକରେ ହିତୈଷିଣୀ (୮।୪୧)ରେ ସାତୋଟି ପ୍ରଶ୍ନ କରିଥିଲେ । ଏହି ପ୍ରଶ୍ନର ଉତ୍ତର ଜ୍ୟୋତିଷାଳଙ୍କାର ସୋମନାଥ ଶତପଥୀ 'ଜିଜ୍ଞାସୁଙ୍କ ପ୍ରତି ଉତ୍ତର' ଶୀର୍ଷକରେ ହିତୈଷିଣୀ (୮।୪୬)ରେ ପ୍ରଦାନ କରିଥିଲେ । ଶତପଥୀ ମହାଶୟଙ୍କ ଉତ୍ତର ଯୁକ୍ତିନିଷ୍ଠ ନ ଥିବାର ହୃଦୟଙ୍ଗମ କରି ଜଳନ୍ଧର 'ଉତ୍ତରର ଆଲୋଚନା' ହିତୈଷିଣୀ (୮।୫୦) ରେ ପ୍ରକାଶ କରିଥିଲେ । ବେଦ ଓ ହିନ୍ଦୁଧର୍ମ, ବିବାହ ବିଚାର ବା ମହାଭାରତ ପ୍ରଭୃତିରେ ଆଲୋଚକଙ୍କ ପ୍ରାରମ୍ଭିକ ପର୍ଯ୍ୟାୟର ହେତୁବାଦୀ ଦୃଷ୍ଟିଭଙ୍ଗୀ ସହିତ ପାଠକଙ୍କ ପରିଚିତିପାଇଁ ଏହି ବିରଳ ରଚନା ଦୁଇଟି ହିତୈଷିଣୀ ପୃଷ୍ଠାରୁ ସଂଗ୍ରହ କରାଗଲା । ଏହି ରଚନା ଦୁଇଟି 'ଶ୍ରୀ—' ଛଦ୍ମନାମରେ ଜଳନ୍ଧର ରଚନା କରିଥିଲେ ।

୧୮୯୫ର ସମ୍ବଲପୁର ହିତୈଷିଣୀରେ ଜଳନ୍ଧରଦେବଙ୍କ 'ଭାରତୀୟ ରମଣୀ' ଓ 'ଜାତିଭେଦ' ଶୀର୍ଷକ ଦୁଇଟି ଆଲୋଚନା ପ୍ରକାଶ ପାଇଥିବାର ଜଣାଯାଏ। ହିତୈଷିଣୀର କିଛି ସଂଖ୍ୟା ନଷ୍ଟ ହୋଇଯାଇଥିବାରୁ 'ଭାରତୀୟ ରମଣୀ' ସଂଗ୍ରହ ହୋଇପାରି ନାହିଁ। 'ଜାତିଭେଦ' ଆଲୋଚନାଟି ସଂଗ୍ରହ କରାଯାଇଛି। 'ବର୍ଣ୍ଣ ଓ ଜାତିବିଚାର' ଏବଂ 'ଶୂଦ୍ର ଜାତି କେଉଁଟା'ରେ ପ୍ରତିଫଳିତ ଜଳନ୍ଧରଙ୍କ ଦୃଷ୍ଟିଭଙ୍ଗୀର ସୃଷ୍ଟି ଉସ ଏହି ଆଲୋଚନାରେ ସହଜଲଭ୍ୟ। ଆଲୋଚନା ପତ୍ରିକା ସମ୍ପର୍କରେ ଦୁଇଟି ବିଜ୍ଞାପନ ସମ୍ବଲପୁର ହିତୈଷିଣୀରେ ଜଳନ୍ଧରଙ୍କ ସ୍ୱାକ୍ଷରରେ ପ୍ରକାଶ ପାଇଥିଲା । ଆଲୋଚନା ମାସିକ ପତ୍ରଟି ୧୯୦୦ ମାର୍ଚ୍ଚ ମାସରୁ ଜଳନ୍ଧରଙ୍କ ସମ୍ପାଦନାରେ ପ୍ରକାଶିତ ହୋଇଥିଲା । ଏହା ଅଳ୍ପ କେତୋଟି ସଂଖ୍ୟା ପରେ ବନ୍ଦ ହୋଇଯାଇଥିଲା । ସମ୍ପ୍ରତି ପତ୍ରିକାଟି ଦୁଷ୍ପ୍ରାପ୍ୟ । ଏଣୁ ଏଥିରେ ପ୍ରକାଶିତ ଜଳନ୍ଧରଙ୍କ ସମ୍ପାଦକୀୟ ଓ ଅନ୍ୟାନ୍ୟ ପ୍ରବନ୍ଧ ସଂଗ୍ରହ ହୋଇପାରି ନାହିଁ । ପ୍ରାଜ୍ଞ ବିଦ୍ୟାଳୟ (୧୯୦୦) ବାମଣ୍ଡାରେ ସ୍ଥାପିତ ଏକ ଅନନ୍ୟ ବିଦ୍ୟାଳୟ । ଏହାର ପରୀକ୍ଷକ ରୂପେ ବିଭିନ୍ନ ଗୁଣୀଜ୍ଞାନୀ ବ୍ୟକ୍ତି ସଚ୍ଚିଦାନନ୍ଦ ଦେବଙ୍କ ଆଗ୍ରହକ୍ରମେ ନିଯୁକ୍ତ ହେଉଥିଲେ । ଜଳନ୍ଧର 'ଅଭିବ୍ୟକ୍ତିବାଦ ଓ ପୃଥିବୀ ଇତିହାସ' ବିଷୟର ପରୀକ୍ଷକ ନିଯୁକ୍ତ ହୋଇ ପ୍ରଶ୍ନପତ୍ର ପ୍ରସ୍ତୁତ କରିଥିଲେ । ସେହି ବିରଳ ପ୍ରଶ୍ନପତ୍ରଟି ପାଠକଙ୍କ ଅବଗତିପାଇଁ ସ୍ଥାନିତ କରାଯାଇଛି । ଶଙ୍ଖପତ୍ରିକାକୁ ମାନସିଂହଙ୍କ ପରେ ଜଳନ୍ଧର ସମ୍ପାଦନା କରିଥିଲେ । ତାଙ୍କର ସମ୍ପାଦକୀୟଗୁଡ଼ିକ ଅପୂର୍ବ ଦୂରଦୃଷ୍ଟିର ସ୍ୱାକ୍ଷର ବହନ କରେ । ସେ ଅମୂଲ୍ୟ ସମ୍ପାଦକୀୟଗୁଡ଼ିକ ବିବିଧ ରଚନା ପର୍ଯ୍ୟାୟରେ ସଙ୍କଳିତ କରାଯାଇଛି ।

ଶଙ୍ଖ ୨ୟ ବର୍ଷ ୩ୟ ସଂଖ୍ୟାଠାରୁ ସମ୍ପାଦନାଭାର ଜଳନ୍ଧର ଗ୍ରହଣ କରନ୍ତି। ଏଠାରେ ସେହି ସମସ୍ତ ସମ୍ପାଦକୀୟ ସ୍ଥାନିତ କରାଯାଇଛି। ତୃତୀୟ ବର୍ଷ ଦ୍ୱାଦଶ ସଂଖ୍ୟାରେ ସୂଚୀରେ ସମ୍ପାଦକୀୟ ରହିଥିଲେ ମଧ୍ୟ ଏହି ସମ୍ପାଦକର ଦୃଷ୍ଟିକୁ ଆସିଥିବା କୌଣସି କପିରେ ସମ୍ପାଦକୀୟ ନାହିଁ। ଏଣୁ ତାହା ସ୍ଥାନିତ ହୋଇ ନାହିଁ। ତୃତୀୟ ବର୍ଷ ଦ୍ୱାଦଶ ସଂଖ୍ୟାଠାରୁ ଏହି ପତ୍ରିକା ପ୍ରକାଶନ ଚିରଦିନପାଇଁ ବନ୍ଦ ରହିଲା।

ଓଡ଼ିଶା ବିଧାନସଭାର ବିଭିନ୍ନ ଆଲୋଚନାରେ ଅଂଶ ଗ୍ରହଣ କରି ଜଳନ୍ଧର ସୁଚିନ୍ତିତ ମନ୍ତବ୍ୟ ପ୍ରଦାନ କରୁଥିଲେ। ତାଙ୍କର ସେହି ଅମୂଲ୍ୟ ମନ୍ତବ୍ୟଗୁଡ଼ିକ ଓଡ଼ିଶା ବିଧାନସଭା proceedings ରୁ ସଂଗ୍ରହ କରି ଏଠାରେ ସଙ୍କଳିତ କରାଗଲା ।

ଜଳନ୍ଧରଙ୍କ ସାମଗ୍ରିକ ପ୍ରବନ୍ଧ କୃତି ପାଠକଙ୍କ ଚକ୍ଷୁ ଅନ୍ତରାଳରେ ଇତସ୍ତତଃ ରହିଯାଇଥିଲା । ସେଗୁଡ଼ିକ ଏକାଠି କରି ପାଠକ ଓ ଗବେଷକଙ୍କ ଅବଗତିପାଇଁ ସଙ୍କଳିତ କରାଗଲା । ପୁରାଣର ପୁନଃ ମୂଲ୍ୟାୟନ ବ୍ୟତିରେକେ ଯେ ବିବିଧ ବିଷୟକ ପ୍ରବନ୍ଧ ରଚନାରେ ଜଳନ୍ଧରଦେବ ସିଦ୍ଧହସ୍ତତାର ବଳିଷ୍ଠ ପ୍ରମାଣ ଏଂସିତ ଗ୍ରନ୍ଥାବଳୀ ।

**ସମ୍ପାଦକ**



# ଜାତିଭେଦ

॥ ୧ ॥

ଜାତିଭେଦର ପ୍ରଥା ଆଜିକାଲିର ଗୋଟିଏ ପ୍ରଧାନ ଆଲୋଚ୍ୟ ବିଷୟ ହୋଇଅଛି । କି ସମ୍ବାଦପତ୍ରରେ, କି ମାସିକ ପତ୍ରିକାରେ, କି ବୟସ୍ୟ ଗୋଷ୍ଠୀରେ ସର୍ବତ୍ର ସର୍ବସମୟରେ ଜାତିଭେଦ ସମ୍ବନ୍ଧରେ ଆନ୍ଦୋଳନ ଆଲୋଚନା ଲାଗିଅଛି । ଜାତିଭେଦ ସପକ୍ଷ ବିପକ୍ଷରେ ଖଣ୍ଡିକେତେ ପୁସ୍ତକ ପୁସ୍ତିକା ମଧ୍ୟ ପ୍ରକାଶିତ ହୋଇଅଛି । ଜାତିଭେଦ ସମ୍ବନ୍ଧରେ ଅଭିଜ୍ଞତା ଲାଭ କରିବା ସକାଶେ ଲୋକମାନେ ସେସବୁ ପୁସ୍ତକ ଆଗ୍ରହପୂର୍ବକ ଅଧ୍ୟୟନ କରୁଥିବା, ସେ ବିଷୟ ନେଇ ତାଙ୍କ ବିତର୍କ କରୁଥିବାର ଦେଖାଯାଏ । ପ୍ରତ୍ୟେକ ବିଷୟର ତତ୍ତ୍ୱାନୁସନ୍ଧାନ କରିବା ବୁଦ୍ଧିମନ୍ତାର କାର୍ଯ୍ୟ । ସୁତରାଂ ଏହାକୁ ଏକ ଶୁଭ ଲକ୍ଷଣ କହିବାକୁ ହେବ ।

ବୋଲାବାହୁଲ୍ୟ ଏହି ପ୍ରବନ୍ଧ କୌଣସି ପ୍ରବନ୍ଧର ପ୍ରତିବାଦ ନୁହଇ ବା ପୋଷକତାରେ ଲିଖିତ ହୋଇ ନାହିଁ । ଜାତିଭେଦ ସପକ୍ଷ ବିପକ୍ଷରେ ଥିବା ଲୋକମାନେ ଯେକୌଣସି ମତେ ନିଜ ନିଜର ପକ୍ଷ ସମର୍ଥନ କରିବାକୁ ପ୍ରବୃତ୍ତ ହେଲେ ସେ ଆଲୋଚନା ଦ୍ୱାରା ସୁଫଳ ନ ହୋଇ କୁଫଳ ଫଳିଥାଏ । ସତ୍ୟ ଆବିଷ୍କାର କରଣାର୍ଥ ନିରପେକ୍ଷ ଭାବରେ ଆଲୋଚନା କରିବା ଶ୍ରେୟସ୍କର । ଅନ୍ୟଥା ଲୋକମାନଙ୍କର ଭ୍ରମଭଞ୍ଜନ ନ ହୋଇ ଜିଗୀଷା ବୃତ୍ତିରେ ଚରିତାର୍ଥତା ସମ୍ପାଦିତ ହୁଏ ମାତ୍ର ଆମ୍ଭେମାନେ ଏପରି ଆନ୍ଦୋଳନ ଆଲୋଚନାକୁ ଅନ୍ତରର ସହିତ ଘୃଣା କରୁଁ । ଆମ୍ଭେ ବୃଥା ବାଗ୍‌ବିତଣ୍ଡା ଏବଂ ଅକାରଣ ବିତର୍କ ଉପସ୍ଥିତ ନ କରି ଜାତିଭେଦ ପ୍ରଥାର ସମ୍ବନ୍ଧେ ଯାହା ଯାହା ଆଲୋଚନା ଅନୁସନ୍ଧାନ କରିବା ଉଚିତ ତାହା ଶାସ୍ତ୍ର ଏବଂ ଯୁକ୍ତିତର୍କ ସାହାଯ୍ୟରେ ପ୍ରକାଶ କରିବାକୁ ପ୍ରବୃତ୍ତ ହେଲୁଁ ।

ହିନ୍ଦୁ ମାତ୍ରେ କହିଥାନ୍ତି ଯେ, ଜାତିଭେଦ ପ୍ରଥା ଜଗତ ସ୍ରଷ୍ଟାଙ୍କ ସୃଷ୍ଟି । ସେ ଆପଣାର ବିଭିନ୍ନ ଅଙ୍ଗରୁ ବ୍ରାହ୍ମଣାଦି ଜାତିକୁ ଜାତ କରିଥିବାରୁ ଉତ୍ପତ୍ତି ସ୍ଥାନ ଭେଦରେ ଜାତିଭେଦର ସୃଷ୍ଟି ହୋଇଅଛି । ଏପରି ସ୍ଥଳେ ସର୍ବାଦୌ ଆଲୋଚ୍ୟ ବିଷୟ ଏହି ଯେ ଜାତିଭେଦ, ଈଶ୍ୱର ସୃଷ୍ଟି କି ନା ?

ଏଥିର ସତ୍ୟାସତ୍ୟ ଅନୁସନ୍ଧାନ କରିବାକୁ ହେଲେ ପୁରାବୃତ୍ତ ସ୍ଥାନୀୟ ବେଦ ପୁରାଣାଦି ଶାସ୍ତ୍ର ଦେଖିବାକୁ ହେବ । ଋଗ୍‌ବେଦର ଦ୍ୱାଦଶ ସୂକ୍ତରେ ଲିଖିତ ଅଛି ଯେ– ବ୍ରାହ୍ମଣୋସ୍ୟ ମୁଖମାସୀତ ବାହୁ ରାଜନ୍ୟଃକୃତାଃଉରୁତଦସ୍ୟଯଦ୍ଵୈଶ୍ୟଃ ପଦ୍ଭ୍ୟାଂ ଶୂଦ୍ରୋ ଅଜାୟତ ।

ଶ୍ରୀମଦ୍ଭାଗବତ ୧୧।୧୭।୧୧ ଶ୍ଳୋକ ଏହି ଯେ

"ବିପ୍ରକ୍ଷତ୍ରିୟ ବିଟ୍ ଶୂଦ୍ରା ମୁଖବାହୁରୁ ପାଦଜାଃ
ବୈରାଜାତ ପୂରୁଷାଜାତା ଯଥାତ୍ମାଚାର ଲକ୍ଷଣଃ ।'

ମନୁସଂହିତାରେ ଲିଖିତ ଅଛି ଯେ–

ଲୋକନାନ୍ତୁ ବିବୃଦ୍ଧ୍ୟର୍ଥଂ ମୁଖବାହୁ ଚା ପାଦତଃ
ବ୍ରାହ୍ମଣଂ କ୍ଷତ୍ରିୟଂ ବୈଶ୍ୟଂ ଶୂଦ୍ରଞ୍ଚ ନିରବର୍ତ୍ତୟତ୍ ।

ମହାଭାରତରେ ଲିଖିତ ଅଛି ଯେ–

ବ୍ରାହ୍ମଣୋ ମୁଖତଃ ସୃଷ୍ଟୋ ବ୍ରାହ୍ମଣୋ ରାଜସତ୍ତମ
ବାହୁଭ୍ୟାଂ କ୍ଷତ୍ରିୟ ସୃଷ୍ଟି ଉରଭ୍ୟଂ ବୈଶ୍ୟଏବଚ ।

ସକଳ ଶାସ୍ତ୍ର ମଧ୍ୟରେ ବେଦ ପ୍ରାଚୀନ ଶାସ୍ତ୍ର; ସୁତରାଂ ଋଗ୍‌ବେଦନ୍ତର୍ଗତ ବିଷୟକୁ ଅଧିକତର ପ୍ରମାଣ୍ୟରୂପେ ଗ୍ରହଣ କରାଯାଇପାରିବ । ବେଦ ରଚନା ଓ ବିଭାଗର ପରେ ମହାଭାରତାଦି ଗ୍ରନ୍ଥ ରଚିତ ଓ ପ୍ରକାଶିତ ହୋଇଅଛି । ଋଗ୍‌ବେଦରେ ବ୍ୟକ୍ତଥିବା ଜାତିଭେଦ ପଦ୍ଧତିକୁ ଅନୁକରଣ କରି ମହାଭାରତାଦି ଗ୍ରନ୍ଥ ପ୍ରଣେତାମାନେ ଜାତିଭେଦ ବିଷୟ ସ୍ୱ ସ୍ୱ ଗ୍ରନ୍ଥରେ ନିବଦ୍ଧ କରିଥିବାର ଅନୁମାନ ଅଯାର୍ଥ ନୁହଇ । ଏପରି ସ୍ଥଳେ ଋଗ୍‌ବେଦ ଲିଖିତ ଜାତିଭେଦ ବିଷୟରେ ଆଲୋଚନାରେ ପ୍ରବୃତ୍ତ ହେବା ଉଚିତ । ଏଥିରେ ଆଲୋଚନାରେ ପ୍ରବୃତ୍ତ ହେଲେ ଦେଖିବାକୁ ହେବ ଯେ, ବେଦ କିପରି ଗ୍ରନ୍ଥ ଏବଂ ତହିଁର ରଚନା କିଏ ଏବଂ କେତେ ଉକ୍ତବେଦ ସୂକ୍ତମାନ ରଚିତ ହୋଇଥିଲା । ଏଥିର ଆଲୋଚନା ବ୍ୟତୀତ ମୂଳ ବିଷୟ ସମ୍ବନ୍ଧେ ପ୍ରକୃତ ଅଭିଜ୍ଞତା ଲାଭ କରାଯାଇ ନ ପାରେ ।

କେତେ ଜଣ ବିଚକ୍ଷଣ ପାଶ୍ଚାତ୍ୟ ପଣ୍ଡିତ କହନ୍ତି ଯେ, ଆଦିମ ଆର୍ଯ୍ୟ ଜାତି ପୁରାକାଳରେ ହିନ୍ଦୁକୁଶ ପର୍ବତର ଉତ୍ତରରେ ଅକଶସ୍ ଓ ଜାକ୍‌ଶାର୍ଟିସ୍ ନଦୀତୀରସ୍ଥ ପ୍ରଦେଶରେ ବାସ କରୁଥିଲେ । ସେମାନେ ଭ୍ରମଣ ପଟୁ ଥିଲେ । ସେମାନେ ନିଜର ଚଞ୍ଚଳତାବଶରୁ ବା ଅନ୍ୟ କୌଣସି କାରଣରୁ ହେଉ ସେମାନଙ୍କ ମଧ୍ୟରୁ ଏକ ଏକ ଦଳ ସମୟେ ସମୟେ ସ୍ୱଦେଶ ତ୍ୟାଗ କରି ଚତୁର୍ଦ୍ଦିଗରେ ଭ୍ରମଣପୂର୍ବକ ନୂତନ ନୂତନ

ଆବାସସ୍ଥାନ ଅନ୍ୱେଷଣ କରୁଥିଲେ । କାଳକ୍ରମେ ଆଧୁନିକ ପଞ୍ଜାବର ଉତ୍ତର ଅଂଶ ଓ କାବୁଲ ଦେଶ ଆର୍ଯ୍ୟଭୂମିର ଅନ୍ତର୍ଗତ ହେଲା । ଆର୍ଯ୍ୟମାନେ ଯେତେବେଳେ ଅତ୍ୟୁନ୍ନତ ଗିରିମଣ୍ଡିତ ବହୁନଦ ପରିଧୌତ ଓ ଶସ୍ୟଶାଳୀ ଶ୍ୟାମଳକ୍ଷେତ୍ରପୂର୍ଣ୍ଣ ଭାରତବର୍ଷରେ ପ୍ରବେଶ କଲେ, ସେତେବେଳେ ଏ ଦେଶ ପ୍ରକୃତିର ଗମ୍ଭୀର ମନୋହର ଭାବ ସକଳ ସନ୍ଦର୍ଶନ କରିବାକୁ ସେମାନଙ୍କ ଚିତ୍ତରେ କବିତ୍ୱ ଶକ୍ତିର ସମଧିକ ଆବିର୍ଭାବ ହେବାକୁ ଲାଗିଲା । ତଦ୍ଦୃଷ୍ଟିରେ ସେମାନେ ମନ୍ତ୍ର ପରେ ମନ୍ତ୍ର ରଚନା କରିବାକୁ ପ୍ରବୃତ୍ତ ହେଲେ । ସେ ସମୟରେ ବର୍ଣ୍ଣମାଳାର ସୃଷ୍ଟି ହୋଇ ନ ଥିବାରୁ ଉକ୍ତ ରଚିତ ମନ୍ତ୍ରମାନ ଲୋକମାନେ ମୁଖସ୍ଥ କରି ରଖୁଥିଲେ । ସେହି ମନ୍ତ୍ରମାନ ଏକ ବ୍ୟକ୍ତି ଅନ୍ୟ ବ୍ୟକ୍ତିଠାରୁ ଶୁଣି କଣ୍ଠସ୍ଥ କରୁଥିଲେ । ଲୋକମାନେ ଶୁଣି ଶୁଣି ଶିକ୍ଷା କରୁଥିବା ହେତୁ ବେଦକୁ ଶ୍ରୁତି ବୋଲାଯାଏ । ପରେ ବର୍ଣ୍ଣମାଳାର ସୃଷ୍ଟି ହେବାରୁ ସମୟେ ସମୟେ ଜଣେ ଜଣେ ପଣ୍ଡିତ ଉଦ୍ୟୋଗୀ ହୋଇ ସ୍ମୃତି ଓ ଲୋକମୁଖରୁ ମନ୍ତ୍ରମାନ ସଂଗ୍ରହ କରି ବର୍ଣ୍ଣିତ ବିଷୟାନୁସାରେ ସେହି ମନ୍ତ୍ରମାନଙ୍କୁ ମଣ୍ଡଳ ଅଧ୍ୟାୟ, ସୂକ୍ତ ପ୍ରଭୃତିରେ ବିଭାଗ କରି ଗ୍ରନ୍ଥାକାରରେ ନିବଦ୍ଧ କରିଯାଇଛନ୍ତି । ଏହି ଋଗ୍‌ବେଦର କୌଣସି ଗୋଟିଏ ସୂକ୍ତ ପାଠ କରିବାକୁ ଗଲେ ଦେଖାଯାଏ ସର୍ବାଗ୍ରରେ ଅମୁକ ଦେବତା, ଅମୁକ ଋଷି, ଅମୁକ ଛନ୍ଦ ପ୍ରଭୃତିର ନିର୍ଦ୍ଦେଶ କରାଯାଇଅଛି । ଏହାର ତାତ୍ପର୍ଯ୍ୟ ଏହି ଯେ ସଂଗ୍ରହକର୍ତ୍ତା ସଂଗ୍ରହ କରିବା ସମୟରେ ଯେଉଁ ଋଷି ଯେଉଁ ମନ୍ତ୍ରର ରଚୟିତା ବୋଲି ଶୁଣି ଅଛନ୍ତି ସେହି ମନ୍ତ୍ରର ଆଦ୍ୟରେ ସେହି ନାମ ନିର୍ଦ୍ଦେଶ କରିଅଛନ୍ତି । ଋଗ୍‌ବେଦ କେତେଗୁଡ଼ିଏ ମନ୍ତ୍ରର ସମଷ୍ଟି ମାତ୍ର । ଉକ୍ତ ମନ୍ତ୍ର ନିଚୟ ଛନ୍ଦୋବଦ୍ଧ ଗୀତପରି । ଉକ୍ତମନ୍ତ୍ରମାନ ଏକକାଳରେ ରଚିତ ହୋଇ ନାହିଁ । କାହାରି କାହାରି ବିଶ୍ୱାସ ବେଦ ଈଶ୍ୱରଙ୍କ ନିଶ୍ୱାସ ସମ୍ଭୂତ ବା ଈଶ୍ୱର ରଚିତ କିନ୍ତୁ ଏ ବିଶ୍ୱାସ ବା ଅନୁମାନ ଯଥାର୍ଥ ନୁହଇ କାରଣ ମନ୍ତ୍ରମାନଙ୍କର ଭାଷା, ବର୍ଣ୍ଣନୀୟ ବିଷୟ, ବର୍ଣ୍ଣିତ ସମାଜର ଛବି ପ୍ରଭୃତି ଦେଖିଲେ ତାହା ବିଭିନ୍ନ ବ୍ୟକ୍ତିଙ୍କଦ୍ୱାରା ରଚିତ ହୋଇଥିବାର ଜଣାଯାଏ । ମହାମୁନି ସୁଶ୍ରୁତ କହିଅଛନ୍ତି ଋଷିବଚନାଚ୍ଚ । ଋଷି ବଚନଂ ହି ବେଦଃ ।

ଶ୍ରୁତି, ସ୍ମୃତି ଉଭୟ ଋଷିପ୍ରଣୀତ ଏଥିରେ କିଛିମାତ୍ର ସନ୍ଦେହ ନାହିଁ । ଭଗବାନ ଜୈମିନି ସ୍ୱକୃତ 'ମୀମାଂସା ଦର୍ଶନ'ରେ ଅଙ୍ଗୀକାର କରିଅଛନ୍ତି ଯେ ଶ୍ରୁତି ଓ ସ୍ମୃତି ଏତଦୁଭୟର କର୍ତ୍ତା ଏକ, ଅର୍ଥାତ୍ ଉଭୟ ଋଷି ପ୍ରଣୀତ । ଅତଏବ ବେଦ ଈଶ୍ୱରଙ୍କର ଶ୍ୱାସସମ୍ଭୂତ ନୁହଇ ।

'ସଙ୍ଗୀତ ସାଗର', 'ସଙ୍ଗୀତ ସାର' ଓ 'ଜଣାଣ ସଂଗ୍ରହ'ରେ ଯେପରି ନାନା କବି କର୍ତ୍ତୃକ ବିଭିନ୍ନ ସମୟରେ ରଚିତ କବିତା ସନ୍ନିବେଶିତ ହୋଇଅଛି । ବେଦରେ ସେହିପରି ନାନା ଋଷିକର୍ତ୍ତୃକ ବିଭିନ୍ନ ସମୟରେ ରଚିତ ମନ୍ତ୍ରମାନ ସନ୍ନିବେଶିତ ହୋଇଅଛି । ସୁତରାଂ ବେଦକୁ ସୃଷ୍ଟି ଆଦ୍ୟ ସମୟର ଗ୍ରନ୍ଥ ବୋଲାଯାଇ ନ ପାରେ । ମାନବ ସୃଷ୍ଟିର ଅଳ୍ପ ବା ଅନେକ ସମୟ ପରେ ବେଦ ରଚିତ ବା ଲିପିବଦ୍ଧ ହୋଇଅଛି । ସେ ଯାହାହେଉ ବର୍ତ୍ତମାନ ଋଗ୍‌ବେଦାନ୍ତର୍ଗତ ପୁରୁଷ ସୂକ୍ତରେ ଯେତେବେଳେ ଜାତିଭେଦର ଉଲ୍ଲେଖ ଅଛି ତେତେବେଳେ ଜାତିଭେଦ ପ୍ରଥା ସୃଷ୍ଟି ଆଦ୍ୟରୁ ବା ଅତି ପ୍ରାଚୀନ କାଳରୁ ଚଳି ଆସୁଥିବାର ସିଦ୍ଧାନ୍ତ କରିବାକୁ ହେବ । ଏ ସମ୍ବନ୍ଧରେ ଆମ୍ଭମାନଙ୍କ ବକ୍ତବ୍ୟ ଏହି ଯେ ଋଗ୍ ବେଦାନ୍ତର୍ଗତ ଉଲ୍ଲିଖିତ ସୂକ୍ତଟିର ରଚନା ଆଧୁନିକ ବୋଲି ସ୍ୱଦେଶୀ, ବିଦେଶୀ, ବହୁଦର୍ଶୀ ପଣ୍ଡିତମାନେ ମତବ୍ୟକ୍ତ କରିଅଛନ୍ତି । ଆମ୍ଭେମାନେ ସେମାନଙ୍କ କଥାରେ ଅବିଶ୍ୱାସ କରିବାକୁ ଅକ୍ଷମ ହୋଇଅଛୁଁ । ଆମ୍ଭେମାନେ ଉକ୍ତ ସୂକ୍ତର କେତେକ ଅଂଶ ଏହି ପ୍ରବନ୍ଧର ଆଦ୍ୟରେ ଉଲ୍ଲେଖ କରୁଅଛୁଁ । ତାହା ପାଠକଲେ ସାମାନ୍ୟ ସଂସ୍କୃତ ଜାଣିଥିବା ଲୋକ ବୁଝିପାରିବେ ଯେ ତହିଁର ଭାଷା ଆଧୁନିକ ସଂସ୍କୃତରୁ ପୃଥକ ନୁହଇ କିନ୍ତୁ ଋଗ୍‌ବେଦାନ୍ତର୍ଗତ ଅନ୍ୟାନ୍ୟ ସୂକ୍ତର ଭାଷା ଆଧୁନିକ ସଂସ୍କୃତର ଅନୁଯାୟୀ ନୁହେଁ । ଟୀକାକାରମାନଙ୍କ ସାହାଯ୍ୟରେ ମଧ ସେସବୁର ଅର୍ଥବୋଧ ହେବା ଦୁଷ୍କର ହୋଇଉଠେ । ତାହାର ବ୍ୟାକରଣ ବିଭିନ୍ନ ଏବଂ ତହିଁର ଅଧିକାଂଶ ଶବ୍ଦ ବର୍ତ୍ତମାନ ସମୟରେ ଅପ୍ରଚଳିତ । ଆଧୁନିକ ସଂସ୍କୃତଜ୍ଞମାନେ ଟୀକାକାରମାନଙ୍କର ସାହାଯ୍ୟ ବ୍ୟତୀତ ଋଗ୍‌ବେଦାନ୍ତର୍ଗତ ମନ୍ତ୍ରମାନଙ୍କର ଅର୍ଥଗ୍ରହଣ କରିପାରିବେ ନାହିଁ କିନ୍ତୁ ପୁରୁଷସୂକ୍ତର ରଚନା ଓ ଭାଷା ଆଧୁନିକ ସଂସ୍କୃତର ନିୟମାନୁଯାୟୀ ସୁତରାଂ ଏହି ପାର୍ଥକ୍ୟ ଦୃଷ୍ଟିରେ ଉକ୍ତ ସୂକ୍ତଟି ଅପରାପର ମନ୍ତ୍ର ରଚିତ ହେବାର ଅନେକ ପରେ ରଚିତ ହୋଇଥିବାର ଅନୁମାନ କରାଯାଇପାରେ । ମୋକ୍‌ସମୁଲାର ପ୍ରଭୃତି ପ୍ରତୀଚ୍ୟ ପଣ୍ଡିତମାନେ ଯେଉଁମାନେ ଋଗ୍‌ବେଦ ମୁଦ୍ରିତ କରିଅଛନ୍ତି ଏବଂ ସକଳ ବେଦବେଦାଙ୍ଗର ଆଲୋଚନାରେ ନିରନ୍ତର ବ୍ୟାପୃତ ଅଛନ୍ତି ସେମାନେ ମଧ ପ୍ରମାଣ କରିଅଛନ୍ତି ଯେ ଋଗ୍‌ବେଦର ଉକ୍ତ ଅଂଶ ଅନେକ ପରେ ରଚିତ ହୋଇ ଋଗ୍‌ବେଦରେ ସନ୍ନିବେଶିତ ହୋଇଅଛି । ଉକ୍ତ ପୁରୁଷସୂକ୍ତରୁ ପ୍ରକାଶ ପାଉଅଛି ଯେ ଦେବଯଜ୍ଞରୁ ଋଗ୍‌ବେଦ ଓ ସାମବେଦ ପ୍ରସୂତ ହେଲା । ଏତଦ୍ୱାରା ଉକ୍ତ ପଣ୍ଡିତମାନଙ୍କର ସିଦ୍ଧାନ୍ତ

ସମର୍ଥିତ ନ ହୋଇ ଋଗ୍‌ବେଦ ନାମକରଣ ପରେ ଉକ୍ତ ସୂକ୍ତ ରଚିତ ହେବାର ସୁସ୍ପଷ୍ଟ ପ୍ରାମାଣିତ ହେଲା । ମନ୍ୱାଦି ଗ୍ରନ୍ଥ ଏବଂ ମହାଭାରତାଦିରେ ଏହି ସୂକ୍ତର ଉଲ୍ଲେଖ ଏବଂ ଏହି ସୂକ୍ତର ଲିଖିତ ଜାତିସୃଷ୍ଟିର ବିବରଣ ପ୍ରତିଧ୍ୱନିତ ହୋଇଥିବାରୁ ଅନ୍ୟାନ୍ୟ ଗ୍ରନ୍ଥ ରଚନା ପୂର୍ବେ ଉକ୍ତ ସୂକ୍ତ ରଚିତ ହୋଇ ଋଗ୍‌ବେଦରେ ସନ୍ନିବେଶିତ ହୋଇଅଛି ବୋଲିବାକୁ ହେବ ।

ବେଦମନ୍ତ୍ର ପାଠ କଲେ ଆଦିମ ଭାରତ ସମାଜର ଆଚାର ବ୍ୟବହାର, କୃଷି, ଶିଳ୍ପ, ବାଣିଜ୍ୟ ପ୍ରଭୃତି ଅନେକ ବିଷୟରେ ଅଭିଜ୍ଞତା ଲାଭ ହୁଏ । ଯେଉଁ ଋଗ୍‌ବେଦରେ ପ୍ରାଚୀନ ସମାଜର ଏତେ କଥାର ବିଶଦ ଉଲ୍ଲେଖ ହୋଇଅଛି ସେହି ଋଗ୍‌ବେଦରେ ଏକମାତ୍ର ପୁରୁଷ ସୂକ୍ତ ଛଡ଼ା ଜାତିଭେଦ ସମ୍ବନ୍ଧେ ଅନ୍ୟତ୍ର କୌଣସି କଥାର ଉଲ୍ଲେଖ ନାହିଁ । ଉକ୍ତ ସୂକ୍ତ ଯେ ପରେ ରଚିତ ଓ ସନ୍ନିବେଶିତ ହୋଇଅଛି ଏଥିରେ ସନ୍ଦେହ କରିବାର କାରଣ ନାହିଁ । କେବଳ ଋଗ୍‌ବେଦରେ ଯେ ପ୍ରକ୍ଷିପ୍ତ ହୋଇଅଛି ଏହା ନୁହେଁ, ସ୍ମୃତି ପୁରାଣାଦିରେ ମଧ୍ୟ ନୂତନ ରଚନା ସନ୍ନିବେଶିତ ହେଉଥିବାର ଉଦାହରଣ ବିରଳ ନୁହଇ । ବିଚକ୍ଷଣ ପଣ୍ଡିତମାନଙ୍କକୃତି ସ୍ମୃତି ପୁରାଣାଦି ଗ୍ରନ୍ଥମାନଙ୍କର ସମାଲୋଚନା ପାଠକଲେ ସେସବୁ ଗ୍ରନ୍ଥରେ ନୂତନ ରଚନା ସନ୍ନିବେଶିତ ହେଉଥିବାର ବିଶ୍ୱାସଯୋଗ୍ୟ ଉଦାହରଣ ମିଳିପାରିବ ।

ଋଗ୍‌ବେଦାନ୍ତର୍ଗତ ପୁରୁଷସୂକ୍ତରେ ଚାରି ଜାତିର ଉତ୍ପତ୍ତି ବିବରଣ ଥିଲେ ହେଁ ଅନ୍ୟାନ୍ୟ ସୂକ୍ତମାନଙ୍କରେ ଆର୍ଯ୍ୟ ଓ ଦସ୍ୟୁ ଏ ଦୁଇ ଶ୍ରେଣୀ ଉଲ୍ଲେଖ ଦେଖାଯାଏ । ଯେବେ ତେତେବେଳେ ଚାରି ଜାତିର ସୃଷ୍ଟି ହୋଇଥାନ୍ତା ତେବେ ଋଗ୍‌ବେଦ ବିଭିନ୍ନ ସ୍ଥାନରେ ଉକ୍ତ ଚାରି ଜାତିର ବିଷୟ ଅବଶ୍ୟ ଉଲ୍ଲେଖ ହୋଇଥାନ୍ତା । କିନ୍ତୁ ତାହା ହୋଇ ନାହିଁ । ବର୍ତ୍ତମାନ ପୁରୁଷ ସୂକ୍ତ ଲିଖିତ ଜାତିସୃଷ୍ଟିର ବିଷୟ ଆଲୋଚନାରେ ପ୍ରବୃତ୍ତ ହେଉଅଛୁଁ । ପାଠକମାନେ ଉକ୍ତ ସୂକ୍ତର ଉଦ୍ଧୃତାଂଶ ପାଠକରି ହୁଏତ ବିଶ୍ୱାସ କରି ଅଛନ୍ତି ଯେ ବ୍ରାହ୍ମଣାଦି ଜାତି ଈଶ୍ୱରଙ୍କର ବିଭିନ୍ନ ଅଙ୍ଗଜାତ କିନ୍ତୁ ବାସ୍ତବରେ ତାହା ନୁହେଁ । ଉକ୍ତ ସୂକ୍ତଟି (ବେଦ ବିଭାଗ ପରେ ସ୍ମୃତି ପୁରାଣାଦି ରଚନା ପୂର୍ବରୁ) ରୂପକ ଛନ୍ଦରେ ବର୍ଣ୍ଣିତ ହୋଇଅଛି । ଏହା ବେଦ ଭାଷ୍ୟକାରମାନେ ଏବଂ ବେଦ ବ୍ୟାଖ୍ୟାନ ସ୍ୱରୂପ ନିରକ୍ତାଦି ଗ୍ରନ୍ଥ ପ୍ରଣେତା ଯାସ୍କ ସ୍ପଷ୍ଟାକ୍ଷରରେ ନିର୍ଦ୍ଦେଶ କରିଯାଇଅଛନ୍ତି ।

୧୧ଶ ମନ୍ତ୍ରରେ ଲିଖିତ ଅଛି ଯେ ''ଦେହାଭିମାନୀ ପୁରୁଷଙ୍କୁ ଯେତେବେଳେ ଯଜ୍ଞରେ ପଶୁ ରୂପରେ ସଙ୍କଳ୍ପକରି ବଳି ଦିଆଯାଇଥିଲା । ତେତେବେଳେ ତାଙ୍କ ଦେହର ଭିନ୍ନ ଭିନ୍ନ ଅଂଶକୁ କିପରି କଳ୍ପନା କରାଯାଇଥିଲା । ଅର୍ଥାତ୍ କେଉଁ ଅଂଶକୁ ମୁଖ, କେଉଁ ଅଂଶକୁ ବାହୁ, କେଉଁ ଅଂଶକୁ ଉରୁ, କେଉଁ ଅଂଶକୁ ପାଦରୂପେ ବର୍ଣ୍ଣନା କରାଯାଇଥିଲା ?'' ୧୨ଶଠାରୁ ୧୪ଶ ମନ୍ତ୍ର ପର୍ଯ୍ୟନ୍ତ ୧୧ଶ ମନ୍ତ୍ରୋକ୍ତ ପ୍ରଶ୍ନର ଉତ୍ତର ବିବୃତ୍ତ ହୋଇଅଛି । ତହିଁରୁ ଜଣାଯାଏ ଯେ ବ୍ରାହ୍ମଣଙ୍କୁ ଏହି ପୁରୁଷର ମୁଖ ରୂପରେ, କ୍ଷତ୍ରିୟକୁ ବାହୁ ରୂପରେ ଏବଂ ଶୂଦ୍ରକୁ ପଦରୂପରେ କଳ୍ପନା କରାଯାଇଥିଲା । କିନ୍ତୁ ଉକ୍ତ ଋକ୍‌ରେ ଅଛି ଯେ 'ପଦ୍‌ଭ୍ୟାଂ ଶୂଦ୍ରୋ ଅଜାୟତ' । ଏହି 'ଅଜାୟତ' ଶବ୍ଦର ସ୍ପଷ୍ଟ ପ୍ରୟୋଗ ହେତୁରୁ ଏପରି ଅର୍ଥ କରାଯାଇପାରେ ଯେ ଶୂଦ୍ର ସେହି ପୁରୁଷର ପଦରୁ ଉତ୍ପନ୍ନ ହେଲେ । ଶୂଦ୍ର ଯେବେ ପଦରୁ ଉତ୍ପତ୍ତି ହେବାର ସ୍ୱୀକାର କରାଯାଏ ତେବେ ଅନ୍ୟ ଜାତିତ୍ରୟ ଅନ୍ୟାନ୍ୟ ଅଙ୍ଗରୁ ଜାତ ହୋଇଥିବାର ଅବଶ୍ୟ ଅଙ୍ଗୀକାର କରିବାକୁ ହେବ । କିନ୍ତୁ ଉକ୍ତ ଜାତିମାନେ ବାସ୍ତବରେ ବିଭିନ୍ନ ଅଙ୍ଗଜାତ ନୁହନ୍ତି । ଉକ୍ତ ଚାରି ଜାତି ଯାହାଙ୍କ ଅଙ୍ଗଜାତ ବୋଲି ଅନୁମାନ କରାଯାଉଅଛି ସେ ବାସ୍ତବରେ ଅଶରୀରୀ ଶରୀର ରୂପକ ଛଳରେ କଳ୍ପନା ମାତ୍ର । ଏହି ଅଶରୀରୀ ପୁରୁଷ ସ୍ଥାନାନ୍ତରରେ କି ଭାବରେ ବର୍ଣ୍ଣିତ ହୋଇଅଛନ୍ତି ତାହା ଅବଗତ ହେଲେ ସମୁଦାୟ ସଂଶୟ ଅପନୋଦିତ ହେବ । ସେ ଅଂଶ ନିମ୍ନରେ ଉଦ୍ଧୃତ କରି ଦେଉଅଛୁଁ ଯଥା–

'ତଂହି ବିଶ୍ୱତୋ ମୁଖ ବିଶ୍ୱତେ ବାହୁର୍ ତ ବିଶ୍ୱସ୍ତପାତ୍' । ଇତ୍ୟାଦି 'ହେ ଭଗବାନ ! ଆପଣଙ୍କର ମୁଖ ବିଶ୍ୱମୟ ବା ଏହି ବିଶ୍ୱ ହିଁ ଆପଣଙ୍କର ମୁଖ, ବିଶ୍ୱହିଁ ଆପଣଙ୍କର ପାଦ । ଆପଣ ସର୍ବବ୍ୟାପକ, ବିଶ୍ୱତୋମୁଖ, ସର୍ବମୟ ଇତ୍ୟାଦି । ଏ ସବୁ ବିଷୟ ଆଲୋଚନା କଲେ ତାଙ୍କର ବିଭିନ୍ନ ଅଙ୍ଗରୁ ଚାରି ଜାତି ସୃଷ୍ଟି ହୋଇଥିବାର ବିଶ୍ୱାସ କରାଯାଇ ନ ପାରେ । ପୂର୍ବମନ୍ତ୍ରରେ ''କେଉଁ ଅଂଶକୁ ପାଦ ରୂପେ କଳ୍ପନା କରାଯାଇଥିଲା ।'' ବୋଲି ପ୍ରଶ୍ନ ହୋଇଥିବା ଏହି ମନ୍ତ୍ରର ଆଦିମ ଭାଗତ୍ରୟରେ ବ୍ରାହ୍ମଣାଦି ବର୍ଣ୍ଣତ୍ରୟ ମୁଖାଦିରୂପେ କଳ୍ପନୀୟ ସ୍ପଷ୍ଟୋକ୍ତି ଥିବାରୁ ଏହି ଶେଷ ଭାଗରେ ଅର୍ଥାତ୍ ପାଦଦ୍ୱୟରୁ ଶୂଦ୍ରର ଉତ୍ପତ୍ତି ଏହି ଅଂଶର, ଉପରୋକ୍ତ ଅନୁସାରେ ବ୍ୟାଖ୍ୟା କରିବା ଉଚିତ, ସୁତରାଂ 'ଶୂଦ୍ରଜାତି ତାଙ୍କର ପାଦରୂପରେ କଳ୍ପିତହେଲେ' ଏହାହିଁ ପ୍ରକୃତ ଅର୍ଥ ବୋଲି ବୁଝିବାକୁ ହେବ । ଅତଏବ

'ବ୍ରାହ୍ମଣୋସ୍ୟ ମୁଖମାସୀତ୍ ।' ଇତ୍ୟାଦି ମନ୍ତ୍ରରେ ରୂପକଛଳରେ ବ୍ରାହ୍ମଣାଦି ବର୍ଣ୍ଣର କ୍ରମୋତ୍କର୍ଷ ବିଧାନର ବର୍ଣ୍ଣନା କରାଯାଇଅଛି । କଦାପି ତଦ୍ ସୃଜନର କଥା ବୋଲାଯାଇ ନାହିଁ

ବୁଝିବାକୁ ହେବ । ଏହା ଯେ ଆମ୍ଭମାନଙ୍କର ମନଗଢ଼ା ସିଦ୍ଧାନ୍ତ ଏହା କେହି ଯେପରି ମନରେ ନ କରନ୍ତି ଆମ୍ଭମାନଙ୍କର ଏହି ସିଦ୍ଧାନ୍ତ ସପକ୍ଷରେ ନିମ୍ନୋକ୍ତ ପ୍ରମାଣ ରହିଅଛି । ଯଥା-

'ଯସ୍ମାଦେତେ ମୁଖ୍ୟାସ୍ତସ୍ମାନ୍ମୁଖତୋହ୍ୟ ସୃଜନ୍ତ' । ଇତ୍ୟାଦି (ଶତପଥ ବ୍ରାହ୍ମଣ) ଅର୍ଥାତ୍ ମୁଖ୍ୟ ବା ପ୍ରଧାନ ବୋଲି ମୁଖରୁ ସୃଷ୍ଟ ହୋଇଥିବାର ଉକ୍ତ ହୋଇଅଛି । ମୁଖରୁ ନିର୍ଗତ ବୋଲି କଦାପି ଏପରି ଉକ୍ତ ହୋଇ ନାହିଁ । ତାହା ଯଦ୍ୟପି ହୋଇଥାନ୍ତା ତେବେ ଦକ୍ଷ ପ୍ରଜାପତି ବ୍ରହ୍ମାଙ୍କର ଅଙ୍ଗୁଷ୍ଠରୁ ଉତ୍ପନ୍ନ ହୋଇ କି ପ୍ରକାର ଉତ୍କୃଷ୍ଟ ବର୍ଣ୍ଣ ବ୍ରାହ୍ମଣ ମଧ୍ୟରେ ପରିଗଣିତ ହୋଇଥିଲେ ? ବାହୁର୍ବୈବଳଂ ବାହୂ ର୍ବୈବୀର୍ଯ୍ୟଂ (ଇତି ଶତପଥେ) । ବାହୁ ଶବ୍ଦରେ ବଳବୀର୍ଯ୍ୟ ବୁଝାଉଅଛି । ସୁତରାଂ ବଳବୀର୍ଯ୍ୟାଦି ଯେଉଁମାନଙ୍କ ମଧ୍ୟରେ ଅଧିକ ସେହିମାନେ କ୍ଷତ୍ରିୟ । ମୂଳମନ୍ତ୍ରରେ ବାହୁ ଦ୍ୱିବଚନ ଏବଂ କୃତ ଏକବଚନ, ସୁତରାଂ କୃତସହିତ ବାହୁର ଯୋଗ ହୋଇପାରେ ନାହିଁ । 'ରାଜନ୍ୟ' ସହିତ ତହିଁର ଅନ୍ୱୟ ହେବ ଅର୍ଥାତ୍ ରାଜନ୍ୟକୁ ବାହୁଦ୍ୱୟ କରାଯାଇଥିଲା-ବାହୁଦ୍ୱୟ ରାଜନ୍ୟ କରାଯାଇଥିଲା- ଏପରି ନୁହେଁ । ଆଉ କଟିଦେଶର ଅଧୋଭାଗ ଏବଂ ଜାନୁର ଉପରିଭାଗ ଏତଦୁଭୟର ମଧ୍ୟବର୍ତ୍ତୀ ସ୍ଥାନର ନାମ ଊରୁ । ଯେଉଁମାନେ ଏହି ଊରୁର ବଳାନୁସାରେ ଦେଶଦେଶାନ୍ତର ଗତାୟତ କରି ଇଷ୍ଟାଦି ଲାଭ କରନ୍ତି ସେମାନେ ବୈଶ୍ୟ । ପରିଶେଷରେ ଯେଉଁମାନେ ପଦ ବା ନୀଚ ଅଙ୍ଗପରି ମୂର୍ଖତ୍ୱାଦି ସ୍ୱଭାବବାନ ସେହିମାନେ ଶୂଦ୍ର । ଅତଏବ ସୁସ୍ପଷ୍ଟ ପ୍ରତିପନ୍ନ ହେଲା ଯେ ଜାତିଭେଦ ପ୍ରଥା ଈଶ୍ୱର ସୃଷ୍ଟ ନୁହେଁ ।

॥ ୨ ॥

ପ୍ରଥମ ପ୍ରବନ୍ଧରେ ପ୍ରତିପନ୍ନ କରିଅଛୁଁ ଜାତିଭେଦ ଈଶ୍ୱରସୃଷ୍ଟ ନୁହେଁ । ବର୍ତ୍ତମାନ ଆଲୋଚନା କରିବାକୁ ହେବ ଯେ ଜାତିଭେଦ ପ୍ରଥା କେବେ କିପରି ଭାବରେ ସୃଷ୍ଟ ହେଲା ।

ଜାତିଭେଦ ପ୍ରଥା ଯେ ଜଗତସୃଷ୍ଟି କାଳରେ ନ ଥିଲା ଏହା ନିମ୍ନଲିଖିତ ବଚନଦ୍ୱାରା ପ୍ରତିପନ୍ନ ହେବ । ୯ମସ୍କନ୍ଧ ଭାଗବତର ୧୪ ଶ ଅଧ୍ୟାୟରେ ଭଗବାନ୍ ଶୁକଦେବ ପରୀକ୍ଷିତଙ୍କୁ କହିଥିଲେ–

''ଏକ ଏବ ପୁରାବେଦଃ ପ୍ରଣବଃ ସର୍ବ ବାଙ୍ମୟଃ ।
ଦେବୋ ନାରାୟଣୋନାନ୍ୟ ଏକୋଗ୍ନି ବର୍ଣ୍ଣ ଏବଚ ।

ମହାରାଜା, ପୂର୍ବେ- ସତ୍ୟଯୁଗରେ ସର୍ବପ୍ରକାର ବାକ୍ୟର ବୀଜସ୍ୱରୂପ ପ୍ରଣବ ହିଁ ଏକମାତ୍ର ବେଦ ଥିଲା ଏକମାତ୍ର ନାରାୟଣ ହିଁ ଦେବତା ଥିଲେ (ଯାଗଯଜ୍ଞ କିଛି ନ ଥିବାରୁ) ଲୌକିକ ଅଗ୍ନି ହିଁ ଏକମାତ୍ର ଅଗ୍ନି ଥିଲା । ଏବଂ ବର୍ଣ୍ଣଭେଦ ନ ଥିବାରୁ ମନୁଷ୍ୟମାନଙ୍କ ମଧ୍ୟରେ ଗୋଟିଏ ମାତ୍ର ବର୍ଣ୍ଣ ବା ଜାତି ଥିଲା । ବର୍ତ୍ତମାନ ଜିଜ୍ଞାସ୍ୟ, ସତ୍ୟଯୁଗରେ ଯେବେ ଜାତିଭେଦ ନ ଥିଲା ତେବେ କେଉଁ ସମୟରେ ଉକ୍ତ ପ୍ରଥା ପ୍ରଚଳିତ ହେଲା ? ଏଥିର ଅନୁସନ୍ଧାନରେ ପ୍ରବୃତ୍ତ ହେଲେ ଦେଖାଯାଏ ଯେ ତ୍ରେତାଯୁଗରେ ଏଥିରେ ପ୍ରମାଣ ରହିଅଛି, ଯଥା-

''ତ୍ରେତାମୁଖେ ମହାଭାଗ ପ୍ରାଣାନ୍ମେ ହୃଦୟାତ୍ରୟୀ
ବିଦ୍ୟାପ୍ରାଦୁରଭୁତସ୍ୟା ଅହମାସଂ ତ୍ରିବୃନ୍ମଖଃ
ବିପ୍ର କ୍ଷତ୍ରିୟ ବିଟ୍‌ଶୂଦ୍ରା ମୁଖବାହୁରୁ ପାଦଜାଃ
ବୈରାଜାତ୍ ପୁରୁଷାଜ୍ଜାତାଯ ଆତ୍ମାଚାର ଲକ୍ଷଣାଃ''

''ହେ ମହାଭାଗ, ତ୍ରେତାର ପ୍ରାରମ୍ଭରେ ଆମ୍ଭର ହୃଦୟରୁ ପ୍ରାଣକୁ ନିମିତ୍ତ କରି ତ୍ରୟୀ ଅର୍ଥାତ୍ ବେଦବିଦ୍ୟା ପ୍ରାଦୁର୍ଭୂତ ହୁଏ । ତହିଁରୁ ଆମ୍ଭେ ତ୍ରିରୂପ (ହୋତା, ଅଧ୍ୱର୍ଯ୍ୟୁ ଓ ଉଦ୍‌ଗାତା) ଯଜ୍ଞ ସ୍ୱରୂପ ହେଲୁଁ । ସ୍ୱୀୟ ସ୍ୱୀୟ ଆଚାର ଓ ଲକ୍ଷଣ ବିଶିଷ୍ଟ ବ୍ରାହ୍ମଣାଦି ଜାଣି ଚତୁଷ୍ଟୟ ବିରାଜ ପୁରୁଷର ମୁଖ, ବାହୁ, ଊରୁ ଓ ପାଦରୁ ଉତ୍ପନ୍ନ ହୋଇଥିଲେ ।''

ଅତଏବ ସିଦ୍ଧାନ୍ତ ହେଲା ଯେ ସତ୍ୟଯୁଗରେ ଜାତିଭେଦ ନ ଥିଲା, ତ୍ରେତାଯୁଗରେ- ବେଦରଚନା ପରେ ଜାତିଭେଦ ପ୍ରଥାର ସୃଷ୍ଟି ହେଲା । ସଂସାରରେ ସୃଷ୍ଟି ବିଭିନ୍ନ ଜାତିର ପଶୁପକ୍ଷୀ ମଧ୍ୟରେ ଆକାରଗତ ପାର୍ଥକ୍ୟ ରହିଅଛି । ବ୍ରାହ୍ମଣାଦି ଜାତି ଯଦ୍ୟପି ଈଶ୍ୱର ସୃଷ୍ଟି ହୋଇଥାନ୍ତେ– ଈଶ୍ୱରଙ୍କ ଦ୍ୱାରା ଯତ୍ୟପି ଜାତିଭେଦ ପ୍ରଥା ପ୍ରବର୍ତ୍ତିତ ହୋଇଥାନ୍ତା ତେବେ ପ୍ରତ୍ୟେକ ଜାତିର ସ୍ୱାତନ୍ତ୍ର୍ୟବୋଧକ ସୁସ୍ପଷ୍ଟ ନିଦର୍ଶନ ରହିଥାନ୍ତା । ଏକ ସମୟରେ ମହର୍ଷି ଭରଦ୍ୱାଜ, ଭଗବାନ୍ ଭୃଗୁଙ୍କୁ ଜାତିଭେଦ ସମ୍ବନ୍ଧରେ ପ୍ରଶ୍ନ କରିଥିଲେ ଯେ–

''କାମକ୍ରୋଧୌ ଭୟଂ ଲୋଭଃ ଶୋକଶ୍ଚିନ୍ତା କ୍ଷୁଧାଶ୍ରମଃ
ସର୍ବେଷାଂନଃ ପ୍ରଭବତି କସ୍ମାଦ୍‌ବର୍ଣ୍ଣୋ ବିଭଜ୍ୟତେ ।
ସେଦ୍‌ମୂତ୍ର ପୁରୀଷାଣି ଶ୍ଳେଷ୍ମା ପିତ୍ତଂଚ ଶୋଣିତଂ
ସମଂସ୍ୟନ୍ଦତି ସର୍ବେଷାଂ କସ୍ମାଦବର୍ଣ୍ଣୋ ବିଭଜ୍ୟତେ ।''
(ମ, ଭାମୋ, ଧ, ୧୪୦/୭୮)

''ହେ ଭଗବାନ୍ ! ଯେତେବେଳେ ଆମ୍ଭ ସମସ୍ତଙ୍କୁ ସମଭାବରେ କାମ କ୍ରୋଧ, ଲୋଭ, ଶୋକ, ଚିନ୍ତା, କ୍ଷୁଧା ଓ ପରିଶ୍ରମ ପ୍ରଭାବରେ କାତର ହେବାକୁ ପଡ଼େ ଏବଂ ସମସ୍ତଙ୍କ ଦେହରୁ ଯେତେବେଳେ ସମଭାବରେ ସ୍ୱେଦ, ମୂତ୍ର, ପୁରୀଷ, ଶ୍ଳେଷ୍ମା, ପିତ୍ତ ଓ ଶୋଣିତ ନିଃସୃତ ହୋଇଥାଏ, ତେତେବେଳେ

ବ୍ରାହ୍ମଣ କ୍ଷତ୍ରିୟାଦି ରୂପ ବର୍ଣ୍ଣ ବିଭାଗ କିପରି ସମ୍ଭବ ବୋଧହୁଏ ?''

ଏତଦୁତ୍ତରରେ ଭଗବାନ ଭୃଗୁ କହିଅଛନ୍ତି ଯେ
ନିବିଶେଷୋଽସ୍ତି ବର୍ଣ୍ଣନାଂ ସର୍ବଂ ବ୍ରାହ୍ମ ମିଦଂ ଜଗତ୍
ବ୍ରାହ୍ମଣାଂ ପୂର୍ବ ସୃଷ୍ଟଂହି କର୍ମଭି ବର୍ଣ୍ଣତାଂ ଗତଂ ।
(ମ.ଭା, ମୋ, ଧ, ୧୪।୧୦)

''ହେ ତପୋଧନ ! ଇହଲୋକରେ ବସ୍ତୁତଃ ବର୍ଣ୍ଣର ଇତର ବିଶେଷ ନାହିଁ । ଜଗତର ଯାବତୀୟ ମନୁଷ୍ୟ ହିଁ ପୂର୍ବେ ବ୍ରାହ୍ମଣ ଜାତି ରୂପରେ ସୃଷ୍ଟି ହୋଇଥିଲେ । କ୍ରମେ କ୍ରମେ ସେହି ଏକ ବ୍ରାହ୍ମଣଜାତି କର୍ମ୍ମ ଓ ବ୍ୟବସାୟ ଭେଦରେ କ୍ଷତ୍ରିୟ ବୈଶ୍ୟାଦି ଜାତିରୂପରେ ପରିଣତ ହୋଇଅଛନ୍ତି ।''

ବ୍ରାହ୍ମଣଜାତିଠାରୁ ଯେ ଅନ୍ୟାନ୍ୟ ଜାତି ସୃଷ୍ଟ, ଏଥିର ପ୍ରମାଣ ମନୁସଂହିତାରେ ମଧ ମିଳଇ । ମନୁ ସଂହିତା ୯ମ ଅଧ୍ୟାୟ ୩୨୦ ଶ୍ଳୋକରେ ଲିଖିତ ଅଛି ଯେ,

'କ୍ଷତ୍ରଂହି ବ୍ରହ୍ମ ସମ୍ଭବଂ', କ୍ଷତ୍ରିୟଜାତି ବ୍ରାହ୍ମଣଠାରୁ ଉତ୍ପନ୍ନ ।''

ଏକ ଜାତି କିପରି ଭିନ୍ନ ଭିନ୍ନ ଜାତିରେ ପରିଣତ ହେଲେ ବର୍ତ୍ତମାନ ଏ ବିଷୟରେ ଆଲୋଚନା କରାଯାଉ । ପ୍ରାଚୀନତମ ଗ୍ରନ୍ଥ ଋଗ୍‌ବେଦରେ ଆର୍ଯ୍ୟ ଓ ଦସ୍ୟୁନାମକ ଦୁଇ ଶ୍ରେଣୀର ଲୋକ ଥିବାର ଉଲ୍ଲେଖ ଅଛି । ଆର୍ଯ୍ୟମାନେ ଭାରତବର୍ଷକୁ ଆଗମନ କରିବା ବେଳେ ଏ ଦେଶରେ କୃଷ୍ଣବର୍ଣ୍ଣତ୍ୱକ୍, ନାସାବିହୀନ ବା ଛାଗନାସାପରି ନାସାବିଶିଷ୍ଟ, ଆମ ମାଂସଭୋଜୀ ଅସଭ୍ୟ ଲୋକମାନେ ବାସ କରୁଥିଲେ । ଆର୍ଯ୍ୟମାନଙ୍କ ଆଗମନ ପରେ ଆର୍ଯ୍ୟ ଓ ଦସ୍ୟୁମାନଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହେଲା । ଉଭୟ ଜାତି ଉଭୟ ଜାତିର ଅମଙ୍ଗଳ କାମନା କଲେ । ଆର୍ଯ୍ୟମାନେ ଦସ୍ୟୁମାନଙ୍କର ଅମଙ୍ଗଳ ସକାଶେ ଇନ୍ଦ୍ରାଦି ଦେବତାମାନଙ୍କୁ ସ୍ତବ କରୁଥିଲେ । ଦସ୍ୟୁମାନେ ଆର୍ଯ୍ୟମାନଙ୍କ ଯାଗଯଜ୍ଞରେ ବିଘ୍ନ ଘଟାଉଥିଲେ । ଉଭୟ ଶ୍ରେଣୀର ଲୋକଙ୍କ ବିବାଦରେ କେତେକ ଦସ୍ୟୁ ପରାସ୍ତ ହୋଇ ଆର୍ଯ୍ୟମାନଙ୍କର ଦାସତ୍ୱ ସ୍ୱୀକାର କଲେ । ଯେଉଁମାନେ ପରାସ୍ତ ନ ହୋଇ ପର୍ବତ ଶିଖରରେ ଅବସ୍ଥାନ କଲେ ସେମାନଙ୍କ ଗୋମହିଷାଦି ହରଣ କରୁଥିଲେ । ଏହି କାରଣରୁ ସେମାନଙ୍କୁ 'ଦସ୍ୟୁ' ଆଖ୍ୟା ପ୍ରଦାନ କରାଯାଇଥିବାର ବିଶ୍ୱାସ ହୁଏ । ଆର୍ଯ୍ୟମାନେ ସେ ଅସଭ୍ୟମାନଙ୍କଦ୍ୱାରା ପୁନଃ ପୁନଃ ଅତ୍ୟାଚାରିତ ହୋଇ ଅତ୍ୟାଚାର ଦମନ ସକାଶେ ଆପଣା ମଧ୍ୟରୁ ଏକ ଦଳ ବଳିଷ୍ଠ ଲୋକ ନିଯୁକ୍ତ କଲେ । କ୍ଷୟରୁ ତ୍ରାଣ ବା ରକ୍ଷା କରିବା ହେତୁ ସେମାନେ 'କ୍ଷତ୍ରିୟ' ନାମରେ ଅଭିହିତ ହେଲେ । ଅପର ଆର୍ଯ୍ୟମାନଙ୍କୁ ନିରାପଦରେ ରକ୍ଷା କରିବା ସେମାନଙ୍କର କାର୍ଯ୍ୟ ହେଲା । ପରାଭୂତ ଦସ୍ୟୁମାନେ ଦାସତ୍ୱ ସ୍ୱୀକାର କରିବାରୁ ସେମାନେ ସେବକ ବା ଶୂଦ୍ର ନାମରେ ଖ୍ୟାତ ହେଲେ । ଯେଉଁମାନେ ବେଦମନ୍ତ୍ର ଅଧ୍ୟୟନ କଲେ, ଯାଗଯଜ୍ଞାଦି ଧର୍ମାନୁଷ୍ଠାନରେ ନିଯୁକ୍ତ ରହିଲେ ସେମାନେ ବ୍ରାହ୍ମଣ ନାମରେ ପରିଚିତ ହେଲେ । ଏକ ଦଳ ଧର୍ମକାର୍ଯ୍ୟରେ ଏକ ଦଳ ଶାନ୍ତି ସଂସ୍ଥାପନ କାର୍ଯ୍ୟରେ, ଏକ ଦଳ ସେବା କାର୍ଯ୍ୟରେ ନିଯୁକ୍ତ ରହିବାରୁ ଅବଶିଷ୍ଟ ଲୋକମାନେ ଭୂମିକର୍ଷଣ, ପଶୁପାଳନ, ବାଣିଜ୍ୟ ପ୍ରଭୃତିରେ ରତ ହେଲେ । ଏମାନେ 'ବିଶ' ନାମରେ ଉକ୍ତ ହେଉଥିଲେ । ବିଶ ଶବ୍ଦର ଅର୍ଥ ସାମାନ୍ୟ ଲୋକ । ସେହିମାନେ ଏବେ ବୈଶ୍ୟନାମରେ ପରିଚିତ ।

ଏକ ବ୍ରାହ୍ମଣଜାତି କାଳକ୍ରମେ ଭିନ୍ନ ଭିନ୍ନ ଜାତିରେ ପରିଣତ ହେବା ବିଷୟରେ ଭଗବାନ୍ ଭୃଗୁ କହିଅଛନ୍ତି–

କାମଭୋଗ ପ୍ରିୟା ସ୍ତୀକ୍ଷ୍ଣାଃ କ୍ରୋଧନାଃ ପ୍ରିୟ ସାହସାଃ
ତ୍ୟକ୍ତ ସ୍ୱ ଧର୍ମ୍ମ ରକ୍ତାଙ୍ଗା ସ୍ତେଦ୍ୱିଜାଃ କ୍ଷତ୍ରତାଂ ଗତାଃ ।
ଗୋଭ୍ୟୋ ବୃତ୍ତିଂ ସମାସ୍ଥାୟ ପୀତାଃ କୃଷ୍ୟୁ ପଜୀବନିଃ
ସ୍ୱଧର୍ମ୍ମଂନାଧିତିଷ୍ଠନ୍ତି ତେଦ୍ୱିଜାଃ ବୈଶ୍ୟତାଂଗତାଃ
ହିଂସାନୃତପ୍ରିୟା ଲୁବ୍ଧାଃ ସର୍ବକର୍ମୋପଜୀବନଃ
କୃଷ୍ଣାଶୌଚ ପରିଭ୍ରଷ୍ଟା ସ୍ତେଦ୍ୱିଜାଃ ଶୂଦ୍ରତାଂଗତଃ ।
ଇତ୍ୟେତୈଃ କର୍ମ୍ମଭିର୍ବ୍ୟସ୍ତା ଦ୍ୱିଜା ବର୍ଣ୍ଣାନ୍ତରଂ ଗତଃ ।
(ମ, ଭା, ମୋ, ଧ ୧୪-୧୧-୧୪)

ବ୍ରହ୍ମା କର୍ତ୍ତୃକସୃଷ୍ଟ ସେହି ଆଦି ବ୍ରାହ୍ମଣ ଜାତି ମଧ୍ୟରେ ଯେଉଁମାନେ କାମଭୋଗ ପ୍ରିୟ, କ୍ରୋଧ ପରତନ୍ତ୍ର, ସାହସୀ ଓ ତୀକ୍ଷ୍ଣ ସ୍ୱଭାବ ହୋଇ ସ୍ୱଧର୍ମ ପରିତ୍ୟାଗ କରିଅଛନ୍ତି ସେମାନେ କ୍ଷତ୍ରିୟତ୍ୱ ପ୍ରାପ୍ତ ହୋଇଅଛନ୍ତି । ଯେଉଁମାନେ ସ୍ୱ ଧର୍ମରେ ଅବସ୍ଥିତ ନ ଥାଇ ରଜଃ ଓ ତମୋଗୁଣ ପ୍ରଭାବରେ ପଶୁପାଳନ ଓ କୃଷି କାର୍ଯ୍ୟ ଅବଲମ୍ବନ କରିଅଛନ୍ତି ସେମାନେ ବୈଶ୍ୟତ୍ୱ ପ୍ରାପ୍ତ ହୋଇଅଛନ୍ତି । ଯେଉଁମାନେ ତମୋଗୁଣ ପ୍ରଭାବରେ ହିଂସା ପରତନ୍ତ୍ର, ଲୁବ୍ଧ, ସର୍ବକର୍ମୋପଜୀବୀ, ମିଥ୍ୟାବାଦୀ ଓ ଶୌଚଭ୍ରଷ୍ଟ ହୋଇଅଛନ୍ତି ସେମାନେ ଶୂଦ୍ରତ୍ୱ ପ୍ରାପ୍ତ ହୋଇଅଛନ୍ତି । ଏହି ରୂପେ ଏକ ଆଦି ବ୍ରାହ୍ମଣ ଜାତି ହିଁ କାର୍ଯ୍ୟଦ୍ୱାରା ପୃଥକକୃତ ହୋଇ ବିଭିନ୍ନ ଜାତିରୂପରେ ପରିଣତ ହୋଇଅଛନ୍ତି ।'' ଅତଏବ ପ୍ରତିପନ୍ନ ହେଲା ଯେ ପରେ କର୍ମ୍ମ ଓ ବ୍ୟବସାୟ ଭେଦରେ ଜାତି ଭେଦ ପ୍ରଥାର ସୃଷ୍ଟି ହୋଇଅଛି ।

॥ ୩ ॥

ପ୍ରଥମ ଓ ୨ୟ ପ୍ରବନ୍ଧରେ ଜାତିଭେଦ ଈଶ୍ୱରସୃଷ୍ଟ ନ ଥିବା ଏବଂ ପରେ ବ୍ୟବସାୟ ଓ କର୍ମ୍ମ ଭେଦରେ ଜାତିଭେଦ ପ୍ରଥା ଉତ୍ପନ୍ନ ହୋଇଥିବାର ପ୍ରମାଣ କରିଅଛୁଁ। ବର୍ତ୍ତମାନ ଦେଖିବାକୁ ହେବ ଯେ ସେ ସମୟରେ ଜାତିଭେଦ ବ୍ୟକ୍ତିଗତ ଥିଲା କି ବଂଶଗତ ଥିଲା।

ଜାତିଭେଦ ଯେବେ ବଂଶଗତ ହୋଇଥାନ୍ତା ତେବେ ଏକ ଜାତିର ଲୋକ ଅନ୍ୟ ଜାତିକୁ ଉନ୍ନତି ବା ଅବନତି ଲାଭ କରି ପାରନ୍ତା ନାହିଁ। କିନ୍ତୁ ଜାତି ପରିବର୍ତ୍ତନର ପ୍ରଚୁର ଉଦାହରଣ ମିଳୁଥିବାରୁ ଜାତିଭେଦ ବଂଶଗତ ନ ଥାଇ ବ୍ୟକ୍ତିଗତ ଥିବାର ବିଶ୍ୱାସ ହେଉଅଛି। ବର୍ତ୍ତମାନ ଜାତି ପରିବର୍ତ୍ତନର ଗୋଟି କେତେ ଉଦାହରଣ ଦେଉଅଛୁଁ।

ବିଶ୍ୱାମିତ୍ର ମୁନି କ୍ଷତ୍ରିୟ ବଂଶୋଦ୍ଭବ ହୋଇ ମଧ ବ୍ରାହ୍ମଣ ହୋଇଥିବାର ସମସ୍ତଙ୍କୁ ବିଦିତ ଅଛି। ବିଷ୍ଣୁପୁରାଣ, ହରିବଂଶ ଶ୍ରୀମଦ୍ଭାଗବତ ପ୍ରଭୃତି ଗ୍ରନ୍ଥରେ ଦେଖାଯାଏ ଯେ ଶତ ଶତ ବ୍ୟକ୍ତି କ୍ଷତ୍ରିୟ, ବୈଶ୍ୟାଦି ବଂଶରେ ଜନ୍ମ ଗ୍ରହଣ କରି ବ୍ରାହ୍ମଣତ୍ୱ ଲାଭ କରିଅଛନ୍ତି। ହସ୍ତିନାପୁର ପ୍ରତିଷ୍ଠାପକ ସୁବିଖ୍ୟାତ ପୁରୁବଂଶୀୟ 'ହସ୍ତୀ' ନାମକ ରାଜାଙ୍କର ପ୍ରପୌତ୍ର ମେଧା ତିଥିବଂଶୀୟମାନେ ବ୍ରାହ୍ମଣ ରୂପରେ ଗଣ୍ୟ ହୋଇଥିଲେ, ଯଥା–

ବୃହତ୍ କ୍ଷତ୍ରସ୍ୟ ସୁହୋତ୍ରଃ, ସୁହୋତ୍ରାତ୍ ହସ୍ତୀ
ଯଇଦଂ ହସ୍ତିନାପୁର ମାରୋପୟା ମାସା ଅଜମୀଢ଼ ଦ୍ୱିମାଢ଼
ପୁରୁ ମୀଢ଼ା ସ୍ତ୍ରୟୋ ହସ୍ତିନ ସ୍ତନୟଃ
ଅଜମୀଢାତ୍ କଣ୍ୱଃ କଣ୍ୱାତ୍
ମେଧାତିଥିବ. ଯତଃ କର୍ଣ୍ଣାୟନାଦ୍ୱିଜା
(ବି, ପୁ ୪।୧୯।୧୦)

ବୃହତ୍ କ୍ଷେତ୍ରଙ୍କର ପୁତ୍ର ସୁହୋତ୍ର, ସୁହୋତ୍ରଙ୍କଠାରୁ ହସ୍ତୀ ଉତ୍ପନ୍ନ ହୋଇଥିଲେ। ଏହି ହସ୍ତୀ ହସ୍ତିନାପୁର ନଗର ସ୍ଥାପନ କରିଥିଲେ। ଅଜମୀଢ଼ ଦ୍ୱିମଢ଼ ଓ ପୁରମୀଢ଼ ଏହି ତିନି ଜଣ ହସ୍ତୀଙ୍କର ପୁତ୍ର। ଅଜମୀଢ଼ଙ୍କର ପୁତ୍ର କଣ୍ୱ, କଣ୍ୱଙ୍କଠାରୁ ମେଧାତିଥି ଉତ୍ପନ୍ନ ହୋଇଥିଲେ। ଏହି ମେଧାତିଥି ବଂଶୀୟମାନେ କାତ୍ୱାୟନ ନାମରେ ବିଖ୍ୟାତ-ବାହ୍ମଣ ହୋଇଥିଲେ। ବଙ୍ଗ ଦେଶର ପଣ୍ଡିତ ଜୟନାରାୟଣ ତର୍କପଞ୍ଚାନନ ଏହି କାତ୍ୟାୟନ ବଂଶଜ।

ଗର୍ଗାଚ୍ଛିନିଃ ତତୋଗାର୍ଗ୍ୟାଃ ଶୈନ୍ୟାଃ
କ୍ଷେତ୍ରୋପେତା ଦ୍ୱିଜାତୟୋ ବଭୂବୁଃ।

ଗାର୍ଗଙ୍କର ପୁତ୍ର ଶିନି। ଏହି ଶିନିଙ୍କଠାରୁ ଗାର୍ଗ୍ୟ ଓ ଶୈନ୍ୟନାମକ ବିଖ୍ୟାତ କ୍ଷତ୍ରୋପେତ ବ୍ରାହ୍ମଣମାନେ ଉତ୍ପନ୍ନ ହୋଇଥିଲେ। କ୍ଷତ୍ରୋପେତ ଶବ୍ଦର ବ୍ୟାଖ୍ୟାରେ ଶ୍ରୀଧରସ୍ୱାମୀ ଲେଖିଅଛନ୍ତି।

କ୍ଷତ୍ରିୟା ଏବ କେନଚିତ୍ କାରଣେ ବ୍ରାହ୍ମଣାଷ୍ଟବଭୂବଃ।
(ବି.ପୁ, ୪।୧୯।୯)

ପୁନଶ୍ଚ ମୁଦ୍ଗଲଙ୍କଠାରୁ ମୌଦ୍ଗଲ୍ୟ ଗୋତ୍ରୀୟ ବ୍ରାହ୍ମଣମାନେ ଉତ୍ପନ୍ନ ହୋଇଥିଲେ। ଏମାନେ ପ୍ରଥମେ କ୍ଷତ୍ରିୟ ଥିଲେ, ଯଥା–

ମୁଦ୍ଗଲାଚ୍ଚ ମୌଦ୍ଗଲ୍ୟାଃ କ୍ଷତ୍ରୋପେତା
ଦ୍ୱିଜାତୟୋ ବଭୂବୁଃ। (ବି.ପୁ. ୪।୨୧।୪)
କୁରୁବଂଶ ବର୍ଣ୍ଣନାସ୍ଥଳରେ ଲିଖିତ ଅଛି ଯେ-
ବ୍ରହ୍ମକ୍ଷତ୍ରସ୍ୟ ଯୋଯୋ ନିର୍ବଂଶୋ ରାଜର୍ଷି ସ୍ୟାତ୍କୃତଃ।''
(ବି.ପୁ. ୪।୨୧।୪)

ଯେଉଁ ବଂଶ ବ୍ରାହ୍ମଣ କ୍ଷତ୍ରିୟମାନଙ୍କର ଉତ୍ପାଦକ ରାଜଶ୍ରୀମାନଙ୍କଦ୍ୱାରା ଯେଉଁ ବଂଶ ଅଳଙ୍କୃତ ଇତ୍ୟାଦି।

ନାର୍ଭାଗାରିଷ୍ଟ ପୁତ୍ରୌଦ୍ୱୌ ବୈଶ୍ୟୌ ବ୍ରାହ୍ମଣାତାଂ ଗତୌ।
(ହ.ବ ୧୧ ଅଃ)

ନା ଭାଗ ଓ ଅରିଷ୍ଟପୁତ୍ର ଏ ଦୁହେଁ ବୈଶ୍ୟ ହୋଇ ମଧ ବ୍ରାହ୍ମଣ ହୋଇଥିଲେ।

ଗୃତ୍ ସମଜସ୍ୟ ଶୌନକ ଷ୍ଠାତୁବର୍ଣ୍ଣ୍ୟ ପ୍ରବର୍ତ୍ତୟିତାଭୂତ୍
(ବି.ପୁ. ୪ ଅଂଶ ୮ମ ଅଃ)

ଗୃତ୍ସମଦଙ୍କର ବଂଶୋଦ୍ଭୂତ୍ ଶୌନକ ଚାରି ବର୍ଣ୍ଣର ପ୍ରବର୍ତ୍ତୟିତା ଅର୍ଥାତ୍ ସେ ଗୁଣକର୍ମାନୁସାରେ ତାଙ୍କର ବଂଶଧରମାନଙ୍କୁ ଚାରି ବର୍ଣ୍ଣରେ ବିଭାଗ କରିଥିଲେ।

ପୁତ୍ରୋଘୃତ ସମଦସ୍ୟଚ ଶୁନକୋଯସ୍ୟ ଶୌନକଃ
ବ୍ରାହ୍ମଣାକ୍ଷତ୍ରିୟାଶ୍ଚୈବ ବୈଶ୍ୟାଶୂଦ୍ରା ସ୍ତଥୈବଚ
ଏତସ୍ୟ ବଂଶେ ସମୁଦ୍ଭୂତା ବିଚିତ୍ରୈଃ କର୍ମ୍ମଭିଦ୍ୱିଜାଃ।
(ବାୟୁପୁରାଣ)

ଘୃତସମଦଙ୍କ ପୁତ୍ରଙ୍କ ନାମ ଶୁନକ। ଶୁନକ ପୁତ୍ରଙ୍କ ନାମ ଶୌନକ। ଏହି ଶୌନକଙ୍କର ବଂଶଧରମାନେ ଗୁଣ କର୍ମର ବିଭିନ୍ନତା ହେତୁରୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର ନାମରେ ଅଭିହିତ ହୋଇଥିଲେ।

ମହାଭାରତ ଅନୁଶାସନ ପର୍ବ ୩୦ ଅଧ୍ୟାୟରେ ରାଜା ବୀତହବ୍ୟ ବ୍ରାହ୍ମଣତ୍ୱ ଲାଭ କରିଥିବାର ଲିଖିତ ଅଛି। କବସ ଋଷି ଶୂଦ୍ରକୁଳୋଦ୍ଭବ ହୋଇ ମଧ୍ୟ ବେଦାଦି ଅଧ୍ୟୟନଦ୍ୱାରା ବ୍ରାହ୍ମଣତ୍ୱ ଲାଭ କରିଥିଲେ।

ଆପସ୍ତମ୍ବ ଋଷି କହିଅଛନ୍ତି–

ଧର୍ମ୍ମଚର୍ଯ୍ୟୟା ଯଘନ୍ୟୋବର୍ଣ୍ଣଃ ପୂର୍ବଂ ପୂର୍ବଂ
ବର୍ଣ୍ଣମା ପଦ୍ୟତେ ଜାତି ପରିବୃତୌ।୧।
ଅଧର୍ମ୍ମ ଚର୍ଯ୍ୟୟା ପୂର୍ବୋ ବର୍ଣ୍ଣୋ ଯଘନ୍ୟ ଯଘନ୍ୟ
ବର୍ଣ୍ଣମାପଦ୍ୟତେ ଜାତି ପରିବୃତୌ।୨।
(୨ୟ ପ୍ର ପାଠକ, ୫ମ ପଟଳ, ୧୦।୧୧ ସୂତ୍ର)

ଧର୍ମାଚରଣଦ୍ୱାରା ଜଘନ୍ୟ ବର୍ଣ୍ଣ ଶୂଦ୍ରାଦି ତଦପେକ୍ଷା ଉତ୍କୃଷ୍ଟ ବୈଶ୍ୟ କ୍ଷତ୍ରିୟାଦି ବର୍ଣ୍ଣ ପ୍ରାପ୍ତ ହୋଇପାରନ୍ତି ଏବଂ ଅଧର୍ମାଚରଣଦ୍ୱାରା ଉତ୍କୃଷ୍ଟ ବର୍ଣ୍ଣ ବ୍ରାହ୍ମଣାଦି ଏବଂ ପରପର କ୍ଷତ୍ରିୟ ବୈଶ୍ୟାଦି ନୀଚବର୍ଣ୍ଣ ପ୍ରାପ୍ତ ହୁଅନ୍ତି।

ମନୁକହନ୍ତି– ପ୍ରଚ୍ଛନ୍ନାବା ପ୍ରକାଶ ବା ବେଦିତବ୍ୟାଃ ସର୍ବକର୍ମଭିଃ (ମନୁ ୧୦।୪୦)

ଯେଉଁମାନଙ୍କର ପ୍ରଚ୍ଛନ୍ନ ବା ଅପ୍ରକାଶ ଜନ୍ମ ସେମାନଙ୍କର ବର୍ଣ୍ଣ ସ୍ୱ ସ୍ୱ କର୍ମଦ୍ୱାରା ନିର୍ଦ୍ଦିଷ୍ଟ ହେବ।

ଛାନ୍ଦୋଗ୍ୟ ଉପନିଷଦୋକ୍ତ ଜାବାଲୋପାଖ୍ୟାନ ଏହାର ଦୀପ୍ୟମାନ ପ୍ରମାଣ। ଦାସୀ ଜାବାଲୀଙ୍କର ପୁତ୍ରଙ୍କର ପିତୃ ନିର୍ଣ୍ଣୟ ହୋଇପାରି ନାହିଁ। ଋଷି ଗୌତମ, ଜାବାଳଙ୍କର ସତ୍ୟ ନିଷ୍ଠା ଦର୍ଶନରେ ତାହାଙ୍କୁ ବ୍ରାହ୍ମଣତ୍ୱ ପ୍ରଦାନ କରିଥିଲେ।

ପୁନଶ୍ଚ ମନୁ କହି ଅଛନ୍ତି–

ଶୂଦ୍ରୋ ବ୍ରାହ୍ମଣ ତା ମେତି ବ୍ରାହ୍ମଣ ଶ୍ଚୈତି ଶୂଦ୍ରତାଂ
କ୍ଷତ୍ରିୟ। ଜ୍ଜାତମେବନ୍ତୁ ବିଦ୍ୟାଦ୍ ବୈଶ୍ୟାଉଥୈବଚ।
(ମନୁ ୧୦।୬୫)

ଶୂଦ୍ର ମଧ୍ୟ ବ୍ରାହ୍ମଣ ହୁଏ ଏବଂ ବ୍ରାହ୍ମଣ ମଧ୍ୟ ଶୂଦ୍ର ହୁଏ। ଏହି ପରି କ୍ଷତ୍ରିୟ ଓ ବୈଶ୍ୟମାନେ ଶୂଦ୍ର ହୁଅନ୍ତି ଏବଂ ଶୂଦ୍ର ମଧ୍ୟ କ୍ଷତ୍ରିୟ ବୈଶ୍ୟାଦି ଜାତି ପ୍ରାପ୍ତ ହୁଅନ୍ତି।

ମାଧବାଚାର୍ଯ୍ୟ, ବ୍ରହ୍ମଙ୍କ ସହିତ ବ୍ରହ୍ମବିଦ୍‌ଙ୍କର ଭେଦାଭେଦ ପ୍ରଦର୍ଶନାର୍ଥ ଦୃଷ୍ଟାନ୍ତସ୍ୱରୂପ କହିଅଛନ୍ତି ଯେ– ''ସଂପୂଜ୍ୟ ବ୍ରାହ୍ମଣଂ ଭକ୍ତ୍ୟା ଶୂଦ୍ରୋଽପି ବ୍ରାହ୍ମଣଂ ଭବେତ୍।'' ଭକ୍ତି ସହକାରେ ବ୍ରାହ୍ମଣର ସେବା ଶୁଶ୍ରୂଷା କଲେ ଶୂଦ୍ର ମଧ୍ୟ ବ୍ରାହ୍ମଣ ହୁଏ। ଉପରୋକ୍ତ ପ୍ରମାଣଗୁଡ଼ିକଦ୍ୱାରା ନିଃସଂଶୟିତ ରୂପେ ସିଦ୍ଧାନ୍ତ ହେଉଅଛି ଯେ ଜାତି ଭେଦ ବଂଶଗତ ନୁହେଁ ବ୍ୟକ୍ତିଗତ।

॥ ୪ ॥

ପୂର୍ବକାଳରେ ବର୍ତ୍ତମାନ ପରି ଅନ୍ନଗତ ଜାତିଭେଦ ଥିଲା କି ନା ଏବଂ ଉକ୍ତ ପ୍ରଥା କିପରି ପ୍ରଚଳିତ ହେଲା ବର୍ତ୍ତମାନ ପ୍ରବନ୍ଧରେ ଏହି ବିଷୟର ଆଲୋଚନା କରାଯିବ।

ପୂର୍ବ ପ୍ରବନ୍ଧରେ ଆମ୍ଭେମାନେ ପ୍ରମାଣ କରିଅଛୁଁ ଯେ ଜାତିଭେଦ ବଂଶଗତ ନ ଥିଲା- ବ୍ୟକ୍ତିଗତ ଥିଲା। ଅର୍ଥାତ୍ ଯେଉଁ ବ୍ୟକ୍ତି ଯେଉଁ ଜାତିର କାର୍ଯ୍ୟାନୁଷ୍ଠାନ କରୁଥିଲା ସେହି ବ୍ୟକ୍ତି ସେହି ଜାତିର ଲୋକ ବୋଲି ପରିଚିତ ହେଉଥିଲା। ସେ ସମୟରେ ପୁତ୍ରମାନେ ପିତା ବ୍ୟବସାୟର ଅନୁକରଣ କରିବାକୁ ବାଧ୍ୟ ହେଉ ନ ଥିଲେ। ଯାହାକୁ ଯେଉଁ ବ୍ୟବସାୟ ଭଲବୋଧ ହେଉଥିଲା। ସେ ସେହି ବ୍ୟବସାୟ ଅବଲମ୍ବନ କରିପାରୁଥିଲା। ଏକ ଜାତିର ଲୋକ ଅନ୍ୟଜାତିର ଘରେ ବିବାହ, ଭୋଜନ କରିପାରୁଥିଲେ। ତହିଁରେ କାହାରି ଜାତି ଧର୍ମନଷ୍ଟ ହେଉ ନ ଥିଲା ବା ପରସ୍ପର ପ୍ରତି ଭେଦ ବୁଦ୍ଧି ନ ଥିଲା। ବର୍ତ୍ତମାନ କାଳ ପରି ପ୍ରାଚୀନ କାଳରେ ସକଳ ଶ୍ରେଣୀର ଲୋକଙ୍କ ଶିକ୍ଷାର ସୁବିଧା ସକାଶେ ବିଦ୍ୟାଳୟ ନ ଥିଲା। ପୁତ୍ରମାନେ ପିତା ଅଧୀନରେ ରହି କ୍ରମେ କ୍ରମେ ପୈତୃକ ବ୍ୟବସାୟର ଅନୁକରଣ କରିବାକୁ ପ୍ରବୃତ୍ତ ହେଲେ। ତହିଁରେ ସେମାନେ ଦକ୍ଷତା ଲାଭ କରି ଆତ୍ମାଭିମାନୀ ହୋଇପଡ଼ିଲେ। ବ୍ରାହ୍ମଣମାନେ କହିଲେ ଆମ୍ଭେମାନ ଧର୍ମାନୁଷ୍ଠାନ ନ କଲେ, ଧର୍ମୋପଦେଶ ନ ଦେଲେ ଅପରାପର ବ୍ୟବସାୟାବଲମ୍ବୀମାନଙ୍କର ମଙ୍ଗଳ ହୁଅନ୍ତା ନାହିଁ। ଅତଏବ ଆମ୍ଭେମାନେ ସକଳ ବ୍ୟବସାୟୀଙ୍କଠାରୁ ଶ୍ରେଷ୍ଠ। କ୍ଷତ୍ରିୟମାନେ ଭାବିଲେ ଆମ୍ଭେମାନେ ଦସ୍ୟୁଭୟ ନିବାରଣ କରି ଶାନ୍ତିରକ୍ଷା କରୁ ନ ଥିଲେ ବ୍ରାହ୍ମଣ ଧର୍ମଚର୍ଚ୍ଚା କରିପାରନ୍ତେ ନାହିଁ, ବୈଶ୍ୟ କୃଷି, ବାଣିଜ୍ୟ କରିପାରନ୍ତେ ନାହିଁ ଅତଏବ ସକଳ ବ୍ୟବସାୟୀଙ୍କ ଅପେକ୍ଷା ଆମ୍ଭେ ଶ୍ରେଷ୍ଠ। ଏହିପରି ସକଳ ବ୍ୟବସାୟୀଙ୍କ ମନରେ ଆତ୍ମଶ୍ଳାଘାର ଉଦୟ ହୋଇ ଭେଦବୁଦ୍ଧିର ପ୍ରବଳ ହେବାରୁ ସର୍ବପ୍ରଥମେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ମଧ୍ୟରେ କଳହ ଉପସ୍ଥିତ ହେଲା। ବେଣ, ନହୁଷ, ନିମି ପ୍ରଭୃତିଙ୍କର ଉପାଖ୍ୟାନ ପାଠ କଲେ ବ୍ରାହ୍ମଣ କ୍ଷତ୍ରିୟ ମଧ୍ୟରେ ଘୋର ବିବାଦ ହୋଇଥିବାର ପ୍ରମାଣ ମିଳଇ। ବ୍ରାହ୍ମଣ ସନ୍ତାନ ପର୍ଶୁରାମ, ଏକବିଂଶତିବାର କ୍ଷତ୍ରିୟ ରକ୍ତରେ ପିତୃତର୍ପଣକରି ଥିବାର କିଏ ବା ନ ଜାଣେ ? ବୃହଦାରଣ୍ୟକ ଉପନିଷଦରେ ମଧ୍ୟ ଉଭୟ ଜାତିର କଳହର ପ୍ରମାଣ ମିଳଇ, ଯଥା–

"ତସ୍ମାତ୍ କ୍ଷତ୍ରାତ ପରଂ ନାସ୍ତି ତସ୍ମାତ୍ ବ୍ରାହ୍ମଣ କ୍ଷତ୍ରିୟ
ମଧସ୍ତାଦୁପାସ୍ତେ ରାଜସୂୟେ କ୍ଷତ୍ରଏବ ତଦ୍ୟଶୋଦଧାତି
ସୈଷାକ୍ଷତ୍ରସ୍ୟ ଯୋନିର୍ଯଦ୍‌ବ୍ରହ୍ମ ତସ୍ମାତ୍ ରାଜା ପରମତାଂ
ଗଚ୍ଛତି ବ୍ରହ୍ମୈବାନ୍ତତଃ ଉପନିଶ୍ରୟତି ସ୍ୱାଂଯୋନିଂ
ଯଏନ ହିନସ୍ତି ସ୍ୱାଂସଯୋନି ମୃଚ୍ଛତି ସପାପୀୟାନ୍ ଭବତି।"

ଅର୍ଥ– "ଅତଏବ କ୍ଷତ୍ରିୟ ଅପେକ୍ଷା ଶ୍ରେଷ୍ଠ ନାହିଁ। ଏହି କାରଣରୁ ରାଜସୂୟ ଯଜ୍ଞରେ ବ୍ରାହ୍ମଣମାନଙ୍କୁ କ୍ଷତ୍ରିୟାଧୀନ ହୋଇ ଉପାସନା କରିବାକୁ ହୋଇଥିଲା। ସେ ଯଶ କ୍ଷତ୍ରିୟ ଧାରଣ କରେ। କିନ୍ତୁ ବ୍ରାହ୍ମଣ କ୍ଷତ୍ରିୟର ଉତ୍ପତ୍ତିସ୍ଥାନ। ସୁତରାଂ କ୍ଷତ୍ରିୟ ଯଦି ପରମଉନ୍ନତି ପ୍ରାପ୍ତ ହୁଏ ତଥାପି ସ୍ୱୀୟ ଉତ୍ପତ୍ତିସ୍ଥାନ ବ୍ରାହ୍ମଣଙ୍କୁ ଆଶ୍ରୟ କରିବେ। ଯଦି କୌଣସି କ୍ଷତ୍ରିୟ ବ୍ରାହ୍ମଣଙ୍କୁ କ୍ଳେଶଦିଏ ତେବେ ସେ ଆପଣାର ଉତ୍ପତ୍ତି ସ୍ଥାନକୁ ନଷ୍ଟ କରେ, ସେ ପାପୀ ହୁଏ।"

ଏହାର ଫଳିତାର୍ଥ ଏହି ଯେ– "ତୁମ୍ଭେ ଦୁଇ ଦଳ ମଧ୍ୟରେ ବିବାଦ କର ନାହିଁ। ଏକପକ୍ଷରେ କ୍ଷତ୍ରିୟମାନେ ଶ୍ରେଷ୍ଠ, ଅନ୍ୟପକ୍ଷରେ ବ୍ରାହ୍ମଣମାନେ ଶ୍ରେଷ୍ଠ। ଦୁଇ ଦଳଙ୍କର ଶ୍ରେଷ୍ଠତାର କଥଣ ଅଛି।

ଏତଦ୍ୱାରା ପ୍ରମାଣ ହେଉଅଛି ଯେ ଉଭୟ ଜାତି ମଧ୍ୟରେ ବିବାଦ ଭୀଷଣ ଭାବଧାରଣ କରିଥିବାରୁ ଉଭୟ ପକ୍ଷଙ୍କର ମାନରକ୍ଷା କରାଯାଇ ସନ୍ଧି କରାଯାଇଅଛି।

ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ବିରୋଧରେ ସନ୍ଧିସ୍ଥାପିତ ହେଲା– ପରେ ଉକ୍ତ ଦୁଇ ଜାତି ମଧ୍ୟରେ ସଂଗ୍ରାମ ହେବାର ଦେଖାଯାଇ ନାହିଁ। ବିରୋଧର ମୀମାଂସା ହେଲା ସତ୍ୟ, କିନ୍ତୁ ବିରୋଧାନଳ ପ୍ରଜ୍ୱଳିତ ହୋଇଥିବା ସମୟରେ ହିଂସା, ବିଦ୍ୱେଷ, ଘୃଣା ପ୍ରଭୃତି ଯେଉଁସବୁ ଅସତ୍ ଭାବ ପ୍ରବଳତା ଲଭିଥିଲା ତହିଁର କୁଫଳ ସମାଜ ମଧ୍ୟରେ ରହିଗଲା। ଏକାନ୍ନବର୍ତ୍ତୀ ପରିବାର ପୃଥକାନ୍ନ ହେଲେ ନାନା କାରଣରୁ ସେମାନଙ୍କ ମଧ୍ୟରେ କଳହ ଉପସ୍ଥିତ ହୁଏ। ପରସ୍ପର ପ୍ରତି ଘୃଣା, ବିଦ୍ୱେଷ ଜାତ ହୁଏ। ଏକ ଭ୍ରାତା ଅନ୍ୟ ଭ୍ରାତା ଗୃହରେ ଭୋଜନ କରେ ନାହିଁ। ଏମନ୍ତକି ଏକ ଭ୍ରାତା ଅପର ଭ୍ରାତାର ମୃତ ସୂତକାଦି ଅଶୌଚ ସୁଦ୍ଧା ପାଳନ କରେ ନାହିଁ। ଏକ ଭ୍ରାତା ଅପରଭ୍ରାତାମାନଙ୍କର ଅମଙ୍ଗଳ କାମନା କରେ। ଏହିପରି ବ୍ରାହ୍ମଣ କ୍ଷତ୍ରିୟାଦି ଜାତି ମଧ୍ୟରେ କଳହ ହୋଇ, ଭୋଜନ ପ୍ରଭୃତି ରହିତ ହେଲା। ବ୍ରାହ୍ମଣମାନେ ଅନ୍ୟାନ୍ୟ ଜାତିର ଶୀର୍ଷ ସ୍ଥାନୀୟ ଥିବାରୁ ସେମାନଙ୍କର ପ୍ରତାପ ଓ ପରାକ୍ରମ ଦିନକୁଦିନ ବୃଦ୍ଧି ଲାଭ କଲା। ଯେଉଁ ଆଧ୍ୟାତ୍ମିକ ଶକ୍ତିରେ ସମାଜ ସର୍ବଦା ଶାସିତ ହୁଏ ସେହି ଶକ୍ତି ସେମାନଙ୍କ ହାତରେ ରହିଲା। କ୍ଷତ୍ରିୟ ରାଜା ହେଲେ କିନ୍ତୁ ମନ୍ତ୍ରୀ ହେଲେ ବ୍ରାହ୍ମଣ। କ୍ଷତ୍ରିୟ ବିଚାରକ, ବ୍ରାହ୍ମଣ ପ୍ରାଡ୍‌ବିବାକ; କ୍ଷତ୍ରିୟ ହେଲେ ରକ୍ଷକ ବ୍ରାହ୍ମଣ ହେଲେ ଗୁରୁ। କ୍ଷତ୍ରିୟ ବାହୁ ବ୍ରାହ୍ମଣ ମସ୍ତିଷ୍କ। ବାହୁ ଅପେକ୍ଷା ମସ୍ତିଷ୍କ ଶ୍ରେଷ୍ଠ, ସୁତରାଂ ବ୍ରାହ୍ମଣମାନଙ୍କ କ୍ଷମତା ଦିନକୁଦିନ ନିରଙ୍କୁଶ ହୋଇଉଠିଲା। ପ୍ରାଚୀନ ଆର୍ଯ୍ୟ ସମାଜରେ ବ୍ରାହ୍ମଣମାନଙ୍କର ଶକ୍ତି ଓ ପ୍ରତାପ ଯେତେ ନିରଙ୍କୁଶ ହେବାକୁ ଲାଗିଲା ତେତିକି ଅପରାପର ଜାତି ହୀନ ଦଶା ପ୍ରାପ୍ତ ହେବାକୁ ଲାଗିଲେ। ଏମନ୍ତ କି ରାଜାମାନେ ମଧ୍ୟ ନାମ ମାତ୍ର ରାଜଦଣ୍ଡ ଧାରଣ କରୁଥିଲେ। ବ୍ରାହ୍ମଣମାନେ ସେମାନଙ୍କର ପରିଚାଳକ ହେଲେ। ବୈଶ୍ୟମାନେ ଆହୁରି ହୀନଦଶା ପ୍ରାପ୍ତ ହେବାକୁ ଲାଗିଲେ। ଶୂଦ୍ରମାନେ ଭୟାନକ ରୂପେ ଅତ୍ୟାଚାରିତ ହେଲେ ଏହା କହିବା ବାହୁଲ୍ୟ ମାତ୍ର। ସେମାନେ ସକଳ ପ୍ରକାର ସାମାଜିକ ଶକ୍ତି ଓ ଅଧିକାରରୁ ବଞ୍ଚିତ ହୋଇ ନିତାନ୍ତ ନିକୃଷ୍ଟ ଓ ପଶୁପ୍ରାୟ ଜୀବନ ଧାରଣ କରିବାକୁ ଲାଗିଲେ। ସେମାନଙ୍କର ସାମାଜିକ ଦୁର୍ଗତିର ସୀମା ପରିସୀମା ରହିଲା ନାହିଁ। ଶୂଦ୍ରମାନଙ୍କ ସମ୍ବନ୍ଧେ କିପରି କଠୋର ବିଧାନ ହୋଇଥିଲା ତହିଁର ଗୋଟିକେତେ ପ୍ରମାଣ ଦେଉଅଛୁଁ।

ଯେନକେନ ଚିଦଙ୍ଗେନ ହିଂସ୍ୟାଚ୍ଚେ ଚ୍ଛେଷ୍ଟମନ୍ତ୍ୟଜଃ
ଛେତ୍ତବ୍ୟଂ ତତ୍ତ ଦେବାସ୍ୟ ତନ୍ମନୋରନୁ ଶାସନଂ

**ଅର୍ଥ**– "ଅନ୍ତ୍ୟଜ ଅର୍ଥାତ୍ ଶୂଦ୍ର ଯେ କୌଣସି ଅଙ୍ଗଦ୍ୱାରା ଶ୍ରେଷ୍ଠ ଜାତୀୟ କୌଣସି ବ୍ୟକ୍ତିକୁ ପ୍ରହାର କରିବେ ତାହାର ସେହି ସେହି ଅଙ୍ଗ ଛେଦନ କରିବାକୁ ହେବ। ଏହାହିଁ ମନୁର ବିଧି।"

'ନସ୍ୱାମିନା ନିସୃଷ୍ଟୋପି ଶୂଦ୍ରୋଦାସ୍ୟ ଦ୍ୱିମୁଚ୍ୟତେ
ନିସର୍ଗ ଫହିତତ୍‌ସ୍ୟ କସ୍ତସ୍ମାତ୍ତଦପୋହତି।" ମନୁ।

**ଅର୍ଥ**– ସ୍ୱୀୟ ପ୍ରଭୁ ଯଦି ଶୂଦ୍ରକୁ ଦାସତ୍ୱରୁ ମୁକ୍ତି ଦିଅନ୍ତି ତାହାହେଲେ ମଧ୍ୟ ଶୂଦ୍ର ଦାସତ୍ୱରୁ ମୁକ୍ତ ହୋଇପାରିବ ନାହିଁ। କାରଣ ଦାସତ୍ୱ ତାହାର ସ୍ୱଭାବଜାତି କିଏତା ଲଂଘନ କରିପାରେ ?

ବିଶ୍ରବ୍ଧ ବ୍ରାହ୍ମଣଃ ଶୂଦ୍ରାଦ୍‌ବ୍ୟୋପାଦାନ ଯାଚରେତ୍
ନହିତସ୍ୟାସ୍ତି କିଞ୍ଚିତ୍ ସ୍ୱଂଭର୍ତ୍ତୃ ହାର୍ଯ୍ୟ ଧନୋହିସଃ। ମନୁ

ଅର୍ଥ– "ଶୂଦ୍ର ଯଦ୍ୟପି କୌଣସି ଦ୍ରବ୍ୟ ଉପାର୍ଜନ କରେ ବ୍ରାହ୍ମଣ ଅସଙ୍କୋଚରେ ସେ ସମୁଦାୟ ନେଇଯିବେ କାରଣ ଶୂଦ୍ରର ଧନରେ ଅଧିକାର ନାହିଁ। ସେମାନେ ଯାହା କିଛି ଉପାର୍ଜନ କରିବେ ସେ ସମୁଦାୟର ଅଧିକାରୀ ସେମାନଙ୍କର ପ୍ରଭୁ।"

''ଶକ୍ତେନାପିହିଶୂଦ୍ରେଣ ନକାର୍ଯ୍ୟୋ ଧନ ସଞ୍ଚୟଃ
ଶୂଦ୍ରୋହି ଧନମା ସାଦ୍ୟ ବ୍ରାହ୍ମଣାନେବ ବାଧତେ।''

ଶୂଦ୍ର ଯଦ୍ୟପି କୃତି ହୁଏ ତଥାପି ସେ ଧନ ସଞ୍ଚୟ କରିବେ ନାହିଁ କାରଣ ଶୂଦ୍ର ହସ୍ତରେ ଧନ ସଞ୍ଚୟ ହେଲେ ବ୍ରାହ୍ମଣମାନଙ୍କୁ କ୍ଲେଶ ପାଇବାକୁ ହେବ।

ପାଣିମୁଦ୍ୟମ୍ୟ ଦଣ୍ଡଂବା ପାଣିଚ୍ଛେଦନ ମହିତି।
ପାଦେନ ପ୍ରହରନ୍ କୋପାତ୍ ପାଦଚ୍ଛେଦନ ମର୍ହତି।
(ମନୁ ୮ମ ଅଃ)

ଶୂଦ୍ର ଶ୍ରେଷ୍ଠ ଜାତୀୟ ବ୍ୟକ୍ତିକୁ ପ୍ରହାର କରିବା ସକାଶେ ଯଦି ହସ୍ତ କିମ୍ବା ଦଣ୍ଡ ଉତ୍ତୋଳନ କରେ ତାହାହେଲେ ଶୂଦ୍ରର ହସ୍ତଚ୍ଛେଦନ କରିବାକୁ ହେବ। ଯଦି କୋପବଶତଃ ପଦଦ୍ୱାରା ପ୍ରହାର କରେ ତାହାହେଲେ ପଦଚ୍ଛେଦନ କରିବାକୁ ହେବ।

ସହାସନ ମୁକଭିପ୍ରେପ୍ସୁ ରତ୍‌କୃଷ୍ଟସ୍ୟାପକୃଷ୍ଟଜଃ
କଟ୍ୟାଂ କୃତାଙ୍କୋ ନିର୍ବାସ୍ୟଃ...

ଶୂଦ୍ରଯଦ୍ୟପି ଶ୍ରେଷ୍ଠଜାତିର ସହିତ ଏକାସନରେ ବସିବାକୁ ଅଭିଳାଷୀ ହୁଏ, ତାହାହେଲେ ତାହାର କଟି ଦେଶରେ ଉତପ୍ତ ଲୌହଦ୍ୱାରା ଦାଗଦେଇ ଦେଶରୁ ନିର୍ବାସିତ କରିବ।

ଉପରୋକ୍ତ ଯୁକ୍ତି ପ୍ରମାଣ ବଳରେ ଏହାହିଁ ପ୍ରତିପନ୍ନ ହେଉଅଛି ଯେ ପୂର୍ବକାଳରେ ଅନ୍ନଗତ ଜାତିଭେଦ ନ ଥିଲା। ଏକ ଜାତିର ଲୋକ ଅନ୍ୟଜାତିର ଲୋକ ଗୃହରେ ଭୋଜନ କରୁଥିଲା ଏବଂ ବିବାହ କରୁଥିଲା। କଳିର ଧର୍ମଶାସ୍ତ୍ର ପରାଶର ସଂହିତାରେ ଲିଖିତ ଅଛି ଯେ

କ୍ଷତ୍ରିୟୋବାପି ବୈଶ୍ୟୋବା କ୍ରିୟବନ୍ତୌ ଶୁଚିବ୍ରତୌ
ତଦ୍‌ଗୃହେଷୁ ଦ୍ୱିଜୈ ର୍ଭୋଜ୍ୟଂ ହବ୍ୟ କବ୍ୟୋଷୁ ନିତ୍ୟଶଃ।

ଯେଉଁସବୁ କ୍ଷତ୍ରିୟ ଓ ବୈଶ୍ୟ କ୍ରିୟାବାନ୍ ଓ ଶୁଚିବ୍ରତଧାରୀ, ସେମାନଙ୍କର ଗୃହରେ ବ୍ରାହ୍ମଣମାନେ ସର୍ବଦା, ହବ୍ୟକବ୍ୟରେ ଭୋଜନ କରିବେ।

ତପ୍‌ରେ ଲୋକମାନଙ୍କର ବ୍ୟକ୍ତିଗତ ବ୍ୟବସାୟ ବଂଶଗତ ହୋଇ ଅହଂ ଭାବର ଉଦୟ ହେବା ସଙ୍ଗେ ଜାତିଭେଦ ପ୍ରଥାର ସୃଷ୍ଟି ହୋଇ ଚାରି ଜାତିରୁ ଆଜି ୪୦ ସହସ୍ର ଜାତି ଉପନ୍ନ ହୋଇ ବାପର ଜାତିଏ ପୁଅର ଜାତିଏ ହୋଇଛି।

●

## ବାଲ୍ୟବିବାହ

ଅତ୍ୟଳ୍ପ ବୟସରେ ସ୍ତ୍ରୀ ପୁରୁଷର ମିଳନ ହେତୁ ସେମାନଙ୍କର ପୁତ୍ରକନ୍ୟାମାନେ ସ୍ୱାସ୍ଥ୍ୟହୀନ ଦୁର୍ବଳ ହେଉଥିବାର ପଣ୍ଡିତ ମଧୁସୂଦନ ମିଶ୍ର ସ୍ୱୀକାର କରିଅଛନ୍ତି । କିନ୍ତୁ ସେ ଏଥିସକାଶେ ବାଲ୍ୟବିବାହକୁ ଦୋଷ ଦେବାକୁ ଅନିଚ୍ଛୁକ। ସେ କହନ୍ତି, ''୧୬ ବର୍ଷ ବୟସ୍କା କନ୍ୟା ସହିତ ବିଂଶତି ବାର୍ଷିକ ପୁରୁଷର ସହବାସ ହେଲେ ସନ୍ତାନ ସବଳ ହୁଅନ୍ତି ଅତଏବ 'ହିତୈଷିଣୀ' ସ୍ୱାସ୍ଥ୍ୟହାନି ଓ ସନ୍ତାନ ଦୌର୍ବଲ୍ୟ ସମ୍ପାଦନ ବାଳକ ବାଳିକା ସହବାସ ବିରତ କରାଇବା ବିଷୟରେ ଚେଷ୍ଟାକଲେ ଆମ୍ଭେମାନେ ଅନ୍ତରର ସହିତ ଧନ୍ୟବାଦ ଦେବୁଁ।'' ବିଧବାର ଏକାଦଶୀ ସମ୍ବନ୍ଧରେ ଆନ୍ଦୋଳନ ଲାଗିଥିବା ବେଳେ ରକ୍ଷଣଶୀଳ ଦଳର ଜଣେ ପଣ୍ଡିତ ଲେଖିଥିଲେ ''ବିଧବାର ଅନୁକଳ୍ପ ସମର୍ଥନ ନ କରି ବିଧବା ସଂଖ୍ୟା ବୃଦ୍ଧିର ମୁଖ୍ୟ କାରଣ ବାଲ୍ୟବିବାହ ଉଠାଇ ଦେବାର ଚେଷ୍ଟା କରିବା ଉଚିତ ।'' ବର୍ତ୍ତମାନ ମିଶ୍ର ମହାଶୟ କହନ୍ତି ''ବାଲ୍ୟବିବାହ ପ୍ରଥା ଅଶେଷ ମଙ୍ଗଳପ୍ରଦ ତା ହିଁ ବିରୋଧରେ କିଛି ନ କରି ବାଳକ ବାଳିକା ସହବାସରହିତ କରିଦେବା ବିଧେୟ ।'' ବାଳକ ବାଳିକା ସହବାସରେ କିଞ୍ଚିତ୍ ବାଧା ଦେବା ସକାଶେ ଅଳ୍ପଦିନ ପୂର୍ବେ ରାଜକୀୟ ବିଧାନ ହେଲା ଯେ କନ୍ୟାର ଦ୍ୱାଦଶ ବର୍ଷ ପୂର୍ଣ୍ଣ ନ ହେଲେ ପତି ସହବାସ କରିପାରିବ ନାହିଁ ସେତେବେଳେ 'ଧର୍ମ୍ମଗଲା' 'ଧର୍ମ୍ମଗଲା' ବୋଲି ଭାରତର ଅସଂଖ୍ୟ ଅଧିବାସୀ ଚିତ୍କାର କରିଉଠିଲେ। ଏପରିସ୍ଥଳେ କାହାକଥା ଗ୍ରହଣ କରିବୁଁ ?

ପଣ୍ଡିତ ମହାଶୟ ଏକଥା ଅବଶ୍ୟ ସ୍ୱୀକାର କରିବେ ଯେ ବାଲ୍ୟବିବାହ ପ୍ରଚଳିତ ନ ଥିଲେ ବାଳକ ବାଳିକା ସହବାସ ପ୍ରଥା ପ୍ରବର୍ତ୍ତିତ ନ ହୋଇଥାଆନ୍ତା । ଯୁବତୀ ବିବାହରେ ବାଳକ ବାଳିକାର ସହବାସ ହୋଇପାରିବ ନାହିଁ । ଏପରିସ୍ଥଳେ ବାଳକ ବାଳିକା ସହବାସର ଆଦିକାରଣ ବାଲ୍ୟବିବାହକୁ ଦୋଷ ଦିଆ ନ ଯିବ କିପରି ? ବାଲ୍ୟ ପରିଣୀତା କନ୍ୟା ଋତୁମତୀ ପରେ ଦୀର୍ଘକାଳ ଯାଏ ପିତୃ ଗୃହରେ ରହିପାରଇ ନାହିଁ । ବରର ପିତାମାତା ତାହାକୁ ଶୀଘ୍ର ଘେନି ଆସନ୍ତି । କନ୍ୟାପିତା ଏଥିରେ ଆପତ୍ତି କଲେ ବନ୍ଧୁ ବିଚ୍ଛେଦ ଘଟିଥାଏ । ବିବାହ ପର୍ଯ୍ୟନ୍ତ ବା କନ୍ୟା ଋତୁମତୀ ହେବା ପର୍ଯ୍ୟନ୍ତ କନ୍ୟାର ପିତାମାତା ଦାୟୀ, ତପ୍‌ରେ ବରପକ୍ଷ ଦାୟୀ । ସେହେତୁ ବରପକ୍ଷର ଲୋକମାନେ କନ୍ୟାକୁ ପିତୃଗୃହରେ ରଖିଦିଅନ୍ତି ନାହିଁ । ଗୃହ ଶୋଭାବର୍ଦ୍ଧନ କରିବା ପୁତ୍ରବଧୂ କର୍ତ୍ତୃକ

ଗୃହକାର୍ଯ୍ୟରେ ସାହାଯ୍ୟ ଲାଭ କରିବା ସକାଶେ କନ୍ୟାକୁ ଶୀଘ୍ର ଘେନି ଆସନ୍ତି । ଅନେକ ସ୍ଥାନରେ କନ୍ୟା ଋତୁମତୀ ହେବାପରେ 'ଗର୍ଭାଧାନ' କୃତ୍ୟ କରିବା ସକାଶେ କନ୍ୟାକୁ ଅନତିବିଳମ୍ବରେ ଘେନି ଆସନ୍ତି । ଏହିସବୁ କାରଣରୁ ବାଲ୍ୟବିବାହ ବିଦ୍ୟମାନରେ ବାଳକ ବାଳିକା ସହବାସ ରହିତ ହୋଇ ନ ପାରେ । ଅତଏବ ସନ୍ତାନମାନଙ୍କର ସ୍ୱାସ୍ଥ୍ୟହାନି ଓ ଦୌର୍ବଲ୍ୟର କାରଣ ସ୍ଥାନୀୟ ବାଲ୍ୟବିବାହରହିତ ହେବାର ଉଚିତ । ବାଳକ ବାଳିକା ସହବାସ ଅନିଷ୍ଟ କରିଥିବାର ପଣ୍ଡିତ ମହାଶୟ ସ୍ୱୀକାର କରିଥିବାରୁ ସେ ସମ୍ବନ୍ଧରେ ଆଲୋଚନା କରିବା ଆବଶ୍ୟକ ବୋଧ କଲି ନାହିଁ ।

ବାଲ୍ୟବିବାହ ହେତୁ ସ୍ଥଳ ବିଶେଷରେ ବିବାହ ବ୍ୟୟ ବ୍ୟର୍ଥ ହେଉଥିବାର 'ସ୍ପଷ୍ଟବାଦୀ'ଙ୍କ କଥା ପଣ୍ଡିତ ମହାଶୟ ସ୍ୱୀକାର କରିଅଛନ୍ତି । 'ବିବାହ ବ୍ୟୟ, ଅଳଙ୍କାର ବ୍ୟୟ, ସଙ୍ଖୋଳା ବ୍ୟୟ ପ୍ରଭୃତିକୁ ଲକ୍ଷ୍ୟ କରିବା ନିତାନ୍ତ କଦର୍ଯ୍ୟର କାର୍ଯ୍ୟ' ପଣ୍ଡିତ ମହାଶୟଙ୍କର ଶେଷକଥା ଉଚିତବୋଧ ହେଲା ନାହିଁ । ଆଜିକାଲିର ଜୀବନ ସଂଗ୍ରାମ ବଡ଼ ଭୟାନକ । ଲୋକମାନେ ହାଡ଼ଭଙ୍ଗା ପରିଶ୍ରମ କରି ସୁଦ୍ଧା ଦିନାନ୍ତେ ପୂର୍ଣ୍ଣଗ୍ରାସ ପାଉ ନାହାନ୍ତି । ସ୍ଥଳ ବିଶେଷରେ ବିବାହ ବ୍ୟୟ ଏତେ ବେଶି ଯେ ଉକ୍ତ ବ୍ୟୟର ଭୟରେ ଜନନୀମାନେ ରାକ୍ଷସୀ ବୃତ୍ତି ଅବଲମ୍ବନ କରି ସୂତିକାଗାରରେ ସନ୍ତାନମାନଙ୍କୁ ବଧ କରୁଅଛନ୍ତି । ଗୋଟିଏ ଗୋଟିଏ ବିବାହରେ ବଡ଼ ବଡ଼ ଘରମାନ ବସି ଯାଉଅଛି । କେତେକ ଲୋକ ଅର୍ଥାଭାବରେ ଚିରଜୀବନ ଅବିବାହିତ ରହି ଦେଶରେ ଅସତୀ ଏବଂ ଭ୍ରୂଣହତ୍ୟାର ସଂଖ୍ୟା ବର୍ଦ୍ଧନ କରୁଅଛନ୍ତି । ଏପରିସ୍ଥଳେ ବିବାହ ସଙ୍କ୍ରାନ୍ତ ବ୍ୟୟକୁ ଲକ୍ଷ୍ୟ କରିବା 'କଦର୍ଯ୍ୟର କାର୍ଯ୍ୟ ନୁହେଁ' ବିଜ୍ଞତା ପରିଣାମଦର୍ଶିତାର କାର୍ଯ୍ୟ । ଅନୁଚିତରୂପେ ଏକ କପର୍ଦ୍ଦକ ବ୍ୟୟ କରିବା ବିଧେୟ ନୁହେଁ ।

ବାଲ୍ୟବିବାହ ପ୍ରଚଳନ ହେତୁ ଅନେକ ସ୍ଥଳରେ ବିବାହ ବ୍ୟୟ ବ୍ୟର୍ଥ ହେଉଥିବାସ୍ଥଳେ ବାଲ୍ୟବିବାହରହିତ ହେବାର ଉଚିତ । ସ୍ପଷ୍ଟବାଦୀ ମହାଶୟ ୫ମ ଦଫାରେ ଲେଖିଥିଲେ, ''ବାଲ୍ୟକାଳରେ ବାଳକ ବାଳିକାମାନଙ୍କର ଆତ୍ମଜ୍ଞାନ ନ ଥାଏ ତେତେବେଳେ ସେମାନଙ୍କୁ ବିବାହ ସଂକ୍ରାନ୍ତ ସର୍ତ୍ତପାଳନ ସକାଶେ ପ୍ରତିଜ୍ଞା କରିବାକୁ ଦେବା ନ୍ୟାୟସଙ୍ଗତ କାର୍ଯ୍ୟ ନୁହେଁ ।'' ପଣ୍ଡିତ ମହାଶୟ ଏ ସ୍ଥଳରେ ମୂଳକଥାର ଆଲୋଚନା ନ କରି ନ ଜାଣିଲାପରି ହୋଇ ଅନ୍ୟ ବିଷୟର ଆଲୋଚନା କରିଅଛନ୍ତି । ପୁତ୍ର କନ୍ୟା ପ୍ରତି ପିତାର କିପରି ଅଧିକାର ତଦ୍ୱିଷୟରେ ମନ୍ତବ୍ୟ ଦେଇଅଛନ୍ତି । କିନ୍ତୁ ଆତ୍ମଜ୍ଞାନହୀନ ବାଳକ ବାଳିକାମାନଙ୍କୁ ବିବାହ ସଂକ୍ରାନ୍ତ କଠିନ ପ୍ରତିଜ୍ଞା ଆଇନରେ ପ୍ରବୃତ୍ତ କରାଇବା ନ୍ୟାୟସଙ୍ଗତ କି ନା ସେ ସମ୍ବନ୍ଧରେ କିଛି କହି ନାହାନ୍ତି, କହିବାକୁ ବା ଅଛି କଅଣ ଯେ କହିବେ ? ବିବାହ ପିଲାଖେଳ ନୁହେଁ ମାନବ ଜୀବନର ମହତ କାର୍ଯ୍ୟ । ଏହି କାର୍ଯ୍ୟ ବିଶେଷ ସାବଧାନତା ସହିତ ସମଧା ହେବା ବିଧେୟ । କନ୍ୟା ଏବଂ ବରର ଆତ୍ମଜ୍ଞାନ ନ ଜନ୍ମିଲେ ସେମାନେ ସ୍ତ୍ରୀ ପୁରୁଷର ଦାୟିତ୍ୱ ବିବାହ ସଂକ୍ରାନ୍ତ ପ୍ରତିଜ୍ଞାର ଗୁରୁତ୍ୱ ନ ବୁଝିଲେ ସେମାନଙ୍କୁ ପ୍ରତିଜ୍ଞା ପାଳନାର୍ଥ ବାଧ କରି, ମାଦକଦ୍ରବ୍ୟ ସେବନ କରାଇ, କୌଣସି ଦସ୍ତାବିଜରେ ଦସ୍ତଖତ କରାଇବାର ଭୟ ନୀତି ବିଗର୍ହିତ । ଏପରି ଅନ୍ୟାୟ ପ୍ରଥାର ପ୍ରଶ୍ରୟକାରୀ ବାଲ୍ୟବିବାହ ଉଠାଇଦେବା ଉଚିତ ନୁହେଁ କି ? ମହାନିର୍ବାଣ ତନ୍ତ୍ରରେ ଲିଖିତ ଅଛି—

ଅଜ୍ଞାତ ପତି ମର୍ଯ୍ୟାଦା ମଜ୍ଞାନ ପତିସେବନ
ନୋଲାଳୟେତ ପିତା ବାଳାମଜ୍ଞାତ ଧର୍ମ୍ମ ଶାସନଂ ।

ଯେଉଁ ବାଳିକା ପତି ମର୍ଯ୍ୟାଦା, ପତିସେବା ଜାଣେ ନାହିଁ, ଧର୍ମ୍ମ ଶାସନ ଅବଗତ ନୁହେଁ, ପିତା ଏପରି ବାଳିକାର ବିବାହ ଦେବେ ନାହିଁ । ଲୋକମାନେ ଏହି ଶିବ ବାକ୍ୟର ଅନ୍ୟଥାଚରଣ କରି ଶାସ୍ତ୍ର ବିଗର୍ହିତ କାର୍ଯ୍ୟ କରୁନାହାନ୍ତି କି ?

ପଣ୍ଡିତ ମହାଶୟ ଲେଖିଅଛନ୍ତି ''କନ୍ୟାର ଆତ୍ମଜ୍ଞାନ ନ ଥିବା ଅବସ୍ଥାରେ ବର ପ୍ରତି ଦାନଟି ପିତାର କାହିଁକି ନ୍ୟାଯ୍ୟ ନୁହେଁ ?'' ସ୍ପଷ୍ଟବାଦୀ ଏକଥା ଉତ୍‌ଥାପନ କରି ନ ଥିବା ସ୍ଥଳେ ମିଶ୍ର ମହାଶୟ ବୃଥାରେ ଏ ପ୍ରଶ୍ନ କରିଅଛନ୍ତି । ଯାହାହେଉ ଏଥର ଉତ୍ତର ଦେବାର ଆବଶ୍ୟକ । ଆମ୍ଭମାନଙ୍କ ବିବେଚନାରେ ଯହିଁରେ ଚିରସୁଖୀ ବା ଚିରଦୁଃଖୀ ହେବାର ସମ୍ଭାବନା ଏପରି ଏକ ଗୁରୁତର ବନ୍ଧନରେ କୌଣସି ବ୍ୟକ୍ତିର ମତଦେବାର ଉପଯୁକ୍ତ ବୟସ ହେବାର ପୂର୍ବେ, ଦାୟିତ୍ୱବୋଧ ଜନ୍ମିବାର ପୂର୍ବେ ଏକ ଅଚ୍ଛେଦ୍ୟ ବନ୍ଧନରେ ବଦ୍ଧ କରିବା ନ୍ୟାୟ ସଙ୍ଗତ ନୁହେଁ । ନାବାଳକର ଏକ କାଣିଜମି କାହାରିକୁ ଦାନବିକ୍ରୟ କରିବାର ଅଧିକାର ନ ଥିବା ସ୍ଥଳେ ତାହାର ଦେହମନ ଜୀବନ ଚିରଦିନ ସକାଶେ ବିକ୍ରିତ କରିବା ଘୋର ଅତ୍ୟାଚାର ବ୍ୟତୀତ ଅନ୍ୟ କିଛି ନୁହେଁ । ଏପରିସ୍ଥଳେ ସ୍ୱାମୀ ବା ସ୍ତ୍ରୀ ବିବାହ ସଂକ୍ରାନ୍ତ ପ୍ରତିଜ୍ଞା ଲଙ୍ଘନ କଲେ ଈଶ୍ୱରଙ୍କ ନିକଟରେ ଦୋଷୀ ହୋଇପାରିବେ ନାହିଁ । ତନ୍ନିମିତ୍ତ ବରକନ୍ୟାର ଅଭିଭାବକମାନେ ଦାୟୀ ହେବେ ଏଥିରେ ସନ୍ଦେହ ନାହିଁ ।

'ସ୍ପଷ୍ଟବାଦୀ'ଙ୍କର ସ୍ପଷ୍ଟ କଥା ''ବାଲ୍ୟବିବାହ ପୁରୁଷର ଶିକ୍ଷା ଏବଂ ଅପରବିଧ ଉନ୍ନତିପକ୍ଷେ ବିଘ୍ନକର'' । ପଣ୍ଡିତ ମହାଶୟ ଏହି କଥାର ମର୍ମ ଗ୍ରହଣ କରିପାରି ନ ଥିବାର କହନ୍ତି । ସୁତରାଂ ସ୍ପଷ୍ଟ କଥାକୁ ଟିକିଏ ସ୍ପଷ୍ଟ କରି ବୁଝାଇ ଦେଉଅଛୁଁ । ବାଲ୍ୟବିବାହ ହେତୁ ଶୀଘ୍ର ସ୍ତ୍ରୀ ସହବାସ, ଗର୍ଭାଧାନ କରି ଧର୍ମରକ୍ଷା କରିବାକୁ ହୁଏ । ପୁତ୍ରମାନେ ସତ୍ ଓ ଅସତ୍ ମାର୍ଗର ସନ୍ଧିସ୍ଥଳ ଯୌବନ ସୀମାରେ ପଦାର୍ପଣ କରି ଇନ୍ଦ୍ରିୟ ସେବାର ଉପକାର ପାଇଲେ ଆପାତ କର୍କଶ ଶିକ୍ଷାଗ୍ରହଣ କାର୍ଯ୍ୟରେ ଶିଥିଳ ପ୍ରଯତ୍ନ ହୋଇଥାନ୍ତି । ଅଳ୍ପ ଦିନପରେ ପୁତ୍ରକନ୍ୟା ଲାଭ କରି ସେମାନଙ୍କ ଭରଣପୋଷଣ ଚିନ୍ତାରେ ବ୍ୟାପୃତ ରହି ଶିକ୍ଷା ଗ୍ରହଣ କାର୍ଯ୍ୟ ପରିତ୍ୟାଗ କରନ୍ତି । ଶିକ୍ଷା ଗ୍ରହଣ କରିବାକୁ ହେଲେ କଠୋର ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବା ଉଚିତ । ଏହି ହେତୁରୁ ମନୁ ବ୍ୟବସ୍ଥା କରି ଯାଇଅଛନ୍ତି ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ଶିକ୍ଷା ସମାପ୍ତ କରିବ ତପ୍ତରେ ଦାର ଗ୍ରହଣ କରି ଗୃହସ୍ଥାଶ୍ରମରେ ବାସ କରିବ । ବାଲ୍ୟବିବାହ ପ୍ରଚଳିତ ଥିବାରୁ ତାହା ହୋଇପାରୁ ନାହିଁ । ସୁତରାଂ ବାଳକମାନଙ୍କର ଶିକ୍ଷା କାର୍ଯ୍ୟରେ ବିଘ୍ନ ଘଟୁଅଛି । ଯେଉଁମାନେ ସ୍ୱୀୟ କନ୍ୟାମାନଙ୍କୁ ଶିକ୍ଷା ଦେଉଅଛନ୍ତି ସେମାନେ ବାଲ୍ୟବିବାହ ଦୋଷରୁ କନ୍ୟାମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାକୁ ଅବସର ପାଉ ନାହାନ୍ତି । ଅପରବିଧ ଉନ୍ନତିରେ ବ୍ୟାଘାତ ଘଟୁଥିବା କଥାର ବିଶଦ ବ୍ୟାଖ୍ୟା ଅନାବଶ୍ୟକ । ଉପଯୁକ୍ତ ଶିକ୍ଷା ଅଭାବରେ କର୍ତ୍ତବ୍ୟଜ୍ଞାନ ଉଜ୍ଜ୍ୱଳ ହୁଏ ନାହିଁ । ତଦ୍ଦ୍ୱାରା ନାନାବିଧ କ୍ଷତି ହେବାର ସ୍ୱତଃସିଦ୍ଧ କଥା ।

ପଣ୍ଡିତ ମହାଶୟ ସ୍ପଷ୍ଟବାଦୀଙ୍କର ୬ ଗୋଟି ମନ୍ତବ୍ୟର ଆଲୋଚନା ଶେଷ କରି ଏକସ୍ଥାନରେ କହିଅଛନ୍ତି କି, ''ଆମ୍ଭମାନଙ୍କ ମତରେ ବାଲ୍ୟବିବାହ ଶ୍ଲାଘ୍ୟ, ଯୁବତୀ ବିବାହ ଶ୍ଲାଘ୍ୟ ଅଥଚ ଉଭୟ ବିବାହ ଦୋଷାଶ୍ରିତ ।'' ଆମ୍ଭେମାନେ କହୁଁ ବାଲ୍ୟବିବାହ ଯୁବତୀ ବିବାହର ଅଧମ ସଂସ୍କରଣ । ବିବାହ ମନ୍ତ୍ରାଦି ଆଲୋଚନା କଲେ ଯୁବତୀ ବିବାହ ଶାସ୍ତ୍ରସମ୍ମତ ଥିବା ଏବଂ ଯୁବତୀ ବିବାହ ସ୍ଥାନରେ ବାଲ୍ୟବିବାହ ପ୍ରଚଳିତ ହୋଇଥିବାର ସ୍ପଷ୍ଟ ବୋଧ ହୁଏ । ଯୁବତୀ ବିବାହ ବଦଳରେ ବାଲ୍ୟବିବାହ ପ୍ରଚଳିତ ହୋଇଥିବାର ଅବିଶ୍ୱାସ କରାଯାଇ ନ ପାରେ । ବାଲ୍ୟବିବାହ ସ୍ଥଳେ ଶିଶୁବିବାହ ଚଳୁଥିବାସ୍ଥଳେ ଯୁବତୀ ବିବାହ ବଦଳରେ ବାଲ୍ୟବିବାହ ଚଳୁଥିବାର ଅସ୍ୱୀକାର କରାଯାଇ ନ ପାରେ । ସୋନପୁର ଅଞ୍ଚଳରେ ଶୁଣିଅଛୁଁ ଏକ ଜାତୀୟ ଗର୍ଭିଣୀ ସ୍ତ୍ରୀମାନେ ସ୍ନାନକାଳରେ ନଦୀ ପୁଷ୍କରିଣୀ ଘାଟରେ ପ୍ରତିଶ୍ରୁତି ଦେଇଥାନ୍ତି ଯେ ଆମ୍ଭେ ଦୁଇ ଜଣ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ପ୍ରସବ କଲେ ସେମାନଙ୍କୁ ବିବାହ ଦେବା । ସାଧାରଣତଃ ଏସବୁ ସ୍ଥାନରେ ଶୈଶବ ବିବାହ ପ୍ରଚଳିତ । ବିବାହର ମନ୍ତ୍ରଗୁଡ଼ିକ ଯେ ଯୁବତୀ ବିବାହର ପରିଚାୟକ ଏଥିର ପ୍ରମାଣ ସ୍ୱରୂପ ଗୋଟିଏ ମନ୍ତ୍ର ଏଠାରେ ଉଲ୍ଲେଖ କରୁଅଛୁଁ ।

ବିବାହ ଶେଷରେ ବର କନ୍ୟାର ବୃଦ୍ଧାଙ୍ଗୁଷ୍ଠ ଧରି କୁହେ—

ସାନଃପୂଷ ଶିବତମା ମୟିରୟତ୍
ସାନ ଉଶତୀବିହର ଯସ୍ୟ ମୃଶନ୍ତ
ପ୍ରହରାମଶେଫଂ ଯସ୍ୟା ମୁକ ମାବହ ବୋନିବିଷ୍ଟି ।

ଏହା ସତ୍ୟକଥା ଯେ ବାଲ୍ୟ ଓ ଯୁବତୀ ଉଭୟବିଧ ବିବାହ ଦୋଷାଶ୍ରିତ କିନ୍ତୁ ଉଭୟ ବିବାହର ଦୋଷାଲୋଚନା କଲେ ବାଲ୍ୟବିବାହ କେବଳ ଦୋଷାକର ଥିବାର ପ୍ରତିପନ୍ନ ହେବ ଏବଂ ଏକଥା ସର୍ବବାଦିସମ୍ମତ ।

•

## ଗ୍ରହଣ ବିଚାର

ତଦିନ୍ଦୁନା ଛାଦିତ ମର୍କବିମ୍ବଂ
ସଂଦୃଶ୍ୟତେ ଗ୍ରସ୍ତମିବାତ୍ରଲୋକୈଃ
କିଞ୍ଚେନ୍ଦୁ ବିମ୍ବସ୍ୟ ରବିଗ୍ରହେଯା
ଛାୟା ପୃଥିବ୍ୟାଃ ପତିତାସ୍ତି ଦୃଷ୍ଟା ।

ଅନନ୍ତ ଆକାଶ ବିହାରୀ ଯେଉଁ ସମସ୍ତ ଜ୍ୟୋତିର୍ମୟ ପଦାର୍ଥ ସୂର୍ଯ୍ୟ କର୍ତ୍ତୃକ ଆକୃଷ୍ଟ ହୋଇ ଡିମ୍ବାକାର ବା ମଣ୍ଡଳାକାର ଇତ୍ୟାଦି ପଥରେ ସୂର୍ଯ୍ୟକୁ ନିୟତ ପ୍ରଦକ୍ଷିଣ କରନ୍ତି ସେହି ଜ୍ୟୋତିଷ୍କମାନଙ୍କୁ ଗ୍ରହ ବୋଲାଯାଏ । ଏବଂ ଯେଉଁ କ୍ଷୁଦ୍ର କ୍ଷୁଦ୍ର ଗ୍ରହମାନେ ଗ୍ରହକୁ ପ୍ରଦକ୍ଷିଣ କରନ୍ତି ସେମାନଙ୍କୁ ଉପଗ୍ରହ ବୋଲାଯାଏ । ଗ୍ରହମାନଙ୍କର ଅଧୀନ ଉପଗ୍ରହ ଏବଂ ସୂର୍ଯ୍ୟଙ୍କର ଅଧୀନ ଗ୍ରହ ଓ ଉପଗ୍ରହ । ତାହାହେଲେ ସୂର୍ଯ୍ୟ ସମସ୍ତ ଗ୍ରହ ଉପଗ୍ରହମାନଙ୍କର ନିୟନ୍ତା ।

ଆମ୍ଭେମାନେ ଯେଉଁ ପୃଥିବୀରେ ବାସ କରୁଅଛୁଁ ତାହା ଗୋଟିଏ ସୂର୍ଯ୍ୟ ପ୍ରଦକ୍ଷିଣକାରୀ ଗ୍ରହ ଏବଂ ଚନ୍ଦ୍ର ତାହାର ଉପଗ୍ରହ, ସୂର୍ଯ୍ୟଦ୍ୱାରା ଆକୃଷ୍ଟ. ଏହି ଗ୍ରହ ଉପଗ୍ରହମାନଙ୍କର ନିୟତ ଗତିଦ୍ୱାରା ଦିବାରାତ୍ର, ପରିବର୍ତ୍ତନ, କୃଷ୍ଣପକ୍ଷ ଶୁକ୍ଳପକ୍ଷର ପରିବର୍ତ୍ତନ ଏବଂ ଋତୁର ପରିବର୍ତ୍ତନ ଘଟୁଅଛି । ଗ୍ରହଣ ବିଷୟ ଲେଖିବା ଏହି ପ୍ରବନ୍ଧର ପ୍ରଧାନ ଉଦ୍ଦେଶ୍ୟ ।

ତେବେ ଗ୍ରହଣ ବିଷୟ ଲେଖିବା ପୂର୍ବରୁ ପୃଥିବୀ ଓ ଚନ୍ଦ୍ରର ଗତି ପ୍ରଣାଳୀର ନିୟମ ଲେଖିବା ଆବଶ୍ୟକ ।

ପୃଥିବୀର ଦୁଇ ଗୋଟି ଗତି ଅଛି । ଗୋଟିଏ ଦୈନିକ ଗତି, ଗୋଟିଏ ବାର୍ଷିକ ଗତି । ପୃଥିବୀ ନିଜ ମେରୁଦଣ୍ଡର ଚାରିପାଖରେ ଘ୨୪ଣ୍ଟା ରେ ଯେଉଁ ଗତି କରେ ତାହାର ନାମ ଦୈନିକ ଗତି । ଏବଂ ଯେଉଁ ଗତିଦ୍ୱାରା ୩୬୫ ଦିନ ୪¹/, ଘଣ୍ଟାରେ ସୂର୍ଯ୍ୟକୁ ପ୍ରଦକ୍ଷିଣ କରେ ତାହାକୁ ବାର୍ଷିକ ଗତି ବୋଲାଯାଏ । ପୃଥିବୀର ଏହି ଦୁଇ ଗୋଟି ଗତି ନିୟମିତ। ପ୍ରଥମୋକ୍ତ ଗତିଦ୍ୱାରା ରାତ୍ରିଦିବାର ପରିବର୍ତ୍ତନ ଏବଂ ଶେଷୋକ୍ତ ଗତିଦ୍ୱାରା ଋତୁର ପରିବର୍ତ୍ତନ ଘଟୁଅଛି । ଚନ୍ଦ୍ର ଉପଗ୍ରହ ପୃଥିବୀକୁ ବୃତ୍ତାକାର ଅସରଳ ରୈଖିକ ପଥରେ ଇଷଦ୍ଦୁନ ଦି ୩୦ନରେ ପ୍ରଦକ୍ଷିଣ କରୁଅଛି, କିନ୍ତୁ ଏହାର ଦୈନିକଗତି ନାହିଁ (ନିଜ ମେରୁଦଣ୍ଡର ଚାରିଆଡ଼ରେ ଭ୍ରମଣ କରେ ନାହିଁ ।) ସୁତରାଂ ଚନ୍ଦ୍ରର ଏକପାର୍ଶ୍ୱ ବ୍ୟତୀତ ଆମ୍ଭେମାନେ ଅନ୍ୟପାର୍ଶ୍ୱ କଦାପି ଦେଖିବାକୁ ପାଉ ନାହିଁ । କିନ୍ତୁ ସୂର୍ଯ୍ୟଙ୍କୁ ଚନ୍ଦ୍ରର ଉଭୟପାର୍ଶ୍ୱ ଦେଖାଯାଏ, ତଥାପି ଚନ୍ଦ୍ର ଗୋଲକର ସମଗ୍ରାଂଶ ଏକଦିନ ସୁଦ୍ଧା ସମ୍ପୂର୍ଣ୍ଣରୂପେ ଆଲୋକିତ ହୋଇପାରେ ନାହିଁ । ଚନ୍ଦ୍ର ପୃଥିବୀକୁ ଭ୍ରମଣ କରୁଥିବାରୁ ପୃଥିବୀ ସଙ୍ଗେ ସଙ୍ଗେ ସୂର୍ଯ୍ୟକୁ ମଧ ପ୍ରଦକ୍ଷିଣ କରୁଅଛି । ପୃଥିବୀ ସୂର୍ଯ୍ୟକୁ ପ୍ରଦକ୍ଷିଣ କରୁଥିବାରୁ ଏବଂ ଚନ୍ଦ୍ର ପୃଥିବୀକୁ ପ୍ରଦକ୍ଷିଣ କରୁଥିବାରୁ ଥରକରେ ଚନ୍ଦ୍ର ପୃଥିବୀ ଏବଂ ସୂର୍ଯ୍ୟଙ୍କ ମଧରେ ଅବସ୍ଥାନ କରେ ଏବଂ ଥରେ ପୃଥିବୀ ଚନ୍ଦ୍ର ଓ ସୂର୍ଯ୍ୟ ମଧରେ ଅବସ୍ଥାନ କରେ । ଯେଉଁଦିନ ଚନ୍ଦ୍ର ପୃଥିବୀ ଓ ସୂର୍ଯ୍ୟ ମଧରେ ଅବସ୍ଥାନ କରେ ସେଦିନ **ଅମାବାସ୍ୟା** ହୁଏ । ଏବଂ ପୃଥିବୀ ଦିଗକୁ ସମ୍ମୁଖୀନ ପାର୍ଶ୍ୱ ଅନ୍ଧକାର ଓ ନିସ୍ତେଜ ରହେ । ଏଣୁ ଆମ୍ଭେମାନେ କିଛି ଦେଖି ନ ପାରୁଁ, ଯେଉଁଦିନ ପୃଥିବୀ ଚନ୍ଦ୍ର ଓ ସୂର୍ଯ୍ୟ ମଧରେ ଅବସ୍ଥାନ କରେ ସେହିଦିନ, ସୂର୍ଯ୍ୟରଶ୍ମି ପୃଥିବୀ ଦିଗକୁ ସମ୍ମୁଖୀନ ହୋଇଥିବା ଚନ୍ଦ୍ରପାର୍ଶ୍ୱରେ ପତିତ ହୋଇ ଆଲୋକିତ କରେ ତେଣୁ ଚନ୍ଦ୍ରର ସମ୍ପୂର୍ଣ୍ଣ ଅର୍ଦ୍ଧାଂଶ ଦେଖିବାକୁ ମିଳେ ।

ବର୍ତ୍ତମାନ ଚନ୍ଦ୍ର ଓ ସୂର୍ଯ୍ୟ ଗ୍ରହଣର କାରଣ ଉଲ୍ଲେଖ କରାଯାଉ । ଏହା ସମସ୍ତଙ୍କୁ ଅବଗତ ଅଛି ଯେ ଅମାବାସ୍ୟା ଦିନ ସୂର୍ଯ୍ୟୋପରାଗ ହୁଏ । କେହି କେହି କହିପାରନ୍ତି ଯେ ଯେତେବେଳେ ପୂର୍ଣ୍ଣମୀରେ ଚନ୍ଦ୍ରଗ୍ରହଣ ହୁଏ, ଅମାବାସ୍ୟାରେ ସୂର୍ଯ୍ୟୋପରାଗ ହୁଏ, ତେବେ ଆମ୍ଭେମାନେ ପ୍ରତି ପୂର୍ଣ୍ଣମୀ ଓ ପ୍ରତି ଅମାବାସ୍ୟାରେ ଏହି ମହତ ପରିବର୍ତ୍ତନ କାହିଁକି ଦେଖିବାକୁ ପାଉ ନାହିଁ ? ତାହାର କାରଣ ପୂର୍ବରୁ ବୋଲାଯାଇଅଛି ଯେ ଚନ୍ଦ୍ର ବୃତ୍ତାକାର ପଥରେ ପୃଥିବୀକୁ ପ୍ରଦକ୍ଷିଣ କରୁଥିଲେ ସୁଦ୍ଧା ତାହାର ଗତିପଥ ସରଳରୈଖିକ ନୁହେଁ । ତେଣୁ କେତେବେଳେ ଗତିପଥରୁ କିଞ୍ଚିତ୍ ଊର୍ଦ୍ଧ୍ୱରେ, କେତେବେଳେ ଗତିପଥରୁ କିଞ୍ଚିତ ନ୍ୟୂନରେ ଗତି କରେ ଏବଂ ଏତାଦୃଶ ଗତି ହେତୁରୁ ଏହି ବିପର୍ଯ୍ୟୟ ଘଟେ ।

**ଚନ୍ଦ୍ରଗ୍ରହଣ :** ଚନ୍ଦ୍ର ଓ ପୃଥିବୀ ଗତି କରୁ କରୁ ଯେଉଁ ପୂର୍ଣ୍ଣମୀରେ ଚନ୍ଦ୍ର ପୃଥିବୀ ଆପାତତ୍ ସରଳରେଖାରେ ଅବସ୍ଥାନ କରନ୍ତି ସେହି ପୂର୍ଣ୍ଣମୀରେ ପୃଥିବୀ, ଚନ୍ଦ୍ର ଓ ସୂର୍ଯ୍ୟ ମଧରେ ଅବସ୍ଥାନ କରୁଥିବାରୁ ପୃଥିବୀର ଛାୟା ଚନ୍ଦ୍ର ଉପରେ ପଡ଼େ ଏବଂ ଚନ୍ଦ୍ର ପୃଥିବୀର ଛାୟାଦ୍ୱାରା ଆବୃତ ହେବାରୁ ଓ ନିଜେ ନିସ୍ତେଜ ପଦାର୍ଥ ଥିବାରୁ ଆମ୍ଭମାନଙ୍କ ଦୃଷ୍ଟିଗୋଚର ହୋଇପାରେ ନାହିଁ, ଏହାକୁ ଚନ୍ଦ୍ରଗ୍ରହଣ କହୁଁ ଏବଂ ଆମ୍ଭେମାନେ ଏହାକୁ ରାହୁଗ୍ରାସ କଲା ବୋଲି ଦାନ କରୁଁ ଏବଂ ପାପଜନକ କାର୍ଯ୍ୟ ବୋଲି ସ୍ନାନାଦି ମଧ କରୁଁ ।

**ସୂର୍ଯ୍ୟୋପରାଗ :** ସମସ୍ତଙ୍କର ଅବଗତ ଅଛି ଯେ ଅମାବାସ୍ୟା ଦିନ ସୂର୍ଯ୍ୟ ଗ୍ରହଣ ହୁଏ ବା ଯେଉଁ ଦିନରେ ଚନ୍ଦ୍ର, ପୃଥିବୀ, ସୂର୍ଯ୍ୟ ମଧରେ ଅବସ୍ଥାନ କରେ ସେହିଦିନ ସୂର୍ଯ୍ୟ ଗ୍ରହଣ ହୁଏ । ଏହା ସମସ୍ତଙ୍କୁ ଜଣାଅଛି ଯେ ଅମାବାସ୍ୟା ଦିନ ଚନ୍ଦ୍ର, ସୂର୍ଯ୍ୟ ଓ ପୃଥିବୀ ମଧରେ ରହେ । ଚନ୍ଦ୍ର ଓ ପୃଥିବୀ ଭ୍ରମଣ କରୁ କରୁ ଯେଉଁ ଅମାବାସ୍ୟା ଦିନ ସୂର୍ଯ୍ୟ ସହିତ ପ୍ରାୟ ସମୟରେଖାରେ ରହନ୍ତି, ଅର୍ଥାତ୍ ଯେଉଁ ଅମାବାସ୍ୟାରେ ଚନ୍ଦ୍ରର କେନ୍ଦ୍ର ଦେଇ ସୂର୍ଯ୍ୟ ଓ ପୃଥିବୀଠାକୁ ଗୋଟିଏ ରେଖା ଟାଣିଲେ ସରଳରେଖା ହେବ । ସେହିଦିନ ଚନ୍ଦ୍ର ଆୟତନ ପରିମାଣରେ ସୂର୍ଯ୍ୟାଲୋକ ଆବୃତ ହୁଏ, ଅର୍ଥାତ୍ ପୃଥିବୀକୁ ଆସୁଥିବା ସୂର୍ଯ୍ୟାଲୋକ ଚନ୍ଦ୍ରର ଉପରପାର୍ଶ୍ୱରେ ପ୍ରତିଘାତ ହୁଏ, ଏବଂ ପୃଥିବୀକୁ ଆସି ନ ପାରେ ଅର୍ଥାତ୍ ଚନ୍ଦ୍ରଦ୍ୱାରା ଯେଉଁ ପରିମାଣରେ ଆଲୋକ ଆବୃତ ହୁଏ ତାହା ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଏ ନାହିଁ ଏବଂ ସୂର୍ଯ୍ୟର ସେହି ଅଂଶ ଆମ୍ଭେମାନେ ଦେଖି ନ ପାରି କେବଳ ଆବୃତକାରୀ ଚନ୍ଦ୍ରର ନିସ୍ତେଜ କୃଷ୍ଣପିଣ୍ଡକୁ ଦୃଷ୍ଟିଗୋଚର କରୁଁ, ଅନ୍ୟ କଥାରେ ଚନ୍ଦ୍ରର ଛାୟା ପୃଥିବୀର ଯେଉଁ ଅଂଶରେ ପତନ ହୁଏ ତଦ୍ଦେଶୀୟ ବ୍ୟକ୍ତିମାନେ ସୂର୍ଯ୍ୟାଲୋକରୁ ବଞ୍ଚିତ ହୁଅନ୍ତି । ଯେତେବେଳେ ସୂର୍ଯ୍ୟର କେନ୍ଦ୍ର ଓ ଚନ୍ଦ୍ରର କେନ୍ଦ୍ର ସରଳରେଖାରେ ଥାଏ ସେହି ସମୟରେ ପୂର୍ଣ୍ଣଗ୍ରାସ ବା କଳଙ୍କଗ୍ରାସ ହୁଏ । ଚନ୍ଦ୍ର ସୂର୍ଯ୍ୟଠାରୁ ଅତି ଛୋଟ, ସେହି ହେତୁରୁ ପୂର୍ଣ୍ଣଗ୍ରାସ ପ୍ରାୟ ଦେଖାଯାଏ ନାହିଁ ତେବେ ସୂର୍ଯ୍ୟର ଦୂରତା ତୁଳନାରେ ଚନ୍ଦ୍ରର ଦୂରତା ପୃଥିବୀଠାରୁ ଅତି ନିକଟ ଏବଂ ନିକଟସ୍ଥ ଅତି କ୍ଷୁଦ୍ର ପଦାର୍ଥ ଦେଇ ଦୂରସ୍ଥ ମହାନ୍

ପଦାର୍ଥକୁ ଦୃଷ୍ଟି ନିକ୍ଷେପ କଲେ ସୁଦ୍ଧା ଛୋଟ ପଦାର୍ଥଦ୍ୱାରା ଦୂରସ୍ଥ ବୃହତ୍ ପଦାର୍ଥ ଆବୃତ୍ତ ହୋଇଯିବାର ଦେଖାଯାଏ । ଏହି ହେତୁରୁ ଆମ୍ଭେମାନେ ଚନ୍ଦ୍ର ସୂର୍ଯ୍ୟାଲୋକକୁ ଏତେ ବେଶୀ ପରିମାଣରେ ଆବୃତ କରୁଥିବାର ଦେଖୁଁ, ଚନ୍ଦ୍ର ଯଦ୍ୟପି ଆଉ କିଛି ଦୂରରେ ଅବସ୍ଥାନ କରୁଥାନ୍ତା ତାହାହେଲେ ସୂର୍ଯ୍ୟର ଆହୁରି ଅଳ୍ପଅଂଶ ଆବୃତ ହେବାର ଦେଖନ୍ତୁ ପୁଣି ଯଦ୍ୟପି ଚନ୍ଦ୍ର ପୃଥିବୀର ଆଉ କିଞ୍ଚିତ ନିକଟରେ ଥାନ୍ତା, ତାହାହେଲେ ସୂର୍ଯ୍ୟ ସମ୍ପୂର୍ଣ୍ଣ ଭାବରେ ଆବୃତ ହେବାର ସର୍ବଦା ଦେଖନ୍ତୁ ।

ଚନ୍ଦ୍ର ପୃଥିବୀର ଗତିଦ୍ୱାରା ଚନ୍ଦ୍ର ସୂର୍ଯ୍ୟ ଗ୍ରହଣ ହୁଏ । ଏତାଦୃଶ ଅନ୍ୟାନ୍ୟ ଗ୍ରହ ଓ ଉପଗ୍ରହମାନଙ୍କର ମଧ୍ୟ ଗ୍ରହଣ ହୋଇଥାଏ । ମାତ୍ର ସେମାନଙ୍କର ଗ୍ରହଣ ଯନ୍ତ୍ର ସାହାଯ୍ୟ ବ୍ୟତିରେକେ ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୋଇପାରେ ନାହିଁ । ତେଣୁ ଆମ୍ଭେମାନେ ତଦ୍ ବିଷୟରେ କୌଣସି ଆନ୍ଦୋଳନ କରୁ ନାହିଁ ।

ଉପରୋକ୍ତ ଗତି ନିୟମାନୁସାରେ ଗତ ଅଗଷ୍ଟ ତା ୯ ରିଖ ଦିନ ୟୁରୋପୀୟ କେତେକ ଦେଶକୁ ସୂର୍ଯ୍ୟଗ୍ରହଣ ଦେଖାଯାଇ ନ ଥିଲା ଏବଂ ସୂର୍ଯ୍ୟ ସମ୍ପୂର୍ଣ୍ଣ ଆଚ୍ଛାଦିତ ହୋଇଥିବାରୁ ଭିନ୍ନ ଭିନ୍ନ ଦେଶୀୟ ଜ୍ୟୋତିର୍ବିତ୍‌ମାନେ ନୂତନ ନୂତନ ରହସ୍ୟ ଆବିଷ୍କାର ନିମନ୍ତେ ସ୍ୱିଡେନ ପ୍ରଭୃତି ସ୍ଥଳକୁ ବହୁ ବ୍ୟୟରେ ଯାତ୍ରା କରିଥିଲେ । ପୁଣି ଏହି ପ୍ରାକୃତିକ ନିୟମର ବଶବର୍ତ୍ତୀ ହୋଇ ୧୮୯୮ ଇଃ. ଜାନୁୟାରୀ ତା ୨୧ ରିଖ ଦିନ ଗୋଟିଏ ଅଲୌକିକ ସୂର୍ଯ୍ୟଗ୍ରହଣ ହେବ । ଏହି ସୂର୍ଯ୍ୟଗ୍ରହଣ ପ୍ରାତଃକାଳରୁ ଆରମ୍ଭ ହେବ, ମଧ୍ୟ ଆଫ୍ରିକାରେ ବିଷୁବରେଖା ନିକଟରେ ସୂର୍ଯ୍ୟୋଦୟ କାଳରେ ସୂର୍ଯ୍ୟ ଏବଂ ଚନ୍ଦ୍ର ଏକରେଖାସ୍ଥ ହେବେ, ତତ୍‌ପରେ ଚନ୍ଦ୍ରଙ୍କର ଛାୟା ଭାରତମହାସାଗର ପାରି ହୋଇ ବମ୍ବେ ଉପକୂଳରେ ପ୍ରବେଶ ହେବ ଏବଂ କ୍ରମାଗତ ଉତ୍ତରଦିଗକୁ ଗତି କରି କାମସ୍କଟ୍‌କାରେ ସମ୍ପୂର୍ଣ୍ଣ ଭାବରେ ଅନ୍ତର୍ହିତ ହେବ । ତିନି ଘଣ୍ଟା ମଧ୍ୟରେ ସୂର୍ଯ୍ୟଗ୍ରହଣ ଉପରୋକ୍ତ ନିର୍ଦ୍ଦିଷ୍ଟ ସ୍ଥଳମାନଙ୍କ ମଧ୍ୟରେ ଥିବା ଦେଶମାନଙ୍କୁ ଦେଖାଯିବ ମାତ୍ର ତନ୍ମଧ୍ୟରୁ ରତନଗିରିରେ ୨ ମିନିଟ୍ ୧୧$\frac{୧}{୨}$ ସେକେଣ୍ଡ ଏବଂ ନାଗପୁରରେ ୧ ମିନିଟ୍ ୫୫ ସେକେଣ୍ଡ ସୂର୍ଯ୍ୟ ସମ୍ପୂର୍ଣ୍ଣ ଅଦୃଶ୍ୟ ହେବେ ଏବଂ ସେହି ସେହି ଦେଶମାନେ ସେହି କାଳରେ ଅନ୍ଧକାରାଚ୍ଛନ୍ନ ହେବ। ତୁଷାର ଧବଳ ହିମାଳୟର ଉଚ୍ଚତମ ଶୃଙ୍ଗ ମି ୧-୩୦ ସେ. ସମ୍ପୂର୍ଣ୍ଣ ତମସାଚ୍ଛନ୍ନ ହେବ । ଚିଫ୍ କମିସନଙ୍କର ଭବନ ଏବଂ ସୂର୍ଯ୍ୟଙ୍କ ମଧ୍ୟରେ ଚନ୍ଦ୍ର ପ୍ରାୟ ୧୨ ଘଟିକା ସମୟରେ ଅବସ୍ଥାନ କରିବ,ମାତ୍ର ୧$\frac{୧}{୨}$ ଘଟିକା ସମୟରେ ଚିଫ୍ କମିସନରଙ୍କର ଭବନକୁ, ଏକାବେଳକେ ସୂର୍ଯ୍ୟ କିରଣରୁ ବଞ୍ଚିତ କରିଦେବ, ଏହି ସମୟରେ ସେହି ପ୍ରଦେଶ ପ୍ରାୟ ୨ ମିନିଟ୍ ପର୍ଯ୍ୟନ୍ତ ଏକାବେଳେକେ ତମସାଚ୍ଛନ୍ନ ହେବ । ନକ୍ଷତ୍ରମାନେ ଦୃଶ୍ୟ ହେବେ, ପକ୍ଷୀମାନେ ସ୍ୱ ସ୍ୱ କୁଳାୟକୁ ଗମନ କରିବାର ଉଦ୍‌ଯୋଗ କରିବେ, ପୁଷ୍ପମାନେ ମୁଦ୍ରିତ ହେବେ, ଉତ୍ତାପ ସହସା ହ୍ରାସ ହେବ। ଏହି ମହତ୍ ଦୃଶ୍ୟ କେବଳ ଭାରତର କେତେକ ପ୍ରଦେଶର ଭାଗ୍ୟରେ ଘଟିବ । ଏଥିନିମନ୍ତେ ପୃଥିବୀସ୍ଥ ପ୍ରଧାନ ପ୍ରଧାନ ଜ୍ୟୋତିଷମାନେ ଏହି ମହତ୍ ଦୃଶ୍ୟକୁ ଅବଲୋକନ କରିବାକୁ ଏବଂ ନୂତନ ରହସ୍ୟ ଆବିଷ୍କାର ନିମନ୍ତେ ଏହି ପ୍ରଦେଶକୁ ପଦାର୍ପଣ କରିବେ । ସେମାନଙ୍କ ମନରେ କି ସ୍ଫୂର୍ତ୍ତି । ମହତ୍ ପ୍ରାକୃତିକ ନିୟମ ଅବଗତ ହେବାକୁ ସେମାନଙ୍କର କି ମହତ୍ ଚେଷ୍ଟା, ସେମାନେ ଏଠାକୁ ଆସି ଆମୋଦପ୍ରମୋଦ କରିବେ । ମାତ୍ର ଭାରତବାସୀମାନଙ୍କ ପ୍ରତି ମହାମୃତକ ଦୋଷ ଲାଗିବ ସମସ୍ତେ ବିମର୍ଷ, ସୂର୍ଯ୍ୟଗ୍ରହଣ କାଳରେ ସ୍ନାନ, ଦାନ, ନେଇ ବ୍ୟସ୍ତ ହେବେ କି ବିପରୀତ କଥା ।

ରଚନା କୁଶଳତାଦି ଅଭାବ ହେତୁରୁ ସମଗ୍ର ବିଷୟ ସ୍ପଷ୍ଟ ପ୍ରକାଶ ହୋଇ ନ ଥିଲେ ସୁଦ୍ଧା ଏବଂ ବାହୁଲ୍ୟ ଭୟରେ ଅନେକ ଜ୍ଞାତବ୍ୟ ବିଷୟ ତ୍ୟାଗ କରିଥିଲେ ସୁଦ୍ଧା ଯେତିକି ଲେଖା ହୋଇଅଛି ତହିଁରୁ ପାଠକମାନେ ଗ୍ରହଣ ହେବାର କାରଣ ବୁଝିପାରିଥିବେ । ଚନ୍ଦ୍ର ଓ ପୃଥିବୀର ଗତିଦ୍ୱାରା ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟଗ୍ରହଣ ହେଉଥିବା ବିଷୟରେ ତିଳେମାତ୍ର ସନ୍ଦେହକରି କୁସଂସ୍କାର ଜଡ଼ିତ ହୋଇ ରହିବାର କଦାପି ବାଞ୍ଛନୀୟ ନୁହେଁ ଏହିମତ ଅତ୍ୟନ୍ତ ବିଶୁଦ୍ଧ ଏହିମତ ଯେ କେବଳ ଆଧୁନିକ ପାଶ୍ଚାତ୍ୟମତ ତାହା ନୁହେଁ । ଏହା ପ୍ରଧାନ ପ୍ରଧାନ ଆର୍ଯ୍ୟଜ୍ୟୋତିଷମାନଙ୍କର ମତ ତହିଁର ପ୍ରମାଣ ଏହି ପ୍ରବନ୍ଧର ଶୀର୍ଷସ୍ଥାନୀୟ ଶ୍ଳୋକରୁ ଜଣାପଡ଼ିବ, ପ୍ରଧାନ ପ୍ରଧାନ ଜଗତ୍ ବିଖ୍ୟାତ ଜ୍ୟୋତିର୍ବେତ୍ତାମାନଙ୍କର ଏତାଦୃଶ ମତ ଥାଉଁ ଥାଉଁ କୁସଂସ୍କାରପୂର୍ଣ୍ଣ ରାହୁଗ୍ରାସ ଦ୍ୱାରା ଚନ୍ଦ୍ରଗ୍ରହଣ ହେଉଥିବା ବିଶ୍ୱାସ ଯେ ହିନ୍ଦୁସମାଜକୁ କିପରି ପ୍ରବେଶ କଲା ତାହା ବୁଝାଯାଉ ନାହିଁ। କେଉଁ ପୁସ୍ତକର ପ୍ରତାରଣାରେ ପଡ଼ି ଗ୍ରହଣ ସମୟରେ ଆମ୍ଭମାନଙ୍କ ଦେଶବାସୀମାନେ ଦାନ କରନ୍ତି ତାହା ମଧ୍ୟ ସ୍ପଷ୍ଟ ବୁଝାଯାଉ ନାହିଁ । ଈଶ୍ୱର ସୃଷ୍ଟିର ପ୍ରଧାନ ପଦାର୍ଥ ମହୀୟସୀ ଆଲୋକମୟ ଅଗ୍ନିପିଣ୍ଡକୁ ରାହୁ ବୋଲି ଚାଣ୍ଡାଳଯୋନି ଜାତ

ଜୀବ ଗ୍ରାସ କରିବା ପୁଣି ଉଦ୍‌ଗୀର୍ଣ୍ଣ କରିଦେବାର ବିଶ୍ୱାସ କି ଭୟାବହ ।

ଯେଉଁ ରାହୁ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଗ୍ରାସ କରେ ସେ ଅନ୍ୟ ସମୟରେ କେଉଁ ପ୍ରଦେଶରେ ବାସ କରେ ? କେହି କେହି କହନ୍ତି ଯେ ପୃଥିବୀର ଛାୟାକୁ ରାହୁ ବୋଲାଯାଏ ତାହା ସ୍ୱୀକାର କଲୁଁ, ତେବେ ଦାନ ସ୍ନାନାଦିର ଫଳ କି ? ପୃଥିବୀର ଛାୟା ଚନ୍ଦ୍ର ଉପରେ ପତିତ ହେଲା ବା ଚନ୍ଦ୍ର ସୂର୍ଯ୍ୟାଲୋକକୁ ଆବୃତ କଲା, ତେବେ ଭାରତବାସୀର ସ୍ନାନ, ଦାନର ଫଳ ?

ପୁଣି ପାକ କରିବାର ପାତ୍ର ସ୍ପର୍ଶ କରିବାକୁ ହେଲେ ପାକ ମାରା ଯିବ । ସୂର୍ଯ୍ୟଗ୍ରହଣ ବା ଚନ୍ଦ୍ରଗ୍ରହଣ ହେଲା ତହିଁରେ ହିନ୍ଦୁମାନଙ୍କୁ ମୃତକ ଦୋଷ ଲାଗିଲା କି ? କେହି କେହି ପୂର୍ବ ପୁରୁଷମାନଙ୍କଠାରୁ ରାହୁଗ୍ରାସର କଥା ଶୁଣି ଅନ୍ଧ ପରମ୍ପରାରେ ହାଣ୍ଡିଛାଡ଼, ଗ୍ରହଣାନ୍ତେ ସ୍ନାନ, ଗ୍ରହଣ ସମୟରେ ଦାନ କରନ୍ତି, ପୌରାଣିକମାନେ ମଧ ତଦ୍ରୂପ । କେବଳ ସଂସ୍କୃତଜ୍ଞମାନେ ରାହୁ ବୋଲି କୌଣସି ଜୀବଗ୍ରାସ କରିବାର ବିଶ୍ୱାସ କରନ୍ତି ନାହିଁ, ତେବେ ସୁଦ୍ଧା ପୂର୍ବ ପୁରୁଷଙ୍କ କାର୍ଯ୍ୟାନୁରୋଧରେ ଦାନ ସ୍ନାନାଦି କରନ୍ତି ।

ତହିଁରୁ ଉଚ୍ଚତମ ଶିକ୍ଷିତମାନେ ରାହୁର ଛାୟା ଅର୍ଥ କରନ୍ତି ତେବେ ସୁଦ୍ଧା କହନ୍ତି କି ଯେତେବେଳେ ସୂର୍ଯ୍ୟ, ଚନ୍ଦ୍ର ସୃଷ୍ଟିର ପ୍ରଧାନବସ୍ତୁ ସେମାନଙ୍କ ଉପରେ ଛାୟାପାତ ହେବା ଦୋଷଜନକ କଥା, ଏଣୁ ଦାନ ସ୍ନାନ ମଙ୍ଗଳଜନକ କାର୍ଯ୍ୟ ପୁଣି ଟିକିଏ ଆଧୁନିକ ପ୍ରାଚୀନ ମତର ସମନ୍ୱୟକାରୀମାନେ କହିବେ କି ସୂର୍ଯ୍ୟ ବା ଚନ୍ଦ୍ରଗ୍ରହଣରେ ପୃଥିବୀର କିଞ୍ଚିତ ଅନିଷ୍ଟ ହେବା ବୋଧ ହୁଏ । ଏଣୁ ଅନ୍ନ ନିଷେଧ, ଦାନ କରିବାର କର୍ତ୍ତବ୍ୟ ପୁଣି ଆଧୁନିକ ଶିକ୍ଷାରେ ଆଧୁନିକ ଶିକ୍ଷାର କିଞ୍ଚିତଜ୍ଞମାନେ କହିବେ ଯେ ଯେତେବେଳେ ଯେକୌଣସି ପ୍ରକାରେ ଦାନକଲେ ମଙ୍ଗଳ ଏବଂ ପରର ଉପକାର ହୁଏ ତେତେବେଳେ ଗ୍ରହଣ ସମୟରେ ଦାନ କଲେ ଆପତ୍ତି କ'ଣ ? କିନ୍ତୁ ଉପରୋକ୍ତ କୌଣସି ମତାବଲମ୍ବୀମାନେ ବ୍ରାହ୍ମଣକୁ ନ ଦିଅ ବୋଲି କହିବେ ନାହିଁ ।

× × ×

ଯଥାପଦ ବିମୁକ୍ତୋଽସି
ରାହୋର୍ବଜନ ସଙ୍କଟାତ୍

ଏହି ପ୍ରାର୍ଥନାଟି ସଙ୍ଗେ ସଙ୍ଗେ କରିବେ । ସମସ୍ତେ ଯେକୌଣସି ମତକୁ ଅବଲମ୍ବନ କରି ଦାନ ଦିଅନ୍ତୁ, ମାତ୍ର ଏ ଦାନର ଫଳ କ'ଣ, ସେମାନେ ବୁଝିପାରିଅଛନ୍ତି କି ? ଦାନ ଦେଲେ ଏବଂ ସ୍ତୋତ୍ର ପଢ଼ିଲେ ରାହୁ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଗ୍ରାସ କରିବାରୁ କ୍ଷାନ୍ତ ହୁଏ ବା ଉଦ୍‌ଗୀର୍ଣ୍ଣ କରେ କି ? ତାହା ନୁହେଁ କାରଣ ଗଣନାରେ ଯାହା ସିଦ୍ଧ ହୋଇଥାଏ ତାହା ହୁଏ ତେବେ ଦାନଦ୍ୱାରା ଚନ୍ଦ୍ର ସୂର୍ଯ୍ୟଙ୍କୁ ରାହୁ ଗ୍ରାସରୁ ରକ୍ଷା କରାଯାଇ ନ ପାରେ। ପୁଣି ରାହୁଗ୍ରାସ ସିଦ୍ଧ ନୁହେଁ । ଏପରିସ୍ଥଳେ ଦାନ ଦେବା ସ୍ତୋତ୍ର ପଢ଼ିବା ଏବଂ ସ୍ନାନ କରିବାର ଲାଭ କ'ଣ ? ଯଦି ରାହୁ ଗ୍ରାସରୁ ଚନ୍ଦ୍ର ସୂର୍ଯ୍ୟଙ୍କୁ ନିତାନ୍ତ ରକ୍ଷା କରିବାର ବାସନା ତେବେ ପୂର୍ବରୁ ଦାନ ଦେଉଥିଲେ ତ ରାହୁ ଗ୍ରାସ କରିପାରନ୍ତା ନାହିଁ ତାହା କାହିଁକି କରାଯାଏ ନାହିଁ ।

ପୁଣି ଆଉ ଗୋଟିଏ କଥା, ରାହୁ ଓ ସୂର୍ଯ୍ୟଙ୍କୁ ଗ୍ରାସ କଲେ ଭାରତବାସୀଙ୍କୁ ଏତେ ବାଧା ହୁଏ ତେବେ ଅନ୍ୟ ଦେଶରେ ସୂର୍ଯ୍ୟ ଚନ୍ଦ୍ର ଗ୍ରହଣ ହେବାର ଶୁଣିଲେ କାହିଁକି ଦାନ ଦିଅନ୍ତି ନାହିଁ ।

ସ୍ୱଦେଶରେ ପିତା ପୁତ୍ର ବା ପୂଜ୍ୟ ବ୍ୟକ୍ତିମାନଙ୍କର ଭବିଷ୍ୟତ ଅମଙ୍ଗଳ ହେବାର ଶଙ୍କା ଥିଲେ ତହିଁର ପ୍ରତିକାର ଯେପରି କରାଯାଏ, ବିଦେଶରେ ଥିଲେ ମଧ ତଦ୍ରୂପ କରାଯାଇଥାଏ ତେବେ ଚନ୍ଦ୍ର, ସୂର୍ଯ୍ୟ ନିଜ ଦେଶରେ ବିପଦାପନ୍ନ ହେଲେ ଏଡ଼େ ଯତ୍ନ କରନ୍ତି କାହିଁକି ପୁଣି କିଞ୍ଚିତ୍ ଦୂରବର୍ତ୍ତୀ ହେଲେ କାହିଁକି ଅନ୍ତର୍ଦ୍ଧ୍ୟ ହୋଇ ଦାନ ସ୍ନାନାଦି କରନ୍ତି ନାହିଁ ? କିମ୍ବା ଭାରତୀୟ ଜ୍ୟୋତିଷମାନେ କେବଳ ଭାରତବର୍ଷରେ ଚନ୍ଦ୍ର ଓ ସୂର୍ଯ୍ୟଙ୍କର ଗ୍ରହଣ ହୁଏ ବୋଲି କେବଳ ଅବଗତ ଅଛନ୍ତି । ପୌରାଣିକ ବ୍ରାହ୍ମଣମାନେ ବୋଧହୁଏ ଭାରତବର୍ଷ ଛଡା ଅନ୍ୟ ଦେଶ ନାହିଁ ଏବଂ ଗ୍ରହଣ ଅନ୍ୟ ଦେଶରେ ହୁଏ ଏକଥା ଜାଣି ନ ଥିଲେ । ନତୁବା ପ୍ରତାରଣା ଜାଲଦ୍ୱାରା କୁସଂସ୍କାରପୂର୍ଣ୍ଣ ସରରୁ ଦାନରୂପ ମୀନ ଧରିବାକୁ ଛାଡୁ ନ ଥାନ୍ତେ କିମ୍ବା ଜାଣି ଶୁଣି ମଧ ଅନ୍ୟ ଦେଶରେ ଗ୍ରହଣ ହେବାକାଳେ ଦାନ ନେବାକୁ କହିଲେ ଅତିଶୟ କଥା ହେବ ବୋଲି ବ୍ରାହ୍ମଣମାନେ ସ୍ଥିର ଅଛନ୍ତି ସେହି ଗୁହ୍ୟକଥା ସେହିମାନଙ୍କୁ ଜଣାଥିବ । ଆଉ ଯେ ତିନି ଗୋଟି ଦାନ ବିଷୟକ ବ୍ୟବସ୍ଥା ତାହା କେବଳ ଲୋକମାନଙ୍କୁ ପୂର୍ବ ସଂସ୍କାରରେ ବାଧ ରଖିବାର ଏବଂ ମନ ଭୁଲାଇବାର ପନ୍ଥା ।

ଗ୍ରହଣ କାଳରେ ଦାନଦେବାକୁ ଆମ୍ଭେମାନେ ନିଷେଧ କରୁ ନାହୁଁ । ଯେଉଁ ଲୋକ ଯେତିକି ଦାନଶୀଳ ହେଲା ସେ ତେତିକି ପ୍ରଶଂସାର୍ହ । ପୁଣି ଯେ ପରର ଅଭାବ ବୁଝି ଦାନ ଦେଲେ ପରର ଦୁଃଖମୋଚନ କଲେ ସେ ବରଂ ଅଧିକ ପ୍ରଶଂସାର ପାତ୍ର । ମାତ୍ର ଯେ ପ୍ରତାରିତ ହୋଇ ଦାନ ଦେବ

ତାହାର ଦାନ ବୃଥା, ବରଂ ତାହାର ଏତାଦୃଶ ଦାନ ଦେଖି ଅନ୍ୟାନ୍ୟ ଲୋକେ ଦାତାକୁ ଅବିବେକ ବୋଲି କହିବେ, ତେବେ ଗ୍ରହଣ ସମୟରେ ଲୋକେ ଅଭାବ ବୁଝି ଗରିବମାନଙ୍କୁ ଯଦି ଦାନ ଦିଅନ୍ତି ସେମାନଙ୍କର ଅଭାବମୋଚନ କରନ୍ତି ତାହା ଅତି ସୌଭାଗ୍ୟର କଥା ମାତ୍ର ରାହୁଗ୍ରାସରୁ ଚନ୍ଦ୍ର ସୂର୍ଯ୍ୟଙ୍କୁ ମୁକ୍ତ କରିବାର ଇଚ୍ଛାରେ ପ୍ରତାରିତ ହୋଇ ଉପବାସ କରିବା, ସ୍ନାନ କରିବା ଏବଂ ଦେଖି ଦେଖି ବ୍ରାହ୍ମଣମାନଙ୍କୁ ଦାନ ଦେବା ଅତି କୁସଂସ୍କାରପୂର୍ଣ୍ଣ ମନ୍ଦ ବୁଦ୍ଧିତାର କଥା ବୋଲିବାକୁ ହେବ ।

ମୁଁ ବୋଧକରେଁ ଗ୍ରହଣର କାରଣ ଏବଂ ଦାନ ଦେବାର ବୃଥା ଏହି କଥା ସମସ୍ତେ ଅବଗତ ହୋଇଅଛନ୍ତି ଏବଂ ଆହୁରି ମଧ ସେମାନଙ୍କର ସ୍ମରଣ ରଖିବା ଆବଶ୍ୟକ ଯେ ଯେଉଁ ଭାରତୀୟ ଆର୍ଯ୍ୟଜ୍ୟୋର୍ତିବିଦ୍‌ମାନଙ୍କର ମତ ଅବଲମ୍ବନ କରି ଆଧୁନିକ ମତର ଆବିର୍ଭାବ, ସେମାନଙ୍କର ମତକୁ ତ୍ୟାଗ କରି ପୁରାଣ ପରିକ୍ଷିପ୍ତ ମତ ମାନଙ୍କରେ ପ୍ରତାରିତ ହେବା କେତେ ଲଜ୍ଜାର ବିଷୟ, ପୁଣି ଯେଉଁ ଆଧୁନିକ ସଭ୍ୟମାନେ ଆମ୍ଭମାନଙ୍କଠାରୁ ମତ ଗ୍ରହଣ କରି ବିଖ୍ୟାତ ହୋଇଅଛନ୍ତି ସେମାନେ ଆମ୍ଭମାନଙ୍କର ଏତାଦୃଶ କୁସଂସ୍କାର ପୂର୍ଣ୍ଣ ଓ ପ୍ରତାରଣାରେ ବଞ୍ଚିତ ହେବା ଦେଖି 'ମୁଖରେ ଲୁଗାଦେଇ ହସୁଥିବା କି ପ୍ରଶଂସାର କଥା' ଧନ୍ୟ ଭାରତବାସି ! ସମସ୍ତଙ୍କର ଚେତନା ହେଲା, ଯାହାକୁ ତୁମ୍ଭେ ଶିକ୍ଷାଦେଲ ସେ ପୁଣି ତୁମ୍ଭର ମୂର୍ଖତାକୁ ଦେଖି ହସୁଅଛି । କି ଲଜ୍ଜାର କଥା ?

ପାଠକଗଣ ଦୁଃଖ ବିବେଚନା କରିବେ ନାହିଁ। ସତ୍ୟାସତ୍ୟକୁ ବିବେଚନା କରନ୍ତୁ, ଅନେକାନେକ ବ୍ରାହ୍ମଣମାନେ ଆମ୍ଭପ୍ରତି ଖଡ୍ଗହସ୍ତ ହେବେ ଏହା ଜାଣିସୁଦ୍ଧା ଏ ସତ୍ୟତାକୁ ଏବଂ ନ୍ୟାୟମାର୍ଗାବଲମ୍ବନ କରି ଏବଂ ସତ୍ୟଗୋପନ ଦୋଷରୁ ରକ୍ଷା ପାଇବାକୁ ନିର୍ଭୟ ଚିତ୍ତରେ ପ୍ରବନ୍ଧ ଲେଖିବାକୁ ପ୍ରବୃତ୍ତହେଲୁଁ ଏବଂ ଅବଶେଷରେ ପ୍ରାର୍ଥନା ଏହି ଯେ ପ୍ରବନ୍ଧରେ ଅନେକ ଦୋଷ ଲକ୍ଷିତ ହେଲେ ସୁଦ୍ଧା ଏହାର ସତ୍ୟତାକୁ ଗ୍ରହଣ କରି ଗ୍ରହଣ ସମ୍ବନ୍ଧୀୟ କୁସଂସ୍କାରକୁ ଦୂର କରିବେ। ଆଗାମୀ ଅଲୌକିକ ଗ୍ରହଣ କାଳରେ ଏହି ପ୍ରବନ୍ଧକୁ ସ୍ମରଣ ରଖିବେ।

ଆଧୁନିକ ଶିକ୍ଷିତମାନଙ୍କୁ କିଛି କହିବାକୁ ହେବ ନାହିଁ। ଯେଉଁମାନେ ଏହି ପ୍ରବନ୍ଧ ଲେଖିତ ମତକୁ ଅଗ୍ରାହ୍ୟ କରନ୍ତି ସେମାନେ ଜ୍ୟୋତିର୍ବିତ୍ ତିଳକ କମଳାକର ଭଟ୍ଟ ବିରଚିତ ସିଦ୍ଧାନ୍ତତତ୍ତ୍ୱବିବେକ ପୁସ୍ତକକୁ ଥରେ ମାତ୍ର ପାଠ କଲେ ରାହୁଗ୍ରାସ ବିଷୟକ ସନ୍ଦେହକୁ ଅପନୋଦନ କରିପାରିବେ ଏବଂ ଗ୍ରହଣକାଳୀନ ଦାନ, ସ୍ନାନର ନିଷ୍ଫଳତାକୁ ମଧ ବୁଝିପାରିବେ ।

•

## ବେଦ

ବେଦର ଭାଷା ବା ବେଦ ପ୍ରତିପାଦିତ ଧର୍ମର ଆଲୋଚନା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ବେଦ ଈଶ୍ୱରଙ୍କ ମୁଖ ବିନିସୃତ—ନିଶ୍ୱସିତ—ଅପୌରୁଷେୟ—ତଦୁପଦିଷ୍ଟ ଇତ୍ୟାଦି ଯେ କେତୋଟି କଥା ପ୍ରଚଳିତ ଅଛି ତାହା କେତେଦୂର ବିଶ୍ୱାସଯୋଗ୍ୟ ଓ ସତ୍ୟ ତାହା ଦେଖାଇବାର ଏ ପ୍ରବନ୍ଧର ମୂଳ ଉଦ୍ଦେଶ୍ୟ।

ପ୍ରଥମେ ଦେଖାଯାଉ ବେଦ ଉପନିଷଦ ପୁରାଣ ଧର୍ମଶାସ୍ତ୍ର ବେଦ ସମ୍ବନ୍ଧେ କ'ଣ ବୋଲୁଅଛନ୍ତି ।

ଋଗ୍‌ବେଦ ପ୍ରକାଶ କରୁଅଛନ୍ତି ଯେ 'ହୋମ ସମ୍ବଳିତ ଯଜ୍ଞରୁ ଋଗ୍‌ବେଦ ଓ ସାମ ସମୂହ ଉତ୍ପନ୍ନ ହେଲେ ଇତ୍ୟାଦି' ।

ତାସ୍ମାଦ୍ୟଜ୍ଞାତ୍ ସର୍ବହୁତ ଋଚଃ ସାମାନି ଯଜ୍ଞିରେ ଛାନ୍ଦ୍ୟାସିଜ୍ଞି ଯଜ୍ଞିରେ ତସ୍ମାଦ୍ୟ ଜୁସ୍ତସ୍ମ ତଜ୍ଜାୟତ । ଋଗ୍‌ବେଦ।

ଛାନ୍ଦୋଗ୍ୟୋପନିଷଦ— ଏହି ମହାଭୂତର ନିଶ୍ୱସିତ ଋଗ୍‌ବେଦ, ସାମବେଦ, ଯଜୁର୍ବେଦ, ଅଥର୍ବବେଦ ଇତ୍ୟାଦି । ଅରେ ଅସ୍ୟ ମହୋତୋ ଭୂତସ୍ୟ ନିଶ୍ୱସିତ ଅତଦୃଗ୍ୱେଦେ ଯଜୁର୍ବେଦଃ ସାମବେଦୋଽଥର୍ବାଙ୍ଗିରସ ଇତ୍ୟାଦି।

ମନୁ- ଅଗ୍ନିବାୟୁ ରବିଭ୍ୟସ୍ତୁ ତ୍ରୟଂ ବ୍ରହ୍ମ ସନାତନ
ସୋଦୋହ ଯଜ୍ଞସିଦ୍ଧ୍ୟାର୍ଥମୃଗଯଜୁଃ ସାମ ଲକ୍ଷଣ

ଅଗ୍ନି, ବାୟୁ, ସୂର୍ଯ୍ୟ, ଋଗ, ଯଜୁ ଓ ସାମବେଦକୁ ଯଜ୍ଞ ସିଦ୍ଧି ନିମନ୍ତେ ଦୋହନ କଲେ ।

ଅନାଦି ନିଧନା ନିଧୋ ବାପୁମୁଷା ସ୍ୱୟମ୍ଭୁବା, ଉପରେ ବେଦ ଉତ୍ପତ୍ତି ସମ୍ବନ୍ଧରେ ଚାରିଗୋଟି ପରସ୍ପର ବିରୋଧ ମତ ପ୍ରକାଶ କରାଗଲା । ଏତାଦୃଶ ଅନେକ ମତ ଅଛି । କେଉଁଟି ବିଶ୍ୱାସଯୋଗ୍ୟ ? ପାଠକମାନେ ସ୍ଥିର କରନ୍ତୁ ।

**ବେଦ ଅପୌରୁଷେୟ**— ଏ କଥାଟି ସାଂଖ୍ୟ ଉକ୍ତି । ଅପୌରୁଷେୟ ବୋଲିବା ଦ୍ୱାରା ଯେ ବେଦ ଈଶ୍ୱର ମୁଖ ନିଃସୃତ ବା ନିଶ୍ୱସିତ ବୋଲି ପ୍ରମାଣିତ ହେଲା । ତାହା ନୁହେଁ । ତଥାପି ଏ ଦେଶରେ 'ଅପୌରୁଷେୟ' ବାକ୍ୟ । ଅର୍ଥାତ୍ ସେହିପରି ବୁଝନ୍ତି ସାଂଖ୍ୟଦର୍ଶନ ମତରେ 'ନ ପୌରୁଷୟତ୍ୱଂ ତତ୍‌ବର୍ତ୍ତୁଃ ପୁରୁଷ୍ୟା ଭାବାତ୍' ବେଦକରଣ ସମର୍ଥା ପୁରୁଷର ଅଭାବ ହେତୁ

ଏ ଅପୌରୁଷେୟ । ସାଂଖ୍ୟଦର୍ଶନ ସର୍ବଜ୍ଞ ଈଶ୍ୱର ସତ୍ତ୍ୱ ସ୍ୱୀକାର କରନ୍ତି ନାହିଁ । ତଥାପି ଉପରୋକ୍ତ ବାକ୍ୟଟି ଆପଣା ଗ୍ରନ୍ଥରେ ଉଲ୍ଲେଖ କରିଥିବାରୁ ଭୂରିଭୂରି ପ୍ରଶଂସା ପାଉଅଛନ୍ତି । ଅପୌରୁଷେୟ ଶବ୍ଦର ପ୍ରକୃତ ଭାବାର୍ଥ ଈଶ୍ୱର ମୁଖ ବିନିସୃତ ନୁହେଁ ବୋଲି ଜ୍ଞାନ ହେଲେ ବୋଧହୁଏ ବେଦ ବିଶ୍ୱାସୀ ଆସ୍ତିକମାନେ ଅପୌରୁଷେୟ ଶବ୍ଦର ନାମ କରିବେ ନାହିଁ ।

ବେଦବାକ୍ୟଂ ପ୍ରମାଣ—ସିଦ୍ଧୌରପବୋଧୃତ୍ୱାଦା-କ୍ୟାର୍ଥୋପଦେଶଃ ବେଦ ବାକ୍ୟର ଅର୍ଥୋପଦେଶ ପ୍ରମାଣ କାହିଁକି ନା ତଦୀୟ କର୍ତ୍ତା ତାହା ଜାଣୁଥିଲେ ।

ଉକ୍ତ ବାକ୍ୟର ଟୀକା ନ ଯୁଚେତ୍ ସତ୍ୟ ସର୍ବଜ୍ଞ ଈଶ୍ୱରୋନାସ୍ତି ତର୍ହିବେଦାନ୍ତ ମହାବାକ୍ୟାର୍ଥସ୍ୟ ବିବେକ ସ୍ୟୋପଦେଶ ଅନ୍ଧ ପରମ୍ପରା ଶଙ୍କୟା ପ୍ରାମାଣ୍ୟ ପ୍ରସଙ୍ଗେ–କୃତତ୍ରାହିକରଣଂ ଗର୍ଭାଦିନାଂ ସିଦ୍ଧକାପାକାଂ ଯଥାର୍ଥସ୍ୟ ବୋଧୃତ୍ୱାତ୍ ତଦ୍ଦତ୍ କୃପାୟ ର୍ବେଦାନି ପ୍ରମାଣା ନବଧୃତ ଛୈଷାଂ ବାକ୍ୟାର୍ଥୋପଦେଶ ପ୍ରମାଣମିତି ଶେଷା। ସର୍ବଜ୍ଞ ଈଶ୍ୱର ନ ଥିଲେ ମଧ ହିରଣ୍ୟଗର୍ଭାକ୍ଷ ପୁରୁଷର ସର୍ବଜ୍ଞତା ଅଛି । ଏହି ହିରଣ୍ୟଗର୍ଭ ପୁରୁଷର କଥିତ ଆୟୁର୍ବେଦ ସପ୍ରମାଣ ବୋଲି ଉଦ୍ଧୃତ ହୋଇଅଛି । ସୁତରାଂ ତଦୁପଦିଷ୍ଟ ବାକ୍ୟର ମଧ ପ୍ରମାଣ୍ୟ ଅଛି ।

ଈଶ୍ୱର ସତ୍ତାକୁ ଅସ୍ୱୀକାର କରି ଆୟୁର୍ବେଦ ପ୍ରମାଣ ହେତୁରୁ ବେଦ ପ୍ରମାଣ ବୋଲିବା ଯୁକ୍ତିସଙ୍ଗତ ମନେ କରାଯାଏ ନାହିଁ । ଅନ୍ୟାନ୍ୟ ଦେଶରେ ଏବଂ ଅସଭ୍ୟ ଜାତିମାନଙ୍କ ମଧରେ ମଧ ଆୟୁର୍ବେଦର ପ୍ରଚାର ଅଛି ଏବଂ ସମସ୍ତେ ହିରଣ୍ୟଗର୍ଭାଗ୍ୟ ପୁରୁଷୋକ୍ତ ଆୟୁର୍ବେଦ ଶିକ୍ଷା କରି ନାହାନ୍ତି । ତାହାହେଲେ ସମସ୍ତ ଦେଶର ଓ ସମସ୍ତ ଜାତିର ପ୍ରାଚୀନ ଗ୍ରନ୍ଥ ବେଦବତ୍ ପ୍ରମାଣ୍ୟ ।

ବେଦ ନିତ୍ୟ ମୀମାଂସକ ବେଦକୁ ନିତ୍ୟ ବୋଲି ମାନନ୍ତି । ବେଦକୁ ନିତ୍ୟ ପ୍ରମାଣ କରିବାକୁ ଯାଇ ଶବ୍ଦ ନିତ୍ୟ ବୋଲି ଅବଶେଷରେ ନିର୍ଦ୍ଧାରଣ କରିଅଛନ୍ତି । ଶବ୍ଦକୁ ନିତ୍ୟ ବୋଲି ସ୍ୱୀକାର କରିବାର କାଳଗତ ହୋଇଅଛି ।

ଉନବିଂଶ ଶତାବ୍ଦୀରେ ମଧ ବେଦବିତ୍ ପଣ୍ଡିତ ଦୟାନନ୍ଦ ସରସ୍ୱତୀ ବେଦକୁ ଈଶ୍ୱରୋପଦିଷ୍ଟ ବୋଲି ପ୍ରକାଶ କରିଅଛନ୍ତି । ଏହାଙ୍କର ଉପରୋକ୍ତ ଦର୍ଶନ ଉପନିଷଦ ଓ ପୁରାଣ ମତ ଅତିକ୍ରମ କରିଅଛି । ବାହୁଲ୍ୟ ଭୟରେ ସମସ୍ତ ଲେଖା ନ ଥିଲେ ମଧ ପାଠକମାନଙ୍କ କୌତୂହଳ ନିମନ୍ତେ ଦୁଇଚାରିକଥା ଲେଖିବାର ଉଚିତ ମନେ କରାଗଲା ।

ଏହାଙ୍କ ମତରେ ବେଦର ଧର୍ମ ଏକମାତ୍ର ଧର୍ମ । ଦୟାନନ୍ଦ ସ୍ୱାମୀ ପୁରାଣ ପ୍ରଭୃତି ସଂସାରର ଯାବତୀୟ ଧର୍ମପୁସ୍ତକ ଓ ଧର୍ମର ତୀବ୍ର ସମାଲୋଚନା କରିଅଛନ୍ତି । ବେଦ ସମ୍ବନ୍ଧେ ସ୍ୱାମିଜୀଙ୍କର କି ବିଶ୍ୱାସ ଓ ମତ ପାଠକମାନେ ଦେଖନ୍ତୁ ।

ଏହାଙ୍କ ମତରେ ଈଶ୍ୱରୋପଦିଷ୍ଟ ବେଦ ଚାରି, ଅଥର୍ବଣକୁ ବେଦ ଶ୍ରେଣୀଭୁକ୍ତ କରିବାର କାରଣ ଏହି ଯେ ଏହି ବେଦ ତାହାଙ୍କର ମତର ପୋଷକ ହୋଇଅଛି । ଈଶ୍ୱର ନିରାକାର ହେଲେ ସୁଦ୍ଧା ସର୍ବଶକ୍ତିମାନ୍ ଓ ସର୍ବବ୍ୟାପକ ହେତୁରୁ ଆପଣା ବ୍ୟାପ୍ତି ଦ୍ୱାରା ବେଦବିଦ୍ୟାର ଉପଦେଶ କରିବା ନିମନ୍ତେ କୌଣସି ମୁଖାଦିର ଅପେକ୍ଷା ନାହିଁ । ମୁଖ ଜିହ୍ୱା ବନ୍ଦ ଥିଲେ ମଧ ମନ ମଧରେ କି ସୁନ୍ଦର ବ୍ୟବହାର ବିଚାର ଆଉ ଶବ୍ଦୋଚାରଣ ହେଉଥାଏ । ଏହି ପ୍ରକାରେ ଅନ୍ତର୍ଯାମୀ ରୂପରେ ଈଶ୍ୱର ଉପଦେଶ ଦେଇଅଛନ୍ତି । ମନୁଷ୍ୟ ତାହା ଅନ୍ୟକୁ ଶୁଣାଇବାକୁ ପୁଣି ଉଚ୍ଚାରଣ କରିଅଛି ।

ପ୍ରତିପକ୍ଷ ଏଥିରେ ସନ୍ତୋଷ ହୋଇ ସ୍ୱାମୀଙ୍କୁ ପଚାରିଲେ ''ତେବେ କେଉଁ ବ୍ୟକ୍ତିର ଆତ୍ମାରେ ଈଶ୍ୱର ବେଦକୁ ପ୍ରକାଶ କଲେ ।'' ସ୍ୱାମିଜୀ ଉତ୍ତର କଲେ ''ଅଗ୍ନେ ଋଗ୍‌ବେଦୋ ବାୟୋ ର୍ଯଜୁର୍ବେଦଃ ସୂର୍ଯ୍ୟାତ୍ସାମ ବେଦଃ । ଶତପଥକ୍ତ, ପରମାତ୍ମା, ଅଗ୍ନି, ବାୟୁ, ଆଦିତ୍ୟ ତଥା ଅଙ୍ଗିରା ଏହି ଋଷିମାନଙ୍କର ଆତ୍ମାରେ ଏକ ଏକ ବେଦର ପ୍ରକାଶ କଲେ । ଶ୍ଳୋକ ପ୍ରକାରେ ଅର୍ଥ ପ୍ରକାରେ ତଥା ଅଙ୍ଗିରା, ଏଟି ସ୍ୱାମୀଙ୍କର ମନଗଢ଼ା କଥା । ଅଥର୍ବ ଈଶ୍ୱରୋପଦିଷ୍ଟ ପ୍ରମାଣ ନ କଲେ ସ୍ୱାମୀଙ୍କର କ୍ଷତି । ଏଣୁ ଗୋଟିଏ ମିଥ୍ୟା ଲେଖିବାକୁ ତିଳେମାତ୍ର ସଙ୍କୁଚିତ ହୋଇ ନାହାନ୍ତି ।

ଆହୁରି ଗୋଟାଏ ହାସ୍ୟଜନକ କଥା ଶୁଣନ୍ତୁ।

ପ୍ର— କିସ୍ ଦେଶ ଭାଷାମେ ବେଦୋଁକା ପ୍ରକାଶ ନ କରକେ ସଂସ୍କୃତମେ କ୍ୟୁଂ କିଆ ?

ଉ—ଯୋ କିସି ଦେଶ ଭାଷାମେ ପ୍ରକାଶ କରତେ। ଈଶ୍ୱର ପକ୍ଷପାତି ହୋ ଯାତା । ଇସ୍‌ଲିଏ ସଂସ୍କୃତ ହି ମେ ପ୍ରକାଶ କିଆ ଯୋ କିସି ଦେଶକି ଭାଷା ନାହିଁ । ଔର ବେଦଭାଷା ସର୍ବଭାଷାଓ କା କାରଣ ହୈ ।

ଧନ୍ୟ ବିଶ୍ୱାସ । ବେଦଭାଷା ସମସ୍ତ ଭାଷାର କାରଣ ବୋଲି ଯାହାଙ୍କ ଧାରଣା । ଅନ୍ୟ ଭାଷାରେ ବେଦ ପ୍ରକାଶିତ ହୋଇଥିଲେ ଈଶ୍ୱର ପକ୍ଷପାତୀ ହୋଇଥାନ୍ତେ ବୋଲି ଯାହାଙ୍କର ବିଶ୍ୱାସ, ତାହାଙ୍କର ମନ କି ସଂକୀର୍ଣ୍ଣ । ଈଶ୍ୱର ବିଶ୍ୱାସ କିପରି ସୀମାବଦ୍ଧ।

ବେଦ ସମ୍ବନ୍ଧେ ଅନେକ ମତ ଉପସ୍ଥିତ କରାଯାଇଅଛି । ଏତାଦୃଶ ମତର ଆଉ ଉଲ୍ଲେଖ କରି ପ୍ରବନ୍ଧ ବୃହତ୍ କରିବାର ପ୍ରୟୋଜନ ନୁହେଁ ।

ବର୍ତ୍ତମାନ ପାଠକ ସମକ୍ଷରେ ଋଗ୍‌ବେଦର କେତେ ଗୁଡ଼ିଏ ଋକ୍ ଉପସ୍ଥିତ କଲେ ଯଥେଷ୍ଟ ହେବ । ସେମାନେ ଏହି ଋକ୍‌ଗୁଡ଼ିକ ପାଠ କଲାପରେ ବେଦ ଈଶ୍ୱର ନିଃଶ୍ୱସିତ କି ନା ଏହା ଅନାୟାସରେ ସ୍ଥିର କରିପାରିବେ ।

ଅଗ୍ନିମିଳେ ପୁରୋହିତଂ ଯଜ୍ଞସ୍ୟ ଦେବ ମୃତ୍ୱିଜଂ। ହୋତାରଂ ରତ୍ନ ଧାତମଂ ।

ଯଜ୍ଞର ପୁରୋହିତ ଦାନା ବିମୁଖ ଯୁକ୍ତ (ଦୀପ୍ତିଶାଳୀ ବା) ବେଦଗଣଙ୍କର ଆହ୍ୱାନକାରୀ ରତ୍ନର ପୋଷଇତା ଅଗ୍ନିକୁ ସ୍ତୁତି କରୁଅଛନ୍ତି ।

ଏହା ଋଗ୍‌ବେଦର ସର୍ବ ପ୍ରଥମ ଋକ । ଈଶ୍ୱର ନିଶ୍ୱାସରୁ ପ୍ରଥମେ ଅଗ୍ନିଙ୍କର ସ୍ତୁତି କାହିଁକି ନିସୃତ ହେବ ? କିଏ ଅଗ୍ନି କି ସ୍ତୁତି କରୁଅଛି ? ବିଶ୍ୱାମିତ୍ର ପୁତ୍ର ମଧୁଛନ୍ଦା ସ୍ତୁତି କରୁ ନାହାନ୍ତି କି ? ମଧୁଛନ୍ଦା ଏହି ମନ୍ତ୍ରର ଋଷି ।

> ଳିତ୍ୟାଦଧେ ବରଆ ପୃଥିବ୍ୟା ଇଳାୟାସ୍ପଦେଷ୍ଟୁ ଦିନଦ୍ୱେ
> ଆତ୍ନାଂ ଦୃଷଦତ୍ୟାଂ ମାନୁଷ ଆପୟୟାଂ ସରସ୍ୱତ୍ୟାଂ
> ରେବଦରେଗ୍ନେ ର୍ଦର୍ଦହଂ । ଋ । ୧ । ୨୪ । ୪ ।

''ଅଗ୍ନି ମୁଁ ତୁମ୍ଭଙ୍କୁ ଶୁଭଦିନରେ ଇଳାରୂପିଣ ଅବନୀର ଉତ୍କୃଷ୍ଟ ସ୍ଥାନରେ ସ୍ଥାପନ କଲି । ତୁମ୍ଭେ ଧନବାନ୍ ହୋଇ ଦୃଷଦତି ଅପୟା ଏବଂ ସରସ୍ୱତୀ ନଦୀର ମନୁଷ୍ୟ ବିଶିଷ୍ଟ ତଟରେ ପ୍ରଦୀପ୍ତ ହୁଅ ।''

ଏହି ଋକ୍‌ଟି ଦୃଷଦତି, ଅପୟା ଓ ସରସ୍ୱତୀ ତଟରେ ଉପନିବେଶ ସ୍ଥାପନ କରିବାର ପରିଚାୟକ। ଈଶ୍ୱର କି ଉପନିବେଶ ସ୍ଥାପନ କରି ଅଗ୍ନି ସ୍ଥାପନ କଲେ ।

> ଅଗ୍ନିପୂର୍ବେଭି ଋଷିଭିରିତଡ୍ୟ ନୂତନୈରୁତ ।
> ସଦେବାଂ ଏହି ବକ୍ଷତି ଋ ।୧।୧।୨।

ଅଗ୍ନି ପୂର୍ବ ଋଷିମାନଙ୍କର ସ୍ତୁତିଭାଜନ ଥିଲେ । ନୂତନ (ଆମ୍ଭମାନଙ୍କ ପରି) ଋଷିମାନଙ୍କର ମଧ ସ୍ତୁତିଭାଜନ ଅଟନ୍ତି । ସେହି ଅଗ୍ନି ଦେବତାମାନଙ୍କୁ ଏହି ଯଜ୍ଞକୁ ଆନୟନ କରନ୍ତୁ ।

ଈଶ୍ୱରଙ୍କ ପୂର୍ବରୁ କୌଣସି ପୁରାତନ ଋଷି ଥିଲେ କି ଯେଉଁମାନେ ଅଗ୍ନିକୁ ସ୍ତୁତି କରୁଥିଲେ ଏବଂ ଅଗ୍ନି ସ୍ତୁତିକାରୀ ନୂତନ ଋଷି ଈଶ୍ୱର କି ? ଏହି ଋକ୍ ପାଠରୁ ଜଣାଯାଇ ନାହିଁ କି ଯେ ଋଗ୍‌ବେଦ ରଚନା ପୂର୍ବରୁ ଅଗ୍ନି ପୂଜକ ଋଷିମାନେ ବିଦ୍ୟମାନ ଥିଲେ ?

> ଯଚ୍ଛଲ୍ମଲୌ ଭବତି ଯନ୍ନଦୀଷ୍ଟୁ
> ଯଦୌଷଧୀଭ୍ୟଃ ପରି ଜାୟରେ ବିଷଂ
> ବିଶ୍ୱେଦେବା ନିରି ତସ୍ତତମୁବଂନ୍ତୁ
> ମାମାଂ ପଦ୍ୟେନ ରପସା ବିଦତ ସୁଖଃ ।ଋ।୭।୫୦।୩।

ଯେଉଁ ବିଷ ଶାଲ୍ମଳୀରେ ଉତ୍ପନ୍ନ ହୁଏ ଯାହା ନଦୀ ଜଳରେ ଓ ଔଷଧିରୁ ଉତ୍ପନ୍ନ ହୁଏ ବିଶ୍ୱଦେବାମାନେ ସେହି ବିଷକୁ ଆମ୍ଭମାନଙ୍କ ନିକଟରୁ ଦୂର କରି ଦିଅନ୍ତୁ । ଛଦ୍ମଗାମୀ ସର୍ପ ଯେପ୍ରକାର ପଦ ଶବ୍ଦଦ୍ୱାରା ମତେ ଜାଣି ନ ପାରୁ । ଏହି ମନ୍ତ୍ର ଈଶ୍ୱର ବିଶ୍ୱାସରୁ ନା ବିଷଭୀତ ମନୁଷ୍ୟ ମୁଖରୁ ?

> ଇୁ ଅଟକଃ କୃଷଂଭକ ସ୍ତଙ୍ଗ ଭିନଦ୍ମ୍ୟମନା
> ତତୋ ବିଷଂ ପ୍ରବାବୃତେ ପରାଚିରନୁ ସମ୍ବତଃ,
> ୧।୧୯୧।୧୫

ହେ ଦେହ ଅତି କ୍ଷୁଦ୍ରକାୟ ନକୁଳ, ତୁମ୍ଭର ବିଷ ହରଣକରୁ ଯଦ୍ୟପି ନ କରେ ମୁଁ ଏହି କୁହିତକୁ ଲୋଷ୍ଟ୍ରଦ୍ୱାରା ଆଘାତ କରିବି । ବିଷ ମୋ ଦେହରୁ ଦୂର ହେଉ ଦୂର ଦେଶକୁ ଗମନ କରୁ ।

> କୁଷୁଂ ଭବସ୍ତ ଦବ୍ରବୀ ଦ୍ଗିରଃ ପ୍ରବର୍ତ୍ତମାନଙ୍କ
> ବୃଷ୍ଟିକ ସ୍ୟା ରଙ୍ଗ ବିଷମରଙ୍ଗ ବୃଷ୍ଟିକ ତେବିଷଂ ।
> ୧ । ୧୯୧୧୬

ନକୁଳ ତେତେବେଳେ ପର୍ବତରୁ ଆଗମନ କରି କହିଲା ବୃଷ୍ଟିକର ବିଷ ରସ ଶୂନ୍ୟ, ହେ ବୃଷ୍ଟିକ ତୋର ବିଷ ରସଶୂନ୍ୟ ।

ସାୟନଙ୍କ ମତରେ ବିଷ ଶଙ୍କାଯୁକ୍ତ ଅଗସ୍ତ୍ୟ ଏହି ସୂକ୍ତଟି ଉଚ୍ଚାରଣ କରିଥିଲେ ଏହା ବିଷଝଡ଼ାମନ୍ତ୍ର, ଈଶ୍ୱର ନିଶ୍ୱାସ ସମ୍ଭୂତ ବାକ୍ୟ ବୋଲା ପ୍ରତୀତି ହେବ କି ।

> ଶୃଭଣା ମିତେ ସୈଭ ଗତ୍ୱାୟ ହସ୍ତଂ
> ମାୟା ପତ୍ୱା ଦର ଦଷ୍ଟି ର୍ଯଥାସଃ ।
> ଭଗୋ ଅର୍ଯମା ସବିତା ପୁରଂ ଧ୍ର୍ମହ୍ୟଂ
> ତ୍ମାଦୁର୍ଗା ର୍ହ ପତ୍ୟାୟ ଦେବାଃ । ୧୦ । ୯୬ । ୩୬

''ତୁମ୍ଭେ ସୌଭାଗ୍ୟବତୀ ହେବ ବୋଲି ତୁମ୍ଭର ହସ୍ତଧାରଣ କରୁଅଛି । ମୋତେ ପତି ପାଇ ତୁମ୍ଭେ ବୃଦ୍ଧାବସ୍ଥାରେ ଉପନୀତ ହୁଅ ଏହି ପ୍ରାର୍ଥନା କରୁଅଛି । ଭଗ, ଅର୍ଯ୍ୟମା ଓ ଅତିବଦାନ୍ୟ ସବିତ । ଏହି ସମସ୍ତ ଦେବତା ମୋର

ସହିତ ଗୃହକାର୍ଯ୍ୟ କରିବାକୁ ତୁମ୍ଭଙ୍କୁ ମୋର ହସ୍ତରେ ଅର୍ପଣ କରିଅଛନ୍ତି ।

ଏହି ମନ୍ତ୍ର ବିବାହର ହସ୍ତଗ୍ରନ୍ଥିପରେ ପୁରୁଷ ସ୍ତ୍ରୀ ପ୍ରତି ସମ୍ବୋଧନ କରି ଉଚ୍ଚାରଣ କରେ । ପ୍ରାୟ ଅଧିକାଂଶ ପାଠକଙ୍କୁ ଜଣାଥିବ । ଏହି ସୂକ୍ତରେ ଅନେକ ବିବାହ ମନ୍ତ୍ର ଅଛି । ଏ ମଧ୍ୟରୁ ଗୋଟିଏ ଅଶ୍ଳୀଳ ହେତୁ ପ୍ରକାଶ ଅଯୋଗ୍ୟ ।

ଯସ୍ୟେ ମେହି ମବଂନ୍ତୋ ମହିତ୍ୱା
ସମୁଦ୍ର ରସୟା ସହ୍ୱାହୁ ।
କସ୍ମୈ ଦେବାୟ ହବିଷା ବିଧେମ ।

ଯାହାର ମହିମାଦ୍ୱାରା ହିମବନ୍ତ ପର୍ବତ ଉତ୍ପନ୍ନ ହୋଇଅଛି ଏବଂ ସସାଗରା ଧରା ଯାହାର ସୃଷ୍ଟି ବୋଲି ଉଲ୍ଲିଖିତ ହୋଇଅଛି । ଏହି ଦିଗ ବିଦିଗ ଯାହାର ବାହୁ ସ୍ୱରୂପ କେଉଁ ଦେବତାଙ୍କ ହବି ଦ୍ୱାରା ପୂଜା କରିବୁଁ ।

ଏଥିରୁ ପ୍ରତୀୟମାନ ହେଉ ନାହିଁ କି ଯେ ମହାନ୍ ହିମବନ୍ତ ପର୍ବତ, ଅନନ୍ତସାଗର ଏବଂ ନୀଳ ଆକାଶରେ ପ୍ରାକୃତିକ ବୈଚିତ୍ର ସନ୍ଦର୍ଶନ କରି କେହି ପୂର୍ବ ପ୍ରଚଳିତ ଯଜ୍ଞାଦିରେ ସନ୍ଦିଗ୍ଧମନା ହୋଇଅଛନ୍ତି ଏବଂ ଅନନ୍ତ ଶକ୍ତି ସମ୍ପନ୍ନ ଈଶ୍ୱର ଧ୍ୟାନ ନିମନ୍ତେ ତାହାଙ୍କର ମନ ବ୍ୟାକୁଳିତ ହୋଇଅଛି।

ଋଗ୍‌ବେଦରୁ ଅନେକ ଗୁଡ଼ିଏ ଋକ୍ ଉଦାହରଣ ସ୍ୱରୂପ ପାଠକଙ୍କ ସମକ୍ଷରେ ଉପସ୍ଥିତ କରାଯାଇଅଛି । ଋକ୍‌ବେଦ ଏହି ଧରଣର ଋକ୍ ସମୂହରେ ପରିପୂର୍ଣ୍ଣ ଅଟେ । ଉଦାହରଣ ରୂପେ ଅନେକ ଋକ୍ ଉଦ୍ଧୃତ କରାଯାଇପାରନ୍ତା । ବାହୁଲ୍ୟ ଭୟରେ ତାହା କରାଗଲା ନାହିଁ । ଆଶା କରାଯାଏ ଉକ୍ତ କେତୋଟି ଋକ୍ ପାଠକଲେ ବେଦ ଈଶ୍ୱର ନିଶ୍ୱସିତ ନୁହେଁ ବୋଲି ପ୍ରତୀତ ଜନ୍ମିବ । ଏହାଛଡ଼ା ବେଦ ଈଶ୍ୱର ନିଶ୍ୱସିତ ନୁହେଁ ବୋଲିବାର ଅନେକ କାରଣ ଅଛି । ତାହା କ୍ରମେ ନିମ୍ନେ ପ୍ରଦର୍ଶିତ ହେଉଅଛି ।

ବେଦଭାଷା ଆସାରସିକ, ବୈଦିକ ଭାଷା ଆଧୁନିକକାଳର ସଂସ୍କୃତ ଭାଷା ପରି ପରିଷ୍କୃତ ନୁହେଁ । ବୈଦିକ ଭାଷାକ୍ରମେ ପରିଷ୍କୃତ ହୋଇ ସଂସ୍କୃତ ହୋଇଅଛି । ଏହା ବୋଧହୁଏ କେହି ଅସ୍ୱୀକାର କରିବେ ନାହିଁ । ଯେ ସାରସିକ ସଂସ୍କୃତ ଭାଷା ଅପେକ୍ଷା ବେଦଭାଷା ଅଶୁଦ୍ଧ ଓ ଅପ୍ରାଞ୍ଜଳ । ଈଶ୍ୱର ମୁଖରୁ ବା ନାସିକାରୁ ଅପ୍ରଯତ୍ନୋଦ୍ଭୂତ ହୋଇଥିଲେ ମଧ୍ୟ ବେଦର ଭାଷା ବିଶୁଦ୍ଧ ହୋଇଥାନ୍ତା । ତାହାକୁ ଅଶୁଦ୍ଧ ବା ଆଧୁନିକ କାଳର ସଂସ୍କୃତ ଅପେକ୍ଷା ଅପରିଷ୍କୃତ ବୋଲି କେହି କହିପାରନ୍ତେ ନାହିଁ। ବେଦ ଭାଷାରେ କେବଳ ସମସ୍ତେ ଗ୍ରନ୍ଥାଦି ଲେଖିଥାନ୍ତେ ଏବଂ ଏହି ଭାଷାହିଁ ମୂଳ ସଂସ୍କୃତ ଭାଷା ହୋଇଥାନ୍ତା ।

ସୁଷୁପ୍ତବସ୍ଥାରେ ବିନା ପ୍ରଯତ୍ନୋଦ୍ଭୂତ ନିଶ୍ୱାସ ପ୍ରଶ୍ୱାସ ପ୍ରାୟ ବେଦ ଈଶ୍ୱରଙ୍କଠାରୁ ନିଶ୍ୱସିତ ହୋଇଅଛି ବୋଲି ଅନେକଙ୍କର ମତ। ଈଶ୍ୱରଙ୍କର ସୁସୁପ୍ତି ବା କି ? ଜାଗରଣ ବା କି ? ଈଶ୍ୱର ନିଦ୍ରିତ ଥିଲେ କିଏ ଚେତା ଥାଇ ଈଶ୍ୱର ନିଶ୍ୱାସ ସମ୍ଭୂତ ବେଦ ଶ୍ରବଣ କରି ମୁଖସ୍ଥ ରଖିଥିଲା ?

ବେଦ ଈଶ୍ୱର ନିଶ୍ୱସିତ ହୋଇଥିଲେ, ବେଦର ଭାଷା ଅଦ୍ୱିତୀୟ ଭାଷା ହୋଇଥାନ୍ତା । ଏକ ବେଦର ରଚନା ପରିପାଟୀ ଦେଶରେ ସମସ୍ତ କାବ୍ୟ ଗ୍ରନ୍ଥାଦି ଅପେକ୍ଷା ଶ୍ରେଷ୍ଠ ହୋଇଥାଆନ୍ତା । ଏବଂ ତାହା ପାଠ କଲା ମାତ୍ରକେ ଈଶ୍ୱର ନିଶ୍ୱସିତ ବୋଲି ସ୍ୱତଃ ପ୍ରତୀୟମାନ ହେଉଥାନ୍ତା । ତାହା ହୁଏ ନାହିଁ । ଜଣେ ସଂସ୍କୃତ ବ୍ୟକ୍ତିକୁ ମାଘର ଏକସର୍ଗ ଏବଂ ଋକ୍‌ବେଦରୁ ଏକ ସୂକ୍ତ ପାଠ କରିବାକୁ ଦିଅ ପାଠକ ମାଘର ସର୍ଗଟିକୁ ଶ୍ରେଷ୍ଠ ସ୍ଥାନ ଦେବେ। ଜଣେ ସଂସ୍କୃତାନଭିଜ୍ଞ ବ୍ୟକ୍ତିକୁ କୁମାରସମ୍ଭବର ଏକ ସର୍ଗ ଓ ବେଦ ଏକ ଅଷ୍ଟକ ପାଠ କରି ଶୁଣାଇଦିଅ ଓ ଅର୍ଥ ବୁଝାଇଦିଅ ଶ୍ରୋତାକାବ୍ୟର ଅର୍ଥ ଶୁଣି ମୁଗ୍ଧ ହେବ ଏବଂ ଗ୍ରନ୍ଥ କର୍ତ୍ତାକୁ ଶତ ଶତ ଧନ୍ୟବାଦ ଦେବ । ବେଦ ଅର୍ଥ ଶୁଣିଲାରୁ ଆଉଥରେ ଶୁଣିବାକୁ ମନ ବଳାଇବ ନାହିଁ ଏବଂ ବେଦରଚକ ସୁକବି ନ ଥିବାର ପ୍ରକାଶ କରିବ । କାବ୍ୟ କାହିଁକି ପୁରାଣ ହେଉ ବା ମନ୍ୱାଦି ଧର୍ମଶାସ୍ତ୍ର ହେଉ ଯେକୌଣସି ପରବର୍ତ୍ତୀ ଗ୍ରନ୍ଥର ଏକ ଅଧ୍ୟାୟ ସହିତ ବେଦର ଏକ ଅଷ୍ଟକ ତୁଳନା କଲେ—ବେଦ ରଚନାରେ ପ୍ରସଙ୍ଗ ଭଙ୍ଗ ଦେଖାଯିବ । ସୁତରାଂ ସାଧାରଣ ଶ୍ରେଣୀର ହୃଦୟ ଗ୍ରାହ୍ୟ ହେବ ନାହିଁ । ବେଦ ଈଶ୍ୱର ନିଶ୍ୱସିତ ହୋଇଥିଲେ ସୁବିଚାରେ ଯେଉଁ ଅସାଧାରଣ ମାଧୁରି ଥାଆନ୍ତା ତା' ଅନ୍ୟ କୌଣସି କବିତାରେ ରହିପାରନ୍ତା କି ? ସୁମହାକବିର ଯେ ରଚନା ତାହା ସଙ୍ଗେ ଛାର ମନୁଷ୍ୟ ରଚନା ଓ କଳ୍ପନା କି ସମକକ୍ଷ ହୁଅନ୍ତା ? ରଚନା ପରିପାଟୀରେ ଓ ପ୍ରସଙ୍ଗ କ୍ରମ ନେଇ ଯେଉଁ ଗ୍ରନ୍ଥକୁ ମନୁଷ୍ୟ ଅପର ଗ୍ରନ୍ଥ ସହିତ ତୁଳନା କରି ନ ପାରେ ଓ ଅପରଗ୍ରନ୍ଥ ଅପେକ୍ଷା ଅଶ୍ରେଷ୍ଠ ବୋଲିପାରେ ସେହି ଗ୍ରନ୍ଥକୁ ଈଶ୍ୱର ନିଶ୍ୱସିତ ବୋଲିବା ସଙ୍ଗତ କି ?

ଯଦି ବେଦ ଈଶ୍ୱର ନିଶ୍ୱସିତ ଏବଂ ପ୍ରତିପାଦ୍ୟ ଧର୍ମ ଈଶ୍ୱରୋପଦିଷ୍ଟ ଧର୍ମ ଅଟେ ତାହାହେଲେ ଉପନିଷଦରେ ଜନକ ଅଙ୍ଗିରା ପ୍ରଭୃତି ବ୍ରହ୍ମୋପାସକମାନଙ୍କର ଋଗ୍‌ବେଦକୁ 'ଅପରା ବିଦ୍ୟା ବୋଲିବାର କି ଶକ୍ତି ଥିଲା ?' 'ଅନ୍ଧଂତମଃ ପ୍ରବିଶ୍ୟନ୍ତି

ଯେ ବିଦ୍ୟା ମୁପାକ୍ଷତେ'। ଯେଉଁମାନେ ପ୍ରକୃତିକୁ (ବୈଦିକ ଅଗ୍ନି ହୋତ୍ରାଦି ଦ୍ୱାରା) ଉପସନା କରନ୍ତି ସେମାନେ ଘୋର ଅନ୍ଧକାରରେ ପ୍ରବିଷ୍ଟ ହୁଅନ୍ତି । ଈଶ୍ୱରୋପଦିଷ୍ଟ ଧର୍ମକୁ ଏତାଦୃଶ ଭାବେ ଅବଜ୍ଞା କରିବାର କା'ର ଶକ୍ତି ଥିଲା ?

ପାଠକଗଣ, ଜନକ ପ୍ରଭୃତି ଋଷିମାନେ ବେଦ ଅଧ୍ୟୟନ କରିଥିଲେ, ବେଦର ଅର୍ଥ ସମ୍ୟକ୍‌ରୂପେ ବୁଝିପାରୁଥିଲେ । ହୃଦୟଙ୍ଗମ କରୁଥିଲେ, ସେମାନଙ୍କ ପକ୍ଷରେ ନିଗମ ଅତି ଗହନ ନ ଥିଲା । ସେମାନଙ୍କପାଇଁ ସାୟନର ଟୀକା ବା ଯାସ୍କଙ୍କର ନିରୁକ୍ତ ଓ ନିର୍ଘଣ୍ଟର ଆବଶ୍ୟକ ନ ଥିଲା । ପୁରାଣ ରଚକମାନଙ୍କ ଅପେକ୍ଷା ଉପନିଷଦ ରଚକମାନେ ବହୁ ପରିମାଣରେ ବେଦର ଚର୍ଚ୍ଚା କରୁଥିଲେ । ଏମାନଙ୍କର ଭାଷା ବୈଦିକ ଭାଷା । ଅନ୍ୟ କଥା ତ ଦୂରେ ଥାଉ ଏହି ପ୍ରାଚୀନ ଉପନିଷଦ ରଚକମାନେ ବେଦ ମନୁଷ୍ୟ ରଚିତ ବୋଲି ତତ୍‌ପ୍ରତି ଅବଜ୍ଞା ପ୍ରକାଶ କରିଅଛନ୍ତି । ଋଗ୍‌ବେଦ ପ୍ରଭୃତିକୁ ନିକୃଷ୍ଟ ବିଦ୍ୟା ବୋଲି ଅନାଦର କରିଅଛନ୍ତି । ତଥାପି ପୁରାଣ କର୍ତ୍ତାମାନେ ବେଦ ଈଶ୍ୱର ନିଶ୍ୱସିତ ବୋଲି ଘୋଷଣା କରିବାକୁ ଛାଡ଼ି ନାହାନ୍ତି ।

ବେଦରେ ଏକ ବିଷୟର ଓ ଭାବର ବାରମ୍ବାର ଉଲ୍ଲେଖ ହୋଇଥିବାର ପୂର୍ବେ ପ୍ରକାଶ ହୋଇଅଛି । ଅଶ୍ଳୀଳ ଓ ଅସଙ୍ଗତ କଥାର ଉଲ୍ଲେଖଥିବାର ପ୍ରକାଶ ହୋଇଅଛି । ବେଦ ଅପ୍ରଯତ୍ନୋଦ୍ଭୂତ ବୋଇଲେ ମଧ୍ୟ ଈଶ୍ୱର ନିଶ୍ୱାସରୁ ଏତାଦୃଶ ପ୍ରସଙ୍ଗ ଭାବ ଓ ଭାଷାର ଜନ୍ମ ହେବା ସମ୍ଭବପର ନୁହେଁ ।

ଅଗ୍ନି, ଇନ୍ଦ୍ର, ବାୟୁ, ବରୁଣ, ମରୁତ ପ୍ରଭୃତି ଦେବତାମାନଙ୍କର ସ୍ତୋତ୍ରରେ ବେଦ ପୂର୍ଣ୍ଣ ଅଟେ। ଏହାଛଡ଼ା ଗୋମାଂସ, ମହିଷ ମାଂସ ଭକ୍ଷଣ, ସୋମପାନ, ସୋମର ମାଦକତା, ଗୃହବିବାଦ, ସମୁଦ୍ରଯାତ୍ରା ଉପନିବେଶ ସ୍ଥାପନ, ଭୂମିକର୍ଷଣ, ବିଧବାବିବାହ, ଦେବରପତି, ଏକ ସ୍ତ୍ରୀର ବହୁ ପୁରୁଷ ବିବାହ ଇତ୍ୟାଦି ପ୍ରସଙ୍ଗ ବେଦରେ ଦେଖାଯାଏ। ଏ ସମସ୍ତ ପ୍ରସଙ୍ଗ ଈଶ୍ୱର ନିଶ୍ୱାସରୁ କି କାରଣରୁ ନିଃସୃତ ହୋଇଥିବାର ବିଶ୍ୱାସ କରାଯିବ ।

ସାଧାରଣତଃ ଯେଉଁ କାରଣ ଦୃଷ୍ଟିରେ ବେଦଈଶ୍ୱର ନିଶ୍ୱସିତ ନୁହେଁ ବୋଲି ବିଶ୍ୱାସ ଜନ୍ମେ ତାହା ଉପରେ ଉଲ୍ଲେଖ କରାଗଲା । ଇଉରୋପୀୟ ପଣ୍ଡିତଗଣଙ୍କର ଆଶ୍ଚର୍ଯ୍ୟଜନକ ମତ କ୍ରମେ ସମୟ ଅନୁକୂଳ ହେଲେ ପ୍ରକାଶ କରିବାର ବାସନା ରହିଲା ।

ପାଠକଗଣ ! ବେଦ ସମ୍ବନ୍ଧରେ ଏତାଦୃଶ ପ୍ରବନ୍ଧ ଏ ଦେଶରେ ପତ୍ରିକାସ୍ଥ କରିବାର ଏହା ନୂତନ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଏହା ଦେଖି ଅନେକେ ବିରକ୍ତ ହେବେ— ଅନେକେ ଅପାଠ୍ୟ ବୋଲି ଫିଙ୍ଗିଦେବେ । ବେଦ ସମ୍ବନ୍ଧେ ଦୁଇଚାରି କଥା କହିଲେ ବେଦ ନିନ୍ଦୁକ ଆଖ୍ୟା ପାଇବାକୁ ହୁଏ ଏହା ସ୍ୱତଃସିଦ୍ଧ କଥା ହେଉ । କିନ୍ତୁ ପାଠକଗଣ, ବେଦ ନିନ୍ଦା କରିବାର ଆମ୍ଭର ଉଦ୍ଦେଶ୍ୟ ନୁହେଁ । ବେଦ ନିତ୍ୟ ନୁହେଁ, ନିଶ୍ୱସିତ ନୁହେଁ । ଅପୌରୁଷେୟ ନୁହେଁ ବୋଲିବାଦ୍ୱାରା କି ବେଦର ନିନ୍ଦା ହେଲା । ବେଦ ସମ୍ବନ୍ଧେ ଯାହା ସତ୍ୟ ତାହା ପ୍ରକାଶ କରିବାର ନାମ କି ବେଦ ନିନ୍ଦା ଏବଂ ତତ୍ ସମ୍ବନ୍ଧେ ଅଯଥା ଓ ଅଯୌକ୍ତିକ କଳ୍ପନା କି ତାହାର ସ୍ତୁତିବାଦ ? ତାହା ନୁହେଁ । ପାଠକଗଣ, ବେଦ ଈଶ୍ୱର ନିଶ୍ୱସିତ ନୁହେଁ ଆର୍ଯ୍ୟମାନଙ୍କର ରଚିତ ଅତି ପ୍ରାଚୀନ ଗ୍ରନ୍ଥ । ଆମ୍ଭମାନଙ୍କର ପୂର୍ବପୁରୁଷଙ୍କ ରଚିତ ଅତି ପ୍ରାଚୀନ ଗ୍ରନ୍ଥ। ପୂର୍ବପୁରୁଷଙ୍କର ଗୌରବ ବିନିଷ୍ଟ କରିବା ଇଚ୍ଛାରେ ଆମ୍ଭେମାନେ ବେଦ ଈଶ୍ୱର ନିଶ୍ୱସିତ ବୋଲୁଅଛୁଁ । ପୂର୍ବଗୌରବ ଲୋପ କରିବାକୁ ଆମ୍ଭେମାନେ ଅଭ୍ୟସ୍ତ । ପୂର୍ବପୁରୁଷମାନଙ୍କର ଗୌରବରେ ଆମ୍ଭେମାନେ ଗର୍ବିତ ନୋହୁଁ । ଆମ୍ଭେମାନେ ପ୍ରତିଭାପୂଜାର ବିରୋଧୀ। ଏ ହେତୁରୁ କାଳିଦାସ ବାଲ୍ମୀକି, ଶ୍ରୀହର୍ଷ ପ୍ରଭୃତି ଆକସ୍ମିକ ଦୈବଶକ୍ତି ପ୍ରଭାବରୁ କବି ହୋଇଥିବାର ପ୍ରକାଶ କରୁଁ। ବେଦ ଈଶ୍ୱର ନିଶ୍ୱସିତ ବୋଲି ପ୍ରକାଶ କରି ଭାରତବାସୀ ଆର୍ଯ୍ୟମାନଙ୍କର ଅଦ୍ୱିତୀୟ ପ୍ରତିଭାକୁ ଲୋପ କରିବାର ଚେଷ୍ଟା କରିଅଛୁଁ। ଯେତେବେଳେ ପୃଥିବୀ ମଧ୍ୟରେ ଅନ୍ୟତ୍ର ମନୁଷ୍ୟ ସମାଜରେ ଘୋରତର ଅସଭ୍ୟତା ବିରାଜମାନ କରୁଥିଲା, ଯେତେବେଳେ ମନୁଷ୍ୟଗଣ ଘୋର ଅଜ୍ଞାନ ଅନ୍ଧକାରରେ ବିଚରଣ କରୁଥିଲେ, ଜ୍ଞାନ ଓ ଧର୍ମାଲୋକର ପ୍ରଥମ ରଶ୍ମି ଦୀପ୍ତ ହୋଇ ନ ଥିଲା ସେତେବେଳେ ଆମ୍ଭମାନଙ୍କର ପୂର୍ବପୁରୁଷମାନଙ୍କର ହୃଦୟରେ ଧର୍ମଭାବ ଜାଗୃତକ ହୋଇଥିଲା । ସେମାନେ ପ୍ରାକୃତିକ, ନୈସର୍ଗିକ ଅସାଧାରଣ ଘଟଣାବଳୀ ଦୃଷ୍ଟି କରି ମୁଗ୍ଧ ହୋଇଥିଲେ ଏବଂ କୌଣସି ଅଭାବନୀୟ କ୍ଷମତାର ସ୍ତୋତ୍ରାଦି ପାଠ କରି ଧର୍ମ ବୀଜର ଅଙ୍କୁର ରୋପଣ କରିଥିଲେ ବୋଲି ପୂର୍ବପୁରୁଷମାନଙ୍କର ଯଶଗାନ କରିବାର ଦୂରେ ଥାଉ-ବେଦ ଈଶ୍ୱର ନିଶ୍ୱସିତ ବୋଲି ପ୍ରକାଶ କରିବାଦ୍ୱାରା ସେମାନଙ୍କର ଶକ୍ତିର ଲାଘବ କରୁଅଛୁଁ ।

ମନୁଷ୍ୟର ପ୍ରତିଭା ଓ କ୍ଷମତା ବଳରେ ଯାହାକିଛି ଆବିଷ୍କୃତ ବା ରଚିତ ହେଉ ନା କାହିଁକି ତାହା ଈଶ୍ୱର ରଚନାର

ସମକକ୍ଷ ହୋଇପାରିବ ନାହିଁ । ଏହା ଜାଣୁ ଜାଣୁ ଆପଣା କ୍ଷମତାତିରିକ୍ତ କୌଣସି କାର୍ଯ୍ୟ ଅନ୍ୟଦ୍ୱାରା ସମ୍ପାଦିତ ଥିବାର ଦେଖିଲାକ୍ଷଣି ଈଶ୍ୱର କ୍ଷମତାର ଲାଘବ ଥିବା କଳ୍ପନାରେ ବା ଅଶ୍ରଦ୍ଧାରେ ଅନ୍ୟର ଅସାଧାରଣ ଶକ୍ତିକୁ ଦୈବଶକ୍ତି ବା ଐଶୀଶକ୍ତି ବୋଲି ପ୍ରକାଶ କରି ମାନବଶକ୍ତିକୁ ହ୍ରାସ କରିବାର କଦାପି ସଙ୍ଗତ ନୁହେଁ । ଭାରତବର୍ଷୀୟ ଆର୍ଯ୍ୟମାନେ ଇଚ୍ଛାକ୍ରମେ ପୂର୍ବପୁରୁଷମାନଙ୍କର ଶକ୍ତିକୁ ଦୈବଶକ୍ତି ବୋଲି ପ୍ରକାଶ କରିବାରେ ତିଳେ ମାତ୍ର ତ୍ରୁଟି କରି ନାହାନ୍ତି । ଏ ହେତୁରୁ ଆମ୍ଭେମାନେ ମାନବ ଶକ୍ତିକୁ ଭୁଲିଯାଇ-ଅଳୀକ ଦୈବଶକ୍ତି ଉପରେ ବୃଥା ବିଶ୍ୱାସ ସ୍ଥାପନ କରିଅଛୁଁ ।

ବେଦ ଈଶ୍ୱର ନିଶ୍ୱସିତ ନୁହେଁ ମନୁଷ୍ୟ ରଚିତ ବୋଲି ପ୍ରମାଣ କରିବାକୁ ଯାଇ ଅନେକଙ୍କ ମତରେ ଆମ୍ଭେ ଅପରାଧ କଲୁଁ । ଦେଖାଯାଉ, ଯେଉଁମାନେ ବେଦକୁ ଈଶ୍ୱର ନିଶ୍ୱସିତ ବୋଲି ସ୍ୱୀକାର କରୁଅଛନ୍ତି ଏବଂ ଏହି ବିଶ୍ୱାସ କରୁଥିବାରୁ ଆସ୍ତିକ ବୋଲାଉଅଛନ୍ତି, ସେମାନେ କିପରି ବେଦର ପୂଜା ବେଦର ଆରାଧନାର ସମ୍ପାଦନା କରୁଅଛନ୍ତି । ବେଦ ଓ ଏ ଦେଶର ଆଦରର ସାମଗ୍ରୀ ମାତ୍ର ଖୋଜି ଆଣ ଋଗ୍‌ବେଦ ସଂହିତା ଦେଶ ମଧ୍ୟରେ ପାଞ୍ଚଦଶ ଖଣ୍ଡ ଥିବା କି ନା ସନ୍ଦେହ । ମାତ୍ର ଅଷ୍ଟାଦଶ ପୁରାଣ ଓ ଉପପୁରାଣ ଖୋଜିଲେ ଘରେ ଘରେ ଦେଖିବାକୁ ପାଇବ । ଆଦର ତ ଭାରି । ପୁଣ୍ୟ ମାସମାନଙ୍କରେ ଭାରତ, ଭାଗବତ, କାର୍ତ୍ତିକମାହାତ୍ମ୍ୟ ଏମନ୍ତ କି ଚୈତନ୍ୟ ଚରିତାମୃତ ଇତ୍ୟାଦି ଗ୍ରାମେ ଗ୍ରାମେ ଘରେ ଘରେ ପାଠ ହେବ । ସମସ୍ତେ ଆଗ୍ରହ ସହିତ ପୂଜାସାମଗ୍ରୀ ନେଇ ଭକ୍ତିର ପରାକାଷ୍ଠା ଦେଖାଇବାରେ ତ୍ରୁଟି କରିବେ ନାହିଁ । ମାତ୍ର ଋଗ୍‌ବେଦ କୌଣସିଠାରେ ଏତାଦୃଶ ଭକ୍ତି ସହକାରେ ପଠିତ ହେବାର ବା କେହି ଶ୍ରବଣ କରିବାର ତ କୌଣସିଠାରେ ଶୁଣା ନାହିଁ ବା ଦେଖା ନାହିଁ ।

ଋଗ୍‌ବେଦରେ ଇନ୍ଦ୍ରଙ୍କର ଅନେକ ସ୍ତୋତ୍ର ଅଛି । ଇନ୍ଦ୍ର ପୃଥିବୀର ଅଶେଷ ମଙ୍ଗଳକାରୀ ନୈସର୍ଗିକ ଦେବତା ରୂପରେ ସ୍ତୁତ ହୋଇଅଛନ୍ତି । ମାତ୍ର ଆଧୁନିକ କାଳର ଇନ୍ଦ୍ର ତ ଋଗ୍‌ବେଦର ସ୍ତୋତ୍ରରେ ସନ୍ତୁଷ୍ଟ ନୁହନ୍ତି । ଏ ଇନ୍ଦ୍ର ସହସ୍ର ଭଗବାନ୍ ମୂର୍ତ୍ତିମାନ ଲମ୍ପଟ ଓ ଐରାବତ ଆରୋହଣକାରୀ ବୋଲି ସ୍ତୁତିକଲେ ତୁଷ୍ଟ ହୁଅନ୍ତି । ପ୍ରାତଃକାଳରେ ସୂର୍ଯ୍ୟଦେବଙ୍କର ହିରଣ୍ମୟ ଜ୍ୟୋତି ଦେଖି କେଉଁ ବ୍ୟକ୍ତି ସୂର୍ଯ୍ୟଙ୍କର ଋକଗୁଡ଼ିକ ଆବୃତ୍ତି କରୁଅଛି । ଋଗ୍‌ବେଦରେ ସୂର୍ଯ୍ୟଙ୍କର ମୂର୍ତ୍ତିର ବର୍ଣ୍ଣନା ନାହିଁ । ଋଗ୍‌ବେଦରେ ସୂର୍ଯ୍ୟ କମଳିନୀର ପତି ନୁହଁନ୍ତି । ସୁତରାଂ ସୂର୍ଯ୍ୟ ଶତକ ଏ କାଳରେ ବେଦ ସ୍ତୋତ୍ର ଅପେକ୍ଷା ଶ୍ରେଷ୍ଠ ତାହାହିଁ ସମସ୍ତଙ୍କର ପାଠ୍ୟ ଏବଂ ସୂର୍ଯ୍ୟଦେବ ମଧ୍ୟ କାଳ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଈଶ୍ୱର ନିଶ୍ୱସିତ ବେଦ ସ୍ତୋତ୍ର ଅପେକ୍ଷା ମନୁଷ୍ୟ ରଚିତ ସ୍ତୋତ୍ରାଦିରେ ସନ୍ତୁଷ୍ଟ ହେବାକୁ ଶିକ୍ଷା କରିଅଛନ୍ତି ।

ବେଦରେ କେତେକ ଗୋଟି ଦେବତାର ସ୍ତୋତ୍ର ଭିନ୍ନ ପ୍ରତିମାପୂଜାର କୌଣସି ଉଲ୍ଲେଖ ନାହିଁ । ବେଦ ବିଶ୍ୱାସୀ ଆର୍ଯ୍ୟମାନେ ଆଧୁନିକ ଦେବତାମାନଙ୍କର ମୂର୍ତ୍ତି ନିର୍ମାଣ ନିମନ୍ତେ କେଉଁ ବେଦରୁ ଛାଞ୍ଚ ଆଣିଛନ୍ତି ଜଣା ନାହିଁ ।

ବେଦରେ ପ୍ରଥମେ ୩ ଗୋଟି ଦେବତା ଥିଲେ । ଋଗ୍‌ବେଦର ୧୦ମ ମଣ୍ଡଳ ନିଶ୍ୱସିତ ହେବାବେଳକୁ ୩୩୩୯ ସଂଖ୍ୟକ ଦେବତା ଅଗ୍ନିଙ୍କର ସେବକ ହୋଇଥିଲେ । ଅଧୁନା କାଳର ଦେବତା ସଂଖ୍ୟା ତେତିଶ କୋଟି ବା ୩୨୯୯୯୬୬୬୧ ଅତିରିକ୍ତ ଦେବତା ପୁରାଣ ରାଜ୍ୟରେ ଉପନିବେଶ ସ୍ଥାପନ କରିଅଛନ୍ତି । ଯେଉଁମାନେ ବେଦ ଈଶ୍ୱର ନିଶ୍ୱସିତ ବୋଲି ବିଶ୍ୱାସ କରନ୍ତି ପୁଣି ।

ପ୍ରଥମଂ ସର୍ବଶାସ୍ତ୍ରାଣାଂ ପୁରାଣଂ ବ୍ରହ୍ମଣାସୃତଂ
ଅନନ୍ତରଂ ଚ ବକ୍ତ୍ରେଭ୍ୟୋ ବେଦାସ୍ତସ୍ୟ ବିନିଃସୃତ ।

"ବ୍ରହ୍ମା ସର୍ବପ୍ରଥମେ ପୁରାଣ ଶାସ୍ତ୍ର ପ୍ରକାଶ କରନ୍ତି, ପରେ ବେଦ ସମୁଦାୟ ତାହାଙ୍କର ମୁଖରୁ ବିନିର୍ଗତ ହୁଏ" ବୋଲି ଯେଉଁ ପୁରାଣମାନେ ପ୍ରକାଶ କରୁଅଛନ୍ତି ସେହି ପୁରାଣମାନଙ୍କୁ ବେଦ ଅପେକ୍ଷା ମଧ୍ୟ ଆଦର କରନ୍ତି ।

ଯେଉଁ ବ୍ରହ୍ମବୈବର୍ତ୍ତ ପୁରାଣ 'ବ୍ରହ୍ମ ବୈବର୍ତ୍ତ ସୁତ୍‌ମ୍ ××× ବେଦାଂ ପ୍ରେମଭଞ୍ଜନଂ' ବୋଲି ବେଦ ବିଶ୍ୱାସୀ ଆର୍ଯ୍ୟଙ୍କୁ ପ୍ରତାରିତ କରୁଅଛି ସେହି ବ୍ରହ୍ମବୈବର୍ତ୍ତ ପୁରାଣକୁ ଆର୍ଯ୍ୟଗଣ ଭକ୍ତି କରନ୍ତି ।

ଯେଉଁ ଆର୍ଯ୍ୟଗଣ ବେଦରେ ଯାହା ନାହିଁ ତାହା ଅଛି ବୋଲି ଘୋଷଣା କରନ୍ତି । ବୈଦିକ ଦେବତାମାନଙ୍କର ରୂପ ଓ ଗୁଣ ପରିବର୍ତ୍ତନ କରନ୍ତି ପୌରାଣିକ ଛାଞ୍ଚରେ ଦେବତା ଗଢ଼ନ୍ତି ସେମାନେ ପ୍ରାମାଣିକ ଗ୍ରନ୍ଥ ବୋଲି ସ୍ୱୀକାର କରୁଥିବାର କିପରି ବିଶ୍ୱାସ କରାଯିବ ।

ଯେଉଁ ପୁରାଣମାନେ ବେଦକୁ ପୁରାଣଠାରୁ ଅପ୍ରାଚୀନ ବୋଲି ପ୍ରକାଶ କରନ୍ତି ସେହି ପୁରାଣମାନଙ୍କୁ ଯେତେବେଳେ ଆର୍ଯ୍ୟ ସନ୍ତାନଗଣ ଅବନତ ମସ୍ତକର ଧର୍ମଶାସ୍ତ୍ର ବୋଲି ସ୍ୱୀକାର କରୁଅଛନ୍ତି ଓ ଭକ୍ତି କରୁଅଛନ୍ତି କିପରି ବିଶ୍ୱାସ କରିବା

ଯେ ସେହି ଆର୍ଯ୍ୟ ସନ୍ତାନଗଣ ବେଦକୁ ଈଶ୍ୱର ନିଶ୍ୱସିତ ବୋଲି ସ୍ୱୀକାର କରନ୍ତି ।

ଯେଉଁ ବ୍ରହ୍ମବୈବର୍ତ୍ତ ପୁରାଣ ବେଦର ଭ୍ରମଭଞ୍ଜନ ବୋଲି ଆସ୍ପର୍ଦ୍ଧା କରିଅଛି । ଯେଉଁ ବ୍ରହ୍ମବୈବର୍ତ୍ତ ପୁରାଣ 'ରାଧା ଶବ୍ଦସ୍ୟ ବ୍ୟୁତ୍‌ପତି ସାମବେଦେ ନିରୂପିତା' ବୋଲି ମିଥ୍ୟା ପ୍ରକାଶ କରି ରାଧାରାଣୀଙ୍କର ମାହାତ୍ମ୍ୟ ବୃଦ୍ଧି କରିଅଛି । ସେହି ପୁରାଣକୁ ଯେଉଁ ଆର୍ଯ୍ୟଗଣ ଅଧୋବଦନରେ ଓ ନିମୀଳିତ ନୟନରେ ଶ୍ରଦ୍ଧା ଓ ଭକ୍ତି କରୁଅଛନ୍ତି । ସେହି ସେମାନେ ବେଦକୁ ଈଶ୍ୱର ନିଶ୍ୱସିତ ବୋଲି ସମ୍ମାନ କରନ୍ତି ଓ ବିଶ୍ୱାସ କରନ୍ତି ବୋଲି କିପରି ବିଶ୍ୱାସ କରିବା ?

ଯେଉଁ ଆର୍ଯ୍ୟଗଣ ବେଦୋଲ୍ଲିଖିତ ୩୩୩୯ ଦେବତାଙ୍କ ସ୍ଥାନରେ ୩୨୯୯୯୬୬୬୧ ଜଣ ଅତିରିକ୍ତ ଦେବତା ଆର୍ଯ୍ୟମାନଙ୍କର ପୂଜ୍ୟ ବୋଲି ନିଶଙ୍କ ମନରେ ଘୋଷଣା କରୁଅଛନ୍ତି, ଯେଉଁ ଆର୍ଯ୍ୟଗଣ ବୈଦିକ ନୈସର୍ଗିକ ଦେବତାଙ୍କ ଆସନରେ ଧୂର୍ଜଟି, ଭୈରବୀ, କାଳୀ, ଅମାଡୀଳି, ମନସା, ଚାମୁଣ୍ଡା, ଇତ୍ୟାଦି ଇତ୍ୟାଦି ଦେବଦେବୀମାନଙ୍କୁ ବସାଇ ଅଛନ୍ତି । ଯେଉଁ ଆର୍ଯ୍ୟଗଣଙ୍କୁ ବୈଦିକ ସ୍ତୋତ୍ରାଦି ଅପେକ୍ଷା କାଳୀକର୍ପୂର ରାଧାଷ୍ଟକ, ଅମୁକ ଶତକ, ଅମୁକ ସହସ୍ରନାମ ସୁମଧୁର ଓ ଭକ୍ତି ରସାତ୍ମକ ବୋଲି ବୋଧ ହୁଏ କିପରି ବିଶ୍ୱାସ କରାଯିବ ଯେ ଏମାନେ ବେଦବାକ୍ୟ ଲଙ୍ଘନ କରନ୍ତି ନାହିଁ ଏବଂ ଏମାନେ ବେଦ ମତାବଲମ୍ବୀ ଓ ବେଦୋପାସକ ଦୀକ୍ଷାମନ୍ତ୍ରବହ ଗୁରୁକୁଳର ଅତି ଗୁହ୍ୟତମ ମନ୍ତ୍ର, ଯାହା ବର୍ତ୍ତମାନ କାଳରେ ଆର୍ଯ୍ୟଗଣଙ୍କର ମୁକ୍ତିର ଏକମାତ୍ର ଉପାୟ ବୋଲି ନିର୍ଦ୍ଧାରିତ ହୋଇଅଛି ଏହି ଗୁରୁମନ୍ତ୍ରର ନାମଗନ୍ଧ ଋଗ୍‌ବେଦରେ ନାହିଁ ତଥାପି ଗୁରୁମନ୍ତ୍ରକୁ ଆର୍ଯ୍ୟଗଣ ଋଗ୍‌ବେଦ ଅପେକ୍ଷା ଅତି ପବିତ୍ର ବୋଲି ମନେ କରନ୍ତି । ଋଗ୍‌ବେଦ ଈଶ୍ୱର ନିଶ୍ୱସିତ ବୋଲି ହିନ୍ଦୁମାନଙ୍କର ବିଶ୍ୱାସ ଥିଲେ ଗୁରୁମନ୍ତ୍ରର ସୃଷ୍ଟି ହୋଇଥାନ୍ତା କି ?

ଯେଉଁ ଦିନରୁ ଆର୍ଯ୍ୟମାନଙ୍କର ହୃଦୟରେ ପୁରାଣ ଆଧିପତ୍ୟ ସ୍ଥାପନ କରିଅଛି ସେହିଦିନଠାରୁ ବେଦର ପ୍ରଧାନତ୍ୱ ଲୋପ ହୋଇଅଛି । ବେଦର ମାହାତ୍ମ୍ୟ ନଷ୍ଟ ହୋଇଅଛି । ଉପର ମନକୁ ଆର୍ଯ୍ୟମାନେ ଯାହା ବେଦ ଈଶ୍ୱର ନିଶ୍ୱସିତ ଓ ବେଦବାକ୍ୟ ଅନିନ୍ଦ୍ୟ ବୋଲନ୍ତି ତାହା ଅଳୀକଓ କପଟବାକ୍ୟ । ପୁରାଣମାନେ ବେଦର ପ୍ରଶଂସା କରିବା ଛଳନାରେ ତାହାର ମାହାତ୍ମ୍ୟ ନଷ୍ଟରେ ଚେଷ୍ଟା କରି ନିଜ ମାହାତ୍ମ୍ୟ ବଢ଼ାଇ ଅଛନ୍ତି ।

ବେଦ ହେତୁରୁ ଭାରତର ଗୌରବ ବେଦ ହେତୁରୁ ଆର୍ଯ୍ୟକୁଳର ଗୌରବ । କିନ୍ତୁ ପୌରାଣିକମାନେ ଜାଣିଶୁଣି ତାହା ନଷ୍ଟ କରିବାର ଚେଷ୍ଟିତ ହେଲେ । ଆମ୍ଭେମାନେ ଈଶ୍ୱର ନିଶ୍ୱସିତ ବୋଲି ସନ୍ତୁଷ୍ଟ ରହିଲେ ଯାହା ଈଶ୍ୱରକୃତ ହେଉ ତୁମ୍ଭର ଆମ୍ଭର କିଛି ନାହିଁ । ତାହା ସାର୍ବଜନୀନ । ଏହା ବୁଝିପାରିଲୁଁ ନାହିଁ । ପୌରାଣିକମାନେ ଭାରତବର୍ଷକୁ ସମସ୍ତ ପୃଥିବୀ ବୋଲି ଜ୍ଞାନ କଲେ ଈଶ୍ୱର କେବଳ ଭାରତବର୍ଷରେ ପ୍ରଭୁ ଆର୍ଯ୍ୟଗଣ କେବଳ ଈଶ୍ୱରଙ୍କର ପ୍ରିୟପାତ୍ର ଏହା ସର୍ବସାଧାରଣଙ୍କୁ ବୁଝାଇ ପୁରାଣ ରାଜ୍ୟର ସୀମା ମଧରେ ସମସ୍ତଙ୍କୁ ରୁଦ୍ଧ କରି ରଖିବାର ଚେଷ୍ଟା କଲେ । ପୁରାଣ କଥାରେ ବେଦର ଦୁହାଇକୁ ସମସ୍ତେ ମାନୁଥିଲେ ମଧପୁରାଣ ଉପରେ ସମସ୍ତେ ଆସ୍ଥା ସ୍ଥାପନ କରିଅଛନ୍ତି । ପୁରାଣ ଜାଲରେ ଜଡ଼ିତ ହୋଇ ବେଦ ମୃତପ୍ରାୟ ହୋଇ ରହିଥିଲା । କିନ୍ତୁ ଆଉ ଭୟର କାରଣ ନାହିଁ । ବେଦ ଆମ୍ଭମାନଙ୍କ ଅପେକ୍ଷା ସୁଯୋଗ୍ୟ ଉପାସକ ପାଇଅଛି । ଯେଉଁମାନେ ତାହାର ମର୍ଯ୍ୟଦା ବୁଝି ତାହାକୁ ଜଗତରେ ସମସ୍ତ ପ୍ରାଚୀନ ଗ୍ରନ୍ଥମାନଙ୍କ ମଧରେ ଅତ୍ୟୁଚ୍ଚ ଆସନ ପ୍ରଦାନ କରିଅଛନ୍ତି । ଆଜି ବେଦ କେବଳ ଭାରତବର୍ଷର ନୁହେଁ ଏହା ସମଗ୍ର ସଭ୍ୟ ଜଗତର ଆଦର ସାମଗ୍ରୀ ହୋଇଅଛି । ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ଏହାର ମର୍ଯ୍ୟାଦା ଓ ମାହାତ୍ମ୍ୟ ବୃଦ୍ଧି ଲାଭ କରିବ ଏବଂ ଯେଉଁ ପୁରାଣମାନେ ବେଦ ଈଶ୍ୱର ନିଶ୍ୱସିତ ବୋଲି କପଟ ଘୋଷଣା କରି ନିଜ ମର୍ଯ୍ୟାଦା ବଢ଼ାଇ ଅଛନ୍ତି ସେହି ପୁରାଣମାନଙ୍କର ମାହାତ୍ମ୍ୟ କ୍ରମେ ମ୍ଳାନ ହେବ ।

ବର୍ତ୍ତମାନ ବେଦ ସମ୍ବନ୍ଧରେ ଆଧୁନିକ ମତରୁ ଦୁଇ ଚାରି କଥା ଲେଖି ପାଠକମାନଙ୍କଠାରୁ ବିଦାୟ ନେଲେ ଯଥେଷ୍ଟ ହେବ ।

ଖ୍ରୀଷ୍ଟଜନ୍ମ ବହୁ ସହସ୍ର ବର୍ଷ ପୂର୍ବରୁ ଆମ୍ଭମାନଙ୍କର ପୂର୍ବ ପୁରୁଷଗଣ ଉନ୍ନତିର ଉଚ୍ଚ ଆସନକୁ ଆରୋହଣ କରିଥିଲେ। ବେଦ ସେମାନଙ୍କର ସଭ୍ୟତା ଓ ବୁଦ୍ଧିମତ୍ତାର ପରିଚାୟକ । ବେଦ ସେମାନଙ୍କର ଇତିହାସ, ଆଇନ୍, ଧର୍ମଗ୍ରନ୍ଥ ସାହିତ୍ୟ ସଙ୍ଗୀତ ଇତ୍ୟାଦି ।

ବେଦ ଇଜିପ୍ଟ ଦେଶର ପିରାମିଡ୍ ନୁହେଁ । ବେଦ ବେବିଲୟନ ନୁହେଁ ବା ଚୀନ୍‌ର ପ୍ରାଚୀର ନୁହେଁ । ସୁତରାଂ ବହୁକାଳ ଯାଏ ବୈଦେଶିକମାନଙ୍କର ଦୃଷ୍ଟିପଥରେ ପଡ଼ି ନ ଥିଲା । ମୁଷ୍ଟିମେୟ ହିନ୍ଦୁମାନଙ୍କ ଗୃହରେ ଗୁପ୍ତଧନ ନ୍ୟାୟ ଲୁକ୍‌କାୟିତ ଥିଲା । ପାଶ୍ଚାତ୍ୟ ପଣ୍ଡିତଗଣଙ୍କର ବିଦ୍ୟାନୁଶୀଳନ ସ୍ପୃହା ବଳବତୀ ହେବାରୁ ଗୁପ୍ତ ସମ୍ପତ୍ତିର ଉଦ୍ଧାର ହୋଇଅଛି । ଆଜି ବେଦ ସମସ୍ତଙ୍କର ନୟନଗୋଚର ହୋଇଅଛି । ଆଜି

ବେଦକୁ ସମସ୍ତ ପୃଥିବୀର ପଣ୍ଡିତ ମଣ୍ଡଳୀ ଅଧ୍ୟୟନ କରି ଆଶ୍ଚର୍ଯ୍ୟାନ୍ୱିତ ହୋଇଅଛନ୍ତି । ଯେଉଁମାନେ ଯନ୍ତ୍ରାରୂଢ଼ କରି ବେଦର ପ୍ରଚାର କରିଅଛନ୍ତି ସେମାନେ ଆମ୍ଭମାନଙ୍କର ଧନ୍ୟବାଦର ପାତ୍ର ଅଟନ୍ତି ।

ଉନବିଂଶ ଶତାବ୍ଦୀର ଅନେକ ବର୍ଷଯାଏ ପିରାମିଡର ଆକୃତିଲିପି, ଚାଲ୍ଡିଆର ଇତିହାସ ମନୁଷ୍ୟ ଜାତିର ସଭ୍ୟତାର ପ୍ରାଥମିକ ଇତିହାସ ବୋଲି ନିର୍ଦ୍ଧାରିତ ହେଉଥିଲା । କିନ୍ତୁ ଆଜିକାଲି ଅନେକଙ୍କଠାରେ ବେଦ ତୁଳନାରେ ପିରାମିଡ଼ର ଆକୃତି ଲିପି ଓ ଚାଲଡିଆର ସଭ୍ୟତା ଐତିହାସିକ ସତ୍ୟ ଉଦ୍‌ଘାଟନ କରିବାକୁ ଅସମର୍ଥ ବୋଲି ନିଶ୍ଚିତ ହେଉଅଛି । ପିରାମିଡ୍‌ର ଆକୃତିଲିପି, ଚାଲଡିଆର ଇତିହାସ ଅତି ପ୍ରାଚୀନ ବୋଲି ପରିଗଣିତ ହୋଇଥିଲେ ସୁଦ୍ଧା ଯେଉଁ ଜାତୀୟ ସମ୍ବନ୍ଧ ନିର୍ଣ୍ଣୟ କରିବାକୁ ଅସମର୍ଥ ହୋଇଥିଲା ବେଦ ତାହା ନିର୍ଣ୍ଣୟ କରିବାକୁ ସମର୍ଥ ହୋଇଅଛି । ଜାତିଗତ ସମ୍ବନ୍ଧ ନିର୍ଣ୍ଣୟ କରିବା ପାଇଁ ଐତିହାସିକ ଅନ୍ଧକାରକୁ ଭେଦ କରିବା ନିମନ୍ତେ ଆର୍ଯ୍ୟ ଶବ୍ଦ ଆଲୋକ ସ୍ୱରୂପ ।

ଆର୍ଯ୍ୟ ବୈଦିକ ଶବ୍ଦ । ଆର୍ଯ୍ୟ ଆମ୍ଭମାନଙ୍କର ପୂର୍ବ ପୁରୁଷଗଣଙ୍କର ଜାତୀୟ ଆଖ୍ୟା । ଆର୍ଯ୍ୟଶବ୍ଦ ପରିବର୍ତ୍ତରେ ଆମ୍ଭେମାନେ ହିନ୍ଦୁ ଆଖ୍ୟା ଗ୍ରହଣ କରିଅଛୁଁ । ହିନ୍ଦୁ ଶବ୍ଦ ଆଧୁନିକ— ଏହା ବେଦରେ ବା ପ୍ରାଚୀନ ଧର୍ମ ଗ୍ରନ୍ଥାଦିରେ ନାହିଁ । ଆର୍ଯ୍ୟଗଣ ବେଦର ରଚକ ସୁତରାଂ ବେଦର ପୁରାତତ୍ତ୍ୱ ଲେଖିବାକୁ ଗଲେ ଆଗରୁ ଆର୍ଯ୍ୟଜାତିର ଇତିହାସରୁ ଦୁଇ ଚାରି କଥା ଲେଖିବା ଉଚିତ । ତାହା ନ କଲେ ପ୍ରବନ୍ଧ ଅସମ୍ପୂର୍ଣ୍ଣ ହୁଏ ।

ଋକ୍‌ବେଦର ଅନେକ ସ୍ଥାନରେ ଆର୍ଯ୍ୟ ଶବ୍ଦ ବ୍ୟବହୃତ ହୋଇଅଛି । ସେହି ଋକ୍‌ଗୁଡ଼ିକ ପାଠ କଲେ ଜଣାଯାଏ ଯେ ଋକ୍‌ବେଦ ରଚନା କାଳରେ କେବଳ ଦୁଇ ଗୋଟି ଜାତି ଥିଲେ । ଆର୍ଯ୍ୟ ଓ ଅନାର୍ଯ୍ୟ, ଦସ୍ୟୁ ବା ଦାସ । ଆର୍ଯ୍ୟମାନେ ଯାଗଯଜ୍ଞାଦି କରୁଥିଲେ, ନୈସର୍ଗିକ ଦେବତାମାନଙ୍କର ଉପାସନା କରୁଥିଲେ । କୃଷି କାର୍ଯ୍ୟ କରି ଜୀବନଯାପନ କରୁଥିଲେ ଏବଂ ଅନାର୍ଯ୍ୟ, ଦସ୍ୟୁ ବା ଦାସମାନେ ଯଜ୍ଞାଦି ନ କରି ଦସ୍ୟୁବୃତ୍ତି ଅବଲମ୍ବନ କରୁଥିଲେ । ଦସ୍ୟୁଗଣ ଆର୍ଯ୍ୟମାନଙ୍କର ପରମ ଶତ୍ରୁ ଥିଲେ । ଆର୍ଯ୍ୟ ଶବ୍ଦର ବ୍ୟବହାର ସ୍ପଷ୍ଟ ରୂପେ ପାଠକମାନଙ୍କର ହୃଦୟଙ୍ଗମ ହେବ ବୋଲି ନିମ୍ନରେ କେତେଗୁଡ଼ିଏ ଋକ୍ ଉଦ୍ଧୃତ କରାଯାଉଅଛି ।

ବିଜାନୀହ୍ୟାର୍ଯ୍ୟାନ୍ୟେଚ ଦସ୍ୟୁବୋ ବର୍ହିସ୍ମିତେରଂଧୟା
ଶାସଦବ୍ରତାନ । ୧ - ୫୧ - ୮

ହେ ଇନ୍ଦ୍ର ! କେଉଁମାନେ ଆର୍ଯ୍ୟ, କେଉଁମାନେ ଦସ୍ୟୁ ତାହା ତୁମ୍ଭେ ଜ୍ଞାତ ହୁଅ । କୁଶ ଯଜ୍ଞର ହିଂସାକାରୀମାନଙ୍କୁ ଶାସନ କରି ବଶୀଭୂତ କର ।

ବିଦ୍ୱାନ୍‌କ୍ରିଦସ୍ୟବେ ହେତିମସ୍ୟାର୍ଯ୍ୟଂ ସହୋବର୍ଧୟା
ଦ୍ୟୁମ୍ନମିନ୍ଦ୍ର । ୧ - ୧୦୩ - ୩ ।

ହେ ବଜ୍ରୀନ ! ଆମ୍ଭମାନଙ୍କର ସ୍ତୁତି ଅବଗତ ହୋଇ ଦସ୍ୟୁର ପ୍ରତି ଅସ୍ତ୍ର ନିକ୍ଷେପ କର । ହେ ଇନ୍ଦ୍ର ! ଆର୍ଯ୍ୟମାନଙ୍କର ବଳ ଓ ଯଶ ବର୍ଦ୍ଧନ କର ।

ଅହଂଭୂମି ଦଦାମାର୍ଯ୍ୟାୟାହଂ ବୃଷ୍ଟି ଦାଶୁଷେ ମର୍ତ୍ତାୟ ।
୪ । ୨୬ । ୨

ମୁଁ ଆର୍ଯ୍ୟକୁ ଭୂମିଦାନ କରିଅଛି ମର୍ତ୍ତ୍ୟକୁ ବୃଷ୍ଟିଦାନ କରିଅଛି ।

ହିରଣ୍ୟୟସୁତ ଭୋଗଂ ସସାନ ହତ୍ୱା
ଦସ୍ୟୁନ ପ୍ରାର୍ଯ୍ୟଂ କର୍ଣ୍ଣମାବତ । ୩ । ୩୪୯

ଇନ୍ଦ୍ର ହିରଣ୍ମୟ ଧନଦାନ କରିଅଛନ୍ତି, ଦସ୍ୟୁମାନଙ୍କୁ ହତ୍ୟାକରି ଆର୍ଯ୍ୟଗଣକୁ ରକ୍ଷା କରିଅଛନ୍ତି ।

ବିଚିନ୍ୱକ ଦାସଂ ଆର୍ଯ୍ୟଂ । ୧୦ । ୮୬ । ୧୯

ମୁଁ (ଇନ୍ଦ୍ର) ଦାସ ଓ ଆର୍ଯ୍ୟକୁ ଅବଗତ ହୋଇ

ନଯରରେ ଆର୍ଯ୍ୟଂ ନାମ ଦଶ୍ୟବେ । ୧୦ । ୪୯ । ୩

ମୁଁ ଦସ୍ୟୁମାନଙ୍କୁ ଆର୍ଯ୍ୟନାମରୁ ବଞ୍ଚିତ କରିଅଛି । (ଆର୍ଯ୍ୟ ନାମ ଦସ୍ୟୁମାନଙ୍କୁ ଦେଇ ନାହିଁ ।)

ଆର୍ଯ୍ୟାବିଶଃ ୧୦ । ୧୧ । ୪ ଆର୍ଯ୍ୟ ମନୁଷ୍ୟଗଣ (ଆର୍ଯ୍ୟଜାତି) ସଧାମାଃ ଆର୍ଯ୍ୟସ୍ୟ ୭ । ୧୮ । ୭ (ଇନ୍ଦ୍ର) ଆର୍ଯ୍ୟର ସଖା ।

ବେଦରେ ଆର୍ଯ୍ୟ ଶବ୍ଦ ମଧ ଅଛି । ଅର୍ଯ୍ୟ ଓ ଆର୍ଯ ଏକ ଧାତୁର ନିଷ୍ପନ୍ନ ଓ ଏକାର୍ଥବୋଧକ ।

ସମର୍ଯଗା ଅଜତି ଯସ୍ୟବୃଷ୍ଟି ୧ । ୩୩ । ୪ ସ୍ୱାମୀରୂପ (ଇନ୍ଦ୍ର) ଯାହାକୁ ଇଚ୍ଛାକରନ୍ତି ତାହାଠାକୁ ଗାଈ ପ୍ରେରଣ କରନ୍ତି ।

ରାଷ୍ଟ୍ରୀ ଅର୍ଯ୍ୟଃ ନିୟୁତ୍ୟାନ ଇନ ଇନ

ଇତିଚତ୍ୟାରୀଶ୍ୱର ନାମାନୀ ୨। ୨୨ ନିରକ୍ତ (ନିର୍ଘଣ୍ଟୁ)

ବ୍ୟାଖ୍ୟା— ଆର୍ଯ୍ୟରଗତୌ ଇତ୍ୟସ୍ମାତଶ୍ୟତ ପ୍ରାପ୍ତେ ଅର୍ଯ୍ୟଃ ସ୍ୱାମୀ ବୈଶ୍ୟୟୋଃ ଇତି ଯନ୍ନିପାତ୍ୱତେ ଗମ୍ୟତେହ ସର୍ବେରୀଶ୍ୱରଃ ।

ଋ ଧାତୁର ଅର୍ଥ ଗମନ ବା ବ୍ୟାପ୍ତ କରିବାର— ଆର୍ଯ୍ୟ ବା ଆର୍ଯ୍ୟ ଶବ୍ଦ ସ୍ୱାମୀ ବା ବୈଶ୍ୟଠାରେ ପ୍ରବର୍ତ୍ତେ । ବେଦ ଭାଷାରେ ସାୟନ ଆର୍ଯ୍ୟ ଶବ୍ଦର ଅନେକଗୁଡ଼ିଏ ଅର୍ଥ ଲେଖିଅଛନ୍ତି ଯଥା—"ବିଦୁଷାଽନ୍, ଷାତ୍ରୀନ୍, ବିହ୍ୱଂସଃ, ସ୍ତୋତାରଃ, ବିଦୂଷେ, ଅରଣୀୟଂ, ସର୍ବୈର୍ଗନ୍ତବ୍ୟ, ମନବେ ଇତ୍ୟାଦି । ଆର୍ଯ୍ୟ ଶବ୍ଦ ବେଦ ଶବ୍ଦପ୍ରାୟ ସମସ୍ତଙ୍କର ବୋଧଗମ୍ୟ ଅଟେ ସୁତରାଂ ଧାତୁଗତ ଅର୍ଥ ବ୍ୟତିରେକେ ଉକ୍ତ ପ୍ରକାର ଅର୍ଥ କରିବାର ବିଶେଷ କାରଣ ନାହିଁ । ଉକ୍ତ କେତୋଟି ପ୍ରତିଶବ୍ଦ ଅପେକ୍ଷା ଆର୍ଯ୍ୟ ଶବ୍ଦ ସ୍ପଷ୍ଟ ଅଟେ ।

ନିରୁକ୍ତ ଅନୁସାରେ ଅର୍ଯ୍ୟ ବା ଆର୍ଯ୍ୟ ଅର୍ଥ ସ୍ୱାମୀ ଈଶ୍ୱର । ବାଜସନେୟି ସଂହିତାର 'ଯସୂଦ୍ରେ ଯଦାର୍ଯ୍ୟେ ଯଦେନଶ୍ଚ କୃସାବୟଂ' ବା : ସ-୨୦ । ୧୬ । ମନ୍ତ୍ରର ବ୍ୟାଖ୍ୟାରେ ମହିଧର ଶୂଦ୍ରେ ଆର୍ଯ୍ୟେ ବୈଶ୍ୟେ 'ଆର୍ଯ୍ୟ ସ୍ୱାମୀ ବୈଶ୍ୟୟୋରିତି' ଲେଖି ଅଛନ୍ତି । ଲାଟ୍ୟାୟନ ସୂତ୍ରରେ ଆର୍ଯ୍ୟ ଅର୍ଥ ବୈଶ୍ୟ ଜାତି ବୋଲି ସ୍ପଷ୍ଟ ଉଲ୍ଲେଖ ଅଛି 'ଆର୍ଯ୍ୟ ଭାବେ ଯାକ ଷାର୍ଯ୍ୟୋବର୍ଣ୍ଣାଃ'। ବ୍ୟାଖ୍ୟା ଯଦି ବୈଶ୍ୟୋନ ଲଭ୍ୟତେ ଯକଷ୍ଟାର୍ଯ୍ୟୋ ବର୍ଣ୍ଣାଃ ସ୍ୟାତ ବ୍ରାହ୍ମଣା ବା କ୍ଷତ୍ରିୟୋବାଃ। ଉପରୋକ୍ତ କେତୋଟି ଉଦାହରଣରୁ ସ୍ପଷ୍ଟ ଜଣାଯାଉଅଛି ଯେ ଆର୍ଯ୍ୟ ଅର୍ଥ ସ୍ୱାମୀ, ବୈଶ୍ୟ ଓ ବୈଶ୍ୟ ଜାତି ।

ସାୟନ ଏକ ସ୍ଥାନରେ ଆର୍ଯ୍ୟ ଅର୍ଥ 'ଅରଣ୍ୟଂ ସର୍ବୈର୍ଗନ୍ତବ୍ୟଂ' ଲେଖି ଅଛନ୍ତି । ସାୟନଙ୍କର ଏହି ଅର୍ଥ ଏବଂ ବୈଶ୍ୟ (ବ୍ୟବସାୟ) ଏହି ଅର୍ଥକୁ ଗ୍ରହଣ କରି ଅନେକ ପଣ୍ଡିତ ମତ ପ୍ରକାଶ କରିଛନ୍ତି ଯେ ଏହି ଜାତି ବ୍ୟବସାୟ କରିବା ନିମନ୍ତେ ସର୍ବତ୍ର ଗମନ କରୁଥିଲେ ବୋଲି ଆର୍ଯ୍ୟ ଆଖ୍ୟା ଗ୍ରହଣ କରିଥିଲେ । ଆର୍ଯ୍ୟ ବ୍ୟବସାୟୀ ଜାତି ।

ପାଶ୍ଚାତ୍ୟ ବେଦବିତ୍ ପଣ୍ଡିତଗଣଙ୍କ ମତରେ ଋ ବା ଅର୍ ଧାତୁର ଅର୍ଥ ଚାଷ କରିବାର । ଏଣୁ ଆର୍ଯ୍ୟ ଶବ୍ଦର ପ୍ରାଥମିକ ଅର୍ଥ କୃଷିଜୀବୀ ଜାତି ।

ଏକ ଅନିଶ୍ଚିତ ଓ ଅନିର୍ଦ୍ଦିଷ୍ଟ କାଳର ହିନ୍ଦୁ, ଇରାନୀୟ ଗ୍ରୀକ୍, ଲାଟିନ୍, କେଲଟ, ଟ୍ୟୁଟନ ପ୍ରଭୃତି ଜାତିମାନେ ମଧ୍ୟ ଆସିଆରେ ଏକତ୍ର ବାସ କରୁଥିଲେ। ଏଥିର ବିସ୍ତୃତ ବିବରଣ ପରେ ଉଲ୍ଲେଖ ହେଉଅଛି । ଏମାନେ ଏକତ୍ର ବାସ କରୁଥିବା କାଳେ ଅର (ଋ) ଧାତୁରୁ ନିଷ୍ପନ୍ନ କୌଣସି କୃଷିବାଚକ ଶବ୍ଦର ବ୍ୟବହାର ହେଉଥିଲା । ସୁତରାଂ ବହୁକାଳରୁ ବିଚ୍ଛିନ୍ନ ହୋଇଥିଲେ ସୁଦ୍ଧା ଉପରୋକ୍ତ କେତୋଟି ଜାତିର ଭାଷାରେ ଅର୍ ଧାତୁର ନିଷ୍ପନ୍ନ କୃଷିବାଚକ କେତେକ ଶବ୍ଦ ଅଦ୍ୟାପି ବିଦ୍ୟମାନ ଥିବାର ଦେଖାଯାଏ । ଯଥା, ଗ୍ରୀକ୍ ଅରଟ୍ରନ (Arotron) ଲେଟିନ ଅରଟ୍ରମ (Aratrum) ଲାଙ୍ଗଳ, ଗ୍ରୀକ୍ ଅରୋରା (Aurora) ଲେଟିନ୍ ଅର୍ଭମ୍ (Aruum) କର୍ଷିତ ଭୂମି ।

ଦେଖାଗଲା ଯେ କେତେକ ପଣ୍ଡିତଙ୍କ ମତରେ ଆର୍ଯ୍ୟଶବ୍ଦର ପ୍ରାଥମିକ ଅର୍ଥ ବ୍ୟବସାୟ ଜାତି ଏବଂ ପାଶ୍ଚାତ୍ୟ ପଣ୍ଡିତଗଣଙ୍କ ମତରେ ଆର୍ଯ୍ୟ ଅର୍ଥ କୃଷିଜୀବୀ ଜାତି । ପ୍ରକୃତ ପକ୍ଷରେ କହିବାକୁ ଗଲେ ଆର୍ଯ୍ୟ ଜାତିକୁ ବ୍ୟବସାୟୀ ଜାତି ବୋଲିବା ଅପେକ୍ଷା କୃଷିଜୀବୀ ଜାତି ବୋଲିବାର ବିଶେଷ କାରଣ ଅଛି । ଯାସ୍କ ଆର୍ଯ୍ୟ ଅର୍ଥ ଈଶ୍ୱର ଲେଖିଅଛନ୍ତି । ପାଣିନି ଓ ମହୀଧର ଆର୍ଯ୍ୟ ଅର୍ଥ ସ୍ୱାମୀ ଓ ବୈଶ୍ୟ ଲେଖିଅଛନ୍ତି । ସାୟନ ଏକସ୍ଥାନରେ ଆର୍ଯ୍ୟ ଅର୍ଥ ସ୍ୱାମୀ ଋପ ବୋଲି ଲେଖିଅଛନ୍ତି। ସ୍ୱାମୀ ଶବ୍ଦ ଭ୍ରମଣକାରୀ ପଣ୍ୟ ଜୀବଠାରେ ବ୍ୟବହୃତ ହେବା ଅପେକ୍ଷା ଭୂମ୍ୟାଧିକାରୀଠାରେ ବ୍ୟବହୃତ ହେବା ସଙ୍ଗତ ।

ଅହଁ ଭୂମିଦଦା ମାର୍ଯ୍ୟାୟାହଂ
ବୃଷ୍ଟି ଦାଶୁଷେ ମର୍ତ୍ତ୍ୟାୟ । ୪ । ୨୬ । ୨

ମୁଁ ଆର୍ଯ୍ୟକୁ ଭୂମିଦାନ କରିଅଛି ଓ ମର୍ତ୍ତ୍ୟକୁ ବୃଷ୍ଟିଦାନ କରିଅଛି । ଏହା ଇନ୍ଦ୍ରଙ୍କର ଉକ୍ତି । ସାୟନ ମର୍ତ୍ତ୍ୟ ଅର୍ଥ ହବ୍ୟଦାତା ଲେଖିଅଛନ୍ତି । କିନ୍ତୁ ନିରୁକ୍ତ ଅନୁସାରେ ମର୍ତ୍ତ୍ୟ ଅର୍ଥ ମରଣଶୀଳ ମନୁଷ୍ୟ ଜାତି । ମର୍ତ୍ତ୍ୟ ଅର୍ଥ ଯେ ମନୁଷ୍ୟ ଏହା କାହାକୁ ଅବିଦିତ ନାହିଁ । ମର୍ତ୍ତ୍ୟ ଶବ୍ଦର ଅର୍ଥ ହବ୍ୟଦାତା କଲେ ଅର୍ଥସଙ୍ଗତ ହେଉ ନାହିଁ କାରଣ ବୃଷ୍ଟି ଯେ କେବଳ ହବ୍ୟଦାତାଙ୍କ ଗୃହରେ ବା ଦେଶରେ ହୁଏ ଏମନ୍ତ ନୁହେଁ ପୃଥିବୀର ସବୁସ୍ଥାନରେ ବର୍ଷା ହୁଏ । ଦସ୍ୟୁମାନଙ୍କର ଦେଶରେ ଯେମନ୍ତ ବର୍ଷା ହେଉଥିଲା— ଆର୍ଯ୍ୟମାନଙ୍କର ଦେଶରେ ମଧ୍ୟ ତେମନ୍ତ ବର୍ଷା ହେଉଥିଲା । କେବଳ ଆର୍ଯ୍ୟଗଣ କୃଷିକାର୍ଯ୍ୟ ଦ୍ୱାରା ଭୂମିରୁ ଶସ୍ୟାଦି ଉତ୍ପନ୍ନ କରିବାକୁ ଜାଣୁଥିବାରୁ ଭୂମିର ଅଧିକାରୀ ହୋଇଥିଲେ ବ୍ୟବସାୟୀ ଜାତିକୁ ଭୂମି ଦେଇଅଛି ବୋଲିବା ଅପେକ୍ଷା କୃଷକକୁ ଭୂମିଦାନ କରିଅଛି ବୋଲିବା ସଙ୍ଗତ ।

'ନଯରରେ ଆର୍ଯ୍ୟନାମ ଦଶ୍ୟବେ ।'

ମୁଁ ଦସ୍ୟୁମାନଙ୍କୁ ଆର୍ଯ୍ୟନାମରୁ ବଞ୍ଚିତ କରିଅଛି । ଅର୍ଥାତ୍ ଦସ୍ୟୁମାନେ କୃଷିକାର୍ଯ୍ୟ ଜାଣନ୍ତି ନାହିଁ ବୋଲାଯିବ । ଏଥିପାଇଁ ଦସ୍ୟୁମାନେ ଆର୍ଯ୍ୟନାମ ପାଇ ନାହାନ୍ତି ।

ଆର୍ଯ୍ୟ ଶବ୍ଦ ଋଗ୍‌ବେଦର ଏକ ସ୍ଥାନରେ ଇନ୍ଦ୍ରଙ୍କର ବିଶେଷଣ ରୂପେ ବ୍ୟବହୃତ ହୋଇଅଛି ।

ନିସର୍ବସେନ ଇଷୁଧୀଂ ରସକ୍ତ
ସମଯୋଗା ଅଜତ୍ଧି ଯସ୍ୟ ବଷ୍ଟି
ରୋସ୍ତୁୟମାଣ ଇନ୍ଦ୍ର ଭୂରିବାମଂ
ମାପଣି ର୍ଭୂଗସ୍ମରଧି ପ୍ରବୃଦ୍ଧ ୧ । ୩୩ । ୩

''ସମଗ୍ର ସେନାନାୟକ ପୃଷ୍ଠଭାଗରେ ଇଷୁଧି ସଂଯୋଜିତ କରିଅଛନ୍ତି । ସ୍ୱାମୀ ରୂପ ଇନ୍ଦ୍ର ଯାହାକୁ ଇଚ୍ଛା କରନ୍ତି ତାହା ନିକଟକୁ ଗାଭୀ ପ୍ରେରଣ କରନ୍ତି । ହେ ପ୍ରକୃଷ୍ଟ ବୁଦ୍ଧିଯୁକ୍ତ ଇନ୍ଦ୍ର ଆମ୍ଭମାନଙ୍କୁ ପ୍ରଭୂତ ଧନ ଦାନ କରି ଆମ୍ଭମାନଙ୍କଠାରେ ବ୍ୟବହାରି ପରି ହୁଅ ନାହିଁ । ଏହି ଋକ୍‌ରେ ଥିବା ଆର୍ଯ୍ୟ ଶବ୍ଦର ଅର୍ଥ ସ୍ୱାମୀରୂପେ ସାୟନ ଲେଖି ଅଛନ୍ତି । ଇନ୍ଦ୍ରଙ୍କୁ ବ୍ୟବସାୟର ସ୍ୱାମୀ ବୋଲିବା ଅପେକ୍ଷା କୃଷିକାର୍ଯ୍ୟର ସ୍ୱାମୀ ବୋଲିବା ଯେ ସଙ୍ଗତପର ବୋଧ ହୁଏ ଏହା ବେଦ ଅସ୍ୱୀକାର କରିବେ ନାହିଁ । ପୁଣି ଏହି ଋକ୍‌ରେ ଆର୍ଯ୍ୟଗଣ ଇନ୍ଦ୍ରଙ୍କୁ 'ପଣିର୍ମାଭୂ' ବ୍ୟବହାରି ବା ବେପାରି ନ ହୁଅ । (ଗାଈର ମୂଲ୍ୟ ମାଗ ନାହିଁ) ବୋଲି ପ୍ରାର୍ଥନା କରୁଅଛନ୍ତି । ଏଥିରୁ ଅନାୟାସରେ ପ୍ରକାଶ ପାଇଅଛି ଯେ, ଆର୍ଯ୍ୟଗଣ ବ୍ୟବସାୟକୁ ଆଦର କରୁ ନ ଥିଲେ । ଆର୍ଯ୍ୟଗଣ କୃଷିପ୍ରିୟ ଥିବାର ଭୂରି ଭୂରି ପ୍ରମାଣ ଋଗ୍‌ବେଦରୁ ଉଦ୍ଧୃତ କରାଯାଇପାରିବ । ଭାରତୀୟ ଆର୍ଯ୍ୟଗଣ ଯେ ବ୍ୟବସାୟ ଅପେକ୍ଷା କୃଷିକାର୍ଯ୍ୟକୁ ଶ୍ରେଷ୍ଠ ଜୀବନୋପାୟ ବୋଲି ମନେ କରନ୍ତି ତାହା ବୋଲିବା ବାହୁଲ୍ୟମାତ୍ର ।

ଆର୍ଯ୍ୟଗଣ ମଧ୍ୟ ଆସିଆରେ ବାସ କରୁଥିବା କାଳେ ସେମାନଙ୍କର ଏକ ଦୁର୍ଦ୍ଧାନ୍ତ ପ୍ରତିବେଶୀ ଜାତି ଥିଲେ । ଏହି ଜାତି ମଧ୍ୟ ଆସିଆର ନାନାସ୍ଥାନରେ ବିଚରଣ କରି ବ୍ୟବସାୟ ଓ ସଙ୍ଗେ ସଙ୍ଗେ ଦସ୍ୟୁତା କରୁଥିଲେ । ଏହି ବର୍ବର ଜାତି ଆପଣାର 'ତ୍ୱରିତ ଗତିର ଗୌରବ' ନିମନ୍ତେ ଆପଣାର ଜାତୀୟ ନାମ ତୁର୍ ରଖିଥିଲେ । ସୁତରାଂ କୃଷିଜୀବୀ ଉନ୍ନତ ଜାତି ଆପଣାର ନାମ ଆର୍ଯ୍ୟ ରଖିଥିଲେ । ପ୍ରାଚୀନ ଆର୍ଯ୍ୟ ଶବ୍ଦର ଆଧୁନିକ ଇରାନ ଓ ତୁର ଶବ୍ଦରୁ ଆଧୁନିକ ତୁରାନ ହୋଇଅଛି । ପ୍ରାଚୀନ କାଳରେ ଆର୍ଯ୍ୟ ଓ ତୁର୍ ମଧ୍ୟରେ ଯେପରି ଘୃଣା ଓ ବିଦ୍ୱେଷ ଭାବ ଥିଲା ଆଜିକାଲି ଇରାନ ଓ ତୁରାନମାନଙ୍କ ମଧ୍ୟରେ ସେହିପରି ଘୃଣା ଓ ବିଦ୍ୱେଷ ଭାବ ରହିଅଛି ।

ପ୍ରଥମେ ଆର୍ଯ୍ୟ ଶବ୍ଦର ଅର୍ଥ ଯେ କୃଷିଜୀବୀ ଥିଲା ତହିଁରେ ସନ୍ଦେହ ନାହିଁ ମାତ୍ର ଯେଉଁ ଜାତି ପ୍ରଥମେ କୃଷିଜୀବୀ ଆଖ୍ୟା ଗ୍ରହଣ କଲେ ଏବଂ କୃଷିକୁ ଏକମାତ୍ର ଜୀବନୋପାୟ ବୋଲି ମନେ କଲେ ସେମାନେ ପୃଥିବୀର କ୍ରମୋନ୍ନତି ନିୟମର ଅନୁସରଣ କରି ପ୍ରଥମରୁ ଉନ୍ନତ ଓ ସଭ୍ୟ ହେବାରୁ ସେମାନଙ୍କର ଜାତୀୟ ନାମ ଆର୍ଯ୍ୟ ଶବ୍ଦର ଅର୍ଥ କ୍ରମେ ଶ୍ରେଷ୍ଠ ଓ ବିଜ୍ଞ ହୋଇଅଛି । ଆଜି ଏହି ଆଖ୍ୟା ଲାଭ କରିବା ନିମନ୍ତେ ପୃଥିବୀର ସମସ୍ତ ସଭ୍ୟ ଜାତି ଲାଳାୟିତ ।

ଆବସ୍ତିକ ଐର୍ଯ୍ୟ ଶବ୍ଦ ଆର୍ଯ୍ୟ ଶବ୍ଦର ରୂପାନ୍ତର ମାତ୍ର ଐର୍ଯ୍ୟ ଶବ୍ଦର ଅର୍ଥ ମାନ୍ୟ ସମ୍ଭ୍ରାନ୍ତ ଓ ପୂଜ୍ୟ । ଆମ୍ଭମାନଙ୍କଦ୍ୱାରା ବ୍ୟବହୃତ ଆର୍ଯ୍ୟ ଓ ଅନାର୍ଯ୍ୟ ଶବ୍ଦ ପ୍ରାୟ ଆବସ୍ତିକ ଐର୍ଯ୍ୟୋ ଦୈନାଭୋ (ଆର୍ଯ୍ୟଜାତି) ଓ ଅନୈର୍ଯ୍ୟ ଦୈନାଭୋ (ଅନାର୍ଯ୍ୟ ବା ଅଶ୍ରେଷ୍ଠଜାତି) ଶବ୍ଦ ବ୍ୟବହୃତ ହେଉଅଛି । ଆବସ୍ତିକ ପ୍ରଥମ ସୃଷ୍ଟି ସ୍ଥାନର ନାମ ଐର୍ଯ୍ୟନ ବା ଏଜୋ ଅର୍ଥାତ୍ ଆର୍ଯ୍ୟବୀଜ ।

ଅରି (ସାହସିକ) ଇରା, ଇରିଉ, ଆୟଲଣ୍ଡ ପ୍ରଭୃତି ଶବ୍ଦ ଆର୍ଯ୍ୟ ଶବ୍ଦର ରୂପାନ୍ତର ବୋଲି ମଧ୍ୟ ପାଶ୍ଚାତ୍ୟ ପଣ୍ଡିତଗଣ ପ୍ରକାଶ କରନ୍ତି ।

ପୂର୍ବେ ଲେଖା ହୋଇଅଛି ଯେ, ହିନ୍ଦୁ, ଇରାନୀୟ, ଗ୍ରୀକ୍ ଲେଟିନ୍, କେଲଟିକ, ଟ୍ୟୁଟନ ପ୍ରଭୃତି ଜାତିମାନେ ଏକ ସମୟରେ ଏକତ୍ର ବାସ କରୁଥିଲେ । ପାଶ୍ଚାତ୍ୟ ପଣ୍ଡିତଗଣ ଏତାଦୃଶ ମତରେ ଉପନୀତ ହେବାର କାରଣ କି ? ଏହି ପ୍ରଶ୍ନ ସହଜରେ ପାଠକମାନଙ୍କ ହୃଦୟରେ ଜାତ ହୋଇପାରେ ।

ଏଣୁ ଆପେକ୍ଷିକ ଶବ୍ଦ ଧାର ଅନୁଶୀଳନ ଦ୍ୱାରା ପାଶ୍ଚାତ୍ୟ ପଣ୍ଡିତଗଣ କିପରି ବିଭିନ୍ନ ଜାତିର ଆଦି ସମ୍ବନ୍ଧ ନିର୍ଣ୍ଣୟ କରିଅଛନ୍ତି ତହିଁର ଉଦାହରଣ ନିମ୍ନରେ ପ୍ରଦତ୍ତ ହେଉଅଛି ।

| **ସଂସ୍କୃତ** | **ଆବସ୍ତିକ** | **ଗ୍ରୀକ୍** | **ଲେଟିନ** | **ଇଂରାଜି** |
|---|---|---|---|---|
| ପିତୃ | ପିତର | ପାଟର | ପାଟର | ଫାଦର |
| ମାତୃ | ମାତର | ମେଟାର | ମାଟେର | ମାଦର |
| ଭ୍ରାତୃ | ଭ୍ରାତର | ଫ୍ରାଟର | ଫ୍ରାଟର | ବ୍ରାଦାର |
| ଦୁହିତୃ | ଦୁଘଧର | ଥୁଥାଟର | — | ଟଡାର |

**ସଂଖ୍ୟା**

| | | | | |
|---|---|---|---|---|
| ଦ୍ୱି | ଦବ | ଡଓ | ଡୁଓ | ଟୁ |
| ତ୍ର,ତ୍ରୟସ,ତିସ୍ର | ତିସ୍‌ରେ | ଟ୍ରାଇସ | ଟେସ | ଥ୍ରୀ |
| ଚତୁର, ଚତ୍ୱାର | ଚଥବାରେ | — | କାଟୁଅର | ଫୋର୍ |
| ପଞ୍ଚନ | ପଞ୍ଚନ | — | ପେନଣ୍ଡି | ଫାଇଭ୍ |
| ଷଷ୍ଠ | ଖସବସ | ହେକସ | ସୋକସ | ସିକସ୍ |
| ଅଷ୍ଟ | ହପ୍ତନ | ଅକଟୋ | ଅକଟୋ | ଏଇଟ |
| ନବନ | ନବନ | — | ନବେମ | ନାଇନ |

| ସଂସ୍କୃତ | ଆବସ୍ତିକ | ଗ୍ରୀକ୍ | ଲେଟିନ |
|---|---|---|---|
| ଦଦାମି | ଦଧାନ | ଡିଡୋନ | ଡୋ |
| ଦଦାସି | ଦଧାହ | ଡିଡୋସ | ଡାସ |
| ଦଦାତି | ଦଧେତ | ଡିଡୋଟି | ଡାଟ |
| ଅସ୍ମି | ଅକ୍ଷ୍ମି | ଏସ୍ମି | ସମ |
| ଅସି | ଅହି | ଏସସି | ଏସ |
| ଅସ୍ତି | ଅଥତି | ଏସଟି | ଏସଟ |

(ଉ : ସ :)

ପାଶ୍ଚାତ୍ୟ ପଣ୍ଡିତଗଣ ପ୍ରକାଶ କରନ୍ତି ଯେ ଗୋଟିଏ ମୂଳ ଭାଷାରୁ ଉକ୍ତ ଭାଷାଗୁଡ଼ିକ ଉତ୍ପନ୍ନ ହୋଇ ନ ଥିଲେ ଏତାଦୃଶ ବୈୟାକରଣିକ ସାଦୃଶ୍ୟ କଦାପି ରହିପାରନ୍ତା ନାହିଁ । ଏକ ଜାତିଠାରୁ ଅପର ଜାତି ଏହି ସମସ୍ତ ଶବ୍ଦ ଶିକ୍ଷା କରିଥିବାର ଅନୁମାନ କରାଯାଇ ନ ପାରେ । କାରଣ ପିତାମାତା-ଦି ଶବ୍ଦ ଅତି ଆବଶ୍ୟକୀୟ ଶବ୍ଦ । ଜନକ ଜନନୀକୁ ସମ୍ବୋଧନ କରିବା ନିମନ୍ତେ ପୃଥିବୀର ସମସ୍ତ ମନୁଷ୍ୟ ଜାତିର ଭାଷାରେ ଶବ୍ଦ ଅଛି କେହି କାହାରିଠାରୁ ଶିକ୍ଷା କରି ନାହାନ୍ତି । ବାକ୍ୟସ୍ଫୁଟ ହେବା ମାତ୍ରେ ମା' ଓ ବାପାକୁ ଡାକିବାର ପ୍ରୟୋଜନ ହୋଇପଡ଼େ । ଏହି ଶବ୍ଦକୁ ଅନ୍ୟ ଭାଷାରୁ ଶିକ୍ଷା କରିବାକୁ ଅପେକ୍ଷା କରାଯାଇ ନ ପାରେ ସୁତରାଂ ଆବଶ୍ୟକୀୟ ସମ୍ପର୍କବାଚକ ଶବ୍ଦର ସାମ୍ୟ ଯେଉଁ ଯେଉଁ ଭାଷାରେ ଦେଖାଯିବ ସେହି ଭାଷା ସମୂହ ଏକ ଭାଷାରୁ ଜନ୍ମ ହୋଇଥିବାର ସ୍ୱୀକାର କରାଯିବ । ସର୍ବନାମ ଓ କ୍ରିୟା ବ୍ୟତୀତ କଥାବାର୍ତ୍ତା ଚଳିବା ଅସମ୍ଭବ । ଏଣୁ ଯେଉଁ ଯେଉଁ ଭାଷାରେ ସେହି ନାମ ଓ କ୍ରିୟାରେ ସୌସାଦୃଶ୍ୟ ଦେଖାଯିବ ସେହି ଭାଷା ଏକ ମୂଳଭାଷାରୁ ଜନ୍ମ ହୋଇଥିବାର ମଧ୍ୟ ସ୍ୱୀକାର କରିବାକୁ ହେବ ।

ଏହାଛଡ଼ା ଅନେକ ଶବ୍ଦର ସୌସାଦୃଶ୍ୟ ଓ ଧାତୁଗତ ସାମ୍ୟ ଉକ୍ତ ସମସ୍ତ ଭାଷାରେ ଦେଖାଯାଏ ।

ସଂସ୍କୃତ ଦେବର ଶବ୍ଦର ରୂପାନ୍ତର ରସିଏନ ଭାଷାରେ ଦେବେରୋ ଓ ଗ୍ରୀକ୍ ଦଏର । ସଂସ୍କୃତ ବିଧବା ଶବ୍ଦର ରୂପାନ୍ତର ଲେଟିନ ଭିଡୁଆ ଇଟାଲିଏନ ରେଡୋଭା ଜାର୍ମେନ ବିଡ୍‌ଥେ ରସିଏନ vedora । ଅଧ୍ୟାପକ ରେଗୋଜିନ ଲେଖନ୍ତି ଯେ ଯେବେ ଆର୍ଯ୍ୟ କୁଳରେ ସତୀଦାହ ପ୍ରଥା ଆଦ୍ୟରୁ ପ୍ରଚଳିତ ହୋଇଥାନ୍ତା ତାହାହେଲେ ସମସ୍ତ ଆର୍ଯ୍ୟ ଭାଷାରେ ବିଧବା ଶବ୍ଦ କଦାପି ଦେଖାଯାଆନ୍ତା ନାହିଁ ।

ଉପରୋକ୍ତ ଶବ୍ଦଗୁଡ଼ିକ ଦେଖିଲାକ୍ଷଣି ଅନେକେ ବୈୟାକରଣିକ ସାଦୃଶ୍ୟ ଅଛି ବୋଲି ସ୍ୱୀକାର କରିବେ ନାହିଁ ମାତ୍ର ଓଡ଼ିଆ ଭାଷା ସହିତ ସଂସ୍କୃତ ଶବ୍ଦର ତୁଳନା କଲେ ଦେଖିବାକୁ ପାଇବେ ଯେ ସଂସ୍କୃତ ସହିତ ଆବସ୍ତିକ ଶବ୍ଦର ଯେପରି ସାମ୍ୟ ଅଛି ଓଡ଼ିଆ ସହିତ ସେପରି ନାହିଁ । ଏହା ମଧ୍ୟ ସ୍ମରଣ ରଖିବା ଉଚିତ ଯେ ସଂସ୍କୃତ ବା ପ୍ରାକୃତରୁ ଓଡ଼ିଆ ଭାଷାର ଉତ୍ପତ୍ତି ଏବଂ ଏହି ଭାଷାର ଜନ୍ମ ଦୁଇ ହଜାର ବର୍ଷରୁ ସମ୍ଭବତଃ ଉର୍ଦ୍ଧ୍ୱ ନୁହେଁ । କିନ୍ତୁ ଉକ୍ତ କେତୋଟି ଭାଷା ସଂସ୍କୃତ ଭାଷାରୁ ଜନ୍ମ ହୋଇ ନାହାନ୍ତି—ବେଦ ରଚନା ପୂର୍ବରୁ ଆର୍ଯ୍ୟମାନଙ୍କର ଯେ ଭାଷା ଥିଲା ସେଥିରୁ ଏହି ଭାଷାମାନଙ୍କର ଜନ୍ମ । ଏହି ଭାଷାମାନଙ୍କର ଉତ୍ପତ୍ତି କାଳ ନିର୍ଣ୍ଣୟ କରିବା ବଡ଼ କଠିନ । ଏତେ ଅଳ୍ପ କାଳ ମଧ୍ୟରେ ଓଡ଼ିଆ ଓ ବଙ୍ଗଳା ପ୍ରଭୃତି ଭାଷା ମାତୃଭାଷାଠାରୁ ଏତେ ଭିନ୍ନ ହୋଇଥିବା ସ୍ଥଳେ ଆବସ୍ତିକ ପ୍ରଭୃତି ଭାଷାମାନେ ଯେ ବହୁ ସହସ୍ର ବର୍ଷ ହେଲା ପ୍ରାଚୀନ ଆର୍ଯ୍ୟ ଭାଷାରୁ ବିଚ୍ଛିନ୍ନ ହୋଇ ସୁଦ୍ଧା ଏତାଦୃଶ ଘନିଷ୍ଠ ସମ୍ବନ୍ଧ ରକ୍ଷା କରିବାକୁ ସକ୍ଷମ ହୋଇଅଛନ୍ତି ଏହା ବଡ଼ ବିସ୍ମୟକର କଥା ।

କେବଳ ଭାଷାର ସମ୍ବନ୍ଧ ଦେଖି ଯେ ହିନ୍ଦୁମାନଙ୍କ ସହିତ ଇରାନୀୟ ଗ୍ରୀକ୍, ଲେଟିନ ପ୍ରଭୃତି ଜାତି ଏକତ୍ର ବାସ କରୁଥିଲେ ବୋଲା ଯାଉଅଛି, ଏମନ୍ତ ନୁହେଁ । ଏହି ଜାତିମାନଙ୍କର ସାମାଜିକ ଦେବୋପାସନାଦିରେ ମଧ୍ୟ ସାମ୍ୟଥିବାର ଲକ୍ଷିତ ହେଉଅଛି । ଏହି ଜାତିମାନଙ୍କ ମଧ୍ୟରୁ ଇରାନୀୟ ଜାତିମାନଙ୍କ ସହିତ ଭାରତୀୟ ଆର୍ଯ୍ୟମାନଙ୍କର ବେଶି ଘନିଷ୍ଠତା ଅଛି; ତାହା କ୍ରମେ ପ୍ରଦର୍ଶିତ ହେବ ।

ତୁମ୍ଭେ ଆସ୍ତିକ ହୁଅ ନାସ୍ତିକ ହୁଅ ସଭ୍ୟ ହୁଅ ବା ବର୍ବର ହୁଅ ପ୍ରାକୃତିକ ବୈଚିତ୍ର୍ୟ ଦର୍ଶନ କଲା ମାତ୍ରକେ ତୁମ୍ଭର ମନରେ ଗୋଟାଏ ଅକଥନୀୟ ଭାବର ଉଦୟ ହେବ । ଏହା ସ୍ୱାଭାବିକ, ଅନ୍ୟଥା ହେବାର ନୁହେଁ । ପ୍ରାକୃତିକ ପରିବର୍ତ୍ତନ ମନୁଷ୍ୟମନକୁ ଆହ୍ଲାଦିତ, ଭୀତତ୍ରସ୍ତ କରେ । ନାନା ସମୟରେ ନାନାସ୍ଥାନରେ ମନୁଷ୍ୟ ମନରେ ନାନାଭାବ ଉଦୟ କରେ । ଇନ୍ଦ୍ରଧନୁ ପୃଥିବୀର କେଉଁ ସ୍ଥାନରେ ଦେଖାଯାଉ ନାହିଁ, ସୂର୍ଯ୍ୟ ଓ ଚନ୍ଦ୍ର ଗ୍ରହଣ କେଉଁଠାରେ ଦେଖାଯାଉ ନାହିଁ ? ଏହି ଘଟଣାକୁ ବିଭିନ୍ନ ଜାତି ବିଭିନ୍ନ ପ୍ରକାରେ ଦେଖୁଅଛନ୍ତି । ସାଧାରଣତଃ ଇନ୍ଦ୍ରଧନୁ ଦେଖି ଲୋକ ଆହ୍ଲାଦିତ ହୁଏ ଓ ନିକଟସ୍ଥ ଲୋକଙ୍କୁ ଦେଖାଇ ଦେବାକୁ ଆଗ୍ରହାନ୍ୱିତ ହୁଏ । ଅପର ବ୍ୟକ୍ତିକୁ ଇନ୍ଦ୍ରଧନୁ ଦେଖାଇବାଟା, ଭାରତବାସୀଙ୍କୁ ମନା।—ଚନ୍ଦ୍ର ଓ ସୂର୍ଯ୍ୟ ଗ୍ରହଣରେ ସ୍ନାନ ଦାନାଦିର ବ୍ୟବସ୍ଥା

ଅଛି । ଠିକ୍ ଏହି ପ୍ରଥାଗୁଡ଼ିକ ଅନ୍ୟ ଜାତିଙ୍କଠାରେ ଦେଖିବାକୁ ପାଇଲେ ମନେ କରାଯିବ ଯେ ସେହି ଜାତି ଭାରତବାସୀଙ୍କଠାରୁ ଏହି ରୀତିଗୁଡ଼ିକ ଶିକ୍ଷା କରିଅଛନ୍ତି କିମ୍ବା ଏହି ଜାତି ଓ ଭାରତବର୍ଷର ଆର୍ଯ୍ୟଜାତି ଏକ ସମୟରେ ଏକତ୍ର ବାସ କରୁଥିଲେ ଓ ଏକ ଜାତି ଥିଲେ । ଏଥିରୁ ଅନ୍ୟପ୍ରକାର ଭାବିବାର ନାହିଁ । କାରଣ ଏକ ଘଟଣାକୁ ଦୁଇ ବା ତତୋଽଧିକ ଜାତି ସମାନ ଭାବରେ ଦେଖିବାର ପୁଣି ଗୋଟାଏ ଘଟଣା ବା ବସ୍ତୁକୁ ଏକ ନାମ ଦେଇ ଡାକିବାର କଦାପି ସମ୍ଭବ ନୁହେଁ।

ସମସ୍ତ ଜାତିର ଆଦିପୁରୁଷଗଣ ନୈସର୍ଗିକ ଦେବୋପାସକ ଥିଲେ । ଯଦି ପୂର୍ବୋକ୍ତ କେତୋଟି ଜାତିର ସ୍ତୁତି ସ୍ତୋତ୍ରାଦିରେ ଧର୍ମଶାସ୍ତ୍ରରେ ବା ଇତିହାସରେ ଏକ ଦେବତାର ଗୁଣକର୍ମର ବର୍ଣ୍ଣନା ସମାନ ଥାଏ, ନାମ ମଧ୍ୟ ସମାନ ହୁଏ, ତାହାହେଲେ ଅନାୟାସରେ ପ୍ରତିପନ୍ନ କରାଯାଇପାରିବ ଯେ ଉକ୍ତ କେତୋଟି ଜାତି ଏକ ସମୟରେ ଏକ ଦେବତାର ଉପାସକ ଥିଲେ । ଯେଉଁ ଏକ ଜାତି ସହିତ ଅପର ଏକ ଜାତିର ଧର୍ମକର୍ମ ଓ ଦେବୋପାସନାର ବେଶି ମେଳ ଦେଖାଯିବ, ମନେ କରାଯିବ ଯେ ସେହି ଜାତିଗୁଡ଼ିକ ଅପେକ୍ଷାକୃତ ଦୀର୍ଘକାଳ ଏକତ୍ର ଥିଲେ । ଜାତିଗତ ସମ୍ବନ୍ଧ ଓ କାଳ ନିର୍ଣ୍ଣୟ କରିବା ନିମନ୍ତେ ଜାତୀୟ ଧର୍ମଶାସ୍ତ୍ର ଗୋଟାଏ ପ୍ରଶସ୍ତ ଉପାୟ । ଏକଥା ଅସ୍ୱୀକାର କରିବାର କୌଣସି କାରଣ ନାହିଁ । କଥାଟା ପ୍ରଥମରୁ ଶୁଣିବାକୁ ଅଡୁଆ ମାତ୍ର ମନ ଦେଇ ଦେଖିଲେ ବଡ଼ ସହଜ ଓ ସତ୍ୟପୂର୍ଣ୍ଣ । ଅଧ୍ୟାପକ ମୁକ୍ଷମୁଲାର ଏକ ସ୍ଥାନରେ କହି ଅଛନ୍ତି, ଯଦି ମୋତେ କେହି ପଚାରେ ଯେ ଊନବିଂଶ ଶତାବ୍ଦୀରେ ମନୁଷ୍ୟ ଜାତିର କି ଆବଶ୍ୟକୀୟ ପ୍ରାଚୀନ ଐତିହାସିକ ଆବିଷ୍କାର ହୋଇଅଛି, ମୁଁ ନିମ୍ନୋକ୍ତ ସଂକ୍ଷେପ ଏକ ପଂକ୍ତିରେ ତହିଁର ଉତ୍ତର ଦେବି । ''ସଂସ୍କୃତ ଦ୍ୟୁପିତର ଗ୍ରୀକ୍ ଜିୟସ ପାଟର, ଲେଟିନ୍ ଜ୍ୟୁପିଟର ପ୍ରାଚୀନ ନର୍ସଟା ।'' ଦୈୱିତାବୈଦିକ ଦେବତା, ଜିୟସ ପିଟାର ଗ୍ରୀକ୍ ଦେବତା; ଡିଏସ ପିଟାର ଓ ଜୁପିଟାର ଲେଟିନ୍ ଦେବତା । ପ୍ରାଚ୍ୟ ପାଶ୍ଚାତ୍ୟ ଆର୍ଯ୍ୟଜାତି ଏକତ୍ର ଥିବାବେଳେ ଦ୍ୟୁ ଧାତୁରୁ ନିଷ୍ପନ୍ନ ଜ୍ୱଳ ଓ ଦିପିଶାଳୀ ନୈସର୍ଗିକ ଦେବତାର ଉପାସନା କରୁଥିଲେ । ୟୁରୋପୀୟ ପଣ୍ଡିତଗଣ ନିମ୍ନୋକ୍ତ ଗ୍ରୀକ୍ ଓ ବୈଦିକ ଦେବତା ଅଭିନ୍ନ ବୋଲି ପ୍ରକାଶ କରିଅଛନ୍ତି ।

| ଗ୍ରୀକ | ବୈଦିକ | ବୈଦିକ | ଲେଟିନ |
|---|---|---|---|
| ଇରସ | ଅରଷା | ପ୍ରମନ୍ଥ | ପ୍ରମିଥିଅସ୍ |
| ଇରଥ୍ରସ | ବୃତ୍ର | ଅଗ୍ନି | ଇଗନିସ |
| ହେଲେନା | ସରମା | ଉଲ୍କା | ଉଲକନ |
| ଖାରିଟ | ହରିତ | ୱରନ୍ୟୁ | ପୌରାନିଅସ |
| ଡାଫନୀ | ଦହନା | ଅହନା | ଏଥେନା |
| ଇକ୍ସିଓନ | ଅକ୍ଷିବାନ | ଯବିଷ୍ଠ | ହପାଷ୍ଟିଅଟ |
| ୟୁରେନସ୍ | ବରୁଣ | | |
| ଅଓସ | ଇଓସ | ଉଷା | ଉଷ ସତ |

ଗ୍ରୀକ୍ ଇଉରେନ୍ସ— ନଭୋମଣ୍ଡଳ ରୂପୀ ଓ ସମସ୍ତ ଦେବଗଣଙ୍କର ପିତା । ବୈଦିକ ବରୁଣ ନୈଶ ଆକାଶ ଆବରଣକାରୀ ବାକାଶ ଦେବ (କୃଷ୍ଣ-ବରଣ) ଦ୍ୟୁସ୍ଥାନ ଦେବତା ।

ପ୍ରମନ୍ଥ-ଦୁଇ କାଷ୍ଠ ଘର୍ଷଣ କରିବା ଦ୍ୱାରା ଯେ ଅଗ୍ନି ଉତ୍ପନ୍ନ ହୁଏ, ତାହାର ନାମ ପ୍ରମନ୍ଥ । ଗ୍ରୀକ୍‌ମାନଙ୍କ ଧର୍ମରେ ଯେଉଁ ଦେବତା ମନୁଷ୍ୟମାନଙ୍କ ହିତ ନିମନ୍ତେ ସ୍ୱର୍ଗରୁ ଅଗ୍ନି ଚୋରି କରିଥିଲେ ତାହାଙ୍କର ନାମ ପ୍ରମିଥିଅସ ।

ସ୍ତ୍ରୀ ପଛରେ ମନୁଷ୍ୟ ଗମନ କଲାପରି ବେଦରେ ଉଷାର ପଶ୍ଚାତ୍ ସୂର୍ଯ୍ୟ ଧାବମାନ ହେବାର ଉଲ୍ଲେଖ ଅଛି । ଗ୍ରୀକ୍‌ମାନଙ୍କ ଶାସ୍ତ୍ରରେ ଏପଲୋ (ସୂର୍ଯ୍ୟ) ଡାଫିନ ବା ଦହନା ଦେବୀର ପଶ୍ଚାତ୍ ଧାବନ କରି ତାହାଙ୍କୁ ଧରିବା ମାତ୍ରକେ ଡାଫିନ ବିନାଶପ୍ରାପ୍ତ ହେବାର ଉଲ୍ଲେଖ ଅଛି ।

ଉକ୍ତ ଦେବତାମାନଙ୍କ ମଧ୍ୟରୁ କେତେକଙ୍କର ନାମରେ ଓ କେତେକଙ୍କର ସ୍ୱଭାବରେ ଯଥେଷ୍ଟ ସାମଞ୍ଜସ୍ୟ ଅଛି ।

ପ୍ରକୃତ ପକ୍ଷରେ କହିବାକୁ ଗଲେ ପାରସିକ ଜାତି ସହିତ ହିନ୍ଦୁ ଜାତିର ଯେମନ୍ତ ଘନିଷ୍ଠତା ଅଛି ଏପରି ଅପର କୌଣସି ଜାତି ସହିତ ନାହିଁ। ସୁତରାଂ ଏହି ଉଭୟ ଜାତିର ଭାଷାରୀତି ନୀତି ଇତ୍ୟାଦିର ବିଶଦ ବିବରଣ ଲେଖିବାର ଆବଶ୍ୟକ ।

ଆବସ୍ତିକ ଭାଷା ଶୁଣିବାକୁ ବେଦଭାଷାତୁଲ୍ୟ । ଆବସ୍ତିକ ଭାଷା ଓ ବେଦଭାଷା ଶୁଣି ନ ଥିବା ଜଣେ ଲୋକ ସମକ୍ଷେ ଉଭୟ ଭାଷାରୁ କିଛି ପାଠ କରି ଶୁଣାଇ ଦେଲେ ବୋଧହୁଏ ଉଭୟ ଭାଷା ଏକ ସମୟରେ ଏକ ଭାଷା ଥିଲା ବୋଲି ଅନୁମାନ କରିବ । ମନ୍ତ୍ରାଦିର ପଠନ ପ୍ରଣାଳୀ ଏକରକମ ବୋଇଲେ ଅତ୍ୟୁକ୍ତି ହେବ ନାହିଁ ।

ବୋଧହୁଏ ପାଠକମାନଙ୍କର କୌତୂହଳ ନିମନ୍ତେ ପାରସିକ ଗୋଟିଏ ମନ୍ତ୍ର ଉଦ୍ଧୃତ କଲେ ଏ ସ୍ଥଳରେ ଅସଙ୍ଗତ ହେବ ନାହିଁ ।

ଆ ଅଦ ମାମ ତନବୋ ଇଥ୍ୟେ
ଜା ହୈତ ହିଜ୍ୱା ମୃଗଧ୍ ହକଟେମ (ଜାମୁକସା)

ହେ ମୋର ନଶ୍ୱର ବନ୍ଧୁ ଜିହ୍ୱାରେ ସତବାକ୍ୟ କହ।

କହମାଦ ହବନେମ ଗାଥନାମ ରତପ୍ରିଂଶା। ପ୍ରାଜା ସୈସ୍ତୀ (ନିରଙ୍ଗିସା ନହବନଶା) କେଉଁ ସମୟରେ ହବନ ଗାଥର ଶୁଭକର୍ମାରମ୍ଭ ହେବ ?

ଏହି ଉଭୟ ଜାତିର ଦେବତାମାନଙ୍କର ନାମ ଓ ସେମାନଙ୍କର ଗୁଣକର୍ମ ସମାନ ତାହା ନିମ୍ନୋଦ୍ଧୃତ କେତେକ ନାମରୁ ଜଣାପଡ଼ିବ।

| ବୈଦିକ | ଆବସ୍ତିକ |
|---|---|
| ମିତ୍ର | ମିଥ୍ର |
| ସୋମ | ହୋମ |
| ଯମ | ଯିମ |
| ବିବସ୍ୱତ | ବିବଂହତ |
| ବୃତ୍ରଘ୍ନ | ବ୍ରେଥେରଘ୍ନ |
| ଅଙ୍ଗିରା | ଅଙ୍ଗ୍ର |
| ତ୍ରିତ | ଥ୍ରିତ |
| ନରଶଂସ | ନଇର୍ଯ୍ୟୋଶଂହା |
| ତ୍ରୈବନ | ଥ୍ରଏବନ |
| ନାସତ୍ୟ | ନାଓଁହଇଥଥ୍ୟ |
| କୃଶାଶ୍ୱ | କେରେଶାଶପ |
| ସରସ୍ୱତୀ | ହରଖଇତ |
| × × × | ଅହୁରମଜଦ |
| × × × | ବାୟୁ |

× × ×× × ×× × ×× × ×× × ×× × ×× × ×
× × ×× × ×× × ×× × ×× × ×× × ×× × ×

× × × ସ୍ଥାନର ନାମ ସପ୍ତସିନ୍ଧୁ ସୁଅହୁର ମଜ୍ଦ ହପ୍ତହିନ୍ଦୁ ନାମକ ଶ୍ରେଷ୍ଠ ସ୍ଥାନ ସୃଷ୍ଟି କଲେ ଏବଂ ବିରୋଧୀ ଅଂଗ୍ରମନ୍ୟୁ ତହିଁରେ ଅତ୍ୟଧିକ ଉଷ୍ଣ ଓ ଆକସ୍ମିକ ରୋଗର ସୃଷ୍ଟି କଲେ । ଏଥିରୁ ଅନୁମାନ କରାଯାଇପାରେ ଯେ ପାରସିକଗଣ ସପ୍ତସିନ୍ଧୁ ପର୍ଯ୍ୟନ୍ତ ହିନ୍ଦୁମାନଙ୍କ ସହିତ ଏକତ୍ର ଥିଲେ । ସରସ୍ୱତୀ ନଦୀତୀର ମଧ ପବିତ୍ର ସ୍ଥାନ ବୋଲି ବର୍ଣ୍ଣିତ ହୋଇଅଛି । ଜରଥୁସ୍ତ-ଜଣେ ଆବସ୍ତିକ ଧର୍ମ ପ୍ରବର୍ତ୍ତକ ଏବଂ ପୌରୁସାଷ୍ପର ପୁତ୍ର- ଏହାଙ୍କ ସହିତ ଅଂଗ୍ରମନ୍ୟୁର ବିବାଦ ଉପସ୍ଥିତ ହୋଇଥିଲା । ଜରଥୁସ୍ତ ଓ ଅଂଗ୍ରମନ୍ୟୁର କଥୋପକଥନ ନିମ୍ନେ ପ୍ରଦତ୍ତ ହେଉଅଛି । ଅଂଗ୍ରମନ୍ୟୁ –ହେ ଜରଥୁସ୍ତ ! ତୁମ୍ଭେ ପୌରସାଷ୍ପ ପୁତ୍ର ତୁମ୍ଭର ପୂର୍ବ ପୁରୁଷଙ୍କ ଦ୍ୱାରା ମୁଁ ସ୍ତୁତ ହେଉଥିଲି ମଜାଦୋପାସକମାନଙ୍କର ଧର୍ମକୁ ଦ୍ୱେଷକର ଏବଂ ତୁମ୍ଭେ ବଧଘ୍ନ ପରି ବରପ୍ରାପ୍ତ ହେବ।

ଜରଥୁସ୍ତ– ମୁଁ ଜୀବନ ଥିବାଯାଏ ମଜଦୋପାସକମାନଙ୍କର ଧର୍ମକୁ ତ୍ୟାଗ ଓ ନିନ୍ଦା କରିବି ନାହିଁ ।

ଅଂଗ୍ରମନ୍ୟୁ– ତୁମ୍ଭେ କେଉଁ ବାକ୍ୟଦ୍ୱାରା ଏବଂ କେଉଁ ଅସ୍ତ୍ରଦ୍ୱାରା ମୋର ସୃଷ୍ଟିର ଜୀବଗଣଙ୍କୁ ବିତାଡ଼ିତ କରିବ ।

ଜରଥୁସ୍ତ– ପବିତ୍ର ଭଲଖଲ ପବିତ୍ର ପାନପାତ୍ର ହୋମ ଏବଂ ମଜଦଙ୍କଠାରୁ ଶିକ୍ଷିତ ବାକ୍ୟ ମୋହର ଅସ୍ତ୍ର ।

ଏ ସମନ୍ଧରେ ଅନ୍ୟମାନଙ୍କର ବିମତ ଥିବ ବୋଲାଯାଇ ନ ପାରେ, ମାତ୍ର ଏହି କେତୋଟି କଥା ପାଠ କଲା ମାତ୍ରକେ ଏହି ଧାରଣା ହୁଏ ଯେ ଜରଥୁସ୍ତ ଦେବୋପାସକମାନଙ୍କୁ ତ୍ୟାଗ କରି ମଜଦୋପାସକ ହେବାରୁ ଦେବୋପାସକ ଅଂଗ୍ରମନ୍ୟୁ ତାହାଙ୍କୁ ଉପଦେଶ ଦେଉଅଛନ୍ତି ଏବଂ ଜରଥୁସ୍ତ ଉପଦେଶ ନ ମାନି ଦେବୋପାସକମାନଙ୍କୁ ବିତାଡ଼ିତ କରିବାର ଚେଷ୍ଟା କରିଅଛନ୍ତି । ଉଭୟ ଦଳ ମଧରେ ଏତାଦୃଶ୍ୟ ବିବାଦ ଉପସ୍ଥିତ ହେଲାପରେ ଉଭୟ ଜାତିର ଉପାସ୍ୟ ଦେବତାମାନଙ୍କର ଭିନ୍ନ ନାମକରଣ କରିଅଛନ୍ତି ଏବଂ ବିବାଦ ଉତ୍ତାରୁ ଏକ ଦଳଦ୍ୱାରା ଯେଉଁ ଦେବତାମାନଙ୍କର ଉପାସନାର ସୃଷ୍ଟି ହୋଇଅଛି ତାହା ଅପର ଦଳର ନିନ୍ଦାଭାଜନ ହୋଇଅଛି । ଏହି ବିବାଦ ଉତ୍ତାରୁ ଇରାନମାନେ ଅସୁରୋପାସକ ଏବଂ ଭାରତୀୟ ଆର୍ଯ୍ୟଗଣ ଦେବୋପାସକ ବୋଲି ଚିହ୍ନିତ ହୋଇଅଛନ୍ତି। ଏହି ବିବାଦ ଉପସ୍ଥିତ ହୋଇ ଜାତୀୟ ବିଦ୍ୱେଷ ଘଟାଇବାର କାରଣ କ'ଣ ତାହା କେହି ନିଶ୍ଚିତ କରି କହିପାରନ୍ତି ନାହିଁ। ଧର୍ମ ସଂଶୋଧନ ଓ କୃଷି କାର୍ଯ୍ୟରେ ସଂସ୍କାର ଓ ବହୁଳ ପ୍ରଚାର କରାଯିବାର ମୂଳୀଭୂତ କାରଣ ବୋଲି ଅନେକେ ପ୍ରକାଶ କରନ୍ତି । ପୁଣି ଅନେକେ ଅନୁମାନ କରନ୍ତି ଯେ ପାରସିକମାନେ ସୋମଯଜ୍ଞର ନିନ୍ଦା କରିବାରୁ ଏବଂ ମାଦକାବସ୍ଥାରେ ସୋମପାନ କରିବାକୁ ନିଷେଧ କରିବାରୁ ଏହି ବିବାଦର ସୂତ୍ରପାତ ହୋଇଥିଲା— ଏଣୁ ପାରସିକ ଗ୍ରନ୍ଥର ସୋମପ୍ରିୟ ଇନ୍ଦ୍ର ସମ୍ମାନାସ୍ପଦ ନୁହନ୍ତି ।

ଆଜିକାଲି ଅସୁର ଶବ୍ଦ ଘୃଣାସ୍ପଦ, ଦେବଦ୍ୱେଷୀ ହୋଇଅଛି, ମାତ୍ର ବୈଦିକ ଅସୁର ଶବ୍ଦର ଅର୍ଥ ଭିନ୍ନ ପ୍ରକାର । ବେଦର ଅସୁର ଅର୍ଥ ପ୍ରାଣଦାତା ଏବଂ ଆବସ୍ତିକ ଅହୁର ଅର୍ଥ ପ୍ରଭୁ ଜୀବିତବାନ । (କ୍ରମଶଃ)

●

# ହେଲିର ଧୂମକେତୁ

ପଣ୍ଡିତ କୋପଲାର କହିଅଛନ୍ତି , ''ସମୁଦ୍ରରେ ଯେତେ ମାଛ ଅଛନ୍ତି ତଦପେକ୍ଷା ଅଧିକ ଧୂମକେତୁ ଆକାଶରେ ଅଛନ୍ତି ।'' ଅସଂଖ୍ୟ ଧୂମକେତୁ ଆକାଶରେ ବିଚରଣ କରୁଥିଲେ ମଧ ଆମ୍ଭେମାନେ ସେମାନଙ୍କୁ ଦେଖିବାକୁ ପାଉଁ ନାହୁଁ । ଏହାର କାରଣ ଏହି ଯେ ସଂଖ୍ୟାତୀତ ଧୂମକେତୁ ଦୃଷ୍ଟି ବହିର୍ଭୂତ ଅନନ୍ତ ନଭୋମଣ୍ଡଳରେ ବିଚରଣ କରନ୍ତି । କେତେଗୁଡ଼ିଏ କ୍ଷୁଦ୍ରାବୟବ ହେତୁ କେବଳ ଦୂରବୀକ୍ଷଣର ସାହାଯ୍ୟ ବ୍ୟତିରେକେ ଦେଖାଯାଇଥାନ୍ତି ନାହିଁ । କେତେଗୁଡ଼ିଏ ଦୃଷ୍ଟି ସୀମାକୁ ଆସୁଥିଲେ ମଧ ସେଗୁଡ଼ିକ ନବାଗତ ବା ନକ୍ଷତ୍ର ଶ୍ରେଣୀର ଅନ୍ତର୍ଭୁକ୍ତ ତାହା ଜାଣିପାରୁ ନାହିଁ । ସେଥିପାଇଁ ଆମ୍ଭମାନଙ୍କର ଯତ୍ନ ମଧ ନାହିଁ । ବୈଜ୍ଞାନିକ ପଣ୍ଡିତ ଗତ ପ୍ରାୟ ପ୍ରତିବର୍ଷ ଯେ ଗୋଟିଏ ଯୋଡ଼ିଏ ଧୂମକେତୁ ଆବିଷ୍କାର କରୁ ନାହାନ୍ତି ଏପରି ନୁହେଁ । ମାତ୍ର ଆମ୍ଭେମାନେ ସେଥିର ଖବର ରଖୁଁ ନାହିଁ । ସମୟ ସମୟରେ ଗୋଟାଏ ଗୋଟାଏ ପ୍ରକାଣ୍ଡ ଧୂମକେତୁ ଆମ୍ଭମାନଙ୍କର ସୂର୍ଯ୍ୟକୁ ପ୍ରଦକ୍ଷିଣ କରି ବାହାରି ଯାଆନ୍ତି । ସେଗୁଡ଼ିକ ଆମ୍ଭମାନଙ୍କ ଦୃଷ୍ଟିପଥରେ ପଡ଼ିବାର କଥା । ତଥାପି କମ୍‌ଲୋକେ ସେମାନଙ୍କର ଖବର ରଖନ୍ତି । ସୂର୍ଯ୍ୟଗ୍ରହଣ, ଚନ୍ଦ୍ରଗ୍ରହଣ ପାଞ୍ଜିରେ ଲେଖାଥାଏ । ଏଣୁ ସୂର୍ଯ୍ୟ ଚନ୍ଦ୍ରଙ୍କୁ ରାହୁର କବଳରୁ ମୁକ୍ତ କରିବା ନିମନ୍ତେ ଆମ୍ଭେମାନେ ସଚେଷ୍ଟ ଥାଉଁ ତେଣୁ କେବେ କେବେ ଆକାଶ ଆଡ଼କୁ ଦୃଷ୍ଟି ପକାଇବାକୁ ପଡ଼େ । ନୋହିଲେ ଆକାଶକୁ ତ ଅନାଇଁବାର ପ୍ରୟୋଜନ ନାହିଁ । ସୁତରାଂ ଧୂମକେତୁ ଆସିଲେ ଗଲେ ଆମ୍ଭମାନଙ୍କର ଯାଏ ଆସେ କେତେ ? ଦୁଷ୍ଟ ଗ୍ରହ, ଗ୍ରହପୁତ୍ର କେତୁ ଅନିଷ୍ଟପସରା ଦେଖା ନ ଗଲେ ହିଁ ଭଲ । ପାଶ୍ଚାତ୍ୟ ଜ୍ୟୋତିର୍ବିତ୍‌ଗଣ ଉଜାଗର ହୋଇ ପ୍ରତିରାତ୍ରରେ ଧୂମକେତୁ ଅନ୍ୱେଷଣରେ ବ୍ୟସ୍ତ ଥାଆନ୍ତି । ଧୂମକେତୁର ଭେଟ ପାଇବାକୁ ସେମାନେ ଆଗ୍ରହାନ୍ୱିତ ଓ ଅନ୍ୱେଷଣ ତତ୍‌ପର ଅଟନ୍ତି । ଆମ୍ଭମାନଙ୍କର ଦୃଷ୍ଟିପଥରେ ଅକସ୍ମାତ୍ ଧୂମକେତୁ ପଡ଼ିଲେ କି ଦୁର୍ଯୋଗ ବୋଲି ଚକ୍ଷୁ ମୁଦ୍ରିତ କରୁଁ । ଭାରତବାସୀ ଯାହା ସେହି ମହାମହିମର ଗୌରବ ଦ୍ୟୋତକ ଯାହା ତୁମ୍ଭମାନଙ୍କୁ ଆଛନ୍ନ କରି ପାରି ନାହିଁ ଯାହା ସମ୍ଭ୍ରମ ସମ୍ପାଦକ ଶୋଭାର ଆଧାର ସ୍ୱରୂପ, ଯାହା ଅନନ୍ତ ଆଡ଼କୁ ଅଗ୍ରସର ହେବାକୁ ଶିକ୍ଷାଦେବ ତାହାହିଁ କି ତୁମ୍ଭର ଅନିଷ୍ଟକାରକ ?

ସୂର୍ଯ୍ୟ ଚନ୍ଦ୍ର ଗ୍ରହଣ ଦେଖିଲେ 'ରାମରାମ', ଶ୍ୟାମ ଜଳଦ କୋଳରେ ଚପଳାର ଖେଳା ଦେଖିଲେ, ବଜ୍ର ନିନାଦ ଶୁଣିଲେ ରାମରାମ, ନିର୍ମଳ ଗୋଧୂଳି ଲଲାଟରେ ଶୁକ୍ର ଗ୍ରହକୁ ଦେଖିଲେ ବଶିଷ୍ଠ ଅଗସ୍ତ୍ୟ ନାମୋଚ୍ଚାରଣ, ଇନ୍ଦ୍ରଧନୁ ଦେଖିଲେ ଚକ୍ଷୁ ମୁଦ୍ରଣ ଧନ୍ୟ ଧନ୍ୟ । ତୁମ୍ଭେ ମନେକର ବିଶ୍ୱପତି ତୁମ୍ଭର ଉପକାର ପାଇଁ କିଛିଦିନ ବିଶ୍ୱଚିନ୍ତା ଭୁଲିଯାଇ ମାନବ ଶରୀର ଧାରଣକରି ତୁମ୍ଭମାନଙ୍କ ମଧରେ ବିଚରଣ କରୁଥିଲେ । ସେହି ବିଶ୍ୱପତି ପୁଣି ତୁମ୍ଭର ଅନିଷ୍ଟ ନିମନ୍ତେ ନୀଳାମ୍ବର ପତ୍ରରେ ଏତେଗୁଡ଼ିଏ ଅନିଷ୍ଟ-ଦାୟକ ଆଦେଶ ଲେଖି ଦେଇଅଛନ୍ତି । ଅବତାରବାଦ ତୁମ୍ଭର କଳ୍ପନା ପ୍ରସୂତ । ଏଣୁ ସୃଷ୍ଟି କୌଶଳରେ ବିଶ୍ୱାସ ସ୍ଥାପନ କରିବାକୁ ଅକ୍ଷମ ହେଉଅଛ । ଯେ ବିଶ୍ୱଶାସକ ବିଶ୍ୱନିୟାମକ ତାହାଙ୍କର ନିୟମର ଦୋଷୋଦ୍‌ଘାଟନ କରିବାର ତୁମ୍ଭ ଆମ୍ଭର କି କ୍ଷମତା ? ଅନନ୍ତ ମାର୍ଗରେ ପ୍ରଧାବିତ ହେବାକୁ କାତର ହୋଇ ଦୃଢ଼ତା ହରାଇ ସମସ୍ତ ପଦାର୍ଥରେ ଅନିଷ୍ଟ ଦର୍ଶନ କରୁଅଛ, ସ୍ୱାର୍ଥପଣ୍ଡିତ । ଏଥିନିମନ୍ତେ ଏତେ ହୋମ ପ୍ରାୟଶ୍ଚିତର ବ୍ୟବସ୍ଥା କେହି ଫଳଦାୟକ ହେବେ ନାହିଁ। ମହତ୍ତ୍ୱର ପ୍ରଶଂସା କର । ସମସ୍ତ ପଦାର୍ଥରେ ସୃଷ୍ଟି କୌଶଳର ପର୍ଯ୍ୟବେକ୍ଷଣ କରି ଚରିତାର୍ଥ ହୁଅ । ବିଶ୍ୱବିଧାତାରା ସୃଷ୍ଟି ବସ୍ତୁରେ ବ୍ୟକ୍ତିଗତ ଅନିଷ୍ଟ ଚିନ୍ତା ଦୂର କର ।

ଚନ୍ଦ୍ର ଗ୍ରହଣ, ସୂର୍ଯ୍ୟୋପରାଗ ସମ୍ବନ୍ଧେ ଆମ୍ଭମାନଙ୍କର ଯେପରି ଅମୂଳକ ଭ୍ରମବିଶ୍ୱାସ ଅଛି ଧୂମକେତୁ ସମ୍ବନ୍ଧେ ତତୋଽଧିକ ଭ୍ରମବିଶ୍ୱାସ ରହିଅଛି । ଏଣୁ ଏହାର ଉଦୟକୁ ଲୋକେ ମନ୍ଦ ଫଳପ୍ରଦ ବୋଲି ମନେ କରନ୍ତି ସେ ଚିନ୍ତା କରିବାର ବିଶେଷ କାରଣ ନାହିଁ । ଏ ବିଶ୍ୱାସ ଯେ ସହଜରେ ଦୂରୀଭୂତ ହେବ ତାହା ବିଶ୍ୱାସ କରାଯାଇ ନ ପାରେ। ଆମ୍ଭମାନଙ୍କର ପୂର୍ବ ଆର୍ଯ୍ୟଗଣ କେତେ ବିଷୟରେ ତତ୍ତ୍ୱ ଆବିଷ୍କାର କରିବାକୁ ଅକ୍ଷମ ହୋଇ ତତ୍ ସମ୍ବନ୍ଧେ ଅନେକ ଅଦ୍ଭୁତ କଳ୍ପନା କରିପାରିଅଛନ୍ତି ଏଥିରେ ସନ୍ଦେହ ନାହିଁ । ଧୂମକେତୁ ସମ୍ବନ୍ଧରେ ମଧ ତା' ଘଟି ଯାଇଅଛି । ସଂସ୍କାର ଦୃଢ଼ବଦ୍ଧ ହୋଇ ରହିଅଛି । ଚିର ସଂସ୍କାର ଦୂର କରିବା ଦୁରାଶା ମାତ୍ର ।

ବହୁକାଳ ଅନ୍ତରରେ ଧୂମକେତୁର ଉଦୟ ହୁଏ । ଏହି ସୁଯୋଗ ସର୍ବଦା ଘଟେ ନାହିଁ, ସଂସ୍କାର ପଛେ ନ ଛାଡ଼ନ୍ତୁ ଆଗାମୀ ଧୂମକେତୁ ଉଦୟକୁ ମନୋଯୋଗ ସହିତ ଦେଖନ୍ତୁ । ଏହାହିଁ ପ୍ରକାଶ କରିବାର ଉଦ୍ଦେଶ୍ୟ । ଖ୍ରୀଷ୍ଟାବ୍ଦ ୧୯୦୬ ରେ ଡାନିଏଲ ଧୂମକେତୁ ଉଦୟ ହୋଇଥିଲା ପ୍ରାୟ ୨ ମାସ (ଅଗଷ୍ଟ, ସେପ୍ଟେମ୍ବର) ଯାବତ ଉଷାକାଳପୂର୍ବରୁ ପୂର୍ବାକାଶରେ ଦେଖାଯାଉଥିଲା, ବୋଧହୁଏ ଶତକଡ଼ା ୫ ଜଣ ଲୋକଙ୍କର ଦୃଷ୍ଟିପାତରେ ପଡ଼ିଅଛି କି ନାହିଁ ସନ୍ଦେହ, ଅନେକରୁ ଜଣେ ମଧ ଆଗ୍ରହ ସହକାରେ ଦେଖିଅଛନ୍ତି କି ନା ସନ୍ଦେହ ।

୧୯୧୧ ଖ୍ରୀଷ୍ଟାବ୍ଦ ଏପ୍ରିଲ୍ ମାସରେ ହେଲିର ଧୂମକେତୁ ଉଦୟ ହେବ । ତା' ହିତୈଷିଣୀ ପାଠକମାନଙ୍କୁ ଜଣାଇଦେବାକୁ ଏହି ପ୍ରବନ୍ଧ ପ୍ରକାଶ କରାଯାଉଅଛି । ଏହି ଧୂମକେତୁ ସୂର୍ଯ୍ୟକୁ ପୁନଃ ପୁନଃ ପ୍ରଦକ୍ଷିଣ କରୁଥିଲେ ସୁଦ୍ଧା ଯେଉଁ ପାଠକ ବର୍ତ୍ତମାନ ସୁଯୋଗକୁ ହରାଇବେ ସେ ଆଉ ଜୀବନରେ ଏହାକୁ ଦେଖିପାରିବେ ନାହିଁ । ଏହି ଧୂମକେତୁର ଉଦୟ ବିଜ୍ଞାନ ରାଜ୍ୟରେ ଗଣିତ ଶାସ୍ତ୍ରର ଅଖଣ୍ଡୀୟ ସତ୍ୟତାକୁ ଦୃଢ଼ୀଭୂତ କରିଅଛି । ପଣ୍ଡିତ ହେଲିଙ୍କର ନାମକୁ ଚିରସ୍ମରଣୀୟ କରିଅଛି । ଏହାକୁ ଆବିଷ୍କାର କରି ହେଲିଙ୍କ ଦୁର୍ଭାଗ୍ୟ ହେବାର ତେଣେ ଥାଉ ସେ ଯଶସ୍ୱୀକ ହୋଇଅଛନ୍ତି, ଅଳ୍ପାୟୁ ହୋଇ ନାହାନ୍ତି, ଦୀର୍ଘଜୀବୀ ହୋଇଛନ୍ତି । ହେଲି ତେୟାଅଶୀ ବର୍ଷ ଜୀବିତ ଥିଲେ ଏହି ଧୂମକେତୁକୁ ଆବିଷ୍କାର କଲା ପରେ ସେ ୬୦ ବର୍ଷ ବଞ୍ଚିଥିଲେ । ଯେଉଁ ଧୂମକେତୁ ହେଲିଙ୍କୁ ଯଶସ୍ୱୀ ଓ ଦୀର୍ଘଜୀବୀ କରିଅଛି ତାହାକୁ ଯେବେ ହିତୈଷିଣୀ ପାଠକଙ୍କୁ ଅମଙ୍ଗଳ ଫଳ ଦେବ ତାହାହେଲେ ଦୂରାଦୃଷ୍ଟ, ହେଲିଙ୍କର ପୂର୍ବବର୍ତ୍ତୀ ପଣ୍ଡିତଗଣ ଧୂମକେତୁ ସୌର ଜଗତରେ ଅନ୍ତର୍ଭୁକ୍ତ ବୋଲି ବିଶ୍ୱାସ କରୁ ନ ଥିଲେ, ନ୍ୟୁଟନ୍ ତାହାଙ୍କର ପ୍ରିନ୍‌ସିପିୟା ନାମକ ଗ୍ରନ୍ଥରେ ପ୍ରକାଶ କରିଥିଲେ ଯେ ଧୂମକେତୁ ମାଧ୍ୟାକର୍ଷଣ ବଶବର୍ତ୍ତୀ, ଏହି ଭିତ୍ତି ଉପରେ ବିଶ୍ୱାସ ସ୍ଥାପନ କରି ହେଲି ଧୂମକେତୁ ସମ୍ବନ୍ଧୀୟ ତତ୍ତ୍ୱ ଆବିଷ୍କାର କରିବାକୁ ଚେଷ୍ଟା କଲେ, ୧୬୮୨ ଖ୍ରୀଷ୍ଟାବ୍ଦ ଗୋଟିଏ ଧୂମକେତୁର ଉଦୟ ହେଲା, ହେଲି ଏହି ଧୂମକେତୁର ପଥ ସହିତ ତତ୍ ପୂର୍ବବର୍ତ୍ତୀ ଧୂମକେତୁମାନଙ୍କର ପଥ ତୁଳନା କରିବାକୁ ଲାଗିଲେ । ୧୫୩୧ ଖ୍ରୀଷ୍ଟାବ୍ଦରେ ଗୋଟିଏ ଏବଂ ୧୬୦୭ ଗୋଟିଏ ଧୂମକେତୁ ଉଦୟ ହୋଇଥିଲା । ଏହି ଉଦୟ ଧୂମକେତୁର ପଥ ସହିତ ୧୬୮୨ ଖ୍ରୀଷ୍ଟାବ୍ଦରେ ଧୂମକେତୁର ପଥର ସାମ୍ୟଥିବାର ଦେଖିବାକୁ ପାଇଲେ ଏବଂ ଗଣନାଦ୍ୱାରା ଏହି ସିଦ୍ଧାନ୍ତ କଲେ ଯେ ପୁଣି ଏହି ଧୂମକେତୁ ୭୫ ବର୍ଷ ଦେଖାଦେବ । ମାତ୍ର ଏହାର ଉଦୟ ଏବଂ ତତ୍ ସଙ୍ଗେ ଗଣିତ ଶାସ୍ତ୍ରର ସତ୍ୟତା ଦୃଢ଼ୀଭୂତ ହେବ । ଏହା ସେ ଦେଖିପାରିବେ ନାହିଁ । ଏଥି ନିମନ୍ତେ ଆକ୍ଷେପ କରିଥିଲେ, ତଥାପି ତାହାଙ୍କର ହୃଦୟରେ ଏହି ଆଶ୍ୱସ ବାଣୀ ଉଦୟ ହୋଇଥିଲା ଓ ସେ ପ୍ରକାଶ କରିଥିଲେ, "ଯଦ୍ୟପି ଆମ୍ଭମାନଙ୍କର ଭବିଷ୍ୟବାଣୀ ଅନୁସାରେ ୧୭୫୮ ଖ୍ରୀଷ୍ଟାବ୍ଦରେ ଏହି ଧୂମକେତୁ ଉଦୟ ହୁଏ ତାହା ହେଲେ ଆମ୍ଭମାନଙ୍କର ନିଷ୍ପକ୍ଷପାତୀ ବଂଶଧରମାନେ ଅସ୍ୱୀକାର କରିପାରିବେ ନାହିଁ ଯେ ଏହା ପ୍ରଥମରେ ଜଣେ ଇଂରେଜ ଦ୍ୱାରା ଆବିଷ୍କୃତ ହୋଇଥିଲା ।"

ଯେଉଁ ବ୍ୟକ୍ତି କେବଳ ସତ୍ୟକୁ ଜାଣିବାପାଇଁ ଲାଳାୟିତ ତା' ପକ୍ଷରେ ଏତାଦୃଶ ଆଶ୍ୱାସ ବାଣୀ ହିଁ ଯଥେଷ୍ଟ ପୁରସ୍କାର, ମହାତ୍ମାଙ୍କର ବାକ୍ୟ ଅକ୍ଷରେ ଅକ୍ଷରେ ଏହି ଧୂମକେତୁ ହେଲି ନାମରେ ଅଭିହିତ ହୋଇ ଉଦୟ ହେଲା, ୧୮୦୫ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୫ ତାରିଖଠାରୁ ୧୮୦୬ ଖ୍ରୀଷ୍ଟାବ୍ଦ ମେ ୫ ତାରିଖ ପର୍ଯ୍ୟନ୍ତ ୯ ମାସ ଦୃଷ୍ଟିଗୋଚର ହୋଇଥିଲା, ହେଲି ଇହସଂସାର ତ୍ୟାଗ କରିଅଛନ୍ତି କିନ୍ତୁ ତାଙ୍କର ନାମ ପ୍ରତି ଅର୍ଦ୍ଧଶତାବ୍ଦୀ ପରେ ପୂର୍ବ ଓ ପଶ୍ଚିମ ଆକାଶ ଲଲାଟ ପଟ୍ଟରେ ଧୂମକେତୁ ଛଳରେ ବିରାଜମାନ ହୋଇ ଭାବୀବଂଶମାନଙ୍କ ହୃଦୟରେ ଭକ୍ତିର ଉଦ୍ରେକ କରାଇବାକୁ ମହତ୍ତ୍ୱର ପ୍ରଶଂସା କରିବାକୁ ଶିକ୍ଷା ଦେବ । ହେଲି ଆଉ ୧୭ ବର୍ଷ ବଞ୍ଚି ଥିଲେ ଏହି ଧୂମକେତୁକୁ ଦେଖିପାରିଥାନ୍ତେ । ପଣ୍ଡିତ କଣ୍ଟିକୋଲେଣ୍ଟ ଏହି ଧୂମକେତୁ ୧୮୦୫ ଓ ୧୯୧୦ ରେ ଦେଖା ଦେବ ବୋଲି ଗଣନା କରିଥିଲେ । ଏହି ଧୂମକେତୁ ୧୮୩୫ ଖ୍ରୀଷ୍ଟାବ୍ଦରେ ଦେଖାଦେଇଥିଲା । ହେଲି ଧୂମକେତୁ ଆଜିକାଲି ଆମ୍ଭମାନଙ୍କର ସୌରଜଗତ ମଧ୍ୟକୁ ପ୍ରବେଶ କରି ସୂର୍ଯ୍ୟ ଆଡ଼କୁ ଯାଉଅଛି । ୧୯୦୭ ଖ୍ରୀଷ୍ଟାବ୍ଦରୁ ଏହି ଧୂମକେତୁ ସମ୍ବନ୍ଧେ ପାଶ୍ଚାତ୍ୟ ବିଜ୍ଞାନ ପତ୍ରିକାମାନଙ୍କରେ ଏଥିରେ ଆନ୍ଦୋଳନ ଲାଗିଅଛି । ୧୯୦୮ ଖ୍ରୀଷ୍ଟାବ୍ଦରେ ଗେଣ୍ଡଲ ପ୍ରମାଣ କରିଥିଲେ ଯେ ସେ କେତେବେଳେ ଏହି ଧୂମକେତୁର ଦୂରତା ସୂର୍ଯ୍ୟଠାରୁ ଶନିଗ୍ରହ ଦୂରତା ଅପେକ୍ଷା କମ୍ ଥିଲା । ଲୁବ୍ଧକ ନକ୍ଷତ୍ର ମଣ୍ଡଳୀ ଉତ୍ତର ସୀମାରେ ଅବସ୍ଥାନ କରୁଥିଲା, ଏବଂ ସରଳପଥରେ ସୂର୍ଯ୍ୟ ଆଡ଼କୁ ପ୍ରଧାବିତ ହେଉଥିଲା । ତଥାପି ପୃଥିବୀର ଗତିହେତୁରୁ ଏହା କେତେକାଳ ଯାଏ ପ୍ରାୟ ୧½ ବର୍ଷ ମିଥୁନ ରାଶି ଓ ବୃଷ ରାଶିର ସୀମାରେ ବିଚରଣ କରିବ ବୋଲି ପ୍ରକାଶ କରିଥିଲେ । ଏହା ମଧ୍ୟ ପ୍ରକାଶ କରିଥିଲେ ଯେ ୧୯୦୯ ଅକ୍ଟୋବର ମାସରେ ଏହାର ଗତି ଅତି ଦ୍ରୁତ ହେବ । ୧୯୦୯ ଅକ୍ଟୋବର ମାସରୁ ଏହାର ଦୂରତା ପ୍ରାୟ ୩୦୦,୦୦,୦୦୦ ମାଇଲ୍ କମ୍ ହୋଇଯିବ । ସୁତରାଂ ଏହି ସମୟରେ ଫଟୋଗ୍ରାଫ୍ ଯନ୍ତ୍ର ଦ୍ୱାରା କେବଳ ଧରାପଡ଼ିବ ଜାନୁୟାରୀ ପୂର୍ବରୁ ଏହାକୁ ଭଲଭାବେ ଦେଖାଯିବା କଷ୍ଟକର । ୧୯୦୯ ଜାନୁୟାରୀ ପର ଏହାର ଦୂରତ୍ୱ ବୃହସ୍ପତିର କକ୍ଷ ସହ ସମାନ । ଭବିଷ୍ୟତବାଣୀ ଅକ୍ଷରେ ଅକ୍ଷରେ ସତ ହୋଇଅଛି । ଇଉରୋପ ଓ ଆମେରିକାରେ ଫଟୋଗ୍ରାଫ୍ କାଚରେ ଏହାର ଛାୟାପାତ ହୋଇଅଛି । ଗତ ୨ ତାରିଖ ଦିନ କେମ୍ବ୍ରିଜ ନଗରରେ ଏହି ଧୂମକେତୁ ବୈଜ୍ଞାନିକମାନଙ୍କର ଦୃଷ୍ଟିଗୋଚର ହୋଇଅଛି ।

ବର୍ତ୍ତମାନ ବଡ଼ ବଡ଼ ଦୂରବୀକ୍ଷଣ ସାହାଯ୍ୟରେ ଦେଖାଯାଇପାରିବ । ଜାନୁୟାରୀ ମାସରେ ବା ତତ୍ ପରେ ମଧ୍ୟ ଭଲ ଦୂରବୀକ୍ଷଣ ସାହାଯ୍ୟରେ ଦେଖାଯିବ, ତଥାପି ଯେଉଁମାନଙ୍କର ଦୂରବୀକ୍ଷଣ ଅଛି ସେମାନେ ଜାନୁୟାରୀ ପୂର୍ବରୁ ଏହାର ଅନ୍ୱେଷଣ କଲେ କୃତକାର୍ଯ୍ୟ ହୋଇପାରନ୍ତି । ଏପ୍ରିଲ୍ ମାସରେ ଏହା ପୂର୍ବାକାଶରେ ସର୍ବସାଧାରଣଙ୍କର ଦୃଷ୍ଟିଗୋଚର ହେବ, ସୂର୍ଯ୍ୟର ଅତି ନିକଟ ହେଲାରୁ କିଛିଦିନ ଦେଖାଯିବ ନାହିଁ । ପୁଣି ପରେ ପଶ୍ଚିମ ଆକାଶରେ ଦେଖାଦେଇ ଅନ୍ତର୍ଦ୍ଧାନ ହେବ । ଏହାର ଭ୍ରମଣକାଳ ହାରାହାରି ୭୨ ବା ୭୭ ବର୍ଷ । କାଉଓ୍ୱେଲ କମାରଲୀନ୍ ଗଣନା କରି ଜାଣିଅଛନ୍ତି ଯେ ୧୨୨୨ ଓ ୧୩୦୧ ଖ୍ରୀଷ୍ଟାବ୍ଦର ଉଦୟ ଦୀର୍ଘକାଳ ପରେ ହୋଇଥିଲା । ୭୯ ବର୍ଷ ୨ ମାସ ଲାଗିଥିଲା । ବର୍ତ୍ତମାନ ୭୪ ବର୍ଷ ୫ ମାସ ପରେ ଦେଖାଯାଉଅଛି, ଏହି ଧୂମକେତୁ ୧୦୬୬ ଖ୍ରୀଷ୍ଟାବ୍ଦ, ୧୩୭୮, ୧୪୫୬ ଖ୍ରୀଷ୍ଟାବ୍ଦରେ ମଧ୍ୟ ଉଦୟ ହୋଇଥିବାର ପ୍ରମାଣ ମିଳୁଥିବା ପଣ୍ଡିତଗଣ ପ୍ରକାଶ କରିଅଛନ୍ତି । ଏହି ଧୂମକେତୁ ସୂର୍ଯ୍ୟର ଅତି ନିକଟବର୍ତ୍ତୀ ହେଲାବେଳେ ଏହାର ଦୂରତା ୫୫,୦୦,୦୦,୦୦୦ ମାଇଲ୍ । ସୂର୍ଯ୍ୟଠାରୁ ଏହାର ଅତି ଦୂରବର୍ତ୍ତୀ ସୀମା ୩୩୧୦୦୦,୦୦୦,୦୦୦ ମାଇଲ ଅର୍ଥାତ୍ ସୌରଜଗତର ପରିବାରଭୁକ୍ତ ଦୂରବର୍ତ୍ତୀ ନେପ୍‌ଚ୍ୟୁନ ଗ୍ରହଠାରୁ ମଧ୍ୟ ଅଧିକ ଦୂର ।

ଏହାର ଗତିପଥ ଗ୍ରହମାନଙ୍କର ଗତିପଥର ବିପରୀତ । ଏହାର ଗତିପଥ ଘଡ଼ି ଘଣ୍ଟାର ଗତିପଥ ତୁଲ୍ୟ ଏବଂ ଗ୍ରହମାନଙ୍କର ଘଡ଼ି ଘଣ୍ଟାର ବିପରୀତ ଅଟେ ।

•

## ବୈଦିକ ଓ ପୌରାଣିକ ଯତ୍‌କିଞ୍ଚିତ

ବିଷ୍ଣୁ ବୋଇଲେ ଆମ୍ଭେମାନେ ବୁଝୁଁ ନୀଳାଚଳନାୟକ ଚକାଡୋଳାଙ୍କୁ, କିମ୍ବା ତାଙ୍କ ଅନୁରୂପରେ ନିର୍ମିତ କାଷ୍ଠମୂର୍ତ୍ତିକୁ, ଶ୍ରୀରଙ୍ଗମ୍‌ଙ୍କୁ କିମ୍ବା ତାଙ୍କ ଅନୁରୂପରେ ନିର୍ମିତ ପାଷାଣ କିମ୍ବା ଧାତବ ମୂର୍ତ୍ତିକୁ, ଶଙ୍ଖଚକ୍ରଗଦାପଦ୍ମଧାରୀ ଦଣ୍ଡାୟମାନ ବା ସମାସୀନ ପାଷାଣ କିମ୍ବା ଧାତବ ମୂର୍ତ୍ତିକୁ, ନୋହିଲେ କନା କାଗଜରେ ଚିତ୍ରିତ ଘନଶ୍ୟାମ ଚତୁର୍ଭୁଜ ରୂପକୁ, ଅଥବା ଶାଳଗ୍ରାମଶିଳାକୁ ।

ବିଷ୍ଣୁ ହିନ୍ଦୁମାନଙ୍କର ସ୍ରଷ୍ଟା, ପାଳନକର୍ତ୍ତା, ରକ୍ଷାକର୍ତ୍ତା, ମୁକ୍ତିଦାତା, ଭୟତ୍ରାତା, ଭକ୍ତବତ୍ସଳ ଇତ୍ୟାଦି । ବିଷ୍ଣୁଙ୍କର ଘର ଅଛି, ସ୍ତ୍ରୀ ଅଛନ୍ତି, ଭୃତ୍ୟ ଅଛନ୍ତି । ଏହାଙ୍କର ନରାକୃତି (କେବଳ ଅଧିକା ଦୁଇ ଗୋଟି ହାତ) ଅଳଙ୍କାର ପିନ୍ଧିବା ସ୍ପୃହା ବଡ଼ ବେଶି, ଏଣୁ ହାତରେ ଗୋଡ଼ରେ ବଳା, ବାହୁରେ ବାହୁବନ୍ଧ, କାନରେ କୁଣ୍ଡଳ, ମସ୍ତକରେ କିରୀଟ, ପରିଧେୟ ଏକ ଯୋଡ଼ା ହଳଦିଆ ପାଟ । ଭକ୍ତବତ୍ସଳ କି ନା, ତେଣୁ ବ୍ରାହ୍ମଣ ପଦଚିହ୍ନରୂପ ଶ୍ରୀବତ୍ସଲାଞ୍ଛନ ହୃଦୟରେ । ହିନ୍ଦୁଗଣ ବିଷ୍ଣୁଙ୍କୁ ଯେମନ୍ତ ସୁନ୍ଦର ବୋଲି ବର୍ଣ୍ଣନା କରିଅଛନ୍ତି, ତାହାଙ୍କୁ ତେମନ୍ତ ଭକ୍ତି, ଆଦର ଓ ସମ୍ମାନ କରନ୍ତି । ବିଷ୍ଣୁ ଆର୍ଯ୍ୟ ଜାତିର କେତେ ଦିନର ଦେବତା ? ବିଷ୍ଣୁ ଅତି ପ୍ରାଚୀନ ଦେବତା, ବେଦ ଯେମନ୍ତେ ପ୍ରାଚୀନ ବିଷ୍ଣୁ ତେମନ୍ତ ପ୍ରାଚୀନ, ନା, ବେଦଠାରୁ ବଳି ପ୍ରାଚୀନ, ଏହା ଅସ୍ୱୀକାର କରିବାର ନୁହେଁ । ଆର୍ଯ୍ୟଗଣ ବିଷ୍ଣୁଙ୍କୁ ଯେମନ୍ତ ଭକ୍ତି କରନ୍ତି, ତାହାଙ୍କୁ ତେମନ୍ତ ରୂପାନ୍ତରିତ କରିଅଛନ୍ତି । ବୋଧହୁଏ ଗୋଟାଏ ରୂପକୁ ବହୁକାଳ ପର୍ଯ୍ୟନ୍ତ ଆରାଧନା କରିବାକୁ ମନ ସ୍ଥିର ରହିପାରିଲା ନାହିଁ । ଏଣୁ ବାରମ୍ବାର ବିଷ୍ଣୁ ରୂପର ପରିବର୍ତ୍ତନ କରିଅଛନ୍ତି । ଅନ୍ୟ ଦେବତାର ଏତେ ପରିବର୍ତ୍ତନ କରିଅଛନ୍ତି କି ନାହିଁ ସନ୍ଦେହ । ବୈଦିକ ବିଷ୍ଣୁଠାରୁ ଆରମ୍ଭ କରି ନୀଳାଦ୍ରିରେ ଶବରସେବିତ ଦାରୁବ୍ରହ୍ମମୂର୍ତ୍ତି ସଂସ୍ଥାପିତ ହେବା ଅବଧି କେତେ ଯେ ନୂତନ କଳେବର ହୋଇଅଛି, ତାହା ଗୋଟି ଗୋଟି କରି ଗଣିବା ଦୁଃସାଧ୍ୟ । ତେବେ ଯେଉଁ ଦିନଠାରୁ ଉତ୍କଳର ସୁବୁଦ୍ଧି ହିନ୍ଦୁଗଣ ହିନ୍ଦୁଧର୍ମ ବଜାୟ ରଖିବାକୁ ଯାଇ ବୌଦ୍ଧ ଓ ପୌରାଣିକ ଧର୍ମର ସମନ୍ୱୟ କଲେ, ବୌଦ୍ଧପ୍ରଥାନୁସାରେ ମହାପ୍ରସାଦ ପ୍ରଥା ଚଳାଇଲେ, ତତ୍କାଳୀନ ବୌଦ୍ଧ ରାଜାଙ୍କୁ ପ୍ରତାରିତ କରି ଅନାର୍ଯ୍ୟ ଶବରସେବିତ କାଷ୍ଠମୂର୍ତ୍ତିକୁ ବିଷ୍ଣୁ ଆଖ୍ୟା ଦେଲେ, ସେହିଦିନୁଁ ବିଷ୍ଣୁଙ୍କର ଆଉ ରୂପପରିବର୍ତ୍ତନ ଘଟୁ ନାହିଁ । ରୂପାନ୍ତର ଘଟୁ ନାହିଁ ସତ୍ୟ, ମାତ୍ର ଥରେ ଯାହାର ପରିବର୍ତ୍ତନ ହେବାକୁ ଆରମ୍ଭ ହୋଇଅଛି, ତାହାର ପରିବର୍ତ୍ତନ ତ ହେଉଥିବ— ଏଠାରେ ଏ ନିୟମ ଠିକ୍ ବଜାୟ ଅଛି । ଜଗନ୍ନାଥ ପ୍ରକାଣ୍ଡ ମୂର୍ତ୍ତି, ଅନ୍ତତଃ ତିନିଖଣ୍ଡ କାଷ୍ଠରେ ନିର୍ମିତ, ପହଣ୍ଡିବେଳେ ବଡ଼ ଝିଙ୍କାଝିଙ୍କି କରିବାକୁ ହୁଏ । ଅନ୍ତତଃ ୧୦।୧୨ ବର୍ଷରେ ଥରେ ବଦଳ ନ କଲେ ବିପତ୍ତିର ଆଶଙ୍କା । ଏଣୁ ବୁଦ୍ଧିମାନ୍ ହିନ୍ଦୁଗଣ ନବକଳେବରର ସୃଷ୍ଟି କରିଅଛନ୍ତି । ଏ ହିସାବରେ ଧଇଲେ ବିଷ୍ଣୁଙ୍କର ଅଦ୍ୟାପି ପରିବର୍ତ୍ତନ ଲାଗିଅଛି ଏବଂ ହିନ୍ଦୁଧର୍ମ ଥିବାଯାଏ ଲାଗିଥିବ ।

ଆମ୍ଭେମାନେ ବିଷ୍ଣୁଙ୍କର ରୂପାନ୍ତର ବା ପୁନଃ ପୁନଃ ନବ କଳେବର ବିଷୟ ଆଲୋଚନା କରିବାକୁ ବସିଅଛୁଁ । ଅନେକେ କହିବେ, ଦେବତାମାନଙ୍କ ସମ୍ବନ୍ଧରେ ଏତେ ଆଲୋଚନାର

ଫଳ କ'ଣ ? ଯାହା ଯେପରି ଅଛି ତାହା ସେପରି ଥାଉ, ତୁମ୍ଭ କଥାରେ ବା ଯାଏ ଆସେ କେତେ ? ''ଭଲରେ ଥାଉନ୍ତୁ ଆମ୍ଭର ପୁରୀ ଜଗନ୍ନାଥେ ।'' ବେଶ୍ କଥା, ଏଥିରେ କୌଣସି ବିଶେଷ ଫଳ ହେବା କଳ୍ପନାରେ ଆମ୍ଭେମାନେ ଏ ଆଲୋଚନା କରୁ ନାହୁଁ । ଆଶା ବା ହେବ କିପରି ? ଯେଉଁ ଦେଶରେ ବିଷ୍ଣୁ, 'କୂର୍ମୋଽଙ୍ଗାନୀବ' ନିଜର ହସ୍ତ ପଦ ପ୍ରଭୃତି ସଙ୍କୁଚିତ କରି ଧର୍ମ ଶାସନ କରୁଥିବାରୁ ଗ୍ରାମେ ଗ୍ରାମେ ଘରେ ଘରେ ଉତ୍କଳର ଅଭିନବ ପୁରାଣ 'ତ୍ରିନାଥମେଳା' ବେଦରୁ ବଳି ସମ୍ମାନ ଲାଭ କରିବାକୁ ବସିଲାଣି, ୩ ନମ୍ବର ଆବକାରିର ପ୍ରଚାର କ୍ରମେ ବୃଦ୍ଧି ହେବାକୁ ଲାଗିଲାଣି, ସେ ଦେଶରେ ଦୁଇ ଚାରି କଥା କହି କୌଣସି ଫଳ ଲାଭ ଆଶା କରିବା ବୃଥା । ତେବେ ମୁଦ୍ରାଯନ୍ତ୍ର ମାହାତ୍ମ୍ୟରୁ ପୁସ୍ତକ ଦୁର୍ଲଭ ନୁହେଁ । ଆଜି କାଲି 'ବେଦରେ ଅଛି' ବୋଲି ଆଖିରେ ଧୂଳି ଦେବା ଦିନ ଆଉ ନାହିଁ । ଏଣୁ ଆମ୍ଭେମାନେ ଯାହାଙ୍କୁ ଶ୍ରଦ୍ଧା କରୁଁ, ପୂଜା କରୁଁ, ତାହାଙ୍କ ଚରିତ୍ର ଗୁଣ ଉତ୍ତରୋତ୍ତର ପର୍ଯ୍ୟାଲୋଚନା କରିବାକୁ ଆଗ୍ରହ ବଳେ । ଏହା ସତ୍ୟ ନୁହେଁ କି ? ଏଣୁ ହିନ୍ଦୁଙ୍କର ପ୍ରଧାନ ଦେବତା ବିଷ୍ଣୁଙ୍କ ସମ୍ବନ୍ଧରେ କେଉଁ କେଉଁ ପୁସ୍ତକ କ'ଣ କ'ଣ ଲେଖିଅଛନ୍ତି, ଯେତେଦୂର ସମ୍ଭବ ଆଲୋଚନା କରିବାକୁ ପ୍ରବୃତ୍ତି ବଳିଅଛି । ବିଷୟ ବଡ଼ ଗୁରୁତର । ଏପରି ପ୍ରବନ୍ଧରେ ସମଗ୍ର ବିଷୟ ଆଲୋଚନା କରି କୃତକାର୍ଯ୍ୟ ହେବା ଆଶା ଅତି କମ୍, ବିଷୟର ଦିଗ୍‌ଦର୍ଶନ ମାତ୍ର କରାଯାଉଅଛି । ପାଠକଗଣ ଏଥିରେ ଗଭୀର ଆଲୋଚନା କରି ପ୍ରଭୂତ ତଥ୍ୟ ହୃଦୟଙ୍ଗମ କରିବାକୁ ଚେଷ୍ଟା କରିବେ ।

ଏହା କେହି ଅସ୍ୱୀକାର କରିବେ ନାହିଁ ଯେ ବେଦ ଆର୍ଯ୍ୟ ଜାତିର ଆଦି ଗ୍ରନ୍ଥ, ଶ୍ରେଷ୍ଠ ଗ୍ରନ୍ଥ । ବେଦର ଭିତ୍ତି ଉପରେ ଆର୍ଯ୍ୟ ଧର୍ମ ପ୍ରତିଷ୍ଠିତ । ବେଦର ଦୋହି ସମସ୍ତେ ମାନନ୍ତି, ଅନ୍ତତଃ ତାହା ସମସ୍ତେ ମାନୁଥିବାର ସ୍ୱୀକାର କରନ୍ତି । ଏଣୁ ବେଦରେ ବିଷ୍ଣୁ ସମ୍ବନ୍ଧରେ କ'ଣ ଲେଖା ଅଛି, ତାହା ପ୍ରଥମରୁ ଦେଖାଯାଉ । ଋଗ୍‌ବେଦ ବେଦମାନଙ୍କ ମଧ୍ୟରେ ପ୍ରଥମ, ସୁତରାଂ ଋଗ୍‌ବେଦର ଆଲୋଚନା ପ୍ରଥମରୁ ଆବଶ୍ୟକ । ଋଗ୍‌ବେଦରେ ବିଷ୍ଣୁ ସମ୍ବନ୍ଧରେ ଅନେକଗୁଡ଼ିଏ ଋକ୍ ବା ମନ୍ତ୍ର ଅଛି । ସେହି ମନ୍ତ୍ରଗୁଡ଼ିକ ପାଠ କଲେ ଆମ୍ଭେମାନେ ସ୍ପଷ୍ଟରୂପେ ବୁଝିପାରୁଁ ଯେ ବିଷ୍ଣୁ ଶବ୍ଦ ସୂର୍ଯ୍ୟଙ୍କର ନାମାନ୍ତର ମାତ୍ର । ବୈଦିକ ଋଷିଗଣ ସୂର୍ଯ୍ୟଙ୍କୁ ଅନେକ ନାମ ଦେଇଥିଲେ । ସେହି ସୂର୍ଯ୍ୟଙ୍କୁ କେତେବେଳେ ବା ପୂଷା, କେତେବେଳେ ବା ବିଷ୍ଣୁ, କେତେବେଳେ ବା ଅନ୍ୟ ନାମରେ ଡାକୁଥିଲେ ।

ନୈରୁକ୍ତଗଣଙ୍କ ମତରେ ବୈଦିକ ଦେବତା ଗଣ ତିନି ଶ୍ରେଣୀରେ ବିଭକ୍ତ; ଯଥା— ଭୂସ୍ଥାନ ଦେବତା, ମଧ୍ୟସ୍ଥାନ ଦେବତା ଓ ଦ୍ୟୁସ୍ଥାନ ଦେବତା । ତନ୍ମଧ୍ୟରୁ ସୂର୍ଯ୍ୟ ଓ ବିଷ୍ଣୁ ଦ୍ୟୁସ୍ଥାନ ଦେବତା ।

ବିଷ୍ଣୁ—ବିଷଳ୍ ବ୍ୟାପ୍ତୌ, ବା ବିଷ ବ୍ୟାପନେ ଯେ ବିଶ୍ୱକୁ ବ୍ୟାପନ୍ତି, ଯେ ବିଶ୍ୱକୁ ସେବନ କରନ୍ତି, ଆପ୍ୟାୟିତ କରନ୍ତି । କିମ୍ବା ତୀବ୍ର ରଶ୍ମିଦ୍ୱାରେଣ ସର୍ବତାହ୍ୟାବିଶତି ବିଶ୍ୱଂ ରଶ୍ମିଭିର୍ବ୍ୟଶ୍ନୁତେ ବା । (ନିଘଣ୍ଟୁ)

ବିଷ୍ଣୁଙ୍କର ଆଉ ଗୋଟିଏ ନାମ ଶିପିବିଷ୍ଟ । ଶିପିବିଷ୍ଟଃ ବିଷ୍ଣୁଃ ଏତେ ବିଷ୍ଣୋଃ ଆଦିତ୍ୟସ୍ୟ ନାମାନି । ଶିପିଭିଃ-ରଶ୍ମିଭିଃ ଆବିଷ୍ଟଃ ଉପାଉରଶ୍ମିଃ; ଉଦିତମାତ୍ରହାତ୍ ଅପ୍ରତିପନ୍ନରଶ୍ମିଃ (ନିଘଣ୍ଟୁ) ଉକ୍ତ ବ୍ୟାଖ୍ୟାନୁସାରେ ବିଷ୍ଣୁ ଓ ଶିପିବିଷ୍ଟ ସୂର୍ଯ୍ୟାର୍ଥକ, ଏଥିରେ ସନ୍ଦେହ ନାହିଁ । ନିରୁକ୍ତକାରମାନେ ବିଷ୍ଣୁ ଓ ଶିପିବିଷ୍ଟ ଅର୍ଥ ସୂର୍ଯ୍ୟ କରିଅଛନ୍ତି ।

ସୂର୍ଯ୍ୟଙ୍କର ଏକ ନାମ ବୃଷାକପି; ବୃଷାକପିଃ— ବୃଷ ସେ ଚ; ଅୟଂ ଚ ସେଚୟିତା ଦିବାଚାରୀଣି ଭୂତାନି ଭୟାତ୍ କମ୍ପୟତି ବା । (ନିଘଣ୍ଟୁ) ବିଷ୍ଣୁଙ୍କ ନାମ ମଧ୍ୟ ବୃଷାକପି । ସୂର୍ଯ୍ୟଙ୍କୁ ପୁରାଣରେ ଶିପିବିଷ୍ଟ ନାମ ଦିଆଯାଇ ନାହିଁ । ଏହି ଶବ୍ଦ କେବଳ ବିଷ୍ଣୁପର ହୋଇ ପୁରାଣରେ ଲିଖିତ ହେଲା ।

ଯେଉଁ ଦେବତାଦ୍ୱୟ ଏକତ୍ର ପୂଜା ବା ସ୍ତୁତି ପାଇବା ଯୋଗ୍ୟ, ସେହି ଦେବତା ଦୁହିଁଙ୍କ ନାମ ଏକତ୍ର ଲିଖିତ ହେବାର ବା ଦୁଇ ଅର୍ଥ କରାଯିବାର ଦେଖାଯାଏ; ଯଥା— ଇନ୍ଦ୍ରବିଷ୍ଣୁ, ଇନ୍ଦ୍ରାଗ୍ନୀ; ଇନ୍ଦ୍ରପୂଷଣୌ ଇତ୍ୟାଦି । ସୂର୍ଯ୍ୟ ଓ ବିଷ୍ଣୁ ଏକାର୍ଥବାଚକ ଥିବାରୁ ସୂର୍ଯ୍ୟେନ୍ଦ୍ରୌ ବା ଇନ୍ଦ୍ରସୂର୍ଯ୍ୟୌ ଏପ୍ରକାର ଦ୍ୱନ୍ଦ୍ୱ ପଦ ବେଦରେ ନାହିଁ, ଇନ୍ଦ୍ରବିଷ୍ଣୁ ଶବ୍ଦଦ୍ୱାରା ଇନ୍ଦ୍ର ଓ ସୂର୍ଯ୍ୟ ସ୍ପଷ୍ଟ ବୁଝାଯାଉଅଛି ।

ପ୍ରାଚୀନ ନୈରୁକ୍ତଗଣ ବିଷ୍ଣୁ ଅର୍ଥ ସୂର୍ଯ୍ୟ କରିଥିବାର ନିମ୍ନୋକ୍ତ ଉଦାହରଣରୁ ସ୍ପଷ୍ଟ ଜଣାପଡ଼ିବ ।

''ଇଦଂ ବିଷ୍ଣୁର୍ବିଚକ୍ରମେ ତ୍ରେଧା ନିଦଧେ ପଦଂ ।

ସମୂଳହମସ୍ୟ ପାଂଶୁରେ । ଋ । ୧ । ୨୨ । ୧୭

ବିଷ୍ଣୁ ଏହାକୁ ପରିକ୍ରମା କରିଥିଲେ, ତିନି ସ୍ଥାନରେ ପଦ ବିକ୍ଷେପ କରିଥିଲେ, ଏହାଙ୍କର ଧୂଳିରେ ସମସ୍ତ ଆବୃତ ହୋଇଥିଲା ।

ବିଷ୍ଣୁଙ୍କର ପଦବିକ୍ଷେପ କ'ଣ ତାହା ଯାସ୍କ ଆପଣା ନିରୁକ୍ତରେ ପ୍ରକାଶ କରିଅଛନ୍ତି—

''ଯଦିଦଂ କିଞ୍ଚ ତଦିଚକ୍ରମତେ ବିଷ୍ଣୁଃ କ୍ରେଧା ନିଧରେ ପଦଂ । କ୍ରେଧା ଭାବାୟ ପୃଥିବ୍ୟାଂ ଅନ୍ତରୀକ୍ଷେ ଦିବି ଇତି ଶାକପୂର୍ଣିଃ । ସମାରୋହଣେ ବିଷ୍ଣୁପଦେ ଗୟଶିରସି ଇତି ଔର୍ଣନାଭଃ ।'' ନିରୁକ୍ତ ୧୨।୧୯

ଦୁର୍ଗାଚାର୍ଯ୍ୟ ଏଥିର ବିଶଦ ବ୍ୟାଖ୍ୟା କରିଅଛନ୍ତି । ତହିଁର ତାତ୍ପର୍ଯ୍ୟ ଏହି ଯେ ଶାକପୂର୍ଣିଙ୍କ ମତରେ ବିଷ୍ଣୁଙ୍କ ତିନିପାଦ ଅର୍ଥ—ଦ୍ୟୁଲୋକରେ ସୂର୍ଯ୍ୟ ରୂପରେ, ଅନ୍ତରୀକ୍ଷରେ ବିଦ୍ୟୁତ୍ ରୂପରେ ଏବଂ ପୃଥିବୀରେ ଅଗ୍ନିରୂପରେ ଏକ ତେଜର ବିଭିନ୍ନ ବିକାଶର ନାମ ବିଷ୍ଣୁଙ୍କର ତ୍ରିପାଦବିକ୍ଷେପ । ଔର୍ଣନାଭଙ୍କ ମତରେ ସୂର୍ଯ୍ୟୋଦୟ ବିଷ୍ଣୁଙ୍କର ପ୍ରଥମ ପାଦ, ମଧ୍ୟ ଆକାଶରେ ସ୍ଥିତି ବା ମଧ୍ୟାହ୍ନ ଦ୍ୱିତୀୟ ପାଦ, ଗୟଶିର ବା ଅସ୍ତଗିରିରେ ଅସ୍ତ ତୃତୀୟପାଦ । ସୂର୍ଯ୍ୟର ଦୈନିକ ତିନି ଅବସ୍ଥାକୁ ବିଷ୍ଣୁଙ୍କର ତ୍ରିପାଦ ବିକ୍ଷେପ ବୋଲାଯାଏ । ଉଭୟଙ୍କ ମତ ଯେ ଯୁକ୍ତିସଙ୍ଗତ ଏଥିରେ ସନ୍ଦେହ ନାହିଁ । ତେବେ ଔର୍ଣନାଭଙ୍କ ମତ ପଣ୍ଡିତମାନଙ୍କ ଦ୍ୱାରା ବିଶେଷ ଆଦୃତ ଓ ଅପେକ୍ଷାକୃତ ଯୁକ୍ତିପୂର୍ଣ୍ଣ । ଯାସ୍କଙ୍କ ସମୟରେ ପୁରାଣର ସୃଷ୍ଟି ହୋଇ ନ ଥିଲା । ସେତେବେଳେ ସୂର୍ଯ୍ୟ, ଅଗ୍ନି ଓ ବାୟୁ ପ୍ରଧାନ ଦେବତା ବୋଲି ପରିଗଣିତ ହେଉଥିଲେ । ଶାକପୂର୍ଣି ଓ ଔର୍ଣନାଭ ଯାସ୍କଙ୍କ ଅପେକ୍ଷା ପୂର୍ବତନ ନୈରୁକ୍ତ । ଏମାନଙ୍କ ମତ ପୌରାଣିକ ଓ କଳ୍ପନାଦୂଷିତ ନୁହେଁ । ବିଷ୍ଣୁଙ୍କ ପାଦବିକ୍ଷେପ ସମ୍ବନ୍ଧରେ ୧ମ ମଣ୍ଡଳ ୨୨ସୂ; ୧୬, ୧୭, ୧୮, ଋକ୍ ଏବଂ ୧ମ ମଣ୍ଡଳର ୧୫୪ ସୂ.ସମସ୍ତ ମନ୍ତ୍ର ଦ୍ରଷ୍ଟବ୍ୟ ।

ଚତୁର୍ଭିଃ ସାକଂ ନବତିଂ ଚ ନାମଭିଶ୍ଚକ୍ରଂ
ନବୃତ୍ତଂ ବ୍ୟତୀଁ ରବୀବିପତ୍ ।
ବୃହଚ୍ଛରୀରୋ ବମିମାନ ଋକ୍ଵଭି
ର୍ଯୁବାକୁମାରଃ ପ୍ରତ୍ୟେତ୍ୟାହବଂ । ୧-୧୫୫-୬

''ବିଷ୍ଣୁ ଗତିବିଶେଷଦ୍ୱାରା ବିବିଧ ସ୍ୱଭାବବିଶିଷ୍ଟ, ଚତୁ-ର୍ନବତି କାଳବୃତ୍ତକୁ ଚକ୍ର ତୁଲ୍ୟ ଚାଳିତ କରିଅଛନ୍ତି । ବିଷ୍ଣୁ ବୃହତ୍ ଶରୀରବିଶିଷ୍ଟ ଓ ସ୍ତୁତି ଦ୍ୱାରା ପରିମେୟ, ସେ ନିତ୍ୟ ତରୁଣ ଓ ଅକୁମାର, ସେ ଆହବକୁ ଗମନ କରନ୍ତି ।''

ସୂର୍ଯ୍ୟହିଁ କାଳର କର୍ତ୍ତା, ୩୬୦ ଦିବସ ହେଉ କିମ୍ବା ୯୪ କାଳାବୟବ ହେଉ— ଏଥିରେ କର୍ତ୍ତା କେବଳ ସୂର୍ଯ୍ୟ । ସୂର୍ଯ୍ୟଙ୍କର କୌଣସି ପରିବର୍ତ୍ତନ ନାହିଁ । ଏଣୁ ନିତ୍ୟ—ପ୍ରତ୍ୟହ ସେହି ତେଜଃପୂର୍ଣ୍ଣ ଓ ଅମ୍ଳାନରୂପ ଅତଏବ ତରୁଣ ଓ ଅକୁମାର ।

''ଯଃ ପୂର୍ବ୍ୟାୟ ବେଧସେ ନବୀୟସେ
ସୁମଜ୍ଜାନୟେ ବିଷ୍ଣବେ ଦଦ୍ୟଶତି ।
ଯୋ ଜାତମସ୍ୟ (ମହିତୋମହି ବ୍ରବତ୍ ସେଦୁ
ସ୍ରବୋଭିର୍ଯୁଜ୍ୟଂ ଚିଦ୍‌ଭ୍ୟସତ୍ । ୧-୧୫୬-୨

''ଯେଉଁ ବ୍ୟକ୍ତି ପ୍ରାଚୀନ, ମେଧାବୀ, ନିତ୍ୟ ନୂତନ, ସ୍ୱୟଂ ଉତ୍ପନ୍ନ ବିଷ୍ଣୁଙ୍କୁ ହବ୍ୟ ପ୍ରଦାନ କରନ୍ତି, ଯେଉଁ ବ୍ୟକ୍ତି ମହାନୁଭବ ବିଷ୍ଣୁର ପୂଜନୀୟ ଜନ୍ମକଥା କୀର୍ତ୍ତନ କରନ୍ତି, ସେ ଯୁଜ୍ୟସ୍ଥାନ ପ୍ରାପ୍ତ ହୁଅନ୍ତି ।'' ସୂର୍ଯ୍ୟ ଅନନ୍ତକାଳରୁ ବିଦ୍ୟମାନ ଏଣୁ ପ୍ରାଚୀନ, ଧନଦାତା ଏଣୁ ମେଧାବୀ,ପ୍ରତ୍ୟହ ନୂତନ ହୋଇ ଉଦିତ ହୁଅନ୍ତି ଏଣୁ ନିତ୍ୟ ନୂତନ, କେହି ସୂର୍ଯ୍ୟଙ୍କୁ ଜନ୍ମ କରି ନାହିଁ ଏଣୁ ସ୍ୱୟଂ ଉତ୍ପନ୍ନ । ଏହି ବିଶେଷଣଗୁଡ଼ିକ ସୂର୍ଯ୍ୟଠାରେ ଯେପରି ପ୍ରଯୁଜ୍ୟ, ଅନ୍ୟ କୌଣସି ଦେବତାଠାରେ ସେପରି ନୁହେଁ । ବିଷ୍ଣୋଃ କର୍ମାଣି ପଶ୍ୟତ ଯତୋ ବ୍ରତାନି ପସ୍ପଶେ ।

ଇନ୍ଦ୍ରସ୍ୟ ଯୁଜ୍ୟଃ ସଖା । ୧ । ୨୨ । ୧୯

ବିଷ୍ଣୁଙ୍କର କାର୍ଯ୍ୟକଳାପ ଦେଖ, ଯଦ୍ଦ୍ୱାରା ବ୍ରତାଦି ନିବଦ୍ଧ ହୋଇଅଛି । ବିଷ୍ଣୁ ଇନ୍ଦ୍ରଙ୍କର ଉପଯୁକ୍ତ ସଖା ।

ବିଷ୍ଣୁଙ୍କୁ ଇନ୍ଦ୍ରଙ୍କର ଉପଯୁକ୍ତ ସଖା ବୋଲାଯାଇଅଛି । ବୃଷ୍ଟିର ଦେବତା ଇନ୍ଦ୍ର ହେଲେ, ସୂର୍ଯ୍ୟଙ୍କୁ ଇନ୍ଦ୍ରଙ୍କର ଉପଯୁକ୍ତ ସଖା ବୋଲିବା ଭିନ୍ନ ଅନ୍ୟ କାହାକୁ ବୋଲାଯିବ ? ସୂର୍ଯ୍ୟ ତ ମେଘର ଉତ୍ପାଦକ ।

ତମସ୍ୟ ରାଜା ବରୁଣସ୍ତମଶ୍ୱିନା କ୍ରତୁଂ
ସଚନ୍ତ ମରୁତସ୍ୟ ବେଧସଃ ।
ଦାଧାର ଦକ୍ଷମୁତ୍ତମମହର୍ବିଦଂ ବ୍ରଜଞ୍ଚ
ବିଷ୍ଣୁଃ ସଖିବାଂ ଅପୋର୍ଣ୍ଣୁତେ । ୧ । ୧୫୬ । ୪

''ରାଜା ବରୁଣ ଓ ଅଶ୍ୱିଦ୍ୱୟ ଋତ୍ୱିକ୍‌ମାନଙ୍କ ଯଜ୍ଞରେ ମିଳିତ ହେଉନ୍ତୁ । ଅଶ୍ୱିଦ୍ୱୟ ଓ ବିଷ୍ଣୁ ସଖାବିଶିଷ୍ଟ ହୋଇ ଅହର୍ଦ୍ଦିବ ବଳ ଧାରଣ କରନ୍ତୁ ଏବଂ ମେଘର ଆବରଣ ଉନ୍ମୋଚନ କରନ୍ତୁ ।''

ଯଜ୍ଞ ସମୟରେ ଅବଶ୍ୟ ମେଘଶୂନ୍ୟ ଆକାଶର ପ୍ରୟୋଜନ । ଏଣୁ ଆକାଶଦେବ, ଉଷାକାଳର ଦେବତା ଏବଂ ସୂର୍ଯ୍ୟ ମିଳିତ ହୋଇ ମେଘାବରଣ ଉନ୍ମୋଚନ କରିବା ନିମନ୍ତେ ଯଜ୍ଞାନୁଷ୍ଠାନକାରିଗଣ ପ୍ରାର୍ଥନା କରୁଅଛନ୍ତି । ଏହା ସ୍ୱାଭାବିକ ଓ ସରଳ ବିଶ୍ୱାସପୂର୍ଣ୍ଣ । ଆଜିକାଲି ମଧ୍ୟ କୌଣସି କାର୍ଯ୍ୟାନୁଷ୍ଠାନ କାଳରେ ଆକାଶ ମେଘାଚ୍ଛନ୍ନ ଦେଖିଲେ ତାହା ଉନ୍ମୋଚନ କରିବାକୁ ସୂର୍ଯ୍ୟଙ୍କୁ ଲୋକେ ପ୍ରାର୍ଥନା କରନ୍ତି ।

ବିଷ୍ଣୁଙ୍କର ଏତାଦୃଶ ଅନେକ ମନ୍ତ୍ର ଅଛି, ସେସବୁ ପର୍ଯ୍ୟାଲୋଚନା କଲେ ସୂର୍ଯ୍ୟଙ୍କ ମନ୍ତ୍ର ବୋଲି ପ୍ରତିପନ୍ନ ହେବ ।

ପୁଣି ଏମନ୍ତ କେତେକ ମନ୍ତ୍ର ଅଛି, ଯାହାର ଅର୍ଥ ଏମନ୍ତ ଗୋଳମାଳିଆ ଯେ ତହିଁର କୌଣସି ଭାବାର୍ଥ ବା ତଥ୍ୟାର୍ଥ ପ୍ରକାଶ ପାଏ ନାହିଁ । ତଥାପି ସେଗୁଡ଼ିକ ସୌରାର୍ଥ ବିରୁଦ୍ଧାତ୍ମକ ନୁହେଁ ।

ଅଦିତି:— ଅସୀମ ପ୍ରକୃତି ଦେବମାତା । ବିଷ୍ଣୁ ଅଦିତିଙ୍କର ପୁତ୍ର, ଏଣୁ ଆଦିତ୍ୟ । ସୂର୍ଯ୍ୟଙ୍କର ନାମ ଆଦିତ୍ୟ ।

ଦ୍ୱାଦଶାଦିତ୍ୟାଃ । ଶତ : ବ୍ରା : ୪ । ୫ । ୬ । ୨ ଆଦିତ୍ୟ ଦ୍ୱାଦଶଟି ।

କତମ ଆଦିତ୍ୟାଇତି; ଦ୍ୱାଦଶମାସାଃ ସଂବତ୍ସର ସୈତଃଆଦିତ୍ୟା ଏତେ ହିଦଂ ସର୍ବମାଦଦାନା ଯନ୍ତି ତେ ଯଦିଦଂ ସର୍ବମାଦଦାନା ଯନ୍ତି ତସ୍ମାଦାଦିତ୍ୟା ଇତି । ଶତ : ବ୍ରା : ୧୧ । ୪ । ୩ । ୮

ପ୍ରତ୍ୟେକ ମାସର ସୂର୍ଯ୍ୟକୁ ଗୋଟିଏ ଗୋଟିଏ ଆଦିତ୍ୟ ବୋଲାଯାଏ । ଦ୍ୱାଦଶ ଆଦିତ୍ୟ ମଧ୍ୟରୁ ବିଷ୍ଣୁ ଜଣେ ଆଦିତ୍ୟ ।

ଉଲ୍ଲିଖିତ ପ୍ରମାଣସମୂହରୁ ଆମ୍ଭେମାନେ ଦେଖିପାରିଲୁଁ ଯେ ବିଷ୍ଣୁ ଜଣେ ଆଦିତ୍ୟ ଏବଂ ବିଷ୍ଣୁ ସୂର୍ଯ୍ୟର ନାମାନ୍ତର ମାତ୍ର ।

ଋଗ୍‌ବେଦର ମନ୍ତ୍ରସମୂହ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ବିଷ୍ଣୁ ପାଳନକର୍ତ୍ତା, ସ୍ରଷ୍ଟା ଇତ୍ୟାଦି ଉପାଧି ପାଇ ନାହାନ୍ତି । କେବଳ ନିମ୍ନୋକ୍ତ ମନ୍ତ୍ରରୁ ବିଷ୍ଣୁ ସମସ୍ତ ବିଶ୍ୱର ଧାରଣକର୍ତ୍ତା ଓ ଅତି ମହାନ୍ ଥିବାର ପ୍ରକାଶ ପାଉଅଛି—

ଯ ଉ ତ୍ରିଧାତୁ ପୃଥିବୀ ମୁତ ଦ୍ୟାମେକୋ
ଦାଧାର ଭୁବନାନି ବିଶ୍ୱା— ୧– ୧୫୪–୪ ।

ସେ ଏକାକୀ ଧାତୁତ୍ରୟ ପୃଥିବୀ ଦ୍ୟୁଲୋକ ଓ ସମଗ୍ର ଭୁବନ ଧାରଣ କରିଅଛନ୍ତି ।

ନ ତେ ବିଷ୍ଣୋ ଜାୟମାନୋ ନ ଜାତୋ
ଦେବ ମହିମ୍ନ ପରସ୍ତମାପ ।
ଉଦସ୍ତଭ୍ନା ନାକମୃଷ୍ୱ ବୃହନ୍ତଂ ଦାଧର୍ଥ
ପ୍ରାଚୀ କକୁଭଂ ପୃଥିବ୍ୟା ।୭-୯୯-୨ ।

" ହେ ବିଷ୍ଣୁ! ଯେଉଁମାନେ ଜନ୍ମିଛନ୍ତି, ଯେଉଁମାନେ ଜନ୍ମିବେ, କେହି ତୁମ୍ଭର ମହିମାର ଅପର ପାର ଦେଖିପାରନ୍ତି ନାହିଁ । ଦର୍ଶନୀୟ ବୃହତ୍ ସ୍ୱର୍ଗକୁ ତୁମ୍ଭେ ଊର୍ଦ୍ଧ୍ୱରେ ଧାରଣ କରିଅଛ— ତୁମ୍ଭେ ପୃଥିବୀର ପୂର୍ବଦିଗ ଧାରଣ କରିଅଛ ।" ବିଷ୍ଣୁଙ୍କର ଏତାଦୃଶ ଆଉ କେତୋଟି ମନ୍ତ୍ର ଥିଲେ ମଧ୍ୟ—ସ୍ୱୟଂ ସୂର୍ଯ୍ୟଙ୍କ ନାମରେ ଯେ ମନ୍ତ୍ରସମୂହ ଅଛି, ତାହା ଅତି ଉଚ୍ଚଶ୍ରେଣୀର । ସେ ମନ୍ତ୍ରଗୁଡ଼ିକ ଆଲୋଚନା କଲେ ଆମ୍ଭେମାନେ ଜାଣିପାରୁଁ ଯେ ସୂର୍ଯ୍ୟ ବେଦର ଅତି ପ୍ରଧାନ ଦେବତା, ତାଙ୍କୁ ବଳି କୌଣସି ଦେବତା ମହତ୍ତର ନୁହନ୍ତି । କହିବା ବାହୁଲ୍ୟ ଯେ ଆର୍ଯ୍ୟ ଜାତିର ସର୍ବୋତ୍କୃଷ୍ଟ ମନ୍ତ୍ର ଅତି ଗୋପନୀୟ ମନ୍ତ୍ର ଗାୟତ୍ରୀ । ଯାହାକୁ ଶୂଦ୍ରାଦି ଜାତି ଶ୍ରବଣ କଲେ ବଧିର ହୋଇଯିବାର ବିଶ୍ୱାସ ଅଦ୍ୟାପି ଅନେକଙ୍କ ହୃଦୟରେ ସ୍ଥାନ ପାଇଅଛି, ସେହି ଗାୟତ୍ରୀ ମନ୍ତ୍ର ସୂର୍ଯ୍ୟଙ୍କର ଗୋଟିଏ ସ୍ତୁତି ମାତ୍ର ।

"ତତ୍ ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି
ଧିୟୋ ଯୋ ନମ ପ୍ରଚୋଦୟାତ୍ ।
ଋ । ୩ । ୬୨ । ୧୦ ।

ଯେ ଆମ୍ଭମାନଙ୍କର ଧୀଶକ୍ତି ପ୍ରେରଣ କରନ୍ତି, ଆମ୍ଭେମାନେ ସେହି ସବିତୃଦେବଙ୍କର ବରଣୀୟ ତେଜକୁ ଧ୍ୟାନ କରୁଁ । ସୂର୍ଯ୍ୟ ସୃଷ୍ଟିକର୍ତ୍ତା, ପ୍ରସବିତା, ପାଳନକର୍ତ୍ତା, ଧନଦାତା, ସର୍ବଦ୍ରଷ୍ଟା, ପାପାହାରୀ ଇତ୍ୟାଦି ଥିବାର ନିମ୍ନୋକ୍ତ କେତେକ ମନ୍ତ୍ରରୁ ଜଣାପଡ଼ିବ ।

ଚିତ୍ରଂ ଦେବାନାମୁଦଗାଦନୀକଂ ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ ।
ଆପ୍ରା ଦ୍ୟାବା ପୃଥିବୀ ଅନ୍ତରୀକ୍ଷଂ ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ।
ଋ । ୧ । ୧୧୫ । ୧

ବିଚିତ୍ର ତେଜଃପୁଞ୍ଜରୂପ, ମିତ୍ର ବରୁଣ ଓ ଅଗ୍ନିର ଚକ୍ଷୁ ସ୍ୱରୂପ ସୂର୍ଯ୍ୟ ଉଦୟ ହୋଇଅଛନ୍ତି । ସ୍ୱୀୟ କିରଣଦ୍ୱାରା ଦ୍ୟାବା, ପୃଥିବୀ ଅନ୍ତରୀକ୍ଷକୁ ପରିପୂର୍ଣ୍ଣ କରିଅଛନ୍ତି । ସୂର୍ଯ୍ୟ ସ୍ଥାବର ଜଙ୍ଗମ ସକଳର ଆତ୍ମା ।

ସୂର୍ଯ୍ୟଃ ପ୍ରସବିତା ଜନାନାଂ । ଋ । ୭ । ୬୩ । ୨ ।
ସୂର୍ଯ୍ୟ ଜନମାନଙ୍କର ଜନ୍ମକର୍ତ୍ତା ।
ଦିବୋଧର୍ତ୍ତା ଭୁବନ୍ୟସ୍ୟ ପ୍ରଜାପତିଃ—
ଋ-୪ । ୫୩ । ୨

ସବିତା— ଦ୍ୟୁଲୋକର ଧାରଣକର୍ତ୍ତା—ଭୁବନର ଈଶ୍ୱର ।

ଋଜୁଃ ମର୍ତ୍ତ୍ୟେଷୁ ବୃଜିନା ଚ ପସ୍ୟନ ।
ଋ-୭-୬୦-୨

ମନୁଷ୍ୟମାନଙ୍କର ପାପ ପୁଣ୍ୟର ଦ୍ରଷ୍ଟା ।
ସ ମନ୍ୟୁଂ ମର୍ତ୍ତ୍ୟେଷୁ ଅଚିକେତ ।
ଋ-୭-୬୧-୧

ବ୍ରହ୍ମାଣ୍ଡର ଦ୍ରଷ୍ଟା ଏବଂ ଅନ୍ତର୍ଯ୍ୟାମୀ ।
ଉତେଶିଷେ ପ୍ରସବସ୍ୟ ତ୍ୱମେକ ଇତ ।
ଋ-୫-୮୧-୫

ହେ ସବିତା ! ତୁମ୍ଭେ କେବଳ ସମସ୍ତ ଜୀବର କାର୍ଯ୍ୟ ଶାସନ କର ।

ସ ଦେବାନ୍ ବିଶ୍ୱାନ୍ ବିଭର୍ତ୍ତି ।

ଋ - ୩ -୫୯-୮ ।

ସେ ସମସ୍ତ ଦେବଗଣଙ୍କୁ ପାଳନ କରନ୍ତି ।

ଆପ୍ରା ରଜାଂସି ଦିବ୍ୟାନି ପାର୍ଥିବା ଶ୍ଳୋକଂ ଦେବଃ
କୃଣୁତେ ସ୍ୱାୟ ଧର୍ମଣେ ।
ପ୍ରବାହୁ ଅସ୍ରାକ ସବିତା ସବୀମନି ନିବେଶୟତ
ପ୍ରସୁବନ୍ନଭିର୍ଜଗତ୍ । ଋ-୪-୫୩-୩

ସବିତା ଦେବ ଦ୍ୟୁଲୋକ ଓ ପୃଥିବୀଲୋକକୁ ପରିପୂର୍ଣ୍ଣ କରନ୍ତି ଏବଂ ସ୍ୱୀୟ କାର୍ଯ୍ୟର ପ୍ରଶଂସା କରନ୍ତି । ସେ ପ୍ରତିଦିନ ଜଗତକୁ ସ୍ଥାପନ ଓ ପ୍ରେରଣ କରତଃ ସୃଜନ କାର୍ଯ୍ୟରେ ବାହୁ ପ୍ରସାରଣ କରନ୍ତି । ଧୃତବ୍ରତ ସବିତା ମହତ୍ ଜଗତର ଈଶ୍ୱର ।

ଋଗ୍‌ବେଦରେ ସୂର୍ଯ୍ୟଙ୍କର ଏତାଦୃଶ ବହୁସଂଖ୍ୟକ ମନ୍ତ୍ର ଅଛି । ଆଉ ଅଧିକ ମନ୍ତ୍ର ଉଦ୍ଧାର କରି ପ୍ରବନ୍ଧର କଳେବର ବୃଦ୍ଧି କରିବାର ପ୍ରୟୋଜନ ନାହିଁ । ବେଦରେ ଇନ୍ଦ୍ର, ଅଗ୍ନି, ବରୁଣ, ସୋମ ବହୁ ସ୍ତୁତ ଓ ବହୁ ସମ୍ମାନଯୁକ୍ତ ହେଲେହେଁ ସୂର୍ଯ୍ୟ କିମ୍ବା ସୂର୍ଯ୍ୟଙ୍କର ନାମାନ୍ତର ମିତ୍ର, ବିଷ୍ଣୁ, ପ୍ରଭୃତିଙ୍କ ସମକକ୍ଷ ନୁହନ୍ତି । ପୁଣି ବେଦରେ ସୂର୍ଯ୍ୟ ଓ ସୂର୍ଯ୍ୟନାମାନ୍ତର ଦେବତାମାନଙ୍କର ଯେତେ ସ୍ତୁତି ଅଛି, ତନ୍ମଧ୍ୟରୁ ସବିତା ଓ ସୂର୍ଯ୍ୟର ସ୍ତୁତି ଅତି ଉଚ୍ଚ ଶ୍ରେଣୀର । ଋଗ୍‌ବେଦର ମନ୍ତ୍ରସମୂହ ପର୍ଯ୍ୟାଲୋଚନା କଲେ ଦେଖିପାରୁଁ ଯେ ବିଷ୍ଣୁ ପୁରାଣରେ, ଯେ ସବୁ ଆଖ୍ୟା ଓ ଉପାଧି ପାଇଅଛନ୍ତି, ବେଦରେ ତାହା ନାହିଁ । ବିଷ୍ଣୁ ସୂର୍ଯ୍ୟଠାରୁ ଭିନ୍ନ ନୁହଁନ୍ତି । ପୁରାଣ ରଚନା ସମୟରେ ମଧ୍ୟ ସୂର୍ଯ୍ୟଙ୍କୁ ବିଷ୍ଣୁ ବୋଲି ସ୍ତୁତି କରିବାର ଉଦାହରଣ ବିରଳ ନୁହେଁ । ଉଦାହରଣସ୍ୱରୂପ ମହାଭାରତ ବନପର୍ବରୁ ସୂର୍ଯ୍ୟସ୍ତୁତି ଉଦ୍ଧୃତ କରାଯାଇପାରେ । ଏହି ସ୍ତୋତ୍ରଟି ସୂର୍ଯ୍ୟଙ୍କର ବୈଦିକ ନାମ ପରିପୂର୍ଣ୍ଣ—

× × ×

ତ୍ୱାମିନ୍ଦ୍ରମାହୁ ସ୍ତ୍ୱଂ ରୁଦ୍ରସ୍ତ୍ୱଂ ବିଷ୍ଣୁସ୍ତ୍ୱଂ ପ୍ରଜାପତିଃ ।
ତ୍ୱମଗ୍ନିସ୍ତ୍ୱଂ ମନଃ ସୂକ୍ଷ୍ମଂ ପ୍ରଭୁସ୍ତ୍ୱଂ ବ୍ରହ୍ମଶାଶ୍ୱତଂ । ୬୦।
ତ୍ୱ ହଂସଃ ସବିତା ଭାନୁ ରଂଶୁମାଳୀ ବୃଷାକପିଃ ।
ବିବସ୍ୱାନ୍ମିହିରଃ ପୂଷାମିତ୍ରୋ ଧର୍ମସ୍ତଥୈବ ଚ । ୬୧।
ବନପର୍ବ, ତୃତୀୟ ଅଧ୍ୟାୟ ।

ଏ ଗଲା ବେଦର କଥା । ବେଦ ଉତ୍ତାରୁ ବ୍ରାହ୍ମଣ ଓ ଆରଣ୍ୟକ । ବ୍ରାହ୍ମଣ ଓ ଆରଣ୍ୟକ ପାଠ କଲେ ଜଣାଯାଏ ଯେ ବିଷ୍ଣୁ ଜଗତ୍‌ପାଳନକର୍ତ୍ତା ନୁହନ୍ତି । ବ୍ରାହ୍ମଣ ଭାଗ ରଚନା ସମୟରେ ଲୋକଙ୍କର ଯଜ୍ଞ ଉପରେ ପ୍ରବଳ ବିଶ୍ୱାସ ଥିଲା । ଜଣେ ସ୍ରଷ୍ଟା ସମସ୍ତଙ୍କୁ ସୃଷ୍ଟି କରିଅଛି, ଏ ବିଶ୍ୱାସ ହୃଦୟରେ ସମ୍ପୂର୍ଣ୍ଣରୂପେ ସ୍ଥାନ ପାଇ ନ ଥିଲା । ଦେବତାମାନେ ସ୍ୱତଃସିଦ୍ଧ ପ୍ରାଧାନ୍ୟ ଲାଭ କରିଅଛନ୍ତି, ଏ ବିଶ୍ୱାସ ମଧ୍ୟ ନ ଥିଲା । ଯଜ୍ଞଦ୍ୱାରା ଦେବତାମାନେ ପ୍ରାଧାନ୍ୟ ଲାଭ କରିଅଛନ୍ତି । ଯଜ୍ଞଦ୍ୱାରା ମନୁଷ୍ୟ ପ୍ରାଧାନ୍ୟ ଲାଭ କରିପାରେ, ଏ ବିଶ୍ୱାସ ଥିଲା । ଦେବତାମାନେ କୁରୁକ୍ଷେତ୍ରରେ ଯଜ୍ଞ କଲେ । ଯଜ୍ଞ ଯେ ପ୍ରଥମରେ ସାଙ୍ଗ କରିବ ସେ ଶ୍ରେଷ୍ଠ ହେବ, ଏହା ନିଶ୍ଚିତ କଲେ ।

ତେ ହୋଚୁଃ । ଯୋ ନ ଶ୍ରମେଣ ତପସା ଶ୍ରଦ୍ଧୟା ଯଜ୍ଞେନାହୁତିଭିର୍ଯଜ୍ଞସ୍ୟୋଦୃଚଂ ପୂର୍ବୋଽବଗଚ୍ଛାତସ ଶ୍ରେଷ୍ଠୋଽସତଦୁ ନଃ ସର୍ବେଷାଂ ସହେତି ତଥେତି । ୪ ।

ସବିଷ୍ଣୁଃ ପ୍ରଥମଃ ପ୍ରାପସ ଦେବାନାଂ ଶ୍ରେଷ୍ଠୋଽ
ଭବରସ୍ମାଦାହୁର୍ବିଷ୍ଣୁ ର୍ଦେବାନାଂ ଶ୍ରେଷ୍ଠ ଇତି । ୫ ।
ଶ.ବ୍ରା.୧୪ ।୧ ।୧।

ଉପରୋକ୍ତ କଣ୍ଡିକାରୁ ପ୍ରକାଶ ପାଉଅଛି ଯେ ବିଷ୍ଣୁ ଯଜ୍ଞଦ୍ୱାରା ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ଲାଭ କଲେ । ପୁଣି ଏହି ବ୍ରାହ୍ମଣର ୯ ଓ ୧୦ କଣ୍ଡିକାରେ ସେହି ବିଷ୍ଣୁଙ୍କର ଶିରଶ୍ଛେଦର କଥା ଉଲ୍ଲେଖ ଅଛି । ତାହା ଆଲୋଚନା କରିବାର ନିଷ୍ପ୍ରୟୋଜନ ।

ଅଗ୍ନିର୍ବୈ ଦେବାନାମବମୋ ବିଷ୍ଣୁଃ ପରମ-
ସ୍ତଦନ୍ତରେଣ ସର୍ବା ଅନ୍ୟା ଦେବତାଃ ।
ଐତରେୟ ବ୍ରାହ୍ମଣ ।୧।୧

ଅଗ୍ନି ଦେବତାମାନଙ୍କ ମଧ୍ୟରେ ପ୍ରଥମ ଏବଂ ବିଷ୍ଣୁ ଉତ୍ତମ ଦେବତା । ତତ୍‌ପର ଅନ୍ୟ ସମସ୍ତ ଦେବତା ।

ଉପନିଷଦ୍ ରଚନା ସମୟକୁ ବିଷ୍ଣୁ ସମସ୍ତ ଦେବତାଙ୍କ ଉପରେ ଶ୍ରେଷ୍ଠତ୍ୱ ଲାଭ କରି ନ ଥିଲେ । ଉପନିଷତ୍‌କାରଗଣ ବିଷ୍ଣୁଙ୍କୁ ଶ୍ରେଷ୍ଠ ସ୍ଥାନ ଦେଇଥିବାର ନିଦର୍ଶନ ମିଳେ ନାହିଁ ।

ଶଂ ନୋ ମିତ୍ରଃ ଶଂ ବରୁଣଃ ଶଂ ନୋଭଵତ୍ୱର୍ଯ୍ୟମା ।
ଶଂ ନ ଇନ୍ଦ୍ରୋ ବୃହସ୍ପତିଃ ଶଂ ନୋ ବିଷ୍ଣୁ ରୁରୁକ୍ରମଃ ।
ନମୋ ବ୍ରାହ୍ମଣେ, ନମସ୍ତେ ବାୟୋତ୍ୱମେବ ପ୍ରତ୍ୟକ୍ଷଂ
ବ୍ରହ୍ମାସି । ତ୍ୱାମେବ ପ୍ରତ୍ୟକ୍ଷଂ ବ୍ରହ୍ମ ବଦିଷ୍ୟାମି ।
ସତ୍ୟଂ ବଦିଷ୍ୟାମି—ତୈ ୧ । ୧

ମିତ୍ର, ବରୁଣ, ଅର୍ଯ୍ୟମା, ବୃହସ୍ପତି, ଇନ୍ଦ୍ର ଓ ବିସ୍ତୀର୍ଣ୍ଣପାଦବିକ୍ଷେପୀ ବିଷ୍ଣୁ ଆମ୍ଭମାନଙ୍କର ସୁଖକର ହେଉନ୍ତୁ। ବ୍ରହ୍ମଙ୍କୁ ନମସ୍କାର, ହେ ବାୟୁ! ତୁମ୍ଭଙ୍କୁ ନମସ୍କାର, ତୁମ୍ଭେ ଏକା ପ୍ରତ୍ୟକ୍ଷ ବ୍ରହ୍ମ। ତୁମ୍ଭଙ୍କୁ ମୁଁ ପ୍ରତ୍ୟକ୍ଷ ବ୍ରହ୍ମ ବୋଲି କହିବି । ସତ୍ୟ କହୁଅଛି।

ଉକ୍ତ ଉଦାହରଣରୁ ବାୟୁ ସମସ୍ତ ଦେବତା ଅପେକ୍ଷା ଶ୍ରେଷ୍ଠ ଥିବାର ଅନୁମାନ ହେଉଅଛି। ବାୟୁକୁ ସାକ୍ଷାତ୍ ବ୍ରହ୍ମ ବୋଲା ହୋଇଅଛି । ପ୍ରାଣରକ୍ଷକ ବାୟୁଠାରୁ ବଳି କିଏ ଅଛି ? ବ୍ରହ୍ମା ବିଷ୍ଣୁ ମହେଶ୍ୱର ନ ଥିଲେ ବଞ୍ଚି ହେବ । ବାୟୁ ନ ଥିଲେ ତିଳେ ବଞ୍ଚିବାର ଯେ ଉପାୟ ନାହିଁ ? ନାକଟିକୁ ଚାପି ଧର, କ୍ଷଣକେ ପଞ୍ଚତ୍ୱପ୍ରାପ୍ତି । ସୁତରାଂ ଏ ମନ୍ତ୍ରରେ ଥିବା ନାମଗୁଡ଼ିକରୁ ବାୟୁ ଅପେକ୍ଷା ବ୍ରହ୍ମ ଆଖ୍ୟା ପାଇବାକୁ ଆଉ କିଏ ଉପଯୁକ୍ତ ? ଉପନିଷଦ୍ ଯୁକ୍ତିମୂଳକ ଗ୍ରନ୍ଥ ଓ ବେଦାନ୍ତ ଯୁକ୍ତିମୂଳକ ଧର୍ମ— ଯୁକ୍ତି ଅନୁସାରେ ଯାହାକୁ ଯାହାର ଇଚ୍ଛା ଶ୍ରେଷ୍ଠ ବୋଲିପାରେ। ସୁତରାଂ ଉପନିଷଦ୍ ଯୁଗ ପର୍ଯ୍ୟନ୍ତ ବିଷ୍ଣୁ ସର୍ବୋତ୍କୃଷ୍ଟ ଦେବତା ବୋଲି ପରିଚିତ ହୋଇ ନ ଥିଲେ ।

କଳ୍ପନା ଉପରେ ଧର୍ମର ଭିତ୍ତି। ଦେବତାର ରୂପଗୁଣ ମନୁଷ୍ୟର କଳ୍ପନାପ୍ରସୂତ। ମନୁଷ୍ୟ ନିଜ ଆକୃତିରେ ଦେବତା ଗଢ଼ିଅଛି, ଦେବତା ନିଜ ଆକୃତିରେ ମନୁଷ୍ୟ ଗଢ଼ି ନାହାଁନ୍ତି । ସୁତରାଂ ଆମ୍ଭେମାନେ ବେଦଠାରୁ ଆରମ୍ଭ କରି ଉପନିଷଦ୍ ଯୁଗ ପର୍ଯ୍ୟନ୍ତ ବିଷ୍ଣୁରୂପୀ ସୂର୍ଯ୍ୟର କିଞ୍ଚିତ୍ ରୂପାନ୍ତର ଦେଖୁଅଛୁଁ । ଏତିକି ନୁହେଁ। ବୈଦିକ ବିଷ୍ଣୁ ପୌରାଣିକ ଯୁଗରେ କିପରି ନରାକୃତି ଲାଭ କରି ସମସ୍ତ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ଲାଭ କଲେ, ତାହା ବର୍ତ୍ତମାନ ଆଲୋଚନାର ବିଷୟ ।

ପାଠକଗଣ ଦେଖି ପାରିଲେ ଯେ ବେଦର ବିଷ୍ଣୁ ବିବାହିତ ନ ଥିଲେ, ଏଣୁ ଲକ୍ଷ୍ମୀ ତାହାଙ୍କ ପଟ୍ଟମହିଷୀ ନ ଥିଲେ । ଲକ୍ଷ୍ମୀଙ୍କ ନାମ ବେଦରେ ନାହିଁ । ବେଦର ବିଷ୍ଣୁ, ବନମାଳୀ ନୁହନ୍ତି, କୁଣ୍ଡଳ, କିରୀଟ, ଶଙ୍ଖ, ଚକ୍ର ଗଦା, ପଦ୍ମ ଧାରଣ କରି ନାହାନ୍ତି । ବେଦରେ ଏ ସମସ୍ତର ଉଲ୍ଲେଖ ନ ଥିବାରୁ ପୁରାଣଯୁଗରେ କେବଳ ବିଷ୍ଣୁ ଏ ସମସ୍ତ ଭକ୍ତମାନଙ୍କଠାରୁ ପାଇଥିବାର ଅନୁମାନ ହୁଏ ।

ସୂର୍ଯ୍ୟ ଦେବତାମାନଙ୍କ ଉପରେ ସର୍ବୋତ୍କୃଷ୍ଟ । ବିଷ୍ଣୁ ସୂର୍ଯ୍ୟର ନାମାନ୍ତର; ଏଣୁ ବିଷ୍ଣୁ, ଦେବତାମାନଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ । ସୂର୍ଯ୍ୟ ନାମ ଅତିସାଧାରଣ ଏବଂ ସମସ୍ତଙ୍କର ବୋଧଗମ୍ୟ; ସୂର୍ଯ୍ୟ ନାମ ପ୍ରକାଶ୍ୟ ଓ ସମସ୍ତଙ୍କର ପରିଚିତ । ମାତ୍ର ସୂର୍ଯ୍ୟଙ୍କର ବିଷ୍ଣୁ ଓ ଅପର କେତୋଟି ନାମ ସେପରି ନୁହେଁ । ବିଷ୍ଣୁ ଶବ୍ଦର ବ୍ୟାପକତ୍ୱ ଅର୍ଥ ଥିବାରୁ, ବିଷ୍ଣୁର ତ୍ରିପାଦବିକ୍ଷେପ ପ୍ରସଙ୍ଗ ବାରମ୍ବାର ବେଦରେ ପ୍ରକାଶିତ ଥିବାରୁ ଏକ ଶ୍ରେଣୀର ଋଷିଗଣ କ୍ରମେ ବିଷ୍ଣୁଙ୍କୁ ସୂର୍ଯ୍ୟଠାରୁ ସ୍ୱତନ୍ତ୍ର ବୋଲି ମନେ କଲେ ଏବଂ ସୂର୍ଯ୍ୟଙ୍କର ଯାବତୀୟ ଆଖ୍ୟା ବିଷ୍ଣୁଙ୍କୁ ଦେଲେ । କଳନାଯୋଗ୍ୟ, ପ୍ରମେୟ, ଦର୍ଶନସୁଲଭ, ଜଡ଼ପଦାର୍ଥରେ ଦେବବିଶ୍ୱାସ ଥିଲେ ସୁଦ୍ଧା ତାହା ସମୟ ସମୟରେ ଶିଥିଳ ହୋଇପଡ଼େ । ଏଣୁ ସେହି ସେହି ବସ୍ତୁରେ ଅଧିଷ୍ଠାତ୍ରୀ ଦେବତାର ଆରୋପ କଲେ । କେତେକ ସ୍ଥଳରେ ଅଧିଷ୍ଠାତ୍ରୀ ଦେବତା ଅନ୍ତର୍ନିହିତ ରହିଲେ, କେତେକ ସ୍ଥଳରେ ସ୍ୱତନ୍ତ୍ର ବୋଲି ବିବେଚିତ ହେଲେ । ଏ ସ୍ଥଳରେ ସୂର୍ଯ୍ୟଠାରୁ ବିଷ୍ଣୁ ସ୍ୱତନ୍ତ୍ର ବୋଲି ବିବେଚିତ ହେଲେ, ଅଥଚ ସୂର୍ଯ୍ୟଙ୍କର ସମ୍ପୂର୍ଣ୍ଣ ବୈଦିକ ଆଖ୍ୟା ପ୍ରାପ୍ତ ହେଲେ । କେତେ କାଳରେ ମନୁଷ୍ୟ ମନରେ ଏ ପରିବର୍ତ୍ତନ ଘଟିଲା, ତାହା କୁହାଯାଇ ନ ପାରେ; ମାତ୍ର ଏହି ପ୍ରକାର ଭାବରେ ଯେ ପରିବର୍ତ୍ତନ ହୋଇଅଛି, ତହିଁରେ ସନ୍ଦେହ ନାହିଁ।

ପୁରାଣ ଯୁଗକୁ କଳ୍ପନାର ଯୁଗ ବୋଲା ଯାଇପାରେ । ଏ ଯୁଗର ମୂଳମନ୍ତ୍ର "ନୂତନ ଗୋଟାଏ କିଛି କର, ବେଦର ଦୋହି ଦିଅ, କଳ୍ପନାତୂଳିକା ଧରି ଏବଂ ନିଜ ଇଚ୍ଛାନୁସାରେ ହସ୍ତପଦବିଶିଷ୍ଟ ରୂପ ଅଙ୍କନ କର ଏବଂ ଚିତ୍ର କର ।"

ଯାହା କିଛି ତୟାର କରିବ, ତାହାର ହାତ ଗୋଡ଼ ଥିବା ଆବଶ୍ୟକ, ବୁଦ୍ଧି ଥିବା ଆବଶ୍ୟକ, କ୍ଷମତା ଥିବା ଆବଶ୍ୟକ । ନରାକୃତି ନ ହେଲେ କିଛି ଗଢ଼ିବାର ସମ୍ଭବପର ନୁହେଁ । ଏଣୁ ଦେବତାର ନରାକୃତି ହେବା ପ୍ରୟୋଜନ । ସୁତରାଂ ବିଷ୍ଣୁଙ୍କୁ ନରାକୃତି କରି କଳ୍ପନା-ତୂଳିକାରେ ଚିତ୍ରିତ କଲେ, ବିଷ୍ଣୁଙ୍କର ନୂତନ ରୀତିରେ ନାମକରଣ କଲେ, କ୍ରମେ ଦଶ, ଶତ ଓ ସହସ୍ର ନାମ ଦେଲେ; ବିଷ୍ଣୁ କ୍ରମେ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେଲେ । ବଟପଟଶାୟୀ ହେଲେ, ନାଭିକମଳରୁ ବ୍ରହ୍ମା ଜାତ ହେଲେ, ବେଦର ସୂର୍ଯ୍ୟରୂପୀ ବିଶ୍ୱକର୍ମା ଓ ପ୍ରଜାପତି ପୁରାଣର ବ୍ରହ୍ମା ହେଲେ ଏବଂ ଜଗତ୍ ସୃଷ୍ଟି କଲେ । ବିଷ୍ଣୁ 'ଧର୍ମସଂସ୍ଥାପନାର୍ଥାୟ' ଯୁଗେ ଯୁଗେ ଜନ୍ମ ଗ୍ରହଣ କରି ଦୁଷ୍ଟ ଦମନ ଓ ଶିଷ୍ଟ ପାଳନ କଲେ । ପାଠକଗଣ ଭାରତ ଭାଗବତ ପ୍ରଭୃତି ପୁରାଣ ଓ ଉପପୁରାଣ ପ୍ରଭୃତିରୁ ବିଷ୍ଣୁଙ୍କର ସମସ୍ତ ବିଷୟ ଅବଗତ ହୋଇଅଛନ୍ତି । ଏଠାରେ ସେସବୁର ପୁନରାଲୋଚନା କରିବାର ପ୍ରୟୋଜନ ନାହିଁ । ପ୍ରତ୍ୟେକ ପୁରାଣରେ ବିଷୟଟି ଠିକ୍ ଏକପ୍ରକାର ଭାବରେ ଲିଖିତ ଅଛି, ତାହା ନୁହେଁ; ଟିକିଏ ଅଧେ ପ୍ରଭେଦ ଅଛି; ତାହାର କାରଣ

ବିଭିନ୍ନ ଲେଖକଗଣ ଆପଣା ଆପଣା ମତାନୁସାରେ ସେପରି କରିଅଛନ୍ତି ।

ପୁରାଣର ବିଷ୍ଣୁଙ୍କୁ ପୌରାଣିକଗଣ ବୈଦିକ ବିଷ୍ଣୁ ଓ ସୂର୍ଯ୍ୟଠାରୁ ଯେତେ ସ୍ୱତନ୍ତ୍ର ଭାବରେ ଗଠିତ କରିବାକୁ ଚେଷ୍ଟା କଲେ ମଧ ଅଦ୍ୟାପି ସୂର୍ଯ୍ୟର ରୂପ ଅନ୍ତର୍ନିହିତ ଥିବାର ଦେଖା ଯାଉଅଛି । ସୂର୍ଯ୍ୟର ବର୍ଣ୍ଣ ଘୋଡ଼ାଇବାକୁ ଗାଢ଼ ନୀଳ ରଙ୍ଗ ଚଢ଼ାଇଲେ ମଧ, ଅଦ୍ୟାପି ହିରଣ୍ମୟ କବଚର ରଙ୍ଗ ଫୁଟି ଦିଶୁଅଛି । ବାଳ ସୂର୍ଯ୍ୟର ଅରୁଣବର୍ଣ୍ଣ, ମଧାହ୍ନ ସୂର୍ଯ୍ୟର ଶ୍ୱେତବର୍ଣ୍ଣ ଅଦ୍ୟାପି ବିଷ୍ଣୁ ଦେହରେ ଫୁଟି ଦିଶୁଅଛି ।

ସନ୍ଧ୍ୟା ହିଁ ଜାତିର ନିତ୍ୟକର୍ମ । ତିନି କାଳରେ ସନ୍ଧ୍ୟା କରିବାର ବିଧି । ସନ୍ଧ୍ୟା କହିବାକୁ ଗଲେ ତିନି ଅବସ୍ଥାରେ ସୂର୍ଯ୍ୟ ଉପାସନା ଭିନ୍ନ ଅନ୍ୟ କିଛି ନୁହେଁ । ସନ୍ଧ୍ୟା ମଧରେ ଗାୟତ୍ରୀ, ହଂସ ଗାୟତ୍ରୀ ପ୍ରଭୃତି ଅଧିକାଂଶ ମନ୍ତ୍ର ସୂର୍ଯ୍ୟସ୍ତୁତି ମାତ୍ର । କେବଳ ଧ୍ୟାନରେ ଗୋଟିଏ ନାରାୟଣ ରୂପର କଳ୍ପନା କରିବାକୁ ହୁଏ ।

ସୂର୍ଯ୍ୟଙ୍କର ଦୈନିକ ଗତିର ତିନି ଅବସ୍ଥାକୁ ବିଷ୍ଣୁଙ୍କର ତ୍ରିପାଦବିକ୍ଷେପ ବୋଲାଯାଏ । ଏଥିରୁ ବାମନ ଅବତାରର କଳ୍ପନା । ଶତପଥ ବ୍ରାହ୍ମଣରେ ଏଥିରେ ପ୍ରଥମ ଆଭାସ ମିଳେ । ଏହିପରି ବିଷ୍ଣୁଙ୍କର ଅନ୍ୟାନ୍ୟ ଅବତାରର ବିବରଣ ବୈଦିକ ଉପାଖ୍ୟାନରୁ ରଚିତ ହୋଇଅଛି । ରାମାୟଣ ଓ ମହାଭାରତ ଅକ୍ଷରେ ଅକ୍ଷରେ ଐତିହାସିକ ସତ୍ୟ, ତାହା ନୁହେଁ । ବୈଦିକ ଉପାଖ୍ୟାନରୁ ଏହି ଦୁଇ କାବ୍ୟର ବା ପୁରାଣର ଅଧିକାଂଶ ଗଳ୍ପ ରଚିତ । ପାଠକଗଣ ଆଲୋଚନା କଲେ ଏଥିରେ ଯାଥାର୍ଥ୍ୟ ହୃଦୟଙ୍ଗମ କରିପାରିବେ ।

ବୁଦ୍ଧଙ୍କୁ ବିଷ୍ଣୁଙ୍କର ଅବତାର କରିବାକୁ ବସିଥିଲେ । କଳିଯୁଗର ମଧଭାଗରେ ଏହାଙ୍କର ଜନ୍ମ । ଏଣୁ ତାହାଙ୍କର କୃତ୍ରିମ ମାହାତ୍ମ୍ୟ ବଢ଼ାଇବାକୁ ଅବସର ମିଳିଲା ନାହିଁ। ଏଣୁ ବୌଦ୍ଧ ଧର୍ମକୁ ଦେଶାନ୍ତରିତ କଲେ । ଆପଣାର ସ୍ୱାର୍ଥ ସାଧନୋପଯୋଗୀ କେତୋଟି ବିଷୟ ହିନ୍ଦୁଧର୍ମର ଅନ୍ତର୍ଭୂତ କରି ରଖିବାକୁ ବାଧ ହେଲେ । ଜଗନ୍ନାଥ ପ୍ରଚ୍ଛନ୍ନ ବୌଦ୍ଧାବତାର, ମାତ୍ର-ପ୍ରକାଶ୍ୟ ବିଷ୍ଣୁ ରୂପ । ଜଗନ୍ନାଥଙ୍କ ନାଭିକମଳରେ କୃଷ୍ଣଙ୍କର ଦହନାବଶେଷ ଥିବାର ଲୋକେ କହନ୍ତି । କୃଷ୍ଣଙ୍କର କିଛି ଅଂଶ ଥାଉ ବା ବୁଦ୍ଧଙ୍କର କିଛି ଅଂଶ ଥାଉ, ଏହାଙ୍କଠାରେ ବିଷ୍ଣୁଙ୍କ ଅବତାରର ଶେଷ ହେଲା ବୋଲାଯିବ । କାରଣ କଳ୍କି ଅବତାର କଥା ପୁରାଣରେ ଏବଂ କାନ୍ଥର ଚିତ୍ରରେ ରହିଲା। ତେବେ ଅଳ୍ପଦିନ ହେଲା ଉତ୍କଳ ଦେଶରେ ଜଣେ ନୂତନ ଗଞ୍ଜିକାସେବନକାରୀ ବିଷ୍ଣୁଙ୍କର ଉତ୍ପତ୍ତି ହୋଇଅଛି । ଏହାଙ୍କ ପ୍ରତିପତ୍ତି ବଡ଼ ବେଶି ବଢୁଅଛି । ଏହି ଗଞ୍ଜୋଡ଼ ବିଷ୍ଣୁ ଯଦି ପ୍ରକୃତ କଳିଯୁଗର ଶେଷ ଅବତାର, ତାହା ହେଲେ ବିଷ୍ଣୁଙ୍କର ଦଶ ଅବତାର କିମ୍ବା ଭାଗବତ ମତରେ ବିଷ୍ଣୁଙ୍କର ଏକବିଂଶ ଅବତାରର ସାଙ୍ଗ ହେଲା । ଏଣିକି ଆଉ ପ୍ରୟୋଜନ ନାହିଁ । ବିଷ୍ଣୁଙ୍କର ଯଥେଷ୍ଟ ରୂପ ପରିବର୍ତ୍ତନ ଓ ସମ୍ମାନ ହୋଇଅଛି । ତାହାଙ୍କର ଅସଂଖ୍ୟ ମନ୍ଦିର ନିର୍ମିତ ହୋଇଅଛି । ବିଷ୍ଣୁଗ୍ରହର ତ ସୀମା ନାହିଁ । ଆଉ ଅବତାର ନୋହିଲେ ମଙ୍ଗଳ । ଆଗରୁ ମନ୍ଦିର ପରିପୂର୍ଣ୍ଣ । ଏ ଦେଶରେ ଗୋପାଳଜୀ, ଗୋବିନ୍ଦଜୀ, ନୃସିଂହଜୀ ପ୍ରଭୃତି ମନ୍ଦିରଦ୍ୱାରା ଅଧିକ ସ୍ଥାନାବରୋଧ ନୋହିଲେ ମଧ ମଙ୍ଗଳ । (ତେବେ ଅର୍ଥ ଅର୍ଥରେ ଦୀର୍ଘକାଳ ନାମ ରକ୍ଷା କରିବାର ଯେବେ ଦେଉଳନିର୍ମାତାଙ୍କ ଅଭିପ୍ରାୟ, ତେବେ ସ୍ୱତନ୍ତ୍ର କଥା ।)

●

## ବ୍ରାହ୍ମଣେଭ୍ୟୋ ନମୋନମଃ
## (ତାଳଚେର ବ୍ରାହ୍ମଣ ସମିତିରେ ପଠିତ)

ମୁଁ ଆପଣମାନଙ୍କରେ ଅପରିଚିତ ନୁହେଁ, ଏଣୁ ଆପଣମାନଙ୍କ ନିକଟରେ ଗୋଟିଏ ନିବେଦନ କରିବାକୁ ସାହସୀ ହୋଇଅଛି।

ଆପଣମାନେ ବ୍ରାହ୍ମଣ, ଆପଣମାନେ ଉପଦେଷ୍ଟା, ସୁତରାଂ ଆପଣମାନଙ୍କୁ ଉପଦେଶ ଦେବାକୁ ଯିବା ଧୃଷ୍ଟତା ମାତ୍ର, ମୋର ଆସ୍ପର୍ଦ୍ଧା ଆଦୌ ନାହିଁ। ପ୍ରାର୍ଥନା କରିବାର ସ୍ୱାଧୀନତା ସମସ୍ତଙ୍କର ଅଛି। ଏଣୁ ବିନୟାବନତ ହୋଇ ନିମ୍ନୋକ୍ତ ପ୍ରାର୍ଥନା କରୁଅଛି। ମୋର ଏହି ପ୍ରାର୍ଥନା ଆପଣମାନଙ୍କର ଆଲୋଚନାର ବିଷୟ ହେଲେ ଆପଣମାନଙ୍କଠାରେ ନିଜକୁ ଚିରକୃତଜ୍ଞ ମନେ କରିବି। ଏବଂ ଏହି ପ୍ରସ୍ତାବ କାର୍ଯ୍ୟରେ ପରିଣତ କଲେ ଇହ ଜୀବନକୁ ସାର୍ଥକ ମନେ କରିବି। ଆପଣମାନଙ୍କର ସମିତି ଅନେକ ଦିନ ହେଲା ପ୍ରତିଷ୍ଠିତ ହୋଇ ସମାଜ ସଂସ୍କାର କରିବାକୁ ଅଗ୍ରସର ହୋଇଅଛି। ମହତ ସହାୟ ଓ ପୃଷ୍ଠପୋଷକ ପାଇ ଅନେକଗୁଡ଼ିଏ ସାମାଜିକ ଉନ୍ନତି କରିବା କଳ୍ପନାରେ ଦୃଢ଼ପ୍ରତିଜ୍ଞ ହୋଇଅଛି। ଏପରି ଅବସ୍ଥାରେ ମୋର ପ୍ରସ୍ତାବ ଆପଣମାନଙ୍କର ଅନୁମୋଦନ ଯୋଗ୍ୟ ହେବ ବୋଲି ମୋର ଦୃଢ଼ ବିଶ୍ୱାସ।

ଆପଣମାନେ ଶାସ୍ତ୍ରଜ୍ଞ, ସୁତରାଂ ପ୍ରାଚୀନ ଆର୍ଯ୍ୟ ଗ୍ରନ୍ଥମାନଙ୍କରୁ ବାଲ୍ୟବିବାହ ବିରୋଧାତ୍ମକ ଉଦାହରଣ ଦେବା ନିଷ୍ପ୍ରୟୋଜନ। ଆପଣମାନେ ବେଦ ଓ ଅତି ପ୍ରାଚୀନ ଧର୍ମଶାସ୍ତ୍ରମାନ ଅଧ୍ୟୟନ କରି ହୃଦୟଙ୍ଗମ କରିଅଛନ୍ତି ଯେ ବୈଦିକ ଓ ପ୍ରାଚୀନ ସମାଜ ଆଧୁନିକ ସମାଜ ପରି ବାଲ୍ୟ ବିବାହର ପକ୍ଷପାତୀ ନ ଥିଲା ଏବଂ ସେ କାଳରେ ବିବାହର ଆଦୌ ପ୍ରଚଳନ ନ ଥିଲା। ଆପଣମାନେ ଅବଶ୍ୟ ହୃଦୟଙ୍ଗମ କରିଅଛନ୍ତି ଯେ ବିବାହ ସମୟରେ ବର ଯେଉଁ ବେଦମନ୍ତ୍ର ଉଚ୍ଚାରଣ କରେ ସେହି ମନ୍ତ୍ରଗୁଡ଼ିକ କେବଳ ଯୁବତୀ କନ୍ୟା ପ୍ରତି ପ୍ରଯୁଜ୍ୟ ହେବା ସୁସଙ୍ଗତ।

ବାଲ୍ୟବିବାହ ରୂପ ଦୁଷ୍ଟକୀଟ କେଉଁ କାଳରେ ସମାଜକୁ ପ୍ରବେଶ କଲା ତାହା ଠିକ୍ ରୂପେ କୁହାଯାଇ ନ ପାରେ ତେବେ ଉନ୍ନତ୍ୟୁନ୍ମୁଖ ଆର୍ଯ୍ୟ ଜାତିର ଅଭ୍ୟୁଦୟ ପ୍ରାରମ୍ଭରୁ ଆଜିଯାଏ ତୁଳନା କରି ଦେଖିଲେ ବାଲ୍ୟବିବାହ ପ୍ରଥାର ପ୍ରଚଳନ ଅତି ଆଧୁନିକ ବୋଲିବା ଅସଙ୍ଗତ ନୁହେଁ। ତଥାପି ଏହି ପ୍ରଥା ସମାଜ ମଧ୍ୟରେ ଏପରି ଅଧିକାର କରି ବସିଅଛି ଯେ ସମାଜ ତହିଁରୁ ମୁକ୍ତିଲାଭ କରିବାକୁ ତିଳେସୁଦ୍ଧା ଯତ୍ନଶୀଳ ହେଉ ନାହିଁ, ଏହି ବିଷବୃକ୍ଷକୁ ଆଦର ସହକାରେ ବଞ୍ଚାଇ ରଖିବାର ବୃକ୍ଷ ବର୍ତ୍ତମାନ ବର୍ଦ୍ଧିତ ହୋଇ ସମାଜରେ ବିଷମୟ ଫଳ ଦାନ କରି ସମାଜର ଅନିଷ୍ଟ କରୁଅଛି ତଥାପି ତାହା ମୂଳୋତ୍ପାଟନ କରିବାକୁ ସମାଜ ଚେଷ୍ଟିତ ହେଉ ନାହିଁ।

ଏହି ପ୍ରଥାଦ୍ୱାରା ସମାଜର ଯେପରି ଅନିଷ୍ଟ ସାଧିତ ହେଉଛି। ତାହା ସମସ୍ତେ ପ୍ରତ୍ୟକ୍ଷ କରିପାରୁ ନାହାନ୍ତି। ତାହା ଚର୍ବିତ ଚର୍ବଣ କରିବାର ନିଷ୍ପ୍ରୟୋଜନ ଚିରଦୁଃଖିନୀ ବାଲ୍ୟ ବିଧବାର ଜନକ ଜନନୀର ଉଦ୍‌ବାହ ସୂତ୍ରରେ ଆବଦ୍ଧ ଅନୁରୂପ ବରକନ୍ୟାଙ୍କର ଜନକ ଜନନୀ ଏହି ପ୍ରଥାର ବିଷମୟ ଫଳ ଭୋଗ କରୁଥିବାର ସାକ୍ଷ୍ୟ ପ୍ରଦାନ କରିବେ।

ସତୀଦାହ ପ୍ରଥା ରହିତ କଲାବେଳେ ବ୍ରାହ୍ମଣଗଣ ଘୋରତର ପ୍ରତିବାଦ କରୁଥିଲେ। ଲୋକେ ସେହି ପ୍ରଥାରେ ଅଭ୍ୟସ୍ତ ଥିବାରୁ ଗର୍ଭଧାରିଣୀକୁ ମଧ୍ୟ ଜ୍ୱଳନ୍ତା ଅଗ୍ନି ମଧ୍ୟରେ ନିକ୍ଷେପ କରିବାକୁ ତିଳେ ମାତ୍ର କୁଣ୍ଠିତ ହେଉ ନ ଥିଲେ। ସମାଜରେ ପ୍ରଶଂସା ଲାଭ କରିବା ନିମନ୍ତେ ଜନନୀର ଅସହ୍ୟ ଯନ୍ତ୍ରଣା ସେମାନଙ୍କର ହୃଦୟକୁ ତିଳେମାତ୍ର ବିଚଳିତ କରିପାରୁ ନ ଥିଲା। ସେ ସମୟରେ ଏହା ପାପ ଏହା ନୃଶଂସ ବ୍ୟାପାର ବୋଲି ହୃଦୟରେ ସ୍ଥାନ ପାଉ ନ ଥିଲା। ମନୁଷ୍ୟ ସଂସ୍କାରର ଦାସ ଆଜି ଏହି ପ୍ରଥା ରହିତ ହୋଇଅଛି। ପଚାରନ୍ତୁ କେଉଁ ପଶୁ କେଉଁ ନୃଶଂସ ନରାଧମ ଏହି ପ୍ରଥାକୁ ସୁପ୍ରଥା ବୋଲି ପ୍ରକାଶ କରିବ।

ତେମନ୍ତ ବାଲ୍ୟବିବାହ ରହିତ ହେଉ ଆମ୍ଭମାନଙ୍କର ବଂଶଧରଗଣ ଏହି ବାଲ୍ୟବିବାହକୁ ଶତମୁଖରେ ନିନ୍ଦା କରିବେ ଏବଂ ଯୁବତୀ ବିବାହ ପ୍ରବର୍ତ୍ତକମାନଙ୍କର ଗୁଣଗାନ କରିବେ।

ମୋର ହୃଦଗତ ଭାବସମୂହ ଆପଣମାନଙ୍କ ସମକ୍ଷରେ ପ୍ରକାଶ କରିବାକୁ ମୋର ସୌଭାଗ୍ୟ ନାହିଁ ଏବଂ ଲେଖାଦ୍ୱାରା ତାହା ଜଣାଇପାରିବି। ଏପରି ଅବସର ମଧ୍ୟ ମିଳିଲା ନାହିଁ ମୋର ହୃଦ୍‌ଗତଭାବ ହୃଦୟରେ ରହିଅଛି। ସମସ୍ତ ପ୍ରକାଶ କରିବାକୁ ଅକ୍ଷମ ହେତୁ ଆପଣାଙ୍କୁ ଦୁର୍ଭାଗ୍ୟ ମନେ କରୁଅଛି। ଆପଣମାନେ ବିଜ୍ଞ ଏଣୁ ଅଧିକ ଜଣାଇବା ନିଷ୍ପ୍ରୟୋଜନ କେବଳ ନିମ୍ନୋକ୍ତ ପ୍ରସ୍ତାବ ଉପସ୍ଥିତ କଲେ ଯଥେଷ୍ଟ ବୋଲି ମନେ କରୁଅଛି।

୧. ''ବାଲ୍ୟ ବିବାହ ରହିତ ହେଉ''

ନୋହିଲେ

୨. ''ଯେଉଁଦିନ ଯୁବତୀ ବିବାହ ହେବେ ସେମାନଙ୍କୁ ସମାଜରୁ ଅନ୍ତର କରା ନ ଯାଉ।''

ନୋହିଲେ

୩. ଦ୍ୱାଦଶ ବର୍ଷରୁ ନିମ୍ନ ବୟସ୍କ ବାଳିକାଙ୍କୁ ବିବାହ ଦେବାର ପ୍ରଥା ରହିତ କରାଯାଉ।

ଅବଶେଷରେ ଏହି ପ୍ରାର୍ଥନା ଯେ ଆପଣମାନେ ନିଜ ଉଦାର ଗୁଣରେ କ୍ଷମା ଦେବା ହେବେ। ଏଥର ଏ ପ୍ରସ୍ତାବ ମୋର ଦୁର୍ଭାଗ୍ୟ ହେତୁ ଗୃହୀତ ନ ହେଲେ ପୁନଃ ପୁନଃ ଆପଣମାନଙ୍କ ସମାଜରେ ମୋର ପ୍ରାର୍ଥନା ଶୁଣାଯିବାର ଅନୁମତି ଦେବେ।

●

## ଭଗବଦ୍‌ଗୀତା

ଭଗବଦ୍‌ଗୀତା ଅତି ଉପାଦେୟ ପୁସ୍ତକ । ଏ ସାର୍ଟିଫିକେଟ୍ ମୋର ନୁହେଁ । ଅତି ପ୍ରାଚୀନ କାଳରୁ ବିଜ୍ଞଲୋକମାନେ ଏହି ସାର୍ଟିଫିକେଟ ଦେଇ ଆସୁଅଛନ୍ତି। ବର୍ତ୍ତମାନ କାଳର ବିଜ୍ଞଲୋକେ ଓ ଅନେକ ପାଶ୍ଚାତ୍ୟ ପଣ୍ଡିତ ଏହି ସାର୍ଟିଫିକେଟ ଦେଉଅଛନ୍ତି । ପୁସ୍ତକର ଉପାଦେୟତା ସମ୍ବନ୍ଧରେ କିଏ ପ୍ରତିବାଦ କରିବ ? 'ମହାଜନୋ ଯେନ ଗତଃ ସ ପନ୍ଥାଃ ।' ସୁତରାଂ ଅଜ୍ଞ ଲୋକେ ସେହି ପଥର ପଥିକ

ହେବାକୁ ବାଧ । ତେବେ ଭଗବଦ୍‌ଗୀତାର ଅନ୍ୟ ପ୍ରସଙ୍ଗ ନେଇ ଦୁଇ ଚାରି କଥା ଲେଖିବାକୁ ମନ ବଳୁଅଛି । ସର୍ବଜନ ସମକ୍ଷରେ ଆତ୍ମସନ୍ଦେହ ପ୍ରକାଶ କଲେ ଦୁର୍ବହ ଭାରରୁ ରକ୍ଷା ମିଳେ । ଏଣୁ ମନର ଅଶାନ୍ତି ଦୂରୀକରଣାର୍ଥେ ଏ କ୍ଷୁଦ୍ର ପ୍ରବନ୍ଧର ଅବତାରଣା କରୁଅଛି; ସମାଲୋଚନା ନିମନ୍ତେ ନୁହେଁ । ପାଠକଗଣ ଦିବ୍ୟ ଅବଧାନରେ ଏହାର ତଥ୍ୟାତଥ୍ୟ ଆଲୋଚନା କରିବେ ଏବଂ 'ଛୋଟ ମୁହଁରେ ବଡ଼ କଥା' ବୋଲି ହେୟ କରିବେ ନାହିଁ ଏହି ପ୍ରାର୍ଥନା ।

ଭଗବଦ୍‌ଗୀତା ପର୍ବ ଗୋଟିଏ ସ୍ୱତନ୍ତ୍ର ଗ୍ରନ୍ଥ ନୁହେଁ । ଏହା ମହାଭାରତ ଅନ୍ତର୍ଭୁକ୍ତ ଭୀଷ୍ମପର୍ବର ଉପପର୍ବ— ଅର୍ଥାତ୍ ସେହି ଅଂଶ ଉଠାଇଦେଲେ ମୂଳପର୍ବର ବିଷୟ ପରମ୍ପରାରେ କୌଣସି ଅସଙ୍ଗତି ଘଟିବ ନାହିଁ ।

କୁରୁକ୍ଷେତ୍ରର ରଣକ୍ଷେତ୍ରରେ ଯୁଦ୍ଧୋଦ୍ୟତ ଉଭୟ ପକ୍ଷୀୟ ଯୋଦ୍ଧୃଗଣ ଅସ୍ତ୍ର ନିକ୍ଷେପ କରିବାକୁ ଉଦ୍ୟୋଗ କଲାବେଳେ ମଧ୍ୟମ ପାଣ୍ଡବ ଅର୍ଜୁନ ହଠାତ୍ ବେପଥୁଯୁକ୍ତ ହୋଇ ଯୁଦ୍ଧ କରିବାକୁ ଅସ୍ୱୀକାର କରିବାରୁ ଚକ୍ରୀ କୃଷ୍ଣ ଉପଦେଶ ଦେଇ ତାହାଙ୍କୁ ସାହସଯୁକ୍ତ ଓ ଉତ୍ସାହିତ କରୁଅଛନ୍ତି । ଭଗବଦ୍‌ଗୀତାର ବ୍ୟାଖ୍ୟାନ ସ୍ଥଳ ରଣକ୍ଷେତ୍ରରେ କୌରବ ସୈନ୍ୟ ସମ୍ମୁଖୀନ ନନ୍ଦିଘୋଷ ରଥ । କୃଷ୍ଣ ନନ୍ଦିଘୋଷ ରଥରେ ଉପବେଶନ କରି ବିଷାଦଯୁକ୍ତ ଅର୍ଜୁନଙ୍କୁ ୩ ।୪ ଘଣ୍ଟା କାଳ ସାଂଖ୍ୟଯୋଗ, ଭକ୍ତିଯୋଗ, ଜ୍ଞାନଯୋଗ ପ୍ରଭୃତି ଉପଦେଶ ପ୍ରଦାନ କରୁଅଛନ୍ତି, ବିରାଟ ରୂପ ଦେଖାଉଅଛନ୍ତି, ନିଜର କୃତିତ୍ୱ ବୁଝାଉଅଛନ୍ତି ଏବଂ ଶତ୍ରୁପକ୍ଷୀୟ ମହାରଥୀଗଣ ଅସ୍ତ୍ରଶସ୍ତ୍ର ଧାରଣ କରି, ଏମନ୍ତ କି, ଧନୁରେ ଶର ଯୋଜନା କରି ମଧ୍ୟ ଆକାଶ ଆଡ଼କୁ ଅନାଇ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଅଛନ୍ତି । କାହିଁକି ? ରଥୀ କ୍ଷତବିକ୍ଷତ ହେଲେ, ମୂର୍ଚ୍ଛିତ ହେଲେ ସାରଥି ସେବା ଶୁଶ୍ରୂଷା କରିବା, ସାନ୍ତ୍ୱନା କରିବା କର୍ତ୍ତବ୍ୟ । ଏଣୁ କୃଷ୍ଣ ଅର୍ଜୁନଙ୍କୁ ବେପଥୁଯୁକ୍ତ ଦେଖି ଉପଦେଶ ଦେଇପାରନ୍ତି, ପାଣ୍ଡବବୀର ଦୁଇ ଚାରି ଜଣ ସହାନୁଭୂତି ଦେଖାଇ ପାରନ୍ତି, କିମ୍ବା କାରଣ ଜାଣିବା ନିମନ୍ତେ ଯୁଦ୍ଧରୁ କିଛିକ୍ଷଣ ବିରତ ହୋଇପାରନ୍ତି । ରଣଭେରୀ ବାଜିଲା, ବୀରମାନେ ନିଜ ନିଜ ଶୁଭଶଙ୍ଖ ବଜାଇଲେ, ଅସ୍ତ୍ର ସମ୍ପାତ ନିମନ୍ତେ ପ୍ରବୃତ୍ତ ହେଲାରୁ ଅର୍ଜୁନ ବେପଥୁଯୁକ୍ତ ହେଲେ ବୋଲି ଅନ୍ୟ ବୀରମାନେ କାହିଁକି ଯୁଦ୍ଧରୁ ବିରତ ହେବେ, ବିପକ୍ଷ ଦଳ କାହିଁକି ଆପଣା ଧନୁର ଶର ଓହ୍ଲାଇ ତୂଣୀରରେ ରଖିଦେବେ ଏବଂ ଏତେ ଦୀର୍ଘକାଳ ଯୁଦ୍ଧକ୍ଷେତ୍ରରେ ଚିତ୍ରପୁତ୍ତଳିକା ତୁଲ୍ୟ ଦଣ୍ଡାୟମାନ ହୋଇରହିବେ ? ଅର୍ଜୁନ ପ୍ରଥମେ ଶର ନିକ୍ଷେପ କଲେ ଶତ୍ରୁପକ୍ଷୀୟ ମହାରଥୀଗଣ ପ୍ରତିଶର କରିବେ, ଏପରି କୌଣସି ଚୁକ୍ତି ଥିଲା କି ? ତାହା ତ ଜଣାପଡୁ ନାହିଁ ।

ମହାଭାରତ ମଧ୍ୟରେ ଭଗବଦ୍‌ଗୀତା ସନ୍ନିବେଶିତ କରାଯିବ ବୋଲି ଅର୍ଜୁନଙ୍କ ବେପଥୁ ବିଷାଦ ଓ ରୋମାଞ୍ଚ ହେଲା, କି ଅର୍ଜୁନଙ୍କର ବେପଥୁ ହେବାରୁ ଭଗବଦ୍‌ଗୀତା ପଦ୍ମନାଭଙ୍କ ମୁଖପଦ୍ମରୁ ବିନିଃସୃତ ହେଲା ? ଏହା ଆଲୋଚନାର ବିଷୟ । ଯୁଦ୍ଧରେ ପ୍ରବୃତ୍ତ ହେଲା ଉତ୍ତାରୁ ଏପରି କାତରୋକ୍ତି ଅର୍ଜୁନଙ୍କ ପକ୍ଷରେ କଦାପି ଶୋଭନୀୟ ନୁହେଁ । ହେଲେ ଏହା ଅର୍ଜୁନଙ୍କର ପଛବୁଦ୍ଧିର ପରିଚାୟକ ନୁହେଁ କି ? ଯେତେବେଳେ ଯୁଦ୍ଧମନ୍ତ୍ରଣା ହେଲା, ଯୁଦ୍ଧର ଆୟୋଜନ ହେଲା, ସେତେବେଳେ ଅର୍ଜୁନ ଆତ୍ମୀୟନିଧନ କଥା ଭାବି ନ ଥିଲେ କି ? ଗୁରୁଜନ ବଧ, କୁଳକ୍ଷୟ, ଅନେକାନେକ ମହାପ୍ରାଣୀବଧ ଭାବନା କେଉଁଆଡ଼େ ଥିଲା ? ଠିକ୍ ଯୁଦ୍ଧବେଳେ ସମରସଜ୍ଜାରେ ସଜ୍ଜିତ ବୀରମାନଙ୍କ ସମକ୍ଷରେ ଏ ଭାବର କିପରି ଉଦୟ ହେଲା ? ଯେତେବେଳେ ଅବସର ନାହିଁ ସେତେବେଳେ ଏତାଦୃଶ ଭାବନା ତ କାପୁରୁଷତାର ଲକ୍ଷଣ । ଭଗବଦ୍‌ଗୀତାର ଅବତାରଣା କରିବା ନିମନ୍ତେ ମହାଭାରତକାର ଅର୍ଜୁନ ସଦୃଶ ବୀରଙ୍କୁ ଏତାଦୃଶ କଳଙ୍କକାଳିମାଦ୍ୱାରା କଳଙ୍କିତ କରିବାକୁ କି ସଙ୍ଗତ ମନେ କରିଅଛନ୍ତି ? ଏହା କଦାପି ବିଶ୍ୱାସଯୋଗ୍ୟ ନୁହେଁ । ଭଗବଦ୍‌ଗୀତା ଅଠର ଅଧ୍ୟାୟ ବାଦ୍ ଦେଲେ ଭୀଷ୍ମପର୍ବର କୌଣସି ଅଙ୍ଗହାନି ହୁଏ କି ? ବିଷୟ ପରମ୍ପରାରେ ବ୍ୟତ୍ୟୟ ଘଟେ କି ?

ଆମ୍ଭମାନଙ୍କ ସାମାନ୍ୟ ବୁଦ୍ଧିରେ ଭଗବଦ୍‌ଗୀତା ଅଠର ଅଧ୍ୟାୟ ଉଠାଇଦେଲେ ଭୀଷ୍ମପର୍ବ ପ୍ରସଙ୍ଗ ଅକ୍ଷୁଣ୍ଣ ଥାଏ । ଅଠର ଅଧ୍ୟାୟ କାହିଁକି ? ଆଗରୁ ପଛରୁ ଆଉ କେତେଗୋଟି ଅଧ୍ୟାୟ ଉଠାଇଦେଲେ ପାଠ ବରଂ ଅତି ସୁସଙ୍ଗତ ହେବ ବୋଲି ଅନୁମାନ ହୁଏ । ପାଠକଗଣ ସଂସ୍କୃତ ମହାଭାରତ ଭୀଷ୍ମପର୍ବ ପ୍ରଥମ କେତେକ ଅଧ୍ୟାୟ ଆଲୋଚନା କଲେ ଆମ୍ଭମାନଙ୍କ ଉକ୍ତିର ଯାଥାର୍ଥ୍ୟ ହୃଦୟଙ୍ଗମ କରିପାରିବେ ।

ସମରବିମୁଖ ଜଣେ ବ୍ୟକ୍ତିକୁ ହତ୍ୟାକାଣ୍ଡରେ ପ୍ରବୃତ୍ତ କରିବା ଉପଯୁକ୍ତ କି ଭଗବତ୍‌ଗୀତାର ଉପଦେଶାବଳୀ ? ନିଜର ସ୍ୱତ୍ୱ ବାହୁବଳରେ ରକ୍ଷା କରିବାର ନାମ ତ ଧର୍ମଯୁଦ୍ଧ । 'ଜୋର ଯାର ମୁଲକ ତା'ର ।' ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ରାଜ୍ୟାଂଶ ନ ଦେବାରୁ ପାଣ୍ଡବମାନେ ଯୁଦ୍ଧଦ୍ୱାରା ଆପଣାର

ନ୍ୟାଯ୍ୟ ପ୍ରାପ୍ୟ ପାଇଲେ। ସ୍ୱାର୍ଥରକ୍ଷା ନିମିତ୍ତ ଭୀଷଣ ହତ୍ୟାକାଣ୍ଡଜନିତ ପାପରେ ଭୀତ ହୋଇ ଅର୍ଜୁନ ଯୁଦ୍ଧରୁ ନିରସ୍ତ ହେବାକୁ ବସିଥିଲେ । କୃଷ୍ଣ ଯୁଦ୍ଧରେ ପ୍ରବୃତ୍ତ ହେବାକୁ ଉପଦେଶ ଦେଲେ ଏବଂ ଯୁଦ୍ଧରେ ପ୍ରବୃତ୍ତ କରାଇଲେ । କୃଷ୍ଣଙ୍କର ସମସ୍ତ ଉପଦେଶ କି ପ୍ରବୃତ୍ତିମୂଳକ ? ଏହି ଉପଦେଶ ଶୁଣିଲେ କି ଲୋକ ହତ୍ୟାକାଣ୍ଡରେ ପ୍ରବୃତ୍ତ ହେବ ଅନ୍ୟାୟ ଯୁଦ୍ଧରେ ପ୍ରବୃତ୍ତ ହେବ ଗୁରୁ, ପିତାମହ, ଜ୍ୟେଷ୍ଠଭ୍ରାତା ପ୍ରଭୃତିଙ୍କୁ ନିହତ କରିବ ? ଆମ୍ଭମାନଙ୍କ କ୍ଷୁଦ୍ର ବୁଦ୍ଧିକୁ ତ ଏହା ଗ୍ରତେ ଲାଗୁ ନାହିଁ । କୌଣସି ବ୍ୟକ୍ତିକୁ ହତ୍ୟାକାଣ୍ଡରେ ପ୍ରବୃତ୍ତ କରିବା ପାଇଁ ଜ୍ଞାନ ଯୋଗ, ସନ୍ନ୍ୟାସ ଯୋଗ, ଭକ୍ତି ଯୋଗ ପ୍ରଭୃତି ମୋକ୍ଷମାର୍ଗର ଉପଦେଶ କି ଲୋଡ଼ା ? ଯାହାର ଶତ୍ରୁ ମିତ୍ରଠାରେ ସମଜ୍ଞାନ, ନିଜପରଠାରେ ସମଜ୍ଞାନ, ତାହାର ସ୍ୱାର୍ଥପରତା କାହିଁ ? ସେ କି ବଡ଼ଭାଇ ନିମନ୍ତେ, ପୁତ୍ର ନିମନ୍ତେ କିମ୍ବା ନିଜ ସ୍ୱାର୍ଥରେ ଲୋକହତ୍ୟା କରିବ ? ଏପରି ସୁନ୍ଦର ଉପଦେଶ ଶୁଣି ହତ୍ୟାକାଣ୍ଡରେ କାହାର ପ୍ରବୃତ୍ତି ବଳିବ ? ସାଧାରଣ ଲୋକ ତ ଏ ଉପଦେଶ ଶୁଣି ହତ୍ୟାକାଣ୍ଡରୁ ବିରତ ହେବାର କଥା; ଭଗବଦ୍‌ଗୀତାର ଉପଦେଶ ଶୁଣି ଅର୍ଜୁନଙ୍କ ପରି ଲୋକ କିପରି ଶିକ୍ଷକଙ୍କୁ, ପିତାମହଙ୍କୁ ଅନ୍ୟାୟ ଯୁଦ୍ଧରେ ବଧ କରିବାକୁ ପ୍ରବୃତ୍ତ ହେଲେ ? ଅନୁମାନ ହୁଏ, କୃଷ୍ଣ ଏ ଉପଦେଶ ଦେଇ ନାହାନ୍ତି ଏବଂ ଅର୍ଜୁନ ଏହି ଉପଦେଶ ଶୁଣି ଯୁଦ୍ଧ କରି ନାହାନ୍ତି ।

ଭଗବଦ୍‌ଗୀତାର ଏତେ ଆଦର କାହିଁକି ? ଯେହେତୁ ଭୀଷ୍ମ ପର୍ବର ୪୩ ଅଧ୍ୟାୟରେ ଲିଖିତ ଅଛି—

"ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରସଂଗ୍ରହୈଃ ।
ଯା ସ୍ୱୟଂ ପଦ୍ମନାଭସ୍ୟ ମୁଖପଦ୍ମାଦ୍ ବିନିଃସୃତା ।
—ଭୀ.ପା. ୪୩.୧

ଗୀତା ଉପଦେଶପୂର୍ଣ୍ଣ ଗ୍ରନ୍ଥ ବୋଲି ତାହାର ଆଦର ନାହିଁ । ନାନାବିଧ ଧର୍ମମତ-ସଙ୍କଳିତ ଗ୍ରନ୍ଥ ବୋଲି ତାହାର ଆଦର ନାହିଁ । କେବଳ କୃଷ୍ଣ ମୁଖରୁ ଉଚ୍ଚାରିତ ହୋଇଅଛି ବୋଲି ତାହାର ଏଡ଼େ ଆଦର । ପ୍ରକୃତରେ ଗୀତା କି କୃଷ୍ଣ ମୁଖରୁ ଉଚ୍ଚାରିତ ହୋଇଅଛି ଏବଂ କୃଷ୍ଣ-ମୁଖ-ବିନିଃସୃତ ବାକ୍ୟଗୁଡ଼ିକ କେହି ଲିପିବଦ୍ଧ କରି ରଖିଅଛି ? ଭୀଷ୍ମପର୍ବର ପ୍ରଥମ ୧୨ ଅଧ୍ୟାୟ ଭୂମିପର୍ବ; ଦ୍ୱିତୀୟ ୩୦ ଅଧ୍ୟାୟ ଭଗବଦ୍‌ଗୀତା ପର୍ବ ଏବଂ ଏହି ଉପପର୍ବ ଅନ୍ତର୍ଭୁକ୍ତ ଶେଷ ଅଠର ଅଧ୍ୟାୟର ନାମ ଗୀତା । ଏହି ଗୀତା ମଧ୍ୟରେ ଧୃତରାଷ୍ଟ୍ରଙ୍କ ଉକ୍ତି, ସଞ୍ଜୟଙ୍କ ଉକ୍ତି, ଅର୍ଜୁନଙ୍କ ଉକ୍ତି ଓ କୃଷ୍ଣଙ୍କ ଉକ୍ତି ଅଛି । ସୁତରାଂ ଗୀତାଟି କେବଳ କୃଷ୍ଣଙ୍କର 'ମୁଖ-ପଦ୍ମ-ବିନିଃସୃତା' କେଉଁ ନ୍ୟାୟରୁ ବୋଲାଯାଏ, ତାହା ସାଧାରଣ ବୁଦ୍ଧିର ଅଗୋ[illegible]

ନନ୍ଦିଘୋଷ ରଥ ଉପରେ କୃଷ୍ଣ [illegible] କଥାବାର୍ତ୍ତା । ଠିକ୍ କଥାଗୁଡ଼ିଏ କିଏ ଶୁଣିଥିଲା, ତହି[illegible] ଉଲ୍ଲେ[illegible] ନାହିଁ । କୃଷ୍ଣ ନିଜେ କହିପାରନ୍ତେ କିମ୍ବା ଅର୍ଜୁନ କହିପାରନ୍ତେ । ସେଠାରେ ଅନ୍ୟ କେହି ନ ଥିବାରୁ କଥାଗୁଡ଼ିକ ଠିକ୍ ରୂପେ ଉଦ୍ଧୃତ ହୋଇଅଛି, ଏହା କୁହାଯାଇ ନ ପାରେ । ତେବେ ବ୍ୟାସଙ୍କ ପ୍ରସାଦରୁ ସଞ୍ଜୟ ସବୁ କଥା ଜାଣି ପାରୁଥିଲେ, ଏହି କଥା ଯେବେ ବିଶ୍ୱାସଯୋଗ୍ୟ ହୁଏ, ତେବେ ସ୍ୱତନ୍ତ୍ର କଥା । ତଥାପି କୃଷ୍ଣ ଅର୍ଜୁନ କି ଶ୍ଳୋକରେ ବାକ୍ୟାଳାପ କରୁଥିଲେ ଏବଂ ସଞ୍ଜୟ ତାହା ବହୁ ଦୂରରେ ଥାଇ ଘୁଣ୍ଟା ଅକ୍ଷରକୁ ଅକ୍ଷର ଟିପି ନେଉଥିଲେ ?

ସୋଽହଂ ଦାଶରଥିର୍ଭୂତ୍ୱା ରଣଭୂମେର୍ବଳ କ୍ଷମଂ ।
କରିଷ୍ୟାମି ଶରୈସ୍ତୀକ୍ଷଣୈ ଛିନ୍ନଶିରଃ କମଳୋଚୟଂ ॥

ଏହି ଶ୍ଳୋକଟି ଯେମନ୍ତ ବିଷ୍ଣୁଙ୍କ ମୁଖୋଚ୍ଚାରିତ ନୁହେଁ; ମାତ୍ର କାଳିଦାସଙ୍କ ରଚିତ । (Hamlet's Soliloquy) ହେମଲେଟର ସ୍ୱଗତ ଯେମନ୍ତ ହେମଲେଟର Verbetim ନୁହେଁ, କିନ୍ତୁ ସେକ୍‌ସପିୟରଙ୍କ ରଚିତ ସ୍ୱଗତ; ତେମନ୍ତ ଗୀତା ମଧ୍ୟଗତ 'ଭଗବାନୁବାଚ' ଶ୍ଳୋକଗୁଡ଼ିକ କୃଷ୍ଣଙ୍କ ମୁଖ ନିଃସୃତ ନୁହେଁ । ମାତ୍ର ଗୀତା ରଚକଙ୍କ ରଚନା ବୋଲିବାର ଅସଙ୍ଗତ କି ? ଉପଦେଶମୂଳକ ପୁସ୍ତକ ବୋଲି ଗୀତାକୁ ଉଚ୍ଚ ଆସନ ଦେବା ଅଯୌକ୍ତିକ ନୁହେଁ, ମାତ୍ର କୃଷ୍ଣମୁଖବିନିଃସୃତ ବୋଲି ସର୍ବୋଚ୍ଚ ସ୍ଥାନ ଦେବା ନିତାନ୍ତ ଅସଙ୍ଗତ ।

ଅନେକଙ୍କର ଧାରଣା ଏହି ଯେ, ଗୀତା ତୁଲ୍ୟ ଅମୂଲ୍ୟ ପୁସ୍ତକ ଓ ଉପଦେଶାବଳୀ ଆର୍ଯ୍ୟ ଗ୍ରନ୍ଥାବଳୀ ମଧ୍ୟରେ ନାହିଁ । ଅବଶ୍ୟ ଗୋଟାଏ ପ୍ରସଙ୍ଗରେ ଏତେଗୁଡ଼ାଏ ଧର୍ମମତପୂର୍ଣ୍ଣ ଖଣ୍ଡେ ପୁସ୍ତକ ନାହିଁ । ତାହା ବୋଲି ଯେ ଏହା ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥ, ଏହା ସ୍ୱୀକାର କରାଯାଇ ନ ପାରେ । ଏହା ବିରୋଧାତ୍ମକ ମତ ଦ୍ୱାରା ପରିପୂର୍ଣ୍ଣ । ସ୍ଥଳରେ ଏହା ବିଭିନ୍ନ ଧର୍ମମତର ଖେଚୁଡ଼ି । ଗୀତାର ମତ ଯେ ବିଭିନ୍ନ ପୁସ୍ତକରୁ ସଂଗୃହୀତ, ତାହା ପ୍ରତ୍ୟେକ ଅଧ୍ୟାୟର 'ଭଣିତା'ରୁ ଜଣା ଯାଉଅଛି । ଗୀତାର ଅଧିକାଂଶ ମତ ଉପନିଷଦରୁ ସଂଗୃହୀତ । ଏଣୁ ଗୀତାଲେଖକ ନିମକ୍‌ହାରାମି ନ କରି ପ୍ରତ୍ୟେକ ଅଧ୍ୟାୟ ଶେଷରେ 'ଗୀତାସୂପନିଷତ୍ସୁ' ବୋଲି ଲେଖିଅଛନ୍ତି । କେବଳ ଏତିକି ନୁହେଁ, ସ୍ଥଳବିଶେଷରେ ଗୋଟାଏ ଗୋଟାଏ ଶ୍ଳୋକ ଉଦ୍ଧୃତ କରି ଦେଇଅଛନ୍ତି । ତଥାପି ଆମ୍ଭଦେଶର ଲୋକେ ଗୀତାକୁ ସଂଗୃହୀତ ପୁସ୍ତକ ବୋଲିବାକୁ କୁଣ୍ଠିତ ।

ବର୍ତ୍ତମାନ ଉପସଂହାରରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଲୋକେ ମହାଭାରତକୁ ପଞ୍ଚମ ବେଦ ବୋଲନ୍ତି । କାହିଁକି ? ଯେହେତୁ ମହାଭାରତର ଭିତ୍ତି ବୈଦିକ ଉପାଖ୍ୟାନ ଓ ବୈଦିକ ଯୁଗର ଗଳ୍ପ । ତେମନ୍ତ ଗୀତାର ଭିତ୍ତି ଉପନିଷତ୍ ସମୂହ । ମହାଭାରତରେ ବେଦ ବ୍ରାହ୍ମଣ ଓ ଆରଣ୍ୟକର ଉପାଖ୍ୟାନ ସମୂହ ଦେଖି ପରବର୍ତ୍ତୀ କୌଣସି ଲେଖକ ଉପନିଷଦର ତତ୍ତ୍ୱସମୂହ ମଧ ମହାଭାରତ ମଧ୍ୟରେ ସନ୍ନିବେଶିତ କରିବାକୁ ଯତ୍ନ କରିଅଛନ୍ତି ଏବଂ କୃଷ୍ଣଙ୍କୁ ଉପଯୁକ୍ତ ଉପଦେଷ୍ଟା ଓ ଅର୍ଜୁନଙ୍କୁ ଶ୍ରୋତା କରି ମହାଭାରତକୁ ବେଦ ଓ ବେଦାନ୍ତଦ୍ୱାରା ପୂର୍ଣ୍ଣାଙ୍ଗ କରିବାକୁ ଚେଷ୍ଟା କରିଅଛନ୍ତି । ମହାଭାରତ ପ୍ରବନ୍ଧରେ ଏଥିରେ ବିଶେଷ ଆଲୋଚନା କରିବାର ଆଶା ରହିଲା ।

•

## ମହାଭାରତ

### ॥ ୧ ॥

ଭାରତବାସୀଙ୍କର ମହାଭାରତ ଅତି ଆଦରଣୀୟ ପୁସ୍ତକ । ଆବାଳବୃଦ୍ଧ ସମସ୍ତେ ଏହା ସମ୍ବନ୍ଧରେ ପଦେ ଅଧେ ଜାଣନ୍ତି । ଭାରତରେ 'ଭାରତ'ର ଯେତେ ଆଦର, ବେଦର ମଧ ତେତେ ଆଦର ନାହିଁ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ସାଧାରଣତଃ ଲୋକେ ଏହାକୁ ପଞ୍ଚମ ବେଦ ବୋଲନ୍ତି । ମହାଭାରତ ପାଠରେ ଯେଉଁ ଫଳ ମିଳେ, ବେଦ ଉପନିଷତ୍ ପାଠରେ ମଧ ସେହି ଫଳ ମିଳିପାରେ ନାହିଁ, ଏହା ଲୋକଙ୍କର ଧାରଣା । ମହାଭାରତ ନିଜର ମାହାତ୍ମ୍ୟ, ସମ୍ମାନ ଓ ଗୁରୁତ୍ୱକୁ କିପରି ପ୍ରକଟିତ କରିଅଛି, ଦେଖାଯାଉ—

ଯଦିହାସ୍ତି ତଦନ୍ୟତ୍ର
ଯନ୍ନେ ହାସ୍ତି ନ ତତ୍ କ୍ୱଚିତ୍ । ୧ । ୬୨ । ୫୩

ଯାହା ଏଥିରେ ଅଛି, ତାହା ଅନ୍ୟତ୍ର ଅଛି; ଏଥିରେ ଯାହା ନାହିଁ, ତାହା କୌଣସିଠାରେ ନାହିଁ । ଏଥିରୁ ଲୋକେ ଜାଣିପାରିଲେ ଯେ, ମହାଭାରତରେ ଯାହା ନାହିଁ, ବେଦ, ବେଦାଙ୍ଗ ଓ ପୁରାଣାଦିରେ ତାହା ନାହିଁ ।

ଏକତଶ୍ଚତୁରୋ ବେଦାନ୍
ଭାରତଂ ଚୈତଦେକତଃ ।
ପୁରା କଳି ସୁରୈଃ ସର୍ବୈଃ
ସମେତ୍ୟ ତୁଳୟା ଧୃତଂ ।
ଚତୁର୍ଭ୍ୟଃ ସରହସ୍ୟେଭ୍ୟୋ
ବେଦେଭ୍ୟୋ ହ୍ୟଧିକଂ ଯଦା ।
ତଦା ପ୍ରଭୃତି ଲୋକେଽସ୍ମିନ୍
ମହାଭାରତମୁଚ୍ୟତେ ।
ମହତ୍ତ୍ୱେ ଚ ଗୁରୁତ୍ୱେ ଚ
ଧ୍ରିୟମାଣଂ ଯତୋଽଧିକଂ ।
ମହତ୍ତ୍ୱାଭାରବତ୍ତ୍ୱାଚ
ମହାଭାରତମୁଚ୍ୟତେ
୧ । ୧ । ୨୬୯-୨୭୧ ।

ଦେବତାମାନେ ଏକ ସମୟରେ ଚାରି ବେଦକୁ ଏକ ପାଖରେ ଏବଂ ମହାଭାରତକୁ ଏକପାଖରେ ରଖି ଓଜନ କଲେ (ତୁଳନା କଲେ) । ମହାଭାରତ ବେଦ ଉପନିଷତ୍ ପ୍ରଭୃତି ଅପେକ୍ଷା ବେଶି ଭାରୀ ହେଲା । ମହତ୍ତ୍ୱ ଓ ଭାରତତ୍ତ୍ୱ ହେତୁରୁ ମହାଭାରତ ନାମ ହୋଇଅଛି । ଏଥିରୁ ବଳି ମହାଭାରତର ଆଉ କି ପ୍ରଶଂସା କରାଯାଇପାରେ ? ପୁରାଣସର୍ବସ୍ୱ ହିନ୍ଦୁମାନଙ୍କଠାରୁ ସମ୍ମାନ ଓ ଆଦର ପାଇବାକୁ ମହାଭାରତ ପକ୍ଷରେ ଏହାହିଁ ଯଥେଷ୍ଟ ।

ବେଦ ଯେମନ୍ତ ପ୍ରାଚୀନତମ ଗ୍ରନ୍ଥ ବୋଲି ପରିଗୃହୀତ ହୋଇଅଛି, ମହାଭାରତ ମଧ ତେମନ୍ତ ପ୍ରକାଣ୍ଡ ମହାକାବ୍ୟ ବୋଲି ପରିଗୃହୀତ ହୋଇଅଛି । ଏଡ଼େ ବଡ଼ ମହାକାବ୍ୟ ପୃଥିବୀରେ ଆଉ ନାହିଁ । ଏହା ପଢ଼ିବାକୁ ଓ ଶୁଣିବାକୁ ବଡ଼ ସୁଖକର ଓ ଆମୋଦଜନକ, ସନ୍ଦେହ ନାହିଁ । କାରଣ ଏଥିରେ ବୀଭତ୍ସ, ଅଦ୍ଭୁତ, ହାସ୍ୟ, ବୀର, ଆଦି ଓ କରୁଣ ରସାତ୍ମକ ବିଷୟର ବର୍ଣ୍ଣନା ଯଥେଷ୍ଟ ଅଛି । ଲୋକେ ଉପରୋକ୍ତ କେତୋଟି ରସାଶ୍ରିତ କାବ୍ୟ ପାଠ ଓ ଶ୍ରବଣରେ ଚରିତାର୍ଥତା ଲାଭ କରିଥାନ୍ତି । ମହାଭାରତରେ ଏତାଦୃଶ ବର୍ଣ୍ଣନାର ଅଭାବ ନାହିଁ । ସୁତରାଂ ଆଦର ହେବାର କଥା ।

ମହାଭାରତ ପାଠରେ ଓ ଶ୍ରବଣରେ ଧର୍ମ, କର୍ମ, କାମ, ମୋକ୍ଷ ଲାଭ କି ପରିମାଣରେ ହୁଏ ତାହା ବ୍ୟକ୍ତ କରିବା ଅସମ୍ଭବ । ତେବେ ସାଧାରଣ ବୁଦ୍ଧିରେ ଜଣାଯାଏ ଯେ ଅର୍ଥାଗମ ବା ଅର୍ଥଲାଭ କୌଣସି ପ୍ରକାରେ ହୋଇ ନ ପାରେ । ଧର୍ମ ଓ ମୋକ୍ଷ ସାଧାରଣ ବୋଧଗମ୍ୟ ନୁହନ୍ତି । ତେବେ ଏହା ନିଶ୍ଚିତରୂପେ କୁହାଯାଇପାରେ ଯେ—

'ଯଦ୍ରାତ୍ରୌ କୁରୁତେ ପାପଂ କର୍ମଣା ମନସା ଗିରା
ମହାଭାରତମାଖ୍ୟାୟ ପୂର୍ବାଂ ସନ୍ଧ୍ୟାଂ ପ୍ରମୁଚ୍ୟତେ ।
୧ । ୧ । ୩୯୪

ଏହି ଉକ୍ତିଟି ନିତାନ୍ତ ଅଳୀକ ଓ ଭ୍ରମୋତ୍ପାଦକ । ତୃତୀୟବର୍ଗ ଲାଭର ଉପାଦାନ ଯଥେଷ୍ଟ ଅଛି ଏବଂ ଅନେକେ ତାହା ଲାଭ କରି କ୍ଷତିଗ୍ରସ୍ତ ହୋଇଥିବେ, ସନ୍ଦେହ ନାହିଁ।

ମହାଭାରତ ୧୮ ପର୍ବ, ୨୧୧୦ ଅଧ୍ୟାୟ ୮୪୩୩୭ ଶ୍ଳୋକ ଏବଂ ହରିବଂଶ ସହିତ ୧୦୭ ୩୯୦ ଶ୍ଳୋକ ସମନ୍ୱିତ । ଏଥିରେ ସୃଷ୍ଟିତତ୍ତ୍ୱ, ରାଜନୀତି, ସମାଜନୀତି ପ୍ରଭୃତି ଯାବତୀୟ ବିଷୟର ଉଲ୍ଲେଖ ଅଛି । ସ୍ଥୂଳରେ ମହାଭାରତ ରଚକମାନଙ୍କର ଏହାହିଁ ଇଚ୍ଛା ଯେ, ମହାଭାରତରେ ଯାବତୀୟ ବିଷୟର ଉଲ୍ଲେଖ ରହିଲେ ଲୋକଙ୍କର ବିଶ୍ୱାସ ହେବ ଯେ ଏହାହିଁ ପ୍ରଧାନ ଗ୍ରନ୍ଥ, ଏହାହିଁ ପ୍ରାଚୀନ ଗ୍ରନ୍ଥ, ଏହାର ବିଷୟ ଅବଲମ୍ବନରେ ଅନ୍ୟାନ୍ୟ ପୁସ୍ତକ ରଚିତ ହୋଇଅଛି ।

''ଇଦଂ କବିବରୈଃସର୍ବୈରାଖ୍ୟାନମୁପଜୀବ୍ୟତେ ।''
୧ । ୧ । ୩୮

''ଯଦିହାସ୍ତି ତଦନ୍ୟତ୍ରଯନ୍ନେହାସ୍ତି ନ ତତ୍ କ୍ୱଚିତ୍''
୧ । ୬୨ । ୫୩

ଉପରୋକ୍ତ ଦୁଇ ଶ୍ଳୋକକୁ ପ୍ରଥମ ଲେଖକଙ୍କ ପ୍ରତିଜ୍ଞା ମନେକରି କବିମାନେ ମହାଭାରତର ଅଙ୍ଗ ବୃଦ୍ଧି କରିବାରେ ଯତ୍ନବାନ୍ ହୋଇଅଛନ୍ତି ଏବଂ ଏ ହେତୁରୁ ଆମ୍ଭେମାନେ ମହାଭାରତକୁ ବର୍ତ୍ତମାନ ଏଡେ ବୃହଦାକାର ଦେଖିବାକୁ ପାଉଅଛୁଁ ।

ଆଧୁନିକ ପଣ୍ଡିତମାନଙ୍କ ମତରେ ପ୍ରଥମ ମହାଭାରତର ଶ୍ଳୋକସଂଖ୍ୟା ୨୪୦୦୦ । ପୁଣି ଅନେକଙ୍କ ମତରେ ପ୍ରଥମ ମହାଭାରତର ଶ୍ଳୋକ ସଂଖ୍ୟା କେବଳ ୮୮୦୦ । କ୍ରମେ କ୍ରମେ ଏହା ବୃଦ୍ଧି ପ୍ରାପ୍ତ ହୋଇ ଏଡେ ବୃହତ୍କାୟ ହୋଇଅଛି । ବାସ୍ତବିକ୍ ମହାଭାରତ ମଧ୍ୟରେ ଅନେକଗୁଡ଼ିଏ ଉପାଖ୍ୟାନ ଅଛି ଏବଂ ଉପପର୍ବ ଅଛି, ଯାହା ଉଠାଇଦେଲେ ବିଷୟ ପରମ୍ପରାର ହାନି ହେବ ନାହିଁ । ଅନେକ ଉପାଖ୍ୟାନ ଅପ୍ରାସଙ୍ଗିକ ବୋଲି ମନେହୁଏ । ବିଭିନ୍ନ ରଚକଙ୍କ ଦ୍ୱାରା ସନ୍ନିବେଶିତ ହୋଇ ନ ଥିଲେ ଏ ବିଭ୍ରାଟ ଘଟନ୍ତା ନାହିଁ । ମହାଭାରତକୁ କାବ୍ୟଜଗତରେ ଉଚ୍ଚ ଆସନ ଦେବାକୁ କାହାରି ଦ୍ୱିଧାମତ ନାହିଁ । କବିମାନଙ୍କର କଳ୍ପନାଚାତୁରୀ, ଅସାଧାରଣ ଉଦ୍ଭାବନୀ ଶକ୍ତିକୁ ପ୍ରଶଂସା କରିବାକୁ କେହି କୁଣ୍ଠିତ ନୁହନ୍ତି । ମାତ୍ର ଏହି ପୁସ୍ତକରେ ଅଶେଷ ଧର୍ମ ଓ ନୀତି ଉପଦେଶ ଥିଲେ ମଧ୍ୟ ଏହାକୁ ଧର୍ମଗ୍ରନ୍ଥ ବା ନୀତିଗ୍ରନ୍ଥ ବୋଲି ଉଚ୍ଚ ଆସନ ଦେବାକୁ ଅନେକଙ୍କର ଦ୍ୱିଧା ନିଶ୍ଚୟ ଅଛି । ତେବେ ବ୍ୟକ୍ତ କରିବାକୁ ସାହସ ବଳେ ନାହିଁ ।

ନୈତିକ ଜୀବନ ଗଠନ କରିବାକୁ ଆମ୍ଭେମାନେ ଉଚ୍ଚ ଆଦର୍ଶ ଅନ୍ୱେଷଣ କରୁଁ । ସାଧାରଣ ନରଦୁର୍ଲଭ ଚରିତ୍ରନିଚୟ ଆମ୍ଭମାନଙ୍କ ଜୀବନକୁ ଉନ୍ନତ କରିବାର ଆଶା ରଖୁଁ । ମାତ୍ର ଭାରତର ଚରିତ ମଧ୍ୟରୁ ଅଧିକାଂଶ ତହିଁର ପରିପନ୍ଥୀ । ହିନ୍ଦୁ ଜାତିର ଧର୍ମଗ୍ରନ୍ଥ ବୋଲି ପୂଜା ପାଉଥିଲେ ମଧ୍ୟ ମହାଭାରତ ହିନ୍ଦୁଧର୍ମର ପରିପନ୍ଥୀ ।

କଥାପ୍ରସଙ୍ଗରେ ଏଠାରେ ଗୋଟିଏ କଥା ଉଲ୍ଲେଖ କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ । ଖଡ଼ିଆଳୟର ସ୍ୱର୍ଗୀୟ ରାଜା ବୀରବିକ୍ରମ ସିଂହଦେଓ ୧୯୦୩ ସାଲରେ ମୋତେ ପଚାରିଥିଲେ, ''ମହାଭାରତ ସମ୍ବନ୍ଧରେ ଆପଣଙ୍କର ପ୍ରକୃତ ମତ କ'ଣ ?'' ମୁଁ କହିପକାଇଲି, ''ଏହା ଆର୍ଯ୍ୟଜାତିର ଧର୍ମପୁସ୍ତକ ନୁହେଁ । ମହାଭାରତର ଐଶ୍ୱରିକ ନିୟମର ପକ୍ଷପାତୀ ନୁହେଁ । ଏହାର କଥା ସବୁ ସୃଷ୍ଟିଛଡ଼ା । ଜାତି ବ୍ୟବସ୍ଥା ହିନ୍ଦୁର ପ୍ରଧାନ ଧର୍ମ, ମହାଭାରତ ଜାତିଭେଦର ପକ୍ଷପାତୀ ନୁହେଁ । ଯେଉଁ ଗ୍ରନ୍ଥରେ ସ୍ତ୍ରୀର ସତୀତ୍ୱ ନାହିଁ, ବ୍ରହ୍ମଚାରୀର ବ୍ରହ୍ମଚର୍ଯ୍ୟ ନାହିଁ, ବ୍ୟଭିଚାର ଦୋଷାବହ ନୁହେଁ, ସ୍ୱେଚ୍ଛାଚାର ସ୍ୱେଚ୍ଛାବିହାର ଇଚ୍ଛାନୁମତ, ବ୍ରାହ୍ମଣର ବ୍ରାହ୍ମଣତ୍ୱ— କ୍ଷତ୍ରିୟର କ୍ଷତ୍ରିୟତ୍ୱ ଯେଉଁଠାରେ ନାହିଁ, ତାହାକୁ ଧର୍ମଗ୍ରନ୍ଥ ବୋଲାଯାଇ ନ ପାରେ ।'' ମହାଭାରତ ଈଦୃଶ ଦୋଷବହୁଳ ଗ୍ରନ୍ଥ ହୋଇ ସୁଦ୍ଧା ହିନ୍ଦୁର ଆଦରଣୀୟ ପୁସ୍ତକ କିପରି ହେଲା, ତାହା ବୁଝାଯାଉ ନାହିଁ । ଏତାବତ୍କାଳ ମୁଁ ଅନୁସନ୍ଧାନ କରି ଜାଣିପାରିଅଛି ଯେ ମୋର ଉକ୍ତି ଯଥାର୍ଥ ଅଟେ ଏବଂ ମୋର ମତ ଆହୁରି ଦୃଢ଼ତା ଲାଭ କରିଅଛି ।

ସର୍ବାଦୌ ମହାଭାରତ କେବେ ରଚିତ ହେଲା ଏବଂ କାହାଦ୍ୱାରା ରଚିତ ହେଲା, ଏହା ଆଲୋଚନା କରିବା ଉଚିତ । ଏହା କେବେ ରଚିତ ହେଲା, ଏକଥା ସ୍ଥିର କରି କହିବା ଅସମ୍ଭବ । କଳି ପ୍ରାରମ୍ଭରୁ ହେଲେ ଆମ୍ଭ ପଞ୍ଜିକାରଙ୍କ ମତରେ ୫୦୧୬ ବର୍ଷ ବା ଆଉ ଦଶ ପନ୍ଦର ବର୍ଷ ତେଣିକି । ଭାରତୀୟ ବୈଦିକ ପଣ୍ଡିତ ଦୟାନନ୍ଦ ପ୍ରଭୃତି ଉକ୍ତ ମତର ପକ୍ଷପାତୀ । ପାଶ୍ଚାତ୍ୟ ପଣ୍ଡିତଗଣ ଏ ସମ୍ବନ୍ଧରେ ଅନେକ ମତ ବ୍ୟକ୍ତ କରିଅଛନ୍ତି । ତଥ୍ୟ ନିର୍ଦ୍ଧାରଣ କରିବା ବଡ଼ ଦୁରୂହ । ଅନେକେ କହନ୍ତି, ପାଣିନୀଙ୍କ ପୂର୍ବରୁ, ଅନେକଙ୍କ ମତରେ ପାଣିନୀଙ୍କ ପରେ । ପାଣିନୀ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀର ଲୋକ ବୋଲି ଅନେକଙ୍କର ଧାରଣା । ତାଙ୍କ ପ୍ରଣୀତ ବ୍ୟାକରଣରେ ମହାଭାରତ ଲିଖିତ ଅନେକ ବ୍ୟକ୍ତିଙ୍କ ନାମ ଅଛି । ଯେମନ୍ତ— 'ବାସୁଦେବାର୍ଜ୍ଜୁନାଭ୍ୟାଂବୁନ ।' ଈଦୃଶ ଉଦାହରଣ ଦେଖିବାକୁ

ପଣ୍ଡିତଗଣ ମନେକରନ୍ତି ଯେ, ବାସୁଦେବ ଓ ଅର୍ଜୁନ ପାଣିନିଙ୍କ ପୂର୍ବରେ ବିଦ୍ୟମାନ ନ ଥିଲେ ପାଣିନି ଏ ଉଦାହରଣ କିପରି ଲେଖିଲେ ? ପାଣିନିଙ୍କ ପୂର୍ବରେ କୃଷ୍ଣ ଓ ଅର୍ଜୁନ ନାମ ଥାଇପାରେ; ମାତ୍ର ମହାଭାରତ ରଚିତ ହୋଇଥିଲା, ଏଥିରେ କୌଣସି ପ୍ରମାଣ ନାହିଁ । ପାଣିନିଙ୍କ ପରେ ମହାଭାରତ ରଚିତ ହୋଇଥିବା ଖୁବ୍ ସମ୍ଭବ । ଅଧିକନ୍ତୁ ବୌଦ୍ଧଧର୍ମର ପତନ ଏବଂ ହିନ୍ଦୁଧର୍ମର ପୁନରୁତ୍‌ଥାନ ସମୟରେ ଏହା ରଚିତ ହୋଇଥିବାର ନିତାନ୍ତ ସମ୍ଭବ । ଏ ବିଷୟ ପରେ ଆଲୋଚିତ ହେବ ।

ମହାଭାରତର ରଚକ କିଏ ? ଏଥିରେ ଉତ୍ତର— ବ୍ୟାସଦେବ । କାରଣ ଲେଖାଅଛି, 'ମହାଭାରତଂ ମହର୍ଷି ବେଦବ୍ୟାସପ୍ରଣୀତଂ ।' ଏବଂ ଲୋକେ କହନ୍ତି 'ମହାଭାରତ ବ୍ୟାସରଚିତ ।' ମହାଭାରତ କାହିଁକି, ଅଷ୍ଟାଦଶ ପୁରାଣ, ଅଷ୍ଟାବିଂଶତି ଉପପୁରାଣ ବ୍ୟାସରଚିତ । ଲୋକେ କହିଲେ ବା ବ୍ୟାସରଚିତ ବୋଲି ଲିଖିତ ଅଛି ବୋଲି କି ବିଶ୍ୱାସ କରିବା ସଙ୍ଗତ ? ଆମ୍ଭ ଦେଶରେ, ଅସଂଖ୍ୟ ଅର୍ଥଶୂନ୍ୟ ମାତ୍ର ଆଦିରସପୂର୍ଣ୍ଣ ସଙ୍ଗୀତ, ଚୌପଦୀରେ 'କବି ଉପଇନ୍ଦ୍ର ଭଣିଲେ ଏ ଗୀତେ' ବୋଲି ଉଲ୍ଲେଖ ଅଛି । ତେବେ କି ଆମ୍ଭେମାନେ ବିଶ୍ୱାସ କରିବାକୁ ବାଧ ହେବା ଯେ–ଭଞ୍ଜଙ୍କ ନାମରେ ଭଣିତ ସବୁ ଚୌପଦୀ ଉପେନ୍ଦ୍ରଭଞ୍ଜଙ୍କ ରଚିତ ? ମହାଭାରତ ପାଠରୁ ଜଣାଯାଏ ଯେ ଭାରତ ବ୍ୟାସରଚିତ ନୁହେଁ, ବୈଶମ୍ପାୟନ ରଚିତ ନୁହେଁ, ସୌତିରଚିତ ନୁହେଁ ।

ମହାଭାରତର ବ୍ୟାଖ୍ୟାନ ସ୍ଥଳ ନୈମିଷାରଣ୍ୟ । ଶ୍ରୋତା ଶୌନକାଦି ଋଷିମାନେ ଓ ବକ୍ତା ସୌତି । ଋଷିମାନେ ସୌତିଙ୍କୁ ପଚାରିଲେ, ତୁମ୍ଭେ କେଉଁଠାରୁ ଆସିଲ ?' ସୌତି କହିଲେ, ମୁଁ ଜନ୍ମେଜୟଙ୍କ ସର୍ପସତ୍ର ଦେଖିବାକୁ ଯାଇଥିଲି ।ସେଠାରେ

କୃଷ୍ଣଦ୍ୱୈପାୟନପ୍ରୋକ୍ତାଃ
ସୁପୁଣ୍ୟା ବିବିଧାଃ କଥାଃ ।
କଥିତାଶ୍ଚାପି ବିଧିବଦ୍
ଯା ବୈଶମ୍ପାୟନେନ ବୈ ।
ଶ୍ରୁତ୍ୱାହଂ ତା ବିଚିତ୍ରାର୍ଥା
ମହାଭାରତସଂଶ୍ରିତାଃ ।

୧ । ୧ । ୧୧

ତତ୍‌ପରେ କହିଲେ, 'ସମନ୍ତପଞ୍ଚକ ଯେଉଁଠାରେ କି କୁରୁପାଣ୍ଡବଙ୍କର ଯୁଦ୍ଧ ହୋଇଥିଲା, ତାହା ମଧ ଦେଖି ଆସିଲି । ଆପଣମାନଙ୍କଠାରେ କେଉଁ କଥା ବ୍ୟକ୍ତ କରିବି ? ଋଷିମାନେ କହିଲେ, 'ଅଦ୍ଭୁତକର୍ମଣଃ' ବ୍ୟାସଦେବଙ୍କ ଆଜ୍ଞାରେ ବୈଶମ୍ପାୟନ ଜନ୍ମେଜୟଙ୍କ ସମକ୍ଷରେ ଯେଉଁ କଥା କହିଥିଲେ, ତାହା ଶ୍ରବଣ କରିବାକୁ ଇଚ୍ଛା କରୁଁ; ପ୍ରକାଶ କର ।' ଏଥିଉତ୍ତାରୁ ସୌତି 'ଆଦ୍ୟଂ ପୁରୁଷମୀଶାନଂ +++' ବୋଲି ଗ୍ରନ୍ଥ ବ୍ୟାଖ୍ୟାନ ଆରମ୍ଭ କଲେ । କହିଲେ, ବ୍ୟାସଦେବ ବେଦ ବିଭାଗ କରି ଏହି ଇତିହାସକୁ କିପରି ଶିଷ୍ୟମାନଙ୍କୁ ଶିକ୍ଷାଦେବେ, ଏହି ଚିନ୍ତା କରିବାକୁ ଲାଗିଲେ ଏବଂ ବ୍ରହ୍ମାଙ୍କୁ ସ୍ମରଣ କଲେ । ବ୍ରହ୍ମାଙ୍କୁ କହିଲେ, ମୁଁ ଯେଉଁ ଗ୍ରନ୍ଥ ରଚନା କରିବି, ତାହାର ଲେଖକ କେହି ଦିଶୁ ନାହାନ୍ତି । ବ୍ରହ୍ମା କହିଲେ, ଗଣେଶଙ୍କୁ ସ୍ମରଣ କର । ବ୍ୟାସଙ୍କ ଅନୁରୋଧରେ ଗଣେଶ ଲେଖକ ହେବାକୁ ସ୍ୱୀକୃତ ହେଲେ; ମାତ୍ର କହିଲେ ଯେ, ମୋର ଲେଖା କ୍ଷଣେମାତ୍ର ବନ୍ଦ ହେଲେ ମୁଁ ଲେଖକ କାର୍ଯ୍ୟରୁ ଇସ୍ତଫା ଦେବି । ବ୍ୟାସ କହିଲେ, ତା ସତ୍ୟ; ମାତ୍ର ନ ବୁଝି କିଛି ଲେଖିବ ନାହିଁ । ଏଣୁ ଗଜାନନଙ୍କର ବୋଧଗମ୍ୟ ୮୮୦୦ କୂଟ ଶ୍ଳୋକ ରଚନା କଲେ । ସେହି ଶ୍ଳୋକମାନଙ୍କର ଅର୍ଥ ଶୁକ ଜାଣନ୍ତି, ମୁଁ ଜାଣେ, ସଞ୍ଜୟ ଜାଣନ୍ତି କି ବା ନାହିଁ ଏହି ଅଷ୍ଟାଦଶ ପର୍ବ ମହାଭାରତ—

ସର୍ବେଷାଂ କବିମୁଖ୍ୟାନାମୁପଜୀବ୍ୟୋ ଭବିଷ୍ୟତି ।
ପର୍ଜନ୍ୟ ଇବ ଭୂତାନାମକ୍ଷୟୋ ଭାରତଦ୍ରୁମଃ ।

୧।୧।୯୨

ଏହା ମହାଭାରତର ସୂତ୍ରପାତ । କଥକ କିଏ, ଶ୍ରୋତା କିଏ ? ଶୌନକାଦି ଋଷିମାନେ ଶ୍ରୋତା ଏବଂ ବକ୍ତା ସୌତି । ସୌତି କି ଆଧୁନିକ ପୁରାଣପଣ୍ଡାଙ୍କ ପରି ଗଣେଶକର୍ତ୍ତୃକ ଲିଖିତ ପୁସ୍ତକ ଖଣ୍ଡ ପାଠକଲେ ଏବଂ ତାହା ସରଳ ଭାଷାରେ ବୁଝାଇ ଦେଲେ ? ତାହା ତ ନୁହେଁ । ଋଷିମାନଙ୍କର ପ୍ରଶ୍ନାନୁସାରେ ଉତ୍ତର ଦିଅନ୍ତି । ଋଷିମାନେ ଯେଉଁ ବିଷୟ ଜ୍ଞାତ ହେବାକୁ ଇଚ୍ଛା କରନ୍ତି, ସୌତି ସେହି ପ୍ରସଙ୍ଗର ଉତ୍ତର ଦିଅନ୍ତି । ଯେମନ୍ତ—

ଋଷୟଃ ଊଚୁଃ

ସମନ୍ତପଞ୍ଚକମିତି ଯଦୁକ୍ତଂ ସୂତନନ୍ଦନ ।
ଏତତ୍ ସର୍ବଂ ଯଥାତତ୍ତ୍ୱଂ ଶ୍ରୋତୁମିଚ୍ଛାମହେ ବୟଂ ।

୧ । ୨ ।୧

ସୌତିରୁବାଚ

ଶୃଣୁଧ୍ୱଂ ମମ ଭୋ ବିପ୍ରା ବ୍ରୁବତଶ୍ଚ କଥାଃ ଶୁଭାଃ ।
ସମନ୍ତପଞ୍ଚକାଖ୍ୟଞ୍ଚ ଶ୍ରୋତୁମର୍ହତ ସତ୍ତମାଃ ।୧।୨।୨

ଋଷୟ ଉଚୁଃ

ଅକ୍ଷୌହିଣ୍ୟ ଇତି ପ୍ରୋକ୍ତଂ ଯତ୍ତ୍ୱୟା ସୂତନନ୍ଦନ ।
ଏତଦିଚ୍ଛାମହେ ଶ୍ରୋତୁଂ ସର୍ବମେବ ଯଥାତଥଂ ।

ସୌତିରୁବାଚ

ଏକୋରଥୋ ଗଜଶ୍ଚୈକ୍ୟୋନରାଃ ପଞ୍ଚ ପଦାତୟଃ
++ ୧ । ୨ । ୧୯

ଶୌନକ ଉବାଚ,

ପୁରାଣମିଖିଳଂ ତାତ ପିତା ତେଽଧୀତବାନ୍ ପୁରା ।
କଚ୍ଚିତ୍ତ୍ୱମପି ତତ୍ ସର୍ବ ମଧୀଷେ ଲୋମହର୍ଷଣେ ।୧।୨।୧

ସୌତିରୁବାଚ

ଯଦଧୀତଂ ପୁରା ସମ୍ୟକ୍ + + । ୧ । ୫ । ୪

ଉପରୋକ୍ତ କେତୋଟି ପ୍ରଶ୍ନୋତ୍ତରରୁ ସ୍ପଷ୍ଟ ଜଣାଯାଉଅଛି ଯେ, ଶୌନକାଦିଙ୍କ ପ୍ରଶ୍ନାନୁସାରେ ସୌତି ଉତ୍ତର ଦେଇଅଛନ୍ତି, ବିସ୍ତୃତରୂପେ ବର୍ଣ୍ଣନା କରୁଅଛନ୍ତି; ମାତ୍ର ବ୍ୟାସ ରଚିତ ମହାଭାରତ ଋଷିମାନଙ୍କ ଆଗରେ ପାଠ କରି ନାହାନ୍ତି । ପୁଣି ସୌତି ଯେ ବୈଶମ୍ପାୟନଙ୍କଠାରୁ ଶ୍ରବଣ କରିଥିବା କଥା କେବଳ ଋଷିମାନଙ୍କଠାରେ ବ୍ୟକ୍ତ କରୁଅଛନ୍ତି, ତାହା ନୁହେଁ; କିନ୍ତୁ ତାଙ୍କ ପିତା ଏବଂ ଦ୍ୱିଜଶ୍ରେଷ୍ଠମାନଙ୍କଠାରୁ ଯାହା ଶ୍ରବଣ କରିଅଛନ୍ତି, ଅଧ୍ୟୟନ କରିଅଛନ୍ତି, ତାହା ବର୍ଣ୍ଣନା କରିଅଛନ୍ତି । ଏତିକି ନୁହେଁ, ସୌତି ଆହୁରି କହିଅଛନ୍ତି—

ପ୍ରବକ୍ଷାମି ମତଂ ପୂର୍ଣଂ ବ୍ୟାସସ୍ୟାଭୁତକର୍ମଣଃ ।
୧। ୨ । ୨୫

ଅନେକଙ୍କର ଧାରଣା ଯେ, ବ୍ୟାସରଚିତ ମହାଭାରତକୁ ବୈଶମ୍ପାୟନ ଜନମେଜୟଙ୍କ ସଭାରେ ପାଠ କରିଥିଲେ । ମାତ୍ର ତାହା ସତ୍ୟ ନ ଥିବାର ନିମ୍ନୋଦ୍ଧୃତ ଶ୍ଳୋକମାନଙ୍କରୁ ଜଣାପଡ଼ିବ—

ଜନମେଜୟ ଉବାଚ

ଯଯାତିଃପୂର୍ବଜୋଽସ୍ମାକଂ ଦଶମୋ ଯଃ ପ୍ରଜାପତେଃ
କଥଂ ସ ଶୁକ୍ରତନୟାଂ ଲେଭେ ପରମଦୁର୍ଲଭାଂ ।
୧।୭୬।୧

ବୈଶମ୍ପାୟନ ଉବାଚ

ଯଯାତିରାଶୀନ୍ନୃପତିଃ + + + ୧ । ୭୬ । ୩

ଜନମେଜୟ ଉବାଚ

ଶ୍ରୁତସ୍ତ୍ୱତ୍ତୋ ମୟା ବ୍ରହ୍ମନ୍
ପୂର୍ବେଷାଂ ସମ୍ଭବୋ ମହାନ୍ ।
ଉଦାରାଶ୍ଚାପି ବଂଶେଽସ୍ମିନ୍
ରାଜାନୋ ମେ ପରିଶ୍ରୁତାଃ ।
୧ । ୯୫ । ୧।

ବୈଶମ୍ପାୟନ ଉବାଚ

ଶୃଣୁ ରାଜନ୍! ପୁରା ସମ୍ୟତ୍ ମୟା
ଦ୍ୱୈପାୟନାତ୍ ଶ୍ରୁତଂ ।
ପ୍ରୋଚ୍ୟମାନମିଦଂ କୃତ୍ସ୍ନଂ
ସ୍ୱବଂଶଜନନଂ ଶୁଭଂ ।
୧।୯୫।୬

ବୈଶମ୍ପାୟନ ଉବାଚ

ମହର୍ଷେ ବିଶ୍ରୁତସ୍ୟେହ ସର୍ବଲୋକେଷୁ ଧୀମତଃ ।
ପ୍ରବକ୍ଷାମି ମତଂ କୃତ୍ସ୍ନଂ ବ୍ୟାସସ୍ୟାସ୍ୟ ମହାତ୍ମନଃ ।
୧ । ୬୧।୨

ଅସୁରାଣାଂ ସୁରାଣାଞ୍ଚ ପୁରାଣେ ସଂଶ୍ରୁତୋ ମୟା ।
୧ । ୬୫ । ୩୮

ଜନମେଜୟଙ୍କ ପ୍ରଶ୍ନାନୁସାରେ ବୈଶମ୍ପାୟନ ଉତ୍ତର ଦେଇଅଛନ୍ତି, ଦ୍ୱୈପାୟନଙ୍କଠାରୁ ଶୁଣିଥିବା କଥା କହିଅଛନ୍ତି, ବ୍ୟାସଙ୍କ ମତ ବ୍ୟକ୍ତ କରିଅଛନ୍ତି ଏବଂ ପୁରାଣରୁ ଶୁଣିଥିବା କଥା କହିଅଛନ୍ତି । ତେବେ ବ୍ୟାସପ୍ରଣୀତ ମହାଭାରତ ଖଣ୍ଡ ବୈଶମ୍ପାୟନ ଜନମେଜୟଙ୍କ ସଭାରେ ପାଠ କଲେ ବୋଲି କେଉଁ କାରଣରୁ ବିଶ୍ୱାସ କରାଯିବ ? କେବଳ ଏତିକି ନୁହେଁ ।

"ନମଃ କୃଷ୍ଣଦ୍ୱୈପାୟନାୟ"
"କୃଷ୍ଣଦ୍ୱୈପାୟନ ପ୍ରୋକ୍ତାଃ"
"ମହର୍ଷେ ପୂଜିତ ସ୍ୟେହ"
"ବ୍ୟାସସ୍ୟାଭୁତ କର୍ମଣଃ"
"ଇତିହାସମିମଂ ଚକ୍ରେ ପୁଣ୍ୟଂ ସତ୍ୟବତୀସୁତଃ"
"ବ୍ୟାସେନାମିତ ବୁଦ୍ଧିନା"

ଏହା କି କଦାପି ସମ୍ଭବ ହୋଇପାରେ ଯେ ବ୍ୟାସ ନିଜ ରଚିତ ପୁସ୍ତକରେ ଉକ୍ତ ପ୍ରକାର ଆତ୍ମଶ୍ଳାଘା ଆତ୍ମପ୍ରଶଂସା ଲେଖିଅଛନ୍ତି । ଏହା କଦାପି ନୁହେଁ ।

ବୋଧହୁଏ ପାଠକଗଣ ହୃଦୟଙ୍ଗମ କରିପାରିଛନ୍ତି ଯେ, ଜନମେଜୟଙ୍କ ସଭାରେ ବୈଶମ୍ପାୟନ ବ୍ୟାସରଚିତ ମହାଭାରତ ପାଠ କରି ନ ଥିଲେ ଏବଂ ସୌତି ଋଷିମାନଙ୍କ ସମକ୍ଷରେ ବ୍ୟାସରଚିତ ଏବଂ ବୈଶମ୍ପାୟନଙ୍କ ଦ୍ୱାରା ପଠିତ ମହାଭାରତ ପାଠ କରି ନ ଥିଲେ । ଉପରୋକ୍ତ ଉଦ୍ଧୃତାଂଶରୁ ଜଣାଯାଉଅଛି ଯେ, ମହାଭାରତ ବ୍ୟାସରଚିତ ନୁହେଁ କିମ୍ବା

ବୈଶମ୍ପାୟନ ରଚିତ ନୁହେଁ। ତେବେ କି ଏହା ସୌତିରଚିତ ? ତାହା ମଧ୍ୟ ନୁହେଁ ।

''ଲୋମହର୍ଷଣ ପୁତ୍ର ଉଗ୍ରଶ୍ରବାଃ ସୌତିଃ ପୌରାଣିକୋ ନୈମିଷାରଣ୍ୟେ ଶୌନକସ୍ୟ କୁଳପତେର୍ଦ୍ୱାଦଶବାର୍ଷିକେ ସତ୍ରେ ଋଷିନ୍ ଅଭ୍ୟାଗତାନୁପତସ୍ଥେ'' । ୧ । ୪ । ୧। ଏଥିରୁ ଏବଂ ପ୍ରଥମ ଅଧ୍ୟାୟରୁ ସ୍ପଷ୍ଟ ଜଣାଯାଉଅଛି ଯେ ଏହା ସୌତି ଭିନ୍ନ ଅନ୍ୟଦ୍ୱାରା ଲିଖିତ ।

ପ୍ରତ୍ୟେକ ପୁରାଣରେ ଏହା ଦେଖାଯାଏ ଯେ ଋଷିମାନେ ଶ୍ରୋତା ଏବଂ ସୂତ, ସୌତି ପ୍ରଭୃତି ବକ୍ତା । ଯେମନ୍ତ ନାଟକରେ ସୂତ୍ରଧାର, ନଟୀ ନ ଥିଲେ ନାଟକତ୍ୱ ଲୋପ ପାଏ, ତେମନ୍ତ ପୁରାଣରେ ଶୌନକାଦି ଋଷି ଶ୍ରୋତା ଏବଂ ସୂତ ବା ସୌତି କଥକ ନ ଥିଲେ ପୁରାଣର ପ୍ରାଚୀନତ୍ୱ ଓ ମହତ୍ତ୍ୱ ଲୋପ ପାଏ । ପ୍ରାଚୀନର କଥା ତ ଛାଡ଼ । ଆମ୍ଭ ଦେଶର ତ୍ରିନାଥମେଳା, ବୁଧେଓଷା ପ୍ରଭୃତିରେ ମଧ୍ୟ ଋଷି ଶ୍ରୋତା ଓ ଋଷି କଥକ ଅଛନ୍ତି। ପ୍ରାଚୀନତ୍ୱ ଫଳାଇବା ନିମନ୍ତେ ପ୍ରାଚୀନ ଋଷିମାନଙ୍କୁ ଶ୍ରୋତା ବକ୍ତା କରିବାର ଗୋଟିଏ ବିଧି ହୋଇଅଛି । ଏହା ଦେଖି ହିନ୍ଦୁଶାସ୍ତ୍ରର ପ୍ରାଚୀ ନତ୍ୱ ସ୍ଥିର କରିବା ଭ୍ରମ ମାତ୍ର ।

ଏଣିକି ମହାଭାରତର ବିଷୟ ଆଲୋଚନାରେ ପ୍ରବୃତ୍ତ ହେବା ବିଧେୟ ।

## ॥ ୨ ॥

ମହାଭାରତ ଲିଖିତ ଜନ୍ମସବୁ ସୃଷ୍ଟିଛଡ଼ା-ଯେମନ୍ତ ବିନା ପୁରୁଷ ସଙ୍ଗରେ ସ୍ତ୍ରୀର ଗର୍ଭଧାରଣ, ସ୍ତ୍ରୀ ପୁରୁଷର ସହବାସ ମାତ୍ରେ ଶିଶୁର ତତ୍କ୍ଷଣାତ୍ ଜନ୍ମ, ରେତଭକ୍ଷଣଦ୍ୱାରା ଶିଶୁ ଗର୍ଭସ୍ଥ ହେବା, ଜଡ଼ପଦାର୍ଥରେ ରେତ ସଞ୍ଚୟଦ୍ୱାରା ଶିଶୁର ଜନ୍ମ, ମାଂସପିଣ୍ଡକୁ ଖଣ୍ଡ ଖଣ୍ଡ କରି କଳସରେ ରକ୍ଷା କରିବାଦ୍ୱାରା କଳସରୁ ଶିଶୁର ଜନ୍ମ ଇତ୍ୟାଦି । ଆଧୁନିକ ଯୁଗରେ ଉକ୍ତ ପ୍ରକ୍ରିୟାରେ ମନୁଷ୍ୟର ଜନ୍ମ ହେଉଥିବାର ତ ଶୁଣାଯାଏ ନାହିଁ । ଦ୍ୱାପର ତ୍ରେତା ଏବଂ ସତ୍ୟଯୁଗରେ ଏବଂବିଧ ରୀତିରେ ଜନ୍ମ ହୋଇଥିଲା କି ? ଏବଂ କାଳର ପରିବର୍ତ୍ତନ ସଙ୍ଗେ ସଙ୍ଗେ ମନୁଷ୍ୟର ଜନ୍ମପ୍ରକ୍ରିୟାର ମଧ୍ୟ ପରିବର୍ତ୍ତନ ଘଟିଲା କି ? ଯୁଗ ପରିବର୍ତ୍ତନ ଯେବେ ଜନ୍ମର କାରଣ ହୋଇଥାନ୍ତା, ତାହାହେଲେ ବିଭିନ୍ନ ଯୁଗରେ ବିଭିନ୍ନ ପ୍ରକାର ଜନ୍ମ ହେଉଥାନ୍ତା, ସମସ୍ତ ଯୁଗରେ କେତେକଙ୍କର ଜନ୍ମ ସ୍ୱାଭାବିକ, ପୁଣି କେତେକଙ୍କ ଜନ୍ମ ଅସ୍ୱାଭାବିକ ହୁଅନ୍ତା ନାହିଁ। ଶକୁନ୍ତଳା ଦଶ ମାସ ଗର୍ଭଧାରଣ କରି ଭରତଙ୍କୁ କଣ୍ୱାଶ୍ରମରେ ଜନ୍ମ କରିଥିଲେ । ରାଜା ରାମଚନ୍ଦ୍ର ଅପବାଦ ଭୟରେ ନିରପରାଧା ସୀତାଙ୍କୁ ଅନ୍ତଃସତ୍ତ୍ୱାବସ୍ଥାରେ ବିସର୍ଜନ ଦେଇଥିଲେ । ଶକୁନ୍ତଳା ଓ ସୀତା ଯେଉଁମାନଙ୍କୁ ଜନ୍ମ କଲେ, ସେମାନଙ୍କର ଜନ୍ମ ସ୍ୱାଭାବିକ; ମାତ୍ର ଶକୁନ୍ତଳା ଓ ସୀତାଙ୍କର ଜନ୍ମ ଅସ୍ୱାଭାବିକ। ଏହିପରି ମହାଭାରତର ବ୍ୟାସ, କୃପ, କୃପୀ, ଦ୍ରୋଣ, ସତ୍ୟବତୀ, ଦୁର୍ଯ୍ୟୋଧନ ପ୍ରଭୃତି ଭ୍ରାତୃଗଣଙ୍କର ଏବଂ ଆଉ କେତେଜଣଙ୍କର ଜନ୍ମ ଅସ୍ୱାଭାବିକ। ପ୍ରାଚୀନ ଗ୍ରନ୍ଥମାନଙ୍କରୁ ଜନ୍ମବୃତ୍ତାନ୍ତ ଆଲୋଚନା କରିବାକୁ ଯାଇ ଆମ୍ଭେମାନେ ଦେଖିବାକୁ ପାଉଁ ଯେ ଆଧୁନିକ ଡାକ୍ତରମାନଙ୍କ ମତ ଏବଂ ପ୍ରାଚୀନ ମତ ମଧ୍ୟରେ ଅତି ସାମାନ୍ୟ ପ୍ରଭେଦ ଅଛି। ଗୋଟିଏ ପ୍ରାଚୀନ ମତ—ରେତ ଓ ରକ୍ତ ଜରାୟୁପରିବେଷ୍ଟିତ ହୋଇ ଏକ ଦିନରେ କଳଳରୂଚିତ୍ୱ ପ୍ରାପ୍ତ ହୁଏ । ପଞ୍ଚରାତ୍ରରେ ବୁଦ୍‌ବୁଦାକାର ହୁଏ । ସପ୍ତରାତ୍ରରେ ମାଂସପେଶିତ୍ୱ ପ୍ରାପ୍ତ ହୁଏ । ପକ୍ଷମାତ୍ରରେ ପେଶୀ ରୁଧିରପରିପ୍ଳୁତ ହୁଏ । ପଞ୍ଚବିଂଶରାତ୍ରରେ ଅଙ୍କୁରୋତ୍ପତ୍ତି । ତିନି ମାସରେ ଅଙ୍ଗସନ୍ଧି, ଚାରି ମାସରେ ଅଙ୍ଗୁଳି, ପାଞ୍ଚ ମାସରେ ନାସା କର୍ଣ୍ଣ, ଛ' ମାସରେ କର୍ଣ୍ଣଛିଦ୍ର, ସାତ ମାସରେ ରୋମ, ଶିରର କେଶ । ପାଞ୍ଚ ମାସରେ ଜୀବ ଚୈତନ୍ୟ ପ୍ରାପ୍ତ ହୁଏ । ଗର୍ଭସ୍ଥ ନାଭିରନ୍ଧ୍ରଦ୍ୱାରା ଭ୍ରୂଣ ପୋଷିତ ହୁଏ, ଏଣୁ ମୃତ ହୁଏ ନାହିଁ । ଏହି ତ ପୁରାଣର ମତ। ତେବେ ଭରଦ୍ୱାଜଙ୍କ ରେତ କଳସସ୍ଥ ହେବାରୁ ଦ୍ରୋଣ କଳସରୁ ଜାତ ହେଲେ ବୋଲି କିପରି ବିଶ୍ୱାସ କରିବା ? ଶରସ୍ତମ୍ବରୁ କୃପ କୃପୀ ଜନ୍ମ ହେଲେ ବୋଲି କେଉଁ କାରଣରୁ ବିଶ୍ୱାସ କରିବା ? ଏ ସମସ୍ତ ଅଦ୍ଭୁତ ବୃତ୍ତାନ୍ତକୁ ବିଶୁଦ୍ଧ କବି କଳ୍ପନା ବୋଲିବାରେ କି ଦୋଷ ଅଛି ? ଯେବେ ଗୋଟିଏ ବଡ଼ ମତ୍ସ୍ୟ ଗୋଟିଏ କ୍ଷୁଦ୍ର ମତ୍ସ୍ୟକୁ ଉଦରସ୍ଥ କରି ହଜମ କରିଦିଏ, ତେବେ ରେତ ଭକ୍ଷଣ କଲେ ତାହା ହଜମ ନ ହୋଇ ମତ୍ସ୍ୟଗର୍ଭରୁ ମାନବଶିଶୁର ଜନ୍ମ ହୁଏ କିପରି ? ରେତ, ରକ୍ତ, ମାଂସ ପ୍ରଭୃତି ପଚନଶୀଳ ପଦାର୍ଥ । ଭୂମିରେ, କାଷ୍ଠରେ ପଡ଼ିଲେ ଶୁଖିଯିବାର କଥା କିମ୍ବା ସ୍ଥଳବିଶେଷରେ ପଚି ଯିବାର କଥା; ମାତ୍ର ଗାନ୍ଧାରୀ ଯେଉଁ ଲୌହଷ୍ଠୀଳବତ୍ କଠିନ ମାଂସପେଶୀକୁ ଗର୍ଭରୁ ଟାଣି ଆଣିଲେ, ତାହାକୁ ବ୍ୟାସଦେବ ଛେଚି ୧୦୧ ଖଣ୍ଡ କଲେ ଏବଂ ୧୦୧ ଗୋଟା ଘୃତକୁମ୍ଭରେ ରଖିଦେଲେ, ସେଥିରୁ ଦୁର୍ଯ୍ୟୋଧନାଦି ୧୦୧ ଜଣ ଜନ୍ମଗ୍ରହଣ କଲେ । ଏହା ସତ୍ୟ କଥା ନା ମିଥ୍ୟାପୂର୍ଣ୍ଣ କବିକଳ୍ପନା ? ଆରବ ଉପନ୍ୟାସରୁ ବଳି କିଏ ସବୁ ଅଦ୍ଭୁତ କଳ୍ପନା ନୁହେଁ ? ପାଠକବର୍ଗଙ୍କୁ ଭ୍ରାନ୍ତ କରିବା ଇଚ୍ଛାରେ କି

କବି ଏହି ମହାକଳ୍ପନାର ଉସ ପିଟାଇ ନାହାନ୍ତି ? ଧନ୍ୟ ସେହି ଲେଖକ, ଯେକି ତାଙ୍କର ଭ୍ରାନ୍ତ ବଂଶଧରଗଣ ଏହା ବିଶ୍ୱାସ କରିବେ ବୋଲି ହୃଦୟଙ୍ଗମ କରି ଏଗୁଡ଼ିକ ଲିପିବଦ୍ଧ କରିଯାଇଅଛନ୍ତି । ଧନ୍ୟ ହିନ୍ଦୁଜାତି, ଯେଉଁମାନେ ଈଦୃଶ ଅଳୀକ କଳ୍ପନାକୁ ଅନ୍ଧ ବିଶ୍ୱାସର ବଶବର୍ତ୍ତୀ ଥାଇ 'ଧର୍ମ କଥା' ବୋଲି ଦୃଢ଼ଭାବରେ ଧରି ବସିଅଛନ୍ତି ।

ପୁତ୍ରର ପ୍ରୟୋଜନ କ'ଣ ? ପୃଥିବୀର ସମସ୍ତ ଜୀବ ସନ୍ତାନଲିପ୍ସୁ । ମାନବେତର ଜୀବ ସନ୍ତାନଠାରୁ ଉପକାର ଲାଭର ବାସନା ରଖନ୍ତି ନାହିଁ । ମନୁଷ୍ୟ ସନ୍ତାନଠାରୁ ବହୁ ଆଶା ରଖେ । ହିନ୍ଦୁଗଣ ଇହଧାମ ତ୍ୟାଗ କଲା ଉତ୍ତାରୁ ମଧ ପୁତ୍ରଠାରୁ ପିଣ୍ଡ ପାଇବାର ଆଶା ରଖନ୍ତି । ପୁତ୍ର ନରକରୁ ତ୍ରାଣ କରେ ।

ପିତର ଉକ୍ତ
ନହି ଧର୍ମଫଳୈସ୍ତାତ ନ ତପୋଭିଃ ସୁସଞ୍ଚିତୈଃ ।
ତାଂ ଗତିଂ ପ୍ରାପ୍ନୁବନ୍ତୀହ ପୁତ୍ରିଣୋ ଯାଂ ବ୍ରଜନ୍ତିବୈ ।
୧ । ୧୩ । ୨୫

ପିଣ୍ଡ ଆଶାରେ ଦ୍ୱାଦଶବିଧ ପୁତ୍ରର ସୃଷ୍ଟି । କାମପରବଶ ହୋଇ ଗୁପ୍ତପ୍ରଣୟ ଦ୍ୱାରା ପରସ୍ତ୍ରୀ ଗର୍ଭରେ ଯେଉଁ ପୁତ୍ର ଜନ୍ମ କରାଯାଏ, ତା'ଠାରେ ପିତାର ପିଣ୍ଡପ୍ରାପ୍ତି ଆଶା ନ ଥାଏ । ପିତୃଗୃହରେ କନ୍ୟା ଅବସ୍ଥାରେ ମାତା ଯେଉଁ ଜାରଜ ସନ୍ତାନ ଉତ୍ପାଦନ କରେ, ତାଠାରୁ ପିଣ୍ଡ ପାଇବାର ଆଶା ମଧ ମା' ରଖି ନ ଥାଏ । ଯେମନ୍ତ ସୂର୍ଯ୍ୟ ଓ କୁନ୍ତୀ କର୍ଣ୍ଣଠାରେ ପିଣ୍ଡପ୍ରାପ୍ତି ଆଶା ରଖି ନ ଥିଲେ । କର୍ଣ୍ଣ କାନୀନପୁତ୍ର, ଯେହେତୁ କୁନ୍ତୀ ପିତୃଗୃହରେ ସୂର୍ଯ୍ୟ ଔରସରେ କର୍ଣ୍ଣଙ୍କୁ ଜନ୍ମ କରିଥିଲେ । ମହାଭାରତ ଲେଖକ କୁନ୍ତୀଙ୍କ ବ୍ୟଭିଚାରିଣୀ ଦୋଷରୁ ଏବଂ ସୂର୍ଯ୍ୟଙ୍କୁ ବ୍ୟଭିଚାରୀ ଦୋଷରୁ ରକ୍ଷା କରିପାରିବେ କି ? ଗୃହଧର୍ମାବଲମ୍ବୀ ଯୁବାପୁରୁଷ କୌଣସି ସୁନ୍ଦରୀ ସ୍ତ୍ରୀ ପ୍ରତି ଦୃଷ୍ଟିପାତ କଲେ ଯୁବକଙ୍କୁ ଘୃଣାସ୍ପଦ ମନେ କରାଯାଏ । ଜଣେ ବ୍ରହ୍ମଚାରୀ ଋଷି ତଦ୍ରୂପ କାର୍ଯ୍ୟ କଲେ ତତୋଽଧିକ ଘୃଣ୍ୟ ଓ ନିନ୍ଦ୍ୟ ହେବାର କଥା । ପରସ୍ତ୍ରୀ ଅଭିଗମନ, ରମଣୀର ସତୀତ୍ୱ ନାଶ ଅତି ଜଘନ୍ୟ ପାପ । ପରାଶର ଋଷି ସତ୍ୟବତୀଙ୍କ ରୂପରେ ମୁଗ୍ଧ ହୋଇ ତାହାଙ୍କର ସତୀତ୍ୱ ନଷ୍ଟ କଲେ ବୋଲି ଦୋଷୀ ହେବେ ନାହିଁ କାହିଁକି ? ପରାଶରଙ୍କ ଚରିତ୍ରରେ କବି ଯେଉଁ କଳଙ୍କକାଳିମା ବୋଳି ଦେଇଅଛନ୍ତି, ତାହା ଧୌତ କରିପାରିବେ କି ? ପରାଶର ପୁତ୍ର ଇଚ୍ଛାରେ ସତ୍ୟବତୀଙ୍କର ସଙ୍ଗ କରି ନାହାନ୍ତି । ସତ୍ୟବତୀଙ୍କ ରୂପରେ ମୁଗ୍ଧ ହୋଇ କାମପରବଶ ହୋଇ ଏହି ଦୁଷ୍କାର୍ଯ୍ୟରେ ରତ ହୋଇଥିଲେ । ଏହି ଦୁଷ୍କର୍ମର ଫଳ କି ବ୍ୟାସଦେବ ?

ଯଂ ବ୍ରାହ୍ମଣସ୍ତୁ ଶୂଦ୍ରାୟାଂ
କାମାଦୁତ୍ପାଦୟେତ୍ ସୁତଂ ।
ସ ପାରୟନ୍ନେବଶବ
ସ୍ତସ୍ମାତ୍ ପାରଶବଃ ସ୍ମୃତଃ । ମନୁ ।

ବ୍ରାହ୍ମଣ କାମବଶତଃ ଶୂଦ୍ରା ଗର୍ଭରେ ଯେଉଁ ପୁତ୍ର ଉତ୍ପାଦନ କରେ, ତାହାକୁ ଶୌଦ୍ର ବା ପାରଶବ ପୁତ୍ର ବୋଲାଯାଏ । ବେଦବିଭାଗକର୍ତ୍ତା ବ୍ରହ୍ମଜ୍ଞାନୀ ବ୍ୟାସଦେବ କି ପାରଶବ ପୁତ୍ର ? ସେହି ବ୍ୟାସଦେବ କି ପିତା ମାତାଙ୍କର ଘୋରତର କୃଷ୍ଣବର୍ଣ୍ଣ କଳଙ୍କ ମସୀରେ ନିଜର ଜୀବନଚରିତ ଲେଖି ଯାଇଅଛନ୍ତି ? ଆଉ ଗୋଟିଏ କଥା ଏହା ବ୍ୟାସଙ୍କର ଯଶ, ନା କଳଙ୍କ ? ବ୍ୟାସଜନନୀ ସତ୍ୟବତୀ ଶାନ୍ତନୁଙ୍କର ମହିଷୀ ହେଲେ । ଶାନ୍ତନୁ ଔରସରୁ ସତ୍ୟବତୀଙ୍କର ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ନାମରେ ଦୁଇଟି ପୁତ୍ର ହେଲେ । ଚିତ୍ରାଙ୍ଗଦ ବିବାହ ଉତ୍ତାରୁ ଗନ୍ଧର୍ବରାଜଦ୍ୱାରା ହତ ହେଲେ । ବିଚିତ୍ରବୀର୍ଯ୍ୟ ଯକ୍ଷ୍ମାରୋଗରେ ମୃତ ହେଲେ । ଏଣୁ ସତ୍ୟବତୀ 'ମା ଦୌଷ୍ମନ୍ତୋ ବଂଶ ଉଚ୍ଛେଦଂ ବ୍ରଜେଦତି' । (୧ । ୯୫ । ୫୨) ବୋଲି ଚିନ୍ତା କଲେ ଏବଂ ଦୌଷ୍ମାନ୍ତ ବଂଶ ରକ୍ଷା କରିବା ନିମନ୍ତେ ନିଜର କାନୀନ ପୁତ୍ର ବ୍ୟାସଙ୍କୁ ଅମ୍ବିକା ଗର୍ଭରେ ପୁତ୍ରୋତ୍ପାଦନ କରିବା ନିମନ୍ତେ ଅନୁରୋଧ କଲେ । ବ୍ୟାସ ମାତାଙ୍କ ଅନୁରୋଧରୁ ଭ୍ରାତୃବଧୂଙ୍କୁ ସହବାସ କରି ପୁତ୍ର ଜନ୍ମ କରିବାର ଚେଷ୍ଟା କଲେ । ବ୍ୟାସଙ୍କୁ କୃଷ୍ଣବର୍ଣ୍ଣ, କପିଳ ଏବଂ ଜଟାଶ୍ମଶ୍ରୁଯୁକ୍ତ ଦେଖି ସମ୍ଭୋଗକାଳରେ ଅମ୍ବିକା ଭୀତା ହୋଇ ଚକ୍ଷୁନିମୀଳିତ କଲେ, ଏଣୁ ବ୍ୟାସଦେବଙ୍କର ମନ ତୃପ୍ତ ନୋହିବାରୁ ଧୃତରାଷ୍ଟ୍ର ଜନ୍ମାନ୍ଧ ହେଲେ । ସତ୍ୟବତୀ କହିଲେ, ଅନ୍ଧ ନୃପତି କୁରୁକୁଳର ଅନୁରୂପ ନୁହେଁ, ଏଣୁ ଅମ୍ବାଳିକା ଗର୍ଭରୁ ଆଉ ଗୋଟିଏ ପୁତ୍ର ଉତ୍ପାଦନ କର । ସମ୍ଭୋଗକାଳରେ ବ୍ୟାସଙ୍କ କଦାକାର ଦେଖି ଅମ୍ବାଳିକା 'ବିପର୍ଣ୍ଣା ପାଣ୍ଡୁସଙ୍କାଶା' ହେଲେ । ବ୍ୟାସଙ୍କର ମନ ତୁଷ୍ଟ ହେଲା ନାହିଁ; ଏଣୁ କହିଲେ—

''ଯସ୍ମାତ ପାଣ୍ଡୁତ୍ୱମାପନ୍ନା ବିରୂପଂ ପ୍ରେକ୍ଷ୍ୟ ମାମିହ ।
ତସ୍ମାଦେଷ ସୁତସ୍ତେ ବୈ ପାଣ୍ଡୁରେବ ଭବିଷ୍ୟତି ।''
୧ । ୧୦୬ । ୧୭

ସତ୍ୟବତୀ ଏହା ଶ୍ରବଣ କରି ପୁଣି ଆଉ ଗୋଟିଏ ପୁତ୍ର ପ୍ରାର୍ଥନା କଲେ ଏବଂ ପୁଣି ଜ୍ୟେଷ୍ଠା ବଧୂକୁ ନିଯୁକ୍ତ କଲେ । ମାତ୍ର ଋଷିଙ୍କର ଗନ୍ଧ ଓ ରୂପକୁ ଚିନ୍ତାକରି ଅମ୍ବିକା ଏଥର ନିଜେ

ନ ଯାଇ ନିଜର ଦାସୀକୁ ନିଜ ଭୂଷଣରେ ଭୂଷିତା କରି ବ୍ୟାସଙ୍କ ନିକଟକୁ ପ୍ରେରଣ କଲେ । ଦାସୀ ବ୍ୟାସଦେବଙ୍କୁ ଚରିତାର୍ଥ କଲା ।

କାମୋପଭୋଗେନ ରହସ୍ତସ୍ୟାଂ ତୁଷ୍ଟିମଗାଦୃଷିଃ ।
ତୟା ସହୋଷି ତୋ ରାଜନ୍ ! ମହର୍ଷିଃ ସଂଶିତବ୍ରତଃ ।
ସଜଙ୍କେ ବିଦୁରୋନାମ୍ × × ୧ । ୧୦୬ । ୨୬-୨୮

ଦାସ ରାଜନନ୍ଦିନୀ ସତ୍ୟବତୀ ଏହି ଉପାୟରେ ଦୌଷ୍ମନ୍ତ ବଂଶ ରକ୍ଷା କଲେ । ଧନ୍ୟ ଜନନୀ, ଧନ୍ୟ ପୁତ୍ର । ଏହି କଥା ଯେବେ ସତ୍ୟ ହୁଏ, ତାହାହେଲେ ବ୍ୟାସଦେବ କି ସ୍ୱାର୍ଥପର, କି କାମାସକ୍ତ । ଅମ୍ବିକା, ଅମ୍ବାଳିକା ତାଙ୍କର କାମପ୍ରବୃତ୍ତିକୁ ଚରିତାର୍ଥ କରି ନ ପାରିଲେ ବୋଲି ପୁତ୍ର ଦୁହିଁଙ୍କୁ ଅନ୍ଧ ଓ ପାଣ୍ଡୁ କଲେ; ମାତ୍ର ଅମ୍ବିକାଙ୍କର ଦାସୀ ତାଙ୍କୁ ସମ୍ଭୋଗଦ୍ୱାରା ଚରିତାର୍ଥ କଲା ବୋଲି ତାହାର ପୁତ୍ରକୁ ସୁଶ୍ରୀ କଲେ । ଏଥିରୁ ବଳି ବ୍ୟାସଦେବଙ୍କର ଆଉ କି ଅପଯଶ ହୋଇପାରେ ? ମହାଭାରତର ଈଦୃଶ ଉପାଖ୍ୟାନଗୁଡ଼ିକୁ ମିଥ୍ୟା କଳ୍ପନା ବୋଲିବା ଦ୍ୱାରା ଧର୍ମଦ୍ୱେଷୀ ବୋଲି ଲାଞ୍ଛିତ ହେବାକୁ ଆମ୍ଭେମାନେ ଭୀତ ନୋହୁଁ; ମାତ୍ର ବ୍ୟାସଦେବଙ୍କୁ ଈଦୃଶ ଘୃଣ୍ୟ, ଜଘନ୍ୟ, ଅନାର୍ଯ୍ୟ କଳଙ୍କ କାଳିମାରେ ରଞ୍ଜିତ କରିବାକୁ ଶତ ଶତବାର ଶଙ୍କିତ ଓ ଭୀତ ଅଟୁଁ ।

ଭ୍ରାତୃଣାମେକଜାତାନାମେକଶ୍ଚେତ୍
ପୁତ୍ରବାନ୍ ଭବେତ୍ ।
ସର୍ବାଂସ୍ତାନ୍ ତେନ ପୁତ୍ରେଣ
ପୁତ୍ରିଣୋ ମନୁରବ୍ରବିତ୍ । ମନୁ ।

କୁରୁକୁଳର ରାଜାମାନଙ୍କର କି ଗୋଟିଏ ମାତ୍ର ପୁତ୍ର ଜନ୍ମ ହୁଏ ? ତାହା ତ ନୁହେଁ । ଶାନ୍ତନୁଙ୍କର ପୁତ୍ର ଚିତ୍ରାଙ୍ଗଦ ଏବଂ ବିଚିତ୍ରବୀର୍ଯ୍ୟ ମୃତ ହେଲେ ମଧ୍ଯ ଉପରୋକ୍ତ ଶାସ୍ତ୍ରପ୍ରମାଣାନୁସାରେ ବାହ୍ଲିକଙ୍କ ପୁତ୍ର ଦ୍ୱାରା ଶାନ୍ତନୁ ପୁତ୍ରବାନ୍ ଏବଂ ଦୌଷ୍ମନ୍ତ ବଂଶ ଉଚ୍ଛେଦ ହେବାର କୌଣସି କାରଣ ନାହିଁ । ବାହ୍ଲିକ୍ ଶାନ୍ତନୁଙ୍କର ସହୋଦର କନିଷ୍ଠଭାଇ । ଯେବେ ବିଚିତ୍ରବୀର୍ଯ୍ୟଙ୍କର ବିଧବାପତ୍ନୀ ଅମ୍ବିକା, ଅମ୍ବାଳିକାଙ୍କ ଗର୍ଭରୁ କ୍ଷେତ୍ରଜ ପୁତ୍ର ଜନ୍ମ କରାଇବାର ପ୍ରୟୋଜନ ଥିଲା, ତେବେ କୁରୁବଂଶୀୟ କୌଣସି ବୀର ପୁରୁଷ ଦ୍ୱାରା କରାଇଥିଲେ ହୋଇ ନ ଥାନ୍ତା କି ?

ଯସ୍ତଳ୍ପଜଃ ପ୍ରମୀତସ୍ୟ କ୍ଲୀବସ୍ୟ ବ୍ୟାଧିତସ୍ୟ ବା ।
ସ୍ୱଧର୍ମେଣ ନିଯୁକ୍ତାୟାଂ ସ ପୁତ୍ରଃ କ୍ଷେତ୍ରଜଃ ସ୍ମୃତଃ ।
ମନୁ ।

ପଣ୍ଡୁ କିମନ୍ଦମ ଋଷି ଦ୍ୱାରା ଅଭିଶପ୍ତ ହୋଇଥିଲେ ଯେ ଯଦ୍ୟପି ପଣ୍ଡୁ ସ୍ତ୍ରୀ ସହବାସ କରିବେ ତାହାହେଲେ ତାହାଙ୍କର ମୃତ୍ୟୁ ଘଟିବ । ସୁତରାଂ ପୁତ୍ରପ୍ରାପ୍ତିର ଉପାୟ ନ ଦେଖି ଅନ୍ୟ ଉପାୟରେ ପୁତ୍ରଜନ୍ମ କରିବାକୁ କୁନ୍ତୀଙ୍କି ଅନୁମତି ଦେଲେ । ଅନ୍ୟ ପୁରୁଷ ଔରସରୁ ଯୁଧିଷ୍ଠିର ଭୀମ ପ୍ରଭୃତିଙ୍କି କୁନ୍ତୀ ଓ ମାଦ୍ରୀ ଜନ୍ମ କଲେ । ଏମାନେ ପଣ୍ଡୁଙ୍କର କ୍ଷେତ୍ରଜ ପୁତ୍ର । ଯେତେବେଳେ ହିନ୍ଦୁଗଣ ସଭ୍ୟତାର ଉଚ୍ଚ ସୋପାନକୁ ଅଧିରୋହଣ କରିଥିଲେ, ବ୍ୟୋମକନ, ପୁଷ୍ପଯା, ଏରୋପ୍ଲେନ୍ ପ୍ରଭୃତିରେ ଚଢ଼ି ଖେଚରବତ୍ ବିହାର କରୁଥିଲେ, ଦେବତାମାନଙ୍କର ସହବାସ କରୁଥିଲେ, ସେହି କାଳରେ ପରା ଈଦୃଶ ଭାବରେ କ୍ଷେତ୍ରଜ ପୁତ୍ର ଜନ୍ମ କରିବାର ଦୋଷାବହ ନ ଥିଲା । ପୁତ୍ର ଜନ୍ମ କରିବା ନିମନ୍ତେ ସ୍ତ୍ରୀ ଅନ୍ୟ ପୁରୁଷଠାରେ ଉପଗତା ହେଲେ ସେ ବ୍ୟଭିଚାରିଣୀ ହେଉ ନ ଥିଲା । ପୁରୁଷ ତ ପୁରୁଷ, ସେ ନିର୍ଲିପ୍ତ ନିଷ୍କଳଙ୍କ ! ଈଦୃଶ କର୍ମକୁ ଧର୍ମ ବୋଲାଯାଉଥିଲା ! ଯେବେ ପିଣ୍ଡ ନିମନ୍ତେ ପୁତ୍ରର ପ୍ରୟୋଜନ, ତେବେ ଯୁଧିଷ୍ଠିର ତ ନିତାନ୍ତ ଉପଯୁକ୍ତ ଥିଲେ । ପୁଣି ଭୀମ ଓ ଅର୍ଜୁନଙ୍କୁ ପରପୁରୁଷ ସଙ୍ଗ କରି ଜନ୍ମ କରିବାର ପ୍ରୟୋଜନ କ'ଣ ? ଜ୍ୟେଷ୍ଠପୁତ୍ର ସିନା ପିଣ୍ଡଦ ?

ମନୁ ଲେଖିଅଛନ୍ତି—

ସର୍ବାସାମେବ ପତ୍ନୀନାମେକା
ଚେତ୍ ପୁତ୍ରିଣୀ ଭବେତ୍ ।
ସର୍ବାସ୍ତାସ୍ତେନ ପୁତ୍ରେଣ ପ୍ରାହୁଃ ପୁତ୍ରବତୀ ମନୁଃ ।

କୁନ୍ତୀ ଓ ମାଦ୍ରୀ ସପତ୍ନୀ । କୁନ୍ତୀଙ୍କର ପୁତ୍ରଦ୍ୱାରା ମାଦ୍ରୀ ପୁତ୍ରବତୀ । ତେବେ ଅନ୍ୟ ପୁରୁଷ ଔରସରୁ ମାଦ୍ରୀଙ୍କର ଗର୍ଭୋଦୟ କରାଇବାର ନିଷ୍ପ୍ରୟୋଜନ ଥିଲା । ପଣ୍ଡୁ ସହଧର୍ମିଣୀମାନଙ୍କୁ ପରଗତା କରାଇବାଦ୍ୱାରା ବଡ଼ ସୁଖାନୁଭବ କରୁଥିବାର ଅନୁମାନ ହୁଏ । ଏତାଦୃଶ କୁତ୍ସିତ ଓ ବୀଭତ୍ସ ବର୍ଣ୍ଣନାଦ୍ୱାରା ମହାପୁରୁଷମାନଙ୍କ ଚରିତ୍ରରେ ଦୋଷାରୋପ କରିବାକୁ କବି ଯେଉଁ ଗୂଢ଼ ଅଭିସନ୍ଧି ରଖିଅଛନ୍ତି ତାହା ସହଜଭେଦ୍ୟ ନୁହେଁ । ମହାଭାରତରେ ବର୍ଣ୍ଣିତ ଅସଂଖ୍ୟ ନାୟକ ନାୟିକାମାନଙ୍କର ଏତାଦୃଶ ଅଦ୍ଭୁତ ଜନ୍ମ ବୃତ୍ତାନ୍ତର ସମାଲୋଚନା କରିବାକୁ ଗଲେ ପ୍ରବନ୍ଧ ଅତି ଦୀର୍ଘାକାର ହେବ, ଏଣୁ ବର୍ତ୍ତମାନ ଏତିକି ଯଥେଷ୍ଟ ।

॥ ୩ ॥

**ମହାଭାରତରେ ବିବାହ:**– ବିବାହ+ବି+ବହ+ଘଞ୍। ବିଶେଷ ରୂପେ ଜଣେ ଜଣକର ଭାର ଗ୍ରହଣ କରିବାର ନାମ ବୋଧହୁଏ ବିବାହ। ଦେଖିବାକୁ ଗଲେ ପୃଥିବୀର ଯାବତୀୟ ଜୀବ ମଧ୍ୟରେ ବିବାହ ପ୍ରଥା ପ୍ରଚଳିତ ଅଛି— ଅବଶ୍ୟ ବିବାହ ଶବ୍ଦର ଭାବାନୁସାରେ । ତେବେ ଶାମୁକା ଓ ଜୋକ ପ୍ରଭୃତି ଯେଉଁମାନଙ୍କଠାରେ ଉଭୟ ଇନ୍ଦ୍ରିୟ ଏକତ୍ର ବିଦ୍ୟମାନ, ସେମାନଙ୍କର ବିବାହ ନାହିଁ। ସନ୍ତାନ ଉତ୍ପାଦନ ହିଁ ବିବାହର ମୂଳ ଉଦ୍ଦେଶ୍ୟ । ସୁତରାଂ ସ୍ତ୍ରୀ ଗର୍ଭଧାରଣ କଲା ଉତ୍ତାରୁ କେତେକ ଇତର ପ୍ରାଣୀଙ୍କର ବିବାହ ବନ୍ଧନ ବିଚ୍ଛିନ୍ନ ହୁଏ । ଇତର ଜୀବ କେବଳ ସନ୍ତାନ ଉତ୍ପାଦନ ନିମନ୍ତେ, ସ୍ତ୍ରୀ ଜାତିର ଗର୍ଭଧାରଣ ନିମନ୍ତେ ସମ୍ଭୋଗ କରେ— ଇନ୍ଦ୍ରିୟ ଚରିତାର୍ଥତା ନିମନ୍ତେ ନୁହେଁ। ମନୁଷ୍ୟ ଜାତି ସ୍ତ୍ରୀ ପୁରୁଷର ସମ୍ଭୋଗକୁ ସୁଖ ବୋଲି ମନେକରିବାରୁ ଏ ସମ୍ବନ୍ଧରେ ଚରିତ୍ର ଦୋଷରେ ସମସ୍ତ ଇତର ଜୀବ ଅପେକ୍ଷା ହୀନ । ଯେଉଁମାନେ ଜୀବମାନଙ୍କର ଦୈନିକ କାର୍ଯ୍ୟାବଳୀ ପର୍ଯ୍ୟବେକ୍ଷଣ କରୁଅଛନ୍ତି, ସେମାନେ ଏହା ଅକ୍ଷରେ ଅକ୍ଷରେ ସତ୍ୟ ଥିବାର ସ୍ୱୀକାର କରିବେ । ମନୁଷ୍ୟ ଜାତି ବୁଦ୍ଧି, ବିଦ୍ୟା ଓ ଜ୍ଞାନରେ ଅନ୍ୟ ଜୀବଠାରୁ ଶ୍ରେଷ୍ଠସ୍ଥାନ ଅଧିକାର କରିଥିଲେ ମଧ ଇନ୍ଦ୍ରିୟଘଟିତ ଚରିତ୍ର ଦୋଷରେ ଅନ୍ୟ ଜୀବ ଅପେକ୍ଷା ନିକୃଷ୍ଟ ।

କୌଣସି କୌଣସି ବୈଜ୍ଞାନିକଙ୍କ ମତରେ ବିବାହ ପାଞ୍ଚପ୍ରକାର, ଯଥା :— (୧) ସାମୟିକ କିମ୍ବା ଜୀବନବ୍ୟାପୀ ଏକପତ୍ନୀକ । (୨) ବହୁପତ୍ନୀକ । (୩) ବହୁଭର୍ତ୍ତୃକ (୪) ସମଷ୍ଟି ବିବାହ । (୫) ସ୍ୱେଚ୍ଛାବିବାହ। ପ୍ରଥମୋକ୍ତ ବିବାହ ଅଧିକାଂଶ ପକ୍ଷୀ, ସ୍ତନ୍ୟପାୟୀ ଏବଂ କେତେକ ମନୁଷ୍ୟ ଜାତି ମଧ୍ୟରେ ବିଦ୍ୟମାନ ଅଛି। ଦ୍ୱିତୀୟ ପ୍ରକାର ବିବାହ ରୋମନ୍ଥନକାରୀ ଜୀବ ହରିଣ, କୁକ୍କୁଟ ଏବଂ ଅନ୍ୟାନ୍ୟ କେତେକ ଜୀବ ଏବଂ ତୃତୀୟ ପ୍ରକାର ମନୁଷ୍ୟମାନଙ୍କ ମଧ୍ୟରେ ପ୍ରଚଳିତ ଅଛି । ବିବାହ ପ୍ରଥାକୁ କେବଳ କେତେ ପ୍ରକାର ପିପୀଲିକା ମାତ୍ର ଅବଲମ୍ବନ କରନ୍ତି ଏବଂ ଏହା ନରସମାଜରେ ମଧ ପ୍ରଚଳିତ ଅଛି । ଚତୁର୍ଥ ପ୍ରକାର ବିବାହ ପଶୁମାନଙ୍କ ମଧ୍ୟରେ ଦେଖାଯାଏ ନାହିଁ, କେବଳ କେତେକ ଜାତି ମନୁଷ୍ୟଙ୍କଠାରେ ଦେଖାଯାଏ । ପଞ୍ଚମ ପ୍ରକାର ବିବାହ ପଶୁମାନଙ୍କଠାରେ ବିରଳ । ମନୁଷ୍ୟ ଜାତି ମଧ୍ୟରେ ବେଶ୍ୟାବୃତ୍ତି ଏଥିର ନିଦର୍ଶନ ।

ପାଶ୍ଚାତ୍ୟ ବିଜ୍ଞାନବିଦ୍‌ଗଣଙ୍କର ଜୀବ-ବିବାହ ସମ୍ବନ୍ଧରେ ଏହି ମତ। ଆମ୍ଭମାନଙ୍କ ଶାସ୍ତ୍ରରେ କେବଳ ମନୁଷ୍ୟ ଜାତିର ବିବାହ ପଦ୍ଧତିର ଉଲ୍ଲେଖ ଅଛି; ତାହା ଏହି-ହିନ୍ଦୁ ଜାତିର ବିବାହ ଆଠପ୍ରକାର; ଯଥା—(୧) ରାକ୍ଷସ ବା କ୍ଷାତ୍ର, (୨) ପୈଶାଚ, (୩) ଗାନ୍ଧର୍ବ, (୪) ଅସୁର, (୫) ବ୍ରାହ୍ମ, (୬) ଦୈବ, (୭) ଆର୍ଷ, (୮) ପ୍ରାଜାପତ୍ୟ। ଏଥି ମଧ୍ୟରୁ ପ୍ରଥମୋକ୍ତ ତିନି ପ୍ରକାର ବିବାହ କରିବାକୁ କ୍ଷତ୍ରିୟଗଣ କେବଳ ସମର୍ଥ । ରାକ୍ଷସବତ୍ ପିଶାଚବତ୍ ଆଚରଣ ନ କଲେ କ୍ଷତ୍ରିୟ ନାମ ବହିବାର ଯେ ବୃଥା ହେଲା। ଚତୁର୍ଥ ଶୂଦ୍ର ଓ ବୈଶ୍ୟ ଏବଂ ଅପର ବିବାହ କରିବାକୁ ବ୍ରାହ୍ମଣ ଏବଂ ଅନ୍ୟ ଜାତି ମଧ ଅଧିକାରୀ ।

ବିବାହ ପ୍ରଥା ମାନବ ଜାତିର ସଭ୍ୟତାର ପରିଚାୟକ; ଏହାଦ୍ୱାରା ମନୁଷ୍ୟ ସମାଜର ମହତ୍ତ୍ୱ ଓ ସମ୍ମାନର ପରିଚୟ ମିଳେ । ପୃଥିବୀର ସମଗ୍ର ଜାତିର ବିବାହ ପଦ୍ଧତି ସମାଲୋଚନା କରି ଭଲ ମନ୍ଦ ବାଛିବାର ଆମ୍ଭମାନଙ୍କର କାର୍ଯ୍ୟ ନୁହେଁ । ପ୍ରାଚୀନ ଆର୍ଯ୍ୟ ଜାତିର, ବିଶେଷତଃ ମହାଭାରତୀୟ ନାୟକ ନାୟିକାମାନଙ୍କର ବିବାହ ପଦ୍ଧତି ଆଲୋଚନା କରିବା ଆମ୍ଭମାନଙ୍କର ମୂଳ ଉଦ୍ଦେଶ୍ୟ ।

ଆମ୍ଭମାନଙ୍କ ମଧ୍ୟରୁ ଅନେକଙ୍କର ଧାରଣା ଯେ, ଆମ୍ଭମାନଙ୍କ ପୂର୍ବପୁରୁଷଗଣ ଖୁବ୍ ସଭ୍ୟ ଥିଲେ, ଉନ୍ନତ ଥିଲେ ଏବଂ କ୍ରମାଗତ ଆମ୍ଭେ ଭାରତବାସୀଗଣ ସମସ୍ତ ବିଷୟରେ ହୀନରୁ ହୀନତର ହେଉଅଛୁଁ । ସେମାନଙ୍କର ଧାରଣା ଯେ, ଆମ୍ଭେମାନେ ଯେତିକି ଭବିଷ୍ୟତ୍ ଆଡ଼କୁ ଅଗ୍ରସର ହେଉଥିବା କି ଧର୍ମ, କି ନୀତି, ସମସ୍ତ ବିଷୟରେ ଅବନତି ଆଡ଼କୁ ଅଗ୍ରସର ହେବା । ମାତ୍ର ଯେତେବେଳେ ଆମ୍ଭେମାନେ ଅତୀତ ଇତିହାସ ଫିଟାଇ ଦେଖିବା, ଆମ୍ଭମାନଙ୍କ ପୂର୍ବପୁରୁଷଗଣ କି ଧନ, କି ବୁଦ୍ଧି, କି ଧର୍ମ, କି ନୀତି, ସମସ୍ତ ବିଷୟରେ ଆମ୍ଭମାନଙ୍କ ଅପେକ୍ଷା ଅତି ଉତ୍କୃଷ୍ଟ ଥିବାର ଜାଣି ପାରିବା। କଳିଯୁଗ ଅପେକ୍ଷା ଦ୍ୱାପରର, ଦ୍ୱାପର ଅପେକ୍ଷା ତ୍ରେତାର, ତ୍ରେତା ଅପେକ୍ଷା ସତ୍ୟଯୁଗର ଲୋକେ ନାହାନ୍ତି ଯେ, ଆମ୍ଭମାନଙ୍କର ଭଲ ମନ୍ଦ ଦେଖାଇ ଦେବେ, ଆମ୍ଭେମାନେ ପୁରାଣ ପ୍ରଭୃତି ଦେଖି ତାଙ୍କ ଆମ୍ଭ ମଧ୍ୟରେ କି ଇତର ବିଶେଷ ଅଛି ତାହା ତୁଳନା କରିବା । ପ୍ରାଚୀନ ଲୋକଙ୍କ ଅପେକ୍ଷା ଆମ୍ଭେମାନେ ଅବନତ ବୋଲି ସ୍ୱୀକାର ନ କଲେ ଖାଣ୍ଟି ପୁରୁଣା ଅମଳ ଲୋକେ ଖଡ଼୍‌ଗହସ୍ତ ହେବେ । କେବଳ ଖାଣ୍ଟି ପୁରୁଣା ଅମଳ ଲୋକେ କାହିଁକି, ଆଧୁନିକ ପାଶ୍ଚାତ୍ୟ ଶିକ୍ଷିତ

ଜଣକେତେ ମଧ—ଯେଉଁମାନେ ନୂତନ ଛାଞ୍ଚରେ ରାଧାକୃଷ୍ଣ ତୟାର କରିବାକୁ ଶିକ୍ଷା କରୁଅଛନ୍ତି ଏବଂ ନୂତନ ରୀତିରେ ହିନ୍ଦୁ ଶାସ୍ତ୍ରର ବ୍ୟାଖ୍ୟା କରୁଅଛନ୍ତି— ସ୍ଥଳରେ ଗୋଟାଏ reformed ହିନ୍ଦୁ ଧର୍ମ ସୃଷ୍ଟି କରିବାକୁ ଚେଷ୍ଟା କରୁଅଛନ୍ତି— ସେମାନେ ମଧ ଖଡ୍ଗହସ୍ତ ହେବେ । ସୁତରାଂ ଭଲ ମନ୍ଦ ବାଛି ଦାୟିତ୍ୱରେ ପଡ଼ିବା ଆମ୍ଭମାନଙ୍କ ପକ୍ଷରେ ଶ୍ରେୟସ୍କର ନୁହେଁ । ତେବେ ବିଷୟଗୁଡ଼ିକ ଠିକ୍ .ଠିକ୍ ଭାବରେ ଉଲ୍ଲେଖ କରିଯିବୁଁ, ପାଠକଗଣ ତାହା ପାଠ କରି ମନେ ମନେ ତୁଳନା କରିନେବେ ।

ଦ୍ୱାପର ଯୁଗରେ କ୍ଷତ୍ରିୟଗଣ ଶ୍ୱଶୁର ପ୍ରଭୃତିଙ୍କ ବିନାନୁମତିରେ—ସ୍ତ୍ରୀ ଅଭିଭାବକଙ୍କ ବିନାନୁମତିରେ ସ୍ତ୍ରୀକୁ ବଳପୂର୍ବକ ହରଣ କରି ଆଣି ବିବାହ ହେଉଥିଲେ। ଆଧୁନିକ କ୍ଷତ୍ରିୟଗଣ 'ଅଗ୍ନିଦେବବ୍ରାହ୍ମଣସନ୍ନିଧୌ' କନ୍ୟାର ପିତା ମାତା ବନ୍ଧୁ ବାନ୍ଧବଙ୍କଦ୍ୱାରା ଅର୍ପିତ କନ୍ୟାର ପାଣିଗ୍ରହଣ କରନ୍ତି । କ୍ଷତ୍ରିୟମାନଙ୍କ ମଧରେ ରାକ୍ଷସ ବିବାହ ଆଜି କାଲି ପ୍ରଚଳିତ ନାହିଁ ।

ଦ୍ୱାପର ଯୁଗରେ ପୁଣି ପୈଶାଚ ବିବାହ ପ୍ରଥା ମଧ ପ୍ରଚଳିତ ଥିଲା । ଆଜିକାଲି ଏହି ବିବାହ କରିବାକୁ ଗଲେ ପେନାଲ କୋଡର ୪୫୭ ଧାରାରେ ପଡ଼ିବାକୁ ହେବ । କୃଷ୍ଣ ରୁକ୍ମିଣୀହରଣରେ ୩୬୬ ଧାରାରେ ପଡ଼ି ନ ଥିଲେ—ତସ୍ୟ ପୁତ୍ର ଶାମ୍ବ ଚନ୍ଦ୍ରାବତୀଙ୍କି ହରଣ କରି ୪୫୭ ଧାରା ମୁତାବକ ଦଣ୍ଡ ପାଇ ନ ଥିଲେ । ରାକ୍ଷସ ବିବାହର ସାମାନ୍ୟ ନିଦର୍ଶନ ଗଡ଼ଜାତର ପାଉଡ଼ିଆମାନେ ରକ୍ଷା କରିଅଛନ୍ତି । କ୍ଷତ୍ରିୟମାନଙ୍କ ଦ୍ୱାରା ଆଚରିତ ହେଉଥିଲେ ମଧ ଉକ୍ତ ପ୍ରଥା ଯୋଡ଼ିକ ନିନ୍ଦନୀୟ ବୋଲି ବିବେଚିତ ହେଉଥିଲା। ନୋହିଲେ ରାକ୍ଷସ, ଆସୁର ଓ ପୈଶାଚ ନାମରେ ଅଭିହିତ ହୁଅନ୍ତା କାହିଁକି ? ଜଣେ କ୍ଷତ୍ରିୟ ସମଜାତୀୟ କ୍ଷତ୍ରିୟ ଗୃହରେ ବିବାହ ନ ହେଲେ ଜାତିଚ୍ୟୁତ ହେବାର କଥା, ବ୍ରାହ୍ମଣର ତ କଥା ନାହିଁ । କିନ୍ତୁ ଦ୍ୱାପରରେ କ୍ଷତ୍ରିୟକୁଳକେତନ ପବନନନ୍ଦନ ଅନାର୍ଯ୍ୟ ହେଉ ବା ଅସୁର ହେଉ, ନରମାଂସଭୋଜୀ ରାକ୍ଷସଲଳନା ହିଡ଼ିମ୍ବାର ପାଣିଗ୍ରହଣ କରିଥିଲେ । ସହସ୍ରଲୋଚନତନୟ ଧନଞ୍ଜୟ ନାଗକନ୍ୟାର ପାଣିଗ୍ରହଣ କରି ସୁତୋପତ୍ତି କରିଥିଲେ। ଯେଉଁମାନଙ୍କୁ ସରଳ ବିଶ୍ୱାସୀ ହିନ୍ଦୁଗଣ ମହାପୁରୁଷ ବୋଲି ବିଶ୍ୱାସ କରୁଅଛନ୍ତି, ସେମାନଙ୍କର କାର୍ଯ୍ୟକୁ ଉଚ୍ଛାସ୍ୟ ବୋଲିବାକୁ ଆମ୍ଭମାନଙ୍କର ଅଧିକାର ନାହିଁ।

ପୃଥିବୀରେ ବର୍ତ୍ତମାନ ଏପରି ସ୍ଥାନ ଅଛି, ଯେଉଁ ସ୍ଥାନରେ ଲୋକମାନେ ଅଦ୍ୟାପି ପଶୁପକ୍ଷୀ ତୁଲ୍ୟ ବ୍ୟବହାର କରନ୍ତି । ବିଂଶ ଶତାବ୍ଦୀରେ ମଧ ଏକଦଳ ଉଲଙ୍ଗ ବା ପଲ୍ଲବପରିଧାନକାରୀ ଅଛନ୍ତି ।

ଫିଉଜିୟାନମାନଙ୍କ ମଧରେ ବହୁ ଭର୍ତ୍ତୃକତା ପ୍ରଚଳିତ ଅଛି । ଆମ୍ଭ ଭାରତବର୍ଷ ବିଶାଳ ଦେଶ— ଏହା ମାନବଜାତିର ଗୋଟିଏ ମିଉଜିୟମ। ଏ ଦେଶରେ ସଭ୍ୟ ଅସଭ୍ୟ ଅଛନ୍ତି— ମୂଲ୍ୟବାନ ପରିଚ୍ଛଦଧାରୀ ଏବଂ ପଲ୍ଲବପରିଧାନକାରୀ ଅଛନ୍ତି । ଏତିକି ନୁହେଁ, ଭାରତ ଆଚାର ବ୍ୟବହାରର ମିଉଜିୟମ, ଧର୍ମର ମିଉଜିୟମ, ସାମାଜିକ ରୀତିନୀତିର ମିଉଜିୟମ। ବହୁଭର୍ତ୍ତୃକତା ଯେ କେବଳ ଫିଉଜିୟାନ ଦ୍ୱୀପରେ ଅଛି, ଏମନ୍ତ ନୁହେଁ, ଭାରତର ସ୍ଥାନେ ଦୁଇ ସ୍ଥାନରେ ଥାଇପାରେ।

"The Nairs of southern western India still practise polyandry, according to which a man's property descends not to his own but to his sister's children."

"Todas practise polyandry, a women marrying all the brothers of a family."

"Among the customs of the Tibetans, that which is the most peculiar is the axistence among them of polyandry, the brothers in a family having one wife in common." —En Brit.

ଭାରତର ଉଭୟ ପ୍ରାନ୍ତରେ ବହୁଭର୍ତ୍ତୃକତାର ପ୍ରଚଳନ ଅଛି । ଓଡ଼ିଶାରେ ଜ୍ୟେଷ୍ଠ ଭ୍ରାତାର ସ୍ତ୍ରୀ ଜ୍ୟେଷ୍ଠା ବଧୂକୁ ବଡ଼ଭାଇର ମୃତ୍ୟୁ ଉତ୍ତାରୁ ସାନ ଭାଇ ବିବାହ ହେବାର ପ୍ରଥା କେତେକ ଜାତି ମଧରେ ପ୍ରଚଳିତ ଅଛି । କୁର୍ଗନିବାସୀ କୋଡାଗା ଜାତିଙ୍କ ପରି ଏମାନଙ୍କ ମଧ "The wives of the brothers of a family are common property." ଅବଶ୍ୟ ବଡ଼ଭାଇର ସ୍ତ୍ରୀର ଉପରୋକ୍ତ ବହୁଭର୍ତ୍ତୃକତାକୁ ପାଠକଗଣ ଘୃଣ୍ୟ ପ୍ରଥା ବୋଲି ମନେକରନ୍ତି ନାହିଁ କି ? ମନୁଷ୍ୟ ତ କରିବାର କଥା, ପଶୁମାନେ ମଧ ଏହି ବିବାହର ପକ୍ଷପାତୀ ନୁହନ୍ତି ।

"Polyandry or the marriage of one female with several males. × × ×

In most of the higher animals, the jealousy of the males renders polyandry impossible. In man it is rare but exists among certain races."

–A Forel

ତେବେ କ୍ଷତ୍ରିୟକୁଳତିଳକ ଯୁଧିଷ୍ଠିର ଏବଂ ତାହାଙ୍କର ଭ୍ରାତାଗଣ (ଯେଉଁମାନଙ୍କୁ ପରବର୍ତ୍ତୀ କ୍ଷତ୍ରିୟଗଣ ଆପଣା ଆପଣା ଆଦିପୁରୁଷ ରୂପେ ଗ୍ରହଣ କରିବାକୁ ଏଡ଼େ ଲାଳାୟିତ) ଏତେ ଘୃଣ୍ୟ କାର୍ଯ୍ୟ କଲେ କିପରି ? ଧର୍ମରାଜ ଧର୍ମ ପରା ଟିକେ ଲଙ୍ଘନ୍ତି ନାହିଁ। ସେ କି ବେଦ ବିରୁଦ୍ଧ କାର୍ଯ୍ୟ କରିବେ ? ଆର୍ଯ୍ୟଜାତିର ଆଦିଗ୍ରନ୍ଥ ଋଗ୍‌ବେଦର ଅନୁଶାସନକୁ ଲଙ୍ଘନ କରିବାକୁ ଆର୍ଯ୍ୟଜାତି ଅସମର୍ଥ, ସେହି ଋଗ୍‌ବେଦ କି ବହୁଭର୍ତ୍ତୃକତାର ପ୍ରଶ୍ରୟ ଦେଇଅଛି ? ଋଗ୍‌ବେଦ ଆଲୋଚନା କର, ବହୁଭର୍ତ୍ତୃକତାର ନାମଗନ୍ଧ ପାଇବ ନାହିଁ । ଋଗ୍‌ବେଦର ଦଶମ ମଣ୍ଡଳର ୮୫ ସୂକ୍ତରେ କେତେଗୁଡ଼ିଏ ବିବାହ ମନ୍ତ୍ର ଅଛି; ସେଥିମଧ୍ୟରୁ ନିମ୍ନୋକ୍ତ ମନ୍ତ୍ରଟି ବୋଧହୁଏ ବିବାହିତ ବ୍ୟକ୍ତିମାତ୍ରେ ଉଚ୍ଚାରଣ କରିଥିବେ । ଏଥିରେ ବହୁଭର୍ତ୍ତୃକତାର ନାମଗନ୍ଧ ଅଛି କି ? ପାଞ୍ଚଜଣ ପତି ଜଣେ ସ୍ତ୍ରୀକୁ ଲକ୍ଷ୍ୟ କରି ଏହି ମନ୍ତ୍ର ଉଚ୍ଚାରଣ କରିପାରନ୍ତି କି ?

ଓଁ ଗୃହଣାମି ତେ ସୌଭଗତ୍ୱାୟ
ହସ୍ତଂ ମୟା ପତ୍ୟା ଜରଦଷ୍ଟିର୍ଯଥା ସଃ ।
ଭଗୋ ଅର୍ଯ୍ୟମା ଦେବ ସବିତା ପୁରନ୍ଧ୍ରି
ର୍ମହ୍ୟଂ ତ୍ୱା ଦୁର୍ଗର୍ହପତ୍ୟାୟ ଦେବାଃ ।
୧୦ । ୮୫ । ୩୬

ଆହୁରି ଗୋଟିଏ—

ଓଁ ମମ ବ୍ରତେ ତେ ହୃଦୟଂ ଦଧାତୁ,
ମମ ଚିତ୍ତମନୁଚିତ୍ତନ୍ତେଽସ୍ତୁ ।
ମମ ବାଚମେକମନା ଜୁଷସ୍ୱ
ବୃହସ୍ପତିଷ୍ଟା ନିଯୁନକ୍ତୁ ମହ୍ୟଂ ।

ଅନେକେ କହିପାରନ୍ତି, ବେଦ ଆନ୍ଦୋଳନ କରି ସତ୍ୟ ଉଦ୍ଧାର କରିବାର ତୁମ୍ଭର ଅଧିକାର ନାହିଁ । ସୁତରାଂ ବେଦରେ ବହୁଭର୍ତ୍ତୃକତାର ବିଧି ବା ଥାଇପାରେ। ମାତ୍ର ଆମ୍ଭର ଉକ୍ତି ସତ୍ୟ ଥିବାର ଦ୍ରୁପଦ ରାଜାଙ୍କ ଏବଂ ବ୍ୟାସଦେବଙ୍କ ସାକ୍ଷ୍ୟଦ୍ୱାରା ପ୍ରମାଣ କରାଇଦେବୁଁ। ଯୁଧିଷ୍ଠିର ଯେତେବେଳେ କୃଷ୍ଣାଙ୍କୁ ବିବାହ ହେବା ପ୍ରସ୍ତାବ କଲେ, ସେତେବେଳେ ବ୍ୟାସ ପ୍ରମୁଖ ଗୋଟିଏ ପଞ୍ଚ ବସିଗଲା । ବ୍ୟାସ ସଭାପତି ହୋଇ କହିଲେ—

ଅସ୍ମିନ୍ ଧର୍ମେ ବିପ୍ରଲବ୍‌ଧେ
ଲୋକବେଦବିରୋଧକେ
ଯସ୍ୟ ଯସ୍ୟ ମତଂ ଯତ୍ ଯତ୍
ଶ୍ରୋତୁମିଚ୍ଛାମି ତସ୍ୟ ତତ୍ ।

ଦ୍ରୁପଦ କହିଲେ—

"ଅଧର୍ମୋଽୟଂ ମମ ମତୋ
ବିରୁଦ୍ଧୋ ଲୋକବେଦୟୋଃ ।
ନହ୍ୟେକା ବିଦ୍ୟତେ ପତ୍ନୀ
ବହନାଂ ଦ୍ୱିଜସତ୍ତମ ।
ନଚାପ୍ୟାଚରିତଃ ପୂର୍ବୈରୟଂ
ଧର୍ମୋ ମହାତ୍ମଭିଃ ।
ନଚାପ୍ୟଧର୍ମୋ ବିଦ୍ୱଦ୍ଭିଶ୍ଚରିତବ୍ୟଃ କଥଞ୍ଚନ।
୧ । ୧୯୬ । ୮

ଯୁଧିଷ୍ଠିର ଏଥିରେ କି ଉତ୍ତର ଦେଲେ, ଶୁଣନ୍ତୁ—

"ନ ମେ ବାଗନୃତଂ ପ୍ରାହ
ନାଧର୍ମେ ଧୀୟତେ ମତିଃ
ବର୍ତ୍ତତେ ହି ମନୋ ମେଽତ୍ର
ନୈଷୋଽଧର୍ମଃ କଥଞ୍ଚନ ।
ଶ୍ରୂୟତେ ହି ପୁରାଣେଽପି
ଜଟିଳା ନାମ ଗୌତମୀ ।
ଋଷୀନଧ୍ୟାସିତବତୀ ସପ୍ତ ଧର୍ମଭୃତାମ୍ବରା ।
ତଥୈବ ମୁନିଜା ବାର୍କ୍ଷୀ ତପୋଭିର୍ଭାବିତାତ୍ମନଃ ।
ସଙ୍ଗତାଭୂଦ୍ଦଶଭ୍ରାତୃନେକନାମ୍ନଃ ପ୍ରଚେତସଃ ।
୧। ୧୯୬ । ୧୩-୧୫

ଏହା କି ଧର୍ମରାଜଙ୍କର ଉପଯୁକ୍ତ ଉତ୍ତର ? ଯେବେ ଏକ ସ୍ତ୍ରୀ ପଞ୍ଚପତି ହେବାର ବେଦବିହିତ, ତେବେ ସତ୍ୟବାଦୀ ଯୁଧିଷ୍ଠିର କିମ୍ବା ବ୍ୟାସଦେବ ବେଦର ଦୋହି ଦେଇପାରିଲେ ନାହିଁ କାହିଁକି ? ଦୁଇ ଗୋଟି ଶୁଣା କଥାର ଉଦାହରଣ ଦେଲେ । ତିବ୍ବତ ଦେଶରେ ବହୁଭର୍ତ୍ତୃକତା ବିଦ୍ୟମାନ ଥିଲା । ଯୁଧିଷ୍ଠିର ପ୍ରଭୃତି ପଞ୍ଚଭ୍ରାତାଙ୍କର ଜନ୍ମସ୍ଥାନ ଶତଶୃଙ୍ଗ ପର୍ବତ । ଶତଶୃଙ୍ଗ ସମ୍ଭବତଃ ଉତ୍ତର ତିବ୍ବତ କିମ୍ବା ମଙ୍ଗୋଲିଆରେ ଅବସ୍ଥିତ । ତିବ୍ବତବାସୀଙ୍କ ତୁଲ୍ୟ ପଞ୍ଚପାଣ୍ଡବ ଜଣେ ସ୍ତ୍ରୀକୁ ବିବାହ ହେବାର ଦେଖି କେତେକ ପାଶ୍ଚାତ୍ୟ ପଣ୍ଡିତ ପାଣ୍ଡବମାନଙ୍କୁ ଅନାର୍ଯ୍ୟ ବୋଲି ପରିଗଣିତ କରିଅଛନ୍ତି ।

"It has been conjectured with plausibility that in this first version of the Epic the Kauravas were the heroes tragically overthrown by the Pandavas, a hoard of unchivalrous foreign barbarians. + '" Barnett.

ମନୁଷ୍ୟର କାର୍ଯ୍ୟକଳାପ ଦେଖି ଆଲୋଚନା କଲେ ତାହାର ଜାତି ଓ ସମାଜର ତଥ୍ୟ ମିଳେ । ପାଣ୍ଡବମାନଙ୍କର କେତେଗୁଡ଼ିଏ ଅନାର୍ଯ୍ୟ ରୀତିନୀତି ଦେଖି ପାଶ୍ଚାତ୍ୟ ପଣ୍ଡିତଗଣ ଉକ୍ତ ମତ ପ୍ରକାଶ କରିବା ଦ୍ୱାରା ନିନ୍ଦନୀୟ ନୁହଁନ୍ତି । ପାଞ୍ଚାଳୀଙ୍କ ବିବାହ ସମ୍ବନ୍ଧରେ ଆଉ ଗୋଟିଏ କଥା କହିବା ଆବଶ୍ୟକ। ବ୍ରାହ୍ମଣ ବେଶ ଧରି ମଧ୍ୟମ ପାଣ୍ଡବ ଲକ୍ଷ୍ୟଭେଦ କଲେ, ଭଲ କଥା, ଲକ୍ଷ୍ୟଭେଦ କରିବା ମାତ୍ରେ ଦ୍ରୌପଦୀ ଅର୍ଜୁନଙ୍କ ଗଳାରେ ବରମାଲ୍ୟ ଦେବାର କଥା । ଲକ୍ଷ୍ୟଭେଦ ଉତ୍ତାରୁ କ୍ଷଣକାଳ ସାମାନ୍ୟ ଯୁଦ୍ଧାୟୋଜନ ହେଲା, ହେଉ । ଗୋଳମାଳ କମିଯିବା ମାତ୍ରେ ଲକ୍ଷ୍ୟଭେଦ କର୍ତ୍ତାର ପଛେ ପଛେ କନ୍ୟାକୁ ପଠାଇ ଦେବାକୁ ହେବ, 'ଏହା ତ ରୀତି ନୁହେଁ । ରାମ ଧନୁ ଭାଙ୍ଗିଲେ, ଜନକ ସୀତାଙ୍କୁ ତତ୍‌କ୍ଷଣାତ୍ ରାମଙ୍କ ସଙ୍ଗେ ତାଙ୍କ ବସାକୁ ପଠାଇ ଦେଇଥିଲେ କି ? ତେବେ ଦ୍ରୁପଦ ନିଜ କନ୍ୟାକୁ ଭିକ୍ଷୁକବେଶଧାରୀ ପାଣ୍ଡବମାନଙ୍କ ସହିତ କୁମ୍ଭକାର ଘରଠାକୁ ପଠାଇ ଦେଇଥିଲେ କି ? କାରଣ କ'ଣ ? ଅଜ୍ଞାତକୁଳଶୀଳ ଭିକ୍ଷୁକଗଣ ଦ୍ରୌପଦୀଙ୍କି କେଉଁଠାକୁ ନେବେ, କି ଅବସ୍ଥାରେ ରଖିବେ, ଏ ବିଷୟରେ ଦ୍ରୁପଦ ତିଳେମାତ୍ର ଚିନ୍ତା କଲେ ନାହିଁ। କନ୍ୟାକୁ ପର ହସ୍ତରେ ଦେଇ ତୁନି ହୋଇ ରହିଲେ । ନୂତନ ଜାମାତାପାଇଁ କି ଟିକିଏ କଷ୍ଟ ସ୍ୱୀକାର କରି ଖଣ୍ଡେ ବସା ବନ୍ଦୋବସ୍ତ କରିପାରିଲେ ନାହିଁ ? ଲକ୍ଷ୍ୟଭେଦ ସଙ୍ଗେ ସଙ୍ଗେ ସ୍ୱୟଂବରର ସମସ୍ତ ଆୟୋଜନ ଶେଷ ପାଇଗଲା । ପାଞ୍ଚାଳ ନଗରରେ କୁନ୍ତୀଙ୍କର ବସା ଥିଲା । କୁନ୍ତୀ ଅବଶ୍ୟ ସ୍ୱୟଂବରର କଥା, ବ୍ରାହ୍ମଣ କ୍ଷତ୍ରିୟଙ୍କର ଖଣ୍ଡଯୁଦ୍ଧ କଥା ଶୁଣିଥିବେ। ରାତ୍ରିକାଳରେ ଭୀମାର୍ଜୁନ ଯେତେବେଳେ ବସାରେ ଦ୍ରୌପଦୀ ସହିତ ପହଞ୍ଚିଲେ, ସେତେବେଳେ ଭୀମ ଅର୍ଜୁନ ମାତାଙ୍କୁ ଛଳନା କରି ଭିକ୍ଷାଲବ୍ଧ ଦ୍ରବ୍ୟ ଆଣିଅଛୁଁ ବୋଲି କହିଲେ । ଦ୍ରୌପଦୀ ତ ଭିକ୍ଷାଦ୍ରବ୍ୟ ନୁହନ୍ତି, ସ୍ୱୟଂବରଲବ୍‌ଧା ଅର୍ଜୁନଙ୍କର ସ୍ତ୍ରୀ । ଅର୍ଜୁନ ବା ଭିକ୍ଷାଲବ୍ଧ ଦ୍ରବ୍ୟ ଆଣିଅଛୁଁ ବୋଲି କିପରି କହିଲେ ? କୁନ୍ତୀ ବା ପାଞ୍ଚଭାଇ ଭୋଗ କର ବୋଲି କିପରି ଉତ୍ତର ଦେଲେ ? ପୁଣି ସେହି କଥାକୁ ବ୍ରାହ୍ମଣ କ୍ଷତ୍ରିୟ ସମସ୍ତଙ୍କୁ ସ୍ୱୀକାର କରିନେବାକୁ ପଡ଼ିଲା । ଏପରି ପ୍ରମାଦପୂର୍ଣ୍ଣ କଥାର ସଂଶୋଧନ ହେଲେ କଅଣ କୁନ୍ତୀଙ୍କର ପାପ ହୁଅନ୍ତା ? ମହାଭାରତରେ ଦ୍ରୌପଦୀ ସ୍ୱୟଂବର ଏବଂ ପଞ୍ଚଭ୍ରାତାଙ୍କର ଦ୍ରୌପଦୀଙ୍କ ସହିତ ବିବାହ କିପରି ଆର୍ଯ୍ୟରୀତିସମ୍ମତ ହେଲା ? ଏହା ବଡ଼ ଆଶ୍ଚର୍ଯ୍ୟଜନକ ବ୍ୟାପାର। ଏହା କ୍ଷତ୍ରିୟକୁଳର କଳଙ୍କ। କ୍ଷତ୍ରିୟଗଣ ଏହି କଳଙ୍କକାଳିମାକୁ କିପରି ନିଜ ହସ୍ତରେ ଅଦ୍ୟାପି ନିଜ ଶରୀରରେ ବୋଳି ଆସୁଅଛନ୍ତି, ଏହା ଭାବିଲେ ବିସ୍ମିତ ହେବାକୁ ହୁଏ । କ୍ଷତ୍ରିୟ ଗୌରବକର୍ତ୍ତରୀ ମହାଭାରତର ଏହି ଆଖ୍ୟାୟିକାଟି ତୀକ୍ଷ୍ଣ ଓ ବିଷଦନ୍ତ ଅଟେ। ଭାଗ୍ୟକ୍ରମେ ଦ୍ରୌପଦୀ ଗର୍ଭସମ୍ଭୂତ କୌଣସି ସନ୍ତାନ ଆର୍ଯ୍ୟସମ୍ମାନର ରକ୍ଷକ ଓ ସମର୍ଦ୍ଧକ ମାନଗୋବିନ୍ଦଙ୍କ କୂଟନୀତିରେ ରହିପାରିଲେ ନାହିଁ। ଥିଲେ ଆଜି ଅନେକ କ୍ଷତ୍ରିୟ ଆପଣାକୁ ପାଞ୍ଚାଳୀନନ୍ଦନଙ୍କ ବଂଶଧର ବୋଲି ପରିଚୟ ଦେବାକୁ ତିଳେମାତ୍ର ଲଜ୍ଜିତ ଓ ଶଙ୍କିତ ହୁଅନ୍ତେ ନାହିଁ ।

ହିନ୍ଦୁ ବିବାହ ପଦ୍ଧତିରେ ଗୋଟିଏ ପରିବେଦନ ଦୋଷ ଅଛି । ଜ୍ୟେଷ୍ଠ ଭାଇର ବିବାହ ହେବା ପୂର୍ବେ କନିଷ୍ଠ ଭାଇ ବିବାହ ହେଲେ ପରିବେଦନ ଦୋଷ ହୁଏ। ଜ୍ୟେଷ୍ଠଭ୍ରାତା ବିଦ୍ୟମାନ ସତ୍ତ୍ୱେ ଯେଉଁ କନିଷ୍ଠ ଭ୍ରାତାର ବିବାହ ହୁଏ, ସେ ପରିବେତ୍ତା, ଜ୍ୟେଷ୍ଠଭ୍ରାତା ପରିବିନ୍ନ, ପରିଣୀତା କନ୍ୟା ପରିବେଦନୀୟ । ଜ୍ୟେଷ୍ଠଭ୍ରାତାଙ୍କ ବିଦ୍ୟମାନତାରେ ଭୀମ କିପରି ହିଡ଼ିମ୍ବାର ପାଣିଗ୍ରହଣ କଲେ ? ଶାସ୍ତ୍ରଜ୍ଞ ଧର୍ମଭୀରୁ ଯୁଧିଷ୍ଠିର ବା କିପରି ଏପରି ଅବୈଧ କାର୍ଯ୍ୟ କରିବାକୁ ନିଜ ଭ୍ରାତାକୁ ଅନୁମତି ଦେଲେ ? ତେବେ ଯୁଧିଷ୍ଠିର ଓ ଭୀମ ବିଭିନ୍ନ ପିତାଙ୍କର ପୁତ୍ର ବୋଲି ଏ ଦୋଷ ଲାଗିଲା ନାହିଁ, ତେବେ ସ୍ୱତନ୍ତ୍ର କଥା ।

ଅତଃପର ନିତାନ୍ତ ଘୃଣ୍ୟ ଓ ଜଘନ୍ୟ ସ୍ୱଚ୍ଛନ୍ଦପରିଣୟ । ଏହା ମଧ୍ୟ ସନାତନ ଧର୍ମ ବୋଲି ସ୍ୱୀକାର କରିବାକୁ ହେବ ?

ଧର୍ମବିତ୍ ପଣ୍ଡୁ କୁନ୍ତୀଙ୍କି କହିଲେ—

ଉତ୍ତରେଷୁ ଚ ରମ୍ଭୋରୁ ! କୁରୁଷ୍ୱାଦ୍ୟାପି ପୂଜ୍ୟତେ ।
ସ୍ତ୍ରୀଣାମନୁ ଗ୍ରହକରଃ ସହି ଧର୍ମଃ ସନାତନଃ ।

୧ । ୧୨୨ । ୭

ପୂର୍ବେ ସ୍ତ୍ରୀଗଣ ସ୍ୱଚ୍ଛଳଚାରିଣୀ ଥିଲେ । ଉଦାହରଣ ରୂପେ ପଣ୍ଡୁ, ଶ୍ୱେତକେତୁ ଓ ଉଦ୍ଦାଳକ ଉପାଖ୍ୟାନକୁ ବିବୃତ କଲେ। ପଣ୍ଡୁ କହିଲେ, ଦିନେ ଶ୍ୱେତକେତୁ ନିଜ ମାତାଙ୍କ ସହ ଉପବେଶନ କରିଥିଲେ, ଜଣେ ବ୍ରାହ୍ମଣ ଆସି ଶ୍ୱେତକେତୁଙ୍କ ମାତାକୁ ହସ୍ତଧରି ସମ୍ଭୋଗ ଇଚ୍ଛାରେ ଘେନିଗଲେ। ଏହା ଦେଖି ଶ୍ୱେତକେତୁ କ୍ରୋଧାନ୍ୱିତ ହେଲେ । ଏଣୁ ସହିଷ୍ଣୁ ଉଦ୍ଦାଳକ ପୁତ୍ରଙ୍କୁ ବୁଝାଇ ବସିଲେ ଏବଂ କହିଲେ, ଏହା ସନାତନ ଧର୍ମ, ତୁ କ୍ରୋଧ କର ନାହିଁ ।

''ଅନାବୃତା ହି ସର୍ବେଷାଂ ବର୍ଣ୍ଣାନାମଙ୍ଗନା ଭୁବି ।
ଯଥା ଗାବଃ ସ୍ଥିତାସ୍ତାତ ! ସ୍ୱେ ସ୍ୱେ ତଥା ପ୍ରଜାଃ ।

୧ । ୧୨୨ । ୧୪

ଇଦୃଶ ମର୍ଯ୍ୟାଦା ମଳୟ-ଉପକୂଳବାସୀଙ୍କ ପକ୍ଷରେ କିଞ୍ଚିତ୍ ଶୋଭନୀୟ ହୋଇପାରେ, ମାତ୍ର ପୃଥିବୀର ଅଦ୍ୱିତୀୟ ଧର୍ମପରାୟଣ ନୀତିନିପୁଣ ହିନ୍ଦୁଜାତିରେ କି ଏହା ସମ୍ଭବପର ? ଆମ୍ଭମାନଙ୍କର ନୀତିଶାସ୍ତ୍ର ମହାଭାରତରେ ପୁଣି ଏହି ପ୍ରଥାଗୁଡ଼ିକ ସନାତନ ଧର୍ମ ବୋଲି ଲେଖାଅଛି । ଏହା ଯେବେ ଧର୍ମ, ସ୍ୱର୍ଗଫଳପ୍ରଦ, ଏହା ଯେବେ ମୋକ୍ଷଦ, ତେବେ ନରକ କାହିଁ, ପାପ କାହିଁ, ଅଧର୍ମ କାହିଁ ?

## ॥ ୪ ॥

ଆଜି ଉତ୍କଳ ସାହିତ୍ୟ ପାଠ କରି ଜାଣି ପାରିଲି ଯେ ସାରଳା ମହାଭାରତ ସମାଲୋଚନା ନିମନ୍ତେ ଲେଖକ ଏବଂ ସମ୍ପାଦକ ମଧ ଅନେକଙ୍କର ବିରାଗଭାଜନ ହୋଇଅଛନ୍ତି । ମହାଭାରତର ସମାଲୋଚନା କଲେ ବିରାଗଭାଜନ ହେବାକୁ ହୁଏ, କି ସୁଦୀର୍ଘ ପ୍ରବନ୍ଧ ଲେଖି ବିରାଗଭାଜନ ହେବାକୁ ହୁଏ ? ଯେବେ ମହାଭାରତର ସମାଲୋଚନା କଲେ ବିରାଗଭାଜନ ହେବାକୁ ହୁଏ, ତେବେ ତ ଆଗରୁ ହୋଇସାରିଅଛୁଁ, ଆଉ ଚିନ୍ତା କ'ଣ ? ଯେବେ ଦୀର୍ଘ ପ୍ରବନ୍ଧ ହେତୁ ବିରାଗଭାଜନ ହେବାର କଥା, ତାହାହେଲେ ରକ୍ଷା ପାଇବାର ଉପାୟ ଅଛି । ସମ୍ପାଦକଙ୍କୁ ଏବଂ ନିଜକୁ ରକ୍ଷା କରିବା ନିମନ୍ତେ ଯେତେ ଶୀଘ୍ର ପାରୁଁ, ପ୍ରବନ୍ଧ ଶେଷ କରିବୁଁ । ତେବେ ସଂକ୍ଷେପରେ ଆରମ୍ଭ କରାଯାଉ ।

ଶ୍ରୀମଦ୍‌ଭଗବଦ୍ ଗୀତାରେ ଅର୍ଜୁନ କୃଷ୍ଣଙ୍କୁ କହିଲେ—
କୁଳକ୍ଷୟେ ପ୍ରଣଶ୍ୟନ୍ତି କୁଳଧର୍ମାଃ ସନାତନାଃ ।
ଧର୍ମେ ନଷ୍ଟେ କୁଳଂ କୃସ୍ନ ମଧର୍ମୋଽଭିଭବତ୍ୟୁତ ।
ଅଧର୍ମାଭିଭବାତ୍ କୃଷ୍ଣ ପ୍ରଦୁ୍ୟଷ୍ୟନ୍ତି କୁଳସ୍ତ୍ରିୟଃ ।
ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ଜାୟନ୍ତେ ବର୍ଣ୍ଣସଙ୍କରଃ ।

ଯଦି କେହି ପଚାରେ, ଏଥିରୁ ତୁମ୍ଭେମାନେ କ'ଣ ବୁଝିଲ ? ଆମ୍ଭେମାନେ ମୋଟରେ ଏହା କହିବୁଁ ଯେ, ଅର୍ଜୁନ କହୁଅଛନ୍ତି ଯେ, ଯେବେ ପୁରୁଷଗୁଡ଼ାକ ଯୁଦ୍ଧରେ ହତ ହେବେ, ତେବେ ସ୍ତ୍ରୀମାନେ ଅନ୍ୟ ପୁରୁଷ ସହବାସ କରି ଗୁଡ଼ିଏ ବର୍ଣ୍ଣସଙ୍କର ଜନ୍ମ କରିବେ ଏବଂ ସେମାନେ—

'ଉତ୍ସାଦ୍ୟନ୍ତେ ଜାତିଧର୍ମାଃ କୁଳଧର୍ମାଶ୍ଚ ଶାଶ୍ୱତାଃ ।'

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଚାରି ବର୍ଣ୍ଣ । ନିଷାଦ ବା ଅନାର୍ଯ୍ୟ ଜାତି ପଞ୍ଚମ ବର୍ଣ୍ଣ । 'ନିଷାଦପଞ୍ଚମାଶ୍ଚତ୍ୱାରୋବର୍ଣ୍ଣାଃ' ଏବଂ ଏକ ବର୍ଣ୍ଣର ସ୍ତ୍ରୀ ଓ ଅନ୍ୟ ବର୍ଣ୍ଣର ପୁରୁଷ ସହବାସରୁ ଯେଉଁ ସନ୍ତାନ ଜାତ ହୁଏ ତାହାକୁ ବର୍ଣ୍ଣସଙ୍କର ବୋଲାଯାଏ ।

ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ ବାହୂରାଜନ୍ୟଃ କୃତଃ । ଉରୁ ତଦସ୍ୟ ଯଦ୍ ବୈଶ୍ୟଃ । ପଦ୍ଭ୍ୟାଂ ଶୂଦ୍ରୋଽଜାୟତ । ଋ୧୦ ମ. ୯୦ ସୂ

ବିରାଟ ପୁରୁଷଙ୍କଠାରୁ ଏହି ଚାରି ବର୍ଣ୍ଣ ଜନ୍ମଗ୍ରହଣ କରନ୍ତୁ ବା ଆର୍ଯ୍ୟଗଣ କୌଣସି ସୁବିଧା ଦୃଷ୍ଟିରେ ଆପଣ ମଧରେ ଚାରି ଜାତିର ସୃଷ୍ଟି କରିଥାନ୍ତୁ, ଆମ୍ଭେମାନେ ଏହି ଚାରି ଜାତିର ଉଲ୍ଲେଖ ଋଗ୍‌ବେଦର ଦଶମ ମଣ୍ଡଳର ୯୦ ସୂକ୍ତରେ ପ୍ରଥମେ ଦେଖିବାକୁ ପାଉଁ । ଅନୁମାନ ହୁଏ, ଜାତିଭେଦ ସୃଷ୍ଟି ଦିନଠାରୁ ପରଶୁରାମଙ୍କର କିଶୋରବୟସାବଧି ଉକ୍ତ ଚାରି ଜାତି ଆପଣାର ଜାତିଗତ ସମ୍ମାନ ମର୍ଯ୍ୟାଦା ମହତ୍ତ୍ୱ ରକ୍ଷା କରି ଆସୁଥିଲେ । କ୍ଷତ୍ରିୟଗଣ ପରଶୁରାମଙ୍କର ପ୍ରଚଣ୍ଡ କ୍ରୋଧାନଳରେ ପତିତ ହୋଇ ନିର୍ମୂଳ ହେଲେ ।

'ତ୍ରିସପ୍ତକୃତ୍ୱଃ ପୃଥିବୀଂ କୃତ୍ୱା ନିଃକ୍ଷତ୍ରିୟାଂ ପୁରା ।
ଜାମଦଗ୍ନ୍ୟସ୍ତପସ୍ତେପେ ମହେନ୍ଦ୍ରପର୍ବତୋତ୍ତମେ ।'
୧ । ୬୪ । ୪

ଋଗ୍‌ବେଦ ଯେଉଁ କ୍ଷତ୍ରିୟଗଣଙ୍କୁ ବିରାଟ ପୁରୁଷର ବାହୁସ୍ୱରୂପ ବୋଲି ବର୍ଣ୍ଣନା କରିଅଛନ୍ତି, ଜଣେ ବ୍ରାହ୍ମଣ ସନ୍ତାନ ସେହି ସମସ୍ତ କ୍ଷତ୍ରିୟମାନଙ୍କୁ ଏକାବେଳକେ ନିର୍ମୂଳ କରିଦେଲେ । ବିରାଟ ପୁରୁଷଙ୍କର ଜାତିବିଭାଗ ଋଗ୍ ବେଦର ସମ୍ମାନ ବ୍ରାହ୍ମଣ କୁଠାରାଘାତରେ ଚୂର୍ଣ୍ଣୀଭୂତ ହୋଇଗଲା । କ୍ଷତ୍ରିୟନିଧନକାରୀ ଜନନୀହନ୍ତା ପରଶୁରାମ ଈଶ୍ୱରଙ୍କର ଅବତାର ଏବଂ ହିନ୍ଦୁ ଜାତିର ଦେବତା । ପରଶୁରାମ ତ ଗୋଟିକଠୁ ସମସ୍ତ କ୍ଷତ୍ରିୟ ନିଧନ କଲେ, କ୍ଷତ୍ରିୟମାନଙ୍କର ଗତି କ'ଣ ?

'ଯଦା ନିଃକ୍ଷତ୍ରିୟେ ଲୋକେ
ଭାର୍ଗବେଣ କୃତେ ସତି ।
ବ୍ରାହ୍ମଣାନ୍ କ୍ଷତ୍ରିୟା ରାଜନ୍
ସୁତାର୍ଥନ୍ୟୋଽଭିଚକ୍ରମୁଃ । ୧।୬୪।୫

ପରଶୁରାମ ଥର ଥର କରି ଏକବିଂଶ ଥର ସମସ୍ତ କ୍ଷତ୍ରିୟଙ୍କୁ ନିର୍ମୂଳ କଲେ, ଏଣୁ କ୍ଷତ୍ରିୟ ସ୍ତ୍ରୀମାନେ ପୁତ୍ରାର୍ଥିନୀ ହୋଇ ବ୍ରାହ୍ମଣମାନଙ୍କର ସହବାସ କଲେ ।

ତାଭିଃ ସହ ସମାପେତୁ ବ୍ରାହ୍ମଣାଃ ସଂଶିତବ୍ରତାଃ ।
ଋତାବୃତୌ ନରବ୍ୟାଘ୍ର
ନ କାମାନ୍ନାନୃତୌ ତଥା । ୬ ।

ତେଭ୍ୟସ୍ତ ଲେଭିରେ ଗର୍ଭାନ୍
କ୍ଷତ୍ରିୟାସ୍ତାଃ ସହସ୍ରସଃ ।
ତତଃ ସୁସୁବିରେ ରାଜନ୍
କ୍ଷତ୍ରିୟାନ୍ ବୀର୍ଯ୍ୟବତ୍ତରାନ୍ ।୧।୬୪।୭

ଏହି ପ୍ରକାରେ କ୍ଷତ୍ରିୟ ବିଧବାଗଣ ବ୍ରାହ୍ମଣ ସହବାସ କରି ପୁଣି କ୍ଷତ୍ରିୟ ବଂଶ ବୃଦ୍ଧି କରେ । ଏବଂବିଧ ଉପାୟରେ ଜାତ କ୍ଷତ୍ରିୟଗଣ ବିଶୁଦ୍ଧ, ନା ବର୍ଣ୍ଣସଙ୍କର ? ଆଧୁନିକ କ୍ଷତ୍ରିୟଗଣ ବେଦୋକ୍ତ କ୍ଷତ୍ରିୟ, ନା ପୁରାଣୋକ୍ତ କ୍ଷତ୍ରିୟ ?

ବ୍ୟାଘ୍ର ମହାପରାକ୍ରମଶାଳୀ ପଶୁ, ମାତ୍ର ଚାରି ପାଞ୍ଚଗୋଟି ବନ୍ୟ କୁକୁରଦ୍ୱାରା ଆକ୍ରାନ୍ତ ହେଲେ ପରାସ୍ତ ହୁଏ । କିନ୍ତୁ ପରଶୁରାମ ଜଣେ ବ୍ରାହ୍ମଣ, ସମ୍ବଳ ଏକମାତ୍ର କୁଠାର । ମହାପରାକ୍ରମଶାଳୀ କ୍ଷତ୍ରିୟଗଣ ସେହି କୁଠାରାଘାତରେ ନିର୍ମୂଳ ହେଲେ, ଏହା କେତେଦୂର ସମ୍ଭବ, ତାହା ପାଠକମାନଙ୍କର ବିବେଚନାର ବିଷୟ। ଯେବେ ଜାତି, ଅନାଦି, ଜାତି ଈଶ୍ୱରସୃଷ୍ଟ, କାହାର ସାଧ ସେହି ଜାତିର ଉଚ୍ଛେଦ ସାଧନ କରିପାରେ ? ଭଙ୍ଗା ଗଢ଼ା ପୁରାଣ ଲେଖକଙ୍କର ଇଚ୍ଛାଧୀନ । ଲେଖନୀର ଏକ ଗାରରେ କ୍ଷତ୍ରିୟ ବିରାଟ ପୁରୁଷଙ୍କର ବାହୁସ୍ୱରୂପ ହୋଇଥିଲେ । ପୁଣି ସେହି ଲେଖନୀର ଅନ୍ୟ ଗାରରେ କ୍ଷତ୍ରିୟଗଣ ଯାମଦଗ୍ନ୍ୟଙ୍କ କୋପାନଳରେ ଭସ୍ମୀଭୂତ ହେଲେ ଏବଂ କ୍ଷତ୍ରିୟ ରମଣୀଗଣ ଅନ୍ୟ ଜାତୀୟ ପୁରୁଷଙ୍କ ସହ ଅବୈଧ ପ୍ରଣୟ କରି ପୁତ୍ର ଜନ୍ମ କଲେ । ଏହା କି କ୍ଷତ୍ରିୟକୁଳର ଗୋଟିଏ କଳଙ୍କ ନୁହେଁ ? ଯେଉଁ ପୁସ୍ତକ ସେମାନଙ୍କର ମହତ୍ତ୍ୱ ଲୋପ କରୁଅଛି, ସେମାନଙ୍କର ପୂର୍ବପୁରୁଷଙ୍କ କଳଙ୍କ ଘୋଷଣା କରୁଅଛି, ସେହି ପୁସ୍ତକକୁ କାଳ୍ପନିକ ଓ ମିଥ୍ୟାପୂର୍ଣ୍ଣ କାବ୍ୟ ବୋଲିବାକୁ ଭାରି ଲଜ୍ଜା ଓ ଭୟ ବୋଧ କରନ୍ତି । ମହାଭାରତକୁ କାଳ୍ପନିକ କାବ୍ୟ ବୋଲିବାକୁ ଭୟ କରନ୍ତି, ମାତ୍ର ନିଜର ପୂର୍ବପୁରୁଷମାନଙ୍କୁ ବର୍ଣ୍ଣସଙ୍କର ବୋଲିବାକୁ ତିଳେ ସଙ୍କୋଚ ବୋଧ କରନ୍ତି ନାହିଁ। କି ଲଜ୍ଜାର କଥା । ଯେଉଁ ମହାଭାରତ ତୁମ୍ଭର ପୂର୍ବପୁରୁଷଙ୍କର ନିନ୍ଦା କରେ, ଅପଯଶ ବର୍ଣ୍ଣନା କରେ, ସେ ପୁଣି ଶ୍ରବଣଯୋଗ୍ୟ, ପୂଜା ଯୋଗ୍ୟ ? ଭାରତବାସୀଙ୍କଠାରେ, ପୁରାଣବିଶ୍ୱାସୀଙ୍କଠାରେ ସବୁ ଶୋଭାପାଏ ।

ବଶିଷ୍ଠ, ବିଶ୍ୱାମିତ୍ର ବେଦର ଋଷି, ରାମାୟଣର ଋଷି, ମହାଭାରତର ଋଷି । ଏମାନଙ୍କର ପରମାୟୁର ଇୟତ୍ତା ନାହିଁ । ବେଦ ଲେଖୁଛି, ମନୁଷ୍ୟର ପରମାୟୁ ଶତ ବର୍ଷ । କିନ୍ତୁ ବଶିଷ୍ଠାଦିଙ୍କର ପରମାୟୁ କେତେ ଲକ୍ଷ ବର୍ଷ ତାହା ଗଣନା କରିବା ସହଜ ନୁହେଁ । ସେ ଯାହାହେଉ, ବଶିଷ୍ଠଙ୍କ ନାମ ସଙ୍ଗେ ସଙ୍ଗେ ବିଶ୍ୱାମିତ୍ରଙ୍କ ନାମ ଗୁନ୍ଥା। ଏ ଦୁହିଁଙ୍କ ନାମ ଯେ କେହି ନ ଜାଣନ୍ତି, ଏପରି ନୁହେଁ । ବେଦରୁ ପୁରାଣରୁ ଏମାନଙ୍କ ନାମ ଅନେକେ ଜାଣନ୍ତି । ଯେଉଁମାନେ ପାଠ ପଢ଼ି ନାହାନ୍ତି, ସେମାନେ ରାମଲୀଳାରେ ଏକଗୋଡ଼ିଆ ନାଚ ଦେଖିଲେ ବଶିଷ୍ଠ ଆସିଲେ ବୋଲି ତାଳି ମାରନ୍ତି ।

ବିଶ୍ୱାମିତ୍ର କାନ୍ୟକୁବ୍ଜର ଅଧିପତି । ତପସ୍ୟା ବଳରେ ବିଶ୍ୱାମିତ୍ର ଅସାଧ ସାଧନ କରିଥିବାର ଉଲ୍ଲେଖ ଅଛି । ମାତ୍ର ବାର ବର୍ଷର ଏକାଦଶୀ ଶୁଖୁଆ ପୋଡ଼ାରେ ଗଲା । ସହସ୍ର ବର୍ଷର ବ୍ରହ୍ମଚର୍ଯ୍ୟ ମେନକାର କଟାକ୍ଷପାତରେ ନଷ୍ଟ ହେଲା । ବିଶ୍ୱାମିତ୍ର ଯେମନ୍ତ ପ୍ରବଳପ୍ରତାପୀ, ତେମନ୍ତ ଉଦ୍ଧତ । ତାଙ୍କଠାରେ ନରମ ଗରମ ସବୁ ଥିଲା । ମାତ୍ର ବଶିଷ୍ଠ ବିଚରା ନିରୀହ, ଶାନ୍ତ, ଦୟାଳୁ, ସୂର୍ଯ୍ୟବଂଶର ଗୁରୁ, ସଦା ତପସ୍ୟାନିରତ, ସଦୁପଦେଷ୍ଟା, ଲୋଭଶୂନ୍ୟ ଓ କ୍ରୋଧବର୍ଜିତ । ସ୍ଥୂଳତଃ ବଶିଷ୍ଠଟି ଏପରି, ମାତ୍ର ସୂକ୍ଷ୍ମଦୃଷ୍ଟିରେ ମହାଭାରତ ଫିଟାଇ ଦେଖିଲେ ଏହି ମହାଋଷିଙ୍କ ସମ୍ବନ୍ଧରେ କ'ଣ ଦେଖିବାକୁ ପାଉଁ ? ବିଶ୍ୱାମିତ୍ରଙ୍କ ଦ୍ୱାରା ବଶିଷ୍ଠପୁତ୍ର ନିହତ ହେବାକୁ ବଶିଷ୍ଠ ଶୋକରେ ଅଧୀର 'ଚକ୍ରେ ଚାତ୍ମବିନାଶାୟ ବୁଦ୍ଧିଂ ସ ମୁନିସତ୍ତମଃ । ୧ । ୧୭୬ । ୪୪' ହୋଇ ଆତ୍ମହତ୍ୟା କରିବା ନିମନ୍ତେ ମେରୁଶୃଙ୍ଗରୁ ଲମ୍ଫପ୍ରଦାନ କଲେ, ଅଗ୍ନିପ୍ରବେଶ କଲେ, ଗଳାରେ ପ୍ରକାଣ୍ଡ ପ୍ରସ୍ତରସହ ସମୁଦ୍ରମଧ୍ୟକୁ ଡେଇଁ ପଡ଼ିଲେ। ପ୍ରସ୍ତର ଚୂର୍ଣ୍ଣୀଭୂତ କରୁ ବା ନ କରୁ, ଅଗ୍ନି ଭସ୍ମୀଭୂତ କରୁ ବା ନ କରୁ, ସେ ସିନା ପଥର, ନିଆଁ ଓ ପାଣିର ଗୁଣ, ମାତ୍ର ବଶିଷ୍ଠ ତ କ୍ରୋଧ ସମ୍ବରଣ କରିବାକୁ ଅକ୍ଷମ ହୋଇ ଆତ୍ମହତ୍ୟା କଲେ । ଆଜିକାଲିର ବୁଝାମଣାରେ ପଥର, ପାଣି ଓ ନିଆଁର ଅନୁଗ୍ରହରୁ ବଶିଷ୍ଠ ବଞ୍ଚିଗଲେ ସୁଦ୍ଧା ଆଇନର ୩୦୯ ଧାରାରୁ ରକ୍ଷା ପାଇ ନ ଥାନ୍ତେ ।

ମୋହ କ୍ରୋଧ ବଡ଼ ବିଷମ ଶତ୍ରୁ। ମହର୍ଷିଙ୍କୁ ମଧ ତ୍ୟାଗ କରେ ନାହିଁ । ବିଚରା ବୃଦ୍ଧକାଳରେ ପୁତ୍ରଶୋକରେ ଆତ୍ମହତ୍ୟା କରୁଥିଲେ, ଏହା ତାଦୃଶ ଦୋଷାବହ ମନେ କରାଯାଇ ନ ପାରେ । କିନ୍ତୁ ବଶିଷ୍ଠଙ୍କ ପରି ବ୍ରହ୍ମର୍ଷିଙ୍କର ଅଗମ୍ୟାଗମନ କି ଦୂଷଣୀୟ ଜଘନ୍ୟ ଓ ଘୃଣ୍ୟ କାର୍ଯ୍ୟ । ମହାଭାରତ ବଶିଷ୍ଠସଦୃଶ ଧର୍ମନିଷ୍ଠ ବ୍ୟକ୍ତିଙ୍କୁ ମଧ ଈଦୃଶ କଳଙ୍କରେ କଳଙ୍କିତ କରିବାକୁ ଛାଡ଼ି ନାହିଁ । ବଶିଷ୍ଠ ନିଜ ଶିଷ୍ୟ କଲ୍ମାଷପାଦ ରାଜାଙ୍କ ପତ୍ନୀ

ସହିତ ସଂଯୋଗ କରି ପୁତ୍ର ଉତ୍ପାଦନ କରିଅଛନ୍ତି । ମହାଭାରତୋଲ୍ଲିଖିତ ବ୍ୟକ୍ତିମାନଙ୍କ ମଧ୍ୟରୁ ଦୁଇ ଚାରି ଜଣ ଛଡ଼ା ପ୍ରାୟ ସମସ୍ତେ କୌଣସି ପ୍ରକାରେ ହେଲେ ଦୋଷଜଡ଼ିତ । ଚନ୍ଦ୍ର ଜଣେ ଆମ୍ଭମାନଙ୍କର ଦେବତା, ସେ ଗୁରୁପତ୍ନୀ ହରଣ କରିବା ଦୋଷରେ ଲିପ୍ତ । ଇନ୍ଦ୍ର ଦେବରାଜ, ଆମ୍ଭମାନଙ୍କର ଜଣେ ଦେବତା, ସେ ମଧ୍ୟ ଗୁରୁପତ୍ନୀ, ହରଣ କରି ସହସ୍ର ଭଗବାନ୍ ହୋଇଅଛନ୍ତି । ବ୍ରହ୍ମା ଆମ୍ଭମାନଙ୍କର ସର୍ଜକ, ସେ ମଧ୍ୟ ଅଗମ୍ୟାଗମନ ଦୋଷରେ ଲିପ୍ତ । ମହର୍ଷି ଭରଦ୍ୱାଜ ଗଙ୍ଗାତୀରରେ ଘୃତାଚୀ ଅପ୍‌ସରାର ବସନ ପରିବର୍ତ୍ତନ କରିବାର ଦେଖି କାମମୋହିତ ହୋଇ ଉର୍ଦ୍ଧ୍ୱରେତାର ଯଥେଷ୍ଟ ପରିଚୟ ଦେଇଥିଲେ । ବିଭାଣ୍ଡକ ସ୍ୱର୍ବେଶ୍ୟାର ପବନବିକ୍ଷିପ୍ତ ବସନାନ୍ତରାଳରେ ସ୍ତନ ଜଘନ ଦେଖିପାରି ତପୋବନରେ ରେତବିସର୍ଜନ କରିଥିଲେ । ଆଜନ୍ମ ବ୍ରହ୍ମଚାରୀ ଋଷ୍ୟଶୃଙ୍ଗ ସ୍ତନ ଶମ୍ଭୁର ପୂଜା କରି ବ୍ରହ୍ମଚର୍ଯ୍ୟର ଯଥେଷ୍ଟ ପରିଚୟ ଦେଇଥିଲେ । ଇତ୍ୟାଦି ଇତ୍ୟାଦି ।

ଯୁଧିଷ୍ଠିର ଧର୍ମରାଜ, ସତ୍ୟପ୍ରିୟ, ଧର୍ମଭୀରୁ, ଜନ୍ମଯାକ ବରାବର ସତ୍ୟ କହିଅଛନ୍ତି, ମିଥ୍ୟାକୁ ବଡ଼ ଡରନ୍ତି । କେବଳ ମାତ୍ର ଥରେ ଆତ୍ମରକ୍ଷାର୍ଥ ଆତ୍ମଗୋପନ କରିଥିଲେ । ନିଜ ନାମ ପ୍ରକାଶ ନ କରି ଅନ୍ୟ ନାମରେ ନିଜକୁ ପରିଚୟ ଦେଇଥିଲେ । ଏହା ତାଦୃଶ ଦୋଷାବହ ନୁହେଁ । ଆଉ ଥରେ ଗୁରୁନିଧନ ନିତାନ୍ତ ପ୍ରୟୋଜନ ବୋଲି କୃଷ୍ଣ କହିବାରୁ ଖୁବ୍ ସାବଧାନତା ସହିତ କୃଷ୍ଣଙ୍କ ଅନୁରୋଧକୁ ରଖି ନିଜର ସତ୍ୟବାଦିତାକୁ ବଜାଏ ରଖି ଅଶ୍ୱତ୍‌ଥାମା ହତ ବୋଲି କହିଥିଲେ । ଏ ଯୁଗର ଲୋକେ ନିଜ ସ୍ୱାର୍ଥରେ ହେଉ କିମ୍ବା କୌତୁକରେ ହେଉ ପଣ ପଣ ମିଛ କହିବାକୁ ଅଭ୍ୟସ୍ତ । କଳିଯୁଗରେ ସିନା ଏହା ଦୋଷାବହ ବୋଲି କୃଷ୍ଣଙ୍କ ପରି ଲୋକ ମିଥ୍ୟା ଶିକ୍ଷା ଦେବେ, ଏହା ଘୃଣ୍ୟ କାର୍ଯ୍ୟ ବୋଲି ମନେ ହେଉ ନାହିଁ କି ? କୃଷ୍ଣଙ୍କ ଅନ୍ୟ ନାମ ଚକ୍ରୀ । ଚକ୍ର ଧାରଣ କରୁଥିଲେ ବୋଲି ଚକ୍ରୀ, କି ଚକ୍ରାନ୍ତ କରିପାରୁଥିଲେ ବୋଲି ଚକ୍ରୀ, ଏହା ବିଶେଷ ଚିନ୍ତାର ବିଷୟ । ମହାଭାରତରେ ଶେଷୋକ୍ତ ଗୁଣ ନିମନ୍ତେ ଚକ୍ରୀ ନାମ ପାଇଥିବାର ଆମ୍ଭର ବିଶ୍ୱାସ । କୃଷ୍ଣଙ୍କ କୂଟଚକ୍ରରେ ମହାଭାରତର ବିଷମ ସମରାଗ୍ନି ଉଦ୍ଦୀପିତ ହୋଇଥିଲା, ଏହା କହିବା ବାହୁଲ୍ୟ ମାତ୍ର ।

ମହାଭାରତରେ ବ୍ରାହ୍ମଣପ୍ରାଧାନ୍ୟର ବିସ୍ତର ବର୍ଣ୍ଣନା ଅଛି । ବ୍ରାହ୍ମଣର ବାକ୍ୟ ଅଟଳ । ନ୍ୟାୟରେ ହେଉ, ଅନ୍ୟାୟରେ ହେଉ, ବ୍ରାହ୍ମଣର ମୁଖରୁ ଯେଉଁ ବାକ୍ୟ ନିଃସୃତ ହେବ, ତାହା ଦେବ ମାନବ ସମସ୍ତେ ମାନ୍ୟ କରିବାକୁ ବାଧ୍ୟ । ତାହା ଆଲୋଚନା କରି ଜାତିଗତ ବିଦ୍ୱେଷ ଆନୟନର ଫଳ କ'ଣ ? ପାଠକ ମାତ୍ରେ ତାହା ଭଲରୂପେ ଅବଗତ ଅଛନ୍ତି । ନାରଦ ଓ ଦୁର୍ବାସା ଯୋଡ଼ିଏ କାଞ୍ଚନିକ ଋଷି । ଜଣେ ଭକ୍ତ ଏବଂ କଳିପ୍ରିୟ, ଅନ୍ୟଟି କ୍ରୋଧର ଅବତାର । ଏ ଦୁହେଁ ଅନାଦି କାଳରୁ ଅଛନ୍ତି, ମାତ୍ର ଋଗ୍‌ବେଦରେ ଏମାନଙ୍କର ନାମ ନାହିଁ । ନିଜର ଅନୁରୋଧ ରକ୍ଷା ନ ହେଲେ ନିଜର ଅଭୀଷ୍ଟ ସିଦ୍ଧି ନୋହିଲେ ଅଯଥା କ୍ରୋଧ କରି କି ଅନିଷ୍ଟ ସାଧନ କରନ୍ତି, ତାହା ଶକୁନ୍ତଳା ଏବଂ ରାମାୟଣର ଉତ୍ତରାକାଣ୍ଡର ପାଠକ ମାତ୍ରେ ବିଦିତ ଅଛନ୍ତି । ଆଜିକାଲି ମଧ୍ୟ ଏହି ଛାଞ୍ଚର ବ୍ରାହ୍ମଣ ଜଣେ ଦୁଇ ଜଣ ଦେଖାଯାନ୍ତି । ଏମାନେ ଈପ୍‌ସିତ ଧନ ନ ପାଇଲେ ଯଜ୍ଞୋପବୀତ ଛିନ୍ନ କରି ବଂଶ ଧ୍ୱଂସ ହେଉ ବୋଲି ଅଭିଶାପ ଦିଅନ୍ତି । ଦୁର୍ବାସାଙ୍କର ଅନେକ ଅଯଥା କ୍ରୋଧଜନିତ ଅନିଷ୍ଟଜନକ ଘଟନାର ଉଲ୍ଲେଖ ଥିଲେ ମଧ୍ୟ ଗୋଟିଏ ମହତ୍ କାର୍ଯ୍ୟର ବିବରଣ ମହାଭାରତରେ ଅଛି । ତାହା 'କୁନ୍ତ୍ୟା ଦୁର୍ବାସସୋ ମନ୍ତ୍ରପ୍ରାପ୍ତିଃ' । ଏହି ମନ୍ତ୍ରର ଅସାଧାରଣ ଗୁଣ । ଏହି ମନ୍ତ୍ରଦ୍ୱାରା ପାଣ୍ଡୁଙ୍କର ବଂଶରକ୍ଷା ହେଲା ଏବଂ ଭାରତବର୍ଷରେ ଧର୍ମସଂସ୍ଥାପନ ହେଲା ଏବଂ ଶାନ୍ତି ବିରାଜମାନ କଲା । ଏହି ମନ୍ତ୍ରକୁ ଲଙ୍ଘନ କରିବାର କାହାରି କ୍ଷମତା ନାହିଁ । ଦଶଶତକରଧାରୀ, ଜ୍ୟୋତିଷାଂ ମଧ୍ୟଚାରୀ, ଲୋକଭାବନ ଭାସ୍କର ଏହି ମନ୍ତ୍ର ପ୍ରଭାବରୁ ପିତୃଗୃହସ୍ଥା ଅପ୍ରାପ୍ତବୟସ୍କା କୁନ୍ତୀଙ୍କର ସହବାସ କରିଥିଲେ । ସେହି ଅଲଂଘ୍ୟ ଦୁର୍ବାସାପ୍ରଦତ୍ତ ମନ୍ତ୍ରାକୃଷ୍ଟ ହୋଇ ଧର୍ମରାଜ, ପବନ, ଇନ୍ଦ୍ର କୁନ୍ତୀ ଗର୍ଭରେ ଗୋଟିଏ ଗୋଟିଏ ପୁତ୍ର ଜନ୍ମ ଦେଇଥିଲେ । ଏ ଘଟନାରୁ ଦୁର୍ବାସାଙ୍କର ଅସାଧାରଣ କ୍ଷମତା ଏବଂ ମନ୍ତ୍ରର ଅକଥନୀୟ ଓ ଅଦ୍ଭୁତ ଶକ୍ତିର ପରିଚୟ ମିଳୁଥିଲେ ସୁଦ୍ଧା ଧର୍ମ, ପବନ, ଇନ୍ଦ୍ର, ଅଶ୍ୱିନୀକୁମାର ପ୍ରଭୃତି ଦେବତାମାନଙ୍କର ଦୁର୍ବଳଚିତ୍ତତାର ଏବଂ (କହିବାକୁ ଅସୁନ୍ଦର) କାପୁରୁଷତାର ପରିଚୟ ମିଳୁଅଛି । ଏମାନେ ଦେବତା, ଏମାନଙ୍କର ଆତ୍ମସମ୍ମାନ ନାହିଁ, ଆତ୍ମସଂଯମ ନାହିଁ, ଜଣେ କହିବାମତେ ପର ସ୍ତ୍ରୀର ସହବାସ କରିବେ ଭୟବିହ୍ୱଳ ହୋଇ ଅବୈଧ କାର୍ଯ୍ୟରେ ପ୍ରବୃତ୍ତ ହେବେ, ଏହା କି ଦେବୋଚିତ କାର୍ଯ୍ୟ ? ଏହା ଯେବେ ଦେବୋଚିତ କାର୍ଯ୍ୟ, ତେବେ ଦାନବର ଆଦର୍ଶ କାହିଁ ?

ଭୀଷ୍ମ ଜଣେ ଅସାଧାରଣ ବୀରପୁରୁଷ । ତାହାର ନାମ ଅନୁରୂପ ପ୍ରତିଜ୍ଞା ଓ କାର୍ଯ୍ୟକଳାପ । ବୃଦ୍ଧ ପିତା ସତ୍ୟବତୀ ବିରହରେ କାତର ହେବାରୁ ପିତାଙ୍କର ଅଭୀଷ୍ଟ ପୂରଣ ନିମନ୍ତେ

ଦାସ ରାଜାଙ୍କଠାରେ ଭୀଷଣ ପ୍ରତିଜ୍ଞା କରି ଦାରଗ୍ରହଣ କରିବାରୁ ନିଜକୁ ବଞ୍ଚିତ କଲେ । ଭୀଷ୍ମ ଜ୍ଞାନୀ, ବୁଦ୍ଧିମାନ୍, ବୃଦ୍ଧବୃଦ୍ଧ, ପ୍ରବଳପରାକ୍ରମଶାଳୀ ଏବଂ ରାଜସଭାସଦ୍, କୁରୁ ପାଣ୍ଡବ ଉଭୟଙ୍କୁ ସ୍ନେହ ଚକ୍ଷୁରେ ଦେଖନ୍ତି । ଭୀଷ୍ମ ଯୁଦ୍ଧରେ ପ୍ରବୃତ୍ତ ହେବାର ନ ଥିଲା । ଦଶ ଦିନ କାଳ ମହାସମର କରି ଶତ୍ରୁକୁ ନିଜର ମରଣ ବୃତ୍ତାନ୍ତ ଅବଗତ କରାଇଦେବା ଏବଂ ଶିଖଣ୍ଡିକୁ ରଣକ୍ଷେତ୍ରରେ ଦେଖି ଅସ୍ତ୍ର ତ୍ୟାଗ କରି କାପୁରୁଷ ପ୍ରାୟ ଆଚରଣ କରିବା ଭୀଷ୍ମଙ୍କ ତୁଲ୍ୟ ମହାପରାକ୍ରମଶାଳୀ କ୍ଷତ୍ରିୟର ବୀରତ୍ୱରେ କଳଙ୍କାରୋପ କରିବା ଭିନ୍ନ କିଛି ନୁହେଁ । ତଦ୍ରୂପ ଦ୍ରୋଣ ମଧ ପୁତ୍ରଶୋକରେ ଅଧୀର ହୋଇ ହଠାତ୍ ବିଷଣ୍ଣଭାବରେ ଯୁଦ୍ଧ କରି ପ୍ରାଣ ହରାଇବାଦ୍ୱାରା ବୀରତ୍ୱର ପରିଚୟ ଦେଇପାରି ନାହାନ୍ତି । ଅଶ୍ୱତ୍ଥାମା ଆତତାୟୀ ଶିଶୁହନ୍ତା । କର୍ଣ୍ଣ ଭାରତଲେଖକଙ୍କର ଚକ୍ଷୁଃଶୂଳ, ସୁତରାଂ ତାଙ୍କ ସମ୍ବନ୍ଧରେ ଅସଂଖ୍ୟ ନିନ୍ଦାବାଦ ଥିବ, ଏଥିରେ ଆଶ୍ଚର୍ଯ୍ୟ କ'ଣ ?

ମହାଭାରତଲିଖିତ ପ୍ରସିଦ୍ଧ ବ୍ୟକ୍ତିଙ୍କ ମଧରୁ କାହାରି ଦେହରେ ଯେ ଭାରତରଚକଙ୍କ କଳା ଛିଟ ପଡ଼ି ନାହିଁ, ଏପରି ନୁହେଁ । ସମସ୍ତଙ୍କଠାରେ କିଛି ହେଲେ ଦୋଷ ବରାବର ରହିଅଛି । କାହାର ଜନ୍ମଦୋଷ, କାହାର ଅବା ବଂଶଦୋଷ, କାହାର ବା ଚରିତ୍ରଦୋଷ । ମହାଭାରତ ଆମ୍ଭମାନଙ୍କ ଦେବତାମାନଙ୍କର, ଆର୍ଯ୍ୟମାନଙ୍କର, ପୂର୍ବପୁରୁଷଗଣଙ୍କର ନିନ୍ଦା ଘୋଷଣା କରୁଅଛି, ତାହା ସମ୍ବନ୍ଧରେ ପଦେ ଅଧେ କହିଲେ-ଆମ୍ଭେମାନେ ଦୋଷୀ-ଧର୍ମଦ୍ୱେଷୀ । ପ୍ରବନ୍ଧ ଲେଖିବା ଆଗରୁ ଭାବିଥିଲୁଁ ଯେ, ଭାରତ ପ୍ରବନ୍ଧ ଲେଖାର ପୁରସ୍କାର ସ୍ୱରୂପ କେତେକ ପାଠକଙ୍କର ବିଧର୍ମୀ ଆଖ୍ୟା ଲାଭ କରିବୁଁ । ବସ୍ତୁତଃ, ତାହା ଯେ ହୋଇ ନାହିଁ, ଏପରି ନୁହେଁ । ଏହି ଆଖ୍ୟା ଗ୍ରହଣ କରିବାକୁ ଶଙ୍କିତ ନୋହୁ । ଯେହେତୁ ଯାହା ପ୍ରକୃତ ସତ୍ୟ, ତାହା ଜ୍ଞାତବ୍ୟ—ସ୍ୱାଧୀନ ଚିନ୍ତାରେ ବାଧା ଦେବାର ପ୍ରୟୋଜନ କ'ଣ ?

'ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ
ମହାଜନୋ ଯେନ ଗତଃ ସ ପନ୍ଥାଃ ।'

ଧର୍ମର ତତ୍ତ୍ୱ ବଡ଼ ଗହନ, ପଥପ୍ରଦର୍ଶକ ଭିନ୍ନ ତାହା ଉପଲବ୍ଧି କରିବାର ଉପାୟ ନାହିଁ । ମହାଜନ ଯେ ଅସଂଖ୍ୟ ? କେଉଁ ମହାଜନଙ୍କ ପଦାଙ୍କ ଅନୁସରଣ କରିବାକୁ ହେବ ? ବିଶିଷ୍ଠ, ଜନକ, ଯାଜ୍ଞବଲ୍କ୍ୟ, ନାରଦ, ବ୍ୟାସ, ଶଙ୍କର, ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ, ରାମାନୁଜ, ନାନକ, ରାମମୋହନ ଏମାନେ ତ ଜଣେ ଜଣେ ମହାଜନ, ସମସ୍ତେ ମୁକ୍ତିପଥର ପଥିକ, କେଉଁ ମହାଜନଙ୍କ ମୁକ୍ତିପଥରେ ଅଗ୍ରସର ହେଲେ ଇଷ୍ଟସିଦ୍ଧି ହେବ, କେହି ବତାଇ ପାରିବେ କି ? ମୁକ୍ତି-ମହାସାଗରକୁ ଅସଂଖ୍ୟ ନଦୀ ପ୍ରବାହିତ ହେଉଅଛି, କେଉଁ ନଦୀସ୍ରୋତର ଅନୁକୂଳରେ ମନ ପ୍ରାଣ ପ୍ରବାହିତ କଲେ ଅନନ୍ତ ଶାନ୍ତି-ସମୁଦ୍ରରେ ବିଲୀନ ହେବାକୁ ହେବ, ତାହା କେହି କହିପାରିବେ କି ? ମନୁଷ୍ୟ ମାତ୍ରକେ ସେହି ଶାନ୍ତି-ସମୁଦ୍ରର ପିପାସୁ, ମାତ୍ର କାହାରି ନଦୀରେ କେହି ଯାଉ ନାହାନ୍ତି, ସମସ୍ତେ ଆପଣା ଆପଣା ନିମନ୍ତେ ଗୋଟିଏ ଗୋଟିଏ କେନାଲ କାଟୁଅଛନ୍ତି । ସେହି ଶାନ୍ତିଧାମ ଆଶାରେ ସମସ୍ତେ ଗୋଟିଏ ଗୋଟିଏ ପଥ ପରିଷ୍କାର କରୁଅଛନ୍ତି । ଏଣୁ କହିବାକୁ ଗଲେ ପ୍ରତ୍ୟେକଙ୍କ ମତ ଭିନ୍ନ, ପ୍ରତ୍ୟେକଙ୍କ ପଥ ଭିନ୍ନ । ଆମ୍ଭ ଦେଶରେ ବେଦଠାରୁ ଆରମ୍ଭ କରି ଅସଂଖ୍ୟ ଧର୍ମଶାସ୍ତ୍ର ଅଛି । ବେଦ ସମସ୍ତଙ୍କର ମୂଳ ବୋଲି ସମସ୍ତେ କହନ୍ତି । ମୂଳ ସୁଖେ ମୂଳ ରହିଲା, ବଟବୃକ୍ଷ ତୁଲ୍ୟ ଶାଖାରୁ ନୂତନ ବୃକ୍ଷ ବାହାରି ତାହାକୁ ଘୋଡ଼ାଇ ଦେଇଅଛି । ବେଦରେ ଯେବେ ମୂଳତତ୍ତ୍ୱ ଅଛି, ତେବେ ଲୋକେ ତାହାକୁ ଛାଡ଼ି ବିପଥଗାମୀ ହେଲେ କାହିଁକି ? ତାହାର ଅସଂଖ୍ୟ ବ୍ୟାଖ୍ୟା ବାହାରିଲା କାହିଁକି ? ପୂର୍ବବର୍ତ୍ତୀ ବ୍ୟାଖ୍ୟାକାରଗଣ ଅବିଶୁଦ୍ଧ ବୋଲନ୍ତି କାହିଁକି ? ବୈଦିକ ଋଷିମାନେ 'ଅଗ୍ନିର୍ହୋତା କବୀ କ୍ରତୁ ସତ୍ୟଚିତ୍ରଂ ସ୍ରବସ୍ତମଃ । ଦେବୋ ଦେବେ ଭିରାଗମତ ।' ବୋଲି ସ୍ତୁତି କରୁଥିଲେ । ବୈଦିକ କାଳର ଅବସାନରେ ବୈଦାନ୍ତିକମାନେ ବୈଦିକ ଋଷିମାନଙ୍କର ସେହି ପ୍ରକୃତିପୂଜାକୁ ନିନ୍ଦାକରି

'ଅନ୍ଧଂ ତମଃ ପ୍ରବିଶନ୍ତି ଯେଽବିଦ୍ୟା ମୁପାସତେ ।
ତତୋଭୂୟ ଇବ ତେ ତମୋ
ଯେ ଉ ବିଦ୍ୟାୟାଂ ରତାଃ ।'

ବୋଲି ଗାଇ ଉଠିଲେ କାହିଁକି ? ସେମାନେ ବୈଦିକ ଋଷିଙ୍କ ତୁଲ୍ୟ ଅଗ୍ନି ଇନ୍ଦ୍ର ପ୍ରଭୃତି ଜଡ଼ ଦେବତାର ତ ସ୍ତୁତି କରୁଥାନ୍ତେ, ତାହା ନ କରି ଅଗ୍ନି, ଇନ୍ଦ୍ରାତିରିକ୍ତ ଅନ୍ୟ ଦେବତାର ଅନ୍ୱେଷଣରେ ପ୍ରବୃତ୍ତ ହେଲେ କାହିଁକି ? ବୈଦାନ୍ତିକମାନେ କାହିଁକି, ବେଦର ଋଷିମାନଙ୍କ ମଧରୁ କେହି କେହି ତ ଜଡ଼ ଉପାସନାରେ ତୃପ୍ତ ନ ହୋଇ 'ଯ ଈଶେଽସ୍ୟ ଦ୍ୱିପଦଶ୍ଚତୁଷ୍ପଦଃ । କସ୍ମୈ ଦେବାୟ ହିବିଷା ବିଧେମ' ବୋଲି ବ୍ୟାକୁଳ ହୃଦୟରେ କୌଣସି ମହାଶକ୍ତିର ଅନୁସରଣରେ ପ୍ରବୃତ୍ତ ହେଲେ ? ବେଦ ବଚନରେ ଯେବେ ଋଷିଗଣ ତୃପ୍ତ ଥିଲେ, ତେବେ—

'ନାୟମାତ୍ମା ପ୍ରବଚନେନ ଲଭ୍ୟୋ
ନ ମେଧୟା ନ ବହୁନା ଶ୍ରୁତେନ ।
ଯମେବୈଷ ବୃଣୁତେ ତେନ ଲଭ୍ୟସ୍ତସ୍ୟୈଷ
ଆତ୍ମା ବୃଣୁତେ ତନୁଂ ସ୍ୱାଂ ।'

ଏହି ଅତୃପ୍ତ ବାଣୀ ଋଷିମୁଖରୁ କାହିଁକି ନିଃସୃତ ହେଲା ?

'ନୈବ ବାଚା ନ ମନସାପ୍ରାପ୍ତୁଂ ଶକ୍ୟୋ ନ ଚକ୍ଷୁସା ।
ଅସ୍ତୀତି ବ୍ରୁବତୋଽନ୍ୟତ୍ର କଥନ୍ତ ଦୁପଲଭ୍ୟତେ ।'

କେତେକ ବୈଦାନ୍ତିକ ଏହି ସିଦ୍ଧାନ୍ତ କରି ଚାଲିଗଲେ । ତେବେ ସେହି ପରମାତ୍ମାଙ୍କୁ ପୌରାଣିକଗଣ ପୁଣି କିପରି ଗୋଟାଏ ମାଟିପିଣ୍ଡୁଳା ରୂପେ ଆମ୍ଭମାନଙ୍କ ହସ୍ତରେ ଧରାଇ ଦେବାକୁ ସାହସ କଲେ ? ଭାରତବାସୀଙ୍କର ଭବିଷ୍ୟତ ଯେମନ୍ତ ଅଜ୍ଞେୟ, ଭୂତ ମଧ ତଦ୍ରୂପ ଅଜ୍ଞେୟ। ଭାରତବାସୀଙ୍କର ବେଦ ଅଛି, ପୁରାଣ ଅଛି, ଧର୍ମ ଅଛି, ଇତିହାସ ଅଛି, ମାତ୍ର ପୌରାଣିକମାନଙ୍କର ଜଟିଳ ଜାଲଦ୍ୱାରା ସମସ୍ତ ଏପରି ଭାବରେ ଜଡ଼ିତ ଯେ, ତାହା ଫିଟାଇବାର କାହାର ଶକ୍ତି ନାହିଁ । ଏଣୁ ଭାରତର ଧର୍ମ ଯେପରି ଗୁହାନିହିତ, ଇତିହାସ ମଧ ତଦ୍ରୂପ । ଏଣୁ ଧର୍ମର ଭିତ୍ତି ନ ବୁଝି ଯେମନ୍ତ ଅସଂଖ୍ୟ ଉପଧର୍ମର ସୃଷ୍ଟି କରିଅଛନ୍ତି, ତେମନ୍ତ ଭାରତର ଇତିହାସ ରୀତିନୀତି ସବୁକୁ ନାନା ଲୋକେ ବିଭିନ୍ନ ଭାବରେ ବୁଝୁଅଛନ୍ତି। ପୂର୍ବେ ଲୋକଙ୍କର କୌଣସି ବିଷୟରେ ଅବିଶ୍ୱାସ ଜନ୍ମୁଥିଲେ କିମ୍ବା କୌଣସି କଥାରେ ସନ୍ଦେହ ଉପସ୍ଥିତ ହେଉଥିଲେ ମଧ ଲୋକନିନ୍ଦା ଭୟରେ ପ୍ରକାଶ କରୁ ନ ଥିଲେ, ମନର କଥା ମନ ମଧରେ ଲୟପ୍ରାପ୍ତ ହେଉଥିଲା। ଆଧୁନିକ କାଳରେ ଲୋକେ ଆପଣା ଭାବ ସର୍ବ ସମକ୍ଷରେ ବ୍ୟକ୍ତ କରିବାକୁ ସମୁତ୍ସୁକ । ଏପରି ଅବସ୍ଥାରେ ଆମ୍ଭମାନଙ୍କ ମନୋଗତ ଭାବ ବ୍ୟକ୍ତ କରିବାକୁ ଆମ୍ଭମାନଙ୍କର ସ୍ୱତଃପ୍ରବୃତ୍ତି ହେବ ଏଥିରେ ସନ୍ଦେହ କ'ଣ ? ପ୍ରାଚୀନ ଦଳ ଆମ୍ଭମାନଙ୍କର ପ୍ରାକୃତ ଭାଷାରେ ଲିଖିତ ପ୍ରବନ୍ଧ ପାଠ କରି ମହାଭାରତ ଆଲୋଚନାରେ ପ୍ରବୃତ୍ତ ହେବେ, ଏ ଆଶା କରି ନାହୁଁ । ଯେଉଁ ଆଶାରେ ଈଦୃଶ ଆଲୋଚନାରେ ପ୍ରବୃତ୍ତ ହୋଇଅଛୁଁ, ତାହା ଫଳବତୀ ହେବ ବୋଲି ମନରେ ଯଥେଷ୍ଟ ଆଶାର ସଞ୍ଚାର ହୋଇଅଛି । ଏଥର ମହାଭାରତର ଆଲୋଚନା ଏତିକି । ଆଗାମୀ ସଂଖ୍ୟାରେ ମହାଭାରତ ସମ୍ବନ୍ଧରେ ନିଜର ମନ୍ତବ୍ୟ ପ୍ରକାଶ କରି ପ୍ରବନ୍ଧ ଶେଷ କରିବୁ ।

## ॥ ୪ ॥

ପୁରାଣ (ପୁରା-ନ) ପ୍ରାଚୀନ ଉପାଖ୍ୟାନ, [illegible], ପୁରାତନ କଥା (କାହାଣୀ) । ଏକ ହିସାବ[illegible] ବେଦଠାରୁ ମଧ ପ୍ରାଚୀନ, କାରଣ ବେଦ ରଚନା ପୂର୍ବରୁ [illegible] ଲୋକମୁଖରେ ତତ୍‌ପୂର୍ବବର୍ତ୍ତୀ ପ୍ରାଚୀନ ଉପାଖ୍ୟାନମାନ ବିଦ୍ୟମାନ ଥିଲା ।

ମହାଭାରତ ପ୍ରଭୃତି ପୁରାଣ ଆଖ୍ୟା ପାଇଅଛନ୍ତି । ଏଥିର ତାତ୍ପର୍ଯ୍ୟ କ'ଣ ? ବୈଦିକ ଯୁଗର ବା ତତ୍‌ପୂର୍ବବର୍ତ୍ତୀ ଯୁଗର ପାରମ୍ପର୍ଯ୍ୟୋପଦିଷ୍ଟ ପୁରାବୃତ୍ତ ପ୍ରାଞ୍ଜଳ ଭାଷାରେ ପଞ୍ଚ ଲକ୍ଷଣାନ୍ୱିତ ବା ଦଶ ଲକ୍ଷଣାନ୍ୱିତ ହୋଇ ଲିଖିତ ହୋଇଅଛନ୍ତି ।

ଲେଖକଙ୍କର ସମସାମୟିକ ଘଟଣାର ବିବରଣୀକୁ ପୁରାଣ ବୋଲିବାର ଅଯୌକ୍ତିକ । ଲେଖକ ମହାଭାରତକୁ ପୁରାଣ ଆଖ୍ୟା ଦେଇଥିବାରୁ ସେ ତହିଁର ସମସାମୟିକ ଲୋକ ନୁହନ୍ତି । ଆମ୍ଭମାନଙ୍କ ଦେଶରେ ଯେମନ୍ତ ଲୋକମୁଖରେ ଅନେକ ଗୁଡ଼ିଏ କାହାଣୀ ଅଛି, ପ୍ରାଚୀନକାଳରେ ଲୋକମୁଖରେ ମଧ ଅନେକ କାହାଣୀ ଥିଲା; ସେ ସମସ୍ତ ସଂଗୃହୀତ ହୋଇ ସୁଶୃଙ୍ଖଳ ଭାବରେ ଲିଖିତ ହୋଇଅଛି ଏବଂ ସେହି ଗ୍ରନ୍ଥମାନଙ୍କୁ ଆମ୍ଭେମାନେ ପୁରାଣ ବୋଲି ନିର୍ଦ୍ଦେଶ କରୁଅଛୁଁ । ପୁରାକାଳରେ ଏକଦଳ ଲୋକ ଥିଲେ, ସେମାନଙ୍କର ବ୍ୟବସାୟ ଥିଲା ଲୋକମାନଙ୍କୁ ପୁରାବୃତ୍ତ ଶୁଣାଇବା । ଲୋମହର୍ଷଣ, ସୁତ, ସୌତି ପ୍ରଭୃତି ପୌରାଣିକ ଶ୍ରେଷ୍ଠ । ଏମାନେ ଗଦ୍ୟରେ କଥାରେ ଲୋକଙ୍କୁ ପୁରାଣ ଶୁଣାନ୍ତି ।

ପଞ୍ଚ ଲକ୍ଷଣାନ୍ୱିତ ବା ଦଶ ଲକ୍ଷଣାନ୍ୱିତ ପୁରାଣସମୂହ ଯାହା ଆମ୍ଭମାନଙ୍କର ହସ୍ତଗତ ହୋଇଅଛନ୍ତି, ସେ ସମସ୍ତ ପୌରାଣିକ ଯୁଗରେ ଲିଖିତ ହୋଇଅଛନ୍ତି। ପୁସ୍ତକରେ ରଚକର ନାମ ନ ଥିବାରୁ କେଉଁ କବି କେଉଁ ପୁସ୍ତକର ରଚକ, ତାହା ଜ୍ଞାତ ହେବା ଅସମ୍ଭବ। ପୁରାଣରଚକମାନେ କବିଯଶଃପ୍ରାର୍ଥୀ ନ ଥିଲେ । ନିଜର ମତ ବିସ୍ତାର ହିଁ ସେମାନଙ୍କର ମୂଳ ଉଦ୍ଦେଶ୍ୟ ଥିଲା । ଏଣୁ ଗ୍ରନ୍ଥ ରଚନା କରି ବ୍ୟାସରଚିତ ବୋଲି ପ୍ରକାଶ କରିଅଛନ୍ତି ।

ବ୍ୟାସ ଶବ୍ଦ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିବାଚକ ନୁହେଁ । ଯେଉଁ ବ୍ୟକ୍ତି ଯୁଗଭେଦରେ ବେଦ ବିଭାଗ କରନ୍ତି, ସେ ବ୍ୟାସ । ଏ ହିସାବରେ ସ୍ୱୟଂ ବ୍ରହ୍ମା ବଶିଷ୍ଠ ପ୍ରଭୃତି ଅଠାଇଶ ଜଣ ଅତୀତ ବ୍ୟାସ—ପୁଣି ଭବିଷ୍ୟତରେ ଦ୍ରୌଣି ପ୍ରଭୃତି ବ୍ୟାସ ହେବେ । ଏହାଛଡ଼ା ପୁଣି ବ୍ୟାସ ଶବ୍ଦର ଆଉ ଗୋଟିଏ

ଅର୍ଥ ଅଛି । ''ଯେଉଁ ବିପ୍ର ବିସ୍ପଷ୍ଟ, ସ୍ପଷ୍ଟାକ୍ଷର ପଦଯୁକ୍ତ, କଳସ୍ୱରସମାଯୁକ୍ତ, ରସଭାବସମନ୍ୱିତ, ସୁବୋଧ, ବେଦବ୍ରାହ୍ମଣାଦି ଗ୍ରନ୍ଥକୁ ସଂଗୃହୀତ ପୁରଣାଦି ଗ୍ରନ୍ଥ ପ୍ରକାଶ କରେ, ସେ ବ୍ୟାସ ।'' ଏ ହିସାବରେ ସମସ୍ତ ପୁରାଣଲେଖକ ବ୍ୟାସ । ସୁତରାଂ ଭାଗବତ ଲେଖକ, ସ୍କନ୍ଦପୁରାଣ ଲେଖକ, ଭବିଷ୍ୟତ୍ ପୁରାଣ ଲେଖକଗଣ ଭାଗବତକୁ, ସ୍କନ୍ଦପୁରାଣକୁ, ଭବିଷ୍ୟତ ପୁରାଣ ପ୍ରଭୃତିକୁ ବ୍ୟାସଚରିତ ବୋଲି ପ୍ରକାଶ କରିବା ଆଶ୍ଚର୍ଯ୍ୟ କ'ଣ ?

ମହାଭାରତର ବିଷୟ ମଧ୍ୟରୁ କେତେକ ବୈଦିକ ଗ୍ରନ୍ଥରୁ ଏବଂ କେତେକ ଲୋକ ମୁଖରୁ ସଂଗୃହୀତ । ଯେଉଁଗୁଡ଼ିକ ଲୋକ ମୁଖରୁ ସଂଗୃହୀତ, ତାହା ନିର୍ଦ୍ଧାରଣର ଉପାୟ ନାହିଁ; ମାତ୍ର ବୈଦିକ ଗ୍ରନ୍ଥରୁ ସଂଗୃହୀତ ବିଷୟର ନିର୍ଦ୍ଧାରଣ ନିମନ୍ତେ ଆମ୍ଭମାନଙ୍କୁ ବୈଦିକ ଗ୍ରନ୍ଥ ଆଲୋଡ଼ନ କରିବାକୁ ପଡ଼ିବ ।

ମହାଭାରତରେ ଅସଂଖ୍ୟ ଅପ୍ରାସଙ୍ଗିକ ଉପାଖ୍ୟାନ ଅଛି, ସେଗୁଡ଼ିକର ମୂଳ ବିଷୟ ସହିତ ଅତି ଅଳ୍ପ ସମ୍ପର୍କ ଥିବାର ଦେଖାଯାଏ । ବୋଧହୁଏ, କୁରୁ ପାଣ୍ଡବଙ୍କର ବିବାଦ ଏବଂ ଯୁଦ୍ଧ ମହାଭାରତର ମୁଖ୍ୟ ବିଷୟ ଏବଂ ସଙ୍ଗେ ସଙ୍ଗେ କୃଷ୍ଣ ଓ ବ୍ୟାସଙ୍କର ଅତ୍ୟଧିକ ପ୍ରଶଂସାରେ ବୈଷ୍ଣବ ଧର୍ମ ପ୍ରଚାର ଉଦ୍ଦେଶ୍ୟ ଅନ୍ତର୍ନିହିତ ।

ମହାଭାରତୋକ୍ତ ଜଣ କେତେ ପ୍ରଧାନ ବ୍ୟକ୍ତିଙ୍କର ପ୍ରକୃତ ପରିଚୟ ପାଇବା ନିମନ୍ତେ ବୈଦିକ ଗ୍ରନ୍ଥ ଆଲୋଚନା କରି ଯେଉଁ ପ୍ରମାଣ ପାଇଅଛୁଁ, ତାହା ନିମ୍ନରେ ପ୍ରକାଶ କରୁଅଛୁଁ ।

ପ୍ରଥମରୁ ବ୍ୟାସ; କାରଣ ସେ ପରା ଯୁଧିଷ୍ଠିର ଏବଂ ଦୁର୍ଯୋଧନ ପ୍ରଭୃତିଙ୍କର ଅଜା ଏବଂ ଧୃତରାଷ୍ଟ୍ର ଓ ପଣ୍ଡୁଙ୍କର ଜନକ, ପରାଶର ଓ ସତ୍ୟବତୀଙ୍କର ପୁତ୍ର ଏବଂ ମହାଭାରତର ରଚକ ଓ ବେଦବିଭାଗକର୍ତ୍ତା ଋଷି । ମହାଭାରତରୁ ବ୍ୟାସଙ୍କର ଏହି ପରିଚୟ ପାଉଅଛୁଁ । ବୈଦିକ ଗ୍ରନ୍ଥରେ ବ୍ୟାସଙ୍କର ସ୍ଥାନ କେଉଁଠାରେ, ଦେଖାଯାଉ । ତୈତ୍ତିରୀୟ ଆରଣ୍ୟକରେ ଲିଖିତ ଅଛି, ବ୍ୟାସ ପରାଶର୍ଯ୍ୟ ବିଶ୍ୱକ୍‌ସେନଙ୍କର ଶିଷ୍ୟ; ଏତଦ୍‌ଭିନ୍ନ ତାହାଙ୍କର ଅନ୍ୟ ପରିଚୟ ମିଳେ ନାହିଁ । ମହାଭାରତର ପରାଶରପୁତ୍ର ବ୍ୟାସ ଏବଂ ତୈତ୍ତିରୀୟ ଆରଣ୍ୟକର ବ୍ୟାସ ପରାଶର୍ଯ୍ୟ ଅଭିନ୍ନ ବୋଲାଯାଇପାରେ । ବ୍ୟାସମାତା ସତ୍ୟବତୀଙ୍କର ନାମ ଦେଖାଯାଏ ନାହିଁ । ସତ୍ୟବତୀ ଶବ୍ଦର ଅର୍ଥ ଦୃଷ୍ଟିରେ ଏହା ରୂପକ ବୋଲି ଅନୁମାନ କରାଯାଇପାରେ । ଯେଉଁ ପରାଶର ଋଷିଙ୍କର ପୁତ୍ର ବ୍ୟାସ ତୈତ୍ତିରୀୟ ବ୍ରାହ୍ମଣ ରଚନା ପୂର୍ବେ ବିଦ୍ୟମାନ ଥିଲେ, ସେ ପୁଣି ପୁରାଣ ଯୁଗରେ ମହାଭାରତ ଲେଖିଅଛନ୍ତି ବୋଲିବା ଯୁକ୍ତିସଙ୍ଗତ ନୁହେଁ । ପାଠକଗଣ ଅବଶ୍ୟ ସ୍ୱୀକାର କରିବେ ଯେ, ବୈଦିକ ଭାଷା ଓ ସଂସ୍କୃତ ଭାଷା ଏକ ନୁହେଁ ଏବଂ ଏକ ସମୟର ଭାଷା ନୁହେଁ । ବୈଦିକ ଯୁଗର ଲୋକ ପୌରାଣିକ ସଂସ୍କୃତ ଲେଖିବା ସମ୍ଭବପର ନୁହେଁ । ପୁଣି ଯେଉଁ ବ୍ୟକ୍ତିର ନାମ ଆମ୍ଭେମାନେ ବୈଦିକ ଗ୍ରନ୍ଥରେ ପାଇବା ସେହି ବ୍ୟକ୍ତି ବୈଦିକ ଗ୍ରନ୍ଥ ଲେଖା ବେଳେ କିମ୍ବା ତତ୍‌ପୂର୍ବେ ଜୀବିତ ଥିଲେ ବୋଲିବାକୁ ହେବ । ମହାଭାରତର ବହୁଦିନ ପୂର୍ବେ ବ୍ରାହ୍ମଣଗ୍ରନ୍ଥମାନ ରଚିତ ହୋଇଥିବା ସର୍ବବାଦି ସମ୍ମତ । ବ୍ରାହ୍ମଣଗ୍ରନ୍ଥରେ ଯେଉଁ ବ୍ୟକ୍ତିର ନାମ ଅଛି ସେ ପୁରାଣ ରଚନା ବେଳେ ନ ଥିଲେ, ଏହା ସ୍ୱଚ୍ଛନ୍ଦରେ କୁହାଯାଇପାରେ । ସମ୍ଭବତଃ ବ୍ୟାସ ମହାଭାରତର ମୂଳ ଉପାଖ୍ୟାନର ଉଦ୍ଭାବନକର୍ତ୍ତା ଏବଂ ବସ୍ତୁତଃ ଧୃତରାଷ୍ଟ୍ର ଓ ପଣ୍ଡୁଙ୍କର ଖ୍ୟାତିର ପ୍ରଥମ ସୂତ୍ରପାତକର୍ତ୍ତା; ଏଣୁ ବ୍ୟାସ ପରେ ମହାଭାରତରଚକ ଏବଂ ଧୃତରାଷ୍ଟ୍ର ଓ ପଣ୍ଡୁଙ୍କର ଜନକରୂପେ ପରିଗୃହୀତ ହୋଇଅଛନ୍ତି ।

ପାଣ୍ଡବ-ତରୀର କର୍ଣ୍ଣଧାର, ଉପନିଷଦ୍-ଦୋଗ୍‌ଧା, ଗୋପାଳନନ୍ଦନ କୃଷ୍ଣଙ୍କର ପରିଚୟ ପୁରଣାଦିରେ ଯଥେଷ୍ଟ ରୂପେ ପାଉଅଛୁଁ । ବୈଦିକ ଗ୍ରନ୍ଥରେ ତାଙ୍କର ସ୍ଥାନ ଅନ୍ୱେଷଣ କରାଯାଉ । ଆମ୍ଭେମାନେ ପୁରାଣରୁ ଜାଣୁ, କୃଷ୍ଣ ଯଦୁବଂଶୀୟ ବସୁଦେବଙ୍କ ନନ୍ଦନ । ବସୁଦେବ ଶବ୍ଦ ବୈଦିକ ଗ୍ରନ୍ଥରେ ଦେଖାଯାଏ ନାହିଁ । ଯଦୁବଂଶ ଗୋଟିଏ ଅତି ପ୍ରାଚୀନ ବଂଶ । ତୁର୍ବଶୁବଂଶୀୟମାନଙ୍କ ସହ ଏମାନେ ମିଳିତ ହୋଇ ସୁଦାସମାନଙ୍କ ବିପକ୍ଷରେ ଯୁଦ୍ଧ କରିଥିବାର ବିବରଣ ଋଗ୍‌ବେଦରେ ଦୃଷ୍ଟ ହୁଏ । ବୈଦିକ ଗ୍ରନ୍ଥରେ କୃଷ୍ଣ ନାମ ମିଳେ— ଜଣେ କୃଷ୍ଣ ଋଗ୍‌ବେଦର ମନ୍ତ୍ରଦ୍ରଷ୍ଟା, ତାଙ୍କର ଅନ୍ୟ ପରିଚୟ ନାହିଁ । ଐତିରେୟ ଆରଣ୍ୟକର ଜଣେ ଋଷିଙ୍କର ନାମ କୃଷ୍ଣ ହାରିତ । ଜଣେ କୃଷ୍ଣ ଧୃତି ସାତ୍ୟକି ସତ୍ୟଶ୍ରବସଙ୍କର ଶିଷ୍ୟ ବୋଲି ଜୈମିନୀୟ ଉପନିଷଦରେ ଲିଖିତ ଅଛି । ଏହାଛଡ଼ା ଜଣେ କୃଷ୍ଣଦତ୍ତ ଲୌହିତଙ୍କ ନାମ ମଧ୍ୟ ଅଛି । ଉପରୋକ୍ତ କୌଣସି କୃଷ୍ଣଙ୍କ ସହିତ ମହାଭାରତର କୃଷ୍ଣଙ୍କର ସମ୍ବନ୍ଧ ନ ଥିଲା ପରି ଜଣାଯାଉଅଛି । ଉପରୋକ୍ତ କେତୋଟି କୃଷ୍ଣ ଛଡ଼ା ବୈଦିକ ଗ୍ରନ୍ଥରେ ଆଉ ଜଣେ କୃଷ୍ଣଙ୍କର ନାମ ଦେଖିବାକୁ ପାଉଁ, ତାହା ଦେବକୀପୁତ୍ର କୃଷ୍ଣ । ଏହି କୃଷ୍ଣ ଘୋର ଆଙ୍ଗିରସ ଋଷିଙ୍କର ଶିଷ୍ୟ ।

ତଦ୍ଧୈତଦ୍ ଘୋର ଆଙ୍ଗିରସଃ
କୃଷ୍ଣାୟ ଦେବକୀପୁତ୍ରାୟୋ
କ୍ତ୍ୱୋବ ଚାଽପିପାସ ଏବ ସ ବଭୂବ ।

ଛା.ଉ.୩ । ୧୭।୬

× × ×

ମହାଭାରତର କୃଷ୍ଣ ମଧ ଦେବକୀଙ୍କର ପୁତ୍ର, ସୁତରାଂ ଛାନ୍ଦୋଗ୍ୟ ଉପନିଷଦର 'କୃଷ୍ଣ ଦେବକୀ ପୁତ୍ର' ଏବଂ ମହାଭାରତର 'ଦେବକୀପୁତ୍ର କୃଷ୍ଣ' ଅଭିନ୍ନ ବୋଲାଯାଇପାରେ । ଏହି କୃଷ୍ଣଙ୍କର ତତ୍‌କାଳୀନ ଲୋକଙ୍କଠାରେ ଯଥେଷ୍ଟ ଖ୍ୟାତି ଥିବାରୁ ତାହାଙ୍କୁ ନରଦେବ ରୂପେ ତତ୍ପରବର୍ତ୍ତୀ ଲୋକେ ସମ୍ମାନ କରୁଥିଲେ । କ୍ରମେ ପୁରାଣ ଯୁଗରେ କୃଷ୍ଣ ସ୍ୱୟଂ ଭଗବାନ୍ ହୋଇଅଛନ୍ତି । ଦେବତା ହେଲେ ବା ନର ଦେବତ୍ୱପ୍ରାପ୍ତ ହେଲେ କଶ୍ୟପ ପୁତ୍ର ହେବାକୁ ହେବ, ଏହା ଗୋଟିଏ ପୌରାଣିକ ସ୍ୱତଃସିଦ୍ଧ । ଏଣୁ ହରିବଂଶ କହିଲେ— କୃଷ୍ଣପିତା ବସୁଦେବ କଶ୍ୟପ ଏବଂ କୃଷ୍ଣମାତା ଦେବକୀ ଅଦିତୀ । ପୁଣି ବ୍ରହ୍ମବୈବର୍ତ୍ତ ପୁରାଣ ଗାଇଲେ—

''କଶ୍ୟପୋ ବସୁଦେବଶ୍ଚ ଦେବମାତା ଚ ଦେବକୀ ।
ପୂର୍ବପୁଣ୍ୟଫଳେ ନୈବ ସଂପ୍ରାପ ଶ୍ରୀହରିଂ ସୁତଂ ।''

କୃଷ୍ଣ ବିଷ୍ଣୁତ୍ୱ ପ୍ରାପ୍ତ ହେଲେ କିପରି, ତାହା ପରେ ଆଲୋଚିତ ହେବ ।

ବ୍ୟାସ ଓ କୃଷ୍ଣ ମହାଭାରତରେ ଦୁଇ ଜଣ ମୁଖ୍ୟ ବ୍ୟକ୍ତି । ଏଥିଉତ୍ତାରୁ କୁରୁପାଣ୍ଡବଙ୍କର ବଂଶ ବିବରଣ ଆଲୋଚନା କରାଯାଉ ।

''ଭରତାଭାରତୀ କୀର୍ତ୍ତି
ର୍ଯେନେଦଂ ଭାରତଂ କୁଳଂ''

ଭରତଙ୍କର ନାମରୁ ଭାରତବର୍ଷ ଏବଂ ଭରତଙ୍କ ବଂଶଧରଙ୍କର ଯୁଦ୍ଧର ନାମ ଭାରତଯୁଦ୍ଧ । ଭରତଙ୍କର ଅନ୍ୟ ନାମ ଶାକୁନ୍ତଳେୟ ଓ ଦୌଷ୍ମନ୍ତି । ଭରତ ଶକୁନ୍ତଳା ଦୁଷ୍ମନ୍ତଙ୍କର ପୁତ୍ର । ଋଗ୍‌ବେଦରେ ଏହି ବଂଶର ଉଲ୍ଲେଖ ଅଛି ।

''ଶକୁନ୍ତଳା ନାଡ଼ପିତ୍ୟପ୍‌ସରା ଭରତଂ ଦଧେ ପରଃ ସହସ୍ରାନିନ୍ଦ୍ରାୟାଶ୍ୱାନ୍ମେଧାନ୍ୟ ଆହିରାଦିଜିତ୍ୟ ପୃଥିବୀଂ ସର୍ବାମିତି''

ଶ. ବ୍ରା. ୧୩ । ୫ । ୧୩

ଐତରେୟ ବ୍ରାହ୍ମଣାଦିରେ ମଧ ଭରତ ଦୌଃଷ୍ମନ୍ତିଙ୍କର ନାମ ମିଳେ ।

କୁରୁବଂଶ ମଧ ଅତି ପ୍ରାଚୀନ ବଂଶ । ଋଗ୍‌ବେଦରେ କୁରୁବଂଶର ଉଲ୍ଲେଖ ଅଛି । ଭରତବଂଶ ପରେ କୁରୁବଂଶ ନାମରେ ଅଭିହିତ ହୋଇଥିବାର ପଣ୍ଡିତଗଣ ଅନୁମାନ କରନ୍ତି । ମହାଭାରତ ପାଠରୁ ମଧ ତାହା ଜଣାଯାଏ ।

ପାଞ୍ଚାଳ ବଂଶ ମଧ ପ୍ରାଚୀନ ବଂଶ । ବୈଦିକ ଗ୍ରନ୍ଥରେ କୁରୁ ପାଞ୍ଚାଳର ଯଥେଷ୍ଟ ଉଲ୍ଲେଖ ଅଛି । ଏହାଛଡ଼ା ଯଦୁ ଓ ପୃଥୁବଂଶର ଉଲ୍ଲେଖ ବୈଦିକ ଗ୍ରନ୍ଥରେ ଦେଖିବାକୁ ପାଉଁ । ମାତ୍ର ଦୁଃଖର କଥା, ପାଣ୍ଡବବଂଶର ନାମ କୌଣସିଠାରେ ଦେଖାଯାଉ ନାହିଁ ।

ଯୁଦ୍ଧ ସ୍ଥଳର ନାମ କୁରୁକ୍ଷେତ୍ର । ବୈଦିକ ଗ୍ରନ୍ଥରେ କୁରୁକ୍ଷେତ୍ରର ନାମ ଅଛି । କୁରୁକ୍ଷେତ୍ରରେ ବୃଷଦ୍ୱତୀ, ସରସ୍ୱତୀ ଏବଂ ଆପୟା ନଦୀ ପ୍ରବାହିତ ହେଉଥିବାର ଉଲ୍ଲେଖ ଅଛି । କୁରୁକ୍ଷେତ୍ରର ଉତ୍ତରରେ ଖାଣ୍ଡବ ଏବଂ ଦକ୍ଷିଣରେ ତୂର୍ଘ୍ନ । ମହାଭାରତ ମତରେ ସମନ୍ତପଞ୍ଚକରେ ଯୁଦ୍ଧ ହୋଇଥିଲା, ଯେଉଁଠାରେ ପରଶୁରାମ କ୍ଷତ୍ରିୟ ରୁଧିରଦ୍ୱାରା ପାଞ୍ଚଗୋଟି ହ୍ରଦ ନିର୍ମାଣ କରି ପିତୃତର୍ପଣ କରିଥିଲେ । 'ସମନ୍ତପଞ୍ଚକେ ପଞ୍ଚ କାରଗୌଧିରାନ୍ ହୃଦାନ୍' । ମାତ୍ର ଭାଗବତରଚକଙ୍କର ପାଞ୍ଚଗୋଟି କ୍ଷତ୍ରିୟରୁଧିର ହ୍ରଦରେ ପିତୃତର୍ପଣ କରିବା ମନଃପୂତ ହେଲା ନାହିଁ । ଏଣୁ ତାଙ୍କ ପୋଥିରେ 'ନେବାନ୍ ହ୍ରଦାନ' ନିର୍ମାଣ କରି ପିତୃତର୍ପଣ କଲେ । ଭାଗବତ କଥା ସତ, କି ଭାରତ କଥା ସତ, ପାଠକେ ବୁଝିନେବେ । ତେବେ ସମନ୍ତପଞ୍ଚକର ନାମ ବୈଦିକ ଗ୍ରନ୍ଥରେ ନାହିଁ ।

ହସ୍ତିନାପୁର କୁରୁ ରାଜଧାନୀ, ହସ୍ତୀ ନାମକ ରାଜାଙ୍କଦ୍ୱାରା ସ୍ଥାପିତ ହୋଇଥିବାରୁ ନାମ ହସ୍ତିନାପୁର । ( ୧ । ୯୫ । ୩୫ ) ମାତ୍ର ବୈଦିକ ଗ୍ରନ୍ଥରେ ଏ ନଗରର ନାମୋଲ୍ଲେଖ ନ ଥିବାରୁ ବୈଦିକ ଗ୍ରନ୍ଥର ପରବର୍ତ୍ତୀ ନାମ ବୋଲି ଅନୁମାନ କରାଯାଏ ।

ଜନମେଜୟ ସର୍ପସତ୍ର କରିଥିଲେ, ମହାଭାରତ ଶ୍ରବଣ କରିଥିଲେ । ଜନମେଜୟ କିଏ ଏବଂ କେଉଁ ଯୁଗର ଲୋକ ? ମହାଭାରତ ପ୍ରାରମ୍ଭରେ ସୌତି କହିଲେ ଯେ, ପରୀକ୍ଷିତ ଜନମେଜୟଙ୍କର ସର୍ପସତ୍ରରେ ବୈଶମ୍ପାୟନ ମହାଭାରତ ବ୍ୟାଖ୍ୟାନ କଲେ । ଆମ୍ଭେମାନେ ଏଥିରୁ ସ୍ପଷ୍ଟରୂପେ ଜାଣିପାରିଲୁଁ ଯେ, ଜନମେଜୟ ପରୀକ୍ଷିତଙ୍କର ପୁତ୍ର । ମହାଭାରତ ପୌଷ୍ୟ ପର୍ବରୁ ମଧ ଜ୍ଞାତ ହେଲୁଁ ଯେ, ଜନମେଜୟ ପରୀକ୍ଷିତଙ୍କର ପୁତ୍ର ଏବଂ ତାହାଙ୍କର ତିନି ଜଣ ଭ୍ରାତା ଥିଲେ; ନାମ- ଶ୍ରୁତସେନ, ଉଗ୍ରସେନ ଓ ଭୀମସେନ; ପୁଣି ଏମାନେ ସର୍ପସତ୍ର କରିଥିଲେ । ଏହି ଚାରି ଭ୍ରାତାଙ୍କ ନାମ ବୈଦିକ ଗ୍ରନ୍ଥରେ ଅଛି କି ନାହିଁ, ଏହା ଅନୁସନ୍ଧାନ କରିବାକୁ ଯାଇ ଆମ୍ଭେମାନେ ନିମ୍ନୋକ୍ତ ପ୍ରମାଣ ପାଉଅଛୁଁ । ଅଥର୍ବ ବେଦରେ ପରୀକ୍ଷିତଙ୍କ ନାମ ଦୃଷ୍ଟ ହୁଏ । ଏହାଛଡ଼ା ଐତରେୟ

ବ୍ରାହ୍ମଣ ଏବଂ ଅନ୍ୟାନ୍ୟ ବ୍ରାହ୍ମଣରେ ପରୀକ୍ଷିତଙ୍କ ନାମ ଦେଖାଯାଏ । ଜନମେଜୟ ପରୀକ୍ଷିତଙ୍କର ପୁତ୍ର ଏବଂ ଅଶ୍ୱମେଧ ଯଜ୍ଞ କରିଥିଲେ ବୋଲି ଶତପଥ ବ୍ରାହ୍ମଣରେ ଲେଖାଅଛି । ପରୀକ୍ଷିତଙ୍କ ରାଜଧାନୀର ନାମ ଆସନ୍ଦିବନ୍ତ; ଜନମେଜୟଙ୍କ ସହୋଦରମାନଙ୍କର ନାମ ଉଗ୍ରସେନ, ଶ୍ରୁତସେନ ଓ ଭୀମସେନ । ଏମାନେ ଅଶ୍ୱମେଧ ଯଜ୍ଞ କରି ପାପରୁ ଉଦ୍ଧାର ପାଇଥିଲେ ବୋଲି ଐତରେୟ ବ୍ରାହ୍ମଣ ଓ ଶାଙ୍ଖ୍ୟାୟନ ଶ୍ରୌତସୂତ୍ରରେ ଲିଖିତ ହୋଇଅଛି । ଉପରୋକ୍ତ ପ୍ରମାଣରୁ ଆମ୍ଭେମାନେ ଜାଣି ପାରିଲୁଁ ଯେ, ଜନମେଜୟ ବୈଦିକ ଯୁଗର ଲୋକ, ବୈଶମ୍ପାୟନଙ୍କ ନାମ ଐତରେୟ ଆରଣ୍ୟକରେ ଦେଖାଯାଏ ।

ମହାଭାରତ ମତରେ ଶାନ୍ତନୁ ଧୃତରାଷ୍ଟ୍ର ଏବଂ ପଣ୍ଡୁଙ୍କର ପିତାମହ । ପ୍ରତାପଙ୍କର ପୁତ୍ର ଦେବାପି ବାହ୍ଲିକ ଓ ଶାନ୍ତନୁ । "ଦେବାପିଃ ଖଲୁ ବାଳ ଏବାରଣ୍ୟ ବିବେଶ । ଶାନ୍ତନୁସ୍ତୁ ମହୀପାଳୋ ବଭୂବ ।" ୧ । ୯୫ । ୪୫ ଋଗ୍‌ବେଦରେ (୧୦ । ୯ । ସୂ) ଦେବାପି ଆର୍ଷ୍ଟିଷେଣର (ଋଷ୍ଟିଷେଣ ପୁତ୍ର ଦେବାପି) ଉଲ୍ଲେଖ ଅଛି । ନିରୁକ୍ତ ଅନୁସାରେ ଦେବାପି ଏବଂ ଶାନ୍ତନୁ ଦୁଇଜଣ କୁରୁରାଜପୁତ୍ର । ଅନ୍ୟାୟକ୍ରମେ ଶାନ୍ତନୁ ରାଜା ହେବାରୁ ରାଜ୍ୟରେ ବାର ବର୍ଷ ବୃଷ୍ଟି ହେଲା ନାହିଁ । ଏଣୁ ବ୍ରାହ୍ମଣମାନେ କହିଲେ, ବଡ଼ ଭାଇଙ୍କି ରାଜ୍ୟଚ୍ୟୁତ କରି ରାଜା ହେବାରୁ ଅନାବୃଷ୍ଟି ହେଲା । ତେଣୁ ଶାନ୍ତନୁ ରାଜ୍ୟ ଫେରାଇ ଦେବାକୁ ପ୍ରସ୍ତୁତ ହେଲେ. ମାତ୍ର ଦେବାପି ରାଜ୍ୟ ଗ୍ରହଣ କଲେ ନାହିଁ । କିନ୍ତୁ ବୃଷ୍ଟି ହେବା ନିମନ୍ତେ ନିଜେ ଯଜ୍ଞ କଲେ, ଏଣୁ ଜଳ ବୃଷ୍ଟି ହେଲା । ଦେବାପି ଯଜ୍ଞ କରିଥିବାର ଋଗ୍‌ବେଦରୁ ମଧ୍ୟ ଜଣାଯାଏ । ଉପରୋକ୍ତ ପ୍ରମାଣ ଦେଖିଲେ ମହାଭାରତୋକ୍ତ ଶାନ୍ତନୁ ଏବଂ ବୈଦିକ ପୁସ୍ତକୋକ୍ତ ଶାନ୍ତନୁ ଅଭିନ୍ନ ବୋଲି ମନେହୁଏ ।

ଧୃତରାଷ୍ଟ୍ର ପଣ୍ଡୁଙ୍କର ବିମାତାନନ୍ଦନ, ଏହା ମହାଭାରତ କଥା । ପୁଣି ସେ ଜନ୍ମାନ୍ଧ । କଥକ ସଂହିତାରେ ଧୃତରାଷ୍ଟ୍ର ବିଚିତ୍ରବୀର୍ଯ୍ୟଙ୍କର ବର୍ଣ୍ଣନା ଅଛି । ମହାଭାରତର ଧୃତରାଷ୍ଟ୍ର ବିଚିତ୍ରବୀର୍ଯ୍ୟଙ୍କର ପୁତ୍ର ବୋଲିବାକୁ ହେବ । ବିଚିତ୍ରବୀର୍ଯ୍ୟଙ୍କଦ୍ୱାରା ଉଭୟ ଧୃତରାଷ୍ଟ୍ର ପରିଚିତ ହେଉଥିବାରୁ ଉଭୟ ଗ୍ରନ୍ଥ ଜଣେ ଧୃତରାଷ୍ଟ୍ରଙ୍କୁ ଲକ୍ଷ୍ୟ ରଖୁଥିବାର ଅନୁମାନ କରାଯାଇପାରେ ।

ଆମ୍ଭେମାନେ ଜନମେଜୟ, ପରୀକ୍ଷିତ ଓ ଶାନ୍ତନୁଙ୍କ ନାମ ବୈଦିକ ଗ୍ରନ୍ଥରେ ଦେଖିବାକୁ ପାଇଅଛୁଁ; ମାତ୍ର ପଣ୍ଡୁ, ଅର୍ଜୁନ, ଅଭିମନ୍ୟୁଙ୍କ ନାମ ବୈଦିକ ଗ୍ରନ୍ଥରେ ନ ମିଳିବାର କାରଣ କ'ଣ ? ଏହି ତିନି ଜଣଙ୍କ ନାମ କାଳ୍ପନିକ କିମ୍ବା ଏମାନେ ବିଖ୍ୟାତନାମା ନୁହନ୍ତି କିମ୍ବା ଅପ୍ରସିଦ୍ଧ-ବଂଶୀୟ ଲୋକ । ପୁରାଣକର୍ତ୍ତା ଏମାନଙ୍କ ନାମକୁ ବୈଦିକ ଯୁଗର ବିଖ୍ୟାତ ବ୍ୟକ୍ତିଙ୍କର ବଂଶ ସହିତ ସଂଯୋଗ କରି ପୁରାଣର ଅଙ୍ଗବୃଦ୍ଧି କରିଅଛନ୍ତି । ପୁରାଣଲେଖକ ଏବଂ କାବ୍ୟଲେଖକମାନେ ସର୍ବଦା ଏହି ପନ୍ଥା ଅବଲମ୍ବନ କରି ଆର୍ଯ୍ୟ ଇତିହାସର କ୍ଷୀଣାଲୋକକୁ ଆବୃତ୍ତ କରି ରଖିଅଛନ୍ତି ଏବଂ ଆମ୍ଭେମାନେ ପୁରାଣାନ୍ଧକାରରେ ଦରାଣ୍ଡି ହେଉଅଛୁଁ ।

ଦୁର୍ଯ୍ୟୋଧନ ବା ତତ୍‌ପକ୍ଷୀୟ କୌଣସି ପ୍ରସିଦ୍ଧ ବ୍ୟକ୍ତିଙ୍କର ନାମ ବୈଦିକ ଗ୍ରନ୍ଥରେ ଦେଖାଯାଏ ନାହିଁ ।

ମୂଳ ଉପାଖ୍ୟାନର ଜଣ କେତେ ପ୍ରସିଦ୍ଧ ବ୍ୟକ୍ତିଙ୍କ ନାମ ଅନୁସନ୍ଧାନ କରି ଯାହା ପାଇଅଛୁଁ, ତାହା ଉପରେ ପ୍ରକାଶ କରାଗଲା । ବର୍ତ୍ତମାନ ପକ୍ଷରେ ଏତିକି ଯଥେଷ୍ଟ । ଏବେ ପ୍ରାସଙ୍ଗିକ ଉପାଖ୍ୟାନ ଦୁଇ ଚାରି ଗୋଟିର ଆଲୋଚନା କରାଯାଉ ।

ଗରୁଡ଼ ସମ୍ବନ୍ଧରେ ୧୦, ୧୨ ଗୋଟି ଅଧ୍ୟାୟ ମହାଭାରତ ଆଦିପର୍ବରେ ଅଛି । ଗରୁଡ଼ ବିନତାର ପୁତ୍ର । ବିନତା କଶ୍ୟପଙ୍କର ସ୍ତ୍ରୀ । ବୋଲିବା ବାହୁଲ୍ୟ ଯେ, କଶ୍ୟପ ଏକ ଅଦ୍ଭୁତ ଋଷି, ପୌରାଣିକଗଣଙ୍କର ଅଦ୍ଭୁତ କଳ୍ପନା । ଏହାଙ୍କର ସତର ଜଣ ସ୍ତ୍ରୀ । ଦେବତା ଅସୁର ଏବଂ ସମସ୍ତ ଜୀବ ଏହାଙ୍କଠାରୁ ଜାତ ହୋଇଅଛନ୍ତି । ସୌଭାଗ୍ୟକ୍ରମେ ମନୁଷ୍ୟମାନେ ଏହାଙ୍କଠାରୁ ଜନ୍ମିଥିବାର ଜଣା ଯାଉ ନାହିଁ । ସେ ଯାହାହେଉ, ବିନତାଠାରୁ ଅରୁଣ ଏବଂ ଗରୁଡ଼ଙ୍କର ଜନ୍ମ । ଏହି ତିନିଗୋଟି ନାମ ବିଶୁଦ୍ଧ କବିକଳ୍ପନା । ବିନତା ଦୁଇଗୋଟି ଅଣ୍ଡ ପ୍ରସବ କଲେ । ପାଞ୍ଚ ଶତ ବର୍ଷରେ ଅଣ୍ଡରୁ ଛୁଆ ପ୍ରସବ ନ ହେବାର ଦେଖି ବିନତା ଗୋଟିଏ ଅଣ୍ଡକୁ ବିଦୀର୍ଣ୍ଣ କଲେ ଏବଂ ଅପୂର୍ଣ୍ଣାଙ୍ଗ ଗୋଟିଏ ପୁତ୍ର ଦେଖିଲେ । ଏହି ଅପୂର୍ଣ୍ଣାବୟବ ବିନତା ପୁତ୍ରର ନାମ ଅରୁଣ । ପୁଣି ପାଞ୍ଚ ଶତ ବର୍ଷ ପରେ ଅନ୍ୟ ଅଣ୍ଡରୁ ଗରୁଡ଼ ଜନ୍ମ ହେଲେ । ଗରୁଡ଼ ନାଗାନ୍ତକ, ମହାପ୍ରତାପଶାଳୀ, ପତଙ୍ଗେଶ୍ୱର ଇତ୍ୟାଦି । ପାଠକଗଣ, ଆପଣମାନେ ବିନତାନନ୍ଦନ ଦୁଇ ଭ୍ରାତାଙ୍କୁ ଚିହ୍ନି ପାରୁଅଛନ୍ତି କି ? ଆମ୍ଭେମାନେ ଜ୍ୟେଷ୍ଠଭ୍ରାତା ଅରୁଣଙ୍କୁ ସୂର୍ଯ୍ୟୋଦୟ ପୂର୍ବ ରକ୍ତାଭା ବୋଲି ପରିଚୟ କରୁଅଛୁଁ ଏବଂ କନିଷ୍ଠ ଗରୁଡ଼ଙ୍କୁ ସ୍ୱୟଂ ସୂର୍ଯ୍ୟ ବୋଲି ବୁଝୁଅଛୁଁ ।

ସୂର୍ଯ୍ୟୋଦୟ ପୂର୍ବରୁ ଯେ ରକ୍ତାଭ ଦେଖାଯାଏ, ତାହା ଆକାରଶୂନ୍ୟ, ସୁତରାଂ ଅପରିପକ୍ୱ ଅଣ୍ଡଜାତ ଅପୂର୍ଣ୍ଣକାୟ ବୋଲି ବର୍ଣ୍ଣନା କରାଯାଇଅଛି ଏବଂ ସୂର୍ଯ୍ୟୋଦୟ ଆଗରୁ ଦେଖାଯାଉ ଥିବାରୁ ଗରୁଡ଼ ବା ସୂର୍ଯ୍ୟଙ୍କର ଅଗ୍ରଜ ବୋଲି ବର୍ଣ୍ଣନା କରାଯାଇଅଛି—

''ଅରୁଣୋଦୃଶ୍ୟତେ ବ୍ରହ୍ମନ୍
ପ୍ରଭାତ ସମୟେ ଯଦା ।
ଆଦିତ୍ୟରଥମଧ୍ୟାସ୍ତେ
ସାରଥ୍ୟଂ ସମକଳ୍ପୟତ୍ ।''

ଗରୁଡ଼ ଯେ ସୂର୍ଯ୍ୟ, ତହିଁର ଅଧିକ ବିବରଣ ଦେବାର ନିଷ୍ପ୍ରୟୋଜନ । ମହାଭାରତୋକ୍ତ ଗରୁଡ଼ସ୍ତୁତିରୁ କିଛି ଉଦ୍ଧୃତ କଲେ ଯଥେଷ୍ଟ ହେବ—

''ତ୍ୱଂ ଜ୍ୟୋତିଃ ସର୍ବଭୂତାନାଂ
ତ୍ୱମାଦିତ୍ୟୋ ବିଭାବସୁଃ ।
ତ୍ୱମହଭୁତମାଶ୍ଚର୍ଯ୍ୟଂ ତ୍ୱଂ ରାଜା ତ୍ୱଂ ସୁରୋତ୍ତମଃ ।
ତ୍ୱଂ ପ୍ରଭୁସ୍ତପନଃ ସୂର୍ଯ୍ୟଃପରମେଷ୍ଠିଃ ପ୍ରଜାପତିଃ ।
ତ୍ୱମିନ୍ଦ୍ରସ୍ତ୍ୱଂ ହୟମୁଖସ୍ତ୍ୱଂ ଶରସ୍ତ୍ୱଂ ଜଗତ୍‌ପତିଃ ।''

କଦ୍ରୁ ରାତ୍ରି ଆକାଶ ଏବଂ ବିନତା ଦିବାକାଶ । କଦ୍ରୁଙ୍କର ଏକ ହଜାର ଡିମ୍ବ ଏବଂ ବିନତାଙ୍କର ଦୁଇ ଡିମ୍ବ ହୋଇଥିଲେ । କଦ୍ରୁଙ୍କର ଅସଂଖ୍ୟ ପୁତ୍ର ଅର୍ଥାତ୍ ନକ୍ଷତ୍ରାଦି ଏବଂ ବିନତାଙ୍କର ଦୁଇ ପୁତ୍ର ଅରୁଣ ଏବଂ ସୂର୍ଯ୍ୟ । ଗରୁଡ଼ ପର୍ଯ୍ୟାୟର ଅଧିକାଂଶ ଶବ୍ଦ ସୂର୍ଯ୍ୟାର୍ଥବାଚକ ।

ଋଗ୍‌ବେଦରେ ନିମ୍ନୋକ୍ତ ମନ୍ତ୍ରକୁ ଲକ୍ଷ୍ୟରଖି ମହାଭାରତରେ ଗରୁଡ଼ର କଳ୍ପନା ଓ ସ୍ତୁତି କରାଯାଇଅଛି—

''ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନି ମାହୁରଥୋ ଦିବ୍ୟଃ ସ ସୁପର୍ଣ୍ଣୋ ଗୁରୁତ୍ମାନ୍ । ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତ୍ୟଗ୍ନି ଯମଂ ମାତରିଶ୍ୱାନମାହୁଃ ।''

ପୌଷ୍ୟ ପର୍ବର ଉତ୍ତଙ୍କ ଚରିତ ପାଠରୁ ଆମ୍ଭେମାନେ **ସ୍ପଷ୍ଟ** ଜାଣି ପାରୁଅଛୁଁ ଯେ, ଦିବା ରାତ୍ର ବର୍ଷ ମାସ ଋତୁକୁ ରୂପକରେ ଗୋଟିଏ ଉପାଖ୍ୟାନ ରଚନା କରଯାଇଅଛି ଏବଂ ତାହା ଆମ୍ଭମାନଙ୍କୁ ପ୍ରକୃତ ଘଟଣା ବୋଲି ପ୍ରତିଭାତ ହେଉଅଛି ।

ଅନେକ ଦିନର କଥା । ପିଲାବେଳେ ଗ୍ରୀଷ୍ମକାଳରେ ରାତ୍ରରେ ଖୋଲା ସ୍ଥାନରେ ମୁଁ ମା'ଙ୍କ ନିକଟରେ ଶୋଇଥିଲି ଓ ଆକାଶକୁ ଅନାଉଥିଲି । ଆକାଶରେ ଚନ୍ଦ୍ର ଓ ନକ୍ଷତ୍ର ଦେଖି ମା'ଙ୍କୁ ପଚାରିଲି ରାତିରେ ତ ଏତେଗୁଡ଼ିଏ ବାହାରନ୍ତି, ଦିନରେ କାହିଁକି ଗୋଟିଏ ବାହାରେ ? ମା' କହିଲେ, ଚନ୍ଦ୍ର ଓ ସୂର୍ଯ୍ୟ ଦୁଇ ଭାଇ, ଚନ୍ଦ୍ରଙ୍କର ଯେଉଁପରି ଛୁଆ ଅଛନ୍ତି, ସୂର୍ଯ୍ୟଙ୍କର ମଧ ଥିଲେ । ସୂର୍ଯ୍ୟ ପରି ତାଙ୍କର ଛୁଆମାନଙ୍କୁ ତେଜସ୍ୱୀ ଦେଖି ଚନ୍ଦ୍ର ବିଚାରିଲେ, ଜଣକର ତେଜ ତ ଲୋକେ ସମ୍ଭାଳି ପାରୁ ନାହାଁନ୍ତି, ତାଙ୍କର ଛୁଆମାନଙ୍କର ତେଜ କିପରି ସହିବେ ? ପୃଥିବୀର ଲୋକେ ତ ଜଳିଯିବେ ? ଏଣୁ ଲୋକ ଉପକାର ନିମନ୍ତେ ଚନ୍ଦ୍ର ଗୋଟିଏ ଉପାୟ ଚିନ୍ତା କଲେ । ଦିନେ ଅନେକ ଗୁଡ଼ିଏ ପାଚିଲା ତାଳ ସିଦ୍ଧକଲେ ଏବଂ ସୂର୍ଯ୍ୟଙ୍କୁ ଖାଇବାକୁ ଡାକିଲେ । ସୂର୍ଯ୍ୟ ସିଦ୍ଧତାଳ ଖାଇ ବଡ଼ ଖୁସିହେଲେ ଏବଂ ପଚାରିଲେ, ତୁ ସୁସ୍ୱାଦୁ ପଦାର୍ଥ କାହୁ ଆଣିଲୁ ? ଚନ୍ଦ୍ର କହିଲେ, ମୋର ଛୁଆମାନଙ୍କର ମୁଣ୍ଡ ଗୁଡ଼ିକ ସିଦ୍ଧ କରିଅଛି । ସୂର୍ଯ୍ୟ ଆରଦିନ ନିଜର ଛୁଆମାନଙ୍କୁ ମାରି ସେମାନଙ୍କ ମୁଣ୍ଡକୁ ସିଦ୍ଧ କରି ଭୋଜନ କଲେ । ସିଦ୍ଧ ତାଳ ପରି ସୁସ୍ୱାଦ ନୋହିବାର ଦେଖି ଚନ୍ଦ୍ରଙ୍କ ଛଳନା ଜାଣିପାରିଲେ ଏବଂ ରାଗ କରି ଚନ୍ଦ୍ରଙ୍କୁ ଅଭିଶାପ ଦେଲେ । ସୂର୍ଯ୍ୟଙ୍କ ଶାପରେ ଚନ୍ଦ୍ର ପକ୍ଷେ ବଢୁଛି— ପକ୍ଷେ ଛିଡ଼ୁଛି । ଚନ୍ଦ୍ରର ବୁଦ୍ଧିବଳରେ ଲୋକଙ୍କର ଅଶେଷ ଉପକାର ହୋଇଅଛି । ବାଳକମତି, ମନେକଲି, ଚନ୍ଦ୍ର ଆମ୍ଭମାନଙ୍କର ବଡ଼ ଉପକାରୀ, ଆଉ ସୂର୍ଯ୍ୟ ବଡ଼ ଅନିଷ୍ଟକାରୀ ।

ଚନ୍ଦ୍ରର କ୍ଷୟବୃଦ୍ଧି ସୂର୍ଯ୍ୟର ଅଭିଶାପରୁ, କି ଗୁରୁପତ୍ନୀ ହରଣ ଦୋଷରୁ, ଏହା ପାଠକଗଣ ବୁଝିବେ । ଆମ୍ଭେମାନେ ବାଲ୍ୟକାଳରେ ଈଦୃଶ ଅନେକ ଗୁଡ଼ିଏ ଗଳ୍ପ ଶୁଣିଥାଉଁ । ସେତେବେଳେ ଆମ୍ଭେମାନେ ସେଗୁଡ଼ିକ ମିଥ୍ୟା ବା କାଳ୍ପନିକ ଗଳ୍ପ ବୋଲି ମନେ କରିଥାଉଁ କି ? ପଲ୍ଲୀଗ୍ରାମବାସୀ ଲୋକେ କାହାଣୀ ଶୁଣିବାରେ ପ୍ରତ୍ୟହ ଘଣ୍ଟାଏ ଦୁଇ ଘଣ୍ଟା ଅତିବାହିତ କରନ୍ତି ଏବଂ ଯାହା ଶୁଣନ୍ତି, ତାହା ସତ୍ୟ ବୋଲି ମନେ କରିଥାନ୍ତି । ସାଧବଘର ବୋହୂ ଫାଳେ ଦାନ୍ତକାଠିକୁ ଡଙ୍ଗାକରି ସାତତାଳ ପାଣି ଚୌଦତାଳ ପଙ୍କ ପାରିହୋଇଯିବା କଥାକୁ ଶୁଣି ପାଶ୍ଚାତ୍ୟ ଶିକ୍ଷିତ ଯୁବକ ବିଶ୍ୱାସ କରି ଘରକୁ ଫେରିଯିବେ କି ? ହିତୋପଦେଶର କଥା ଅତି ଉପଦେଶଗର୍ଭକ ଓ ଆମୋଦଜନକ । କଥା ଶୁଣି ଲୋକେ ସୁଖାନୁଭବ କରନ୍ତି, ମାତ୍ର ପକ୍ଷୀ ଓ ପଶୁମାନେ ମନୁଷ୍ୟ ପରି କଥାବାର୍ତ୍ତା କରୁଥିବାର କେହି ବିଶ୍ୱାସ କରନ୍ତି କି ? କେହି କରନ୍ତି ନାହିଁ । ତେବେ ମହାଭାରତର ଗୃଧ୍ର-ଜମ୍ବୁକ ସମ୍ବାଦକୁ ସତ୍ୟ ବୋଲିବା କି ବୁଦ୍ଧିମାନ୍‌ର କାର୍ଯ୍ୟ ? ସତ୍ୟ ଯୁଗରେ ହେଉ, ଦ୍ୱାପର ବା ତ୍ରେତା ଯୁଗରେ ହେଉ, ପଶୁ ପକ୍ଷୀମାନେ ମନୁଷ୍ୟପରି କଥା

କହୁ ନ ଥିଲେ କିମ୍ବା ମନୁଷ୍ୟପରି ବୁଦ୍ଧିମାନ୍ ନ ଥିଲେ । ଆମୋଦପ୍ରଦ ଲୋକଶିକ୍ଷା ନିମନ୍ତେ ପଶୁ ପକ୍ଷୀର ଗଳ୍ପ ରଚିତ ହୋଇଅଛି । ବେଦରେ ଥାଉ ବା ପୁରାଣରେ ଥାଉ, ଏହା ଯେ ସମ୍ପୂର୍ଣ୍ଣ ମିଥ୍ୟା ଓ କପୋଳକଳ୍ପିତ ଏଥିରେ ସନ୍ଦେହ ନାହିଁ ।

ଯୀଶୁଖ୍ରୀଷ୍ଟ ପାଣିକୁ ମଦ କରିଦେଲେ, ବୃକ୍ଷମୂଳରୁ ଅସଂଖ୍ୟ ରୁଟି ବାହାର କରି ଲୋକଙ୍କର ଉଦରଜ୍ୱାଳା ଶାନ୍ତ କଲେ । ଏହା ଶୁଣି ଆମ୍ଭ ଦେଶର ଲୋକେ ବିଦ୍ରୂପ କରନ୍ତି ଏବଂ ହସି ଉଡ଼ାଇ ଦିଅନ୍ତି । କିନ୍ତୁ କୃଷ୍ଣ ଯେ ଦ୍ରୌପଦୀ ପ୍ରଦତ୍ତ ଶାକ-କଣିକା ଭକ୍ଷଣ କରି ଦୁର୍ବାସା ଓ ତାଙ୍କ ଶିଷ୍ୟଗଣଙ୍କର ଉଦରଜ୍ୱାଳା ନିବାରଣ କରିଦେଲେ, ତାହା କେହି ଅସମ୍ଭବ ବୋଲି ମନେ କରନ୍ତି ନାହିଁ । ମହାଭାରତ କାହିଁକି ସତ, ଆଉ ବାଇବେଲ୍ କଥା କାହିଁକି ମିଛ ? ପୁଣି ଖ୍ରୀଷ୍ଟଧର୍ମ ପ୍ରଚାରକ ପାଦ୍ରିଗଣ ତାଙ୍କ ବାଇବେଲ୍‌ର ଅସଂଖ୍ୟ ଗଲ୍‌ତି ସତ୍ତ୍ୱେ ହିନ୍ଦୁଙ୍କ ଗ୍ରନ୍ଥରୁ ପଣ ପଣ ଦୋଷ କାଢ଼ିବାର ପ୍ରୟାସ କରନ୍ତି ଏବଂ ବାଇବେଲ୍‌ର ଲେଖାଛଡ଼ା ସବୁ ମିଥ୍ୟା ବୋଲି ପ୍ରଚାର କରନ୍ତି । ଆମ୍ଭେମାନେ କହୁଁ, ଯୀଶୁଙ୍କର ମଦ ଓ ରୁଟି କଥା ଯେମନ୍ତ ଅଯୌକ୍ତିକ ଓ ଅଳୀକ ଗଳ୍ପ, କୃଷ୍ଣଙ୍କର ଶାକଭକ୍ଷଣ ଦ୍ୱାରା ଦୁର୍ବାସାଦିଙ୍କର ଉଦରଜ୍ୱାଳା ଶାନ୍ତହେବା ତେମନ୍ତ ଅଯୌକ୍ତିକ ଓ ଅଳୀକ ଗଳ୍ପ । ଗଳ୍ପରଚକ ଦୁଇ ପଦ ଲେଖିଦେଇ ନିଜର ବାହାଦୂରୀ ନେଇ ଚାଲିଗଲେ । ଆଉ ଅନ୍ଧବିଶ୍ୱାସୀଗଣ ତହିଁରେ ଆସ୍ଥା ସ୍ଥାପନ କରି ନିଜର ସ୍ଥୂଳବୁଦ୍ଧିର ପରିଚୟ ଦେଉଅଛନ୍ତି ।

ଆରବ୍ୟ ଉପନ୍ୟାସରେ ଗୋଟାଏ ଗଳ୍ପ ଅଛି । ଭାରତବର୍ଷର ଜଣେ କାରିଗର ପାରସ୍ୟ ରାଜାଙ୍କଠାରୁ ଗୋଟାଏ କାଷ୍ଠଘୋଟକ ଭେଟି ଦେବାକୁ ନେଇଥିଲା— ଘୋଟକଟି ଏପରି କୌଶଳରେ ନିର୍ମିତ ହୋଇଥିଲା ଯେ, ତାହା ବାୟୁବେଗରେ ଆକାଶମାର୍ଗରେ ଉଡ଼୍‌ଡୀୟମାନ ହୁଏ । ପାରସ୍ୟ ରାଜପୁତ୍ର ସେହି ଘୋଟକରେ ଚଢ଼ି ଗୋଟାଏ ପେଞ୍ଚ ମୋଡ଼ିଦେବାରୁ ଘୋଟକ ଅଳ୍ପ ସମୟ ମଧ୍ୟରେ ବଙ୍ଗ ଦେଶକୁ ଉଡ଼ି ଆସିଲା । ଏହି ଗଳ୍ପ, ନା ପ୍ରକୃତ କଥା ? ଯେହେତୁ ଉପନ୍ୟାସର କଥା, ସୁତରାଂ ପାଠକଗଣ ମିଥ୍ୟା ବୋଲିବାକୁ କୁଣ୍ଠିତ ହେବେ ନାହିଁ । ମାତ୍ର ନନ୍ଦିଘୋଷ ରଥକୁ ବା ପୁଷ୍ପକକୁ କାଳ୍ପନିକ ଯାନ ବୋଲିବାକୁ କେହି ସାହସ କରିବେ କି ? ଆମ୍ଭେମାନେ କୁହେଳିକାରେ ସନ୍ତରଣ କରିପାରୁଁ, ଆକାଶ ଗଙ୍ଗାରୁ ଫୁଲ ତୋଳିପାରୁଁ, ଇଚ୍ଛାନୁସାରେ ଆକାଶରେ ଉଡ଼ିପାରୁଁ। ପୂର୍ବପୁରୁଷଙ୍କ ମହତ୍ତ୍ୱ ପ୍ରଚାର କରି ନିଜ ମହତ୍ତ୍ୱ ଅନାୟାସରେ ବଢ଼ାଇବାର ଆଶା କରୁଁ । ସୁତରାଂ ଆମ୍ଭମାନଙ୍କର ଏକମାତ୍ର ଗଚ୍ଛିଧନ ପୁରାଣ ପୋଥିରେ ଯାହା ଲେଖାଅଛି, ତାହା ବିଶ୍ୱାସ ନ କଲେ ଆମ୍ଭମାନଙ୍କର ଉପାୟାନ୍ତର କ'ଣ ? ଆମ୍ଭ ଦେଶର ହେଉ ବା ଅନ୍ୟ ଦେଶର ହେଉ, ପୁରାଣ ଏବଂ ଗ୍ରାମ୍ୟ କାହାଣୀ ଏକ ଧରଣର । ତେବେ ପୁରାଣର ବିଶେଷତ୍ୱ ଏତିକି ଯେ, ଏଗୁଡ଼ିକ ପ୍ରାଞ୍ଜଳ ଭାଷାରେ ଲିଖିତ । ମନୁଷ୍ୟକୁ ଆକାଶ ଯେପରି ଦୈନିକ ଅଭିନବ ଦୃଶ୍ୟ ଦେଖାଏ, ପୃଥିବୀ ସେପରି ଦେଖାଇପାରେ ନାହିଁ । ଆକାଶରେ ପ୍ରକୃତି-ବୈଚିତ୍ର୍ୟ ଦେଖି ମାନବ ଯେପରି ଆଶ୍ଚର୍ଯ୍ୟାନ୍ୱିତ ଓ ସ୍ତମ୍ଭିତ ହୋଇଅଛି, ପୃଥିବୀର ବୈଚିତ୍ର୍ୟ ସନ୍ଦର୍ଶନରେ ସେପରି ହୋଇ ନାହିଁ ।

ଅତି ପୁରାକାଳରୁ ସୂର୍ଯ୍ୟ ଚନ୍ଦ୍ରର ଗତି ବିଧି, ନକ୍ଷତ୍ରମାନଙ୍କର ଦୈନିକ ଉଦୟ ଅସ୍ତ ମାନବ ମନରେ ଅଭିନବ ଭାବ ଜାତ କରିଅଛି । ଏଣୁ ସେ ସେମାନଙ୍କ ସମ୍ବନ୍ଧରେ ନାନା ଉପାଖ୍ୟାନ ସୃଷ୍ଟି କରିବାରେ ପ୍ରବୃତ୍ତ ହୋଇ ନିଜ ମନକୁ ଚରିତାର୍ଥ କରିଅଛି । ମନୁଷ୍ୟ ସଭ୍ୟ ହେଲା ଉତ୍ତାରୁ ଯେ ଏପରି କରିଅଛି, ତାହା ନୁହେଁ; ବର୍ବର ଅବସ୍ଥାରେ ମଧ୍ୟ ଜ୍ୟୋତିଷ୍କଗଣ ନରର ଉଦ୍ଭାବନୀ ଶକ୍ତିକୁ ଉଦ୍ଦୀପିତ କରିଅଛନ୍ତି । ସେହି ହେତୁରୁ ଆମ୍ଭେମାନେ ଅସଭ୍ୟ କୋହ୍ଲ କୁଆଙ୍ଗମାନଙ୍କଠାରେ ମଧ୍ୟ ଜ୍ୟୋତିଷ ସମ୍ବନ୍ଧୀୟ ଉପାଖ୍ୟାନମାନ ଶୁଣିବାକୁ ପାଉଁ । ଗଉଡ଼ଭାରିଆ, ସାତ ଭଉଣୀ ପ୍ରଭୃତି ନକ୍ଷତ୍ରମାନଙ୍କ ସମ୍ବନ୍ଧରେ କି ଦେଶରେ ଗଳ୍ପ ନାହିଁ ? ସେଗୁଡ଼ିକ କିଏ ରଚନା କଲା ? ପୁରାକାଳରେ ଅସଂଖ୍ୟ ନକ୍ଷତ୍ର ସମ୍ବନ୍ଧୀୟ କାହାଣୀ ଦେଶରେ ଥିଲା । ପୁରାଣକର୍ତ୍ତାମାନେ ସେଗୁଡ଼ିକୁ ଅତି କୌଶଳରେ ନିଜ ପୁସ୍ତକର ଅନ୍ତର୍ଭୁକ୍ତ କରି ଦେଇଅଛନ୍ତି ଏବଂ ସେଗୁଡ଼ିକୁ ଆମ୍ଭେମାନେ ପ୍ରକୃତ ଦେବଚରିତ ବୋଲି ମନେକରୁଅଛୁଁ । ପାଠକଗଣ ଗୋଟିଏ ଯୋଡ଼ିଏ ଉଦାହରଣ ଦେଖିବେ କି ?

ମନେ ପଡ଼ିଗଲା, ପ୍ରବୋଧଚନ୍ଦ୍ରୋଦୟ ନାଟକରେ ପଢ଼ିଥିଲି × × × ଆତ୍ମତନୟାଂ ପ୍ରଜାନାଥ ଆସୀତ୍ × × ଅର୍ଥାତ୍ ମନ୍ମଥ କହୁଅଛି, ମୋର ଅସାଧାରଣ କ୍ଷମତା, ପ୍ରଜାପତିଙ୍କି ମଧ୍ୟ ନିଜ କନ୍ୟାଠାରେ ଆସକ୍ତ କରାଇଦେଲି । ଅହୋ ! ଆମ୍ଭ ଦେଶର ସୃଷ୍ଟିକର୍ତ୍ତା ମଧ୍ୟ ଏଡ଼େ ନିର୍ବୋଧ । ଧର୍ମ ନିନ୍ଦା କରିବାକୁ ଆମ୍ଭମାନଙ୍କର ସାହସ ଅଛି, ମାତ୍ର ନିଜର ସୃଷ୍ଟିକର୍ତ୍ତାଙ୍କୁ ଏପରି ଦୋଷଲିପ୍ତ ଦେଖିବାକୁ ସାହସ ନାହିଁ । ଏଣୁ ପ୍ରକୃତ କଥା ଖୋଜୁ ଖୋଜୁ ଏହା ଗୋଟିଏ ନକ୍ଷତ୍ର ସମ୍ବନ୍ଧୀୟ ଗଳ୍ପ ବୋଲି ଜାଣିପାରିଲୁଁ । ତାହା ଏହି— 'ପ୍ରଜାପତି ନିଜ ଦୁହିତାଠାରେ ଆସକ୍ତ ହେଲେ (ଉଷାଠାରେ କିମ୍ବା ଆକାଶଠାରେ) । ପ୍ରଜାପତି ମୃଗ ରୂପ ଧାରଣ କଲେ ଏବଂ ପ୍ରଜାପତି କନ୍ୟା ରୋହିତ ଥିଲେ। ଦେବତାମାନେ କହିଲେ, ପ୍ରଜାପତି ଅକୃତ

କଲେ । ଦେବତାମାନେ ଏଥିର କୁଫଳ ନିବାରଣ ନିମନ୍ତେ ଜଣେ ସଂହାରକ ଅନ୍ୱେଷଣ କଲେ । ଦେବତାମାନଙ୍କର କ୍ରୋଧ ଏକତ୍ରୀଭୂତ ହୋଇ ଗୋଟିଏ ପୁରୁଷ ହେଲା— ତାହାର ନାମ ଭୂତବତ୍ । ଦେବତାମାନେ କହିଲେ, ପ୍ରଜାପତିଙ୍କୁ ବିଦ୍ଧ କର । ପ୍ରଜାପତି ପଶୁଙ୍କ ଉପରେ ଆଧିପତ୍ୟ ମାଗିଲେ । ଦେବତାମାନେ ଏଣୁ ତାଙ୍କୁ ପଶୁଙ୍କର ଆଧିପତ୍ୟ ଦେଇ ପଶୁମାନ ନାମ ଦେଲେ । ଭୂତବତ୍ ପ୍ରଜାପତିଙ୍କୁ ଶରବିଦ୍ଧ କଲା । ଯେ ବିଦ୍ଧ ମୃଗପରି ଦେଖାଯାନ୍ତି, ସେ ପ୍ରଜାପତି, ଯେ ରୋହିତ, ସେ ରୋହିଣୀ, ଯେଉଁ ଶରରେ ମୃଗବଧ ହେଲା, ତାହା ଇଷୁ ତ୍ରିକାଣ୍ଡ ।' ଏହା ଐତରେୟ ବ୍ରାହ୍ମଣର ବଚନ । ମୃଗଶିରା ନକ୍ଷତ୍ର ପ୍ରଜାପତି ଏବଂ ରୋହିଣୀ ନକ୍ଷତ୍ର ପ୍ରଜାପତିଙ୍କର କନ୍ୟା । ପୁଣି ଶତପଥ ବ୍ରାହ୍ମଣ ଅନୁସାରେ ମଧ ମୃଗଶୀର୍ଷ ପ୍ରଜାପତିର ମସ୍ତକ । ରୋହିଣୀ ଓ ମୃଗଶିରା ନକ୍ଷତ୍ରରେ ପ୍ରଜାପତିଙ୍କର କନ୍ୟାହରଣ ବୃତ୍ତାନ୍ତ ଅଛି ।

ଧ୍ରୁବ ନକ୍ଷତ୍ର ପୃଥିବୀ ଜନ୍ମର ବହୁକୋଟି ବର୍ଷ ପୂର୍ବେ ସୃଷ୍ଟି ହୋଇଥିବ । ମାତ୍ର ପୁରାଣଲେଖକ ପୃଥିବୀର ଧ୍ରୁବ ନାମକ ରାଜପୁତ୍ରଙ୍କର ବାସ ନିମନ୍ତେ ତାହା ସୃଷ୍ଟି ହୋଇଥିବାର କଳ୍ପନା କରିବାକୁ ଛାଡ଼ି ନାହାନ୍ତି । ଏମନ୍ତ କି, ଭାଗବତରଚକ ଉତ୍କଳ ଦେଶ ସୃଷ୍ଟି ଉତ୍ତାରୁ ଧ୍ରୁବଲୋକ ସୃଷ୍ଟିର କଳ୍ପନା କରିଅଛନ୍ତି । (ଧ୍ରୁବଙ୍କର ଗୋଟିଏ ଉତ୍କଳ ନାମକ ପୁତ୍ର ଥିଲେ, ସେ ଉତ୍କଳର ରାଜା ଥିଲେ ।)

ଧ୍ରୁବ ଅର୍ଥ—ଶାଶ୍ୱତ ନିଶ୍ଚିତ ସ୍ଥିର ଧ୍ରୁବ ନକ୍ଷତ୍ର— ଉତ୍ତରକେନ୍ଦ୍ରସ୍ଥ ନକ୍ଷତ୍ର ଧ୍ରୁବ ଭ୍ରମଣ କରୁଥିବାର ଆପାତତଃ ଜଣାଯାଏ ନାହିଁ । ଧ୍ରୁବକୁ କେନ୍ଦ୍ର କରି ଶିଶୁମାର ସପ୍ତର୍ଷି ପ୍ରଭୃତି ନକ୍ଷତ୍ରଗଣ ଭ୍ରମଣ କରୁଅଛନ୍ତି । ଧ୍ରୁବ ଶିଶୁମାରଙ୍କ କନ୍ୟା ଭ୍ରମିକୁ ବିବାହ ହୋଇଥିଲେ । ଭ୍ରମି ଗର୍ଭରୁ କଳ୍ପ ଓ ବତ୍ସର ନାମକ ଦୁଇ ପୁତ୍ରଙ୍କ ଜନ୍ମ ଏବଂ ଇଳା ନାମକ ସ୍ତ୍ରୀର ପୁତ୍ର ଉତ୍କଳ । ଧ୍ରୁବ ଅସ୍ତ ହୁଅନ୍ତି ନାହିଁ ଏବଂ ତାଙ୍କର ଶ୍ୱଶୁର ଶିଶୁମାରଙ୍କର ଚାରି ଗୋଟି ନକ୍ଷତ୍ର ଅସ୍ତ ହୁଅନ୍ତି ନାହିଁ । 'ତାରକା ଶିଶୁମାରସ୍ୟ ନାସ୍ତମେତି ଚତୁଷ୍ଟୟଂ' । ପାଠକଗଣ ବୁଝି ପାରିଥିବେ, ଧ୍ରୁବକୁ କେନ୍ଦ୍ର କରି ଚକ୍ରାକାରରେ ଭ୍ରମଣ କରୁଥିବା ନକ୍ଷତ୍ରଗୁଡ଼ିକ ଧ୍ରୁବଙ୍କର କୁଟୁମ୍ବ ଓ ଜ୍ଞାତି । ଧ୍ରୁବଙ୍କର ଅତି ନିକଟରେ ତାଙ୍କର ଶ୍ୱଶୁର ।

ସପ୍ତର୍ଷିମଣ୍ଡଳ ଯେଉଁ ଆକୃତିର, କୃତ୍ତିକା ନକ୍ଷତ୍ରପୁଞ୍ଜ ମଧ ସେହି ଆକୃତିର । ସପ୍ତର୍ଷି ସାତଗୋଟି ଏବଂ କୃତ୍ତିକା ଛଅଗୋଟି । ସପ୍ତର୍ଷିମଣ୍ଡଳର ଷଷ୍ଠ ନକ୍ଷତ୍ର ନିକଟରେ ଗୋଟିଏ କ୍ଷୁଦ୍ର ତାରା ଅଛି, ତାର ନାମ ଅରୁନ୍ଧତୀ, ଷଷ୍ଠ ନକ୍ଷତ୍ରର ନାମ ବଶିଷ୍ଠ । ବଶିଷ୍ଠଙ୍କ ସହିତ ତାଙ୍କର ସ୍ତ୍ରୀ ଅରୁନ୍ଧତୀଙ୍କୁ ପାଇ ଏବଂ ବଶିଷ୍ଠଙ୍କ ଛଅଭ୍ରାତା ମରୀଚି, ଅତ୍ରି, ପୁଲହ, ପୁଲସ୍ତ୍ୟ, କ୍ରତୁ, ଅଙ୍ଗିରାଙ୍କର ସ୍ତ୍ରୀମାନଙ୍କୁ ସେମାନଙ୍କ ନିକଟରେ ନ ଦେଖି ମାନବ ଆକାଶରେ ଅନ୍ୱେଷଣ କରିବାକୁ ଲାଗିଲା । ଦେଖିଲା, ସେହି ଆକୃତିରେ ଛଅଗୋଟି ତାରା ଅଛନ୍ତି । ଏହି ଛଅଗୋଟି ତାରାକୁ ମରୀଚି ପ୍ରଭୃତି ଛଅ ଋଷିଙ୍କର ପତ୍ନୀ ବୋଲି ସ୍ଥିର କଲା ଏବଂ ଋଷିମାନଙ୍କୁ ଛାଡ଼ି ଅନ୍ୟତ୍ର ଆସିବାର କାରଣ ଅନୁସନ୍ଧାନ କରି ଜାଣିଲା ଯେ, ବ୍ୟଭିଚାର ଦୋଷ ହେତୁରୁ ସ୍ତ୍ରୀମାନେ ବର୍ଜିତା ହୁଅନ୍ତି । ଏଣୁ ତଦନୁରୂପ ଗୋଟିଏ ଆଖ୍ୟାୟିକା ରଚନା କଲା । କୃତ୍ତିକା ନକ୍ଷତ୍ରର ଅଧିଷ୍ଠାତ୍ରୀ ଦେବତା ଅଗ୍ନି, ସୁତରାଂ ଅଗ୍ନିଙ୍କ ହେତୁରୁ ଏମାନଙ୍କର ଏ ଦୁର୍ଗତି । ଋଷିପତ୍ନୀମାନଙ୍କର ରୂପଲାବଣ୍ୟ ଦେଖି ଅଗ୍ନି ପାଗଳ, ପୁଣି ଅଗ୍ନିଙ୍କ ରୂପମାଧୁରୀ ଦେଖି ଦକ୍ଷକନ୍ୟା ସ୍ୱାହା ଉନ୍ମାଦା । ସ୍ୱାହା ବିଚାରିଲେ, ଯେବେ ଋଷିପତ୍ନୀମାନଙ୍କ ରୂପ ଅନୁକରଣ କରା ନ ଯାଏ, ଅଗ୍ନିଙ୍କ ସହବାସସୁଖ ପାଇବାର ଉପାୟାନ୍ତର ନାହିଁ । ଏଣୁ ପ୍ରତିଦିନ ଜଣେ ଜଣେ ଋଷିପତ୍ନୀଙ୍କ ରୂପ ଧାରଣ କରି ଅଗ୍ନିଙ୍କର ସହବାସ କରନ୍ତି ଏବଂ ଗର୍ଭଧାରଣ କରନ୍ତି । ପୁଣି ସେହି ଗର୍ଭ ଗୋପନ କରିବା ନିମନ୍ତେ କପୋତ ବେଶରେ ଯାଇ ଗୋଟିଏ ଗହ୍ୱରରେ ରେତ ନିକ୍ଷେପ କରନ୍ତି । ସୁରୁଚି, ଅନସୂୟା, କ୍ଷମା, ପ୍ରୀତି, ସନ୍ନତି ଓ ଲଜ୍ଜାର ରୂପ ଅନୁକରଣ କରିପାରିଲେ, ମାତ୍ର ଅରୁନ୍ଧତୀ ମହାସତୀ ଥିବାରୁ ତାଙ୍କର ରୂପ ଅନୁକରଣ କରିପାରିଲେ ନାହିଁ । ଋଷିମାନେ ଅଗ୍ନି ଔରସରୁ ସେମାନଙ୍କ ସ୍ତ୍ରୀ ଗର୍ଭରୁ ପୁତ୍ର ଜନ୍ମ ବୃତ୍ତାନ୍ତ ଶ୍ରବଣ କରି ଛଅ ଜଣ ଋଷିପତ୍ନୀଙ୍କି ତ୍ୟାଗ କଲେ । ଷଟ୍‌କୃତ୍ତିକା ସେହି ସ୍ୱାମୀତ୍ୟକ୍ତା ଛଅ ଋଷିପତ୍ନୀ । ସ୍ୱାହା ଛଅଥର ଅଗ୍ନିଙ୍କର ରେତ ଗହ୍ୱରରେ ନିକ୍ଷେପ କରିଥିବାରୁ ସେହି ରେତରୁ ଯେଉଁ ପୁତ୍ର ଜାତ ହେଲେ— ତାହାଙ୍କର ନାମ ସ୍କନ୍ଦ, ଷଡ଼ାନନ, କାର୍ତ୍ତିକେୟ ଇତ୍ୟାଦି । ସ୍ୱାହା ଓ ଅଗ୍ନିଙ୍କର ଜାରଜ ପୁତ୍ରକୁ ଶୈବପୁରାଣ ଶିବପାର୍ବତୀଙ୍କ ପୁତ୍ର ବୋଲି ଅନ୍ୟ ଆକାରରେ ଆମ୍ଭମାନଙ୍କ ସମକ୍ଷରେ ଉପସ୍ଥାପିତ କରିଅଛନ୍ତି ।

ଗୋଟାଏ ବିଷୟକୁ ଭଙ୍ଗ୍ୟନ୍ତରେ କହି ମନୋମୁଗ୍ଧ କରିବାର ନାମ ପୁରାଣଚାତୁର । ନକ୍ଷତ୍ର ସମ୍ବନ୍ଧରେ ଏତିକି ।

ମହାଭାରତରେ ତିନିପ୍ରକାର ଉପାଖ୍ୟାନ ଅଛି— ଐତିହାସିକ ଉପାଖ୍ୟାନ, ନାକ୍ଷତ୍ରିକ ଉପାଖ୍ୟାନ, ବିଶୁଦ୍ଧ କାଳ୍ପନିକ ଉପାଖ୍ୟାନ (ରୂପକ) । ବୋଧହୁଏ ତିନି ପ୍ରକାର ଉପାଖ୍ୟାନରୁ ଉଦାହରଣ ଦେଇଅଛୁଁ । ଅଧିକ ଉଦାହରଣ

ଉଲ୍ଲେଖ କରି ପ୍ରବନ୍ଧର କଳେବର ବୃଦ୍ଧି କରିବୁ ନାହିଁ। ପାଣ୍ଡବଙ୍କ ସମ୍ବନ୍ଧରେ ଦୁଇ ଚାରି କଥା କହି ମହାଭାରତ ପ୍ରବନ୍ଧ ଶେଷ କରିବୁ ।

ପାଣ୍ଡବ ପଞ୍ଚଭ୍ରାତାଙ୍କ ନାମ ଆମ୍ଭେମାନେ ବୈଦିକ ଗ୍ରନ୍ଥରେ ପାଇ ନାହୁଁ କିମ୍ବା ସେମାନଙ୍କର ପତ୍ନୀ ପାଞ୍ଚାଳୀ ଏବଂ ମାତା କୁନ୍ତୀଙ୍କର ନାମ ମଧ ବୈଦିକ ଗ୍ରନ୍ଥରେ ପାଇ ନାହୁଁ । ଯୁଧିଷ୍ଠିର ପ୍ରଭୃତିଙ୍କ ନାମ ବୈଦିକ ଗ୍ରନ୍ଥରେ ନ ମିଳିବାରୁ ଯେ ସେମାନଙ୍କର ନାମ ସମ୍ପୂର୍ଣ୍ଣ କାଳ୍ପନିକ, ତାହା କହିବାକୁ ଆମ୍ଭମାନଙ୍କର ଇଚ୍ଛା ନାହିଁ । ହୁଏତ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ, ସହଦେବ ନାମରେ ଲୋକ ଥିଲେ; ମାତ୍ର ସେମାନେ ବୈଦିକ ଗ୍ରନ୍ଥରେ ଉଲ୍ଲେଖଯୋଗ୍ୟ ପ୍ରସିଦ୍ଧି ଲାଭ କରି ନ ଥିବାରୁ ସେମାନଙ୍କର ନାମ ଲେଖାଯାଇ ନାହିଁ; ମାତ୍ର ଲୋକମୁଖରେ ଥାଇପାରେ । ମହାଭାରତ-ରଚକ ସେମାନଙ୍କ ନାମ ପ୍ରସିଦ୍ଧ କୁରୁବଂଶ ସହିତ ଯୋଗ କରି ଦେଇଅଛନ୍ତି । କବି ଯେ କେବଳ ମନୁଷ୍ୟ ରୂପରେ, ଯୋଦ୍ଧା ରୂପରେ ସେମାନଙ୍କୁ ଚିତ୍ରିତ କରିଅଛନ୍ତି, ଏପରି ନୁହେଁ, ଦେବତା ରୂପରେ ଚିତ୍ରିତ କରିଅଛନ୍ତି । ପୌରାଣିକ ଦେବତାରୂପରେ ନୁହେଁ, ମାତ୍ର ବୈଦିକ ଦେବତାରୂପରେ । ଏଥିରେ ସୂର୍ଯ୍ୟ ଉପାସନାଠାରୁ ବିଷ୍ଣୁ ଉପାସନା ଅଭିବ୍ୟକ୍ତି ଅନ୍ତର୍ନିହିତ ରହିଅଛି ।

ନିରୁକ୍ତ ଅନୁସାରେ ଦେବତା ତିନି ପ୍ରକାର । ଦ୍ୟୁସ୍ଥାନ ଦେବତା— ସୂର୍ଯ୍ୟ, ବିଷ୍ଣୁ, ବରୁଣ ଇତ୍ୟାଦି; ମଧସ୍ଥାନ ଦେବତା—ଇନ୍ଦ୍ର, ବାୟୁ ଇତ୍ୟାଦି ଏବଂ ଭୂସ୍ଥାନ ଦେବତା— ଅଗ୍ନି ଇତ୍ୟାଦି । ଅଦିତି ଅନନ୍ତ ଆକାଶ । ମହାଭାରତରେ ଆମ୍ଭେମାନେ କୁନ୍ତୀଙ୍କୁ ଅଦିତି ବା ଆକାଶ ବୋଲି ପରିଚୟ କରୁଅଛୁଁ । ଅଦିତିଙ୍କ ପୁତ୍ର ସୂର୍ଯ୍ୟ, ବରୁଣ, ବାୟୁ, ଇନ୍ଦ୍ର । ଅଦିତିରୂପା କୁନ୍ତୀଙ୍କର ପୁତ୍ର କର୍ଣ୍ଣ, ଯୁଧିଷ୍ଠିର, ଭୀମ ଓ ଅର୍ଜୁନ । କର୍ଣ୍ଣ ସୂର୍ଯ୍ୟ, ଯୁଧିଷ୍ଠିର ବରୁଣ, ଭୀମ ବାୟୁ ଏବଂ ଅର୍ଜୁନ ଇନ୍ଦ୍ର । କୁନ୍ତୀ କର୍ଣ୍ଣଙ୍କୁ ତ୍ୟାଗ କରିଥିଲେ । ଅଦିତି ମାର୍ତ୍ତଣ୍ଡଙ୍କୁ ତ୍ୟାଗ କରିଥିଲେ ।

ଅଷ୍ଟୌ ପୁତ୍ରାସଃ ଅଦିତେଃ
ଯେ ଜାତା ତନ୍ୱୋପରି
ଦେବାନ ଉପପ୍ରେତ ସପ୍ତଭିଃ
ପରା ମାର୍ତ୍ତଣ୍ଡ ଆସ୍ୟତେ ।

ଋ; ୧୦ । ୭୨ । ୮

ବେଦରେ ଆଠ ପୁତ୍ର ମଧ୍ୟରୁ ଏକ ପୁତ୍ରକୁ ତ୍ୟାଗ କରିବାର ଉଲ୍ଲେଖ ଅଛି । ଏଠାରେ ଚାରି ପୁତ୍ର ମଧ୍ୟରୁ ଏକ ପୁତ୍ରକୁ ତ୍ୟାଗ କରିବାର ଲେଖା ଅଛି । ବେଦୋକ୍ତ ଅଦିତିଙ୍କର ଆଠ ପୁତ୍ରକୁ ପୁରାଣରେ ଚାରି ପୁତ୍ର ରୂପେ ବର୍ଣ୍ଣନା କରାଯାଇଅଛି । ସୂର୍ଯ୍ୟଙ୍କର ଅନ୍ୟ ନାମ ବିଷ୍ଣୁ । ବୈଦିକ ଯୁଗର ଶେଷରେ ସୂର୍ଯ୍ୟ ଓ ବିଷ୍ଣୁ ସ୍ୱତନ୍ତ୍ର ଦୁଇ ଗୋଟି ଦେବତା ବୋଲି ଋଷିମାନଙ୍କଦ୍ୱାରା ପରିଗୃହୀତ ହୋଇଅଛନ୍ତି ଏବଂ କ୍ରମେ ସୂର୍ଯ୍ୟର ପ୍ରାଧାନ୍ୟ ଯେମନ୍ତ ହ୍ରାସ ହେବାକୁ ଆରମ୍ଭ ହୋଇଅଛି, ବିଷ୍ଣୁଙ୍କର ମାହାତ୍ମ୍ୟ ବଢ଼ିବାକୁ ଆରମ୍ଭ ହୋଇଅଛି । ପୌରାଣିକ ଯୁଗରେ ବିଷ୍ଣୁ ଜଗତକର୍ତ୍ତା ପାଳନକର୍ତ୍ତା ଇତ୍ୟାଦି । ମହାଭାରତରେ କୃଷ୍ଣଙ୍କର ମହତ୍ତ୍ୱ ବୃଦ୍ଧି ସଙ୍ଗେ ସଙ୍ଗେ କର୍ଣ୍ଣର ମହତ୍ତ୍ୱର ହ୍ରାସ ଦେଖିବାକୁ ପାଉଁ । ମହାଭାରତରେ କର୍ଣ୍ଣ ସୂର୍ଯ୍ୟ ଏବଂ କୃଷ୍ଣ ବିଷ୍ଣୁ । କୃଷ୍ଣ ଅଦିତିରୂପା ଦେବକୀଙ୍କର ପୁତ୍ର— ଦେବକୀଙ୍କର ଅଷ୍ଟମ ପୁତ୍ର ଏବଂ ଏକପ୍ରକାର ତ୍ୟକ୍ତ । କର୍ଣ୍ଣ ସୂତ ଗୃହରେ ପାଳିତ, କୃଷ୍ଣ ଗୋପ ଗୃହରେ ପାଳିତ । ସୂର୍ଯ୍ୟ ଏବଂ ଇନ୍ଦ୍ର ମଧ୍ୟରେ ସ୍ଥଳବିଶେଷରେ ବିବାଦ ଥିବାର ବୈଦିକ ଗ୍ରନ୍ଥରେ ଉଲ୍ଲେଖ ଅଛି । କର୍ଣ୍ଣଙ୍କ ରଥଚକ୍ର ଅକର୍ମଣ୍ୟ ଥିବାବେଳେ ଅର୍ଜୁନ କର୍ଣ୍ଣଙ୍କୁ ବାଣବିଦ୍ଧ କଲେ । ସୂର୍ଯ୍ୟର ଗୋଟାଏ ରଥଚକ୍ର ଇନ୍ଦ୍ର ହରଣ କରିଥିଲେ ଏବଂ ସୂର୍ଯ୍ୟର ଗତିରୋଧ କରିଥିଲେ ବୋଲି ବେଦରେ ଲେଖାଅଛି ।

ଯୁଧିଷ୍ଠିର, ଭୀମ, ଅର୍ଜୁନଙ୍କର ଗୁଣ କର୍ମ ବରୁଣ, ପବନ ଏବଂ ଇନ୍ଦ୍ରଙ୍କର ଗୁଣ କର୍ମ ସହିତ ତ ସାମଞ୍ଜସ୍ୟ ଥିବାର ସ୍ପଷ୍ଟ ଜଣାଯାଏ । ପାଠକଗଣ ତୁଳନା କଲେ ଅନାୟାସରେ ଜାଣିପାରିବେ ।

ଏମାନଙ୍କର ଆଉ ଦୁଇଜଣ ଭ୍ରାତା ଥିଲେ— ନକୁଳ ଓ ସହଦେବ । ଏମାନେ ଅଶ୍ୱିନୀକୁମାରଦ୍ୱୟଙ୍କର ପୁତ୍ର । ଏ ଦୁଇ ଭ୍ରାତା ଅଶ୍ୱିନୀଦ୍ୱୟଙ୍କର ରୂପାନ୍ତର ମାତ୍ର । ଅଶ୍ୱିନୀଦ୍ୱୟ ଦ୍ୟୁସ୍ଥାନ ଦେବତା ସତ୍ୟ; ମାତ୍ର ଅଦିତିପୁତ୍ର ନୁହନ୍ତି । ଏମାନେ ସରଣ୍ୟୁଙ୍କର ପୁତ୍ର । ନକୁଳ ସହଦେବ କୁନ୍ତୀଙ୍କର ପୁତ୍ର ନୁହନ୍ତି; ମାତ୍ର ମାଦ୍ରୀଙ୍କର ପୁତ୍ର । ସରଣ୍ୟୁ ଯମଜ ଦୁଇ ସନ୍ତାନଙ୍କୁ ଜନ୍ମ କରି ତ୍ୟାଗ କରିଥିଲେ । ମାଦ୍ରୀ ମଧ ନକୁଳ ସହଦେବଙ୍କୁ ତ୍ୟାଗ କରି ଯାଇଥିଲେ । ସରଣ୍ୟୁ ଓ ବିବସ୍ୱାନଙ୍କର ସହବାସ ଏବଂ ମାଦ୍ରୀ ଓ ପଣ୍ଡୁଙ୍କର ସହବାସ ଏକପ୍ରକାର । ଯୁଧିଷ୍ଠିରାଦି ପଞ୍ଚଭ୍ରାତାଙ୍କର ଏକମାତ୍ର ପତ୍ନୀ ଦ୍ରୌପଦୀ । ଆମ୍ଭେମାନେ ପୂର୍ବେ ଦେଖାଇଅଛୁଁ ଯେ, ଈଦୃଶ ବହୁଭର୍ତ୍ତୃକତା ଅନାର୍ଯ୍ୟ ପଦ୍ଧତି । ଆମ୍ଭେମାନେ ବର୍ତ୍ତମାନ ପ୍ରକାଶ କରୁଅଛୁଁ ଯେ, ଏହା ପ୍ରକୃତ ଘଟଣା ନୁହେଁ । ଯୁଧିଷ୍ଠିରାଦି ପାଞ୍ଚଭାଇ ଯେମନ୍ତ ପାଞ୍ଚଗୋଟି ବୈଦିକ ଦେବତା— ଦ୍ରୌପଦୀ ତେମନ୍ତ ଗୋଟିଏ

ଦେବତା ଏବଂ ଆମ୍ଭେମାନେ ଦ୍ରୌପଦୀଙ୍କୁ ଅଗ୍ନି ବୋଲି ପରିଚୟ କରୁଅଛୁଁ । ଦ୍ରୌପଦୀଙ୍କର ଜନ୍ମ କେଉଁଠାରୁ ? ଅଗ୍ନିକୁଣ୍ଡରୁ । ଅଗ୍ନି ବ୍ୟତୀତ ବୈଦିକ ଦେବତାମାନଙ୍କର ଆରାଧନାଦି ଅସମ୍ଭବ, ଦ୍ରୌପଦୀ ଭିନ୍ନ ପଞ୍ଚପାଣ୍ଡବଙ୍କର ମଧ୍ୟ ସ୍ୱାତନ୍ତ୍ୟ ଦେଖାଯାଏ ନାହିଁ । ତେବେ ଅଗ୍ନି ପରା ପୁରୁଷ ? ପୁରୁଷକୁ ସ୍ତ୍ରୀ କରିବା ଏବଂ ସ୍ତ୍ରୀକୁ ପୁରୁଷ କରିବାର କି ବଡ଼କଥା— ବିଶେଷତଃ ପୌରାଣିକଗଣଙ୍କ ଠାରେ ? ଅଗ୍ନିଙ୍କର ନାମ ସପ୍ତଜିହ୍ୱା—ତାଙ୍କର ଜିହ୍ୱାଗୁଡ଼ିକ ସ୍ତ୍ରୀ ବାଚକ; ଯଥା— କାଳୀ, କରାଳୀ, ମନୋଜବା, ସୁଲୋହିତା, ଧୂମ୍ରବର୍ଣ୍ଣା, ଉଗ୍ରା, ପ୍ରଦୀପ୍ତା । କାର୍ଯ୍ୟବିଶେଷରେ ଏକ ଏକ ଜିହ୍ୱାର ପ୍ରାଧାନ୍ୟ ଅଛି । କୃଷ୍ଣାଙ୍କୁ ଦୁର୍ଗାରୂପିଣୀ ବୋଲାଯାଏ— ସୁତରାଂ ଏହି ସପ୍ତଜିହ୍ୱା ମଧ୍ୟରୁ କୌଣସି ଏକ ଜିହ୍ୱାକୁ ଦ୍ରୌପଦୀ ରୂପରେ ବର୍ଣ୍ଣନା କରିଥିବାର ଆଶ୍ଚର୍ଯ୍ୟ କ'ଣ ?

ମହାଯୋଦ୍ଧା ଭୀଷ୍ମ ମଧ ସୂର୍ଯ୍ୟଙ୍କର ରୂପାନ୍ତର ମାତ୍ର ।

ପ୍ରାଚୀନ କାହାଣୀ ଦେବାସୁର ଯୁଦ୍ଧକୁ ମହାଭାରତ ରଚକ ମହାଭାରତ ଯୁଦ୍ଧରେ ରୂପାନ୍ତରିତ କରିଅଛନ୍ତି । ଦୁର୍ଯ୍ୟୋଧନାଦି ଦୈତ୍ୟପକ୍ଷ ଏବଂ ଯୁଧିଷ୍ଠିରାଦି ଦେବତା ପକ୍ଷ । ଦୁର୍ଯ୍ୟୋଧନ ଏବଂ ତାଙ୍କ ଭାଇ ଓ ତାଙ୍କ ପକ୍ଷୀୟ ଲୋକମାନଙ୍କୁ ନିନ୍ଦା କରିବା ଓ ଯୁଧିଷ୍ଠିର ପ୍ରଭୃତିଙ୍କ ପ୍ରଶଂସା କରିବା କବିଙ୍କର ପ୍ରତିଜ୍ଞା । ଏଣୁ ଯୁଧିଷ୍ଠିର ଜନ୍ମ ହେବାବେଳେ ପୁଷ୍ପବୃଷ୍ଟି ହେଲା ଏବଂ ଦୁର୍ଯ୍ୟୋଧନ ଜନ୍ମବେଳେ ନାନା ଉତ୍ପାତ ଉପସ୍ଥିତ ହେଲା । ଦୁର୍ଯ୍ୟୋଧନାଦି ଗର୍ଭସ୍ଥ ହେବା ଦିନରୁ କବିଙ୍କ ଚକ୍ଷୁଃଶୂଳ । ଏହା ସ୍ୱାଭାବିକ । ଦୈତ୍ୟମାନେ କେବେ ଆର୍ଯ୍ୟଗଣଙ୍କର ପ୍ରିୟପାତ୍ର ହୋଇଥିଲେ ?

ଉପସଂହାରରେ ବକ୍ତବ୍ୟ ଏହି ଯେ, ବେଦ ଆର୍ଯ୍ୟଜାତିର ଆଦି ଗ୍ରନ୍ଥ । ଏହା ଆର୍ଯ୍ୟରଚିତ—ଏଥିରେ ଆର୍ଯ୍ୟଜାତିର ପ୍ରାଚୀନତମ ଇତିହାସର କ୍ଷୀଣ ଜ୍ୟୋତି ଭସ୍ମାଚ୍ଛାଦିତ ବହ୍ନି ପ୍ରାୟ ରହିଅଛି । ଏହା ଈଶ୍ୱରନିଃଶ୍ୱସିତ ନୁହେଁ, ତାହା ସେହି ବେଦ କହୁଅଛି । ପୁରାଣ ପ୍ରାଚୀନ ଉପାଖ୍ୟାନ ସଂଗ୍ରହ । ଭାରତୀୟ ଆର୍ଯ୍ୟ ଈଶ୍ୱରଙ୍କର ଅତି ପ୍ରିୟପାତ୍ର ନୁହନ୍ତି । ଈଶ୍ୱର ଏମାନଙ୍କୁ ଏକାବେଳକେ ଜ୍ଞାନସମ୍ପନ୍ନ କରି ଧନଧାନ୍ୟପୂର୍ଣ୍ଣ ଭାରତବର୍ଷରେ ଛାଡ଼ିଦେଇ ନ ଥିଲେ । ପୃଥିବୀରେ ଅନ୍ୟାନ୍ୟ ଜାତି ପରି ଏମାନେ ନିଜ ଅଧ୍ୟବସାୟ ବଳରେ ଉନ୍ନତି ଲାଭ କରିଅଛନ୍ତି । ଭାରତୀୟ ଆର୍ଯ୍ୟମାନଙ୍କର ପୂର୍ବପୁରୁଷଗଣ ଏକ ସମୟରେ ପଲ୍ଲବ ପରିଧାନକାରୀ ଥିଲେ ଏବଂ ଆମମାଂସଭୋଜୀ ଥିଲେ । ଏହା ଯେ ଅସ୍ୱୀକାର କରିବ, ସେ ମାନବ ଇତିହାସର ସୀମା ସ୍ପର୍ଶ ମଧ୍ୟ କରି ନାହିଁ । ବେଦ ରଚନାବେଳକୁ ଆର୍ଯ୍ୟଗଣ ଅବଶ୍ୟ ସଭ୍ୟ ହୋଇଥିଲେ, ମାତ୍ର ଆଧୁନିକ ସଭ୍ୟତା ସଙ୍ଗରେ ତାହାର ତୁଳନା ହୋଇ ନ ପାରେ । ଦେବତା ମାନବର ମନଗଢ଼ା । ଆର୍ଯ୍ୟଜାତିର ପତନର ମୂଳୀଭୂତ କାରଣ— କାଳ୍ପନିକ ଦେବତା ଉପରେ ବୃଥା ଆସ୍ଥା ସ୍ଥାପନ । ଯେବେ ଦେବତା ଥିଲେ ବା ଅଛନ୍ତି, ସେମାନେ ପୃଥିବୀର ସମସ୍ତ ଲୋକଙ୍କୁ ସମାନ ଚକ୍ଷୁରେ ଦେଖିବାର କଥା । ତାହା ନ କରି ଭାରତବାସୀଙ୍କ ପ୍ରତି କେବଳ ଏଡ଼େ ପ୍ରେମାସକ୍ତ ହେବାର କାରଣ କ'ଣ ? ଆଧୁନିକ ସଭ୍ୟଜାତିଙ୍କ ତୁଳନାରେ ଏପରି ହୀନବୀର୍ଯ୍ୟ ଓ ଦୁର୍ଦ୍ଦଶାଗ୍ରସ୍ତ ହୋଇ ସୁଦ୍ଧା ହିନ୍ଦୁଗଣ ଆପଣାକୁ ଦେବତାଙ୍କର ପ୍ରିୟପାତ୍ର ବୋଲି ମନେକରନ୍ତି, ଏହା ବଡ଼ ଲଜ୍ଜାର କଥା । ପୁରାଣବିଶ୍ୱାସ ଯେ ଆମ୍ଭମାନଙ୍କର କ୍ରମୋନ୍ନତିର ମୂଳରେ କୁଠାରାଘାତ କରୁଅଛି, ଏହା ଆମ୍ଭେମାନେ କେବେ ବୁଝିବାକୁ କ୍ଷମ ହେବା ?

ମହାଭାରତ ଅତି ପ୍ରକାଣ୍ଡ । ତାହାର ଜଟିଳ ଜାଲ ଭେଦ କରିବା ବଡ଼ କଠିନ । ତାହାର ସମାଲୋଚନା ସହଜସାଧ୍ୟ ନୁହେଁ । କରୁଛି କିଏ ? ଶୁଣୁଛି କିଏ ? ପାଠକଗଣ, ପୁରାଣ ନିନ୍ଦା କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ମାତ୍ର ପୁରାଣ ପାଠ ପାଠକମାନଙ୍କର ସ୍ୱାଧୀନ ଚିନ୍ତାର ବିଷୟ ହେଉ, ଏଥିପାଇଁ ପ୍ରବନ୍ଧର ଅବତାରଣା କରିଥିଲୁଁ । ବିଜ୍ଞ ପାଠକଗଣ ଚେଷ୍ଟାକଲେ ପୁରାଣର ରହସ୍ୟ ଉଦ୍‌ଘାଟନ କରିବାରେ ଆମ୍ଭମାନଙ୍କ ଅପେକ୍ଷା ଅଧିକ ସଫଳ ମନୋରଥ ହେବେ, ଏହା ଆମ୍ଭମାନଙ୍କର ବିଶ୍ୱାସ । ଏବେ ବିଦାୟ ନେଉଅଛୁଁ, ସୁବିଧା ହେଲେ ଆପଣମାନଙ୍କ ଧୈର୍ଯ୍ୟଚ୍ୟୁତି ନୋହିବାଭଳି ଗୋଟିଏ ଯୋଡ଼ିଏ ପ୍ରବନ୍ଧ ଲେଖିବାକୁ ଚେଷ୍ଟା କରିବୁ ।

●

## ଆମ୍ଭମାନଙ୍କର ଯାନ ଓ ଅସ୍ତ୍ରଶସ୍ତ୍ର

॥ ୧ ॥

ସାହିତ୍ୟ ଜଗତରେ ଉତ୍କଳ-ସାହିତ୍ୟ ମୋର ରାଜା, ମୁଁ ତାହାର ପ୍ରଜା । ତାହାକୁ ରାଜସ୍ୱ ଦେବାକୁ ମୁଁ ବାଧ୍ୟ, ଚୁକ୍ତିବଦ୍ଧ । ନିଃସ୍ୱ ପ୍ରଜା କିସ୍ତି ବାନ୍ଧିବାକୁ ମଜ୍‌ବୁତ । ମୁଁ ଛଅ କିସ୍ତି ଦେବାକୁ ସ୍ୱୀକୃତ ହୋଇଅଛି । କିସ୍ତିବନ୍ଦ ହେବା ମାତ୍ରେ ତାଗଦା ଆସିଲା । ବାମଣ୍ଡା ରାଜଜେମାଙ୍କ ବିବାହ ଉପଲକ୍ଷରେ

ମାଫ ପାଇଲି । ଦ୍ୱିତୀୟ କିସ୍ତି କଳାହାଣ୍ଡି ଯିବା ବାହାନାରେ ମହଲତ ନେଲି । ତୃତୀୟ କିସ୍ତିବେଳେ ମୁଁ ଯାହାଙ୍କ ସହିତ ବଢ଼ିଥିଲି—ଯାହାଙ୍କ ସହିତ ପଢ଼ିଥିଲି, ମୋର ଜୀବନସଖା ସଚ୍ଚିଦାନନ୍ଦଙ୍କର ମୃତ୍ୟୁ । ସେହି ଦାରୁଣ ଦୁଃଖ ହେତୁରୁ ଦୁଇ ମାସ କଲମ ଧରିବାକୁ ମନ ଚଳିଲା ନାହିଁ । ଚତୁର୍ଥ କିସ୍ତିର ତ ଓଜୁହାତ କିଛି ନାହିଁ । ମୁଁ ପ୍ରବନ୍ଧ ହେବାକୁ ବାଧ ଚୁକ୍ତିବଦ୍ଧ ସତ୍ୟ, ମାତ୍ର ମୁଁ ମନେ କରେଁ, ରାଜସ୍ୱ ଦେବାଟା ପ୍ରଜାର ଇଚ୍ଛାଧୀନ, କିସ୍ତି ଖିଲାପରେ ଦୋଷ ନାହିଁ । ପାଞ୍ଚ ଛଅ କିସ୍ତିର ଦେୟ ଥରେ ଦେଲେ ଚଳନ୍ତା । ମାତ୍ର ସାହିତ୍ୟର ସମ୍ପାଦକ ବଡ଼ ଟାଣ । କିସ୍ତିଖିଲାପ ନିମନ୍ତେ କୈଫିୟତ୍ ମାଗନ୍ତି, ତର୍ଜନ ଗର୍ଜନ ସବୁ ଚଳାନ୍ତି । ଏଥର ଉପାୟାନ୍ତର ନ ଦେଖି କଲମ ଧରିବାକୁ ବାଧ ହୋଇଅଛି । ଏଥର ଅନ୍ତତଃ ସମ୍ପାଦକଙ୍କୁ ଅଣ୍ଟାଗୁଞ୍ଜା ନ ଦେଇ ରହିବାର ଗତ ନାହିଁ । ଅଣ୍ଟାଗୁଞ୍ଜା ଦେବା ଲୋକ ଏବଂ ନେବା ଲୋକ ଉଭୟେ ଲାଞ୍ଛିତ ହୁଅନ୍ତି । ମୋର ଏହି ଅଣ୍ଟାଗୁଞ୍ଜା ପ୍ରବନ୍ଧ ପାଠ କରି ପାଠକେ କ୍ଷମା ଦେବେ ବୋଲି ଅତି କମ୍ ଆଶା ଅଛି ।

ଜୀବ ମାତ୍ରେ ଯୁଦ୍ଧ କରନ୍ତି, ସୁତରାଂ ଯୁଦ୍ଧସାମଗ୍ରୀ ସମସ୍ତଙ୍କର ଆବଶ୍ୟକ । ହସ୍ତଦ୍ୱାରା, ପଦଦ୍ୱାରା, ନଖଦ୍ୱାରା, ଦନ୍ତଦ୍ୱାରା ଯୁଦ୍ଧ କରାଯାଏ । ମନୁଷ୍ୟ ହସ୍ତଚାଳନକୌଶଳ ହେତୁରୁ ଫିଙ୍ଗିପାରେ, ପିଟି ପାରେ; ଏଣୁ ମନୁଷ୍ୟ ପ୍ରଥମେ ବାଡ଼ିରେ ପିଟିବାକୁ ଏବଂ ପ୍ରସ୍ତର ଫିଙ୍ଗିବାକୁ ଶିକ୍ଷା କରିଅଛି । ବାଡ଼ି ଓ ପଥରରୁ ଅସ୍ତ୍ର ଶସ୍ତ୍ରର ଅଭିବ୍ୟକ୍ତି । ପଶୁ ପକ୍ଷୀ ପ୍ରଭୃତି ଜୀବମାନେ ଅଦ୍ୟାପି ହସ୍ତ ପଦ ନଖ ଦନ୍ତ ଶୃଙ୍ଗ ଓ ଚଞ୍ଚୁରେ ଯୁଦ୍ଧ କରନ୍ତି । ମନୁଷ୍ୟ ଆପଣା କୌଶଳକ୍ରମେ ଅସ୍ତ୍ର ଶସ୍ତ୍ର ନିର୍ମାଣ କରୁଅଛି । ଏଣୁ ନଖ ଦନ୍ତ ସତ୍ତ୍ୱେ ଆୟୁଧଦ୍ୱାରା ଯୁଦ୍ଧ କରୁଅଛି ।

ଅସ୍ତ୍ର ଶସ୍ତ୍ର କେବେ ପ୍ରଥମେ ସୃଷ୍ଟି ହେଲା, ତାହା ଆଲୋଚନା କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ ।

ଆମ୍ଭେମାନେ ଭାରତବାସୀ, ହିନ୍ଦୁ, ଆମ୍ଭମାନଙ୍କର କର୍ତ୍ତବ୍ୟ କ'ଣ ? ନିଜ ଦେଶର, ନିଜ ଜାତିର ମାହାତ୍ମ୍ୟ ବର୍ଣ୍ଣନା କରିବା । ମାତ୍ର ଆମ୍ଭେମାନେ ମନୁଷ୍ୟ, ଏ ହିସାବରେ ପୃଥିବୀର ସମସ୍ତ ମନୁଷ୍ୟଜାତିର ବିଷୟନିଷ୍ପକ୍ଷପାତରେ ପ୍ରକାଶ କରିବା ଏବଂ ଆମ୍ଭ ଜାତିର ସ୍ଥାନ ଅନ୍ୟ ଜାତିର ସ୍ଥାନ ତୁଳନାରେ କେଉଁଠାରେ, ତାହା ନିର୍ଦ୍ଧାରଣ କରିବା ମଧ୍ୟ ଆମ୍ଭମାନଙ୍କର କର୍ତ୍ତବ୍ୟ । ଅନ୍ୟ ଜାତିର ତୁଳନାରେ ଆମ୍ଭମାନଙ୍କର ଯାନ ଓ ଅସ୍ତ୍ର ଶସ୍ତ୍ର କ'ଣ ଥିଲା ଏବଂ କ'ଣ ଅଛି, ତାହା ଦେଖାଇବା ଏ ପ୍ରବନ୍ଧର ମୁଖ୍ୟ ଉଦ୍ଦେଶ୍ୟ । ଯୁଦ୍ଧଟା ଅସ୍ତ୍ର ଶସ୍ତ୍ର ଓ ଯାନ ବିଷୟ ଆଲୋଚନାର ପ୍ରାସଙ୍ଗିକ ବିଷୟ । ଏଣୁ ତତ୍‌ସମ୍ବନ୍ଧରେ ପ୍ରଥମେ ଦୁଇ ଚାରି ପଦ ଲେଖିବା ଆବଶ୍ୟକ ।

ତ୍ରେତା ଯୁଗର ରାମଦୂତ ହନୁମାନଙ୍କୁ ସମସ୍ତେ ଚିହ୍ନନ୍ତି । କପିଧ୍ୱଜ ରଥ ଉପରେ ବସି ଯୁଦ୍ଧ ଦେଖିବାକୁ ପରା କୃଷ୍ଣ ହନୁମାନଙ୍କୁ ନିମନ୍ତ୍ରଣ କରି ଆଣିଥିଲେ । ସମବେତ କୁରୁପାଣ୍ଡବ ସୈନ୍ୟ ପରିଦର୍ଶନ କରି ମନ୍ତବ୍ୟ ଦେବାକୁ କୃଷ୍ଣ ହନୁମାନଙ୍କୁ କହିଲେ । ହନୁ କହିଲେ, ଏ ସୈନ୍ୟର କି ବଡ଼ିମା ଦେଖାଉଅଛ, ଏ ସମସ୍ତ ସୈନ୍ୟ ଲଙ୍କାପତି ରାବଣର ବାଦ୍ୟକାର ଦଳର ସମସଂଖ୍ୟକ ନୁହନ୍ତି । ଆମ୍ଭମାନଙ୍କ ମତରେ ଏହି କଥାଟି ହନୁମାନର 'ଗୋପାଳପୁରିଆ ଭୁରୁଡ଼ି' । ଈଦୃଶ ଭୁରୁଡ଼ିର ଆମ୍ଭେମାନେ ପକ୍ଷପାତ ନୋହୁଁ । ଆଜିକାଲି ୟୁରୋପରେ ଯେଉଁ ସମରାଗ୍ନି ଲକ୍ଷ ଲକ୍ଷ ନରଦେହ ଭସ୍ମୀଭୂତ କରୁଅଛି, ତାହା ମାନବ ଇତିହାସରେ ଅଦ୍ୱିତୀୟ ଘଟନା, ଏହା ପ୍ରତ୍ୟେକ ଇତିହାସବେତ୍ତା ସ୍ୱୀକାର କରିବେ । ମାତ୍ର ଆମ୍ଭ ଦେଶବାସୀଙ୍କ ହିସାବରେ ଏହା ଅତି ସାମାନ୍ୟ ଘଟନା । ସେମାନଙ୍କ ମତରେ ଏହି ଯୁଦ୍ଧ ମହାଭାରତ ଯୁଦ୍ଧ ସଙ୍ଗେ ତୁଳନାଯୋଗ୍ୟ ନୁହେଁ । ଆମ୍ଭମାନଙ୍କ ମତରେ ଈଦୃଶ ତୁଳନା 'ଗୋପାଳପୁରିଆ ଭୁରୁଡ଼ି' । ଭାରତବାସୀ ଯେମନ୍ତ ଯୁଦ୍ଧପଟୁ, ତାଙ୍କର ମନ୍ତବ୍ୟ ତେମନ୍ତ ମୂଲ୍ୟବାନ୍, ଏତିକି କହିଲେ ଯଥେଷ୍ଟ ହୁଅନ୍ତା । ମାତ୍ର ପାଠକବର୍ଗଙ୍କ କୌତୂହଳ ନିବାରଣ ନିମନ୍ତେ ଉଭୟ ଯୁଦ୍ଧର କିଞ୍ଚିତ୍ ତୁଳନା କରାଯାଉ ।

ଯେଉଁ ଯୁଦ୍ଧର କ୍ଷେତ୍ର ଯେତିକି ପ୍ରଶସ୍ତ, ସେ ଯୁଦ୍ଧ ତେତିକି ବଡ଼ । ବର୍ତ୍ତମାନ ଯୁଦ୍ଧକ୍ଷେତ୍ର ସହସ୍ରାଧିକ ମାଇଲ । କୁରୁକ୍ଷେତ୍ର ଯୁଦ୍ଧକ୍ଷେତ୍ର ସମନ୍ତପଞ୍ଚକ ମାତ୍ର । ମହାଭାରତ ଯୁଦ୍ଧ କେବଳ ଅଠର ଦିନରେ ଶେଷ ହୋଇଥିଲା । ଏହି ଯୁଦ୍ଧ ଦୁଇ ବର୍ଷ ଅତିକ୍ରମ କଲାଣି । ବର୍ତ୍ତମାନ ଯୁଦ୍ଧର ଲୋକସଂଖ୍ୟା ପାଠକବର୍ଗଙ୍କୁ ଜଣା । ମହାଭାରତ ଯୁଦ୍ଧର ଗଜ ରଥ ଅଶ୍ୱ ଓ ଲୋକସଂଖ୍ୟା ମୋଟ ଅଠର ଅକ୍ଷୌହିଣୀ ।

ଏତୟା ସଂଖ୍ୟୟା ହ୍ୟାସନ୍
କୁରୁପାଣ୍ଡବସେନୟୋଃ
ଅକ୍ଷୌହିଣ୍ୟୋ ଦ୍ୱିଜଶ୍ରେଷ୍ଠାଃ
ପିଣ୍ଡିତାଷ୍ଟାଦଶୈବତୁ ।

୧ । ୨ । ୨୮

ଗୁଣ୍ଡୀଭୂତ କୁରୁପାଣ୍ଡବ ସୈନ୍ୟ ଅଠର ଅକ୍ଷୌହିଣୀ ଅର୍ଥାତ୍–

| | |
|---|---|
| ପଦାତି | ୧୯୬୮୩୦୦ |
| ଗଜ | ୩୯୩୬୬୦ |
| ରଥ | ୩୯୩୬୬୦ |
| ଅଶ୍ୱ | ୧୧୮୦୯୮୦ |

ମାତ୍ର ଧର୍ମରାଜ ଯୁଧିଷ୍ଠିର ଜ୍ୟେଷ୍ଠପିତୃବ୍ୟ ଅନ୍ଧରାଜଙ୍କ ପ୍ରଶ୍ନର ଉତ୍ତରରେ ଯେଉଁ ସଂଖ୍ୟା ବ୍ୟକ୍ତ କଲେ, ତାହା ଅଠର ଅକ୍ଷୌହିଣୀରୁ ଅନେକ ବେଶି ।

ଦଶାୟୁତାନାମୟୁତଂ ସହସ୍ରାଣି ଚ ବିଂଶତିଃ ।
କୋଟ୍ୟଃ ଷଷ୍ଟିଶ୍ଚ ଷଟ୍‌ଚୈବ
ହ୍ୟସ୍ମିନ୍, ରାଜନ୍ ମୃଧେ ହତାଃ ।
ଅଲକ୍ଷିତାନାଂ ବୀରାଣାଂ ସହସ୍ରାଣି ଚତୁର୍ଦ୍ଦଶ ।
ଦଶ ଚାନ୍ୟାନି ରାଜେନ୍ଦ୍ର
ଶତଷଷ୍ଟିଶ୍ଚ ପଞ୍ଚ ଚ । ଚ.ମ.ସ୍ତ୍ରୀ.୨୬

ବେଦର ପ୍ରଥମ ତେତିଶ ଦେବତାରୁ ତେରଶ କୋଟି ହେଲା ପରି ମହାଭାରତର ଆଦିପର୍ବର ଅଠର ଅକ୍ଷୌହିଣୀରୁ ଏହି ଅସମ୍ଭବ ସଂଖ୍ୟାର ଉଦ୍ଭାବନ ହୋଇ ନାହିଁ ବୋଲି କିଏ କହିବ ?

ତସ୍ମିନ୍ ପରଧର୍ମିଷ୍ଟେ ଦେଶେ
ଭୂଦୋଷବର୍ଜ୍ଜିତେ ।
ଅଷ୍ଟାଦଶ ସମାଜଗ୍ମୁ ରକ୍ଷୌହିଣ୍ୟୋ
ଯୁଯୁତ୍‌ସୟା ।
ସମେତ୍ୟ ତଂ ଦ୍ୱିଜାସ୍ତାଶ୍ଚ ତତ୍ରୈବ
ନିଧନଂ ଗତାଃ ।
ମ. ୨।୧୪।୧୫

ଆଦିପର୍ବ ଏବଂ ସ୍ତ୍ରୀପର୍ବ ମଧ୍ୟରେ ଏପରି ପ୍ରଭେଦ ହେବାର କାରଣ କ'ଣ ତାହା ପାଠକମାନେ ବିଚାର କରିବେ ।

ବର୍ତ୍ତମାନ ପାଠକଗଣ ବିବେଚନା କରନ୍ତୁ, ମହାଭାରତ ଯୁଦ୍ଧ ବର୍ତ୍ତମାନ ଯୁଦ୍ଧର କେଉଁ ତୁଳନାର ଯୋଗ୍ୟ । ତଥାପି ଲୋକେ ମହାଭାରତ ଯୁଦ୍ଧକୁ ଶ୍ରେଷ୍ଠ ସ୍ଥାନ ଦେବାକୁ କୁଣ୍ଠିତ ନୁହନ୍ତି । ପୌରାଣିକଗଣ ଅବଶ୍ୟ ସ୍ୱୀକାର କରିବେ ଯେ, ପୌରାଣିକ ସମସ୍ତ ଯୁଦ୍ଧ ଅପେକ୍ଷା ମହାଭାରତ ଯୁଦ୍ଧ ଶ୍ରେଷ୍ଠ । ଭାରତ ଯୁଦ୍ଧ ଯେବେ ବର୍ତ୍ତମାନ ଯୁଦ୍ଧର ସମକକ୍ଷ ନୁହେଁ, ଅନ୍ୟ ଯୁଦ୍ଧ କଥା ମୁହଁକୁ ଆଣିବା କାହିଁକି ? ଯୁଦ୍ଧ ସମ୍ବନ୍ଧରେ ଏତିକି ।

ଆମ୍ଭ ଦେଶରେ ପରା ବେଲୁନ୍, ଜ୍ୟାପେଲିନ୍, ବାଇପ୍ଳେନ୍, ମନୋପ୍ଳେନ, ଏରୋପ୍ଳେନ, ହାଇଡ୍ରୋପ୍ଳେନ, ରେଲ, ମଟର, ଦାଇସିକଲ, ଟ୍ରାଇସିକଲ, ଡ୍ରେଡ୍‌ନଟ୍, ଷ୍ଟିମାର, ସବମେରିନ୍ ପ୍ରଭୃତି ସବୁ ଥିଲା । ଆମ୍ଭେମାନେ କୁଳାଙ୍ଗାର, ସେସବୁ ହରାଇ ବସିଅଛୁଁ ।

''ଗର୍ଜନ ନାଦ କରି ଯେ ଅଇଲା ନନ୍ଦିଘୋଷ ।
ଅର୍ଜୁନ ମିଳିଲେ ଯାଇ ଦୁର୍ଯ୍ୟୋଧନ ପାଶ ।''

ଗର୍ଜନ ମାତ୍ର ସାର । ନନ୍ଦିଘୋଷ ଆସିବା ସତ, ଗର୍ଜନ କରିବା ସତ । ମାତ୍ର ଏହା ମଟରତୁଲ୍ୟ ରଥ, କି ଏକ୍କା ଗାଡ଼ିତୁଲ୍ୟ ରଥ, କି ଜଗନ୍ନାଥଙ୍କ ରଥତୁଲ୍ୟ ରଥ, ତାହା ଅର୍ଜୁନଙ୍କୁ ଜଣା । ଏପରି ବର୍ଣ୍ଣନା ଦେଖି ଲୋକେ ନନ୍ଦିଘୋଷଟାକୁ ବେଗଗାମୀ ଯାନ ବୋଲି ମନେ କରନ୍ତି । ମାତ୍ର ଯେଉଁ ଯାନରେ ଅଶ୍ୱ ଯୋଜିତ ହୁଅନ୍ତି, ତାହା ଯେ କି ପ୍ରକାର ଆଧୁନିକ ଘୋଡ଼ାଗାଡ଼ି ଅପେକ୍ଷା ବେଗଗାମୀ ହୋଇପାରେ, ତାହା କେହି ତିଳେ ମାତ୍ର ଚିନ୍ତା କରନ୍ତି ନାହିଁ ।

ଅଶ୍ୱର ଦ୍ରୁତଗମନକୁ ବାୟୁର ବେଗ ସହିତ ତୁଳନା କରାଯାଏ । ଆଜିକାଲି ଘୋଡ଼ାର ଯେଉଁ ଗତି, ପୂର୍ବକାଳରେ ମଧ୍ୟ ସେହି ଗତି । ବାୟୁବେଗରେ ଅଶ୍ୱ ଚାଲିବା କଥା କେବଳ ଅତିଶୟୋକ୍ତି ମାତ୍ର ।

ଆଜିକାଲି ଗାଡ଼ିରେ ଘୋଡ଼ା ଯେପରି ଯୋଜିତ ହୁଅନ୍ତି, ପୂର୍ବକାଳରେ ସେହିପରି ଯୋଜିତ ହେଉଥିଲେ । ଅଶ୍ୱର ଗତିବେଗ କ୍ଷାନ୍ତ କରିବା ନିମନ୍ତେ ସେହି ରଶ୍ମିର ପ୍ରୟୋଜନ ହେଉଥିଲା । ବେଗରେ ଚାଲିବା ନିମନ୍ତେ କଶାଘାତର ପ୍ରୟୋଜନ ହେଉଥିଲା ।

ଆମ୍ଭେମାନେ ବେଦ ପୁରାଣ କାବ୍ୟନାଟକାଦିରେ ଯେଉଁ ରଥର ବିବରଣୀ ଦେଖିବାକୁ ପାଉ, ତାହା କେବଳ ଅଶ୍ୱଦ୍ୱାରା ଆଧୁନିକ ଗାଡ଼ି ପରି ଟଣା ଯାଉଥିବା ରଥ । ବୈଦିକ ଯୁଗର ରଥ ବା ତତ୍‌ପରବର୍ତ୍ତୀ ଯୁଗର ରଥ କଳଦ୍ୱାରା, ଷ୍ଟିମ୍‌ଦ୍ୱାରା କିମ୍ବା ବିଦ୍ୟୁତ୍‌ଦ୍ୱାରା ଚାଳିତ ହେଉଥିବାର ବର୍ଣ୍ଣନା ତ କୌଣସି ସ୍ଥଳରେ ଦେଖିବାକୁ ପାଉଁ ନାହିଁ । ମନୁଷ୍ୟର ରଥ କଥା ତେଣେ ଥାଉ, ଦେବତାମାନଙ୍କର, ଗ୍ରହମାନଙ୍କର ରଥ ମଧ୍ୟ ଅଶ୍ୱଦ୍ୱାରା ଟଣା ହୁଏ । 'ବୃହସ୍ପତେ ରଥାଷ୍ଟାଶ୍ୱଃ ସ୍ୟନ୍ଦନୋ ହେମନିର୍ମିତଃ' । (କୂର୍ମପୁରାଣ) ବୃହସ୍ପତିଙ୍କର ଗୋଟିଏ

ସ୍ୱର୍ଣ୍ଣନିର୍ମିତ ରଥ ଅଛି, ତହିଁରେ ଆଠ ଗୋଟି ଘୋଟକ ଯୋଜିତ ହୁଅନ୍ତି ।

ଗୋଟିଏ ମଟରଗାଡ଼ି ଯେବେ ଖୋଲାଯାଏ, ତାହାହେଲେ ତହିଁରେ ଅନେକଗୁଡ଼ିଏ ଚକ, ନଳ, ପେଞ୍ଚ ପ୍ରଭୃତି ଏବଂ ଚୁମ୍ବକ, ବିଦ୍ୟୁତ୍, ପେଟ୍ରୋଲ ଦେଖିବାକୁ ମିଳିବ । ପ୍ରାଚୀନ କାଳର ଗୋଟିଏ ରଥ ଖୋଲିଲେ ଆମ୍ଭେମାନେ କେବଳ ଘୋଡ଼ା, ଲଗାମ, ଯୋତ, ଗାଡ଼ିଚକ, ଅଖ, ଯୁଆଳି ପ୍ରଭୃତି କେତେଗୁଡ଼ିଏ ସାଧାରଣ ପଦାର୍ଥ ଦେଖିବାକୁ ପାଇବା । ପାଠକମାନଙ୍କ କୌତୂହଳ ନିବାରଣ ନିମନ୍ତେ ବୈଦିକ ଗ୍ରନ୍ଥରୁ ରଥ ଓ ତଦଙ୍ଗବାଚକ ଶବ୍ଦଗୁଡ଼ିକ ନିମ୍ନରେ ପ୍ରକାଶ କଲୁଁ । ପାଠକଗଣ ଅନୁଗ୍ରହପୂର୍ବକ ଏହି ମାଲ ମସଲା ନେଇ ଗୋଟିଏ ଗୋଟିଏ ରଥ ନିର୍ମାଣ କରନ୍ତୁ, ଦେଖି ପାରିବେ ଯେ, ଏହି ଗୋଟିଏ ଆଧୁନିକ ମଟର ହେବ, କି ଏରୋପ୍ଲେନ୍ ହେବ, କିମ୍ବା ଗୋଟିଏ ଏକ୍କାଗାଡ଼ି ହେବ— ଯାହାକୁ ଭାରତବର୍ଷର କୌଣସି କୌଣସି ସ୍ଥଳରେ ପୁଷ୍ପକ ବୋଲନ୍ତି । ଅକ୍ଷ, ଆଣି— ଅକ୍ଷଛିଦ୍ରେ ପ୍ରକ୍ଷିପ୍ତଃ କୀଳବିଶେଷଃ, ସାୟନ, କଷା, ଉଧି– ବସିବା ସ୍ଥାନ, ଉପହ୍ୱର–ରଥଦେହ, କସ୍ତମ୍ଭି–ଗାଡ଼ିଦଣ୍ଡା, ଖ–ଅକ୍ଷଛିଦ୍ର, ଯୁକ୍ତ, ଯୋଗ, ଧୁର–ଝୁରା, ନାଭି, ନାଦୀ, ରଥନାଭି–ଚକ୍ରନାଭି, ପରିରଥ୍ୟା, ପର୍ବ–ଝାମ, ବର୍ତ୍ତନ, ପ୍ରଧି, ନେମି–ରଥପ୍ରାନ୍ତ, ଯୋକ୍ତ୍ର–ଚର୍ମବନ୍ଧନୀ, ରଶନା, ରଶ୍ମି– ଲଗାମ, ବରତ୍ରା–ଯୋତ, ଶ୍ଳେଷ୍ମନ୍–ଦୌଡ଼ି, ସ୍ଥୁରି–ଯେଉଁ ଗାଡ଼ିରେ ଗୋଟିଏ ପଶୁ ଯୋଜିତ ହୁଏ, ବିପୃଥ, ବିପଥା– ସାଧାରଣ ଗାଡ଼ି ।

ବୈଦିକ ଯୁଗର ରଥୋପକରଣ ପାଠକଗଣ ଦେଖି ପାରିଲେ ତ ? ଏଥିରେ ମଟର ପ୍ରଭୃତି ନିର୍ମିତ ହେବା ଅସମ୍ଭବ । ତଥାପି ଏହି ଉପକରଣ ନିର୍ମିତ ରଥଦ୍ୱାରା ଇନ୍ଦ୍ର, ସୂର୍ଯ୍ୟ, ଅଶ୍ୱିଦ୍ୱୟ, ପ୍ରଭୃତି ଦେବତାମାନେ ଆକାଶରେ ବିଚରଣ କରୁଥିଲେ ।

ପାଠକମାନଙ୍କର କୌତୂହଳ ନିବାରଣ ନିମନ୍ତେ ଗୋଟି କେତେ ଉଦାହରଣ ଉଦ୍ଧୃତ କରିବୁ ।

ଅଶ୍ୱଦ୍ୱାରା ନୀତ ରଥ–
ଉତବା ଯସ୍ୟ ବାଜିନୋଽନୁ ବିପ୍ରମତକ୍ଷତ ।
ସଙ୍ଗତା ଗୋମତି ବ୍ରଜେ ।

ଋ. ୧ । ୮୬ । ୩

"ହେ ଅଶ୍ୱିଦ୍ୱୟ ! ତୁମ୍ଭମାନଙ୍କର ରଥ ଯେତେବେଳେ ପ୍ରଶଂସିତ ସ୍ୱର୍ଗଲୋକକୁ ଅଶ୍ୱଗଣଦ୍ୱାରା ନୀତ ହୁଏ, ସେତେବେଳେ ଆମ୍ଭେମାନେ ତୁମ୍ଭ ଦୁହିଁଙ୍କର ସ୍ତୁତି ଉଚ୍ଚାରଣ କରୁଁ ।"

ହିରଣ୍ୟୟେଭିଃ ପର୍ବଭିଃ ପୟୋବୃଧ
ଉଜ୍ଜିଘ୍ନନ୍ତ ଆପଥ୍ୟୋନ ପର୍ବତାନ୍ ।
ମଖା ଅୟାସଃ ସ୍ୱସୃତୋ ଧ୍ରୁବଚ୍ୟୁତୋ
ଦୁଧ୍ରକୃତୋ ମରୁତୋ ଭ୍ରାଜ ଦୃଷ୍ଟୟଃ ।

ଋ. ୧ । ୬୪ । ୧୧

"ବୃଷ୍ଟି ବର୍ଦ୍ଧନକାରୀ ମରୁତ୍‌ଗଣ ସୁବର୍ଣ୍ଣମୟ ରଥଚକ୍ରଦ୍ୱାରା ପୃଥିବୀସ୍ଥିତ (ତୃଣବୃକ୍ଷାଦି ପରି) ମେଘ ସମସ୍ତଙ୍କୁ ସ୍ଥାନରୁ ଉତୋଳନ କରନ୍ତି । ସେମାନେ ଯଜ୍ଞବାନ୍ ଦେବତାମାନଙ୍କର ଯଜ୍ଞସ୍ଥଳକୁ ଗମନ କରନ୍ତି । ସ୍ୱୟଂ ଶତ୍ରୁମାନଙ୍କୁ ଆକ୍ରମଣ କରନ୍ତି । ନିଶ୍ଚଳ ପଦାର୍ଥ ସଞ୍ଚାଳନ କରନ୍ତି । ଅନ୍ୟର ଅସାଧ ଦ୍ରବ୍ୟ ଏବଂ ଦୀପ୍ତିମାନ୍ ଆୟୁଧ ଧାରଣ କରନ୍ତି ।"

ନ ହି ସ୍ଥୁର୍ଯ୍ୟୃତୁଥା ଯାତମସ୍ତି
ନୋତ ଅବୋ ବିବିଦେ ସଂଗମେଷୁ ।
ଗବ୍ୟଂତ ଇନ୍ଦ୍ରଂ ସଖାୟ ବିପ୍ରା
ଅଶ୍ୱା ଯଂତୋ ବୃଷଣ ବା ଯଯଂତ ।

ଋ.୧୦ । ୧୩୧ । ୩

"ଯେଉଁ ଶକଟରେ ଗୋଟିଏ ପଶୁ ଯୋଜିତ ହୁଏ, ତାହା କେବେ ଯଥାସମୟରେ ଗନ୍ତବ୍ୟସ୍ଥାନରେ ଉପସ୍ଥିତ ହୋଇପାରେ ନାହିଁ । ଯୁଦ୍ଧ ସମୟରେ ତାହାଦ୍ୱାରା ଅନ୍ନ ଲାଭ କରାଯାଏ ନାହିଁ । ଯେଉଁମାନେ ଗୋ, ଅଶ୍ୱ, ଅନ୍ନ କାମନା କରନ୍ତି, ସେହି ବୁଦ୍ଧିମାନ୍‌ମାନେ ଏହି କାରଣରୁ ଇନ୍ଦ୍ରଙ୍କ ବନ୍ଧୁତ୍ୱ ନିମନ୍ତେ ଲାଳାୟିତ ହୁଅନ୍ତି ।"

ଦେବତାଙ୍କର ରଥ ଥିଲା, ଦେବତାମାନେ ଆକାଶରେ ଉଡୁଥିଲେ । ସେଥିରେ ତୁମ୍ଭର ଆମ୍ଭର କ'ଣ ? ଦେବତାମାନେ ତ ଜଗଦ୍‌ବାସୀ ସମସ୍ତଙ୍କର । ନୋହିଲା ଆମ୍ଭେ ଭାରତସନ୍ତାନମାନେ ହତବୁଦ୍ଧି ହୋଇ ସବୁ ହରାଇ ବସିଅଛୁଁ । ଦେବତାଗୁଡ଼ିକ ମଧ ଏପରି ମୋଟବୁଦ୍ଧି ହେଲେ କାହିଁକି ? ଏବଂ ଲଜ୍ଜାରେ ଦେଖା ଦେଉ ନାହାନ୍ତି କାହିଁକି ? ନା, ନା, ଦେବତାମାନେ ଅଛନ୍ତି । ସେହି ଇନ୍ଦ୍ର, ସେହି ମରୁତ୍, ସେହି

ସୂର୍ଯ୍ୟ, ସେହି ଅଶ୍ୱିଦ୍ୱୟ ଅଦ୍ୟାପି ବିଦ୍ୟମାନ ଅଛନ୍ତି । ଦେଖିବାରେ ଇତର ବିଶେଷ ଅଛି । ଆମ୍ଭେମାନେ କଳ୍ପନା-ଯାନରେ ଚଢ଼ି ଏତେଦୂରକୁ ଚାଲି ଯାଇଅଛୁଁ ଯେ, ସେହି ଦେବତାମାନଙ୍କର ରୂପକୁ ସ୍ପଷ୍ଟରୂପେ ଦେଖି ସୁଦ୍ଧା ବୁଝିପାରୁ ନାହୁଁ ।

ଅନେକେ କହନ୍ତି, ଯେବେ ବ୍ୟୋମଯାନ ପ୍ରଭୃତି ନ ଥିଲା, ତେବେ ଗ୍ରନ୍ଥମାନଙ୍କରେ ଆକାଶରେ ଗମନାଗମନ ବର୍ଣ୍ଣନା କାହୁଁ ଆସିଲା ? ଆମ୍ଭେମାନେ କହୁଁ, ଏ ସବୁ କଳ୍ପନା । ମେଘର ଅଧିଷ୍ଠାତ୍ରୀ ଦେବତା ଇନ୍ଦ୍ର । ତାହାଙ୍କର ବାହନ ବା ରଥ ମେଘ । ମେଘ ଆକାଶରେ ଦ୍ରୁତବେଗରେ ଯିବାର କିଏ ଦେଖି ନାହିଁ ? ଏହି ମେଘକୁ ଆକାଶଗାମୀ ରଥ ବୋଲି ବର୍ଣ୍ଣନା କରିବାକୁ କିଏ ମନା କରିଥିଲା ? ସୂର୍ଯ୍ୟ ପ୍ରତିଦିନ ପୂର୍ବାକାଶରେ ଉଦିତ ହୋଇ ପଶ୍ଚିମାକାଶରେ ଅସ୍ତ ହୁଅନ୍ତି । ସୂର୍ଯ୍ୟ ରଥରେ ଯାତାୟାତ କରନ୍ତି ବୋଲି ବର୍ଣ୍ଣନା କରିବା ତ ଅଯୌକ୍ତିକ ନୁହେଁ । ଏଣୁ କବି ଗାଇଲେ—

''ଆକୃଷ୍ଣେନ ରଜସା ବର୍ତ୍ତମାନୋ
ନିବେଶୟନ୍ନମୃତଂ ମର୍ତ୍ତ୍ୟଂ ଚ ।
ହିରଣ୍ୟୟେନ ସବିତା ରଥେନ
ଦେବୋ ଯାତି ଭୁବନାନି ପଶ୍ୟନ୍ ।''

''ଶୈଳାନାମବରୋହତୀବ
ଶିଖରାଦୁନ୍ମଜ୍ଜତାଂ ମେଦିନୀ
ପର୍ଣ୍ଣାଭ୍ୟନ୍ତରଲୀନତାଂ ବିଜହତି
ସ୍କନ୍ଧୋଦୟାତ୍ ପାଦପାଃ ।
ସନ୍ତାନଂ ତନୁଭାଗନଷ୍ଟସଲିଳ-
ବ୍ୟକ୍ତ୍ୟା ବ୍ରଜନ୍ତ୍ୟାପଗାଃ ।
କେନାପ୍ୟୁତ୍ କ୍ଷିପତେବ ପଶ୍ୟ
ଭୁବନଂ ମତ୍ପାର୍ଶ୍ୱମାନୀୟତେ ।''

ଏହି ଶ୍ଳୋକଟି ଶକୁନ୍ତଳା ନାଟକରେ ଅଛି, ଏହା କାଳିଦାସ ଲେଖିଅଛନ୍ତି । ଏହା ସମସ୍ତେ ଅବଶ୍ୟ ସ୍ୱୀକାର କରିବେ ଯେ, କାଳିଦାସ କଳିଯୁଗର ଲୋକ । ସେ ଦୁଷ୍ମନ୍ତଙ୍କର ସମସାମୟିକ ଲୋକ ନ ଥିଲେ ଏବଂ ଦୁଷ୍ମନ୍ତଙ୍କ ସହିତ ସ୍ୱର୍ଗକୁ ଯାଇ ନ ଥିଲେ । ତେବେ ସେ ଏ ବର୍ଣ୍ଣନା କରିବାକୁ କାହୁଁ ଜାଣିଲେ ? ମହାଭାରତରୁ ଶକୁନ୍ତଳା ଉପାଖ୍ୟାନ ସଂଗୃହୀତ, ସେଥିରେ ଏପରି ବର୍ଣ୍ଣନା ଅଛି କି ? ନାହିଁ ତ ତେବେ ଏହା କାଳିଦାସଙ୍କର କପୋଳକଳ୍ପିତ । ନୋହିଲେ କାଳିଦାସ ବିଖ୍ୟାତ କବି କାହିଁକି ? କବିବର କୌଣସି ଉଚ୍ଚ ପର୍ବତରୁ ଦ୍ରୁତପଦରେ ଅବତରଣ କଲାବେଳେ ହୃଦୟରେ ଯେଉଁ ଭାବଟିକି ପୋଷଣ କରିଥିଲେ, ତାହା ଦୁଷ୍ମନ୍ତଙ୍କର ସ୍ୱର୍ଗାବତରଣ ବୃତ୍ତାନ୍ତରେ ପ୍ରାଞ୍ଜଳ ଭାବରେ ଲେଖିଦେଇ ପାଠକବର୍ଗଙ୍କୁ ମୋହିତ ଓ ବିସ୍ମିତ କରିଅଛନ୍ତି ।

ରାମ ଲଙ୍କା ଗଲାବେଳେ ପାଦଚାରୀ ହୋଇଗଲେ, ଫେରିଲାବେଳେ ବିଭୀଷଣ କୁବେରଙ୍କର ପୁଷ୍ପକରେ ଚଢ଼ିବାକୁ ଅନୁରୋଧ କଲେ । ପଞ୍ଜାବରେ ପ୍ରକାଶିତ ଖଣ୍ଡେ ଉର୍ଦ୍ଦୁ କାଗଜରେ ପୁଷ୍ପକର ଚିତ୍ର ପ୍ରକାଶିତ ହୋଇଥିଲା— ଚିତ୍ରକର ଗୋଟିଏ ହଂସ ଉପରେ ଅନେକ ଗୁଡ଼ିଏ ବାନର ଓ ରାକ୍ଷସ ମୂର୍ତ୍ତି ମଧ୍ୟରେ ରାମ, ଲକ୍ଷ୍ମଣ ଓ ସୀତାଙ୍କ ରୂପ ଅଙ୍କନ କରିଥିଲେ । ଏହି ଚିତ୍ରକୁ ଦେଖି ଅନେକ ଲୋକ କୃତକୃତ୍ୟତା ଲାଭ କରୁଥିଲେ ।

ପୁଷ୍ପକ ଗୋଟିଏ ବିଖ୍ୟାତ ଯାନ। ରାମାୟଣ ଫିଟାଇ ଦେଖିଲେ ଏହା କିପରି ଉପାଦାନରେ ନିର୍ମିତ ହୋଇଥିଲା, ତହିଁର ଉଲ୍ଲେଖ ନାହିଁ। କେବଳ 'ବିମାନ ସୂର୍ଯ୍ୟସଂକାଶଂ' । 'ପ୍ରକୀର୍ଣ୍ଣ-କିଙ୍କିଣୀଜାଳୈଃ'। 'ମୁକ୍ତାମଣିଗବାକ୍ଷକଂ' । ପ୍ରଭୃତି ବର୍ଣ୍ଣନାମାନ ଅଛି। କେଉଁ ବଳରେ ଗତି କରେ ? ଚଢ଼ିବା ଲୋକ ଆଜ୍ଞା ଦେଲେ ପୁଷ୍ପକ ଚଳେ । ଏଣୁ–

''ଅନୁଜ୍ଞାତଂ ତୁ ରାମେଣ ତଦ୍ବିମାନମନୁତ୍ତମଂ ।
ହଂସଯୁକ୍ତଂ ମହାନାଦମୁତ୍ପପାତ ବିହାୟସଂ ।''

ଲ. ୨୩୨ । ୨

ପୁଷ୍ପକର ଆୟତନ କେଡ଼େ, ତାହା ପାଠକଗଣ ଶ୍ରବଣ କରି ଆଶ୍ଚର୍ଯ୍ୟାନ୍ୱିତ ହେବେ । ରାମ ଲକ୍ଷ୍ମଣ ଓ ସୀତା ତ ବିମାନରେ ବସିଲେ । ସଙ୍ଗରେ ଅମାତ୍ୟ ସୈନ୍ୟ ସହ ବିଭୀଷଣ, ପୁଣି ଲଙ୍କାକୁ ଯୁଦ୍ଧ କରିବାକୁ ଯାଇଥିବା ସମସ୍ତ ବାନର ପୁଷ୍ପକରେ ସ୍ଥାନ ପାଇଲେ । ଏତିକି ନୁହେଁ, କିଷ୍କିନ୍ଧ୍ୟାର ସମସ୍ତ 'ବାନର ଯୋଷିତ୍' ଅଯୋଧ୍ୟା ଦର୍ଶନ କରିବାକୁ କିଷ୍କିନ୍ଧ୍ୟାଠାରୁ ସେହି ପୁଷ୍ପକରେ ଆରୋହଣ କଲେ।

ଦୁଷ୍ମନ୍ତ ଯେଉଁ ରଥରେ ଚଢ଼ି ସ୍ୱର୍ଗକୁ ଯାଇଥିଲେ, ସେହି ରଥ ଅଶ୍ୱଦ୍ୱାରା ଚାଳିତ । ନନ୍ଦିଘୋଷ, କପିଧ୍ୱଜ, ଇନ୍ଦ୍ରଙ୍କ ରଥ, ଶନିଙ୍କ ରଥ କି ନରରଥ, କି ଦେବ ରଥ, କି ରାକ୍ଷସ ରଥ, ସବୁ ଅଶ୍ୱଦ୍ୱାରା ଚାଳିତ ହେଉଥିବାର ବର୍ଣ୍ଣନା ଆମ୍ଭେମାନେ ଗ୍ରନ୍ଥାଲୋଚନାରୁ ପାଉଁ। ଅଶ୍ୱଯୋଜିତ ରଥ ଆକାଶମାର୍ଗରେ କିପରି ଉଡ୍ଡୀୟମାନ ହେବ, ଏହା କେହି ଥରେ ମାତ୍ର ଚିନ୍ତା ନ କରି, ଆମ୍ଭ ପୂର୍ବପୁରୁଷଗଣ ରଥରେ ଚଢ଼ି ଆକାଶମାର୍ଗରେ

ବିଚରଣ କରୁଥିଲେ ବୋଲି ଘୋଷଣା କରିବାକୁ ତିଳେମାତ୍ର ଶଙ୍କିତ ବା ଲଜ୍ଜିତ ହୁଅନ୍ତି ନାହିଁ । ବେଦ ଓ ପୁରାଣର କଥାରେ ଆସ୍ଥା ସ୍ଥାପନ କରି ଯେବେ ଇନ୍ଦ୍ର ପ୍ରଭୃତିଙ୍କର ରଥ ଥିବାର ବିଶ୍ୱାସ କରିବା ତେବେ ସୂର୍ଯ୍ୟଙ୍କର ରଥ ଥିବାର ବିଶ୍ୱାସ ନ କରିବା କାହିଁକି ? ସୂର୍ଯ୍ୟଙ୍କର ରଥ ଥିବାର ତ ସେହି ବେଦ ଓ ପୁରାଣରେ ଅଛି ।

ସୂର୍ଯ୍ୟ, ଚନ୍ଦ୍ର ଗ୍ରହଙ୍କୁ ପୂର୍ବକାଳର ଲୋକେ ଯେପରିଭାବରେ ଦେଖୁଥିଲେ ଆମ୍ଭେମାନେ ମଧ୍ୟ ପ୍ରାୟ ସେହିପରି ଦେଖି ପାରୁଅଛୁଁ । ଯେବେ ସେମାନଙ୍କୁ ରଥ ଚକ ଅଶ୍ୱ ଦେଖାଯାଉଥିଲା, ତେବେ ଆମ୍ଭମାନଙ୍କୁ ଦେଖାଯାଉ ନାହିଁ କାହିଁକି ? ଯେବେ ରଥରେ ବସିବା ଲୋକକୁ ଦେଖିପାର, ତେବେ ରଥକୁ ଦେଖି ପାର ନାହିଁ, ଏହା କିପରି କଥା ?

ଆମ୍ଭେମାନେ ଦୂରବୀକ୍ଷଣରେ ଶନିର ବଳୟ, ମଙ୍ଗଳର କେନାଲ୍, ବୁଧ, ଶୁକ୍ରର କ୍ଷୟ ବୃଦ୍ଧି ଦେଖିପାରିଲୁଁ । ସୂର୍ଯ୍ୟର କଳଙ୍କ ଏବଂ ଅଗ୍ନି ଝଟିକା ଦେଖିପାରିଲୁଁ । ଚନ୍ଦ୍ରର ପାହାଡ଼ ପର୍ବତ ଗୋଟି ଗୋଟି କରି ଗଣି ପାରିଲୁଁ । ଆଉ ରଥଟି କେବଳ ଦେଖି ପାରିଲୁଁ ନାହିଁ । ସୂର୍ଯ୍ୟ ତ ଜଡ଼ପଦାର୍ଥ, ଗ୍ରହ ଉପଗ୍ରହ ମଧ୍ୟ ତ ଜଡ଼ ପଦାର୍ଥ । ଜଡ଼ପଦାର୍ଥ ଦେଖିବାକୁ ତ ଜ୍ଞାନଚକ୍ଷୁର ପ୍ରୟୋଜନ ନାହିଁ ।

ଆଉ ଗୋଟିଏ କଥା । ରଥର ଉପାଦାନ ତ କାଷ୍ଠ ଓ ଲୌହ । କେବଳ ଦେବତାମାନଙ୍କ ରଥରେ ସୁନା ମଣି ମାଣିକ୍ୟ ଲାଗିଥାଏ । ସୂର୍ଯ୍ୟଙ୍କ ରଥ କେଉଁ ଉପାଦାନରେ ଗଠିତ । କାଠ ଓ ଲୁହାରେ ତ ନୁହେଁ । କାରଣ ରଥନିର୍ମାତା ବିଶ୍ୱକର୍ମା ହାତରେ ଏପରି କୌଣସି ପଦାର୍ଥ ନାହିଁ, ଯାହା ସୂର୍ଯ୍ୟ ଦେହରେ ଲାଗିଲାକ୍ଷଣି କାଗଜ ପରି ଜଳି ନ ଯିବ ।

ସୂର୍ଯ୍ୟଙ୍କର ପରା ଖଣ୍ଡେ ବାଇସିକଲ୍ ଥିଲା । ପ୍ରାନ୍ୟଚକ୍ରମବୃହଃ ସୂର୍ଯସ୍ୟ ।

କୁତ୍‌ସାୟାନ୍ୟଦରିବୋ ଯାତବେହକଃ ।
ଅନାସୋଦସୁଂ ରମୃଣୀ ବଧେନ
ନିଦୁର୍ଯୋଣ ଆବୃଣଙ୍ମୃଧବା ଚ ।

ଋ. ୫।୨୯।୧୦।

''ହେ ଇନ୍ଦ୍ର, ତୁମ୍ଭେ ପୂର୍ବେ ସୂର୍ଯ୍ୟଙ୍କର ଗୋଟିଏ ରଥଚକ୍ର ଛେଦନ କରିଥିଲ, ଅପର ଗୋଟିକ ଧନଲାଭ ନିମିତ୍ତ କୁତ୍‌ସକୁ ପ୍ରଦାନ କରିଥିଲ । ତୁମ୍ଭେ ବଜ୍ରଦ୍ୱାରା ବାକ୍‌ଶକ୍ତିହୀନ ଦସ୍ୟୁମାନଙ୍କୁ ହତବୁଦ୍ଧି କରି ଯୁଦ୍ଧରେ ସେମାନଙ୍କୁ ବଧ କରିଥିଲ ।''

ଉପରୋକ୍ତ ପ୍ରମାଣ ଏବଂ ଏପରି ଆଉ ଦୁଇ ଚାରି ଗୋଟି ଋଗ୍‌ବେଦ ମନ୍ତ୍ର ଦେଖି ଜଣକେତେ ସ୍ୱମତାଭିମାନୀ କହନ୍ତି ଯେ, ଆମ୍ଭମାନଙ୍କର ପୂର୍ବପୁରୁଷଗଣ ବାଇସିକଲ ଚଢ଼ି ଦେଶ ଭ୍ରମଣ କରୁଥିଲେ । ସେମାନଙ୍କ ମତରେ ବାଇସିକଲ ଚଢ଼ି ବୁଲିବା ଏହି ସୂର୍ଯ୍ୟ ଦୃଶ୍ୟମାନ ଜଡ଼ ସୂର୍ଯ୍ୟ ନୁହନ୍ତି । ଯେଉଁ ସୂର୍ଯ୍ୟଙ୍କର ରଥଚକ୍ର ଇନ୍ଦ୍ର ଛେଦନ କଲେ, ସେ ନର ସୂର୍ଯ୍ୟ ଏବଂ ନର ଇନ୍ଦ୍ରଙ୍କର ସହୋଦର ଭ୍ରାତା । ସେହି ନର ସୂର୍ଯ୍ୟ ଜଣେ ମହାବୈଜ୍ଞାନିକ ଥିଲେ । ଯେତେବେଳେ ଇନ୍ଦ୍ର ବାଇସିକଲର ଗୋଟିଏ ଚକା କାଟିଦେଲେ, ସେତେବେଳେ ସେ ଏକଚକ୍ରା ଗାଡ଼ି ଅର୍ଥାତ୍ ମନୋସାଇକଲରେ ଚଢ଼ି ବୁଲିବାକୁ ଲାଗିଲେ । ଏପରି କଥାକୁ ଆମ୍ଭେମାନେ କହୁଁ ଲୋକଭୁଲାଣିଆ ଭୁରୁଡ଼ । ଯେବେ ପାଠକଗଣ ଈଦୃଶ ଭୁରୁଡ଼ରେ ଆସ୍ଥା ସ୍ଥାପନ କରିବାକୁ ଇଚ୍ଛୁକ, ତେବେ ନାଚାର ।

ଇଜିପଟ୍‌ବାସୀ ମଧ୍ୟ ଗୋଟିଏ ପ୍ରାଚୀନ ଜାତି, ତାଙ୍କର ଯେଉଁ ସୂର୍ଯ୍ୟ, ଆମ୍ଭମାନଙ୍କର ମଧ୍ୟ ସେହି ସୂର୍ଯ୍ୟ । ତାଙ୍କ ମତରେ ସୂର୍ଯ୍ୟ ନୌକାରେ ଗମନ କରନ୍ତି । ଆମ୍ଭମାନଙ୍କ ମତରେ ସୂର୍ଯ୍ୟ ଅଶ୍ୱଯୋଜିତ ରଥରେ ଗମନ କରନ୍ତି । କାହା କଥା ସତ ? ଦେବତାମାନଙ୍କୁ ମନୁଷ୍ୟ ଗଢ଼ିଅଛି । ସେମାନଙ୍କର ଆଚ୍ଛାଦନ ଆଭରଣ ମନୁଷ୍ୟ ଦେଇଅଛି । ସେମାନଙ୍କର ଗମନାଗମନ ନିମନ୍ତେ ଯାନ ଖଞ୍ଜିଅଛି । ମନୁଷ୍ୟ ଗଢ଼ିଅଛି ସତ, କିନ୍ତୁ ଦେବତାମାନଙ୍କୁ ନିଜଠାରୁ ବଡ଼ କରିବାର ତାହାର ଇଚ୍ଛା, ଏଣୁ ନିଜର ଦୁଇଗୋଟି ହସ୍ତଥିବା ସ୍ଥଳେ ଦେବତାଙ୍କର ଚାରିଗୋଟି ହସ୍ତ କଲା; ନିଜର ଗାଡ଼ି ଭୂମିରେ ଚାଲେ, ଦେବତାଙ୍କ ଗାଡ଼ିକୁ ଆକାଶରେ ଉଡ଼ାଇଦେଲା; ନିଜର ନୌକା ଜଳରେ ଚାଲେ, ଦେବତାଙ୍କର ନୌକାକୁ ଆକାଶରେ ଚଲାଇଦେଲା ।

ଆମ୍ଭେମାନେ ପ୍ରାଚୀନ ରାଜାମାନଙ୍କର ଅସୁରମାନଙ୍କର ଦେବତାମାନଙ୍କର ଯାନଗୁଡ଼ିକ ତନ୍ନ ତନ୍ନ କରି ଦେଖିଲୁଁ, କୌଣସିଟି ଆଧୁନିକ ମଟର ଗାଡ଼ି ପରି ନୁହେଁ ବା ଏରୋପ୍ଲେନ୍ ପରି ନୁହେଁ । ଆମ୍ଭମାନଙ୍କର ପୂର୍ବପୁରୁଷଗଣ ଗାଡ଼ି ବ୍ୟବହାର କରୁଥିଲେ ସତ୍ୟ, ମାତ୍ର ସେଗୁଡ଼ିକ ବଳଦଗାଡ଼ି ଓ ଘୋଡ଼ାଗାଡ଼ି । କଳ୍ପନାଦେବୀଙ୍କ ଅନୁଗ୍ରହରେ ସେଗୁଡ଼ିକୁ କବିମାନେ ଆକାଶରେ ଉଡ଼ାଇବାକୁ ସମର୍ଥ ହୋଇଥିଲେ । ଏବେ ଆମ୍ଭେମାନେ ଆଧୁନିକ ମଟର ଗାଡ଼ି ପ୍ରଭୃତି ଦେଖି ବୃଥା ଅଭିମାନରେ ସ୍ଫୀତ ହେଉଅଛୁଁ । ଭାରତୀୟ ଆର୍ଯ୍ୟମାନେ ଜାହାଜରେ ଚଢ଼ି ସମୁଦ୍ରଯାତ୍ରା କରୁଥିଲେ କି ନା ? ସମୁଦ୍ର ତୀରବାସୀମାନେ ଅବଶ୍ୟ ଜାହାଜଦ୍ୱାରା ନିକଟବର୍ତ୍ତୀ

ସ୍ଥାନମାନଙ୍କୁ ଯାଉଥିଲେ । ଟ୍ରାଫଲଗାର ଜଳଯୁଦ୍ଧର ବିବରଣ ଆମ୍ଭେମାନେ ପାଠ କରିଅଛୁଁ। ସ୍ପେନିସ୍ ଆର୍ମାଡାର ବିବରଣ ଇତିହାସରୁ ପାଠ କରିଅଛୁଁ । ସେ କାଳର ରଣତରୀକୁ ଆଧୁନିକ ଡ୍ରେଡ଼ନଟ୍, ସୁପାର ଡ୍ରେଡନଟ୍ ସହିତ ତୁଳନା କରିବା ଅଜ୍ଞତାର ପରିଚାୟକ ନୁହେଁ କି ?

ଜାହାଜ ସଂସ୍କୃତ ଶବ୍ଦ ନୁହେଁ । ନୌ, ତରଣୀ, ତରୀ, ତରଣ୍ଡୀ ପ୍ରଭୃତି ନୌକାବାଚକ ଶବ୍ଦ । ଏହାଛଡ଼ା ପୋତ ଓ ବହିତ୍ର ବୃହତ୍ ଜଳଯାନ । ଶେଷୋକ୍ତ ଶବ୍ଦ ଯୋଡ଼ିକ ବୈଦିକ ଗ୍ରନ୍ଥରେ ନାହିଁ ।

ବୈଦିକ ଗ୍ରନ୍ଥରେ ନାବ ଶବ୍ଦ ବହୁ ସ୍ଥାନରେ ବ୍ୟବହୃତ ହୋଇଅଛି ।

ନାବେନ ନଃ ପାରୟତଂ + + ଋ । ୨ । ୩୯ । ୪ ।

''ହେ ଅଶ୍ୱିଦ୍ୱୟ, ନୌକା ପରି ତୁମ୍ଭେ ଦୁହେଁ ଆମ୍ଭମାନଙ୍କୁ ପାର କର ।''

+ + ନାବ ମାପା ଦ୍ୟା ସୈଥ୍ ତତସ୍ମା

ପାରଇତାସ୍ମୀତି + + ଶ.ବ୍ରା. ୧ । ୭ । ୪ । ୪ ।

ଜଳପ୍ଳାବନରୁ ମନୁ ରକ୍ଷା ପାଇବା ନିମନ୍ତେ ନାବ ଆରୋହଣ କରିଥିଲେ, ତାହା ଶତପଥ ବ୍ରାହ୍ମଣରୁ ଉଦ୍ଧୃତ ଉପରୋକ୍ତ ଶ୍ଳୋକରୁ ଜଣାପଡ଼ିବ ।

ଛୋଟ ହେଉ ବଡ଼ ହେଉ, ବୈଦିକ ଯୁଗର ଜଳଯାନ କେଉଁ ଉପାୟରେ ଚାଳିତ ହେଉଥିଲା ? ପାଲ, ମାସ୍ତୁଲ, ଲଙ୍ଗର ବା କୌଣସି କଳର ଉଲ୍ଲେଖ ନାହିଁ । ନାବ କ୍ଷେପଣୀ ବା ଆହୁଲାଦ୍ୱାରା ଚାଳିତ ହୁଏ । ଆହୁଲାର ନାମ ଅରିତ୍ର । 'ଯୈଃ କାଷ୍ଠୈଃ ପାର୍ଶ୍ୱତୋବଦ୍ଧୈ ର୍ଜଳାଲୋଡନେ ସତି ନୌଃ ଶୀଘ୍ରଂ ଗଚ୍ଛତି ତାନି ଅରିତ୍ରାଣି' । ନାବର ଆୟତନ ଅନୁସାରେ ଅରିତ୍ରର ପ୍ରୟୋଜନ । ଶତାରିତ୍ର ନାବର ବର୍ଣ୍ଣନା ଋଗ୍‌ବେଦରେ ଦେଖାଯାଏ ।

ଅନାରମ୍ଭଣେ ତଦବୀରୟେଥା
ମନାସ୍ଥାନେ ଅଗ୍ରଭଣେ ସମୁଦ୍ରେ ।
ଯଦଶ୍ୱିନାଭହଥୁର୍ଭୁଜ୍ୟୁମସ୍ତଂ
ଶତାରିତ୍ରାଂ ନାବ ମାତସ୍ଥିବାଂସଂ ।
ଋ । ୧ । ୧୧୬ । ୫ ।

''ହେ ଅଶ୍ୱିଦ୍ୱୟ ! ତୁମ୍ଭେ ଦୁହେଁ ଅବଲମ୍ବନରହିତ, ଭୂପ୍ରଦେଶରହିତ, ଗ୍ରହଣୀୟ ବସ୍ତୁରହିତ, ସମୁଦ୍ରରେ ଏହି କର୍ମ କରିଥିଲ । ଶତ କ୍ଷେପଣୀଯୁକ୍ତ ନୌକାରେ ଭୁଜ୍ୟୁକୁ ସ୍ଥାପନ କରି ତାହାର ଗୃହକୁ ଆଣିଥିଲ ।''

ଏହା ହେଲା ବୈଦିକ ଯୁଗର ଅତି ପ୍ରକାଣ୍ଡ ଜଳଯାନର ବିବରଣୀ । ଅଶ୍ୱିଦ୍ୱୟ ଏହି ନୌକାର ମାଲିକ, ସୁତରାଂ ସମୁଦ୍ର, ଭୂପୃଷ୍ଠସ୍ଥ, କି ଆକାଶଗଙ୍ଗାବତ୍ ଆକାଶସ୍ଥ, ତାହା ବିବେଚନାର ବିଷୟ ।

ଦାରୁ ବା କାଷ୍ଠଦ୍ୱାରା ସମୁଦ୍ର ମଧ୍ୟ ପାର ହେବାର ଦେଖାଯାଏ ।

ଅଦ୍ୟୋ ଯଦାରୁ ପ୍ଲବତେ
ସିନ୍ଧୋଃ ପାରେ ଅପୁରୁଷଂ
ଦୋରଭସ୍ୱ ଦୂର୍ହଣୋ ତେନ ଗଚ୍ଛ
ପରସ୍ତରଂ ।
ଋ । ୧୦ । ୧୫୫ । ୩

''ଏହି ଏକଖଣ୍ଡ କାଷ୍ଠ ସମୁଦ୍ର ନିକଟରେ ଭାସୁଅଛି । ଏହାର ପୁରୁଷ କେହି ନାହିଁ । ହେ ବିରୂପାକୃତି ଅଲକ୍ଷ୍ମୀ । ଏହା ଉପରେ ଆରୋହଣପୂର୍ବକ ସମୁଦ୍ରର ଅପରପାରକୁ ଗମନ କର ।''

ବୈଦିକଗ୍ରନ୍ଥରେ ଏହା ଛଡ଼ା ଜଳଯାନସମ୍ବନ୍ଧୀୟ ନିମ୍ନୋକ୍ତ କେତେଗୋଟା ଶବ୍ଦ ଅଛି । ଯଥା– ମଣ୍ଡ–ଆହୁଲା, ସମ୍ପିନ–କର୍ଣ୍ଣଧାର, ନାବାଜ– ନୌକା ବାହାଣିଆ, ନାବ୍ୟ ।

ଉପରୋକ୍ତ ପ୍ରମାଣରୁ ପାଠକଗଣ ଅବଶ୍ୟ ହୃଦୟଙ୍ଗମ କରିପାରିବେ ଯେ, ବୈଦିକଯୁଗରେ ଆମ୍ଭ ଦେଶରେ କେବଳ ଛୋଟ ଓ ପ୍ରକାଣ୍ଡ ନୌକା ଥିଲା, ଆଧୁନିକ ଜାହାଜ ତୁଲ୍ୟ କୌଣସି ଜଳଯାନ ନ ଥିଲା ।

ରାମାୟଣରେ ବଡ଼ ଜଳଯାନର ଉଲ୍ଲେଖ ନାହିଁ । ରାମ ଲକ୍ଷ୍ମଣ ସୀତା ବନକୁ ଗଲାବେଳେ ନାବରେ ଗଙ୍ଗା ପାରି ହେଲେ । ଲଙ୍କା ଅଭିଯାନରେ ଜାହାଜ ବା ନୌକାର ଲୋଡ଼ା ହୋଇ ନ ଥିଲା । ରାମ ବନ୍ଧ ବାନ୍ଧି ବାନରସୈନ୍ୟକୁ ଚଳାଇ ନେଲେ ।

ମହାଭାରତରେ ନିମ୍ନୋକ୍ତ ଶ୍ଳୋକଟି ଦେଖି ଅନେକେ ଅନୁମାନ କରନ୍ତି ଯେ, ଭାରତବାସୀ ଷ୍ଟିମାର୍ ଚଳାଉଥିଲେ ।

ସର୍ବବାତସହାଂ ନାବଂ ଯନ୍ତ୍ରଯୁକ୍ତାଂ ପତାକିନୀଂ ।
ଶିବେ ଭାଗୀରଥୀତୀରେ ନରୈର୍ବିଶ୍ରମ୍ଭିଭିଃ କୃତାଂ ।
ମ.ଆ. ୧୪୯ । ୫ ।

ଜତୁଗୃହଦାହବେଳେ ପାଣ୍ଡବମାନେ ଗୁପ୍ତଭାବରେ ପଳାଇବେ ବୋଲି ବିଦୁର ଯେଉଁ ନାବ ଯୋଗାଇଥିଲେ, ତାହା ବୃହତ୍ ଜଳଯାନ ହେବା ସମ୍ଭବପର ନୁହେଁ । ବାୟୁସହନଶୀଳ, ଯନ୍ତ୍ରଯୁକ୍ତ, ପତାକାଯୁକ୍ତ ନାବ ବୋଇଲେ ଷ୍ଟିମାର ଅର୍ଥ କେଉଁଠାରୁ ଆସିଲା, ତାହା ଆମ୍ଭମାନଙ୍କର ବୋଧଗମ୍ୟ ନୁହେଁ । କ୍ଷେପଣୀ ଆହୁଲାକୁ ମଧ୍ୟ ଯନ୍ତ୍ର ବୋଲା ଯାଇପାରେ ।

ବଙ୍ଗଦେଶୀୟ କୌଣସି ପଣ୍ଡିତଙ୍କ ମତରେ ଜଳରେ ଲୁକ୍‌କାୟିତ ଜାହାଜ ଅର୍ଥାତ୍ ସବ୍‌ମେରିନ୍ ମଧ୍ୟ ଆମ୍ଭମାନଙ୍କର ଥିଲା । ମାତ୍ର ନିମ୍ନୋଦ୍ଧୃତ ଶ୍ଳୋକରୁ ଏହି ଅସମ୍ଭବ ଅର୍ଥ କାହୁଁ ଆଣିଲେ, ଏହା ତାହାଙ୍କୁ ହିଁ ଜଣା ।

ତତଃ ସାଗରମାସାଦ୍ୟ କୁକ୍ଷୌ ତସ୍ୟ ମହୋର୍ମିଣଃ ।
ସମୁଦ୍ରନାଭ୍ୟାଂ ଶାଲ୍ୱୋଽଭୂତ୍ ସୌଭମାସ୍ଥାୟ
ଶତ୍ରୁହନ୍ । ବ । ୨୦ । ୧୭ ।

ଯୁଧିଷ୍ଠିରଙ୍କଠାରେ କୃଷ୍ଣ ଶାଲ୍ୱବଧ ବୃତ୍ତାନ୍ତ ବର୍ଣ୍ଣନା କରିବାବେଳେ ସେ ସମୁଦ୍ରଗର୍ଭରେ ଥିଲା ବୋଲି କହୁଅଛନ୍ତି । ଏଥିରୁ ହିନ୍ଦୁମାନଙ୍କର ସବ୍‌ମେରିନ୍ ଥିବାର ଯେବେ ପ୍ରତିପନ୍ନ ହେଲା, ତାହାହେଲେ ଆମ୍ଭମାନଙ୍କର ସବୁ ଥିଲା ବୋଲିବା ଅଯୌକ୍ତିକ ନୁହେଁ ।

ଅଣ୍ଟାରେ ଯାହା ଗୁଞ୍ଜାଯାଇ ପାରେ, ତାହାର ନାମ ଅଣ୍ଟାଗୁଞ୍ଜା । ଅଣ୍ଟାଗୁଞ୍ଜା ଶବ୍ଦର ସୃଷ୍ଟିବେଳେ ନୋଟ୍ ହୋଇ ନ ଥିଲା । ବଡ଼ ଜୋର ଦଶ ପଚିଶ ଟଙ୍କାକୁ ଅଣ୍ଟାଗୁଞ୍ଜା ବୋଲା ଯାଇପାରେ । ଅଣ୍ଟାରେ ଗୁଞ୍ଜାଯାଇ ପାରିବା ଭଳି ନ ଦେଇ ଅଧିକ ଦେଲେ ବେଶି ଲାଞ୍ଛିତ ହେବାକୁ ପଡ଼ିବ ।

ଏଣୁ ଆର ଥରକୁ ଅସ୍ତ୍ରଶସ୍ତ୍ର କଥା ରହିଲା ।

॥ ୨ ॥

ଏହି ବିଂଶଶତାବ୍ଦୀରେ ପାଶ୍ଚାତ୍ୟ ସଭ୍ୟଜାତି ଯେଉଁ ଯୁଦ୍ଧାସ୍ତ୍ରମାନ ଲୋକକ୍ଷୟକାରୀ ମହାହବରେ ବ୍ୟବହାର କରୁଅଛନ୍ତି, ଆମ୍ଭମାନଙ୍କର ପୂର୍ବପୁରୁଷଗଣ ସହସ୍ର ସହସ୍ର ବର୍ଷ ପୂର୍ବରେ ତାଦୃଶ ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ କି ? ଆତ୍ମରକ୍ଷା ନିମନ୍ତେ ଗୋଧନରକ୍ଷା ନିମନ୍ତେ 'ଦାସମାନଙ୍କ' ବିପକ୍ଷରେ ଈଦୃଶ ଅଗ୍ନି ଉଦ୍ଗୀରଣକାରୀ ତୋପର ପ୍ରୟୋଜନ ହେଉଥିଲା କି ? 'ରାମରାବଣୟୋ ଯୁଦ୍ଧଂ ରାମରାବଣୟୋରିବ' । ଅ. ପୁ. ରାମ ରାବଣ ଯୁଦ୍ଧ ଅତୁଳନୀୟ । ରାମ ରାବଣ ଯୁଦ୍ଧରେ ବନ୍ଧୁକ ଓ ତୋପର ବ୍ୟବହାର ହୋଇଥିଲା କି ?

ବୃତ୍ରାସୁର ବଧରେ ଇନ୍ଦ୍ର ବଜ୍ର ବ୍ୟବହାର କରିଥିଲେ । ସେହି ବଜ୍ର ଆଧୁନିକ ଅଗ୍ନ୍ୟସ୍ତ୍ର ତୁଲ୍ୟ କି ? ପରଶୁରାମ ଏକା କୁଠାରଦ୍ୱାରା ତ୍ରିସପ୍ତବାର ପୃଥିବୀକୁ ନିଃକ୍ଷତ୍ରିୟା କରିଥିଲେ । ଆଧୁନିକ କୌଣସି ଅସ୍ତ୍ର ତାହା ସହିତ ତୁଳନୀୟ ହୋଇପାରିବ କି ? ଚଣ୍ଡୀଯୁଦ୍ଧରେ ଦେବୀ ଶୁମ୍ଭ ନିଶୁମ୍ଭ, ମହିଷାସୁର, ଚଣ୍ଡ ମୁଣ୍ଡ ପ୍ରଭୃତି ରାକ୍ଷସଙ୍କ ବଧ ନିମନ୍ତେ ଈଦୃଶ ବାଣ ବ୍ୟବହାର କରିଥିଲେ କି ? ରକ୍ତବୀଜବଂଶ ଧ୍ୱଂସ ନିମନ୍ତେ ସାର୍ପନେଲ ଗନ୍ ଚଳାଇଥିଲେ କି ? ଅର୍ଜୁନ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ ପ୍ରଭୃତି ମହାମହାବୀରମାନଙ୍କୁ ଯେଉଁ ବାଣରେ ନିପାତ କରିଥିଲେ, ତାହା ଆଧୁନିକ ବାଣ ତୁଲ୍ୟ କି ? ସମବେତ କୁରୁପାଣ୍ଡବ ସୈନ୍ୟମାନେ ସମ୍ମୁଖ ସମର ନିମନ୍ତେ ପ୍ରକାଣ୍ଡ ପ୍ରକାଣ୍ଡ ତୋପ ସଜାଇ ରଖିଥିଲେ କି ? ଏବଂ ନେତାମାନଙ୍କର ଆଦେଶ ମାତ୍ରେ ଶତ ଶତ କମାଣ ଏକାବେଳକେ ଅଗ୍ନି ଉଦ୍ଗୀରଣ କରି ପ୍ରତିପକ୍ଷ ସୈନିକମାନଙ୍କୁ ବିଧ୍ୱସ୍ତ କରିବାର ଆୟୋଜନ ହୋଇଥିଲା କି ? ଅହୋ! ଯେବେ ଆମ୍ଭମାନଙ୍କ ପୂର୍ବପୁରୁଷଗଣ ପ୍ରାଥମିକ ସଭ୍ୟତାରେ ଈଦୃଶ କୌଶଳ ଜାଣୁଥିଲେ, ଈଦୃଶ ଉଦ୍ଭାବନା ଶକ୍ତି ଲାଭ କରିଥିଲେ, ତେବେ ଆମ୍ଭ ଦେଶ ଧନ୍ୟ, ତେବେ ଆମ୍ଭ ଜାତି ଧନ୍ୟ । ବିଂଶଶତାବ୍ଦୀର ସଭ୍ୟଜାତି ବିଜ୍ଞାନବଳରେ ଯାହା କରିବାକୁ ସମର୍ଥ, ତାହା ଯେବେ ଆମ୍ଭ ପୂର୍ବପୁରୁଷମାନେ ସହସ୍ର ସହସ୍ର ବର୍ଷ ପୂର୍ବରେ କରିବାକୁ ସମର୍ଥ ଥିଲେ, ତେବେ ଆମ୍ଭ ଜାତିଠାରୁ ବଳି ଶ୍ଳାଘ୍ୟ କିଏ ? ପୁରାଣପାଠକମାନଙ୍କ ମଧ୍ୟରୁ ଅନେକେ ଏହି କଥାରେ ଅନୁକୂଳ ମତ ଦେବେ ସନ୍ଦେହ ନାହିଁ । ଆମ୍ଭେମାନେ ଏହି ମତପୋଷଣ କରି ପାରିଲେ ବାହା ବାହା ପାଇପାରନ୍ତୁ । ମାତ୍ର ଅପ୍ରିୟ ସତ୍ୟ କହି ଦୋଷଭାଗୀ ହେବାକୁ ଆରମ୍ଭରୁ କଲମ ଧରି ବସିଅଛୁଁ । ଏଣୁ କହୁଁ, ବୈଦିକ ଆର୍ଯ୍ୟଗଣ ଦାସମାନଙ୍କ ସହିତ ଯୁଦ୍ଧ କରିବାକୁ ଏପରି ଲୋକସଂହାରକାରୀ ଅସ୍ତ୍ର ଲୋଡ଼ି ନ ଥିଲେ । ଲଙ୍କା ଅଭିଯାନରେ ରାମ କିଷ୍କିନ୍ଧ୍ୟା ଗିରିଦୁର୍ଗରୁ ଶକଟବାହୀ ତୋପମାନ ନେଇ ନ ଥିଲେ । ପରାକ୍ରମଶାଳୀ ଜରାସନ୍ଧର ଅଭେଦ୍ୟ ଦୁର୍ଗ ଆକ୍ରମଣ ନିମନ୍ତେ କୃଷ୍ଣ ଇନ୍ଦ୍ରପ୍ରସ୍ଥଠାରୁ ପ୍ରକାଣ୍ଡ ପ୍ରକାଣ୍ଡ କମାଣ ଗିରିବ୍ରଜପୁରଠାକୁ ନେଇ ନ ଥିଲେ । କୁରୁପାଣ୍ଡବ ଯୁଦ୍ଧରେ ସମରାଗ୍ନି ପ୍ରଜ୍ୱଳିତ ହୋଇଥିଲା ସତ୍ୟ, ମାତ୍ର ତୋପ ଅଗ୍ନି ଜଳି ନ ଥିଲା । ଧୂଳିରାଶିରେ ଗଗନ ଆଚ୍ଛାଦିତ ହୋଇଥିଲା, ମାତ୍ର ଧୂମାଚ୍ଛନ୍ନ ହୋଇ ନ ଥିଲା । ଜୟଦ୍ରଥକୁ ପ୍ରତାରିତ କରିବା ନିମନ୍ତେ କୃଷ୍ଣ ଚକ୍ରାନ୍ତରାଳରେ ସୂର୍ଯ୍ୟଙ୍କ ରଖି ପାରିଥିବେ, ମାତ୍ର ଧୂମଦ୍ୱାରା ସୂର୍ଯ୍ୟାସ୍ତ ହେବାର ଭ୍ରାନ୍ତି କାହାରି ମନରେ ଜନ୍ମି ନ

ଥିବ । ବେଦ ଆର୍ଯ୍ୟଜାତିର ପ୍ରଥମ ଇତିହାସ । ତେତେବେଳେ ଆମ୍ଭମାନଙ୍କ ପୂର୍ବପୁରୁଷ କିପରି ସଭ୍ୟ ଥିଲେ, ତାହା ଦେଖାଇବାର ପ୍ରୟୋଜନ ନାହିଁ । କେବଳ ସେମାନେ କିପରି ଯୁଦ୍ଧାସ୍ତ୍ର ବ୍ୟବହାର କରୁଥିଲେ, ତାହା ସ୍ଥୂଳଭାବରେ ପ୍ରକାଶ କରିବା ଆବଶ୍ୟକ।

ଇନ୍ଦ୍ର ପ୍ରଧାନ ଦେବତା, ଇନ୍ଦ୍ର ପ୍ରଧାନ ବୀର, ଇନ୍ଦ୍ର ପ୍ରଧାନ ଯୋଦ୍ଧା— ତାହାଙ୍କର ଆୟୁଧବଜ୍ର ।

ବିଦ୍ୟୁତ ନେମିଃ ହେତିଃ ନମଃ ପବିଃ ମୃକଃ ବୃକଃ ବଧଃ ବଜ୍ରଃ ଅର୍କଃ କୁତ୍ସଃ କୁଳିଶଃ ତୁଜଃ ତିଗ୍ମ ମେନିଃ ସ୍ୱଧିତି ସାୟକଃ ପରଶୁରିତ୍ୟଷ୍ଟାଦଶ ବଜ୍ରନାମାନି । ୨୦ । ନିରୁକ୍ତେ ନୈଘଣ୍ଟୁକଂ କାଣ୍ଡ । 'ବଜ୍ରଃ କସ୍ମାତ୍ ବର୍ଜୟତୀତ ସତଃ । ବର୍ଜୟତି ବିଯୋଜୟତି ପ୍ରାଣୈଃ ପ୍ରାଣିନଃ' । ବଜ୍ରର ଆଉ ବ୍ୟୁତ୍ପତ୍ତି ଦେବାର ପ୍ରୟୋଜନ ନାହିଁ । ପବି କୁଳିଶ ବଜ୍ରର ନାମାନ୍ତର, ଦେଶଭାଷାରେ ଚଡ଼କ । ଇନ୍ଦ୍ର ମେଘର ଅଧିଷ୍ଠାତ୍ରୀ ଦେବତା, ତାଙ୍କର ଅସ୍ତ୍ର ଯେ ବଜ୍ର, ତାହା ବୋଲିବା ବାହୁଲ୍ୟ ମାତ୍ର । ଋଗ୍‌ବେଦରୁ ଗୋଟିଏ ଉଦାହରଣ ଦେଖାଯାଉ—

ଭିନ୍ନଦ୍ବିଙ୍ଗିଂ ଶରସା ବଜ୍ରମିଷ୍ଣାନ୍ତା—
ବିଷ୍ଟୁ ସହସା ନ ଓଜଃ
ବଧୀ ବୃତ୍ରଂ ବଜ୍ରେଣ ସଂଦସାନଃ
ସରନ୍ନୀପୋ ଜବସା ହତବୃଷ୍ଣୀଃ ।

''ଶତ୍ରୁମାନଙ୍କର ଅଭିଭାବକର ଇନ୍ଦ୍ର ତେଜଃ ପ୍ରକାଶପୂର୍ବକ ବଜ୍ର ପ୍ରେରଣ କରି ଜଳଦ୍ୱାରା ପର୍ବତସମୂହକୁ ବିଦୀର୍ଣ୍ଣ କରିଥିଲେ । ସେ ଦୃଷ୍ଟ ହୋଇ ବଜ୍ରଦ୍ୱାରା ବୃତ୍ରକୁ ବିନାଶ କରିଥିଲେ ଏବଂ ବୃତ୍ର ହତ ହେଲେ ଜଳ ଶୀଘ୍ର ଗମନ କରିବାକୁ ଲାଗିଲା ।''

ବଜ୍ରର ଶବ୍ଦ ଅଦ୍ୟାପି ଆମ୍ଭମାନଙ୍କ କର୍ଣ୍ଣକୁହରକୁ ସ୍ତବ୍ଧ କରୁଅଛି । ସେହି ବଜ୍ର ଅଦ୍ୟାପି ପର୍ବତଶିଖରକୁ ବିଦୀର୍ଣ୍ଣ କରୁଅଛି । ସେହି ବଜ୍ର ଅଦ୍ୟାପି ଲୋକ ମନରେ ଭୀତିର ସଞ୍ଚାର କରୁଅଛି ଏବଂ ଆମ୍ଭମାନଙ୍କର ହୃତ୍‌କମ୍ପ ଉପସ୍ଥିତ କରୁଅଛି । ମାତ୍ର ବଜ୍ରଧାରୀ ଇନ୍ଦ୍ରକୁ ଆମ୍ଭେମାନେ ଚିହ୍ନି ପାରୁ ନାହୁଁ ଏବଂ ଭ୍ରମରେ ବଜ୍ରକୁ ତୋପ ବୋଲୁଅଛୁଁ ।

କୃତ୍ୱାମହା ଅନୁଷ୍ୱଧଂ ଭୀମ ଆବାବୃଧେ ଶତ
ଶ୍ରିୟ ରଷ୍ୱ ଉପାକର୍ଯୋନି ଶପ୍ରୀହରିବାନ୍ଦଧେ
ହସ୍ତୟୋର୍ବଜ୍ରମାୟାସଂ ।

ଋ । ୧ । ୮୧ । ୪

''ଇନ୍ଦ୍ର ଲୌହମୟ ବଜ୍ର ହସ୍ତରେ ଧାରଣ କଲେ ।''

'ବଜ୍ରମାୟସଂ' ଲୌହମୟ ବ୍ରଜ ଏହି କଥାଟି ଦେଖି ଅନେକେ ମନେ କରନ୍ତି ଯେ, ଇନ୍ଦ୍ର ଜଣେ ଆର୍ଯ୍ୟ ବୀର ପୁରୁଷ ଏବଂ ତାଙ୍କ ହସ୍ତରେ ଥିବା ଲୌହମୟ ବଜ୍ର ଅର୍ଥ ଗୋଟିଏ ଛୋଟ ତୋପ । ଏଥିରୁ ବଳି ଭ୍ରାନ୍ତିପୂର୍ଣ୍ଣ ବିଶ୍ୱାସ ଆଉ କ'ଣ ହୋଇପାରେ ? ଅସ୍ତ୍ର ଲୁହାରେ ନିର୍ମିତ ହୁଏ । ବଜ୍ର ଯେବେ ଅସ୍ତ୍ର ହେଲା, ତାକୁ ଲୌହମୟ ବୋଲିବା ଅସଙ୍ଗତ କ'ଣ ? ସିନ୍ଧିଆଳମାନେ ଚଡ଼କ ଲୁହାଦ୍ୱାରା ସିନ୍ଧି କାଟନ୍ତି ବୋଲି ଲୋକଙ୍କର ଧାରଣା । ମେଘରୁ ଖଣ୍ଡେ ଦୀପ୍ତିଶାଳୀ ଉତ୍ତପ୍ତ ଲୌହ ଖସି ପଡ଼ି ବୃକ୍ଷକୁ ଛିନ୍ନଭିନ୍ନ କରେ, ମନୁଷ୍ୟ ଓ ପଶୁର ପ୍ରାଣ ସଂହାର କରେ ବୋଲି, ଲୋକଙ୍କର ଧାରଣା ଅଛି । ସୁତରାଂ ବଜ୍ରକୁ ଲୌହମୟ ବୋଲା ଯାଇଅଛି । ବଜ୍ରମାୟସଂ ଅର୍ଥ ତୋପ ନୁହେଁ । ଶତଘ୍ନୀ ତୋପ କି ? କେଉଁ ବ୍ୟୁତ୍ପତ୍ତିରୁ ତୋପ ହୋଇପାରେ ? ଶତଘ୍ନୀ ଅର୍ଥ ଯାହା ଶତକୁ ବଧ କରେ । ଏହାର ଅର୍ଥ ବଜ୍ର ନୋହିଲା କାହିଁକି ? ଭୀମର ଗଦା ଯାହା କରିପାରେ, ଆଧୁନିକ ତୋପ ତ ତାହା କରି ନ ପାରେ । ତେବେ ଆମ୍ଭେମାନେ କହିବୁଁ, ଭୀମର ଗଦାଟି ଶତଘ୍ନୀ । ହନୁମାନର ଚାପୁଡ଼ାଟି ଶତଘ୍ନୀ । ପୁଣି ଶହେ ଦୁଇଶ ବର୍ଷ ପରେ 'ପାର୍ବତୀ' ପାଠକଗଣ ମନେ କରିବେ ଯେ, ପୁରୀରେ ମଦନ ବୋଲି ଜଣେ ରାଜା ଥିଲେ, ତାଙ୍କର ଶତଘ୍ନୀ ବା ତୋପର ନାମ 'ଦ୍ୱିଜସିମନ୍ତିନୀ' ।

ବୈଦିକ ଗ୍ରନ୍ଥରେ ଅଶି, ସାପ, ସୃକ, ସକ୍ତି, ଇଷ୍ଟି ପ୍ରଭୃତି ଅମୁକ୍ତାସ୍ତ୍ରମାନଙ୍କର ନାମ ଦେଖାଯାଏ ।

ବୈଦିକ ଯୁଗର ପ୍ରଧାନ ଆୟୁଧ ଧନୁ । ଧନୁହିଁ ପ୍ରଧାନତଃ ଯୁଦ୍ଧରେ ବ୍ୟବହୃତ ହେଉଥିଲା ।

ବୈଦିକ ଧନୁ ଯେ ଆଧୁନିକ ଧନୁ ଅପେକ୍ଷା ଅତି ବଡ଼ ବା ଭିନ୍ନ ଥିଲା, ତାହା ବୋଧ ହୁଏ ନାହିଁ । ଧନୁର ଗୁଣର ନାମ ଜ୍ୟା । ଏହି ଜ୍ୟା ବୈଦିକ ଯୁଗରେ ଗୋଚର୍ମରେ ନିର୍ମିତ ହେଉଥିଲା । ପୁରାଣ ଯୁଗର ଗୁଣ ତନ୍ତଦ୍ୱାରା କିମ୍ବା ଶଣସୂତ୍ରଦ୍ୱାରା ନିର୍ମିତ ହେଉଥିଲା, ଆଧୁନିକ ଧନୁର ଗୁଣ ପ୍ରାୟଶଃ ବାଉଁଶ କତୁରୀରେ ପ୍ରସ୍ତୁତ ହୁଏ ।

ପ୍ରୟୋଜନ ହେଲେ ଧନୁରେ ଜ୍ୟାରୋପ କରାଯାଏ । ଆଜି କାଲି ଧନୁ ବ୍ୟବହାର କରିବା ଲୋକେ ତାହାହିଁ କରନ୍ତି ।

କିରାତରୂପୀ ରୁଦ୍ରଙ୍କୁ ଧନୁର୍ଦ୍ଧର ରୂପରେ ବାଜସନେୟି ସଂହିତାରେ ଯେଉଁ ସ୍ତବ କରାଯାଇଅଛି, ତାହା ପାଠ କଲେ ଧନୁ ବ୍ୟବହାରର ସମସ୍ତ ପ୍ରକ୍ରିୟା ଜଣାପଡ଼ିବ । ନମ ଉଷ୍ଣୀଷିଣେ

ଗିରଚରାୟ କୁଲୁଞ୍ଚାନାଂ ପତୟେ ନମୋନମ ଇଷମଦ୍ଭ୍ୟୋ ଧନ୍ୱାୟିଭ୍ୟଶ୍ଚବୋ ନମୋନମ ଆତନ୍ୱାନେଭ୍ୟଃ ପ୍ରତିଦଧାନେଭ୍ୟଶ୍ଚ ବୋ ନମୋନମ, ଆୟଚ୍ଛଦ୍ଭ୍ୟୋଽସ୍ୟ ଦ୍ଭ୍ୟଶ୍ଚବୋ ନମଃ । ବା. ସ. ୧୬ । ୨୨

ଉଷ୍ଣୀଷଧାରୀ ଗିରିଚର ଏବଂ ଦସ୍ୟୁପାଳକ ରୁଦ୍ରଙ୍କୁ ନମସ୍କାର । ଇଷହସ୍ତ ଧନୁର୍ଦ୍ଧାରୀ ରୁଦ୍ରଙ୍କୁ ନମସ୍କାର। ଅଧିଜ୍ୟଧନ୍ୱା ରୁଦ୍ରଙ୍କୁ ନମସ୍କାର । ବାଣ ସନ୍ଧାନକାରୀ ରୁଦ୍ରଙ୍କୁ ନମସ୍କାର । ଧନୁ ଆକର୍ଷଣକାରୀ ରୁଦ୍ରଙ୍କୁ ନମସ୍କାର । ବାଣନିକ୍ଷେପକାରୀ ରୁଦ୍ରଙ୍କୁ ନମସ୍କାର ।

ଶିକାର କରିବାକୁ ବହିର୍ଗତ ଧନୁର୍ବାଣହସ୍ତ ଜଣେ ଆଧୁନିକ ଶବରକୁ ବା ଭୂୟାଁକୁ ଆମ୍ଭେମାନେ ଉପରୋକ୍ତ ରୂପରେ ଦେଖିବା ନାହିଁକି ?

ଶରକୁ କର୍ଣ୍ଣ ପର୍ଯ୍ୟନ୍ତ ଟାଣିବା ଆବଶ୍ୟକ— ବୈଦିକ ଆର୍ଯ୍ୟମାନେ ମଧ କର୍ଣ୍ଣ ପର୍ଯ୍ୟନ୍ତ ଗୁଣକୁ ଟାଣି ବାଣ ନିକ୍ଷେପ କରୁଥିଲେ । ଏଣୁ ବାଣର ନାମ କର୍ଣ୍ଣଯୋନି ।

ଜ୍ୟା, ଜ୍ୟାକା, ଗୋଧା, ପିଙ୍ଗା ଗୁଣର ନାମ । ଧନୁହୁଳକୁ ଆର୍ତ୍ତନା ବୋଲାଯାଏ । ନିଷଙ୍ଗଧି ବାଣବନ୍ତ ତ ତୂଣୀରର ନାମ । ସାୟକ, ପରୁଷ, ବାଣ, ବୃନ୍ଦ, ଶାରୁ, ଶାର୍ଯ୍ୟ, ଶାରି ଶରର ନାମ । ଆର୍ଯ୍ୟମାନେ ସମ୍ଭବତଃ ସମୟ ସମୟରେ ବିଷଯୁକ୍ତ ବାଣ ବ୍ୟବହାର କରୁଥିଲେ, ଏଣୁ ବିଷଯୁକ୍ତ ବାଣର ନାମ ଆଳାକ୍ତା ଓ ଦିଗ୍ଧା । ଶରର ଫଳ ଧାତବ କିମ୍ବା ଶୃଙ୍ଗନିର୍ମିତ, ତେଣୁ ବାଣକୁ କ୍ରମାନ୍ୱୟରେ ଅୟୋମୁଖ ଓ ରୁରୁଶୀର୍ଷ ବୋଲାଯାଏ ।

ପଞ୍ଚପ୍ରାଦେଶା ହସ୍ମତ୍ୱେବ
ପୁରେଷୁର୍ଭବତି । ଶ. ବ୍ରା. ୩ । ୫୨ । ୪

ବାଣ ପଞ୍ଚ ପ୍ରାଦେଶ ବା ପାଞ୍ଚ ବିଘାତ ଲମ୍ବ । ଆଧୁନିକ ବାଣ ଚାରି ବିଘାତ।

ଧନୁ ବ୍ୟବହାରକମାନେ ଧନୁର ଗୁଣ ଓହ୍ଲାଇ ରଖନ୍ତି । କାରଣ ତାହା ନ କଲେ ଧନୁର ବଳ ଭାଙ୍ଗିଯାଏ । ଅଧିଜ୍ୟ ଧନୁ ହୁଳରେ ଭାର ଦେଇ ଦଣ୍ଡାୟମାନ ହେବା ବଡ଼ ବିପଜ୍ଜନକ, ଏ ଯୁଗର ଧନୁର୍ଦ୍ଧର କେବେ କେବେ ବିପଦରେ ପଡ଼ିଅଛନ୍ତି । ପୂର୍ବ କାଳର ଲୋକମାନେ ମଧ ତଦ୍ରୂପ ବିପଦ୍‌ଗ୍ରସ୍ତ ହୋଇଥିବାର ଉଲ୍ଲେଖ ଆମ୍ଭେମାନେ ଦେଖିବାକୁ ପାଉଁ । ''ସ ତିସୃଧନ୍ୱମାଦାୟାପ୍ରଚକ୍ରାମି ସ ଧନୁ ରାର୍ତ୍ନ୍ୟା ଶିର ଉପସ୍ତଭ୍ୟ ତସ୍ଥୌ ତଂ ଦେବା ଅନଭିଧୃଷ୍ଣବନ୍ତଃ ସମନ୍ତଂ ପରି ଏୟ ବିଶନ୍ତି ।''

ଶ.ବ୍ରା. ୧୪ । ୧ । ୧।୭

ବିଷ୍ଣୁ ଧନୁହୁଳରେ ମୁଣ୍ଡ ରଖି ଦଣ୍ଡାୟମାନ ଥିଲେ । ଦେବତାମାନେ ଗୁଣ କାଟି ଦେବାରୁ ଧନୁ ବିଷ୍ଣୁଙ୍କ ଶିରରେ ପ୍ରବେଶ କଲା ।

ଉପରୋକ୍ତ କେତେଗୋଟି ପ୍ରମାଣରୁ ପାଠକଗଣ ଅବଶ୍ୟ ହୃଦୟଙ୍ଗମ କରି ପାରିବେ ଯେ, ଏ ଯୁଗର ଧନୁଶର ଓ ବୈଦିକ ଯୁଗର ଧନୁ ଶର ଓ ବ୍ୟବହାରରେ କୌଣସି ପ୍ରଭେଦ ନାହିଁ ।

ୟୁରୋପୀୟ ଯୁଦ୍ଧରେ ପ୍ରଧାନ ସେନାପତି ଯୁଦ୍ଧକ୍ଷେତ୍ରର କିଛି ଦୂରରେ ନିଜର ତମ୍ବୁରେ ମ୍ୟାପ୍ ଖୋଲି ବସିଅଛନ୍ତି, ସୈନ୍ୟଚାଳନାର ଚିନ୍ତା କରୁଅଛନ୍ତି । ଯୁଦ୍ଧକ୍ଷେତ୍ରରୁ ତାଙ୍କଠାକୁ ଟେଲିଗ୍ରାଫ୍‌ରେ, ଟେଲିଫୋନ୍‌ରେ, ମଟର ସାଇକେଲ୍‌ଦ୍ୱାରା ବାଇସିକଲଦ୍ୱାରା, ଅଶ୍ୱାରୋହୀଦ୍ୱାରା ସମ୍ବାଦ ଆସୁଅଛି । କର୍ଣ୍ଣେଲପ୍ରମୁଖ ସୈନାଧକ୍ଷଗଣ ପ୍ରକୃତ ସୈନ୍ୟଚାଳନା କରୁଅଛନ୍ତି । ଧାଡ଼ି ଧାଡ଼ି ତୋପ ମେକସିମ୍ ଗନ୍ ସଜ୍ଜିତ ହୋଇ ରହିଅଛି । ସଙ୍ଗିନଯୁକ୍ତ ବନ୍ଧୁକଧାରୀ ପଦାତିକଗଣ ଯୁଦ୍ଧରେ ବ୍ୟାପୃତ ଅଛନ୍ତି । ପ୍ରଧାନ ସେନାପତି ବନ୍ଧୁକ ବା ତରବାରୀ ନେଇ ଯୁଦ୍ଧ କରୁ ନାହାନ୍ତି । ତାହାଙ୍କର ଇଙ୍ଗିତ ମାତ୍ରେ ସହସ୍ର ସହସ୍ର ତୋପ ଏକାବେଳକେ ଗୋଳାବର୍ଷଣ କରୁଅଛନ୍ତି । ଆଦେଶ ମାତ୍ରେ ଶତ ଶତ ଯୋଦ୍ଧା ପତଙ୍ଗବତ୍ ଅଗ୍ନି ପ୍ରବେଶ କରୁଅଛନ୍ତି । ହାଉଇଜାର ଗନ୍, ମଟାର ଗନ୍ ପ୍ରଭୃତି ଭୀଷଣ ଗର୍ଜନ କରି ଅସଂଖ୍ୟ ଅଟାଳିକା ଏବଂ ମହାରଣ୍ୟାନୀକୁ ବିଧ୍ୱସ୍ତ ଓ ଚୂର୍ଣ୍ଣୀଭୂତ କରୁଅଛନ୍ତି । ଏହି କାଣ୍ଡ ଦୁଇ ବର୍ଷରୁ ଅଧିକକାଳ ଲାଗିଅଛି । ପାଠକଗଣ ମହାଭାରତ ଯୁଦ୍ଧ ଦେଖିବାକୁ ଆସନ୍ତୁ ।

ପାଣ୍ଡବମାନଙ୍କର ଅଜ୍ଞାତବାସ ଉତ୍ତାରୁ କୃଷ୍ଣପ୍ରମୁଖ ମନ୍ତ୍ରଣାକୁଶଳୀ ବ୍ୟକ୍ତିଙ୍କଦ୍ୱାରା ସନ୍ଧି ସ୍ଥାପନ ହୋଇପାରିଲା ନାହିଁ; ଏଣୁ ଯୁଦ୍ଧର ଆୟୋଜନ ଲାଗିଲା । ଉଭୟ ପକ୍ଷ ଶିବିର ସ୍ଥାପନ କଲେ । ପାଠକ ମହାଭାରତ ଉଦ୍ୟୋଗପର୍ବ ଶେଷ ଦୁଇ ଅଧ୍ୟାୟ ପାଠ କରନ୍ତୁ, ଦେଖିପାରିବେ, ଆଧୁନିକ ଯୁଦ୍ଧ ଶିବିର ଏବଂ କୁରୁକ୍ଷେତ୍ର ଯୁଦ୍ଧ ଶିବିର ମଧରେ ପ୍ରଭେଦ କ'ଣ ।

କୁରୁକ୍ଷେତ୍ରରେ ଶିବିରସ୍ଥାପନ ହେଲା । ପ୍ରତ୍ୟୁଷରୁ ପାଣ୍ଡବ ସେନାପତି ଅର୍ଜୁନ ଏବଂ କୌରବ ସେନାପତି ଭୀଷ୍ମ ବ୍ୟୂହରଚନାରେ ବ୍ୟସ୍ତ । ଉଭୟେ ଆପଣା ଆପଣା ରଥୀ, ପଦାତି, ଅଶ୍ୱାରୋହୀ ଓ ଗଜାରୋହୀ ଯୋଦ୍ଧାମାନଙ୍କର ସ୍ଥାନ ନିର୍ଦ୍ଦେଶ କରି ଆପଣା ଆପଣା ରଥରେ ଆରୋହଣ କରି ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହେଲେ । ରଣଭେରୀ ଓ ଶୁଭ୍ରଶଙ୍ଖ

ବାଜିବ ଏବଂ ବାଣ ପ୍ରୟୋଗ ହେବ । ଭୀଷ୍ମଙ୍କର ଆଦେଶ ମାତ୍ରେ ଶତ ଶତ ତୋପ ଏକାବେଳକେ ବଜ୍ରନିର୍ଘୋଷବତ୍ ଶବ୍ଦ କରି ପାଣ୍ଡବବାହିନୀକୁ ଭୀତ ଓ ତ୍ରସ୍ତ କରିବ କି ? ଅର୍ଜୁନଙ୍କ ଇଙ୍ଗିତରେ ଅଜସ୍ର ସାର୍ପନେଲ୍ ବୃଷ୍ଟି ହେବ କି ? ଦେଖ, କୁରୁସୈନ୍ୟଙ୍କୁ ଉତ୍ସାହିତ କରିବା ନିମନ୍ତେ କୁରୁବୃଦ୍ଧ ଭୀଷ୍ମ ଶଙ୍ଖନାଦ କଲେ; ଏହି ଶଙ୍ଖନାଦ ଶ୍ରବଣ ମାତ୍ରେ ଅସଂଖ୍ୟ ଶଙ୍ଖ ଓ ଭେରୀର ତୁମୁଳ ଶବ୍ଦ ଉତ୍‌ଥିତ ହେଲା । କୁରୁ ସୈନ୍ୟର ଏହି ତୁମୁଳ ଶଙ୍ଖନାଦ ଅର୍ଜୁନଙ୍କୁ ପ୍ରୋତ୍ସାହିତ କରୁ ନାହିଁ କି ? ଦେଖ, ଶ୍ୱେତ ହୟଯୁକ୍ତ ରଥରେ କୃଷ୍ଣ ଓ ଅର୍ଜୁନ ଶଙ୍ଖନାଦ କରି କରି ସ୍ୱସୈନ୍ୟ ମଧ୍ୟରୁ ଆଗକୁ ବହିର୍ଗତ ହେଲେ । ସମ୍ଭବତଃ ଅର୍ଜୁନ ପ୍ରଥମରୁ ଅସ୍ତ୍ରପ୍ରୟୋଗ କରିବେ । ଆହା, ରଣସଙ୍କେତ କାହିଁ ? ତୋପଧ୍ୱନି କାହିଁ ? ବାଣପ୍ରୟୋଗ କାହିଁ ?

'ବିସୃଜ୍ୟ ସଶରଂ ଚାପଂ ଶୋକସଂବିଗ୍ନମାନସଃ'
ଅର୍ଜୁନ କୃଷ୍ଣଙ୍କୁ କହିଲେ,

'ବେପଥୁଶ୍ଚ ଶରୀରେ ମେ ରୋମହର୍ଷଶ୍ଚ ଜାୟତେ ।
ଗାଣ୍ଡୀବଂ ସଂସ୍ରତେ ହସ୍ତାତ୍ ତ୍ୱକ୍ ଚୈବ ପରିଦହ୍ୟତେ ।

ଅର୍ଜୁନ ତୁମ୍ଭର ଏ କି କଥା ? ଯୁଦ୍ଧମନ୍ତ୍ରଣାବେଳେ ଯୁଧିଷ୍ଠିରଙ୍କୁ ଏତେ ଆଶା ଭରସା ଦେଇ ଠିକ୍ ଯୁଦ୍ଧବେଳକୁ ପଶ୍ଚାତ୍‌ପଦ । ଯୁଦ୍ଧମନ୍ତ୍ରଣାବେଳେ ତୁମ୍ଭେ ପରା କହିଥିଲ—

ଯଦ୍ୟୁଗାନ୍ତେ ପଶୁପତିଃ ସର୍ବ ଭୂତାନି ସଂହରନ୍ ।
ପ୍ରଯୁତକ୍ତେ ପୁରୁଷବ୍ୟାଘ୍ର ତଦିଦଂମୟି ବର୍ତ୍ତିତେ ।
ଭା. ୫ । ୧୯୪ । ୧୩

ଅର୍ଜୁନଙ୍କର ଏହି ଉକ୍ତିଟି ଶୁଣି ଆମ୍ଭେମାନେ ମାନ କରିଥିଲୁଁ, ତାଙ୍କଠାରେ ଗୋଟିଏ high velocity regulation rifle ଥିବ । କିନ୍ତୁ ତାହା କାହିଁ ? ରଥ କେବଳ ଧନୁଶର ଦ୍ୱାରା ପୂର୍ଣ୍ଣ । ବନ୍ଧୁକ ନାହିଁ, ରିଭଲଭର ନାହିଁ । ଅର୍ଜୁନ ପାଶୁପତ ଶରଦ୍ୱାରା ସମସ୍ତଙ୍କୁ ଜୟ କରିବାର ଆଶା କରିଅଛନ୍ତି । ଏହା ଅର୍ଜୁନଙ୍କର ଅମୋଘ ସାୟକ । ପାଶୁପତ ଅର୍ଥାତ୍ ପଶୁପତି ସମ୍ବନ୍ଧୀୟ । ଅର୍ଜୁନ ଏହି ଶର କିରାତରୂପୀ ଶିବଙ୍କଠାରୁ ପାଇଥିଲେ । ଏହା ବନ୍ଧୁକ ନୁହେଁ, କି ରାଇଫଲ ନୁହେଁ । ମାତ୍ର ଏହି ଶରପ୍ରୟୋଗ ଦ୍ୱାରା ଅର୍ଜୁନ କର୍ଣ୍ଣ ପ୍ରଭୃତିଙ୍କୁ ନିଧନ କଲେ । ଭୀଷ୍ମଙ୍କର ନୀଳବାଣ ଓ ଭୁଜବାଣ ମଧ୍ୟ ଶର; ବନ୍ଧୁକ ବା ତୋପ ନୁହେଁ । ବ୍ରହ୍ମାସ୍ତ୍ର ବୋଲ, ଅଗ୍ନ୍ୟାସ୍ତ୍ର ବୋଲ, ସବୁ ଶର । କିନ୍ତୁ ତୁମ୍ଭେମାନେ ବିଶ୍ୱାସ କର ବା ନ କର, ଏହି ବାଣର କ୍ଷମତା ୫୫ କେଲିବର ତୋପଠାରୁ ମଧ୍ୟ ଅଧିକ । ମହାଭାରତ ଯୁଦ୍ଧ ଶେଷ ହେଲା, ଅସଂଖ୍ୟ ସୈନ୍ୟ ମଲେ, ମହା ମହା ବୀରମାନେ ନିପାତ ହେଲେ । କାହିଁରେ ? ଧନୁଶରରେ, ଗଦାରେ, କୁନ୍ତରେ,ଖଡ୍ଗରେ । ତୋପ ବା ବନ୍ଧୁକର ଶବ୍ଦ ଶୁଣିଲ କି ? ନାହିଁ ତ । ତେବେ ଯେଉଁମାନେ ଆର୍ଯ୍ୟମାନଙ୍କର ତୋପ ବନ୍ଧୁକ ଅଛି ବୋଲି କହନ୍ତି, ସେମାନେ ମହାଭ୍ରମରେ ପଡ଼ି ନାହାନ୍ତି କି ?

କୁରୁପାଣ୍ଡବ ରାଜପୁତ୍ରମାନଙ୍କର ଅସ୍ତ୍ରଶସ୍ତ୍ର ଶିକ୍ଷା ଉତ୍ତାରୁ କୁରୁ ରାଜଧାନୀରେ ଗୋଟିଏ କୃତ୍ରିମ ଯୁଦ୍ଧର ଆୟୋଜନ ହେଲା । ଏହା ସାମାନ୍ୟ ନୁହେଁ । ଅବଶ୍ୟ ଅନେକ ପାଠକ କଲିକତା ନଗରୀରେ କୃତ୍ରିମ ଯୁଦ୍ଧ ଦେଖିଥିବେ କିମ୍ବା ବଡ଼ଦିନର କବାଏତ ଦେଖିଥିବେ । ଏଥିରେ ତୋପ ବନ୍ଧୁକ ଥାଏ ତ ? କୁରୁ ରାଜଧାନୀର କୃତ୍ରିମ ଯୁଦ୍ଧବୃତ୍ତାନ୍ତ ମହାଭାରତ ଆଦିପର୍ବ ଫିଟାଇ ଦେଖନ୍ତୁ । ବନ୍ଧୁକ ତୋପ ଅଛି କି ? ଯେବେ ଦ୍ରୋଣଗୁରୁ ତୋପ ବନ୍ଧୁକ ମାରିବାର ଅଭ୍ୟାସ କରାଇଥାନ୍ତେ, ତେବେ ଗଦାଯୁଦ୍ଧ, ଖଣ୍ଡାଯୁଦ୍ଧ ପରି ତୋପଯୁଦ୍ଧ ଓ ବନ୍ଧୁକ ଯୁଦ୍ଧ ତ ହୋଇଥାନ୍ତା ? ଆଧୁନିକ କୃତ୍ରିମ ଯୁଦ୍ଧକୁ କୌଣସି ପ୍ରତିଦ୍ୱନ୍ଦ୍ୱୀ ସୈନିକ ଗଲେ ଗୋଟିଏ ବନ୍ଧୁକ, ଗୋଟିଏ ରିଭଲଭର, ଗୋଟିଏ ଦୂରବୀକ୍ଷଣ ଏବଂ ଏକ ବୋତଲ ପାଣି ନେଇ ରଙ୍ଗମଞ୍ଚକୁ ପ୍ରବେଶ କରିବେ । କୁରୁ ରାଜଧାନୀ ରଙ୍ଗମଞ୍ଚକୁ ନବୀନ ଯୁବକମାନେ କେଉଁ କେଉଁ ବେଶରେ ପ୍ରବେଶ କଲେ, ପାଠକଗଣ ଦେଖନ୍ତୁ । ସ୍ଥାନ ସଂକୀର୍ଣ୍ଣ ଥିବାରୁ କେବଳ ଉଦୟମାନ ଯୁବା ଯୋଦ୍ଧା ଅର୍ଜୁନ ଓ କର୍ଣ୍ଣଙ୍କୁ ଦେଖି ବିରତ ହେଲେ ଭଲ ହେବ । ଅର୍ଜୁନଙ୍କର ପ୍ରବେଶ—

ଆଚାର୍ଯ୍ୟବଚନେନାଥ
କୃତସ୍ୱସ୍ତ୍ୟୟନୋଯୁବା ।
ବଦ୍ଧଗୋଧାଙ୍ଗୁଳିତ୍ରାଣଃ
ପୂର୍ଣ୍ଣ ତୂଣଃ ସକାର୍ମୂକଃ ।
କାଞ୍ଚନ କବଚଂ ବିଭ୍ରତ୍
ପ୍ରତ୍ୟଦୃଶ୍ୟତ ଫାଲ୍‌ଗୁନିଃ ।
ସାର୍କ ସେନ୍ଦ୍ରାୟୁଧ ତଡ଼ିତ୍
ସସନ୍ଧ୍ୟ ଇବ ତୋୟଦଃ ।
ଭା. ୧ । ୧୩୫ ।

କର୍ଣ୍ଣଙ୍କର ପ୍ରବେଶ—

ବିବେଶ ରଙ୍ଗ ବିସ୍ତୀର୍ଣ୍ଣଂ
କର୍ଣ୍ଣଃ ପରପୁରଞ୍ଜୟଃ ।

ସହଜଂ କବଚଂ ବିଭ୍ରତ୍
କୁଣ୍ଡଳୋଦ୍ୟୁତିତାନନଃ ।
ସଧନୁର୍ବଦ୍ଧନିସ୍ତ୍ରିଂଶଃ
ପାଦଚାରୀବ ପର୍ବତଃ ।
ମ. ୧ । ୧୩୬ ।

ଅର୍ଜୁନ ଯାହା ଘେନି ରଙ୍ଗସ୍ଥଳୀକୁ ପ୍ରବେଶ କଲେ, ଦେଖିଲେ ତ ? ଏଥିରେ ପୁଣି ଅର୍ଜୁନ ଯେ ଭୋଜବାଜ ଦେଖାଇଲେ, ତାହା ବର୍ଣ୍ଣନାତୀତ । ସେହି ଶର ଗୋଟି କେତେ ଧରି 'ଆଗ୍ନେୟନ ସୃଜତ୍ ରହ୍ନିଂ' 'ବାରୁଣେନ ସୃଜତ୍ପୟଃ' 'ପାର୍ବତେନ ଭବଦ୍ଗିରୀନ୍' ଇତ୍ୟାଦି, ଇତ୍ୟାଦି ।

ଅର୍ଜୁନ ଜଳବୃଷ୍ଟି, ଅଗ୍ନିବୃଷ୍ଟି ଓ ପର୍ବତ ସୃଷ୍ଟି କରିଥିଲେ । ରଙ୍ଗସ୍ଥଳୀସ୍ଥ ଦର୍ଶକମାନେ ଭୀତ ଓ ତ୍ରସ୍ତ ହୋଇ ପ୍ରାଣରକ୍ଷା ନିମନ୍ତେ ହାହାକାର କରିଥାନ୍ତେ । ମାତ୍ର ଏହି ଜଳବୃଷ୍ଟି, ଅଗ୍ନିବୃଷ୍ଟି ଓ ପର୍ବତ ସୃଷ୍ଟି କାବ୍ୟଲେଖକଙ୍କର ଲେଖନ ମୁନରେ ହେବାରୁ କେହି ତ୍ରାହି ତ୍ରାହି ଡାକି ନ ଥିଲେ । ଏଣୁ ଭୟ ନାହିଁ, ଭୟ ନାହିଁ ।

ରାବଣ— ଏହାର ଦଶଗୋଟା ମୁଣ୍ଡ ଓ କୋଡ଼ିଏ ଗୋଟା ହସ୍ତ । ଗୋଟାଏ ମୁଣ୍ଡବିଶିଷ୍ଟ ପ୍ରାଣୀକୁ ବା ଶରରେ ବଧ କରାଯାଇପାରେ, ମାତ୍ର ଦଶଶିର ବିଂଶବାହୁବିଶିଷ୍ଟ ପ୍ରାଣୀ କି ଗୋଟାଏ ଥରରେ ବିନିପାତ ହେବ ? ରାମ ଅବଶ୍ୟ ଏହାକୁ ତୋପରେ ଉଡ଼ାଇଥିବେ । ରାମାୟଣ ଫିଟାଇ ଦେଖିବା ଆବଶ୍ୟକ । ରାବଣ କେଉଁ ବାଣରେ ହତ ହେବ, ରାମ ତାହା ସ୍ଥିର କରି ପାରିଲେ ନାହିଁ । ଏଣୁ—

''—ସଂସ୍କାରୟାମାସ ମାତଳୀ ରାଘବଂ ତଦା ।''

ଏଣୁ ରାମ ପ୍ରଦୀପ୍ତ 'ପୈତାମହ' ଅସ୍ତ୍ରକୁ ଧାରଣ କଲେ । ଯେଉଁ ଅସ୍ତ୍ରର

''**ବାକେଷୁ ପବନଃ ଫଳେ ପାବକଭାସ୍କରୌ ଶରୀରମାକାଶମୟଂ ଗୌରବେ ମେରୁମନ୍ଦରୌ ।''

''ଜାଜଲ୍ୟମାନଂ ବପୁଷା ସୁପୁଙ୍ଖହେମଭୂଷିତଂ
ତେଜସା ସର୍ବଭୂତାନାଂ ଦୃଢ଼ଂ ଭାସ୍କରବର୍ଚସଂ ।''
ଇତ୍ୟାଦି ।

ଏହି ବ୍ରହ୍ମାସ୍ତ୍ରଟି କ'ଣ ? ତୋପ କି ? ଉପରୋକ୍ତ ବର୍ଣ୍ଣନା ପାଠ କରି ବ୍ରହ୍ମାସ୍ତ୍ରକୁ ତୋପ ବୋଲି ନ ଭାବିଲେ ସୁଦ୍ଧା ଏହା କିମ୍ଭୂତକିମାକାର ଅସ୍ତ୍ର ବୋଲି ମନେ କରାଯାନ୍ତା । ମାତ୍ର ଯେତେବେଳେ 'ଅଭିମନ୍ତ୍ୟ ତତୋ ରାମସ୍ତଂ ମହେଷୁଂ ମହାବଳଃ' ।

''ଚେଦପ୍ରୋକ୍ତେନ ବିଧିନା
ସଂଦଧେ କାର୍ମୁକେ ବଳୀ ।''
ଲ. ୨୦୮ । ୧୪

ଶ୍ଳୋକଟି ପାଠ କରାଗଲା, ସେତେବେଳେ ବ୍ରହ୍ମାସ୍ତ୍ରଟି, ଯେ ସାର୍ଦ୍ଧଦ୍ୱିହସ୍ତପରିମିତ ବଂଶନିର୍ମିତ ଶର, ଏଥିରେ ତିଳେ ମାତ୍ର ସନ୍ଦେହ ରହିଲା ନାହିଁ । ତେବେ ଏହା ଅଭିମନ୍ତ୍ରିତ । ଏହି ଅଭିମନ୍ତ୍ରିତ ବ୍ରହ୍ମାସ୍ତ୍ରରେ ଲଙ୍କାପତି ରାବଣର ପ୍ରାଣ ଗଲା । ରାବଣର ପ୍ରାଣ ନେଇ ଶର ''ବିବେଶ ଧରଣୀ– ତଳଂ ।'' ଦେଖିଲୁଁ, ରାମ ତୋପ ବା ବନ୍ଧୁକ ବ୍ୟବହାର କରି ନାହାନ୍ତି । ଶରଦ୍ୱାରା ମାରୀଚ, ସୁବାହୁ, ବାଳୀ, କୁମ୍ଭକର୍ଣ୍ଣ ଓ ରାବଣର ପ୍ରାଣ ନାଶ କରିଅଛନ୍ତି । ମନ୍ତ୍ରରେ ବିଶ୍ୱାସ ଥିଲେ ବ୍ରହ୍ମାସ୍ତ୍ର ତୋପ ଅପେକ୍ଷା ମଧ ଅଧିକ କ୍ଷମତାଶାଳୀ ।

ଦେବୀ ଦୃପ୍ତ ନିଶାଚରମାନଙ୍କ ସହିତ ଯୁଦ୍ଧ କରୁଥିଲେ । ସେ ତୋପ ବନ୍ଧୁକ ବ୍ୟବହାର କରୁଥିଲେ ପରା ? ତେବେ ଚଣ୍ଡୀ ଫିଟାଇ ଦେଖ । ମହିଷାସୁର ମହାଭୟାନକ ଅସୁର, ତାହାର ପ୍ରତାପରେ ତିନି ଲୋକ ଭୀତ ଓ ତ୍ରସ୍ତ । ଏହି କିମ୍ଭୂତକିମାକାର ଅସୁରକୁ ବଧ କରିବାକୁ ଭଗବତୀଙ୍କର ଆବିର୍ଭାବ । ଭଗବତୀ ତ ଅସ୍ତ୍ର ଶସ୍ତ୍ର ଧରି ଆବିର୍ଭୂତା ହୋଇ ନ ଥିଲେ, ଏଣୁ ଦେବତାମାନେ ତାହାଙ୍କୁ ଗୋଟିଏ ଗୋଟିଏ ଅସ୍ତ୍ର ଦେଲେ, ଯଥା— ଶିବ ଗୋଟିଏ ଶୂଳ, ବିଷ୍ଣୁ ଚକ୍ର, ଇନ୍ଦ୍ର ବଜ୍ର, ଐରାବତର ଘଣ୍ଟା ଏବଂ କାଳ ଓ ଖଡ୍ଗ ଦେଲେ । ଦେବତାମାନଙ୍କ ଦତ୍ତ ଅଳଙ୍କାରଦ୍ୱାରା ଭୂଷିତା ଓ ଅସ୍ତ୍ରଶସ୍ତ୍ରଦ୍ୱାରା ସଜ୍ଜିତା ହୋଇ ଦେବୀ ଦଣ୍ଡାୟମାନ ହୋଇ ମୁହୁର୍ମୁହୁଃ ଅଟ୍ଟହାସ କଲେ । ଦୁଃଖର କଥା, କୌଣସି ଦେବତା ଗୋଟିଏ ବନ୍ଧୁକ ବା ରିଭଲଭର ଦେଲେ ନାହିଁ । ଜଗନ୍ମାତା ଦେବତାମାନଙ୍କ ପ୍ରଦତ୍ତ ଅସ୍ତ୍ର ଶସ୍ତ୍ର ନେଇ ମହିଷାସୁର ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଉଭୟଙ୍କ ମଧରେ ଅଭୂତପୂର୍ବ ଦ୍ୱନ୍ଦ୍ୱଯୁଦ୍ଧ ହେଲା । ମହିଷାସୁର ଯେତେବେଳେ ଦେବୀଙ୍କ ଉପରକୁ ଉଚ୍ଚ ଉଚ୍ଚ ପର୍ବତ ନିକ୍ଷେପ କରିବାକୁ ଲାଗିଲା, ଦେବୀ ମଦ୍ୟ ପାନ କରିବାକୁ ଲାଗିଲେ ଏବଂ କହିଲେ—

ଗର୍ଜ ଗର୍ଜ କ୍ଷଣଂ ମୃଢ଼ ମଧୁ ଯାବତ୍ ପିବାମ୍ୟହଂ ।
ମାୟା ତ୍ୱୟି ହତେଽତ୍ରୈବ, ଗର୍ଜିଷ୍ୟନ୍ତ୍ୟାଶୁ ଦେବତାଃ

ମଦ୍ୟପାନୋନ୍ମତ୍ତା ଦେବୀଙ୍କର ମହାଅସିଦ୍ୱାରା ମହିଷାସୁରର ପ୍ରାଣ ଗଲା ।

''ତପା ମହାସିନା ଦେବ୍ୟା ଶିରଶ୍ଛିତ୍ୱା ନିପାତିତଃ ।''
ଭଗବତୀ ଶୁମ୍ଭନିଶୁମ୍ଭକୁ ଶୂଳଦ୍ୱାରା ନିପାତ କଲେ ।

ପାଠକଗଣ ଦେଖିଲେ ତ ? ଦେବାସୁର ଯୁଦ୍ଧରେ, ବୃତ୍ରବଧରେ, ରାମ ରାବଣ ଯୁଦ୍ଧରେ, କୁରୁପାଣ୍ଡବ ଯୁଦ୍ଧରେ, ଚଣ୍ଡୀ ଯୁଦ୍ଧରେ ତୋପ ବନ୍ଧୁକର ବାରୁଦ ଗନ୍ଧ ଅଛି କି ?

ତାଞ୍ଜୋର ଶିବମନ୍ଦିରର ଏକପାର୍ଶ୍ୱରେ ଗୋଟିଏ ହ୍ୟାଟଧାରୀ ୟୁରୋପୀୟ ମୂର୍ତ୍ତି (Bust) ଅଛି । ଏହି ମୂର୍ତ୍ତିକୁ ଦେଖାଇଦେଇ ମୋର ପଣ୍ଡା କହିଲା, ''ଇଂରେଜ ଭାରତର ଶାସକ ହେବେ, ଏହା ଦେବତାମାନଙ୍କୁ ଜଣା ଥିଲା, ତାହାର ସୂଚନା କରି ଦେଇଅଛନ୍ତି ।'' ଓଲନ୍ଦାଜ କିମ୍ବା ପର୍ତ୍ତୁଗାଲବାସୀମାନେ ଭାରତବର୍ଷକୁ ଆସିଲା ଉତ୍ତାରୁ କାରିଗର ସେମାନଙ୍କ ରୂପ ଦେଖି କୌତୂହଳାବିଷ୍ଟ ହୋଇ ମନ୍ଦିର ପାର୍ଶ୍ୱରେ ଉକ୍ତ ମୂର୍ତ୍ତିଟି ନିର୍ମାଣ କରିଅଛି ବୋଲି ବିଶ୍ୱାସ ନ କରି ପଣ୍ଡାର ଏହି ଅଯୌକ୍ତିକ ପ୍ରଳାପ ଉପରେ ଆସ୍ଥା ସ୍ଥାପନ କରାଯାଇପାରେ କି ? ଏହିପରି ଶୁକ୍ରନୀତି ପୁସ୍ତକରେ ବନ୍ଧୁକ ଓ ତୋପର ବର୍ଣ୍ଣନା ଅଛି । ଶୁକ୍ରନୀତି ଯେ ଖଣ୍ଡିଏ ଅତି ପ୍ରାଚୀନ ପୁସ୍ତକ, ତାହା ନୁହେଁ, ପୁଣି ତାଞ୍ଜୋର ଶିବମନ୍ଦିର ଉପରେ ୟୁରୋପୀୟ ମୂର୍ତ୍ତି ସ୍ଥାନ ପାଇଲା ପରି ତୋପ ବନ୍ଧୁକର ବର୍ଣ୍ଣନା ଯେ ସନ୍ନିବେଶିତ ହୋଇଅଛି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଶୁକ୍ରାଚାର୍ଯ୍ୟ ଦୈତ୍ୟଗୁରୁ, ସେ ଆଜିକାଲିର ଗୁରୁ ନୁହନ୍ତି । ବୃତ୍ରାସୁର, ତାରକାସୁର ପ୍ରଭୃତିଙ୍କର ଗୁରୁ, ଯେବେ ତାହାଙ୍କୁ ତୋପ ବନ୍ଧୁକର ନିର୍ମାଣକୌଶଳ ଜଣା ଥିଲା, ତେବେ ଦୈତ୍ୟରାଜମାନଙ୍କୁ ଏହା ଶିକ୍ଷା ଦେଲେ ନାହିଁ କାହିଁକି ? ସେମାନେ ତ ଗୋଟିଏ ଗନ୍ ଫାକ୍‌ଟରି କରି ପ୍ରକାଣ୍ଡ ପ୍ରକାଣ୍ଡ ତୋପ ନିର୍ମାଣ କରିପାରିଥାନ୍ତେ ।

''ନାଳିକଂ ଦ୍ୱିବିଧଂ ଜ୍ଞେୟଂ
ବୃହତ୍ କ୍ଷୁଦ୍ର ବିଭେଦତଃ ।'' ଶୁକ୍ରନୀତି ।

ଶୁକ୍ର ଦୈତ୍ୟଗୁରୁ ଓ ଯବନଗୁରୁ, ଯବନମାନେ ଏ ଦେଶକୁ ଆସିଲା ଉତ୍ତାରୁ ସେମାନଙ୍କର ବ୍ୟବହୃତ ଗଣ୍ଡିଆ ତୋପ ଓ ପଥରକାନୀ ବନ୍ଧୁକ ଦେଖି ତହିଁର ଅସମ୍ପୂର୍ଣ୍ଣ ବର୍ଣ୍ଣନା ଶୁକ୍ରନୀତିରେ ସଂଯୋଗ କରାଯାଇଅଛି ।

ଆମ୍ଭେମାନେ ଜାଣୁଁ, ବଶିଷ୍ଠ ସୂର୍ଯ୍ୟବଂଶର ଗୁରୁ, ସତ୍ୟଯୁଗରୁ ଆରମ୍ଭ କରି କଳିଯୁଗ ଆରମ୍ଭ ପର୍ଯ୍ୟନ୍ତ ବଶିଷ୍ଠ ବିଦ୍ୟମାନ ଥିଲେ । ରାମଚନ୍ଦ୍ରଙ୍କୁ ସେ ପ୍ରଥମେ ଧନୁ ବ୍ୟବହାର ଶିକ୍ଷା ଦେଉଥିଲେ । ବଶିଷ୍ଠ ତାଙ୍କର ଅନ୍ତିମ ଦଶା ପୂର୍ବରୁ ଖଣ୍ଡିଏ ପୁସ୍ତକ ପ୍ରଣୟନ କରି ଭାରତବାସୀଙ୍କ ହସ୍ତରେ ଅର୍ପଣ କରି ଇହଧାମ ତ୍ୟାଗ କଲେ । ଏହି ପୁସ୍ତକର ନାମ ଧନୁର୍ବେଦ । ବଶିଷ୍ଠ ଏହି ପୁସ୍ତକ ଅନ୍ତିମକାଳରେ ପ୍ରଣୟନ କଲେ ବୋଲିବାର କାରଣ ଏହି ଯେ, ସେ ତୋପ ବନ୍ଧୁକର ବ୍ୟବହାର ବା ନିର୍ମାଣକୌଶଳ ରଘୁ, ଅଜ, ଦିଲୀପ, ଦଶରଥ, ରାମ ପ୍ରଭୃତିଙ୍କୁ ଶିଖାଇ ନ ଥିଲେ । ଯେବେ ଧନୁର୍ବେଦ ପ୍ରକୃତ ବଶିଷ୍ଠରଚିତ, ତାହାହେଲେ ବୃଦ୍ଧ ଋଷିଙ୍କୁ ଆମ୍ଭେମାନେ ଦୋଷୀ ନ କରି ଛାଡ଼ି ନ ପାରୁଁ । ଯେହେତୁ ସେ ତାଙ୍କର ପ୍ରିୟ ଶିଷ୍ୟ ରାମଙ୍କୁ ଧନୁର୍ବେଦ ଗ୍ରନ୍ଥ ଖଣ୍ଡ ଅଧ୍ୟୟନ ନ କରାଇ ଏବଂ ବନ୍ଧୁକ ଓ ତୋପର ବ୍ୟବହାର ଶିକ୍ଷା ନ ଦେଇ କୁଳାଙ୍ଗାର ହିନ୍ଦୁମାନଙ୍କ ହାତରେ ଥୋଇଦେଇ ଗଲେ ।

''ନାଳୀକା ଲଘବୋ ବାଣା
ନଳଯନ୍ତ୍ରେଣ ଯୋଜିତାଃ ।
ଅତ୍ୟୁଚ୍ଚଦୂରପାତେଷୁ
ଦୁର୍ଗୟଦ୍ଧେଷୁ ତେ ମତାଃ ।''
ଧ.ବେ.୭୪

ଏହା ପରା ବନ୍ଧୁକର ବର୍ଣ୍ଣନା ।

ସିଂହାସନସ୍ୟ ରକ୍ଷାର୍ଥଂ
ଶତଘ୍ନୀଂ ସ୍ଥାପୟେଦ୍ଧ୍ରୁବେ ।
ରଞ୍ଜକଂ ବହୁଳଂ ତତ୍ର
ସ୍ଥାପ୍ୟଂ ବଟୟ ଧୀମତା ।
ଧ. ନେ. ୭୫

ନାଳିକ, ରଞ୍ଜକ, ବଟୟ, ଗଡ଼ ଏହି ଶବ୍ଦଗୁଡ଼ିକ ଦେଖିଲେ ଧନୁର୍ବେଦ କୌଣସି ସିଦ୍ଧହସ୍ତ ପ୍ରାଚୀନ ଲେଖକଦ୍ୱାରା ରଚିତ ହୋଇଅଛି ବୋଲି ମନେ ହୁଏ ନାହିଁ । ବଶିଷ୍ଠଙ୍କଦ୍ୱାରା ଏହା ରଚିତ ବା କଥିତ ବୋଲିବାକୁ ଲଜ୍ଜାବୋଧ ହେଉଅଛି ।

ଏହି ଧନୁର୍ବେଦ ମଧ୍ୟରେ ଧନୁଶରର ନିର୍ମାଣ ବିଧି, ପ୍ରୟୋଗ ବିଧି, ବ୍ୟୂହ, ମନ୍ତ୍ର, ଔଷଧ ପ୍ରଭୃତିର ବର୍ଣ୍ଣନା ଅଛି, ତନ୍ମଧ୍ୟରେ ଏହି ଦୁଇ ଗୋଟି ମାତ୍ର ଶ୍ଳୋକ ଅସଙ୍ଗତ ରୂପରେ ସନ୍ନିବେଶିତ ହୋଇଥିବାର ହୃଦ୍‌ବୋଧ ହୁଏ ।

ଶତଘ୍ନୀ ଅର୍ଥ ଯେ ତୋପ ତାହା ନୁହେଁ । ଏହାର ବ୍ୟୁତ୍ପତ୍ତିଗତ ଅର୍ଥ— ଯେ ଶତକୁ ବଧ କରେ । ଶତଘ୍ନୀ ଲକ୍ଷଣ—

''ଅୟଃକଣ୍ଟକସାଚ୍ଛନ୍ନା
ଶତଘ୍ନି ମହତୀ ଶିଳା ।''
ବିଜୟରକ୍ଷିତଃ ଶ. କ.

ଲୌହକଣ୍ଟକସମାଚ୍ଛନ୍ନ ପ୍ରକାଣ୍ଡ ପ୍ରସ୍ତରର ନାମ ଶତଘ୍ନୀ ।

ଧନୁର୍ବେଦ ଅର୍ବାଚୀନ ଓ ଅବିଶ୍ୱାସ୍ୟ ପୁସ୍ତକ । ବଶିଷ୍ଠଙ୍କ ରଚିତ ବୋଲି ଲୋକଙ୍କୁ ପ୍ରତାରିତ କରିବା ଅତି ଦୋଷାବହ କାର୍ଯ୍ୟ ଅଟେ ।

ଆମ୍ଭେମାନେ ନାନାଦି ଶାସ୍ତ୍ର ଆଲୋଚନା କରି ଜାଣି ପାରିଅଛୁଁ ଯେ, ଆମ୍ଭମାନଙ୍କ ପୂର୍ବପୁରୁଷଗଣ କିମ୍ୱା କାଳ୍ପନିକ ଦେବତାମାନେ ଆଧୁନିକ ପାଶ୍ଚାତ୍ୟ ସଭ୍ୟଜାତିଙ୍କର ଯୁଦ୍ଧାସ୍ତ୍ର ପରି କୌଣସି ଯୁଦ୍ଧାସ୍ତ୍ର ବ୍ୟବହାର କରୁ ନ ଥିଲେ । ସେମାନଙ୍କର ତୋପ ବା ବନ୍ଧୁକ ନ ଥିଲା । ଥିଲା କେବଳ ଧନୁଶର ଓ ମନ୍ତ୍ର । ମନ୍ତ୍ରର ପ୍ରଭାବ ତୋପ ଗୋଳାଠାରୁ ଅଧିକ । ଚିତ୍ରକୁଟରେ ଦିନେ ମାଂସଲୋଭୀ ''ଇନ୍ଦ୍ରପୁତ୍ର ଯେ ବାୟସ'' ସେ ସୀତାଙ୍କର ସ୍ତନକୁ ଆଘାତ କଲା, ଏଣୁ ରାମଚନ୍ଦ୍ର କ୍ରୋଧାନ୍ୱିତ ହୋଇ

ସଦର୍ଭସଂସ୍ତରାଦ୍‌ଗୃହ୍ୟ
ବ୍ରହ୍ମଣୋସ୍ତ୍ରେଣ ଯୋର୍ଜୟେତ୍ ।
ସଦୀପ୍ତ ଇବ କାଳାଗ୍ନି–
ର୍ଜଜ୍ୱାଳାଭିମୁଖୋ ଦ୍ୱିଜଂ ।

ମୁ. ୮ । ୨୯ ।

ବ୍ରହ୍ମାସ୍ତ୍ରରୂପୀ କୁଶ ବିବିଧ ଗତଶୀଳ କାକର ପଶ୍ଚାଦ୍ଧାବନ କଲା । ଏହି ସଂସାର ମଧ୍ୟରେ ବିଚାରା କାକକୁ କେହି ରକ୍ଷା କରି ପାରିଲେ ନାହିଁ । ଶରଟି କାକର ପଛେ ପଛେ ତଳକୁ ଉପରକୁ ଏଣେ ତେଣେ ଯାଉଥାଏ, ମାତ୍ର କାକକୁ ସ୍ପର୍ଶ କରେ ନାହିଁ । କାକ ଅବଶେଷରେ ତ୍ରିଲୋକରେ ତାହାର ରକ୍ଷକ ନ ଦେଖି ରାମଙ୍କର ଶରଣାଗତ ହେଲା । ସେତେବେଳେ ଶର ରାମ ଆଦେଶକୁ ଅପେକ୍ଷା କରୁଥିଲା । ରାମ କହିଲେ, ବ୍ରହ୍ମାସ୍ତ୍ର ଅମୋଘ, ଏଣୁ କାକ ବିଚାରା ''ଦତ୍ୱା ତୁ ଦକ୍ଷିଣଂ ନେତ୍ରଂ ପ୍ରାଣେଭ୍ୟ ପରିରକ୍ଷିତଃ ।''

ଲେଖକ କ୍ଷତ୍ରିୟ । ଲେଖକକୁ ଅସ୍ତ୍ରପ୍ରୟୋଗ ଓ ସଂହାରର ବିଧି ବ୍ୟବସ୍ଥା ସବୁ ଜଣା ଅଛି । ଜଣା ଥିଲେ କ'ଣ ହେବ, ସମ୍ପାଦକଙ୍କଠାରେ ନିଜର ଦାୟିତ୍ୱ ବୁଝାଇବାରେ ବ୍ୟସ୍ତ । ଆଗଥର ଅଣ୍ଟାଗୁଞ୍ଜା ଦେଇ ରକ୍ଷା ମିଳିଥିଲା । ଏଥର ନିଜର ଜାତିଗତ ବିଦ୍ୟାରୁ କିଛି ଲାଞ୍ଚ ଦେଇ କିଛିଦିନ ଅବସର ନେବାର ଆଶା ରଖେ । ବ୍ରହ୍ମାସ୍ତ୍ରଂ ପ୍ରଥମ ପ୍ରୋକ୍ତଂ ଦ୍ୱିତୀୟଂ ବ୍ରାହ୍ମଦଣ୍ଡକଂ ବ୍ରହ୍ମଶିରସ୍ତୃତୀୟଂ ଚ ଚତୁର୍ଥଂ ପାଶୁପତଂ ମତୀ ଏଗୁଡ଼ିକ କ୍ଷତ୍ରିୟର ଗଚ୍ଛିଧନ । ବ୍ରହ୍ମାସ୍ତ୍ରଟି ହାତଛଡ଼ା ହେବା ଉଚିତ ନୁହେଁ । ତେବେ ଅଗତ୍ୟାସ୍ଥଳରେ ବ୍ରହ୍ମଦଣ୍ଡଟି ସମ୍ପାଦକଙ୍କୁ ଉପହାର ଦେଲେ କ୍ଷତି ନାହିଁ ।

ବ୍ରହ୍ମଦଣ୍ଡଂ ପ୍ରବକ୍ଷ୍ୟାମି
ପ୍ରଣବଂ ପୂର୍ବମୁଚ୍ଚରେତ୍
ତତଃ ପ୍ରଚୋଦୟାଦ୍ ଜ୍ଞେୟଂ
ତତୋ ନୋ ଯୋ ଧିୟଃ କ୍ରମାତ୍
ତତୋଧୀମହି ଦେବସ୍ୟ
ତତୋଭର୍ଗୋ ବରେଣ୍ୟଂ
ସର୍ବତୁସ୍ତଞ୍ଚ ଯୋକ୍ତବ୍ୟ
ମମୁକଶତ୍ରୁଂ ତଥୈବଚ
ତତୋହନ୍ ହନ୍ ହୁଁ ଫଟ୍
ଜପ୍ତ୍ୱା ପୂର୍ବଂ ଦ୍ୱିଲକ୍ଷକଂ
ଅଭିମନ୍ତ୍ୟ ଶରଂ ତଦ୍‌ବତ୍
କ୍ଷିପେତହତୃଷ୍ଟ ସ୍ଫୁଟଂ ।

ଧ.ବେ.-୮୦

ଅର୍ଥାତ୍ ଗାୟତ୍ରୀ ମନ୍ତ୍ରଟିକୁ ଅସ୍ତବ୍ୟସ୍ତ କରି ଜପ କରିବାକୁ ହେବ ।

''ଓଁ ପ୍ରଚୋଦୟାତ୍, ନୋ ଯୋ ଧିୟୋଧୀମହି ଦେବସ୍ୟ, ଭର୍ଗୋବରେଣ୍ୟଂ ସବିତୁଃ ବାୟସାନ୍ ହନ୍ ହନ୍ ହୁଁ ଫଟ୍ ।''

ବାୟସଗୁଡ଼ାକ ସବୁ ଯୁଗରେ ଧୂର୍ତ୍ତ । ତ୍ରେତା ଯୁଗରେ ରାମ ବ୍ରହ୍ମାସ୍ତ୍ର ପ୍ରୟୋଗଦ୍ୱାରା କାକଗୁଡ଼ାଙ୍କର ଦକ୍ଷିଣ ଚକ୍ଷୁ ନଷ୍ଟ କରିଅଛନ୍ତି । ସମ୍ପାଦକ କିମ୍ୱା ପାଠକଗଣ ବ୍ରହ୍ମାସ୍ତ୍ରର ଭାଇ ବ୍ରହ୍ମଦଣ୍ଡ ପ୍ରୟୋଗଦ୍ୱାରା କଳିଯୁଗିଆ ଇନ୍ଦ୍ର ପୁତ୍ରମାନଙ୍କର ବାମ ଚକ୍ଷୁଗୁଡ଼ାକ ନଷ୍ଟ କରିପାରିଲେ ଦେଶର ପ୍ରଭୂତ ଉପକାର ସାଧିତ ହେବ ଏବଂ ନନାଙ୍କ ବସ୍ତାନିରେ ସାଇତା ହେଲେ ଭବିଷ୍ୟତରେ ଦରକାର ବେଳେ କର୍ମକୁ ଆସିବ । ଇତି ।

●

## ଛାତ୍ରମାନଙ୍କୁ ଅନୁରୋଧ

### (ବାଲେଶ୍ୱର ଛାତ୍ର ସମ୍ମିଳନୀରେ ପଠିତ)

ଏହି ସଂସାରରେ ସମସ୍ତେ ଛାତ୍ର, ଗୁରୁ କେହି ନୁହନ୍ତି । ସୁତରାଂ ଛାତ୍ର ସମ୍ମିଳନୀରେ ସମସ୍ତଙ୍କୁ ଛାତ୍ରତ୍ୱ ସ୍ୱୀକାର କରିବାକୁ ହେବ ଏବଂ ସମ୍ମିଳନୀର ଭବିଷ୍ୟତ ମଙ୍ଗଳ ନିମନ୍ତେ ସାହାଯ୍ୟ ଓ ସହାନୁଭୂତି କରିବାକୁ ହେବ ।

ନିଜର ଅପାରଗତା ହେତୁ ଛାତ୍ର ସମ୍ମିଳନୀରେ ଉପସ୍ଥିତ ହୋଇ ନ ପାରିଲେ ସୁଦ୍ଧା, ମୋର ମନ ସମବେତ ଛାତ୍ରଗଣଙ୍କର ମନ ସହିତ ମିଳିତ ହୋଇ ସେମାନଙ୍କର କ୍ରମୋନ୍ନତି ଆକାଂକ୍ଷାରେ ଆକାଂକ୍ଷିତ ହୋଇ ରହିଅଛି ।

ସମ୍ମିଳିତ ଛାତ୍ରମାନେ ନିଜ ନିଜର ଅଭିଜ୍ଞତା, ବିନିମୟ ଦ୍ୱାରା ସାମାଜିକ, ନୈତିକ ଓ ସାହିତ୍ୟିକ ଉନ୍ନତି ସାଧନ କରିବେ ଏହାହିଁ ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ବୋଲି ବୋଧହୁଏ । ଏହି ସୁଯୋଗରେ ମୋର ଜୀବନବ୍ୟାପୀ ଅଭିଜ୍ଞତାକୁ ଛାତ୍ରମାନଙ୍କ ସମକ୍ଷରେ ବ୍ୟକ୍ତ କରିବାକୁ ସାହସ କରିଅଛି । ଏବଂ ମୋର ଏହି ଅଭିଜ୍ଞତା ବିନିମୟରେ ସେମାନଙ୍କଠାରୁ ଅମୂଲ୍ୟ ଧନ ପାଇବାର ବାସନା କରିଅଛି ।

ମାଦକଦ୍ରବ୍ୟ ଆମ୍ଭମାନଙ୍କର ନିତାନ୍ତ ଅନିଷ୍ଟକାରୀ । ମାଦକଦ୍ରବ୍ୟ ସେବନଦ୍ୱାରା ଶାରୀରିକ ଓ ମାନସିକ କ୍ଷତି ହୁଏ ଏହା ସମସ୍ତେ ସ୍ୱୀକାର କରନ୍ତି । ତଥାପି ଏହି ବିଷବୃକ୍ଷର ଛାୟାରେ ଆଶ୍ରୟ ନେବାକୁ ଏବଂ ତହିଁରେ ବିଷମୟ ଫଳ ଭକ୍ଷଣ କରିବାକୁ ଅପରିଣତ ବୟସ୍କ ଓ ଅପରିଣାମଦର୍ଶୀ ଯୁବକଗଣ ଆଗ୍ରହାନ୍ୱିତ ହୁଅନ୍ତି ।

ମାଦକଦ୍ରବ୍ୟ ସେବନକାରୀମାନଙ୍କର ସାହାଯ୍ୟରେ ଓ ଯତ୍ନରେ ଏହି ବିଷବୃକ୍ଷ କ୍ରମେ ଶାଖାପ୍ରଶାଖା ବିସ୍ତାର କରି ଦେଶକୁ ଆବୃତ କରିବାକୁ ବସିଲାଣି । ସୁତରାଂ ଏହି ବିଷ ବୃକ୍ଷ ମୂଳୋତ୍ପାଟନ କରିବା ନିମନ୍ତେ ସମସ୍ତ ଦେଶ ହିତୈଷୀ ଛାତ୍ରଗଣଙ୍କର ସମବେତ ଚେଷ୍ଟା ଏକାନ୍ତ ଆବଶ୍ୟକ ।

ଯେଉଁ ପଦାର୍ଥ ବ୍ୟବହାର ନ କରି ଜୀବନର ପ୍ରଥମ ଚତୁର୍ଥାଂଶ ନିର୍ବିବାଦରେ, ନିର୍ବିଘ୍ନରେ ଚାଲିଯାଏ ଯୌବନ ରାଜ୍ୟରେ ପଦାର୍ପଣ କଲା ମାତ୍ରକେ କାହିଁକି ଏହି ଅନିଷ୍ଟକାରୀ ମାଦକଦ୍ରବ୍ୟର ଲୋଡ଼ା ହୁଏ ? ମନୁଷ୍ୟ ସର୍ବଦା ସ୍ୱାଧୀନ ହେବାକୁ ପ୍ରୟାସୀ ତେବେ ତୁଚ୍ଛ ମାଦକଦ୍ରବ୍ୟର ଦାସ ହେବାକୁ ଏଡ଼େ ଆଗ୍ରହାନ୍ୱିତ କାହିଁକି ? ସେବନକାରୀର ଅଜ୍ଞାତସାରରେ ସଙ୍ଗ ଦୋଷ ଏହି କୁଅଭ୍ୟାସଟି ଜନ୍ମାଇ ଦିଏ । ଏଣୁ ଆଗହୁଁ ସଙ୍ଗ ଦୋଷର ମାୟାଜାଲରୁ ନିଜକୁ ଏବଂ ଅନ୍ୟକୁ ରକ୍ଷା କରିବାକୁ ଚେଷ୍ଟା କରିବାର ଦରକାର ।

ମଦ, ଅଫିମ, ଗଞ୍ଜାଇ ଓ ତମାଖୁ ଚାରି ଗୋଟି ଭାଇ । ଏମାନେ ମନୁଷ୍ୟର ପରମ ଶତ୍ରୁ । ଏମାନଙ୍କ ମଧ୍ୟରେ ଛୋଟ ବଡ଼ ବାଛିବା ବୁଦ୍ଧିମାନ୍‌ର କାର୍ଯ୍ୟ ନୁହେଁ । ଅନେକେ ମନେ କରନ୍ତି ତମାଖୁ ପ୍ରଥମୋକ୍ତ ତିନି ଗୋଟି ପଦାର୍ଥ ପରି ତାଦୃଶ ଅନିଷ୍ଟକାରୀ ନୁହେଁ, ମାତ୍ର ପ୍ରକୃତ ପକ୍ଷରେ ତମାଖୁ 'ଚୁପ୍‌ସୈତାନ' । ଏହାର ଗତି ଅତି କୁଟୀଳ । ଏହା ପ୍ରବେଶାଧିକାର ନାନା ପ୍ରକାର ଓ ସର୍ବତ୍ର । ଏହା ମନୁଷ୍ୟମାନଙ୍କୁ ଏପରି ଆୟତ୍ତାଧୀନ କରେ ଏବଂ ବଡ଼ଭାଇମାନଙ୍କ ନିମନ୍ତେ ସ୍ଥାନ ବିଶେଷରେ ପଥ ପରିଷ୍କାର କରେ । ତାହା ଚିନ୍ତାଶୀଳ ବ୍ୟକ୍ତି ମାତ୍ରେ ଜାଣନ୍ତି ।

ତମାଖୁର ଓ ଗଞ୍ଜିକାର ଆଧିପତ୍ୟ ଏ ଦେଶରେ ଅତି ଅଧିକ । ତମାଖୁ– ପିକାଚୁରୁଟ, ଗୁଡ଼ାଖୁ, ଗୁଣ୍ଡି ଓ ନସ୍ୟ ଆକାରରେ ଦେଶବାସୀଙ୍କୁ ଅନାୟତ୍ତ କରିବାକୁ ବସିଲାଣି । ଗୁଣ୍ଡି ସେବନ ନିମନ୍ତେ ଓଡ଼ିଆମାନେ ଅନ୍ୟ ଜାତିଙ୍କଠାରୁ ତିରସ୍କୃତ ହେବାର ଶୁଣାଯାଏ । ଗଞ୍ଜାଇ ସେବନରେ ଜାତିପାତ ହେଉ ନ ଥିବାରୁ ଶିକ୍ଷିତ ବ୍ୟକ୍ତିମାନେ ମଧ ଦେବାଳୟରେ ଆମୋଦ ପ୍ରମୋଦ ସମୟରେ ଏଥିର ବ୍ୟବହାର କରିବାକୁ କୁଣ୍ଠିତ ନୁହନ୍ତି ।

ମନୁଷ୍ୟ ଅଭ୍ୟାସର ଦାସ । ଅଭ୍ୟାସର ବଶବର୍ତ୍ତୀ ହେଲେ ତହିଁରୁ ମୁକ୍ତିଲାଭ କରିବା ମନୁଷ୍ୟ ପକ୍ଷରେ ବଡ଼ କଠିନ ।

ଏଣୁ ନିର୍ମଳ ଚରିତ୍ର ଛାତ୍ରମାନଙ୍କର ଉଚିତ ଯେ ସେମାନେ ମାଦକଦ୍ରବ୍ୟ ସେବନରୂପକ କୁଅଭ୍ୟାସରୁ ନିଜକୁ ରକ୍ଷା କରିବାକୁ ବଦ୍ଧପରିକର ହେବେ । ଏବଂ ମଦ୍ୟପାନ ଓ ଚିରୋଟ ସେବନ ସଭ୍ୟତାର ଅଙ୍ଗ ବୋଲି ନିଜର ଚରିତ୍ରକୁ କଳଙ୍କିତ ଏବଂ ଦେଶର ଅମଙ୍ଗଳ କରିବେ ନାହିଁ । ଦେଶରୁ ମାଦକଦ୍ରବ୍ୟର ବ୍ୟବହାର ଉଠାଇ ଦେବାର ଚେଷ୍ଟା କରିବେ ।

ଛାତ୍ରମାନଙ୍କର ସମବେତ ଚେଷ୍ଟା ଦ୍ୱାରା ଦେଶର ଏହି ଉପାକାର ସାଧିତ ହୋଇପାରିବ । ଏହା ମୋର ଦୃଢ଼ ବିଶ୍ୱାସ । ପ୍ରତି ଛାତ୍ର ସମ୍ମିଳନୀରେ ଏ ବିଷୟରେ ଆନ୍ଦୋଳନ ହେବା ଦରକାର ।

ଓଡ଼ିଆରେ ଗୋଟିଏ ମାଦକଦ୍ରବ୍ୟ ସେବନ ନିବାରଣ ସମାଜ (Temperance Society) ସ୍ଥାପିତ ହେବାର ଦରକାର ।

ଏହି ଛାତ୍ର ସମ୍ମିଳନୀ ଏହି ସମାଜର ପ୍ରଥମ ଭିତ୍ତିସ୍ଥାପନ କରି ଚିର ସ୍ମରଣୀୟ ହେଉ ଏହା ମୋର ଏକାନ୍ତ ଅନୁରୋଧ ।

୨ୟ ପ୍ରସ୍ତାବ ।

ବାଲ୍ୟ ବିବାହର ଅନେକ ଦୋଷ ଅଛି । ସେ ଗୋଟିକ ଛାଡ଼ିଦେଲେ ମଧ ବିଦ୍ୟୋନ୍ନତିର ଏହା ଗୋଟିଏ ପ୍ରଧାନ ଅନ୍ତରାୟ ସୁତରାଂ ଏ କୁପ୍ରଥାର ସଂସ୍କାର ନିମନ୍ତେ ଛାତ୍ରଗଣ ସଚେଷ୍ଟ ହେବାର ଦରକାର ।



## ରାମାୟଣ

॥ ୧ ॥

ଆମ୍ଭେମାନେ ରାମାୟଣ ଆଲୋଚନାରେ ପ୍ରବୃତ୍ତ ହେଉଅଛୁଁ । ପାଠକଗଣ ଧୈର୍ଯ୍ୟ ସହକାରେ ଅବଧାନ କଲେ ଅନୁଗୃହୀତ ହେବୁଁ ।

ରାମାୟଣ ଆଲୋଚନାମାନେ ରାମଚରିତ୍ର ଆଲୋଚନା । ମାତ୍ର ଆମ୍ଭେମାନେ ସେହି ରାମାୟଣର ଆଲୋଚନା କରିବୁ ନାହିଁ । ଯେଉଁ ରାମାୟଣର

'ରାମୋ ନ ଗଚ୍ଛତି ନ ତିଷ୍ଠତି ନାନୁଶୋଚ—
ତ୍ୟାକାଂକ୍ଷତେ ତ୍ୟଜତି ନୋ ନ କରୋତି କିଞ୍ଚିତ ।
ଆନନ୍ଦମୂର୍ତ୍ତି ରଚଳଃ ପରିଣାମହୀନୋ
ମାୟାଗୁଣାନନୁଗତୋ ହି ତଥା ବିଭାତି ।'

ଅ.ରା. ୨ । ୪୩ ।

ଏହି ରାମଚରିତ୍ର ବଶିଷ୍ଠା ଦ୍ୱୈତବାଦୀଙ୍କର ଆଲୋଚନାର ବିଷୟ ଯେଉଁମାନେ ରାମ ଓ କୃଷ୍ଣଙ୍କର ବା ଶିବ ବିଷ୍ଣୁଙ୍କର ମାହାତ୍ମ୍ୟ ତୁଳନା ପଟୁ, ସେମାନଙ୍କର ଆଲୋଚନାର ସାମଗ୍ରୀ ହୋଇପାରେ ।

ଅଧ୍ୟାତ୍ମ ରାମାୟଣ ରାମଙ୍କୁ ପରମବ୍ରହ୍ମ ବୋଲି ପ୍ରମାଣ କରିବାକୁ ବ୍ୟସ୍ତ । ଭାଗବତ ଗାଇଲେ 'ଏତେଚାଂଶକଳା ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ ।' ଅଧ୍ୟାତ୍ମ ରାମାୟଣ ଲେଖିଲେ— 'ରାମଂ ବିଦ୍ଧି ପରଂବ୍ରହ୍ମ ସଚ୍ଚିଦାନନ୍ଦମଦ୍ୱୟଂ ।' ଏ ଉତ୍ପାତ ମଧ୍ୟରେ ପ୍ରବେଶ କରି ଆମ୍ଭମାନଙ୍କର ମସ୍ତିଷ୍କ ସ୍ଥିର ରଖିବାର କ୍ଷମତା ନାହିଁ । ଏଣୁ ଇଚ୍ଛା ପୂର୍ବକ ତ୍ୟାଗ କଲୁଁ । ବିଶେଷତଃ ଏହା ପୁରାଣ ତୁଳନାରେ ଅତି ଅର୍ବାଚୀନ ।

ଆମ୍ଭେମାନେ ସେହି ରାମାୟଣର ଆଲୋଚନା କରିବୁଁ, ଯେଉଁ ରାମାୟଣର ରାମ ଆମ୍ଭମାନଙ୍କ ପରି ଜନ୍ମଗ୍ରହଣ କରିଥିଲେ । ଏହି ସଂସାର କ୍ଷେତ୍ରରେ ଆପଣାର କର୍ତ୍ତବ୍ୟ କାର୍ଯ୍ୟ ସାଧନ କରି ଅବଶେଷରେ ସଂସାରଲୀଳା ସମ୍ବରଣ କଲେ । ଏହି ରାମାୟଣର ନାମ ବାଲ୍ମୀକି ରାମାୟଣ ।

ରାମ ଭାରତବାସୀଙ୍କର ଦେବତା ଏବଂ ଏହାଙ୍କ ହେତୁରୁ ଭାରତବାସୀ ଗୌରବାନ୍ୱିତ । ଏହି ମହାପୁରୁଷଙ୍କର ଚରିତ୍ର ଚିତ୍ରକର କିଏ ? କାହାର ସୁନିପୁଣ ତୂଳିକା ଚାଳନାଦ୍ୱାରା ରାମ ରୂପ ପରିସ୍ଫୁଟ ହେଲା ? ସ୍ୱୈର ରତ୍ନାକର ? କିମ୍ବଦନ୍ତୀ ଅଛି, ରତ୍ନାକର ଦସ୍ୟୁବୃତ୍ତି ଅବଲମ୍ବନପୂର୍ବକ ଜୀବିକା ନିର୍ବାହ କରୁଥିଲା । ଦିନେ ନାରଦଙ୍କ କୌପୀନ ହରଣ ଉଦ୍ୟୋଗ କରିବାରୁ ନାରଦ ଉପଦେଶ ଦେଇ ଦସ୍ୟୁବୃତ୍ତିରୁ ତାଙ୍କୁ ନିବୃତ୍ତ କଲେ ଏବଂ ରାମନାମ ଜପ କରିବାକୁ ଉପଦେଶ ଦେଇଗଲେ । ରତ୍ନାକର ଏକାଗ୍ରଚିତ୍ତରେ ରାମନାମ ଜପ କରିବାକୁ ଲାଗିଲେ । ଜପ କରୁ କରୁ ବହୁ ସହସ୍ର ବର୍ଷ ଗତ ହେଲା । ଏଣୁ ରତ୍ନାକରଙ୍କ ଶରୀର ବାଲ୍ମୀକି ସମାବୃତ ହେଲା । ରାମନାମ ପ୍ରସାଦରୁ ପାପ କ୍ଷୟ ହେଲା । ସେ ବାଲ୍ମୀକ ଭେଦକରି ବହିର୍ଗତ ହେଲେ ଏବଂ ସେହି ଦିନଠାରୁ ବାଲ୍ମୀକି ଋଷି ବୋଲି ଖ୍ୟାତ ହେଲେ ।

ଆମ୍ଭମାନଙ୍କ ମତରେ ଏହା ସମ୍ପୂର୍ଣ୍ଣ ମିଥ୍ୟା । ରାମାୟଣ ରଚକଙ୍କ ନାମ ପ୍ରକୃତରେ ବାଲ୍ମୀକି ଥିଲା । ତାହା ଦେଖି କୌଣସି ପୌରାଣିକ ବୈୟାକରଣ ଏହି ଶବ୍ଦର ବ୍ୟୁପତ୍ତି ଅନ୍ୱେଷଣ କରିବାକୁ ଯାଇ ଦେଖିପାରିଲେ ଯେ, ବାଲ୍ମୀକି ଅର୍ଥ ଉଇ ହୁଙ୍କା ଜାତାର୍ଥେ ଷ୍ଣି ପ୍ରତ୍ୟୟ ଯୋଗେ ବାଲ୍ମୀକି ଶବ୍ଦର ଉତ୍ପତ୍ତି ହୁଏ । ଏଣୁ ବଲ୍ମୀକରୁ ଜାତ ବାଲ୍ମୀକ ବୋଲି ଏହି ଅଦ୍ଭୁତ ଉପାଖ୍ୟାନର ସୃଷ୍ଟି କଲେ । ପାଠକଗଣ ଆମ୍ଭମାନଙ୍କର ମତର ପକ୍ଷପାତୀ କି ଉପରୋକ୍ତ କିମ୍ବଦନ୍ତୀର ପକ୍ଷପାତୀ, ତାହା ଆମ୍ଭେମାନେ କହି ନ ପାରୁଁ । ତେବେ ଅନେକେ ଆମ୍ଭମାନଙ୍କ ମତ ଆଡ଼କୁ ଢଳିବେ ବୋଲି ଆଶାନ୍ୱିତ ହୋଇଅଛୁଁ ।

ବାଲ୍ମୀକି ରାମଙ୍କର ସମସାମୟିକ ହେଲେ କି ? ତାହାହେଲେ ତ୍ରେତାଯୁଗର ଲୋକ । ପାଞ୍ଜିକାର ମତରେ ଅନ୍ତତଃ ଆଠ ଲକ୍ଷ ବର୍ଷ । ପ୍ରତ୍ନତତ୍ତ୍ୱବିତ୍ କେତେଜଣ ପଣ୍ଡିତ ବାଲ୍ମୀକିଙ୍କର ଜନ୍ମପତ୍ରିକା ପ୍ରସ୍ତୁତ କରିଦେଇପାରିବାର ସ୍ପର୍ଦ୍ଧା କରିବେ । ଆମ୍ଭେମାନେ ଉଭୟ ମତର ପକ୍ଷପାତୀ ନୋହୁଁ । ତେବେ ଏହା ଜଣାଯାଏ ଯେ, ଋଗ୍‌ବେଦରେ ବାଲ୍ମୀକ ଶବ୍ଦ ନାହିଁ । ବ୍ରାହ୍ମଣାଦି ଗ୍ରନ୍ଥରେ ବାଲ୍ମୀକି ଶବ୍ଦ ଅଛି । ସୁତରାଂ ଉତ୍ତର-ବୈଦିକ ଯୁଗରେ ବା ତତ୍‌ପରବର୍ତ୍ତୀ ସମୟରେ ବାଲ୍ମୀକି ଋଷିଙ୍କର ଜନ୍ମ, ଏଥିରେ ସନ୍ଦେହ ନାହିଁ । ବାଲ୍ମୀକି ଭୃଗୁବଂଶୀୟ ଋଷି । ଆମ୍ଭେମାନେ ଯେଉଁ ରାମାୟଣ ଖଣ୍ଡ ବାଲ୍ମୀକି ରାମାୟଣ ବୋଲି ପାଇଅଛୁଁ, ତାହା ରାମଙ୍କର ସମସାମୟିକ ବାଲ୍ମୀକି ଋଷି ପ୍ରଣୀତ କି ? ପୁଣି ତାଙ୍କ ରଚିତ ଅବିକଳ ରାମାୟଣ ଖଣ୍ଡ ଉତ୍ତରାଧିକାରୀ ସତ୍ତ୍ୱରେ ଭାରତବାସୀ ପାଇ ଆସୁଅଛନ୍ତି କି ? ଅନେକେ କହିବେ ପୁସ୍ତକର ନାମ 'ବାଲ୍ମୀକି ରାମାୟଣ', ଅତଏବ ଏହା ଆଦିକବି ବାଲ୍ମୀକିଙ୍କ ରଚିତ । ଆମ୍ଭ ଦେଶରେ କେତେଖଣ୍ଡ ଓଡ଼ିଆ ରାମାୟଣ ଅଛି । ଯେଉଁମାନେ ସଂସ୍କୃତ ଭାଷା ଅଛି ବୋଲି ଜାଣନ୍ତି ନାହିଁ ଏବଂ ସଂସ୍କୃତରେ ବାଲ୍ମୀକି ରାମାୟଣ ଅଛି ବୋଲି

ଜାଣନ୍ତି ନାହିଁ; ସେମାନେ ଓଡ଼ିଆ ରାମାୟଣକୁ ବାଲ୍ମୀକି ରାମାୟଣ ବୋଲି କହନ୍ତି । ଫକୀରମୋହନଙ୍କ ରାମାୟଣକୁ ଅନେକେ ବାଲ୍ମୀକି ରାମାୟଣ ବୋଲି କହନ୍ତି । ଓଡ଼ିଆ ରାମାୟଣକୁ ଯେଉଁ ହିସାବରେ ବାଲ୍ମୀକି ରାମାୟଣ ବୋଲାଯାଏ, ସେ ହିସାବରେ ସଂସ୍କୃତ ରାମାୟଣକୁ ବାଲ୍ମୀକି ରାମାୟଣ ବୋଲିବାକୁ ଆମ୍ଭମାନଙ୍କର ଆପତ୍ତି ନାହିଁ । ମାତ୍ର ଏହା ଆଦିକବିଙ୍କ ରଚିତ ଅବିକଳ ପୁସ୍ତକ ବୋଲିବାକୁ ଆମ୍ଭେମାନେ ପ୍ରସ୍ତୁତ ନୋହୁଁ ।

ଅନେକେ ମନେକରନ୍ତି ଯେ, ରାମାୟଣ ପୂର୍ବରୁ ଶ୍ଳୋକ ନ ଥିଲା, ବାଲ୍ମୀକି ଋଷି ଦିନେ ଶିଷ୍ୟ ସମଭିବ୍ୟାହାରରେ ତମସା ନଦୀତୀରରେ ବିଚରଣ କଲାବେଳେ ଏକ ନିଷାଦ କ୍ରୌଞ୍ଚମିଥୁନ ମଧ୍ୟରୁ ପୁରୁଷ ପକ୍ଷୀକୁ ଶରବିଦ୍ଧ କଲା । କ୍ରୌଞ୍ଚୀ ପତି-ବିୟୋଗ-କାତରା ହୋଇ ରୋଦନ କରିବାକୁ ଲାଗିଲା । ଏହି ହୃଦୟବିଦାରକ ଦୃଶ୍ୟ ଦେଖିବାରୁ ଏବଂ କ୍ରୌଞ୍ଚୀର କରୁଣ ରୋଦନ ଧ୍ୱନି ଋଷିଙ୍କର କର୍ଣ୍ଣକୁହରରେ ପ୍ରବେଶ କରିବାରୁ ନିମ୍ନୋକ୍ତ ଶ୍ଳୋକଟି ସ୍ୱତଃ ତାଙ୍କ ମୁଖରୁ ନିଃସୃତ ହେଲା—

'ମାନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ ।
ଯତ୍କ୍ରୌଞ୍ଚମିଥୁନାଦେକମବଧୀଃ କାମମୋହିତଂ ।

ମୁନିଙ୍କର ଶୋକଜନିତ ସ୍ୱତଃ ନିଃସୃତ ପଦ୍ୟାବଳୀର ନାମ ଶ୍ଳୋକ ହେଲା । ବାଲ୍ମୀକି ନାରଦ ଓ ବ୍ରହ୍ମାଙ୍କର ଉପଦେଶ ଅନୁସାରେ ଏହି ଛନ୍ଦରେ ରାମାୟଣ ରଚନା କଲେ । ଏହି ଛନ୍ଦର ନାମ ଅନୁଷ୍ଟୁପ୍ ଛନ୍ଦ । ଅନୁଷ୍ଟୁପ୍ ଛନ୍ଦଟି ବାଲ୍ମୀକି କୃତ କି ? ଯେବେ ରାମାୟଣ ରଚନା ପୂର୍ବରୁ ଆର୍ଯ୍ୟଶାସ୍ତ୍ରରେ ଛନ୍ଦୋବନ୍ଧ ବାକ୍ୟାବଳୀ ନ ଥିବ, ତେବେ ଉପରୋକ୍ତ ଶ୍ଳୋକଟି ପ୍ରଥମ ବୋଲାଯିବ । ଋଗ୍‌ବେଦ ସଂହିତାରେ ଅନୁଷ୍ଟୁପ୍, ତ୍ରିଷ୍ଟୁପ, ଜଗତି, ଗାୟତ୍ରୀ ପ୍ରଭୃତି ଛନ୍ଦ ଅଛି । ତାହାହେଲେ ଅନୁଷ୍ଟୁପ ନାମଟି ନୂତନ ନୁହେଁ, ଏହା ବୈଦିକ ଛନ୍ଦ । ତେବେ ବୈଦିକ ଅନୁଷ୍ଟୁପ୍ ଓ ସଂସ୍କୃତ ଅନୁଷ୍ଟୁପ୍ ଛନ୍ଦର କ୍ରମ ସମ୍ପୂର୍ଣ୍ଣ ଭିନ୍ନ ।

ମନୁସଂହିତା ଅତି ପ୍ରାଚୀନ ଧର୍ମଶାସ୍ତ୍ର ବୋଲି ଲୋକଙ୍କର ଧାରଣା । ଶିବ ବିଷ୍ଣୁଙ୍କର ଆରାଧନାରେ ଉଲ୍ଲେଖ ନ ଥିବାରୁ ଶିବ ଓ ବିଷ୍ଣୁଙ୍କର ମାହାତ୍ମ୍ୟ ବୃଦ୍ଧି ହେବା ପୂର୍ବରୁ ମନୁସଂହିତା ରଚିତ ହୋଇଥିବାର ଅନେକ ପଣ୍ଡିତ ମତ ଦିଅନ୍ତି । ମାତ୍ର ଭାଷାବିତ୍‌ଗଣ ତାହା ସ୍ୱୀକାର କରନ୍ତି ନାହିଁ । ସେ ଯାହାହେଉ ବାଲ୍ମୀକି ରାମାୟଣରେ ମନୁଙ୍କ ନାମ ଏବଂ ମନୁସଂହିତାର ଶ୍ଳୋକ ଉଦ୍ଧୃତ ହୋଇଅଛି ।

'ଶକ୍ୟଂ ତ୍ୱୟାପି ତତ୍‌କାର୍ଯ୍ୟ ଧର୍ମମେବାନୁ ବର୍ତ୍ତଣାଂ ।
ଶ୍ରୂୟତେ ମନୁନା ଗୀତୌ ଶୌକୌ ଚାରିତ୍ରବତ୍ସଳୌ ।
ଗୃହିତୌ ଧର୍ମକଶଳୈସ୍ତଦା ତଚ୍ଚରତଂ ମୟା
ରାଜଭିର୍ଧୃ ତଦଣ୍ଡାଶ୍ଚ କୃତ୍ୱା ପାପାନି ମାନବାଃ
ନିର୍ମଳାଃ ସ୍ୱର୍ଗମାୟାନ୍ତି ସନ୍ତଃ ସୁକୃତିତୋ ଯଥା ।
ଶାସନାଦାପି ମୋକ୍ଷାଦ୍ୱା ସ୍ତେନଃପାପାତ୍ ପ୍ରମୁଚ୍ୟତେ ।
ରାଜ୍ୟତ୍ୱଶାସନାତସ୍ୟ ତଦବାପ୍ନୋତି କିଲ୍ୱିଷଂ ।
ସୁ ୧୮ । ୩୦, ୩୧, ୩୨

ଯେବେ ମନୁସଂହିତାକୁ ପ୍ରାଚୀନତମ ଗ୍ରନ୍ଥ ବୋଲିବାକୁ ହୁଏ, ଅନୁଷ୍ଟୁପ୍ ଛନ୍ଦ ଯେ ବାଲ୍ମୀକିଙ୍କ କୃତ୍ୟ ନୁହେଁ ତାହା ଅବଶ୍ୟ ସ୍ୱୀକାର କରିବାକୁ ହେବ । ଯେହେତୁ ମନୁସଂହିତା ଅନୁଷ୍ଟୁପ୍ ଛନ୍ଦରେ ଲିଖିତ, ଏହି ପ୍ରସଙ୍ଗ ଏଠାରେ ଉଲ୍ଲେଖ କରିବାର ପ୍ରୟୋଜନ ଏହି ଯେ, ଯେଉଁମାନେ ଅନୁଷ୍ଟୁପ୍ ବୃତ୍ତିଟି ବାଲ୍ମୀକି ରଚିତ ବୋଲି ସ୍ୱୀକାର କରିବେ, ସେମାନେ ମନୁସଂହିତାକୁ ରାମାୟଣ ଅପେକ୍ଷା ଅର୍ବାଚୀନ ବୋଲିବାକୁ ବାଧ ଏବଂ ଯେଉଁମାନେ ମନୁସଂହିତାକୁ ରାମାୟଣ ଅପେକ୍ଷା ପ୍ରାଚୀନ ବୋଲି ସ୍ୱୀକାର କରିବେ, ସେମାନେ ଅନୁଷ୍ଟୁପ୍ ଛନ୍ଦ ବାଲ୍ମୀକି କୃତ ନୁହେଁ ବୋଲିବାକୁ ବାଧ । ପାଠକଗଣ ଏହାର ଔଚିତ୍ୟ ବିଚାର କରିବେ ।

ରତ୍ନାକର ଦସ୍ୟୁ ଷାଠିଏ ହଜାର ବର୍ଷ ତପସ୍ୟା କରି ଉଇହୁଙ୍କାରୁ ବାହାରି ବାଲ୍ମୀକି ନାମରେ ଅଭିହିତ ହେବା ଉପାଖ୍ୟାନ ଯେମନ୍ତ, କ୍ରୌଞ୍ଚବଧ ଦେଖି ଶ୍ଳୋକ ନିଃସୃତ ହେବା ତେମନ୍ତ କାଳ୍ପନିକ । ପ୍ରଥମୋକ୍ତ ଉପାଖ୍ୟାନଟି ରାମାୟଣରେ ନାହିଁ । ଶେଷୋକ୍ତ ଉପାଖ୍ୟାନଟି ଅନୁକ୍ରମଣିକାଧ୍ୟାୟରେ ଅଛି । ଅନୁକ୍ରମଣିକାଧ୍ୟାୟର ରଚକ କିଏ ? ତଥାବିଧଂ ଦ୍ୱିଙ୍ଗଂ ଦୃଷ୍ଟ୍ୱା ନିଷାଦେନ ନିପାତିତଂ ଋଷେଧର୍ମାତ୍ମନସ୍ତସ୍ୟ କାରୁଣ୍ୟଂ ସମପଦ୍ୟତ । × × × କାମମୋହିତଃ । ବା ୨ । ୧୩, ୧୪, ୧୫ । କ୍ରୌଞ୍ଚବଧ ଦେଖି ସେହି ଧର୍ମାତ୍ମା ଋଷିଙ୍କର (ବାଲ୍ମୀକିଙ୍କର) କାରୁଣ୍ୟ ଜାତ ହେଲା ଇତ୍ୟାଦି । ବାଲ୍ମୀକି ନିଜେ ଆପଣାକୁ ଧର୍ମାତ୍ମା ବୋଲିବା କେତେଦୂର ସଙ୍ଗତ, ତାହା ପାଠକଗଣ ବିବେଚନା କରିବେ । ଆମ୍ଭମାନଙ୍କ ମତରେ ଅନୁକ୍ରମଣିକାଧ୍ୟାୟଗୁଡ଼ିକ ବାଲ୍ମୀକି ରଚିତ ନୁହେଁ ।

କ୍ରୌଞ୍ଚବଧ ବୃତ୍ତାନ୍ତ କେହି କେହି ଭିନ୍ନ ଅର୍ଥ କରନ୍ତି ବୋଲି ଟୀକାକାର ଲେଖିଅଛନ୍ତି । କାବ୍ୟାରମ୍ଭରେ ଆଶୀର୍ବାଦ କିମ୍ବା କାବ୍ୟାର୍ଥ ସୂଚନା କରିବାର ବିଧାନ ଅଛି । ଏଣୁ ରାମାୟଣ ରଚକ ନାରଦଙ୍କ ମୁଖରୁ ରାମ ଚରିତ୍ର ଶ୍ରବଣ କରି

ତମସାତୀରକୁ ସ୍ନାନ କରିବାକୁ ଯାଇ କାବ୍ୟ ରଚନାର ଅନୁଚିନ୍ତା କରୁ କରୁ ପ୍ରଥମରୁ ଏହି ଆଶୀର୍ବାଦ ଶ୍ଳୋକ ମୁଖରୁ ବାହାରିଲା । ଜଣେ ଟୀକାକାର ଏହି ଶ୍ଳୋକର ଅର୍ଥ କରନ୍ତି ଯେ, ହେ ରାମ, ତୁମ୍ଭେ ମନ୍ଦୋଦରୀ ଓ ରାବଣ ମଧ୍ୟରୁ କାମମୋହିତ ରାବଣକୁ ବଧକଲ, ଏହେତୁ ଅନେକ ସମ୍ବସର ଅଖଣ୍ଡ ଐଶ୍ୱର୍ଯ୍ୟାନନ୍ଦ ପ୍ରାପ୍ତ ହୁଅ । ଅନ୍ୟ ମତରେ— ହେ ରାବଣ, ତୁ ରାଜ୍ୟଜୟ ଓ ବନବାସାଦି ଦୁଃଖରେ ଜର୍ଜରିତ ସୀତା ରାମ ମଧ୍ୟରୁ ସୀତାଙ୍କୁ ବଧ ଅପେକ୍ଷା ଅଧିକ ପୀଡ଼ାଦେଲୁ, ସେହି ହେତୁରୁ ବ୍ରହ୍ମଦତ୍ତ ଲଙ୍କାପୁରର ପ୍ରତିଷ୍ଠାକୁ ପ୍ରାପ୍ତ ହୁଅ ନାହିଁ ।

ଉପରୋକ୍ତ କାରଣରୁ ଟୀକାକାରଗଣ କ୍ରୌଞ୍ଚବଧ ବୃତ୍ତାନ୍ତ ଏବଂ ବାଲ୍ମୀକି ମୁଖରୁ ସ୍ୱତଃ ଶ୍ଳୋକ ବାହାରିବା ବିଷୟରେ ସନ୍ଦିହାନ ଥିବାର ସହଜରେ ଅନୁମାନ କରାଯାଇପାରେ ।

ବାଲ୍ମୀକି ରାମଙ୍କର ସମସାମୟିକ ଲୋକ କି ? ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରିବେ ଯେ, ବାଲ୍ମୀକି ରାମଙ୍କର ସମସାମୟିକ ଲୋକ, ଯେହେତୁ ନିର୍ବାସିତା ସୀତାଙ୍କୁ ବାଲ୍ମୀକି ନିଜ ଆଶ୍ରମରେ ସ୍ଥାନ ଦେଇଥିଲେ ଏବଂ ରାମଙ୍କପୁତ୍ର କୁଶଲବଙ୍କୁ ପାଳନ କରୁଥିଲେ । କେତେକ କାରଣରୁ ଆମ୍ଭେମାନେ ଏହା ବିଶ୍ୱାସ କରିବାକୁ ଅକ୍ଷମ । ରାମାୟଣର ପ୍ରଥମସର୍ଗର ପ୍ରଥମ ଶ୍ଳୋକରେ ବାଲ୍ମୀକି ନାରଦଙ୍କୁ ପ୍ରଶ୍ନ କଲେ—

କୋନ୍ୱସ୍ମିନ୍ ସଂପ୍ରତଂ ଲୋକେ
ଗୁଣବାନ୍ କଶ୍ଚ ବୀର୍ଯ୍ୟବାନ୍ ।

ବା : ୧ । ୨

ନାରଦ ଉତ୍ତର କଲେ—

ବହବୋ ଦୁର୍ଲଭା ଶ୍ଚୈବ
ଯେ ତ୍ୱୟା କୀର୍ତ୍ତିତା ଗୁଣାଃ ।
ମୁନେ ବକ୍ଷ୍ୟାମ୍ୟହଂ ବୁଦ୍ଧ୍ୱା
ତୈର୍ଯୁକ୍ତଃ ଶ୍ରୂୟତେ ନରଃ ।

ବା : ୧ । ୭

ନାରଦ କହିଲେ, ତୁମ୍ଭେ ଯେଉଁ ଗୁଣମାନ କୀର୍ତ୍ତନ କଲ, ତାହା ଜଣେ ଲୋକଠାରେ ଥିବା ଦୁର୍ଲଭ । ତଥାପି ହେ ମୁନି, ଏତାଦୃଶ ଗୁଣଯୁକ୍ତ ନରର ନାମ ସ୍ମରଣ କରି କହୁଅଛି ଶ୍ରବଣ କର । ବୁଦ୍ଧ୍ୱା ଅର୍ଥ ସ୍ମୃହା-ସ୍ମରଣ କରି । ଯେଉଁ ସମୟରେ ରାମ 'ଅପ୍ରତିହତ ପ୍ରତାପରେ ରାଜ୍ୟଶାସନ ଓ ପ୍ରଜାପାଳନ' କରୁଥିଲେ, ସେତେବେଳେ ପୃଥିବୀରେ ରାମତୁଲ୍ୟ କେତେଜଣ ସର୍ବଗୁଣସମ୍ପନ୍ନ ରାଜା ରାଜତ୍ୱ କରୁଥିଲେ ଯେ, ସେଥି ମଧ୍ୟରୁ ରାମନାମଟି ବାଛିନେବାକୁ ନାରଦଙ୍କୁ ସମୟସାପେକ୍ଷ ହେଲା । ରାମାୟଣ ଅବଶ୍ୟ ରାମଙ୍କର ଜୀବିତାବସ୍ଥାରେ କିମ୍ବା ରାମଙ୍କର ଦେହାନ୍ତର ଉତ୍ତାରୁ ରଚିତ ହୋଇଥିବ, ଆଉ ଭବିଷ୍ୟପୁରାଣ ପରି ରାମଜନ୍ମ ଆଗରୁ ରଚିତ ହୋଇ ନ ଥିବ । ତେବେ ଯେଉଁ ବାଲ୍ମୀକି ସୀତାଙ୍କୁ ଆଶ୍ରୟ ଦେଇ କୁଶଲବଙ୍କୁ ଶିକ୍ଷା ଦେଇଥିଲେ, ସେ କିପରି ପୁଣି ରାମଚରିତ୍ର ଜାଣି ନ ଥିଲେ ଯେ, ନାରଦଙ୍କ ସାହାଯ୍ୟରେ ରାମଚରିତ୍ର ଜ୍ଞାତ ହେଲେ । ଦଶରଥଙ୍କ ଅଶ୍ୱମେଧ ଯଜ୍ଞରେ ପୁତ୍ରେଷ୍ଟି ଯାଗରେ ବାଲ୍ମୀକି ନାହାନ୍ତି । ରାମ ବନବାସରେ ରାମଙ୍କ ବିବାହରେ ବାଲ୍ମୀକି ନାହାନ୍ତି । ଚିତ୍ରକୂଟରେ ବାସକଲା ସମୟରେ ରାମ ଜଣେ ବାଲ୍ମୀକି ଋଷିଙ୍କ ସହିତ ସାକ୍ଷାତ କରିଥିଲେ । ମାତ୍ର ଚିତ୍ରକୂଟର ବାଲ୍ମୀକି ଯେ କବି ବାଲ୍ମୀକି ନୁହନ୍ତି ତାହା ସ୍ପଷ୍ଟରୂପେ ଜଣାଯାଉଅଛି ।

ଇତି ସୀତା ଚ ରାମଶ୍ଚ ଲକ୍ଷ୍ମଣଶ୍ଚ କୃତାଞ୍ଜଳିଃ ।
ଅଭିଗମ୍ୟାଶ୍ରମଂ ସର୍ବେ ବାଲ୍ମୀକିମଭ୍ୟବାଦୟନ୍ ।

ଅ : ୫୬ । ୧୬

ଚିତ୍ରକୂଟନିବାସୀ ବାଲ୍ମୀକି ରାମଙ୍କୁ ଦେଖି କହିଲେ—

ଜ୍ଞାତଂ ମୟା ରଘୁଶ୍ରେଷ୍ଠ ତବାଗମନକାରଣଂ ।

ଅ:୫୬।୧୮

ରାମ ବନବାସକୁ ଆସିବା କାରଣ ଯେଉଁ ବାଲ୍ମୀକି ଜ୍ଞାତ ଥିଲେ, ସେ ନାରଦଙ୍କୁ ପ୍ରଶ୍ନକରି ରାମଚରିତ୍ର ଜ୍ଞାତହେବା ଯୁକ୍ତିସଙ୍ଗତ ନୁହେଁ ।

ରାମାୟଣ ଟୀକାକାର ଲେଖିଅଛନ୍ତି × × × ବାଲ୍ମୀକି ରାମ ରାଜ୍ୟପ୍ରାପ୍ତି ସମୟେ ତମସାତୀରଂ ଗତ ଇତି ନ ବିରୋଧ ଇତି ପ୍ରାଞ୍ଚଃ ପ୍ରାଚେତସାଦୟଃ ବାଲୀକେରମ୍ୟ ଏବେତି ତତ୍ତ୍ୱଂ ।

ଉତ୍ତରାକାଣ୍ଡରେ ବାଲ୍ମୀକି ନିର୍ବାସିତା ସୀତାଙ୍କୁ ଆଶ୍ରୟ ଦେବା ଏବଂ ତାଙ୍କର ଯମଜ ପୁତ୍ର କୁଶ ଲବଙ୍କୁ ରାମାୟଣ ଶିକ୍ଷା ଦେଇଥିବା ପ୍ରସଙ୍ଗ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । କିନ୍ତୁ ଆମ୍ଭେମାନେ ଏଥିଉତ୍ତାରୁ ଦେଖାଇବୁ ଯେ, ଉତ୍ତରାକାଣ୍ଡ ପ୍ରଥମ ରଚକଙ୍କ ରଚନା ନୁହେଁ ଏବଂ ଏହା ବହୁକାଳ ଉତ୍ତାରୁ ରାମାୟଣରେ ଯୋଗ କରାଯାଇଅଛି । ଉତ୍ତରାକାଣ୍ଡଟି ରାମାୟଣ ଛଅକାଣ୍ଡର ସମସାମୟିକ ରଚନା ନୁହେଁ ବୋଲି ସ୍ୱୀକାର କଲେ ବାଲ୍ମୀକି ରାମଙ୍କର ସମସାମୟିକ ଲୋକ ନ ଥିବାର ସ୍ପଷ୍ଟ ପ୍ରମାଣିତ ହେଉଅଛି ।

ରାମଚରିତ୍ର ବାଲ୍ମୀକିବର୍ଣ୍ଣିତ ଏହା ଅସ୍ୱୀକାର କରିବାର ଉପାୟ ନାହିଁ । ବାଲ୍ମୀକି ରାମଚରିତ୍ରର ପ୍ରଥମ ରଚକ ଓ ପ୍ରକାଶକ । ମାତ୍ର ଆମ୍ଭମାନଙ୍କର ହସ୍ତଗତ ରାମାୟଣ ଖଣ୍ଡ ବାଲ୍ମୀକିରଚିତ ପୁସ୍ତକ ତାହା ଆମ୍ଭେ ସ୍ୱୀକାର କରି ନ ପାରୁଁ। ରାମାୟଣ ବ୍ୟାସ ରଚିତ ନ ଥିବା ବିଷୟରେ ଆମ୍ଭେମାନେ ଯେଉଁ ପ୍ରମାଣ ଦେଖାଇଅଛୁଁ, ସେହି ପ୍ରମାଣ ସବୁ ଏ ସ୍ଥଳରେ ପ୍ରଯୋଜ୍ୟ । ରାମାୟଣଟି ବାଲ୍ମୀକି ରଚିତ ଅବିକଳ ପୁସ୍ତକ ନୁହେଁ, ତାହା ପ୍ରସଙ୍ଗକ୍ରମେ ପଶ୍ଚାତ୍ ପ୍ରଦର୍ଶିତ ହେବ ।

ରାମାୟଣର ରଚନା କାଳ ଘେନି ବିଶେଷ ମତଭେଦ ଅଛି । ଯେଉଁମାନେ ଏହି ପୁସ୍ତକ ଖଣ୍ଡ ଖୋଦ ବାଲ୍ମୀକିଙ୍କ ରଚିତ ବୋଲି ମନେ କରିବେ, ସେମାନେ ଏହାର ରଚନାକାଳ ତ୍ରେତାଯୁଗ ବୋଲି ପ୍ରକାଶ କରିବେ। ଆମ୍ଭେମାନେ ପୂର୍ବେ ଦେଖାଇଅଛୁଁ, ବାଲ୍ମୀକି ରାମଙ୍କର ସମସାମୟିକ ଲୋକ ନୁହଁନ୍ତି ଏବଂ ରାମାୟର ଖୋଦ ବାଲ୍ମୀକି ରଚିତ ନୁହେଁ । ସୁତରାଂ ଏହି ପୁସ୍ତକ ତ୍ରେତା ଯୁଗରେ ବା ଦ୍ୱାପର ଯୁଗରେ ଲିଖିତ ନୁହେଁ । ଏହା ଘୋର କଳିଯୁଗରେ ରଚିତ ହୋଇଥିବ । ଆମ୍ଭମାନଙ୍କର ମତରେ ବୌଦ୍ଧ ଓ ହିନ୍ଦୁମାନଙ୍କର ଘୋର ବିବାଦ କାଳର ନାମ ଘୋର କଳିଯୁଗ ।

ପ୍ରଥମେ ରାମାବତାର ପରେ କୃଷ୍ଣାବତାର । କୃଷ୍ଣାବତାରରେ ମହାଭାରତ ଯୁଦ୍ଧ । ଯୁଦ୍ଧ ଉତ୍ତାରୁ ମହାଭାରତ ଲିଖିତ ଓ ପ୍ରଚାରିତ ହୋଇଥିବ, ଏହା ଭାବିବା ସ୍ୱାଭାବିକ । ମହାଭାରତ ଘଟଣା ଆଗରୁ ରାମାୟଣ ଘଟଣା ଘଟିଥିଲା, ଏହା ଅସ୍ୱୀକାର କରିବାର କାରଣ ନାହିଁ। କିନ୍ତୁ ସାତକାଣ୍ଡ ରାମାୟଣ ଯେ ଯୁଧିଷ୍ଠିରଙ୍କର ରାଜତ୍ୱକାଳ ପୂର୍ବରୁ ରଚିତ ଓ ପ୍ରଚାରିତ ହୋଇ ନ ଥିଲା, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ରାଜା ଯୁଧିଷ୍ଠିରଙ୍କ ସମକ୍ଷରେ ମାର୍କେଣ୍ଡେୟ ରାମଙ୍କ ନାମ ପ୍ରକାଶ କରିବାରୁ ଯୁଧିଷ୍ଠିର ତାଙ୍କୁ ପଚାରିଲେ—

କସ୍ମିନ୍ରାମ କୁଳେ ଜାତଃ
କିଂ ବୀର୍ଯ୍ୟ କିଂ ପରାକ୍ରମଃ ।
ରାବଣଃ କସ୍ୟ ପୁତ୍ରୋବା
କିଂ ବୈରଂ ତସ୍ୟ ତେନହ ।

ବ. ୨୭୪ । ୪

ଯେବେ ଯୁଧିଷ୍ଠିରଙ୍କ ରାଜତ୍ୱ ପୂର୍ବରୁ ଏହି ପୁସ୍ତକ ରଚିତ ଓ ଲିଖିତ ହୋଇଥାନ୍ତା, ତେବେ ମହାରାଜାଙ୍କ ଲାଇବ୍ରେରୀରେ ଖଣ୍ଡିଏ ପାଣ୍ଡୁଲିପି ନ ଥାନ୍ତା କି ? ଏବଂ ଧର୍ମରାଜ ଥରେ ଅଧେ ତାହା ଅଧ୍ୟୟନ ଓ ଶ୍ରବଣ କରି ନ ଥାନ୍ତେ କି ? ଭାରତବାସୀ ଆବାଳବୃଦ୍ଧ ରାମନାମକୁ ଜାଣନ୍ତି । ଯୁଧିଷ୍ଠିର ରାମନାମ ଓ ରାମଙ୍କ ଖ୍ୟାତି ନ ଜାଣିବା ବଡ଼ କ୍ଷୋଭର ବିଷୟ ନୁହେଁ କି ? ଯୁଧିଷ୍ଠିରଙ୍କର ରାଜତ୍ୱ ପୂର୍ବରୁ ରାମାୟଣ ରଚିତ ହୋଇଥିଲେ ଏବଂ ରାମଙ୍କର ଇଦୃଶ ଖ୍ୟାତି ପ୍ରଚାରିତ ହୋଇଥିଲେ ଯୁଧିଷ୍ଠିର ରାମଙ୍କର କୁଳ ଓ ବଂଶର କଥା ପଚାରନ୍ତେ କି ?

ଋଷ୍ୟଶୃଙ୍ଗଙ୍କର ପ୍ରଶସ୍ତ୍ୟ ଓ ମହତ୍ତ୍ୱ କି ହେତୁରୁ ? ସମସ୍ତେ କହିବେ ପୁତ୍ରେଷ୍ଟି ଯଜ୍ଞରେ ଚରୁ ଦେଇ ସେ ବିଷ୍ଣୁଙ୍କୁ ଅବତାର କରାଇଥିଲେ । ଏହା ସ୍ପଷ୍ଟାକ୍ଷରରେ ରାମାୟଣରେ ଲିଖିତ ହୋଇଅଛି । ଯେବେ ମହାଭାରତରେ ଲିଖିତ ଋଷ୍ୟଶୃଙ୍ଗ ବୃତ୍ତାନ୍ତରେ ତାଙ୍କର ଏହି ପରିଚୟ ନ ମିଳେ, ତାହାହେଲେ ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ମହାଭାରତର ଋଷ୍ୟଶୃଙ୍ଗ ବୃତ୍ତାନ୍ତ ରାମାୟଣରୁ ସଂଗୃହୀତ ହୋଇ ନାହିଁ। ପାଠକଗଣ ମହାଭାରତ ବନପର୍ବ ୧୧୦-୧୧୨ ଅଧ୍ୟାୟ ଅଧ୍ୟୟନ କଲେ ତାହା ସ୍ପଷ୍ଟ ରୂପେ ଜାଣିପାରିବେ ।

ପଶ୍ଚାତ୍ ପ୍ରଦର୍ଶିତ ହେବ ଯେ, ବାଲ୍ମୀକି ଓ ରାମଙ୍କ ନାମ ଓ ରାମଚରିତ୍ର ମହାଭାରତର ନାନା ସ୍ଥାନରେ ବର୍ଣ୍ଣିତ ଅଛି । ମାତ୍ର ତାହା ଏହି ରାମାୟଣରୁ ସଂଗୃହୀତ ହୋଇ ନ ଥିବାର ସ୍ପଷ୍ଟ ଜଣାଯାଏ ।

କେତେଜଣ ପାଶ୍ଚାତ୍ୟ ଓ ଏ ଦେଶର ପଣ୍ଡିତ ପ୍ରକାଶ କରନ୍ତି ଯେ, ରାମାୟଣ ମହାଭାରତ ପୂର୍ବରୁ ଏମନ୍ତ କି ପାଣିନୀଙ୍କ ପୂର୍ବରୁ ରଚିତ ହୋଇଥିବ । ସେମାନେ ଦେଖିପାରି ଅଛନ୍ତି ଯେ, ରାମାୟଣରେ ସାରସିକ ପ୍ରୟୋଗବିରୋଧ ଅନେକ ପଦ ଅଛି । ସେମାନଙ୍କ ମତରେ ଯେଉଁ ସମୟରେ ରାମାୟଣ ପୁସ୍ତକ ରଚିତ ହେଲା, ସେତେବେଳେ ଭାଷାକାବ୍ୟ ଭାଷା ପରି ପରିଷ୍କୃତ ହୋଇ ନ ଥିଲା । କିନ୍ତୁ ଆମ୍ଭମାନଙ୍କ ମତରେ ଏ ଯୁକ୍ତିଟି ସମୀଚୀନ ବୋଲି ବୋଧ ହେଉ ନାହିଁ । ଯେଉଁ ଧର୍ମପ୍ରବର୍ତ୍ତକଗଣ ରାମାୟଣର ପ୍ରାଚୀନତ୍ୱ ପ୍ରମାଣ କରିବାକୁ ପ୍ରାଣପଣେ ଚେଷ୍ଟା କରି ଅଛନ୍ତି, ଏବଂ ଭାରତବାସୀଗଣ ଚିରକାଳ ରାମାୟଣର ପ୍ରାଚୀନତ୍ୱ ସ୍ୱୀକାର କରିଯିବେ ବୋଲି ଗୋଟିଏ ଚଲାଖି ଖେଳି ଅଛନ୍ତି, ସେମାନେ ଯେ ରାମାୟଣର ପ୍ରାଚୀନତ୍ୱ ଫଳାଇବା ନିମନ୍ତେ ଗୋଟି କେତେ ସାରସିକ ଓ ଅସାରସିକ ଉଭୟବିଧ ପଦର ପ୍ରୟୋଗ ଦେଖାଯାଏ, ସେତେବେଳେ କବି ଇଚ୍ଛାପୂର୍ବକ କିମ୍ବା ଅପାରଗତା ହେତୁ ଅସାରସିକ ପଦ ବ୍ୟବହାର କରିଅଛନ୍ତି ବୋଲିବା ତ ଅଯୌକ୍ତିକ ନୁହେଁ । ଯେମନ୍ତ 'ଦୃଶ୍ୟ' (ଦେଖିକରି) ଅସାରସିକ ଏବଂ 'ଦୃଷ୍ଟ୍ୱା' (ଦେଖିକରି)

ସାରସିକ। ଯେବେ ସମସ୍ତ ରାମାୟଣରେ କେବଳ 'ଦୃଶ୍ୟ' ଶବ୍ଦର ବ୍ୟବହାର ଥାନ୍ତା ଏବଂ 'ଦୃଷ୍ଟ୍ୱା' ଶବ୍ଦର ଆଦୌ ବ୍ୟବହାର ନ ଥାନ୍ତା, ତାହାହେଲେ ଆମ୍ଭେମାନେ ବିଜ୍ଞ ପଣ୍ଡିତଗଣଙ୍କ ମତ ଶିରୋଧାର୍ଯ୍ୟ କରନ୍ତୁ । ମାତ୍ର 'ଦୃଶ୍ୟ' ପଦର ପ୍ରାୟ ଦୁଇଗୁଣ 'ଦୃଷ୍ଟ୍ୱା' । ପଦ ଦେଖିପାରି ପ୍ରତିବାଦ କରିବାକୁ ବାଧ ହୋଇଅଛୁଁ ।

ମିଥିଲୋପବନେ ତତ୍ର ଆଶ୍ରମଂ
ଦୃଶ୍ୟ ରାଘବଃ।
ବା : ୮ । ୧୧

ପତିସଂଯୋଗସୁଲଭଂ ବୟୋ
ଦୃଷ୍ଟ୍ୱା ତୁ ମେ ପିତା।
ଅ : ୩୪ । ୧୧୮

ଦେବତାନାଂ ଭୟଂ ଦୃଷ୍ଟ୍ୱା
ଶ୍ରୁତ୍ୱା ବାକ୍ୟନ୍ତୁ ଶାର୍ଙ୍ଗିଣଃ ।
ବା : ୪୫ । ୨୫

ଅନ୍ୟ କଥା କଣ, କାଳ ହିସାବରେ ଚଣ୍ଡୀ ତ ସେଦିନ ରଚିତ ହୋଇଅଛି, ତହିଁରେ ମଧ ଅସାରସିକ 'ବେମୁ' ପ୍ରଭୃତି ପଦ ଅଛି ।

ରାମାୟଣ ପ୍ରାଚୀନ ପୁସ୍ତକ ବୋଲି ପଣ୍ଡିତଗଣ ଆଉ ଗୋଟିଏ କାରଣ ଦେଖିବାକୁ ପାଇଅଛନ୍ତି । ସେମାନେ କହନ୍ତି ରାମାୟଣ ଅନୁଷ୍ଟୁପ୍ ଛନ୍ଦରେ ଲିଖିତ । ଏଥିରେ ଅନୁପ୍ରାସ ଓ ଶବ୍ଦାଡ଼ମ୍ବର ଅଧିକ ନାହିଁ । ମାତ୍ର ପ୍ରତ୍ୟେକ ରାମାୟଣ ପାଠକଗଣ ଦେଖିବାକୁ ପାଇବେ ଯେ, ରାମାୟଣରେ ଅନୁଷ୍ଟୁପ୍ ଛନ୍ଦ ଭିନ୍ନ ଅପର କେତେଗୋଟି ଛନ୍ଦ ଅଛି ଏବଂ ଶବ୍ଦାଡ଼ମ୍ବର ଓ ଅନୁପ୍ରାସାଡ଼ମ୍ବର ଯଥେଷ୍ଟ ଅଛି । ଏମନ୍ତ କି ରଚନା ପରିପାଟୀ ଦେଖାଇବା ନିମନ୍ତେ କବି ଇଚ୍ଛାପୂର୍ବକ ଅନୁପ୍ରାସର ଉତ୍ସ ଫିଟାଇ ଦେଇଅଛନ୍ତି । ଉଦାହରଣସ୍ୱରୂପ ଗୋଟିଏ ଶ୍ଲୋକ ନିମ୍ନରେ ପ୍ରକାଶ କରାଗଲା—

ବିନଷ୍ଟଶୀତାମ୍ବୁତୁଷାରପଙ୍କୋ
ମହାଗ୍ରହ ଗ୍ରାହବିନଷ୍ଟ ପଙ୍କଃ ।
ପ୍ରକାଶଲକ୍ଷ୍ୟାଶ୍ରୟନିର୍ମଳାଙ୍କୋ
ରରାଜ ଚନ୍ଦ୍ରୋ ଭଗବାଚଛଶାଙ୍କ ।
ସୁ : ୫ । ୬

କବି ଲେଖନୀରୁ ଅକସ୍ମାତ୍ ଗୋଟିଏ ଶ୍ଲୋକ ବାହାରି ଅଛି, ତାହା ନୁହେଁ । ରାମାୟଣରେ ଏହି ଶ୍ରେଣୀର ଅନେକ ଶ୍ଲୋକ ଅଛି ଏବଂ ସୁନ୍ଦରା କାଣ୍ଡର ପଞ୍ଚମସର୍ଗ ଗୋଟିଏଯାକ ଏହିପରି ଶ୍ଲୋକରେ ପରିପୂର୍ଣ୍ଣ ।

ବୁଦ୍ଧଦେବଙ୍କର ବହୁ ସହସ୍ର ବର୍ଷ ପୂର୍ବେ ରାମଙ୍କର ଜନ୍ମ । ବୁଦ୍ଧଦେବଙ୍କ ନାମ ଏବଂ ବୌଦ୍ଧଧର୍ମର କଥା ରାମଙ୍କୁ ଜଣାଥିବାର ଅସମ୍ଭବ । ଯେବେ ଆମ୍ଭେମାନେ ରାମାୟଣରେ ବୁଦ୍ଧଦେବଙ୍କ ପ୍ରସଙ୍ଗ ଓ ବୌଦ୍ଧଧର୍ମ ନିନ୍ଦା ଦେଖିବାକୁ ପାଇବା, ତେବେ ରାମାୟଣଟି ବୌଦ୍ଧଧର୍ମ ପ୍ରଚାରର ବହୁ ବର୍ଷ ପରେ ରଚିତ ହୋଇଅଛି ବୋଲିବା ଅଯୌକ୍ତିକ କି ? ରାମଙ୍କ ମୁଖରେ ବୌଦ୍ଧଧର୍ମ ନିନ୍ଦା ଶ୍ରବଣ କଲେ, ବୌଦ୍ଧଧର୍ମ ପ୍ରତି ଲୋକଙ୍କର ବିରାଗ ହେବ, ଏହି ଭାବକୁ ପୋଷଣ କରି ରାମାୟଣ ଲେଖକ ଗୋଟିଏ ଚଲାଖି ଖେଳିବାକୁ ଯାଇ ରାମାୟଣର ଅର୍ବାଚୀନତ୍ୱ ପ୍ରମାଣ କରିପକାଇଲେ ।

ରାମଙ୍କୁ ପ୍ରତ୍ୟାବର୍ତ୍ତନ କରାଇବା ନିମନ୍ତେ ଭରତ ଚିତ୍ରକୂଟକୁ ଯାଇଥିଲେ। ରାମ ଭରତଙ୍କୁ ରାଜନୀତିର ଉପଦେଶ ଦେଲାବେଳେ ଜାବାଳି ଅଗ୍ରବକ୍ତା ହୋଇ ଲୋକାୟତ ମତ ବ୍ୟକ୍ତ କଲେ । ଏହା ଶ୍ରବଣ କରି ରାମ ଜାବାଳିଙ୍କୁ ତିରସ୍କାର କଲେ ଏବଂ କହିଲେ—

ଯଥା ହି ଚୌର ସ ତଥା ହି ବୁଦ୍ଧ
ସ୍ତଥାଗତଂ ନାସ୍ତି କମତ୍ର ବିଦ୍ଧି
ତସ୍ମାଦ୍ଧିୟଃ ଶକ୍ୟ ମତ ପ୍ରଜାନାଂ
ସ ନାସ୍ତି କେନାଭିମୁଖୋ ବୁଧଃ ସ୍ୟାତ୍ ।
ଅ: ୧୦୯,୩୪

ରାମଙ୍କର ଇଦୃଶ ତିରସ୍କାର ଶୁଣି ଜାବାଳି ମତ ପରିବର୍ତ୍ତନ କରି କହିଲେ—

ନ ନାସ୍ତି କାନାଂ ବଚନଂ ବ୍ରବୀମ୍ୟହଂ
ନ ନାସ୍ତି କୋହଂ ନ ଚ ନାସ୍ତି କିଞ୍ଚନ ।
ସମୀକ୍ଷ୍ୟ କାଳଂ ପୁନରାସ୍ତି କୋଭବ
ଭବେୟକାଳେ ପୁନରେବ ନାସ୍ତିକଃ ।
ଅ: ୧୦୯, ୩୮

ଶ୍ରମଣ ଅର୍ଥ ବୌଦ୍ଧ ସନ୍ନ୍ୟାସୀ, ଏହା ମଧ ରାମାୟଣରେ ଅଛି । ଏହା ଛଡ଼ା ବୌଦ୍ଧଧର୍ମ ପରିଚାୟକ ଅନେକ ଶବ୍ଦ ରାମାୟଣରେ ଅଛି । ତାହା ପଶ୍ଚାତ ପ୍ରଦର୍ଶିତ ହେବ ।

ସଂସ୍କୃତ ଭାଷାରେ ରାମାୟଣ ଲିଖିତ । ପାଣିନିଙ୍କ ଉତ୍ତାରୁ ପରିଷ୍କୃତ ଭାଷାର ନାମ ସଂସ୍କୃତ ହୋଇଅଛି । ରାମାୟଣ ଯେ, କେବଳ ସଂସ୍କୃତ ଭାଷାରେ ଲିଖିତ ତାହା ନୁହେଁ, ଏଥିରେ 'ସଂସ୍କୃତ'ପଦଟି ମଧ ଅଛି ।

ଯଦି ବାଚଂ ବଦିଷ୍ୟାମି ଦ୍ୱିଜାତିରିବ ସଂସ୍କୃତଂ ।
ସୁ ୩୦ । ୧୮

ପାଣିନି ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀର ଲୋକ— ସୁତରାଂ ରାମାୟଣ ଯେ ତାଙ୍କ ଉତ୍ତାରୁ ଲେଖା ହୋଇଅଛି ଏବଂ ତ୍ରେତା ଯୁଗରେ ଲେଖା ହୋଇ ନାହିଁ; ଏଥିରେ ଆଉ ସନ୍ଦେହ କ'ଣ ଅଛି ?

ଉତ୍କଳ ସାହିତ୍ୟରେ ପ୍ରକାଶିତ ଡାଏରୀର କିୟଦଂଶ ଯେଉଁମାନେ ପାଠ କରିଅଛନ୍ତି ସେମାନଙ୍କର ଅବଶ୍ୟ ସ୍ମରଣଥିବ ଯେ, ଆମ୍ଭେମାନେ ଅନୁରାଧାପୁରର ଭଗ୍ନାବଶେଷ ଦେଖି ତାହାକୁ ଲଙ୍କାପୁର ବୋଲି ମନେ କରିଥିଲୁଁ । ଆମ୍ଭେମାନେ ମନେକରୁଁ, ଯେଉଁମାନେ ସିଂହଳର ଅନୁରାଧାପୁରର ଭଗ୍ନାବଶେଷ ଦେଖିଅଛନ୍ତି ଏବଂ ରାମାୟଣର ଲଙ୍କାପୁର ବର୍ଣ୍ଣନା ପାଠ କରି ଅଛନ୍ତି, ସେମାନେ ଅବଶ୍ୟ ହୃଦୟଙ୍ଗମ କରିପାରିବେ ଯେ, ଅନୁରାଧାପୁରକୁ ହିଁ ଲଙ୍କାପୁର ବୋଲି ଲେଖା ଯାଇଅଛି ଏବଂ ଅନୁରାଧାପୁରର ଭଗ୍ନାବଶେଷ ରାମଙ୍କ ବାନର ସୈନ୍ୟକୃତ ଲଙ୍କାପୁରର ଭଗ୍ନାବଶେଷ ।

ସିଂହଳର ବୌଦ୍ଧରାଜାମାନଙ୍କ ଦ୍ୱାରା ଅନୁରାଧାପୁର ସ୍ଥାପିତ ଓ କ୍ରମୋନ୍ନତି ପ୍ରାପ୍ତ ହୋଇଥିଲା । ଏହା ପ୍ରଥମେ ଖ୍ରୀଷ୍ଟପୂର୍ବ ୪୩୭ ଅବ୍ଦରେ ପ୍ରତିଷ୍ଠିତ ହୋଇଥିଲା । ଏହି ନଗରର ବୀଥି, ଉପବୀଥି, ପୟଃପ୍ରଣାଳୀ, ବାପୀ, ଚୈତ୍ୟ, ଜଗତି ପ୍ରଭୃତି ଦେଖିଲେ ଏହା ଏକ ସମୟରେ ଅତି ସମୃଦ୍ଧିଶାଳୀ ନଗରୀ ଥିବାର ଆଭାସ ମିଳେ । ପୁଣି ରାମାୟଣ ଉତ୍ତରାକାଣ୍ଡ ଫିଟାଇ ପାଠକ ପାଠ କଲେ ନିମ୍ନୋକ୍ତ ବର୍ଣ୍ଣନା ଦେଖି ଅନୁରାଧାପୁରକୁ ହିଁ ଲଙ୍କାପୁର ବୋଲାଯାଇଥିବା ବିଶ୍ୱାସ ଦୃଢ଼ୀଭୂତ ହୁଏ ।

ପ୍ରବିଭକ୍ତ ମହାପଥାଃ । ସୁ : ୨ । ୪୮
ପ୍ରାସାଦମାଳା ବିଜତଂ । ସୁ : ୨ । ୪୯
ସପ୍ତଭୌମାଷ୍ଟ ଭୌମା ମହାପୁରଂ । ସୁ : ୨
ନିଷ୍କୁଟାନ୍ତର ରଥ୍ୟାଃ । ସୁ : ୧୨ । ୧୪
ଭୂମି ଗୃହାନ ଚୈତ ଗୃହାନ୍ । ସୁ : ୧୨ । ୧୬
ପ୍ରକାରାନ୍ତର ବୀଥ୍ୟଶ୍ଚ । ସୁ : ୧୨ । ୧୮

ପ୍ରସ୍ତର ନିର୍ମିତ ବୀଥି, ଉପବୀଥି, ଚତୁଷ୍ପଥ, ବାପୀ ପ୍ରଭୃତି ଯେକୌଣସି ସମୃଦ୍ଧିଶାଳୀ ନଗରରେ ଥାଇପାରେ । ତାହା ଦେଖି ଆମ୍ଭେମାନେ ଲଙ୍କାପୁର ବର୍ଣ୍ଣନା ଯେ ଅନୁରାଧାପୁରର ବର୍ଣ୍ଣନା ବୋଲୁଅଛୁଁ, ତାହା ନୁହେଁ । ମାତ୍ର ଚୈତ୍ୟଗୃହାନ୍, ଚୈତ୍ୟପ୍ରାସାଦଂ, ଜଗତି ପର୍ବତଂ ଏଗୁଡ଼ିକର ଅର୍ଥ କ'ଣ ?

ବଜ୍ରାଙ୍କୁଶନିକାଶୈଶ୍ଚ ବଜ୍ରଜାଲ ବିଭୂଷିତୈଃ । ସୁ ୪।୬
ସିତାଭ୍ରସଦୃଶୈଶ୍ଚିତୈ ପଦ୍ମସ୍ୱସ୍ତିକ ସଂସ୍ଥିତୈଃ । ସୁ ୪।୭

ଉପରୋକ୍ତ ଶ୍ଳୋକଗୁଡ଼ିକର ଅର୍ଥ ବା କ'ଣ ? ଏହା ତତ୍‌କାଳର ଲଙ୍କାପୁରର ଦୃଶ୍ୟ । ନଗରୀରାଣୀ ଅଯୋଧ୍ୟା ଦୃଶ୍ୟ ପାଠକଗଣ ଦେଖିଥିବେ କି ? 'କୈଳାସ ସଦୃଶପ୍ରଙ୍ଗ' । 'ଶକ୍ର ବେଶ୍ମ ସମପ୍ରଭଂ' । 'ମହାକବାଟ ପିହିତଂ' । 'ମଣିବିଦ୍ରୁମ ତୋରଣଂ' । ଶାରଦାଭ୍ର ଘନପ୍ରଖ୍ୟଂ ଦୀପ୍ତଂ ମେରୁଗୁହାସମଂ । ସୁବୃତେହା ମୃଗାକୀର୍ଣ୍ଣମୂକୀର୍ଣ୍ଣ ଭକ୍ତି ସ୍ତଥା ଇତ୍ୟାଦି । ଗୃହ ବର୍ଣ୍ଣନାରେ ଏତେ ତାରତମ୍ୟ କାହିଁକି ? ଅଯୋଧ୍ୟାରେ ଚୈତ୍ୟ ନାହିଁ ଜଗତି ନାହିଁ । ଅଯୋଧ୍ୟାନଗରୀର ଗୃହର କାନ୍ଥମାନଙ୍କରେ ସୁରମ୍ୟ ହଂସମୃଗ ମୟୂରାଦିର ଚିତ୍ର ଉତ୍କୀର୍ଣ୍ଣ ହେଲା ଏବଂ ଲଙ୍କାପୁରର କାନ୍ଥମାନଙ୍କରେ କାହିଁକି ପଦ୍ମସ୍ୱସ୍ତିକ, ବଜ୍ରଅଙ୍କୁଶାଦିର ଚିହ୍ନ ଚିତ୍ରିତ ଓ କବାଟ ଫଳରେ ଖୋଦିତ ହେଲା ? ଏହାର ତାତ୍ପର୍ଯ୍ୟ କ'ଣ ?

ଆମ୍ଭେମାନେ ଅନୁରାଧାପୁରର ଭଗ୍ନ ଅଟ୍ଟାଳିକା ଧାତୁଗର୍ଭ ପ୍ରଭୃତି ପରିଦର୍ଶନ କରି ଏବଂ କଲମ୍ବୋ ମିଉଜିୟମରେ ସୁରକ୍ଷିତ ପ୍ରସ୍ତର କାଷ୍ଠ ଓ ଧାତବ ପ୍ରାଚୀନ ପଦାର୍ଥଗୁଡ଼ିକ ପର୍ଯ୍ୟବେକ୍ଷଣ କରି ଉପରୋକ୍ତ ଶ୍ଳୋକଗୁଡ଼ିକର ଅର୍ଥ ଯାହା ହୃଦୟଙ୍ଗମ କରିଅଛୁଁ, ତାହା ନିମ୍ନରେ ପ୍ରକାଶ କଲୁଁ ।

ଚୈତ୍ୟ ଅର୍ଥ— ଦେବାୟତନ, ଦେବସ୍ଥାନ; ପ୍ରକୃତ ପକ୍ଷରେ ଚୈତ୍ୟ ବୌଦ୍ଧମାନଙ୍କର ଉପାସନାଳୟର ନାମ । ଅସୁରମାନେ ଦେବତା ପୂଜାର ଗୃହ ନିର୍ମାଣ କରିବେ କାହିଁକି ? ଲଙ୍କାପୁର ବର୍ଣ୍ଣନାରେ ଚୈତ୍ୟ ଗୃହର ଉଲ୍ଲେଖ ଥିବାରୁ ବୌଦ୍ଧଧର୍ମଦ୍ୱେଷର ପରିଚୟ ମିଳୁଅଛି ।

ସ ଦଦର୍ଶ ବିଦୂରସ୍ଥ ଚୈତ୍ୟପ୍ରାସାଦମୁର୍ଚ୍ଛିତଂ ।
ମଧ୍ୟେ ସ୍ତମ୍ଭ ସହସ୍ରେଣ ସ୍ଥିତଂ କୈଳାସ ପାଣ୍ଡୁରଂ ।
ସୁ । ୧୫ । ୧୬

ଚୈତ୍ରେ ବର୍ତ୍ତୁଳାକାରତ୍ୱାତ୍ ବହ୍ୱାୟତ ନମିବ ପ୍ରାସାଦ ସ୍ତମ୍ଭ ସହସ୍ରେଣା ଧାର ଭୂତେନ ସ୍ଥିତଂ । ତି : ଟି :

"The Lowa Mahapaya Brazen Palace— was built to accommodate the large and increasing number of priests in the capital. It stood on sixteen hundred columns of granite, each column consisting of a single stone. The palace that stood

on them was about 250 ft long, 250ft broad and 250 ft high. It was roofed with sheets of brass, whence its name, the Brazen Palace."

(History of Ceylon)

ଲାଓଆ ମହାପାୟର ବର୍ଣ୍ଣନା ସହିତ ଲଙ୍କାପୁରର ଚୈତ୍ୟ ପ୍ରାସାଦର ବର୍ଣ୍ଣନାର ସାମ୍ୟ ଥିବାର ପ୍ରତିପନ୍ନ ହେଉଅଛି ।

ଜଗତି ପର୍ବତ— ଟୀକାକାର ଏଥିରେ ଯେ ଅର୍ଥ ଦେଇଅଛନ୍ତି, ତାହା ସ୍ପଷ୍ଟ ନୁହେଁ । ଆମ୍ଭେମାନେ ଅନୁମାନ କରୁଁ, ଧାତୁ ଗର୍ଭକୁ ହିଁ ଜଗତି ପର୍ବତ ବୋଲାଯାଇଅଛି ।

ଅନୁରାଧାପୁରରେ ଅନେକ ଗୁଡ଼ିଏ ଧାତୁଗର୍ଭ ଅଛି । ତନ୍ମଧ୍ୟରୁ ଧୂପାରାମ ସୁବନାରାମ ଓ ଅଭୟଗିରି ଡେଗୋବା ଅତି ପ୍ରସିଦ୍ଧ । ଅଭୟଗିରି ଡେଗୋବାର ଉଚ୍ଚତା ୪୧୨ ଫୁଟ । ଏହା ମାଟି ପ୍ରସ୍ତରଦ୍ୱାରା ନିର୍ମିତ । ଏହି ଭଗ୍ନ ଧାତୁଗର୍ଭ ବୃକ୍ଷଲତା ଦ୍ୱାରା ପରିପୂର୍ଣ୍ଣ ହୋଇଥିବାରୁ ଗୋଟିଏ ପର୍ବତ ତୁଲ୍ୟ ଦେଖାଯାଏ । ରାବଣ ଜଗତି ଉପରେ ଥାଇ ରାମଙ୍କ ସୈନ୍ୟ ଦେଖିକନା କରୁଥିବାର ପ୍ରବାଦ ଅଛି । ଧାତୁଗର୍ଭକୁ ଜଗତି ବୋଲିବା ସମ୍ଭବପର ମନେହୁଏ । ଅଭୟଗିରି ଧାତୁଗର୍ଭ ଖ୍ରୀଷ୍ଟପୂର୍ବ ୮୭ ଅବ୍ଦରେ ନିର୍ମିତ ହୋଇଅଛି ।

କଲମ୍ବୋ ମିଉଜିୟମରେ ରକ୍ଷିତ ପ୍ରସ୍ତର, କାଷ୍ଠ ଓ ଧାତବ ପଦାର୍ଥ ମଧ୍ୟରୁ କେତେଗୁଡ଼ିଏ ପଦାର୍ଥର ନାମ ସ୍ୱସ୍ତିକ । ତହିଁର ଚିତ୍ର ପ୍ରଦର୍ଶିତ ହେଲା ।



ପୂର୍ବୋଦ୍ଧୃତ ଶ୍ଳୋକ ମଧ୍ୟରେ ଥିବା ସ୍ୱସ୍ତିକ ଅଙ୍କୁଶ, ପଦ୍ମସ୍ୱସ୍ତିକ ଓ ବଜ୍ରର ଅର୍ଥ କ'ଣ ? ଟୀକାକାରଙ୍କ ମଧ୍ୟରେ ସ୍ୱସ୍ତିକ ଅର୍ଥ ଦୂର୍ବାତଣ୍ଡୂଳାଦି ମାଙ୍ଗଲ୍ୟଦ୍ରବ୍ୟ । ମାତ୍ର ଏହାଦ୍ୱାରା ଶ୍ଳୋକର ଅର୍ଥର ଅବବୋଧ ହେଉ ନାହିଁ । ବସ୍ତୁତଃ ତାହା ନୁହେଁ । ବୁଦ୍ଧଦେବଙ୍କ ପଦସ୍ଥିତ ଚିହ୍ନମାନଙ୍କ ନାମ ସ୍ୱସ୍ତିକ ।

'The signs on the toes are called 'Swastika' (Colombo Museum) ଏହାଛଡ଼ା ସ୍ୱସ୍ତିକ ଅର୍ଥ— Swastika a kind of mystical mark made on persons or things to denote good luck. Amongst Jainas it is one of the 24 auspicious marks and is the emblem of the 7th Arhat'.

ବଜ୍ର— ଏହା ମଧ୍ୟ ବୁଦ୍ଧଦେବଙ୍କ ପଦସ୍ଥିତ ଚିହ୍ନ । ତିବ୍‌ବତଦେଶୀୟ ବୌଦ୍ଧମାନେ ଏହାକୁ ଦର୍ଜେ କହନ୍ତି । 'Dorje of Buddha i.e. Vajra which the priest grasps and manipulates in various ways during prayes'–Ex.Br.

ଅଙ୍କୁଶ—ଏହା ମଧ୍ୟ ଗୋଟିଏ ଶୁଭସୂଚକ ଚିହ୍ନ ।

ପଦ୍ମସ୍ୱସ୍ତିକ— A mystical mark consisting of lotus flowers (according to Scholiast) a four-cornered. –M.W.

ଉପରୋକ୍ତ ଚିହ୍ନଗୁଡ଼ିକ ବୁଦ୍ଧଦେବଙ୍କ ପଦାଙ୍କିତ ଚିହ୍ନ, ସୁତରାଂ ବୌଦ୍ଧମାନଙ୍କର ଅତି ଭକ୍ତି ଓ ଶ୍ରଦ୍ଧାର ପଦାର୍ଥ । ଏଣୁ ବୌଦ୍ଧମାନେ ଏହି ଚିହ୍ନଗୁଡ଼ିକ ଗୃହ ସମ୍ମୁଖରେ କାନ୍ଥରେ ଅଙ୍କନ କରିଥାନ୍ତି ଏବଂ କବାଟ ଫଳକରେ ଉତ୍କୀର୍ଣ୍ଣ କରିଥାନ୍ତି । ଏହି ଚିହ୍ନଗୁଡ଼ିକ ସେମାନଙ୍କର ଶୁଭସୂଚକ ଓ ମଙ୍ଗଳଦ୍ୟୋତକ ବୋଲି ମନେକରନ୍ତି । କେହି କହିପାରନ୍ତି, ପଦ୍ମ, ଅଙ୍କୁଶ ଓ ବଜ୍ର ବିଷ୍ଣୁଙ୍କର ଚିହ୍ନ । ତାହା ସତ୍ୟ, ମାତ୍ର ଦୈତ୍ୟମାନେଯେ ଦୈତ୍ୟାରିଙ୍କର ପଦଚିହ୍ନଗୁଡ଼ିକ ଆପଣାର ଶୁଭଦ୍ୟୋତକ ବୋଲି ମନେକରିବେ ଏବଂ ଅହରହ ଦର୍ଶନଦ୍ୱାରା ଓ ଭାବନାଦ୍ୱାରା ନିଜର ମଙ୍ଗଳ ହେବ ବୋଲି ମନେ କରିବେ ଏହା କଦାପି ସମ୍ଭବପର ନୁହେଁ । ସ୍ୱସ୍ତିକ ପଦ୍ମ ପ୍ରଭୃତି ବିଷ୍ଣୁଙ୍କର ଚିହ୍ନ ହେଲେ, ଅଯୋଧ୍ୟାରେ ନ ରହି ଲଙ୍କାରେ ରହିବ କାହିଁକି ? କବି ଅନୁରାଧାପୁରର ଗୃହମାନ ଦେଖି ଏହି ପ୍ରକୃତ ବର୍ଣ୍ଣନା କରି ଅଛନ୍ତି, ବୌଦ୍ଧ ଗୃହଗୁଡ଼ିକୁ ଦୈତ୍ୟଗୃହ ରୂପେ ବର୍ଣ୍ଣନା କରି ଧର୍ମଦ୍ୱେଷର ପରିଚୟ ଦେଇଅଛନ୍ତି ।

କାଳିଦାସ ପଞ୍ଚମ ଶତାବ୍ଦୀର କବି । ସେ ରଘୁବଂଶ ଲେଖିଅଛନ୍ତି । ପୁସ୍ତକର ନାମ ସୂର୍ଯ୍ୟବଂଶ ବା ଇକ୍ଷ୍ୱାକୁବଂଶ ନ ଦେଇ ରଘୁବଂଶ ନାମ ଦେବାର ତାତ୍ପର୍ଯ୍ୟ ଏହି ଯେ ସୂର୍ଯ୍ୟବଂଶୀୟମାନଙ୍କ ମଧ୍ୟରୁ ରଘୁକୁ ହିଁ ସେ ସର୍ବଶ୍ରେଷ୍ଠ ବୋଲି ମନେ କରିଥିଲେ । କାଳିଦାସ ରଘୁବଂଶାବଳୀ କେଉଁଠାରୁ ପ୍ରାପ୍ତ ହେଲେ ? ସମସ୍ତେ କହିବେ ଅବଶ୍ୟ ବାଲ୍ମୀକି ରାମାୟଣରୁ । ଏଥିରେ ଆମ୍ଭମାନଙ୍କର ଘୋରତର ସନ୍ଦେହ ଅଛି । ଯେବେ ଜଣେ କେହି ମୋଗଲ ବଂଶାବଳୀ ଲେଖିବାକୁ ଯାଇ ଲେଖେ ଯେ ହୁମାୟୁନଙ୍କ ପୁତ୍ର ଜାହାଙ୍ଗିର ଦିଲ୍ଲୀରେ ରାଜତ୍ୱ କରୁଥିଲେ, ତାହାହେଲେ ଲୋକେ କ'ଣ କହିବେ ? ଅବଶ୍ୟ ବାଲ୍ମୀକି କହିବେ ଲେଖକ ବାଦସାହୀନାମା ପଢ଼ି ନାହିଁ । ତେବେ କାଳିଦାସ ରାମାୟଣ ପାଠକରି ରଘୁବଂଶ ଲେଖିଅଛନ୍ତି

ବୋଲି କିପରି ବିଶ୍ୱାସ କରନ୍ତି, ତାହା ଆମ୍ଭେମାନେ ବୁଝିପାରୁ ନାହୁଁ । କାଳିଦାସଙ୍କ ରଘୁବଂଶ ଅନୁସାରେ ଦିଲୀପଙ୍କ ପୁତ୍ର ରଘୁ, ତାଙ୍କ ପୁତ୍ର ଅଜ, ଅଜଙ୍କ ପୁତ୍ର ଦଶରଥ ଏବଂ ଦଶରଥଙ୍କ ପୁତ୍ର ରାମ । ଏ ରଘୁବଂଶ ମତରେ ରଘୁ ରାମଙ୍କ ପ୍ରପିତାମହ ଏବଂ ଦିଲୀପ ବୃଦ୍ଧ ପ୍ରପିତାମହ । କିନ୍ତୁ ରାମାୟଣ ଫିଟାଇ ଦେଖିଲେ ଜଣାଯାଏ ଯେ ରଘୁ ଓ ଦିଲୀପ ରାମଙ୍କର କ୍ରମାନ୍ୱୟରେ ପ୍ରପିତାମହ ଓ ବୃଦ୍ଧ ପ୍ରପିତାମହ ହେବାର ତେଣେ ଥାଉ, ରାମଙ୍କର କୂଟସ୍ଥ ପୁରୁଷ ମଧ୍ୟରେ ସ୍ଥାନ ପାଉ ନାହାନ୍ତି । ରଘୁ ପୂର୍ବ ଅଠର ପୁରୁଷ ଏବଂ ଦିଲୀପ ପୂର୍ବ ବିଂଶ ପୁରୁଷ ଅଟନ୍ତି । ରଘୁବଂଶରେ ରଘୁ ଓ ଦିଲୀପ ଯେଉଁ ସ୍ଥାନ ପାଇଛନ୍ତି, ରାମାୟଣରେ କ୍ରମାନ୍ୱୟରେ ନାଭାଗ ଓ ଯଯାତି ସେହି ସ୍ଥାନ ପାଇଅଛନ୍ତି । ରାମାୟଣ ଓ ଅନ୍ୟାନ୍ୟ ପୁରାଣରେ ରାମବଂଶର ଇଦୃଶ ତାରତମ୍ୟ ଦେଖି ଟୀକାକାର ଲେଖିଲେ 'ଯଦ୍ୟପି ବଂଶ ପରମ୍ପରାପୁରାଣାଦିଷ୍ୱନ୍ୟଥା ଦୃଶ୍ୟତେ ତଥାପି ତତ୍ର କଷ୍ଟଭେଦେନ ବିରୋଧପରିହାରଃ । (ବା ୭୦ । ୪୩) କଷ୍ଟଭେଦ ନାମକ ମହାଭୁରୁଡ଼କୁ ଆମ୍ଭମାନଙ୍କର ଶତ ନମସ୍କାର । କାଳିଦାସ ରାମାୟଣ ପାଠକରି ରଘୁବଂଶ ଲେଖିନାହାନ୍ତି, କିମ୍ବା ସେ ସମୟରେ ଏହି ରାମବଂଶାବଳୀ ରାମାୟଣରେ ସଂଯୋଜିତ ହୋଇ ନ ଥିଲା, ଏହା ଭିନ୍ନ ଆଉ କ'ଣ ବୋଲାଯାଇପାରେ ।

ବାଲି ଦ୍ୱୀପରେ ହିନ୍ଦୁ ଓ ବୌଦ୍ଧଗଣ ବାସ କରନ୍ତି । ସେମାନଙ୍କ ନିକଟରେ ସଂସ୍କୃତ ଓ କବିଭାଷାରଚିତ କେତେକ ପୁସ୍ତକ ଦେଖାଯାଏ । ତନ୍ମଧ୍ୟରୁ କେବଳ ରାମାୟଣ ବିଷୟ ଏଠାରେ ଉଲ୍ଲେଖଯୋଗ୍ୟ । ହିନ୍ଦୁଗଣ ପଞ୍ଚମ ଶତାବ୍ଦୀରେ ବାଲି ଦ୍ୱୀପରେ ଉପନିବେଶ ସ୍ଥାପନ କଲେ । ସେମାନେ ଭାରତବର୍ଷରୁ ଯେଉଁ ରାମାୟଣ ନେଇଯାଇଥିଲେ, ତାହା ସାତକାଣ୍ଡ ରାମାୟଣ ନୁହେଁ । ରାମାୟଣଟି ୨୫ ଗୋଟି ସର୍ଗ ମାତ୍ର ଏବଂ ଉତ୍ତରାକାଣ୍ଡ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ପୁସ୍ତକ ।

ରାମାୟଣ ଆଲୋଚନା ପ୍ରସଙ୍ଗରେ କେତେକ ଦିନ ପୂର୍ବେ ଆମ୍ଭେମାନେ ଏସିଆଟିକ ସୋସାଇଟି ପୁସ୍ତକାଳୟରୁ 'The Journal of the Indian Archipelago' ପାଠ କରିବା ନିମନ୍ତେ ପ୍ରାପ୍ତ ହୋଇ ଅନୁଗୃହୀତ ହୋଇଥିଲୁଁ । ସେହି ପତ୍ରିକାରୁ ରାମାୟଣ ସମ୍ବନ୍ଧରେ ଯେଉଁ ନୋଟ କରି ରଖିଥିଲୁଁ, ତାହା ନିମ୍ନରେ ପ୍ରକାଶ କଲୁଁ—

The Hindus and particularly the Brahmin Hindus who came to Java brought with them the Sanskrit in their sacred writings and perhaps also a prakrit dialect (500 years after christ)

Ramayana is Bali has no seven Kandas but has been divided into 25 Sargas, 7th of Utara Kanda is no part of the narrative but forms a separate work. But the author is Valmiki. The separation of the Kanda from the Ramayana is a proof that it was introduced from India as a different piece.

From this it might be concluded that when Ramayana was introduced to Java the Utara Kanda was not yet annexed to this work. It was not also so voluminous as it exists now in India. Utara Kanda gives an account of the history of the family of Rama after death. The narration of the Ramayan is same with that of India.

ଉପରୋକ୍ତ ପ୍ରମାଣରୁ ଜଣାଯାଏ ଯେ ରାମାୟଣରେ ମାତ୍ର ୨୫ ଗୋଟି ସର୍ଗ ଥିଲା ଏବଂ ଉତ୍ତରାକାଣ୍ଡ ଗୋଟିଏ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ପୁସ୍ତକ ।

ଅନୁକ୍ରମଣିକାଧ୍ୟାୟରୁ ସ୍ପଷ୍ଟ ଜଣାଯାଏ ଯେ, ପ୍ରଥମ କବି ଉତ୍ତରାକାଣ୍ଡ ଲେଖି ନାହାନ୍ତି ।

ନାରଦ ବାଲ୍ମୀକିଙ୍କ ନିକଟରେ ରାମଚରିତ୍ରର ଯେଉଁ ସଂକ୍ଷେପ ବିବରଣ ଦେଲେ ତାହା ରାମଜନ୍ମଠାରୁ ଲଙ୍କାଜୟ ଉତ୍ତାରୁ ଅଯୋଧ୍ୟାକୁ ଫେରିବା ପର୍ଯ୍ୟନ୍ତ ।

ନନ୍ଦିଗ୍ରାମେ ଜଟାଂ ହିତ୍ୱା
ଭ୍ରାତୃଭିଃ ସହିତୋଽନଘଃ ।
ରାମ ସୀତାମନୁ ପ୍ରାପ୍ୟ
ରାଜ୍ୟଂ ପୁନରବାପ୍ତବାନ୍ ।

ବା : ୧ । ୮୯

ସ ଯଥା କଥିତଂ ପୂର୍ବଂ ନାରଦେନ ମହାତ୍ମନା ।
ରଘୁବଂଶସ୍ୟ ଚରିତଂ ଚକାର ଭଗବନ୍ମୁନିଃ ।

ବା : ୩ । ୨

ନାରଦଙ୍କ କଥା ଅନୁସାରେ ଯେବେ ବାଲ୍ମୀକି ରାମାୟଣ ଲେଖିଲେ, ତେବେ ନାରଦ ସୀତା ବନବାସ ବୃତ୍ତାନ୍ତ ବାଲ୍ମୀକିଙ୍କଠାରେ ବ୍ୟକ୍ତ କରି ନ ଥିବାରୁ ଉତ୍ତରାକାଣ୍ଡ ଆଦିକବି ବା ପ୍ରଥମ କବିଙ୍କ ରଚନା ନୁହେଁ ।

ବାଲ୍ମୀକି 'ବ୍ରହ୍ମାଙ୍କ ଉପଦେଶ ପାଇ ଧ୍ୟାନଦ୍ୱାରା ରାମଚରିତ୍ରର ସୂଚନା କଲେ, ତହିଁର ମଧ୍ୟ ବିବରଣ ଅନୁକ୍ରମଣିକାଧ୍ୟାୟରେ ଉଲ୍ଲେଖ ଅଛି । ସେଥିରେ ଉତ୍ତରାକାଣ୍ଡ ଭଗବାନ୍ ଋଷି ରଚନା କଲେ ବୋଲି ଲେଖାଅଛି । ମାତ୍ର ତାହା

କିପରି ଧରଣର ଲେଖା ହୋଇଅଛି, ତାହା ପାଠକଗଣ ଦେଖନ୍ତୁ ।

ପ୍ରେଷଣ ବାୟୁପୁତ୍ରେଣ ଭରତେନ ସମାଗମଂ ।
ରାମାଭିଷେକାଭ୍ୟୁଦୟଂ ସର୍ବସୈନ୍ୟବିସର୍ଜନଂ ।
ବା : ୩ । ୩୮

ଏଥିଉତ୍ତାରୁ ତିନିପାଦର ଗୋଟିଏ ଶ୍ଳୋକ—

ସ୍ୱରାଷ୍ଟ୍ର ରଞ୍ଜନଂ ଚୈବ
ବୈଦେହ୍ୟାଶ୍ଚ ବିସର୍ଜନଂ ।
ଅନାଗତଞ୍ଚ ଯତ୍କିଞ୍ଚିଦ୍ରାମସ୍ୟ ବସୁଧାତଳେ ।
ତଚ୍ଚକାରୋତ୍ତରେ କାବ୍ୟେ
ବାଲ୍ମୀକି ଭଗବାନୃଷିଃ ।
ବା : ୩ । ୩୯

ଶ୍ଳୋକଟି ତିନିପାଦ ହେଲା ବାଲ୍ମୀକି ? ପୁଣି ଏହି ତିନି ପାଦରେ ବର୍ଣ୍ଣିତ ବିଷୟ ଉତ୍ତରକାବ୍ୟରେ ଋଷି ଲେଖିଲେ ବୋଲିବାର ତାତ୍ପର୍ଯ୍ୟ କ'ଣ ? ରାମଙ୍କ ଜନ୍ମଠାରୁ ଲଙ୍କା ବିଜୟ ଓ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ଯାବତୀୟ ଘଟନା ମଧ୍ୟରୁ କେଉଁ ଘଟନା କେଉଁ କାଣ୍ଡରେ ଘଟିଲା ତାହା ଉଲ୍ଲେଖ ନ କରି କେବଳ ସୀତାବନବାସ ଉତ୍ତରକାବ୍ୟରେ ଋଷି ଲେଖିଲେ ବୋଲିବାଦ୍ୱାରା ଉତ୍ତରାକାଣ୍ଡ ପଶ୍ଚାତ ଲିଖିତ ବୋଲି ପ୍ରତିପନ୍ନ ହେଉଅଛି ।

ଲଙ୍କାକାଣ୍ଡ ଶେଷରେ ଲିଖିତ ଅଛି— ଲଙ୍କାରୁ ଫେରିଆସି ରାଜ୍ୟାଭିଷିକ୍ତ ହୋଇ ଦଶବର୍ଷ ସହସ୍ରାଣି ରାମୋ-ରାଜ୍ୟମକାରୟତ୍ । ଲ : ୧୩୦ । ୧୦୪

ଏଥି ଉତ୍ତାରୁ ରାମାୟଣ ପଠନ ଓ ଶ୍ରବଣର ଫଳ ଲିଖିତ ହୋଇଅଛି । ଏହା ପାଠକଲା ଉତ୍ତାରୁ ମନେହୁଏ ଯେ, ରାମାୟଣ ଛଅକାଣ୍ଡ ଲେଖି କବି ତାହାଙ୍କର ଗ୍ରନ୍ଥ ଏହିଠାରେ ଶେଷକରି ଗ୍ରନ୍ଥ ଅଧ୍ୟୟନ ଓ ଶ୍ରବଣର ଫଳ ପ୍ରକାଶ କଲେ ।

ରାମ ଦଶ ହଜାର ବର୍ଷ ରାଜତ୍ୱ କଲା ଉତ୍ତାରୁ ପୁଣି ଉତ୍ତରା କାଣ୍ଡରେ—

ପ୍ରାପ୍ତରାଜ୍ୟସ୍ୟ ରାମସ୍ୟ
ରାକ୍ଷସାନାଂ ବଧେ କୃତେ ।
ଉ : ୧ । ୧

ଏ ପ୍ରସଙ୍ଗ କାହୁଁ ଆସିଲା ? ଏବଂ ଉତ୍ତରାକାଣ୍ଡ ଶେଷରେ ପୁଣି ରାମାୟଣ ମାହାତ୍ମ୍ୟ ଏବଂ ରାମାୟଣ ପଠନର ଓ ଶ୍ରବଣର ଫଳ ଲେଖାହେଲା କାହିଁକି ?

ଯଦି ପ୍ରତି କାଣ୍ଡ ଶେଷରେ ରାମାୟଣ ଅଧ୍ୟୟନ ଓ ଶ୍ରବଣର ଫଳ ଲେଖାଥାନ୍ତା, ତେବେ କୌଣସି କଥା ନ ଥିଲା । ମାତ୍ର ଲଙ୍କାକାଣ୍ଡ ଶେଷରେ ଏବଂ ଉତ୍ତରାକାଣ୍ଡ ଶେଷରେ ରାମାୟଣ ମାହାତ୍ମ୍ୟ ଶ୍ରବଣ ଓ ଅଧ୍ୟୟନର ଫଳ ଲେଖାଥିବାରୁ ରାମାୟଣ ପୂର୍ବ ଛଅକାଣ୍ଡ ଓ ଉତ୍ତରାକାଣ୍ଡ ସମ୍ପୂର୍ଣ୍ଣ ପୃଥକ୍ ଓ ସ୍ୱତନ୍ତ୍ର ଲୋକ ଦ୍ୱାରା ରଚିତ ହୋଇଥିବାର ସ୍ପଷ୍ଟ ପ୍ରମାଣିତ ହେଉଅଛି ।

ଏ ପ୍ରବନ୍ଧର ଉପସଂହାରରେ ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ, ରାମାୟଣର ବା ରାମଚରିତ୍ରର ପ୍ରଥମ ଉଦ୍ଭାବକ ଓ ଚରିତ୍ରଚିତ୍ରକର ବାଲ୍ମୀକି ଋଷି ଅଟନ୍ତି, ମାତ୍ର ଆମ୍ଭମାନଙ୍କର ହସ୍ତଗତ ରାମାୟଣ ଖଣ୍ଡ ଖୋଦ ବାଲ୍ମୀକି ରଚିତ ନୁହେଁ । ତାହାଙ୍କ ରଚିତ ରାମଚରିତ୍ର ସଂସ୍କୃତରେ ଥିଲା କିମ୍ବା ବୈଦିକ ଭାଷାରେ ଥିଲା, ତାହା କୁହାଯାଇ ନ ପାରେ, କିମ୍ବା ତାଙ୍କର କୌଣସି କୌଣସି ଶ୍ଳୋକ ଯେ ଏଠାରେ ନ ଥିବ, ତାହା ମଧ କୁହାଯାଇ ନ ପାରେ ।

ହିନ୍ଦୁ-ବୌଦ୍ଧବିଦ୍ୱେଷ ଉତ୍ତାରୁ ଏହି ପୁସ୍ତକ ରଚିତ ହୋଇଅଛି । ସିଂହଳରେ ବୌଦ୍ଧଧର୍ମ ସ୍ଥାପିତ ହେଲାପରେ ଏବଂ ଅନୁରାଧାପୁର ସ୍ଥାପିତ ହେଲାପରେ ଏହି ରାମାୟଣର ଅଧିକାଂଶ ରଚିତ ହୋଇଅଛି । ପୂର୍ବ ଛଅକାଣ୍ଡ ଯେଉଁ କବି ଲେଖିଅଛନ୍ତି ସେ ଉତ୍ତରାକାଣ୍ଡ ଲେଖି ନାହାନ୍ତି ଏବଂ ପ୍ରଥମ କବି ବା ବାଲ୍ମୀକି କାଣ୍ଡ ଭାଗକରି ଲେଖିନାହାନ୍ତି ।

କବି ବାଲ୍ମୀକି ସୀତାଙ୍କୁ ଆଶ୍ରୟ ଦେବା ଏବଂ କୁଶଲବଙ୍କୁ ପାଳନ କରିବା ନିତାନ୍ତ ଅଯୌକ୍ତିକ । 'କୁଶଲବୌ ବା କୁଶୀଲବୌ ରାମପୁତ୍ରୌ' ଇତି ହେମଚନ୍ଦ୍ରଃ । ରାମ ପୁତ୍ର ଦିହିଙ୍କି କୁଶ ଲବ ବା କୁଶୀ ଲବ ବୋଲାଯାଏ । କୁଶୀ ଲବ ଅର୍ଥ ପୁଣି ଚାରଣ— ଯେଉଁ ବ୍ୟକ୍ତି ଦେଶାନ୍ତରରେ କୀର୍ତ୍ତି ପ୍ରଚାର କରେ । ଏହା ଦେଖିଲେ ରାମପୁତ୍ର କୁଶୀ ଲବ ଏବଂ ରାମାୟଣ ଗାୟକ କୁଶୀ ଲବ ସ୍ୱତନ୍ତ୍ର ବୋଲି ଅନୁମାନ କରାଯାଏ ।

ଏଥି ଉତ୍ତାରୁ ରାମଙ୍କର ଅବତାରତ୍ୱ ସମ୍ବନ୍ଧରେ ଲେଖିବାକୁ ବାସନା ରହିଲା ।

●

॥ ୨ ॥

ଯେଉଁ ମହାପୁରୁଷଙ୍କ ସାଧୁ ଚରିତ୍ର ସର୍ବଥା ଅନୁକରଣୀୟ, ମାତ୍ର ମନୁଷ୍ୟ ସାଧାରଣତଃ ଅନୁକରଣ କରିପାରେ ନାହିଁ ସେହି ମହାପୁରୁଷ ଆମ୍ଭମାନଙ୍କର ଦେବତା ।

ରାମ ଆମ୍ଭମାନଙ୍କର ଦେବତା । ରାମ ଆଦର୍ଶ ମହାପୁରୁଷ । ସେ ନରଦୁର୍ଲଭ ଗୁଣନିଚୟରେ ଭୂଷିତ ହୋଇଥିଲେ । ତାଙ୍କର ଅସାଧାରଣ ପିତୃ ମାତୃ ଭକ୍ତି, ତାଙ୍କର ସ୍ୱାର୍ଥ ତ୍ୟାଗ, ସହିଷ୍ଣୁତା, ଧୈର୍ଯ୍ୟ, ଗାମ୍ଭୀର୍ଯ୍ୟ ଆର୍ଯ୍ୟ ପୁରୁଷଙ୍କଠାରେ ପରିଲକ୍ଷିତ ହୁଏ ନାହିଁ । ଏଣୁ ରାମ ଆମ୍ଭମାନଙ୍କର ଦେବତା । ମହାପୁରୁଷମାନଙ୍କ ଜୀବନ-ଚରିତ ପାଠକଲେ ଆମ୍ଭେମାନେ ସେହି ମହାପୁରୁଷମାନଙ୍କର ଗୁଣମାନଙ୍କୁ ଅନୁକରଣ କରିବାକୁ ପ୍ରୟାସୀ ହେଉଁ । ଯେଉଁ ଜାତି ମଧ୍ୟରେ ଯେତିକି ଜୀବନଚରିତ ଅଛି, ସେହି ଜାତି ସେତିକି ଉନ୍ନତତର । କବି ବାଲ୍ମୀକି ଏହି ଭାବ ହୃଦୟରେ ପୋଷଣ କରି ଆର୍ଯ୍ୟ ନର-ଦେବତାମାନଙ୍କ ଚରିତ୍ର ମଧ୍ୟରୁ ରାମ ଚରିତ୍ରକୁ ଆଦର୍ଶ ବୋଲି ଗ୍ରହଣ କରି ରାମାୟଣ ଲେଖିଲେ । ତାହାଙ୍କ ରଚିତ ସ୍ୱଭାବସୁନ୍ଦର ବିଶୁଦ୍ଧ ରାମଚରିତଟି ପୌରାଣିକ କଳ୍ପନାପଙ୍କରେ ପଡ଼ି ଦୂଷିତ ଓ ବିକୃତ ହୋଇଅଛି । ରାମ ନାମ ଭାରତବାସୀଙ୍କ ମୁଖରେ, ରାମ ରୂପ ଭାରତବାସୀଙ୍କ କାନ୍ଥରେ; କିନ୍ତୁ ସେହି ରାମନାମ ବାଲ୍ମୀକି ଲିଖିତ ରାମନାମ ନୁହେଁ, ସେହି ରାମ ରୂପ ବାଲ୍ମୀକି ଚିତ୍ରିତ ରାମ ରୂପ ନୁହେଁ । ମହାପୁରୁଷମାନଙ୍କର ଅସାଧାରଣ ଗୁଣନିଚୟ ଦେଖି ସେହିଗୁଡ଼ିକ ଦୈବୀଶକ୍ତି ଦ୍ୱାରା ପ୍ରାପ୍ତ ହୋଇଥିବାର ଯେଉଁମାନେ ପ୍ରକାଶ କରନ୍ତି, ସେମାନେ ମାନବ ପ୍ରତିଭାର ମୂଳରେ କୁଠାରାଘାତ କରନ୍ତି । ସେମାନେ ମାନବର ମହତ୍ତ୍ୱ ବୃଦ୍ଧିରେ କ୍ଷୁଣ୍ଣମନା, ସେମାନେ ଜାତୀୟ ଅବନତିର ପକ୍ଷପାତୀ । ଭାରତବାସୀ ଦେବତାକୁ ମନୁଷ୍ୟ କରିପାରନ୍ତି; ମାତ୍ର ମନୁଷ୍ୟକୁ ଦେବତା ଗଣି ଆରାଧନା କରିପାରନ୍ତି ନାହିଁ । ରାମଙ୍କୁ ବିଷ୍ଣୁ ବୋଲି, ବାଲ୍ମୀକି ରାମନାମ ପ୍ରସାଦରୁ କବି ହେଲେ ବୋଲି, ମୂର୍ଖ କାଳିଦାସ ଆତ୍ମହତ୍ୟା କଲାବେଳେ ସରସ୍ୱତୀ ତାହାଙ୍କୁ ବରଦେଇ ପଣ୍ଡିତ କଲେ ବୋଲି ମିଥ୍ୟାରଚନା କରିବାଦ୍ୱାରା ଆର୍ଯ୍ୟ ମହତ୍ତ୍ୱ ଧ୍ୱଂସର ଚେଷ୍ଟା କରାଯାଇଅଛି । କାଳିଦାସ ଯେବେ ସ୍ତ୍ରୀ ପଦାଘାତ ପାଇ ଆତ୍ମହତ୍ୟାର ଉଦ୍ୟୋଗ କଲାବେଳେ ସରସ୍ୱତୀ ତାହାଙ୍କୁ ମହାପଣ୍ଡିତ କରିଦେଲେ, ତେବେ ଆଧୁନିକ କାଳରେ କେତେ ଲୋକ ଋଣଜର୍ଜରିତ ହୋଇ ଉଦ୍‌ବନ୍ଧନ କରୁଅଛନ୍ତି, ଲକ୍ଷ୍ମୀ ତ ସେମାନଙ୍କୁ ଟେକି ଧରୁ ନାହାନ୍ତି । କେତେଜଣ ବିଦ୍ୟା ନିମନ୍ତେ ଆତ୍ମହତ୍ୟା କରୁଅଛନ୍ତି, ସରସ୍ୱତୀ ତ ସେମାନଙ୍କୁ କାଳିଦାସ ପ୍ରାୟ ବରପୁତ୍ର ଗଣିବା ତେଣେ ଥାଉ କିରାଣି ହେବା ଭଳି ସାମାନ୍ୟ ବିଦ୍ୟା ମଧ୍ୟ ଦେଉ ନାହାନ୍ତି । ଏଗୁଡ଼ିକ ଆଉ କିଛି ନୁହେଁ ଜାତୀୟ ଅବନତିମୂଳକ ଦୈବୀଶକ୍ତି ବିଶ୍ୱାସର ଫଳ । ସେ ଯାହା ହେଉ, ରାମ ଆମ୍ଭମାନଙ୍କର ପ୍ରାତଃସ୍ମରଣୀୟ ଆର୍ଯ୍ୟ ମହାପୁରୁଷ । ପୌରାଣିକଗଣ ତାହାଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ପ୍ରକାଶ କରିଅଛନ୍ତି । ଏହି ପ୍ରବନ୍ଧରେ ତାହାହିଁ ଦେଖାଇବା ଆମ୍ଭର ମୁଖ୍ୟ ଉଦ୍ଦେଶ୍ୟ । ଯେଉଁମାନେ ଗ୍ରନ୍ଥ ଅଧ୍ୟୟନପୂର୍ବକ ତଥ୍ୟ ନିର୍ଦ୍ଧାରଣ କରିବାକୁ ପ୍ରୟାସୀ, ସେମାନଙ୍କ ଆଲୋଚନା ନିମନ୍ତେ ଏହି ପ୍ରବନ୍ଧର ଅବତାରଣା । ଆଉ ଯେଉଁମାନଙ୍କର ବିଶ୍ୱାସ ଯେ ଈଶ୍ୱର ଭାରତବାସୀଙ୍କ ପ୍ରତି ବଡ଼ ସଦୟ, ଏଣୁ ଦିନାକେତେ କୌଶଲ୍ୟାଙ୍କ କ୍ରୋଡ଼ରେ, ଦିନାକେତେ ଯଶୋଦାଙ୍କ କ୍ରୋଡ଼ରେ ଖେଳାକରି ଭାରତବାସୀଙ୍କି ମୁକ୍ତିପସରା ଓ ବୈକୁଣ୍ଠ ଦ୍ୱାର କହିଦେଇ ଯାଇଅଛନ୍ତି, ସେମାନେ ଅବଶ୍ୟ ଆମ୍ଭମାନଙ୍କ ପ୍ରବନ୍ଧ ପାଠ କରିବାକୁ ଘୃଣା କରିବେ ଏବଂ ସେମାନଙ୍କ ନିମନ୍ତେ ଏ ପ୍ରବନ୍ଧ ଲେଖି ନାହୁଁ ।

ରାମାୟଣ ପାଠ କଲେ ଏହା ସ୍ପଷ୍ଟ ରୂପେ ଜଣାଯିବ ଯେ, ଆମ୍ଭେମାନେ ବାଲ୍ମୀକି ରାମାୟଣ ବୋଲି ଯେଉଁ ପୁସ୍ତକ ପାଇଅଛୁଁ, ତାହାର କଳେବର ନାନା ସମୟରେ ନାନା କବିଙ୍କ ଦ୍ୱାରା, ବହୁଳଭାବେ ଅନ୍ୟାୟରୂପେ ପରିବର୍ଦ୍ଧିତ ହୋଇଅଛି । ଏହା ଯେ କେବଳ ଆଧୁନିକ ପାଶ୍ଚାତ୍ୟ ଓ ଏ ଦେଶ ପଣ୍ଡିତଗଣଙ୍କ ମତ ତାହା ନୁହେଁ, କତକାଦି ଟୀକାକାରଗଣ ରାମାୟଣର କେତେକାଂଶ ପ୍ରକ୍ଷିପ୍ତ ବୋଲି ପ୍ରକାଶ କରିଅଛନ୍ତି, ସ୍ଥଳବିଶେଷରେ ଟୀକା କରିବାକୁ ମଧ୍ୟ ଅଗ୍ରସର ହୋଇ ନାହାନ୍ତି । ରାମାୟଣରେ ସ୍ଥଳବିଶେଷରେ ସର୍ଗ, ଶ୍ଳୋକ ଏବଂ ଅର୍ଦ୍ଧ ଶ୍ଳୋକ ସନ୍ନିବେଶିତ ହୋଇଅଛି । ପ୍ରକ୍ଷିପ୍ତ ଅଂଶଗୁଡ଼ିକ ତନ୍ନ ତନ୍ନ କରି ବାଛି ବାହାର କରିବା ସହଜ କର୍ମ ନୁହେଁ ଏବଂ ଆମ୍ଭମାନଙ୍କ ପରି ବ୍ୟକ୍ତି ଦ୍ୱାରା ତାହା ନିର୍ବାଚିତ ହୋଇପାରିବା କଦାପି ସମ୍ଭବପର ନୁହେଁ । ତଥାପି ଯେଉଁ ଅଂଶଗୁଡ଼ିକ ପ୍ରକ୍ଷିପ୍ତ ବୋଲି ସ୍ପଷ୍ଟ ଜଣାପଡୁଅଛି, ଏବଂ ଯେଉଁ ଅଂଶଗୁଡ଼ିକ ଯେକୌଣସି ରାମାୟଣ ପାଠକ ପ୍ରକ୍ଷିପ୍ତ ବୋଲି ଅନାୟାସରେ ବାଛି ଦେଇପାରିବେ, ବର୍ତ୍ତମାନ ପ୍ରବନ୍ଧରେ ଆମ୍ଭେମାନେ ସେହି ସେହି ଅଂଶର ଆଲୋଚନା କରିବୁଁ । ପୁଣି ସେହି ଅଂଶଗୁଡ଼ିକରେ କେବଳ ଅବତାରବାଦ ଅଛି ।

ବାଲ୍ମୀକି ନାରଦଙ୍କୁ ପଚାରିଲେ, ଆର୍ଯ୍ୟ ପୁରୁଷମାନଙ୍କ ମଧ୍ୟରେ ସର୍ବଗୁଣସମ୍ପନ୍ନ କେଉଁ ବ୍ୟକ୍ତିଙ୍କ ଚରିତ କାବ୍ୟାକାରରେ ଲେଖା ଯାଇପାରେ । ନାରଦ କହିଲେ, ସ୍ମରଣ କରି କହୁଅଛି ଶ୍ରବଣ କର—

ଇକ୍ଷ୍ୱାକୁବଂଶପ୍ରଭବୋ ରାମୋନାମ ଜନୈଃ ଶ୍ରୁତଃ ।
ନିୟତାତ୍ମ ମହାବୀର୍ଯ୍ୟୋ ଦ୍ୟୁତିମାନ ଧୃତିମାନ୍ ବଶୀ ।
ବା : ୧ । ୮

ନାରଦ ରାମଙ୍କୁ ବିଷ୍ଣୁ ଅବତାର ବୋଲି କହିଲେ କି ? ନା ବରଂ ନାରଦଙ୍କ ଦ୍ୱାରା ବ୍ୟବହୃତ କେତୋଟି ବିଶେଷଣ ଦେଖିଲେ ରାମ ବିଷ୍ଣୁ ଅବତାର ନ ଥିବାର ପ୍ରତିପନ୍ନ ହେଉଅଛି ଯଥା— 'ପ୍ରଜାପତିସମଃ', 'ବିଷ୍ଣନା ସଦୃଶୋ ବୀର୍ଯ୍ୟ' ଇତ୍ୟାଦି ।

ବ୍ରହ୍ମା ରାମାୟଣ ଲେଖ ବୋଲି ବାଲ୍ମୀକିଙ୍କୁ ଉପଦେଶ ଦେଲେ । ସେଥିରେ ବ୍ରହ୍ମା ରାମ ବିଷ୍ଣୁଙ୍କ ଅବତାର ବୋଲି କହିଅଛନ୍ତି କି ?

ବାଲ୍ମୀକି ଯୋଗ ଚକ୍ଷୁରେ ରାମଚରିତ୍ର ଦେଖିଲେ, ଏବଂ ରାମାୟଣ ଟିପ୍‌ପଣୀ କଲେ । ବାଲ୍ମୀକି ନିମୀଳିତ ନେତ୍ରରେ ଯୋଗଚକ୍ଷୁରେ ରାମଙ୍କୁ ବିଷ୍ଣୁ ବୋଲି ଦେଖି ପାରିଥିଲେ କି ? ବାଳକାଣ୍ଡ ତୃତୀୟ ସର୍ଗଟି ଅଧ୍ୟୟନ କଲେ ବିଷ୍ଣୁ ଅବତାରର ସୂତ୍ରପାତ ଅନୁକ୍ରମଣିକାଧ୍ୟାୟରେ କରାଯାଇ ନ ଥିବାର ସ୍ପଷ୍ଟ ଜଣାପଡ଼ିବ । ଏଣୁ ଅନାୟାସରେ କୁହାଯାଇପାରେ ଯେ, ଆଦିକବି କିମ୍ବା ଅନୁକ୍ରମଣିକାଧ୍ୟାୟ ଲେଖକ ରାମଙ୍କୁ ବିଷ୍ଣୁ ବୋଲି ଅଯଥା ଅଳଙ୍କାରରେ ଅଳଙ୍କୃତ କରିବାର କଳ୍ପନା ମଧ କରି ନ ଥିଲେ । ରାମାୟଣ ପ୍ରଥମ ଚାରି ସର୍ଗ ଅନୁକ୍ରମଣିକା । ପଞ୍ଚମ ସର୍ଗଠାରୁ ରାମାୟଣର ଆରମ୍ଭ ।

ଇକ୍ଷ୍ୱାକୁ ବଂଶୀୟ ନରପତି ଦଶରଥ ଅଯୋଧ୍ୟାରେ ରାଜତ୍ୱ କରୁଥିଲେ । ତାହାଙ୍କ ରାଜତ୍ୱ କାଳରେ ନଗରୀରାଣୀ ମହାସମୃଦ୍ଧିଶାଳିନୀ ହୋଇଥିଲା । ଅଯୋଧ୍ୟାବାସୀଗଣ ସୁଖ ଶାନ୍ତିରେ ସ୍ୱର୍ଗ ସୁଖ ଅନୁଭବ କରି ବାସ କରୁଥିଲେ । 'ନାସ୍ତିକ ବର୍ଜିତ' ହେତୁରୁ ଦେଶର ଲୋକେ ସ୍ୱଚ୍ଛନ୍ଦରେ ଧର୍ମାଚରଣ କରୁଥିଲେ । ଏପରି ନାସ୍ତିକ ବର୍ଜିତା ସମୃଦ୍ଧିଶାଳିନୀ ପୃଥିବୀର ଅଧୀଶ୍ୱର ହୋଇ ସୁଦ୍ଧା ଦଶରଥଙ୍କର ସୁତୋତ୍ପତ୍ତି ନୋହିବାରୁ ଚିନ୍ତିତ ହେଲେ । ଏଣୁ ସୁତୋତ୍ପତ୍ତି କାମନାରେ ଅଶ୍ୱମେଧଯଜ୍ଞ କରିବାକୁ ଇଚ୍ଛାକଲେ ଏବଂ ମନ୍ତ୍ରିଶ୍ରେଷ୍ଠ ସୁମନ୍ତ୍ରକୁ କହିଲେ, ସମସ୍ତ ଗୁରୁମାନଙ୍କୁ ଓ ପୁରୋହିତମାନଙ୍କୁ ମୋ ନିକଟକୁ ଆଣ । ଏହା ଶ୍ରବଣକରି ସୁମନ୍ତ୍ର ସମସ୍ତ ବେଦପାରଗ ବ୍ରାହ୍ମଣମାନଙ୍କୁ ରାଜାଙ୍କ ସମୀପକୁ ଆହ୍ୱାନ କଲେ । ବଶିଷ୍ଠ, ଜାବାଳି, ବାମଦେବ ଏବଂ ଅନ୍ୟାନ୍ୟ ଋଷିମାନେ ଉପସ୍ଥିତ ହେଲାରୁ ଦଶରଥ ସେମାନଙ୍କୁ ପୂଜାକରି କହିଲେ— ×××

ମମ ଲାଲପ୍ୟ ମାନସ୍ୟ
ସୁତାର୍ଥଂ ନାସ୍ତି ବୈ ସୁଖଂ ।
ତଦର୍ଥଂ ହୟମେଧେନ
[illegible]ଷ୍ୟାମୀତି ମତିର୍ମମ ।
ତଦହଂ ଯଷ୍ଟୁମିଚ୍ଛାମି
ଶାସ୍ତ୍ରଦୃଷ୍ଟେନ କର୍ମଣା ।
କଥଂ ପ୍ରାପ୍ସ୍ୟାମ୍ୟହଂ କାମଂ
ବୁଦ୍ଧିରତ୍ର ବିଚିନ୍ତ୍ୟତାଂ ।

ବା. ୮ । ୮ । ୯

ଦଶରଥଙ୍କର ଏହି ଉକ୍ତି ଶ୍ରବଣକରି ବଶିଷ୍ଠ ପ୍ରମୁଖ ଋଷିମାନେ ସାଧୁ ସାଧୁ ବୋଲି କହିଲେ ।

ଊଚୁଶ୍ଚ ପରମପ୍ରୀତାଃ ସର୍ବେ ଦଶରଥଂ ବଚଃ ।
ସମ୍ଭାରାଃ ସମ୍ଭ୍ରିୟନ୍ତାନ୍ତେ ତୁରଗଶ୍ଚ ବିମୁଚ୍ୟତାଂ ।
ସରଯ୍ୱାଶ୍ଚୋତ୍ତରେ ତୀରେ ଯଜ୍ଞଭୂମି ର୍ବିଧୀୟତାଂ ।
ସର୍ବଥା ପ୍ରାପ୍ସ୍ୟସେ ପୁତ୍ରାନଭିପ୍ରେତାଂଶ୍ଚ
ପ [illegible] ଥ [illegible] ।

ବା . ୧୮ । ୧୧ । ୧୨

ଋଷିମାନଙ୍କର ଇଦୃଶ ଉପଦେଶ ଶ୍ରବଣ କରି ଦଶରଥ ହର୍ଷବ୍ୟାକୁଳଲୋଚନ ହୋଇ ମନ୍ତ୍ରୀମାନଙ୍କୁ ଆଦେଶ ଦେଲେ—

ସମ୍ଭାରାଃ ସମ୍ଭ୍ରିୟନ୍ତାଂ ମେ ଗୁରୁଣାଂ ବଚନାଦିହ ।

ବା. ୮ । ୧୪

ରାମାୟଣର ଅଷ୍ଟମ ସର୍ଗ ପାଠ କରି ଆମ୍ଭେମାନେ ଜାଣି ପାରିଲୁଁ ଯେ, ଦଶରଥଙ୍କର ପୁତ୍ର ନୋହିବାରୁ ବଶିଷ୍ଠାଦିଙ୍କ ଉପଦେଶ ଅନୁସାରେ ପୁତ୍ର ହେବା କାମନାରେ ଅଶ୍ୱମେଧ ଯଜ୍ଞର ଆୟୋଜନ କଲେ । ଏଥିଉତ୍ତାରୁ ରାମାୟଣ ପାଠକ ଅଶ୍ୱମେଧ ଯଜ୍ଞର ବର୍ଣ୍ଣନା, ଯଜ୍ଞ ସମାପ୍ତି ଓ ଦଶରଥଙ୍କ ପୁତ୍ର ପ୍ରାପ୍ତିର ବିବରଣ ପାଠ କରିବାର ଆଶା ରଖନ୍ତି । ଅଶ୍ୱମେଧ ଯଜ୍ଞର ଆୟୋଜନ କରିବାର କାରଣ ମନ୍ତ୍ରୀମାନଙ୍କୁ ଆଦେଶ ଦେଲା ଉତ୍ତାରୁ ଅନ୍ୟ ବିଷୟର ଉତ୍‌ଥାପନ ଓ ଉଲ୍ଲେଖ ଅସଙ୍ଗତ ନୁହେଁ କି ? ନବମ ସର୍ଗରେ ସୂତ ଦଶରଥଙ୍କୁ ପୁରାଣ ଶ୍ରୁତ ଋଷ୍ୟଶୃଙ୍ଗ ପ୍ରସଙ୍ଗ ଶୁଣାଇଲେ । ଏହା ସନତ୍‌କୁମାରଙ୍କର ଭବିଷ୍ୟ ପୁରାଣ । ଏହି ଋଷ୍ୟଶୃଙ୍ଗ ବୃତ୍ତାନ୍ତ ବଶିଷ୍ଠ ବାମଦେବ ପ୍ରଭୃତିଙ୍କୁ ଜଣା ନ ଥିଲା କି ? ଯେବେ ଅଶ୍ୱମେଧ ଯଜ୍ଞ କଲେ ପୁତ୍ର ହେବାର କଥା ନ ଥିଲା ତେବେ ବଶିଷ୍ଠାଦି ଋଷିମାନେ ଦଶରଥଙ୍କୁ ତାହା କରିବାକୁ ଉପଦେଶ ଦେଲେ କାହିଁକି ? ଆଉ ଯେବେ ଅଶ୍ୱମେଧ ଯଜ୍ଞରେ ଋଷ୍ୟଶୃଙ୍ଗ ପୁରୋହିତ ହେଲେ ପୁତ୍ର ହେବାର ପୁରାଣ ପ୍ରସଙ୍ଗ ସନତ୍‌କୁମାରଙ୍କଦ୍ୱାରା କଥିତ ହୋଇଥିଲା, ତାହା ଅବଶ୍ୟ ବଶିଷ୍ଠଙ୍କୁ ବିଦିତ୍ ଥିବ । ବଶିଷ୍ଠ ଏହା ଗୋପନ କରିବାର ତାତ୍ପର୍ଯ୍ୟ କ'ଣ ? ଋଷ୍ୟଶୃଙ୍ଗ

ପୁରୋହିତ ହେଲେ ଦକ୍ଷିଣା ଭାଗ କରିବାକୁ ହେବ ବୋଲି ବଶିଷ୍ଠ ଏହା ଗୋପନ କଲେ କି ? ବଶିଷ୍ଠଙ୍କୁ କଳଙ୍କିତ କରିବା ଅପେକ୍ଷା ରାମାୟଣର ଏହି କେତେଗୋଟି ସର୍ଗ ପ୍ରକ୍ଷିପ୍ତ ବୋଲିବା ତ ଆପତ୍ତଜନକ ନୁହେଁ । ନବମ ଦଶମ ଓ ଏକାଦଶ ସର୍ଗ ଋଷ୍ୟଶୃଙ୍ଗ ବୃତ୍ତାନ୍ତ, ଏହି ତିନି ସର୍ଗ ସହିତ ପୂର୍ବାପର ମେଳ ନାହିଁ ।

ଅଷ୍ଟମ ସର୍ଗରେ ଅଶ୍ୱମେଧ ଯଜ୍ଞ କରିବାର ସ୍ଥିରୀକୃତ ହେଲା । ଆୟୋଜନ କରିବାକୁ ମନ୍ତ୍ରୀମାନେ ଆଦେଶ ପାଇଲେ । ପୁଣି ଦ୍ୱାଦଶ ସର୍ଗରେ ସେହି ପ୍ରସ୍ତାବର ପୁନରୁକ୍ତି ଓ ପୁନରୁତ୍‌ଥାପନ ହେବାର କାରଣ କ'ଣ ? ମଧ୍ୟବର୍ତ୍ତୀ ନବମ, ଦଶମ ଓ ଏକାଦଶ ସର୍ଗ ବୃତ୍ତାନ୍ତ ବର୍ଣ୍ଣିତ ହେଲାରୁ ଗୁଞ୍ଜାମେଳ କରିବାକୁ ଦ୍ୱାଦଶ ସର୍ଗର ପ୍ରୟୋଜନ ହୋଇଅଛି । ଏଣୁ ପରବର୍ତ୍ତୀ ଲେଖକ ଦ୍ୱାଦଶ ସର୍ଗ ଆରମ୍ଭରୁ ପୁଣି ଲେଖିଲେ—

ତତଃ କାଳେ ବହୁତୀଥେ କସ୍ମିଂଶ୍ଚିତ ସୁମନୋହରେ
ବସନ୍ତେ ସମନୁପ୍ରାପ୍ତେ ରାଜ୍ଞୋଯଷ୍ଟୁଂ ମନୋଭବତ୍ ।
ବା. ୧୨ । ୧

ଏ ସମ୍ବନ୍ଧରେ ଅଧିକ ମନ୍ତବ୍ୟ ନ ଦେଇ ଅଷ୍ଟମ ସର୍ଗର ଶ୍ଳୋକଗୁଡ଼ିକ ଦ୍ୱାଦଶ ସର୍ଗରେ କି ପ୍ରକାର ଭାବରେ ପୁନରୁକ୍ତ ଓ ପୁନରୁଦ୍ଧୃତ ହୋଇଅଛି ତାହା ଦେଖାଇଦେଲେ ଯଥେଷ୍ଟ ହେବ ।

ମମ ଲାଲପ୍ୟ ମାନସ୍ୟ ପୁତ୍ରାର୍ଥଂ ନାସ୍ତି ବୈ ସୁଖଂ ।
ବା : ୮ । ୮
ମମ ଶତପ୍ୟମାନସ୍ୟ ପୁତ୍ରାର୍ଥଂ ନାସ୍ତି ବୈ ସୁଖଂ ।
ବା. ୧୨ । ୮
ସମ୍ଭରାଃ ସଂଭ୍ରିୟନ୍ତାନ୍ତେ ତୁରଗଶ୍ଚ ବିମୁଚ୍ୟତାଂ ।
ବା. ୮ ।୧୧
ସମ୍ଭରାଃ ସଂଭ୍ରିୟନ୍ତାନ୍ତେ ତୁରଗଶ୍ଚ ବିମୁଚ୍ୟତାଂ ।
ବା. ୧୨।୩
ସରଯ୍ୱାଶ୍ଚୋତ୍ତରେ ତୀରେ ଯଜ୍ଞ ଭୂମିର୍ବିଧୀୟତାଂ ।
ବା. ୮ । ୧୨ । ପ୍ର.ପା
ସରଯ୍ୱାଶ୍ଚୋତ୍ତରେ ତୀରେ ଯଜ୍ଞଭୂମି ର୍ବିଧୀୟତାଂ ।
ବା. ୧୨ । ୪। ପ୍ର.ପା.
ସର୍ବଥା ପ୍ରାପ୍ୟସେ ପୁତ୍ରାଂ ନଭିପ୍ରେତାଂଶ୍ଚ ପାର୍ଥିବ ।
ବା. ୮ । ୧୨। ଶେ.ପା
ସର୍ବଥା ପ୍ରାପ୍ୟସେ ପୁତ୍ରାଂ ଶ୍ଚତ୍ୱାରୋଽମିତ ବିକ୍ରମାନ୍ ।
ବା. ୧୨ । ୧୩ । ପ୍ର.ପା.

ତତସ୍ତୁଷ୍ଟୋଽଭବଦ୍ରାଜା ଶ୍ରୁତୈତଦ୍ ଦ୍ୱିଜଭାଷିତଂ ।
ବା. ୮ । ୧୩ । ଶେ.ପା.
ତତଃ ପ୍ରୀତୋଽଭବଦ୍ରାଜା ଶ୍ରୁତ୍ୱା ତୁ ଦ୍ୱିଜଭାଷିତଂ ।
ବା. ୧୨ । ୧୪। ପ୍ରଥମ ପାଦ
ଅମାତ୍ୟାନବ୍ରବୀଦ୍ରାଜା ହର୍ଷବ୍ୟାକୁଳଲୋଚନଃ ।
ବା. ୮ । ୧୪। ପ୍ରଥମପାଦ
ଅମାତ୍ୟାନବ୍ରବୀଦ୍ରାଜା ହର୍ଷେଣେଦଂ ଶୁଭାକ୍ଷରଂ ।
ବା. ୧୨ । ୧୪ । ଶେଷପାଦ
ସାରାଃ ସମ୍ଭ୍ରିୟନ୍ତାଂ ମେ ଗୁରୁଣାଂ ବଚନାଦିହ ।
ବା. ୮ । ୧୪ । ଶେଷପାଦ
ଗୁରୁଣାଂ ବଚନାଛୀଘ୍ରଂ ସମ୍ଭରାଃ ସମ୍ଭ୍ରିୟନ୍ତୁ ମେ ।
ବା. ୧୨।୧୫। ପ୍ରଥମପାଦ
ସରଯ୍ୱାଶ୍ଚୋତ୍ତରେ ତୀରେ ଯଜ୍ଞଭୂମି ର୍ବିଧୀୟତାଂ ।
ବା. ୮।୧୫ ପ୍ରଥମପାଦ
ସରଯ୍ୱାଶ୍ଚୋତ୍ତରେ ତୀରେ ଯଜ୍ଞଭୂମି ର୍ବିଧୀୟତାଂ ।
ବା. ୧୨। ୧୬ ପ୍ରଥମପାଦ
ଶାନ୍ତୟଶ୍ଚାପି ବର୍ଦ୍ଧନ୍ତାଂ ଯଥାକଳ୍ପଂ ଯଥାବିଧି ।
ବା. ୧୮ । ୧୬ । ପ୍ରଥମପାଦ
ଶାନ୍ତୟଶ୍ଚାପି ବର୍ଦ୍ଧନ୍ତାଂ ଯଥାକଳ୍ପଂ ଯଥାବିଧି ।
ବା. ୧୨ । ୧୭ ଶେଷପାଦ
ଶକ୍ୟଃ ପ୍ରାପ୍ତୁମୟଂ ଯଜ୍ଞଃ ସର୍ବେଣାପି ମହୀକ୍ଷିତ ।
ବା. ୮ । ୧୬ । ଶେଷପାଦ
ଶକ୍ୟଃ କର୍ତ୍ତୁମୟଂ ଯଜ୍ଞଃ ସର୍ବେଣାପି ମହୀକ୍ଷିତା ।
ବା. ୧୨ । ୧୭ । ପ୍ରଥମପାଦ
ନାପରାଧୋ ଭବେତ୍‌କଷ୍ଟୋ ଯଦ୍ୟସ୍ମିନ କ୍ରତୁସତ୍ତମେ ।
ଛିଦ୍ରଂ ହି ମୃଗୟନ୍ତେସ୍ମ ବିଦ୍ୱାଂ ସୋ ବ୍ରହ୍ମରାକ୍ଷସାଃ । ୧୭
ବିଧିହୀନସ୍ୟ ଯଜ୍ଞସ୍ୟ ସଦ୍ୟଃ କର୍ତ୍ତା ବିନଶ୍ୟତି ।
ତଦ୍ୟଥା ବିଧିପୂର୍ବଂ ମେ କ୍ରତୁରେଷଃ ସମାପ୍ୟତେ ।
ବା. ୮ । ୧୮
ନାପରାଧୋ ଭବେତ୍‌କଷ୍ଟୋ ଯଦ୍ୟସ୍ମିନ୍ କ୍ରତୁସତ୍ତମେ ।
ବା. ୧୨ । ୧୭ ଶେଷପାଦ
ଛିଦ୍ରଂ ହି ମୃଗୟନ୍ତ୍ୟେତ୍ର ବିଦ୍ୱାଂସୋ ବ୍ରହ୍ମରାକ୍ଷସାଃ ।
ବିଧିହୀନସ୍ୟ ଯଜ୍ଞସ୍ୟ ସଦ୍ୟକର୍ତ୍ତା ବିନଶ୍ୟତି ।
ବା.୧୨।୧୮
ତଦ୍ୟଥା ବିଧିପୂର୍ବଂ ମେ କ୍ରତୁରେଷଃ ସମାପ୍ୟତେ ।
ବା. ୧୨ । ୧୯ ପ୍ରଥମପାଦ

ଏହି ପ୍ରକାର ବା. ୮ । ୧୯ ପ୍ରଥମପାଦ ଏବଂ ବା. ୧୨ । ୧୯ ଶେଷପାଦ ଏକ । ବା. ୮ । ୨୩ ପ୍ରଥମପାଦ

ଏବଂ ବା. ୧୨ । ୨୨ ଶେଷପାଦ ସମାନ । ଏଥି ଉତ୍ତାରୁ ପାଠକଗଣ ଦ୍ୱାଦଶ ସର୍ଗଟି ଅଷ୍ଟମ ସର୍ଗର ନକଲ ବୋଲି ସ୍ୱୀକାର କରିବାକୁ ଅନିଚ୍ଛୁକ ହେବେ କି ? ରାମାୟଣ ମଧ୍ୟରୁ ନବମ, ଦଶମ, ଏକାଦଶ ଓ ଦ୍ୱାଦଶ ସର୍ଗଟିମାନ ଫାଡ଼ି ଫିଙ୍ଗିଦେଲେ ରାମାୟଣ ପାଠ ପରମ୍ପରାରେ କିଛି ଅସଙ୍ଗତ ହେବ ନାହିଁ, ବରଂ ଅତି ସୁସଙ୍ଗତ ଓ ସୁଖପାଠ୍ୟ ହେବ ।

ତ୍ରୟୋଦଶ ସର୍ଗରେ ଯଜ୍ଞର ଆୟୋଜନ, ଚତୁର୍ଦ୍ଦଶ ସର୍ଗରେ ଯଜ୍ଞ ସାଙ୍ଗ ହେଲା । ଦଶରଥ ତୁଷ୍ଟ ହୋଇ ବ୍ରାହ୍ମଣମାନଙ୍କୁ କୋଟିସଂଖ୍ୟକ ସ୍ୱର୍ଣ୍ଣମୁଦ୍ରା ଗୋ ଓ ଭୂମି ଦାନକଲେ ଏବଂ ବ୍ରାହ୍ମଣମାନେ ତୁଷ୍ଟ ହୋଇ ।

'ଭବିଷ୍ୟନ୍ତି ସୁତା ରାଜଂଶ୍ଚତ୍ୱାର ସ୍ତେ କୁଳୋଦ୍‌ବହାଃ ।'

ବା ୧୪ । ୬୦

ବୋଲି ଆଶୀର୍ବାଦ କଲେ । ଏହା ଶ୍ରବଣକଲାରୁ ସମସ୍ତଙ୍କର ଆଶା ହୁଏ ଯେ, ଅଶ୍ୱମେଧ ଯଜ୍ଞର ଫଳ ଅବଶ୍ୟ ଫଳିବ ଏବଂ ବ୍ରାହ୍ମଣମାନଙ୍କ ଆଶୀର୍ବାଦ ଶୂନ୍ୟରେ ଉଡ଼ିଯିବ ନାହିଁ । କିନ୍ତୁ କି ଅଦ୍ଭୁତ କଥା— ଋଷ୍ୟଶୃଙ୍ଗ ଅଶ୍ୱମେଧର ଫଳ ପ୍ରତ୍ୟାଶା ନ କରି ଏବଂ ସମୟ ପ୍ରତୀକ୍ଷା ଓ ନିଜର ଆଶୀର୍ବାଦରେ ଆସ୍ଥା ସ୍ଥାପନ ନ କରି ହଠାତ୍ କହି ଉଠିଲେ—

ଇଷ୍ଟିଂ ତେଽହଂ କରିଷ୍ୟାମି ପୁତ୍ରୀୟଂ ପୁତ୍ରକାରଣାତ୍
ଅଥର୍ବଶିରସି ପ୍ରୋକ୍ତୈ ର୍ମନ୍ତ୍ରୈଃ ସିଦ୍ଧାଂ ବିଧାନତଃ ।

ବା. ୧୫ । ୨

ଏବଂ ଏହି କଥା କହୁ କହୁ ବିନା ସଙ୍କଳ୍ପରେ, ବିନା ଅନୁଷ୍ଠାନରେ, ଦଶରଥଙ୍କର ବିନା ଆୟୋଜନରେ ।

ଜୁହାବାଗ୍ନୌ ଚ ତେଜସ୍ୱୀ ମନ୍ତ୍ରଦୃଷ୍ଟେନ କର୍ମଣା ।

ବା. ୧୫।୩

ତତୋ ଦେବାଃ ସଗନ୍ଧର୍ବାଃ ସିଦ୍ଧାଶ୍ଚ ପରମର୍ଷୟଃ ।
ଭାଗପ୍ରତିଗ୍ରହାର୍ଥଂ ବୈ ସମବେତା ଯଥାବିଧି ।

ବା. ୧୫ । ୪

ଋଷ୍ୟଶୃଙ୍ଗ ହୋମ କଲେ, ଆଉ ଦେବତାମାନେ ଉଦ୍‌ଗ୍ରୀବ ହୋଇ ରହିଥିଲେ, ଏଣୁ ତତ୍‌କ୍ଷଣାତ୍ ଭାଗ ନେବାପାଇଁ ଉପସ୍ଥିତ ହେଲେ । ଏଥି ଉତ୍ତାରୁ ବିଷ୍ଣୁଙ୍କର ଅବତାରର ବର୍ଣ୍ଣନା ଏବଂ ବାନରମାନଙ୍କର ଜନ୍ମବୃତ୍ତାନ୍ତ ପଞ୍ଚଦଶ, ଷୋଡ଼ଶ ଏବଂ ସପ୍ତଦଶ ସର୍ଗରେ ବର୍ଣ୍ଣିତ ହୋଇଅଛି । ଅତି ପ୍ରାଚୀନ ଅଶ୍ୱମେଧ ଯଜ୍ଞ ଅପେକ୍ଷା ଅଥର୍ବ ବେଦୋକ୍ତ ହୋମବିଧିକୁ ଶ୍ରେଷ୍ଠ ଜ୍ଞାନ କରିବାକୁ ହେବ । ବୈକୁଣ୍ଠରୁ ବିଷ୍ଣୁଙ୍କୁ ଅବତୀର୍ଣ୍ଣ କରାଇବା ନିମନ୍ତେ ବୈଷ୍ଣବ ବାଜୀକରଙ୍କର ଅଥର୍ବ ବେଦ କିମିଆ-ମନ୍ତ୍ର ଏବଂ ଅଥର୍ବ ବେଦୋକ୍ତ ହୋମ ସ୍ରୁବ ସେମାନଙ୍କର କିମିଆ-ଦଣ୍ଡ । ଯେଉଁ ଅର୍ଥବାନ୍ନ ପାନକଲେ ଗୃହସ୍ଥଙ୍କୁ ପ୍ରାୟଶ୍ଚିତ୍ତ କରିବାକୁ ହୁଏ, ସେହି ଅଥର୍ବ ବେଦର ପ୍ରଭାବରେ ବିଷ୍ଣୁ ମର୍ତ୍ତ୍ୟକୁ ଆସନ୍ତି । ଅଥର୍ବବେଦୀ ସମ୍ପ୍ରଦାୟର ଲେଖକ ଏହି ସର୍ଗଗୁଡ଼ିକ ରାମାୟଣରେ ସନ୍ନିବେଶିତ କରିଅଛନ୍ତି, ଏଥିରେ କୌଣସି ସନ୍ଦେହ ନାହିଁ ।

ଚତୁର୍ଦ୍ଦଶ ସର୍ଗ ଉତ୍ତାରୁ ଅଷ୍ଟାଦଶ ସର୍ଗର ଅତି ସୁନ୍ଦର ସାମଞ୍ଜସ୍ୟ ଅଛି—

ଭବିଷ୍ୟନ୍ତି ସୁତା ରାଜନ ଚତ୍ୱାରସ୍ତେ
କୁଳୋଦ୍‌ବହାଃ ।

ବା. ୧୪ । ୬୦

ଏଥି ଉତ୍ତାରୁ ଅଷ୍ଟାଦଶ ସର୍ଗର ପ୍ରଥମ ଶ୍ଳୋକ—
ନିବୃତ୍ତେ ତୁ କ୍ରତୌ ତସ୍ମିନ୍ ହୟମେଧେ ମହାତ୍ମନଃ ।

ବା । ୧୮ । ୧

ଚତୁର୍ଦ୍ଦଶ ସର୍ଗରେ ଏବଂ ଅଷ୍ଟାଦଶ ସର୍ଗରେ ସେହି ଅଶ୍ୱମେଧ ଯଜ୍ଞର ବୃତ୍ତାନ୍ତ ଉଲ୍ଲେଖ ଥିବାରୁ ମଧ୍ୟବର୍ତ୍ତୀ ପୁତ୍ରେଷ୍ଟି ଯଜ୍ଞ ଓ ବାନର ଜନ୍ମ ବିଷୟକ ତିନିଗୋଟି ସର୍ଗ ନିତାନ୍ତ ଅସଙ୍ଗତ, ଅମୂଳକ, ପ୍ରକ୍ଷିପ୍ତ ବୋଲି ଆମ୍ଭେମାନେ ସ୍ପଷ୍ଟ ପ୍ରମାଣ ପାଉଅଛୁଁ ।

ବାଳକାଣ୍ଡର କେତେଗୋଟି ସର୍ଗ ଏବଂ ଲଙ୍କାକାଣ୍ଡର ୧୧୯ ସର୍ଗଟି ଉଠାଇଦେଲେ ବିଷ୍ଣୁଙ୍କର ଅବତାରତ୍ୱ ରାମାୟଣର ଆଉ କେଉଁଠାରେ ? ରାବଣ ହତ ହେଲା ଉତ୍ତାରୁ ଏବଂ ସୀତା ଦେବୀ ଅଗ୍ନି ପ୍ରବେଶ କଲା ଉତ୍ତାରୁ ବ୍ରହ୍ମା ପ୍ରମୁଖ ଦେବତାମାନେ ସେଠାରେ ଉପସ୍ଥିତ ହୋଇ ରାମଙ୍କୁ ବିଷ୍ଣୁ, ପରମବ୍ରହ୍ମ ବୋଲି ସ୍ତୁତି କରିବାକୁ ଲାଗିଲେ । ଏହି ସର୍ଗଟିର ପୂର୍ବାପର ସମ୍ବନ୍ଧ କିଛି ନାହିଁ । ପୂର୍ବାପର ସମ୍ବନ୍ଧ ନ ରଖି ଗୋଟିଏ ସ୍ତୋତ୍ର ପୁସ୍ତକ ମଧ୍ୟରେ ରଖିଦେବା ବଡ଼ କଠିନ ବ୍ୟାପାର ନୁହେଁ । ଏଣୁ କୌଣସି ଭକ୍ତକବି ଏହି କରିଅଛନ୍ତି । ରାବଣ ବଧ ଉତ୍ତାରେ ଦେବତାମାନେ ଏହି ସ୍ତୁତିବାଦ କରିଥିଲେ ରାମଙ୍କ ମୁଖରୁ ସୀତାଙ୍କ ପ୍ରତି ଦୁର୍ବାକ୍ୟ ଓ କଟୁ ଭାଷଣ ପ୍ରକାଶ ପାଇ ନ ଥାନ୍ତା ଏବଂ ସୀତାଦେବୀଙ୍କି ଅଗ୍ନିରେ ପ୍ରବେଶ କରିବାକୁ ପଡ଼ି ନ ଥାନ୍ତା । ସୀତାଙ୍କର ଅଗ୍ନି ପ୍ରବେଶ ଉତ୍ତାରୁ ରାମଙ୍କୁ ଇଦୃଶ ସ୍ତୁତି କରିବା ଦ୍ୱାରା ଦେବତାମାନଙ୍କର କେଉଁ ବୁଦ୍ଧିମତ୍ତାର ପରିଚୟ ଦିଆଗଲା ? ଏହି ସ୍ତୁତି ମଧ୍ୟରେ ପୁଣି କୃଷ୍ଣ ଶବ୍ଦଟି ଦେଖାଯାଏ ।

ଅଜିତଃ ଖଡ଼୍‌ଗଧୃଗ୍ ବିଷ୍ଣୁଃ କୃଷ୍ଣଶ୍ଚୈବ ବୃହଦ୍‌ବଳଃ ।
ଲ.୧୧୯।୧୫

କୃଷ୍ଣ ଅଥ ବାସୁଦେବ କୃଷ୍ଣ କି କଳାବର୍ଣ୍ଣ ? ଟୀକାକାର ଲେଖନ୍ତି କୃଷ୍ଣଃ ତତ୍‌ବର୍ଣ୍ଣଃ । ଟୀକାକାର ଉକ୍ତିକୁ ବିଶ୍ୱାସ କରାଯାନ୍ତା; ମାତ୍ର ଅନ୍ୟ ସ୍ଥଳରେ ବାସୁଦେବ ଓ ମାଧବ ଶବ୍ଦ ଥିବାରୁ ଏ ସ୍ଥାନରେ ବ୍ୟବହୃତ କୃଷ୍ଣ ଅର୍ଥ ବାସୁଦେବ ପୁତ୍ର କୃଷ୍ଣଙ୍କୁ ଲକ୍ଷ୍ୟ କରାଯାଇଥିବାର ଅନୁମାନ କରାଯାଉଅଛି ।

●

॥ ୩ ॥

ପୂର୍ବ ପ୍ରଦର୍ଶିତ ସ୍ଥଳ ଭିନ୍ନ ଯେଉଁ ଯେଉଁ ସ୍ଥଳରେ ରାମ ବିଷ୍ଣୁ ବୋଲି ପରିଚିତ ଓ ସ୍ତୁତ ହେବା ସ୍ୱାଭାବିକ, ସେ ସ୍ଥଳମାନ ଦେଖାଯାଉ ।

ଅଶ୍ୱମେଧ ଯଜ୍ଞର ଏକ ବର୍ଷ ଉତ୍ତାରୁ ଚୈତ୍ର ନବମୀ ଦିନ ରାମ ଜନ୍ମଗ୍ରହଣ କଲେ ।

ନକ୍ଷତ୍ରେ ଦିତିଦୈବତ୍ୟେ
ସ୍ୱୋଚସଂସ୍ଥେଷୁ ପଞ୍ଚସୁ ।
ଗ୍ରହେଷୁ କର୍କଟେ ଲଗ୍ନେ
ବାକ୍‌ପତା ବିନ୍ଦୁନା ସହ ।୯।
ପ୍ରୋଦ୍ୟମାନେ ଜଗନ୍ନାଥଂ
ସର୍ବଲୋକ ନମସ୍କୃତଂ ।
କୌଶଲ୍ୟାଜନୟଦ୍ରାମଂ
ଦିବ୍ୟଲକ୍ଷଣସଂଯୁତଂ ।୧୦।
ବିଷ୍ଣୋରର୍ଦ୍ଧଂ ମହାଭାଗଂ
ପୁତ୍ରମୈକ୍ଷ୍ୱାକୁନନ୍ଦନଂ ।
ଲୋହିତାକ୍ଷଂ ମହାବାହୁଂ
ରକ୍ତୋଷ୍ଠ ଦୁନ୍ଦୁଭିସ୍ୱନଂ । ୧୧ ବା. ୧୮ ।

ଦଶମ ଶ୍ଲୋକର ପ୍ରଥମ ପାଦରେ 'ଜଗନ୍ନାଥଂ' 'ସର୍ବଲୋକନମସ୍କୃତଂ' ଏବଂ ଏକାଦଶ ଶ୍ଲୋକରେ 'ବିଷ୍ଣୋରର୍ଦ୍ଧଂ' ଶବ୍ଦ ଅଛି । ଏହି ତିନିଗୋଟି ଶବ୍ଦକୁ ଅନାୟାସରେ ପରିବର୍ତ୍ତିତ କରାଯାଇପାରେ । ପ୍ରଥମ ଲେଖକ ଦ୍ୱାରା ସନ୍ନିବେଶିତ ସୁସଙ୍ଗତ ତିନିଗୋଟି ଶବ୍ଦ ଯେକୌଣସି ବୈଷ୍ଣବ ଲେଖକଦ୍ୱାରା ପରିବର୍ତ୍ତିତ ହୋଇ ନାହିଁ, ଏହା କିଏ କହିପାରେ ? ପୂର୍ବୋଲ୍ଲିଖିତ ପ୍ରକ୍ଷିପ୍ତ ସର୍ଗଗୁଡ଼ିକ ଯାହାଙ୍କଦ୍ୱାରା ଲିଖିତ, ଏହି ତିନିଗୋଟି ଶବ୍ଦ ତାହାଙ୍କଦ୍ୱାରା ପରିବର୍ତ୍ତିତ, ଏଥିରେ ସନ୍ଦେହ ନାହିଁ । 'ବିଷ୍ଣୋରର୍ଦ୍ଧଂ' ଲେଖିବାଦ୍ୱାରା ଲେଖକର ଯେ ଅଭିପ୍ରାୟ ଥାଉ ପଛକେ ଟୀକାକାରଙ୍କୁ କ୍ଲିଷ୍ଟ କଳ୍ପନା କରିବାର ପ୍ରୟୋଜନ ହୋଇଅଛି । ଏଣୁ ଟୀକାକାର ଲେଖିଲେ, ବିଷ୍ଣୋଃ ଶଙ୍ଖ ଚକ୍ରାନନ୍ତବିଶିଷ୍ଟ ସ୍ୟେତ୍ୟର୍ଥଃ, ଅର୍ଦ୍ଧଂ କିଞ୍ଚିତ୍‌ନ୍ୟୂନମର୍ଦ୍ଧମିତ୍ୟ ର୍ଥଃ, ଶଙ୍ଖ ଚକ୍ରାଦେରଭାବାଦିତି ଭାବଃ । ଉପରୋକ୍ତ ସମସ୍ତ ଶ୍ଲୋକରୁ ରାମଙ୍କଠାରେ ଆମ୍ଭେମାନେ ବିଷ୍ଣୁଙ୍କର ସମସ୍ତ ଚିହ୍ନର ଅଭାବ ଦେଖିପାରୁଅଛୁ । ତିଳକ ଟୀକାକାର କେବଳ ଶଙ୍ଖ ଚକ୍ରର ଅଭାବ ଦେଖିଲେ କିପରି ! ଅପ୍ରିୟ ସତ୍ୟର ଆଲୋଚନା କରିବା ଅପେକ୍ଷା ଏହି ସର୍ଗର କେତୋଟି ଶବ୍ଦ ପ୍ରକ୍ଷିପ୍ତ ବୋଲିବା ଶ୍ରେୟସ୍କର ।

ଅଷ୍ଟାଦଶ ସର୍ଗରେ ରାମଙ୍କର ଜନ୍ମ, ବିଦ୍ୟାଭ୍ୟାସ, ଅସ୍ତ୍ରଶିକ୍ଷା ଏବଂ ବିଶ୍ୱାମିତ୍ରଙ୍କର ଅପେକ୍ଷା ଆଗମନ ଏବଂ ରାମଲକ୍ଷ୍ମଣଙ୍କୁ ସଙ୍ଗରେ ନେବାର ବର୍ଣ୍ଣନା ଅଛି । ରାମଲକ୍ଷ୍ମଣଙ୍କୁ ବିଶ୍ୱାମିତ୍ରଙ୍କ ସଙ୍ଗରେ ଛାଡ଼ିଦେବାକୁ ପ୍ରଥମେ ଦଶରଥ ଅସ୍ୱୀକୃତ ଥିଲେ । ବଶିଷ୍ଠଙ୍କ ଉପଦେଶକ୍ରମେ ବିଶ୍ୱାମିତ୍ରଙ୍କ ଜିମା ଦେବାକୁ ସ୍ୱୀକୃତ ହେଲେ । ଏପରି ସଙ୍କଟସ୍ଥଳରେ ବଶିଷ୍ଠ ରାମଙ୍କୁ ବିଷ୍ଣୁ ଅବତାର ବୋଲି ଚିହ୍ନାଇଲେ କି ? ବରଂ କହିଲେ–

ତେଷାଂ ନିଗ୍ରହଣେ ଶକ୍ତଃ
ସ୍ୱୟଂ ଚ କୁଶିକାତ୍ମଜଃ
ତବ ପୁତ୍ର ହିତାର୍ଥାୟ
ତ୍ୱାମୁପେତ୍ୟାଭିଚାରତେ । ବା. ୨୧।୨୧

ତାଡ଼କାବଧ ଉତ୍ତାରୁ ଦେବତାମାନେ ବିଶ୍ୱାମିତ୍ରଙ୍କୁ କହିଲେ–

କର୍ତ୍ତବ୍ୟଂ ସୁମହତ୍ କର୍ମ
ସୁରାଣାଂ ରାଜସୂନୁନା । ବା ୨୬।୩୧।

ବିଶ୍ୱାମିତ୍ର ରାମଙ୍କଠାରେ ତୁଷ୍ଟ ହୋଇ ଅସ୍ତ୍ର ପ୍ରଦାନ କଲାବେଳେ କହିଲେ–

ପରିତୁଷ୍ଟୋଽସ୍ମି ଭଦ୍ରାନ୍ତେ
ରାଜପୁତ୍ର ମହାଯଶଃ । ବା ୨୭ । ୨।

ଅହଲ୍ୟା ରାମଙ୍କୁ ବିଷ୍ଣୁ ବୋଲି ସ୍ତୁତି କରି ନାହାନ୍ତି । ଗୌତମ ଶାପ ଦେଲାବେଳେ ରାମରୂପୀ ବିଷ୍ଣୁ ତୋତେ ମୁକ୍ତି ଦେବେ ବୋଲି କହି ନ ଥିଲେ । ପୁରାଣାନ୍ତରେ ଉଲ୍ଲେଖ ଅଛି ଯେ ଅହଲ୍ୟା ପାଷାଣ ହୋଇଥିଲେ, ରାମ ପାଷାଣ ଉପରେ ପାଦ ଦେବାରୁ ଅହଲ୍ୟା ପୂର୍ବ ରୂପ ପାଇଲେ । ବାଲ୍ମୀକି ରାମାୟଣରେ ଏପରି ନାହିଁ । ଅହଲ୍ୟା ଭସ୍ମଶାୟିନୀ ହୋଇଥିଲେ । ରାମ ଅହଲ୍ୟା ମୁଣ୍ଡରେ ପାଦ ଦେବାର ଦେଖେ ଥାଉ, ତାଙ୍କର ଦର୍ଶନ ପାଇବା ମାତ୍ରେ

ରାଘବୌ ତୁ ତଦା ତସ୍ୟାଃ
ପାଦୌ ଜଗ୍ରହତୁର୍ମୁଦା । ବା. ୪୯।୧୮।

ରାମଙ୍କୁ ବିଷ୍ଣୁ ବନାଇ ଗୁରୁପତ୍ନୀଙ୍କ ମୁଣ୍ଡରେ ପାଦ ଦିଆଇବା କଳ୍ପନା ପଦ୍ମପୁରାଣ ଲେଖକଙ୍କର କପୋଳକଳ୍ପିତ; ମାତ୍ର ବାଲ୍ମୀକିଙ୍କର ନୁହେଁ । ଊନପଞ୍ଚାଶତ୍ ସର୍ଗର ପ୍ରଥମ ଦଶଗୋଟି ଶ୍ଳୋକ ଅଶ୍ଳୀଳ, ଘୃଣ୍ୟ ଏବଂ ଆଲୋଚନାର ବିଷୟ ନୁହେଁ । ଏହି ଶ୍ଳୋକଗୁଡ଼ିକ ସନ୍ନିବେଶିତ କରିବାଦ୍ୱାରା ଗ୍ରନ୍ଥର କେଉଁ ଉତ୍କର୍ଷ ସାଧନା କରାଗଲା, ତାହା ବୋଧଗମ୍ୟ ହେଉ ନାହିଁ । ଅହଲ୍ୟାଙ୍କ ସତୀତ୍ୱ ନାଶ କରିବା ହେତୁରୁ ଦେବରାଜ ଇନ୍ଦ୍ରଙ୍କର ଦୁର୍ଦ୍ଦଶା ଏବଂ ଅଗ୍ନିପ୍ରମୁଖ ଦେବତାମାନଙ୍କଦ୍ୱାରା ସେହି ଦୁର୍ଦ୍ଦଶା ମୋଚନ ଏଥିରେ ବର୍ଣ୍ଣିତ ବିଷୟ । ଏଠାରେ ତହିଁର ଆଲୋଚନା କରିବାକୁ ଆମ୍ଭମାନଙ୍କର ପ୍ରବୃତ୍ତି ହେଉ ନାହିଁ; ପାଠକମୂଳ ପୁସ୍ତକ ଦେଖିପାରିବେ ।

ଅଶ୍ରାବ୍ୟ ହେଲେ ସୁଦ୍ଧା ସେଥି ମଧ୍ୟରୁ ଗୋଟିଏ ବିଷୟ ଲେଖିବାକୁ ବାଧ ହେଉଅଛୁଁ । ଅଧ୍ୟାତ୍ମ ରାମାୟଣରେ ଲେଖା ଅଛି, 'ଦୁର୍ବୃତ୍ତ ଇନ୍ଦ୍ରଙ୍କୁ' ଗୌତମ ଶାପ ଦେଲେ-

ଅଶ୍ରାବ୍ୟ ହେଲେ ସୁଦ୍ଧା ସେଥି ମଧ୍ୟରୁ ଗୋଟିଏ ବିଷୟ ଲେଖିବାକୁ ବାଧ ହେଉଅଛୁଁ । ଅଧ୍ୟାତ୍ମ ରାମାୟଣରେ ଲେଖା ଅଛି, 'ଦୁର୍ବୃତ୍ତ ଇନ୍ଦ୍ରଙ୍କୁ' ଗୌତମ ଶାପ ଦେଲେ–

''ଯୋନିଲମ୍ପଟ ଦୁଷ୍ଟାତ୍ମନ୍
ସହସ୍ର ଭଗବାନ୍ ଭବ ।'' ଅ.ରା.

ଦେବତାମାନେ ଅନୁଗ୍ରହ କରି ଇନ୍ଦ୍ରଙ୍କୁ ସହସ୍ର ଚକ୍ଷୁ କଲେ । ଭଲକଥା । ବାଲ୍ମୀକି ରାମାୟଣରେ ଲେଖାଅଛି–

ମମରୂପଂ ସମାସ୍ଥାୟ କୃତବାନସି ଦୁର୍ମତେ ।
ଅକର୍ତ୍ତବ୍ୟମିଦଂ ଯସ୍ମାଦ୍ ତଫଳସ୍ତଂ ଭବିଷ୍ୟତି ।

ବା. ୪୮ । ୨୩

ଇନ୍ଦ୍ରଙ୍କର ପାପକର୍ମ ଏକ । ସେହି ଏକ କର୍ମ ନିମନ୍ତେ ଯୋଡ଼ିଏ ପୋଥିରେ ଦୁଇପ୍ରକାର ଦଣ୍ଡ କାହିଁକି ? ଏଥର ମୀମାଂସା ତିଳକ ଟୀକାକାର କରି ନାହାନ୍ତି । ମିଥ୍ୟା କଳ୍ପନା ବୋଇଲେ କ୍ଷତି କ'ଣ ?

ଜନକ ଓ ବିଶ୍ୱାମିତ୍ରଙ୍କର ବାକ୍ୟାଳାପରେ ରାମ ବିଷ୍ଣୁ ଅବତାର ବୋଲି ପ୍ରକାଶ ପାଉ ନାହିଁ ।

ବିଷ୍ଣୁ ଯେବେ ରାମରୂପରେ କୌଶଲ୍ୟା ଗର୍ଭରେ ଜନ୍ମଗ୍ରହଣ କରିପାରନ୍ତି ତେବେ ବିଷ୍ଣୁପତ୍ନୀ ବା ଲକ୍ଷ୍ମୀ ସୀତା ରୂପରେ ଜନକରାଜରାଣୀ ଗର୍ଭରେ ଜନ୍ମଗ୍ରହଣ କରିବାରେ କୌଣସି ଦୋଷ ଥିଲା କି ? ତେବେ ସୀତାଙ୍କୁ କର୍ଷିତ ଭୂମିରୁ ଜନ୍ମ କରାଇବାର ପ୍ରୟୋଜନ କ'ଣ ? ଈଦୃଶ ସୀତା ଜନ୍ମ ବୃତ୍ତାନ୍ତଟିକୁ ନିତାନ୍ତ ଅସମ୍ଭବ ଓ ଅପ୍ରାକୃତିକ ଦେଖି ପାଶ୍ଚାତ୍ୟ ପଣ୍ଡିତଗଣ ମନେ କରନ୍ତି ଯେ, ସୀତାଜନ୍ମ ଉପାଖ୍ୟାନଟି ଗୋଟିଏ କୃଷିବିଷୟକ ରୂପକ ମାତ୍ର । ଆମ୍ଭେମାନେ କେବଳ ବାଲ୍ମୀକି ରାମାୟଣର ଆଲୋଚନା କରୁଥିବାରୁ ପାଶ୍ଚାତ୍ୟ ପଣ୍ଡିତଗଣଙ୍କ ମତ ଓ ବୈଦିକ ଶାସ୍ତ୍ର ମତର ଅବତାରଣା କରିବୁଁ ନାହିଁ ।

ରାମଙ୍କୁ ବିଷ୍ଣୁ ବୋଲି ପ୍ରତିପନ୍ନ କରିବା ନିମନ୍ତେ ରାମାୟଣରେ ଯେଉଁ କୃତ୍ରିମ ପନ୍ଥା ଅବଲମ୍ବିତ ହୋଇଅଛି, ସୀତାଙ୍କ ଅଯୋନିକା ବୋଲି ପ୍ରକାଶ କରିବାରେ ସେହି କୃତ୍ରିମ ପନ୍ଥା ଅବଲମ୍ବିତ ହୋଇଅଛି । ବୈଦିକ ଗ୍ରନ୍ଥମାନଙ୍କରେ ସୁକୀର୍ତ୍ତିତ, ପରାବିଦ୍ୟା ଅପରାବିଦ୍ୟାର ବ୍ୟାଖ୍ୟାକର୍ତ୍ତା 'ବୈଦେହକ ଜନକ'ଙ୍କୁ ସୀତାଦେବୀଙ୍କର ଜନକରୂପେ ସ୍ୱୀକାର କରିବାକୁ କେଉଁ କାରଣରୁ ପୌରାଣିକଗଣ ପରାଙ୍ମୁଖ, ତାହା ତାହାଙ୍କୁ ହିଁ ଜଣା ? ଜନକ ଔରସରୁ ଜାନକୀ ରୂପା ସର୍ବଗୁଣସମ୍ପନ୍ନା କନ୍ୟା ଜନ୍ମ ହେବା ଏକା ସମ୍ଭବ । ଯୋଗ୍ୟ ପିତାର ଯୋଗ୍ୟ କନ୍ୟା । ଆମ୍ଭେମାନେ କେଉଁ କାରଣରୁ ସୀତାଦେବୀଙ୍କର ଅସମ୍ଭବ, ଅମାନୁଷିକ ଓ ଅପ୍ରାକୃତିକ ଜନ୍ମ ସ୍ୱୀକାର କରିବୁଁ ? କେଉଁ କାରଣରୁ ଲୌହଫଳକ ବିଦୀର୍ଣ୍ଣ ଲଙ୍ଗଳପଦ୍ଧତିରେ ନିକୃଷ୍ଟ ଜୀବ ପ୍ରାୟ ଧୂଳିଧୂଷରିତା ସୀତାଙ୍କୁ ଦେଖି ସୁଖାନୁଭବ କରିବୁଁ ? କୌଣସି ଜଣେ ପୌରାଣିକର ଅସ୍ୱାଭାବିକ କଳ୍ପନା ଆମ୍ଭମାନଙ୍କୁ କେତେ ଦିନ ମୁଗ୍ଧ ଓ କପଟାଚ୍ଛନ୍ନ କରି ରଖିପାରିବ ?

ସୀତାଙ୍କର ଜନ୍ମ ବିବରଣ ରାମାୟଣରେ ନାହିଁ । ସୀତା ଭୂମିରୁ ଉଦ୍ଧୃତା ହୋଇଥିବା ପ୍ରସଙ୍ଗ ଅସ୍ପଷ୍ଟ ଭାବରେ ଦୁଇ ସ୍ଥାନରେ ଲିଖିତ ହୋଇଅଛି, ଯଥା-ବାଳକାଣ୍ଡ ଷଟ୍‌ଷଷ୍ଠିତମ ସର୍ଗରେ ଏବଂ ଅଯୋଧ୍ୟାକାଣ୍ଡ ଏକ ଶତ ଅଠର ସର୍ଗରେ । ଏ ସମ୍ବନ୍ଧରେ ଦୁଇ କଥା ଆଲୋଚନା କରିବା ଆବଶ୍ୟକ ।

ସୁବାହୁବଧ ଉତ୍ତାରୁ ମିଥିଳାନଗରକୁ ଯଜ୍ଞ ଦେଖିବାକୁ ଯିବା ନିମନ୍ତେ ବିଶ୍ୱାମିତ୍ର ଓ ଅନ୍ୟାନ୍ୟ ଋଷିମାନେ ରାମଙ୍କୁ ଅନୁରୋଧ କଲେ ଏବଂ ଶିବଧନୁ ବୃତ୍ତାନ୍ତ ସମସ୍ତ ସ୍ପଷ୍ଟାକ୍ଷରରେ ବ୍ୟକ୍ତ କରିଥିଲେ । ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ଘେନି ଜନକଙ୍କ ଯଜ୍ଞ ସ୍ଥାନରେ ଉପସ୍ଥିତ ହେବାରୁ ଜନକ ଯଥାବିଧି ପୂଜା କରି ସ୍ୱାଗତ ଜିଜ୍ଞାସା କଲେ ଏବଂ ସଙ୍ଗେ ସଙ୍ଗେ ରାମଲକ୍ଷ୍ମଣଙ୍କର ପରିଚୟ ଓ ଆଗମନ କାରଣ ପଚାରିଲେ । ବିଶ୍ୱାମିତ୍ର ବିସ୍ତରଭାବେ ଦୁଇ ଭାଇଙ୍କର ପରିଚୟ ଦେଲେ ଏବଂ ମିଥିଳା ଆଗମନର କାରଣ ମଧ୍ୟ ପ୍ରକାଶ କଲେ । ଏଥିଉତ୍ତାରୁ ପୁଣି

ଅନ୍ୟ ସର୍ଗରେ ସ୍ୱୟଂ ଜନକ ଶିବଧନୁର ବିବରଣୀ ପ୍ରକାଶ କରିବା ଏବଂ ରାମ ଲକ୍ଷ୍ମଣଙ୍କ ପରିଚୟ ଗ୍ରହଣ କରିବା ଅସଙ୍ଗତ ବୋଲି ମନେ ହୁଏ କାହିଁକି ? ଏ ସ୍ଥଳରେ ତାହା ଘଟିଅଛି।

ପ୍ରଥମ ସାକ୍ଷାତ୍ ଦିନ ବିଶ୍ୱାମିତ୍ର ଜନକଙ୍କୁ କହିଲେ– ପୁତ୍ରୌ ଦଶରଥସ୍ୟେତୌ। ବା. ୫୦ । ୨୨

ଏଥି ଉତ୍ତାରୁ ୧୫ ଗୋଟି ସର୍ଗ ବିଶ୍ୱାମିତ୍ର ଶତାନନ୍ଦଙ୍କ ନୈଶ ଆଳାପରେ ପରିପୂର୍ଣ୍ଣ- ଏହି ପନ୍ଦର ଗୋଟି ସର୍ଗରେ ଗୌତମ, ବିଶ୍ୱାମିତ୍ର ପ୍ରଭୃତିଙ୍କର ଗୁଣକର୍ମର ପୁନରାବୃତ୍ତି ମାତ୍ର। ରାମାୟଣରେ ଏପରି ୧୦ । ୧୫ ସର୍ଗ ଅପ୍ରାସଙ୍ଗିକ ଭାବରେ ତ ଅନେକ ସ୍ଥଳରେ ଅଛି। ସେ କଥା ଛାଡ଼। ପ୍ରଥମ ସାକ୍ଷାତ୍ ପରଦିନ ସକାଳେ ଦେଖା ହେଲାବେଳେ ବିଶ୍ୱାମିତ୍ର ପୁଣି ଜନକଙ୍କୁ କହିଲେ–

ପୁତ୍ରୌ ଦଶରଥସ୍ୟେମୌ
କ୍ଷତ୍ରିୟୌଲୋକବିଶ୍ରୁତୌ।

ବା. ୬୬ । ୫

ବିଶ୍ୱାମିତ୍ର କି ସ୍ମରଣଶକ୍ତି ରହିତ ଯେ ସେହି କଥାକୁ ପୁନଃ ପୁନଃ କହନ୍ତେ ? ଏଥି ଉତ୍ତାରୁ ବିଶ୍ୱାମିତ୍ର କହିଲେ–

ଦ୍ରଷ୍ଟୁକାମୌ ଧନୁଃଶ୍ରେଷ୍ଠଂ
ଯଦେତତ୍ତ୍ୱୟି ତିଷ୍ଠତି।

ବା. ୬୬।୫

ବିଶ୍ୱାମିତ୍ରଙ୍କର ଏହି ଉକ୍ତି ଶୁଣି ଜନକ ଶିବଧନୁର ବିବରଣ ଗାଇବାକୁ ଲାଗିଲେ। କେବଳ ସୀତାଙ୍କୁ ଅଯୋନିକା ବୋଲି ପ୍ରକାଶ କରିବାରୁ ଈଦୃଶ ଆରମ୍ଭ। ପଞ୍ଚାଶତ୍ ସର୍ଗ ଏବଂ ସପ୍ତଷଷ୍ଟି ସର୍ଗର ଅଗମୂଳରୁ କେତେଗୋଟି ଶ୍ଳୋକ ସଂଗ୍ରହପୂର୍ବକ ଏବଂ ତହିଁରେ ନିଜସ୍ୱ କିଛି ଯୋଗ କରି ପରବର୍ତ୍ତୀ ଲେଖକ ଷଟ୍‌ଷଷ୍ଠିତମ ସର୍ଗର ସୃଷ୍ଟି କରିଅଛନ୍ତି। ପାଠକ ମୂଳଗ୍ରନ୍ଥ ଆଲୋଚନା କଲେ ଆମ୍ଭମାନଙ୍କୁ ଦୋଷରୁ ଅବ୍ୟାହତି ଦେବେ ବୋଲି ଆଶା ଅଛି। ତେବେ ମଧ ଏହି କେତେଗୋଟା ଶ୍ଳୋକରେ ସୀତାଙ୍କର ଭୂଗର୍ଭରୁ ଜନ୍ମ ହେବା ବିବରଣ କି ପ୍ରକାର ସନ୍ଦେହଜନକ ଓ ଅସ୍ୱଷ୍ଟ, ତାହା ବିବେଚନାଯୋଗ୍ୟ। ଏଥିରେ ସୀତା କିଏ, କିପରି ଭାବରେ କାହାଦ୍ୱାରା ଭୂମି ମଧରେ ପ୍ରୋଥିତ୍ ହୋଇଥିଲେ, ତହିଁର ଉଲ୍ଲେଖ ନାହିଁ। ବଙ୍ଗ ରାମାୟଣ ଅପେକ୍ଷା ପଦ୍ମପୁରାଣରେ ଏଥିର ବହୁଳ ବିବରଣ ଅଛି।

ଅଥ ଲୋକେଶ୍ୱରୀ ଲକ୍ଷ୍ମୀ
ଜନକସ୍ୟ ପୁରେ ସ୍ୱତଃ।
ଶୁଭକ୍ଷେତ୍ରେ ହଳୋତ୍‌ଖାତେ
ତାରେ ଚୋତ୍ତରଫାଲ୍‌ଗୁନେ।
ଅଯୋନିକା ପଦ୍ମକରା
ବାଳାର୍କ ଶତସନ୍ନିଭା।
ସୀତାମୁଖେ ସମୁତ୍ପନ୍ନା
ବାଳଭାବେନ ସୁନ୍ଦରୀ।
ସୀତାସମୁଦ୍ଭବା ସୀତା
ଇତ୍ୟସ୍ୟୈ ନାମାଚାକରୋତ୍। ପଦ୍ମପୁରାଣ।

ପ୍ରୀତିଯୁକ୍ତସ୍ତୁ ସର୍ବେଷାଂ
ଦଦୌ ତେଷାଂ ମହାତ୍ମନାଂ।
ତଦେତଦ୍ଦେବଦେବସ୍ୟ
ଧନୁରତ୍ନଂ ମହାତ୍ମନଃ।୧୨।
ନ୍ୟାସଭୂତଂ ତଦା ନ୍ୟସ୍ତ
ମସ୍ମାକଂ ପୂର୍ବଜେ ବିଭୋ।
ଅଥମେ କୃଷତଃ କ୍ଷେତ୍ରଂ
ଲାଙ୍ଗଳାଦୁଥିତା ତତଃ।୧୩।
କ୍ଷେତ୍ରଂ ଶୋଧୟତା ଲବ୍ଧା
ନାମ୍ନା ସୀତେତି ବିଶ୍ରୁତା।
ଭୂତଳାଦୁତ୍‌ଥିତା ସା ତୁ
ବ୍ୟବର୍ଦ୍ଧତ ମମାତ୍ମଜା।୧୪।
ବୀର୍ଯ୍ୟଶୁଳ୍କେତି ମୋ କନ୍ୟା
ସ୍ଥାପିତେୟମଯୋନିଜା।
ଭୂତଳାଦୁତ୍‌ଥିତାଂ ତାନ୍ତୁ
ବର୍ଦ୍ଧମାନାଂ ମମାତ୍ମଜାଂ।୧୫ ।

ବା.୬୬ ସର୍ଗ

ଉପରୋକ୍ତ ଉଦ୍ଧୃତାଂଶ ଯୋଡ଼ିକରୁ ବିଲକ୍ଷଣ ହୃଦୟଙ୍ଗମ କରାଯାଇପାରେ ଯେ, ପଦ୍ମପୁରାଣର ସୀତାଙ୍କ ଅଯୋନିସମ୍ଭବତ୍ୱ ସ୍ୱଷ୍ଟ ଏବଂ ରାମାୟଣର ବିବରଣୀ ଅସ୍ୱଷ୍ଟ।

ପ୍ରଥମତଃ ଏଠାରେ ସୀତା ଜନ୍ମ ବୃତ୍ତାନ୍ତ ବର୍ଣ୍ଣନା କରିବାର କୌଣସି କାରଣ ନ ଥିଲା। ଯେବେ ସୀତାଙ୍କର ଅସମ୍ଭବ ଜନ୍ମବୃତ୍ତାନ୍ତ ବ୍ୟକ୍ତ କରିବାର ଆଦି କବିଙ୍କର ଇଚ୍ଛା ଥାନ୍ତା, ତାହାହେଲେ ତାହା ବିଶଦଭାବରେ ବର୍ଣ୍ଣନା କରିଥାନ୍ତେ, ମାତ୍ର ଏପରି ସନ୍ଦେହଯୁକ୍ତ ବାକ୍ୟବିନ୍ୟାସ କରି ନ ଥାନ୍ତେ।

ଶିବଧନୁ ଭଙ୍ଗରୂପ ବୀର୍ଯ୍ୟପରୀକ୍ଷାରେ ଯେଉଁ ବୀର ଉତ୍ତୀର୍ଣ୍ଣ ହେବ, ତାହାକୁ ମୋର କନ୍ୟାକୁ ଅର୍ପଣ କରିବି ବୋଲି

ଜନକ ବହୁଦିନରୁ ସର୍ବତ୍ର ଘୋଷଣା ପ୍ରଚାର କରିଥିଲେ। ସୁତରାଂ ଏହି ଘୋଷଣା ସଙ୍ଗେ ସଙ୍ଗେ ଶିବଧନୁର ବର୍ଣ୍ଣନା ସମସ୍ତ ରାଜା ମହାରାଜାମାନଙ୍କୁ ଜଣାଥିଲା। ବିଶ୍ୱାମିତ୍ର, ରାମ ଓ ଲକ୍ଷ୍ମଣଙ୍କୁ ତାହା ସମ୍ପୂର୍ଣ୍ଣ ଜଣା ଥିବାର ଜନକ ଜାଣନ୍ତି। ପଣ ଏବଂ ଶିବଧନୁର ତତ୍ତ୍ୱାଭିଜ୍ଞମାନଙ୍କଠାରେ ପୁନର୍ବାର ସେହି ବୃତ୍ତାନ୍ତ ବ୍ୟକ୍ତ କରିବାକୁ ଚେଷ୍ଟା କରିବା ଚର୍ବିତ ଚର୍ବଣ ମାତ୍ର। ଜାନକୀ ନିମନ୍ତେ ଶିବଧନୁର ପ୍ରୟୋଜନ, କି ଶିବଧନୁ ନିମନ୍ତେ ଜାନକୀର ପ୍ରୟୋଜନ? ସୀତାଙ୍କ ହସ୍ତପ୍ରାର୍ଥୀ ବୀରର ବୀର୍ଯ୍ୟ ପରୀକ୍ଷା ନିମନ୍ତେ ଧନୁଭଙ୍ଗ ପଣ କରାଯାଇଥିଲା। ସୀତାଙ୍କ ରୂପ ଗୁଣ ବିଦିତ ହେଲାରୁ ଈଦୃଶ କଠୋର ପରୀକ୍ଷାରେ ପରୀକ୍ଷାର୍ଥୀ ହେବା ସ୍ୱାଭାବିକ। ପରୀକ୍ଷାକ୍ଷେତ୍ରରେ ଉପସ୍ଥିତ ବ୍ୟକ୍ତିଙ୍କୁ ଧନୁର ବର୍ଣ୍ଣନା ଏବଂ ଗୌଣ ଭାବରେ ସୀତାଙ୍କ ଜନ୍ମ ଟିପ୍ପଣୀ ଫିଟାଇବାପାଇଁ ଯୁକ୍ତିସଙ୍ଗତ କଥା? ସୁତରାଂ ଜନକ ମୁଖରୁ ଉକ୍ତ କେତୋଟି ଶ୍ଳୋକ ବାହାରି ନାହିଁ, ଏହା ଆମ୍ଭମାନଙ୍କର ଦୃଢ଼ବିଶ୍ୱାସ।

ଉକ୍ତ ଉଦ୍ଧୃତ ଶ୍ଳୋକରୁ ଏହା ସ୍ପଷ୍ଟ ଜଣାପଡୁଅଛି ଯେ, ଜନକଙ୍କ ପୂର୍ବପୁରୁଷଗଣ ଶିବଧନୁକୁ ପୋତି ରଖିଥିଲେ, ଯେପରି କି ପୂର୍ବ କାଳର ଲୋକମାନେ ଧନ ପୋତି ରଖନ୍ତି। 'ନ୍ୟାସଭୂତଂ' ଓ 'ନ୍ୟସ୍ତଂ' ଶବ୍ଦ ବ୍ୟବହାରଦ୍ୱାରା ଉକ୍ତ ଅର୍ଥ ପ୍ରତୀୟମାନ ହେଉଅଛି ଏବଂ ଲୌହ ମଞ୍ଜୁଷାରେ ଥିବାର ନିମ୍ନୋକ୍ତ ପ୍ରମାଣରୁ ପ୍ରକାଶ ପାଉଅଛି।

ତମାଦାୟ ସୁମଞ୍ଜୁଷାମାୟସୀଂ ଯତ୍ର ତଦ୍ଧନୁଃ।

ବା.୬୭।୫

ଏତିକି ନୁହେଁ, ଏହା ମଧ ପ୍ରତୀତ ହେଉଅଛି ଯେ, ଶିବଧନୁ ଭୂମିରେ ନ୍ୟସ୍ତ ଥିଲା, ଜନକ ଭୂମି କର୍ଷଣ କଲାବେଳେ ତାହା ପ୍ରାପ୍ତ ହେଲେ। 'ଉତ୍‌ଥିତା ତତଃ' ଥିବାରୁ ତ୍ରୟୋଦଶ ଶ୍ଳୋକର ଶେଷପାଦକୁ ଚତୁର୍ଦ୍ଦଶ ଶ୍ଳୋକ ସହିତ ଅନ୍ୱୟକରି ସୀତା ଉଦ୍ଧୃତା ହେଲେ ବୋଲି ଅର୍ଥ କରିବାକୁ ଟୀକାକାର କହନ୍ତି। ଉତ୍‌ଥିତକୁ ଉତ୍‌ଥିତା କରିବା ବଡ଼ ବୃହତ୍ ବ୍ୟାପାର ନୁହେଁ। ଯେବେ ସୀତା ଭୂମିରୁ ଜାତ, ତେବେ ଜନକ ଆତ୍ମଜା ଶବ୍ଦ ବ୍ୟବହାର କଲେ କିପରି? ଏଡ଼େ ବଡ଼ ରାମାୟଣ ପୁସ୍ତକରେ ସୀତା ଜନ୍ମ ବୃତ୍ତାନ୍ତପାଇଁ କି କେବଳ ଦୁଇ ଗୋଟି ଶ୍ଳୋକର ସ୍ଥାନ ମିଳିଲା? ସେଥି ମଧ୍ୟରୁ ପଞ୍ଚଦଶ ଶ୍ଳୋକର ଶେଷପାଦଟି ଚତୁର୍ଦ୍ଦଶ ଶ୍ଳୋକର ଅବିକଳ ପୁନରାବୃତ୍ତି ମାତ୍ର। ରାମାୟଣ ରୂପ ମହାସମୁଦ୍ରରୁ ଯେବେ କେବଳ 'ଲବ୍ଧା ନାମ୍ନା ସୀତେତି ବିଶ୍ରୁତା' ଏତିକି ପ୍ରମାଣ ପାଇ ଅସମ୍ଭବ ସୀତାଜନ୍ମ ବୃତ୍ତାନ୍ତକୁ ପାଠକଗଣ ବିଶ୍ୱାସ କରିବାକୁ ଦୃଢ଼ ପରିକର, ତେବେ ଆମ୍ଭେମାନେ ନାଚାର। ପଦ୍ମପୁରାଣ ପ୍ରାଚୀନ, କି ରାମାୟଣ ପ୍ରାଚୀନ? ସମସ୍ତେ ଆଶା କରନ୍ତି, ପଦ୍ମପୁରାଣ ରାମାୟଣରୁ ରାମ ଚରିତ୍ର ସଂଗ୍ରହ କରିଥିବେ। ଗୁରୁଙ୍କୁ ଯାହା ଅଜଣା ଶିଷ୍ୟ ଜାଣିଲେ କିପରି ସେ ସ୍ପଷ୍ଟ ବିବରଣ ଲେଖିଲେ? ରାମାୟଣରେ ସୀତାଙ୍କ ଜନ୍ମର ମାସ ଦିନ ଥିବାର ତ ତେଣେ ଥାଉ, ଜନ୍ମ ବିବରଣ ମଧ ନାହିଁ; ଅଥଚ ପଦ୍ମପୁରାଣ ସୀତା ଉତ୍ତରାଫାଲ୍‌ଗୁନୀ ନକ୍ଷତ୍ରରେ ଜନ୍ମ ବୋଲି ଲେଖି ପକାଇଲେ। ଏସବୁ କାରଣ ଦେଖିଲେ ଏହା କି ମନେ ହୁଏ ନାହିଁ ଯେ, ପଦ୍ମପୁରାଣ ପ୍ରଭୃତି ରଚନା ହେବା ପୌରାଣିକ ଯୁଗରେ ଏତାଦୃଶ ଅଦ୍ଭୁତ ଉପାଖ୍ୟାନମାନଙ୍କର କଳ୍ପନା କରାଯାଇଅଛି।

ଭାଗବତ, ଗୀତଗୋବିନ୍ଦ ଏବଂ ଅନ୍ୟାନ୍ୟ ଅର୍ବାଚୀନ ପୁରାଣମାନଙ୍କରୁ ଆମ୍ଭେମାନେ ଜାଣି ପାରୁଅଛୁଁ ଯେ, ପରଶୁରାମ ବିଷ୍ଣୁଙ୍କର ଅବତାର ଏବଂ ରାମଙ୍କର ପୂର୍ବବର୍ତ୍ତୀ ଅବତାର। ତ୍ରେତା ଯୁଗରେ କ୍ଷତ୍ରିୟନିଧନ ନିମନ୍ତେ ବିଷ୍ଣୁ ପରଶୁରାମ ରୂପ ଧାରଣ କରିଥିଲେ। ରାମଜନ୍ମ ବେଳେ ପରଶୁରାମ ବିଷ୍ଣୁ ବୋଲି ପୂଜା ପାଉଥିଲେ କି? ରାମାୟଣରେ ପରଶୁରାମ ବିଷ୍ଣୁଙ୍କର ଅବତାର ବିଶେଷ ବୋଲି ବର୍ଣ୍ଣିତ ହୋଇଅଛନ୍ତି କି? ପରଶୁରାମ ଓ ରାମଙ୍କର ସାକ୍ଷାତ ବେଳେ ଉଭୟେ ଏକ ବିଷ୍ଣୁଙ୍କର ବିଭିନ୍ନ ରୂପ ବୋଲି ପ୍ରକାଶ ପାଇଅଛି କି? ନାହିଁ। ପରଶୁରାମ ଓ ରାମ ଏକ ବିଷ୍ଣୁଙ୍କର ଯୋଡ଼ିଏ ସ୍ୱତନ୍ତ୍ର ରୂପ ହେଲେ ଜଣେ ଅନ୍ୟ ପ୍ରତି ସହାନୁଭୂତି ପ୍ରଦର୍ଶନ କରିବାର ସ୍ୱାଭାବିକ। ସହାନୁଭୂତି ଦେଖାଇବା ତେଣେ ଥାଉ, ଉଭୟଙ୍କ ମଧରେ ବିରକ୍ତି ଓ ଘୃଣାଭାବ ପରିସ୍ଫୁଟ ହୋଇଥିଲା। ଅବଶେଷରେ ପରଶୁରାମ ରାମଙ୍କଠାରେ ପରାସ୍ତ ହୋଇ କହିଲେ–

ଅକ୍ଷୟଂ ମଧୁହନ୍ତାରଂ
ଜାନାମି ତ୍ୱାଂ ସୁରେଶ୍ୱରଂ। ବା ୭୬।୧୨

ତ୍ୱୟା ତ୍ରୈଲୋକ୍ୟନାଥେନ
ଯଦାହଂ ବିମୁଖୀକୃତଃ। ବା. ୭୬।୧୯

ପରଶୁରାମଙ୍କ ପ୍ରସଙ୍ଗର କେତେ ଗୋଟା ଶ୍ଳୋକକୁ ସ୍ୱୟଂ ଟୀକାକାର ମଧ ପ୍ରକ୍ଷେପ ବୋଲି ପ୍ରକାଶ କରିଅଛନ୍ତି। ସୁତରାଂ ଉପରୋକ୍ତ ଶ୍ଳୋକାର୍ଦ୍ଧ ଯୋଡ଼ିକୁ ଆମ୍ଭେମାନେ ପ୍ରକ୍ଷିପ୍ତ ବୋଲି ତ୍ୟାଗ କରିପାରୁ। ଯେଉଁ ପରଶୁରାମ ରାମାୟଣରେ ଈଶ୍ୱରାବତାର ବୋଲି ଆଦୌ ଚିହ୍ନିତ ବା ଗୃହୀତ ହୋଇ ନ

ଥିଲେ, ସେ ପୁଣି ପରବର୍ତ୍ତୀ ପୁରାଣମାନଙ୍କରେ ଦଶାବତାର ମଧ୍ୟରେ ଷଷ୍ଠ ସ୍ଥାନ ଏବଂ ଭାଗବତ ମତରେ ଷୋଡ଼ଶ ସ୍ଥାନ ପାଇଲେ କିପରି ? ଅବତାରବାଦଟି ଅତି ଅର୍ବାଚୀନ ପୁରାଣ ରଚନାଯୁଗରେ ସୃଷ୍ଟ ହୋଇଅଛି; ଏଣୁ ଜାମଦଗ୍ନ୍ୟ ପରଶୁରାମଙ୍କୁ ପୁରାଣ ଭେଦରେ ଷଷ୍ଠ ଓ ଷୋଡ଼ଶ ଅବତାର ଏବଂ ରାମଙ୍କୁ ସପ୍ତମ ଓ ସପ୍ତଦଶ ଅବତାର କରାଯାଇଅଛି ଏବଂ ତହିଁ ଉତ୍ତାରୁ ରାମାୟଣରେ ପଦେ ଅଧେ ଗୁଞ୍ଜାଯାଇଅଛି । ବନବାସ କାଳରେ ରାମ ଲକ୍ଷ୍ମଣ ସୀତାଙ୍କୁ ଭରଦ୍ୱାଜ ନିଜ ଆଶ୍ରମରେ ଦେଖି ଆପଣମାନଙ୍କର ଅକାରଣ ବନବାସ ହେଲା ବୋଲି ଦୁଃଖ ପ୍ରକାଶ କରିଅଛନ୍ତି । ରାମ ବିଷ୍ଣୁ, ତାଙ୍କ ଦ୍ୱାରା ରାବଣ ବଧ ହେବ, ଏହା ପୂର୍ବରୁ ଜ୍ଞାତ ଥିଲେ ଏପରି ଦୁଃଖ ପ୍ରକାଶ କରି ନ ଥାନ୍ତେ ।

ଚିତ୍ରକୂଟଠାରୁ ରାମଙ୍କୁ ଫେରାଇ ଆଣିବାକୁ ଭରତ ବଶିଷ୍ଠାଦିଙ୍କ ସହିତ ଯାଇଥିଲେ । ବଶିଷ୍ଠ ରାମଙ୍କୁ ଫେରିବା ନିମନ୍ତେ ଅନେକ ଉପଦେଶ ଦେଲେ ଏବଂ କହିଲେ ଯେ, ତୁମ୍ଭ କୁଳର ପ୍ରଚଳିତ ପ୍ରଥା ଅଛି ଯେ, ଜ୍ୟେଷ୍ଠପୁତ୍ର କେବଳ ରାଜା ହୁଅନ୍ତି, ତୁମ୍ଭେ ଏହି ସନାତନ ପ୍ରଥାର ଉଚ୍ଛେଦ ନ କରି ରାଜ୍ୟଭାର ଗ୍ରହଣ କର ।

ସ ରାଘବାଣାଂ କୁଳଧର୍ମମାତ୍ମନଃ
ସନାତନଂ ନାଦ୍ୟ ବିହନ୍ତୁ ମର୍ହସି ।

ଅ : ୩୬ ।୧୧୦

ଯେବେ ବଶିଷ୍ଠ ପୁତ୍ରେଷ୍ଟି ଯଜ୍ଞରେ ଉପସ୍ଥିତ ଥିଲେ ଏବଂ ଋଷ୍ୟଶୃଙ୍ଗ ହୋମ କଲାବେଳେ ଅଗ୍ନିକୁଣ୍ଡରୁ ଶଙ୍ଖଚକ୍ର ଗଦାପଦ୍ମଧାରୀ ଭଗବାନ ଆବିର୍ଭୂତ ହୋଇ ସ୍ୱହସ୍ତରେ ଚରୁ ଚଢ଼ାଇ ଦେବାର ଦେଖିଥିଲେ ଏବଂ ବିଷ୍ଣୁ ଅବତାର ହେବାର ଜ୍ଞାତ ଥିଲେ, ତେବେ ଭରତାଦିଙ୍କୁ ପ୍ରବୋଧ ନ ଦେଇ ପ୍ରାୟ ଦୁଇଶତ କ୍ରୋଶ ବାଟ ଟାଣି ନେଲେ କାହିଁକି ଏବଂ ରାମଙ୍କୁ ଏପରି ପ୍ରତାରଣାପୂର୍ଣ୍ଣ ମିଥ୍ୟା ଅଭିଭାଷଣ ଶୁଣାଇଲେ କାହିଁକି ?

ଆରଣ୍ୟକାଣ୍ଡରେ ଶରଭଙ୍ଗ, ସୁତୀକ୍ଷ୍ଣ ପ୍ରଭୃତି ଋଷିମାନଙ୍କ ସହିତ ରାମଙ୍କର ସାକ୍ଷାତ ହେଲା; ସେମାନେ ରାମଙ୍କୁ ବିଷ୍ଣୁ ବୋଲି ସ୍ତୁତି କରି ନ ଥିଲେ । ବିରାଧ ରାମଙ୍କୁ ବିଷ୍ଣୁ ବୋଲି ସ୍ତୁତି କରି ନାହିଁ । ଅଗସ୍ତି ରାମଙ୍କୁ ବିଷ୍ଣୁ ବୋଲି ସ୍ତୁତି କରି ନାହାନ୍ତି, ବରଂ ଚ ସ୍ତ୍ରୀ ଚରିତ୍ରରେ କେତେକ ଅଯଥା ଦୋଷାରୋପ କରିଅଛନ୍ତି । ଶବରୀ ରାମଙ୍କୁ ବିଷ୍ଣୁ ବୋଲି ସ୍ତୁତି କରି ନାହିଁ ।

ରାବଣ ସୀତାଙ୍କୁ ହରଣ କରିବା ପୂର୍ବରୁ ସୀତା ଆତ୍ମରୂପ ଅଗ୍ନିରେ ରକ୍ଷା କରିବା ଅସମ୍ଭବ କାହାଣୀ ରାମାୟଣରେ ନାହିଁ । ଏହା ପରବର୍ତ୍ତୀ ପୁରାଣ ଲେଖକଙ୍କର ମିଥ୍ୟା କଳ୍ପନା ଅଟେ । ଗୋଦାବରୀ ନଦୀ ସୀତାହରଣ ବୃତ୍ତାନ୍ତ ଜ୍ଞାତ ଥିଲେ ସୁଦ୍ଧା ରାବଣକୁ ଭୟ କରି ରାମଙ୍କଠାରେ ପ୍ରକାଶ କଲେ ନାହିଁ । ବିଷ୍ଣୁ ଅପେକ୍ଷା ରାବଣକୁ ଭୟ କରି ରାମଙ୍କଠାରେ ପ୍ରକାଶ କଲେ ନାହିଁ । ବିଷ୍ଣୁ ଅପେକ୍ଷା ରାବଣକୁ ଏତେ ଭୟ କାହିଁକି ? ଚୁଗୁଲି କରିବାକୁ ବା ସେଠାରେ କିଏ ଥିଲା ? ସୀତା ବିୟୋଗ ଦୁଃଖରେ ରାମ ନଦୀ, ପର୍ବତ ଓ ବୃକ୍ଷ ପାଷାଣାଦି ପ୍ରତି ଯେ କ୍ରୋଧ ପ୍ରକାଶ କରି ଅଛନ୍ତି, ତାହା ବିଷ୍ଣୁଚିତ କର୍ମ ନୁହେଁ, ଏମନ୍ତ କି, ସାଧାରଣ ମନୁଷ୍ୟ ପକ୍ଷରେ ଏହା ଅତି ନିନ୍ଦନୀୟ କାର୍ଯ୍ୟ ବୋଲି ପରିଗଣିତ ହେବ ।

ଅତି ବୃଦ୍ଧ ସମ୍ପାତି ରାମଙ୍କୁ ବିଷ୍ଣୁ ବୋଲି ଜ୍ଞାତ ନ ଥିଲା । ନିଶାକର ଋଷି ରାମଙ୍କୁ ବିଷ୍ଣୁ ବୋଲି ନାହାନ୍ତି । ହନୁମାନ ସମୁଦ୍ର ଲଙ୍ଘନ କଲାବେଳେ ବ୍ରହ୍ମା, ସୂର୍ଯ୍ୟ ଓ ପବନକୁ ପ୍ରଣାମ କଲା, ରାମଙ୍କୁ ପ୍ରଣାମ କରି ନାହିଁ । ସାଗରପତି ରାମଙ୍କୁ ବିଷ୍ଣୁ ବୋଲି ସ୍ତୁତି କରିବା ତେଣେ ଥାଉ ତଦ୍‌ଯୋଗ୍ୟ ସମ୍ବୋଧନ ମଧ୍ୟ କରି ନାହିଁ ।

ଲଙ୍କାକାଣ୍ଡରେ ରାମଙ୍କ ସ୍ତୁତି ଥିବାର ପୂର୍ବେ ପ୍ରକାଶ କରାଯାଇଅଛି । ଯେତେବେଳେ ଇନ୍ଦ୍ରାଦି ଦେବତାମାନେ ରଥ ପ୍ରଭୃତି ପଠାଇ ରାମଙ୍କୁ ରୀତିମତେ ସାହାଯ୍ୟ କରିବା କଳ୍ପନା କବିକପୋଳରେ ସ୍ଥାନ ପାଇଲା ସେତେବେଳେ ଗୋଟାଏ ଯୋଡ଼ାଏ ସ୍ତୁତି ଓ ବିଷ୍ଣୁ ସମ୍ବୋଧନ ଲେଖନୀରୁ ବାହାରିବା ଆଶ୍ଚର୍ଯ୍ୟଜନକ ନୁହେଁ । ବଡ଼ ଆଶ୍ଚର୍ଯ୍ୟର ବିଷୟ ଅମରକୋଷ ଓ ଅନ୍ୟାନ୍ୟ କୋଷର ବିଷ୍ଣୁ ପର୍ଯ୍ୟାୟରେ ରାମ ନାମ ସ୍ଥାନ ପାଇ ନାହିଁ । ଅବତାର ସମ୍ବନ୍ଧରେ ଏତିକି ?

ଏଣିକି ସାମାଜିକ ଓ ଧର୍ମସଂକ୍ରାନ୍ତ ଆଚାର ବ୍ୟବହାର ସମ୍ବନ୍ଧରେ ଯେଉଁ ଭ୍ରାନ୍ତ ମତଗୁଡ଼ିକ ଅଛି, ତାହା ଦେଖାଇ ଦେବାର ଚେଷ୍ଟା କରିବୁ ଏବଂ ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଜ୍ଞାତବ୍ୟ ବିଷୟର ଆଲୋଚନା କରିବୁ ।

ବାଲ୍ୟ ବିବାହ– ବାଲ୍ୟବିବାହ ସମାଜର ଘୋରତର ଅନିଷ୍ଟଜନକ ଓ ଅକଲ୍ୟାଣକର, ତାହା ଭାରତବାସୀ ପ୍ରତ୍ୟକ୍ଷ କରି ମଧ୍ୟ ବୁଝୁ ନାହାନ୍ତି । ବୁଝିଲେ ମଧ୍ୟ ନିରାକରଣ ଚେଷ୍ଟା କରୁ ନାହାନ୍ତି । ବ୍ରାହ୍ମଣମାନେ କୁଳରୀତି ଅନୁସରଣୀୟ ବୋଲି ପରିଦୃଶ୍ୟମାନ ଅମଙ୍ଗଳକୁ ଆଖି ବୁଜି ସହି ଯାଉଛନ୍ତି । ବ୍ରାହ୍ମଣେତର କେତେକ ଜାତି ସେହି ବ୍ରାହ୍ମଣମାନଙ୍କର

ପଦାନୁସରଣ କରୁଅଛନ୍ତି । କେତେକ ଶୂଦ୍ର ଜାତି ଓ ଅନ୍ୟାନ୍ୟ ନିମ୍ନ ଶ୍ରେଣୀ ଯେଉଁମାନଙ୍କ ସମାଜରେ ବିଧବା ବିବାହ ପର୍ଯ୍ୟନ୍ତ ପ୍ରଚଳିତ ଅଛି, ସେମାନେ ମଧ ଅନ୍ଧପରମ୍ପରା ନ୍ୟାୟରେ ଉଚ୍ଚଜାତି ଅବଲମ୍ବିତ ପନ୍ଥାର ପଥିକ ହୋଇଅଛନ୍ତି । ରାମାୟଣ ଆଲୋଚନାରେ ବାଲ୍ୟ ବିବାହ ଆଲୋଚନା ଅପ୍ରାସଙ୍ଗିକ ମନେ କରାଯାଇପାରେ, ମାତ୍ର ତାହା ନୁହେଁ, କାରଣ ସାଧାରଣ ଲୋକଙ୍କର ବିଶ୍ୱାସ ଯେ, ସୀତା ବାଲ୍ୟାବସ୍ଥାରେ ବିବାହିତା ହୋଇଥିଲେ, ମାତ୍ର ଏହା ନିତାନ୍ତ ଭ୍ରମପୂର୍ଣ୍ଣ ବିଶ୍ୱାସ । ରାମାୟଣରେ ଯୁବତୀ ବିବାହ ପ୍ରଚଳନର ଓ କୁମାରୀ ବିବାହ ନିନ୍ଦାର ଉଲ୍ଲେଖ ଅଛି ।

ରାମାୟଣରେ ସତୀଦାହ ପ୍ରଥାର ଉଲ୍ଲେଖ ନାହିଁ । ଏହି ଜଘନ୍ୟ ହୃଦୟ ବିଦାରକ ନୃଶଂସ ପ୍ରଥାର ପ୍ରଚଳନ ସେ ସମୟରେ ହୋଇ ନ ଥିଲା । ଆର୍ଯ୍ୟ ବା ଅନାର୍ଯ୍ୟ ସନ୍ତାନମାନେ ଆପଣା ଆପଣା ଜନନୀ, ବଧୂ, ପୁତ୍ରବଧୂ ପ୍ରଭୃତିଙ୍କି ଜ୍ୱଳନ୍ତ ଅଗ୍ନିକୁଣ୍ଡରେ ନିକ୍ଷେପ କରି ଦହନ କରୁ ନ ଥିଲେ । ଏଣୁ କୌଶଲ୍ୟା ପ୍ରଭୃତି ଦଶରଥଙ୍କ ମହିଷୀମାନେ ଏବଂ ତାରା ମନ୍ଦୋଦରୀ ପ୍ରଭୃତି ମହିଷୀମାନେ ଚିତାରୋହଣ କରିବାକୁ ବାଧ ହୋଇ ନ ଥିଲେ । ରାମାୟଣ ସମୟରେ ବହୁ ବିବାହର ପ୍ରଚଳନ ଥିଲା । ସେ ଯୁଗଯୁଗାନ୍ତରର କଥା । ସେହି କୁପ୍ରଥାକୁ ଅଦ୍ୟାପି ଅନ୍ଧ ପରମ୍ପରା ନ୍ୟାୟରେ ଭାରତବାସୀ ଅନେକ ରାଜା ଓ ସମ୍ପତ୍ତିଶାଳୀ ବ୍ୟକ୍ତିମାନେ ଅନୁକରଣ କରି ଆସୁଅଛନ୍ତି ।

●

॥ ୪ ॥

ଅବରୋଧ ପ୍ରଥା- ଆଧୁନିକ କାଳରେ ପ୍ରଚଳିତ ଥିବା ଅବରୋଧ ପ୍ରଥା ରାମାୟଣ ଯୁଗରେ ପ୍ରଚଳିତ ନ ଥିବାର ପ୍ରକାଶ ପାଏ । ରାଜରାଣୀମାନେ ଏବଂ ଭଦ୍ରମହିଳାମାନେ ଅନ୍ତଃପୁରରେ ବାସ କରୁଥିଲେ ଏବଂ ସ୍ଥାନାନ୍ତରକୁ ଯିବା ବେଳେ ଶିବିକାରେ ଆରୋହଣ କରି ଯାଉଥିଲେ, ମାତ୍ର ସମୟ ବିଶେଷରେ ଏବଂ ପ୍ରୟୋଜନାନୁସାରେ ସର୍ବଜନ ସମକ୍ଷରେ ଦଣ୍ଡାୟମାନ ହେଉଥିଲେ ଏବଂ ବାକ୍ୟାଳାପ କରୁଥିଲେ, ଏଥିରେ ସନ୍ଦେହ ନାହିଁ । ସୀତା ବନବାସ ଗଲାବେଳେ ସର୍ବସମକ୍ଷରେ ବାହାରି ଯାଇଥିଲେ । ଲଙ୍କାରେ ସର୍ବଜନ ସମକ୍ଷରେ ରାମଙ୍କ ସମୀପକୁ ପାଦଚାରିଣୀ ହୋଇ ଆସିଥିଲେ । କୈକେୟୀ ଯୁଦ୍ଧରେ ଦଶରଥଙ୍କ ରଥ ଚାଳନା କରିଥିଲେ । ସୁମନ୍ତ୍ର ପ୍ରଭୃତି ରାଜାନ୍ତଃପୁରକୁ ପ୍ରବେଶ କରିପାରୁଥିଲେ । ଲକ୍ଷ୍ମଣ ଅବାଧରେ କିଷ୍କିନ୍ଧା ରାଜପ୍ରାସାଦ ମଧ୍ୟକୁ ପ୍ରବେଶ କରିଥିଲେ । ରାଜରାଣୀମାନେ ଋଷିମାନଙ୍କ ସହିତ ବାକ୍ୟାଳାପ କରୁଥିଲେ । ସୀତା ରାବଣର ଅତିଥିସତ୍କାର କରି ଆଳାପ କରିଥିଲେ ।

ପୋଷାକ ପରିଚ୍ଛଦ– ପଟ୍ଟବସ୍ତ୍ରାଦି ପରିଧାନର ବିବରଣ ଅଛି ଏବଂ ଅଳଙ୍କାର ଧାରଣ କରୁଥିବାର ବିସ୍ତୃତ ବିବରଣ ଦୃଷ୍ଟ ହୁଏ । ମାତ୍ର ବର୍ତ୍ତମାନ କାଳରେ ପ୍ରଚଳିତ କୋଟ ଅଙ୍ଗରେଖା ପ୍ରଭୃତି ପରି ପୋଷାକ ବ୍ୟବହାରର ଉଲ୍ଲେଖ ଦେଖାଯାଏ ନାହିଁ । ଯୁଦ୍ଧରେ କବଚ ବ୍ୟବହାରର ଉଲ୍ଲେଖ ଅଛି । ତାହା ଦୈନିକ ବ୍ୟବହାର୍ଯ୍ୟ ପୋଷାକ ନୁହେଁ । ଅଯୋଧ୍ୟାର ରାଜା ଓ ଭଦ୍ରଲୋକମାନେ ଏବଂ ରାଜାଙ୍କର ଶରୀର ରକ୍ଷକମାନେ କୌଣସି ପୋଷାକ ପିନ୍ଧୁ ନ ଥିଲେ, କେବଳ ଚନ୍ଦନଚର୍ଚ୍ଚିତ ହେଉଥିଲେ– ଅଭିଷେକ ନିମନ୍ତେ ସଜ୍ଜୀଭୂତ ରାମଙ୍କୁ ସୁମନ୍ତ୍ର ସୁଗନ୍ଧଯୁକ୍ତ ରକ୍ତଚନ୍ଦନଚର୍ଚ୍ଚିତ ହୋଇ ସୀତା ସହ ଉପବେଶନ କରିଥିବାର ଦେଖିଲେ ।

ବରାହରୁଧିରାଭେଣ ଶୁଚିନାଚ ସୁଗନ୍ଧିନା ।
ଅନୁଲିପ୍ତ ପରାର୍ଦ୍ଧେନ ଚନ୍ଦନେନ ପରନ୍ତପଂ ।
ଅ : ୧୬।୯

ରାମ ଦଶରଥଙ୍କ ନିକଟକୁ ଗଲାବେଳେ ତାଙ୍କ ଅଗ୍ରରେ ଶରୀର ରକ୍ଷକ ପ୍ରଭୃତି ଯାଇଥିଲେ, ସେମାନେ ସମସ୍ତେ ଚନ୍ଦନଭୂଷିତ ହୋଇଥିଲେ ।

ଗୁପ୍ତଶ୍ଚାସ୍ୟ ସନ୍ନଦ୍ଧାଶ୍ଚନ୍ଦନାଗୁରୁଭୂଷିତାଃ ।
ଖଡ୍ଗଚାପଧରାଃ ଶୂରା ଜଗ୍ମୁରାଶସବୋଜନାଃ ।
ଅ. ୧୬ । ୩୫ ।

ଯେବେ ପୋଷାକ ପିନ୍ଧିବାର ରୀତି ଥାନ୍ତା, ତାହାହେଲେ ତହିଁର ବର୍ଣ୍ଣନା ଆମ୍ଭେମାନେ ଦେଖି ପାରନ୍ତୁ । କମ୍ବଳ ଆବୃତ ହେବାର ଦେଖାଯାଏ; ତାହା ମେଷଲୋମନିର୍ମିତ ହୋଇପାରେ କିମ୍ବା ବୌଦ୍ଧସନ୍ନ୍ୟାସୀମାନେ ଯେଉଁ ପରି କନ୍ଥା ବ୍ୟବହାର କରନ୍ତି, ତଦ୍ରୂପ ଦ୍ୱିଗୁଣୀକୃତ ବସ୍ତ୍ରକୁ ମଧ କମ୍ବଳ ବୋଲାଯାଇପାରେ ।

ପୂଜାପଦ୍ଧତି ଆରାଧନାର ରୀତି– ଦେବାଳୟ ନିର୍ମାଣ କରି ତହିଁରେ ଧାତବ ବା ପାଷାଣ ବିଗ୍ରହ ରଖି ପୂଜା କରିବା ରୀତି ପ୍ରଚଳିତ ଥିବାର ପ୍ରକାଶ ପାଏ ନାହିଁ । ବୈଦିକ ପ୍ରଥାରେ ହୋମାଦି ମାଙ୍ଗଲ୍ୟ କାର୍ଯ୍ୟ କରାଯାଉଥିବାର ବର୍ଣ୍ଣନା ଦେଖାଯାଏ । ଅଶ୍ୱମେଧ ଯଜ୍ଞ ତତ୍କାଳରେ ଅନୁଷ୍ଠିତ ହେଉଥିଲା । ବିଷ୍ଣୁପୂଜା ଅବଶ୍ୟ ମୂର୍ତ୍ତିପୂଜା ନୁହେଁ– ଉଲ୍ଲେଖ ଅଛି । ରାମଙ୍କ ମଙ୍ଗଳକାମନାରେ କୌଶଲ୍ୟା ପୂଜା ଓ ହୋମ କରୁଥିଲେ । ଏ

ଯୁଗରେ ସ୍ତ୍ରୀମାନେ ନିଜ ହସ୍ତରେ ବୋଧ ହୁଏ ହୋମ କରିବା ଅଧିକାରରୁ ବଞ୍ଚିତ ହୋଇଅଛନ୍ତି । ରାମାୟଣ ଯୁଗରେ ସ୍ତ୍ରୀମାନେ ହୋମ କରିବାର ଅଧିକାରିଣୀ ଥିବାର ନିମ୍ନୋକ୍ତ ପ୍ରମାଣରୁ ପ୍ରତିପନ୍ନ ହେବ ।

କୌଶଲ୍ୟାପି ତଦା ଦେବୀ
ରାତ୍ରିଂସ୍ଥିତ୍ୱା ସମାହିତା ।
ପ୍ରଭାତେ ତ୍ୱକରୋତ ପୂଜାଂ
ବିଷ୍ଣୋଃ ପୁତ୍ରହିତୈଷିଣୀ । ୧୪।
ସା କ୍ଷୌମବସନା ହୃଷ୍ଟା
ନିତ୍ୟ ବ୍ରତପରାୟଣା ।
ଅଗ୍ନିଂ ଜୁହୋତିସ୍ମତଦା
ମନ୍ତ୍ରବତ୍ କୃତମଙ୍ଗଳା ।୧୫।
ପ୍ରବିଶ୍ୟ ତୁ ତଦା ରାମୋ
ମାତୁରନ୍ତଃପୁରଂ ଶୁଭଂ ।
ଦଦର୍ଶ ମାତରଂ ତତ୍ର
ହାବୟନ୍ତୀଂ ହୁତାଶନଂ ।ଇତ୍ୟାଦି।
ଅ.୨୦।୧୬।

କାଳୀ, ଦୁର୍ଗା, ଶିବ, ଗଣେଶ ପ୍ରଭୃତି ବର୍ତ୍ତମାନ କାଳରେ ଯେଉଁ ସ୍ଥାନ ପାଇଅଛନ୍ତି, ରାମାୟଣ ଯୁଗରେ ବୈଦିକ ଦେବତାମାନେ ସେହି ସ୍ଥାନ ପାଇଥିଲେ । ସେ କାଳରେ ପ୍ରଥମୋକ୍ତ ଦେବତାମାନଙ୍କର ସୃଷ୍ଟି ହୋଇ ନ ଥିଲା । ଏଣୁ ରାମାୟଣରେ ସେମାନଙ୍କର ସ୍ତୁତି ବନ୍ଦନା ଦେଖିବାକୁ ମିଳେ ନାହିଁ । ଆଜିକାଲି କେହି କାହାରି ମଙ୍ଗଳ କାମନା କଲେ ସାଧାରଣତଃ କହିବ, 'ମା' କାଳୀ ରକ୍ଷା କରନ୍ତୁ' ଇତ୍ୟାଦି । ରାମାୟଣରେ ଏପରି ଘଟନାରେ କିପରି କୁହାଯାଉଥିଲା, ଦେଖାଯାଉ :-

ପୂର୍ବଦିଶଂ ବଜ୍ରଧରୋ ଦକ୍ଷିଣାଂ ପାତୁ ମେ ଯମଃ ।
ବରୁଣଃ ପଶ୍ଚିମାମାଶାଂ ଧନେଶସ୍ତୂତ୍ତରାଂ ଦିଶଂ ।
ଅ. ୧୬।୨୪

ବିବାହବେଳେ ଲକ୍ଷ୍ମୀନାରାୟଣ ମୂର୍ତ୍ତି କିମ୍ବା ଶାଳଗ୍ରାମ ଶିଳା ସ୍ଥାପିତ ହେବାର ଦେଖାଯାଏ ନାହିଁ ।

ହନୁମାନ ସମୁଦ୍ର ଲଙ୍ଘନ କରିବା ପୂର୍ବରୁ ସୂର୍ଯ୍ୟ ପ୍ରଭୃତିଙ୍କୁ ପ୍ରଣାମ କରିଥିଲେ ।

ସ ସୂର୍ଯ୍ୟାୟ ମହେନ୍ଦ୍ରାୟ ପବନାୟ ସ୍ୱୟଂଭୁବେ ।
ଭୂତେଭ୍ୟଶ୍ଚାଞ୍ଜଳିଂ କୃତ୍ୱା ଚକାର ଗମନେ ମତିଂ ।
ସୁ. ୧।୮

ସେତୁବନ୍ଧଠାରେ ରାମ ଶିବଲିଙ୍ଗ ସ୍ଥାପନ କରି ସେହି ଶିବଙ୍କର ନାମ ରାମେଶ୍ୱର ଦେଇଥିବାର ପ୍ରବାଦ ଅଛି । ବର୍ତ୍ତମାନ ପୂଜିତ ଶିବଲିଙ୍ଗ ରାମଙ୍କ ସ୍ଥାପିତ ଶିବଲିଙ୍ଗ ବୋଲି ଲୋକଙ୍କର ବିଶ୍ୱାସ । ସେତୁ ନିର୍ମାଣ ପୂର୍ବରୁ କିମ୍ବା ସେତୁ ନିର୍ମାଣବେଳେ ରାମ ଶିବଲିଙ୍ଗ ପ୍ରତିଷ୍ଠା କରିବାର ଆଦୌ ଉଲ୍ଲେଖ ନାହିଁ । ସେତୁ ନିର୍ମାଣ କାର୍ଯ୍ୟ ନିର୍ବିଘ୍ନରେ ସମ୍ପନ୍ନ ହେଉ, ଏହି ଇଚ୍ଛାରେ ଶିବଲିଙ୍ଗ ପ୍ରତିଷ୍ଠା କରିବାର କଳ୍ପନା କରାଯାଇଥିଲେ ପ୍ରଥମେ ଶିବଲିଙ୍ଗ ସ୍ଥାପନ ଓ ସଙ୍ଗେ ସଙ୍ଗେ ଯଥାଯୋଗ୍ୟ ପୂଜାଦିର ବର୍ଣ୍ଣନା ଅବଶ୍ୟ ଲିପିବଦ୍ଧ ହୋଇଥାନ୍ତା ଏବଂ ରାମଲକ୍ଷ୍ମଣ ଓ କପିମାନେ ସେହି ସ୍ଥାପିତ ଲିଙ୍ଗକୁ ପ୍ରଣାମ କରି ସେତୁବନ୍ଧ ନିର୍ମାଣରେ ପ୍ରବୃତ୍ତ ହୋଇଥାନ୍ତେ, ତାହା ହୋଇ ନାହିଁ । ସୁତରାଂ ରାମେଶ୍ୱର ଲିଙ୍ଗ ରାମଚନ୍ଦ୍ରଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ ନାହିଁ ବୋଲାଯିବ । ରାମ ଅଯୋଧ୍ୟା ପ୍ରତ୍ୟାଗମନ ବେଳେ ସେତୁବନ୍ଧ ପାରି ହୋଇସାରିଲାଣି ସୀତାଙ୍କୁ କହିଲେ :-
ଏତତ୍ତୁକ୍ଷୌ ସମୁଦ୍ରସ୍ୟ ସ୍କନ୍ଧାବାରନିବେଶନଂ ।

ଅତ୍ର ପୂର୍ବଂ ମହାଦେବଃ ପ୍ରମାଦମକାରୋଦ୍‌ବିଭୁଃ ।
ଏତତ୍ତୁଦୃଶ୍ୟତେ ତୀର୍ଥଂ ସାଗରସ୍ୟ ମହାତ୍ମନଃ । ୧୯
ସେତୁବନ୍ଧ ଇତି ଖ୍ୟାତଂ
ତ୍ରୈଲୋକ୍ୟେନ ଚପୂଜିତଂ । ୨୦ ।
ଏତତ୍ପବିତ୍ରଂ ପରମଂ ମହାପାତକନାଶନଂ ।
ଅତ୍ର ରାକ୍ଷସରାଜୋୟମାଜଗାମ ବିଭୀଷଣଃ । ୨୧।
ଲ. ୨୨୫ ।

ଉପରୋକ୍ତ ଉନବିଂଶ ଶ୍ଳୋକରେ ମହାଦେବ ଶବ୍ଦଟି ଅଛି । ଏଥିରୁ ରାମେଶ୍ୱର ଶିବଙ୍କର ସୃଷ୍ଟି । ପଶ୍ଚାଲ୍ଲିଖିତ ଶ୍ଳୋକଗୁଡ଼ିକ ପାଠ କଲେ ଜଣାଯିବ ଯେ, ରାମସୀତାଙ୍କୁ ସେତୁବନ୍ଧ ଦେଖାଇଦେଇ ସମୁଦ୍ର ପାରି ହେଲେ ଏବଂ ଯେଉଁଠାରେ ବିଭୀଷଣ ରାମଙ୍କ ସହିତ ପ୍ରଥମ ସାକ୍ଷାତ୍ କଲେ, ସେହି ସ୍ଥାନ ଦେଖାଇଲେ । ପୁନର୍ବାର ସେତୁବନ୍ଧର ବର୍ଣ୍ଣନା ସହିତ ମହାଦେବ ନାମଟି ବିଷୟାନ୍ତର୍ଭୂତ କରିବାଟା ପୌରାଣିକ ଚାତୁରୀ ।

ଲଙ୍କାର ରଣକ୍ଷେତ୍ର ଦେଖାଇଦେଇ ସମୁଦ୍ର କୂଳକୁ ଆସି ରାମ କହିଲେ–

ଏତତ୍ତୁଦୃଶ୍ୟତେ ତୀର୍ଥଂ ସମୁଦ୍ରସ୍ୟ ବରାନନେ ।
ଯତ୍ର ସାଗରମୁତ୍ତୀର୍ଯ୍ୟ ତାଂ ରାତ୍ରିମୁଷିତା ବୟଂ ।୧୫।
ତହିଁ ଉତ୍ତାରୁ ସେତୁବନ୍ଧ ଦେଖାଇଲେ–

ଏଷ ସେତୁର୍ମୟା ବଦ୍ଧଃ ସାଗରେ ଲବଣାର୍ଣ୍ଣବେ ।
ତବ ହେତୁ ବିଶାଳାକ୍ଷି ନଳସେତୁଃ ସୁଦୁଷ୍କରଃ ।

ଏଥିଉତ୍ତାରୁ ସମୁଦ୍ର ପାର ହୋଇ ସମୁଦ୍ରତୀରସ୍ଥ ସ୍କନ୍ଧାବାର ଦେଖାଇଲେ, ଯେଉଁଠାରେ ବିଭୀଷଣ ଆସି ପ୍ରଥମ ସାକ୍ଷାତ୍ କଲେ। ପ୍ରଥମୋକ୍ତ ଊନବିଂଶ ଶ୍ଳୋକର ଶେଷ ପାଦ, ବିଂଶ ଶ୍ଳୋକ ଏବଂ ଏକବିଂଶ ଶ୍ଳୋକର ପ୍ରଥମ ପାଦ ସଙ୍ଗତିଶୂନ୍ୟ ପ୍ରକ୍ଷେପ, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ। ମହାଦେବ ରାମଙ୍କୁ କେବେ କିପରି ଭାବରେ ପ୍ରସାଦ ଦେଲେ ତହିଁର କୌଣସି ଉଲ୍ଲେଖ ସେତୁ ନିର୍ମାଣ ବେଳେ କିୟା ସେତୁ ନିର୍ମାଣ ପୂର୍ବରେ ନ ଥିବା ହେତୁ ଏପରି ଅପ୍ରାସଙ୍ଗିକ ଓ ଅସ୍ପଷ୍ଟ ବର୍ଣ୍ଣନାକୁ ପ୍ରକ୍ଷେପ ବୋଲିବାକୁ ହେବ।

ଏତତ୍କୁକ୍ଷୌ ସମୁଦ୍ରସ୍ୟ ସ୍କନ୍ଧାବାରନିବେଶନଂ ।
ଅତ୍ର ରାକ୍ଷସରାଜୋୟମାଜଗାମ ବିଭୀଷଣଃ ।

ଅତି ସୁସଙ୍ଗତ ପାଠ ବୋଲି ମନେ ହୁଏ।

ଲୋକଚରିତ୍ର ଚିତ୍ର– ରାମାୟଣବର୍ଣ୍ଣିତ ବ୍ୟକ୍ତିମାନଙ୍କର ଚରିତ୍ରଚିତ୍ର ସ୍ୱାଭାବିକ। ପରବର୍ତ୍ତୀ କବିମାନେ ଯାହା ଯୋଗ କରିଅଛନ୍ତି, ତାହା ବ୍ୟକ୍ତିଗତ ଚରିତ୍ର ଓ ସ୍ୱଭାବର ବିପରୀତ ଭାବବ୍ୟଞ୍ଜକ ଅଟେ। ଲକ୍ଷ୍ମଣ ପରା ଧୀରୋଦ୍ଧତନାୟକ। ଏଥି ନିମନ୍ତେ ପଶ୍ଚାଦ୍‌ବର୍ତ୍ତୀ କବିମାନେ ତାହାଙ୍କର ଔଦ୍ଧତ୍ୟକୁ ଏତେ ବୃଦ୍ଧି କରିଅଛନ୍ତି ଯେ, ତାହା ଅସହାୟ ହୋଇଅଛି। କୌଶଲ୍ୟା ଯେମନ୍ତ ପୁତ୍ରବତ୍ସଳା, ତେମନ୍ତ ପତିଭକ୍ତିପରାୟଣା। ତାହାଙ୍କର ସ୍ୱଭାବସୁନ୍ଦର ଚିତ୍ରକୁ ଅସିଦ୍ଧହସ୍ତ ଚିତ୍ରକରମାନେ କ୍ରୋଧ, ଅସୂୟା ଓ ଈର୍ଷାରୂପ ଅପ୍ରାକୃତ ରଙ୍ଗଦ୍ୱାରା ଅତିରଞ୍ଜିତ କରିଅଛନ୍ତି। ପ୍ରାୟ ସମସ୍ତ ନାୟକ ନାୟିକାମାନଙ୍କଠାରେ ଅଳ୍ପ ବେଶି ରଙ୍ଗ ଛିଟା ପଡ଼ିଅଛି। ତାହା ବିସ୍ତରଭାବରେ ବର୍ଣ୍ଣନା କରିବାର ଆବଶ୍ୟକ ନାହିଁ। ଗୋଟିଏ ବା ଦିଓଟି ସ୍ଥଳ ଦେଖାଇ ଦେଲେ ଯଥେଷ୍ଟ ହେବ। ଯେଉଁ ଭ୍ରାତୃବତ୍ସଳ ଲକ୍ଷ୍ମଣ ରାମଙ୍କର ବନବାସ କଷ୍ଟ ଦୂର କରିବା ନିମନ୍ତେ ସ୍ୱେଚ୍ଛାପ୍ରଣୋଦିତ ହୋଇ ଚତୁର୍ଦ୍ଦଶ ବର୍ଷ ବନବାସ ଦୁଃଖ ସହ୍ୟ କରିବାକୁ ସମର୍ଥ ହେଲେ, ସେ କି ପିତୃବଧ କରିବାକୁ ଉଦ୍ୟତ ହେବା ସମ୍ଭବପର ? କୌଶଲ୍ୟାଙ୍କ ସମକ୍ଷରେ ପିତାଙ୍କ ପ୍ରତି ଅଭକ୍ତି ଦେଖାଇବା ଏବଂ ଅପଶବ୍ଦ ବ୍ୟବହାର କରିବା କି ସମ୍ଭବ ? ଲକ୍ଷ୍ମଣ କୌଶଲ୍ୟାଙ୍କ ଆଗରେ କହିଲେ–

ବିପରୀତଶ୍ଚ ବୃଦ୍ଧଶ୍ଚ ବିଷୟୈଶ୍ଚ ପ୍ରଧର୍ଷିତଃ ।
ନୃପଃ କିମିବ ନ ବ୍ରୂୟାଚ୍ଚୋଦ୍ୟମାନଃ ସମନ୍ମଥଃ ।
ଅ. ୨୧ । ୩

ହନିଷ୍ୟେ ପିତରଂ ବୃଦ୍ଧଂ କୈକେୟ୍ୟାସକ୍ତମାନସଂ ।
କୃପଣଂ ଚ ସ୍ଥିତଂ ବାଲ୍ୟେ ବୃଦ୍ଧଭାବେନ ଗର୍ହିତଂ ।
ଅ. ୨୧ ।୧୯

ଲକ୍ଷ୍ମଣଙ୍କର ଉପରୋକ୍ତ ବାକ୍ୟବିନ୍ୟାସ କରିବା ଏବଂ ଏ ପ୍ରକାର ଅସଦିଚ୍ଛା ମନରେ ପୋଷଣ କରିବା ଯେମନ୍ତ ଅସମ୍ଭବ, ଉଦାରହୃଦୟା କୌଶଲ୍ୟା ନିମ୍ନୋକ୍ତ ପ୍ରକାର ରାମଙ୍କୁ କୁପରାମର୍ଶ ଦେବା ତେମନ୍ତ ଅସମ୍ଭବ ଓ ଅସ୍ୱାଭାବିକ :-

ଭ୍ରାତୁସ୍ତେ ବଦତଃ ପୁତ୍ର ଲକ୍ଷ୍ମଣସ୍ୟ ଶ୍ରୁତଂ ତ୍ୱୟା ।
ଯଦତ୍ରାନନ୍ତରଂ ତତ୍ତ୍ୱଂ କୁରୁଷ୍ୱ ଯଦି ରୋଚତେ ।।
ଅ. ୨୧ । ୨୧

ଧର୍ମଜ୍ଞ ଯଦି ଧର୍ମିଷ୍ଠ ଧର୍ମ ଚରିତୁମିଚ୍ଛସି ।
ଶୁଶ୍ରୂଷାମାମିହସ୍ଥସ୍ତ୍ୱଂ ଚର ଧର୍ମମନୁତ୍ତମଂ ।
ଅ. ୨୧ । ୨୩

ଯଦି ତ୍ୱଂ ଯାସ୍ୟସିବନଂ ତ୍ୟକ୍ତ୍ୱାମାଂ ଶୋକଲାଳସାଂ
ଅହଂ ପ୍ରାୟମିହାଶିଷ୍ୟେ ନ ଚ ଶକ୍ଷ୍ୟାମିଜୀବିତୁଂ ।
ତତସ୍ତ୍ୱଂ ପ୍ରାପ୍ସ୍ୟସେ ପୁତ୍ର ନିରୟଂ ଲୋକବିଶ୍ରୁତଂ ।
ବ୍ରହ୍ମହତ୍ୟାମିବାଧର୍ମାତ୍ସମୁଦ୍ରଃ ସରିତାଂପତିଃ ।
ଅ. ୨୧ । ୨୮

ଏହା କି କୌଶଲ୍ୟାଙ୍କ ପରି ଜନନୀଙ୍କର ଉକ୍ତି ? ମାତା ଅପେକ୍ଷା ପିତୃବାକ୍ୟ ଗରୀୟାନ୍, ଏବଂ ପିତାଙ୍କ ଆଦେଶରେ ଗୋହତ୍ୟା ଓ ମାତୃହତ୍ୟା କଲେ ଦୋଷ ନାହିଁ, ଏହି ଅବଜ୍ଞାସୂଚକ ବାକ୍ୟ ରାମଙ୍କ ମୁଖରୁ ଉଚ୍ଚାରଣ କରାଇ ରାମଙ୍କ ପିତୃଭକ୍ତିର ପରାକାଷ୍ଠା ଦେଖାଇବାକୁ ଈଦୃଶ ରଚନା। ଦଶରଥ ଭରତଙ୍କ ଆଚରଣରେ ସନ୍ଦିଗ୍ଧମନା ଥିବାର ଚତୁର୍ଥ ସର୍ଗରେ ବର୍ଣ୍ଣିତ ହୋଇଅଛି। ରାମଭକ୍ତ ଭରତଙ୍କଠାରେ ଦଶରଥଙ୍କର ଈଦୃଶ ଅଯଥା ମନ୍ତବ୍ୟ ନିତାନ୍ତ ଅନୁଚିତ ଅଟେ। ଅଧିକ କହିବାର ପ୍ରୟୋଜନ ନାହିଁ। ଅଯୋଧ୍ୟାକାଣ୍ଡରେ ଯେପରି ଅଯଥା ଓ ଅପ୍ରାସଙ୍ଗିକ ସର୍ଗ ଓ ଶ୍ଳୋକ ସନ୍ନିବେଶିତ ହୋଇଅଛି, ତହିଁର ଆଲୋଚନା କରିବାକୁ ଗଲେ ପ୍ରବନ୍ଧ ଅତି ଦୀର୍ଘ ହେବ। ଦୂତ ଭରତଙ୍କୁ ପିତୃବିୟୋଗର ପ୍ରକୃତ ସମ୍ବାଦ ଦେଇ ନ ଥିଲେ। ଦୂତମାନେ ଭରତଙ୍କୁ ସମ୍ପୂର୍ଣ୍ଣ ମିଥ୍ୟା ସମ୍ବାଦ ଦେଲେ। ରାମନିର୍ବାସନ ଉତ୍ତାରୁ ଭରତ ତାଙ୍କର ଜନନୀଠାରେ ବିରକ୍ତ ହୋଇପାରିଥିବେ, ମାତ୍ର ମାତୁଳ ଗୃହରେ ଥାଇ ଗୃହର ସମସ୍ତଙ୍କର କୁଶଳ ପଚାରିଲାବେଳେ ନିଜ ଜନନୀଙ୍କ ପ୍ରତି ଏପରି ତିରସ୍କାରବାକ୍ୟ ପ୍ରୟୋଗ କଲେ କାହିଁକି ?

ଅଧିକାମ ସଦା ଚଣ୍ଡୀ କ୍ରୋଧନୀ ପ୍ରାଜ୍ଞମାନିନୀ।
ଅରୋଗାଚାପି ମେ ମାତା କୈକେୟୀ କିମୁବାଚହ।

ଅ. ୬୮।୧୦

ମୁଦ୍ରା– କୌଣସି ତାମ୍ର, ରୋପ୍ୟ ବା ସ୍ୱର୍ଣ୍ଣ ମୁଦ୍ରାର ବିଶେଷ ଉଲ୍ଲେଖ ଦେଖାଯାଏ ନାହିଁ। ତାମ୍ରମୁଦ୍ରାର ନାମ ଆଦୌ ନାହିଁ। ନିଷ୍କ ନାମ ଅଛି ଏବଂ ସୁବର୍ଣ୍ଣ ଶବ୍ଦ ମଧ୍ୟ ଅଛି। ଅତି ରତି ପରିମିତ ସ୍ୱର୍ଣ୍ଣମୁଦ୍ରାର ନାମ 'ସୁବର୍ଣ୍ଣ' ଏବଂ ଦ୍ୱାତ୍ରିଂଶ ରତି ପରିମତ (ସ୍ୱର୍ଣ୍ଣ ଓ ରୌପ୍ୟ) ମୁଦ୍ରାର ନାମ ନିଷ୍କ ବା ଦୀନାର। ଦୀନାର ପାରସିକ ମୁଦ୍ରା, ନିଷ୍କ ଅର୍ଥ ମଧ୍ୟ 'ଉରୋଭୂଷଣ'। ବ୍ରାହ୍ମଣମାନଙ୍କୁ ଦାନ ଦିଆଯିବା ସ୍ଥଳରେ କେବଳ ସ୍ୱର୍ଣ୍ଣମୁଦ୍ରାର ଉଲ୍ଲେଖ ଅଛି। ଜଣେ ଜଣେ ବ୍ରାହ୍ମଣଙ୍କୁ କୋଟିଏ ବା ଲକ୍ଷେ ସୁବର୍ଣ୍ଣ ଦାନ ଦେବାର ବିବରଣ ଅଛି। ଏହା ଦେଖିଲେ କଥାଟା ଅସମ୍ଭବ ବୋଲି ମନେ ହୁଏ। କାରଣ ଏକ କୋଟି ସ୍ୱର୍ଣ୍ଣମୁଦ୍ରାର ଓଜନ ୩୧୨୫ ମହଣ ଏବଂ ୧୫୬ ଗୋଟା ଗାଡ଼ି ନୋହିଲେ ନିଆଯାଇ ନ ପାରେ। ରାଜଗୃହରେ ଏତେ ସୁବର୍ଣ୍ଣ ଥାଏ ବା କିପରି ଏବଂ ଗରିବ ବ୍ରାହ୍ମଣ ବିଚାରା ଏତେ ସୁବର୍ଣ୍ଣ ନେଇ ରଖେ କେଉଁଠାରେ ? ଏଗୁଡ଼ିକ କବିର ଅତ୍ୟୁକ୍ତି।

ଦେଶମାନଙ୍କର ନାମ- ବଙ୍ଗ, ଦ୍ରାବିଡ଼, ଉତ୍କଳ, ସୌରାଷ୍ଟ୍ର, ବାହ୍ଲିକ, ଅବନ୍ତୀକାମ୍ୱୋଜ, ବରଦା (ବରୋଦା ?) ପ୍ରଭୃତି ଦେଶର ନାମ ଅଛି। ପୃଥିବୀର ସମଗ୍ର ଦେଶକୁ ବାନରମାନଙ୍କୁ ସୀତାନ୍ୱେଷଣ ନିମନ୍ତେ ପଠାଇବାର କୌଣସି ପ୍ରୟୋଜନ ନ ଥିଲା; ଯେହେତୁ ଲଙ୍କାପତି ରାବଣ ସୀତାଙ୍କୁ ହରଣ କରି ନେଇଥିବାର ସୁଗ୍ରୀବ ଓ ହନୁମାନଙ୍କୁ ସ୍ପଷ୍ଟ ଜଣାଥିଲା ଏବଂ ରାମ ଜଟାୟୁଙ୍କଠାରୁ ମଧ୍ୟ ରାବଣର ବୃତ୍ତାନ୍ତ ବିଦିତ ଥିଲେ। ଲଙ୍କାରେ ରାବଣ ସୀତାଙ୍କୁ ରଖିଅଛି ବୋଲି ସମ୍ପୂର୍ଣ୍ଣ ବିଶ୍ୱାସ କରି ରାମ ନିଜର ମୁଦ୍ରିକା ହନୁମାନ ହସ୍ତରେ ଦେଇଥିଲେ ଏବଂ ବିଶ୍ୱାସଯୋଗ୍ୟ କଥା କହିଥିଲେ। ଅନ୍ୟଦିଗକୁ ଯିବା ବାନରମାନଙ୍କୁ କୌଣସି ଅଭିଜ୍ଞାନ ଦେଇ ନ ଥିଲେ। ସୁତରାଂ ବାନରମାନଙ୍କଦ୍ୱାରା ପୃଥିବୀର ସମସ୍ତ ଦେଶ ପର୍ଯ୍ୟଟନ ପ୍ରସଙ୍ଗ ଅପ୍ରାସଙ୍ଗିକ। ବିଭିନ୍ନ ଲେଖକଦ୍ୱାରା ରଚିତ ହୋଇଥିବା ହେତୁ ଭୌଗୋଳିକ ନାମ ଓ ସ୍ଥାନର ଅମେଳ ଦେଖାଯାଏ। ତାହା ହେଲେ ମଧ୍ୟ ଏହି ସର୍ଗଗୁଡ଼ିକରେ ଅନେକ ଦେଶ, ପର୍ବତ ଓ ନଦୀର ନାମ ଦେଖାଯାଏ। ନିମ୍ନୋକ୍ତ ଶ୍ଳୋକଟି Aurora Borealis ର ବର୍ଣ୍ଣନା ବୋଲି ଅନୁମାନ କରାଯାଇପାରେ।

ସା ତୁ ଦେଶୋ ବିସୃର୍ଯ୍ୟୋଽପି ତସ୍ୟ ଭାସା ପ୍ରକାଶତେ
ସୂର୍ଯ୍ୟଲକ୍ଷ୍ମ୍ୟାଭିର୍ବିଜ୍ଞେୟସ୍ତପତେବ ବିବସ୍ୱତା।

କି. ୪୩।୫୫

ଆଉ ଗୋଟିଏ ଦେଶର ବର୍ଣ୍ଣନା ଅଛି, ଯାହାକି ବିଶ୍ୱ ପର୍ଯ୍ୟଟକ ସୁଗ୍ରୀବଙ୍କର ଦେଖା ନ ଥିଲା ଏବଂ ସେ ଦେଶ ପୃଥିବୀର କେଉଁ ସ୍ଥାନରେ ଥାଇପାରେ, ତାହା ଆମ୍ଭମାନଙ୍କର ବୋଧଗମ୍ୟ ହେଉ ନାହିଁ। ତାହା ଅନକ୍ଷତ୍ର ଦେଶ-

ଅନକ୍ଷତ୍ରଗଣଂ ବ୍ୟୋମ ନିଷ୍ୟୋଦମନାଦିତଂ।

କି. ୪୩।୩୫

ମସ୍ୟ ମାଂସ ଭକ୍ଷଣ- ସେ କାଳର ଲୋକେ ବ୍ରାହ୍ମଣ, କ୍ଷତ୍ରିୟ, ଋଷି, ସନ୍ନ୍ୟାସୀ ସମସ୍ତେ ମାଂସ ଭକ୍ଷଣ କରୁଥିଲେ। ଶୁଷ୍କ ମାଂସ ଭକ୍ଷଣର ମଧ୍ୟ ବ୍ୟବସ୍ଥା ଥିଲା। ପକ୍ଷିମାଂସ ଭକ୍ଷଣ ନିର୍ବିବାଦରେ ଚଳୁଥିଲା। ନାନାପ୍ରକାର ମୃଗ, ବରାହ, ଶଲ୍ଲକୀ, ଶଶକ, ଗୋଧା, ଗଣ୍ଡା, କୂର୍ମ ମାଂସ ଶୁଦ୍ଧ ବୋଲି ପରିଗଣିତ ହେଉଥିଲା। ରାମ ବନବାସ ସମୟରେ ମୃଗ ବରାହାଦି ମାଂସ ଭକ୍ଷଣ କରୁଥିଲେ।

ତୌ ତତ୍ର ହତ୍ୱା ଚତୁରୋ ମହାମୃଗାନ୍
ବରାହମୃଷ୍ୟଂ ପୃଶତଂ ମହାରୁରୁଂ।

ଅ.୫୨।୧୦୧

ସୀତାଦେବୀ ରାବଣଙ୍କୁ ଅତିଥି ବ୍ରାହ୍ମଣ ଜ୍ଞାନରେ ସତ୍କାର କଲେ ଏବଂ କହିଲେ–

ଅଗମିଷ୍ୟତି ମେ ଭର୍ତ୍ତା ବନ୍ୟମାଦାୟ ପୁଷ୍କଳଂ।
ରୁରୂନ୍‌ଗୋଧାନ୍ ବରାହାଂଶ୍ଚ ହତ୍ୱାଦାୟାମିଷଂ
ବ ହ

ଆ. ୪୭।୨୩

କବନ୍ଧ ରାମଙ୍କୁ କହିଲା ପମ୍ପା ସରୋବରରେ ଅନେକ ପକ୍ଷୀ ବାସ କରନ୍ତି। ମନୁଷ୍ୟଠାରେ ସେମାନଙ୍କର ବଧଭୟ ନାହିଁ, ଏଣୁ ସେମାନଙ୍କୁ ମାରିବା ସହଜ, ଏଣୁ ଅନାୟାସରେ ହୃଷ୍ଟପୁଷ୍ଟ ପକ୍ଷୀମାଂସ ଖାଇବାକୁ ପାଇବ। ଅନେକ ପ୍ରକାର ସୁସ୍ୱାଦୁ ମସ୍ୟ ଭକ୍ଷଣ କରିପାରିବ-

ତତ୍ର ହଂସାଃ ପ୍ଲବାଃ କ୍ରୋଞ୍ଚାଃ
କୁରରାଂଶ୍ଚୈବ ରାଘବ। ୧୨।
ବଲ୍ଗୁ ସ୍ୱରା ନିକୁଞ୍ଜନ୍ତି
ପମ୍ପାସଲିଳଗୋଚରାଃ।
ନୋଦ୍‌ବିଜନ୍ତେ ନରାନ୍ ଦୃଷ୍ଟ୍ୱା
ବଧସ୍ୟାକୋବିଦାଃ ପୁରା। ୧୩।

ଧୃତପିଣ୍ଡୋପମାନ୍ ସ୍ଥୂଳାନ୍
ତାନ୍ ଦ୍ୱିଜାନ୍ ଭକ୍ଷୟିଷ୍ୟଥ ।
ରୋହିତାଂ ଶ୍ଚକ୍ରତୁଣ୍ଡାଂଶ୍ଚ
ନଳ ମୀନାଂଶ୍ଚ ରାଘବ । ୧୪ ।
ପମ୍ପାୟାମିଷୁଭିର୍ମତ୍ସ୍ୟାନ୍
ତତ୍ର ରାମ ବରାନ୍ ହତାନ୍ ।
ନିସ୍ତ୍ୱକ୍ ପକ୍ଷାନୟସ୍ତପ୍ତା-
ନକୃଶାନେକକଣ୍ଟକାନ୍ । ୧୫ ।
ତବ ଭକ୍ତ୍ୟା ସମାଯୁକ୍ତେ
ଲକ୍ଷ୍ମଣଃ ସଂପ୍ରଦାସ୍ୟତି ।
ଭୃଶଂ ତାନ୍ ଖାଦତୋ ମତ୍ସ୍ୟାନ୍
ପମ୍ପାୟା ପୁଷ୍ପସଞ୍ଚୟ ।

ଆ. ୭୩ । ୧୬

ସୁଗ୍ରୀବ ହନୁମାନ ପ୍ରଭୃତି ପ୍ରକୃତ ମାଙ୍କଡ଼ କି ? ଅଭିବ୍ୟକ୍ତିବାଦିଙ୍କ ମତରେ Lemur ଠାରୁ ସମସ୍ତ ପ୍ରକାର ବାନର ଓ ବନମନୁଷ୍ୟଙ୍କର ଅଭିବ୍ୟକ୍ତି । ବାନର ଓ ବନମନୁଷ୍ୟମାନଙ୍କର ବୁଦ୍ଧିବୃତ୍ତି, କ୍ଷମତା, ଶିଳ୍ପନୈପୁଣ୍ୟ, ବିଜ୍ଞତା ପ୍ରଭୃତି ଆଧୁନିକ କଳିଯୁଗିଆ କୌଣସି ବ୍ୟକ୍ତି କି ଅବିଦିତ ନାହିଁ । ତ୍ରେତାଯୁଗରେ ଏହି ବାନର ଜାତିର ପୂର୍ବ ପୁରୁଷଗଣ ପୁରାଣର ବର୍ଣ୍ଣନାନୁସାରେ ଏଡ଼େ ସମୃଦ୍ଧିଶାଳୀ, ବିଚକ୍ଷଣ ଓ ଜ୍ଞାନସମ୍ପନ୍ନ ଜାତି ହୋଇଥିବାରୁ ପୁଣି କଳିଯୁଗରେ ସେହି ଉନ୍ନତ ଜାତିର ବଂଶଧରମାନେ ଏଡ଼େ ନିକୃଷ୍ଟ ଜୀବ ଓ ଖର୍ବକାୟ ହୋଇଥିବାର କୌଣସି ଉଲ୍ଲେଖ ପାଶ୍ଚାତ୍ୟ ବିଜ୍ଞାନବାଦୀଙ୍କ ପୁସ୍ତକରେ ନାହିଁ । ଅଭିବ୍ୟକ୍ତିବାଦର ଯେଉଁମାନେ ପକ୍ଷପାତୀ, ସେମାନେ ଏ କଥାକୁ ହସି ଉଡ଼ାଇ ଦେବେ । ମାତ୍ର ସେଥିରେ ଯାଏ ଆସେ କେତେ ? ଅଭିବ୍ୟକ୍ତିବାଦ ତ ବେଦ ନୁହେଁ । ସୁତରାଂ ଅଭିବ୍ୟକ୍ତିବାଦର ପ୍ରମାଣକୁ ଆମ୍ଭେମାନେ ଏକାବେଳକେ ତ୍ୟାଗ କରି ରାମାୟଣରୁ ଏ ସମ୍ବନ୍ଧରେ ଯେଉଁ ପ୍ରମାଣ ପାଇବୁଁ, କେବଳ ତାହା ନେଇ ଆଲୋଚନା କରିବୁଁ, ତଦ୍ୱାରା ଆମ୍ଭମାନଙ୍କ ମତ ରହୁ ବା ଉଡ଼ିଯାଉ, ସେଥିରେ ଚିନ୍ତା ନାହିଁ ।

ହିନ୍ଦୁଗଣ ମୁକ୍ତକଣ୍ଠରେ ସ୍ୱୀକାର କରିବେ ଯେ କଳାମୁଖା ବାନରଗୁଡ଼ିକ (langur) ମହାବୀର ହନୁମାନଙ୍କର ବଂଶଧର । ମହାବୀରଙ୍କର ରକ୍ତମୁଖ ପଦ୍ମହସ୍ତ ଓ ପଦ୍ମପାଦ ଥିଲା । ମାତ୍ର ଲଙ୍କା ଦହନ ଉତ୍ତାରୁ କପିରାଜ ଭାବିଲେ, ଏଡ଼େ ବଡ଼ ମହତ୍ କାର୍ଯ୍ୟର ବଂଶପରମ୍ପରାଗତ ନିଦର୍ଶନ ଗୋଟାଏ ରଖି ନ ପାରିଲେ ବାନରତ୍ୱର ଅପବ୍ୟବହାର ହେଲା । ଏଣୁ ଗୃହଦାହାବଶେଷ କଳାଦ୍ୱାରା ନିଜର ମୁଖ ହସ୍ତ ପଦକୁ ରଞ୍ଜିତ କଲେ । ସେହିଦିନଠାରୁ ହନୁମାନ କଳାମୁଖା ହେଲେ ଏବଂ ତାଙ୍କର ବଂଶଧରଗଣ ମଧ କଳାମୁଖା ହୋଇ ଆସୁଅଛନ୍ତି । ଏଥିରେ ଅବିଶ୍ୱାସ କରିବାର କାରଣ ନାହିଁ, ଯେହେତୁ ହନୁମାନମାନଙ୍କ ମୁଖ କୃଷ୍ଣବର୍ଣ୍ଣ ଥିବାର ଭାରତବାସୀ ଅଦ୍ୟାପି ଦେଖିବାକୁ ପାଉଅଛନ୍ତି । ଋଷ୍ୟମୂକ ନିକଟରେ ହନୁମାନ ଛଦ୍ମବେଶ ଧାରଣ ପୂର୍ବକ ରାମଲକ୍ଷ୍ମଣଙ୍କର ସାକ୍ଷାତ୍ କଲେ । ବାନରଠାରେ ଏପରି ରୂପ ଧାରଣ କରିବା ସମ୍ଭବ କି ? ହନୁମାନଙ୍କର ଲାଙ୍ଗୁଳ ଓ ଲୋମରାଜି କେଉଁଆଡ଼େ ଉଭାଇ ଯାଇଥିଲା ଯେ ରାମଚନ୍ଦ୍ରଙ୍କ ପରି ବିଜ୍ଞ ବ୍ୟକ୍ତି ପ୍ରତାରିତ ହୋଇଥିଲେ ! ଯେବେ ବାନରମାନେ ଇଚ୍ଛାନୁସାରେ ରୂପ ପରିବର୍ତ୍ତନ କରିପାରୁଥିଲେ, ତେବେ ମାନବ ରୂପକୁ ପୁଣି ବାନର ରୂପରେ ପରିବର୍ତ୍ତନ କରିବାର କାରଣ କ'ଣ ? ହନୁମାନଙ୍କୁ ରାମ ତିନି ବେଦଜ୍ଞ, ବ୍ୟାକରଣଜ୍ଞ ଓ ସଂସ୍କୃତଜ୍ଞ ବୋଲି ଚିହ୍ନାଇ ଅଛନ୍ତି । ଏ ପ୍ରକାର ବିଦ୍ୱାନ୍ ବ୍ୟକ୍ତିଙ୍କୁ ବାନର ବୋଲିବା କାହିଁକି ? ସୁଗ୍ରୀବ ପ୍ରଭୃତି ମଧ ଏହିପ୍ରକାର ବିଶିଷ୍ଟ ଗୁଣଯୁକ୍ତ ଥିବାର ବର୍ଣ୍ଣିତ ହୋଇଅଛନ୍ତି । ତେବେ ଏମାନଙ୍କୁ କେଉଁ ହେତୁରୁ ବାନର ବୋଲାଯିବ ? କିଷ୍କିନ୍ଧ୍ୟାର ଅତି ଚମତ୍କାର ବର୍ଣ୍ଣନା ଦେଖାଯାଏ । ବାଳିକୁ ବହିନେବା ନିମନ୍ତେ କିଷ୍କିନ୍ଧ୍ୟା ନଗରରୁ ଯେଉଁ ଶିବିକା ଅଣାଯାଇଥିଲା, ସେପରି ଶିବିକା ଅଯୋଧ୍ୟାପୁରରେ ମଧ ଦେଖାଯାଏ ନାହିଁ । ଅଯୋଧ୍ୟା ରାଜମହିଷୀଗଣ ଯଦୃଶ ବେଶଭୂଷାରେ ସଜ୍ଜୀଭୂତ ହେଉଥିଲେ, କିଷ୍କିନ୍ଧ୍ୟା ରାଜରାଣୀମାନେ ତଦପେକ୍ଷା କୌଣସି ପ୍ରକାର ନିନ୍ଦନୀୟ ବା ନିକୃଷ୍ଟ ବେଶଭୂଷାରେ ଭୂଷିତ ହେଉ ନ ଥିଲେ । ଭରତ ଅଯୋଧ୍ୟାରେ ଦଶରଥଙ୍କ ନିମନ୍ତେ ଯେଉଁପ୍ରକାର ଶ୍ରାଦ୍ଧ କରିଥିଲେ, ବାଳି ନିମନ୍ତେ ଅଙ୍ଗଦ ତଦପେକ୍ଷା ଉତ୍କୃଷ୍ଟ ପ୍ରକାରେ ଶ୍ରାଦ୍ଧ କ୍ରିୟା କରିଥିଲେ । ରାମ ଚିତ୍ରକୂଟରେ ଦଶରଥ ବିୟୋଗରେ ଯେପରି ଉଦକକ୍ରିୟା ଓ ପ୍ରେତକାର୍ଯ୍ୟ କରିଥିଲେ । ସୁଗ୍ରୀବଙ୍କର ଅଭିଷେକ ସମ୍ଭାର ରାମାଭିଷେକ ସମ୍ଭାର ଅପେକ୍ଷା କୌଣସି ପ୍ରକାରେ କମ ନ ଥିଲା । ଅଯୋଧ୍ୟାରେ 'ଦ୍ୱିଜର୍ଷଭ'ମାନେ ଯେପରି ଦାନ ଦକ୍ଷିଣା ଓ ଭୋଜନାଦି ପାଇ ପରିତୃପ୍ତି ଲାଭ କରୁଥିଲେ, କିଷ୍କିନ୍ଧ୍ୟାରେ ମଧ ତାଦୃଶ ସତ୍କାର ପାଇ ତୃପ୍ତିଲାଭ କରୁଥିଲେ । ତେବେ ରାମାଦିଙ୍କ ପରି ବୁଦ୍ଧି ବିଦ୍ୟା-ଧନ-କ୍ଷମତା-ଦକ୍ଷତାସମ୍ପନ୍ନ କେତେଗୁଡ଼ିଏ ବ୍ୟକ୍ତିଙ୍କୁ କେଉଁ କାରଣରୁ ବାନର ବୋଲାଯିବ ? ବର୍ଣ୍ଣନାରେ ତ ଆମ୍ଭେମାନେ ତତ୍କାଳୀନ ନର ଓ ବାନର ମଧ୍ୟରେ ତିଳେ ମାତ୍ର ପ୍ରଭେଦ ଦେଖିପାରୁ ନାହୁଁ ? କେବଳ ସ୍ଥାନେ ସ୍ଥାନେ ରାମଙ୍କୁ

ନରର୍ଷଭ ବୋଲାଯାଉଅଛି ଏବଂ ହନୁମାନାଦିଙ୍କୁ ସ୍ଥାନବିଶେଷରେ ବାନରର୍ଷଭ ବା କପିରାଜ ବୋଲାଯାଇଅଛି ଏବଂ ସମୟ ସମୟରେ ସେମାନଙ୍କ ମୁଖରୁ 'କିଳକିଳା' ଶବ୍ଦ ଉଚ୍ଚରିତ ହୁଏ, ଏତିକି ମାତ୍ର । ଏ କେତୋଟି ଶବ୍ଦ ଉଠାଇ ଦେଲେ କିଷ୍କିନ୍ଧ୍ୟାବାସୀ ବାନର ଓ ଅଯୋଧ୍ୟାବାସୀ ନର ମଧ୍ୟରେ କୌଣସି ପ୍ରଭେଦ ନାହିଁ । ସୁତରାଂ କବି ଯେ ଇଚ୍ଛାପୂର୍ବକ ନରମାନଙ୍କୁ ବାନରରୂପେ ବର୍ଣ୍ଣନା କରିଅଛନ୍ତି, ଏଥିରେ ସନ୍ଦେହ ନାହିଁ । ଏପରି କରିବାର ଅଭିପ୍ରାୟ ସମ୍ଭବତଃ ଏହି ଯେ ରାବଣ ପରି ପାପାଚାରୀକୁ ନରଦ୍ୱାରା ଦଣ୍ଡ ଦିଆଇବା ଅପେକ୍ଷା ବାନରଦ୍ୱାରା ଦଣ୍ଡ ଦିଆଇବା ସମୀଚୀନ । ସେ ଯାହା ହେଉ- ସେ ଯୁଗରେ ମୃଗ, ଗୋ, ଅଶ୍ୱ ଓ ବାନର ଥିଲେ, ଏବେ ମଧ୍ୟ ମୃଗ, ଗୋ, ଅଶ୍ୱ ପ୍ରଭୃତି ପଶୁ ଅଛନ୍ତି । ଅନ୍ୟ ପଶୁ ମଧ୍ୟରେ କୌଣସି ତାରତମ୍ୟ ଦୃଷ୍ଟ ହୁଏ ନାହିଁ, କେବଳ ବାନର ଜାତିରେ ଏ ତାରତମ୍ୟ ଘଟିବା କଥାକୁ ଭାରତବାସୀ କେତେଦିନ ଆଖି ବୁଜି ବିଶ୍ୱାସ କରୁଥିବେ ? ଯେବେ ବାନରମାନେ ମନୁଷ୍ୟ ପରି କଥାବାର୍ତ୍ତା କହିପାରୁଥିଲେ ଓ ଗୃହ କରି ବାସ କରୁଥିଲେ ଓ ଅତିଥିସତ୍କାରାଦି କରୁଥିଲେ, ତେବେ କିଷ୍କିନ୍ଧ୍ୟା ଭିନ୍ନ ଅପରସ୍ଥାନମାନଙ୍କରେ ଥିବା ବାନରମାନେ ମଧ୍ୟ ତଦ୍ରୂପ ଆଚରଣ କରୁଥାନ୍ତେ, ମାତ୍ର ତାହା ଦେଖାଯାଏ ନାହିଁ । ରାମ ଅରଣ୍ୟରେ ଅନେକ ସ୍ଥଳରେ ସେମାନଙ୍କୁ ଦେଖିଅଛନ୍ତି, ମାତ୍ର ସେମାନେ ରାମଙ୍କ ସହିତ କଥୋପକଥନ କରି ନାହାନ୍ତି ବା ସତ୍କାର କରି ନାହାନ୍ତି, ବରଂ ଆଧୁନିକ ବାନରମାନେ ନରଙ୍କୁ ଦେଖି ଯେପରି ପଳାଇବେ, ସେମାନେ ସେହିପରି ହୁଙ୍କାର ଶବ୍ଦ କରି ପଳାଉଥିଲେ ।

●

॥ ୫ ॥

ରାବଣ– ରାବଣର ନାମ ଦଶଗ୍ରୀବ ଓ ଦଶାନନ । ଗୋଟାଏ ମନୁଷ୍ୟର ଦଶଗୋଟା ମୁଣ୍ଡ, ଏହା ପୌରାଣିକମାନଙ୍କର ଅଦ୍ଭୁତ କଳ୍ପନା । ଅଯୋଧ୍ୟାପତିଙ୍କ ନାମ ଦଶରଥ : ସ୍ୱର୍ଗାଧିପତିଙ୍କ ନାମ ସୁନାଶୀର । ସେହିପ୍ରକାର ଲଙ୍କାଧିପତିଙ୍କ ନାମ ଦଶଗ୍ରୀବ । ଏହି ଦଶଗ୍ରୀବ ଶବ୍ଦରୁ ଦଶାନନ । ଯାହାର ଦଶଟାମୁଣ୍ଡ ଥାଇପାରେ, ତାହାର ବିଂଶ ଗୋଟା ହସ୍ତ ଥିବାର କଥା; ନୋହିଲେ ଭୋଜନ ପାନ କରିବାକୁ ଅସୁବିଧା, ଏଣୁ ବିଂଶ ବାହୁର କଳ୍ପନା । ରାମାୟଣରେ ରାବଣର ଜନ୍ମବିବରଣ ନାହିଁ କିମ୍ବା ଏକ ସ୍ଥାନରେ ତାହାର ଅଙ୍ଗପ୍ରତ୍ୟଙ୍ଗମାନଙ୍କର ସ୍ପଷ୍ଟ ବିବରଣ ନାହିଁ, ଯହିଁରୁ କି ରାବଣର ରୂପଟି ଅଙ୍କନ କରାଯାଇପାରିବ । ବହ୍ନିପୁରାଣ ଅନୁସାରେ ରାବଣ-

ଶଙ୍କୁକର୍ଣ୍ଣୋ ଦଶଗ୍ରୀବଃ ପିଙ୍ଗଳୋ ରକ୍ତମୂର୍ଦ୍ଧଜଃ ।
ଚତୁଷ୍ପାଦ୍ବିଂଶତିଭୂଜୋ ମହାକାୟୋ ମହାବଳଃ ।
ଜାତାଞ୍ଜନନିଭୋ ମର୍ଦ୍ଦଲୋହିତଗ୍ରୀବ ଏବଚ ।

ଅର୍ବାଚୀନ ପୁରାଣମାନଙ୍କରୁ ଏତାଦୃଶ ବର୍ଣ୍ଣନା ଶୁଣି ଲୋକଙ୍କ ମନରେ ଗୋଟାଏ ଧାରଣା ବଦ୍ଧମୂଳ ହୋଇଯାଇଅଛି । ଏଣୁ ରାମାୟଣର ରାବଣ ବର୍ଣ୍ଣନା ପ୍ରତି କାହାରି ଲକ୍ଷ୍ୟ ରହିପାରୁ ନାହିଁ । ଆମ୍ଭେମାନେ ରାମାୟଣ ପାଠରୁ ସ୍ପଷ୍ଟ ପ୍ରମାଣ ପାଉଅଛୁ ଯେ, ରାବଣର ଗୋଟିଏ ମୁଣ୍ଡ, ଗୋଟିଏ ଗ୍ରୀବା ଓ ଦୁଇ ଗୋଟି ହସ୍ତ ଥିଲା । ଅର୍ବାଚୀନ ପୌରାଣିକମାନେ ତାହାକୁ ଅଦ୍ଭୁତ ଓ ବୀଭତ୍ସାକାର କରି ବର୍ଣ୍ଣନା କରିଅଛନ୍ତି । ରାମାୟଣର ଅତି ଅଳ୍ପ ସ୍ଥଳରେ ରାବଣର ବହୁ ବାହୁ ଓ ବହୁ ଶିର ଥିବାର ଉଲ୍ଲେଖ ଅଛି ଏବଂ ସମ୍ଭବତଃ ସେ ସ୍ଥଳଗୁଡ଼ିକ ପ୍ରକ୍ଷେପ । ନିମ୍ନୋକ୍ତ ପ୍ରମାଣଦ୍ୱାରା ଆମ୍ଭେମାନେ ଦେଖାଇବାକୁ ଚେଷ୍ଟା କରିବୁ ଯେ, ଆଦିକବି ରାବଣର ଦୁଇ ବାହୁ, ଏକ ମୁଣ୍ଡ ଓ ଏକ ଗ୍ରୀବା ଥିବାର ସ୍ପଷ୍ଟ ଲେଖିଅଛନ୍ତି । ପଞ୍ଚବଟୀରେ ସୀତାଙ୍କ ସମକ୍ଷରେ ରାବଣ ବ୍ରହ୍ମଚାରୀ ବେଶରେ ଉପସ୍ଥିତ ହେଲା । ତାହାର ଦଶମୁଣ୍ଡ ଓ ବିଂଶ ବାହୁ ଦେଖିଥିଲେ ସୀତା ତାହାକୁ ଅତିଥି ବୋଲି ପାଦ୍ୟ ପ୍ରଭୃତି ଦେଇ ନ ଥାନ୍ତେ । କେହି କେହି କହନ୍ତି ରୂପ ପରିବର୍ତ୍ତନ କରି ଯାଇଥିଲା । ଅବଶ୍ୟ ଜଣେ ଗୃହସ୍ଥ ଖଣ୍ଡେ କଷାୟ ବାସ ପରିଧାନ କରି ଓ ଶରୀରରେ ଭସ୍ମ ବିଲେପନ କରି ବ୍ରହ୍ମଚାରୀର ଭାନ କରିପାରେ, କିଛିକ୍ଷଣ ହାତ ଟେକି ଦେଇ ଉର୍ଦ୍ଧ୍ୱବାହୁର ଭ୍ରମ ଜନ୍ମାଇପାରେ, ମାତ୍ର ଗୋଟିଏ ହାତ ଉଭାଇଦେଇ ପାରେ କି ? ରାବଣ ତ ଭସ୍ମାଚ୍ଛାଦିତ ହୋଇ କଷାକପଡ଼ା ପିନ୍ଧି ଗୋଟାଏ ଛଦ୍ମବେଶ ଧାରଣ କଲା, ମାତ୍ର ଅଠର ଗୋଟି ହାତ ଓ ନଅଗୋଟି ମୁଣ୍ଡ କେଉଁଠାରେ ରଖିଦେଲା ଏବଂ କିପରି ରଖିଦେଲା ? ଇଚ୍ଛାପୂର୍ବକ ଅଙ୍ଗ ହ୍ରାସ କରିବାର କ୍ଷମତା ଥିଲା କି ଏବଂ ଇଚ୍ଛାନୁସାରେ ଶରୀରାନ୍ତର୍ହିତ କରିବାର କ୍ଷମତା ଥିଲା ତେବେ ସର୍ବଦା ସେପରି ଭାବରେ ନ ରହି ବୀଭତ୍ସ ରୂପ ଦେଖାଉଥାଏ କାହିଁକି ? ଟୀକାକାର ଏପରି ସ୍ଥଳରେ ମନ୍ତବ୍ୟ ଦେଇଅଛନ୍ତି ଯେ ଯୁଦ୍ଧବେଳେ ରାବଣର ଦଶମୁଣ୍ଡ ଓ ବିଂଶ ବାହୁର ଯେ ବର୍ଣ୍ଣନା ଅଛି, ତାହା ସହିତ ଏହି ବର୍ଣ୍ଣନାର ବିରୋଧ ଜ୍ଞାନ କରିବା ସଙ୍ଗତ ନୁହେଁ । କିନ୍ତୁ ପାଠକଗଣ ଦେଖିପାରିବେ ଯେ, ଯୁଦ୍ଧବେଳେ ମଧ୍ୟ ରାବଣର ଦଶମୁଣ୍ଡ ଓ ବିଂଶ ବାହୁ ନ ଥିଲା ।

ସ୍ୱୀକାର କଲୁ, ରାବଣ ସୀତାଙ୍କ ସମକ୍ଷରେ ଛଦ୍ମବେଶ ଧାରଣ କରି ହାତ ମୁଣ୍ଡ ଉଡ଼ାଇଦେଇ ଉପସ୍ଥିତ ହୋଇଥିଲା। ମାତ୍ର କ୍ରୋଧାବିଷ୍ଟ ହେଲାରୁ ଏବଂ ନିଜ ରୂପ ଧାରଣ କଲାରୁ ତାହାର ମୁଣ୍ଡ ଓ ହାତଗୁଡ଼ିକ ତ ଗଜୁରି ଉଠିବାର କଥା ମାତ୍ର ତାହା ହୋଇ ନାହିଁ। ସୀତାଙ୍କୁ ଲଙ୍କାକୁ ଘେନିଯିବାର ପ୍ରସ୍ତାବ କଲା, ସୀତା କ୍ରୋଧାନ୍ୱିତା ହୋଇ ରାବଣକୁ ତିରସ୍କାର କଲେ। ସୀତା ବାକ୍ୟ ଶ୍ରବଣ କରି ରାବଣ ନିଜ ରୂପ ଧାରଣ କଲା–

ସୀତାୟା ବଚନଂ ଶ୍ରୁତ୍ୱା ଦଶଗ୍ରୀବ ପ୍ରତାପବାନ୍
ହସ୍ତେ ହସ୍ତଂ ସମାହତ୍ୟ ଚକାର ସୁମହଦ୍‌ବପୁଃ।

ଏଥିରୁ ଜଣାଗଲା ଯେ ରାବଣ ଯତିବେଶ ତ୍ୟାଗ କରି ନିଜ ରୂପ ଧାରଣ କଲା ଏବଂ ସୀତାଙ୍କୁ ଭୟ ଦେଖାଇ କହିଲା–

ଉଦ୍‌ବେହେୟଂ ଭୁଜାଭ୍ୟାଂ ତୁ ମେଦିନୀମମ୍ବରେ ସ୍ଥିତଃ।

ଆ.୪୯।୪

ରାବଣ ନିଜର ବିଂଶବାହୁ ଥିବାର ଭୁଲିଯାଇ ଯୋଡ଼ିଏ ଭୁଜର ବର୍ଣ୍ଣନା କଲା କି ? ସୀତା ରାବଣ ସହିତ ଯିବାକୁ ଅସ୍ୱୀକାର କରିବାରୁ ସେ ବଳପୂର୍ବକ ସୀତାଙ୍କୁ କୁଣ୍ଢାଇ ଧଇଲା। କେତେଟା ହାତରେ ରାବଣ ସୀତାଙ୍କୁ ଧଇଲା ? ଯୋଡ଼ିଏ ହାତରେ। ବାମ ହାତରେ କେଶଗୁଚ୍ଛ ଏବଂ ଡାହାଣ ହାତରେ ଊରୁଦେଶ।

ବାମେନସୀତାଂ ପଦ୍ମାକ୍ଷୀଂ ମୂର୍ଦ୍ଧଜେଷୁ କରେଣ ସଃ।
ଊର୍ବୋସ୍ତୁ ଦକ୍ଷିଣେନୈବ ପରିଜଗ୍ରାହ ପାଣିନା।

ଆ. ୪୯।୧୭

ଜଟାୟୁ ସହିତ ରାବଣର ଯୁଦ୍ଧ ହେଲାବେଳେ ରାବଣ ସୀତାଙ୍କୁ ତଳେ ଛାଡ଼ିଦେଇ ଜଟାୟୁକୁ ମୁଷ୍ଟି ପ୍ରହାର କଲା ଓ ଖଡ଼୍‌ଗରେ ତାହାର ପକ୍ଷ ଛିନ୍ନ କଲା:-

ତତଃ କ୍ରୋଧାଦଶଗ୍ରୀବଃ
ସୀତାମୁତ୍‌ସୃଜ୍ୟ ବୀର୍ଯ୍ୟବାନ୍।
ମୁଷ୍ଟିଭ୍ୟାଂ ଚରଣ ଭ୍ୟାଂଞ୍ଚ
ଗୃଧ୍ରରାଜମପୋଥୟତ୍।

ଆ. ୫୧।୪୦

ଯୁଦ୍ଧରେ ମଧ୍ୟ ଯୋଡ଼ିଏ ହାତ ଓ ଯୋଡ଼ିଏ ପାଦ ବ୍ୟବହାର କଲା କାହିଁକି ? କୋଡ଼ିଏ ଗୋଟା ହାତ ଥିଲେ ସୀତାଙ୍କୁ ତଳେ ପକାଇଦେବାର ପ୍ରୟୋଜନ ହୋଇ ନ ଥାନ୍ତା।

ଶୟନକାଳରେ ରାବଣର କେତେଟା ମୁଣ୍ଡ କେତେଟା ହାତ ଥାଏ ଦେଖାଯାଉ। ସୀତାନ୍ୱେଷଣ ତପ୍ତର ହନୁମାନ ରାବଣାନ୍ତଃପୁରରେ ପ୍ରବେଶ କରି ତାହାକୁ ଦେଖିଲେ।

କାଞ୍ଚନାଙ୍ଗଦନଦ୍ଧୌ ଦଦର୍ଶ ସ ମହାତ୍ମନଃ।
ବିକ୍ଷିପ୍ତୌ ରାକ୍ଷସେନ୍ଦ୍ରସ୍ୟଭୁଜାବିନ୍ଦ୍ରଧ୍ୱଜୋପମୌ।

ସୁ. ୧୫।୧୫

ତାଭ୍ୟାଂ ସଂପରିପୂର୍ଣ୍ଣାଭ୍ୟାଂ ଭୁଜାଭ୍ୟାଂ ରାକ୍ଷସେଶ୍ୱରଃ।
ଶୁଶୁଭେଽଚଳସଙ୍କାଶଃ ଶୃଙ୍ଗାଭ୍ୟାଂ ଇବ ମନ୍ଦରଃ।

ସୁ. ୧୦।୨୨

ସୁନ୍ଦରାକାଣ୍ଡ ଦଶମ ସର୍ଗରେ ଆଠ ଗୋଟି ଶ୍ଳୋକରେ କେବଳ ରାବଣର ଦୁଇ ଗୋଟି ଭୁଜର ବର୍ଣ୍ଣନା ଅଛି।

ଆଚ୍ଛା, ହନୁମାନ ରାବଣର ମୁଖ କେତେ ଗୋଟା ଦେଖିଲେ ? ଗୋଟାଏ ମୁଖ, ଗୋଟାଏ ମୁଣ୍ଡ–

ତସ୍ୟ ରାକ୍ଷସରାଜସ୍ୟ ନିଷ୍କ୍ରାମ ମହାମୁଖାତ।
ମୁକ୍ତା ମଣି ବିଚିତ୍ରେଣ କାଞ୍ଚନେନ ବିରାଜିତା।
ମୁକୁଟେନାପବୃତ୍ତେନ କୁଣ୍ଡଳୋଜ୍ଜ୍ୱଳିତାନନଂ।

ସୁ. ୧୦।୨୫

ଇନ୍ଦ୍ରଜିତ୍‌ର ନିଧନ ସମ୍ବାଦ ଶୁଣିବାରୁ ରାବଣର ଦୁଇ ନେତ୍ରରୁ ଅଶ୍ରୁବିନ୍ଦୁ ପତିତ ହେଲା।

ତସ୍ୟକ୍ରୁଦ୍ଧସ୍ୟ ନେତ୍ରାଭ୍ୟାଂ ପ୍ରପତନ୍ନଶ୍ରୁବିନ୍ଦବଃ।
ଦୀପାଭ୍ୟାମିବ ଦୀପ୍ତାଭ୍ୟାଂ ସାର୍ଚ୍ଚିଷଃ ସେହିବିନ୍ଦରଃ।

ଲ. ୯୩।୨୨

ପୁତ୍ରଶୋକବେଳେ ରାବଣର ଯୋଡ଼ିଏ ଚକ୍ଷୁ କାହିଁକି ? ଆଉ ଅଠର ଗୋଟି ଚକ୍ଷୁ କୁଆଡ଼େ ଗଲା ?

ଯୁଦ୍ଧରେ ରାମ ରାବଣର ଶିରଚ୍ଛେଦନ କଲେ–

ରାବଣସ୍ୟ ଶିରୋଚ୍ଛିନ୍ଦଚ୍ଛି ମତ୍‌ଜ୍ୱଳିତ କୁଣ୍ଡଳଂ।
ତଚ୍ଛିରଃ ପତିତଂ ଭୂମୌ ଦୃଷ୍ଟଲୌକେସିଭିସ୍ତଦା।

ରାମ ରାବଣର ଶିରକୁ କାଟିପକାଇଲେ ଏବଂ ତାହା ଭୂମିରେ ପତିତ ହେଲା। ଏଥି ଉତ୍ତାରୁ ରାମ ରାବଣର ଯୁଦ୍ଧ ଶେଷ ବୋଲି ମନେ କରାଯାଇପାରେ; ମାତ୍ର ତାହା ନୁହେଁ, ଗୋଟିଏ ମୁଣ୍ଡ କାଟିଲେ ଆଉ ଗୋଟାଏ ଗଜୁରି ଉଠିବା କଳ୍ପନା କରାଯାଇଅଛି।

ତସ୍ୟୈବ ସଦୃଶଂ ଚାନ୍ୟଦ୍ରାବଣସ୍ୟୋଥିତଂ ଶିରଃ।
ତତ୍‌କ୍ଷିପ୍ରଂ କ୍ଷିପ୍ରହସ୍ତେନ ରାମେଣ କ୍ଷିପ୍ରକାରିଣା।
ଦ୍ୱିତୀୟଂ ରାବଣଶିରଶ୍ଛିନ୍ନଂ ସଂଯତିସାୟକୈଃ।

ଲ. ୧୦୯

ଏହି ପ୍ରକାରେ ଶତବାର ଶିରଚ୍ଛେଦନ କଲେ :-

ଏବମେକଶତଂ ଛିନ୍ନଂ
ଶିରସା ତୁଲ୍ୟ ବର୍ଚ୍ଚସଂ ।

ଲଙ୍କାକାଣ୍ଡର ଅପରାପର ଅସ୍ୱାଭାବିକ ଓ ଅସମ୍ଭବ କଥା ତୁଲ୍ୟ ଏହା ମଧ ଗୋଟିଏ ଅସମ୍ଭବ ଓ ଅସ୍ୱାଭାବିକ କଥା । ତଥାପି ଏଥିରୁ ମଧ ଦଶ ଗୋଟି ମୁଣ୍ଡ ଥିବାର ପ୍ରତିପନ୍ନ ହେଉ ନାହିଁ । ଇନ୍ଦ୍ରକର୍ତ୍ତୃକ ପ୍ରେରିତ ମାତଳିର ଉପଦେଶ ଅନୁସାରେ ବ୍ରହ୍ମଶର ପ୍ରୟୋଗଦ୍ୱାରା ରାବଣର ପ୍ରାଣନାଶ ହେଲା, ଏହା ପ୍ରକାଶ କରିବା ଅଭିପ୍ରାୟରେ ଗୋଟାଏ ମୁଣ୍ଡ ଛିଡ଼ିଲେ ଗୋଟାଏ ମୁଣ୍ଡ ଗଜୁରି ଉଠିବା କଳ୍ପନାଟି ପରେ ଗୁଞ୍ଜା ହୋଇଅଛି ।

ପ୍ରବଳ ପ୍ରତାପୀ ରାବଣ ପ୍ରାଣ ହରାଇ ଭୂମିରେ ପତିତ ହେଲା । ତାହାକୁ ଏତାଦୃଶ ଭୂମିଶାୟୀ ଦେଖି ବିଭୀଷଣ ରୋଦନ କରିବାକୁ ଲାଗିଲେ ଏବଂ କହିଲେ–

ନିକ୍ଷିପ୍ୟ ଦୀର୍ଘୌ ନିଶ୍ଚେଷ୍ଟୌ
ଭୁଜାବଙ୍ଗଦଭୂଷିତୌ ।
ମୁକୁଟେନାପବୃତ୍ତେନ
ଭାସ୍କରାକାରବର୍ଚ୍ଚସ ।

ଲ. ୧୧୧ । ୩

ରାବଣର ବଧବୃତ୍ତାନ୍ତ ଅନ୍ତଃପୁରରେ ପ୍ରଚାରିତ ହେଲା । ରାବଣ ମହିଷୀମାନେ ତାହା ନିକଟକୁ ଆସି ରୋଦନ କରିବାକୁ ଲାଗିଲେ–

ବହୁମାନାପରିଷ୍ୱଜ୍ୟ କାଚଦେନଂ ରୁରୋଦ ହ ।
ବରଣୌ କାଚିଦାଲମ୍ବ୍ୟ କାଚିକ୍ରଣ୍ଠେଽବଲମ୍ବ୍ୟ ଚ । ୮ ।
ଉତ୍କ୍ଷିପ୍ୟ ଚ ଭୁଜୌ କାଚି
ଭୂମୌ ସୁପରିବର୍ତ୍ତତେ ।
ହତସ୍ୟ ବଦନଂ ଦୃଷ୍ଟ୍ୱା
କାଚିନ୍‌ମୋହମୁପାଗମତ୍ । ୯ ।
କାଚିଦଙ୍କେ ଶିରଃ କୃତ୍ୱା
ରୁରୋଦ ମୁଖମୀକ୍ଷତି ।
ସ୍ନାପୟନ୍ତି ମୁଖଂ ବାଷ୍ପେ
ତୁଷାରୈ ରିବ ପଙ୍କଜଂ । ୧୦ ।

ଆମ୍ଭେମାନେ ଉପରୋକ୍ତ ପ୍ରମାଣମାନଙ୍କରୁ ଦେଖିବାକୁ ପାଇଲୁଁ ଯେ, ବିଳାସ କାଳରେ, ଶୟନରେ, କ୍ରୋଧବେଳେ, ଯୁଦ୍ଧକାଳରେ, ମୃତ ହୋଇ ଭୂମିଶାୟୀ ଥିବାବେଳେ ରାବଣର ଗୋଟିଏ ମୁଣ୍ଡ ଓ ଯୋଡ଼ିଏ ହାତ ଥିଲା । ଏଥି ଉତ୍ତାରୁ ଯେବେ ପାଠକଗଣ ପୂର୍ବାଭ୍ୟାସବଶରୁ ରାବଣର ଦଶମୁଣ୍ଡ ବିଂଶ ବାହୁ ଥିବାର ବିଶ୍ୱାସ କରିବେ, ତେବେ ଆମ୍ଭେମାନେ ନାଚାର ।

ରାମାୟଣ ଅନୁସାରେ ଲଙ୍କାବାସୀମାନେ– ନର ହେଉନ୍ତୁ ବା ଅସୁର ହେଉନ୍ତୁ– ଅଯୋଧ୍ୟାବାସୀଙ୍କ ଅପେକ୍ଷା କୌଣସି ଅଂଶରେ ନ୍ୟୂନ ନ ଥିଲେ । ବରଂ ଅଧିକ ବୁଦ୍ଧିଜୀବୀ ଓ ସମୃଦ୍ଧିଶାଳୀ ଥିବାର ପ୍ରକାଶ ପାଏ ।

ଶୟନ ଶରୀର ପକ୍ଷରେ କି ଉପକାରକ, ତାହା ସମସ୍ତଙ୍କୁ ଜଣା । ବହୁଦିନ ଉନ୍ନିଦ୍ର ହେଲେ ସ୍ୱାସ୍ଥ୍ୟଭଙ୍ଗ, ସଙ୍ଗେ ସଙ୍ଗେ ମୃତ୍ୟୁ ହେବା ଏକପ୍ରକାର ସ୍ୱାଭାବିକ । ତଥାପି ଲୋକଙ୍କର ବିଶ୍ୱାସ ଯେ ଲକ୍ଷ୍ମଣ ଚଉଦ ବର୍ଷ ଆଦୌ ଶୋଇ ନ ଥିଲେ । ଲକ୍ଷ୍ମଣ ଶୁଅନ୍ତେ ନାହିଁ କାହିଁକି ? ସେଥିରେ କି ତାଙ୍କର କର୍ତ୍ତବ୍ୟ କାର୍ଯ୍ୟରେ ତ୍ରୁଟି ହୁଅନ୍ତା କିମ୍ବା ତାଙ୍କୁ ଉନ୍ନିଦ୍ର ରହିବାକୁ ରାମ ଓ କୌଶଲ୍ୟା ଆଦେଶ ଦେଇଥିଲେ ? ତାହା ତ ନୁହେଁ । ଲକ୍ଷ୍ମଣ ଏ ପ୍ରକାର ଅକାର୍ଯ୍ୟ କରୁଥିଲେ କିମ୍ବା ତାହା କରିବାର ଚେଷ୍ଟା କରୁଥିଲେ ତାହା ଦେଖି ରାମ ତାହାଙ୍କୁ ଏଥିରୁ କ୍ଷାନ୍ତ କରିବାର ଉଚିତ ନୁହେଁ କି ? ନିଜେ ନିଶ୍ଚିନ୍ତରେ ରାତ୍ର ତମାମ ଶୋଇ ସାନ ଭାଇକୁ ପହରା ଜଗାଇ ରଖିବା କଥାଟା ରାମଙ୍କୁ ସ୍ୱାର୍ଥପର ବୋଲି ଚିହ୍ନାଇବ ନାହିଁ କି ? ରାମ ଏଡ଼େ ସ୍ୱାର୍ଥପର ବୋଲି ଆମ୍ଭେମାନଙ୍କର ଆଦୌ ବିଶ୍ୱାସ ନୁହେଁ; ବସ୍ତୁତଃ ଆମ୍ଭମାନଙ୍କର ବିଶ୍ୱାସ ସମ୍ପୂର୍ଣ୍ଣ ଠିକ୍ । ରାମ ପ୍ରତ୍ୟୁଷରୁ ପ୍ରଥମେ ଉଠି ଲକ୍ଷ୍ମଣଙ୍କୁ ଜାଗ୍ରତ କରନ୍ତି–

ଅର୍ଥ ରାତ୍ରିଂ ବ୍ୟତୀତାୟାମବସୁପ୍ତମନନ୍ତରଂ ।
ପ୍ରବୋଧୟାମାସ ଶନୈର୍ଲକ୍ଷ୍ମଣଂ ରଘୁ ପୁଙ୍ଗବଃ ।୧।
ସୌମିତ୍ରେ ଶୃଣୁ ବନ୍ୟାନାଂ
ବଲ୍‌ଗୁ ବ୍ୟାହରତାଂ ସ୍ୱନଂ ।
ସଂପ୍ରତିଷ୍ଠାମହେ କାଳଃ ପ୍ରସ୍ଥାନସ୍ୟ ପରନ୍ତପ ।୨।
ସ ସୁପ୍ତସ୍ତୁ ତତୋ ଭ୍ରାତା
ସମୟେ ପ୍ରତିବୋଧିତଃ ।
ଜହୌ ନିଦ୍ରାଞ୍ଚ ତନ୍ଦ୍ରାଞ୍ଚ
ପ୍ରସକ୍ତଂ ଚ ପରିଶ୍ରମଂ । ଅ । ୫୧ । ୩ ।

ଆହା ! ଏହା କି ସୁନ୍ଦର ମନୋମୁଗ୍ଧକର ବାକ୍ୟାବଳୀ । ଏଥିରେ ଅମୃତମୟ ଭ୍ରାତୃସ୍ନେହର କି ଅପୂର୍ବ ପ୍ରକାଶ । ରାମ ପ୍ରତ୍ୟୁଷରୁ ଗାତ୍ରୋତ୍ଥାନ କରି ସାନ ଭାଇର ନିଦ୍ରାଭଙ୍ଗ କରିବି କି ନା ବୋଲି ଭାବୁ ଭାବୁ ପକ୍ଷିଗଣ ଆପଣା ଆପଣା କୁଳାୟ ମଧ୍ୟରୁ ଗାୟନ କରିବାକୁ ଲାଗିଲେ, ପୂର୍ବାଶା ରକ୍ତାଭ ଧାରଣ କରିବାର ଉପକ୍ରମ ହେଲା । ରାମ ଆଉ ବିଳମ୍ବ ନ କରି ନିଦ୍ରାଳସ, ତନ୍ଦ୍ରାଯୁକ୍ତ ଲକ୍ଷ୍ମଣଙ୍କୁ ସମ୍ବୋଧନ କରି କହିଲେ, ‘‘ଭାଇ, ରାତି ପାହିଲା, ପକ୍ଷୀମାନେ ଡାକିଲେ, ଉଠ,

ଦୀର୍ଘପଥ ଯିବାକୁ ହେବ।'' ଏହା କିପରି ଅମୃତସ୍ରାବୀ ସ୍ରୋତସ୍ୱତୀର ସ୍ନେହଧାରା-ଅପରଟି କିପରି ଆସୁରିକ ସାର୍ଥପରତାର କଳୁଷିତ ପଙ୍କିଳ ଦୋଷୋତ୍ପାଦକ ଜଳ। ଏହି ପ୍ରକାର ରାମାୟଣରେ ଏକଆଡ଼େ ସ୍ୱଭାବୋକ୍ତିପ୍ରିୟ ଆଦିକବିଙ୍କର ସ୍ୱଭାବ ସୁନ୍ଦର ନାୟକ ନାୟିକାଗଣଙ୍କର ପ୍ରକୃତ ରୂପ ଓ ଗୁଣ, ଅନ୍ୟଆଡ଼େ ପୌରାଣିକଗଣଙ୍କର ଅଦ୍ଭୁତ କଳ୍ପନା ପ୍ରସୂତ, ବିକୃତ ଛଦ୍ମବେଶ ଏବଂ ଦୋଷ। ରାମାୟଣର ନାନା ସର୍ଗରେ ଏପ୍ରକାର ବିପରୀତ ଭାବବ୍ୟଞ୍ଜକ ବର୍ଣ୍ଣନା ବିଦ୍ୟମାନ ଅଛି ବୋଇଲେ ଅତ୍ୟୁକ୍ତି ହେବ ନାହିଁ।

ପାଠକଗଣଙ୍କ ଧୈର୍ଯ୍ୟଚ୍ୟୁତି ଘଟିଅଛି, ଏଥିରେ ସନ୍ଦେହ ନାହିଁ। ଏଣୁ ଉପସଂହାର କରାଯାଉ– ରାମାୟଣ ଗୋଟିଏ କାବ୍ୟ- ଏହା ପଞ୍ଚଲକ୍ଷଣାକ୍ରାନ୍ତ ପୁରାଣ ନୁହେଁ ଏବଂ ଅଷ୍ଟାଦଶ ପୁରାଣ କିମ୍ୱା ଅଷ୍ଟାବିଂଶତି ଉପପୁରାଣର ଅନ୍ତର୍ଭୁକ୍ତ ନୁହେଁ। ରାମାୟଣଟି ପୁରାଣ ରୂପରେ ପରିଗୃହୀତ ହେଉ, ଏହି ଆଶାରେ ପୌରାଣିକଗଣ ଏଥିରେ ଅଯଥା ପ୍ରକ୍ଷେପ କରିଅଛନ୍ତି। ଅପ୍ରାସଙ୍ଗିକ ଉପାଖ୍ୟାନଗୁଡ଼ିଏ ଯୋଗ କରିଅଛନ୍ତି। କ୍ରମେ କ୍ରମେ ଏହାର କଳେବର ବୃଦ୍ଧି ହୋଇଅଛି। ଏଥିରେ ବୈଦିକ ଉପାଖ୍ୟାନ ଓ ନାକ୍ଷତ୍ରିକ ଉପାଖ୍ୟାନଗୁଡ଼ିକୁ ଭିନ୍ନ ଛାଞ୍ଚରେ ଗଢ଼ି ରଖାଯାଇଅଛି। ଅଯଥା ଓ ଅପ୍ରାକୃତିକ ବର୍ଣ୍ଣନା ନିଃଶଙ୍କ ଚିତ୍ତରେ ଭର୍ତ୍ତି କରାଯାଇଅଛି। ସ୍ଥଳବିଶେଷରେ ବିରୋଧ ଭାବାତ୍ମକ ବର୍ଣ୍ଣନା ଦେଖାଯାଏ। କୌଣସି କୌଣସି ସର୍ଗ ମଧ୍ୟରେ ଆଦିରସାତ୍ମକ ଶ୍ଳୋକ ଗୋଟିଏ ଯୋଡ଼ିଏ ଦେଖାଯାଏ। ପୁଣି ଗୋଟିଏ ଗୋଟିଏ ସର୍ଗ ସୁନ୍ଦରୀ ସ୍ତ୍ରୀମାନଙ୍କର ଅଙ୍ଗ ପ୍ରତ୍ୟଙ୍ଗ ବର୍ଣ୍ଣନା, ବେଶଭୂଷା, ବିଳାସଭ୍ରମ ବର୍ଣ୍ଣନାରେ ପରିପୂର୍ଣ୍ଣ। ନାନା ଉଦ୍ଦେଶ୍ୟ ସାଧନ କାମନାରେ ରାମାୟଣରେ ଅଯଥା ପ୍ରକ୍ଷେପ କରାଯାଇଅଛି। କେତେକ ରାମଙ୍କୁ ବିଷ୍ଣୁ ଅବତାର ପ୍ରମାଣ କରିବାକୁ, କେତେକ ମୁନିଋଷିମାନଙ୍କର ମାହାତ୍ମ୍ୟ ବଢ଼ାଇବାକୁ କେତେକ ଲୋକଙ୍କ ମନରେ ଅଯଥା କୁବିଶ୍ୱାସ ଜନ୍ମାଇବା ନିମନ୍ତେ। ପୁଣି ଆଦିରସାତ୍ମକ ରଚନା ଯୋଗ କରିବାର କାରଣ କେବଳ ମାତ୍ର ଏହା ଅନୁମାନ କରାଯାଇପାରେ ଯେ, ଗୃହତ୍ୟାଗୀ ଯୁବକଗଣ ହାତରେ ରତିବିଳାପ, ଋତୁସଂହାର, ନୈଷଧାଦି ନ ନେଇ ସୁଦ୍ଧା ଆଦିରସପୂର୍ଣ୍ଣ କାବ୍ୟରସ ଆସ୍ୱାଦନ କରିପାରିବେ। ଅଥଚ ଅଶ୍ଳୀଳ ପୁସ୍ତକ ପାଠ କରିବା ଦୋଷରୁ ରକ୍ଷା ପାଇବେ।

ସଂସ୍କୃତ ଓ ପ୍ରାକୃତ ଭାଷାରେ ଭାରତବର୍ଷରେ ଅନେକ ଗୁଡ଼ିଏ ରାମାୟଣ ଓ ରାମଚରିତ୍ର ଅଛି। ତୁଳନା କଲେ ପରସ୍ପର ମଧ୍ୟରେ ଅନେକ ଅମେଳ ଦେଖାଯିବ। ଯେମନ୍ତ ସୀତା ଅଯୋନିସମ୍ଭବା, ଏହା କୌଣସି ଗୋଟିଏ ପୁରାଣରେ ପ୍ରକାଶ ପାଇବାରୁ କବିମାନେ ନିଜ ନିଜ ଇଚ୍ଛାନୁସାରେ ଗୋଟିଏ ଗୋଟିଏ ଜନ୍ମବୃତ୍ତାନ୍ତ କଳ୍ପନା କଲେ। ଉପେନ୍ଦ୍ରଭଞ୍ଜଙ୍କ କଳ୍ପନା କୌଣସି ପୁରାଣସମ୍ମତ ବୋଲି ମନେ ହେଉ ନାହିଁ; ହୁଏତ କୌଣସି ଗ୍ରାମ୍ୟ କାହାଣୀରୁ ଶୁଣି ତାହା ତାଙ୍କର ରୁଚିସମ୍ମତ ହେବାରୁ ଆପଣା କାବ୍ୟରେ ରଖି ଦେଇଗଲେ। ଏପରି ଅନେକ ଅଛି। ଏହି ପ୍ରବନ୍ଧ ଲେଖିଲାବେଳେ ଖୋରଧାନିବାସୀ ଜଣେ ବୈଷ୍ଣବ ମୋ ନିକଟକୁ ଆସି କିଛିକ୍ଷଣ ବସନ୍ତି; ଦିନେ କଥା ପ୍ରସଙ୍ଗରେ ମୋତେ ପଚାରିଲେ, ''ସୀତା ଜନେକ (ଜନକ) ନନ୍ଦିନୀ, କି ଅନେକ ନନ୍ଦିନୀ?'' ମୁଁ କହିଲି, ''ମୁଁ ତ ଜାଣେ ଜନକ ନନ୍ଦିନୀ। ତୁମ୍ଭେ ଯେବେ ସୀତାଙ୍କୁ ଅନେକ ନନ୍ଦିନୀ ବୋଲି ଜାଣ ତେବେ କହ।'' ସେ କହିଲେ, ''ରାବଣ ପୃଥ୍ୱୀରେ ରାଜା ହେବାରୁ ସମସ୍ତଙ୍କଠାରୁ କର ଆଦାୟ କରିବାକୁ ଲାଗିଲା। ପୂର୍ବ ପୃଥ୍ୱୀପତିମାନେ ଯୋଗୀ ସନ୍ନ୍ୟାସୀ ଋଷିମାନଙ୍କଠାରୁ କର ନେଉ ନ ଥିଲେ। ରାବଣ ଋଷିମାନଙ୍କଠାରୁ କର ଆଦାୟ ନିମନ୍ତେ ପିଆଦା ପଠାଇବାକୁ ଋଷିମାନେ କହିଲେ, ଗୋଟାଏ ବୃହତ୍ କଳସ ଆଣ, ଆମ୍ଭେମାନେ କର ଦେବୁଁ। ରାବଣ ଗୋଟିଏ କଳସ ପଠାଇଲା। ପିଆଦା ଆସିବାରୁ ଋଷିମାନେ କହିଲେ, ଆମ୍ଭେମାନେ ଫଳମୂଳାହାରୀ, କର ଦେବାକୁ ଶରୀରର ରକ୍ତ ଭିନ୍ନ ଆମ୍ଭମାନଙ୍କର ନିଜସ୍ୱ କିଛି ନାହିଁ। ଆମ୍ଭମାନଙ୍କ ଶରୀରରୁ କିଛି କିଛି ରକ୍ତ ଦେବୁ। ଏହା କହି ସମସ୍ତେ ଏକ ଏକ ବିନ୍ଦୁ ରକ୍ତ ଦେଲେ। ଜନକ ରାଜଧାନୀରୁ ଏହି କଳସର ମୁଖ ବନ୍ଦ ହୋଇ ଲଙ୍କାକୁ ପ୍ରେରିତ ହେଲା। ବ୍ରାହ୍ମଣମାନେ ପୁଣି ଶାପ ଦେଇଥିଲେ ଯେ, ରାବଣର ଅତ୍ୟାଚାରରୁ ଆମ୍ଭମାନଙ୍କର ଶରୀରରୁ ରକ୍ତପାତ ହେଲା, ଏଥିରେ ତାହାର ସର୍ବନାଶ ହେବ। ଦୂତ ରାବଣ ନିକଟରେ କଳସ ପହଞ୍ଚାଇବାରୁ ରାବଣ ଆହ୍ଲାଦିତ ହୋଇ କଳସସ୍ଥ ପଦାର୍ଥର ବିବରଣୀ ପଚାରିଲା। ଦୂତ ତାହା ବ୍ୟକ୍ତ କରିବାରୁ କହିଲା, ଲଙ୍କାରେ ବ୍ରାହ୍ମଣର ରକ୍ତପାତ ହେଲେ ଅନିଷ୍ଟ ହୋଇପାରେ। ଏହି କଳସକୁ ନେଇ ଗୋପନରେ ମିଥିଳାରେ ପୋତିଦେଇ ଆସ। ଦୂତମାନେ ତାହା କଲେ। କଳସସ୍ଥ ରକ୍ତ ପିଣ୍ଡୁଳାକାର ହୋଇ କ୍ରମେ ଗୋଟିଏ କନ୍ୟା ରୂପରେ ପରିଣତ ହେଲା। ସେହି କନ୍ୟାର ନାମ ସୀତା- ତାହାକୁ ଜନକ ପାଳିଲେ ବୋଲି ନାମ ଜନକ ନନ୍ଦିନୀ

ହୋଇଅଛି । କିନ୍ତୁ ପ୍ରକୃତରେ ଅନେକ ଋଷିଙ୍କ ରକ୍ତରୁ ସୀତାଙ୍କର ଜନ୍ମ ବୋଲି ତାଙ୍କୁ ଅନେକି ନନ୍ଦିନୀ ବୋଲିବା ଉଚିତ ।'' ଠିକ୍ ସମୟରେ ଏହା ଆମ୍ଭମାନଙ୍କର କର୍ଣ୍ଣଗୋଚର ହେଲା । ପାଠକଗଣ ଏହା ପାଠ କରି କୌତୁକାବିଷ୍ଟ ହେବେ ବୋଲି ଲେଖିଲୁ । ବୋଧହୁଏ ଏହା ଅପ୍ରାସଙ୍ଗିକ ନୁହେଁ । କୌଣସି ଓଡ଼ିଆ ରାମାୟଣରେ ଏ ବିବରଣ ଥିବାର ଆମ୍ଭମାନଙ୍କୁ ଜଣା ନାହିଁ । ଏହା ଅନ୍ୟାନ୍ୟ କଳ୍ପନା ଅପେକ୍ଷା ସମ୍ଭବତଃ ନିକୃଷ୍ଟ ନୁହେଁ । ଭାରତବାସୀଙ୍କର କଳ୍ପନାସ୍ରୋତ ପ୍ରତି ପ୍ରବଳ, ଅନର୍ଗଳ ଧାରାରେ ଚାଲୁଥିଲା, 'ନାଦ୍ୟାପି ବିଶ୍ରାମ୍ୟତି' । ସତ୍ୟ ଉଦ୍ଘାଟନରେ ପ୍ରବୃତ୍ତ ହୋଇ ଏହି ପ୍ରବନ୍ଧର ଅବତାରଣା କରିଥିଲୁଁ, ତ୍ରୁଟି ଥିଲେ ପାଠକ ଅବଧାନେ କ୍ଷମା ଦେବା ହେବେ, ଏହି ଶେଷ ଆଶା ।

•

## ବାମଣ୍ଡା ଛାତ୍ର ସମିତିର ଅଧିବେଶନରେ ଅଭିଭାଷଣ

*[ତା-୨୧-୧୨-୧୯୧୭ ଦିନ ଦେବଗଡ଼ଠାରେ ବଡ଼ା ପ୍ରଥମଶ୍ରେଣୀ ମାଜିଷ୍ଟ୍ରେଟ ଜଳନ୍ଧରଦେବଙ୍କ ଭାଷଣର ସାରମର୍ମ ]*

ଶ୍ରଦ୍ଧେୟ ଛାତ୍ରମଣ୍ଡଳି !

ତୁମ୍ଭେମାନେ ଉପଦେଶ ଗ୍ରହଣ କରିବାର ଉପଯୁକ୍ତ । ଆମ୍ଭେମାନେ ମଧ୍ୟ ଆଜି ତୁମ୍ଭମାନଙ୍କୁ ବକ୍ତୃତା ଛଳରେ ଯେ ଉପଦେଶ ଦେବା ନିମନ୍ତେ ଦଣ୍ଡାୟମାନ ହେଉଅଛୁଁ ଏଥିନିମନ୍ତେ ଆମ୍ଭେମାନେ ନିଜର ଜୀବନକୁ ସାର୍ଥକ ଜ୍ଞାନ କରୁଅଛୁ । କାରଣ ବର୍ତ୍ତମାନ ମାତୃଭୂମି ତୁମ୍ଭମାନଙ୍କ ଉପରେ ବହୁ ପରିମାଣରେ ଆଶା ଭରସା ରଖିଅଛି ଯୋଗ୍ୟ ହେଲେ ନିଶ୍ଚୟ ତୁମ୍ଭମାନଙ୍କଦ୍ୱାରା ଦିନେ ଜନ୍ମଭୂମିର ମୁଖ ଉଜ୍ଜ୍ୱଳ ହେବ ।

ଆଜି ତୁମ୍ଭମାନଙ୍କର ଛାତ୍ର ସମିତିର ବାର୍ଷିକ ଅଧିବେଶନ, ଆଜି ଆମ୍ଭମାନଙ୍କର ନିକଟରୁ କିଛି କିଛି ଉପଦେଶ ଶୁଣିବା ନିମନ୍ତେ ତୁମ୍ଭେମାନେ ଲାଳାୟିତ । ସୁଖର କଥା । ଆଜି ନୁହେଁ କାଲି ନୁହେଁ ବହୁଦିନ ହେଲା ଏହି ବାର୍ଷିକ ଛାତ୍ର ସମିତିରେ ତୁମ୍ଭମାନଙ୍କୁ କହି ଆସୁଅଛି ଯେ ତୁମ୍ଭେମାନେ ଯଦି ଆମ୍ଭମାନଙ୍କୁ ପ୍ରତି ସପ୍ତାହରେ ଗଠିତ ତୁମ୍ଭମାନଙ୍କର ଛାତ୍ର ସମିତିକୁ ଆହ୍ୱାନ କରନ୍ତ ତାହାହେଲେ ଆମ୍ଭେମାନେ ପ୍ରଫୁଲ୍ଲ ମାନସରେ ତୁମ୍ଭମାନଙ୍କର ଅନୁରୋଧ ରକ୍ଷାପୂର୍ବକ ନିଜର ଶକ୍ତି ଅନୁସାରେ କିଛି ଉପଦେଶ ତୁମ୍ଭମାନଙ୍କୁ ଦେଇ ନିଜକୁ ଧନ୍ୟ ମଣନ୍ତୁ; କିନ୍ତୁ କାହିଁ ଅନ୍ତତଃ ବର୍ଷ ମଧ୍ୟରେ ଦିନେ ଦୁଇ ଦିନ ମଧ୍ୟ ଆମ୍ଭମାନଙ୍କୁ ଆହ୍ୱାନ କରି ଉପଦେଶ ଶୁଣିବାର ଯୋଗାଡ଼ କରିଥିବାର ତ ମୁଁ ଶୁଣେ ନାହିଁ । ଏଥି ନିମନ୍ତେ ଅଦ୍ୟ ମୁଁ ଦୁଃଖ ପ୍ରକାଶ କରୁଅଛି । ଆଶାକରେ ଭବିଷ୍ୟତ୍‌ରେ ମୋର ଏହି ଅନୁରୋଧ ଏବଂ ଉପଦେଶ ଯେପରି ପ୍ରତିପାଳିତ ହୁଏ ତତ୍‌ପ୍ରତି ଯତ୍ନଶୀଳ ହେବ ।

ଦ୍ୱିତୀୟ କଥା ତୁମ୍ଭେମାନେ ନିଜ ଜୀବନରେ ମାଦକଦ୍ରବ୍ୟ ସେବନର ପ୍ରଶ୍ରୟ କଦାପି ଦେବ ନାହିଁ । ସ୍ୱାସ୍ଥ୍ୟପକ୍ଷରେ ମାଦକଦ୍ରବ୍ୟ ସେବନ ଅତିଶୟ ଅନିଷ୍ଟକାରୀ । ମାଦକଦ୍ରବ୍ୟ ବୋଇଲେ ତୁମ୍ଭମାନଙ୍କର ବୋଧହୁଏ ପ୍ରଧାନ ଧାରଣା ମଦ୍ୟ, ଅଫିମ, ଗଞ୍ଜାଇ ପ୍ରଭି । ମଦ୍ୟ, ଅଫିମ ଓ ଗଞ୍ଜାଇ ଛଡ଼ା ଆଉ ଗୋଟିଏ ମାଦକଦ୍ରବ୍ୟ ଅଛି ତା'ର ନାମ ଦୋକ୍ତାପତ୍ର । ଏହି ଦୋକ୍ତାପତ୍ର ବର୍ତ୍ତମାନ ପୃଥିବୀବ୍ୟାପୀ ଲୋକମାନଙ୍କୁ ବଶୀଭୂତ କରିବାକୁ ଚେଷ୍ଟା କରୁଅଛି । ସାବଧାନ ବସ୍ତଗଣ ! ଏହି ବିଷାକ୍ତ ସର୍ପ ତୁମ୍ଭମାନଙ୍କର କୋମଳ ସ୍ୱାସ୍ଥ୍ୟ ଯେପରି ଦଂଶନ ନ କରେ ତତ୍‌ପ୍ରତି ଆଜହୁଁ ଯତ୍ନଶୀଳ ହୁଅ ।

ତୃତୀୟ କଥା...ଏକଥା ମଧ୍ୟ ମୁଁ ତୁମ୍ଭମାନଙ୍କୁ ଅନେକଥର କହିଅଛି, ପିତାମାତା ପ୍ରତି ଭକ୍ତି କର କିନ୍ତୁ ପିତା ଅପେକ୍ଷା ମାତା ପ୍ରତି ଅଧିକ ପରିମାଣରେ ଭକ୍ତି ଦେଖାଅ । ତୁମ୍ଭପ୍ରତି ମାତାର ଯେ କର୍ତ୍ତବ୍ୟ, ସେ କର୍ତ୍ତବ୍ୟ ଥରେ ସ୍ମରଣ କରି ଭକ୍ତିକର । ମାତୃ ଜାତିପ୍ରତି କଦାପି ଅସମ୍ମାନ ଅଭକ୍ତି ପ୍ରଦର୍ଶନ କରିବ ନାହିଁ । ମାତାକୁ ଜୀବନର ଲକ୍ଷ୍ୟ, ଜୀବନର ଧ୍ରୁବତାରା ରୂପେ ଜ୍ଞାନ କରିବ ।

ଚତୁର୍ଥ କଥା, ତୁମ୍ଭେମାନେ ନିଜ ଦେଶର ଉନ୍ନତି ସଙ୍ଗେ ସଙ୍ଗେ ନିଜ ରାଜାଙ୍କର ସୁନାମ ବର୍ଦ୍ଧନ ନିମନ୍ତେ ସତତ ଚେଷ୍ଟିତ ହୁଅ । ସର୍ବଦା ସ୍ୱାବଲମ୍ବନ ପ୍ରିୟ ହୁଅ । ସାମାନ୍ୟ ଅପର ପ୍ରାଇମେରୀ, ଭର୍ଣ୍ଣାକୁଲାର, ମେଟ୍ରିକ୍ୟୁଲେଶନ ପାସ୍ କରି ନିଜର ଶିକ୍ଷା ଯଥେଷ୍ଟ ହେଲାବୋଲି ସନ୍ତୁଷ୍ଟ ହୁଅ ନାହିଁ । ଶିକ୍ଷାର ପଥ ଅନନ୍ତ । ସେହି ଅନନ୍ତ ପଥରେ ପଥିକ ହେବା ନିମନ୍ତେ ଆଶା ପୋଷଣ କର । ସଂକୀର୍ଣ୍ଣ ଆଶା, ସଂକୀର୍ଣ୍ଣ ଭରସା, ସଂକୀର୍ଣ୍ଣ ଆକାଂକ୍ଷା କଦାପି ମନରେ ସ୍ଥାନ ଦେବ ନାହିଁ । ତୁମ୍ଭେମାନେ ନିଜ ରାଜାଙ୍କର ଜଣେ ଉଚ୍ଚ ଧରଣର ମାର୍ଜିତ ରୁଚିର ସହାୟକ ମନ୍ତ୍ରଣାଦାତା ରୂପେ ଦଣ୍ଡାୟମାନ ହେବ ।

ଆଉ ଗୋଟିଏ କଥା କେବଳ ସ୍କୁଲଶିକ୍ଷାରେ ଆମ୍ଭମାନଙ୍କର ଶିକ୍ଷା ଶେଷ ହେଲା ବୋଲି ଭାବିବ ନାହିଁ । ଆକାଶରେ, ଭୂମି ଉପରେ, ଶୂନ୍ୟରେ, ବୃକ୍ଷରେ, ପାଷାଣରେ ଜଳରେ, ସକଳ ସ୍ଥାନରେ ତୁମ୍ଭମାନଙ୍କର ଶିକ୍ଷା ନିହିତ ଅଛି । ଆମରଣ ଶିକ୍ଷା କଲେ ମଧ ଶିକ୍ଷା କାର୍ଯ୍ୟ ଶେଷ ହେବ ନାହିଁ । ଇତ୍ୟାଦି ଇତ୍ୟାଦି ।

•

## ଭ୍ରମ ବିଶ୍ୱାସ

ପ୍ରକୃତ ବସ୍ତୁରେ ମିଥ୍ୟାଜ୍ଞାନର ନାମ ଭ୍ରମ। କିମ୍ବା ଗୋଟିଏ ପ୍ରକୃତ ବସ୍ତୁ ବା ବିଷୟ ଅନ୍ୟପ୍ରକାରରେ ଇନ୍ଦ୍ରିୟଗ୍ରାହ୍ୟ ହେବାର ନାମ ଭ୍ରମ। ସେହି ମିଥ୍ୟାଜ୍ଞାନକୁ ତତ୍କାଳରେ ସଂଶୋଧନ ନ କରି ହୃଦୟରେ ପୋଷଣ କରି ରଖିବାର ନାମ ଭ୍ରମ ବିଶ୍ୱାସ। ଭ୍ରମ ସହଜରେ ସଂଶୋଧିତ ହୋଇପାରେ, ମାତ୍ର ଭ୍ରମ ବିଶ୍ୱାସ ଦୂର କରିବା ଦୁରୂହ ବ୍ୟାପାର।

ସମାନ ଲମ୍ୱ ଗୋଟିଏ ସରଳରେଖା ଉପରେ ଆଉ ଗୋଟିଏ ସରଳରେଖା ଦଣ୍ଡାୟମାନ ହେଲେ, ଦଣ୍ଡାୟମାନ ସରଳରେଖା ପତିତ ସରଳରେଖା ଅପେକ୍ଷା ଲମ୍ୱ ବୋଲି ମନେହୁଏ। ସମାନ୍ତରାଳ ସରଳରେଖା ଯୋଡ଼ିକ ଉପରେ କେତେଗୁଡ଼ିଏ ଛୋଟ ତୀର୍ଯ୍ୟକ୍ ରେଖା ଟାଣିଲେ ସରଳରେଖା ଯୋଡ଼ିକ ବକ୍ର ଦେଖାଯାଏ। ଏହା ଦର୍ଶନେନ୍ଦ୍ରିୟର ଅଭ୍ୟାସଘଟିତ ଭ୍ରମ। ରଜ୍ଜୁ ଓ ସର୍ପ ମଧରେ କେତେକ ସାଦୃଶ୍ୟ ଥିବାରୁ ରଜ୍ଜୁରେ ସର୍ପ ଭ୍ରମ ହେବା ସ୍ୱାଭାବିକ। ଦୃଷ୍ଟ ବସ୍ତୁଟିକୁ ପର୍ଯ୍ୟବେକ୍ଷଣ କଲେ ଅନାୟାସରେ ଭ୍ରମ ଦୂର ହୋଇପାରେ। ମାତ୍ର ଦୃଷ୍ଟବସ୍ତୁ ସମ୍ୱନ୍ଧରେ ଗୋଟିଏ ମିଥ୍ୟାଜ୍ଞାନ ପୋଷଣ କରି ଭ୍ରମଜାତ ହେବା ସ୍ଥାନରୁ ଅନ୍ତର ହେଲେ ସେହି ଭ୍ରମ ବିଶ୍ୱାସ ଦୂର ହେବା ସହଜ ନୁହେଁ। କାରଣ ଘଟଣାକ୍ରମେ ଭ୍ରମୋତ୍ପାଦକ ବସ୍ତୁଟି ସେହି ସ୍ଥାନରୁ ଅପସୃତ ହେଲେ ପରୀକ୍ଷାର ଅବସର ଆଉ କାହିଁ ?

ଭ୍ରମ ବିଶ୍ୱାସ ବ୍ୟକ୍ତିଗତ, ସମାଜଗତ ଓ ଜାତିଗତ। ବ୍ୟକ୍ତିଗତ ଭ୍ରମ ବିଶ୍ୱାସଦ୍ୱାରା ବ୍ୟକ୍ତିବିଶେଷର କ୍ଷତି। ମାତ୍ର ବ୍ୟକ୍ତିଗତ ଭ୍ରମ ବିଶ୍ୱାସ ସମୟରେ ସମାଜଗତ ଓ ଜାତିଗତ ଭ୍ରମ ବିଶ୍ୱାସରୂପେ ପରିଣତ ହୋଇ ସମାଜ ଓ ଜାତିର ଅନିଷ୍ଟକାରକ ହୁଏ। ଏହା ବିସ୍ତୃତଭାବରେ ବର୍ଣ୍ଣନା କରିବାର ପ୍ରୟୋଜନ ନାହିଁ। ପ୍ରତ୍ୟେକ ବ୍ୟକ୍ତି ଚିନ୍ତା କଲେ ଏଥିରେ ଯଥାର୍ଥ୍ୟ ଉପଲବ୍ଧ କରି ପାରିବେ।

ଭ୍ରମ ବିଶ୍ୱାସର ଅନ୍ତ ନାହିଁ। ସେଥିମଧ୍ୟରୁ ଗୋଟି କେତେ ଏହି ପତ୍ରିକାର ସ୍ଥାନାଧିକାର କଲେ ବୋଧହୁଏ ପାଠକ ଅବଧାନମାନଙ୍କର ଅବସର ବିନୋଦନରେ ବାଧାଜନକ ହେବ ନାହିଁ।

ବହୁଦିନର କଥା। ବାଲ୍ୟକାଳରେ ଦିନେ ମା'ଙ୍କ ନିକଟରେ ବସିଥିବାବେଳେ ଦେଖିଲୁଁ, ନିକଟବର୍ତ୍ତୀ କାନ୍ଥରେ ଗୋଟିଏ କୁମ୍ଭାରପୋକ ମାଟିର ବସା ନିର୍ମାଣ କରି ତହିଁ ଭିତରେ ଗୋଟିଏ ମୃତ ଶାଗପୋକ ଭର୍ତ୍ତି କରିଦେଇ ବସାର ମୁଖ ବନ୍ଦ କରିଦେଲା। ଏହାଦେଖି ମା'ଙ୍କୁ ଏଥିର କାରଣ ପଚାରିଲୁଁ। ମା' କହିଲେ, '' ଏହାର ନାମ କୁମ୍ଭାରପୋକ। ଏହାକୁ 'ସଞ୍ଜୀବନୀ' ମନ୍ତ୍ର ଜଣା। କୀଟକୁ ମାରି ତାକୁ ପୁନର୍ଜୀବିତ କରିପାରେ। ବସା ମଧ୍ୟରେ ପୋକକୁ ରଖିଦେଇ ମୁଖ ବନ୍ଦ କରିଦେଲା ଏବଂ ବସାର ମୁଖ ବନ୍ଦ କରିବା ଆଗରୁ ପୋକକୁ ଜୀବଦାନ ହେଲା। ପୁନର୍ଜୀବନ ପ୍ରାପ୍ତ କୀଟ କୁମ୍ଭକାର କୀଟକୁ ଚିନ୍ତା କରୁ କରୁ ତାହାର ରୂପ ପ୍ରାପ୍ତ ହେବ ଏବଂ ବସା ଭାଙ୍ଗି ବାହାରିବ। ଏହା ଶାସ୍ତ୍ରରେ ଲିଖିତ ଅଛି। କେହି ବସା ଭାଙ୍ଗିବ ନାହିଁ।'' ବସା ଭାଙ୍ଗିଲେ କ'ଣ ହୁଏ ? ମା' କହିଲେ, ''ଅଧାକପାଳୀ ବ୍ୟଥା ଧରେ।'' ବାଲ୍ୟାବସ୍ଥାରେ ଚାଟଶାଳୀକି ଯିବା ଭୟରେ କେତେ ରୋଗ ଲୋଡ଼ା ଯାଉ ନ ଥାଏ ? ଏତେ ସହଜରେ ଯେବେ ଗୋଟାଏ ରୋଗ ଭିଆଇ ଗୁରୁଙ୍କ ତାଡ଼ନାରୁ ରକ୍ଷା ମିଳେ ତେବେ ଭଲ କଥା। କ୍ରମେ ଦୁଇ ତିନି ଗୋଟି ବସା ଭଙ୍ଗାଗଲା, ମାତ୍ର ଅଧାକପାଳୀର ଦେଖା ନାହିଁ। କିନ୍ତୁ ଏ ପରୀକ୍ଷାର କଥା ମା'ଙ୍କଠାରେ ପ୍ରକାଶ କରିବାକୁ ସାହସ କରି ନ ଥିଲୁଁ। କେତେକ ବର୍ଷ ଉତ୍ତାରେ ଦିନେ ଗୋଟାଏ ପରିବା ବୋଝରେ ଦେଖୁଁ ଦେଖୁଁ ଗୋଟିଏ କୁମ୍ଭାରପୋକ ବସା ନିର୍ମାଣ କରି ବସା ଭିତରେ ଗୋଟିକେତେ ମାଙ୍କଡ଼ସା ଭର୍ତ୍ତି କରି ମୁଖ ବନ୍ଦ କଲା। ଭାବିଲୁଁ, ପରିବା ବୋଝଟା ବସାନିର୍ମାଣ ଉପଯୁକ୍ତ ସ୍ଥାନ ନୁହେଁ, ଯେକୌଣସି ପ୍ରକାରେ ଭାଙ୍ଗିବ। ଏଣୁ ଭାଙ୍ଗି ଦେଖିଲୁ, ମାଙ୍କଡ଼ସାଗୁଡ଼ିକ ଜୀବଶୂନ୍ୟ। ତନ୍ନ ତନ୍ନ କରି ଦେଖିଲୁଁ, ମାଙ୍କଡ଼ସା ଦେହରେ ସୋରିଷ ପ୍ରମାଣ ଈଷତ୍ ଲମ୍ୱ ଗୋଟିଏ ଡିମ୍ୱ। ସମସ୍ତ ସତ୍ୟ ଉଦ୍ଭାସିତ ହୋଇଉଠିଲା। ତତ୍କ୍ଷଣାତ୍ ମା'ଙ୍କଠାରେ ସମସ୍ତ ବିଷୟ ବୁଝାଇ କହିଲୁଁ। ଏଥି ଉତ୍ତାରୁ କେତେ ବସା ଭାଙ୍ଗି କୀଟର ନାନା ଅବସ୍ଥା ପର୍ଯ୍ୟବେକ୍ଷଣ କରିଅଛୁଁ। ଏହା ପୁଣି ସାରୂପ୍ୟ ମୁକ୍ତିର ଉଦାହରଣ।

ଜୀବନ୍ମୁକ୍ତସ୍ତୁ ତଦ୍‌ବିଦ୍ୱାନ
ପୂର୍ବୋପାଧିଗୁଣାନ୍ ତ୍ୟଜେତ୍।

ସଚ୍ଚିଦାନନ୍ଦଧର୍ମତ୍ୱାତ୍
ଭଜେତ୍ ଭ୍ରମରକୀଟବତ୍ ।
(ଆତ୍ମବୋଧ)

ଯଂ ଯଂ ବାପି ସ୍ମରନ୍ ଭାବଂ
ତ୍ୟଜତ୍ୟନ୍ତେ କଳେବରଂ ।
ତଂ ତମେବୈତି କୌନ୍ତେୟ
ସଦା ତଦ୍ଭାବଭାବିତଃ ।
(ଭଗବଦ୍‌ଗୀତା)

ଶାଗପୋକ ଭ୍ରମର କୀଟର ରୂପ ପ୍ରାପ୍ତ ହେବା ଯେମନ୍ତ ସତ୍ୟ, ହିନ୍ଦୁଗଣ ଦେବାରାଧନାଦ୍ୱାରା ଦେବରୂପ ପ୍ରାପ୍ତ ହେବା ତେମନ୍ତ ସତ୍ୟ । ଏହା ବ୍ୟକ୍ତିଗତ ଭ୍ରମ; କ୍ରମେ ଜାତିଗତ ଭ୍ରମବିଶ୍ୱାସ ଓ ଅମୂଳକ ଧର୍ମବିଶ୍ୱାସରେ ପରିଣତ ହୋଇଅଛି ।

କାଶୀନିବାସୀ ଉତ୍କଳ ଦେଶୀୟ ଖ୍ୟାତନାମା ପଣ୍ଡିତଙ୍କ ସହିତ ଅଢ଼ାଇ ବର୍ଷ ତଳେ ସୃଷ୍ଟିକର୍ମ ସମ୍ବନ୍ଧରେ ତର୍କ କରିବାବେଳେ ପଣ୍ଡିତ ମହୋଦୟ କହିଲେ 'ସ୍ୱେଦଜାମଶକାଦୟଃ ।' ନୈୟାୟିକ ପଣ୍ଡିତମାନଙ୍କର ବିଶ୍ୱାସ ଯେ, ମଶକ ଓ ଓଡ଼ଶ ସ୍ୱେଦରୁ ଜାତ ହୁଅନ୍ତି । ଏହା ଲେଖିବା ବାହୁଲ୍ୟ ଯେ, ଆଧୁନିକ ସ୍କୁଲ ଛାତ୍ରମାନେ ମଧ ମଶକର ଜୀବନବୃତ୍ତାନ୍ତ ସ୍ପଷ୍ଟରୂପେ ଜାଣନ୍ତି । ମଶକ ପୁଷ୍କରିଣୀରେ ଆବଦ୍ଧ ଜଳରେ ଡିମ୍ବ ପାଡ଼େ ଏବଂ ପୂର୍ଣ୍ଣାବୟବ ପ୍ରାପ୍ତ ହେବା ଯାଏ ମଶକର ସମୟ ଜଳ ମଧରେ ଅତିବାହିତ ହୁଏ । ଓଡ଼ଶର ଅସଂଖ୍ୟ ଶୁକ୍ଳ କ୍ଷୁଦ୍ର ଡିମ୍ବ ଖଟରେ, ବେଞ୍ଚରେ, କୁରୁଚିରେ କିଏ ଦେଖି ନାହିଁ ? ତଥାପି ପ୍ରାଚୀନ ପଣ୍ଡିତଗଣଙ୍କ ମତରେ ମଶକାଦି ସ୍ୱେଦଜ । ସେହି ଭ୍ରମ-ବିଶ୍ୱାସ ଆଧୁନିକ ସଂସ୍କୃତଜ୍ଞ ପଣ୍ଡିତଙ୍କ ମତରେ ସତ୍ୟ, ଏଣୁ ସେମାନେ କହନ୍ତି, 'ସ୍ୱେଦଜା ମଶିକାଦୟ' ।

ବୃଶ୍ଚିକ ଅଣ୍ଡଜ । ତେବେ ସୁଦ୍ଧା ପ୍ରାଚୀନ କୌଣସି କୌଣସି ସାଂଖ୍ୟବାଦୀ ବୃଶ୍ଚିକ ଗୋମୟରୁ ଜାତ ହୁଏ ବୋଲି ଲେଖିଅଛନ୍ତି । 'ଗୋମୟାଚ୍ଚ ବୃଶ୍ଚିକୋ ଜାୟତେ' । କଙ୍କଡ଼ା ଅଣ୍ଡଜ । କଙ୍କଡ଼ା ତାହାର ଛୁଆମାନଙ୍କୁ ଆତ୍ମରକ୍ଷଣ ସମର୍ଥ ହେବା ଯାଏ ପେଟତଳର ଖୋଳପା ମଧରେ ରଖିଥାଏ । ମହାଭାରତ ଲେଖକଙ୍କର ବିଶ୍ୱାସ ଯେ, କଙ୍କଡ଼ାଛୁଆମାନେ ତାହାର ମାତାର ମାଂସ ଭୋଜନ କରି ଭକ୍ଷଣ କରନ୍ତି । ଏଣୁ ସେ ଅର୍ଜୁନ ବାଣବିଦ୍ଧ ଭୀଷ୍ମଙ୍କ ମୁଖରେ ପ୍ରକାଶ କରାଇ ଅଛନ୍ତି ।

''ଭିନ୍ଦନ୍ତି ମମ ଗାତ୍ରାଣି ମାଘମାସେ ଗବାଇବ ।''

ବଂଶରକ୍ଷା ହିଁ ଜୀବଜଗତର ମୂଳ ଲକ୍ଷ୍ୟ । ସନ୍ତାନ ନିମନ୍ତେ ମନୁଷ୍ୟ, ପଶୁ, ପକ୍ଷୀ, କୀଟପତଙ୍ଗର ସମସ୍ତ ଆୟୋଜନ । ମଧୁମକ୍ଷିକା ତାହାର ନବଜାତ ସନ୍ତାନମାନଙ୍କର ଉଦରଜ୍ୱାଳା ନିବାରଣ ନିମନ୍ତେ ଆଗହୁଁ ମଧୁ ସଂଗ୍ରହ କରି ରଖେ ଏବଂ ପୁଷ୍ପରେଣୁ ଓ ମଧୁମିଶ୍ରିତ ମିଠାଇ ପ୍ରସ୍ତୁତ କରି ରଖେ ଭାଗବତ ଲେଖକଙ୍କ ମତରେ ମଧୁମକ୍ଷିକା ନିତାନ୍ତ କୃପଣ ଓ ଲୋଭୀ । ଲୋଭୀ ବ୍ୟକ୍ତି ପରି ନିଜର ପେଟ ମାରି ନ ଖାଇ ନ ପିଇ ମଧୁମକ୍ଷିକା ମଧୁ ସଞ୍ଚୟ କରେ; ଏଣୁ ଲେଖିଲେ–

ନ ଖାଇ ନ ପିଇ ସଞ୍ଚଇ ।

ତାହାର ମୁଖେ ଅଗ୍ନି ଦେଇ । ଇତ୍ୟାଦି । ଯେଉଁମାନେ ଆତ୍ମା ଓ ଈଶ୍ୱରତତ୍ତ୍ୱରେ ଅନଭିଜ୍ଞ, ସେମାନଙ୍କ ବୈଷୟିକ ଜ୍ଞାନ କିପରି !

ଭୂତ ପ୍ରେତ- ମନୁଷ୍ୟ ମଲା ଉତ୍ତାରୁ ଭୂତ ହୁଏ, ପିଶାଚ ହୁଏ, ଇତ୍ୟାଦି ଇତ୍ୟାଦି । କୌଣସି କୌଣସି ବ୍ରାହ୍ମଣ ମରଣାନ୍ତେ ବ୍ରାହ୍ମରାକ୍ଷସ ହୁଅନ୍ତି । ବ୍ୟାଘ୍ରଭକ୍ଷିତ ବ୍ୟକ୍ତି ବାଘିଆ ହୁଏ । ଏହିପରି ଭୂତମାନଙ୍କର ଜାତିଭେଦ ଅଛି । ମୃତ ଶିଶୁଗୁଡ଼ିକ ମାଟିଆ, ଦ୍ୱିଜାତି ବାଳକ ବ୍ରତ ହେବା ପୂର୍ବରୁ ମୃତ ହେଲେ ଓଥରା ହୁଅନ୍ତି । ଗର୍ଭିଣୀ ସ୍ତ୍ରୀ ମୃତା ହେଲେ କିମ୍ବା ନବପ୍ରସୂତୀ ସ୍ତ୍ରୀ ମୃତ୍ୟୁ ହେଲେ ପେତିନୀ, ଚିରଗୁଣୀ ହୁଅନ୍ତି । ଏହି ସମସ୍ତ କିମ୍ଭୂତକିମାକାର ଭୂତଗୁଡ଼ିକ ଜୀବିତ ବ୍ୟକ୍ତିମାନଙ୍କୁ ଭୟ ଦେଖାନ୍ତି, ସେମାନଙ୍କ ପ୍ରତି ନାନା ଅତ୍ୟାଚାର କରନ୍ତି । ସେହ୍ନ, ବାତ୍ସଲ୍ୟ, ମମତା ସବୁ ଭୁଲିଯାନ୍ତି । ଭୂତ, ପିଶାଚଙ୍କ ଗଳ୍ପ କିଏ ବା କେତେ ଶୁଣି ନାହିଁ ? ତତ୍ସମ୍ବନ୍ଧରେ ଅଧିକ ଲେଖିବା କ'ଣ ? ଏହି ଭ୍ରମ-ବିଶ୍ୱାସ କେବେ ମନୁଷ୍ୟ ସମାଜରେ ପ୍ରବେଶ କଲା, ତାହା କହି ହେବ ନାହିଁ । ମନୁଷ୍ୟଜାତିର ଆଦିମ ଅବସ୍ଥାରେ ଏହାର କଳ୍ପନା । ବଂଶାନୁକ୍ରମେ ଏକାବେଳକେ ମୂଳୋତ୍ପାଟିତ ହେଉ ବୋଲି ଲୋକେ ସଯତ୍ନ ଥିବାର ଦେଖାଯାଏ ନାହିଁ । ଆମ୍ଭେମାନେ ବହୁ ଚେଷ୍ଟା କରି ସୁଦ୍ଧା କେବେ ଭୂତ ପିଶାଚ ଦେଖିପାରିଲୁ ନାହିଁ କିମ୍ବା କୌଣସି ଶବ୍ଦ ଶୁଣିପାରିଲୁ ନାହିଁ । ମହାଶ୍ମଶାନରେ ଦିବାରାତ୍ର ଯାପନ କରିଅଛୁଁ । ଶବ ସାଧନା କଲା ଭଳି ଏକାଗ୍ରଚିତ୍ତ ହୋଇ ବ୍ୟାଘ୍ରଧୃତ ଉଲଙ୍ଗ ବୀଭତ୍ସ କେତେ ନରନାରୀଙ୍କ ଶବକୁ ଏକାକୀ ରାତ୍ରତମାମ ଜଗିବସିଅଛୁଁ । କେବେ ତ କୌଣସି ଭୂତ, ପ୍ରେତ ବା ବାଘିଆ ଦେଖିଲୁ ନାହିଁ । ତେବେ ସୁଦ୍ଧା ଲୋକେ ଅମୂଳକ ଭୂତ ଗଳ୍ପ କରନ୍ତି । ପାଠକଗଣଙ୍କୁ ଗୋଟିଏ ଭୂତ ଗଳ୍ପ ଉପାହାର ଦେଲେ ଅପ୍ରାସଙ୍ଗିକ ହେବ ନାହିଁ । ତାହା ଏହି :-

ଦୁଇ ବର୍ଷର କଥା, ଜଣେ ବଙ୍ଗୀୟ ଉଚ୍ଚ ଶିକ୍ଷିତ ଭଦ୍ରଲୋକ ସସ୍ତ୍ରୀକ କିଛିକାଳ ଦେବଗଡ଼ରେ ଅବସ୍ଥାନ କରୁଥିଲେ। ଦିନେ ସନ୍ଧ୍ୟାବେଳେ ତାଙ୍କର ଗୃହିଣୀ ରାଜଭବନରେ ଥିବାବେଳେ ସେ ଏକାକୀ ବସି ଅଧ୍ୟୟନ କରୁଥିଲେ। ମୁଖ ଉଠାଇ ଦେଖନ୍ତି, ଅଳ୍ପ ଦୂରରେ ଶୁକ୍ଳବସନପରିହିତ ଭୂତ। ଭଦ୍ରଲୋକ କିଂକର୍ତ୍ତବ୍ୟବିମୂଢ଼ ହୋଇ ପାଠ ତ୍ୟାଗ କଲେ ଏବଂ ସଦର ରାସ୍ତାକୁ ପଳାୟନ କଲେ। ଘର୍ମପ୍ଲାବିତ, ପ୍ରାୟ ମୂର୍ଚ୍ଛାଗତ ! ଜଣେ ବ୍ୟକ୍ତି ହଠାତ୍ ଉପସ୍ଥିତ ହୋଇ ତାଙ୍କୁ ସାନ୍ତ୍ୱନା ଦେଲେ। ତାଙ୍କର ଉଚ୍ଚଶିକ୍ଷିତା ଗୃହିଣୀ ଗୃହକୁ ଆସିଲାରୁ ସମସ୍ତ ବିଷୟ ପ୍ରକାଶ କଲେ। ଗୃହିଣୀ ମିଥ୍ୟା ବୋଲି ଉଡ଼ାଇଦେବାକୁ ବସିଲେ, ମାତ୍ର ଭଦ୍ରଲୋକ ଯାହା ପ୍ରତ୍ୟକ୍ଷ କରିଅଛନ୍ତି, ସେଥିରୁ ତାଙ୍କର ବିଶ୍ୱାସ ଦୂର ହେବ କିପରି ? ଏହି ଘଟଣାର ୨ । ୩ ଦିନ ପରେ ବାବୁ, ତାଙ୍କର ପଠନ କାର୍ଯ୍ୟରେ ବ୍ୟସ୍ତ ଥିବାବେଳେ ଗୃହିଣୀ ପୂର୍ବ ଘଟଣା ଦିନ ହାତ ଲାଲଟିନ ଯେଉଁଠାରେ ଥିଲା, ସେହିଠାରେ ରଖିଦେଇ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ରହିଲେ। କିଛିକ୍ଷଣ ପରେ ବାବୁ ମୁଖ ଟେକି ଦେଖନ୍ତି ତ ସେହି ଭୂତ। ହଠାତ୍ ଚିତ୍କାର କରି ଉଠିଲେ। ଉଭୟେ ଦଣ୍ଡାୟମାନ ହୋଇ ଦେଖନ୍ତି, ସେହି ଭୂତ। ଗୃହିଣୀ କହିଲେ ସତ ତ। କୌଶଳକ୍ରମେ ବାବୁଙ୍କ ଅଜ୍ଞାତରେ ଲାଲଟିନ ସ୍ଥାନାନ୍ତରିତ ହେଲା। ଭୂତ ଆଉ ନାହିଁ। ଲାଲଟିନ୍ ପୂର୍ବ ସ୍ଥାନରେ ରଖାଗଲା, ପୁଣି ଭୂତର ଆବିର୍ଭାବ। ଥରକେତେ ଏହିପରି କରିବାରୁ ବାବୁଙ୍କର ଭୂତ ବିଶ୍ୱାସ ଦୂର ହେଲା। ଆରଦିନ ଉଭୟେ ଆମ୍ଭଠାରେ ଏହି ଭୂତ ଗଳ୍ପ ବ୍ୟକ୍ତ କଲେ। ଘଟଣାକ୍ରମେ ବାବୁ ମହୋଦୟଙ୍କୁ ପ୍ରତ୍ୟୁଷରୁ ବସା ତ୍ୟାଗ କରିବାକୁ ପଡ଼ିଥିଲେ ଏବଂ ଉଚ୍ଚଶିକ୍ଷିତା ବୁଦ୍ଧିମତୀ ସହଧର୍ମିଣୀ ତାଙ୍କୁ ସଙ୍ଗରେ ନ ଥିଲେ ବାବୁଙ୍କର ଭୂତ ବିଶ୍ୱାସ କଦାପି ଦୂର ହୋଇ ନ ଥାନ୍ତା ଏବଂ ଦେବଗଡ଼ର ସେହି ଗୃହଟି ଭୂତାବାସ ବୋଲି ପ୍ରସିଦ୍ଧ ହୋଇଥାନ୍ତା।

ଭୂତାବେଶ- କୌଣସି କୌଣସି ସ୍ତ୍ରୀଙ୍କଠାରେ ଭୂତାବେଶ ହୁଏ। ଏହା ଅତି ଅଦ୍ଭୁତ। ମାତ୍ର ସୁଖର କଥା, ପୂର୍ବାପେକ୍ଷା ଭୂତାବେଶ ସଂଖ୍ୟା କମି ଆସୁଅଛି। ଦିନେ ଜଣେ ଗଉଡ଼ଘର ବୋହୂକୁ ଭୂତାବେଶ ହେଲା। ଲବ ପାଣ ନାମକ ଗୁଣିଆ ତାକୁ ଆରୋଗ୍ୟ କଲା। ଆମ୍ଭେମାନେ ଲବ ପାଣକୁ ଏହି ରହସ୍ୟ ପଚାରିଲୁଁ। ସେ କହିଲା, 'ହଳ ଧଇଲେ ଢେଙ୍କଳୀ। ଝଣ ଧଇଲେ, କୁକୁଡ଼ା।' ଆପଣ ବଡ଼ ଲୋକ, ଏକଥା ପଚାରନ୍ତି କାହିଁକି ?

ଦେବୀ ମାଉଳୀ ଲାଗିଗଲା, ତାକୁ ନେଇ ଶାଳ ଗଛରେ ବନ୍ଧି କରିଦେଲି। ଲବ ପାଣ ଯେଉଁ ମନ୍ତ୍ର ପ୍ରୟୋଗଦ୍ୱାରା ଗୋପାଳବଧୂକୁ ଭୂତ ଆକ୍ରମଣରୁ ରକ୍ଷା କରିଥିଲା, ସେହି ମନ୍ତ୍ରଟି ଏହି–

"ଝାଲିଆ ଝାଲିଆ ତୁ ଥିଲୁ କାହିଁ। ମୋର ସୁମରଣେ ଅଇଲୁ ଧାଇଁ। ଅଇଲୁ ବାବୁ ଭଲ କଲୁ। ଭୂତ ବାନ୍ଧ, ପ୍ରେତ ବାନ୍ଧ, ମଡ଼ା ମଶାଣି ବାନ୍ଧ, ଚିରଗୁଣୀ ବାନ୍ଧ, ଉଲାରୀ ବାନ୍ଧ, ବୁଲାରୀ ବାନ୍ଧ, ଛୁଆଖାଇ ଡାହାଣୀ ବାନ୍ଧ, ସପ୍ତ ସୁନ୍ଦରୀ ବାନ୍ଧ, କାଳସୁନ୍ଦରୀ ବାନ୍ଧ, ସାତଭଉଣୀ ବାନ୍ଧ, ମଗରମୁହାଁ ବାନ୍ଧ, ଜଳଦେବତାକୁ ବାନ୍ଧ, ଜଳେ, ସ୍ଥଳେ, ପାତାଳେ ପଶି ବାନ୍ଧ। ବାନ୍ଧ ବୋଲି କାହାର ଆଜ୍ଞା, ଶ୍ରୀ ରାମଚନ୍ଦ୍ର ଠାକୁରଙ୍କର କୋଟି କୋଟି ଆଜ୍ଞା।"

ସର୍ପବିଷ- ସର୍ପ ବିଷ ମନୁଷ୍ୟର ଆଜ୍ଞାକାରୀ। ସର୍ପବିଷ ଦେବତାର ରାଣମାନେ, ମନ୍ତ୍ରର ମାହାତ୍ମ୍ୟ ବୁଝିପାରେ। ଏଥିରୁ ବଳି ଭ୍ରମବିଶ୍ୱାସ ଆଉ କ'ଣ ଅଛି ? ମନ୍ତ୍ର ଉପରେ ଆସ୍ଥା ସ୍ଥାପନ କରି କେତେ ନିରୀହ ଲୋକ ଯେ ସର୍ପ ବିଷରେ ପ୍ରାଣ ହରାଉଅଛନ୍ତି, ତାହାର ଇୟତା ନାହିଁ। ଆମ୍ଭେମାନେ ଦେଖିଅଛୁଁ ଏ ସର୍ପଦଷ୍ଟ, ବ୍ୟକ୍ତିମାନଙ୍କର ଜୀବନ ରକ୍ଷାର ଭାର ମୂର୍ଖଗୁଣିଆଙ୍କ ହସ୍ତରେ ଅର୍ପଣ କରି ଏବଂ ଔଷଧାଦିର ବ୍ୟବସ୍ଥା ନ କରି ପରେ ଲୋକେ ଆପଣାର ପ୍ରିୟଜନଙ୍କୁ ହରାଇ ବସନ୍ତି। କିଃ ଦୁଃଖର କଥା। ଅବଶ୍ୟ ସର୍ପବିଷ ପୂର୍ଣ୍ଣମାତ୍ରାରେ ଶରୀର ମଧ୍ୟରେ ପ୍ରବିଷ୍ଟ ହେଲେ ନିଶ୍ଚୟ ମାରାତ୍ମକ ହୁଏ; ତଥାପି କି ଔଷଧର ବ୍ୟବସ୍ଥା କରିବା ଅବିଧି ? ତ୍ରିଦୋଷ ସନ୍ନିପାତ ମାରାତ୍ମକ ବୋଲି କି ଲୋକେ ଔଷଧର ବ୍ୟବସ୍ଥା କରନ୍ତି ନାହିଁ ? ତେବେ ସର୍ପବିଷ ନିମନ୍ତେ କେବଳ ମନ୍ତ୍ରର ବ୍ୟବସ୍ଥା କାହିଁକି ? ବିଷ ତ ଜଡ଼ ପଦାର୍ଥ, ମନୁଷ୍ୟର ଆଜ୍ଞାକାରୀ ହେଲା କିପରି ? ଶତସହସ୍ର ରାଣ ଦେଲେ କି ପାତ୍ରସ୍ଥ ଜଳ ତଳକୁ ଓହ୍ଲାଇ ପଡ଼ିବ ? ଚାଳ ଉପରେ ଥିବା ବୋଇତାଳୁକୁ ଈଶ୍ୱର ପାର୍ବତୀଙ୍କର ରାଣ ଦେଲେ କି ତଳକୁ ଓହ୍ଲାଇ ଆସିବ ? ତେବେ ରକ୍ତ ମିଶ୍ରିତ ବିଷ କେଉଁ ନ୍ୟାୟରୁ ଦେବତାରାଣ ମାନି ଓହ୍ଲାଇ ଯିବ ? ଗୋଟିଏ ମନ୍ତ୍ରର ନାମ ବ୍ରହ୍ମଚାପୁଡ଼ା। ସର୍ପଦଷ୍ଟ ବ୍ୟକ୍ତିର ଯେଉଁ ଆତ୍ମୀୟ ବା ବନ୍ଧୁ ଗୁଣିଆଠାକୁ ଡାକିବାକୁ ଯାଇଥିବ, ସେ ଗୁଣିଆଠାରୁ ଗୋଟିଏ ଚାପୁଡ଼ା ପାଇଲେ ସର୍ପଦଷ୍ଟ ବ୍ୟକ୍ତି ଆରୋଗ୍ୟ ଲାଭ କରେ ! ଏ ପ୍ରକାର ଅମୂଳକ ମନ୍ତ୍ର ଉପରେ ବିଶ୍ୱାସ ସ୍ଥାପନ କରିବା ମୂର୍ଖତା ଭିନ୍ନ ଆଉ କ'ଣ ହୋଇପାରେ ?

ଭାଷା- ସଂସ୍କୃତ ଭାଷାକୁ ପଣ୍ଡିତଗଣ ଗୀର୍ବାଣ ବାଣୀ ବୋଲନ୍ତି। କେଉଁ ଦେବତା କେବେ ଭାରତବାସୀଙ୍କୁ ଏ ଭାଷା ଶିକ୍ଷା ଦେଲେ, ତହିଁର କୌଣସି ପ୍ରମାଣ ନାହିଁ। ତଥାପି ସଂସ୍କୃତ ଭାଷାର ନାମ ଦେବଭାଷା। ସଂସ୍କୃତଜ୍ଞ ପଣ୍ଡିତଗଣ ଭାଷାର ଅଭିବ୍ୟକ୍ତି ସ୍ୱୀକାର କରିବାକୁ ନାରାଜ। ବେଦ ଓ ବ୍ରାହ୍ମଣାଦି ଲିଖିତ ଭାଷାଟି ଦେବଭାଷା କି କାଳିଦାସଙ୍କ ଲିଖିତ କାବ୍ୟ ଭାଷା ଦେବଭାଷା ଏଥି ମଧ୍ୟରୁ ଗୋଟିଏ ଦେବଭାଷା ହେଲେ ଅପର ଦେବଭାଷା ନୁହେଁ ବୋଲି ଅବଶ୍ୟ ସ୍ୱୀକାର କରିବାକୁ ହେବ। ଯେହେତୁ ଉଭୟ ଭାଷା ମଧ୍ୟରେ ଯଥେଷ୍ଟ ପ୍ରଭେଦ ଥିବାର ଦେଖାଯାଏ।

ପୁଣି ପୂଜ୍ୟପାଦ ଦୟାନନ୍ଦ ସରସ୍ୱତୀଙ୍କ ପରି ବିଜ୍ଞ ବ୍ୟକ୍ତିଙ୍କର ବିଶ୍ୱାସ ଯେ, ବୈଦିକ ଭାଷା ସମସ୍ତ ମାନବଜାତିର ଆଦିଭାଷା। ସେହି ଭାଷା କ୍ରମେ ବିକୃତି ଲାଭ କରି ଜଗତରେ ଅସଂଖ୍ୟ ଭାଷାରେ ପରିଣତ ହୋଇଅଛି। ଏହି ଉକ୍ତିର ଅଯୌକ୍ତିକତା ବିସ୍ତୃତ ଭାବରେ ଏ ସ୍ଥଳରେ ଆଲୋଚନା କରିବା ନିଷ୍ପ୍ରୟୋଜନ।

ଦୁଇ ବର୍ଷ ପୂର୍ବେ କୌଣସି ବିଜ୍ଞ ପଣ୍ଡିତଙ୍କ ସହିତ ବାକ୍ୟାଳାପ ହେଲାବେଳେ ପଣ୍ଡିତେ କହିଲେ, 'ଭାଷା ଆଗରୁ ବ୍ୟାକରଣ' ।ଲେଖିବା ବାହୁଲ୍ୟ ଯେ ସ୍ୱେଚ୍ଛାଚାରିତା ନିବାରଣ ନିମନ୍ତେ ବ୍ୟାକରଣର ସୃଷ୍ଟି। ପାଣିନୀଙ୍କ ବ୍ୟାକରଣ ନିୟମଦ୍ୱାରା ପରିଷ୍କୃତ ଭାଷାର ନାମ ସଂସ୍କୃତ ଭାଷା- ବ୍ୟାକରଣ ପରେ ଭାଷାର ସୃଷ୍ଟି କରି ଦେବତାମାନେ ଭାରତବାସୀଙ୍କ ହାତରେ ଭାଷା ଓ ବ୍ୟାକରଣ ଦେଇଥିଲେ ସଂସ୍କୃତ ଗ୍ରନ୍ଥ ମଧ୍ୟରେ ଏତେ ଆର୍ଷ ପ୍ରୟୋଗ ନ ଥାନ୍ତା। ବୈଦିକ ଭାଷା ଓ ସଂସ୍କୃତ ଭାଷାର ତାରତମ୍ୟ ଏବଂ ଆଦି ପ୍ରୟୋଗାଦି ଦେଖି ସୁଦ୍ଧା ଯେଉଁମାନେ ଭାଷାର ଅଭିବ୍ୟକ୍ତି ସ୍ୱୀକାର କରନ୍ତି ନାହିଁ, ସେମାନେ ଅନୁପେକ୍ଷଣୀୟ ଭ୍ରମରେ ପଡ଼ିଅଛନ୍ତି, ଏଥିରେ ସନ୍ଦେହ ନାହିଁ। ପୃଥିବୀରେ ଅନେକ ଜାତିର ଭାଷା ବିଦ୍ୟମାନ ଅଛି, ଯେଉଁ ଭାଷା କି ଅଦ୍ୟାପି ବ୍ୟାକରଣର ଆୟତ୍ତାଧୀନ ହୋଇ ନାହିଁ। ତଥାପି ପଣ୍ଡିତେ କହିବେ, ଭାଷା ଆଗରୁ ବ୍ୟାକରଣ।

ସନାତନ ହିନ୍ଦୁଧର୍ମ- ମାନବଜାତିର ଧର୍ମ ଈଶ୍ୱରକୃତ ନୁହେଁ। ହିନ୍ଦୁଧର୍ମ ଯେବେ କୌଣସି ସର୍ବନିୟନ୍ତାଙ୍କଦ୍ୱାରା ଆବିଷ୍କୃତ ହୋଇ ନର ହସ୍ତରେ ଅର୍ପଣ କରାଯାଇଥାନ୍ତା, ତାହାହେଲେ କାହାର ସାଧ ଯେ, ସେ ଧର୍ମକୁ ଅବଜ୍ଞା କରିବ। ଧର୍ମ ସର୍ବନିୟନ୍ତାଙ୍କ କୃତ ନୁହେଁ। ଧର୍ମ ମନୁଷ୍ୟକୃତ। ଏଣୁ ଜଗତରେ ନାନା ଧର୍ମରେ ଉଦୟ ଓ ପ୍ରଚାର। ଧର୍ମର ଅଭିବ୍ୟକ୍ତି ଅବଶ୍ୟ ସ୍ୱୀକାର କରିବାକୁ ହେବ। ଧର୍ମର ପରିବର୍ତ୍ତନ, ଉଦ୍ଦେଶ୍ୟସାଧନ ପରିଲକ୍ଷିତ ହେଉଅଛି। ତେବେ ତାହାର ସନାତନତ୍ୱ କାହିଁ ? ଆଦିକାଳରୁ ଯାହା ଚାଲି ଆସୁଅଛି– ଯାହା ଚିରକାଳ ରହିବ, ତାହାର ନାମ ଯେବେ ସନାତନ ହୁଏ, ତେବେ ହିନ୍ଦୁଧର୍ମକୁ ସନାତନ ବୋଲାଯାଇପାରେ କିପରି ? ମୁସଲମାନଧର୍ମ ସନାତନ ନୁହେଁ, କି ଖ୍ରୀଷ୍ଟଧର୍ମ ସନାତନ ନୁହେଁ। ଭାରତୀୟ ଧର୍ମର ପରିବର୍ତ୍ତନ ଆମ୍ଭେମାନେ ମୁହୁର୍ମୁହୁଃ ପାଉଅଛୁଁ। ବେଦ ଈଶ୍ୱରନିଶ୍ୱସିତ ହେଉ ବା ମନୁଷ୍ୟକୃତ ହେଉ, ସେଥିରେ ଦେବତାଦିଙ୍କର ସ୍ତବ ସ୍ତୁତି ଅଛି; ବ୍ରାହ୍ମଣ ଗ୍ରନ୍ଥରେ ଯଜ୍ଞ- ଗୋମେଧ ଅଶ୍ୱମେଧର ଧୂମ ଚାଲିଗଲା, ଉପନିଷଦ୍ ଯୁଗ ଉପସ୍ଥିତ ହେଲା। ଋଷିମାନେ ଚିନ୍ତା କଲେ, ପୂର୍ବାଚରିତ ଧର୍ମଦ୍ୱାରା ଆତ୍ମାର ସଦ୍‌ଗତି ନାହିଁ। ଏଣୁ କହିଲେ, ଦୁଇଗୋଟି ବିଦ୍ୟା ଜ୍ଞାତବ୍ୟ, ଯଥାପରା ବିଦ୍ୟା ଓ ଅପରାବିଦ୍ୟା। ଋଗ୍‌ବେଦ ଯଜୁର୍ବେଦ ଇତ୍ୟାଦି ଅପରା ବିଦ୍ୟା ଏବଂ ଯେଉଁ ବିଦ୍ୟାଦ୍ୱାରା ପରଂବ୍ରହ୍ମଙ୍କୁ ଜାଣିବାକୁ ହୁଏ, ତାହାର ନାମ ପରା ବା ଶ୍ରେଷ୍ଠ ବିଦ୍ୟା। ଆଉ ଜଣେ ଋଷି କହିଲେ–

ଅନ୍ଧଂ ତମଃ ପ୍ରବିଶନ୍ତି ଯେଽବିଦ୍ୟାମୁପାସତେ।
ତତୋ ଭୂୟଇବ ତେ ତମୋ ଯଉ ବିଦ୍ୟାୟାଂ ରତାଃ।

ଈଶ

ତାତ୍ପର୍ଯ୍ୟ– ଯେଉଁମାନେ ଅଗ୍ନିହୋତ୍ରାଦି ବୈଦିକ କର୍ମ କରିବାରେ ରତ, ସେମାନେ ତମସାଚ୍ଛନ୍ନ। ପୁଣି ଯେଉଁମାନେ ଦେବାରାଧନା ପ୍ରଭୃତିରେ ରତ ହୁଅନ୍ତି, ସେମାନେ ଅଧିକତର ତମସାଚ୍ଛନ୍ନ। ଏହି ପ୍ରକାର ଅନେକ ବୈଦିକ ଧର୍ମ ପ୍ରତିରୋଧକ ବାକ୍ୟ ଉପନିଷଦ ଗ୍ରନ୍ଥରେ ଦୃଷ୍ଟ ହୁଏ। ଭଗବଦ୍‌ଗୀତାରେ ମଧ୍ୟ ବୈଦିକ ଧର୍ମରେ ଅନୁରକ୍ତ ହେଲେ ଆତ୍ମାର ସଦ୍‌ଗତି ନାହିଁ ବୋଲି ଅନେକ ବାକ୍ୟ ଦୃଷ୍ଟ ହୁଏ। ଉପନିଷଦ୍ ଯୁଗରେ ବୈଦିକ ଧର୍ମ ପ୍ରତି ଲୋକଙ୍କର ଆସ୍ଥା କ୍ରମଶଃ ହ୍ରାସ ହୋଇ ଆସିଲା। କ୍ରମେ ବୌଦ୍ଧ ଧର୍ମର ପ୍ରାଦୁର୍ଭାବ। ଏଥିଉତ୍ତାରୁ ଜାତୀୟ ଅବନତି ଏବଂ ପୌରାଣିକ ଧର୍ମର ଉତ୍ପତ୍ତି। ଏହି ପୌରାଣିକ ଧର୍ମରେ ବେଦର ନାମମାତ୍ର ଅଛି ସତ୍ୟ, ମାତ୍ର ଏଥିରେ ଏତେ ପରିବର୍ତ୍ତନ, ଯୋଗ ବିୟୋଗ ଘଟିଅଛି ଯେ, ତାହାର ସୀମା ନାହିଁ। ଯାହାର ଏପରି ପରିବର୍ତ୍ତନ ଘଟିଅଛି, ତାହାକୁ ସନାତନ ବୋଲିବାର ଭ୍ରମବିଶ୍ୱାସ ଭିନ୍ନ କ'ଣ ବୋଲାଯାଇପାରେ ? ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ଉପାସନା ଯେଉଁ ଧର୍ମରେ ବିଦ୍ୟମାନ, ତାହାର ନାମ ସନାତନ ଧର୍ମ ବୋଲି କେହି କେହି କହନ୍ତି। ତାହା ଯଥାର୍ଥ ନୁହେଁ। ପୁଣି ଏହି ତିନି ଦେବତାଙ୍କ ପୂଜା

କଲେ ହିନ୍ଦୁର ଧର୍ମ ନୁହେଁ। ଏହି ଧର୍ମ ସାଙ୍କର୍ଯ୍ୟଦୁଷ୍ଟ- ଆର୍ଯ୍ୟ ଓ ଅନାର୍ଯ୍ୟ ଧର୍ମର ସମିଶ୍ରଣ, ଏଣୁ ସନାତନ ନୁହେଁ।

ବର୍ଣ୍ଣାଶ୍ରମଧର୍ମ– ଦ୍ୱାରବଙ୍ଗର ଭୂସ୍ୱାମୀ ଯେତେବେଳେ କଲିକତା ନଗରୀରେ ଗୋଟିଏ ବକ୍ତୃତା ଦେଲେ, ଅନେକ ଲୋକ ଏହା ଶ୍ରବଣ କରି ବଡ଼ ଆପ୍ୟାୟିତ ହେଲେ ଏବଂ ବର୍ଣ୍ଣାଶ୍ରମ ଧର୍ମ ପ୍ରଚଳନରେ ଦେଶର ମଙ୍ଗଳ, ଏହା ଅନେକ ଭାବି ନେଲେ। ମାତ୍ର ବର୍ଣ୍ଣାଶ୍ରମଧର୍ମ ଯେ ଭାରତବର୍ଷକୁ କି ଦୁର୍ଦ୍ଦଶା ଆନୟନ କରିଅଛି, ତାହା କେହି ତିଳେମାତ୍ର ଭାବି ଦେଖିଲେ ନାହିଁ। ବର୍ଣ୍ଣାଶ୍ରମଧର୍ମ ଏକ ସମୟରେ ଭାରତବର୍ଷର ପ୍ରଚଳିତ ଧର୍ମ ହୋଇପାରିଥିବ। ମାତ୍ର ବର୍ତ୍ତମାନ ଯୁଗରେ ତାହା ଚଳିବା ସମ୍ଭବ ତ ? କେଉଁ ଶୂଦ୍ର ଜଜ ବା ମାଜିଷ୍ଟ୍ରେଟ ବ୍ରାହ୍ମଣ ମୁଦାଲାକୁ ଦେଖି ବିଚାରାସନରୁ ଓହ୍ଲାଇ ପଡ଼ି ଓଳିଗି ହେବେ। କେଉଁ ଶୂଦ୍ର ଛାତ୍ର ବ୍ରାହ୍ମଣ ଛାତ୍ର ସହିତ ଏକାସନରେ ବସିବାକୁ ଭୀତ ଓ ସଂକୁଚିତ ହେବ ? କେଉଁ ଆତ୍ମୋନ୍ନତିକାମୀ ନବ୍ୟ ଯୁବକ ବର୍ଣ୍ଣାଶ୍ରମ ଧର୍ମାନୁରୋଧରେ ସମୁଦ୍ରଯାତ୍ରା କରିବାରୁ ନିରସ୍ତ ହେବ ? ବର୍ଣ୍ଣାଶ୍ରମ ଧର୍ମାନୁରୋଧରେ କିଏ କେଉଁ ସ୍ୱାର୍ଥ ତ୍ୟାଗ କରି ପାରିବେ, ତାହା ଆମ୍ଭମାନଙ୍କର ବୋଧଗମ୍ୟ ହେଉ ନାହିଁ। ତଥାପି କେତେକ ପ୍ରାଚୀନ ମତାବଲମ୍ବୀ 'ଆମ୍ଭର ସବୁ ଭଲ' ଏହି ମହାଭ୍ରମ ବିଶ୍ୱାସକୁ ତ୍ୟାଗ କରୁନାହାନ୍ତି ! ବରଂ ଭ୍ରମବିଶ୍ୱାସର ଦୃଢ଼ୀକରଣ ନିମନ୍ତେ ସେମାନେ ସତତ ଯତ୍ନବାନ୍।

ଉଲ୍‌କା ଇନ୍ଦ୍ରଧନୁ ଇତ୍ୟାଦି- ମନୁଷ୍ୟ ଭାବିନିଏ, ଜଗତରେ ଯେତେ ସୁନ୍ଦର ବସ୍ତୁର ସୃଷ୍ଟି, ତାହା କେବଳ ମାନବର ନେତ୍ର ପ୍ରୀତି ନିମନ୍ତେ। ଚନ୍ଦ୍ର ସୂର୍ଯ୍ୟ ଗ୍ରହ ନକ୍ଷତ୍ର ସବୁ ମାନବ ନିମନ୍ତେ ଈଶ୍ୱର ସୃଷ୍ଟି କରିଅଛନ୍ତି। ମାତ୍ର ଏହି ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ନିମନ୍ତେ କେଉଁ ମହାତ୍ମାମାନେ ଶାରଦୀୟ ଅମାନିଶାରେ ନୀଳ ନଭ ଫଳକରେ ଲିଖିତ ଉଜ୍ଜ୍ୱଳ ସ୍ୱର୍ଣ୍ଣାକ୍ଷରଗୁଡ଼ିକୁ ଅଧ୍ୟୟନ କରିବା ନିମନ୍ତେ ଜାଗ୍ରତ ହୋଇ ରହନ୍ତି, ତାହା ଆମ୍ଭମାନଙ୍କୁ ଜଣା ନାହିଁ। ସନ୍ଧ୍ୟା ମୁଖରେ ହଠାତ୍ ଗୋଟିଏ ଗ୍ରହ ବା ନକ୍ଷତ୍ର ଦୃଷ୍ଟିପଥାରୂଢ଼ ହେଲେ ସାତ ଜଣ ବ୍ରାହ୍ମଣଙ୍କ ନାମ ଉଚ୍ଚାରଣ କରିବା ନିମନ୍ତେ ବ୍ୟାକୁଳ ହୁଅନ୍ତି। ଶୀତକାଳରେ କେବେ ଶୁକ୍ର ଗ୍ରହଟି ଦିବସରେ ଦେଖାଗଲେ ଦିବସରେ ନକ୍ଷତ୍ର ଦର୍ଶନ ଅମଙ୍ଗଳର ଲକ୍ଷଣ ବୋଲି ଅସ୍ତବ୍ୟସ୍ତ ହୋଇପଡ଼ନ୍ତି। ପ୍ରତି ରାତ୍ରରେ ଅନେକ ଉଲ୍‌କାପାତ ହେଉଅଛି। ଅକସ୍ମାତ୍ ଗୋଟିଏ ଉଲ୍‌କା କାହାରି ଚକ୍ଷୁରେ ବିଷୟୀଭୂତ ହେଲେ 'ରାମ ରାମ' ଶବ୍ଦ ମୁଖରୁ ଉଚ୍ଚାରିତ ହୁଏ। ଧୂମକେତୁ କି ଅଦ୍ଭୁତ ଦର୍ଶନୀୟ ବସ୍ତୁ, ଜୀବନରେ କେତୋଟା ଦେଖିବାକୁ ମିଳେ ? ସୌଭାଗ୍ୟକ୍ରମେ ଗୋଟାଏ ଦେଖାଦେଲେ ତାକୁ ପର୍ଯ୍ୟବେକ୍ଷଣ କରିବାର ତେଣେ ଥାଉ 'ଏ ଅମଙ୍ଗଳପସରା କାହୁଁ ଆସିଲା' ବୋଲି ଶତସହସ୍ର ଗାଳି ବର୍ଷଣ କରା ହୁଏ। କେଉଁ ରାଜ୍ୟର କେଉଁ ରାଜାର ଅମଙ୍ଗଳ ହେବ, ତହିଁର ଗୋଟାଏ ବୃହତ୍ ଆଲୋଚନା ହୁଏ। ଚନ୍ଦ୍ର ଓ ସୂର୍ଯ୍ୟ ଗ୍ରହଣ ସମ୍ବନ୍ଧରେ ଦେଶରେ କି ପ୍ରକାର ଭ୍ରମବିଶ୍ୱାସ ଓ କୁସଂସ୍କାର ବର୍ତ୍ତମାନ ଅଛି, ତାହା ବିସ୍ତୃତ ଭାବରେ ବର୍ଣ୍ଣନା କରିବା ଅନାବଶ୍ୟକ। ସିଦ୍ଧାନ୍ତ ପୁସ୍ତକ ସ୍ପଷ୍ଟାକ୍ଷରରେ ଲେଖିଲେ-

''ନଭେନ୍ଦୁନାଚ୍ଛାର୍ଦିତମର୍କବିମ୍ବଂ
ସଂଦୃଶ୍ୟତେ ଗ୍ରସ୍ତମିମାତ୍ର ଲୋକେ।''

ଏପରି ପ୍ରମାଣ ବାକ୍ୟ ଥିଲେ ସୁଦ୍ଧା ଦୟାର୍ଦ୍ରହୃଦୟ କୌଣସି ପଣ୍ଡିତ ଗୋସାଇଁ ଦୁଷ୍ଟଗ୍ରହ କବଳିତ କଳୁଷଧ୍ୱଂସକାରୀ ରବିଙ୍କର ଦୁର୍ଦ୍ଦଶା ଦେଖି ସହାନୁଭୂତିପୂର୍ଣ୍ଣ ବାକ୍ୟରେ ଗାଇଲେ– 'ଆହା ! କପାଳ ଲିଖନ କିଏ ଖଣ୍ଡନ କରିବ ?' ସେହି ହେତୁରୁ ରବିଙ୍କର କପାଳଲିଖିତ ଦୁର୍ଦ୍ଦଶା ମୋଚନ ନିମନ୍ତେ ଆମ୍ଭ ଦେଶରେ ଏତେ ସ୍ନାନ ଦାନର ବ୍ୟବସ୍ଥା।

ଇନ୍ଦ୍ରଧନୁ କି ରମଣୀୟ ନେତ୍ରାହ୍ଲାଦକ ବସ୍ତୁ ? ତାକୁ ପୁଣି ଅନ୍ୟକୁ ଦେଖାଇ ଦେବାଟା ଦୋଷାବହ। ଏହିପରି ଭ୍ରମ ବିଶ୍ୱାସ ଅସଂଖ୍ୟ। ଯେଉଁମାନେ ସମାଜଗତ, ଜାତିଗତ ଭ୍ରମ ବିଶ୍ୱାସ ସମୂହର ଉନ୍ମୂଳନ ନିମନ୍ତେ ଯଥାସାଧ ଯତ୍ନବାନ୍। ସେମାନେ ଦେଶର ଓ ସମାଜର ପ୍ରକୃତ ବନ୍ଧୁ ବୋଲି ଆମ୍ଭମାନଙ୍କର ବିଶ୍ୱାସ।

•

## ମେଘଦୂତ

କବି ଲେଖିଅଛନ୍ତି—'କାମାର୍ତ୍ତାହି ପ୍ରକୃତି- କୃପଣାଶ୍ଚେତନାଚେତନେଷୁ' । କାମାର୍ତ୍ତ ବ୍ୟକ୍ତିର ଚେତନ ଅଚେତନ ଜ୍ଞାନ ଥାଉ ବା ନ ଥାଉ, ଆଦି ଓ କରୁଣ ରସରେ ଅନୁପ୍ରାଣୀତ କବିମାନଙ୍କଠାରେ ଅଚେତନ ବୋଲି କୌଣସି ବସ୍ତୁ ନାହିଁ । ଆଶାୟୀ ବ୍ୟକ୍ତି ଆପଣା ବାଞ୍ଛା ପୂରଣ କାମନାରେ ଯାହାକୁ ତାହାକୁ ପ୍ରାର୍ଥନା କରେ, ଏହା ମଧ ସତ୍ୟ । ନିଦାଘ କାଳ ଆସି ଶେଷ ହେବାକୁ ବସିଲା । ଅର୍ଦ୍ଧ ବର୍ଷ ଅତୀତ ହେଲା— ଆମ୍ଭେମାନେ ନୂତନ ମେଘର ଦେଖା ପାଇ ନାହୁଁ । ଆମ୍ଭେମାନେ ଗିରିବର୍ତ୍ତ-ଉପତ୍ୟକାବାସୀ, ଦାବହହନଦାହ ଆମ୍ଭମାନଙ୍କୁ ବ୍ୟତିବ୍ୟସ୍ତ କଲାଣି। ଆମ୍ଭେମାନେ ପୁଣି କୃଷକ, ଯେଉଁ 'ସଦ୍ୟସୀରୋତ୍କର୍ଷଣ ସୁରଭି' ଅତ୍ୟୁତ୍କୃଷ୍ଟ ଏସେନ୍‌ସ ଓ

ଅତର ଅପେକ୍ଷା ଆମ୍ଭମାନଙ୍କୁ ଆମୋଦଜନକ ବୋଲି ବୋଧ ହୁଏ, ତାହା ଆମ୍ଭମାନଙ୍କ ନାସିକାକୁ ଅଦ୍ୟାପି ଆମୋଦିତ କଲା ନାହିଁ । ତାପମାନ ଓ ଚାପମାନ ଯନ୍ତ୍ର ନିରୀକ୍ଷଣ କରି କରି କେବେ ନୂତନ ମେଘର ସୂଚନା ପାଇବୁଁ ? ଧୈର୍ଯ୍ୟ ଧରି ହେଉ ନାହିଁ । ଉଚ୍ଚ ପର୍ବତଚୂଡ଼ା ଉପରେ କେଉଁ ଦିନରେ କେଉଁ ଶୁଭ ମୁହୂର୍ତ୍ତରେ ବପ୍ରକ୍ରୀଡ଼ାସକ୍ତ ଗଜତୁଲ୍ୟ କୃଷ୍ଣ ମେଘଖଣ୍ଡକୁ ଦେଖି ଶାନ୍ତିଲାଭ କରିବୁଁ ? କେଉଁଦିନ ସହସ୍ର-ଧାରା-ବର୍ଷୀ ନୂତନ ମେଘ ଦାବାଗ୍ନି ତାପ ଓ ତପନ ତାପରୁ ଆମ୍ଭମାନଙ୍କୁ ରକ୍ଷାକରିବ ? ଆମ୍ଭେମାନେ ଏବର୍ଷ ମେଘାତୁର । ମେଘକୁ ପ୍ରତ୍ୟହ ଅଭ୍ୟର୍ଥନା କରୁଁ କରୁଁ ପ୍ରସଙ୍ଗକ୍ରମେ ମେଘଦୂତର ଆବୃତ୍ତି ଓ ଆଲୋଚନା କରିବାକୁ ପ୍ରବୃତ୍ତି ବଳିଅଛି ।

କାଳିଦାସ ପ୍ରାକୃତିକ ଚିତ୍ର ଅଙ୍କନରେ ସିଦ୍ଧହସ୍ତ, ଏହା ବୋଲିବା ବାହୁଲ୍ୟ ମାତ୍ର । ଭାରତୀୟ ଅଧିକାଂଶ କବି କାବ୍ୟ ଲେଖୁ ଲେଖୁ ପ୍ରସଙ୍ଗକ୍ରମେ ଦୃଶ୍ୟ ଖଣ୍ଡେ ଦୁଇ ଖଣ୍ଡ ଚିତ୍ର କରିବାକୁ ତୂଳିକା ଧାରଣ କରନ୍ତି । ମାତ୍ର କାଳିଦାସ ପ୍ରାକୃତିକ ଚିତ୍ର ଅଙ୍କନ କରିବା ନିମନ୍ତେ ଓ ଦେଶପର୍ଯ୍ୟଟନଜନ୍ୟ ବହୁଦର୍ଶିତାକୁ ଫଳାଇବା ନିମନ୍ତେ କାବ୍ୟର ବିଷୟ ବାଛି ନେଇଥିଲେ । କାଳିଦାସ ହୃଦୟଗ୍ରାହୀ ସ୍ୱଭାବସୁନ୍ଦର ଉଜ୍ଜ୍ୱଳ ଓ କୋମଳ ଚିତ୍ର ଅଙ୍କନରେ ସୁଦକ୍ଷ ଏବଂ ଲୋକପ୍ରିୟ, ମନୋରଞ୍ଜନ ଓ ନବ ନବ ଉଦ୍ଭାବିତ କଳ୍ପନା ପ୍ରୟୋଗରେ ନିପୁଣ ଥିବା ସର୍ବବାଦିସମ୍ମତ । ମେଘଦୂତ ଏହି ସିଦ୍ଧାନ୍ତର ଅତୁଳନୀୟ କାରିଗରୀ । ଏପରି କାବ୍ୟ ପୃଥିବୀରେ କମ୍ ଅଛି ।

ଯକ୍ଷର ବିରହ ଯେ କେବଳ ଏକମାତ୍ର ବର୍ଣ୍ଣନୀୟ ବିଷୟ, ତାହା ନୁହେଁ । ମଧ୍ୟପ୍ରଦେଶ, ରାଜପୁତାନା, ବ୍ରହ୍ମାବର୍ତ୍ତ ଓ ହିମାଳୟ ପ୍ରଦେଶର ଦୃଶ୍ୟ, ମେଘର ପଛାରେ ଥିବା ପ୍ରଧାନ ପ୍ରଧାନ ଦେବପୀଠମାନ କାବ୍ୟର ପ୍ରଧାନ ବର୍ଣ୍ଣନୀୟ ବିଷୟ । ଏହାଛଡ଼ା ମୌସୁମୀ ମେଘ କେବେ ଆସେ, ମୌସୁମୀ ମେଘ ଆସିବା ପୂର୍ବରୁ ଏ ଦେଶର ଅବସ୍ଥା କିପରି ଥାଏ, ମେଘର ଆଗମନରେ କି ଶୋଭାସମ୍ପଦର ଆବିର୍ଭାବ ହୁଏ ଏବଂ ଦୃଶ୍ୟର ପଟପରିବର୍ତ୍ତନ ସଙ୍ଗେ ସଙ୍ଗେ ଜୀବଜନ୍ତୁଗଣଙ୍କର, ଏମନ୍ତ କି, ମନୁଷ୍ୟମାନଙ୍କର କି ଶାରୀରିକ ଓ ମାନସିକ ପରିବର୍ତ୍ତନ ଘଟେ, ଏହା ବୁଝାଇବା କବିଙ୍କର ପ୍ରଧାନ ଲକ୍ଷ୍ୟ । ଯକ୍ଷ, ଶାପ, ବିରହ ଇତ୍ୟାଦି ଉପଲକ୍ଷ୍ୟ ମାତ୍ର ।

ଯକ୍ଷ କେଉଁ ମେଘକୁ ଦୂତରୂପେ ବରଣ କଲା ? ଆଷାଢ଼ ମାସର ମେଘ, ନା ଶ୍ରାବଣ ମାସର ମେଘ କିମ୍ବା ଶ୍ରାବଣ ନିକଟବର୍ତ୍ତୀ କୌଣସି ଦିନର ମେଘ ? ଏ ଘେନି ଟୀକାକାରମାନଙ୍କ ମଧ୍ୟରେ ଅନେକ ମତଭେଦ ଉପସ୍ଥିତ ହୋଇଅଛି । ଏଥିମଧ୍ୟରୁ କୌଣସି ମତର ଖଣ୍ଡନ ବା ସମର୍ଥନ କରିବାଭଳି ପାଣ୍ଡିତ୍ୟ ଆମ୍ଭମାନଙ୍କର ନାହିଁ । ତେବେ ଏକଥା କହିପାରୁଁ ଯେ ଦ୍ୱିତୀୟ ଶ୍ଳୋକରେ ଆଷାଢ଼ର ପ୍ରଥମ ଦିବସରେ ଉତ୍‌ଖାତ କ୍ରୀଡ଼ାସକ୍ତ ଗଜତୁଲ୍ୟ ମେଘକୁ ଦେଖିଲା ବୋଲି ଯେଉଁ କବି ଲେଖିଗଲେ, ସେ ପୁଣି ଚତୁର୍ଥ ଶ୍ଳୋକରେ ଶ୍ରାବଣ ନିକଟବର୍ତ୍ତୀ ହେବାରୁ ପ୍ରିୟାଠାକୁ ସନ୍ଦେଶ ପଠାଇବାକୁ ଇଚ୍ଛା କଲା ବୋଲି ଲେଖିନାହାନ୍ତି । ଉତ୍ତର ମେଘର ୪୯ ଶ୍ଳୋକ ପ୍ରତି ଲକ୍ଷ୍ୟ ନ ରଖି ପୂର୍ବମେଘର ୨, ୩ ଓ ୪ ଶ୍ଳୋକର ଅର୍ଥ ନିମ୍ନୋକ୍ତ ପ୍ରକାରେ କଲେ କିଛି ଅସଙ୍ଗତ ହେବ କି ? ଏବଂ ପଣ୍ଡିତଗଣ 'ପ୍ରତ୍ୟାସନ୍ନେ ନଭସି' ମଧ୍ୟରେ କୌଣସି ପ୍ରକାରେ ମେଘରାଶିକୁ ଅଧ୍ୟାହାର କରି ଅର୍ଥସଙ୍ଗତ କରି ଦେଇପାରିବେ ନାହିଁ କି ? ଆଷାଢ଼ ମାସର ପ୍ରଥମ ଦିବସରେ ପର୍ବତଶୃଙ୍ଗରେ ଉତ୍‌ଖାତ କ୍ରୀଡ଼ାସକ୍ତ ଗଜତୁଲ୍ୟ ନୂତନ ମେଘକୁ ସଂଦର୍ଶନ କରି ବିରହୀ ଯକ୍ଷ ଚିନ୍ତାମଗ୍ନ ହେଲା ଏବଂ କ୍ରମେ ମେଘ ଆକାଶ ନିକଟବର୍ତ୍ତୀ ହେବାରୁ ବିରହବିଧୁରା କୈଳାସବାସିନୀ ସୀମନ୍ତିନୀ ନିକଟକୁ କୁଶଳ ସମ୍ବାଦ ପଠାଇବା ପ୍ରବୃତ୍ତି ବଳବତୀ ହେବାରୁ କୁଟଜକୁସୁମଦ୍ୱାରା ଅର୍ଘ୍ୟ ସମ୍ପାଦନ କଲା ।

ହରିଙ୍କର ଶୟନ ଉତ୍‌ଥାନ ଏକାଦଶୀ ନେଇ ସରଳବିଶ୍ୱାସୀ ପାଠକମାନଙ୍କୁ ଟୀକାକାରଗଣ ଏତେ ବ୍ୟତିବ୍ୟସ୍ତ କରିବା ଭଲ କି ?

ଆଷାଢ଼ ପ୍ରଥମ ଦିବସ ଅର୍ଥ ଯେ ଠିକ୍ ଆଷାଢ଼ କୃଷ୍ଣ ପ୍ରତିପଦ, ଏହା ବୋଧହୁଏ କବିଙ୍କର ଲକ୍ଷ୍ୟ ନୁହେଁ; କିମ୍ବା ଆମ୍ଭେମାନେ ଯେ ଆଷାଢ଼ ପ୍ରତିପଦକୁ କବିଙ୍କର ଲକ୍ଷ୍ୟ ବୋଲି କହୁଅଛୁଁ ଏମନ୍ତ ନୁହେଁ । ମୌସୁମୀବାୟୁ ବିତାଡ଼ିତ ପ୍ରଥମ ମେଘହିଁ କବିଙ୍କର ବର୍ଣ୍ଣନୀୟ ମେଘ । ଆଉ ମୌସୁମୀ ମେଘ ଆଷାଢ଼ ମାସର ପ୍ରଥମ ଅଂଶରେ କିମ୍ବା ଜ୍ୟେଷ୍ଠ ମାସର ଶେଷ ଅଂଶରେ ଦେଖାଦିଏ, ଏଥିରେ କୌଣସି ସନ୍ଦେହ ନାହିଁ । ନିମ୍ନୋକ୍ତ କେତେଗୋଟି ବର୍ଣ୍ଣନା ପାଠ କଲେ ସ୍ପଷ୍ଟ ଜଣାପଡ଼ିବ ଯେ, ନିଦାଘ ଋତୁ ଥାଉଁ ଥାଉଁ ଯେଉଁ ମେଘ ସହସା ଦେଖାଦେଲା ସେହି ମେଘହିଁ ଯକ୍ଷର ଦୂତ ।

ନୂତନ ମେଘ (ମୌସୁମୀ ମେଘ) ପର୍ବତ ଶୃଙ୍ଗରେ ବପ୍ରକ୍ରୀଡ଼ାରତ ଗଜତୁଲ୍ୟ ଦେଖାଯାଏ । ପାର୍ବତ୍ୟ ପ୍ରଦେଶବାସୀ ପ୍ରତ୍ୟେକ ବ୍ୟକ୍ତି ଏଥିର ସାକ୍ଷ୍ୟ ପ୍ରଦାନ କରିବେ । ଧାରାଶ୍ରାବଣର ମେଘ ଏପରି କେବେ ହେଁ ଦେଖାଯାଏ ନାହିଁ । ଶ୍ରାବଣରେ କୁଟଜପୁଷ୍ପ ପ୍ରସ୍ଫୁଟିତ ହେଲେ ମଧ୍ୟ ମେଘର ପ୍ରଥମାବସ୍ଥା ଏହାର ମୁକୁଳୋଦ୍‌ଗମ ହେବାର ସମୟ ।

ବାତ୍ୟାବିତାଡ଼ିତ ନୂତନ ମେଘ ଅତି ଦ୍ରୁତ ବେଗରେ ଗମନ କରେ ଏବଂ ଦୂତ ହେବାର ଉପଯୁକ୍ତ; ଶ୍ରାବଣ ମାସର ସମାଚ୍ଛନ୍ନ ମେଘ ତାଦୃଶ ଭାବୋତ୍ପାଦକ ନୁହେଁ ।

ନୂତନ ମେଘ ହିଁ ବିଦ୍ୟୁତ୍‌ବନ୍ତ ଏବଂ ଇନ୍ଦ୍ରଚାପ-ଶୋଭୀ ଅଟେ ।

ବଳାକାପଙ୍‌କ୍ତି ନୂତନ ମେଘ ବକ୍ଷରେ ଶୁକ୍ଳ ପୁଷ୍ପମାଲ୍ୟ ତୁଲ୍ୟ ଶୋଭାପାଆନ୍ତି । ପ୍ରଥମ ମେଘାଗମରେ ସେମାନଙ୍କର ଗର୍ଭାଧାନ ହୁଏ । ଶ୍ରାବଣ ମାସରେ ବକମାନେ ଶାବକ ପାଳନ କରିବାରେ ବ୍ୟସ୍ତ ଥାନ୍ତି । କ୍ରୀଡ଼ାରତ ହେବାକୁ ସେମାନଙ୍କର ଅବସର କାହିଁ ?

ହଂସମାନେ ବର୍ଷାଗମନରେ ମାନସରୋବରକୁ ଯିବାର କବି ପ୍ରସିଦ୍ଧି ଅଛି । ଆବିଳ ଜଳପାନ କରି ରୋଗ ସଙ୍କ୍ରମଣ ହେଲାରୁ ମାନସରୋବରକୁ ଯିବେ କାହିଁକି ? ଏହା ସତ୍ୟ କି ମିଥ୍ୟା ତାହା କବିମାନଙ୍କୁ ଗୋଚର, ମତ ଦେବାର ଆମ୍ଭର ଅଧିକାର ନାହିଁ । ହଂସମାନେ ମେଘର ସହଯାତ୍ରୀ ହେବେ ବୋଲି ଲେଖାଥିବାରୁ ପ୍ରଥମ ମେଘର ସୂଚନା ମିଳୁଅଛି ।

ମୟୂରଗଣ ନୂତନ ମେଘ ଦେଖି ଉତ୍‌ଫୁଲ୍ଲ ମାନସରେ ନୃତ୍ୟ କରନ୍ତି ଏବଂ ବର୍ଷା ପୂର୍ବରୁ ବା ପ୍ରଥମ ବର୍ଷାରେ ସେମାନଙ୍କର ଦୀର୍ଘ ପୁଚ୍ଛଭାର ତ୍ୟାଗ କରନ୍ତି (Moulting Season) ।ଏହା ସ୍ୱାଭାବିକ।

ଉତପ୍ତ ଭୂମିରେ ଜଳ ପଡ଼ିଲେ ଗନ୍ଧ ନିର୍ଗତ ହୁଏ । ଆର୍ଦ୍ର ଭୂମିରେ ଯେତେ ଜଳବୃଷ୍ଟି ହେଲେ ମଧ ଗନ୍ଧ ନିର୍ଗତ ହୁଏ କି ? ମେଘାତୁର କୃଷକମାନଙ୍କୁ 'ସଦ୍ୟ ସୀରୋତ୍କର୍ଷଣ ସୁରଭି' ଦ୍ୱାରା ପ୍ରଥମ ମେଘ କେବଳ ଆହ୍ଲାଦିତ କରେ ।

ପକ୍ୱ ଆମ୍ର ପରିପୂର୍ଣ୍ଣତା ହେତୁ ହରିଦ୍ରାବର୍ଣ୍ଣ ଆମ୍ରକୂଟ ପର୍ବତର ସାନୁଦେଶରେ ସ୍ନିଗ୍ଧ କୁନ୍ତଳକଳାପ ତୁଲ୍ୟ କୃଷ୍ଣମେଘ ଉପବେଶନ କଲେ ତାହା ପୃଥିବୀର ସ୍ତନପରି ଶୋଭା ପାଇବ ବୋଲି ଲେଖାଅଛି । ଜ୍ୟେଷ୍ଠ ଶେଷ ବା ଆଷାଢ଼ ପ୍ରଥମାଂଶରେ କେବଳ ଇଦୃଶ ରସାଳ ଶୋଭା ସମ୍ଭବ । କଦମ୍ବ ପୁଷ୍ପ ମୌସୁମୀବାୟୁ ପ୍ରବାହିତ ହେବା ସଙ୍ଗେ ସଙ୍ଗେ ପ୍ରସ୍ଫୁଟିତ ହୁଏ । ଜାମ୍ବୁଫଳ ବର୍ଷା ସମୟରେ ପକ୍ୱ ହୁଏ। କାକମାନେ ବର୍ଷାରମ୍ଭରେ ନୀଡ଼ ନିର୍ମାଣ କରନ୍ତି ।

ବର୍ଷା ପ୍ରାରମ୍ଭରେ କେବଳ ନଦୀମାନେ କ୍ଷୀଣସ୍ରୋତା ହୋଇଥାନ୍ତି ।

ବାଳ ଭାରାକ୍ରାନ୍ତ ଚମରୀମାନଙ୍କୁ ବନାଗ୍ନି କଷ୍ଟ ଦେଲେ ତାହା ବାରିଧାରା ଦ୍ୱାରା ନିର୍ବାପିତ କରିବାକୁ ଯକ୍ଷ ଅନୁରୋଧ କରିଅଛି । ଦାବାଗ୍ନି କେବଳ ଗ୍ରୀଷ୍ମକାଳରେ ସମ୍ଭବ, ଶ୍ରାବଣ ମାସରେ ବା ଦୁଇ ଚାରି ଥର ବର୍ଷା ହେଲା ପରେ ଯେଉଁ କାରଣରୁ ହେଉ, ବନଦାହ ହୁଏ କି ?

ଉପରୋକ୍ତ ବର୍ଣ୍ଣନାଗୁଡ଼ିକ ପାଠ କଲେ ଜ୍ୟେଷ୍ଠ ମାସର ଶେଷାଂଶ ବା ଆଷାଢ଼ର ପ୍ରଥମାଂଶରେ କୌଣସି ଏକ ଦିନରେ ପ୍ରବଳ ବାୟୁଦ୍ୱାରା ନୀୟମାନ ମେଘ ଖଣ୍ଡକୁ ଯକ୍ଷ ଦୂତରୂପେ ବରଣ କରିଥିବାର ହୃଦ୍‌ବୋଧ ହେଉ ନାହିଁ କି ?

ଏଥିଉତ୍ତାରୁ ଜନକତନୟା ସ୍ନାନପୂତ ବାରିସ୍ରାବୀସ୍ନିଗ୍ଧ ଛାୟାତରୁ ବିମଣ୍ଡିତ ରାମଗିରି କେଉଁଠାରେ, ଯେଉଁସ୍ଥାନରେ ଭର୍ତ୍ତୃଶାପପ୍ରାପ୍ତ ଯକ୍ଷ କେତେକମାସ ଅତିବାହିତ କରି ନୂତନ ମେଘକୁ ଦୂତରୂପେ ବରଣ କଲା ?

ଏ ସମସ୍ୟା ମଧ ସମାଲୋଚକ ଓ ଟୀକାକାରମାନଙ୍କୁ କମ୍ ବ୍ୟତିବ୍ୟସ୍ତ କରି ନାହିଁ। ମଲ୍ଲୀନାଥ ଚିତ୍ରକୂଟକୁ ରାମଗିରି ଆଖ୍ୟା ଦେଇଅଛନ୍ତି। ମଲ୍ଲୀନାଥଙ୍କ ପରବର୍ତ୍ତୀ ଟୀକାକାରମାନେ, ଏମନ୍ତ କି ଆଧୁନିକ କେତେକ ଟୀକାକାର ଓ ସମାଲୋଚକ ଚିତ୍ରକୂଟକୁ ରାମଗିରି ବୋଲିବାକୁ ଛାଡୁ ନାହାନ୍ତି ।

ଚିତ୍ରକୂଟ ବୁନ୍ଦେଲଖଣ୍ଡରେ ଅବସ୍ଥିତ (ପ୍ରାୟ ୮୦°– ୩୦'' ଦ୍ରାଘିମା ଓ ୨୫° ନିରକ୍ଷାନ୍ତର) ଏବଂ ବିଦିଶା ଆଧୁନିକ ଭିଲସାଠାରୁ ପୂର୍ବ ଦକ୍ଷିଣ ଆନୁମାନିକ ୨୦୦° ମାଇଲ ଦୂରବର୍ତ୍ତୀ ଅଟେ । ଚିତ୍ରକୂଟ ଯକ୍ଷର ନିର୍ଜନ ନିବାସ ହୋଇଥିଲେ ସେ ମେଘକୁ ସରଳ ପନ୍ଥା ନ ଦେଖାଇ ଦକ୍ଷିଣ ପଶ୍ଚିମ ବିଦିଶାବାଟ ଦେଖାଇ ଦିଅନ୍ତା କାହିଁକି ? ବିଦିଶା ତ ଚିତ୍ରକୂଟଠାରୁ କୈଳାସ ଯିବାର ପଥରେ ନାହିଁ । ବିଦିଶାଠାରୁ ମେଘ ଉତ୍ତର ଦିଗକୁ ଯିବାର କଥା, ମାତ୍ର ଉଜ୍ଜୟିନୀ ତୁଲ୍ୟ ସମୃଦ୍ଧିଶାଳୀ ନଗରୀର ବର୍ଣ୍ଣନା କାବ୍ୟାନ୍ତର୍ଭୁକ୍ତ କରିବା କବିଙ୍କର ବାସନା—ଏଣୁ ମେଘକୁ ଉଜ୍ଜୟିନୀ ବାଟ ଦେଖାଇଦେଲେ । ମାତ୍ର ସମାଲୋଚକମାନଙ୍କୁ ଭୟ କରି ଆଗରୁ ଗୋଟିଏ କୈଫିୟତ୍ ଦେଇ ରଖିଲେ । ଚିତ୍ରକୂଟଠାରୁ କାବ୍ୟାରମ୍ଭ କରିଥିଲେ ଏହି ଅତ୍ୟଦ୍ଭୁତ ବକ୍ର ପନ୍ଥାର ଆବଶ୍ୟକତା ନିବନ୍ଧନ ଗୋଟିଏ ଅଧେ ଶ୍ଳୋକ ଲେଖି ଯାଇଥାନ୍ତେ । ଚିତ୍ରକୂଟ ଓ ବିଦିଶା ବିନ୍ଧ୍ୟ ପର୍ବତର ଉତ୍ତର ଦିଗରେ । ଚିତ୍ରକୂଟଠାରୁ ବିଦିଶାକୁ ଯିବାକୁ ହେଲେ ବିନ୍ଧ୍ୟପାଦ ପର୍ବତ ଓ ବିନ୍ଧ୍ୟ ପର୍ବତ ଏବଂ ରେବାନଦୀ ଅତିକ୍ରମ କରିବାକୁ ହେବ ନାହିଁ ।

ଉପରୋକ୍ତ କାରଣରୁ ଚିତ୍ରକୂଟ ଯେ ରାମଗିରି ନୁହେଁ, ଏହା ଅନାୟାସରେ ପ୍ରତିପନ୍ନ ହେଉଅଛି ।

ସୁରଗୁଜା ରାଜ୍ୟସ୍ଥ ରାମଗଡ଼କୁ କେହି କେହି ରାମଗିରି ଏବଂ ଯକ୍ଷର କାରାଗାର ବୋଲି ଅନୁମାନ କରନ୍ତି । ଏ କଳ୍ପନା ତତୋଽଧିକ ଭ୍ରାନ୍ତିମୂଳକ; ଯେହେତୁ ଏହା ବିଦିଶାଠାରୁ ବହୁଦୂର ପୂର୍ବବର୍ତ୍ତୀ ଅଟେ । ଏ ପ୍ରସ୍ତାବ ଏକାବେଳକେ ଅସଙ୍ଗତ ଓ ତ୍ୟାଜ୍ୟ ।

ପ୍ରସ୍ରବଣ ଶୈଳରେ ରାମ ବହୁଦିନ ବାସ କରିଥିଲେ । ତନ୍ନିକଟବର୍ତ୍ତୀ କୌଣସି ଶୈଳ ରାମଗିରି ବୋଲି ଅନେକଙ୍କର ଧାରଣା । ଏ ଧାରଣା ନିତାନ୍ତ ଅଯୌକ୍ତିକ ହୁଅନ୍ତା ନାହିଁ । କାରଣ ଏହି ସ୍ଥାନରୁ କୈଳାସର ପନ୍ଥା ବର୍ଣ୍ଣିତ ପନ୍ଥା ଅଟେ । ମାତ୍ର ଉଜ୍ଜୟିନୀ ପ୍ରସ୍ରବଣଗିରିର ଠିକ୍ ଉତ୍ତର ଦିଗରେ ବିଦ୍ୟମାନ ଥିବା ସ୍ଥଳେ ପ୍ରଥମେ ଉଜ୍ଜୟିନୀ ପ୍ରବେଶ କରିବାକୁ ନ ଲେଖି ବିଦିଶାକୁ ପ୍ରଥମେ ପ୍ରବେଶ କରିବାର ଉଲ୍ଲେଖ ଥିବାରୁ ପ୍ରସ୍ରବଣ ଶୈଳକୁ ରାମଗିରି ଭାବିବା ପ୍ରସ୍ତାବ ଚୂର୍ଣ୍ଣୀଭୂତ ହେଉଅଛି ।

ରାମଗିରିକୁ ଅନ୍ୟତ୍ର ଅନ୍ୱେଷଣ କରିବାକୁ ହେବ । ବର୍ଣ୍ଣନାଚାତୁରୀ ପ୍ରତି ସ୍ଥିର ଲକ୍ଷ୍ୟ କଲେ ରାମଗିରି ବିଦିଶାର ଠିକ୍ ଦକ୍ଷିଣରେ ଅବସ୍ଥିତ ବୋଲି ବିଶ୍ୱାସ ହେବ । ଦଶାର୍ଣ୍ଣା ଆଧୁନିକ ଭୋପାଳ ରାଜ୍ୟର ଦକ୍ଷିଣରେ ମଧ୍ୟପ୍ରଦେଶ ବିଦ୍ୟମାନ ଅଛି । ସୁତରାଂ ମଧ୍ୟପ୍ରଦେଶର ଏକ ସ୍ଥାନରେ ରାମଗିରି ଅବସ୍ଥିତ, ଏହା ନିଶ୍ଚୟ ଭାବି ନେବାକୁ ହେବ । ମଧ୍ୟପ୍ରଦେଶର ରାଜଧାନୀ ନାଗପୁରର ଉତ୍ତରପୂର୍ବ ଦ୍ୱାଦଶ କ୍ରୋଶ ଦୂରବର୍ତ୍ତୀ 'ରାମଟେକ' ସ୍ଥାନକୁ ପୁରାତତ୍ତ୍ୱ ଗବେଷଣାକାରୀଗଣ ରାମଗିରି ବୋଲି ସ୍ଥିର କରିଅଛନ୍ତି।

ରାମାୟଣରେ ରାମଗିରିର ନାମ ନାହିଁ। ରାମ ଚିତ୍ରକୂଟ ଠାରୁ ଦକ୍ଷିଣ ଦିଗସ୍ଥ ଅତ୍ରି ଆଶ୍ରମକୁ ଗମନ କଲେ । ସେଠାରୁ ଅଗସ୍ତ୍ୟାଶ୍ରମ ଦଣ୍ଡକାରଣ୍ୟକୁ ଗଲେ । ରଘୁବଂଶରେ ମଧ୍ୟ ଠିକ୍ ଦକ୍ଷିଣ ଦିଗକୁ ରାମ ଗମନ କଲେ ବୋଲି ଲେଖାଅଛି । ଚିତ୍ରକୂଟଠାରୁ ଦକ୍ଷିଣକୁ ବିନ୍ଧ୍ୟଗିରି ଅତିକ୍ରମ କରି ଗଲେ ସୁରମ୍ୟବନାନୀ ପରିପୂର୍ଣ୍ଣ ମହାଦେବ ପର୍ବତ ଶ୍ରେଣୀରେ ଉପନୀତ ହେବାକୁ ହେବ । ସମସ୍ତ ବିଷୟ ଆଲୋଚନା କଲେ ମହାଭାରତ ପର୍ବତ ଶ୍ରେଣୀର ଦକ୍ଷିଣାଂଶସ୍ଥ 'ରାମଟେକ'କୁ ରାମଗିରି ବୋଲିବା ସର୍ବଥା ଯୁକ୍ତିସଙ୍ଗତ। ଆମ୍ଭେମାନେ ରାମଟେକକୁ ରାମଗିରି ଧରି ନେଇ ମେଘର ବାଟ ସ୍ଥିର କରିବୁଁ ।

ଆମ୍ରକୂଟ-ଅମରକଣ୍ଟକକୁ ଅନେକେ ଆମ୍ରକୂଟ ବୋଲି ଅନୁମାନ କରନ୍ତି। ମାତ୍ର ଅମରକଣ୍ଟକ ବିନ୍ଧ୍ୟର ପୂର୍ବାଂଶରେ ଥିବାରୁ ଏବଂ ରାମଗିରିଠାରୁ ବିଦିଶାକୁ ଆସିବା ପଥର ପୂର୍ବବର୍ତ୍ତୀ ହେବାରୁ ଅମରକଣ୍ଟକକୁ ଆମ୍ରକୂଟ ବୋଲିବା ଯୁକ୍ତିସଙ୍ଗତ ମନେ ହେଉ ନାହିଁ । ମହାଦେବ ପର୍ବତଶ୍ରେଣୀର କୌଣସି ଉନ୍ନତ ଶୃଙ୍ଗର ନାମ 'ଆମ୍ରକୂଟ'।'

ବିନ୍ଧ୍ୟପାଦ— ନର୍ମଦା ନଦୀର ଦକ୍ଷିଣକୁ ବିଦ୍ୟମାନ ଥିବା ପର୍ବତର ନାମ ବିନ୍ଧ୍ୟପାଦ । ବିନ୍ଧ୍ୟ ପର୍ବତର ନତାନତ ପାଦଦେଶ ବୋଲି ଟୀକାକାରଗଣ ଅର୍ଥ କରିଅଛନ୍ତି । ନର୍ମଦା ଓ ତାପ୍ତି ନଦୀର ମଧ୍ୟବର୍ତ୍ତୀ ପର୍ବତର ନାମ ବିନ୍ଧ୍ୟପାଦ ।

ନର୍ମଦା ନଦୀର ପ୍ରାଚୀନ ନାମ ରେବା ।

ଦଶାର୍ଣ୍ଣା—ମାଳବ ଦେଶର ପୂର୍ବବର୍ତ୍ତୀ ଦେଶର ନାମ ଦଶାର୍ଣ୍ଣା, ଆଧୁନିକ ନାମ ଭୋପାଳ ରାଜ୍ୟ । ଦଶାର୍ଣ୍ଣାର ରାଜଧାନୀର ନାମ ବିଦିଶା, ବର୍ତ୍ତମାନ ଭିଲସା । ଆଉ ବେତ୍ରବତୀ ନଦୀର ଆଧୁନିକ ନାମ ବେଟବା । ବିଦିଶା ବେତ୍ରବତୀର କୂଳରେ ଅବସ୍ଥିତ ।

ନିଚୈଃ—ବିଦିଶାର ନିକଟବର୍ତ୍ତୀ ସ୍ୱଳ୍ପୋଚ୍ଚ ଏକ ପର୍ବତର ନାମ ନିଚୈଃ ।

ନିର୍ବିନ୍ଧ୍ୟା—ନିର୍ଗତ ବିନ୍ଧ୍ୟାତ୍—ବିନ୍ଧ୍ୟ ପର୍ବତରୁ ନିର୍ଗତ ନଦୀର ନାମ । ବିଦିଶାଠାରୁ ଆନୁମାନିକ ୩୦ କ୍ରୋଶ ଦୂରବର୍ତ୍ତୀ ଉଜ୍ଜୟିନୀ ବାଟରେ ପ୍ରବାହିତ ନଦୀର ନାମ ନିର୍ବିନ୍ଧ୍ୟା—ଆଧୁନିକ ପାର୍ବତୀ ନଦୀ ।

ସିନ୍ଧୁ—ମାଳବା ପ୍ରଦେଶରେ ଅନେକ ଗୁଡ଼ିଏ ସିନ୍ଧୁ ନାମକ ନଦୀ ଅଛି । ମାତ୍ର କବିଙ୍କ ବର୍ଣ୍ଣିତ ସିନ୍ଧୁ ଆଧୁନିକ କଟ୍‌ଟିସିନ୍ଧୁ ବୋଲି ଅନୁମିତ ହୁଏ । କଟ୍‌ଟିସିନ୍ଧୁ ଉଜ୍ଜୟିନୀ ପଥରେ ନିର୍ବିନ୍ଧ୍ୟା ବା ପାର୍ବତୀ ନଦୀଠାରୁ ୫୦।୬୦ ମାଇଲ ଦୂରବର୍ତ୍ତୀ ଅଟେ ।

ଅବନ୍ତୀ—ଆଧୁନିକ ମାଳବା ଦେଶ— ଏହାର ରାଜଧାନୀ ଉଜ୍ଜୟିନୀ । କବି ଉଜ୍ଜୟିନୀ ଅଧିବାସୀ ହେତୁ ଏ ନଗରୀର ବିଭବ ବର୍ଣ୍ଣନା କରିବା ନିମନ୍ତେ ମେଘକୁ ବକ୍ରପନ୍ଥାରେ ଆଣିଅଛନ୍ତି ।

ଶିପ୍ରା— ଉଜ୍ଜୟିନୀର ପଶ୍ଚିମ ପାର୍ଶ୍ୱରେ ପ୍ରବାହିତ । ଶିପ୍ରା କୂଳରେ ମହାକାଳ ଶିବଙ୍କ ମନ୍ଦିର।

ଗମ୍ଭୀରା—ଉଜ୍ଜୟିନୀ ନିକଟବର୍ତ୍ତୀ କୌଣସି ନଦୀ— ଯାହାର ସ୍ୱଚ୍ଛ ଜଳ ନିମନ୍ତେ ଅବଶ୍ୟ ସୁପ୍ରସିଦ୍ଧି ଥିଲା ।

ଦେବଗିରି— ଆରାବଳୀ ପର୍ବତର ଏକ ଅଂଶର ନାମ ବୋଲି ଅନେକେ ଅନୁମାନ କରନ୍ତି । ଏହା ନିର୍ଦ୍ଦେଶ କରିବା ସୁକଠିନ, ତେବେ ଏହି ପର୍ବତ ଯେ ଉଜ୍ଜୟିନୀ ଓ ଦଶପୁର ମଧ୍ୟବର୍ତ୍ତୀ, ଏଥିରେ ସନ୍ଦେହ ନାହିଁ ।

ବ୍ରହ୍ମାବର୍ତ୍ତ—ସରସ୍ୱତୀ ଓ ଦୃଶଦ୍‌ବତୀ ମଧ୍ୟବର୍ତ୍ତୀ ଦେଶର ନାମ ବ୍ରହ୍ମାବର୍ତ୍ତ ।

କୁରୁକ୍ଷେତ୍ର—ବ୍ରହ୍ମାବର୍ତ୍ତର ସଂଲଗ୍ନ ପୂର୍ବବର୍ତ୍ତୀ ଦେଶର ନାମ କୁରୁଦେଶ । କୁରୁକ୍ଷେତ୍ର ବା ଧର୍ମକ୍ଷେତ୍ର ଏହାର ପ୍ରଧାନ ସ୍ଥାନ— ଆଧୁନିକ ନାମ ଥାନେଶ୍ୱର—ପ୍ରାଚୀନ ନାମ ସ୍ଥାଣୁତୀର୍ଥ ଥିଲା ।

କନଖଳ—ହରଦ୍ୱାରକୁ ହିଁ ପୂର୍ବେ କନଖଳ ବୋଲି ପରିଚିତ କରୁଥିବାର ଅନୁମାନ ହୁଏ । ବର୍ତ୍ତମାନ ହରଦ୍ୱାରର ନିକଟବର୍ତ୍ତୀ ଏକ ସ୍ଥାନର ନାମ କନଖଳ ।

ପ୍ରାଲେୟାଦ୍ରି—ହିମାଳୟର ଏକାଂଶର ନାମ ପ୍ରାଲେୟାଦ୍ରି । ସମ୍ଭବତଃ ନନ୍ଦଦେବୀ ଓ ତାହାର ଦକ୍ଷିଣାଂଶର ନାମ ପ୍ରାଲେୟାଦ୍ରି ।

କ୍ରୌଞ୍ଚରନ୍ଧ୍ର—ନିର୍ଦ୍ଦେଶ କରିବା ବଡ଼ କଠିନ—କ୍ରୌଞ୍ଚରନ୍ଧ୍ରର ଅନ୍ୟ ନାମ ହଂସଦ୍ୱାର । ବର୍ଷାକାଳରେ ହଂସମାନେ ଏହି ବାଟ ଦେଇ ମାନସରୋବରକୁ ଯାଆନ୍ତି ବୋଲି ପ୍ରବାଦ ଅଛି । କାର୍ତ୍ତିକେୟଙ୍କର ପ୍ରତିଦ୍ୱନ୍ଦ୍ୱୀ ପରଶୁରାମ ବାଣ ଦ୍ୱାରା ହିମାଳୟର ଏହି ଅଂଶ ଭେଦ କରିଥିଲେ । ଯେଉଁ ଉପତ୍ୟକା ଦେଇ ଶତଦ୍ରୁ ନଦୀ ପ୍ରବାହିତ ହେଉଅଛି, ତାହାର ନାମ କ୍ରୌଞ୍ଚରନ୍ଧ୍ର ବୋଲି ଅନୁମାନ କରାଯାଏ । ଶତଦ୍ରୁ ନଦୀ ମାନସରୋବରରୁ ନିର୍ଗତ ହୋଇ ପଶ୍ଚିମାଭିମୁଖରେ ପ୍ରବାହିତ ହେଉଅଛି । ଶତଦ୍ରୁ ନଦୀ ପ୍ରବାହିତ ହେଉଥିବା ଉପତ୍ୟକାର ଉଚ୍ଚତା ୬୦୦୦ ଫୁଟଠାରୁ ୧୬୦୦୦ ଫୁଟ ଉଚ୍ଚ। ଶତଦ୍ରୁ ନଦୀର ଉଭୟ ପାର୍ଶ୍ୱରେ ଅତ୍ୟୁଚ୍ଚ ହିମାଳୟ ପର୍ବତ । ମାନସରୋବରକୁ ଯିବାକୁ ହେଲେ ଏହି ଉପତ୍ୟକା ଦେଇ ଯିବାର ସୁବିଧା— ସୁତରାଂ ଏହାର ନାମ ହଂସଦ୍ୱାର ଓ କ୍ରୌଞ୍ଚରନ୍ଧ୍ର । ଶତଦ୍ରୁ ନଦୀର ଉଭୟପାର୍ଶ୍ୱସ୍ଥ ଉଚ୍ଚ ପର୍ବତର ବାଧା ପାଇ ମେଘ ଏହି ଉପତ୍ୟକା ଦେଇ କୈଳାସକୁ ଯିବାର ଏକମାତ୍ର ପନ୍ଥା ।

କୈଳାସ—ମାନସରୋବର ଉତ୍ତରରେ କୈଳାସ ପର୍ବତ ବିଦ୍ୟମାନ । ଏହି ପର୍ବତରେ ଅଳକା ଓ ଯକ୍ଷର ବାସସ୍ଥାନ ।

ଚିତ୍ର ପରିଚୟ— ମେଘର ପଥ ୭୫ ଡିଗ୍ରୀ ଓ ୮୦ ଡିଗ୍ରୀ ଦ୍ରାଘିମା ଏବଂ ୨୦ ଡିଗ୍ରୀ ଓ ୩୨ ଡିଗ୍ରୀ ନିରକ୍ଷାନ୍ତର ମଧ୍ୟବର୍ତ୍ତୀ ଅଟେ ।

'୨୧° – ୨୪ ନିରକ୍ଷାନ୍ତର ଓ ୭୮° – ୨୦' ଦ୍ରାଘିମାରେ ରାମଗିରି । ତହିଁ ଉତ୍ତରକୁ ମହାଦେବ ପର୍ବତ— ତହିଁ ଉତ୍ତରକୁ ବିନ୍ଧ୍ୟପାଦ ଓ ବିନ୍ଧ୍ୟ ପର୍ବତ । ଏହି ଦୁଇ ପର୍ବତ ମଧ୍ୟରେ ରେବା— ଆଧୁନିକ ନର୍ମଦା ନଦୀ ପ୍ରବାହିତ । ବିନ୍ଧ୍ୟର ଉତ୍ତରରେ ଦଶାର୍ଣ୍ଣା । ଆଧୁନିକ ଭୋପାଳ । ଦଶାର୍ଣ୍ଣାର ରାଜଧାନୀ ବିଦିଶା—ଆଧୁନିକ ଭିଲସା ।

ବେତ୍ରବତୀ—ବର୍ତ୍ତମାନ ବେଟବା କୂଳରେ ବିଦିଶା ନଗରୀ ଅବସ୍ଥିତ । ବେତ୍ରବତୀ (ବେଟବା) ଉତ୍ତର ଦିଗକୁ ପ୍ରବାହିତ ହୋଇ ଚମ୍ବଲ ନଦୀରେ ପତିତ ହେଉଅଛି । ସିନ୍ଧୁଠାରୁ ୫୦ ମାଇଲ ଦୂରରେ ଉଜ୍ଜୟିନୀ, ଉଜ୍ଜୟିନୀର ଦକ୍ଷିଣାଂଶରେ ଶିପ୍ରା ନଦୀ । ଶିପ୍ରା ଓ ଅନ୍ୟ ନଦୀ ମିଳିତ ହୋଇ ଚର୍ମଣାବତୀ— ଆଧୁନିକ ଚମ୍ବଲ ନାମ ଧାରଣ କରିଅଛି ।

ଉଜ୍ଜୟିନୀର ଉତ୍ତରକୁ ଦଶପୁର—ବର୍ତ୍ତମାନ ନାମ ମେଣ୍ଡାସୋର ।

ବ୍ରହ୍ମାବର୍ତ୍ତ—ସରସ୍ୱତୀ ଓ ଦୃଶଦ୍‌ବତୀ ମଧ୍ୟବର୍ତ୍ତୀ ଦେଶର ନାମ ।

କୁରୁକ୍ଷେତ୍ର—ଆଧୁନିକ ନାମ ସ୍ଥାନେଶ୍ୱର ।

ସରସ୍ୱତୀ ନଦୀ—ସିରମୁର ପର୍ବତରୁ ନିର୍ଗତ ଏବଂ ମରୁଭୂମିରେ ଲୁପ୍ତ— ଏହାର ପୂର୍ବକୁ ଦୃଶଦ୍‌ବତୀ—ତହିଁ ପୂର୍ବକୁ ଯମୁନା—ତହିଁ ପୂର୍ବକୁ ଗଙ୍ଗା ।

କନଖଳ ହରଦ୍ୱାର ଦ୍ୱାରା ପରିଚିତ । ପ୍ରାଳେୟାଦ୍ରି— ନନ୍ଦଦେବୀ ପର୍ବତ ଓ ତହିଁର ଦକ୍ଷିଣାଂଶ ।

କ୍ରୌଞ୍ଚରନ୍ଧ୍ର ଶତଦ୍ରୁ ନଦୀ— ଆଧୁନିକ ସତଲେଜ ନଦୀର ଉପତ୍ୟକା ।

ଆଉ ଗୋଟିଏ କଥା । କବି ଏହି କାବ୍ୟରେ ଚାରି ଗୋଟି ସ୍ଥାନର ବିସ୍ତୃତ ବର୍ଣ୍ଣନା କରିଅଛନ୍ତି, ଯଥା— ଉଜ୍ଜୟିନୀ, ଦେବଗିରି, କନଖଳ ଓ କୈଳାସ । କବି ଯେ ଶିବଭକ୍ତ, ଏହା କହିବା ବାହୁଲ୍ୟ ମାତ୍ର । ଉଜ୍ଜୟନୀରେ କବିଙ୍କର ନିତ୍ୟ ପୂଜ୍ୟ ମହାକାଳ, ଦେବଗିରିରେ ଶିବପୁତ୍ର ସ୍କନ୍ଦ ସଙ୍ଗେ ସଙ୍ଗେ ପୁତ୍ରବତ୍ସଳା ଭବାନୀଙ୍କର ବର୍ଣ୍ଣନା; କନଖଳଠାରେ ଭବାନୀ ସପତ୍ନୀ ଶିବପ୍ରିୟା ଗଙ୍ଗାଙ୍କର କ୍ରୀଡ଼ା; ଏବଂ କୈଳାସରେ ହରଗୌରୀ ଯୁଗଳମୂର୍ତ୍ତିଙ୍କର କ୍ରୀଡ଼ା ବର୍ଣ୍ଣନା କରିଅଛନ୍ତି । କବି ଚାରି ଗୋଟି ପ୍ରଧାନ ଦେବପୀଠର

ବର୍ଣ୍ଣନାଦ୍ୱାରା ନିଜେ ଶିବଭକ୍ତ ଥିବାର ପରିଚୟ ଦେଇଅଛନ୍ତି । ଉକ୍ତ ଚାରି ଗୋଟି ସ୍ଥାନ କବିଙ୍କର ବହୁ ପରିଚିତ ବୋଲି ବୋଧହୁଏ ।

•

## ବାର

ଅତ୍ୟନ୍ତ ଅଭ୍ୟସ୍ତ, ନିତ୍ୟ ବ୍ୟବହାର୍ଯ୍ୟ, ଚିର ପରିଚିତ ଓ ଅତି ପ୍ରୟୋଜନୀୟ ବିଷୟ ଘେନି କୌଣସି ଆଲୋଚନା କରିବାକୁ କାହାରି ପ୍ରବୃତ୍ତି ବଳେ ନାହିଁ । କି ପୋଷାକ ପରିଚ୍ଛେଦ, କି ଅସ୍ତ୍ର ଶସ୍ତ୍ର, କି ଖାଦ୍ୟପଦାର୍ଥ, କି ଗୀତ, କି ଶ୍ଳୋକ, କି ଶବ୍ଦ ସବୁ ବିଷୟରେ ଏ ସ୍ୱତଃସିଦ୍ଧଟି ପ୍ରଯୋଜ୍ୟ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ବିଲାତୀଆଳୁ ଏ ଦେଶର ପ୍ରୟୋଜନୀୟ ନିତ୍ୟ ବ୍ୟବହାର୍ଯ୍ୟ ଖାଦ୍ୟବସ୍ତୁ ହୋଇପଡ଼ିଅଛି । ଏହା କେଉଁଠାରୁ ଆସିଲା, କେବେ ଆସିଲା, କିଏ ଆଣିଲା, ଏଥିର କେହି ଆଲୋଚନା କରନ୍ତି କି ? ତଦ୍ରୂପ ବାର ଶବ୍ଦଟି ପ୍ରୟୋଜନୀୟ, ଅତ୍ୟନ୍ତ ଅଭ୍ୟସ୍ତ, ନିତ୍ୟ ବ୍ୟବହାର୍ଯ୍ୟ ନୁହେଁ କି ? ହାଟ କେଉଁଦିନ ହେବ, ତାହା ବାର ଭିନ୍ନ ଜାଣି ହୁଏ ନାହିଁ; କଚେରି କରିବାକୁ ହେବ, ବାରଟି ବୁଝି ରଖିବାକୁ କର୍ମଚାରୀମାନଙ୍କର ଖୋଷାମଦ କରିବାକୁ ହେବ । ମନୁଷ୍ୟର ଅନିଷ୍ଟକାରିଣୀ ଯୋଗିନୀ କେବେ ପୃଷ୍ଠରେ, କେବେ ପାର୍ଶ୍ୱରେ, କେବେ ମୁଖରେ ବୁଲୁଅଛି । ବାର ନ ଜାଣି ଅନୁକୂଳ କରିବା ଅସମ୍ଭବ, ସନ୍ତାନ ଜନ୍ମ ହେଲେ ବାର ଅନୁସାରେ ତାହାର ଭାଗ୍ୟଫଳ ଘଟିବ । ବିବାହ, ବ୍ରତ, ଜନ୍ମ, ମରଣ, ବାରଦ୍ୱାରା ନିୟନ୍ତ୍ରିତ । ସାତଗୋଟି ବାର ମନୁଷ୍ୟଜୀବନର ନିୟାମକ । ମାନବର ଦୈନନ୍ଦିନ କାର୍ଯ୍ୟ ବାର ଦ୍ୱାରା ପରିଚାଳିତ ।

ତିଥି ଓ ତାରିଖ ଅପେକ୍ଷା ବାରର ପ୍ରଚଳନ ଅଧିକ । କି ସଭ୍ୟ, ଅସଭ୍ୟ, ଶିକ୍ଷିତ, ଅଶିକ୍ଷିତ— ସମସ୍ତେ ଏହାର ବ୍ୟବହାରକ । ବିଶେଷତଃ ଭାରତବାସୀ ବାର ଭିନ୍ନ ନିତ୍ୟ କାର୍ଯ୍ୟ ଚଳାଇବାକୁ ଅକ୍ଷମ । ଏପରି ଅତି ପ୍ରୟୋଜନୀୟ ଶବ୍ଦଟିର ପ୍ରଚଳନ କେବେ ହେଲା ? ପଚାର, ଅନେକେ କହିବେ, ଏହା ବେଦ ପରି ପୁରୁଣା । ଅନେକେ କହିବେ, ଦ୍ୟାବା ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ ପରି ଆବହମାନ କାଳରୁ ସୃଷ୍ଟି । ଏହାର ପରିସୀମା କ'ଣ ? ଆମ୍ଭେମାନେ ବାର ପ୍ରଚଳନର ଗୋଟିଏ ଆନୁମାନିକ କାଳ ନିର୍ଦ୍ଧାରଣ କରିବାକୁ ଏହି ପ୍ରବନ୍ଧର ଅବତାରଣା କରିଅଛୁଁ । ଆଜିକାଲି ଆପଣା ଦେଶର ପ୍ରଚଳିତ କୌଣସି ବିଷୟର ଆଲୋଚନା କରିବାକୁ ଗଲେ ବଡ଼ ସାବଧାନତା ଆବଶ୍ୟକ । ଆଧୁନିକ ଅନେକ ଶିକ୍ଷିତଙ୍କର ମତ ଯେ, ନିଜ ଦେଶର ସମସ୍ତ କଥାକୁ— ଭଲ ହେଉ ବା ମନ୍ଦ ହେଉ— ପ୍ରଶଂସା କର; ନତୁବା ଯାହା ମନ୍ଦ ବା ଅନ୍ଧବିଶ୍ୱାସଛେଦକ, ତାକୁ ଘୋଡ଼ାଇ ରଖ । ଆମ୍ଭର ପୂର୍ବ ଋଷି ଓ ବିଜ୍ଞ ଓ ପଣ୍ଡିତଗଣ ଏହି ପନ୍ଥା ଅବଲମ୍ବନ କରିଥିଲେ । ତୁମ୍ଭେ ତାଙ୍କର ବଂଶଧର, ସେହି ପନ୍ଥା ଅବଶ୍ୟ ଅବଲମ୍ବନ କରିବ । ଆମ୍ଭେମାନେ ଯୋଡ଼ିକ ପନ୍ଥାରୁ ଗୋଟିଏ ମଧ ଗ୍ରହଣ କରିବାକୁ ରାଜି ନୋହୁଁ । ସୁତରାଂ ସାବଧାନତା ଆମ୍ଭ ପକ୍ଷରେ ବେଶି ଅବଲମ୍ବନୀୟ, ପ୍ରବନ୍ଧ ଦୀର୍ଘ ହେବାର କଥା ଭୟ ହେଲା, 'ଦେଉଳଠାରୁ ମୁଖଶାଳା ବଡ଼' ହୋଇପଡ଼ିଲା କି ?

ବାର ସଂଖ୍ୟା ସାତ । ଗ୍ରହସଂଖ୍ୟା ସାତ । ସାତ ଗୋଟି ଗ୍ରହର ନାମରେ ସାତଗୋଟି ବାର ପରିଚିତ; ଇୟୁରୋପୀୟମାନେ ମଧ ଆମ୍ଭମାନଙ୍କ ପରି ସାତ ଗୋଟି ବାରର ବ୍ୟବହାର କରନ୍ତି, ଯଥା—

ରବିବାର (Sunday-Solis dies), ସୋମବାର (Monday-Lunae dies), ମଙ୍ଗଳବାର (Tuesday-Martis dies), ବୁଧବାର (Wednesday-Mercuir dies), ଗୁରୁବାର (Thursday-Jovis dies), ଶୁକ୍ରବାର (Friday-Veneris dies), ଶନିବାର (Saturday-Saturni dies), ଏହି ନାମ ଗୁଡ଼ିକ ଦେଖିଲେ ସ୍ପଷ୍ଟ ଜଣାଯିବ ଯେ, ଭାରତବାସୀମାନେ, ରୋମସ୍ତ୍ରାମାଜ୍ୟବାସୀମାନେ ଏବଂ ପରବର୍ତ୍ତୀ ଇୟୁରୋପୀୟ ଜାତିମାନେ ଏକ ରୀତିରେ ଏବଂ ଏକ ଅନୁକ୍ରମରେ ଗ୍ରହମାନଙ୍କ ନାମରେ ସାତଗୋଟି ଦିବସର ନାମକରଣ କରିଅଛନ୍ତି । ଆମ୍ଭମାନଙ୍କ ଦେଶରେ ତିଥିର ନାମ ଅଛି ଓ ବ୍ୟବହାର ଅଛି । ଇୟୁରୋପରେ ତିଥିର ବ୍ୟବହାର ନାହିଁ, ନାମ ମଧ ନାହିଁ । ଆଶ୍ଚର୍ଯ୍ୟର କଥା, ଉଭୟ ଦେଶର ରାଶିଚକ୍ର ସମାନ, କିନ୍ତୁ ଆମ୍ଭ ଦେଶପରି ସେମାନଙ୍କର ସତାଇଶଗୋଟି ନକ୍ଷତ୍ର ନାହାନ୍ତି । ଚନ୍ଦ୍ର ପ୍ରତି ରାତ୍ରିରେ ଗୋଟିଏ ଗୋଟିଏ ନକ୍ଷତ୍ରରେ ପ୍ରବେଶ କରେ— ଚନ୍ଦ୍ରର ପଥରେ ଥିବା ନକ୍ଷତ୍ର ସଂଖ୍ୟା ୨୭ । ଚନ୍ଦ୍ରର ନକ୍ଷତ୍ର ଭୋଗ ଅନୁସାରେ ତିଥିର ହ୍ରାସ ବୃଦ୍ଧି ହୁଏ । ସୂର୍ଯ୍ୟ ରାଶିଚକ୍ର ଭୋଗ କରିବା ଅନୁସାରେ ମାସ ସଂଖ୍ୟା ବାର ଗୋଟି ଉଭୟ ଦେଶରେ ଅଛି, ମାତ୍ର ମାସର ନାମ ବାର ନାମ ପରି ଏକଧରଣର ନୁହେଁ କିମ୍ବା ଏକାର୍ଥବୋଧକ ନୁହେଁ । ମାସ, ତାରିଖ ଓ ବାର ସମସ୍ତେ ବ୍ୟବହାର କରୁଥିଲେ ମଧ ମାସ ଓ ତାରିଖ (ଆମ୍ଭ ଦେଶର ତିଥି) ସମାନ ନୁହେଁ, କିନ୍ତୁ ବାର ନାମଟି ସର୍ବତ୍ର ସମାନ । କୌଣସି ଗ୍ରହ ନକ୍ଷତ୍ରାଦିଙ୍କ ଗତିବିଧି

ସହିତ ବାରର ସମ୍ବନ୍ଧ ନ ଥିବାରୁ ବାର ଅପରିବର୍ତ୍ତନୀୟ । ନାମକରଣ ଦିନଠାରୁ ସପ୍ତାହ ପରେ ସପ୍ତାହ ବରାବର ଚାଲି ଆସୁଅଛି ଏବଂ ବରାବର ଚାଲିବ, ସଂଶୋଧନ ବା ପରିବର୍ତ୍ତନ ଆବଶ୍ୟକ ହୋଇ ନାହିଁ ବା ହେବ ନାହିଁ ।

ଏପ୍ରକାର ସର୍ବସାଧାରଣ, ନିର୍ଭୁଲ୍ ଦିବସ ଗଣନା ପ୍ରଣାଳୀ କେବେ କେଉଁ, ଦେଶରେ ପ୍ରଥମେ ପ୍ରଚଳିତ ହେଲା ? ପୁଣି ତାହା ସମସ୍ତ ଦେଶର ବାକି ଲୋକେ ଆଦର ସହିତ ଗ୍ରହଣ କରି ସର୍ବସାଧାରଣଙ୍କର ପ୍ରକୃତ ଉପକାର କରିଅଛନ୍ତି । ଏତାଦୃଶ ଅଦ୍ଭୁତ ଆବିଷ୍କ୍ରିୟାକୁ ନିଜସ୍ୱ କରିବା ନିମନ୍ତେ କେଉଁ ଜାତି ଲାଳାୟିତ ନ ହେବେ ? ପ୍ରତ୍ୟେକ ଜାତି ଏହି ଆବିଷ୍କ୍ରିୟାକୁ ନିଜସ୍ୱ ବୋଲନ୍ତୁ, ସେଥିରେ ଯାଏ ଆସେ କେତେ ? ପରିଶୀଳନ ଏବଂ ଗାଢ଼ ତତ୍ତ୍ୱାନୁସନ୍ଧାନ ଏଥିର ତଥ୍ୟ ନିର୍ଦ୍ଧାରଣ କରିବ ।

ଯୁଗଯୁଗାନ୍ତରର କୌଣସି ଋଷି ବଞ୍ଚି ନାହାନ୍ତି ଯେ, ଆମ୍ଭମାନଙ୍କୁ ବାର ସୃଷ୍ଟି ଦିବସଟିର ପରିଚୟ କରାଇଦେବେ । ଆମ୍ଭମାନଙ୍କୁ ପ୍ରାଚୀନ ପୁସ୍ତକରୁ ତାହା ବାହାର କରିବାକୁ ହେବ ।

ଆମ୍ଭମାନଙ୍କର ଅତି ପ୍ରାଚୀନ ପୁସ୍ତକ ଋଗ୍‌ବେଦ ଏବଂ ତତ୍‌ପରବର୍ତ୍ତୀ ବେଦ ବେଦାଙ୍ଗ । ବେଦ ବେଦାଙ୍ଗରେ ବାରର ବ୍ୟବହାର ଅଛି କି ନାହିଁ, ପ୍ରଥମେ ଭିନ୍ନଭିନ୍ନ କରି ଦେଖାଯାଉ । ପ୍ରଥମ ଯୁଗ । ବର୍ଷବାଚକ—ପରିବତ୍ସର, ସମ୍ବତ୍ସର, ଋତୁବାଚକ—ଋତୁ, ଆର୍ତ୍ତ୍ୱ; ପକ୍ଷବାଚକ—ପକ୍ଷ, ପକ୍ଷସ; ଦିବସବାଚକ— ଅହନ୍, ଅହୋରାତ୍ର । କାଳର ଏହି ବୃହତ୍ ବିଭାଗଗୁଡ଼ିକ ଋଗ୍‌ବେଦ ଓ ତତ୍‌ପରବର୍ତ୍ତୀ ବୈଦିକ ଗ୍ରନ୍ଥରେ ଦୃଷ୍ଟ ହୁଏ । ବୈଦିକ ପୁସ୍ତକରେ ସପ୍ତାହର ନାମ ନାହିଁ, କିମ୍ବା ସାତ ଦିନର କୌଣସି ବିଭାଗ ନାହିଁ । 'ଗ୍ରାମୋ ନାସ୍ତି କୁତଃ ସୀମା' । ଯେବେ ଗ୍ରହମାନଙ୍କର ନାମ ବେଦରେ ନାହିଁ, ତେବେ ବାରମାନଙ୍କର ନାମ ଥିବ କିପରି ? ପ୍ରଥମତଃ ଗ୍ରହ ଶବ୍ଦଟି ଋଗ୍‌ବେଦରେ ନାହିଁ । କେବଳ ଶତପଥ ବ୍ରାହ୍ମଣରେ (କା ୪ । ୬ । ୫ ୧) ଗ୍ରହ ଶବ୍ଦଟି ଅଛି । ମାତ୍ର ଏହାର ଅର୍ଥ ଯେ ଭ୍ରମଣକାରୀ ସୂର୍ଯ୍ୟ ଚନ୍ଦ୍ରାଦି ସପ୍ତଗ୍ରହ, ଏ ପ୍ରକାର ଅର୍ଥାବଗତି ଆଦୌ ହେବାକୁ ନାହିଁ ବୋଲି ପଣ୍ଡିତଗଣ ମତ ବ୍ୟକ୍ତ କରନ୍ତି ।

ସୂର୍ଯ୍ୟ ଯେ ବେଦର ପ୍ରଧାନ ଦେବତା, ତାହା ଲେଖିବା ନିଷ୍ପ୍ରୟୋଜନ । ଚନ୍ଦ୍ର ଚନ୍ଦ୍ରମାସ ଓ ସୋମଙ୍କର ବହୁଳ ବର୍ଣ୍ଣନା ବେଦ ଓ ବୈଦିକ ଗ୍ରନ୍ଥରେ ଦୃଷ୍ଟ ହୁଏ । ବାକି ପାଞ୍ଚ—ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନି । ଏଥି ମଧ୍ୟରୁ ମଙ୍ଗଳ, ବୁଧ ଓ ଶନି ନାମ ବୈଦିକ ଗ୍ରନ୍ଥରେ ଆଦୌ ନାହିଁ । ଶୁକ୍ର ଶବ୍ଦ ଓ ବୃହସ୍ପତି ଶବ୍ଦ ବେଦରେ ଅଛି । ମାତ୍ର ଶୁକ୍ର ଶବ୍ଦଟି ଶୁକ୍ର ଗ୍ରହାର୍ଥକ କି ନା, ଏ ଘେନି ପଣ୍ଡିତଗଣ ବିଶେଷ ସଂଶୟାପନ୍ନ । ବାଲ ଗଙ୍ଗାଧର ତିଲକ ଆପଣା ପୁସ୍ତକରେ ଦେଖାଇଅଛନ୍ତି ଯେ, ଋଗ୍‌ବେଦର ଶୁକ୍ର, ମନ୍ଥିନ ଓ ବେନ ଶବ୍ଦ ଶୁକ୍ରଗ୍ରହବାଚକ; ପାଶ୍ଚାତ୍ୟ ପଣ୍ଡିତଗଣ ଏହା ଆଦୌ ସ୍ୱୀକାର କରନ୍ତି ନାହିଁ । ପ୍ରାୟ ଶୁକ୍ର ଶବ୍ଦର ଅର୍ଥ ଶୁକ୍ରଗ୍ରହ କରି ନାହାନ୍ତି । ଶୁକ୍ର ଅର୍ଥ ଶୁକ୍ଳ ଓ ଜଳ । ଶୁକ୍ରଂ ସ୍ୱଧା, ବାରି, ଜଳଂ ++ ଇଦମିତ୍ୟେକଶତମୁଦକନାମାନୀ (୧–୭୨) ନିରୁକ୍ତେ ନୈଘୁଣ୍ଟକଂ କାଣ୍ଡଂ) ''ଶୁକ୍ରପେଶସଂ, ଶୁକ୍ରରୂପଂ । ଶ୍ରିୟଂ'' (ଦୈବତକାଣ୍ଡ) ଏହା ଛଡ଼ା ଯେଉଁ ସୂକ୍ତରୁ ତିଳକ ମହାଶୟ ଶୁକ୍ର ଶବ୍ଦ ଗ୍ରହାର୍ଥକ ବୋଲି ଅନୁମାନ କରନ୍ତି, ତାହା ଏହି—

ଗବାଶିରଂ ମନ୍ଥିନମିନ୍ଦ୍ର ଶୁକ୍ରଂ ପିବା ସୋମଂ
ଚାରିମାତେ ମଦାୟ ।
ବ୍ରହ୍ମକୃତା ମାରୁତେନ ଗଣେନ ସଜୋଷା
ରୁଦ୍ରୈସ୍ତୃପଦା ବୃଷସ୍ୱ ।
ଋ. ୩।୩୨।୨

ହେ ଇନ୍ଦ୍ର । ଗବାଶିରଂ ଗବ୍ୟସ୍ୟ ପୟସ ଆଶୀର୍ମିଶ୍ରଣଂ ଯସ୍ମିନ୍ ତଂ ସୋମଂ । ଅପିଚ ମନ୍ଥିନଂ ମନ୍ଥସଯୁକ୍ତଂ ଶୁକ୍ରଂ ଅଭିନବଂ ସୋମଂ ପିବ । ତେ ତବ ମଦାୟ ହର୍ଷାୟ ଗିରିମ ତଂ ସୋମଂ ବୟଂ ପ୍ରୟଚ୍ଛାମି । × ×

ହେ ଇନ୍ଦ୍ର ଗବ୍ୟମିଶ୍ରିତ, ମନ୍ଥସଂଯୁକ୍ତ ଅଭିନବ ସୋମ ପାନ କର । ତୁମ୍ଭର ହର୍ଷ ନିମନ୍ତେ ଆମ୍ଭେମାନେ ଦାନ କରୁଅଛୁଁ ।

ଏହା ବେଦର ମନ୍ତ୍ର, ସାୟନଙ୍କର ଭାଷ୍ୟ— ଏବଂ ଆକ୍ଷରିକ ଅର୍ଥ । ଏଥିରୁ ମନ୍ଥିନ ଏବଂ ଶୁକ୍ର ଶୁକ୍ରଗ୍ରହବାଚକ ବୋଲି କିପରି ଅନୁମାନ କରିଅଛନ୍ତି, ତାହା ବୁଝିବା ଦୁଃସାଧ୍ୟ । ଏପରି ଟଣାଟଣି କରିବାକୁ ଯେଉଁମାନେ ଅଭ୍ୟସ୍ତ, 'ଆମ୍ଭ ଦେଶରେ ସବୁ ଥିଲା' ବୋଲିବା ସେମାନଙ୍କର ମୁଖରେ ଶୋଭା ପାଏ ଏବଂ ଲେଖାରେ ସୁନ୍ଦର ଦିଶେ ।

ବେନ— ଦେବତାର ନାମ । ଯାସ୍କ ଲେଖିଅଛନ୍ତି, ବେନ ଅର୍ଥ ଯଜ୍ଞ, ବେନ ଅର୍ଥ ମେଧାବୀ । ଋଗ୍‌ବେଦର ୧୦ ମ ମଣ୍ଡଳର ୧୨୩ ସୂକ୍ତଟି ବେନ ଦେବତାର ସ୍ତୁତି । ବେନ ଜଳଦାତାରୂପେ ସ୍ତୁତ ହୋଇଅଛନ୍ତି । ବେନ ଶବ୍ଦକାରୀ, ବେନ ବିଦ୍ୟୁତ୍‌ର ପତି, ବେନ ଗନ୍ଧର୍ବରୂପୀ ଓ ଜଳରୂପୀ ବୃଷ୍ଟିକର୍ତ୍ତା, ଇତ୍ୟାଦି । ଉପରୋକ୍ତ ବିଶେଷଣଗୁଡ଼ିକ ପାଠ କଲେ ବେନ ଓ ଶୁକ୍ର ଏକ ବୋଲି କି ପ୍ରକାରେ ବିବେଚନା କରାଯାଇପାରେ, ତାହା ହୃଦୟଙ୍ଗମ ହେଉ ନାହିଁ ।

ପରବର୍ତ୍ତୀ ପୁରାଣ ଯଥା— ଭାଗବତ ମତ୍ସ୍ୟପୁରାଣ ପ୍ରଭୃତିରେ ଶୁକ୍ର ଗ୍ରହ ଚଳନଦ୍ୱାରା ବୃଷ୍ଟି ହୁଏ ବୋଲି ଲେଖା ଅଛି । ଏଥିରୁ ବାଳ ଗଙ୍ଗାଧର ତିଳକ ମହାଶୟ ବେନ ଓ ଶୁକ୍ର ଏକ ବୋଲି ଅନୁମାନ କରନ୍ତି ଏବଂ ବେନ ଓ Venus ତୁଲ୍ୟଶ୍ରାବ୍ୟ ଶବ୍ଦ ହେତୁରୁ ଏକ ଶବ୍ଦ ବୋଲି ଅନୁମାନ କରନ୍ତି । ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ମହାଶୟ ମଧ୍ୟ ତିଳକ ମହାଶୟଙ୍କର ପକ୍ଷପାତୀ ଓ ପକ୍ଷସମର୍ଥକ । ଏତାଦୃଶ କ୍ଲିଷ୍ଟ କଳ୍ପନା କରି ସୁଦ୍ଧା ବେନ, ମନ୍ଥିନ ଓ ବୈଦିକ ଶୁକ୍ର ଏବଂ ଆଧୁନିକ ଶୁକ୍ର ଗ୍ରହ ଏକ ବୋଲି ତିଳକ ମହାଶୟ ପ୍ରଭୃତି ପ୍ରମାଣ କରିବାକୁ ସମର୍ଥ ହୋଇନାହାନ୍ତି ବୋଲି ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ ।

ବୃହସ୍ପତି ଶବ୍ଦଟି ବୈଦିକ ଗ୍ରନ୍ଥରେ ଥିଲେ ସୁଦ୍ଧା ନୈରକ୍ତଗଣ ଏହାର ଅର୍ଥ ପାଳୟିତା ବୋଲି ଲେଖି ଯାଇଅଛନ୍ତି । ବୃହସ୍ପତି, ବ୍ରାହ୍ମଣସ୍ପତି—ଏକ ଶବ୍ଦ । 'ବୃହତଃ ପାତା ବା ପାଳୟିତା ବା ବୃହସ୍ପତିଃ' (ନିରୁକ୍ତେ ଦୈବତକାଣ୍ଡ ।) କୌଣସି କୌଣସି ପାଶ୍ଚାତ୍ୟ ପଣ୍ଡିତ ବୃହସ୍ପତି ଶବ୍ଦଟି ଗ୍ରହବାଚକ ବୋଲି ଅନୁମାନ କରନ୍ତି; ମାତ୍ର ଏହି ଅନୁମାନ ଭିତ୍ତିଶୂନ୍ୟ ବୋଲି ଅନ୍ୟମାନେ ପ୍ରକାଶ କରନ୍ତି ।

ବୁଧ, ଶନି ଓ ମଙ୍ଗଳ ନାମ, ବୈଦିକ ଗ୍ରନ୍ଥରେ ନାହିଁ ।

ପୁରାଣରେ ନବ ଗ୍ରହର ନାମ ରୂପ, ଗୁଣ, ଏମନ୍ତ କି, ସେମାନଙ୍କର ଜନ୍ମବୃତ୍ତାନ୍ତ ପର୍ଯ୍ୟନ୍ତ ବିସ୍ତୃତଭାବରେ ଲେଖାଯାଇଅଛି ।

ରାମାୟଣ ଓ ମହାଭାରତ ଖ୍ରୀଷ୍ଟପୂର୍ବ ତୃତୀୟ ଓ ପ୍ରଥମ ଶତାବ୍ଦୀ ମଧ୍ୟରେ ରଚିତ ହୋଇଥିବାର ପଣ୍ଡିତଗଣ ବିବେଚନା କରନ୍ତି । ଅବଶ୍ୟ ସମଗ୍ର ଗ୍ରନ୍ଥ ନୁହେଁ । ସେ ଯାହା ହେଉ, ରାମାୟଣ ଓ ମହାଭାରତରେ ଗ୍ରହମାନଙ୍କର ନାମ ଦୃଷ୍ଟ ହୁଏ । ମାତ୍ର ଗ୍ରହନାମାନୁସାରେ ବାର ଗଣନାର ଉଲ୍ଲେଖ ଆଦୌ ନାହିଁ । ସେତେବେଳେ ବାରର ପ୍ରଚଳନ ନ ଥିଲା । ଆଜି କାଲି କାହାରି ଜନ୍ମ ହେଲେ, ବିବାହ ହେଲେ, ବାର ତିଥି ଲେଖାଯାଏ । ରାମାୟଣ ରଚନା ବେଳେ ବାର ଗଣନାର ପ୍ରଚାର ଥିଲେ ରାମ କେଉଁ ବାରରେ ଜନ୍ମଗ୍ରହଣ କରିଥିଲେ ତାହା ଅବଶ୍ୟ ଲେଖା ଯାଇଥାନ୍ତା । ତିଥି ଗଣନା ପ୍ରଚଳନ ଥିବାରୁ ତହିଁର ଉଲ୍ଲେଖ ମିଳେ । ରାମଙ୍କ ଜନ୍ମ ଚୈତ୍ର ନବମୀ ।

ଚୈତ୍ରେ ନାବମିକେ ତିଥୌ ।

ବା - ୧୮ ।

ନକ୍ଷତ୍ରେଽଦିତି ଦୈବତ୍ୟେ
ସ୍ୱୋଚ୍ଚସଂସ୍ଥେଷୁ ପଞ୍ଚସୁ ।
ଗ୍ରହେଷୁ କର୍କଟେ ଲଗ୍ନେ
ବାକ୍‌ପତା ବିନ୍ଦୁନା ସହ ।

ବା - ୧୮ । ୯

ତିଥି, ରାଶି, ଲଗ୍ନର ପ୍ରଚଳନ ଥିବାର ଉପରୋକ୍ତ ଉଦ୍ଧୃତାଂଶରୁ ଜଣାଯାଉଅଛି । ବୁଦ୍ଧଦେବଙ୍କ ଜନ୍ମ ବୈଶାଖ ପୂର୍ଣ୍ଣିମାରେ, ବାରର ନାମ ନାହିଁ । ଚୈତନ୍ୟଙ୍କର ଜନ୍ମବେଳେ ବାରର ପ୍ରଚଳନ ହୋଇଥିଲା, ଏଣୁ ଚୈତନ୍ୟଙ୍କର ଜନ୍ମ ଫାଲ୍ଗୁନ ପୂର୍ଣ୍ଣିମା ଗୁରୁବାର ବୋଲି ଲେଖା ଅଛି ।

କେତେଗୋଟି ପ୍ରାଚୀନ ପୁରାଣରେ ବାରର ଉଲ୍ଲେଖ ନାହିଁ । ରଘୁବଂଶରେ କାଳିଦାସ ବାରର ଉଲ୍ଲେଖ କରି ନାହାନ୍ତି । ମାନବ ଧର୍ମଶାସ୍ତ୍ର ଯାହାର ରଚନାକାଳ ତୃତୀୟ ଶତାବ୍ଦୀ ବୋଲି ପଣ୍ଡିତଗଣ ଅନୁମାନ କରନ୍ତି— ସେଥିରେ ବାର ବା ସପ୍ତାହର ବିଭାଗ ନାହିଁ ।

ହେମାଦ୍ରି ଗ୍ରନ୍ଥରେ ବାରକୃତ୍ୟ ଓ ବାରବ୍ୟବସ୍ଥା ବିସ୍ତୃତଭାବରେ ଦିଆଯାଇଅଛି । ହେମାଦ୍ରି ବାରକୃତ୍ୟରେ ପଦ୍ମପୁରାଣର ନାମୋଲ୍ଲେଖ କରିଅଛନ୍ତି । ହେମାଦ୍ରି ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗରେ ଜୀବିତ ଥିଲେ । ଜୈନମାନଙ୍କର ଖଣ୍ଡିଏ ପଦ୍ମପୁରାଣ ଅଛି । ଉଭୟ ପଦ୍ମପୁରାଣର କେତେକ ବିଷୟ ଐକ୍ୟ ଥିବାର ପ୍ରତିପନ୍ନ ହୋଇଅଛି । ହିନ୍ଦୁ ପଦ୍ମପୁରାଣ ଓ ଜୈନ ପଦ୍ମପୁରାଣ ସମସାମୟିକ ବା ହିନ୍ଦୁ ପଦ୍ମପୁରାଣ କେତେକ ବର୍ଷପରେ ରଚିତ ବୋଲିବା ଅଯୌକ୍ତିକ ନୁହେଁ । ପଦ୍ମପୁରାଣ ଓ ସମସାମୟିକ କେତେକ ଖଣ୍ଡ ପୁରାଣ ରଚନାବେଳେ ବାର ଗଣନା ଉତ୍ତମରୂପେ ପ୍ରଚଳିତ ହୋଇଥିବ, ଏଥିରେ କୌଣସି ସନ୍ଦେହ ନାହିଁ ।

ସିଦ୍ଧାନ୍ତ ନାମରେ କେତେଗୋଟି ଜ୍ୟୋତିଷ ଗ୍ରନ୍ଥ ଅଛି । ପୁରାଣ ଯେମନ୍ତ ଅଷ୍ଟାଦଶ, ସିଦ୍ଧାନ୍ତ ମଧ୍ୟ ଅଷ୍ଟାଦଶ । ସୂର୍ଯ୍ୟ ପ୍ରଭୃତି ପରା ଏହି ଗ୍ରନ୍ଥମାନଙ୍କର ପ୍ରବର୍ତ୍ତକ ! ସିଦ୍ଧାନ୍ତ ଗ୍ରନ୍ଥ ମଧ୍ୟରୁ ପୈତାମହ ସିଦ୍ଧାନ୍ତ ପ୍ରାଚୀନ । ଏହା ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀର ଶେଷଭାଗରେ ଲିଖିତ । ତହିଁ ଉତ୍ତାରୁ ବାଶିଷ୍ଠ ସିଦ୍ଧାନ୍ତ ଲିଖିତ ହୋଇଅଛି ଏବଂ ତତ୍‌ପରେ ସୂର୍ଯ୍ୟ ସିଦ୍ଧାନ୍ତ । ବାଶିଷ୍ଠ ସିଦ୍ଧାନ୍ତ ଆନୁମାନିକ ଖ୍ରୀଷ୍ଟ ଦ୍ୱିତୀୟ ଶତାବ୍ଦୀରେ ଲିଖିତ । ସୋମ, ସୂର୍ଯ୍ୟ, ବ୍ରହ୍ମା ଇତ୍ୟାଦି ପରା ଏହି ଗ୍ରନ୍ଥମାନଙ୍କର ପ୍ରବର୍ତ୍ତକ । ସିଦ୍ଧାନ୍ତ ଗ୍ରନ୍ଥ ମଧ୍ୟରୁ ପିତାମହ ସିଦ୍ଧାନ୍ତ ପ୍ରାଚୀନ । ଏହା ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀର ଶେଷଭାଗରେ ପରା ଲିଖିତ । ତହିଁ ଉତ୍ତାରୁ

ବାଶିଷ୍ଠ ଏବଂ ତତ୍‌ପରେ ପ୍ରସିଦ୍ଧ ସୂର୍ଯ୍ୟ ସିଦ୍ଧାନ୍ତ । ବାଶିଷ୍ଠ ଦ୍ୱିତୀୟ ଶତାବ୍ଦୀରେ ଲିଖିତ ହୋଇଥିବାର ଅନେକେ ଅନୁମାନ କରନ୍ତି । ପୈତାମହା ଓ ବାଶିଷ୍ଠରେ ''ରବି ଚନ୍ଦ୍ର ବ୍ୟତୀତ ଅନ୍ୟ ଗ୍ରହ ଗଣିତ ନାହିଁ।'' ସୁତରାଂ ଏପର୍ଯ୍ୟନ୍ତ ରବି ଚନ୍ଦ୍ର ବ୍ୟତୀତ ଅନ୍ୟ ଗ୍ରହର ଗଣନା ଜ୍ୟୋତିଷଶାସ୍ତ୍ରରେ ପ୍ରବେଶ କରି ନ ଥିଲା । ନିରାପଦରେ ମତ ଦିଆଯାଇପାରେ ଯେ, ତୃତୀୟ ଶତାବ୍ଦୀ ପରେ ଓ ଅଷ୍ଟମ ଶତାବ୍ଦୀ ମଧରେ ପଞ୍ଚଗ୍ରହ ଜ୍ୟୋତିଷିକ ଗଣନା ମଧକୁ ଆସିଅଛନ୍ତି ।

ଅଧ୍ୟାପକ ଯୋଗେଶଚନ୍ଦ୍ର ମହାଶୟ ଲେଖିଅଛନ୍ତି, ପୂର୍ବକାଳରେ ସପ୍ତାହ ବିଭାଗ ନ ଥିଲା, ବାର ମଧ ତେତେ ପ୍ରଚଳିତ ନ ଥିଲା । ସୌର ମାସ ଓ ସପ୍ତ ବାର ପ୍ରଚଳିତ ହେଲା ପରେ ସପ୍ତାହର ପ୍ରାଧାନ୍ୟ ଘଟିଅଛି ।

ମାସ ଉତ୍ତାରୁ ପକ୍ଷ ସମୟର ବୃହତ୍ ବିଭାଗ ଅଟେ । ତହିଁ ଉତ୍ତାରୁ ସପ୍ତାହ । ସପ୍ତାହ ଅଧିକାଂଶ ସଭ୍ୟ ଦେଶରେ ଚଳୁଅଛି ।

ପାରସ୍ୟ ଦେଶରେ ପଞ୍ଚ ଦିବସର ବିଭାଗ ଥିଲା । ଆଫ୍ରିକାର କୌଣସି କୌଣସି ଦେଶରେ ଚାରି ଦିବସର ବିଭାଗ ମଧ ଅଛି । ସୁତରାଂ ମାସ ଉତ୍ତାରୁ ସମୟର ବୃହତ୍ ବିଭାଗ ପକ୍ଷ, ସପ୍ତାହ, ପଞ୍ଚାହ ଓ ଚତୁର୍ଥାହ ପୃଥିବୀର ନାନାସ୍ଥାନରେ ପ୍ରଚଳିତ ଅଛି । ଆମ୍ଭମାନଙ୍କ ଦେଶର ପକ୍ଷପ୍ରଚଳନ ଅନ୍ୟତ୍ର ନାହିଁ । ସାତ ଦିନର ବିଭାଗ ବା ସପ୍ତାହ ସମସ୍ତ ସଭ୍ୟଜାତି ବ୍ୟବହାର କରନ୍ତି ।

ପୂର୍ବେ ପ୍ରକାଶ କରାଯାଇଅଛି ଯେ, ୟୁରୋପରେ ଓ ଆମ୍ଭ ଦେଶରେ ବାରର ନାମ ଏକପ୍ରକାର ଏବଂ ଗ୍ରହମାନଙ୍କ ନାମାନୁସାରେ ନାମକରଣ ହୋଇଅଛି । ଏହି ନାମକରଣ କୌଣସି ପ୍ରାକୃତିକ ସ୍ୱତଃସିଦ୍ଧ ଘଟନା ଅନୁକରଣରେ କରାଯାଇ ନ ଥିବାରୁ କିମ୍ବା ଏହି ନାମକରଣ ଗ୍ରହମାନଙ୍କର ଗତିବିଧି ସହିତ ସମ୍ବନ୍ଧ ରଖି ନ ଥିବାରୁ ଏହାକୁ ବିଶୁଦ୍ଧ କାଳ୍ପନିକ ବୋଲିବା ଅଯୌକ୍ତିକ ନୁହେଁ । ସୁତରାଂ ଏକ ଜାତି ଅନ୍ୟ ଜାତିଠାରୁ ଏହି ଗଣନା ଶିକ୍ଷା କରିଥିବା ସ୍ୱାଭାବିକ ।

ଗ୍ରହାବସ୍ଥିତି ଓ ଗ୍ରହମାନଙ୍କର ଗତିବିଧି ଦୁଇ ପ୍ରକାର । ଭୂକୈନ୍ଦ୍ରିକ (Geo-centric) ଏବଂ ସୂର୍ଯ୍ୟକୈନ୍ଦ୍ରିକ (Helio-centric) । ଗ୍ରୀକ୍ ଜ୍ୟୋତିର୍ବିତ୍‌ଗଣ ଏବଂ ଆମ୍ଭ ଦେଶର ଜ୍ୟୋତିର୍ବିତ୍‌ଗଣ ପ୍ରଥମୋକ୍ତ ମତାନୁସାରେ ଗଣନା କରୁଥିଲେ । ସେମାନଙ୍କ ମତରେ ପୃଥିବୀ ସ୍ଥିର ଏବଂ ମଧବର୍ତ୍ତିନୀ । ପୃଥିବୀକୁ ସୂର୍ଯ୍ୟ, ଚନ୍ଦ୍ର, ଶନି, ଶୁକ୍ର, ବୁଧ, ବୃହସ୍ପତି ଓ ମଙ୍ଗଳ ପ୍ରଦକ୍ଷିଣ କରୁଥିଲେ । ଆଧୁନିକ ମତରେ ସୂର୍ଯ୍ୟକୁ ପୃଥିବୀ ଓ ଗ୍ରହମାନେ ପ୍ରଦକ୍ଷିଣ କରନ୍ତି । ଏହା ବିସ୍ତୃତଭାବରେ ଲେଖିବା ନିଷ୍ପ୍ରୟୋଜନ । ଯେ ହେତୁ ଆଧୁନିକ ସୌରଜଗତରେ ବିବରଣୀ ଅଳ୍ପବୟସ୍କ ଛାତ୍ରମାନଙ୍କୁ ମଧ ଜଣା ଅଛି ।

ଭୂକୈନ୍ଦ୍ରିକ ମତାନୁସାରେ ପୃଥିବୀକୁ କେନ୍ଦ୍ର କରି ରବି ଶଶୀ ପ୍ରଭୃତି ଗ୍ରହଗଣ ଓ ନକ୍ଷତ୍ରଗଣ ଚକ୍ରାକାର କକ୍ଷରେ ଏହାକୁ ପ୍ରଦକ୍ଷିଣ କରନ୍ତି । ଏହା ପୌରାଣିକ ମତ ନୁହେଁ । ଏହା ସିଦ୍ଧାନ୍ତ ମତ । ପଣ୍ଡିତଗଣଙ୍କ ମତରେ ''ପୈତାମହ ସିଦ୍ଧାନ୍ତ ପ୍ରଥମ, ତାର ପର ବାଶିଷ୍ଠ, ତାର ପର ସୂର୍ଯ୍ୟ ସିଦ୍ଧାନ୍ତ ।''

ସୂର୍ଯ୍ୟ ସିଦ୍ଧାନ୍ତର ରଚନା କାଳ ଘେନି ପଣ୍ଡିତମାନଙ୍କର ମତଭେଦ ଦେଖାଯାଏ । ଜନୈକ ଗ୍ରନ୍ଥପ୍ରକାଶକ ସୂର୍ଯ୍ୟ ସିଦ୍ଧାନ୍ତକୁ 'ଅଷ୍ଟାଦଶ ସିଦ୍ଧାନ୍ତଗ୍ରନ୍ଥନିଚୟର ଶିରୋମଣି' ବୋଲି ଲେଖିଅଛନ୍ତି । ସୂର୍ଯ୍ୟ ସିଦ୍ଧାନ୍ତର ରଚକର ନାମ ଗୁପ୍ତ ରଖାଯାଇଅଛି । ଅନେକେ ପ୍ରକାଶ କରନ୍ତି ଯେ, ଏହା ଅତି ପ୍ରାଚୀନ ଗ୍ରନ୍ଥ; ମାତ୍ର ଆମ୍ଭମାନଙ୍କର ହସ୍ତଗତ ସୂର୍ଯ୍ୟସିଦ୍ଧାନ୍ତ ବରାହମିହିରଙ୍କ କୃତ ନୂତନ ସଂସ୍କରଣ । ସୂର୍ଯ୍ୟସିଦ୍ଧାନ୍ତର 'ପ୍ରାଚୀନତ୍ୱ ଫଳାଇବା ନିମନ୍ତେ ବଡ଼ ବିଚିତ୍ର ଭୂମିକା କରାଯାଇଅଛି । ସ୍ୱୟଂ ସୂର୍ଯ୍ୟ ଦାନବେନ୍ଦ୍ର ମୟକୁ ଜ୍ୟୋତିଃଶାସ୍ତ୍ର ଶିକ୍ଷା ଦେଉଥିଲେ । ତଥ୍ୟ ନିର୍ଦ୍ଧାରଣ କରିବାକୁ ଯାଇ ଈଦୃଶ ପୌରାଣିକ କଳ୍ପନା ଉପରେ ଆସ୍ଥା ସ୍ଥାପନ କରିବା କଦାପି ଯୁକ୍ତିସଙ୍ଗତ ନୁହେଁ । ସୂର୍ଯ୍ୟ ମୟଙ୍କର ଶିକ୍ଷାଦାତା । ଶିକ୍ଷାଦାତା ଆପଣାର ସ୍ଥାନ ଓ ମର୍ଯ୍ୟାଦା ଜ୍ଞାତ ନୁହନ୍ତି । ପୃଥିବୀର ପ୍ରସବିତା ସବିତା ପୃଥିବୀକୁ ମଧସ୍ଥାନ ଦେଇ ନିଜକୁ ଚତୁର୍ଥସ୍ଥାନୀୟ ବୋଲି ଯୋଗ୍ୟ ଶିଷ୍ୟ ମୟ ଦାନବକୁ ଜ୍ୟୋତିଃଶାସ୍ତ୍ରର ଉପଦେଶ ଦେଇଅଛନ୍ତି । ସୂର୍ଯ୍ୟ ମୟକୁ ଶିକ୍ଷା ଦେଉନ୍ତୁ ବା ନ ଦେଉନ୍ତୁ ସୂର୍ଯ୍ୟସିଦ୍ଧାନ୍ତ ଗ୍ରନ୍ଥ ଯେ ମୟର ଉପଦେଶାନୁସାରେ ଲିଖିତ କିମ୍ବା ମୟର ମତାନୁସାରେ ବା ମୟରଚିତ କୌଣସି ପୁସ୍ତକ ଅବଲମ୍ବନରେ ଲିଖିତ ଏଥିରେ ସନ୍ଦେହ ନାହିଁ । ମୟ କିଏ ? ଏ ଘେନି ପଣ୍ଡିତଗଣଙ୍କ ମଧରେ ବିଷମ ମତଭେଦ ଥିବାର ଦେଖାଯାଏ । ମହାଭାରତରେ ଯୁଧିଷ୍ଠିରଙ୍କ ସଭାନିର୍ମାତା ଏକ ମୟ । ରାମାୟଣରେ କାଞ୍ଚନ—କାନନନିର୍ମାତା ଏକ ମୟ । ସୂର୍ଯ୍ୟ ଛାତ୍ର— ସୌର ମତପ୍ରବର୍ତ୍ତକ ଏକ ମୟ । ପ୍ରଥମୋକ୍ତ ଦୁଇଜଣ ଶିଳ୍ପୀ, ଶେଷୋକ୍ତ ମୟ ଜ୍ୟୋତିଷୀ । ସୂର୍ଯ୍ୟସିଦ୍ଧାନ୍ତ ରଚନାକାଳ ଘେନି ପଣ୍ଡିତଗଣଙ୍କ ମଧରେ ଅନ୍ୟ ମତ ନ ଥିଲେ ସୁଦ୍ଧା ଆମ୍ଭମାନଙ୍କର ହସ୍ତଗତ ସୂର୍ଯ୍ୟସିଦ୍ଧାନ୍ତ ଯେ ବ୍ରାହ୍ମ, ବାଶିଷ୍ଠ,

ପୌଳିଶ ଓ ରୋମକ ସିଦ୍ଧାନ୍ତର ପରବର୍ତ୍ତୀ, ଏଥିରେ ସନ୍ଦେହ କରିବାର କିଛିହିଁ କାରଣ ନାହିଁ ।

ଅଧ୍ୟାପକ ଯୋଗେଶଚନ୍ଦ୍ର ମହାଶୟ ଲେଖିଅଛନ୍ତି ଯେ, ''ଯେ ଆକାରରେ ଆମ୍ଭେମାନେ ସମ୍ପ୍ରତି ସୂର୍ଯ୍ୟ ସିଦ୍ଧାନ୍ତ ଦେଖୁଅଛୁଁ, ସେହି ଆକାର ଅନ୍ତତଃ ଶକର ଦ୍ୱାଦଶ ଶତାବ୍ଦୀରୁ ଅଛି ।'' ନିତ୍ୟାନନ୍ଦଙ୍କ ମତରେ ପ୍ରାଚୀନ ସୂର୍ଯ୍ୟସିଦ୍ଧାନ୍ତ କଳିର ୩୬୦୦ ବର୍ଷ ସମୟରେ ଅର୍ଥାତ୍ ୪୯୯ ଖ୍ରୀଷ୍ଟାବ୍ଦରେ ରଚିତ । ସୁତରାଂ ସୂର୍ଯ୍ୟସିଦ୍ଧାନ୍ତ ରଚନା ପୂର୍ବରୁ ଉପରୋକ୍ତ କେତେଗୋଟି ସିଦ୍ଧାନ୍ତ ଭାରତବର୍ଷରେ ବହୁଳପରିମାଣରେ ପ୍ରଚାରିତ ହୋଇଥିଲା, ଏଥିରେ ସନ୍ଦେହ କ'ଣ ? ଲାଟାଚାର୍ଯ୍ୟ, ରୋମକସିଦ୍ଧାନ୍ତର ବ୍ୟାଖ୍ୟାକର୍ତ୍ତା । ଲାଟ ବା ଲଗଧ ଏକବ୍ୟକ୍ତି ଏବଂ ଯବନ ବୋଲି ଅନେକେ ଅନୁମାନ କରନ୍ତି । ଲାଟାଚାର୍ଯ୍ୟ ଯବନ ପୁରର ସୂର୍ଯ୍ୟାସ୍ତ ସମୟରୁ ଅହର୍ଗଣ ଗଣନା କରନ୍ତି। ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ, ଲାଟାଚାର୍ଯ୍ୟ ଯବନ ହେଉନ୍ତୁ ବା ଭାରତୀୟ ଆର୍ଯ୍ୟ ହେଉନ୍ତୁ, ସେ ଯେ ଯବନ ଜ୍ୟୋତିଷ ଶାସ୍ତ୍ରରେ ପ୍ରଭୂତ ବ୍ୟୁତ୍ପତ୍ତି ଲାଭ କରିଥିଲେ ଏବଂ ଯବନ ଜ୍ୟୋତିଷର ପ୍ରବର୍ତ୍ତକ ଥିଲେ, ଏଥିରେ ସନ୍ଦେହ ନାହିଁ। ଏହା ଲେଖିବା ବାହୁଲ୍ୟ ଯେ, ବୃହଜ୍ଜାତକ ରଚନାବେଳେ ଯବନ ସଂସ୍ରବ ଅତ୍ୟଧିକ ହୋଇଥିଲା ଏବଂ ଏହି ପୁସ୍ତକରେ ପାରିଭାଷିକ ଯାବନିକ ଶବ୍ଦ ଏବଂ ଯବନଚାର୍ଯ୍ୟାଦିଙ୍କର ନାମୋଲ୍ଲେଖ ଅଛି। ଏଥିରେ ମୟ, ଯବନ ପ୍ରଭୃତିଙ୍କର ନାମ ମିଳେ । ଅଧ୍ୟାପକ ଯୋଗେଶଚନ୍ଦ୍ର ମହାଶୟ ଲେଖିଅଛନ୍ତି, 'ଗ୍ରୀକ୍‌ମତ— ସମ୍ଭବତଃ ମୟ ଯବନ' ଲାଟାଚାର୍ଯ୍ୟ, ସିଂହାଚାର୍ଯ୍ୟ ପ୍ରଭୃତି ଜ୍ୟୋତିଷିଗଣ ଦ୍ୱିତୀୟ ବା ତୃତୀୟ ଶତାବ୍ଦୀରେ ପ୍ରାଦୁର୍ଭୂତ ହୋଇଥିବାର ପଣ୍ଡିତଗଣ ଅନୁମାନ କରନ୍ତି । ସୁତରାଂ ସୂର୍ଯ୍ୟସିଦ୍ଧାନ୍ତ ରଚନା ବେଳେ ଯବନ ପାରିଭାଷିକ ଶବ୍ଦ ଓ ଯବନ ମତ ବହୁଳ ପରିମାଣରେ ଆମ୍ଭଦେଶରେ ପ୍ରଚାରିତ ହୋଇଥିଲା । ଯେଉଁ ସିଦ୍ଧାନ୍ତଗୁଡ଼ିକୁ ପଣ୍ଡିତଗଣ ଅତି ପ୍ରାଚୀନ ବୋଲି ବ୍ୟକ୍ତି କରନ୍ତି, ସେଥିରେ ଗ୍ରହାଦିଙ୍କର ନାମ ନାହିଁ । ଏହା ପୂର୍ବେ ଲେଖା ଯାଇଅଛି । କେବଳ ସୂର୍ଯ୍ୟସିଦ୍ଧାନ୍ତରେ ଗ୍ରହଗଣନାର ପ୍ରଥମ ସୂତ୍ରପାତ ମିଳେ । ସୁତରାଂ ଗ୍ରହଗଣନା ଓ ଗ୍ରହସ୍ଥାନ ନିର୍ଦ୍ଦେଶ ଯବନ ବା ଗ୍ରୀକ୍‌ମାନଙ୍କଠାରୁ ଗୃହୀତ ବୋଲିବା ଅସଙ୍ଗତ କି ?

ଗ୍ରୀକ୍ ଟଲିମୟ ଓ ସୂର୍ଯ୍ୟସିଦ୍ଧାନ୍ତର ମୟ ଏକ ବୋଲି କେତେକ ପଣ୍ଡିତଙ୍କର ମତ । ''ଜ୍ଞାନଭାସ୍କର ଗ୍ରନ୍ଥରେ ମୟକୁ ପଶ୍ଚିମର ରୋମକପୁରବାସୀ ବୋଲା ହୋଇଅଛି ।'' ପିୟଦର୍ଶୀ (ଅଶୋକ) ଲିଖିତ ଲିପିରେ ଏହି ଗ୍ରୀକ୍ ନାମଟି ତୁର ମୟ ହୋଇଅଛି ଏବଂ ତହିଁରୁ ଅସୁର ମୟ ହେବା ଅସମ୍ଭବ ନୁହେଁ । ଅଧ୍ୟାପକ ମହାଶୟ ଅନୁମାନ କରନ୍ତି, ''ଆଲେକଜାଣ୍ଡ୍ରିଆର ପ୍ରସିଦ୍ଧ ଟଲେମିଙ୍କ ପୁସ୍ତକକୁ ମୂଳ କରି ସଂସ୍କୃତ ଭାଷାରେ ଏହି ରୋମାନ୍ ସିଦ୍ଧାନ୍ତ ଲିଖିତ ହୋଇଥିଲା।''

ବେଦ ସିଦ୍ଧାନ୍ତ ମତରେ ବର୍ଷର ଦିନ ସଂଖ୍ୟା ୩୬୫, ଘ. ୫, ମି ୫୫, ସେ ୧୨; ସୂର୍ଯ୍ୟ ସିଦ୍ଧାନ୍ତ ମତରେ ଦି ୩୬୫, ଘ ୬ ମି ୧୨, ସେ. ୩୬-୫୬ । ପ୍ରଭେଦ କେବଳ ମି ୧୬, ସେ. ୨୪-୫୬ ।

ପୌରାଣିକ ଓ ବୈଦିକ ଜ୍ୟୋତିଷର ମତ ତ୍ୟାଗ କଲେ ଏବଂ ସିଦ୍ଧାନ୍ତ ମତ ଓ ଗ୍ରୀକ୍ (ଯବନ) ଜ୍ୟୋତିଷ ମତର ତୁଳନା କଲେ ଶେଷୋକ୍ତ ଯୋଡ଼ିକ ମତ ମଧ୍ୟରେ ଐକ୍ୟ ଥିବାର ପ୍ରମାଣ ମିଳେ । ଉଭୟ ମତର ଐକ୍ୟ ଦେଖି ଏକ ଜାତି ଅନ୍ୟ ଜାତିଠାରୁ ଶିକ୍ଷା କରିଥିବେ ବୋଲି ଅନୁମାନ କରିବା ସ୍ୱାଭାବିକ । ସମସ୍ତ ବିଷୟ ପର୍ଯ୍ୟାଲୋଚନା କଲେ ଜ୍ୟୋତିଷଶାସ୍ତ୍ରର ଅଧିକାଂଶ ବିଶେଷତଃ ଗ୍ରହସ୍ଫୁଟ, ଗ୍ରହସ୍ଥାନ ନିର୍ଣ୍ଣୟାଦି ଗ୍ରୀକ୍‌ମାନଙ୍କଠାରୁ ହିନ୍ଦୁଗଣ ଗ୍ରହଣ କରିଥିବାର ନିରାପଦରେ ମତ ଦିଆ ଯାଇପାରେ । ଏହା ଛଡ଼ା ସୂର୍ଯ୍ୟ ସିଦ୍ଧାନ୍ତର ମୟ ଓ ଗ୍ରୀକ୍ ଟଲିମୟ ଏକ ବ୍ୟକ୍ତି ବୋଲି ଯେ ପ୍ରମାଣିତ ହୋଇପଡୁଅଛି, ଏହା ଲେଖିବା ବାହୁଲ୍ୟ ମାତ୍ର । ସୂର୍ଯ୍ୟସିଦ୍ଧାନ୍ତ ଲେଖକ ସିଦ୍ଧାନ୍ତ ଗ୍ରନ୍ଥ ଲେଖିବାକୁ ଯାଇ ସୁଦ୍ଧା ପୌରାଣିକ କଳ୍ପନାରୁ ରକ୍ଷା ପାଇ ପାରି ନାହାନ୍ତି, ଏହା ବର୍ଣ୍ଣନା କରିବାର ନିଷ୍ପ୍ରୟୋଜନ । ଯେମନ୍ତ ଅଷ୍ଟାଦଶ ପୁରାଣ ଲେଖକମାନେ ସମସ୍ତ ପୁରାଣର ରଚକ ବ୍ୟାସ ବୋଲି ନିଜ ନିଜ ନାମ ଗୋପନ କରି ଯାଇଅଛନ୍ତି ଏବଂ ପୁରାଣର ପ୍ରାଚୀନତ୍ୱ ଫଳାଇବାର ଚେଷ୍ଟା କରିଅଛନ୍ତି, ସୂର୍ଯ୍ୟସିଦ୍ଧାନ୍ତ ଲେଖକ ନିଜର ନାମ ଗୋପନ କରି ନିଜ ମତର ପ୍ରାଚୀନତ୍ୱ ଫଳାଇବା ନିମନ୍ତେ ପ୍ରକୃତ ମୟକୁ କାଳ୍ପନିକ ମୟ ଆଖ୍ୟା ପ୍ରଦାନ କରି ସୂର୍ଯ୍ୟଶିଷ୍ୟ କରିଅଛନ୍ତି । ଏହି ପନ୍ଥା ଓ ରୀତି ହିନ୍ଦୁଗଣ ବରାବର ଅବଲମ୍ବନ କରିଅଛନ୍ତି ଓ କରୁଅଛନ୍ତି । ଈଦୃଶ କୁରୀତି ଅବଲମ୍ବନ କରି ନିଜ ଦେଶର ଶାସ୍ତ୍ରମର୍ଯ୍ୟାଦା ଓ ଜାତୀୟ ଗୌରବ ବଢ଼ାଇବା ଶ୍ରେୟସ୍କର କି ନା, ତାହା ବିସ୍ତୃତଭାବରେ ଆଲୋଚନା କରିବାର ବର୍ତ୍ତମାନ ସମୟ ନୁହେଁ । ଚାରି ପାଞ୍ଚ ବର୍ଷ ତଳେ ଓଡ଼ିଆ ଗୀତ ତ୍ରିନାଥମେଳାର ସଂସ୍କୃତ ଭାଷାନ୍ତରକାରୀ ସୁଦର୍ଶନ ମିଶ୍ର ତ୍ରିନାଥମେଳା ବ୍ୟାସକର୍ତ୍ତୃକ ରଚିତ ଓ ଶୁକ ଶୌନକାଦିଙ୍କ ଆଗରେ ସୂତ

କର୍ତ୍ତୃକ ବ୍ୟାଖ୍ୟାତ ବୋଲି ଲେଖିଅଛନ୍ତି । ଇତିମଧ୍ୟରେ ଲୋକେ ତାକୁ ପ୍ରାଚୀନ ପୁସ୍ତକ ବୋଲି ମନେ କଲେଣି । ଏକଶତାବ୍ଦୀ ପରେ ଏ ପୁସ୍ତକ ସମ୍ବନ୍ଧରେ ହିନ୍ଦୁମାନଙ୍କର କି ଧାରଣା ନ ହେବ ? ଶିକ୍ଷାଦାତାର ନାମ ଗୋପନ, ଆତ୍ମଗୋପନ କରି ଯେକୌଣସି ପୁସ୍ତକ ଋଷି ନାମରେ, ଦେବତା ନାମରେ ଭଣତି କରିବାକୁ ହିନ୍ଦୁଜାତି ଅଭ୍ୟସ୍ତ ।

ଭୂକୈନ୍ଦ୍ରିକ ଓ ସୂର୍ଯ୍ୟକୈନ୍ଦ୍ରିକ ଦୁଇ ଗୋଟି ମଧ୍ୟରୁ ସୂର୍ଯ୍ୟକୈନ୍ଦ୍ରିକ ମତ ଅଭ୍ରାନ୍ତ ବୋଲି ପ୍ରତପନ୍ନ ହୋଇଅଛି । ସୂର୍ଯ୍ୟକୈନ୍ଦ୍ରିକ ମତଟି ଭୂକୈନ୍ଦ୍ରିକ ମତ ତୁଳନାରେ ଅର୍ବାଚୀନ । ଭୂକୈନ୍ଦ୍ରିକ ମତକୁ ପ୍ରାଚୀନ ଗ୍ରୀକଗଣ ଓ ହିନ୍ଦୁଗଣ ନିର୍ଭୁଲ୍ ବୋଲି ଗଣନା କରୁଥିଲେ ।

ଟଲେମିଙ୍କ (ମୟ) ମତରେ ପୃଥିବୀ ମଧ୍ୟ ସ୍ଥାନବର୍ତ୍ତୀ । ପୃଥିବୀକୁ କେନ୍ଦ୍ର କରି ଯଥାକ୍ରମେ ଚନ୍ଦ୍ର, ବୁଧ, ଶୁକ୍ର, ସୂର୍ଯ୍ୟ, ମଙ୍ଗଳ, ବୃହସ୍ପତି, ଶନି ନିଜ କକ୍ଷରେ ପ୍ରଦକ୍ଷିଣ କରୁଅଛନ୍ତି । ତହିଁ ଉତାରୁ ନକ୍ଷତ୍ର ଓ ଦେବତାଦିଙ୍କର ବାସ ଇତ୍ୟାଦି ଅତ୍ୟଦ୍ଭୁତ କଳ୍ପନା ।

ସୂର୍ଯ୍ୟସିଦ୍ଧାନ୍ତ ମତରେ ମଧ୍ୟ ତଦ୍ରୂପଃ—

ମନ୍ଦାମରେଜ୍ୟ ଭୂପୁତ୍ର ସୂର୍ଯ୍ୟ
ଶୁକ୍ରେନ୍ଦୁଜେନ୍ଦବଃ ।
ପରିଭ୍ରମନ୍ତ୍ୟଧୋଽଧସ୍ତାଃ ସିଦ୍ଧ
ବିଦ୍ୟାଧରା ଘନାଃ ।

୩୧ । ସୂ:ସି: ୧୨ ଅଧ୍ୟାୟ

ଉଭୟ ମତରେ ଯଥାକ୍ରମେ ଚନ୍ଦ୍ର, ବୁଧ, ଶୁକ୍ର, ସୂର୍ଯ୍ୟ, ମଙ୍ଗଳ, ବୃହସ୍ପତି ଓ ଶନିର ସ୍ଥାନ । ତାହା ହେଲେ ଗ୍ରହାବସ୍ଥିତ ଅନୁସାରେ ଯଥାକ୍ରମେ ସୋମବାର, ବୁଧବାର, ଶୁକ୍ରବାର, ରବିବାର, ମଙ୍ଗଳବାର, ଗୁରୁବାର ଓ ଶନିବାର ହେବାର କଥା କିମ୍ବା ଶନିଠାରୁ ଆରମ୍ଭ କରି ଶନିବାର, ଗୁରୁବାର, କ୍ରମରେ ସୋମବାରରେ ସପ୍ତାହ ଶେଷ ହେବାର କଥା । ଏହା ନ ହୋଇ ପୃଥିବୀଠାରୁ ଚତୁର୍ଥ ସ୍ଥାନରେ ଅବସ୍ଥିତ ସୂର୍ଯ୍ୟ ପରେ ପ୍ରଥମ ସ୍ଥାନାବସ୍ଥିତ ସୋମ, ତହିଁ ଉତାରୁ ପଞ୍ଚମ ସ୍ଥାନାବସ୍ଥିତ ମଙ୍ଗଳ, କ୍ରମେ ଷଷ୍ଠ ସ୍ଥାନାବସ୍ଥିତ ବୃହସ୍ପତି, ପୁଣି ତୃତୀୟ ସ୍ଥାନାବସ୍ଥିତ ଶୁକ୍ର ଏବଂ ସପ୍ତମ ସ୍ଥାନାବସ୍ଥିତ ଶନି ନାମରେ ବାର ହେଲା କିପରି ? ଇଦୃଶ ଅସାମଞ୍ଜସ୍ୟ ଓ ବିଶୃଙ୍ଖଳ ବାରଗଣନାର କାରଣ କ'ଣ ? ହିନ୍ଦୁଗଣ ବାର ଗଣନା କରନ୍ତି ସତ ମାତ୍ର ଏପରି ବିଶୃଙ୍ଖଳା ଭାବରେ ଗଣନା କଲେ କାହିଁକି, ତହିଁର ସ୍ପଷ୍ଟ କାରଣ କୌଣସି ସିଦ୍ଧାନ୍ତ ଗ୍ରନ୍ଥରେ ବା ପୁରାଣାଦିରେ ନାହିଁ ।

ପ୍ରାଚୀନ ଇଜିପ୍ଟବାସୀ ଦିବସକୁ ଚବିଶ ଘଣ୍ଟାରେ ଭାଗ କରିଥିଲେ । ଆମ୍ଭମାନଙ୍କ ଦେଶ ପରି ଷାଠିଏ ଦଣ୍ଡରେ ଭାଗ କରି ନ ଥିଲେ ଏବଂ ଦିବସର ପ୍ରତ୍ୟେକ ଏକ ଏକ ଘଣ୍ଟାରେ ଅଧିପତି ଏକ ଏକ ଗ୍ରହ ବୋଲି ମନେ କରୁଥିଲେ । କ୍ରମରେ ସାତ ଗ୍ରହ ସାତ ଘଣ୍ଟା ଭୋଗ କଲାରୁ ପୁଣି ପ୍ରଥମ ଗ୍ରହ ଅଷ୍ଟମ ଘଣ୍ଟାରେ ଅଧିପତି ହୁଏ ଏବଂ କ୍ରମେ ପୁଣି ବାକି ଗ୍ରହଗଣ ଏକ ଏକ ଘଣ୍ଟାରେ ଅଧିପତି ହୁଅନ୍ତି । ଏହି କ୍ରମରେ ସାତ ଗୋଟି ଗ୍ରହ ଚବିଶ ଘଣ୍ଟାରେ ଅଧିପତି ହେଲା ପରେ ଦ୍ୱିତୀୟ ଦିବସର ପ୍ରଥମ ଘଣ୍ଟାରେ ଯେଉଁ ଗ୍ରହ ଅଧିପତି ହୁଏ, ତାହାର ନାମରେ ଦିବସ ବା ବାରର ନାମ ହୁଏ । ଏହି ପ୍ରକାରେ ସାତ ଗୋଟି ଗ୍ରହ ନାମରେ ସାତ ଗୋଟି ବାରର ନାମ ହୋଇଅଛି । ଏକ ପ୍ରାନ୍ତରେ ଚନ୍ଦ୍ର ଏବଂ ଅନ୍ୟ ପ୍ରାନ୍ତରେ ଶନି । ଇଜିପ୍ଟବାସୀଗଣ ଚନ୍ଦ୍ରଠାରୁ ଗଣନା ଆରମ୍ଭ କରି ନାହାନ୍ତି । ଦୂରବର୍ତ୍ତୀ ଶନିଠାରୁ ପ୍ରଥମ ଗଣନା ଆରମ୍ଭ କରିଥିଲେ । ଶନି ଦୂରବର୍ତ୍ତୀ ଓ ଗ୍ରହ ଓ ନକ୍ଷତ୍ରମାନଙ୍କର ମଧ୍ୟବର୍ତ୍ତୀ ବୋଲି ସମ୍ଭବତଃ ପ୍ରଥମ ଗ୍ରହ ମନେ କରିଥିଲେ ଏବଂ ଶନିକୁ ପ୍ରଥମ ଗଣନା ଦିବସରେ ପ୍ରଥମ ଘଣ୍ଟାର ଅଧିପତି ବୋଲି ନିଶ୍ଚୟ କଲେ ଏବଂ କ୍ରମେ ଧାରାବାହିକରୂପେ ବୃହସ୍ପତି, ମଙ୍ଗଳ, ସୂର୍ଯ୍ୟ, ଶୁକ୍ର, ବୁଧ ଓ ଚନ୍ଦ୍ରକୁ ଦ୍ୱିତୀୟ, ତୃତୀୟ, ଚତୁର୍ଥ, ପଞ୍ଚମ, ଷଷ୍ଠ ଓ ସପ୍ତମ ଘଣ୍ଟାର ଅଧିପତି ନିଶ୍ଚୟ କଲେ । ପୁଣି ଅଷ୍ଟମ ଘଣ୍ଟାର ଅଧିପତି ଶନି ହେଲା । ଏହି କ୍ରମରେ ୨୪ ଘଣ୍ଟା ଶେଷ ରାତ୍ର ପାହାନ୍ତା ଘଣ୍ଟାର ଅଧିପତି ମଙ୍ଗଳ ଏବଂ ଦ୍ୱିତୀୟ ଦିବସର ପ୍ରଥମ ଘଣ୍ଟାର ଅଧିପତି ସୂର୍ଯ୍ୟ । ଏହି ପ୍ରକାରେ ଏହି ନିୟମରେ ସପ୍ତାହ ଓ ବାରର ସୃଷ୍ଟି । ଏହି ଗଣନା ନିର୍ଭୁଲ୍ ଏବଂ ଏହାର ସଂଶୋଧନ ପ୍ରୟୋଜନ ନାହିଁ । ବରାବର ଚାଲି ଆସୁଅଛି ଓ ଚାଲିବ । ସାଧାରଣତଃ ରବିବାରକୁ ପ୍ରଥମ ବାର ବୋଲି ମନେ କରାଯାଏ । ଯେକୌଣସି ବାରକୁ ସପ୍ତାହର ପ୍ରଥମ ବାର ବୋଲି ଧରି ନେଲେ ମଧ୍ୟ ବାରଗଣନାର କ୍ରମରେ ବ୍ୟତ୍ୟୟ ଘଟିବି ନାହିଁ । ଜୁଡ଼ାଜାତି ଇଜିପ୍ଟବାସୀଙ୍କ କର୍ତ୍ତୃକ ନିର୍ଯାତିତ ହୋଇ ସିରିଆ ଦେଶକୁ ଆସିଲା ପରେ ଇଜିପ୍ଟବାସୀଙ୍କ ପ୍ରତି ଘୃଣା ପ୍ରଦର୍ଶନ ସକାଶେ ଶନିବାରକୁ ସପ୍ତାହର ପ୍ରଥମ ବାର ନ କରି ରବିବାରକୁ ପ୍ରଥମ ବାର କଲେ । ତଦବଧି ରବିବାର ସପ୍ତାହର ପ୍ରଥମ ଦିନ ହୋଇଅଛି ।

●

## ଶକ୍ତି ସମନ୍ୱିତ ବସ୍ତୁ ସମଷ୍ଟି ନିତ୍ୟ

ପୂର୍ବାବସ୍ଥା ପରିତ୍ୟାଗ ବିନାଶ ବା ପରିବର୍ତ୍ତନର ନାମ ନାଶ । ବସ୍ତୁର ସମ୍ପୂର୍ଣ୍ଣ ଧ୍ୱଂସ ହୋଇ ନ ପାରେ । ବସ୍ତୁ ଆମ୍ଭମାନଙ୍କ ଇନ୍ଦ୍ରିୟର ଅଗ୍ରାହ୍ୟ ହେଲେ ଧ୍ୱଂସ ହେଲା ବୋଲି କହୁଁ, ମାତ୍ର ଈଦୃଶ ଅବସ୍ଥା ବସ୍ତୁର ଧ୍ୱଂସ ନୁହେଁ ।

ଅଗ୍ନି ପ୍ରଜ୍ୱଳିତ ତୃଣଗୁଚ୍ଛ ଭସ୍ମୀଭୂତ ହୁଏ । ଭସ୍ମରାଶି ଆମ୍ଭମାନଙ୍କର ଚକ୍ଷୁର ବିଷୟୀଭୂତ ହୁଏ ନାହିଁ । ଇଷ୍ଟକ ଖଣ୍ଡ ଚୂର୍ଣ୍ଣୀଭୂତ ହୋଇ ଅଦୃଶ୍ୟ ହୁଏ, ଜଳରେ ଚିନି ମିଶ୍ରିତ ହେଲେ ମିଳାଇଯାଏ, ଜଳ ଶୁଖିଯାଏ । ପ୍ରକାଣ୍ଡ ମହୀରୁ ବାୟୁ ବିତାଡ଼ିତ ହୋଇ ଉନ୍ମୂଳିତ ହୁଏ । ଉନ୍ମୂଳିତ ବୃକ୍ଷ କ୍ରମେ ଶୁଷ୍କ ହୋଇଯାଏ । ବା ପଚିଯାଏ ଏବଂ କିଛିକାଳ ପରେ ତା'ର ଚିହ୍ନ ବର୍ଣ୍ଣ ନ ଥାଏ । ଜୀବଗଣ ମୃତ୍ୟୁମୁଖରେ ପତିତ ହୁଅନ୍ତି । ଭୂମିଖଣ୍ଡ ଜଳରାଶିରେ ପରିଣତ ହୁଏ । ସମୁଦ୍ରଗର୍ଭ ଭୂଭାଗରେ ପରିଣତ ହୁଏ । ଏତାଦୃଶ ଘଟନା ଅହରହ ଘଟୁଅଛି, ଆମ୍ଭମାନଙ୍କ ଦୃଷ୍ଟିପଥରେ ପଡୁଅଛି । ଭୂପୃଷ୍ଠସ୍ଥ ସମସ୍ତପ୍ରକାର ପଦାର୍ଥ, କି କୋମଳତମ ଜୀବ କି କଠିନତମ ଉପଳଖଣ୍ଡ ବିନଷ୍ଟ ହେବାର ଦେଖାଗଲା । ତହିଁରୁ ବଡ଼ ପାଷାଣଖଣ୍ଡର କି ସେହି ପରିଣାମ ହୋଇ ନ ପାରେ ? ପୁଣି ପାଷାଣ ଓ ମୃତ୍ତିକାଗଠିତ ଏହି ପୃଥିବୀର ମଧ କି ସେହି ପରିଣାମ ହେବ ନାହିଁ ? ତାହା କିଏ ଅନ୍ୟଥା କରିବ ? ଆଜି ଇଷ୍ଟକଖଣ୍ଡର ଯେଉଁ ପରିଣାମ କାଳକ୍ରମେ ପୃଥିବୀର ମଧ ସେହି ପରିଣାମ ହେବ । ଚନ୍ଦ୍ର, ଗ୍ରହ, ସୂର୍ଯ୍ୟ, ନକ୍ଷତ୍ର ସମସ୍ତେ କାଳକ୍ରମେ ଏହି ଇଷ୍ଟକର ଦଶାକୁ ପ୍ରାପ୍ତ ହେବେ । ପୃଥିବୀ ମନୁଷ୍ୟର ବାସସ୍ଥାନ ବୋଲି ରହିବ ନାହିଁ । ସୂର୍ଯ୍ୟ ଆଲୋକ ଦିଏ ବୋଲି ରହିବ ନାହିଁ । ନକ୍ଷତ୍ରଗଣ ମନୁଷ୍ୟର ନେତ୍ରାହ୍ଲାଦକ ବୋଲି ରହିବେ ନାହିଁ । ଯେହେତୁ ଏମାନଙ୍କର ଆକାର ଅଛି, ଏମାନଙ୍କର ଅବଶ୍ୟ ନାଶ ହେବ ।

ସୂର୍ଯ୍ୟ ପ୍ରତ୍ୟହ ପ୍ରାତଃକାଳରେ ଉଦିତ ହୋଇ ସନ୍ଧ୍ୟାସମୟରେ ଅସ୍ତ ହେଉଅଛି । ନକ୍ଷତ୍ରଗଣ ପ୍ରତି ରାତ୍ରରେ ନୀଳାକାଶକୁ ସୁଶୋଭିତ କରୁଅଛନ୍ତି । ଆମ୍ଭେମାନେ ଏହି ବ୍ୟାପାର ଦେଖି ମନେ କରୁ ଯେ, ଏହି ପୃଥିବୀ ଚିରକାଳ ଏହିପରି ଥିଲା । ମନୁଷ୍ୟଗଣ ଅନନ୍ତକାଳ ଏହି ପରି ବାସ କରି ଆସୁଅଛନ୍ତି । ସୂର୍ଯ୍ୟ ଏହିପରି ଆଲୋକ ଓ ଉତ୍ତାପ ଦେଉଅଛି । ଚନ୍ଦ୍ର ଅନନ୍ତକାଳ ନରଗଣଙ୍କର ହୃଦୟାହ୍ଲାଦକ ହୋଇଅଛି । ନକ୍ଷତ୍ରଗଣ ମନୁଷ୍ୟର ନେତ୍ରପ୍ରୀତି ନିମନ୍ତେ ପୂର୍ବରେ ଉଦିତ ହୋଇ ପଶ୍ଚିମରେ ଅସ୍ତମିତ ହେଉଅଛି । ପୂର୍ବ ପୁରୁଷଗଣଙ୍କର ଏହି ବିଶ୍ୱାସ ଥିଲା, ସୁତରାଂ ସେମାନେ ସୃଷ୍ଟି ରହସ୍ୟ ଉଦ୍‌ଘାଟନ କରିବାରେ ଏତେ ପରାଙ୍ମୁଖ ଥିଲେ । ଆମ୍ଭେମାନେ ମଧ ସେହି ସଂସ୍କାରାଧୀନ ହୋଇ ସୃଷ୍ଟି ରହସ୍ୟ ଜ୍ଞାତ ହେବା ବିଷୟରେ ଏତେ ଅମନୋଯୋଗୀ । ଏଣୁ ଆକାଶରେ ପ୍ରତି ରାତ୍ରରେ କି ଘଟନା ଘଟୁଅଛି, ତାହା ଆମ୍ଭମାନଙ୍କ ହୃଦୟରେ ସ୍ଥାନ ପାଏ ନାହିଁ । ସାଧାରଣତଃ ଏହା ଦେଖାଯାଏ ଯେ, ଅସଂଖ୍ୟ କ୍ଷୁଦ୍ର ଘଟନା ପରେ ଗୋଟାଏ ବଡ଼ ଘଟନା ଘଟିଥାଏ । ପୁଣି ଆମ୍ଭେମାନେ ଆକାଶର ବୈଚିତ୍ର୍ୟ ସନ୍ଦର୍ଶନରେ ଏଡ଼େ ପରାଙ୍ମୁଖ ଯେ, କୌଣସି ଘଟନା ସଂଘଟିତ ହେଲେ ମଧ ଲକ୍ଷ୍ୟ ରଖୁ ନାହିଁ । ଯେଉଁ ନକ୍ଷତ୍ରଗୁଡ଼ିକ ସାଧାରଣ ଚକ୍ଷୁକୁ ଦୃଶ୍ୟ ହୁଅନ୍ତି, ସେମାନଙ୍କର କୌଣସି ପରିବର୍ତ୍ତନ ଘଟିବାର ନ ଦେଖିଲେ ଆକାଶରେ ଅନ୍ୟ କୌଣସି ପରିବର୍ତ୍ତନ ହେଉଅଛି ବୋଲି ଆମ୍ଭମାନଙ୍କର ଧାରଣା ହୁଏ ନାହିଁ । ନକ୍ଷତ୍ରଗଣ ବହୁ ଶ୍ରେଣୀରେ ବିଭକ୍ତ । ତନ୍ମଧ୍ୟରୁ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଶ୍ରେଣୀର ନକ୍ଷତ୍ର କେବଳ ଚକ୍ଷୁର ଗୋଚର ଅଟନ୍ତି । ତନ୍ନିମ୍ନ ଶ୍ରେଣୀର ନକ୍ଷତ୍ରଗଣ କ୍ଷମତାଶାଳୀ ଯନ୍ତ୍ର ସାହାଯ୍ୟ ବ୍ୟତିରେକେ ଦେଖାଯାନ୍ତି ନାହିଁ । ଖାଲି ଚକ୍ଷୁକୁ ଦେଖାଯିବା ନକ୍ଷତ୍ର ସଂଖ୍ୟା ପ୍ରାୟ ଛଅହଜାର । ଯନ୍ତ୍ର ସାହାଯ୍ୟରେ ଆଜିଯାଏ ପ୍ରାୟ ପାଞ୍ଚ କୋଟି ନକ୍ଷତ୍ର ଆବିଷ୍କୃତ ହୋଇଅଛନ୍ତି । ମନୁଷ୍ୟ ବୁଦ୍ଧିବଳରେ ଯେତିକି କ୍ଷମତାଶାଳୀ ଦୂରବୀକ୍ଷଣ ଯନ୍ତ୍ର ଆବିଷ୍କାର କରି ଅନନ୍ତ ଆକାଶକୁ ଭେଦ କରିବାକୁ ବସିବ, ନକ୍ଷତ୍ର ସଂଖ୍ୟା ତେତିକି ଅସଂଖ୍ୟ ବୋଲି ହୃଦୟଙ୍ଗମ କରିପାରୁଥିବ ବୋଲି ମନେ ହୁଏ ।

ପରିଦୃଶ୍ୟମାନ ନକ୍ଷତ୍ରମାନଙ୍କ ମଧ୍ୟରୁ କୌଣସିଟିର ପରିବର୍ତ୍ତନ ହେଉ ନ ଥିବାରୁ ଆମ୍ଭେମାନେ ଅନୁମାନ କରିବା ନାହିଁ ଯେ, ଏହି ନକ୍ଷତ୍ରସମୂହ ଚିରକାଳ ରହିବେ । ଏମାନଙ୍କ ମଧ୍ୟରୁ କୌଣସିଟିର ନାଶ ହୋଇ ନାହିଁ କି ହେବ ନାହିଁ । ଅନନ୍ତ ଆକାଶରେ ଅସଂଖ୍ୟ ନକ୍ଷତ୍ର ପରିଭ୍ରମଣ କରୁଅଛନ୍ତି । ବୟସ ଅନୁସାରେ ସେମାନଙ୍କର ନାଶ ଘଟୁଅଛି । ନକ୍ଷତ୍ରଗୁଡ଼ିକ ପୃଥିବୀଠାରୁ ବହୁ ଦୂରରେ ଅବସ୍ଥିତ, ଏଣୁ ଯେଉଁ ନକ୍ଷତ୍ର ଅଦ୍ୟ ଜାଜ୍ୱଲ୍ୟମାନରୂପେ ଆମ୍ଭମାନଙ୍କୁ ଦେଖାଯାଉଅଛି, ହୁଏତ ତାହା ବହୁଶତାବ୍ଦୀ ପୂର୍ବରୁ ନିର୍ବାପିତ ହୋଇଗଲାଣି, ମାତ୍ର ତାହାର ନାଶ ସମ୍ବାଦ ଆମ୍ଭ ନିକଟରେ ପହଞ୍ଚି ନାହିଁ ।

ଆକାଶକୁ କିଛିକ୍ଷଣ ନିରୀକ୍ଷଣ କଲେ ଆମ୍ଭେମାନେ ତୀର୍ଯ୍ୟକ୍ ଗତିଶୀଳ ଗୋଟିଏ ଗୋଟିଏ ଆଲୋକ ଦେଖିବାକୁ ପାଉଁ । ଏଗୁଡ଼ିକର ଆଲୋକ ନକ୍ଷତ୍ର ଆଲୋକ ସହିତ ସମାନ ।

ଏ ହେତୁରୁ ଲୋକେ ଏତାଦୃଶ ଆଲୋକ ଦେଖି ନକ୍ଷତ୍ରପାଳ ବୋଲି କହନ୍ତି । ଏହି ଆଲୋକର ନାମ ଉଲ୍‌କା । ପ୍ରତି ରାତ୍ରିରେ ଅସଂଖ୍ୟ ଉଲ୍‌କାପାତ ହୁଏ । ଘଣ୍ଟାକ ମଧରେ ତିନି ଚାରି ଗୋଟା ଉଲ୍‌କା ଅନାୟାସରେ ଦେଖାଯାଇପାରେ । ପୁଣି କୌଣସି କୌଣସି ରାତ୍ରିରେ ଏକ ସ୍ଥାନରୁ ଅଗଣନ ଉଲ୍‌କାପାତ ହୁଏ । ବଡ଼ ଛୋଟ ହୋଇ ଏକ କୋଟିଠାରୁ ଦୁଇ କୋଟି ପର୍ଯ୍ୟନ୍ତ ଉଲ୍‌କା ପୃଥିବୀର ବାୟୁମଣ୍ଡଳରେ ଭସ୍ମୀଭୂତ ହୁଅନ୍ତି । ପ୍ରତ୍ୟହ ଯେ ଏତେ ଉଲ୍‌କାପାତ ହେଉଅଛି, ଏଗୁଡ଼ିକ କ'ଣ ? ଏଗୁଡ଼ିକ ନକ୍ଷତ୍ରଖଣ୍ଡ, କୃଷ୍ଣକାୟ, ଜଡ଼ପିଣ୍ଡ । ସମୁଦ୍ର ଯେମନ୍ତ ଅସଂଖ୍ୟ ଜୀବଜନ୍ତୁ ଓ କୀଟାଣୁରେ ପରିପୂର୍ଣ୍ଣ, ଆକାଶ ତେମନ୍ତ ବୃହଦାକାର ପ୍ରସ୍ତରଖଣ୍ଡଠାରୁ କ୍ଷୁଦ୍ରତମ ଧୂଳିକଣା ସଦୃଶ ଉଲ୍‌କାଦ୍ୱାରା ପରିପୂର୍ଣ୍ଣ । ଏଗୁଡ଼ିକ ଗଗନସାଗରର କୀଟାଣୁ । ଧୂମକେତୁ ତୁଲ୍ୟ ଏମାନଙ୍କର ଗତିପଥ ଅଛି । ଏମାନେ ସେହି ପଥରେ ଭ୍ରମଣ କରନ୍ତି ।

ଉଲ୍‌କାପିଣ୍ଡ ସମୂହ ସୂର୍ଯ୍ୟମାନଙ୍କଦ୍ୱାରା ନିକ୍ଷିପ୍ତ । ଯେଉଁଗୁଡ଼ିକ କୌଣସି ସୂର୍ଯ୍ୟ କର୍ତ୍ତୃକ ଅତି ଦୂରକୁ ନିକ୍ଷିପ୍ତ ହୁଅନ୍ତି, ସେଗୁଡ଼ିକ ନିକ୍ଷେପକାରୀ ସୂର୍ଯ୍ୟ ପରିବାରରୁ ଚିରକାଳ ନିମନ୍ତେ ବିଦାୟ ନିଅନ୍ତି ଏବଂ ଅପର ସୂର୍ଯ୍ୟ କର୍ତ୍ତୃକ ଧୃତ ହୋଇ ପ୍ରଦକ୍ଷିଣ କରନ୍ତି । ଯେଉଁଗୁଡ଼ିକ ସଜୋରେ ନିକ୍ଷିପ୍ତ ହୁଅନ୍ତି ନାହିଁ, ସେଗୁଡ଼ିକ ସୂର୍ଯ୍ୟର ଜ୍ୱଳନ୍ତ ଶରୀର ଉପରେ ପତିତ ହୋଇ ଭସ୍ମୀଭୂତ ହୁଅନ୍ତି । ଯେହେତୁ ଉଲ୍‌କାଗୁଡ଼ିକ ସୂର୍ଯ୍ୟ ଶରୀରରେ ପତିତ ହୋଇ ନାହାନ୍ତି ଏବଂ ତାହାର ଚତୁର୍ଦ୍ଦିଗରେ ଧୂମକେତୁ ପ୍ରାୟ ଭ୍ରମଣ କରୁଅଛନ୍ତି, ସୁତରାଂ ବୋଲାଯାଇପାରେ ଯେ, ଅପର ସୂର୍ଯ୍ୟ କର୍ତ୍ତୃକ ନିକ୍ଷିପ୍ତ ଉଲ୍‌କାପିଣ୍ଡଗୁଡ଼ିକ ଆମ୍ଭମାନଙ୍କ ସୂର୍ଯ୍ୟର ଆକର୍ଷଣାଧୀନ ହୋଇଅଛନ୍ତି ଏବଂ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଭ୍ରମଣ କରୁଅଛନ୍ତି । ଉଲ୍‌କାପିଣ୍ଡର ଉତ୍ପତ୍ତି ସମ୍ବନ୍ଧରେ ଉପରୋକ୍ତ ମତ ଛଡ଼ା ଆଉ କେତେଗୋଟି ମତ ଅଛି । ବିଭିନ୍ନ ମତ ଥିଲେ ମଧ ଉଲ୍‌କାପିଣ୍ଡ ସମୂହ ଯେ ସୂର୍ଯ୍ୟମାନଙ୍କଠାରୁ ଜାତ, ଏଥିରେ ମତଦ୍ୱୈଧ ନାହିଁ । ଆଉ ଏମାନେ ସୂର୍ଯ୍ୟ ଓ ଗ୍ରହମାନଙ୍କର ଶରୀରରେ ପଡ଼ି ସେମାନଙ୍କର ଅଙ୍ଗ ଓ ଗୁରୁତା ବୃଦ୍ଧି କରୁଅଛନ୍ତି, ଏଥିରେ ସନ୍ଦେହ ନାହିଁ ।

ଏହି ପିଣ୍ଡ ସମୂହର ଗତିପଥ ପ୍ରାୟ ବୈକେନ୍ଦ୍ରିକ, ଏଣୁ ଏମାନେ ସମୟ ସମୟରେ ପୃଥିବୀର ଗତିପଥର ଅତି ନିକଟବର୍ତ୍ତୀ ହୁଅନ୍ତି । ଯେଉଁଗୁଡ଼ିକ ପୃଥିବୀର ଆକର୍ଷଣାଧୀନ ହୁଅନ୍ତି; ସେଗୁଡ଼ିକ ବାୟୁ ସଂଘର୍ଷଣରେ ପ୍ରଜ୍ୱଳିତ ହୁଅନ୍ତି; ଏଣୁ ଆମ୍ଭେମାନେ ଦେଖିବାକୁ ପାଉଁ । ବର୍ଷକୁ ବର୍ଷ ପୃଥିବୀ ଏକ ଏକ ସ୍ଥାନକୁ ଆସିଲେ ବହୁସଂଖ୍ୟକ ଉଲ୍‌କା ତାହାର ଆକର୍ଷଣାଧୀନ ହୋଇ ପ୍ରଜ୍ୱଳିତ ହୁଅନ୍ତି । ଏପ୍ରିଲ୍ ୨୦ ତାରିଖ ନଭେମ୍ବର ୧୩ ଓ ୧୭ ତାରିଖ ଏବଂ ଅଗଷ୍ଟ ୧୦ ତାରିଖ ଉଲ୍‌କା ଦର୍ଶନ ନିମନ୍ତେ ପ୍ରଶସ୍ତ ଦିବସ ।

ଏମାନଙ୍କର ଗତି ଅତି ପ୍ରଖର, ସ୍ୱତନ୍ତ୍ର ବାୟୁସଂଘର୍ଷଣ ଦ୍ୱାରା ପ୍ରଜ୍ୱଳିତ ହୁଅନ୍ତି, ଉତ୍ତାପର ଅତ୍ୟଧିକ ବୃଦ୍ଧି ହୁଏ । ଜଡ଼ ପିଣ୍ଡଟି ଗତି କରୁ କରୁ ଦଗ୍ଧ ହେଉଥାଏ । କ୍ଷୁଦ୍ର ଉଲ୍‌କାଗୁଡ଼ିକ ଏକାବେଳକେ ଭସ୍ମରେ ପରିଣତ ହୁଅନ୍ତି । ବଡ଼ ବଡ଼ କେତେଗୋଟା ଭସ୍ମୀଭୂତ ନ ହୋଇ ଭୂପୃଷ୍ଠରେ ପତିତ ହୁଅନ୍ତି । ଆଲମ୍ବ ପର୍ବତ ଉପରେ ପତିତ ଉଲ୍‌କାପିଣ୍ଡର ଓଜନ ପ୍ରାୟ ସତର ମହଣ । ଲୋକେ ଏତାଦୃଶ ଉଲ୍‌କାପିଣ୍ଡ ପାଇଅଛନ୍ତି ଏବଂ ତାହା ମିଉଜିୟମମାନଙ୍କରେ ଯତ୍ନ ସହକାରେ ରଖା ଯାଇଅଛି । ପଣ୍ଡିତଗଣ ଉଲ୍‌କାପିଣ୍ଡକୁ ବିଶ୍ଳେଷଣ କରି ଦେଖିଅଛନ୍ତି ଯେ, ଉଲ୍‌କାର ଉପାଦାନ ପୃଥିବୀର କେତେକ ଉପାଦାନ ସହିତ ସମାନ । ଉଲ୍‌କା ସାକ୍ଷ୍ୟପ୍ରଦାନ କରୁଅଛି ଯେ, ପୃଥିବୀ ଯେଉଁ ଉପାଦାନରେ ଗଠିତ, ଦୂରବର୍ତ୍ତୀ ସୂର୍ଯ୍ୟଗଣ ମଧ ସେହି ଉପାଦାନରେ ଗଠିତ । ଏତଦ୍‌ପେକ୍ଷା ଆଲୋକର ବିଶ୍ଳେଷଣଯନ୍ତ୍ର ପୃଥିବୀ ଓ ଦୂରବର୍ତ୍ତୀ ସୂର୍ଯ୍ୟଗଣ ଏକ ଉପାଦାନରେ ଗଠିତ ବୋଲି ଅଧିକ ପ୍ରମାଣ କରୁଅଛି ।

ଯେବେ ଏକ ଉପାଦାନଗଠିତ, ଅସଂଖ୍ୟ ଉଲ୍‌କାପିଣ୍ଡ ପ୍ରତି ରାତ୍ରିରେ ପଥଚ୍ୟୁତ ହୋଇ ଭସ୍ମୀଭୂତ ହେଉଅଛନ୍ତି, ଭୂପୃଷ୍ଠରେ ପଡ଼ି ଖଣ୍ଡବିଖଣ୍ଡ ହେଉଅଛନ୍ତି, ତେବେ ତହିଁରୁ ବଡ଼ ଗୋଟାଏ ପିଣ୍ଡ ଭସ୍ମୀଭୂତ ହେବା ଅସମ୍ଭବ କି ? ତାହାଠାରୁ ବଡ଼ ଚନ୍ଦ୍ରର ମଧ କି ସେହି ଦଶା ଘଟି ନ ପାରେ ? ଚନ୍ଦ୍ର ଅପେକ୍ଷା ଅତି ବୃହତ୍ ପୃଥିବୀ ଓ କ୍ରମେ ସୂର୍ଯ୍ୟର ମଧ କି ସେହି ଦଶା ଘଟି ନ ପାରେ ? ଏହା ନିଶ୍ଚୟ ହେବ— ଛୋଟର ଯେଉଁ ଦଶା, ବଡ଼ର ମଧ ସେହି ଦଶା ।

ଏକ ଗଣ୍ଡୁଷ ଜଳରେ ଆମ୍ଭେମାନେ ଅସଂଖ୍ୟ କୀଟାଣୁ ଗଳାଧଃକରଣ କରୁଁ, ଭ୍ରୂକ୍ଷେପ ନାହିଁ । ଏକ ପଦାଘାତରେ ଅନେକ ପିପୀଲୀକା ନାଶ କରୁଁ, ଚିନ୍ତା ନାହିଁ । ପୋଖରୀରେ ଗୋଟାକେତେ ମାଛ ମରାଗଲେ ଗ୍ରାମରେ ଚହଳ ପଡ଼ିଯାଏ । ଗୋଟାଏ ଛାଗ ବଧ ହେଲେ ପ୍ରାୟ ସମସ୍ତ ଗ୍ରାମବାସୀଙ୍କର କାନରେ ବାଜିଯାଏ । ଗୋଟାଏ ମନୁଷ୍ୟ ମୃତ୍ୟୁମୁଖରେ ପତିତ ହେଲେ ଆମ୍ଭେମାନେ ଚିନ୍ତା କରୁଁ ଓ ଶୋକ କରୁଁ । ପ୍ରତି ସେକେଣ୍ଡରେ ଯେତେ କୀଟାଣୁ ମରୁଅଛନ୍ତି, ପୃଥିବୀରେ

ମନୁଷ୍ୟ ସୃଷ୍ଟି ହେବା ଦିନରୁ ଯେତିକି ମନୁଷ୍ୟ ମରିଅଛନ୍ତି କି ନାହିଁ ସନ୍ଦେହ । ସାଧାରଣତଃ ଏହା ଦେଖାଯାଏ ଯେ, ଅସଂଖ୍ୟ କ୍ଷୁଦ୍ର ଘଟନା ପରେ ଗୋଟାଏ ମହତ୍ ଘଟନା ଘଟେ। ସୂର୍ଯ୍ୟ ଗ୍ରହାଦିର ନାଶ ଅତି ମହତ୍ତର ଘଟନା, ସୁତରାଂ ଅତି ବିରଳ। ପୁଣି ଆମ୍ଭେମାନେ ଆକାଶର ବୈଚିତ୍ର୍ୟ ସନ୍ଦର୍ଶନରେ ଏଡ଼େ ପରାଙ୍ମୁଖ ଯେ, ତାହା କେବେ ଘଟିଲେ ମଧ୍ୟ ଲକ୍ଷ୍ୟ ରଖୁ ନାହିଁ ।

ଜ୍ୟୋତିର୍ବିଦ୍ୟାର ଆନ୍ଦୋଳନ ହେବା ଅବଧି ପ୍ରାୟ ଏକଚାଳିଶ ଗୋଟି ନୂତନ ପ୍ରଜ୍ୱଳିତ ନକ୍ଷତ୍ର ଆବିଷ୍କୃତ ହୋଇଅଛନ୍ତି । ଏଥିମଧ୍ୟରୁ ଅଧିକାଂଶ କେବଳ ଗତ ଛବିଶ ବର୍ଷ ମଧ୍ୟରେ ଆବିଷ୍କୃତ। ସୁତରାଂ ମାନବ ଏ ସମ୍ବନ୍ଧରେ କିପରି ଅମନୋଯୋଗୀ, ତାହା ସ୍ପଷ୍ଟ ପ୍ରତୀୟମାନ ହେଉଅଛି। ପୁଣି ଏହି ନକ୍ଷତ୍ରମାନେ ଏତେ ଦୂରରେ ଅବସ୍ଥିତ ଯେ, ଯେଉଁ ନକ୍ଷତ୍ରକୁ ଆମ୍ଭେମାନେ ଆଜି ପ୍ରଦୀପ୍ତ ଦେଖୁଅଛୁଁ, ହୁଏତ ତାହା ବହୁ ବର୍ଷ ପୂର୍ବରୁ ନିର୍ବାପିତ ହୋଇଅଛି କିମ୍ବା ତାହାର ପରିବାରସ୍ଥ ଥଣ୍ଡା କୃଷ୍ଣକାୟ ଗ୍ରହ ତାହା ଉପରେ ପତିତ ହୋଇ ଉଭୟେ ଉଲ୍‌କାପିଣ୍ଡର ଦଶାକୁ ପ୍ରାପ୍ତ ହୋଇଅଛନ୍ତି ।

ଆମ୍ଭମାନଙ୍କର ସୂର୍ଯ୍ୟକୁ ଯେମନ୍ତ ଗ୍ରହଗଣ ପ୍ରଦକ୍ଷିଣ କରୁଅଛନ୍ତି, ଦୂରବର୍ତ୍ତୀ ସୂର୍ଯ୍ୟମାନଙ୍କର ମଧ୍ୟ ଏତାଦୃଶ କୃଷ୍ଣକାୟ ଗ୍ରହ ଅଛନ୍ତି ଏବଂ ସେମାନଙ୍କୁ ପ୍ରଦକ୍ଷିଣ କରୁଅଛନ୍ତି । ଜାଜ୍ୱଲ୍ୟମାନ ନକ୍ଷତ୍ର ଅପେକ୍ଷା କୃଷ୍ଣକାୟ ଗ୍ରହ ଅବଶ୍ୟ ଅଧିକ ଥିବେ, ସନ୍ଦେହ ନାହିଁ । କୌଣସି କୌଣସି ନକ୍ଷତ୍ରର ଦୀପ୍ତଶାଳୀ ଗ୍ରହ ଅଛନ୍ତି। ଏଲଗଲ (Algol) ପରିବାର ପୂର୍ବୋକ୍ତପ୍ରକାର ଏବଂ ଲାଇରା (Lyra) ପରିବାର ଶେଷୋକ୍ତପ୍ରକାର ଅଟନ୍ତି ।

୧୮୬୬ ରେ Northern Crown ନକ୍ଷତ୍ରପୁଞ୍ଜ ମଧ୍ୟରୁ ଗୋଟିଏ ନକ୍ଷତ୍ର ସହସା ପ୍ରଜ୍ୱଳିତ ହୋଇଉଠିଲା ଏବଂ ଏହାର ଜ୍ୟୋତି ପୂର୍ବାପେକ୍ଷା ନଅଶତ ଗୁଣ ଅଧିକ ବର୍ଦ୍ଧିତ ହୋଇଥିଲା । ଆମ୍ଭମାନଙ୍କ ସୂର୍ଯ୍ୟର ଉତ୍ତାପ ଏହିପରିମାଣରେ ବୃଦ୍ଧିପ୍ରାପ୍ତ ହେଲେ ପୃଥିବୀର ସମସ୍ତପ୍ରକାର ଜୀବ, ଏମନ୍ତ କି ଅତି ଦୂରବର୍ତ୍ତୀ ନେପଚୁନ ଗ୍ରହରେ ମଧ୍ୟ କୌଣସି ଜୀବ ଥିଲେ ଏକାବେଳକେ ବିନଷ୍ଟ ହୁଅନ୍ତେ । ଆମ୍ଭମାନଙ୍କ ସୂର୍ଯ୍ୟର ଉତ୍ତାପ ନଅଶତ ଗୁଣ ତେଣେ ଥାଉ କେବଳମାତ୍ର ବର୍ଦ୍ଧିତ ହେଲେ ମଧ୍ୟ ସମସ୍ତପ୍ରକାର ଉଚ୍ଚଶ୍ରେଣୀର ଜୀବମାନଙ୍କର ନାଶ ଘଟନ୍ତା ।

୧୯୦୧ ରେ ପର୍ସିୟସ (Perseus) ନକ୍ଷତ୍ରପୁଞ୍ଜ ମଧ୍ୟରୁ ଏକ ନକ୍ଷତ୍ର ସହସା ଆଲୋକିତ ହୋଇଉଠିଲା । ତିନି ଦିନ ମଧ୍ୟରେ ଜ୍ୟୋତି ପୂର୍ବାପେକ୍ଷା ୨୫୦୦୦ ଗୁଣ ଅଧିକ ହୋଇଥିଲା । କ୍ରମେ ଏହାର ଉତ୍ତାପ ଏତେ ଅଧିକ ହୋଇଉଠିଲା ଯେ, ଏହାର ସୂକ୍ଷ୍ମ ପରମାଣୁ ସକଳ ପ୍ରତି ସେକେଣ୍ଡରେ ୨୦୦୦ ମାଇଲ ଗତିରେ ବିକୀର୍ଣ୍ଣ ହେବାକୁ ଲାଗିଲା ଏବଂ ଏହା ନୀହାରିକା ବା ବାଷ୍ପମୟ ସୂକ୍ଷ୍ମ ଭୂତରେ ପରିଣତ ହେଲା । ଏହି ଜାଜ୍ୱଲ୍ୟମାନ ନକ୍ଷତ୍ର ଏକ ସପ୍ତାହ ମଧ୍ୟରେ ଚକ୍ଷୁର ଅଗୋଚର ହେଲା । ଏହି ନକ୍ଷତ୍ର ୧୬୦୦ ଖ୍ରୀଷ୍ଟାବ୍ଦରେ ପ୍ରଜ୍ୱଳିତ ହୋଇଥିଲେ ହେଁ ୧୯୦୧ ଖ୍ରୀଷ୍ଟାବ୍ଦରେ ବୈଜ୍ଞାନିକମାନଙ୍କର ଚକ୍ଷୁର ବିଷୟୀଭୂତ ହୋଇଥିଲା । ଆଲୋକ ପ୍ରତି ସେକେଣ୍ଡରେ ୧୮୬୦୦୦ ମାଇଲ ଗତି କରେ, ଏହି ନକ୍ଷତ୍ରଠାରୁ ପୃଥିବୀକୁ ଆଲୋକ ଆସିବାକୁ ୩୦୧ ବର୍ଷ ଲାଗିଥିଲା ।

ପରିଦୃଶ୍ୟମାନ ନକ୍ଷତ୍ରଗୁଡ଼ିକ ପ୍ରକାଣ୍ଡ ଜ୍ୱଳନ୍ତ ସୂର୍ଯ୍ୟ । ଏମାନେ ଆମ୍ଭମାନଙ୍କଠାରୁ ଅତି ଦୂରରେ ଅବସ୍ଥିତ । ଏହି ହେତୁରୁ ଏଡ଼େ କ୍ଷୁଦ୍ର ଦେଖାଯାନ୍ତି । ପ୍ରତ୍ୟେକ ସୂର୍ଯ୍ୟର ଗତି ଉପଗ୍ରହ ଅଛନ୍ତି । ବୟସାନୁସାରେ ଏମାନଙ୍କର ଗତିର ବିପର୍ଯ୍ୟୟ ଘଟୁଅଛି । ନିର୍ବାଚିତ ସୂର୍ଯ୍ୟମାନଙ୍କର ପରସ୍ପର ସଂଘର୍ଷଣରୁ ହେଉ କିମ୍ବା ଅତି ପ୍ରଚଣ୍ଡଗତିରେ ଏକ ଅନ୍ୟର ଅତି ନିକଟ ଦେଇ ଯିବା ହେତୁରୁ ହେଉ, ପ୍ରଚଣ୍ଡ ଉତ୍ତାପର ସୃଷ୍ଟି ହେଉଅଛି। ଉତ୍ତାପ ଦ୍ୱାରା ଜଡ଼ପିଣ୍ଡର ନାଶ ଘଟୁଅଛି ଏବଂ ପିଣ୍ଡଟି ମୂଳଭୂତରେ ପରିଣତ ହେଉଅଛି ଏବଂ ନୀହାରିକା (Nebula) ରୂପରେ ଆକାଶରେ ରହୁଅଛି । ଆଜିଯାଏ ପ୍ରାୟ ଏକ ଲକ୍ଷ ନୀହାରିକା ଆବିଷ୍କୃତ ହୋଇଅଛନ୍ତି । ନାଶପ୍ରାପ୍ତ ସୌରପରିବାର ବା ନକ୍ଷତ୍ର ପ୍ରଥମେ ମୂଳଭୂତରେ ପରିଣତ ହୁଏ, କ୍ରମେ ଘନୀଭୂତ ହେବାବେଳେ ନୀହାରିକା ରୂପରେ ଆକାଶରେ ରହି ଦେଖାଯାଏ।

ଧୂମକେତୁ ଆକାଶରେ ଉଦିତ ହେଲେ ଲୋକେ ଅମଙ୍ଗଳସୂଚକ ବୋଲି ମନେକରନ୍ତି । ଏ କୁସଂସ୍କାର ପ୍ରାଚୀନକାଳରୁ ସମସ୍ତ ଦେଶରେ ରହି ଆସିଅଛି । ମାତ୍ର ଏହା ଯେ ନେତ୍ରପ୍ରୀତିକର ଓ ଶିକ୍ଷାପ୍ରଦ ଜ୍ୟୋତିର୍ମୟ ଆଗନ୍ତୁକ, ସୃଷ୍ଟି ରହସ୍ୟ ଉଦ୍‌ଘାଟନର ପଥପ୍ରଦର୍ଶକ, ତାହା ଅତି କମ ଲୋକେ ଭାବନ୍ତି । ଧୂମକେତୁଗୁଡ଼ିକ ପ୍ରାଥମିକ ନୀହାରିକାମାନଙ୍କର ଅଂଶବିଶେଷ, ମୂଳ ନୀହାରିକାରୁ ବିଚ୍ୟୁତ ହୋଇ ଅନନ୍ତଗଗନରେ ଖେଳା କରୁଅଛନ୍ତି । କେପଲାର ଏକ ସ୍ଥାନରେ କହିଅଛନ୍ତି ଯେ, ସାଗର ଯେମନ୍ତ ମତ୍ସ୍ୟଦ୍ୱାରା ପରିପୂର୍ଣ୍ଣ, ଗଗନ ସାଗର ତେମନ୍ତ ଧୂମକେତୁ ଦ୍ୱାରା ପରିପୂର୍ଣ୍ଣ। ତଥାପି ଅଳ୍ପସଂଖ୍ୟକ ମାତ୍ର ଆମ୍ଭମାନଙ୍କର ଦୃଷ୍ଟିପଥରେ

ପଡ଼ନ୍ତି । ଖ୍ରୀଷ୍ଟାବ୍ଦ ଆରମ୍ଭରୁ ଆଜିଯାଏ ପ୍ରାୟ ପାଞ୍ଚ ଶତ ଧୂମକେତୁ ଖାଲି ଚକ୍ଷୁକୁ ଦେଖା ଯାଇଅଛନ୍ତି । ଧୂମକେତୁଙ୍କ ସହିତ ଉଲ୍‌କାପିଣ୍ଡର ସମ୍ବନ୍ଧ ଥିବାର ଅନୁମାନ କରାଯାଏ ।

ପ୍ରତି ସନ୍ଧ୍ୟାରେ କୃଷ୍ଣପକ୍ଷର ନିର୍ମଳ ଆକାଶରେ କିଏ ପଶ୍ଚିମ ଆକାଶ ପ୍ରାନ୍ତରୁ ଅର୍ଦ୍ଧଆକାଶବ୍ୟାପୀ କ୍ଷୀଣପ୍ରଭା ଦୀପ୍ତିକୁ ଦେଖି ନାହିଁ ? ଏପ୍ରକାର ଜ୍ୟୋତି ଦେଖାଯିବାର କାରଣ କ'ଣ ? ପଣ୍ଡିତଗଣ ପ୍ରକାଶ କରନ୍ତି ଯେ, ସୂର୍ଯ୍ୟଠାରୁ ଆରମ୍ଭ କରି ପୃଥିବୀର ଗତିପଥ ପର୍ଯ୍ୟନ୍ତ ଅତି ସୂକ୍ଷ୍ମ ପ୍ରାଥମିକ ଧୂଳିକଣାପରିପୂର୍ଣ୍ଣ ଅଟେ । ଏହି ଧୂଳିକଣା ଉପରେ ସୂର୍ଯ୍ୟ ତେଜର ପ୍ରତିଘାତ ହୋଇ କ୍ଷୀଣାଲୋକ ପ୍ରଦାନ କରେ । ଆମ୍ଭେମାନେ ଦେଖିବାକୁ ପାଇଲୁଁ ଯେ ଅନନ୍ତ ଆକାଶ, ନକ୍ଷତ୍ର, ସୂର୍ଯ୍ୟ, ଗ୍ରହ, ଉପଗ୍ରହ, ନୀହାରିକା ଧୂମକେତୁ, ଉଲ୍‌କାପିଣ୍ଡ, ସୂକ୍ଷ୍ମ ଉଲ୍‌କାରେଣୁଦ୍ୱାରା (Meteoroids) ପରିପୂର୍ଣ୍ଣ ଏ ସମସ୍ତେ ଏକ ଉପାଦାନ ଗଠିତ ଏଥିରେ ସନ୍ଦେହ ନାହିଁ ।

ବୈଜ୍ଞାନିକଗଣ ଯେଉଁମାନେ କି ଅହର୍ନିଶ ବିଶ୍ୱବ୍ରହ୍ମାଣ୍ଡର ରହସ୍ୟ ଉଦ୍‌ଘାଟନ କରିବାକୁ ଜୀବନ ଉତ୍ସର୍ଗ କରି ବସିଅଛନ୍ତି, ସେମାନେ ପୃଥିବୀ, ଗ୍ରହ, ସୂର୍ଯ୍ୟର ନାଶ ଅବଶ୍ୟମ୍ଭାବୀ ବୋଲି ସ୍ଥିର କରିଅଛନ୍ତି; ନା, ଆମ୍ଭମାନଙ୍କ ସୂର୍ଯ୍ୟଠାରୁ ବୃହତ୍‌କାୟ ସୂର୍ଯ୍ୟଗଣର ନାଶ ପ୍ରତ୍ୟକ୍ଷ କରୁଅଛନ୍ତି । ପାର୍ଥିବ ପଦାର୍ଥ ନଷ୍ଟ ହେଲେ ପୃଥିବୀରେ ରହିବ । ପୃଥିବୀ ନଷ୍ଟ ହେଲେ ଆକାଶରେ ରହିବ । ତଦ୍ରୂପ ଗ୍ରହ ନକ୍ଷତ୍ର ନଷ୍ଟ ହେଲେ ଆକାଶରେ ରହିବେ । କେତେକାଳ ପରେ ଆମ୍ଭମାନଙ୍କର ପୃଥିବୀ ନଷ୍ଟ ହେବା ସମ୍ଭବ, ତାହା ପଣ୍ଡିତଗଣ ଅନୁମାନ କରିଅଛନ୍ତି । ଭଙ୍ଗା ଗଢ଼ା ପ୍ରାକୃତିକ ନିୟମ । ଏକ ସୌର ଜଗତ୍ ଭଙ୍ଗା ହୋଇ ଅନ୍ୟ ଗଢ଼ାଯାଉଅଛି । ଏକ ନକ୍ଷତ୍ର ଜଗତ୍ ଭଙ୍ଗାଯାଇ ଅନ୍ୟ ଗଢ଼ାଯାଉଅଛି । ପଦାର୍ଥର ପରିବର୍ତ୍ତନ ଘଟୁଅଛି ସତ୍ୟ, ମାତ୍ର ତାହାର ଧ୍ୱଂସ ନାହିଁ । ଏହି ବିମ୍ବ ସ୍ଥୂଳ ଓ ସୂକ୍ଷ୍ମ ବସ୍ତୁରେ ପରିପୂର୍ଣ୍ଣ । ଶକ୍ତିସମନ୍ୱିତ ବସ୍ତୁ ସମଷ୍ଟି ଚିରକାଳ ବିଦ୍ୟମାନ ।

ଯାହାର ଆକାର ଅଛି, ତାହାର ପରିଣାମ ଓ ନାଶ ଅର୍ଥାତ୍ ପରିବର୍ତ୍ତନ ଅବଶ୍ୟମ୍ଭାବୀ । ଆକାର ପରିବର୍ତ୍ତନ ହେଲେ ସୁଦ୍ଧା ଅନନ୍ତ ଆକାଶରେ ରହିବ ।

ଆକାରବିଶିଷ୍ଟ ହେଲେ ଯାହା ଅଛି, ଆକାରଶୂନ୍ୟ ହେଲେ ଯାହା ଅଛି, ଲୋକଖଣ୍ଡରେ, ଜଳବିନ୍ଦୁରେ, ଧୂମକେତୁରେ, ନକ୍ଷତ୍ରରେ, ସୂର୍ଯ୍ୟରେ, ଇଥର ରୂପରେ, ଅନନ୍ତ ଆକାଶରେ ଯାହାକିଛି ଅନନ୍ତକାଳ ଯାହା ଅଛି, ତାହା ଶକ୍ତିସମନ୍ୱିତ ବସ୍ତୁସମଷ୍ଟି ବସ୍ତୁ ଓ ଶକ୍ତି ଉଭୟର ପରସ୍ପର ପ୍ରତି ସ୍ୱାତନ୍ତ୍ର୍ୟ ନାହିଁ । ବସ୍ତୁ ଓ ଶକ୍ତି ଏହି ଦୁଇ ଆଖ୍ୟା ଥିଲେ ମଧ୍ୟ ଏକ । ସୁତରାଂ ଶକ୍ତିସମନ୍ୱିତ ବସ୍ତୁ ସମଷ୍ଟି ବ୍ୟାପ୍ତ ଓ ଅବିନାଶୀ ।

ପୁନଃ ବ୍ୟାଖ୍ୟାନ— ବସ୍ତୁ ସମ୍ବନ୍ଧରେ ଧ୍ୱଂସ annihilation, total destruction ଶବ୍ଦ ବ୍ୟବହାର୍ଯ୍ୟ ନୁହେଁ । ବସ୍ତୁସମଷ୍ଟିର ଧ୍ୱଂସ ନାହିଁ । ପରିବର୍ତ୍ତନ ଧ୍ୱଂସ ନୁହେଁ । ଭାଷାରେ ଧ୍ୱଂସ ଓ ବିନାଶ ଶବ୍ଦ ଏକାର୍ଥକରୂପେ ବ୍ୟବହୃତ ହେଉଥିଲେ ମଧ୍ୟ ରୂପାନ୍ତର ଅର୍ଥରେ ଏଠାରେ ବିନାଶ ଓ ନାଶ ଶବ୍ଦ ବ୍ୟବହାର କରାଯାଇଅଛି ।

ଅନନ୍ତ ଆକାଶ ନାକ୍ଷତ୍ରିକ ଜଗତ ସୌର ଜଗତରେ ପରିପୂର୍ଣ୍ଣ । ସମସ୍ତେ ମାଧ୍ୟାକର୍ଷଣାଧୀନ । ବସ୍ତୁବିରହିତ ସ୍ଥାନ ନାହିଁ । ସ୍ଥୂଳ ଓ ସୂକ୍ଷ୍ମବସ୍ତୁ ଓ ଇଥରଦ୍ୱାରା ପରିପୂର୍ଣ୍ଣ ବସ୍ତୁସମଷ୍ଟି ଅବ୍ୟୟ । ଅଣୁମାତ୍ର ଧ୍ୱଂସ ହେଉ ନାହିଁ କିମ୍ବା ଗୋଟିଏ ପରମାଣୁ ନୂତନ ସୃଷ୍ଟି ହେଉ ନାହିଁ । ଯାହା ଅଛି, ଅଛି । ଗୋଟିଏ ନକ୍ଷତ୍ର ପରିବାର ବା ସୌର ପରିବାର ନଷ୍ଟ ହେଲେ ସେଥିରେ ଅନ୍ୟ ନକ୍ଷତ୍ର ବା ସୌର ପରିବାରମାନଙ୍କର କୌଣସି ପରିବର୍ତ୍ତନ ଘଟୁ ନାହିଁ । ଯେହେତୁ ପରିବର୍ତ୍ତିତ ବସ୍ତୁ ସମଷ୍ଟିର ଓଜନରେ ତାରତମ୍ୟ ଘଟୁ ନାହିଁ । ଏକାବେଳକେ ସମସ୍ତଙ୍କର ନାଶ ଅସମ୍ଭବ । ଭଙ୍ଗା ଗଢ଼ା ଅନନ୍ତ କାଳ ଲାଗିଅଛି, ନକ୍ଷତ୍ର ଉଲ୍‌କାପିଣ୍ଡ, ଧୂମକେତୁ, ନୀହାରିକା ପ୍ରଭୃତି ଏଥିର ସାକ୍ଷ୍ୟ ପ୍ରଦାନ କରୁଅଛନ୍ତି ।

ଶଙ୍କରଙ୍କ ମତରେ ଅଦର୍ଶନ ସ୍ୱଭାବ, ଅର୍ଥ ବିନାଶ । ନୀଳକଣ୍ଠ କହନ୍ତି, ପୂର୍ବାବସ୍ଥା ପରିତ୍ୟାଗର ନାମ ବିନାଶ । ଏମାନଙ୍କ ମତରେ ବସ୍ତୁ ପରିବର୍ତ୍ତନଶୀଳ ଏବଂ ଚେତନ ବିକାଶ ରହିତ । ତର୍କ ସୂତ୍ରରେ ଔପନିଷଦମାନଙ୍କ ମତର ପରୀକ୍ଷା କଲେ ଅନୁମାନ କରାଯାଏ ଯେ, ବସ୍ତୁକୁ ଅଚେତନ ଓ ଶକ୍ତିକୁ ଚେତନ ଆଖ୍ୟା ଦେଇଅଛନ୍ତି । କ୍ରମେ ସେହି ଚେତନରୂପ ସଦ୍‌ବସ୍ତୁ ଜୀବତତ୍ତ୍ୱ ହୋଇଅଛି ।

''ଅବିନାଶୀ ତୁ ତଦ୍‌ବିଦ୍ଧି ଯେନ ସର୍ବ ନ ଦିତତଂ,
ବିନାଶମବ୍ୟୟ ସ୍ୟାସ୍ୟ ନ କଶ୍ଚିତ୍‌କୁତ୍ର, ମର୍ହତି ।''

ଏହାର ଆକ୍ଷରିକ ଅର୍ଥ କ'ଣ ?

ତାହାହିଁ ସଦ୍‌ବସ୍ତୁ, ଯାହାଦ୍ୱାରା ଏହି ସମସ୍ତ ବ୍ୟାପ୍ତ । ଏହି ଅବ୍ୟୟର କେହି ଧ୍ୱଂସ କରି ନ ପାରେ । ଏଠାରେ ତତଂ ବା ବ୍ୟାପ୍ତଂ ଅର୍ଥ କ'ଣ ? ସମସ୍ତ ପଦାର୍ଥକୁ ଘୋଡ଼ାଇ ରଖିଅଛି,

ନା ଅଣୁପରମାଣୁରେ ଅନ୍ତର୍ନିହିତ ହୋଇ ରହିଅଛି ? ଶେଷୋକ୍ତ ଅର୍ଥ ଠିକ୍ ନୁହେଁ କି ? ଜୀବତତ୍ତ୍ୱଦ୍ୱାରା ବ୍ୟାପ୍ତ ବୋଲି ଟୀକାକାରମାନେ କହନ୍ତି । ତତ୍ ଶବ୍ଦର ଅର୍ଥ ଜୀବତତ୍ତ୍ୱ ବୋଲି ବୃଥା କଳ୍ପନା କରାଯାଇଥିବା ହେତୁରୁ ଉପନିଷଦର ଏତାଦୃଶ ଅନେକ ଶ୍ଳୋକ ଓ ସୂତ୍ରର ଭାବ ସହଜ ବୋଧଗମ୍ୟ ହେଉ ନାହିଁ ।

ଆମ୍ଭମାନଙ୍କ ମତରେ (Law of Substance) ବୋଇଲେ ଯାହା ବୁଝାଯାଏ, ଏହି ଉଦ୍ଧୃତ ଶ୍ଳୋକର ଅର୍ଥରୁ ତାହା ବୁଝାଯାଏ । ଯେହେତୁ ଶକ୍ତିସମନ୍ୱିତ ବସ୍ତୁ ସମଷ୍ଟି ବ୍ୟାପ୍ତ ଓ ଅବିନାଶୀ । ଏହା ଅବ୍ୟୟ– ଏହାର କ୍ଷୟ ନାହିଁ ।

•

## ବସ୍ତୁ ଓ ଶକ୍ତି ଅବିନାଶି

ଅବିନାଶୀ ତୁ ତଦ୍‌ବିଦ୍ଧି ।
ଯେନ ସର୍ବମିଦଂ ତତଂ ।

ଯାହାଦ୍ୱାରା ସମସ୍ତ ବ୍ୟାପ୍ତ ହୋଇଅଛି, ତାହା ଅବିନାଶୀ ।

ଆକାର ପରିବର୍ତ୍ତନର ନାମ ନାଶ । ବସ୍ତୁର ଅବସ୍ଥା ପରିବର୍ତ୍ତନର ନାମ ନାଶ । ବସ୍ତୁର ଏକାବେଳକେ ଧ୍ୱଂସ ହୋଇ ନ ପାରେ । ବସ୍ତୁ ଆମ୍ଭମାନଙ୍କ ଇନ୍ଦ୍ରିୟର ଅଗୋଚର ହେଲେ ନଷ୍ଟ ହେଲା ବୋଲି କହୁଁ । ମାତ୍ର ଇଦୃଶ ଅବସ୍ଥା ବସ୍ତୁର ଧ୍ୱଂସ ନୁହେଁ । ଆକାରବିଶିଷ୍ଟ ବସ୍ତୁମାନଙ୍କର ନାଶ ହେଲେ ବସ୍ତୁସମଷ୍ଟି ଯେଉଁ ଭାବାପନ୍ନ ହୋଇରହିବ, ତାହାର ଧ୍ୱଂସ ନାହିଁ । ଏଣୁ ବସ୍ତୁସମଷ୍ଟି ଅବିନାଶୀ । ଇଷ୍ଟକଖଣ୍ଡ ଚୂର୍ଣ୍ଣୀଭୂତ ହେଲେ ଆମ୍ଭମାନଙ୍କ ଚକ୍ଷୁର ବିଷୟୀଭୂତ ହୁଏ ନାହିଁ ସତ୍ୟ, ମାତ୍ର ତାହା ଆକାଶରେ ରହେ । ଜଳ ଶୁଖିଯାଏ, ଆମ୍ଭମାନଙ୍କ ଦୃଷ୍ଟିର ବହିର୍ଭୂତ ହୁଏ, ମାତ୍ର ତାହାର ଉପାଦାନର ନାଶ ନାହିଁ । ମନୁଷ୍ୟ, ଜୀବଜନ୍ତୁ ଯେଉଁମାନେ ଆକାରବିଶିଷ୍ଟ ସେମାନଙ୍କର ନାଶ ବା ଆକାର ପରିବର୍ତ୍ତନ ଘଟୁଅଛି । ଆମ୍ଭେମାନେ ଅହରହ ଦେଖୁଅଛୁଁ । ପୃଥିବୀ ଚନ୍ଦ୍ର ସୂର୍ଯ୍ୟ ଗ୍ରହ ନକ୍ଷତ୍ର ପ୍ରଭୃତିଙ୍କର ମଧ୍ୟ ଆକାର ପରିବର୍ତ୍ତନ ଅବଶ୍ୟମ୍ଭାବୀ ବୋଲି ପଣ୍ଡିତଗଣ ସ୍ଥିର କରିଅଛନ୍ତି ।

ଭୂପୃଷ୍ଠସ୍ଥ ସମସ୍ତ ପ୍ରକାର ପଦାର୍ଥ— କି କୋମଳତମ ଜୀବ କି କଠିନତମ ଉପଳଖଣ୍ଡ— ନଷ୍ଟ ହେବାର ଦେଖାଗଲା । ତହିଁରୁ ବଡ଼ ପାଷାଣଖଣ୍ଡ କି ସେହି ପରିଣାମ ହୋଇ ନ ପାରେ ? ପୁଣି ମାଟି ଓ ପାଷାଣରେ ଗଠିତ ଏହି ପୃଥିବୀର ମଧ୍ୟ କି ନାଶ ହୋଇ ନ ପାରେ ? ତାହା କିଏ ଅନ୍ୟଥା କରିବ ? ଆଜି ଇଷ୍ଟକଖଣ୍ଡର ଯେଉଁ ପରିଣାମ, କାଳକ୍ରମେ ପୃଥିବୀର ମଧ୍ୟ ସେହି ପରିଣାମ ହେବ । ଚନ୍ଦ୍ର, ଗ୍ରହ, ସୂର୍ଯ୍ୟ, ନକ୍ଷତ୍ର ସମସ୍ତେ କାଳକ୍ରମେ ଏହି ଇଷ୍ଟକର ଦଶା ପ୍ରାପ୍ତ ହେବେ । ପୃଥିବୀ ମନୁଷ୍ୟର ବାସସ୍ଥାନ ବୋଲି ରହିବ ନାହିଁ, ସୂର୍ଯ୍ୟ ଆଲୋକ ଦିଏ ବୋଲି ରହିବ ନାହିଁ, ନକ୍ଷତ୍ରଗଣ ମାନବର ନେତ୍ରାହ୍ଲାଦକ ବୋଲି ରହିବ ନାହିଁ । ଯେହେତୁ ଏମାନଙ୍କର ଆକାର ଅଛି, ଏମାନଙ୍କର ଅବଶ୍ୟ ନାଶ ହେବ ।

ସୂର୍ଯ୍ୟ ପ୍ରତ୍ୟହ ପ୍ରାତଃକାଳରେ ଉଦିତ ହୋଇ ସନ୍ଧ୍ୟା ସମୟରେ ଅସ୍ତ ହେଉଅଛି— ନକ୍ଷତ୍ରଗଣ ତଦ୍ରୂପ ପ୍ରତି ରାତ୍ରରେ ନୀଳ ଆକାଶକୁ ସୁଶୋଭିତ କରି ଆମ୍ଭମାନଙ୍କର ନେତ୍ରାହ୍ଲାଦକ ହେଉଅଛନ୍ତି । ଆମ୍ଭେମାନେ ଏହି ବ୍ୟାପାର ଦେଖି ମନେ କରୁଅଛୁଁ ଯେ, ଏହି ପୃଥିବୀ ଚିରକାଳ ଏହିପରି ଥିଲା । ମନୁଷ୍ୟଗଣ ଅନନ୍ତକାଳ ଏହିପରି ବାସ କରି ଆସୁଅଛନ୍ତି । ସୂର୍ଯ୍ୟ ଏହିପରି ଆଲୋକ ଓ ଉତ୍ତାପ ଦେଉଅଛି, ଚନ୍ଦ୍ର ନରନାରୀଙ୍କର ହୃଦୟାହ୍ଲାଦକ ହୋଇଅଛି । ନକ୍ଷତ୍ରଗଣ ନେତ୍ରପ୍ରୀତି ନିମନ୍ତେ ପୂର୍ବରେ ଉଦିତ ହୋଇ ପ୍ରତି ରାତ୍ରିରେ ପଶ୍ଚିମରେ ଅସ୍ତମିତ ହୁଅନ୍ତି । ପୂର୍ବପୁରୁଷଗଣଙ୍କର ଏହି ବିଶ୍ୱାସ ଥିଲା, ସୁତରାଂ ସେମାନେ ସୃଷ୍ଟିରହସ୍ୟ ଉଦ୍‌ଘାଟନ କରିବାରେ ଏଡ଼େ ପରାଙ୍ମୁଖ । ଆମ୍ଭେମାନେ ମଧ୍ୟ ସେହି ସଂସ୍କାରାଧୀନ ହୋଇ ସୃଷ୍ଟିରହସ୍ୟ ଉଦ୍‌ଘାଟନ କରିବା ବିଷୟରେ ଏଡ଼େ ଅମନୋଯୋଗୀ । ଏଣୁ ଆକାଶରେ ପ୍ରତି ରାତ୍ରିରେ କି ଘଟନା ଘଟୁଅଛି, ତାହା ଆମ୍ଭମାନଙ୍କ ହୃଦୟରେ ସ୍ଥାନ ପାଏ ନାହିଁ । ସାଧାରଣତଃ ଏହା ଦେଖା ଯାଇଥାଏ ଯେ; ଅସଂଖ୍ୟ କ୍ଷୁଦ୍ର ଘଟନା ପରେ ଗୋଟାଏ ବଡ଼ ଘଟନା ଘଟିଥାଏ । ପୁଣି ଆମ୍ଭେମାନେ ଆକାଶର ବୈଚିତ୍ର୍ୟ ଦର୍ଶନରେ ଏଡ଼େ ପରାଙ୍ମୁଖ ଯେ, କୌଣସି ଘଟନା ସଂଘଟିତ ହେଲେ ମଧ୍ୟ ଲକ୍ଷ୍ୟ ରଖୁ ନାହିଁ । ଯେଉଁ ନକ୍ଷତ୍ରଗୁଡ଼ିକ ସାଧାରଣ ଚକ୍ଷୁକୁ ଦୃଶ୍ୟ ହୁଅନ୍ତି, ସେମାନଙ୍କର କୌଣସି ପରିବର୍ତ୍ତନ ଘଟିବାର ନ ଦେଖିଲେ, ଆକାଶରେ ଯେ ଅନ୍ୟ କୌଣସି ପରିବର୍ତ୍ତନ ହେଉଅଛି, ତାହା ଆମ୍ଭମାନଙ୍କର ଧାରଣା ହୁଏ ନାହିଁ । ନକ୍ଷତ୍ରସମୂହ ବହୁ ଶ୍ରେଣୀରେ ବିଭକ୍ତ । ତନ୍ମଧ୍ୟରୁ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଶ୍ରେଣୀର ନକ୍ଷତ୍ର କେବଳ ସାଧାରଣ ଚକ୍ଷୁର ଗୋଚର ହୁଅନ୍ତି ଓ ନିମ୍ନଶ୍ରେଣୀର ନକ୍ଷତ୍ରଗଣ କ୍ଷମତାଶାଳୀ ଯନ୍ତ୍ରସାହାଯ୍ୟ ବ୍ୟତିରେକେ ଦେଖାଯାନ୍ତି ନାହିଁ । ଖାଲି ଚକ୍ଷୁକୁ ଦେଖା ଯିବା ନକ୍ଷତ୍ରସଂଖ୍ୟା ପ୍ରାୟ ୬୦୦୦ । ଦୃଷ୍ଟିବହିର୍ଭୂତ ନକ୍ଷତ୍ରସଂଖ୍ୟା ଅସଂଖ୍ୟ । ମନୁଷ୍ୟ ବୁଦ୍ଧିବଳରେ

ଯେତିକି କ୍ଷମତାଶାଳୀ ଦୂରବୀକ୍ଷଣ ଯନ୍ତ୍ରର ଆବିଷ୍କାର କରି ଅନନ୍ତ ଆକାଶକୁ ଭେଦ କରିବାକୁ ବସିବ ନକ୍ଷତ୍ରସଂଖ୍ୟା ତେତିକି ଅସଂଖ୍ୟ ବୋଲି ହୃଦୟଙ୍ଗମ କରିପାରୁଥିବ ।

ବଡ଼ ବଡ଼ ପରିଦୃଶ୍ୟମାନ ନକ୍ଷତ୍ରମାନଙ୍କ ମଧ୍ୟରୁ କୌଣସିଟିର ଧ୍ୱଂସ ହେଉ ନ ଥିବାରୁ ଆମ୍ଭେମାନେ ଅନୁମାନ କରିବା ନାହିଁ ଯେ, ପରିଦୃଶ୍ୟମାନ ନକ୍ଷତ୍ରସମୂହ ଚିରକାଳ ରହିବେ— ଏମାନଙ୍କ ମଧ୍ୟରୁ କୌଣସିଟିର ନାଶ ହୋଇ ନାହିଁ, ହେଉ ନାହିଁ ବା ହେବ ନାହିଁ । ଅନନ୍ତ ଆକାଶରେ ଅସଂଖ୍ୟ ନକ୍ଷତ୍ର ପରିଭ୍ରମଣ କରୁଅଛନ୍ତି । ବୟସ ଅନୁସାରେ ସେମାନଙ୍କର ନାଶ ଘଟୁଅଛି । ନକ୍ଷତ୍ରଗୁଡ଼ିକ ପୃଥିବୀଠାରୁ ବହୁ ଦୂରରେ ଅବସ୍ଥିତ, ଏଣୁ ଯେଉଁ ନକ୍ଷତ୍ର ଆଦ୍ୟ ଜାଜ୍ୱଲ୍ୟମାନରୂପେ ଆମ୍ଭମାନଙ୍କୁ ଦେଖାଯାଉଅଛି, ହୁଏ ତ ତାହା ବହୁ ଶତାବ୍ଦୀ ପୂର୍ବରୁ ନିର୍ବାପିତ ହୋଇଗଲାଣି, ମାତ୍ର ତାହାର ନାଶ ସମ୍ବାଦ ଆମ୍ଭଠାକୁ ପହଞ୍ଚି ନାହିଁ ।

ଆକାଶକୁ କିଛିକ୍ଷଣ ନିରୀକ୍ଷଣ କଲେ ଆମ୍ଭେମାନେ ତିର୍ଯ୍ୟକ୍ ଗତିଶୀଳ ଗୋଟିଏ ଗୋଟିଏ ଆଲୋକ ଦେଖିବାକୁ ପାଉଁ । ଏମାନଙ୍କର ଆଲୋକ ନକ୍ଷତ୍ରାଲୋକ ସଙ୍ଗେ ସମାନ । ଏହେତୁରୁ ସାଧାରଣ ଲୋକେ ନକ୍ଷତ୍ରପାତ ବୋଲି କହନ୍ତି। କୌଣସି କୌଣସି ରାତ୍ରରେ ଏକ ସ୍ଥାନରୁ ଅଗଣନ ଉଲ୍କାପାତ ହୁଏ । ପ୍ରତ୍ୟହ ଯେ ଏତେ ଉଲ୍କାପାତ ହେଉଅଛି, ଏଗୁଡ଼ିକ କ'ଣ ? ଏଗୁଡ଼ିକ ନକ୍ଷତ୍ରଖଣ୍ଡ—କୃଷ୍ଣବର୍ଣ୍ଣ ଜଡ଼ପିଣ୍ଡ । ସମୁଦ୍ର ଯେମନ୍ତ ଅସଂଖ୍ୟ କୀଟାଣୁ ପରିପୂର୍ଣ୍ଣ ଆକାଶ ତେମନ୍ତ ଅତି ବୃହଦାକାର ପ୍ରସ୍ତରଖଣ୍ଡଠାରୁ ଅତି କ୍ଷୁଦ୍ରକାୟ ଧୂଳିକଣା ସଦୃଶ ଉଲ୍କାଦ୍ୱାରା ପରିପୂର୍ଣ୍ଣ । ଏଗୁଡ଼ିକ ଗଗନ-ସାଗରର କୀଟାଣୁ । ଧୂମକେତୁ ପ୍ରାୟ ଏମାନଙ୍କର ଗତିପଥ ଅଛି । ବୈକେନ୍ଦ୍ରିକ, ଏଣୁ ଏମାନେ ସମୟ ସମୟରେ ପୃଥିବୀର ଗତିପଥର ଅତି ନିକଟବର୍ତ୍ତୀ ହୁଅନ୍ତି । ଯେଉଁଗୁଡ଼ିକ ପୃଥିବୀର ଆକର୍ଷଣାଧୀନ ହୁଅନ୍ତି, ସେଗୁଡ଼ିକ ବାୟୁସଂଘର୍ଷିତ ହୋଇ ପ୍ରଜ୍ୱଳିତ ହୁଅନ୍ତି, ଏଣୁ ଆମ୍ଭେମାନେ ଦେଖିପାରୁଁ । ଏକ ଏକ ନିର୍ଦ୍ଦିଷ୍ଟ ସ୍ଥଳ ଅଛି, ଯେଉଁଠାକୁ ପୃଥିବୀ ଆସିଲେ ଅଧିକରେ ଉଲ୍କାପିଣ୍ଡ ତାହାର ଆକର୍ଷଣାଧୀନ ହୁଅନ୍ତି ଓ ପ୍ରଜ୍ୱଳିତ ହୁଅନ୍ତି । ଏପ୍ରିଲ୍ ୨୦ ତାରିଖ, ନଭେମ୍ବର ୧୩ ଓ ୧୭ ତାରିଖ ଓ ଅଗଷ୍ଟ ୧୦ ତାରିଖ ଉଲ୍କାପାତ ଦର୍ଶନ ନିମନ୍ତେ ପ୍ରଶସ୍ତ ଦିବସ ।

ଏମାନଙ୍କର ଗତି ଅତି ପ୍ରଖର, ସୁତରାଂ ବାୟୁସଂଘର୍ଷଣ ଦ୍ୱାରା ପ୍ରଜ୍ୱଳିତ ହୁଅନ୍ତି । ଉତ୍ତାପ ଅତ୍ୟଧିକ ରୂପେ ବୃଦ୍ଧିପ୍ରାପ୍ତ ହୁଏ । କୃଷ୍ଣକାୟ ଜଡ଼ପିଣ୍ଡଟି ଗତି କରୁ କରୁ ଦଗ୍ଧ ହେଉଥାଏ । କ୍ଷୁଦ୍ର ଉଲ୍କାଗୁଡ଼ିକ ଏକାବେଳେକେ ଭସ୍ମରେ ପରିଣତ ହୁଅନ୍ତି । କେତେଗୁଡ଼ିଏ ବୃହତ୍କାୟ ଥିବାରୁ ସମ୍ପୂର୍ଣ୍ଣ ଭସ୍ମ ହୁଅନ୍ତି ନାହିଁ । ସେଗୁଡ଼ିକ ଭୂପୃଷ୍ଠରେ ପତିତ ହୁଅନ୍ତି । ଯେବେ ଏକ ଉପାଦାନଗଠିତ ଅସଂଖ୍ୟ ଉଲ୍କାପିଣ୍ଡ ପ୍ରତି ରାତ୍ରରେ ଖସି ଭସ୍ମୀଭୂତ ହେଉଅଛନ୍ତି, ଭୂପୃଷ୍ଠରେ ପଡ଼ି ଖଣ୍ଡବିଖଣ୍ଡ ହେଉଅଛନ୍ତି, ତେବେ ତହିଁରୁ ବଡ଼ ଗୋଟାଏ ଜଡ଼ପିଣ୍ଡ ଭସ୍ମୀଭୂତ ହେବା ଅସମ୍ଭବ କି ? ତାହାଠାରୁ ବଡ଼ ଚନ୍ଦ୍ରର ମଧ କ'ଣ ଏହି ଦଶା ଘଟିବ ନାହିଁ ? ତଦପେକ୍ଷା ବଡ଼ ପୃଥିବୀ ଓ କ୍ରମେ ସୂର୍ଯ୍ୟର ମଧ କ'ଣ ସେହି ଅବସ୍ଥା ହେବ ନାହିଁ ? ଏହା ନିଶ୍ଚୟ ହେବ— ଛୋଟର ଯେଉଁ ଦଶା, ବଡ଼ର ସେହି ଦଶା ।

ଏକ ଗଣ୍ଡୁଷଜଳରେ ଆମ୍ଭେମାନେ ଅସଂଖ୍ୟ କୀଟାଣୁ ଗଳାଧଃକରଣ କରୁଁ, ଭ୍ରୂକ୍ଷେପ ନାହିଁ । ଏକ ପଦାଘାତରେ ଅନେକ ପିପୀଲିକା ନାଶ କରୁଁ, ଚିନ୍ତା ନାହିଁ । ପୋଖରୀରେ ଗୋଟାକେତେ ମାଛ ମରାଗଲେ ଗ୍ରାମରେ ଚହଳ ପଡ଼ିଯାଏ, ଗୋଟାଏ ଛାଗ ମରାଗଲେ ପ୍ରାୟ ସମସ୍ତ ଗ୍ରାମବାସୀଙ୍କ କାନରେ ବାଜିଯାଏ । ଜଣେ ମନୁଷ୍ୟ ମୃତ୍ୟୁମୁଖରେ ପତିତ ହେଲେ ଆମ୍ଭେମାନେ ଦୁଃଖ କରୁଁ, ଚିନ୍ତା କରୁଁ । ପ୍ରତି ସେକେଣ୍ଡରେ ଯେତେ କୀଟାଣୁ ମରୁଅଛନ୍ତି, ପୃଥିବୀରେ ମନୁଷ୍ୟ ସୃଷ୍ଟି ହେବା କାଳରୁ ତେତିକି ମନୁଷ୍ୟ ମରିଅଛନ୍ତି କି ନାହିଁ ସନ୍ଦେହ । ସାଧାରଣତଃ ଏହା ଦେଖାଯାଏ ଯେ, ଅସଂଖ୍ୟ କ୍ଷୁଦ୍ର ଘଟନା ପରେ ଗୋଟାଏ ବୃହତ୍ତର ଘଟନା ସଂଘଟିତ ହୁଏ । ସୂର୍ଯ୍ୟର ଧ୍ୱଂସ ଅତି ମହତ୍ତର ଘଟନା, ସୁତରାଂ ଅତି ବିରଳ । ପୁଣି ଆମ୍ଭେମାନେ ଆକାଶର ବୈଚିତ୍ର୍ୟ ସନ୍ଦର୍ଶନରେ ଏଡ଼େ ବିମୁଖ ଯେ, କେବେ ତାହା ଘଟିଲେ ମଧ ଲକ୍ଷ୍ୟ ରଖୁ ନାହିଁ ।

ଜ୍ୟୋତିର୍ବିଦ୍ୟାର ଆନ୍ଦୋଳନ ହେବା ଅବଧି ପ୍ରାୟ ୪୨ ଗୋଟି ନୂତନ ନକ୍ଷତ୍ର ଆବିଷ୍କୃତ ହୋଇଅଛନ୍ତି । ଏଥିମଧ୍ୟରୁ ଅଧିକାଂଶ କେବଳ ଗତ ୩୦ ବର୍ଷ ମଧ୍ୟରେ ଆବିଷ୍କୃତ ହୋଇଅଛନ୍ତି । ସୁତରାଂ ମାନବ ଏ ସମ୍ବନ୍ଧରେ କେଡ଼େ ଅମନୋଯୋଗୀ, ତାହା ସ୍ପଷ୍ଟ ପ୍ରତୀୟମାନ ହେଉଅଛି । ପୁଣି ଏହି ନକ୍ଷତ୍ରମାନ ଏତେ ଦୂରରେ ଅବସ୍ଥିତ ଯେ, ଯେଉଁ ନକ୍ଷତ୍ରକୁ ଆମ୍ଭେମାନେ ଆଜି ଆକାଶରେ ଏଡ଼େ ଜାଜ୍ୱଲ୍ୟମାନରୂପେ ଦେଖୁଅଛୁଁ, ହୁଏ ତ ତାହା ବହୁ ଶତାବ୍ଦୀ ପୂର୍ବରୁ ନିର୍ବାପିତ ହୋଇଅଛି କିମ୍ବା ତାହାର ପରିବାରସ୍ଥ ଥଣ୍ଡା ଓ କୃଷ୍ଣକାୟ ଗ୍ରହ ତାହା ଉପରେ ପତିତ ହେବାରୁ ଉଭୟେ ଉଲ୍କାପିଣ୍ଡର ଦଶା ପ୍ରାପ୍ତ ହୋଇଅଛନ୍ତି ।

ଯେଉଁ ବୈଜ୍ଞାନିକଗଣ ଅହର୍ନିଶ ବିଶ୍ୱବ୍ରହ୍ମାଣ୍ଡର ରହସ୍ୟ ଉଦ୍‌ଘାଟନ କରିବାକୁ ଜୀବନ ଉତ୍ସର୍ଗ କରି ବସିଅଛନ୍ତି, ସେମାନେ ପୃଥିବୀ ଗ୍ରହ ଓ ସୂର୍ଯ୍ୟର ଧ୍ୱଂସ ଅବଶ୍ୟମ୍ଭାବୀ ବୋଲି ସ୍ଥିର କରି ସାରିଅଛନ୍ତି; ନା, ଆମ୍ଭମାନଙ୍କ ସୂର୍ଯ୍ୟଠାରୁ ବୃହତ୍କାୟ ସୂର୍ଯ୍ୟଗଣର ଧ୍ୱଂସ ପ୍ରତ୍ୟକ୍ଷ କରୁଅଛନ୍ତି।

ଆମ୍ଭମାନଙ୍କ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଯେମନ୍ତ ପୃଥିବୀ ପ୍ରଭୃତି ଗ୍ରହଗଣ ଭ୍ରମଣ କରୁଅଛନ୍ତି, ଦୂରବର୍ତ୍ତୀ ସୂର୍ଯ୍ୟମାନଙ୍କର ମଧ ତଦ୍ରୂପ କୃଷ୍ଣକାୟ ଗ୍ରହ ଅଛନ୍ତି ଓ ସେମାନଙ୍କ ଚତୁର୍ଦ୍ଦିଗରେ ଭ୍ରମଣ କରୁଅଛନ୍ତି । ଜାଜ୍ୱଲ୍ୟମାନ ନକ୍ଷତ୍ର ଅପେକ୍ଷା କୃଷ୍ଣକାୟ ଗ୍ରହ ଅଧିକ ଅଛନ୍ତି ।

୧୮୬୬ ଇ : ରେ (Northern Crown) ନକ୍ଷତ୍ରପୁଞ୍ଜ ମଧ୍ୟରୁ ଗୋଟାଏ ନକ୍ଷତ୍ର ସହସା ପ୍ରଜ୍ୱଳିତ ହୋଇଉଠିଲା । ଏହାର ଜ୍ୟୋତି ପୂର୍ବାପେକ୍ଷା ନଅ ଶତ ଗୁଣ ଅଧିକ ବର୍ଦ୍ଧିତ ହୋଇଥିଲା । ଆମ୍ଭମାନଙ୍କ ସୂର୍ଯ୍ୟର ଉତ୍ତାପ ଏହି ପରିମାଣରେ ବୃଦ୍ଧି ହେଲେ ପୃଥିବୀର ସମସ୍ତ ପ୍ରକାର ଜୀବ, ଏମନ୍ତ କି ଅତି ଦୂରବର୍ତ୍ତୀ ନେପଚୁନ୍ ଗ୍ରହରେ ମଧ କୌଣସି ଜୀବ ଥିଲେ ଏକାବେଳେକେ ନଷ୍ଟ ହୁଅନ୍ତେ । ଆମ୍ଭମାନଙ୍କ ସୂର୍ଯ୍ୟର ଉତ୍ତାପ ନଅ ଶତ ଗୁଣ ବୃଦ୍ଧି ପାଇବ। ତେଣେ ଥାଉ, କେବଳ ମାତ୍ର ନଅ ଗୁଣ ବୃଦ୍ଧି ହେଲେ ମଧ ସମସ୍ତ ପ୍ରକାର ଉଚ୍ଚ ଜୀବମାନଙ୍କର ନାଶ ଘଟନ୍ତା ।

୧୯୦୧ ଇ:ରେ ପାର୍ଶିୟସ (Perseus) ନକ୍ଷତ୍ରପୁଞ୍ଜ ମଧ୍ୟରୁ ଏକ ନକ୍ଷତ୍ର ସହସା ଆଲୋକିତ ହୋଇଉଠିଲା । ତିନି ଦିନ ମଧ୍ୟରେ ଏହାର ଜ୍ୟୋତି ପୂର୍ବାପେକ୍ଷା ୨୫୦୦୦ ଗୁଣ ଅଧିକ ହୋଇଥିଲା । କ୍ରମେ ଏହାର ଉତ୍ତାପ ଏତେ ଅଧିକ ହୋଇଉଠିଲା ଯେ, ଏହାର ସୂକ୍ଷ୍ମ ପରମାଣୁ ସକଳ ପ୍ରତି ସେକେଣ୍ଡରେ ୨୦୦୦ ମାଇଲ ଗତିରେ ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ହେବାକୁ ଲାଗିଲା ଏବଂ ଏହା ନୀହାରିକା ବା ବାଷ୍ପମୟ ସୂକ୍ଷ୍ମଭୂତରେ ପରିଣତ ହେଲା । ଏହି ନକ୍ଷତ୍ର ଯାହା ଆଲୋକ ବିତରଣ କରୁଥିଲା, ଏକ ସପ୍ତାହ ମଧ୍ୟରେ ଚକ୍ଷୁର ଅଗୋଚର ହେଲା । ଏହି ନକ୍ଷତ୍ର ୧୬୦୦ ଖ୍ରୀଷ୍ଟାବ୍ଦରେ ପ୍ରଜ୍ୱଳିତ ହୋଇଥିଲେ ହେଁ ୧୯୦୧ ଇ:ରେ ଏହା ବୈଜ୍ଞାନିକମାନଙ୍କର ଚକ୍ଷୁର ବିଷୟୀଭୂତ ହୋଇଥିଲା । ପ୍ରତି ସେକେଣ୍ଡରେ ଆଲୋକ ୧୮୬୦୦୦ ମାଇଲ ଗତି କରେ । ଏହି ନକ୍ଷତ୍ରଠାରୁ ପୃଥିବୀକୁ ଆଲୋକ ଆସିବାକୁ ୩୦୦ ବର୍ଷ ଲାଗିଥିଲା । ପୃଥିବୀଠାରୁ ନକ୍ଷତ୍ରର ଦୂରତା ୧୭୩୫୬୦୩୨୦୦୦୦୦୦୦୦ ମାଇଲ । ଦ୍ରୁତଗାମୀ ରେଳଗାଡ଼ି ସେଠାରେ ପହଞ୍ଚିବାକୁ ପ୍ରାୟ ୫୦୦୦୦୦୦୦୦ ବର୍ଷରୁ କିଛି ଅଧିକ ସମୟ ଲାଗିବ ।

ପରିଦୃଶ୍ୟମାନ ନକ୍ଷତ୍ରଗୁଡ଼ିକ ପ୍ରକାଣ୍ଡ ଜ୍ୱଳନ୍ତ ସୂର୍ଯ୍ୟ । ଏମାନେ ଆମ୍ଭମାନଙ୍କଠାରୁ ଅତି ଦୂରରେ ଅବସ୍ଥିତ, ଏହେତୁରୁ ଏତେ କ୍ଷୁଦ୍ର ଦେଖାଯାଉଅଛନ୍ତି । ପ୍ରତ୍ୟେକ ସୂର୍ଯ୍ୟର ଗ୍ରହ ଉପଗ୍ରହ ଅଛନ୍ତି— ବୟସ ଅନୁସାରେ ଏମାନଙ୍କର ଗତିର ବିପର୍ଯ୍ୟୟ ଘଟୁ ଅଛି । ନିର୍ବାପିତ ସୂର୍ଯ୍ୟମାନଙ୍କର ପରସ୍ପର ସଂଘର୍ଷଣରେ ପ୍ରଚଣ୍ଡ ଉତ୍ତାପର ସୃଷ୍ଟି ହୋଇ ଜଡ଼ପିଣ୍ଡର ବିନାଶ ସାଧିତ ହେଉଅଛି ଏବଂ ମୂଳ ଭୂତରେ ପରିଣତି ଘଟୁଅଛି ।

ପାର୍ଥିବ ପଦାର୍ଥର ନାଶ ହେଲେ ପୃଥିବୀରେ ରହୁଅଛି । ପୃଥିବୀ ନଷ୍ଟ ହେଲେ ଆକାଶରେ ରହିବ । ତଦ୍ରୂପ ଗ୍ରହ-ସୂର୍ଯ୍ୟ ଧ୍ୱଂସ ହେଲେ ଆକାଶରେ ରହିବେ । ଭଙ୍ଗା ଗଢ଼ା ପ୍ରାକୃତିକ ନିୟମ । ଏକ ସୌର ଜଗତ୍ ଭଙ୍ଗା ହୋଇ ଅନ୍ୟ ସୌର ଜଗତ୍ ଗଢ଼ା ହେଉଅଛି । ଏକ ନକ୍ଷତ୍ର ଜଗତ୍ ଭଙ୍ଗା ହୋଇ ଅନ୍ୟ ଏକ ଗଢ଼ା ହେଉଅଛି। କେତେକାଳ ପରେ ଆମ୍ଭମାନଙ୍କର ପୃଥିବୀ ନଷ୍ଟ ହେବ, ଏହା ପଣ୍ଡିତଗଣ ଅନୁମାନ କରିଅଛନ୍ତି ।

ଆମ୍ଭେମାନେ ଦେଖିପାରିଲୁଁ ଯେ, ଯାହାର ଆକାର, ତାହାର ନାଶ । ପାର୍ଥିବ ପଦାର୍ଥ ଯେମନ୍ତ ନଷ୍ଟ ହୋଇ ଦୃଷ୍ଟିର ବହିର୍ଭୂତ ହେଉଅଛି, ପ୍ରକାଣ୍ଡ ପ୍ରକାଣ୍ଡ ସୂର୍ଯ୍ୟ ମଧ ତଦ୍ରୂପ ନଷ୍ଟ ହେଉଅଛନ୍ତି । ନାଶ ସମୟସାପେକ୍ଷ । ଯାହାର ଆକାର, ତାହାର ପରିବର୍ତ୍ତନ ଓ ନାଶ ଅବଶ୍ୟମ୍ଭାବୀ । ସମସ୍ତ ଆକାରବିଶିଷ୍ଟ ପଦାର୍ଥ ନଷ୍ଟ ହେଲେ ଏହି ଅନନ୍ତ ଆକାଶରେ ରହିବେ ।

ଆକାରବିଶିଷ୍ଟ ହେଲେ ଯାହା ଅଛି, ଆକାରଶୂନ୍ୟ ହେଲେ ଯାହା ଅଛି, ଲୋଷ୍ଟ୍ରଖଣ୍ଡରେ, ଜଳବିନ୍ଦୁରେ, ଆକାଶରେ ଯାହା ଅଛି, ଅନନ୍ତକାଳ ଯାହା ଅଛି, ଯାହା ଭିତରେ ଏହି ଚନ୍ଦ୍ର ପୃଥିବୀ ଗ୍ରହ ସୂର୍ଯ୍ୟ ନକ୍ଷତ୍ରାଦିଙ୍କର ଉତ୍ପତ୍ତି ଓ ବିଲୟ, ତାହା ବ୍ୟାପ୍ତ ଓ ଅବିନାଶୀଙ୍କର ।

•

## ସ୍ୱାଧୀନ ଚିନ୍ତା

*[ ଏହି ପ୍ରବନ୍ଧଟି ୧୯୨୫ ସାଲରେ ଲିଖିତ ହୋଇ ଆମ୍ଭମାନଙ୍କ ନିକଟକୁ ପ୍ରେରିତ ହୋଇଥିଲା। ଅନବଧାନତାବଶତଃ ଦୃଷ୍ଟିର ଅନ୍ତରାଳରେ ରହିଯାଇଥିବାରୁ ପ୍ରକାଶିତ ହୋଇପାରି ନାହିଁ — ଉତ୍କଳ ସାହିତ୍ୟ, ସମ୍ପାଦକ ]*

ଧର୍ମ ଶବ୍ଦର ଅନେକ ଅର୍ଥ ଅଛି । ଏହାର ବ୍ୟୁତ୍ପତ୍ତି 'ଧରତି ଲୋକାନ୍', 'ଧ୍ରିୟତେ ପୁଣ୍ୟାତ୍ମଭିଃ', 'ଧ୍ରିୟତେ

ଅନେନେତି' ଇତ୍ୟାଦି । ଯେତେ ପ୍ରକାର ବ୍ୟୁତ୍ପତ୍ତିଗତ ଅର୍ଥ ଥାଉ, ସାଧାରଣତଃ ଧର୍ମ ଶବ୍ଦର ଅର୍ଥ ଏହି ଯେ ଯାହା ଜନସାଧାରଣ ମଧ୍ୟରେ ସାମ୍ୟ ଓ ମୈତ୍ରୀ ଆନୟନ କରେ । ଯାହା ସାର୍ବଜନୀନ ଓ ସର୍ବବାଦିସମ୍ମତ । ସୃଷ୍ଟିକର୍ତ୍ତା, ପ୍ରତିପାଳକ, ରକ୍ଷାକର୍ତ୍ତା ଈଶ୍ୱରଙ୍କ ଉପରେ ବିଶ୍ୱାସସ୍ଥାପନକୁ ମଧ୍ୟ ଧର୍ମ ଆଖ୍ୟା ଦିଆଯାଏ । ଈଦୃଶ ଆସ୍ଥାସ୍ଥାପନକୁ ବିଶ୍ୱାସ ବୋଲ, ପନ୍ଥା ବୋଲ, ଆଚାର ବୋଲ, Religion ବୋଲ, ମଝବ ବୋଲ, ପ୍ରତ୍ୟେକ ଯେ ଧର୍ମ ଶବ୍ଦର ଅନ୍ତର୍ଗତ, ଏଥିରେ ସନ୍ଦେହ କରିବାର କିଛିହିଁ କାରଣ ନାହିଁ ।

× × ×

ସୃଷ୍ଟିକର୍ତ୍ତା ଓ ରକ୍ଷାକର୍ତ୍ତାଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସର ନାମ କ'ଣ ଧର୍ମ ? ଏହି ବିଶ୍ୱାସ କ'ଣ ଲୋକମାନଙ୍କୁ ବିଶ୍ୱାସ ଗଣ୍ଡି ମଧ୍ୟରେ ରଖିଅଛି ? 'ଧରତି ଲୋକାନ୍' ଏହି ବିଶ୍ୱାସ କ'ଣ ଲୋକମାନଙ୍କ ମଧ୍ୟରୁ ହିଂସା, ଦ୍ୱେଷ, ଘୃଣା ଅପସାରିତ କରେ ? ଏକ ଜାତି କି ଅନ୍ୟ ଜାତିକୁ ଏକ ପିତାର ପୁତ୍ର ବୋଲି ଭ୍ରାତୃ ଦୃଷ୍ଟିରେ ଦେଖେ ? ଅସଭ୍ୟ ଯେମନ୍ତ ଏକ ନିୟନ୍ତା ଉପରେ ଆସ୍ଥା ରଖେ, ସଭ୍ୟ ମଧ୍ୟ ତଦ୍ରୂପ ଏକ ନିୟନ୍ତା ଉପରେ ଆସ୍ଥା ସ୍ଥାପନ କରେ; ତେବେ ଏହି ବିଶ୍ୱାସ ଘେନି ଏତେ ଦ୍ୱେଷ କାହିଁକି— ଏତେ ରକ୍ତପାତ କାହିଁକି ? ଅଶିକ୍ଷିତ ସର୍ବଦା ଏକ ବିଶ୍ୱାସ ଘେନି ବସିଅଛି । ଶିକ୍ଷିତ ଶିକ୍ଷା ବଳରେ ନିଜର ବିଶ୍ୱାସ ତ୍ୟାଗ କଲେ ଅନ୍ୟ ପନ୍ଥାରେ ଚାଲୁଅଛି । ଏଥିରେ କିଏ ବେଶି ଅପରାଧୀ—କିଏ ବେଶି ଦଣ୍ଡାର୍ହ ?

× ×

ସ୍ପେନ ଜାତି କ'ଣ ବରାବର ଖ୍ରୀଷ୍ଟଧର୍ମାବଲମ୍ବୀ ଥିଲେ ? ପୋପ୍‌ଙ୍କ ଆଧିପତ୍ୟ କ'ଣ ସୃଷ୍ଟି ପ୍ରାରମ୍ଭରୁ ଚାଲିଅଛି ? ଯେତେବେଳେ ପିଜାରୋଙ୍କର ଧର୍ମୋପଦେଷ୍ଟା ଇଙ୍କା ଅଧିପତିକି ଖ୍ରୀଷ୍ଟୀୟ ତ୍ରିନୀତି ବ୍ୟାଖ୍ୟା ପ୍ରଦାନ କଲେ ଏବଂ ଖ୍ରୀଷ୍ଟପ୍ରଦର୍ଶିତ ପନ୍ଥା ଏକମାତ୍ର ମୁକ୍ତିର ପନ୍ଥା ବୋଲି ପ୍ରକାଶ କଲେ ଏବଂ ଭ୍ରମପ୍ରମାଦପୂର୍ଣ୍ଣ ନିଜ ଧର୍ମ ତ୍ୟାଗ କରି ମୁକ୍ତିହେତୁ ଖ୍ରୀଷ୍ଟ ଧର୍ମର ଶରଣ ନେବା ଆଦେଶ କଲେ, ଧୀର ଗମ୍ଭୀର ସ୍ୱରରେ ସେ ଅଧିପତି କହିଲେ, ''ମୁଁ ମୋର ଧର୍ମ ତ୍ୟାଗ କରିବି ନାହିଁ । ତୁମ୍ଭ କହିବା କଁଆରେ ତୁମ ଈଶ୍ୱର ଯେ କି ମନୁଷ୍ୟମାନଙ୍କୁ ସୃଷ୍ଟି କଲେ, ଯେ ତାହାଙ୍କ ସୃଷ୍ଟ ମନୁଷ୍ୟମାନଙ୍କଦ୍ୱାରା ସେ ସୃଷ୍ଟି ହେଲେ ।'' ରକ୍ତସିନ୍ଦୂର ମୃଦୁଜ୍ୟୋତି ଅସ୍ତଗତ ସବିତା ଆଡ଼କୁ ହସ୍ତ ବଢ଼ାଇ କହିଲେ, ''ମୋର ଈଶ୍ୱର ଅଦ୍ୟାପି ସ୍ୱର୍ଗରେ ବିଦ୍ୟମାନ ଅଛନ୍ତି ଏବଂ ତାଙ୍କର ସନ୍ତାନମାନଙ୍କୁ କୃପାଦୃଷ୍ଟିରେ ଦେଖୁଅଛନ୍ତି ।'' ଏତିକି ମାତ୍ର ସେ ଅଧୀଶ୍ୱରଙ୍କର ଅପରାଧ । ଏହି ଅପରାଧ କିମ୍ବା ଧର୍ମୋପଦେଷ୍ଟାଙ୍କ ଉତ୍ତେଜନା ବାକ୍ୟରେ ସୈନ୍ୟ ରାଜଗୃହରେ ଉପସ୍ଥିତ ଇଙ୍କାମାନେ ପ୍ରାଣନାଶ କଲେ । ରାଜ୍ୟ ସ୍ପେନର ଅଧିକୃତ ହେଲା । ଈଶ୍ୱରପୁତ୍ର ଖ୍ରୀଷ୍ଟଙ୍କର ଧର୍ମରାଜ୍ୟ ପ୍ରତିଷ୍ଠିତ ହେଲା ।

× × ×

କୃଷ୍ଣ କହିଅଛନ୍ତି, 'ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ' । କୃଷ୍ଣଙ୍କର କେଉଁ ପନ୍ଥାକୁ ଜଗତର ସମସ୍ତ ଲୋକେ ଅନୁସରଣ କରିଅଛନ୍ତି ? 'କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ' । ତାଙ୍କର ଉପଦେଶ କେତେ ଲୋକ ମାନୁଅଛନ୍ତି ? ଯେ ନିଜକୁ ଈଶ୍ୱର, ସର୍ବଲୋକର ନିୟନ୍ତା ବୋଲି ଭାବନ୍ତି, ସେ କ'ଣ ଭୂପରିମାଣ, ଲୋକସଂଖ୍ୟା ଏବଂ ଭୂତ ଭବିଷ୍ୟତ୍ କଳ୍ପନା କରିପାରନ୍ତି ନାହିଁ ? ସେ କ'ଣ କେବଳ ଭାରତବାସୀ ମୁଷ୍ଟିମେୟ ବୈଷ୍ଣବଙ୍କ କଥା ଭାବି ଏ କଥା କହିଥିଲେ ?

× × ×

କୃଷ୍ଣଭକ୍ତମାନେ କୃଷ୍ଣଙ୍କୁ ଈଶ୍ୱରଙ୍କର ଅବତାର, ରୂପାନ୍ତର ବୋଲି ପ୍ରକାଶ କରିଥିଲେ । ଖ୍ରୀଷ୍ଟ ନିଜକୁ ଈଶ୍ୱରପୁତ୍ର ବୋଲି ପ୍ରକାଶ କଲେ । ମହମ୍ମଦ ନିଜକୁ ରସୁଲ୍ ଆଲ୍ଲା ବୋଲି ପ୍ରଚାର କଲେ । ଏଥିରୁ ଜଣାଯାଏ, ଲୋକଙ୍କର ବିଶ୍ୱାସ ଓ ରୁଚିର ପରିବର୍ତ୍ତନ ଅନୁସାରେ ଧର୍ମୋପଦେଷ୍ଟାମାନେ ନିଜ ନିଜକୁ ଈଶ୍ୱରଙ୍କଠାରୁ ଦୂରରେ ରଖିବାକୁ ଚେଷ୍ଟା କରିଅଛନ୍ତି ।

× × ×

ଯେବେ ଧର୍ମ ଈଶ୍ୱରକୃତ ଏବଂ ଧର୍ମୋପଦେଶ ଈଶ୍ୱରଦତ୍ତ, ତେବେ ସମଗ୍ର ମାନବଜାତିର ଏକଧର୍ମ ନୋହିଲା କାହିଁକି ?

ବେଦ ଈଶ୍ୱରନିଶ୍ୱସିତ, ବାଇବେଲ୍ ଓ କୋରାନ୍ ଈଶ୍ୱରଦତ୍ତ । ଈଶ୍ୱର ତିନି ଜାତିକୁ ତିନିପ୍ରକାର ପୁସ୍ତକ ଦେଇ ଅନ୍ତର୍ବିବାଦ ଘଟାଇଲେ କି ? ତିନି ଜାତି ଏକେଶ୍ୱରବାଦୀ ବୋଲି ପ୍ରକାଶ କରୁଥିଲେ ମଧ୍ୟ ମନେ ହୁଏ, ଭାରତବାସୀ ବୈଦିକ ଈଶ୍ୱରବାଦୀ, ଖ୍ରୀଷ୍ଟାନଗଣ ବାଇବେଲ ଈଶ୍ୱରବାଦୀ ଏବଂ ମୁସଲମାନଗଣ କୋରାନ୍ ଈଶ୍ୱରବାଦୀ । ନିଷ୍ପକ୍ଷପାତୀ ପ୍ରତି ତିନି ଗୋଟି ଈଶ୍ୱର ବିବେଚିତ ହେବା ସ୍ୱାଭାବିକ କିମ୍ବା ଏକ ଈଶ୍ୱରଙ୍କୁ ବିଭିନ୍ନ ଜାତି ବିଭିନ୍ନ ଭାବରେ ଦେଖନ୍ତି ବୋଲିବା ସ୍ୱାଭାବିକ ? ବସ୍ତୁତଃ ଦେଖି ନ ଜାଣି ସମସ୍ତେ ଭ୍ରାନ୍ତି ।

ହିନ୍ଦୁ ଓ ମୁସଲମାନଙ୍କ ମଧରେ ବିଦ୍ୱେଷର କାରଣ କ'ଣ ? ଯୋଡ଼ାଏ ଜାତି ଏକ ଦେଶରେ ପ୍ରାୟ ସହସ୍ରାଧିକ ବର୍ଷ କାଳ ଏକତ୍ର ବାସ କରୁଅଛନ୍ତି । ଉଭୟେ ଏକ ଦେଶର ଅନ୍ନ ଜଳରେ ପରିପାଳିତ । ଦ୍ୱେଷ କାହିଁକି ? ଧର୍ମ ଏଥିର ମୂଳ ନୁହେଁ କି ? ଆଚାର ଉଭୟଙ୍କର ମିଳନର ପରିପନ୍ଥୀ ନୁହେଁ କି ?

× × ×

ଧର୍ମ ଯେବେ ନିତ୍ୟ, ସନାତନ, ଈଶ୍ୱରସୃଷ୍ଟି, ତେବେ ମୁସଲମାନ ଧର୍ମ, ଖ୍ରୀଷ୍ଟ ଧର୍ମ, ହିନ୍ଦୁ ଧର୍ମ, ଜେନ୍ଦୁ ଧର୍ମ ହେଲା କାହିଁକି ? ଏ ଯୁଗରେ ମଧ ଲୋକେ ଧର୍ମକୁ ଈଶ୍ୱର ବା ସର୍ବନିୟନ୍ତାଙ୍କ କୃତ ବୋଲି ଭାବିବା ଅନ୍ଧ ବିଶ୍ୱାସ ନୁହେଁ କି ? ଯେମନ୍ତ ଦେଶଭେଦରେ ବର୍ଣ୍ଣବୈଷମ୍ୟ ହୋଇଅଛି, ତେମନ୍ତ ଜ୍ଞାନ ଓ ବିଚାର ଭେଦରେ ଧର୍ମଭେଦ ହୋଇ ନାହିଁ କି ? ଈଶ୍ୱର ମନୁଷ୍ୟକୃତ କି ମନୁଷ୍ୟ ଈଶ୍ୱରକୃତ ? ବର୍ବର ଅଶିକ୍ଷିତ ଓ ଆଦିମ ଜାତିମାନେ ଆପଣା ଛାଞ୍ଚରେ ଈଶ୍ୱରଙ୍କୁ ହିଂସାପରାୟଣ, ରକ୍ତପିପାସୁ, ଯୁଦ୍ଧପ୍ରିୟ ମନେ କରନ୍ତି । ଦେବତା ବଳିରେ ତୁଷ୍ଟ, ବଳି ପାଇଲେ ଧନବୃଦ୍ଧି କରନ୍ତି, ବଂଶରକ୍ଷା କରନ୍ତି ବୋଲି ସେମାନଙ୍କର ବିଶ୍ୱାସ । ପ୍ରୋକ୍ଷିତ ନରର କ୍ରନ୍ଦନଧ୍ୱନି, ଚିତ୍କାର, ଯନ୍ତ୍ରଣାର ଆର୍ତ୍ତନାଦ ଦେବତାର ପ୍ରୀତ୍ୟୁତ୍ପାଦକ ସଙ୍ଗୀତ ବୋଲି ମନେ କରନ୍ତି । ଆଫ୍ରିକାନ୍ ଓ ଭାରତୀୟ ଅନାର୍ଯ୍ୟମାନଙ୍କର ନରବଳି ବିଷୟ କାହାକୁ ଅବିଦିତ ? ଗଡ଼ଜାତର ମେରିଆ କଥା ଶୁଣିଲେ କେଉଁ ସଭ୍ୟ ଜାତିର ହୃତ୍କମ୍ପ ନ ହୋଇ ରହିବ । ଅସଭ୍ୟ ଅଶିକ୍ଷିତ କଥା ତେଣେ ଥାଉ, ସଭ୍ୟ ସୁଶିକ୍ଷିତ ହିନ୍ଦୁ ଶାକ୍ତମାନଙ୍କର ତନ୍ତ୍ରବ୍ୟାପାର ଶ୍ରବଣ କଲେ ଆଜି କାହାର ହୃଦୟ ବିଦୀର୍ଣ୍ଣ ନ ହୋଇରହିବ ? ଧର୍ମର ଦୋହି ଦେଇ କୌଣସି ଅଜ୍ଞେୟ ଅଜ୍ଞାତ ଦେବତା ଉପରେ ବିଶ୍ୱାସ ରଖି କି ସଭ୍ୟ କି ଅସଭ୍ୟ ନିଜ ଜାତି ଉପରେ— ଏକ ରକ୍ତମାଂସଗଢ଼ା ନରଗଣଙ୍କ ଉପରେ କି ଉତ୍ପାତ, କି ନୃଶଂସ ବ୍ୟବହାର କରି ନାହାନ୍ତି । ମନୁଷ୍ୟ ସୃଷ୍ଟି ଦିନରୁ ଏହି ନୃଶଂସ ବ୍ୟାପାର ଚାଲିଅଛି—ସେହି ଦେବତା ନାମରେ, ସେହି ଧର୍ମ ଛଳନାରେ ! ବିଶ୍ୱନିୟନ୍ତା, ପାଳନକର୍ତ୍ତା ଈଶ୍ୱର କି ଏହା ଦେଖୁ ନାହାନ୍ତି ? ଏହା ଜାଣୁ ନାହାନ୍ତି ? ଡ୍ରୁଇଡ଼ମାନଙ୍କର ଶତ ସହସ୍ର ନରବଳି ସର୍ବଦ୍ରଷ୍ଟାଙ୍କ ଦୃଷ୍ଟିରେ ପଡ଼ି ନ ଥିଲା କି ? ରୋମ ସମ୍ରାଟ୍ କନ୍‌ଷ୍ଟେଣ୍ଟାଇନ୍‌ଙ୍କର ହତ୍ୟାକାଣ୍ଡ ସ୍ମରଣ କଲେ କାହାର ରୋମାଞ୍ଚ ନ ହେବ ? ଖ୍ରୀଷ୍ଟପ୍ରଚାରିତ ସ୍ୱାର୍ଥତ୍ୟାଗମୂଳକ ଧର୍ମର ପ୍ରଥମ ଗ୍ରହଣକର୍ତ୍ତା କନ୍‌ଷ୍ଟେଣ୍ଟାଇନ ଖ୍ରୀଷ୍ଟାନ୍ ପୁରୋହିତମାନଙ୍କ ଉତ୍ତେଜନାରେ କି ନରରକ୍ତ ନଦୀ ବୁହାଇ ଦେଇ ନ ଥିଲେ । ପିତା ମୃତପ୍ରାୟ ବତ୍ସକୁ ଧରିବାକୁ ଯାଇ ପୁତ୍ରର ରକ୍ତସ୍ରୋତରେ କି ଭାସି ନ ଥିଲା ? ସତୀ ପ୍ରାଣାଧିକ ପତିକୁ ଆଲିଙ୍ଗନ କରିବାକୁ ଯାଇ ପତିରକ୍ତରେ ପିଚ୍ଛୁଳି ପଡ଼ି ନ ଥିଲା ? ଯେତେବେଳେ ନିରୀହ ଧର୍ମପ୍ରାଣ ବୃଦ୍ଧ, ପତିପରାୟଣା ସତୀ, ସହାସ୍ୟମୁଖ ଶିଶୁଗଣଙ୍କ ଉପରେ ରକ୍ତପିପାସୁ ଘାତକଗଣଙ୍କ କୁରାଳ କୁଠାରାଘାତ ଚାଲିଥିଲା, ସେତେବେଳେ ସ୍ୱର୍ଗଦୂତଗଣ (angles) ଆକାଶରେ ଥାଇ ଅଙ୍ଗୁଳି ନିର୍ଦ୍ଦେଶ କରି 'ମାର୍, ମାର' ଆଦେଶ ଦେଉଥିଲେ । ଖ୍ରୀଷ୍ଟଙ୍କ ଜନ୍ମଦାତା ପରମକାରୁଣିକ ଜଗତ୍ପାତା କେଉଁ ଉଜ୍ଜ୍ୱଳ ଧର୍ମାସନରେ ବସି ଦେଖୁଥିଲେ ? ଏଠାରେ ଖ୍ରୀଷ୍ଟଙ୍କର ଭବିଷ୍ୟତ୍‌ବାଣୀ ('I come not to bring peace upon earth, but a sword' ସାର୍ଥକ ହେଲା କି ?

ମୋଜାଇମାନେ ଈଶ୍ୱରଙ୍କର କଲ୍ୟାଣଭାଜନ ପ୍ରିୟ ଭକ୍ତ । ସେହି ଭକ୍ତଗଣ କ'ଣ କରି ନାହାନ୍ତି । ଦୁଗ୍ଧପୋଷ୍ୟ ଶିଶୁ, ଯୁବକ ଯୁବତୀ, ବୃଦ୍ଧ ବୃଦ୍ଧା ସମସ୍ତେ ମୋଜାଇମାନଙ୍କ କୁଠାରାଘାତରୁ ରକ୍ଷା ପାଇ ନ ଥିଲେ । ଏହା ପ୍ରଭୁଙ୍କର ଆଦେଶ— 'ସମସ୍ତଙ୍କୁ ମାର'କେବଳ 'keep alive yourselves' ।

ଏପରି ଧର୍ମଶାସ୍ତ୍ରମାନ ପାରାୟଣ କଲେ, ମାନବ-ଇତିହାସ ପାଠ କଲେ କିଏ କହିବ ଯେ, ଧର୍ମ ଈଶ୍ୱରକୃତ, ନରଗଣ ଈଶ୍ୱରଙ୍କ ଛାଞ୍ଚରେ ଗଢ଼ା ? ସ୍ୱତଃ କହିବାକୁ ପ୍ରବୃତ୍ତି ବଳେ ଯେ, ମନୁଷ୍ୟ ନିଜ ଛାଞ୍ଚରେ ଈଶ୍ୱରଙ୍କୁ ଗଢ଼ିଅଛି ଏବଂ ସେହି ଛାଞ୍ଚରେ ନିଜର ଧର୍ମ, ଗୁଣ ଓ ପ୍ରକୃତି ବିନ୍ୟାସ କରିଅଛି ।

× × ×

ଧର୍ମ ନାମଟି ଆତ୍ମରକ୍ଷାର ଉପାୟ । ଧର୍ମର ଦୋହି ଦେଇ ମନୁଷ୍ୟ ସଂସାରରେ ଅଶେଷ କ୍ଷତି କରୁଅଛି, ଅସଂଖ୍ୟ ପ୍ରାଣ ନଷ୍ଟ କରୁଅଛି । କୁରୁକ୍ଷେତ୍ର ଧର୍ମକ୍ଷେତ୍ର, କୁରୁପାଣ୍ଡବ ଯୁଦ୍ଧ ଧର୍ମଯୁଦ୍ଧ । 'କୋରାନ୍ ମାନ, ନତୁବା ପ୍ରାଣ ଦିଅ' ଏହା ଧର୍ମବାକ୍ୟ ଓ ଯେହାଦ ଧର୍ମଯୁଦ୍ଧ ମୋଜାଇମାନଙ୍କର ପୈଶାଚିକ କାଣ୍ଡ, ଖ୍ରୀଷ୍ଟଧର୍ମ ପୁରୋହିତଙ୍କ ଉତ୍ତେଜନାରେ ଅଶେଷ ନରନାରୀଙ୍କ ପ୍ରାଣନାଶ ଈଶ୍ୱରେଚ୍ଛା, ଇତ୍ୟାଦି କେତେଗୁଡ଼ିଏ କାଳ୍ପନିକ ଧର୍ମମତର ସୃଷ୍ଟି ହୋଇ ନ ଥିଲେ ଏତେ ରକ୍ତପାତ ହୁଅନ୍ତା କି ? ଆଦ୍ୟାଶକ୍ତି ନାମ କାଳୀ ପ୍ରଭୃତି

ଦେବୀଙ୍କ ଖର୍ପରରେ କେତେ ନରରକ୍ତ ଅଜାଡ଼ା ଯାଇ ନାହିଁ ? ପଞ୍ଚମକାର ଉପାସନା ଧର୍ମର ଅଙ୍ଗ ନୁହେଁ କି ? ସେବାଦାସୀ ପ୍ରଥା କି ଭାରତରେ, କି ଇଉରୋପରେ ଧର୍ମ ଆଖ୍ୟା ଅନ୍ତର୍ଭୁକ୍ତ ନୁହେଁ କି ? ଏହି ଧର୍ମର ଛଳନାରେ ପଡ଼ି କେତେ ଯୁବତୀ ଆପଣାର କୁଳମର୍ଯ୍ୟାଦାଦି ମହତ୍ତ୍ୱ ହରାଇ ପାପପଙ୍କରେ ଲିପ୍ତ ହୋଇ ଅଛନ୍ତି । ପିତାମାତା ଧର୍ମଭାବ ହୃଦୟରେ ପୋଷଣ କରି ଆପଣାର ପ୍ରିୟତମା କନ୍ୟାକୁ କିମ୍ଭୂତକିମାକାର ଅଜ୍ଞେୟ ପୁରୁଷ ନାମରେ ଉତ୍ସର୍ଗ କରୁଅଛନ୍ତି । ଗଙ୍ଗାସାଗର ସଙ୍ଗମରେ ପୁତ୍ର କନ୍ୟା ଭସାଇ ଦେବା କଥା ଶୁଣିଲେ କିଏ ଆକୁଳ ନ ହୁଏ । କୁଳରେ ସତୀ ଆଖ୍ୟା ରହିବ ବୋଲି କେତେ ନରପିଶାଚ କୁପୁତ୍ର ନିଜର ପରମାରାଧ୍ୟା ଜନନୀକୁ ପିତାର ଜ୍ୱଳନ୍ତ ଚିତା ଉପରେ ନିକ୍ଷେପ କରି ନାହାନ୍ତି । ଆହା । ଏ ସବୁ ତ ଧର୍ମ । ତେବେ ଅଧର୍ମ କେଉଁଠାରେ ? ମୁକ୍ତିର ସୋପାନପରମ୍ପରା, ସ୍ୱର୍ଗଫଳପ୍ରଦ । ଈଦୃଶ ଧର୍ମଦ୍ୱାରା ସ୍ୱର୍ଗବାସ ଅପେକ୍ଷା ନିରୟବାସ ସ୍ପୃହଣୀୟ ନୁହେଁ କି ?

× × ×

ନାଳନ୍ଦା ପ୍ରଧାନ ବୌଦ୍ଧ ପୀଠ । ନାଳନ୍ଦା ନିକଟ ବଡ଼ ଗ୍ରାମର ଧାନ୍ୟକ୍ଷେତ୍ର ମଧ୍ୟରେ ବୃହତ୍ ବଟବୃକ୍ଷ ମୂଳରେ ସୁନ୍ଦର କୃଷ୍ଣପ୍ରସ୍ତରରେ ନିର୍ମିତ ପ୍ରକାଣ୍ଡ ବୁଦ୍ଧ ମୂର୍ତ୍ତି ବିରାଜମାନ । ନିମୀଳିତନେତ୍ର ପ୍ରଶାନ୍ତ ଧ୍ୟାନମୁଦ୍ରାରେ ଉପବିଷ୍ଟ ଧ୍ୟାନମଗ୍ନ ସିଦ୍ଧାର୍ଥ । ଦର୍ଶକ କରୁଣାବତାର ବୁଦ୍ଧଦେବଙ୍କର ଏହି ରୂପଲାବଣ୍ୟ ଦେଖି ପ୍ରେମ ଗଦ୍‌ଗଦ୍ ଚିତ୍ତରେ ଭକ୍ତି-ପୁଷ୍ପାଞ୍ଜଳି ଦେବାକୁ ଅଗ୍ରସର ହେବା ସ୍ୱାଭାବିକ । ମାତ୍ର ଦେଖେ କ'ଣ, ଶୁଣେ କ'ଣ ? ଭାରତଗୌରବ ବାଳାଦିତ୍ୟ ପ୍ରଭୃତିଙ୍କ ଅନ୍ତର୍ଦ୍ଧାନ ସଙ୍ଗେ ସଙ୍ଗେ ଏହି ମୂର୍ତ୍ତିର ନାମ ପରିବର୍ତ୍ତନ ହୋଇଅଛି । ଏହି ମୂର୍ତ୍ତି ଧର୍ମରାଜ ନୁହନ୍ତି, ଏହାଙ୍କ ନାମ କାଳଭୈରବ । ଏହାଙ୍କ ପାଦପଦ୍ମ ବୌଦ୍ଧ ଭିକ୍ଷୁ ଓ ଶ୍ରମଣମାନଙ୍କ ଶୁକ୍ଳ ପୁଷ୍ପାଞ୍ଜଳିଦ୍ୱାରା ସୁଶୋଭିତ ନୁହେଁ, ମାତ୍ର ଏହାଙ୍କୁ ଗଳଦେଶ ରକ୍ତ ମନ୍ଦାରମାଳଦ୍ୱାରା ପରିପୂର୍ଣ୍ଣ । ଯାହାଙ୍କର ପାଦଯୁଗଳ ଏକ ସମୟରେ ଭକ୍ତାଶ୍ରୁଦ୍ୱାରା ଧୌତ ହେଉଥିଲା, ଏବେ ତାହା ମେଷରକ୍ତଦ୍ୱାରା ରଞ୍ଜିତ ହେଉଅଛି । ପରମକାରୁଣିକ, ଦୟାବତାର ସଦୟହୃଦୟ ବୁଦ୍ଧଦେବଙ୍କ ପ୍ରତିମୂର୍ତ୍ତି ହିନ୍ଦୁ ପୂଜକମାନଙ୍କର ମେଷବଳିରେ ତୃପ୍ତ । ପ୍ରତି ବର୍ଷ ଆଷାଢ଼ ମାସରେ ଏହି କାଳଭୈରବ ଆଖ୍ୟାଧାରୀ ବୁଦ୍ଧ ପ୍ରତିମା'ଙ୍କୁ ଗୋଟିଏ ମେଷ ବଳି ଦିଆଯାଏ । ହିନ୍ଦୁମାନଙ୍କର ବୌଦ୍ଧଧର୍ମ ବିଦ୍ୱେଷର ଏହା ଫଳ ନୁହେଁ କି ? କେଉଁ ହିନ୍ଦୁ, ବୁଦ୍ଧଦେବଙ୍କୁ ନ ଜାଣେ ? କେଉଁ ଭାରତୀୟ ପ୍ରଧାନ ସ୍ଥାନରେ ବୁଦ୍ଧଙ୍କର ମୂର୍ତ୍ତି ନାହିଁ ? ଚକ୍ଷୁ ଥାଉଁ ଥାଉଁ ଅନ୍ଧ । ବୁଦ୍ଧମୂର୍ତ୍ତି ଆଜି କାଳଭୈରବ । ମୂର୍ତ୍ତିର କି ଚେତନା ଅଛି ? ''ମାନିଲେ ଦିଅଁ, ନୋହିଲେ ପାଷାଣ ।'' ଦୂର ଚୀନ ଓ ଜାପାନରୁ ଯାତ୍ରୀମାନେ ଭକ୍ତିତଦ୍ଗତ ଚିତ୍ତରେ ଦର୍ଶନ କରିବାକୁ ଆସୁଅଛନ୍ତି, ଆଉ ନାଳନ୍ଦାବାସୀ କାଳଭୈରବ ବୋଲି ମେଷ ବଳି ଦେଉଅଛନ୍ତି !

× × ×

ଫାସିମାଳ (ବାମଣ୍ଡା ରାଜ୍ୟାନ୍ତର୍ଗତ ଗୋଟିଏ ପ୍ରାଚୀନ ଗଡ଼) ଗ୍ରାମରେ ଏକ ଯୁଗଳ ମୂର୍ତ୍ତି ଅଛନ୍ତି । ଶାସ୍ତ୍ରଜ୍ଞ ବ୍ୟକ୍ତି ପ୍ରତି ଏହା ସ୍ପଷ୍ଟ ଶିବ ପାର୍ବତୀ ମୂର୍ତ୍ତି । ମାତ୍ର ବହୁକାଳରୁ ଏହି ମୂର୍ତ୍ତିକୁ ସେଠାର ଲୋକେ କଳାପାଟ ବୋଲି ପୂଜା କରନ୍ତି । ଗୋଟିଏ ସୂର୍ଯ୍ୟ ମୂର୍ତ୍ତି ମଧ୍ୟ ଅଛନ୍ତି । ଏହାଙ୍କର ନାମ ଭୁଖିଲା । ବଡ଼ ଭୟାନକ ରକ୍ତପିପାସୁ । ଏମାନେ ଛାଗ ମେଷ ଓ ମହିଷ ବଳିରେ ତୃପ୍ତ । ସମସ୍ତ ହିନ୍ଦୁ ଶାସ୍ତ୍ରଜ୍ଞମାନେ ଏମାନଙ୍କୁ ଶିବ ପାର୍ବତୀ ଓ ସୂର୍ଯ୍ୟ ବୋଲି ପରିଚୟ କରି ସାତ୍ତ୍ୱିକ ଉପଚାରରେ ପୂଜା କରନ୍ତି । ଅଶିକ୍ଷିତମାନେ ମେଷ ମହିଷ ବଳିରେ ତୃପ୍ତ କରୁଅଛନ୍ତି ।

ନାମର ମୂଲ୍ୟ ଅଛି, ସ୍ଥାନର ମୂଲ୍ୟ ଅଛି, ମାତ୍ର ମୂର୍ତ୍ତିର କୌଣସି ମୂଲ୍ୟ ନାହିଁ ।

× × ×

ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତିନି ମୂର୍ତ୍ତି ଭାରତର ନାନା ସ୍ଥାନରେ ଅଛନ୍ତି । ଆକାରବୈଷମ୍ୟ ଥାଇ ପାରେ, ମାତ୍ର ଆକୃତି ଠିକ୍ । ସମସ୍ତଙ୍କର ରୂପ ଦେଖିବାକୁ ଏକା । ଏକ ଛାଞ୍ଚରେ ଗଢ଼ା । ସମସ୍ତେ ଜୀବନ୍ୟାସଦ୍ୱାରା ପୂଜିତ । ମାତ୍ର ପୁରୀ ଜଗନ୍ନାଥଙ୍କ ଉପରେ ଯେପରି ଭକ୍ତି ଓ ପ୍ରେମ ଅଛି, ଅନ୍ୟମାନଙ୍କ ଉପରେ ସେପରି ଅଛି କି ? ମହାପ୍ରସାଦ ଭକ୍ଷଣ ପୁରୀ ତୁଲ୍ୟ ଅନ୍ୟ ସ୍ଥାନରେ ଅଛି କି ? ନା । କାରଣ କ'ଣ ? ସ୍ଥାନର ମାହାତ୍ମ୍ୟ ନୁହେଁ କି ? ସଂସ୍କାର ଏହି ମହାନ୍ ତାରତମ୍ୟ ବହୁକାଳାବଧି ରଖିଅଛି । ବ୍ୟାସଦେବଙ୍କର ଏହି ଶ୍ଳୋକଟି ଅତି ଚମତ୍କାର—

''ରୂପଂ ରୂପବିବର୍ଜିତସ୍ୟ ଭବତୋ
ଧ୍ୟାନେନ ଯଦ୍‌ବର୍ଣ୍ଣିତଂ
ସ୍ତୁତ୍ୟାନିର୍ବଚନୀୟତା ଖିଳଗୁରୋ
ଦୂରୀକୃତା ଯନ୍ମୟା ।
ବ୍ୟାପିତ୍ୱଂ ଚ ବିନାଶିତଂ ଭଗବତୋ
ଯତ୍ତୀର୍ଥଯାତ୍ରାଦିନା

କ୍ଷାନ୍ତବ୍ୟଂ ଯଗଦୀଶ ତଦ୍‌ବିକଳିତା
ଦୋଷତ୍ରୟଂ ମତ୍‌କୃତଂ ॥

''କୋଥା ଗେଲେ ପାବୋ ତାରେ ବଲେଦାଓ ଅମାୟ ।''

ଭକ୍ତର ଆର୍ତ୍ତନାଦ କୌଣସି ସ୍ଥାନକୁ ଯାଇ ସେହି ଅଜ୍ଞେୟର ଦର୍ଶନ ଆଶା ବୃଥା ।

× × ×

ଗୁରୁ ନାନକ ମକ୍‌କାକୁ ପରା ଯାଇଥିଲେ । ମନ୍ଦିରର ବହିର୍ଭାଗରେ ଏକ ସ୍ଥାନରେ ରାତ୍ରରେ ଶୟନ କଲେ । ମନ୍ଦିର ଆଡ଼କୁ ଗୋଡ଼ଲମ୍ବାଇ ଶୋଇଲେ । ଜଣେ ଧର୍ମଯାଜକ ନାନକଙ୍କୁ ତିରସ୍କାର କଲେ ଏବଂ କହିଲେ, ''ତୁମ୍ଭେ ଈଶ୍ୱରଙ୍କର ଧର୍ମପୀଠ ଆଡ଼କୁ ଗୋଡ଼ ଲମ୍ବାଇ ଶୋଇଅଛ ।'' ଗୁରୁ ନାନକ କହିଲେ, ''ଯେଉଁ ଆଡ଼େ ଈଶ୍ୱର ନାହାନ୍ତି, ସେହି ଆଡ଼େ ମୋର ଗୋଡ଼ ରଖିଦିଅ ।'' ଧର୍ମଯାଜକ ଅବାକ୍ । ଈଶ୍ୱର ଯେବେ ସର୍ବବ୍ୟାପକ, ତେବେ ଏଠି ସେଠି ବୋଲି ଭାବିବା ମୂଢ଼ତା ନୁହେଁ କି ?

× × ×

ବେଦରେ ଧର୍ମ ଶବ୍ଦଟି ଅଛି । ଏହାର ଅର୍ଥ ନିୟମ, ଆଚାର । ଆଚାର ଯେବେ ଧର୍ମ ହୁଏ, ତେବେ ତାହା ଚିରକାଳ ଏକ ରହି ନ ପାରେ । ଯେହେତୁ କାଳର ଗତି ସଙ୍ଗେ ସଙ୍ଗେ ମନୁଷ୍ୟ ରୁଚିର ପରିବର୍ତ୍ତନ ଘଟେ ଏବଂ ଅଚାନକ ପରିବର୍ତ୍ତନ ଘଟେ, ସୁତରାଂ ଧର୍ମର ପରିବର୍ତ୍ତନ ଘଟିବା ସ୍ୱାଭାବିକ । ମନୁସ୍ମୃତିକି ମାନବ ଧର୍ମଶାସ୍ତ୍ର ବୋଲାଯାଏ । ପୂର୍ବପ୍ରଚଳିତ ଆଚାର ବ୍ୟବହାର ଓ ସମସାମୟିକ ଆଚାର ବ୍ୟବହାର ପ୍ରତି ଇଚ୍ଛା ରଖି ଯେଉଁ ବିଧି ବିଧାନ କରାଗଲା, ତାହାର ନାମ 'ମାନବ-ଧର୍ମଶାସ୍ତ୍ର' ଦିଆଗଲା । ଏହି ଶାସ୍ତ୍ରବିଧିକୁ ନେଇ ଲୋକେ ଚିରକାଳ ଚଳି ନ ପାରନ୍ତି । ରୁଚିପରିବର୍ତ୍ତନ ସଙ୍ଗେ ସଙ୍ଗେ ଆଚାର ବିଭିନ୍ନ ଏବଂ କ୍ରମେ ବିଧିର ପରିବର୍ତ୍ତନ ହେବା ସ୍ୱାଭାବିକ । ଏଣୁ ମନୁ ଛଡ଼ା କେତେ ଧର୍ମଶାସ୍ତ୍ରରେ ବିଧି ବ୍ୟବସ୍ଥା କାଳଭେଦରେ ଓ ଦେଶଭେଦରେ ହୋଇଯାଇଅଛି । ଯେଉଁମାନେ ଧର୍ମ ସନାତନ ଓ ନିତ୍ୟ ବୋଲି କହିଅଛନ୍ତି, ସେମାନେ ଭ୍ରାନ୍ତ । ଧର୍ମ ପରିବର୍ତ୍ତନଶୀଳ, ଏହାର ଗତିରୋଧ ହେଇ ନ ପାରେ ।

ଧର୍ମ ଶବ୍ଦର ଅର୍ଥ ପନ୍ଥା ବା ବିଶ୍ୱାସ ହେଲେ ତାହା ବିଭିନ୍ନ ଓ ନାନା, ସୁତରାଂ ସର୍ବତ୍ର ପରିବର୍ତ୍ତନଶୀଳ ।

× × ×

ଭଗବଦ୍‌ଗୀତାରେ କେତେଗୋଟି ଧର୍ମ ଶବ୍ଦ ଅଛି— ପ୍ରାୟ ୧୭ ଗୋଟି । ଅଧିକାଂଶ ଏକ ଅର୍ଥରେ ବ୍ୟବହୃତ ହୋଇ ନାହିଁ, ଯଥା– ସ୍ୱଧର୍ମ, କୃତଧର୍ମ, ବର୍ଣ୍ଣଧର୍ମ, ଇତ୍ୟାଦି । କୁଳଧର୍ମ ନଷ୍ଟ ହୁଏ କୁଳକ୍ଷୟ ହେଲେ । କୁଳଧର୍ମ ସନାତନ । ଧର୍ମ ନଷ୍ଟ ହେଲେ କୁଳର ଅଧର୍ମ ହୁଏ। ଅଧର୍ମ ହେଲେ ସ୍ତ୍ରୀମାନେ ପ୍ରଦୁଷ୍ୟ ହୁଅନ୍ତି । ସ୍ତ୍ରୀ ଦୁଷ୍ଟା ହେଲେ ବର୍ଣ୍ଣସଙ୍କର ଜାତ ହୁଅନ୍ତି । ସାଙ୍କର୍ଯ୍ୟରୁ ନରକ ଅବଶ୍ୟମ୍ଭାବୀ । ନରକରୁ ରକ୍ଷା ପାଇବା ନିମନ୍ତେ କୁଳରକ୍ଷା, କୁଳରକ୍ଷା ହେଲେ କୁଳଧର୍ମର ରକ୍ଷା କୁଳ ଧର୍ମରକ୍ଷକ, ନା ଧର୍ମ କୁଳରକ୍ଷକ ? ଏଥିରୁ ଜଣାଯାଏ, କୁଳ ଧର୍ମରକ୍ଷକ । ତେବେ କୁଳଧର୍ମ ସନାତନ, ଶାଶ୍ୱତ ବୋଲିବା ଅଯୌକ୍ତିକ । ଯୁଦ୍ଧ କୁଳନାଶକ । ଅନେକ କୁଳ ଯୁଦ୍ଧାଦିଦ୍ୱାରା ନଷ୍ଟ ହୁଅନ୍ତି, ସୁତରାଂ ନଷ୍ଟ କୁଳମାନଙ୍କର ଧର୍ମ ରହିବା ସମ୍ଭବ ନୁହେଁ । ବୈଦିକ କାଳରୁ ଆଜିଯାଏ କୌଣସି ଧର୍ମ ବରାବର କୁଳଧର୍ମ ହୋଇ ରହି ନାହିଁ । ସନାତନ ଓ ଶାଶ୍ୱତ ଶବ୍ଦ ଯୋଡ଼ିକ ଧର୍ମ ଶବ୍ଦର ବିଶେଷଣରୂପେ ବହୁଶଃ ବ୍ୟବହୃତ ହେଉଥିଲେ ସୁଦ୍ଧା ଜାତିଧର୍ମ ଓ କୁଳଧର୍ମ କ୍ଷଣଭଙ୍ଗୁର, ଅନିତ୍ୟ ଓ ସର୍ବଦା ପରିବର୍ତ୍ତନୀୟ । ଧର୍ମର ସ୍ୱାଭାବିକ ପରିବର୍ତ୍ତନ ଜାତିର ଉଚ୍ଛେଦକାରକ ନୁହେଁ, ବରଂ ମଙ୍ଗଳକାରକ ।

× × ×

'ସ୍ୱଧର୍ମ' ଏଠାରେ କ୍ଷତ୍ରିୟର ଧର୍ମ ଯୁଦ୍ଧ । ଯୁଦ୍ଧରୂପ ଧର୍ମ ତ୍ୟାଗ କରିବା କ୍ଷତ୍ରିୟ ଯୋଦ୍ଧା ପ୍ରତି ଅସଙ୍ଗତ । ଏହା ମାତ୍ର ସମୟୋଚିତ, ଏଣୁ ଶାଶ୍ୱତ ନୁହେଁ । ଯେଉଁ ବ୍ୟକ୍ତି ଯୁଦ୍ଧ କରିବାକୁ କୃତସଙ୍କଳ୍ପ କିମ୍ବା ଯେଉଁ ବ୍ୟକ୍ତି ଯୁଦ୍ଧ କରିବାକୁ ଉଦ୍ୟତ, ତା' ପ୍ରତି ଯୁଦ୍ଧ ତ୍ୟାଗ କରିବା ଅଧର୍ମ ଏବଂ କାପୁରୁଷପଣିଆ ସନ୍ଦେହ ନାହିଁ । ମହାଯୋଦ୍ଧା ବଳରାମ ଯୁଦ୍ଧ କରି ନ ଥିଲେ । କୃଷ୍ଣ ସାରଥିର କାର୍ଯ୍ୟ କରୁଥିଲେ । କୃଷ୍ଣ ବଳରାମ ସ୍ୱଧର୍ମ ତ୍ୟାଗୀ କି ?

× × ×

ହିନ୍ଦୁ କହୁଅଛି, ''ହେ ପ୍ରଭୁ, ହେ ପରମାତ୍ମା, ହିନ୍ଦୁର ଧର୍ମ ରକ୍ଷା କର, ମ୍ଳେଚ୍ଛ ଅତ୍ୟାଚାରରୁ ଏହି ସନାତନ ଧର୍ମକୁ ରକ୍ଷା କର । ଆମ୍ଭର ଆର୍ଯ୍ୟ ଭାଳରେ ସର୍ବଦା ଉର୍ଦ୍ଧ୍ୱପୁଣ୍ଡ୍ର ଓ ତ୍ରିପୁଣ୍ଡ୍ର, ଥାଉ ସ୍କନ୍ଧରେ ଯଜ୍ଞୋପବୀତ ଥାଉ ।'' ମୁସଲମାନ ମସ୍‌ଜିଦ୍‌ରେ ନମାଜ ପଢ଼ି କହୁଅଛି, ''ଆଲ୍ଲା ହୋ ଆକବର, ତୁମ୍ଭର ଅସୀମ ଦୟା, ପୌତ୍ତଳିକ କାଫେରମାନଙ୍କଠାରୁ ତୁମ୍ଭର ଏହି ପ୍ରିୟତମ ଧର୍ମକୁ ରକ୍ଷା କରିପାରିବୁଁ, ଏଥି ନିମନ୍ତେ

ବଳ ଦିଅ, ଶକ୍ତି ଦିଅ ।'' ଗିର୍ଜାରେ ପାଦ୍ରିଗଣ ପ୍ରାର୍ଥନା କରୁଅଛନ୍ତି, ''ହେ ସ୍ୱର୍ଗୀୟ ପିତା, ତୁମ୍ଭର ସିଂହାସନ ଉଜ୍ଜ୍ୱଳତମ ହେଉ । ତୁମ୍ଭର ପବିତ୍ର ରାଜ୍ୟ ବିସ୍ତାର ଲାଭ କରୁ । ଦୋଷୀମାନଙ୍କର ଦୋଷ କ୍ଷମା କର । ପୌତ୍ତଳିକଗଣ ଏବଂ ଖ୍ରୀଷ୍ଟବିରୋଧୀମାନେ ଅଜ୍ଞାନ । ସେମାନଙ୍କ ହୃଦୟରେ ଜ୍ଞାନାଲୋକ ଉଦ୍ଦୀପ୍ତ କର । ଖ୍ରୀଷ୍ଟ ପନ୍ଥା ଅବଲମ୍ବନ କରି ତୁମ୍ଭର ପବିତ୍ର ଯଶ ବର୍ଦ୍ଧନ କର ।''

ହିନ୍ଦୁର ଭାବ— ହିନ୍ଦୁ ପବିତ୍ର, ଆଉ ସମସ୍ତେ ଅପବିତ୍ର । ସେମାନେ ଜନ୍ମ ଜନ୍ମାନ୍ତରରେ ପାପ ଧୌତ ନ କଲେ ହିନ୍ଦୁ ହୋଇପାରିବେ ନାହିଁ । ହିନ୍ଦୁ ଜନ୍ମ ନ ନେଲେ ମୁକ୍ତି ନାହିଁ ।

ମୁସଲମାନଙ୍କ ମତ— ମହମ୍ମଦ ପ୍ରଚାରିତ ଧର୍ମ ଅବଲମ୍ବନ କଲେ, ପୌତ୍ତଳିକତା ବର୍ଜନ କଲେ ମୁସଲମାନ । ମୁସଲମାନ ହେଲାରୁ ତେଣିକି ଯେ ହେଉ ।

ଯୀଶୁ ଈଶ୍ୱରପୁତ୍ର—ଯିଶୁଙ୍କୁ ଈଶ୍ୱରପୁତ୍ର ବୋଲି ବିଶ୍ୱାସ କରିବା ବ୍ୟକ୍ତି ପ୍ରତି ମୁକ୍ତିପନ୍ଥା ଉନ୍ମୁକ୍ତ । ସିଧାସଳଖ ବାଟରେ ବିଚାରାସନ ତଳେ ପହଞ୍ଚି ଯିବ ।

ଈଶ୍ୱର ହିନ୍ଦୁଙ୍କୁ ବିଶୁଦ୍ଧ ଓ ପବିତ୍ର କରି ରଖି ପାରୁ ନାହାଁନ୍ତି, ସମସ୍ତଙ୍କୁ ମୁସଲମାନ କରି ଦେଉ ନାହାନ୍ତି କିମ୍ବା ସମସ୍ତଙ୍କୁ ଖ୍ରୀଷ୍ଟଭକ୍ତ କରୁନାହାନ୍ତି । ଈଶ୍ୱର କାହା କଥା ଶୁଣିବେ ?

— o —

**ଅନୁକରଣ (Imitation)**– ଅନୁକରଣ ଜୀବର ଆଦ୍ୟାବୃତ୍ତି (Instinct), ସହଜନ୍ମା–ଜୀବାଣୁଠାରୁ ଆରମ୍ଭି ଶ୍ରେଷ୍ଠ ଜୀବ ମନୁଷ୍ୟ ପର୍ଯ୍ୟନ୍ତ ସର୍ବତ୍ର । ଆଦ୍ୟାବୃତ୍ତିର ଶେଷ କେଉଁଠାରେ, ଜ୍ଞାନର ଉତ୍ପତ୍ତି କେଉଁଠାରେ, ତାହା କରିବାର ସାଧ ନାହିଁ । ଉଚ୍ଚଜାତୀୟ ଜୀବଠାରେ ଯେଉଁ ଆଦ୍ୟାବୃତ୍ତି ଦେଖାଯାଏ ତାହା ନିକୃଷ୍ଟ ଜୀବର ଅନୁକରଣ ପ୍ରିୟତାର ଫଳ । ନୀଚ ଜୀବର ଆଦ୍ୟାବୃତ୍ତି ଅନୁକରଣ ଦ୍ୱାରା ପରିମାର୍ଜିତ ହୋଇ କାଳକ୍ରମେ ଉଚ୍ଚଜୀବର ଆଦ୍ୟାବୃତ୍ତି ହୋଇଅଛି । ମନୁଷ୍ୟର ଜ୍ଞାନ ସେହି ଅନୁକରଣର ଫଳ । ମନୁଷ୍ୟର ଅନୁକରଣସ୍ପୃହା ବଳବତୀ । ପୁଣି ଅନୁପାତ ଅନୁସାରେ ନିମ୍ନ ସ୍ତରର ମନୁଷ୍ୟ ଅପେକ୍ଷା ଉଚ୍ଚସ୍ତରର ମନୁଷ୍ୟର ଅନୁକରଣଲିପ୍ସା ଅତ୍ୟଧିକ । ଅନୁକରଣଦ୍ୱାରା ମନୁଷ୍ୟ ସଭ୍ୟ, ଶିକ୍ଷିତ, ବୀର, ଦୁର୍ଦ୍ଧର୍ଷ, ଅତ୍ୟାଚାରୀ, ହିଂସାପରାୟଣ, ପୁଣି ଦୟାର୍ଦ୍ର, ସ୍ୱାର୍ଥତ୍ୟାଗୀ, ଆଉ ନିର୍ଲଜ୍ଜ, ପରମୁଖାପେକ୍ଷୀ ଓ କାପୁରୁଷ ମଧ୍ୟ । ଜୀବତତ୍ତ୍ୱ ଅଧ୍ୟୟନ କଲେ ସ୍ପଷ୍ଟ ଜଣାଯାଏ ଯେ, ଅନେକ ଜୀବ ଅନୁକାରୀ ଥିବା ଯୋଗୁଁ କେବଳ ଜଗତରେ ଜୀବନ ଧାରଣ କରିବାକୁ ସମର୍ଥ ହୋଇଅଛନ୍ତି । କେତେକ ବୃକ୍ଷ ଲତା ମଧ୍ୟ ଜୀବନ ଧାରଣ ନିମନ୍ତେ ଅନୁକାରୀ ହୋଇଅଛନ୍ତି । କେତେ କୀଟପତଙ୍ଗ ପତ୍ର ଓ କାଠିର ଆକାର ଓ ରଙ୍ଗ ଅନୁକରଣ କରି ଶତ୍ରୁଠାରୁ ରକ୍ଷା ପାଆନ୍ତି । ଶତ୍ରୁସଙ୍କୁଳ ସ୍ଥାନରେ ଅତ୍ୟଧିକ ଅନୁକାରୀ ହେବା ନିତାନ୍ତ ପ୍ରୟୋଜନ, ନୋହିଲେ ଜୀବର ଜୀବନଧାରଣ ଅସମ୍ଭବ । ଏଣୁ ସାମୁଦ୍ରିକ ଜୀବଗଣ ଅତ୍ୟଧିକ ଅନୁକରଣପ୍ରିୟ ଥିବାର ଦେଖାଯାଏ । ଜୀବଗଣ ଶତ୍ରୁକୁ ପ୍ରବଞ୍ଚିତ କରିବା ନିମନ୍ତେ କିମ୍ବା ଉଦରପୋଷଣ ଓ ଅନ୍ୟ ସ୍ୱାର୍ଥସିଦ୍ଧି ନିମନ୍ତେ ଅନୁକାରୀ ହୁଅନ୍ତି, ଏହା ପ୍ରତ୍ୟକ୍ଷ ପ୍ରମାଣସିଦ୍ଧ ।

— o —

ଭଲ ଅର୍ଥରେ ଅନୁକରଣ ଶବ୍ଦର ସୃଷ୍ଟି; କାର୍ଯ୍ୟ ଯେପରି । ଉପପଦ ସଂଯୋଗଦ୍ୱାରା ଏହାର ଅର୍ଥ ବିକୃତ ହୁଏ ମାତ୍ର । ଅନୁକରଣ ସତ୍ ଅନୁଷ୍ଠାନ ଅର୍ଥରେ ବ୍ୟବହୃତ ହୁଏ । ଯେଉଁ ଅନୁକରଣ ଅନୁକାରୀ ପକ୍ଷରେ ଅମଙ୍ଗଳ ଓ ବିପଜ୍ଜନକ ବା ସମାଜ ପକ୍ଷରେ ଅମଙ୍ଗଳକର ଓ ବିପଜ୍ଜନକ ତାହାର ଅସଦନୁକରଣ ଆଖ୍ୟା ହେବା ଉଚିତ । ମନୁଷ୍ୟ ସମାଜ ଅନୁକରଣଦ୍ୱାରା ଉନ୍ନତ ଓ ବୁଦ୍ଧିମାନ୍ ବା ଯାହାକିଛି ବୋଲ । ମନୁଷ୍ୟ ଅନୁକରଣପ୍ରିୟ, ଏହା ସ୍ୱତଃସିଦ୍ଧ । ତେବେ ଅନୁକରଣ ଶବ୍ଦଟା ଏଡ଼େ ଘୃଣ୍ୟ କାହିଁକି ? ଅନୁକରଣପ୍ରିୟ ହେବା ନିନ୍ଦନୀୟ କାହିଁକି ?

ଅନୁକରଣପ୍ରିୟ ହେବାରୁ ମନୁଷ୍ୟ ପଶୁ ଅପେକ୍ଷା ଶ୍ରେଷ୍ଠ । ସଭ୍ୟ ଜାତି ଅନୁକରଣ ଲିପ୍ସା ତ୍ୟାଗ କଲେ କ୍ରମେ ଅସଭ୍ୟ ଓ ବର୍ବର ହେବ । ଅସଭ୍ୟ ଅନୁକରଣପ୍ରିୟ ହେଲେ କ୍ରମେ ସଭ୍ୟ ହୋଇପାରିବ ଓ ଉନ୍ନତଶୀଳ ହେବ, ଏଥିରେ ସନ୍ଦେହର କିଛି ହିଁ କାରଣ ନାହିଁ । ଯେଉଁ ଶିଶୁ ବେଶି ଅନୁକରଣପ୍ରିୟ, ସେ ଅନ୍ୟ ଶିଶୁ ଅପେକ୍ଷା ଶୀଘ୍ର ଉନ୍ନତ, ସବଳକାୟ ଓ ବୁଦ୍ଧିମାନ୍ ହୁଏ । ଶିଶୁର ଅନୁକରଣପ୍ରିୟତା ସ୍ୱଭାବଜାତ ଗୁଣ । ଏହି ସ୍ୱଭାବଜାତ ଗୁଣର ଉନ୍ନତି ଓ ଉତ୍ତରୋତ୍ତର ବୃଦ୍ଧି କରିବାକୁ ଚେଷ୍ଟା କରିବା ପ୍ରତ୍ୟେକ ପିତା ମାତା ଓ ଶିକ୍ଷକ ପକ୍ଷରେ କର୍ତ୍ତବ୍ୟ । ଶିଶୁର ଅନୁକରଣପ୍ରିୟତାର ପରିପନ୍ଥିଗଣ ଶିଶୁର ଅନିଷ୍ଟକାରୀ ଏବଂ ଅଲକ୍ଷିତରେ ସମାଜର ଓ ଦେଶର ଅନିଷ୍ଟକାରୀ ମଧ୍ୟ ।

— o —

ଶିଶୁ ଅନୁକରଣପ୍ରିୟ ବୋଲି ଲୁଗା ପିନ୍ଧି ଶିଖିଲା, ଅନୁକରଣପ୍ରିୟ ବୋଲି ବାମ ହାତରେ ନ ଖାଇ ଡାହାଣ ହାତରେ ଖାଇ ଶିଖିଲା, ଉଚ୍ଚାରଣ ଶିକ୍ଷା କଲା, ଅକ୍ଷର ଲେଖି ଶିଖିଲା, ଚିତ୍ର ଅଙ୍କନ କରି ଜାଣିଲା, ରେଳ ନିର୍ମାଣ କଲା, ମଟର, ଏରୋପ୍ଲେନ୍, ଜାହାଜ ନିର୍ମାଣ କଲା, ଟେଲିଗ୍ରାଫ୍, ଟେଲିଫୋନ୍, ବୈଦ୍ୟୁତିକ ଆଲୋକ, ରେଡ଼ିଓଫୋନ୍ ଆବିଷ୍କାର କଲା। ବନ୍ଧୁକ, ତୋପ, ମେସିନ୍ ଗନ୍, ଟର୍ପେଡ଼ୋ ପ୍ରଭୃତି ପ୍ରାଣନାଶକ ଯନ୍ତ୍ରପାତି, ଆଉ କେତେ କ'ଣ କଲା। ଶୈଶବକାଳୀନ ଅନୁକରଣପ୍ରିୟତା ଏହାର ମୂଳରେ।

— ୦ —

ଫିଜିଦ୍ୱୀପବାସୀ, ଆଣ୍ଡାମାନ୍‌ବାସୀ, ଏମନ୍ତ କି, ଭାରତବର୍ଷର ଗଞ୍ଜାମ ଓ ଭାଇଜାଗର କେତେକ ଅସଭ୍ୟ ଜାତି, ଓଡ଼ିଶାର ଜୁଆଙ୍ଗ ଅଦ୍ୟାପି ଲୁଗା ପିନ୍ଧିବାକୁ ଶିକ୍ଷା କରି ନାହାନ୍ତି। ଏ କାହିଁକି ? ଏମାନେ ଅନୁକରଣପ୍ରିୟ ନୁହନ୍ତି ବୋଲି ଏମାନଙ୍କୁ ପ୍ରଶଂସା କରାଯାଇ ପାରେ କି ଏବଂ ଏମାନଙ୍କୁ ମନୁଷ୍ୟର ଆଦର୍ଶ ବୋଲାଯାଇପାରେ କି ? ଅନୁକରଣପ୍ରିୟ ନ ହେଲେ ମନୁଷ୍ୟର ଉନ୍ନତି-ଆଶା ସୁଦୂରପରାହତ। ଏହା ଜାଣିଶୁଣି ଅନୁକରଣପ୍ରିୟତାକୁ ଲୋକେ କେଉଁ ବିବେଚନାରେ ଶତମୁଖରେ ନିନ୍ଦା କରନ୍ତି ? ଯେଉଁ ଜାତିମାନେ ଅନୁକରଣପ୍ରିୟ ସେମାନେ ପ୍ରାଚୀନ ସଭ୍ୟତାଗର୍ବିତ ଭାରତବାସୀର ମସ୍ତକରେ ଘୃଣାସୂଚକ ପଦାଘାତ କଲେଣି। ଭାରତବାସୀ ଅନୁକରଣପ୍ରିୟ ନିନ୍ଦାବାନଦ୍ୱାରା ଗର୍ବିତ ଓ ସ୍ଫୀତ।

— ୦ —

ଈଶ୍ୱରବିଶ୍ୱାସ ଅନୁକରଣଦ୍ୱାରା ଶିକ୍ଷା ହୁଏ। ପୂଜା ପଦ୍ଧତି ଶିଖିଲ କାହୁଁ ? ଅଙ୍ଗନ୍ୟାସ କରନ୍ୟାସ ମୁଦ୍ରାଦର୍ଶନ ମା' ପେଟରୁ କିଏ ଶିଖି ଆସିଥିଲା କି ? ଅନୁକରଣଦ୍ୱାରା ଏଗୁଡ଼ିକ ଶିକ୍ଷାକରା ହୋଇ ନାହିଁ ? କାଳୀ ଦୁର୍ଗାଙ୍କ ଆଗରେ ପଶୁବଳି ଅନୁକରଣ ନୁହେଁ କି ? ମାନବ ଦେବତାକୁ ମୁଣ୍ଡିଆ ମାରିବାକୁ, ଚକ୍ଷୁ ମୁଦ୍ରିତ କରି ଈଶ୍ୱର ଧ୍ୟାନ ଓ ଆରାଧନା କରିବାକୁ ଶିଖିଲ କାହୁଁ ? ବର୍ବର ପୂଜାପଦ୍ଧତିଠାରୁ ଆରମ୍ଭି ଈଶ୍ୱରାଧନା ପର୍ଯ୍ୟନ୍ତ ସମସ୍ତ ପ୍ରଥା ଅନୁକରଣ ଲବ୍ଧ। ତଥାପି ଅନୁକରଣର ନିନ୍ଦା ?

— ୦ —

ପିତା ପକ୍କା ଗୃହ ନିର୍ମାଣ କରାଉଅଛନ୍ତି ଏଣେ ତେଣେ ସ୍ତୂପାକାର ଇଷ୍ଟକ ପଡ଼ିଅଛି-ବାଳକ ଖଣ୍ଡକେତେ ଇଟା ନେଇ ନିଜେ ଗୃହ ନିର୍ମାଣ କରିବାକୁ ପ୍ରସ୍ତୁତ ହେଲା। ପାଞ୍ଚ ଖଣ୍ଡ ଇଟାରେ ଗୋଟିଏ ଏକ ତାଲା ଘର ବନାଇ ସେଥିରେ ତାର ପିତୁଳାଟକ ରଖିଲା। ସ୍ଥାନ ହେଲା ନାହିଁ। ପୁଣି ପାଞ୍ଚ ଖଣ୍ଡ ଇଟା ଦେଇ ପୂର୍ବ ଘର ଉପରେ ଆଉ ଏକ ବଖରା ବନାଇଲା। ଦୁଇ ତାଲା ଘର ହେଲା। ବାଳକ ମନେ କଲା, ବାପା ଏକ ତାଲା ଘର ବନାଇ ଥିଲେ ସିନା, ମୁଁ ଦୁଇ ତାଲା ଘର ବନାଇଲି ଏହି ଶୈଶବକାଳୀନ ଅନୁକରଣ ଭବିଷ୍ୟତରେ ଉନ୍ନତତର ଘର ନିର୍ମାଣର ପ୍ରକ୍ରିୟା ତା' ଅନ୍ତରରେ ପଥର ଗାର ପରି ଅଲକ୍ଷିତରେ ରହିଲା। ବାପା କରୁଅଛି ଘଡ଼ି। ଯନ୍ତ୍ରପାତି, ଘଡ଼ିର ଚକ, ଭଙ୍ଗା ଘଡ଼ି, ଦୁଇ ଚାରିଟା ପଡ଼ିଅଛି। ପୁତ୍ର ସେଗୁଡ଼ିକ ସଂଗ୍ରହ କରି ଯୋଡ଼ିବାକୁ ଲାଗିଲା। ବଡ଼ ଚକକୁ ହାତ ଦେଇ ଠେଲିଲେ ସଂଲଗ୍ନ ସାନ ଚକଟି ଅତି ଜୋରରେ ଚାଲିବାକୁ ଲାଗିଲା। ପୁଣି ସାନ ଚକଟି ଠେଲି ଦେଲେ ବଡ଼ ଚକଟି ଅତି ଧୀର ଭାବରେ ଚାଲିବାକୁ ଲାଗିଲା। ଏହି ସାମାନ୍ୟ ଯାନ୍ତ୍ରିକ ପ୍ରକ୍ରିୟା ବାଳକର ହୃଦୟରେ ଯେଉଁ କାର୍ଯ୍ୟ କରିବାକୁ ଲାଗିଲା, ତାହା ପରଜୀବନରେ ସାଧାରଣ କଳ କାରଖାନା ଆକାରରେ ପ୍ରକାଶ ପାଇଲା। ପାଶ୍ଚାତ୍ୟ ଦେଶୀୟ ଅଭିଭାବକମାନେ ବାଳକମାନଙ୍କୁ ଅନୁକରଣପ୍ରିୟ କରିବାକୁ କେତେ ଯତ୍ନଶୀଳ। ଏଣୁ ସେ ଦେଶ ବ୍ୟଗ୍ରଗତିରେ ଉନ୍ନତିପଥରେ ପ୍ରଧାବିତ ହେଉଅଛି। ସେ ଦେଶରେ ଅନୁକରଣ ଶିକ୍ଷୋପଯୋଗୀ ଆଦର୍ଶ ଅଛି, ସାମଗ୍ରୀ ଅଛି। ଆମ ଦେଶରେ କାହିଁ ?

— ୦ —

ଆମ ଦିହକ ଭିତରେ ବାଷ୍ପୀୟ ଯନ୍ତ୍ରର କେତେ ଉନ୍ନତି ସାଧିତ ହେଲା ! କି ଅଲୌକିକ ବୈଦ୍ୟୁତିକ ଆବିଷ୍କାର କରାଗଲା। ମଟର, ଏରୋପ୍ଲେନ୍, ସବ୍ ମେରିନ୍, ଯୁଦ୍ଧ ଜାହାଜ ଟର୍ପେଡ଼ୋ ଆମ ଦିହକର କଥା। ବିଦ୍ୟୁତ୍ ଆଲୋକ, ଏକ୍ସରେ, ଟେଲିଗ୍ରାଫ୍, ଟେଲିଫୋନ୍, ବେତାର ସମ୍ବାଦପ୍ରେରଣ, ଏ କେତେ ଦିନର କଥା ? ସେ ଦିନର ତ ? ଏତେ ଅଳ୍ପଦିନ ମଧ୍ୟରେ ଏତେ ଅସାଧ୍ୟ ସାଧନ ପାଶ୍ଚାତ୍ୟ ଦେଶରେ ହେଲା କିପରି, ଆମ ଦେଶରେ କିଛି ନୋହିଲା କିପରି ? ଭାରତବାସୀ ଯେ ଅନୁକରଣପ୍ରିୟ ନୁହନ୍ତି। ହେବ କିପରି ? ଆମର ଅନୁକରଣୀୟ ଚାକିରି, ଦାସବୃତ୍ତି। ସେଥିରେ ଆମ ଦେଶବାସୀ କି ଉନ୍ନତି କରି ନାହାନ୍ତି ? ଅବଶ୍ୟ କରିଅଛନ୍ତି। ଯେବେ ଶତକରା ବେଶି ହାରରେ ଚାକିରି କରନ୍ତି, ତେବେ କହିବାକୁ ହେବ, ଏ କ୍ଷେତ୍ରରେ ଭାରତବାସୀ ଯଥେଷ୍ଟ ଅନୁକରଣପ୍ରିୟ। ତେବେ ଏଠାରେ ବିଚାର୍ଯ୍ୟ, ଏହା ଅସଦନୁକରଣ, କି ସଦନୁକରଣ ?

— ୦ —

ସେଦିନ କଲିକତାରେ ଜଣେ ଉଚ୍ଚପଦର ଇଂରେଜ କହିଲେ, 'ମୁଁ ଭାରତବାସୀଙ୍କ ଇଉରୋପିଆନ ପୋଷାକ ପିନ୍ଧିବାର ଦେଖି ବଡ଼ ଘୃଣା କରେ।' ବାହାବା ବାହାବା ପଡ଼ିଗଲା। ମହାତ୍ମା କି ଦୟାଳୁ, କି ଭାରତ ପ୍ରିୟ, କି ଭାରତହିତାକାଂକ୍ଷୀ। ଏପରି ଆଉ କେତେ ଭାରତହିତୈଷୀ ଅଭିଭାଷଣଦ୍ୱାରା ଭାରତବାସୀଙ୍କୁ ମୁଗ୍ଧ କରି ବାହାବା ନେଇ ଯାଆନ୍ତି। ମହାଶୟଗଣ ଏପରି କହନ୍ତି, ମାତ୍ର କେବେ ହେଲେ ତ କେହି ପ୍ରକାଶ କରି ନାହାନ୍ତି ଯେ, ଭାରତବାସୀଙ୍କି ଇଉରୋପୀୟ ବସ୍ତ୍ର ପରିହିତ ଦେଖି ମୁଁ ବଡ଼ ଘୃଣା କରେ, ବିଦେଶୀ ଛତା, ଜୋତା, ସିଗାରେଟ୍ ବ୍ୟବହାର କରିବାର ଦେଖି ମୁଁ ବଡ଼ ଘୃଣା କରେଁ। ଏ ଧରଣର ହିତୈଷିଗଣ କେବଳ ଭାରତବାସୀଙ୍କଦ୍ୱାରା ଇଉରୋପିଆନ୍ ଅନୁକରଣ ବିଦ୍ୱେଷୀ। କେବଳ ପୋଷାକର ବିଦ୍ୱେଷୀ ନୁହନ୍ତି। ସେମାନଙ୍କ ମତ-ତୁମେ ଯାହା ଥିଲ ତାହା ଥାଅ।

— ୦ —

ଯେଉଁ ଅନୁକରଣ ସମାଜର ଓ ଦେଶର ଉପକାରକ, ତାହା ଅବଶ୍ୟ କରଣୀୟ। ସେ ଅନୁକରଣ ପାଶ୍ଚାତ୍ୟଠାରୁ ହେଉ ବା ଅସଭ୍ୟଠାରୁ ହେଉ। ଯେବେ ପତଙ୍ଗ ଆତ୍ମରକ୍ଷା ନିମନ୍ତେ ପତ୍ରର ରଙ୍ଗ ଓ ଆକାର ଅନୁକରଣ କରି ଶତ୍ରୁଠାରୁ ରକ୍ଷା ପାଏ, ଯେବେ ଶଶକ ଶତ୍ରୁକୁ ବଞ୍ଚନା କରିବା ଅଭିପ୍ରାୟରେ ଖଣ୍ଡେ ପ୍ରସ୍ତରର ରଙ୍ଗ ଓ ଆକାର ଅନୁକରଣ କରେ, ବିଲୁଆ ସ୍ୱାର୍ଥସିଦ୍ଧି ନିମନ୍ତେ ଭୂମିର ରଙ୍ଗ ଅନୁକରଣ କରେ, ତେବେ ମନୁଷ୍ୟ ପକ୍ଷରେ ସ୍ୱାର୍ଥସିଦ୍ଧି ନିମନ୍ତେ ବା ଅନ୍ୟ ଜାତି ସହିତ ନିଜ ଜାତିର ସାମ୍ୟ ଆନୟନ ନିମନ୍ତେ ପୋଷାକର ଅନୁକରଣ କରିବା ନିନ୍ଦନୀୟ କାହିଁକି ?

— ୦ —

ଅତି ମୂଲ୍ୟବାନ୍ ବିଦେଶୀ ବସ୍ତ୍ରରେ ଖ୍ୟାତନାମା କମ୍ପାନୀଙ୍କ ଦ୍ୱାରା ନିର୍ମିତ, କାଟଛାଟ ନିମନ୍ତେ ଅତ୍ୟଧିକ ବ୍ୟୟସାଧ, ହାତ, ଦିହ, କମର ଠିକ ପାଶ୍ଚାତ୍ୟ ଢଙ୍ଗରେ ନିର୍ମିତ ସେରବାନି, ଏଚକନ, ଗଳାବନ୍ଦ କୋଟଗୁଡ଼ିକ ଦେଶୀ ଓ ନିନ୍ଦନୀୟ ନୁହେଁ; ଯେହେତୁ ଗଳା ଖୋଲା ନୁହେଁ। ମାତ୍ର ମଠା ହେଉ, ଏଣ୍ଡି ହେଉ, ପଟ୍ଟୁ ହେଉ ବା ଅନ୍ୟ ଦେଶୀୟ ବା ଅଳ୍ପ ମୂଲ୍ୟର ବିଦେଶୀୟ ବସ୍ତ୍ର ହେଉ, ସେଥିରେ ନିର୍ମିତ ଗଳାଖୋଲା କୋଟ, ଅଳ୍ପ ଲମ୍ବର କୋଟ, ଯାହାର ନାମ କି ଦୁର୍ଭାଗ୍ୟକ୍ରମେ ଇଙ୍ଗଲିସ୍ କୋଟ୍ ହୋଇଅଛି, ତାହା ଏବଂ ତାହା ସହିତ ଓୟେଷ୍ଟ କୋଟ ଓ ଖଣ୍ଡେ ନେକଟାଇ ବା ଗଳାବନ୍ଦ ଉଭୟ ପାଶ୍ଚାତ୍ୟ ଓ ପ୍ରାଚ୍ୟ ଦେଶହିତୈଷିଙ୍କର ଚକ୍ଷୁଃଶୂଳ। ଦେଶବାସୀ ନୀଚ ଅନୁକରଣର ପକ୍ଷପାତୀ, ମାତ୍ର ଏ ଅନୁକରଣର ପକ୍ଷପାତୀ ନୁହଁନ୍ତି। ''ଲାଲ ଲୁଗାକୁ ଗାଈର କ୍ରୋଧ!''

ପାଶ୍ଚାତ୍ୟ ପୋଷାକ ମଧ୍ୟ ଅନୁକରଣୀୟ। ମାତ୍ର କି ନିମନ୍ତେ, କି ପରିମାଣରେ ଓ କେତେ ଦୂର ଅନୁକରଣୀୟ, ତାହା ବ୍ୟବହାର କରିବା ଲୋକ ଉତ୍ତମରୂପେ ବିବେଚନା କରିବା ଉଚିତ।

— ୦ —

ସେରବାନୀ, ଏଚକନ, ଚୋଗା, କାମିଜ, ଶାର୍ଟ, କୋଟ, ଇତ୍ୟାଦି କେଉଁଟି ଏ ଦେଶୀ ? ସବୁ ତ ବିଦେଶୀ। ତେବେ ଟାଇଟ୍ କୋଟ, ଗଲ୍ଫ କୋଟ, ଚେଷ୍ଟାରଫିଲଡ୍ ଓଭରକୋଟ, ହାଫ୍ ପେଣ୍ଟ, ପେଣ୍ଟ ବିଦେଶୀ ବୋଲି ଧରାଗଲା କେଉଁ ହିସାବରେ ? କୋଟଗୁଡ଼ିକର ଗଳା ଖୋଲା ବୋଲି ଏବଂ ଷ୍ଟେ, ହାଫ୍ ପେଣ୍ଟଟି ଟିକିଏ ଢିଲା ବୋଲି। ପୋଷାକ ସମ୍ବନ୍ଧରେ ଏତାଦୃଶ ମତ ଘୋର ରକ୍ଷଣଶୀଳତାର ପରିଚାୟକ ଓ ଅନୁକରଣ ପ୍ରିୟତାର ଅଭାବବ୍ୟଞ୍ଜକ।

— ୦ —

ଅନୁକରଣଦ୍ୱାରା ପୋଷାକ ପରିଚ୍ଛଦର ସୃଷ୍ଟି। ଲଜ୍ଜା ନିବାରଣ ଓ ଶରୀର ଆବରଣ ନିମନ୍ତେ ପୋଷାକର ସୃଷ୍ଟି। କ୍ରମୋନ୍ନତିଦ୍ୱାରା ଏତେ ପ୍ରକାର ପୋଷାକ ପରିଚ୍ଛଦର ଉନ୍ନତି ହୋଇଅଛି। ଆଫ୍ରିକା ପ୍ରଭୃତି ଦେଶର ଅସଭ୍ୟମାନେ ଅଦ୍ୟାପି ଉଲଙ୍ଗ। ଜୁଆଙ୍ଗ ସ୍ତ୍ରୀମାନେ କୋମଳ ଶାଳପତ୍ର ବା ଅସନପତ୍ରଦ୍ୱାରା ଅଶ୍ଳୀଳ ସ୍ଥାନ ଆବରଣ କରନ୍ତି। ଜୟପୁର ଅଞ୍ଚଳର ପୋରଜା ସ୍ତ୍ରୀମାନେ ମଶିଣା ଖଣ୍ଡେ ଅଣ୍ଟାରେ ବାନ୍ଧି ଦେଇ ଲଜ୍ଜା ନିବାରଣ କରନ୍ତି– ପ୍ରୟୋଜନାନୁସାରେ ପୋଷାକର ପରିବର୍ତ୍ତନ ପୋଷାକ ସମ୍ବନ୍ଧରେ ଅସଭ୍ୟମାନଙ୍କର ଅଭାବ ଜ୍ଞାନ ଓ ପ୍ରୟୋଜନ ଜ୍ଞାନ ଉଦୟ ହୋଇ ନାହିଁ-ଶିକ୍ଷିତ ବା ଅର୍ଦ୍ଧଶିକ୍ଷିତମାନଙ୍କର ଅଭାବଜ୍ଞାନ ଅନୁସାରେ ପରିଚ୍ଛଦର ପରିବର୍ତ୍ତନ ହୋଇଅଛି ପୋଷାକ କାଳକୁ, ସ୍ଥାନକୁ ଓ ଋତୁକୁ ଅପେକ୍ଷା କରେ।

— ୦ —

ଏହି ଭାରତବର୍ଷରେ କାଶ୍ମୀରବାସୀ ଯେଉଁ ପୋଷାକ ପିନ୍ଧନ୍ତି, ପଞ୍ଜାବନିବାସୀ ସେ ପୋଷାକ ପିନ୍ଧନ୍ତି ନାହିଁ। ଉଭୟେ ହିନ୍ଦୁ ଆଖ୍ୟାରେ ପରିଚିତ ଓ ଭାରତବାସୀ ମଧ୍ୟ।

— ୦ —

ବଙ୍ଗାଳୀ ଧନିକ ବଡ଼ ବାବୁ ମାଞ୍ଚେଷ୍ଟର ନିର୍ମିତ ୧୮୦ ନମ୍ବର ସୂତାର ଅତି ମିହି ଧୋତି ଓ ଚାଦର ଏବଂ ପାତଳା ମଲମଲର ପଞ୍ଜାବି ପରିଧାନ କରି ଜାତୀୟ ପୋଷାକର ପରିପାଟ୍ୟ ଓ ବଢ଼ାଇ ଦେଖାନ୍ତି। ଉତ୍ତରପଶ୍ଚିମ ପ୍ରଦେଶବାସୀ ବିଲାତୀ ଧୋତି, ମଲମଲ ପଞ୍ଜାବି, ଚିକନ କାମକରାବାଲା ମଲମଲ ଟୋପି ଲଗାଇ ଜାତୀୟ ପୋଷାକ ବିଭୂଷିତ ବୋଲି ଗର୍ବ ପ୍ରକାଶ କରନ୍ତି। ଦ୍ରାବିଡ଼ ଭାଇମାନଙ୍କର ଜାତୀୟ ପୋଷାକ ମୁଣ୍ଡରେ ଲମ୍ବ ଓ ମୋଟ ଚୁଟି, ଦିହରେ ଯେକୌଣସି ପ୍ରକାରର ଗୋଟାଏ କୋଟ ବା ଶାର୍ଟ। ଅଣ୍ଟାରେ ପାଞ୍ଚ ହାତ ପରିମିତ ଲଙ୍ଗ୍ କ୍ଲୁଥର ଗୋଉଡ଼ି ଏବଂ ତାହା କମରବନ୍ଧଦ୍ୱାରା ସୁରକ୍ଷିତ। ଯାଅ ପଞ୍ଜାବର ଉତ୍ତରାଞ୍ଚଳକୁ, ଆଫଗାନ ଓ ହିନ୍ଦୁ ପୋଷାକ ମଧ୍ୟରେ କମ୍ ପାର୍ଥକ୍ୟ ଦେଖିପାରିବ। ଯାଅ ମଧ୍ୟପ୍ରଦେଶକୁ, ଯାଅ ବମ୍ବେକୁ, ଯାଅ ଅନ୍ୟସ୍ଥାନକୁ-ପୋଷାକର ତାରତମ୍ୟ ଯଥେଷ୍ଟ ଦେଖି ପାରିବ। ଭାରତବାସୀର ଜାତୀୟ ପୋଷାକ କେଉଁଟା ? ଭାରତବାସୀର ଜାତୀୟତା ଯେମନ୍ତ ନାହିଁ, ଜାତୀୟ ପୋଷାକ ମଧ୍ୟ ନାହିଁ। ଜାତିଭେଦ ପରି ଭାରତବାସୀ ପୋଷାକଭେଦ ରଖନ୍ତି।

— ୦ —

ପୂର୍ବ ଉପକୂଳରେ ଚାରି ଗୋଟି ପ୍ରଧାନ ଜାତି ବାସ କରନ୍ତି ବୋଇଲେ ଚଳେ। ବଙ୍ଗାଳୀ ପୋଷାକ ସହିତ ଓଡ଼ିଆର ପୋଷାକର ମେଳ ନାହିଁ। ଓଡ଼ିଆ ପୋଷାକ ସହିତ ତେଲୁଗୁ ପୋଷାକର ମେଳ ନାହିଁ। ତେଲଗୁ ସହିତ ଖାସ ମାନ୍ଦ୍ରାଜ ଅଞ୍ଚଳବାସୀଙ୍କର ତେତେ ମେଳ ନାହିଁ।

ଶରୀରରକ୍ଷଣ ନିମନ୍ତେ ଯେବେ ପୋଷାକ, ତେବେ ଭାରତବର୍ଷର କେତେଗୋଟି ପରିଚ୍ଛଦ ସମ୍ପୂର୍ଣ୍ଣ ନିରର୍ଥକ ମନେ ହୁଏ। ଯେପରି କି ଉତ୍ତର ପଶ୍ଚିମାଞ୍ଚଳରେ ବ୍ୟବହୃତ ଅତି କ୍ଷୁଦ୍ର ମଲମଲ ଟୋପି ଏବଂ କ୍ଷୁଦ୍ର ମଖମଲ 'ମାଷ୍ଟରୀ ଟୋପି', ଯାହା କେବଳ ବ୍ରହ୍ମରନ୍ଧ୍ରକୁ ଘୋଡ଼ାଇ ରଖେ।

— ୦ —

ସାରା ଇଉରୋପ ଏକ ଧରଣର ପୋଷାକ ପରିଚ୍ଛଦ ବ୍ୟବହାର କରନ୍ତି। ତାଙ୍କର ପୋଷାକ ପରିଚ୍ଛଦ ବ୍ୟବହାର କରନ୍ତି। ତାଙ୍କର ପୋଷାକ ଦେଖିଲେ ମନେ ହୁଏ, ଶରୀରର ପ୍ରୟୋଜନାନୁସାରେ ତାହା ନିର୍ମିତ। ଅବଶ୍ୟ ବଡ଼ଲୋକଙ୍କ ପୋଷାକ, ସୌଖୀନ ପୋଷାକ ଆମ ଦେଶ ଅପେକ୍ଷା ବହୁତ ଅଛି। ସେ ସବୁର ତୁଳନା କରାଯାଉ ନାହିଁ। ଯେଉଁ ପୋଷାକ କାର୍ଯ୍ୟକାରୀ, ପୁଣି ଅର୍ଥସମସ୍ୟା ସମାଧାନ କରେ, ତାହା ସମସ୍ତଙ୍କର ଅନୁକରଣୀୟ ହୋଇଅଛି। ଏଣୁ ସାରା ଇଉରୋପ ଏକ ପ୍ରକାର ପୋଷାକରେ ସଜ୍ଜିତ।

— ୦ —

ପୂର୍ବେ ଲୋକଙ୍କୁ ଭୟ ଦେଖାଇବା ଅଭିପ୍ରାୟରେ ଉଜ୍ଜ୍ୱଳ ରକ୍ତବର୍ଣ୍ଣର ପୋଷାକ ସୈନ୍ୟର ପରିଧେୟ ହୋଇଥିଲା। ଭୟ ଦେଖାଇବା ଅପେକ୍ଷା ଏ କାଳରେ ଆତ୍ମରକ୍ଷାର ଉପାଦାନ ବେଶି ଆବଶ୍ୟକ ହେଲା। ସାରା ଇଉରୋପ ମାଟି ରଙ୍ଗର ପୋଷାକର ଆବିଷ୍କାର କଲେ ଏବଂ ତାହା ସମସ୍ତଙ୍କର ଅନୁକରଣୀୟ ହୋଇଅଛି।

— ୦ —

ଇଉରୋପରେ ଶୋଲ ଟୋପିର (Sola hat) ପ୍ରୟୋଜନ କ'ଣ ? ସେଠାରେ ପ୍ରଚଣ୍ଡ ସୂର୍ଯ୍ୟତାପ ନାହିଁ। ଏଣୁ ସାରା ଇଉରୋପ ଶୋଲ ଟୋପି ବ୍ୟବହାର କରନ୍ତି ନାହିଁ। ଗ୍ରୀଷ୍ମପ୍ରଧାନ ଦେଶରେ ଶୋଲ ଟୋପିର ନିତାନ୍ତ ପ୍ରୟୋଜନ। ଏଣୁ ଇଉରୋପରୁ ଆଗତ ସମସ୍ତ ଜାତି ଗ୍ରୀଷ୍ମ ପ୍ରଧାନ ଦେଶରେ ହ୍ୟାଟ ବ୍ୟବହାର କରନ୍ତି। ଗ୍ରୀଷ୍ମପ୍ରଧାନ ଦେଶ ନିମନ୍ତେ ଶୋଲା ହ୍ୟାଟର ସୃଷ୍ଟି। ପାଶ୍ଚାତ୍ୟ ଦେଶବାସୀ ଏ ଦେଶକୁ ଆସି ଶରୀରରକ୍ଷା ନିମନ୍ତେ ଯେଉଁ ପଦାର୍ଥର ଆବିଷ୍କାର କଲେ, ତାହା ମଧ୍ୟ ପାଶ୍ଚାତ୍ୟ ହୋଇ ପଡ଼ିଲା। ତହିଁର ଉପକାର ବୁଝି ମଧ୍ୟ ଏ ଦେଶବାସୀ ବ୍ୟବହାର କରିବେ ନାହିଁ। କଲେ ଦେଶଦ୍ରୋହୀ ? ଘୃଣ୍ୟ ଓ ନିନ୍ଦ୍ୟ।

□□

ହ୍ୟାଟ୍ ଝାମ୍ପିର ଅଭିବ୍ୟକ୍ତି। ପ୍ରାୟ ଅନେକ ଦେଶର କୃଷକମାନେ ଝାମ୍ପି ବ୍ୟବହାର କରୁଥିଲେ। ବିଶେଷତଃ ଗ୍ରୀଷ୍ମପ୍ରଧାନ ପ୍ରଦେଶମାନଙ୍କରେ- ଯେଉଁଠାରେ ଅତ୍ୟଧିକ ବୃଷ୍ଟି ହୁଏ। ଭାରତବର୍ଷରେ ଅଦ୍ୟାପି ଝାମ୍ପି ବ୍ୟବହୃତ ହୁଏ।

ଶୋଲ ଏ ଦେଶର ପଦାର୍ଥ। ଇଉରୋପରେ ଜନ୍ମେ ନାହିଁ। ପ୍ରବାଦ ଅଛି, ଇଟାଲିବାସୀମାନେ ମରକୋ ସହିତ ଯୁଦ୍ଧ କଲା ବେଳେ ସୈନ୍ୟମାନେ ଇଟାଲୀୟ ଶିରସ୍ତ୍ରାଣ ବ୍ୟବହାର କରି ଯୁଦ୍ଧରେ କୃତକାର୍ଯ୍ୟ ହେବାକୁ ସମର୍ଥ ହେଲେ ନାହିଁ। ଇଟାଲୀ ସୈନ୍ୟବିଭାଗ ଏଣୁ ଭାରତବର୍ଷକୁ ଝାମ୍ପି ଅନୁକରଣରେ ଶୋଲ ହ୍ୟାଟ ତୟାର କରାଇ ନେଇ ନିଜ ସୈନ୍ୟର ବ୍ୟବହାରରେ ଲଗାଇଲେ। ଏହିଠାରୁ ଶୋଲ ହ୍ୟାଟର ମର୍ଯ୍ୟାଦା ବଢ଼ିଲା। ଏହି ଶୋଲ ହ୍ୟାଟ କେବଳ ଅସଂଖ୍ୟ ଇଉରୋପିଆନମାନଙ୍କୁ ଶର୍ଦ୍ଦି ଗରମିରୁ (Syb Stroke) ରକ୍ଷା

କରଅଛି । ଭାରତବର୍ଷ ନିମନ୍ତେ ଏହା ଗୋଟିଏ ନିତାନ୍ତ ପ୍ରୟୋଜନୀୟ ଶରୀର ରକ୍ଷାକାରୀ ପୋଷାକ । ନିରୋଳ ସ୍ୱଦେଶୀ । ଏ ଦେଶର ପଦାର୍ଥରେ ନିର୍ମିତ, ଏ ଦେଶର ଲୋକଙ୍କ ଦ୍ୱାରା ନିର୍ମିତ । ଅସତ୍ ଅନୁକରଣପ୍ରିୟ ଆଖ୍ୟା ଲାଭ ହେବା ଭୟରେ ଲୋକେ ଏହା ବ୍ୟବହାର କରିବାକୁ ଶଙ୍କିତ ଓ କୁଣ୍ଠିତ ।

□□

ଲମ୍ବଶାଟପଟାବୃତ ହୋଇ ଚାଲିଥାଅ । ରେଡ଼ି ପର୍ଯ୍ୟନ୍ତ ଓସାର ସୂକ୍ଷ୍ମ ବସ୍ତ୍ର ପିନ୍ଧି ବଡ଼ଲୋକି ଦେଖାଉଥାଅ । ଯେତେବେଳେ ବିପତ୍ତି ପଡ଼ିବ, ଦଉଡ଼ିବାର ପ୍ରୟୋଜନ ହେବ, ଗଛ ଚଢ଼ିବାର ଦରକାର ହେବ, ସନ୍ତରଣ କରିବାର ପ୍ରୟୋଜନ ହେବ ସେତେବେଳେ ପାଦର ଲୁଗା ଚଞ୍ଚଳରେ ଆଣ୍ଠୁ ଉପରକୁ ଉଠିବ, ନିଶ୍ଚୟ ଉଠିବ । ସେତେବେଳେ ଲଜ୍ଜା ମାନ ସମ୍ଭ୍ରମର ଭୟ ନାହିଁ, କେବଳ ଜୀବନର ଭୟ । ତେବେ କାର୍ଯ୍ୟକ୍ଷେତ୍ରରେ, ଶିକାରବେଳେ, ଭ୍ରମଣ ବେଳେ, ଜଙ୍ଘିଆ ଧଡ଼ା ବା ହାଫ୍ ପେଣ୍ଟ ପିନ୍ଧିବାର ଦୋଷ କ'ଣ ? ଶିଖ୍‌ମାନେ ନିଶ୍ଚୟ କାଛ ପିନ୍ଧନ୍ତି । ପୂର୍ବକାଳରେ ଯୋଦ୍ଧାମାନେ ଧଡ଼ା ପିନ୍ଧୁଥିଲେ । ପାଇକମାନେ ଜଙ୍ଘିଆ ପିନ୍ଧୁଥିଲେ । ପାତଳ ଧୋତି ପିନ୍ଧି ଯୁଦ୍ଧ କରିଯିବା, ବିଡ଼ମ୍ବନା ମାତ୍ର । ଯାହା ସହସା ଖୋଲି ଯିବ, ଯାହା ଚିରି ଯିବ, ଏପରି ପୋଷାକ ପିନ୍ଧି ଯୁଦ୍ଧ କରିବା ଅସମ୍ଭବ । ଧଡ଼ା ହିଁ ଏକମାତ୍ର ପ୍ରଧାନ ପୋଷାକ ଥିଲା । ଜଙ୍ଘିଆ, କାଛ, ଧଡାର ଅଭିବ୍ୟକ୍ତି ହାଫ୍ ପେଣ୍ଟ । ଏବେ ହାଫ୍ ପେଣ୍ଟ ନାମ ପାଇଲା ଏବଂ ପାଶ୍ଚାତ୍ୟ ଲୋକଙ୍କଦ୍ୱାରା ବେଶି ବ୍ୟବହୃତ ହେଲା ବୋଲି ଏହା ଅନୁକରଣୀୟ ନୁହେଁ, ନିନ୍ଦନୀୟ । ଏ ପ୍ରକାର କଳ୍ପନା ଅବନତି ବିଧାୟକ ନୁହେଁ କି ?

□□

ଭାରତବାସୀ ଏପରି ପରିଚ୍ଛଦର ଅନୁକରଣ କରିବା ଉଚିତ, ଯାହା ଅଳ୍ପମୂଲ୍ୟରେ ବହୁଦିନ ବ୍ୟବହୃତ ହୋଇପାରିବ । ଘରେ ପ୍ରକାରେ ଏବଂ ବାହାରେ ବା କାର୍ଯ୍ୟକ୍ଷେତ୍ରରେ ପ୍ରକାରେ ପୋଷାକ ବ୍ୟବହୃତ ହେବା ଶ୍ରେୟସ୍କର ଭାରତବାସୀର ଅନ୍ନବସ୍ତ୍ର ସମସ୍ୟା ବିଷମ ସମସ୍ୟା ଏହାର ସମାଧାନ ନିମନ୍ତେ ଚେଷ୍ଟା ଆବଶ୍ୟକ ମୂଲ୍ୟବାନ ଓ ସୂକ୍ଷ୍ମ ବସ୍ତ୍ରର ବ୍ୟବହାର ଯେତେଦୂର ବନ୍ଦ ହୁଏ, ସେତେ ମଙ୍ଗଳ । ଅଳ୍ପ ମୂଲ୍ୟ ଓ ଦୀର୍ଘକାଳ ସ୍ଥାୟୀ ହେଲେ ହେଲା, ତାହା ସ୍ୱଦେଶ ହେଉ ବା ବିଦେଶୀ ହେଉ ।

□□

ଅନ୍ୟକଥା ତେଣେ ଥାଉ, ବିଶ୍ୱାସ ହିଁ ଅନୁକରଣରୁ ଜାତ । ଧର୍ମୋପଦେଷ୍ଟାର, ଧର୍ମଯାଜକର, ଗୁରୁଙ୍କର ଉପଦେଶ ଅନୁସାରେ ଓ ତାଙ୍କର ଅନୁକରଣର ଯଜମାନମାନେ, ଶିଷ୍ୟମାନେ ଗଳାରେ ମାଳା ଧାରଣ କରନ୍ତି ମାଳ ଜପି ଶିଖନ୍ତି, କୌପୀନ ଧାରଣ କରନ୍ତି ଚିତା କାଟନ୍ତି, ଭସ୍ମାଚ୍ଛାଦିତ ହୁଅନ୍ତି, ଆଖି ବୁଜନ୍ତି, ମୁଣ୍ଡିଆ ମାରନ୍ତି । ଏହି ଅନୁକରଣଦ୍ୱାରା ସ୍ୱର୍ଗ କିମ୍ବା ବୈକୁଣ୍ଠରେ ବାସର ଆଶା କରନ୍ତି । ଏ ଦେଶରେ ହେଉ ବା ପାଶ୍ଚାତ୍ୟ ଦେଶରେ ହେଉ ଗୁରୁ ଶିଷ୍ୟ ପ୍ରଥାଟା ଯେ ବିଶୁଦ୍ଧ ଅନୁକରଣ, ଏଥିରେ ସନ୍ଦେହ ନାହିଁ । ଧର୍ମ ସମ୍ବନ୍ଧୀୟ ଅନ୍ଧ ବିଶ୍ୱାସ ସମ୍ପୂର୍ଣ୍ଣ ଅନୁକରଣରୁ ଜାତ । ତେବେ ଏହାକୁ ଅନୁକରଣ ବୋଲାଯିବ, କି ଅସଦନୁକରଣ ବୋଲାଯିବ, ତାହା ବିଚାର୍ଯ୍ୟ ।

□□

ଅନୁକରଣ ବ୍ୟକ୍ତିଗତ ଓ ସାମାଜିକ । ଯାହା କେବଳ ନିଜର ଉପକାର ଆଶାରେ ଅନୁକରଣ କରାଗଲା, ତାହା ବ୍ୟକ୍ତିଗତ ଏବଂ ସେହି ଅନୁକରଣ ବହୁ ଲୋକ ସମାଦୃତ ହୋଇ ସମାଜର ଉପକାର କଲେ ତାହା ସାମାଜିକ ଅନୁକରଣଯୋଗ୍ୟ ବୋଲି କ୍ରମେ ଗୃହୀତ ହୁଏ । ଯେଉଁ ଅନୁକରଣ ସମାଜ ଓ ଜାତିର ଉନ୍ନତି ବିଧାୟକ, ତହିଁର ପ୍ରସାର ନିମନ୍ତେ ପ୍ରତ୍ୟେକ ବ୍ୟକ୍ତି ଯତ୍ନଶୀଳ ହେବା ଉଚିତ । ପୁଣି ଯେଉଁ ଅନୁକରଣ ସମାଜ ଓ ଜାତିର ରକ୍ଷାବିଧାନର ସହାୟକ ନୁହେ, ବରଂ ଅମଙ୍ଗଳଜନକ, ତାହାକୁ ଅସଦନୁକରଣ ନେଇ ଦେଇ ତ୍ୟାଗ କରିବାକୁ ଚେଷ୍ଟା କରିବା ଉଚିତ ।

□□

ଏ ଦେଶବାସୀ ଅନ୍ଧବିଶ୍ୱାସୀ ଓ ଅସଦନୁକାରୀ ଥିବା ଯୋଗୁଁ ସାମାଜିକ ଆବର୍ଜନା ପରିଷ୍କରଣରେ ବରାବର ପରାଙ୍ମୁଖ । ସୁତରାଂ ଏ ଦେଶବାସୀଙ୍କୁ ଅସଦନୁକରଣକାରୀ ବୋଲିବା ଯୁକ୍ତିସଙ୍ଗତ ।

□□

ଏ ଦେଶବାସୀଙ୍କର ଧର୍ମାନ୍ଧତା ଓ ଅନ୍ଧବିଶ୍ୱାସ ମଜ୍ଜାଗତ ହୋଇଅଛି, ଏଣୁ ରକ୍ଷଣଶୀଳତାର ଏମାନେ ଯେପରି ପକ୍ଷପାତୀ (ଚିରାଭ୍ୟସ୍ତ ହେତୁ) ଅସଦନୁକରଣର ମଧ ସେହିପରି ପକ୍ଷପାତୀ । ଯେହେତୁ ଅନୁକରଣର ସଦ୍‌ବ୍ୟବହାର ଭୁଲିଯାଇଅଛନ୍ତି ।

□□

ଦେଖାଯାଏ, ଗ୍ରାମ୍ୟ ଓ ଗୃହପାଳିତ ପଶୁପକ୍ଷୀ- ପାରା, ହଂସ, ଗାଈ, ଛେଳି ଆତ୍ମନିର୍ଭରଶୀଳ ଓ ଆତ୍ମରକ୍ଷଣସମର୍ଥ ନୁହନ୍ତି । ଏମାନେ ପରମୁଖାପେକ୍ଷୀ, ଏଣୁ ଏମାନଙ୍କର ଅନୁକରଣର ପ୍ରୟୋଜନୀୟତା ନଷ୍ଟ ହୋଇଅଛି । ଏଣୁ ଆତ୍ମରକ୍ଷାର କୌଶଳ ମଧ୍ୟ ଅନୁକରଣ କରନ୍ତି ନାହିଁ । ଯେଉଁ ଜାତି ପରମୁଖାପେକ୍ଷୀ ଓ ପରବାହୁଚ୍ଛାୟାଶ୍ରିତ, ତା'ର ଆତ୍ମରକ୍ଷଣୋପଯୋଗୀ ଅନୁକରଣର ପ୍ରୟୋଜନୀୟତା କ୍ରମେ କ୍ରମେ ଧୀରେ ଧୀରେ ନଷ୍ଟ ହୋଇଆସେ । ସେ ଜାତୀୟ ଉନ୍ନତିବିଧାୟକ ଅନୁକରଣର ପକ୍ଷପାତୀ ହୋଇପାରେ ନାହିଁ । କେବଳ ଆପାତମଧୁର ଇନ୍ଦ୍ରିୟଗ୍ରାହ୍ୟ ସୁଖ ସ୍ୱଚ୍ଛନ୍ଦତାର ଅନୁକରଣ କରେ । ଏତାଦୃଶ ଅନୁକରଣ ସମାଜର ହିତକାରକ ନ ହେବାରୁ ତାହାକୁ ଅସଦନୁକରଣ ବୋଲାଯାଏ ।

□□

ଏ ଦେଶବାସୀ କଳ କାରଖାନା ନିର୍ମାଣ କୌଶଳ ଅଦ୍ୟାପି ଶିକ୍ଷା କଲେ ନାହିଁ । ଶିକ୍ଷା କରିବାର ଚେଷ୍ଟାରେ ଥିବାର ଦେଖାଯାଏ ନାହିଁ । ବ୍ୟବସାୟର ଅନୁକରଣ କଲେ ନାହିଁ । ଜାତୀୟ ଚରିତ୍ର ଗଠନରେ ଚେଷ୍ଟିତ ନୁହନ୍ତି । ଶାରୀରିକ ବଳ ଓ ନୈତିକ ବଳର ଅନୁକରଣ କଲେ ନାହିଁ । ସମ୍ୟକ୍ ପ୍ରକାର ଶରୀର ରକ୍ଷୋପଯୋଗୀ ଉପାୟ ଏବଂ ପୋଷାକ ପରିଚ୍ଛଦର ଅନୁକରଣ କଲେ ଦୋଷାବହ ବୋଲି ମନେ କଲେ । ଅସଲ କଥା ମନୁଷ୍ୟତାର ଅନୁକରଣ କଲେ ନାହିଁ, ଅନୁକରଣ କଲେ କ'ଣ ? ତାହା ପ୍ରକାଶ କରିବା ଅନାବଶ୍ୟକ । ସେଗୁଡ଼ିକ ଅସଦନୁକରଣ; ଚୁରଟ ସିଗାରେଟ ଅହରହ ପାନଦ୍ୱାରା ଭାରତକୁ ଧୂମାୟମାନ କରିବାକୁ ବସିଲେ । ମଦ୍ୟସ୍ରୋତ ପ୍ରବଳ ବେଗରେ ବଢୁଅଛି । ଗଳାଯାଏ ଉଠିଲାଣି ।

ଆଜି Pussy foot Jonson ଏ ସମ୍ବନ୍ଧରେ ଯେତେ ଚିନ୍ତାନ୍ୱିତ ଓ ବ୍ୟାକୁଳ, ଭାରତବାସୀ ହିନ୍ଦୁସ୍ତାନ ତେତେ ଚିନ୍ତାନ୍ୱିତ ବ୍ୟାକୁଳ ନୁହନ୍ତି । 'କିମାଶ୍ଚର୍ଯ୍ୟମତଃପରଂ ।'

□□

**କାଳ :** କାଳ ଅସୀମ, ଏହାର ଆଦି ନାହିଁ, ଅନ୍ତ ନାହିଁ । ଅନନ୍ତ । ଏ ଅନନ୍ତ ସହିତ ଗୋଟାଏ ସୂର୍ଯ୍ୟର ଗୋଟାଏ ଗ୍ରହର, ଗୋଟାଏ ଜୀବର ଜୀବନ କାଳର ତୁଳନା ବଡ଼ ଅସମଞ୍ଜସ । ମନୁଷ୍ୟଜୀବନ ତ ଛାର !

ଜୀଇବାର ଗୋଟାଏ ନିର୍ଦ୍ଦିଷ୍ଟ ସୀମା ମଧ୍ୟ ନାହିଁ । ଜନ୍ମ ମରଣ ତ ମୁହୂର୍ତ୍ତର କଥା । ସ୍ଥିତି ବା କ୍ରୀଡ଼ାକାଳର ମଧ୍ୟ ନିଶ୍ଚୟତା ନାହିଁ । ଜୀବନ ସଂଗ୍ରାମରେ ବିପଦ ଅହରହ ଚାରିଆଡ଼େ ଘୂର୍ଣ୍ଣାୟମାନ । ପଦେ ପଦେ ବିପଦ । କେତେବେଳେ ଜୀବନ ଯିବ, ତାହାର ସ୍ଥିରତା ନାହିଁ । ଏହି ସଂଗ୍ରାମରେ ଯେଉଁ ଜୀବ ଯେତେଦିନ ବଞ୍ଚି ପାରିଲା, ସେ ତେତେ ଦିନ ଜିତିଲା । ସ୍ଥିତି ବା କ୍ରୀଡ଼ା ମଧ୍ୟରେ ବର୍ଷ, ମାସ, ପକ୍ଷ, ସପ୍ତାହ, ଦିନ, ଦଣ୍ଡ, ମୁହୂର୍ତ୍ତ ମଧ୍ୟ ଜୀବପକ୍ଷରେ ଅତି ମୂଲ୍ୟବାନ୍ । ଏହି କାଳ ମହାହବରେ ମୁହୂର୍ତ୍ତେ ବଞ୍ଚିବା ଲୋକ ମଧ୍ୟ ମୁହୂର୍ତ୍ତବିଜୟୀ ବୋଲି ଗର୍ବ କରିବା ଉଚିତ । ବଞ୍ଚିବା ହିଁ ଜୀବର ଜୀବତ୍ୱ, ଆଉ ସବୁ ପଛେ ।

ନିରବଧି, ନିରବଚ୍ଛିନ୍ନ କାଳକୁ ମନୁଷ୍ୟ ନିଜ ସୁବିଧା ନିମନ୍ତେ ସାଧାରଣତଃ ତିନି ଭାଗରେ ବିଭକ୍ତ କରିଅଛି । ଭୂତ, ବର୍ତ୍ତମାନ, ଭବିଷ୍ୟତ କାଳର ତିନି ବିଭାଗ । ବର୍ତ୍ତମାନ ଉପରେ ମନୁଷ୍ୟମାନଙ୍କର ବେଶି ଆସ୍ଥା । ଭୂତ ଉପରେ ଅନାସ୍ଥା । ଭୂତ ଘଟଣାକୁ 'ଗଲା କଥା ଗଲା' ବୋଲି ହେୟ କରନ୍ତି, ହସି ଉଡ଼ାଇ ଦିଅନ୍ତି । ସବୁ ଦେଶର ଶାସ୍ତ୍ରଜ୍ଞ, କବି, ପଣ୍ଡିତ ଏ ବିଷୟରେ ଏକମତ ବୋଇଲେ ଚଳେ । ଏଥିରେ ମତାନ୍ତର ପ୍ରକାଶ କରିବାର କାହାରି ଅଧିକାର ନାହିଁ । ଅଧିକାର ନାହିଁ ବୋଲିବାଟା ଠିକ୍ ନୁହେଁ । ଲୋକେ ନିଜ ମତ ବ୍ୟକ୍ତି କରିପାରନ୍ତି, ମାତ୍ର ଫଳ ? ହାସ୍ୟାସ୍ପଦ ହେବା, ଗଞ୍ଜନା ।

କାଳ ଅନନ୍ତ । ସୂର୍ଯ୍ୟ କେତେ କୋଟି ବର୍ଷରେ ଅବଶ୍ୟ ନିଷ୍ପ୍ରଭ ହେବ । ପୃଥିବୀ କେତେ ଲକ୍ଷ ବର୍ଷରେ ଜୀବଶୂନ୍ୟ ହେବ । ହେବ ଯେ ଏହା ନିଶ୍ଚୟ, ଧ୍ରୁବ । ଚନ୍ଦ୍ର କେତେ ଲକ୍ଷ ବର୍ଷରେ ନିଷ୍ପ୍ରଭ ହୋଇଅଛି । ମନୁଷ୍ୟ ବଞ୍ଚି ରହେ କେତେ ? ଶହେ ବର୍ଷ ଧରାଯାଉ । 'ଶତାୟୁର୍ବୈ ପୁରୁଷଃ' । ଏତିକି ତ ! ଏଥିରେ କାଣ୍ଡକାରଖାନା କେତେ ! ଏଥି ମଧ୍ୟରେ ମନୁଷ୍ୟ ଭୂତ, ଭବିଷ୍ୟତ, ବର୍ତ୍ତମାନ କାଳ ନେଇ ଖେଳ କରୁଅଛି । ମନୁଷ୍ୟ ଜୀବନଟା କାଳର ଖେଳା ନୁହେଁ କି ? ଭୂତ କାଳଟାକୁ ତୁଚ୍ଛ ଓ ହେୟ ବୋଲି ପ୍ରାୟ ସମସ୍ତେ ଉଡ଼ାଇ ଦେବାକୁ ଚେଷ୍ଟା କରନ୍ତି- କି ମୂର୍ଖ, କି ପଣ୍ଡିତ ସମସ୍ତେ । ଭବିଷ୍ୟତ ଉପରେ ଅନେକ ବଡ଼ ଆଶା ରଖନ୍ତି ଅଶିକ୍ଷିତ ଓ ଶିକ୍ଷିତ ମଧ୍ୟ । ମାତ୍ର ଅତି ଶିକ୍ଷିତ ଓ ଉପଦେଷ୍ଟାମାନେ ଭବିଷ୍ୟତଟା ମାୟା, ଅନ୍ଧକାର, ସୁତରାଂ ଆସ୍ଥାସ୍ଥାପନଯୋଗ୍ୟ ନୁହେଁ ବୋଲି ଉପଦେଶ ଦିଅନ୍ତି । ସମସ୍ତଙ୍କର ବର୍ତ୍ତମାନଟା ସବୁ, ଏଥିରେ ସମସ୍ତେ ପ୍ରଚୁର ଆସ୍ଥା ଦିଅନ୍ତି । ସୁଖ ସ୍ୱାଚ୍ଛନ୍ଦ୍ୟ, ସ୍ନେହ, ମମତା, ଆହ୍ଲାଦ, ପ୍ରେମ, ସବୁ ବର୍ତ୍ତମାନର ଅଙ୍ଗୀଭୂତ । ବର୍ତ୍ତମାନକୁ ନେଇ ସମସ୍ତେ ଉନ୍ମତ୍ତ । ବର୍ତ୍ତମାନକୁ ନେଇ ସମସ୍ତେ ନାଚନ୍ତି । ଏହା ଅସ୍ୱୀକାର୍ଯ୍ୟ ନୁହେଁ ।

Long fellow ଗାଇଲେ-

Trust no future however pleasant,
Let the dead past bury its dead,
Act, act in the living present,
Heart within and God overhead.

ଲଙ୍ଗଫେଲୋ ଏହା ଗାଇଅଛନ୍ତି । ଆଉ ଅନେକ ମଧ୍ୟ ଏହି କଥାକୁ ତାଙ୍କ ପୂର୍ବରେ ଓ ତାଙ୍କ ପରେ ଗାଇ ଅଛନ୍ତି– କେହି ଗଦ୍ୟରେ, କେହି ପଦ୍ୟରେ । ତାଙ୍କ ବାଇବେଲ ମଧ୍ୟ ଭଙ୍ଗ୍ୟନ୍ତରରେ ଏହା କହିଅଛନ୍ତି ।

— ୦ —

ଲଙ୍ଗ ଫେଲୋଙ୍କର ଏ କବିତାଟି ପିଲା ଦିନର ପଢ଼ା । ପ୍ରାୟ ବିସ୍ମୃତି ଗର୍ଭରେ ଲୀନ ହେଲାଣି ବୋଇଲେ ଚଳେ । ଏ କବିତାର ଭୂୟିଷ୍ଠ ପ୍ରଶଂସାବାଦ ଅଛି । ଗୁରୁ ଯାହାକୁ ପ୍ରଶଂସା କରିବେ, ଶିଷ୍ୟ ତାହାକୁ ପ୍ରଶଂସା କରିବାକୁ ବାଧ୍ୟ । ମୁଁ ମଧ୍ୟ ଏ କବିତାକୁ ଅତି ଉଚ୍ଚଦରର ଓ ଉପଦେଶପୂର୍ଣ୍ଣ ଓ ଅନୁକରଣୀୟ ବୋଲି ଭାବି ରଖିଥିଲି । ଏବେ ଟିକିଏ ଭାବାନ୍ତର ଘଟିଲା । ଭୂତକୁ ଏକାବେଳକେ ବିସ୍ମୃତ ହୁଅ । ପ୍ରୀତିକର ଭବିଷ୍ୟତରେ ଆଶା ରଖ ନାହିଁ । କେବଳ ବର୍ତ୍ତମାନ ନେଇ କ୍ରୀଡ଼ା କର । ଅଦ୍ଭୁତ ଉପଦେଶ । ବିଲ୍‌କୁଲ ବେଖାପ । ତେବେ ଭବିଷ୍ୟତ ସୁଖ ସ୍ୱର୍ଗଭୋଗଲାଳସା କି ବୃଥା ? ଧର୍ମବିଶ୍ୱାସିଗଣ କେବଳ ଭବିଷ୍ୟତ ସ୍ୱର୍ଗ ପାଇବେ ବୋଲି ଚାକି ରହିଛନ୍ତି । ଧର୍ମାଲୋଚନା ଛାଡ଼ । ସେ ଭବିଷ୍ୟତ ଲଙ୍ଗଫେଲୋ ଓ ଅନ୍ୟାନ୍ୟ ଲେଖକଙ୍କ ଭବିଷ୍ୟତ ନୁହେଁ କି ?

ବର୍ତ୍ତମାନ, ବର୍ତ୍ତମାନ ନେଇ ଖେଳ । ବର୍ତ୍ତମାନର ସୀମା ନିର୍ଦ୍ଧାରଣ କରିବା ମୋ ପକ୍ଷରେ ବଡ଼ ଦୁଃସାଧ୍ୟ । ଯେହେତୁ ମୁଁ କାଳାନଭିଜ୍ଞ ବା ଅଜ୍ଞ । କିନ୍ତୁ ଚିନ୍ତାସ୍ରୋତ ପଶ୍ଚାତରେ ବେତ୍ରପାଣି ହୋଇ ଦଣ୍ଡାୟମାନ ''ଯାହା ମନରେ ଉଦିତ ହୋଇଅଛି, ତାହା ପ୍ରକାଶ କର, ଲୋକେ ଆଲୋଚନା କରିବେ, ସତ୍ୟ ମିଥ୍ୟା ବୁଝିବେ ।''

କାଳର କ୍ରୀଡ଼ନକ ମନୁଷ୍ୟ ଜାତି । ଭୂତ ଭବିଷ୍ୟତ ଛାଡ଼ିଦେଇ ବର୍ତ୍ତମାନରେ ଆସ୍ଥା ରଖେ । ମାତ୍ର ବର୍ତ୍ତମାନ କାଳ କେଉଁଟା ? ତା'ର ସୀମାର କେଉଁଠାରେ ଆରମ୍ଭ, କେଉଁଠାରେ ଶେଷ ? ପଛକୁ ଅନାଇ ଦେଖ । ତୁମେ ଅନାଇବାବେଳୁ ତେଣିକି ସବୁ ଭୂତ, ଭୂତ, ଭୂତ, ଦୃଷ୍ଟିର ଅଗୋଚର ଅସୀମ; ଚିନ୍ତାର ଅଗୋଚର, ଅନନ୍ତ; ନିରବଚ୍ଛିନ୍ନ-ନିରବଧି । ଆଗକୁ ଅନାଅ, ଭବିଷ୍ୟତ୍ ଅଜ୍ଞେୟ, ଦୁର୍ଜ୍ଞେୟ, ଅସୀମ । ଭୂତ, ଭବିଷ୍ୟତ ଅସୀମ । ଯୋଡ଼ିକର ମଧ୍ୟବର୍ତ୍ତୀ ବା ମଧ୍ୟଗତ ଯେ ସେ ନିଶ୍ଚୟ ସସୀମ । ବର୍ତ୍ତମାନ ତେବେ ସସୀମ । ସସୀମ ଯେ, ତାର ପରିମାଣ ଅଛି ଅବଧି ଅଛି । ଯେଉଁ ସୀମାବଦ୍ଧ ବର୍ତ୍ତମାନକୁ ନେଇ ମନୁଷ୍ୟ ନାଚୁଅଛି– ଭୂତ ଭବିଷ୍ୟତ ପ୍ରତି ଅନାସ୍ଥା ଓ ଘୃଣା କରୁଅଛି, ତାର ପରିମାଣ କେତେ ? ସ୍ଥିରଚିତ୍ତରେ ଅନୁଧାବନ କଲେ ହୃଦୟଙ୍ଗମ ହୁଏ ଯେ, ବର୍ତ୍ତମାନ କାଳଟା ଜ୍ୟାମିତିର ରେଖା ତୁଲ୍ୟ । କେଉଁଠାରେ ଆରମ୍ଭ, କେଉଁଠାରେ ଶେଷ ଜାଣିବାର ଉପାୟ ନାହିଁ । ଜଳସ୍ଥଳର ମିଳନରେ ଯେପରି ରେଖାର ବିସ୍ତୃତି ଜଣାଯାଏ ନାହିଁ, ସେହିପରି ଭୂତ ଭବିଷ୍ୟତର ମିଳନରେ ବର୍ତ୍ତମାନ କାଳର ବିସ୍ତୃତି । ଦିବା ରାତ୍ରର ସନ୍ଧିପରି- ଇନ୍ଦ୍ରଧନୁର ରଙ୍ଗର ବ୍ୟବଧାନ ପରି ଭୂତ ଭବିଷ୍ୟତ ମିଳନର ସନ୍ଧିସ୍ଥଳରେ ବର୍ତ୍ତମାନ । ଭୂତ ଆଡ଼କୁ ଅନାଅ, ସବୁ ସତ୍ୟ, ଯଥାର୍ଥ ପରୀକ୍ଷିତ । ବର୍ତ୍ତମାନର ଅସ୍ତିତ୍ୱ ଅତି ସାମାନ୍ୟ । ଭବିଷ୍ୟତ ଅଜ୍ଞେୟ । ତେବେ ଯାହା ସତ୍ୟ, ଯାହା ପରୀକ୍ଷିତ, ସ୍ପଷ୍ଟ ତା ଉପରେ ଏଡ଼େ ଅନାସ୍ଥା- ଘୃଣା କାହିଁକି ?

ଜର୍ମାନ କବି ଗେଟେ ଏକ ସ୍ଥାନରେ କହିଅଛନ୍ତି– 'The past, past alone is time to me." ଅତୀତ, ଅତୀତ କେବଳ ମୋ ପକ୍ଷରେ ସତ୍ୟ । ଏଥିରୁ ବଳି ସତ୍ୟବାଣୀ ଆଉ କିଛି ଅଛି ବୋଲି ପ୍ରତ୍ୟୟ ଜନ୍ମୁ ନାହିଁ । ହୃଦୟଗ୍ରାହୀ ମର୍ମସ୍ପର୍ଶୀ ପଦଟି ।

ସ୍ମରଣ କରି ସେହି ନିର୍ମଳ ପବିତ୍ର ଶୈଶବକାଳର ଛବିଟି । ମାତାଙ୍କ ପବିତ୍ର କ୍ରୋଡ଼ରେ ଉପବେଶନ, ବାତ୍ସଲ୍ୟପୂର୍ଣ୍ଣ ଗାଢ଼ାଲିଙ୍ଗନ, ସୁକୋମଳ ଲାବଣ୍ୟ ଗଣ୍ଡୋପରି ଗଣ୍ଡ ସ୍ଥାପନ, ସସ୍ନେହ ଚୁମ୍ବନଦାନ, ଗଣ୍ଡସ୍ରାବୀ ପ୍ରେମାଶ୍ରୁବର୍ଷଣ, କୋମଳ ଉପଦେଶ ବଚନ ''ବାପ ମୋର ସୁନାପୁଅ, ବୁଢ଼ା ହେବୁ ।'' କି ଉଦାର ସ୍ନେହଗର୍ଭିତ ଉପଦେଶ, କି ଉଜ୍ଜ୍ୱଳ ଭବିଷ୍ୟତ ଆଶା ଏହି କ୍ଷୁଦ୍ର ବାକ୍ୟଟିରେ ଥିଲା । ଏହାକୁ ତୁମ୍ଭେ କି ବିସ୍ମୃତି ଗର୍ଭରେ ନିକ୍ଷେପ କରିପାର ? ଯାହା ତୁମ୍ଭର ଆୟତ୍ତାଧୀନ ନୁହେଁ, ତାକୁ ପାସୋରି ଦେଲେ ଆଉ ପାଇବ କିପରି ? ସେହି ପ୍ରେମାଲିଙ୍ଗନ, ସେହି ଅମିୟ ବାଣୀ ଆଉ ଜୀବନରେ ମିଳିବ ନା ଶୁଣାଯିବ ? ମାତା, ପିତା, ଗୁରୁବର୍ଗଙ୍କର ହିତୋପଦେଶ ଯାହା ତୁମ୍ଭକୁ ସନ୍ମାର୍ଗରେ ଚାଳିତ କରିଅଛି, ତାକୁ ବିସ୍ମୃତ ହେଲେ ଚଳିବ କିପରି ? ତୁମ୍ଭର ମନୁଷ୍ୟତା, ବଡ଼ଲୋକୀ ସେହି ଅତୀତର ଉପଦେଶଦ୍ୱାରା ତ । ଜୀବନବ୍ୟାପୀ ପ୍ରଶଂସା, ସ୍ତୁତି, ଅଭ୍ୟର୍ଥନା, ଯାହା କିଛି ପାଇଲ, ତାହା ଅତୀତରେ । ନିନ୍ଦା, ଲାଞ୍ଛନା, ଗଞ୍ଜନା, ଅପମାନ, ସମାଜର ଦଣ୍ଡ ଯାହା କିଛି

ପାଇଲ, ତାହା ଅତୀତରେ। ଅତୀତର ସତ୍‌କାର୍ଯ୍ୟ ତୁମ୍ଭଙ୍କୁ ଉତ୍ତରୋତ୍ତର ସନ୍ମାର୍ଗରେ ଚାଳିତ କରିଅଛି, ନିନ୍ଦା ଅପବାଦ ଦଣ୍ଡ ତୁମ୍ଭର ଚରିତ୍ର ସଂଶୋଧନ କରିଅଛି। ଅତୀତ ଶିକ୍ଷାଗୁରୁ। ଅତୀତର ଶିକ୍ଷାରୁ ମନୁଷ୍ୟ ଭବିଷ୍ୟତ ଜୀବର ଗଠନ କରେ।

କର୍ଣ୍ଣଧାରବିହୀନ ତରୀ ଯେପରି ବାତ୍ୟାବିତାଡ଼ିତ ହୁଏ, ଅତୀତର ଶିକ୍ଷା ଓ ଉପଦେଶ ବିସ୍ମୃତ ବ୍ୟକ୍ତି ବିଶୃଙ୍ଖଳ ଓ ଲଣ୍ଡଭଣ୍ଡ ହେବା ସ୍ୱାଭାବିକ।

— ୦ —

ପର୍ବତାରୋହଣ କରୁଅଛ, ପ୍ରତ୍ୟେକ ପଦକ୍ଷେପ ଭୂତରେ ସାମିଲ ହେଲା। ଗୋଟିଏ ପଦକ୍ଷେପରେ ଝୁଣ୍ଟି ପଡ଼ିଲ, ଭବିଷ୍ୟତ୍ ପଦକ୍ଷେପରେ ସାବଧାନ ହେବାକୁ ଅତୀତର ଅସତର୍କତା ଶିକ୍ଷା ଦେଲା। ନିରାପଦରେ ପର୍ବତ ଶିଖରକୁ ଯାଇ ଦଣ୍ଡାୟମାନ ହେଲ। ତୁମ୍ଭେ ଭବିଷ୍ୟତ ଆଡ଼କୁ ଅଗ୍ରସର ହେଉ ହେଉ ଭୂତ ତୁମ୍ଭର ପର୍ବତାରୋହଣ କାଳଟିକୁ ଗ୍ରାସ କରି ନେଲା। ପର୍ବତାରୋହଣ ସମୟର ପ୍ରତ୍ୟେକ ମୁହୂର୍ତ୍ତକୁ ଭୂତ ଗ୍ରାସ କରୁ କରୁ ତୁମ୍ଭେ ପର୍ବତର ଶିଖର ଦେଶରେ ଦଣ୍ଡାୟମାନ ହେଲ, ଦେଖିଲ, ପର୍ବତାରୋହଣ ଅତୀତର ଘଟନା।

ପ୍ରିୟଜନଠାରୁ ପତ୍ରର ଉତ୍ତର ଦେବାକୁ ବସିଲ। ଲେଖା ଆରମ୍ଭ କଲ, ତୁମ୍ଭର ଲିଖିତ ପ୍ରତ୍ୟେକ ଅକ୍ଷର ଜାପକର ମାଳକଣ୍ଠି ତଳ ଆଡ଼କୁ ଗଡ଼ି ଗଲା ପରି ଭବିଷ୍ୟ୍ ଆଡୁ ଭୂତ ଆଡ଼କୁ ଗଡ଼ି ପଡୁଅଛି। ଯାହା ଲେଖିଲ, ତାହାର ଅସ୍ତିତ୍ୱ ଅତୀତର ବେଷ୍ଟନୀ ମଧ୍ୟକୁ ଗଲା। 'ତୁମ୍ଭର ପତ୍ର ପାଇଲି' ଏହା ଲେଖିବାର ତୁମ୍ଭର ଅଭିପ୍ରାୟ, 'ତୁମ୍ଭର ପତ୍ର' ଲେଖି ଅନ୍ୟମନସ୍କ ଭାବରେ 'ମୋର' ଏହି ଯୋଡ଼ିକ ଅକ୍ଷର ଲେଖି ପକାଇଲ ବା ଅତୀତ ଆଡ଼କୁ ଗଡ଼ାଇ ଦେଲ। ଏ ଶବ୍ଦଟି କାଟିବ, ନତୁବା ଭବିଷ୍ୟତ ଗର୍ଭରୁ ଗୁଡ଼ିଏ ଉପଯୁକ୍ତ ଶବ୍ଦ ଅନ୍ୱେଷଣ କରି ଯୋଗ କରି ବାକ୍ୟର ଅର୍ଥସଙ୍ଗତି ରକ୍ଷା କରିବ। ଭୂତର ଅନୁଭୂତି ଦ୍ୱାରା ଭବିଷ୍ୟତରେ ସାବଧାନତା। ଲେଖିଲ, "ତୁମ୍ଭର ପତ୍ର ମୋର ହସ୍ତଗତ ହେଲା।"

ପତ୍ର ଲେଖିଲାବେଳେ କେହି ପଚାରିଲେ କହିବ, "ମୁଁ ପତ୍ର ଲେଖୁଅଛି।" ମାତ୍ର ପତ୍ର ମଧ୍ୟରୁ ଯେତିକି ଲିପିବଦ୍ଧ ହେଲା ତାହା ଅତୀତର ବେଷ୍ଟନୀ ମଧ୍ୟଗତ। ଯାହା ଲେଖି ନାହିଁ, ତାହା ଭବିଷ୍ୟତ ବେଷ୍ଟନୀରେ। ପତ୍ର ଲେଖା ଶେଷ କରି ପାରିବ କି ନା, ତହିଁର ସ୍ଥିରତା ନାହିଁ। ଜରୁରୀ କାମ ପଡ଼ିଗଲେ ପତ୍ର ଲେଖା ତ୍ୟାଗ କରି ଲେଖା ଅଂଶ ଅତୀତରେ ପକାଇଦେଇ ଅନ୍ୟ କାର୍ଯ୍ୟରେ ରତ ହେବ। ଆଲୋଚନା କରି ଦେଖିଲେ ଛୋଟବଡ଼ ପ୍ରତ୍ୟେକ କାର୍ଯ୍ୟ ଭୂତ ଭବିଷ୍ୟତ ମଧ୍ୟରେ ବିଭକ୍ତ। ବର୍ତ୍ତମାନର ଅସ୍ତିତ୍ୱ ନାହିଁ ବୋଇଲେ ଚଳେ। ଭୂତର ପରୀକ୍ଷାଲବ୍ଧ ଜ୍ଞାନଦ୍ୱାରା ମନୁଷ୍ୟ ଭବିଷ୍ୟତରେ ଫଳ ଲାଭ କରେ।

ଭୂତକୁ ବିସ୍ମୃତ ହୋଇ ବର୍ତ୍ତମାନରେ ଆସ୍ଥା ରଖିବା ଯେଉଁ ଅର୍ଥକଣ୍ଟକପୂର୍ଣ୍ଣ ପ୍ରସ୍ତରମୟ ଦୁର୍ଗମ ବାଟରେ ଘୋର ଅନ୍ଧକାରରେ ଚାଲିବା ସେହି ଅର୍ଥ।

ଅତୀତଲବ୍ଧ ଦୀପଶିଖା, ସାହାଯ୍ୟରେ ଅନ୍ଧକାର ଭବିଷ୍ୟତରେ ଅଗ୍ରସର ହେବାକୁ ଯତ୍ନଶୀଳ ହୁଅ- ବଦ୍ଧପରିକର ହୁଅ-ବର୍ତ୍ତମାନ, ବର୍ତ୍ତମାନ କିଛି ନୁହେଁ।

— ୦ —

ଆସ୍ତିକ, ନାସ୍ତିକ, theist, atheist, ଯେ ଈଶ୍ୱର ବିଶ୍ୱାସ କରେ, ସେ ଆସ୍ତିକ theist, ଯେ ଈଶ୍ୱାର ବିଶ୍ୱାସ ନ କରେ, ସେ atheist, ଏହା ସମସ୍ତେ ଲେଖି ଆସୁଅଛନ୍ତି, କହି ଆସୁଅଛନ୍ତି। Theist, atheist, ର ତର୍ଜମା ଆସ୍ତିକ ଓ ନାସ୍ତିକ ନୁହେଁ ବୋଲି ମନେ ହୁଏ। ଆସ୍ତିକ ଓ ନାସ୍ତିକ ଶବ୍ଦ ଯୋଡ଼ିକ ବ୍ୟାକରଣ ନିଷ୍ପନ୍ନ, ଈଶ୍ୱରବିଶ୍ୱାସୀ ଓ ଈଶ୍ୱର ଅବିଶ୍ୱାସୀ ଏପରି ଅର୍ଥ ଅବଗତ କରାଉ ନାହିଁ। କେହି କହନ୍ତି, ଯେ ପରଲୋକ ନ ମାନେ, ସେ ନାସ୍ତିକ। କେହି କହନ୍ତି, ଯେ ବେଦର ପ୍ରାମାଣ୍ୟ ସ୍ୱୀକାର ନ କରେ, ସେ ନାସ୍ତିକ। ମନୁ ଲେଖି ଅଛନ୍ତି- 'ନାସ୍ତିକୋ ବେଦନିନ୍ଦକଃ'। ସେ ପରଲୋକ ବା ଈଶ୍ୱର ଅସ୍ୱୀକାର କଥା ଲେଖି ନାହାନ୍ତି। ଯାହା ହେଉ ନାସ୍ତିକ ଶବ୍ଦର ବ୍ୟାପ୍ତି ଏବେ ଏତେ ଦୂର ଯେ, ହିନ୍ଦୁର ସମଗ୍ର ମତ, ସମସ୍ତ ଶାସ୍ତ୍ର, ସମସ୍ତ ଦେବତା, ମଏ କୁଳାଚାର ବିଧିରେ ଯେ କେହି ଯୁକ୍ତି ତର୍କ କରିବାକୁ ବସିଲା, ସେ ନାସ୍ତିକ। ମୋଟ କଥା ସବୁ ବିଧି ବ୍ୟବସ୍ଥା ନତମସ୍ତକରେ, ଅମ୍ଳାନବଦନରେ ମାନିଯାଅ, ନତୁବା ତୁମର ପୁରସ୍କାର 'ନାସ୍ତିକତାଏ'।

— ୦ —

ଶିକ୍ଷିତ ଜାତିମାନଙ୍କ ମଧ୍ୟରେ ଆସ୍ତିକ ନାସ୍ତିକ ଶବ୍ଦର ପ୍ରଚାର ଅଛି। ଅଶିକ୍ଷିତ ଜାତିମାନଙ୍କ ମଧ୍ୟରେ ଏହି ଶବ୍ଦ ଯୋଡ଼ିକର ବା ଏତାଦୃଶ ଶବ୍ଦର ବ୍ୟବହାର ନାହିଁ। ଅଶିକ୍ଷିତମାନେ ସମସ୍ତେ କ'ଣ ? ହିନ୍ଦୁ କହିବେ- ନାସ୍ତିକ, ଖ୍ରୀଷ୍ଟାନ କହିବେ- atheist। ମାତ୍ର ପ୍ରକୃତ ପକ୍ଷରେ ତାହା ଠିକ୍ ନୁହେଁ। ଆସ୍ତିକ, ନାସ୍ତିକ ମଧ୍ୟରେ ଗୋଟାଏ ମଧ୍ୟ ପନ୍ଥା ନାହିଁ କି ? ଏ ବଡ଼ ବିଷମ କଥା।

— ୦ —

ଯେଉଁମାନେ ଈଶ୍ୱରବିଶ୍ୱାସୀ ବୋଲି ଢଙ୍କା ବଜାଉଅଛନ୍ତି, ସେମାନେ ଈଶ୍ୱର ସର୍ବଦ୍ରଷ୍ଟା, ଅନ୍ତର୍ଯ୍ୟାମୀ ବୋଲି ପ୍ରକାଶ କରିବାକୁ ଅନ୍ତତଃ ଯୁକ୍ତିସ୍ଥଳରେ ତ୍ରୁଟି କରନ୍ତି ନାହିଁ। ଏହା ସେମାନଙ୍କର ମୁହଁର କଥା, ନା ହୃଦ୍‌ଗତ ବିଶ୍ୱାସ ? ତାହା ବୋଧାତୀତ। ଈଶ୍ୱର ସବୁ ଦେଖୁଛନ୍ତି, ସବୁ ଜାଣୁଛନ୍ତି, ଏ ବିଶ୍ୱାସ ଥିଲେ ଲୋକେ ପାପ କରନ୍ତେ କି ? ଈଶ୍ୱର ସର୍ବଦ୍ରଷ୍ଟା ବୋଲି ବିଶ୍ୱାସ କରୁଥିଲେ ଅଭିସାରକୁ ଯିବା ନିମନ୍ତେ ଅନ୍ଧକାରକୁ ଅପେକ୍ଷା କରନ୍ତେ କି ? ବ୍ୟଭିଚାର କରିବାକୁ ଗଲାବେଳେ ଆଗରେ ପଛରେ ନିକଟରେ ଦୂରେ କେହି ଅଛି କି ନା, କେହି ଦେଖୁଛି କି ନା, ଏହା ଭଲଭାବରେ ଅନୁସନ୍ଧାନ ନ କରି ବ୍ୟଭିଚାରିଗଣ ଗୃହପ୍ରବେଶ କରନ୍ତି ନାହିଁ କାହିଁକି ? କୌଣସି ଦୋଷଯୁକ୍ତ କାର୍ଯ୍ୟ କରିବାକୁ ଯାଉଥିବା ବେଳେ ଜଣେ କଳା ପୋଷାକ ପରିହିତ କନଷ୍ଟେବଲକୁ ଦେଖିଲେ ଭୟରେ ଛାତି ଯେତେ ଦୂର ଦାକୁଦାକୁ କରେ ଈଶ୍ୱରଭୟରେ ସେପରି କରେ କି ? ହାକିମ ରାୟ ଲେଖୁ ଲେଖୁ ଟେବୁଲ ତଳକୁ ହାତ ପତାଇ ଉତ୍କୋଚ ନେବା କି ଈଶ୍ୱରଦୃଷ୍ଟି ବହିର୍ଭୂତ ? ଗୋଟାଏ ଲୋକର ବା ଗୋଟାଏ ଜାତିର ଅନିଷ୍ଟ କଳ୍ପନାରେ ନିରୁଦ୍ଧ ମନ୍ତ୍ରଣାଗାରର ଯୁକ୍ତି ଈଶ୍ୱରଙ୍କ ଜ୍ଞାନଗମ୍ୟ ନୁହେଁ ବୋଲି କି ଯୁକ୍ତିକର୍ତ୍ତାମାନଙ୍କର ଧାରଣା ନୁହେଁ ? ମନ୍ତ୍ରଣାଗାରର ଅର୍ଗଳ ବନ୍ଦ କରିବାଦ୍ୱାରା ଓ ପ୍ରହରୀ ବସାଇବା ଦ୍ୱାରା ଈଶ୍ୱରଙ୍କର ଦୃଷ୍ଟିଶକ୍ତି, ଶ୍ରବଣଶକ୍ତି ଓ ଜ୍ଞାନ ତୁଚ୍ଛ ମନୁଷ୍ୟର ସମକକ୍ଷ କରାଯାଉ ନାହିଁ କି ? ତେବେ ବ୍ୟଭିଚାରୀ, ଉତ୍କୋଚଗ୍ରହଣକାରୀ, ଅନିଷ୍ଟକାରୀ, ଅନିଷ୍ଟ ମନ୍ତ୍ରଣାକାରୀ ବ୍ୟକ୍ତିଙ୍କର ଉକ୍ତି– 'ଈଶ୍ୱର ସର୍ବଦ୍ରଷ୍ଟା', 'ଈଶ୍ୱର ସର୍ବଜ୍ଞ', 'ଅନ୍ତର୍ଯାମୀ' ପ୍ରଭୃତି କେବଳ କପଟତାପୂର୍ଣ୍ଣ, ପ୍ରତାରଣାପୂର୍ଣ୍ଣ ଭିନ୍ନ ଆଉ କ'ଣ ବୋଲାଯାଇପାରେ ?

ଯେଉଁମାନେ କଳଙ୍କ କାଳିମା ଲିପ୍ତ, ବ୍ୟଭିଚାରୀ, ପରସ୍ୱାପହପରଣକାରୀ, ଉତ୍କୋଚଗ୍ରାହୀ, ଚୂପ୍‌ସଇତାନ, ସେମାନେ ଈଶ୍ୱରବିଶ୍ୱାସୀ ବୋଲି ପ୍ରକାଶ କରି ଏବଂ ଈଶ୍ୱରଙ୍କୁ ସର୍ବଜ୍ଞ, ସର୍ବଦ୍ରଷ୍ଟା, ଅନ୍ତର୍ଯାମୀ ବୋଲି ପ୍ରକାଶ କରିବାଦ୍ୱାରା ନିରୀହ ବିଚାରାମାନଙ୍କ ଚକ୍ଷୁରେ ଧୂଳି ଦେଉ ନାହାନ୍ତି କି ?

ଈଶ୍ୱର ନାମରେ ଗୋଟିଏ ଧର୍ମବିଶ୍ୱାସର ବାଡ଼ ଦେଇ ତହିଁ ମଧ୍ୟରେ ରହି ଅନାୟାସରେ ନାନା ପାପାଚରଣ କରୁଅଛନ୍ତି। ତେବେ କି କପଟତାପୂର୍ଣ୍ଣ ଈଶ୍ୱରଭକ୍ତି ପାପୀ ଓ ଧୂର୍ତ୍ତର ଆତ୍ମରକ୍ଷାର ଢାଲ ? 'କିମାଶ୍ଚର୍ଯ୍ୟମତଃପରଂ'। ଭଣ୍ଡ ଈଶ୍ୱରଭକ୍ତ ଓ ନାସ୍ତିକ ମଧ୍ୟରେ ପାର୍ଥକ୍ୟ କ'ଣ ଓ କେତେ ?

— ୦ —

ଅଦାଲତମାନଙ୍କରେ ସାକ୍ଷୀଙ୍କୁ ଶପଥ ଦେବା ଓ ଅଦାଲତରେ ଶପଥ ଗ୍ରହଣ କରିବା ରୀତି ଓ ପ୍ରଥା ଗୋଟାଏ ବିଦ୍ରୂପାତ୍ମକ ପ୍ରହସନ ବୋଲି ମନେହୁଏ।

"ଈଶ୍ୱରଙ୍କୁ ପ୍ରତ୍ୟକ୍ଷ ଜାଣି ଏ ମୋକଦ୍ଦମାରେ ଯାହା ଯାହା କହିବି ସତ ସତ କହିବି, ମିଛ କହିଲେ ଈଶ୍ୱର ଦଣ୍ଡ ଦେବେ।" ବୋଧହୁଏ ଏହା ଶପଥର ପାଠ। ଶିକ୍ଷିତ, ଅଶିକ୍ଷିତ ସାକ୍ଷ ଦେବା ପୂର୍ବରୁ ହାକିମ ଆଗରେ ଥରେ ଏହି ପାଠର ଆବୃତ୍ତି କରନ୍ତି। ବାଦ, ପ୍ରତିବାଦୀ, ଶ୍ରୋତା, ବକ୍ତା, ମଏହାକିମ ଏହା ଶୁଣି ସନ୍ତୁଷ୍ଟ। ବାଦୀ ପକ୍ଷର ସାକ୍ଷୀମାନେ, ପ୍ରତିବାଦୀ ପକ୍ଷରେ ସାକ୍ଷୀମାନେ ହାକିମଙ୍କ ଆଗରେ ସର୍ବସମକ୍ଷରେ ଶପଥ ଗ୍ରହଣ କରି ସାକ୍ଷ୍ୟ ଦିଅନ୍ତି। ଯେହେତୁ 'ପରମେଶ୍ୱରଙ୍କୁ ପ୍ରତ୍ୟକ୍ଷ ଜାଣି' ବୋଲି ଶପଥ କରାଯାଏ। ଏଣୁ ସମସ୍ତଙ୍କର ଅବଶ୍ୟ ଧାରଣା ଯେ, ପରମେଶ୍ୱର ମଧ୍ୟ ସେଠାରେ ବିଦ୍ୟମାନ। ସାକ୍ଷୀଗଣ ଆପଣା ବକ୍ତବ୍ୟରେ ଓ ଜେରାରେ ବ୍ୟତିବ୍ୟସ୍ତ ହୋଇ ବସିପଡ଼ନ୍ତି। ହାକିମ ଆତ୍ମପ୍ରତ୍ୟୟ ଅନୁସାରେ ନିଷ୍ପତ୍ତି କରନ୍ତି। ବିଚାରାଳୟର କାର୍ଯ୍ୟକଳାପ ଆଲୋଚନା କଲେ ଈଶ୍ୱର ହିଁ ପ୍ରଧାନ ସାକ୍ଷୀ ବୋଲି ମନେ ହୁଏ। ହାକିମ ତ ତାଙ୍କ ଆଡ଼କୁ ଅନାଇଲେ ନାହିଁ, ପଦେ ଅଧେ ପଚାରିଲେ ନାହିଁ ବା ଜେରା କଲେ ନାହିଁ। ତେବେ ଅଦାଲତକୁ ଏତେ ଲୋକଙ୍କ ସମକ୍ଷକୁ ଆଣି ଈଶ୍ୱରଙ୍କୁ ଲଣ୍ଡଭଣ୍ଡ କରିବାର କାରଣ କ'ଣ ? ଅଦ୍ୟାପି ସଭ୍ୟ ଜଗତରେ ପ୍ରାଚୀନ ବର୍ବର ପ୍ରଥା ଅନୁମୋଦନୀୟ ହେବା ପରିତାପର ବିଷୟ ନୁହେଁ କି ?

— ୦ —

ମନୁଷ୍ୟ ଭୟ କରେ ମନୁଷ୍ୟକୁ, ମନୁଷ୍ୟ ପ୍ରବର୍ତ୍ତିତ ଦଣ୍ଡକୁ- ଦଣ୍ଡନୀତିକୁ। ମନୁଷ୍ୟ ଈଶ୍ୱରଙ୍କୁ କେବେ ଭୟ କରେ ନାହିଁ। ମୁହଁରେ ପଛେ କହୁଥାଉ, ଈଶ୍ୱରଠାରୁ ଦଣ୍ଡ ପାଇବାକୁ ତାର ତିଳେ ମାତ୍ର ଭୟ ନାହିଁ। ଈଶ୍ୱର ଭୟ ବିଶ୍ୱାସୀ ହୋଇଥିଲେ ଏ ଜଗତର ରୀତି ଅନ୍ୟ ପ୍ରକାର ହୁଅନ୍ତା। ଈଶ୍ୱରନାମ ଧାରଣକୁ ମନୁଷ୍ୟ ଆତ୍ମରକ୍ଷାର ଉପାୟ ବୋଲି ମନେ କରିଅଛି। ଈଶ୍ୱର ମୁଣ୍ଡରେ ହାତ ଆଉଁସି ମିଥ୍ୟା କହିଲେ ତ୍ରାହି ମିଳିବ, ଏହି ଧାରଣା ମନୁଷ୍ୟ ମନରେ ବଦ୍ଧମୂଳ ହୋଇଅଛି।

— ୦ —

ଜଗତରେ ସତ୍ୟର ପୁରସ୍କାର ନାହିଁ। ସତ୍ୟବକ୍ତାର ଆତ୍ମରକ୍ଷାର ଉପାୟ ନାହିଁ ଦଣ୍ଡର ଭୟ ଅଛି। ମିଥ୍ୟା କହିବା ଲୋକର ଶପଥରୂପ ଆବରଣ ଅଛି। ଈଶ୍ୱରଙ୍କର ଶପଥ ନେଇ

ମିଥ୍ୟା କହିଲେ ବଞ୍ଚିଯିବାର ଆଶା ଥାଏ । ତେଣୁ ଲୋକେ କ୍ରମେ ସତ୍ୟ ତ୍ୟାଗ କରି ଈଶ୍ୱର ବହିରେ ମିଥ୍ୟା କହିବାକୁ ଶିଖୁଅଛନ୍ତି । ଶପଥ ଆତ୍ମବିଶ୍ୱାସ ଓ ସହାନୁଭୂତିର ଅନ୍ତରାୟ, ଅଥଚ ପ୍ରତାରଣାର ଉପାୟ । ଶପଥ ଗ୍ରହଣ କଲେ ସାକ୍ଷିଗଣ ସତ କହିବେ, ଏହି ବିଶ୍ୱାସରେ ତ ଶପଥ ଦିଆଯାଇଥାଏ ? ତେବେ ପ୍ରତ୍ୟେକ ଶପଥ ଗ୍ରହଣକର୍ତ୍ତାଙ୍କର ସାକ୍ଷ୍ୟ ସତ୍ୟ ବୋଲି ଗୃହୀତ ହୁଏ ନାହିଁ କାହିଁକି ? ଆଉ ଯେବେ ଶପଥ ଗ୍ରହଣ କଲେ ମଧ ପ୍ରତ୍ୟେକେ ସତ୍ୟ କହିବେ ବୋଲି ବିଶ୍ୱାସ ନ ଥାଏ, ତେବେ ଶପଥ ଦେବାର ପ୍ରୟୋଜନ କ'ଣ ? ଏହା ଯେବେ ସତ ଯେ, ଲୋକେ ଈଶ୍ୱରନାମରେ ଶପଥ ଗ୍ରହଣ କରି ସୁଦ୍ଧା ମିଥ୍ୟା କହନ୍ତି ଏବଂ ଶପଥ ନେଇ କିଏ ସତ କହିବ, କିଏ ମିଥ୍ୟା କହିବ, ଏଥିର ମଧ ସ୍ଥିରତା ନାହିଁ । ଏପରି ଅବସ୍ଥାରେ ଶପଥ ଦିଆଇବା ଲୋକ ଦୋଷୀ ଓ ଈଶ୍ୱରଦ୍ରୋହୀ ନୁହେଁ କି ? ଶପଥ ଦେଇ ଭକ୍ତି କିଣିବା, ପ୍ରେମ ଲାଭ କରିବା, ସତ୍ୟ ଉଦ୍ଧାର କରିବା ଆଶା ଦୁରାଶା ମାତ୍ର । ଏ ବର୍ବର ପ୍ରଥା ଅଦ୍ୟାପି ଲୋକମନରେ ରାଜତ୍ୱ କରୁଅଛି, ଏଥିରୁ ବଳି ଆଶ୍ଚର୍ଯ୍ୟର ବିଷୟ କ'ଣ ହୋଇପାରେ ?

— ୦ —

ମାନବ ଜାତିର ପୂର୍ବପୁରୁଷଗଣ ଯେ ଆଦର୍ଶ ଗୁଣାତୀତ ଐଶୀ ଶକ୍ତିର ଉଦ୍‌ବୋଧନ କରିଥିଲେ, ସେ କି କେବଳ ପ୍ରତାରଣାର ସହାୟଭୂତ ହେବା ନିମନ୍ତେ ? ସେହି ପ୍ରଭୁଭକ୍ତିର ପରିଚାୟକ ଚିତା, ପଇତା, ମାଳ, ଭେକ ତ ପ୍ରତାରଣାର ଉପାୟ ହୋଇଅଛନ୍ତି । କେହି କେହି ଚିତାଦ୍ୱାରା ଲୋକଙ୍କୁ ଚିତା ଦେଉଅଛନ୍ତି । କେହି କେହି ମାଳାଦ୍ୱାରା ସହଜ ବିଶ୍ୱାସୀଙ୍କ ଗଳାରେ ଫାଶ ଲଗାଉଅଛନ୍ତି । କେହି କେହି ପଇତାରେ ହାତ ଦେଇ ଅନ୍ୟକୁ ଭୟ ଲଗାଉଅଛନ୍ତି । ଏକ ସମୟରେ ଯେଉଁଗୁଡ଼ିକ ଧର୍ମର ଧ୍ୱଜା ବା ଚିହ୍ନ ଥିଲା, ଏବେ ସେଗୁଡ଼ିକ ଧର୍ମଧ୍ୱଜା ବା ଭଣ୍ଡତାର ଲକ୍ଷଣରେ ପର୍ଯ୍ୟବସିତ ହୋଇଅଛନ୍ତି ।

— ୦ —

ଅହରହ ସଭ୍ୟ ଓ ଅସଭ୍ୟ ଶବ୍ଦର ଉଚ୍ଚାରଣ କର୍ଣ୍ଣପଟହରେ ଆଘାତ କରୁଅଛି- ତର୍କ ବିତର୍କରେ, କଳିତକରାରରେ, ବକ୍ତୃତାରେ । ଇଉରୋପୀୟ ଜାତିକୁ ମଧ ଆମ ଦେଶର କେବଳ ସଂସ୍କୃତଜ୍ଞ ପଣ୍ଡିତଗଣ ଅସଭ୍ୟ ବୋଲି କହନ୍ତି । ଏ ଶବ୍ଦ ଆଦୌ ସୁଶ୍ରାବ୍ୟ ନୁହେଁ । ସୁଶ୍ରାବ୍ୟ ହେବା ତେଣେ ଥାଉ କ୍ରମେ ବଡ଼ ବିରକ୍ତିକର ହୋଇଉଠିଲାଣି । ଏଣୁ ଥରେ ଥରେ ଏ ଶବ୍ଦ ସମ୍ବନ୍ଧରେ ଆଲୋଚନା କରିବାକୁ ମନ ବଳେ । ଆମ୍ଭେମାନେ ସଭ୍ୟ କି ? ଏଥିର ଉତ୍ତର ବଡ଼ କଠିନ । କେବଳ କଠିନ ନୁହେଁ, ଦାୟିତ୍ୱପୂର୍ଣ୍ଣ ମଧ । ସମସ୍ତଙ୍କ ମାନମାଫିକ ଉତ୍ତରଟିଏ ନ ଦେଲେ ଅନେକ ଗାଳି ବର୍ଷଣ କରିବେ । ଋଗ୍‌ବେଦ ଏଥିର ଉତ୍ତର ଦେଉ । ତାହା ହେଲେ ବେଦବିଶ୍ୱାସୀ ଭାରତବାସୀ ଆଉ ବାକ୍ୟବ୍ୟୟ କରିବେ ନାହିଁ । ସଭା ଶବ୍ଦରୁ ସଭ୍ୟ ଶବ୍ଦର ଉତ୍ପତ୍ତି । ସଭା ବୈଦିକ ଶବ୍ଦ । ସଭା ଅର୍ଥରେ ଆମ୍ଭେମାନେ ଏବେ ଯାହା ବୁଝୁ, ବୈଦିକ ଯୁଗର ଲୋକେ ମଧ ତାହାହିଁ ବୁଝୁଥିଲେ । ବୈଦିକ ଯୁଗରେ ସଭାରେ ବସିବା ଯୋଗ୍ୟ ବ୍ୟକ୍ତିକୁ ସଭେୟ ବୋଲୁଥିଲେ । ଏବେ ଆମ୍ଭେମାନେ ସଭ୍ୟ ବୋଲୁଅଛୁଁ । ଏ ତ ଗଲା ସଭ୍ୟ ଶବ୍ଦର ପ୍ରକୃତ ଅର୍ଥ ।

ଲୋକେ ଯେଉଁ ସ୍ଥଳରେ ସମବେତ ହୋଇ ଧର୍ମନୀତି, ସମାଜନୀତି, ରାଜନୀତିର ସ୍ୱାଧୀନ ଆଲୋଚନା କରନ୍ତି, ତା'ର ନାମ ସଭା । ସଭାରେ ଆଲୋଚନାକାରୀ ବକ୍ତା ଓ ଶ୍ରୋତା ସଭ୍ୟ । ଏ ହିସାବରେ ଭାରତବାସୀ ଅନ୍ୟ କୌଣସି ଦେଶବାସୀଙ୍କୁ ଅସଭ୍ୟ ବୋଲିବା ନ୍ୟାୟସଙ୍ଗତ ନୁହେଁ । ଭାରତବାସୀ ଆପଣାକୁ ସଭ୍ୟ ବୋଲି ପରିଚୟ ଦେବା ଯୁକ୍ତିସଙ୍ଗତ କି ନୁହେଁ ତାହା ପାଠକଗଣଙ୍କ ବିଚାର୍ଯ୍ୟ ।

Civilized nation କୁ ବୋଧହୁଏ ପ୍ରଥମରୁ ସଭ୍ୟ ଜାତି ବୋଲି ତର୍ଜମା କରାଯାଇଅଛି । ଏଣୁ ପ୍ରତ୍ୟେକ ଭାରତୀୟ ଜାତି ଆପଣାକୁ ସଭ୍ୟ ଜାତି ବୋଲି ପରିଚୟ ଦେବାକୁ ବ୍ୟସ୍ତ । ସଭ୍ୟ ଶବ୍ଦର ଅର୍ଥ କ୍ରମେ ନମ୍ର, ପରିମାର୍ଜିତ ଓ ଉନ୍ନତିଶୀଳ ହୋଇଥିଲେ ମଧ ଶେଷୋକ୍ତ ଅର୍ଥାନୁସାରେ civilized nation ଅର୍ଥ ସଭ୍ୟ ଜାତି ହୋଇଅଛି । ଭାରତବାସୀ ନମ୍ର ଏକଥା ସତ । ପରିମାର୍ଜିତ ଜାତି ? ଏ ସମ୍ବନ୍ଧରେ ନିଃସନ୍ଦେହ ଉତ୍ତର ଦେବା କଠିନ । ନମ୍ର ବୋଲି ଭାରତବାସୀର ଭୂରି ଭୂରି ପ୍ରଶଂସା ଏ ଦେଶରେ, ଇଉରୋପ ଓ ଆମେରିକାରେ ମଧ । ଏଥି ନିମନ୍ତେ ଭାରତବାସୀ ସ୍ଫୀତ ଓ ଗର୍ବିତ । ଫଳଭାରରେ ବୃକ୍ଷ ଅବନତ । ଗୁଣବାନ୍ ବ୍ୟକ୍ତି ମଧ ନମ୍ର ବା ଅବନତ । ଭାରତବାସୀ ନମ୍ର ହେବାଟା ହିଁ ଅତି ମହତ୍ ଗୁଣ ବୋଲି ଭାବି ନେଲେ । ନମ୍ରତା ଭାରରୁ ଅବନତ- କ୍ରମେ ପଦାନତ । ଏ ନମ୍ରତା ଅର୍ଥ ଯେବେ ସଭ୍ୟତା, ତେବେ ଭାରତବାସୀ ସଭ୍ୟ ।

— ୦ —

ପ୍ରାଥମିକ ଆର୍ଯ୍ୟଗଣ ନବସଂସ୍କାରର ପକ୍ଷପାତୀ ହୋଇ ସମାଜ ଓ ଜାତି ଗଠନରେ ତତ୍ପର ଥିଲେ । ସେ ଜାତି ଗଠନର ଆକାଂକ୍ଷା ଲୋପ ପାଇଅଛି । ପରିମାର୍ଜିତ ରୁଚି ବିକାରପ୍ରାପ୍ତ

ହୋଇଅଛି। ସେ ଅନେକ ଦିନର କଥା। ଏବେ ଜାତୀୟ ସଂସ୍କାର ଘଟୁ ନାହିଁ, ଜାତି ପରିମାର୍ଜିତ ହେବ କିପରି ? ସୁତରାଂ ପରିମାର୍ଜିତ ଅର୍ଥରେ ଆମ୍ଭେମାନେ ସଭ୍ୟ ନୋହୁଁ।

— ୦ —

ଭାରତବାସୀଙ୍କି ଉନ୍ନତିଶୀଳ ଜାତି ବୋଲାଯାଇପାରେ କି ? ବୋଧ ହୁଏ ନାହିଁ। ଜୀବନୀଶକ୍ତି ଅଛି, ଉଦ୍ଭାବନଶକ୍ତି ନାହିଁ। ଜଟିଳ ଜୀବନସମସ୍ୟା ସମାଧାନ ଯୋଗ୍ୟ ବୁଦ୍ଧି ନାହିଁ, ପ୍ରକୃତ ଜାତୀୟ ଅଭାବ ଜ୍ଞାନ ନାହିଁ, ଏଣୁ ଅଭାବ ପୂରଣ କରିବାର ଉପାୟ ଦିଶୁ ନାହିଁ। ଅଭାବ ଜ୍ଞାନ ଓ ଅଭାବ ପୂରଣ ନିମନ୍ତେ ଅସାଧାରଣ ଯତ୍ନ ଓ ଅଧ୍ୟବସାୟ ସିନା ଜାତିକୁ ଉନ୍ନତ କରେ। ଜାତୀୟ ଅଭାବ ପୂରଣ ନିମନ୍ତେ ଯେଉଁ ଜାତି ଉପାୟ ଉଦ୍ଭାବନ କରେ, ଉନ୍ନତିର ପନ୍ଥା ଆବିଷ୍କାର କରେ, ସେ ଜାତି ସିନା ଉନ୍ନତିଶୀଳ ଜାତି।

ଜାତିର ଅଭ୍ୟୁତ୍ଥାନ ଓ ପତନ ପ୍ରାକୃତିକ ବୋଇଲେ ଚଳେ। ଅଭ୍ୟୁତ୍ଥାନ ସମୟସାପେକ୍ଷ। ବହୁ ଯତ୍ନ ଓ ଅଧ୍ୟବସାୟ ଦ୍ୱାରା ଜାତୀୟ ଅଭ୍ୟୁତ୍ଥାନ ସାଧିତ ହୁଏ। ଜାତିର ସ୍ୱାର୍ଥ ଜଡ଼ିତ ଅବିମୃଶ୍ୟକାରିତାର ଫଳରୁ ପତନ। ମନ୍ଦିର ଗଢ଼ିବାକୁ ଯେତେ ସମୟ ଲାଗେ, ଭାଙ୍ଗିବାକୁ ତେତେ ସମୟ ଲାଗେ କି ? ଗଢ଼ିବାକୁ ଯେତେ ବୁଦ୍ଧି, ବିଚାର, ଆୟୋଜନର ପ୍ରୟୋଜନ, ଭାଙ୍ଗିବାକୁ ତାହା ଆବଶ୍ୟକ ନାହିଁ। ଜାତୀୟ ଅଭ୍ୟୁଦୟକାମୀ ଓ ଅଭାବପୂରଣକାରୀ ଜାତିକୁ civilized nation ବା ଉନ୍ନତିଶୀଳ ଜାତି ବୋଲାଯାଇପାରେ। ତେବେ ଆମ୍ଭେମାନେ ଉନ୍ନତିଶୀଳ ଅର୍ଥରେ ସଭ୍ୟ କି ?

ମାନବର ଅଭ୍ୟୁଦୟର ନାମାନ୍ତର କ୍ରମୋନ୍ନତି। ଏହାର ଗୋଟାଏ ଶେଷ ସୀମା ନାହିଁ। ଉନ୍ନତିସ୍ରୋତ ଚାଲିଥିବା ପର୍ଯ୍ୟନ୍ତ ଜାତିକି ଉନ୍ନତିଶୀଳ ବୋଲାଯାଇପାରିବ। ଜାତିର ମଙ୍ଗଳବିଧାୟକ ଉଦ୍ଭାବନୀଶକ୍ତିର ହ୍ରାସ ହେଲାରୁ ସେହି ଜାତିକି ଆଉ ଉନ୍ନତିଶୀଳ ବୋଲିବାର କିଛି ହିଁ କାରଣ ନାହିଁ। ଉନ୍ନତିଶୀଳ ଶବ୍ଦରେ ପ୍ରତିଦ୍ୱନ୍ଦ୍ୱିତାର ଛାୟା ଅଛି। ସମସାମୟିକ ଜାତି ସହିତ ସମକକ୍ଷ ହୋଇ ଚାଲିଥିବାଯାଏ ଜାତିଟା ଉନ୍ନତିଶୀଳ। ଆମେରିକାର ମାୟା ଜାତି ସେକାଳରେ ବିଶେଷ ଉନ୍ନତି ସାଧନ କରିଥିଲେ। ସେ ଜାତିର ଯେ ମୁଷ୍ଟିମେୟ ବଂଶଧର ଅଛନ୍ତି, ସେମାନଙ୍କୁ ଉନ୍ନତିଶୀଳ ବୋଲାଯିବ କି ? କାଲଡିୟ ଜାତିର ବଂଶଧରଗଣ ଏବେ ଉନ୍ନତିଶୀଳ, ନା ପିରାମିଡ୍ ନିର୍ମାତାଙ୍କ ବଂଶଧରଗଣ ଉନ୍ନତିଶୀଳ ? ତେବେ ପ୍ରାଚୀନ ଆର୍ଯ୍ୟ ଜାତିର ବଂଶଧର, ଆମ୍ଭମାନଙ୍କୁ ସଂଖ୍ୟାଭୂୟିଷ୍ଠ ବୋଲି ଉନ୍ନତିଶୀଳ (civilized) ଜାତି ବୋଲିବାର କାରଣ କ'ଣ ?

— ୦ —

ବର୍ବରମାନଙ୍କର ଆବିଷ୍କାର ଧନୁଃଶର। ଏହି ଧନୁର୍ଗୁଣର ସ୍ୱନ ସୁଶ୍ରାବ୍ୟ ଏବଂ ଏହି ଧନୁଦ୍ୱାରା ନିକ୍ଷିପ୍ତ ଶର ପ୍ରାଣସଂହାରକ। ଏହି ଧନୁର୍ଗୁଣର ଅଭିବ୍ୟକ୍ତି ବା କ୍ରମୋନ୍ନତି ବୀଣା, ବେହେଲା, ସିତାର, ପିଆନୋ। ଧନୁଃଶର ପ୍ରକ୍ରିୟାର କ୍ରମୋନ୍ନତି ବନ୍ଧୁକ, ତୋପ। ମା' ସରସ୍ୱତୀ ବୀଣାପାଣି ଥିବାରୁ ବା ରାମ କୋଦଣ୍ଡପାଣି ଥିବାରୁ ଭାରତବାସୀ ଉନ୍ନତିଶୀଳ ଜାତି ବୋଲି ପରିଚୟ ଦେବା ହାସ୍ୟାସ୍ପଦ ନୁହେଁ କି ? ତଦାନୀନ୍ତନ ଧନୁ ଶରର କ୍ରମୋନ୍ନତି କରିବା ତେଣେ ଥାଉ, ଭାରତବାସୀ ଧନୁଃଶର ନିର୍ମାଣ କୌଶଳ ମଧ୍ୟ ଭୁଲି ଯାଇଅଛନ୍ତି।

— ୦ —

ଜୀବନର ନିତ୍ୟ ପ୍ରୟୋଜନ ଅନ୍ନ ବସ୍ତ୍ର ସଂସ୍ଥାନର କି ବ୍ୟବସ୍ଥା ଏ ଜାତି କରିଅଛନ୍ତି ଦେଖାଯାଉ। ଭାରତମାତା ସୁଜଳା, ସୁଫଳା, ଶସ୍ୟଶ୍ୟାମଳା, ଏଥିରେ ସନ୍ଦେହ ନାହିଁ। ମାତ୍ର ନିର୍ବୋଧଗଣଙ୍କୁ କେତେଦିନ ପୋଷିବା ବା ପୋଷି ପାରିବ। ଆଦାନ ପ୍ରଦାନ ପ୍ରକୃତିର ନିୟମ। ଭଣ୍ଡାର ଅସରନ୍ତା କେବେ ନୁହେଁ। ହଜାର ହଜାର ବର୍ଷ କାଳ ଫଳାହରଣ ଯୋଗୁଁ ମାଟିର ଉର୍ବରା ଶକ୍ତି ହ୍ରାସ ପାଇଅଛି। ଭାରତବାସୀ, ତୁମେ ବା ତୁମ ପୂର୍ବପୁରୁଷଗଣ ଏ ସମସ୍ୟାକୁ ହୃଦୟରେ ସ୍ଥାନ ଦେଇଅଛି କି ? ଭୂମିର ଉର୍ବରତା କ୍ରମେ ନଷ୍ଟ ହୁଏ, ଏ ଚିନ୍ତା ଦିନେ ହୃଦୟରେ ସ୍ଥାନ ପାଇଥିଲେ ତୁମେ ଓ ତୁମ ଜାତି ଭାଇମାନେ ଦୁର୍ଭିକ୍ଷ ମଡ଼କରେ ପଡ଼ନ୍ତେ କାହିଁକି ? ଆମର ବୈଦିକ ପୂର୍ବପୁରୁଷଗଣ ଯେଉଁ କୃଷିକରଣୋପଯୋଗୀ ଲଙ୍ଗଳ, ଯୁଆଳି, ଈଷ ତୟାର କରି ଦେଇଯାଇଅଛନ୍ତି, ତାହାକୁ ସାଇତି ରଖିଥାଇ। ଉନ୍ନତି କରିବାର ତ ତେଣେ ଥାଉ, ଟିକିଏ ପରିବର୍ତ୍ତନ କଲେ ମଧ୍ୟ ପାପ ହେବ। ଯାହା ଥିଲା, ତାହା ଅଛି। ଦ୍ୱାପର ଯୁଗର ବଳଦ ଶଗଡ଼ରେ ଗୋଟିଏ କଣ୍ଟା ବା ଖଣ୍ଡିଏ କାଠ ସଂଯୋଗ କରି ନାହିଁ। ଗୋମାତା, ଦେବତା। ଗୋଜାତିର ମଙ୍ଗଳ କରିବାକୁ, ଉନ୍ନତି କରିବାକୁ ମନୁଷ୍ୟ ଛଡ଼ା କିଏ ? ସେ ନିଜକୁ ରକ୍ଷା କରିବେ, ଗୋମାତା ଯେପରି, ପୃଥିବୀ ମାତା ସେହିପରି। ପଞ୍ଚଗବ୍ୟ ପାନ କଲେ ଗୋଜାତିର ସମ୍ମାନର ପରାକାଷ୍ଠା।

— ୦ —

ବୈଦିକ ଯୁଗରେ ଗୃହିଣୀ ଓ କନ୍ୟାମାନେ ସୂତା କାଟୁଥିଲେ। ଗୃହକର୍ତ୍ତାଗଣ ବସ୍ତ୍ର ବୟନ କରୁଥିଲେ। ସେମାନେ ଯେଉଁ ଅରଟ ହତା, ପାନିଆ, ତଙ୍ଗି ତୟାର କରି ଯାଇଅଛନ୍ତି, ତାହା ଅଦ୍ୟାପି ଭାରତୀୟ ଅସ୍ପୃଶ୍ୟ ଜାତିଙ୍କ ପାଖରେ ଅଛି। ବୁଦ୍ଧିମାନ୍ ବ୍ୟକ୍ତିଗଣ ତାକୁ ଘୃଣା ଚକ୍ଷୁରେ ଦେଖନ୍ତି, ଉନ୍ନତି ହେବ ସେ ପଦାର୍ଥର କେଉଁଆଡ଼ୁ ? ଭାରତବାସୀ ତ ଉଲଗ୍ନ ହୋଇ ନାହାନ୍ତି ? ସେ ସମୟ ଆସି ନାହିଁ। ଆସିବ ବା କାହିଁକି ? ବସ୍ତ୍ରଦାତା ତ ବସ୍ତ୍ର ଯୋଗାଉଅଛନ୍ତି। ଯେଉଁ ଜାତି ଅନ୍ନ ବସ୍ତ୍ରର ଅଭାବ ବୋଧ ନ କରେ କିମ୍ବା ଅଭାବ ବୋଧ କଲେ ମଧ ତାହା ପୂରଣ କରିବାକୁ ଉପାୟ ଚିନ୍ତା ନ କରେ, ସେ ଉନ୍ନତିଶୀଳ ଜାତି କି ?

— ୦ —

ଉନ୍ନତିଶୀଳ ଜାତି ଜାତୀୟତା ଗଠନରେ ସର୍ବଦା ବ୍ୟସ୍ତ ଥାଏ। ଐକ୍ୟବଦ୍ଧ ହେବାକୁ ସମସ୍ତଙ୍କର ଇଚ୍ଛା ସୁତରାଂ ଦେଶରକ୍ଷା କରିପାରେ, ଶତ୍ରୁଜୟ କରିପାରେ, ସହଯୋଗିତା ଦ୍ୱାରା ଜାତୀୟ ଧନବୃଦ୍ଧି କରିପାରେ। ସହାନୁଭୂତି ଦ୍ୱାରା ଜାତିର ଦୋଷ, ଦୁଃଖ, ରୋଗ ଦୂର କରେ। ଯେଉଁ ଜାତି ଜାତୀୟତା ଭାଙ୍ଗିବାକୁ ଚେଷ୍ଟିତ, ଏକତାକୁ ପାପଜନକ ମନେ କରେ, ତାକୁ ଉନ୍ନତିଶୀଳ ବୋଲିବା ସଙ୍ଗତ କି ?

— ୦ —

ଚରକ, ସୁଶ୍ରୁତ ପ୍ରଭୃତି ଅଦ୍ୟାପି ଦେଶରେ ଅଛି, ଲାଇବ୍ରେରୀ ଶୋଭା ନିମନ୍ତେ ମୁଦ୍ରିତ ହେଉଅଛି। ଏହା ଏ ଦେଶବାସୀଙ୍କର ପୂର୍ବପୁରୁଷଙ୍କର ଗବେଷଣାର ଫଳ। ସେହି ଗବେଷଣା ଆଜିଯାଏ ଚାଲିଥିଲେ ଏ ଦେଶର ଚିକିତ୍ସା ପଦ୍ଧତି ବି କୌଣସି ଅଂଶରେ ଇଉରୋପୀୟ ଚିକିତ୍ସା ପଦ୍ଧତି ଅପେକ୍ଷା ପଶ୍ଚାତ୍‌ପଦ ହୋଇପଡ଼ିଥାନ୍ତା।

— ୦ —

ଜଳଯାନ ଉନ୍ନତିଶୀଳ ଜାତିର ପରିଚାୟକ। ଆମ ଜାତିର ମଧ ଜଳଯାନ ଥିଲା। କିପରି ଜଳଯାନ ଥିଲା, ତାହାର ଆଲୋଚନାର ବି ପ୍ରୟୋଜନ ? ପ୍ରାଚୀନ ନମୁନା ଉନ୍ନତିଶୀଳତାର ପରିଚାୟକ ନୁହେଁ। ଯାହା ଥିଲା ତାହା ନାହିଁ। କାହିଁକି ନାହିଁ ? ଏଥିରେ ଆଲୋଚନାରେ ଲାଭ କ'ଣ ? ଯାହା ଥିଲା, ତାହାର କ୍ରମୋନ୍ନତି କରିବାକୁ ବା ତାହାର ରକ୍ଷା କରିବାକୁ ଯେଉଁ ଜାତି ଅକ୍ଷମ, ସେ ଜାତି ଅଧୋଗାମୀ, ସେ ଜାତି ଉନ୍ନତିଶୀଳ ନୁହେଁ। ଭାରତବାସୀ ରଖିଛନ୍ତି ଶବରପଲ୍ଲୀର ଡଙ୍ଗା ଏବଂ ନୋଳିଆମାନଙ୍କର ନାଆ। ଉଡୁପଦ୍ୱାରା ଦୁସ୍ତର ସାଗର ତିତୀର୍ଷୁ ହେବେ ବା କାହିଁକି ? ଜଳଯାନ କଥାଟା ଭୁଲିଯିବା ହିଁ ଭଲ। ଏହା ଜାତିର ଉନ୍ନତିଶୀଳତାର ବା ସଭ୍ୟତାର ପରିଚାୟକ।

— ୦ —

କ'ଣ, ଆମ ଶାସ୍ତ୍ରରେ ବ୍ୟୋମଯାନ ନାମ ନାହିଁ, ବା ପୁଷ୍ପକ ରଥର ନାମ ନାହିଁ ? ସେଦିନର କଥା ଦେଖ, ଅର୍ଜୁନ ସ୍ମରଣ କରିବା ମାତ୍ରକେ ଦ୍ୱାରାବତୀ ନଗରୀରୁ ନନ୍ଦିଘୋଷ ରଥ ଅଳ୍ପକ୍ଷଣ ମଧରେ ବିରାଟ ସିଂହଦ୍ୱାରରେ ଉପସ୍ଥିତ ହେଲା। କୃଷ୍ଣ ଚକ୍ରଦ୍ୱାରା ସୂର୍ଯ୍ୟଙ୍କୁ ଘଣ୍ଟାଏ ଦୁଇଘଣ୍ଟାକାଳ ଘୋଡ଼ାଇ ରଖି ଦେଲେ। ଭୀମ ଗଦାଚାଳନଦ୍ୱାରା ଏତେ ପବନ ବା ଝଡ଼ ସୃଷ୍ଟି କରୁଥିଲେ ଯେ ହାତୀ ଘୋଡ଼ା ଏମନ୍ତ କି ପର୍ବତ ମଧ ଉଡ଼ି ଯାଉଥିଲା। ହନୁମାନ ତ ଏକରାତ୍ର ମଧରେ ଲଙ୍କାରୁ ହିମାଳୟକୁ ଯାଇ ଗୋଟାଏ ଗିରିଶୃଙ୍ଗ୍ ଉତ୍ପାଟନ କରି ଆଣିଥିଲେ। ତାହାଛଡ଼ା ହନୁମାନ ଅଦ୍ୟାପି କଦଳୀବନରେ ଅଛନ୍ତି। ଆମର କ'ଣ ନ ଥିଲା ? ଥିଲା, ସବୁ ଥିଲା। ଶାସ୍ତ୍ରରେ ଲେଖା ଅଛି। ଏଥିର ଆଲୋଚନାରେ ଫଳ କ'ଣ ? ମାତ୍ର ଆଧୁନିକ ଯୁଗ ଧର୍ମ କହୁଛି, ବାପ ଦାଦିଙ୍କ ନାମ, ଯଶ କୀର୍ତ୍ତିଦ୍ୱାରା ଆତ୍ମପରିଚୟ ଦେବା ଜାତିକୁ ଅଧମ ଜାତି ବୋଲାଯାଏ। ଏଥିରେ ଉତ୍ତର କ'ଣ ? ଅନ୍ୟ କଥା ସତ କି ନୁହେଁ, ସେ କଥା ଛାଡ଼। ତେବେ ହନୁମାନ ଯେ କଦଳୀ ବନରେ ଥିବା ବିଶ୍ୱାସ ଅଛି ଏବଂ ଦିନେ ସେଠାରୁ ବାହାରି ଗୋଟିଏ ଗୋଟିଏ ପାହାଡ଼ଦ୍ୱାରା ରଣତରୀତକ ବୁଡ଼ାଇ ଦେବା ଆଶା କିମ୍ବା ଆକାଶତରୀଗୁଡ଼ିକୁ ପଙ୍ଗପାଳ ଧରିବା ପରି ଗୋଟି ଗୋଟି କରି ଧରି ତଳେ କଚାଡ଼ିଦେବା ଆଶା ଯେ ନିତାନ୍ତ ଦୁରାଶା, ଏଥିରେ ସନ୍ଦେହ ନାହିଁ।

— ୦ —

ସେଦିନ ଦେଖାଗଲା ଜର୍ମାନ୍ ବ୍ୟୋମପୋତ ବିହାରୀ ଭନ୍ ଏକ୍‌ନାର କେତେ ଜଣ ସହଯାତ୍ରୀ ସହିତ ଗାର୍ଫ ଜେପଲିନରେ ଭୂପ୍ରଦକ୍ଷିଣ କରି ଆସିଲେ। ବିଷ୍ଟି, ଯୋଗିନୀ, ବାରବେଳା, କାଳବେଳା କିଛି ଦେଖିଲେ ନାହିଁ। ଗୋଟାଏ ଭଲ ଯୋଗ ଦେଖି ଅନୁକୂଳ କଲେ ନାହିଁ। ବ୍ୟୋମପୋତରେ ଚଢ଼ିଲାବେଳେ 'ମଙ୍ଗଳ ଭଗବାନ ବିଷ୍ଣୁ ମଙ୍ଗଳଂ ମଧୁସୂଦନଃ' ବୋଲି ଉଚ୍ଚାରଣ କଲେ ନାହିଁ, ତଥାପି ଏତେ ବଡ଼ ଅସାଧ ସାଧନ କରି ଆସିଲେ। ଆଉ ଆମ ଦେଶର ଲୋକେ ଗ୍ରାମରୁ ଗ୍ରାମାନ୍ତରକୁ ଯିବାକୁ ହେଲେ ପାଞ୍ଜି ଫିଟାଇ ଅନୁକୂଳ ଯୋଗ ଦେଖନ୍ତି, ମାହେନ୍ଦ୍ର ବା ଅମୃତ ମୁହୂର୍ତ୍ତ ଖୋଜନ୍ତି, ଯୋଗିନୀଟାକୁ ସବୁବେଳେ ପୃଷ୍ଠରେ ନୋହିଲେ ବାମରେ ରଖିବାକୁ ଚାହାନ୍ତି।

ଜର୍ମାନ ଜାତି ମ୍ଳେଚ୍ଛ ବର୍ବର ବା ପାଷଣ୍ଡ। ଭାରତବାସୀ ଈଶ୍ୱରାନୁଗୃହୀତ ଉନ୍ନତ, ଈଶ୍ୱରାନୁଗୃହୀତ ବ୍ୟକ୍ତିର ଯୋଗିନୀକୁ ଭୟ କାହିଁକି ? ଆମେ ବିଶ୍ୱାସୀ ବୋଲି ଆମର ସବୁ କାର୍ଯ୍ୟ ପଣ୍ଡ। ଅବିଶ୍ୱାସିଗଣ ସବୁଥିରେ କୃତକାର୍ଯ୍ୟ। ବାର, ତିଥି, ବେଳା, ନକ୍ଷତ୍ର ମୁହୂର୍ତ୍ତ ଦେଖୁ ଦେଖୁ କେତେ ରାଜାଙ୍କର ଯେ ରାଜ୍ୟ ଗଲା, ତାହା ଇତିହାସ ଫିଟାଇଲେ ଜଣାପଡ଼ିବ। କଲମ୍ବସ୍ ଇଣ୍ଡିଜ୍ ଆବିଷ୍କାର ନିମନ୍ତେ ଶୁଭ ମୁହୂର୍ତ୍ତ କିମ୍ବା ଭଲ ବେଳା ଦେଖି ପୋତାରୋହଣ କରି ନ ଥିଲେ। ଇଂରାଜ ବଣିକଗଣ ଭାରତକୁ ମସଲା କାରବାର କରିବାକୁ ଆସିଲା ଦିନ ମାହେନ୍ଦ୍ରଯୋଗରେ ଅନୁକୂଳ କରି ନ ଥିଲେ କିମ୍ବା ଯୋଗିନୀଟା କେଉଁ ପାଖକୁ ଅଛି ବୋଲି ଆଗକୁ, ପଛକୁ ବା କରକୁ ଅନାଇ ନ ଥିଲେ। କଲମ୍ବସ୍ ଆମେରିକା ଆବିଷ୍କାର କଲେ। ଇଂରାଜମାନେ ମସଲା କାରବାର କରୁ କରୁ ଭାରତବର୍ଷକୁ ପଦାନତ କଲେ। ଏ ସବୁ ଘଟନା ଦେଖୁ ଦେଖୁ ଯେଉଁ ଜାତି ଗ୍ରହ, ନକ୍ଷତ୍ର, ବେଳା, ଯୋଗିନୀରେ ଅଦ୍ୟାପି ବିଶ୍ୱାସ ରଖି ଦୀର୍ଘସୂତ୍ରିତା ଓ ଅକର୍ମଣ୍ୟତାର ପରିଚୟ ଦିଅନ୍ତି, ସେମାନଙ୍କୁ ଉନ୍ନତିଶୀଳ ବା ସଭ୍ୟଜାତି ବୋଲିବାର କି କିଛି କାରଣ ଅଛି ?

— o —

ପ୍ରାଥମିକ ଧର୍ମବିଶ୍ୱାସ ଆଚାର ବ୍ୟବହାରରୁ ତିଳେ ହଲଚଲ୍ ହେବାକୁ ଯେଉଁ ଜାତି ନାରାଜ, ସେ ଜାତିକୁ କଦାପି ଉନ୍ନତିଶୀଳ ବୋଲାଯାଇ ନ ପାରେ। ସ୍ୱାଧୀନ ଚିନ୍ତାଦ୍ୱାରା ଉନ୍ନତିମାର୍ଗ ପ୍ରସ୍ତାର ସେମାନଙ୍କୁ ଉନ୍ନତିଶୀଳ ବା ସଭ୍ୟଜାତି ବୋଲିବାର କି କିଛି କାରଣ ଅଛି ?

— o —

ପ୍ରାଥମିକ ଧର୍ମବିଶ୍ୱାସ ଆଚାର ବ୍ୟବହାରରୁ ତିଳେ ମାତ୍ର ହଲଚଲ୍ ହେବାକୁ ଯେଉଁ ଜାତି ନାରାଜ, ସେ ଜାତିକୁ କଦାପି ଉନ୍ନତଶୀଳ ବୋଲାଯାଇ ନ ପାରେ। ସ୍ୱାଧୀନଚିନ୍ତାଦ୍ୱାରା ଉନ୍ନତିମାର୍ଗ ପ୍ରସ୍ତାର କରିବାଟା ଜାତିର ଧର୍ମ। ଜାତୟ ସମସ୍ୟା ଅଧ୍ୟୟନ କରି ପରିଶ୍ରମ ଦ୍ୱାରା,ଉପଦେଶଦ୍ୱାରା ଧନଦାନଦ୍ୱାରା ଜାତିର ମଙ୍ଗଳ ସାଧନ କରିବାହିଁ ଉନ୍ନତିଶୀଳତାର ପରିଚାୟକ। ଦେଶରେ ଦୁର୍ଭିକ୍ଷ ହେଲେ, ମଡ଼କ ହେଲେ, ଦେଶବାସୀ ଦରିଦ୍ର ହେଲେ ଦେଶୋପଦ୍ରବ ବୋଲାଯାଏ। ଉପଦ୍ରବ ନାଶ ନ କରେ ଏବଂ ଭବିଷ୍ୟତରେ ଉପଦ୍ରବ ନୋହିବାର ଉପାୟ ଚିନ୍ତା ନ କରେ ଯେଉଁ ଜାତି, ସେ କି କେବେ ଉନ୍ନତିଶୀଳ ହୋଇପାରେ ? ଉପଦ୍ରବ ଶାନ୍ତିର ଉପାୟ କେବଳ ଅଗ୍ନିରେ ଘିଅ ଅଜାଡ଼ି ଦେବତାପ୍ରୀତି ଅନ୍ୱେଷଣ ? ଯେଉଁ ଦେଶରେ ସତ୍‌କାର୍ଯ୍ୟ ନିମନ୍ତେ କପର୍ଦ୍ଦକ ମଧ୍ୟ ଲୋଡ଼ା ସେ ଦେଶର ଧନିକମାନେ ଯେବେ ଅଦ୍ୟାପି ଯାଗ ଯଜ୍ଞ ନିମନ୍ତେ କୁମ୍ଭମେଳାରେ ତିନିଲକ୍ଷ ଟଙ୍କା ବ୍ୟୟରେ ଗୋଟିଏ ଅଗ୍ନିକାଣ୍ଡ କରନ୍ତି ଏବଂ ସେହି ଯଜ୍ଞଧୂମ ଆକାଶକୁ ଯାଇ ଭାରତର ଦୁଃଖ ଦୈନ୍ୟ ଦୂର କରିବା, ସୁଖ ଶାନ୍ତି ଆନୟନ କରିବ ବୋଲି ବିଶ୍ୱାସ କରନ୍ତି, ତେବେ ଭାରତବାସୀ ଉନ୍ନତିଶୀଳ ଜାତି ବୋଲି ପରିଚୟ ଦେବାକୁ ଆଉ କେତେକାଳ ଲାଗିବ, ତାହାର ଇୟତ୍ତା ଅଛି କି ?

— o —

ବହୁକାଳରୁ ଇତିହାସ ସହିତ ଦେଖା ନାହିଁ। ବାଲ୍ୟକାଳରେ ଇଂଲଣ୍ଡ ଇତିହାସ ପାଠ କରିଥିଲି। ବୋଧହୁଏ ଖ୍ରୀ.ପୂ. ୫୫ ଅବ୍ଦ ପୂର୍ବେ ବ୍ରିଟେନବାସୀଙ୍କ ଇତିହାସ ଜଗଦ୍‌ବାସୀଙ୍କୁ ଆଦୌ ଜଣା ନ ଥିଲା। ଗତ ଦୁଇ ହଜାର ବର୍ଷ ଭିତରେ ଏହି ବ୍ରିଟେନ୍‌ବାସୀ କି ଅସାଧାରଣ ଉନ୍ନତି କରି ନାହାନ୍ତି ? ସେ କାଳର କାଠ ଡଙ୍ଗା ସହିତ ଡ୍ରେଡନଟ୍ ସବମେରିନର ତୁଳନା କରି ଧନୁ କାଣ୍ଡ ସହିତ ମେଶିନ୍‌ଗନ୍ ଏବଂ ତୋପର ତୁଳନା କର, ଜାଣିପାରିବ ଉନ୍ନତି କାହାକୁ ବୋଲାଯାଏ। ମୋଟାର ଏରୋପ୍ଲେନ୍ ପ୍ରଭୃତି ଉଦ୍ଭାବନର କଥା, ବିଦ୍ୟୁତ୍ ପ୍ରଭାବର କଥା ତ ଲୋକାତୀତ। କି ସମାଜନୀତି କି ରାଜନୀତି ସମସ୍ତ ବିଷୟରେ ଆଜି ବ୍ରିଟେନ୍‌ବାସୀ ପୃଥିବୀ ମଧ୍ୟରେ ଅଦ୍ୱିତୀୟ, ସୁତରାଂ ଉନ୍ନତିଶୀଳ ଜାତି। ଜାପାନ କେତେଟା ବର୍ଷ ପୂର୍ବରେ ସଭ୍ୟ-ଜାପାନ ବୋଲି ଲୋକେ କହୁଥିଲେ। ଭାରତ ଜାପାନର ଧର୍ମ-ଶିକ୍ଷାଗୁରୁ ବୋଲି କହୁଥିଲେ। ଗୋଟାଏ ଶତାବ୍ଦୀ ମଧ୍ୟରେ ଜାପାନ କି ଉନ୍ନତିଶୀଳ ? ଆଜି ଜାପାନ ସମସ୍ତ ପାଶ୍ଚାତ୍ୟ ଓ ପ୍ରାଚ୍ୟ ଦେଶମାନଙ୍କ ସହିତ ସଭ୍ୟାସନରେ ସମାସୀନ। ଯେଉଁ ଜାତିର କ୍ରମବିକାଶ ଦେଖାଯାଏ ତାକୁ ଉନ୍ନତିଶୀଳ ଜାତି ବା ସଭ୍ୟ ଜାତି ବୋଲିବା ନ୍ୟାୟସଙ୍ଗତ। ଭାରତବାସୀଙ୍କଠାରେ ସଭ୍ୟ ବା ଉନ୍ନତିଶୀଳ ଶବ୍ଦ ଅପବ୍ୟବହାର ମାତ୍ର।

— o —

Fear God— ଈଶ୍ୱରଙ୍କୁ ଭୟ କର । ଧନୀ ଦରିଦ୍ର, ଦୁଃଖୀ, ସୁଖୀ, ପୁରୋହିତ ଯଜମାନ, ଶାସକ ଶାସିତ, ଅତ୍ୟାଚାରୀ ଅତ୍ୟାଚାରିତ, ଦଣ୍ଡଧର, ଦଣ୍ଡିତ, ପ୍ରାୟ ସମସ୍ତଙ୍କ ମୁଖରେ ଏହି କଥା । 'ଈଶ୍ୱରଙ୍କୁ ଭୟ କର'। ଈଶ୍ୱରଙ୍କୁ ଭୟ କରିବା କାହିଁକି ? ଈଶ୍ୱର ଶାସକ, ରାଜା, କି ମାଜିଷ୍ଟ୍ରେଟ୍, ଦାରୋଗା ନା ଇନ୍ସପେକ୍ଟର ?

ଶାସ୍ତ୍ରରେ ରାଜାମାନେ 'ଚାରଚକ୍ଷୁ' ବୋଲି ବର୍ଣ୍ଣିତ ହୋଇଅଛନ୍ତି । ଏ ଶବ୍ଦଟି କେବଳ ରାଜାଙ୍କଠାରେ ପ୍ରଯୋଜ୍ୟ ନୁହେଁ । ଶାସନତନ୍ତ୍ର ଚାଳକଗଣଙ୍କଠାରେ ଏହା ପ୍ରଯୋଜ୍ୟ । ପୂର୍ବ କାଳ ଅପେକ୍ଷା ବର୍ତ୍ତମାନ ଶାସକଗଣ ପ୍ରକୃତ ଚାରଚକ୍ଷୁ, ଏହା କହିବା ବାହୁଲ୍ୟ ମାତ୍ର । କୌଣସି ବ୍ୟକ୍ତି ଭୀତ କି ନିର୍ଭୀକ, ସାଧୁ କି ଅସାଧୁ, ଭକ୍ତ କି ବିରୋଧୀ, ଏହା କେବଳ ଚାର ମୁଖରୁ ବା ରିପୋଟରୁ ଜଣାଯାଏ । ଏବଂ ଚାର ବାକ୍ୟଟା ଧ୍ରୁବ ସତ୍ୟ ବୋଲି ମଧ ଭାବି ନେବାକୁ ହୁଏ । ସୁତରାଂ ପୂର୍ବେ ଲୋକେ ଶାସକଗଣଙ୍କୁ ଭୟ କରୁଥିଲେ। ଏବେ ମଧ ଭୟ କରନ୍ତି । ମାତ୍ର ଈଶ୍ୱର ଚାରଚକ୍ଷୁ କି ? ସେ ପରା ସର୍ବଦ୍ରଷ୍ଟା, ତାଙ୍କୁ ଭୟ କରିବାର କାରଣ କ'ଣ ?

—୦—

ଯେଉଁମାନେ ଦଣ୍ଡଧର, ଯାହାଙ୍କଠାରୁ କ୍ଷମା ପାଇବାର ଆଶା ନାହିଁ, ତାଙ୍କୁ ଲୋକେ ଭୟ କରନ୍ତି । ଯେଉଁ ବ୍ୟକ୍ତି କ୍ରୋଧଯୁକ୍ତ, ନିଜର ନିନ୍ଦା ଶୁଣିଲେ ଯେଉଁ ବ୍ୟକ୍ତି ଜଳିପୋଡ଼ି ମରେ, ବୁଦ୍ଧି ସ୍ଥିର ରଖିବାକୁ ଅକ୍ଷମ ହୋଇ କେବଳ ପ୍ରତିହିଂସାର ଉପାୟ ଲୋଡ଼େ, ତଥ୍ୟ ଅନୁସନ୍ଧାନ ନ କରି ଦଣ୍ଡ ଦେବାକୁ ଉଦ୍ୟତ ହୁଏ ବା ଦଣ୍ଡ ଦିଏ, ତାକୁ ସିନା ଲୋକେ ଭୟ କରନ୍ତି; ଯେଉଁ ଈଶ୍ୱର ଦୟାବାନ୍, କ୍ଷମାଶୀଳ, ଅନିନ୍ଦ୍ୟ, ନିଷ୍କଳଙ୍କ ଆଖ୍ୟା ଲୋକରୁ ପ୍ରାପ୍ତ ହୋଇଅଛନ୍ତି, ତାଙ୍କୁ ଭୟ କରିବାର କାରଣ କ'ଣ ? ସେ ପରା 'ନିର୍ମଳଂ ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଞ୍ଜନଂ'। ତାଙ୍କର ପ୍ରଶଂସାରେ ବା ନିନ୍ଦାରେ ତାଙ୍କର ହର୍ଷ ବା ବିମର୍ଷ ହୁଏ କି ? ଯାହାଙ୍କଠାରେ ନିନ୍ଦା ପ୍ରଶଂସା ସମାନ, ତାଙ୍କୁ ଲୋକେ ଭୟ କରିବେ କାହିଁକି ?

—୦—

ଶୃଙ୍ଗୀ, ନଖୀ ଓ ଶସ୍ତ୍ରପାଣିଙ୍କୁ ଭୟ କରିବାକୁ ନୀତିଶାସ୍ତ୍ର ଉପଦେଶ ଦେଇଅଛନ୍ତି । ପୁଣି ଶାସକମାନଙ୍କୁ ଭୟ କରିବାର ମଧ ଉପଦେଶ ଅଛି। ଛୁଆଳୀ ଗାଈ ଛୁଆ କୋଳରେ କାଣ୍ଡଜ୍ଞାନଶୂନ୍ୟ ହୋଇ ସାଧାରଣତଃ ମାରେ, ଏଣୁ ଲୋକେ ଛୁଆଳୀ ଗାଈକୁ ଡରନ୍ତି । ସିଂହ, ବ୍ୟାଘ୍ର ମାଂସାଶୀ, ନରଖାଦକ, ଏଣୁ ଲୋକେ ହିଂସ୍ର ପଶୁକୁ ବଡ଼ ଡରନ୍ତି । ସର୍ପର ଗତି ବିଧିଗୁପ୍ତ। ଅପ୍ରକାଶ୍ୟରେ ଆସି କାମୁଡ଼ି ଦେଇ ମନୁଷ୍ୟର ପ୍ରାଣ ନିଏ । ଏଣୁ ସର୍ପ ସାମାନ୍ୟ ଜୀବ ହେଲେ ମଧ ତାକୁ ଲୋକେ ବଡ଼ ଭୟ କରନ୍ତି । ମନୁଷ୍ୟ ଜାତି ସନ୍ଦିଗ୍ଧମନା । ଶାସକଗଣ ତତୋଽଧିକ ସନ୍ଦିଗ୍ଧମନା । ଶାସନପଦ୍ଧତିରେ ବିଶ୍ୱାସର ବଡ଼ ଅଭାବ ବୋଲି ବିବେଚିତ ହୁଏ । ପ୍ରଜାବିଦ୍ରୋହର ଭୟ ଅଛି । ରାଜ୍ୟ ହସ୍ତଚ୍ୟୁତ ହେବାର ଭୟ ଅଛି । ପ୍ରଜାବୃନ୍ଦଙ୍କ ବ୍ୟବସାୟର କ୍ଷତିରେ ବସ୍ତୁତଃ ରାଜକୋଷର ଅର୍ଥ ଅନାଟନର ଭୟ ଅଛି । ଅପମାନ, ନିନ୍ଦାର ଭୟ ଅଛି । ଏଣୁ ଶାସନପଦ୍ଧତିରେ ଦଣ୍ଡନୀତିଟା କଠୋର, ଅତି କଠୋର। ଏଣୁ ଲୋକେ ଶାସନପଦ୍ଧତି ପ୍ରତି ସର୍ବଦା ଶଙ୍କିତ, ଭୀତ ହେବା ସ୍ୱାଭାବିକ । ମାତ୍ର ଈଶ୍ୱର ଏତାଦୃଶ ଶାସନ ପଦ୍ଧତିର ବଶବର୍ତ୍ତୀ କି ? ଜଣକ ହାତରୁ ଜଣକ ହାତକୁ ରାଜ୍ୟ ଗଲେ ସେ କ୍ଷୁଣ୍ଣମନା ହୁଅନ୍ତି କି ? ପଶୁମାନଙ୍କ ପରି ହିଂସା ଆଚରଣ କରିବାର କୌଣସି କାରଣ ଅଛି କି ? ତେବେ ଈଶ୍ୱରଙ୍କୁ ଭୟ କର ବୋଲି ଲୋକଙ୍କୁ ଉପଦେଶ ଦେବା ଉଚିତ କି ?

—୦—

Bacon ଏକ ସ୍ଥାନରେ କହିଅଛନ୍ତି— "Man fears the unknown" ଅନବଗତକୁ ମନୁଷ୍ୟ ଭୟ କରେ । ବାସ୍ତବିକ କଥା । ମୃତ୍ୟୁ ଉତ୍ତାରୁ କ'ଣ ହୁଏ, ଏହା ସାଧାରଣ ଲୋକଙ୍କର ଅଜଣା ବୋଇଲେ ଚଳେ । ଏଣୁ ସେକାଳର ଲୋକେ ଭଲ ମନ୍ଦ କାର୍ଯ୍ୟ ନିମନ୍ତେ ସ୍ୱର୍ଗ ଓ ନରକ ଲୋକର ସୃଷ୍ଟି କଲେ । କେବଳ ତାହା ନୁହେଁ— ସେ ଦୁଇ ଲୋକର ଶାସକ ମଧ ନିଯୁକ୍ତ କଲେ । ଯମ ଦଣ୍ଡଧର, ତାର ବିଧାନ କଠୋର, ଯନ୍ତ୍ରଣା ଅକଥନୀୟ । ଲୋକଙ୍କ ପ୍ରତି ଯମଲୋକର ଏବଂ ଯମର ବିଷୟ ପରୋକ୍ଷ, ଏଣୁ ଭୟ କରିବାକୁ ବାଧ ହେଲେ ।

ଶ୍ମଶାନ ଭୂତ, ପିଶାଚ, ପ୍ରେତିନୀର ବାସସ୍ଥାନ; ତାଙ୍କର ରୂପ ଭୟାନକ ଓ କଦର୍ଯ୍ୟ; ଆଚରଣ ତତୋଽଧିକ ଭୟାବହ ଓ କଦର୍ଯ୍ୟ। ଯୁଗଯୁଗାନ୍ତରରୁ ଏ ଭୟ ଲୋକଙ୍କ ମନରେ ବଦ୍ଧମୂଳ କରାଯାଇଅଛି । ବାଳକକୁ ଭୟ ଦେଖାଇ ନିଜର ସୁବିଧା କରିବାକୁ ପିତା, ମାତା ଓ ଗୁରୁଦେବଙ୍କ ପକ୍ଷରେ ଗୋଟିଏ ଉତ୍କୃଷ୍ଟ ଉପାୟ । ସଂସ୍କାରପରବଶ ହୋଇ ବାଲ୍ୟକାବସ୍ଥାରେ ଏମନ୍ତ କି ଦିହକଯାକ ମନୁଷ୍ୟ ଶ୍ମଶାନକୁ ବଡ଼ ଭୟ କରେ । କାରଣ ଶ୍ମଶାନ ବିଷୟ ତାର ଅନବଗତ । ଈଶ୍ୱର ଏତାଦୃଶ ଅନବଗତ କି ? ଏବଂ ଅନବଗତ ହେତୁରୁ ପ୍ରାଚୀନ କାଳର ଶାସକ ଓ ଧର୍ମାଧ୍ୟକ୍ଷଗଣ ଏକ ମତ ହୋଇ ଶାସନ କାର୍ଯ୍ୟର ସୁବିଧା ନିମନ୍ତେ ଆପଣା ସ୍ୱାର୍ଥରେ 'ଈଶ୍ୱରଙ୍କୁ ଭୟ କର' ଏ ଉପଦେଶର ରଚନା କରିଅଛନ୍ତି କି ?

—୦—

ଭୀତ ହେଲାକ୍ଷଣି ମନୁଷ୍ୟ ପଶୁ, ପକ୍ଷୀ, କୀଟ, ପତଙ୍ଗ ଇତ୍ୟାଦି ଗୋଟିଏ କୃତ୍ରିମ ପନ୍ଥା ଅବଲମ୍ବନ କରିବାକୁ ବାଧ ହୁଅନ୍ତି । ଏହା ସ୍ୱତଃସିଦ୍ଧ । ଏହି ଭୟରୁ ରକ୍ଷା ପାଇବା ନିମନ୍ତେ ଜୀବର ଶାରୀରିକ ପରିବର୍ତ୍ତନ ଘଟେ, କ୍ରମେ ତାହା ବଂଶଗତ ହୋଇ ରହେ ଏବଂ ଜୀବର୍ର ଉପକାର କରେ । ଉଦାହରଣ ବିରଳ ନୁହେଁ । ଭୟରୁ ରକ୍ଷା ପାଇବାର ଉପାୟ ପ୍ରତାରଣା । ଏହା ଜୀବଜଗତର ନିୟମ । ମନୁଷ୍ୟ ବୁଦ୍ଧିମାନ୍, ତା'ର ଶତ୍ରୁଠାରୁ ରକ୍ଷା ପାଇବାର ଅନ୍ୟ ଉପାୟ ଥିବା ସତ୍ତ୍ୱେ ଯୁଦ୍ଧକ୍ଷେତ୍ରରେ ଶତ୍ରୁଚକ୍ଷୁରେ ଧୂଳି ଦେବା ନିମନ୍ତେ ଏବେ ଖାକି ପୋଷାକର ସୃଷ୍ଟି କରିଅଛି । ଆତ୍ମରକ୍ଷା ନିମନ୍ତେ ଏ ପରିବର୍ତ୍ତନ ବା ଏତାଦୃଶ ପରିବର୍ତ୍ତନ ଜୀବଜଗତର ସର୍ବସାଧାରଣ ନିୟମ ମନୁଷ୍ୟ ପାଳନ କରୁଅଛି । କିନ୍ତୁ ମନୁଷ୍ୟର କେତେଗୁଡ଼ିଏ ବିଷୟ ଅଛି, ଯାହା ଜୀବଜଗତର ସର୍ବସାଧାରଣ ନିୟମର ବହିର୍ଭୂତ । ଜାତି, ସମାଜ, ଶାସନ, ଧର୍ମ ସମ୍ମାନ, ଆସନ, ସ୍ୱାର୍ଥ, ଆଚାର, କୁଳାଚାର, ଇହଲୋକ, ପରଲୋକ, ସ୍ଥାବର ଓ ଅସ୍ଥାବର ସମ୍ପତ୍ତି, ସ୍ଥାବର ଦେବତା, ଅସ୍ଥାବର ଦେବତା, ଜଳୀୟ ଓ ବାୟବୀୟ ଦେବତା, ପିତୃଲୋକ, ସ୍ୱର୍ଗ, ନରକ, ଇତ୍ୟାଦି ଇତ୍ୟାଦି ସର୍ବୋପରି ଈଶ୍ୱର । ଏ ସମସ୍ତର ପର୍ଯ୍ୟବେକ୍ଷକ ଏବଂ ରକ୍ଷକ କିଏ ? ଶାସକ ଓ ଧର୍ମାଧ୍ୟକ୍ଷଗଣ । ଏଥିନିମନ୍ତେ ଧର୍ମଶାସ୍ତ୍ରର ବିଧି ବ୍ୟବସ୍ଥା, ଆଇନ୍‌କାନୁନ୍ । ବିଧିବ୍ୟବସ୍ଥାଭଙ୍ଗ ନିମନ୍ତେ ନାନାପ୍ରକାର ଦଣ୍ଡର ସୃଷ୍ଟି । ସେସବୁ ଐହିକ ଦଣ୍ଡ । ଦଣ୍ଡଦାତା ଶାସକ ଓ ଧର୍ମାଧ୍ୟକ୍ଷ । ଏହି ଦଣ୍ଡ ନିମନ୍ତେ ଲୋକଙ୍କର ଭୟ । ଏତାଦୃଶ ଭୟରୁ ରକ୍ଷା ପାଇବାର ଉପାୟ ଜୀବଜଗତର ସାଧାରଣ ନିୟମମତେ ଶାରୀରିକ ପରିବର୍ତ୍ତନ ନୁହେଁ, ମାତ୍ର ମାନସିକ ପରିବର୍ତ୍ତନ, ଯଥା— କପଟାଚରଣ, ପଳାୟନ, ମିଥ୍ୟାଭାଷଣ । ଭୟ ସଙ୍ଗରେ ମିଥ୍ୟାର ଜନ୍ମ କି ? କିଏ କହି ପାରେ ? ତେବେ ଭୀତ ହେଲେ ଲୋକେ ମିଛ କହନ୍ତି, ଏହା ଅସ୍ୱୀକାର୍ଯ୍ୟ ନୁହେଁ । ଯେ ନିର୍ଭୀକ, ସେ ମିଥ୍ୟା କହିବ କାହିଁକି ? ସାଧାରଣତଃ ଦେଖାଯାଏ, ଯେଉଁମାନେ ପରାର୍ଥପର, ସେମାନେ ମିଥ୍ୟାବାଦୀ ନୁହନ୍ତି । ଦେଶ ନିମନ୍ତେ, ପର ନିମନ୍ତେ ଯେଉଁମାନେ ଜୀବନ ବିସର୍ଜନ କରିବାକୁ ବଦ୍ଧପରିକର, ସେମାନେ ମିଥ୍ୟା କହିବେ କାହିଁକି ? ଯେଉଁମାନଙ୍କର ମରଣକୁ ଭୟ, ସେମାନେ ମିଛ କହନ୍ତି । ଦଣ୍ଡ ଭୟଟା ଲୋକକୁ ମିଥ୍ୟା କହିବାକୁ ପ୍ରେରଣା ଦିଏ । କ୍ଷମାଦ୍ୱାରା ମନୁଷ୍ୟକୁ ନିର୍ଭୟ କରିବାର ଉପାୟ ଥିଲେ ମନୁଷ୍ୟ ସତ୍ୟବାଦୀ ହୁଅନ୍ତେ, ଏଥିରେ ସନ୍ଦେହ ନାହିଁ । ମାତ୍ର ଏ ପରିବର୍ତ୍ତନ ଦିନକେ ହେବାର ନୁହେଁ । ବହୁକାଳର ଅଭ୍ୟାସ ବହୁ କଷ୍ଟରେ ଓ ବହୁ ଯତ୍ନରେ ଶୋଧିତ ହୋଇପାରେ । ହାକିମ ବା ଶାସକର ବିଶ୍ୱାସ ଅନୁସାରେ ଏଠାରେ ଦଣ୍ଡ । ତାହାଛଡ଼ା ଈଶ୍ୱରଦଣ୍ଡର ମଧ ଭୟ ଦେଖାଇ ଦିଆଯାଏ— ଶପଥଦ୍ୱାରା ବା ଅନ୍ୟ କିଛି ଦ୍ୱାରା । ମନୁଷ୍ୟ କେଉଁ ଦଣ୍ଡକୁ ବେଶି ଭୟ କରେ ? ମନୁଷ୍ୟର ଦଣ୍ଡକୁ ନୁହେଁ କି ? ଯେବେ କହ, ଈଶ୍ୱରଙ୍କ ଦଣ୍ଡକୁ ବେଶି ଭୟ କରେ, ତାହା ହେଲେ ଯେଉଁଠାରେ ବେଶି ଭୟ, ସେହିଠାରେ ଆତ୍ମରକ୍ଷାର ଉପାୟ ଉଦ୍ଭାବନ କରାଯାଏ ବେଶି । ଏଠା ଦଣ୍ଡରୁ ରକ୍ଷା ପାଇବାକୁ ମିଥ୍ୟା କହିବାକୁ ବାଧ, ତେବେ ଈଶ୍ୱରଦଣ୍ଡରୁ ରକ୍ଷା ପାଇବାକୁ କି ଉପାୟ ଅବଲମ୍ବନ କରେ ? ମିଥ୍ୟା କି ? ଭୟ ଯହିଁ, ମିଥ୍ୟା ତହିଁ । ଲୋକ ମିଥ୍ୟାଦ୍ୱାରା ଏଠାରେ ଆତ୍ମରକ୍ଷାର ଚେଷ୍ଟା କରେ । ରକ୍ଷା ପାଇଲେ ତା'ର ଚିନ୍ତା ନାହିଁ । ଈଶ୍ୱରଭୟ ତା'ର ମନରେ ନ ଥାଏ । ତେବେ ଈଶ୍ୱରଙ୍କୁ ଭୟ କର ବୋଲି ଉପଦେଶ ଦେବାର ଫଳ କ'ଣ ?

ଯେଉଁମାନେ 'ଈଶ୍ୱରଙ୍କୁ ଭୟ କର' ଏହି ଉପଦେଶର ରଚନା କଲେ, ତାଙ୍କ ବିବେଚନାରେ ଭକ୍ତି ଓ ଭୟ ମଧରେ ଅଧିକ ପାର୍ଥକ୍ୟ ନ ଥିଲା । ଲୋକେ କହନ୍ତି, ଭୟରୁ ଭକ୍ତି । ମାତ୍ର ଏହା ସତ କି ? ଭୟରୁ ଭକ୍ତି ଏବଂ ନିତାନ୍ତ କୃତ୍ରିମ । ଭୟରୁ ଭକ୍ତି ଶତ୍ରୁ ପ୍ରତି, ଅତ୍ୟାଚାରୀ ପ୍ରୀତି । ଭୟର କାରଣ ଯିବା ସଙ୍ଗେ ସଙ୍ଗେ ଭକ୍ତି ଉଡ଼ିଯାଏ । ଯାହାକୁ ଭୟ କରାଯାଏ, ତାକୁ ଭକ୍ତି କରିବା ଅସମ୍ଭବ । ତେବେ ମନୁଷ୍ୟ ଈଶ୍ୱରଙ୍କଠାରେ ଭୟ ଓ ଭକ୍ତି କରିବ କିପରି ? କଠିନ ଓ କୋମଳର ସମାବେଶ ଏକତ୍ର ଅସମ୍ଭବ ।

ଈଶ୍ୱର ପ୍ରତି ଭୀତ ହେବାକୁ ଉପଦେଶ ଦେବା ମୂଳରେ ସ୍ୱାର୍ଥପରତା ଅଛି ।

ଏ ଉପଦେଶଦ୍ୱାରା ଜନସମାଜର ଅନିଷ୍ଟ ।

× × ×

ଆର୍ଯ୍ୟଜାତି ଅତି ପ୍ରାଚୀନ । ଆର୍ଯ୍ୟ ଶାସ୍ତ୍ର ମଧ ଅତି ପ୍ରାଚୀନ । ଆର୍ଯ୍ୟ ଶାସ୍ତ୍ର ଅଗାଧ । ଏହି ଆର୍ଯ୍ୟଶାସ୍ତ୍ରର ଉପଦେଶ ଅସୀମ, ନାନାପ୍ରକାର । ଆର୍ଯ୍ୟସନ୍ତାନଗଣ ଏହି ଉପଦେଶମାନଙ୍କୁ ଅନୁଧାବନ କରି ସ୍ୱକୀୟ ଓ ଜାତୀୟ ଚରିତ୍ର ଗଠନ କରିବେ ବୋଲି ନାନା ଭଙ୍ଗୀରେ ଲିଖିତ । ଭାରତୀୟ ଆର୍ଯ୍ୟ ସନ୍ତାନମାନେ ଆର୍ଯ୍ୟ ଉପଦେଶ ଓ ଆର୍ଯ୍ୟ ସତ୍ୟ ପାଳନ କରି ଜଗତରେ ଅଦ୍ୱିତୀୟ ଜାତି ହୋଇପାରିବେ ଭାବି ପ୍ରାଚୀନ ଆର୍ଯ୍ୟଗଣ ଯେଉଁ ଅମୂଲ୍ୟ ଉପଦେଶମାନ ସାଇତି ଯାଇଥିଲେ,

ବୋଧହୁଏ, ପୃଥିବୀର ଅନ୍ୟ କୌଣସି ପ୍ରାଚୀନ ଜାତି ତାହା କରିପାରି ନ ଥିଲେ । ସାହିତ୍ୟ ଭଣ୍ଡାରରେ ଅମୂଲ୍ୟ ଉପଦେଶରତ୍ନମାନ ତ ଅଛି । ଆର୍ଯ୍ୟ ସନ୍ତାନମାନେ ମଧ ଅଛନ୍ତି । ଉପଦେଶରଚକମାନଙ୍କର ଆଶା ପୂର୍ଣ୍ଣ ହୋଇଅଛି କି ? ଆର୍ଯ୍ୟ ସନ୍ତାନ ଅଦ୍ୱିତୀୟ ଜାତି ବୋଲି ବିଖ୍ୟାତ କି ? ଶ୍ରେଷ୍ଠ ବା ବୀର ବୋଲି ବିଖ୍ୟାତ ନ ହେଲେ ମଧ ଦାସଜାତି ବୋଲି ସେ ଜଗଦ୍‌ବିଖ୍ୟାତ, ଏହା କିଏ ଅସ୍ୱୀକାର କରି ପାରିବ ?

— ୦ —

ମନୁଷ୍ୟର ଛଅ ଗୋଟି ପ୍ରଧାନ ଶତ୍ରୁ । ଏମାନଙ୍କୁ ଷଡ଼୍‌ରିପୁ ବୋଲାଯାଏ, ଯଥା– କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ । ଏହି ରିପୁଗଣ ବାହ୍ୟ ଶତ୍ରୁ ନୁହନ୍ତି । ଏମାନେ ଦୈହିକ ଶତ୍ରୁ । ପ୍ରାଚୀନ କାଳରେ ଋଷିମାନେ ଭାବୁଥିଲେ, ଏହି ଦୈହିକ ଶତ୍ରୁହିଁ ପ୍ରଧାନ ଶତ୍ରୁ । ମନୁଷ୍ୟର ବାହ୍ୟ ଶତ୍ରୁ ନଗଣ୍ୟ । ଏବେ ମଧ ସାଂସାରିକ ଉପଦେଷ୍ଟାମାନେ ଏହି ଉପଦେଶ ବାକ୍ୟ ବିତରଣରେ ବଡ଼ ମୁକ୍ତହସ୍ତ ।

''ଜୀୟନ୍ତାଂ ଦୁର୍ଜୟା ଦେହେ ରିପବୋ
ଚକ୍ଷୁରାଦୟଃ
ଜିତେଷୁ ନନୁ ଲୋକୋଽୟଂ ତେଷୁ
କୃତ୍ସ୍ନୟାସ୍ତଜିତଃ ।''

ଦେହସ୍ଥ ଚକ୍ଷୁ ଆଦି ଦୁର୍ଜୟ ରିପୁମାନଙ୍କୁ ଜୟ କର । ଏହି ଶତ୍ରୁମାନଙ୍କୁ ଜିଣିପାରିଲେ ତୁମ୍ଭେ ସମସ୍ତ ସଂସାରକୁ ଜୟ କଲ । ଭାରବିଙ୍କର ଉପଦେଶଗର୍ଭକ ଗ୍ରନ୍ଥ ମଧରେ ଏହା ଗୋଟିଏ ଅତି ଉପାଦେୟ ଓ ଶିକ୍ଷଣୀୟ ଶ୍ଳୋକ । ବାସ୍ତବିକ ଯେଉଁ ବ୍ୟକ୍ତି ଇନ୍ଦ୍ରିୟ ଓ ମନକୁ ଜୟ କରିଅଛି ଜଗତରେ ତାହାର ଶତ୍ରୁ ଆଉ କିଏ ରହିପାରେ ? ସେ ସର୍ବଜେତା ।

— ୦ —

ଷଡ଼ିରିପୁ ମଧରୁ ଲୋଭ ରିପୁ ଅତି ପ୍ରବଳ । ଏହି ଶତ୍ରୁ ମାନବକୁଳକୁ ଅଭିଭୂତ କରି ରଖିଅଛି ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଏହାର ଆୟସୀ ମୁଷ୍ଟିରୁ ନିଷ୍କୃତି ଲାଭ କରିବା ନିମନ୍ତେ ସାଧନା ଓ ମନସ୍ୱିତାର ପ୍ରୟୋଜନ । ମାତ୍ର ଲୋକେ ଏହାର ମୁଷ୍ଟିରୁ ନିଷ୍କୃତି ଲାଭ କରିବା ଅପେକ୍ଷା ଆବଦ୍ଧ ରହିବାକୁ ବାସନା କରନ୍ତି । ଆପାତରମ୍ୟ ବିଷୟ ନିମନ୍ତେ ଶତ୍ରୁର କରକବଳିତ ହୋଇ ରହିବା ମନୁଷ୍ୟତାର ଉଚ୍ଛେଦକ ଅନୁଚିତ ନୁହେଁ କି ?

— ୦ —

ସ୍ୱାର୍ଥପର ହୋଇ ପରଧନଲାଭ କାମନାର ନାମ ଲୋଭ । ଲୋଭ ନାନାପ୍ରକାରରେ ଲୋକକୁ ଆୟତ୍ତ କରି ରଖିଅଛି । ଲୋଭର ନାଶ ମନୁଷ୍ୟର ପରମ ପୁରୁଷାର୍ଥ । ମନୁଷ୍ୟ ଲୋଭର ନାଶ ବିଷୟରେ ଚେଷ୍ଟିତ ହେବାର ତେଣେ ଥାଉ, ତାହାର ଦାସ ହେବାକୁ ଶ୍ଳାଘ୍ୟ ମଣେ । ଲୋଭାସକ୍ତ ବ୍ୟକ୍ତି ପ୍ରତି ହିତୋପଦେଶ, ଏମନ୍ତ କି ଉପନିଷଦ୍ ବାକ୍ୟ 'ମା ଗୃଧଃ କସ୍ୟ ସ୍ୱିଦ୍ଧନଂ' ମଧ ବିଷ ତୁଲ୍ୟ ତ୍ୟାଜ୍ୟ ମନେ ହୁଏ ।

— ୦ —

ଲୋଭ ବ୍ୟକ୍ତିଗତ । ସ୍ୱାର୍ଥପର ବ୍ୟକ୍ତିବିଶେଷର କାମନା ଅନୁସାରେ ଲୋଭ ନାନାପ୍ରକାର । ପ୍ରବଞ୍ଚନା ଲୋଭର ସହଚର । ଯେଉଁଠାରେ ଲୋଭ, ସେହିଠାରେ ପ୍ରତାରଣା । ଷଡ଼୍‌ରିପୁମାନଙ୍କ ମଧରୁ ଲୋଭ ଯେପରି ଆତ୍ମଗୋପନ କରିପାରେ, ଅନ୍ୟ ରିପୁମାନେ ସେପରି ଆତ୍ମଗୋପନ କରିପାରନ୍ତି ନାହିଁ । ଲୋଭ ସମସ୍ତ ଅନିଷ୍ଟର ମୂଳରେ ।

— ୦ —

ବ୍ୟକ୍ତି ଲୋଭର ଦାସ ହେଲା ମାତ୍ରକେ ନୈତିକ ସମ୍ପତ୍ତିରୁ ବଞ୍ଚିତ ହୁଏ । ଲୋଭୀ ସ୍ୱାର୍ଥର ପୂଜକ—ଧର୍ମରେ ଦରିଦ୍ର ।

— ୦ —

ବ୍ୟକ୍ତିଗତ ଲୋଭ ସମୟବିଶେଷରେ ସମାଜର ଓ ଦେଶର ସମୁଦାୟ ଅନିଷ୍ଟର ମୂଳୀଭୂତ କାରଣ ହୁଏ । ଏଥିର ଉଦାହରଣ ବିରଳ ନୁହେଁ, ଇତିହାସ ଏଥିର ସାକ୍ଷୀ । କ୍ଷୋଭର ବିଷୟ ଏହି ଯେ, ବ୍ୟକ୍ତି ବା ସମାଜ ଓ ଜାତି ଯାହା ଉପରେ ବିଶ୍ୱାସ ସ୍ଥାପନ କରେ, ନିର୍ଭର ରଖେ, ସେହି ବ୍ୟକ୍ତି ଲୋଭର ଅନୁସରଣ କରିବାକୁ ବିଶେଷ ଯତ୍ନଶୀଳ ହୁଏ ଏବଂ ଲୋଭର ପ୍ରସାଦ ପ୍ରାପ୍ତ ହେଲେ ବ୍ୟକ୍ତି, ସମାଜ, ଜାତି ବା ଦେଶର କ୍ଷତି ପ୍ରତି ଦୃକ୍‌ପାତ ମଧ କରେ ନାହିଁ ।

ରାଜା ଲୋଭର ଦାସ ହେଲେ ରାଜ୍ୟର କ୍ଷତି । ସୈନ୍ୟଚାଳକ ଲୋଭଗ୍ରସ୍ତ ହେଲେ ସୈନ୍ୟମାନଙ୍କର ନୈତିକ ବଳ ଓ ସଙ୍ଗେ ସଙ୍ଗେ ଶାରିରୀକ ବଳର ଅବସାଦ ଘଟେ, ଦେଶ ପରହସ୍ତଗତ ହୁଏ । ଇତିହାସ ଏଥିର ଅଜସ୍ର ସାକ୍ଷ୍ୟ ଦେବାକୁ ପ୍ରସ୍ତୁତ । ଯେଉଁ ସମ୍ପାଦକମାନଙ୍କ ମନ୍ତବ୍ୟକୁ ଲୋକେ ଦେଶର ତଥା ସମାଜର ହିତକର ଓ ମଙ୍ଗଳଜନକ ବୋଲି ଭାବନ୍ତି, ସେ ଲୋଭଗ୍ରସ୍ତ ହେଲେ ହିତର ବିପରୀତ ଫଳ

ହୁଏ । ଲୋକେ ଭ୍ରାନ୍ତ ପଥରେ ଚାଳିତ ହୁଅନ୍ତି । ହିତୈଷୀ ନେତା ଓ ବକ୍ତାମାନେ ଅନେକ ସମୟରେ ବିଶ୍ୱାସରେ ବିଷ ମିଶାନ୍ତି— କେବଳ ପ୍ରଲୋଭନରେ ପଡ଼ି ।

— ୦ —

ଭାରତରେ ଲୋଭର ଅଖଣ୍ଡ ରାଜତ୍ୱ ! ଅଳମତିବିସ୍ତରେଣ ।

— ୦ —

ଅଖଣ୍ଡପ୍ରକୃତି ଉପାସନାରେ ଭେଦାଭେଦ ଜ୍ଞାନ ନାହିଁ, ବିଧିନିଷେଧ ନାହିଁ, ଧରା ବନ୍ଧା ନିୟମ ନାହିଁ । ମନୁଷ୍ୟଜାତି ଏପରି ପୂଜା ଓ ଉପାସନାପଦ୍ଧତି ରଚନା କଲା କାହିଁକି, ଯାହା ଭେଦଜନକ ? ପୁଣ୍ୟ ବନସ୍ଥଳୀ, ପୁଣ୍ୟତୋୟା ସ୍ରୋତସ୍ୱିନୀ, ନୀଳ ପାରାବାର, ନୀଳ ନଭୋମଣ୍ଡଳ, ଜୀବନବର୍ଦ୍ଧକ ସୂର୍ଯ୍ୟକର, ଅଖଣ୍ଡ ପ୍ରାଣବାୟୁ, ନିତ୍ୟ ପୁଷ୍ପା ବସୁନ୍ଧରାର ଶସ୍ୟକ୍ଷେତ୍ର ନିତ୍ୟ ପବିତ୍ର । ଏମାନଙ୍କୁ ସ୍ପର୍ଶ କରିବାକୁ ସମସ୍ତଙ୍କର ଅଧିକାର । ମନୁଷ୍ୟ ପୁଣି ଏପରି ଦେବତାର ସୃଷ୍ଟି କଲା କାହିଁକି, ଯାହାକୁ ଉଦ୍ଭାବନକର୍ତ୍ତା ବା ତାଙ୍କର ଜାତି ଭାଇ, ବନ୍ଧୁ ଭିନ୍ନ ଅପର ଜାତି ସ୍ପର୍ଶ କଲେ ଦେବବିଗ୍ରହ ଅପ୍ରତିଷ୍ଠ ହେବ ! ଏପରି ମନ୍ଦିର କଲା କାହିଁକି, ଯେଉଁଠାକୁ କେତେକ ଜାତିର ମାତ୍ର ଗତିବିଧି ଅବାଧ, ଅନ୍ୟ ଜାତି ସେଠାକୁ ଗଲେ ମନ୍ଦିର ବା ଚତ୍ୱର ସବୁ ଅପବିତ୍ର ହେବ ।

ମନୁଷ୍ୟ ଏକ । ଜାତି ଏକତ୍ୱର ନାଶକ । ଏକତ୍ୱ ହରାଇବା ଅପେକ୍ଷା ଜାତି ହରାଇବା ଉଚିତ୍ ନୁହେଁ କି ?

— ୦ —

ଜଡ଼ବାଦୀ (Materialist) ଏ ଶବ୍ଦର ବ୍ୟବହାର ଅନେକଙ୍କ ପକ୍ଷରେ ବଡ଼ ଜଟିଳ । ବକ୍ତାମାନେ, ସମ୍ପାଦକମାନେ ପାଶ୍ଚାତ୍ୟ ଜାତିକୁ ଜଡ଼ବାଦୀ ବୋଲି ଶତମୁଖରେ ନିନ୍ଦା କରନ୍ତି, ଗାଳି ଦିଅନ୍ତି । ଏହା ସମୀଚୀନ କି ? ଜଗତ୍ ମଧରେ ହିନ୍ଦୁହିଁ କେବଳ ଜଡ଼ବାଦୀ, ଏହାହିଁ ମୋର ସମ୍ପୂର୍ଣ୍ଣ ଧାରଣା । ଆବାଲ୍ୟରୁ ଯେଉଁମାନେ ଧାତୁ ପାଷାଣ କାଷ୍ଠର ବିଗ୍ରହ ପୂଜାଦ୍ୱାରା ପୁରୁଷାର୍ଥତାର ଆଶା କରନ୍ତି, ସେମାନେ ଯେବେ ଜଡ଼ବାଦୀ ନୁହନ୍ତି, ତେବେ ଜଡ଼ବାଦୀ କେଉଁମାନେ ? ଯେଉଁମାନେ ଧନ, ପୁତ୍ର, ଭୂମି ପାଇବା ଇଚ୍ଛାରେ ଏବଂ ମୋକଦ୍ଦମାରେ ଜୟ କରିବା ନିମନ୍ତେ କିମ୍ବା ରାଜଦ୍ୱାରରେ ପ୍ରତିଷ୍ଠା ଲାଭ କରିବା ନିମନ୍ତେ ମୃତ୍ତିକା କିମ୍ବା ପାଷାଣ ନିର୍ମିତ ଦୁର୍ଗା ବା କାଳୀ ପ୍ରତିମାଠାରେ ପଶୁ ପ୍ରୋକ୍ଷଣ କରନ୍ତି, ସେମାନେ ଯେବେ ଜଡ଼ବାଦୀ ନୁହଁନ୍ତି, ତେବେ ଜଡ଼ବାଦୀ କିଏ ? ଯେଉଁ ଜାତି ଉଦ୍ୟୋଗର ପକ୍ଷପାତୀ ନୁହେଁ, କେବଳ ଜଡ଼ସେବାଦ୍ୱାରା ଇଷ୍ଟଲାଭର ଆଶା କରେ, ସେ ଜଡ଼ବାଦୀ ନୁହେଁ କି ? ନିର୍ଜୀବ ପଦାର୍ଥର ପଦାନତ ହେବାକୁ ଯେଉଁମାନେ ଅଭ୍ୟସ୍ତ, ସେମାନେ ନରର ପଦାନତ ବା ପରର ପଦାନତ ହେବାକୁ କୁଣ୍ଠାବୋଧ କରିବେ କାହିଁକି ? ହିନ୍ଦୁର ମନ ଜଡ଼ରେ ମୁଗ୍ଧ, ସୁତରାଂ ମୃଗଶିଶୁ ସ୍ନେହରେ ମୁଗ୍ଧ ଜଡ଼ ଭରତ ପ୍ରାୟ ଏମାନଙ୍କର ଜ୍ଞାନ ଜଡ଼ୀଭୂତ । ଏଣୁ ଅର୍ଥଲାଭ କାମନାରେ ଆଶା ଦେବୀର ସମକ୍ଷରେ ମନୁଷ୍ୟତ୍ୱ ବଳି ଦେବାକୁ ଏମାନେ ଦ୍ୱିଧା ବୋଧ କରନ୍ତି ନାହିଁ।

ଯେଉଁମାନେ ଅଧ୍ୟବସାୟଦ୍ୱାରା ଅର୍ଥ ଉପାର୍ଜନ କରନ୍ତି, ସେମାନେ କଦାପି ଜଡ଼ବାଦୀ ନୁହନ୍ତି ।

ଜେତା ଜାତିର ଧନ, ସମ୍ପତ୍ତି, ପ୍ରଭୁତ୍ୱ ଦେଖି ଜିତ ଜାତି ବିସ୍ମିତ ହୁଅନ୍ତି । ଧନ ସମ୍ପତ୍ତି ଏବଂ ପ୍ରଭୁତ୍ୱ ପ୍ରାପ୍ତ୍ୟାଶାରେ ଜିତ ଜେତାର ଅନୁକରଣ କରିବାକୁ ବାଧ ହୁଏ । ପରାଧୀନ ପକ୍ଷରେ ଅନୁକରଣ ଅସମ୍ଭବ। ଏଣୁ ଅସତ୍ ଉପାୟରେ ଅର୍ଥାଗମର ପଥ ଖୋଜେ । ପ୍ରଭୁତ୍ୱ ତ ମିଳିବାର କଥା ନୁହେଁ । ଅସଦୁପାୟରେ ଜାତି ଭାଇଙ୍କର ଅର୍ଥ ଶୋଷଣ କରେ ଏବଂ ଜାତି ଭାଇଙ୍କ ଉପରେ ପ୍ରଭୁତ୍ୱ ଦେଖାଏ । ଏହା ଇତିହାସର ରକ୍ତାକ୍ଷରରେ ଲିଖିତ ଲିପି । ଆଖି ଫିଟାଇ ଲୋକେ ଅନାୟାସରେ ଦେଖିପାରନ୍ତି ।

— ୦ —

ଜଗତରେ ଯେତେ ଜାତି ଅଛନ୍ତି— କି ସଭ୍ୟ କି ଅସଭ୍ୟ—ସମସ୍ତଙ୍କ ଅପେକ୍ଷା ଭାରତବାସୀ ସ୍ୱଜାତିହିଂସ୍ରକ ଓ ସ୍ୱଜାତିପୀଡ଼କ ।

— ୦ —

ସ୍ୱାର୍ଥକ୍ଷୁଧା ବଢୁଅଛି । ଏହାଠାରୁ ବଳି କଲେରା ଓ ପ୍ଲେଗ ମଧ୍ୟ ଅଧିକ ସଂକ୍ରାମକ ନୁହେଁ । ଜଣେ କେହି ଅସତ୍ ଉପାୟଦ୍ୱାରା ଧନ ଉପାର୍ଜନରେ ବଡ଼ଲୋକ ହେବାର ଦେଖିଲେ ଅନ୍ୟମାନେ ସେ ସୂତ୍ରରେ ବଡ଼ଲୋକ ହେବାକୁ ବଡ଼ ଆଗ୍ରହାନ୍ୱିତ । ଉପାୟ ସହଜଲଭ୍ୟ ନୁହେଁ, ଏହାହିଁ ସେମାନଙ୍କ ପକ୍ଷରେ ଦୁଃଖର ବିଷୟ । ଏହାକୁ ଦମନ କରି ନ ପାରିଲେ ଜାତୀୟ ଓ ସାମାଜିକ ଉନ୍ନତି ସୁଦୂରପରାହତ । ଦେଖୁଛି କିଏ, ଦେଖାଉଛି ବା କିଏ ?

— ୦ —

ବିଶ୍ୱାସ ଏକତାର ଭିତ୍ତି । ଏ ଦେଶବାସୀଙ୍କ ମନରେ ପରସ୍ପର ପ୍ରତି ବିଶ୍ୱାସର ଅଭାବ । ହୃଦୟରେ ବିଶ୍ୱାସ ସ୍ଥାନ ପାଇବ କିପରି ? ସମସ୍ତେ କି ସ୍ୱାର୍ଥ ଅନ୍ୱେଷଣରେ ନାହାନ୍ତି ? ଏବଂ ତାହା କି ସମସ୍ତଙ୍କୁ ଅବିଦିତ ଅଛି ?

ଅନ୍ୟ କଥା ତେଣେ ଥାଉ, ମନୁଷ୍ୟ ସହିତ ମନୁଷ୍ୟର ଘନିଷ୍ଠ ସମ୍ବନ୍ଧ । ଅନ୍ୟ ଆତ୍ମା ଅପେକ୍ଷା ମନୁଷ୍ୟ ମନୁଷ୍ୟ ଆତ୍ମାକୁ ବେଶି ଚିହ୍ନିଅଛି । ଆତ୍ମା ବୋଇଲେ ଜୀବାତ୍ମା ଏବଂ ବିଶେଷରେ ମନୁଷ୍ୟ ଆତ୍ମା । ଶାସ୍ତ୍ରର ମତ, ବଡ଼ ପଣ୍ଡିତମାନଙ୍କର ମତ ପୋଷଣ ବା ଖଣ୍ଡନ ସ୍ୱାଧୀନଚିନ୍ତାର ଅନ୍ତରାୟ ।

— ୦ —

'ନାୟମାତ୍ମା ବଳହୀନେନ ଲଭ୍ୟଃ' । ଏହା ଗୋଟିଏ ଉପନିଷଦ୍ ପ୍ରବଚନ । ବଳହୀନଦ୍ୱାରା ଏହି ଆତ୍ମା (ମନୁଷ୍ୟାତ୍ମା) ଲଭ୍ୟ ନୁହେଁ । ଯାହାର ହୃଦୟରେ ବଳ ନାହିଁ, ସେ ଅପରକୁ ନିଜ ଆଡ଼କୁ ଟାଣିଆଣି ପାରିବ ନାହିଁ । ଏକ ଆତ୍ମା ସହିତ ଅପର ଆତ୍ମାର ଚୁମ୍ବକ ଓ ଲୌହ ସମ୍ବନ୍ଧ । ଚୁମ୍ବକର ଯଥେଷ୍ଟ ବଳ ଥିଲେ ଲୁହାକୁ ଆଣି ଆପଣା ଦେହରେ ଲଗାଇ ପାରେ । ଯାହାର ହୃଦୟରେ ଅସୀମ ବଳ ଅଛି, ସେ ଅପରକୁ ନିଜର ପକ୍ଷପାତୀ କରି ପାରେ । ଏ ବଳ ଅସ୍ତ୍ରବଳ ନୁହେଁ, ଧନବଳ ନୁହେଁ, ଶାରୀରିକ ସାମର୍ଥ୍ୟ ନୁହେଁ । ଏ ବଳଠାରେ ଅପର ବଳମାନେ ପରାସ୍ତ । ଯାହାର ହୃଦୟ ବଳ ଅଛି, ସେ ସତ୍ୟାଶ୍ରୟୀ, ଦୃଢ଼ପ୍ରତିଜ୍ଞ, ଅଟଳ, ନିଷ୍କମ୍ପ । ସେ କାହାକୁ ଭୟ କରେ ନାହିଁ । ଅତ୍ୟାଚାରୀ ଅସ୍ତ୍ର ଶସ୍ତ୍ର ଏବଂ ଶାରୀରିକ ବଳ ସତ୍ତ୍ୱେ ତାହାକୁ ଭୟ କରେ । ଯାହାର ହୃଦୟରେ ବଳ ଅଛି, ସେ କେବଳ ବଳବାନ୍ । ସେ ବିଶ୍ୱାସର ଆକର ହୁଏ । ତାହାଠାରେ ଜଗତ୍ ବିଶ୍ୱାସ ସ୍ଥାପନ କରେ । ସେ ବଳହୀନ ଅର୍ଥାତ୍ ଯାହାର ହୃଦୟରେ ବଳ ନାହିଁ, ସେ କୃପାର ପାତ୍ର । ଲୋକେ ତାକୁ ବିଶ୍ୱାସ କରି ନ ପାରନ୍ତି । ଲୋକଙ୍କର ଭକ୍ତି ପ୍ରେମ-ବିଶ୍ୱାସ ଲାଭ କରିବା ତ ଦୂରର କଥା । ବଳହୀନ ହୋଇ ଆତ୍ମାଲାଭ କରିବାକୁ ଯିବା ବା ନେତା ବା ଲୋକଚାଳକ ହେବାକୁ ବାସନା କରିବା ବାମନର ଚନ୍ଦ୍ର ସ୍ପର୍ଶ ବାସନା ତୁଲ୍ୟ ଅଟେ ।

— ୦ —

ସେହି ମହାତ୍ମା ବୁଦ୍ଧଦେବଙ୍କ ଶ୍ରୀଚରଣରେ ଆମ୍ଭମାନଙ୍କର ପ୍ରଣାମ, ଯେ ଦିନେ କହିଥିଲେ, "ଉପକାରୀ ବ୍ୟକ୍ତିକୁ ଖୋସାମତ କରିବ ନାହିଁ ।" ମନୁଷ୍ୟର ପରିବର୍ତ୍ତନଶୀଳ ହୃଦୟବଳର କଥା ସେ ଅଧ୍ୟୟନ କରିଥିଲେ । ଆଉ ଦୃଢ଼ପ୍ରତିଜ୍ଞ ହେବା ମନୁଷ୍ୟମାତ୍ରର ସାଧାରଣ ଧର୍ମ ନୁହେଁ, ଏହା ମଧ୍ୟ ବିଦିତ ଥିଲେ । କ୍ୱଚିତ୍ ଜଣେ ଦୁଇ ଜଣ ମିଳିବା ସମ୍ଭବ । ଯଦି କେହି ପର ଉପକାର ବ୍ରତ ସାଧନା କଲାବେଳେ ତାକୁ ଲୋକେ ପ୍ରଶଂସା କରି ତାର ସାଧନାରୁ ତାକୁ ସ୍ଖଳିତ କରନ୍ତି, ତେବେ ଦେଶର ଓ ସମାଜର ଅମଙ୍ଗଳ । ଏହି ଚିନ୍ତାରେ ସେ ଉପରୋକ୍ତ ବାକ୍ୟ ଶିକ୍ଷା ଦେଇଥିଲେ । ଭାରତବାସୀ ଏ ଉପଦେଶ ମାନି ଯେବେ ଅଯଥା ପ୍ରଶଂସା କରିବା ଅଭ୍ୟାସ ଏକାବେଳକେ ତ୍ୟାଗ କରିଥାନ୍ତେ, ଆଜି ଭାରତରେ ଅନେକ ବଳବାନ୍ ପରୋପକାରୀ ବ୍ୟକ୍ତିର ଆବିର୍ଭାବ ହୋଇଥାନ୍ତା । ଜଡ଼ବାଦୀ ଭାରତବାସୀ ହିନ୍ଦୁ ଆଜି ସେହି ବୁଦ୍ଧପ୍ରତୀକ ଜଗନ୍ନାଥଙ୍କୁ ପ୍ରଣାମ କରୁଅଛନ୍ତି । ମାତ୍ର ପ୍ରକୃତ ବୁଦ୍ଧବଚନ ରକ୍ଷା ଓ ଅନୁକରଣ କରୁ ନାହାନ୍ତି ।

— ୦ —

ଧରାବଦ୍ଧପଦ୍ମାସନସ୍ଥାଙ୍ଗଯଷ୍ଟି —
ର୍ନିୟମ୍ୟାନିଳଂ ଦତ୍ତନାସାଗ୍ରଦୃଷ୍ଟିଃ ।
ଯ ଆସ୍ତେ କଲୌ ଯୋଗିନାଂ ଚକ୍ରବର୍ତ୍ତୀ
ସ ବୁଦ୍ଧଃ ପ୍ରବୁଦ୍ଧୋଽସ୍ତି ମେ ଚିତ୍ତବୃତ୍ତିଃ ।।

ଶଙ୍କରାଚାର୍ଯ୍ୟ

ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତଂ
ସଦୟହୃଦୟଦର୍ଶିତପଶୁଘାତଂ
କେଶବଧୃତବୁଦ୍ଧଶରୀର,
ଜୟଜଗଦୀଶ ହରେ ।

ଜୟଦେବ

ଅଦ୍ୱିତୀୟପରାର୍ଦ୍ଧସ୍ୟ ପ୍ରମାପୂରଣକାରିଣେ ।
ଦାରୁବ୍ରହ୍ମସ୍ୱରୂପାୟ ତସ୍ମୈ ବୁଦ୍ଧାତ୍ମନେ ନମଃ ।

ଉପରୋକ୍ତ ପ୍ରଥମ ଶ୍ଳୋକଟି ପାଠ କଲେ ସ୍ପଷ୍ଟ ହୃଦୟଙ୍ଗମ ହୁଏ ଯେ, ଶଙ୍କରାଚାର୍ଯ୍ୟ ବୁଦ୍ଧବିଦ୍ୱେଷୀ ଥିବାର ତ ତେଣେ ଥାଉ, ବରଂ ସେ ବୁଦ୍ଧଭକ୍ତ ଥିଲେ । ମାତ୍ର ଶଙ୍କରାଚାର୍ଯ୍ୟ ଯେ ବୌଦ୍ଧବିଦ୍ୱେଷୀ ଥିଲେ, ଏଥିରେ ସନ୍ଦେହ ନାହିଁ । ଏ କଥା ଶୁଣିବାକୁ ଅଦ୍ଭୁଆ, ବୁଝିବାକୁ ଅଦ୍ଭୁଆ । ମାତ୍ର ଏହା ବର୍ଣ୍ଣେ ବର୍ଣ୍ଣେ ସତ୍ୟ । ଯେତେବେଳେ ଶଙ୍କରାଚାର୍ଯ୍ୟଙ୍କର ଆବିର୍ଭାବ, ସେତେବେଳକୁ ବୁଦ୍ଧପ୍ରଚାରିତ ଧର୍ମ ରୂପାନ୍ତରିତ ହୋଇଯାଇଥିଲା । ବୁଦ୍ଧଙ୍କର କପଟଶୂନ୍ୟ ନିସ୍ୱାର୍ଥବାଦ ଶିଷ୍ୟଙ୍କ ହାତରେ ନିଗୂଢ଼ ଧର୍ମ ନାମରେ ଅଭିହିତ ହେଲାଣି । ତାନ୍ତ୍ରିକ

ମୂର୍ତ୍ତି ଉପାସନା ଏବଂ ପଞ୍ଚମକାର ସାଧନା ରାଜତ୍ୱ କଲାଣି। ସେତେବେଳେ ହିନ୍ଦୁ ଓ ବୌଦ୍ଧ ତନ୍ତ୍ରଉପାସକ । ସେତେବେଳେ ହିନ୍ଦୁ ଓ ବୌଦ୍ଧ ଘୋର ପ୍ରତିଦ୍ୱନ୍ଦ୍ୱୀ। ଶଙ୍କର ଉଭୟ ଧର୍ମରୁ ନିଜକୁ ସ୍ୱାଧୀନ ରଖି ପ୍ରାଚୀନ ଉପନିଷଦ୍ ଧର୍ମରୁ ନିଜର ମତ ଗଠନ କଲେ । ଉପନିଷଦ୍ ଭିତ୍ତି ଉପରେ ସେ ଯେଉଁ ଧର୍ମର ପ୍ରତିଷ୍ଠା କଲେ, ତାହା ଉଭୟ ମତରୁ ସମ୍ପୂର୍ଣ୍ଣ ଭିନ୍ନ, ତଥାପି ଶଙ୍କର ମତ ହିନ୍ଦୁ ମତ ବୋଲି ଗୃହୀତ ହୋଇଅଛି । ଶଙ୍କରଙ୍କ ବ୍ରହ୍ମ ଓ ଈଶ୍ୱର ସାଧାରଣ ହିନ୍ଦୁଙ୍କର ବୋଧଗମ୍ୟ ନୁହନ୍ତି, ତଥାପି ଶଙ୍କର ହିନ୍ଦୁ । ଶଙ୍କର ମୂର୍ତ୍ତି ଉପାସକ ନୋହି ସୁଦ୍ଧା ହିନ୍ଦୁ । ଶଙ୍କରଙ୍କର 'ନିତ୍ୟମୁକ୍ତ ଶୁଦ୍ଧବୋଧସ୍ୱଭାବ' ବ୍ରହ୍ମତତ୍ତ୍ୱ କେତେଜଣ ହିନ୍ଦୁ ବା ଶଙ୍କରଶିଷ୍ୟ ବୁଝନ୍ତି ?

— ୦ —

ଶଙ୍କର ମୂର୍ତ୍ତି ଉପାସକ ନ ଥିଲେ ଏବଂ ମୂର୍ତ୍ତି ଉପାସନାର ପକ୍ଷପାତୀ ମଧ ନ ଥିଲେ। ଅଦ୍ୟାପି ତାଙ୍କର ଶିଷ୍ୟମାନେ ବା ମତାବଲମ୍ବିମାନେ ଜଗନ୍ନାଥଙ୍କ ଆଗରେ ମସ୍ତକ ଅବନତ କରନ୍ତି ନାହିଁ। ତଥାପି ମନ୍ଦିର ପ୍ରବେଶ କରିବାର ସେମାନଙ୍କର ଅଧିକାର ଅଛି । ମନ୍ଦିରର ବିଧି ନିଷେଧର ବ୍ୟବସ୍ଥା ଦେବାର ଅଧିକାର ଅଛି । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ବୌଦ୍ଧ 'ବୁଦ୍ଧ, ସଂଘ ଓ ଧର୍ମ' ର ପ୍ରତୀକ, କିନ୍ତୁ ବୌଦ୍ଧମାନଙ୍କୁ ମନ୍ଦିରଦ୍ୱାର ମାଡ଼ିବା ବୋଧ ହୁଏ ନିଷିଦ୍ଧ । ବିସ୍ମୟଜନକ ବ୍ୟାପାର ନୁହେଁ କି ? ଶଙ୍କର ମାୟାରହିତ ନରର ଆବିର୍ଭାବକୁ ଅବତାର ବୋଲି ସ୍ୱୀକାର କରନ୍ତି, ସୁତରାଂ ବୁଦ୍ଧଙ୍କୁ ସେ ଅବତାରରୂପେ ପରମଯୋଗୀ ବୋଲି ସ୍ୱୀକାର କରି ଯାଇଅଛନ୍ତି । ଶଙ୍କରଙ୍କର ନମସ୍ୟ ବୁଦ୍ଧ ଆଧୁନିକ ହିନ୍ଦୁର ଉପାସ୍ୟ ନୁହଁନ୍ତି ଏବଂ ବୁଦ୍ଧମତାବଲମ୍ବୀମାନେ ହିନ୍ଦୁ ନୁହନ୍ତି । ଅଥଚ ଶଙ୍କରଶିଷ୍ୟମାନେ ହିନ୍ଦୁ ବୋଲି ଆଦୃତ । ଏହା ମଧ ଆଶ୍ଚର୍ଯ୍ୟଜନକ ନୁହେଁ କି ? ଉଭୟ ମତାବଲମ୍ବୀଙ୍କ ବେଶଭୂଷାରେ ବିଶେଷ ପାର୍ଥକ୍ୟ ଦୃଷ୍ଟ ହୁଏ ନାହିଁ । ଅଥଚ ଏକ ସମ୍ପ୍ରଦାୟ ଆଧୁନିକ ହିନ୍ଦୁର ନମସ୍ୟ, ଅପର ସମ୍ପ୍ରଦାୟ ଘୃଣ୍ୟ ଓ ହେୟ । ଶଙ୍କର ବୁଦ୍ଧବିଦ୍ୱେଷୀ ନୁହନ୍ତି, ମାତ୍ର ତାଙ୍କର ମାୟାବାଦଦ୍ୱାରା ତାଙ୍କର ଶିଷ୍ୟ ଓ ହିନ୍ଦୁମାନେ ମାୟାମୋହିତ; ଏଣୁ ବୌଦ୍ଧଦ୍ୱେଷୀ । ଶଙ୍କର ହିନ୍ଦୁଙ୍କର ଆଦର୍ଶପୁରୁଷ ହେବାର ଅନ୍ୟ କାରଣ ଏହି ଯେ, ସେ ବର୍ଣ୍ଣାଶ୍ରମ ପଥରେ ମୁକ୍ତି ଲଭ୍ୟ ବୋଲି ପ୍ରକାଶ କରିଥିଲେ । ଅଥଚ ନିଜେ ବର୍ଣ୍ଣାଶ୍ରମ ମତାବଲମ୍ବୀ ନ ଥିଲେ ।

— ୦ —

ଜୟଦେବ କୋମଳହୃଦୟ ବୈଷ୍ଣବ ଭକ୍ତ, ଭକ୍ତିରୁ ମୁକ୍ତି ତାଙ୍କର ବିଶ୍ୱାସ । ସେ ଅବତାରବାଦୀ । ତାଙ୍କ ପ୍ରତି ପଶୁହିଂସା ଅସହ୍ୟ। ବୁଦ୍ଧଦେବଙ୍କର ପ୍ରଧାନ କର୍ମ ଯେ ଶ୍ରୁତିଜାତ ପଶୁବଧ ନିବାରଣ, ତାହା ଜୟଦେବଙ୍କ କୋମଳ ହୃଦୟକୁ ସ୍ପର୍ଶ କଲା । ଏଣୁ ସେ ଦୟାର୍ଦ୍ରହୃଦୟ ବୁଦ୍ଧଦେବଙ୍କୁ ଜଗଦୀଶଙ୍କର ନବମାବତାର ବୋଲି ସ୍ତୁତି କଲେ । ହିନ୍ଦୁମାନେ, ବୈଷ୍ଣବମାନେ ପ୍ରେମତଦ୍ଗତ ଚିତ୍ତରେ ଏହି ସ୍ତୁତି ପାଠ କରନ୍ତି, ମାତ୍ର ବୁଦ୍ଧ କିଏ ତାହା ଜାଣନ୍ତି ନାହିଁ ।

— ୦ —

ତୃତୀୟ ଶ୍ଳୋକଟି ନୀଳାଦ୍ରିମହୋଦୟ ବା ସ୍କନ୍ଦପୁରାଣରୁ ଉଦ୍ଧୃତ । ପୁରୀ ବଡ଼ଦେଉଳରେ ଜଗନ୍ନାଥଙ୍କ ପ୍ରତିଷ୍ଠାବେଳେ ସ୍ୱୟଂ ବ୍ରହ୍ମା ଦଶାବତାର ସ୍ତୁତି ପାଠ କଲେ । ଜଗଦୀଶଙ୍କର ସପ୍ତମାବତାର ରାମଙ୍କୁ ଦଶରଥାତ୍ମଜ ବୋଲି ନମସ୍କାର କଲେ। ଅଷ୍ଟମାବତାର ବଳରାମଙ୍କୁ ରୋହିଣୀନନ୍ଦନ ବୋଲି ନମସ୍କାର କଲେ । ନବମାବତାର ବୁଦ୍ଧଦେବଙ୍କୁ ଦାରୁବ୍ରହ୍ମସ୍ୱରୂପ ବୋଲି ନମସ୍କାର କଲେ । ବ୍ରହ୍ମାଙ୍କ ମୁଖରୁ ଯାହା ବାହାରେ, ତାହା ପାଠ । ବ୍ରହ୍ମବାକ୍ୟ, ବେଦରଗାର। ସୁତରାଂ ବ୍ରହ୍ମାବାକ୍ୟ ଅନୁସାରେ ବୁଦ୍ଧଙ୍କର ନାମାନ୍ତର କଳିଯୁଗରେ ଦାରୁବ୍ରହ୍ମ । କୃଷ୍ଣ ଦାରୁବ୍ରହ୍ମ ନୁହନ୍ତି । ରାମ ଦାରୁବ୍ରହ୍ମ ନୁହନ୍ତି । ଶାସ୍ତ୍ରରେ ଏସବୁ ପ୍ରମାଣ ଥିଲେ ମଧ ଅନେକ ଶିକ୍ଷିତ ଏବଂ ପଣ୍ଡିତ ଏହା ପ୍ରକାଶ କରିବାକୁ ଓ ସ୍ୱୀକାର କରିବାକୁ ନାରାଜ । ମାତ୍ର ଓଡ଼ିଆ ସାହିତ୍ୟ, ଓଡ଼ିଆ କାହାଣୀ, ଓଡ଼ିଆର ହଳୁଆ ଗୀତ ଜଗନ୍ନାଥଙ୍କୁ ବୁଦ୍ଧ ବୋଲି ପ୍ରକାଶ କରିବାରେ ତ୍ରୁଟି କରି ନାହିଁ । ଓଡ଼ିଆ ସାହିତ୍ୟରେ ତ୍ରୁଟି ଲକ୍ଷିତ ହେବ କାହିଁକି ? ଓଡ଼ିଶା ଯେ ଏକ ସମୟରେ ବୌଦ୍ଧ ପ୍ରଦେଶ ଥିଲା, ଓଡ଼ିଶାର ପ୍ରାଚୀନ ରାଜାମାନେ ଯେ ପ୍ରଧାନ ବୁଦ୍ଧଭକ୍ତ ଥିଲେ, ପୁରୀ ଯେ ପ୍ରଧାନ ବୌଦ୍ଧପୀଠ, ମହାପ୍ରସାଦଭକ୍ଷଣ ପ୍ରଥା ଯେ ବୌଦ୍ଧପ୍ରଭାବର ଜାଜ୍ୱଲ୍ୟମାନ ନିଦର୍ଶନ । ଏହା କି ଅସ୍ୱୀକାର କରିବାର ଉପାୟ ଅଛି ? ଓଡ଼ିଶାର ବିଖ୍ୟାତ ରାଜାମାନଙ୍କର ସୌଗତ ଉପାଧି ଶିଳାଲେଖରୁ ଓ ଦାନଶାସନରୁ ପୋଛି ଦେବାକୁ କାହାର ଅଧିକାର ଅଛି ? ଏ ଦେଶକୁ କେଶରୀବଂଶ ଓ ଗଙ୍ଗବଂଶଙ୍କର ସୁଭାଗମନ ଉତ୍ତାରୁ ସିନା ହିନ୍ଦୁଧର୍ମର ପ୍ରତିଷ୍ଠା ହେଲା । ତତ୍‌ପୂର୍ବରୁ, ଏମନ୍ତ କି, ଅଶୋକଙ୍କର ସାମ୍ରାଜ୍ୟପ୍ରତିଷ୍ଠାର ବହୁ ପୂର୍ବରୁ ଓଡ଼ିଶା ବୌଦ୍ଧ ରାଜ୍ୟ ଥିଲା । ଏଥିର ନିଦର୍ଶନ ଗ୍ରାମେ ଗ୍ରାମେ ଅଛି। ଆଚାର ବ୍ୟବହାରରେ ଅଛି, ପାହାଡ଼ ପର୍ବତରେ ଅଛି । ଓଡ଼ିଶାର ସୁଯୋଗ୍ୟ ପ୍ରତ୍ନତାତ୍ତ୍ୱିକ ଉଦୀୟମାନ ଯୁବକମାନେ ତାହା ଆବିଷ୍କାର କରିବେ ।

— ୦ —

ଓଡ଼ିଶାବାସୀ ବୌଦ୍ଧ ଥିଲାବେଳେ ଯେ ସମ୍ୟକ୍ ପ୍ରକାରରେ ଉନ୍ନତି ସାଧନ କରିଥିଲେ, ତାହା କହିବା ବାହୁଲ୍ୟ ମାତ୍ର । ମାତ୍ର ଯେଉଁଦିନରୁ ଏମାନେ ହିନ୍ଦୁତ୍ୱର ସଂକୀର୍ଣ୍ଣ ଗଣ୍ଡିରେ ପଶିଲେ, ସେହିଦିନୁ ଓଡ଼ିଶାର ଅବନତି । ଏହା ମଧ୍ୟ କ୍ରମେ ଆବିଷ୍କୃତ ହେବ । ମୁଁ ଅନୁମାନ କରେଁ, ଓଡ଼ିଆ ଘରର କାହାଣୀରେ ଯେ ବୋଇତ ବାଣିଜ୍ୟର ବିସ୍ମୟକର ବର୍ଣ୍ଣନା ଶୁଣାଯାଏ, ତାହା ସେହି ବୌଦ୍ଧଯୁଗର ଅବସ୍ଥା । ସାଧବପୁଅର ପୋତବନ୍ଦାଣ ବ୍ୟାପାର କି କେଶରୀ ଓ ଗଙ୍ଗବଂଶ ରାଜତ୍ୱର ପୂର୍ବ କାହାଣୀ ନୁହେଁ ? ଉପେନ୍ଦ୍ରଭଞ୍ଜଙ୍କର 'ବହିତ୍ର ଲାଗିଲା ଯାଇ ସିଂହଳ ଦ୍ୱୀପରେ' ଏହା କି ପ୍ରାଚୀନମାନଙ୍କର ଗଳ୍ପର ଅନୁବାଦ ନୁହେଁ ? ଗତ ହଜାରେ ବାର ଶହ ବର୍ଷ ମଧ୍ୟରେ ଓଡ଼ିଶାର କୌଣସି ରାଜା ଯବଦ୍ୱୀପ, ବାଲିଦ୍ୱୀପ ପ୍ରଭୃତିକୁ କୌଣସି ଅଭିଯାନ କରିଥିବା ବିଷୟ ଆମ୍ଭମାନଙ୍କର ଶ୍ରୁତିଗୋଚର ହୁଏ କି ? ଅଥଚ ବାଲିଦ୍ୱୀପ ଓ ଯବ ଦ୍ୱୀପରେ ଓଡ଼ିଆ ହସ୍ତନିର୍ମିତ ରମଣୀୟ ହର୍ମ୍ୟ, ଅଟ୍ଟାଳିକା, ମନ୍ଦିର, ପ୍ରତିମୂର୍ତ୍ତିମାନ ଅଦ୍ୟାପି ବିଦ୍ୟମାନ ଅଛି । ଏସବୁ ଆଧୁନିକ ଓଡ଼ିଆର ସ୍ୱପ୍ନର ଅଗୋଚର । ଏ କୀର୍ତ୍ତିରାଜି ହିନ୍ଦୁ ଅଭ୍ୟୁତ୍ଥାନ ଉତ୍ତାରୁ ହୋଇଥିବାର ତ ଜଣାପଡୁ ନାହିଁ ।

ଗଙ୍ଗ ଓ କଦମ୍ବ ରାଜାମାନେ ଯେ ଦାକ୍ଷିଣାତ୍ୟରୁ ଓଡ଼ିଶାକୁ ଆସିଥିଲେ, ସେଥିରେ କାହାରି ସନ୍ଦେହ ନାହିଁ । ପୁଣି ଭଞ୍ଜମାନେ ମଧ୍ୟ ଯେ ଦାକ୍ଷିଣାତ୍ୟ ରାଜବଂଶ, ତାହା କ୍ରମେ ଗବେଷଣାଦ୍ୱାରା ପ୍ରମାଣିତ ହେବ ବୋଲି ବିବେଚିତ ହୁଏ । ମାତ୍ର ଏହି ତିନି ବଂଶର ଆଗମନ ପୂର୍ବରୁ ଏ ଦେଶରେ ଯେଉଁ ପ୍ରାଚୀନ ରାଜବଂଶମାନେ ରାଜତ୍ୱ କରୁଥିଲେ, ସେମାନଙ୍କର ବଂଶଲୋପ ହେଲା କେବେ ? ଐତିହାସିକମାନଙ୍କୁ ଜଣା ଥାଇପାରେ । କିନ୍ତୁ ଆମ୍ଭମାନଙ୍କୁ ଏହାହିଁ ସମ୍ଭବ ବୋଲି ବୋଧ ହୁଏ ଯେ, ପ୍ରାଚୀନ ବଂଶର ଧ୍ୱଂସ ସାଧନା ହୋଇ ନାହିଁ । ମାତ୍ର ହିନ୍ଦୁ ଧର୍ମର ପୁନରୁତ୍ଥାନ ଉତ୍ତାରୁ ପ୍ରତ୍ୟେକ ରାଜବଂଶ ହିନ୍ଦୁତ୍ୱ ଗ୍ରହଣ କରି ନିଜ ବଂଶର ଉତ୍ପତ୍ତିମୂଳ ରାଜପୁତାନା ବୋଲି ଘୋଷଣା କରିଅଛନ୍ତି ଏବଂ କାଳ୍ପନିକ ଗୋତ୍ର ପ୍ରବରର ଅନ୍ୱେଷଣରେ ତତ୍ପର ହୋଇ ନିଜ ବଂଶର ପ୍ରାଚୀନତ୍ୱ ନଷ୍ଟ କରିଅଛନ୍ତି । ହିନ୍ଦୁ ଆଖ୍ୟା ସୌଗତ ଆଖ୍ୟାରୁ ଶ୍ରେଷ୍ଠ ବୋଲି ସେମାନଙ୍କଦ୍ୱାରା ବିବେଚିତ ହୋଇଅଛି । ଏ କଥା ତଥ୍ୟ ବୋଲି ବିବେଚିତ ହେଉଥିଲେ ମଧ୍ୟ ଏହା ପ୍ରମାଣ କରିବାର ବର୍ତ୍ତମାନ ଉପାୟ ନାହିଁ ।

— ୦ —

ଏ ତ ଗଲା ଓଡ଼ିଶାର କଥା । ଭାରତବର୍ଷମୟ ଏହି ଅବସ୍ଥା । ହିନ୍ଦୁର ଅଭ୍ୟୁତ୍ଥାନରେ ପ୍ରବଳର ଅତ୍ୟାଚାରରେ ଦୁର୍ବଳମାନେ ଆପଣାର ଧର୍ମ ପରିବର୍ତ୍ତନ ସଙ୍ଗେ ସଙ୍ଗେ ନିଜ ନିଜ ବଂଶର ଉତ୍ପତ୍ତିର ବିଚିତ୍ର ବିବରଣ ଉଦ୍ଭାବନ କରିଥିଲେ । ଯେଉଁ ଜାତି ବା ବଂଶ ତାହା କରିବାରେ ବିଳମ୍ବ କଲେ, ସେମାନେ ଘୃଣ୍ୟ ଓ ଅସ୍ପୃଶ୍ୟ ଜାତି ହୋଇରହିଲେ । ଏଥିରେ ପ୍ରମାଣ ନାନା ଦେଶରେ ଅଛି, ମାତ୍ର ପ୍ରକାଶ କରିବାକୁ କେହି ପ୍ରସ୍ତୁତ ନୁହନ୍ତି ।

— ୦ —

ହିନ୍ଦୁ ଧର୍ମର ପ୍ରତିପତ୍ତି ବଢ଼ିଲା । ଏକତା ଭାଙ୍ଗିଲା । କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ଭାରତ ବିଭକ୍ତ ହେଲା । ବଂଶମର୍ଯ୍ୟାଦା ଓ ଶ୍ରେଷ୍ଠତ୍ୱ ବଜାୟ ରଖିବା ନିମନ୍ତେ ରାଜାମାନେ କ୍ଷୁଦ୍ର ହେଉ ପଛକେ ଗୋଟିଏ ଗୋଟିଏ ଯଜ୍ଞର ଅନୁଷ୍ଠାନ କଲେ । ବୌଦ୍ଧମାନଙ୍କର ସ୍ଥାନ ସଂକୀର୍ଣ୍ଣ ହେଲା । ସମସ୍ତେ ହିନ୍ଦୁଧର୍ମର ପକ୍ଷପାତୀ ହେବାକୁ ବାଧ୍ୟ ହେଲେ । ଏଣୁ ଏ ଦେଶରେ ଅନେକ ଧର୍ମମତର ସୃଷ୍ଟି ହେଲା । ଏହି ପରିବର୍ତ୍ତନବେଳେ ପାଶ୍ଚାତ୍ୟ ହୁନ୍, ମୋଗଲ, ପଠାଣ ପ୍ରଭୃତି ଏ ଦେଶକୁ ଆସି ଆଧିପତ୍ୟ ବିସ୍ତାର କଲେ । କ୍ରମେ ଏକତା ଭାଙ୍ଗିଲା । ଜାତି ସଂଖ୍ୟା ବଢ଼ିଲା । ଭାରତର ପତନର କାରଣ ଯେ ହିନ୍ଦୁଧର୍ମ, ଏହା କେହି ଭାବିଲେ ନାହିଁ କିମ୍ବା ଭାବିବାକୁ ନାହିଁ । ବର୍ତ୍ତମାନ ଭାରତର ଅବସ୍ଥାର ବର୍ଣ୍ଣନା ନିଷ୍ପ୍ରୟୋଜନ, ତାହା ସମସ୍ତେ ଜାଣନ୍ତି ।

— ୦ —

ଅଶୋକ ଯେଉଁ ସାମ୍ରାଜ୍ୟ ଗଠନ କରିଥିଲେ, ତାହା ପାଶ୍ଚାତ୍ୟ ମନୀଷିମାନଙ୍କର ବିସ୍ମୟକର । ସେ ସମୟରେ ଭାରତ କି ପ୍ରକାର ସମୃଦ୍ଧିଶାଳୀ ହୋଇଥିଲା ଏବଂ ଏ ଦେଶବାସୀମାନେ କିପରି ଦୂର ଦେଶମାନଙ୍କରେ ବାଣିଜ୍ୟ ବିସ୍ତାର କରିଥିଲେ, ତାହା କ୍ରମେ ଶିକ୍ଷିତମାନଙ୍କର ଜ୍ଞାନଗମ୍ୟ ହେଉଅଛି । ବୌଦ୍ଧଯୁଗର ଶିଳ୍ପୋନ୍ନତି ଜଗତରେ ଅତୁଳନୀୟ । ଏହି ଭାରତବର୍ଷରେ ନାଳନ୍ଦା, ବିକ୍ରମଶିଳା, ଧାନ୍ୟ କଟକ ପ୍ରଭୃତି ଦଶ ବାର ଗୋଟି ଗୌରବାନ୍ୱିତ । ବିଶ୍ୱବିଦ୍ୟାଳୟ ନାନା ଦେଶର ଜ୍ଞାନପିପାସୁମାନଙ୍କର ମନ ଆକର୍ଷଣ କରୁଥିଲା ।

ଚୀନ୍, ଜାପାନ ଭାରତଶିଷ୍ୟ । ବୁଦ୍ଧଙ୍କ ଦ୍ୱାରା ପ୍ରଜ୍ୱଳିତ ଜ୍ଞାନରଶ୍ମିଦ୍ୱାରା ଚୀନ୍, ଜାପାନ ଉଦ୍ଭାସିତ । ଆଜି ସେହି ଦେଶମାନେ ବୌଦ୍ଧ ପତାକା ତଳେ ରହି ଜଗତରେ ଶ୍ରେଷ୍ଠ ।

ଭାରତର ଏକମାତ୍ର ଯୋଗ୍ୟ ପୁତ୍ର ବୁଦ୍ଧଙ୍କୁ ଭାରତବାସୀ ଜାଣନ୍ତି ନାହିଁ, ଚିହ୍ନନ୍ତି ନାହିଁ । କେତେ ଭାରତସନ୍ତାନଙ୍କର ଜନ୍ମାହ, ମୃତାହ ପାଳିତ ହେଉଅଛି; ମାତ୍ର ବୁଦ୍ଧଙ୍କର ସ୍ମାରକ ଦିବସ ଗୋଟିଏ ହେଲେ ଭାରତବାସୀ ପାଳନ କରୁଅଛନ୍ତି କି ? ଆଶ୍ଚର୍ଯ୍ୟର ବିଷୟ, ଶିକ୍ଷିତମାନେ ମଧ୍ୟ ଏ ସମ୍ବନ୍ଧରେ ଉଦାସୀନ । ଖ୍ରୀଷ୍ଟଙ୍କର କାଞ୍ଚନିକ ବଡ଼ଦିନରେ ଭାରତବାସୀ ଲକ୍ଷ ଲକ୍ଷ ମୁଦ୍ରା ବ୍ୟୟ କରିବାକୁ ତିଳେ ମାତ୍ର ଦ୍ୱିଧା ବୋଧ କରନ୍ତି ନାହିଁ । ମାତ୍ର ଜଗତର ଦୟାବତାର ବୁଦ୍ଧଙ୍କୁ ଭାରତବାସୀ କି ଶିକ୍ଷିତ କି ଅଶିକ୍ଷିତ ଥରେ ହେଲେ ସ୍ମରଣ କରନ୍ତି କି ?

— ୦ —

ଆଜି ବହୁ ଶତାବ୍ଦୀ ପରେ ଜଗଦ୍‌ବାସୀଙ୍କର ମତି ଗତି ବୁଦ୍ଧଙ୍କର ଧର୍ମଚକ୍ର ଆଡ଼କୁ ଅଲକ୍ଷିତ ଭାବରେ ଗତି କରୁଅଛି, ତଥାପି ବୁଦ୍ଧ ହେୟ ।

— ୦ —

ଭାରତବାସୀର ପତନର ମୂଳୀଭୂତ କାରଣ ଯାହା, ତହିଁର ପୁନଃ ପ୍ରବର୍ତ୍ତନ ଦ୍ୱାରା ଏହି ଦେଶର ଏକତା ଆଣିବାକୁ ନେତାମାନଙ୍କର ଚେଷ୍ଟା ମାଦୃଶ ବ୍ୟକ୍ତି ପ୍ରତି ଅସମ୍ଭବ ବୋଲି ବୋଧହୁଏ । କେବଳ ଅସମ୍ଭବ ବୋଲି ଯେ ବୋଧହୁଏ ତାହା ନୁହେଁ, ଏତାଦୃଶ ଉଦ୍ୟୋଗ ପଣ୍ଡଶ୍ରମ ଓ ଅହମିକା ଭାବ ବୋଲି ମନେ ହୁଏ ।

— ୦ —

ବୁଦ୍ଧ ଆର୍ଯ୍ୟସନ୍ତାନ । ବୁଦ୍ଧ ପ୍ରଚାରିତ ଧର୍ମ ଆର୍ଯ୍ୟ ଧର୍ମରୁ ନିର୍ବାଚିତ ଓ ସଂଗୃହୀତ । ବୁଦ୍ଧଙ୍କ ଉପଦେଶ ଆର୍ଯ୍ୟ ଧର୍ମର ସାର ରସ । ଏଥିରେ ଭଣ୍ଡତା, ପ୍ରତାରଣା, କାପଟ୍ୟ ନାହିଁ ବୋଲି ଭାରତବାସୀ ଶିକ୍ଷିତଙ୍କର ଗ୍ରହଣଯୋଗ୍ୟ ନୁହେଁ ।

— ୦ —

ହିନ୍ଦୁଧର୍ମର ସଂଶୋଧନ ନିତାନ୍ତ ପ୍ରୟୋଜନ ହୋଇଅଛି । ଯଦି ଶିକ୍ଷିତମାନେ ହିନ୍ଦୁ ଧର୍ମ ଓ ହିନ୍ଦୁ ସମାଜର ସଂଶୋଧନ ନିମନ୍ତେ ଚେଷ୍ଟା ନ କରି କେବଳ ଖାମଖିଆଲି ଉପରେ ଏବଂ ଗଳଗର୍ଜନ ଉପରେ ବିଶ୍ୱାସ ରଖି ଗତି କରୁଥିବେ, ତେବେ ଏ ଦେଶର ଉନ୍ନତି ଦୂର ଭବିଷ୍ୟତରେ ମଧ୍ୟ ହେବ ନାହିଁ ।

— ୦ —

ବୁଦ୍ଧଙ୍କର ଯେଉଁ ଅଷ୍ଟବିଧ ସତ୍ୟ କୌଣସି ଧର୍ମର, କୌଣସି ଜାତିର, କୌଣସି ସମାଜର ଅଗ୍ରାହ୍ୟ ନୁହେଁ, ତାହାକୁ ଭିତ୍ତି କରି ଭାରତର ଧର୍ମ ଓ ସମାଜର ସଂସ୍କାର କରାଯାଇପାରେ । ତେବେ ଅଚିରେ ଭାରତର ଭାଗ୍ୟ ପରିବର୍ତ୍ତନ ହେବ ସନ୍ଦେହ ନାହିଁ । ମାତ୍ର ଭାରତର ନେତାମାନେ ଅହମିକା ଭାବ ଛାଡ଼ିବେ କି ? ଏହା କପଟ ଧର୍ମରେ ଯେ ଉଚ୍ଚ ଜାତିର ସ୍ୱାର୍ଥ ଜଡ଼ିତ । ମନ୍ଦିର ଯେ ମୁଷ୍ଟିମେୟ ଉଚ୍ଚ ଜାତିର ଧନାଗାର । ପୌରୋହିତ୍ୟ ଯେ ଭାରତର ଶ୍ରେଷ୍ଠ ଜାତିର ସମ୍ମୋହନ ମନ୍ତ୍ର । ଏ ମୋହ ଛାଡ଼ି ପାରିବେ ଭାରତର ଉଚ୍ଚ ଜାତି ?

ପାଶ୍ଚାତ୍ୟ ଶିକ୍ଷା ବାହ୍ୟ ପରିବର୍ତ୍ତନ ଘଟାଉଅଛି । ଆଭ୍ୟନ୍ତରିକ ପରିବର୍ତ୍ତନ ବେଳେ ବିଳାସିତା, ଅର୍ଥଲୋଭ ଏବଂ ଆତ୍ମବିକ୍ରୟରେ ପର୍ଯ୍ୟବସିତ ହେଉଅଛି । ସେ ଶିକ୍ଷାପ୍ରଭାବ ପ୍ରକୃତ ମନୁଷ୍ୟତ୍ୱ ଦାନ କରି ପାରୁ ନାହିଁ। କରିବ କିପରି ? ସ୍ୱାର୍ଥର ମୋହନ ମୁରଲୀ ଭାରତବାସୀଙ୍କ ପ୍ରତି ବଡ଼ ମଧୁର, ବଡ଼ ମଧୁର।

— ୦ —

ପାଶ୍ଚାତ୍ୟ ଜାତି ଯୁଦ୍ଧ ବ୍ୟାପାରରେ ହଇରାଣ । ପୃଥିବୀରେ ଯେପରି ଆଉ ଯୁଦ୍ଧ ନ ହୁଏ, ତତ୍‌ପ୍ରତି ସମସ୍ତଙ୍କର ମନୋଯୋଗ ବଢ଼ିଅଛି । ଏହା କପଟ ନୀତି କି ସରଳ ନୀତି, ତାହା ରାଜନୈତିକମାନଙ୍କୁ ଜଣା । ଆଭ୍ୟନ୍ତରିକ ଭାବ ବୁଝିବାକୁ ଆମେ ତୁମେ କିଏ ? ତେବେ ସାଧାରଣ ବୁଦ୍ଧିରେ ଏହା ସ୍ପଷ୍ଟରୂପେ ଜଣାପଡ଼େ ଯେ, ଏହି ଯୁଦ୍ଧବିଗ୍ରହନିବାରଣ ପ୍ରସ୍ତାବ ମାନବପ୍ରେମୋତ୍ଥିତ ନୁହେଁ । ସ୍ୱାର୍ଥ ବଜାୟ ରହିବ, ଅଥଚ ଯୁଦ୍ଧରେ ଧନକ୍ଷୟ, ଲୋକକ୍ଷୟ ନ ହେବ, ଏହାହିଁ ପ୍ରବଳ ଜାତିମାନଙ୍କର ଆନ୍ତରିକ ଇଚ୍ଛା ବୋଲି ମନେ ହୁଏ । ଏହି ହେତୁରୁ କାହାରି ପ୍ରତି କେହି ସନ୍ଦେହଶୂନ୍ୟ ହୋଇପାରୁ ନାହାଁନ୍ତି । ଯେଉଁ ସ୍ଥାନରେ ସ୍ୱାର୍ଥର ରାଜତ୍ୱ, ସେ ସ୍ଥାନରେ ଶାନ୍ତିର ପ୍ରବେଶାଧିକାର ଆଦୌ ନାହିଁ । ଅଢ଼ାଇ ହଜାର ବର୍ଷ ଆଗରୁ ବୁଦ୍ଧଦେବ ପ୍ରକାଶ କରିଯାଇଅଛନ୍ତି ଯେ, ସ୍ୱାର୍ଥହିଁ ସମସ୍ତ ପ୍ରକାର ଅଶାନ୍ତି ଓ ଦୁଃଖର ମୂଳ । ଯୀଶୁ, ଶଙ୍କର, ମହମ୍ମଦ ଓ ଅନ୍ୟାନ୍ୟ ଧର୍ମଶିକ୍ଷାଦାତାମାନେ ତାହାର ପ୍ରତିଧ୍ୱନି କରି ଯାଇଅଛନ୍ତି ମାତ୍ର । ସେମାନଙ୍କର ଉପଦେଶ ମାନୁଛି କିଏ ? ଶାନ୍ତିର ମୂଳଭିତ୍ତି ନିର୍ମାଣ ନ କରି ଆଶାମନ୍ଦିର ଗଢ଼ିଲେ ତାହା ସ୍ଥାୟୀ ହେବ କାହୁଁ ?

— ୦ —

ଅନ୍ୟ ଦେଶର କଥା ଛାଡ଼, ଆମ ଭାରତବାସୀଙ୍କ ହୃଦୟ ଯେମନ୍ତ କୁସଂସ୍କାରପୂର୍ଣ୍ଣ, ତେମନ୍ତ ସନ୍ଦେହଯୁକ୍ତ । ଏ ଦେଶବାସୀର ହୃଦୟରୁ ଏକତାର ବନ୍ଧନ ତୁଟିଅଛି । ସ୍ୱାର୍ଥ ଏକତାକୁ ଛିନ୍ନ ବିଚ୍ଛିନ୍ନ କରୁଅଛି । ସେହି ତନ୍ତ୍ର ମନ୍ତ୍ରର ମୋହ, ସେହି ଯୋଗୀ କପଟିର ବାକ୍ୟ, ସେହି ଜ୍ୟୋତିଷିମାନଙ୍କର ଭବିଷ୍ୟତବାଣୀ, ସ୍ୱର୍ଗପ୍ରାପ୍ତିର ପୌରାଣିକ ଉପାୟ, ଗ୍ରହଶାନ୍ତି, ସ୍ୱାର୍ଥସାଧନ ନିମନ୍ତେ ଅଭିଚାର ବଳିଦାନ ଆଉ କ'ଣ କେତେ ସର୍ବଦା ମନକୁ ଆଚ୍ଛନ୍ନ କରି ରଖିଅଛି । ଏହା ବହୁଦିନର କୁସଂସ୍କାର ଓ ଅଭ୍ୟାସର ଫଳ । ଅଦ୍ୟାପି ଭାରତବାସୀ ନବ୍ୟ ଶିକ୍ଷିତମାନେ ମଧ୍ୟ ସେଥିରୁ ମୁକ୍ତି ଲାଭ କରିବାକୁ ଇଚ୍ଛା କରୁ ନାହାନ୍ତି, ଚେଷ୍ଟା କରୁ ନାହାନ୍ତି । ଏ ଦେଶର ହିତସାଧନ ହେବ କେଉଁ ଉପାୟରେ ?

— ୦ —

ଅପରାଧୀନତା ମୁକ୍ତି । କୁସଂସ୍କାରାଧୀନ ଭାରତବାସୀର ମୁକ୍ତିର ବାଟ ନାହିଁ । ଶଙ୍କର ରାଜାମାନଙ୍କୁ ଉପଦେଶ ଦେଇଥିଲେ ଯେ, ତନ୍ତ୍ର ମନ୍ତ୍ରରେ ବିଶ୍ୱାସ କରିବା ଉଚିତ୍ ନୁହେଁ । ବୁଦ୍ଧ କହିଥିଲେ ଯେ, ଭବିଷ୍ୟତ୍ ସମ୍ବନ୍ଧରେ ଯେଉଁ ବିଦ୍ୟା ପ୍ରତାରଣା କରେ, ତାକୁ ବିଶ୍ୱାସ କରିବ ନାହିଁ । ମାନୁଛି କିଏ ? ଏ ଦେଶବାସୀ ଯେ ପ୍ରକୃତ ଗୁରୁର ଉପଦେଶ ମାନିବାକୁ ନାରାଜ । ଶିଷ୍ୟ ଓ ପ୍ରଶିଷ୍ୟମାନଙ୍କର ବ୍ୟାଖ୍ୟା ମାନିବାକୁ ମଜଭୁତ୍ । ସୁଖଶାନ୍ତି ଆସିବ କେଉଁ ଉପାୟରେ ? ଏକତା ଆସିବ କେଉଁ ଉପାୟରେ ?

—୦—

ଏ ଜଗତରେ ଆତ୍ମପ୍ରଶଂସାର ପକ୍ଷପାତୀ ନୁହେଁ, ଏପରି ଶହକରେ କେତେ ଜଣ ଅଛନ୍ତି ? ତାଙ୍କ ସଂଖ୍ୟାନଗଣ୍ୟ ବୋଇଲେ ଚଳେ । ଅନେକେ ଆତ୍ମପ୍ରଶଂସା ଶୁଣି ଆନନ୍ଦିତ ହୁଅନ୍ତି; ଅନେକେ ଆତ୍ମପ୍ରଶଂସା ଶୁଣି ବିରକ୍ତିର ବାହ୍ୟ ଛଳନା କଲେ ସୁଦ୍ଧା ସେମାନଙ୍କ ଅନ୍ତରରେ ଆହ୍ଲାଦର ଢେଉ ଖେଳୁଥାଏ । ଜଣକେତେ ଆପଣା ମୁଖରେ ଆତ୍ମପ୍ରଶଂସା ଗାଆନ୍ତି । ପ୍ରଶଂସା ଯେ କର୍ଣ୍ଣପ୍ରୀତିକର ଏଥିରେ ସନ୍ଦେହ ନାହିଁ । ଉଚିତ ପ୍ରଶଂସା କରିବାଲୋକ ଧନ୍ୟ, ଶୁଣିବା ଲୋକ ଧନ୍ୟ । ଅନୁଚିତ ପ୍ରଶଂସାର ବକ୍ତା ଓ ଶ୍ରୋତା ଉଭୟେ ନିନ୍ଦ୍ୟ ।

— ୦ —

ଜାତିର ହେଉ ବା ଦେଶର ହେଉ, ଅନୁଚିତ ପ୍ରଶଂସା କେତେଦୂର ହିତକର, ତାହା ପ୍ରକାଶ କରିବା ପୂର୍ବରୁ ଭାବିବା ଉଚିତ୍ । ଅଯଥା ପ୍ରଶଂସା ପ୍ରକାଶଦ୍ୱାରା ଦେଶହିତୈଷିତା ଦେଖାଇବାକୁ ଯିବା ଅନିଷ୍ଟକର ବୋଲି ଅନେକେ ଭାବନ୍ତି । ତାହା ଅଯୌକ୍ତିକ ନୁହେଁ ।

— ୦ —

ଯେଉଁମାନେ ସମାଲୋଚକ ହେବାକୁ ପ୍ରୟାସୀ ସେମାନଙ୍କ ଦାୟିତ୍ୱ ଅତ୍ୟନ୍ତ ବେଶ । ସେମାନଙ୍କ ଅଯଥା ନିନ୍ଦା ପ୍ରଶଂସାରେ ସମାଜର ଓ ଜାତିର ବା ଦେଶର ଅନିଷ୍ଟ ହୁଏ, ତାହା ବୁଝାଇବାକୁ ହେବ, ନାହିଁ । ଅନେକ ବିଜ୍ଞବ୍ୟକ୍ତି, ଏମନ୍ତ କି ପାଶ୍ଚାତ୍ୟ ଶିକ୍ଷିତ ବିଜ୍ଞବ୍ୟକ୍ତି ମଧ୍ୟ ଲୋକପ୍ରିୟ ହେବା ଅଭିପ୍ରାୟରେ କିମ୍ବା ଆପଣା ଆଡ଼କୁ ଲୋକମତ ଆଣିବା ନିମନ୍ତେ ସ୍ୱଜାତିର ଓ ସ୍ୱଦେଶର ଅହିତକର ମତକୁ ପ୍ରଶଂସା କରିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ ।

— ୦ —

ଆମର ଯାହା ତାହା ସୁନ୍ଦର, ଏ ମତ କଅଣ ପ୍ରଶଂସନୀୟ ? ଆଜିକାଲି ଏ ଧାରଣା କାହିଁକି ଶିକ୍ଷିତଙ୍କ ହୃଦୟକୁ ଆକ୍ରମଣ କରୁଅଛି, ତାହା ବୁଝିବା କଠିନ । ବୋଧହୁଏ ଅବନତିର ନିମ୍ନତର ସୋପାନ ବାକି ଅଛି ।

— ୦ —

ଗୋଟିଏ ପ୍ରବାଦ ଅଛି, ଶିଖିଲୁ କାହୁଁ ? ଠିକିଲି ଯହୁଁ । ଜଳସ୍ରୋତ ବାଧାପ୍ରାପ୍ତ ହେଲେ ଗତି ପରିବର୍ତ୍ତନ କରେ । ପିପିଲିକା ବା ଅନ୍ୟାନ୍ୟ କୀଟ ଗତିପଥରେ ବାଧା ପାଇ ସୁପନ୍ଥାର ଅନ୍ୱେଷଣ କରି ଆପଣା ଗନ୍ତବ୍ୟ ସ୍ଥାନକୁ ଯାଏ ବା ଯିବାର ଚେଷ୍ଟା କରେ । ଅଗ୍ରବର୍ତ୍ତୀ ଅନିଷ୍ଟ ଦେଖି ସୁଦ୍ଧା ମାନବ ମତ ପରିବର୍ତ୍ତନ କରିବାକୁ କୁଣ୍ଠିତ ହୁଏ । ଏଥିରୁ ବଳି ଆଶ୍ଚର୍ଯ୍ୟର କଥା କଅଣ ଅଛି ?

— ୦ —

ଅନ୍ୟାନ୍ୟ ବିଷୟ ପରି ପରୀକ୍ଷାର ମଧ୍ୟ ଗୋଟାଏ ନିର୍ଦ୍ଦିଷ୍ଟ ସମୟ ଅଛି । ଚିରକାଳ ପରୀକ୍ଷା ଚାଲିଥିଲେ ସେଥିରେ ଅନିଷ୍ଟର ସମ୍ଭାବନା । ରୋଗ ପ୍ରତି ଗୋଟାଏ ଔଷଧର ବ୍ୟବହାର ପରୀକ୍ଷା ନିମନ୍ତେ ଦୀର୍ଘକାଳ ପ୍ରଯୋଜ୍ୟ ନୁହେଁ, ଅନିଷ୍ଟ ନିଶ୍ଚୟ ହୁଏ । ଯେଉଁ ପଥ୍ୟ ରୋଗିର ଉପକାରକ ନୁହେଁ, ତାହାକୁ ପରୀକ୍ଷା ନିମନ୍ତେ ନ ରଖି ତ୍ୟାଗ କରିବା ଉଚିତ । ଯେଉଁ ବ୍ୟବସ୍ଥା ବା ମତ, ସମାଜ ବା ଜାତି ପକ୍ଷରେ ଅନିଷ୍ଟକର, ତାହା ପରୀକ୍ଷା ନିମନ୍ତେ ଚିରକାଳ ପୋଷି ରଖିବା ଉଚିତ କି ? ରୋଗୀପ୍ରତି କୁପଥ୍ୟ ସଦୃଶ ସମାଜ ଓ ଜାତି ପ୍ରତି କୁବ୍ୟବସ୍ଥା ଅହିତକର ନୁହେଁ କି ?

— ୦ —

ଆମ୍ଭମାନଙ୍କର ମୁନି ଋଷିମାନେ ଅହମ୍ମକ୍ ନ ଥିଲେ କିଏ ବା କହୁଛି ? ମାତ୍ର ସେମାନେ ଯାହା ଲିପିବିଦ୍ଧ କରିଯାଇଅଛନ୍ତି, ତାହା ସତ୍ୟ, ଧ୍ରୁବ ଓ ସନାତନ ବୋଲି ଯେଉଁମାନେ ମତବ୍ୟକ୍ତ କରନ୍ତି, ସେମାନଙ୍କୁ ବୋଧହୁଏ ଅହମ୍ମକ୍ ବୋଲିବା ଅସଙ୍ଗତ ବା ଅଯୌକ୍ତିକ ନୁହେଁ । ଦେଶ, କାଳ ଓ ପାରିପାର୍ଶ୍ୱିକ ବ୍ୟାପାର ଲକ୍ଷ୍ୟରେ ସେମାନେ ଯାହା ଲିପିବଦ୍ଧ କରିଗଲେ ତାହା ଚିରକାଳ ସତ୍ୟ ଓ ଧ୍ରୁବ ବୋଲି ବିବେଚିତ ହେବ, ଏ ଧାରଣା ସେମାନଙ୍କ ହୃଦୟରେ ନ ଥିଲା । ପୂର୍ବପ୍ରଚଳିତ ରୀତି, ବ୍ୟବସ୍ଥା ଓ ମତର ସାଫଲ୍ୟ ଦେଖା ନ ଗଲେ ନୂତନ ମତ ବା ବ୍ୟବସ୍ଥା ପ୍ରଣୀତ ଓ ଲିପିବଦ୍ଧ ହୁଏ । ଏହା ବରାବର ଘଟି ଆସୁଛି । ଏହା ଦେଖି ସୁଦ୍ଧା ଯେଉଁମାନେ ମୁନି ଋଷିମାନଙ୍କର ମତକୁ ଅଭ୍ରାନ୍ତ, ସତ୍ୟ, ଧ୍ରୁବ ଓ ସନାତନ ବୋଲି ଭାବନ୍ତି, ସେମାନଙ୍କୁ ଅହମ୍ମକ୍ ବୋଲିବାରେ କି ଦୋଷ ?

— o —

ବେଦବଚନର ନାମାନ୍ତର ପ୍ରବଚନ । ପ୍ରବଚନ ସନାତନ, ସତ୍ୟ ଓ ଅଭ୍ରାନ୍ତ, ଏହା ହିନ୍ଦୁମାତେ ହିଁ ମୁଖରେ ସ୍ୱୀକାର କରନ୍ତି । ଈଶ୍ୱରବିଶ୍ୱାସ ତାହାର ଥାଉ ବା ନ ଥାଉ, ସେ ବେଦର ଅପ୍ରାମାଣ୍ୟତା ମୁଖରେ ପ୍ରକାଶ କଲା, ସେ ନାସ୍ତିକ । ମାତ୍ର ଯେଉଁ ଉପନିଷଦର ଋଷି କହିଲେ 'ନାୟମାତ୍ମା ପ୍ରବଚନେନ ଲଭ୍ୟ' ତାହାଙ୍କୁ ତ କେହି ନାସ୍ତିକ ଆଖ୍ୟା ଦେଲେ ନାହିଁ ? ଜଣେ ଋଷି ଗାଇଲେ—ଅପରା ଋଗ୍‌ବେଦୋ, ଯଜୁର୍ବେଦୋ ସାମବେଦୋ ଅଥର୍ବାଙ୍ଗିରସଃ ଇତ୍ୟାଦି, ପରା; ଯୟା 'ତଦକ୍ଷରଂ ଅଧିଗମ୍ୟତେ' ଏ ଉକ୍ତି ଦ୍ୱାରା ବେଦର ସର୍ବଶ୍ରେଷ୍ଠତ୍ୱ ରହିଲା କେଉଁଠାରେ ? ସମନ୍ୱୟକାରୀ କହିବେ, ବେଦ, କର୍ମକାଣ୍ଡ; ଉପନିଷଦ୍ ଜ୍ଞାନକାଣ୍ଡ; ଉଭୟ ମତର ଅନୈକ୍ୟ ଥିଲେ ମଧ୍ୟ ହିନ୍ଦୁର ଉଭୟ ମତରେ ବିଶ୍ୱାସ ସ୍ଥାପନ କରିବା ଉଚିତ୍ । ପୌରାଣିକ ଯୁଗରେ ମଧ୍ୟ କୌଣସି କୌଣସି ପୁରାଣ ଓ ଗୀତା ମଧ୍ୟ ବେଦର ନିନ୍ଦା କରି ଯାଇଅଛନ୍ତି ଏବଂ ଜ୍ଞାନ ଓ ଭକ୍ତିର ପ୍ରଶଂସା କରିଅଛନ୍ତି । ଯୋଡ଼ିଏ ତରୀରେ ଦିଆଯିବା ପାଦ ଭଳି ଆମମାନଙ୍କର ବିଶ୍ୱାସ ଟଳମଳ । ଶାସ୍ତ୍ରୀୟ ଗୌରବ ନଷ୍ଟ ହେବା ଭୟରେ ଆମ୍ଭେମାନେ ଆତ୍ମମତ ବ୍ୟକ୍ତ କରିବାକୁ ଅସମର୍ଥ ।

ଧର୍ମଶାସ୍ତ୍ର ସାମାଜିକ ଆଇନ୍ । ଆଇନର ବିମାନ ପରିବର୍ତ୍ତନ ସମୟଭେଦରେ କରାଯାଏ । ଯେଉଁ ବ୍ୟବସ୍ଥା ଦୁଇ ହଜାର ବର୍ଷ ପୂର୍ବରେ ସମାଜର ହିତକର ଥିଲା ବା ଗ୍ରାହ୍ୟ ଥିଲା, ତାହାକୁ ଆଜି ସମାଜର ହିତକର ଓ ଗ୍ରାହ୍ୟ ବୋଲି ଭାବିବା ଅବିବେଚନାର କାର୍ଯ୍ୟ । ଏ ଘୋର କଳିଯୁଗରେ, ରେଲ୍, ଜାହାଜ, ମଟର୍, ଏରୋପ୍ଲେନ୍ ଯୁଗରେ ପୂର୍ବ ମୁନିଋଷିକୃତ ଅଶୌଚ ବ୍ୟବସ୍ଥା, ଶୁଦ୍ଧି, ଶ୍ରାଦ୍ଧ ଓ ବିବାହ ଆଦି ଖର୍ଚ୍ଚବ୍ୟବସ୍ଥାକୁ ଅନିଚ୍ଛା ସତ୍ତ୍ୱେ ନତମସ୍ତକରେ ମାନିବାକୁ ବାଧ ହେବା ଅବନତିଧୋୟକ ନୁହେଁ କି ?

— o —

ପ୍ରତ୍ୟେକ ଦେଶରେ ଅନ୍ଧବିଶ୍ୱାସ ଓ କୁସଂସ୍କାର ବିଦ୍ୟମାନ ଅଛି । ମାତ୍ର ଭାରତବାସୀର ଅନ୍ଧବିଶ୍ୱାସ ଓ କୁବିଶ୍ୱାସ ମଜ୍ଜାଗତ । ଏପରି ହେବାର କାରଣ ଏହି ଯେ, ଏ ଦେଶର ଶିକ୍ଷିତ ଅଶିକ୍ଷିତ କେହି ସଂସ୍କାରର ପକ୍ଷପାତୀ ନୁହନ୍ତି । ବ୍ୟକ୍ତିଗତ ସ୍ୱାର୍ଥଭେଦ ସଙ୍ଗେ ଜାତିଗତ ସ୍ୱାର୍ଥଭେଦ ବିଦ୍ୟମାନ ଥିବାରୁ ନିଜର ଓ ସ୍ୱଜାତିର ସ୍ୱାର୍ଥ ବଜାୟ ରଖିବା ନିମନ୍ତେ ଆତ୍ମମତ ଗୋପନ କରି ଶାସ୍ତ୍ରୀୟ ମତରେ ଅନ୍ୟର ମୁଣ୍ଡପାତ କରିବାକୁ ସମସ୍ତେ ବାହାଦୁର । ଏଠାରେ ସ୍ୱଜାତିର ଅର୍ଥ Nation ନୁହେଁ, କ୍ଷତ୍ରିୟ, ବ୍ରାହ୍ମଣ, କାୟସ୍ଥ, କରଣ ଇତ୍ୟାଦି, ଇତ୍ୟାଦି ।

— o —

କୌଣସି ସଂସ୍କାର ଏ ଦେଶରେ ହେଉ ଏହା କାହାରି ମତ ନୁହେଁ । ଆମ୍ଭେମାନେ କୁସଂସ୍କାରରେ ବୁଡ଼ିଥାଇଁ । କୁସଂସ୍କାରରେ ବୁଡ଼ିରହିଥିବା; ଏହା ହିଁ ପ୍ରାୟ ସମସ୍ତଙ୍କର ମତ । ଏ ବିଶ୍ୱାସ ପରା ଦେଶହିତୈଷିତାର ପରିଚାୟକ ?

— o —

ଜାତିଭେଦ ଥିଲା ଥାଉ, ବାଲ୍ୟ ବିବାହ ଥିଲା ଥାଉ, ବିଧବା ବିବାହ ପ୍ରଚଳିତ ନାହିଁ— ପ୍ରଚଳିତ ନୋହୁ । ଅଶୌଚ ପାଳନ କରିବାକୁ ହିଁ ହେବ, ଅଶୌଚ ପାଳନର ପରିଚାୟକ ଦୈନିକ କ୍ଷୌରକର୍ମ ବନ୍ଦ, କିନ୍ତୁ ବନ୍ଧୁ ଅନୁରୋଧରେ କିମ୍ବା ବନ୍ଧୁକୁ ଆପ୍ୟାୟିତ କରିବା ନିମନ୍ତେ ରାତ୍ରିରେ ଡିନର୍ ଗୋପନରେ ଚାଲି ଥାଉ । ଏପରି କେତେ ବା ଦାମ୍ଭିକତା ଓ ଆତ୍ମଗୋପନ ଭାରତବାସୀଠାରେ ବିଦ୍ୟମାନ ନାହିଁ ? ଆତ୍ମମତ ଗୋପନ କରି ଛଳରେ ଶାସ୍ତ୍ରୀୟ ମତର ସହାୟତା କରିବା ଆଧୁନିକ ଭାରତବାସୀର ସଂସ୍କୃତି ବା Culture.

'ସ୍ୱାଧୀନ ଚିନ୍ତା' ଆରମ୍ଭ କରିବାର ପ୍ରାୟ କୋଡ଼ିଏ ବର୍ଷ । ବୋଧହୁଏ ଶଶିବାବୁଙ୍କର ବିକ୍ଷିପ୍ତଚିନ୍ତା ଲେଖାର ଆରମ୍ଭ ଅନେକ ପଛେ । ମାତ୍ର ମୋର ସ୍ୱାଧୀନ ଚିନ୍ତା ଅପେକ୍ଷା ତାଙ୍କର

ବିକ୍ଷିପ୍ତ ଚିନ୍ତା ସମ୍ଭବତଃ କୋଡ଼ିଏ ଗୁଣରୁ ଅଧିକ ହେବ ପଛେ, କମ୍ ନୁହେଁ । ଚିନ୍ତାର ତ ଅଭାବ ନାହିଁ, ମାତ୍ର ସ୍ୱାଧୀନତାର ବଡ଼ ଅଭାବ । ନାମକରଣ ପଶ୍ଚାତ୍‌ପଦ କଲା ବୋଲାଯିବ ।

— ୦ —

ଖବରକାଗଜରେ ଦେଖିଲି, ନୂତନ ଦିଲ୍ଲୀରେ ବିରଲା ଗୋଟିଏ ଲକ୍ଷ୍ମୀନାରାୟଣ ମନ୍ଦିର ନିର୍ମାଣ କରି ତହିଁରେ ଦେବତା ସ୍ଥାପନ କଲେ । ବ୍ୟବସାୟପୁଷ୍ଟ ଧନୀବ୍ୟକ୍ତିଙ୍କର ମନ୍ଦିର ନିର୍ମାଣ କରିବା ସ୍ୱାଭାବିକ । ଏହା ଧନୀମାନଙ୍କର ପ୍ରାୟଶ୍ଚିତ୍ତ । ନାମ ମଧ୍ୟ ତ ଅଛି । ନାମଟା ଉପରି ପ୍ରାପ୍ୟ । ମନ୍ଦିର ନିର୍ମାତାଙ୍କ ବୈକୁଣ୍ଠପ୍ରାପ୍ତି ଶାସ୍ତ୍ରସମ୍ମତ । ଅନେକ ସମୟରେ ମନ୍ଦିର ନିର୍ମାଣ ନାମ ଓ ଯଶ ନିମିତ୍ତରେ, କି ବୈକୁଣ୍ଠ ପ୍ରାପ୍ତ୍ୟାଶାରେ କରାଯାଏ, ତାହା ଜଣାଯାଏ ନାହିଁ । କାରଣ, ବୈକୁଣ୍ଠ ସମ୍ପୂର୍ଣ୍ଣ କାଳ୍ପନିକ । କାରଣ, ବେଦରୁ ଜଣାଯାଏ, ବିକୁଣ୍ଠା ନାମକ ଗୋଟିଏ ଅସୁରୀ ଥିଲା, ତା'ର ପୁତ୍ରତ୍ୱ ସ୍ୱୀକାର କରିଥିଲେ ଇନ୍ଦ୍ର । ଏଣୁ ଇନ୍ଦ୍ରଙ୍କର ଏକ ନାମ ବୈକୁଣ୍ଠ ।

— ୦ —

ଆଜିକାଲି ମନ୍ଦିର ନିର୍ମାଣ ଅର୍ଥ ମୁଣ୍ଡଫଟା ବ୍ୟାପାର । ଏହି ମନ୍ଦିର ନିମନ୍ତେ ଅନେକ ହିନ୍ଦୁମୁସଲମାନମାନଙ୍କ ମୁଣ୍ଡ ଫାଟିବ, ସନ୍ଦେହ ନାହିଁ । ମାତ୍ର ଆଶା ଓ ଭରସା ଏତିକି ଯେ, ଏହି ମନ୍ଦିରର ଦ୍ୱାରୋଦ୍ଘାଟନକାରୀ ସ୍ୱୟଂ ମହାତ୍ମା ଗାନ୍ଧୀ ।

— ୦ —

ସେ ଦିନ ମାହିଷ୍ୟ ସଭାର ସଭାପତି ଶ୍ରୋତାମାନଙ୍କୁ କହିଲେ, ଶିକ୍ଷିତ ହୁଅ ବା ଶିକ୍ଷା ବିସ୍ତାରର ଚେଷ୍ଟା କର ଓ ମନ୍ଦିର ନିର୍ମାଣ କର । ମାହିଷ୍ୟ ଜାତିର ଉନ୍ନତି କଳ୍ପେ ଏହି ଦୁଇ ଗୋଟି ଉତ୍କୃଷ୍ଟ ବାଟ । ଶିକ୍ଷା ସହିତ ମନ୍ଦିର ନିର୍ମାଣର ସମ୍ବନ୍ଧ ମୋ ବୁଦ୍ଧିର ଅଗମ୍ୟ । ଏ ସବୁ କାର୍ଯ୍ୟ ଓ ଶିକ୍ଷା ଏକତାର ଅନ୍ତରାୟ, ଏହା ନିଶ୍ଚିତ ।

— ୦ —

ଦେବଯାତ୍ରା ନିମନ୍ତେ ପୂର୍ବେ ହିନ୍ଦୁ ମୁସଲମାନମାନଙ୍କର ମୁଣ୍ଡ ଫାଟୁଥିଲା ଏବେ ମଧ୍ୟ ଫାଟୁଅଛି । ମୁଣ୍ଡ ଫାଟେ ରାମ ଲାଲ୍, ଶାମ ଲାଲ୍, ଭୁଖନ୍ ବା ଆଉ କେତେଜଣଙ୍କର କିମ୍ବା ରହିମ୍, କରିମ୍, ପାଞ୍ଚୁ ବା ଆଉ ଜଣକେତେ ମୁସଲମାନଙ୍କର । ଏପରି ପୂର୍ବେ ଶୁଣିଥିଲୁଁ, ଏବେ ପ୍ରତିବର୍ଷ କାହିଁକି, ପ୍ରତି ପର୍ବରେ ଶୁଣୁଅଛୁଁ । ମହାମହୋପାଧ୍ୟାୟ, ଶାସ୍ତ୍ରୀ, ପଣ୍ଡିତ, ପୁରୋହିତ, କଥକ ଠାକୁରଙ୍କର ମୁଣ୍ଡ ଫାଟିବାର କେହି ଶୁଣିଥାଉଁ କି ? କିମ୍ବା ଡଲେମା, ମୌଲବୀମାନଙ୍କର ମୁଣ୍ଡ ଫାଟିବାର ଶୁଣି ଥାଉ ବି ? ମୁଞ୍ଜେ, ସବାରକର, ଜିନ୍ନା, ଆଜାଦଙ୍କର ମୁଣ୍ଡ ପୂର୍ବେ ଯେପରି ସୁଗୋଲ ଓ ସୁଠାମ ଥିଲା, ଆଜି ମଧ୍ୟ ସେହିପରି ରହିଅଛି ତେବେ ବି ବୁଝିବାକୁ ହେବ ଯେ, ଯେଉଁମାନେ ଧର୍ମଶାସ୍ତ୍ର ବୁଝନ୍ତି, ଧର୍ମମତ ଜାଣନ୍ତି ଏବଂ ସେଥିନିମନ୍ତେ ନାମଜାଦା, ସେମାନେ ଧର୍ମଯୁଦ୍ଧର ରଥୀ ଏବଂ ନିରକ୍ଷରଯାଜ ଯୋଦ୍ଧା । ଗୋଟିଏ ପ୍ରବାଦ ଅଛି— 'ଲଢ଼େ ସପାହି ନାମ୍ ସର୍ଦ୍ଦାର୍ ବା' । ଏହା ଭାରତମାତାଙ୍କ ଦୁର୍ଭାଗ୍ୟ !

— ୦ —

ଶ୍ଳୋକଟିଏ ଅଛି—

ବାଣିଜ୍ୟେ ବସତେ ଲକ୍ଷ୍ମୀଃ
ତଦର୍ଦ୍ଧଂ କୃଷିକର୍ମଣି
ତଦର୍ଦ୍ଧଂ ରାଜସେବାୟାଂ
ଭିକ୍ଷା ନୈବଚ ନୈବଚ ।

ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱବେଳେ ବୋଧହୁଏ ଏପରି ଧନାଗମ ପନ୍ଥା ପ୍ରଚଳିତ ଥିଲା । ବର୍ତ୍ତମାନ ଏଥିର ଓଲଟ ପାଲଟ ଦେଖାଯାଏ । ବାଣିଜ୍ୟର ଧନାଗମ ହୁଏ, ଏହା ପୂର୍ବେ ଥିଲା, ଏବେ ମଧ୍ୟ ଅଛି, ମାତ୍ର ବାଣିଜ୍ୟର ଆୟରୁ ଅର୍ଦ୍ଧେକ ଯେ କୃଷିକର୍ମରୁ ଲାଭ, ଏହା ଠିକ୍ ନୁହେଁ । ଆଜିକାଲି ବାଣିଜ୍ୟ ଉତ୍ତାରୁ ରାଜସେବା ଲାଭଜନକ । କୃଷକର ପରିଶ୍ରମ ପେଟପୋଷା ବ୍ୟାପାର ମାତ୍ର ।

— ୦ —

ଚାକରର ଅର୍ଥଲାଭର କି ତୁଳନା ଅଛି ? ତେବେ 'ଯଥା ନିଯୁକ୍ତୋଽସ୍ମି ତଥା କରୋମି' ମହାମନ୍ତ୍ରର ଯେଉଁମାନେ ଯାପକ, ସେମାନେ ନିଶ୍ଚୟ ଲାଭବାନ୍ ଓ ଧନୀ । ଅର୍ଜୁନ କି ସୁକ୍ଷଣରେ ଏ ବାକ୍ୟ ମୁଖରେ ଉଚ୍ଚାରଣ କଲେ ଏବଂ ଫଳରେ କୌରବମାନଙ୍କୁ ଜୟ କଲେ । ତଦବଧି ଏ ବାକ୍ୟର ମର୍ଯ୍ୟାଦା ରକ୍ଷା ନିମନ୍ତେ ପ୍ରାୟ ଲୋକେ ଚେଷ୍ଟିତ । କୃଷ୍ଣ ଅର୍ଜୁନଙ୍କଠାରୁ ଏହି ପ୍ରତିଶ୍ରୁତି ଶୁଣିବାକୁ ଆଶା କରିଥିଲେ । ଆଜିକାଲି ଡିକ୍ଟେଟର୍ (Dictator) ମାନେ ଅନୁଗତମାନଙ୍କଠାରୁ ସେହି ପ୍ରତିଶ୍ରୁତି ଶୁଣିବାକୁ ଆଶାନ୍ୱିତ । ଆନୁଗତ୍ୟ ବିନା ପ୍ରକୃତ ନ୍ୟାୟ ବା ଦୟା କେଉଁଠାରେ ମିଳେ ?

— ୦ —

ରାଜନୀତି କ୍ଷେତ୍ରରେ ବନ୍ଧୁତ୍ୱ ଓ ଶତ୍ରୁତାର ସ୍ଥାୟିତ୍ୱ ଅତି ଅଳ୍ପ । ଆଜି ଯେ ବନ୍ଧୁ କାଲି ସେ ଶତ୍ରୁ; ଆଜି ଯେ ଶତ୍ରୁ କାଲି

ସେ ବନ୍ଧୁ । ଇଉରୋପର ଘଟନା ସମୂହରୁ ଆମ୍ଭେମାନେ ଏହା ଦେଖୁଥାଉ । ରୁଷ ଜାତିର ନାମ ଉଚ୍ଚାରଣ କରିବାକୁ ଯେଉଁମାନେ ପୂର୍ବେ ଘୃଣାବୋଧ କରୁଥିଲେ, ଆଜି ସେହି ଋଷିଜାତିର କରସ୍ପର୍ଶ କରିବାକୁ ଲାଳାୟିତ । 'କିମାଶ୍ଚର୍ଯ୍ୟମତଃପରଂ' କଥା ରାଜନୀତିକମାନଙ୍କ କାର୍ଯ୍ୟରେ ପ୍ରଯୁଜ୍ୟ ନୁହେଁ । ଫ୍ରେଙ୍କୋ ସ୍ପେନର ବର୍ତ୍ତମାନ ହର୍ତ୍ତାକର୍ତ୍ତା, ଏହା ସମସ୍ତେ ସ୍ୱୀକାର କରିବାକୁ ବାଧ ହୋଇଅଛନ୍ତି । 'ତଦ୍ଧି ଜାନନ୍ତି ତଦ୍‌ବିଦଃ' । ପରାଧୀନ ଜାତି ତା' ଭିତରେ ପ୍ରବେଶ କରି ପାରିବାରୁ ବଞ୍ଚିତ ।

— ୦ —

ଶଙ୍କରଙ୍କ ମତରେ ବ୍ରହ୍ମବିଦ୍ୟାରେ ବ୍ରାହ୍ମଣର ହିଁ ବିଶେଷ ଅଧିକାର । ଲେଖିବାକୁ ମନା କଲା କିଏ ? ମାତ୍ର ଏହି ଅନୁଶାସନଦ୍ୱାରା ବ୍ରହ୍ମବିଦ୍ୟାର ଶ୍ରୀବୃଦ୍ଧି ବା ପ୍ରସାର ହେଲା ନାହିଁ । ଅଥଚ ଆଜି ବ୍ରାହ୍ମଣମାନେ ବ୍ରହ୍ମବିଦ୍ୟାର ସାଧନ ଅପେକ୍ଷା ନାନା ଉପାୟରେ ଅର୍ଥାଗମର ଚେଷ୍ଟା କଲେଣି ବେଶି । ଗାୟତ୍ରୀ ଅପେକ୍ଷା ରାଧେଶ୍ୟାମର ଆଦର ବଢ଼ୁ ନାହିଁ କି ? ଦଣ୍ଡଧାରଣ ଅପେକ୍ଷା କଣ୍ଠିଧାରଣ ସୁବିଧାଜନକ । କାଳସ୍ୟ କୁଟିଳା ଗତିଃ ।

— ୦ —

'ବେଦ ପୂର୍ବକସ୍ତୁ ନ୍ୟସ୍ତାଧିକାରଃ ଶୂଦ୍ରାଣାମିତି ସ୍ଥିତଂ' । ବେଦପୂର୍ବକ ଶୂଦ୍ରାଦିର ଜ୍ଞାନ ଜନ୍ମି ନ ପାରେ । ଅର୍ଥାତ୍ ଶୂଦ୍ରର ବେଦାଧିକାର ନାହିଁ । ଏହା ଶଙ୍କରଙ୍କ ମତ । ଏ ମତ ପରା ବଡ଼ ଉଦାର । ଶଙ୍କରସ୍ତାବକମାନେ କହନ୍ତି । ବେଦର ଅଧିକାରୀ ଅର୍ଥ କଅଣ ? ବେଦକୁ ସଂଗ୍ରହ କରି ଘରେ ବା ଲାଇବ୍ରେରୀରେ ସାଇତିବା, କି ବେଦାଧ୍ୟୟନ କରିବା, ନା ଆଉ କିଛି ? ପ୍ରଥମୋକ୍ତ ଦୁଇ ଅର୍ଥରେ ଯେବେ ଅଧିକାରୀ ଅର୍ଥ ପ୍ରଯୁଜ୍ୟ, ତେବେ ଭଟ୍ଟ ଶ୍ରୀ ମୋକ୍ଷ ମୂଲାର୍ ପ୍ରଭୃତି ଇଉରୋପୀୟ ପଣ୍ଡିତଗଣ ମୋକ୍ଷାଧିକାରୀ । ଶୂଦ୍ରାଦିଙ୍କୁ ସିନା ଶଙ୍କର ଡରାଇ ପାରିଲେ, ବେଦାଧ୍ୟୟନରୁ ଓ ବେଦ ଶ୍ରବଣରୁ ବଞ୍ଚିତ କଲେ, ମାତ୍ର ବିଦେଶରୁ ଆଗନ୍ତୁକମାନେ ଯେ ଦେଶ ନେବେ-ବେଦ ନେବେ, ଏ ଦୂରଦର୍ଶିତା ଶଙ୍କରଙ୍କର କେଉଁଆଡ଼େ ଥିଲା ?

— ୦ —

ସିନ୍ଧୁ ପ୍ରଦେଶରେ ଓଁ ମଣ୍ଡଳୀ ନାମକ ନୂତନ ଧର୍ମମତର ପ୍ରଚଳନ ଦେଖାଯାଉଅଛି । ପ୍ରେମ ସଂକୀର୍ତ୍ତନରେ ଶାଖା ପ୍ରଶାଖା ତ ବଢ଼ୁଛି । ସ୍ୱାମୀମାନଙ୍କ ଭାରରେ ତ ଭାରତ ଟଳମଳ । ଜଣକେତେ ସ୍ୱାମୀ ବିଲାତ ବା ଆମେରିକା ଯାଇ ଗୋଟିକେତେ ଶିଷ୍ୟ ଶିଷ୍ୟା ଲାଭ କରି ଫେରି ଆସିଲେ ଏ ଦେଶର ଅନେକଙ୍କର ଗର୍ବର ସୀମା ନ ଥାଏ । ବିଂଶ ଶତାବ୍ଦୀରେ ଯେତେବେଳେ ଦେଖାଯାଏ ଯେ, ଯେଉଁ ଧର୍ମର ଅସ୍ତିତ୍ୱ ହେତୁ ଦେଶର ଅବନତି, ସେହି ଧର୍ମମତମାନଙ୍କୁ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଉଜାଡ଼ କରିବା କର୍ତ୍ତବ୍ୟ ସେହି ଜାତିମାନଙ୍କୁ ପୋଷଣ କରିବା ଭାରତର ଅବନତିର ବାଟ ନୁହେଁ କି ?

— ୦ —

ବାବା ମେହେରାଙ୍କ ଆଶ୍ରମ ନିମନ୍ତେ ଏକଶତମାଣ ଭୂମି ଓ ପାଞ୍ଚ ଲକ୍ଷ ଟଙ୍କା ଦରକାର । ଦାତା ଅଛନ୍ତି ଦେବେ; କିଏ ମନା କରିବ ?

ବହୁଦିନ ପରେ ସ୍ୱାଧୀନ ଚିନ୍ତା ଆରମ୍ଭ, ଆଜି ଏତିକି ।

ଧର୍ମ ଧାରଣା ଏ ଜଗତ ।
ଧର୍ମେ ହୁଅଇ ଆତଯାତ ॥

ହଠାତ୍ ମନେ ପଡ଼ିଲା । ପଢ଼ିଥିଲି କି ଶୁଣିଥିଲି, ଠିକ୍ ମନେ ପଡ଼ୁ ନାହିଁ । ଯାହାହେଉ ଏହି ଧର୍ମ ଶବ୍ଦର ଅର୍ଥ ମନକୁ ଆନ୍ଦୋଳିତ କରେ । ଜଗତ୍ ଅର୍ଥ କି Universe ? ଜୀବସମୂହ ବା ମାନବଜାତି ? ଜଟିଳ ସମସ୍ୟା ! ପ୍ରାକୃତିକ ନିୟମଦ୍ୱାରା ବିଶ୍ୱବ୍ରହ୍ମାଣ୍ଡ ଚାଳିତ, ମାତ୍ର ମାନବକୃତ ଧର୍ମଦ୍ୱାରା ନୁହେଁ । Universal law ବା Law of Nature ଅର୍ଥରେ ଯେବେ ଏହି ଧର୍ମଶବ୍ଦ ପ୍ରଯୁକ୍ତ, ତାହାହେଲେ କୌଣସି ଆପତ୍ତି ଥାଇ ନ ପାରେ । ମାତ୍ର ଯେବେ ଧର୍ମ ଅର୍ଥ ମାନବକୃତ ଧର୍ମ ତାହାହେଲେ ଉପରିଉକ୍ତ ପଦଟି ଯୁକ୍ତିମୂଳକ ନୁହେଁ ।

— ୦ —

ଏହି ଧର୍ମଶବ୍ଦର ଅର୍ଥ କି ହିନ୍ଦୁଧର୍ମ, ଇସଲାମ ଧର୍ମ ବା ଖ୍ରୀଷ୍ଟଧର୍ମ ? ଏଥିମଧ୍ୟରୁ ଗୋଟିଏ ଦ୍ୱାରା ମଧ୍ୟ ଜଗତ୍ ବା ମାନବଜାତି ଆତଯାତ ହେଉ ନାହାନ୍ତି ।

— ୦ —

ହିନ୍ଦୁଧର୍ମର ସର୍ବଶ୍ରେଷ୍ଠତ୍ୱ ଥିଲେ ଆଜି ମନ୍ଦିରରେ ଗାଈମୁଣ୍ଡ, ପ୍ରାଙ୍ଗଣରେ ଗାଈଗୋଡ଼ ପଡ଼େ କାହିଁକି ? ମସଜିଦ୍ ନିକଟରେ ବାଦ୍ୟଧ୍ୱନି ହେବା ମାତ୍ରକେ ମୁସଲମାନମାନେ ରେରେକାର ଧ୍ୱନି ସହିତ ହିନ୍ଦୁଙ୍କ ମୁଣ୍ଡ ଫଟାନ୍ତି କାହିଁକି ? ଇସ୍‌ଲାମ୍ ଧର୍ମ ତଥୈବଚ । ସିଆ ସୁନ୍ନୀଙ୍କ ବିବାଦ ଆମ୍ଭେମାନେ ଶୁଣୁଥାଉଁ । ମହରମ ବେଳେ ମୁସଲମାନମାନଙ୍କ ମୁଣ୍ଡ ଫାଟେ ।

ଅନ୍ଧବିଶ୍ୱାସ ଉପରେ ଯେଉଁ ଧର୍ମର ଭିତ୍ତି, ତହିଁରେ ମାନବର ଆସ୍ଥା ଚିରସ୍ଥାୟୀ ହୋଇ ନ ପାରେ । ଏଣୁ ଧର୍ମର ଶାଖା ପ୍ରଶାଖା ବୃଦ୍ଧିପ୍ରାପ୍ତ ହୋଇ ମାନବ ସମାଜର ହାନି କରୁଅଛି ।

— ୦ —

କୌଣସି ଧର୍ମର ପ୍ରବର୍ତ୍ତକ ଜଣେ ନୁହେଁ । ଧର୍ମ ପଥର ବ୍ୟବସ୍ଥା ଜଣକଦ୍ୱାରା ପ୍ରବର୍ତ୍ତିତ ହୋଇ ନାହିଁ । ପୂର୍ବ ପୂର୍ବ ପ୍ରବର୍ତ୍ତକମାନଙ୍କ ମତକୁ ପରବର୍ତ୍ତିଗଣ ଗ୍ରହଣ କରି ଓ ପରିବର୍ତ୍ତନ କରି ଉତ୍ତର ପୁରୁଷମାନଙ୍କୁ ଦେଇ ଆସିଅଛନ୍ତି ।

— ୦ —

ପ୍ରାଚୀନ ଧର୍ମମତ ପ୍ରବର୍ତ୍ତକ ବା ସଂଗ୍ରାହକମାନେ ଅଭ୍ରାନ୍ତ ଥିଲେ କି ? ତାହା କଦାପି ନୁହେଁ । ଯେହେତୁ ଆବହମାନକାଳରୁ ପ୍ରଥମ ପ୍ରବର୍ତ୍ତିତ ଧର୍ମ ଅକ୍ଷୁଣ୍ଣ ଭାବରେ ଆଜିଯାଏ ରହି ନାହିଁ । ପରିବର୍ତ୍ତନ, ପରିବର୍ଦ୍ଧନ କଟାଛଟା ଆମ୍ଭମାନଙ୍କର ପ୍ରତ୍ୟକ୍ଷ । ଗୁରୁପରମ୍ପରା ନ୍ୟାୟରେ ଅନ୍ଧବିଶ୍ୱାସର ପକ୍ଷପାତୀ ଆମ୍ଭେମାନେ ତାହା ମାନି ଆସୁଅଛୁ ।

— ୦ —

ଧର୍ମ ଧାରଣା ଏ ଜଗତ
ଧର୍ମେ ହୁଅଇ ଆତଯାତ

ଏଥିରେ ଧର୍ମଶବ୍ଦର ଅର୍ଥ ଜାତିଗତ ବା ସମାଜଗତ ଧର୍ମ ବା ବିଶ୍ୱାସ ନୁହେଁ ବୋଲି ଅନୁମିତ ହୁଏ । ଏହାର ଅର୍ଥ ମାନବପ୍ରେମ ଏବଂ ଜଗତ୍ ଅର୍ଥ ମାନବ ଜାତି ।

ମାନବ ମାନବକୁ କେବଳ ପ୍ରେମଦ୍ୱାରା ଆପଣାର କରିପାରେ ଏବଂ ଯାବତ୍ ପ୍ରେମର ଆଦାନ ପ୍ରଦାନ ଅକ୍ଷୁଣ୍ଣ ଥାଏ, ତାବତ୍ ମାନବଜାତିର ଆତଯାତରେ ବିରୋଧ ହୁଏ ନାହିଁ ଏତଦ୍‌ଭିନ୍ନ ଏ ପଦର ଅନ୍ୟାର୍ଥ ମନକୁ ପାଉ ନାହିଁ ।

— ୦ —

ରାମାୟଣରେ ଗୋଟିଏ ଏଭଳିଆ ଶ୍ଳୋକ ଅଛି—

''ସତ୍ୟେନାର୍କଃ ପ୍ରତିପତି
ସତ୍ୟେନାପ୍ୟାୟତେ ଶଶୀ,
ସତ୍ୟେନାମୃତମୁଭୂତଂ
ସତ୍ୟେ ଲୋକଃ ପ୍ରତିଷ୍ଠିତଃ ।''

ପ୍ରଥମ ତିନି ପାଦରେ ସତ୍ୟର ଅର୍ଥ ପ୍ରାକୃତିକ ନିୟମ, (Natural law) ଶେଷ ପାଦରେ ସତ୍ୟର ଅର୍ଥ ଅଖଣ୍ଡ ଶ୍ରଦ୍ଧା ବା ମନର ନିର୍ମଳତା । ବିଶ୍ୱାସର ବ୍ୟତ୍ୟାସ ଯାବତୀୟ ଅନିଷ୍ଟର ମୂଳ ।

— ୦ —

Dictator (ଡିକ୍ଟେଟର୍)ର ଠିକ୍ ପ୍ରତିଶବ୍ଦ ଦୁଷ୍ପ୍ରାପ୍ୟ ବୋଇଲେ ଚଳେ । ଯାହାଙ୍କ ପ୍ରଭୁତ୍ୱ ଓ ପ୍ରତିପତ୍ତିକୁ ସମାଜ ବା ଜାତିବିଶେଷ ନତମସ୍ତକରେ ସ୍ୱୀକାର କରନ୍ତି, ତାହାଙ୍କୁ ହିଁ ଡିକ୍‌ଟେଟର୍ ବୋଲାଯାଇପାରେ । ସମ୍ରାଟ୍, ରାଜା ଯେ ଡିକ୍‌ଟେଟର୍ ହେବେ, ଏପରି ନୁହେଁ । ଷ୍ଟାଲିନ୍, ହିଟ୍‌ଲର୍, ମୁସୋଲିନୀ ଯଥାକ୍ରମେ ରୁଷିଆ, ଜର୍ମାନୀ ଓ ଇଟାଲୀର ଡିକ୍‌ଟେଟ୍‌ର୍; ଗାନ୍ଧି ଭାରତୀୟ କଂଗ୍ରେସର ଡିକ୍ଟେଟର୍ । କୃଷ୍ଣ ପାଣ୍ଡବମାନଙ୍କର ଡିକ୍ଟେଟର୍ ଥିଲେ । ଡିକ୍ଟେଟର୍‌ମାନଙ୍କର ସ୍ୱକୀୟ ଉତ୍ତରାଧିକାରୀ କେହି ନ ଥାନ୍ତି ଏବଂ କୌଣସି ଦେଶ ବା ସମାଜ ଯେ ବରାବର ଡିକ୍ଟେଟର୍ କର୍ତ୍ତୃକ ଚାଳିତ, ଏହା ନୁହେଁ ।

— ୦ —

ଡିକ୍ଟେଟର୍‌ମାନଙ୍କର ପ୍ରତିପତ୍ତି ଅକ୍ଷୁଣ୍ଣ ଥିବାଯାଏ ସେମାନେ ପ୍ରତ୍ୟେକେ ପ୍ରଚାର କରନ୍ତି, 'ମାମେକଂ ଶରଣ ବ୍ରଜଂ'। ବସ୍ତୁତଃ ଡିକ୍ଟେଟର୍ ଚାଳିତ ଦେଶ ବା ସମାଜରେ ଡିକ୍ଟେଟର୍‌ଙ୍କ ପ୍ରତିଦ୍ୱନ୍ଦ୍ୱୀ ରହିବା ତା ଦୂରର କଥା, ଏମନ୍ତ କି କୌଣସି ସମକକ୍ଷର ସ୍ଥାନ ମଧ୍ୟ ସ୍ପୃହଣୀୟ ନୁହେଁ।

— ୦ —

ପାଣ୍ଡବ ପକ୍ଷର ଜୟ ହେଲା; ମାତ୍ର ପାଣ୍ଡବଙ୍କ ଉତ୍ତରାଧିକାରୀଙ୍କୁ ଚଳାଇବାକୁ କୃଷ୍ଣଙ୍କ ପରି କୌଣସି ଡିକ୍ଟେଟର୍ ରହିଲେ ନାହିଁ । ପରୀକ୍ଷିତ ଜନମେଜୟ ପଙ୍ଗୁ ।

— ୦ —

ଇଉରୋପର ଡିକ୍ଟେଟର୍‌ମାନେ ଆପଣା ଆପଣା ଉତ୍ତରାଧିକାରୀ ତିଆରି କରୁଅଛନ୍ତି କି ନାଁ, କିଏ ଜାଣେ ? ମାତ୍ର ଗାନ୍ଧି ଯେ ନିଜର ସ୍ଥାନ ଅଧିକାର କରିବାକୁ କୌଣସି ଉତ୍ତରାଧିକାରୀ ତିଆରି କରୁନାହାନ୍ତି, ଏହା ଠିକ୍। ବର୍ଷକୁ ବର୍ଷ କଂଗ୍ରେସ୍ ପ୍ରେସିଡେଣ୍ଟ୍ ନିର୍ବାଚିତ ହେବା ସୁନିଶ୍ଚିତ, ମାତ୍ର ଗାନ୍ଧିଙ୍କ ସ୍ଥାନରେ ପ୍ରତିଷ୍ଠିତ ହେବ କିଏ ?

ଉପବାସଦ୍ୱାରା ଗାନ୍ଧିଙ୍କର ସ୍ଥାନ ମିଳି ପାରେ ନାହିଁ । ଅନେକ ଦେଶପ୍ରେମୀ ଗାନ୍ଧୀଙ୍କ ଅପେକ୍ଷା ବହୁଦିନ ଉପବାସ କରିଅଛନ୍ତି, କରୁଅଛନ୍ତି, କରିବେ, ମାତ୍ର ଉପବାସଦ୍ୱାରା ଏ ମହତ୍ତ୍ୱ ପ୍ରାପ୍ୟ ନୁହେଁ। ଅସହଯୋଗ ଦ୍ୱାରା ? ନାହିଁ ।

ସତ୍ୟାଗ୍ରହ ଦ୍ୱାରା ? ଗାନ୍ଧୀଙ୍କ ଭିନ୍ନ ଅନ୍ୟ କେହି ଏହା ବୁଝିବାକୁ ଅକ୍ଷମ । ସମ୍ଭବତଃ ଭବିଷ୍ୟତ୍‌ରେ ଡିକ୍ଟେଟ୍‌ର ଅନାବଶ୍ୟକ । ଜନନିର୍ବାଚିତ ପ୍ରେସିଡେଣ୍ଟଙ୍କଦ୍ୱାରା କଂଗ୍ରେସ ଚଳିବ । ତାହା ହେଉ ।

— ୦ —

ଦାସତ୍ୱ ଦୁଇ ପ୍ରକାର ବୋଲାଯାଇପାରେ । ପରକୃତ ଦାସତ୍ୱ ଓ ମାନସିକ ଦାସତ୍ୱ । ପ୍ରଥମୋକ୍ତ ଦାସତ୍ୱରୁ ଅବ୍ୟାହତିର ସମ୍ଭାବନା ଅପେକ୍ଷା ଶେଷୋକ୍ତ ଦାସତ୍ୱରୁ ଅବ୍ୟାହତିର ସମ୍ଭାବନା ଅତି କମ୍ । ମାତ୍ର ମାନସିକ ଦାସତ୍ୱ ଯେ ସମସ୍ତ ଦୁଃଖର ମୂଳ, ତାହା ଅଳ୍ପ ଲୋକେ ଚିନ୍ତା କରନ୍ତି ।

— ୦ —

ପରକୃତ ଦାସତ୍ୱ ଆକସ୍ମିକ; ଆସେ, ଯାଏ; ସ୍ଥାୟୀ ଯେ ନ ହୁଏ, ଏପରି ନୁହେଁ । ମାନସିକ ଦାସତ୍ୱ ପରମ୍ପରାଗତ । ଜାତୀୟ ଶିକ୍ଷା ତଥାକଥିତ ସାମାଜିକ ଧର୍ମରୁ ଶିକ୍ଷା, ସୁତରାଂ ପରକୃତ ଦାସତ୍ୱ ଅପେକ୍ଷା ସ୍ଥାୟୀ । ପରକୃତ ଦାସତ୍ୱରୁ ମୁକ୍ତିଲାଭର ବାଟ ଦାସ ବା ଦାସଜାତି ଅନ୍ୱେଷଣତତ୍‌ପର ଥାଏ, ମାତ୍ର ମାନସିକ ଦାସତ୍ୱର ମୁକ୍ତିବାଟ କେହି ପ୍ରାୟ ଖୋଜନ୍ତି ନାହିଁ ।

— ୦ —

ଭିକ୍ଷା, ପ୍ରାର୍ଥନାରେ ମାନସିକ ଦାସତ୍ୱର ଛାପ ଅଛି ।

— ୦ —

ଦେବଦେବୀଙ୍କ ଉପରେ ଆପଣାର ସୁଖ ଦୁଃଖ ଓ ଧନ ଜନର ଭାର ଦେଲେ ମନୁଷ୍ୟତ୍ୱର ଅସ୍ତିତ୍ୱ ରହେ କେଉଁଠାରେ ?

— ୦ —

ଭାର୍ଯ୍ୟାପୁତ୍ରୈଃ ବନ୍ଧୁବର୍ଗୈଃ ସମେତୋ—
ବିକ୍ରୀତୋଽହଂ କୃଷ୍ଣପାଦାରବିନ୍ଦେ,
କିଂ କୁର୍ଯ୍ୟାନ୍ମାଂ ଭାନୁପୁତ୍ରୋ ବରାକଃ
ସିଂହଦ୍ରବ୍ୟେନୈବ ଫେରୋଃ ପ୍ରଭୁତ୍ୱଂ ।

କୃଷ୍ଣ ସିଂହ, ମୃତ୍ୟୁ ଫେରୁ । କହିବାକୁ କିଏ ମନା କଲା ? ମାତ୍ର ଜନ୍ମଲାଭ କରି କେହି ମୃତ୍ୟୁଞ୍ଜୟ ହୋଇ ନାହିଁ । ମୃତ୍ୟୁ ଉପରେ କୃଷ୍ଣଙ୍କର ଅଦ୍ୟାପି ହାତ ଅଛି କି ? ତଥାପି ମୃତ୍ୟୁଭୟରୁ ରକ୍ଷା ପାଇବା ଆଶାରେ କୃଷ୍ଣପାଦାରବିନ୍ଦରେ ନିଜକୁ ଓ ଭାର୍ଯ୍ୟା ପୁତ୍ର କୁଟୁମ୍ବଙ୍କୁ ବିକ୍ରିତ ମନେ କରିବା ବାସନା ମାନସିକ ଦାସତ୍ୱର ଜାଜ୍ୱଲ୍ୟମାନ ଉଦାହରଣ ।

ଅତ୍ୟଧିକ ଭକ୍ତି ବା ଅଯଥା ଭକ୍ତି ମାନସିକ ଦାସ୍ୟପ୍ରବୃତ୍ତିରୁ ଜାତ । ପୁରାଣାଦିରେ ଏଥିରେ ଦୃଷ୍ଟାନ୍ତ ବିରଳ ନୁହେଁ । ଯୁଗଯୁଗାନ୍ତରରୁ ହିନ୍ଦୁଶାସ୍ତ୍ର ଭାରତବାସୀ (ହିନ୍ଦୁ)ଙ୍କ ମନରେ ଅଯଥା ଭକ୍ତି ଓ ମାନସିକ ଦାସତ୍ୱର ଛାୟାପାତ କରି ଆସିଅଛି । ଏହା ପରକୃତ ଦାସତ୍ୱ ପରି ଉତ୍କଟ ନୁହେଁ; ସୁତରାଂ ସେଥିରୁ ଅବ୍ୟାହତି ପାଇବାପାଇଁ ଉତ୍କଣ୍ଠା ନାହିଁ । ଫଳରେ ଯାହା ହେବାର, ତାହା ହେଉଅଛି ।

— ୦ —

ପୂର୍ବେ ଗୁରୁଜନମାନେ ନିର୍ମାଲ୍ୟ ଭକ୍ଷଣ କଲାବେଳେ, ତୁଳସୀଦଳ ଭକ୍ଷଣ କଲାବେଳେ, ଏମନ୍ତ କି ବଟ ଓ ଅଶ୍ୱତ୍ଥକୁ ଦର୍ଶନ କଲାବେଳେ ପାପକ୍ଷାଳନ ଆଶାରେ ଏବଂ ମୁକ୍ତିକାମନାରେ କହୁଥିଲେ, ପାପୋଽହଂ ପାପକର୍ମାହଂ ପାପାତ୍ମା ପାପସମ୍ଭବଃ । ଅହରହଃ ନିଜକୁ ଏଡ଼େ ହୀନ ମନେ କଲେ ପୁରୁଷାର୍ଥ ରହେ ନାହିଁ ।

●

## ବିବାହ ବିଚାର

### ଭୂମିକା

ପୁସ୍ତକ ଲେଖା ଶେଷ ହେଲା । ମୁଦ୍ରିତ ହୋଇ ପ୍ରକାଶିତ ହେଲାରୁ ପୁସ୍ତକର ନାମ ଦେଖି ପାଠକେ ବିଚାର କରିପାରନ୍ତି ଯେ, ଦେଶବ୍ୟାପୀ ବିବାହ ଆନ୍ଦୋଳନ ଲାଗିଥିବାରୁ ସେହି ହୁଜୁଗରେ ଲେଖକଦ୍ୱାରା ଏହି ପୁସ୍ତକଖଣ୍ଡ ଲିଖିତ ଓ ପ୍ରସାରିତ ହେଲା । ପାଠକଗଣ ଏପରି ଭାବିବା ସ୍ୱାଭାବିକ । ଏଥି ନିମନ୍ତେ ଆଗରୁ ପୁସ୍ତକ ଲେଖିବାର ଅଭିପ୍ରାୟ ବ୍ୟକ୍ତ କରିବା ବା ଗୋଟାଏ ଆଗତୁରା କୈଫିୟତ୍ ଦେଇ ରଖିବା ଉଚିତ ।

କ୍ଷତ୍ରିୟ ଜାତି ଆବହମାନକାଳରୁ ଯୁବତୀବିବାହର ପକ୍ଷପାତୀ ଏବଂ ବାଲ୍ୟବିବାହର ବିଦ୍ୱେଷୀ । କୁଳାଚାର ନେଇ ବ୍ରାହ୍ମଣ କ୍ଷତ୍ରିୟର ବିରୋଧ ଏହିଠାରେ । ଆନୁମାନିକ ଦୁଇ ହଜାର ବର୍ଷ ବା ଆଗରୁ ଏ ଆଚରଗତ ପାର୍ଥକ୍ୟ ଘଟିଅଛି । ସୁତରାଂ ଲେଖକ ମନରେ ବାଲ୍ୟବିବାହ ପ୍ରତି ଜାତିଗତ ଘୃଣା ବିଦ୍ୟମାନ ଅଛି, ଏହା କହିବା ବାହୁଲ୍ୟ ମାତ୍ର । ସୁତରାଂ ଯୁବତୀବିବାହର ପକ୍ଷ ସମର୍ଥନ ଓ ବାଲ୍ୟବିବାହର ନିନ୍ଦା କରି ପଦେ ଅଧେ ଲେଖିବା ଓ କହିବା ଅଭ୍ୟାସ ଲେଖକର

ପାଠ୍ୟାବସ୍ଥାରୁ ଅଛି । ଯେଉଁ ବ୍ୟକ୍ତି ବାଲ୍ୟବିବାହର ବିଦ୍ୱେଷୀ, ତା ପ୍ରତି ବାଳବିଧବାର ଦୁଃଖ ଓ ନିର୍ଯାତନା ଅତ୍ୟନ୍ତ ମର୍ମନ୍ତୁଦ । ଏ ମର୍ମବେଦନା ଓ ଦୁଃଖ ଦେଖି ଦେଶ ଲୋକେ ବୁଝିପାରିବା ଅସମ୍ଭବ । ବାଲ୍ୟବିବାହ ବନ୍ଦ କରିବା ସଙ୍ଗେ ସଙ୍ଗେ ବାଳବିଧବାମାନଙ୍କୁ ବିବାହ ଦେବାଦ୍ୱାରା କେତେଗୁଡ଼ିଏ ନିରପରାଧା କ୍ଲିଷ୍ଟା ବାଳିକାଙ୍କର ଅକଥନୀୟ ଦୁଃଖ ଦୂର କରାଯାଇପାରନ୍ତା ବୋଲି କେଉଁ ଚିନ୍ତାଶୀଳ ବ୍ୟକ୍ତି ଭାବୁ ନାହାନ୍ତି ? ଏହି ଦେଶରେ ସ୍ୱାଧର୍ଷଣାଭିମାନୀ ଲୋକ ଅଛନ୍ତି । ଦୟାର୍ଦ୍ରହୃଦୟ, ପରଦୁଃଖକାତର ବ୍ୟକ୍ତି ମଧ ଅଛନ୍ତି । ସାମାଜିକ ଜଟିଳ ସମସ୍ୟା ସମାଧାନ କରିବାକୁ ଅନେକ ବ୍ୟକ୍ତି ଚିନ୍ତିତ ମାତ୍ର କରିବାକୁ, କହିବାକୁ ସାହସ ନାହିଁ, ବଳ ନାହିଁ । ଯେଉଁ ବ୍ୟକ୍ତି ସମାଜ ସଂସ୍କାରର ନାମ ଧରିବାକୁ ସାହସୀ ହେଲା, ସେ ଧର୍ମଦ୍ରୋହୀ, ଦେଶଦ୍ରୋହୀ, ତା ମୁଣ୍ଡରେ ଠେଙ୍ଗା । ଏଥି ନିମନ୍ତେ ମନୋଗତ ଭାବ ବ୍ୟକ୍ତ କରିବାକୁ ଲୋକେ ଲଜ୍ଜିତ ଓ ଭୀତ । ଭୂଗର୍ଭର ଜ୍ୱାଳା ପ୍ରବଳ ହେଲେ ଭୂପୃଷ୍ଠର ପ୍ରସ୍ତର ସ୍ତର ବିଦୀର୍ଣ୍ଣ କରି ଅଗ୍ନି ଉଦ୍ଗତ ହୁଏ । ପ୍ରସ୍ତରର ବାଧା ମାନେ ନାହିଁ । ମନୁଷ୍ୟର ହୃଦ୍‌ଗତ ବେଦନା ଅତ୍ୟଧିକ ହେଲେ ବାହ୍ୟଶାସନଭୀତି, ଅପମାନ ଓ ଲଜ୍ଜା ତାହାକୁ ବାଧା ଦେଇ ପାରନ୍ତି ନାହିଁ । ସମାଜଗତ ଦୋଷମାନ ସମୟ ସମୟରେ ସମାଜ ହିତୈଷୀମାନଙ୍କ ହୃଦୟରେ ଅକଥନୀୟ ଜ୍ୱାଳା ଉପସ୍ଥିତ କରେ । ସେହି ଜ୍ୱାଳା ଅସହନୀୟ ହେଲେ ସମାଜହିତୈଷୀ ତଦ୍ୱାରା ସର୍ବସାଧାରଣଙ୍କ ହୃଦୟକୁ ଜାଳିବାକୁ ଚେଷ୍ଟା କରନ୍ତି । ସର୍ବସାଧାରଣ ସେହି ଜ୍ୱାଳା ଅସହନୀୟ ବୋଲି ମନେ କଲେ ସାମାଜିକ ଦୋଷ ରହିପାରେ ନାହିଁ । ସାମାଜିକ ଦୋଷର ସଂସ୍କାର ହୁଏ । ଆବହମାନକାଳରୁ ସମସ୍ତ ଦେଶରେ ମନୀଷିଗଣ ଜନ୍ମଗ୍ରହଣ କରି ସମାଜ ସଂସ୍କାର କରି ଆସୁଅଛନ୍ତି । ଆମ ଦେଶରେ ଅନେକ ଦେଶହିତୈଷୀ ଜନ୍ମଗ୍ରହଣ କରିଥିଲେ । ସମାଜଗତ ଆବର୍ଜନାସମୂହକୁ ଦହନ କରିବାର ଚେଷ୍ଟା କରିଥିଲେ ସୁଦ୍ଧା ଜନସାଧାରଣର ହୃଦୟକୁ ଆନ୍ଦୋଳିତ କରିବାର କ୍ଷମତା ବା ସହାୟତା ସେମାନଙ୍କୁ ଯଥେଷ୍ଟରୂପେ ମିଳିପାରିଲା ନାହିଁ । ଏଣୁ ସେମାନଙ୍କ ଚେଷ୍ଟା ଫଳବତୀ ହୋଇପାରିଲା ନାହିଁ । ଆଜି ମଧ ଦେଶରେ ସମାଜ ଓ ଜାତିର ହିତୈଷୀ କ'ଣ ନାହାନ୍ତି ? ଅଛନ୍ତି । ସେମାନଙ୍କ ହୃଦୟରେ ସଦିଚ୍ଛା ଅଙ୍କୁରିତ ହେଉଅଛି, ମାତ୍ର ସହାନୁଭୂତି ଓ ସାହାଯ୍ୟରୂପ ଜଳାଭାବରୁ ତାହା ଶୁଷ୍କ ହୋଇଯାଉଅଛି । ଭାରତବାସୀର ପାପଭାର ଲାଘବ ହେବା ତେଣେ ଥାଉ, ତାହା ବଢୁଅଛି । ଏଣୁ ଅନୁତାପର ସମୟ ଉପସ୍ଥିତ ହୋଇ ନାହିଁ, ଅନୁତାପ ଭିନ୍ନ ପାପରୁ ଅବ୍ୟାହତ ମିଳେ ନାହିଁ । ଯେଉଁମାନେ ସମାଜର ଦୋଷୋଦ୍ଘାଟନ କରି ସଂସ୍କାରପ୍ରଚଳନର ପ୍ରୟାସୀ ହେବେ ସେମାନେ ନିନ୍ଦାଭାଜନ । ଯେଉଁ ଦେଶରେ ପ୍ରାତଃସ୍ମରଣୀୟ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରଭୃତି ସମାଜ ସଂସ୍କାର ଚେଷ୍ଟାରେ ନିନ୍ଦା ପାଇଅଛନ୍ତି, ସେ ସ୍ଥଳରେ ଆମ ତୁମ ପରି ଲୋକଙ୍କୁ ପଚାରେ କିଏ ? ଏଣୁ ମନେ ହୁଏ, ଏ ଦେଶର ଲୋକଙ୍କର ନିନ୍ଦା ପ୍ରଶଂସାର ମୂଲ୍ୟ ନାହିଁ କିମ୍ବା କୌଣସି କାର୍ଯ୍ୟ ଆରମ୍ଭ କରି ତହିଁରେ ସୁଫଳ ଲାଭର ଆଶା ନାହିଁ, ସେଠାରେ ଲୋକ ସଂସ୍କାରର ଚେଷ୍ଟା କରିବ କାହିଁକି ? ଯେଉଁମାନେ ଫଳକାମୀ ନୁହନ୍ତି, ସେହିମାନେ କର୍ତ୍ତବ୍ୟ ପ୍ରେରଣାରୁ କାର୍ଯ୍ୟରତ ହେବା ସ୍ୱାଭାବିକ ନିନ୍ଦା ପ୍ରଶଂସାରେ ସେମାନଙ୍କର କିଛି କ୍ଷତି ବୃଦ୍ଧି ନାହିଁ ।

**'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ'** ।

ଏହା କୃଷ୍ଣ ବାସୁଦେବଙ୍କର ବଚନ । ମୋ ପ୍ରତି ମୋର ଅଗ୍ରଜପ୍ରତିମ ବାସୁଦେବଙ୍କର (ସ୍ୱର୍ଗୀୟ ରାଜା ସାର୍ ସୁଢଳଦେବ ବାସୁଦେବ) ଉପଦେଶ । ଏହି ଉପଦେଶର ପ୍ରେରଣାରୁ କେବଳ ଲୋକନିନ୍ଦା ପାଇବାକୁ ଅଗ୍ରସର ହୋଇଅଛି ।

ଆଜିକି ପୂର୍ଣ୍ଣ ପଚିଶ ବର୍ଷ ହେଲା ବାସୁଦେବ ଇହଧାମ ତ୍ୟାଗ କରିଅଛନ୍ତି । ଉତ୍କଳବାସୀ ଏହି ମହାତ୍ମାଙ୍କ କଥା କ୍ରମେ ଭୁଲିଯିବାକୁ ବସିଲେଣି । ମୃତ୍ୟୁର ଚାରି ମାସ ପୂର୍ବେ ସେ ବାଲ୍ୟବିବାହ ସମ୍ବନ୍ଧରେ ଗୋଟିଏ ବିଜ୍ଞାପନ ପ୍ରଚାର କରିଥିଲେ । ଭବିଷ୍ୟତରେ ବାମଣ୍ଡାରେ ଯୁବତୀବିବାହର ପ୍ରଚଳନ ହୋଇପାରିବ, ସେଥିର ଭିତ୍ତିସ୍ୱରୂପ ଏହି ବିଜ୍ଞାପନର ପ୍ରଚାର । ଚଷାକୁଳରେ ବାଲ୍ୟବିବାହର ପ୍ରଚଳନ ଥିଲା । ଏଣୁ ଚଷାକୁଳରୁ ପ୍ରଥମ ସଂସ୍କାର ଆରମ୍ଭ କରିବାର ଉଚିତ ମନେ କରିଥିଲେ । ବିଜ୍ଞାପନର ଶେଷ ଅଂଶ ନିମ୍ନରେ ପ୍ରଦତ୍ତ ହେଲା ।

''ଆମ୍ଭ ଦ୍ୱାରା ଅନୁମୋଦିତ ହୋଇ ପ୍ରଚାର କରାଗଲା ଯେ କନ୍ୟାର ବୟସ ୧୨ ବର୍ଷରୁ କମ୍‌ରେ କେହି ବିବାହ କରିବ ନାହିଁ । ଯେ କରିବ, ସେ ସମାଜରୁ ଅନ୍ତର ହେବ ।''

''ଏହି ବିବାହ ନିୟମକୁ ବ୍ରାହ୍ମଣ ପ୍ରଭୃତି ସକଳ ଶ୍ରେଣୀର ଲୋକମାନେ ମଧ ସ୍ୱୀକାର କରିବା ଉଚିତ । ଯେହେତୁ କନ୍ୟାର ୧୨ ବର୍ଷରୁ ନ୍ୟୂନ ବୟସରେ ଓ ବରର ୧୪/୧୫ ବର୍ଷରୁ ନ୍ୟୂନ ବୟସରେ ବାଳରିଷ୍ଟ ଦ୍ୱାରା ବିପଦର ଆଶଙ୍କା ଥାଏ । ଇତି । ୧୦।୭।୧୯୦୩ ।''

ସେହିଦିନଠାରୁ ବାମଣ୍ଡାରେ ଯୁବତୀବିବାହର ଆନ୍ଦୋଳନ ଅନେକଙ୍କ ମନରେ ଜାଗରୂକ ହୋଇଅଛି । ଏହା ଆଧୁନିକ 'ହୁଜୁଗ' ନୁହେଁ ।

ମୁଁ 'ସମ୍ବଲପୁରହିତୈଷିଣୀ' ପତ୍ରିକାରେ ଓ ଉତ୍କଳ ସାହିତ୍ୟରେ ବାଲ୍ୟବିବାହ ବିପକ୍ଷରେ, ଯୁବତୀବିବାହ ସପକ୍ଷରେ ଅନେକ ପ୍ରବନ୍ଧ ଲେଖିଅଛି । ହିତୈଷିଣୀରେ 'ଭାରତୀୟ ରମଣୀ' ନାମକ ଦୀର୍ଘ ପ୍ରବନ୍ଧ ୧୮୯୬ ଖ୍ରୀଷ୍ଟାବ୍ଦରେ ପ୍ରକାଶ କରିଥିଲି । ତାହା ପାଠ କରି ଗୁରୁପ୍ରତିମ ୰ ରାଧାନାଥ ରାୟ ଏବଂ ମୋର ପ୍ରିୟ ବନ୍ଧୁ ଶ୍ରୀ ବିଶ୍ୱନାଥ କର ତାହା ମୁଦ୍ରିତ କରି ପୁସ୍ତକାକାରରେ ପ୍ରକାଶ କରିବାକୁ ଉପଦେଶ ଦେଇଥିଲେ । ସେ ଉପଦେଶ ରକ୍ଷା କରି ନ ଥିବା ହେତୁ ମୁଁ ଦୁଃଖିତ ଅଛି । ଆଜି ମୋହ ନିକଟରେ ସେ ପ୍ରବନ୍ଧର ପାଣ୍ଡୁଲିପି ନାହିଁ । କିମ୍ବା ହିତୈଷିଣୀ ଉଠିଗଲା ଉତ୍ତାରୁ ବାମଣ୍ଡା ଛାପାଖାନାରେ ପତ୍ରିକାର ନାମ ଗନ୍ଧ ନାହିଁ । ସୁତରାଂ ଏ ପୁସ୍ତକ ଲେଖିବା ପ୍ରେରଣା ନୂତନ ନୁହେଁ ।

ରାଜା ସାର୍ ବାସୁଦେବ ସୁଢଳଦେବ ୧୮୯୮ ଖ୍ରୀଷ୍ଟାବ୍ଦରେ ଗଦାଧର ପଦ୍ଧତି ପଣ୍ଡିତ ଶ୍ରୀ ମଧୁସୂଦନ ମିଶ୍ର ତର୍କ ବାଚସ୍ପତିଙ୍କ ଦ୍ୱାରା ପ୍ରକାଶ କରାଇଥିଲେ । ସେହି ପୁସ୍ତକର ୨୩୩ ପୃଷ୍ଠାରେ ଯୁବତୀବିବାହର ପ୍ରମାଣ ସଂଗ୍ରହ କରାଯାଇ ପ୍ରକାଶିତ ହୋଇଅଛି ।

ସାଧାରଣତଃ ବ୍ରାହ୍ମଣମାନେ ବରଠାରୁ ଶୁଳ୍କ ଗ୍ରହଣ କରି କନ୍ୟା ବିବାହ ଦେବାର ରୀତି ପ୍ରଚଳିତ ଅଛି । ବାମଣ୍ଡାରେ ମଧ ଥିଲା । ଧନିକ ବୃଦ୍ଧ ବ୍ରାହ୍ମଣମାନେ ଅର୍ଥଲୋଭୀ କନ୍ୟାପିତାଙ୍କୁ ଧନଦ୍ୱାରା ତୃପ୍ତ କରି ନାବାଳିକା କନ୍ୟା ବିବାହ ହେବାର ସୁଯୋଗ ପାଉଅଛନ୍ତି । ସୁଢଳ ଦେବ ବାମଣ୍ଡା ରାଜ୍ୟର ଏହି କୁପ୍ରଥାକୁ ଉଠାଇ ଦେଇଥିଲେ ।

ଛୋଟନାଗପୁର ଅଞ୍ଚଳର ଜଣେ ଧନୀ ବ୍ରାହ୍ମଣ ବାସୁଦେବପୁରନିବାସୀ ଜଣେ ବ୍ରାହ୍ମଣଙ୍କୁ ତିନିଶତ ମୁଦ୍ରା ଦେଇ ତାହାର ନାବାଳିକା କନ୍ୟାର ପାଣିଗ୍ରହଣ କଳ୍ପନାରେ ବାସୁଦେବପୁରରେ ଉପସ୍ଥିତ ହେଲେ । ବିବାହର ଏକ ଦିନ ପୂର୍ବରୁ ଏହି ସମ୍ବାଦ ଶ୍ରବଣ କରି ସୁଢଳଦେବ ବୃଦ୍ଧ ବ୍ରାହ୍ମଣଙ୍କୁ ଡକାଇ ଆଣିଲେ । ବୃଦ୍ଧ ବ୍ରାହ୍ମଣ ହରିଦ୍ରାଜର୍ଜରିତ ହୋଇ ଚକ୍ଷୁରେ କଜ୍ଜ୍ୱଳ ଲଗାଇ ପୂରା ବରବେଶରେ ରାଜସମକ୍ଷରେ ଉପସ୍ଥିତ ହେଲେ । ନମସ୍କାରାନନ୍ତର ରାଜା ବ୍ରାହ୍ମଣଙ୍କ ନାମ ପଚାରିଲେ । ବୃଦ୍ଧ ବ୍ରାହ୍ମଣ କହିଲେ, ''ନାମ ବାସୁଦେବ ମିଶ୍ର ।'' ସୁଢଳଦେବ କହିଲେ, ''ତେବେ ଆପଣ ମୋର ମିତ୍ର । ମିତ୍ରର ଉପକାରାର୍ଥେ ମୋର ଉପଦେଶ ଦେବା କର୍ତ୍ତବ୍ୟ । ଅଗ୍ନିରେ ପ୍ରକ୍ଷିପ୍ତ ହେବା ପୂର୍ବରୁ ମତ୍ସ୍ୟ ଯେପରି ହରିଦ୍ରାଜର୍ଜରିତ ହୋଇଥାଏ, ଆପଣ ମଧ ସେହିପରି ହୋଇଅଛନ୍ତି । ଏଥିରୁ ଆପଣଙ୍କୁ ରକ୍ଷା କରିବା ଉଚିତ୍ । ରକ୍ଷା କରିବାର ଏକମାତ୍ର ଉପାୟ ଆପଣଙ୍କର ବିବାହ ବନ୍ଦ କରିବା । ଆପଣ ନିଜ ଅର୍ଥ ଗ୍ରହଣ କରି ସ୍ୱଦେଶକୁ ନିରାପଦରେ ଯାଉନ୍ତୁ ।'' ବୃଦ୍ଧ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ, ବାଳିକାକୁ ଅନ୍ୟ ଜଣେ ଯୁବକ ବିବାହ ହେଲା । କହିବା ବାହୁଲ୍ୟ ଯେ, ବୃଦ୍ଧର ବୟସ ଷାଠିଏର ନିକଟବର୍ତ୍ତୀ ଏବଂ କନ୍ୟାର ବୟସ ନଅ ବା ଦଶ । ଏ ଦେଶର ବ୍ରାହ୍ମଣମାନେ ଏତାଦୃଶ ଜନହିତୈଷୀ ସଂସ୍କାରକଙ୍କ ଦେଶରେ ବାସ କରିଥିବାରୁ ମନରୁ ଅନେକ କୁସଂସ୍କାର ଦୂର କରିପାରିଅଛନ୍ତି । ଏଣୁ ସ୍ୱତଃପ୍ରଣୋଦିତ ହୋଇ ୨୮।୫।୧୯୨୮ରେ ନିମ୍ନୋକ୍ତ ବ୍ରାହ୍ମଣଗଣ ମୋତ ବ୍ରାହ୍ମଣସମିତିର ସଭାପତି ନିଯୁକ୍ତ କରି ନିମ୍ନ ପ୍ରକାଶିତ ନିଯୁକ୍ତିପତ୍ର ଦେଲେ ।

''ହିନ୍ଦୁ ବ୍ରାହ୍ମଣସମାଜରୁ ବାଳବିଧବାମାନଙ୍କର ଦୁର୍ଦ୍ଦଶା ଦୂର କରିବା ଉଦ୍ଦେଶ୍ୟରେ ବର୍ତ୍ତମାନ ସମୟର ଗତି ଲକ୍ଷ୍ୟ କରି ଗୋଟାଏ କିଛି ପନ୍ଥା ଅବଲମ୍ବନ କରିବା ନିତାନ୍ତ ଆବଶ୍ୟକ ହୋଇଅଛି । ଏ ସମ୍ପର୍କରେ ଗତ ୨୭ । ୫ । ୧୯୨୮ ଦିନ ଦେବଦୁର୍ଗର ସମସ୍ତ ବ୍ରାହ୍ମଣସମାଜ ଆମ୍ଭେମାନେ ଗୋପାଳଜୀ ମନ୍ଦିରରେ ସମ୍ମିଳିତ ହୋଇ ଅନେକ ଆଲୋଚନା ପରେ ସ୍ଥିର କରିଅଛୁଁ । ଏ ବିଷୟର ଆଲୋଚନାର ପୀଠସ୍ୱରୂପ ଗୋଟିଏ ସମିତି ରହିବା ଆବଶ୍ୟକ । ଉକ୍ତ ସମିତିରେ ଦେବଦୁର୍ଗର, ତଥା ମୋଫସଲ ଶାସନମାନଙ୍କର ବିଶିଷ୍ଟ ବ୍ରାହ୍ମଣମାନେ ମେମ୍ବରସ୍ୱରୂପ ରହିବେ । କାର୍ଯ୍ୟ କି ଗତିରେ ଚାଲିଲେ ଆମ୍ଭମାନଙ୍କର ଉଦ୍ଦେଶ୍ୟ ସିଦ୍ଧ ହେବ, ସେ ବିଷୟ ଉକ୍ତ କମିଟି ନିଶ୍ଚୟ କରିବେ ।

ଏହି ସମିତିରେ ଆମ୍ଭେମାନେ ସମସ୍ତେ ଏକମତ ହୋଇ ସର୍ବାଂଶରେ ଉପଯୁକ୍ତ ମନେ କରି ଆପଣଙ୍କୁ ସ୍ଥାୟୀ ସଭାପତି ରୂପେ ବରଣ କରୁଅଛୁଁ । ଆଶା କରୁଁ, ଆମ୍ଭମାନଙ୍କର ଏହି ଅନୁରୋଧ ଉପେକ୍ଷିତ ହେବ ନାହିଁ ।''

ତା୨୮।୫।୧୯୨୮

| | |
|---|---|
| ଶ୍ରୀ ଗୋବର୍ଦ୍ଧନ ପୁରୋହିତ | ଶ୍ରୀ ପଦ୍ମନାଭ ଦ୍ୱିବେଦୀ |
| ଶ୍ରୀ ମହାଦେବ ଦ୍ୱିବେଦୀ | ଶ୍ରୀ ନରହରି ଦ୍ୱିବେଦୀ |
| ଶ୍ରୀ ପୁରୁଷୋତ୍ତମ ନନ୍ଦ | ଶ୍ରୀ ପ୍ରଭାକର ବ୍ରହ୍ମା |
| ଶ୍ରୀ ଦାମୋଦର ମହାପାତ୍ର | ଶ୍ରୀ ଘନଶ୍ୟାମ ପଣ୍ଡା |

| | |
|---|---|
| ଶ୍ରୀ ଲମ୍ବୋଦର ପାଢ଼ୀ | ଶ୍ରୀ ବୈଦ୍ୟନାଥ ମହାପାତ୍ର |
| ଶ୍ରୀ ନିତ୍ୟାନନ୍ଦ ପଣ୍ଡା | ଶ୍ରୀ ଗଦାଧର ଦ୍ୱିବେଦୀ |
| ଶ୍ରୀ ଭାଗୀରଥି ପୁରୋହିତ | ଶ୍ରୀ ବାଇଧର ଦାଶ |
| ଶ୍ରୀ ସୋମନାଥ ମିଶ୍ର | ଶ୍ରୀ ରେବତୀମୋହନ ମିଶ୍ର |
| ଶ୍ରୀ ସୋମନାଥ ଶତପଥୀ | ଶ୍ରୀ ବିଶ୍ୱନାଥ ଶତପଥୀ |
| ଶ୍ରୀ ପଦ୍ମଲାଭ ଦେବତା | ଶ୍ରୀ ରାମକୃଷ୍ଣ ଦ୍ୱିବେଦୀ |
| | ଶ୍ରୀ ରଘୁନାଥ ରାଜଗୁରୁ |
| ଶ୍ରୀ ପରମାନନ୍ଦ ଗୁରୁ | ଶ୍ରୀ ଶ୍ରୀନିବାସ ଗୁରୁ |
| ଶ୍ରୀ ଜୟଦେବ ଦାସ | ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ |
| ଶ୍ରୀ ରତ୍ନାକର ପାଢ଼ୀ | ଶ୍ରୀ ବଳଭଦ୍ର ବ୍ରହ୍ମା |
| ଶ୍ରୀ ମାନକେତନ କର | |
| ଶ୍ରୀ ଜୟକୃଷ୍ଣ ଗୁରୁ | ଶ୍ରୀ ସତ୍ୟାନନ୍ଦ ପତି |
| ଶ୍ରୀ ସୁଶୀଳ ଦେବତା | ଶ୍ରୀ ବେଣୁଧର ବ୍ରହ୍ମା |
| ଶ୍ରୀ ବୈରାଗୀ ପଣ୍ଡା | ଶ୍ରୀ କୃଷ୍ଣଚନ୍ଦ୍ର ନନ୍ଦ |
| ଶ୍ରୀ ବଂଶୀଧର ଦାଶ | |
| ଶ୍ରୀ ମଧୁସୂଦନ ଦ୍ୱିବେଦୀ | ଶ୍ରୀ ବୃନ୍ଦାବନନାଥ ଶର୍ମା । |

ପ୍ରଥମ ବ୍ରାହ୍ମଣ ସମିତି ଗଠିତ ହୋଇ ମୋତେ ସଭାପତି ନିର୍ବାଚନ କଲା ଦିନ ମୁଁ ଗ୍ରାମାନ୍ତରରେ ଥିଲି । ବ୍ରାହ୍ମଣମାନଙ୍କର ଏହି ନିଯୁକ୍ତିପତ୍ର ପାଇ ମୁଁ ଆପଣାକୁ ଧନ୍ୟ ମନେ କଲି ଏବଂ ନମସ୍କାରପୁରଃସର ସେମାନଙ୍କୁ ମୋର ଧନ୍ୟବାଦ ଜ୍ଞାପନ କଲି ଏବଂ ନିଜକୁ ସମିତିର ସେବାରେ ନିଯୁକ୍ତ କଲି । ତିନି ଚାରିଗୋଟି ସଭାରେ ଅନ୍ୟାନ୍ୟ ବିଷୟ ଛଡ଼ା ଯୁବତୀବିବାହ ଓ ବିଧବାବିବାହର ଆନ୍ଦୋଳନ ଚାଲିଲା । ତର୍କବିତର୍କ ଓ ଆଲୋଚନା ପରେ ସଭା ଯୁବତୀବିବାହ ଓ ବିଧବାବିବାହ ସମ୍ବନ୍ଧରେ ଯେଉଁ ନିର୍ଦ୍ଧାରଣ କଲେ, ତାହା ଏଥିସଙ୍ଗରେ ଯୋଗ କରାଗଲା ।

ଏହା ନିର୍ଦ୍ଧାରଣପତ୍ର ସ୍ୱାକ୍ଷରିତ ହେଲା ପରେ ଏହି ସମ୍ବନ୍ଧରେ ଖଣ୍ଡିଏ ପୁସ୍ତକ ଲେଖି ଶୀଘ୍ର ପ୍ରକାଶିତ ହେବା ବାଞ୍ଛନୀୟ ବୋଲି ବିବେଚିତ ହେଲା । ଏହି ପୁସ୍ତକ ଲେଖିବା ମୋର କର୍ତ୍ତବ୍ୟ ବୋଲି ମୁଁ ମନେ କଲି ଏବଂ ପୁସ୍ତକ ଲେଖିବାକୁ ପ୍ରବୃତ୍ତ ହେଲି । ଏହି ପୁସ୍ତକ ଖଣ୍ଡ ଲେଖିବାକୁ କେବଳ ଏକମାସ ଲାଗିଅଛି । ବିଷୟ ବଡ଼ ଗୁରୁତର । ସଂଯୁକ୍ତିପୂର୍ଣ୍ଣ ମନଆକର୍ଷଣକାରୀ ସୁଖପାଠ୍ୟ ପୁସ୍ତକ ମୋ ପରି ଲୋକଦ୍ୱାରା ଲେଖା ହେବା ସମ୍ଭବପର ନୁହେଁ । ଏତେ ଚଞ୍ଚଳ ଏପରି ଗୁରୁତର ବିଷୟର ପୁସ୍ତକ ପ୍ରକାଶ କରିବାକୁ ମୁଁ ସାହସୀ ହୋଇ ନ ଥାନ୍ତି; ମାତ୍ର କର୍ତ୍ତବ୍ୟ ସାହସ ବାନ୍ଧି ଅଗ୍ରସର ହେବାକୁ ମୋତେ ବାଧ କଲା ।

ପୁସ୍ତକର ଦୋଷ ଗୁଣ ବିଚାର ସହୃଦୟ ପାଠକମାନଙ୍କର ବିବେକ ବୁଦ୍ଧି ଉପରେ ନିର୍ଭର କରେ ।

ବେଦ ଚାରି, ମାତ୍ର ସ୍ମୃତି ଓ ପୁରାଣ ଅନେକ । ସମସ୍ତ ଆଲୋଡ଼ନ କରି ଏବଂ ସମସ୍ତ ସପକ୍ଷ ବିପକ୍ଷ ପ୍ରମାଣାଦି ସଂଗ୍ରହ କରି ଗୋଟାଏ ମୀମାଂସା କରିବା ଯେପରି କଠିନ ବ୍ୟାପାର, ସେହିପରି ସମୟସାକ୍ଷେପ । ଏହି ଅଳ୍ପ ସମୟ ମଧ୍ୟରେ ଯେତେଦୂର ସମ୍ଭବ, ଶାସ୍ତ୍ରାଲୋଚନା କରି ଓ ମତ ସଂଗ୍ରହ କରି ଏହି ପୁସ୍ତକ ପ୍ରଣୟନ କରାଯାଇଅଛି । ଏଥିରେ ଅକାଟ୍ୟଯୁକ୍ତି ଦିଆଯାଇଅଛି ବୋଲି ମତ ଦେବା ଧୃଷ୍ଟତା ମାତ୍ର । ସୁତରାଂ ଏପରି ମତ ବ୍ୟକ୍ତ କରିବା ଆମ୍ଭର ସାହସ ନାହିଁ । ତେବେ ଏଭଳି ଗୁରୁତର ବିଷୟର ପ୍ରଥମ ଆନ୍ଦୋଳନ ବିଷୟରେ ପୁସ୍ତକଗତ ପ୍ରମାଣାଦି ଯଥେଷ୍ଟ ବୋଲି ପ୍ରକାଶ କରାଯାଇପାରେ । ଦେଶବାସୀ ଯେବେ ଏଥିରେ ଆଲୋଚନାରେ ପ୍ରବୃତ୍ତ ହେବେ, ତେବେ ଆଉ ଅଧିକ ପ୍ରମାଣାଦି ସଂଗ୍ରହ କରିବାରେ ପରାଙ୍‌ମୁଖ ହେବୁଁ ନାହିଁ ।

ଯେଉଁସବୁ ପୁସ୍ତକ ଆଲୋଚନା କଲାପରେ ଏହି ପୁସ୍ତକ ଲେଖିବାକୁ ସାହସୀ ହୋଇଅଛୁଁ, ସେହି ପୁସ୍ତକମାନଙ୍କର ତାଲିକା ପୁସ୍ତକର ପଶ୍ଚାଦ୍‌ଭାଗରେ ଦିଆଯାଇଅଛି ।

ପୁସ୍ତକ ଲେଖିବା ନିମନ୍ତେ ଏତେଗୁଡ଼ିଏ ଗ୍ରନ୍ଥର ସାହାଯ୍ୟ ଗ୍ରହଣ କରିଥିଲେ ମଧ୍ୟ ଏହି ପୁସ୍ତକର ମତ ଆମ୍ଭର ବିବେକବୁଦ୍ଧିପ୍ରସୂତ । ଏଥିରେ ଦୋଷଗୁଣର ଦାୟିତ୍ୱ ଆମ୍ଭ ଉପରେ ନ୍ୟସ୍ତ ।

ତରବର ହୋଇ ପ୍ରକାଶ କରିବାହେତୁ ପୁସ୍ତକ ମଧ୍ୟରେ ନାନା ପ୍ରକାର ତ୍ରୁଟି ରହି ଯାଇଅଛି । ଆଶା କରାଯାଏ, ସେଥିନିମନ୍ତେ ସହୃଦୟ ପାଠକଗଣ କ୍ଷମା ଦେବେ ।

ବାମଣ୍ଡାନିବାସୀ ବ୍ରାହ୍ମଣମାନଙ୍କ ଛଡ଼ା ପଣ୍ଡିତ ଶ୍ରୀ ସୁଦର୍ଶନ ମିଶ୍ର, ପଣ୍ଡିତ ଶ୍ରୀ ସୋମନାଥ ମିଶ୍ର ନିର୍ଦ୍ଧାରଣପତ୍ର ପ୍ରସ୍ତୁତ କରିବାରେ ସାହାଯ୍ୟ କରିବାରେ ଏବଂ ଲିଖିତ ପୁସ୍ତକର ପକ୍ଷ ସମର୍ଥନ କରିବାକୁ ପ୍ରତିଜ୍ଞାବଦ୍ଧ ହୋଇଥିବାରୁ ଏ ସତ୍‌ସାହସ ନିମନ୍ତେ ସେମାନେ ଧନ୍ୟବାଦର ପାତ୍ର ଅଟନ୍ତି ।

ମୋର ପ୍ରିୟବନ୍ଧୁ ଶ୍ରୀ ବିଶ୍ୱନାଥ କର ପୁସ୍ତକର ପାଣ୍ଡୁଲେଖ୍ୟ ଦେଖି ତାହା ସଂଶୋଧନ କରିଥିବାରୁ ତାହାଙ୍କୁ

ଆନ୍ତରିକ ଧନ୍ୟବାଦ ଦେଉଅଛି ଏବଂ ତାଙ୍କଠାରେ କୃତଜ୍ଞତା ସ୍ୱୀକାର କରୁଅଛି । ଇତି ।

ଦେବଗଡ଼ ଶ୍ରୀ ଜଳନ୍ଧରଦେବ
୧୪।୧୧।୧୯୨୮

## ବାମଣ୍ଡା-ବ୍ରାହ୍ମଣସମିତିଦ୍ୱାରା ସ୍ଥିରୀକୃତ ନିର୍ଦ୍ଧାରଣ

ଅଧୁନା ବ୍ରାହ୍ମଣସମାଜରେ ଯୁବତୀବିବାହ ଓ ବିଧବାବିବାହ ପ୍ରଚଳନ ଶାସ୍ତ୍ରସଙ୍ଗତ ଓ ଯୁକ୍ତିସଙ୍ଗତ କି ନୁହେଁ ତାହା ଆଲୋଚନା କରିବାକୁ ଦେବଗଡ଼ ବ୍ରାହ୍ମଣ ସମିତି ବଦ୍ଧପରିକର ହୋଇ ସେମାନଙ୍କ ହସ୍ତଗତ ନାନା ଶାସ୍ତ୍ର ଗବେଷଣାପୂର୍ବକ ନିମ୍ନଲିଖିତ ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ।

(୧) ସନାତନ ଆର୍ଯ୍ୟଧର୍ମର ଉଚ୍ଛେଦ ସାଧନ ନୋହିବା କାମନାରେ ପ୍ରାଚୀନ ଋଷିଗଣ ଦେଶ କାଳ ଅବସ୍ଥା ବିବେଚନାରେ ବେଦୋକ୍ତ ଧର୍ମଭିତ୍ତି ଉପରେ ନୂତନ ନୂତନ ଶାସ୍ତ୍ର ଓ ବ୍ୟବସ୍ଥା ପ୍ରଣୟନ କରୁଥିଲେ ।

(୨) ବହୁକାଳାବଧି ଦେଶ ପରାଧୀନ ହେବାରୁ ଜାତୀୟ ଏକତାର ସମ୍ଭାବନା ନାହିଁ ଏବଂ ଜାତୀୟ ନିୟାମକ ଅଭାବରୁ ଦେଶ କାଳ ଅବସ୍ଥା ବିବେଚନାନୁସାରେ ନୂତନ ଶାସ୍ତ୍ର ଓ ବ୍ୟବସ୍ଥା ପ୍ରଣୟନ ହେଉ ନାହିଁ, ସୁତରାଂ ପୂର୍ବ ବ୍ୟବସ୍ଥାର ଉଚ୍ଛେଦ ଅଲକ୍ଷ୍ୟରେ ସଂଘଟିତ ହେବା ସ୍ୱାଭାବିକ । ଏଥି ପ୍ରତି ସମାଜନେତାମାନେ ଆଦୌ ସତର୍କ ନୁହନ୍ତି ।

(୩) ଜାତି ଓ ଧର୍ମର ରକ୍ଷା ଓ ଉନ୍ନତି ନିମନ୍ତେ ଧର୍ମଶାସ୍ତ୍ରର ଓ ଆଚାର ବ୍ୟବହାରର କାଳୋଚିତ ସଂସ୍କାର ଓ ପରିବର୍ତ୍ତନ କରିବାକୁ ହେବ । ଏହା ନ କଲେ ସମାଜ ଓ ଜାତିର ପତନ ତଥା ଅଧୋଗତି ଅବଶ୍ୟମ୍ଭାବୀ ।

(୪) ବେଦୋକ୍ତ ବୈବାହିକ ମନ୍ତ୍ରସମୂହ ଯାହା ବିବାହକାଳରେ ଉଚ୍ଚାରଣ କରିବାକୁ ହେବ, ସେ ସମସ୍ତ ମନ୍ତ୍ର ଯୁବତୀବିବାହପର ।

(୫) ଗୃହ୍ୟସୂତ୍ରରେ ଦ୍ୱିଜାତିର ଗୃହସ୍ଥାଶ୍ରମର ପ୍ରଣାଳୀ ଓ ନିୟମ ବିଧିବଦ୍ଧ ହୋଇଅଛି; ସେହି ଗୃହ୍ୟସୂତ୍ରାନୁସାରେ ଆର୍ଯ୍ୟ ଜାତି ଆପଣାର ଗୃହସ୍ଥ ଧର୍ମ ଚଳାଉଛନ୍ତି । ସେହି ଗୃହ୍ୟସୂତ୍ର ଯୁବତୀବିବାହର ନିର୍ଦ୍ଦେଶ କରିଥିବା ସ୍ପଷ୍ଟ ପ୍ରତୀୟମାନ ହୁଏ ।

(୬) ସ୍ମୃତିଶାସ୍ତ୍ର ଅନେକ । ଦେଶ କାଳ ଅବସ୍ଥା ବିବେଚନାରେ ଏବଂ ବ୍ୟବସ୍ଥାଦାତାଙ୍କ ମତ ଓ ସମସାମୟିକ ସାମାଜିକ ମନୋଗତ ଭାବ ଅନୁସାରେ ବ୍ୟବସ୍ଥା ବିଭିନ୍ନ ହେବା ସ୍ୱାଭାବିକ । ଏଣୁ ବ୍ୟବସ୍ଥାଶାସ୍ତ୍ରମାନଙ୍କରେ ପରସ୍ପର ବିରୋଧୀ ମତ ଦୃଷ୍ଟ ହୁଏ । ତଥାପି ସମ୍ୟକ୍ ଆଲୋଚନାଦ୍ୱାରା ସ୍ପଷ୍ଟ ଜଣାଯାଏ ଯେ, ଯୁବତୀବିବାହ ପକ୍ଷର ମତ ବଳବତ୍ତର ।

(୭) ଯୁବତୀବିବାହ ଶାସ୍ତ୍ରସମ୍ମତ, ଏଣୁ ଏହାର ପ୍ରଚଳନ ଦୂଷଣୀୟ ନୁହେଁ ।

(୮) ସ୍ମୃତିଶାସ୍ତ୍ରାଭିଜ୍ଞ ୬ ରାଜା ସାର୍ ବାସୁଦେବ ସୁଢ଼ଳଦେବ ଯୁବତୀବିବାହର ଭବିଷ୍ୟତ୍ ଭିତ୍ତି ସ୍ୱରୂପ ବିବାହର ବୟସ ବାର ବର୍ଷ ନିର୍ଦ୍ଧାରଣ କରିଥିଲେ । ଦେବଗଡ଼ ବ୍ରାହ୍ମଣ ସମିତିର ସଭ୍ୟମାନେ ନିଶ୍ଚୟ କରିଅଛନ୍ତି ଯେ, ସର୍ବସମ୍ମତିକ୍ରମେ ଯୁବତୀବିବାହ ପ୍ରଚଳନ ନୋହିବାଯାଏ ସେମାନେ ଆପଣା ଆପଣା କନ୍ୟା ଓ ଆତ୍ମୀୟାମାନଙ୍କୁ ବାର ବର୍ଷ ପୂର୍ବରୁ ବିବାହ ଦେବେ ନାହିଁ ।

(୯) ଅକ୍ଷତଯୋନି ବିଧବାମାନଙ୍କର ବିବାହ ଶାସ୍ତ୍ରନିଷିଦ୍ଧ ନୁହେଁ ।

(୧୦) ବୈଦିକ ବୈବାହିକ ମନ୍ତ୍ର ବିଧବାବିବାହର ନିଷେଧପର ନୁହେଁ, ସୁତରାଂ ବୈଦିକ ମନ୍ତ୍ର ପାଠ ଓ ହୋମ ପୂର୍ବକ ବିଧବାର ପାଣିଗ୍ରହଣ ଶାସ୍ତ୍ରାନୁମୋଦିତ ବୋଲାଯିବ ।

(୧୧) ବାଳବିଧବାର ପିତା ଓ ପିତୃକୁଳର ଶାସ୍ତ୍ରସମ୍ମତ କ୍ଷମତାପନ୍ନ ବ୍ୟକ୍ତିଗଣ କନ୍ୟାଦାନ ଦେଇ ପାରିବାକୁ ଶାସ୍ତ୍ର ନିଷେଧ କରୁ ନାହାନ୍ତି । ଏଣୁ ଅବିବାହିତା କନ୍ୟାଦାନ ତୁଲ୍ୟ ବାଳବିଧବାର ଦାନ ହୋଇ ପରିଣୟ କାର୍ଯ୍ୟ ସମ୍ପନ୍ନ ହେବ, ଅକ୍ଷତଯୋନି ବାଳବିଧବା ଅବିବାହିତା କନ୍ୟା ତୁଲ୍ୟା ।

ଅନନ୍ତ ଶାସ୍ତ୍ର— ଜ୍ଞାତବ୍ୟ ବିଷୟ ଅନନ୍ତ, ଭାରତବର୍ଷକୁ ଦୁର୍ଦ୍ଦଶା ଅନନ୍ତ, ଲୋକମତ ଅସୀମ, ଜାତିଭେଦ ଅପାର, କୁସଂସ୍କାର ଅନନ୍ତ, ପ୍ରାରମ୍ଭିକ ମହତ୍‌କାର୍ଯ୍ୟର ବିଘ୍ନ ଉତ୍ପାଦ ଭାରତୀୟ ଜାତିଧର୍ମ । ନରନାରୀର ଜାତିଗତ ଅଧିକାର ଓ ସମ୍ମାନ ସମ୍ପୂର୍ଣ୍ଣ ଭିନ୍ନ । ଉତ୍କଳୀୟ ଲବ୍ଧପ୍ରତିଷ୍ଠ ପଣ୍ଡିତଗଣଙ୍କର ଶାସ୍ତ୍ରଜ୍ଞାନ ଓ ପାଣ୍ଡିତ୍ୟ ଅଗାଧ, ଶାସ୍ତ୍ରାର୍ଥ ଓ ବ୍ୟୁତ୍ପତ୍ତିଗତ ଅର୍ଥ ବ୍ୟାଖ୍ୟାନରେ ଓ ଶାସ୍ତ୍ରର ଉଦାହରଣ ଉଦ୍ଧୃତ କରିବାରେ ସେମାନଙ୍କର କ୍ଷମତା ଓ ଦକ୍ଷତା ଅତୁଳନୀୟ, ଏହା ଜ୍ଞାନ ଥାଇ ସୁଦ୍ଧା ଦେବଗଡ଼ ବ୍ରାହ୍ମଣ ସମିତି ଏହି ପ୍ରସ୍ତାବରେ ଓ ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି କେବଳ

ଉତ୍କଳ ଦେଶର ମହାନୁଭବମାନଙ୍କର ଆନୁକୂଲ୍ୟ ଓ ସହାନୁଭୂତି ଉପରେ ନିର୍ଭର ରଖି ।

ସ୍ୱହସ୍ତରୋପିତ ବିଷବୃକ୍ଷ ଛେଦନ କରିବାକୁ ରୋପଣକର୍ତ୍ତାର ଯେପରି ସଙ୍କୋଚ ବୋଧହୁଏ, ବହୁକାଳପ୍ରଚଳିତ ତଥା ବଦ୍ଧମୂଳ ବିଶ୍ୱାସ ଓ ସାମାଜିକ ସଂସ୍କାର ଅନିଷ୍ଟକାରୀ ହେଲେ ମଧ ତାହା ଉନ୍ମୂଳିତ କରିବାକୁ ସମାଜ ସଙ୍କୋଚ ବୋଧ କରିବା ସ୍ୱାଭାବିକ । ତେବେ ଭରସା ଏହି ଯେ, ବର୍ତ୍ତମାନ ଜାତିର ଅବନତି, ସମାଜର କ୍ଷତି, ସ୍ତ୍ରୀମାନଙ୍କ ପ୍ରତି ଅଯଥା ନିର୍ଯାତନାକୁ ଲକ୍ଷ୍ୟ କଲେ ସହୃଦୟ ବ୍ରାହ୍ମଣ ସମାଜର ହୃଦୟ ଦୟାର୍ଦ୍ର ହେବ ।

ପରିଶେଷରେ ବ୍ରାହ୍ମଣ ସମିତିର ପ୍ରାର୍ଥନା ଯେ— ସହୃଦୟ ବ୍ରାହ୍ମଣଗଣ କେବଳ ଶାସ୍ତ୍ର ଓ କୁଳାଚାର ଉପରେ ନିର୍ଭର ନ କରି ଦୟା ଓ ସୌଜନ୍ୟ ଉପରେ ଏହି ମହତ୍ ସଂସ୍କାରର ଭିତ୍ତି ସ୍ଥାପନ କରିବେ ଏବଂ ସେମାନଙ୍କର ପୂର୍ବପୁରୁଷଗଣ ଯେପରି ଦେଶ କାଳ ଓ ଅବସ୍ଥା ବିବେଚନାରେ ଜନହିତ ସାଧନାକାମନାରେ ନୂତନ ଶାସ୍ତ୍ର ଓ ବ୍ୟବସ୍ଥା ପ୍ରଣୟନ କରି ଅକ୍ଷୟ କୀର୍ତ୍ତି ରଖିଯାଇଛନ୍ତି, ଉତ୍କଳର ଅବିଦ୍ୟ ଓ ସବିଦ୍ୟ ବ୍ରାହ୍ମଣ ସମାଜ ଏକବାକ୍ୟରେ ଏହି ଜନହିତକର ବ୍ୟବସ୍ଥା ଯୋଡ଼ିକ ଦେଶରେ ପ୍ରଚଳନ କରି ଅକ୍ଷୟ କୀର୍ତ୍ତି ରଖିଯାଉନ୍ତୁ । ଇତି ।

ଦେବଗଡ଼ ବ୍ରାହ୍ମଣସମାଜ

•

# ବିବାହ ବିଚାର

## ପ୍ରଥମ ଅଧ୍ୟାୟ

## ବିବାହ

'ତଜ୍ଜଳାନୀତି'

ଏହା ଉପନିଷଦ୍ ବଚନ । ଧ୍ରୁବ ସତ୍ୟ । ଏହି ବଚନ ମଧ୍ୟରେ ସାରା ବିଶ୍ୱ ବ୍ରହ୍ମାଣ୍ଡର ତତ୍ତ୍ୱ ନିହିତ ରହିଅଛି । ଏହି ବଚନ ଆମ ସୂର୍ଯ୍ୟଠାରୁ ଶତ ସହସ୍ର ଗୁଣ ବଡ଼ ସୂର୍ଯ୍ୟମାନଙ୍କର ଏବଂ ସୂକ୍ଷ୍ମାଦପି ସୂକ୍ଷ୍ମ ପରମାଣୁର ଐତିହ୍ୟ ବ୍ୟକ୍ତି କରୁଅଛି । ଜନ୍ମ କ୍ରୀଡ଼ା ମରଣ ଏହି ତିନି ଅବସ୍ଥା । ଏତଭିନ୍ନ ଯାହା କିଛି ଅଛି ସବୁ କଳ୍ପନା, ଅନୁମାନ ।

''ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତମଧ୍ୟାନି ଭାରତ ।
ଅବ୍ୟକ୍ତନିଧନାନ୍ୟେବ ତତ୍ର କା ପରିବେଦନା ॥''

ଜନ୍ମ କ୍ରୀଡ଼ା ନାଶ । ସୃଷ୍ଟି ସ୍ଥିତି ଲୟ । ଆସିଛି ଯିବ, ଜନ୍ମ ଓ ମରଣ । ଏହା ମଧ୍ୟରେ କ୍ରୀଡ଼ାର ସମୟ । କି ଜଡ଼, କି ଜୀବ, ସମସ୍ତଙ୍କର ଏକ ଦଶା । ସୃଷ୍ଟି ବସ୍ତୁର ତିନି ଅବସ୍ଥା । 'ନାନ୍ୟଃ ପନ୍ଥା ବିଦ୍ୟତେ' । ଜୀବ ସମ୍ବନ୍ଧରେ କ୍ରୀଡ଼ା ଶବ୍ଦ ଓ ଜଡ଼ ସମ୍ବନ୍ଧରେ ସ୍ଥିତି ଶବ୍ଦ ପ୍ରଯୋଜ୍ୟ । ଏ ସ୍ଥଳରେ ଜଡ଼ର ଉଲ୍ଲେଖ ଓ ଆଲୋଚନା ନିଷ୍ପ୍ରୟୋଜନ ।

ଜୀବର ଜନ୍ମ ଓ ମରଣ ଏକ ଏକ ମୁହୂର୍ତ୍ତର ଘଟନା; କ୍ରୀଡ଼ା କାଳ ଦୀର୍ଘ । ଜନ୍ମ ଓ ମରଣର ମଧ୍ୟବର୍ତ୍ତୀ କାଳର ନାମ କ୍ରୀଡ଼ାକାଳ ।

କି ସ୍ଥାବର, କି ଜଙ୍ଗମ, ଜୀବମାତ୍ରରେ ଏକ ସାଧାରଣ ଇଚ୍ଛା ଶକ୍ତି ବିଦ୍ୟମାନ ଅଛି । ସେହି ଇଚ୍ଛାଶକ୍ତି ହେଉଅଛି, 'ବହୁ ସ୍ୟାଂ ପ୍ରଜାୟେୟ' । ଅନେକ ହେବି । ଏହା ପ୍ରକୃତିର ମୂଳମନ୍ତ୍ର । ଏହି ପ୍ରବୃତ୍ତି ସୂକ୍ଷ୍ମାଦପି ସୂକ୍ଷ୍ମ ପରମାଣୁରେ ମଧ ଅଛି । ଏଣୁ ସୃଷ୍ଟିବୈଚିତ୍ର୍ୟ— ଏତେ ବୃକ୍ଷ ଲତା, ଫଳ, ପୁଷ୍ପ, ଏତେ ପଶୁ ପକ୍ଷୀ କୀଟ ପତଙ୍ଗ, ସ୍ଥଳଚର ଜଳଚର । ସମସ୍ତ ଏହି ପ୍ରବୃତ୍ତିର ଫଳସ୍ୱରୂପ ।

ଜୀବର ଏହି ପ୍ରବୃତ୍ତି ଥିବାରୁ ଆପଣା ଆପଣା ବଂଶବୃଦ୍ଧିଦ୍ୱାରା ଜଗତର ଆଧିପତ୍ୟ କାମନାରେ ପ୍ରବୃତ୍ତ । ବଂଶବୃଦ୍ଧି ଭିନ୍ନ ଆଧିପତ୍ୟପ୍ରାପ୍ତି ଅସମ୍ଭବ । ଏଠାରେ ଉଦ୍ଭିଦ ମଧ ଜୀବଶ୍ରେଣୀର ଅନ୍ତର୍ଭୁକ୍ତ ।

ନିଜର ଶରୀରବିଭାଗଦ୍ୱାରା କିମ୍ୱା ନିଜ ଶରୀରର ଅଂଶଦ୍ୱାରା ନିଜ ଆକାର ସଦୃଶ ଅନ୍ୟ ପ୍ରାଣୀ ଗଠନର ନାମ ବଂଶବୃଦ୍ଧି ।

ଯେଉଁ ଜୀବର କ୍ରମବିକାଶଦ୍ୱାରା ଉଚ୍ଚ ଜୀବର ସୃଷ୍ଟି, ସେହି ନିମ୍ନସ୍ତରର ଜୀବ ମଧ୍ୟରୁ କେତେକ ନିଜର ଶରୀର ବିଭାଗଦ୍ୱାରା ତଦାକାର ଜୀବ ସୃଷ୍ଟି କରନ୍ତି । ଏମାନଙ୍କ ଜୀବନର ମଧ ଚାରି ଅବସ୍ଥା ଥିବାର ଧରାଯାଇପାରେ । ଜନ୍ମ, ଆହାର ସଂଗ୍ରହଦ୍ୱାରା ବୃଦ୍ଧି, ସଂଯମ ଓ ବିଭାଗ । ଶକ୍ତିବିକାଶର ପୂର୍ବ ସମୟକୁ ସଂଯମର ସମୟ ବୋଲି କରାଯାଇପାରେ । ଏହା ଜୀବମାତ୍ରର ଅଛି । କାୟ ବିଭାଗଦ୍ୱାରା ବଂଶବୃଦ୍ଧି ହେତୁରୁ ପ୍ରଥମ ଜୀବର ଅସ୍ତିତ୍ୱ ବରାବର ବିଦ୍ୟମାନ ରହୁଅଛି । କାୟ ବିଭାଗଦ୍ୱାରା ବଂଶବୃଦ୍ଧିର ଉଦାହରଣ ଦିଆଯାଇପାରେ ଯେ, କଲେରା କୀଟ ଗୋଟିକଠାରୁ ଚବିଶ ଘଣ୍ଟା ମଧ୍ୟରେ ଏଗାର ହଜାର କଲେରା କୀଟ ଜନ୍ମ ହୁଅନ୍ତି । ଅତି ନିମ୍ନସ୍ତରର ଜୀବମାନଙ୍କର ବଂଶବୃଦ୍ଧି ଏହି ପ୍ରକ୍ରିୟାରେ ସଂଘଟିତ ହୁଏ । କେତେକ

ଉଦ୍ଭିଜ୍ଜାଣୁମାନଙ୍କର ମଧ୍ୟ ଉତ୍ପତ୍ତି ଏହି ପ୍ରକ୍ରିୟାରେ ହୁଏ । ତହିଁରୁ ଉଚ୍ଚତର ଜୀବର ସୃଷ୍ଟି ସଂଯୋଗଜନିତ । କାମପ୍ରବୃତ୍ତି ଏଥିର ମୂଳମନ୍ତ୍ର । ଜୀବର ଉତ୍ପତ୍ତି ମୈଥୁନସମ୍ଭବ । ଜୀବର ମୂଳ ଉପାଦାନ ଦୁଇ ସ୍ଥାନରେ ଥାଏ । ଉଭୟ ଉପାଦାନର ସଂଯୋଗ ହେଲେ ଜୀବର ଜନ୍ମ ହୁଏ । ଉଭୟ ଉପାଦାନ ଏକ ଶରୀରରେ ଥାଇ ପାରେ କିମ୍ବା ସ୍ୱତନ୍ତ୍ର ଯୋଡ଼ିଏ ଶରୀରରେ ଥାଇପାରେ । ଜୀବର ଶକ୍ତି ସଞ୍ଚିତ ହେଲାରୁ ସମ୍ଭୋଗ ବା ସଂଯୋଗର ସମୟ ଉପସ୍ଥିତ ହୁଏ । ଶରୀରରେ ବିଜାତୀୟ ଭାବ ଉପସ୍ଥିତ ହୁଏ । ଉଭୟ ଶରୀରସ୍ଥ ଉପାଦାନଦ୍ୱାରା ଆଉ ନୂତନ ଜୀବସୃଷ୍ଟିର ପ୍ରବୃତ୍ତି ହେଲାରୁ ସଂଯୋଗ, ତହିଁ ଉତ୍ତାରୁ, ନୂତନ ଜୀବର ଜନ୍ମ ।

କେତେକ ଜୀବ ଓ ଉଦ୍ଭିଦର ଜୀବସୃଷ୍ଟିର ଉପାଦାନ ଏକ ଶରୀରରେ ଥାଏ, ସ୍ତ୍ରୀ-ବୀଜ ଓ ପୁଂ-ବୀଜ କାୟର ଦୁଇ ଗୋଟି ସ୍ଥାନରେ ଥାଏ ବା ଏକ ଶରୀରରେ ଉଭୟବିଧ (ସ୍ତ୍ରୀ ଓ ପୁରୁଷ) ଜନନେନ୍ଦ୍ରିୟ ଥାଏ । ଜନ୍ମ କରିବା ପ୍ରବୃତ୍ତି ହେଲାରୁ ଏକ ଜୀବଦ୍ୱାରା ଉଭୟ ଇନ୍ଦ୍ରିୟର ସଂଯୋଗ ହୋଇ ଅଣ୍ଡକ୍ରମେ ନୂତନ ଜୀବର ଜନ୍ମ ହୁଏ । ଅଧିକାଂଶ ଉଦ୍ଭିଦର ଜନ୍ମ ଏହି ପ୍ରଣାଳୀରେ । କେଞ୍ଚୁଅ, ଯୋକ ପ୍ରଭୃତି ଜୀବର ଜନ୍ମ ମଧ୍ୟ ଏହି ପ୍ରଣାଳୀରେ । ଊର୍ଦ୍ଧ୍ୱସ୍ତରର ଜୀବମାନଙ୍କର ଜନନେନ୍ଦ୍ରିୟ ସ୍ୱତନ୍ତ୍ର ଭାବରେ ସ୍ତ୍ରୀ ଓ ପୁରୁଷଠାରେ ବିଦ୍ୟମାନ ଥାଏ । ନୂତନ ଜୀବ ଜନ୍ମ କରିବାରେ ସମୟ ଉପସ୍ଥିତ ହେଲାରୁ ସେହି ପ୍ରଜା ଜନ୍ମ କରିବାର ଅନିର୍ବଚନୀୟ ପ୍ରବୃତ୍ତି ହୁଏ । ଏହି ପ୍ରବୃତ୍ତି ଜାତ ହେବା ସଙ୍ଗେ ସଙ୍ଗେ ପୁରୁଷ ସ୍ତ୍ରୀ ଏବଂ ସ୍ତ୍ରୀ ପୁରୁଷ ଅନ୍ୱେଷଣ କରେ । ଏହା ସାଧାରଣ ପ୍ରାକୃତିକ ନିୟମ । ଏହା ଜୀବର ଧର୍ମ, ପ୍ରଧାନ ଧର୍ମ, ଏହି ଧର୍ମ ରକ୍ଷା ନ କଲେ ଜୀବର ନାଶ ।

ସନ୍ତାନ ଉତ୍ପାଦନ କରିବା ପ୍ରବୃତ୍ତି ପ୍ରାକୃତିକ । ତହିଁର ପ୍ରତିବନ୍ଧ ଅପ୍ରାକୃତିକ ଓ ଅସ୍ୱାଭାବିକ । ସ୍ୱଜାତୀୟ ଜୀବ ଉତ୍ପାଦନ ଅଭିଳାଷରେ ପୁରୁଷର ସ୍ତ୍ରୀ ଅନ୍ୱେଷଣ ଓ ସ୍ତ୍ରୀର ପୁରୁଷ ଅନ୍ୱେଷଣ ଏବଂ ଅନ୍ୱେଷଣ ଉତ୍ତାରୁ ଉଭୟର ସଂଯୋଗର ନାମ ବିବାହ । ଏହି ବିବାହ ଜୀବସମୂହର ସାଧାରଣ ବିଧି । ସମସ୍ତ ଜୀବ ନିଜର ବଂଶରକ୍ଷା ନିମନ୍ତେ ଏବଂ ବଂଶବୃଦ୍ଧି ନିମନ୍ତେ ଏହି ନିୟମ ପାଳନ କରନ୍ତି । ଏ ସ୍ଥଳରେ ତହିଁର ବିସ୍ତୃତ ବିବରଣ ଭିନ୍ନ ପ୍ରସ୍ତାବର ଅବତାରଣା ବୋଲି ବିବେଚିତ ହେବ । ଏଠାରେ କେବଳ ମନୁଷ୍ୟର ବିବାହ ବିଚାର କଲେ ଯଥେଷ୍ଟ ।

ସମସ୍ତ ଜୀବତତ୍ତ୍ୱ ଆଲୋଚନା କରି ଦେଖିଲେ ବିବାହ ଯେ କାମ୍ୟ କର୍ମ ଅଟେ, ଏଥିରେ ସନ୍ଦେହର ଅବସର ରହିପାରେ ନାହିଁ । ସନ୍ତାନ ଉତ୍ପାଦନ କରିବି, ଏହି କାମନାରେ କେବଳ ଜୀବ ସଙ୍ଗ ଇଚ୍ଛା କରେ, ବିବାହ ହୁଏ, ଗୃହ ନିର୍ମାଣ କରେ । ସନ୍ତାନ ଜନ୍ମ କରିବା ଅଭିପ୍ରାୟରେ ବିବାହ, ସନ୍ତାନର ପାଳନ ଓ ରକ୍ଷଣାବେକ୍ଷଣ ନିମନ୍ତେ ଗୃହ । ଇତର ପ୍ରାଣୀମାନଙ୍କର ଗୃହ ବା ବସା ନିର୍ମାଣର ପ୍ରୟୋଜନ କ'ଣ ? କେବଳ ସନ୍ତାନପାଳନ ନିମନ୍ତେ ନୁହେଁ କି ? ତେବେ ମାନବଜାତିର ଆଦିପୁରୁଷଗଣ ଯେ ପ୍ରଥମେ ବାସନିର୍ମାଣ କୌଶଳ ଶିକ୍ଷା କଲେ, ସେ କେବଳ ସନ୍ତାନରକ୍ଷା ପ୍ରବୃତ୍ତିର ପ୍ରେରଣାରୁ ନୁହେଁ କି ? ବ୍ୟାଘ୍ର, ଭଲ୍ଲୁକ ପ୍ରଭୃତି ପ୍ରାଣୀ ପ୍ରସ୍ତରଗୁହା ବା ଗର୍ତ୍ତ ଅନ୍ୱେଷଣ କରନ୍ତି କିଁ ନିମନ୍ତେ ? ନିଜ ନିମନ୍ତେ ? ନା, କେବଳ ସନ୍ତାନପାଳନ ନିମନ୍ତେ । ସନ୍ତାନ ଆତ୍ମରକ୍ଷଣକ୍ଷମ ହେଲାରୁ, ବିଚରଣ କରି ପାରିଲାରୁ ତାଙ୍କର ଗୁହା ବା ଗର୍ତ୍ତର ଲୋଡ଼ା ନାହିଁ । ପ୍ରାଗୈତିହାସିକ ମନୁଷ୍ୟଗଣ ପର୍ବତଗୁହାରେ ବାସ କରୁଥିଲେ, ବୃକ୍ଷ ଉପରେ ବାସ ନିର୍ମାଣ କରି ରହୁଥିଲେ, ଜଳରେ ମଞ୍ଚ ନିର୍ମାଣ କରି ରହୁଥିଲେ କେବଳ ସନ୍ତାନରକ୍ଷା ନିମନ୍ତେ—ସନ୍ତାନମାନଙ୍କୁ ଶତ୍ରୁ ବା ହିଂସ୍ର ପଶୁର ଆକ୍ରମଣରୁ ରକ୍ଷା କରିବା ନିମନ୍ତେ । ମୂଳ ପ୍ରୟୋଜନ ସନ୍ତାନରକ୍ଷଣ । କ୍ରମେ ଗୁହାରେ, ଗୃହରେ ରହିବାର ଅଭ୍ୟାସ ସୁଖକର ବୋଧ ହେବାରୁ ଓ ନିରାପଦ ବୋଧ ହେବାରୁ ତହିଁର କ୍ରମୋନ୍ନତି । ଏବେ ତହିଁର ଚରମୋନ୍ନତି ହର୍ମ୍ୟ, ଅଟ୍ଟାଳିକା । ତେବେ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ, ସମସ୍ତ ଉନ୍ନତିର ମୂଳରେ ବଳବତୀ ସନ୍ତାନଜନ୍ମକାମନା ।

ସନ୍ତାନଜନ୍ମ ଜୀବର ମୂଳ ଲକ୍ଷ୍ୟ, ଏଥି ନିମନ୍ତେ ସଂଯୋଗ ବା ବିବାହ । ଏହି ସଂଯୋଗର ଗୋଟାଏ ଅସାଧାରଣ ଆକର୍ଷଣୀ ଶକ୍ତି ଅଛି । ଏହି ସଂଯୋଗର ଆକର୍ଷଣୀ ଶକ୍ତି ଶରୀର ମଧ୍ୟରେ ଏକ ଅକଥନୀୟ ସାମୟିକ ପ୍ରକୃତିର ଅନ୍ୟଥା ଭାବ ଉପସ୍ଥିତ କରେ। ଏହି ସାମୟିକ ପ୍ରକୃତିର ଅନ୍ୟଥା ଭାବ ଜାତ ହେଉ ନ ଥିଲେ ଜୀବର ସଙ୍ଗଲିପ୍ସା ବଳବତୀ ହୁଅନ୍ତା ନାହିଁ ଏବଂ ଜୀବ ସଙ୍ଗ ଅନ୍ୱେଷଣରେ ତତ୍‌ପର ହୁଅନ୍ତା ନାହିଁ । ସୁତରାଂ ସନ୍ତାନଜନ୍ମରେ ବାଧା ଘଟନ୍ତା । ଏହି ବଳବତୀ ସଙ୍ଗଲିପ୍ସା ମନୁଷ୍ୟଠାରୁ ଆରମ୍ଭି ନିକୃଷ୍ଟ ଜୀବ— ବୃକ୍ଷ ଲତାଦି ଉଦ୍ଭିଦମାନଙ୍କଠାରେ ମଧ୍ୟ ଅଛି । ମାତ୍ର ସେ କଥା ବିସ୍ତୃତ ଭାବରେ ଏଠାରେ ବର୍ଣ୍ଣନା କରିବାର ଅବସର ନାହିଁ ।

ଜୀବର ଜନ୍ମ ଓ ଜୀବନଧାରଣ କେବଳ ବଂଶବୃଦ୍ଧି ନିମନ୍ତେ ଏବଂ ଅନ୍ୟ କିଛି ନିମନ୍ତେ ନୁହେଁ । ତାହା ଜୀବର ଜୀବନ ଇତିହାସ ଅଧ୍ୟୟନରୁ ସ୍ପଷ୍ଟ ଜଣାଯାଏ । ସମସ୍ତ ଜୀବ ଏହି ପବିତ୍ର ନିୟମକୁ ପାଳନ କରନ୍ତି । କେବଳ ମନୁଷ୍ୟ ଏ ନିୟମ ସମ୍ବନ୍ଧରେ ଟିକିଏ ସୃଷ୍ଟିଛଡ଼ା । ମନୁଷ୍ୟ ଜ୍ଞାନବାନ୍ କି ନା, ସେହି ହେତୁରୁ ଏହି ପବିତ୍ର ସଂଯୋଗକୁ ବା ବିବାହକୁ ନିଜର ଜୀବନର ସୁଖ ସାମଗ୍ରୀ ବୋଲି ଭାବି ନେଇଅଛି । ପୁଣି ସମ୍ଭୋଗକୁ ସୁଖ ଓ ନିତ୍ୟ ସୁଖ ବୋଲି ଭାବିବାଦ୍ୱାରା ଇତର ଜୀବ ଅପେକ୍ଷା ଚରିତ୍ରହୀନ ହୋଇଅଛି ।

ମନୁଷ୍ୟ ଇତର ପ୍ରାଣୀ ଅପେକ୍ଷା ଜ୍ଞାନବାନ୍ ଏବଂ ଜ୍ଞାନହିଁ ମନୁଷ୍ୟର ବିଶେଷତ୍ୱ । ମାତ୍ର "ଆହାର ନିଦ୍ରା ଭୟ ମୈଥୁନଂ ଚ ସମାନମେତତ୍ ପଶୁଭି ର୍ନରାଣାଂ" ବୋଲି ପଣ୍ଡିତଗଣ କହିଅଛନ୍ତି । ପ୍ରଥମ ତିନି ବିଷୟରେ ମନୁଷ୍ୟ ଓ ପଶୁ ସମାନ ହୋଇପାରନ୍ତି, ମାତ୍ର ଶେଷ ବିଷୟରେ ମନୁଷ୍ୟ ପଶୁ ଅପେକ୍ଷା ଯେ କେତେ ହୀନ, ତାହା ବର୍ଣ୍ଣନାତୀତ । ମନୁଷ୍ୟ ନିକଟରେ କାକ, କୁକୁର, ଶୃଗାଳ, ନିତାନ୍ତ ଘୃଣ୍ୟ ଜୀବ । ମାତ୍ର ମୈଥୁନ ସମ୍ବନ୍ଧରେ ମନୁଷ୍ୟ ଏହି ତିନି ଜୀବ ଅପେକ୍ଷା ଉପକୃଷ୍ଟ । କାକ କୁକୁର ଶୃଗାଳ ସନ୍ତାନ ନିମନ୍ତେ କେବଳ ସ୍ତ୍ରୀସମ୍ଭୋଗ କରନ୍ତି, ଅନ୍ୟ ସମୟରେ ନୁହେଁ । ମନୁଷ୍ୟର ସ୍ତ୍ରୀସମ୍ଭୋଗ ନିଜ ସୁଖ ନିମନ୍ତେ, ଏଣୁ ସେ ଋତୁକାଳ ଅପେକ୍ଷା କରୁ ନାହିଁ । ଅନ୍ୟ ଜୀବମାନେ ଆଦ୍ୟାବୁଦ୍ଧି * (Instinct) ଦ୍ୱାରା ଚାଳିତ, ସୁତରାଂ ସେମାନେ ପ୍ରକୃତିବିରୋଧ କାର୍ଯ୍ୟ କ୍ୱଚିତ୍ କରନ୍ତି— ଅନ୍ତତଃ ଏହି ମୈଥୁନ ସମ୍ବନ୍ଧରେ । ସ୍ତ୍ରୀର ଗର୍ଭଧାରଣ ହେଲେ ସ୍ତ୍ରୀ ଓ ପୁଂ ଜୀବର ଚରିତାର୍ଥତା ସାଧିତ ହେଲା । ସୁତରାଂ ତେଣିକି ସମ୍ଭୋଗ ନିଷ୍ପ୍ରୟୋଜନ । ଆଦ୍ୟାବୁଦ୍ଧିଦ୍ୱାରା ଚାଳିତ ହେଉଥିବାରୁ ଅନ୍ୟ ଜୀବଗଣ ଗର୍ଭଧାରଣ ବିଷୟ ସହସା ଜାଣିପାରନ୍ତି । ମନୁଷ୍ୟ ଜ୍ଞାନବାନ୍ ହେବାରୁ ଏହି ମହତ୍ ତତ୍ତ୍ୱଟି ହରାଇ ବସିଅଛି । ଜୀବଗଣ ଗର୍ଭିଣୀ ପ୍ରତି ସମ୍ମାନ ପ୍ରଦର୍ଶନ କରନ୍ତି । ମନୁଷ୍ୟ ଅନ୍ତତଃ କେତେକାଳ ପର୍ଯ୍ୟନ୍ତ ତାହା କରନ୍ତି ନାହିଁ । ପଶୁ ପକ୍ଷୀମାନେ ସ୍ତ୍ରୀର ମହତ୍ତ୍ୱ ଓ ସନ୍ତାନରକ୍ଷା ନିମନ୍ତେ ଯେପରି ତତ୍ପର, ମନୁଷ୍ୟ ଜାତିରେ ତାହା ଦେଖାଯାଏ ନାହିଁ । ମନୁଷ୍ୟ ଜାତି ପରି ଅନ୍ୟ ଜୀବ ବ୍ୟଭିଚାରୀ ନୁହଁନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ତ୍ରୀ ପ୍ରତି ଅସମ୍ମାନ ହିଁ ଏହି ଅତ୍ୟାଚାରର ମୂଳ । ସ୍ତ୍ରୀସମ୍ଭୋଗକୁ ନିତ୍ୟ ସୁଖ ମଣିବାଟା ବ୍ୟଭିଚାରର ମୂଳ କାରଣ ଅଟେ । ଏ ସମ୍ବନ୍ଧରେ ମନୁଷ୍ୟ ପଶୁଠାରୁ ହୀନ, ଅତି ହୀନ ।

ବିବାହର ମୂଳ ଉଦ୍ଦେଶ୍ୟ ଯାହା ତାହା ମନୁଷ୍ୟ ଓ ପଶୁ ସମ୍ବନ୍ଧରେ ସମାନ । ତହିଁର କିଞ୍ଚିତ୍ ଆଲୋଚନା ଉପରେ କରାଯାଇଅଛି । ପଶୁ ସମ୍ବନ୍ଧରେ ଆଉ ଆଲୋଚନା ନିଷ୍ପ୍ରୟୋଜନ ।

ମନୁଷ୍ୟ ସମାଜବଦ୍ଧ ଜୀବ ଏବଂ ଜ୍ଞାନବାନ୍ । ସୁତରାଂ ପ୍ରାଗୈତିହାସିକ ଯୁଗରୁ ବିବାହ ପ୍ରଥାର ପରିବର୍ତ୍ତନ କରି ଆସୁଅଛି । ଜଗତରେ ଅସଂଖ୍ୟ ଜାତି, ଶ୍ରେଣୀ ଓ ପରିବାର ଅଛନ୍ତି । କାଳ, ଅବସ୍ଥା ଓ ସ୍ଥାନ ଭେଦରେ ପ୍ରତ୍ୟେକ ଜାତି ଆପଣା ଆପଣା ସମାଜ ସଂସ୍କାର କରିବାକୁ ବାଧ ହୋଇଅଛନ୍ତି । ସମାଜର, ଜାତିର ହିତକଳ୍ପନାରେ ସଂସ୍କାର କରାଯାଏ । ମାତ୍ର ସେହି ସଂସ୍କାର ଯେ ଚରିକାଳ ସମାଜ ବା ଜାତିର ଉପକାରକ ହେବ ଏବଂ ସମୟରେ ସେହି ସଂସ୍କାର ଯେ ଜାତିର ଅନିଷ୍ଟ ଘଟାଇ ନ ପାରେ, ଏପରି ନୁହେଁ । କାରଣ ସଂସ୍କାରକଗଣ ଯେ ସର୍ବବେତ୍ତା ବା ସର୍ବକାଳଦ୍ରଷ୍ଟା, ଏପରି ମଧ୍ୟ ନୁହେଁ । ସାମାଜିକ ଓ ଜାତୀୟ ସଂସ୍କାର ବାରବାର ହେବା ଉଚିତ୍—ଅବଶ୍ୟ ନିତାନ୍ତ ପ୍ରୟୋଜନ ହେଲେ । ଧରାଯାଉ ସଂସ୍କାର ଅର୍ଥ ନିର୍ମଳକରଣ ।

ଜାତିଗତ ଓ ସାମାଜିକ ଦୋଷକୁ ନିର୍ମଳ କରିବାର ପ୍ରୟୋଜନ ହେଲେ ତାହା କରିବା ଉଚିତ୍, ତାହା ନ କଲେ ଜାତି ବା ସମାଜ କ୍ରମେ କଳୁଷିତ ହୋଇ ଘୋର ଅନିଷ୍ଟ ଜାତ କରିବା ସମ୍ଭବ । ଯେଉଁ ଜାତି ବରାବର ସମୟୋପଯୋଗୀ ସଂସ୍କାର କରି ଆସିଅଛନ୍ତି ଏବଂ ପୂର୍ବ ବିଧି ବା ପଦ୍ଧତିର ନିଗଡ଼କୁ ପ୍ରୟୋଜନ ହେଲେ ଭାଙ୍ଗି ଖଣ୍ଡ ଖଣ୍ଡ କରିବାକୁ ଦ୍ୱିଧା ବୋଧ କରି ନାହାନ୍ତି, ସେମାନେ ସଭ୍ୟ ହୋଇଅଛନ୍ତି ଓ ଆଧିପତ୍ୟ ବିସ୍ତାର କରିବାରେ ସମର୍ଥ ହୋଇଅଛନ୍ତି । ଆଉ ଯେଉଁ ଜାତି ପୂର୍ବ ରୀତି ନୀତିର ଦାସ ଏବଂ ପ୍ରୟୋଜନୀୟ ସଂସ୍କାର ଯେଉଁ ଜାତିର ସମକ୍ଷରେ କାକ ଯମ ପ୍ରାୟ ଦୃଶ୍ୟ ହୁଏ, ସେହି ଜାତିର ଅଧୋଗତି ଓ ପତନ ଅବଶ୍ୟମ୍ଭାବୀ । ପୃଥିବୀର ଯେଉଁ ଜାତିମାନେ କୁସଂସ୍କାରର ବଶବର୍ତ୍ତୀ ହୋଇ ପୂର୍ବ ବିଧିକୁ ଗଣ୍ଡିଧନ କରି ଧରିଅଛନ୍ତି ଏବଂ ପୂର୍ବପୁରୁଷକୃତ ବେଷ୍ଟନୀକୁ ତିଳେମାତ୍ର ବହିର୍ଗତ ବା ଅଗ୍ରସର ହେଉ ନାହାନ୍ତି, ସେହି ଜାତିମାନେ ଧୀରେ ଧୀରେ ନାଶ ପ୍ରାପ୍ତ ହେଉଅଛନ୍ତି, ପରର କରକବଳିତ ହେଉଅଛନ୍ତି, ଏହା ଆମ୍ଭମାନଙ୍କର ଦୃଷ୍ଟିରେ

* Instinct ଅର୍ଥ ପଶୁବୁଦ୍ଧି, ମାତ୍ର ଏହା ଜୀବ ମାତ୍ରରେ ପ୍ରୟୋଗ କରାଯାଇ ପାରେ ନାହିଁ । ଏଣୁ ଆଦ୍ୟାବୁଦ୍ଧି ଉପଯୁକ୍ତ ଶବ୍ଦ ବୋଲି ବିବେଚିତ ।

ପଡ଼ୁଅଛି । ଭାରତବାସୀର ସେହି ଦଶା । ଦେଖୁଅଛି କିଏ— ଦେଖାଉଅଛି କିଏ ? ଦର୍ପଣ ଭିନ୍ନ ତ ମୁଖ ଦେଖା ଯାଇ ନ ପାରେ । ଦର୍ପଣ ଦେଖିବାକୁ ଭାରତବାସୀ ନାରାଜ— କାଳେ ମୁଖର ଦାଗ ବା କଳଙ୍କ ଦେଖା ପଡ଼ି ମନକୁ ବିଚଳିତ କରିବ ।

ଭାରତୀୟ ସଭ୍ୟତା କେତେ କାଳର, ତାହା କେହି ନିର୍ଦ୍ଧାରଣ କରିପାରି ନାହାନ୍ତି ବା କରିବାର ସହଜ ପନ୍ଥା ନାହିଁ । କେତେ କାଳର ସାଧନାର ଫଳରେ ଆର୍ଯ୍ୟ ଜାତି ବୈଦିକ ଯୁଗର ସଭ୍ୟତା ଅର୍ଜନ କରିଥିଲେ— ଯେଉଁ ସଭ୍ୟତାର ଉଲ୍ଲେଖ ଋଗ୍‌ବେଦରେ ଦେଖାଯାଏ ଏବଂ ଯେଉଁ ସଭ୍ୟତା ଅଦ୍ୟାପି ଜଗତକୁ ସ୍ତମ୍ଭିତ କରୁଅଛି ? ସେହି ସଭ୍ୟତା କି ଈଶ୍ୱର ଆଦେଶ ବଳରେ ସାଧିତ ହୋଇଥିଲା ? ପ୍ରାଗ୍‌ବୈଦିକ ଯୁଗର ଲୋକେ କି ଅଧ୍ୟବସାୟ ଓ କ୍ରମସଂସ୍କାରଦ୍ୱାରା ଏହି ସଭ୍ୟତାର ଗଠନ କରି ନ ଥିଲେ ? ଏହା ଯେ ସ୍ୱୀକାର ନ କରିବ, ସେ ଅନ୍ଧବିଶ୍ୱାସୀ ।

ଭାରତୀୟ ଆର୍ଯ୍ୟ ଜାତିର ଚରମ ଉନ୍ନତି କେବେ ଏବଂ ତାହା ପତନୋନ୍ମୁଖ ହେଲା କେଉଁ ଦିନଠାରୁ, ତାହା ନିଶ୍ଚୟ କରି ପ୍ରକାଶ କରିବା ଅସମ୍ଭବ । ଯେହେତୁ ଏ ଦେଶରେ ଧାରାବାହିକ ଇତିହାସ ନାହିଁ ଏବଂ ଯେହେତୁ ଏ ଦେଶର ଲୋକେ ଜାତୀୟ ପତନକୁ, ଅବନତିକୁ ଏକପ୍ରକାର ଉନ୍ନତି ବୋଲି ଭାବନ୍ତି ଏବଂ ସ୍ପର୍ଦ୍ଧା ସହିତ ତାହା ପରବର୍ତ୍ତୀ ବଂଶଧରମାନଙ୍କ ନିମନ୍ତେ ଲେଖି ରଖିଅଛନ୍ତି । ମତାନ୍ତର ଥାଉ ପଛକେ, ବୈଦିକ ଯୁଗଠାରୁ ଆରମ୍ଭି ବୌଦ୍ଧ ଯୁଗର ଶେଷ ପର୍ଯ୍ୟନ୍ତ ଭାରତର ଉନ୍ନତି ଓ ସଭ୍ୟତାର ସମୟ ବୋଲି କହିବାକୁ ଆମ୍ଭେମାନେ କୁଣ୍ଠିତ ନୋହୁଁ । ଏହି ସମୟ ମଧ୍ୟରୁ କେଉଁ ସମୟଟି ଠିକ୍ ଚରମ ଉନ୍ନତିର କାଳ, ତାହା ଠିକ୍‌ରୂପେ ପ୍ରକାଶ କରିବା ସାଧ୍ୟାତୀତ ।

ଗବେଷଣାଦ୍ୱାରା ପ୍ରକାଶ ପାଏ ଯେ, ଏକ ସମୟରେ ଜଗତର ନାନା ସ୍ଥାନରେ ନାନା ଜାତିର ମନରେ ସ୍ୱତଃ ଏକପ୍ରକାର ଭାବ ଉଦ୍ଭାସିତ ହୁଏ; ଧର୍ମବିଷୟକ ହେଉ, ନୀତି ବିଷୟକ ହେଉ ବା ଜାତି ବିଷୟକ ହେଉ । ଏହା ପୁଣି ଜାତୀୟ ଶିକ୍ଷା ଓ ସଭ୍ୟତା ଅନୁସାରେ ହୋଇଥାଏ । ଉପନିଷଦ ଓ ବୌଦ୍ଧ ଯୁଗରେ ଯେତେବେଳେ ଭାରତବାସୀଙ୍କ ହୃଦୟରେ ପୂର୍ବପ୍ରଚଳିତ ରୀତି ନୀତି ଓ ବିଶ୍ୱାସ ସମ୍ବନ୍ଧରେ ଘୋର ବିପ୍ଳବ ଉପସ୍ଥିତ ହୋଇଥିଲା ଏବଂ ଭାରତବାସୀଙ୍କି ଅନ୍ଧାରରୁ ଉଜ୍ଜ୍ୱଳ ଆଲୋକକୁ କଢ଼ାଇ ନେବାର ଚେଷ୍ଟା ଚାଲିଥିଲା, ପ୍ରାୟ ସେହି ସମୟରେ ଗ୍ରୀସ୍ ଦେଶରେ ଜଣ କେତେ ମନୀଷୀ ଜନ୍ମ ଗ୍ରହଣ କରି ପୂର୍ବ କୁସଂସ୍କାରକୁ ପରିଷ୍କାର କରିବାର ଚେଷ୍ଟା କରିଥିଲେ । ଏହି ଉଭୟ ଦେଶର ଏହା ଚରମ ଉନ୍ନତିର ସମୟ ବୋଲାଯାଇପାରେ । ସେତେବେଳେ ଆଧୁନିକ ସଭ୍ୟ ଇଉରୋପୀୟମାନଙ୍କର ନାମ ଖଡ଼ିଗାରକୁ ଆସି ନ ଥିଲା । ସେହି ମହତ୍ମାମାନଙ୍କ ବଚନକୁ ଅବହେଳା କରି ଗ୍ରୀକ୍ ଜାତିର ପତନ ଏବଂ ତତ୍କାଳୀନ ମନୀଷିମାନଙ୍କ ଆଦେଶ ଓ ଉପଦେଶକୁ ଅବଜ୍ଞା କରି ଭାରତବାସୀର ଅବନତି । ଏଥି ଉତ୍ତାରୁ ସ୍ୱାର୍ଥତ୍ୟାଗୀ ଈଶ୍ୱରପୁତ୍ର ଖ୍ରୀଷ୍ଟଙ୍କର ଜନ୍ମସାରା ଇଉରୋପରୁ ସ୍ୱାର୍ଥାନ୍ଧ କଲା ଏବଂ ଖ୍ରୀଷ୍ଟବିଶ୍ୱାସ ହିଁ ମନୁଷ୍ୟର ଚରମ ମୁକ୍ତି ପନ୍ଥା, ଏହି ବିଶ୍ୱାସ ସମସ୍ତ ଖ୍ରୀଷ୍ଟିୟାନ୍ ଜାତିଙ୍କୁ ଅବିକଳ୍ପ ମନରେ ସମସ୍ତ ପାପ କରିବାକୁ ପ୍ରଶ୍ରୟ ଦେଲା । ପ୍ରାୟ ଠିକ୍ ସେହି ସମୟରେ ଭାରତରେ ଅସଂଖ୍ୟ ଦେବ-ଦେବୀ ବେଦ ଉପନିଷଦ ଓ ବୌଦ୍ଧ ମତକୁ ପଦଦଳିତ କରି ଆବିର୍ଭୂତ ହେଲେ । ଗୋପନୀୟ ତନ୍ତ୍ର, ମନ୍ତ୍ର ଓ ଯନ୍ତ୍ରର ପ୍ରୟୋଗ ଓ ଦେବତାପୂଜନଦ୍ୱାରା ମୁଷ୍ଟିମେୟ ଲୋକ ଭାରତାବାସୀଙ୍କୁ ମୁଗ୍ଧ କରି ରଖିଲେ । ଏକ ସମୟରେ ଯେଉଁ କ୍ଷତ୍ରିୟ ଓ ବ୍ରାହ୍ମଣ ପରସ୍ପର ସହାୟତାଦ୍ୱାରା ଦେଶର ଅଶେଷ ଉନ୍ନତି ସାଧନ କରିଥିଲେ, ପୁଣି ସେହି ଜାତି ସ୍ୱାର୍ଥାନ୍ଧ ହୋଇ ଭାରତବର୍ଷର ପତନର ଗର୍ତ୍ତ ଖନନ କଲେ ।

ଅସଂଖ୍ୟ ଦେବତାର ପ୍ରାଦୁର୍ଭାବ ସଙ୍ଗେ ସଙ୍ଗେ ଅସଂଖ୍ୟ ଭକ୍ତର ଜନ୍ମ ସ୍ୱାଭାବିକ । ଅନେକ ମୁନି ହେଲାରୁ ମତ ମଧ ଭିନ୍ନ ଓ ଅନେକ ହେବାର କଥା । ପୁରାଣ, ସ୍ମୃତି, ମାହାତ୍ମ୍ୟ ଆଉ କେତେ କଣ ଦେଶମୟ ବ୍ୟାପିବାକୁ ଲାଗିଲା । ଲୋକେ ଦେଶସେବାରେ ଲାଗିବେ, କି ନୂତନ ସ୍ୱର୍ଗରାଜ୍ୟ ଅଧିକାର କରିବା ନିମନ୍ତେ ଦେବତାଙ୍କ ସେବାରେ ନିଯୁକ୍ତ ହେବେ, ଏହା ଗୋଟାଏ ଗୂଢ଼ ସମସ୍ୟା ହୋଇଉଠିଲା । ନେତାମାନେ ଉପଦେଶ ଦେଲେ— ପାର୍ଥିବ ରାଜ୍ୟ ଜୟ ଓ ଆଧିପତ୍ୟ କେବଳ ଦୁଇଦିନିଆ କଥା । ଯେବେ ଚିରସୁଖର ଇଚ୍ଛା ଥାଏ, ତେବେ ବଦ୍ଧପରିକର ହୋଇ ସ୍ୱର୍ଗରାଜ୍ୟ ଜୟ ଚେଷ୍ଟାରେ ରହିବା ଉଚିତ୍ । ଦାନଧର୍ମ ଏଥିରେ ପ୍ରଧାନ ଉପାୟ । ତାହା ଭାରତବାସୀ । ସମସ୍ତେ ତ ସ୍ୱର୍ଗରାଜ୍ୟ ଜୟ କରିବାକୁ ବସିଲେ, ଭାରତର ସୀମାରୁ ଖଣ୍ଡିଏ ଖଣ୍ଡିଏ ଯିବାକୁ ବସିଲା । ଯାଉ, ସେଥିରେ ଯାଏ ଆସେ କ'ଣ ? ସ୍ୱର୍ଗରାଜ୍ୟ ଥାଉ । କ୍ରମେ ସେହି ସ୍ୱର୍ଗ ରାଜ୍ୟ ଆଶାରେ ଭାରତବାସୀ ଭାରତ ହଜାଇ ବସିଲେ । ସେହି ସ୍ୱର୍ଗ ଆଶା ''ନାଦ୍ୟାପି ବିଶ୍ରାମ୍ୟତି ।''

ଭେଦବୁଦ୍ଧି ଆସିଲା । ବେଦ ଉପନିଷଦ୍ ପେଡ଼ିରେ ସାଇତା ହେଲେ ଉପାସ୍ୟ ହେଲେ ପୁରାଣ । ସ୍ତ୍ରୀମାନେ ବେଦ ପଢ଼ିଲେ, ଉପନିଷଦ ପଢ଼ିଲେ, ଶାସ୍ତ୍ରଜ୍ଞ ହେଲେ ତାଙ୍କର ମର୍ଯ୍ୟାଦା ବଢ଼ାଏ ରଖି ବସିବେ, ଏଣୁ ସ୍ତ୍ରୀଙ୍କୁ ବିଦ୍ୟାରୁ ବିରତ କରାଗଲା । ବେଦ ସ୍ତ୍ରୀପାଠ୍ୟ ନୁହେଁ ବୋଲି ଘୋଷଣା କରାଗଲା । ସ୍ତ୍ରୀର ମର୍ଯ୍ୟାଦା ସମ୍ମାନ କ୍ଷୁଣ୍ଣ କରାଗଲା । ମୈତ୍ରେୟୀ, ଗାର୍ଗୀ, ସୁଲଭା, ବୟୁକା, ଅପାଳୀ, ବିଶ୍ୱବାରାଙ୍କ ପରି ସ୍ତ୍ରୀମାନେ ବ୍ରହ୍ମଜ୍ଞାନୀ ହୋଇ ପୁରୁଷ ସଙ୍ଗେ ସମକକ୍ଷ ହେଲେ । କଳିଯୁଗରେ ପୁରୁଷର ମାହାତ୍ମ୍ୟ ରହିବ କେଉଁଠି ? ସ୍ତ୍ରୀ ସହିତ ଶାସ୍ତ୍ରାଳାପ କରିବା ଅପେକ୍ଷା ମୁହଁ ପୋଡ଼ିଯିବା ଭଲ । ସ୍ତ୍ରୀଜାତି ଅବଳା, ସେମାନେ ବିନା ପରିଶ୍ରମରେ ପେଟକୁ ଭାତ, ଅଣ୍ଟାକୁ ଲୁଗା, ପ୍ରୟୋଜନ ହେଲେ ଗହଣା ପାଇଁ ଘରେ ରହନ୍ତୁ । ସ୍ତ୍ରୀମାନେ ବିଦ୍ୟାହୀନା ହେଲେ ଏବଂ ପୁରୁଷର ଧର୍ମରେ, ଜାତିରେ ଓ ଗୃହରେ ଏକାଧିପତ୍ୟ ରହିଲା । ଯେଉଁ ପୁରାଣ ଓ ସ୍ମୃତିରେ ସ୍ତ୍ରୀମାନଙ୍କ ପ୍ରତି ଅଜସ୍ର ନିନ୍ଦାଗାନ ଲିଖିତ ହେଲା, ସେ ପୁଣି ହେଲା ତାଙ୍କର ପାଠ୍ୟ ବା ଶ୍ରବଣଯୋଗ୍ୟ । ସ୍ତ୍ରୀମାନଙ୍କୁ ନିନ୍ଦ୍ୟା ଓ ଦୂଷିତା ବୋଲି ଘୋଷଣା କରିବାଦ୍ୱାରା ସେମାନଙ୍କର ମାନସିକ ଓ ନୈତିକ ବଳକୁ ହ୍ରାସ କରାଗଲା । ଏହି ଭେଦବୁଦ୍ଧିରୁ ଆଜି ଭାରତ ରମଣୀମାନଙ୍କର ଦୁର୍ଦ୍ଦଶା ।

ଏତିକିରେ ଶାନ୍ତି ମିଳିଲା ନାହିଁ । ଦୁର୍ଦ୍ଦଶା ଉପରେ ଦୁର୍ଦ୍ଦଶା—ବିବାହ ଆଇନ୍ । ବାଲ୍ୟବିବାହର ପ୍ରଚାର ଏବଂ ବିଧବାବିବାହର ନିଷେଧ । ସ୍ତ୍ରୀ ଚରିତ୍ରକୁ ଦୂଷିତ, କଳଙ୍କିତ କରିବାକୁ ପୁରୁଷ ଜାତିର କି ଆଗ୍ରହ, କି ଅହଙ୍କାର, ତାହା ଅକଥନୀୟ । ପୁରୁଷ ଚରିତ୍ର ଅପେକ୍ଷା ସ୍ତ୍ରୀ ଚରିତ୍ର ଯେ ଶତଗୁଣରେ ଶ୍ରେଷ୍ଠ, ତାହା ପୁରୁଷ ଜାଣୁ ଜାଣୁ ଭୁଲିଯିବାକୁ ଲାଗିଲା । ଅନୂଢ଼ା ଯୁବତୀ, ପୁରୁଷଚକ୍ଷୁର ଶୂଳ ହୋଇରହିଲେ । ଅନୂଢ଼ା ଯୁବତୀ ଅସତୀ, ଏହି କଥା ପୁରୁଷ ମନରେ ଅହରହ ନୃତ୍ୟ କଲା । କାପୁରୁଷଗଣ ଏହା ବରଦାସ୍ତ କରିପାରିଲେ ନାହିଁ । ବାଲ୍ୟବିବାହ ପ୍ରଚଳନ କଲେ । ଏଥିରେ ମଧ୍ୟ ଶାନ୍ତି ମିଳିଲା ନାହିଁ । ବିବାହ ହେଲା ମାତ୍ରକେ ବାଳିକା ପାଣିଗ୍ରହୀତା ବାଳକର ସମ୍ପତ୍ତି ବୋଲି ବିଧି କଲେ । ସ୍ତ୍ରୀ ଗୋଟାଏ ପାର୍ଥିବ ଅସ୍ଥାବର ସମ୍ପତ୍ତିତୁଲ୍ୟ । ସେ ପୁଣି ପରହସ୍ତ ହୋଇ ନ ପାରେ । ହେଲେ ପତିକୁଳର ନିନ୍ଦା ଓ ପିତୃକୁଳର ନିନ୍ଦା । ବିବାହିତା ବାଳିକାର ଗତି କ'ଣ ? ବାଳକ ମଲେ ବାଳିକା ବ୍ରହ୍ମଚର୍ଯ୍ୟ କରିବ ଏବଂ ଚିରକାଳ ମୃତ ବାଳକର ବା ବୃଦ୍ଧର ଅସ୍ଥାବର ସମ୍ପତ୍ତିରୂପେ ପରିଚିତ ହେଉଥିବ । ସ୍ତ୍ରୀମାନଙ୍କ ପ୍ରତି ବ୍ରାହ୍ମଣ ଜାତି ଯେତେଦିନଯାଏ ଉପରୋକ୍ତ କେତେଗୋଟି ନିୟମ ଜାରି କରିପାରି ନ ଥିଲେ, ସେତେଦିନ ଯାଏ ସେମାନଙ୍କର ମନ ପ୍ରାଣ ଦଗ୍ଧ ହେଉଥିଲା । ଘୋର କଳିଯୁଗରେ ଏହି ବିଧି ବ୍ୟବସ୍ଥା ପ୍ରଣୟନ କରି ନିଜେ ଶାନ୍ତି ଲାଭ କଲେ ଏବଂ ସ୍ତ୍ରୀଜାତିକୁ ଅନନ୍ତ ଶୋକସାଗରରେ ଭସାଇଲେ । କି ଆଶ୍ଚର୍ଯ୍ୟ । ଏତେ ସ୍ମୃତିଶାସ୍ତ୍ରର ରଚନା କି କେବଳ ସ୍ତ୍ରୀନିର୍ଯାତନା ନିମନ୍ତେ ଏବଂ ଶୂଦ୍ରକୁ ଅଯଥା ଭୟ ଦେଖାଇବା ନିମନ୍ତେ ? ଏହି ଆଲୋଚନା ହିଁ କେବଳ କି ଦେଶର ମଙ୍ଗଳଜନକ ଏବଂ ସ୍ୱର୍ଗସୁଖପ୍ରଦାୟକ ।

ସ୍ମୃତିସଂହିତା ଅନେକ, ମାତ୍ର ସମସ୍ତେ ଛୋଟ ବଡ଼ ହେଲେ ମଧ୍ୟ ଏବଂ ବିଭିନ୍ନ ସମୟରେ ଲେଖା ହୋଇଥିଲେ ମଧ୍ୟ ସମସ୍ତ ସ୍ମୃତିର ପଥ ଏକ । ଏକ ଉପାଦାନ ନେଇ ପ୍ରତ୍ୟେକେ ଭିନ୍ନ ଭିନ୍ନ ଛାଞ୍ଚରେ ଗଢ଼ିଅଛନ୍ତି । ଏହି ସ୍ମୃତିମାନଙ୍କର ରଚକ ବୈଦିକଯୁଗର ଋଷି ଓ ଦେବତା ବୋଲି କଥିତ ହେଉଥିଲେ ମଧ୍ୟ କେତେକ ପୁରାଣ ଓ ସ୍ମୃତି ଯେ ଘୋର କଳିଯୁଗରେ ରଚିତ, ଏହା କହିବା ବାହୁଲ୍ୟ ମାତ୍ର । ତଥାପି ଲୋକେ ଏହି ସ୍ମୃତି ଓ ପୁରାଣାଦିକୁ ସତ୍ୟ, ତ୍ରେତା, ଦ୍ୱାପରର ପୁରାଣ ଓ ସ୍ମୃତି ବୋଲି ପ୍ରକାଶ କରିବାକୁ କୁଣ୍ଠିତ ନୁହଁନ୍ତି ଓ ସେହି କାଳରେ ରଚିତ ବୋଲି କହିବାକୁ ଦ୍ୱିଧା ବୋଧ କରନ୍ତି ନାହିଁ । ଅଧିକାଂଶ ସ୍ମୃତିର ମତ ଅତି ପୁରୁଣା— ମାତ୍ର ସ୍ମୃତିରଚନା ପୁରୁଣା ନୁହେଁ । ପ୍ରାଚୀନ ଋଷିଙ୍କର ମତାନୁସାରେ ସ୍ମୃତି ରଚିତ, ମାତ୍ର ସେହି ଋଷିଙ୍କର ରଚିତ ନୁହେଁ । ପ୍ରାଚୀନ ପ୍ରସିଦ୍ଧ ଋଷିଙ୍କ ନାମରେ ବାକ୍ୟ ରଚନା କରି ନିଜର ମତ ବଜାଏ ରଖିବାକୁ ଅର୍ବାଚୀନ ସ୍ମୃତିକର୍ତ୍ତାମାନେ କୃତ୍ରିମ ପନ୍ଥା ଅବଲମ୍ବନ କରିଅଛନ୍ତି ଏବଂ ଅନ୍ଧବିଶ୍ୱାସୀ ଶ୍ରୋତା ପାଇଲାରୁ ସେମାନଙ୍କର ସାହସ ଉତ୍ତରୋତ୍ତର ବଢ଼ିଅଛି । ଏଣୁ ଯମ କୁବେର ସମ୍ବର୍ତ୍ତ ପ୍ରଭୃତି ନାମରେ ଭଣିତ ଓ କଥିତ ସ୍ମୃତିମାନ ବ୍ୟବସ୍ଥା ଶାସ୍ତ୍ରରୂପେ ଆଦର ପାଇଅଛନ୍ତି । ଭାରତବର୍ଷରେ ଶାସ୍ତ୍ରମାନେ ପ୍ରଥମ ରଚନାଦିନରୁ ଅବିକୃତ ଓ ଅପରିବର୍ତ୍ତିତ ଭାବରେ ରହିଅଛନ୍ତି ବୋଲି ବିଶ୍ୱାସ କରିବା ଭୁଲ୍ । ପ୍ରଥମ ପ୍ରଣେତାଙ୍କ ଶାସ୍ତ୍ରରେ ପରେ ଯୋଗ ବିୟୋଗ ଓ ପରିବର୍ତ୍ତନ କେତେ ଘଟିଅଛି, ତାହା ସ୍ଥିରରୂପେ ପ୍ରକାଶ କରିବା ସମ୍ଭବପର ନୁହେଁ । ଭୃଗୁ ପ୍ରଭୃତି ସ୍ମୃତି-ପ୍ରଣେତା ଉଦାରଚେତା ଥିଲେ ବୋଲି ଅନୁମାନ କରାଯାଏ । ଯେଉଁମାନେ ଉଦାରପ୍ରକୃତିର ଲେଖକ, ସେମାନେ ବେଦ ଉପନିଷଦ ପ୍ରଚଳିତ ଲୋକାଚାରରୁ ଉଦାର ମତ ସଂଗ୍ରହ କରି ଗ୍ରନ୍ଥ ପ୍ରଣୟନ କରିଥିଲେ । ପରବର୍ତ୍ତୀ ସଂକୀର୍ଣ୍ଣମନା ପଣ୍ଡିତଗଣ ସେହି ସ୍ମୃତିମାନଙ୍କର ଯୋଗ ବିୟୋଗ କରିଅଛନ୍ତି ଏବଂ ନିଜର ମତାନୁଯାୟୀ ଦୁଇ ଚାରି ଶ୍ଳୋକ ରଖି

ଦେଇଅଛନ୍ତି।ସୁତରାଂ ଗୋଟାଏ ଗ୍ରନ୍ଥରେ ପରସ୍ପର ବିରୋଧୀ ଦୃଷ୍ଟ ହୁଏ । ପୁଣି ବ୍ୟାଖ୍ୟାକାରମାନେ ନିଜ ମତ ଦ୍ୱାରେ ତାକୁ ଗ୍ରହଣ କରି ଗ୍ରନ୍ଥର ବିଷୟକୁ ଖଣ୍ଡନ ମଣ୍ଡନ ନ୍ତି ଏବଂ ଶାସ୍ତ୍ରାନଭିଜ୍ଞ ବ୍ୟକ୍ତିଙ୍କୁ ଭ୍ରାନ୍ତ କରନ୍ତି । ବହୁକାଳରୁ ି ପ୍ରକ୍ରିୟା ଚାଲି ଆସିଅଛି । ଜଣ କେତେ କେବଳ ଶାସ୍ତ୍ରଜ୍ଞ, ଅନ୍ୟ ସମସ୍ତେ ସେହି ଜଣ କେତେକଙ୍କର ମୁଖାପେକ୍ଷୀ । ସେମାନଙ୍କ ମୁଖନିଃସୃତ ବାକ୍ୟ ଧ୍ରୁବ ସତ୍ୟ, ଏହା ସାଧାରଣ ଲୋକଙ୍କର ବିଶ୍ୱାସ । ଏଣୁ ସ୍ମୃତି ଶାସ୍ତ୍ରର ଜଟିଳତା କ୍ରମାଗତ ବୃଦ୍ଧି ଲାଭ କରିଅଛି । ସୁତରାଂ ସ୍ମୃତିଶାସ୍ତ୍ର ଆଲୋଚନା କରି ଗୋଟାଏ ସ୍ଥିର ମତ ନିର୍ଦ୍ଧାରିତ କରିବା ବଡ଼ କଠିନ— ପରସ୍ପର ବିରୋଧୀ ମତର ସୀମା ନାହିଁ । କେବଳ ଯେ ସ୍ମୃତିଶାସ୍ତ୍ର ଏପରି, ତାହା ନୁହେଁ; ପୁରାଣ, ମାହାତ୍ମ୍ୟ, କଥା କଥାଣୀରେ ମଧ ପରସ୍ପର ବିରୋଧୀ ଧର୍ମମତ ଅଛି । ସ୍ମୃତି ନୋହିଲେ ପୁରାଣର ସାକ୍ଷ୍ୟ ଦେବେ । ପୁରାଣ ନୋହିଲେ ମାହାତ୍ମ୍ୟର ସାକ୍ଷ୍ୟ ଦେବେ । ଇତ୍ୟାଦି । ଏହି ପ୍ରକାର ଶାସ୍ତ୍ରୀୟ ଜାଲ ଭାରତବାସୀଙ୍କି ବନ୍ଧନ କରି ରଖିଅଛି । ମୁକ୍ତିର ବାଟ ନାହିଁ । କେହି ଜାଲ ଛିନ୍ନ କରିବାର ପ୍ରୟାସୀ ନୁହନ୍ତି ।

ଯେଉଁ ଭାରତବାସୀ ଏକ ସମୟରେ ମହତ୍ ଓ ଉଦାର ଥିଲେ, ତାଙ୍କର ବଂଶଧରଗଣ ଏପ୍ରକାର ଅନୁଦାର ଓ ହୀନପ୍ରକୃତିର ହେବେ, ଏହା ସ୍ୱପ୍ନର ଅତୀତ । ସ୍ମୃତିମାନେ ସବୁ ପାପର ପ୍ରାୟଶ୍ଚିତ୍ତ ଲେଖିଗଲେ, ମାତ୍ର ସ୍ୱାର୍ଥାନ୍ଧତାର ପ୍ରାୟଶ୍ଚିତ୍ତ ଅଛି ବୋଲି ତ କାହିଁ ଲେଖିଲେ ନାହିଁ ? ବୋଧହୁଏ ଏ ପାପର ପ୍ରାୟଶ୍ଚିତ୍ତ ନାହିଁ । ସୁତରାଂ ଭାରତବାସୀ କ୍ଳେଶ ଭୋଗ କରୁଅଛନ୍ତି ଓ କରିବେ । ଅନୁତାପ ଭିନ୍ନ ପାପର ଖଣ୍ଡନ ହୁଏ ନାହିଁ । ପାପ ନାଶ କରାଯାଏ 'ତ୍ୟାଗାତ୍, ଅନୁତାପାତ୍, ପ୍ରଖ୍ୟାପନାଚ୍ଚ' । ପୂର୍ବ ପୁରୁଷଙ୍କର ଦୂଷିତ କୁଳାଚାରକୁ ତ୍ୟାଗ କରିବାକୁ ଯେଉଁମାନେ ନାରାଜ, ସେମାନଙ୍କର ଅନୁତାପ ହେବ କେଉଁଆଡୁ ? ଏବଂ ତାହାକୁ ଦୋଷ ବୋଲି ସ୍ୱୀକାର କରିବେ କିପରି ? ସୁତରାଂ ଭାରତବାସୀ ପକ୍ଷରେ ନିଷ୍କୃତି ସୁଦୂରପରାହତ ।

ଭୂପୃଷ୍ଠରେ ମାନବଜାତି ଅସଂଖ୍ୟ । ସଭ୍ୟ ଓ ଅସଭ୍ୟ । ବିବାହପଦ୍ଧତି ଅନେକ ପ୍ରକାର । ପ୍ରତ୍ୟେକ ଜାତିର ଭିନ୍ନ ପଦ୍ଧତି ଅଛି ବୋଇଲେ ଅତ୍ୟୁକ୍ତି ନୁହେଁ । ଭାରତବର୍ଷର ବିବାହପଦ୍ଧତି ଅନେକ, ଯେହେତୁ ଏଠାରେ ବହୁ ଜାତିର ଲୋକ ବାସ କରନ୍ତି । ପୃଥିବୀର ଅନ୍ୟ କୌଣସି ଜାତି ମଧରେ ବାଧତାମୂଳକ ବାଲ୍ୟବିବାହର ପ୍ରଚଳନ ନାହିଁ । କିମ୍ୱା ବିଧବାବିବାହର ନିଷେଧ ନାହିଁ । ଏ ଦୁଇ ପ୍ରଥା ଭାରତର ନିଜସ୍ୱ । ସମସ୍ତ ଉଚ୍ଚ ଆର୍ଯ୍ୟଜାତି ମଧରେ ବିଧବାବିବାହ ଏକାବେଳକେ ନିଷିଦ୍ଧ । ବାଲ୍ୟବିବାହ କେବଳ ବ୍ରାହ୍ମଣ ଓ ବୈଶ୍ୟମାନଙ୍କ ମଧରେ ପ୍ରଚଳିତ ଏବଂ ସେମାନଙ୍କ ଅନୁକରଣରେ ଶୂଦ୍ରାଦି, ଏମନ୍ତ କି ଅତି ନୀଚ ଜାତି ମଧ ବାଲ୍ୟବିବାହର ପକ୍ଷପାତୀ ହୋଇ ପଡ଼ିଅଛନ୍ତି । ଏପରି ଜାତି ଅଛନ୍ତି, ଯେଉଁମାନଙ୍କର ସମାଜରେ ବିଧବାବିବାହ ଓ ଯୁବତୀ ବିବାହର ପ୍ରଚଳନ ଅଛି; ସେମାନେ ମଧ ସମୟ ସମୟରେ ବାଲ୍ୟବିବାହ କରିବାକୁ ଛାଡୁ ନାହାନ୍ତି ।

ବାଲ୍ୟବିବାହ କେତେଦିନରୁ ଭାରତବର୍ଷରେ ପ୍ରଚଳିତ ହେଲା, ତାହା ଠିକ୍‌ରୂପେ ନିର୍ଦ୍ଧାରଣ କରିବା କଠିନ । ଯେବେ ପ୍ରାଚୀନ ସ୍ମୃତିଶାସ୍ତ୍ରର ପ୍ରକ୍ଷିପ୍ତ ବଚନ ଓ ଅର୍ବାଚୀନ ସ୍ମୃତି ଓ ଆଧୁନିକ ଟୀକାକାରମାନଙ୍କ ମତ ଓ ବ୍ୟବସ୍ଥାମାନଙ୍କ କଥାକୁ ବିଶ୍ୱାସ କରିବାକୁ ହୁଏ, ତାହାହେଲେ ଅଗତ୍ୟା ସ୍ୱୀକାର କରିବାକୁ ହେବ ଯେ, ବାଲ୍ୟବିବାହ ଅନନ୍ତ କାଳରୁ ଅଛି । ମାତ୍ର ତାହା ନୁହେଁ । ବୈଦିକ ଯୁଗରେ ବାଲ୍ୟବିବାହର ପ୍ରଚାର ଆଦୌ ନ ଥିଲା, ତାହା ସ୍ପଷ୍ଟରୂପେ ପ୍ରମାଣିତ ହୋଇଅଛି । ସେ ଯୁଗରେ କେବଳ ଯୁବତୀ ବିବାହର ପ୍ରଚାର ଥିଲା । ତାହା ପରେ ବର୍ଣ୍ଣିତ ହେବ ।

ବେଦସିଦ୍ଧ ଯୁବତୀବିବାହ ପରିବର୍ତ୍ତରେ ବ୍ରାହ୍ମଣଜାତି ବାଲ୍ୟବିବାହର ପ୍ରଚଳନ କି କାରଣ ଦୃଷ୍ଟିରେ କଲେ, ତାହା ସ୍ଥିର ନିଶ୍ଚିତ ରୂପେ ବ୍ୟକ୍ତ କରିବା କଠିନ । କି ସୁଫଳ ପ୍ରାପ୍ତ୍ୟାଶାରେ ଏହି କୁପ୍ରଥାର ପ୍ରଚଳନ କଲେ, ତାହା ମଧ ବ୍ୟକ୍ତ କରିବା ସହଜ ନୁହେଁ । ତେବେ ଅନ୍ତର୍ବିବାଦ ଓ ଧର୍ମବିଦ୍ୱେଷ ଏହି ପ୍ରଥାର ମୂଳରେ, ଏହା କହିବାକୁ ସଙ୍କୋଚ ବୋଧ ହୁଏ ନାହିଁ । କ୍ଷତ୍ରିୟମାନେ ବରାବର ବୈଦିକ ପ୍ରଥାକୁ ରକ୍ଷା କରିଅଛନ୍ତି ଏବଂ ବ୍ରାହ୍ମଣମାନେ ସେହି ବୈଦିକ ମନ୍ତ୍ରାଦି ବ୍ୟବହାର କରୁଥିବା ସତ୍ତ୍ୱେ କେବଳ ସ୍ତ୍ରୀର ବୟସର ପରିବର୍ତ୍ତନ କରିଅଛନ୍ତି । ଏଣୁ ବ୍ରାହ୍ମଣ କ୍ଷତ୍ରିୟଙ୍କ ଆଚାରଗତ ମତଦ୍ୱୈଧ ଉଭୟଙ୍କର କୁଳାଚାର ବେଷ୍ଟନୀକୁ ସୁଦୃଢ଼ କରିବାର ପ୍ରବୃତ୍ତି ଦେଲା ବୋଲିବା ଅଯୌକ୍ତିକ ନୁହେଁ । ବ୍ରାହ୍ମଣମାନେ ଏହି ପ୍ରଥାର ପ୍ରଚଳନଦ୍ୱାରା ନିଜ ସମାଜକୁ ପୂର୍ବପ୍ରଚଳିତ ରୀତିରୁ ସ୍ୱତନ୍ତ୍ର କଲେ । ଏପରି ଭାବରେ ବ୍ରାହ୍ମଣ ଓ କ୍ଷତ୍ରିୟର କୁଳାଚାର ପୃଥକ୍ ହୋଇପଡ଼ିଲା । ବୌଦ୍ଧଯୁଗରେ ବୌଦ୍ଧମାନେ ସ୍ୱାଧୀନଚେତା ହେବାରୁ ଜାତିଭେଦ ଉନ୍ମୂଳନ ଓ ସ୍ତ୍ରୀ ସ୍ୱାଧୀନତାର ପକ୍ଷପାତୀ ହେବାକୁ ଲାଗିଲେ । ସେତେବେଳେ ବ୍ରାହ୍ମଣମାନେ ସ୍ତ୍ରୀମାନଙ୍କର ସ୍ୱାଧୀନତା ଲୋପ ଚେଷ୍ଟାରେ ଏହି ବାଲ୍ୟବିବାହ ପ୍ରଥାକୁ ଦୃଢ଼ ଭାବରେ ଚଳାଇବାର ଚେଷ୍ଟା

କଲେ । ଏହିପରି ନାନା କାରଣରୁ ବାଲ୍ୟବିବାହର ପ୍ରଚଳନ ହୋଇଥିବାର ଅନୁମାନ କରାଯାଏ ଏବଂ ଏ ଅନୁମାନ ଅମୂଳକ ନୁହେଁ । ଏହା ଛଡ଼ା ଅନ୍ୟାନ୍ୟ କାରଣରୁ ବାଲ୍ୟବିବାହ ପ୍ରଥା ରକ୍ଷା କରିବାକୁ ବ୍ରାହ୍ମଣଗଣ ଦୃଢ଼ ସଂକଳ୍ପ କଲେ । ତଦାନୀନ୍ତନ ବ୍ରାହ୍ମଣମାନେ ଏହି ପ୍ରଥାକୁ ମଙ୍ଗଳପ୍ରଦ ବୋଲି ମନେ କରିଥିଲେ, ମାତ୍ର ତହିଁର ଭବିଷ୍ୟତ୍ ଫଳ ମନ୍ଦ ହେବ ବୋଲି ଭାବିବା ସେମାନଙ୍କ ପକ୍ଷରେ ଅସମ୍ଭବ । ପରବର୍ତ୍ତୀ ସମାଜନେତାମାନେ ଏ ପ୍ରଥାର କୁଫଳ ଦେଖି ଯୁବତୀବିବାହ ପୁନଃ ପ୍ରଚଳନ କରିବାକୁ ଚେଷ୍ଟା କରିବାର ଉଚିତ ଥିଲା, ମାତ୍ର ସେମାନେ ତାହା କରିବାକୁ ସାହସ କଲେ ନାହିଁ; ଏବେ ସମାଜ ତହିଁର ବିଷମୟ ଫଳ ଭୋଗ କରୁଅଛି ।

ବୌଦ୍ଧଯୁଗର ପତନ ସମୟରେ ଯେତେବେଳେ ଭାରତବର୍ଷକୁ ବିଦେଶୀୟ ଶତ୍ରୁମାନେ ଆକ୍ରମଣ କରିବାକୁ ଲାଗିଲେ ଏବଂ ଦେଶର ରାଜାମାନେ ମଧ୍ୟ ପରସ୍ପରର ବିରୋଧାଚରଣ କରିବାରେ ବ୍ରତୀ ହେଲେ, ସେତେବେଳେ କ୍ଷତ୍ରିୟମାନେ ସମାଜ ଉପରେ ଦୃଷ୍ଟି ଦେବାକୁ ତ୍ରୁଟି କଲେ । ବ୍ରାହ୍ମଣଗଣ ଏହି ସୁବିଧା ପାଇ ଗୃହରେ ବସି ସାମାଜିକ ରୀତି ନୀତିର ଗଠନମୂଳକ ସ୍ମୃତି ପ୍ରଣୟନ କରିବାକୁ ଲାଗିଲେ । ବ୍ରାହ୍ମଣଗଣ ନିଜ ସ୍ୱାର୍ଥ ବଜାଏ ରଖିବା ନିମନ୍ତେ ନାନା ଶାସ୍ତ୍ରୀୟ କୌଶଳ ଉଦ୍ଭାବନ କଲେ । ସ୍ତ୍ରୀ ଶୂଦ୍ରାଦିଙ୍କ ଉପରେ ନିର୍ଯାତନାର ମାତ୍ରା ବଢ଼ିଲା । ଜାତୀୟତା ନିମ୍ନରୁ ନିମ୍ନତର ସ୍ତରକୁ ଚାଲିବାକୁ ଲାଗିଲା । ଉତ୍ତରାଞ୍ଚଳ ଅପେକ୍ଷା ସେତେବେଳେ ଦାକ୍ଷିଣାତ୍ୟରେ ଯୁଦ୍ଧବିଗ୍ରହ କମ୍ ଥିଲା । ସୁତରାଂ ଦାକ୍ଷିଣାତ୍ୟ ବ୍ରାହ୍ମଣମାନେ ସ୍ମୃତି ପ୍ରଣୟନରେ ଅଧିକ ଯତ୍ନଶୀଳ ଥିଲେ ବୋଲି ବୋଧହୁଏ ।

ମୁସଲମାନ ରାଜତ୍ୱବେଳେ ବାଲ୍ୟବିବାହର ପ୍ରଚାର ସୁଦୃଢ଼ ହେଲା ।

ବାଲ୍ୟବିବାହ ଜାତିର ଘୋର ଅନିଷ୍ଟକାରକ, ଏହା ସମସ୍ତେ ସ୍ୱୀକାର କରିବେ । ବାଲ୍ୟବିବାହଦ୍ୱାରା ଜାତିର ଶାରୀରିକ ଓ ମାନସିକ ବଳର ହ୍ରାସ ହେଉଅଛି, ଚରିତ୍ର ନଷ୍ଟ ହେଉଅଛି । ନାନାବିଧ କ୍ଷୟ ରୋଗର କାରଣ ଏହି ବାଲ୍ୟବିବାହ ବୋଲି ଭିଷକ୍‌ମାନେ ମୁକ୍ତକଣ୍ଠରେ ପ୍ରକାଶ କରୁଅଛନ୍ତି । ତଥାପି ଭାରତବାସୀଙ୍କ କର୍ଣ୍ଣକୁହରକୁ ଏହି ହିତୋପଦେଶ ପ୍ରବେଶ କରିପାରୁ ନାହିଁ । କେତେଗୁଡ଼ିଏ ନିରପରାଧା ବାଳିକାଙ୍କ ଜୀବନ ହାହାମୟ ହେଉଅଛି । ପିତା ସ୍ୱର୍ଗଲୋକ, ବ୍ରହ୍ମଲୋକ ବା ବିଷ୍ଣୁଲୋକ ପ୍ରାପ୍ତ୍ୟାଶାରୂପ ସ୍ୱାର୍ଥ ତ୍ୟାଗ କଲେ ଯାହାର କନ୍ୟା ସୁଖ ସ୍ୱାଚ୍ଛନ୍ଦ୍ୟରେ ପଡି ପୁତ୍ର ନେଇ ଜୀବନ ଅତିବାହିତ କରି ପାରନ୍ତା, ସେ ପିତାର ଅବିମୃଷ୍ୟକାରିତାପ୍ରଯୁକ୍ତ ବାଲ୍ୟଜୀବନରୁ ଆରମ୍ଭି ଶେଷ ଦଶାଯାଏ ନିର୍ଯାତିତା ଲାଞ୍ଛିତା ଓ ଅପମାନିତା ହୋଇ କାଳ କଟାଇବାକୁ ବାଧ୍ୟ ହେଉଅଛି । ଏ ଦୁର୍ଦ୍ଦଶାରୁ ଆଉ ନିସ୍ତାର ନାହିଁ ।

ଉଭୟ ବାଲ୍ୟବିବାହ ଓ ବିଧବାବିବାହ ନିଷେଧ ସମାଜ ପକ୍ଷରେ ଘୋର ଅନିଷ୍ଟକର, ଏହା କେଉଁ ବ୍ୟକ୍ତି ବୁଝିବାକୁ ଅକ୍ଷମ ? ମାତ୍ର କୁଳାଚାରର ମୋହ ଛାଡ଼ୁ ନାହିଁ । କୁଳାଚାର ଉପରେ ଯେଉଁ ଜାତିର ମମତା ଓ ଆସକ୍ତି ଅଧିକ, ସେ ସଂସ୍କାରପରାଙ୍ମୁଖ, ସୁତରାଂ ଅଧୋଗାମୀ ।

ବାଲ୍ୟବିବାହର ପକ୍ଷପାତିମାନେ ଧର୍ମର ଦ୍ୱାହି ଦେଇ ନିଷ୍କୃତି ଲାଭ କରିବାକୁ ଚେଷ୍ଟା କରନ୍ତି ଏବଂ ଶାସ୍ତ୍ରର ବଚନ ଓ ଉପଦେଶ ଅଲଙ୍ଘନୀୟ ବୋଲି ପ୍ରକାଶ କରନ୍ତି । ଏହି ଧର୍ମ ଓ ଶାସ୍ତ୍ରର ଛଳନାରେ ନିଜକୃତ ଦୋଷ ଓ ପାପକୁ ଦୋଷ ଓ ପାପ ବୋଲି ମନେ କରନ୍ତି ନାହିଁ ।

ବେଦ ଏକବାକ୍ୟରେ ଯୁବତୀବିବାହର ପକ୍ଷପାତୀ । ବାଲ୍ୟବିବାହରେ ସେହି ଯୁବତୀବିବାହ ପରି ମନ୍ତ୍ରଗୁଡ଼ିକ ଅଦ୍ୟାପି ଉଚ୍ଚାରଣ କରୁଥିଲେ ମଧ୍ୟ ବୈଦିକ ବିଧି କଳିଯୁଗର ବିଧି ବୋଲି ପ୍ରତାରଣା କରିବାକୁ ବ୍ରାହ୍ମଣମାନେ ଲଜ୍ଜିତ ନୁହଁନ୍ତି । ପ୍ରାଚୀନ ଧର୍ମଶାସ୍ତ୍ର ଓ ପୁରାଣମାନ ଆଲୋଚନା କଲେ ଯୁବତୀବିବାହ ସେ କାଳର ବିଧାନ ଥିବାର ସ୍ପଷ୍ଟ ଜଣାଯାଉଥିବା ସ୍ଥଳେ କେତେଟା ପ୍ରକ୍ଷିପ୍ତ ବାକ୍ୟ ଉପରେ ଆସ୍ଥା ସ୍ଥାପନ କରିବାକୁ ଦ୍ୱିଧା ବୋଧ କରନ୍ତି ନାହିଁ କିମ୍ବା ବାଲ୍ୟବିବାହ ବିରୋଧ ବା ବିଧବାବିବାହ ପରି ବାକ୍ୟ ଦେଖିଲେ ସେଗୁଡ଼ିକ ଯୁଗାନ୍ତରର ବିଷୟ ବୋଲି ପ୍ରକାଶ କରିବାକୁ ଲଜ୍ଜା ବୋଧ କରନ୍ତି ନାହିଁ । ଏସବୁ ବିଷୟ ନେଇ ଏତେ ଶାସ୍ତ୍ର, ଏତେ ବଚନ ଅଛି ଯେ, ଶାସ୍ତ୍ରରୁ ଉଦାହରଣ ଦେଖାଇ ଜୟ କରିବାର ଉପାୟ ନାହିଁ । ଗୋଟିଏ ଯୁବତୀ ବିବାହର ସପକ୍ଷ ବଚନ ଉଦ୍ଧୃତ କରି ବସିଲେ ସଙ୍ଗେ ସଙ୍ଗେ ଗୋଟିଏ ବିପକ୍ଷ ବଚନ ମଧ୍ୟ ମିଳିଯାଇ ପାରେ । ବ୍ୟବସ୍ଥାପକମାନଙ୍କ ସ୍ୱାର୍ଥସିଦ୍ଧି ନିମନ୍ତେ ଏତାଦୃଶ ପରସ୍ପର ବିରୋଧୀ ବଚନ ଲୋଡ଼ା । ପ୍ରକୃତ ତତ୍ତ୍ୱାନ୍ୱେଷୀ ନିମନ୍ତେ ଗ୍ରନ୍ଥକର୍ତ୍ତାର ଅଭିପ୍ରାୟ ହିଁ ପ୍ରୟୋଜନ । ତାହା ହେଲେ ଆର୍ଯ୍ୟ ଋଷିମାନଙ୍କ ମତାନୁସାରେ ଯୁବତୀବିବାହ କରଣୀୟ ଓ ଆଦରଣୀୟ । ସେମାନେ ବାଲ୍ୟବିବାହର ନାମ ଗନ୍ଧ ଜାଣୁ ନ ଥିଲେ । ଯୁବତୀ ବିବାହ

ପ୍ରଚଳନସ୍ଥଳରେ ବିଧବାବିବାହ ଅଳ୍ପ ପ୍ରୟୋଜନ ହୋଇପାରେ । ସ୍ତ୍ରୀ ପୁତ୍ର କନ୍ୟା ଲାଭ କଲେ ସେମାନଙ୍କର ରକ୍ଷଣାବେକ୍ଷଣର ଦାୟିତ୍ୱ ହେତୁ ଅନ୍ୟ ପତିର ପ୍ରୟୋଜନ କରେ ନାହିଁ ଏବଂ ତାହାର ଜୀବନର ଯାହା ପ୍ରୟୋଜନ ଏବଂ ଯେଉଁ ନିମନ୍ତେ ବିବାହ, ତହିଁର ଫଳଲାଭଜନିତ ତୃପ୍ତି ଲାଭ କରେ । ଯେଉଁ ସ୍ତ୍ରୀ ଦୁର୍ଭାଗ୍ୟବଶତଃ ପତି ହରାଇ ବସେ, ତାହାର ଅନ୍ୟ ପତି ପ୍ରୟୋଜନ ହୋଇପାରେ, ମାତ୍ର ଅତି ଅଳ୍ପସଂଖ୍ୟକ ବିଧବା ଏତାଦୃଶ ବିପଦ୍‌ଗ୍ରସ୍ତା ହୁଅନ୍ତି । ବିଧବା ହେବା ବା ଅଭାର୍ଯ୍ୟ ହେବା ଉଭୟ ସ୍ତ୍ରୀ ଓ ପୁରୁଷ ପକ୍ଷରେ ଆପଦ । ଏହି ଆପଦ ନାନା ଅବସ୍ଥାରେ ଘଟିପାରେ । ଭବିଷ୍ୟତରେ ଜୀବନଯାତ୍ରା ନିର୍ବାହ ନିମନ୍ତେ କି ଉପାୟ ଅବଲମ୍ବନୀୟ, ତାହା କେବଳ ଆପଦ୍‌ଗ୍ରସ୍ତ ବ୍ୟକ୍ତି ସ୍ଥିର କରିବା କଥା । ଶାସ୍ତ୍ରକର୍ତ୍ତା ବା ବ୍ୟବସ୍ଥାଦାତାମାନେ ଏହା ସ୍ଥିର କରିବା ପକ୍ଷରେ ଅସମର୍ଥ । ସୁତରାଂ ପ୍ରୌଢ଼ା ଅପତ୍ୟହୀନା ବିଧବା ବା ଅଭାର୍ଯ୍ୟଙ୍କର ପୁନର୍ବିବାହ ସେମାନଙ୍କର ଇଚ୍ଛାଧୀନ । ଜଣକ ନିମନ୍ତେ ଯାହା ଅକଥନୀୟ ଆପଦ, ଅନ୍ୟ ପକ୍ଷରେ ତାହା ସହନୀୟ ହୋଇପାରେ । ସୁତରାଂ ଶାସ୍ତ୍ରକାରମାନେ ବିଧବାର ଓ ଅଭାର୍ଯ୍ୟର ପୁନର୍ବିବାହକୁ ଆପଦ୍ଧର୍ମ ବୋଲି ପ୍ରମାଣ କରିଅଛନ୍ତି ।

ବିବାହର ମନ୍ତ୍ରଦ୍ୱାରା ଓ ବିବାହକାଳୀନ ପ୍ରତିଜ୍ଞାଦ୍ୱାରା ସ୍ତ୍ରୀ ଓ ପୁରୁଷ ପରସ୍ପରର ଜୀବନସଖା ହୋଇଥାଆନ୍ତି । ଏହି ପ୍ରତିଜ୍ଞାଭଙ୍ଗ ଉଭୟଙ୍କ ପକ୍ଷରେ ଦୂଷଣୀୟ । ସ୍ତ୍ରୀ ବ୍ୟଭିଚାରିଣୀ ହେଲେ ଘୃଣ୍ୟ ଓ ନିନ୍ଦ୍ୟ । ପୁରୁଷ ବ୍ୟଭିଚାରୀ ହେଲେ ଘୃଣ୍ୟ ଓ ନିନ୍ଦ୍ୟ ନୁହେଁ, ଏହା ଅଶାସ୍ତ୍ରୀୟ ଓ ଅଯୌକ୍ତିକ କଥା । ସେହିପରି ସ୍ତ୍ରୀ ବିଧବା ହେଲେ ଯେବେ ଚିରଜୀବନ ବ୍ରହ୍ମଚାରିଣୀ ହୋଇ ମୃତ ପତି ସହିତ ପାରତ୍ରିକ ମିଳନ କାମନାରେ ରତା ଥିବ, ତେବେ ପୁରୁଷ ଅଭାର୍ଯ୍ୟ ହେଲେ ସେପରି ଆଚରଣ କରିବ ନାହିଁ କାହିଁକି ? ଏ ସମ୍ବନ୍ଧରେ ଅଧିକାଂଶ ଶାସ୍ତ୍ର ପକ୍ଷପାତିତା ଦୋଷରେ ଲିପ୍ତ । ପୁରୁଷ ଓ ସ୍ତ୍ରୀ ସମ୍ବନ୍ଧରେ ଏକ ବିଧି କରାଯାଇଥିଲେ ଏତେ ଦିନ ଯାଏ ବିଧବାବିବାହ ବନ୍ଦ ରହି ନ ଥାନ୍ତା । ପୁରୁଷ ନିଜ ସ୍ୱାର୍ଥରେ ଏହି ଅସଙ୍ଗତ ପାର୍ଥକ୍ୟଟିକି ରଖିଥିବାରୁ ଆଜି ସମାଜରେ ଏ ବିଶୃଙ୍ଖଳା । ବିଧବାବିବାହ ନିଷିଦ୍ଧ କରଣୀୟ, ଏପରି ମତ କୌଣସି ଶାସ୍ତ୍ର ଦେଇ ନାହାନ୍ତି, ଏହା ସତ୍ୟ; ମାତ୍ର ବିଧବାର ବିବାହକୁ ନିଷେଧ ମଧ କରି ନାହାନ୍ତି । ଅଧିକନ୍ତୁ କେଉଁ ସ୍ଥଳରେ ବିଧବାବିବାହ କରଣୀୟ, ତାହା ସ୍ପଷ୍ଟାକ୍ଷରରେ ଲେଖି ଯାଇଅଛନ୍ତି । ଏହାଛଡ଼ା ପରାଶର ମୁକ୍ତକଣ୍ଠରେ ବିଧବାର ବିବାହ ଶାସ୍ତ୍ରସିଦ୍ଧ କରିଅଛନ୍ତି । ମନୁ ମଧ ବିଧବାର ପୁର୍ନବାର ପତିଗ୍ରହଣ ସ୍ଥଳମାନଙ୍କରେ ସଂସ୍କାର ଶବ୍ଦ ପ୍ରୟୋଗ କରିଥିବାରୁ ବିଧବାବିବାହକୁ ଘୃଣାଚକ୍ଷୁରେ ଦେଖିଅଛନ୍ତି ବୋଲାଯାଇ ନ ପାରେ । ବରଂ ବିଧବାବିବାହର ଅନୁମୋଦନ କରିଅଛନ୍ତି ବୋଲାଯିବ । ଏ ସମସ୍ତ ବିଷୟ ବିଧବାବିବାହ ଅଧ୍ୟାୟରେ ବିସ୍ତୃତ ଭାବରେ ବିବୃତ ହେବ ।

ବାଲ୍ୟବିବାହର ପ୍ରଚଳନ ହେତୁରୁ ଦେଶର ଯେ ଘୋର ଅନିଷ୍ଟ ହେଉଅଛି, ତାହା କହିବା ବାହୁଲ୍ୟ ମାତ୍ର । ଏବଂ ବିଧବାବିବାହର ନିଷେଧ ଥିବାରୁ ଅପରିଣତବୟସ୍କା ବିଧବାମାନଙ୍କୁ ଅଯଥା ମାନସିକ କଷ୍ଟ ଓ ଅପମାନ ସହ୍ୟ କରିବାକୁ ପଡୁଅଛି ।

ଏ ଦେଶରେ ବ୍ରାହ୍ମଣଙ୍କ ଅନୁକରଣରେ କେତେକ ଶୂଦ୍ର ଜାତି ମଧ ବାଲ୍ୟବିବାହର ପକ୍ଷପାତୀ । ମାତ୍ର ରକ୍ଷା ଯେ, ସେମାନଙ୍କ କୁଳରେ ବିଧବାବିବାହ ମଧ ଚଳେ । ମାତ୍ର ସେଥିରେ ମଧ କିଛି ଦୋଷ ଅଛି । ବିବାହିତା ବିଧବାକୁ ପ୍ରଥମ ବିବାହିତାର ସମ୍ମାନରୁ ବଞ୍ଚିତ କରାଯାଏ । ତାହାକୁ ଦେବକାର୍ଯ୍ୟ ଓ ପିତୃକାର୍ଯ୍ୟର ଅର୍ହା ନୁହେଁ ବୋଲି ଗୋଟିଏ ବୃଥା ଅପମାନ ଦିଆଯାଏ । ପୁନର୍ବିବାହ ହେବା ମାତ୍ରକେ ସେ ସଂସ୍କୃତା ହେଲା ଏବଂ ପତିର ସହଧର୍ମିଣୀ ହେଲା । ଯେବେ ସେ ଗୃହର ସବୁ କାର୍ଯ୍ୟ କରିବାକୁ ଯୋଗ୍ୟା ହେଲା, ତେବେ କେବଳ ଦେବକାର୍ଯ୍ୟ ଓ ପିତୃକାର୍ଯ୍ୟରେ ତାକୁ ଅପ୍ରତିଷ୍ଠା ବୋଲିବା ଅଯୌକ୍ତିକ । ପୁନର୍ବିବାହିତା ବିଧବାର ପୁତ୍ର ଯେବେ ପିଣ୍ଡଦ ଓ ଧନାଧିକାରୀ ହୁଏ, ତେବେ ତା'ର ମାତାର ଅପବିତ୍ରତା କେଉଁଠାରେ ରହିଲା ? ଧନ୍ୟ ସେ ପୁତ୍ରମାନେ, ଯେଉଁମାନେ ଗର୍ଭଧାରିଣୀକୁ ଅପବିତ୍ରା ବୋଲି ମନେ କରନ୍ତି । ଆଶା କରାଯାଏ, ଯେଉଁ ଜାତିରେ ବିଧବାବିବାହ ପ୍ରଚଳିତ ଅଛି, ସେହି ଜାତିର ଲୋକେ ଶୀଘ୍ର ବିବାହିତା ବିଧବାଠାରୁ ଏହି କାଳ୍ପନିକ ଦୋଷକୁ ଉନ୍ମୂଳିତ କରିଦେବେ ।

ବର୍ତ୍ତମାନ ଯେଉଁପରି ସମୟ ଉପସ୍ଥିତ ହୋଇଅଛି, ସେଥିରେ କେବଳ ସଂସ୍କାର ହିଁ ଜାତି ଓ ସମାଜର ରକ୍ଷକ । ଏକତା ବ୍ୟତିରେକେ ଜାତୀୟ ସଂସ୍କାର ଆଶା ସୁଦୂରପରାହତ । ସଂସ୍କାର କରିବାକୁ ହେଲେ ଜାତୀୟ ଏକତାର ପ୍ରୟୋଜନ । ଏକତାର ଭିତ୍ତି ଅଟେ ନିଜ ସ୍ୱାର୍ଥତ୍ୟାଗ । ଦେଶବାସୀ ଯେବେ ବର୍ତ୍ତମାନ ଅବସ୍ଥାରେ ପଡ଼ି ସୁଦ୍ଧା ନିଜର ଉଦ୍ଧାର ଚେଷ୍ଟା ନ କରନ୍ତି, ତାହା ହେଲେ ଜୀଇ ରହିବାର ପ୍ରୟୋଜନ କ'ଣ ?

ଦେଶବାସୀଙ୍କର, ଅନ୍ତତଃ ଶିକ୍ଷିତ ଯୁବକମାନଙ୍କର ଆଖି ଫିଟିଲାଣି । ସେମାନେ ଆପଣାକୁ ସଭ୍ୟ ବୋଲି ପରିଚୟ ଦେବାକୁ ଶିକ୍ଷା କଲେ । ସମସ୍ତ ପ୍ରକାର ଶାସ୍ତ୍ର ଓ ନାନା ଦେଶର ଇତିହାସ ସେମାନଙ୍କ ପ୍ରତି ସୁଲଭ ହେଲା । ଅନ୍ୟ ଦେଶ ଓ ଅନ୍ୟ ଜାତି ସହିତ ନିଜ ଦେଶ ଓ ଜାତିର ପାର୍ଥକ୍ୟ ତୁଳନା କରିବାକୁ ଏବେ କୌଣସି ବାଧା ନାହିଁ । ଭବିଷ୍ୟତର ଆଶା ଭରସା ଯୁବକଙ୍କ ହାତରେ । ଏପରି ଅବସ୍ଥାରେ ଯେବେ ନବ୍ୟ ଶିକ୍ଷିତ ଯୁବକଦଳ ଏ ସବୁ ଗୁରୁତର ସାମାଜିକ ଓ ଜାତୀୟ ଉନ୍ନତିକଳ୍ପେ ଦୃଢ଼ ପରିକର ନ ହୁଅନ୍ତି, କୁସଂସ୍କାରସମୂହକୁ ଖଣ୍ଡ ଖଣ୍ଡ କରି ଭାଙ୍ଗି କାଟି ନ ପକାନ୍ତି ଏବଂ ନୂତନ ଧରଣରେ ଜାତୀୟ ଜୀବ ଗଠନର ଚେଷ୍ଟା ନ କରନ୍ତି, ତେବେ ସମାଜ ଓ ଜାତିର ଅଧୋଗତି । ଘୁଷୁରି ଭାବରେ ଜୀଇଁବା ଅପେକ୍ଷା ସିଂହ ଭାବରେ ମରଣ ଭଲ ।

## ଦ୍ୱିତୀୟ ଅଧ୍ୟାୟ

# ଯୁବତୀ ବିବାହ

ଏହି ଅଧ୍ୟାୟରେ ବିବାହ ବିଷୟରେ ଆମ୍ଭମାନଙ୍କର ଧର୍ମଶାସ୍ତ୍ର ଶ୍ରୁତି, ସ୍ମୃତି ଓ ପୁରାଣାଦିରେ କି ମତ ରକ୍ଷିତ ଅଛି, ତାହା ପୁଙ୍ଖାନୁପୁଙ୍ଖରୂପେ ଆଲୋଚନା କରାଯିବ ।

ଉପରୋକ୍ତ ଶାସ୍ତ୍ରମାନଙ୍କର ମତ ସମାଲୋଚନା କରିବା ପୂର୍ବରୁ ବିବାହ ଓ ତତ୍ସମ୍ପର୍କୀୟ କେତେଗୁଡ଼ିଏ ଶବ୍ଦ ଏବଂ ତତ୍ପର୍ଯ୍ୟାୟଗୁଡ଼ିକର ଆଲୋଚନା କରାଯାଉ । ଏତଦ୍ୱାରା ଗ୍ରନ୍ଥମଧ୍ୟଗତ ତଥ୍ୟ ପରୀକ୍ଷା ବିଷୟରେ ଆମ୍ଭମାନଙ୍କର ପ୍ରଭୂତ ସାହାଯ୍ୟ ହେବ ।

ଯେଉଁ ବିବାହ ଶବ୍ଦର ବ୍ୟାବହାରିକ ସାଧାରଣ ଅର୍ଥ ଆପାମର ସମସ୍ତେ ଜାଣନ୍ତି, ତାହା ବେଦ ପରି ଅନାଦିସିଦ୍ଧ କି ? ଋଗ୍‌ବେଦ ପାଠରୁ ଜଣାଯାଏ ଯେ, ବିବାହ ଶବ୍ଦଟି ଅବିକଳ ଏହି ବେଦରେ ନାହିଁ । କିମ୍ବା ବିବାହ ଶବ୍ଦର ପର୍ଯ୍ୟାୟ ମଧ୍ୟ ନାହିଁ । ଏହି ଶବ୍ଦ ଋଗ୍‌ବେଦର ପରବର୍ତ୍ତୀ କାଳରେ ଉତ୍ପତ୍ତି ଲାଭ କରିଅଛି । ବହତୁ ଶବ୍ଦ ଋଗ୍‌ବେଦରେ ଅଛି । ବିବାହିତା ପତ୍ନୀ ନିଜ ପିତୃଗୃହରୁ ସ୍ୱାମୀଗୃହକୁ ନୀତା ହେବାର ନାମ ବହତୁ । ଏଥିରେ ମତଦ୍ୱୈଧ ଅଛି । ଋଗ୍‌ବେଦରେ ବିବାହ ଶବ୍ଦଟି ନ ଥିଲେ ମଧ୍ୟ ବିବାହପରିଜ୍ଞାପକ ଅନେକ ଗୁଡ଼ିଏ କ୍ରିୟାପଦ ଅଛି । ପରବର୍ତ୍ତୀ ଆଲୋଚନାରେ ଶବ୍ଦ ପରୀକ୍ଷାର ନିତାନ୍ତ ଆବଶ୍ୟକ । ଏଣୁ ତତ୍ପର୍ଯ୍ୟାୟ କେତେ ପ୍ରାଚୀନ, ଏହା ନିର୍ଦ୍ଧାରଣ କରିବା ନିମନ୍ତେ ଋଗ୍‌ବେଦରେ ବିବାହ ଶବ୍ଦଟି ଅବିକଳ ଅଛି କି ନା, ତାହା ଦେଖିବାକୁ ପଡ଼ିଲା । ବିବାହ ଶବ୍ଦଟି ନେଇ ସବୁ ଗଣ୍ଡଗୋଳ— ଏଣୁ ତାହାର ପ୍ରାଚୀନତ୍ୱ ଆଦୌ ଆଲୋଚନାଯୋଗ୍ୟ ।

ବିବାହ ଶବ୍ଦଟି ପ୍ରଥମେ ଅଥର୍ବ ବେଦରେ ଦେଖାଯାଏ:–

ଯସ୍ତେ ଗନ୍ଧଃ ପୁଷ୍କରମାବିବେଶ ଯଂ ସଂଜଭ୍ରୁଃ ସୂର୍ଯ୍ୟାୟା ବିବାହେ ।
ଅମର୍ତ୍ତ୍ୟାଃ ପୃଥିବୀଗନ୍ଧମଗ୍ରେ ତେନ ମା ସୁରଭିଂ
କୃଣୁମାନୋ ଦ୍ୱିକ୍ଷତ କଶ୍ଚନ ॥
ଅ । ୧୨ । ୧ । ୨୪

### ବିବାହ ପର୍ଯ୍ୟାୟ

×× ବିବାହୋପଯମୌ ସମୌ ।
ତଥା ପରିଣୟୋଦ୍‌ବାହୋପଯାମାଃ ପାଣିପୀଡ଼ନଂ ।
[ଅମର]

ଉପଯମଃ ପରିଣୟନଂ ପାଣିଗ୍ରହଣଂ ବିବାହ ଉଦ୍‌ବାହଃ ।
[ହଳାୟୁଧ]

ଦାରକର୍ମ କରଗ୍ରହଃ ।
[ଶବ୍ଦରତ୍ନାବଳୀ]

ନିବେଶଃ ଫୁସି ବିନ୍ୟାସେ ଶବିରୋଦ୍‌ବାହୟୋରପି ।
[ମେଦିନୀ]

ପାଣିଗ୍ରହଣଂ ପାଣିକରଣଂ ନିବେଶଃ ।
[ଜଟାଧର]

ପ୍ରଧାନ କୋଷକାରଗଣ ବିବାହର ପ୍ରତିଶବ୍ଦ ଉପରୋକ୍ତ ପ୍ରକାରେ ଆପଣା ଆପଣା ଅଭିଧାନମାନଙ୍କରେ ଲେଖି ଯାଇଅଛନ୍ତି । ଏହା ଛଡ଼ା ଅନେକ ଯୌଗିକ ଶବ୍ଦ ଶାସ୍ତ୍ରମାନଙ୍କରେ ବ୍ୟବହୃତ ହୋଇଅଛି ଏବଂ ଅନେକ ଯୌଗିକ ଶବ୍ଦ ନିଷ୍ପନ୍ନ କରାଯାଇପାରେ । ଉପରୋକ୍ତ ଶବ୍ଦମାନଙ୍କର ବ୍ୟୁତ୍ପତ୍ତିଗତ ଅର୍ଥ ପରୀକ୍ଷା କଲେ କେଉଁ ଶବ୍ଦ କିପରି ଭାବରେ ପ୍ରଯୋଜ୍ୟ ହୋଇ ଅର୍ଥାବଗତି କରାଉଅଛି, ତାହା ସ୍ପଷ୍ଟରୂପେ ହୃଦୟଙ୍ଗମ ହୋଇପାରିବ ।

ବିବାହ:– ବି+ବହ–ଘଞ୍; ବିଶିଷ୍ଟ ବହନଂ । ଏଥିରୁ ବିବାହ ଶବ୍ଦର ସାଧାରଣ ବୋଧଗମ୍ୟ ଅର୍ଥାବଗତି କିପରି ହେଲା, ତାହା କେହି କେହି ପ୍ରକାଶ କରିଅଛନ୍ତି; ଯଥା—

"ଭାର୍ଯ୍ୟାତ୍ୱସମ୍ପାଦକଜ୍ଞାନଂ ବିବାହଃ ।"
"ଭାର୍ଯ୍ୟାତ୍ୱସ୍ୟୋପଲକ୍ଷଣତୟା ନିବେଶଃ ।
ତେନ ନାନ୍ୟୋନ୍ୟାଶ୍ରୟଃ ।"

''ଚରମସଂସ୍କାରୋ ବିଜାତୀୟସଂସ୍କାରୋ ବା ବିବାହଃ ।''

''ଦାରପରିଗ୍ରହେ ଚଜ୍ଞନକେ ବ୍ୟାପାରେ ।''

(ବାସସ୍ପତି)

ଉଦ୍‌ବାହ– ଉଦ୍‌+ବହ–ଘଞ୍ । ବିବାହ ଉଦ୍‌ବାହ ଏକ ପର୍ଯ୍ୟାୟ ହେଲେ ମଧ ଅର୍ଥଗତ ବୈଷମ୍ୟ ଅଛି ।

''ବିବାହଃ ସ ଚ ଜ୍ଞାନବିଶେଷ ଇତି ।''

''ଯେନ ଜ୍ଞାନେନ ମମେୟଂ ଭାର୍ଯ୍ୟା, ମମାୟଂ ପତିରିତ ବ୍ୟବହାରୋଭବତି ତାଦୃଶଂ ଜ୍ଞାନଂ ।''

ଯଦ୍ୱାରା ଏ ମୋର ଭାର୍ଯ୍ୟା, ଏ ମୋର ପତି, ଏହି ଜ୍ଞାନ ପୁରୁଷ ଓ ସ୍ତ୍ରୀ ଦୁହିଁଙ୍କ ହୃଦୟରେ ବଦ୍ଧମୂଳ ହୁଏ, ତାହାର ନାମ ଉଦ୍‌ବାହ ।

ପାଣିଗ୍ରହଣ :— ଗ୍ରହ୍—ଆଧାରେ—ଲ୍ୟୁଟ୍ । ପାଣିଃ ଗୃହ୍ୟତେ ଅତ୍ର ।

ପରିଣୟ—ପରି + ନୀ–ଆଧାରେ–ଅଚାପରିଣୟତେ ବିବାହାର୍ଥତ୍ୱାତ୍ । ପରିଣୀତା ଇତ୍ୟାଦୌ କୃତବିବାହା-ଦ୍ୟର୍ଥାବଗମଃ ।

ଦାରକର୍ମଃ:— ଦାରାଣାଂ ତଦଭାବକସ୍ୟ ପ୍ରତିପାଦକଂ କର୍ମ । ଭାର୍ଯ୍ୟାତ୍ୱସମ୍ପାଦକେ ଜ୍ଞାନବିଶେଷରୂପେ ବିବାହେ ।

ଭାର୍ଯ୍ୟାହସମ୍ପାଦକ ଜ୍ଞାନବିଶେଷ ଯେଉଁ ବିବାହରେ ଜନ୍ମେ, ତାହାର ନାମ ଦାରକର୍ମ ।

ନିବେଶ:— ନି + ବିଶ୍–ଆଧାରେ–ଘଞ୍ । ବିବାହ ।

ମନୁରେ ବ୍ୟବହୃତ ହୋଇଥିବା ବିବାହ ଶବ୍ଦର ପ୍ରତିଶବ୍ଦ ଓ ବିବାହବୋଧକ କେତେଗୁଡ଼ିଏ ଶବ୍ଦ ନିମ୍ନରେ ପ୍ରକାଶ କରାଯାଉଅଛି । ପରବର୍ତ୍ତୀ ଆଲୋଚନାବେଳେ ପ୍ରୟୋଜନକୁ ଆସିବ । ଯଥା:— ଉଦ୍‌ବହେତ, ଦାରକର୍ମଣି, ମୈଥୁନେ, ବିନ୍ଦତି, ପାଣିଗ୍ରାହସ୍ୟ, ସଂସ୍କାରଃ ।

ବିବାହର ଆଲୋଚନା ସଙ୍ଗେ ସଙ୍ଗେ ସ୍ତ୍ରୀ ପୁରୁଷ ପର୍ଯ୍ୟାୟ ଆବଶ୍ୟକ ନୁହେଁ କି ? ବିଶେଷତଃ ସ୍ତ୍ରୀପର୍ଯ୍ୟାୟ । ଏଣୁ ସ୍ତ୍ରୀବାଚକ ଶବ୍ଦଗୁଡ଼ିକ ଲେଖାଯାଉ । ବୈଦିକ ଗ୍ରନ୍ଥରେ ସ୍ତ୍ରୀବାଚକ ନିମ୍ନୋକ୍ତ ଶବ୍ଦ ବ୍ୟବହୃତ ହୋଇଥିବାର ଦେଖାଯାଏ । ଯଥା— ଜନି, ଜନୀ, ଜାୟା, ଦମ୍ପତୀ, ଦାର, ପତ୍ନୀ, ସ୍ତ୍ରୀ । ମନୁସ୍ମୃତିରେ ବ୍ୟବହୃତ ସ୍ତ୍ରୀବାଚକ ଶବ୍ଦ–ଭାର୍ଯ୍ୟା, ସ୍ତ୍ରୀ, କନ୍ୟା, ଯୋଷିତ୍, ଯୁବତୀ, ଜାୟା । କନ୍ୟା ଶବ୍ଦଟି ଋଗ୍‌ବେଦରେ ଦୃଷ୍ଟ ହୁଏ ନାହିଁ ।

ବେଦ ହିନ୍ଦୁର ଆଦି ଗ୍ରନ୍ଥ । ବେଦ ଉପରେ ଭିତ୍ତିସ୍ଥାପନ କରି ହିନ୍ଦୁମାନେ ଆପଣା ଜୀବନଯାତ୍ରା ନିର୍ବାହ କରନ୍ତି । ପରବର୍ତ୍ତୀ ଯାବତୀୟ ଧର୍ମଶାସ୍ତ୍ର ବେଦଭିତ୍ତି ଉପରେ ପ୍ରତିଷ୍ଠିତ । ସ୍ଥୂଳଭାବରେ ଯୁଗ ଭାଗ କରିବାକୁ ଗଲେ ପ୍ରଥମେ ବୈଦିକ ଯୁଗ, ଦ୍ୱିତୀୟ ସୂତ୍ର ଯୁଗ, ତୃତୀୟ ପୌରାଣିକ ଯୁଗ । ଏହି ତିନି ଯୁଗରେ ଧର୍ମମତର ନାନା ବିପର୍ଯ୍ୟୟ ସଂଘଟିତ ହୋଇଥିଲେ ସୁଦ୍ଧା ସମସ୍ତେ ଆଜି ବେଦର ଦୋହି ଦେଇ ଚାଲୁଅଛନ୍ତି । ଆଧୁନିକ କାଳରେ ହିନ୍ଦୁର ଶୁଭାଶୁଭ କର୍ମରେ ଅଧିକାଂଶ ତାନ୍ତ୍ରିକ ପଦ୍ଧତି ଅନୁସାରେ ଚଳୁଥିଲେ ସୁଦ୍ଧା ଏବଂ ଅଧିକାଂଶ ତାନ୍ତ୍ରିକମନ୍ତ୍ର ବ୍ୟବହୃତ ହେଉଥିଲେ ମଧ ବେଦମନ୍ତ୍ର ମଧ ବ୍ୟବହୃତ ହେଉଅଛି । ବେଦମନ୍ତ୍ର ବ୍ୟବହୃତ ନୋହିଲେ ଆର୍ଯ୍ୟତ୍ୱ ରକ୍ଷା ହେବ ନାହିଁ, ଏହି ଭୟରେ ବୈଦିକ ମନ୍ତ୍ରମାନ ପଦ୍ଧତିମାନଙ୍କରେ ସନ୍ନିବେଶିତ କରାଯାଇଅଛି ।

ହିନ୍ଦୁଗଣ ନୂତନ ପୂଜା, ଉପାସନାର ସୃଷ୍ଟି କରିଥିଲେ ମଧ ସେଥିରେ ବୈଦିକ ମନ୍ତ୍ର ଓ ତାନ୍ତ୍ରିକ ମନ୍ତ୍ର ବ୍ୟବହାର କରନ୍ତି । ବୈଦିକ ମନ୍ତ୍ର ବିହୀନ କର୍ମ ଆର୍ଯ୍ୟଧର୍ମସମ୍ମତ ନୁହେଁ । ଏଣୁ ପ୍ରତ୍ୟେକ କର୍ମରେ ଋଗ୍‌ବେଦର ମନ୍ତ୍ର ଅଳ୍ପ ବହୁତ ସଂଯୋଜିତ ହେବାର ବ୍ୟବସ୍ଥା ହୋଇଅଛି । ଅଧୁନା ଉଦ୍ଭାବିତ ନୂତନ ପୂଜା ପ୍ରଭୃତିରେ ମଧ ବେଦମନ୍ତ୍ର ବା ମନ୍ତ୍ରାଂଶ ବ୍ୟବହୃତ ହୁଏ । ନୋହିଲେ କଳଶ ପୂଜା ଓ ବରୁଣପୂଜା କରିବାଦ୍ୱାରା ନୂତନ କର୍ମର ପ୍ରତିଷ୍ଠା ସମ୍ପାଦନ କରାଯାଏ ।

ଅନ୍ୟ ପ୍ରସଙ୍ଗର ଏଠାରେ ଆଲୋଚନା ନିଷ୍ପ୍ରୟୋଜନ । ଆମ୍ଭମାନଙ୍କର ଏଠାରେ ଦେଖିବା ଉଚିତ୍ ଯେ, ବିବାହକର୍ମରେ କେତେ ତାନ୍ତ୍ରିକମନ୍ତ୍ର ଓ କେତେ ବୈଦିକମନ୍ତ୍ର ବ୍ୟବହୃତ ହେଉଅଛି । ପୁଣି ଏହା ମଧ ଦେଖିବା ଉଚିତ୍ ଯେ, ବିବାହକର୍ମର ପ୍ରତିଷ୍ଠାରକ୍ଷା ନିମନ୍ତେ ଆଧୁନିକ କାଳରେ କେତେଗୋଟି ବେଦମନ୍ତ୍ର ପଦ୍ଧତିରେ ସନ୍ନିବେଶିତ କରାଯାଇଅଛି, ନା ବେଦମନ୍ତ୍ର ବୈଦିକ ଯୁଗରେ ଯେପରି ଭାବରେ ଯେତେଗୁଡ଼ିଏ ବ୍ୟବହୃତ ହେଉଥିଲା, ସେଗୁଡ଼ିକ ଅବିକଳ ଭାବରେ ଏବେ ବ୍ୟବହୃତ ହେଉଅଛି ଏବଂ ସେଥିସଙ୍ଗେ ତାନ୍ତ୍ରିକମନ୍ତ୍ର କେତେକ ଯୋଗ କରାଯାଇଅଛି । ଏହା ନିତାନ୍ତ ପ୍ରଣିଧାନର ବିଷୟ । ଏଥି ଉପରେ ତର୍କର ଭିତ୍ତି ସ୍ଥାପନ ହୋଇଅଛି ।

ପୂର୍ବେ ସୁବିଧା କଳ୍ପନାରେ ମୋଟରେ ତିନିଗୋଟି ଯୁଗର ବର୍ଣ୍ଣନା କରିଅଛୁଁ । ବୈଦିକଯୁଗ, ସୂତ୍ରଯୁଗ ଓ ପୌରାଣିକ ଯୁଗ । ନିମ୍ନପ୍ରଦର୍ଶିତ ପ୍ରମାଣାଦିରୁ ଦେଖାଯାଇପାରିବ ଯେ ପୂଜା, ଜାତି, ଧର୍ମ ପ୍ରଭୃତି ନେଇ ଯୁଗଭେଦରେ ଯେପରି ଅସାଧାରଣ ପରିବର୍ତ୍ତନ ହୋଇଅଛି, ବିବାହ ସମ୍ବନ୍ଧରେ ସେପରି ବିଶେଷ ପରିବର୍ତ୍ତନ ହୋଇ ନାହିଁ । ଏହା କେବଳ ମନ୍ତ୍ରପ୍ରୟୋଗ ସମ୍ବନ୍ଧରେ ପ୍ରକାଶ କରାଯାଉଅଛି, ଏହା ପାଠକମାନଙ୍କର ସ୍ମରଣ ରଖିବା ମଧ୍ୟ ଉଚିତ।

ଆର୍ଯ୍ୟ ସମାଜରେ ବିବାହ ସମ୍ବନ୍ଧରେ ବୈଦିକ ଯୁଗରେ ଯେଉଁ ମନ୍ତ୍ରଗୁଡ଼ିକ ସ୍ତ୍ରୀ, ପୁରୁଷ, ପିତା ଓ ପୁରୋହିତ ବିବାହ ସମୟରେ ବିବାହ ବେଦୀରେ ଉଚ୍ଚାରଣ କରୁଥିଲେ, ସେହି ମନ୍ତ୍ରଗୁଡ଼ିକ ସୂତ୍ରଯୁଗରେ ମଧ୍ୟ ଉଚ୍ଚାରିତ ହୋଇଅଛି ଏବଂ ପୁରାଣଯୁଗରେ ଏବେ ମଧ୍ୟ ଠିକ୍ ସେହି ମନ୍ତ୍ରଗୁଡ଼ିକ ପଠିତ ହେଉଅଛି । ଏହା କେହି ଅସ୍ୱୀକାର କରିବେ ନାହିଁ ବା ଅସ୍ୱୀକାର କରି ପାରିବେ ନାହିଁ ।

ବେଦ ସଂହିତାରେ ଓ ସେହି ଯୁଗର ଋଷିମାନଙ୍କ ମୁଖରେ ଯେଉଁ ସବୁ ସାମାଜିକ ମଙ୍ଗଳଜନକ ଉପଦେଶ ଥିଲା, ତାହା ପରେ ସ୍ମୃତିରୂପେ ଆଦୃତ ହୋଇଅଛି । ସେହି ସ୍ମୃତିରେ ଆର୍ଯ୍ୟଜାତିର ଜନ୍ମଠାରୁ ମରଣାବଧି ଯାବତୀୟ ଆଚାର ବ୍ୟବହାର ଧର୍ମ ଓ ନୀତି ସମ୍ବନ୍ଧରେ ଉପଦେଶମାନ ଗ୍ରଥିତ ହୋଇଅଛି । ଏହି ସ୍ମୃତିମତକୁ ଯେଉଁମାନେ ନତମସ୍ତକରେ ସ୍ୱୀକାର କରନ୍ତି, ସେମାନଙ୍କର ସ୍ଥାନ ହିନ୍ଦୁର ଜାତିବେଷ୍ଟନୀ ମଧ୍ୟରେ ସୁରକ୍ଷିତ । ଯେଉଁମାନେ ସେଥିରେ ଆସ୍ଥା ସ୍ଥାପନ ନ କରି ଦ୍ୱିଧା ମତ ପ୍ରକାଶ କରନ୍ତି, ସେମାନେ ଜାତିରୁ ବହିର୍ଭୂତ । ଜାତିକୁ ଏକତାବଦ୍ଧ କରିବାକୁ ସ୍ମୃତି ଗୋଟାଏ ଶକ୍ତ ଆଇନ୍ ବୋଇଲେ ଚଳେ ।

ଅତି ପ୍ରାଚୀନ କାଳରେ ହିନ୍ଦୁସମାଜରେ କେଉଁ ସ୍ମୃତି କୀଦୃଶ ଆକାରରେ ବିଦ୍ୟମାନ ଥିଲା, ତାହା ଠିକ୍‌ରୂପେ କହି ହେବ ନାହିଁ । ତେବେ ଏହା ଅକୁଣ୍ଠିତ ଭାବରେ ପ୍ରକାଶ କରାଯାଇପାରେ ଯେ, ଆମ୍ଭମାନଙ୍କର ହସ୍ତଗତ ସ୍ମୃତିଗ୍ରନ୍ଥଗୁଡ଼ିକ ବୈଦିକ ଯୁଗର ଲିଖିତ ଓ ରଚିତ ଗ୍ରନ୍ଥ ନୁହନ୍ତି । ଯେହେତୁ ସ୍ମୃତିଗ୍ରନ୍ଥର ଭାଷା ବୈଦିକ ଭାଷା ନୁହେଁ ।

ପୂର୍ବକାଳର ବୈଦିକ ଯୁଗର ବିଧିବ୍ୟବସ୍ଥାକୁ ସ୍ମରଣ କରି ଋଷିମାନେ ଯେଉଁ ଗ୍ରନ୍ଥ ପ୍ରଣୟନ କରୁଅଛନ୍ତି, ସେ ସମସ୍ତଙ୍କୁ ଆମ୍ଭେମାନେ ସ୍ମୃତି ବୋଲି କହୁଅଛୁଁ । ସେହି ଗ୍ରନ୍ଥମାନେ ପଲ୍ଲବିତ ହୋଇ ବୃହଦାକାର ଲାଭ କରିଅଛନ୍ତି ଏବଂ ନାନା ଋଷିଙ୍କଦ୍ୱାରା ନାନା ସ୍ମୃତି ରଚିତ ହୋଇଥିବାରୁ ମତରେ ଅମେଳ ରହିଅଛି । ପୁଣି ଯୁଗଭେଦରେ ମତର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ସେଥିନିମନ୍ତେ ପ୍ରାଚୀନ ଓ ଅର୍ବାଚୀନ ମଧ୍ୟରେ ମଧ୍ୟ ମତଦ୍ୱୈଧ ଅଛି । ଅନେକେ କହି ପାରନ୍ତି, ସ୍ମୃତି ପ୍ରାଚୀନ ଓ ଅର୍ବାଚୀନ ହୋଇ ନ ପାରେ, ମାତ୍ର ତାହା ଭୁଲ୍ । ଯେହେତୁ ମନୁସ୍ମୃତି ଓ ପରାଶର ଏକକାଳରେ ଲିଖିତ ନୁହେଁ, ତାହା ପରାଶରସଂହିତାରୁ ସ୍ପଷ୍ଟ ପ୍ରକାଶ ପାଏ ।

ସ୍ମୃତିଗ୍ରନ୍ଥର ସଂଖ୍ୟା କୋଡ଼ିଏ, ଯଥା:—୧. ମନୁ, ୨.ଅତ୍ରି, ୩. ବିଷ୍ଣୁ, ୪. ହାରୀତ, ୫. ଯାଜ୍ଞବଲ୍କ୍ୟ, ୬. ଉଶନା, ୭.ଅଙ୍ଗିରା, ୮. ଯମ, ୯. ଆପସ୍ତମ୍ବ, ୧୦. ସଂବର୍ତ୍ତ, ୧୧.କାତ୍ୟାୟନ, ୧୨. ବୃହସ୍ପତି, ୧୩. ପରାଶର, ୧୪.ବ୍ୟାସ, ୧୫. ଶଙ୍ଖ, ୧୬. ଲିଖିତ, ୧୭. ଦକ୍ଷ, ୧୮.ଗୌତମ, ୧୯. ଶତାତପ, ୨୦. ବଶିଷ୍ଠ ।

ଏହି ବିଂଶତି ସଂହିତା ମଧ୍ୟରୁ ମନୁ, ଯାଜ୍ଞବଲ୍କ୍ୟ ଓ ପରାଶର ଦେଶରେ ପ୍ରଧାନରୂପେ ପ୍ରଚଳିତ । ଏହି ତିନି ଗୋଟି ସ୍ମୃତି ପର୍ଯ୍ୟାଲୋଚନା କରି ବ୍ୟବସ୍ଥା ଦିଆଯାଇଥାଏ ଏବଂ ଅନ୍ୟ ସ୍ମୃତିମାନଙ୍କୁ ସାକ୍ଷୀ ସ୍ୱରୂପ ଗ୍ରହଣ କରାଯାଇଥାଏ ।

ମନୁ କିଏ ? ମନୁଷ୍ୟର ଆଦିପୁରୁଷ । ମନୁ ଚତୁର୍ଦ୍ଦଶଟି । ୧. ସ୍ୱାୟମ୍ଭୁବ, ୨. ସ୍ୱାରୋଚିତ, ୩. ଉତ୍ତମ, ୪. ତାମସ, ୫. ରୈବତ, ୬. ଚାକ୍ଷୁଷ, ୭. ବୈବସ୍ୱତ, ୮.ସାବର୍ଣ୍ଣି, ୯. ଦକ୍ଷସାବର୍ଣ୍ଣି,୧୦. ବ୍ରହ୍ମସାବର୍ଣ୍ଣି, ୧୧.ଧର୍ମସାବର୍ଣ୍ଣି, ୧୨. ରୁଦ୍ରସାବର୍ଣ୍ଣି, ୧୩. ଦେବସାବର୍ଣ୍ଣି ଓ ୧୪. ଇନ୍ଦ୍ରସାବର୍ଣ୍ଣି ।

ଏହି ଚତୁର୍ଦ୍ଦଶ ମନୁଙ୍କ ମଧ୍ୟରୁ ବୈବସ୍ୱତ ମନୁଙ୍କ ନାମ କେବଳ ବୈଦିକ ଗ୍ରନ୍ଥରେ ଦୃଷ୍ଟ ହୁଏ, ଅନ୍ୟ ମନୁମାନଙ୍କ ନାମ ନାହିଁ । ଆମ୍ଭମାନଙ୍କର ହସ୍ତଗତ ମନୁସ୍ମୃତି କେଉଁ ମନୁଙ୍କ ପ୍ରବର୍ତ୍ତିତ ଧର୍ମବ୍ୟବସ୍ଥା ? ମନୁସ୍ମୃତିର ଶେଷ ଶ୍ଳୋକ ପାଠ କଲେ ଜଣାଯାଏ, ମାନବ ଧର୍ମଶାସ୍ତ୍ରଖଣ୍ଡ ସ୍ୱାୟମ୍ଭୁବ ମନୁଙ୍କ ମୁଖନିର୍ଗତ ଧର୍ମ :—

ମନୁଃ ସ୍ୱାୟଂଭୁବୋ ଦେବଃ ସର୍ବଶାସ୍ତ୍ରାର୍ଥପାରଗଃ ।
ତସ୍ୟାସ୍ୟନିର୍ଗତଂ ଧର୍ମଂ ବିଚାର୍ଯ୍ୟଂ ବହୁବିସ୍ତରାତ୍ ॥

× × ×

ଏ ଗ୍ରନ୍ଥ କି ମନୁରଚିତ ? ତାହା ମଧ୍ୟ ନୁହେଁ । ଏହା ଭୃଗୁପ୍ରୋକ୍ତ ସଂହିତା । ଭୃଗୁଙ୍କ ନାମ ସଂହିତାରଚକମାନଙ୍କ ନାମର ଅନ୍ତର୍ଭୂତ ନୁହେଁ । ତଥାପି ଭୃଗୁରଚିତ ସଂହିତାକୁ ମନୁସଂହିତା ବୋଲି ଆମ୍ଭେମାନେ କହୁଁ । ସେହିପରି ଅତ୍ରି,

ବିଷ୍ଣୁ, ସଂବର୍ତ୍ତ, ବ୍ୟାସ, ପରାଶର, ପ୍ରଭୃତି ସଂହିତାମାନ ଅନ୍ୟ ସ୍ମୃତିକର୍ତ୍ତାଙ୍କଦ୍ୱାରା ରଚିତ ହୋଇଥିଲେ ମଧ୍ୟ ଅତ୍ରିସଂହିତା, ବ୍ୟାସସଂହିତା, ପରାଶରସଂହିତା ବୋଲି ବ୍ୟକ୍ତ କରୁଁ । ପ୍ରତ୍ୟେକ ସଂହିତା ପାଠ କଲେ ସ୍ପଷ୍ଟ ଜଣାଯିବ ଯେ, ମନୁସଂହିତା ଯେପରି ସ୍ୱାୟମ୍ଭୁବ ମନୁରଚିତ ନୁହେଁ, ସେହିପରି ପରାଶରସଂହିତା ପରାଶର ରଚିତ ନୁହେଁ । ତେବେ ଉପରିଲିଖିତ ସଂହିତାଗୁଡ଼ିକର ନାମ ଯଥାକ୍ରମେ ମନୁ, ଅତ୍ରି, ବିଷ୍ଣୁ ଇତ୍ୟାଦି ହେଲା କାହିଁକି ? ଏହା ଅନୁମାନ କରାଯାଏ ଯେ, ବିଭିନ୍ନ କାଳର ବିଭିନ୍ନ ସ୍ଥାନର ଋଷିମାନଙ୍କ ମତମାନ ଯାହା ବିଭିନ୍ନ ଲୋକମୁଖରେ ଓ ନାନା ପୁରାଣରେ ଥିଲା, ତାହା ପରବର୍ତ୍ତୀ ଯୁଗର ଲେଖକମାନେ ସଂଗ୍ରହ କରି ଗ୍ରନ୍ଥ ପ୍ରଣୟନ କରିଅଛନ୍ତି । ଅତ୍ରିଙ୍କ ମତାନୁସାରେ ଲିଖିତ ସ୍ମୃତି ଅତ୍ରିସଂହିତା, ବ୍ୟାସଙ୍କ ମତାନୁସାରେ ଲିଖିତ ସ୍ମୃତି ବ୍ୟାସସଂହିତା, ଇତ୍ୟାଦି ।

ଏ ପ୍ରବନ୍ଧରେ ସମସ୍ତ ସଂହିତାର ବଚନାଦି ଆଲୋଚନା ଓ ଉଦ୍ଧାର କରିବା ଆବଶ୍ୟକ ହୋଇପାରେ; ମାତ୍ର ମନୁ ଓ ପରାଶର ଆଲୋଚନାର ପ୍ରଧାନ ସମାଗ୍ରୀ ।

ମନୁ ଓ ପରାଶର ମଧ୍ୟରେ ମନୁ ପ୍ରାଚୀନ ଓ ପରାଶର ପରବର୍ତ୍ତୀ । ମନୁରେ ସତ୍ୟଯୁଗର ଧର୍ମ ବ୍ୟକ୍ତ ହୋଇଅଛି । ପରାଶରରେ କଳିର ଧର୍ମ ବ୍ୟକ୍ତ ହୋଇଥିବାର ପରାଶର ଲେଖନ୍ତି ।

କୃତେ ତୁ ମାନବୋ ଧର୍ମ୍ମ ସ୍ତ୍ରେତାୟାଂ ଗୌତମଃ ସ୍ମୃତଃ ।
ଦ୍ୱାପରେ ଶଙ୍ଖଲିଖିତଃ କଳୌ ପାରାଶରଃ ସ୍ମୃତଃ ।
ପରାଶର । ୧ । ୨୩

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ବର୍ତ୍ତମାନକାଳର ଧର୍ମଶାସ୍ତ୍ର ପରାଶର । ପରାଶର ଅନୁସାରେ ବ୍ୟବସ୍ଥା ହେବା ଉଚିତ ଏବଂ ପରାଶରଙ୍କ ମତର ସମର୍ଥନ ନିମନ୍ତେ ଅନ୍ୟାନ୍ୟ ସଂହିତାର ମତକୁ ସାକ୍ଷ୍ୟରୂପେ ଗ୍ରହଣ କରାଯିବା ଉଚିତ । ମାତ୍ର ମନୁ ଯେ କେବଳ ସତ୍ୟଯୁଗର ଧର୍ମ, ଏହା ମନୁରୁ ବା ଅନ୍ୟ ଗ୍ରନ୍ଥରୁ ପ୍ରକାଶ ପାଉ ନାହିଁ । ପରାଶର ସଂହିତାର ଆଧିକ୍ୟ ରକ୍ଷା କରିବା ନିମନ୍ତେ ମନୁକୁ ସତ୍ୟଯୁଗର ଶ୍ରେଷ୍ଠ ଧର୍ମଗ୍ରନ୍ଥ ବୋଲି ପ୍ରଶଂସାବାଦ କରି ନିଜ ସଂହିତାର ପ୍ରଚଳନପଥ ପରିଷ୍କାର କରି ନେଲେ ।

ସ୍ମୃତି ଛଡ଼ା ନିତାନ୍ତ ପ୍ରୟୋଜନୀୟ ପୁସ୍ତକ ଅଟେ ଗୃହ୍ୟସୂତ୍ର । ଗୃହ୍ୟସୂତ୍ରରେ ଗୃହସ୍ଥର ଜନ୍ମଠାରୁ ଆରମ୍ଭି ମୃତ୍ୟୁ ପର୍ଯ୍ୟନ୍ତ ଯେତେ ଶୁଭାଶୁଭ କର୍ମ କରାଯାଏ, ତହିଁର ବିଧି ଏହି ଗ୍ରନ୍ଥରେ ଦିଆଯାଇଅଛି ଏବଂ କେଉଁ କର୍ମରେ କେଉଁ ମନ୍ତ୍ର ପାଠ ହେବ, ତାହା ମଧ୍ୟ ଉଲ୍ଲେଖ କରାଯାଇଅଛି । ଇଚ୍ଛା ଅନୁସାରେ ବ୍ୟବସ୍ଥାପକମାନେ ପରାଶରଙ୍କୁ ଅତିକ୍ରମ କରି ମନୁର ବ୍ୟବସ୍ଥା ଦେଇପାରନ୍ତି, ମାତ୍ର ଗୃହ୍ୟସୂତ୍ରର କିଛି ହିଁ ପରିବର୍ତ୍ତନ କରି ପାରନ୍ତି ନାହିଁ । କିମ୍ବା ଏକ ଗୃହ୍ୟସୂତ୍ରକୁ ଅନ୍ୟ ଗୃହ୍ୟସୂତ୍ରର ମତାନୁସାରେ କର୍ମ କରିବାକୁ ବ୍ୟବସ୍ଥା ଦେଇ ନ ପାରନ୍ତି । ବିବାହ ବ୍ରତାଦି କର୍ମରେ ଗୋତ୍ର ପରି ଗୃହ୍ୟସୂତ୍ରର ମଧ୍ୟ ନାମ ଉଲ୍ଲେଖ କରାଯାଏ । କେଉଁ କେଉଁ ଜାତି ବା ଗୋତ୍ରର ବ୍ରାହ୍ମଣ ବା କ୍ଷତ୍ରିୟ କେଉଁ କେଉଁ ଗୃହ୍ୟସୂତ୍ରାନୁସାରେ ଚଳନ୍ତି, ତାହା ସ୍ପଷ୍ଟାକ୍ଷରରେ ଉଚ୍ଚାରଣ କରିବାକୁ ହୁଏ । ସୁତରାଂ ଗୃହ୍ୟସୂତ୍ର ଗୃହସ୍ଥର ଅତି ପ୍ରୟୋଜନୀୟ ଗ୍ରନ୍ଥ, ଏଥିରେ ସନ୍ଦେହ ନାହିଁ । ଏହି ଗୃହ୍ୟସୂତ୍ର ଗୃହସ୍ଥର ନିତ୍ୟ ନୈମିତ୍ତିକ କାର୍ଯ୍ୟର ଚାଳକ ଓ ନିୟାମକ, ଏହା କେହି ଅସ୍ୱୀକାର କରି ପାରିବେ ନାହିଁ । ଗୋଭିଳ, ଆଶ୍ୱଳାୟନ, କାତ୍ୟାୟନ, ପାରସ୍କର ପ୍ରଧାନ ଗୃହ୍ୟସୂତ୍ରପ୍ରଣେତା ।

ଦ୍ୱିଜାତିର ଗୃହସ୍ଥକର୍ମ ଗୃହ୍ୟସୂତ୍ରାନୁସାରେ ଚାଳିତ ହୁଏ । ଗୃହସ୍ଥ ମାନବ ଧର୍ମଶାସ୍ତ୍ରାନୁସାରେ ଆପଣାର ଧର୍ମ କର୍ମ କରେ ।

ବର୍ତ୍ତମାନ ଯୁବତୀବିବାହ ଓ ବିଧବାବିବାହର ଆଲୋଚନା କରାଯାଉ । ଉଭୟ ବିଷୟ ଏକସଙ୍ଗରେ ବିଚାର କଲେ ଗୋଳମାଳ ହେବା ସମ୍ଭବ । ଏଣୁ ପ୍ରଥମେ ଯୁବତୀବିବାହ, ପରେ ବିଧବାବିବାହର ବିଚାର କରିବା କର୍ତ୍ତବ୍ୟ ।

ଦ୍ୱିଜାତି ଦଶ କର୍ମରେ ପରିଶୁଦ୍ଧ । ଦଶ କର୍ମର ନାମ ଯଥାକ୍ରମେ ଗର୍ଭାଧାନ, ପୁଂସବନ, ସୀମନ୍ତୋନ୍ନୟନ, ଜାତକର୍ମ, ନାମକରଣ, ଅନ୍ନପ୍ରାଶନ, ଚୂଡ଼ାକରଣ, ଉପନୟନ, ବ୍ରହ୍ମଚର୍ଯ୍ୟ, ସମାବର୍ତ୍ତନ । ଜନ୍ମରୁ ଆରମ୍ଭି ଗୃହସ୍ଥାଶ୍ରମ କରିବା ମଧ୍ୟରେ ମନୁଷ୍ୟ ଏହି କେତେଗୋଟି କାର୍ଯ୍ୟ ନିର୍ବିଘ୍ନରେ କରିପାରିଲେ ତାକୁ ଗୃହସ୍ଥାଶ୍ରମ କରି ଓ ପୁତ୍ରଜନ୍ମ କରି ଇହକାଳ ଓ ପରକାଳର ଉନ୍ନତି ସାଧନର ଉପଯୁକ୍ତ ବୋଲି ଲୋକେ ବିବେଚନା କରନ୍ତି ।

ପିତା ମାତା ଜନ୍ମ ଉତ୍ତାରୁ ବାଳକର ଉପନୟନ ପର୍ଯ୍ୟନ୍ତ ଯାବତୀୟ କାର୍ଯ୍ୟ କରନ୍ତି । ଉପନୟନ ଉତ୍ତାରୁ ପୁତ୍ର ଗୁରୁଗୃହକୁ ଯାଇ ଅଧ୍ୟୟନ ଓ କଠିନ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରେ । ଏହି ସମୟକୁ ଜୀବନର କଠିନ ସମସ୍ୟା ବୋଲାଯାଏ । ସଂଯମ, ପରିଶ୍ରମ, ଅଧ୍ୟବସାୟ, ଯାହା ପର ଜୀବନରେ ପ୍ରୟୋଜନରେ ଲାଗିବ, ତାହା ଏହି ସମୟରେ ଶିକ୍ଷା ଓ ସଞ୍ଚୟ କରାଯାଏ । ଏହା ଅତି ସମୀଚୀନ ବ୍ୟବସ୍ଥା ।

ପୂର୍ବେ ଗୁରୁଗୃହରେ ରହି ଗୁରୁଙ୍କର ସେବା କରି ଛାତ୍ରଗଣ ବିଦ୍ୟାଭ୍ୟାସ କରୁଥିଲେ, ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରୁଥିଲେ । ଏବେ ଗୁରୁଗୃହରେ ରହିବାର ବ୍ୟବସ୍ଥା ନାହିଁ ବା ସୁଯୋଗ ନାହିଁ; ତଥାପି ଆପଣ ଗୃହରେ ବା ବିଦେଶରେ, ପାଠଶାଳାରେ ରହି ସଂଯମ ଓ ବ୍ରହ୍ମଚର୍ଯ୍ୟ ଶିକ୍ଷା କରାଯାଇପାରନ୍ତା ନାହିଁ କି ? ମାତ୍ର ଏଥିପ୍ରତି କାହାରି ଯତ୍ନ ନାହିଁ ବା ଏପରି ସୁବ୍ୟବସ୍ଥା ପ୍ରତି କାହାରି ଆସ୍ଥା ନାହିଁ ।

ବ୍ରହ୍ମଚର୍ଯ୍ୟ କେତେକାଳ ପର୍ଯ୍ୟନ୍ତ କରିବାର ନିୟମ, ତାହା ଧର୍ମଶାସ୍ତ୍ରମାନଙ୍କରେ ଲିଖିତ ହୋଇଅଛି ।

ଷଟ୍‌ତ୍ରିଂଶଦାବ୍ଦିକଂ ଚର୍ଯ୍ୟଂ ଗୁରୌ ତ୍ରୈବେଦିକଂ ବ୍ରତଂ ।
ତଦର୍ଦ୍ଧକଂ ପାଦିକଂ ବା ଗ୍ରହଣାନ୍ତିକମେବ ବା । ୧।
ବେଦାନଧୀତ୍ୟ ବେଦୌ ବା ବେଦଂବାପି ଯଥାକ୍ରମଂ ।
ଅବିପ୍ଲୁତବ୍ରହ୍ମଚର୍ଯ୍ୟୋ ଗୃହସ୍ଥାଶ୍ରମମାବସେତ୍ ।୨।
(ମନୁ)

ନିୟମେନାଧୀତଂ ବୀର୍ଯ୍ୟବତ୍ତରଂ ଭବତୀତ ଶ୍ରୁତେଃ ।
(ମନୁଟୀକା– ଗୋବିନ୍ଦରାଜ ।

ଦ୍ୱିଜାତିର ବ୍ରହ୍ମଚର୍ଯ୍ୟ କରିବାର ବ୍ୟବସ୍ଥା ଅଛି । ଉପରୋକ୍ତ ଦୁଇ ଗୋଟି ଶ୍ଳୋକ ବେଦାଧ୍ୟୟନ ନିମନ୍ତେ ଗୁରୁଗୃହରେ ରହିବାର ବ୍ୟବସ୍ଥା । ଗୁରୁଗୃହରେ ଛତିଶ ବର୍ଷ ରହି ବେଦାଧ୍ୟୟନ କରିବାର ବ୍ୟବସ୍ଥା କରିଅଛନ୍ତି । ମାତ୍ର ସମଗ୍ର ବେଦ ଅଧ୍ୟୟନ ନ କଲେ ଅଠର ବର୍ଷ ବା ନଅ ବର୍ଷ ମଧ୍ୟ ବ୍ରହ୍ମଚର୍ଯ୍ୟ କରି ବେଦାଧ୍ୟୟନ କରିବ, ଏହା ବେଦାଧ୍ୟୟନର ନିୟମ । ସଂଯମରେ ରହି ବେଦାଧ୍ୟୟନ କଲେ ମନୁଷ୍ୟ ବୀର୍ଯ୍ୟବନ୍ତ ହୁଏ । ଏହାଛଡ଼ା ମନୁଷ୍ୟର ବିବାହ ବୟସ ନିର୍ଦ୍ଦେଶ କରିଅଛନ୍ତି ଯେ—

ଚତୁର୍ଥମାୟୁଷୋ ଭାଗମୁଷିତ୍ୱାଦ୍ୟଂ ଗୁରୌ ଦ୍ୱିଜଃ ।
ଦ୍ୱିତୀୟମାୟୁଷୋ ଭାଗଂ କୃତଦାରୋ ଗୃହେ ବସେତ୍ ।
(ମନୁ-୪/୫)

ମନୁଷ୍ୟର ପରମାୟୁ ଏକଶତ ବର୍ଷ, ତା'ର ଚତୁର୍ଥାଂଶ ଅର୍ଥାତ୍ ପଚିଶ ବର୍ଷ ଗୁରୁଗୃହରେ ରହି ଦ୍ୱିତୀୟ ଭାଗରେ କୃତଦାର ହୋଇ ଗୃହରେ ରହିବ । ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଅଛି ଯେ, ପୁରୁଷ ପଚିଶ ବର୍ଷଠାରୁ ତେଣିକି ବିବାହ କରିପାରିବ । ପଚିଶ ବର୍ଷ ପୂର୍ବରୁ ନୁହେଁ ।

ଯୁବତୀ ବିବାହର ଆଲୋଚନା ପୂର୍ବରୁ ଆଉ ଗୋଟିଏ ବିଷୟ ଉଲ୍ଲେଖ କରାଯାଉ । ଏ ବିଷୟଟି ନିଶ୍ଚୟ ପ୍ରଣିଧାନଯୋଗ୍ୟ । ବୈଦିକ ଗ୍ରନ୍ଥ, ବିଶେଷତଃ ଋଗ୍‌ବେଦ ଯେପରି ଶୁଦ୍ଧ ରହିଅଛି, ସ୍ମୃତିଗ୍ରନ୍ଥ ସେପରି ଅବିକଳ କୃତ୍ରିମତାଶୂନ୍ୟ ହୋଇ ରହି ନାହିଁ । ତହିଁର କାରଣ ଅନେକ । ଯେଉଁ ବ୍ୟକ୍ତି ରଚକ, ସେ ଗୁପ୍ତରେ ରହି ଅତି ପ୍ରାଚୀନ କାଳର ଋଷିମାନଙ୍କଦ୍ୱାରା ଗ୍ରନ୍ଥ ରଚିତ ବୋଲି ପ୍ରକାଶ କରିଅଛନ୍ତି, ଯଥା– ଭୃଗୁ ରଚିତ ଗ୍ରନ୍ଥ ମନୁ ନାମରେ ପରିଚିତ । ତଥାପି ଏଠାରେ ପରିଚୟ ଦିଆଯାଇଛି । ମାତ୍ର ପରାଶର ପ୍ରଭୃତି ସଂହିତାରେ ରଚକର ପରିଚୟ ଆଦୌ ଦିଆଯାଇ ନାହିଁ । ତେବେ ଗ୍ରନ୍ଥପାଠ କଲେ ସ୍ପଷ୍ଟରୂପେ ଜଣାଯାଏ ଯେ, ସଂହିତା ଯାହାର ନାମରେ ପରିଚିତ, ସେ ରଚକ ନ ହୋଇ ଅନ୍ୟ ଜଣେ ତାହାର ରଚକ । ଉଦାହରଣସ୍ୱରୂପ ଦେଖାଯାଉ—

ଅତଃ ଶୁଦ୍ଧିଂ ପ୍ରବକ୍ଷ୍ୟାମି ଜନନେ ମରଣେ ତଥା ।
ଦିନତ୍ରୟେଣ ଶୁଦ୍ଧ୍ୟନ୍ତି ବ୍ରାହ୍ମଣାଃ ପ୍ରେତସୂତକେ ।୧।
କ୍ଷତ୍ରିୟୋ ଦ୍ୱାଦଶାହେନ ବୈଶ୍ୟଃ ପଞ୍ଚଦଶାହକୈଃ ।
ଶୂଦ୍ରଃ ଶୁଦ୍ଧ୍ୟତି ମାସେନ ପରାଶରବଚୋ ଯଥା ।୨।

ଏହି ଗୋଟାଏ ଶ୍ଳୋକରୁ ସ୍ପଷ୍ଟ ପ୍ରମାଣ ମିଳୁଅଛି ଯେ, ଲେଖକ ପରାଶରଙ୍କ ବଚନ ଅନୁସାରେ ଏହି ପୁସ୍ତକରେ ଶୁଦ୍ଧି ବିଷୟ ଉଲ୍ଲେଖ କଲେ । ପରାଶର ନିଜେ ଲେଖକ ହୋଇଥିଲେ 'ପରାଶରବଚୋ ଯଥା' (ପରାଶରଙ୍କର ବଚନ ଯେପରି) ଲେଖି ନ ଥାନ୍ତେ । ଅଧିକ ଉଦାହରଣ ଦେବା ବାହୁଲ୍ୟ ମାତ୍ର । ତେବେ ପରାଶର ନ ଲେଖିଲେ ମଧ୍ୟ ପରାଶରମତାବଲମ୍ବୀ ଅନ୍ୟ କୌଣସି ଋଷିଦ୍ୱାରା ଲିଖିତ ହୋଇଅଛି, ଏହା କିଏ ଅସ୍ୱୀକାର କରିବ ?

ଦେଶହିତାକାଂକ୍ଷୀ, ସମାଜହିତୈଷୀ ବିଜ୍ଞ ଋଷିଗଣକର୍ତ୍ତୃକ ଲିଖିତ ଧର୍ମଶାସ୍ତ୍ରମାନଙ୍କ ମଧ୍ୟରେ ପରସ୍ପରବିରୋଧୀ ମତ ଦେଖାଯାଏ କାହିଁକି ? ଏଥିର କାରଣ ଏହି ଯେ, ବହୁକାଳରୁ ଏହି ଗ୍ରନ୍ଥମାନ ଲିଖିତ । ତାଳପତ୍ରପୋଥିରେ ଲିଖିତ । ସେତେବେଳେ ଏ ଦେଶରେ ଘରେ ଘରେ ଶାସ୍ତ୍ରଜ୍ଞ ପଣ୍ଡିତ ଥିଲେ । ଯୁଗ ଓ ରୁଚି ଯେ ମନୁଷ୍ୟ ମନରେ ଆଧିପତ୍ୟ ନ କରେ, ତାହା ନୁହେଁ । ଭଗବାନ୍ ବୁଦ୍ଧଙ୍କ ଅବତାର ଉତ୍ତାରୁ ଭାରତବର୍ଷରେ ଧର୍ମଯୁଦ୍ଧ ସଂଘଟିତ ହେଲା, ଏହା କିଏ ଅସ୍ୱୀକାର କରିବ ? ଏହି ପରିବର୍ତ୍ତନ ସଙ୍ଗେ ସଙ୍ଗେ ଦେଶରେ ଧର୍ମବିପ୍ଳବ, ସମାଜବିପ୍ଳବ, ଜାତିବିପ୍ଳବ ଘଟିଥିଲା, ତହିଁରେ ସନ୍ଦେହ କରିବାର କିଛିହିଁ କାରଣ ନାହିଁ । ବୌଦ୍ଧମାନେ ଯେପରି ସଦାଶୟତା ଦେଖାଇ ସମାଜ ଓ ଜାତିକୁ କୁସଂସ୍କାରବେଷ୍ଟନୀରୁ ମୁକ୍ତି ଦେବାକୁ ଆରମ୍ଭ କଲେ, ସ୍ୱାର୍ଥଗଣ ସେହିପରି ବେଷ୍ଟନୀକୁ ସୁଦୃଢ଼ କରିବାକୁ

ଲାଗିଲେ । ସୁତରାଂ ଦେଶରେ ଏତେ ପୁରାଣ ଓ ଧର୍ମଶାସ୍ତ୍ରର ସୃଷ୍ଟି । ପ୍ରାଚୀନ ସ୍ମୃତି ଅନୁସାରେ ବ୍ୟବସ୍ଥା କାର୍ଯ୍ୟକାରୀ ନୋହିବାରୁ ପୁଣି ନୂତନ ନୂତନ ସ୍ମୃତିର ସୃଷ୍ଟି । ତାହା ଛଡ଼ା ଲୋକମାନ୍ୟ ମାନବାଦି ଧର୍ମଶାସ୍ତ୍ରରେ ମଧ୍ୟରେ ମଧ୍ୟରେ ଶ୍ଳୋକ ଗୋଟିଏ ଗୋଟିଏ ଇତସ୍ତତଃ ଯୋଗ କରାଗଲା । ଏଣୁ ମନୁ ପ୍ରଭୃତିରେ ମଧ ପରସ୍ପରବିରୋଧୀ ମତ ଦୃଷ୍ଟ ହୁଏ । ପରବର୍ତ୍ତୀ ଟୀକାକାରଗଣ ତାହା ସମର୍ଥକ କରିବାକୁ ବୃଥା ପ୍ରୟାସ ପାଇଅଛନ୍ତି ।

ମନୁ ବା ଅନ୍ୟ ସ୍ମୃତିରେ ସଂଗ୍ରହାଧ୍ୟାୟ ନ ଥିବାରୁ ଅର୍ଥାତ୍ ଗ୍ରନ୍ଥରେ କେତେ ଅଧ୍ୟାୟ ଓ କେତେ ଶ୍ଳୋକ ବା ପ୍ରତି ଅଧ୍ୟାୟରେ କେତେ ଶ୍ଳୋକ ଏହା ଲିଖିତ ହୋଇ ନ ଥିବାରୁ ମୂଳ ଗ୍ରନ୍ଥରେ କେତେଗୋଟି ଶ୍ଳୋକ ସଂଯୋଗ ହେଲା ବା କେତେଗୋଟି ଶ୍ଳୋକ ବାଦ ଦିଆଗଲା, ତାହା ଜ୍ଞାତ ହେବାର ଉପାୟ ନାହିଁ । ମହାଭାରତ ପର୍ବସଂଗ୍ରହାଧ୍ୟାୟରେ ପ୍ରତ୍ୟେକ ପର୍ବରେ ଯେତେ ଅଧ୍ୟାୟ ଓ ଯେତେ ଶ୍ଳୋକ ଅଛି, ତାହା ଲେଖାଅଛି । ଏଣୁ ଗଣନା କଲେ କେତେ ଅଧ୍ୟାୟ ବେଶି ବା କମ୍, ତାହା ଜଣାପଡୁଅଛି । ସେହିପରି ଶ୍ଳୋକ ମଧ ଜଣା ଯାଉଅଛି । ଉକ୍ତ ପର୍ବାଧ୍ୟାୟ ଅନୁସାରେ ମୋଟ ୧୯୨୩ ଅଧ୍ୟାୟ ହେବା ଉଚିତ; ମାତ୍ର ଗଣନା ଅନୁସାରେ ୨୧୦୭ ମିଳେ । ସୁତରାଂ ୧୮୪ ଅଧ୍ୟାୟ ଅଧିକ । ଶ୍ଳୋକ ୮୪୮୩୬ ହେବା ସ୍ଥଳେ ଗଣନାରେ ୯୬୨୧୬ ଶ୍ଳୋକ ମିଳୁଅଛି । ଏଣୁ ୧୧୩୮୦ ଶ୍ଳୋକ ଅଧିକ । ଏହି ମୂଳଗ୍ରନ୍ଥକୁ ଏଡ଼େ ବାହୁଲ୍ୟ କରିବା ନିମନ୍ତେ ଦେଶର କବିମାନେ ଦାୟୀ ନୁହନ୍ତି କି ? ଏବଂ ଏତାଦୃଶ ଗ୍ରନ୍ଥବାହୁଲ୍ୟ କରିବା ମୂଳରେ କିଛି ସ୍ୱାର୍ଥ ଜଡ଼ିତ ନାହିଁ ବୋଲି ମନେ କରିବାର କିଛିହିଁ କାରଣ ନାହିଁ । ମନୁରେ ବାରଗୋଟି ଅଧ୍ୟାୟ ଓ ୨୬୮୪ ଗୋଟି ଶ୍ଳୋକ ଅଛି । ମହାଭାରତର ଶ୍ଳୋକ ସଂଖ୍ୟା ଯେଉଁ ଅନୁପାତରେ ବୃଦ୍ଧି ପାଇଅଛି, ସେହି ଅନୁପାତରେ ବୃଦ୍ଧି ହୋଇଥିଲେ ମନୁଗ୍ରନ୍ଥରେ ଅନ୍ତତଃ ପକ୍ଷରେ ୨୫୦ ଶ୍ଳୋକ ନିଶ୍ଚୟ ଯୋଗ ହୋଇଥିବ । ମହାଭାରତ ଅପେକ୍ଷା ମନୁରେ ଯୋଗ ବିୟୋଗ କରିବା ଅଧିକ ସମ୍ଭବ, ଯେହେତୁ ମନୁ ଆଇନ୍ ଯୁଗଭେଦରେ ଓ ରୁଚିଭେଦରେ ଏପରି ହେବା ସ୍ୱତଃସିଦ୍ଧ । କ'ଣ ମୂଳରେ ଥିଲା ଏବଂ ତାହାକୁ ଉଠାଇ ଦିଆଯାଇଅଛି ଏବଂ କ'ଣ ଯୋଗ କରାଯାଇଅଛି, ତାହା ଜାଣିବା ସମ୍ଭବ ନୁହେଁ । ତେବେ ଆମ୍ଭମାନଙ୍କୁ ପୂର୍ବାପର ଶ୍ଳୋକ ଆଲୋଚନା କରିବାକୁ ହେବ ଏବଂ ସନ୍ଦେହଜନକ ଶ୍ଳୋକଟି ଯେଉଁ ସ୍ଥାନରେ ଅଛି, ତାହା ବିଷୟ ସହିତ ସାମଞ୍ଜସ୍ୟ ରକ୍ଷା କରି ପାରିଅଛି କି ନାହିଁ, ତାହା ମଧ ଦେଖିବାକୁ ହେବ । ବସ୍ତୁତଃ ଗୋଟିଏ ଶ୍ଳୋକ ନିମନ୍ତେ ସମଗ୍ର ଅଧ୍ୟାୟ, ପ୍ରୟୋଜନ ହେଲେ ସମଗ୍ର ପୁସ୍ତକ ଆଲୋଡ଼ନ କରି ତଥ୍ୟ ନିର୍ଦ୍ଧାରଣ କରିବାକୁ ହେବ । ଟୀକାକାରମାନଙ୍କ ସାହାଯ୍ୟରେ ଅର୍ଥ ଅବଗତ ହେବା ପ୍ରୟୋଜନ— ମାତ୍ର ସେମାନଙ୍କ ଅଭିପ୍ରାୟକୁ ସତ୍ୟ ବୋଲି ଧରି ନେଲେ ଭ୍ରମରେ ପଡ଼ିବାକୁ ହେବ ସନ୍ଦେହ ନାହିଁ ।

ଦେଶରେ ବାଲ୍ୟବିବାହ ପ୍ରଥା ଆଜିକାଲି ଚଳି ନାହିଁ । ଏହାର ପ୍ରଚଳନର ସମୟ ନିର୍ଦ୍ଧାରଣ କରିବା କଠିନ । ବୌଦ୍ଧଯୁଗର ଆରମ୍ଭ ଏବଂ ମୁସଲମାନ ଅଭ୍ୟୁତ୍ଥାନ ସମୟରେ ଏହାର ପ୍ରଚଳନ ଅତ୍ୟଧିକ ଭାବରେ ପ୍ରଚାର ହୋଇଅଛି, ଏଥିରେ ସନ୍ଦେହ ନାହିଁ । କାରଣ ଯୋଡ଼ିଏ ନିର୍ଦ୍ଦେଶ କରାଯାଇପାରେ । ମୁସଲମାନମାନେ ବାଲ୍ୟବିବାହର ଅପକ୍ଷପାତୀ ନୁହନ୍ତି । ଆଉ ଗୋଟିଏ ମୁସଲମାନମାନଙ୍କର ଅତ୍ୟାଚାର ଭୟ । ଦ୍ୱିତୀୟୋକ୍ତ କାରଣ ନିମନ୍ତେ ବ୍ରାହ୍ମଣମାନେ ବ୍ରାହ୍ମଣ ଓ ବୈଶ୍ୟମାନଙ୍କ ନିମନ୍ତେ ଏହି ପ୍ରଥାଟି ପ୍ରଚଳନ କରି ତାହା ଜାତୀୟ ଆଚାରଶ୍ରେଣୀଭୁକ୍ତ କରି ନେଇଗଲେ । ମାତ୍ର ସେମାନଙ୍କ ହୃଦୟକୁ ଏହା ସ୍ପର୍ଶ କରିପାରିଲା ନାହିଁ ଯେ, ଏହି କୁପ୍ରଥା ପରେ କି ବିଷମୟ ଫଳ ପ୍ରସବ କରିବ । ବହୁଯୁଗରୁ ଏ ପ୍ରଥା ଚାଲି ଆସୁଥିଲା । ଶ୍ରୀମତୀ ମହାରାଣୀଙ୍କର ଘୋଷଣା 'କାହାରି ଧର୍ମରେ ହସ୍ତକ୍ଷେପ କରିବୁ ନାହିଁ' ବ୍ରାହ୍ମଣଜାତିକୁ ସ୍ତ୍ରୀ ନିର୍ଯାତନରେ ପ୍ରଚୁର ବଳ ଓ ସାମର୍ଥ୍ୟ ପ୍ରଦାନ କଲା । ଏଥିଉତ୍ତାରୁ ଯେ ଧର୍ମଶାସ୍ତ୍ରମାନଙ୍କରେ ମଧ ଶ୍ଳୋକେ ଅଧେ ବାଲ୍ୟବିବାହ ସପକ୍ଷରେ ଓ ଯୁବତୀବିବାହ ବିପକ୍ଷରେ ଯୋଗ କରାଯାଇ ନାହିଁ, ତାହା କିଏ କହିପାରିବ ?

ଯଦି ଜଣେ ଲୋକର ଅର୍ଥପ୍ରାପ୍ତି ହିଁ ଏକମାତ୍ର ଜୀବନର ଲକ୍ଷ୍ୟ ଥାଏ, ତେବେ ତା ପ୍ରତି ସୁବିଧାନୁସାରେ ଲେଖାପତ୍ର କୃତ୍ରିମ କରିବାର ଧର୍ମଭୟ ମନରେ ରହିପାରେ କି ? ତେବେ ବାଲ୍ୟବିବାହ ପ୍ରଚଳନ ଯେଉଁ ସ୍ମାର୍ତ୍ତମାନଙ୍କର ଜୀବନର ଓ ଧର୍ମର ଲକ୍ଷ୍ୟ, ସେମାନେ ସ୍ମୃତି ମଧ୍ୟରେ ପଦେ ଅଧେ ଯୋଗ କରିବାକୁ କୁଣ୍ଠିତ ହେବେ କି ? ସନାତନ ଧର୍ମରକ୍ଷାର ଯତ୍ନ କୃତ୍ରିମ ଉପାୟ ଅବଲମ୍ବନ କରିବା ପାପରୁ ସେମାନଙ୍କୁ ରକ୍ଷା କରିବ, ଯେପରି ବ୍ରାହ୍ମଣକୁ ରକ୍ଷା କରିବା ଅଭିପ୍ରାୟରେ ମିଥ୍ୟା ସାକ୍ଷ୍ୟ ମିଥ୍ୟାବାଦିତାରୂପ ପାପରୁ ରକ୍ଷା କରେ । ଆମ୍ଭମାନଙ୍କର ଏଗୁଡ଼ିକ ଲେଖିବାର ପ୍ରୟୋଜନ ଏହି ଯେ, ସନାତନ ଧର୍ମରକ୍ଷା ନିମନ୍ତେ ସ୍ମାର୍ତ୍ତଗଣ ସ୍ମୃତିରେ ପଦେ ଅଧେ ଯୋଗ କରିଅଛନ୍ତି, ବ୍ୟାଖ୍ୟାରେ ନିଜ ମତଦ୍ୱାରା ପାଠକମାନଙ୍କୁ ଭ୍ରାନ୍ତ କରିବାର ଚେଷ୍ଟା କରିଅଛନ୍ତି, ଏଥିରେ ସନ୍ଦେହ ନାହିଁ ।

ସୁତରାଂ ପାଠକମାନଙ୍କୁ ଅନୁରୋଧ ଯେ, ସେମାନେ ବିବେକ ବୁଦ୍ଧି ଉପରେ ସମ୍ପୂର୍ଣ୍ଣ ନିର୍ଭର ରଖି ଏହି ଗୁରୁତର ବିଷୟର ବିଚାରରେ ଅଗ୍ରସର ହେବେ ।

ଏହା ପ୍ରକାଶ କରିବାଦ୍ୱାରା ପୁନରୁକ୍ତି ହେବ ନାହିଁ ଯେ, ଋଗ୍‌ବେଦଠାରୁ ବଳି ପ୍ରାଚୀନ ଗ୍ରନ୍ଥ ଜଗତରେ ନାହିଁ । ଏହାଠାରୁ ବଳି ପ୍ରାଚୀନ ବଡ଼ ଗ୍ରନ୍ଥ କୌଣସି ଜାତିରେ ନାହିଁ । ଏହା କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ ଯେ, ଏହି ଋଗ୍‌ବେଦ ମାତ୍ର ଜଗତରେ ଭାରତବାସୀଙ୍କ ଅତି ପ୍ରାଚୀନ ସଭ୍ୟଜାତିର ସନ୍ତାନ ବୋଲି ପରିଚିତ କରାଉଅଛି । ଏହି ପୁସ୍ତକଟି ମାତ୍ର ଭାରତବାସୀର ପ୍ରଧାନ ଗୌରବର ସାମଗ୍ରୀ । ତାହାରି ପ୍ରଭାବ ଅଦ୍ୟାପି ଭାରତବାସୀର ହୃଦୟରେ ପୂର୍ବ ଗୌରବର ସତ୍ତା ରକ୍ଷା କରିଅଛି । ଏହାକୁ ଗୋଟିଏ ମନୁ, ପରାଶର, ଭାଗବତ, ଭାରତ, କାଳିକାପୁରାଣ, ପ୍ରଭୃତି ପରି ଖଣ୍ଡେ ପୁସ୍ତକ ବିବେଚନା କରିବା ଅସଙ୍ଗତ । ଏଥିରେ ସୂତ୍ରାକାରରେ ମାନବ ଜାତିର ଏତେ ଜ୍ଞାତବ୍ୟ ବିଷୟ ରହିଅଛି ଯେ, ତାହା ବୁଝିବା, ବୁଝାଇବା ଅସମ୍ଭବ । ପାଶ୍ଚାତ୍ୟ ଧନଲୋଲୁପ ସ୍ୱାର୍ଥାନ୍ଧଗଣ ପଦଦଳିତ ଭାରତବାସୀଙ୍କ ଅସଭ୍ୟ ବର୍ବର ଅଶିକ୍ଷିତ ଆଖ୍ୟା ଦେଇ ସେମାନଙ୍କର ଆଧୁନିକ ବୃଥା ଗୌରବକୁ ଯେତେଦୂର ଇଚ୍ଛା ନିନ୍ଦା କରନ୍ତୁ, ସେମାନଙ୍କୁ ଅକର୍ମା, ନିଷ୍କର୍ମା, ଅଯୋଗ୍ୟ ବୋଲି ପୃଥିବୀର ସଭ୍ୟମାନଙ୍କୁ ଅଙ୍ଗୁଳିନିର୍ଦ୍ଦେଶଦ୍ୱାରା ଦେଖାଇ ଦିଅନ୍ତୁ ପଛକେ, ସେମାନଙ୍କ ଦେଶରେ ନିଃସ୍ୱାର୍ଥ, ବିଦ୍ୟାଧନ, ତତ୍ତ୍ୱାନ୍ୱେଷୀ ଜଣ କେତେ ଜନ୍ମଗ୍ରହଣ କରି ଋଗ୍‌ବେଦକୁ ସମ୍ମାନ ଦେବାରେ ନତମସ୍ତକ ହୋଇଅଛନ୍ତି । ଋଗ୍‌ବେଦଯୁଗର ଲୋକମାନଙ୍କର ଆଚାର ବ୍ୟବହାରକୁ ପ୍ରାଚୀନ ସମଗ୍ର ଜାତିର ଆଚାର ବ୍ୟବହାର ଅପେକ୍ଷା ଉଚ୍ଚ ବୋଲି ପ୍ରକାଶ କରିଅଛନ୍ତି । ଋଗ୍‌ବେଦ ଆମ ପୂର୍ବ ପୁରୁଷର ଇତିହାସ, ଏହା କହିଲେ ଯଥେଷ୍ଟ ହେଲା ନାହିଁ । ଜଣେ ପାଶ୍ଚାତ୍ୟ ବେଦପାଠିଙ୍କ କଥାରେ "The Rigveda is not a book, but a library and a literature" ଏହା ଅକ୍ଷରେ ଅକ୍ଷରେ ସତ୍ୟ । ଋଗ୍‌ବେଦ ହିନ୍ଦୁମାନଙ୍କର ଆଦି ପୁସ୍ତକ । ଏହାର ଭିତ୍ତି ଉପରେ ହିନ୍ଦୁର ଧର୍ମ, ଶାସ୍ତ୍ର, ରୀତି, ନୀତି, ଆଚାର, ବ୍ୟବହାର ପ୍ରତିଷ୍ଠିତ । ଏହା ସମସ୍ତ ହିନ୍ଦୁ ସ୍ୱୀକାର କରନ୍ତି, ସମସ୍ତେ ପ୍ରକାଶ କରନ୍ତି । ପ୍ରକାଶ କରନ୍ତି ସତ୍ୟ, ମାତ୍ର ପ୍ରକୃତରେ ତାହା ନୁହେଁ । ବେଦର ମନ୍ତ୍ର ଉଚ୍ଚାରଣ କରନ୍ତି, ମାତ୍ର ତାହାର ଅର୍ଥାନୁସାରେ କାର୍ଯ୍ୟ କରନ୍ତି ନାହିଁ । ଦେଖିବାକୁ ଗଲେ ହିନ୍ଦୁର ସମଗ୍ର କାର୍ଯ୍ୟ କପଟତାପୂର୍ଣ୍ଣ । କଥା ପ୍ରକାରେ, କାର୍ଯ୍ୟ ପ୍ରକାରେ । ମନ ପ୍ରକାରେ, କାର୍ଯ୍ୟ ପ୍ରକାରେ । ହିନ୍ଦୁର ଏହି ମାନସିକ ବଳର ଅଭାବରୁ ଆଜି ଏ ଦୁର୍ଗତି, ଏ ଅବନତି ।

ଆସ୍ମମାନଙ୍କର ଏହି ଉକ୍ତି ଅକ୍ଷର ଅକ୍ଷରେ ସତ୍ୟ ଥିବାର ବିବାହସମ୍ବନ୍ଧୀୟ ଆଲୋଚନାରେ ସପ୍ରମାଣ କରିବାକୁ ଚେଷ୍ଟା କରିବୁଁ ।

ଋଗ୍‌ବେଦରେ ବାଲ୍ୟବିବାହର ନାମ ନାହିଁ । ସେ ଯୁଗରେ ଯୁବତୀବିବାହ କେବଳ ପ୍ରଚଳିତ ଥିଲା । ଏହା ଜ୍ଞାତ ହେବାର ଉପାୟ କ'ଣ ? ବିବାହ ମନ୍ତ୍ରଦ୍ୱାରା, ସେ କାଳର ବିବାହର ବର୍ଣ୍ଣନାଦ୍ୱାରା ।

ବର୍ତ୍ତମାନ ଯୁଗରେ କୌଣସି ବ୍ରାହ୍ମଣଗୃହରେ କନ୍ୟା ଋତୁମତୀ ହେଲେ ତାହା ନିତାନ୍ତ ଦୋଷାବହ ବୋଲି ବିବେଚିତ ହେଉଅଛି । ବୈଦିକ ଯୁଗରେ କନ୍ୟାମାନେ ପିତୃଗୃହରେ ଋତୁମତୀ ହୋଇ ଆଜୀବନ ରହୁଥିଲେ, ତାହା ନିମ୍ନୋକ୍ତ ଋକ୍‌ବେଦ ମନ୍ତ୍ରରୁ ଜଣାପଡ଼ିବ ।

ଅମାଜୂରିବ ପିତ୍ରୋଃ ସଚା ସତୀ ସମାନାଦା
ସଦସସ୍ତ୍ୱାମିୟେ ଭଗଂ ।
କୃଧି ପ୍ରକେତମୁପ ମାସ୍ୟାଭର ଦଦ୍ଧି ଭାଗଂ
ତନ୍ୱୋଯେନ ମାମହାଃ ॥
(ଋଗ୍‌ବେଦ—୨ । ୧୭ ।୧

ଯାବଜ୍ଜୀବନ ପିତୃଗୃହରେ ଅବସ୍ଥିତା ପିତା ମାତାର ଶୁଶ୍ରୂଷଣପରା ଅପ୍ରାପ୍ତପତିକା ଦୁହିତା ଯେପରି ପୈତୃକ ଧନ ପ୍ରାର୍ଥନା କରେ, ହେ ଇନ୍ଦ୍ର, ମୁଁ ସେହିପରି ଭଜନୀୟ ଧନ ପ୍ରାର୍ଥନା କରୁଅଛି ।

ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ, ପିତୃଗୃହରେ କନ୍ୟାମାନେ ଇଚ୍ଛା କଲେ ପିତାମାତାର ସେବା ନିମନ୍ତେ ବା ଇଚ୍ଛାପୂର୍ବକ ଆମରଣ ପିତୃଗୃହରେ ରହି ଭାଗର ଦାବି କରି ପାରୁଥିଲେ ।

ଅମାଜୁରଶ୍ଚିଦ୍ଭବଥୋ ଯୁବଂ ଭଗୋଽନାଶୋଶ୍ଚି
ଦବିତାରା ତାମସ୍ୟ ଚିତ୍ ।
ଅନ୍ଧସ୍ୟ ଚିନ୍ନାସତ୍ୟା କୃଶସ୍ୟ ବିଦ୍ୟୁବାମିଦାହୁ
ର୍ଭିଷଜା ରୁତସ୍ୟଚିତ୍ ।
(ଋ.–୧୦ । ୩୯ । ୩)

ହେ ନାସତ୍ୟ ଦୁହେଁ, ତୁମ୍ଭେ ଦୁଇ ଜଣ ପିତୃଗୃହରେ ବୃଦ୍ଧାବସ୍ଥା ପ୍ରାପ୍ତ ହେଉଥିବା ଦୁର୍ଭାଗିନୀ ସ୍ତ୍ରୀକୁ (ଘୋଷାକୁ) ଶୋଭନରୂପ ପରିଣୟଯୋଗ୍ୟ ପତି ଦାନ କରିଥିଲ ××××

ଉଦୀର୍ଷ୍ୱାତଃ ପତିବତୀ ହ୍ୟେଷା ବିଶ୍ୱାବସୁଂ ନମସା ଗୀର୍ଭିରୀଳେ ।

ଅନ୍ୟାମିଚ୍ଛ ପିତୃଷଦଂ ବ୍ୟକ୍ତାଂ ସତେ ଭାଗୋ ଜନୁଷା ତସ୍ୟ ବିଦ୍ଧି ॥

(ଋ.୧୦।୮୫।୨୧

ବିଶ୍ୱାବସୁର୍ନାମ ଗନ୍ଧର୍ବଃ କନ୍ୟାନାମଧିପତିଃ ।

(ସାୟନ)

ହେ ବିଶ୍ୱାବସୁ, ଏହି କନ୍ୟା ନିକଟରୁ ଉଠ । ଏହି କନ୍ୟା ପତିମତୀ ହୋଇ ସାରିଅଛି । ବିଶ୍ୱାବସୁଙ୍କୁ ନମସ୍କାର ଓ ସ୍ତୁତିଦ୍ୱାରା ସ୍ତବ କରୁଅଛି । ଆଉ ଯେଉଁ କନ୍ୟା ପିତୃକୁଳରେ ଥାଇ ବିବାହଲକ୍ଷଣଯୁକ୍ତା ହୋଇଅଛି ଜନ୍ମରୁ ତାଦୃଶ ପଦାର୍ଥ ତୁମ୍ଭର ଭାଗ କଳ୍ପନା ହୋଇଅଛି । ତାହାକୁ ଲାଭ କର ।

ଉଦୀର୍ଷ୍ୱାତୋ ବିଶ୍ୱାବସୋ ନମସେଳା ମହେହା ।
ଅନ୍ୟାମିଚ୍ଛ ପ୍ରଫର୍ବ୍ୟଂ ସଂ ଜାୟାଂ ପତ୍ୟା ସୃଜ ॥

(ଋ.୧୦।୮୫।୨୨)

"ପ୍ରଫର୍ବ୍ୟଂ ବୃହନ୍ନିତମ୍ବାଂ ।"

(ସାୟନ)

ହେ ବିଶ୍ୱାବସୁ, ଏହି ସ୍ଥାନରୁ ଗାତ୍ରୋତ୍ଥାନ କର । ନମସ୍କାରଦ୍ୱାରା ତୁମ୍ଭଙ୍କୁ ସ୍ତବ କରୁଅଛୁଁ । ତୁମ୍ଭେ ବୃହନ୍ନିତମ୍ବବତୀ କନ୍ୟାକୁ ଇଚ୍ଛା କର, ତାହା ନିମନ୍ତେ ପତି ସଂଯୋଗ କର ।

କିୟତୀ ଯୋଷା ମର୍ଯତୋ ବଧୂୟୋଃ
ପରିପ୍ରୀତାପନ୍ୟସା ବାର୍ଯେଣ ।
ଭଦ୍ରା ବଧୂର୍ଭବତୀ ଯତ୍ସୁ ପେଶାଃ
ସ୍ୱୟଂ ସା ମିତ୍ରଂ ବନୁତେ ଜନେଚିତ୍ ॥

(ଋ.୧୦।୨୭।୧୨

କେତେକ ସ୍ତ୍ରୀ ଅଛନ୍ତି, ଯେଉଁମାନେ ମନୁଷ୍ୟସମ୍ବନ୍ଧୀୟ ଭୋଗରେ ଆସକ୍ତ ହୋଇ ପୁରୁଷ ପ୍ରତି ଅନୁରକ୍ତ ହୁଅନ୍ତି । ଯେଉଁ ସ୍ତ୍ରୀଲୋକ ଭଦ୍ରା, ଶୋଭନରୂପା, ସେ ମନୁଷ୍ୟମାନଙ୍କ ମଧ୍ୟରୁ ପ୍ରିୟଜନକୁ ପତିରୂପେ ବରଣ କରେ ।

ଏତାଦୃଶ ବହୁଳ ପ୍ରମାଣ ଋଗ୍‌ବେଦରେ ଦେଖାଯାଏ । ଯହିଁରୁ ସ୍ପଷ୍ଟ ଜଣାଯାଉଅଛି ଯେ, ପିତୃଗୃହରେ କନ୍ୟା ଋତୁମତୀ ହୋଇ ରହିଲେ ସେଥି ନିମନ୍ତେ ପିତା ପାପଯୁକ୍ତ ହୁଅନ୍ତି ନାହିଁ କିମ୍ବା କନ୍ୟାପିତାର ପୂର୍ବପୁରୁଷଗଣ ପ୍ରତି ମାସରେ ଋତୁସ୍ରାବ ପାନ କରନ୍ତି ନାହିଁ । ଯେବେ ବୈଦିକ ଯୁଗର କନ୍ୟାମାନଙ୍କର ଋତୁସ୍ରାବ ପିତୃମୁଖରେ ପଡୁ ନ ଥିଲା, ତେବେ ଏ ଯୁଗରେ ପିତୃଗଣଙ୍କ ମୁଖରେ ପଡ଼ିବ କାହିଁକି ? ବୈଦିକ ଯୁଗରେ ପିତୃଲୋକ ଓ ଏ ଯୁଗର ପିତୃଲୋକ ମଧ୍ୟରେ ପାର୍ଥକ୍ୟ ଅଛି କି ? ଏହା କେବଳ ଲୋକଙ୍କୁ ଭୟ ଦେଖାଇବା ନିମନ୍ତେ କୌଣସି କୌଣସି ସ୍ମୃତିକର୍ତ୍ତା ଶପଥ ଦେଇଅଛନ୍ତି, ଏଥିରେ ସନ୍ଦେହ ନାହିଁ ।

ଅତ୍ରିଗୋତ୍ରୀୟମାନଙ୍କର ପ୍ରବର ଅର୍ଚ୍ଚନାନ ନିଜ ପୁତ୍ର ଶ୍ୟାବାଶ୍ୱଙ୍କ ନିମନ୍ତେ ରଥବୀତିଙ୍କ ଯୁବତୀ କନ୍ୟାଙ୍କୁ ପ୍ରାର୍ଥନା କଲେ । ରଥବୀତି ସ୍ୱୀକୃତ ଥିଲେ ମଧ୍ୟ ରଥବୀତିଙ୍କ ପତ୍ନୀ ଏହି ବିବାହରେ ଅସମ୍ମତ ହୋଇ କହିଲେ ଯେ, ଶ୍ୟାବାଶ୍ୱ ମନ୍ତ୍ରଦ୍ରଷ୍ଟା ବା ଋଷି ନୁହନ୍ତି, ଏଣୁ ତାଙ୍କୁ କନ୍ୟା ଦେବେ ନାହିଁ । ଏଣୁ ସପୁତ୍ର ଅର୍ଚ୍ଚନାନ ମରୁତଙ୍କୁ ଆରାଧନା କଲେ । ମରୁତଗଣ ପ୍ରସନ୍ନ ହୋଇ ଶ୍ୟାବାଶ୍ୱଙ୍କୁ ମନ୍ତ୍ରଦ୍ରଷ୍ଟା ଓ ଋଷି କଲେ । ଶ୍ୟାବାଶ୍ୱ ରଥବୀତିଙ୍କ କନ୍ୟାଙ୍କର ପାଣି ଗ୍ରହଣ କଲେ । 'ବୃହଦ୍ଦେବତା' ଗ୍ରନ୍ଥରେ ଏହି ପ୍ରସଙ୍ଗ ବିସ୍ତୃତ ଭାବରେ ଲିଖିତ ହୋଇଅଛି ।

ମହାଶ୍ୱେତା, ଦେବଯାନୀ, ଶକୁନ୍ତଳା ପ୍ରଭୃତି ଅନେକ ପୁରାଣପ୍ରସିଦ୍ଧା ଭାରତୀୟ ଲଳନା ପିତୃଗୃହରେ ଋତୁମତୀ ହୋଇ ବାସ କରୁଥିଲେ, ଏହା କାହାକୁ ଅବିଦିତ ? ଯେବେ ଋତୁମତୀ କନ୍ୟା ପିତୃଗୃହରେ ରହିଲେ ପିତୃକୁଳର ପାପ, ଅପମାନ ଓ ଅମର୍ଯ୍ୟାଦା ହୁଏ, ତେବେ ଶୁକ୍ରାଚାର୍ଯ୍ୟ, କଣ୍ୱ ପ୍ରଭୃତି ଋଷିମାନେ ଏତାଦୃଶ ପାପଜନକ କାର୍ଯ୍ୟ କରିବାକୁ ସାହସୀ ହୁଅନ୍ତେ କି ? ଆଜିକାଲି ବ୍ରାହ୍ମଣଙ୍କ ଅପେକ୍ଷା ସେ କାଳର ବ୍ରାହ୍ମଣମାନଙ୍କର ପାପଭୟ କୌଣସି ଅଂଶରେ କମ୍ ଥିଲା କି ? ତେବେ ଋତୁମତୀ କନ୍ୟାକୁ ଗୃହରେ ରକ୍ଷା କରିବାକୁ ଆଧୁନିକ ବ୍ରାହ୍ମଣ ଜାତିର ଏଡ଼େ ପାପଭୟ କାହିଁକି ? ମନୁ ତ କହିଅଛନ୍ତି :—

କାମମାମରଣାତ୍ତିଷ୍ଠେଦ୍‌ଗୃହେ କନ୍ୟର୍ତ୍ତୁ ମତ୍ୟପି ।
ନଚୈବୈନାଂ ପ୍ରଯଚ୍ଛେତ୍ତୁ ଗୁଣହୀନାୟ କର୍ହିଚିତ୍ ॥

(ମନୁ :୯।୮୯)

କନ୍ୟାପକ୍ଷେ ଋତୁମତୀ ହୋଇ ଆମରଣ ଗୃହରେ ରହିବ, ତଥାପି ଗୁଣହୀନ ବ୍ୟକ୍ତିକୁ କନ୍ୟା ଦାନ କରିବ ନାହିଁ ।

ଯଦି ଋତୁମତୀ କନ୍ୟା ଗୃହରେ ରହିଲେ ପିତୃଗଣ ଋତୁସ୍ରାବଭାକ୍ ହେବା ସ୍ୱତଃସିଦ୍ଧ, ତେବେ ମନୁ ଉପରୋକ୍ତ ଶ୍ଳୋକ ଲେଖି ପାପପନ୍ଥାର ଆବିଷ୍କର୍ତ୍ତା ହୋଇ ନ ଥାନ୍ତେ । ପୁଣି ଲେଖିଅଛନ୍ତି :—

ତ୍ରୀଣି ବର୍ଷାଣ୍ୟୁଦୀକ୍ଷେତ କୁମାର୍ଯୃତୁମତୀ ସତୀ ।
ଊର୍ଦ୍ଧ୍ୱଂ ତୁ କାଳାଦେତସ୍ମାଦ୍ ବିନ୍ଦେତ ସଦୃଶଂ ପତିମ୍ ॥

(ମନୁ : ୯।୯୦)

କୁମାରୀ ଋତୁମତୀ ହେଲା ପରେ ତିନି ବର୍ଷ ପ୍ରତୀକ୍ଷା କରିବ, ତହିଁ ଉତ୍ତାରୁ ନିଜେ ସମାନଗୁଣଯୁକ୍ତ ବରକୁ ବରଣ କରିବ ।

ଉପରୋକ୍ତ ପ୍ରମାଣ ଯୋଡ଼ିକରୁ ସ୍ପଷ୍ଟ ଜଣାଯାଉଅଛି ଯେ, ପିତୃଗୃହରେ କନ୍ୟା ଋତୁମତୀ ହୋଇ ରହିବାରେ କିଛି ହିଁ ଦୋଷ ନାହିଁ । ଏହା ବେଦସମ୍ମତ ଓ ମନୁସମ୍ମତ । ତଥାପି ଯଦି ବ୍ରାହ୍ମଣମାନେ ଯୁବତୀ କନ୍ୟା ଗୃହରେ ଅବିବାହିତା ହୋଇ ରହିଲେ ମହାପାପ ବୋଲି ମନେ କରନ୍ତି, ତାହାହେଲେ ନାଚାର ।

ପ୍ରସଙ୍ଗକ୍ରମେ ଏହି ଅଧ୍ୟାୟରେ ନାନା ବିଷୟର ଅବତାରଣା କରାଯାଇଥିଲେ ମଧ୍ୟ ସେଥିମଧ୍ୟରୁ ଦୁଇଗୋଟି ବିଷୟର ପୁନରୁଲ୍ଲେଖ ହେବାର ପ୍ରୟୋଜନ । ପ୍ରଥମଟି ଏହି ଯେ, ବ୍ରହ୍ମଚର୍ଯ୍ୟପାଳନ ଦ୍ୱିଜାତିର ଅବଶ୍ୟ କର୍ତ୍ତବ୍ୟ । ଏତଦ୍ୱାରା ବୀର୍ଯ୍ୟ ପୁଷ୍ଟ ହୁଏ । ଊର୍ଦ୍ଧ୍ୱରେତା ପୁରୁଷର ସନ୍ତାନସନ୍ତତି ସୁପୁଷ୍ଟ, ସବଳକାୟ, ସୁସ୍ଥ ଓ ଦୀର୍ଘଜୀବୀ ହୁଅନ୍ତି । ବ୍ରହ୍ମଚର୍ଯ୍ୟଦ୍ୱାରା ସଂଯମଶିକ୍ଷା ହୁଏ । ସଂଯମ ମନୁଷ୍ୟ ଜୀବନର ମାନସିକ ବଳର ମେରୁଦଣ୍ଡ । ବ୍ରହ୍ମଚର୍ଯ୍ୟଦ୍ୱାରା ବଳବୀର୍ଯ୍ୟ ଲାଭ କରାଯାଏ ଏବଂ ଏହାଦ୍ୱାରା ମନୁଷ୍ୟ ପର ଜୀବନରେ ପ୍ରକୃତ ମନୁଷ୍ୟତା ଉପାର୍ଜନ କରି ଇହ ଜୀବନକୁ ସୁଖସ୍ୱାଚ୍ଛନ୍ଦ୍ୟରେ କଟାଇପାରେ ଏବଂ ଭବିଷ୍ୟତ୍ ବଂଶ ରକ୍ଷା ନିମନ୍ତେ ଉପଯୁକ୍ତ ପୁତ୍ର ରଖି ଆତ୍ମପ୍ରସାଦ ପ୍ରାପ୍ତ ହୋଇ ଇହ ସଂସାର ତ୍ୟାଗ କରେ । ଏ ହେତୁରୁ ବ୍ରହ୍ମଚର୍ଯ୍ୟାଶ୍ରମକୁ ଆର୍ଯ୍ୟମାନେ ଉତ୍କୃଷ୍ଟ ଆଶ୍ରମ ବୋଲି ମାନିଅଛନ୍ତି । ବର୍ଣ୍ଣାଶ୍ରମଧର୍ମ ମଧ୍ୟରେ ପୁଣି ଗୃହସ୍ଥାଶ୍ରମ ଶ୍ରେଷ୍ଠ । ମନୁଷ୍ୟ ଶ୍ରେଷ୍ଠ ଗୃହସ୍ଥାଶ୍ରମୀ ହୋଇପାରିବ ବୋଲି ବ୍ରହ୍ମଚର୍ଯ୍ୟାଶ୍ରମର ପ୍ରୟୋଜନ ।

ଦ୍ୱିତୀୟ ପ୍ରଧାନ ବିଷୟ, ଯାହାର ପୁନରାବୃତ୍ତି ଆବଶ୍ୟକ ହୋଇଅଛି, ତାହା ଏହି ଯେ ବୈଦିକ ଯୁଗରୁ ଆରମ୍ଭି ମାନବଧର୍ମ ପ୍ରଚଳନ ଯାଏ ଯୁବତୀ କନ୍ୟା ପିତୃଗୃହରେ ବାସ କରୁଥିବାର ପ୍ରମାଣ ଉପରେ ଯଥେଷ୍ଟ ରୂପେ ଦିଆ ଯାଇଅଛି । ଋତୁମତୀ କନ୍ୟା ଗୃହରେ ଅବିବାହିତା ଅବସ୍ଥାରେ ରହିଲେ ତହିଁରେ ପିତୃକୁଳର କୌଣସି ପାପ ବା ଦୋଷ ହୁଏ ନାହିଁ, ଏହା ଉଦ୍ଧୃତ ପ୍ରମାଣରୁ ସ୍ପଷ୍ଟ ଜଣାଯାଉଅଛି ।

ପୁରୁଷମାନଙ୍କ ପ୍ରତି ବ୍ରହ୍ମଚର୍ଯ୍ୟର ବିଧାନ ଅଛି, ସ୍ତ୍ରୀମାନଙ୍କ ନିମନ୍ତେ କି ବ୍ରହ୍ମଚର୍ଯ୍ୟର ବିଧାନ ଥିଲା ? ଯଦ୍ୟପି ଗୃହସ୍ଥାଶ୍ରମର ପ୍ରୟୋଜନ ନିମନ୍ତେ ବୀର୍ଯ୍ୟବୃଦ୍ଧି ଓ ସଂଯମାଦିର ପ୍ରୟୋଜନ, ତେବେ ସ୍ତ୍ରୀମାନଙ୍କ ପକ୍ଷରେ ମଧ୍ୟ ବିବାହ ପୂର୍ବରୁ ବ୍ରହ୍ମଚର୍ଯ୍ୟ ଓ ସଂଯମର ପ୍ରୟୋଜନ । ପୂର୍ବ କାଳରେ ଏହା ପ୍ରଚଳିତ ଥିଲା । ବାଲ୍ୟବିବାହ ପ୍ରଥା ପ୍ରଚଳିତ ହେଲାଦିନରୁ ତାହା ରହିତ ହୋଇଅଛି । ପୂର୍ବକାଳରେ କନ୍ୟାମାନଙ୍କର ବ୍ରହ୍ମଚର୍ଯ୍ୟ ଏବେ ବିଧବାମାନଙ୍କ ଉପରେ ଅଯଥାଭାବରେ ଲଦି ଦିଆଯାଉଅଛି । ଷୋଡ଼ଶ ବର୍ଷ ପର୍ଯ୍ୟନ୍ତ କନ୍ୟାମାନଙ୍କର ବ୍ରହ୍ମଚର୍ଯ୍ୟ କରିବାର ରୀତି ଥିଲା । ବେଦପାଠ କରିବାର ରୀତି ଥିଲା । ଏବେ ସ୍ତ୍ରୀମାନେ ବେଦ ପଢ଼ିବାର ନିଷେଧ । ସ୍ତ୍ରୀମାନେ ବ୍ରହ୍ମଚାରିଣୀ ହୋଇ ଚିର ଜୀବନ ଅତିବାହିତ କରିବାର ଉଦାହରଣ ବିରଳ ନୁହେଁ । ସ୍ତ୍ରୀମାନେ ବେଦ ପାଠ କରି ପୁରୁଷ ସହିତ ଶାସ୍ତ୍ରାଳାପ କରିବା ଉଦାହରଣ ମଧ୍ୟ ବିରଳ ନୁହେଁ । ଏବେ ''ସ୍ତ୍ରୀଶୂଦ୍ରୌ ନାଧୀୟାତାଂ'' ଏହି ରାଣଦ୍ୱାରା ସ୍ତ୍ରୀଜାତିକୁ ଶାସ୍ତ୍ରାଲୋଚନାରୁ ପୁରୁଷଜାତି ରହିତ କରିଅଛନ୍ତି । ଗୋଟିଏ ଯୋଡ଼ିଏ ଉଦାହରଣ ଦେଲେ ଅପ୍ରାସଙ୍ଗିକ ହେବ ନାହିଁ ।

ଯାଜ୍ଞବଲ୍କ୍ୟଙ୍କର ଦୁଇ ପତ୍ନୀ ଥିଲେ— ମୈତ୍ରେୟୀ ଓ କାତ୍ୟାୟନୀ । 'ତୟୋର୍ହ ମୈତ୍ରେୟୀ ବ୍ରହ୍ମବାଦିନୀ ବଭୂବ' । ମୈତ୍ରେୟୀ ବ୍ରହ୍ମବାଦିନୀ ଥିଲେ । ମୈତ୍ରେୟୀଙ୍କ ସ୍ୱାମୀ ଯାଜ୍ଞବଲ୍କ୍ୟ ଯଦି ସ୍ମୃତିକର୍ତ୍ତା ଯାଜ୍ଞବଲ୍କ୍ୟ ହୋଇଥାନ୍ତେ, ତାହାହେଲେ ସ୍ତ୍ରୀମାନଙ୍କ ପ୍ରତି ଅସମ୍ମାନଜନକ ବ୍ୟବସ୍ଥା ଲେଖି ନ ଥାନ୍ତେ ।

ଗାର୍ଗୀ ବେଦ ଓ ଉପନିଷଦ୍ ଶାସ୍ତ୍ରାର୍ଥଦ୍ୱାରା ଯାଜ୍ଞବଲ୍କ୍ୟଙ୍କୁ ଅସ୍ତବ୍ୟସ୍ତ କରି ନ ଥିଲେ କି ? ଏବଂ ସୁଲଭା ଶାସ୍ତ୍ରାର୍ଥଦ୍ୱାରା ଜନକଙ୍କୁ ସହଜରେ ମୁକ୍ତି ଦେଇ ନ ଥିଲେ କି ? ସେ ତ ଦୂରର କଥା । ମଣ୍ଡନ ମିଶ୍ରଙ୍କ ସ୍ତ୍ରୀ ବିଦ୍ୟାଧରୀ ଶଙ୍କରାଚାର୍ଯ୍ୟଙ୍କ ସହିତ ଶାସ୍ତ୍ରାଲୋଚନା କରିବାକୁ ପ୍ରବୃତ୍ତ ହେବାରୁ ଶଙ୍କରାଚାର୍ଯ୍ୟ କହିଲେ ଯେ, ମହାଯଶସ୍ୱୀ ଲୋକ ସ୍ତ୍ରୀ ସହିତ ଶାସ୍ତ୍ରାଳାପ କରିବା ଉଚିତ ନୁହେଁ । ବିଦ୍ୟାଧରୀ ଉତ୍ତର ଦେଲେ ଯେ, ଯେବେ ଗାର୍ଗୀଙ୍କ ସହିତ ଯାଜ୍ଞବଲ୍କ୍ୟ ଏବଂ ସୁଲଭାଙ୍କ ସହିତ ଜନକ ଶାସ୍ତ୍ରାଳାପ କରିବାକୁ କୁଣ୍ଠିତ ନ ହେଲେ, ତେବେ ତୁମ୍ଭେ ମୋ ସଙ୍ଗେ ଶାସ୍ତ୍ରାଳାପ କରିବାକୁ କୁଣ୍ଠିତ କାହିଁକି ? ଶଙ୍କରଙ୍କର ସ୍ତ୍ରୀଜାତି ପ୍ରତି ହେୟଜ୍ଞାନ ଛାଡ଼ିଲା, ଶାସ୍ତ୍ରାର୍ଥ ଆରମ୍ଭ କଲେ । ତେବେ ସ୍ତ୍ରୀ ବେଦ ପଢ଼ିଲେ ବିଦୁଷୀ ହେଲେ ଦୋଷ, ଏ କଥାର ପ୍ରଚାର ଅତି ଅର୍ବାଚୀନ ନୁହେଁ କି ?

ମହାଭାଷ୍ୟ ଅନୁସାରେ 'ଆପିଶାଳମଧୀତେ ବ୍ରାହ୍ମଣୀ ଆପିଶାଳା' ଅର୍ଥାତ୍ ଯେଉଁ ବ୍ରାହ୍ମଣୀ ଆପିଶାଳ ଶାଖା ପଢ଼ନ୍ତି, ସେ 'ଆପିଶାଳା ।'

ଯେ ବେଦ ଅଧ୍ୟୟନ ବା ବେଦଶାଖା ଅଧ୍ୟୟନ କରାଏ, ସେ ଉପଧ୍ୟାୟ । ଯେଉଁ ସ୍ତ୍ରୀ ବେଦଶାଖା ବା ବେଦ ପଢ଼ାଏ, ସେ ଉପାଧ୍ୟାୟା ବା ଉପାଧ୍ୟାୟୀ (ଉପେତ୍ୟାଧୀୟତେଽସ୍ୟାଃ); ଉପଧ୍ୟାୟର ସ୍ତ୍ରୀକୁ କିନ୍ତୁ ଉପାଧ୍ୟାୟାନୀ ବୋଲାଯାଏ ।

ଏଥିରୁ କି ସ୍ପଷ୍ଟ ପ୍ରତୀତି ଜନ୍ମୁ ନାହିଁ ଯେ, ସ୍ତ୍ରୀମାନେ ବେଦାଧ୍ୟୟନ କରୁଥିଲେ ଓ ବେଦପାଠ ମଧ୍ୟ କରାଉଥିଲେ । ପିତୃଗୃହରେ ରହି ବ୍ରହ୍ମଚର୍ଯ୍ୟ ଆଚରଣଦ୍ୱାରା ବିଦ୍ୟାଭ୍ୟାସ ନ କଲେ ଏତାଦୃଶ ବିଦୂଷୀ ହେବା ସମ୍ଭବ କି ? ଏହାଛଡ଼ା ସ୍ତ୍ରୀମାନେ ବ୍ରହ୍ମଚର୍ଯ୍ୟ ସାଧନାରେ ତତ୍ପର ରହି ଇହଧାମ ତ୍ୟାଗ କରିଥିବାର ମଧ୍ୟ ଉଦାହରଣ ଶାସ୍ତ୍ରରେ ବିରଳ ନୁହେଁ । ଚନ୍ଦ୍ରସେନଦୁହିତା ମନ୍ଦୋଦରୀଙ୍କୁ ପିତା ମାତା ବିବାହ ଦେବାର ଉଦ୍‌ଯୋଗ କଲାବେଳେ ସେ ମାତାଙ୍କୁ କହିଲେ :—

ନାଽହଂ ପତିଂ କରିଷ୍ୟାମି ନେଚ୍ଛା ମେଽସ୍ତି ପରିଗ୍ରହେ ।
କୌମାର୍ଯ୍ୟଂ ବ୍ରତମାସ୍ଥାୟ କାଳଂ ନେଷ୍ୟାମି ସର୍ବଥା । ୧୫
ସ୍ୱାତନ୍ତ୍ର୍ୟେଣ ଚରିଷ୍ୟାମି ତପସ୍ତୀବ୍ରଂ ସଦୈବ ହି ।
ପାରତନ୍ତ୍ର୍ୟଂ ପରଂ ଦୁଃଖଂ ମାତଃ ସଂସାରସାଗରେ । ୧୬
ଦେବୀ ଭାଗବତୀ, ୪ମ ସ୍କନ୍ଧ, ୧୭ଅଧ୍ୟାୟ ।

କନ୍ୟାର ଇଚ୍ଛାବିରୋଧରେ ପିତା ମାତା ବିବାହ ଦେଲେ ନାହିଁ ।

ଶ୍ରୀମଦ୍ଭାଗବତ ୪ର୍ଥ ସ୍କନ୍ଧ ୧ ଅଧ୍ୟାୟ ୫୦ ଶ୍ଳୋକରେ ଲିଖିତ ଅଛି ଯେ, ସ୍ୱଧାଙ୍କର ଦୁଇ କନ୍ୟା, ନାମ ବୟୁନା ଓ ଧାରିଣୀ–'ଉଭେ ତେ ବ୍ରହ୍ମବାଦିନ୍ୟୌ ଜ୍ଞାନବିଜ୍ଞାନପାରଗେ'। ବୟୁନା ଓ ଧାରିଣୀ ଜ୍ଞାନବିଜ୍ଞାନ ପାରଗାମିନୀ ହୋଇ ବ୍ରହ୍ମବାଦିନୀ ହେଲେ, ଅର୍ଥାତ୍ ଜୀବନ୍ମୁକ୍ତା ଥିବାରୁ ଏମାନଙ୍କର ପୁତ୍ର କନ୍ୟା ହୋଇ ନାହାନ୍ତି । ଅପାଳା, ବିଶ୍ୱବାରା ବ୍ରହ୍ମବାଦିନୀ ଥିଲେ ।

କନ୍ୟାମାନେ ଇଚ୍ଛା କଲେ ଚିର କୌମାର୍ଯ୍ୟ ବ୍ରତ ଧାରଣ କରି ପିତୃଗୃହରେ ରହି ପାରୁଥିଲେ । ପିତାମାତା କନ୍ୟାର ଇଚ୍ଛା ବିରୋଧରେ ବିବାହ ଦେଉ ନ ଥିଲେ ।

ଏକବର୍ଷଠାରୁ ଆରମ୍ଭି ଦଶ ବର୍ଷର କନ୍ୟାର ବିବାହ ସମ୍ବନ୍ଧୀୟ ଜ୍ଞାନ ଥାଏ କି ? ଏବଂ ଭବିଷ୍ୟତ ଜ୍ଞାନ ଜନ୍ମିଥାଏ କି ଯେ ସେ ନିଜ ବିବାହ ସମ୍ବନ୍ଧରେ ମତ ଦେଇ ପାରିବ ? ପ୍ରାପ୍ତବୟସ୍କା ନ ହେଲେ ନିଜର ଭବିଷ୍ୟତ୍ ଚିନ୍ତା କରିବା ଅସମ୍ଭବ । ଏହା ଛଡ଼ା ପୁରାକାଳରେ କୁମାରୀମାନଙ୍କର ମୌଞ୍ଜୀବନ୍ଧନ, ବେଦାଧ୍ୟୟନ, ସାବିତ୍ରୀଗ୍ରହଣ ରୀତିମତ ହେଉଥିଲା, ଏବେ ତାହା ହେଉ ନାହିଁ । କାରଣ କଳିଯୁଗରେ ବିବାହ ହିଁ ସ୍ତ୍ରୀର ସଂସ୍କାର ବୋଲି ଜଣକେତେ ସ୍ମୃତିକର୍ତ୍ତା ଲେଖିଗଲେ ଏବଂ ଯାହା ବାଲ୍ୟବିବାହର ପ୍ରତିଷେଧକ ବଚନ, ସେସବୁ 'ଯୁଗାନ୍ତର ବିଷୟ' ବୋଲି ଗୋଟିଏ ଯୁକ୍ତିହୀନ ବାକ୍ୟ ବ୍ୟାଖ୍ୟାକର୍ତ୍ତାମାନେ ଲେଖି ଯାଇଅଛନ୍ତି ଏବଂ ଏହି ବାକ୍ୟଟିକି ଆଧୁନିକ ବ୍ରାହ୍ମଣମାନେ ବେଦବାକ୍ୟଠାରୁ ମଧ୍ୟ ଶ୍ରେଷ୍ଠ ବୋଲି ମନେ କରନ୍ତି ।

ବ୍ରହ୍ମଚର୍ଯ୍ୟ ସମ୍ବନ୍ଧରେ ଯଥେଷ୍ଟ ଲେଖାଯାଇଅଛି, ତହିଁର ପୁନରାଲୋଚନା ନିଷ୍ପ୍ରୟୋଜନ । ଗୃହସ୍ଥଧର୍ମ ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କରାଯାଉ ।

ବ୍ରହ୍ମଚର୍ଯ୍ୟ ଉତ୍ତାରୁ ଯେ ନିଶ୍ଚୟ ଗୃହସ୍ଥଧର୍ମ କରଣୀୟ, ଏଥିରେ କାହାରି ମତଦ୍ୱୈଧ ନାହିଁ । ଯେଉଁମାନେ ଗୃହସ୍ଥଧର୍ମ ନ କରି ଗୃହତ୍ୟାଗୀ ହେବେ, ସେମାନଙ୍କର କଥା ସ୍ୱତନ୍ତ୍ର; ତତ୍‌ସମ୍ବନ୍ଧରେ ଏଠାରେ କିଛି ହିଁ ଆଲୋଚନା କରିବାର ପ୍ରୟୋଜନ ନାହିଁ ।

ବେଦାନଧୀତ୍ୟ ବେଦୌ ବା ବେଦଂ ବାପି ଯଥାକ୍ରମଂ
ଅବିପ୍ଲୁତବ୍ରହ୍ମଚର୍ଯ୍ୟୋ ଗୃହସ୍ଥାଶ୍ରମ ମାବସେତ୍ ।
(ମନୁ । ୩ । ୨)

ବେଦମାନଙ୍କୁ, ଯୋଡ଼ିଏ ବେଦ ବା ଗୋଟିଏ ବେଦ ଯଥାକ୍ରମରେ ଅଧ୍ୟୟନ କରି ଅବିନଷ୍ଟବ୍ରହ୍ମଚାରୀ ଗୃହସ୍ଥାଶ୍ରମ କରିବ ।

ଗୁରୁଣାନୁମତଃ ସ୍ନାତ୍ୱା ସମାବୃତ୍ତୋ ଯଥାବିଧି ।
ଉଦ୍‌ବହେତ ଦ୍ୱିଜୋଭାର୍ଯ୍ୟାଂ ସବର୍ଣ୍ଣାଂ ଲକ୍ଷଣାନ୍ୱିତାଂ ।
ମନୁ । ୩ । ୪

ଗୁରୁଙ୍କ ଅନୁମତିରେ ଗୃହ୍ୟୋକ୍ତ ବିଧି ଅନୁସାରେ ସ୍ନାନ କରି ସମାବର୍ତ୍ତନପୂର୍ବକ ଦ୍ୱିଜ ସବର୍ଣ୍ଣା ଲକ୍ଷଣାନ୍ୱିତା ଭାର୍ଯ୍ୟାକୁ ଉଦ୍‌ବାହ କରିବ ।

ଅବିପ୍ଲୁତବ୍ରହ୍ମଚର୍ଯ୍ୟୋ ଲକ୍ଷଣ୍ୟାଂ ସ୍ତ୍ରୀୟମୁଦ୍‌ବହେତ୍ ।
ଅନନ୍ୟପୂର୍ବିକାଂ କାନ୍ତାମସପିଣ୍ଡାଂ ଯବୀୟସୀଂ ॥
ଯାଜ୍ଞବଲ୍କ୍ୟ ୩ । ୫୨

ଅବିନଷ୍ଟବ୍ରହ୍ମଚର୍ଯ୍ୟ ଦ୍ୱିଜ ସବର୍ଣ୍ଣା ଲକ୍ଷଣାନ୍ୱିତା ଅନନ୍ୟପୂର୍ବିକା ଅସପିଣ୍ଡା ଭାର୍ଯ୍ୟାକୁ ଉଦ୍‌ବାହ କରିବ ।

ଚତୁର୍ଥ ମାୟୁଷୋ ଭାଗମୁଷିତ୍ୱାଦ୍ୟଂ ଗୁରୌ ଦ୍ୱିଜଃ ।
ଦ୍ୱିତୀୟମାୟୁଷୋ ଭାଗଂ କୃତଦାରୋ ଗୃହେ ବସେତ୍ ।
ମନୁ ୪ । ୧

ଗୁରୁକୁଳରେ ଆୟୁଷର ପ୍ରଥମ ଚତୁର୍ଥଭାଗ ଯାପନ କରି ଦ୍ୱିତୀୟ ଆୟୁଷଭାଗରେ କୃତଦାର ହୋଇ ଗୃହରେ ରହିବ ।

ବିବାହଭିନ୍ନ ଗୃହସ୍ଥାଶ୍ରମ ହୋଇ ନ ପାରେ ।

"ଗୃହଞ୍ଚ ଗୃହିଣୀମାହୁସ୍ତଦ୍‌ବିବାହୋଽପ୍ୟଥୋଚ୍ୟତେ ।"

ଗୃହସ୍ଥର ଧର୍ମ:—

ସ୍ୱଦାରନିରତୋନିତ୍ୟଂ ଶିଷ୍ଟାଚାରୋ ଜିତେନ୍ଦ୍ରିୟଃ ।
ପଞ୍ଚଭିଶ୍ଚ ମହାଯଜ୍ଞୈଃ ଶ୍ରଦ୍ଧାନୋ ଯଜେଦିହ ।
ଦେବତାତିଥିଶିଷ୍ଟାଶୀ ନିରତୋ ବେଦକର୍ମସୁ ।
ଇଜ୍ୟାପ୍ରଦାନଯୁକ୍ତଶ୍ଚ ଯଥାଶକ୍ତି ଯଥାବିଧି ।

ଦ୍ୱିଜାତିଙ୍କର ଚାରିଗୋଟି ଆଶ୍ରମ; ଯଥା– ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥ, ଭିକ୍ଷୁକ । ଗୃହସ୍ଥାଶ୍ରମ ସମସ୍ତ ଆଶ୍ରମ ଅପେକ୍ଷା ଶ୍ରେଷ୍ଠ ।

"ଗୃହସ୍ଥୋ ବ୍ରହ୍ମଚାରୀ ଚ ବାନପ୍ରସ୍ଥୋଽଥ ଭିକ୍ଷୁକଃ ।
ଚତ୍ୱାର ଆଶ୍ରମାଃ ପ୍ରୋକ୍ତାଃ ସର୍ବେ ଗାର୍ହସ୍ଥ୍ୟମୂଳକାଃ ॥"
ଯଥା ବାୟୁଂ ସମାଶ୍ରିତ୍ୟ ବର୍ତ୍ତନ୍ତେ ସର୍ବଜନ୍ତବଃ ।
ତଥା ଗୃହସ୍ଥମାଶ୍ରିତ୍ୟ ବର୍ତ୍ତନ୍ତେ ସର୍ବ ଆଶ୍ରମାଃ ॥
ଯସ୍ମାତ୍ତ୍ରୟୋଽପ୍ୟାଶ୍ରମିଣୋ ଜ୍ଞାନେନାନ୍ନେନ ଚାନ୍ୱହଂ ।
ଗୃହସ୍ଥେନୈବ ଧାର୍ଯ୍ୟନ୍ତେ ତସ୍ମାଦ୍‌ଜ୍ୟେଷ୍ଠାଶ୍ରମୋ ଗୃହୀ ॥
(ମନୁ : ୩ । ୭୭ । ୭୮)

ଗୃହସ୍ଥାଶ୍ରମ ସମସ୍ତ ଆଶ୍ରମ ଅପେକ୍ଷା ଶ୍ରେଷ୍ଠ । ବିଦ୍ୟାଭ୍ୟାସ ଓ ବ୍ରହ୍ମଚର୍ଯ୍ୟ ଉତ୍ତାରୁ ଗୃହସ୍ଥାଶ୍ରମ କରିବା ଅବଶ୍ୟ କର୍ତ୍ତବ୍ୟ, ଏହା ଏକ ବାକ୍ୟରେ ଶ୍ରୁତି, ସ୍ମୃତି ଉପଦେଶ ଦେଉଅଛନ୍ତି । ବିବାହ ବ୍ୟତୀତ ଗୃହସ୍ଥାଶ୍ରମରେ ପ୍ରବେଶ କରାଯାଇ ନ ପାରେ ଏବଂ ପତ୍ନୀ ଭିନ୍ନ ଗୃହସ୍ଥାଶ୍ରମ ହୋଇ ନ ପାରେ । ପତ୍ନୀ ଭିନ୍ନ ଯାଗଯଜ୍ଞାଦି ଏବଂ ଗାର୍ହସ୍ଥ୍ୟ ନିତ୍ୟନୈମିତ୍ତିକ କ୍ରିୟା ସମ୍ପନ୍ନ ହୋଇ ନ ପାରେ । ସୁତରାଂ ଗୃହସ୍ଥାଶ୍ରମ ଅର୍ଥ ପତି ପତ୍ନୀ ଏକତ୍ର ହୋଇ ଗୃହ୍ୟସୂତ୍ରୋକ୍ତ ପ୍ରମାଣେ ଦୈନନ୍ଦିନ ଅବଶ୍ୟ କର୍ତ୍ତବ୍ୟ ଗୃହକାର୍ଯ୍ୟ ଚଳାଇବା । ଏହା ବେଦ ଓ ଧର୍ମଶାସ୍ତ୍ରର ମତ । ମାତ୍ର ଉପନୟନ ସଙ୍ଗେ ସଙ୍ଗେ ବେଦାରମ୍ଭ, ବେଦପାଠ ଶେଷ, ବ୍ରହ୍ମଚର୍ଯ୍ୟ ଶେଷ ଓ ସମାବର୍ତ୍ତନ, ଏ ଆଧୁନିକ ପିଲାଖେଳ । ଏକ ଦିନରେ ବେଦପାଠ ଓ ବ୍ରହ୍ମଚର୍ଯ୍ୟ ଉଦ୍‌ଯାପନ ଏବଂ ମୁକୁଟ ବାନ୍ଧି ସମାବର୍ତ୍ତନ ହେବା ବିଧି କେଉଁ ଶାସ୍ତ୍ରରେ ଅଛି, ତାହା ଜଣାପଡୁ ନାହିଁ । ଯେଉଁ ମାଣବକ ଏକ ଦିନରେ ବେଦପାଠ ଶେଷ କରିପାରେ , ଯେଉଁ ମାଣବକ ଏକ ମୁହୂର୍ତ୍ତକାଳ ବ୍ରହ୍ମଚର୍ଯ୍ୟ କରି ବା ବ୍ରହ୍ମଚାରୀ ହେଲି ବୋଲି ଭାବିନେଲା ମାତ୍ରକେ ବହୁ କଷ୍ଟସାଧ ସଂଯମଶିକ୍ଷା ଓ ବୀର୍ଯ୍ୟଲାଭ କରିପାରେ, ତାହା ପକ୍ଷରେ ଗୌରୀ କନ୍ୟାର ପାଣିଗ୍ରହଣ ଶୋଭନୀୟ । ମାତ୍ର ଏହା ଆର୍ଯ୍ୟସମ୍ମତ ନୁହେଁ । ଧର୍ମବିଦ୍ୱେଷ ଏହି 'ଅନାର୍ଯ୍ୟଜୁଷ୍ଟ ଅସ୍ୱର୍ଗ୍ୟ ଅକୀର୍ତ୍ତିକର' ଓ ଅନିଷ୍ଟକାରକ କୁଳପ୍ରଥାପ୍ରବର୍ତ୍ତନର ମୂଳ । ଆର୍ବାଚୀନ ଶାସ୍ତ୍ରକର୍ତ୍ତୃଗଣ ଓ ବ୍ୟାଖ୍ୟାକର୍ତ୍ତୃଗଣ ମୂଳ ଧର୍ମଶାସ୍ତ୍ରମାନଙ୍କୁ ଘୋଡ଼ାଇ ରଖି ନିଜ ମତ ପ୍ରଚାର କରିବା ନିମନ୍ତେ ନାନା ବାକ୍ୟ ରଚନା କରି ପ୍ରାଚୀନ ଗ୍ରନ୍ଥମାନଙ୍କରେ ସନ୍ନିବେଶିତ କରି ଲୋକଙ୍କୁ ଭ୍ରାନ୍ତ କରିବାର ଚେଷ୍ଟା କରିଅଛନ୍ତି ଏବଂ ବ୍ୟାଖ୍ୟାକର୍ତ୍ତାମାନେ ନୂତନ ପନ୍ଥାର ପଥିକ ଥିବାହେତୁ ନୂତନ ଓ ପୁରାତନର ସମନ୍ୱୟ କରିବାକୁ ଯାଇ ଅନର୍ଥ ଘଟାଇଅଛନ୍ତି । ଏହା ଯେ ଦେଶର ବିଜ୍ଞ ପଣ୍ଡିତମାନେ ବୁଝୁ ନାହାନ୍ତି, ତାହା ନୁହେଁ; ମାତ୍ର 'ଯାହା ଅଛି ତାହା ଥାଉ' ଏ କଥାକୁ ଯେଉଁମାନେ ଗଣ୍ଠିଧନ କରି ଧରିଅଛନ୍ତି, ସେମାନେ ଭଲ ମନ୍ଦ ବାଛିବାକୁ ପ୍ରୟାସ କରିବେ କାହିଁକି ?

ବ୍ରହ୍ମଚର୍ଯ୍ୟ ଉତ୍ତାରୁ ଗୃହସ୍ଥାଶ୍ରମ— ଗୃହସ୍ଥାଶ୍ରମ ଅର୍ଥ ପତି ପତ୍ନୀ ହୋଇ ଗୃହ ଚଳାଇବା ଓ ଧର୍ମକାର୍ଯ୍ୟ କରିବା । କେବଳ ପୁରୁଷ ଗୃହସ୍ଥାଶ୍ରମ କରି ନ ପାରେ, ଗୃହସ୍ଥାଶ୍ରମ ନିମନ୍ତେ ଜନନୀ, ଜାୟା, ପତ୍ନୀ, ଗୃହିଣୀ, ଭାର୍ଯ୍ୟାର ପ୍ରୟୋଜନ । ଗୌରୀ, ରୋହିଣୀର କଦାପି ପ୍ରୟୋଜନ ନାହିଁ । ଏହା କୌଣସି ବେଦ ଓ ପ୍ରାଚୀନ ଧର୍ମଶାସ୍ତ୍ର କହୁ ନାହାନ୍ତି । ଗୌରୀ ଓ ରୋହିଣୀ ଶବ୍ଦଯୋଡ଼ିକ ବୈଦିକ ଗ୍ରନ୍ଥରେ ଆଦୌ ନାହିଁ ।

ପୁରୁଷର ପିତା ମାତା ଯେପରି କନ୍ୟାର କୁଳ ଗୋତ୍ର ବଂଶ ଅନ୍ୱେଷଣ କରିବେ, କନ୍ୟାର ପିତା ମାତା ମଧ୍ୟ ବରର ସମସ୍ତ ବିଷୟ ଅନ୍ୱେଷଣ କରିବେ, ଏହା ସ୍ୱଭାବସିଦ୍ଧ ।

କେଉଁପରି କନ୍ୟା ବିବାହର ଅଯୋଗ୍ୟା, ତାହା ମନୁ ଦୁଇ ଗୋଟି ଶ୍ଳୋକରେ ବର୍ଣ୍ଣନା କରିଛନ୍ତି ।

ନୋଦ୍‌ବହେତ୍‌କପିଳାଂ କନ୍ୟାଂ
ନାଧିକାଙ୍ଗୀଂ ନ ରୋଗିଣୀଂ ।
ନାଲୋମିକାଂ ନାତିଲୋମାଂ ନ
ବାଚାଟାଂ ନ ପିଙ୍ଗଳାଂ ॥
ନର୍କ୍ଷବୃକ୍ଷନଦୀନାମ୍ନୀଂ ନାନ୍ତ୍ୟପର୍ବତନାମିକାଂ ।
ନ ପକ୍ଷ୍ୟହିପ୍ରେଷ୍ୟନାମ୍ନୀଂ ନ ଚ ଭୀଷଣନାମିକାଂ ॥

ତେବେ କେଉଁପରି କନ୍ୟା ବିବାହ ହେବା ଉଚିତ, ତାହା ତୃତୀୟ ଅଧ୍ୟାୟ ୧୦ ମ ଶ୍ଳୋକରେ ଲେଖିଅଛନ୍ତି ।

ଅବ୍ୟଙ୍ଗାଙ୍ଗୀଂ ସୌମ୍ୟନାମ୍ନୀଂ ହଂସବାରଣଗାମିନୀଂ ।
ତନୁଲୋମକେଶଦଶନାଂ ମୃଦ୍ୱଙ୍ଗୀମୁଦ୍‌ବହେତ୍ ସ୍ତ୍ରିୟଂ ॥

ବିକଳାଙ୍ଗୀ ହୋଇ ନ ଥିବ, ସୁଖଶ୍ରାବ୍ୟ ନାମ ଯାହାର ଥିବ, ହଂସ ପରି ଓ ହାତୀ ପରି ସୁନ୍ଦର ଚାଲି ଚାଲୁଥିବ, ଦେହର ଲୋମ ଓ ମୁଣ୍ଡର କେଶ ଏବଂ ଦାନ୍ତଗୁଡ଼ିକ ସ୍ଥୂଳ ହୋଇ ନ ଥିବ, ଏପରି କୋମଳାଙ୍ଗୀ କନ୍ୟାକୁ ଉଦ୍‌ବାହ କରିବ ।

ହଂସବାରଣଗାମିନୀ ପଦଟି ଲେଖିଲାବେଳେ ମନୁ କି ଗୌରୀ ଓ ରୋହିଣୀର ଭାବନା କରି ନ ଥିଲେ ? ଆଠ ବର୍ଷରେ ତ ଦନ୍ତ ସମସ୍ତ ଉଠି ସାରି ନ ଥିବ, ଗୌରୀଟି ତନୁଦଶନା, ହେବ, କି ସ୍ଥୂଳଦଶନା ହେବ, ତାହା ଘଟକ ମହାଶୟ ବୁଝିବେ କିପରି, ଏହା କି ମନୁ ଭାବି ନ ଥିଲେ ? ନା, ମନୁ ଯୁବତୀବିବାହର ପକ୍ଷପାତୀ, ଏଣୁ ଯୁବତୀର ବର୍ଣ୍ଣନା କରିଅଛନ୍ତି । ସେ ଜାଣି ନ ଥିଲେ ଯେ ତାଙ୍କର ବଂଶଧରଗଣ ଏବଂ ପରବର୍ତ୍ତୀ ସ୍ମୃତିକାରଗଣ ତାଙ୍କ କଥାକୁ ନ ମାନି ଦୁଗ୍ଧପୋଷ୍ୟା ଶିଶୁବାଳିକାଠାରୁ ଆରମ୍ଭି ଦଶମବର୍ଷୀୟା କନ୍ୟାମାନଙ୍କୁ ବିବାହ ଦେଇ ଆଭିଜାତ୍ୟ ଧର୍ମଧ୍ୱଜା ଉଡ଼ାଇବେ । ବିଷ୍ଣୁପୁରାଣରେ ଲେଖା ଅଛି ଯେ—

ନ ଘର୍ଘରସ୍ୱରାଂ କ୍ଷାମବାକ୍ୟାଂ କାକସ୍ୱରାଂ ନ ବା ।
ନାନିବଦ୍ଧେକ୍ଷଣାଂ ତଦ୍‌ବତ୍ ବୃତ୍ତାକ୍ଷୀଂ ନୋଦ୍‌ବହେଦ୍ ବୁଧଃ ।
× × ×
ନ ବାମନାଂ ନାତୀଦୀର୍ଘାଂ ନୋଦ୍‌ବହେତ୍ ସଂହତଭ୍ରୁବାଂ ।
ନଚାତିଛିଦ୍ରଦଶନାଂ ନ କରାଳମୁଖୀଂ ନରଃ ।
(ବିଷ୍ଣୁପୁରାଣ : ୩।୧୦)

ଏହା ବୋଧହୁଏ ସମସ୍ତେ ସ୍ୱୀକାର କରିବେ ଯେ, ପ୍ରାୟ ଯୁବାବସ୍ଥା ନ ହେଲେ ସ୍ୱର ଠିକ୍ ହେବ ନାହିଁ । ଯେହେତୁ ବାଲ୍ୟାବସ୍ଥାରେ ଅନ୍ୟାନ୍ୟ ଅବୟବମାନଙ୍କ ପରି ଗଳନଳୀର ମାଂସପେଶୀ ପରିପୁଷ୍ଟ ହୋଇ ନ ଥାଏ । ଏଥିରେ ଅଧିକ କହିବାର ପ୍ରୟୋଜନ ନାହିଁ । ଆମ୍ଭେମାନେ ଶିଶୁ ଓ ବୟଃପ୍ରାପ୍ତ ବ୍ୟକ୍ତିର କଥା ଦୂରରୁ ଶୁଣି ମଧ୍ୟ ଅନାୟାସରେ ଶିଶୁର ବା ଯୁବାର ଉଚ୍ଚାରିତ କଥା ତାହା ଠିକ୍ ରୂପେ କହି ଦେଇପାରୁଁ । ତାହା କେବଳ ନୁହେଁ, ବାଛୁରୀ ଓ ଗାଈ, କୁକୁର ଛୁଆ ଓ କୁକୁର, ହଂସଶାବକ ଓ ହଂସର ଶବ୍ଦର ପାର୍ଥକ୍ୟ ମଧ୍ୟ ବୁଝିପାରୁଁ । ପୁରୁଷର ଶୈଶବ ଓ ଯୌବନକାଳୀନ ସ୍ୱର ମଧ୍ୟରେ ଯେତେ ପାର୍ଥକ୍ୟ ଲକ୍ଷିତ ହୁଏ, ସ୍ତ୍ରୀସମ୍ବନ୍ଧରେ ତାହାଠାରୁ ଅଳ୍ପ ପାର୍ଥକ୍ୟ ଲକ୍ଷିତ ହୁଏ । ସ୍ତ୍ରୀଜାତିର ପ୍ରାୟ ବାର ବର୍ଷ ବୟସରେ ସ୍ୱରର ପରିବର୍ତ୍ତନ ହୁଏ ଏବଂ ପୁରୁଷର ପନ୍ଦର ଷୋହଳରେ ସ୍ୱରର ପରିବର୍ତ୍ତନ ହୁଏ । ସୁତରାଂ ବାର ବର୍ଷ ଅତିକ୍ରାନ୍ତ ନ ହେଲେ ସ୍ତ୍ରୀ ଘର୍ଘରସ୍ୱର ହେବ କି କାକସ୍ୱର ହେବ ବା କ୍ଷୀଣବଚନା ହେବ, ତାହା ବୁଝିବା ଅସମ୍ଭବ ।

ସ୍ତ୍ରୀଟି ଖର୍ବା କି ଅତିଦୀର୍ଘା, ଏ ସମ୍ବନ୍ଧରେ ମଧ୍ୟ ପରୀକ୍ଷା କରିବାକୁ ବିଷ୍ଣୁପୁରାଣ କହିଅଛନ୍ତି । ଏ ବିଷୟ ଆଲୋଚନା କଲେ ଆମ୍ଭମାନଙ୍କୁ ବୈଦ୍ୟକ ଗ୍ରନ୍ଥ ଆଲୋଚନା କରିବାକୁ ପଡ଼ିବ । ପରୀକ୍ଷାଦ୍ୱାରା ସ୍ଥିରୀକୃତ ହୋଇଅଛି ଯେ, ସାଧାରଣତଃ ବାଳିକା ଜନ୍ମବେଳେ ୨୭ $\frac{୧}{୨}$ ଇଞ୍ଚ ଲମ୍ବ ଥାଏ । ଏହା ଅବଶ୍ୟ ହାରାହାରି ହିସାବ— କମ୍ ବେଶି ହୋଇପାରେ; ମାତ୍ର ତାହା ଧର୍ତ୍ତବ୍ୟ ନୁହେଁ । ଏହା ହାରାହାରି ସର୍ବସାଧାରଣ ହିସାବ । ଜନ୍ମବେଳେ ୨୭ $\frac{୧}{୨}$ ଇଞ୍ଚ, ଚାରି ବର୍ଷ ବେଳେ ୩୮ $\frac{୧}{୪}$ ଇଞ୍ଚ, ଆଠ ବର୍ଷ ବେଳେ ୪୬ $\frac{୧}{୨}$ ଇଞ୍ଚ, ବାର ବର୍ଷ ବେଳେ ୫୫ $\frac{୧}{୨}$ ଇଞ୍ଚ, ଷୋହଳ ବର୍ଷ ବେଳେ ୬୧ $\frac{୩}{୪}$ ଇଞ୍ଚ, ଏବଂ କୋଡ଼ିଏ ବର୍ଷ ବେଳେ ୬୩ ଇଞ୍ଚ; ତେଣିକି ବୃଦ୍ଧି ନାହିଁ ବୋଇଲେ ଚଳେ । ସାଧାରଣ ପକ୍ଷରେ ଆଠ ବର୍ଷର ବାଳିକା ଷୋହଳ ବର୍ଷବୟସ୍କା ହେଲା ବେଳକୁ ୧୫ $\frac{୧}{୪}$ ବଢ଼ିବ । ଆଠ ବର୍ଷୀୟା ବାଳିକାକୁ ଦେଖି ସେ ଖର୍ବା ହେବ ବା ଦୀର୍ଘା ହେବ, ତାହା ଯେ ଅନୁମାନ କରାଯାଇ ନ ପାରେ, ଏପରି ନୁହେଁ । ମାତ୍ର ବାର ବର୍ଷ ଉତ୍ତାରୁ ଷୋହଳ ବର୍ଷ ମଧ୍ୟରେ କନ୍ୟାକୁ ଦେଖି ସ୍ଥିର ସିଦ୍ଧାନ୍ତ କରାଯାଇପାରେ । ବିଷ୍ଣୁପୁରାଣରେ ଏ ବାକ୍ୟଟି ଦେଖିଲେ କନ୍ୟାକୁ ଷୋହଳ ବର୍ଷ ମଧ୍ୟରେ ପରୀକ୍ଷା କରିବା ଉଚିତ ବୋଲି ସ୍ପଷ୍ଟ ପ୍ରକାଶ ପାଉଅଛି ।

ସ୍ତ୍ରୀର ଦନ୍ତପରୀକ୍ଷା ବିଷୟରେ ମନୁ ଓ ବିଷ୍ଣୁପୁରାଣ ଏକମତ କାହିଁକି ? ଦନ୍ତଦ୍ୱାରା ବୟସ ନିର୍ଣ୍ଣୀତ ହୁଏ । ମନୁଷ୍ୟର ୩୨ ଗୋଟି ଦାନ୍ତ । ଉପର ପାଟିରେ ଷୋହଳ, ତଳ ପାଟିରେ ଷୋହଳ । ଏଥି ମଧ୍ୟରୁ କୋଡ଼ିଏ ଗୋଟି ଦାନ୍ତକୁ ଅସ୍ଥାୟୀ ଓ ଦୁଧଦାନ୍ତ ବୋଲାଯାଏ । ଦୁଧଦାନ୍ତଗୁଡ଼ିକ ପଡ଼ିଯାଇ ପୁଣି ସ୍ଥାୟୀ ଦାନ୍ତ ବାହାରେ । ଦୁଧଦାନ୍ତ ଉଦ୍‌ଗମନର ସମୟ ନିମ୍ନୋକ୍ତ ପ୍ରକାରେ ସ୍ଥିରୀକୃତ ହୋଇଅଛି ।

ତଳ ମଝିଦାନ୍ତ ଶିଶୁଜନ୍ମର ଛଅ ଓ ସାତ ମାସ ମଧ୍ୟରେ ।

ଉପର ମଝିଦାନ୍ତ ଶିଶୁଜନ୍ମର ଛଅ, ସାତ ଓ ଆଠ ମାସ ମଧ୍ୟରେ ।

ଉପର ମଝିଦାନ୍ତ ପାଖର ଦାନ୍ତଯୋଡ଼ିକ ସାତ ଓ ନଅ ମାସ ମଧ୍ୟରେ ।

ତଳ ମଝିଦାନ୍ତ ପାଖର ଦାନ୍ତଯୋଡ଼ିକ ଦଶ ଓ ବାର ମାସ ମଧ୍ୟରେ ।

ପ୍ରଥମ ଅସ୍ଥାୟୀ ଜମ୍ଭାଳୀ ଦାନ୍ତଯୋଡ଼ିକ ବାର ଓ ଚଉଦ ମାସ ମଧ୍ୟରେ ।

ଶ୍ୱଦାନ୍ତ ଯୋଡ଼ିକ ସତରଠାରୁ ଓ ଅଠର ମାସ ମଧ୍ୟରେ ।

ଦ୍ୱିତୀୟ ଜମ୍ଭାଳୀ ଦାନ୍ତ ଯୋଡ଼ିକ ଦ୍ୱିତୀୟ ବର୍ଷ ବା ପରେ ।

ଏହି ଦୁଧଦାନ୍ତଗୁଡ଼ିକ ଛଅ ବର୍ଷ ପର୍ଯ୍ୟନ୍ତ ରହିଲା ଉତ୍ତାରୁ ଖସିପଡ଼େ, ନୂତନ ଦାନ୍ତ ବାହାରେ । ସ୍ଥାୟୀଦାନ୍ତ ଉଦ୍ଗମନର ସମୟ ଯାହା ସ୍ଥିର କରାଯାଇଅଛି, ତାହା ନିମ୍ନରେ ଦିଆଗଲା ।

ପ୍ରଥମ ଜମ୍ଭାଳୀ ବାହାରେ ଛଅ ବର୍ଷ ବୟସରେ ।
ମଝିଦାନ୍ତ ଯୋଡ଼ିକ ସାତ ବର୍ଷ ବୟସରେ ।
ମଝିଦାନ୍ତ ପାଖଦାନ୍ତ ଯୋଡ଼ିକ ଆଠ ବର୍ଷ ବୟସରେ ।
ଆଗର ପ୍ରଥମ ଜମ୍ଭାଳୀ ନଅ ବର୍ଷ ବୟସରେ ।
ଆଗର ଦ୍ୱିତୀୟ ଜମ୍ଭାଳୀ ଦଶ ବର୍ଷ ବୟସରେ ।
ଶ୍ୱଦାନ୍ତ ଏଗାର ଓ ବାର ବର୍ଷ ବୟସରେ ।
ଦ୍ୱିତୀୟ ଜମ୍ଭାଳୀ ବାର ଓ ତେର ବର୍ଷ ବୟସରେ ।
ଜ୍ଞାନଦାନ୍ତ ୧୭ ବର୍ଷ ପରେ ।

ମୋଟରେ ଦେଖିବାକୁ ଗଲେ ନଅ ବର୍ଷରେ ବାଳକ ବା ବାଳିକାର ବାର ଗୋଟି ସ୍ଥାୟୀ ଦାନ୍ତ ହୋଇଥାଏ । ଦଶ ଏଗାର ବର୍ଷରେ ମାତ୍ର ଚବିଶ ଗୋଟି ଦାନ୍ତ ଏବଂ ତେର ଚଉଦ ବର୍ଷରେ ଅଠାଇଶ ଗୋଟି ଦାନ୍ତ ହେବାର କଥା । ଏହା ପରୀକ୍ଷିତ ଓ ସ୍ୱୀକୃତ ସତ୍ୟ । ଏହା ବର୍ତ୍ତମାନକାଳର ଭିଷକ୍‌ମାନେ ସ୍ଥିର କରିଅଛନ୍ତି । ପୂର୍ବକାଳର ଭିଷକ୍‌ମାନେ ଯେ ଏହା ସ୍ଥିର କରି ନ ଥିବେ, ଏପରି ନୁହେଁ । ମନୁ ପ୍ରଭୃତିଙ୍କି ମଧ୍ୟ ଏହା ଉତ୍ତମରୂପେ ଜଣା ଥିଲା । ଏଣୁ ସେମାନେ ଦନ୍ତ ପରୀକ୍ଷା କରି କନ୍ୟା ସ୍ଥିର କରିବା ନିର୍ଦ୍ଦେଶ କରିଅଛନ୍ତି । ସାମୁଦ୍ରିକ-ଲକ୍ଷଣବିଶ୍ୱାସୀମାନଙ୍କ ନିମନ୍ତେ ଦନ୍ତପରୀକ୍ଷା ନିତାନ୍ତ ପ୍ରୟୋଜନ ।

ସନ୍ତାନ ଉତ୍ପାଦନ ହିଁ ବିବାହର ମୂଳ ଉଦ୍ଦେଶ୍ୟ; ଏଣୁ ସ୍ତ୍ରୀ ପୁରୁଷ ଉଭୟେ ପୈତୃକ ରୋଗଶୂନ୍ୟ— ସ୍ଥାୟୀ ରୋଗଶୂନ୍ୟ ହେବା ଯେମନ୍ତ ପ୍ରୟୋଜନ, ଅବୟବାଦି ମଧ୍ୟ ବ୍ୟଙ୍ଗରହିତ ହେବା ଉଚିତ । ଯେଉଁସବୁ ଶାରୀରିକ ଓ ମାନସିକ ଦୋଷମାନ ପୁତ୍ରାଦିଠାକୁ ପ୍ରସରିବାର ସମ୍ଭବ, ସେ ସବୁ ଦୋଷରହିତା ସ୍ତ୍ରୀବିବାହ କରିବାକୁ ସ୍ମୃତିକର୍ତ୍ତୃଗଣ କହି ଯାଇଅଛନ୍ତି । ଏ ସବୁ ପରୀକ୍ଷା ଯେମନ୍ତ ବିଜ୍ଞାନସମ୍ମତ, ସେହିପରି ସ୍ମୃତିସମ୍ମତ । ମାତ୍ର ବାଲ୍ୟବିବାହ ପକ୍ଷପାତିମାନେ ଏଥି ପ୍ରତି ଅନ୍ଧ । 'ଘର ଦେଖି ଦେଇ, କି ବର ଦେଖି ଦେଇ' । ଏହି ବାକ୍ୟ ଉପରେ ଆଧୁନିକ ଭାରତବାସୀଙ୍କର ବେଶି ବିଶ୍ୱାସ । ପୁଣି ଏଥି ମଧ୍ୟରୁ ଘର ଅର୍ଥାତ ଧନ ଉପରେ ବେଶି ଝୁଙ୍କ । ଧନ ଥିଲେ ହେଁ ହେଲା । କଣା, କୁଜା, ବୁଢ଼ା, ରୋଗୀ, ଦୁର୍ବଳ, ଏଥିରେ ବିଚାର ନାହିଁ । ଧନ ଥିଲେ କନ୍ୟାଦାନ ସଫଳ, ଏହି ବିଶ୍ୱାସ । କନ୍ୟା ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ବଡ଼ ଘରେ, ଧନୀ ଘରେ ବିବାହ ହେଲେ ଧନ ମିଳିବ, ଏହି ଲାଳସା ବଳବତୀ । କନ୍ୟା ବିକଳାଙ୍ଗୀ ହେଉ, କାଳୀ ହେଉ, ମୋଟୀ ହେଉ, ଯାହା ତାହା ହେଉ, ଚିନ୍ତା ନାହିଁ । ଏହା ଭାରତବାସୀର କାୟିକ ଓ ମାନସିକ ଅବନତିର ଗୋଟିଏ କାରଣ । ଦନ୍ତ କଥାଟି ବାଦ ପଡ଼ିଗଲା । ବିବାହବେଳେ ଗୌରୀ କନ୍ୟାର ତ ବାରଗୋଟି ମଧ୍ୟ ଦନ୍ତ ହୋଇ ନ ଥିବ ଏବଂ ରୋହିଣୀର ବିବାହବେଳେ ବାର ଗୋଟି ମାତ୍ର ଦାନ୍ତ ଏବଂ କନ୍ୟାର ତ କେବଳ ଚବିଶ ଗୋଟି ଦାନ୍ତ ହୋଇଥିବ । ଏପରି ଅବସ୍ଥାରେ ମନୁଙ୍କର ଓ ବିଷ୍ଣୁପୁରାଣର ବଚନ ରକ୍ଷା କରିବାର ବୈବାହିକମାନଙ୍କର ଅବସର ଓ ଗରଜ କାହିଁ ? ମନୁବାକ୍ୟ ପଛେ ଅନ୍ୟଥା ହେଉ, ବାଲ୍ୟବିବାହ ଚଳୁ, ସାରା ଜଗତରେ ହିନ୍ଦୁତ୍ୱର ଧର୍ମଧ୍ୱଜା ଉଡ଼ୁ ।

'ପ୍ରଜାର୍ଥେ ଗୃହମେଧିନଃ' ପୁତ୍ର ନିମନ୍ତେ ଗୃହସ୍ଥାଶ୍ରମ ଓ ଘର । ପୁତ୍ର ଉତ୍ପାନ ଯେବେ ବିବାହର ମୁଖ୍ୟ ଉଦ୍ଦେଶ୍ୟ, ତାହାହେଲେ ଉତ୍ତମ ସ୍ତ୍ରୀର ମଧ୍ୟ ଯେପରି ପ୍ରୟୋଜନ, ସେପରି ଉତ୍ତମ ସମୟରେ ଗର୍ଭାଧାନ କରିବା ମଧ୍ୟ ପ୍ରୟୋଜନ । ସ୍ତ୍ରୀ ବା ପୁରୁଷ ରୋଗଗ୍ରସ୍ତ ହୋଇଥିବା ବେଳେ ଗର୍ଭଧାନ କରିବା ଉଚିତ ନୁହେଁ । ଶରୀର ଦୁର୍ବଳ ଥିଲାବେଳେ ପୁତ୍ରକାମନାରେ ସ୍ତ୍ରୀ ସହବାସ କରିବା ଉଚିତ ନୁହେଁ । ଜୀବଦ୍ଦଶାର କେଉଁ ସମୟରେ ପୁତ୍ରୋତ୍ପାଦନ ହେଲେ ପୁତ୍ର ଆରୋଗ୍ୟ ଓ ଦୀର୍ଘଜୀବୀ ହେବ, ଏହା ପିତାମାତାଙ୍କର ବିଚାର୍ଯ୍ୟ ବିଷୟ । ପୂର୍ବକାଳରେ କାମଲାଳସା ଚରିତାର୍ଥ କରିବା ଅପେକ୍ଷା ପୁତ୍ରୋତ୍ପାଦନ ସ୍ତ୍ରୀ ପୁରୁଷର ସଂଯୋଗର ମୂଳ ଉଦ୍ଦେଶ୍ୟ ବୋଲି ବିଚାର କରୁଥିଲେ, ଏଣୁ ବିବାହ, ବ୍ରହ୍ମଚର୍ଯ୍ୟ ଓ ଗର୍ଭାଧାନ ନିମନ୍ତେ ଏତେ ବିଧି ବ୍ୟବସ୍ଥା ହୋଇଅଛି । ସେ ସମସ୍ତ ବିଷୟ ଆଲୋଚନା କରି ପ୍ରବନ୍ଧର କଳେବର ବୃଦ୍ଧି କରିବା

ନିଷ୍ପ୍ରୟୋଜନ । କେଉଁ ବୟସରେ ସ୍ତ୍ରୀ ଗର୍ଭବତୀ ହେଲେ ସୁପୁତ୍ର ଲାଭ ହେବା ସମ୍ଭବ, ଏହା କେବଳ ଭିଷକ୍‌ମାନେ କହି ପାରନ୍ତି । ଯଦି ଏ ସମ୍ବନ୍ଧରେ ଭିଷକ୍‌ର ମତ ଲୋଡ଼ା ନ ହୁଏ, ତେବେ ଆଉ କେଉଁ ସମୟରେ ? ମନୁ ପ୍ରଭୃତି ଯେ ଭିଷକ୍‌ମାନଙ୍କ ମତ ବିରୋଧରେ ବିବାହର ସମୟ ନିଷ୍କୟ କରିଥିବେ, ଏହା ଆମ୍ଭମାନଙ୍କର ହୃଦୟକୁ ପ୍ରବେଶ କରୁ ନାହିଁ ।

ଚରକ, ସୁଶ୍ରୁତ, ବାଗ୍‌ଭଟା ପ୍ରଭୃତି ପ୍ରାଚୀନ ପ୍ରଧାନ ବୈଦ୍ୟଶାସ୍ତ୍ରମାନ ଦେଖିଲେ ଜଣାଯାଏ ଯେ, 'ସର୍ବେନ୍ଦ୍ରିୟୋପପନ୍ନ ପରିପୂର୍ଣ୍ଣଶରୀର ବଳ ବର୍ଣ୍ଣ ସତ୍ୟ ସଂହନ ସମ୍ପଦ ସୁଖଦ୍ୱାରା' ସ୍ତ୍ରୀ ପୁରୁଷର ସଂଯୋଗଜନିତ ଗର୍ଭ ଶୁଭ । ତାହାହେଲେ ସ୍ତ୍ରୀ ଓ ପୁରୁଷ ଭିଷକର ଉପଦିଷ୍ଟ ସମୟ ପୂର୍ବରୁ ସହବାସ କରି ପୁତ୍ରୋତ୍ପାଦନ କରିବା ଅସଙ୍ଗତ । ସୁଶ୍ରୁତ କହିଅଛନ୍ତି—

'ଊନଷୋଡ଼ଶବର୍ଷାୟାମପ୍ରାପ୍ତପଞ୍ଚବିଂଶତିମ୍ ।
ଯଦ୍ୟାଧତ୍ତେ ପୁମାନ୍ ଗର୍ଭଂ ଗର୍ଭସ୍ଥଃ ସ ବିପଦ୍ୟତେ ।୧।
ଜାତୋବା ନ ଚିରଂ ଜୀବେଜ୍ଜୀବେଦ୍ ବା ଦୁର୍ବଳେନ୍ଦ୍ରିୟଃ ।
ତସ୍ମାଦତ୍ୟନ୍ତବାଳାୟାଂ ଗର୍ଭାଧାନଂ ନ କାରୟେତ୍ ।୨।

'ଅତିବୃଦ୍ଧାୟାଂ ଦୀର୍ଘରୋଗିଣ୍ୟାମନ୍ୟେନ ବା ବିକାରେଣୋପସଷ୍ଟାୟାଂ ଗର୍ଭାଧାନଂ ନୈବ କୁର୍ବୀତ । ପୁରୁଷସ୍ୟାପ୍ୟେବଂବିଧସ୍ୟ ତ ଏବ ଦୋଷାଃ ସମ୍ଭବନ୍ତି ।'

ସୁଶ୍ରୁତ ଶାଃ ୧୦ମ ଅଧ୍ୟାୟ ।

ଷୋହଳ ବର୍ଷରୁ ନ୍ୟୂନବୟସ୍କା ସ୍ତ୍ରୀଠାରେ ପଚିଶ ବର୍ଷରୁ ନ୍ୟୂନବୟସ୍କ ପୁରୁଷ ଯେବେ ଗର୍ଭ ସ୍ଥାପନ କରେ, ତେବେ ସେହି କୁକ୍ଷିସ୍ଥ ସନ୍ତାନ ବିପତ୍ତି ପ୍ରାପ୍ତ ହୁଏ । ଏହି ଗର୍ଭରୁ ଜାତ ସନ୍ତାନ ଚିରକାଳ ଜୀବିତ ହେବ ନାହିଁ । ଜୀବିତ ରହିଲେ ମଧ୍ୟ ଦୁର୍ବଳେନ୍ଦ୍ରିୟ ହେବ । ଏଥିନିମନ୍ତେ ଅତି ବାଲ୍ୟାବସ୍ଥାରେ ସ୍ତ୍ରୀର ଗର୍ଭ ସ୍ଥାପନ କରିବ ନାହିଁ ।

ଅତିବୃଦ୍ଧା, ଚିରରୋଗିଣୀ, ବିକାର ବା ଅନ୍ୟ ଉପସର୍ଗଯୁକ୍ତା ସ୍ତ୍ରୀର ଗର୍ଭୋଦୟ କରିବ ନାହିଁ । ଏବଂବିଧ ପୁରୁଷଠାରେ ମଧ୍ୟ ଏହିପରି ଦୋଷ ଅବଶ୍ୟ ଘଟିବ ।

ପରାଶରସଂହିତା ଯେପରି କଳିଯୁଗର ଧର୍ମଶାସ୍ତ୍ର, ବାଗ୍‌ଭଟସଂହିତା ମଧ୍ୟ କଳିଯୁଗର ବୈଦ୍ୟଶାସ୍ତ୍ର ବୋଲି ପ୍ରସିଦ୍ଧି ଲାଭ କରିଅଛି । ଦେଖାଯାଉ, ବାଗ୍‌ଭଟ କ'ଣ ମତ ଦେଇଅଛନ୍ତି ।

ପୂର୍ଣ୍ଣଷୋଡ଼ଶବର୍ଷା ସ୍ତ୍ରୀ ପୂର୍ଣ୍ଣବିଂଶୋନସଙ୍ଗତା ।
ଶୁଦ୍ଧେ ଗର୍ଭାଶୟେ ମାର୍ଗେ ରକ୍ତେ ଶୁକ୍ରେଽନିଳେ ହୃଦି ।୧
ବୀର୍ଯ୍ୟବନ୍ତଂ ସୁତଂ ସୂତେ ତତୋନ୍ୟୂନାଦତଃ ପୁନଃ ।
ରୋଗ୍ୟଳ୍ପାୟୁରଧନ୍ୟୋବା ଗର୍ଭୋଭବତି ନୈବ ବା ।୨

ପୂର୍ଣ୍ଣ ଷୋହଳ ବର୍ଷର ସ୍ତ୍ରୀ କୋଡ଼ିଏ ବର୍ଷର ପୁରୁଷ ସହିତ ସଙ୍ଗମଦ୍ୱାରା ଗର୍ଭାଶୟ, ଗର୍ଭାଶୟମାର୍ଗ, ରକ୍ତ, ବୀର୍ଯ୍ୟ ଏବଂ ହୃଦୟ ଶୁଦ୍ଧ ଥାଏ । ଏଣୁ ସ୍ତ୍ରୀ ବୀର୍ଯ୍ୟବନ୍ତ ସୁତ ଜନ୍ମ କରେ । ଏଥିରୁ ବର୍ଷରେ ଊଣା ସ୍ତ୍ରୀ ପୁରୁଷ ସଂଯୋଗଦ୍ୱାରା ଯେଉଁ ପୁତ୍ର ଜାତ ହୁଏ, ସେ ରୋଗୀ, ଅଳ୍ପାୟୁ ଆଉ ଅଧନ୍ୟ ହୁଏ କିମ୍ବା ଏପରି ସଂଯୋଗରେ ଗର୍ଭ ହୁଏ ନାହିଁ ।

ଏହା ଅକ୍ଷରେ ଅକ୍ଷରେ ସତ୍ୟ ନୁହେଁ କି ? ଭାରତବାସୀ ଏହା ସତ୍ୟ ବୋଲି ଜାଣିଲେ ମଧ୍ୟ ଅଭ୍ୟାସ ତ୍ୟାଗ କରିବେ କି ? ବୈଦ୍ୟଶାସ୍ତ୍ରର ଉପଦେଶକୁ ଉପେକ୍ଷା କରି ଧର୍ମଶାସ୍ତ୍ର ପ୍ରଣେତାମାନେ ବିବାହର ବ୍ୟବସ୍ଥା ଦେଇଅଛନ୍ତି ବୋଲି ଆମ୍ଭେମାନେ ବିଶ୍ୱାସ କରି ନ ପାରୁଁ । ଏଣୁ ମନୁ ବାଲ୍ୟବିବାହର ପକ୍ଷପାତୀ ନ ଥିଲେ । ଋତୁମତୀ ହେବାର ତିନି ବର୍ଷ ମଧ୍ୟରେ ବିବାହର ପ୍ରଶସ୍ତ କାଳ ନିର୍ଣ୍ଣିତ ହୋଇଅଛି ।

ତ୍ରୀଣି ବର୍ଷାଣ୍ୟୁଦୀକ୍ଷେତ କୁମାର୍ଯୃତୁମତୀ ସତୀ ।
ଊର୍ଦ୍ଧ୍ୱଂତୁ କାଳାଦେତସ୍ମାଦ୍ ବିନ୍ଦେତ ସଦୃଶଂ ପତିଂ ।

ମନୁ । ୯ ।୯୦

କୁମାରୀ ଋତୁମତୀ ହେଲା ଉତ୍ତାରୁ ତିନି ବର୍ଷ ଅପେକ୍ଷା କରିବ, ତହିଁ ଉତ୍ତାରୁ ନିଜେ ସମାନ ଗୁଣଯୁକ୍ତ ବରକୁ ବରଣ କରିବ ।

ଅଜ୍ଞାତପତିମର୍ଯ୍ୟାଦାମଜ୍ଞାତପତିସେବନାଂ ।
ନୋଦ୍‌ବାହୟେତ୍ ପିତା କନ୍ୟାମଜ୍ଞାତଧର୍ମଶାସନାଂ ।

ମହାନିର୍ବାଣ ତନ୍ତ୍ର

ଯେ କନ୍ୟା ପତିମର୍ଯ୍ୟାଦା ଜାଣୁ ନ ଥିବ, ପତିସେବା ଜାଣୁ ନ ଥିବ, ଧର୍ମଶାସନ ଜାଣୁ ନ ଥିବ, ସେପରି କନ୍ୟାକୁ ପିତା ବିବାହ କରିଦେବ ନାହିଁ ।

ବଶିଷ୍ଠସଂହିତା ଲେଖନ୍ତି :—

ସ୍ନାତ୍ୱା ଅସମାନାର୍ଷାମସ୍ପୃଷ୍ଟମୈଥୁନାଂ ଯବୀୟସୀଂ ସଦୃଶୀଂ ଭାର୍ଯ୍ୟାଂ ବିନ୍ଦେତ୍ ।

ସମାବର୍ତ୍ତନ ଉତ୍ତାରୁ ଅସଗୋତ୍ରା ଅନ୍ୟଦ୍ୱାରା ମୈଥୁନଦୂଷିତା ହୋଇ ନ ଥିବା ନିଜଠାରୁ ଅଳ୍ପବୟସ୍କା ସବର୍ଣ୍ଣା ଭାର୍ଯ୍ୟାକୁ ବିବାହ କରିବ ।

ପରାଶର ବିବାହ ସମ୍ବନ୍ଧରେ କୌଣସି ମତ ଦେଇ ନାହାନ୍ତି । ସୁତରାଂ ପରାଶର ବିବାହ ସମ୍ବନ୍ଧରେ ମନୁଙ୍କ ମତକୁ ସ୍ୱୀକାର କରିଯାଇଅଛନ୍ତି ବୋଲାଯିବ । ପରାଶର ପ୍ରକାଶ କରିଅଛନ୍ତି, ସତ୍ୟଯୁଗର ଧର୍ମଶାସ୍ତ୍ର ମନୁସଂହିତା । ତ୍ରେତା ଯୁଗରେ ଗୌତମସଂହିତା ଓ ଦ୍ୱାପରଯୁଗରେ ଶଙ୍ଖ ଓ ଲିଖିତସଂହିତା ଏବଂ କଳିଯୁଗରେ ଧର୍ମଶାସ୍ତ୍ର ପରାଶରସଂହିତା । ମନୁଙ୍କ ବ୍ୟବସ୍ଥା ଯେଉଁ ଯେଉଁ ସ୍ଥଳରେ ଯୁଗଭେଦରେ ପ୍ରଯୋଜ୍ୟ ହୋଇପାରିଲା ନାହିଁ, ସେହି ସ୍ଥଳମାନଙ୍କରେ ପରବର୍ତ୍ତୀ ସ୍ମୃତିକର୍ତ୍ତାମାନେ କେବଳ ନୂତନ ମତ ଦେଇ ଯାଇଅଛନ୍ତି । ମନୁଙ୍କ ମତ ସହିତ ଏକମତ ହେବା ସ୍ଥଳରେ ସେମାନେ ନୂତନ ମତ ପ୍ରକାଶ କରି ନାହାନ୍ତି । ମନୁଙ୍କ ମତ ବିବାହ ସମ୍ବନ୍ଧରେ ବେଦ ଓ ବୈଦିକଗ୍ରନ୍ଥ ସହିତ ଏକ । ଏଣୁ ପରାଶର ତାହା ସ୍ୱୀକାର କରି ଯାଇଅଛନ୍ତି ବୋଲି ତାହାର ପୁନରାବୃତ୍ତି କରିବାର ଚେଷ୍ଟା କରି ନାହାନ୍ତି । ଦଣ୍ଡ ବା ପ୍ରାୟଶ୍ଚିତ୍ତ ଯୁଗଭେଦରେ ପୃଥକ୍ ହେବା ସ୍ୱାଭାବିକ ଜାଣି କେବଳ ଆଚାର ଓ ପ୍ରାୟଶ୍ଚିତ୍ତାଦି ବିଷୟ ବହୁଳ ଭାବରେ ବିବୃତ କରିଅଛନ୍ତି । ଦ୍ୱିତୀୟାଧ୍ୟାୟରେ ଗୃହସ୍ଥର ଧର୍ମାଚାର ସଂକ୍ଷେପରେ ଷୋହଳ ଗୋଟି ଶ୍ଳୋକରେ ପ୍ରକାଶ କରିଅଛନ୍ତି । ଏଥିରେ ବିବାହ ବା ସ୍ତ୍ରୀର ବୟସ ବିଷୟ ଲେଖି ନାହାନ୍ତି । ଲେଖିବାର ପ୍ରୟୋଜନ ନ ଥିଲା, ଯେହେତୁ ବିବାହପ୍ରଥା ଆବହମାନକାଳରୁ ବୈଦିକ ମତରେ ଗୃହ୍ୟସୂତ୍ରାନୁସାରେ ଚଳି ଆସୁଅଛି । ପରାଶର ଯୁବତୀବିବାହର ପକ୍ଷପାତୀ ।

ମାଧବାଚାର୍ଯ୍ୟ ପରାଶରସଂହିତାର ବ୍ୟାଖ୍ୟାକର୍ତ୍ତା ହୋଇ ତାହାର ମହତ୍ତ୍ୱର ହାନି କରିଅଛନ୍ତି । ଅଯଥା ମତ ସଂଗ୍ରହ କରି ପରାଶର ସଂହିତାକୁ ଘୋଡ଼ାଇ ରଖିବାର ଚେଷ୍ଟା କରିଅଛନ୍ତି । ଯେଉଁ ବ୍ୟବସ୍ଥାପକମାନଙ୍କ ହସ୍ତରେ ପରାଶର, ମାଧବ ଅଛି, ସେମାନେ ପରାଶର ପାଠ ନ କରି ମାଧବବ୍ୟାଖ୍ୟା ପାଠ କରନ୍ତି ଏବଂ ତଦନୁସାରେ ବ୍ୟବସ୍ଥା ଦିଅନ୍ତି । ଯେହେତୁ ନିଜ ମତ ଅନୁସାରେ ଏହି ପୁସ୍ତକରେ ଅନେକଗୁଡ଼ିଏ ମତ ମିଳି ପାରେ ।

ଦେଖାଯାଉ 'ଚତୁର୍ଣ୍ଣାମପି ବର୍ଣ୍ଣାନାମେଷ ଧର୍ମଃ ସନାତନଃ'।୨ ।୧୬ ପରାଶରଙ୍କର କେବଳ ଏହି ଶ୍ଳୋକଟି ଉପରେ ମାଧବାଚାର୍ଯ୍ୟ ବର୍ଣ୍ଣାଶ୍ରମର ଓ ବିବାହାଦି ଦଶ କର୍ମର ଯାବତୀୟ ପ୍ରମାଣ୍ୟାଦି ସଂଗ୍ରହ କରି ୧୩୯ ପୃଷ୍ଠା ଲେଖି ଯାଇଅଛନ୍ତି। ପରାଶରଙ୍କର ଷୋହଳ ଗୋଟି ଶ୍ଳୋକକୁ ଭାଙ୍ଗି ଗଢ଼ି ପନ୍ଦର କରିଅଛନ୍ତି ଏବଂ 'ବ୍ରାହ୍ମଣଶ୍ଚେତ୍ କୃଷିଂ କୁର୍ଯ୍ୟାନ୍ମହାଦୋଷମବାପ୍ନୁୟାତ୍'ଏହି ଅତିରିକ୍ତ ପଦଟି ସପ୍ତମ ଶ୍ଳୋକ ପରେ ଯୋଜନା କରି ଅଷ୍ଟମ ଶ୍ଳୋକର ପ୍ରଥମ ପାଦ ସହିତ ସଂଯୋଗ କରି ଦେଇଅଛନ୍ତି । ଏହା ପାଠକମାନେ ପ୍ରଣିଧାନ ପୂର୍ବକ ଦେଖିଲେ ଅନାୟାସରେ ଉପଲବ୍ଧି କରି ପାରିବେ, ଆମ୍ଭେମାନେ ପରାଶରଙ୍କୁ ମାନିବା, କି ମାଧବାଚାର୍ଯ୍ୟଙ୍କର ବୃଥା ଆଡ଼ମ୍ବର ଓ ଆଭିଜାତ୍ୟ ଅଭିମାନ ଉପରେ ଆସ୍ଥା ସ୍ଥାପନ କରିବା । ଅନେକ ବ୍ୟବସ୍ଥାପକଙ୍କ ମୁଖରୁ ଆମ୍ଭେମାନେ ଶୁଣିଅଛୁଁ ଯେ, ସେମାନେ କହନ୍ତି—

'ଅଷ୍ଟବର୍ଷା ଭବେଦ୍‌ଗୌରୀ ନବବର୍ଷାତୁ ରୋହିଣୀ
ଦଶମେ କନ୍ୟକା ପ୍ରୋକ୍ତା ଅତ ଊର୍ଦ୍ଧ୍ୱଂ ରଜସ୍ୱଳା ॥

ଶ୍ଳୋକଟି ପରାଶର ସଂହିତାର ଶ୍ଳୋକ ବୋଲି କହନ୍ତି; ମାତ୍ର ଏହା ସତ୍ୟ କି ? ପରାଶର ଏ ଶ୍ଳୋକର ରଚକ ନୁହନ୍ତି । ଏହା ମାଧବଙ୍କ ଦ୍ୱାରା ଉଦ୍ଧୃତ ଶ୍ଳୋକ । ଏହା ଯମ ସଂହିତାର ଶ୍ଳୋକ ବୋଲି ସେ ଉଦ୍ଧାର କରିଅଛନ୍ତି । ମାତ୍ର ପରାଶର ସଂହିତା ଯମଙ୍କୁ ସ୍ମୃତିକର୍ତ୍ତା ବୋଲି ସ୍ୱୀକାର କରି ନାହାନ୍ତି । ବ୍ୟାସ ଊନବିଂଶ ସଂହିତାର କଥା ଶୁଣିଅଛି ବୋଲି ପରାଶରଙ୍କୁ କହିଲେ । ସେହି ଊନବିଂଶ ସଂହିତା ମଧ୍ୟରେ ଯମ ସଂହିତାର ନାମ ନାହିଁ । ଏଣୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ, ବ୍ୟାସଙ୍କ ସମୟରେ ଯମ ସଂହିତା ପ୍ରଚଳିତ ହୋଇ ନ ଥିଲା । ଏଣୁ ସେ ଯମ ସଂହିତାର ନାମୋଲ୍ଲେଖ କରି ନାହାନ୍ତି । ପରାଶର ସଂହିତା ରଚନାବେଳେ ମଧ୍ୟ ଯମ ସଂହିତା ରଚିତ ହୋଇ ନ ଥିଲା । ଯେଉଁ ସ୍ମୃତିକୁ ପରାଶର ସ୍ମୃତି ମଧ୍ୟରେ ଗଣନା କରି ନାହାନ୍ତି, ଯାହା ପରାଶର ସ୍ମୃତି ଅପେକ୍ଷା ଅର୍ବାଚୀନ, ତାହା ପରାଶରଙ୍କର ମତ ଖଣ୍ଡନ ନିମନ୍ତେ ବ୍ୟବହାର କରିବା ସମୀଚୀନ ନୁହେଁ ।

ମାଧବାଚାର୍ଯ୍ୟ ପ୍ରଭୃତି ଏତାଦୃଶ ବିସ୍ତର ସ୍ମୃତିଜାଳ ବିସ୍ତାର କରି ନ ଥିଲେ 'ଦକ୍ଷିଣେ ମାତୂଳା କନ୍ୟା' ଏ କଥାଟି ଓ ପ୍ରଥାଟି ଦ୍ରାବିଡ଼ ବ୍ରାହ୍ମଣ ମଧ୍ୟରେ ପ୍ରଚଳିତ ହୁଅନ୍ତା କିପରି ? ଆଉ ଅତି ଅଳ୍ପବୟସ୍କା ଭଗିନୀକନ୍ୟାର ପାଣିଗ୍ରହଣ ପ୍ରଥା ବ୍ରାହ୍ମଣ ସମାଜରେ ଆଦୃତ ହୁଅନ୍ତା କିପରି ? ଏ ଯୋଡ଼ିକ ସ୍ଥଳରେ ଦେଶାଚାର ଓ କୁଳାଚାର ଶାସ୍ତ୍ରକୁ ମଧ୍ୟ ଅତିକ୍ରମ କରିଅଛି ।

ଉତ୍କୃଷ୍ଟାୟାଭିରୂପାୟ ବରାୟ ସଦୃଶାୟ ଚ ।
ଅପ୍ରାପ୍ତାମପି ତାଂ ତସ୍ମୈ କନ୍ୟାଂ ଦଦ୍ୟାଦ୍ୟଥାବିଧି ॥
ମନୁ । ୯ ।୮୮

ଉତ୍କୃଷ୍ଟ ଏବଂ ସ୍ୱରୂପ ସମାନଜାତୀୟ ବର ମିଳିଲେ ଅପ୍ରାପ୍ତବୟସ୍କା କନ୍ୟାକୁ ମଧ୍ୟ ଯଥାବିଧି ଦାନ କରିବ । ବୋଧ ହୁଏ ଏହା ସ୍ପଷ୍ଟାର୍ଥ । ମାତ୍ର ବ୍ୟାଖ୍ୟାକାରଗଣଙ୍କ ମଧ୍ୟରୁ କେହି କେହି ଲେଖନ୍ତି ଯେ, 'ଅପ୍ରାପ୍ତା' ବୋଇଲେ ଅପ୍ରାପ୍ତବିବାହକାଳ ଅର୍ଥାତ୍ ଆଠ ବର୍ଷ ହୋଇ ନ ଥିଲେ ମଧ୍ୟ ବିବାହ ଦେବ । ଏହି ଅପ୍ରାପ୍ତା ପଦଟି କନ୍ୟାର ବିଶେଷଣ—ବିବାହକାଳର ବିଶେଷଣ ନୁହେଁ । ବାଲ୍ୟବିବାହପକ୍ଷପାତିଙ୍କର କ୍ଲିଷ୍ଟ କଳ୍ପନା ଉପରେ ନିର୍ଭର କରିବାର କିଛି ହିଁ କାରଣ ନାହିଁ । ବିବାହକାଳ ନିର୍ଣ୍ଣୟ କେବଳ ଅର୍ବାଚୀନ ସ୍ମୃତିକର୍ତ୍ତାମାନଙ୍କର ମତ । ମନୁରେ ସେମାନଙ୍କ ନାମର ଗନ୍ଧ ସମ୍ବନ୍ଧ ନାହିଁ ।

ତା ପରେ କହୁଅଛନ୍ତି—

କାମମାମରଣାତ୍ତିଷ୍ଠେଦ୍‌ଗୃହେ କନ୍ୟର୍ତ୍ତୁମତ୍ୟପି ।
ନ ଚୈବୈନାଂ ପ୍ରଯଚ୍ଛେତ୍ତୁ ଗୁଣହୀନାୟ କର୍ହିଚିତ୍ ।
ମନୁ । ୯ । ୮୯

କନ୍ୟା ଋତୁମତୀ ହୋଇ ମରଣ ପର୍ଯ୍ୟନ୍ତ ପିତୃଗୃହରେ ରହିବା ପଛେ ଭଲ, ତାକୁ କଦାପି ଗୁଣହୀନ ପୁରୁଷକୁ ପ୍ରଦାନ କରିବ ନାହିଁ ।

ଉପରୋକ୍ତ ଶ୍ଳୋକଯୋଡ଼ିକର ତାତ୍ପର୍ଯ୍ୟ ଓ ସ୍ପଷ୍ଟାର୍ଥ ଏହି ଯେ, ଯେବେ ସ୍ୱରୂପ ଓ ଗୁଣବନ୍ତ ବର ମିଳିଯାଏ, ତେବେ କନ୍ୟା ଋତୁମତୀ ହୋଇ ନ ଥିଲେ ମଧ୍ୟ ଦେଇ ପକାଇବ; ଆଉ ଯେବେ ଭଲ ଉପଯୁକ୍ତ ବର ନ ମିଳେ, ତେବେ କନ୍ୟା ଋତୁମତୀ ହୋଇ ପିତୃଗୃହରେ ଆମରଣ ରହିବ ପଛେ, ତାକୁ ଅପାତ୍ରରେ ଦାନ କରିବ ନାହିଁ ।

ମନୁ ଯୁବତୀବିବାହର ସମ୍ପୂର୍ଣ୍ଣ ପକ୍ଷପାତୀ ଥିବାର ପ୍ରମାଣ ଏଥିରୁ ବଳି ଆଉ କ'ଣ ମିଳିପାରେ ?

ପୁଣି କହିଲେ, ଯେବେ ବର ନ ମିଳେ, ତେବେ ଋତୁମତୀ ହେଲାରୁ କନ୍ୟା ତିନି ବର୍ଷ ଅପେକ୍ଷା କରିବ, ତେଣିକି ସେ ଇଚ୍ଛାନୁରୂପ ସ୍ୱଜାତୀୟ ବର ପାଇଲେ ବରଣ କରି ପାରିବ ।

ତ୍ରୀଣି ବର୍ଷାଣ୍ୟୁଦୀକ୍ଷେତ କୁମାର୍ଯୃତୁମତୀ ସତୀ ।
ଊର୍ଦ୍ଧ୍ୱଂ ତୁ କାଳାଦେତସ୍ମାଦ୍‌ବିନ୍ଦେତ ସଦୃଶଂ ପତିମ୍ ॥
ମନୁ । ୯ । ୯୦

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ, ଋତୁମତୀ ହେଲାରୁ ତିନି ବର୍ଷ ପର୍ଯ୍ୟନ୍ତ ପିତା ଉପଯୁକ୍ତ ପାତ୍ର ଅନୁସନ୍ଧାନ କରି ଅକୃତକାର୍ଯ୍ୟ ହେଲେ ତେଣିକି କନ୍ୟାର ପରାମର୍ଶାନୁସାରେ ବିବାହର ବନ୍ଦୋବସ୍ତ କରିବେ । ତେଣିକି କେବଳ କନ୍ୟାର ଇଚ୍ଛାନୁସାରେ ବର ନିର୍ବାଚନ କରାଯାଇପାରିବ । ଅର୍ଥାତ୍ ତେଣିକି କନ୍ୟାର ଇଚ୍ଛା ଉପରେ ବିବାହର ନିର୍ଭର ରଖାଗଲା । ପିତା କୌଣସି ବରକୁ ପସନ୍ଦ ନ କରୁଥିଲେ ମଧ୍ୟ ଯେବେ ସେହି ବର କନ୍ୟାର ମନୋନୀତ ହୁଏ, ତାହାହେଲେ ପିତା ବିବାହ କରିଦେବେ କିମ୍ବା କନ୍ୟା ସ୍ୱୟଂବର କରିବ । କନ୍ୟା ବୟଃପ୍ରାପ୍ତା, ଭବିଷ୍ୟତ୍ ଭଲ ମନ୍ଦ ବିବେକଶକ୍ତିସମ୍ପନ୍ନା ହେଲା ଉତ୍ତାରୁ ପିତା ତା'ର ଭବିଷ୍ୟତ୍ ସୁଖ ସ୍ୱାଚ୍ଛନ୍ଦ୍ୟର ଅନ୍ତରାୟ ହେବେ କାହିଁକି ? ଏହା ମନୁଙ୍କର ମତ । ଏଥିରୁ ବଳି ଯୁବତୀବିବାହ ସପକ୍ଷ ମତ ଆଉ କ'ଣ ଆଶା କରାଯାଇପାରେ ?

ମନୁରେ ଆଉ ଗୋଟାଏ ଶ୍ଳୋକ ଅଛି, ଯାହା ଟିକିଏ ଗୋଳମାଳିଆ । ନାନା ବ୍ୟାଖ୍ୟାକର୍ତ୍ତାଙ୍କ ନାନା ବ୍ୟାଖ୍ୟା । ଆମ୍ଭେମାନେ ଶ୍ଳୋକଟି ଉଦ୍ଧୃତ କରି ତା'ର ସରଳ ଅନୁବାଦ ପ୍ରକାଶ କଲେ ଯଥେଷ୍ଟ ହେବ ।

ତ୍ରିଂଶଦ୍‌ବର୍ଷୋଦ୍‌ବହେତ୍ କନ୍ୟାଂ ହୃଦ୍ୟାଂ ଦ୍ୱାଦଶବାର୍ଷିକାଂ ।
ତ୍ର୍ୟଷ୍ଟବର୍ଷୋଽଷ୍ଟବର୍ଷାଂ ବା ଧର୍ମେ ସୀଦତି ସତ୍ୱରଃ ।
(ମନୁ । ୯ । ୯୪)

ତ୍ରିଂଶବର୍ଷବୟସ୍କ ପୁରୁଷ ଦ୍ୱାଦଶବର୍ଷୀୟା ମନୋହାରିଣୀ କନ୍ୟାକୁ ବିବାହ ହେବ । ଚବିଶ ବର୍ଷର ପୁରୁଷ ଆଠ ବର୍ଷର କନ୍ୟାକୁ ବିବାହ ହେବ । ନୋହିଲେ ଧର୍ମର ଅବସାଦ ଘଟିବ । ଶ୍ଳୋକଟି ଏପରି ହେବାର କିଛି ଅସମ୍ଭବ କି ?

ତ୍ରିଂଶଦ୍‌ବର୍ଷୋବହେତ୍କନ୍ୟାଂ ହୃଦ୍ୟାଂ
ଦ୍ୱାବିଂଶ ବା (ଷୋଡ଼ଶ) ବାର୍ଷିକାଂ ।
ତ୍ର୍ୟଷ୍ଟବର୍ଷୋଽଷ୍ଟ ବର୍ଷାଂ ବା ଧର୍ମେ ସୀଦତି ସତ୍ୱରଃ ।

'ହୃଦ୍ୟାଂ' ଶବ୍ଦଟି ବ୍ୟବହୃତ ହୋଇଥିବା ହେତୁରୁ 'ଷୋଡ଼ଶବାର୍ଷିକାଂ' ପଦଟି ଅତୀବ ସମୀଚୀନ ନୁହେଁ କି ? ବାରବର୍ଷୀୟା ବାଳିକା ହୃଦ୍ୟା ହୋଇ ନ ପାରେ । ବାଲ୍ୟବିବାହପକ୍ଷପାତିଗଣ ଦ୍ୱାବିଂଶ ବା ଷୋଡ଼ଶ ସ୍ଥଳରେ ଦ୍ୱାଦଶ ଲେଖିବା ଅସମ୍ଭବ ନୁହେଁ । ଏଥିରେ ଯତି ବା ରୀତିଭଙ୍ଗ ହେଉ ନାହିଁ । ସୁତରାଂ (ଦ୍ୱାବିଂଶ) 'ଷୋଡ଼ଶବାର୍ଷିକାଂ' ସ୍ଥଳରେ ଦ୍ୱାଦଶବାର୍ଷିକାଂ କରାଯାଇଅଛି ବୋଲି ଅନେକଙ୍କର ମତ । ପୁଣି 'ଅଷ୍ଟବର୍ଷାଂ' ଶବ୍ଦକୁ କେହି କେହି ଏପରି ବ୍ୟୁତ୍ପତ୍ତି କରନ୍ତି ଯେ 'ଅଷ୍ଟୌ ଚ ଅଷ୍ଟୌ ଚ ଅଷ୍ଟୌ ।' ଅର୍ଥାତ୍ ଏ ସ୍ଥଳରେ 'ଅଷ୍ଟବର୍ଷାଂ' ଅର୍ଥ 'ଷୋଡ଼ଶବର୍ଷାଂ' । ତାହାହେଲେ ଗୋଟାକଯାକ ଶ୍ଳୋକର ଅର୍ଥ ଏହା ହେଉଅଛି ଯେ ସମାବର୍ତ୍ତନ ଉତ୍ତାରୁ ଯେଉଁ ପୁରୁଷର ବୟସ ତିରିଶ ବା ଚବିଶ, ସେ

ଷୋଡ଼ଶ ବର୍ଷ କନ୍ୟାର ପାଣି ଗ୍ରହଣ କରି ଗୃହସ୍ଥଧର୍ମ କରିବ । ଏହା ନ କଲେ ଧର୍ମ ନାଶ ହେବ । ଯେହେତୁ ଏ ସ୍ଥଳରେ ଗୃହସ୍ଥାଶ୍ରମର ପ୍ରଧାନ ଓ ପ୍ରଥମ ଧର୍ମ ଗର୍ଭାଧାନ । ଅଳ୍ପବୟସ୍କା କନ୍ୟା ବିବାହ ହେଲେ ଗର୍ଭାଧାନ ଅସମ୍ଭବ ବସ୍ତୁତଃ ଧର୍ମର ଅବସାଦ ଘଟିବ ।

ପ୍ରଜନାର୍ଥଂ ସ୍ତ୍ରିୟଃ ସୃଷ୍ଟାଃ ସନ୍ତାନାର୍ଥଂ ଚ ମାନବାଃ ।
ତସ୍ମାତ୍ସାଧାରଣୋ ଧର୍ମଃ ଶ୍ରୁତୌ ପତ୍ନ୍ୟା ସହୋଦିତଃ ॥
(ମନୁ ୯ । ୯୬)

ଗର୍ଭ ଗ୍ରହଣ ନିମନ୍ତେ ଓ ଜନ୍ମ ନିମନ୍ତେ ସ୍ତ୍ରୀର ସୃଷ୍ଟି ଏବଂ ଗର୍ଭାଧାନ ନିମନ୍ତେ ମନୁଷ୍ୟର ସୃଷ୍ଟି, ଏଣୁ ଗର୍ଭୋତ୍ପାଦନ ଓ ଅଗ୍ନ୍ୟାଧାନାଦି ଧର୍ମ ମଧ ପତି ପତ୍ନୀଙ୍କର ସାଧାରଣ ଧର୍ମ । ପ୍ରଜା ଉତ୍ପାଦନ ନିମନ୍ତେ ବିବାହ, ସୁତରାଂ ଷୋଡ଼ଶ ବର୍ଷରୁ ନ୍ୟୂନବୟସ୍କା କନ୍ୟାବିବାହ ଗର୍ଭାଧାନ-ବିବାହର ମୂଳ ଲକ୍ଷ୍ୟ ଉଚ୍ଛେଦକ, ଏଣୁ ବେଦ ଓ ସ୍ମୃତିର ଅନୁମତ ନୁହେଁ ବୋଲାଯିବ ।

ଋତୁମତୀ କନ୍ୟାକୁ ଉପଯୁକ୍ତ ପାତ୍ର ମିଳିବା ସ୍ଥଳେ ପିତା ଦାନ ନ କଲେ ଭ୍ରୂଣହତ୍ୟା ଦୋଷରେ ଲିପ୍ତ ବୋଲି କୌଣସି କୌଣସି ସ୍ମୃତି ଲେଖିଅଛନ୍ତି ।

ଯାବଚ୍ଚ କନ୍ୟାମୃତବଃ ସ୍ପୃଶନ୍ତି
ତୁଲ୍ୟୈଃ ସକାମାମଭିଯାଚ୍ୟମାନାଂ ।
ଭୃଣାନି ତାବନ୍ତି ହତାନି ତାଭ୍ୟାଂ
ମାତାପିତୃଭ୍ୟାମିତି ଧର୍ମବାଦଃ ।
ତ୍ରୀଣି ବର୍ଷାଣ୍ୟୃତୁମତୀ କାଙ୍କ୍ଷେତ ପିତୃଶାସନଂ ।
ତତଶ୍ଚତୁର୍ଥେ ବର୍ଷେ ତୁ ବିନ୍ଦେତ ସଦୃଶଂ ପତିଂ ।
ବଶିଷ୍ଠ

ତ୍ରୀଣି ବର୍ଷାଣ୍ୟୃତୁମତୀଂ ଯଃ କନ୍ୟାଂ ନ ପ୍ରଯଚ୍ଛତି ।
ସ ତୁଲ୍ୟଂ ଭ୍ରୂଣହତ୍ୟାୟା ଦୋଷମୃଚ୍ଛତ୍ୟସଂଶୟଂ ।
ବୌଧାୟନ

ଉଦ୍ଧୃତ ତିନି ଗୋଟି ଶ୍ଳୋକ ଯେ ମନୁଙ୍କର ପୂର୍ବଲିଖିତ ନବମ ଅଧାୟ ନବେ ଶ୍ଳୋକର ପ୍ରତିଧ୍ୱନି, ଏହା କହିବା ବାହୁଲ୍ୟ ମାତ୍ର । ତେବେ ବୌଧାୟନ ଓ ବଶିଷ୍ଠ ଅଧିକନ୍ତୁ ଲେଖନ୍ତି ଯେ, ତିନି ବର୍ଷରୁ ଅଧିକ ରଖିବା ଉଚିତ୍ ନୁହେଁ ।

ଗୌତମ ମଧ ଲେଖିଅଛନ୍ତି ଯେ 'ତ୍ରୀନୃତୂନତୀତ୍ୟ ସ୍ୱୟଂ ଯୁଜ୍ୟତେ' ।

ପ୍ରାୟ ଅଧିକାଂଶ ଓ ପ୍ରସିଦ୍ଧ ସ୍ମୃତିକାରଙ୍କର ଅଭିମତ ଏହି ଯେ, ଋତୁ ହେଲା ପରେ କନ୍ୟାକୁ ତିନି ବର୍ଷରେ ବିବାହ ଦେବା ଉଚିତ୍, ନୋହିଲେ ବର ମନୋନୀତ କରିବା କନ୍ୟାର ଇଚ୍ଛାଧୀନ ।

ମନୁଙ୍କର ଏହି ଆଦେଶ ଓ ଉପଦେଶକୁ ବଶିଷ୍ଠ, ବୌଧାୟନ ଓ ଗୌତମ ଏକ ବାକ୍ୟରେ ସ୍ୱୀକାର କରି ଯାଇଅଛନ୍ତି ।

ଉପରୋକ୍ତ ପ୍ରମାଣସମୂହକୁ ଦୃଷ୍ଟିପାତ କଲା ଉତ୍ତାରୁ କି ଆମ୍ଭ ଦେଶର ବ୍ରାହ୍ମଣମାନେ ଯୁବତୀବିବାହକୁ ଦୋଷାବହ ବୋଲି ମନେ କରିବେ ?

ଅଧିକନ୍ତୁ ଯୁବତୀକନ୍ୟା ଗୃହରେ ରଖିଲେ କିମ୍ବା ଯୁବତୀକନ୍ୟା ବିବାହ କଲେ ପିତା ମାତା ବା କନ୍ୟାଗ୍ରହୀତା ପ୍ରତି ପ୍ରାୟଶ୍ଚିତ୍ତର କୌଣସି ବିଧାନ ନାହିଁ । ପରସ୍ତ୍ରୀ ଅଭିଗମନରେ ଦଣ୍ଡ ଓ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଅଛି । ଗୋବଧରେ ପ୍ରାୟଶ୍ଚିତ୍ତ, ଏମନ୍ତ କି ମର୍କଟ, ମୟୂର, ହଂସ ପ୍ରଭୃତି ବଧ କଲେ ମଧ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଅଛି । ରଜସ୍ୱଳା ସ୍ପର୍ଶ କଲେ ପ୍ରାୟଶ୍ଚିତ୍ତ ଓ ଚାନ୍ଦ୍ରାୟଣର ବ୍ୟବସ୍ଥା ଅଛି, ମାତ୍ର ଋତୁମତୀ କନ୍ୟାବିବାହ ନିମନ୍ତେ କୌଣସି ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ନାହିଁ । ମନୁ, ପରାଶର, ଯାଜ୍ଞବଲ୍କ୍ୟ ପ୍ରଭୃତି କୌଣସି ପ୍ରାୟଶ୍ଚିତ୍ତ ବ୍ୟବସ୍ଥା କରି ନାହାନ୍ତି । ନିର୍ଣ୍ଣୟସିନ୍ଧୁରେ ଗୋଟିଏ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଅଛି । ଆଶ୍ୱଳାୟନଦ୍ୱାରା ଉକ୍ତ ବୋଲି ସେହି ପୁସ୍ତକରେ ଲିଖିତ ଅଛି । ମାତ୍ର ତାହା ଆଶ୍ୱଳାୟନ ଗୃହ୍ୟସୂତ୍ରରେ ନାହିଁ । ଆଶ୍ୱଳାୟନଙ୍କ ନାମରେ ସ୍ମୃତିଗ୍ରନ୍ଥ ଆମ୍ଭମାନଙ୍କର ହସ୍ତଗତ ହୋଇ ନାହିଁ । ଯାହାହେଉ ନିର୍ଣ୍ଣୟସିନ୍ଧୁର ପ୍ରଦର୍ଶିତ ଏକମାତ୍ର ପ୍ରାୟଶ୍ଚିତ୍ତ ବ୍ୟବସ୍ଥାଟି ଅବିକଳ ଉଦ୍ଧୃତ କରାଗଲା ।

କନ୍ୟାମୃତୁମତୀଂ ଶୁଦ୍ଧାଂ କୃତ୍ୱା ନିଷ୍କୃତିମାତ୍ମନଃ ।
ଶୁଦ୍ଧିଂ ଚ କାରୟିତ୍ୱା ତାମୁଦ୍ବହେଦନୃଶଂସଧୀଃ ॥
ପିତା ଋତୂନ୍ ସ୍ୱପୁତ୍ର୍ୟାସ୍ତ ଗଣୟେଦାଦିତଃ ସୁଧୀଃ ।
ଦାନାବଧି ଗୃହେ ଯତ୍ନାତ୍ ପାଳୟେଚ୍ଚ ରଜୋବତୀଂ ॥
ଦଦ୍ୟାଉଦୃତୁସଂଖ୍ୟା ଗାଃ ଶକ୍ତଃ କନ୍ୟାପିତା ଯଦି ।
ଦାତବ୍ୟୈକାପି ନିସ୍ୱେନ ଦାନେ ତସ୍ୟା ଯଥାବିଧି ॥
ଦଦ୍ୟାଦ୍‌ବା ବ୍ରାହ୍ମଣେଷ୍ୱନ୍ନମତିନିଃସ୍ୱଃ ସଦକ୍ଷିଣାଂ ।
ତସ୍ୟାତୀତର୍ତ୍ତୁସଂଖ୍ୟେଷୁ ବରାୟ ପ୍ରତିପାଦୟେତ୍ ॥
ଉପୋଷ୍ୟ ତ୍ରିଦିନଂ କନ୍ୟାଂ ରାତ୍ରୌ ପୀତ୍ୱା ଗବାଂ ପୟଃ ॥
ଅଦୃଷ୍ଟରଜସେ ଦଦ୍ୟାତ୍ କନ୍ୟାୟୈ ରତ୍ନଭୂଷଣଂ ।
ତାମୁଦ୍‌ବହନ୍ ବରଶ୍ଚାପି କୁଷ୍ମାଣ୍ଡୈର୍ଜୁହୁୟାଦ୍ଦ୍ୱିଜଃ ॥

ନିର୍ଣ୍ଣୟ ସିନ୍ଧୁରଚକ ଯେ ଘୋର ବାଲ୍ୟବିବାହ ପକ୍ଷପାତୀ, ଏହା କହିବା ନିଷ୍ପ୍ରୟୋଜନ । ସେ ଗ୍ରନ୍ଥ ଆଲୋଡ଼ନପୂର୍ବକ ଅତି କଷ୍ଟରେ ଉପରୋକ୍ତ କେତୋଟି ଶ୍ଳୋକ ଉଦ୍ଧୃତ କରିଅଛନ୍ତି । ଏଥିରେ ମଧ କୃତ୍ରିମ ଥିବାର ସ୍ପଷ୍ଟ ଜଣା ଯାଉଅଛି ।

'ଅଦୃଷ୍ଟରଜସେ ଦଦ୍ୟାତ୍ କନ୍ୟାୟୈ ରତ୍ନଭୂଷଣଂ' ।

ଏ ପାଦଟି ନିରର୍ଥକ— ପୂର୍ବ ପର ପାଦ ସହିତ ସମ୍ବନ୍ଧ ନାହିଁ । ରଜସ୍ୱଳା କନ୍ୟାର ପ୍ରାୟଶ୍ଚିତ୍ତବିଧିରେ ଅରଜସ୍କା କନ୍ୟାକୁ ରତ୍ନଭୂଷଣ ଦେବାର ବିଧାନ ଲେଖିବା ଅମୂଳକ ନୁହେଁ କି ? କେବଳ ଏ ପଦକ ଲେଖିବାର ପ୍ରୟୋଜନ ଏତିକି ଯେ, ଯେ କୌଣସି ପ୍ରକାରେ ବାଲ୍ୟବିବାହର ପ୍ରାପ୍ତିଟା ଆଶ୍ୱଳାୟନ ଲିଖିତ ବାକ୍ୟ ବୋଲି ପ୍ରଚାର କଲେ ବାଲ୍ୟବିବାହ ପ୍ରତି ଜନସ୍ପୃହା ଜନ୍ମିବ । କିନ୍ତୁ ଏହି ଶ୍ଳୋକ ଦ୍ୱାରା ଋତୁମତୀ କନ୍ୟା ବିବାହ ହେଲେ ଯେ ବରର ଅତ୍ୟଧିକ ଲାଭ ଅଛି, ତତ୍ ପ୍ରତି ଲେଖକର ଲକ୍ଷ୍ୟ ନାହିଁ । ଧନୀ ବ୍ୟକ୍ତିର କନ୍ୟା ତିନି ବର୍ଷ ପିତୃଗୃହରେ ରହିଲେ ପାଣିଗ୍ରହୀତାର ଯେ ଅନ୍ତତଃ ପକ୍ଷରେ ଛତିଶ ଗୋଟି ଧେନୁ ଲାଭ ହେବ ଏବଂ ତାହା ଯେ କନ୍ୟା ଦେହର ଅଳଙ୍କାର ଅପେକ୍ଷା ଅନେକ ବେଶି । ପୁଣି ଗାଈଗୁଡ଼ିକ ସ୍ତ୍ରୀଧନ ନୁହେଁ । ପିତା କେଉଁ କନ୍ୟାକୁ ଅଳଙ୍କାର ନ ଦେବେ ? କନ୍ୟାପିତା ଅତି ନିଃସ୍ୱ ହେଲେ ତ ଅରଜସ୍କା ବିବାହ ହେଲେ ଲାଭ ନାହିଁ ବା ରଜସ୍ୱଳା ବିବାହ ହେଲେ ଲାଭ ନାହିଁ । କେବଳ ବ୍ରାହ୍ମଣର କିଛି ଅନ୍ନଲାଭର ପ୍ରତ୍ୟାଶା ଅଛି । ଯାହାହେଉ ଏହି ପ୍ରାୟଶ୍ଚିତ୍ତ ଯୁବତୀବିବାହର ନିଷେଧପର ନୁହେଁ, ବରଂ ଯୁବତୀବିବାହର ଅନୁକୂଳ ଅଟେ । ପୁଣି ଶେଷରେ ଗୋଟିଏ ଅସଂଲଗ୍ନ ପଦ ଅଛି । ଋତୁମତୀ କନ୍ୟାବିବାହ କରି ବର କୁଷ୍ମାଣ୍ଡ ହୋମ ବା କୁଷ୍ମାଣ୍ଡ ଦାନ କରିବ । ଏ ଯେଉଁ ବ୍ୟବସ୍ଥା, ଏଥିରେ ମସ୍ତିଷ୍କ ଚାଳନା କରିବା ନିରର୍ଥକ । ଏହି ଏକମାତ୍ର ପ୍ରାୟଶ୍ଚିତ୍ତରୁ ମଧ ଆମ୍ଭେମାନେ ଯୁବତୀବିବାହର ପୋଷକତା ପାଇଲୁଁ ବୋଲାଯିବ ।

ଯୁବତୀବିବାହ ସପକ୍ଷରେ ଅନେକ ପ୍ରମାଣ ଉଦ୍ଧୃତ କରାଯାଇପାରିବ, ମାତ୍ର ଆଉ ଅଧିକ ଲେଖି ପ୍ରବନ୍ଧର କଳେବର ବଢ଼ାଇବା ନିଷ୍ପ୍ରୟୋଜନ ।

ବଡ଼ ଆଶ୍ଚର୍ଯ୍ୟ ଓ ଦୁଃଖର ବିଷୟ ଏହି ଯେ, ଗୋଟିଏ ଶ୍ଳୋକ ସମସ୍ତଙ୍କ ମୁଖରେ ବହୁକାଳରୁ ନୃତ୍ୟ କରି ଆସୁଅଛି, ଏବେ ମଧ ନୃତ୍ୟ କରୁଅଛି । ଏହି ବାକ୍ୟଟି ବେଦବିଧି, ସ୍ମୃତିବ୍ୟବସ୍ଥାକୁ ମଧ ପଦଦଳିତ କରୁଅଛି । କେହି ଥରେ ମଧ ଦେଖୁ ନାହାନ୍ତି ବା ଦେଖିବାକୁ ଚେଷ୍ଟା କରୁ ନାହାନ୍ତି ଯେ, ଏହି ଶ୍ଳୋକଟି କେତେ ପ୍ରାଚୀନ, କାହା ରଚିତ । ଏହି ଗୋଟିକ ଶ୍ଳୋକ ଉପରେ ଟୀକା ଟିପ୍ପଣୀ କେତେ ଚାଲିଅଛି, ମାତ୍ର ତା'ର ଭିତ୍ତି କେଉଁଠାରେ, ତାହା କେହି ଅନୁସନ୍ଧାନ କରିବାକୁ ନାହିଁ ।

ଶ୍ଳୋକଟି ଏହି– ଶୌର୍ଯ୍ୟାଦି ଶବ୍ଦାର୍ଥୋ ଯମେନ ଦର୍ଶିତଃ ।

(ମାଧବ)

''ଅଷ୍ଟବର୍ଷା ଭବେଦ୍‌ଗୌରୀ ନବବର୍ଷା ତୁ ରୋହିଣୀ ।
ଦଶମେ କନ୍ୟକା ପ୍ରୋକ୍ତ ଅତଊର୍ଦ୍ଧ୍ୱଂ ରଜସ୍ୱଳା ।''

ମାଧବାଚାର୍ଯ୍ୟ ଏହି ଶ୍ଳୋକଟି ଯମଙ୍କଦ୍ୱାରା ଲିଖିତ ବୋଲି ନିଜ ଗ୍ରନ୍ଥରେ (ପରାଶର ମାଧବରେ) ଲେଖିଅଛନ୍ତି । ପୁଣି ଲେଖିଲେ ଯେ ସମ୍ବର୍ତ୍ତ ମଧ ଲେଖିଅଛନ୍ତି—

''ଅଷ୍ଟବର୍ଷା ଭବେଦ୍ଗୌରୀ ନବମେ ନଗ୍ନିକା ଭବେତ୍ ।
ଦଶମେ କନ୍ୟକା ପ୍ରୋକ୍ତା ଦ୍ୱାଦଶେ ବୃଷଳୀ ସ୍ମୃତା ।''

କେବଳ ଏତିକି ନୁହେଁ— ଗୌରୀ ରୋହିଣୀ ପ୍ରଭୃତି ବାଳିକାଦାନର ଫଳଶ୍ରୁତି ମଧ ଉଦ୍ଧୃତ କରିଅଛନ୍ତି । ଏହି ଶ୍ଳୋକର ରଚକ ମରୀଚି ।

ଗୌରୀଂ ଦଦନ୍ନାକପୃଷ୍ଠଂ ବୈକୁଣ୍ଠଂ ରୋହିଣୀଂ ଦଦତ୍ ।
କନ୍ୟାଂ ଦଦଦ୍ ବ୍ରହ୍ମଲୋକଂ ରୌରବନ୍ତୁ ରଜସ୍ୱଳାଂ ।

ଏତାଦୃଶ ଅନେକ ଦୁଗ୍ଧପୋଷ୍ୟ କନ୍ୟାବିବାହର ଫଳଶ୍ରୁତି ସଂଗ୍ରହ କରାଯାଇପାରନ୍ତା, ମାତ୍ର ସେଗୁଡ଼ିକ ସଂଗ୍ରହ କରିବା ନିଷ୍ପ୍ରୟୋଜନ । ଦେଖାଯାଉ ମୂଳ ଶ୍ଳୋକର ମହତ୍ତ୍ୱ, ଗୁରୁତ୍ୱ ଓ ପ୍ରାମାଣ୍ୟ କିପରି ।

ଯମ ବିଂଶତି ସ୍ମୃତିକର୍ତ୍ତା ମଧ୍ୟରୁ ଜଣେ, ଏହା କେହି ଅସ୍ୱୀକାର କରିବେ ନାହିଁ । ମାତ୍ର ପରାଶର ଓ ବ୍ୟାସଙ୍କୁ ଏହାଙ୍କର ସଂହିତାର ନାମ ଜଣା ନ ଥିଲା । ବ୍ୟାସ ଯେଉଁ କେତୋଟି ଧର୍ମଶାସ୍ତ୍ରର ନାମ ଜ୍ଞାତ ଥିବାର ପ୍ରକାଶ କରିଥିଲେ, ସେଥି ମଧରେ ଯମର ନାମ ନାହିଁ । ସୁତରାଂ ପରାଶର ସ୍ମୃତି ଅନୁସାରେ ଯମ ନଗଣ୍ୟ । ଆମ୍ଭମାନଙ୍କର ହସ୍ତଗତ ଯମସ୍ମୃତି ଆଲୋଡ଼ନ କଲେ ଜଣାଯାଏ ଯେ, ଏହା ଗୋଟିଏ ଅତି କ୍ଷୁଦ୍ର ଗ୍ରନ୍ଥ । ମାତ୍ର ଏଥିରେ ୭୮ ଗୋଟି ଶ୍ଳୋକ । ଅସଂଲଗ୍ନସମ୍ବନ୍ଧ ବିଧି ଓ ନିଷେଧ ବାକ୍ୟଗୁଡ଼ିଏ ଅଛି । ପ୍ରାୟଶ୍ଚିତ୍ତର କଥା ଏଥିରେ ବେଶି । ୨୧ ଶ୍ଳୋକରେ ଶୂଦ୍ରାନ୍ନ ଭକ୍ଷଣ କଲେ ପ୍ରାୟଶ୍ଚିତ୍ତ ଓ ଚାନ୍ଦ୍ରାୟଣ କରିବାର ବ୍ୟବସ୍ଥା ଦେଇ ୨୨ ଶ୍ଳୋକରେ ଆରମ୍ଭ କଲେ—

''ପ୍ରାପ୍ତେ ତୁ ଦ୍ୱାଦଶେ ବର୍ଷେ ଯଃ କନ୍ୟାଂ ନ ପ୍ରଯଚ୍ଛତି ।
ମାସି ମାସି ରଜସ୍ତସ୍ୟାଃ ପିତା ପିବତି ଶୋଣିତଂ ।''୨୨

ଏହାଛଡ଼ା ଆଉ ପାଞ୍ଚ ଗୋଟି ଶ୍ଳୋକରେ ମାତା, ପିତା, ଭାଇ, ବନ୍ଧୁ, ପ୍ରଭୃତିଙ୍କି ନରକରେ ପକାଇବାକୁ ଚେଷ୍ଟା କରିଅଛନ୍ତି । ଶୂଦ୍ରାନ୍ନଭକ୍ଷଣକାରୀ ଓ ଶୂଦ୍ରଯାଜକ ବ୍ରାହ୍ମଣର ଦୋଷ ଓ ପ୍ରାୟଶ୍ଚିତ୍ତ ବିଷୟ ମଧ୍ୟକୁ ଦ୍ୱାଦଶବର୍ଷୀୟା କନ୍ୟାବିବାହର ପ୍ରସଙ୍ଗ ଆସିଲା କିପରି, ଏହା ଗବେଷଣାର ବିଷୟ । ଯାହା ହେଉ ଅଛି ତ । ଏଥିରେ ମଥା ଘୂରାଇବା ନିଷ୍ପ୍ରୟୋଜନ । ଅସଲ କଥା ଯାହା ଉପରେ ଭିତ୍ତି ରଖି ଏତେଗୁଡ଼ାଏ ସ୍ୱର୍ଗ ନରକର ସୃଷ୍ଟି ହେଲା— ପିତା, ମାତା, ଭାଇ, ବନ୍ଧୁ, ପୁରୋହିତ, ବର କିଏ ବା ନରକଗାମୀ, କିଏ ବା ରଜପାୟୀ ହେଲେ, ସେହି ଶ୍ଳୋକଟି ଯମସଂହିତାରେ ଅଛି କି ? ନାହିଁ । ଯମଙ୍କ ମତରେ ବିବାହ ବାର ବର୍ଷ ମଧ୍ୟରେ ହେବା ଉଚିତ, ତେଣିକି ହେଲେ ମହାଦୋଷ, ଏହା ଲେଖି ଯାଇଅଛନ୍ତି । ମାତ୍ର 'ଅଷ୍ଟବର୍ଷା ଭବେଦ୍ ଗୌରୀ' ଏହି ଶ୍ଳୋକଟି ତାଙ୍କ ସଂହିତାରେ ଦେଖାଯାଉ ନାହିଁ । ଦକ୍ଷିଣ ଦିଗ ଯମଙ୍କର ସ୍ଥାନ । ଦକ୍ଷିଣ ଦିଗର ରାଜା ଯମ । ସୁତରାଂ ଦକ୍ଷିଣ ଦେଶପ୍ରଚଳିତ ସ୍ମୃତି ଯମସ୍ମୃତି ବୋଲିବାଦ୍ୱାରା ଲେଖକର କୌଣସି ଦୋଷ ହେଉ ନାହିଁ । ଏଣୁ ଏହି ସ୍ମୃତିରେ ବାଲ୍ୟବିବାହ ଶୂଦ୍ର ପ୍ରତି ଘୃଣାସୂଚକ ବୋଲି ମତ ବ୍ୟକ୍ତ ହୋଇଅଛି ।

ମାଧବାଚାର୍ଯ୍ୟଲିଖିତ ଯମ ଓ ସଂବର୍ତ୍ତକ ସ୍ମୃତିର ଶ୍ଳୋକଯୋଡ଼ିକ ମଧ୍ୟରେ ପାର୍ଥକ୍ୟ ଦେଖାଯାଏ । ଆଠ ବର୍ଷରେ କନ୍ୟାକୁ ଗୌରୀ ବୋଲାଯାଏ, ଏହା ମାଧବଙ୍କ ଯମ ଓ ସମ୍ବର୍ତ୍ତ ବାକ୍ୟରେ ଅନୈକ୍ୟ ନାହିଁ । ମାଧବଙ୍କ ଯମ ମତରେ ନଅ ବର୍ଷର କନ୍ୟାର ନାମ ରୋହିଣୀ ଏବଂ ସମ୍ବର୍ତ୍ତମତରେ ନଗ୍ନିକା । ଦଶମରେ ଉଭୟଙ୍କ ମତରେ କନ୍ୟକା, ମାଧବଙ୍କ ଯମ ଅନୁସାରେ ଦଶ ବର୍ଷ ଉତ୍ତାରୁ ରଜସ୍ୱଳା । ସମ୍ବର୍ତ୍ତମତରେ ବାର ବର୍ଷରେ ବୃଷଳୀ । ଏ ପାର୍ଥକ୍ୟ କାହିଁକି ?

ଆମ୍ଭେମାନେ ଯେ ଉପରେ ଦୁଇ ଗୋଟି ଶ୍ଳୋକର ତୁଳନା କଲୁଁ, ତାହା ମାଧବାଚାର୍ଯ୍ୟଲିଖିତ ପୁସ୍ତକ ଅନୁସାରେ । ବର୍ତ୍ତମାନ ମୂଳ ସମ୍ବର୍ତ୍ତସ୍ମୃତି ଦେଖାଯାଉ ।

ଅଷ୍ଟବର୍ଷା ଭବେଦ୍‌ଗୌରୀ ନବବର୍ଷା ତୁ ରୋହିଣୀ ।
ଦଶବର୍ଷା ଭବେତ୍ କନ୍ୟା ଅତ ଊର୍ଦ୍ଧ୍ୱଂ ରଜସ୍ୱଳା ।
ସମ୍ବର୍ତ୍ତସ୍ମୃତି ୬୬ ଶ୍ଳୋକ

ଏଥିର ବିଶେଷ ଆଲୋଚନା ନିଷ୍ପ୍ରୟୋଜନ । ଏହି ଶ୍ଳୋକର ରଚକ ଯେ ସମ୍ବର୍ତ୍ତ, ଏହା ସମ୍ବର୍ତ୍ତସଂହିତା ଓ ମାଧବଦୃଷ୍ଟିରେ ପ୍ରତିପନ୍ନ ହେଉଅଛି । ସମ୍ବର୍ତ୍ତ ଯେ ଦାକ୍ଷିଣାତ୍ୟ ସ୍ମୃତି, ଏଥିରେ ସନ୍ଦେହ ନାହିଁ । ଜଳଦାନ ଅନ୍ନଦାନର ଖାଦ୍ୟାଖାଦ୍ୟ ଓ ପ୍ରାୟଶ୍ଚିତ୍ତ ବିଷୟ ଏହି ସଂହିତାର ମୂଳ ଲକ୍ଷ୍ୟ । ସେଥିମଧ୍ୟରେ ବର୍ଣ୍ଣାଶ୍ରମ ଧର୍ମର ଦୁଇ ଚାରି କଥା ଲେଖି ଗୋଟିଏ ବାଲ୍ୟବିବାହ ବିଷୟକ ମତ ଓ ଯୁବତୀବିବାହ ନିନ୍ଦାର କଥା ଲେଖି ଯାଇଅଛନ୍ତି ? ସମ୍ବର୍ତ୍ତସଂହିତାରୁ ରୋହିଣୀ ଓ ଗୌରୀର ସୃଷ୍ଟି ।

ଅମର ଓ ହଳାୟୁଧ ରୋହିଣୀ ଶବ୍ଦର ଅର୍ଥ ଗୌରୀ ଲେଖିଅଛନ୍ତି । ଅମର ଓ ମେଦିନୀ ଗୌରୀ ଅର୍ଥ କନ୍ୟା ଲେଖିଅଛନ୍ତି । ହଳାୟୁଧ ଗୌରୀ ଅର୍ଥ ଦେଇ ନାହାନ୍ତି ।

'ଗୌରୀ ତୁ ନଗ୍ନିକାଽନାଗତାର୍ତ୍ତବା' ।
—ଅମର

'ଗୌରୀ ତ୍ୱସଞ୍ଜାତରଜଃକନ୍ୟାଶଙ୍କର-ଭାର୍ଯ୍ୟୟୋଃ' ।
—ମେଦିନୀ

ଅପ୍ରାପ୍ତରଜସ୍କା କନ୍ୟାର ନାମ ଗୌରୀ । ଏଥିରୁ ବୟସର ପରିଚୟ ମିଳୁ ନାହିଁ । ଶବ୍ଦର ଧାତୁଗତ ଅର୍ଥରୁ ମଧ୍ୟ ଏହି ଯୋଡ଼ିକ ଶବ୍ଦର ଅର୍ଥ ଆଠ ନଅ ବର୍ଷର କନ୍ୟା ବୋଲି ପରିଚୟ ମିଳୁଅଛି କି ? ଏ ଯୋଡ଼ିକ ଶବ୍ଦ ବାଲ୍ୟବିବାହ ପ୍ରବର୍ତ୍ତକ ସ୍ମୃତିକର୍ତ୍ତାଙ୍କର କପୋଳକଳ୍ପିତ । ଆମ୍ଭେ ପୂର୍ବେ ଲେଖିଅଛୁଁ ଯେ, 'ଅଷ୍ଟବର୍ଷା ଭବେଦ୍‌ଗୌରୀ ନବବର୍ଷାତୁ ରୋହିଣୀ' ଇତ୍ୟାଦି ଶ୍ଳୋକ ପରାଶରଙ୍କ ରଚିତ ନୁହେଁ । ଏହା ବୋଲିବାର କାରଣ ଅଛି । ଏହା ବୋଲିବାର କାରଣ ଏହି ଯେ, ପରାଶର ବର୍ଣ୍ଣାଶ୍ରମ ବିଚାର ସ୍ଥଳରେ ଗୃହସ୍ଥାଶ୍ରମର ଉଲ୍ଲେଖ କରିବାକୁ ଯାଇ ମନୁ ଓ ଯାଜ୍ଞବଲ୍କ୍ୟ ପ୍ରଭୃତିଙ୍କ ପରି ସ୍ତ୍ରୀ ପୁରୁଷର ଗୁଣ ଓ ବୟସ ନିର୍ବାଚନ ସମ୍ବନ୍ଧରେ କିଛି ହିଁ ଲେଖି ନାହାନ୍ତି । ସୁତରାଂ ବିବାହ ସମ୍ବନ୍ଧରେ ଓ କନ୍ୟାର ବୟସ ନିର୍ବାଚନ ସମ୍ବନ୍ଧରେ ମନୁବଚନକୁ ମାନି ଯାଇଅଛନ୍ତି ବୋଲାଯିବ । ସପ୍ତମ ଅଧ୍ୟାୟରେ ଦ୍ରବ୍ୟସଂଶୁଦ୍ଧି ମଧ୍ୟକୁ ଗୌରୀ ରୋହିଣୀର କଥା ଆସିଲା କିପରି ? ପ୍ରଥମ ଶ୍ଳୋକରେ ଲେଖିଲେ ବାପୀ, କୂପ, ତଡ଼ାଗର ଜଳ ଅପବିତ୍ର ହେଲେ ଶତଘଟ ଜଳ ଉଠାଇ ପଞ୍ଚାମୃତଦ୍ୱାରା ଶୁଦ୍ଧ କରିବ ।

ଏଥିଉତ୍ତାରୁ—

ଅଷ୍ଟବର୍ଷା ଭବେଦ୍‌ଗୌରୀ ନବବର୍ଷା ତୁ ରୋହିଣୀ ।
ଦଶବର୍ଷା ଭବେତ୍ କନ୍ୟା ଅତଊର୍ଦ୍ଧ୍ୱଂ ରଜସ୍ୱଳା ।।
ପ୍ରାପ୍ତେ ତୁ ଦ୍ୱାଦଶେ ବର୍ଷେ ଯଃ କନ୍ୟାଂ ନ ପ୍ରଯଚ୍ଛତି ।
ମାସି ମାସି ରଜସ୍ତସ୍ୟାଃ ପିବନ୍ତି ପିତରଃ ସ୍ୱୟଂ ।।
ମାତା ଚୈବ ପିତା ଚୈବ ଜ୍ୟେଷ୍ଠଭ୍ରାତା ତଥୈବ ଚ ।
ତ୍ରୟସ୍ତେ ନରକଂ ଯାନ୍ତି ଦୃଷ୍ଟ୍ୱା କନ୍ୟାଂ ରଜସ୍ୱଳାଂ ।।

ଯସ୍ତାଂ ସମୁଦ୍ବହେତ୍ କନ୍ୟାଂ ବ୍ରାହ୍ମଣୋଽଜ୍ଞାନମୋହିତଃ ।
ଅସମ୍ଭାଷ୍ୟୋହ୍ୟପାଂକ୍ତେୟଃ ସ ବିପ୍ରୋ ବୃଷଳୀପତିଃ ॥
ଯଃ କରୋତ୍ୟେକରାତ୍ରେଣ ବୃଷଳୀସେବନଂ ଦ୍ୱିଜଃ ।
ସ ଭୈକ୍ଷ୍ୟଭୁଗ୍‌ଜପନ୍ନିତ୍ୟଂ ତ୍ରିଭିର୍ବର୍ଷୈର୍ବିଶୁଦ୍ଧ୍ୟତି ।
ପରାଶର ୭ମ-୬-୧୦

ଛଅ ସଂଖ୍ୟାଠାରୁ ଦଶ ସଂଖ୍ୟା ପର୍ଯ୍ୟନ୍ତ ଚାରିଗୋଟି ଶ୍ଳୋକ ପ୍ରକ୍ଷିପ୍ତ ଅଟେ । ପ୍ରକ୍ଷିପ୍ତ ବୋଲିବାର କାରଣ ଅଛି । ମନୋଯୋଗ ସହିତ ଆଲୋଚନା କଲେ ତାହା ସ୍ପଷ୍ଟ ଜଣାପଡ଼ିବ ।

ପରାଶରଙ୍କର ସପ୍ତମ ଅଧ୍ୟାୟଟି ଶୁଦ୍ଧି ବିଷୟକ ବିଧାନ ଅଟେ । ଏଥି ମଧ୍ୟରୁ ରୋହିଣୀ ଗୌରୀର ବିଷୟ ଆସିବାର କିଛି ହିଁ କାରଣ ନାହିଁ ।

ପଞ୍ଚମ ଓ ଦଶମ ଶ୍ଳୋକ ଶୁଦ୍ଧିବିଷୟକ, ସୁତରାଂ ପଞ୍ଚମ ଉତ୍ତାରୁ ଦଶମ ଶ୍ଳୋକ ଲେଖା ହେବା ଯୋଗ୍ୟ ବୋଲି ମନେ କରାଯାଇପାରେ । ମାତ୍ର ୬ । ୭ । ୮ । ୯ । ୧୦ ପାଞ୍ଚଗୋଟି ଶ୍ଳୋକ ପରବର୍ତ୍ତୀ ବାଲ୍ୟବିବାହ ପକ୍ଷପାତୀ ପଣ୍ଡିତଗଣ ଏଥି ମଧ୍ୟରେ ଯୋଗ କରି ଦେଇଅଛନ୍ତି । ଏପରି କହିବାର କାରଣ ଏହି ଯେ—

ଯଃ କରୋତ୍ୟେକରାତ୍ରେଣ ବୃଷଳୀସେବନଂ ଦ୍ୱିଜଃ ।
ସ ଭୈକ୍ଷ୍ୟଭୁଗ୍‌ଜପନ୍ନିତ୍ୟଂ ତ୍ରିଭିର୍ବର୍ଷୈ ର୍ବିଶୁଦ୍ଧ୍ୟତି । ୧୦

ଏହି ଶ୍ଳୋକରେ ବୃଷଳୀ ଶବ୍ଦଟି ଦେଖି ବାଲ୍ୟବିବାହ-ପକ୍ଷପାତୀ କୌଣସି ପଣ୍ଡିତ ସ୍ୱମତରକ୍ଷଣୋପଯୋଗୀ କେତୋଟି ଶ୍ଳୋକର ଲୋଭ ସମ୍ବରଣ କରି ପାରିଲେ ନାହିଁ, ଏଣୁ ଅନ୍ୟ ଅର୍ବାଚୀନ ସ୍ମୃତିର ପାଞ୍ଚଗୋଟି ଶ୍ଳୋକ ପରାଶରସଂହିତାର ପଞ୍ଚମ ଓ ଏକାଦଶ ଶ୍ଳୋକ ମଧ୍ୟରେ ଯୋଗ କରିଦେଲେ । ଆମ୍ଭେମାନେ ପୂର୍ବରେ କହିଅଛୁଁ ଯେ,

ଅଷ୍ଟବର୍ଷା ଭବେଦ୍‌ଗୌରୀ ନବବର୍ଷା ତୁ ରୋହିଣୀ ।
ଦଶବର୍ଷା ଭବେତ୍ କନ୍ୟା ଅତଉର୍ଦ୍ଧ୍ୱଂ ରଜସ୍ୱଳା ।୬୬
ମାତା ଚୈବ ପିତା ଚୈବ ଜ୍ୟେଷ୍ଠୋଭ୍ରାତା ତଥୈବଚ ।
ତ୍ରୟସ୍ତେ ନରକଂ ଯାନ୍ତି ଦୃଷ୍ଟ୍ୱା କନ୍ୟାଂ ରଜସ୍ୱଳାଂ ।୬୭

ଏହି ଦୁଇ ଗୋଟି ଶ୍ଳୋକ ସମ୍ବର୍ତ୍ତସଂହିତାର ଅଟେ । ଏହା ମାଧବାଚାର୍ଯ୍ୟ ମଧ୍ୟ ମାଧବ ପରାଶରରେ ସ୍ପଷ୍ଟାକ୍ଷରରେ ଲେଖିଯାଇଅଛନ୍ତି । ସୁତରାଂ ଏହି ଶ୍ଳୋକ ଯୋଡ଼ିକ ଅବିସମ୍ବାଦିତ ରୂପରେ ସମ୍ବର୍ତ୍ତଲିଖିତ୍ ବୋଲି ସ୍ୱୀକାର କରିବାକୁ ହେବ ।

ପ୍ରାପ୍ତେ ତୁ ଦ୍ୱାଦଶେ ବର୍ଷେ ଯଃ କନ୍ୟାଂ ନ ପ୍ରଯଚ୍ଛତି ।
ମାସି ମାସି ରଜସ୍ତସ୍ୟାଃ ପିତା ପିବତି ଶୋଣିତଂ । ୨୨
ମାତା ଚୈବ ପିତା ଚୈବ ଜ୍ୟେଷ୍ଠୋଭ୍ରାତା ତଥୈବ ଚ ।
ତ୍ରୟସ୍ତେ ନରକଂ ଯାନ୍ତି ଦୃଷ୍ଟ୍ୱା କନ୍ୟାଂ ରଜସ୍ୱଳାଂ । ୨୩
ଯସ୍ତାଂ ବିବାହୟେତ୍ କନ୍ୟାଂ ବ୍ରାହ୍ମଣୋମଦ୍‌ମୋହିତଃ ।
ଅସଂଭାଷ୍ୟୋହ୍ୟପାତ୍‌କ୍ତେୟଃ ସ ବିପ୍ରୋବୃଷଳୀପତିଃ ।୨୪
(ଯମସ୍ମୃତି)

ଉପରୋକ୍ତ ତିନି ଗୋଟି ଶ୍ଳୋକ ଯମସ୍ମୃତିର ଅଟେ । ମାଧବାଚାର୍ଯ୍ୟ ମଧ୍ୟ ଏହା ଯମସ୍ମୃତିର ବଚନ ବୋଲି ପ୍ରକାଶ କରି ଯାଇଅଛନ୍ତି ।

ଯମସ୍ମୃତି ଏହାଛଡ଼ା ବୃଷଳୀ କାହାକୁ ବୋଲାଯାଏ ତାହ ମଧ୍ୟ ଲେଖିଅଛନ୍ତି, ଯଥା—

ବନ୍ଧ୍ୟା ତୁ ବୃଷଳୀ ଜ୍ଞେୟା ବୃଷଳୀ ତୁ ମୃତପ୍ରଜା ।
ଶୂଦ୍ରୀ ତୁ ବୃଷଳୀ ଜ୍ଞେୟା କୁମାରୀ ତୁ ରଜସ୍ୱଳା । ୨୫

ବୃଷଳୀ ବିଷୟ ପରେ ଆଲୋଚ୍ୟ । ବର୍ତ୍ତମାନ ପରାଶରସଂହିତାର ୬ । ୭ । ୮ । ୯ । ୧୦ ଶ୍ଳୋକ ସମ୍ବନ୍ଧରେ ଆଲୋଚନା କରାଯାଉ । ପୁନର୍ବାର ତିନି ସ୍ମୃତିର ଶ୍ଳୋକଗୁଡ଼ିକ ଏକତ୍ର ଆଗ ପଛ କରି ଲେଖିଲେ ତୁଳନା କରିବାକୁ ସୁବିଧା ମିଳିବ ।

ଅଷ୍ଟବର୍ଷା ଭବେଦ୍ଗୌରୀ ନବବର୍ଷା ତୁ ରୋହିଣୀ ।
ଦଶବର୍ଷା ଭବେତ୍ କନ୍ୟା ଅତ ଉର୍ଦ୍ଧ୍ୱଂ ରଜସ୍ୱଳା । ୬୬
(ପରାଶର)

ଅଷ୍ଟବର୍ଷା ଭବେଦ୍ଗୌରୀ ନବବର୍ଷା ତୁ ରୋହିଣୀ
ଦଶବର୍ଷା ଭବେତ୍ କନ୍ୟା ଅତ ଉର୍ଦ୍ଧ୍ୱଂ ରଜସ୍ୱଳା ।୬୬
(ସମ୍ବର୍ତ୍ତ)

ପ୍ରାପ୍ତେ ତୁ ଦ୍ୱାଦଶେ ବର୍ଷେ ଯଃ କନ୍ୟାଂ ନ ପ୍ରଯଚ୍ଛତି ।
ମାସି ମାସି ରଜସ୍ତସ୍ୟାଃ ପିବନ୍ତି ପିତରଃ ସ୍ୱୟଂ । ୭
(ପରାଶର)

ପ୍ରାପ୍ତେ ତୁ ଦ୍ୱାଦଶେ ବର୍ଷେ ଯଃ କନ୍ୟାଂ ନ ପ୍ରଯଚ୍ଛତି
ମାସି ମାସି ରଜସ୍ତସ୍ୟାଃ ପିତା ପିବତି ଶୋଣିତଂ ।୨୨
(ଯମସ୍ମୃତି)

ମାତା ଚୈବ ପିତା ଚୈବ ଜ୍ୟେଷ୍ଠଭ୍ରାତା ତଥୈବ ଚ ।
ତ୍ରୟସ୍ତେ ନରକଂ ଯାନ୍ତି ଦୃଷ୍ଟ୍ୱା କନ୍ୟାଂ ରଜସ୍ୱଳାଂ । ୮
(ପରାଶର)

ମାତା ଚୈବ ପିତା ଚୈବ ଜ୍ୟେଷ୍ଠୋଭ୍ରାତା ତଥୈବ ଚ ।
ତ୍ରୟସ୍ତେ ନରକଂ ଯାନ୍ତି ଦୃଷ୍ଟ୍ୱା କନ୍ୟାଂ ରଜସ୍ୱଳାଂ ॥ ୨୩
(ଯମସ୍ମୃତି)

ମାତା ଚୈବ ପିତା ଚୈବ ଜ୍ୟେଷ୍ଠୋଭ୍ରାତା ତଥୈବ ଚ ।
ତ୍ରୟସ୍ତେ ନରକଂ ଯାନ୍ତି ଦୃଷ୍ଟ୍ୱା କନ୍ୟାଂ ରଜସ୍ୱଳାଂ ।।୬୭
(ସମ୍ବର୍ତ୍ତ)

ଯସ୍ତାଂ ସମୁଦ୍‌ବହେତ୍ କନ୍ୟାଂ ବାହ୍ମଣୋଃଜ୍ଞାନମୋହିତଃ।
ଅସମ୍ଭାଷ୍ୟୋ ହ ପାଂକ୍ତେୟଃ ସ ବିପ୍ରୋବୃଷଳୀପତିଃ ।।୯
(ପରାଶର)

ଯସ୍ତାଂ ବିବାହୟେତ୍ କନ୍ୟାଂ ବ୍ରାହ୍ମଣୋମଦମୋହିତଃ ।
ଅସମ୍ଭାଷ୍ୟୋ ହ୍ୟପାଂକ୍ତେୟଃ ସ ବିପ୍ରୋବୃଷଳୀପତିଃ ।।୨୪
(ଯମସ୍ମୃତି)

ଯଃ କରୋତ୍ୟେକରାତ୍ରେଣ ବୃଷଳୀସେବନଂ ଦ୍ୱିଜଃ ।
ସ ଭୈକ୍ଷ୍ୟଭୁଗ୍‌ଜପନ୍ନିତ୍ୟଂ ତ୍ରିଭିର୍ବର୍ଷୈ ର୍ବିଶୁଦ୍ଧ୍ୟତି ।୧୦
(ପରାଶର)

ଯକ୍ରୋତ୍ୟେକରାତ୍ରେଣ ବୃଷଳୀସେବନାଦ୍ୱିଜଃ ।
ତଭୈକ୍ଷଭୁଗ୍ ଜପନ୍ନିତ୍ୟଂ ତିଭିର୍ବର୍ଷୈର୍ବ୍ୟପୋହତି ।। ୨୬
(ଯମସ୍ମୃତି)

ପରାଶର ସଂହିତାର ଦ୍ରବ୍ୟସଂଶୁଦ୍ଧି ଅଧ୍ୟାୟରେ ୬ । ୭ । ୮ । ୯ । ୧୦ ଶ୍ଳୋକ ପାଞ୍ଚଗୋଟି ଯମ ଓ ସଂବର୍ତ୍ତ ସଂହିତାରୁ ଅଣାଯାଇ ଲେଖା ଯାଇଅଛି । ଏହା ସ୍ପଷ୍ଟରୂପରେ ପ୍ରମାଣିତ ହେଉଅଛି । କିମ୍ବା ପରାଶର ରଚିତ ପାଞ୍ଚଗୋଟି ଶ୍ଳୋକକୁ ଯମ ଓ ସମ୍ବର୍ତ୍ତ ଭାଗ କରି ଆପଣା ଆପଣା ସଂହିତାରେ ଯୋଗ କରିଅଛନ୍ତି ବୋଲାଯିବ । ଏତଦ୍‌ଭିନ୍ନ ଅନ୍ୟ କିଛି ହିଁ ହୋଇ ନ ପାରେ । ସ୍ମୃତିଲେଖକ ପରାଶର ଓ ସମ୍ବର୍ତ୍ତ ଚୋର ବୋଲି ଆମ୍ଭେ କହି ନ ପାରୁଁ । ତେବେ ପରବର୍ତ୍ତୀ ଲେଖକମାନେ ଚୋରି କରି ଏପରି ଅନ୍ୟାୟ କରିଅଛନ୍ତି ବୋଲିବାଟା ବୋଧହୁଏ ଅସଙ୍ଗତ ନୁହେଁ ।

ପରାଶରସଂହିତା ପୂର୍ବରୁ ସମ୍ବର୍ତ୍ତସଂହିତା ବିଦ୍ୟମାନ ଥିଲା, ଏହା ପରାଶରସଂହିତା ସ୍ୱୀକାର କରିଅଛନ୍ତି । ଏଣୁ ଷଷ୍ଠ ଓ ଅଷ୍ଟମ ଶ୍ଳୋକ ଯେ ସମ୍ବର୍ତ୍ତସଂହିତାରୁ ଅଣାଯାଇଅଛି, ଏହା ଅସ୍ୱୀକାର କରିବାର ଉପାୟ ନାହିଁ ।

ଯମସଂହିତାକୁ ପରାଶର ସ୍ୱୀକାର କରି ନାହାନ୍ତି । ସୁତରାଂ ଯମସଂହିତା ପରାଶରରୁ ସପ୍ତମ, ଅଷ୍ଟମ, ନବମ ଓ ଦଶମ ଶ୍ଳୋକ ଚୋରି କରି ଆପଣା ସଂହିତାରେ ଲେଖିଅଛନ୍ତି ବୋଲିବା ଅସଙ୍ଗତ ନୁହେଁ । ମାତ୍ର ପରାଶର ଲେଖକ ସମ୍ବର୍ତ୍ତର ଶ୍ଳୋକ ଯୋଡ଼ିକ ଚୋରି କରିଥିବା ପ୍ରମାଣିତ ହେଉଥିବାରୁ ଯମର ଶ୍ଳୋକ ଚାରି ଗୋଟି ମଧ୍ୟ ଚୋରି କରିଅଛନ୍ତି ବୋଲିବା ଯୁକ୍ତିସଙ୍ଗତ । ସ୍ୱାର୍ଥସିଦ୍ଧି ଅଭିପ୍ରାୟରେ ଧର୍ମଶାସ୍ତ୍ରମାନଙ୍କରେ ଏପରି ଘଟୁଥିବାର ଭୂରି ଭୂରି ପ୍ରମାଣ ମିଳିପାରିବ । ମାତ୍ର ତାହା ଏ ସ୍ଥଳରେ ବିସ୍ତୃତ ଭାବରେ ଲେଖିବା ନିଷ୍ପ୍ରୟୋଜନ ।

ପୂର୍ବରେ ଆମ୍ଭେ ଲେଖିଅଛୁଁ ଯେ, ପରାଶରସଂହିତାର ଲେଖକ ପରାଶର ଋଷି ନୁହନ୍ତି । ଅନ୍ୟ ଜଣେ ଏହି ଗ୍ରନ୍ଥକୁ ଲେଖି ପରାଶରଙ୍କ ରଚିତ ବୋଲି ପ୍ରକାଶ କରିଅଛନ୍ତି । ସୁତରାଂ ଏପରି ଚୋରି କରିବା ଅପରାଧ ପରାଶରଙ୍କର ନୁହେଁ କିମ୍ବା ପରାଶର ଦ୍ରବ୍ୟସଂଶୁଦ୍ଧି ଲେଖିବାକୁ ଯାଇ ବାଳିକାବିଷୟକ ଅପ୍ରାସଙ୍ଗିକ କଥାର ଅବତାରଣା କଦାପି କରି ନାହାନ୍ତି । ଏହା ଘୋର ବାଲ୍ୟବିବାହପକ୍ଷପାତୀ କୌଣସି ପଣ୍ଡିତଙ୍କର କାର୍ଯ୍ୟ । ଏପରି କରିବାର କାରଣ କ'ଣ ? କାରଣ ଏହି ଯେ, ଦଶମ ଶ୍ଳୋକରେ 'ବୃଷଳୀସେବନଂ ଦ୍ୱିଜଃ' ଏହି ବାକ୍ୟ ଦେଖି ବୃଷଳୀ ଅର୍ଥ ଦ୍ୱାଦଶବର୍ଷୀୟା ଅବିବାହିତା କନ୍ୟା ମନେ କରି ଯମ ଓ ସମ୍ବର୍ତ୍ତ ସ୍ମୃତିର ପାଞ୍ଚଗୋଟି ଶ୍ଳୋକ ପରାଶରସଂହିତାରେ ଦ୍ରବ୍ୟସଂଶୁଦ୍ଧି ଅଧ୍ୟାୟରେ ଯୋଗ କରିଦେଲେ । ଆମ୍ଭମାନଙ୍କର ହସ୍ତଗତ ତାଳପତ୍ର ପୁସ୍ତକରେ ଏହି ପାଞ୍ଚଗୋଟି ଶ୍ଳୋକ ନାହିଁ ।

ପାଠକଗଣ ପ୍ରଣିଧାନପୂର୍ବକ ଆଲୋଚନା କଲେ ସ୍ପଷ୍ଟ ଜାଣିପାରିବେ ଯେ, ସ୍ୱମତ ରକ୍ଷା କରିବା ନିମନ୍ତେ ଏ ଦେଶର ବିଦ୍ୱାନ୍‌ମାନେ କିପରି କପଟପନ୍ଥା ଆଚରଣ କରିଅଛନ୍ତି ।

ଯଃ କରୋତ୍ୟେକରାତ୍ରେଣ ବୃଷଳୀସେବନଂ ଦ୍ୱିଜଃ ।
ସ ଭୈକ୍ଷ୍ୟଭୁଗ୍‌ଜପନ୍ନିତ୍ୟଂ ତିଭିର୍ବର୍ଷୈର୍ବିଶୁଦ୍ଧ୍ୟତି ।

ଯେଉଁ ବ୍ରାହ୍ମଣ ଏକ ରାତ୍ରି ମାତ୍ର ବୃଷଳୀଗମନ କରିବ, ସେ ତିନି ବର୍ଷ ଭିକ୍ଷାନ୍ନ ଭୋଜନପୂର୍ବକ ନିତ୍ୟ ଜପ କଲେ ଶୁଦ୍ଧି ଲାଭ କରିବ ।

ଏହି ବୃଷଳୀ ଶବ୍ଦ ହେତୁ ଏତେ ଗୋଳମାଳ । ଏହି ବୃଷଳୀ ଅର୍ଥ କ'ଣ ? ପ୍ରାୟ ସମସ୍ତେ ମନେ କରନ୍ତି ଯେ, ବାର ବର୍ଷ ମଧ୍ୟରେ କନ୍ୟାର ବିବାହ ନ ହେଲେ ତାହାକୁ ବୃଷଳୀ ବୋଲାଯାଏ ।

ବନ୍ଧ୍ୟା ତୁ ବୃଷଳୀ ଜ୍ଞେୟା ବୃଷଳୀ ତୁ ମୃତପ୍ରଜା ।
ଶୂଦ୍ରୀ ତୁ ବୃଷଳୀ ଜ୍ଞେୟା କୁମାରୀ ତୁ ରଜସ୍ୱଳା ।୨୫

ବନ୍ଧ୍ୟା, ମୃତପ୍ରଜା, ଶୂଦ୍ରୀ, ରଜସ୍ୱଳା କୁମାରୀକୁ ବୃଷଳୀ ବୋଲାଯାଏ । ଏହା ଯମଙ୍କର ବଚନ । ଯମ ଏ ବଚନଟି ଲେଖି ନ ଥିଲେ ବୃଷଳୀ ଅର୍ଥ ରଜସ୍ୱଳା କୁମାରୀ ବୋଲି ବୋଧଗମ୍ୟ ହୁଅନ୍ତା ନାହିଁ । ଗୌରୀ ଓ ରୋହିଣୀ ଶବ୍ଦ ନେଇ ଯେପରି ଗୋଳମାଳ ଦେଖାଯାଏ, ବୃଷଳୀ ଶବ୍ଦ ଘେନି

ମଧ ତଦ୍ରୂପ ବା ତଦପେକ୍ଷା ଅଧିକତର ଗୋଳମାଳ ଦେଖାଯାଏ । ଉଦ୍‌ବାହତତ୍ତ୍ୱରେ ମଧ ଗୋଟିଏ ଶ୍ଳୋକ ଅଛି, ଯାହା ରଘୁନନ୍ଦନ 'ଅତ୍ରିକାଶ୍ୟପୌ' ବୋଲି ଲେଖିଅଛନ୍ତି । ତାହା ଏହି—

ପିତୁର୍ଗେହେ ଚ ଯା କନ୍ୟା ରଜଃ ପଶ୍ୟତ୍ୟସଂସ୍କୃତା ।
ଭୃଣହତ୍ୟା ପିତୁସ୍ତସ୍ୟାଃ ସା କନ୍ୟା ବୃଷଳୀ ସ୍ମୃତା ॥

ଅବିବାହିତା କନ୍ୟା ପିତୃଗୃହରେ ରଜସ୍ୱଳା ହେଲେ ତାକୁ ବୃଷଳୀ ବୋଲାଯାଏ, ଏହା ଯମ ଏବଂ ରଘୁନନ୍ଦନଙ୍କ ଅନୁସାରେ ଅତ୍ରି ଓ କଶ୍ୟପଙ୍କ ବଚନ ଅଟେ ।

ଏହି ଶବ୍ଦର ବ୍ୟୁତ୍ପତ୍ତି ଓ ଅର୍ଥ ଅନ୍ୟାନ୍ୟ ସ୍ମୃତି, ପୁରାଣ ଓ କୋଷ ଆଲୋଚନାରୁ ସ୍ପଷ୍ଟୀକୃତ କରାଯାଉ ।

ଶୂଦ୍ରୋହ୍ୟନ୍ତ୍ୟବର୍ଣ୍ଣୋ ବୃଷଳଃ ।
(ହଳାୟୁଧ)

ଶୂଦ୍ରାଷ୍ଟାବରବର୍ଣ୍ଣାଶ୍ଚ ବୃଷଳାଶ୍ଚ ଜଘନ୍ୟଜାଃ ।
(ଅମର)

ବୃଷଳୋ ଗୁଞ୍ଜନେ ଶୂଦ୍ରେ ଚନ୍ଦ୍ରଗୁପ୍ତେଽପି ରାଜନି ।
(ମେଦିନୀ)

ଅଭିଧାନ ଅନୁସାରେ ବୃଷଳ ଅର୍ଥ ଶୂଦ୍ର ଏବଂ ବୃଷଳୀ ଅର୍ଥ ଶୂଦ୍ର ସ୍ତ୍ରୀ ।

ବୈଦିକ ଗ୍ରନ୍ଥରେ ବୃଷଳ ଓ ବୃଷଳୀ ଶବ୍ଦ ଅଛି । ଏହାର ଅର୍ଥ ଏହି ଯେ ଦ୍ୟୂତକ୍ରୀଡ଼ାଦି ନିନ୍ଦିତ କାର୍ଯ୍ୟରତ ବା ରତା ପୁରୁଷ ଓ ସ୍ତ୍ରୀକୁ ବୃଷଳ ଓ ବୃଷଳୀ ବୋଲାଯାଏ ।

ସ୍ୱବୃଷଂ ଯା ପରିତ୍ୟଜ୍ୟ ପରଞ୍ଚୈବ ବୃଷାୟତେ ।
ବୃଷଳୀ ସା ହି ବିଜ୍ଞେୟା ନ ଶୂଦ୍ରୀ ବୃଷଳୀ ଭବେତ୍ ॥

ସ୍ୱ ପତିକୁ ଅବଜ୍ଞା କରି ପରପତିଠାରେ ଆସକ୍ତା ସ୍ତ୍ରୀର ନାମ ମଧ ବୃଷଳୀ ।

ଶୂଦ୍ରାନ୍ନଭୋଜିନଃ କ୍ରୂରା ବୃଷଳୀରତିକାମୁକାଃ ।
(ମହାନିର୍ବାଣତନ୍ତ୍ରେ ୧ । ୪୭)

ବୃଷଳୀରତିକାମୁକାଃ—ଶୂଦ୍ରାରତିକାମୟିତାରଃ ।
ଯଦି ଶୂଦ୍ରାଂ ବ୍ରଜେଦ୍ ବିପ୍ରୋ ବୃଷଳୀପତିରେବ ସଃ ।
(ବ୍ରହ୍ମ.ବୈ.ପୁ)

ଯଦି ବ୍ରାହ୍ମଣ ଶୂଦ୍ରା ସ୍ତ୍ରୀ ସମ୍ଭୋଗ କରେ, ତାହାକୁ ବୃଷଳୀପତି ବୋଲାଯାଏ ।

ଉପରୋକ୍ତ ସମସ୍ତ ପ୍ରମାଣରୁ ସ୍ପଷ୍ଟ ଜଣାଯାଉଅଛି ଯେ, ବୃଷଳୀ ଅର୍ଥ ଶୂଦ୍ରା ସ୍ତ୍ରୀ । ମନୁରେ ମଧ ବୃଷଳୀ ଶବ୍ଦ ଅଛି ଓ ବୃଷଳ ଶବ୍ଦ ମଧ ଅଛି ।

ବୃଷୋହି ଭଗବାନ୍ଧର୍ମସ୍ତସ୍ୟ ଯଃ କୁରୁତେ ହ୍ୟଳଂ ।
ବୃଷଳଂ ତଂ ବିଦୁର୍ଦ୍ଦେବା ସ୍ତସ୍ମାଦ୍ଧର୍ମଂ ନ ଲୋପୟେତ୍ ॥
ମନୁ : ୮ । ୧୬

କାମବର୍ଷୀ ବୃଷ ବା ଧର୍ମକୁ ଯେ ବାରଣ କରେ, ତାହାକୁ ଦେବତାମାନେ ବୃଷଳ ବୋଲି ଜାଣନ୍ତି । ଏଣୁ ଧର୍ମକୁ ଲୋପ କରିବ ନାହିଁ । ଏଠାରେ ବୃଷଳ ଜାତିବାଚକ ବା ଶୂଦ୍ରପର ନୁହେଁ । ଧର୍ମବ୍ୟତିକ୍ରମକାରୀର ନାମ ବୃଷଳ । ସ୍ତ୍ରୀ ହେଲେ ବୃଷଳୀ ହେବା ସ୍ୱାଭାବିକ ।

ବୃଷଳୀ ଫେନପୀତସ୍ୟ ନିଃଶ୍ୱାସୋପହତସ୍ୟ ଚ ।
ତସ୍ୟାଂ ଚୈବ ପ୍ରସୂତସ୍ୟ ନିଷ୍କୃତିର୍ନ ବିଧୀୟତେ ॥
ମନୁ । ୩ । ୧୯

ଶୂଦ୍ରାର ଅଧରରସପାୟୀ, ଶୂଦ୍ରା ସହିତ ଏକ ଶଯ୍ୟାରେ ଶୟନକାରୀ (ଶୂଦ୍ରାର ପ୍ରଶ୍ୱାସ ଗ୍ରାହୀ) ଏବଂ ଶୂଦ୍ରାପ୍ରସୂତର ଶୁଦ୍ଧି ନାହିଁ ।

ଏତିକି ନୁହେଁ, ଦ୍ୱାଦଶ ଅଧ୍ୟାୟରେ ପରାଶର ମଧ ଲେଖିଅଛନ୍ତି—

ଅଗ୍ନିକାର୍ଯ୍ୟାତ୍ ପରିଭ୍ରଷ୍ଟାଃ ସନ୍ଧ୍ୟୋପାସନବର୍ଜ୍ଜିତାଃ ।
ବେଦଂ ଚୈବାନଧୀୟାନାଃ ସର୍ବେ ତେ ବୃଷଳାଃ ସ୍ମୃତାଃ ॥
(ପରାଶର ୧୨ । ୨୯)

ଯେଉଁ ସକଳ ବ୍ରାହ୍ମଣ ଅଗ୍ନିକାର୍ଯ୍ୟରୁ ପରିଭ୍ରଷ୍ଟ, ସନ୍ଧ୍ୟୋପାସନାବର୍ଜ୍ଜିତ, ଯେଉଁମାନେ ବେଦପାଠପରାଙ୍ମୁଖ, ସେମାନଙ୍କୁ ବୃଷଳ ବୋଲାଯାଏ । ଏହା ଦେଖିବାକୁ ଗଲେ ଅଧୁନାତନ ଅଧିକାଂଶ ବ୍ରାହ୍ମଣ ବୃଷଳ, ସେମାନଙ୍କର ସ୍ତ୍ରୀମାନେ ବୃଷଳୀ । ବାଳିକାବିବାହ କରିବାଦ୍ୱାରା ବେଦବିହିତ ଗୃହ୍ୟାଗ୍ନି ରକ୍ଷା ଓ ପଞ୍ଚଯଜ୍ଞ ବିବାହର ଅବ୍ୟବହିତ ପରେ କରୁ ନାହାନ୍ତି କିମ୍ବା ଗୃହ୍ୟାଗ୍ନି ରକ୍ଷାରେ ସ୍ତ୍ରୀକୁ ନିଯୁକ୍ତ କରୁ ନାହାନ୍ତି; ଏଣୁ ବ୍ରାହ୍ମଣମାନେ ବୃଷଳ ଓ ବ୍ରାହ୍ମଣୀମାନେ ବୃଷଳୀ । ଏହି ଶବ୍ଦ ଦୁଇଗୋଟି ସର୍ବବ୍ୟାପକ ହୋଇଥିବା ସ୍ଥଳେ କେବଳ ଅର୍ବାଚୀନ ସ୍ମୃତି ଗୋଟିକର ମତ ଗ୍ରହଣ କରି କେବଳ ପିତୃଗୃହରେ ଅବିବାହିତା ରଜସ୍ୱଳା ଉପରେ ଅଯଥା ଦୋଷାରୋପଣର ଫଳ କ'ଣ ?

ସେହି ମାଧବାଚାର୍ଯ୍ୟ ଏକ ସ୍ଥଳରେ ଲେଖି ଅଛନ୍ତି—

'ବୃଷଳତ୍ୱଂ ଶୂଦ୍ରାଦିସମାନତ୍ୱଂ' ।

ବେଦଠାରୁ ଆରମ୍ଭି ମନୁ, ପୁରାଣ ଓ କୋଷମାନ ପରୀକ୍ଷା କରାଗଲେ ସୁଦ୍ଧା ପିତୃଗୃହରେ ସଞ୍ଜାତରଜା କନ୍ୟା ଅର୍ଥ ବୃଷଳୀ, ଏହା ମିଳିଲା ନାହିଁ । କେବଳ କେତେଜଣ ସ୍ମୃତିକର୍ତ୍ତା ବିନା କାରଣରେ ବୃଷଳୀ ଅର୍ଥ ପିତୃଗୃହରେ ଅସଂସ୍କୃତା ରଜସ୍ୱଳା କନ୍ୟାର ନାମ ବୋଲି ଲେଖିଗଲେ । ଯେଉଁ ସ୍ମୃତିକର୍ତ୍ତାମାନେ ଏହି ବାକ୍ୟଟି ଲେଖିଅଛନ୍ତି, ସେମାନେ ମନୁ ତୁଲ୍ୟ ନୁହନ୍ତି, ମନୁ ପରି ପ୍ରାଚୀନ ନୁହନ୍ତି । ଯମ ମଧ ରଜସ୍ୱଳା କୁମାରୀ ବୋଲି ଲେଖିଅଛନ୍ତି, ମାତ୍ର ତାହା କପୋଳକଳ୍ପିତ, ଧାତୁଗତ ଅର୍ଥ ନୁହେଁ କିମ୍ବା ପ୍ରାଚୀନ ବେଦ ପୁରାଣର ପ୍ରମାଣ ନୁହେଁ। ପୁଣି ବନ୍ଧ୍ୟାକୁ, ମୃତବତ୍ସାକୁ, ଶୂଦ୍ରାକୁ ଓ ଋତୁମତୀ କୁମାରୀକୁ ବୃଷଳୀ ବୋଲାଯାଏ । ଏପରି ସ୍ଥଳରେ ଯେ ଏକରାତ୍ରି ମାତ୍ର ବୃଷଳୀ ଗମନ କରିବ, ସେ ପତିତ ହେବ ବୋଲି ଯାହା ଲେଖାଅଛି, ତାହାର ତାତ୍ପର୍ଯ୍ୟ କଅଣ ? ବନ୍ଧ୍ୟା ସମ୍ଭୋଗ କଲେ, କି ମୃତବତ୍ସା ସମ୍ଭୋଗ କଲେ, କି ଶୁଦ୍ରା ସମ୍ଭୋଗ କଲେ, କି ଋତୁମତୀ କୁମାରୀ ସମ୍ଭୋଗ କଲେ ପତିତ ହେବ ? ବ୍ୟଭିଚାର ହେତୁ ଚାରି ସ୍ଥଳରେ ପତିତ ହେବ ସନ୍ଦେହ ନାହିଁ । ନତୁବା ଅନେକ ବନ୍ଧ୍ୟା ଓ ମୃତବତ୍ସାର ସ୍ୱାମୀ ଅଛନ୍ତି, ସେମାନେ ଅବଶ୍ୟ ନିଜ ନିଜର ସ୍ତ୍ରୀ ସମ୍ଭୋଗ କରୁଅଛନ୍ତି, ସେଥି ନିମନ୍ତେ ପ୍ରାୟଶ୍ଚିତ୍ତ କରୁ ନାହାନ୍ତି । ଋତୁମତୀ କୁମାରୀ ପିତୃଗୃହରେ ଅବିବାହିତା ହୋଇ ରହିବା ପରେ ବିବାହ ହେବାର ବ୍ୟବସ୍ଥା ମନୁ, ଗୌତମ, ବିଷ୍ଣୁ, ଆପସ୍ତମ୍ବ ପ୍ରଭୃତି ସ୍ମୃତିକର୍ତ୍ତାମାନେ ନିର୍ଦ୍ଦେଶ କରିଅଛନ୍ତି ଓ ଉପଦେଶ ଦେଇଅଛନ୍ତି । ସୁତରାଂ ଋତୁମତୀ କୁମାରୀ ବିବାହର ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ମଧ ନାହିଁ । ପରାଶର ବର୍ଣ୍ଣାଶ୍ରମ ଧର୍ମ ସ୍ଥଳରେ ଏ ସମ୍ବନ୍ଧରେ କିଛି ନ କହିଥିବାରୁ ଉପରୋକ୍ତ ସ୍ମୃତିକର୍ତ୍ତାମାନଙ୍କ ମତକୁ ସ୍ୱୀକାର କରିଯାଇଅଛନ୍ତି ବୋଲାଯିବ । ଅତଏବ ସ୍ୱଚ୍ଛନ୍ଦରେ ବୋଲାଯାଇ ପାରେ ଯେ, ପରାଶର ସ୍ମୃତିର ୬ । ୭ । ୮ । ୯ । ଓ ୧୦ ଶ୍ଳୋକ ପାଞ୍ଚଗୋଟି ଯମ ଓ ସମ୍ବର୍ତ୍ତ ସ୍ମୃତିରୁ ଅର୍ବାଚୀନ କୌଣସି ବାଲ୍ୟବିବାହ ପକ୍ଷପାତୀ ଓ ଯୁବତୀବିବାହ ବିଦ୍ୱେଷୀ ଲେଖକଦ୍ୱାରା ପରାଶର ସ୍ମୃତିରେ ସଂଯୋଜିତ ହୋଇଅଛି ।

ମାଧବାଚାର୍ଯ୍ୟ ପରାଶରର ଚତୁର୍ଥ ଅଧ୍ୟାୟରେ ବର୍ଣ୍ଣାଶ୍ରମ ଧର୍ମର ପ୍ରସ୍ତାବ ପ୍ରସଙ୍ଗରେ ଅନ୍ୟାନ୍ୟ ସ୍ମୃତିକର୍ତ୍ତାମାନଙ୍କ ମତ ଉଦ୍ଧୃତ କରିଥିଲେ ମଧ ସପ୍ତମ ଅଧ୍ୟାୟରେ ପରାଶର ଏହା ଲେଖିଅଛନ୍ତି ବୋଲି ସୂଚନା ମଧ କଲେ ନାହିଁ ଏବଂ ସପ୍ତମ ଅଧ୍ୟାୟରେ ଗୌରୀ, ରୋହିଣୀ ପ୍ରଭୃତିର ଉଲ୍ଲେଖ ହେବାର ଯେଉଁ କାରଣ ଦେଖାଇଅଛନ୍ତି, ତାହା ମଧ ଛଳନାପୂର୍ଣ୍ଣ । ସେଥିର ଆଲୋଚନା ନିରର୍ଥକ ।

ବୃଷଳୀ ଶବ୍ଦର ଅର୍ଥ ଶୂଦ୍ରା ଓ ନିନ୍ଦ୍ୟ କାର୍ଯ୍ୟ କରିବା ସ୍ତ୍ରୀ । ଏହି ଅର୍ଥ ନେଇ ପିତୃଗୃହରେ ରହି କନ୍ୟା ରଜୋବତୀ ହେବା ନିନ୍ଦ୍ୟ, ଏଣୁ ରଜସ୍ୱଳା କୁମାରୀ ବୃଷଳୀ ବୋଲି ଗୋଟିଏ କପୋଳକଳ୍ପିତ ଅର୍ଥ ଯୋଜନା କରି ପଶ୍ଚାତ୍‌ବର୍ତ୍ତୀ ବ୍ରାହ୍ମଣମାନଙ୍କୁ ପ୍ରତାରିତ କରିବାର ଚେଷ୍ଟା କରାଯାଇଅଛି । ଏପରି ଛଳନା ଓ ଚାତୁରୀ ଉପରେ ବିଶ୍ୱାସ ରଖିବାରୁ ଜାତୀୟ ଅଧୋଗତି ଘଟିଅଛି ।

ଗୌରୀ, ରୋହିଣୀ ଶବ୍ଦ ହେତୁ ସର୍ବପ୍ରକାର ଗୋଳମାଳ । ଏ ଶବ୍ଦ ଯୋଡ଼ିକ ବୟସର ନ୍ୟୂନାଧିକ୍ୟ ନେଇ ବ୍ୟାକରଣ ନିଷ୍ପନ୍ନ ହୋଇ ନ ଥିବାରୁ ଯେଉଁ ଲେଖକ ଯାହା ଭାବିଲେ, ସେ ନିଜ ସ୍ମୃତିରେ ଲେଖି ଦେଇଗଲେ । ପୂର୍ବେ ସମ୍ବର୍ତ୍ତ, ଯମ ପ୍ରଭୃତି ଯାହା କହିଲେ, ତାହା ପ୍ରକାଶ କରାଯାଇଅଛି । ଏବେ ଆଉ ଦୁଇ ଗୋଟି ଦେଖାଯାଉ—

ଅପ୍ରାପ୍ତରଜସା ଗୌରୀ ପ୍ରାପ୍ତେ ରଜସି ରୋହିଣୀ ।
ଅବ୍ୟଞ୍ଜନକୃତା ଶ୍ୟାମା କୁଚହୀନାତୁ ନଗ୍ନିକା ॥
ଅଙ୍ଗିରା(ହେମାଦ୍ରି)

ଅପ୍ରାପ୍ତରଜସ୍କାକୁ ଗୌରୀ ବୋଲାଯାଏ । ରଜସ୍ୱଳାକୁ ରୋହିଣୀ ବୋଲାଯାଏ ।

ସପ୍ତବର୍ଷା ଭବେଦ୍‌ଗୌରୀ ଦଶବର୍ଷା ତୁ କନ୍ୟକା ।
ପ୍ରାପ୍ତେ ତୁ ଦ୍ୱାଦଶେ ବର୍ଷେ କୁମାରୀତ୍ୟଭିଧୀୟତେ ॥
କାଶ୍ୟପ(ହେମାଦ୍ରି)

କାହାର କଥା ସତ୍ୟ ଓ ବିଶ୍ୱାସଯୋଗ୍ୟ ? ଅଙ୍ଗିରାଙ୍କଠାରୁ ବଳି ପ୍ରାଚୀନ ଋଷି ଆଉ କିଏ ? ସେ କହିଲେ, ଋତୁମତୀ ହେଲେ ରୋହିଣୀ ବୋଲାଯାଏ । ଏବେ ଅଙ୍ଗିରାବଚନ ଗ୍ରାହ୍ୟ କି ସମ୍ବର୍ତ୍ତବଚନ ଗ୍ରାହ୍ୟ ?

ଯୁବତୀବିବାହ ସପକ୍ଷରେ ପୁରାଣାଦିରେ ବିସ୍ତାର ମତ ରହିଅଛି । ସେ ସବୁ ଉଲ୍ଲେଖ କରି ପ୍ରବନ୍ଧ ବଢ଼ାଇବା ନିଷ୍ପ୍ରୟୋଜନ । ପୁରାଣରେ ଯୁବତୀବିବାହର ପ୍ରମାଣ ପ୍ରାୟ ସମସ୍ତ ପୁରାଣପାଠକଙ୍କୁ ଜଣା । ତଥାପି ଆଉ ଦୁଇ ଚାରି ଗୋଟି ପ୍ରମାଣ ପୁରାଣ ଓ ସ୍ମୃତିରୁ ଉଦ୍ଧୃତ କରାଯାଉ :—

ଗାନ୍ଧର୍ବେଣ ବିବାହେନ ଯସ୍ତୁକନ୍ୟାଂ ପ୍ରଯଚ୍ଛତି ।
ଗନ୍ଧର୍ବଲୋକମାସାଦ୍ୟ କ୍ରୀଡ଼ତେ ଦେବବଚ୍ଚିରଂ ।
ବହ୍ନିପୁରାଣ (ହେମାଦ୍ରି)

ଗାନ୍ଧର୍ବେଣ ଗନ୍ଧର୍ବଲୋକଂ ଗଚ୍ଛତି ।
ବିଷ୍ଣୁସ୍ମୃତି, ୨୭ ଅ

ଯୁବତୀବିବାହ ଦେଇ ଦାତା ଗନ୍ଧର୍ବଲୋକକୁ ଯାଏ ।
ଚତୁର୍ବର୍ଷାବିଧି ସୁତାନ୍ ଲାଳୟେତ୍ ପାଳୟେତ୍ ପିତା ।
ତତଃ ଷୋଡ଼ଶପର୍ଯ୍ୟନ୍ତଂ ଗୁଣାନ୍ ବିଦ୍ୟାଞ୍ଚ ଶିକ୍ଷୟେତ୍ ।୪୫
ବିଂଶତ୍ୟଦ୍ଧାଧିକାନ୍ ପୁତ୍ରାନ୍ ପ୍ରେରୟେଦ୍‌ଗୃହକର୍ମସୁ ।
ତତସ୍ତାଂସ୍ତୁଲ୍ୟଭାବେନ ମହା ସ୍ନେହଂ ପ୍ରଦର୍ଶୟେତ୍ । ୪୬
କନ୍ୟାପ୍ୟେବଂ ପାଳନୀୟା ଶିକ୍ଷଣୀୟାତିଯତ୍ନତଃ ।
ଦେୟା ବରାୟ ବିଦୁଷେ ଧନରତ୍ନସମନ୍ୱିତା । ୪୬
ମହାନିର୍ବାଣ ତନ୍ତ୍ର–୮ମ ଉ.

ଉପରୋକ୍ତ ଶ୍ଳୋକରୁ କି ସ୍ପଷ୍ଟ ପ୍ରକାଶ ପାଉ ନାହିଁ ଯେ, ପୁତ୍ର ପରି କନ୍ୟାକୁ ପାଳନ ଓ ଶିକ୍ଷା ଦେଇ ଉପଯୁକ୍ତ ପାତ୍ରରେ ଅର୍ପଣ କରିବ ? ଏହି ଶ୍ଳୋକ ତିନି ଗୋଟିରୁ ଏପରି ଅର୍ଥ ହେଉଅଛି ଯେ, ପୁଅକୁ ଷୋହଳ ବର୍ଷ ପାଳନ ଓ ଶିକ୍ଷା ଦେବ ଏବଂ କନ୍ୟାକୁ ଆଠ ବର୍ଷ ପାଳନ କରିବ ଓ ଶିକ୍ଷା ଦେବ । ଆମ୍ଭମାନଙ୍କର ଅଳ୍ପ ବୁଦ୍ଧିକୁ ଏହା ଦେଖାଯାଉଅଛି ଯେ, କନ୍ୟାକୁ ମଧ ଷୋହଳ ବର୍ଷ ଶିକ୍ଷା ଦେବ ।

ପୁଣି ଲେଖା ଅଛି :—

ଅଜ୍ଞାତପତି ମର୍ଯ୍ୟାଦାମଜ୍ଞାତପତି ସେବନାଂ ।
ନୋଦ୍‌ବାହୟେତ୍ ପିତା ବାଳାମଜ୍ଞାତଧର୍ମଶାସନାଂ ।
ମହାନିର୍ବାଣତନ୍ତ୍ର । ୮ ଲ । ୧୦୭

ଯେଉଁ କନ୍ୟା ପତିମର୍ଯ୍ୟାଦା ଜାଣୁ ନ ଥିବ, ପତିସେବା ଜାଣୁ ନ ଥିବ, ଧର୍ମଶାସନ ଜାଣୁ ନ ଥିବ, ସେପରି କନ୍ୟାକୁ ପିତା ବିବାହ କରି ଦେବେ ନାହିଁ ।

ସ୍ୱର୍ଗପ୍ରାପ୍ତ୍ୟାଶାରେ ଅଜ୍ଞା ବାଳିକାର ବିବାହକୁ ନାମମାତ୍ର ବିବାହ ବୋଲା ଯାଇପାରେ ।

ସର୍ବାବୟବସମ୍ପୂର୍ଣ୍ଣାଂ ସୁବୃତାମୁଦ୍‌ବହେନ୍ନରଃ ।
ଲଘୁହାରୀତି

ଆଠବର୍ଷର ବାଳିକାକୁ ସର୍ବାବୟବସମ୍ପୂର୍ଣ୍ଣା ବୋଲାଯିବ, କି ଷୋଡ଼ଶ ବର୍ଷୀୟା ଯୁବତୀଠାରେ ଏହି ବିଶେଷଣ ପ୍ରଯୁକ୍ତ ହେବ, ତାହା ପାଠକଙ୍କର ବିଚାର୍ଯ୍ୟ ।

ଏ ପ୍ରକାର ଆଲୋଚନା କରିବାକୁ ଗଲେ ଅଧିକାଂଶ ସ୍ମୃତି ଯୁବତୀବିବାହ ପରି ବାକ୍ୟ ଲେଖିଯାଇଅଛନ୍ତି ।

ବିବାହପର୍ଯ୍ୟାୟ ଏକାର୍ଥକ ବୋଧ ହେଉଥିଲେ ମଧ ବ୍ୟବହାରଗତ ପାର୍ଥକ୍ୟ ଅଛି, ତାହା ପୂର୍ବେ ଆମ୍ଭେମାନେ ବିଶଦ୍‌ଭାବରେ ଉଲ୍ଲେଖ କରିଅଛୁଁ । ମନୁ ପ୍ରଭୃତି ସ୍ମୃତିକାରମାନେ ବିନା ବିବେଚନାରେ ଯେପରି ଯେପରି ଭାବରେ ଶବ୍ଦ, ଯୋଜନା କରିବେ, ତାହା ଆମ୍ଭର ବିଶ୍ୱାସ ହେଉ ନାହିଁ । ବିବାହିତା ହେଲେ ମଧ ଦୁଗ୍ଧପୋଷ୍ୟା ବାଳିକାଠାରେ ଦାରା, ପତ୍ନୀ, ଜାୟା ଶବ୍ଦ ବିଜ୍ଞବ୍ୟକ୍ତିଦ୍ୱାରା ବ୍ୟବହୃତ ହେବା ହାସ୍ୟାସ୍ପଦ ନୁହେଁ କି ? ପୁଣି ବାଗ୍‌ଦତ୍ତା କନ୍ୟାକୁ ଉଦ୍‌ବାହିତା ବୋଲି କହିବା ଅସଙ୍ଗତ ନୁହେଁ କି ? ପାଠକଗଣ ଦେଖିପାରିବେ ଯେ, ମନୁରେ ବ୍ୟବହୃତ ବିବାହପର ଶବ୍ଦ ଓ ସ୍ତ୍ରୀବାଚକ ଶବ୍ଦ ସମସ୍ତ ଯୁବତୀପର ଓ ଗୃହକର୍ତ୍ତ୍ରୀପରିଚାୟକ ଅଟନ୍ତି । ପ୍ରସଙ୍ଗକ୍ରମେ ସେ ଶବ୍ଦଗୁଡ଼ିକ ପରେ ଆଲୋଚିତ ହେବ ।

ସ୍ମୃତିରେ ଅଛି ବୋଲି ଚକ୍ଷୁ ମୁଦ୍ରିତ କରି କାର୍ଯ୍ୟ କରିବା ଅପେକ୍ଷା ବିବେଚନାପୂର୍ବକ କାର୍ଯ୍ୟ କରିବା ଯୁକ୍ତିସଙ୍ଗତ । ଏଥି ସଙ୍ଗରେ ଦୟାନନ୍ଦ ସରସ୍ୱତୀଙ୍କର ଗୋଟିଏ କଥା ମନେ ପଡ଼ିଲା । ସେ ଲେଖିଅଛନ୍ତି—

ବ୍ରହ୍ମୋବାଚ

ଏକକ୍ଷଣା ଭବେଦ୍‌ଗୌରୀ ଦ୍ୱିକ୍ଷଣେୟନ୍ତୁ ରୋହିଣୀ ।
ତ୍ରିକ୍ଷଣା ସା ଭବେତ୍‌କନ୍ୟା ହ୍ୟତ ଊର୍ଦ୍ଧ୍ୱଂ ରଜସ୍ୱଳା ।

ଯଦି ଯମ ବା ସମ୍ବର୍ତ୍ତବାକ୍ୟକୁ ବିଶ୍ୱାସ କରି ଆଠବର୍ଷର କନ୍ୟାକୁ ଗୌରୀ ବୋଲୁଅଛ, ତେବେ ବ୍ରହ୍ମାଙ୍କ କଥାରେ ବିଶ୍ୱାସ କରି ଜନ୍ମ ମାତ୍ର ଏକକ୍ଷଣା କନ୍ୟାର ନାମ ଗୌରୀ ଓ ଦୁଇ କ୍ଷଣ ମାତ୍ର କନ୍ୟାର ନାମ ରୋହିଣୀ ହେଉ । ଏହାର ତାତ୍ପର୍ଯ୍ୟ ଏହି ଯେ ବ୍ରହ୍ମା, ବିଷ୍ଣୁ ବା ଯମ ବା କୁବେରଙ୍କ କଥିତ ବୋଲି ବିଶ୍ୱାସ କରିବା ଯେଉଁ ଅର୍ଥ, ଘୋର ପ୍ରମାଦରେ ପଡ଼ିବା ସେହି ଅର୍ଥ ।

ଏଥିଉତ୍ତାରୁ ବିବାହପଦ୍ଧତି ପରୀକ୍ଷା କରାଯାଉ । ଗୃହ୍ୟସୂତ୍ର ଅନୁସାରେ ହିନ୍ଦୁ ଗୃହସ୍ଥର ଦଶ କର୍ମ ଓ ଆଶ୍ରମ କର୍ମ ପରିଚାଳିତ ହୁଏ । ବିଭିନ୍ନ ବେଦ ଅନୁସାରେ ବିଭିନ୍ନ ଗୃହ୍ୟସୂତ୍ର ଲିଖିତ ହୋଇଅଛି ଏବଂ ସେହି ଗୃହ୍ୟସୂତ୍ରକୁ ବିଶଦ ଭାବରେ ଯେଉଁ ଗ୍ରନ୍ଥରେ ବୁଝାଇ ଦିଆଯାଇଅଛି, ତାହାକୁ ପଦ୍ଧତି ବୋଲାଯାଉଅଛି । ଏହି ପଦ୍ଧତିଗୁଡ଼ିକ ପୁରୋହିତମାନଙ୍କର ସୁବିଧା ନିମନ୍ତେ ରଚିତ ।

ଗୌତମୀୟ ଧର୍ମସୂତ୍ରରେ ଲିଖିତ ଅଛି—
ସ୍ନାନଂ ସହଧର୍ମଚାରିଣୀସଂଯୋଗଃ ପଞ୍ଚାନାଂ ଯଜ୍ଞାନା-
ମନୁଷ୍ଠାନଂ ଦେବପିତମନୁଷ୍ୟଭୂତବ୍ରହ୍ମଣାଂ ।
ଗୌତମୀୟ ଧର୍ମସୂତ । ୮ । ୧୬

ସମାବର୍ତ୍ତନ ସ୍ନାନ କରି ସହଧର୍ମଚାରିଣୀ ସଂଯୋଗ, ପଞ୍ଚ ଯଜ୍ଞ ଅନୁଷ୍ଠାନ ଯଥା— ଦେବ, ପିତୃ, ମନୁଷ୍ୟ, ମହାଭୂତ ଓ ବ୍ରାହ୍ମଣ ଯଜ୍ଞ । ଏହା ନିତ୍ୟ କର୍ତ୍ତବ୍ୟ ।

ଗୌତମ ସହଧର୍ମଚାରିଣୀସଂଯୋଗ ବୋଲି ଲେଖିଲେ । ଗୌରୀ ବା ରୋହିଣୀ ବା ନଗ୍ନିକା ବା ଅନାର୍ତ୍ତବା ବୋଲି ଲେଖି ନ ଥିବାରୁ ଦୋଷୀ ନୁହନ୍ତି କି ?

ଗୋଭିଳୀୟ ଗୃହ୍ୟସୂତ୍ର ଲେଖିଲେ—

ବ୍ରହ୍ମଚାରୀ ବେଦମଧୀତ୍ୟାନ୍ତ୍ୟଂ ସମିଧ-
ମଧ୍ୟାଧାସ୍ୟନ୍ ।

ଗୋ : ୧ । ୧ । ୭

ବେଦ ଅଧ୍ୟୟନ ଶେଷ କରି ଅଗ୍ନି ଆଧାନ ଉତ୍ତାରୁ—

ଜାୟାୟା ବା ପାଣଂ ଜିଘୃକ୍ଷନ୍ ।

ଗୋ : ୧ । ୮

(ଆତ୍ମା ପୁତ୍ର ରୂପେ ଜନ୍ମ ହେବ ଏହି କାମନାରେ) ଜାୟାର ପାଣିଗ୍ରହଣ ଇଚ୍ଛା କରିବ ।

ଏଠାରେ ଏତିକି ସ୍ମରଣ ରଖିବା ଉଚିତ ଯେ, ''ଜାୟାର ପାଣିଗ୍ରହଣ ଇଚ୍ଛା କରିବ'' ଏହା ଲେଖା ଅଛି । କନ୍ୟା ବା କୁମାରୀ ବା ନଗ୍ନିକା ପ୍ରଭୃତି ଶବ୍ଦ ବ୍ୟବହାର କରାଯାଇ ନାହିଁ । ଏହାର ତାତ୍ପର୍ଯ୍ୟ ଏହି ଯେ, ପ୍ରଜା ବା ପୁତ୍ରଜନନକ୍ଷମା ଭାର୍ଯ୍ୟାର ପାଣିଗ୍ରହଣ ଇଚ୍ଛା କରିବ । ଭାର୍ଯ୍ୟା ଜାୟା ସମ୍ବନ୍ଧ ନିମିତ୍ତ ସାଧନାଭୂତା । ଏହା ବୈବାହିକମାନଙ୍କର ସ୍ୱର୍ଗଲାଭ ନିମନ୍ତେ ନୁହେଁ ଯେ ଉଭୟ ପକ୍ଷରେ ପିତା ମାତା କଣ୍ଢେଇ ଖେଳ ପରି ଆପୋଗଣ୍ଡ ଦୁଗ୍ଧପୋଷ୍ୟ ଶିଶୁଯୋଡ଼ିକର ହସ୍ତ ବନ୍ଧନ କରି ସଂସାରସମୁଦ୍ରରେ ଭସାଇ ଦେଇ ନିଜେ ନିଜେ ସ୍ୱର୍ଗସୁଖ ଲାଳସାରେ ବସି ରହିବାର ବ୍ୟବସ୍ଥା ପ୍ରାଚୀନ ସୂତ୍ରକର୍ତ୍ତାମାନେ ଲେଖି ରଖନ୍ତେ ।

ଉପରୋକ୍ତ ସୂତ୍ର ସ୍ପଷ୍ଟରୂପେ ନିର୍ଦ୍ଦେଶ କରୁଅଛନ୍ତି, ଯୁବକ ନିଜେ ଜାୟା ବିବାହର ଇଚ୍ଛା କରିବ ।

ଗୋଭିଳ ବିବାହସମ୍ବନ୍ଧରେ ଆଉ ଅଧିକ ଲେଖି ନାହାନ୍ତି । ଉପରୋକ୍ତ ସୂତ୍ର ଉତ୍ତାରୁ ଗୃହକର୍ମର କେତେକ ଉପଦେଶ ଦେଇଅଛନ୍ତି ।

ସ ଯଦେବାନ୍ତ୍ୟଂ ସମିଧମଭ୍ୟାଦଧାତି,
ଜାୟାୟା ବା ପାଣିମ୍ ଜିଘକ୍ଷନ୍ ଜୁହୋତି,
ତମଭିସଂଯଚ୍ଛେତ୍ ।

ଗୋ.୧ । ୧।୨୦

ପୂର୍ବ କର୍ତ୍ତବ୍ୟ କଲା ପରେ କର୍ତ୍ତା ସେହି ଅଗ୍ନିରେ ସମିଧ ଆଧାନ କରିବ ଏବଂ ଜାୟାର ପାଣି ଧାରଣ କରି ହୋମ କରିବ । ସେହି ଅଗ୍ନିକୁ ରକ୍ଷା କରିବ । ଅର୍ଥାତ୍ ବିବାହ ସମୟରେ ଯେଉଁ ଅଗ୍ନିରେ ଲାଜାହୋମ ହୋଇଥାଏ, ସେହି ଅଗ୍ନିକୁ ଯତ୍ନ ସହିତ ରଖିବ ।

ସ ଏବାସ୍ୟ ଗୃହ୍ୟୋଽଗ୍ନିର୍ଭବତି ।

ଗୋ. ୧ ।୧।୨୧

ଏହି ଅଗ୍ନି ଗୃହ୍ୟାଗ୍ନି ହୁଏ । ଏହି ଗୃହ୍ୟାଗ୍ନି ଦ୍ୱାରା ଦ୍ୱିଜାତିର ପଞ୍ଚ ଯଜ୍ଞ କରାହୁଏ । ଏହି ଅଗ୍ନି ରକ୍ଷାକର୍ତ୍ତ୍ରୀ ସ୍ତ୍ରୀ ତ । ଦୁଗ୍ଧପୋଷ୍ୟା ବାଳିକାର କର୍ମ କି ଅଗ୍ନି ରକ୍ଷା ? ସ୍ୱପିତୃଗୃହରେ ନାବାଳିକା କନ୍ୟା ଅଗ୍ନିଚର୍ଯ୍ୟା କରିବ, ଏପରି ବିଧି ତ ନାହିଁ ।

ଆଶ୍ୱଳାୟନ ଗୃହ୍ୟସୂତ୍ର ଲେଖନ୍ତି :—

ପ୍ରଥମରୁ ବିବାହପୂର୍ବରୁ ପିତୃମାତୃକୁଳ ପରୀକ୍ଷା କରିବା ବିବାହକର୍ମର ଆଦ୍ୟାରମ୍ଭ ।

କୁଳମଗ୍ରେ ପରୀକ୍ଷେତ ଯେ ମାତୃତଃ ପିତୃତ ।
ଶ୍ଚେତି ଯଥୋକ୍ତଂ ପୁରସ୍ତାତ୍ ।

ଗୋ.୧। ୫ ।୧

ବୁଦ୍ଧିମତେ କନ୍ୟାଂ ପ୍ରଯଚ୍ଛେତ ।

ଗୋ. ୧ । ୫ । ୨

ବୁଦ୍ଧିମାନ୍ ବ୍ୟକ୍ତିକୁ କନ୍ୟା ପ୍ରଦାନ କରିବ ।

ବୁଦ୍ଧି ରୂପଶୀଳଲକ୍ଷଣସମ୍ପନ୍ନାମରୋଗାମୁପଯଚ୍ଛେତ୍ ।

ଗୋ. ୧ । ୫ ।୩

ବୁଦ୍ଧିମତୀ, ରୂପବତୀ, ସଚ୍ଚରିତ୍ରା, ଆକାରସମ୍ପନ୍ନା, ଅରୋଗିଣୀକୁ ସ୍ୱୀକାର କରିବ ।

ଆଠ ନଅ ବର୍ଷର କନ୍ୟା ଉପରୋକ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣା ହେବାର ସମ୍ଭବ କି ?

ବର କନ୍ୟା ପରୀକ୍ଷା ପରେ ବିବାହର ବ୍ୟବସ୍ଥା ଲେଖାଯାଇଅଛି । ତାହା ପରେ ବିସ୍ତୃତ ଭାବରେ ବିବୃତ ହେବ।

ପାଣିଗ୍ରହଣାଦି ଗୃହ୍ୟଂ ପରିଚରେତ୍ ସ୍ୱୟଂ ପତ୍ନ୍ୟପି
ବା ପୁତ୍ରାଃ କୁମାର୍ଯ୍ୟନ୍ତେବାସୀ ବା ।

ଗୋ.୧ । ୯ ।୧

ପାଣିଗ୍ରହଣ ହୋମାଗ୍ନିକୁ ସ୍ୱୟଂ ରକ୍ଷା କରିବ, ପତ୍ନୀ, ପୁତ୍ର, କନ୍ୟା ବା ଶିଷ୍ୟ ରକ୍ଷା କରିବେ । ଏହି ମନ୍ତ୍ରରେ ସ୍ତ୍ରୀର ହୋମ କରିପାରିବାର ସୂଚନା ମିଳୁଅଛି, ମାତ୍ର ସେ ଆଲୋଚନା ଏଠାରେ ନିଷ୍ପ୍ରୟୋଜନ ।

ବିବାହଅଗ୍ନିଦ୍ୱାରା ଗୃହସ୍ଥର ନିତ୍ୟନୈମିତ୍ତିକ କାର୍ଯ୍ୟ ସମ୍ପାଦିତ ହୁଏ । ଏହି ଅଗ୍ନିରକ୍ଷା ଗୃହସ୍ଥର କର୍ତ୍ତବ୍ୟ, ଏଣୁ ସମସ୍ତ ଗୃହ୍ୟସୂତ୍ର ଓ ସ୍ମୃତିମାନେ ଏକବାକ୍ୟରେ ତାହା ଉପଦେଶ ଦେଉଅଛନ୍ତି । ଗୃହ୍ୟାଗ୍ନି ରକ୍ଷା ହୋଇ ନ ପାରେ ଯୁବତୀବିବାହ

ନ କଲେ । ବୈବାହିକ ଅଗ୍ନିକୁ ନେଇ ଗୃହରେ ରକ୍ଷା କରିବ— ପତ୍ନୀ ତା'ର ରକ୍ଷାକର୍ତ୍ତ୍ରୀ ।

ବୈବାହିକେଽଗ୍ନୌ କୁର୍ବୀତ ଗୃହ୍ୟଂ କର୍ମ ଯଥାବିଧି ।
ପଞ୍ଚଯଜ୍ଞବିଧାନଂ ଚ ପକ୍ତିଂ ଚାନ୍ୱାହିକୀଂ ଗୃହୀ ।
ମନୁ । ୩ । ୩୭

ବୈବାହିକ ଅଗ୍ନିରେ ଗୃହସ୍ଥ ଯଥାବିଧି ଗୃହ୍ୟସୂତ୍ରଲିଖିତ ବୈଶ୍ୱଦେବାଦି ଅନୁଷ୍ଠାନ ଓ ପାକାଦି ଦୈନିକ କର୍ତ୍ତବ୍ୟ କର୍ମ କରିବ ।

ପାରସ୍କର ଗୃହ୍ୟସୂତ୍ରର ବ୍ୟବସ୍ଥା ଏବଂ ଆଶ୍ୱଳାୟନ ଗୃହ୍ୟସୂତ୍ର ପ୍ରାୟ ଏକ ଧରଣରେ ଲିଖିତ । ପାରସ୍କର ବହୁଳ ଭାବରେ ମନ୍ତ୍ରାଦିର ସୂଚନା କରିଅଛନ୍ତି । ଉଭୟ ପୁସ୍ତକରେ ଯେଉଁ ବାହୁଲ୍ୟ ବିଷୟ ଅଛି, ତାହା ତ୍ୟାଗ କରାଯାଇ କେବଳ ପ୍ରଧାନ ବିବାହାଙ୍ଗଗୁଡ଼ିକ ପ୍ରକାଶ କଲେ ଯଥେଷ୍ଟ ହେବ ।

ଉଦଗୟନ ଆପୂର୍ଯ୍ୟମାଣପକ୍ଷେ ପୁଣ୍ୟାହେ କୁମାର୍ଯ୍ୟାଃ
ପାଣିଂ ଗୃହ୍ଣୀୟାତ୍ ।
ପା. ୪ । ୫

୧. ପାଣିଗ୍ରହଣ, ୨. ବିବାହହୋମ, ୩. ଲାଜାହୋମ, ୪. ଅଶ୍ମାରୋହଣ, . ୫. ସପ୍ତପଦୀ, ୬. ଧ୍ରୁବ ଦର୍ଶନ, ୭.ଯାନାରୋହଣ, ୮. ବିବାହାଗ୍ନିକୁ ସଙ୍ଗେ ନେଇ ଗମନ, ୯.ଗୃହପ୍ରବେଶ, ୧୦. ଚତୁର୍ଥୀକର୍ମ, ୧୧.ଗୃହ୍ୟାଗ୍ନିପରିଚରଣ, ୧୨. ପକ୍ଷାଦିରେ ସ୍ଥାଲୀପାକ, ୧୩. ଗର୍ଭାଧାନ ।

ଉପରୋକ୍ତ ପ୍ରତ୍ୟେକଟିକୁ ଗୋଟିଏ ଗୋଟିଏ କର୍ମସୂତ୍ର ବୋଲାଯାଏ । ପାଣିଗ୍ରହଣଠାରୁ ସ୍ଥାଲୀପାକ ପର୍ଯ୍ୟନ୍ତ ପ୍ରତ୍ୟେକ କର୍ମ ପରସ୍ପର ସମ୍ବନ୍ଧ । ଗର୍ଭାଧାନକୁ ପୁତ୍ରର ଦଶକର୍ମ ଅନ୍ତର୍ଭୁକ୍ତ ପ୍ରଥମ କର୍ମ ବୋଲି ନିର୍ଦ୍ଦେଶ କରାଯାଇଅଛି । ଗର୍ଭାଧାନଯାଏ ସ୍ତ୍ରୀ ପୁରୁଷର ଅନବଚ୍ଛିନ୍ନ ବୈବାହିକ କର୍ମସମ୍ବନ୍ଧ ରହିଅଛି । ଏଥି ମଧ୍ୟରେ ଦ୍ୱିରାଗମନ, ପୁନର୍ବିବାହ-ଦୂର୍ବାକ୍ଷତ ପ୍ରଭୃତି କର୍ମର ଅବସର କେଉଁଠାରେ ?

ବାଲ୍ୟବିବାହ କରି ବାଳିକାକୁ ଶ୍ୱଶୁରଗୃହରେ ଛାଡ଼ି ବାଳିକା ତିନି ଚାରି ବର୍ଷ ପରେ ରଜୋବତୀ ହେଲେ ସ୍ୱାମୀଗୃହକୁ ହଳଦିଆ ପତ୍ର ପଠାଇବା ବିଧି ପଦ୍ଧତିରେ ନାହିଁ । ପଦ୍ଧତିରେ ରତୁମତୀ ହେଲାରୁ କନ୍ୟାକୁ ନିଜ ଘରକୁ ଆଣିବାର ବିଧି ନାହିଁ । ବନ୍ଧାପନା ବୋଲି କୌଣସି କର୍ମ ଗୃହ୍ୟସୂତ୍ର ତ ତେଣିକି ଥାଉ— ପୁରୋହିତଗଣଙ୍କର ଗଣ୍ଡିଧନ କର୍ମପଦ୍ଧତିମାନଙ୍କରେ ମଧ୍ୟ ଲେଖା ନାହିଁ । ତେବେ ଏ ସବୁ ଅଶାସ୍ତ୍ରୀୟ ବ୍ୟବସ୍ଥା ଓ ବିଧାନ କେଉଁଆଡୁ ଆସିଲା ଯେ, ବ୍ରାହ୍ମଣମାନେ ବାଲ୍ୟବିବାହକୁ ଏଡ଼େ ଜାତୀୟ ଗୌରବ ବୋଲି ଅକ୍ଷୁଣ୍ଣ ରଖିବାକୁ ଚେଷ୍ଟା କରୁଅଛନ୍ତି ।

ବିବାହବେଳେ ଭିନ୍ନ ଭିନ୍ନ କର୍ମରେ ଯେଉଁ ଯେଉଁ ମନ୍ତ୍ରମାନ ପାଠ କରାଯାଏ, ସେଥି ମଧ୍ୟରୁ ଗୋଟିକେତେ ଏଠାରେ ଉଦ୍ଧୃତ ହେଲେ ପାଠକମାନଙ୍କର ହୃଦୟଙ୍ଗମ ହେବ ଯେ, ଏ ଦେଶବାସୀମାନେ ବାଲ୍ୟବିବାହରେ ମଧ୍ୟ ଯୁବତୀବିବାହପର ବୈଦିକ ମନ୍ତ୍ରମାନ ନିଃସଙ୍କୋଚଚିତ୍ତରେ ବ୍ୟବହାର କରୁଅଛନ୍ତି ।

ବିବାହକର୍ମ ଆରମ୍ଭରୁ ଗର୍ଭାଧାନ ପର୍ଯ୍ୟନ୍ତ ଯେତେଗୁଡ଼ିଏ ବୈଦିକ ମନ୍ତ୍ର ଅଛି, ସେ ସମସ୍ତ ଲେଖିଲେ ପ୍ରବନ୍ଧ ଅତ୍ୟନ୍ତ ବଡ଼ ହୋଇଯିବ— ଏଣୁ କେତେକ ମନ୍ତ୍ର ମାତ୍ର ଉଦ୍ଧୃତ କରାଯାଉଅଛି । ଋଗ୍‌ବେଦୀୟ, ସାମବେଦୀୟ ଓ ଯଜୁର୍ବେଦୀୟ ବିବାହପଦ୍ଧତିମାନଙ୍କରେ ପ୍ରାୟ ଅଧିକାଂଶ ଋଗ୍‌ବେଦୀୟ ମନ୍ତ୍ର ବ୍ୟବହୃତ ହୋଇଅଛି । ତାହାଛଡ଼ା ପ୍ରତ୍ୟେକ ପଦ୍ଧତିରେ ଅଧିକା ମନ୍ତ୍ରମାନ ମଧ୍ୟ ଅଛି । ଆମ୍ଭେମାନେ କେବଳ ତିନି ପଦ୍ଧିତରେ ବ୍ୟବହୃତ ଋଗ୍‌ମନ୍ତ୍ରଗୁଡ଼ିକ ଓ ଏକାର୍ଥବୋଧକ ଅନ୍ୟ କେତେଗୁଡ଼ିଏ ମନ୍ତ୍ରର ଉଲ୍ଲେଖ କରିବୁଁ ।

ବିବାହବେଦୀରେ ଉପବେଶନ କରି କେତେକ ବୈବାହିକ କର୍ମ ସମ୍ପନ୍ନ ହେଲା ପରେ ସମୀକ୍ଷାକରଣ କରାଯାଏ, ଅର୍ଥାତ୍ କନ୍ୟା ଓ ବର ପରସ୍ପର ମୁଖାବଲୋକନ କରନ୍ତି । ସେତେବେଳେ ବର ନିମ୍ନଲିଖିତ ବେଦମନ୍ତ୍ରଟି ପାଠ କରେ:—

ସମଂ ଜଂ ତୁ ବିଶ୍ୱେ ଦେବାଃ ସମାପୋ ହୃଦୟାନି ନୌ ।
ସଂ ମାତରିଶ୍ୱା ସଂ ଧାତା ସମୁଦେଷ୍ଟ୍ରୀ ଦଧାତୁ ନୌ ।
ଋ । ୧୦ । ୮୫ । ୪୭

ସମସ୍ତ ଦେବତା ଆମ୍ଭ ଦୁହିଁଙ୍କ ହୃଦୟକୁ ସମ୍ୟକ୍ ପ୍ରକାରରେ ଯୋଗ କରନ୍ତୁ । ଜଳ ଆମ୍ଭ ଦୁହିଁଙ୍କ ହୃଦୟକୁ ସଂଯୁକ୍ତ କରନ୍ତୁ । ବାୟୁ, ଧାତା ଏବଂ ଫଳଦାତ୍ରୀ (ସରସ୍ୱତୀ) ଆମ୍ଭ ଦୁହିଁଙ୍କ ହୃଦୟକୁ ସନ୍ଧାନ କରନ୍ତୁ ।

ବେଦଜ୍ଞ ଓ ଶାସ୍ତ୍ରଜ୍ଞ ବ୍ରାହ୍ମଣ ଏତାଦୃଶ ସାରଗର୍ଭକ ଉପଦେଶ ଚଟୁଳମତି କ୍ଷୁଦ୍ର ବାଳିକା ପ୍ରତି ବ୍ୟବହାର କରିବା ହାସ୍ୟାସ୍ପଦ ନୁହେଁ କି ? ଶିକ୍ଷିତ ଯୁବତୀ ବା ଯେଉଁ ଯୁବତୀ ଗାର୍ହସ୍ଥ୍ୟ ଧର୍ମ ଓ ଧର୍ମୋପଦେଶ ବୁଝିବାକୁ ସମର୍ଥ, ତାହା ପ୍ରତି କେବଳ ବ୍ୟବହାର କରାଯିବା କଥା । ପୁନଃ ସମୀକ୍ଷାକରଣ କରି ବର ପାଠ କରେ—

ଅଘୋରଚକ୍ଷୁରପତିଘ୍ନେଧି ଶିବା
ପଶୁଭ୍ୟ ସୁମନା ସୁବର୍ଚ୍ଚା ।
ବୀରସୂର୍ଦେବକାମା ସ୍ୟୋନା ଶଂ
ନୋ ଭବ ଦ୍ୱିପଦେ ଶଂ ଚତୁଷ୍ପଦେ ॥
ଋ । ୧୦ । ୮୫ । ୪୪

ହେ ବଧୂ ! ତୁମ୍ଭର ଚକ୍ଷୁ କ୍ରୋଧ ଅଭୟଙ୍କର ହେଉ (କ୍ରୋଧଦ୍ୱାରା ଭୟଦ୍ୟୋତକ ନ ହେଉ), ପତିର ଅନିଷ୍ଟକାରିଣୀ ନ ହୁଅ । ପଶୁମାନଙ୍କର ହିତକାରିଣୀ ହୁଅ, ମନସ୍ୱିନୀ ଓ ଶୋଭନତେଜୋବିଶିଷ୍ଟା ହୁଅ । ବୀରପ୍ରସବିନୀ ହୁଅ, ଦେବାନୁରକ୍ତା ହୁଅ ଓ ସୁଖକରା ହୁଅ । ଆମ୍ଭମାନଙ୍କର ଦ୍ୱିପଦ (ଗୃହର ମନୁଷ୍ୟ ଦାସଦାସୀ ପ୍ରଭୃତି) ଓ ଚତୁଷ୍ପଦମାନଙ୍କର (ଗାଭୀ ପ୍ରଭୃତି ଗୃହପାଳିତ ପଶୁ) ମଙ୍ଗଳକାରିଣୀ ହୁଅ ।

ଏହି ମନ୍ତ୍ରଟି ବିବାହରେ ଦ୍ୱିଜାତିମାନେ ଉଚ୍ଚାରଣ କରନ୍ତି, ଏଥିରେ ଭୁଲ୍ ନାହିଁ । ଦାସ ଦାସୀ ଗୃହର ମନୁଷ୍ୟମାନଙ୍କର ଏବଂ ଗୃହର ଯାବତୀୟ ପାଳିତ ପଶୁମାନଙ୍କର, ଏମନ୍ତ କି ନିଜର ଭାର ମଧ୍ୟ ଅପୋଗଣ୍ଡ ବାଳିକା ଉପରେ ନ୍ୟସ୍ତ କରିବାକୁ ଋଗ୍‌ବେଦ କି ଏତାଦୃଶ ଅମୂଲ୍ୟ ମନ୍ତ୍ର ରଖି ଯାଇଅଛନ୍ତି ? ତଥାପି ପ୍ରୌଢ଼ ଓ ବୃଦ୍ଧ ବ୍ରାହ୍ମଣଗଣ ନାବାଳିକାର ମୁଖାବଲୋକନ କଲାବେଳେ ବିବାହବେଦୀରେ ଏହି ସ୍ତୁତିଟି ପାଠ କରନ୍ତି ଏବଂ ବେଦମନ୍ତ୍ର ଓ ବେଦୋପଦେଶର ଅପବ୍ୟବହାର କରନ୍ତି ।

ଗୃଭ୍ଣାମି ତେ ସୌଭଗତ୍ୱାୟ ହସ୍ତଂ
ମୟା ପତ୍ୟା ଜରଦଷ୍ଟିର୍ଯଥା ସଃ ।
ଭଗୋ ଅର୍ଯ୍ୟମା ସବିତା ପୁରଂଧି ର୍ମହ୍ୟଂ
ତ୍ୱା ଦୁର୍ଗାହପତ୍ୟାୟ ଦେବାଃ ॥

ହେ ବଧୂ ! ସୌଭାଗ୍ୟ ନିମନ୍ତେ ମୁଁ ତୁମ୍ଭର ହସ୍ତ ଗ୍ରହଣ କଲି । ମୁଁ ପତି, ମୋ ସହିତ ତୁମ୍ଭେ ବାର୍ଦ୍ଧକ୍ୟାବସ୍ଥାକୁ ପ୍ରାପ୍ତ ହୁଅ । ଗୃହକାର୍ଯ୍ୟ କରିବା ନିମନ୍ତେ ଭଗ, ଅର୍ଯ୍ୟମା ସବିତା ଓ ଜ୍ଞାନବାନ୍ ପୂଷା ଦେବତାମାନେ ତୁମ୍ଭକୁ ମୋଠାରେ ଅର୍ପଣ କରିଅଛନ୍ତି ।

ସୋମଃ ପ୍ରଥମୋ ବିବେଦେ ଗନ୍ଧର୍ବୋ ବିବିଦ ଉତ୍ତରଃ ।
ତୃତୀୟୋ ଅଗ୍ନିଷ୍ଟେ ପତିସ୍ତୁରୀୟସ୍ତେ ମନୁଷ୍ୟଜାଃ ॥
ଋ.୧୦ । ୮୫ । ୪୦

ସୋମ ପ୍ରଥମରୁ ତୁମ୍ଭଙ୍କୁ ଲାଭ କଲେ । ପରେ ଗନ୍ଧର୍ବ ଲାଭ କଲେ । ତୁମ୍ଭର ତୃତୀୟ ପତି ଅଗ୍ନି । ମନୁଷ୍ୟପୁତ୍ର ତୁମ୍ଭର ଚତୁର୍ଥ ପତି ।

ସୋମୋ ଦଦଦ୍‌ଗନ୍ଧର୍ବାୟ ଗନ୍ଧର୍ବୋ ଦଦଦଗ୍ନୟେ ।
ରାୟିଂଚ ପୁତ୍ରାଂଶ୍ଚାଦଦାଗ୍ନି ର୍ମହ୍ୟମଥୋ ଇମାଂ ॥
ଋ । ୧୦ । ୮୫ । ୪୧

ସୋମ ପ୍ରଥମରୁ ଗନ୍ଧର୍ବଙ୍କୁ ଦାନ କଲେ । ଗନ୍ଧର୍ବ ଅଗ୍ନିଙ୍କୁ ଦେଲେ । ଏଥି ଉତ୍ତାରୁ ଅଗ୍ନି ପୁତ୍ର ଓ ଧନ (ନିମନ୍ତେ) ସହିତ ମୋତେ ଦେଲେ ।

ଏହି ବେଦମନ୍ତ୍ର ଦୁଇ ଗୋଟିର ଅର୍ଥ ଅତି ସ୍ପଷ୍ଟ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଜନ୍ମଠାରୁ ବିବାହ ପର୍ଯ୍ୟନ୍ତ କନ୍ୟାର ତିନି ଗୋଟି ସମୟ ସ୍ଥିରୀକୃତ ହୋଇଅଛି । ପ୍ରଥମ ଅବସ୍ଥାରେ ସୋମ କନ୍ୟାର ରକ୍ଷାକର୍ତ୍ତା । ତହିଁ ଉତ୍ତାରୁ ଗନ୍ଧର୍ବ ଜିମା ଦିଅନ୍ତି । ତୃତୀୟରେ କନ୍ୟାର ପାଳନକର୍ତ୍ତା ଅଗ୍ନି । ଚତୁର୍ଥରେ ରକ୍ଷାକର୍ତ୍ତା ମନୁଷ୍ୟସନ୍ତାନ । ୪୧ ଋକ୍‌ଟି ତା'ର ପୁନରୁକ୍ତି । ଅଧିକନ୍ତୁ ଏହାହିଁ ଅଛି ଯେ, ଅଗ୍ନି ଧନ ପୁତ୍ର ନିମନ୍ତେ ଚତୁର୍ଥରେ ମନୁଷ୍ୟକୁ ଦାନ କଲେ । ଜନ୍ମଠାରୁ ଆରମ୍ଭି ବିବାହ ପର୍ଯ୍ୟନ୍ତ କନ୍ୟାର ଶାରୀରିକ ଓ ମାନସିକ ଗଠନ ସମ୍ବନ୍ଧରେ ସୋମ, ଗନ୍ଧର୍ବ ଓ ଅଗ୍ନି ଦାୟୀ, ଏହି ବିଶ୍ୱାସ ଉପରେ ଏହି ଯୋଡ଼ିକର ରଚନା । ଏଠାରେ କହିଲେ ଅପ୍ରାସଙ୍ଗିକ ହେବ ନାହିଁ ଯେ, ଏ ଦେଶର ଅନେକ ସ୍ଥାନରେ ସ୍ତ୍ରୀମାନଙ୍କର ବିଶ୍ୱାସ ଯେ, ସନ୍ତାନଜନ୍ମଠାରୁ ଷଷ୍ଠୀ ଦେବୀ ତା'ର ରକ୍ଷାକର୍ତ୍ରୀ । ସନ୍ତାନ 'ଲବଣ' ଶବ୍ଦ ଉଚ୍ଚାରଣ କରିବାଯାଏ ଷଷ୍ଠୀଦେବୀ ତା'ର ତତ୍ତ୍ୱ ନେଉଥାନ୍ତି । ଲବଣ ଶବ୍ଦ ଉଚ୍ଚାରଣ କଲାରୁ ତାଙ୍କର ଦାୟିତ୍ୱ ଶେଷ ହୁଏ । ସେହିପରି କନ୍ୟା ପତିହସ୍ତକୁ ଯିବାଯାଏ ଏହି ତିନିଗୋଟି ଦେବତା ସମୟବିଭାଗାନୁସାରେ କନ୍ୟାର ଦାୟିତ୍ୱ ଗ୍ରହଣ କରି ତା'ର ରକ୍ଷା କରନ୍ତି । ଧର୍ମ ଓ ବେଦରେ ବିଶ୍ୱାସୀ ବର କନ୍ୟାକୁ ତା'ର ରକ୍ଷକ ଓ ଉନ୍ନତିକର୍ତ୍ତାମାନଙ୍କର ନାମ ସ୍ମରଣ କରାଇଦେବା ଛଡ଼ା ନିଜେ ସେହି ଦେବତାମାନଙ୍କଠାରେ କୃତଜ୍ଞତା ସ୍ୱୀକାର କରୁଅଛି । ଏହା ବେଦମନ୍ତ୍ରର ପ୍ରକୃତ ଓ ସ୍ପଷ୍ଟ ତାତ୍ପର୍ଯ୍ୟ । ମାତ୍ର ପରବର୍ତ୍ତୀ ସ୍ମୃତିକାରଗଣ ସେହି ମନ୍ତ୍ରକୁ ବିକୃତ ଭାବରେ ଗ୍ରହଣ କରି ପରବର୍ତ୍ତୀ ଲୋକଙ୍କୁ ପ୍ରତାରିତ କରିବା ଇଚ୍ଛାରେ କି ଜଟିଳ ଜାଲ ବିସ୍ତାର କରି ଆଧୁନିକ ବ୍ରାହ୍ମଣମାନଙ୍କୁ ବାଲ୍ୟବିବାହପକ୍ଷପାତୀ କରାଇଅଛନ୍ତି ଏବଂ ବ୍ରାହ୍ମଣମାନେ ତାହା ବିଶ୍ୱାସ କରି ନିଜର କନ୍ୟା ଓ ଆତ୍ମୀୟମାନଙ୍କୁ ଅନନ୍ତ ଶୋକ ଓ ଦୁଃଖସାଗରରେ ଭସାଇ ଦେଉଅଛନ୍ତି, ତାହା ନିମ୍ନୋକ୍ତ ପ୍ରମାଣରୁ ପ୍ରକାଶ ପାଇବ ।

ଆମ୍ଭେମାନେ ଉପରେ ୪୦ ଓ ୪୧ ଋକ୍‌ର ଯେଉଁ ଅର୍ଥ ଓ ଭାବ ପ୍ରକାଶ କରିଅଛୁଁ, ଯାଜ୍ଞବଲ୍କ୍ୟ ଠିକ୍ ସେହି ଭାବଜ୍ଞାପକ ବଚନ ଆପଣା ସ୍ମୃତିରେ ଲେଖିଅଛନ୍ତି ।

ସୋମାଃ ଶୌଚଂ ଦଦାବାସାଂ ଗନ୍ଧର୍ବଶ୍ଚ ଶୁଭାଂଗିରଂ ।
ପାବକଃ ସର୍ବମେଧତ୍ୱଂ ମେଧ୍ୟା ବୈ ଯୋଷିତୋ ହ୍ୟତଃ ॥

ସୋମ କନ୍ୟାକୁ ଶୌଚ ଦାନ କଲେ, ଗନ୍ଧର୍ବ ସୁମଧୁର ବଚନ ଦାନ କଲେ, ଅଗ୍ନି କନ୍ୟାର ସର୍ବପ୍ରକାର ପବିତ୍ରତା ଦାନ କଲେ, ଏଥି ନିମନ୍ତେ ସ୍ତ୍ରୀ ପବିତ୍ରା ବା ଯଜ୍ଞ-ଯୋଗ୍ୟା ।

ପୂର୍ବେ ଏପରି ପବିତ୍ର ଭାବରେ ଉକ୍ତ ଋକ୍ ଯୋଡ଼ିକର ଅର୍ଥ ଗ୍ରହଣ କରାଯାଉଥିଲା । ପରବର୍ତ୍ତୀ ବାଲ୍ୟବିବାହପକ୍ଷପାତୀ ସ୍ମୃତିକର୍ତ୍ତୃଗଣ କିପରି ବିକୃତ ଅର୍ଥ କଲେ ଦେଖନ୍ତୁ :—

''କାମକାଳେ ତୁ ସଂପ୍ରାପ୍ତେ ସୋମୋଭୁଙ୍କ୍ତେ ତୁ କନ୍ୟକାଂ ।
ରଜଃକାଳେ ତୁ ଗନ୍ଧର୍ବା ବହ୍ନିସ୍ତୁ କୁଚଦର୍ଶନେ ।
ତସ୍ମାଦୁଦ୍‌ବାହୟେତ୍ କନ୍ୟାଂ ଯାବନ୍ନର୍ତ୍ତୁ ମତ୍ନୀଭବେତ୍ ॥''
ସଂବର୍ତ୍ତୋପି-ମାଧବ ।

ଉକ୍ତ ତିନି ପାଦ ପରାଶରମାଧବରେ ଅଛି । ସମ୍ବର୍ତ୍ତସ୍ମୃତିରେ ଯାହା ଅଛି, ତାହା ନିମ୍ନରେ ଦିଆଗଲା ।

ରୋମଦର୍ଶନସଂପ୍ରାପ୍ତେ ସୋମୋଭୁଙ୍କ୍ତେଽଥ କନ୍ୟାକାଂ ।
ରଜୋଦୃଷ୍ଟ୍ୱା ତୁ ଗନ୍ଧର୍ବଃ କୁଚୌ ଦୃଷ୍ଟ୍ୱା ତୁ ପାବକଃ । ୬୫
ଅଷ୍ଟବର୍ଷା ଭବେଦ୍‌ଗୌରୀ ନବବର୍ଷା ତୁ ରୋହିଣୀ ।
ଦଶବର୍ଷା ଭବେତ୍ କନ୍ୟା ଅତ ଊର୍ଦ୍ଧ୍ୱଂ ରଜସ୍ୱଳା ।୬୬
ମାତା ଚୈବ ପିତା ଚୈବ ଜ୍ୟେଷ୍ଠୋଭ୍ରାତା ତଥୈବ ଚ ।
ତ୍ରୟସ୍ତେ ନରକଂ ଯାନ୍ତି ଦୃଷ୍ଟ୍ୱା କନ୍ୟାଂ ରଜସ୍ୱଳାଂ ॥ ୬୭
ତସ୍ମାଦ୍ ବିବାହୟେତ୍ କନ୍ୟାଂ ଯାବନ୍ନର୍ତ୍ତୁମତୀ ଭବେତ୍ ।
ବିବାହୋ ହ୍ୟଷ୍ଟବର୍ଷାୟାଃ କନ୍ୟାୟାସ୍ତୁ ପ୍ରଶସ୍ୟତେ । ୬୮

ଉଭୟ ଉଦ୍ଧୃତାଂଶରେ ଯଥେଷ୍ଟ ଅମେଳ ଅଛି । ଅନେକ ଭାବି ପାରନ୍ତି ଭାବାର୍ଥ ଏକ । ମାତ୍ର ଆମ୍ଭମାନଙ୍କ ବିବେଚନାରେ ତାହା ନୁହେଁ । ସମ୍ବର୍ତ୍ତସ୍ମୃତିର ଠିକ୍ ବାକ୍ୟଗୁଡ଼ିକ ମାଧବ-ପରାଶରରେ ଉଦ୍ଧୃତ ହୋଇ ନାହିଁ ଏବଂ ସମଗ୍ର ବାକ୍ୟ ମଧ ଉଦ୍ଧୃତ ହୋଇ ନାହିଁ । ତାହାଛଡ଼ା ଆଉ ଗୋଟାଏ ଚାତୁରୀ ଅଛି । ସମ୍ବର୍ତ୍ତ ଅଷ୍ଟବର୍ଷୀୟା କନ୍ୟାବିବାହ ପ୍ରଶସ୍ତ ବୋଲି ମତ ଦେବା ଅଭିପ୍ରାୟରେ ଲେଖିଅଛନ୍ତି । ମାତ୍ର ମାଧବାଚାର୍ଯ୍ୟ ନିଜ ମନଗଢ଼ା ତିନି ପାଦର ଗୋଟିଏ ଶ୍ଳୋକ ସମ୍ବର୍ତ୍ତଲିଖିତ ବୋଲି ଉଦ୍ଧୃତ କରି ବେଦପ୍ରତୀକକୁ ଅସିଦ୍ଧ କରିବାର ଚେଷ୍ଟା କରିଅଛନ୍ତି । ସର୍ବସାଧାରଣଙ୍କ ମନରେ ବାଲ୍ୟବିବାହ ବିଶ୍ୱାସକୁ ଦୃଢ଼ୀଭୂତ କରିବା ଅଭିପ୍ରାୟରେ ପ୍ରକାରାନ୍ତରରେ ଏହି ଭାବ ବ୍ୟକ୍ତ କରିଅଛନ୍ତି ଯେ, ଯେବେ କାମକାଳ ଉପସ୍ଥିତ ହେଲେ ସୋମ କନ୍ୟାକୁ ଭୋଗ କରନ୍ତି, ରଜୋବତୀ ହେଲେ ଗନ୍ଧର୍ବ ଭୋଗ କରନ୍ତି ଏବଂ କୁଚ ଦେଖାଗଲେ ଅଗ୍ନି ଭୋଗ କରନ୍ତି, ତେବେ ପରୋପଭୁକ୍ତା କନ୍ୟା ଦାନରେ ଫଳ କ'ଣ ? ସ୍ୱର୍ଗ, ବୈକୁଣ୍ଠ ଓ ବ୍ରହ୍ମଲୋକ ପ୍ରାପ୍ତି ତ ହୋଇପାରିବ ନାହିଁ । ଏଥିଉତ୍ତାରୁ ପୁଣି କନ୍ୟକା କାହାକୁ ବୋଲନ୍ତି, ଏଥିରେ ଦୁଇ ଗୋଟି ଉଦ୍ଭଟ ଶ୍ଳୋକ ଉଦ୍ଧୃତ କରି ଲେଖନ୍ତି ଯେ, ଯେଉଁ ବାଳିକା ପୁରୁଷ ଆଗରେ ଅଙ୍ଗାଦି ଦେଖାଇବାକୁ ଲଜ୍ଜିତା ନ ହେବ, ଯୋନି ପ୍ରଭୃତି ଗୋପନ କରିବ ନାହିଁ, ତାକୁ କନ୍ୟକା ବୋଲାଯାଏ । ଅର୍ଥାତ୍ ତିନି ଚାରି ବର୍ଷଠାରୁ ଆଠ ବର୍ଷ ମଧ୍ୟରେ ବିବାହ ହେବାର ଦାକ୍ଷିଣାତ୍ୟ ମାଧବାଚାର୍ଯ୍ୟଙ୍କର ମତ । ସ୍ୱମତ ରକ୍ଷା ନିମନ୍ତେ ପଣ୍ଡିତମାନେ ଧର୍ମଶାସ୍ତ୍ରମାନଙ୍କରେ କିପରି କୃତ୍ରିମ ମତ ପ୍ରବେଶ କରାଇଅଛନ୍ତି, ତହିଁର ଉଦାହରଣ ବିରଳ ନୁହେଁ ।

ଯଦିବା ସୋମ, ଗନ୍ଧର୍ବ ଓ ଅଗ୍ନି ଭୋଗ କରିବାର ସମୟ ନିର୍ଦ୍ଦିଷ୍ଟ ଅଛି, ତେବେ ସେ ସମୟ ବାଳିକାର ଅବଶ୍ୟ ଆସିବ । ଦେବତାମାନଙ୍କର ବିଧିବିହିତ ଭୋଗକାଳକୁ ସ୍ମାର୍ତ୍ତ ବ୍ରାହ୍ମଣ ଅନ୍ୟଥା କରିବାର ଚେଷ୍ଟା କରିବା ଧର୍ମବିରୋଧ କଥା ନୁହେଁ କି ? ପୁଣି ଆଠ ସାତ ଛଅ ବର୍ଷର କନ୍ୟାବିବାହରେ ମଧ ଏହି ମନ୍ତ୍ର ଉଚ୍ଚାରଣ କରାଯାଏ । ସୋମ ଗନ୍ଧର୍ବ ଓ ଅଗ୍ନି ଯୁବତୀ କନ୍ୟାକୁ ଭୋଗ କରିବାର କଥା । କନ୍ୟା ଯୁବତୀ ନ ହେଉଣୁ ଅଷ୍ଟବର୍ଷୀୟା କନ୍ୟାକୁ ଭୋଗ କଲ ବୋଲି ସୋମ, ଗନ୍ଧର୍ବ ଓ ଅଗ୍ନିକୁ ଅପବାଦ ଦେବା ଗର୍ହିତ ନୁହେଁ କି ? ସମ୍ପ୍ରତି ଆଇନ୍ ଅମାନ୍ୟପାଇଁ ଲୋକଙ୍କ ନିମନ୍ତେ ଦଣ୍ଡବିଧାନ ଅଛି । ଦେବତାମାନଙ୍କୁ କ'ଣ ବାଳିକାହରଣ ଦୋଷ ଲାଗିବ ନାହିଁ ? ଆମ୍ଭମାନଙ୍କ ମତରେ ଦେବତାମାନେ ପ୍ରକୃତରେ କନ୍ୟାକୁ ଭୋଗ କରନ୍ତି ନାହିଁ । ସେମାନେ ପ୍ରତ୍ୟେକେ କନ୍ୟାର ନିର୍ଦ୍ଦିଷ୍ଟ କାଳର ରକ୍ଷାକର୍ତ୍ତା ଏବଂ ତିନି ଜଣ ଦେବତା କନ୍ୟାକୁ ଅନ୍ୟପାତ୍ରସ୍ଥ କରିବାଯାଏ ଆପଣା ଆପଣା ପାଳି ଅନୁସାରେ ରକ୍ଷା କରନ୍ତି, ମାନସିକ ଓ ଶାରୀରିକ ଉନ୍ନତି କରାନ୍ତି । ସୁତରାଂ ଯୁବତୀବିବାହ ପ୍ରଶସ୍ତ । ତାହାହେଲେ ବେଦବାକ୍ୟ ଲଙ୍ଘନ ହେବ ନାହିଁ । ଦେବତାଙ୍କୁ ଅପବାଦରେ ଦୋଷୀ କରିବାକୁ ହେବ ନାହିଁ । ଅସ୍ଥାନରେ ଓ ଅକାଳରେ ବେଦମନ୍ତ୍ର ପାଠର ଦୋଷରୁ ରକ୍ଷା ମିଳିବ ।

ସା ନଃ ପୂଷା ଶିବତମା ମେ ରୟସାନ
ଉରୂ ଉଶତୀ ବିହରା ।
ଯସ୍ୟା ମୁଶନ୍ତଃ ପ୍ରହରାମଶେଫଂ
ଯସ୍ୟାମୁ କାମା ବହବୋନିବିଷ୍ଟେ ॥

ଏହି ମନ୍ତ୍ରର ଅର୍ଥ ଅଶ୍ଳୀଳ ବୋଲି ବୋଧ ହେବ, ଏଣୁ ଲେଖିବା ଉଚିତ ମନେ ହେଲା ନାହିଁ । ଏହି ମନ୍ତ୍ରଟି ସମ୍ପୂର୍ଣ୍ଣ ଯୁବତୀବିବାହପର, ଏଥିରେ ସନ୍ଦେହ ନାହିଁ ।

ତାବେହି ବିବହାବହୈସହରେତୋ ଦଧାବହେ ।
ପ୍ରଜାଂ ପ୍ରଜନୟାବହୈ ପୁତ୍ରାନ୍ ବିନ୍ଦ୍ୟାବହୈ ବହୂନ୍ ॥

ଆମ୍ଭେ ଦୁହେଁ ବିବାହ ହେବା, ରେତ ଧାରଣ କରି ପୁତ୍ର ଜନ୍ମ କରିବା ଓ ଅନେକ ପୁତ୍ର ଲାଭ କରିବା ।

ମମ ବ୍ରତେ ତେ ହୃଦୟଂ ଦଧାମି
ମମ ଚିତ୍ତମନୁଚିତ୍ତଂ ତେ ଅସ୍ତୁ ।
ମମ ବାଚମେକମନା ଜୁଷସ୍ୱ
ପ୍ରଜାପତିଷ୍ଟ୍ୱା ନିଯୁନକ୍ତୁ ମହ୍ୟଂ ॥

ମୋର ବ୍ରତରେ ତୁମର ହୃଦୟ ଅନୁକୂଳ ଏହା ଧାରଣ କଲି । ମୋର ଚିତ୍ତ ଅନୁକୂଳ ତୁମର ଚିତ୍ତ ରହୁ । ମୋର ବାକ୍ୟକୁ ଏକ ମନ ହୋଇ ଆସ୍ୱାଦନ କର । ପ୍ରଜାପତି ମୋ ନିମନ୍ତେ ତୁମକୁ ନିଯୁକ୍ତ କରିଅଛନ୍ତି । ଅର୍ଥାତ୍ ତୁମ ହୃଦୟ ମୋ ହୃଦୟ ଏକ ହେଉ, ତୁମର ଚିତ୍ତ ମୋର ଚିତ୍ତର ଅନୁକୂଳ ହେଉ । ମୋର ବାକ୍ୟ ତୁମର ପ୍ରୀତିକର ହେଉ । ଏହି ମନ୍ତ୍ରଟି ପୁରୁଷ ସ୍ତ୍ରୀ ପ୍ରତି ଓ ସ୍ତ୍ରୀ ପୁରୁଷ ପ୍ରତି ପ୍ରୟୋଗ କରିବାର ବିଧି ଥିଲା । ଏକପ୍ରକାର ଆଉ ଗୋଟିକେତେ ମନ୍ତ୍ର ମଧ୍ୟ ସ୍ତ୍ରୀ ଉଚ୍ଚାରଣ କରିବାର ବିଧି ଥିଲା । ମାତ୍ର ଏବେ 'ସ୍ତ୍ରୀ ଶୂଦ୍ରୌ ନାଧୀୟେତାଂ' ଏହି ବାକ୍ୟ ଅନୁସାରେ ସ୍ତ୍ରୀ ମୁଖରେ ବେଦମନ୍ତ୍ର ଉଚ୍ଚାରିତ ହେବା ମହା ଦୋଷ ବୋଲି ପଣ୍ଡିତଗଣ ସିଦ୍ଧାନ୍ତ କରିଅଛନ୍ତି ।

ପାଣିଗ୍ରହଣ ଓ ସପ୍ତପଦୀ ଏକ ରାତ୍ରରେ ଏକ ବେଦୀରେ ଦୁଇ ତିନି ଘଣ୍ଟା ମଧ୍ୟରେ ସମାପ୍ତ ହୁଏ । ତଥାପି ସ୍ମୃତିକାରମାନେ ଏଥିରେ ସ୍ୱାର୍ଥସିଦ୍ଧିକାମନାରେ ଏହି କେତେ ଘଣ୍ଟା ମଧ୍ୟରେ ବୈବାହିକ କାର୍ଯ୍ୟକୁ ଦୁଇ ଭାଗରେ ବିଭକ୍ତ କଲେ । ଅର୍ଥାତ୍ ପାଣିଗ୍ରହଣ ଓ ସପ୍ତପଦୀ । ପାଣିଗ୍ରହଣ କାର୍ଯ୍ୟ ସମାପ୍ତ ହେଲେ ମଧ୍ୟ ପରା ଜାୟାତ୍ୱ ସିଦ୍ଧ ହୁଏ ନାହିଁ । ସପ୍ତପଦ ଗମନ କଲା ଉତ୍ତାରୁ ଜାୟାତ୍ୱ ସିଦ୍ଧ ହୁଏ । ପାଣିଗ୍ରହଣ ଓ ସପ୍ତପଦୀ ମଧ୍ୟରେ ସମୟର ବ୍ୟବଧାନ ଅତି କମ୍, ତଥାପି ପାଣିଗ୍ରହଣ ପରେ କୌଣସି ବିପତ୍ତି ଉପସ୍ଥିତ ହେଲେ ବା ବିଘ୍ନ ହେଲେ କନ୍ୟା ସମ୍ବନ୍ଧରେ ଅନ୍ୟ ବିଚାର କରାଯାଇପାରିବ, ଏହା ସ୍ମୃତିକାରମାନଙ୍କର ମତ । ତାହାହେଲେ ଦେଖାଯାଉଅଛି ଯେ, ସପ୍ତପଦୀଦ୍ୱାରା କେବଳ ସ୍ତ୍ରୀ ପୁରୁଷଙ୍କର ଜାୟାପତିତ୍ୱ ସମ୍ବନ୍ଧ ଦୃଢ଼ୀଭୂତ ହୁଏ ।

ପାଣିଗ୍ରହଣିକା ମନ୍ତ୍ରା ନିୟତଂ ଦାର ଲକ୍ଷଣଂ ।
ତେଷାଂ ନିଷ୍ଠାତୁ ବିଜ୍ଞେୟା ବିଦ୍ୱଭିଃ ସପ୍ତମେ ପଦେ ।
(ମନୁ . ୮ । ୨ । ୨୭)

ସପ୍ତପଦ ଗମନ ଉତ୍ତାରୁ ଜାୟାତ୍ୱ ସିଦ୍ଧ ହୁଏ । ସପ୍ତପଦୀ ଉତ୍ତାରୁ ବିବାହିତା ସ୍ତ୍ରୀକୁ ଜାୟା ଓ ଧର୍ମପତ୍ନୀ ବୋଲାଯାଏ । ଜାୟା ଓ ଧର୍ମପତ୍ନୀ ସମ୍ବନ୍ଧରେ ଏଠାରେ ପୁନରାଲୋଚନାର ପ୍ରୟୋଜନ । ଜାୟା କିଏ ?

ପତିର୍ଭାର୍ଯ୍ୟାଂ ସମ୍ପ୍ରବିଶ୍ୟ ଗର୍ଭୋଭୂତ୍ୱେହ ଜାୟତେ ।
ଜାୟାୟାସ୍ତଦ୍ଧି ଜାୟାତ୍ୱଂ ଯଦସ୍ୟାଂ ଜାୟତେ ପୁନଃ ॥
(ମନୁ ୯ । ୮)

ପତି ଶୁକ୍ର ରୂପରେ ସ୍ତ୍ରୀଠାରେ ପ୍ରବେଶ କରି ଗର୍ଭରେ ରହି ପୁତ୍ର ରୂପରେ ଜନ୍ମ ହୁଏ । ଯେହେତୁ ଏହାଠାରୁ ପତି ପୁନର୍ବାର ଜାତ ହୁଏ, ଏଣୁ ସ୍ତ୍ରୀର ନାମ ଜାୟା । ଶ୍ରୁତି ମଧ୍ୟ ଲେଖିଅଛନ୍ତି— 'ଆତ୍ମା ବୈ ପୁତ୍ର ନାମାସି' ।

ସପ୍ତପଦ ଗମନ ଅର୍ଥ ସ୍ତ୍ରୀର ଜାୟାତ୍ୱ ସମ୍ପାଦନ । ଜାୟା ଅର୍ଥ, ଯେ ପତିର ଆତ୍ମାରୂପ ପୁତ୍ର ଧାରଣ କରିବ । ପୁତ୍ରୋତ୍ପାଦନକ୍ଷମା ଯୁବତୀ ଭିନ୍ନ ବାଳିକାଠାରେ ଜାୟା ଶବ୍ଦର ବ୍ୟବହାର ନିତାନ୍ତ ଅସଙ୍ଗତ । ତଥାଚ ଧର୍ମବିଶ୍ୱାସିଗଣ ଶିଶୁ କନ୍ୟାର ପାଣିଗ୍ରହଣ କରି ସପ୍ତପଦୀ କର୍ମ କରୁଅଛନ୍ତି ।

ସପ୍ତପଦୀ କର୍ମଟି ଅତି ପବିତ୍ର ଏବଂ ଏଥିରେ ସ୍ତ୍ରୀ ପୁରୁଷର ଭବିଷ୍ୟତ୍ ସୁଖ ଶାନ୍ତିର ଆଶାରେ ପ୍ରାର୍ଥନା ଛଡ଼ା ସ୍ତ୍ରୀ ପ୍ରତି ଉପଦେଶ ମଧ୍ୟ ରହିଅଛି ।

୧. ଓଁ ଏକମିଷେ ବିଷ୍ଣୁସ୍ତ୍ୱାନୟତୁ ।
ପ୍ରଭୂତ୍ଲାଭ ନିମନ୍ତେ ବିଷ୍ଣୁ ତୁମ୍ଭକୁ ଏକପଦ ଆଣନ୍ତୁ ।
୨. ଓଁ ଦ୍ୱେ ଊର୍ଜ୍ଜେ ବିଷ୍ଣୁତ୍ୱାନୟତୁ ।
ଧନଲାଭାର୍ଥ ।
୩. ତ୍ରୀଣି ବ୍ରତାୟ ।
ଧର୍ମ କର୍ମ ନିମନ୍ତେ ।
୪. ଚତ୍ୱାରି ମୟୋଭବାୟ
ସୌଖ୍ୟପ୍ରାପ୍ତି ନିମନ୍ତେ ।
୫. ପଞ୍ଚ ପଶୁଭ୍ୟୋ ।
ପଶୁପ୍ରାପ୍ତି ନିମନ୍ତେ ।
୬. ଋତୁଭ୍ୟଃ ।
ଷଡ଼ୃତୁ ସୁଖଦାୟୀ ହେବା ନିମନ୍ତେ ।
୭. ସପ୍ତ ସପ୍ତଭ୍ୟ ।
ଋତ୍ୱିକ ପ୍ରାପ୍ତି ନିମନ୍ତେ ।

ଓଁ ସଖା ସପ୍ତପଦୀ ଭବ ସା ମା ମନୁ ବ୍ରତାଭବ ବିଷ୍ଣୁତ୍ୱା
ନୟତୁ ପୁତ୍ରାନ୍ ବିନ୍ଦାବହେି ବହୁଁସ୍ତେ ସନ୍ତୁ ଜରଦଷ୍ଟୟଃ ।

ହେ ସଖା, ସପ୍ତପଦୀ ହୁଅ, ମୋର ଅନୁଗାମିନୀ ହୁଅ । ବିଷ୍ଣୁ ଆନୟନ କରନ୍ତୁ, ବହୁ ପୁତ୍ର ପ୍ରାପ୍ତହେବା—ସୁଖରେ ବୃଦ୍ଧାବସ୍ଥା ପ୍ରାପ୍ତ ହେବା ।

ଓଁ ସଖା ସପ୍ତପଦୀ ଭବ ସଖ୍ୟନ୍ତେ ଗମେୟଂ ।
ସଖ୍ୟନ୍ତେ ମା ଯୋଷାଃ ସଖ୍ୟନ୍ତେ ମା ଯୋଷ୍ୟାଃ ॥

ହେ ସଖି, ମୋର ସହଚାରିଣୀ ହୁଅ, ମୁଁ ତୁମ୍ଭର ସଖା ହେଲି, ତୁମ୍ଭ ସହିତ ମୋର ଯେ ସଖ୍ୟ ସମ୍ପାଦିତ ହେଲା, ତାହା ସ୍ତ୍ରୀମାନଙ୍କଦ୍ୱାରା ନଷ୍ଟ ନ ହେଉ ।

ଉପରୋକ୍ତ ମନ୍ତ୍ରଦ୍ୱାରା ସ୍ତ୍ରୀକୁ ସହଧର୍ମିଣୀ, ସହଚାରିଣୀ ଓ ଧନପୁତ୍ର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ଦୁଃଖର ଅଂଶୀଦାର କରାଗଲା ।

ସପ୍ତପଦୀ ଉତ୍ତାରୁ ଜାୟାକୁ ନେଇ ପତି ସ୍ୱଗୃହକୁ ପ୍ରସ୍ଥାନ କରିବାର ବିଧି ଅଛି । ଋଗ୍‌ବେଦରେ ଯାନାରୋହଣ-ମନ୍ତ୍ର ଓ ପଥରେ ବିଘ୍ନନାଶ ନିମନ୍ତେ ସ୍ତୁତିମାନ ଲିଖିତ ଅଛି । ସେ ସମସ୍ତ ଉଦ୍ଧୃତ କରିବାର ପ୍ରୟୋଜନ ନାହିଁ ।

ଗୃହପ୍ରବେଶ ମନ୍ତ୍ର:

ଇହ ପ୍ରିୟଂ ପ୍ରଜୟାତେ ସମୃଧ୍ୟତାମସ୍ମିନ୍‌ଗୃହେ
ଗାହପତ୍ୟାୟ ଜାଗୃହି ।
ଏନା ପତ୍ୟାତନ୍ୱଂ ସଂସୃଜସ୍ୱାଧା ଜିବ୍ରୀ
ବିଦଥମା ବଦାଥଃ ॥
ଋଗ୍-୧୦।୮୫।୨୭

ହେ ବଧୂ ! ଏହି ପତିକୁଳରେ ପ୍ରିୟ ପ୍ରଜା (ପୁତ୍ରାଦି) ସହିତ ସମୃଦ୍ଧି ଲାଭ କର । ଏହି ଗୃହରେ ଗୃହକାର୍ଯ୍ୟ କରିବା ନିମନ୍ତେ ଜାଗ୍ରତା ହୁଅ । ଏହି ପତି ସହିତ ନିଜ ଶରୀରକୁ ସଂସୃଷ୍ଟ କର ଏବଂ ବୃଦ୍ଧାବସ୍ଥା ପ୍ରାପ୍ତ ହେବାଯାଏ ଗୃହଧର୍ମ କର ।

ଚତୁର୍ଥୀ କର୍ମ ଏଥି ଉତ୍ତାରୁ । ଚତୁର୍ଥୀ ହୋମରେ ଓ ବଧୂର ମସ୍ତକରେ ପତି ଉଦକ ସେଚନ କରିବା ମନ୍ତ୍ରରୁ ସ୍ପଷ୍ଟ ଜଣାଯାଏ, ପତି ସ୍ତ୍ରୀର ଯାବତୀୟ ଦୋଷ କ୍ଷାଳନ କରି ଗୃହରେ ରକ୍ଷା କରେ । ଏହି ହୋମର ନାମ ଦେହସଂସ୍କାର ହୋମ । ଏହି ହୋମଦ୍ୱାରା ବଧୂର ଦୈହିକ ଭାବୀ ଅମଙ୍ଗଳଜନକ ଦୋଷ ନିରାକରଣ କରାଯାଏ ।

''ଉର୍ବୋରୂପସ୍ଥେ ଜଙ୍ଘୟୋଃ ସନ୍ଧାନେଷୁ ଚ ଯାନି ତେ
ତାନି ତେ ପୂର୍ଣ୍ଣାହୁତ୍ୟା ସର୍ବାଣି ସମୟାମ୍ୟହଂ ।''

ତୁମ୍ଭର ଉରୁଦ୍ୱୟରେ, ଉପସ୍ଥରେ, ଜଙ୍ଘଦ୍ୱୟରେ ଓ ସନ୍ଧିସ୍ଥଳରେ ଯାହାକିଛି ଦୋଷ ଅଛି, ତାହା ମୁଁ ପୂର୍ଣ୍ଣାହୁତିଦ୍ୱାରା ନାଶ କରିଅଛି ।

ଓଁ ଯା ତେ ପତିଘ୍ନୀ, ପ୍ରଜାଘ୍ନୀ, ପଶୁଘ୍ନୀ, ଗୃହଘ୍ନୀ, ଯଶୋଘ୍ନୀ, ନିନ୍ଦିତା ତନୂର୍ଜାରଘ୍ନୀଂ ତତ ଏନାଂ କରୋମି । ସା ଜୀର୍ଯତ୍ୱଂ ମୟା ସହ ।

ତୁମ୍ଭର ଯେ ପତି ସମ୍ବନ୍ଧୀୟ, ପୁତ୍ର ପଶୁ ଗୃହ ଯଶ ଓ ଜାରସମ୍ବନ୍ଧୀୟ ଦୋଷ ଅଛି, ତାହା ମୁଁ ଏହି ଅଭିଷେଚନଦ୍ୱାରା ନାଶ କଲି । ତୁମ୍ଭେ ମୋ ସହିତ ବୃଦ୍ଧାବସ୍ଥାକୁ ପ୍ରାପ୍ତ ହୁଅ ।

ବଧୂକୁ ଅଭିଷେଚନ କଲା ଉତ୍ତାରୁ ସ୍ଥାଲୀପାକପ୍ରାଶନ କରାଇବାକୁ ହୁଏ ।

ସ୍ଥାଲୀପାକପ୍ରଶମନ ମନ୍ତ୍ର ଏହି—

ଓଁ ପ୍ରାଣୈସ୍ତେ ପ୍ରାଣାନ୍ ସନ୍ଧଧାମ୍ୟସ୍ଥିଭିରସ୍ଥିନି
ମାଂସୈର୍ମାଂସାନି ତ୍ୱଗ୍ଭ ତ୍ୱଚଂ
ପା.ଗୃ.ସୂ.୧୧ ।କ। ୫

ମୋର ପ୍ରାଣ ସହିତ ପ୍ରାଣ, ଅସ୍ଥି ସହିତ ଅସ୍ଥି, ମାଂସରେ ମାଂସ, ଚର୍ମରେ ଚର୍ମ ସଂଯୋଗ କଲି, ଅର୍ଥାତ୍ ଆଜିଠାରୁ ତୁମ୍ଭର ମୋର ଏକ ପ୍ରାଣ, ଏକ ଅସ୍ଥି, ଏକ ମାଂସ, ଏକ ଚର୍ମ ହେଲା ବା ଉଭୟେ ଏକ ପ୍ରାଣ, ଏକ ଶରୀର ହେଲୁଁ ।

ତସ୍ମାଦେବଂ ବିଚ୍ଛୋତ୍ରିୟସ୍ୟ ଦାରେଣ ନୋପ—
ହାସମିଚ୍ଛେତ ହ୍ୟେବଂ ବିତ୍ପରୋଭବତି । ୬।
ତାମୁଦୁହ୍ୟ ଯଥର୍ତୁ ପ୍ରବେଶନଂ । ୭
ଯଥା କାମୀ ବା କାମମାବିଜନିତୋ ସମ୍ଭବାମେତି ବଚନାତ୍। ୮

ଚରୁପ୍ରାଶନ ଉତ୍ତାରୁ ସ୍ତ୍ରୀ ପୁରୁଷ ଏକତ୍ର ବାସ କରିବା ହେତୁରୁ ସହବାସ ସମ୍ଭବ । ଶ୍ରୋତ୍ରିୟ ବିଜ୍ଞ ବ୍ୟକ୍ତି ଦାରା ସହିତ ଏକତ୍ର ରହିଲେ ମଧ୍ୟ ମୈଥୁନ ଇଚ୍ଛା କରିବ ନାହିଁ । ଏପରି କଲେ ଶତ୍ରୁ ହେବାକୁ ପଡ଼େ ।

ଉକ୍ତ ପ୍ରକାରରେ ବିବାହ କର୍ମ ଶେଷ କରି ଋତୁକାଳରେ ଉପଗତ ହେବ ।

'କାମମାବିଜନିତୋ ସମ୍ଭବାମେତି'

ବଚନ ପ୍ରମାଣରେ ଯଥା ଇଚ୍ଛା ସମ୍ଭୋଗ କରିବ ।

ଚତୁର୍ଥୀ ଉତ୍ତାରୁ ସମ୍ଭୋଗ କରିବାର ଉଲ୍ଲେଖ ଥିବାରୁ ଋତୁମତୀ କନ୍ୟାବିବାହର ସ୍ପଷ୍ଟ ପ୍ରମାଣ ମିଳୁଅଛି । ଉକ୍ତ ମନ୍ତ୍ରର ତାତ୍ପର୍ଯ୍ୟ ଏହି ଯେ, ଚତୁର୍ଥୀ ରାତ୍ରରେ ହୋମ ଅଭିଷେଚନ ଉତ୍ତାରୁ ପ୍ରାଶନ କରାଇ ସମ୍ଭୋଗ କରିବ । ମାତ୍ର ଶ୍ରୋତ୍ରିୟ

ବିଜ୍ଞ ବ୍ୟକ୍ତି ଋତୁକାଳ ପର୍ଯ୍ୟନ୍ତ ଅପେକ୍ଷା କଲେ ଭଲ । ଋତୁକାଳ ପର୍ଯ୍ୟନ୍ତ ଅପେକ୍ଷା ନ କରି ସମ୍ଭୋଗ କଲେ ଶତ୍ରୁ ହେବାର ଦୋଷ ଅଛି । ଇଚ୍ଛାକଲେ ମଧ୍ୟ ସମ୍ଭୋଗ କରାଯାଇପାରେ, ଯେହେତୁ ସ୍ତ୍ରୀମାନେ ଇନ୍ଦ୍ରଙ୍କଠାରେ ପ୍ରାର୍ଥନା କରିଅଛନ୍ତି ଯେ, ପ୍ରସବ ପର୍ଯ୍ୟନ୍ତ ଭର୍ତ୍ତା ସହିତ ସହବାସ କରିପାରିବେ ।

ଏଥିରୁ ବଳି ଯୁବତୀବିବାହର ସ୍ପଷ୍ଟ ପ୍ରମାଣ ଆଉ ଲୋଡ଼ା କ'ଣ ?

ସେହି ଚତୁର୍ଥୀ ରାତ୍ରରେ ନିମ୍ନୋକ୍ତ ଗର୍ଭାଧାନ ମନ୍ତ୍ରଟି କନ୍ୟାର ହୃଦୟ ସ୍ପର୍ଶ କରି ବରକୁ ଉଚ୍ଚାରଣ କରିବାକୁ ହୁଏ ।

ଅଥାସ୍ୟୈ ଦକ୍ଷିଣାଂ ସମଧିତ୍ ହୃଦୟମାଲଭତେ ।
ଯତ୍ତେ ସୁସୀମେ ହୃଦୟଂ ଦିବି ଚନ୍ଦ୍ର ମସି ଶ୍ରିତଂ ।
ଦେବାହ ତନ୍ମାଂ ତଦ୍‌ବିଦ୍ୟାପ୍ତଶ୍ୟେମ ଶରଦଃ ଶତଂ
ଜୀବେମ ଶରଦଃ ଶତଂ ଶୃଣୁୟାମ ଶରଦଃ ଶତଂ ।
ପା : ଗୃ : ସୂ : ୧୧ କ-୯

ଏଥି ଉତ୍ତାରୁ ଗୃହରେ ବିବାହାଗ୍ନି ସ୍ଥାପନ କରିବାର ବିଧାନ ଅଛି ଏବଂ ସ୍ଥାଳୀପାକ ଓ ହୋମାଦିର ବ୍ୟବସ୍ଥା ଅଛି ।

ପତ୍ନୀ ଗର୍ଭଧାରଣ ନ କଲେ ଗର୍ଭାଧାନାଦିର ଉପଚାର ଗୃହ୍ୟସୂତ୍ର ତ୍ରୟୋଦଶ କଣ୍ଡିକାରେ ଉଲ୍ଲେଖ ଅଛି ।

ପୁତ୍ର ଉତ୍ପାଦନ ହିଁ ବିବାହର ମୁଖ୍ୟ ଉଦ୍ଦେଶ୍ୟ ଥିବାରୁ ଗୃହ୍ୟସୂତ୍ରରେ ଏହି ପ୍ରକାର ଭାବରେ ବିଧିବଦ୍ଧ ହୋଇଅଛି ଯେ, ବ୍ରହ୍ମଚର୍ଯ୍ୟ ଉତ୍ତାରୁ ପ୍ରାପ୍ତ ବୟସ୍କା ଗୃହପରିଚାଳନାକ୍ଷମା କନ୍ୟା ବିବାହ କରିବ । ବିବାହର ଚୂଡ଼ାନ୍ତ ଏବଂ ଜାୟାତ୍ୱ ସମ୍ପାଦକ କର୍ମ ସପ୍ତପଦୀ ଅଟେ । ସପ୍ତପଦୀ ଉତ୍ତାରୁ ସ୍ତ୍ରୀର ନାମ ଜାୟା ଓ ଧର୍ମପତ୍ନୀ । ମୋର ଆତ୍ମା ଏହାର ଗର୍ଭରେ ପୁତ୍ର ରୂପରେ ଜନ୍ମଗ୍ରହଣ କରିବ, ଏଣୁ ସ୍ତ୍ରୀର ନାମ ଜାୟା । ସପ୍ତପଦୀ ସଙ୍ଗେ ସଙ୍ଗେ ପୁତ୍ର ଉତ୍ପାଦନର ଆକାଂକ୍ଷା ଓ ପ୍ରୟୋଜନ ଆବଶ୍ୟମ୍ଭାବୀ । ବିବାହର ହୋମାଗ୍ନି ସ୍ତ୍ରୀ ପୁରୁଷ ରକ୍ଷା କରି ଗୃହ୍ୟ କର୍ମ କରିବା ଗୃହସ୍ଥର କର୍ତ୍ତବ୍ୟ । ଏହି ଅଗ୍ନିକୁ ସ୍ୱାମୀ ଓ ସ୍ତ୍ରୀ ରକ୍ଷା କରିବେ । ଏଥିନିମନ୍ତେ ଭାର୍ଯ୍ୟାର ନାମ ସହଧର୍ମିଣୀ ଓ ପତ୍ନୀ । ବିବାହାଗ୍ନି ନ ରଖିଲେ ପ୍ରତ୍ୟବାୟ ଘଟେ । ଆଜିକାଲି କେହି ଅଗ୍ନି ରଖୁ ନାହାନ୍ତି ବା ସ୍ୱଗୃହକୁ ନେଉ ନାହାନ୍ତି, କିନ୍ତୁ ପୂର୍ବପ୍ରଚଳିତ ନିୟମ ଥିବାରୁ ଏବେ ମଧ୍ୟ ବିବାହ ହୋମାଗ୍ନିକୁ ବିସର୍ଜନ କରାଯାଏ ନାହିଁ । ବିବାହ ଅଗ୍ନି ନଷ୍ଟ ବା ନିର୍ବାପିତ ହେଲେ ପ୍ରାୟଶ୍ଚିତ୍ତ କରିବାର ବ୍ୟବସ୍ଥା ଅଛି । ବିବାହବେଦୀଠାରୁ ସ୍ତ୍ରୀ ଓ ଅଗ୍ନି ସ୍ୱାମିଗୃହକୁ ଯିବାର ବ୍ୟବସ୍ଥା ଅଛି । ଚତୁର୍ଥୀ କର୍ମରେ ସେହି ଅଗ୍ନିର ସ୍ଥାପନ କରାଯାଇ କର୍ମ କରାଯାଏ । ସ୍ଥାଳୀପାକ ପ୍ରାଶନ କରାଇ ସ୍ତ୍ରୀ ସହିତ ସମ୍ଭୋଗ କରିବାର ବ୍ୟବସ୍ଥା ଅଛି । ପୁତ୍ର ଉତ୍ପାଦନ ହିଁ ଏହି ସମ୍ଭୋଗର ମୂଳ ଲକ୍ଷ୍ୟ ଥିବା ହେତୁରୁ ଯେବେ ସ୍ତ୍ରୀର ଋତୁକାଳ ଅନେକ ଦିନ ଗତ ହୋଇଥାଏ, ତେବେ ଗର୍ଭୋଦୟ ସମ୍ଭବ ନ ଥିବା ପ୍ରଯୁକ୍ତ ଶ୍ରୋତ୍ରିୟ ବିଜ୍ଞ ବ୍ୟକ୍ତି ପୁଣି ଆଗାମୀ ଋତୁକାଳ ପର୍ଯ୍ୟନ୍ତ ଅପେକ୍ଷା କରିବାର ନିୟମ ଅଛି । ମାତ୍ର ଏହା ଇଚ୍ଛାଧୀନ । ଚତୁର୍ଥୀ ଚରୁପ୍ରାଶନ ଉତ୍ତାରୁ ସ୍ତ୍ରୀ ସହବାସ ସ୍ତ୍ରୀ ଓ ପୁରୁଷଙ୍କ ଇଚ୍ଛାଧୀନ । ପୁତ୍ର କାମନାରେ ଦର୍ଶ ପୌର୍ଣ୍ଣମାସ୍ୟାଦି ବ୍ରତ ଓ ହୋମାଦି ବିଧି ଅନୁସାରେ କରିବାକୁ ହୁଏ । ଯେବେ ଗର୍ଭୋଦୟ ନ ହୁଏ, ତେବେ ଔଷଧ ପ୍ରୟୋଗ କରିବାର ଚେଷ୍ଟା କରିବାର ବ୍ୟବସ୍ଥା ଗୃହ୍ୟସୂତ୍ରମାନଙ୍କରେ ଲେଖା ଅଛି ।

ହିନ୍ଦୁର ବିବାହ ଧର୍ମମୂଳକ । ଆଶ୍ରମମାନଙ୍କ ମଧ୍ୟରେ ଗୃହସ୍ଥାଶ୍ରମ ହିଁ ଶ୍ରେଷ୍ଠ ଆଶ୍ରମ । ପତି ପତ୍ନୀ ଏହି ପବିତ୍ର ଆଶ୍ରମର ମେରୁଦଣ୍ଡ । ଏକର ଅଭାବରେ ଅନ୍ୟ ଅଙ୍ଗହୀନ, ଏଣୁ ଆଶ୍ରମଧର୍ମ ଭ୍ରଷ୍ଟ ହୁଏ । ଏ ହେତୁରୁ ବିଧାନ କରାଯାଇ ଅଛି ଯେ, ବ୍ରହ୍ମଚର୍ଯ୍ୟ ପାଳନ କରି ସାରିଲାରୁ ପୁରୁଷ ଅବଶ୍ୟ ଗୃହସ୍ଥାଶ୍ରମରେ ପ୍ରବେଶ କରିବ ଏବଂ ଏହାର ଅର୍ଥ ବିବାହ କରିବ ଏବଂ ପଞ୍ଚଯଜ୍ଞାଦିଦ୍ୱାରା ନିତ୍ୟ ବୈଶ୍ୱଦେବାଦି ଅତିଥିସେବା କରିବ ଏବଂ ଗୃହରେ ବିବାହାଗ୍ନିର ରକ୍ଷା କରିବ । ସ୍ତ୍ରୀ ଭିନ୍ନ ଏ ସମସ୍ତ କାର୍ଯ୍ୟ ପୁରୁଷଦ୍ୱାରା ସମ୍ପନ୍ନ ହୋଇ ନ ପାରେ ଓ ହେବାର ବିଧି ନୁହେଁ । ସୁତରାଂ ବିବାହ ସଙ୍ଗେ ସଙ୍ଗେ ବିବାହାଗ୍ନି ଓ ସହଧର୍ମିଣୀକୁ ସଙ୍ଗରେ ଧରି ଗୃହକୁ ଆସିବ । ବିବାହର ପ୍ରଧାନ ଲକ୍ଷ୍ୟ ପୁତ୍ର— ପୁତ୍ର ନୋହିଲେ ଧର୍ମନାଶ, ପିତୃମାନେ ପିଣ୍ଡ ପାଆନ୍ତି ନାହିଁ; ଏଣୁ ଗୃହସ୍ଥାଶ୍ରମୀ ଆଦ୍ୟରୁ ପୁତ୍ର ଉତ୍ପାଦନର ଚେଷ୍ଟା କରିବ । ଏଣୁ ବିବାହର ଚତୁର୍ଥ ଦିନରେ ଯଜ୍ଞପୁରଃସର ସ୍ତ୍ରୀକୁ ଅଭିଷେଚନ କରି ପୁତ୍ର କାମନାରେ ଚରୁ ପ୍ରାଶନ କରାଇବ ଏବଂ ସମ୍ଭୋଗ କରିବ।

ହିନ୍ଦୁ ବିବାହର ରୀତି ଓ ବ୍ୟବସ୍ଥା ଓ ପଦ୍ଧତି ସୂକ୍ଷ୍ମରେ ଉଲ୍ଲେଖ କରାଗଲା ।

ପାଠକଗଣ ବେଦ, ସ୍ମୃତି ଓ ଗୃହ୍ୟସୂତ୍ର ପ୍ରଭୃତି ପର୍ଯ୍ୟାଲୋଚନା କଲେ ଉପରିଲିଖିତ କଥା ସତ୍ୟ ଥିବାର ହୃଦୟଙ୍ଗମ କରି ପାରିବେ ।

ଅଧୁନା ମଧ୍ୟ ଯେଉଁ ବେଦମନ୍ତ୍ରସମୂହ ପାଠ କରାଯାଇ ବିବାହକାର୍ଯ୍ୟ ସମ୍ପାଦନ କରାଯାଉଅଛି ଏବଂ ସ୍ତ୍ରୀକୁ ସହଧର୍ମିଣୀ ଓ ଜାୟା ବୋଲି ଗ୍ରହଣ କରାଯାଉଅଛି, ସେହି ମନ୍ତ୍ର ଅବିସମ୍ବାଦିତ ଭାବରେ ଯୁବତୀବିବାହପର । ଏହି

ଯୁବତୀବିବାହର ମନ୍ତ୍ରଗୁଡ଼ିକ ବ୍ରାହ୍ମଣମାନେ ନାବାଳିକା କନ୍ୟାଠାରେ ନିଃସଙ୍କୋଚ ଚିତ୍ତରେ ବ୍ୟବହାର କରି ଯାଉଅଛନ୍ତି ।

ଗୃହ୍ୟସୂତ୍ର ଅନୁସାରେ ବିବାହ କର୍ମ ଚଳେ । ସେଥିରେ ଯେଉଁ ଆଦେଶ ଅଛି, ତାହା ନିର୍ଭୀକଭାବରେ ଲଙ୍ଘନ କରୁଅଛନ୍ତି ।

ମନ୍ୱାଦି ଧର୍ମଶାସ୍ତ୍ର ଯୁବତୀବିବାହର ମତ ଦେଇଅଛନ୍ତି, ସେହି ବ୍ୟବସ୍ଥାକୁ ଅବମାନନା କରୁଅଛନ୍ତି ।

ପରବର୍ତ୍ତୀ ସ୍ମୃତି, ସ୍ମୃତିର ଟୀକା ଏବଂ ବ୍ୟାଖ୍ୟାକାରମାନଙ୍କର କପୋଳକଳ୍ପିତ ବ୍ୟାଖ୍ୟା ଆଜି ଭାରତବାସୀଙ୍କ ପକ୍ଷରେ ବେଦ ଅପେକ୍ଷା ମଧ ମୂଲ୍ୟବାନ୍ ଓ ଗୌରବାବହ ହୋଇଅଛି ।

ସ୍ୱାର୍ଥାନ୍ଧ ଜଣକେତେ ବ୍ୟାଖ୍ୟାକର୍ତ୍ତା ଆପଣା ଆପଣା ମତ ବଜାଏ ରଖିବା ଅଭିପ୍ରାୟରେ କି କୃତ୍ରିମ ଉପାୟ ଅବଲମ୍ବନ କରିଅଛନ୍ତି, ତାହା ଦେଖିଲେ ହୃଦୟରେ ଦୁଃଖ ଓ ଘୃଣା ଉପସ୍ଥିତ ହୁଏ । ଏ ସ୍ଥଳରେ ସେ ସବୁର ଆଲୋଚନା ନିଷ୍ପ୍ରୟୋଜନ ।

ମୂଳ ଗ୍ରନ୍ଥମାନ ଆଲୋଚନା ନ କରି ଟୀକା ଓ ବ୍ୟାଖ୍ୟା ଉପରେ ଆସ୍ଥା ସ୍ଥାପନ କରିବାଦ୍ୱାରା ବିଶେଷ ଭ୍ରମରେ ପଡ଼ିବାକୁ ହୁଏ, ଏଥିରେ କି ସନ୍ଦେହ ଅଛି ?

ଏହି ଦେଶର ବେଦ, ଏହି ଦେଶର ପୁରାଣ, ଏହି ଦେଶର ସ୍ମୃତି ଏବଂ ଏହି ଦେଶର ଆର୍ଯ୍ୟସନ୍ତାନ ଆମ୍ଭେମାନେ । ଦେଶ, କାଳ ଓ ଲୋକମତ ଲକ୍ଷ୍ୟରେ ଦେଶର ତଥା ସମାଜର ହିତ କାମନାରେ ପୂର୍ବାଚାର୍ଯ୍ୟମାନେ ପୂର୍ବ ପୂର୍ବ ମତମାନ ପରିବର୍ତ୍ତନ କରି ନୂତନ ନୂତନ ମତ ଓ ବ୍ୟବସ୍ଥା ଦେଇ ଆସୁଥିଲେ । ତେବେ ଆମ୍ଭମାନଙ୍କର କି ବ୍ୟବସ୍ଥା ଦେବାର କ୍ଷମତା ନାହିଁ ? ଯେଉଁ ଦିନଠାରୁ ସଂସ୍କୃତ ସାହିତ୍ୟର ଅଧୋଗତି ହେଲା, ସେହିଦିନଠାରୁ କି କାଳଭେଦ ଘଟୁ ନାହିଁ, ରୁଚିଭେଦ ଘଟୁ ନାହିଁ ? ଆଜି ପାଞ୍ଚ ଶତ ବର୍ଷ ପୂର୍ବେ ଯେଉଁ ବ୍ୟବସ୍ଥା ଦେଶ ପକ୍ଷରେ ଉପଯୁକ୍ତ ଥିଲା, ଆଜି କି ତାହା ଉପଯୁକ୍ତ ବୋଲି ବିବେଚିତ ହେଉଅଛି କିମ୍ବା ତାହା ଉପଯୁକ୍ତ ବୋଲି ବିବେଚିତ ହେବା ଉଚିତ ? କଦାପି ନୁହେଁ । ତେବେ ଏହି କାଳ ପରିବର୍ତ୍ତନ ଓ ରୁଚିପରିବର୍ତ୍ତନ ଦେଖି ଯେବେ ପୂର୍ବରେ ବ୍ୟବସ୍ଥାପକଗଣ ବ୍ୟବସ୍ଥା ଦେଇପାରୁଥିଲେ (ତାହା ସମାଜ ପକ୍ଷରେ ଇଷ୍ଟଜନକ ହେଉ ବା ଅନିଷ୍ଟଜନକ ହେଉ), ତେବେ ଆମ୍ଭେମାନେ ସେହି ଦେଶର ସେହି ଆର୍ଯ୍ୟ ଶୋଣିତରେ ଜୀବିତ ଓ ସେହି ଦେଶର ଜଳବାୟୁ ଓ ଅନ୍ନରେ ପରିପାଳିତ ଆମ୍ଭେମାନେ ନିଶ୍ଚେଷ୍ଟ ନିର୍ବେଦ କାହିଁକି ? ସେହି ମହାମନା ମହାପୁରୁଷମାନଙ୍କ ବଂଶଧରମାନଙ୍କଠାରୁ ଏ କାପୁରୁଷତ୍ୱ ଆସିଲା କେବେ, କେଉଁଠାରୁ ? ଭାରତବାସୀ ସାମାଜିକ ପ୍ରତିଦ୍ୱନ୍ଦ୍ୱିତାରୂପ ଅନନ୍ତ ପାରାବାରରେ 'ଯାହା ଅଛି ତାହା ଥାଉ' ଏହି ଭାସମାନ ତୃଣଖଣ୍ଡିକ ଧରି କେତେ ଦିନ ବଞ୍ଚି ପାରିବ ?

ଯେବେ ଶାସ୍ତ୍ରମର୍ଯ୍ୟାଦା ଓ ଶାସ୍ତ୍ରର ମହତ୍ତ୍ୱ ରକ୍ଷା କରିବାକୁ ଚେଷ୍ଟା କର, ତେବେ ବେଦ ଓ ସୂତ୍ରଗ୍ରନ୍ଥମାନଙ୍କରୁ ଯୁବତୀବିବାହର ବ୍ୟବସ୍ଥା ଉଦ୍‌ଘାଟନ କରି ଯଶଃସୌରଭରେ ଜଗତ୍‌କୁ ବିମୋହିତ କର ଏବଂ

> ''ଅଷ୍ଟବର୍ଷା ଭବେଦ୍‌ଗୌରୀ ନବବର୍ଷା ତୁ ରୋହିଣୀ ।
> ଦଶମେ କନ୍ୟକା ପ୍ରୋକ୍ତା ଅତ ଊର୍ଦ୍ଧ୍ୱଂ ରଜସ୍ୱଳା ।''

ପରି ସମ୍ବର୍ତ୍ତ ଓ ଯମ ପ୍ରଭୃତି ସଂହିତାର ଅମୂଳକ ଓ ଅସାର ବାକ୍ୟଗୁଡ଼ିକୁ ହିନ୍ଦୁଶାସ୍ତ୍ରର ମଧ୍ୟଗତ ଅସାର ଅସ୍ୱାସ୍ଥ୍ୟକର ଆବର୍ଜନା ବୋଲି ଦୂରକୁ ନିକ୍ଷେପ କର, ନୋଚେତ୍ ଭୂମିଗର୍ଭରେ ପ୍ରୋଥିତ କରି ବୃହତ୍ ପାଷାଣଖଣ୍ଡ ଘୋଡ଼ାଇ ରଖ, ଯେପରି କି ତହିଁର ଅସ୍ୱାସ୍ଥ୍ୟକର ଗନ୍ଧ ଭବିଷ୍ୟତ୍ ବଂଶଧରମାନଙ୍କୁ ଦୂଷିତ ଓ କ୍ଲିଷ୍ଟ କରି ନ ପାରେ ।



## ତୃତୀୟ ଅଧ୍ୟାୟ
## ବିଧବା ବିବାହ

ବିଧବା ଶବ୍ଦ ସହିତ ବିବାହ ଶବ୍ଦର ଯୋଜନା ଦେଖିଲେ ଅସ୍ମଦେଶୀୟ ବ୍ୟକ୍ତିମାନଙ୍କର ଦେହ ଚମକି ଉଠିବ, ମନ ବିଷଣ୍ଣ ହେବ, ଛି ଛି ଶବ୍ଦ ମୁଖରୁ ଉଚ୍ଚାରିତ ହେବ । ଏହା ସତ । ଯେଉଁ ଅଭ୍ୟାସକୁ ବହୁକାଳରୁ ଗର୍ହିତ ବୋଲି ତ୍ୟାଗ କରାଯାଇଅଛି, ତାହାକୁ ଆଦର କରିବାପାଇଁ ବଡ଼ ମନସ୍ୱିତାର ପ୍ରୟୋଜନ । ମାନସିକ ଅବସାଦ ଘଟିଲେ ଜାତୀୟ ପତନ ଅନିବାର୍ଯ୍ୟ । ଯେଉଁ ଜାତିର ପତନ ଘଟିଅଛି ଏବଂ ସଙ୍ଗେ ସଙ୍ଗେ ମାନସିକ ଚିନ୍ତାସ୍ରୋତ ବାଧାପ୍ରାପ୍ତ ହୋଇଅଛି ଏବଂ ଯେଉଁମାନଙ୍କର ଜାତୀୟ ଜୀବନ ପରତନ୍ତ୍ର, ସେମାନଙ୍କର ସାମାଜିକ ଉନ୍ନତି ଓ ସାମାଜିକ ସମସ୍ୟାନିର୍ଦ୍ଧାରଣ ବିଧାୟିକା ଉଦ୍ଭାବନୀ ଶକ୍ତି ଅଙ୍କୁରିତ ହେବା ସ୍ୱାଭାବିକ ନୁହେଁ । ସୁତରାଂ ଅନ୍ୟ କେତେଗୋଟି କଠିନ ଜାତୀୟ ସମସ୍ୟା ପରି ବିଧବାବିବାହ ସମସ୍ୟା ମଧ ହାସ୍ୟାସ୍ପଦ ବିଷୟ ହୋଇଅଛି । ଏ ସମସ୍ୟାମାନ ହିନ୍ଦୁ ଜାତି କିପରି ମୀମାଂସା କରିବେ ବୋଲି

ଅନ୍ୟ ଜାତି ଉଦ୍‌ଗ୍ରୀବ ହୋଇ ଚାହୁଁଅଛନ୍ତି । ହିନ୍ଦୁ ନିଜର ଆଭିଜାତ୍ୟ ନେଇ ସ୍ୱାର୍ଥତ୍ୟାଗ ସ୍ୱୀକାର କରୁ ନାହିଁ, ଦେଖୁ ଦେଖୁ ତା'ର ପତନ ଘଟୁଅଛି ଓ ଘଟିବ ।

ଆଜି ବିଧବାବିବାହ ପ୍ରସ୍ତାବ ହାସ୍ୟାସ୍ପଦ । କିନ୍ତୁ ଚିରଦିନ ହିନ୍ଦୁଜାତି ହସିପାରିବେ ନାହିଁ । କାଳର ଗତି ଅନିବାର୍ଯ୍ୟ । କାଳର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଲୋକମତର ପରିବର୍ତ୍ତନ ମଧ୍ୟ ଅନିବାର୍ଯ୍ୟ । ''ଯାହା ଥିଲା ତାହା ଅଛି, ଯାହା ଅଛି ତାହା ଥାଉ ।'' ଏହା ଗୋଟିଏ ଅଳୀକ କଥା । ଭାରତବାସୀ ଏହି ଅଳୀକ କଥାରେ ବିଶ୍ୱାସ କରି ମହାନ୍ କ୍ଷତିଗ୍ରସ୍ତ । ଜାତୀୟ ସମସ୍ୟାର ମୀମାଂସା ମଧ୍ୟ ଆପେ ଆପେ କରିବାକୁ ନାରାଜ । ଏଥିର ଭାର ମଧ୍ୟ ଶାସକ ଉପରେ ରଖିବାକୁ ଲଜ୍ଜା ବୋଧ କରନ୍ତି ନାହିଁ । ସୁତରାଂ ବିଧବାବିବାହ ପ୍ରସ୍ତାବ ଯେ ପ୍ରଥମରୁ ଉପହାସର ବିଷୟ ହେବ, ଏହା ଜାଣି ଶୁଣି ଅଗ୍ରସର ହେବାକୁ ପଡୁଅଛି । ଦେଶର ଯୁବକଗଣ ଏକମାତ୍ର ଆଶା ଓ ଭରସାର ସ୍ଥଳ— ସେମାନେ ମଧ୍ୟ ଯେବେ ଏତାଦୃଶ ଜାତୀୟ ସମସ୍ୟାମାନ ସ୍ୱାଧୀନ ଇଚ୍ଛା ଓ ବିବେକବୁଦ୍ଧି ସାହାଯ୍ୟରେ ମୀମାଂସା ନ କରନ୍ତି, ତେବେ ଜାତୀୟ ଉନ୍ନତିର ଆଶା ସୁଦୂରପରାହତ ।

ବାଲ୍ୟବିବାହ ହେତୁରୁ ବିଧବାବିବାହର ନିତାନ୍ତ ପ୍ରୟୋଜନ ବୋଲି ମନେ ହୁଏ । ଯୁବତୀବିବାହ ପ୍ରଥା ପ୍ରଚଳିତ ହେଲେ ବିଧବା ସଂଖ୍ୟା ଅବଶ୍ୟ କମିବ । ତାହାଛଡ଼ା ପୁତ୍ରସନ୍ତାନବତୀ ବିଧବାମାନେ ବିବାହକୁ ପ୍ରୟୋଜନ ବୋଧ କରିବେ ନାହିଁ ।

ବିବାହ ବିଧବାର ଆପଦ୍ଧର୍ମ । ବିଧବା ହେବା ସ୍ତ୍ରୀ ପକ୍ଷରେ ଅସାଧାରଣ ମର୍ମନ୍ତୁଦ ବିପତ୍ତିର କଥା । ଏହି ମହାବିପତ୍ତି ସାଗରରୁ ତାକୁ ଉଦ୍ଧାର କରିବାର ନାମ ବିଧବାବିବାହ ବା ବୈଧଭାବରେ ଜଣେ ରକ୍ଷାକର୍ତ୍ତା ଖଞ୍ଜିଦେବାର ନାମ ବିଧବାବିବାହ । ଦୁସ୍ତର ଜୀବନସାଗରରେ ଭାସମାନ ବିଧବାର ଉଦ୍ଧାର କାମନାରେ କେହି ଅଗ୍ରସର ହେଲେ ତାକୁ ବାରଣ କରିବାଟା କି ନୀଚମନାର କାର୍ଯ୍ୟ ନୁହେଁ ? ବିପଦ୍‌ଗ୍ରସ୍ତା କନ୍ୟାଜଣକର ଉଦ୍ଧାର କରିବାକୁ ଅନ୍ୟ ଜଣେ ପ୍ରସ୍ତୁତ । ଉଦ୍ଧାରକର୍ତ୍ତାକୁ ଶପଥ ଦେଇ ଭୟ ଦେଖାଇ ସେଥିରୁ ନିବୃତ୍ତ କରିବା କି ଧାର୍ମିକର କାର୍ଯ୍ୟ ? ବାଳିକା ବିଧବା ବ୍ରହ୍ମଚାରିଣୀ ହେଲେ ଲାଭ କାହାର ? ପିତା ମାତାଙ୍କର, ନା ଶାଶୂ ଶ୍ୱଶୁରଙ୍କର, ନା ଜାତି ଓ ସମାଜର ? କାହାରି ତ ଲାଭ ନାହିଁ । ବାଳିକାଟି ନଷ୍ଟା ହେଲେ ଭ୍ରଷ୍ଟା ହେଲେ କ୍ଷତି କାହାର ? ନିନ୍ଦାବାଦ ଭିନ୍ନ ଐହିକ ବା ପାରତ୍ରିକ କ୍ଷତି ତ କାହାରି ଘଟିବ ନାହିଁ । ତେବେ ଏପରି ସମ୍ପର୍କଶୂନ୍ୟା, ନିଃସହାୟା ବାଳିକା ପ୍ରତି ଏ ନିର୍ଯାତନ କାହିଁକି ? ଏ କଠୋର ଦଣ୍ଡ କେଉଁ ଲାଭ କାମନାରେ ? ପଶୁହତ୍ୟା କରି କରି ଜହ୍ଲାଦର ପ୍ରାଣ ଯେପରି କଠିନ, ଧୀବର ମତ୍ସ୍ୟର ତଣ୍ଟି ଚିପିବାଦ୍ୱାରା ଯେପରି ହିଂସାପଟୁ, ଭାରତବାସୀ ସେହିପରି ସ୍ତ୍ରୀନିର୍ଯାତନପଟୁ । ସ୍ତ୍ରୀର ଦୁଃଖରେ ଏମାନଙ୍କର ପ୍ରାଣ ବିଚଳିତ ହୁଏ ନାହିଁ, ସହଜରେ ହେବାର ନୁହେଁ । ରାଣ୍ଡ ଶବ୍ଦଟିରେ ତାଚ୍ଛଲ୍ୟ ଓ ଘୃଣା ପୂର୍ଣ୍ଣମାତ୍ରାରେ ରହିଅଛି । ଏ ଶବ୍ଦର ଘୃଣାବ୍ୟଞ୍ଜକ । ହା ଭାରତବାସୀ । ହା ଆଭିଜାତ୍ୟମମତା ।

ବିଧବା ଶବ୍ଦ ବେଦରେ ଅଛି । ଏହି ଶବ୍ଦରେ ପର୍ଯ୍ୟାୟ—

''ବିଶ୍ୱସ୍ତା ବିଧବା ପ୍ରୋକ୍ତା ।'' ହଳାୟୁଧ
''ବିଶ୍ୱସ୍ତା ବିଧବେ ସମେ ।'' ଅମର
''ବିଶ୍ୱସ୍ତୋ ବିଧବାସ୍ତ୍ରିୟଂ
ଧବଃ ପ୍ରିୟଃ ପତିର୍ଭର୍ତ୍ତା ।''

ଅମର । ପତିର ପର୍ଯ୍ୟାୟ ।

ବିଧବା— ବିଗତୋ ଧବୋ ଯସ୍ୟାଃ । ଯାହାର ଧବ ନାହିଁ । ଧବ ଅର୍ଥ ଏହି ଯେ ଧୂ + ଅଚ୍ କର୍ତ୍ତୃ, ସନ୍ତାପଂ ଧୂବତି— ସନ୍ତାପକୁ କମ୍ପିତ ବା ନାଶ କରେ ଯେ । ଯେ ସନ୍ତାପ ନାଶ କରେ, ସେ ଯେବେ ଧବ, ତାହା ହେଲେ ବିଧବାର ଅର୍ଥ ଏହି ଯେ, ଯାହାର ସନ୍ତାପନାଶକାରୀ ବିଗତ ହୋଇଅଛି ବା ମୃତ ହୋଇଅଛି ।

ବିଶ୍ୱସ୍ତା:– ବିଫଳଂ ଶ୍ୱସିତି– ବିଫଳ ଜୀବନ ଏହାର । ଏଣୁ ବିଧବାର ନାମ ବିଶ୍ୱସ୍ତା ।

ପ୍ରୀତି ଅଛି ଏହାର, ଏହି ଅର୍ଥର ସ୍ୱାମୀର ନାମ ପ୍ରିୟ ।
ପାଳନ କରେ ବୋଲି ସ୍ୱାମୀର ନାମ ପତି ।
ଭାର ବହନ କରେ ବୋଲି ସ୍ୱାମୀର ନାମ ଭର୍ତ୍ତା ।

ଜଗତରେ ଯାହାର ପ୍ରିୟ ନାହିଁ, ଯାହାର ପାଳନକର୍ତ୍ତା ନାହିଁ, ଯାହାର ଭାରବହନକର୍ତ୍ତା ନାହିଁ, ଯାହାର ସନ୍ତାପନାଶକର୍ତ୍ତା କେହି ନାହିଁ, ତାହାକୁ ବିଧବା ବୋଲାଯାଏ ।

ଉପରେ ଲିଖିତ ବିଧବାପର୍ଯ୍ୟାୟ ଓ ପତିପର୍ଯ୍ୟାୟ ଦେଖିଲେ ଯୁବତୀ ସ୍ୱାମୀଗୃହକୁ ଯାଇ ସ୍ୱାମୀ ସହିତ ଗୃହ କର୍ମରତା ହୋଇ ଓ ଜୀବନର ଅନ୍ତତଃ କେତେକ କାଳ ସ୍ୱାମୀସୁଖସମ୍ଭୋଗ କରିସାରିଲା ପରେ ଯେବେ ସ୍ୱାମୀର ମୃତ୍ୟୁ

ଘଟେ, ତେବେ ସେହି ସ୍ତ୍ରୀକୁ କେବଳ ବିଧବା ବା ବିଶ୍ୱସ୍ତା ବୋଲାଯାଇପାରେ । ମାତ୍ର ଅଜ୍ଞାତପତିମର୍ଯ୍ୟାଦା ନାବାଳିକା—ଯାହାର ପାଣିଗ୍ରହୀତା ପ୍ରିୟ ହୋଇ ନାହିଁ, ପାଳନ କରି ନାହିଁ, କନ୍ୟାର ଭାର ବହନ କରି ନାହିଁ ବା କୌଣସି ପ୍ରକାର ଦୁଃଖ ନାଶ କରି ନାହିଁ, ସେହି ପାଣିଗ୍ରହୀତା ମୃତ ହେଲେ ବାଳିକାକୁ ବିଧବା ବୋଲାଯିବ କାହିଁକି ?

ଅନ୍ୟ କଥା ଛଡ଼ା ଉପରୋକ୍ତ କାରଣରୁ କେବଳ ପିତୃଗୃହରେ ଥିବା ନାବାଳିକା ମୃତ ପାଣିଗ୍ରହୀତାକୁ ବିଧବା ବୋଲିବା ଅସଙ୍ଗତ ବୋଲି ପ୍ରତିପନ୍ନ ହେଉଅଛି । ସେହିପରି ପିତୃଗୃହରେ ଥିବା ନାବାଳିକା କନ୍ୟାଠାରେ ଜନନୀ, ଜାୟା, ପତ୍ନୀ, ସହଧର୍ମିଣୀ, ଭାର୍ଯ୍ୟା, ଦାର ପ୍ରଭୃତି ଶବ୍ଦ ବ୍ୟବହାର କରାଯାଇ ନ ପାରେ । ଏହି ଶବ୍ଦମାନ ନାବାଳିକାଠାରେ ବ୍ୟବହାର କଲେ ଦୂଷଣୀୟ ହେବାର କଥା । ଏଣୁ ପିତୃପାଳିତା ନାବାଳିକାଠାରେ ବିଧବା ଶବ୍ଦ ପ୍ରୟୋଗ କରିବା ଅଶାସ୍ତ୍ରୀୟ ବୋଲି ବିବେଚନା କରାଯିବା ଉଚିତ ।

ସ୍ତ୍ରୀ ଓ ପୁରୁଷ ପର୍ଯ୍ୟାୟ ନେଇ ଉପରୋକ୍ତ ମତ ଗଠନ କରାଯାଇଅଛି । ଏ ସମ୍ବନ୍ଧରେ ମତଦ୍ୱୈଧ ହେବା ଖୁବ୍ ସମ୍ଭବ । ତେବେ ବିବେଚକମାନେ ସ୍ୱାଧୀନ ଚିନ୍ତା ଉପରେ ନିର୍ଭର ରଖି ବିଚାର କଲେ ଉପରୋକ୍ତ ମତ ନ୍ୟାୟାନୁମୋଦିତ ବୋଲି ନିଷ୍ପତ୍ତି କରିବେ, ବିଶ୍ୱାସ କରାଯାଏ ।

ବିଧବା ଶବ୍ଦଟି ବୈଦିକ ଶବ୍ଦ । ଯାସ୍କ ଓ ତତ୍‌ପୂର୍ବ ବ୍ୟାଖ୍ୟାକାରଗଣ ଏହି ଶବ୍ଦର ଅର୍ଥ ଯେପରି ପ୍ରକାଶ କରିଅଛନ୍ତି, ତାହା ଏହି :—

ବିଧବା : ବିଧବନାଦ୍‌ବା ସା ହି ଭର୍ତ୍ତୃମରଣେନ ବିଧୂତା କମ୍ପିତା ଭବତି । ଭର୍ତ୍ତୃମରଣଦ୍ୱାରା କମ୍ପିତା ହୁଏ ବୋଲି ବିଧବା ।

ବିଧବା : ବିଧାବନାଦ୍‌ବା ସା ହି ଭର୍ତ୍ତୃରଭାବାଦନୁରୁଧ୍ୟମାନା ତତ୍ର ତତ୍ର ବିଧାବତ୍ୟେବ ଇତି ଚର୍ମଶିରାଃ ।

ଭର୍ତ୍ତାର ଅଭାବରୁ ଦୁଃଖାଭିଭୂତା ହୋଇ ଇତସ୍ତତଃ ଧାବିତା ହୁଏ ବୋଲି ବିଧବା (ଚର୍ମଶିରାଙ୍କ ମତରେ) ।

ଯେତେବେଳେ ବିଧବା ଶବ୍ଦର ସୃଷ୍ଟି, ସେତେବେଳେ ସମାଜରେ ବାଲ୍ୟବିବାହର ନାମଗନ୍ଧ ନ ଥିଲା । ଯୁବତୀବିବାହ ହିଁ ପ୍ରଚାର ଥିଲା । ଯେତେବେଳେ ଭାରତୀୟ ଆର୍ଯ୍ୟ ଓ ଅନ୍ୟାନ୍ୟ ଆର୍ଯ୍ୟ ଜାତି ଏକତ୍ର ବାସ କରୁଥିଲେ, ସେତେବେଳେ ବିଧବା ଶବ୍ଦର (ଦୁହିତା ପ୍ରଭୃତି ଶବ୍ଦ ପରି) ସୃଷ୍ଟି । ଏଣୁ ଅନ୍ୟାନ୍ୟ ଇଉରୋପୀୟ ଭାଷାରେ ମଧ୍ୟ ଏହି ଶବ୍ଦ କିଞ୍ଚିତ୍ ରୂପାନ୍ତରିତ ହୋଇ ବ୍ୟବହୃତ ହେଉଥିବାର ଦେଖାଯାଏ, ଯଥା—ଲାଟିନ୍—ବିଦୁବା; ଗଥ— ବିଦୁବୋ; ଏଙ୍ଗଲୋସେକସନ୍—ବୁଦୁବୋ, ବୁଦୁବା, ସ୍ଲେଭ—ବିଦୋବା । ଆଜି ପୃଥିବୀରେ ସମସ୍ତ ସଭ୍ୟ ଓ ଅସଭ୍ୟ ଜାତି ମଧ୍ୟରେ ଯୁବତୀବିବାହର ପ୍ରଚଳନ ଅଛି; ମାତ୍ର ଭାରତବର୍ଷର କେତେଟା ଜାତି ମାତ୍ର ତାହା ବାରଣ କରି ବାଲ୍ୟବିବାହ ପ୍ରଥା ପ୍ରଚଳନ କରିଅଛନ୍ତି । ଯୁବତୀବିବାହ ସମ୍ୟକ୍ ପ୍ରଚଳିତ ଥିଲାବେଳେ ବିଧବାର ବିବାହ ମଧ୍ୟ ପ୍ରଚଳିତ ଥିଲା । ପୃଥିବୀର ସମଗ୍ର ଜାତି ମଧ୍ୟରେ ଏ ପ୍ରଥାର ପ୍ରଚଳନ ଅଛି; ମାତ୍ର ଭାରତବର୍ଷରୁ ତାହା ଉଠି ଯାଇଅଛି । ଧବ ବା ଭର୍ତ୍ତାର ଅଭାବକୁ ବିଧବା ବୋଲାଯାଏ । ପିତା ନାକ ପୃଷ୍ଠରେ ବସିବା କାମନାରେ ଦାନ କରିବା ଅଳ୍ପବୟସ୍କା ବାଳିକାକୁ (ଯାହାର ପାଣିଗ୍ରହୀତା କି ଭର୍ତ୍ତା, ପ୍ରିୟ, ଧବ, ପତି ପଦବାଚ୍ୟ ନୁହଁନ୍ତି; ସେହି ପାଣିଗ୍ରହୀତାର ମୃତ୍ୟୁ ହେଲେ) ବିଧବା ବୋଲିବାର କିଛି ହିଁ କାରଣ ନାହିଁ । ତଥାପି ସଂସ୍କାରବଶବର୍ତ୍ତୀ ହୋଇ ଅପୋଗଣ୍ଡ ଶିଶୁକୁ ବିବାହ ଦେଉଅଛନ୍ତି ଏବଂ ପାଣିଗ୍ରହୀତା ମୃତ ହେଲେ ସେହି ବାଳିକାକୁ ବିଧବା ଆଖ୍ୟା ଦେଇ ନାନା ଦୁଃଖକଷ୍ଟ ଯନ୍ତ୍ରଣା ଅପମାନ ଦେବାକୁ ପିତା ଓ ସମାଜ ବଡ଼ ସୁଖ ମଣୁଅଛନ୍ତି । ଜଣକ ଦୁଃଖରେ ଅନ୍ୟମାନଙ୍କର ସୁଖ, ଏହା ପରା ଭାରତୀୟ ଆର୍ଯ୍ୟମାନଙ୍କର ଧର୍ମ ।

ଆମ୍ଭେ ପୂର୍ବେ କହିଅଛୁଁ ଯେ, ବିଧବା ହେବା ବା ବିଭାର୍ଯ୍ୟା ହେବାଟା ଜୀବନର ଗୋଟିଏ ଅତି ଭୟାନକ ବିପଦ । ଏ ବିପତ୍ତି ପଡ଼ିବା ମାତ୍ରକେ ବୁଦ୍ଧିଭ୍ରଂଶ ହୁଏ, ଭବିଷ୍ୟତ୍ ଆଶା ଭରସା ନିର୍ମୂଳ ହେବାର ବୋଧହୁଏ, ଭବିଷ୍ୟତ୍ ଜୀବନସମସ୍ୟା ଜଟିଳ ବୋଧହୁଏ; ଜୀବନ ବୃଥା ବୋଲି ମନେ ହୁଏ । ଏମନ୍ତ କି, ପତି ବା ପତ୍ନୀ ସଙ୍ଗେ ସଙ୍ଗେ ଜୀବନ ଯିବା ଭଲ ବୋଲି ବିବେଚନା କରନ୍ତି । କି ପୁରୁଷ କି ସ୍ତ୍ରୀ ଏତାଦୃଶ ବିୟୋଗଦୁଃଖରେ ପ୍ରାଣତ୍ୟାଗ କରି ନାହାନ୍ତି, ଏପରି ନୁହେଁ । ମାତ୍ର ଏ ଭାବ ବହୁକାଳ ରହି ନ ପାରେ । 'ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ' । ଦୁଃଖ ଯିବାର ହିଁ କଥା । ଦୁଃଖ ଚାଲିଯାଏ । ପୁରୁଷର ପୁଣି ବିବାହ ହେବାର ବ୍ୟବସ୍ଥା ଅଛି, ଏଣୁ ସେ ବିବାହ ହେବାକୁ ପରାଙ୍ମୁଖ ହୁଏ ନାହିଁ, ସମାଜ; ଶାସ୍ତ୍ରତା' ନିମନ୍ତେ ବିଧି ବ୍ୟବସ୍ଥା କରି ରଖିଅଛନ୍ତି । ସେ ଅବଲୀଳାକ୍ରମେ ଅନ୍ୟ ସ୍ତ୍ରୀର ପାଣିଗ୍ରହଣ କରେ । ସ୍ତ୍ରୀ ପୁରୁଷ ଯୋଡ଼ିଏ ଜାତି । ପ୍ରଥମଟି ଅବଳା, ଦ୍ୱିତୀୟଟି ପ୍ରବଳ ପରାକ୍ରମୀ । ଯେ ପ୍ରବଳ, ସେ ବିଧି ବ୍ୟବସ୍ଥା ଦେବ ଓ ଶାସନ କରିବ । ପୁରୁଷଦ୍ୱାରା ଶାସ୍ତ୍ର ପ୍ରଣୀତ । ଏଣୁ ପୁରୁଷ ଆପଣା

ପ୍ରଭୁତ୍ୱ, ମହତ୍ତ୍ୱ ବଜାଏ ରଖିବା ନିମନ୍ତେ ସ୍ତ୍ରୀ ବିପକ୍ଷରେ ବିଧି ବ୍ୟବସ୍ଥା କରିବ, ଏଥିରେ ଆଶ୍ଚର୍ଯ୍ୟ କ'ଣ ? 'ବଳ ଯାର ମୁଲକ ତା'ର' ସବୁ ତା'ର । ଏଣୁ ସ୍ତ୍ରୀ ବିଧବା ହେଲେ ଆଉ ପୁନର୍ବାର ବିବାହ ହୋଇପାରିବ ନାହିଁ ବୋଲି ବ୍ୟବସ୍ଥା ରଖିଗଲେ । ରାଣ ମାନିବାକୁ ଭାରତୀୟ ପୁଏ ମଜଭୁତ୍ । ଏଣୁ ମାନି ଆସୁଅଛନ୍ତି ଏବଂ ସ୍ତ୍ରୀଜାତି ଧର୍ଷିତା, ଲାଞ୍ଛିତା, ଅପମାନିତା, ନିର୍ଯାତିତା ଓ କ୍ଲିଷ୍ଟା ହେଉଅଛନ୍ତି । ପରବାଏ କ'ଣ ? ସମାଜର, ଜାତିର ଅଶେଷ କ୍ଷତି ହେଉଅଛି । ଯାଏ ଆସେ କେତେ ? ପର ବାହୁଛାୟାରେ ସୁଖରେ ଦିନାତିପାତ ହେଉଅଛି । ତୀର୍ଥଗୁଡ଼ିକ ଥାଉ, ହିନ୍ଦୁଜାତିର ନାମ ମାତ୍ର ଧର୍ମରେ ବିଶ୍ୱାସ ଥାଉ ଏବଂ ଯେ କୌଣସି ପ୍ରକାରେ ସ୍ୱର୍ଗଜାତିର ଆକାଂକ୍ଷା ବଳବତୀ ଥାଉ । ଜାତୀୟ ଓ ସାମାଜିକ ଚିନ୍ତାର ପ୍ରୟୋଜନ କ'ଣ ?

ଆର୍ଯ୍ୟ ଶବ୍ଦଟି ବଡ଼ ଗୌରବପୂର୍ଣ୍ଣ ଓ ମହିମାମୟ । ଭାରତୀୟ ଆର୍ଯ୍ୟସନ୍ତାନ । ଏ ମୋହ ଆଉ ଭାଙ୍ଗିବ ନାହିଁ କି ?

ଦୁଃଖ ଓ ଆକ୍ଷେପ କରିବାକୁ ତ ଜୀବନଯାକ ଅଛି । ଏବେ ମୂଳ ପ୍ରସଙ୍ଗର ଅବତାରଣା କରାଯାଉ ।

ବିଧବା ହେଲେ ବା ଅଭାର୍ଯ୍ୟ ହେଲେ ପୁଣି ଯେ ବିବାହ, ସେ କେବଳ ଆପଦ୍ଧର୍ମ । ଘର ଭାଙ୍ଗିଗଲା, ମରାମତି କରିବାକୁ ହେବ । ତାହା ଗୃହାରମ୍ଭର ମହଦାନୁଷ୍ଠାନ ନୁହେଁ, ଜୀର୍ଣ୍ଣ ସଂସ୍କାର ମାତ୍ର । ଯଜ୍ଞୋପବିତ ଛିନ୍ନ ହେଲେ ଯେ ପୁଣି ପଇତା ଧାରଣ କରିବାକୁ ହେବ; ତାହା ପ୍ରଥମ ଉପନୟନର ସମକକ୍ଷ ନୁହେଁ । ପୁରୁଷ ଅଭାର୍ଯ୍ୟ ହେଲେ ସେ ପୁଣି ବିବାହ କରନ୍ତି, ତାହା ପ୍ରଥମ ବିବାହର ଅନୁଷ୍ଠାନର ସମକ୍ଷକ ହୋଇ ନ ପାରେ । କିମ୍ବା ବିଧବା ବିବାହ ହେଲେ ପ୍ରଥମ ବିବାହର ଅନୁଷ୍ଠାନର ସମକକ୍ଷ ହୋଇ ନ ପାରେ । ଯେହେତୁ ଏହା ଆପଦ୍ଧର୍ମ । ପ୍ରଥମାନୁଷ୍ଠାନ ନିମନ୍ତେ ଯେପରି ବିଧି ବ୍ୟବସ୍ଥା କରାଯାଇଅଛି, ଏଥି ନିମନ୍ତେ ସେପରି ବିଧି ବ୍ୟବସ୍ଥା କରାଯାଇ ନାହିଁ । ଯେହେତୁ ହିନ୍ଦୁର ସମସ୍ତ କାର୍ଯ୍ୟ ଶାସ୍ତ୍ରାନୁମୋଦିତ ହେବା କଥା । ମାତ୍ର ଯେଉଁ ଜାତି ମଧ୍ୟରେ ଏତାଦୃଶ ସଂସ୍କାର ନାହିଁ ବା ଯେଉଁ ସମାଜରେ ବିଧବା ବିବାହ ବରାବର ଚଳି ଆସିଅଛି, ସେମାନଙ୍କ ମଧ୍ୟରେ ମଧ୍ୟ କିଞ୍ଚିତ୍ ପାର୍ଥକ୍ୟ ଥିବାର ଦେଖାଯାଏ ।

ଉପରେ ଆପଦ୍ଧର୍ମ ବୋଲି ପଦ କେତେ ଲେଖିଗଲୁଁ, ସେ ପଦ କେତେକ କାହା ପକ୍ଷରେ ? ସେହିମାନଙ୍କ ପକ୍ଷରେ, ଯେଉଁ ପତିପତ୍ନୀ ଗୃହସ୍ଥାଶ୍ରମ କରି ପରସ୍ପରକୁ ପରିଚୟ କରିଥାନ୍ତି । ଉଭୟେ ପରସ୍ପର ସାହାଯ୍ୟଦ୍ୱାରା ଜୀବନଯାତ୍ରାର ପଥ ସୁଖମୟ କରିଥାନ୍ତି, ପ୍ରେମାସକ୍ତ ହୋଇଥାନ୍ତି । ଏକର ଅଭାବରେ ଅନ୍ୟ ସଂସାର ହାହାମୟ ମଣେ । ଏକର ଅଭାବ ଅନ୍ୟ ପ୍ରତି ଯନ୍ତ୍ରଣାମୟ ଜୀବନଧାରଣ ତୁଲ୍ୟ ହୁଏ । ଗୃହସ୍ଥ କର୍ମରତ, ପବିତ୍ର ପ୍ରେମାସକ୍ତ ଅଭାର୍ଯ୍ୟ ପ୍ରତି ଏବଂ ବିଧବା ପ୍ରତି ପୁନର୍ବିବାହଦ୍ୱାରା ଗୃହଧର୍ମ ଆରମ୍ଭର ନାମ ଆପଦ୍ଧର୍ମ । ମାତ୍ର ଅଷ୍ଟବର୍ଷୀୟା ବାଳିକା ଓ ଦଶ ବା ଦ୍ୱାଦଶ ବର୍ଷୀୟା ବାଳକର ବିବାହରେ ଗୃହସ୍ଥଧର୍ମର ସମ୍ବନ୍ଧ ନାହିଁ । ବାଳକ ବାଳିକା ମଧ୍ୟରେ ବୈବାହିକ ଆସକ୍ତି ନାହିଁ । ପ୍ରେମର ଲେଶ ମାତ୍ର ନ ଥାଏ । ଭବିଷ୍ୟତ୍ ସୁଖ ଦୁଃଖ ବା ସ୍ୱାଚ୍ଛନ୍ଦ୍ୟ ପ୍ରତି ଉଭୟେ ସମ୍ପୂର୍ଣ୍ଣ ଅଜ୍ଞ । ଜଣକର ବିୟୋଗଟା ଅନ୍ୟର ହୃଦୟରେ ଆପଦ ବୋଲି ତିଳେ ମାତ୍ର ସ୍ଥାନ ପାଏ ନାହିଁ । ଏପରି ସ୍ଥଳରେ ବାଲ୍ୟବିବାହର ପାତ୍ର ପାତ୍ରୀ ମଧ୍ୟରୁ ଜଣକର ମୃତ୍ୟୁ ଅପରର ମର୍ମନ୍ତୁଦ ନୁହେଁ । ଏଣୁ ବାଳକ ମଲେ ବାଳିକା ବିଧବା ନୁହେଁ ବା ବାଳିକା ମଲେ ବାଳକ ଅଭାର୍ଯ୍ୟ ନୁହେଁ । କୁଣ୍ଢେଇ ବିବାହ ସରିଲା ପରେ, କୁଣ୍ଢେଇ ମଧ୍ୟରୁ ଗୋଟିଏ ଭାଙ୍ଗିଗଲା । କୁଣ୍ଢେଇବିବାହ ପ୍ରିୟ ବ୍ୟକ୍ତି ଆଉ ଗୋଟାଏ କୁଣ୍ଢେଇ ତୟାର କରିବା ଉଚିତ । ଖେଳରେ ଏପରି ହୋଇଥାଏ । ଜୀବନ୍ତ କୁଣ୍ଢେଇ ଖେଳରେ ମଧ୍ୟ ତାହା ହେବା ଉଚିତ । ବାଳବିଧବାର ବିବାହ ଆପଦ୍ଧର୍ମ ବୋଲି ଗଣ୍ୟ ହେବାର ଉଚିତ ନୁହେଁ ।

ଆମ୍ଭେମାନେ ପୂର୍ବେ ପ୍ରକାଶ କରିଅଛୁଁ ଯେ, ପରାଶର କଳିଯୁଗର ଧର୍ମଶାସ୍ତ୍ର । 'କଳୌ ପାରାଶରଃ ସ୍ମୃତିଃ'। ଆମ୍ଭେମାନେ ଏହା ମଧ୍ୟ ପ୍ରକାଶ କରିଅଛୁଁ ଯେ, ମନୁ ସହିତ ଯେଉଁ ବିଷୟରେ ପରାଶର ଏକମତ, ସେ ବିଷୟରେ ପୁନରୁଲ୍ଲେଖ କରି ନାହାନ୍ତି, ମନୁ ବଚନକୁ ସ୍ୱୀକାର କରି ଯାଇଅଛନ୍ତି । ମାତ୍ର କଳିଯୁଗରେ ଧର୍ମ ଯାହା ମନୁରେ ନାହିଁ ବା ମନୁ ମତ ଅପେକ୍ଷା ଭିନ୍ନ ହେବାର ପ୍ରୟୋଜନୀୟ ମନେ କରିଅଛନ୍ତି, ତାହା କେବଳ ଲେଖି ଯାଇଅଛନ୍ତି । ପରାଶରସଂହିତାରେ ୧୨ ଗୋଟି ଅଧ୍ୟାୟ ଓ ୫୮୮ ଗୋଟି ଶ୍ଳୋକ; ଏଥିମଧ୍ୟରୁ ୬୦ । ୭୦ ଗୋଟି ଶ୍ଳୋକ ଯେ ପ୍ରକ୍ଷିପ୍ତ, ଏଥିରେ ସନ୍ଦେହ ନାହିଁ । ତାହା ଛଡ଼ା କେତେଗୁଡ଼ିଏ ଶ୍ଳୋକ ଛାପା ପୁସ୍ତକରେ ନାହିଁ । ତହିଁର କାରଣ ଅନୁସନ୍ଧାନ କରାଯିବା ନିଷ୍ପ୍ରୟୋଜନ, ଯେହେତୁ ଦେଶର ପଣ୍ଡିତଗଣ ଆପଣାର ମତ ରକ୍ଷା ଉଦ୍ଦେଶ୍ୟରେ ସ୍ମୃତି ଗ୍ରନ୍ଥମାନଙ୍କୁ ଯଥେଷ୍ଟ କାଟଛାଟ କରିଅଛନ୍ତି । ତାହା ପୂର୍ବ ଅଧ୍ୟାୟରେ ମଧ୍ୟ ବହୁଳ ଭାବରେ ବିବୃତ ହୋଇଅଛି ।

ପରାଶର କଳିଯୁଗର ଧର୍ମ, ଏହା ନିଜେ ପରାଶର ସ୍ମୃତିରେ ଲେଖା ଅଛି । ଟୀକାକାରମାନେ ତାହା ସ୍ୱୀକାର କରୁଅଛନ୍ତି ଏବଂ ପରାଶର ଅନୁସାରେ ବିଶେଷଭାବରେ ବ୍ୟବସ୍ଥା ଦିଆଯାଏ । ଅନ୍ୟ ସ୍ମୃତିକୁ ସାକ୍ଷରୂପେ ଗ୍ରହଣ କରାଯାଏ ।

ଅନ୍ୟେ କୃତଯୁଗେ ଧର୍ମାସ୍ତ୍ରେତାୟାଂ ଦ୍ୱାପରେଽପରେ ।
ଅନ୍ୟେ କଳିଯୁଗେ ନର୍ଣାଂ ଯୁଗରୂପାନୁସାରତଃ ॥ ୨୧
ତପଃ ପରଂ କୃତଯୁଗେ ତ୍ରେତୟାଂ ଜ୍ଞାନମୁଚ୍ୟତେ ।
ଦ୍ୱାପରେ ଯଜ୍ଞମିତ୍ୟୂଚୁ ର୍ଦାନମେବଂ କଳୌ ଯୁଗେ ।
କୃତେତୁ ମାନବୋ ଧର୍ମସ୍ତ୍ରେତାୟାଂ ଗୌତମଃ ସ୍ମୃତଃ ।
ଦ୍ୱାପରେ ଶଙ୍ଖଲିଖିତଃ କଳୌ ପାରାଶର ସ୍ମୃତଃ ।
(ପରାଶର ୧ ଅ.)

ସତ୍ୟଯୁଗର ଧର୍ମ ଏକପ୍ରକାର, ତ୍ରେତାରେ ଏକପ୍ରକାର ଓ ଦ୍ୱାପରରେ ଏକ ପ୍ରକାର । ଯୁଗ ରୂପ ଅନୁସାରେ କଳିର ଧର୍ମ ମଧ ଅନ୍ୟ ପ୍ରକାର ।

ସତ୍ୟଯୁଗରେ ତପ ଶ୍ରେଷ୍ଠ, ତ୍ରେତାରେ ଜ୍ଞାନ ପ୍ରଧାନ, ଦ୍ୱାପରରେ ଯଜ୍ଞ ପ୍ରଧାନ ଏବଂ କଳିଯୁଗରେ ଏକମାତ୍ର ଦାନ ପ୍ରଧାନ ଧର୍ମ ।

ସତ୍ୟଯୁଗର ପ୍ରଧାନ ଧର୍ମ ମନୁପ୍ରବର୍ତ୍ତିତ ଧର୍ମ, ତ୍ରେତାଯୁଗର ଧର୍ମ ଗୌତମଙ୍କର ମତ ଏବଂ ଦ୍ୱାପର ଯୁଗର ଧର୍ମ ଶଙ୍ଖ ଓ ଲିଖିତ ମତ ଏବଂ ପରାଶରଙ୍କର ମତ କଳିଯୁଗର ଧର୍ମ ଅଟେ ।

ମନୁ ସର୍ବପ୍ରଥମ ଧର୍ମଶାସ୍ତ୍ର । ତାହାର ଭିତ୍ତି ଉପରେ ଯୁଗଭେଦ ଅନୁସାରେ ଚାରିଜଣ ଯୁଗଧର୍ମବେତ୍ତା ବିଭିନ୍ନ ସମୟରେ ଲୋକଗ୍ରହଣୀୟ ମତ ଓ ବ୍ୟବସ୍ଥା ଦେଇଗଲେ । ତାହା ଗୌତମ, ଶଙ୍ଖ, ଲିଖିତ ଓ ପରାଶର ସ୍ମୃତି । ଯେବେ ପରାଶରସଂହିତାକୁ ମାନିବାକୁ ହୁଏ, ତେବେ ତାହା କଳିଯୁଗର ଧର୍ମଶାସ୍ତ୍ର । ପୂର୍ବ ସ୍ମୃତି ସହିତ ଯୁଗମତ ସାମ୍ୟ ନୋହିବା ସ୍ଥଳରେ ନୂତନ ମତ ଓ ବ୍ୟବସ୍ଥା ଦିଆଯାଇଥାଏ । ଏକାବେଳକେ ସ୍ମୃତିଶାସ୍ତ୍ର ବଦଳାଇଲେ ବା ଓଲଟ ପାଲଟ କଲେ ଧର୍ମନାଶ ହେବାର କଥା । ସନାତନତ୍ୱ ରହିପାରେ ନାହିଁ । ଏଣୁ ମାନବଧର୍ମଶାସ୍ତ୍ରକୁ ମୂଳରେ ରଖି ଏତେଗୁଡ଼ିଏ ସ୍ମୃତିର ସୃଷ୍ଟି କରିଅଛନ୍ତି, ପଲ୍ଲବିତ କରିଅଛନ୍ତି । ଏବେ ମଧ ଆଇନ୍‌ର ଧାରା ପରିବର୍ତ୍ତନର ପ୍ରୟୋଜନ ହେଉଅଛି । ଧର୍ମଶାସ୍ତ୍ର ତ ସାମାଜିକ ଓ ରାଜନୈତିକ ଆଇନ୍ ।

ପରାଶର ସ୍ମୃତି ରଚନା ପୂର୍ବରୁ ବିଧବା ବିବାହର ପ୍ରଚଳନ ଥିଲେ ମଧ ସ୍ପଷ୍ଟାକ୍ଷରରେ ଶାସ୍ତ୍ରମାନଙ୍କରେ ତହିଁର ଉଲ୍ଲେଖ ନ ଥିଲା । ଏଣୁ ପରାଶରସଂହିତାରେ ତାହା ବିଶଦ୍‌ଭାବରେ ବିବୃତ ହେଲା ।

ପରାଶର ସ୍ମୃତି ଲେଖିଲେ :—

ଦତ୍ତାହିତା ତୁ ଯା କନ୍ୟା ନ ପ୍ରାପ୍ନୋତି ଚ ମୈଥୁନଂ ।
ପୁନର୍ଲଭେତ ଭର୍ତ୍ତାରଂ ଯଥା କନ୍ୟା ତଥୈବ ସା ।
ପରୀକ୍ଷେତ୍‌କୁଳଶୀଳାଭ୍ୟାଂ ନ ଦୁଷ୍ୟେତି କଦାଚନ ।
ନ ମନ୍ତ୍ରବାରଣଂ ତତ୍ର ନ କନ୍ୟା ଚାନୃତଂ ଭବେତ୍ ॥
ନଷ୍ଟେ ମୃତେ ପ୍ରବ୍ରଜିତେ କ୍ଲୀବେ ଚ ପତିତେ ପତୌ ।
ପଞ୍ଚସ୍ୱାପତ୍ସୁ ନାରୀଣାଂ ପତିରନ୍ୟୋ ବିଧୀୟତେ ॥
ମୃତେ ଭର୍ତ୍ତରି ଯା ନାରୀ ବ୍ରହ୍ମଚର୍ଯ୍ୟେ ବ୍ୟବସ୍ଥିତା ।
ସା ମୃତା ଲଭତେ ସ୍ୱର୍ଗଂ ଯଥା ତେ ବ୍ରହ୍ମଚାରିଣଃ ॥
ତିସ୍ରଃ କୋଟ୍ୟର୍ଦ୍ଧ କୋଟୀ ଚ ଯାନି ରୋମାଣି ମାନବେ ।
ତାବତ୍କାଳଂ ବସେତ୍ ସ୍ୱର୍ଗଂ ଭର୍ତ୍ତାରଂ ଯାନୁଗଚ୍ଛତି ॥
ବ୍ୟାଳଗ୍ରାହୀ ଯଥା ବ୍ୟାଳଂ ବିଳାଦୁଦ୍ଧରତେ ବଳାତ୍ ।
ଏବମୁଦ୍ଧୃତ୍ୟ ଭର୍ତ୍ତାରଂ ତେନୈବ ସହ ମୋଦତେ ॥
(ପରାଶର ୪ର୍ଥ ଅଧ୍ୟାୟ)

ଦତ୍ତା ଓ ଅର୍ପିତା କନ୍ୟା ଯଦି ସ୍ୱାମୀ ସହବାସ କରି ନ ଥାଏ, ତାହା ହେଲେ ଅବିବାହିତା କନ୍ୟା ପରି ସେ ପୁଣି ଭର୍ତ୍ତାଲାଭ କରି ପାରିବ । ଅର୍ଥାତ ଅକ୍ଷତଯୋନି ଓ ଅବିବାହିତା କନ୍ୟା ସମାନ ।

ଯାହାର କୁଳଶୀଳ ପରୀକ୍ଷା ହୋଇଅଛି, ତାହାକୁ ଦୂଷିତା ବୋଲି ମନେ କରିବ ନାହିଁ । କୁଳଶୀଳ ପରୀକ୍ଷା ହୋଇଥିବା ସ୍ଥଳରେ ଅନ୍ୟ ବିଚାର ଅନାବଶ୍ୟକ । କନ୍ୟା କେବେ ଅସତୀ ହୁଏ ନାହିଁ ।

ପତି ନଷ୍ଟ ହେଲେ, ମୃତ ହେଲେ, ସନ୍ନ୍ୟାସ ଧର୍ମ ଅବଲମ୍ବନ କଲେ, କ୍ଲୀବ ଥିଲେ, ପତିତ ହେଲେ ଏହି ପାଞ୍ଚ ଗୋଟି ସ୍ତ୍ରୀର ଆପଦ । ଏହି ପଞ୍ଚ ବିଧ ଆପଦରେ ନାରୀ ଅନ୍ୟ ପତି ଗ୍ରହଣ କରିବାର ଶାସ୍ତ୍ରବିହିତ ।

କିନ୍ତୁ ସ୍ୱାମୀ ମୃତ ହେଲେ ଯେଉଁ ନାରୀ ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣ କରି ରହିପାରିବ, ସେ ନିଜେ ମଲେ ବ୍ରହ୍ମଚାରୀଙ୍କ ପରି ସ୍ୱର୍ଗଲାଭ କରିବ ।

ଯେଉଁ ନାରୀ ଭର୍ତ୍ତାର ଅନୁଗମନ କରିବ, ସେ ଯେଉଁ ସାର୍ଦ୍ଧ ତିନି କୋଟି ଲୋମ ମନୁଷ୍ୟ ଦେହରେ ଅଛି, ସେହି ଲୋମପରିମିତ ସମୟ ସ୍ୱର୍ଗରେ ବାସ କରିବ ।

ସ୍ୱାମୀ ମୃତ ହେଲେ ବାଳିକା ହେଉ ବା ଯୁବତୀ ହେଉ ତା ପକ୍ଷରେ ତିନି ଗୋଟି ପନ୍ଥା ପରାଶର ସ୍ମୃତିରେ ଲେଖା ଅଛି । ପ୍ରଥମ, ଅନ୍ୟ ପତି ଗ୍ରହଣ; ଦ୍ୱିତୀୟ ବ୍ରହ୍ମଚର୍ଯ୍ୟପାଳନ; ତୃତୀୟ, ସହମରଣ । ବିଧବା ସମ୍ବନ୍ଧରେ ଏପରି ସ୍ପଷ୍ଟାକ୍ଷରରେ ଅନ୍ୟ କୌଣସି ସ୍ମୃତି ଲେଖି ନାହାନ୍ତି ।

ଉପରିଲିଖିତ ପ୍ରଥମ ଦୁଇ ଗୋଟି ଶ୍ଳୋକ ତାଳପତ୍ର ପୁସ୍ତକମାନଙ୍କରେ ଦେଖାଯାଏ । ମାତ୍ର ଛାପା ପୁସ୍ତକରେ ଉକ୍ତ ଦୁଇ ଗୋଟି ଶ୍ଳୋକ ନାହିଁ । ତାଳପତ୍ର ପୋଥିରେ ଥିବା ସ୍ଥଳେ ମୁଦ୍ରିତ ପୁସ୍ତକରେ ନ ଥିବାର କାରଣ ଏହି ଯେ, ମାଧବାଚାର୍ଯ୍ୟ ପରାଶରସଂହିତାର ପ୍ରଥମ ଟୀକାକାର ଓ ବ୍ୟାଖ୍ୟାକର୍ତ୍ତା । ପ୍ରାୟ ଛାପା ପୁସ୍ତକ ତାଙ୍କ ପୁସ୍ତକ ଅନୁକରଣରେ ମୁଦ୍ରିତ । ବିଧବାବିବାହ ପର ଏପ୍ରକାର ଯୋଡ଼ିଏ ଶ୍ଳୋକ ମାଧବଙ୍କ ପୁସ୍ତକରେ ସ୍ଥାନ ପାଇବା ଅସମ୍ଭବ । ଯେହେତୁ ସେ ବାଲ୍ୟବିବାହର ପକ୍ଷପାତୀ ଓ ବିଧବାବିବାହର ବିଦ୍ୱେଷୀ । ସୁତରାଂ ଛାପା ପୁସ୍ତକରେ ଏ ଶ୍ଳୋକ ଯୋଡ଼ିକ ନାହିଁ । ଉତ୍କଳ ଦେଶର ପ୍ରାୟ ସମସ୍ତ ତାଳପତ୍ର ପୋଥିରେ ଥିବାର ଅନୁମାନ କରାଯାଏ । ଆମ୍ଭ ଦେଶର ତାଳପତ୍ର ପୋଥିରେ ଏ ଶ୍ଳୋକ ଯୋଡ଼ିକ ଅଛି ଏବଂ ଆମ୍ଭମାନଙ୍କ ହସ୍ତଗତ ତାଳପତ୍ର ପୋଥିରେ ଅଛି । ଏହା କେବଳ ନୁହେଁ, ପଣ୍ଡିତସର୍ବସ୍ୱକାର 'ସ୍ତ୍ରୀଣାଂ ଧର୍ମବିଚାରଃ' 'ବାଳବିଧବାପରିଣୟ ବିଷୟେ' ବିଚାରସ୍ଥଳରେ ନିମ୍ନୋକ୍ତ ପରାଶରସଂହିତାର ଶ୍ଳୋକଟି ଉଦ୍ଧୃତ କରିଅଛନ୍ତି ।

''ଦତ୍ତାହିତା ଚଯା କନ୍ୟା ନ ଚ ସଂପ୍ରାପ୍ତମୈଥୁନା ।
ପୁନଃ ପ୍ରାପ୍ନୋତି ଭର୍ତ୍ତାରଂ ଯଥା କନ୍ୟା ତଥୈବ ସା ।

ପୁଣି ଲେଖିଅଛନ୍ତି– ''ନ ଚ ସଂପ୍ରାପ୍ତମୈଥୁନା ନ ଭର୍ତ୍ତୃସଙ୍ଗମବତୀ ଅକ୍ଷତଯୋନିକା ବିବାହ ବିଷୟେ । ସାଚେଦକ୍ଷତଯୋନିଃ ସ୍ୟାତ୍ପୁନଃସଂସ୍କାର ମର୍ହତି । ଅକ୍ଷତଯୋନି ର୍ନ ଋତୁମତୀ । ସଂସ୍କାରଂ ବିବାହଂ । ଶୂଦ୍ର ବିଷୟେ ।''

ଏଥିରୁ ପ୍ରତିପନ୍ନ ହେଉଅଛି ଯେ, ଉତ୍କଳଦେଶୀୟ ସମସ୍ତ ତାଳପତ୍ର ପୋଥିରେ ପରାଶର ସ୍ମୃତିର ବିଧବାବିବାହପରି ଶ୍ଳୋକତକ ଅକ୍ଷୁଣ୍ଣଭାବରେ ଅଛି । ଏ ଦେଶର ପଣ୍ଡିତମାନେ ସେଗୁଡ଼ିକ ପୋଥିରୁ ବହିଷ୍କୃତ ନ କରିବାଦ୍ୱାରା ଉଦାରତାର ପରିଚୟ ଦେଇଅଛନ୍ତି ।

କିନ୍ତୁ ପଣ୍ଡିତ ସର୍ବସ୍ୱକାର ଦ୍ୱିତୀୟ ଶ୍ଳୋକଟିର ଉଲ୍ଲେଖ କରି ନାହାନ୍ତି । ତାହା ନ କରନ୍ତୁ, ସେ ଯେ ଭର୍ତ୍ତୃସଙ୍ଗମରହିତା ଅକ୍ଷତଯୋନିର ବିବାହ ଶାସ୍ତ୍ରସଙ୍ଗତ ଥିବାର ସ୍ୱୀକାର କରି ଯାଇଅଛନ୍ତି, ଏଥିରେ ସନ୍ଦେହ ନାହିଁ । ତେବେ 'ଅକ୍ଷତଯୋନିର୍ନ ଋତୁମତୀ' ଏବଂ 'ଶୂଦ୍ରସ୍ତ୍ରୀ ବିଷୟେ' ଏ ଦୁଇ ଗୋଟି ବଚନ କପୋଳକଳ୍ପିତ । କିମ୍ବା ଏ ଦୁଇ ବାକ୍ୟ ପଣ୍ଡିତସର୍ବସ୍ୱକାରଙ୍କର ନୁହେଁ, କେବଳ ପୁସ୍ତକଲେଖକ ବା ପ୍ରକାଶକଙ୍କର ହୋଇପାରେ । ଏ ଦେଶର ଶୂଦ୍ରମାନେ ବିଧବା ବିବାହ କରନ୍ତି, ଏହା ଦେଖି ପଣ୍ଡିତସର୍ବସ୍ୱକାର ବା ଅନ୍ୟ କେହି ଏହା ଲେଖିଅଛନ୍ତି । ଏହା ତ ପରାଶର ସ୍ମୃତିର ବଚନ ନୁହେଁ । ପରାଶର ସ୍ମୃତିଂ ରଚକ ଏ କଥା ପଣ୍ଡିତସର୍ବସ୍ୱକାରଙ୍କ କାନରେ ତୁନି କରି କହି ଦେଇଗଲେ କି ? ଯେଉଁ ଦେଶରେ ଶୂଦ୍ର ଜାତିରେ ମଧ ବିଧବା ବିବାହ ନାହିଁ, ସେ ଦେଶର ପଣ୍ଡିତ ଏହା ଲେଖିଲେ କି ?

ପ୍ରଥମ ଶ୍ଳୋକଟି ଓ ଦ୍ୱିତୀୟ ଶ୍ଳୋକଟି ଅକ୍ଷତଯୋନିର ବିବାହ ସପକ୍ଷରେ ଦୃଢ଼ମତ । ଏହା ପାଠ କଲା ଉତ୍ତାରୁ ଯେବେ ଅକ୍ଷତଯୋନି ବିଧବାର ପୁନର୍ବିବାହ ଶାସ୍ତ୍ରସିଦ୍ଧ ନୁହେଁ ବୋଲି କହନ୍ତି, ତାହାହେଲେ ପରାଶର ସ୍ମୃତିକି ନ ମାନିବା ଭଲ ଏବଂ ପରାଶର ସ୍ମୃତି କଳିଯୁଗର ଧର୍ମଶାସ୍ତ୍ର ନୁହେଁ ବୋଲି ପ୍ରକାଶ କରିବା ଭଲ ।

ତୃତୀୟ ଶ୍ଳୋକ କେବଳ ବିଧବାବିବାହପର । ପତି ନଷ୍ଟ ହେଲେ, ପତି ମୃତ ହେଲେ, ପ୍ରବ୍ରଜ୍ୟା କଲେ, ନପୁଂସକ ଥିଲେ, ପତିତ ହେଲେ ସ୍ତ୍ରୀ ଅନ୍ୟ ପତି ଗ୍ରହଣ କରିପାରିବ । ଏ ପାଞ୍ଚଟି ସ୍ତ୍ରୀ ପକ୍ଷରେ ଜୀବନଯାତ୍ରା ସମ୍ବନ୍ଧରେ ମହା ଆପଦ– ଏ ଆପଦରୁ ରକ୍ଷାର ଏକମାତ୍ର ଉପାୟ ଅନ୍ୟ ପତି ଗ୍ରହଣ। ଏହା ପରାଶର ସ୍ମୃତିର ବ୍ୟବସ୍ଥା ଓ ଆଦେଶ । ଏ ଶ୍ଳୋକଟି ନେଇ ନାନା ଟୀକାକାର ନାନା ବ୍ୟାଖ୍ୟା କରି ଶ୍ଳୋକର ଅସଲ ତାତ୍ପର୍ଯ୍ୟ ନଷ୍ଟ କରିଅଛନ୍ତି । ଏତାଦୃଶ ସ୍ପଷ୍ଟାର୍ଥବୋଧକ ଶ୍ଳୋକ ଉପରେ ଟୀକା ଟିପ୍ପଣୀ ଅନାବଶ୍ୟକ, ତଥାପି ବିଧବାବିବାହବିରୋଧୀମାନେ ପଦେ ଅଧେ ଲେଖିବାକୁ ଛାଡ଼ି ନାହାନ୍ତି ।

ପରାଶର ସ୍ମୃତିର ପ୍ରଧାନ ଟୀକାକାର ଓ ବ୍ୟାଖ୍ୟାକର୍ତ୍ତା ଅଟନ୍ତି ମାଧବାଚାର୍ଯ୍ୟ, ଏହା କେହି ଅସ୍ୱୀକାର କରିବେ ନାହିଁ । ଅନ୍ୟାନ୍ୟ ପ୍ରସଙ୍ଗରେ ତାହାଙ୍କର ଟୀକା ଟିପ୍ପଣୀ ଯେପରି ବିସ୍ତୃତ ଭାବରେ ଥିବାର ଦେଖାଯାଏ, ଏ ଶ୍ଳୋକ ସମ୍ବନ୍ଧରେ ସେପରି ବିସ୍ତୃତ ଓ ଆଡ଼ମ୍ବରପୂର୍ଣ୍ଣ ଟୀକା ଟିପ୍ପଣୀ ନାହିଁ । କେବଳ ଲେଖିଲେ 'ନଷ୍ଟୋ ଦେଶାନ୍ତରଗମନେ ନାପରିଜ୍ଞାତବୃତ୍ତାନ୍ତଃ । ଅୟଞ୍ଚ ପୁନରୁଦ୍‌ବାହୋ ଯୁଗାନ୍ତରବିଷୟଃ' । ତଥା ଚାଦିପୁରାଣେ—

ଉଢ଼ାୟାଃ ପୁନରୁଦ୍‌ବାହଂ ଜ୍ୟୋଷ୍ଠାଂଶଂ ଗୋବଧଂ ତଥା ।
କଳୌ ପଞ୍ଚ ନ କୁର୍ବୀତ ଭ୍ରାତୃଜାୟାଂ କମଣ୍ଡଳୁଂ ॥

ମାଧବାଚାର୍ଯ୍ୟ ପ୍ରଥମ ଓ ଦ୍ୱିତୀୟ ଶ୍ଳୋକକୁ ତାଙ୍କ ମାଧବ ପରାଶରରେ ଲେଖିଲେ ନାହିଁ । ତୃତୀୟ ଶ୍ଳୋକଟିକୁ ସ୍ଥାନ ଦେଲେ, ମାତ୍ର ଅଧିକ ବାଦ ପ୍ରତିବାଦ, ଟୀକା ଟିପ୍ପଣୀ ନ ଲେଖି କେବଳ ଏହା ଲେଖିଲେ ଯେ, ଏହି ପୁନରୁଦ୍‌ବାହ ଯୁଗାନ୍ତର ବିଷୟ ଅଟେ; ଅର୍ଥାତ୍ ସତ୍ୟ ତ୍ରେତା ଦ୍ୱାପର ଯୁଗର ବ୍ୟବସ୍ଥା, ମାତ୍ର କଳି ଯୁଗର ବ୍ୟବସ୍ଥା ନୁହେଁ । ମାଧବାଚାର୍ଯ୍ୟଙ୍କର ଏହି ଉକ୍ତିକୁ ବିଜ୍ଞ ବ୍ୟକ୍ତିଗଣ ଦିବ୍ୟଚିତ୍ତରେ ପ୍ରଣିଧାନପୂର୍ବକ ବିବେଚନା କରିବା ଉଚିତ । ସଂହିତାଲେଖକ ବି ମାଧବାଚାର୍ଯ୍ୟଙ୍କୁ କହିଗଲେ ଯେ ବିଧବାର ପୁନର୍ବିବାହ ବିଷୟ ଯୁଗାନ୍ତରର କଥା ? ଶ୍ଳୋକଟି ବିଦ୍ୟମାନ ଅଛି, ସମସ୍ତେ ତାହା ପାଠ କରୁଅଛନ୍ତି, ବୁଝି ପାରୁଅଛନ୍ତି । ଶ୍ଳୋକପାଠରୁ ବା ପୂର୍ବାପରି ବିଷୟରୁ ବିଧବାର ପୁନର୍ବିବାହ ଅନ୍ୟ ଯୁଗର ବିଷୟ ବୋଲି ଯେକୌଣସି ପ୍ରକାରେ ହେଲେ ବୁଝାଯାଉ ଅଛି କି ? ଯେବେ କେହି ଏହା ଯୁଗାନ୍ତର ବିଷୟ ବୋଲି କଳ୍ପନା ମଧ କରନ୍ତି, ତେବେ ମାଧବାଚାର୍ଯ୍ୟ ଏପରି ସ୍ୱକପୋଳକଳ୍ପିତ ମତରୁ ପଦେ ଲେଖି ଦେଇ ସମସ୍ତଙ୍କ ଚକ୍ଷୁରେ ଧୂଳି ପକାଇବେ କାହିଁକି ? ଏବଂ ସମସ୍ତେ ଚକ୍ଷୁ ମୁଦ୍ରିତ କରି ଅନ୍ଧପରମ୍ପରା ନ୍ୟାୟରେ ସର୍ବଦା ଚାଲିବେ କାହିଁକି ? ମାଧବାଚାର୍ଯ୍ୟ ଏହି ପଦକ ଲେଖି କେବଳ ତାଙ୍କର ପାଠକମାନଙ୍କୁ ଅନ୍ଧୀଭୂତ କରୁଅଛନ୍ତି, ଏପରି ନୁହେଁ, ସଂହିତାଲେଖକଙ୍କୁ ମଧ ଅଯଥା ପ୍ରତିଜ୍ଞାଭଙ୍ଗ ଦୋଷରେ ଜଡ଼ିତ କରିବାକୁ ଛାଡ଼ି ନାହାନ୍ତି ।

ପରାଶରସଂହିତାର ପ୍ରଥମ ଅଧ୍ୟାୟରୁ କିଛି ପୁନରାବୃତ୍ତି କରାଯାଉ ।

ଦିନେ ହିମାଳୟ ପର୍ବତ ଉପରେ, ଦେବଦାରୁ-ବନବେଷ୍ଟିତ ଆଶ୍ରମରେ ବ୍ୟାସଦେବ ଏକାଗ୍ରମନରେ ଉପବିଷ୍ଟ ଥିବା ବେଳେ ଋଷିମାନେ ତାହାଙ୍କୁ କଳିଯୁଗର ଧର୍ମୋପଦେଶ ଦେବାକୁ ପ୍ରାର୍ଥନା କଲେ । ବ୍ୟାସ କହିଲେ, ମୁଁ ସର୍ବତତ୍ତ୍ୱଜ୍ଞ ନୁହେଁ, କିପରି ଧର୍ମ ବ୍ୟାଖ୍ୟା କରିବି ? ଏ ସମ୍ବନ୍ଧରେ ଆମ୍ଭର ପିତାଙ୍କୁ ପଚାରିବା କର୍ତ୍ତବ୍ୟ । ଏଣୁ ଋଷିମାନେ ବେଦବ୍ୟା-ସମଭିବ୍ୟାହାରରେ ପରାଶରଙ୍କ ନିକଟକୁ ଗଲେ । ବ୍ୟାସ କହିଲେ ହେ ତାତ, ଆମ୍ଭେ ଆପଣଙ୍କ ନିକଟରୁ ମନୁ, ବଶିଷ୍ଠ, କଶ୍ୟପ, ଗର୍ଗ, ଗୌତମ, ଉଶନା, ଅତ୍ରି, ବିଷ୍ଣୁ, ସମ୍ବର୍ତ୍ତ, ଦକ୍ଷ, ଅଙ୍ଗିରା, ଶତାତପ, ହାରିତ, ଯାଜ୍ଞବଲ୍କ୍ୟ, କାତ୍ୟାୟନ, ପ୍ରଚେତସ, ଆପସ୍ତମ୍ଭ, ଶଙ୍ଖ, ଲିଖିତଙ୍କ ନିରୂପିତ ଧର୍ମ ଶୁଣିଅଛୁଁ । ଏ ସମସ୍ତ ଧର୍ମ ସତ୍ୟ ତ୍ରେତା ଓ ଦ୍ୱାପର ଯୁଗର ଅଟନ୍ତି ।

ସର୍ବେ ଧର୍ମାଃ କୃତେ ଜାତାଃ ସର୍ବେ ନଷ୍ଟାଃ କଳୌ ଯୁଗେ ।
ଚାତୁର୍ବର୍ଣ୍ଣ୍ୟସମାଚାରଂ କିଞ୍ଚିତ୍ ସାଧାରଣଂ ବଦ ॥

ସମସ୍ତ ଧର୍ମ ସତ୍ୟଯୁଗରେ ଜାତ ହୋଇଥିଲା, ସମସ୍ତ ଧର୍ମ କଳି ଯୁଗରେ ନଷ୍ଟ ହେଲା । ଚାରି ବର୍ଣ୍ଣର ସାଧାରଣ ଧର୍ମ କିଛି ପ୍ରକାଶ କରନ୍ତୁ ।

ବ୍ୟାସବାକ୍ୟାବସାନେ ତୁ ମୁନିମୁଖ୍ୟଃ ପରାଶରଃ ।
ଧର୍ମସ୍ୟ ନିର୍ଣ୍ଣୟଂ ପ୍ରାହ ସୂକ୍ଷ୍ମଂ ସ୍ଥୂଳଂ ଚ ବିସ୍ତରାତ୍ ।

ବ୍ୟାସଙ୍କର ବାକ୍ୟ ସମାପ୍ତ ହେଲା ଉତ୍ତାରୁ ମୁନିଶ୍ରେଷ୍ଠ ପରାଶର ବିସ୍ତୃତଭାବରେ ଧର୍ମ ସ୍ଥୂଳ ଓ ସୂକ୍ଷ୍ମ ନିର୍ଣ୍ଣୟ କହିଲେ ।

ବ୍ୟାସପ୍ରମୁଖ ଋଷିମାନେ ପରାଶରଙ୍କୁ କଳିଧର୍ମ ପଚାରିଲେ । ପରାଶର କଳିଧର୍ମ ବ୍ୟାଖ୍ୟାନ କଲେ । ପରାଶରସଂହିତାର ସମସ୍ତ ବ୍ୟବସ୍ଥା କଳିଯୁଗ ନିମନ୍ତେ, କେବଳ ବିଧବାବିବାହଟି ଯୁଗାନ୍ତର ବିଷୟ କି ?

ମାଧବାଚାର୍ଯ୍ୟ ଭାଷ୍ୟରେ ଲେଖିଅଛନ୍ତି :—

ଯଦ୍ୟପି ମନ୍ୱାଦୟଃ କଳିଧର୍ମାଭିଜ୍ଞାଃ ତଥାପି ପରାଶରସ୍ୟାସ୍ମିନ୍ ବିଷୟେ ତପୋବିଶେଷବଳାତ୍ ଅସାଧାରଣଃ କଶ୍ଚିଦତିଶୟୋ ଦ୍ରଷ୍ଟବ୍ୟଃ ।

ଯଦିବା ମନୁ ପ୍ରଭୃତି କଳିଧର୍ମାଭିଜ୍ଞ ଥିଲେ, ତଥାପି ତପୋବିଶେଷପ୍ରଭାବରୁ ପରାଶର ଏ ବିଷୟରେ (କଳିଯୁଗଧର୍ମ ବିଷୟରେ) ଆସାରଣ ପ୍ରବୀଣ ଥିଲେ । ସେହି କଳିଯୁଗଧର୍ମ ବିଷୟରେ ଅସାଧାରଣ ପ୍ରବୀଣ ପରାଶର ଚତୁର୍ଥ ଅଧ୍ୟାୟରେ ବିଧବାବିବାହରୂପ ଯୁଗାନ୍ତର ବିଷୟକୁ ଭ୍ରମରେ ଲେଖି ପକାଇଲେ କି ? ଯେଉଁ ବ୍ୟକ୍ତିଙ୍କୁ କେବଳ କଳିଧର୍ମ କହିବାକୁ ପ୍ରାର୍ଥନା କରାଗଲା, ଯେଉଁ ବ୍ୟକ୍ତି ପୁଣି ମୁଁ କଳିଧର୍ମ କହିବି ବୋଲି ପ୍ରତିଶ୍ରୁତ ହେଲେ, ସେ ପୁଣି ଯେବେ ଅନ୍ୟ ଯୁଗର ଧର୍ମରୁ ପଦେ ପଦେ ଶାସ୍ତ୍ରମଧରେ ଗୁଞ୍ଜି ଦେଲେ, ତେବେ ତାଙ୍କର ଅସାଧାରଣ ପ୍ରବୀଣତ୍ୱ ରହିଲା କେଉଁଠାରେ ? ପରାଶର ଭ୍ରମବଶତଃ ଶାସ୍ତ୍ରମଧରେ ଅନ୍ୟ ଯୁଗର ବିଷୟ ଲେଖିଯାଇଅଛନ୍ତି ବୋଲି ନ କହି ମାଧବାଚାର୍ଯ୍ୟ ଇଚ୍ଛାପୂର୍ବକ ସଜ୍ଞାନରେ ବିଧବାବିବାହର ବିପକ୍ଷତାଚରଣ କରି ଲୋକଙ୍କୁ ଭ୍ରାନ୍ତ କରିବା ଅଭିପ୍ରାୟରେ 'ଅୟଞ୍ଚ ପୁନରୁଦ୍‌ବାହୋ ଯୁଗାନ୍ତରବିଷୟଃ' ବୋଲି ଲେଖିଗଲେ ବୋଲିବାଟା ଦୋଷାବହ ହେବ କି ? ସ୍ୱମତ ରକ୍ଷା ନିମନ୍ତେ ଏପରି

ଲେଖିବାଟା ଅନେକ ପଣ୍ଡିତଙ୍କର ଅଭ୍ୟାସ, ଏହା କହିବା ବାହୁଲ୍ୟ ମାତ୍ର ।

ପୁଣି ମାଧବାଚାର୍ଯ୍ୟ ଉଦାହରଣସ୍ୱରୂପ ଲେଖିଲେ—

ଊଢ଼ାୟାଃ ପୁନରୁଦ୍‌ବାହଂ ଜ୍ୟେଷ୍ଠାଂଶଂ ଗୋବଧଂ ତଥା ।
କଳୌ ପଞ୍ଚ ନ କୁର୍ବୀତ ଭ୍ରାତୃଜାୟାଂ କମଣ୍ଡଳୁଂ ॥
(ଆଦିପୁରାଣ

ବିବାହିତା ସ୍ତ୍ରୀର ପୁନର୍ବାର ବିବାହ, ଜ୍ୟେଷ୍ଠାଂଶ, ଗୋବଧ, ଭାଇବୋହୂଠାରେ ପୁତ୍ରୋତ୍ପାଦନ, କମଣ୍ଡଳୁଧାରଣ ଏହି ପାଞ୍ଚ ବିଷୟ କଳିଯୁଗରେ କରିବ ନାହିଁ ।

ବିଧବାବିବାହ ନିଷେଧକ ଏହା ମାଧବଙ୍କର ଅକାଟ୍ୟ ଯୁକ୍ତି । ଏହି ଶ୍ଳୋକଟି ଦେଖିଲାକ୍ଷଣି ମନେ ହୁଏ, ମାଧବାଚାର୍ଯ୍ୟ ବିଧବାବିବାହବିପକ୍ଷରେ ପ୍ରମାଣ ଅନ୍ୱେଷଣ କରିବାକୁ ବହୁ ପ୍ରୟାସ କରି ସୁଦ୍ଧା ସ୍ମୃତି ପୁରାଣାଦିରୁ ଏହାଠାରୁ ବଳି ଭଲ ପ୍ରମାଣ ପାଇଲେ ନାହିଁ । ଏଣୁ ଏପ୍ରକାର ପୁରାଣର ଅସଙ୍ଗତ ଶ୍ଳୋକଦ୍ୱାରା ପରାଶରଙ୍କ ମତକୁ ରଦ କରିବାରେ ଚେଷ୍ଟିତ ହେଲେ । କିମ୍ବଦନ୍ତୀ ଅଛି, ଥରେ ବିପତ୍ତିବେଳେ 'କୃଷ୍ଣ ଗଧର ପାଦ ଧରିଥିଲେ' ତେବେ ନିଜ ମତ ରକ୍ଷା କରିବା ନିମନ୍ତେ ମାଧବ କେବଳ ଆଦିପୁରାଣର ଦ୍ୱାହି ଦେବେ, ଏଥିରେ ଆଶ୍ଚର୍ଯ୍ୟ କ'ଣ ?

ଆଦିପୁରାଣ ସ୍ମୃତି ନୁହେଁ, ପୁରାଣ ମାତ୍ର । ତାହା ପୁଣି ଘୋର କଳିଯୁଗର ପୁରାଣ । ପୁଣି ଆଦିପୁରାଣରେ ଏ ଶ୍ଳୋକ ନ ଥିବାର ପଣ୍ଡିତ ଗିରିଶ୍ଚନ୍ଦ୍ର ବିଦ୍ୟାରତ୍ନ ଓ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରକାଶ କରିଅଛନ୍ତି । ଥିଲେ ନ ଥିଲେ କ'ଣ ହେଲା ? ଏହି ଶ୍ଳୋକଟି ପ୍ରମାଣଯୋଗ୍ୟ ନୁହେଁ ।

ପୁଣି ଏହି ଶ୍ଳୋକଟି ସମ୍ବନ୍ଧରେ ଆହୁରି ଗୋଳମାଳ ଥିବାର ବୋଧ ହୁଏ । ବିବାହିତାର ପୁନର୍ବିବାହ ବୋଲିବାଦ୍ୱାରା ବିଧବାର ପୁନର୍ବିବାହ ଏହା ପ୍ରକାଶ ପାଉ ନାହିଁ । ତାହାଛଡ଼ା ଏହି ବାକ୍ୟଦ୍ୱାରା ସତ୍ୟଯୁଗ ତ୍ରେତା ଓ ଦ୍ୱାପରରେ ବିବାହିତାର ପୁନର୍ବିବାହ ପ୍ରଚଳନ ଅଙ୍ଗୀକାର କରାଗଲା । ଗୋମେଧ ଯଜ୍ଞର ନାମ ଗୋବଧ କି ? ସତ୍ୟ ତ୍ରେତା ଦ୍ୱାପରରେ ଗୋବଧ ପ୍ରଚଳିତ ଥିଲା, କଳିରେ ନାହିଁ । ଏହା ଆଦିପୁରାଣର ବଚନ ଏବଂ ମାଧବଙ୍କର ବିଧବାବିବାହ ନିଷେଧକ ଶ୍ରେଷ୍ଠ ପ୍ରମାଣ ।

ମାଧବଙ୍କର ଏତାଦୃଶ ମନ୍ତବ୍ୟ ଅନେକ ଅଛି, ତାହା ପଶ୍ଚାଦ୍‌ବର୍ତ୍ତୀ ଟୀକାକାରଗଣ ଭ୍ରାନ୍ତିପୂର୍ଣ୍ଣ ଥିବାର ପ୍ରକାଶ କରିଅଛନ୍ତି । ନିର୍ଣ୍ଣୟସିନ୍ଧୁ ଅନେକ ସ୍ଥଳରେ ମାଧବଙ୍କର ସମାଲୋଚନା କରି ମାଧବଙ୍କ ମତ ଭ୍ରାନ୍ତ ବୋଲି ଲେଖିଅଛନ୍ତି । ମାଧବ ଭ୍ରାନ୍ତ ଧାରଣାପ୍ରଯୁକ୍ତ ହେଉ ବା ପରବର୍ତ୍ତୀ ବ୍ୟବସ୍ଥାପକମାନଙ୍କୁ ଭ୍ରାନ୍ତ କରି ନିଜ ମତରକ୍ଷା କଳ୍ପନାରେ ହେଉ ଅନେକ ଅଯୌକ୍ତିକ ମତ ପ୍ରକାଶ କରିଯାଇଅଛନ୍ତି ।

ପାଞ୍ଚ ଗୋଟି ଆପଦରେ ନାରୀ ଅନ୍ୟ ପତି ବରଣ କରିବାର ବ୍ୟବସ୍ଥା ପରାଶର ଦେଇଗଲେ ।

ତହିଁର ଅବ୍ୟବହିତ ପରେ ଆଉ ଯୋଡ଼ିଏ ଶ୍ଳୋକ ସଂହିତାରେ ଦେଖାଯାଏ ।

ମୃତେ ଭର୍ତ୍ତରି ଯା ନାରୀ ବ୍ରହ୍ମଚର୍ଯ୍ୟେ ବ୍ୟବସ୍ଥିତା ।
ସା ମୃତା ଲଭତେ ସ୍ୱର୍ଗଂ ଯଥା ତେ ବ୍ରହ୍ମଚାରିଣଃ ॥
(ପରାଶର)

ପୁନରୁଦ୍‌ବାହକୃତ୍ୱାବ୍ରହ୍ମଚର୍ଯ୍ୟବ୍ରତାନୁଷ୍ଠାନେ,
ଶ୍ରେୟୋଽତିଶୟଂ ଦର୍ଶୟତି ।
(ମାଧବ)

ପୁନର୍ବାର ବିବାହ ନ କରି ବ୍ରହ୍ମଚର୍ଯ୍ୟବ୍ରତାନୁଷ୍ଠାନ କଲେ ଅତିଶୟ ଶ୍ରେୟ, ଏହା ଦେଖାଉଅଛନ୍ତି । ମାଧବଙ୍କର ଏହି ଭାଷ୍ୟଦ୍ୱାରା ସ୍ପଷ୍ଟ ପ୍ରତୀତି ଜନ୍ମୁଅଛି ଯେ, ପୁନର୍ବିବାହ ଅପେକ୍ଷା ବ୍ରହ୍ମଚର୍ଯ୍ୟ ଭଲ । ଅର୍ଥାତ୍ ବିଧବା ପୁନର୍ବାର ପତି ଗ୍ରହଣ କଲେ ଇହସଂସାରରେ ସିନା ସୁଖ ଭୋଗ କରିପାରିବ, ମାତ୍ର ବିବାହ ନ ହେଲେ ଯେ ସେ ସ୍ୱର୍ଗଗତି ପାଇବ । କେବଳ ଏହି କଥା କହିବାଦ୍ୱାରା ମାଧବ ପୁନର୍ବିବାହ କଳିଯୁଗର ଧର୍ମ ଥିବାର ପରାଶର ଲେଖିଅଛନ୍ତି ବୋଲି ସ୍ୱୀକାର କଲେ ନାହିଁକି ?

ପୁଣି ମାଧବ ଲେଖିଲେ, 'ଉକ୍ତ ବ୍ରହ୍ମଚର୍ଯ୍ୟାଦପ୍ୟଧିକଫଳମନୁ ଗମନେ ଦର୍ଶୟତି ।'

ଉପରୋକ୍ତ ବ୍ରହ୍ମଚର୍ଯ୍ୟଫଳ ଅପେକ୍ଷା ପତିର ସହଗମନରେ ଅଧିକ ଫଳ, ଏହା ଦେଖାଉଅଛନ୍ତି ।

ତିସ୍ରଃ କୋଟ୍ୟୋଽର୍ଦ୍ଧକୋଟିଶ୍ଚ
ଯାନି ରୋମାଣି ମାନୁଷେ ।
ତାବତ୍କାଳଂ ବସେତ୍ ସ୍ୱର୍ଗେ
ଭର୍ତ୍ତାରଂ ଯାଽନଗଚ୍ଛତି ।

ପତିର ସହଗମନ କଲେ ଶରୀରରେ ଯେ ସାର୍ଦ୍ଧ ତିନି କୋଟି ଲୋମ ଅଛି, ସେତିକି ବର୍ଷ ସ୍ୱର୍ଗବାସ କରିପାରିବ । ଅର୍ଥାତ୍ ମାଧବଙ୍କ ମତରେ ବିଧବାର ପୁନର୍ବିବାହ ଅପେକ୍ଷା ବ୍ରହ୍ମଚାରିତ୍ୱ ଭଲ, ତଦପେକ୍ଷା ସହମରଣ ଶ୍ରେୟସ୍କର । ତିନି ଗୋଟି ଶ୍ଳୋକରେ ତିନିଗୋଟି ମତ ବ୍ୟକ୍ତ ହୋଇଅଛି । ଏହା ନାରୀର ଇଚ୍ଛାଧୀନ । ୧. ସେ ବିବାହ କରିପାରେ, ୨. ସେ

ବ୍ରହ୍ମଚାରିଣୀ ହୋଇ ରହିପାରେ, ୩. ସେ ପତିର ଚିତାରେ ନିଜକୁ ଦଗ୍ଧ କରିପାରେ, ଏହା ଶ୍ଳୋକର ଅର୍ଥ ଓ ଅଭିପ୍ରାୟ । ମାଧବ ମଧ ଏହା ସ୍ୱୀକାର କରିଅଛନ୍ତି ବୋଲାଯିବ, ଯେହେତୁ ସେ ବିବାହ ଅପେକ୍ଷା 'ବ୍ରହ୍ମଚର୍ଯ୍ୟବ୍ରତାନୁଷ୍ଠାନେ ଶ୍ରେୟୋଽତିଶୟଂ' ଲେଖିଅଛନ୍ତି ଏବଂ ପୁଣି ଲେଖିଅଛନ୍ତି, 'ଉକ୍ତ ବ୍ରହ୍ମଚର୍ଯ୍ୟା-ଦପ୍ୟଧିକ-ଫଳମନୁଗମନେ ।'' ଏକସଙ୍ଗରେ ଥିବା ତିନିଗୋଟି ଶ୍ଳୋକର ଫଳଶ୍ରୁତି ତୁଳନା କରେ ଯେଉଁ ବ୍ୟକ୍ତି, ସେ ପୁଣି ସେଥିମଧରୁ ଗୋଟିଏ ଶ୍ଳୋକକୁ ଯୁଗାନ୍ତର ବିଷୟ ବୋଲିବା କିପରି ଅଯୌକ୍ତିକ, ତାହା ସୁଧୀଗଣଙ୍କର ବିଚାର୍ଯ୍ୟ ।

ସ୍ୱାର୍ଥରକ୍ଷା କଳ୍ପନାରେ କିଛି ଲେଖିଲେ ତାହା ଭ୍ରମପ୍ରମାଦଶୂନ୍ୟ ହେବା ଅସମ୍ଭବ ।

ଆଉ ଗୋଟିଏ କଥା, ପାଞ୍ଚ ଆପଦରେ ନାରୀର ଅନ୍ୟ ପତିଗ୍ରହଣର ବ୍ୟବସ୍ଥା ଦେଲେ । ତହିଁପର ଶ୍ଳୋକ ଯୋଡ଼ିକରେ କେବଳ ମୃତପତିକାର ଶ୍ରେୟସ୍କର ପନ୍ଥା ନିର୍ଦ୍ଦେଶ କଲେ । ବାକି ଯାହାର ପତି ନଷ୍ଟ, ଯାହାର ପତି ପ୍ରବ୍ରଜିତ, ଯାହାର ପତି କ୍ଳୀବ, ଯାହାର ପତି ପତିତ, ତା'ର ଉପାୟ କ'ଣ ? ତା ସମ୍ବନ୍ଧରେ ତ ବିବାହ ଭିନ୍ନ କିଛି ବ୍ୟବସ୍ଥା ରହିଲା ନାହିଁ । ଏଣୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ, ପାଞ୍ଚ ଆପଦରେ ପୁନର୍ବିବାହ କର୍ତ୍ତବ୍ୟ । କେବଳ ଗୋଟିଏ ଆପଦରେ ଅର୍ଥାତ୍ ପତି ମୃତ ହେଲେ ବିଧବାର ଆଉ ଯୋଡ଼ିଏ ଶ୍ରେୟଃପନ୍ଥା ଅଛି, ଯଥା— ବ୍ରହ୍ମଚର୍ଯ୍ୟ ଓ ସହଗମନ ।

ଆଧୁନିକ ବ୍ୟବସ୍ଥାପକ ମଧରୁ ଜଣକେତେ 'ନାରୀଣାଂ' ଅର୍ଥ ବାଗ୍‌ଦତ୍ତା କନ୍ୟା ବୋଲି ଅର୍ଥ କରି ଲୋକଙ୍କୁ ବୁଝାଇବାକୁ ଚେଷ୍ଟା କରନ୍ତି । ଏ ସମ୍ବନ୍ଧରେ ତର୍କ ନ କରି ସେମାନଙ୍କର ଉକ୍ତି ଭ୍ରମପୂର୍ଣ୍ଣ ବୋଲି କ୍ଷମା ଦେବା ଉଚିତ ।

ଶେଷର ଦୁଇ ଗୋଟି ଶ୍ଳୋକଦ୍ୱାରା ବିଧବାର ପୁନର୍ବିବାହ ଦୃଢ଼ୀଭୂତ ହେଉଥିଲେ ମଧ ଏହା ନ ଥିଲେ ଭଲ ଥିଲା । ଏହା ପରାଶରଙ୍କର ଶ୍ଳୋକ କି ନୁହେଁ, ଏ ସମ୍ବନ୍ଧରେ ସନ୍ଦେହ ଜାତ ହୁଏ; ଯେହେତୁ ଏହା ଅନ୍ୟ ସ୍ମୃତିରେ ମଧ ଅବିକଳଭାବରେ ଅଛି । ମାଧବଙ୍କର ପକ୍ଷପାତିତା ମାଧବପରାଶର ଦେଖିଲେ ସ୍ପଷ୍ଟ ଜଣାପଡ଼ିବ । ବିଧବାର ବିବାହବେଳେ କେବଳ ଯୁଗାନ୍ତର ବିଷୟ ବୋଲି ଲେଖିଲେ, ମାତ୍ର ସତୀଦାହ ବା ସ୍ତ୍ରୀବଧ ସପକ୍ଷରେ ଦେଢ଼ ପୃଷ୍ଠା ଏଣୁ ତେଣୁ ଠୁଳ କରିବାକୁ ଛାଡ଼ିଲେ ନାହିଁ ।

କେତେକ ସ୍ମୃତି ଦ୍ୱିତୀୟ ଥର ପରିଣୀତା ସ୍ତ୍ରୀକୁ ପୁନର୍ଭୂ ବୋଲି ପ୍ରକାଶ କରିଅଛନ୍ତି ।

ପୁନର୍ଭୂର୍ଦ୍ଦିଧିଷୁ ରୂଢ଼ାଦ୍ୱିଃ । ଅମର ।

ଯେଉଁ ସ୍ତ୍ରୀର ଦୁଇ ଥର ବିବାହ ହୋଇଅଛି, ତାହାକୁ ପୁନର୍ଭୂ ଓ ଦିଧିଷୁ ବୋଲାଯାଏ ।

ଲେଖିବା ବାହୁଲ୍ୟ ଯେ, ଆର୍ଯ୍ୟସମାଜରେ ବିଧବାର ପୁନର୍ବିବାହ ବିଧି ପ୍ରଚଳନ ଥିବାରୁ ଉକ୍ତ ଶବ୍ଦ ଯୋଡ଼ିକର ସୃଷ୍ଟି ।

ପରପୂର୍ବା ସ୍ତ୍ରିୟସ୍ତ୍ୱନ୍ୟାଃ ସପ୍ତ ପ୍ରୋକ୍ତା ଯଥାକ୍ରମଂ ।
ପୁନର୍ଭୂ ସ୍ତ୍ରିବିଧା ତାସାଂ ସ୍ୱୈରିଣୀ ତୁ ଚତୁର୍ବିଧା ।
କନ୍ୟା ବା କ୍ଷତଯୋନିର୍ଯା ପାଣିଗ୍ରହଣଦୂଷିତା ।
ପୁନର୍ଭୂଃ ପ୍ରଥମା ପ୍ରୋକ୍ତା ପୁନଃସଂସ୍କାରକର୍ମଣା ॥
ଦେଶଧର୍ମାନବେକ୍ଷ୍ୟ ସ୍ତ୍ରୀ ଗୁରୁଭିର୍ଯା ପ୍ରଦୀୟତେ ।
ଉତ୍ପନ୍ନସାହସାନ୍ୟସ୍ମୈ ସା ଦ୍ୱିତୀୟା ପ୍ରକୀର୍ତ୍ତିତା ॥
ଅସତ୍‌ସୁ ଦେବରେଷ୍ଣୁ ସ୍ତ୍ରୀ ବାନ୍ଧବୈର୍ଯ୍ୟା ପ୍ରଦୀୟତେ ।
ସବର୍ଣ୍ଣାୟ ସପିଣ୍ଡାୟ ସା ତୃତୀୟା ପ୍ରକୀର୍ତ୍ତିତା ॥

ବିବାହିତାର ଅନ୍ୟ ବରଗ୍ରହଣ ସାତ ପ୍ରକାର । ସେଥିମଧରୁ ପୁନର୍ଭୂ ତିନି ପ୍ରକାର ଏବଂ ସ୍ୱୈରିଣୀ ଚାରି ପ୍ରକାର ।

ପାଣିଗ୍ରହଣଦୂଷିତା କନ୍ୟା ବା କ୍ଷତଯୋନି ଯେବେ ସଂସ୍କାର କର୍ମଦ୍ୱାରା ଅନ୍ୟ ପତି ଗ୍ରହଣ କରେ, ତାକୁ ପ୍ରଥମ ପ୍ରକାର ପୁନର୍ଭୂ ବୋଲାଯାଏ । ବିବାହସମୁତ୍ସୁକା ବିଧବାକୁ ଗୁରୁଜନମାନେ ଦେଶ କାଳ (ବା ଦେଶଧର୍ମ) ବିବେଚନାରେ ଅନ୍ୟକୁ ସମ୍ପ୍ରଦାନ କରନ୍ତି, ତାକୁ ଦ୍ୱିତୀୟ ପ୍ରକାର ପୁନର୍ଭୂ ବୋଲାଯାଏ ।

'ଉତ୍ପନ୍ନସାହସା' ଅର୍ଥ 'ଉତ୍ପନ୍ନବ୍ୟଭିଚାରା' (ଯାହାକୁ ନ ଦେଲେ ବ୍ୟଭିଚାର କରିବ) ବାଚସ୍ପତି ଏ ପ୍ରକାର ଅର୍ଥ କରିଅଛନ୍ତି ।

ସବର୍ଣ୍ଣ ସପିଣ୍ଡ ଅସତ୍ ଦେବରାଦିଙ୍କୁ ଯେଉଁ ସ୍ତ୍ରୀ ଦିଆଯାଏ, ସେ ତୃତୀୟା ପୁନର୍ଭୂ ।

ଉପର୍ଯ୍ୟୁକ୍ତ ଶ୍ଳୋକଗୁଡ଼ିକ ପ୍ରତି ଦୃଷ୍ଟିପାତ କଲେ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଯାହାକୁ ପିତା ମାତାଦି ଗୁରୁଜନ ବିବାହ କରି ଦିଅନ୍ତି, ସେ ପ୍ରଥମ ପ୍ରକାର ପୁନର୍ଭୂ ।

ଯେଉଁ ବିଧବା ନିଜେ ବିବାହ ହେବାକୁ ଇଚ୍ଛା କଲେ ଗୁରୁଜନମାନେ ବିବାହ କରିଦିଅନ୍ତି, ସେ ଦ୍ୱିତୀୟ ପ୍ରକାର ପୁନର୍ଭୂ ।

ଯେ ବ୍ୟଭିଚାରିଣୀ ହେଲେ ଅସତ୍ ଦେବରାଦିଙ୍କୁ ଗୁରୁଜନମାନେ ଦିଅନ୍ତି, ସେ ତୃତୀୟ ପ୍ରକାର ପୁନର୍ଭୂ ।

ପ୍ରଥମ କନ୍ୟାର ଭବିଷ୍ୟତ୍ ଦୁର୍ଦ୍ଦଶାନିରାକରଣ କାମନାରେ ଗୁରୁଜନକୃତ ଦାନ । ଦ୍ୱିତୀୟ ସ୍ତ୍ରୀର ଇଚ୍ଛାନୁସାରେ ଗୁରୁଜନକର୍ତ୍ତୃକ ଦାନ । ତୃତୀୟ ବ୍ୟଭିଚାରିଣୀ ହେଲାରୁ ଭବିଷ୍ୟତରେ ପୁଣି ଦୂଷିତା ନୋହିବା ଅଭିପ୍ରାୟରେ ବାନ୍ଧବକର୍ତ୍ତୃକ ବାଧ୍ୟତାମୂଳକ ଦାନ ।

ଯାହାର ବିଧିପୂର୍ବକ ବିବାହ ହେଲା ଉତ୍ତାରୁ ପୁଣି ଯଦି ତାହାର ବିବାହ ହୁଏ, ତାହାକୁ ପୁନର୍ଭୂ ବୋଲାଯାଏ । ଏବଂ ବାଗ୍‌ଦତ୍ତା ପ୍ରଭୃତି କନ୍ୟାର ପୁନର୍ବାର ବିବାହ ହେଲେ ତାହାକୁ ଦିଧିଷୁ ବୋଲାଯାଏ । ବିବାହିତା ବା ବାଗ୍‌ଦତ୍ତାର ପୁନର୍ବାର ବିବାହପରିଚାୟକ ଶବ୍ଦ ଏ ଯୋଡ଼ିକ ମାତ୍ର । ପୁନର୍ବିବାହିତା ବିଧବା ପୁନର୍ଭୂ ନାମରେ ଏବଂ ପୁନର୍ବିବାହିତା ବାଗ୍‌ଦତ୍ତା ମନୋଦତ୍ତା କନ୍ୟା ଦିଧିଷୁ ନାମରେ ପରିଚିତ ହେଉଥିଲେ । ଏ ଶବ୍ଦଯୋଡ଼ିକ ନେଇ ଅସ୍ତବ୍ୟସ୍ତ ବା ଭୀତ ହେବାର ତ କିଛିହିଁ କାରଣ ନାହିଁ, ତଥାପି କେତେକ ଅର୍ବାଚୀନ ସ୍ମୃତିକର୍ତ୍ତା ଲୋକଙ୍କୁ ଭ୍ରାନ୍ତ କରିବା ଅଭିପ୍ରାୟରେ ନାନା ମତ ଯୋଜନା କରିବାକୁ ଛାଡ଼ି ନାହାନ୍ତି ।

ଅକ୍ଷତା ଚ କ୍ଷତା ଚୈବ ପୁନର୍ଭୂଃ ସଂସ୍କୃତା ପୁନଃ ।
ସ୍ୱୈରିଣୀ ଯା ପତିଂ ହିତ୍ୱା ସବର୍ଣ୍ଣଂ କାମତଃ ଶ୍ରୟେତ୍ ।
ଯାଜ୍ଞବଲ୍କ୍ୟ ୧ । ୬୭

ଅକ୍ଷତଯୋନି ହେଉ ବା କ୍ଷତଯୋନି ହେଉ ଯେଉଁ ସ୍ତ୍ରୀର ପୁନର୍ବାର ବିବାହସଂସ୍କାର ହୁଏ, ତାହାକୁ ପୁନର୍ଭୂ ବୋଲାଯାଏ । ଯେଉଁ ସ୍ତ୍ରୀ କାମବଶ ହୋଇ ସ୍ୱେଚ୍ଛାପୂର୍ବକ ସବର୍ଣ୍ଣ ପୁରୁଷର ଆଶ୍ରୟ ନିଏ, ସେ ସ୍ୱୈରିଣୀ । ଯାଜ୍ଞବଲ୍କ୍ୟଙ୍କର ଏହି ଶ୍ଳୋକରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ, ବାଳବିଧବା ହେଉ ବା ଯୁବତୀ ବିଧବା ହେଉ, ତାହାର ପୁନର୍ବିବାହସଂସ୍କାର ହେବାର ବିଧି ଅଛି ।

ପୁଣି ଯାଜ୍ଞବଲ୍କ୍ୟ ଦାୟଭାଗ ପ୍ରକରଣରେ ଲେଖିଅଛନ୍ତି–

ଅକ୍ଷତାୟାଂ କ୍ଷତାୟାଂ ବା ଜାତଃ ପୌନର୍ଭବଃ ସୁତଃ ।
ଯାଜ୍ଞବଲ୍କ୍ୟ– ୮।୧୩୧

କ୍ଷତଯୋନି ବା ଅକ୍ଷତଯୋନି (ବିଧବା) ଗର୍ଭପ୍ରସୂତ ପୁତ୍ର ପୌନର୍ଭବ । ଅର୍ଥାତ୍ କ୍ଷତଯୋନି ବା ଅକ୍ଷତଯୋନି ବିଧବା ଯେ କି ଶାସ୍ତ୍ରବିଧି ଅନୁସାରେ ବିବାହିତା, ତାର ପୁତ୍ରର ନାମ ପୌନର୍ଭବ ।

ଯାଜ୍ଞବଲ୍କ୍ୟ ଅନୁସାରେ ବିବାହିତା ବିଧବାଗର୍ଭଜାତ ପୁତ୍ରର ନାମ ପୌନର୍ଭବ । ଦ୍ୱାଦଶ ପୁତ୍ରମଧ୍ୟରେ ପୌନର୍ଭବ ଷଷ୍ଠପୁତ୍ର । ସେ ପିଣ୍ଡଦ ଓ ଅଂଶହର ଅଟେ ।

ପିଣ୍ଡଦୋଽଂଶହରଶ୍ଚୈଷାଂ ପୂର୍ବାଭାବେ ପରଃ ପରଃ ।।
ଯାଜ୍ଞବଲ୍କ୍ୟ : ୮ । ୧୩୨

ମନୁଙ୍କ ମତରେ ପୌନର୍ଭବ ଦଶମସ୍ଥାନୀୟ, ବିଷ୍ଣୁ ମତରେ ଚତୁର୍ଥସ୍ଥାନୀୟ ଓ ବଶିଷ୍ଠ ମତରେ ଚତୁର୍ଥସ୍ଥାନୀୟ । ମାତ୍ର ଏପ୍ରକାର ସ୍ଥାନ ନିର୍ଣ୍ଣୟ ଲେଖକର ଅଭିପ୍ରେତ, କି ପରବର୍ତ୍ତୀ ସ୍ମୃତିକର୍ତ୍ତାମାନେ ପରିବର୍ତ୍ତନ କରିଅଛନ୍ତି, ତାହା ଜାଣିବାର ଉପାୟ ନାହିଁ । ଶ୍ଳୋକଟିମାନଙ୍କୁ ଆଗପଛ କରି ଦେବା ତ ବଡ଼ କଠିନ ବ୍ୟାପାର ନୁହେଁ । ସେ ଯାହାହେଉ ସମସ୍ତ ସ୍ମୃତି ଅନୁସାରେ ବିଧବାର ବିବାହ ଶାସ୍ତ୍ରାନୁମୋଦିତ । ବିଧବାର ପୁତ୍ର ପିଣ୍ଡଦ ଓ ଭାଗୀଦାର ।

ଅତି ପ୍ରାଚୀନ ସ୍ମୃତିଶାସ୍ତ୍ରମାନଙ୍କରେ ଦ୍ୱାଦଶବିଧ ପୁତ୍ରର ଉଲ୍ଲେଖ ଦେଖାଯାଏ । ପରବର୍ତ୍ତୀ ପୁରାଣାଦି ଓ କେତେକ ସ୍ମୃତି ଦ୍ୱାଦଶବିଧ ପୁତ୍ର ସ୍ୱୀକାର କରି ନାହାନ୍ତି । ବ୍ରହ୍ମବୈବର୍ତ୍ତ ପୁରାଣ ସାତ ପ୍ରକାର, ମାର୍କଣ୍ଡେୟ ପୁରାଣ ତିନି ପ୍ରକାର ପୁତ୍ର ବର୍ଣ୍ଣନା କରିଅଛନ୍ତି ।

ପରାଶରଙ୍କ ମତରେ ପୁତ୍ର ଚାରିପ୍ରକାର । ଔରସ, କ୍ଷେତ୍ରଜ, ଦତ୍ତକ ଓ କୃତ୍ରିମ ।

ଔରସଃ କ୍ଷେତ୍ରଜଶ୍ଚୈବ ଦତ୍ତଃ କୃତ୍ରିମକଃ ସୁତଃ ।
ଦଦ୍ୟାନ୍ମାତା ପିତା ବାପି ସ ପୁତ୍ରୋଦତ୍ତକୋଭବେତ୍ ।।
ପରାଶର ୪। ୨୦

ପରାଶର କେବଳ ଦତ୍ତକ ପୁତ୍ରର ବର୍ଣ୍ଣନା ଦେଲେ, ଅନ୍ୟ ତ୍ରିବିଧ ପୁତ୍ରର ବର୍ଣ୍ଣନା ଲେଖି ନାହାନ୍ତି । ମନୁ ପ୍ରଭୃତିରେ ଲିଖିତ ଅପର ଆଠ ପ୍ରକାର ପୁତ୍ରର ଉଲ୍ଲେଖ ମଧ୍ୟ କରି ନାହାନ୍ତି । ଏହାର ତାତ୍ପର୍ଯ୍ୟ ଏହି ଯେ, ପରାଶର ଅନ୍ୟ ଯୁଗରେ ଧର୍ମ ଆଚାର ରୀତି ନୀତି ବ୍ୟବହାର କଳିଯୁଗର ଉପଯୋଗୀ ନ ଥିବାରୁ ସେହି ଶାସ୍ତ୍ରମାନଙ୍କର ସଂକ୍ଷିପ୍ତ ବ୍ୟବସ୍ଥା ପ୍ରଣୟନ କଲେ । ଏ ହେତୁରୁ ପୂର୍ବ ମୁନିମାନଙ୍କ ପ୍ରବର୍ତ୍ତିତ ଦ୍ୱାଦଶବିଧ ପୁତ୍ର କଳିର ଉପଯୋଗୀ ନୁହେଁ ଭାବି କେବଳ ଚାରି ପ୍ରକାର ପୁତ୍ରର ଉଲ୍ଲେଖ କଲେ । ପୁନର୍ବିବାହିତା ବିଧବାକୁ ପୁନର୍ଭୂ ଆଖ୍ୟା ଦେବାର ଉଚିତ ମନେ କଲେ ନାହିଁ; ଯେହେତୁ ସେ ବିଧବାବିବାହର ବ୍ୟବସ୍ଥା ସ୍ପଷ୍ଟାକ୍ଷରରେ କଳିର ଧର୍ମ ବୋଲି ଲେଖିଗଲେ । ସୁତରାଂ ପୁନର୍ଭୂର ପୁତ୍ର ପୌନର୍ଭବ, ଏହା ଲେଖିବାର ପ୍ରୟୋଜନ ହେଲା ନାହିଁ । ପରାଶରଙ୍କ ମତରେ ବିବାହିତା ବିଧବା ପୁନର୍ଭୂ ପଦବାଚ୍ୟା ନୁହେଁ ଏବଂ ତାହାର ଗର୍ଭଜାତ ପୁତ୍ର ପୌନର୍ଭବ ପଦବାଚ୍ୟ ନୁହେଁ । ଏଣୁ ସେ ପୁତ୍ରଗଣନାରେ ପୌନର୍ଭବ ନାମ ଦେଲେ ନାହିଁ । ପୁତ୍ରଗଣନା

ସ୍ଥଳରେ ପୌନର୍ଭବ ପୁତ୍ରର ନାମୋଲ୍ଲେଖ କରିଥିଲେ ବିଧବାବିବାହ ବ୍ୟବସ୍ଥା ସହିତ ଏହାର ଅମେଳ ହୋଇପଡ଼ନ୍ତା । ଏ ବିଷୟକୁ ପୁଙ୍ଖାନୁପୁଙ୍ଖରୂପେ ଆଲୋଚନା କଲେ ପ୍ରକାଶ ପାଏ ଯେ, ପରାଶରଙ୍କ ମତରେ ପୁନର୍ବିବାହିତା ବିଧବାର ପୁତ୍ର ପତିର ଔରସ ପୁତ୍ର । କଳିଯୁଗରେ ପୌନର୍ଭବ ନାମ ପ୍ରଚଳନଯୋଗ୍ୟ ନୁହେଁ । ଏହା ମଧ ନିମ୍ନୋକ୍ତ ପ୍ରସଙ୍ଗରୁ ସ୍ପଷ୍ଟ ଜଣାପଡ଼ିବ ।

କାଶ୍ୟପ ସ୍ମୃତିରେ ଲେଖା ଅଛି:—

ସପ୍ତ ପୌନର୍ଭବାଃ କନ୍ୟା ବର୍ଜନୀୟାଃ କୁଳାଧମାଃ ।
ବାଚା ଦତ୍ତା ମନୋଦତ୍ତା କୃତକୌତୁକମଙ୍ଗଳା ।
ଉଦକସ୍ପର୍ଶିତା ଯା ଚ ଯା ଚ ପାଣିଗୃହୀତିକା ।
ଅଗ୍ନିଂ ପରିଗତା ଯା ଚ ପୁନର୍ଭୂପ୍ରଭବା ଚ ଯା ।

ଯେଉଁ କନ୍ୟା ବାଗ୍‌ଦତ୍ତା, ଯେଉଁ କନ୍ୟା ମନୋଦତ୍ତା (ବା ମନେ ମନେ ଦିଆଯାଇଥିବା କନ୍ୟା) ଯାହାର ହସ୍ତରେ ମଙ୍ଗଳସୂତ୍ର ବନ୍ଧା ହୋଇଅଛି, ଯାହାକୁ ବିଧିପୂର୍ବକ ଦାନ ଦିଆ ଯାଇଅଛି, ଯାହାର ପାଣିଗ୍ରହଣ ଶେଷ ହୋଇଅଛି, ଯାହାର ଅଗ୍ନିସାକ୍ଷିକ ବିବାହ ହୋଇଅଛି, ଯେଉଁ କନ୍ୟା ପୁନର୍ଭୂର ଗର୍ଭସମ୍ଭୂତା, ଏହି ସାତ ପ୍ରକାର କୁଳାଧମା କନ୍ୟା ବର୍ଜନୀୟା ।

ଏହା କାଶ୍ୟପଙ୍କର ବଚନ ସତ୍ୟ, ମାତ୍ର ଏହା ଦେଶପ୍ରଚଳିତ ନୁହେଁ ବା ସର୍ବବାଦିସମ୍ମତ ନୁହେଁ ଏବଂ ଅନ୍ୟାନ୍ୟ ପ୍ରଧାନ ସ୍ମୃତିମାନେ ଏହା ସ୍ୱୀକାର କରନ୍ତି ନାହିଁ ।

ବାଗ୍‌ଦତ୍ତା କନ୍ୟାର ମନୋନୀତ ବର ମୃତ ହେଲେ ବାଗ୍‌ଦତ୍ତା କନ୍ୟାକୁ ବିଧବା କରାଯାଏ ନାହିଁ କିମ୍ବା ତାକୁ ବିବାହ ହେବା ଲୋକ ପୁନର୍ଭୂବିବାହ କଲା ବୋଲି କେହି କହନ୍ତି ନାହିଁ କିମ୍ବା ସେହି କନ୍ୟାର ଗର୍ଭସମ୍ଭୂତ ପୁତ୍ରକୁ କେହି ପୌନର୍ଭବ ବୋଲି କହନ୍ତି ନାହିଁ ।

ମନୋଦତ୍ତ କନ୍ୟାର ପୁନର୍ଭୂତ୍ୱ ତ ଆହୁରି ଅସମ୍ଭବ । ଯଦି ପିତା କୌଣସି ସୁପାତ୍ର ଦେଖି ମନେ ମନେ ଚିନ୍ତା କରେ ଯେ, ସେ ତା' କନ୍ୟାକୁ ସେହି ଉପଯୁକ୍ତ ପାତ୍ରକୁ ଦେବ ଏବଂ ସେଥି ନିମନ୍ତେ ଚେଷ୍ଟା ମଧ କରୁଥିବ, ଏହି ଚେଷ୍ଟା କଲାବେଳେ ଯେବେ ମନୋନୀତ ବରପାତ୍ରର ମୃତ୍ୟୁ ହୁଏ, ତେବେ କି କନ୍ୟାପିତା ଆପଣା କନ୍ୟାକୁ ବିଧବା କରିବ ? କିମ୍ବା ଅନ୍ୟତ୍ର ଦାନ କଲାବେଳେ ପୁନର୍ଭୂ ବୋଲି ପ୍ରକାଶ କରି ଦାନ କରିଦେବ ? ତାହା ତ ନୁହେଁ । କିମ୍ବା ସେହି କନ୍ୟାର ଗର୍ଭସମ୍ଭୂତ ପୁତ୍ରକୁ ପୌନର୍ଭବ ବୋଲି ଲୋକେ ଡାକିବେ ? କେଉଁ ପିତା ନିଜର ଅନିତ୍ୟ କଳ୍ପନା ଘେନି ନିଜର କନ୍ୟାକୁ କଳଙ୍କିତା କରିବାକୁ ବସିବ ବା କଳଙ୍କିତ କରିବାକୁ ବସୁଥିଲେ, ଏହା ତ ଆମ୍ଭମାନଙ୍କର ଧାରଣାକୁ ଆସୁ ନାହିଁ । ଆଉ ଚାରି ଗୋଟି ବିବାହକାଳୀନ ଘଟନା । ଏହି ଚାରି ସ୍ଥଳରେ ବର ମୃତ ହେଲେ ଅବଶ୍ୟ ଲୋକେ ଜାଣିପାରିବା ଅସମ୍ଭବ ନୁହେଁ । ଏଣୁ ପୁନର୍ଭୂ ବୋଲାଯାଇପାରେ । ମାତ୍ର ଏତାଦୃଶ ପୁନର୍ଭୂର ପୁନର୍ବିବାହ ସଂସ୍କାର ମନ୍ୱାଦିଶାସ୍ତ୍ରସମ୍ମତ, ସୁତରାଂ କଶ୍ୟପବଚନଟି ନିତାନ୍ତ ଅସାର । କେବଳ ପରାଶରାଦିଶାସ୍ତ୍ରସମ୍ମତ ବିଧବାବିବାହ ପ୍ରଚଳନ ବନ୍ଦ ରଖିବା ନିମନ୍ତେ ଏଗୁଡ଼ିକ ଅଯଥା ଭୟପ୍ରଦର୍ଶନ ।

ଉପର୍ଯ୍ୟୁକ୍ତ ସାତ ପ୍ରକାର କନ୍ୟା ବିବାହିତା ହେଲେ ଅଗ୍ନିପରି ପତିକୁଳକୁ ଦହନ କରନ୍ତି ବୋଲି କହିଲେ କାହାର ଭୟ ନ ହେବ ? ଏହିପରି କେତେକ ଭୟଉତ୍ପାଦକ ଗାଣଦ୍ୱାରା ବିଧବାବିବାହ ବନ୍ଦ ହୋଇଅଛି, ଏଥିରେ ସନ୍ଦେହ ନାହିଁ ।

ପୁନର୍ଭୂ ଓ ଦିଧିଷୁ ଶବ୍ଦର ପ୍ରକୃତାର୍ଥ ବ୍ୟକ୍ତ କରାଗଲା । ଏ ଶବ୍ଦ ଯୋଡ଼ିକରେ ଅସମ୍ଭବ ଗୂଢ଼ାର୍ଥ କିଛି ନାହିଁ ବା ଏ ଶବ୍ଦ ଦେଖି ଭୀତିଯୁକ୍ତ ହେବାର କିଛି କାରଣ ନାହିଁ । ପୁନର୍ଭୂ ଓ ଦିଧିଷୁ ବିଧବାପର୍ଯ୍ୟାୟଭୁକ୍ତ । ଏ ଶବ୍ଦଯୋଡ଼ିକର ପୂର୍ବେ ପ୍ରଚଳନ ଥିଲା । ଏ ଯୁଗରେ ଏହାର ପ୍ରଚଳନ ନାହିଁ । ପରାଶର ପ୍ରଭୃତି ଏ ଶବ୍ଦଯୋଡ଼ିକୁ ଅବ୍ୟବହାର୍ଯ୍ୟ କରିଦେଇଅଛନ୍ତି । ଏ ସମ୍ବନ୍ଧରେ ଅଧିକ ଆଲୋଚନା ପିଷ୍ଟପେଷଣ ମାତ୍ର । ବିଧବାଶବ୍ଦ ଏ ଯୋଡ଼ିକର ସ୍ଥାନ ଅଧିକାର କରିଅଛି । ଏବଂ ବିଧବାବିବାହକୁ ପ୍ରାୟ ସମସ୍ତ ସ୍ମୃତି ସ୍ୱୀକାର କରୁଅଛନ୍ତି ବୋଇଲେ ଅତ୍ୟୁକ୍ତି ହେବ ନାହିଁ । କେହି ବା ମୁଖ୍ୟ ଭାବରେ କେହି ବା ଭଙ୍ଗ୍ୟନ୍ତରରେ । ସମସ୍ତ ପ୍ରମାଣବଚନ ଉଦ୍ଧୃତ କଲେ ସ୍ଥାନ ଓ ସମୟ ନଷ୍ଟ ହେବ ମାତ୍ର । ମନୁ, ଯାଜ୍ଞବଲ୍କ୍ୟ, ବଶିଷ୍ଠ, କାତ୍ୟାୟନ, ବିଷ୍ଣୁ, ଶାତାତପ, ବୌଧାୟନ, ନାରଦ, ପ୍ରଭୃତି ସ୍ମୃତିମାନେ ବିଧବାବିବାହର ପକ୍ଷପାତୀ । କଳିଯୁଗର ଏକମାତ୍ର ପ୍ରାମାଣ୍ୟ ସ୍ମୃତି ପରାଶର ନିର୍ଭୀକ ହୃଦୟରେ ବିଧବାବିବାହର ଘୋଷଣା କରିଯାଇଅଛନ୍ତି ।

ପୁରାଣମାନେ ମଧ ବିଧବାବିବାହର ଉଦାହରଣ ସ୍ଥଳବିଶେଷରେ ଉଲ୍ଲେଖ କରିଅଛନ୍ତି । ମହାନିର୍ବାଣତନ୍ତ୍ରେ ଲେଖନ୍ତି:—

ପରିଣୀତା ନ ରମିତା କନ୍ୟକା ବିଧବା ଭବେତ୍ ।
ସାପ୍ୟୁଦ୍‌ବାହ୍ୟା ପୁନଃ ପିତ୍ରା ଶୈବଧର୍ମେଷ୍ୱୟଂ ବିଧିଃ ॥
ମ : ନି : ୧୧ ।୬୭

ନଳ ଯେତେବେଳେ ଦମୟନ୍ତୀଙ୍କୁ ତ୍ୟାଗ କରି ନିରୁଦ୍ଦେଶ ହେଲେ ଏବଂ ପରେ ଯାଇ ଋତୁପର୍ଣ୍ଣଙ୍କର ଆଶ୍ରୟରେ ଥିଲେ, ସେତେବେଳେ ଦମୟନ୍ତୀ ସୁଦେବ ବ୍ରାହ୍ମଣଦ୍ୱାରା ତାଙ୍କର ଦ୍ୱିତୀୟ ସ୍ୱୟଂମ୍ବର ସମ୍ବାଦ ଋତୁପର୍ଣ୍ଣ ମହାରାଜଙ୍କ ନିକଟକୁ ପ୍ରେରଣ କଲେ । ସୁଦେବ ଋତୁପର୍ଣ୍ଣଙ୍କଠାରେ ପ୍ରକାଶ କଲେ ।

''ସୂର୍ଯ୍ୟୋଦୟେ ଦ୍ୱିତୀୟଂ ସା ଭର୍ତାରଂ ବରୟିଷ୍ୟତି ।
ନ ହି ସ ଜ୍ଞାୟତେ ବୀରୋ ନଳୋ ଜୀବତି ବା ନବା ।''

ମହାଭାରତ : ବନ । ୭୦ । ୨୬

ନଳ ଜୀବିତ କି ମୃତ, ଏହା ଦମୟନ୍ତୀଙ୍କୁ ଜଣା ନାହିଁ, କାଲି ସୂର୍ଯ୍ୟୋଦୟ ସମୟରେ ସେ ଦ୍ୱିତୀୟ ବର ବରଣ କରିବେ ।

ସୂକ୍ଷ୍ମପ୍ରାବାରାନଜିନୋତ୍ତରୀୟାନ୍
ଦୃଷ୍ଟ୍ୱାରଣ୍ୟେ ନିର୍ଧନାନପ୍ରତିଷ୍ଠାନ୍ ।
କାଂ ତ୍ୱଂ ପ୍ରୀତିଂ ଲପ୍ସ୍ୟସେ ଯାଜ୍ଞସେନି
ପତିଂ ବୃଣୀଷ୍ୱେହ ଯମନ୍ୟମିଚ୍ଛସି ।

ମହାଭାରତ । ସଭା । ୭୭ । ୧୧

ତୁଚ୍ଛବସ୍ତ୍ର ପରିହିତ, ଚର୍ମୋତ୍ତରୀୟଯୁକ୍ତ, ନିର୍ଦ୍ଧନ, ଅପ୍ରତିଷ୍ଠ ପାଣ୍ଡବମାନଙ୍କୁ ଅରଣ୍ୟରେ ଦେଖି, ହେ ଯାଜ୍ଞସେନୀ, ତୁମ୍ଭେ କି ପ୍ରୀତି ଲାଭ କରିବ ? ଏଠାରେ ତୁମ୍ଭେ ଯାହାକୁ ଇଚ୍ଛା କର ତାହାକୁ ବରଣ କର ।

ମହାଭାରତ ରଚନାବେଳେ ବା ତତ୍‌ପୂର୍ବରେ ଏତାଦୃଶ ରୀତି ପ୍ରଚଳିତ ନ ଥିଲେ ମହାଭାରତ ଲେଖକଙ୍କ ଲେଖନୀରୁ ଏତାଦୃଶ ସାମାଜିକ ବିଷୟ କଦାପି ନିଃସୃତ ହୁଅନ୍ତା ନାହିଁ ।

ଅର୍ଜୁନ ବିଧବାର ପାଣିଗ୍ରହଣ କରି ପୁତ୍ର କରିଥିବାର ଓ ସେହି ପୁତ୍ରକୁ ଔରସ ପୁତ୍ର ବୋଲାଯିବାର ସ୍ପଷ୍ଟ ପ୍ରମାଣ ମହାଭାରତରୁ ମିଳୁଅଛି ।

''ଅର୍ଜୁନସ୍ୟାତ୍ମଜଃ ଶ୍ରୀମାନିରାବାନ୍ନାମ ବୀର୍ଯ୍ୟବାନ୍ ।
ସୁତାୟାଂ ନାଗରାଜସ୍ୟ ଜାତଃ ପାର୍ଥେନ ଧୀମତା । ୭
ଐରାବତେନ ସା ଦତ୍ତା ହ୍ୟନପତ୍ୟା ମହାତ୍ମନା ।
ପତ୍ୟୌ ହୃତେ ସୁପର୍ଣ୍ଣେନ କୃପଣା ଦୀନଚେତନା ॥
ଭାର୍ଯ୍ୟାର୍ଥଂ ତାଞ୍ଚ ଜଗ୍ରାହ ପାର୍ଥଃ କାମବଶାନୁଗାଂ ।
ଏବମେଷ ସମୁତ୍ପନ୍ନଃ ପରକ୍ଷେତ୍ରେଽର୍ଜୁନାତ୍ମଜଃ ।୯
ଅଜାନନ୍ନର୍ଜୁନଶ୍ଚାପି ନିହତଂ ପୁତ୍ରମୌରସଂ ।
ଜଘାନ ସମରେ ଶୂରାନ୍ରାଜ୍ଞସ୍ତାନ୍ ଭୀଷ୍ମରକ୍ଷିଣଃ । ୮୨

ଭୀଷ୍ମପର୍ବ : ୯୦ ଅ

ବୀର୍ଯ୍ୟବାନ୍ ଇରାବାନ୍ ଅର୍ଜୁନଙ୍କର ଆତ୍ମଜ ଥିଲେ । ସେ ଅର୍ଜୁନଙ୍କ ଔରସରେ ନାଗରାଜକନ୍ୟାଙ୍କ ଗର୍ଭରୁ ଜାତ ହୋଇଥିଲେ । ନାଗରାଜକନ୍ୟାର ସ୍ୱାମୀ ସୁପର୍ଣ୍ଣଦ୍ୱାରା ହତ ହେବାରୁ ନାଗରାଜ ଐରାବତ ସେହି ଅନପତ୍ୟା, କୃପଣା, ଦୀନଚେତନା କନ୍ୟାଙ୍କୁ ଅର୍ଜୁନଙ୍କୁ ଦାନ କଲେ । ସେହି ବିବାହସମୁତ୍ସୁକା ନାଗକନ୍ୟାଙ୍କୁ ଅର୍ଜୁନ ଭାର୍ଯ୍ୟାନିମିତ୍ତରେ ଗ୍ରହଣ କଲେ । ପରକ୍ଷେତ୍ରରେ ଅର୍ଜୁନ ବୀର୍ଯ୍ୟରେ ସମୁତ୍ପନ୍ନ ଏହି ଇରାବାନ୍ ।

ଅର୍ଜୁନ ତାହାଙ୍କର ଏହି ଔରସ ପୁତ୍ର ଯୁଦ୍ଧରେ ହତ ହୋଇଅଛି ବୋଲି ନ ଜାଣି ଭୀଷ୍ମଙ୍କ ରକ୍ଷାକାରୀ ପରାକ୍ରମଶାଳୀ ରାଜାମାନଙ୍କୁ ନିହତ କରିବାକୁ ଲାଗିଲେ ।

ପରକ୍ଷେତ୍ର ଶବ୍ଦ ଥିବାରୁ ଅନେକ ମନେ କରିପାରନ୍ତି ଯେ, ଇରାବାନ୍ ନାଗକନ୍ୟାଙ୍କ ପୂର୍ବପତିର କ୍ଷେତ୍ରଜ ପୁତ୍ର । ତାହା ଲେଖକଙ୍କର ମତ ନୁହେଁ । ଲେଖକଙ୍କର ସେ ଅଭିପ୍ରାୟ ଥିଲେ ଅର୍ଜୁନାତ୍ମଜ, ଅର୍ଜୁନ ଭାର୍ଯ୍ୟା ନିମନ୍ତେ ଗ୍ରହଣ କଲେ, ଏପରି ପଦପ୍ରୟୋଗ କଦାପି କରନ୍ତେ ନାହିଁ । କେବଳ ନାଗକନ୍ୟା ଅନ୍ୟ ଜଣକର ପୂର୍ବବିବାହିତା ଓ ବିଧବା, ଏହା ବ୍ୟକ୍ତ କରିବା ଅଭିପ୍ରାୟରେ 'ପରକ୍ଷେତ୍ରେ' ଅନ୍ୟର ସ୍ତ୍ରୀଠାରେ ଏହା ଲେଖିଲେ । କେବଳ ଏତିକି ନୁହେଁ, ଇରାବାନ୍ ଯେ ଅର୍ଜୁନଙ୍କର ଔରସ ପୁତ୍ର, ତାହା ୮୨ ଶ୍ଳୋକରେ ସ୍ପଷ୍ଟ ବିବୃତ କଲେ । ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ, ଦ୍ୱାପରଯୁଗର ଶେଷ ବା କଳିପ୍ରାରମ୍ଭକୁ ବିଧବାର ଗର୍ଭସମ୍ଭୂତ ପୁତ୍ରର ପୌନର୍ଭବ ଆଖ୍ୟା ନ ଥିଲା । ତାକୁ ପିତାର ଔରସପୁତ୍ର ବୋଲି ସ୍ୱୀକାର କରୁଥିଲେ । ଏଥି ନିମନ୍ତେ କଳିଯୁଗର ସ୍ମୃତିପ୍ରଣେତା ପରାଶର ପୁତ୍ରଗଣନାସ୍ଥଳରେ ପୌନର୍ଭବର ଉଲ୍ଲେଖ କଲେ ନାହିଁ । ବିଧବାଗର୍ଭସମ୍ଭୂତ ପୁତ୍ର ତା'ର ପୁନର୍ବିବାହିତ ପତିର ଔରସ ପୁତ୍ର ।

ବୃହସ୍ପତି ଲେଖିଅଛନ୍ତି :—

ତପୋଜ୍ଞାନସମାଯୁକ୍ତାଃ କୃତତ୍ରେତାଯୁଗେ ନରାଃ ।
ଦ୍ୱାପରେ ଚ କଳୌ ନୃଣାଂ ଶକ୍ତିହାନିର୍ହି ନିର୍ମିତା ॥
ଅନେକଧା କୃତାଃ ପୁତ୍ରା ଋଷିଭିଶ୍ଚ ପୁରାତନୈଃ ।
ନ ଶକ୍ୟନ୍ତେଽଧୁନା କର୍ତ୍ତୁଂ ଶକ୍ତିହୀନୈରିଦଂତନୈଃ ॥

ଇତିପୂର୍ବେ ପ୍ରଦର୍ଶିତ ହୋଇଥିବା ପ୍ରମାଣାଦିରୁ ସ୍ପଷ୍ଟ ପ୍ରକାଶ ପାଉଅଛି ଯେ, ବିଧବାର ବିବାହ ବିଷୟରେ ସ୍ମୃତିମାନେ ଅନୁମତି ଦେଇଅଛନ୍ତି ଏବଂ ପ୍ରତ୍ୟେକ ସ୍ଥଳରେ ସ୍ମୃତିକର୍ତ୍ତାମାନେ ସଂସ୍କାର ଶବ୍ଦଟି ବ୍ୟବହାର କରିଅଛନ୍ତି । ସେ ପ୍ରମାଣଗୁଡ଼ିକର ପୁନରୁଲ୍ଲେଖ ନିଷ୍ପ୍ରୟୋଜନ । ବିଧବାର ପୁନର୍ବିବାହ ନିନ୍ଦ୍ୟ ଓ ସ୍ୱେଚ୍ଛାପ୍ରଣୋଦିତ ଅନ୍ୟ ପୁରୁଷ ସହିତ ସହବାସଜ୍ଞାପକ ହୋଇଥିଲେ ସ୍ମୃତିମାନେ କଦାପି ସଂସ୍କାର ଶବ୍ଦ ପ୍ରୟୋଗ କରନ୍ତେ ନାହିଁ । ବିବାହର ବିଧି ଦେବା ସଙ୍ଗେ ସଙ୍ଗେ ବିଧବାର ବିବାହକୁ ପୁନଃସଂସ୍କାର ବୋଲିଥିବା ପ୍ରଯୁକ୍ତ ଏହା ପ୍ରଥମ ବିବାହ ତୁଲ୍ୟ ବୋଲି ସ୍ୱୀକାର କରିଅଛନ୍ତି ବୋଲାଯିବ । ପ୍ରଥମ ବିବାହକୁ ଯେପରି ନାରୀର ପ୍ରଥମ ବିବାହସଂସ୍କାର ବୋଲାଯାଏ, ବିଧବାର ବିବାହକୁ ସେହିପରି ତା'ର ବିବାହସଂସ୍କାର ବୋଲାଯିବ । ଏ ସମ୍ବନ୍ଧରେ ସମସ୍ତ ସ୍ମୃତି ଏକମତ ।

ମନ୍ତ୍ରାଦି ପ୍ରୟୋଗଦ୍ୱାରା ହୋମାଦି କାର୍ଯ୍ୟ ନ ହେଲେ ସଂସ୍କାର ବୋଲାଯାଇପାରେ ନାହିଁ । ଯେଉଁଠାରେ ସଂସ୍କାର ଶବ୍ଦର ପ୍ରୟୋଗ ଦେଖାଯିବ, ସେହି ସ୍ଥଳରେ ବିଧିପୂର୍ବକ ବୈଦିକ ମନ୍ତ୍ରାଦିର ପ୍ରୟୋଗଦ୍ୱାରା ସେହି ସଂସ୍କାରର ବ୍ୟବସ୍ଥାପ୍ରମାଣେ ସମସ୍ତ କାର୍ଯ୍ୟ ସମ୍ପନ୍ନ ହୋଇଥିବାର ପ୍ରତୀତ ଜନ୍ମିବ । ଦ୍ୱିଜାତିର ବିବାହାବଧି ଦଶ ଗୋଟି ସଂସ୍କାର ହେବାର ଅଛି । ଏହି ଦଶବିଧ ସଂସ୍କାରରେ ଦ୍ୱିଜାତିର ପରିଶୁଦ୍ଧି । ଚୂଡ଼ାକରଣାଦି ସଂସ୍କାର ହୋଇଥିଲେ ମଧ ବ୍ରତବେଳେ ପୁନର୍ବାର ଏହି ସଂସ୍କାରମାନ କରାଯାଇଥାଏ । ଏ ସ୍ଥଳରେ ଜଣେ ବାଳକ ଦୁଇ ଥର ସଂସ୍କୃତ ହେଲା ବୋଲିବା ଅସଙ୍ଗତ ନୁହେଁ । ପୁନଃସଂସ୍କୃତ ବୋଇଲେ ଏହି ଅର୍ଥରେ ଅବଶ୍ୟ ଉପଲବ୍ଧି ହୁଏ ଯେ, ପୂର୍ବେ ଯେଉଁରୂପେ ଯେଉଁ ସଂସ୍କାର ହୋଇଥିଲା, ପୁନର୍ବାର ସେହିରୂପେ ସେହି ସଂସ୍କାର କରାଗଲା । ଏ ସ୍ଥଳରେ ପୂର୍ବ ସଂସ୍କାରର ବିଧି ଓ ମନ୍ତ୍ର ଏବଂ ପରବର୍ତ୍ତୀ ସଂସ୍କାରର ବିଧି ଓ ମନ୍ତ୍ର ମଧରେ କୌଣସି ପ୍ରଭେଦ ଦେଖାଯାଏ ନାହିଁ । ସେହିପରି ବିଧବାର ପୁନଃ ସଂସ୍କାର ବା ପୁନଃ ସଂସ୍କୃତା ବିଧବା ବୋଲିବା ମାତ୍ରକେ ଏହାହିଁ ସ୍ପଷ୍ଟ ବୁଝାଯିବ ଯେ, ପୂର୍ବ ବିବାହବେଳେ ତାର ଯେଉଁ ବିଧି ଓ ଯେଉଁ ମନ୍ତ୍ରର ପ୍ରୟୋଗ ହୋଇଥିଲା, ପରବର୍ତ୍ତୀ ବିବାହରେ ସେହି ବିଧି ଓ ସେହି ମନ୍ତ୍ରର ବ୍ୟବହାର ହୋଇଥିଲା ବା ହେବ । ସ୍ମୃତିକର୍ତ୍ତାମାନେ ବିଧବାବିବାହ ସ୍ଥଳରେ ବରାବର ସଂସ୍କାର ଶବ୍ଦ ବ୍ୟବହାର କରିବାଦ୍ୱାରା ବିବାହର ବିଧି ଓ ମନ୍ତ୍ର ବିଧବାବିବାହରେ ବ୍ୟବହୃତ ହେବାର ଆଦେଶ କରୁଅଛନ୍ତି ବୋଲାଯିବ । କନ୍ୟାବିବାହ ଓ ବିଧବାବିବାହରେ ସଂସ୍କାର ସମ୍ବନ୍ଧରେ ମତଦ୍ୱୈଧ ନାହିଁ ।

ବୈବାହିକ ମନ୍ତ୍ର ଯାହା ବିବାହ ସମୟରେ ବ୍ୟବହୃତ ହୁଏ, ତାହା ଯେ କେବଳ କନ୍ୟାଠାରେ ପ୍ରଯୁକ୍ତ ହେବ ଏବଂ ବିଧବାଠାରେ ପ୍ରଯୁକ୍ତ ହୋଇପାରିବ ନାହିଁ, ଏପରି ନୁହେଁ । ପୂର୍ବେ ଲେଖାଯାଇଥିବା ମନ୍ତ୍ରସମୂହକୁ ପର୍ଯ୍ୟାଲୋଚନା କଲେ ସ୍ପଷ୍ଟ ହୃଦୟଙ୍ଗମ ହେବ ଯେ, ଏହି ମନ୍ତ୍ରଗୁଡ଼ିକ କେବଳ ଗୃହଯୋଗ୍ୟା ଯୁବତୀଠାରେ ପ୍ରଯୁକ୍ତ ହେବ । ଅଗ୍ନିସ୍ଥାପନ, ବରୁଣପୂଜା, କୁଶାଣ୍ଡି ପ୍ରଭୃତି ସର୍ବସାଧାରଣ ବ୍ୟବସ୍ଥା ସମସ୍ତ ମାଙ୍ଗଳିକ କାର୍ଯ୍ୟରେ କରାଯାଇଥାଏ, ଏଠାରେ ମଧ କରାଯାଇପାରିବ । ବର ଅର୍ଚ୍ଚନା, ବରଣ, ସମ୍ପ୍ରଦାନ, ପାଣିଗ୍ରହଣ, ସପ୍ତପଦୀ ପ୍ରଭୃତି ମନ୍ତ୍ର ବା କାର୍ଯ୍ୟ ଯେ ଅବିବାହିତା କନ୍ୟାପର, ଏପରି ନୁହେଁ । ସେହି ସେହି ମନ୍ତ୍ରଗୁଡ଼ିକ ବ୍ୟବହାରଦ୍ୱାରା କୌଣସିପ୍ରକାର ମନ୍ତ୍ରର ଅପବ୍ୟବହାର ହେବ ନାହିଁ । ଏବଂ ଏ ସବୁ ଆଲୋଚନାପୂର୍ବକ ସ୍ମୃତିକର୍ତ୍ତାମାନେ ବିଧବାର ବିବାହକୁ ପୁନଃସଂସ୍କାର ଆଖ୍ୟା ଦେଇଅଛନ୍ତି ।

ବିଧବାର ଦାନକର୍ତ୍ତା କିଏ ? ପିତା, ମାତା, ଭାଇ, ବନ୍ଧୁ ପ୍ରଭୃତି । ଅବିବାହିତା କନ୍ୟା ଦାନ କରିବାକୁ ଯେଉଁମାନେ ସମର୍ଥ, ବିଧବାକୁ ଦାନ କରିବାକୁ ମଧ ସେହିମାନେ ସମର୍ଥ ଅଟନ୍ତି । କୌଣସି ଶାସ୍ତ୍ର ଏ ପ୍ରକାର ଦୃଢ଼ ନିୟମ କରି ନାହାନ୍ତି ଯେ, ବିଧବାକୁ ଦାନ ଦେବାକୁ କାହାର ଅଧିକାର ନାହିଁ । ଅବଶ୍ୟ କୌଣସି କୌଣସି ସ୍ମୃତିରେ ଉଲ୍ଲେଖ ଅଛି ଯେ, ଦତ୍ତା କନ୍ୟାକୁ ପୁନର୍ଦାନ କରିବ ନାହିଁ । ମାତ୍ର ଏତାଦୃଶ ସ୍ମୃତିବଚନ ଅପେକ୍ଷା ବିଧବାର ବିବାହ ବ୍ୟବସ୍ଥାଦାତା ସ୍ମୃତିମାନଙ୍କର ବଚନ ଅଧିକ ଗୌରବାନ୍ୱିତ ଓ ଆଦରଣୀୟ । ସ୍ତ୍ରୀ ଓ ଗୋମେଷାଦି ପଶୁ ବା ବାସନ ବର୍ତ୍ତନ ନୁହେଁ । ବିଧବା ହେଲେ ନାରୀ ପିତାର ଅଧିକାରରେ ସାଧାରଣତଃ ରହିବାର କଥା— ଯାହାର ପୁତ୍ର କନ୍ୟା ଅଛନ୍ତି ବା ଯେ ନିଜେ ଗୃହାଧିକାରିଣୀ ହୁଏ, ସେ ସ୍ୱାମୀଗୃହରେ ରହିବ । ସେ କଥା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ମାତ୍ର ବାଳବିଧବା ବା ଯେଉଁ ବିଧବାର ପୁତ୍ର କନ୍ୟା ନାହିଁ ବା ଶ୍ୱଶୁରାଳୟରେ ଯାହାର ଆଦର ନାହିଁ ବା ସଂସ୍ଥାନର ଉପାୟ ନାହିଁ, ସେ ନିଶ୍ଚୟ ପିତୃଗୃହରେ ଆଶ୍ରୟ ଗ୍ରହଣ କରିବ । ଏପରି ସ୍ଥଳରେ ପିତା ତାର ମୁରବୀ, ତା'ର ପାଳନକର୍ତ୍ତା । ଏଣୁ ପିତାର ଦାନାଧିକାର ଅଛି ଏବଂ ତହିଁ ସଙ୍ଗେ ସଙ୍ଗେ ଶାସ୍ତ୍ରପ୍ରଦତ୍ତ କ୍ଷମତାପନ୍ନ ଦାତାମାନଙ୍କର ଦାନ ଦେବାର ଅଧିକାର ଅଛି ବୋଲିବା ସୁସଙ୍ଗତ । କିମ୍ବା ମନୁଙ୍କ ମତାନୁସାରେ ରାଜଧର୍ମ ହେଉଅଛି—

''କନ୍ୟାନାଂ ସମ୍ପ୍ରଦାନଞ୍ଚ କୁମାରାଣାଂ ଚ ରକ୍ଷଣଂ''

ମନୁ ୭ । ୧୫୨

କନ୍ୟାସମ୍ପ୍ରଦାନ ସମ୍ବନ୍ଧରେ ରାଜା ଚିନ୍ତା କରିବେ ଏବଂ କୁମାରମାନଙ୍କର ବିଦ୍ୟାଭ୍ୟାସ ଓ ଆଚରଣ ସମ୍ବନ୍ଧରେ ବିଚାର କରିବେ । ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ଦେଶର ରାଜକୁମାରମାନଙ୍କର ଶିକ୍ଷାର ଭାରତ ଦେଶବାସୀ ସମ୍ପୂର୍ଣ୍ଣରୂପେ ମନୁବାକ୍ୟ ଅବଲମ୍ବନରେ ରାଜହସ୍ତରେ ଅର୍ପଣ କରିଅଛନ୍ତି ଓ ନିଶ୍ଚିନ୍ତ ଅଛନ୍ତି କିମ୍ବା ରାଜଶକ୍ତିର ବେଷ୍ଟନୀମଧ୍ୟକୁ ନେଇ ଏ ଦେଶବାସୀଙ୍କୁ ନିଶ୍ଚିନ୍ତ କରିଅଛନ୍ତି । କେବଳ ମନୁବାକ୍ୟ ଅନୁସାରେ ନାରୀର ସମ୍ପ୍ରଦାନଭାର ଦେଶବାସୀ ଆଜିଯାଏ ରାଜଶକ୍ତିର ଅନ୍ତର୍ଭୁକ୍ତ କରିଦେଇ ନିଶ୍ଚିନ୍ତ ହେଇପାରି ନାହାନ୍ତି କିମ୍ବା ଗଭର୍ଣ୍ଣମେଣ୍ଟ ନିଜେ ଏ ଭାର ଗ୍ରହଣ କରି ଦେଶବାସୀଙ୍କୁ ନିଶ୍ଚିତ କରିପାରି ନାହିଁ । ଦେଶବାସୀ ସ୍ମୃତିବାକ୍ୟ ଅକ୍ଷରେ ଅକ୍ଷରେ ପାଳନ କରନ୍ତି, ତେବେ ଏ ବାକ୍ୟର ଆଦେଶ ଅପୂର୍ଣ୍ଣ ରହିଲା କାହିଁକି ? ବଡ଼ ଦୁଃଖର କଥା, ଏ ଭାର ମଧ୍ୟ ରାଜାର୍ପଣମସ୍ତୁ । ତାହାହେଲେ ଦେଶବାସୀ ମହାସୁଖୀ ଓ ନିଶ୍ଚିନ୍ତ ହେବେ ।

ଲୋକେ କହନ୍ତି, 'କମ୍ବଳରୁ ବାଳ ବାଛିବ କେତେ' ? ସ୍ମୃତିଶାସ୍ତ୍ରମଧ୍ୟରେ ଏତେ ବିରୋଧ ମତ ଅଛି ଯେ, ସେ ସବୁ ଖୋଜି ଏକତ୍ର କରି ଯୁକ୍ତିଦ୍ୱାରା ଖଣ୍ଡନ କରିବା ଦୁରୂହ ବ୍ୟାପାର । ସେ ବଚନଗୁଡ଼ିକ ଅଯୌକ୍ତିକ ଓ ଅପ୍ରାସଙ୍ଗିକ ହେଲେ ମଧ୍ୟ ବିରୁଦ୍ଧବାଦୀ ତ ତାହା ଉଦ୍ଧୃତ କରିବାକୁ ଛାଡ଼ିବେ ନାହିଁ ବା ତାହା ଅମୂଳକ ଥିବାର ସ୍ୱୀକାର କରିବେ ନାହିଁ । ସେହି ପ୍ରକାର ଆଉ ଗୋଟିଏ ବଚନର ଆଲୋଚନା କରାଯାଉ । ସେଇଟି ହେଉଅଛି ଗୋତ୍ରପ୍ରସଙ୍ଗ । ଗୋତ୍ର— ଯାହାଦ୍ୱାରା ଆଦି ପୁରୁଷ ଚିହ୍ନିତ ହୁଅନ୍ତି । ପୃଥିବୀର ଅନ୍ୟ କୌଣସି ଜାତି ଗୋତ୍ର ପ୍ରୟୋଗ କରନ୍ତି ନାହିଁ । ଭାରତୀୟ ଆର୍ଯ୍ୟଜାତିର ଏହା ଗୋଟିଏ ବିଶେଷତ୍ୱ । ଭଲକଥା । ବିଧବାବିବାହ ବିପକ୍ଷ ଦଳ ଗୋଟିଏ ଯୋଡ଼ିଏ ପ୍ରମାଣ ସଂଗ୍ରହ କରିଅଛନ୍ତି, ତାହା ହେଉଅଛି ଏହି—

''ପାଣିଗ୍ରହଣିକା ମନ୍ତ୍ରାଃ ପିତୃଗୋତ୍ରାପହାରକାଃ ।
ଭର୍ତୃଗୋତ୍ରେଣ ନାରୀଣାଂ ଦେୟଂ ପିଣ୍ଡୋଦକଂ ତତଃ ॥''

ପାଣିଗ୍ରହଣସମ୍ବନ୍ଧୀୟ ମନ୍ତ୍ରମାନ ପିତୃଗୋତ୍ରରେ ଅପହାରକ । ନାରୀମାନଙ୍କର ପିଣ୍ଡ, ଉଦକକ୍ରିୟା ଭର୍ତୃଗୋତ୍ରରେ କରିବ ।

ଅନେକେ ମନେ କରନ୍ତି ଯେ, ବୋଧହୁଏ ବିବାହମନ୍ତ୍ରରେ ପିତୃଗୋତ୍ରଚ୍ଛେଦକାରକ ଗୋଟାଏ କର୍ମ ଅଛି ଯେପରି ସମୀକ୍ଷୀକରଣ ମନ୍ତ୍ର, ସପ୍ତପଦୀ ମନ୍ତ୍ର, ସେହିପରି ପିତୃଗୋତ୍ରଚ୍ଛେଦନ ମନ୍ତ୍ର ବା ପିତୃଗୋତ୍ରଚ୍ଛେଦନ କର୍ମ । ମାତ୍ର ତାହା ଆଦୌ ନୁହେଁ । ଯେଉଁମାନଙ୍କର ଏପରି ଜ୍ଞାନ ଅଛି, ସେମାନେ ବିବାହମନ୍ତ୍ରରେ ଅର୍ଥ ବୁଝି ନାହାନ୍ତି । ବିବାହମନ୍ତ୍ରରେ ଏପ୍ରକାର ଅସଙ୍ଗତ ଓ ଅସମ୍ଭବ କଥା ଆଦୌ ରହି ନ ପାରେ । ଏସବୁ ବଚନ ବିଧବାବିବାହ ବିପକ୍ଷବାଦିଙ୍କର କଳ୍ପନା ଓ ଜଳ୍ପନା; ଆଦୌ ବିଶ୍ୱାସଯୋଗ୍ୟ ନୁହେଁ । ତଥାପି ଏଥିର ଆଲୋଚନା କରାଯାଉ ।

ଶ୍ଳୋକର ପ୍ରଥମ ପାଦଟି ମାତ୍ର ଉଲ୍ଲେଖ କରି ବ୍ୟବସ୍ଥାପକମାନେ ଲୋକଙ୍କୁ ଭ୍ରାନ୍ତ କରନ୍ତି । କିନ୍ତୁ ପଛ ପାଦଟି ଦେଖିଲେ ସ୍ପଷ୍ଟ ଜଣାଯିବ ଯେ, ସ୍ତ୍ରୀ ମୃତ ହେଲେ କେବଳ ତା'ର ପିଣ୍ଡ ଓ ଉଦକ କ୍ରିୟା ସ୍ୱାମୀଗୋତ୍ରରେ କରାଯିବ । ଜୀବିତାବସ୍ଥାରେ ସ୍ତ୍ରୀ ପିତୃଗୋତ୍ର ବ୍ୟବହାର କରିବାକୁ ବାଧ୍ୟ । ବିବାହଦ୍ୱାରା ଗୋତ୍ରର ପରିବର୍ତ୍ତନ ହେଉ, ମାତ୍ର ତାହା କାର୍ଯ୍ୟକାରୀ ହୁଏ ସ୍ତ୍ରୀ ମରଣଠାରୁ । ଏହା ମଧ୍ୟ ଯୁକ୍ତିସିଦ୍ଧ କି ନା ନିମ୍ନୋକ୍ତ ଉଦାହରଣରୁ ଦେଖାଯାଇପାରେ ।

ଜଣେ ଷାଠିଏ ବର୍ଷର ବୃଦ୍ଧ ବ୍ରାହ୍ମଣଙ୍କ ଗୃହରେ ଗୋଟିଏ ଷୋଡ଼ଶବର୍ଷୀୟା ଯୁବତୀ ଦେଖିଲେ ସ୍ୱତଃ କେତେଟା ପ୍ରଶ୍ନ ପଚାରିବାକୁ ଅତିଥିର ମନ ବଳିବା ସ୍ୱାଭାବିକ । ଅତିଥି ଯେବେ ପଚାରେ, 'ଏ ଯୁବତୀଟି କିଏ' ? ବୃଦ୍ଧ ଅବଶ୍ୟ କହିବ, 'ମୋର ଦ୍ୱିତୀୟ, ତୃତୀୟ ବା ଚତୁର୍ଥ ପକ୍ଷର ଗୃହିଣୀ ।' ପୁଣି ଯେବେ ପଚାରେ, କେଉଁ ଗାଁର ଝିଅ, କାହାର ଝିଅ, ବୃଦ୍ଧ ତାଙ୍କ ଗୃହିଣୀର ଜନ୍ମସ୍ଥାନ ଓ ଗୃହିଣୀଙ୍କର ପିତାର ନାମ ଅବଶ୍ୟ କହିବେ । ନିଜ ଗ୍ରାମର ନାମ ବା ନିଜ ପିତାର ନାମ ତ କହିବେ ନାହିଁ । ଅତିଥି ମନରେ ଏପରି ଭାବ ଜନ୍ମିବା ସ୍ୱାଭାବିକ ଯେ, ଏପରି ଲୋଳିତଚର୍ମ, ପକ୍ୱକେଶ, ଦଶନବିହୀନ ବୃଦ୍ଧକୁ ଏତାଦୃଶ ମୃଦ୍ୱଙ୍ଗୀ କନ୍ୟା ଦାନ କଲା କିଏ ? ଅବଶ୍ୟ ବୃଦ୍ଧ ଅପେକ୍ଷା ନୀଚ କୁଳର କୌଣସି ବ୍ରାହ୍ମଣ ଅର୍ଥଲୋଭରେ ଦେଇଥିବ ପରା ? ସୁତରାଂ ବୃଦ୍ଧର ଗୋତ୍ର ପ୍ରବର ଓ ରମଣୀର ଗୋତ୍ର ପ୍ରବର ପଚାରି ହୃଦୟରୁ ସନ୍ଦେହ ଅପନୋଦନ କରିବାର ଚେଷ୍ଟା କରିବ ଓ ମୁକ୍ତକଣ୍ଠରେ ପଚାରିବ । ବର୍ତ୍ତମାନ ବିଚାର୍ଯ୍ୟ, ବୃଦ୍ଧ କି ଉତ୍ତର ପ୍ରଦାନ କରିବେ । ମନେ କରାଯାଉ, ବୃଦ୍ଧଙ୍କର ଗୋତ୍ର ମୌଦ୍‌ଗଲ୍ୟ ଏବଂ ପ୍ରବର ଯାମଦଗ୍ନ୍ୟ ଆପ୍ନୁବାନ୍ ଏବଂ ବୃଦ୍ଧଙ୍କର ସହଚରୀଙ୍କ ପିତାଙ୍କର ଗୋତ୍ର କାଶ୍ୟପ ଓ ପ୍ରବର ନୈଧ୍ରୁବ । ବୃଦ୍ଧ ଅବଶ୍ୟ କହିବେ, 'ମୋର ଗୋତ୍ର ମୌଦ୍‌ଗଲ୍ୟ

ଏବଂ ପ୍ରବର ଜାମଦଗ୍ନ୍ୟ ଆପ୍ନବାନ୍'। ଅତିଥି ପଚାରିବେ, ଆପଣଙ୍କର ସହଚରୀଙ୍କର'? ବୃଦ୍ଧ କି କହିବେ, 'ମୌଦ୍ଗଲ୍ୟ ଗୋତ୍ର, ଜାମଦଗ୍ନ୍ୟ ଆପ୍ନବାନ୍ ପ୍ରବର'। ତାହାହେଲେ ତ ଅତିଥି ଚିନେବେ ଯେ, ବୃଦ୍ଧ ବୟସରେ କନ୍ୟା ନ ମିଳିବାରୁ ବୃଦ୍ଧ ଜଣେ ସଗୋତ୍ରକୁ ଅବୈଧ ବିବାହ କରିଅଛନ୍ତି। ଆଉ ଯେବେ କହିବେ ଯେ, 'ମୋର ସହଧର୍ମିଣୀ କାଶ୍ୟପଗୋତ୍ରା, ନୈଧୃବପ୍ରବରା'। ତାହାହେଲେ ସେ ଭାବିବେ ଯେ, ବୃଦ୍ଧ ଭଲ ବଂଶରେ ବିବାହ କରିଅଛନ୍ତି। କନ୍ୟାର ପିତା ମାତା ନିଃସ୍ୱ ଥିବାରୁ ଅର୍ଥଲୋଭରେ କନ୍ୟାଟିକୁ ପାଣିରେ ଭସାଇ ଦେଲେ। ଗୋତ୍ର ପ୍ରବର ବଂଶର ପରିଚାୟ, ଏହା ବିବାହ ଦ୍ୱାରା ଲୁପ୍ତ ହେବ କିପରି ? କନ୍ୟା ସ୍ୱାମିଗୃହକୁ ଗଲେ ଯେପରି କନ୍ୟାର ପିତାର ନାମ ଲୁପ୍ତ ହୁଏ ନାହିଁ, କନ୍ୟାର ପିତାମହ, ପ୍ରପିତାମହର ନାମ ଲୁପ୍ତ ହୁଏ ନାହିଁ, ସେହିପରି ପିତାର ଆଦି ପୁରୁଷର ନାମ ମଧ ଲୁପ୍ତ ହୁଏ ନାହିଁ। ଏ ଗୋଟାଏ ଅଯୌକ୍ତିକ ବଚନ ମାତ୍ର। କାତ୍ୟାୟନଙ୍କ ବଚନ ଯୁକ୍ତିଯୁକ୍ତ ଥିବାର ପ୍ରକାଶ ପାଏ।

''ସଂହିତ ୟାନ୍ତୁ ଭାର୍ଯ୍ୟାୟାଂ ସପିଣ୍ଡୀକରଣାନ୍ତିକଂ।
ପୈତୃକଂ ଭଜତେ ଗୋତ୍ରମୂର୍ଦ୍ଧ୍ୱନ୍ତୁ ପତିପୈତ୍ରିକଂ॥''

ପତି ପତ୍ନୀ ସଂଯୋଗ ହେଲା ପରେ (ବିବାହ ଉତ୍ତାରୁ) ସପିଣ୍ଡୀକରଣ ପର୍ଯ୍ୟନ୍ତ ସ୍ତ୍ରୀଠାରେ ପୈତୃକ ଗୋତ୍ର ଥାଏ, ତହିଁ ଉତ୍ତାରୁ ପତିର ପୈତୃକ ଗୋତ୍ର ପ୍ରବର୍ତ୍ତେ।

ଭାର୍ଯ୍ୟା ଜୀବିତା ଥିବାଯାଏ ନିଜ ପିତାର ଗୋତ୍ରଦ୍ୱାରା ପରିଚିତା ହେବ— ମରଣାନ୍ତର ସ୍ୱାମୀର ଗୋତ୍ରଭାଗିନୀ ହେବ। ଜୀବିତାବସ୍ଥାରେ ସ୍ତ୍ରୀର ପରିଚୟ ନିମନ୍ତେ ଏବଂ ପୁତ୍ର କନ୍ୟାର ବୈବାହିକ ସମ୍ବନ୍ଧ ସ୍ଥିର କଲାବେଳେ ସ୍ତ୍ରୀର ପିତାମାତାଙ୍କ ନାମ ଗୋତ୍ର ପ୍ରବର ଅବଶ୍ୟ ଜିଜ୍ଞାସ୍ୟ, ଏହା କେହି ଅସ୍ୱୀକାର କରିପାରିବେ ନାହିଁ। ଏପ୍ରକାର ସ୍ୱତଃସିଦ୍ଧ କଥାର ମହତ୍ତ୍ୱକୁ ଗୋଟାଏ ନିତାନ୍ତ ଅଯୌକ୍ତିକ ବାକ୍ୟଦ୍ୱାରା ହ୍ରାସ କରିବାକୁ ଚେଷ୍ଟା କରିବା ନିତାନ୍ତ ଅସଙ୍ଗତ।

ପୂର୍ବେ କହିଅଛୁଁ, ଏ ଦେଶର ସ୍ମୃତିଶାସ୍ତ୍ର ଅନନ୍ତ। ପୂର୍ବେ ସ୍ମୃତିଶାସ୍ତ୍ରର ପ୍ରଣୟନ ବା ସଂସ୍କାର ହେଉଥିଲା, ଯେତେବେଳେ ଋଷିମାନେ ଦେଖିପାରୁଥିଲେ ଯେ, ପୂର୍ବସ୍ମୃତିର ବ୍ୟବସ୍ଥା ଜନସମାଦୃତ ହେଉ ନ ଥିଲା। ଏଣୁ ଯୁଗଭେଦରେ ସ୍ମୃତିଭେଦ ବୋଲି ଲେଖିଅଛନ୍ତି। କାଳର ପରିବର୍ତ୍ତନ ଅନିବାର୍ଯ୍ୟ, ସଙ୍ଗେ ସଙ୍ଗେ ଲୋକମତର ପରିବର୍ତ୍ତନ ଅନିବାର୍ଯ୍ୟ। ସୁତରାଂ ଲୋକମତର ଓ ଶାସ୍ତ୍ରର ସମନ୍ୱୟ ରଖିବା କାରଣ ବ୍ୟବସ୍ଥାର ପ୍ରୟୋଜନ। ଏବେ ତାହା ନାହିଁ। ସେହି ଯେ ପୁରୁଣା ସ୍ମୃତିଶାସ୍ତ୍ରଗୁଡ଼ିକ ଅଛି, ତହିଁର ସଂଗ୍ରହ ଏବଂ ମଝିରେ ମଝିରେ ନିଜ ମତ ସଂଯୋଗ ଓ ନିଜ ମତ ପୋଷଣ ନିମନ୍ତେ ଉଦ୍ଭଟ ଶ୍ଳୋକ ଉଦ୍ଧାର ଏବଂ ସ୍ଥାନବିଶେଷରେ ଅନ୍ୟ ନାମରେ ନିଜ ରଚିତ ଶ୍ଳୋକ ସଂଯୋଗ କଳିଯୁଗିଆ ସ୍ମୃତିକାରଗଣଙ୍କର କୃତିତ୍ୱ। ବ୍ୟାଖ୍ୟାକର୍ତ୍ତାମାନଙ୍କର ଟୀକା ଟିପ୍ପଣୀ, ବ୍ୟାଖ୍ୟା ମୂଳଶାସ୍ତ୍ରକୁ ସ୍ପଷ୍ଟ ଭାବରେ ଲୋକଙ୍କୁ ବୁଝାଇବାର ତେଣେ ଥାଉ ଲୋକଙ୍କୁ ସର୍ବଦା ଭ୍ରାନ୍ତ ଓ ସନ୍ଦିଗ୍ଧ କରୁଅଛି। ମୂଳଗ୍ରନ୍ଥମାନଙ୍କୁ ସ୍ପଷ୍ଟରୂପେ ନ ବୁଝାଇବାର ଅଭିପ୍ରାୟ ଏହି ଯେ, ସ୍ମୃତି କଣ୍ଠ କେବଳ ଜଣକେତେକଙ୍କ ହାତରେ ରହିଲେ ସର୍ବସାଧାରଣଙ୍କୁ ପ୍ରତାରିତ କରିବାକୁ ସୁବିଧା ମିଳିବ। କିନ୍ତୁ ତାହା ଆଉ ଅଧିକ ଦିନ ରହି ପାରିବ ନାହିଁ। ଠକିବା ଦିନ କ୍ରମେ ଚାଲି ଯାଉଅଛି। ଏତେବେଳେ ଲୋକଙ୍କ ବିଶ୍ୱାସ ପୂର୍ବ ପରି ନାହିଁ। ମୂଳତତ୍ତ୍ୱ ଜାଣିବାକୁ ସମସ୍ତଙ୍କର ଇଚ୍ଛା। ଜଣକେତେକଙ୍କ ଇଚ୍ଛାରେ ଯେ ଭାରତବର୍ଷ ସର୍ବଦା ଅଜ୍ଞାନ-ଅନ୍ଧାରରେ ବୁଡ଼ି ରହିବ, ତାହା ମଧ ନୁହେଁ। ଏଣୁ ଶାସ୍ତ୍ରଜ୍ଞ ବିଜ୍ଞ ବ୍ୟକ୍ତି ଓ ଦେଶହିତୈଷିମାନଙ୍କ ଉଚିତ ଯେ, ସେମାନେ ନୂତନ ବ୍ୟବସ୍ଥା ପ୍ରଣୟନରେ ଯତ୍ନଶୀଳ ହେଉନ୍ତୁ ଏବଂ ବ୍ୟବସ୍ଥା ପ୍ରଣୟନରେ ସ୍ୱାର୍ଥତ୍ୟାଗୀ ହେଉନ୍ତୁ ଏବଂ ପୂର୍ବଶାସ୍ତ୍ର ଅପେକ୍ଷା ଦେଶ କାଳ ଓ ଅବସ୍ଥାର ପକ୍ଷପାତୀ ଯୁକ୍ତି ଉପରେ ଅଧିକ ନିର୍ଭର କରନ୍ତୁ।

କେବଳଂ ଶାସ୍ତ୍ରମାଶ୍ରିତ୍ୟ ନ କର୍ତ୍ତବ୍ୟୋ ବିନିର୍ଣ୍ଣୟଃ।
ଯୁକ୍ତିହୀନବିଚାରେଣ ଧର୍ମହାନିଃ ପ୍ରଜାୟତେ।

## ପୁସ୍ତକ ତାଲିକା

ଏହି ପୁସ୍ତକର ରଚନାରେ ନିମ୍ନଲିଖିତ ପୁସ୍ତକମାନଙ୍କର ସାହାଯ୍ୟ ଗ୍ରହଣ କରାଯାଇଅଛି।

| | |
|---|---|
| ମନୁ | ଯମସ୍ମୃତି |
| ପରଶର | ଅପସ୍ତମ୍ବସ୍ମୃତି |
| ପରାଶର ତାଳପତ୍ର ପୋଥି | କାତ୍ୟାୟନ ସ୍ମୃତି |
| ପରାଶରମାଧବ | ବୃହସ୍ପତି ସ୍ମୃତି |
| ଯାଜ୍ଞବଲ୍କ୍ୟ | ରଘୁନନ୍ଦନ |
| ମନୁଟୀକା | ପାରସ୍କରଗୃହ୍ୟସୂତ୍ର |
| ପଣ୍ଡିତସର୍ବସ୍ୱ | ଗୋଭିଳଗୃହ୍ୟସୂତ୍ର |
| ପଣ୍ଡିତସର୍ବସ୍ୱ ପୋଥି | ଆଶ୍ୱଳାୟନଗୃହ୍ୟସୂତ୍ର |
| ଗଦାଧରପଦ୍ଧତି | ଗୌତମୀୟ ଧର୍ମଶାସ୍ତ୍ର |
| ହେମାଦ୍ରି | ବ୍ରାହ୍ମଣସର୍ବସ୍ୱ |
| ନିର୍ଣ୍ଣୟସିନ୍ଧୁ | ଉଦ୍‌ବାହ ସମୟମୀମାଂସା |

| | |
|---|---|
| ବୃହତ୍ ପରାଶରସଂହିତା | ନବରତ୍ନବିବାହପଦ୍ଧତି |
| ଲଘୁହାରିତ | ବିହାରୀକର୍ମକାଣ୍ଡ |
| ବ୍ୟାସସଂହିତା | ସର୍ବସତ୍‌କର୍ମପଦ୍ଧତି |
| ଗୌତମସଂହିତା | ସଂସ୍କାରବିଧି |
| ଶାତାତପସଂହିତା | ହିନ୍ଦୁଶାସ୍ତ୍ର |
| ବଶିଷ୍ଠସଂହିତା | ଭାସ୍କରପ୍ରକାଶ |
| ଅତ୍ରିସଂହିତା | ବୃହଦ୍‌ବେରା |
| ବିଷ୍ଣୁସଂହିତା | ସତ୍ୟାର୍ଥପ୍ରକାଶ |
| | ଲଘୁହାରିତ |
| | ବିଧବାବିବାହ |
| ଆଙ୍ଗିରସସ୍ମୃତି | ବିଧବାବିବାହ ପ୍ରତିବାଦ |
| ରତ୍ନପରୀକ୍ଷା | ବାଚସ୍ପତି |
| ଋଗ୍‌ବେଦ | ଶବ୍ଦକଳ୍ପଦ୍ରୁମ |
| ଅଥର୍ବବେଦ | ବ୍ରହ୍ମପୁରାଣ |
| ଅମରକୋଷ | ଭାଗବତ-୪ର୍ଥ ସ୍କନ୍ଧ |
| ହଳାୟୁଧ | ଦେବୀଭାଗବତ |
| ମେଦିନୀକୋଷ | ବ୍ରହ୍ମବୈବର୍ତ୍ତପୁରାଣ |
| ମହାନିର୍ବାଣତନ୍ତ୍ର | Medical Jurisprudence |
| | Census of 1921-Vol-I |
| ମହାଭାରତ-ଭୀଷ୍ମପର୍ବ | Practical Biology |
| ମହାଭାରତ-ବନପର୍ବ | Monier Williams |
| ମହାଭାରତ-ସଭାପର୍ବ | Sanskrit Dictionary |
| ବିଶ୍ୱକୋଷ | Story of Nations. |

•

## ସାହିତ୍ୟ ଓ ଜାତି

ବଡ଼ ଗୁରୁତର ବିଷୟ । ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିର ଚିନ୍ତାର ସାମଗ୍ରୀ । ପ୍ରତ୍ୟେକ ସାହିତ୍ୟିକ ଓ ଭାବୁକ ଏ ସମ୍ବନ୍ଧରେ ବେଳେ ବେଳେ ଚିନ୍ତା କରୁଥିବେ ବୋଲି ମୋର ବିଶ୍ୱାସ । ମୁଁ ମଧ୍ୟ ଯେ ଏ ସମ୍ବନ୍ଧରେ ନିଜର ଶିକ୍ଷା ଓ ଶକ୍ତି ଅନୁସାରେ ଚିନ୍ତା ନ କରେଁ, ଏପରି ନୁହେଁ; ତେବେ ପଦେ ଅଧେ କେବେ ଲେଖି ନାହିଁ । ଆଜି ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁଙ୍କ ଗବେଷଣାପୂର୍ଣ୍ଣ ସୁଚିନ୍ତିତ ପ୍ରବନ୍ଧଟି ପାଠ କରି ଦୁଇ ପଦ ଲେଖିବାକୁ ବସିଅଛି । ଏହା ଉକ୍ତ ପ୍ରବନ୍ଧର ସମାଲୋଚନା ନୁହେଁ, ପ୍ରତିବାଦ ନୁହେଁ । ଏହା ନିଜର ସ୍ୱାଧୀନ ମତ । ରାଜଗୁରୁଙ୍କ ପ୍ରବନ୍ଧରେ ଦୁଇ ପଦ ନିଜ ମତ ଯୋଗ କରିବାହିଁ ମୋର ଉଦ୍ଦେଶ୍ୟ ।

ମୁଁ ଅଦାବେପାରୀ, ଜାହାଜର ଖବର ନେବା ମୋ ପକ୍ଷରେ ସଙ୍ଗତ ନୁହେଁ । ମୁଁ ଅଦା ବେପାରର ଆଲୋଚନା କରିବି ।

'ସାହିତ୍ୟର ଉନ୍ନତିରେ ଜାତୀୟ ବିକାଶ ସମ୍ପାଦିତ ହୁଏ' ଏହା ଅକ୍ଷରେ ଅକ୍ଷରେ ସତ୍ୟ । ଏଥି ସଙ୍ଗରେ ଯୋଗ କରାଯାଇପାରେ ଯେ, ସାହିତ୍ୟଦ୍ୱାରା ଜାତୀୟ ବିକାଶର ପରିଚୟ ମିଳେ । ଏହା ହୋଇ ନ ଥିଲେ ଆଜି ଆମ୍ଭମାନଙ୍କର ସ୍ଥାନ କେଉଁଠାରେ ? ମୁଦ୍ରାଯନ୍ତ୍ରର ପ୍ରଚଳନ ପୂର୍ବରୁ ଆମ୍ଭ ଦେଶବାସୀ ଯେବେ ଲିଖନ ସାହାଯ୍ୟରେ ତାଳପତ୍ରରେ ଆକ୍ଷରିକ କୀର୍ତ୍ତି ରଖିଯାଇ ନ ଥାନ୍ତେ, ତେବେ ଆଧୁନିକ ସଭ୍ୟ ଜଗତରେ ଆମ୍ଭମାନଙ୍କୁ ଶିକ୍ଷିତ ଜାତିର ସନ୍ତାନ ବୋଲି କିଏ ପରିଚୟ କରାଇ ଦିଅନ୍ତା ? ଯେବେ ସଭ୍ୟ ସମାଜରେ ଆମ୍ଭମାନଙ୍କର କୌଣସି ସ୍ଥାନ ଥାଏ, ତାହା ଏହି ତାଳପତ୍ର ଲେଖା ସାର୍ଟିଫିକଟ ବଳରେ । ଏ ତ ଗତ କଥା । ମାତ୍ର ଭବିଷ୍ୟତ ବଂଶଧରଙ୍କ ନିମନ୍ତେ ଆମ୍ଭେମାନେ ସାର୍ଟିଫିକେଟ୍ ରଖି ଯାଇପାରିବାଟି କି ?

'Language is a part of man's character' ଏହା ମଧ୍ୟ ଗୋଟିଏ ଅବିସମ୍ବାଦିତ ସତ୍ୟ । ବ୍ୟକ୍ତିଗତ ଚରିତ୍ର ଓ ଜାତୀୟ ଚରିତ୍ର ଭାଷାରେ ପରିସ୍ଫୁଟ ହୁଏ, ଯେବେ ଲେଖକମାନେ ସ୍ୱାଧୀନ ମତ ବ୍ୟକ୍ତ କରିବାରେ କୁଣ୍ଠିତ ନ ହୁଅନ୍ତି । ସ୍ୱାଧୀନ ମତସମ୍ବଳିତ ସାହିତ୍ୟ ଜାତୀୟ ବିକାଶର ପରିଚାୟକ। ଯେଉଁ ଚରିତ୍ର ଚିତ୍ର ଓ ସ୍ୱାଧୀନ ଚିନ୍ତା ବ୍ୟକ୍ତ ହେବା ଦ୍ୱାରା ସାହିତ୍ୟର ଅଙ୍ଗ ପୁଷ୍ଟ ହୁଏ, ଆମ୍ଭମାନଙ୍କର ଏ ସମୟରେ ଦେଶରେ ତହିଁର ଅଭାବ କେଉଁ ଚିନ୍ତାଶୀଳ ବ୍ୟକ୍ତି ଅନୁଭବ କରୁ ନାହାନ୍ତି ? ସ୍ୱାଧୀନ ଚିନ୍ତା କରିବାର ସୁଯୋଗ ଅଛି କି ? ସ୍ୱାଧୀନ ମତ ବ୍ୟକ୍ତ କରିବାର ସାହସ ଅଛି କି ?

ପୂର୍ବେ ଲୋକେ ଜ୍ଞାନ ଉପାର୍ଜନ ନିମନ୍ତେ, ଧର୍ମୋପାର୍ଜନ ନିମନ୍ତେ ଏବଂ ଆତ୍ମୋନ୍ନତି ନିମନ୍ତେ ବିଦ୍ୟାଭ୍ୟାସ କରୁଥିଲେ । ଏ କାଳରେ ଧନ ଉପାର୍ଜନ ନିମନ୍ତେ କେବଳ ବିଦ୍ୟା ଉପାର୍ଜନ । ଗବେଷଣା, ଆବିଷ୍କାର, ତତ୍ତ୍ୱାନୁସନ୍ଧାନ ନିମନ୍ତେ କେତେଜଣ ଭାରତବାସୀ ଇଚ୍ଛାପୂର୍ବକ ବିଦ୍ୟାଭ୍ୟାସ କରନ୍ତି ? ଚାକିରି ନିମନ୍ତେ ବିଦ୍ୟାଶିକ୍ଷା । ଚାକିରି କରୁ କରୁ ଜଣକେତେ ଗବେଷଣା କରିବାର ସୁଯୋଗ ପାଇ କିଛି ଆବିଷ୍କାର କରିବାକୁ ବା କିଛି ମୌଳିକତ୍ୱ ଦେଖାଇବାକୁ ସମର୍ଥ ହୋଇଅଛନ୍ତି । ସାହିତ୍ୟ-କ୍ଷେତ୍ରରେ ମଧ୍ୟ ତଦ୍ରୂପ । ଏ ଦେଶରେ ସ୍ୱାଧୀନ ସାହିତ୍ୟସେବୀ, କବି, ରଚକ, ବୈଜ୍ଞାନିକ କେତେ ଜ'ଣ ? ଅର୍ଥକରୀ ବିଦ୍ୟା ନିମନ୍ତେ ସମସ୍ତେ ଲାଳାୟିତ ।

ଦେଶୀୟ ଭାଷା ତ ଅର୍ଥକରୀ ନୁହେଁ, ଏଣୁ ଦେଶୀୟ ଭାଷାର ଉନ୍ନତି ଆଶା ସୁଦୂରପରାହତ ।

ଅଲକ୍ଷ୍ୟରେ ଇଂରାଜୀ ଭାଷା ଅର୍ଥକରୀ ଓ ଜାତୀୟ ଭାଷା ହୋଇଉଠୁଅଛି । ତା' ସଙ୍ଗରେ ପ୍ରତିଦ୍ୱନ୍ଦ୍ୱୀ ହୋଇ ଦେଶୀୟ ଭାଷା ଉନ୍ନତିପଥରେ ଅଗ୍ରସର ହେବା ଆଶା କେତେ ଦୂର ?

ଦେଶୀୟ ଭାଷା ଶିକ୍ଷା ଉଚ୍ଚପ୍ରାଥମିକ ବା ଛାତ୍ରବୃତ୍ତି ଶିକ୍ଷାରେ ପର୍ଯ୍ୟବସିତ । ତେଣିକି ଉଚ୍ଚଶିକ୍ଷା ଉପଯୁକ୍ତ ପୁସ୍ତକ ବା ବିଷୟ ଦେଶୀୟ ସାହିତ୍ୟରେ ଅଛି ବୋଲି କର୍ତ୍ତୃପକ୍ଷ ତଥା ଦେଶବାସୀଙ୍କର ଧାରଣା ନାହିଁ । ସୁତରାଂ ଉଚ୍ଚ ଅଙ୍ଗର ସାହିତ୍ୟ ପ୍ରଚାର ହେବା ଅସମ୍ଭବ ।

ଆଜିକାଲି ପ୍ରାୟ ସମସ୍ତେ ଇଂରାଜୀ ସାହିତ୍ୟସେବୀ । କେହି କେହି ଦୟାପରବଶ ହୋଇ ମାତୃଭାଷାର ଉନ୍ନତିକଳ୍ପେ କ୍ଷୁଦ୍ର ଦୃକ୍‌ପାତ କଲେ ସୁଦ୍ଧା ଏବଂ ମାତୃଭାଷାର ଅଙ୍ଗ ପୁଷ୍ଟ କରିବାକୁ କିଞ୍ଚିତ୍ ଚେଷ୍ଟା କଲେ ସୁଦ୍ଧା ଅଧିକାଂଶ ସ୍ଥଳରେ ଭାବ ଓ ଧରଣ ସମ୍ପୂର୍ଣ୍ଣ ଅନୁକରଣ ବୋଲି ପ୍ରକାଶ ପାଏ ।

ନିର୍ଭୀକଭାବରେ ମନୋଗତ ଭାବ ପ୍ରକାଶ କଲେ ସାହିତ୍ୟର ପ୍ରକୃତ ବିକାଶ ହୁଏ । କବି ଓ ଲେଖକ ଆନ୍ତରିକ ଭାବ ବ୍ୟକ୍ତ କରିବାକୁ ବାଧାପ୍ରାପ୍ତ ହୋଇ ଯେଉଁ କବିତା ବା ରଚନା ଲେଖନ୍ତି, ତାହା କେବଳ ସାହିତ୍ୟିକ ପ୍ରବଞ୍ଚନା । ଏପରି ଲେଖା ପାଠ କରି ପରବର୍ତ୍ତୀ କାଳର ଲୋକେ ଜାତୀୟ ବିକାଶର ପରିଚୟ ପାଇବା କଳ୍ପନା ମଧ ବିଡ଼ମ୍ବନା ।

ଓଡ଼ିଆ ଭାଷାର ସମ୍ୟକ୍ ଉନ୍ନତିର ଅନ୍ତରାୟ ଅନେକ । ଏହା ଅର୍ଥକରୀ ନୁହେଁ, ଅର୍ଥାତ୍ କେବଳ ଓଡ଼ିଆ ପାଠପଢ଼ି ପେଟ ପୋଷିବା ଆଶା ନାହିଁ । ଅର୍ଥକରୀ ବିଦ୍ୟା ଇଂରାଜୀ । ତାହା ଅର୍ଥକରୀ ହେବ ବୋଲି ମନପ୍ରାଣ ଢାଳିଦେବାକୁ ପଡ଼େ । କ୍ରମେ ତାହା ମନ ପ୍ରାଣ ଉପରେ, ନା, ଚରିତ୍ର ଉପରେ ମଧ ଆଧିପତ୍ୟ କରିବ ସେ—ସେତେବେଳେ ନିଜର ମାତୃଭାଷାର ସେବା କରିବାକୁ ଆଉ ସେବକର ଅବସର ନ ଥାଏ । ଜଣଙ୍କ ପ୍ରତି ଦିଓଟି ସେବ୍ୟର ସେବକ ହେବା ଅସମ୍ଭବ ନୁହେଁ; ମାତ୍ର ଯାହାର ବେଶି ଆଧିପତ୍ୟ, ତା'ର ପାଦସେବାରେ ଅଧିକ ସମୟ ଅତିବାହିତ ହେବା ନିତାନ୍ତ ସ୍ୱାଭାବିକ । ତା'ପରେ ଇଂରାଜୀ ଶିକ୍ଷିତଙ୍କ ପ୍ରତି ଇଂରାଜୀ ପୁସ୍ତକର ସଂଖ୍ୟା ପ୍ରଚୁର । ଓଡ଼ିଆ ପୁସ୍ତକର ନିତାନ୍ତ ଅଭାବ । ଯାହା କିଛି ଅଛି, ତାହା ଉଚ୍ଚ ଦରର ନୁହେଁ ଯେ ପାଠକମାନଙ୍କୁ ଦଣ୍ଡେ ମୋହିତ କରିପାରିବ— ବିଶେଷତଃ ଉପନ୍ୟାସ । ପାଠକମାନଙ୍କ ମନ ଅଧିକାର କରିବା ନିମନ୍ତେ ଇଂରାଜୀ ଓ ବଙ୍ଗ ସାହିତ୍ୟ ଆମ ମାତୃଭାଷାର ପ୍ରତିଦ୍ୱନ୍ଦ୍ୱୀ । ପାଶ୍ଚାତ୍ୟ ଜାତି ଆମ ଦେଶରୁ ଧନ ଓ ଜ୍ଞାନ ଉପାର୍ଜନ କରନ୍ତି ତାଙ୍କ ଦେଶର ଓ ତାଙ୍କ ମାତୃଭାଷାର ଉନ୍ନତି ନିମନ୍ତେ । ଆଉ ଆମ୍ଭେମାନେ ବିଦେଶୀ ଜ୍ଞାନ ଉପାର୍ଜନ କରୁଁ ନିଜ ଦେଶର ଧନ ଶୋଷଣ କରି ପର ଦେଶକୁ ବଢ଼ାଇଦେବା ନିମନ୍ତେ । ଆମ ଦେଶର ପ୍ରତ୍ୟେକ ସାହିତ୍ୟିକ, କବି ଓ ଲେଖକଙ୍କର ଏହାହିଁ ଅବଶ୍ୟ କର୍ତ୍ତବ୍ୟ ଯେ, ସେମାନେ ପ୍ରତିଦ୍ୱନ୍ଦ୍ୱୀ ସାହିତ୍ୟର ସେବା କରି ଜ୍ଞାନ ଉପାର୍ଜନ କରିବେ ନିଜ ମାତୃଭାଷାର ସେବାରେ ଲଗାଇବାକୁ, ଶୂନ୍ୟ ଭଣ୍ଡାରକୁ ପୂରଣ କରିବାକୁ, ଛିନ୍ନବସ୍ତ୍ରା ମାତୃଭାଷାକୁ ସୁଭୂଷିତା କରିବାକୁ, ନିରାଳଙ୍କାରା ମାତୃଭାଷାକୁ ଅଳଙ୍କୃତ କରିବାକୁ । ନବ୍ୟ ଶିକ୍ଷିତଗଣ ଏ ପନ୍ଥା ଅବଲମ୍ବନ ନ କଲେ ମାତୃଭାଷାର କ୍ଷୀଣ ଆଶାଲତା ଦିନକୁ ଦିନ କ୍ଷୀଣତର ହେବ ।

ମୁଁ ଥରେ ଥରେ ଭାବେ, ଶିକ୍ଷା ବଡ଼ ନା ଚରିତ୍ର ବଡ଼ ? କାହାର ସ୍ଥାନ ଉଚ୍ଚରେ ? ସମସ୍ୟା ବଡ଼ ଜଟିଳ । ମୋ ପରି ବ୍ୟକ୍ତି ଏ ସମ୍ବନ୍ଧରେ ଗୋଟାଏ ମତ ଦେବା ଧୃଷ୍ଟତାର ପରିଚାୟକ । ତଥାପି ଚରିତ୍ରକୁ ଉଚ୍ଚସ୍ଥାନ ଦେବାକୁ ମନ ବଳେ । କାରଣ ଚରିତ୍ରବିହୀନ ଶିକ୍ଷା ଆତ୍ମଶ୍ଳାଘାରୂପ ଘୂର୍ଣ୍ଣି ବାୟୁ-ବିତାଡ଼ିତ ଆଶାତରୀ ମାତ୍ର । ଧର୍ଷିତ ଜାତିର ଚାରିତ୍ର ବଳ ଅସ୍ତ୍ରବଳ ପରି ଭ୍ରଷ୍ଟ । ଜାତୀୟ ଅଭ୍ୟୁତ୍ଥାନ ନିମନ୍ତେ ନୈତିକ ବଳ ସଞ୍ଚୟ ଏକାନ୍ତ ଆବଶ୍ୟକ । ଜାତୀୟ ଚରିତ୍ର ସାହିତ୍ୟରେ ପରିସ୍ଫୁଟ ହେଲେ ଜାତୀୟ ବିକାଶ ସମ୍ପାଦିତ ହୁଏ ଏବଂ ଭବିଷ୍ୟତ ଜାତୀୟ ଜୀବନ ଗଠନରେ ପ୍ରଭୂତ ସାହାଯ୍ୟ କରେ ।

ଏଲିଜାବେଥ୍‌ଙ୍କ ରାଜତ୍ୱକାଳ ୪୫ ବର୍ଷ । ଏହି କେତେଟା ବର୍ଷ ଶାନ୍ତି ଓ ଉନ୍ନତିର କାଳ ବୋଲି ଐତିହାସିକମାନଙ୍କର ମତ । ୪୫ ବର୍ଷରେ ଗ୍ରେଟ୍‌ବ୍ରିଟେନ୍‌ରେ ୧୫ ଗୋଟି ଦୁର୍ଭିକ୍ଷ ପଡ଼ିଥିଲା । ପଡ଼ି ଥାଇପାରେ । ସେ ଦେଶର ଐତିହାସିକ ଓ ଲେଖକଙ୍କ କଲମର ଜୋର ଓ ହୃଦୟସ୍ପର୍ଶୀ ବର୍ଣ୍ଣନାଚାତୁରୀ ଯୋଗରୁ ଆମ୍ଭେମାନେ ଏତେଦିନ ପରେ ସୁଦ୍ଧା ସେହି ଦୁର୍ଭିକ୍ଷଗୁଡ଼ିକୁ ଭୟଙ୍କର ବୋଲି କହୁଅଛୁଁ । ମାତ୍ର ଆମ ଦେଶରେ ଏତିକି ସମୟ ମଧ୍ୟରେ ଯେ ଭୟଙ୍କର ହୃଦୟବିଦାରକ ଦୁର୍ଭିକ୍ଷ ଓ ମଡ଼କର ପ୍ରାଦୁର୍ଭାବ ହୋଇ ଲକ୍ଷ ଲକ୍ଷ ନରନାରୀଙ୍କର ଇହଜଗତରେ ଚିହ୍ନ ବର୍ଣ୍ଣ ରଖି ନାହିଁ, ତାହା କିଏ ବର୍ଣ୍ଣନା କରିବ ? ତାହା ଲେଖିବାକୁ କ୍ଷମତା କାହାର— ସାହସ କାହାର ? ଦୁର୍ଭିକ୍ଷ ଅନ୍ୟ ଦେଶରେ ପଡ଼େ, ଏ ଦେଶରେ ପଡ଼େ ଓ ଇଂଲଣ୍ଡରେ ପଡ଼ିଥିଲା । ମାତ୍ର ଏ ଦେଶର ଦୁର୍ଭିକ୍ଷର ହୃଦୟବିଦାରକ ଜନନାଶ ଅନ୍ୟ

ଦେଶରେ ଘଟେ କି ନାହିଁ ସନ୍ଦେହ । ଅନ୍ନମୁଠାକ ନିମନ୍ତେ ସପରିବାର ଘରଦ୍ୱାର ଛାଡ଼ି ସ୍ଥାନାନ୍ତରକୁ ଯିବାବେଳେ ବାଟରେ ଘାଟରେ ସ୍ୱାମୀ, ସ୍ତ୍ରୀ, ପୁତ୍ର, କନ୍ୟା ଏଣେତେଣେ ପଡ଼ିରହନ୍ତି— କେହି କାହାକୁ ସାହାଯ୍ୟ କରିବାର ଉପାୟ ନାହିଁ । ସହାୟହୀନ, ଆଶାହୀନ, ଭରସାହୀନ ସମସ୍ତେ । ଜୀର୍ଣ୍ଣ ଶୀର୍ଣ୍ଣ ମୃତ ସନ୍ତାନର ଶବକୁ ଗୃଧ୍ରମାନେ ଅବଲୀଳାକ୍ରମେ ଛିନ୍ନ ବିଛିନ୍ନ କରୁଅଛନ୍ତି, ଅସ୍ତବ୍ୟସ୍ତ କରୁଅଛନ୍ତି, ଅନତିଦୂରରେ ପିତାମାତା ଅଶ୍ରୁଶୂନ୍ୟ ବିକଳ ନୟନରେ ଦେଖୁଅଛନ୍ତି । ସାହାଯ୍ୟ କରିବାର ଶକ୍ତି ନାହିଁ । ସନ୍ତାନର ମାଂସହୀନ ଶବର ଭକ୍ଷଣରେ ତୃପ୍ତିଲାଭ ନ କରି ଅର୍ଦ୍ଧମୃତ ସ୍ୱାମୀର ମାଂସଭକ୍ଷଣ ଲାଳସାରେ ଗୃଧ୍ରଗଣ ନିକଟରେ ବସି ବିକଟ ରାବରେ ତାହାର ମୃତ୍ୟୁକାମନା କରୁଥିବାର ନିଃସହାୟା ଜୀବନ-ସଙ୍ଗିନୀ ଦେଖୁଅଛି । ଏ ବୀଭତ୍ସ ଦୃଶ୍ୟ ଭାରତ ଭିନ୍ନ ଅନ୍ୟ ଦେଶରେ ବିରଳ । ତଥାପି ଭାରତ ସୁଖୀ—ତାହାର ଅବସ୍ଥା ଶୋଚନୀୟ ନୁହେଁ । ଏ ଦୃଶ୍ୟ ପାଶ୍ଚାତ୍ୟ ଦେଶବାସୀଙ୍କ ଦୃଷ୍ଟିରେ ପଡ଼ିଲେ କେଡ଼େ ହୃଦୟସ୍ପର୍ଶୀ ବର୍ଣ୍ଣନା ସାହିତ୍ୟର ଅଙ୍ଗ ପୁଷ୍ଟ କରନ୍ତି । ଦୁର୍ଭିକ୍ଷ ପ୍ରଭୃତି ସାହିତ୍ୟିକ ଉନ୍ନତିର ଅନ୍ତରାୟ ନୁହନ୍ତି, ବରଂ ସହାୟ । ସମସାମୟିକ ଲୋକଙ୍କର ସହାନୁଭୂତି ଏବଂ ଭବିଷ୍ୟତରେ ସାବଧାନ ଓ ସତର୍କ ହେବାର ଉପଦେଶ ଲେଖକ ସାହିତ୍ୟରେ ରଖିଯାଇ ଯଶ ଲାଭ କରେ । ଲୋକକ୍ଷୟକାରୀ ଯୁଦ୍ଧ, ବିପ୍ଳବ ସାହିତ୍ୟୋନ୍ନତିର ଅନ୍ତରାୟ ନୁହେଁ । ଫରାସୀ ରାଷ୍ଟ୍ରବିପ୍ଳବ କେତେ ମହାକବି, ଔପନ୍ୟାସିକ, ଐତିହାସିକ୍‌ଙ୍କୁ ଜନ୍ମ ଦେଇଅଛି । ଏ ଘେନି କେବଳ ଫରାସୀ ସାହିତ୍ୟର ଉନ୍ନତି ବୋଇଲେ ଅତ୍ୟୁକ୍ତି ହେବ କି ? ଜର୍ମାନୀ ମହାହବ ଘେନି ପାଶ୍ଚାତ୍ୟ ସାହିତ୍ୟ ଆଜି କେତେ ସୁପୁଷ୍ଟ । କବି, ଔପନ୍ୟାସିକ, ଲେଖକ ଯୁଦ୍ଧରେ ଜୀବନାହୁତି ଦେଇଅଛନ୍ତି ସତ୍ୟ; ମାତ୍ର ପୁଣି କେତେ କେତେ କବି ଔପନ୍ୟାସିକ ଓ ଲେଖକ ଖ୍ୟାତି ଲାଭ କରିଅଛନ୍ତି । ଇଉରୋପ ଖଣ୍ଡରେ ଏ ଘେନି ସହସ୍ରାଧିକ ପୁସ୍ତକ ରଚିତ ହୋଇ ନ ଥିବ କି ? ରୁଷ୍ ବିପ୍ଳବ ଘେନି ଜଗତରେ କେତେ ପୁସ୍ତକ ରଚିତ ହୋଇ ସାହିତ୍ୟର ଅଙ୍ଗପୁଷ୍ଟି କରୁଅଛି ।

ଲିସ୍‌ବନ୍ ଭୂମିକମ୍ପରେ ଅନେକ ଘର କୋଠା ନଷ୍ଟ ହେଲା, ନରନାରୀଙ୍କର ପ୍ରାଣ ନଷ୍ଟ ହେଲା । ଏହା ଗୋଟିଏ ମର୍ମନ୍ତୁଦ ଘଟନା । ଏହି ମର୍ମନ୍ତୁଦ ଘଟନାର ଗୋଟିଏ ଗାର ସାହିତ୍ୟ ଆପଣା ହୃଦୟରେ କାଟି ରଖିଅଛି । ଆଜି ସେହି ଗାରଟି ଦେଖି ଲୋକେ ବିସ୍ମିତ ଓ ସ୍ତମ୍ଭିତ ହେଉଅଛନ୍ତି । ଏହି ବିପର୍ଯ୍ୟୟ ଦ୍ୱାରା କ'ଣ ସାହିତ୍ୟର କ୍ଷତି ?

ଯୁଦ୍ଧ, ବିପ୍ଳବ, ଭୂମିକମ୍ପ, ଦୁର୍ଭିକ୍ଷଦ୍ୱାରା ସାହିତ୍ୟ କ୍ଷତିଗ୍ରସ୍ତ ହେବାର କେବେ ଶୁଣା ନାହିଁ । ଏ ସବୁ ଘେନି ସାହିତ୍ୟ । ସାହିତ୍ୟ କ୍ଷତିଗ୍ରସ୍ତ ହୁଏ ଚରିତ୍ରହୀନ, ଆତ୍ମଗୋପନକାରୀ ଲେଖକର ଲେଖନୀ ଚାଳନାଦ୍ୱାରା, ସାହିତ୍ୟ କ୍ଷତିଗ୍ରସ୍ତ ହୁଏ ସ୍ୱାଧୀନ ଚିନ୍ତାର ଅଭାବରୁ । କୃପଣପ୍ରୋତ୍‌ଥିତ ଗୁପ୍ତଧନ ଯେପରି ଲୋକର ଉପକାରକୁ ଆସିପାରେ ନାହିଁ, ସାହିତ୍ୟିକର ଆତ୍ମମତ ଗୋପନ ସାହିତ୍ୟର ଉପକାରକୁ ଆସିପାରେ ନାହିଁ । ନାନା କାରଣରୁ ଆମ ଦେଶର ସାହିତ୍ୟିକ କ୍ଷତି ପୂରଣ ହେବାର ଆଶା ସୁଦୂରପରାହତ ।

ଆଉ ଗୋଟିଏ କଥା— ଦାରିଦ୍ର୍ୟ । ଦାରିଦ୍ର୍ୟ କି ସାହିତ୍ୟ-ସେବାର ପ୍ରତିବନ୍ଧକ ? ଏହା କେହି ଅସ୍ୱୀକାର କରିପାରିବେ ନାହିଁ । ଯେ ଦାରିଦ୍ର୍ୟ କେତେକାଂଶରେ ସାହିତ୍ୟ-ସେବାର ପ୍ରତିବନ୍ଧକ ସ୍ୱରୂପ । ମାତ୍ର ସାହିତ୍ୟିକର ଚରିତ୍ରବଳ ଯଥେଷ୍ଟ ଥିଲେ ସେ ସାହିତ୍ୟସେବା ନିମନ୍ତେ ଦାରିଦ୍ର୍ୟକୁ ମଧ ଭ୍ରୂକ୍ଷେପ କରେ ନାହିଁ; ଦାରିଦ୍ର୍ୟ ମସ୍ତକରେ ପଦାଘାତ କରି ସାହିତ୍ୟ ଲେଖିବାରେ ବ୍ରତୀ ହୁଏ । ଦାରିଦ୍ର୍ୟର କୁଟିଳ ଭ୍ରୂଭଙ୍ଗୀ, ନିଷ୍ପେଷଣ, ବିଦ୍ରୂପକୁ ତନ୍ନ ତନ୍ନ କରି କେବଳ ଦାରିଦ୍ର୍ୟ କଶାଘାତପ୍ରାପ୍ତ ବ୍ୟକ୍ତି ହିଁ ବ୍ୟକ୍ତ କରିପାରେ । ସୁଖାଦ୍ୟ-ପରିପୁଷ୍ଟ ଦୁଗ୍ଧଫେନନିଭ ଶଯ୍ୟୋପବିଷ୍ଟ ଧନିକପୁତ୍ର କି ଦାରିଦ୍ର୍ୟର ବିକଟ ରୂପ ବର୍ଣ୍ଣନାରେ କ୍ଷମ । ତାହା କରିବାକୁ ଗଲେ ସାହିତ୍ୟିକ ପ୍ରବଞ୍ଚନା ବୋଲି ପ୍ରତିଭାତ ହେବ କି ।

ଜନସନ, ଏଡ଼ିସନ୍‌ଙ୍କ ଅପେକ୍ଷା ଶତ ଗୁଣରେ ଦରିଦ୍ର ଆମ ଦେଶବାସୀ କବି, ଲେଖକ ଅନେକ ପୁସ୍ତକ ରଚନା କରି ସାହିତ୍ୟାଗାରରେ ରଖିଯାଇଅଛନ୍ତି । ରଚନା ହିଁ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ—ଅର୍ଥଲାଳସାରେ ସେମାନେ ଲେଖନୀ ଧାରଣ କରି ନାହାନ୍ତି । ମୁଦ୍ରାଯନ୍ତ୍ରଯୋଗୁଁ ପୁସ୍ତକ ବିକ୍ରୟ ଗୋଟାଏ ଉପାର୍ଜନର ପନ୍ଥା ହୋଇଅଛି । ତାଳପତ୍ର ପ୍ରଚଳନ ବେଳେ ସେ ଉପାୟ ନ ଥିଲା ।

ସାହିତ୍ୟିକମାନଙ୍କୁ ଗୁଣଗ୍ରାହୀ ସାହିତ୍ୟରସିକ ଓ ପାଠକଗଣ ନିଶ୍ଚୟ ସାହାଯ୍ୟ କରିବା ଉଚିତ । ତାହା ନ ହେଲେ ସାହିତ୍ୟର ପ୍ରଚାର ହେବ କିପରି ? ମାତ୍ର ସାହିତ୍ୟିକ ଓ ଲେଖକ ନିଜ ରଚନା ଓ କବିତା ସକାଶେ ପରମୁଖାପେକ୍ଷୀ ହେବା ଉଚିତ ନୁହେଁ । ଲେଖକ ଲେଖିଯାଉ ମୁଦ୍ରିତ ଓ ପ୍ରଚାରିତ ହୋଇପାରିବା କଥା ପଛେ । ଯେବେ ଦେଶବାସୀ ଏବଂ ଧନବନ୍ତ ବ୍ୟକ୍ତିମାନେ ଦେଶହିତ ନିମନ୍ତେ ଉପଯୁକ୍ତ ସାହାଯ୍ୟ ନ କରନ୍ତି, ସେଥିନିମନ୍ତେ ସେମାନେ ନିନ୍ଦାଭାଜନ ହେବେ ।

ସାହିତ୍ୟିକ ଧନ ଆଶାରେ ଜଣକର ଆଶ୍ରୟ ନେଲେ ତା'ର ସ୍ୱାଧୀନ ଚିନ୍ତା ବିକାଶ ପାଏ ନାହିଁ— କବିତା ବା ରଚନା କାପଟ୍ୟପୂର୍ଣ୍ଣ ହୁଏ । କବି, ଶିଳ୍ପୀ, ଚିତ୍ରକର ଓ ଲେଖକ ସମ୍ପୂର୍ଣ୍ଣ ସ୍ୱାଧୀନଚେତା ହେବା ନିତାନ୍ତ ଆବଶ୍ୟକ ।

''ଭାରତର ହିନ୍ଦୁମାନଙ୍କର ପ୍ରତ୍ୟେକ ରକ୍ତବିନ୍ଦୁରେ ରକ୍ଷଣଶୀଳତା ଜର୍ଜର ହୋଇ ରହିଅଛି ।'' ଏହା ଅକ୍ଷରେ ଅକ୍ଷରେ ସତ୍ୟ, ସତ୍ୟ, ସତ୍ୟ । ମୁଁ ଏହା ନତମସ୍ତକରେ ସ୍ୱୀକାର କରୁଅଛି । ଏ ରକ୍ଷଣଶୀଳତା ଥିଲା, ଅଛି ଓ ରହିବ । ଏଥିର ଉପାୟ କ'ଣ ? ଚରିତ୍ରହୀନତା, ନୈତିକବଳର ଅଭାବ, ଏକତାର ଅଭାବ, ସ୍ୱାଧୀନ ଚିନ୍ତାର ଅଭାବ, ସ୍ୱାଧୀନ ମତବ୍ୟକ୍ତ କରିବାରେ ଭୀରୁତା ଓ ସ୍ୱାର୍ଥପରତା 'ରକ୍ଷଣଶୀଳତା'ର ଉତ୍ପତ୍ତି ଓ ସ୍ଥିତିର କାରଣ । ସାହିତ୍ୟ କଥା ତ ତେଣେ ଥାଉ— ଦୁଃଖ ସୁଖ ଓ ଜୀବନ ସମସ୍ୟା କଥା ଦେଖାଯାଉ । ପିତା ସ୍ନେହପାଳିତା ପୁତ୍ର କନ୍ୟା ମଧ୍ୟରୁ କନ୍ୟାଟିକୁ ବାଲ୍ୟବିବାହ ରୂପ ସୁସଜ୍ଜିତ କ୍ଷୁଦ୍ର ନୌକାରେ ବସାଇ ଜୀବନ ସମୁଦ୍ର ପାରି ହେବାକୁ ପେଲି ଦେଇ କୂଳରେ ଦଣ୍ଡାୟମାନ ହୋଇ ସୁଖରେ ଡାକି ଦେଉଅଛନ୍ତି ଏବଂ ନୌକା ଅତି ଅଳ୍ପ ଦୂରରେ ନିମଜ୍ଜମାନ ହେଲାରୁ ଏବଂ ସ୍ନେହମୟୀ ବାଳିକା ବୈଧବ୍ୟାବର୍ତ୍ତରେ ପଡ଼ି ତ୍ରାହି ଡାକ ଛାଡ଼ିଲା ବେଳେ ତା' ମୁଣ୍ଡରେ ବ୍ରହ୍ମଚର୍ଯ୍ୟାରୂପ ପଥର ଚାପ ଦେବାକୁ ଚେଷ୍ଟା କରୁଅଛନ୍ତି । ଏହା ବାତ୍ସଲ୍ୟ ନା କ୍ରୂର ଓ କଦର୍ଯ୍ୟ ଧର୍ମଧ୍ୱଜା ? ଏ ରକ୍ଷଣଶୀଳତା କେବଳ ରକ୍ତବିନ୍ଦୁରେ ନୁହେଁ, ଏହା ଅସ୍ଥିମଜ୍ଜାଗତ । ଆମ ଦେଶରେ କ'ଣ ସ୍ୱାଧୀନଚେତା ସାହିତ୍ୟିକ ନାହାନ୍ତି ? ଏ ନେଇ ଲେଖକମାନେ ସାହିତ୍ୟର ଅଙ୍ଗ ପୁଷ୍ଟ କରିପାରନ୍ତି । ମାତ୍ର ନବ୍ୟ ଶିକ୍ଷିତଙ୍କର ଏ ସାହସ କାହିଁ ? ଏ ସ୍ୱାର୍ଥତ୍ୟାଗ କାହିଁ ?

ପ୍ରକୃତ ଶିକ୍ଷାର ଅଭାବ ଯେ ସାହିତ୍ୟ ବିକାଶର ପ୍ରତିବନ୍ଧକରୂପେ ଦେଶରେ ବିଦ୍ୟମାନ, ଏହା କହିବା ବାହୁଲ୍ୟ ମାତ୍ର । ସ୍ତ୍ରୀଶିକ୍ଷାର ଅଭାବ ମଧ୍ୟ ସାହିତ୍ୟ ବିକାଶର ପ୍ରତିବନ୍ଧକ । ଏହା ମଧ୍ୟ ଅକ୍ଷରେ ଅକ୍ଷରେ ସତ୍ୟ । ମାତ୍ର ସମାଜରେ ସ୍ତ୍ରୀର ସମ୍ମାନ ଓ ସ୍ଥାନକୁ ଟିକିଏ ଉଚ୍ଚ ଭାବିବା ଓ ଉଚ୍ଚ କରିବାକୁ ଚେଷ୍ଟା କରିବା ପ୍ରଥମରୁ ଆବଶ୍ୟକ । ସ୍ତ୍ରୀଜାତିର କୃପା, ଅବମାନନା ପୁରୁଷ ଜାତିର ସ୍ପର୍ଦ୍ଧାର ସାମଗ୍ରୀ ଯେଉଁ ଦେଶରେ, ସେ ଦେଶରେ ସ୍ତ୍ରୀ ଶିକ୍ଷାର ଆଶା ସ୍ୱପ୍ନର କାହାଣୀ । ସ୍ତ୍ରୀସେବିକା, କି ସହଧର୍ମିଣୀ ? ସ୍ତ୍ରୀ ସହଚରୀ ନୁହେଁ, ଅନୁଚରୀ । ଏ ଭାବ ପ୍ରଥମରୁ ସମାଜ ଓ ଜାତିର ମନରୁ ନିଷ୍କାସିତ ହେବା ଉଚିତ । ହିନ୍ଦୁ ଜାତି ଭୁଲି ଯାଇଅଛନ୍ତି— 'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ' ।

ଅବଶେଷରେ ମୋର ମତ ଏହି ଯେ, ସାହିତ୍ୟ ଓ ଭାଷାକୁ ବ୍ୟାକରଣ ବେଷ୍ଟନୀରୁ ଓ ଅବରୋଧରୁ ଟିକିଏ ମୁକ୍ତି ଦେବା ଉଚିତ୍ । ସାହିତ୍ୟ ମୁକ୍ତି ଲାଭ କରି ଉନ୍ମୁକ୍ତ ଭାବରାଜ୍ୟରେ ବିଚରଣ କରୁ, ତୃଣଶସ୍ୟଶ୍ୟାମଳାୟିତ କ୍ଷେତ୍ର, ପର୍ବତ ଶିଖର, ସମୁଦ୍ରକୂଳରେ ବିଚରଣ କରି ସ୍ୱାଧୀନ ବାୟୁ ସେବନ କରୁ । ସାହିତ୍ୟ ପ୍ରତି କୁଟିଳ ସମାଜପତିମାନଙ୍କର ଓ ଜଟିଳ ରାଜନୀତିଜ୍ଞମାନଙ୍କର ଭେଦପୂର୍ଣ୍ଣ ଓ ସ୍ୱାର୍ଥଜଡ଼ିତ ମନ୍ତ୍ରଣାଗାରର ଦ୍ୱାର ଉନ୍ମୁକ୍ତ ରହୁ । ସାହିତ୍ୟ ପ୍ରତି ଧର୍ଷିତା ନାରୀ ଜାତିର ଅବରୋଧାଗାରର ଲୌହ କବାଟ ମଧ୍ୟ ଉଦ୍‌ଘାଟିତ ହେଉ । ଅଳମତି ବିସ୍ତରେଣ ।

•

## ଭାଷା

ଯଦ୍ଦ୍ୱାରା ମନୁଷ୍ୟ ନିଜ ହୃଦଗତ ଭାବ ବ୍ୟକ୍ତ କରିପାରେ ତାହାହିଁ ଭାଷା । ଭାଷା ଦୁଇ ପ୍ରକାର—କଥିତ ଭାଷା ଓ ଲିଖିତ ଭାଷା । ସର୍ବସାଧାରଣ ଯେଉଁ ପ୍ରଚଳିତ ଭାଷା କହନ୍ତି ତାହା କଥିତ ଭାଷା; ପରିମାର୍ଜିତ ଭାଷା ଲିଖିତ ଭାଷା । ଯେଉଁ ଭାଷାରେ ପୁସ୍ତକାଦି ଲିଖିତ ହୋଇ ଲେଖକର ଭାବ ବ୍ୟକ୍ତ ହୁଏ ଏବଂ ପାଠକର ମନ ତୃପ୍ତି ଲାଭ କରେ ତାହା ଲିଖିତ ଭାଷା । କଥିତ ଭାଷା ପରିମାର୍ଜିତ ହୋଇ ଲିଖିତ ଭାଷା ହୋଇଅଛି ସତ କିନ୍ତୁ ତହିଁରେ ଭାବବ୍ୟକ୍ତକାରୀ ଅନେକ ସଂସ୍କୃତ ଓ ଅନ୍ୟ ଭାଷାର ଶବ୍ଦ ମିଶ୍ରିତ ହୋଇଅଛି । ଭାରତବର୍ଷରେ ବି କଥିତ ଲିଖିତ ଭାଷାର ସଂଖ୍ୟା ଅନେକ । ମାତ୍ର କଥିତ ଭାଷା ଅପେକ୍ଷା ଲିଖିତ ଭାଷାର ସଂଖ୍ୟା ଅଳ୍ପ । ଏହା ସ୍ୱାଭାବିକ କଥା । ଦୂରତାର ତାରତମ୍ୟ ଅନୁସାରେ କଥିତ ଭାଷାର ତାରତମ୍ୟ ଘଟେ; ଏହା ପ୍ରମାଣସିଦ୍ଧ, ପ୍ରତ୍ୟକ୍ଷସିଦ୍ଧ ।

ଆମମାନଙ୍କର ମାତୃଭାଷା ଓଡ଼ିଆ ଗୋଟିଏ ପ୍ରସିଦ୍ଧ ଭାଷା, ଏଥିରେ ସନ୍ଦେହ ନାହିଁ । ଭାରତରେ ପ୍ରଚଳିତ ଅନେକ ଭାଷା ଅପେକ୍ଷା ଓଡ଼ିଆ ଭାଷାର ଆସନ ଯେ ଉଚ୍ଚରେ ଏଥିରେ କେହି ଦ୍ୱିରୁକ୍ତି କରିପାରିବେ ନାହିଁ । ଭାଷା ଭିତରେ ଏହାର ବୈଶିଷ୍ଟ୍ୟ ଥିଲା, ଏବେ ମଧ୍ୟ ବଢ଼ୁଛି । ପଦ୍ୟ-ସାହିତ୍ୟରେ ଏହାର ବିଶିଷ୍ଟତା ଅସାଧାରଣ ଥିଲା, ଗଦ୍ୟ-ସାହିତ୍ୟରେ ମଧ୍ୟ ଅଳ୍ପକାଳ ମଧ୍ୟରେ ଏହାର ପ୍ରାଧାନ୍ୟ ଯଥେଷ୍ଟ ବଢ଼ିଅଛି । ରଚକ ଓ ଲେଖକମାନଙ୍କର ସ୍ୱାଧୀନ ପ୍ରବୃତ୍ତି ହିଁ ଏ ଉନ୍ନତିର ମୂଳକାରଣ । ଅନୁକରଣଦ୍ୱାରା ଭାବ ଓ ଭାଷା ସଙ୍କୁଚିତ ହୁଏ । ଅନୁକରଣତା ସ୍ୱାଧୀନ ଭାବର ଅନ୍ତରାୟ । ଭାବରାଜ୍ୟ

ସଙ୍କୁଚିତ ହେଲେ ଭାଷାର ବିସ୍ତୃତି ଅସମ୍ଭବ । ପର୍ଯ୍ୟବେକ୍ଷଣ, ପର୍ଯ୍ୟଟନ, ଅଭାବ, ଜ୍ଞାନ, ବିପତ୍‌ପାତ୍‌, ବିପତ୍‌ପାତରୁ ରକ୍ଷା ପାଇବାର ପନ୍ଥା, ଅନ୍ୱେଷଣ ଇତ୍ୟାଦିରୁ ମନୁଷ୍ୟର ଭାଷାର ଶବ୍ଦ ସଂଖ୍ୟା ବୃଦ୍ଧିପ୍ରାପ୍ତ ହୋଇଅଛି । ଯେଉଁ ଜାତି ଯେତିକି ସଭ୍ୟ ଓ ଉନ୍ନତିଶୀଳ ତା'ର ଭାଷାକୋଷ ତେତିକି ବଡ଼ । ଅଶିକ୍ଷିତ ପ୍ରଚଳିତ ଅଳ୍ପ ସଂଖ୍ୟକ ଶବ୍ଦ ଘେନି ତୃପ୍ତ । ମାତ୍ର ଶିକ୍ଷିତ ଓ ସଭ୍ୟର ଆଶା ଓ ଆକାଙ୍କ୍ଷା ସେତିକିରେ ତୃପ୍ତ ହେବା ଅସମ୍ଭବ । ସଭ୍ୟର ଭାବରାଜ୍ୟର ବିସ୍ତୃତି ସଙ୍ଗେ ସଙ୍ଗେ ଶବ୍ଦ ସଂଖ୍ୟା ବୃଦ୍ଧି କରିବାର ନିତାନ୍ତ ପ୍ରୟୋଜନ ହୋଇଉଠେ । ସୁତରାଂ ଗ୍ରାମ୍ୟ ଓ ପ୍ରାଦେଶିକତା ତ୍ୟାଗ କରି ବିଶୁଦ୍ଧ ଭାଷା ଓ ପ୍ରାଞ୍ଜଳ ସାହିତ୍ୟ ଗଠନରେ ସଭ୍ୟର ପ୍ରବୃତ୍ତି ଜନ୍ମେ । ଏହି ନିୟମରେ ଭାଷା ଓ ସାହିତ୍ୟର ଉନ୍ନତି ଘଟିଥାଏ ।

ଓଡ଼ିଆ ଭାଷାର ଗ୍ରାମ୍ୟ ଓ ପ୍ରାଦେଶିକତା ବେଶି, ଯେହେତୁ ଓଡ଼ିଶା ଗୋଟିଏ କ୍ଷୁଦ୍ର ପ୍ରଦେଶ ନୁହେଁ; ତାହାଛଡ଼ା ଅରଣ୍ୟ ଓ ଗିରିସଙ୍କୁଳ ଏ ପ୍ରଦେଶର ଗତିପଥ ସବୁ ନିର୍ବୋଧ ଓ ସୁଗମ ନ ଥିଲା । ଏଣୁ ପ୍ରତ୍ୟେକ କ୍ଷୁଦ୍ର ଭୂମି ବିଭାଗ ମଧ ଭାଷାର ସ୍ୱାତନ୍ତ୍ର୍ୟ ରକ୍ଷା କରିଅଛି । ଏହା ବୁଝାଇବା ନିଷ୍ପ୍ରୟୋଜନ । କିନ୍ତୁ ଏତାଦୃଶ ବାଧା ସତ୍ତ୍ୱେ ବିଶୁଦ୍ଧ ଓଡ଼ିଆ ଭାଷା ଗଠିତ ହୋଇଅଛି ଓଡ଼ିଶାର କୃତୀପୁତ୍ର ପ୍ରାଚୀନ କବିମାନଙ୍କଦ୍ୱାରା । ତାହା ପାଠ କଲାବେଳେ ପ୍ରତ୍ୟେକ ଓଡ଼ିଆ ପ୍ରାଦେଶିକ ଓ ଗ୍ରାମ୍ୟଭାଷାକୁ ଭୁଲିଯାଆନ୍ତି ଏବଂ ନିଜେ ରଚନା କଲାବେଳେ ପୂର୍ବ କବିମାନଙ୍କର ପଦାଙ୍କ ଅନୁସରଣ କରି ଗ୍ରାମ୍ୟ ଶବ୍ଦ ତ୍ୟାଗକରି ଶକ୍ତ୍ୟାନୁସାରେ କାବ୍ୟ ଲେଖନ୍ତି । ପ୍ରତ୍ୟେକ ଲେଖାରେ ଗ୍ରାମ୍ୟ ଓ ପ୍ରାଦେଶିକ ଶବ୍ଦ ଯେ ନ ଥାଏ ଏପରି ନୁହେଁ, ମାତ୍ର ଜଣକର ପ୍ରାଦେଶିକ ଓ ଗ୍ରାମ୍ୟ କଥା ଯେପରି ଅନ୍ୟ ପ୍ରଦେଶର ବା ଗ୍ରାମର ଲୋକ ବୁଝିବା ଅସମ୍ଭବ ହୁଏ କାବ୍ୟ ବୁଝିବାକୁ ସେପରି ଅସମ୍ଭବ ହୁଏ ନାହିଁ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ ସମ୍ବଲପୁରର ଗ୍ରାମ୍ୟଭାଷା କଟକବାସୀଙ୍କୁ ବୁଝିବାକୁ ଯେପରି କଷ୍ଟ ସ୍ୱୀକାର କରିବାକୁ ହେବ, ବିଶୁଦ୍ଧ କଟକ ଗ୍ରାମ୍ୟଭାଷା ବୁଝିବାକୁ ସମ୍ବଲପୁରବାସୀଙ୍କୁ ମଧ ସେହିପରି କଷ୍ଟ ସ୍ୱୀକାର କରିବାକୁ ହେବ ।

ବର୍ତ୍ତମାନ ଦେଖାଯାଏ ଅନେକ ଲେଖକ ଗ୍ରାମ୍ୟଭାଷା ବ୍ୟବହାର କରିବାକୁ କୁଣ୍ଠିତ ନୁହନ୍ତି । ସେମାନଙ୍କ ବ୍ୟବହୃତ ଗ୍ରାମ୍ୟ ଶବ୍ଦ ଯେବେ ସମସ୍ତ ଉତ୍କଳଭାଷୀଙ୍କର ବୋଧଗମ୍ୟ ହୁଅନ୍ତା, ତେବେ ଗୋଟାକେତେ ଶବ୍ଦ ବ୍ୟବହାରରେ କ୍ଷତି ନ ଥାନ୍ତା; ମାତ୍ର ସେମାନଙ୍କର ବୁଝିବା ଉଚିତ ଯେ ଲେଖକର ଗ୍ରାମ୍ୟ ଶବ୍ଦ ସବୁ ସ୍ଥଳରେ ପାଠକର ଗ୍ରାମ୍ୟ ଶବ୍ଦ ନୁହେଁ । ପାଠକ ଯେ ଗ୍ରାମ୍ୟ ଶବ୍ଦର ଅର୍ଥ ବୁଝିବାକୁ କିଂକର୍ତ୍ତବ୍ୟବିମୂଢ଼ ହେବା କଥା— ଯେହେତୁ ଏ ଦେଶରେ ଗ୍ରାମ୍ୟ ଶବ୍ଦକୋଷ ନାହିଁ । 'ନନାଙ୍କ ବସ୍ତାନୀ'ରେ ବ୍ୟବହୃତ କଟକୀ ଗ୍ରାମ୍ୟଭାଷା ଲେଖକର ଲେଖା-ନୈପୁଣ୍ୟରୁ ପଢ଼ିବାକୁ ପ୍ରୀତିପ୍ରଦ ହେଲେ ମଧ ପ୍ରକୃତ ପକ୍ଷରେ ଅନ୍ୟ ପ୍ରଦେଶର ଲୋକଙ୍କର ବୋଧଗମ୍ୟ ହୁଏ ନାହିଁ । ଯେଉଁମାନଙ୍କ ନିମନ୍ତେ ଲେଖା, ସେମାନେ ଯେବେ ବୁଝିବାକୁ ଅକ୍ଷମ ତେବେ ସେ ଲେଖାର ପ୍ରୟୋଜନ କ'ଣ ? ପର ନିମନ୍ତେ ସାହିତ୍ୟର ସୃଷ୍ଟି । ଶବ୍ଦ-କାଠିଣ୍ୟ ଯେମନ୍ତ କାବ୍ୟର ଦୋଷ, ଗ୍ରାମ୍ୟତା ବିଶେଷତଃ ଅପ୍ରଯୋଜ୍ୟ ଗ୍ରାମ୍ୟତା ତତୋଽଧିକ ଆଲଙ୍କାରିକ ଦୋଷ ଅଟେ । ଓଡ଼ିଶାର ପ୍ରତ୍ୟେକ ପ୍ରଦେଶର ଲେଖକମାନେ ଯେବେ ଆପଣା ଆପଣା ପ୍ରଦେଶର ବା ଗ୍ରାମର ବ୍ୟବହୃତ ଶବ୍ଦ ବ୍ୟବହାର କରି ଦେଶପ୍ରେମିକତା ଦେଖାଇବାକୁ ଯତ୍ନଶୀଳ ହୁଅନ୍ତି, ତା'ହେଲେ ଅଚିରେ ଯେ ଓଡ଼ିଆ ସାହିତ୍ୟର ଅଧୋଗତି ହେବ ଏଥିରେ କି ସନ୍ଦେହ କରିବାର ଅବସର ଅଛି ? ଆଧୁନିକ ଲେଖାର ଗୋଟିଏ ମାତ୍ର ଉଦାହରଣ ଦେଲେ ବୋଧହୁଏ କେହି ଅସଙ୍ଗତ ମନେକରିବେ ନାହିଁ । ସମ୍ପାଦକମାନଙ୍କର କାଳି, କାଗଜ ଓ ଅକ୍ଷର ଯଥେଷ୍ଟ ଅଛି ଏଣୁ ବୋଧହୁଏ ଶବ୍ଦ— ସଂକ୍ଷେପର ସେମାନେ ପକ୍ଷପାତୀ ହୁଅନ୍ତେ ନାହିଁ । ତଥାପି ଲେଖକମାନେ ବୃଥାରେ କେତେଗୋଟା ଶବ୍ଦର ଅବୟବ ଛିନ୍ନ କରିବାକୁ ଯତ୍ନଶୀଳ । ଯେମନ୍ତ ନାହିଁ ସ୍ଥଳରେ 'ନି' । ଏହାର ବହୁଳ ବ୍ୟବହାର ଦେଖି ଭୟ ହେଲାଣି । ମୁଁ ଯିବି ନାହିଁ ସ୍ଥଳରେ ଲେଖୁଅଛନ୍ତି ମୁଁ ଯିବିନି । ହୁଏତ କଟକ ଅଞ୍ଚଳରେ ଲୋକେ ତାହା ବୁଝି ପାରନ୍ତି ମାତ୍ର ଅନ୍ୟ ଅଞ୍ଚଳର ଲୋକପ୍ରତି ତାହା ବୁଝିବାକୁ କଷ୍ଟକର ହେବ । ମୁଁ ଯିବିନି ବ୍ୟବହାରର 'ନି' ଅକ୍ଷରଟି ଏ ଅଞ୍ଚଳରେ ନିଶ୍ଚୟାର୍ଥରେ ପ୍ରୟୋଗ ହୁଏ । ତମେ ଯାଇଥାଅ, ମୁଁ ଯିବିନି ଅର୍ଥାତ୍‌ ମୁଁ ନିଶ୍ଚୟ ଯିବି । ସୁତରାଂ ଏତାଦୃଶ ଦ୍ୱିର୍ଥବୋଧକ ଗ୍ରାମ୍ୟ ଶବ୍ଦ ବ୍ୟବହାରଦ୍ୱାରା ଯେ ସାହିତ୍ୟର ଉଦେଶ୍ୟ କ୍ଷୁଣ୍ଣ ହେବ ଏଥିରେ ସନ୍ଦେହ ନାହିଁ । ପ୍ରାଚୀନ ବୈୟାକରଣିକମାନେ କହନ୍ତି ଶବ୍ଦରୁ ଗୋଟାଏ ଅକ୍ଷର ସଂକ୍ଷେପ କରିପାରିଲେ ପୁତ୍ରଲାଭର ଆନନ୍ଦ ମିଳେ । ସେ ସମୟ ଆମ ଦେଶକୁ ଆସି ନାହିଁ ।

ଭାଷାକୁ ବିଶୁଦ୍ଧ କରିବାକୁ ହେଲେ ଏବଂ ସମସ୍ତଙ୍କର ବୋଧଗମ୍ୟ ହେଉ ଏ ଇଚ୍ଛା ଥିଲେ ଗ୍ରାମ୍ୟ ଶବ୍ଦ ବ୍ୟବହାର ଯେ ବର୍ଜନୀୟ ଏହା ବୋଧହୁଏ ଅସ୍ୱୀକାର୍ଯ୍ୟ ନୁହେଁ । ଭାଷା ବ୍ୟବଧାନ ସାହିତ୍ୟ ପ୍ରଗତିର ଅନ୍ତରାୟ । ଭାଷାର ବ୍ୟବଧାନ

ଘଟେ ଗ୍ରାମ୍ୟତା ଦୋଷରୁ । ସୁତରାଂ ଆଧୁନିକ ଉତ୍କଳର ଶିକ୍ଷିତା ମହିଳା ବା ଶିକ୍ଷିତା ଘରର ମହିଳାମାନେ ଯେପରି ଅଶିକ୍ଷିତା ଗ୍ରାମ୍ୟନାରୀଙ୍କ ବ୍ୟବହୃତ ପିତ୍ତଳ ଅଳଙ୍କାର ଓ ମୋଟା ଲାଖ ବ୍ୟବହାରକୁ ଦେଶ-ପ୍ରେମିକତାର ପରିଚାୟକ ବୋଲି ମନେକରନ୍ତି ନାହିଁ ସେହିପରି ଆଧୁନିକ ଲେଖକମାନେ ଗ୍ରାମ୍ୟ ଶବ୍ଦ ବ୍ୟବହାରକୁ ଦେଶ-ପ୍ରେମିକତାର ପରିଚାୟକ ବୋଲି ମନେକରିବେ ନାହିଁ ।

•

## ଜ୍ୟୋତିର୍ବିଦ୍ୟାର ଜୟ

ଖ୍ରୀଷ୍ଟଧର୍ମ ସୃଷ୍ଟିପୂର୍ବରୁ ସକ୍ରେଟିସ୍ ଇହଧାମ ତ୍ୟାଗ କରିଅଛନ୍ତି । ସକ୍ରେଟିସ୍ ଜ୍ଞାନୀ, ସତ୍ୟବାଦୀ, ସ୍ୱାଧୀନଚେତା, ନିର୍ଭୀକ, ପରମ ସତ୍ୟର ଅନୁଧାବନକାରୀ । ସେ କହିଲେ, ଜ୍ଞାନର ସୀମା ନାହିଁ, ଯେ ଯେତିକି ଜ୍ଞାନପଥରେ ଅଗ୍ରସର ହୋଇଥିବ, ସେ ତେତିକି ଆପଣାକୁ ଅଜ୍ଞ ବୋଲି ମନେ କରୁଥିବ । ଲୋକ ଦୁଇ ପ୍ରକାର, ଏକଦଳ ଏକଥା ସତ୍ୟ ବୋଲି ମନେ କରନ୍ତି । ଅନ୍ୟଦଳ ଏଥିରେ ଆସ୍ଥାବାନ୍ ନୁହନ୍ତି । ସୃଷ୍ଟି ରହସ୍ୟ ସମ୍ବନ୍ଧରେ ନିଜକୁ ଅଜ୍ଞ ବୋଲି ସ୍ୱୀକାର କରିବାକୁ କେତେ ଜଣଙ୍କର ସାହସ ଅଛି ? ମନସ୍ୱିତାର ପ୍ରୟୋଜନ । ଏପରି ମନସ୍ୱୀ ଲୋକ ଶତକରା କେତେ ଜଣ ? ସକ୍ରେଟିସ୍ ମନସ୍ୱୀ, ପ୍ରଚଳିତ ଧର୍ମବିଶ୍ୱାସର ପକ୍ଷପାତୀ ନ ଥିଲେ, ବିବର୍ତ୍ତନବାଦୀ, ବିପ୍ଳବବାଦୀ । ଲୋକେ ତାହା ସହନ୍ତେ କିପରି । ତାହାଙ୍କୁ ହତ୍ୟା କଲେ । ସେ ନିଜ ହସ୍ତରେ ବିଷ ପାନ କରି ସତ୍ୟର ମହିମା ଅନନ୍ତକାଳ ପାଇଁ ବଜାଏ ରଖିଲେ । ମଦୋଦ୍ଧତା, ଶାସନଗର୍ବିତ, ବିଷଦାତା, ନରହନ୍ତାମାନଙ୍କର ନାମ ଗନ୍ଧ ନାହିଁ । ସକ୍ରେଟିସ୍‌ଙ୍କ ଜ୍ଞାନର ଆଲୋକ ଦୀପରୁ ଦୀପାନ୍ତରକୁ ଗଲା ପରି ଅଦ୍ୟାପି ବିସ୍ତୃତି ଲାଭ କରୁଅଛି । ସେହି ଶିକ୍ଷାନୁସାରେ ଆତ୍ମପ୍ରତ୍ୟୟାନୁଯାୟୀ ଲୋକେ ସ୍ୱାର୍ଥ ତ୍ୟାଗ କରିବାକୁ ଓ ଆତ୍ମବଳି ଦେବାକୁ ଶିକ୍ଷା କରିଅଛନ୍ତି ।

ସପ୍ତଦଶ ଶତାବ୍ଦୀ ଆଡ଼କୁ ଖ୍ରୀଷ୍ଟିୟାନ୍ ଆଧିପତ୍ୟ ଅତି ପ୍ରବଳ । ଈଶ୍ୱରଙ୍କର ଧର୍ମରାଜ୍ୟ ପୂର୍ଣ୍ଣମାତ୍ରାରେ ରୋମ ନଗରୀରେ ବିଦ୍ୟମାନ । ସାରା ସୃଷ୍ଟି ଧର୍ମଯାଜକଗଣଙ୍କର ହସ୍ତାମଳକ ହୋଇଥିଲା । ବାଇବେଲ୍‌ର କଥା ସତ, ଆଉ ସବୁ ମିଛ । ସ୍ୱର୍ଗ ଓ ପୃଥିବୀ ସ୍ୱର୍ଣ୍ଣଶୃଙ୍ଖଳାଦ୍ୱାରା ଛନ୍ଦା । ପୃଥିବୀ ସ୍ଥିର । ସ୍ୱର୍ଗର ପାବଚ୍ଛ ମଧ୍ୟ ନିର୍ମାଣ ହେଉଥିଲା ବୋଇଲେ ଚଳେ । ଏପରି ସ୍ଥଳରେ ଗାଲିଲିଓ ଓ ପୃଥିବୀ ସଚଳା ବୋଲି କହି ଧର୍ମରାଜ୍ୟରେ ବିପ୍ଳବ ଉପସ୍ଥିତ କରିବାକୁ କିଏ ? କ୍ଷମତାର ଅକରଣୀୟ କିଛି ନାହିଁ । ଗାଲିଲିଓଙ୍କ ସତ୍ୟୋକ୍ତି ବ୍ୟ କରାଗଲା । ଗାଲିଲିଓ କାରାଗାରକୁ ପ୍ରେରିତ ହେଲେ । ସେ ଚିରକାଳ କାରାଗାରରେ ରହିଲେ ନାହିଁ, ମୁକ୍ତି ପାଇଲେ । ସତ୍ୟକୁ କିଏ କାରାରୁଦ୍ଧ କରିପାରେ ? ପୃଥିବୀ ନିଜ କକ୍ଷରେ, ପ୍ରବଳ ବେଗରେ ବୁଲୁଅଛି ଏବଂ ସୂର୍ଯ୍ୟକୁ ପ୍ରଦକ୍ଷିଣ କରୁଅଛି । ଆବାଳବୃଦ୍ଧ ପ୍ରତ୍ୟକ୍ଷ କରୁଅଛନ୍ତି । ଧର୍ମଗ୍ରନ୍ଥଲିଖିତ ସ୍ୱର୍ଣ୍ଣଶୃଙ୍ଖଳ ଛିନ୍ନ ବିଛିନ୍ନ ହୋଇ ଧୂଳିସାତ୍ ହୋଇଅଛି । ଯେଉଁ ଧର୍ମବିରୋଧ ମତ ପ୍ରକାଶ ନିମନ୍ତେ ଗାଲିଲିଓ କାରାଗାରକୁ ପ୍ରେରିତ ହୋଇଥିଲେ, ତାହା ସତ୍ୟ ବୋଲି ଏବେ ପୋପଗଣ ମଧ୍ୟ ବିଶ୍ୱାସ କରିବାକୁ ବାଧ୍ୟ ହୋଇଅଛନ୍ତି ଏବଂ ଲୋକେ ସନ୍ତାନମାନଙ୍କୁ ସେ ଧର୍ମବିରୋଧ ମତ ଶିକ୍ଷା ଦେବାକୁ କୁଣ୍ଠିତ ହେଉ ନାହାନ୍ତି । ଗାଲିଲିଓ ଟେଲିସ୍‌କୋପ୍ ଦ୍ୱାରା ଉପଗ୍ରହ ଆବିଷ୍କାର କଲେ । ତାଙ୍କ ଅଗ୍ରେସର ଓ ପଶ୍ଚାଦ୍‌ବର୍ତ୍ତିଗଣଙ୍କୁ ମଧ୍ୟ ଏଥି ନିମନ୍ତେ କେତେ ଲାଞ୍ଛିତ ହେବାକୁ ପଡ଼ି ନାହିଁ ? ଟେଲିସ୍‌କୋପର କ୍ରମୋନ୍ନତି ଚାଲିଲା । ସୃଷ୍ଟିରହସ୍ୟ ଲୋକଲୋଚନର ବିଷୟୀଭୂତ ହେଲା । ଜ୍ଞାନଚକ୍ଷୁ ମଧ୍ୟ ଫିଟିଲା । ଜ୍ଞାନପିପାସା ବଢ଼ୁଅଛି । ସକ୍ରେଟିସ୍‌ଙ୍କ କଥାନୁସାରେ ଆଜି ଜ୍ୟୋତିର୍ବେତ୍ତାମାନେ ନିଜକୁ ଅଜ୍ଞ ବୋଲି ମନେ କରୁଅଛନ୍ତି । ଏଣୁ ଟେଲିସ୍‌କୋପ୍‌କୁ କ୍ରମେ ବୃହତ୍ତରୁ ବୃହତ୍ତର କରି ନିର୍ମାଣ କରିବାକୁ ଚେଷ୍ଟା କରୁଅଛନ୍ତି । ଏବେ ଦୁଇ ଶତ ଇଞ୍ଚ ବ୍ୟାସର ସ୍ଥୂଳମଧ୍ୟ କାଚବିଶିଷ୍ଟ ଦୂରବୀକ୍ଷଣ ନିର୍ମାଣ ଚାଲିଅଛି । ଆକାଶର ଆଉ କିଛି ଦୂରକୁ ଅଗ୍ରସର ହେବେ ।

ବାଇବେଲର ଭ୍ରାନ୍ତ ମତକୁ ଚୂର୍ଣ୍ଣ କରିବାକୁ ସମର୍ଥ ହୋଇଅଛି କେବଳ ଜ୍ୟୋତିର୍ବିଦ୍ୟା । ଯେହେତୁ ଏହା ପ୍ରତ୍ୟକ୍ଷସିଦ୍ଧ । ଗଣିତ ଏହାର ପୃଷ୍ଠପୋଷକ, ଟେଲିସ୍‌କୋପ୍ ଏବଂ ସ୍ପେକ୍‌ଟସ୍‌କୋପ ପ୍ରତ୍ୟକ୍ଷ ପ୍ରମାଣ କରାଇବାର ଉପାୟ । ଏ ବିଦ୍ୟାର ଅସାଧାରଣ ଉନ୍ନତି ହୋଇଅଛି । କ୍ରମୋନ୍ନତି ଚାଲିଅଛି । ଖ୍ରୀଷ୍ଟଧର୍ମ ଏ ଶାସ୍ତ୍ରବେତ୍ତାମାନଙ୍କ ଗଳା ଚିପି ନିଶ୍ୱାସରୁଦ୍ଧ କରିବାକୁ ସମର୍ଥ ନୁହେଁ କିମ୍ବା ପୁସ୍ତକତକ ପୋଡ଼ି ଦେଇ ଏ ମତର ପ୍ରଚାର ବନ୍ଦ କରିବାକୁ ଏବେ କ୍ଷମ ନୁହେଁ । ଏ ବିଦ୍ୟାର ଗତି ଓ ଉନ୍ନତି ଅନିବାର୍ଯ୍ୟ ଏବଂ ସେଥିରେ ଫଳସ୍ୱରୂପ ଏ ବର୍ଷ ଆମ ସୌର ପରିବାରର ଗୋଟିଏ ଅଦୃଶ୍ୟ ଗ୍ରହ ଆବିଷ୍କୃତ ହୋଇଅଛି । ଗୋପନଭାବରେ ଥିଲା, ଦେଖା ଦେଇଅଛି । ଜ୍ୟୋତିର୍ବିତ୍‌ଗଣ ଏହି ଗ୍ରହର ଅନୁସନ୍ଧାନରେ ଚୌରାଶୀ ବର୍ଷ କାଳ ବ୍ୟସ୍ତ ଥିଲେ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ପରିଶ୍ରମ ସଫଳ ହୋଇଅଛି । ବର୍ତ୍ତମାନ ସୌର ପରିବାରର ଗ୍ରହସଂଖ୍ୟା ନଅ ଗୋଟି ।

ଗ୍ରହନକ୍ଷତ୍ରଖଚିତ ଅନନ୍ତ ଆକାଶ ଯେ ଚିରକାଳ ମନୁଷ୍ୟମନକୁ ବିସ୍ମୟାଭିଭୂତ କରୁଅଛି, ଏଥିରେ ସନ୍ଦେହ ନାହିଁ । ଅନେକେ ଏମାନଙ୍କ ଗତିବିଧିର ରହସ୍ୟ ବୁଝିବାକୁ ଚିରକାଳ ଚେଷ୍ଟା କରିଅଛନ୍ତି— କି ପ୍ରାଚ୍ୟ, କି ପାଶ୍ଚାତ୍ୟ ଜାତି । ବାଇବେଲ୍‌କଥିତ ଈଶ୍ୱର ଏ ପୃଥିବୀକୁ ନିର୍ମାଣ କରି ନରମିଥୁନର ବିହାରୋଦ୍ୟାନ କରିବା ପୂର୍ବରୁ ପ୍ରାଚ୍ୟ ଜାତି ଓ କେତେକ ପାଶ୍ଚାତ୍ୟ ଜାତି ଆକାଶର ଅନେକ ରହସ୍ୟ ହୃଦୟଙ୍ଗମ କରି ପାରିଥିଲେ । ଗ୍ରହମାନଙ୍କର ଗତିବିଧି ଓ ସ୍ଥିତିର କଳ୍ପନା ମଧ କରିଥିଲେ । ଧର୍ମବିଶ୍ୱାସ ବାଧା ଦେଲା । ମତର ବିକାଶ ହେଲା ନାହିଁ ।

ସୂର୍ଯ୍ୟ ଓ ଗ୍ରହମାନଙ୍କର ସ୍ଥିତି ଓ ଗତି ସମ୍ବନ୍ଧରେ ଆମ୍ଭେମାନେ ଗ୍ରୀକ୍ ଓ ହିନ୍ଦୁଶାସ୍ତ୍ର ଆଲୋଚନା କରି ଦେଖିବାକୁ ପାଉଁ ଯେ, ଉଭୟ ଦେଶର ମତ ଏକ । ଏ ମତ ହିନ୍ଦୁଠାରୁ ଗ୍ରୀକ୍ ଗ୍ରହଣ କରିଥିଲେ, କି ଗ୍ରୀକ୍‌ଠାରୁ ହିନ୍ଦୁ ଗ୍ରହଣ କରିଥିଲେ କିମ୍ବା ଉଭୟେ ଅନ୍ୟ କୌଣସି ପ୍ରାଚୀନ ମତ ଅବଲମ୍ବନ କରିଥିଲେ, ତାହା ଏଠାରେ ଆଲୋଚନା କରିବାର ପ୍ରୟୋଜନ ନାହିଁ । ସୂର୍ଯ୍ୟସିଦ୍ଧାନ୍ତ ଲେଖିଲେ—

ମନ୍ଦାମରେଜ୍ୟଭୂପୁତ୍ର
ସୂର୍ଯ୍ୟଶୁକ୍ରେନ୍ଦୁଜେନ୍ଦବଃ ।
ପରିଭ୍ରମନ୍ତ୍ୟଧୋଽଧସ୍ଥାଃ ।
ସିଦ୍ଧବିଦ୍ୟାଧରା ଘନାଃ ॥

ଗ୍ରୀକ୍ ଜ୍ୟୋତିଃଶାସ୍ତ୍ରର ମଧ ଏହି ମତ, ଅର୍ଥାତ୍ ପୃଥିବୀ ମଧରେ, ତହିଁ ପାଖକୁ ଚନ୍ଦ୍ର, ପରେ ବୁଧ, ପରେ ଶୁକ୍ର, ପରେ ସୂର୍ଯ୍ୟ, ପରେ ମଙ୍ଗଳ, ପରେ ବୃହସ୍ପତି, ଶେଷରେ ଶନି । ଆଧୁନିକ ମତରେ ପୃଥିବୀ ଯେଉଁ ସ୍ଥାନ ଅଧିକାର କରିଅଛି, ପ୍ରାଚୀନ ସିଦ୍ଧାନ୍ତ ମତରେ ସୂର୍ଯ୍ୟ ସେହି ସ୍ଥାନ ଅଧିକାର କରିଥିଲା । ସେକାଳର ଗ୍ରହଣାଦି ଗଣନା ପକ୍ଷରେ ଏହି କଳ୍ପନା ଯଥେଷ୍ଟ ଥିଲା । ମାତ୍ର ପୃଥିବୀଟାକୁ ଯେ ସେମାନେ ଏ ସାରା ସୃଷ୍ଟିର ସର୍ବେସର୍ବା କରି ଧରି ବସିଥିଲେ, ଏହା କ୍ଷମାଯୋଗ୍ୟ ଭ୍ରମ ନୁହେଁ । ଅନୁମାନ ହୁଏ, ଲୋକମତ ଓ ଧର୍ମବିଶ୍ୱାସ ସେମାନଙ୍କର ସ୍ୱାଧୀନ ଗବେଷଣାର ଅନ୍ତରାୟ ହୋଇଥିଲା । ସେମାନଙ୍କର ସୌରଜଗତ୍ ବୋଲି ଗୋଟାଏ ଧାରଣା ନ ଥିଲା । ପୃଥିବୀକୁ ଦିନ ରାତିରେ ଆଲୋକିତ କରିବାକୁ ସୂର୍ଯ୍ୟ, ଚନ୍ଦ୍ର ଈଶ୍ୱରଙ୍କର ସୃଷ୍ଟି, ଏହି ଧାରଣା ଥିଲା । ଯେଉଁମାନଙ୍କର ପ୍ରକାଶ୍ୟ ବସ୍ତୁ ସମ୍ବନ୍ଧରେ ଏପରି ଭ୍ରମ, ସେମାନଙ୍କ ପରିକଳ୍ପିତ ସୃଷ୍ଟିକର୍ତ୍ତାର ରୂପରେଖ ଗୁଣ କର୍ମ ଯେ ନିତାନ୍ତ ଭ୍ରମପୂର୍ଣ୍ଣ ହେବ, ଏଥିରେ ଆଶ୍ଚର୍ଯ୍ୟ କ'ଣ ? ଏ ସମ୍ବନ୍ଧରେ ସେମାନଙ୍କ ପ୍ରଦର୍ଶିତ ବାଟରେ ଚକ୍ଷୁ ମୁଦ୍ରିତ କରି ଚାଲିବା ଅନ୍ଧପରମ୍ପରା ନ୍ୟାୟ ନୁହେଁ କି ? ସେ ଯାହା ହେଉ, ପୃଥିବୀ କେନ୍ଦ୍ର ନୁହେଁ, ସୂର୍ଯ୍ୟ କେନ୍ଦ୍ର । ସୂର୍ଯ୍ୟର ବ୍ୟାସ ପ୍ରାୟ ୮୬୬.୦୦୦ ମାଇଲ୍ ଏବଂ ପୃଥିବୀର ବ୍ୟାସ ପ୍ରାୟ ୮୦୦୦ ମାଇଲ୍ ମାତ୍ର । ଉଭୟର ଦୂରତା ୯୩୦୦୦୦୦୦ ମାଇଲ୍ । ଆମ ଦେଶର ଜଣେ କବି କିନ୍ତୁ ସୂର୍ଯ୍ୟ ଓ ପଦ୍ମିନୀର ପ୍ରୀତି ବର୍ଣ୍ଣନା କରିବାକୁ ଯାଇ ଉଭୟଙ୍କର ଦୂରତା କେବଳ ଶଏ ଯୋଜନ ବୋଲି ଲେଖିଗଲେ । ସୂର୍ଯ୍ୟ ଏତିକି ପାଖକୁ ଆସିଲେ କୁମୁଦିନୀର ଦଶା ତ ଛାଡ଼, ପୃଥିବୀ କି ଦଶା ହୁଅନ୍ତା, ତାହା କଳ୍ପନାତୀତ । ଯାହା ହେଉ ପ୍ରାଚୀନ ଜ୍ୟୋତିଷିଗଣ ଶନିପର୍ଯ୍ୟନ୍ତ ସୌରଜଗତର ବିସ୍ତୃତି ସ୍ଥିର କରିପାରିଥିଲେ । ସୂର୍ଯ୍ୟଠାରୁ ଶନିର ଦୂରତା ୮୮୬୦୦୦୦୦୦ ମାଇଲ୍ । ୧୭୮୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜ୍ୟୋତିର୍ବିତ୍‌ମାନଙ୍କର ବିଶ୍ୱାସ ଥିଲା ଯେ, ସୌରରାଜ୍ୟର ବିସ୍ତୃତି କେବଳ ୮୮୬୦୦୦୦୦୦ ମାଇଲ୍ ପର୍ଯ୍ୟନ୍ତ ଏବଂ ସୂର୍ଯ୍ୟ ଛଅ ଗୋଟି ଗ୍ରହର ଅଧିପତି ।

ହୋରଶେଲ୍ ଇଉରେନ୍‌ସ ନାମକ ସପ୍ତମ ଗ୍ରହର ଆବିଷ୍କାର କରି ସୌରରାଜ୍ୟର ପରିମାଣ ବଢ଼ାଇ ଦେଲେ । ଇଉରେନ୍‌ସ ୧୮୬୫୦୦୦୦୦୦ ମାଇଲ୍ ଦୂରରେ ଥାଇ ସୂର୍ଯ୍ୟକୁ ପ୍ରଦକ୍ଷିଣ କରେ ।

୧୮୪୬ ଖ୍ରୀଷ୍ଟାବ୍ଦରେ ନେପଚୁନ୍ ନାମକ ଅଷ୍ଟମ ଗ୍ରହ ପ୍ରଥମ ବାର୍ଲିନ ନଗରରେ ଦେଖାଦେଲା । ଜ୍ୟୋତିର୍ବିତ୍‌ଗଣ ପରିଚୟ ପାଇଲେ ଯେ, ନେପଚୁନ୍ ସୂର୍ଯ୍ୟର ଅଷ୍ଟମ ଅଙ୍ଗଜ । ନେପ୍‌ଚୁନ୍ ୨୮୧୬୦୦୦୦୦ ମାଇଲ ଦୂରରେ ଥାଇ ମଧ ସୂର୍ଯ୍ୟର ବଶ୍ୟତା ସ୍ୱୀକାର କରୁଅଛି । ନେପ୍‌ଚୁନ୍‌କୁ ଆପଣା ପରିବାର ମଧରେ ପାଇ ସୁଦ୍ଧା ଜ୍ୟୋର୍ତିବିତ୍‌ଗଣ ତୃପ୍ତ ହେଲେ ନାହିଁ । କୁଟୁମ୍ବ ଅନ୍ୱେଷଣରେ ତତ୍ପର ରହିଲେ । ୮୪ ବର୍ଷ କାଳ ଖୋଜି ଖୋଜି ଏ ବର୍ଷ ଜଣେ କୁଟୁମ୍ବର ଦେଖା ପାଇଲେ । ପରିବାରବୃଦ୍ଧିରେ କାହାର ଆନନ୍ଦ ନ ହୁଏ ? ଜ୍ୟୋତିର୍ବିତ୍‌ଗଣ ଆଜି ପ୍ରେମୋତ୍‌ଫୁଲ୍ଲ, ଅଦୃଶ୍ୟ ବ୍ୟକ୍ତିକୁ ପାଇଅଛନ୍ତି । ମାତ୍ର ନାମକରଣ କରି ନାହାନ୍ତି । ବର୍ତ୍ତମାନ ସୌରରାଜ୍ୟର ବିସ୍ତୃତି ୮୦୦୦୦୦୦୦୦୦ ମାଇଲ୍ ପର୍ଯ୍ୟନ୍ତ । ନବାବିଷ୍କୃତ ଗ୍ରହଟି ପୃଥିବୀ ଅପେକ୍ଷା ବଡ଼, କିନ୍ତୁ ୟୁରେନ୍ସ ଅପେକ୍ଷା ଛୋଟ । ଆଉ ଗୋଟିଏ ଯୋଡ଼ିଏ ଯେ ଆବିଷ୍କାର ନୋହିବ ଏହା କିଏ କହିପାରେ ? ସତ୍ୟର ଜୟ ହେଉ ମାତ୍ର ଧର୍ମମତ ଓ ପ୍ରଭୁତ୍ୱ ଏ ସାରୋକ୍ତିର ପକ୍ଷପାତୀ ନ ଥିଲେ ବୋଲି ମନେ ହୁଏ, ଉଭୟେ ପରସ୍ପର ସମ୍ବନ୍ଧ, ଉଭୟେ ବିପ୍ଳବବିରୋଧୀ । ବିପ୍ଳବକରି ସତ୍ୟର ଉଦ୍ଧାର ହୁଏ ନାହିଁ; ଏଣୁ ଚିରକାଳ ସତ୍ୟ

ବାଧାପ୍ରାପ୍ତ, ଏହା ଅସ୍ୱୀକାର୍ଯ୍ୟ ନୁହେଁ । ଗାଲିଲିଓଙ୍କର ନିର୍ଯାତନ ତାହାର ପ୍ରକୃଷ୍ଟ ଉଦାହରଣ । ଅଧିକ ପ୍ରମାଣରେ ପ୍ରୟୋଜନ କ'ଣ ?

ସୃଷ୍ଟିରହସ୍ୟ କିଏ ବା ହୃଦୟଙ୍ଗମ କରିପାରିଅଛି ? ବା କରିପାରିବ ? ତଥାପି ଧର୍ମପୁସ୍ତକମାନେ ଅନନ୍ତ ବ୍ରହ୍ମାଣ୍ଡଟାକୁ— ମଏ ସୃଷ୍ଟିକର୍ତ୍ତାର ହସ୍ତସ୍ଥିତ ଖଡ଼ିଗୋଟାକି କଳନା କଲାଭଳି କଳନା କରିସାରିଥିବା କଥା ଧର୍ମଶାସ୍ତ୍ରରେ ଲେଖାଯାଇଅଛନ୍ତି । ଲୋକେ ତାହା ଅଭ୍ରାନ୍ତ ବୋଲି ବିଶ୍ୱାସ କରୁଅଛନ୍ତି । ଧର୍ମଶାସ୍ତ୍ରର ଉକ୍ତିକୁ ଭ୍ରାନ୍ତି ବୋଲି ଦେଖାଇଦେଲେ ଏବଂ ପ୍ରମାଣ କରିଦେଲେ ମଧ ଲୋକେ ତତ୍‌ସମ୍ବନ୍ଧୀୟ ଉଦାସୀନ । ସୁତରାଂ ସ୍ୱାଧୀନ ଗବେଷଣାର ବଡ଼ ଅଭାବ ।

ଲୋକେ ଯେବେ ଭ୍ରାନ୍ତ ଧର୍ମଶାସ୍ତ୍ରମତକୁ ନ ମାନି ଏବଂ ଧର୍ମଯାଜକ ଓ ଶାସକଗଣଙ୍କ ଆଦେଶକୁ ଓ ଦଣ୍ଡକୁ ଗ୍ରାହ୍ୟ ନ କରି ସତ ଉଦ୍ଘାଟନରେ ବ୍ରତୀ ହୋଇଥାଆନ୍ତେ, ତାହା ହେଲେ ବିଜ୍ଞାନଶାସ୍ତ୍ରର ଅଧିକ ଉନ୍ନତି ହୋଇ ନ ଥାନ୍ତା କି ?

ଗାଲିଲିଓଙ୍କୁ ଦଣ୍ଡ ଦିଆଗଲା କାହିଁକି ? ଧର୍ମଯାଜକ ଓ ଶାସନକର୍ତ୍ତାଙ୍କ ନିକଟରେ କି ସୃଷ୍ଟିକର୍ତ୍ତା ନାଲିଶ୍ କରିଥିଲେ ? ତତ୍ତ୍ୱ ଅନୁସନ୍ଧାନ ହିଁ ପରମ ସତ୍ୟର ଆରାଧନା । ତେବେ ସତ୍ୟାନୁସରଣକାରୀ ପ୍ରତି ଶାସକ ଓ ଧର୍ମଯାଜକଗଣଙ୍କର ଅତ୍ୟାଚାର ଓ ନିର୍ଯାତନ କାହିଁକି ? କାରଣ ଅଛି । ଧର୍ମନୀତି ଓ ଦଣ୍ଡନୀତିର ଆଧିପତ୍ୟ ବଜାର ରଖିବା ନିମନ୍ତେ ପାର୍ଥିବ ନୀତି ଅପେକ୍ଷା ଗୋଟାଏ ଉନ୍ନତତର କଠୋରତର ନୀତି ଆବଶ୍ୟକ । ତା'ର ନାମ ସ୍ୱର୍ଗୀୟ ନୀତି । ଆଧିପତ୍ୟର ବେଡ଼ା ଅତିକ୍ରମ କରିବାର କାହାରି ଅଧିକାର ନାହିଁ । ପାର୍ଥିବ ଆଧିପତ୍ୟକୁ ଅଗ୍ରାହ୍ୟ କଲେ ସ୍ୱର୍ଗୀୟ ଆଧିପତ୍ୟର ବେଡ଼ାରେ ପଡ଼ିବ । ଏଠାରେ ଯେପରି ଦୋଷର ଦଣ୍ଡ ଅଛି ଏବଂ ଗୁଣର ପୁରସ୍କାର ଅଛି, ସେପରି ସ୍ୱର୍ଗରେ ମଧ ଦଣ୍ଡ ଓ ପୁରସ୍କାର ଅଛି । ଏଠାରେ ଶାସକଗଣ ଓ ଧର୍ମଯାଜକଗଣ ଦୋଷଗୁଣର ବିଚାରକର୍ତ୍ତା । ସ୍ୱର୍ଗରେ ଦୋଷଗୁଣର ବିଚାରକର୍ତ୍ତା ଈଶ୍ୱର । ଈଶ୍ୱର ଗୋଟାଏ ଅତି ପ୍ରକାଣ୍ଡ ବିଚାରକର୍ତ୍ତା ଭିନ୍ନ କିଛି ନୁହନ୍ତି । ଶାସନକର୍ତ୍ତା ଓ ଧର୍ମଯାଜକଗଣ ତାଙ୍କୁ ଗଢ଼ିଅଛନ୍ତି । ଆଉ ଲୋକେ ମାନିବାକୁ ବାଧ ।

ଗାଲିଲିଓ ସବୁଠାରୁ ବଡ଼ ଶାସନକର୍ତ୍ତାର କଥା (ବାଇବେଲ୍‌ର କଥା) ଅଗ୍ରାହ୍ୟ କଲେ, ସ୍ୱାଧୀନ ମତ ପ୍ରକାଶ କଲେ । ପାର୍ଥିବ ଶାସନକର୍ତ୍ତା ଓ ଧର୍ମଯାଜକ ତାହା ସହିବେ କିପରି ? ବଡ଼ ଶାସନକର୍ତ୍ତାର ମାନ ବଜାଏ ରଖିବାକୁ ଗାଲିଲିଓଙ୍କୁ ଜେଲକୁ ଠେଲିଦେଲେ ।

ପରମ ସତ୍ୟ ସମସ୍ତଙ୍କର, ମାତ୍ର ଧର୍ମଶାସ୍ତ୍ରବର୍ଣ୍ଣିତ ପ୍ରଭୁ କେବଳ କ୍ଷମତାସମ୍ପନ୍ନ ଓ ଅଧିକାରପ୍ରାପ୍ତ ବ୍ୟକ୍ତିର ବୋଲି ମନେ ହୁଏ ।

ଭାଗବତ ମନୁଷ୍ୟକୁ ଦାସାନୁଦାସକାରୀ ବୈଷ୍ଣବଧର୍ମର ଉପଦେଶ ଦେଇଥିଲେ ସୁଦ୍ଧା ଗୋଟିଏ ପଦ ଲେଖି ଯାଇଅଛନ୍ତି, ଯାହା ଅନ୍ୟ କୌଣସି ଧର୍ମଗ୍ରନ୍ଥରେ ଦେଖାଯାଏ ନାହିଁ । ତାହା ଏହା— 'ସତ୍ୟଂ ପରଂ ଧୀମହି' । ପରମ ସତ୍ୟକୁ ଧାନ କରୁଁ । ଯେଉଁମାନେ ଜଗତର କିଛିହିଁ ଉପକାର କରିଅଛନ୍ତି, ଯେଉଁମାନେ କିଛିହିଁ ସତ୍ୟ ଆବିଷ୍କାର କରିଅଛନ୍ତି, ସେମାନେ ନିଶ୍ଚୟ ବିପ୍ଳବବାଦୀ, ମାତ୍ର ସତ୍ୟର ଅନୁସନ୍ଧାନକାରୀ । ସେମାନେ ଜୟଯୁକ୍ତ ହେଉନ୍ତୁ ।

''ସତ୍ୟ ପରଂ ଧୀମହି ।''

•

## ଧ୍ରୁବ

ଧ୍ରୁବ ଚରିତ୍ରଟି ଅତି ଉପାଦେୟ । ଏଥିରେ ଜ୍ଞାତବ୍ୟ ଓ ଶିକ୍ଷଣୀୟ ବିଷୟ ଅନେକ ଅଛି । ପୁରାଣମାନଙ୍କରେ ଧ୍ରୁବ ଚରିତ୍ରର ଉଲ୍ଲେଖ ଦେଖାଯାଏ । ଏହାଛଡ଼ା ଏ ଦେଶର ନାନା ଭାଷାରେ ଧ୍ରୁବ ଚରିତ୍ର ରଚିତ ହୋଇଅଛି । ଏ ଉପାଖ୍ୟାନଟି ଏ ଦେଶର ସର୍ବସାଧାରଣଙ୍କୁ ଜଣା ଅଛି ବୋଇଲେ ଅତ୍ୟୁକ୍ତି ନୁହେଁ ।

ସ୍ୱାୟମ୍ଭୁବ ମନୁଙ୍କର ଉତ୍ତାନପାଦ ନାମରେ ଜଣେ ପୁତ୍ର ଥିଲେ । ତାହାଙ୍କର ସୁନୀତି ଓ ସୁରୁଚି ନାମରେ ଦୁଇ ଜଣ ମହିଷୀ ଥିଲେ । ସୁନୀତି ଅପେକ୍ଷା ସୁରୁଚି ଉତ୍ତାନପାଦଙ୍କର ଅତି ପ୍ରିୟ ଥିଲେ । ବହୁବିବାହର କୁଫଳ ଏ କାଳରେ ଯେପରି ଘଟିଥାଏ, ପୂର୍ବ କାଳରେ ମଧ ସେହିପରି ଘଟୁଥିଲା । ମନୁପୁତ୍ର ହେଲେ ମଧ ଅବିମୃଶ୍ୟକାରିତାର ଫଳ ଭୋଗ କରିବାର କଥା, ତାହାହିଁ ଘଟିଲା । ପ୍ରିୟତମା ପତ୍ନୀ ସୁରୁଚିଙ୍କର ରୁଚି ବିକାର ଘଟିଲା । ଉତ୍ତାନପାଦଙ୍କର ନାମାନୁସାରେ ତାଙ୍କର ବୁଦ୍ଧି । ସୁରୁଚିଙ୍କର ପ୍ରରୋଚନାରେ ଉତ୍ତାନପାଦ ସୁନୀତିଙ୍କୁ ଗୃହରୁ ନିର୍ବାସିତା କଲେ । ସୁରୁଚି ଓ ଉତ୍ତାନପାଦ ସୁଖସ୍ୱଚ୍ଛନ୍ଦରେ ରାଜପ୍ରାସାଦରେ ରହିଲେ । ସୁନୀତି ହରଣ ଦ୍ୱାରା ଅରଣ୍ୟରେ କୁଟୀର ନିର୍ମାଣ କରି ଫଳମୂଳ ଖାଇ ଜୀବନ ଯାତ୍ରା ନିର୍ବାହ କଲେ ।

ମୃଗୟାବିନୋଦୀ ଉତ୍ତାନପାଦ ଦିନେ ଘଟଣା କ୍ରମେ ସୁନୀତିଙ୍କର କୁଟୀରରେ ଉପସ୍ଥିତ ହୋଇ ଆତିଥ୍ୟ ଗ୍ରହଣ କଲେ ଏବଂ ରାତ୍ରି ଯାପନ କଲେ । ଏଥି ଉତ୍ତାରୁ ସୁନୀତିଙ୍କ ଗର୍ଭରେ ଉତ୍ତାନପାଦଙ୍କର ଔରସ ପୁତ୍ର ଧ୍ରୁବଙ୍କର ଜନ୍ମ । ସୁରୁଚିଙ୍କର ଗର୍ଭଜାତ ପୁତ୍ରର ନାମ ଉତ୍ତମ । ଧ୍ରୁବ ମାତୃକୋଳରେ ବଢ଼ିଲେ । ପାଞ୍ଚ ବର୍ଷ ବୟସରେ ସେ ଦିନେ ପିତାଙ୍କ ନିକଟକୁ ଯାଇ ତାଙ୍କ କ୍ରୋଡ଼ରେ ବସିବାକୁ ଇଚ୍ଛାକଲେ । ଉତ୍ତାନପାଦ ସୁରୁଚିଙ୍କ ଭୟରେ ଭୀତ; ଏଣୁ ପୁତ୍ରକୁ କ୍ରୋଡ଼ରେ ସ୍ଥାନ ଦେଲେ ନାହିଁ । ଇତି ମଧରେ ସୁରୁଚି ଉପସ୍ଥିତ ହୋଇ ଧ୍ରୁବକୁ ତିରସ୍କାର କଲେ ଏବଂ କହିଲେ, ''ତୁମେ ଅନ୍ୟ ସ୍ତ୍ରୀ ଗର୍ଭସମ୍ଭୂତ ହୋଇ ମୋ ପୁତ୍ରର ଉଚ୍ଚାସନ ଆକାଂକ୍ଷା କରୁଅଛ ?'' ଏତାଦୃଶ କର୍କଶ ବାକ୍ୟ ଶ୍ରବଣକରି ଧ୍ରୁବ ପିତୃକ୍ରୋଡ଼ାରୋହଣ ଇଚ୍ଛା ପରିତ୍ୟାଗପୂର୍ବକ ବିଷଣ୍ଣ ବଦନରେ ମା'ଙ୍କ ସମୀପରେ ଉପସ୍ଥିତ ହେଲେ ଏବଂ ସମସ୍ତ ବୃତ୍ତାନ୍ତ ସୁନୀତିଙ୍କ ନିକଟରେ ପ୍ରକାଶ କଲେ । ସୁନୀତି ସାନ୍ତ୍ୱନା ଦେଇ କହିଲେ, ''ପୁତ୍ର, ତୁ ଭାଗ୍ୟହୀନାର ଗର୍ଭରେ ଜନ୍ମ ହୋଇଥିବା ହେତୁ ଭାଗ୍ୟହୀନ । ତୋ ଭାଗ୍ୟରେ ରାଜାସନ ମିଳିବା ସମ୍ଭବ ନୁହେଁ । ଯେବେ ବିମାତାର ଉକ୍ତିରେ ତୋର ମନସ୍ତାପ ଅସହ୍ୟ ହେଉଅଛି, ତେବେ ପୁଣ୍ୟୋପରିଚୟରେ ଯତ୍ନବାନ୍ ହୁଅ ।

ସୁଶୀଳୋ ଭବ ଧର୍ମାତ୍ମା ମୈତ୍ରଃ ପ୍ରାଣିହିତେରତଃ
ନିମ୍ନଂ ଯଥାପଃ ପ୍ରବଣାଃପାତ୍ରମାୟାନ୍ତି ସମ୍ପଦଃ ॥''

ଧ୍ରୁବ ମାତାଙ୍କର ଏତାଦୃଶ ସୁଲଳିତ ଉପଦେଶ ଶ୍ରବଣ କରି କହିଲେ, ''ମା ! ପିତା ତାଙ୍କର ରାଜାସନ ଉତ୍ତମଙ୍କୁ ଦାନ କରନ୍ତୁ, ସେଥିରେ ମୋର ଚିନ୍ତା ନାହିଁ; ମାତ୍ର ମୁଁ ଏପରି ସ୍ଥାନ ପାଇବାକୁ ଯତ୍ନଶୀଳ ହେବି, ଯେଉଁ ଆସନ କି ମୋର ପିତାଙ୍କ ଭାଗ୍ୟରେ ମଧ ଘଟି ନାହିଁ ।'' ଏହା କହି ଧ୍ରୁବ ମାତୃସମୀପରୁ ବିଦାୟ ଗ୍ରହଣପୂର୍ବକ ନିବିଡ଼ ବନରେ ପ୍ରବେଶ କଲେ ଏବଂ ସେଠାରେ ସାତ ଜଣ ଋଷିଙ୍କୁ ଦେଖିବାକୁ ପାଇଲେ । ଋଷିମାନଙ୍କ ପ୍ରଶ୍ନାନୁସାରେ ଧ୍ରୁବ ସେମାନଙ୍କ ନିକଟରେ ନିଜ ବକ୍ତବ୍ୟ ପ୍ରକାଶ କଲେ ଏବଂ ଉଚ୍ଚାସନ ପାଇବା ନିମନ୍ତେ ଯେ ତପସ୍ୟାର ପ୍ରୟୋଜନ, ତାହା ଉପଦେଶ ଦେବାକୁ ସେମାନଙ୍କୁ ଅନୁରୋଧ କଲେ । ଏହି ଋଷିମାନଙ୍କର ନାମ ପୁଲହ, ପୁଲସ୍ତ୍ୟ, ଅଙ୍ଗିରା, ମରୀଚି, ଅତ୍ରି, ବଶିଷ୍ଠ ଓ କ୍ରତୁ । ଏହି ଋଷିମାନେ ଏକବାକ୍ୟରେ ବିଷ୍ଣୁ ଆରାଧନା କରିବାକୁ ଉପଦେଶ ଦେଲେ ଏବଂ କହିଲେ, ''ତୁମ୍ଭ ପିତାମହ ଯେଉଁ ମନ୍ତ୍ର ଜପକରି ଭଗବାନ୍‌ଙ୍କୁ ତୁଷ୍ଟ କଲେ, ସେହି ମନ୍ତ୍ର ଏହି—

''ହିରଣ୍ୟଗର୍ଭ ପୁରୁଷ ପ୍ରଧାନାବ୍ୟକ୍ତରୂପିଣେ
ଓଁ ନମୋ ବାସୁଦେବାୟ ଶୁଦ୍ଧଜ୍ଞାନସ୍ୱଭାବିନେ ।''

ଧ୍ରୁବ ଋଷିମାନଙ୍କଠାରୁ ଉକ୍ତ ମନ୍ତ୍ରୋପଦେଶ ପାଇ ତପସ୍ୟାଚରଣ କରିବାକୁ ଯମୁନାତଟସ୍ଥ ମଧୁବନକୁ ଗମନ କଲେ । ଏହି ବନରେ ମଧୁ ରାକ୍ଷସ ତପସ୍ୟା କରିଥିବା ହେତୁ ଏହାର ନାମ ମଧୁବନ । ଏଠାରେ ମଧୁପୁତ୍ର ଲବଣକୁ ଶତ୍ରୁଘ୍ନ ବଧ କରି ପୁରୀ ନିର୍ମାଣପୂର୍ବକ ମଥୁରା ନାମ ଦେଇଥିଲେ । ଏହି ପୁଣ୍ୟତୀର୍ଥରେ ଧ୍ରୁବ ତପସ୍ୟା କଲେ ।

ଧ୍ରୁବଙ୍କର ତପସ୍ୟା ଦେଖି ଦେବତାମାନେ ବ୍ୟଥିତ ହେଲେ । ଦେବତା ନାମ ବହିଥିଲେ ସୁଦ୍ଧା ପରଶ୍ରୀକାତରତା ଇନ୍ଦ୍ରାଦିଙ୍କର ଧର୍ମ । ଇନ୍ଦ୍ର ଭାବିଲେ, ଧ୍ରୁବ ଇନ୍ଦ୍ରତ୍ୱ ନେବ; ବରୁଣ ଭାବିଲେ, ଜଳାଧିପତି ନେବ, ଇତ୍ୟାଦି । ଏଣୁ ଦେବତାମାନେ ଏକତ୍ର ହୋଇ ଭଗବାନ୍‌ଙ୍କ ପାଖକୁ ଗଲେ ଏବଂ ଧ୍ରୁବଙ୍କ ତପସ୍ୟା କଥା ଜଣାଇଲେ । ଭଗବାନ୍ କହିଲେ, ''ଧ୍ରୁବ ତୁମ୍ଭମାନଙ୍କର ପ୍ରଭୁତ୍ୱ ନେବାକୁ ତପସ୍ୟା କରୁ ନାହିଁ । ସେ ଯେଉଁ ପ୍ରାର୍ଥନା କରୁଅଛି, ତାହା ମୁଁ ଜାଣେ, ତା'ର ପ୍ରାର୍ଥନା ପୂରଣ କରିବି । ତୁମ୍ଭେମାନେ ମନରେ ଦମ୍ଭ ଧରି ସ୍ୱ ସ୍ୱ ସ୍ଥାନକୁ ଗମନ କର ।

ବିଷ୍ଣୁ ଧ୍ରୁବ ସନ୍ନିଧାନରେ ଉପସ୍ଥିତ ହୋଇ ବର ଦେବାକୁ ଇଚ୍ଛା କଲେ । ଧ୍ରୁବ କହିଲେ, ''ପ୍ରଭୁ ! ମୁଁ ସ୍ଥାନାଭିଳାଷୀ ହୋଇ ତପସ୍ୟା କରୁଥିଲି । କାଚ ଖୋଜୁଥିଲି, ରତ୍ନ ପାଇଲି, ତୁମ୍ଭଙ୍କୁ ପାଇଲି, ଆଉ ବରରେ ମୋର ଲୋଡ଼ା ନାହିଁ ।'' ବିଷ୍ଣୁ କହିଲେ, ''ହେ ଧ୍ରୁବ ! ମୁଁ ତୁମ୍ଭଙ୍କୁ ସବୁଠାରୁ ଉଚ୍ଚସ୍ଥାନ ଦେଲି, ଯାହାକି ତ୍ରୈଲୋକ୍ୟ ଅପେକ୍ଷା ମଧ ଉଚ୍ଚ । ତୁମ୍ଭେ ସମସ୍ତ ଗ୍ରହ ଓ ତାରାମାନଙ୍କର ଆଶ୍ରୟ ହୋଇ ରହିବ । ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି ଓ ସମସ୍ତ ନକ୍ଷତ୍ର, ସପ୍ତର୍ଷି ଏବଂ ବୈମାନିକ ଦେବତାମାନଙ୍କ ଉପରେ ମୁଁ ତୁମ୍ଭର ସ୍ଥାନ ନିର୍ଦ୍ଦେଶ କରିଅଛି । ଦେବତାମାନଙ୍କ ମଧରୁ କେହି ଚାରି ଯୁଗ, କେହି ବା ମନ୍ୱନ୍ତର ଭୋଗ କରନ୍ତି । ମାତ୍ର ତୁମ୍ଭର ସ୍ଥିତି ଏବଂ କଳ୍ପ ସ୍ଥିର କରିଅଛି । ଅତି ନିର୍ମଳଚରିତ୍ରା ତୁମ୍ଭର ମାତା ସୁନୀତି ତାରକା ହୋଇ ତାବତ୍‌କାଳ ଆକାଶରେ ତୁମ୍ଭ ନିକଟରେ ରହିବେ ।''

ଧ୍ରୁବ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲାରୁ ଉତ୍ତାନପାଦ ତାହାଙ୍କୁ ରାଜ୍ୟ ସମର୍ପଣ କରି ତପସ୍ୟାଚରଣ କରିବାପାଇଁ ବନକୁ ଗଲେ । ଧ୍ରୁବ ପିତୃରାଜ୍ୟରେ ୩୬ ହଜାର ବର୍ଷ ରାଜତ୍ୱ କଲେ ।

ଧ୍ରୁବଙ୍କର ଦୁଇ ପତ୍ନୀ— ଶିଶୁମାରତନୟା ଭ୍ରମି ଓ ବାୟୁତନୟା ଇଳା । ଭ୍ରମି ଗର୍ଭରୁ କଳ୍ପ ଓ ବତ୍ସର ନାମକ ଦୁଇ ପୁତ୍ରଙ୍କର ଜନ୍ମ । ଇଳା ଗର୍ଭରୁ ଗୋଟିଏ ପରମା ସୁନ୍ଦରୀ କନ୍ୟା ଓ ଉତ୍କଳ ନାମକ ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ଏହି ଉତ୍କଳଙ୍କ ନାମାନୁସାରେ ଆମ ଦେଶର ନାମକରଣ ହୋଇଥିଲେ ଆମ ଦେଶର ପ୍ରାଚୀନତ୍ୱ ଓ ମହତ୍ତ୍ୱ କମ୍ ନୁହେଁ ।

ଏହା ହିଁ ପୁରାଣଲିଖିତ ସଂକ୍ଷିପ୍ତ ଧ୍ରୁବ ଉପାଖ୍ୟାନ ।

ବର୍ତ୍ତମାନ ଜିଜ୍ଞାସ୍ୟ ଏହି ଯେ— ଉତ୍ତାନପାଦ ପୁତ୍ରଙ୍କ ବାସ ନିମନ୍ତେ ଧ୍ରୁବଲୋକର ସୃଷ୍ଟି, ନା ଧ୍ରୁବଲୋକ ବା ଧ୍ରୁବତାରା ବିଦ୍ୟମାନ ଥିଲା, ସେଠାରେ ଉତ୍ତାନପାଦଙ୍କ ପୁତ୍ରକୁ ସ୍ଥାନ ଦିଆଗଲା ? ଏହା ଛଡ଼ା ଏହି ଉପାଖ୍ୟାନରେ ଜ୍ୟୋତିଃଶାସ୍ତ୍ରୀୟ କେତେକ ତତ୍ତ୍ୱ ଓ ଅନ୍ୟାନ୍ୟ ଜ୍ଞାତବ୍ୟ ବିଷୟ ଗୁପ୍ତ ରହିଅଛି । ତାହାର କିଞ୍ଚିତ୍ ଆଲୋଚନା କରାଯାଉ । ଆଶା କରାଯାଏ, ଆଲୋଚିତ ବିଷୟ ଧ୍ରୁବଚରିତର ତୁଳନାରେ ତାହା ଅପ୍ରୀତିକର ହେବ ନାହିଁ ।

ଉତ୍ତାନପାଦ ପୁତ୍ରଙ୍କର ନାମ ଧ୍ରୁବ । ଏହାଛଡ଼ା ଧ୍ରୁବ ଶବ୍ଦର ଆଉ କେତେ ଗୁଡ଼ିଏ ଅର୍ଥ ଅଛି :— ଯଥା— ସ୍ଥିର, କେନ୍ଦ୍ର, ମେଢ଼ି, ଭୂଗୋଳର ମଧ୍ୟ ସ୍ଥାନ ବା କେନ୍ଦ୍ର ଇତ୍ୟାଦି ।

ଲୋକଙ୍କର ଧାରଣା ଏହି ଯେ, ଧ୍ରୁବଙ୍କର ତପସ୍ୟାରେ ପ୍ରୀତି ହୋଇ ବିଷ୍ଣୁ ଭକ୍ତର ବାସ ନିମନ୍ତେ ଏହି ନକ୍ଷତ୍ର ଲୋକଟି ସୃଷ୍ଟି କଲେ । ସେହି ଲୋକ ବିଶ୍ୱାସ ଅନୁସାରେ ସୃଷ୍ଟିକର୍ତ୍ତାଙ୍କଠାରେ ଅସାଧାରଣ ସୃଷ୍ଟିକରଣଯୋଗ୍ୟ କ୍ଷମତା ଋଷିମାନଙ୍କଦ୍ୱାରା ଅର୍ପିତ ହୋଇଥିଲେ ସୁଦ୍ଧା ସେ କ୍ଷମତାଟା ବିଧିବଦ୍ଧ । ବାଇବେଲ୍ ଅନୁସାରେ ଈଶ୍ୱର ତାଙ୍କର ଔରସ ପୁତ୍ର ଯୀଶୁଙ୍କୁ ମେରିଙ୍କ ଗର୍ଭରୁ ଜନ୍ମ କରାଇଲେ, ମାତ୍ର ଏକମାସରେ ବା ଏକଦିନରେ ନୁହେଁ, କିନ୍ତୁ ଦଶ ମାସରେ ଈଶ୍ୱର ଏତାଦୃଶ ନିଜ ପୁତ୍ରକୁ ଜନ୍ମ କରାଇବାର ବ୍ୟବସ୍ଥା ଆମ ଦେଶରେ ନାହିଁ । ଆମ ଦେଶରେ ଅବତାର ହୁଅନ୍ତି । ଯେଉଁମାନେ ଈଶ୍ୱର ରୂପରେ ଅବତୀର୍ଣ୍ଣ ବୋଲି ପ୍ରଖ୍ୟାତି ଲାଭ କରିଅଛନ୍ତି, ସେମାନେ ମଧ୍ୟ ମାତୃଗର୍ଭରେ ଦଶମାସ ଥିଲେ । ଭଗବାନ୍ ଗୋଟାଏ ନକ୍ଷତ୍ର ବା ଗ୍ରହ ସୃଷ୍ଟି କଲେ ମଧ୍ୟ ସୃଷ୍ଟି ପ୍ରକ୍ରିୟା ଅବଶ୍ୟ ପାଳନ କରିଥିବେ । ଅନ୍ୟାନ୍ୟ ନକ୍ଷତ୍ର ପରି ଧ୍ରୁବ ନକ୍ଷତ୍ର ମଧ୍ୟ ଗୋଟିଏ ସୂର୍ଯ୍ୟ— ପ୍ରକାଣ୍ଡ ସୂର୍ଯ୍ୟ— ଆମ ସୂର୍ଯ୍ୟଠାରୁ ଅନେକ ବଡ଼ । ଭଗବାନ୍‌ଙ୍କର ସୂର୍ଯ୍ୟ ଗଢ଼ିବାର କ୍ଷମତା ଥାଉ ପଛକେ ସେ ସୂର୍ଯ୍ୟ ଗଢ଼ିଲେ; ଗଢ଼ିଲା ସୂର୍ଯ୍ୟଟି ଅନ୍ୟାନ୍ୟ ସୂର୍ଯ୍ୟପରି ବଢ଼ିବ ଓ ଛିଡ଼ିବ । ଆମ୍ଭେମାନେ ଦେଖିପାରିଅଛୁଁ ଯେ, ଧ୍ରୁବ ନକ୍ଷତ୍ର ଅଦ୍ୟାପି ସୂର୍ଯ୍ୟ ରୂପରେ ବିଦ୍ୟମାନ ଅଛି— ବାସଯୋଗ୍ୟ ହୋଇ ନାହିଁ; କୋଟି କୋଟି ବର୍ଷ ପରେ ବାସଯୋଗ୍ୟ ହେବ କି ନା କିଏ କହିପାରେ ? ଉପାଖ୍ୟାନରୁ ସ୍ପଷ୍ଟ ଜଣାଯାଏ ଯେ ଧ୍ରୁବ ତ୍ରେତା ଯୁଗର ଲୋକ, ଯେ ହେତୁ ସେ ଶ୍ରୀରାମଭ୍ରାତା ଶତ୍ରୁଘ୍ନ ନିର୍ମିତ ମଥୁରାପୁରୀ ନିକଟସ୍ଥ ମଧୁବନରେ ତପସ୍ୟା କରି ବିଷ୍ଣୁଙ୍କଠାରୁ ବର ପାଇଥିଲେ ।

ଯେଉଁ ନକ୍ଷତ୍ର ଅଦ୍ୟାପି ଜ୍ୱଳନ୍ତ ତରଳ ଧାତୁପିଣ୍ଡ, ସେ ତ୍ରେତାଯୁଗ ଆଡ଼କୁ ବାସଯୋଗ୍ୟ ହୋଇଥିବା ଅସମ୍ଭବ । ସୁତରାଂ ଅନାୟାସରେ ମତ ଦିଆଯାଇପାରେ ଯେ, ଏ ନକ୍ଷତ୍ରଟି ଉତ୍ତାନପାଦଙ୍କ ପୁତ୍ର ନିମନ୍ତେ ତ୍ରେତା ଯୁଗରେ ଭଗବାନ୍ ସୃଷ୍ଟି କରି ନ ଥିଲେ । ଧ୍ରୁବ ଉପାଖ୍ୟାନ ରଚନାର ବହୁ କୋଟି ବର୍ଷ ପୂର୍ବରୁ ଧ୍ରୁବତାରା ବର୍ତ୍ତମାନଠାରୁ ବଳି ଜାଜ୍ୱଲ୍ୟମାନ ରୂପରେ ବିଦ୍ୟମାନ ଥିଲା । ମାତ୍ର ଏହା ନିଶ୍ଚିତ ଯେ ଏହି ତାରା ପୂର୍ବେ ଧ୍ରୁବ ଆଖ୍ୟା ପାଇ ନ ଥିଲା । ଏ ବିଷୟ ପରେ ଆଲୋଚ୍ୟ ।

ବିଷ୍ଣୁ କହିଲେ, ''ହେ ଧ୍ରୁବ ! ମୁଁ ତୁମ୍ଭ ନିମନ୍ତେ ସମସ୍ତ ନକ୍ଷତ୍ର, ସପ୍ତର୍ଷି ଓ ବୈମାନିକ ଦେବତାମାନଙ୍କ ଉପରେ ସ୍ଥାନ ନିର୍ଦ୍ଦେଶ କରିଅଛି ।'' ପୌରାଣିକ ଯୁଗରେ ବିଷ୍ଣୁଙ୍କ ମୁଖରେ ଏତାଦୃଶ ବାକ୍ୟ ଶୋଭନୀୟ ଓ ସତ୍ୟ ହୋଇପାରିଥିବ, ମାତ୍ର ବର୍ତ୍ତମାନ ବୈଜ୍ଞାନିକ ଯୁଗରେ ଅର୍ଥାତ୍ ଟେଲିସ୍କୋପ୍ ଓ ସ୍ପେକଟ୍ରସ୍‌କୋପ୍ ଯୁଗରେ ବିଷ୍ଣୁଙ୍କର ଏ କଥାକୁ ବୈଜ୍ଞାନିକମାନେ ମିଥ୍ୟା କଥା ବୋଲିବାକୁ ତିଳେମାତ୍ର ଦ୍ୱିଧା ବୋଧ କରିବେ କି ? ପୃଥିବୀଠାରୁ ଧ୍ରୁବ ତାରାର ସ୍ଥାନ କାଳ୍ପନିକ ବୈମାନିକ ଦେବତାମାନଙ୍କ ଉପରେ ହୋଇପାରେ ଏବଂ ଅଳ୍ପସଂଖ୍ୟକ ନକ୍ଷତ୍ରଙ୍କ ଉପରେ ହୋଇପାରେ । ମାତ୍ର ସମସ୍ତ ନକ୍ଷତ୍ରଙ୍କ ଉପରେ ଧ୍ରୁବର ସ୍ଥାନ ବୋଲିବା ବଡ଼ ଭ୍ରମ, ଯେହେତୁ ଧ୍ରୁବ ତାରାର ଦୂରତା ୪୬.୫ ଆଲୋକ ବର୍ଷ ମାତ୍ର, ଅଧିକସଂଖ୍ୟକ ତାରାଙ୍କର ଦୂରତା ଏହାଠାରୁ ଅନେକ ବେଶି, ପୁଣି ଆକାଶରେ ବହୁସଂଖ୍ୟକ ତାରା ଏତେ ଉର୍ଦ୍ଧ୍ୱରେ ଅଛନ୍ତି ଯେ, ସେମାନଙ୍କର ଆଲୋକ ଆମ ପୃଥିବୀରେ ପହଞ୍ଚିବାକୁ ଲକ୍ଷବର୍ଷ ଲାଗେ ବା ତହିଁରୁ ବଳି ମଧ୍ୟ ଉର୍ଦ୍ଧ୍ୱରେ ତାରା ଅଛନ୍ତି, ସେମାନଙ୍କ ଆଲୋକ ଦେଢ଼ ଲକ୍ଷ ବର୍ଷରେ ଏଠାରେ ପହଞ୍ଚେ, ତାହା କହିବ କିଏ ?

ଭୂଗୋଳକର ଦୁଇ ଗୋଟି ପ୍ରାନ୍ତ ଅଛି; ଉତ୍ତର ପ୍ରାନ୍ତ ଓ ଦକ୍ଷିଣ ପ୍ରାନ୍ତ, ଉତ୍ତର କେନ୍ଦ୍ର ଓ ଦକ୍ଷିଣ କେନ୍ଦ୍ର, ସୁମେରୁ ଓ କୁମେରୁ । ସେହି ପ୍ରକାର ଭୂଗୋଳକର କେନ୍ଦ୍ର ମଧ୍ୟ ନିର୍ଦ୍ଧାରଣ କରାଯାଇଅଛି । ପୃଥିବୀର ଉଭୟ ମେରୁଦେଇ ଆକାଶ ଆଡ଼କୁ

ବର୍ଦ୍ଧିତ ସରଳ ରେଖାର ନାମ ଧ୍ରୁବ ଯଷ୍ଟି । ଏହି ଧ୍ରୁବ ଯଷ୍ଟିର କାଳ୍ପନିକ ପ୍ରାନ୍ତବିନ୍ଦୁର ନାମ ଧ୍ରୁବ ବା ଭୂଗୋଳର କେନ୍ଦ୍ର । ଯଦି ଏହି ଧ୍ରୁବଯଷ୍ଟିର ଉପରେ ବା ନିକଟରେ କୌଣସି ତାରା ରହେ, ତାହାକୁ ଧ୍ରୁବତାରା ବୋଲାଯାଏ । ଉତ୍ତର କେନ୍ଦ୍ରରେ ଥିବା ତାରାର ନାମ ସୌମ୍ୟ ଧ୍ରୁବତାରା ଏବଂ ଦକ୍ଷିଣ କେନ୍ଦ୍ରରେ ଥିବା ତାରାର ନାମ ଯାମ୍ୟ ଧ୍ରୁବତାରା ।

ସୌମ୍ୟଧ୍ରୁବ ବା ଉତ୍ତର କେନ୍ଦ୍ରର ଧ୍ରୁବକୁ ଅନେକ ଚିହ୍ନନ୍ତି, ଏହା ଗୋଟିଏ ଦ୍ୱିତୀୟ ଶ୍ରେଣୀର ନକ୍ଷତ୍ର । ଏହି ନକ୍ଷତ୍ର ସମ୍ବନ୍ଧରେ ପୁରାଣରେ ବିସ୍ତାର ବର୍ଣ୍ଣନା ଅଛି ଓ ଉପାଖ୍ୟାନର ମଧ୍ୟ ସୃଷ୍ଟି ହୋଇଅଛି । ଦକ୍ଷିଣ ଆକାଶ ସମ୍ବନ୍ଧରେ ପୌରାଣିକମାନେ ଏକପ୍ରକାର ନୀରବ ବୋଇଲେ ଚଳେ । ଯାମ୍ୟ ବା ଦକ୍ଷିଣ ଧ୍ରୁବଟି ଗୋଟିଏ ଅତି କ୍ଷୁଦ୍ର ନକ୍ଷତ୍ର । ଯାମ୍ୟ ଧ୍ରୁବ ଯଷ୍ଟି ଓ ଧ୍ରୁବ ସମ୍ବନ୍ଧରେ ଆମ୍ଭମାନଙ୍କର ଆଲୋଚ୍ୟ ବିଷୟ କିଛି ନାହିଁ । କେବଳ ସୌମ୍ୟ ଧ୍ରୁବର ବିଷୟ ଏଠାରେ ଆଲୋଚ୍ୟ ଅଟେ ।

ପୃଥିବୀରେ ଉତ୍ତର କେନ୍ଦ୍ର ବା ଧ୍ରୁବଯଷ୍ଟି ଆକାଶରେ ଗୋଟିଏ ବୃତ୍ତ ଅଙ୍କନ କରେ । ଏହି ବୃତ୍ତଟି ପୂର୍ଣ୍ଣ ହେବାକୁ ୨୨୯୦୦ ବର୍ଷ ଲାଗେ । ଏହି ପରିଧିରେ ବା ପରିଧି ନିକଟରେ ଯେବେ କୌଣସି ତାରା ଥାଏ, ତେବେ ତାହା ଧ୍ରୁବତାରା ବୋଲି ପରିଚିତ ହୁଏ । ଯେଉଁ ତାରାଟି ଧ୍ରୁବ ଯଷ୍ଟିର ପ୍ରାନ୍ତରେ ପଡ଼େ, ତାହା ଅଚଳ ହୁଏ; ଧ୍ରୁବଯଷ୍ଟିର ନିକଟରେ ରହିଲେ ଗୋଟିଏ କ୍ଷୁଦ୍ର ବୃତ୍ତରେ ଭ୍ରମଣ କରେ । ଆମର ଧ୍ରୁବତାରା ଠିକ୍ ଧ୍ରୁବଯଷ୍ଟିରେ ପଡ଼ି ନାହିଁ, ଏଣୁ ଗୋଟିଏ କ୍ଷୁଦ୍ରବୃତ୍ତ ପଥରେ ଭ୍ରମଣ କରେ । ତାହା କେବଳ ଟେଲିସ୍କୋପ୍ କିମ୍ବା ଶଙ୍କୁ ଦ୍ୱାରା ଜଣାଯାଏ, ସାଧାରଣ ଦୃଷ୍ଟିରେ ଜଣାଯାଏ ନାହିଁ । ଧ୍ରୁବଯଷ୍ଟି ଏହି ନକ୍ଷତ୍ରକୁ ପହଞ୍ଚିବାକୁ ପ୍ରାୟ ୩୦୦ ବର୍ଷ ଲାଗେ ଅର୍ଥାତ୍ ଆମ୍ଭେମାନେ ଯାହାକୁ ବର୍ତ୍ତମାନ ଧ୍ରୁବତାରା ବୋଲି କହୁଅଛୁଁ, ତାହା ଆଉ ୩୦୦ ବର୍ଷରେ ସୌମ୍ୟ ଧ୍ରୁବତାରା ହେବ । ଆଜିଠାରୁ ୨୦୦୦ ବର୍ଷ ପୂର୍ବେ ବର୍ତ୍ତମାନ ଧ୍ରୁବତାରାଟି ଏଡ଼େ ବୃହତ୍ ପରିଧିରେ ଭ୍ରମଣ କରୁଥିଲା ଯେ, ତାହାକୁ କେହି ହେଲେ ସେ ସମୟରେ ଧ୍ରୁବତାରା ବୋଲି କହିବା ସମ୍ଭବ ନୁହେଁ । କୌଣସି ତାରା ସ୍ଥିର ହୋଇ ଏକ କଳ୍ପ କାଳ ବା ୪୩୨୦୦୦୦୦୦୦ ବର୍ଷ ରହିବା ତେଣେ ଥାଉ, ୧୦୦୦ ବର୍ଷରେ ସଚଳ ଥିବାର ଜଣାପଡ଼ିବ । ବର୍ତ୍ତମାନ ଧ୍ରୁବତାରାଟି ତ ୨୦୦୦ ବର୍ଷ ପୂର୍ବେ ଆଜିକାଲି ପରି ସ୍ଥିର ନ ଥିଲା, ତେବେ ପୁରାଣ ଲେଖକମାନେ କେଉଁ ଧ୍ରୁବ ତାରାକୁ ଲକ୍ଷ୍ୟ କରି ଏତେ ପୁରାଣ ଲେଖିଗଲେ— ଏହା ବିବେଚନାର ବିଷୟ ।

ଗଣନାଦ୍ୱାରା ସ୍ଥିରୀକୃତ ହୋଇଅଛି ଯେ, ଧ୍ରୁବ ଯଷ୍ଟି ଅର୍ଥାତ୍ ପରିଧିରେଖା ନିକଟରେ ବା ରେଖା ଉପରେ ଯେ କେତୋଟି ଦୃଶ୍ୟମାନ ତାରା ଅଛନ୍ତି, ସେମାନଙ୍କ ମଧ୍ୟରୁ କେତୋଟି ତାରା ଧ୍ରୁବତାରା ହୋଇଅଛନ୍ତି, କେତୋଟି ପୁଣି ଭବିଷ୍ୟତରେ ଧ୍ରୁବତାରା ହେବେ । ଆଜିଠାରୁ ୪୦୦୦ ବର୍ଷ ପୂର୍ବେ Alpha Draconis ବା Thuban (କେହି କେହି ଏହାକୁ ଯମତାରା ନାମ ଦିଅନ୍ତି) ଧ୍ରୁବତାରା ହୋଇଥିଲା । ଏହି ତାରାଟି ଧ୍ରୁବତାରା ହୋଇଥିଲା ବେଳେ ଇଜିପଟ୍ ଦେଶର ପ୍ରଧାନ ପିରାମିଡ୍ ନିର୍ମିତ ହୋଇଥିଲା । ଏହି ଧ୍ରୁବତାରାକୁ ଦେଖିବା ନିମନ୍ତେ ପିରାମିଡ୍‌ର ପାର୍ଶ୍ୱ ଦେଶରେ ଗୋଟିଏ ସୁଡ଼ଙ୍ଗ ତିଆରି ହୋଇଥିଲା, ଯେଉଁ ସୁଡ଼ଙ୍ଗ ପଥରେ Thuban ଧ୍ରୁବନକ୍ଷତ୍ରକୁ ଦିନରେ ଓ ରାତ୍ରିରେ ଅନାୟାସରେ ଦେଖା ଯାଇପାରୁଥିଲା । ପୁଣି ପ୍ରାୟ ୫୦୦୦ ବର୍ଷ ପରେ Alpha Cepheus ଧ୍ରୁବତାରା ହେବ । ଆଜିଠାରୁ ପ୍ରାୟ ୧୩୦୦୦ ବର୍ଷ ପରେ ଅତି ଉଜ୍ଜ୍ୱଳ Vega ନକ୍ଷତ୍ର ଧ୍ରୁବତାରା ହେବ । ତହିଁ ଉତ୍ତାରୁ ଧ୍ରୁବସ୍ଥାନ ଶୋଭିତ କରିବାକୁ କୌଣସି ତାରା ନାହାନ୍ତି ।

Alpha Draconis ୪୦୦୦ ବର୍ଷ ପୂର୍ବେ ଧ୍ରୁବ ହୋଇଥିଲା । Alpha ursa minor ବର୍ତ୍ତମାନ ଧ୍ରୁବତାରା । Bita Cepheus ୨୨୬୦୦ ବର୍ଷରେ ଧ୍ରୁବତାରା ହୋଇଥିଲା । ଏହି ତିନି ଗୋଟି ତାରାମଧ୍ୟରୁ କେଉଁ ତାରାଟି ପୁରାଣବର୍ଣ୍ଣିତ ଧ୍ରୁବତାରା ଏବଂ ଉକ୍ତ ଧ୍ରୁବଙ୍କର ବାସସ୍ଥାନ ?

ପ୍ରାଚୀନତ୍ୱ ରକ୍ଷା ହିଁ ଆମ ଦେଶବାସୀଙ୍କର ଇଚ୍ଛା; ଏଣୁ ଅନେକଙ୍କ ମତ ଯେ ଯେତେ ଅତୀତରେ ଏହି ଧ୍ରୁବବ୍ୟାପାର ସଂଘଟିତ ହୋଇଥିବାର ସ୍ଥିର ହୁଏ, ତେତେ ଭଲ । ଯୁକ୍ତି ଓ ପ୍ରମାଣ ଉପରେ ଯେଉଁମାନଙ୍କର ଆସ୍ଥା, ସେମାନେ ତତ୍ତ୍ୱନିର୍ଦ୍ଧାରଣର ପକ୍ଷପାତୀ । ଏଣୁ ଯୁକ୍ତି ଓ ପ୍ରମାଣଦ୍ୱାରା ଏଥିର ତତ୍ତ୍ୱ ନିର୍ଦ୍ଧାରଣ ନିମନ୍ତେ ଚେଷ୍ଟା କରାଯାଉ ।

ଧ୍ରୁବଙ୍କର ନାମ, ଉତ୍ତାନପାଦଙ୍କ ନାମ, ଏମନ୍ତ କି ସ୍ୱାୟମ୍ଭୁବ ମନୁଙ୍କ ନାମ ମଧ୍ୟ ଋଗ୍‌ବେଦରେ ଓ ବୈଦିକ ଗ୍ରନ୍ଥରେ ଦେଖାଯାଏ ନାହିଁ ।

କେତେକ ପୁରାଣରେ ଧ୍ରୁବଚରିତ୍ର ବିଶଦଭାବରେ ବର୍ଣ୍ଣିତ ହୋଇଅଛି । ପୁରାଣ ପାଠରୁ ଜଣାଯାଏ ଯେ, ଧ୍ରୁବ ସହିତ ସପ୍ତର୍ଷି ବା ପୁଲହ, ପୁଲସ୍ତ୍ୟ, ଅଙ୍ଗିରା, ମରୀଚି, ଅତ୍ରି,

ବଶିଷ୍ଠ, କ୍ରତୁଙ୍କର ଚିର ସମ୍ବନ୍ଧ । ସପ୍ତର୍ଷି ମଣ୍ଡଳଟି ଅଧିକାଂଶ ଲୋକଙ୍କର ପରିଚିତ, କାରଣ ଏତେଗୁଡ଼ିଏ ଜାଜ୍ୱଲ୍ୟମାନ ବଡ଼ ନକ୍ଷତ୍ର ଉତ୍ତର ଆକାଶରେ ନାହାନ୍ତି । ଏହି ଉଜ୍ଜ୍ୱଳ ସାତଗୋଟି ନକ୍ଷତ୍ର ଉପର୍ଯ୍ୟୁକ୍ତ ସାତ ଜଣ ଋଷିଙ୍କ ନାମରେ ପରିଚିତ । ଏହି ସପ୍ତର୍ଷିମଣ୍ଡଳ ଧ୍ରୁବ ନକ୍ଷତ୍ରକୁ ପ୍ରଦକ୍ଷିଣ କରନ୍ତି ବୋଲି ଅନେକ ପୁରାଣରେ ଓ ରାମାୟଣରେ ଲେଖାଅଛି; କାଳିଦାସାଦି କବିମାନେ ମଧ ନିଜ ନିଜ କାବ୍ୟମାନଙ୍କରେ ଲେଖି ଯାଇଅଛନ୍ତି । ଧ୍ରୁବକୁ ସପ୍ତର୍ଷି ପ୍ରଦକ୍ଷିଣ କରୁଥିବାର ପୁରାଣ ରଚକମାନେ ଦେଖିଅଛନ୍ତି, କବିମାନେ ଦେଖିଅଛନ୍ତି, ଆମ୍ଭେମାନେ ମଧ ଦେଖୁଥାଇଁ । ଯେ କୌଣସି ନକ୍ଷତ୍ର ଧ୍ରୁବରେଖାକୁ ଆସି ଧ୍ରୁବ ନକ୍ଷତ୍ର ହେଲା ମାତ୍ରକେ ସପ୍ତର୍ଷିଗଣ ସେହି ନକ୍ଷତ୍ରକୁ ପ୍ରଦକ୍ଷିଣ କରନ୍ତି କି ?

ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ, ତିନି ଗୋଟି ନକ୍ଷତ୍ର ଧ୍ରୁବ ନକ୍ଷତ୍ର ହୋଇଅଛନ୍ତି, ପ୍ରତ୍ୟେକଙ୍କୁ ସପ୍ତର୍ଷି ପ୍ରଦକ୍ଷିଣ କରିଅଛନ୍ତି କି ?

ଲେଖିବାର ବାହୁଲ୍ୟ ଯେ, ବର୍ତ୍ତମାନ ଧ୍ରୁବ ତାରାକୁ ସପ୍ତର୍ଷି ପ୍ରଦକ୍ଷିଣ କରୁଅଛନ୍ତି, ଏହା ସମସ୍ତଙ୍କର ଦୃଷ୍ଟିଗୋଚର ହେଉଅଛି ।

Thuban ଧ୍ରୁବତାରା ଥିଲାବେଳେ ମଧ ସପ୍ତର୍ଷିମଣ୍ଡଳ ଯେ ତାକୁ ପ୍ରଦକ୍ଷିଣ କରୁଥିଲା, ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ସପ୍ତର୍ଷି ବର୍ତ୍ତମାନ ଧ୍ରୁବତାରା ଅପେକ୍ଷା ଥୁବାନର ନିକଟବର୍ତ୍ତୀ ଥିବାର ସ୍ପଷ୍ଟ ଜଣା ପଡ଼ିବ ।

ଏଲ୍‌ଫା ସିଫିଅସ୍ ଧ୍ରୁବତାରା ଥିଲାବେଳେ ତାକୁ ସପ୍ତର୍ଷି ପ୍ରଦକ୍ଷିଣ କରୁ ନ ଥିଲେ । କାରଣ ସପ୍ତର୍ଷିମଣ୍ଡଳ ସେହି ନକ୍ଷତ୍ରଠାରୁ ବହୁ ଦୂରରେ ଅବସ୍ଥିତ; ଏମନ୍ତ କି ସେତେବେଳେ ସପ୍ତର୍ଷିର ଉଦୟ ଅସ୍ତ ଘଟୁଥିଲା । ସୁତରାଂ ପୁରାଣଲେଖକମାନଙ୍କର ବର୍ଣ୍ଣିତ ଧ୍ରୁବ ଏ ତାରା ନୁହେଁ, ଏହା ନିଶ୍ଚିତ ରୂପରେ କୁହାଯାଇପାରେ ।

ବର୍ତ୍ତମାନ ବିଚାର୍ଯ୍ୟ ଯେ, Polaris Alpha Draconis ପୁରାଣର ଧ୍ରୁବତାରା ।

ସପ୍ତର୍ଷିଙ୍କଠାରୁ ୧୩୦୦୦୦୦ ଯୋଜନ ଅନ୍ତରରେ ବିଷ୍ଣୁଙ୍କର ପରମସ୍ଥାନ । ଏହିଠାରେ

''ତାରାମୟଂ ଭଗବତଃ ଶିଶୁମାରାକୃତି ପ୍ରଭୋ
ଦିବି ରୂପଂ ହରେ ର୍ଯତ୍ତୁ ତସ୍ୟ ପୁଚ୍ଛେ ସ୍ଥିତୋ ଧ୍ରୁବଃ ।
(ବିଷ୍ଣୁପୁରାଣ, ୯ମ ଅଧ୍ୟାୟ)

ତାରାମୟ ଶିଶୁମାରାକୃତି ଭଗବାନ୍‌ଙ୍କର ପୁଚ୍ଛରେ ଧ୍ରୁବ ବିଦ୍ୟମାନ ।

ଏହା ବର୍ଣ୍ଣନାରୁ ଆମ୍ଭେମାନେ ଶିଶୁମାର ଓ ଧ୍ରୁବକୁ ସ୍ପଷ୍ଟରୂପେ ଚିହ୍ନିତ କରିପାରିଲୁଁ ନାହିଁ; ଯେହେତୁ ଏଥିର ଚିତ୍ର ନାହିଁ ଏବଂ କେଉଁ କେଉଁ ନକ୍ଷତ୍ର ଶିଶୁମାରର ଅବୟବମାନଙ୍କରେ ସନ୍ନିବେଶିତ ତାହା ଜଣାଯାଉ ନାହିଁ । କେବଳ ଏତିକି ଜାଣିଲୁଁ ଯେ, ଧ୍ରୁବ ଶିଶୁମାର ପୁଚ୍ଛରେ । Draconis ଶିଶୁମାର ହୋଇପାରେ କିମ୍ବା Ursa Minor ଶିଶୁମାର ହୋଇପାରେ । ପାଶ୍ଚାତ୍ୟମାନେ ପ୍ରଥମୋକ୍ତକୁ ସର୍ପରୂପରେ ଏବଂ ଶେଷୋକ୍ତକୁ ଭଲ୍ଲୁକରୂପରେ ଦେଖୁଥିଲେ । ଆମ ଦେଶର ପ୍ରାଚୀନମାନେ ଏଥିରୁ ଗୋଟିକୁ ଶିଶୁମାର ରୂପରେ କଳ୍ପନା କରିଥିବାର ଆଶ୍ଚର୍ଯ୍ୟ କ'ଣ ? ତେବେ ପ୍ରଥମୋକ୍ତଟି କି ଶେଷୋକ୍ତଟି ଶିଶୁମାର ହେବା ସମ୍ଭବ, ତାହା ଆମ୍ଭମାନଙ୍କର ବିଚାର୍ଯ୍ୟ । ଏହା ଦେଖାଯାଏ ଯେ, Draconis (ସର୍ପ)ର ପୁଚ୍ଛାଗ୍ରରେ ଧ୍ରୁବତାରା ନ ଥିଲା— ପୁଚ୍ଛମୂଳରେ ଥିଲା; କିନ୍ତୁ Ursa Minor (କ୍ଷୁଦ୍ର ଭଲ୍ଲୁକ)ର ଠିକ୍ ପୁଚ୍ଛାଗ୍ରରେ ଧ୍ରୁବତାରା ଅଛି ।

ଏହି ଶିଶୁମାରର ସାଧାରଣ ଓ ବିରାଟ ରୂପର ବର୍ଣ୍ଣନା ଅଛି ।

ସାଧାରଣ ରୂପରେ ଚତୁର୍ଦ୍ଦଶ ତାରାର ନାମ ଅଛି । ଅଙ୍ଗର ନାନାସ୍ଥାନରେ ଦଶ ଗୋଟି, ପୁଚ୍ଛରେ ଚାରି ଗୋଟି, ଯଥା—ଅଗ୍ନି, ମହେନ୍ଦ୍ର, କଶ୍ୟପ ଓ ଧ୍ରୁବ । ଏ ଚାରି ଗୋଟି କେବେ ଅସ୍ତମିତ ହୁଅନ୍ତି ନାହିଁ । Ursa Minor ର ଅବୟବରେ ଚତୁର୍ଦ୍ଦଶଟି ଛୋଟ ବଡ଼ ତାରକା ଅବଶ୍ୟ ଅଛନ୍ତି; ମାତ୍ର ସେଥି ମଧ୍ୟରୁ ସାତ ଗୋଟି ସ୍ପଷ୍ଟ ଦେଖାଯାନ୍ତି । ସେଥିମଧ୍ୟରୁ ଚାରି ଗୋଟି ପୁଚ୍ଛରେ ଏବଂ ଏହି ପୁଚ୍ଛର ଶେଷ ନକ୍ଷତ୍ରଟି ଧ୍ରୁବ । ଏହି ବର୍ଣ୍ଣନା ଅନୁସାରେ ଆମ୍ଭେମାନେ Ursa Minor ଠାରେ Draconis ଅପେକ୍ଷା ଶିଶୁମାରର ଅଧିକ ଲକ୍ଷଣ ବିଦ୍ୟମାନ ଥିବାର ଅନୁମାନ କରିପାରୁଁ ।

ଶିଶୁମାରର ବିରାଟ ରୂପର ବର୍ଣ୍ଣନା ଏ ସ୍ଥଳରେ ଅନାବଶ୍ୟକ ।

ଭାଗବତ ଏକ ସ୍ଥାନରେ ଲେଖିଲେ— ଶିଶୁମାର କୁଣ୍ଡଳାକାର ହୋଇ ରହିଅଛନ୍ତି । ତାଙ୍କର ପୁଚ୍ଛଦେଶରେ ଧ୍ରୁବ । Draconis ଦୀର୍ଘ ସ୍ଥାନବ୍ୟାପୀ ସର୍ପାକାରରେ ରହି ଅଛି । Ursa Minor ମଧ ମଣ୍ଡଳାକାରରେ ନାହିଁ କହିଲେ ଚଳେ ।

ଭାଗବତ ପୁଣି ଏକସ୍ଥାନରେ ଲେଖିଲେ ଯେ, ଋଷିମାନଙ୍କର ଯେ ସ୍ଥାନ ନିର୍ଣ୍ଣୟ ହୋଇଅଛି; ସେହିଠାରୁ ୧୩୦୦୦୦୦ ଯୋଜନ ଅନ୍ତରରେ ବିଷ୍ଣୁଙ୍କର ପରମସ୍ଥାନ । ସେଠାରେ ଉତ୍ତାନପାଦ ପୁତ୍ର ପରମଭାଗବତ ଧ୍ରୁବ— ଅଗ୍ନି, ଇନ୍ଦ୍ର, ପ୍ରଜାପତି, କାଶ୍ୟପ ଓ ଧର୍ମ ଏକ ସମୟରେ ନକ୍ଷତ୍ର ହୋଇଥିଲେ— ସେମାନଙ୍କ କର୍ତ୍ତୃକ ବର୍ତ୍ତମାନ ପ୍ରଦକ୍ଷିଣୀକୃତ ହୋଇ ଏବଂ କଳ୍ପଜୀବୀମାନଙ୍କର ଆଜୀବ୍ୟ ହୋଇ ଭଗବାନ୍‌ଙ୍କର ଉପାସନା କରୁଅଛନ୍ତି ।

ଅନିମିଷ ଅବ୍ୟକ୍ତ ବେଗବିଶିଷ୍ଟ କାଳର ଗତିକ୍ରମେ ଯେ ସମସ୍ତ ଗ୍ରହନକ୍ଷତ୍ରାଦି ଜ୍ୟୋତିର୍ଗଣ ନିରନ୍ତର ଗଗନମଣ୍ଡଳରେ ପରିଭ୍ରମଣ କରୁଅଛନ୍ତି, ସେମାନଙ୍କର ଅବଲମ୍ବନ ନିମନ୍ତେ ପରମେଶ୍ୱର ଏହି ଧ୍ରୁବତାରାକୁ ସ୍ତମ୍ଭ ରୂପେ ସୃଷ୍ଟି କରିଅଛନ୍ତି ।

ଯେପରି ଧାନ୍ୟାକ୍ରମଣାର୍ଥ ମେଧୀସ୍ତମ୍ଭରେ ବଦ୍ଧ ବଳୀବର୍ଦ୍ଧଗଣ ତ୍ରିସବନ ଅର୍ଥାତ୍ ନିକଟ, ମଧ ଓ ଦୂରତା କ୍ରମେ ସ୍ୱ ସ୍ୱ ସ୍ଥାନ ଅତିକ୍ରମ କରି ମଣ୍ଡଳବେଷ୍ଟନପୂର୍ବକ ଭ୍ରମଣ କରନ୍ତି, ସେହିପରି ଗ୍ରହନକ୍ଷତ୍ରଗଣ ଏହି କାଳଚକ୍ରର ଅଭ୍ୟନ୍ତରରେ ଓ ବାହାରେ ଆବଦ୍ଧ ହୋଇ ଧ୍ରୁବକୁ ଅବଲମ୍ବନ କରିଅଛନ୍ତି ଏବଂ ବାୟୁଦ୍ୱାରା ବିଚାଳିତ ହୋଇ କଳ୍ପାନ୍ତ ପର୍ଯ୍ୟନ୍ତ ଚତୁର୍ଦ୍ଦିଗରେ ପରିଭ୍ରମଣ କରୁଅଛନ୍ତି ।

ଅଗ୍ନି, ଇନ୍ଦ୍ର, ପ୍ରଜାପତି, କାଶ୍ୟପ ଏବଂ ଧର୍ମ ଧ୍ରୁବକୁ ପ୍ରଦକ୍ଷିଣ କରୁଅଛନ୍ତି; ମାତ୍ର ଭାଗବତରେ ଏମାନଙ୍କର ସ୍ଥାନ ନିର୍ଦ୍ଦେଶ ନାହିଁ; ସୁତରାଂ ସମସ୍ତଙ୍କର ପରିଚୟ ପାଇବାର ଉପାୟ ନାହିଁ ।

ବିଷ୍ଣୁପୁରାଣ କହିଲେ— ଅଗ୍ନି, ମହେନ୍ଦ୍ର, କଶ୍ୟପ, ପୁଚ୍ଛରେ ଅଛନ୍ତି । ବିଷ୍ଣୁପୁରାଣ ମତରେ ଧର୍ମ ମୂର୍ଦ୍ଧାରେ, ମାତ୍ର ପ୍ରଜାପତିଙ୍କ କୌଣସି ଅଙ୍ଗରେ ନ୍ୟାସ କରି ନାହାନ୍ତି ।

Draconis ସର୍ପାକାର, ତା'ର ପାଦ ନାହିଁ । ପୁରାଣରେ ଶିଶୁମାରର ଚାରି ପାଦର ବର୍ଣ୍ଣନା ଅଛି । ପୂର୍ବ ଦୁଇ ପାଦରେ ଅଶ୍ୱିନୀଦ୍ୱୟ ଏବଂ ପଛ ଦୁଇ ପାଦରେ ବରୁଣ ଓ ଅର୍ଯମା । ଶିଶୁମାର ଗୋଧାକାର । ଏଣୁ ଚାରି ଗୋଟି ପାଦ ଥାଏ । Ursa Minor (କ୍ଷୁଦ୍ର ଭଲ୍ଲୁକ) ର ପାଦ ଅଛି, ସୁତରାଂ Ursa Minor ଶିଶୁମାର ହେବା ସମ୍ଭବ ।

ଶିଶୁମାରର ପୁଚ୍ଛାଗ୍ରରେ ଧ୍ରୁବ ମେଧୀଭୂତ ହୋଇ ରହିବା ହେତୁ ଶିଶୁମାରର ସମସ୍ତ ଅଙ୍ଗ ବସ୍ତୁତଃ ଅଙ୍ଗରେ ନ୍ୟସ୍ତ ଥିବା ତାରକାମାନେ ଧ୍ରୁବକୁ ପ୍ରଦକ୍ଷିଣ କରୁଅଛନ୍ତି, ବୋଲାଯିବ । ମାତ୍ର ଭାଗବତର ପ୍ରଜାପତି ବିଷ୍ଣୁପୁରାଣରେ ନାହିଁ ଅଥଚ Auriga ନକ୍ଷତ୍ରମଣ୍ଡଳର ଚତୁର୍ଥ ତାରା Delta Auriga ପ୍ରଜାପତି ବୋଲି ସିଦ୍ଧାନ୍ତ ଶାସ୍ତ୍ରଦ୍ୱାରା ଚିହ୍ନିତ ହୋଇଅଛି ଏବଂ ଏହି ତାରାଟି Polaris (ବର୍ତ୍ତମାନ ଧ୍ରୁବ)କୁ ପ୍ରଦକ୍ଷିଣ କରେ । Thuban ଠାରୁ ପ୍ରଜାପତି ବହୁ ଦୂରରେ । ଏଣୁ Thuban ଧ୍ରୁବ ଥିଲାବେଳେ ତାକୁ ପ୍ରଦକ୍ଷିଣ କରୁ ନ ଥିଲା ।

Cassiopeia କାଶ୍ୟପୀୟମଣ୍ଡଳୀ ବୋଲି ସ୍ଥିର ହୋଇଅଛି ଏବଂ ଏହି ନକ୍ଷତ୍ରମଣ୍ଡଳ ଧ୍ରୁବକୁ ପ୍ରଦକ୍ଷିଣ କରେ; କିନ୍ତୁ Thuban ଠାରୁ ବହୁ ଦୂରରେ ଥିବାରୁ Thuban କୁ ପ୍ରଦକ୍ଷିଣ କରୁ ନ ଥିଲା ।

ଉପରିଲିଖିତ ସମସ୍ତ କାରଣରୁ Ursa Minor (କ୍ଷୁଦ୍ର ଭଲ୍ଲୁକ)ର ପୁଚ୍ଛରେ ଥିବା ନକ୍ଷତ୍ରଟି ପୌରାଣିକ ଧ୍ରୁବତାରା ବା ଧ୍ରୁବଲୋକ ବୋଲି ନିଃସନ୍ଦେହରେ କୁହାଯାଇପାରେ ।

ଅତି ପ୍ରାଚୀନକାଳରେ ଧ୍ରୁବ ସମ୍ବନ୍ଧରେ ଆମ ଦେଶରେ ଗବେଷଣା ହୋଇଥିବାର ଜଣାଯାଏ ନାହିଁ । ଏଣୁ ବୈଦିକଗ୍ରନ୍ଥରେ ଏଥିର ଉଲ୍ଲେଖ ନାହିଁ । ଏହାର ଆଲୋଚନା ପୁରାଣଯୁଗରେ ଆରମ୍ଭ । ଧ୍ରୁବତାରାଟି କ୍ଷୁଦ୍ରରୁ କ୍ଷୁଦ୍ରତର ପରିଧିରେ ଭ୍ରମଣ କରିବା ଦିନରୁ ଏ ବିଷୟର ଗବେଷଣା ଚାଲିଅଛି— ଆନୁମାନିକ ଦୁଇ ହଜାର ବର୍ଷ ।

''ଶରଦ୍ୱସନ୍ତୟୋର୍ମଧ୍ୟେ ବିଷୁବତ୍ତୁ ବିଭାବ୍ୟତେ ।
ତୁଳା ମେଷ ଗତେ ଭାନୌ ସମ ରାତ୍ରି ଦିନଂ ତୁ ତତ୍ ।
କର୍କଟାବସ୍ଥିତେ ଭାନୌ ଦକ୍ଷିଣାୟନମୁଚ୍ୟତେ
ଉତ୍ତରାୟଣମପ୍ୟୁକ୍ତଂ ମକରସ୍ଥେ ଦିବାକରେ ।''

ବିଷ୍ଣୁ ପୁରାଣ ଲେଖିଲେ— ଶରତ୍ ବସନ୍ତରେ ବିଷୁବ ସଂକ୍ରାନ୍ତି ହୁଏ । ସୂର୍ଯ୍ୟ ତୁଳାରାଶି ଓ ମେଷରାଶିକୁ ଗମନ କଲେ ସମଦିବାରାତ୍ରି ହୁଏ । କର୍କଟରେ ଦକ୍ଷିଣାୟନ, ମକରରେ ଉତ୍ତରାୟଣ । ଅଦ୍ୟାପି ଆମ୍ଭେମାନେ ଏହି ନିୟମରେ ସଂକ୍ରାନ୍ତି ପାଳନ କରୁଅଛୁଁ; କିନ୍ତୁ ପ୍ରକୃତ ପକ୍ଷରେ ମୀନ କନ୍ୟାରେ ସମରାତ୍ରିଦିବା, ମିଥୁନରେ ଦକ୍ଷିଣାୟନ ଏବଂ ଧନୁରେ ଉତ୍ତରାୟଣ । ଏହି ଗଣନା ଅନୁସାରେ ଦେଖିବାକୁ ଗଲେ ମୂଳଗ୍ରନ୍ଥ ରଚନା ବେଳେ ଧ୍ରୁବ ନିଶ୍ଚଳ ହୋଇ ନ ଥିଲା; ମାତ୍ର ଗୋଟିଏ କ୍ଷୁଦ୍ର ପରିଧିରେ ଭ୍ରମଣ କରୁଥିଲା ।

ଏଣୁ ମତ୍ସ୍ୟପୁରାଣ ଲେଖିଅଛନ୍ତି ଯେ;—

''ସୈଷଭ୍ରମନ୍ ଭ୍ରାମୟତି ଚନ୍ଦ୍ରାଦିତ୍ୟଗ୍ରହୈଃ ସହ
ଭ୍ରମନ୍ତି ମନୁସର୍ପନ୍ତି ନକ୍ଷତ୍ରାଣି ଚ ଚକ୍ରବତ୍ ।''

ଧ୍ରୁବ ଭ୍ରମଣ କରୁ କରୁ ଚନ୍ଦ୍ର ସୂର୍ଯ୍ୟ ଗ୍ରହ ନକ୍ଷତ୍ରଙ୍କୁ ଭ୍ରମଣ କରାଉଅଛି । ନକ୍ଷତ୍ରମାନେ ଚକ୍ରବତ୍ ଗତି କରୁଅଛନ୍ତି ଓ ଭ୍ରମଣ କରୁଅଛନ୍ତି ।

ଭାଗବତ ଧ୍ରୁବଙ୍କୁ ମେଧାସ୍ତମ୍ଭ ସହିତ ତୁଳନା କରିଅଛନ୍ତି; ସୁତରାଂ ନିଶ୍ଚଳାବସ୍ଥାର ବର୍ଣ୍ଣନା ବୋଲାଯିବ। ଏଥିରୁ ଅନୁମାନ କରିବା ଅସଙ୍ଗତ ନୁହେଁ ଯେ, ମତ୍ସ୍ୟପୁରାଣ ଅପେକ୍ଷା ଭାଗବତର ଲେଖା ପର କାଳର ।

ଉପସଂହାରରେ ପ୍ରକାଶ କରାଯାଇପାରେ ଯେ, ଏକ ବିଷୟକୁ ପୁରାଣଲେଖକମାନେ ବିଭିନ୍ନ ଛାଞ୍ଚରେ ଗଢ଼ିଅଛନ୍ତି । ଜଣ ଜଣକର ଲେଖା ପାଣ୍ଡିତ୍ୟପୂର୍ଣ୍ଣ ହେତୁ ପ୍ରକୃତ ବିଷୟକୁ ପ୍ରଚ୍ଛନ୍ନ ରଖିଅଛି— ତତ୍ତ୍ୱ ଉଦ୍ଧାର କରିବାରେ ଅନ୍ତରାୟ ଘଟାଉଅଛି ।

Alpha Draconis ୪୦୦୦ ବର୍ଷ ପୂର୍ବେ ଧ୍ରୁବତାରା ହୋଇଥିଲା; ମାତ୍ର ତା'ର ନିଦର୍ଶନ ଆମ ଦେଶରେ ନାହିଁ । କୌଣସି ପୁରାଣ ଏ ସମ୍ବନ୍ଧରେ ଲେଖିଯାଇ ନାହାନ୍ତି । ବୈଦିକ ଯୁଗରେ ଏହା ଅବଶ୍ୟ ଘଟିଥିଲା; ମାତ୍ର ବେଦ ଏ ସମ୍ବନ୍ଧରେ ନିର୍ବେଦ । ବର୍ତ୍ତମାନ ଧ୍ରୁବର କଥା ବହୁଳ ଭାବରେ ବୈଷ୍ଣବ ପୌରାଣିକଗଣ ଲେଖି ଯାଇଅଛନ୍ତି । ଏହା ନିଶ୍ଚିତ ଯେ, ଧ୍ରୁବ ବୈଦିକଯୁଗର ଲୋକ ନୁହନ୍ତି । ଅବଶ୍ୟ ଧ୍ରୁବନାମକ ପରମଭାଗବତ ଲୋକପ୍ରିୟ ବ୍ୟକ୍ତି ଜଣେ ଥିଲେ— କେବେ ଥିଲେ ତା'ର ନିଶ୍ଚୟତା ନାହିଁ । ତାଙ୍କ ନିମନ୍ତେ ଧ୍ରୁବଲୋକନିର୍ମିତ ହୋଇଥିବା କଥା ଅଳୀକ ଥିବାର କାରଣ ବିସ୍ତାରଭାବରେ ଆଗରେ ଲେଖାଯାଇଅଛି ।

ଏତାଦୃଶ ଉପାଖ୍ୟାନର ସୃଷ୍ଟି ହେଲା କିପରି ? ପୂର୍ବକାଳର ଲୋକମାନେ ବୀରପୂଜକ ଥିଲେ । ପରୋପକାରୀ, ସ୍ୱାର୍ଥତ୍ୟାଗୀ ବ୍ୟକ୍ତିମାନଙ୍କୁ, ବୀରମାନଙ୍କୁ, ଭକ୍ତମାନଙ୍କୁ ସେମାନେ ଶ୍ରଦ୍ଧା ଓ ଭକ୍ତି କରୁଥିଲେ— ସେମାନଙ୍କ ଗୁଣର ଆରାଧନା କରୁଥିଲେ । ଏ ହେତୁ ଅତିଶୟ ଗୁଣବାନ୍ ବ୍ୟକ୍ତିଙ୍କୁ ନକ୍ଷତ୍ର ଲୋକରେ ସ୍ଥାନ ଦେଉଥିଲେ । ସେମାନଙ୍କୁ ନକ୍ଷତ୍ରରେ ପରିଣତ କଲେ ସର୍ବଦା ଲୋକଲୋଚନରେ ପଡ଼ିବେ । ଲୋକେ ଆକାଶକୁ ଦୃଷ୍ଟି ଦେଲାମାତ୍ରେ ସେମାନଙ୍କ ଗୁଣ ସ୍ମରଣ କରି ଧନ୍ୟ ହେବେ— ଏହି ଉଦ୍ଦେଶ୍ୟରେ ଏତାଦୃଶ ଉପାଖ୍ୟାନର ସୃଷ୍ଟି । ଆମ ଦେଶରେ କେବଳ ନୁହେଁ; ଅନ୍ୟ ଦେଶରେ ମଧ ଏହା ଥିଲା । ନକ୍ଷତ୍ର ସମ୍ବନ୍ଧୀୟ ଉପାଖ୍ୟାନ ଅସଭ୍ୟ ଲୋକଙ୍କ ମଧରେ ମଧ ଅଛି ।

ଧ୍ରୁବ ବିଷ୍ଣୁଭକ୍ତ, ତା'ଛଡ଼ା ତାଙ୍କର ଅହୈତୁକୀ ଭକ୍ତି ଥିଲା । ଏଣୁ ବିଷ୍ଣୁଭକ୍ତମାନେ ତାଙ୍କୁ ଗୋଟିଏ ଉଚ୍ଚ ସ୍ଥାନରେ ଆସନ ଦେଲେ— କେବଳ ତାଙ୍କୁ ନୁହେଁ, ତାଙ୍କର ଜନନୀ ଓ ଜନକଙ୍କୁ (ଯେ କି ପ୍ରିୟବତୀ ଭାର୍ଯ୍ୟାର ଭୟରେ ଧ୍ରୁବଙ୍କୁ ଅଙ୍କରେ ସ୍ଥାନ ଦେଇ ନ ଥିଲେ) ମଧ ନକ୍ଷତ୍ର ଲୋକରେ ସ୍ଥାନ ଦେଲେ । ସୁନୀତି ଧ୍ରୁବ ନିକଟରେ ଶିଶୁମାର ପୁଚ୍ଛରେ ଏବଂ ଉତ୍ତାନପାଦ ଶିଶୁମାରର କପାଳରେ ସନ୍ନିବେଶିତ ହେଲେ । ସୁକୃତାତ୍ମାମାନେ ନକ୍ଷତ୍ର ହୁଅନ୍ତି ବୋଲି ପୁରାଣପ୍ରସିଦ୍ଧ ଅଛି । ମତ୍ସ୍ୟ ପୁରାଣ ଲେଖନ୍ତିଃ—

''ଅସ୍ମାତ୍ ଲୋକାଦମୁଂ ଲୋକଂ ତୀର୍ଣ୍ଣତାଂ ସୁକୃତାତ୍ମନାଂ
''ତାରଣାତ୍ ତାରକାହ୍ୟେତାଃ ଶୁକ୍ଲତ୍ୱାଜ୍ଜୈବ ଶୁକ୍ଳିକାଃ ।''

ନୀଳଆକାଶ ପଟରେ ପାର୍ଥିବ ନରନାରୀଙ୍କର ଏବଂ କାଳ୍ପନିକ ଦେବତାମାନଙ୍କର ରହସ୍ୟପୂର୍ଣ୍ଣ ଇତିହାସ ସ୍ୱର୍ଣ୍ଣାକ୍ଷରରେ ଲିଖିତ ହୋଇ ରହିଅଛି— ପଢୁଛି କିଏ, ଶୁଣୁଛି କିଏ ?

କାଳ୍ପନିକ ଦେବତାମାନଙ୍କର ଘରଦ୍ୱାର, ବନ୍ଧୁ ପରିବାର, ଅମୃତ, ବିଷ ବିଗ୍ରହ ସେହି ଆକାଶରେ ।

'ଦେବଗୃହାଃ ବୈ ନକ୍ଷତ୍ରାଣି ।'

ତୈଃବ୍ରାଃ

●

## ବୁଦ୍ଧଦେବଙ୍କ ଜନ୍ମସ୍ଥାନ

କି ଘୋର ପରିତାପର ବିଷୟ । ଏ ଦେଶବାସୀ ଭାରତର ସର୍ବଶ୍ରେଷ୍ଠ ଯୁଗପ୍ରବର୍ତ୍ତକ ମହାପୁରୁଷ ବୁଦ୍ଧଦେବଙ୍କ ଅନ୍ତୁଡ଼ିଶାଳ ଘେନି ଅଦ୍ୟାପି ସନ୍ଦିହାନ ।

ପ୍ରତିବାଦର ମୁଁ ପକ୍ଷପାତୀ ନୁହେଁ । କୌଣସି ଲିଖିତ ପ୍ରବନ୍ଧର ପ୍ରତିବାଦ କରିଥିବାର ମୋର ସ୍ମରଣ ନାହିଁ । ବିଶେଷ କାରଣବଶତଃ ଆଜି ପ୍ରତିବାଦ ଭଳିଆ ଗୋଟିଏ ପ୍ରବନ୍ଧ ଲେଖିବାକୁ ବାଧ ହୋଇଅଛି । ଏଥିନିମନ୍ତେ ପାଠକମାନଙ୍କଠାରୁ କ୍ଷମା ପାଇବି ବୋଲି ମୋର ଆଶା ।

ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁଙ୍କଦ୍ୱାରା ଲିଖିତ 'ଉତ୍କଳରେ ବୌଦ୍ଧଧର୍ମର ମାହାତ୍ମ୍ୟ' ଶୀର୍ଷକ ପ୍ରବନ୍ଧଟି ଶେଷ ହୋଇଅଛି । ସମଗ୍ର ପ୍ରବନ୍ଧଟି ମୁଁ ପାଠ କରିଅଛି ଏବଂ ଆନନ୍ଦ ଅନୁଭବ କରିଅଛି । ମାତ୍ର ଉପରୋକ୍ତ ପ୍ରବନ୍ଧର ପରିଶିଷ୍ଟରେ ଲିଖିତ 'ଓଡ଼ିଶାରେ ବୁଦ୍ଧଦେବଙ୍କ ଜନ୍ମ' ଏହା ଦେଖି ମର୍ମାନ୍ତିକ ବେଦନା ଅନୁଭବ କରୁଅଛି ।

ଆଜିକି ଦୁଇ ବର୍ଷ ତଳର କଥା; ୫ । ୫ । ୧୯୨୯ ର 'ଦୈନିକ ଆଶା' ରେ ମୁଦ୍ରିତ 'ନେପାଳ ବୁଦ୍ଧଙ୍କ ଜନ୍ମଭୂମି ହୋଇ ନ ପାରେ' ଶୀର୍ଷକ ପ୍ରବନ୍ଧ ପାଠ କରି ମୁଁ ଦୁଃଖିତ, ବିସ୍ମିତ ଓ ଲଜ୍ଜିତ ହୋଇଥିଲି । ଏହି ପ୍ରବନ୍ଧର ପ୍ରତିବାଦ କରିବାକୁ ଉଦ୍ୟତ ହୋଇଥିଲେ ସୁଦ୍ଧା ସେତେବେଳେ କେତେକ କାରଣବଶତଃ ତାହା ପ୍ରକାଶ କରିବାରୁ କ୍ଷାନ୍ତ ହୋଇଥିଲି । ଆଜି ରାଜଗୁରୁଙ୍କ ପ୍ରବନ୍ଧପାଠ ପୁଣି ସେହି ବିଷୟର ଅବତାରଣା କରିବାକୁ ବାଧ କରିଅଛି ।

'ନେପାଳ ବୁଦ୍ଧଙ୍କ ଜନ୍ମଭୂମି ହୋଇ ନ ପାରେ' ଏ ପ୍ରବନ୍ଧ ପାଠ କରି ଦୁଃଖିତ, ବିସ୍ମିତ ଓ ଲଜ୍ଜିତ ହୋଇଥିଲି, ବର୍ତ୍ତମାନ ରାଜଗୁରୁଙ୍କ ପ୍ରବନ୍ଧରୁ 'ଓଡ଼ିଶାରେ ବୁଦ୍ଧଦେବଙ୍କ ଜନ୍ମ' ଏହି ଦୃଢ଼ ମନ୍ତବ୍ୟ ପାଠ କରି ତତୋଽଧିକ ଦୁଃଖିତ, ବିସ୍ମିତ ଓ ଲଜ୍ଜିତ ହୋଇଅଛି । ଉଭୟ ଲେଖକଙ୍କ ମତ ଏକ । ବିଷୟଟି ସାମାନ୍ୟ ନୁହେଁ । ଏପରି ଗୁରୁତର ବିଷୟରେ ଯାହାକୁ ଯାହା ଜଣାଅଛି, ତାହା ବ୍ୟକ୍ତ କରିବା ଉଚିତ ବୋଲି ମନେହୁଏ । ନିଜ ମତ ବ୍ୟକ୍ତ ନ କରି ତୁନି ହୋଇ ରହିଲେ ସତ୍ୟ ଗୋପନ ଦୋଷରେ ଲିପ୍ତ ହେବା ଆଶଙ୍କା ହୃଦୟରେ ଜାତ ହୁଏ । ଏଣୁ ନିଜ ମତ ଲିପିବଦ୍ଧ କରିବାରେ ସାହସୀ ହୋଇଅଛି । କେବଳ ନିଜ ମତ ବ୍ୟକ୍ତ କଲେ ଯଥେଷ୍ଟ ହେବ ନାହିଁ । ଏଣୁ ପ୍ରବନ୍ଧର ମଧ ଟିକିଏ ସମାଲୋଚନା କରିବାକୁ ବାଧ । ୫ । ୫ । ୧୯୨୯ ସାଲ ପ୍ରବନ୍ଧର ସମାଲୋଚନା ସଙ୍ଗେ ସଙ୍ଗେ ରାଜଗୁରୁଙ୍କ ପରିଶିଷ୍ଟର ମଧ ସମାଲୋଚନା ହେବ ।

ମୁଁ ଉଭୟ ପ୍ରବନ୍ଧ ପାଠ କରି ଦୁଃଖିତ, ବିସ୍ମିତ ଓ ଲଜ୍ଜିତ ହୋଇଅଛି ।

ଦୁଃଖିତ ହେବାର କାରଣ ଏହି ଯେ, ବିଶ୍ୱବନ୍ଦ୍ୟ ବୁଦ୍ଧଦେବଙ୍କ ଜନ୍ମସ୍ଥାନ ନେଇ ଅଦ୍ୟାପି କୌଣସି କୌଣସି ଶିକ୍ଷିତ ଭାରତବାସୀଙ୍କ ମନରେ ସନ୍ଦେହ ଅଛି ଏବଂ ଏଥିର ଆନ୍ଦୋଳନ ନିମନ୍ତେ ମଧ ଲୋକେ ଅଗ୍ରସର ହେଉଅଛନ୍ତି ।

ବିସ୍ମିତ ହେବାର କାରଣ ଏହି ଯେ, ଲୁମ୍ବିନୀ ଶିଳାଲେଖ ଖୋଦିତ ହେବାର ୨୧୮୦ ବର୍ଷ ପରେ ଅଦ୍ୟାପି ଭାରତର ନାନା ସ୍ଥାନରେ ଶିବଲିଙ୍ଗ ଅଙ୍କୁରିତ ହେଲାଭଳି ଓଡ଼ିଶାରେ କପିଳେଶ୍ୱର ଗ୍ରାମରେ ଅଶୋକଙ୍କ ଶିଳାଲେଖ ଆବିଷ୍କୃତ ହେଉଅଛି । ଭାରତବର୍ଷ ବିଚିତ୍ର ଦେଶ, ଏଠାରେ ଅଘଟନ ସଂଘଟନ ଦେଖାଯାଏ, ଅସମ୍ଭବ କଥା ସମ୍ଭବ ବୋଲି ଶିକ୍ଷିତ ଓ ଅଶିକ୍ଷିତଙ୍କର ବିଶ୍ୱାସ ହୁଏ । ହେଉ, ମାତ୍ର ନବାଙ୍କୁରିତ ଶିବଲିଙ୍ଗଗୁଡ଼ିକଦ୍ୱାରା ଯେପରି ବିଶ୍ୱେଶ୍ୱର; ରାମେଶ୍ୱର, ବୈଦ୍ୟନାଥ ଏବଂ କେଦାରନାଥ ପ୍ରଭୃତି ଶିବଲିଙ୍ଗମାନଙ୍କ ମାହାତ୍ମ୍ୟ ଓ ସମ୍ମାନର ଲାଘବ କରାଯାଇ ନ ପାରେ, ସେ କପିଳେଶ୍ୱରରେ ନବାବିଷ୍କୃତ ଶିଳାଫଳକଦ୍ୱାରା ଲୁମ୍ବିନୀ ଗ୍ରାମ ସ୍ତମ୍ଭଲିପିର ଗୌରବ ହ୍ରାସ କରାଯାଇ ନ ପାରେ । ଏହା ବୃଥା ପ୍ରୟାସ ମାତ୍ର ଏବଂ ଏତାଦୃଶ ପ୍ରୟାସ ଦୋଷାବହ ଓ କ୍ଷତିଜନକ ।

ଲଜ୍ଜିତ ହେବାର କାରଣ ? ପ୍ରବନ୍ଧ ଲେଖକଙ୍କ ମନରେ ଘୋର ଆଶଙ୍କା ଉପୁଜିଅଛି ଯେ, ବଙ୍ଗାଳୀମାନେ ବୁଦ୍ଧଦେବଙ୍କୁ ବଙ୍ଗାଳୀ କରି ନେଇଯିବେ । ବେଳ ଥାଉଁ ଥାଉଁ ଓଡ଼ିଆମାନେ ଏଥିର ପ୍ରତିକାର କରି ବୁଦ୍ଧଙ୍କୁ ଓଡ଼ିଆ କରିବାର ଚେଷ୍ଟା କରିବା ଉଚିତ ଏବଂ ଏଥିନିମନ୍ତେ ଶଂସିତ ପ୍ରବନ୍ଧ ତାଙ୍କର ପ୍ରଥମ ଉଦ୍ୟମ । ଏ ଉଦ୍ୟମରେ ଲେଖକ କେତେଦୂର କୃତକାର୍ଯ୍ୟ ହୋଇଅଛନ୍ତି ବା ହେବାର ଆଶା କରନ୍ତି, ତାହା ପାଠକଙ୍କୁ ଜଣା ।

ଓଡ଼ିଆ ବଙ୍ଗାଳୀଙ୍କ ମଧରେ ନାନା ବିଷୟରେ ବିବାଦ ଚାଲିଅଛି । ଏବେ ଭାରତୀୟ ମହାପୁରୁଷମାନଙ୍କର ଜନ୍ମସ୍ଥାନ ନେଇ ମଧ ଟଣାଓଟରା ଲାଗିବାର ସୂତ୍ରପାତ ହୋଇଅଛି ।

ଅଢ଼ାଇ ହଜାର ବର୍ଷ ପରେ ଆଜି ଓଡ଼ିଆ ଭାଇ କେତେ ଜଣ ବୁଦ୍ଧଦେବଙ୍କୁ ଉତ୍କଳ ଜନନୀର କ୍ରୋଡ଼ରେ ସ୍ଥାନ ଦେଇ ଉତ୍କଳ ଜନନୀଙ୍କୁ କିମ୍ବା ବୁଦ୍ଧଦେବଙ୍କୁ ଗୌରବାନ୍ୱିତ କରିବାକୁ ଉଦ୍ୟୋଗୀ ହୋଇଅଛନ୍ତି । ଏ ଅସାଧ ସାଧନ କରିବାକୁ ପ୍ରେରଣା ଦେଲା କିଏ ? ଖଣ୍ଡିଏ ତୁଚ୍ଛ ପ୍ରସ୍ତରଫଳକ । ପ୍ରସ୍ତରର ଆବିଷ୍କର୍ତ୍ତା ଜଣେ ବଙ୍ଗାଳୀ ଭାଇ । ମାତ୍ର ବୁଦ୍ଧଙ୍କୁ ବଙ୍ଗାଳୀ କରିବା ଅଭିପ୍ରାୟ ଏହାଙ୍କର ଥିଲା ପରି ଅନୁମାନ ହେଉ ନାହିଁ । ଏ ଅଭିପ୍ରାୟ ଥିଲେ ସେ ପ୍ରସ୍ତରଫଳକଟି ବଙ୍ଗଦେଶୀୟ କୌଣସି କପିଳାକ୍ଷ ଗ୍ରାମରେ ଆବିଷ୍କାର କରିଥାନ୍ତେ । ମୂଳ କଥାର ଅବତାରଣା କରାଯାଉ ।

ପ୍ରାୟ ଅନେକ ପାଠକଙ୍କୁ ଜଣାଥିବ ଯେ, ପୁରୀପ୍ରବାସୀ ଶ୍ରୀଯୁକ୍ତ ବୀରେନ୍ଦ୍ରନାଥ ରାୟ ପୁରୀଠାରେ ଗୋଟିଏ ମିଉଜିୟମ ସ୍ଥାପନ କରିଅଛନ୍ତି । ଏଥିରେ ଏ ଦେଶରୁ ପୋଥି, ମୂର୍ତ୍ତି, ଚିତ୍ର, ପ୍ରାଚୀନ ମୁଦ୍ରା, ତାମ୍ରଫଳକ, ପ୍ରସ୍ତରଫଳକ ପ୍ରଭୃତି ସଂଗ୍ରହ କରି ରଖିଅଛନ୍ତି । ଏହା ତାଙ୍କର ପ୍ରଶଂସନୀୟ କାର୍ଯ୍ୟ— ଏଥିରେ ସନ୍ଦେହ ନାହିଁ । ଏଥିନିମନ୍ତେ ଦେଶବାସୀଙ୍କର ତାଙ୍କଠାରେ କୃତଜ୍ଞ ହେବା ଉଚିତ । ଚାରି ବର୍ଷ ହେଲା ରାୟ ମହାଶୟ କପିଳେଶ୍ୱର ଗ୍ରାମରୁ ଗୋଟିଏ ଶିଳାଫଳକ ପ୍ରାପ୍ତ ହୋଇ ତହିଁର ପାଠୋଦ୍ଧାର ନିମନ୍ତେ ଅଧାପକ ଶ୍ରୀ ହାରାନଚନ୍ଦ୍ର

ଚାକଳଦାରଙ୍କୁ ଅଣାଇଥିଲେ । ସେ ପାଠ କରି ପ୍ରକାଶ କଲେ ଯେ, ଏହା ରୁମିନ୍ଦେଇ ଶିଳାସ୍ତମ୍ଭରେ ଖୋଦିତ ଅଶୋକଲିପିର ପ୍ରତିଲିପି । କପିଳେଶ୍ୱର ଶିଳାଫଳକର ଫଟୋଗ୍ରାଫ୍ ମଧ୍ୟ 'ପ୍ରବାସୀ'ରେ ଛପାଇଥିଲେ । ଇଂରାଜୀ ପତ୍ରିକାରେ ମଧ୍ୟ ଏହାର ବିବରଣ ପ୍ରକାଶିତ ହୋଇଥିଲା । ସମସ୍ତ ବିବରଣ ପାଠ କରି ଏବଂ ଫଟୋଗ୍ରାଫ୍ ଦେଖି ଶ୍ରୀଯୁକ୍ତ ରମାପ୍ରସାଦ ଚନ୍ଦ ମତ ପ୍ରକାଶ କରିଥିଲେ ଯେ, ଏହା ଆଧୁନିକ କାଳର ଲେଖା, ଅଶୋକଙ୍କ ସମସାମୟିକ ଲେଖା ନୁହେଁ । ସେ ଏପରି ମତରେ ଉପସ୍ଥିତ ହେବାର ଯଥେଷ୍ଟ କାରଣ ତାଙ୍କ ପ୍ରବନ୍ଧରେ ଉଲ୍ଲେଖ କରିଥିଲେ । ତାଙ୍କ ପ୍ରବନ୍ଧ ଯେ ଯୁକ୍ତିପୂର୍ଣ୍ଣ, ଏଥିରେ ସନ୍ଦେହ ନାହିଁ । ଭାଷାବିତ୍ ଓ ପୁରାଣତତ୍ତ୍ୱବିତ୍‌ମାନଙ୍କ କଥା ଛାଡ଼ିଦିଅ । ଯେକୌଣସି ବ୍ୟକ୍ତି ରୁମିନ୍ଦେଇ ସ୍ତମ୍ଭଲିପି ଓ କପିଳେଶ୍ୱର ଶିଳାଲେଖ ମିଳାଇ ଦେଖିଲେ ସ୍ପଷ୍ଟ ହୃଦୟଙ୍ଗମ କରିପାରିବେ ଯେ, ଏହା ଏକ ହାତର ଲେଖା ନୁହେଁ କିମ୍ବା ଏକ ସମୟର ଲେଖା ନୁହେଁ । ଅକ୍ଷରର ଆକାର ପ୍ରକାର ଏକପ୍ରକାର ନୁହେଁ ।

ବାରହୁତଠାରେ ଆବିଷ୍କୃତ ଜେତାବନ ଭିତ୍ତିପତନନାମକ ଫଳକରେ ଖୋଦିତ ବ୍ରାହ୍ମୀ ଲିପି ସହିତ ଏବଂ ଖାରବେଳଙ୍କ ହାତୀ ଗୁମ୍ଫା ଶିଳାଲିପି ସହିତ ରୁମିନ୍ଦେଇ ଲେଖାର ଯେଉଁ ସାମ୍ୟ ଦେଖାଯାଏ, କପିଳେଶ୍ୱର ଲିପି ସହିତ ସେ ସାମ୍ୟ ନାହିଁ । ଏମନ୍ତ କି ବାରହୁତର ଲେଖା ଓ ରୁମିନ୍ଦେଇର ଲେଖା ଏକ ଜଣଙ୍କଦ୍ୱାରା ଲିଖିତ ବୋଲି ଅନୁମିତ ହେବ । ତଥାପି ଉଭୟ ଲେଖାର ସମୟ ମଧ୍ୟରେ କମ୍ ପାର୍ଥକ୍ୟ ନାହିଁ । ହାତୀ ଗୁମ୍ଫାର ଖାରବେଳଙ୍କ ଗୁହାଲିପି ସହିତ ରୁମିନ୍ଦେଇ ସ୍ତମ୍ଭଲିପିର ଯେଉଁ ସାଦୃଶ୍ୟ ଅଛି, କପିଳେଶ୍ୱରଲିପିର ରୁମିନ୍ଦେଇଲିପି ସହିତ ସେ ସାଦୃଶ୍ୟ ନାହିଁ ।

ଅଶୋକଙ୍କ ଶିଳାଲେଖ, ସ୍ତମ୍ଭଲେଖ, ଅନୁଶାସନ ପ୍ରଭୃତି ବ୍ରାହ୍ମୀ ଅକ୍ଷରରେ ଖୋଦିତ । ଏହା ଭାରତବର୍ଷର ଆଦି ଅକ୍ଷର । ଅଶୋକ ଲେଖସମୂହ ପାଲୀ ଭାଷାରେ ଲିଖିତ । ଅକ୍ଷର ମେଳ କରି ଦେଖିବା ନିମନ୍ତେ ପାଲୀ ଭାଷା ଜାଣିବାର ପ୍ରୟୋଜନ ନାହିଁ । କେତେଗୁଡ଼ିଏ ଅକ୍ଷରର ଆଦର୍ଶ ଓ ବିଭିନ୍ନ ଶିଳାଲେଖର ଫଟୋଗ୍ରାଫ୍ ମିଳାଇ ଦେଖିଲେ ଅକ୍ଷରର ବିଭିନ୍ନତା ଅନାୟାସରେ ଧରାଯାଇପାରିବ । ପାଠକମାନେ ପାଲୀ ଭାଷା ଜାଣନ୍ତୁ ବା ନ ଜାଣନ୍ତୁ, ବ୍ରାହ୍ମୀ ଲିପିର ପରିଚୟ କରି ଥାଉନ୍ତୁ ବା ନ ଥାଉନ୍ତୁ, ଯେବେ ରୁମିନ୍ଦେଇ ସ୍ତମ୍ଭଲିପିର ଫଟୋଗ୍ରାଫ୍ ଏବଂ କପିଳେଶ୍ୱର ଶିଳାଲେଖର ଫଟୋଗ୍ରାଫ୍ ଏବଂ ସଙ୍ଗେ ସଙ୍ଗେ J. Bubber Paliography ଏବଂ ଗୌରୀଶଙ୍କର ହୀରାଚନ୍ଦ ଓଝାଙ୍କ କୃତ ଭାରତୀୟ ପ୍ରାଚୀନ ଲିପିମାଳା ମିଳାଇ ଦେଖିବେ, ତାହାହେଲେ ଅନାୟାସରେ ହୃଦୟଙ୍ଗମ କରିପାରିବେ ଯେ, ଉଭୟ ଲିପି ମଧ୍ୟରେ ଏକରୂପକତା ନାହିଁ । କପିଳେଶ୍ୱର ଶିଳାଲେଖ ଯେ ଅତି ଅର୍ବାଚୀନ, ଏଥିରେ ସନ୍ଦେହ କରିବାର କିଛି କାରଣ ନାହିଁ । ଲିପିତତ୍ତ୍ୱବିତ୍ ଶ୍ରୀରମାପ୍ରସାଦ ଚନ୍ଦ ଏଥିର ଅକାଟ୍ୟ ସମାଲୋଚନା 'ପ୍ରବାସୀ'ରେ ପ୍ରକାଶ କରିଥିଲେ । ପ୍ରକୃତରେ ଏହା ଗୋଟିଏ ଜାଲ ଲିପି । ବଙ୍ଗୀୟ ପ୍ରତ୍ନତତ୍ତ୍ୱବିତ୍‌ମାନେ ଏହାକୁ ଜାଲ ଓ ଅର୍ବାଚୀନ ଲିପି ବୋଲି ମତ ପ୍ରକାଶ କରିବା ଦ୍ୱାରା କୌଣସି ଅନ୍ୟାୟ କରି ନାହାନ୍ତି କିମ୍ବା ଏହାକୁ ଜାଲ ବୋଲି ପ୍ରକାଶ କଲେ, ବୁଦ୍ଧଦେବଙ୍କ ଅନ୍ତର୍ଦ୍ଧାନ ବଙ୍ଗ ଦେଶରେ ହେବ ବୋଲି ବୋଧହୁଏ କେହି ଆଶା କରି ନାହାନ୍ତି ।

କପିଳେଶ୍ୱର ଗ୍ରାମରୁ ଆବିଷ୍କୃତ ଶିଳାଫଳକକୁ ଅଶୋକଙ୍କର ବୁଦ୍ଧଜନ୍ମ ସ୍ମାରକଲିପି ଫଳକ ବୋଲିବା ପାପ । ଯେଉଁ ବୁଦ୍ଧଭକ୍ତ ଅଶୋକଙ୍କ ଅନୁଶାସନ ଲେଖ ବୃହତ୍ତର ଭାରତବ୍ୟାପୀ ଏବଂ ଜଗଦବିଦିତ ସେ ବୁଦ୍ଧଦେବଙ୍କ ଜନ୍ମସ୍ଥାନକୁ ଚିରସ୍ମରଣୀୟ କରିବା ଆଶାରେ ସ୍ମାରକ ଶିଳାଲେଖ ରଖିଯିବାକୁ ଊଣେଇଶ ଇଞ୍ଚ ଲମ୍ବ, ବାର ଇଞ୍ଚ ପ୍ରସ୍ଥ ଏବଂ ସାତ ଇଞ୍ଚ ମୋଟ ଖଣ୍ଡେ ତୁଚ୍ଛ ପ୍ରସ୍ତରର ଅନ୍ୱେଷଣ କରିଥିଲେ, ଏତାଦୃଶ କଳ୍ପନା ସଂକୀର୍ଣ୍ଣ ମନର ପରିଚାୟକ ମାତ୍ର । ଅଶୋକଙ୍କ ମହତ୍ତ୍ୱ ଆଧୁନିକ ଭାରତବାସୀଙ୍କ କଳ୍ପନାର ଅତୀତ । ଭାରତବାସୀର ସଂକୀର୍ଣ୍ଣ ମନ ସହିତ ନବାବିଷ୍କୃତ ପାଷାଣ ଖଣ୍ଡର ଠିକ୍ ମେଳ ଅଛି ।

ଯେଉଁ ଅଶୋକଲେଖର ମୂଲ୍ୟ କେବଳ ଗୋଟିଏ ମୋହର, ତାହା କୃଷକର କାତୁରେ ରହିବାର ହିଁ ଉପଯୁକ୍ତ ।

ପ୍ରତିଲିପି ବୋଲାଯାଏ କାହାକୁ ? ଯଦି ଆଦର୍ଶ ଲିପିର ଠିକ୍ ଅନୁକରଣ କରାଯାଏ, ତାହାହେଲେ କପିଳେଶ୍ୱର ଶିଳାଲେଖ ରୁମିନ୍ଦେଇ ସ୍ତମ୍ଭଲେଖର ପ୍ରତିଲିପି ନୁହେଁ । ଉଭୟ ଲେଖର ଅକ୍ଷର ଏକ ନୁହେଁ । ଅକ୍ଷରର ଆକୃତି, ଗଠନ ଏକପ୍ରକାର ନୁହେଁ । ରୁମିନ୍ଦେଇ ଲେଖ ଚାରି ଧାଡ଼ି ଏବଂ ପ୍ରାୟ ଏକର ଚାରି ଅଂଶ । କପିଳେଶ୍ୱରର ଲେଖା ପୂର୍ଣ୍ଣ ଛଅ ଧାଡ଼ି ଅଟେ । କପିଳେଶ୍ୱରର ଲେଖାରେ ଯେଉଁ ଭ୍ରମ ପ୍ରମାଦ ଅଛି; ତାହା କ୍ଷମାଯୋଗ୍ୟ ନୁହେଁ । ଏହାର ଅର୍ଥାବଗତି ହେଉ ନ ଥିବାର ଶ୍ରୀଯୁକ୍ତ ରମାପ୍ରସାଦ ଚନ୍ଦ ସ୍ପଷ୍ଟାକ୍ଷରରେ ବୁଝାଇ ଦେଇଅଛନ୍ତି । ଶ୍ରୀଯୁକ୍ତ ହାରାନଚନ୍ଦ୍ର ଚାକଲଦାର ମଧ୍ୟ ଲେଖିଅଛନ୍ତି ଯେ, ଏହି ଶିଳାଲେଖରେ କେତେକ ଶବ୍ଦ ଅସମ୍ପୂର୍ଣ୍ଣ

ରହିଅଛି, ପୁଣି କେତେଗୋଟି ଶବ୍ଦ ଅଧିକ ଅଛି । ଯେଉଁ ଲେଖାରେ ପ୍ରୟୋଜନୀୟ ଶବ୍ଦ କେତେଟାର ଅଭାବ ଥିବ ଏବଂ କେତେଗୁଡ଼ିଏ ଅନାବଶ୍ୟକ ଓ ଅପ୍ରାସଙ୍ଗିକ ଶବ୍ଦ ଯୋଗ ହୋଇଥିବ, ତାହାକୁ ମୂଳ ଲେଖାର ପ୍ରତିଲିପି ବୋଲାଯାଇ ନ ପାରେ । ସୁତରାଂ କପିଳେଶ୍ୱର ଲେଖା ଅଶୋକଙ୍କ ଲେଖା ନୁହେଁ କିମ୍ବା ରୁମିନ୍ଦେଇ ସ୍ତମ୍ଭଲେଖର ପ୍ରତିଲିପି ମଧ୍ୟ ନୁହେଁ । ଏହା କାହାରି ମନଗଢ଼ା ଜାଲ୍ ଲେଖା ମାତ୍ର ଏବଂ ଏ ଫଳକର ଲେଖକ ଯେମନ୍ତ ଅଜ୍ଞ, ତେମନ୍ତ ଅନଭ୍ୟସ୍ତ । ଅଶୋକ ଅଜ୍ଞ ଓ ଅନଭ୍ୟସ୍ତ ଲେଖକଦ୍ୱାରା ବୁଦ୍ଧଙ୍କ ଜନ୍ମସ୍ଥାନ ସ୍ମାରକ ଲିପି ଲେଖାଇଥିଲେ କି ?

ମୂଳ ପ୍ରବନ୍ଧ ଆଶାର ଚାରି ସ୍ତମ୍ଭ ଅଧିକାର କରିଥିଲା । ଅସଲ ବିଷୟ ଅପେକ୍ଷା ଚୀନଦେଶୀୟ ମାପ 'ଲି'ଶବ୍ଦର ଆଲୋଚନା ବେଶି, ଏମନ୍ତ କି 'ଲି' ଶବ୍ଦର ଆଲୋଚନାରେ ତିନି ସ୍ତମ୍ଭ ପୂର୍ଣ୍ଣ ହୋଇଥିଲା । ଲେଖକ କେବଳ 'ଲି' ଶବ୍ଦର ଆଲୋଚନାଦ୍ୱାରା କପିଳେଶ୍ୱର ବୁଦ୍ଧଙ୍କ ଜନ୍ମଭୂମି ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଅଛନ୍ତି ।

ପ୍ରତ୍ୟେକ ଦେଶରେ ନାନା ପ୍ରକାର ମାପର ପ୍ରଚଳନ ଦେଖାଯାଏ । ସେଥିମଧ୍ୟରୁ ଯେଉଁ ମାପଟି ଆପଣା ମତର ପୋଷକ, ସେହି ମାପକୁ ଠିକ୍ ମାପ ବୋଲି ଧରିନେଲେ ଭ୍ରମ ପ୍ରମାଦରେ ପଡ଼ିବାକୁ ହେବ ଓ ହାସ୍ୟାସ୍ପଦ ହେବାକୁ ହେବ, ଏହା ବୋଧହୁଏ ଲେଖକ ଲେଖିଲାବେଳେ ସମ୍ପୂର୍ଣ୍ଣ ବିସ୍ମୃତ ହୋଇଥିଲେ । ଏଣୁ ତାଙ୍କର ମତପୋଷଣ କରିବା ନିମନ୍ତେ ୧୬ 'ଲି'ରେ ଏକ ଯୋଜନ ଏହି ହିସାବକୁ ଧରିନେଲେ ।

ମାପ ସମ୍ବନ୍ଧରେ କିଛି ଲେଖିବାର ପ୍ରୟୋଜନ । ଏକଛତ୍ର ଇଂରାଜୀଶାସିତ ଭାରତରେ ମଧ୍ୟ ଅଦ୍ୟାପି ଏକ ପ୍ରକାର ସେରର ପ୍ରଚଳନ ହୋଇପାରି ନାହିଁ । ବାଲେଶ୍ୱରୀ, କଟକୀ ସେର ତାହାର ପ୍ରକୃଷ୍ଟ ଉଦାହରଣ, ଅନ୍ୟ ଉଦାହରଣର ପ୍ରୟୋଜନ କ'ଣ ? କ୍ରୋଶ ମଧ୍ୟରେ ଅଦ୍ୟାପି ତାରତମ୍ୟ ଅଛି । ସାଧାରଣତଃ ଦୁଇ ମାଇଲରେ ଏ କ୍ରୋଶ ବୋଲି କହନ୍ତି; ମାତ୍ର ଗଡ଼ଜାତରେ ପ୍ରଚଳିତ ଡାଳଭଙ୍ଗା କୋଶ କୌଣସି ପ୍ରକାରେ ତିନି ମାଇଲ୍‌ରୁ କମ୍ ହେବ ନାହିଁ । ଏତିକି କେବଳ ନୁହେଁ, ପ୍ରାଚୀନ ଗ୍ରନ୍ଥମାନଙ୍କରେ ମଧ୍ୟ କ୍ରୋଶ ଓ ଯୋଜନର ପାର୍ଥକ୍ୟ ଦେଖାଯାଏ । ଏକ ମତରେ (ଯଥା— ମାର୍କଣ୍ଡେୟପୁରାଣ) ୩୨୦୦୦ ହସ୍ତରେ ଏକ ଯୋଜନ । କେତେକ ପୁରାଣଙ୍କ ମତରେ ୧୬୦୦୦ ହସ୍ତରେ ଏକ ଯୋଜନ । କୌଟିଲ୍ୟ ପଶ୍ଚାଦ୍‌ବର୍ତ୍ତୀ ମତର ପକ୍ଷପାତୀ । ସୁତରାଂ ଆମ ଦେଶର ପ୍ରାଚୀନ ହିସାବ ଅନୁସାରେ ଯୋଜନ ପ୍ରାୟ ନଅ ମାଇଲ୍ ଏବଂ ସାର୍ଦ୍ଧ ଚାରି ମାଇଲ୍ । ଆପଣା ଦେଶର ଯୋଜନ ହିସାବ ତ ଏପରି, ଚୀନ ଦେଶର ହିସାବ କଥା ପଚାରେ କିଏ ? 'ଲି'ର ଠିକ୍ ଠିକଣା କରିବା ଏକପ୍ରକାର ଦୁଷ୍କର । 'ଲି'ର ପରିମାଣ ମଧ୍ୟ ଦୁଇପ୍ରକାର, ଯଥା— $\frac{୧}{୩}$ ମାଇଲ୍, $\frac{୧}{୨}$ ମାଇଲ (Encyclopaedia Britanica) ଏବଂ କେତେକ ଅଭିଧାନରେ $\frac{୧}{୩}$ ମାଇଲରେ ଏକ 'ଲି' ବୋଲି ଲେଖା ଅଛି ଅତି ପୂର୍ବରେ $\frac{୧}{୨}$ ମାଇଲରେ ଏକ 'ଲି' ହେଉଥିବାର ପ୍ରକାଶ ପାଏ ।

ଫାହିୟାନ୍ ସ୍ଥାନର ଦୂରତା ଯୋଜନରେ ପ୍ରକାଶ କରିଅଛନ୍ତି ଏବଂ ହୁଏନ୍‌ସାଂ ଯୋଜନ ଓ 'ଲି'ରେ ପ୍ରକାଶ କରିଅଛନ୍ତି । ପରିଚିତ ସ୍ଥାନର ଦୂରତା ତୁଳନା କରି ପଣ୍ଡିତମାନେ ଏହି ମତରେ ଉପନୀତ ହୋଇଅଛନ୍ତି ଯେ, ଫାହିୟାନ୍‌ଙ୍କ ଯୋଜନ ୬.୭୧ ମାଇଲ ଏବଂ ହୁଏନ୍‌ସାଂଙ୍କ ଯୋଜନ ୬.୭୫ ମାଇଲ୍ ସହିତ ସମାନ । ଏଥିରେ ମଧ୍ୟ ମତଦ୍ୱୈଧ ଅଛି ।

ଚୀନ୍ ପରିବ୍ରାଜକଗଣ ଚେନ୍ କମ୍ପାସ୍ ନେଇ ଦେଶଭ୍ରମଣ କରୁ ନ ଥିଲେ, ଏଣୁ ଦିଗ ଓ ଦୂରତାର ମାପ ଠିକ୍ ଥିବାର ସମ୍ଭବ ନୁହେଁ । ସେତେବେଳେ ପ୍ରଶସ୍ତ ରାଜପଥ ସବୁଆଡ଼େ ନ ଥିଲା । ସେମାନେ ମନୁଷ୍ୟ ଚଲା ବାଟରେ ମହାରଣ୍ୟ, ନଦୀ, ନାଳ ପାରି ହୋଇ ଯାଉଥିଲେ । ପଥ ପ୍ରଦର୍ଶକ ଏ ଦେଶର ଲୋକ । ଯେଉଁ ବାଟ ପଥପ୍ରଦର୍ଶକଙ୍କୁ ସୁବିଧା ମନେ ହେଉଥିଲା, ସେହି ବାଟ ଦେଇ ନିର୍ଦ୍ଦିଷ୍ଟ ସ୍ଥାନକୁ ନେଇ ଯାଉଥିଲା । ଏଣୁ ପରିବ୍ରାଜକମାନଙ୍କ ହିସାବ ସମ୍ପୂର୍ଣ୍ଣ ଠିକ୍ ବୋଲି କିପରି କୁହାଯାଇପାରେ ? ତଥାପି ସେମାନେ ସେ ଯୁଗରେ ଆନ୍ଦାଜି ଯେଉଁ ଦୂରତାର ମାପ ଲେଖିଯାଇଅଛନ୍ତି, ତାହା ଦେଖିଲେ ବିସ୍ମିତ ହେବାକୁ ହୁଏ । ପ୍ରାଚୀନ ସ୍ଥାନମାନ ବିଦ୍ୟମାନ ଥିବା ସ୍ଥଳେ ଦୂରତାର ଭୁଲ୍ ହିସାବ ଦେଖାଇ ପରିଚିତ ଓ ଚିହ୍ନିତ ସ୍ଥାନକୁ ଅସ୍ୱୀକାର କରିବା କେତେଦୂର ବୁଦ୍ଧିମତ୍ତାର କାର୍ଯ୍ୟ, ତାହା ଆମ୍ଭମାନଙ୍କ ଧାରଣାର ଅତୀତ ।

ସାମୁଏଲ୍ ବିଲ୍‌ଙ୍କ ଲିଖିତ ହୁଏନ୍‌ସାଂଙ୍କ ଭ୍ରମଣ ବୃତ୍ତାନ୍ତରେ ଥିବା ଲି ର ହିସାବ ତିନି ପ୍ରକାର, ଯଥା— ୪୦ ଲି ରେ ଏକ ଯୋଜନ (ସୈନ୍ୟର ଏକ ଦିନର ଚାଲି ସହିତ

ସମାନ) । ତଦାନୀନ୍ତନ ପ୍ରଚଳିତ ଭାରତୀୟ ହିସାବ ୩୦ ଲି ରେ ଏକ ଯୋଜନ । ଆଉ ପ୍ରାଚୀନ ବୌଦ୍ଧ ଗ୍ରନ୍ଥାନୁସାରେ ଏକ ଯୋଜନ ୧୬ ଲି ସହିତ ସମାନ । ପୁଣି ହୁଏନ୍‌ସାଂଙ୍କ ଲିଖିତ ଯୋଜନର ପରିମାଣ ୧୬୦୦୦ ହାତ । ଏହି ଯୋଜନ ୪.୫୪ ମାଇଲ୍ ସହିତ ସମାନ । ୩୨୦୦୦ ହସ୍ତ ପରିମିତ ଯୋଜନ ୯.୦୯ ମାଇଲ୍ ସହିତ ସମାନ । ଆଉ ଏକ ଯୋଜନର ହିସାବ ହୁଏନ୍‌ସାଂ ଦେଇଅଛନ୍ତି, ଯାହାର ପରିମାଣ ୧୨.୧୨ ମାଇଲ୍ । ସେ କାଳର ଏପ୍ରକାର ହିସାବ ଦେଖି ଏବଂ ନାନା ପ୍ରକାର ପରୀକ୍ଷା ଉତ୍ତାରୁ ପାଶ୍ଚାତ୍ୟ ପଣ୍ଡିତଗଣ ସ୍ଥିର କରିଅଛନ୍ତି ଯେ, ଚୀନ୍ ପରିବ୍ରାଜକମାନେ ସ୍ଥାନର ଦୂରତା ହାରାହାରି ହିସାବରେ ଦେଖାଇଅଛନ୍ତି । ପରିବ୍ରାଜକ ଦୁହେଁ ଦୂରତା ଭଗ୍ନାଂଶରେ ପ୍ରକାଶ ନ କରି କେବଳ ପୂର୍ଣ୍ଣ ସଂଖ୍ୟାରେ ପ୍ରକାଶ କରିଅଛନ୍ତି । କେବଳ ଏତିକି ନୁହେଁ ଅଧିକାଂଶ ସ୍ଥଳରେ ଦୂରତାକୁ ଦଶ କିମ୍ବା ଦଶ ଗୁଣିତକରେ ପ୍ରକାଶ କରିଅଛନ୍ତି, ଯଥା— ୨୦, ୫୦, ୫୦୦, ୬୦୦ ମାଇଲ୍ ଇତ୍ୟାଦି । ଏଥିରୁ ପ୍ରତିପନ୍ନ ହୁଏ ଯେ, ସେମାନଙ୍କର ହିସାବ କେବଳ ମୋଟାମୋଟି । ପାଶ୍ଚାତ୍ୟ ପଣ୍ଡିତଗଣ ଏହା ମଧ ପ୍ରକାଶ କରିଅଛନ୍ତି ଯେ, ୫୦୦ ଲି ଲେଖା ଥିବା ସ୍ଥଳରେ ତାହା ୪୫୦ ଲି ହୋଇପାରେ କିମ୍ବା ୫୫୦ ଲି ହୋଇପାରେ । ଯୋଜନ ସମ୍ବନ୍ଧରେ ମଧ ତଦ୍ରୂପ ।

'ଆଶା'ର ଲେଖକ ତିନି ପ୍ରକାର ଲି ହିସାବ ମଧ୍ୟରୁ ୧୬ ଲି ରେ ଏକ ଯୋଜନ ଏହି ହିସାବକୁ ବାଛି ନେଲେ କାହିଁକି ? ପଣ୍ଡିତଗଣଙ୍କ ଗଣନାକୁ ମିଥ୍ୟା କରିବାକୁ ଏବଂ କପିଳେଶ୍ୱର ଗ୍ରାମକୁ ବୁଦ୍ଧଙ୍କ ଜନ୍ମସ୍ଥାନ ବୋଲି ପ୍ରମାଣ କରିବା ନିମନ୍ତେ କି ? ପ୍ରାଚୀନ ଶାସ୍ତ୍ରଲିଖିତ ପ୍ରାଚୀନ ଓ ଅପ୍ରଚଳିତ ହିସାବ ଅପେକ୍ଷା ଭ୍ରମଣକାରୀର ସମସାମୟିକ ପ୍ରଚଳିତ ହିସାବ ଲେଖିବା ସମ୍ଭବ ଓ ଯୁକ୍ତିଯୁକ୍ତ । ଏହି ହେତୁରୁ ପରିବ୍ରାଜକଗଣ ତଦାନ୍ତୀନ୍ତନ ପ୍ରଚଳିତ ଯୋଜନର ଉଲ୍ଲେଖ କରିଅଛନ୍ତି । ଏଣୁ ଶତକଡ଼ା କିଛି ବାଦ୍ ଦେଲେ ବିଦ୍ୟମାନ ପ୍ରାଚୀନ ସହର, ନଦୀ, ପର୍ବତ ପ୍ରଭୃତିର ଦୂରତା ଆଧୁନିକ ହିସାବ ସହିତ ଠିକ୍ ମିଳୁଅଛି ।

ହୁଏନ୍‌ସାଂଙ୍କ ଷଷ୍ଠ ପୁସ୍ତକରେ (ସାମୁଏଲ୍ ବିଲ୍‌ଙ୍କ ତର୍ଜମା) ଲିଖିତ ଅଛି ଯେ—

To the north of the town is a Stupa which contains relics of the entire body of Kasyapa Buddha. Both these were built by Asoka Raja. From this point going south east 500 li or so we come to the country of Kapilabastu.

ଏଥିରୁ ପ୍ରକାଶ ପାଏ ଯେ, ଶ୍ରାବସ୍ତିନଗରଠାରୁ କପିଳବାସ୍ତୁ ୫୦୦ ଲି ଦୂରରେ ଦକ୍ଷିଣ ପୂର୍ବକୁ ଅବସ୍ଥିତ ।

କନିଙ୍ଗହାମ ଲେଖନ୍ତି :—

From Sravasti both of the Chinese Pilgrims proceeded direct to Kapila, which was famous throghout India as the birthplace of Buddha Huenthsang makes the distance 500 li or 83 miles to the South east.

× × ×

ଉପରୋକ୍ତ ଦୁଇ ଲେଖାରୁ ଜଣାପଡୁଅଛି ଯେ, ହୁଏନ୍‌ସାଂ ଶ୍ରାବସ୍ତିଠାରୁ କପିଳବାସ୍ତୁର ଦୂରତା ୫୦୦ ଲି ସ୍ଥିର କରିଥିଲେ । 'ଆଶା'ର ଲେଖକ ଶ୍ରାବସ୍ତିଠାରୁ କପିଳବାସ୍ତୁର ଦୂରତା ୮୦୦ ଲି ବୋଲି ରଖିଲେ କିପରି ? ହୁଏତ ଏହି ୮୦୦ ତାଙ୍କର କଳ୍ପନାପ୍ରସୂତ କିମ୍ବା କୌଣସି ପୁସ୍ତକରେ ଶ୍ରାବସ୍ତି ଓ କପିଳାବାସ୍ତୁର ଦୂରତା ୮୦୦ ଲି ବୋଲି ଲେଖାଥିବ; ମାତ୍ର ଆମ୍ଭମାନଙ୍କର ଦୃଷ୍ଟିପଥକୁ ଆସି ନାହିଁ । ଶ୍ରାବସ୍ତିଠାରୁ କପିଳବାସ୍ତୁର ଦୂରତା ୮୦୦ଲି ହେଲେ ଏବଂ ପ୍ରାଚୀନ ବୌଦ୍ଧଗ୍ରନ୍ଥ ଲିଖିତ ୧୬ ଲି ରେ ଏକ ଯୋଜନ ହେଲେ ମଧ ଶ୍ରାବସ୍ତି ଓ କପିଳେଶ୍ୱରର ଦୂରତା ସହିତ ତାହା ସମାନ ହେବ ନାହିଁ । ତଥାପି ଲେଖକଙ୍କର ପ୍ରୟାସରେ ତ୍ରୁଟି ନାହିଁ ଏବଂ ହୁଏନ୍‌ସାଂଙ୍କ ଲିଖିତ ଦିଗ ଏବଂ ଭ୍ରମପୂର୍ଣ୍ଣ ଦୂରତା ଉପରେ ନିର୍ଭର କରି କପିଳେଶ୍ୱରଙ୍କ ବୁଦ୍ଧଙ୍କ ଜନ୍ମସ୍ଥାନ ବୋଲି ସମ୍ଭବ ମନେକଲେ ଏବଂ ଅନେକ ଓଡ଼ିଆ ଭାଇଙ୍କି ଭ୍ରମରେ ପକାଇଲେ; ମାତ୍ର କପିଳାବାସ୍ତୁ ଯେ ହିମାଳୟର ପାଦଦେଶରେ ବିଦ୍ୟମାନ ଥିବାର ପୁରାଣପ୍ରସିଦ୍ଧ, ଲୋକପ୍ରସିଦ୍ଧ, ତଥା ଚୀନ୍ ପରିବ୍ରାଜକ ଓ ଅନ୍ୟାନ୍ୟ ପରିବ୍ରାଜକମାନଙ୍କର ସ୍ଥିରୀକୃତ ସ୍ଥାନ, ତାକୁ ଏକାବେଳକେ ଚକ୍ଷୁର ଅନ୍ତରାଳରେ ପକାଇ ଦେଲେ ।

ବ୍ରାହ୍ମଣ୍ୟ ଧର୍ମର ଅଭ୍ୟୁତ୍‌ଥାନ ସଙ୍ଗେ ସଙ୍ଗେ ବୌଦ୍ଧଧର୍ମର ପତନ, ଏହା କହିବା ବାହୁଲ୍ୟ ମାତ୍ର । ଏହା ଏକ ମୁଖରେ ସମସ୍ତେ ସ୍ୱୀକାର କରିଯାଇଅଛନ୍ତି । ହିନ୍ଦୁମାନେ ବୌଦ୍ଧତୀର୍ଥକୁ ନିଜ ତୀର୍ଥରେ ପରିଣତ କରିଅଛନ୍ତି । ବ୍ରାହ୍ମଣ୍ୟ ଧର୍ମର ସମ୍ପୂର୍ଣ୍ଣ ଅଭ୍ୟୁତ୍‌ଥାନ ପରେ ବୌଦ୍ଧ ତୀର୍ଥସମୂହକୁ ନିଃସନ୍ଦିଗ୍ଧରୂପେ ପରିଚୟ କରିବା ଅସମ୍ଭବ ହୋଇ ପଡ଼ିଲା । Encyclopaedia Britanica ରେ ଲେଖା ଅଛି, "Before the Brahmin revolution, which drove Buddhism out of India pilgrimages to the chief scenes of

Gautama Buddha's life were common; and notably Kapilavastu his birthplace, Benares where he began his mission & Kusinagara, where he died were much frequented specialy by Chinese converts." Vol. 19-92.

"Kapilavastu X X on the bank of the Kohana about 100 miles north of the city of Benares and about 50 miles south of the foot of the Himalaya Mountain. Vol - 4 - 424.

କପିଳବାସ୍ତୁ ଯେ ହିନ୍ଦୁ ତୀର୍ଥ ବନାରସ, ପ୍ରୟାଗ ଓ ଅଯୋଧ୍ୟାର ଉତ୍ତରରେ, ଏଥିର ଭୂରି ଭୂରି ପ୍ରମାଣ ଉଦ୍ଧୃତ କରାଯାଇପାରେ ।

ଚୀନ ପରିବ୍ରାଜକମାନଙ୍କ 'ଲି' ହିସାବ ଅପେକ୍ଷା ସେମାନଙ୍କ ବର୍ଣ୍ଣନା ଓ ଭ୍ରମଣର ଗତିପଥରୁ ସ୍ଥାନର ନିର୍ଦ୍ଦେଶ କରିବା ସମୀଚୀନ ଓ ନିରାପଦ । ହୁଏନସାଂଙ୍କ ଷଷ୍ଠ ପୁସ୍ତକରେ ଚାରୋଟି ରାଜ୍ୟର ବର୍ଣ୍ଣନା ଅଛି, ଯଥା— ଶ୍ରାବସ୍ତି, କପିଳବାସ୍ତୁ, ରାମଗ୍ରାମ ଓ କୁଶିନଗର । ଏହି ଧରଣରେ ତାଙ୍କର ଭ୍ରମଣ ବୃତ୍ତାନ୍ତ ଲିପିବଦ୍ଧ ହୋଇଅଛି । ଏହା କରିବାର କାରଣ କ'ଣ ? ଯେହେତୁ ଉକ୍ତ ଚାରୋଟି ରାଜ୍ୟ ପରସ୍ପର ନିକଟବର୍ତ୍ତୀ । ଶ୍ରାବସ୍ତିର ବିଶଦ୍ ବର୍ଣ୍ଣନା ଲେଖି ସାରିଲା ପରେ ସେ ଲେଖନ୍ତି ଯେ, ଶ୍ରାବସ୍ତିର ଉତ୍ତର ପଶ୍ଚିମକୁ ୧୬ ଲି ଦୂରରେ କାଶ୍ୟପ ବୁଦ୍ଧଙ୍କ ଜନ୍ମସ୍ଥାନ । ସେଠାରୁ ଦକ୍ଷିଣ-ପୂର୍ବକୁ ପ୍ରାୟ ୫୦୦ ଲି ଗମନ କରି ଆମ୍ଭେମାନେ କପିଳବାସ୍ତୁ ରାଜ୍ୟରେ ଉପନୀତ ହେଲୁଁ । ଏଠାରୁ ପୂର୍ବକୁ ପ୍ରାୟ ୩୦୦ ଲି ବାଟ ଅରଣ୍ୟ ମଧ୍ୟ ଦେଇ ଅତିକ୍ରମ କରି ରାମଗ୍ରାମ ରାଜ୍ୟରେ ଉପସ୍ଥିତ ହେଲୁଁ । ଏଠାରୁ ଉତ୍ତର-ପୂର୍ବାଭିମୁଖରେ ମହାରଣ୍ୟ ମଧ୍ୟ ଦେଇ କୁଶିନଗରରେ ଉପନୀତ ହେଲୁଁ । ଏହି ଅରଣ୍ୟରେ ଗୟଳ, ବନ୍ୟ ହସ୍ତୀ, ଡକାୟତ ଓ ମୃଗୟୁମାନେ ପଥିକମାନଙ୍କୁ ଅତ୍ୟନ୍ତ କଷ୍ଟ ଦିଅନ୍ତି । ଏହି ବର୍ଣ୍ଣନାରୁ ସ୍ପଷ୍ଟ ଜଣାଯାଉଅଛି ଯେ, ଉପରୋକ୍ତ ଚାରୋଟି ରାଜ୍ୟ ପରସ୍ପର ସଂଲଗ୍ନ ।

ଲେଖକ ଶ୍ରାବସ୍ତିକୁ ଅସ୍ୱୀକାର କରି ନାହାନ୍ତି । ଶ୍ରାବସ୍ତିଠାରୁ ୩୦୦ ମାଇଲ୍ ଓଡ଼ିଶାର ସୀମା ଥିବାର ତାଙ୍କର ମତ । ଶ୍ରାବସ୍ତିଠାରୁ ଦକ୍ଷିଣ-ପୂର୍ବରେ ୨୨୦ ମାଇଲ୍ ଦୂରରେ କାଶୀ ବା ତନ୍ନିକଟବର୍ତ୍ତୀ କୌଣସି ସ୍ଥାନ ପଡ଼ିବ—ଗଙ୍ଗା ତଟରେ ବା ଦକ୍ଷିଣ କୂଳରେ । ମାତ୍ର ହୁଏନ୍‌ସାଂ ତ ଏପରି ପଥର ବର୍ଣ୍ଣନା କରିନାହାନ୍ତି । ଭୁବନେଶ୍ୱର ମଧ୍ୟ ଶ୍ରାବସ୍ତିର ଦକ୍ଷିଣ-ପୂର୍ବରେ ବୋଲାଯାଇପାରେ । ମାତ୍ର ତାହାର ଦୂରତା ମ୍ୟାପ୍‌ରେ ୬୦୦ ମାଇଲ୍‌ରୁ ଅଧିକ । ଅନ୍ୟ ସମସ୍ତ ବର୍ଣ୍ଣନାକୁ ଦୂରକୁ ଫିଙ୍ଗି ଦେଇ ଲେଖକଙ୍କ ମତାନୁସାରେ ଶ୍ରାବସ୍ତିର ଦକ୍ଷିଣ-ପୂର୍ବକୁ ଭୁବନେଶ୍ୱର ଧରିନେଲେ ରାମଗ୍ରାମ ଅବଶ୍ୟ ସମୁଦ୍ର ଗର୍ଭରେ ପଡ଼ିବ । ଯେହେତୁ କପିଳବାସ୍ତୁର ୩୦୦ ଲି ପୂର୍ବକୁ ରାମଗ୍ରାମ ବିଦ୍ୟମାନ ଥିଲା । ପୁଣି କୁଶିନଗର ମଧ୍ୟ ବଙ୍ଗୋପସାଗର ମଧ୍ୟବର୍ତ୍ତୀ ବୋଲି ସ୍ୱୀକାର କରିବାକୁ ହେବ । ଯେହେତୁରୁ ରାମଗ୍ରାମର ଉତ୍ତର ପୂର୍ବକୁ କୁଶିନଗର ଥିବାର ଲେଖାଅଛି । କପିଳେଶ୍ୱରକୁ ବୁଦ୍ଧଙ୍କ ଅନ୍ତୁଡ଼ିଶାଳ କରିବାକୁ ଗଲେ ଆମ୍ଭମାନଙ୍କୁ ବଙ୍ଗୋପସାଗରରେ ଭାସମାନ ହେବାକୁ ପଡ଼ିବ ସିନା ।

କେତେଜଣ ଚୈନ ପରିବ୍ରାଜକ ଭାରତକୁ ଭ୍ରମଣ ଉଦ୍ଦେଶ୍ୟରେ ଓ ବିଦ୍ୟାଶିକ୍ଷା କାମନାରେ ଆସିଥିଲେ । ସେମାନଙ୍କ ମଧ୍ୟରୁ ଫାହିୟାନ୍, ହୁଏନ୍‌ସାଂ ଏବଂ ଇତ୍‌ସିଙ୍ଗ ପ୍ରଧାନ । କେବଳ ହୁଏନ୍‌ସାଂଙ୍କ ଲି ହିସାବ ନେଇ ବୌଦ୍ଧ ଇତିହାସକୁ ଅସ୍ତବ୍ୟସ୍ତ କରିବାର ଚେଷ୍ଟା କଲେ ଚଳିବ ନାହିଁ । ଅପର ଦୁଇଜଣଙ୍କ ବର୍ଣ୍ଣନାକୁ ମଧ୍ୟ ଦେଖିବାକୁ ହେବ ।

ଫାହିୟାନ୍ ୩୯୯-୪୧୪ ଖ୍ରୀଷ୍ଟାବ୍ଦରେ ଭାରତ ଭ୍ରମଣ କରିଥିଲେ । ସେ ଭାରତବର୍ଷକୁ ଉତ୍ତର-ପଶ୍ଚିମ ଆଡୁ ପ୍ରବେଶ କରି ସମସ୍ତ ଆର୍ଯ୍ୟାବର୍ତ୍ତ ପରିଭ୍ରମଣ କରି ତାମ୍ରଲିପ୍ତଠାରେ ପୋତାରୋହଣ କରି ସ୍ୱଦେଶକୁ ପ୍ରତ୍ୟାବୃତ୍ତ ହେଲେ ।

ହୁଏନସାଂ ୬୨୯-୪୫ ଖ୍ରୀଷ୍ଟାବ୍ଦରେ ଭାରତବର୍ଷକୁ ସେହି ପଥରେ ଆସିଥିଲେ ଏବଂ ସେହି ପଥ ଦେଇ ସ୍ୱଦେଶକୁ ଫେରିଗଲେ ।

ଇତ୍‌ସିଙ୍ଗ୍ ଜାହାଜଦ୍ୱାରା ଆସି ତାମ୍ରଲିପ୍ତରେ ଅବତରଣ କରି ଦେଶ ପର୍ଯ୍ୟଟନ କଲେ, ପୁଣି ତାମ୍ରଲିପ୍ତଠାରେ ପୋତାରୋହଣ କରି ସ୍ୱଦେଶକୁ ଫେରିଲେ ।

ହୁଏନସାଂ ଶ୍ରାବସ୍ତିଠାରୁ କପିଳବାସ୍ତୁକୁ ଗଲେ ଏବଂ ତାହାର ଦୂରତା ଆନୁମାନିକ ୫୦୦ ଲି ବୋଲି ଲେଖିଅଛନ୍ତି । କପିଳବାସ୍ତୁଠାରୁ ଦକ୍ଷିଣକୁ ୫୦ ଲି ଦୂରରେ କ୍ରକୁଚଣ୍ଡା ବୁଦ୍ଧଙ୍କର ଜନ୍ମସ୍ଥାନ । ଏହି କ୍ରକୁଚଣ୍ଡା ନଗରର ଉତ୍ତର ପୂର୍ବକୁ ୩୦ ଲି ଦୂରରେ ଏକ ସ୍ତୂପ ଅଛି; ଏହିଠାରେ ଭଦ୍ରକଳ୍ପରେ କନକମୁନି ବୁଦ୍ଧ ଜନ୍ମଗ୍ରହଣ କରିଥିଲେ ।

ଫାହିୟାନ୍ ଲେଖନ୍ତି ଯେ, ଶ୍ରାବସ୍ତି ତ୍ୟାଗ କରି ଦକ୍ଷିଣ ପୂର୍ବାଭିମୁଖରେ ଯାତ୍ରା କରି ଦ୍ୱାଦଶ ଯୋଜନ ଦୂରବର୍ତ୍ତୀ ନାପିକ ନଗରରେ ଉପନୀତ ହେଲୁ । ଏହା କ୍ରକୁଚଣ୍ଡା— ବୁଦ୍ଧଙ୍କ ଜନ୍ମସ୍ଥାନ । ଏଠାରୁ ଏକ ଯୋଜନରୁ କମ୍ ବାଟ ଉତ୍ତରକୁ ଯାଇ କନକମୁନି ବୁଦ୍ଧଙ୍କ ଆଶ୍ରମରେ ଉପସ୍ଥିତ ହେଲୁଁ ।

କନକମୁନିଙ୍କ ଜନ୍ମସ୍ଥାନରୁ ଏକ ଯୋଜନରୁ କମ୍ ପଥ ପୂର୍ବକୁ ଯାଇ କପିଳବାସ୍ତୁ ନଗରରେ ପହଞ୍ଚିଲେ । ଫାହିୟାନ୍ କପିଳବାସ୍ତୁକୁ ଆସିବା ଆଗରୁ କ୍ରକୁଚଣ୍ଡା ନଗର ଓ କନକମୁନି ଆଶ୍ରମ ଦେଖି ଆସିଲେ । ହୁଏନ୍‌ସାଂ କପିଳବାସ୍ତୁରେ ପ୍ରବେଶ କଲା ପରେ କ୍ରକୁଚଣ୍ଡା ଓ କନକବୁଦ୍ଧ ଆଶ୍ରମ ଦେଖିଲେ ।

କ୍ରକୁଚଣ୍ଡା ଓ କନକମୁନି ଆଶ୍ରମର ଦୂରତା ଫାହିୟାନ ଏକ ଯୋଜନରୁ କମ୍ ବୋଲି ଲେଖିଲେ ଏବଂ ହୁଏନ୍‌ସାଂ ୩୦ ଲି ବୋଲି ଲେଖିଲେ । ଉଭୟଙ୍କ ଲେଖା ଅନୁସାରେ କ୍ରକୁଚଣ୍ଡା ଓ କନକମୁନି ଆଶ୍ରମ କପିଳବାସ୍ତୁ ରାଜ୍ୟରେ ଥିଲା । ଶ୍ରାବସ୍ତିଠାରୁ କପିଳବାସ୍ତୁ, ଜଣକ ଲେଖା ଅନୁସାରେ ପ୍ରାୟ ୧୨ ଯୋଜନ ଏବଂ ଅପରର କଥା ଅନୁସାରେ ପ୍ରାୟ ୫୦୦ ଲି ଦୂର ।

ଲୁମ୍ବିନୀଠାରୁ ରାମଗ୍ରାମ ପାଞ୍ଚ ଯୋଜନ ପୂର୍ବକୁ, ଏହା ଫାହିୟାନ୍‌ଙ୍କ ମତ । ରାମଗ୍ରାମଠାରୁ ତିନି ଯୋଜନ ଦୂରରେ ବୁଦ୍ଧଦେବ ଛନ୍ଦକକୁ ବିଦାୟ ଦେଇଥିଲେ । ଏଠାରୁ ୧୨ ଯୋଜନରେ କୁଶିନଗର ।

ଇଟସିଙ୍ଗ୍ ତାମ୍ରଲିପ୍ତଠାରୁ ପ୍ରଥମରୁ ନାଳନ୍ଦାକୁ ଯାଇ ସେଠାରେ ବିଦ୍ୟାଧ୍ୟୟନ କଲେ । ସେଠାରୁ ଗଲେ ଗୃଧ୍ରକୂଟ, ବୁଦ୍ଧଗୟା, ବୈଶାଳୀ, କୁଶିନଗର । କୁଶିନଗରଠାରୁ ଗଲେ କପିଳବାସ୍ତୁ । କପିଳବାସ୍ତୁଠାରୁ ଶ୍ରାବସ୍ତି, ଶ୍ରାବସ୍ତିଠାରୁ ମୃଗଦାବ (ବନାରସ), ସେଠାରୁ କୁକ୍‌କୁଟପଦଗିରିଠାକୁ (ଗୟାନିକଟ) ଗଲେ । ସେଠାରୁ ତାମ୍ରଲିପ୍ତକୁ ଯାଇ ଜାହାଜଦ୍ୱାରା ସ୍ୱଦେଶକୁ ଫେରିଲେ । Takaku Usu Itsing–Record of the Budhist religion ନାମକ ପୁସ୍ତକରେ ଉପରୋକ୍ତ ପ୍ରକାର ଭ୍ରମଣ କାହାଣୀ ତର୍ଜମା କରିଅଛନ୍ତି ।

ଉପରୋକ୍ତ ଉଦ୍ଧୃତାଂଶରୁ ପାଠକଗଣ ଅବଶ୍ୟ ବୁଝି ପାରିବେ ଯେ, ଶ୍ରାବସ୍ତି, କପିଳବାସ୍ତୁ, ରାମଗ୍ରାମ ଓ କୁଶିନଗର ଲଗାଲଗି ହୋଇଅଛନ୍ତି । ଫାହିୟାନ୍ ଏବଂ ହୁଏନ୍‌ସାଂ ଶ୍ରାବସ୍ତିଠାରୁ କପଳିବାସ୍ତୁକୁ ଆସିଲେ, କପିଳବାସ୍ତୁରୁ କୁଶିନଗରକୁ ଗଲେ । ଇଟ୍‌ସିଙ୍ଗ୍ ପୂର୍ବଆଡ଼କୁ ଯାଉଥିବାରୁ ପ୍ରଥମେ କୁଶିନଗର, ସେଠାରୁ କପିଳବାସ୍ତୁ, ସେଠାରୁ ଶ୍ରାବସ୍ତିକୁ ଗଲେ । ଭୁବନେଶ୍ୱର ନିକଟ କପିଳେଶ୍ୱର ବୁଦ୍ଧଙ୍କ ଜନ୍ମସ୍ଥାନ ହୋଇଥିଲେ ଇଟସିଙ୍ଗ୍ ପ୍ରଥମେ କପିଳେଶ୍ୱର ନ ଯାଇ ନାଳନ୍ଦାକୁ ଯାଆନ୍ତେ କି ? ହୁଏନ୍‌ସାଂ ଓଡ଼ିଶାକୁ ଆସିଥିଲେ, କପିଳେଶ୍ୱରର ବର୍ଣ୍ଣନା ତ କରି ନାହାନ୍ତି । ଚୀନ ପରିବ୍ରାଜକମାନଙ୍କର କାୟକ୍ଲେଶ ଅର୍ଥବ୍ୟୟ ବା ଜୀବନମରଣ ସମସ୍ୟା ତ ଭାରତର ଦିଓଟି ସ୍ଥାନ ନିମନ୍ତେ; ଯଥା– ବୁଦ୍ଧଙ୍କ ଜନ୍ମସ୍ଥାନ ଓ ପରିନିର୍ବାଣ ସ୍ଥାନ– କପିଳବାସ୍ତୁ ଓ କୁଶିନଗର । ପରିବ୍ରାଜକଗଣ ଉକ୍ତ ଦୁଇ ତୀର୍ଥସ୍ଥାନ ଦେଖି ଚରିତାର୍ଥ ଓ କୃତକୃତ୍ୟ ହୋଇ ଆପଣା ଭ୍ରମଣକାହାଣୀରେ ଲେଖି ଯାଇଅଛନ୍ତି । ଆଜି ଆମ ଦେଶରେ ଖଣ୍ଡିଏ ଜାଲ୍ ନଗଣ୍ୟ ଶିଳାଫଳକ ଗୋଟିଏ ମୋହରରେ କ୍ରୀତ ହେଲା ବୋଲି କି ସେମାନଙ୍କର ଅମୂଲ୍ୟ ଗ୍ରନ୍ଥରାଜିକୁ ମିଥ୍ୟା ପ୍ରମାଣ କରିବାକୁ ଚେଷ୍ଟା କରିବା ଏବଂ ଅଗାଧ ବୌଦ୍ଧଶାସ୍ତ୍ରରେ ଲୋକଙ୍କର ଅବିଶ୍ୱାସ ଜନ୍ମାଇବାକୁ ଚେଷ୍ଟା କରିବା ।

ଏହାଛଡ଼ା ଲୁମ୍ବିନୀ ଗ୍ରାମ ବୌଦ୍ଧମାନଙ୍କର ପରମ ପବିତ୍ର ତୀର୍ଥସ୍ଥାନ । ବୁଦ୍ଧଦେବଙ୍କ ଜନ୍ମାବଧି ତାହା ପୂଜିତ ହୋଇ ଆସୁଅଛି । ଉତ୍କଳର ଲେମ୍ବାଇ ଗ୍ରାମ ଏ ସମ୍ମାନ ପାଇବ କାହିଁ ? ଲୁମ୍ବିନୀର ନାମ ବର୍ତ୍ତମାନ ରୁମିନ୍ଦେଇ । ଏହି ରୁମିନ୍ଦେଇ ଗ୍ରାମରେ ଅଶୋକ ପ୍ରତିଷ୍ଠିତ ପ୍ରକାଣ୍ଡ ଶିଳାସ୍ତମ୍ଭ ଅଦ୍ୟାପି ବିଦ୍ୟମାନ । ଏହି ସ୍ତମ୍ଭର ଶିଖର ବଜ୍ରଦ୍ୱାରା ଭଗ୍ନ ହୋଇଥିଲେ ସୁଦ୍ଧା ଲେଖା ନଷ୍ଟ ହୋଇ ନାହିଁ । ଏହାର ପାଠୋଦ୍ଧାର ହୋଇଥିବାରୁ ଏହାର ଯାଥାର୍ଥ୍ୟ ପୃଥିବୀର ସମସ୍ତ ସଭ୍ୟ ଜାତି ନତମସ୍ତକରେ ସ୍ୱୀକାର କରି ଯାଇଅଛନ୍ତି । ମହାମହିମ ସମ୍ରାଟ୍ ଅଶୋକ ଯେଉଁ ବର୍ଷ ଲୁମ୍ବିନୀ ଶିଳାସ୍ତମ୍ଭ ପ୍ରତିଷ୍ଠା କଲେ, ସେହି ବର୍ଷ କନକମୁନିଙ୍କ ଜନ୍ମସ୍ଥାନ ପରିଦର୍ଶନ କରି ସେଠାରେ ମଧ୍ୟ ସ୍ମାରକ ଶିଳାଲେଖ ରଖିଯାଇଅଛନ୍ତି । ଏହାକୁ ‘ନିଗ୍ରୀବ ସ୍ତମ୍ଭ ଲେଖ’ ବୋଲି ପରିଚୟ କରାଯାଉଅଛି । ସେ ବର୍ଷ ତାଙ୍କର ତୀର୍ଥଯାତ୍ରାପଥରେ ନାନା ସ୍ଥାନରେ ଅଶୋକ ଶିଳାଲେଖ ରଖି ଯାଇଅଛନ୍ତି ।

ରାମାବତାର ଶର୍ମାଙ୍କ ପ୍ରକାଶିତ ‘ପ୍ରିୟଦର୍ଶୀ ପ୍ରଶସ୍ତୟଃ’ ପୁସ୍ତକରୁ କିଛି ଉଦ୍ଧୃତ କରି ପାଠକଗଣଙ୍କୁ ଉପହାର ଦେଲେ ଆମ୍ଭମାନଙ୍କ ଯୁକ୍ତିର ପୋଷଣ ପକ୍ଷରେ ସୁବିଧା ହେବ ।

× × × ‘‘ମୃଗୟାଦି ବ୍ୟସନବିମୁଖୋଽସୌ ଧର୍ମଯାତ୍ରା ଅନ୍ୱତିଷ୍ଠାଦିତ୍ୟୁକ୍ତଂ ତାସ୍ୱେକସ୍ୟା ଉଦାହରଣସ୍ୟ ରୁକ୍ମିଣୀଗ୍ରାମଲେଖେ ସମୁପଲଭ୍ୟତେ । ବିଂଶତିବର୍ଷାଭିଷିକ୍ତୋ ରାଜା ପାଟଳିପୁରାଲିଚ୍ଛବି ଚମ୍ପକାରଣ୍ୟାଦିମଧ୍ୟଗଂ ଯାତ୍ରାମାର୍ଗଂ ସ୍ତମ୍ଭୈର୍ଭୂଷୟନ ରୁକ୍ମିଣୀଗ୍ରାମଂ ସ୍ୱୟମୁପଗମ୍ୟୋପଗୁପ୍ତେନ ତିଷ୍ୟାପରାଖ୍ୟେଣ ଗୁରୁଣୋପଦିଷ୍ଟଃ ଶାକ୍ୟମୁନେର୍ଭଗବତୋ ବୁଦ୍ଧସ୍ୟ ଜନ୍ମୋଦ୍ୟାନେ ପୂଜାଂ ବିଧାୟ ତତ୍ର ଶିଳାସ୍ତମ୍ଭଂ

ଶିଳାବକଲଭୀଂଚ ସ୍ଥାପୟିତ୍ୱା ରୁକ୍ମିଣୀଗ୍ରାମମୁଦ୍‌ବଳିକମଷ୍ଟଭାଗିନଂ ଚ ବିଦଧୌ । ତତୋ ନାତିଦୂରେ ଚ କନକମୁନେଃ ପ୍ରାଚୀନତର ବୁଦ୍ଧସ୍ୟ ସ୍ତୂପଂ ଚତୁର୍ଦ୍ଦଶବର୍ଷାଭିଷିକ୍ତେନାତ୍ମନା ବର୍ଦ୍ଧିତ ପୂର୍ବମୁପଗମ୍ୟ ସ୍ୱୟଂ ପୂଜିତବାନ୍ ।''

× × ×

ଲୁମ୍ବିନୀ ଶିଳାଲେଖ ଓ ନିଗ୍ରୀବ ଶିଳାଲେଖ ମଧ ନିମ୍ନରେ ପ୍ରଦତ୍ତ ହେଲା । ଅଶୋକଙ୍କ ଗୁରୁ ଉପଗୁପ୍ତ ଅପର ନାମ ତିଷ୍ୟ ଅଶୋକଙ୍କର ସହଯାତ୍ରୀ ଥାଇ ପ୍ରାଚୀନ ସ୍ଥାନମାନଙ୍କର ପରିଚୟ କରାଉଥିଲେ । ଲୁମ୍ବିନୀ ଗ୍ରାମରେ ଉପସ୍ଥିତ ହୋଇ ଗୋଟିଏ ସ୍ଥାନ ନିର୍ଦ୍ଦେଶ କରି କହିଲେ, ''ମହାରାଜ, ଏଠାରେ ଭଗବାନ୍, ଜନ୍ମଗ୍ରହଣ କରିଥିଲେ ।'' ଅଶୋକ ସେହି ସ୍ଥାନରେ ବୃହତ୍ ସ୍ମାରକସ୍ତମ୍ଭ ପ୍ରତିଷ୍ଠା କରି ଏଠାରେ ଭଗବାନ୍ ଜନ୍ମଗ୍ରହଣ କରିଥିଲେ ବୋଲି ଲେଖିଲେ ।

ଲୁମ୍ବିନୀସ୍ତମ୍ଭଲେଖଃ ।

''୧. ଦେବାନ ପ୍ରିୟେନ ପ୍ରିୟଦସିନ ଲାଜିନ ବୀସତି ବସାଭିସିତେନ ।
୨. ଅତନ ଆଗଚ ମହୀୟିତେ ହିଦ ବୁଧେ ଜାତେ ସାକ୍ୟମୁନିତି ।
୩. ସିଲା ବିଗଡଭୀ ଚାକ୍ୟଳାପିତ ଶିଳାଥବେ ଚ ଉସପାସିତେ ।
୪. ହିଦ ଭଗବଂ ଜାତେ ଲୁମ୍ବିନୀଗ୍ରାମେ ଉବଲିକେ କଟେ ।
୫. ଅଠଭାଗିୟେ ଚ ।''

ଏହାର ସଂସ୍କୃତ ଭାଷାନ୍ତର— ''ଦେବାନାଂ ପ୍ରିୟେଣ ପ୍ରିୟଦର୍ଶିନା ରାଜ୍ଞା ବିଂଶତିବର୍ଷ ଭିଷିକ୍ତେନାତ୍ମାନା ଆଗତ୍ୟ ମହୀୟତ ମାତ୍ର ବୁଦ୍ଧୋ ଜାତଃ ଶାକ୍ୟମୁନିରିତି ଶିଳାବକଲଭୀ ଚ କାରିତା ଶିଳାସ୍ତମ୍ଭଶ୍ଚୋତ୍‌ଥାପିତୋତ୍ର ଭଗବାଞ୍ଜାତ ଇତି ରୁକ୍ମିଣୀଗ୍ରାମ ଉଦ୍‌ବଳିକଃ କୃତୋଷ୍ଟଭାଗୀଚ ।''

''ଦେବପ୍ରିୟ ପ୍ରିୟଦର୍ଶୀ ରାଜା ତାଙ୍କର ଅଭିଷେକର ବିଂଶତି ବର୍ଷରେ ସ୍ୱୟଂ ଆଗମନ କରି ଏଠାରେ ବୁଦ୍ଧ ଶାକ୍ୟମୁନି ଜନ୍ମଗ୍ରହଣ କରିଥିବାର ପୂଜା କଲେ । ପାଷାଣବେଦୀ ନିର୍ମାଣ କଲେ । ଶିଳାସ୍ତମ୍ଭ ଉତ୍‌ଥାପିତ କଲେ । ଯେହେତୁ ଭଗବାନ୍ ଏଠାରେ ଜନ୍ମଗ୍ରହଣ କରିଥିଲେ, ଲୁମ୍ବିନୀ ଗ୍ରାମକୁ କରଶୂନ୍ୟ କରାଯାଇ ଅଷ୍ଟଭାଗୀ କରାଗଲା ।''

ନିଗ୍ରୀବ ସ୍ତମ୍ଭଲେଖର ସଂସ୍କୃତ ଭାଷାନ୍ତର—

''ଦେବାନାଂ ପ୍ରିୟଦର୍ଶିନ ରାଜ୍ଞା ଚତୁର୍ଦ୍ଦଶ ବର୍ଷାଭିଷିକ୍ତେନ ବୁଦ୍ଧସ୍ୟ କନକମୁନେସ୍ତୂପୋ ଦ୍ୱିତୀୟଂ ବର୍ଦ୍ଧିତଃ । ବିଂଶତି ବର୍ଷାଭିଷିକ୍ତେନ ଚାତ୍ମନାଗତ୍ୟ ମହୀୟିତଂ ସ୍ତମ୍ଭଶ୍ଚୋତ୍‌ଥାପିତଃ ।''

''ଦେବପ୍ରିୟ ପ୍ରିୟଦର୍ଶୀ ରାଜା ଅଭିଷେକର ଚତୁର୍ଦ୍ଦଶ ବର୍ଷରେ ବୁଦ୍ଧ କନକମୁନିଙ୍କର ଦ୍ୱିତୀୟ ବାର ସ୍ତୂପ ନିର୍ମାଣ କରାଇଥିଲେ । ଅଭିଷେକର ବିଂଶତି ବର୍ଷରେ ନିଜେ ଏଠାକୁ ଆସି ପୂଜାପୂର୍ବକ ଗୋଟିଏ ସ୍ତମ୍ଭ ସ୍ଥାପନ କଲେ ।''

ଅଶୋକ ନିଜ ଗୁରୁ ଉପଗୁପ୍ତଙ୍କ ସମଭିବ୍ୟାହାରରେ ପାଟଳିପୁତ୍ରଠାରୁ ଉତ୍ତରାଭିମୁଖରେ ଲିଚ୍ଛବି ଚମ୍ପାରଣ୍ୟ ମଧଦେଇ ନେପାଳ ପର୍ଯ୍ୟନ୍ତ (ହିମାଳୟର ପାଦଦେଶ ପର୍ଯ୍ୟନ୍ତ) ଗମନ କରିଥିଲେ । ଏହି ପଥରେ ପାଞ୍ଚ ଗୋଟି ପ୍ରସ୍ତର ସ୍ତମ୍ଭ ସ୍ଥାପନ କରିଥିଲେ । ସେଠାରୁ ପଶ୍ଚିମାଭିମୁଖରେ ପ୍ରସ୍ଥାନ କରି ପ୍ରଥମେ ଲୁମ୍ବିନୀ ଉଦ୍ୟାନ ପରିଦର୍ଶନ କରି ସ୍ମାରକ ଶିଳାସ୍ତମ୍ଭ ପ୍ରତିଷ୍ଠା କଲେ । ସେଠାରୁ କପିଳବାସ୍ତୁ ପ୍ରଭୃତି ପୁଣ୍ୟସ୍ଥାନ ପରିଦର୍ଶନ କରିଥିଲେ ।

ଯେଉଁ ଅଶୋକ ସ୍ତମ୍ଭକୁ ବଜ୍ର ମଧ ଉନ୍ମୂଳିତ ଓ ଧ୍ୱଂସ କରିପାରିଲା ନାହିଁ, ତାକୁ ଜଣକେତେ ଷୋହଳ ଟଙ୍କା ମୂଲ୍ୟର ପଥର ସାହାଯ୍ୟରେ ଉନ୍ମୂଳିତ କରିପାରିବେ ତ ?

ବୁଦ୍ଧଦେବଙ୍କର ଟିକିଏ ବଂଶ ପରିଚୟ ଦେବା ଆବଶ୍ୟକ । କାରଣ କପିଳେଶ୍ୱରରେ ସେ ପ୍ରକାର ପ୍ରାଚୀନ ରାଜବଂଶ ରାଜତ୍ୱ କରୁଥିଲେ କି ନାହିଁ ଏବଂ ସେମାନଙ୍କ ରାଜ୍ୟ ଏ ଦେଶରେ ଥିବାର ସମ୍ଭବ କି ନା, ତାହା ଜଣାପଡ଼ିବ ।

ବୁଦ୍ଧଦେବ ଯେ ଶାକ୍ୟାବଂଶସମ୍ଭୂତ, ଏଥିରେ କେହି ସନ୍ଦେହ କରିବେ ନାହିଁ । ଶାକ୍ୟବଂଶ, ସୂର୍ଯ୍ୟବଂଶ, ଇକ୍ଷ୍ୱାକୁବଂଶ ଏକ । ସୂର୍ଯ୍ୟବଂଶ ରାଜାମାନେ ଅଯୋଧ୍ୟାର ରାଜା ଥିଲେ, ଏହା ପୁରାଣ ପ୍ରସିଦ୍ଧ । ଅଯୋଧ୍ୟାର ନାମ କୋଶଳ, ଏହା ସମସ୍ତଙ୍କ ଜଣା । ଅଯୋଧ୍ୟାର ନାମ ମଧ ସାକେତ ଓ ବୈଶାଖ । କପିଳବାସ୍ତୁ ଏହି କୋଶଳ ରାଜ୍ୟର ଅଧୀନ ଗୋଟିଏ ସାମନ୍ତ ରାଜ୍ୟ ଥିଲା । କପିଳଙ୍କ ଆଦେଶରେ ଏହି ରାଜ୍ୟର ସ୍ଥାପନ ହେତୁ ଏହାକୁ କପିଳବାସ୍ତୁ ବା କପିଳବାସ୍ତୁ ବୋଲି କହନ୍ତି । ବୌଦ୍ଧଶାସ୍ତ୍ର ଅନୁସାରେ ଏହି ଅଂଶ ଜମ୍ବୁଦୀପର ମଧ; ଏଣୁ ଏହି ଅଂଶକୁ ମଜ୍ଝିମ ଦେଶ ବା ମଧଦେଶ ବୋଲାଯାଏ । ଏହି ମଧଦେଶର ପୂର୍ବକୁ କପିଙ୍ଗଳ, ତହିଁ ପରେ ମହାଶାଳ, ଦକ୍ଷିଣ ପୂର୍ବକୁ ସଳଳବତୀ ନଦୀ । ଜାତକମାଳାରେ ଲିଖିତ ହୋଇଅଛି ଯେ, ଜମ୍ବୁଦ୍ୱୀପର ମଜ୍ଝିମ ଦେଶ ପବିତ୍ର ଭୂମି । କପିଳବାସ୍ତୁ ଅତି ପବିତ୍ର, ଏଣୁ ସେଠାରେ ବୁଦ୍ଧଦେବଙ୍କର ଜନ୍ମ ହୋଇଥିଲା । ଓଡ଼ିଶା ଅବଶ୍ୟ ଜମ୍ବୁଦୀପର ମଧ ବା ନାଭି ନୁହେଁ ।

ଇକ୍ଷ୍ୱାକୁବଂଶ କ୍ରମେ ଗୌତମବଂଶ ବୋଲି ମଧ ପରିଚିତ ହୋଇଥିଲା । କପିଳବାସ୍ତୁ ଶାକ୍ୟରାଜ୍ୟ ଏବଂ କପିଳବାସ୍ତୁ ଶାକ୍ୟନଗର । କପିଳବାସ୍ତୁର ଉତ୍ପତ୍ତି ସମ୍ବନ୍ଧରେ ବୌଦ୍ଧଗ୍ରନ୍ଥମାନଙ୍କରେ ଯାହା ଲେଖା ଅଛି, ତହିଁରୁ କିଛି ଏଠାରେ ପ୍ରକାଶ କଲେ ଅପ୍ରାସଙ୍ଗିକ ହେବ ନାହିଁ ।

ମହାବସ୍ତୁ ଗ୍ରନ୍ଥରେ ଲିଖିତ ହୋଇଅଛି ଯେ ସାକେତ ନଗରରେ (ଶ୍ରାବସ୍ତି ବା କୋଶଳ ରାଜ୍ୟରେ) ଇକ୍ଷ୍ୱାକୁ ବଂଶୀୟ ସୁଜାତ ରାଜତ୍ୱ କରୁଥିଲେ । ତାହାଙ୍କର ପାଞ୍ଚ ପୁତ୍ର ଥିଲେ, ଯଥା— ଓପୁର, ନିପୁର, କରଣ୍ଡକ, ଉଲ୍‌କାମୁଖ ଓ ହସ୍ତିକଶୀର୍ଷ । ଏମାନଙ୍କ ଛଡ଼ା ସୁଜାତଙ୍କ ରକ୍ଷିତାର ଗୋଟିଏ ପୁତ୍ର ଥିଲା, ତା'ର ନାମ ଥିଲା ଜେନ୍ତ । ସୁଜାତ ଜେନ୍ତର ଜନନୀଠାରେ ଅନୁରକ୍ତ ଥିଲେ । ତାହାକୁ ଗୋଟିଏ ବର ଦେବାକୁ ପ୍ରତିଶ୍ରୁତ ହୋଇଥିଲେ । ରାଜରକ୍ଷିତା ସୁଯୋଗ ଜାଣି ବର ମାଗିଲା ଯେ ଜେନ୍ତ ସାକେତର ରାଜା ହେବ ଏବଂ ଔରସଜାତ ପାଞ୍ଚ ପୁତ୍ର ଦେଶତ୍ୟାଗୀ ହେବେ । ରାଜା ବର ଦେଲେ । ପୁତ୍ରମାନେ ଦେଶତ୍ୟାଗ କଲେ ଏବଂ ଉତ୍ତରାଭିମୁଖରେ ଯାତ୍ରା କଲେ । ହିମାଳୟର ପାଦଦେଶରେ ଫଳପୁଷ୍ପପୂର୍ଣ୍ଣ ପ୍ରକାଣ୍ଡ ଅରଣ୍ୟ ଥିଲା, ତାହାର ନାମ କପିଳାରଣ୍ୟ । ସେଠାକୁ ଯାଇ ଓପୁର କପିଳ ଋଷିଙ୍କୁ ସ୍ଥାନ ପ୍ରାର୍ଥନା କଲେ । କପିଳ ନିଜ ଆଶ୍ରମ ନିକଟରେ ରାଜପ୍ରାସାଦ ନିର୍ମାଣ କରିବାକୁ ଅନୁମତି ଦେଲେ । ଏହି ନଗରର ନାମ କପିଳବାସ୍ତୁ ବା କପିଳବାସ୍ତୁ । ରାଜ୍ୟର ନାମ ମଧ କପିଳବାସ୍ତୁ । ମନେ ରଖିବା ଉଚିତ ଯେ, କପିଳପୁର ନିର୍ମାଣ କରିବା ନିମନ୍ତେ ଓପୁର ପୂର୍ବ-ଦକ୍ଷିଣାଭିମୁଖରେ ଓଡ଼ିଶା ଆଡ଼କୁ ଆସିବାର ଲେଖା ନାହିଁ । କପିଳବାସ୍ତୁ ରାଜ୍ୟ ପ୍ରତିଷ୍ଠାତାଙ୍କର ଅଧସ୍ତନ ପଞ୍ଚମ ପୁରୁଷ ଅଟନ୍ତି ସିଂହବାହୁ । ସିଂହବାହୁଙ୍କ ଜ୍ୟେଷ୍ଠ ପୁତ୍ର ଶୁଦ୍ଧୋଧନ— ବୁଦ୍ଧଦେବଙ୍କ ପିତା । ହିମାଳୟର ପାଦଦେଶରେ କପିଳବନରେ କପିଳବାସ୍ତୁ ରାଜ୍ୟ ବିଦ୍ୟମାନ ଥିବା ମହାବଂଶ, ମହାବସ୍ତୁ, ସୁମଙ୍ଗଳବିଳାସିନୀ, ଲଳିତବିସ୍ତର ପ୍ରଭୃତି ବୌଦ୍ଧଗ୍ରନ୍ଥନିଚୟ ଏକ ବାକ୍ୟରେ ସ୍ୱୀକାର କରି ଯାଇଅଛନ୍ତି । ଲଳିତବିସ୍ତର ଏହାର ନାମ କପିଳପୁର ଓ କପିଳା ଭୂୟପୁର ମଧ ଦେଇଅଛନ୍ତି । ଏହି ଶାକ୍ୟଗଣ ଗୌତମଗୌତ୍ରୀୟ ଏବଂ ସୂର୍ଯ୍ୟବଂଶୀୟ ଥିବାରୁ ଏମାନଙ୍କୁ ଆଦିତ୍ୟବନ୍ଧୁ ବୋଲାଯାଏ ।

ଅମର ମଧ ବୁଦ୍ଧଦେବଙ୍କୁ 'ଗୌତମଶ୍ଚାର୍କ ବନ୍ଧୁଶ୍ଚ' ବୋଲି ଅଛନ୍ତି । ଏ ତ ବୁଦ୍ଧଦେବଙ୍କ ବାପଘର କଥା । ମା' ଘର କଥା ଦେଖାଯାଉ । କପିଳବାସ୍ତୁ ରାଜ୍ୟସଂଲଗ୍ନ କୋଳୀୟ ରାଜ୍ୟ ଥିଲା । ଏହି ରାଜ୍ୟର କ୍ଷତ୍ରିୟମାନଙ୍କୁ କୋଳୀୟକ୍ଷତ୍ରିୟ ବୋଲାଯାଉଥିଲା । ବୁଦ୍ଧଜନନୀ ମାୟା ଦେବୀ ଏହି ବଂଶସମ୍ଭୂତା । କୋଳୀୟ ରାଜ୍ୟ ଓ କୋଳାନଗରର ଉତ୍ପତ୍ତି କଥା ମଧ ବୌଦ୍ଧଗ୍ରନ୍ଥମାନଙ୍କରେ ବିସ୍ତୃତ ଭାବରେ ଲିଖିତ ହୋଇଅଛି । ବାରାଣସୀ ରାଜ୍ୟର ରାଜା ରାମଙ୍କୁ କୁଷ୍ଠରୋଗ ହେବାରୁ ସେ ଗୃହତ୍ୟାଗ କରି ଅରଣ୍ୟରେ ବାସ କରୁଥିଲେ । ନାନାପ୍ରକାର ବୃକ୍ଷ ପତ୍ର, ଫଳ ଭକ୍ଷଣ କରି ସମ୍ପୂର୍ଣ୍ଣ ରୋଗ ମୁକ୍ତ ହେଲେ । ଦିନେ ରାତ୍ରିରେ ଜଣେ ସ୍ତ୍ରୀର କରୁଣ ରୋଦନଧ୍ୱନି ଶ୍ରବଣ କଲେ । ପ୍ରାତଃକାଳରେ ଯାଇ ଦେଖିଲେ ଯେ, ଜଣେ ସ୍ତ୍ରୀ ଭୂମିରେ ପ୍ରୋଥିତ ଅବସ୍ଥାରେ ରୋଦନ କରୁଅଛି । ତାକୁ ପଚାରି ଜାଣିପାରିଲେ ଯେ, ସେ ଜଣେ ଇକ୍ଷ୍ୱାକୁବଂଶୀୟା କୁଷ୍ଠରୋଗଗ୍ରସ୍ତା ରାଜପୁତ୍ରୀ । ତାହାକୁ ଗର୍ତ୍ତରୁ ଉତ୍ତୋଳନ କରି ବନୌଷଧି ଭକ୍ଷଣ କରାଇ ରୋଗମୁକ୍ତ କଲେ ଏବଂ ତାହାର ପାଣିଗ୍ରହଣ କଲେ । କୋଳ ବୃକ୍ଷ ପରିଷ୍କାର କରାଇ ନଗର ନିର୍ମାଣ କରାଇବାରୁ ସେହି ନଗରର ନାମ କୋଳ ନଗର ବୋଲି ପ୍ରସିଦ୍ଧି ଲାଭ କଲା । ଏହାଙ୍କ ବଂଶଧରମାନେ କୋଳୀୟ କ୍ଷତ୍ରିୟ ବୋଲି ପରିଚିତ ହେଲେ । ଏହି ରାଜ୍ୟର ନାମ ରାମଗ୍ରାମ ବୋଲି ମଧ ପରିଚିତ । କୌଣସି କୌଣସି ପୁସ୍ତକରେ ଲେଖା ଅଛି ଯେ, କୋଳି ବୃକ୍ଷ କ୍ରୋଟରରେ ଏହି ବଂଶର ପ୍ରଥମ ପୁରୁଷ ବାସ କରୁଥିଲେ, ଏଣୁ ଏହି ବଂଶର ନାମ କୋଳୀୟ ହୋଇଅଛି । କପିଳବାସ୍ତୁ ରାଜ୍ୟ ଓ କୋଳୀୟ ରାଜ୍ୟ ଯେ ପରସ୍ପର ସଂଲଗ୍ନ, ଏଥିରେ କୌଣସି ସନ୍ଦେହ ନାହିଁ । ଓଡ଼ିଶାର ଭୁବନେଶ୍ୱର କପଳିବାସ୍ତୁ ରାଜ୍ୟ ହେଲେ ହେଁ ପୂର୍ବକୁ କୋଳୀୟ ରାଜ୍ୟ କେଉଁଟା ?

କପିଳବାସ୍ତୁ ରାଜ୍ୟ ନିକଟରେ ଆଉ କେତେଗୋଟି କ୍ଷୁଦ୍ର ରାଜ୍ୟ ବିଦ୍ୟମାନ ଥିଲା, ଯଥା—କୁଶିନାରା, ବୈଶାଳୀ, ଅଲ୍ଲକପ, ରାମଗ୍ରାମ (କୋଳୀୟ) ପାବା, ପିପ୍ପଳିବନ । କୋଳୀୟ ରାଜ୍ୟ ସହିତ କପିଳବାସ୍ତୁ ରାଜ୍ୟର ଖୁବ୍ ଘନିଷ୍ଠତା ଥିଲା । ଉଭୟ ରାଜ୍ୟ ମଧରେ ରୋହିଣୀ ନଦୀ ପ୍ରବାହିତ ହେଉଥିଲା । ଶୁଦ୍ଧୋଧନ କୋଳୀୟବଂଶୀୟା ମାୟାଦେବୀଙ୍କର ପାଣିଗ୍ରହଣ କରିଥିଲେ ଏବଂ ମାୟାଦେବୀଙ୍କ ଗର୍ଭରୁ ବୁଦ୍ଧଦେବଙ୍କର ଜନ୍ମ । ପିତ୍ରାଳୟରେ ସନ୍ତାନ ପ୍ରସବ କରିବାର ଲୌକିକ ରୀତି ଥିବା ହେତୁରୁ ଶୁଦ୍ଧୋଦନ ମାୟାଦେବୀଙ୍କୁ ସ୍ୱପିତ୍ରାଳୟକୁ ପ୍ରେରଣ କଲେ । ରୋହିଣୀତୀରବର୍ତ୍ତୀ ଲୁମ୍ବିନୀ ଉଦ୍ୟାନରେ ବୁଦ୍ଧଦେବଙ୍କର ଜନ୍ମ ହେଲା । ଏହି ଲୁମ୍ବିନୀ ଉଦ୍ୟାନରେ ଅଶୋକସ୍ତମ୍ଭ ବିଦ୍ୟମାନ ଅଛି ।

ମହାନିର୍ବାଣ ସୂତରେ ଲିଖିତ ହୋଇଅଛି ଯେ, ଯେତେବେଳେ କୁଶିନାରା ଗ୍ରାମରେ ବୁଦ୍ଧଦେବ ପରନିର୍ବାଣପ୍ରାପ୍ତ ହେଲେ, ସେତେବେଳେ କୁଶିନାରାର ମଲ୍ଲ କ୍ଷତ୍ରିୟଗଣ ବୁଦ୍ଧଦେବଙ୍କ ଦହନାବଶେଷ ଅସ୍ଥିସମୂହ ଏକତ୍ର କରି ଯତ୍ନସହକାରେ ସାତଦିନ ଯାଏ ପୂଜା ପୁରଃସର ରକ୍ଷାକଲେ । ମଗଧର ବିଦେହବଂଶୀୟ ରାଜା ଅଜାତଶତ୍ରୁ, ବୈଶାଳୀର ଲିଚ୍ଛବି କ୍ଷତ୍ରିୟଗଣ, କପିଳବାସ୍ତୁର ଶାକ୍ୟଗଣ, ଅଲ୍ଲକପ୍‌ପର କୁଲିମାନେ ଏବଂ ରାମଗ୍ରାମର କୋଳୀୟ କ୍ଷତ୍ରିୟଗଣ, ପାବାର ମଲ୍ଲଗଣ ବୁଦ୍ଧଦେବଙ୍କ ଦହନାବଶେଷର ଅଂଶ ନେବାକୁ ଉପସ୍ଥିତ ହେଲେ । ବୁଦ୍ଧଦେବ କ୍ଷତ୍ରିୟ ଏବଂ ଉପରୋକ୍ତ ରାଜାଗଣ ମଧ କ୍ଷତ୍ରିୟ ଦାବିରେ ବୁଦ୍ଧଦେବଙ୍କ ଅସ୍ଥିର ଅଂଶ ପାଇ ଆପଣା ଆପଣା ସ୍ଥାନକୁ ନେଲେ ଏବଂ ନିଜ ନିଜ ଦେଶରେ ଅସ୍ଥି ରକ୍ଷା କରି ତହିଁ ଉପରେ ସ୍ତୂପ ନିର୍ମାଣ କରାଇଲେ । ଭାଗ ଶେଷରେ ପିପ୍‌ପଳୀବନର ମୋରୀୟ କ୍ଷତ୍ରିୟଗଣ ଉପସ୍ଥିତ ହୋଇ ସେହି ଦାବି ଉପସ୍ଥାପିତ କଲେ । ଅସ୍ଥିସମୂହ ବିଭକ୍ତ ହୋଇସାରିଥିବା ହେତୁରୁ ସେମାନେ ଅଙ୍ଗାରତକ ଗ୍ରହଣ କରି ସନ୍ତୁଷ୍ଟ ହେଲେ ଏବଂ ତହିଁ ଉପରେ ସ୍ତୂପ ନିର୍ମାଣ କଲେ । ଏହି ସ୍ତୂପମାନଙ୍କୁ ପରିବ୍ରାଜକଗଣ ପ୍ରତ୍ୟକ୍ଷ କରିଥିବାର ଲିପିବଦ୍ଧ କରିଅଛନ୍ତି ।

ଶ୍ରାବସ୍ତି, ଶାକେତ, ରାମଗ୍ରାମ, ବୈଶାଳୀ, କୁଶିନାରା ପ୍ରଭୃତି ସ୍ଥାନମାନ ବିଦ୍ୟମାନ ଥିବାରୁ ପରିଚିତ ହେଲା । ମହାମହିମ ସମ୍ରାଟ୍ ଅଶୋକଙ୍କ ନିର୍ମିତ ସ୍ତମ୍ଭ ପ୍ରକୃତିର ଧ୍ୱଂସଲୀଳା ବିରୋଧରେ ମସ୍ତକ ହରାଇ ସତ୍ୟ ଉଦ୍‌ଘାଟନ କରିବା ନିମନ୍ତେ ଅଦ୍ୟାପି ଦଣ୍ଡାୟମାନ ରହି ଜଗଦ୍‌ବାସୀଙ୍କୁ ଆଶ୍ଚର୍ଯ୍ୟାନ୍ୱିତ ଓ ମୋହିତ କରୁଅଛି ।

ଅଗାଧ ବୌଦ୍ଧଗ୍ରନ୍ଥ ଜଗଦ୍‌ଗୌରବ ହିମାଳୟର ପାଦଦେଶରେ ଜଗଦ୍‌ବନ୍ଦ୍ୟ ବୁଦ୍ଧଦେବଙ୍କର ଜନ୍ମସ୍ଥାନ କପିଳବାସ୍ତୁ ନଗର ବିଦ୍ୟମାନ ବୋଲି ବଜ୍ରନିର୍ଘୋଷରେ ପ୍ରକାଶ କରୁଅଛନ୍ତି । ଭକ୍ତ ପରିବ୍ରାଜକଗଣ ସୁଦୂର ଚୀନ ଦେଶରୁ ସେହି ବୁଦ୍ଧ ଜନ୍ମସ୍ଥାନ ଦେଖି ଚରିତାର୍ଥତା ଲାଭ ନିମନ୍ତେ ସ୍ୱାସ୍ଥ୍ୟ ଓ ଅର୍ଥ ବ୍ୟୟ କରି ଏ ଦେଶକୁ ଆସି ସେହି ତୀର୍ଥରେ ଅଶ୍ରୁସିକ୍ତ ପୁଷ୍ପାଞ୍ଜଳି ଦାନ କରି ଯାଇଅଛନ୍ତି । ସେ ଆଜି ଯୁଗଯୁଗାନ୍ତରର କଥା । ଆଜି ଯେବେ ଜଣକେତେ ଗୋଟିଏ ତୁଚ୍ଛ ପଦାର୍ଥ ଘେନି ସେହି ସମସ୍ତ ସତ୍ୟକୁ ମିଥ୍ୟା ପ୍ରତିପନ୍ନ କରିବାକୁ ଚେଷ୍ଟା କରିବେ, ତେବେ ଏ ଦେଶ ପକ୍ଷରେ ଏହା କମ୍ ଲଜ୍ଜା ଓ ନିନ୍ଦାର ବିଷୟ ନୁହେଁ । ଭାରତର ପ୍ରାଚୀନ ଇତିହାସ ନାହିଁ । ପ୍ରାଚୀନ ବୀରପୁରୁଷ, ରାଜା ସମସ୍ତେ ପୁରାଣପ୍ରସିଦ୍ଧ ଦେବତା ଆଖ୍ୟାରେ ମନୁଷ୍ୟତ୍ୱରୁ ଊର୍ଦ୍ଧ୍ୱରେ ରହିଲେ । ବୁଦ୍ଧଚରିତ୍ର ହିଁ ଏକମାତ୍ର ଐତିହାସିକ ସତ୍ୟ ବୋଲି ଜଗଦ୍‌ବାସୀଙ୍କର ଧାରଣା ହୋଇଅଛି । ଏ ଦେଶବାସୀ ତାହାକୁ ଅଳୀକ ବୋଲି ପ୍ରତିପନ୍ନ କରିବାକୁ ବସି କେଉଁ ମହତ୍ତ୍ୱ ଉପାର୍ଜନ କରିବେ ? ଅଧିକ ଲେଖିବା କ'ଣ ? ବୁଦ୍ଧଦେବଙ୍କ ଅନ୍ତୁଡ଼ିଶାଳ ଘେନି ଏ ଦେଶବାସୀ ଯେବେ ଅଦ୍ୟାପି ସନ୍ଦିହାନ, ତେବେ ଭାରତବାସୀର ଭୂତ ଭବିଷ୍ୟତ ବର୍ତ୍ତମାନ ଘୋର ଅନ୍ଧକାରାଚ୍ଛନ୍ନ ।

Statement of some old sage is produced; do not believe in conjectures; do not believe in that as truth to which you have become attached by habit; do not believe merely on the authority of your teachers and elders :—after observation and analysis, when it agrees with reason and is conducive to the good and benefit of one and all then accept it and live up to it."

Anguttara Nikaya by Max Muller.

''କେବଳଂ ଶାସ୍ତ୍ରମାଶ୍ରିତ୍ୟ ନ କର୍ତ୍ତବ୍ୟୋହି ନିର୍ଣ୍ଣୟଃ ।
ଯୁକ୍ତିହୀନବିଚାରେଣ ଧର୍ମହାନିଃ ପ୍ରଜାୟତେ ।''

ଯାହା ଧାରଣ କରେ ତାହା ଧର୍ମ ବା ଯାହା ଲୋକସମୂହକୁ ଧାରଣ କରେ ବା ଲୋକ ମଧ୍ୟରେ ଐକ୍ୟଭାବ ଆନୟନ କରେ ତାହା ଧର୍ମ । ଧର୍ମ ଶବ୍ଦର ଅନେକ ଅର୍ଥ ଥିଲେ ମଧ ଏହି ଶବ୍ଦର ମୂଳାର୍ଥ ଏହି ଯେ, ଯାହା ମନୁଷ୍ୟ ସମାଜକୁ ସ୍ନେହ, ସାମ୍ୟ, ମୈତ୍ରୀ ଆନୟନ କରେ ତାହା ଧର୍ମ । ଧର୍ମର ନାମାନ୍ତର ସତ୍ୟ, ସତ୍ୟ ଉଦ୍‌ଘାଟନର ନାମ ଧର୍ମପାଳନ । ସତ୍ୟ ଉଦ୍‌ଘାଟିତ ହୋଇ ଅବିଶ୍ୱାସ ଦୂରକୁ ପଳାୟନ କରେ, ବିଶ୍ୱାସନ ଆସନ ଦୃଢ଼ୀଭୂତ ହୁଏ ।

•

## ବେଦ ଓ ହିନ୍ଦୁଧର୍ମ

Buddha says, "Do not believe in what ye have heards; do not believe in traditions because they have been handed down from many generations; do not believe in anything because it is rumoured and spoken by many; do not believe merely because the written statement of some old sage is produced; do not believe in conjectures; do not believe in that as truth to which you have become attached by habit; do not believe merely on the authority of your

teachers and elders:— after observation and analysis, when it agrees with reason and is conducive to the good and benefit of one and all, then accept it and live up to it."

Anguttara Nikaya
translated by Maxmuller

କେବଳଂ ଶାସ୍ତ୍ରମାଶ୍ରିତ୍ୟ ନ କର୍ତ୍ତବ୍ୟୋହି ନିର୍ଣ୍ଣୟଃ ।
ଯୁକ୍ତିହୀନ-ବିଚାରେଣ ଧର୍ମହାନିଃ ପ୍ରଜାୟତେ ॥

ଯାହା ଧାରଣ କରେ ତାହା ଧର୍ମ ବା ଯାହା ଲୋକସମୂହକୁ ଧାରଣ କରେ ବା ଲୋକ ମଧ୍ୟରେ ଐକ୍ୟଭାବ ଆନୟନ କରେ, ତାହା ଧର୍ମ । ଧର୍ମର ନାମାନ୍ତର ସତ୍ୟ, ସତ୍ୟ ଉଦ୍‌ଘାଟନର ନାମ ଧର୍ମପାଳନ । ସତ୍ୟ ଉଦ୍‌ଘାଟିତ ହୋଇ ଅନ୍ଧବିଶ୍ୱାସ ଓ ଅବିଶ୍ୱାସ ଦୂରକୁ ପଳାୟନ କରେ, ବିଶ୍ୱାସର ଆସନ ଦୃଢ଼ୀଭୂତ ହୁଏ । ଫଳତଃ ସ୍ନେହ, ସହାନୁଭୂତି ମନୁଷ୍ୟ ଅନ୍ତରରେ ରାଜତ୍ୱ କରିପାରେ । ଉପରି ଉଦ୍ଧୃତ ଶ୍ଳୋକରେ ବ୍ୟବହୃତ ଧର୍ମ ଶବ୍ଦ ଏହି ଅଭିପ୍ରାୟରେ ବ୍ୟବହୃତ ହୋଇଅଛି । କେବଳ ଶାସ୍ତ୍ରର ଆଶ୍ରୟ ଗ୍ରହଣ କରି କୌଣସି ବିଷୟର ନିର୍ଣ୍ଣୟ କରିବା ବିଧେୟ ନୁହେଁ । ଯୁକ୍ତି ବା ଆତ୍ମବିବେକ ବୁଦ୍ଧିଦ୍ୱାରା ପରିଚାଳିତ ନ ହୋଇ ନିଷ୍ପତ୍ତି କଲେ ଧର୍ମହାନି ହେବ ବା ସମାଜରେ ବିଶୃଙ୍ଖଳା ଘଟିବ । ସତ୍ୟର ଶରଣାପନ୍ନ ହେଲେ ଭେଦବୁଦ୍ଧି ରହିପାରେ ନାହିଁ । ବିବେକ ବୁଦ୍ଧିଦ୍ୱାରା ପରିଚାଳିତ ହୋଇ ବେଦ ସମ୍ବନ୍ଧରେ ସତ୍ୟ ଉଦ୍‌ଘାଟନର ଚେଷ୍ଟା କରାଯାଉ ।

ଆମ୍ଭମାନଙ୍କର ପରି ଅଜ୍ଞ ବ୍ୟକ୍ତି ପକ୍ଷରେ ବେଦ ସମ୍ବନ୍ଧରେ ସତ୍ୟୋଦ୍‌ଘାଟନ କରିବସିବା ହାସ୍ୟାସ୍ପଦ ବୋଲି ବିବେଚିତ ହୋଇପାରେ; ମାତ୍ର ଯେ କୌଣସି ବିଷୟରେ ଆତ୍ମମତ ବ୍ୟକ୍ତ କରିବାର ଅଧିକାର ସମସ୍ତଙ୍କର ଅଛି । ବେଦ ସମସ୍ତ ହିନ୍ଦୁଶାସ୍ତ୍ର ଅପେକ୍ଷା ଯେ ପ୍ରାଚୀନ, ଏହା କି ପ୍ରାଚ୍ୟ କି ପାଶ୍ଚାତ୍ୟ ପଣ୍ଡିତଗଣ ଏକ ବାକ୍ୟରେ ସ୍ୱୀକାର କରନ୍ତି । ବେଦକୁ ହିନ୍ଦୁମାନେ ସର୍ବପ୍ରଧାନ ପ୍ରାମାଣିକ ଧର୍ମଶାସ୍ତ୍ର ବୋଲି ସ୍ୱୀକାର କରନ୍ତି । ବେଦ ହିନ୍ଦୁ ଧର୍ମର ଆକାର । ବେଦରୁ ସମସ୍ତ ଭାରତୀୟ ଧର୍ମର ଜନ୍ମ ହୋଇଅଛି ବୋଲି ସମସ୍ତେ ପ୍ରକାଶ କରନ୍ତି । ବେଦ ଅପୌରୁଷେୟ, ବ୍ରହ୍ମନିଃଶ୍ୱସିତ ଓ ନିତ୍ୟ ବୋଲି ବିଜ୍ଞ ହିନ୍ଦୁଗଣଙ୍କଦ୍ୱାରା ସମ୍ମାନିତ । ସର୍ବସାଧାରଣ ବିଶ୍ୱାସ କରନ୍ତି ଯେ, ବ୍ରହ୍ମାଙ୍କ ଚାରି ମୁଖରୁ ଚାରି ବେଦ ଉଚ୍ଚାରିତ ହୋଇଥିଲା, ଏଣୁ ବେଦବାକ୍ୟ ଅକାଟ୍ୟ । ପାଶ୍ଚାତ୍ୟ ଦେଶବାସୀ ପଣ୍ଡିତଙ୍କଦ୍ୱାରା ବେଦ ସମ୍ମାନିତ ଓ ଆଦରଣୀୟ । ଅପୌରୁଷେୟ ବା ବ୍ରହ୍ମନିଃଶ୍ୱସିତ ବୋଲି ନୁହେଁ— ଯେହେତୁ ସେମାନଙ୍କ ମତରେ ବେଦ ଗୋଟାଏ ପ୍ରାଚୀନ ଆର୍ଯ୍ୟଜାତିର ପୁରାତତ୍ତ୍ୱ ଓ ସଭ୍ୟତାର ଇତିହାସ ।

ଆମ ଦେଶବାସୀ ଅପୌରୁଷେୟ ଓ ବ୍ରହ୍ମନିଃଶ୍ୱସିତ ବେଦକୁ ଗୋପନୀୟ ବୋଲି ଭାବି ଅମୂଲ୍ୟ ଅଦେୟ ପୈତୃକ ସମ୍ପତ୍ତି ରୂପେ ଗଚ୍ଛିତ ରଖିବାରେ ଚେଷ୍ଟା କଲେ । ଏଣୁ ଏ ସମ୍ପତ୍ତି ସମସ୍ତ ଭାରତବାସୀଙ୍କର ଉପଭୋଗ୍ୟ ହୋଇପାରିଲା ନାହିଁ । ବେଦ ହିନ୍ଦୁର ନିଧି । ଏଣୁ ଭୂଗର୍ଭରେ ରହିଲା ଧନ ପରି ଏହା କେତେକ ବ୍ରାହ୍ମଣ ନିକେତନରେ ବା ରାଜଗୃହରେ ସାଇତା ହୋଇ ରହିଥିଲା । ଏହାର ଆଦାନ ପ୍ରଦାନ ହେଲା ନାହିଁ । ଧନ ଓ ବିଦ୍ୟା ଆଦାନପ୍ରଦାନରେ ବୃଦ୍ଧିଲାଭ କରେ । ଭାରତବାସୀ ମାତ୍ରକେ ବେଦର ନାମ ଜାଣନ୍ତି । ମାତ୍ର କିମ୍ବଦନ୍ତୀ ଗଚ୍ଛିତ ଧନର ବା ଭୂଗର୍ଭସ୍ଥ ଧନର ପ୍ରକାର ଓ ପରିମାଣ ଯେପରି ବଂଶଧରମାନଙ୍କୁ ଜଣାଯାଇପାରେ ନାହିଁ, ସେହିପରି ବେଦରେ କ'ଣ ଅଛି ଏହା ହିନ୍ଦୁଗଣଙ୍କୁ ଅଗୋଚର ।

ପାଶ୍ଚାତ୍ୟ ପଣ୍ଡିତଗଣଙ୍କ ନିକଟରେ ଏହା ଅତି ଅମୂଲ୍ୟ ପୋତାଧନ ପ୍ରାୟ ପ୍ରତିଭାତ ଥିଲା । ଏଣୁ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତଗଣ ତାହା ଉଦ୍ଧାର କରିବାରେ ପ୍ରଭୂତ ପରିଶ୍ରମ କଲେ । ସେମାନଙ୍କର ଅନୁଶୀଳନ ଓ ଗବେଷଣା ଫଳରେ ଆଜି ବେଦ ସମସ୍ତଙ୍କର ହସ୍ତଗତ । ସେହି ଗବେଷଣାର ଅନୁକରଣରେ ଆଜି ତୁମେ ଆମେ ବେଦ ସମ୍ବନ୍ଧରେ ପଦେଅଧେ ଲେଖିବାକୁ ସମର୍ଥ ହେଉଥାଉଁ । ସେମାନେ ଖ୍ରୀଷ୍ଟଧର୍ମାବଲମ୍ବୀ ହୋଇ ସୁଦ୍ଧା କି ପ୍ରକାର ଅତୁଳନୀୟ ଯତ୍ନ ଓ ପରିଶ୍ରମ ଦ୍ୱାରା ଏହି ବେଦୋଦ୍ଧାର ରୂପ ମହା ଅସାଧ ସାଧନ କରିଅଛନ୍ତି, ତହିଁର ବିବରଣ ଲେଖିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଭିନ୍ନ ଧର୍ମାବଲମ୍ବୀଦ୍ୱାରା ହିନ୍ଦୁର ସମ୍ମାନିତ ଋଗ୍‌ବେଦର ପ୍ରଥମ ପରିଶୁଦ୍ଧ ସଂସ୍କରଣରେ ଭାରତୀୟ ଆଲୋକରଶ୍ମି ପତିତ ହେଲା । ଆଜି ଘରେ ଘରେ ବେଦ । ଘରେ ଘରେ ବେଦର ଅନୁବାଦ । ପାଶ୍ଚାତ୍ୟ ଧୀଶକ୍ତିସମ୍ପନ୍ନ ପଣ୍ଡିତମାନଙ୍କଦ୍ୱାରା ବେଦ ବହୁ ସମ୍ମାନିତ । ଆଦୃତ, ଯେହେତୁ ସେମାନେ ଜାଣନ୍ତି ଯେ, The Rigveda is not a book, but a library and a literature.

ବେଦୋଦ୍ଧାର ବିଷୟରେ କୃତଶ୍ରମ ପାଶ୍ଚାତ୍ୟ ପଣ୍ଡିତମାନଙ୍କଠାରେ କୃତଜ୍ଞତା ପ୍ରଦର୍ଶନ ଆମ୍ଭମାନଙ୍କର ସର୍ବଥା କରଣୀୟ ।

ବେଦର ଆଲୋଚନା କରିବା ପୂର୍ବରୁ ବେଦ ପର୍ଯ୍ୟାୟର ଆଲୋଚନା କରାଯାଉ ।

ଋଗ୍, ଯଜୁ, ସାମ ଓ ଅଥର୍ବ ସଂହିତାକୁ ଚାରି ବେଦ ବୋଲାଯାଏ । ଏହି ଚାରି ଗୋଟି ସଂହିତାର ବେଦ ଆଖ୍ୟା ହେଲା କେବେ ? ବେଦ ଶବ୍ଦଟି ସଂହିତାମାନଙ୍କର ପୂର୍ବଜନ୍ମା, ସହଜନ୍ମା ବା ପରାଜନ୍ମା ? ଋଗ୍ ସଂହିତାରେ ବେଦ ଶବ୍ଦର ଉଲ୍ଲେଖ ନାହିଁ । ତଥା ଯଜୁଃ ଓ ସାମ ସଂହିତାରେ ମଧ ବେଦ ଶବ୍ଦ ଦୃଷ୍ଟିଗୋଚର ହୁଏ ନାହିଁ । ସୁତରାଂ ଏହା ପ୍ରକାଶ କଲେ ଅସଙ୍ଗତ ହେବ କି ଯେ ଏହି ତିନି ସଂହିତା ଅପେକ୍ଷା ବେଦ ଶବ୍ଦଟି ପରଜନ୍ମା ? ଅଥର୍ବ ସଂହିତାରେ ବେଦ ଶବ୍ଦର ବ୍ୟବହାର ଦେଖାଯାଏ । ପବିତ୍ର ମନ୍ତ୍ର ଏହି ଅର୍ଥରେ ଏକବଚନରେ ବେଦ ଶବ୍ଦ ତିନି ସ୍ଥାନରେ ବ୍ୟବହୃତ ହୋଇଅଛି:— (ଅ. ବେ. ୭ । ୫୪ । ୨ ; ୧୦ । ୮ । ୧୭ ; ୧୦ । ୩ । ୭) ଏବଂ ଋଗ୍, ଯଜୁ ଓ ସାମ ଅର୍ଥରେ ବହୁବଚନରେ ଥରେ ବ୍ୟବହୃତ ହୋଇଅଛି, ଯଥା— 'ଯସ୍ମିନ୍ ବେଦା ବିହିତା ବିଶ୍ୱରୂପଃ'। (ଅ. ବେ. ୪ । ୩୫ । ୬) । ଏହା ଦେଖି ଅନାୟାସରେ ମତ ଦିଆଯାଇପାରେ ଯେ, ଅଥର୍ବ ସଂହିତାର ଏହି ମନ୍ତ୍ରମାନଙ୍କ ଅପେକ୍ଷା ବେଦ ଶବ୍ଦଟି ପ୍ରାଚୀନ । ଏଥିଉତ୍ତାରୁ ବ୍ରାହ୍ମଣାଦି ଗ୍ରନ୍ଥରେ ଉପନିଷଦ୍, ପୁରାଣ ପ୍ରଭୃତିରେ ବେଦ ଓ ତାତ୍ପର୍ଯ୍ୟାୟ ବହୁଳ ଶବ୍ଦର ବ୍ୟବହାର ଦେଖାଯାଏ । ଏଥିରୁ ଅନାୟାସରେ ବୋଲାଯାଇପାରେ, ପ୍ରାଚୀନ କାଳରୁ ଯେଉଁ ଋଗ୍, ଯଜୁଃ ଓ ସାମ ମନ୍ତ୍ରରାଶି ଆର୍ଯ୍ୟଗଣଙ୍କଦ୍ୱାରା ବ୍ୟବହୃତ ହେଉଥିଲା, ତାହାର ତାତ୍ପର୍ଯ୍ୟ ହୃଦୟଙ୍ଗମ କରି ବ୍ରାହ୍ମଣାଦି ଗ୍ରନ୍ଥରଚକମାନେ ଉକ୍ତ ସଂହିତାମାନଙ୍କର ନାମ ବେଦ ବୋଲି ଗ୍ରହଣ କଲେ ।

କେହି କେହି କହନ୍ତି, ବିଦ୍ ଧାତୁରୁ ବେଦ ଶବ୍ଦର ଉତ୍ପତ୍ତି । ବିଦ୍ ଅର୍ଥ ଜ୍ଞାନ । ପରବର୍ତ୍ତୀ ବ୍ୟାଖ୍ୟାକର୍ତ୍ତାମାନଙ୍କଦ୍ୱାରା ଏହି ଶବ୍ଦର ବ୍ୟୁତ୍ପତ୍ତ୍ୟର୍ଥ ପ୍ରକାଶ ପାଇଅଛି, ଯଥା— 'ବିଦ୍ୟନ୍ତେ ଜ୍ଞାୟନ୍ତେ ଲଭନ୍ତେ ବା ଏଭିଧର୍ମାଦି ପୁରୁଷାର୍ଥ ଇତି ବେଦାଃ'। ଏହାଦ୍ୱାରା ଧର୍ମାଦି ପୁରୁଷାର୍ଥ ଜଣାଯାଏ ବା ଲାଭ କରାଯାଏ, ସେହି ହେତୁରୁ ଏହାର ନାମ ବେଦ । ମାତ୍ର ଏହା ପୌରାଣିକ ବ୍ୟୁତ୍ପତ୍ତି ବୋଲାଯାଇପାରେ ।

ଏହି ବ୍ୟୁତ୍ପତ୍ତି ଅପେକ୍ଷା ବିଦ୍ୟା ଶବ୍ଦରୁ ବେଦ ଶବ୍ଦର ଉତ୍ପତ୍ତି ପ୍ରାଚୀନ ବୋଲାଯାଇପାରେ । ପ୍ରଥମେ ବେଦର ନାମ ବିଦ୍ୟା ଥିଲା, ଯଥା— 'ତ୍ରୟୀ ବୈ ବିଦ୍ୟାଃ । ଋଚେ ଯଜୁଂଷି ସାମାନି'। (ଶ. ବ୍ରା. ୪ । ୬ । ୭ । ୧)

ନିରୁକ୍ତ ଅନୁସାରେ ବେଦ ଅର୍ଥ ଧନ । ''ବିଦ୍ୟତେ ଲଭ୍ୟତେ ଏବ ଇତି ବେଦଃ ।'' (ନିଘଣ୍ଟୁ ୨ । ୧୦)

ବେଦ ପର୍ଯ୍ୟାୟ ଅନେକ ଶବ୍ଦ ଦେଖାଯାଏ, ଯଥା— ତ୍ରୟୀ, ଶ୍ରୁତି, ସ୍ୱାଧ୍ୟାୟ, ଆମ୍ନାୟ, ସମାମ୍ନାୟ, ଆଗମ, ନିଗମ, ବ୍ରହ୍ମ, ଇତ୍ୟାଦି ।

ଶ୍ରୁତି—'ଶ୍ରବଣାତ୍ ଶ୍ରୁତିଃ' କେହି କହନ୍ତି, ଧର୍ମ ଶୁଣାଯାଏ ଏହାଦ୍ୱାରା, କେହି କହନ୍ତି ଯାହା ବହୁକାଳରୁ ଶ୍ରୁତ ବା ଶୁଣା ହୋଇଆସୁଛି । ପ୍ରଥମୋକ୍ତ ଅର୍ଥରେ ସମସ୍ତ ଧର୍ମଶାସ୍ତ୍ରକୁ ଶ୍ରୁତି ବୋଲାଯାଇପାରେ । ମାତ୍ର ତାହା ସମୀଚୀନ ନୁହେଁ । ଶେଷୋକ୍ତ ଅର୍ଥ ଠିକ୍ ଥିବାର ଅନୁମାନ କରାଯାଏ । ବେଦ ଶୁଣିବାଦ୍ୱାରା ଶିକ୍ଷା କରାଯାଉଥିଲା । ବର୍ଣ୍ଣ ସୃଷ୍ଟି ପୂର୍ବରୁ ବେଦ ବିଦ୍ୟମାନ ଥିବାର ଏହି ଶବ୍ଦ ପ୍ରତିପନ୍ନ କରୁଅଛି । ସମ୍ଭବତଃ ପରବର୍ତ୍ତୀ ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ୍, ମାନବ ଧର୍ମଶାସ୍ତ୍ର, ଏମନ୍ତ କି ପୁରାଣାଦିକୁ ମଧ ଶ୍ରୁତି ଆଖ୍ୟା ଦେଇ ସ୍ୱମତ ପୋଷଣ କରିବା ଅଭିପ୍ରାୟରେ ପ୍ରଥମୋକ୍ତ ବ୍ୟାଖ୍ୟାର ସୃଷ୍ଟି କରାଯାଇଅଛି ।

ତ୍ରୟୀ— ପଦ୍ୟ, ଗଦ୍ୟ ଓ ଗାନ ଏହି ତିନି ପ୍ରଣାଳୀରେ ବେଦ ରଚିତ ହୋଇଥିବାରୁ ବେଦର ନାମ ତ୍ରୟୀ । ମୁଖ୍ୟାର୍ଥରେ କେବଳ ଋଗ୍, ଯଜୁ ଓ ସାମ ମନ୍ତ୍ର ତ୍ରୟୀ ଅଟନ୍ତି । ବ୍ରାହ୍ମଣ ଯୁଗରେ ଏହି ଶବ୍ଦର ସୃଷ୍ଟି । ତ୍ରୟୀ ବୈ ବିଦ୍ୟାଃ ଋଚେ ଯଜୁଂଷି ସମାନି ।

(ଶ.ବ୍ରା. ୪ । ୬ । ୭ । ୧)

ସ୍ୱାଧ୍ୟାୟ— ବେଦ ଅବଶ୍ୟ ସମ୍ୟକ୍‌ରୂପେ ଅଧ୍ୟୟନ ଯୋଗ୍ୟ, ଏଣୁ ବେଦର ନାମ ସ୍ୱାଧ୍ୟାୟ ।

ଆମ୍ନାୟ ସମାମ୍ନାୟ—ଧର୍ମ ଉପଦେଶ ଦିଏ ବୋଲି ବେଦର ନାମ ଆମ୍ନାୟ ଓ ସମାମ୍ନାୟ । କେହି କେହି କହନ୍ତି, ''ଆମ୍ନାୟୋ ବେଦଃ ।'' ଗୁରୁମୁଖରୁ ଯେଉଁ ମନ୍ତ୍ରସମୂହ ଅଭ୍ୟାସଦ୍ୱାରା ଶିକ୍ଷା କରାଯାଏ, ତାହା ଆମ୍ନାୟ । ବେଦ ଗୁରୁମୁଖରୁ ଅଭ୍ୟାସଦ୍ୱାରା ଶିକ୍ଷା କରାଯାଉଥିଲା, ଏଣୁ ବେଦ ଆମ୍ନାୟ ବା ସମାମ୍ନାୟ । କେହି କେହି କହନ୍ତି, ଋଗ୍, ଯଜୁ, ସାମ ଛଡ଼ା ବ୍ରାହ୍ମଣାଦି ଗ୍ରନ୍ଥ ମଧ ଆମ୍ନାୟ ପଦବାଚ୍ୟ ।

ଆଗମ, ନିଗମ (ଆ + ଗମ + ଘ = ଆଗମ ନି + ଗମ + ଘ = ନିଗମ)— ବେଦକୁ ଆଗମ ଓ ନିଗମ ବୋଲାଯାଏ । ମାତ୍ର ଏ ଯୋଡ଼ିକ ଶବ୍ଦ କିପରି ଗମ୍ ଧାତୁରୁ ନିଷ୍ପନ୍ନ ହୋଇ ବେଦର ପ୍ରତିଶବ୍ଦ ହେଲେ ତହିଁର ସନ୍ତୋଷଜନକ ବ୍ୟାଖ୍ୟା ମିଳେ ନାହିଁ । ବ୍ରାହ୍ମଣାଦି ଯୁଗରୁ ଏହି ଦୁଇ ଶବ୍ଦ ବେଦାର୍ଥରେ ବ୍ୟବହୃତ ହୋଇ ଆସୁଅଛି । ବୋଧହୁଏ, ଯାସ୍କ ଯେଉଁ ମନ୍ତ୍ରମାନଙ୍କରେ ନିଗୂଢ଼ାର୍ଥ

ବିଦ୍ୟମାନ, ତାହାକୁ ନିଗମ ଆଖ୍ୟା ଦେଇଛନ୍ତି । ସୁତରାଂ ମନ୍ତ୍ରଭାଗର ନାମ ନିଗମ ହୋଇଅଛି । ମନୁ ଭାଗବତାଦିରେ ନିଗମ ଶବ୍ଦ ସ୍ପଷ୍ଟ ବେଦାର୍ଥ ବୋଧକ ।

ବ୍ରହ୍ମ ଶବ୍ଦ ବେଦାର୍ଥରେ ମନୁ, ଭାଗବତ ଓ ଅନ୍ୟାନ୍ୟ ପୁରାଣମାନଙ୍କରେ ବ୍ୟବହୃତ ହୋଇଅଛି । ବ୍ରାହ୍ମଣାଦି ଗ୍ରନ୍ଥରେ ଏହାର ଉଲ୍ଲେଖ ଦେଖାଯାଏ ନାହିଁ ।

ଆଉ କେତେଗୋଟି ଶବ୍ଦ ବେଦ ଶବ୍ଦର ପ୍ରତିଶବ୍ଦ ରୂପେ ବ୍ୟବହୃତ ହେଉଥିଲେ ମଧ୍ୟ ତାହା ସର୍ବବାଦିସମ୍ମତ ନୁହେଁ ବୋଲି ଅନୁମାନ ହୁଏ । ଏଣୁ ତହିଁର ଆଲୋଚନା ନିଷ୍ପ୍ରୟୋଜନ । କୋଷକାରମାନେ ଉପରୋକ୍ତ ସମସ୍ତ ଶବ୍ଦକୁ ବେଦପର୍ଯ୍ୟାୟ ବୋଲି ଗ୍ରହଣ କରି ନାହାନ୍ତି । 'ଶ୍ରୁତିଃ ସ୍ତ୍ରୀ ବେଦ ଆମ୍ନାୟ' (ଅମର) ହଳାୟୁଧ ଲେଖନ୍ତି, 'ବେଦଃ ଶ୍ରୁତିସ୍ତଥାମ୍ନାୟଃ ସ୍ୱାଧାୟଶ୍ଛନ୍ଦ ଆଗମଃ'।

ବେଦ ଓ ତତ୍‌ପର୍ଯ୍ୟାୟ ବ୍ରାହ୍ମଣ ଯୁଗରେ ଓ ପରେ ସୃଷ୍ଟି ହୋଇଅଛନ୍ତି । ବେଦ ଶବ୍ଦଟି କାଳ୍ପନିକ ବ୍ରହ୍ମାଙ୍କ ମୁଖନିଃସୃତ ନୁହେଁ କିମ୍ବା ନିଃଶ୍ୱସିତ ନୁହେଁ । ବେଦ ଶବ୍ଦଟି ମନୁଷ୍ୟ ରଚିତ । ତଥାପି ଶଙ୍କରାଦି ଦାର୍ଶନିକଗଣ ଏହି ଶବ୍ଦ ନିତ୍ୟ ବୋଲି ଘୋଷଣା କରିବାକୁ ଛାଡ଼ି ନାହାନ୍ତି ।

ଆମ୍ଭେମାନେ ଋଗ୍‌ସଂହିତା, ଯଜୁଃସଂହିତା, ସାମସଂହିତା ଓ ଅଥର୍ବସଂହିତା ଚାରି ବେଦ ବୋଲି ଜାଣୁ । କେବଳ ଏତିକି ନୁହେଁ, ଏହି ଚାରି ବେଦ ନିତ୍ୟ, ଅପୌରୁଷେୟ ଓ ବ୍ରହ୍ମ ନିଃଶ୍ୱସିତ ବୋଲି ହିନ୍ଦୁ ଧର୍ମାବଲମ୍ବୀଗଣ ବିଶ୍ୱାସ କରିବାକୁ ବାଧ୍ୟ । ମାତ୍ର ବେଦ ନିତ୍ୟ କି ? ଅପୌରୁଷେୟ ଓ ବ୍ରହ୍ମନିଃଶ୍ୱସିତ କି ? ସମଗ୍ର ହିନ୍ଦୁ ଧର୍ମଗ୍ରନ୍ଥ ଏ ସମ୍ବନ୍ଧରେ ଏକମତ ବୋଲାଯାଇପାରେ । ଏମନ୍ତ କି କେତେକ ଦର୍ଶନ ମଧ୍ୟ ବେଦକୁ ନିତ୍ୟ, ଅପୌରୁଷେୟ ଓ ବ୍ରହ୍ମନିଃଶ୍ୱସିତ ବୋଲି ସ୍ୱୀକାର କରି ଯାଇଅଛନ୍ତି । ବିଶେଷତଃ ଦର୍ଶନଶାସ୍ତ୍ରର ଭାଷ୍ୟକାରଗଣ ମୂଳ ସୂତ୍ରମାନଙ୍କର ବ୍ୟାଖ୍ୟାକୁ ବିଶଦ କରିବା ତେଣେ ଥାଉ, ତାହାକୁ ତର୍କଜାଲଦ୍ୱାରା ଆବିଳ କରିଅଛନ୍ତି । ସ୍ୱମତପୋଷଣ ହିଁ ସେମାନଙ୍କର ମୂଳ ଉଦ୍ଦେଶ୍ୟ । ଏଣୁ ପାଣ୍ଡିତ୍ୟାଭିମାନରେ ସେମାନେ ସତ୍ୟର ଅପଳାପ କରିଅଛନ୍ତି ବୋଲାଯାଇପାରେ । ଦର୍ଶନଶାସ୍ତ୍ରର ମୂଳ ଉଦ୍ଦେଶ୍ୟ ସତ୍ୟ ଆବିଷ୍କାର । ତତ୍ତ୍ୱାନ୍ୱେଷୀ ଯେବେ କୌଣସି ଆପ୍ତବାକ୍ୟ ଉପରେ ତର୍କର ଭିତ୍ତି ସ୍ଥାପନ କରେ, ତାହା ପକ୍ଷରେ ତତ୍ତ୍ୱାନ୍ୱେଷଣ ବିଡ଼ମ୍ବନା ମାତ୍ର । କେତେକ ଦର୍ଶନଶାସ୍ତ୍ର ବେଦର ନିତ୍ୟତା ଉପରେ ତାଙ୍କର ଭିତ୍ତି ସ୍ଥାପନ କରିଅଛନ୍ତି । ଏଣୁ ସେମାନଙ୍କର ଯୁକ୍ତି ଓ ମତକ ସର୍ବବାଦିସମ୍ମତ ହୋଇ ନ ପାରେ । କେବଳ ଯେଉଁମାନେ ଅନ୍ଧପରମ୍ପରା ନ୍ୟାୟର ବଶବର୍ତ୍ତୀ, ସେମାନେ ତାହା ଗ୍ରହଣ କରିପାରନ୍ତି ।

ଷଡ଼୍‌ଦର୍ଶନ ମଧ୍ୟରୁ ସାଂଖ୍ୟ ଦର୍ଶନ ଓ ବୈଶେଷିକ ଦର୍ଶନ ନିରୀଶ୍ୱରବାଦୀ । ତଥାପି ଭାଷ୍ୟକାରମାନେ ଓ ଅନ୍ୟାନ୍ୟ ଦାର୍ଶନିକଗଣ ଏ ଦୁଇ ଦର୍ଶନକୁ ଆପଣା ମତ ଆଡ଼କୁ ଟାଣି ଆଣିବାକୁ ଯଥେଷ୍ଟ ପ୍ରୟାସ କରିଅଛନ୍ତି । ମାତ୍ର ସେ ପ୍ରୟାସ ବୃଥା । ଏ ପ୍ରକାର କରିବାରେ ଦୁରଭିସନ୍ଧି ଥିବାର ଅନୁମାନ କରାଯାଇପାରେ । ଶ୍ରେଷ୍ଠ ଦୁଇ ଗୋଟି ଦର୍ଶନ ନିରୀଶ୍ୱରବାଦୀ ପ୍ରତିପନ୍ନ ହେଲେ ବୌଦ୍ଧମତର ଶ୍ରେଷ୍ଠତା ପ୍ରତିପାଦିତ ହୋଇପାରେ ଏବଂ ହିନ୍ଦୁଦର୍ଶନ ସଂଖ୍ୟାଲଘିଷ୍ଠ ହୋଇ ସତ୍ୟ-ଏସେମ୍ବ୍ଲିରେ ଯଥେଷ୍ଟ ଭୋଟ ପାଇପାରିବ ନାହିଁ । ସେ ଯାହାହେଉ, ନ୍ୟାୟ, ପାତଞ୍ଜଳି, ମୀମାଂସା ଓ ବେଦାନ୍ତ ଦର୍ଶନ ଈଶ୍ୱରବାଦୀ ଏବଂ ବେଦର ନିତ୍ୟତ୍ୱ ସ୍ୱୀକାର କରନ୍ତି । ଅପୌରୁଷେୟ ସମ୍ବନ୍ଧରେ ମଧ୍ୟ ମତଭେଦ ନାହିଁ । ମୀମାଂସା ଓ ବେଦାନ୍ତ ଶବ୍ଦ ନିତ୍ୟ ହେତୁ ବେଦ ନିତ୍ୟ ବୋଲି ପ୍ରକାଶ କରନ୍ତି । ନ୍ୟାୟ ଦର୍ଶନ ବେଦ ନିତ୍ୟ ବୋଲି ସ୍ୱୀକାର କଲେ ମଧ୍ୟ ଶବ୍ଦର ନିତ୍ୟତା ସ୍ୱୀକାର କରେ ନାହିଁ । ନ୍ୟାୟ, ମୀମାଂସା ଓ ବେଦାନ୍ତ ଦର୍ଶନ ମଧ୍ୟରେ ଶବ୍ଦର ନିତ୍ୟତା ସମ୍ବନ୍ଧରେ ପରସ୍ପର ବିରୋଧ ମତ ଥିଲେ ମଧ୍ୟ ବେଦର ନିତ୍ୟତା ଅବଶ୍ୟ ସ୍ୱୀକାର୍ଯ୍ୟ, ଏହା ସେମାନଙ୍କର ପ୍ରତିଜ୍ଞା । ବେଦବିଶ୍ୱାସୀ ଯେ ନୁହେଁ, ସେ ନାସ୍ତିକ । ନାସ୍ତିକ ମତଖଣ୍ଡନ ହିଁ ଏହି ତିନି ଦର୍ଶନର ଚରିତାର୍ଥତା । ବୌଦ୍ଧଧର୍ମର ଅବସାନ ବେଳେ ଶଙ୍କରାଦିଙ୍କର ଆବିର୍ଭାବ । ସୁତରାଂ ଏହି ହିନ୍ଦୁ ଦାର୍ଶନିକଗଣଙ୍କ ପକ୍ଷରେ ବୌଦ୍ଧ ଦର୍ଶନର ଅସାରତା ପ୍ରମାଣିତ କରିବା ଅଭିପ୍ରାୟରେ ବେଦବିଶ୍ୱାସୀ ହିନ୍ଦୁମାନଙ୍କୁ ବେଦର ନିତ୍ୟତା ଓ ଅପୌରୁଷେୟତା ବାକ୍ୟ କୌଶଳଦ୍ୱାରା ହୃଦୟଙ୍ଗମ କରାଇବା ଭିନ୍ନ ଉପାୟନ୍ତର କ'ଣ ଥିଲା ? କପିଳ, କଣାଦ ଓ ବୌଦ୍ଧ ଦାର୍ଶନିକଗଣଙ୍କ ଅବର୍ତ୍ତମାନତାରେ ଶଙ୍କର ଯାହା କହିଲେ, ତାହା ଗ୍ରାହ୍ୟ ହେବା ସ୍ୱାଭାବିକ । ଏଥିର ତଥ୍ୟ ଭବିଷ୍ୟତ୍ ଶାସ୍ତ୍ରବିଶାରଦ ଓ ଐତିହାସିକଗଣଙ୍କଦ୍ୱାରା ସ୍ଥିରୀକୃତ ହେବ ।

ଏଠାରେ ଦର୍ଶନ ସମ୍ବନ୍ଧରେ ଦୀର୍ଘ ଆଲୋଚନା ନିଷ୍ପ୍ରୟୋଜନ ଥିଲେ ସୁଦ୍ଧା ଦୁଇ ପଦ ଲେଖାଗଲା । ପ୍ରକୃତ ବିଷୟର ଅବତାରଣା କରିବା ଆଗରୁ ବେଦାନ୍ତ ମତ ନେଇ ଦୁଇ କଥା ପୁଣି ଲେଖାଯାଉଅଛି, ପାଠକଗଣ କ୍ଷମାଦେବେ ।

ଶଙ୍କରଙ୍କ ମତ ଯେ କେବଳ ବେଦାନ୍ତ ଦର୍ଶନର ମତ ତାହା ନୁହେଁ, ତାଙ୍କ ଭାଷ୍ୟ ମୂଳଶାସ୍ତ୍ରକୁ ଅନ୍ତରାଳରେ ରଖି ସ୍ୱଦୀପ୍ତି ପ୍ରକାଶ କରିଅଛି । ତାଙ୍କ ମତରେ ବେଦ ଯେ କେବଳ ନିତ୍ୟ ତାହା ନୁହେଁ, ଶବ୍ଦ ନିତ୍ୟ ହେତୁରୁ ବେଦ ନିତ୍ୟ । ବେଦ ଈଶ୍ୱର ରଚିତ ନୁହେଁ । ବେଦ ଈଶ୍ୱରବତ୍ ନିତ୍ୟ । ସୃଷ୍ଟି ଶବ୍ଦପୂର୍ବିକା । ପ୍ରସ୍ତୁତ ପଦାର୍ଥର ବାଚକ ଶବ୍ଦ ଆଗରୁ ସ୍ମରଣ ନ କଲେ ପଦାର୍ଥ ପ୍ରସ୍ତୁତ ହୋଇପାରେ ନାହିଁ । ପ୍ରଜାପତିଙ୍କ ମନରେ ବୈଦିକ ଶବ୍ଦର ସ୍ମରଣ ହେବାରୁ ସେ ସୃଷ୍ଟି କରିବାକୁ ସମର୍ଥ ହେଲେ । ଶଙ୍କରଙ୍କର ଏହି ମତମାନ ଯୁକ୍ତିସିଦ୍ଧ ନୁହେଁ ବୋଲି ଆଧୁନିକ ବୈଜ୍ଞାନିକମାନେ ମନ୍ତବ୍ୟ ଦେବେ ବୋଲି ଆମ୍ଭମାନଙ୍କର ବିଶ୍ୱାସ ।

ବେଦ ଈଶ୍ୱରବତ୍ ନିତ୍ୟ ହେଲେ ବେଦ ଈଶ୍ୱର ସମକକ୍ଷ, କି ଏଥିରୁ ଜଣେ ବଡ଼ ? ସର୍ବନିୟନ୍ତା ଈଶ୍ୱରଙ୍କର କର୍ତ୍ତୃତ୍ୱ ବେଦରେ ନାହିଁ, ଅଥଚ ଶଙ୍କର ହିନ୍ଦୁଧର୍ମର ଉଦ୍ଧାରକର୍ତ୍ତା ।

ପ୍ରଜାପତି ବିଶ୍ୱବ୍ରହ୍ମାଣ୍ଡକୁ ସୃଷ୍ଟି କରିଅଛନ୍ତି ବୋଲି କି ଜଗଦ୍‌ବାସୀ ସମସ୍ତେ ବିଶ୍ୱାସ କରିବେ ?

ବାଚକ ଶବ୍ଦ ସ୍ମରଣ ନ କଲେ କି କୌଣସି ପଦାର୍ଥ ପ୍ରସ୍ତୁତ ବା ଆବିଷ୍କୃତ ହୁଏ ନାହିଁ ? କୂପମଣ୍ଡୂକ ଏହା ବିଶ୍ୱାସ କରିପାରେ । କେତେ ପଦାର୍ଥ ନିର୍ମିତ ହେଉଅଛି, କେତେ ପଦାର୍ଥ ଆବିଷ୍କୃତ ହେଉଅଛି, ଅଥଚ ତା'ର ବାଚକଶବ୍ଦ ଆଗରୁ ନାହିଁ । ଆଧୁନିକ ବୈଦ୍ୟୁତିକ ଆବିଷ୍କାର, ରେଡ଼ିୟମ୍, ହିଲିୟମ୍ ପ୍ରଭୃତି ପଦାର୍ଥର ଆବିଷ୍କାର କି ଶବ୍ଦପୂର୍ବିକା ? ଏହି ପଦାର୍ଥମାନଙ୍କର ବାଚକଶବ୍ଦ କି ବେଦରେ ଅଛି, ନା ବୈଦିକ ଋଷିମାନଙ୍କ କଳ୍ପନାରେ ଏ ଯୁଗର ବିଷୟ ଉଦ୍‌ବେଳିତ ହୋଇଥିଲା ? ଦେଖାଯାଏ, ଅନେକ ପଦାର୍ଥ ପ୍ରସ୍ତୁତ ହେଲା ପରେ ନାମ ଦିଆଯାଏ ବା ଆବିଷ୍କୃତ ହେଲା ପରେ ନାମକରଣ କରାଯାଏ ।

X Ray ବା Raman Effect କି ଶବ୍ଦପୂର୍ବିକା ଆବିଷ୍କ୍ରିୟା ? ତେବେ ଶଙ୍କରଙ୍କ କଥା ମାନେ କିଏ ?

ଜାଗତିକ ସମସ୍ତ ବ୍ୟବହାର ବେଦ ଶବ୍ଦରୁ ହୋଇଅଛି ବୋଲିବାଦ୍ୱାରା କେଡ଼େ ସଙ୍କୀର୍ଣ୍ଣତାର ପରିଚୟ ମିଳୁଅଛି, ତାହା କୁହାଯାଇ ନ ପାରେ । ଶଙ୍କର ଓ଼ ଦୟାନନ୍ଦ ସରସ୍ୱତୀ ପ୍ରଭୃତି ଏପରି ବିଶ୍ୱାସ କରିପାରନ୍ତି, ମାତ୍ର ସମସ୍ତେ ବିଶ୍ୱାସ କରିବେ କାହିଁକି ? ତେବେ ଏଠାରେ ପ୍ରତ୍ୟେକ ମତପ୍ରବର୍ତ୍ତକମାନଙ୍କ ମତର ସମାଲୋଚନା କରାଯାଉ ନ ଥିବାରୁ ତହିଁର ବିଶେଷ ଉଲ୍ଲେଖ ନିଷ୍ପ୍ରୟୋଜନ । ପାଠକଗଣ ସତ୍ୟାର୍ଥ ପ୍ରକାଶର ସପ୍ତମ ସମୁଲ୍ଲାସର ବେଦ ବିଷୟ ବିଚାର ଆମୂଳ ପାଠକଲେ ସତ୍ୟାର୍ଥପ୍ରକାଶର ଯୁକ୍ତିର ଅସାରତା ଉପଲବ୍ଧି କରିପାରିବେ ।

ବେଦାନ୍ତ ଓ ମୀମାଂସା ଦର୍ଶନ ଶବ୍ଦର ନିତ୍ୟତା ଉପରେ ବେଦର ନିତ୍ୟତା ସ୍ଥିର କରନ୍ତି । ମାତ୍ର ଶବ୍ଦଧ୍ୱନ୍ୟାତ୍ମକ ନୁହେଁ କି ? ଏଣୁ ଧ୍ୱନି ମତ ନିତ୍ୟ । ଏ ସମ୍ବନ୍ଧରେ ପରସ୍ପର ବିରୋଧୀ ନ୍ୟାୟ ଦର୍ଶନ ଏବଂ ବେଦାନ୍ତ ବା ମୀମାଂସା ଦର୍ଶନର ମତ ଉଲ୍ଲେଖ କରି ଖଣ୍ଡନ ବା ସମର୍ଥନ କରିବାର ଅବସର ଆମ୍ଭମାନଙ୍କର ନାହିଁ । ପାଠକେ ଇଚ୍ଛାକଲେ ଦେଖିପାରିବେ । ତେବେ ଧ୍ୱନି ବା ଶବ୍ଦ ଦୁଇ ପ୍ରକାର— ଅବ୍ୟକ୍ତ ଧ୍ୱନି ଓ ବ୍ୟକ୍ତ ଧ୍ୱନି । ବ୍ୟକ୍ତ ଧ୍ୱନି ବର୍ଣ୍ଣାତ୍ମକ ।

ବର୍ଣ୍ଣ ଧ୍ୱନି ପ୍ରକାଶକ ସାଙ୍କେତିକ ନୁହେଁ କି ? ଦେଶ ଭେଦରେ କେତେକ ଜାତିର ଧ୍ୱନି ବିଭିନ୍ନ । ସେମାନେ ଆପଣା ଆପଣା ଭାଷାର ପ୍ରକଟନ ନିମନ୍ତେ ବିଭିନ୍ନ ପ୍ରକାର ବର୍ଣ୍ଣ ବା ସାଙ୍କେତିକ ଚିହ୍ନର ସୃଷ୍ଟି କରିଅଛନ୍ତି । ବର୍ତ୍ତମାନ ଆମ ଦେଶରେ ଅନେକ ପ୍ରକାର ବର୍ଣ୍ଣର ପ୍ରଚଳନ ଅଛି । ନାଗରାଦି ବର୍ଣ୍ଣର ପୂର୍ବରୁ ବ୍ରାହ୍ମୀ ଲିପିର ପ୍ରଚଳନ ଥିଲା । ପ୍ରାଚୀନ କାଳରେ ମିଶର ଦେଶରେ ଚିତ୍ରମୟ ଲିପିର ପ୍ରଚଳନ ଥିଲା । ପାରସ୍ୟବାସୀମାନେ ପୂର୍ବେ କୀଳକାକୃତି ଲିପିର ବ୍ୟବହାର କରୁଥିଲେ । କେବଳ ତାହା ନୁହେଁ, ଭାଷାର ଉଚ୍ଚାରଣ ଅନୁସାରେ ବର୍ଣ୍ଣମାଳାର ତାରତମ୍ୟ ଦେଖାଯାଏ । ଆମ ଦେଶରେ ବର୍ଣ୍ଣମାଳାଦ୍ୱାରା ଇଂରାଜୀ ଶେଷ ବର୍ଣ୍ଣର ପ୍ରକୃତ ଉଚ୍ଚାରଣ ବ୍ୟକ୍ତ କରିବା ଅସମ୍ଭବ । ପାରସିକ କେତେଗୋଟା ଅକ୍ଷରର ଉଚ୍ଚାରଣ ଆମ ବର୍ଣ୍ଣମାଳା ଦ୍ୱାରା ବ୍ୟକ୍ତ କରାଯାଇ ନ ପାରେ । ସେହିପରି ଆମ ବର୍ଣ୍ଣମାଳାର କେତେଗୋଟି ଅକ୍ଷର ଇଂରାଜୀ ଓ ପାରସିକ ବର୍ଣ୍ଣମାଳା ଦ୍ୱାରା ବ୍ୟକ୍ତ କରାଯାଇପାରିବ ନାହିଁ । ଏ ଦେଶରେ କେତେକ ଭାଷାରେ ବର୍ଣ୍ଣ ବିଦ୍ୟମାନ ଥିଲେ ମଧ୍ୟ ସେହି ଭାଷାଭାଷୀମାନେ ସେହି ବର୍ଣ୍ଣର ପ୍ରକୃତ ଉଚ୍ଚାରଣ ବ୍ୟକ୍ତ କରିପାରନ୍ତି ନାହିଁ । ଜିହ୍ୱାମୂଳୀୟ ଓ ଉପଧାନୀୟ ବର୍ଣ୍ଣ ଯୋଡ଼ିକ ଆଧୁନିକ ଭାରତୀୟ ବର୍ଣ୍ଣମାଳାରୁ ଖାରଜ ପାଇଅଛନ୍ତି । ସଂସ୍କୃତ ବ୍ୟାକରଣରେ ଏହି ଦୁଇ ବର୍ଣ୍ଣର ଆକୃତି ଓ ଉଚ୍ଚାରଣରେ ସାମାନ୍ୟ ବିବରଣ ଥିଲେ ମଧ୍ୟ ଏହା କେହି ଉଚ୍ଚାରଣ କରିପାରନ୍ତି ନାହିଁ ବା ବର୍ତ୍ତମାନ ସଂସ୍କୃତ ଓ ପ୍ରାକୃତ ଭାଷାରେ ଏହି ଦୁଇ ବର୍ଣ୍ଣର ପ୍ରୟୋଜନ ନାହିଁ । ଅଥଚ ଏହି ଦୁଇ ବର୍ଣ୍ଣର ବୈଦିକ କାଳରେ ଯଥେଷ୍ଟ ବ୍ୟବହାର ଥିଲା । ଏହି ଦୁଇ ବର୍ଣ୍ଣର ଉଚ୍ଚାରଣ ବା ଧ୍ୱନି ଅଧୁନା ଲୋପ ପାଇଅଛି । ତଥାପି ଶଙ୍କରାଦି କହିବେ ଯେ, ଶବ୍ଦ ନିତ୍ୟ ।

ଗୀତଗୋବିନ୍ଦକୁ ସମସ୍ତେ କର୍ଣ୍ଣପ୍ରିୟ କରି ଗାଇପାରିବେ କି ? କୌଣସି ସ୍କୁଲ ଛାତ୍ର କନଡ଼ା ବା କାମୋଦୀ ଛାନ୍ଦକୁ ପାଠକଲେ ଶ୍ରୋତା ଆହ୍ଲାଦିତ ହୋଇ ଶୁଣିବେ କି ? ଛାନ୍ଦ, ଗୀତ, ଶ୍ଳୋକ ପ୍ରଭୃତି ପଢ଼ିବା ଦ୍ୱାରା ଶିକ୍ଷା କରାଯାଇ ପାରେ ନାହିଁ, ଶୁଣିକରି ଶିକ୍ଷା କରାଯାଏ । ଚାରି ବେଦ ବିଦ୍ୟମାନ ଅଛି । ଆମ୍ଭେମାନେ ବେଦ ପଢୁଅଛୁ । ପାଶ୍ଚାତ୍ୟ ପଣ୍ଡିତଗଣ ଏଥିରେ ଛନ୍ଦ ବିଭାଗ, ଯତି ବିଭାଗ ଇତ୍ୟାଦି କରି ପାରୁଅଛନ୍ତି; ମାତ୍ର ଏ ଦେଶବାସୀ ପଣ୍ଡିତଗଣ ବା ବୈଦେଶିକ ପଣ୍ଡିତଗଣ ପୂର୍ବେ ବେଦାଧ୍ୟାୟୀଗଣ ଯେପରି ଭାବରେ ପାଠ କରୁଥିଲେ,ଏବେ ସେପରି ପାଠ କରିପାରନ୍ତି କି ? ବୈଦିକ ଋଷିମାନେ ଯେପରି ସାମଗାନ କରୁଥିଲେ, ସେହି ରୀତିରେ କେହି ସାମଗାନ କରିପାରନ୍ତି କି ନାହିଁ ସନ୍ଦେହ । ବେଦ ଶ୍ରବଣଦ୍ୱାରା ଶିକ୍ଷା କରାଯାଉଥିବା ଯାଏ ତାହାର ଉଚ୍ଚାରଣପ୍ରଣାଳୀ ବା ଧ୍ୱନି ବେଦପାଠିକାମାନେ ବ୍ୟକ୍ତ କରିପାରୁଥିଲେ । ଏବେ ବେଦ ମୁଦ୍ରିତ ହୋଇ ଆମ୍ଭମାନଙ୍କ ସମକ୍ଷରେ ରଖାଯାଉଅଛି ଏବଂ ଆମ୍ଭେମାନେ ପାଠ କରୁଅଛୁଁ; ମାତ୍ର ବେଦପାଠର ଧ୍ୱନି ଲୋପ ପାଇଅଛି ।

ପ୍ରାଗୈତିହାସିକ ମନୁଷ୍ୟମାନେ ଇଙ୍ଗିତଦ୍ୱାରା ଆଳାପ କରୁଥିଲେ କି କୌଣସି ଶବ୍ଦ ବ୍ୟବହାର କରିବାଦ୍ୱାରା ଆପଣା ଆପଣା ହୃଦ୍‌ଗତ ଭାବ ବ୍ୟକ୍ତ କରୁଥିଲେ, ତାହା ଜଣାଯାଉ ନାହିଁ । ତଥାପି କୌଣସି ଶବ୍ଦ ଯେ ଉଚ୍ଚାରଣ କରୁଥିଲେ, ଏଥିରେ ସନ୍ଦେହ ନାହିଁ । ସେ ଶବ୍ଦ କି ବୈଦିକ ଋଷିମାନଙ୍କୁ ଜଣାଥିଲା, ନା ଆମ୍ଭମାନଙ୍କୁ ଜଣାଅଛି ? ସେ ଜାତିମାନେ ବହୁକାଳରୁ ଲୁପ୍ତ ହୋଇଅଛନ୍ତି । ସେମାନଙ୍କର ଶବ୍ଦକୁ ନିତ୍ୟ ବୋଲିବା ଯୁକ୍ତିଯୁକ୍ତ କି ?

ତହିଁ ଉତ୍ତାରୁ ଅବ୍ୟକ୍ତ ଧ୍ୱନି । ପଶୁ, ପକ୍ଷୀ ଓ ବାଦ୍ୟଯନ୍ତ୍ରାଦିର ଧ୍ୱନି ଅବ୍ୟକ୍ତ ଧ୍ୱନି । କେତେକ ଅବ୍ୟକ୍ତ ଧ୍ୱନିକୁ ବର୍ଣ୍ଣଦ୍ୱାରା ବ୍ୟକ୍ତ କରିବାର ଚେଷ୍ଟା କରାଯାଏ ସତ; ମାତ୍ର ପ୍ରକୃତ ପକ୍ଷରେ କେତେକ ଅବ୍ୟକ୍ତ ଧ୍ୱନି ଆଦୌ ପ୍ରକାଶ ପାଏ ନାହିଁ । ବାଦ୍ୟଯନ୍ତ୍ର ବିଦ୍ୟମାନ ଥିବାଯାଏ ତା'ର ଧ୍ୱନି ଲୋକେ ଶୁଣିପାରନ୍ତି ବା ସ୍ମରଣ ରଖିପାରନ୍ତି । କୌଣସି କାରଣରୁ ସେ ବାଦ୍ୟଯନ୍ତ୍ର ନଷ୍ଟ ହେଲେ ସେ ଧ୍ୱନିର ନିତ୍ୟତା ଲୋପ ପାଇଲା ବୋଲାଯିବ ନାହିଁ କି ? କେତେ ବାଦ୍ୟଯନ୍ତ୍ର ଲୋପ ପାଇଅଛି, କେତେ ବାଦ୍ୟ ଯନ୍ତ୍ର ନୂତନ ସୃଷ୍ଟି ହୋଇଅଛି ଓ ହେବ, ତା'ର ଇୟତ୍ତା ନାହିଁ । ବୈଦିକଦ ଦୁନ୍ଦୁଭିର ଶବ୍ଦ ଆମ୍ଭମାନଙ୍କ ପ୍ରତି ଅନିତ୍ୟ, ଯେହେତୁ ସେ ଯନ୍ତ୍ର ଅବିଦ୍ୟମାନ ଥିବାରୁ ତା'ର ଶବ୍ଦ ଆମ୍ଭମାନଙ୍କର କର୍ଣ୍ଣଗୋଚର ହୋଇ ନାହିଁ । ଆଧୁନିକ ଅନେକ ବାଦ୍ୟଯନ୍ତ୍ରର ଶବ୍ଦ ବୈଦିକ ଋଷିଗଣଙ୍କ କର୍ଣ୍ଣକୁହରରେ କଦାପି ପ୍ରବେଶ କରି ନ ଥିଲା । ଏଣୁ ବେଦରେ ସେ ଯନ୍ତ୍ରମାନଙ୍କର ନାମ ନାହିଁ । ପିଆନୋ ପ୍ରଭୃତି ତେବେ ଶବ୍ଦପୂର୍ବିକା ସୃଷ୍ଟି ହେଲା କିପରି ?

ଗଭୀର ହମ୍ବାରବ ମନୁଷ୍ୟମାନଙ୍କ ପ୍ରତି ସେତିକି ଦିନ ନିତ୍ୟ, ଯେତିକି ଦିନ ଗୋଜାତି ଜୀବିତ ଥିବେ । କୌଣସି କାରଣରୁ ଗୋଜାତିର ଧ୍ୱଂସ ହେଲେ ହମ୍ବାରବ ଗୋଜାତି ସହିତ ଧ୍ୱଂସପ୍ରାପ୍ତ ହେବ, ମନୁଷ୍ୟ ଗୋଜାତିର ଶବ୍ଦ ବିସ୍ମୃତ ହେବେ । କିନ୍ତୁ ଶଙ୍କରଙ୍କ ମତରେ ଗୋଜାତି ଥିଲା ଓ ଥିବ । ଆଧୁନିକ ବୈଜ୍ଞାନିକଙ୍କ ପ୍ରତି ଏହି ଉକ୍ତି ନିତାନ୍ତ ହାସ୍ୟାସ୍ପଦ । ଅତି ପ୍ରାଚୀନ କାଳରେ ଗୋଜାତି ଯେ ବିଦ୍ୟମାନ ନ ଥିଲା, ଏହା ଲେଖିବା ବାହୁଲ୍ୟ ମାତ୍ର । ଜୀବଜନ୍ମ ନିର୍ଣ୍ଣାୟକ ଘଡ଼ି ଅନୁସାରେ ଗୋଜାତିର ଜନ୍ମ ସେଦିନ ବୋଇଲେ ଚଳେ । ଗୋଜାତିର ଅଭିବ୍ୟକ୍ତି ଆଗରୁ କେତେ ଜାତିର ନାଶ ଘଟିଅଛି, ତାହା ଗଣନା କରିବା ସମ୍ଭବ ନୁହେଁ । ଶଙ୍କର କହନ୍ତି, ଗୋଜାତି ଥିଲେ ଓ ଥିବେ, ମାତ୍ର ଅତି ପ୍ରାଚୀନ କାଳର ଅତି ପ୍ରକାଣ୍ଡକାୟ ଜୀବମାନଙ୍କର କଙ୍କାଳ ଯାହାକି ଭୂଗର୍ଭରୁ ମିଳୁଅଛି ଓ ମିଳିବାର ସମ୍ଭାବନା ଅଛି, ସେ ଜାତିର ନାମକରଣ ବୈଦିକ ଋଷିଙ୍କଦ୍ୱାରା ହୋଇଅଛି କି ? ତାହାଛଡ଼ା କେତେ ପ୍ରକାର ଜୀବ ଯେ ଅଦ୍ୟାପି ଭୂପୃଷ୍ଠରେ ବିଚରଣ କରୁଅଛନ୍ତି, ସେମାନଙ୍କର ବାଚକ ଶବ୍ଦ ବେଦରେ କାହିଁ ? ବେଦରେ କେବଳ ମାତ୍ର କେତେଗୋଟି ଗ୍ରାମ୍ୟ ଓ ବନ୍ୟ ପଶୁଙ୍କ ନାମ ଅଛି । ସେହି ବେଦ ଲିଖିତ ବନ୍ୟ ଓ ଗ୍ରାମ୍ୟ ପଶୁଙ୍କ ସଂଖ୍ୟା ନଗଣ୍ୟ ବୋଇଲେ ଚଳେ । ସମୁଦ୍ର ଗର୍ଭରେ ଜୀବସଂଖ୍ୟା କିଏ କହିପାରିବ ବା କିଏ ଆବିଷ୍କାର କରିଅଛି ? ତଥାପି ଶଙ୍କରଭାଷ୍ୟ ପ୍ରକାଶ କରେ ଯେ, ଜାତି ଓ ଆକୃତି ଅନାଦି ଏବଂ ଆକୃତି ବୋଧକ ବା ଜାତିବୋଧକ ଶବ୍ଦ ଅନାଦି । କେବଳ ତାହା ନୁହେଁ, ଜାତି ବା ଆକୃତି ସହିତ ତଦ୍‌ବୋଧକ ଶବ୍ଦର ଅନାଦି ସମ୍ବନ୍ଧ ରହିଅଛି ବୋଲି ବ୍ରହ୍ମବାଦୀଙ୍କର ବିଶ୍ୱାସ । ଏତାଦୃଶ ଅମୂଳକ ବିଶ୍ୱାସ ଏ ଦେଶବାସୀଙ୍କ ଉନ୍ନତିର ପ୍ରଧାନ ଅନ୍ତରାୟ ।

ବେଦକୁ ସମସ୍ତେ ଅପୌରୁଷେୟ ବୋଲି କହନ୍ତି, ଅର୍ଥାତ୍ କୌଣସି ପୁରୁଷଦ୍ୱାରା ଏହା ରଚିତ ନୁହେଁ, ଏହା ସେମାନଙ୍କର ମତ । ଏହା ସେମାନଙ୍କର ମତ ସତ୍ୟ; ମାତ୍ର ଏଥିରେ ପ୍ରମାଣ ବା ଉପଯୁକ୍ତ କାରଣ କେହି ନିର୍ଦ୍ଦେଶ କରିବାକୁ ସମର୍ଥ ହୋଇ ନାହାନ୍ତି ବୋଇଲେ ଚଳେ । କେହି କହନ୍ତି,

ବେଦବାକ୍ୟ ଅଭ୍ରାନ୍ତ । ଅଭ୍ରାନ୍ତ ବାକ୍ୟ ମନୁଷ୍ୟଦ୍ୱାରା କୃତ ହେବା ସମ୍ଭବପର ନୁହେଁ, ଏଣୁ ଅପୌରୁଷେୟ । ମାତ୍ର ବେଦବାକ୍ୟ ଯେ ସମ୍ପୂର୍ଣ୍ଣ ଅଭ୍ରାନ୍ତ ଏବଂ ତହିଁରେ ଯେ ଭ୍ରାନ୍ତିର ଅବସର ନାହିଁ, ତାହା ଦେଖାଇବାକୁ ବା ପ୍ରମାଣ କରିବାକୁ ସେହି ଗ୍ରନ୍ଥକର୍ତ୍ତାମାନେ ଅଗ୍ରସର ହୋଇ ନାହାନ୍ତି । କେହି କହନ୍ତି, ଗ୍ରନ୍ଥକର୍ତ୍ତାର ନାମ ନ ଥିବାରୁ ଏହା ଅପୌରୁଷେୟ । ବେଦଭାଷ୍ୟପ୍ରଣେତା ସାୟନାଚାର୍ଯ୍ୟଙ୍କ ଅଗ୍ରଜ ମାଧବାଚାର୍ଯ୍ୟ ଏହି ଯୁକ୍ତି ଦେଖାନ୍ତି ଯେ, ମନୁଷ୍ୟକୃତ ବା ଋଷିକୃତ ହେଲେ ରଚକର ନାମ ଜଣାପଡ଼ନ୍ତା ଯେପରି 'କାଠକଂ କୌଥୁମଂ ତୈତ୍ତିରୀୟକଂ' ଇତ୍ୟାଦି । ବ୍ୟାସପ୍ରଣୀତ ମହାଭାରତକୁ 'ବୈୟାସକି' ବୋଲାଯାଏ । ବେଦମନ୍ତ୍ରରେ ସେପରି ରଚକର ନାମ ନାହିଁ । ଏଣୁ ବେଦ ଅପୌରୁଷେୟ । ପଣ୍ଡିତାଗ୍ରଣୀ ମାଧବାଚାର୍ଯ୍ୟ ମଧ ଏପ୍ରକାର କ୍ଷୀଣ ପ୍ରମାଣଦ୍ୱାରା ବେଦର ଅପୌରୁଷେୟତା ପ୍ରତିପନ୍ନ କରିବାକୁ କିପରି ସାହସ ବାନ୍ଧିଲେ, ଏହା ଆମ୍ଭମାନଙ୍କର ବୋଧଗମ୍ୟ ହେଉ ନାହିଁ । ବେଦ ଭିନ୍ନ ତାନ୍ତ୍ରିକ ମନ୍ତ୍ରରେ ରଚକର ନାମ ଦେଖାଯାଏ ନାହିଁ । ଗୁଣିଆମାନଙ୍କର ଭୂତ ଛଡ଼ାଇବା ମନ୍ତ୍ର, ସର୍ପବିଷହରଣ ମନ୍ତ୍ରରେ ରଚକର ନାମ ଦେଖାଯାଏ ନାହିଁ । ଏହି ମନ୍ତ୍ରମାନ ଅପୌରୁଷେୟ କି ? କଥାଣି ଓ ହଳୁଆ ଗୀତ କାହାଦ୍ୱାରା କେବେ ରଚିତ, ତହିଁର ଠିକଣା ନାହିଁ । ଏଗୁଡ଼ିକୁ ଅପୌରୁଷେୟ ବୋଲାଯାଇପାରେ କି ? ବେଦ ଜଣକ ରଚିତ କାବ୍ୟ ବା ପୁରାଣ ନୁହେଁ, ଏହା ବହୁଜନଙ୍କ ରଚିତ ଛନ୍ଦସମୂହ । ଏହା ସଂଗୃହୀତ ଗ୍ରନ୍ଥ, ଏଥିରେ ଗ୍ରନ୍ଥକର୍ତ୍ତାର ବା ରଚକର ନାମ ରହିବ କିପରି ? ବେଦର କୌଣସି କୌଣସି ମନ୍ତ୍ରରେ ରଚକର ଯେ ନାମ ନାହିଁ ଏପରି ନୁହେଁ । ଏଥିରେ ସର୍ବଶେଷ ଆଲୋଚନା ପରେ କରାଯିବ । ଭାରତବାସୀଙ୍କି ଦେଶବିଶ୍ୱାସୀ ପାଇ କେତେକ ଗ୍ରନ୍ଥକର୍ତ୍ତା ଓ ବ୍ୟାଖ୍ୟାକାରଗଣ ଏହି ଅପୌରୁଷେୟ ଶବ୍ଦକୁ ବେଦର ପର୍ଯ୍ୟାୟରୂପେ ଚଳାଇ ଦେଇଅଛନ୍ତି । ବେଦ ଋଷିକୃତ, ଏଥିର ପ୍ରମାଣ ପରେ ସ୍ପଷ୍ଟ ଭାବରେ ଲେଖାଯିବ ।

ବେଦ ବ୍ରହ୍ମନିଃଶ୍ୱସିତ ବୋଲି ମଧ ପ୍ରବାଦ ଅଛି । ''ଅରେ ଅସ୍ୟ ମହତୋ ଭୂତସ୍ୟ ନିଃଶ୍ୱସିତମେତତ୍ ଯତ୍ ଋଗ୍‌ବେଦୋ ଯଜୁର୍ବେଦଃ ସାମବେଦୋଽଥର୍ବାଙ୍ଗିରସ ଇତିହାସଃ ପୁରାଣଂ ବିଦ୍ୟା ଉପନିଷଦଃ ଶ୍ଲୋକାଃ ସୂତ୍ରାଣ୍ୟନୁବ୍ୟାଖ୍ୟାନାନି ବ୍ୟାଖ୍ୟାନାନ୍ୟ ସୌବୈତାନି ସର୍ବାଣି ନିଃଶ୍ୱସିତାନି ।'' ବୃ : ଉ : ୪ । ୧୦

ଏଥିର ତାତ୍ପର୍ଯ୍ୟ ଏହି ଯେ, କେବଳ ବେଦ ନୁହେଁ, ଇତିହାସ, ପୁରାଣ, ବିଦ୍ୟା, ଉପନିଷଦ, ଶ୍ଲୋକ, ସୂତ୍ର, ବ୍ୟାଖ୍ୟାନ ଇତ୍ୟାଦି ସମସ୍ତ ଅପ୍ରଯତ୍ନ ପୁରୁଷନିଃଶ୍ୱାସ ତୁଲ୍ୟ ମହତ୍ ଭୂତଠାରୁ ଅଭିବ୍ୟକ୍ତ ହୋଇଅଛି ।

ଯଦି ବା ବ୍ୟାଖ୍ୟାକାରଗଣ ଏହାକୁ ଜଟିଳ କରିବାକୁ ଚେଷ୍ଟା କରିଅଛନ୍ତି, ତଥାପି ଏହା ସ୍ପଷ୍ଟତଃ ହୃଦୟଙ୍ଗମ ହୁଏ ଯେ, ଭକ୍ତିପୁରଃସର ଋଷି କହୁଅଛନ୍ତି ଯେ— ''ରେ ମୈତ୍ରେୟି, ବେଦ କାହିଁକି, ମହତ୍ ଭୂତଠାରୁ ସମସ୍ତ ପ୍ରକାଶିତ । ନିଃଶ୍ୱସିତ ଅର୍ଥ ଉଚ୍ଚାରିତ ନୁହେଁ, ପ୍ରକାଶିତ । ଈଶ୍ୱରାନୁଗ୍ରହରୁ ଋଷିଗଣଙ୍କ ହୃଦୟରେ ସମସ୍ତ ବିଷୟର ଆବିର୍ଭାବ ହେବାରୁ ବିନା ପ୍ରଯତ୍ନରେ ସେମାନେ ବ୍ୟକ୍ତ କରିବାକୁ ସମର୍ଥ ହୋଇଅଛନ୍ତି ।'' ଏ ବାକ୍ୟଟି ଯୁକ୍ତିପର ।

ମାତ୍ର ଦୟାନନ୍ଦ ସରସ୍ୱତୀ ବ୍ରାହ୍ମଣାଦି ଗ୍ରନ୍ଥକୁ ନିତ୍ୟ ବା ବ୍ରହ୍ମନିଃଶ୍ୱସିତ ବୋଲି ସ୍ୱୀକାର କରିବାକୁ ରାଜି ନୁହଁନ୍ତି । ସେ କହନ୍ତି, ''ବ୍ରାହ୍ମଣ ପୁସ୍ତକୋଂ ମେ ବହୁତ ସେ ଋଷି ମହର୍ଷି ଔର ରାଜା ଦିନେ ଇତିହାସ ଲିଖେହେଂ । ଔର ଇତିହାସ ଜିସ୍‌କା ହୋ ଉସ୍ କେ ଜନ୍ମକେ ପଶ୍ଚାତ୍ ଲିଖାଜାତା ହେ । ବହ୍ ଗ୍ରନ୍ଥଭୀ ଉସ୍‌କେ ଜନ୍ମକେ ପଶ୍ଚାତ୍ ହୋତା ହେ । ବେଦୋମେ କିସିକା ଇତିହାସ ନାହିଁ କିନ୍ତୁ ବିଶେଷ ଜିସ୍ ଜିସ୍ ଶବ୍ଦ ସେ ବିଦ୍ୟାକା ବୋଧ ହୋକେ ଉସ୍ ଉସ୍ ଶବ୍ଦକା ପ୍ରୟୋଗ କିଆ ହେ । କିସୀ ମନୁଷ୍ୟକି ସଂଜ୍ଞା ବା ବିଶେଷ କଥାକା ପ୍ରସଙ୍ଗ ବେଦୋଂମେ ନହିଁ ।'' ସତ୍ୟାର୍ଥ ପ୍ରକାଶ— ୭ମ ଉ : ୨୦୭ ପୃ.

ସାୟନ ଲେଖନ୍ତି, ''ମନ୍ତ୍ରବ୍ରାହ୍ମଣାତ୍ମକଶବ୍ଦରାଶି ର୍ବେଦଃ ।''

ଦୟାନନ୍ଦ ସରସ୍ୱତୀ ଋଗ୍, ଯଜୁ, ସାମ ଓ ଅଥର୍ବ ସଂହିତାକୁ ବେଦ ଆଖ୍ୟା ଦିଅନ୍ତି । ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ୍ ପ୍ରଭୃତିକୁ ସ୍ୱତନ୍ତ୍ର କରିବାର ଚେଷ୍ଟା କରିଅଛନ୍ତି । ଅନେକ ଋଷି ବ୍ରାହ୍ମଣାଦି ଗ୍ରନ୍ଥକୁ ମଧ ବେଦ ଆଖ୍ୟା ଦେବାକୁ ତ୍ରୁଟି କରି ନାହାନ୍ତି । ତହିଁ ଉତ୍ତାରୁ ବେଦ ପର୍ଯ୍ୟାୟ କେତେକ ଶବ୍ଦର ଗଣ୍ଡି ଭିତରେ ପୁରାଣକୁ ମଧ ପ୍ରବେଶ କରାଇବାକୁ ପରବର୍ତ୍ତୀ ଋଷି ବା ଗ୍ରନ୍ଥକର୍ତ୍ତୃଗଣ ଓ ଭାଷ୍ୟକାରଗଣ ଚେଷ୍ଟା କରିଅଛନ୍ତି । ଏପରି ଶ୍ରୁତି ଶବ୍ଦର ବହୁଳ ବ୍ୟବହାର ଅଛି ।

ଉପରେ ଦୟାନନ୍ଦ ସରସ୍ୱତୀ ଓ ସାୟନାଚାର୍ଯ୍ୟଙ୍କର ପରସ୍ପର ବିରୋଧୀ ମତ ପ୍ରକାଶ କରାଗଲା । ଅନ୍ୟାନ୍ୟମାନଙ୍କ ମଧରେ ମଧ ଏହିପରି ପରସ୍ପର ବିରୋଧୀ ମତ ଥିବାର ବହୁଳ ଉଦାହରଣ ଦିଆଯାଇପାରେ ।

ସାୟନାଚାର୍ଯ୍ୟ ପ୍ରଭୃତି ଯେଉଁ ବ୍ରାହ୍ମଣଲିଖିତ ଶବ୍ଦରାଶିକୁ ଅପୌରୁଷେୟ ବୋଲି ଘୋଷଣା କରନ୍ତି, ତାହା ଦୟାନନ୍ଦ ସରସ୍ୱତୀଙ୍କ ମତରେ ଅପୌରୁଷେୟ ନୁହେଁ । ପୁଣି ଦୟାନନ୍ଦ ସରସ୍ୱତୀ କହନ୍ତି ଯେ, ବେଦରେ ଇତିହାସ ନାହିଁ କିମ୍ବା ମନୁଷ୍ୟର ସଂଜ୍ଞା ବା ବିଶେଷ କଥାର ପ୍ରସଙ୍ଗ ବେଦରେ ନାହିଁ । ମାତ୍ର ଆମ୍ଭେ ଏଥି ଉତ୍ତାରୁ ଦେଖାଇବାକୁ ଚେଷ୍ଟା କରିବୁଁ ଯେ, ବେଦରେ ଯଥେଷ୍ଟ ଇତିହାସ ଅଛି ଏବଂ ବେଦରେ ମନୁଷ୍ୟର ସଂଜ୍ଞା ଓ ବିଶେଷ ବିଶେଷ ପ୍ରସଙ୍ଗ ମଧ ଅଛି ।

ବେଦ ବିଷୟ ଆଲୋଚନା ପ୍ରସଙ୍ଗରେ ଷଡ଼୍‌ଦର୍ଶନର, ବିଶେଷତଃ ବେଦାନ୍ତର ଆଲୋଚନା କେତେକ ପୃଷ୍ଠା ଅଧିକାର କରିଥିବାର ଦେଖି, କେହି କେହି ନିରର୍ଥକ ବୋଲି ଭାବି ପାରନ୍ତି । ମାତ୍ର ତାହା ଭାବିବା ଉଚିତ୍ ନୁହେଁ । ବେଦାନ୍ତ ଦର୍ଶନର ଆବିର୍ଭାବ ପରେ ଲୋକଙ୍କର ବେଦସମ୍ବନ୍ଧୀୟ ଭ୍ରାନ୍ତ ଧାରଣା ଦୃଢ଼ୀଭୂତ ହୋଇଅଛି । ବିଶେଷତଃ ଶଙ୍କରାଚାର୍ଯ୍ୟଙ୍କ ମାୟାବାଦ ପ୍ରକୃତ ମାୟାବାଦ । ଏହା ଲୋକଙ୍କୁ ଯେପରି ମାୟାଛନ୍ନ କରିଅଛି, ବେଦକୁ ମଧ ସେହିପରି ଘୋଡ଼ାଇ ରଖିଅଛି । ଏହି ମାୟାରେ ପଡ଼ି ଏ ଦେଶରେ ଅନେକ ପଣ୍ଡିତ ବେଦାଧୟନ ଓ ବେଦ ଆଲୋଚନା ତ୍ୟାଗ କରିଥିଲେ ଓ କରିଅଛନ୍ତି ବୋଲିବା ଅଯୌକ୍ତିକ ନୁହେଁ । ଶଙ୍କରାଚାର୍ଯ୍ୟ ବେଦର ସାକ୍ଷ୍ୟଉପରେ ବର୍ଣ୍ଣାଶ୍ରମ ଧର୍ମର ପ୍ରଚଳନ କଲେ; କିନ୍ତୁ ନିଜକୁ ସେଥିରୁ ନିର୍ଲିପ୍ତ କରି ରଖିଲେ । ପୌତ୍ତଳିକତାର ପ୍ରଚାରର ଯଥେଷ୍ଟ ଚେଷ୍ଟା କରିଥିଲେ, ମାତ୍ର ନିଜେ ପୌତ୍ତଳିକ ନ ଥିଲେ ।

ବ୍ରହ୍ମବିଦ୍ୟାର ବା ବେଦର ବ୍ରାହ୍ମଣହିଁ ମୁଖ୍ୟାଧିକାରୀ । ବେଦରେ ଶୂଦ୍ରର ଆଦୌ ଅଧିକାର ନାହିଁ ବୋଲି ବଜ୍ରନିର୍ଘୋଷରେ ଦେଶରେ ପ୍ରଚାର କରି ବେଦାଧୟନରୁ ଶୂଦ୍ରଙ୍କୁ ବଞ୍ଚିତ କଲେ ।

ଶଙ୍କର ସନ୍ନ୍ୟାସୀ । ମାତ୍ର ମନୁଙ୍କ ଧର୍ମଶାସ୍ତ୍ରାନୁମୋଦିତ ଏହାଙ୍କର ସନ୍ନ୍ୟାସ ନୁହେଁ । ଶଙ୍କରାଚାର୍ଯ୍ୟ ବିଦ୍ୟାଚୋରର ସନ୍ନ୍ୟାସୀ । ବତ୍ରିଶ ବର୍ଷ ବୟସରେ ମାନବଲୀଳା ସମ୍ବରଣ କଲେ । ବ୍ରହ୍ମଚାରୀ ଅବସ୍ଥାରୁ ସନ୍ନ୍ୟାସବ୍ରତ ଅବଲମ୍ବନ କରି ଦେଶ ପର୍ଯ୍ୟଟନ କଲେ । ଗୃହସ୍ଥାଶ୍ରମ ଓ ବାନପ୍ରସ୍ଥ ଏହାଙ୍କର ବର୍ଣ୍ଣାଶ୍ରମ ଧର୍ମର ଅନ୍ତର୍ଭୁକ୍ତ ନୁହେଁ । ବେଦାନ୍ତ ଅନୁଶୀଳନ ହିଁ ସନ୍ନ୍ୟାସ ପକ୍ଷରେ ପ୍ରଶସ୍ତ । ମାତ୍ର ଅସଂସ୍କୃତଜ୍ଞ ଅନେକ ଶଙ୍କରଶିଷ୍ୟ ଆଜି ଭାରତରେ ଭ୍ରମଣ କରୁଥିବାର ଦେଖାଯାଏ । ତେବେ ଏତିକି ଯେ, ସେମାନେ ନୀଳାଚଳନାୟକଙ୍କ ପଦାରବିନ୍ଦରେ ଅବନତ ମସ୍ତକ ହୁଅନ୍ତି ନାହିଁ । ହୁଏତ ଜଗନ୍ନାଥଙ୍କୁ ବୁଦ୍ଧପ୍ରତୀକ ବୋଲି ଜାଣନ୍ତି କିମ୍ବା ମାୟାବାଦିଗଣ ପୌତ୍ତଳିକତାର ପକ୍ଷପାତୀ ନୁହନ୍ତି ବୋଲି ପ୍ରମାଣ କରନ୍ତି ନାହିଁ ।

ମାୟାବାଦ ଭାରତବାସୀଙ୍କୁ ପୌତ୍ତଳିକ କରିଅଛି । ବର୍ଣ୍ଣାଶ୍ରମ ଧର୍ମର ଭିତ୍ତି ବଦ୍ଧମୂଳ କରିଅଛି । ଭାରତବାସୀଙ୍କୁ ବେଦବିଶ୍ୱାସୀ ଓ ଈଶ୍ୱରବିଶ୍ୱାସୀ କରିଅଛି ସତ; ମାତ୍ର ନିଜେ ଶଙ୍କର ହିନ୍ଦୁଧର୍ମାବଲମ୍ବୀ କି କ'ଣ, ତାହା କେହି ଜାଣନ୍ତି ନାହିଁ । ପଣ୍ଡିତଗଣ ଶଙ୍କର ବାକ୍ୟକୁ ବେଦବାକ୍ୟ ପରି ସମ୍ମାନ କରନ୍ତି । ଯେହେତୁ 'ଶଙ୍କରଃ ଶଙ୍କରଃ ସାକ୍ଷାତ୍' ବୋଲି ଗୋଟିଏ ବାକ୍ୟ ଅଛି । ମାତ୍ର କେତେକ ବୈଷ୍ଣବ ଓ ଦର୍ଶନ ଶାସ୍ତ୍ରର ଭାଷ୍ୟକାର ଶଙ୍କରାଚାର୍ଯ୍ୟଙ୍କ ସ୍ୱାଧୀନ ମତ ଦେଖି ମନେକରନ୍ତି ଯେ, ସେ ପ୍ରଚ୍ଛନ୍ନ ବୌଦ୍ଧ । ବୌଦ୍ଧଗଣଙ୍କୁ ନିରସ୍ତ୍ର କରିବା ଅଭିପ୍ରାୟରେ ମାତ୍ର ସେ ହିନ୍ଦୁ । ଏ କଥା ପରବର୍ତ୍ତୀ ଐତିହାସିକଗଣଙ୍କ ମୀମାଂସାର ବିଷୟ ।

ପରବର୍ତ୍ତୀ ପ୍ରବନ୍ଧରେ ବେଦର ସ୍ୱରୂପ ଓ ତାହାର ପ୍ରକୃତ ଆଲୋଚନା ଆରମ୍ଭ ହେବ ।

॥ ୨ ॥

ପ୍ରବନ୍ଧର ପ୍ରାରମ୍ଭିକ ଅଂଶରେ ଆମ୍ଭେମାନେ ବେଦର ନିତ୍ୟତା, ଅନାଦିତ୍ୱ, ଅପୌରୁଷେୟତ୍ୱ, ସମ୍ବନ୍ଧରେ ଦାର୍ଶନିକ ମତ ଯାହା ଅଛି, ତାହା ପ୍ରକାଶ କରି ସେହି ମତମାନଙ୍କୁ ଖଣ୍ଡନ କରିବାକୁ ଚେଷ୍ଟା କରିଅଛୁଁ । ବର୍ତ୍ତମାନ ବେଦ, ମାନବ ଧର୍ମଶାସ୍ତ୍ର ଓ ପୁରାଣମାନଙ୍କରେ ବେଦର ନିତ୍ୟତା, ଅନାଦିତ୍ୱ ଅପୌରୁଷେୟତ୍ୱ ସମ୍ବନ୍ଧରେ ଯେଉଁ ମତବ୍ୟକ୍ତ ଅଛି, ତାହା ପ୍ରକାଶ କରିବାକୁ ଚେଷ୍ଟା କରିବୁ । ଏ ଚେଷ୍ଟାଦ୍ୱାରା ବେଦବିଶ୍ୱାସୀମାନଙ୍କର ମତ ଟଳିବ ବୋଲି ଆମ୍ଭେମାନେ ଆଶା କରି ନ ପାରୁଁ କିମ୍ବା ଆମ୍ଭମାନଙ୍କର କ୍ଷୀଣ ଯୁକ୍ତିତର୍କ ଦ୍ୱାରା ସେମାନଙ୍କ ମତର ପରିବର୍ତ୍ତନ କରାଇ ପାରିବାର ସାହସ ଆମ୍ଭେମାନେ କରି ନାହୁଁ । ତେବେ କର୍ତ୍ତବ୍ୟର ପ୍ରେରଣାର ସ୍ୱମତ ପାଠକମାନଙ୍କ ସମକ୍ଷରେ ଉପସ୍ଥାପିତ କରିବାକୁ ବାଧ ହୋଇଅଛୁଁ । ସତ୍ୟସନ୍ଧାନକାରୀ ପାଠକଗଣ ଏ ପ୍ରବନ୍ଧର ସାର ଗ୍ରହଣ କରିବେ ବୋଲି ଆଶା କରାଯାଏ ।

ପୂର୍ବେ ଲେଖିଅଛୁଁ ଯେ, ବେଦ ଶବ୍ଦଟି ଋଗ୍‌ବେଦ, ଯଜୁର୍ବେଦ ଓ ସାମବେଦରେ ନାହିଁ; ମାତ୍ର ଅଥର୍ବ ବେଦରେ, ବ୍ରାହ୍ମଣଗ୍ରନ୍ଥରେ ଓ ଉପନିଷଦ୍‌ରେ ଅଛି । ସେହିପରି

ଋଗ୍‌ବେଦ, ଯଜୁର୍ବେଦ ଓ ସାମବେଦ ଶବ୍ଦ ମଧ ଉପରୋକ୍ତ ତିନି ବେଦରେ ନାହିଁ । ଋଗ୍‌ବେଦ ଶବ୍ଦ ପ୍ରଥମେ ଐତରେୟ ବ୍ରାହ୍ମଣ, ଶତପଥ ବ୍ରାହ୍ମଣରେ ଦୃଷ୍ଟ ହୁଏ, ପରେ ଐତରେୟ ଆରଣ୍ୟକ ପ୍ରଭୃତିରେ ଓ ବୃହଦାରଣ୍ୟକ ଉପନିଷଦ, ଛାନ୍ଦୋଗ୍ୟ ଉପନିଷଦ ପ୍ରଭୃତିରେ ଦେଖାଯାଏ । ତଥା ଯଜୁର୍ବେଦ ଓ ସାମବେଦ ଶବ୍ଦ ମଧ ତିନି ବେଦରେ ନାହିଁ । ମାତ୍ର ବ୍ରାହ୍ମଣାଦି ଗ୍ରନ୍ଥରେ ଓ ଉପନିଷଦ, ଆରଣ୍ୟକ ଗ୍ରନ୍ଥରେ ମିଳେ । ମାତ୍ର ଋଗ୍, ସାମନ ଓ ଯୁଜଃ ଶବ୍ଦ ଋଗ୍‌ବେଦରେ ଦେଖାଯାଏ; ଯଥା—

'ତସ୍ମାଦ୍ୟଜ୍ଞାତ୍ସର୍ବହୁତ ଋଚଃ
ସାମାନି ଜଜ୍ଞିରେ ।
ଛନ୍ଦାଂସି ଜଜ୍ଞିରେ ତସ୍ମାଦ୍ୟଜୁ
ସ୍ତସ୍ମାଦଜାୟତ ॥

ଋ. ୧୦ ।୯୦।୯

ଋଗ, ଯଜୁ ଓ ସାମନ ଶବ୍ଦର ଏକତ୍ର ଉଲ୍ଲେଖର ପ୍ରଥମ ଉଦାହରଣ ଋଗ୍‌ବେଦର ଦଶମ ମଣ୍ଡଳରେ ମାତ୍ର ପ୍ରଥମେ ଦେଖାଯାଏ । ଅଥର୍ବବେଦ, ବ୍ରାହ୍ମଣାଦି ଗ୍ରନ୍ଥ, ପରବର୍ତ୍ତୀ ଆରଣ୍ୟକ ଓ ଉପନିଷଦରେ ବହୁଳ ବ୍ୟବହାର ଦେଖାଯାଏ । ମାତ୍ର କେବଳ ସାମନ ଶବ୍ଦ ଗୀତାର୍ଥରେ ଋଗ୍‌ବେଦର ଅନେକ ସ୍ଥଳରେ ମିଳେ;

ଯଥା— ପ୍ରବୋମହେ ମହିନମୋ ଭାରଧ୍ୱ
ମାଂଗୂଷ୍ୟ ଶବସାନାୟ ସାମ ।
ଯେନା ନଃ ପୂର୍ବେ ପିତରଃ ପଦଜ୍ଞା
ଅର୍ଚନ୍ତୋ ଅଙ୍ଗିରସୋ ଗା ଅବିନ୍ଦନ୍ ॥

ଋ.୧ । ୬୨ । ୨

ଏଥିର ତାତ୍ପର୍ଯ୍ୟ କ'ଣ ? ଅଥର୍ବବେଦ ଭିନ୍ନ ଅନ୍ୟ ତିନି ବେଦରେ ବେଦ ଶବ୍ଦର ଉଲ୍ଲେଖ ନାହିଁ କିମ୍ବା ଋଗ୍‌ବେଦ, ଯୁଜର୍ବେଦ ଓ ସାମବେଦର ମଧ ଉଲ୍ଲେଖ ନାହିଁ । ଅଥଚ ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ, ମାନବ ଧର୍ମଶାସ୍ତ୍ର ଓ ପୁରାଣରେ ଏହି ତିନି ବେଦର ନାମ ମିଳେ । ଏହା ଦେଖି ଅନାୟାସରେ ମତ ଦିଆଯାଇପାରେ ଯେ, ଅତି ପ୍ରାଚୀନ କାଳରେ ଋଷିମାନେ ଯେଉଁ ମନ୍ତ୍ରସମୂହ ଉଚ୍ଚାରଣ ଓ ଅଭ୍ୟାସ କରୁଥିଲେ, ସେଥିମଧ୍ୟରୁ ଅଧିକାଂଶ ମନ୍ତ୍ରର ନାମ ଋଗ୍, କେତେକର ନାମ ସାମ ଓ କେତେକର ନାମ ଯଜୁଃ । ଏହି ତିନି ଶବ୍ଦର ପ୍ରଥମ ଉଲ୍ଲେଖ ଏକତ୍ର ଋଗ୍‌ବେଦର ଦଶମ ବା ଶେଷ ମଣ୍ଡଳରେ ଦେଖାଯାଏ । ଅଥର୍ବବେଦରେ କେବଳ ଯେ ଋଗ୍, ଯଜୁ ଓ ସାମ ଶବ୍ଦର ଉଲ୍ଲେଖ ଅଛି ଏପରି ନୁହେଁ; ମାତ୍ର ଋଗ୍‌ବେଦ ଯଜୁର୍ବେଦ ଓ ସାମବେଦର ମଧ ଉଲ୍ଲେଖ ଅଛି । ଏଣୁ ଋଗ୍‌ବେଦର ଦଶମ ମଣ୍ଡଳ ଉତ୍ତାରୁ ଅଥର୍ବବେଦର କଳେବର ଗଠିତ ହୋଇଅଛି ବୋଲିବା ସ୍ୱାଭାବିକ । ଏହା ଶୁଣି ଅନେକେ ବିରକ୍ତ ହୋଇପାରନ୍ତି; ମାତ୍ର ଯାହା ସତ୍ୟ ତାହା ଗୁପ୍ତ ହୋଇ ରହି ନ ପାରେ । ଯେ କେହି ଏଥିର ତତ୍ତ୍ୱାନୁସନ୍ଧାନ କଲେ ଆମ୍ଭମାନଙ୍କ ଉକ୍ତିର ଯଥାର୍ଥ ଉପଲବ୍ଧି କରିପାରିବେ ।

ତସ୍ମାଦ୍ୟଜ୍ଞାତ୍ସର୍ବହୁତ ଋଚଃ ସାମାନି ଜଜ୍ଞିରେ ।
ଛନ୍ଦାସି ଜଜ୍ଞିରେ ତସ୍ମାଦ୍ୟଜୁ ସ୍ତସ୍ମାଦଜାୟତ ॥

ଋ.୧୦।୯୦।୯

ଏହି ମନ୍ତ୍ରରେ ବ୍ୟବହୃତ ଋଚଃ, ସାମାନି, ଯଜୁଃ ଅର୍ଥ ଋଗ୍‌ବେଦ, ସାମବେଦ ଓ ଯଜୁର୍ବେଦ ନୁହେଁ । ଏହାର ଅର୍ଥ ପଦ୍ୟ, ଗୀତ ଓ ଗଦ୍ୟ । ଉଦ୍ଧୃତ ମନ୍ତ୍ରର ଅର୍ଥ ଏହି ଯେ, ପୁରୁଷର ମାନସ ଯଜ୍ଞରୁ ପଦ୍ୟ, ଗୀତ ଓ ଗଦ୍ୟରୂପ ତିନି ପ୍ରଣାଳୀର ରଚନା ଉତ୍ପନ୍ନ ହେଲା ଏବଂ ଗାୟତ୍ର୍ୟାଦି ଛନ୍ଦମାନେ ମଧ ଉତ୍ପନ୍ନ ହେଲେ । ପୁରୁଷ ଓ ମାନସ ଯଜ୍ଞର ସର୍ବଶେଷ ବିବରଣ ପରବର୍ତ୍ତୀ ପ୍ରବନ୍ଧରେ ଦିଆଯିବ । ଏହି ଗୋଟିକ ମନ୍ତ୍ରରୁ ବେଦ ସମ୍ବନ୍ଧୀୟ ନାନା ଉପାଖ୍ୟାନର ସୃଷ୍ଟି କିପରି ହେଲା, ତାହା ମଧ ବିସ୍ତୃତଭାବରେ ପ୍ରକାଶ କରିବାର ଇଚ୍ଛା ରହିଲା ।

ଭୃଗୁକଥିତ ମାନବ ଧର୍ମଶାସ୍ତ୍ରର ପ୍ରଥମ ଅଧ୍ୟାୟରେ 'ବେଦତ୍ରୟ ସୃଷ୍ଟି' ବିବରଣ ତ୍ରୟୋବିଂଶ ଶ୍ଳୋକରେ ଲିଖିତ ହୋଇଅଛି । 'ବେଦତ୍ରୟ ସୃଷ୍ଟି' ଦେଖି ଚମକିବାର କାରଣ ନାହିଁ । ଏହା ଆମ୍ଭମାନଙ୍କର କପୋଳକଳ୍ପିତ ନୁହେଁ । ମନୁର ସୂଚିଲେଖକ 'ବ୍ରାହ୍ମଣାଦି ବର୍ଣ୍ଣ ସୃଷ୍ଟି', 'ସ୍ତ୍ରୀ ପୁରୁଷ ସୃଷ୍ଟି' ସଙ୍ଗରେ 'ବେଦତ୍ରୟ ସୃଷ୍ଟି' ଲେଖି ଯାଇଅଛନ୍ତି । ଶ୍ଳୋକଟି ଏହି—

ଅଗ୍ନିବାୟୁରବିଭ୍ୟସ୍ତୁ
ତ୍ରୟଂ ବ୍ରହ୍ମ ସନାତନଂ ।
ଦୁଦୋହ ଯଜ୍ଞସିଦ୍ଧ୍ୟର୍ଥ-
ମୃଗ୍ୟଜୁଃ ସାମଲକ୍ଷଣଂ ॥

ଏହି ଶ୍ଳୋକର ଶେଷ ଅଂଶ ଋଗ୍‌ବେଦର ପୁରୁଷସୂକ୍ତର ନବମ ମନ୍ତ୍ରର ପ୍ରତିଧ୍ୱନି ମାତ୍ର । ଏହାର ଅର୍ଥ ଏହି ଯେ ଯଜ୍ଞସିଦ୍ଧ ନିମନ୍ତେ ଋଗ୍, ଯଜୁ ଓ ସାମ ବା ପଦ୍ୟ, ଗଦ୍ୟ ଓ ଗୀତ ଦୋହନ କଲେ ବା ଜାତ କଲେ । ଅଧିକନ୍ତୁ ଏଠାରେ ଲିଖିତ ହୋଇଅଛି ଯେ, ଅଗ୍ନି, ବାୟୁ ଓ ରବିଙ୍କଠାରୁ ଋଗ୍, ଯଜୁ ଓ ସାମ ଦୋହନ କଲେ ।

ଦୋହନ କଲା କିଏ ? କୁଲ୍ଲୁକ ଭଟ୍ଟ କହନ୍ତି— ବ୍ରହ୍ମରଗ୍ୟଜୁଃ ସାମ ସଂଜ୍ଞଂ ବେଦତ୍ରୟଂ ଅଗ୍ନିବାୟୁରବିଭ୍ୟ ଆକୃଷ୍ଟବାନ୍ ।' ଅଗ୍ନି, ବାୟୁ, ରବିଙ୍କଠାରୁ ବ୍ରହ୍ମା ରଗ୍, ଯଜୁ ଓ ସାମବେଦ ତ୍ରୟ ଆକର୍ଷଣ କଲେ । ମାତ୍ର ଏ ଅର୍ଥ ସର୍ବବାଦିସମ୍ମତ ନୁହେଁ । ମେଧାତିଥି କହନ୍ତି, 'ତ୍ରୟମୃଗ୍ୟଜୁ ସାମଲକ୍ଷଣଂ ବ୍ରହ୍ମ ବେଦାଖ୍ୟଂ ଦୁଦୋହ' । ଗୋଗିନ୍ଦରାଜ କହନ୍ତି, 'ରଗ୍ୟଜୁଃସାମାଖ୍ୟଂ ବ୍ରହ୍ମତ୍ରୟଂ' । ରାଘବାନନ୍ଦଙ୍କର ମଧ ସେହି ମତ, ଯଥା—'ବ୍ରହ୍ମ ବେଦଂ ସନାତନଂ ନିତ୍ୟଂ' । ମାତ୍ର ମନୁର ଅପର ଟୀକାକାର ନନ୍ଦନ କହନ୍ତି ଯେ, 'ବ୍ରହ୍ମ ବେଦାଭିମାନିନଂ ଦେବତାଂ ଦୁଦୋହ ପ୍ରକାଶିତବାନ୍' । ଅଧିକାଂଶ ଟୀକାକାରଙ୍କ ମତରେ ବ୍ରହ୍ମ ଅର୍ଥ ବେଦ । ମନୁଙ୍କର ଏହି ଶ୍ଳୋକ ରଗ୍ବେଦର ପୁରୁଷସୂକ୍ତର ନବମ ମନ୍ତ୍ରର ପ୍ରତିଧ୍ୱନି ହେଲେ ମଧ ଟୀକାମାନଙ୍କ ଅର୍ଥ ଦ୍ୱାରା ତାହା ସମ୍ପୂର୍ଣ୍ଣ ପୃଥକ୍ ବୋଲି ପ୍ରତିପନ୍ନ ହେଉଅଛି । ବେଦମନ୍ତ୍ର କହୁଅଛି ଯେ, ସେହି ଯଜ୍ଞରୁ ରଗ୍, ଯଜୁଃ ଓ ସାମ ଉତ୍ପନ୍ନ ହେଲେ । ମନୁ କହିଲେ, ଅଗ୍ନି, ବାୟୁ ଓ ରବିଙ୍କଠାରୁ ରଗ୍, ଯଜୁ ଓ ସାମତ୍ରୟକୁ ଦୋହନ କଲେ । କୁଲ୍ଲୁକ ଭଟ୍ଟ ଏହି ଦୁଇ ବାକ୍ୟ ସମନ୍ୱୟ କରିବାର ତେଣେ ଥାଉ ପୂର୍ବକଳ୍ପ ପ୍ରସଙ୍ଗର ଅବତାରଣା କରି ଅର୍ଥକୁ ଜଟିଳ କରିବାକୁ ଚେଷ୍ଟା କଲେ । ସ୍ୱାମୀ ଦୟାନନ୍ଦ ଏହି ଶ୍ଳୋକର ଅର୍ଥକୁ ଅଧିକ ଜଟିଳ କଲେ । ସେ ଲେଖନ୍ତି ଯେ, "ଜିସ୍ ପରମାତ୍ମାନେ ଆଦି ସୃଷ୍ଟିମେ ମନୁଷ୍ୟକୋ ଉତ୍ପନ୍ନ କର୍‌କେ ଅଗ୍ନି ଆଦି ଚାରୋଂ ମହର୍ଷିୟୋଂକେ ଦ୍ୱାରା ଚାରୋଂ ବେଦ ବ୍ରହ୍ମାକୋ ପ୍ରାପ୍ତ କରାଏ ଔର ଉସ୍ ବ୍ରହ୍ମାନେ ଅଗ୍ନି ବାୟୁ ଆଦିତ୍ୟ ଔର ଅଙ୍ଗିରାସେ ରଗ୍ ଯଜୁ ସାମ ଔର ଅଥର୍ବ ବେଦକା ଗ୍ରହଣ କିଆ ।" (ସତ୍ୟାର୍ଥ ପ୍ରକାଶ ୭ମ ସ. ପୃ ୨୦୪) ଏହା ମନୁ ଶ୍ଳୋକର ପ୍ରକୃତ ଅର୍ଥ ନା ବ୍ୟାଖ୍ୟା ? ପରମାତ୍ମା, ଆଦିସୃଷ୍ଟି, ଅଗ୍ନି ଆଦି ଚାରି ମହର୍ଷି ଓ ବ୍ରହ୍ମାଙ୍କର କୌଣସି ଉଲ୍ଲେଖ ଉପରୋକ୍ତ ଶ୍ଳୋକରେ ଅଛି କି ? ଅଗ୍ନି, ବାୟୁ ଓ ସୂର୍ଯ୍ୟ ମହର୍ଷି ହେଉନ୍ତୁ ବା ଦେବତା ହେଉନ୍ତୁ ବା ଜଡ଼ ହେଉନ୍ତୁ ସେମାନଙ୍କର ନାମ ଅଛି; ମାତ୍ର ଅଙ୍ଗିରା ନାମକ ମହର୍ଷିଙ୍କର ନାମଗନ୍ଧ ବା ଅଥର୍ବ ବେଦର ନାମଗନ୍ଧ ଏହି ଶ୍ଳୋକରେ ମିଳେ କି ? ଏତାଦୃଶ ବ୍ୟାଖ୍ୟା, ଭାବାର୍ଥ ବା ମତ ସ୍ୱାମିଜୀଙ୍କର କପୋଳକଳ୍ପିତ ବୋଲିବା ଦ୍ୱାରା ଆମ୍ଭେମାନେ ଦୋଷୀ ହେବୁଁ କି ? ମନୁଶ୍ଳୋକକୁ ବୁଝାଇବା ନିମନ୍ତେ ପ୍ରାୟ ସମସ୍ତ ଟୀକାକାର ଏବଂ ସ୍ୱାମିଜୀ ମଧ ଶତ୍‌ପଥ ବ୍ରାହ୍ମଣର ଗୋଟିଏ ବାକ୍ୟ ଉଦ୍ଧୃତ କରିଅଛନ୍ତି । କୁଲ୍ଲୁକଭଟ୍ଟ ଲେଖିଲେ— 'ତଥାଚ ଶ୍ରୁତିଃ— ଅଗ୍ନେ ରଗ୍‌ବେଦୋ ବାୟୋର୍ଯଜୁର୍ବେଦ ଆଦିତ୍ୟାତ୍‌ସାମବେଦଃ' । ଶ୍ରୁତି ଅର୍ଥ ଏଠାରେ ରଗ୍‌ବେଦ, ଯଜୁର୍ବେଦ ବା ସାମବେଦ ନୁହେଁ; ମାତ୍ର ଶତପଥ ବ୍ରାହ୍ମଣ । ବେଦ ବ୍ୟାଖ୍ୟାକୁ ଜଟିଳ କରିବା ଅଭିପ୍ରାୟରେ ଯେ ଗ୍ରନ୍ଥକର୍ତ୍ତାମାନେ ବ୍ରାହ୍ମଣ ପ୍ରଭୃତି ଗ୍ରନ୍ଥକୁ ଶ୍ରୁତି ଆଖ୍ୟା ଦେଇଅଛନ୍ତି, ତାହା ଆମ୍ଭେମାନେ ପୂର୍ବେ ଦେଖାଇଅଛୁଁ । ସୁତରାଂ ପ୍ରକୃତ ବେଦାଲୋଚନା ବେଳେ ଆମ୍ଭମାନଙ୍କୁ ତିନି ବେଦ ଦେଖିବାକୁ ହେବ । 'ଇତି ଶ୍ରୁତେଃ' । ଏହି ବାକ୍ୟ ଉପରେ ଆସ୍ଥା ସ୍ଥାପନ କଲେ ପ୍ରମାଦରେ ପଡ଼ିବାକୁ ହେବ । ଦୟାନନ୍ଦ ସରସ୍ୱତୀ 'ଅଗ୍ନେ ରଗ୍‌ବେଦୋ ବାୟୋର୍ଯଜୁର୍ବେଦଃ ସୂର୍ଯ୍ୟାତ୍‌ସାମ ବେଦଃ' ଉଦାହରଣ ଦେଇ ଲେଖନ୍ତି ଯେ, "ପ୍ରଥମ ସୃଷ୍ଟି କି ଆଦିମେ ପରମାତ୍ମାନେ ଅଗ୍ନିବାୟୁ ଆଦିତ୍ୟ ତଥା ଅଙ୍ଗିରା ଇନ ରଷିୟୋଂକେ ଆତ୍ମାମେ ଏକ ଏକ ବେଦକା ପ୍ରକାଶ କିଆ ।" ମୂଳ ଓ ଭାଷା ପାଠକମାନଙ୍କ ସମକ୍ଷରେ ଉପସ୍ଥାପିତ କଲୁଁ । ପାଠକଗଣ ବିଚାର କରିପାରିବେ ଯେ, ମୂଳ ସହିତ ଅର୍ଥର କୌଣସି ସଙ୍ଗତି ନାହିଁ ।

ଆଶା ରହିଲା, ଏଥିଉତ୍ତାରୁ ଆମ୍ଭେମାନେ ମୂଳ ରଗ୍‌ବେଦର ପୁରୁଷସୂକ୍ତରୁ ନବମ ମନ୍ତ୍ର ମନୁଙ୍କର ପ୍ରଥମ ଅଧ୍ୟାୟର ଦଶମ ଶ୍ଳୋକ ଏବଂ ଶତପଥ ବ୍ରାହ୍ମଣର ପ୍ର ୧୧ । ୪ । ୨ । ୩ ର କିପରି ସମନ୍ୱୟ ହୋଇପାରେ, ତାହା ଦେଖାଇବାକୁ ଚେଷ୍ଟା କରିବୁଁ ।

ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଅଥର୍ବ ବେଦକୁ ମଧ ରଗ୍‌ବେଦ, ଯଜୁର୍ବେଦ ଓ ସାମବେଦର ସମକକ୍ଷ ଥିବାର ଉପରୋକ୍ତ ବ୍ୟାଖ୍ୟାରେ ପ୍ରକାଶ କରିଅଛନ୍ତି, ଯଦିଚ ମୂଳମନ୍ତ୍ର ଓ ଶ୍ଳୋକରେ ତହିଁର କୌଣସି ଉଲ୍ଲେଖ ନାହିଁ । ଅନ୍ୟାନ୍ୟ ବିଷୟର ଆଲୋଚନା ପୂର୍ବରୁ ଅଥର୍ବ ବେଦର ପ୍ରାଚୀନତ୍ୱର ଅନୁସନ୍ଧାନ କରାଯାଉ । ଅଥର୍ବ ବେଦକୁ ଅଥର୍ବାଙ୍ଗିରସ ମଧ ବୋଲାଯାଏ । ଅଙ୍ଗିରା ଓ ଅଥର୍ବନ ଦୁଇ ଗୋଟି ପ୍ରାଚୀନ ରଷି । ଏହାଙ୍କ ବଂଶଧରମାନେ ଆଙ୍ଗିରସ ଓ ଆଥର୍ବଣ ନାମରେ ଯଥାକ୍ରମେ ପରିଚିତ ହୁଅନ୍ତି । ଅଙ୍ଗିରା ଓ ଅଥର୍ବ ରଷିଙ୍କର ନାମ ରଗ୍‌ବେଦରେ ମିଳେ । ମାତ୍ର ଅଥର୍ବ ବେଦର ଉଲ୍ଲେଖ ତିନି ବେଦରେ ଆଦୌ ନାହିଁ । ଅଥର୍ବ ବେଦକୁ ଅଥର୍ବାଣଙ୍ଗିରସ ମଧ ବୋଲାଯାଏ । ଅଥର୍ବ ବେଦରେ ଏହି ଅଥର୍ବାଣଙ୍ଗିରସ ନାମର ପ୍ରଥମ ଉଲ୍ଲେଖ ଦେଖାଯାଏ । ଏହାର ଅର୍ଥ ଅଥର୍ବବେଦ, ଯଥା—

ଯସ୍ମାଦୃଚୋ ଅପାତକ୍ଷନ୍ୟଜୁ ଯସ୍ମାଦପାକଷନ୍ ।
ସାମାନି ଯସ୍ୟ ଲୋମାନ୍ୟଥର୍ବାଙ୍ଗିରସୋ ମୁଖଂ ।
ସ୍କମ୍ଭଂ ତଂ ବ୍ରୁହି କତମଃ ସ୍ୱଦେବ ସଃ ।

ଅ : ବେ: ୧୦ । ୭।୨୦

ଏହାଛଡ଼ା ଅଥର୍ବ ବେଦର ଉଲ୍ଲେଖ କୌଣସି ବେଦରେ ନାହିଁ । ତୈତିରୀୟ ବ୍ରାହ୍ମଣ, ଶତପଥ ବ୍ରାହ୍ମଣ, ତୈତିରୀୟ ଆରଣ୍ୟକ ଓ କେତେକ ଉପନିଷଦରେ ଅଥର୍ବ ବେଦର ଉଲ୍ଲେଖ ମିଳେ । ସୁତରାଂ ଅଥର୍ବ ବେଦ ସଂଗ୍ରହ ତିନି ବେଦ ଅପେକ୍ଷା ଅପ୍ରାଚୀନ ବୋଲିବା ଅସଙ୍ଗତ ନୁହେଁ । ଋଗ୍‌ବେଦ, ଯଜୁର୍ବେଦ, ସାମବେଦ ସଂଗ୍ରହ ଅପେକ୍ଷା ଅଥର୍ବ ବେଦ ସଂଗ୍ରହ ଯେ ପରେ ହୋଇଅଛି, ତହିଁର ସାକ୍ଷ୍ୟ ନିଜେ ଅଥର୍ବ ବେଦ ।

ଯଜୁର୍ବେଦ ପୁଣି ଯୋଡ଼ିଏ, ଶୁକ୍ଳ ଯଜୁର୍ବେଦ ଓ କୃଷ୍ଣ ଯଜୁର୍ବେଦ । ଏ ଯୋଡ଼ିକର ନାମ ଯଥାକ୍ରମେ ବାଜସନେୟ ସଂହିତା ଓ ତୈତିରୀୟ ସଂହିତା । ଯଜୁର୍ବେଦର ଏତାଦୃଶ ବିଭାଗ ହେଲା କାହିଁକି, ତାହା ପରେ ଆଲୋଚିତ ହେବ ।

ବେଦ ସମ୍ବନ୍ଧରେ ପୁରାଣ ସମୂହର ଯେ ମତ, ତାହା ଏଠାରେ ବିଶଦ ଭାବରେ ପ୍ରକାଶ କରି ପ୍ରବନ୍ଧର କଳେବର ବୃଦ୍ଧି କରିବାର ପ୍ରୟୋଜନ ଦେଖାଯାଏ ନାହିଁ । ପ୍ରସଙ୍ଗକ୍ରମେ ପୁରାଣ ମତମାନ ମଧ୍ୟ ଉଦ୍ଧୃତ ହୋଇପାରିବ । ବର୍ତ୍ତମାନ ବିଶୁଦ୍ଧ ବେଦମନ୍ତ୍ର ଆଲୋଚନାରୁ ବେଦ ଅନାଦି, କି ଋଷିରଚିତ, ତାହାର ପରୀକ୍ଷା କରାଯାଉ । ଋଗ୍‌ବେଦ ହିଁ ପ୍ରଥମ ଓ ପ୍ରଧାନ । କେହି କେହି ଏହା ସ୍ୱୀକାର କରିବାକୁ ରାଜି ନୁହଁନ୍ତି । ସେମାନଙ୍କର ଭୟ ଏହି ଯେ, କାଳେ ଋଗ୍‌ବେଦକୁ ପ୍ରଥମ ଓ ପ୍ରଧାନ ବୋଲି ସ୍ୱୀକାର କରି ପକାଇଲେ ବେଦର ନିତ୍ୟତ୍ୱରେ ବାଧା ଘଟିବ । ସେମାନଙ୍କର ବୈମତ୍ୟରେ ଆସେ ଯାଏ କେତେ ? ଆମ୍ଭେ ପ୍ରମାଣଦ୍ୱାରା ଦେଖାଇବାକୁ ଚେଷ୍ଟା କରିବୁଁ ଯେ, ଋଗ୍‌ବେଦ ହିଁ ପ୍ରଥମ ଓ ପ୍ରଧାନ । ଏହା ଯେ କେବଳ ଆମ୍ଭମାନଙ୍କର ଧାରଣା ତାହା ନୁହେଁ, ଏ ସମ୍ବନ୍ଧରେ ବ୍ରାହ୍ମଣ ବଚନ ବିଦ୍ୟମାନ ଅଛି । 'ତତ୍‌ପରିଚରଣାବିତରୌ ବେଦୌ' । ଅର୍ଥାତ୍ ଅନ୍ୟ ବେଦଯୋଡ଼ିକ ତାହାର ବା ଋଗ୍‌ବେଦର ପରିଚୟ ।

ପ୍ରତ୍ୟେକ ବେଦର ବିଭାଗ ବିଭିନ୍ନ ପ୍ରକାର । ଋଗ୍‌ବେଦ ଅଷ୍ଟକ, ଅଧ୍ୟାୟ, ଅନୁବାକ ଓ ବର୍ଗ ଏବଂ ମଣ୍ଡଳ, ସୂକ୍ତ, ଋଗ୍ ବା ମନ୍ତ୍ରରେ ବିଭକ୍ତ । ସମଗ୍ର ଋଗ୍‌ବେଦର ଆଠ ଅଷ୍ଟକ ଓ ଦଶମଣ୍ଡଳ ପ୍ରଧାନ ବିଭାଗ ଅଟେ । ପ୍ରଥମ ବିଭାଗାନୁସାରେ ଋଗ୍‌ବେଦ ଆଠଗୋଟି ଅଷ୍ଟକ— ପ୍ରତ୍ୟେକ ଅଷ୍ଟକ ଆଠ ଅଧ୍ୟାୟରେ ବିଭକ୍ତ; ସୁତରାଂ ସମଗ୍ର ଋଗ୍ ବେଦକୁ ୬୪ ଅଧ୍ୟାୟରେ ବିଭକ୍ତ କରାଯାଇଅଛି । ପ୍ରତ୍ୟେକ ଅଧ୍ୟାୟର ଅନୁବାକ୍ ସମପରିମିତ ନୁହେଁ, ଏଣୁ ସମଗ୍ର ଋଗ୍‌ବେଦ ୮୫ ଅନୁବାକ୍‌ରେ ବିଭକ୍ତ । ସମଗ୍ର ଋଗ୍‌ବେଦ ୧୦ ଗୋଟି ମଣ୍ଡଳରେ ବିଭକ୍ତ । ମଣ୍ଡଳ ସୂକ୍ତରେ ବିଭକ୍ତ ଏବଂ ସୂକ୍ତ ଋଗ୍ ବା ମନ୍ତ୍ରରେ ବିଭକ୍ତ । ଶେଷୋକ୍ତ ବିଭାଗ ସହଜବୋଧ ଅଟେ । ଏଠାରେ ମଣ୍ଡଳ ଅର୍ଥ ସଂଗ୍ରହର ବୃହତ୍ତର ବିଭାଗ ବୋଲାଯାଇପାରେ । ତହିଁ ଉତ୍ତାରୁ ମଣ୍ଡଳ ବିଭାଗ ସୂକ୍ତ ଅଟେ । ବୃହଦେବତା ଅନୁସାରେ 'ସମ୍ପୂର୍ଣ୍ଣମୃଷିବାକ୍ୟଂ ତୁ ସୂକ୍ତମିତ୍ୟଭିଧୀୟତେ' । ସମ୍ପୂର୍ଣ୍ଣ ଋଷିବାକ୍ୟକୁ ସୂକ୍ତ ବୋଲାଯାଏ । ଅନୁବାକ ଅନୁକ୍ରମଣି ଅନୁସାରେ ଋଗ୍‌ବେଦରେ ଦଶସଂଖ୍ୟକ ମଣ୍ଡଳ, ୧୦୧୭ ସୂକ୍ତ ଏବଂ ୧୦୫୮୦ ଋଗ୍ ବା ମନ୍ତ୍ର ଏବଂ ୧୫୩୮୨୬ ଗୋଟି ଶବ୍ଦ ଅଛି ।

ସୂକ୍ତ— ସହସ୍ର ମେତତ୍ ସୂକ୍ତାନାଂ
ନିଶ୍ଚିତଂ ଖୈଲିକୈର୍ବିନା ।
ଦଶସପ୍ତ ଚ ପଠ୍ୟନ୍ତେ
ସଂଖ୍ୟାତଂ ବୈ ପଦଦ୍ୱୟଂ ।

**ଋକ୍ ସଂଖ୍ୟା—**

ଋଚାଂ ଦଶସହସ୍ରାଣି
ଋଚାଂ ପଞ୍ଚଶତାନିଚ ।
ଋଚାମଶୀତିପାଦଶ୍ଚ ପାରଣଂ ସମ୍ପ୍ରକୀର୍ତ୍ତିତଂ ।
ଶବ୍ଦ-ଶାକଲ୍ୟଦୃଷ୍ଟେ ପଦଲକ୍ଷଣମେକଂ
ସାର୍ଦ୍ଧଞ୍ଚ ବେଦେ ତ୍ରିସହସ୍ରଯୁକ୍ତଂ ।
ଶତାନି ଚାଷ୍ଟୌ ଦଶକଦ୍ୱୟଞ୍ଚ ।
ପଦାନି ଷଟ୍ ଚେତି ଚ ଚର୍ଚ୍ଚିତାନି ॥

ମାତ୍ର ଦୟାନନ୍ଦ ସରସ୍ୱତୀଙ୍କ ଗଣନାନୁସାରେ ଋଗ୍‌ବେଦର ୧୦ ଗୋଟି ମଣ୍ଡଳ, ୧୦୨୮ ସୂକ୍ତ ଏବଂ ୧୦୫୮୯ ଋଗ୍ ବା ମନ୍ତ୍ର ଦେଖାଯାଏ । ଏ ପାର୍ଥକ୍ୟର କାରଣ କ'ଣ ?

ପୂର୍ବେ ଋଗ୍‌ବେଦର ପାଞ୍ଚଗୋଟି ଶାଖା ଥିଲା, ଯଥା— ଶାକଳ, ବାଷ୍କଳ, ଆଶ୍ୱଳାୟନ, ଶାଂଖ୍ୟାୟନ ଓ ମାଣ୍ଡୁକେୟ । ଏହି ଶାଖାଧ୍ୟାୟୀଗଣ ଋଗ୍‌ବେଦ ରକ୍ଷାରେ ଯତ୍ନଶୀଳ ଥିଲେ । ଆଶ୍ୱଳାୟନ ଶାଖାଧ୍ୟାୟୀଗଣ ବାଳଖିଲ୍ୟକୁ ଋଗ୍‌ବେଦାନ୍ତର୍ଗତ ବୋଲି ଧରି ନେଇଥିଲେ । ଶାଂଖ୍ୟାୟନମାନେ ବାଳଖିଲ୍ୟର ସମସ୍ତ ଋଗ୍‌କୁ ଗ୍ରହଣ ନ କରି କେତେକ ମାତ୍ର ଋଗ୍‌ବେଦୀୟ ବୋଲି ଗ୍ରହଣ କରୁଥିଲେ । ମାଣ୍ଡୁକେୟ ଶାଖାଦ୍ୱାରା ଗୃହୀତ କୌଣସି ଋଗ୍‌ବେଦ ବିଦ୍ୟମାନ ନ ଥିବାର ପଣ୍ଡିତଗଣ ପ୍ରକାଶ କରନ୍ତି । ବାଷ୍କଳ ଶାଖା ବାଳଖିଲ୍ୟକୁ ଋଗ୍‌ବେଦ ବୋଲି ସ୍ୱୀକାର କରନ୍ତି; ମାତ୍ର ଶାକଳ ଶାଖା ତାହା ସ୍ୱୀକାର କରନ୍ତି ନାହିଁ । ଶୌନକାଚାର୍ଯ୍ୟବିରଚିତ ଅନୁବାକ୍ ଅନୁକ୍ରମଣୀରେ ଯେ

ଋଗ୍‌ବେଦର ମଣ୍ଡଳ, ସୂକ୍ତ, ଋକ୍ ଓ ପଦର ସଂଖ୍ୟା ଦିଆଯାଇଅଛି, ତହିଁରୁ ସ୍ପଷ୍ଟ ଜଣାଯାଉଅଛି ଯେ, ବାଳଖିଲ୍ୟ ଛଡ଼ା ଋଗ୍‌ବେଦର ସୂକ୍ତସଂଖ୍ୟା ୧୦୧୭ । ମାକ୍‌ସମୂଲାରଙ୍କ ପ୍ରକାଶିତ ଋଗ୍‌ବେଦର ସୂକ୍ତସଂଖ୍ୟା ୧୦୨୮ ଏବଂ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ଗଣନାନୁସାରେ ମଧ ସୂକ୍ତସଂଖ୍ୟା ୧୦୨୮ । ଏହି ବାଳଖିଲ୍ୟ ଋଗ୍‌ବେଦର ଅଷ୍ଟମ ମଣ୍ଡଳର ୪୯ ସୂକ୍ତଠାରୁ ଆରମ୍ଭ ହୋଇ ୫୯ ସୂକ୍ତରେ ଶେଷ ପାଇଅଛି । ଏହି ଏଗାରଟି ସୂକ୍ତ ଅପ୍ରାମାଣିକ ବିବେଚନାରେ ପୂର୍ବେ କେତେକ ବେଦଶାଖାଧାୟୀ ନିଜ ନିଜ ପୁସ୍ତକରୁ ବହିଷ୍କୃତ କରିଥିଲେ । ଏହି ଶାଖାମାନଙ୍କ ମଧ୍ୟରୁ ଶାକଳ ପ୍ରଧାନ । ବେଦର ନାନା ପ୍ରକାର ପାଠ ଅଛି, ଯଥା— କ୍ରମ, ପଦ, ଜଟା, ଘନ । ସୌନକ ଋଗ୍‌ଦେବ ପ୍ରତିଶାଖାର ରଚକ ଅଟନ୍ତି । ସେ ଖିଳ ସୂକ୍ତସମୂହର ପଦପାଠ ଦେଇ ନାହାନ୍ତି । ଏହାଛଡ଼ା ଆଉ ଛଅଗୋଟି ମନ୍ତ୍ରର ପଦପାଠ ମଧ ଦେଇ ନାହାନ୍ତି । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ ଶାକଳ ଶାଖାଧାୟୀଗଣ ଉପରୋକ୍ତ ବାଳଖିଲ୍ୟ ସୂକ୍ତ ଓ ଅନ୍ୟ ଛଅଗୋଟି ମନ୍ତ୍ରକୁ ପରବର୍ତ୍ତୀ ସଂଯୋଗ ସୁତରାଂ ଅପ୍ରାମାଣିକ ବୋଲି ସ୍ୱୀକାର କରିଅଛନ୍ତି । ତାହାଛଡ଼ା ବେଦର ନିତ୍ୟତ୍ୱବିଶ୍ୱାସୀ ସାୟନାଚାର୍ଯ୍ୟ ମଧ ଏହି ବାଳଖିଲ୍ୟ ସୂକ୍ତସମୂହର ବ୍ୟାଖ୍ୟା ନ କରି ଛାଡ଼ି ଦେଇଅଛନ୍ତି । ଏଥିରୁ କି ସ୍ପଷ୍ଟ ପ୍ରମାଣିତ ହେଉ ନାହିଁ ଯେ, ପୂର୍ବେ ବେଦରେ ସଂଯୋଗ ବିୟୋଗ ଘଟୁଥିଲା ଏବଂ ସେଥିନିମନ୍ତେ ବେଦରକ୍ଷକମାନଙ୍କ ମଧରେ ମତାନୈକ୍ୟ ଘଟୁଥିଲା ? ଶାକଳ ଶାଖାଧାୟୀଗଣ ବାଳଖିଲ୍ୟକୁ ପରବର୍ତ୍ତୀ ସଂଯୋଗ ବୋଲି ଆପଣା ଆପଣା ସଂଗୃହୀତ ଋଗ୍‌ବେଦରୁ ନିଷ୍କାସିତ କରି ସେମାନଙ୍କଦ୍ୱାରା ଯାହା ପ୍ରମାଣ ସହ ଋଗ୍‌ବେଦ ବୋଲି ବିବେଚିତ ହେଲା, ତାହା ରକ୍ଷାକରି ଆମ୍ଭମାନଙ୍କୁ ଦେଇଅଛନ୍ତି । ତାହା ଅବଶ୍ୟ ସ୍ୱୀକାର୍ଯ୍ୟ ବୋଲି ବିବେଚନା କରିବାରୁ ସାୟନାଚାର୍ଯ୍ୟ ମଧ ତହିଁର ଭାଷ୍ୟ ଲେଖିନାହାନ୍ତି । ତେବେ ବେଦର ନିତ୍ୟତ୍ୱ, ଅପୌରୁଷେୟତ୍ୱ ଓ ସନାତନତ୍ୱ କେଉଁଠାରେ ରହିଲା ? ଏହାଛଡ଼ା ମାକ୍‌ସମୂଲାରଙ୍କ ମୁଦ୍ରିତ ଓ ପ୍ରକାଶିତ ଋଗ୍‌ବେଦର (୨ୟ ସଂସ୍କରଣ) ଶେଷରେ ୩୨ ଗୋଟି ସୂକ୍ତ ମୁଦ୍ରିତ ହୋଇଅଛି । ଏହି ୩୨ ଗୋଟି ସୂକ୍ତକୁ ମଧ ଖୈଳିକ ସୂକ୍ତ ବୋଲି ଅଭିହିତ କରାଯାଇଅଛି । ଏହି ସୂକ୍ତମାନଙ୍କ ମଧ୍ୟରୁ ଅନେକଗୁଡ଼ିଏ ଅତି ପ୍ରାଚୀନ ବୋଲି ପଣ୍ଡିତଗଣ ଅନୁମାନ କରନ୍ତି ଏବଂ କେତେକ ଅପ୍ରାଚୀନ ବୋଲି ସ୍ୱୀକୃତ ହୋଇଅଛି । ଏଥିରୁ ଯେଉଁଗୁଡ଼ିକ ଋଗ୍ ବେଦର ଖିଳ ବୋଲି ସ୍ୱୀକୃତ ହୋଇଅଛି, ସେଗୁଡ଼ିକ ଅଥର୍ବ ବେଦର ମୂଳ ଋକ୍ ବୋଲି ଗୃହୀତ ହୋଇଅଛି । ଏହିପ୍ରକାର ସଂହିତାର, ଆରଣ୍ୟକର ଓ ଉପନିଷଦର ମଧ ଖିଳ ଅଛି । ଅନ୍ୟ କଥା ତେଣେ ଥାଉ ହରିବଂଶକୁ ମହାଭାରତର ଖିଳ ବୋଲାଯାଏ । ହରିବଂଶର ନାମ ହିଁ ଖିଳ ହରିବଂଶ । ଖିଳକୁ ପରିଶିଷ୍ଟ ବୋଲାଯାଇ ପାରେ । ପରବର୍ତ୍ତୀ ଋଷିମାନେ ଦେଖିଲେ ଯେ, ଆଉ କେତେଗୋଟି ମନ୍ତ୍ର ସଂଗ୍ରହ ବା ସଂଯୋଗଦ୍ୱାରା କିମ୍ବା କେତେକ ଅଧାୟ କିମ୍ବା ଗୋଟିଏ ଗ୍ରନ୍ଥ ସଂଯୋଗଦ୍ୱାରା ପ୍ରକୃତ ଗ୍ରନ୍ଥ ପୂର୍ଣ୍ଣାଙ୍ଗ ହେବ, ସେମାନେ ତାହା ସଂଗ୍ରହଦ୍ୱାରା କିମ୍ବା ରଚନାଦ୍ୱାରା ପୂରଣ କରିଅଛନ୍ତି । ସୁତରାଂ ଖିଳ ଯେ ପରବର୍ତ୍ତୀ ସଂଗ୍ରହ ବା ରଚନା ବା ପରିଶିଷ୍ଟ, ଏଥିରେ ମତଦ୍ୱୈଧ ହେବାର କୌଣସି କାରଣ ନାହିଁ ।

ପ୍ରସିଦ୍ଧ ଶ୍ରୀସୂକ୍ତ ଖୈଳିକ ସୂକ୍ତାନ୍ତର୍ଭୁତ ଅଷ୍ଟମ ସୂକ୍ତ । ଏହି ଖୈଳିକ ସୂକ୍ତମାନଙ୍କର ଋଷି ନାହାନ୍ତି । ଅଧିକାଂଶ ସୂକ୍ତରେ କେବଳ ଗୋଟିଏ ବା ଯୋଡ଼ିଏ ମନ୍ତ୍ର ଦେଖାପଡ଼େ । କେତେଗୁଡ଼ିଏ ମନ୍ତ୍ରର ବୈଦିକ ଭାଷା ନ ହୋଇ ସଂସ୍କୃତ ବୋଲି ଜଣାଯାଏ, ଯଥା ନବମ ସୂକ୍ତ—

ବିଶ୍ୱେଶ୍ୱର ବିରୂପାକ୍ଷ ବିଶ୍ୱରୂପ ସଦାଶିବ ।
ଶରଣଂ ଭବ ଭୂତେଶ କରୁଣାକର ଶଙ୍କର ।।
ଇତ୍ୟାଦି

ଏହିପରି ଭାଷାରେ କୃଷ୍ଣଙ୍କ ନାମରେ ମଧ ଗୋଟିଏ ସୂକ୍ତ ଅଛି । (୧୦ମ ସୂକ୍ତ) ଏହି ଖୈଳିକ ସୂକ୍ତର ଅନେକଗୁଡ଼ିଏ ଶ୍ଳୋକ ଅବିକଳ ମହାଭାରତରେ ଦେଖାଯାଏ, ଯଥା— ଖୈଳିକ ୨ୟ ସୂକ୍ତ :—

ଭୋଃ ସର୍ପ ଭଦ୍ର ଭଦ୍ରଂ ତେ
ଦୂରଂ ଗଚ୍ଛ ମହାଯଶାଃ ।
ଜନମେଜୟସ୍ୟ ଯଜ୍ଞାନ୍ତେ
ଆସ୍ତିକ-ବଚନଂ ସ୍ମର ।
ଆସ୍ତିକବଚନଂ ଶ୍ରୁତ୍ୱା
ଯଃ ସର୍ପୋ ନ ନିବର୍ତ୍ତତେ ।
ଶତଧା ଭିଦ୍ୟତେ ମୂର୍ଦ୍ଧ୍ନିଂଶିବୃକ୍ଷଫଳଂ ଯଥା । ୬

ମହାଭାରତ ୧ମ ପର୍ବ :—

ସର୍ପାପସର୍ପ ଭଦ୍ରଂ ତେ ଗଚ୍ଛ ସର୍ପ ମହାବିଷ ।
ଜନମେଜୟସ୍ୟ ଯଜ୍ଞାନ୍ତେ
ଆସ୍ତିକବଚନଂ ସ୍ମର ।
ଅସ୍ତିକସ୍ୟ ବଚଃ ଶ୍ରୁତ୍ୱା ଯଃ ସର୍ପୋ ।
ନଂ ନିବର୍ତ୍ତତେ ।

ଶତଧା ଭିଦ୍ୟତେ ମୂର୍ଦ୍ଧ୍ନି ଶଂଶ ବୃକ୍ଷଫଳଂ ଯଥା ।

ଖୈଳିକସୂକ୍ତରୁ ମହାଭାରତକୁ ଏହି ଶ୍ଳୋକ ଯୋଡ଼ିକ ଅଣାଯାଇଅଛି କିମ୍ବା ମହାଭାରତରୁ ଏହି ଶ୍ଳୋକଯୋଡ଼ିକ ଖୈଳିକ ସୂକ୍ତାନ୍ତର୍ଭୁକ୍ତ କରାଯାଇଅଛି । ଏହାଛଡ଼ା ଆଉ କିଛି ହୋଇପାରେ କି ? ପୂର୍ବାଚାର୍ଯ୍ୟଗଣ ଏହା ବେଦମନ୍ତ୍ର ନୁହେଁ ବୋଲି ତ୍ୟାଗ କରିଥିଲେ ସୁଦ୍ଧା ଅଜ୍ଞଜ୍ଞ ଲୋକ ଏହି ସମସ୍ତ ମନ୍ତ୍ରକୁ ବେଦବାକ୍ୟ ବୋଲି ମାନି ନେଉଅଛନ୍ତି । ଏହା ଦେଖିଲା ଉତ୍ତାରୁ ମଧ୍ୟ ଆମ୍ଭେମାନେ ବେଦ ନିତ୍ୟ ଓ ଅପୌରୁଷେୟ ବୋଲି ମାନିବାକୁ ବାଧ କି ?

ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ, ଋଗ୍‌ବେଦ ହିଁ ପ୍ରଥମ ଓ ପ୍ରଧାନ ।

ସାମବେଦର "ଅଷ୍ଟୌ ସାମ ସହସ୍ରାଣି ସାମାନି ଚ ଚତୁର୍ଦ୍ଦଶଃ । ଉହ୍ୟାନି ସରହସ୍ୟାନି ଏଷ ସାମଗଣଃ ସ୍ମୃତାଃ ।" ଅର୍ଥାତ୍ ସାମବେଦରେ ୮୦୧୪ ସାମମନ୍ତ୍ର ଅଛି । ମାତ୍ର ସେଥିମଧ୍ୟରୁ ୭୫ ଗୋଟି ଗୀତ ଛଡ଼ା ସମଗ୍ର ମନ୍ତ୍ର ଋଗ୍‌ବେଦରୁ ଗୃହୀତ ହୋଇଅଛି । ମନିଅର ଉଇଲିୟମସ୍‌ଙ୍କ ଅନୁସାରେ ଋଗ୍‌ବେଦ ୧ମ ମଣ୍ଡଳରୁ ୧୯୦ଟି ଋକ୍, ୨ୟ ମଣ୍ଡଳରୁ ୯ଟି, ୩ୟ ମଣ୍ଡଳରୁ ୪୦ଟି, ୪ର୍ଥ ମଣ୍ଡଳରୁ ୨୩ଟି, ୫ମ ମଣ୍ଡଳରୁ ୫୩ଟି, ୬ଷ୍ଠ ମଣ୍ଡଳରୁ ୭୭ଟି, ୭ମ ମଣ୍ଡଳରୁ ୭୫ଟି, ୮ମ ମଣ୍ଡଳରୁ ୩୫୫ଟି, ବାଳଖିଲ୍ୟରୁ ୯ଟି, ୯ମ ମଣ୍ଡଳରୁ ୫୪୫ଟି ଏବଂ ଦଶମ ମଣ୍ଡଳରୁ ୯୫ଟି ଋକ୍ ଅବିକଳ ସାମବେଦରେ ଗୃହୀତ ହୋଇଅଛି । ଏହାଛଡ଼ା ଅଥର୍ବବେଦର ୧୨ ଗୋଟି ଏବଂ ବାଜସନେୟୀ ସଂହିତାରୁ ୪ ଗୋଟି ମନ୍ତ୍ର ମଧ୍ୟ ସାମବେଦରେ ସନ୍ନିବେଶିତ କରାଯାଇଅଛି । ତାହାଛଡ଼ା ସାମବେଦ ପୂର୍ବାର୍ଚ୍ଚିକ ଓ ଉତ୍ତରାର୍ଚ୍ଚିକରେ ବିଭକ୍ତ । ପୂର୍ବାର୍ଚ୍ଚିକର ମନ୍ତ୍ରମାନ ପୁଣି ଉତ୍ତରାର୍ଚ୍ଚିକରେ ପୁନରୁକ୍ତ ହୋଇଅଛି । ଉଦାହରଣସ୍ୱରୂପ ତିନି ଚାରି ଗୋଟି ଋଗ୍‌ବେଦ ଓ ସାମବେଦରୁ ଉଦ୍ଧୃତ କଲେ ତୁଳନା ବିଷୟରେ ସୁବିଧା ହେବ ।

"ଅଗ୍ନିମୀଳେ ପୁରୋହିତଂ ଯଜ୍ଞସ୍ୟ ଦେବମୃତ୍ୱିଜଂ ।
ହୋତାରଂ ରତ୍ନଧାତମଂ । ୧ ।
ଋ. ୧ମ ମଣ୍ଡଳ ୧ମ ସୂକ୍ତ ।
ଅଗ୍ନିମୀଢ଼େ ପୁରୋହିତଂ ଯଜ୍ଞସ୍ୟ ଦେବମୃତ୍ୱିଜଂ ।
ହୋତାରଂ ରତ୍ନଧାତମଂ ।
ସା : ବେ : ଛ :ଅ ୨ୟ ଅ, ୨୦ ।

ଅପ୍ରତିରଥ ସୂକ୍ତଟି ଅନେକ ବ୍ରାହ୍ମଣ ଓ ପୁରୋହିତଙ୍କର ମୁଖସ୍ଥ । ଏହା ରାଜାମାନେ ଅନୁକୂଳ କଲାବେଳେ ବରାବର ପାଠ କରାଯାଇଥାଏ । ଏହି ସୂକ୍ତଟି ଋଗ୍‌ବେଦର । ଏଥିରେ ୧୩ ଗୋଟି ମନ୍ତ୍ର ଅଛି ।

ଆଶୁଃ ଶିଶାନୋ ବୃଷଭୋ ନ ଭୀମୋ ଘନାଘନଃ
କ୍ଷୋଭଣଶ୍ଚର୍ଷଣୀନାଂ । ସଂକ୍ରଂଦନୋଽନିମିଷ
ଏକବୀର ଶତଂସେନା ଅଜୟତ୍‌ସାକମିନ୍ଦ୍ରଃ ।
ଋ. ୧୦ ମ. ୧୦୩-୧

ଆଶୁଃ ଶିଶାନୋ ବୃଷଭୋ ନ ଭୀମୋ ଘନାଘନଃ
କ୍ଷୋଭଣଶ୍ଚର୍ଷଣୀନାଂ । ସଂକ୍ରନ୍ଦନୋ ନିମିଷ
ଏକବୀରଃ ଶତଂ ସେନା ଅଜୟତ୍ସାକମିନ୍ଦ୍ରଃ ।
ସା. ୨୧ ଅଃ. ୧ । ୧ ସୂକ୍ତ

ଆଉ ଉଦ୍ଧୃତ କରିବାର ପ୍ରୟୋଜନ କ'ଣ ? ଋଗ୍‌ବେଦରେ ଓ ସାମବେଦରେ ଏକ ମନ୍ତ୍ର ଦୃଷ୍ଟିଗୋଚର ହେବାରୁ ଏହା ଅନାୟାସରେ ମତ ଦିଆଯାଇପାରେ ଯେ, ଗୋଟିଏ ବେଦରୁ ଅନ୍ୟ ବେଦ ଏହି ମନ୍ତ୍ର ଗ୍ରହଣ କରିଅଛି । ପୂର୍ବେ ଲେଖାଯାଇଅଛି ଯେ, ଋଗ୍‌ବେଦ ପ୍ରଥମ ଓ ପ୍ରଧାନ, ଏଣୁ ସାମବେଦ ସେହି ପ୍ରଥମ ବେଦରୁ ଗାନଯୋଗ୍ୟ ମନ୍ତ୍ରମାନଙ୍କୁ ଗ୍ରହଣ କରି ଆପଣାର କଳେବର ବୃଦ୍ଧି କରିଅଛି । ଅଧିକନ୍ତୁ ଋଗ୍‌ବେଦର ଅନ୍ୟ ମଣ୍ଡଳମାନଙ୍କ ଅପେକ୍ଷା ଅଷ୍ଟମ, ନବମ, ଓ ଦଶମ ମଣ୍ଡଳରୁ ଅଧିକସଂଖ୍ୟକ ମନ୍ତ୍ର ଗ୍ରହଣ କରିଅଛି । ଅଧିକାଂଶ ମନ୍ତ୍ର ସୋମଯାଗରେ ଉଦଗାତୃମାନଙ୍କ ଦ୍ୱାରା ଗୀତ ହେବା ଅଭିପ୍ରାୟରେ ସଂଗୃହୀତ ହୋଇଅଛି । ଏକ ମନ୍ତ୍ର ବିଭିନ୍ନ ଶାଖାରେ ପୁରୋହିତମାନଙ୍କ ବ୍ୟବହାର ନିମନ୍ତେ ସ୍ୱତନ୍ତ୍ର ପୁସ୍ତକାନ୍ତର୍ଗତ ହୋଇଅଛି ।

॥ ୩ ॥

ସାମବେଦ ଉତ୍ତାରୁ ଯଜୁର୍ବେଦର କଥା । ଯଜୁର୍ବେଦ ଗଦ୍ୟ ଓ ପଦ୍ୟ ମିଶ୍ରିତ ଅଟେ । ଗଦ୍ୟରଚିତ ମନ୍ତ୍ରମାନଙ୍କୁ ଯଜୁଃ ବୋଲାଯାଉଥିଲା, ମାତ୍ର ଯଜୁର୍ବେଦରେ ଗଦ୍ୟ ଓ ପଦ୍ୟ ଅଛି । ଯଜୁର୍ବେଦ ଗୋଟିଏ ନୁହେଁ ଯୋଡ଼ିଏ । କୃଷ୍ଣ ଓ ଶୁକ୍ଳ । କୃଷ୍ଣ ଯଜୁର୍ବେଦର ନାମ ତୈତ୍ତିରୀୟ ସଂହିତା ଏବଂ ଶୁକ୍ଳ ଯଜୁର୍ବେଦର ନାମ ବାଜସନେୟୀ ସଂହିତା । ଯଜୁର୍ବେଦ ଏକପ୍ରକାର ଦୁଇଭାଗ ହେବାର ବିଚିତ୍ର ନୁହେଁ କି ? ସନ୍ଦେହ ନିରାକରଣ କରିବାକୁ ଭାଷ୍ୟକାର ମହୀଧର ଆପଣା ଶୁକ୍ଳ ଯଜୁର୍ବେଦ ଭାଷ୍ୟ ପ୍ରାରମ୍ଭରେ ଲେଖିଅଛନ୍ତି ଯେ, ପରମ୍ପରାପ୍ରାପ୍ତ ବେଦକୁ ବେଦବ୍ୟାସ ମନୁଷ୍ୟମାନଙ୍କର ମନ୍ଦମତି ସମ୍ବନ୍ଧରେ ଚିନ୍ତା କରି ଚାରିଭାଗରେ ବିଭକ୍ତ କଲେ, ଯଥା—ଋଗ୍, ଯଜୁଃ, ସାମ ଓ ଅଥର୍ବ ଏବଂ ଯଥାକ୍ରମେ ତାହାଙ୍କର ଚାରି ଶିଷ୍ୟ ପୈଲ,

ବୈଶମ୍ପାୟନ, ଜୈମିନି ଓ ସୁମନ୍ତୁଙ୍କୁ ଉପଦେଶ ଦେଲେ । ପୁଣି ସେମାନେ ମଧ୍ୟ ଆପଣା ଆପଣା ଶିଷ୍ୟମାନଙ୍କୁ ଅଧ୍ୟୟନ କରାଇଲେ । ବୈଶମ୍ପାୟନ ଯାଜ୍ଞବଲ୍କ୍ୟ ପ୍ରଭୃତି ସ୍ୱଶିଷ୍ୟମାନଙ୍କୁ ଯଜୁର୍ବେଦ ଶିକ୍ଷା ଦେଲେ । କୌଣସି କାରଣରୁ ବୈଶମ୍ପାୟନ କ୍ରୁଦ୍ଧ ହୋଇ ଯାଜ୍ଞବଲ୍କ୍ୟଙ୍କୁ କହିଲେ ଯେ, 'ମଦଧୀତଂ ତ୍ୟଜ' ମୋଠାରୁ ଯାହା ପଢ଼ିଅଛ, ତାହା ତ୍ୟାଗ କର । ଯାଜ୍ଞବଲ୍କ୍ୟ ଯୋଗସାମର୍ଥ୍ୟ ହେତୁ ବିଦ୍ୟାକୁ ମୂର୍ତ୍ତି କରି ବମନ କଲେ । ବୈଶମ୍ପାୟନ ଅନ୍ୟ ଶିଷ୍ୟମାନଙ୍କୁ ଆଦେଶ କଲେ, ବାନ୍ତ ଯଜୁଃମାନଙ୍କୁ ଗ୍ରହଣ କର । ଅନ୍ୟ ଶିଷ୍ୟମାନେ ତିତ୍ତିରୀ ପକ୍ଷୀ ହୋଇ ଯାଜ୍ଞବଲ୍କ୍ୟଙ୍କ ଦ୍ୱାରା ବାନ୍ତ ଯଜୁଃମାନଙ୍କୁ ଭକ୍ଷଣ କଲେ । ସେ ଭକ୍ଷିତ ଯଜୁଃମନ୍ତ୍ରସମୂହ ବୁଦ୍ଧିମାଳିନ୍ୟ ହେତୁ କୃଷ୍ଣ ହେଲେ । ତହିଁ ଉତ୍ତାରୁ ଯାଜ୍ଞବଲ୍କ୍ୟ ଦୁଃଖିତ ହୋଇ ସୂର୍ଯ୍ୟ ଆରାଧନା ଦ୍ୱାରା ଅନ୍ୟ ଶୁକ୍ଳ ଯଜୁଃ ମନ୍ତ୍ରସମୂହ ପ୍ରାପ୍ତ ହେଲେ । ଆଦିତ୍ୟଠାରୁ ଅଧୀତ, ଏଣୁ ଶୁକ୍ଳ ଏବଂ ଶୁଦ୍ଧ । ଯାଜ୍ଞବଲ୍କ୍ୟ ଏହି ଯଜୁର୍ବେଦକୁ ଜାବାଳ, ଗୌଧେୟ, କାଣ୍ୱ ଓ ମାଧ୍ୟନ୍ଦିନ ପ୍ରଭୃତି ପଞ୍ଚଦଶ ଶିଷ୍ୟଙ୍କୁ ପଢ଼ାଇଥିଲେ । ତହିଁ ମଧ୍ୟରୁ ମାଧ୍ୟନ୍ଦିନଶାଖା ଲୋକରେ ପ୍ରସିଦ୍ଧ ।

ତୈତ୍ତିରୀୟ ସଂହିତାର ଅନେକ ଶାଖା ଅଛି, ମାତ୍ର ସେସବୁ ଜଟିଳ ବିଷୟ ଏଠାରେ ଉଲ୍ଲେଖ କରିବାର କୌଣସି ପ୍ରୟୋଜନ ନାହିଁ । କୃଷ୍ଣ ଯଜୁର୍ବେଦ ବା ତୈତ୍ତିରୀୟ ସଂହିତାରେ ଉପଦେଶ ଓ ମନ୍ତ୍ର ଉଭୟ ଏକତ୍ର ସନ୍ନିବେଶିତ ହୋଇଅଛି, ଅର୍ଥାତ୍ ମନ୍ତ୍ରଭାଗ ଓ ବ୍ରାହ୍ମଣଭାଗ ଏକତ୍ର ମିଶିଅଛି । ଶୁକ୍ଳ ଯଜୁର୍ବେଦରେ କେବଳ ମନ୍ତ୍ରଭାଗ ବିଦ୍ୟମାନ । ଶୁକ୍ଳ ଯଜୁର୍ବେଦ ୪୦ ଅଧ୍ୟାୟରେ ବିଭକ୍ତ । ଗଦ୍ୟାଂଶ ଭିନ୍ନ ବିସ୍ତାର ଋଗ୍ ମନ୍ତ୍ର ଏହି ସଂହିତାରେ ସଂଗୃହୀତ ହୋଇଅଛି ।

ଉଭୟ କୃଷ୍ଣ ଓ ଶୁକ୍ଳ ଯଜୁର୍ବେଦ ଆରମ୍ଭରେ ପଳାଶର ସ୍ତୁତି ଅଛି । ଭାଷ୍ୟକାର ମାଧବାଚାର୍ଯ୍ୟ କହନ୍ତି, ଯେମନ୍ତ ଜଗନ୍ନିଷ୍ପାଦକ ବ୍ରହ୍ମ ପ୍ରଶସ୍ତ, ସେହିପରି ଯଜ୍ଞନିଷ୍ପାଦନରେ ପଳାଶର ପ୍ରାଶସ୍ତ୍ୟ, ଏଣୁ ବ୍ରହ୍ମରୂପରେ ପଳାଶର ସ୍ତୁତି । ଉଭୟ ବେଦର ପଳାଶସ୍ତୁତି ନିମ୍ନରେ ଉଦ୍ଧୃତ କରାଗଲା । ଉଭୟ ମଧ୍ୟରେ କି ପାର୍ଥକ୍ୟ ଅଛି, ତାହା ସ୍ପଷ୍ଟ ଜଣାପଡ଼ିବ ।

ଇଷେତ୍ୱୋର୍ଜେ ତ୍ୱା ବାୟବ ସ୍ଥୋପାୟବସ୍ଥ ଦେବୋ ବଃ ସବିତା ପ୍ରାପୟତୁ ଶ୍ରେଷ୍ଠତମାୟ କର୍ମଣ ଅପ୍ୟାୟଧ୍ୱମଘ୍ନିୟା ଦେବଭାଗ ମୂର୍ଜସ୍ୱତୀଃ ପୟସ୍ୱତୀଃ ପ୍ରଜାବତୀରନମୀବା ଆଜକ୍ଷ୍ମା ମା ବସ୍ତେନ ଈଶତ ମାଘଶଂସୋ ରୁଦ୍ରସ୍ୟ ହେତିଃ ପରି ବୋ ବୃଣକ୍ତୁ ଧ୍ରୁବା ଅସ୍ମିନ୍ ଗୋପତୌ ସ୍ୟାତ୍ ବହ୍ୱୀର୍ଯଜମାନସ୍ୟ ପଶୂନ୍ ପାହି । ୧ । କୃଷ୍ଣ ଯର୍ଜୁବେଦ ୧ କା : ୧ ପ୍ରଃ

ଇଷେତ୍ୱା ଉର୍ଜେତ୍ୱା । ବାୟବସ୍ଥା । ଦେବୋ ବଃ ସବିତା ପ୍ରାର୍ପୟତୁ ଶ୍ରେଷ୍ଠତମାୟ କର୍ମଣ ଅପ୍ୟାୟଧ୍ୱମଘ୍ନ୍ୟା ଇନ୍ଦ୍ରାୟ ଭାଗମ୍ପ୍ରଜାବତୀରନମୀବା ଅଯକ୍ଷ୍ମା ମା ବସ୍ତେନ ଈଶତ ମାଘଶଂସୋ ଧ୍ରୁବା ଅସ୍ମିନ୍ ଗୋପତୌ ସ୍ୟାତ୍ ବହ୍ୱୀଃ । ଯଜମାନସ୍ୟ ପଶୂନ ପାହି । ଶୁ : ଯ : ୧ ।୧

ଉଦ୍ଧୃତ ମନ୍ତ୍ରର ମୂଳାର୍ଥ ଏକ, ମାତ୍ର କେତେକ ବିଷୟରେ ଉଭୟ ସଂହିତା ମଧ୍ୟରେ ମତଦ୍ୱୈଧ ଥିବାର ଅନୁମାନ କରାଯାଇପାରେ । ଶୁକ୍ଳରେ ଅଛି ଇନ୍ଦ୍ରାୟ ଭାଗଂ, କୃଷ୍ଣରେ ଅଛି— ଦେବଭାଗଂ । ଏହାଛଡ଼ା କୃଷ୍ଣଯଜୁଃରେ ଗାଭୀର କେତେଗୁଡ଼ିଏ ବିଶେଷଣ ଅଛି । ତାହାଛଡ଼ା ରୁଦ୍ରସ୍ୟ ହେତିଃ ଅଛି । ଅର୍ଥାତ୍ ରୁଦ୍ର ନାମକ କ୍ରୂର ଦେବତାର ଆୟୁଧରୁ ରକ୍ଷା ପାଅ । ଏହିପ୍ରକାର ଅନେକ ମନ୍ତ୍ର ଇତସ୍ତତଃ ହୋଇଥିବାର ଦେଖାଯାଏ । କୃଷ୍ଣ ଓ ଶୁକ୍ଳ ଯଜୁର୍ବେଦରେ ଯେ ଏତାଦୃଶ ବୈମତ୍ୟ ଅଛି ଏବଂ କୃଷ୍ଣରେ ଯାହାଅଛି, ଶୁକ୍ଳରେ ତାହା ନାହିଁ ବା ଶୁକ୍ଳରେ ଯାହା ଅଛି, କୃଷ୍ଣରେ ତାହା ନାହିଁ, ସେ ବିଷୟର ବିସ୍ତାର ଆଲୋଚନା କରି ପ୍ରବନ୍ଧର କଳେବର ବଢ଼ାଇବାର ନିଷ୍ପ୍ରୟୋଜନ । ଯାହାହେଉ ପ୍ରବାଦ ଅଛି ଯେ, ବାଜସନେୟୀ ସଂହିତାରେ ବ୍ରାହ୍ମଣଭାଗ ନ ଥିବାରୁ ଏହା ଶୁଦ୍ଧ, ଏଣୁ ତାହାର ନାମ ଶୁକ୍ଳ । ତାହାଛଡ଼ା ଶୁକ୍ଳ ଯଜୁର୍ବେଦର ଏକଚତୁର୍ଥାଂଶ ମନ୍ତ୍ର ଋଗ୍‌ବେଦରୁ ଗୃହୀତ । ସ୍ୱାମୀ ଦୟାନନ୍ଦଙ୍କ ଗଣନାକ୍ରମେ ବାଜସନେୟୀ ସଂହିତାରେ ୪୦ ଅଧ୍ୟାୟ ଓ ୧୯୭୫ ମନ୍ତ୍ର ଅଛି । ଏଥିରୁ ପ୍ରାୟ ୭୦୦ ମନ୍ତ୍ର ଋଗ୍‌ବେଦର । କେତେକ ମନ୍ତ୍ର ଅବିକଳରୂପେ ଯଜୁର୍ବେଦରେ ଲିଖିତ ହୋଇଅଛି, କେତେକ ମନ୍ତ୍ରରେ ମଧ୍ୟ କିଛି କିଛି ଯୋଗ ହୋଇଅଛି । ପୁଣି କୌଣସି କୌଣସି ମନ୍ତ୍ର ଅସ୍ତବ୍ୟସ୍ତ କରାଯାଇଥିବାର ଦେଖାଯାଏ । ଗୋଟିଏ ଯୋଡ଼ିଏ ଉଦାହରଣ ଦେଲେ ଆମ୍ଭମାନଙ୍କ ଉକ୍ତିର ସତ୍ୟତା ଉପଲବ୍ଧ କରାଯାଇପାରିବ ବୋଲି ଆଶା କରାଯିବାରୁ ନିମ୍ନରେ ତହିଁର କିଞ୍ଚିତ୍ ଆଲୋଚନା କରାଯାଉଅଛି ।

ଶୁକ୍ଳ ଯଜୁର୍ବେଦର ୩୧ ଅଧ୍ୟାୟରେ ଥିବା ପୁରୁଷସୂକ୍ତ ବହୁଜନବିଦିତ ଅଟେ । ମାତ୍ର ଏହି ସୂକ୍ତଟି ଯଜୁର୍ବେଦର ନିଜସ୍ୱ ନୁହେଁ, ଏହା ଋଗ୍‌ବେଦରୁ ଗୃହୀତ । ଏହା ଋଗ୍‌ବେଦ ଦଶମ ମଣ୍ଡଳର ୯୦ ସୂକ୍ତ ଅଟେ । ଋଗ୍‌ବେଦ ଅନୁସାରେ ଏହି ସୂକ୍ତର ଋଷି ନାରାୟଣ, ପୁରୁଷ ଦେବତା । ୧୬ ଗୋଟି ଋଗ୍ ମଧ୍ୟରୁ ପ୍ରଥମ ପନ୍ଦରଟି ଋଗ୍ ଅନୁଷ୍ଟୁପ୍, ଶେଷ ଋଗ୍‌ଟି ତ୍ରିଷ୍ଟୁପ୍ ଛନ୍ଦରେ ରଚିତ ।

ଯଜୁର୍ବେଦର ୩୧ ଅଧ୍ୟାୟରେ ୨୨ ଗୋଟି ମନ୍ତ୍ର ଅଛି । ତନ୍ମଧ୍ୟରେ ପ୍ରଥମରୁ ୧୬ ଗୋଟି ଋଗ୍‌ବେଦର ପୁରୁଷସୂକ୍ତରୁ ଗୃହୀତ । ମାତ୍ର ଏହି ୧୬ ଗୋଟି ମନ୍ତ୍ର ଋଗ୍‌ବେଦରେ ଯେଉଁ ନିୟମରେ ଶୃଙ୍ଖଳିତ ହୋଇଅଛି, ଯଜୁର୍ବେଦରେ ତାହା ହୋଇ ନାହିଁ । ପ୍ରଥମ ପାଞ୍ଚ ଗୋଟି ମନ୍ତ୍ର ଉଭୟ ବେଦରେ ସମାନ ସ୍ଥାନ ଅଧିକାର କରିଅଛନ୍ତି; ମାତ୍ର ଋଗ୍‌ବେଦର ୬ଷ୍ଠ ମନ୍ତ୍ର ଯଜୁର୍ବେଦର ୧୪ ଶ ସ୍ଥାନ, ସପ୍ତମ ମନ୍ତ୍ର ୯ମ ସ୍ଥାନ, ୮ମ ମନ୍ତ୍ର ଷଷ୍ଠ ସ୍ଥାନ, ୯ମ ମନ୍ତ୍ର ୭ମ ସ୍ଥାନ, ୧୦ମ ମନ୍ତ୍ର ୮ମ ସ୍ଥାନ, ୧୧ଶ ମନ୍ତ୍ର ୧୦ମ ସ୍ଥାନ, ୧୨ ଶ ମନ୍ତ୍ର ୧୧ଶ ସ୍ଥାନ, ୧୩ ଶ ମନ୍ତ୍ର ୧୨ ଶ ସ୍ଥାନ, ୧୪ଶ ମନ୍ତ୍ର ୧୩ ଶ ସ୍ଥାନ ଏବଂ ୧୫ ଶ ଓ ୧୬ ଶ ମନ୍ତ୍ର ଯଥାକ୍ରମେ ୧୫ ଓ ୧୬ ସ୍ଥାନ ଅଧିକାର କରିଅଛନ୍ତି । କହିବା ବାହୁଲ୍ୟ ଯେ, ଏହାର ଅର୍ଥସଙ୍ଗତିରେ ଉଭୟ ବେଦ ମଧ୍ୟରେ ପାର୍ଥକ୍ୟ ଘଟୁଅଛି ।

ଆଉ ଗୋଟିଏ ଉଦାହରଣ ଦିଆଯାଇପାରେ । ପୂର୍ବେ ଦେଖାଇଅଛୁଁ ଯେ, ଅପ୍ରତିରଥ ସୂକ୍ତଟି ଋଗ୍‌ବେଦର ସୂକ୍ତ ଅଟେ । ତାହାକୁ ଅବିକଳ ଭାବରେ ସାମବେଦ ଗ୍ରହଣ କରି ଆପଣା କଳେବର ବୃଦ୍ଧି କରିଅଛି । ଯଜୁର୍ବେଦ ମଧ୍ୟ ଏହି ଅପ୍ରତିରଥ ସୂକ୍ତଟିଦ୍ୱାରା ଆପଣାର କଳେବର ବୃଦ୍ଧି କରିଅଛି । ଶୁକ୍ଳ ଯଜୁର୍ବେଦ ସପ୍ତଦଶ ଅଧ୍ୟାୟରେ ୯୯ ଗୋଟି ମନ୍ତ୍ର ଅଛି । ଏହି ମନ୍ତ୍ରମାନଙ୍କ ମଧ୍ୟରୁ ୧୩ ଗୋଟି ମନ୍ତ୍ର ଋଗ୍‌ବେଦର ଦଶମ ମଣ୍ଡଳର ୧୦୩ ସୂକ୍ତ ବା ଅପ୍ରତିରଥ ସୂକ୍ତ ଅଟେ । ଶୁକ୍ଳ ଯଜୁର୍ବେଦର ୩୩ ମନ୍ତ୍ରଠାରୁ ଆରମ୍ଭ କରି ୪୪ ମନ୍ତ୍ର ପର୍ଯ୍ୟନ୍ତ କ୍ରମାନ୍ୱୟରେ ଋଗ୍‌ବେଦର ୧୨ ଗୋଟି ମନ୍ତ୍ର ଲେଖା ହୋଇଅଛି । ୪୫ ମନ୍ତ୍ରଟି ଋଗ୍‌ବେଦର ଅପ୍ରତିରଥ ସୂକ୍ତର ୧୩ ମନ୍ତ୍ର ନ ହୋଇ ଅପର ଗୋଟିଏ ମନ୍ତ୍ର ଅଟେ । ତହିଁଉତ୍ତାରୁ ଋଗ୍‌ବେଦର ଅପ୍ରତିରଥ ସୂକ୍ତର ଶେଷ ବା ୧୩ ମନ୍ତ୍ରଟି ସଂଯୋଜିତ ହୋଇଅଛି । ଏହାଛଡ଼ା ଏକ ମନ୍ତ୍ର ବିଭିନ୍ନ ଅଧ୍ୟାୟରେ ସ୍ଥାନ ପାଇଥିବାର ଉଦାହରଣ ମଧ୍ୟ ବିରଳ ନୁହେଁ ।

ଉଦୁତ୍ୟଂ ଜାତବେଦସଂ ଦେବଂ ବହନ୍ତି କେତବଃ ଦୃଶେ ବିଶ୍ୱାୟ ସୂର୍ଯ୍ୟଂ ସ୍ୱାହା । ୪୧

ଏହି ମନ୍ତ୍ରଟି ଅଷ୍ଟମ ଅଧ୍ୟାୟର ୪୧ ମନ୍ତ୍ରର ପୂର୍ବାର୍ଦ୍ଧ ଅଟେ । କେବଳ ଏଥିରେ ସ୍ୱାହା ପଦ ନାହିଁ । ପୁଣି ଏହି ମନ୍ତ୍ର ୩୩ ଅଧ୍ୟାୟର ୩୧ ମନ୍ତ୍ର ଅଟେ । ସ୍ୱାହା ସହିତ ଏହି ମନ୍ତ୍ରଟି ଅବିକଳ ୭ମ ଅଧ୍ୟାୟର ୪୧ ମନ୍ତ୍ର ଅଟେ । ସେହିପରି ଦ୍ୱାଦଶ ଅଧ୍ୟାୟର ୩୧, ୫୬ ଓ ୧୫ ଅଧ୍ୟାୟର ୪୪ ମନ୍ତ୍ର ଯଥାକ୍ରମେ ୧୭ ଅଧ୍ୟାୟର ୫୩, ୭୧ ଓ ୭୭ ମନ୍ତ୍ର ସହିତ ସମାନ । ଏପ୍ରକାର ଅନେକ ଉଦାହରଣ ଉଦ୍ଧୃତ କରାଯାଇପାରେ ।

ଉପରୋକ୍ତ ସମସ୍ତ ବିଷୟ ପର୍ଯ୍ୟାଲୋଚନା କଲେ ସ୍ପଷ୍ଟ ହୃଦୟଙ୍ଗମ ହେବ ଯେ, ଯଜୁର୍ବେଦ ଯୋଡ଼ିଏ—ଗୋଟିଏ ଶୁକ୍ଳ, ଗୋଟିଏ କୃଷ୍ଣ । ଶୁକ୍ଳ ଅପେକ୍ଷା କୃଷ୍ଣ ପ୍ରାଚୀନ । କୃଷ୍ଣ କେତେ ଦିନର ବା କେତେ ବର୍ଷର ବା କେତେ ଶତାବ୍ଦୀର ପ୍ରାଚୀନ, ତାହା ଏଠାରେ ଆଲୋଚିତ ହେଉ ନାହିଁ । ତେବେ ପ୍ରାଚୀନ ଯେ, ଏହା ସମସ୍ତେ ସ୍ୱୀକାର କରିବେ । ବେଦ ବିଭାଗକର୍ତ୍ତା କେବଳ ବୈଶମ୍ପାୟନଙ୍କୁ ଯଜୁର୍ବେଦ ଶିକ୍ଷା ଦେଇଥିଲେ । ବୈଶମ୍ପାୟନ ବାଜସନେୟ, ଯାଜ୍ଞବଲ୍‌କ୍ୟଙ୍କୁ ତାହା ପଢ଼ାଇଥିଲେ । ମତଭେଦ ହେବାରୁ ବୈଶମ୍ପାୟନଙ୍କ ଆଦେଶରେ ଯାଜ୍ଞବଲ୍‌କ୍ୟ ତାହା ବମନ କଲେ ବା ତ୍ୟାଗ କଲେ । ଯାଜ୍ଞବଲ୍‌କ୍ୟ ଏଥିନିମନ୍ତେ ଦୁଃଖିତ ହୋଇ ଅନ୍ୟ ବେଦ ପ୍ରାପ୍ତ୍ୟାଶାରେ ସୂର୍ଯ୍ୟଆରାଧନା କଲେ । ଆଦିତ୍ୟଙ୍କଠାରୁ ଅଧୀତ ଗଦ୍ୟମନ୍ତ୍ର ଶୁଦ୍ଧ ବା ଶୁକ୍ଳ । ଉଭୟ ସଂହିତାର ମନ୍ତ୍ର ମଧ୍ୟରେ କି ପାର୍ଥକ୍ୟ ଅଛି, ତାହା ଆମ୍ଭେମାନେ ଦେଖାଇଅଛୁଁ । ବୈଶମ୍ପାୟନ ପ୍ରଚାରିତ ମନ୍ତ୍ର ଓ ସୂର୍ଯ୍ୟଠାରୁ ଅଧୀତ ମନ୍ତ୍ର ଏକ ନୁହେଁ । ଏଣୁ ଜଣକର ରଚନା ମଧ୍ୟ ନୁହେଁ । ତାହାଛଡ଼ା ଶୁକ୍ଳ ଯଜୁର୍ବେଦ ଯେ ୭୦୦ ଋକ୍ ମନ୍ତ୍ରଦ୍ୱାରା ଆପଣା ଅଙ୍ଗ ପୁଷ୍ଟ କରିଅଛି ଏବଂ ଯଜ୍ଞ ଓ ଗୃହକର୍ମ ନିଷ୍ପାଦନ ନିମନ୍ତେ ଏବଂ ପୁରୋହିତଗଣଙ୍କ ସୁବିଧା ନିମନ୍ତେ ସଂହିତାର ଅଧ୍ୟାୟ ବିଭାଗ ଏବଂ ମନ୍ତ୍ରସଂଗ୍ରହଦ୍ୱାରା ଋକ୍ ସୂକ୍ତମାନଙ୍କର ଶୃଙ୍ଖଳା ଭଙ୍ଗ କରିଅଛି, ତାହା ଦୃଷ୍ଟିଗୋଚର କଲେ କହିବାକୁ ପ୍ରବୃତ୍ତି ହୁଏ ଯେ, ବାଜସନେୟୀ ସଂହିତା କୃଷ୍ଣ ଯଜୁର୍ବେଦ ଅପେକ୍ଷା ଅର୍ବାଚୀନ । ମାତ୍ର ଏହି ବେଦର ଆଦର ଓ ପ୍ରଚାର ବେଶି ଅଟେ । ମୋଟ କଥା ଏହି ଯେ, ବାଜସନେୟୀ ସଂହିତା ଗୋଟିଏ ମନ୍ତ୍ରସଂଗ୍ରହ ପୁସ୍ତକ ଅଟେ । ସୁତରାଂ ତୈତ୍ତିରୀୟ ସଂହିତା ବା ବାଜସନେୟୀ ସଂହିତା ଅପୌରୁଷେୟ ବା ନିତ୍ୟ ବୋଲିବାର କାରଣ କ'ଣ ?

ଅଥର୍ବବେଦ ମଧ୍ୟ ଗୋଟିଏ ମନ୍ତ୍ରସଂଗ୍ରହ ପୁସ୍ତକ ଅଟେ । ଏହି ପୁସ୍ତକର ବୃହତ୍ ବିଭାଗ କାଣ୍ଡ । ଅଥର୍ବବେଦ ୨୦ କାଣ୍ଡରେ ବିଭକ୍ତ । ଏହି ୨୦ କାଣ୍ଡ ୧୬୦ ସୂକ୍ତରେ ବିଭକ୍ତ ଏବଂ ଏହି ବେଦରେ ୬୦୦୦ ଅଥର୍ବଣ ବା ମନ୍ତ୍ର ଅଛି । ପୁଣି ଅନ୍ୟ ଗଣନାନୁସାରେ ଅଥର୍ବ ସଂହିତାରେ ୧୦୦ ପ୍ରପାଠକ ଓ ୧୨୩୦୦ ଅଥର୍ବ ମନ୍ତ୍ର ବିଦ୍ୟମାନ । ଏତିକି ନୁହେଁ, ଅନେକ ପାଣ୍ଡୁଲିପିରେ କମ୍ ବେଶି ପ୍ରପାଠକ ଓ ମନ୍ତ୍ର ଥିବାର ଦେଖାଯାଏ ।

ଅଥର୍ବବେଦ ଯେ ଋଗ୍‌ବେଦର ମନ୍ତ୍ରଦ୍ୱାରା ସ୍ୱଅଙ୍ଗ ପୁଷ୍ଟ କରିଅଛି, ତାହା କହିବା ବାହୁଲ୍ୟମାତ୍ର । ବେଦାର୍ଥ ପ୍ରକାଶ ଲେଖନ୍ତି— ''ଅଥର୍ବନିକୈରପି ସ୍ୱକୀୟ ସଂହିତାୟାଂ ଋଚ ଏବ ବାହୁଲ୍ୟେନ ଧୀୟନ୍ତେ ।'' ପଣ୍ଡିତଗଣଙ୍କ ଗଣନାନୁସାରେ ଅଥର୍ବବେଦ ମନ୍ତ୍ରର ଏକଷଷ୍ଠାଂଶ ଋଗ୍‌ବେଦର ଦଶମ ମଣ୍ଡଳରେ ବିଦ୍ୟମାନ ।

ଅଥର୍ବବେଦ ଯେ ଋଗ୍‌ବେଦର ମନ୍ତ୍ର ଗ୍ରହଣ କରିଅଛି ତାହା ନୁହେଁ, ମନ୍ତ୍ରମାନଙ୍କୁ ଇତସ୍ତତଃ ଓ ଅସ୍ତବ୍ୟସ୍ତ କରିଅଛି ।

ଋଗ୍‌ବେଦର ପୁରୁଷସୂକ୍ତକୁ (୧୦ମ ୯୦ସୂକ୍ତ) ଯଜୁର୍ବେଦ ଯେମନ୍ତ ଗ୍ରହଣ କରିଅଛି, ଅଥର୍ବବେଦ ମଧ ସେହିପରି ଗ୍ରହଣ କରିଅଛି । ଯଜୁର୍ବେଦରେ ଏହି ସୂକ୍ତର କି ପରିବର୍ତ୍ତନ ହୋଇଅଛି ତାହା ପୂର୍ବେ ଦେଖାଇଅଛୁଁ, ବର୍ତ୍ତମାନ ଏହି ସୂକ୍ତକୁ ଅଥର୍ବବେଦ ଗ୍ରହଣ କରି କିପରି ସୁବିଧାନୁସାରେ ସଜ୍ଜିତ କରିଅଛି, ତାହା ଦେଖାଯାଉ—

ଋଗ୍‌ବେଦର ୧୦ମ ମଣ୍ଡଳର ପୁରୁଷ ସୂକ୍ତରେ ୧୬ ଗୋଟି ମନ୍ତ୍ର ଅଛି । ଅଥର୍ବ ବେଦର ୧୯ କାଣ୍ଡର ପୁରୁଷସୂକ୍ତରେ ମଧ ୧୬ ଗୋଟି ମନ୍ତ୍ର ଅଛି । ମାତ୍ର ଉଭୟ ମନ୍ତ୍ରର ଶୃଙ୍ଖଳା ସମାନ ନୁହେଁ । ତାହାଛଡ଼ା ପଦପ୍ରୟୋଗରେ ମଧ ପାର୍ଥକ୍ୟ ଦେଖାଯାଏ । ଋଗ୍‌ବେଦରେ ଅଛି— 'ସହସ୍ରଶର୍ଷା ପୁରୁଷଃ', ଅଥର୍ବ ବେଦରେ ଅଛି—'ସହସ୍ର ବାହୁଃ ପୁରୁଷଃ'। ଋଗ୍‌ବେଦର ୨ୟ ଋକ୍ ସହିତ ଅଥର୍ବବେଦର ୨ୟ ମନ୍ତ୍ରର ଆଦୌ ମେଳ ନାହିଁ । ୨ୟ ଅଥର୍ବ ମନ୍ତ୍ରଟି ଏହି— ''ତ୍ରିଭିଃ ପଦ୍ଭିର୍ଦ୍ୟାମରୋହପ୍ୟାଦସ୍ୟେହା ଭବତ୍ ପୁନଃ । ତଥା ବ୍ୟକ୍ରାମଦ୍‌ବିଶ୍ୱଂ ଶାସନାନଶନେ ଅନୁ ।''

ଉଭୟ ବେଦରେ ଏହି ପୁରୁଷସୂକ୍ତର ମନ୍ତ୍ର ଯେପରି ଭାବରେ ସଜ୍ଜିତ ହୋଇଅଛି, ତାହା ନିମ୍ନରେ ପ୍ରଦର୍ଶିତ ହେଲା—

| | |
|---|---|
| ଋଗ୍ ବେଦର ୧ମ ମନ୍ତ୍ର | ଅଥର୍ବ ୧ମ ମନ୍ତ୍ର ସମାନ । |
| ଋଗ୍ ବେଦର ୨ୟ | ଅଥର୍ବ ୪ର୍ଥ ସ୍ଥାନ |
| ଋଗ୍ ବେଦର ୩ୟ | ଅଥର୍ବ ୩ୟ ସ୍ଥାନ |
| ଋଗ୍ ବେଦର ୪ର୍ଥ | ଅଥର୍ବ ୨ୟ ସ୍ଥାନ |
| ଋଗ୍ ବେଦର ୫ମ | ଅଥର୍ବ ୯ମ ସ୍ଥାନ |
| ଋଗ୍ ବେଦର ୬ଷ୍ଠ | ଅଥର୍ବ ୧୦ ମ ସ୍ଥାନ |
| ଋଗ୍ ବେଦର ୭ମ | ଅଥର୍ବ ୧୧ ଶ ସ୍ଥାନ |
| ଋଗ୍ ବେଦର ୮ମ | ଅଥର୍ବ ୧୪ ଶ ସ୍ଥାନ |
| ଋଗ୍ ବେଦର ୯ମ | ଅଥର୍ବର ୧୩ ଶ ସ୍ଥାନ |
| ଋଗ୍ ବେଦର ୧୦ମ | ଅଥର୍ବ ୧୨ ଶ ସ୍ଥାନ |
| ଋଗ୍ ବେଦର ୧୧ଶ | ଅଥର୍ବ ୫ମ ସ୍ଥାନ |
| ଋଗ୍ ବେଦର ୧୨ ଶ | ଅଥର୍ବ ୬ଷ୍ଠ ସ୍ଥାନ |
| ଋଗ୍ ବେଦର ୧୩ ଶ | ଅଥର୍ବ ୭ମ ସ୍ଥାନ |
| ଋଗ୍ ବେଦର ୧୪ ଶ | ଅଥର୍ବ ୮ମ ସ୍ଥାନ |
| ଋଗ୍ ବେଦର ୧୫ ଶ | ଅଥର୍ବ ୧୫ ଶ ସ୍ଥାନ |

ଋଗ୍ ୧୬ ଶ ମନ୍ତ୍ର ସହିତ ଅଥର୍ବ ବେଦର ୧୬ ଶ ମନ୍ତ୍ରର କୌଣସି ଅର୍ଥସାମ୍ୟ ନାହିଁ । ଏହାଛଡ଼ା ଉଭୟ ବେଦର ଶବ୍ଦପ୍ରୟୋଗରେ ମଧ ଇତରବିଶେଷ ଅଛି । ଏହି ଶବ୍ଦପ୍ରୟୋଗ ଦ୍ୱାରା ଏବଂ ମନ୍ତ୍ରମାନଙ୍କୁ ଆଗପଛ କରି ରଖିବାଦ୍ୱାରା ସମଗ୍ର ସୂକ୍ତର ଅର୍ଥରେ ଯେ ଅନୈକ୍ୟ ଘଟୁଅଛି, ତାହା କହିବା ବାହୁଲ୍ୟ ମାତ୍ର । ଅର୍ଥବ ବେଦରେ ଋଗ୍‌ବେଦ ମନ୍ତ୍ର ଛଡ଼ା ଅନେକ ଅତି ପ୍ରାଚୀନ ମନ୍ତ୍ର ମଧ ଅଛି । ବାହୁଲ୍ୟ ଭୟରେ ଆଉ ଅଧିକ ଉଦାହରଣ ଦେବାରୁ ନିରସ୍ତ ହେବାକୁ ପଡ଼ିଲା ।

ସଂକ୍ଷେପରେ ଚାରି ବେଦର ବିବରଣ ଉପରେ ପ୍ରଦତ୍ତ ହେଲା । ତାହାଛଡ଼ା ଏହି ବେଦମାନଙ୍କରେ ମନ୍ତ୍ରମାନ କିପରି ଭାବରେ ସଜ୍ଜିତ ହୋଇଅଛନ୍ତି, ତହିଁର ଉଦାହରଣ ଓ ସଂକ୍ଷିପ୍ତ ବିବରଣ ମଧ ଦିଆଯାଇଅଛି । ତଥାପି ପାଠକମାନଙ୍କର ସୁବିଧା ନିମନ୍ତେ ଉକ୍ତ ବିଷୟମାନଙ୍କର ସଂକ୍ଷିପ୍ତ ପୁନରାବୃତ୍ତି କରାଯିବା ସମୀଚୀନ ବୋଧହୁଏ ।

ଅଥର୍ବବେଦ ଭିନ୍ନ ଅନ୍ୟ କୌଣସି ବେଦରେ ଋଗ୍‌ବେଦ, ସାମବେଦ ଓ ଯଜୁର୍ବେଦ ଶବ୍ଦ ନାହିଁ । ଋଗ୍‌ବେଦର ଦଶମ ମଣ୍ଡଳ ପୁରୁଷସୂକ୍ତରେ କେବଳ ଋଚଃ, ସାମାନି, ଯଜୁଃ ଏହି ତିନିଗୋଟି ଶବ୍ଦ ଅଛି । ଏହି ତିନି ଶବ୍ଦର ଅର୍ଥ ଋଗ୍‌ବେଦ, ସାମବେଦ, ଯଜୁର୍ବେଦ ନୁହେଁ । ଏହାର ଅର୍ଥ ପଦ୍ୟ, ଗୀତ ଓ ଗଦ୍ୟ । ପ୍ରଥମରୁ ମନୁଷ୍ୟକଳ୍ପନାରୁ ଏହି ତିନିପ୍ରକାର ରଚନାପ୍ରଣାଳୀ ବାହାରିଥିଲା । ପରବର୍ତ୍ତୀ ଋଷିମାନେ ପଦ୍ୟ ମନ୍ତ୍ର ସଂଗ୍ରହ ପୁସ୍ତକର ନାମ ଋଗ୍‌ବେଦ ଦେଲେ, ଗାନଯୋଗ୍ୟ ମନ୍ତ୍ରସଂଗ୍ରହ ପୁସ୍ତକର ନାମ ସାମବେଦ ହେଲେ ଏବଂ ଗଦ୍ୟ ମନ୍ତ୍ରସଂଗ୍ରହ ପୁସ୍ତକର ନାମ ଯଜୁର୍ବେଦ ଦେଲେ । କାଳକ୍ରମେ ବେଦାଧ୍ୟାୟୀଗଣ ଏହି ନିୟମ ରକ୍ଷା କରିପାରିଲେ ନାହିଁ । ଯାଗ ଯଜ୍ଞ ଓ ପୌରୋହିତ୍ୟର ବାହୁଲ୍ୟ ସଙ୍ଗେ ସଙ୍ଗେ ଏହି ବେଦମାନଙ୍କର ଅଙ୍ଗବୃଦ୍ଧି ମଧ ହେବାକୁ ଲାଗିଲା । ଏଣୁ ପ୍ରାଚୀନ ଋକ୍‌ମନ୍ତ୍ରମାନଙ୍କୁ ଗ୍ରହଣ କରି ସାମ ଓ ଯଜୁର୍ବେଦରେ ଭର୍ତ୍ତି କଲେ । କେବଳ ମନ୍ତ୍ରମାନଙ୍କୁ ସଂଯୋଗ କଲେ ତାହା ନୁହେଁ, ଇଚ୍ଛାନୁସାରେ ମନ୍ତ୍ରର ଓ ଶବ୍ଦର ପରିବର୍ତ୍ତନ ମଧ କଲେ । ତହିଁର ଉଦାହରଣ ଆମ୍ଭେମାନେ ଉପରେ

ଦେଇଅଛୁଁ । ଏପରି କରିବାର କାରଣ ଯାହା ଜଣାଯାଏ, ତାହା ପରବର୍ତ୍ତୀ ପ୍ରବନ୍ଧରେ ପ୍ରଦର୍ଶିତ ହେବ । ଅଥର୍ବବେଦରେ କେତେଗୁଡ଼ିଏ ପ୍ରାଚୀନ ମନ୍ତ୍ର ଛଡ଼ା ଅନେକ ଋଗ୍‌ବେଦର ମନ୍ତ୍ର ସନ୍ନିବେଶିତ ହୋଇଥିବାର ଉଦାହରଣ ଆମ୍ଭେମାନେ ଦେଇଅଛୁଁ । ଅଥର୍ବବେଦକୁ ଏ ଦେଶବାସୀ ବ୍ରାହ୍ମଣମାନେ ଯେପରି ଘୃଣାଚକ୍ଷୁରେ ଦେଖନ୍ତି, ତାହା ସେପରି ଘୃଣାର ସାମଗ୍ରୀ ନୁହେଁ । ଅନେକେ କହନ୍ତି ଯେ, ଏଥିରେ ମାରଣ, ବଶୀକରଣ ପ୍ରଭୃତି ଅଭିଚାର କର୍ମମାନଙ୍କର ଉଲ୍ଲେଖ ଥିବା ହେତୁରୁ ତାହା ପଠନଯୋଗ୍ୟ ନୁହେଁ । ମାତ୍ର ଅନେକେ ହିନ୍ଦୁଶାସ୍ତ୍ର ଯେ ଅଭିଚାରବିଧିରେ ପରିପୂର୍ଣ୍ଣ, ତାହା କହିବା ବାହୁଲ୍ୟ ମାତ୍ର ଏବଂ ଏହି ଅଭିଚାରଶିକ୍ଷାଦ୍ୱାରା ଅନେକ ସ୍ୱଚ୍ଛନ୍ଦରେ ଉଦରପୋଷଣ କରିପାରୁଅଛନ୍ତି, ତାହା କାହାକୁ ଅବିଦିତ ନାହିଁ । ଅଥର୍ବବେଦ କେବଳ ଅନ୍ୟ ବେଦର ପୁରୋହିତ ଓ ଶାଖାଧାୟୀମାନଙ୍କ ବିଦ୍ୱେଷ ହେତୁରୁ ଅପାଠ୍ୟ ବୋଲି ବିବେଚିତ ହୋଇଅଛି । ପ୍ରକୃତ ପକ୍ଷରେ ଏଥିରେ ଅନେକ ଜ୍ଞାତବ୍ୟ ବିଷୟ ଅଛି ଓ ଆର୍ଯ୍ୟଜାତିର ପୁରାତତ୍ତ୍ୱ ଓ ଜନ୍ମରହସ୍ୟ ମଧ୍ୟ ମିଳୁଅଛି ।

ବେଦ ଚାରୋଟି ବୋଲି ପ୍ରବାଦ ଅଛି; ମାତ୍ର କୃଷ୍ଣ ଶୁକ୍ଳ ଅନୁସାରେ ଯଜୁର୍ବେଦ ଦୁଇ; ସୁତରାଂ ବେଦ ପାଞ୍ଚ ବୋଲାଯିବ । କାରଣ ବାଜସନେୟୀ ସଂହିତା ପୂର୍ବପ୍ରଚଳିତ ବେଦ ନୁହେଁ, ଏହା ସୂର୍ଯ୍ୟଙ୍କଠାରୁ ପ୍ରାପ୍ତ ଅଭିନବ ବେଦ ବୋଲି ଏହାର ନାମ ଶୁକ୍ଳ ଓ ଶୁଦ୍ଧ । ଏହା ଶାସ୍ତ୍ର କହୁଅଛି ।

ବେଦରେ ଏତେ ପୁନରୁକ୍ତି ଅଛି ଯେ, ତାହା ଦେଖିଲେ ଜଣକର ରଚନା ବୋଲି କଦାପି ବିଶ୍ୱାସ ହେବ ନାହିଁ । ଏହା ସୃଷ୍ଟିକର୍ତ୍ତାଙ୍କର ଉପଦେଶ ବାକ୍ୟ ହୋଇଥିଲେ ବିଶୁଦ୍ଧ ସ୍ପଷ୍ଟ ସର୍ବଜନବୋଧ ହୋଇଥାନ୍ତା । ତାହା ନ ହୋଇ ଯେମନ୍ତ ଦୁର୍ବୋଧ ତେମନ୍ତ ଅବୋଧ ଅଟନ୍ତି । ଏପରି କି, ଅତି ପ୍ରାଚୀନକାଳର ଋଷିମାନେ ମଧ୍ୟ ଏହି ବେଦମନ୍ତ୍ରମାନଙ୍କର ପ୍ରକୃତ ଅର୍ଥ ବୁଝି ନ ପାରି ଭିନ୍ନ ଭିନ୍ନ ମତର ଆବିଷ୍କର୍ତ୍ତା ହୋଇଉଠିଲେ । ବ୍ରାହ୍ମଣାଦି ଗ୍ରନ୍ଥ ତହିଁର ପ୍ରକୃଷ୍ଟ ଉଦାହରଣ । ଈଶ୍ୱରକୃତ ହେଲେ ବା ବ୍ରହ୍ମନିଃଶ୍ୱସିତ ହେଲେ ବା ଅପୌରୁଷେୟ ହେଲେ କେବଳ ଦେବତାମାନଙ୍କର ସ୍ତବରେ ଏ ବୃହତ୍ ଗ୍ରନ୍ଥ ପରିପୂର୍ଣ୍ଣ ହୁଅନ୍ତା କାହିଁକି ? ଥରେ ନୁହେଁ ଦୁଇ ଥର ନୁହେଁ, ବାରମ୍ବାର ଶତ ସହସ୍ରବାର ସେହି ଅଗ୍ନି ଇନ୍ଦ୍ର ସୋମର ସ୍ତୁତି । ସ୍ତୁତିରେ ଯେକୌଣସି ଅଭିନବତ୍ୱ ଅଛି ତାହା ନୁହେଁ । ଅର୍ଥର ସାମାନ୍ୟ ଇତରବିଶେଷ ଥିଲେ ମଧ୍ୟ କେବଳ ପୁନରୁକ୍ତି । କେବଳ ଯାଚନା, ଧନ, ପୁତ୍ର ଓ ବଳବୀର୍ଯ୍ୟର କାମନା ନିଃସହାୟର କାତରୋକ୍ତି । ବେଦ କି ବ୍ରହ୍ମନିଃଶ୍ୱସିତ ଅପୌରୁଷେୟ ଏବଂ ନିତ୍ୟ ଈଶ୍ୱରପ୍ରଦତ୍ତ ଭାରତବାସୀଙ୍କୁ କେବଳ ନିଃସହାୟର କାତରୋକ୍ତି ଶିକ୍ଷା ଦେବାକୁ ? ଏଥିନିମନ୍ତେ ଏବଂ ପୂର୍ବପ୍ରଦର୍ଶିତ କାରଣ ହେତୁରୁ ଆମ୍ଭମାନଙ୍କୁ ବେଦ ଈଶ୍ୱରପ୍ରଦତ୍ତ, ବ୍ରହ୍ମନିଃଶ୍ୱସିତ, ଅପୌରୁଷେୟ ଓ ନିତ୍ୟ କଥା ଭୁଲିଯିବାକୁ ପଡ଼ିବ । ଏହି ଆଶାରେ ଏହି ପ୍ରବନ୍ଧର ଅବତାରଣା ।

ଏତିକି ନୁହେଁ, ବ୍ରାହ୍ମଣ, ଆରଣ୍ୟକ, ଉପନିଷତ୍ ଓ ପୁରାଣାଦି ଗ୍ରନ୍ଥ ପର୍ଯ୍ୟାଲୋଚନା କଲେ ବେଦର ଉତ୍ପତ୍ତି ସମ୍ବନ୍ଧରେ ପରସ୍ପର ବିରୋଧୀ ଏତେ ମତ ମିଳି ପାରିବ ଯେ, ତାହା ଦେଖିଲେ ମନେହେବ, ବେଦ ବରଂ ମନୁଷ୍ୟ ରଚିତ ବୋଲି ବିଶ୍ୱାସ କରିବାହିଁ ଶ୍ରେୟ; ମାତ୍ର ଅପୌରୁଷେୟ ବିଶ୍ୱାସରେ ଶାସ୍ତ୍ର-କୁହୁଡ଼ି ସନ୍ତରଣ କରିବା ଉଚିତ ନୁହେଁ ।

ଆଉ ଗୋଟିଏ କଥା । ବେଦ ବିଭାଗ ବିଷୟ । ବେଦବ୍ୟାସ ପରା ବେଦବିଭାଗକର୍ତ୍ତା ? କେଉଁ ବ୍ୟାସ ? ବ୍ୟାସ ପରା ଅନେକ ? ଯେ ବେଦ ବିଭାଗ କଲେ, ପଞ୍ଚ ବା ନବ ଲକ୍ଷଣାନ୍ୱିତ ପୁରାଣାଦି ଲେଖିଲେ, ସେହି ତ ବ୍ୟାସ । ଯାହାହେଉ ପୁରାଣାଦି ଦୃଷ୍ଟିରେ ଜଣାଯାଏ ଯେ, ପରାଶରପୁତ୍ର ବ୍ୟାସ ବେଦବିଭାଗକର୍ତ୍ତା । ବ୍ୟାସଦେବ ବିଭାଗକର୍ତ୍ତା କି ବେଦବିଭେଦକର୍ତ୍ତା ? ତିନି ବେଦ ଯେବେ ଅପୌରୁଷେୟ, ବ୍ରହ୍ମନିଃଶ୍ୱସିତ ଓ ନିତ୍ୟ, ତେବେ ବ୍ୟାସ ଭାଗ କଲେ କ'ଣ ? ପୁଣି ଯେବେ ଅଗ୍ନିଠାରୁ ଋଗ୍‌ବେଦ, ବାୟୁଠାରୁ ଯଜୁର୍ବେଦ ଏବଂ ଆଦିତ୍ୟଠାରୁ ସାମବେଦ ଏବଂ ଅଙ୍ଗିରାଠାରୁ ଅଥର୍ବବେଦ ଯଜ୍ଞସିଦ୍ଧି ନିମନ୍ତେ ମିଳିଥିଲା, ତେବେ ବ୍ୟାସଦେବଙ୍କ ବେଦବିଭାଗ କରିବାର ଅବସର ରହିଲା କେଉଁଠାରେ ?

ବେଦ ଆଦ୍ୟରୁ ଗୋଟାଏ ଥିଲେ ବ୍ୟାସ ପାରାଶର୍ଯ୍ୟ ତାହାକୁ ସୁବିଧା ନିମନ୍ତେ ଚାରି ଭାଗ ଦଲେ ବୋଲାଯାଇପାରେ । ମାତ୍ର ବେଦବିଶ୍ୱାସୀଗଣ ଏହା ସ୍ୱୀକାର କରିବେ କି ? ଯେବେ ଚାରି ବେଦ ବ୍ୟାସ ଜନ୍ମ ପୂର୍ବରୁ ବିଦ୍ୟମାନ ଥିଲା, ତେବେ ବ୍ୟାସ ବେଦବିଭାଗ କଲେ ବୋଲିବା କଥା ଅଳୀକ ନୁହେଁ କି ? ବ୍ୟାସଙ୍କର ଚାରି ଜଣ ଶିଷ୍ୟଙ୍କ ମଧ୍ୟରୁ ବୈଶମ୍ପାୟନ ଓ ଜୈମିନୀଙ୍କ ନାମ ଆରଣ୍ୟକ ଓ ସୂତ୍ର ଗ୍ରନ୍ଥରେ ମିଳେ; ମାତ୍ର ପୈଳ ଓ ସୁମନ୍ତ ତାଦୃଶ ବିଖ୍ୟାତ ନ ଥିବାରୁ ସମ୍ଭବତଃ ଆରଣ୍ୟକ ଓ ସୂତ୍ର ଗ୍ରନ୍ଥରେ ସେ ଦୁହିଁଙ୍କର ନାମ ଦେଖାଯାଏ ନାହିଁ । ବ୍ୟାସଙ୍କଠାରୁ ବୈଶମ୍ପାୟନ ଯେଉଁ ଯଜୁର୍ବେଦ ପାଠ କରି ଯାଜ୍ଞବଲ୍‌କ୍ୟଙ୍କୁ ଶିକ୍ଷା ଦେଇଥିଲେ, ତାହା ସେ ଫେରାଇ ଆଣିଲେ । ଯାଜ୍ଞବଲ୍‌କ୍ୟ ସୂର୍ଯ୍ୟାରାଧନା କରି

('ଅନ୍ୟାନି ଶୁକ୍ଳାନି ଯଜୁଂଷି ପ୍ରାପ୍ତବାନ୍') ଅନ୍ୟ ଶୁକ୍ଳ ଯର୍ଜୁମନ୍ତ୍ରମାନ୍ ପ୍ରାପ୍ତ ହେଲେ ତେବେ ବାଜସନୋୟୀ ସଂହିତା ବା ଶୁକ୍ଳ ଯଜୁର୍ବେଦ ଓ ବ୍ୟାସ କର୍ତ୍ତୃକ ବିଭକ୍ତ ଯଜୁର୍ବେଦ ନୁହେଁ ? ତେବେ ବ୍ୟାସ ବେଦ ବିଭାଗକର୍ତ୍ତା ହେଲେ କିପରି ? ଜଣେ ବ୍ୟକ୍ତି ବେଦବିଭାଗକର୍ତ୍ତା ହେଲେ ବେଦର ବା ମନ୍ତ୍ରର ବିଶୁଦ୍ଧତା ରକ୍ଷା କରିବାକୁ ଅବଶ୍ୟ ଚେଷ୍ଟା କରିଥାନ୍ତା । ନିତ୍ୟ ଅପୌରୁଷେୟ ଓ ଈଶ୍ୱରବାକ୍ୟକୁ ଅସ୍ତବ୍ୟସ୍ତ କରିବା, ଇତସ୍ତତଃ କରିବା, ନିଜ ଇଚ୍ଛାନୁସାରେ ଶବ୍ଦ ବଦଳ କରିବା, ନୂତନ ଶବ୍ଦ ଯୋଜନା କରିବା କି ବ୍ୟାସ ସଦୃଶ ଜ୍ଞାନୀଙ୍କର କାର୍ଯ୍ୟ ? ଏହା ଜଣକଦ୍ୱାରା ହୋଇ ନାହିଁ–ଯେବେ ପୁରାଣବାକ୍ୟ ସ୍ୱୀକାର କରି ବ୍ୟାସଙ୍କୁ ହିଁ ଏହି କାର୍ଯ୍ୟରେ ଲିପ୍ତ କରାଯାଏ, ତାହାହେଲେ ସେ ବେଦବିଭାଗକର୍ତ୍ତା ଆଖ୍ୟା ପାଇବା ଯୋଗ୍ୟ ନୁହନ୍ତି, ମାତ୍ର ବେଦବିଭେଦକର୍ତ୍ତା ଆଖ୍ୟା ପାଇବା ଉଚିତ । ଏତାଦୃଶ ପରିବର୍ତ୍ତନ ହେତୁ ପରିବର୍ତ୍ତନକର୍ତ୍ତା ପୁରୋହିତଗଣଙ୍କ ମଧ୍ୟରେ ଯେ ବିବାଦର ସୂତ୍ରପାତ କଲେ, ଏଥିରେ ସନ୍ଦେହ ନାହିଁ । ପ୍ରାଚୀନ ଋଗ୍, ଯଜୁ ଓ ସାମ ନିୟମରେ ପଦ୍ୟ, ଗଦ୍ୟ ଓ ଗାନ ପ୍ରଣାଳୀରେ ତିନିଗୋଟି ବେଦ ରଖାଯାଇଥିଲେ ବେଦର ବିଶୁଦ୍ଧତା ସର୍ବଦା ବିଦ୍ୟମାନ ଥାଆନ୍ତା । ତାହା ନ କରି ଋଗ୍ ମନ୍ତ୍ରମାନ ଅପର ତିନି ବେଦରେ ସଂଯୋଗ କରିବାରୁ ଏବଂ କ୍ରିୟାନୁଷ୍ଠାନ ବାହୁଲ୍ୟ ଇଚ୍ଛାରେ ନୂତନ ଓ ପରିବର୍ତ୍ତିତ ମନ୍ତ୍ର ସଂଯୋଗ କରି ବେଦର ଆଡ଼ମ୍ବର ବୃଦ୍ଧି ଚେଷ୍ଟାଦ୍ୱାରା ଋତ୍ୱିକଗଣଙ୍କ ମଧ୍ୟରେ ବିଦ୍ୱେଷାଗ୍ନି ପ୍ରଜ୍ୱଳିତ କରାଗଲା । ଫଳତଃ, ବେଦମହୀରୁହ ବହୁଶାଖାସମନ୍ୱିତ ହୋଇ ଅବୋଧ ହେଲା । ଏହି ବେଦବିଭାଗ ହେତୁରୁ ବେଦର ପ୍ରକୃତ ସମ୍ମାନ କେଉଁଆଡ଼େ ଯାଇ ଏକ ବେଦୀ ଅପର ବେଦୀକୁ ଈର୍ଷାକଷାୟିତ ଲୋଚନରେ ଦେଖିବାକୁ ଲାଗିଲେ । ଯଜୁର୍ବେଦ ଅନ୍ୟାନ୍ୟ ବେଦ ଅପେକ୍ଷା ଶ୍ରେଷ୍ଠ ଓ ଶୀର୍ଷ ସ୍ଥାନୀୟ ଏବଂ ଋଗ୍‌ବେଦ ଦକ୍ଷିଣାଙ୍ଗ ଏବଂ ସାମବେଦ ବାମାଙ୍ଗ ଏବଂ ଅଥର୍ବବେଦ ପୁଚ୍ଛସ୍ଥାନୀୟ ବୋଲି କୌଣସି ଆରଣ୍ୟକ ଗ୍ରନ୍ଥ ପ୍ରକାଶ କରିବାରୁ ଅଥର୍ବବେଦ କହିଲା— ଅଥର୍ବବେଦ ତାହାର ମୁଖ, ଯାହାଠାରୁ ଏହାର ସୃଷ୍ଟି, ସାମବେଦ ଲୋମ ମାତ୍ର ଇତ୍ୟାଦି । ଏହାଛଡ଼ା ଏକ ବେଦୀୟ ପୁରୋହିତ ଅପର ବେଦୀୟ ପୁରୋହିତ ପ୍ରତି, ଏକ ବେଦୀୟ ଏକ ଶାଖାର ପୁରୋହିତ ଅପର ଶାଖାର ପୁରୋହିତ ପ୍ରତି କି ପ୍ରକାର ଭର୍ତ୍ସନା ଓ କଟୂକ୍ତି ପ୍ରୟୋଗ କରିଅଛନ୍ତି ଏବଂ ଯଜମାନମାନଙ୍କୁ ଭୟ ଦେଖାଇ ସ୍ୱାର୍ଥରକ୍ଷା କରିବାକୁ ଯାଇ ଅମନୁଷ୍ୟତାର ପରିଚୟ ଦେଇଅଛନ୍ତି, ତାହା ଦେଖିଲେ ଲଜ୍ଜିତ ହେବାକୁ ହୁଏ । ସେଥିର ଆଲୋଚନା ଅପ୍ରାସଙ୍ଗିକ ଓ ନିଷ୍ପ୍ରୟୋଜନ ।

ପରିତାପର ବିଷୟ ଏହି ଯେ, ବ୍ୟାସ ନାମକ ଜଣେ ଋଷିଙ୍କ ସ୍କନ୍ଧରେ ବେଦ ବିଭାଗଠାରୁ ଆରମ୍ଭ କରି ଅଷ୍ଟବିଂଶତି ପୁରାଣ ଓ ଉପପୁରାଣ ପ୍ରଭୃତି ଯାବତୀୟ ହିନ୍ଦୁଶାସ୍ତ୍ରର ଭାର ନ୍ୟସ୍ତ କରାଯାଇଅଛି । ଏଥିର ତଥ୍ୟାତଥ୍ୟ ବିଚାର କରିବାକୁ କେହି ରାଜି ନୁହନ୍ତି । 'ଅନ୍ଧେନ ନୀୟମାନା ଯଥାନ୍ଧାଃ' । ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ଆମ୍ଭେମାନେ ସମସ୍ତେ ଚାଲିଥାଉଁ ।

ବେଦବିଶ୍ୱାସୀ ହିନ୍ଦୁଶାସ୍ତ୍ରମାନଙ୍କର ପରସ୍ପର ବିରୋଧୀ ମତ କେତେଗୋଟା ଉଲ୍ଲେଖ କରାଯାଉ ।

ସମଗ୍ର ଋଗ୍‌ବେଦ ଆଲୋଡ଼ନ କରି ୧୦ମ ମଣ୍ଡଳରେ କେବଳ ଦେଖାଗଲା ଯେ, 'ମାନସ ଯଜ୍ଞରୁ ଋଗ୍, ସାମ ଓ ଯଜୁ ଜାତ ହେଲେ ଅର୍ଥାତ୍ ପଦ୍ୟ, ଗଦ୍ୟ ଓ ଗୀତ ଏହି ତିନି ପ୍ରଣାଳୀର ରଚନା ବାହାରିଲା । ଶତପଥ ବ୍ରାହ୍ମଣ କଳ୍ପନା କଲେ ଯେ, ଅଗ୍ନିଠାରୁ ଋଗ୍‌ବେଦ, ବାୟୁଠାରୁ ଯଜୁର୍ବେଦ ଓ ସୂର୍ଯ୍ୟଠାରୁ ସାମବେଦର ଉତ୍ପତ୍ତି । ମନୁ ଏହି ମତ ନେଇ ଆପଣା ଗ୍ରନ୍ଥରେ ଲେଖିଅଛନ୍ତି ।

ତୈତ୍ତିରୀୟ ବ୍ରାହ୍ମଣ ଲେଖିଅଛନ୍ତି ଯେ, ପ୍ରଜାପତିଠାରୁ ବେଦର ଉତ୍ପତ୍ତି । ବୃହଦାରଣ୍ୟକ ଉପନିଷଦ୍ ମହତ୍ ଭୂତଠାରୁ ବେଦପୁରାଣ ବ୍ୟାଖ୍ୟାନ ଇତ୍ୟାଦି ସମସ୍ତ ନିଃଶ୍ୱସିତ ।

ପୁରାଣ ଗୋଟିଏ ବ୍ରହ୍ମା ସୃଷ୍ଟି କରି ତାଙ୍କ ଚାରି ମୁଖରୁ ଚାରି ବେଦର ଉତ୍ପତ୍ତି କରାଇଲେ । ବିଷ୍ଣୁ ପୁରାଣ ମତରେ ବ୍ରହ୍ମାଙ୍କ ପୂର୍ବ ମୁଖରୁ ଋଗ୍ ବେଦ, ପଶ୍ଚିମ ମୁଖରୁ ସାମବେଦ, ଉତ୍ତର ମୁଖରୁ ଅଥର୍ବବେଦ ଏବଂ ଦକ୍ଷିଣ ମୁଖରୁ ଯଜୁର୍ବେଦ । ହରିବଂଶ ମତରେ ଗାୟତ୍ରୀଠାରୁ ବେଦର ଜନ୍ମ । ମହାଭାରତରେ ଏ ସମ୍ବନ୍ଧରେ ଗୋଟିଏ ମତ ଅଛି ବୋଲାଯାଇ ପାରେ । ମହାଭାରତ ଗୋଟିଏ ମତ ଏହି ଯେ, ତ୍ରେତାରେ ତିନି ବେଦର ଉତ୍ପତ୍ତି ଇତ୍ୟାଦି । ଏତାଦୃଶ ବିସଦୃଶ ମତ ସଂଗ୍ରହ କରି ପାଠକମାନଙ୍କୁ ବିରକ୍ତ କରିବାର ଆବଶ୍ୟକ କ'ଣ ? ଏତିକି କହିଲେ ଯଥେଷ୍ଟ ହେବ ଯେ, ପୁରାଣ ଜଣକ ରଚିତ ନୁହେଁ, ଏଣୁ ମହାମାନ୍ୟ ବେଦ ସମ୍ବନ୍ଧରେ ମଧ୍ୟ ଅସଙ୍ଗତ ଓ ବିସଦୃଶ ମତ ଦେଖାଯାଏ । ଏଣୁ ଆମ୍ଭେମାନେ କହୁଁ ଯେ, ବେଦର ଆଲୋଚନା କରିବାକୁ ହେଲେ କେବଳ ବେଦରୁ ହିଁ ତାହାର ପ୍ରାଚୀନତ୍ୱ ଓ ମହତ୍ତ୍ୱ ଉଦ୍ଧାର କରିବାକୁ ହେବ । ଯେଉଁ ଗ୍ରନ୍ଥମାନେ ଭ୍ରାନ୍ତ ଧାରଣା ଜନ୍ମାଇ ବେଦକୁ ଗୋପନରେ ରଖି

ଆପଣା ଆପଣା ମହତ୍ତ୍ୱ, ପ୍ରାଶସ୍ତ୍ୟ ବଢ଼ାଇବାର ଚେଷ୍ଟା କରିଅଛନ୍ତି ଏବଂ ଭାରତରେ ଧର୍ମବିଦ୍ୱେଷ ଓ ଜାତିବିଦ୍ୱେଷର ସୂତ୍ରପାତ କରିଅଛନ୍ତି, ସେସବୁ ଶାସ୍ତ୍ରରୁ ପ୍ରକୃତ ତତ୍ତ୍ୱ ଅନୁସନ୍ଧାନ କରିବାକୁ ଗଲେ ବିଡ଼ମ୍ବିତ ହେବା ସ୍ୱତଃସିଦ୍ଧ ।

॥ ୪ ॥

ଯେଉଁ ମହାପୁରୁଷଗଣ ବେଦ ଈଶ୍ୱରଦତ୍ତ, ଅପୌରୁଷେୟ ଓ ନିତ୍ୟ ବୋଲି ବଜ୍ରନିର୍ଘୋଷରେ ପ୍ରକାଶ କରିଗଲେ, ସେହି ମହାପୁରୁଷମାନଙ୍କ ଚରଣତଳରେ ବସିବାର ଯୋଗ୍ୟତା ଆମ୍ଭେମାନେ ଅର୍ଜନ କରି ନାହୁଁ । ତଥାପି ସେମାନଙ୍କର ମତର ସମାଲୋଚନା କରିବାକୁ ପ୍ରବୃତ୍ତ ହୋଇଅଛୁଁ— ସେମାନଙ୍କ ଯୁକ୍ତିକୁ ଖଣ୍ଡନ କରିବାକୁ ସାହସ କରିଅଛୁଁ । ଉପହାସର କଥା । ଦେଶବାସୀଙ୍କଠାରୁ ତିରସ୍କାର ଗଞ୍ଜନା ଏଥିର ପୁରସ୍କାର । ନିନ୍ଦା ସ୍ତୁତି ହାଉଆ ମାତ୍ର । ଗୋଟିଏ ଗୋଟିକର ପ୍ରତିକୂଳ । ଗୋଟିଏ ଉତ୍ତପ୍ତ ଓ ଅସହ୍ୟ, ଅପରଟି ସୁଖନିଦ୍ରା ଆନୟନକାରୀ ମଳୟାନିଳ । ନିନ୍ଦା ଉତ୍କଟ କର୍ଣ୍ଣକଟୁ । ସ୍ତୁତି ସୁଖଶ୍ରାବ୍ୟ ସଙ୍ଗୀତ । ମାତ୍ର ଅସ୍ଥାୟୀ, ଅସ୍ଥିର । ବାୟୁପ୍ରବାହ ପରି ଆସେ, ଯାଏ । ଆତ୍ମପ୍ରତ୍ୟୟ ଜୀବନର ସଙ୍ଗୀ ବା ଚାଳକ । ଆତ୍ମପ୍ରତ୍ୟୟ ଉପରେ କାହାରି ଆଧିପତ୍ୟ ନାହିଁ । ଆତ୍ମପ୍ରତ୍ୟୟ ଶାସ୍ତ୍ରର ଶପଥକୁ ଭୟ କରେ ନାହିଁ । କଠୋର ଶାସନଦଣ୍ଡକୁ ଭୟ କରେ ନାହିଁ । ଆତ୍ମପ୍ରତ୍ୟୟ ଚାଳିତ କେତେ ମହାପୁରୁଷ ସତ୍ୟ ନିମନ୍ତେ ଆତ୍ମୋତ୍ସର୍ଗ କରିଅଛନ୍ତି । ଆତ୍ମପ୍ରତ୍ୟୟ ଜୀବନର ଚାଳକ, ନିୟନ୍ତା, ସର୍ବସ୍ୱ । ମାତ୍ର ଏହା କି ପରିତାପର ବିଷୟ ନୁହେଁ ଯେ, ଜଗତର ସମସ୍ତ ଧର୍ମଶାସ୍ତ୍ର ଏହି ଆତ୍ମପ୍ରତ୍ୟୟକୁ ତ୍ୟାଗ କରିବାକୁ ଶିକ୍ଷା ଦେଉଅଛି । ଧର୍ମଯାଜକ ଓ ଶାସକର କଠୋର ବିଧାନ ଓ ପଦ୍ଧତି କି ମନୁଷ୍ୟକୁ ଆତ୍ମପ୍ରତ୍ୟୟରୁ ବଞ୍ଚିତ କରିବାକୁ ରଚିତ ହୋଇ ନାହିଁ ? ଭାରତବାସୀର ବେଦବିଷୟକ ଆତ୍ମପ୍ରତ୍ୟୟ କି ଶାସ୍ତ୍ରବିଧାନଦ୍ୱାରା ନିୟନ୍ତ୍ରିତ ହୋଇ ନାହିଁ ? ଆବହମାନ କାଳରୁ ଏକ କଥା ଚାଲି ଆସୁଅଛି— ବେଦ ଅପୌରୁଷେୟ ଓ ନିତ୍ୟ । ବେଦ ବିଷୟରେ ଆତ୍ମପ୍ରତ୍ୟୟର ପରିଚୟ ନାହିଁ । ଯନ୍ତ୍ରଚାଳିତ ପୁତ୍ତଳିକାପ୍ରାୟ ଭାରତବାସୀଙ୍କର ବୁଦ୍ଧିବୃତ୍ତି ଶାସ୍ତ୍ର ଦୋହି ମାନିବାକୁ ବାଧ୍ୟ । ଏଥିରେ ଏ ଦେଶର କି ପରିମାଣରେ କ୍ଷତି ହୋଇଅଛି, ତାହାର ଆଲୋଚନା କରିବାର ଅବସର ଏଠାରେ ନାହିଁ । କିନ୍ତୁ କ୍ଷତି ଯେ ହୋଇଅଛି, ଏଥିରେ ସନ୍ଦେହ ନାହିଁ । ବିନାବିପ୍ଳବରେ ଉନ୍ନତିର ଆଶା ଅବଶ୍ୟ ସୁଦୂର ପରାହତ । ସତ୍ୟ ବା ସ୍ୱତ୍ୱ ସାବ୍ୟସ୍ତ କରିବାର ନାମାନ୍ତର ବିପ୍ଳବ ହୋଇଅଛି । ସତ୍ୟ ଉଦ୍ଧାରରେ କପଟାଚାର, ନିନ୍ଦାବାଦ ସ୍ଥାନ ପାଏ ନାହିଁ । ଆମ୍ଭେମାନେ ଆତ୍ମପ୍ରତ୍ୟୟର ବଶବର୍ତ୍ତୀ ହୋଇ ବେଦାଲୋଚନାରେ ପ୍ରବୃତ୍ତ ହୋଇଅଛୁଁ । ସତ୍ୟ ଉଦ୍‌ଘାଟନହିଁ ଏଥିର ମୂଳ ଉଦ୍ଦେଶ୍ୟ । ଏଥିରେ ବେଦର ନିନ୍ଦା ଥିବାର ଆଶଙ୍କା ଯେଉଁମାନଙ୍କ ହୃଦୟରେ ଅଙ୍କୁରିତ ହେବ, ସେମାନେ ସତ୍ୟାଶ୍ରୟୀ ନୁହନ୍ତି । ଆମ୍ଭେମାନେ ଆନ୍ତରିକତା ସହିତ ପାଠକମାନଙ୍କୁ ଆହ୍ୱାନ କରିଅଛୁଁ ଯେ, ସେମାନେ ଏହି ସତ୍ୟ ଉଦ୍ଧାର ନିମନ୍ତେ ଖୋଲା ହୃଦୟରେ ତର୍କବିତର୍କ କରିବାକୁ ଯତ୍ନଶୀଳ ହେଉନ୍ତୁ । ବିନା ତର୍କ ବିତର୍କରେ ସତ୍ୟର ଉଦ୍ଧାର ହୁଏ ନାହିଁ । ଏଣିକି ପ୍ରକୃତ ବିଷୟର ଅବତାରଣା କରାଯାଉ—

ଈଶ୍ୱର ଯେବେ ସୃଷ୍ଟିକର୍ତ୍ତା, ବିଶ୍ୱନିୟନ୍ତା, ସର୍ବଜ୍ଞ, ସର୍ବଦ୍ରଷ୍ଟା ଇତ୍ୟାଦି, ତେବେ ତାଙ୍କ ଦୃଷ୍ଟିରେ ଭାରତବାସୀ ବଡ଼ କାହିଁକି ? ଭାରତବାସୀ ତାଙ୍କର ପ୍ରୀତିପାତ୍ର କାହିଁକି ? ଏବଂ ଭାରତବାସୀ ତାଙ୍କର ଜ୍ଞାନଭଣ୍ଡାରର ଗନ୍ତାଘରିଆ କାହିଁକି ? ଏହି ବିଶାଳ ପୃଥିବୀବାସୀଙ୍କ ମଧ୍ୟରୁ ଭାରତବାସୀଙ୍କ ପ୍ରତି ଈଶ୍ୱର ଏଡ଼େ ସଦୟ ହେବାଦ୍ୱାରା ପକ୍ଷପାତିତା ଦୋଷରେ ଲିପ୍ତ ହେବେ ନାହିଁ କାହିଁକି ? ଏତାଦୃଶ ଚିନ୍ତାଧାରାଦ୍ୱାରା ସଂକୀର୍ଣ୍ଣ ମନର ପରିଚୟ ମିଳେ ଏବଂ ଏହି ପୃଥିବୀର ବିଶାଳତା, ଲୋକସଂଖ୍ୟା, ପ୍ରଚଳିତ ଭାଷା ସମ୍ବନ୍ଧରେ ସୀମାବଦ୍ଧ ଜ୍ଞାନ କିମ୍ବା ଭ୍ରାନ୍ତଧାରଣା ଥିବାର ବିଶ୍ୱାସ ହୁଏ ?

ଏହା ସମସ୍ତେ ସ୍ୱୀକାର କରିବେ ଯେ ଭାଷା ମନୁଷ୍ୟକୃତ । ଆର୍ଯ୍ୟଜାତିର ଭାଷା ବୈଦିକ ଭାଷା ଥିଲା । ତାହା କ୍ରମବିକାଶପ୍ରାପ୍ତ ହୋଇ ସଂସ୍କୃତ ଭାଷାରେ ପରିଣତ ହୋଇଅଛି । ସଂସ୍କୃତଜ୍ଞ ବ୍ୟକ୍ତି ସମସ୍ତ ବେଦମନ୍ତ୍ରର ଅର୍ଥ କରିବାକୁ ଅକ୍ଷମ ହେବେ, ଯେହେତୁ ସଂସ୍କୃତ ଭାଷା ଓ ବେଦ ଭାଷା ଏକ ନୁହେଁ । ଅନେକ ବୈଦିକ ଶବ୍ଦ ସଂସ୍କୃତକୁ ଅଣାଯାଇ ନାହିଁ । ସଂସ୍କୃତ ଭାଷାରେ ଅନେକ ଅଭିନବ ଶବ୍ଦ ସଂଗୃହୀତ ହୋଇଅଛି, ଯାହା କି ବେଦରେ ନାହିଁ । ସଂସ୍କୃତକୁ ବେଦଭାଷା ବୋଲିବା ଯେମନ୍ତ ଭୁଲ୍, ବେଦକୁ ମଧ୍ୟ ସଂସ୍କୃତ ଭାଷା ବୋଲିବା ତେମନ୍ତ ଭୁଲ୍ ଅଟେ । ତଥାପି ଅନେକ ଭାରତୀୟ ବିଜ୍ଞଲୋକ ବେଦଭାଷାକୁ ସଂସ୍କୃତ ଆଖ୍ୟା ଦେବାରେ କୁଣ୍ଠାବୋଧ କରି ନାହାନ୍ତି । ସ୍ୱାମୀ କହନ୍ତି, ବେଦକୁ ଯେବେ ଈଶ୍ୱର କୌଣସି ଦେଶ ଭାଷାରେ ପ୍ରକାଶ କରିଥାନ୍ତେ, ତେବେ ଈଶ୍ୱର ପକ୍ଷପାତୀ ହୁଅନ୍ତେ । ଏହି ହେତୁରୁ ''ସଂସ୍କୃତ ହିଁ ମେ ପ୍ରକାଶ କିୟା ଯୋ କିସି ଦେଶକୀ ଭାଷା ନହିଁ ।'' କହିବା

ବାହୁଲ୍ୟ ଯେ, ପୂର୍ବେ ବେଦଭାଷା ପ୍ରଚଳିତ ଭାଷା ଥିଲା ଏବଂ ଏକ ସମୟରେ ସଂସ୍କୃତ ମଧ୍ୟ ପ୍ରଚଳିତ ଭାଷା ଥିଲା । ସ୍ୱାମିଜୀଙ୍କର ମତ ଏହି ଯେ, ଅନ୍ୟ ଭାଷାରେ ବେଦ ପ୍ରକାଶ କରିଥିଲେ ପଠନ ପାଠନ ବିଷୟରେ ସୁଗମ ହୋଇ ନ ଥାନ୍ତା । ମାତ୍ର ବେଦ ସଂସ୍କୃତ ଭାଷାରେ ଲିଖିତ ହୋଇଥିବାରୁ ଅନ୍ୟ ଦେଶବାସୀମାନେ ବା ଏ ଦେଶବାସୀମାନେ ଅନାୟାସରେ ବୁଝି ପାରୁଅଛନ୍ତି ବା ପଠନପାଠନ କରିପାରୁଅଛନ୍ତି କି ?

ସ୍ୱାମୀଙ୍କର ଏ ମତ କଦାପି ସର୍ବବାଦିସମ୍ମତ ହୋଇ ନ ପାରେ । ବିଶ୍ୱନିୟନ୍ତା ଯଦ୍ୟପି ଯେକୌଣସି ଭାଷାରେ ତାଙ୍କର ଉପଦେଶ ଓ ଶିକ୍ଷା ପ୍ରଚାର କରନ୍ତେ, ତାହା ଜଗଦ୍‌ବାସୀଙ୍କର ଆଦରର ସାମଗ୍ରୀ ହୁଅନ୍ତା ଓ ତାହା ପଠନପାଠନ ବିଷୟରେ ପ୍ରଚଳିତ ବେଦ ଅପେକ୍ଷା ସୁଗମ ଓ ସୁବୋଧ ହୁଅନ୍ତା । ଆଉ ଗୋଟିଏ କଥା— ସ୍ୱାମୀ ଓ ତାଙ୍କର ମତାବଲମ୍ବୀମାନଙ୍କର ଧାରଣା ଏହି ଯେ, ବେଦ ସମସ୍ତ ଭାଷାର ଜନକ ଏବଂ ବେଦ ପ୍ରତିପାଦିତ ଧର୍ମ ସମସ୍ତ ଧର୍ମର ମୂଳ । ପ୍ରାଚୀନ ଗ୍ରନ୍ଥକର୍ତ୍ତାମାନେ ଏତାଦୃଶ ମତ ବ୍ୟକ୍ତ କରିପାରି ନାହାନ୍ତି । ଯେହେତୁ ସେମାନଙ୍କର ଭୌଗୋଳିକ ଜ୍ଞାନ ଓ ବିଭିନ୍ନ ଭାଷାଜ୍ଞାନ ସୀମାବଦ୍ଧ ଥିଲା । ମାତ୍ର ଊନବିଂଶ ଶତାବ୍ଦୀର କେତେକ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ବ୍ୟକ୍ତି, ପାଶ୍ଚାତ୍ୟ ପଣ୍ଡିତଗଣଙ୍କର ବେଦସମ୍ବନ୍ଧୀୟ ମତ ପ୍ରକାଶ ଉତ୍ତାରୁ ଏବଂ ଭାଷାତତ୍ତ୍ୱବେତ୍ତାମାନଙ୍କ ଗବେଷଣାର ଫଳସ୍ୱରୂପ ଗ୍ରୀକ୍, ଲାଟିନ୍, ପାରସିକ ଭାଷା ପ୍ରଭୃତିର ସାମ୍ୟ ବେଦଭାଷାରେ ଆବିଷ୍କୃତ ହେବାରୁ ଏ ଅଭିନବ ମତବ୍ୟକ୍ତ କରିବାରେ ପ୍ରୟାସୀ ହୋଇଅଛନ୍ତି । ଆଧୁନିକ ଅନେକ ପାଶ୍ଚାତ୍ୟ ଶିକ୍ଷିତ ବ୍ୟକ୍ତି ସେହି ପଥର ପଥିକ ହୋଇ ବେଦ ଓ ବେଦଧର୍ମର ଅଯଥା ପ୍ରଶଂସା କରିବାକୁ ତ୍ରୁଟି କରୁ ନାହାନ୍ତି । ମାତ୍ର ଏ ସବୁକୁ ଗବେଷଣା ବୋଲାଯାଇ ନ ପାରେ । ପୂର୍ବେ ବେଦର ଏକପ୍ରକାର ପ୍ରଶଂସା ହେଉଥିଲା, ଏବେ ଅନ୍ୟ ପ୍ରକାର ହେବାକୁ ଲାଗିଲା । ମାତ୍ର ତହିଁର ପ୍ରକୃତ ତତ୍ତ୍ୱ କେଉଁଠାରେ ? ଏକ ଦଳ ଲେଖକ ଚିଟା ଓ ଚୁଟିରେ ମଧ୍ୟ ବୈଜ୍ଞାନିକ ସମ୍ବନ୍ଧର ସ୍ୱପ୍ନ ଦେଖିଥିଲେ । କେହି କେହି ହୋମଦ୍ୱାରା ଜଳବୃଷ୍ଟି ହେବା ମତକୁ ପୋଷଣ କରିବାରେ ତ୍ରୁଟି କରି ନାହାନ୍ତି । ହିନ୍ଦୁର ସମସ୍ତ କାର୍ଯ୍ୟ ବିଜ୍ଞାନସମ୍ମତ ବିଚାରସିଦ୍ଧ, ଏହା ମଧ୍ୟ ଅନେକ ପାଶ୍ଚାତ୍ୟ ଶିକ୍ଷିତ ବ୍ୟକ୍ତି ଅଦ୍ୟାପି ତର୍କଦ୍ୱାରା ସିଦ୍ଧ କରିବାକୁ ପ୍ରୟାସୀ । ଆମ୍ଭମାନଙ୍କର ଏତାଦୃଶ ବିଦ୍ୟାବଳ ନାହିଁ, ଏଣୁ ଏ ସବୁ ସମ୍ବନ୍ଧରେ ଯୁକ୍ତିତର୍କ କରିବାକୁ ପ୍ରବୃତ୍ତି ବଳେ ନାହିଁ । କେବଳ ନିଜ ଭାଷାର ନିଜ ଧର୍ମର ପ୍ରଶଂସାରେ ରତ ରହିଲେ ବିଦ୍ୱେଷବହ୍ନି ଅନିର୍ବାପିତ ହୋଇ ରହିବ, ଏହାହିଁ ଶେଷ କଥା । ଚିରପୋଷିତ ବିଶ୍ୱାସର ବଶବର୍ତ୍ତୀ ହୋଇ ରହିଲେ ସତ୍ୟ ଉଦ୍‌ଘାଟନର ସମ୍ଭାବନା ସୁଦୂରପରାହତ ନୁହେଁ କି ?

ଭାରତବାସୀ କହନ୍ତି ଯେ, ସେମାନେ ଦେବାନୁଗୃହୀତ ଜାତି, ଯେହେତୁ ଈଶ୍ୱର ସେମାନଙ୍କୁ ବେଦ ଦେଇଅଛନ୍ତି । ତେବେ ଆଦାମ ଯେ ଈଶ୍ୱରଙ୍କ ସହିତ ଭ୍ରମଣସୁଖାନୁଭବ କରୁଥିଲେ, ସେ କାହିଁକି ଈଶ୍ୱରାନୁଗୃହୀତ ବ୍ୟକ୍ତି ନୁହନ୍ତି ? ଆଦାମ ଈଶ୍ୱରମୁଖନିଃସୃତ ଶବ୍ଦ ଗ୍ରହଣ କରୁଥିଲେ । ଆଦାମ ଏବଂ ତାଙ୍କ ସଦୃଶ ଅନେକ ଇହୁଦି ଋଷି ଏବଂ ଇହୁଦି ଜାତି ଈଶ୍ୱରାନୁଗୃହୀତ ନୁହନ୍ତି ବୋଲିବାର ତ କାରଣ କିଛି ନାହିଁ । ଆମ୍ଭେମାନେ ଯେବେ ବିଶ୍ୱାସ କରୁଁ ଯେ, ବେଦ ଈଶ୍ୱରଦତ୍ତ ଏବଂ ଋଷିମାନେ ତାହା ଶ୍ରବଣ କରି ପ୍ରଚାର କରିଥିଲେ, ତେବେ ଆମ୍ଭେମାନେ କେଉଁ କାରଣରୁ ଇହୁଦି ଜାତିର ଋଷି ଏବ୍ରାହିମ ଈଶ୍ୱରଙ୍କଠାରୁ ଧର୍ମ ଉପଦେଶ ଶୁଣି ନ ଥିଲେ ବୋଲି ପ୍ରକାଶ କରିବା ? ଇହୁଦି ଧର୍ମଶାସ୍ତ୍ର ଜାଲ୍ ଓ ମିଥ୍ୟା ଏବଂ ଆମ୍ଭମାନଙ୍କ ଧର୍ମଶାସ୍ତ୍ର ଖାଣ୍ଟି ସତ୍ୟ, ଏକଥା ଈଶ୍ୱର ଆସି ପ୍ରକାଶ କରିଯିବେ କି ? ବିଭିନ୍ନ ଜାତିର ଋଷିଗଣଙ୍କ ହୃଦୟରେ ବିଭିନ୍ନ ଧର୍ମଶାସ୍ତ୍ରର ବୀଜ ରୋପଣ କରି ଈଶ୍ୱର ନିୟନ୍ତ୍ରିତ୍ୱର ପ୍ରକୃଷ୍ଟ ପରିଚୟ ଦେଇଅଛନ୍ତି ତେବେ ?

ଇହୁଦି ଓ ଭାରତବାସୀ ଈଶ୍ୱରାନୁଗୃହୀତ ଜାତି ବୋଲି ଆପଣା ଆପଣାର ପରିଚୟ ଦିଅନ୍ତି । ଏତାଦୃଶ ମିଥ୍ୟା ଶ୍ରେଷ୍ଠତ୍ୱ ଯେଉଁ ଜାତି ଜଗଦ୍‌ବାସୀଙ୍କଠାରେ ଦେଖାଇବାକୁ ଚେଷ୍ଟା କରନ୍ତି, ସେହି ଜାତିର ଯେ ଅଧୋଗତି ଅବଶ୍ୟମ୍ଭାବୀ , ତହିଁର ପ୍ରକୃଷ୍ଟ ଉଦାହରଣ ଇହୁଦି ଜାତି ଓ ଭାରତବାସୀ । ଉଭୟ ଜାତିର ଦୁର୍ଦ୍ଦଶାର ସୀମା ନାହିଁ ।

ଭାରତବାସୀ ମନୁଷ୍ୟ କ୍ଷମତାକୁ କ୍ଷୁଣ୍ଣ କରିବାକୁ ଏଡ଼େ ଯତ୍ନଶୀଳ କାହିଁକି, ତାହା ଆମ୍ଭେମାନେ ଚିନ୍ତାକରି କୂଳକିନାରା ପାଉ ନାହିଁ । ସ୍ୱଜାତିର ମହତ୍ତ୍ୱ, ମର୍ଯ୍ୟାଦା, କ୍ଷମତା ଭାରତବାସୀ ପ୍ରତି ଅସହ୍ୟ । ଏଣୁ ଭାରତବାସୀର ଜାତୀୟ ବୀର ନାହିଁ, ଜାତୀୟ କବି ନାହିଁ, ଧର୍ମୋପଦେଷ୍ଟା ନାହିଁ । ଏଣୁ ଭାରତବାସୀର ଜାତୀୟ ଇତିହାସ ନାହିଁ, ଜାତୀୟ ସାହିତ୍ୟ ନାହିଁ । ଯେଉଁ ଜାତିର ଏ ସବୁ ନାହିଁ, ସେ ପ୍ରକୃତ ଜାତିପଦବାଚ୍ୟ ନୁହେଁ । ଯେଉଁ ଜାତିର ଏ ସବୁ ନାହିଁ, ସେ ଜାତି ମନୁଷ୍ୟତାର ଜଳାଞ୍ଜଳି ଦିଏ । ଈଶ୍ୱର ଓ ଦେବତା ଯାହାର ସହାୟ— ଯେଉଁ ଜାତିର ବିପତ୍ତି ଉପସ୍ଥିତ ହେଲେ କେବଳ କାତରୋକ୍ତି ଉଚ୍ଚାରଣଦ୍ୱାରା ଅପରର କୃପା ଆଶାରେ

ଅନାଇ ରହିବ, ସେ ଜାତିର ପୌରୁଷ ଓ ଆତ୍ମମର୍ଯ୍ୟାଦା କାହିଁ ? ଭାରତବାସୀ ଅନ୍ଧବିଶ୍ୱାସରେ ଚିରକାଳକ ପରପଦାନତ ହୋଇ ଆସୁଅଛି । ତଥାପି ସେ ଅନ୍ଧବିଶ୍ୱାସ ତ୍ୟାଗ କରିବାକୁ ରାଜି ନୁହେଁ, ଏଥିରୁ ବଳି ପରିତାପର ବିଷୟ ଆଉ କ'ଣ ଅଛି ?

ବେଦ ଈଶ୍ୱରଦତ୍ତ, ଅପୌରୁଷେୟ ଓ ନିତ୍ୟ, ଏହା ଗୋଟିଏ ପ୍ରଧାନ ଅନ୍ଧବିଶ୍ୱାସ । ଏହି ଅନ୍ଧବିଶ୍ୱାସ ଭାରତବାସୀର ସମସ୍ତ ଅନିଷ୍ଟର ମୂଳ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଏଥି ସମ୍ବନ୍ଧରେ ହୃଦୟଜ୍ୱାଳା ବ୍ୟକ୍ତ କରି ପାଠକମାନଙ୍କୁ ବିରକ୍ତ କରିବା ନିଷ୍ପ୍ରୟୋଜନ ।

ଆତ୍ମପ୍ରତ୍ୟୟାନୁସାରେ ଆମ୍ଭେମାନେ ଦୃଢ଼ତା ସହିତ ପ୍ରକାଶ କରିଅଛୁଁ ଯେ, ବେଦ ଆମ୍ଭମାନଙ୍କ ପୂର୍ବପୁରୁଷଙ୍କଦ୍ୱାରା ରଚିତ । ଏହି ପ୍ରତ୍ନରତ୍ନ ଆମ୍ଭମାନଙ୍କର ସର୍ବସ୍ୱ । ଏଥିନିମନ୍ତେ ଆମ୍ଭମାନଙ୍କର ମହତ୍ତ୍ୱ ବା ମନୁଷ୍ୟତ୍ୱ ଜଗତର ଧର୍ମ ଓ ଜାତୀୟ ବିପଣିରେ ଅମୂଲ୍ୟ ମହାରତ୍ନ ବୋଲି ପ୍ରଚାର ହେଉଅଛି । ଏହାର ପ୍ରକୃତ ମୂଲ୍ୟ ଓ ସମ୍ମାନ ଯେଉଁ ପରିମାଣରେ ବଢ଼ିବ, ଆମ୍ଭମାନଙ୍କର ମର୍ଯ୍ୟାଦା ସେହି ପରିମାଣରେ ବଢ଼ିବ । ଆମ୍ଭେମାନେ ଏଥିରୁ ଜାତୀୟ ମହତ୍ତ୍ୱ ଉପାର୍ଜନ କରିପାରିବା— ପୌରୁଷ ଲାଭ କରିବା । ବେଦ କାହା କୃତ ? ଆମ୍ଭର ପୂର୍ବପୁରୁଷଙ୍କ କୃତ । ଏ ଉତ୍ତର ଦେବାରେ ଆମ୍ଭେମାନେ ଯେଉଁ ପରିମାଣରେ ଗର୍ବିତ ଓ ସମ୍ମାନିତ ହେବାର କଥା, ଏହା ଈଶ୍ୱରଦତ୍ତ ବୋଲି ପ୍ରକାଶ କଲେ, ସେ ଗର୍ବ ବା ମହତ୍ତ୍ୱ କେଉଁଠାରେ ରହିଲା ? ଯେବେ ବେଦ ନିତ୍ୟ, ତେବେ ବେଦୋଲ୍ଲିଖିତ ବୀରପୁରୁଷଗଣ ଆମ୍ଭର ପୂର୍ବପୁରୁଷ ହେବେ କିପରି ? ଯେବେ ମନୁଷ୍ୟରଚିତ, ତେବେ ବୀରପୁରୁଷ, ଋଷି, କବି, ପୁରୋହିତ, ଉପଦେଷ୍ଟା ସମସ୍ତେ ଆମ୍ଭର ପୂର୍ବପୁରୁଷ ବୋଲି ବିବେଚିତ ହେବେ । ସେମାନଙ୍କ କାର୍ଯ୍ୟାବଳୀର ବର୍ଣ୍ଣନା ଶୁଣିଲେ ଆମ୍ଭମାନଙ୍କ ହୃଦୟ ସ୍ଫୀତ ହେବ, ବୀରଭାବ ଆସିବ, ଜାତୀୟ ଭାବ ଆସିବ । ଯେଉଁମାନେ ଏ ସବୁ ଗୋପନ କରି ରଖିବାକୁ ଚେଷ୍ଟା କରିଅଛନ୍ତି, ସେମାନଙ୍କର ଚାତୁରୀ ଓ ଧୃଷ୍ଟତା ଅନାୟାସରେ ଧରା ପଡ଼ିବ । ସୁତରାଂ ଦେଶବାସୀ ଅନ୍ଧବିଶ୍ୱାସ ତ୍ୟାଗ କରି ଥରେ ପ୍ରକୃତ ଗବେଷଣାରେ ଚେଷ୍ଟିତ ହୁଅ, ପ୍ରକୃତ ତତ୍ତ୍ୱ ପାଇ ନିଜକୁ ଓ ଦେଶକୁ ଧନ୍ୟ କର, ଏହି ଅନୁରୋଧ ।

ବେଦ ଆମ୍ଭର ପୂର୍ବପୁରୁଷଙ୍କ ରଚିତ, ଏହି ଧାରଣାରେ ଆମ୍ଭେମାନେ ବେଦାଲୋଚନାରେ ପ୍ରବୃତ୍ତ ହୋଇଅଛୁଁ । ପାଠକଗଣ ପୂର୍ବ ବିଶ୍ୱାସ ତ୍ୟାଗକରି ମମତାଶୂନ୍ୟ ହୋଇ ଅବହିତ ଚିତ୍ତରେ ଏହା ପାଠ କରନ୍ତୁ, ଆମ୍ଭମାନଙ୍କର ଶ୍ରମ ସାର୍ଥକ ହେବ ।

ବେଦ ନିତ୍ୟ ନୁହେଁ, ଅପୌରୁଷେୟ ନୁହେଁ, ଏହା ଆମ୍ଭମାନଙ୍କ ପୂର୍ବ ପୁରୁଷଙ୍କର ଅଧ୍ୟବସାୟର ଫଳ । ଯେତେବେଳେ ପୃଥିବୀର ଅନ୍ୟ ଦେଶର ଲୋକମାନେ ଏତାଦୃଶ ମାନସିକ ମହତ୍ତ୍ୱପ୍ରାପ୍ତିର ଉପଯୁକ୍ତ ହୋଇ ନ ଥିଲେ, ସେତେବେଳେ ଆମ୍ଭମାନଙ୍କ ପୂର୍ବ ପୁରୁଷଗଣ ଦେବସ୍ତୁତି ରଚନା କରି ତାହା ମୁଖସ୍ଥ ରଖି ବଂଶଧରମାନଙ୍କୁ ଦେଇଯାଇଥିଲେ । ଏହି ବେଦରେ ଆମ୍ଭମାନଙ୍କ ପୂର୍ବପୁରୁଷଗଣଙ୍କର ଜ୍ଞାନ ବିକାଶର ପ୍ରକୃଷ୍ଟ ପ୍ରମାଣ ମିଳେ । ଏହି ରଚନା ଦିନକେ ହୋଇ ନାହିଁ, ବର୍ଷକେ ଶେଷ ପାଇ ନାହିଁ । କେତେ କାଳରେ ଏହି ବେଦ ରଚନା ଶେଷ ହେଲା, ତାହା ନିଶ୍ଚୟ କରି କୁହାଯାଇ ନ ପାରେ । ଏଣୁ ଏଥିରେ ଭାଷାର, ରଚନାର ଏବଂ ଭାବର କ୍ରମବିକାଶ ଦେଖାଯାଏ । ଏଥିରେ ଆମ୍ଭମାନଙ୍କ ପୂର୍ବପୁରୁଷଙ୍କର ଇତିହାସ ଅଛି । ସମାଜନୀତି, ରାଜନୀତି, ଧର୍ମଉପଦେଶ, ଗୃହସ୍ଥାଳୀ, ହାସ୍ୟରସ, କୌତୁକ, କୃଷି, ଜୀବନଜୀବିକାର ଉପାୟ, ପଶୁପାଳନ, ଔଷଧ, ଚିକିତ୍ସା ଇତ୍ୟାଦି ଯାବତୀୟ ବିଷୟର ଉଲ୍ଲେଖ ରହିଅଛି । ଏହା ଗୋଟିଏ ଗ୍ରନ୍ଥବିଶେଷ ନୁହେଁ ବା, ଏହା ଗୋଟିଏ ଗ୍ରନ୍ଥାଗାର । ଏଥିରେ ଅଧ୍ୟୟନ କରିବାର ସାମଗ୍ରୀ କ'ଣ ନାହିଁ ? ମାତ୍ର ବେଦାଧ୍ୟୟନ ବହୁଦିନରୁ ଭାରତବାସୀଙ୍କ ପ୍ରତି ତିକ୍ତ ହୋଇଅଛି । ପୁରାଣର ପ୍ରତିପତ୍ତି ବଢ଼ିଲା ଦିନରୁ ବେଦର ମହତ୍ତ୍ୱ ଲୋପ ପାଇଅଛି କିମ୍ବା ଏହାର ତତ୍ତ୍ୱ ଗୁହାନିହିତ ହୋଇଅଛି ।

ବେଦ ଶ୍ରୁତି ଅଟେ । ଏହା କେଉଁ ପ୍ରାଚୀନ ଯୁଗରୁ ଚାଲି ଆସୁଅଛି । ଏହା କେବେ ରଚିତ, ସେ ସମ୍ବନ୍ଧରେ ଆମ୍ଭେମାନେ ବର୍ତ୍ତମାନ କୌଣସି ମତ ଦେବାକୁ ପ୍ରସ୍ତୁତ ନୋହୁଁ, ତାହା ପରେ ଆଲୋଚନା କରିବାର ବାସନା ରହିଲା । ବର୍ତ୍ତମାନ ବେଦସମ୍ବନ୍ଧୀୟ ପ୍ରବନ୍ଧ ବା ପୁସ୍ତକ ଲେଖକମାନଙ୍କର ଭାବଧାରାରୁ ଆମ୍ଭେମାନେ ଆପଣାକୁ ସ୍ୱତନ୍ତ୍ର ରଖିବାକୁ ଚେଷ୍ଟା କରିଅଛୁଁ ଓ କରିବୁଁ । କି ପାଶ୍ଚାତ୍ୟ ଓ ପ୍ରାଚ୍ୟ ଉଭୟ ଗବେଷଣାର ଭାବଧାରା ଆମ୍ଭମାନଙ୍କ ହୃଦୟରେ ବିଶ୍ୱାସର ଅଙ୍କୁରୋତ୍ପତ୍ତି ମଧ୍ୟ କରାଇପାରି ନାହିଁ । ଉଭୟେ ବିରୋଧବାଦୀ ଖ୍ରୀଷ୍ଟଧର୍ମାବଲମ୍ବୀମାନେ ବେଦର ସମୟକୁ ଯେତେଦୂର ସମ୍ଭବ ଖ୍ରୀଷ୍ଟଜନ୍ମର ନିକଟବର୍ତ୍ତୀ କରିବାକୁ ଚେଷ୍ଟିତ । ପ୍ରାଚ୍ୟଗଣ ଯେତେଦୂର ସମ୍ଭବ ଖ୍ରୀଷ୍ଟଜନ୍ମର କୋଟି

କୋଟି ବର୍ଷ ପୂର୍ବେ ବେଦ ବିଦ୍ୟମାନ ଥିବାର ମତ ପ୍ରକାଶ କରିବାରେ କୁଣ୍ଠାବୋଧ କରନ୍ତି ନାହିଁ । ଏହି ଉଭୟ ବିପରୀତ ମତର ସମନ୍ୱୟ କରିବାର ସାହସ କାହାର ? ଏଣୁ ଜଣକେତେ କୌଣସି ଗୋଟାଏ ହେଲେ ମତକୁ ଧରିବସିବାକୁ ପ୍ରସ୍ତୁତ । ମାତ୍ର ସେଥିରେ ଆତ୍ମପ୍ରତ୍ୟୟ ଆଧିପତ୍ୟ ବିସ୍ତାର କରିପାରେ ନାହିଁ । ଏ ଜଟିଳତାରେ ଆମ୍ଭେମାନେ ଆପଣାକୁ ସ୍ୱାଧୀନ ରଖି ପ୍ରକାଶ କରୁଅଛୁଁ ଯେ, ପୃଥିବୀରେ ଯେତେ ସାହିତ୍ୟ ଅଛି, ବୈଦିକ ସାହିତ୍ୟ ସବୁଠାରୁ ପ୍ରାଚୀନ ଓ ପ୍ରଧାନ ଏବଂ ଏଥିନିମନ୍ତେ ଆମ୍ଭମାନଙ୍କର ଗର୍ବର ବିଶେଷ କାରଣ ଅଛି ।

ବେଦ ଥିଲା ଏବଂ ତାହା ବେଦ ହୋଇଥିଲା । ସେହି ପାଚୀନ କାଳରେ ତାହାକୁ ବୁଝାଇବାକୁ ଟୀକା ବ୍ୟାଖ୍ୟା ବା ଭାଷ୍ୟର ପ୍ରୟୋଜନ ଥିଲା । ସେକାଳର ଲୋକେ ତାହା ଅନାୟାସରେ ବୁଝି ପାରୁଥିଲେ । କାଳର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଭାଷାର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ବହୁକାଳ ପରେ ପ୍ରଚଳିତ ଭାଷା ରୂପାନ୍ତରିତ ହେଲା । ପୁସ୍ତକଗତ ବେଦଭାଷା ସାଧାରଣଙ୍କ ପ୍ରତି ସହଜବୋଧ ହୋଇପାରିଲା ନାହିଁ । ବେଦ ବୁଝିବା ଭଳି ପାଣ୍ଡିତ୍ୟ ମାତ୍ର କେତେକ ଲୋକଙ୍କର ଥିଲା । ସେମାନେ ବେଦର ଟୀକା ବା ଭାଷ୍ୟ ପରବର୍ତ୍ତୀ ବଂଶଧରମାନଙ୍କ ନିମନ୍ତେ ରଖିଯାଇଥିବାର ନିଦର୍ଶନ ମିଳେ ନାହିଁ ।

ବେଦ ଉତାରୁ ବ୍ରାହ୍ମଣଗ୍ରନ୍ଥର ଜନ୍ମ । ସେତେବେଳେ ଲୋକମାନେ ପୂର୍ବପୁରୁଷ ଉଦ୍ଭାବିତ ପ୍ରକୃତି ଉପାସନା ଅପେକ୍ଷା ପ୍ରକୃତି ପୂଜାରେ ବିଶେଷ ଆଗ୍ରହାନ୍ୱିତ ବା ରତ ହୋଇଥିଲେ । ବ୍ରାହ୍ମଣଗ୍ରନ୍ଥ ବେଦବ୍ୟାଖ୍ୟା ଓ ବେଦପ୍ରଚାର କରିବାର ତେଣେ ଥାଉ, ଲୋକଙ୍କୁ ଅଧିକତର ଭାବରେ ଯାଗଯଜ୍ଞରେ ଦୀକ୍ଷିତ ଓ ଶିକ୍ଷିତ କରିବାକୁ ଚେଷ୍ଟା କଲେ । ବେଦର ମନ୍ତ୍ରବିଶେଷ ଗ୍ରହଣ କରି ଦେବତା, ପ୍ରାଚୀନ ବୀର ପୁରୁଷ ଓ ଋଷିମାନଙ୍କ ଉତ୍ପତ୍ତିର କାଳ୍ପନିକ ଇତିହାସ ରଚନା କଲେ ଏବଂ ଯଜ୍ଞହିଁ ସମସ୍ତ ମହତ୍ତ୍ୱ ଓ ପ୍ରବାହର ମୂଳ, ଏହି ବିଶ୍ୱାସ ଲୋକମନରେ ଦୃଢ଼ୀଭୂତ କଲେ । ଲୋକେ ଭାବିଲେ, ବ୍ରାହ୍ମଣ ବେଦର ବ୍ୟାଖ୍ୟା, ବ୍ରାହ୍ମଣ ଉପଦେଶ ହିଁ ବେଦର ଉପଦେଶ । କ୍ରମେ ବେଦ ଓ ବ୍ରାହ୍ମଣ ଅଭେଦ, ଏହି ବିଶ୍ୱାସ ଲୋକମନରେ ଆଧିପତ୍ୟ କଲା । ଲୋକେ ବ୍ରାହ୍ମଣ ଉପଦିଷ୍ଟ ଯାଗଯଜ୍ଞରେ ମାତିଲେ, ବେଦ ବେଦ ହୋଇ ରହିଲା । ଏ ଘଟଣାର ସମ୍ୟକ୍ ଆଲୋଚନା କରି ବହୁକାଳ ପରେ ଜଣେ ଉପନିଷଦ୍ ମନ୍ତ୍ରରଚକ ହୃଦୟବେଦନା ପ୍ରକାଶ କରିଅଛନ୍ତି । ''ଅନ୍ଧଂ ତମଃ ପ୍ରବିଶନ୍ତି ଯେଽବିଦ୍ୟାମୁପାସତେ । ତତୋ ଭୂୟ ଇବ ତେ ତମୋ ଯଉ ବିଦ୍ୟାୟାଂ ରତା ।''

ବେଦାନ୍ତ ବା ଉପନିଷଦ୍ ବୈଦିକ ଧର୍ମର ଅଭିବ୍ୟକ୍ତି, ଏଥିରେ ସନ୍ଦେହ ନାହିଁ । ଏହା ଭାରତୀୟ ଆର୍ଯ୍ୟଧର୍ମର ଗୋଟିଏ ଶାଖା । ମାତ୍ର ତହିଁର ଆଲୋଚନା ବର୍ତ୍ତମାନ କ୍ଷେତ୍ରରେ ସ୍ଥଗିତ ରଖାଯାଉ ।

ଲୋକେ କାଳ୍ପନିକ ଆଶାରେ ପ୍ରକୃତିପୂଜା ବା ଯଜ୍ଞାଦିରେ ରତ ଥିଲେ ମଧ କେତେକ ପଣ୍ଡିତ ବ୍ୟକ୍ତି ଯେ ବେଦାଧ୍ୟୟନରେ ତତ୍ପର ଥିଲେ, ଏଥିରେ ସନ୍ଦେହ ନାହିଁ । ପଠନପାଠନ ଚାଲିଥିଲା । ମାତ୍ର ଭବିଷ୍ୟତ୍ ବଂଶଧରମାନଙ୍କ ସୁବିଧା ନିମନ୍ତେ ସେମାନେ କୌଣସି ଲିଖିତ ବ୍ୟାଖ୍ୟାଦି ରଖିଗଲେ ନାହିଁ, ଏଣୁ କାଳକ୍ରମେ ବେଦମନ୍ତ୍ର ଦୁର୍ବୋଧ ହେଲା ।

ସେ କାଳରେ ଯେଉଁମାନେ ବେଦମନ୍ତ୍ରକୁ ବୁଝାଉଥିଲେ, ସେମାନଙ୍କୁ ନୈରୁକ୍ତ ବୋଲାଯାଉଥିଲା । ନୈରୁକ୍ତମାନେ ମୁଖରେ ବେଦବ୍ୟାଖ୍ୟା କରୁଥିଲେ । ଯାସ୍କଙ୍କ ପୂର୍ବରୁ କୌଣସି ନିରୁକ୍ତ ଗ୍ରନ୍ଥ ଲିଖିତ ହୋଇଥିବାର ପ୍ରକାଶ ପାଉ ନାହିଁ । ସୁତରାଂ ଯାସ୍କହିଁ ପ୍ରଥମ ନିରୁକ୍ତ ଗ୍ରନ୍ଥ ରଚକ ବୋଲାଯିବ । ଯାସ୍କ ତାଙ୍କ ଗ୍ରନ୍ଥରେ ପୂର୍ବ ନୈରୁକ୍ତମାନଙ୍କର ନାମୋଲ୍ଲେଖ କରି ଯାଇଅଛନ୍ତି । ମାତ୍ର ସେହି ନୈରୁକ୍ତମାନଙ୍କ ରଚିତ ଗ୍ରନ୍ଥ ଥିବା ବା ଗ୍ରନ୍ଥର ନାମ ସେ ଲେଖି ନାହାନ୍ତି । ଯାସ୍କ ନୈରୁକ୍ତ ଛଡ଼ା ନୈଦାନ, ବୈୟାକରଣ ଓ ଐତିହାସିକମାନଙ୍କ ସାକ୍ଷ୍ୟ ଲିପିବଦ୍ଧ କରିଅଛନ୍ତି । ଏହା ଦେଖିଲାରୁ ଅନୁମାନ କରାଯାଏ ଯେ, ଯାସ୍କଙ୍କ ପୂର୍ବରେ ବେଦବ୍ୟାଖ୍ୟାକର୍ତ୍ତା ଚାରି ପ୍ରକାର ଥିଲେ, ଯଥା—ନୈରୁକ୍ତ ଯେଉଁମାନେ ଶବ୍ଦର ଉତ୍ପତ୍ତି ଧାତୁ ପ୍ରତ୍ୟୟ ସହିତ ବୁଝାଉଥିଲେ । ନୈଦାନମାନେ ମଧ ବୈଦିକ ଶବ୍ଦର ତତ୍ତ୍ୱ ବୁଝାଇବାରେ ପଟୁ ଥିଲେ । ବୈୟାକରଣମାନେ ସେ କାଳରେ ପ୍ରଚଳିତ ଶବ୍ଦ କ୍ରିୟା ପ୍ରଭୃତି ଯାବତୀୟ ବ୍ୟାକରଣ ସମ୍ବନ୍ଧୀୟ ବିଷୟ ବୁଝାଉଥିଲେ । ଐତିହାସିକଗଣ ବେଦ ମନ୍ତ୍ରର ଐତିହ୍ୟ ବୁଝାଉଥିଲେ । ଏହାଛଡ଼ା ଯାଜ୍ଞିକମାନଙ୍କଠାରୁ ଓ ବ୍ରାହ୍ମଣଗ୍ରନ୍ଥରୁ ବେଦବ୍ୟାଖ୍ୟା ଜଣାଯାଉଥିବାର ଉଲ୍ଲେଖ ଯାସ୍କ ନିରୁକ୍ତରୁ ମିଳେ । ଯାସ୍କ ତାଙ୍କ ରଚିତ ନିରୁକ୍ତ ଗ୍ରନ୍ଥରେ ଚର୍ମଶିରା, ଶାକପୂର୍ଣ୍ଣୀ, ସ୍ଥୌଳାଷ୍ଠୀବି ପ୍ରଭୃତି ସତର ଜଣ ନୈରୁକ୍ତଙ୍କ ନାମୋଲ୍ଲେଖ କରି ତାଙ୍କ ଗ୍ରନ୍ଥର ପ୍ରତିଷ୍ଠା ବଢ଼ାଇଅଛନ୍ତି । ଅର୍ଥାତ୍ ଯାସ୍କଙ୍କ ନିରୁକ୍ତ ପୂର୍ବ ସତର ଜଣ ନୈରୁକ୍ତଙ୍କ ସମର୍ଥିତ ଶବ୍ଦାର୍ଥଦ୍ୱାରା ପରିପୂର୍ଣ୍ଣ ଅଟେ ।

ଯାସ୍କଙ୍କୁ ହିଁ ପ୍ରଥମ ବେଦବ୍ୟାଖ୍ୟାକର୍ତ୍ତା ବୋଲାଯିବ । ଯାସ୍କକୃତ ନିରୁକ୍ତ ବହୁକାଳ ଯାଏ ଏକମାତ୍ର ବେଦବ୍ୟାଖ୍ୟା ବୋଲି ପ୍ରଖ୍ୟାତି ଲାଭ କରିଥିଲା । ଯାସ୍କଙ୍କ ସମୟ ନିର୍ଦ୍ଧାରଣ କରିବାର ପ୍ରୟାସ ଏ ପ୍ରବନ୍ଧର ସୀମାବହିର୍ଭୂତ । ଯାସ୍କ ଓ ପାଣିନିଙ୍କ ସମୟ ଓ ଜନ୍ମକାଳ ନେଇ ପାଶ୍ଚାତ୍ୟ ଓ ପ୍ରାଚ୍ୟ ପଣ୍ଡିତଙ୍କ ମଧ୍ୟରେ ଏକ ପ୍ରକାର ମେଷଯୁଦ୍ଧ ଚାଲିଅଛି । ଆମ୍ଭମାନଙ୍କ ପରି ଲୋକ ଏଥିରେ ମଧ୍ୟସ୍ଥତା କରିବାକୁ ଗଲେ ଆଘାତପ୍ରାପ୍ତ ହେବା ସ୍ୱାଭାବିକ । ପାଶ୍ଚାତ୍ୟ ପଣ୍ଡିତଙ୍କ ମଧ୍ୟରୁ ଅନେକେ କହନ୍ତି ଯେ, ଯାସ୍କ ପାଣିନିଙ୍କ ପୂର୍ବବର୍ତ୍ତୀ । ଏ ଦେଶର ପଣ୍ଡିତମାନେ କହନ୍ତି ଯେ, ପାଣିନି ଯାସ୍କଙ୍କ ପୂର୍ବବର୍ତ୍ତୀ ନିରୁକ୍ତରେ ଦୁଇ ଚାରି ଗୋଟା ସୂତ୍ର ଦେଖିବାକୁ ମିଳେ, ଯାହା ପାଣିନି ବ୍ୟାକରଣରେ ମଧ୍ୟ ଅଛି । ଏଣୁ ଏ ଦେଶ ପଣ୍ଡିତଗଣ କହନ୍ତି ଯେ, ସୂତ୍ର ପାଣିନିରଚିତ, ଯାସ୍କ ତାହା ଉଦ୍ଧୃତ କରିଅଛନ୍ତି ।

ଆଉ ଗୋଟିଏ ଯୋଡ଼ିଏ ଏତାଦୃଶ କ୍ଷୀଣ ପ୍ରମାଣ ମଧ୍ୟ ଦିଅନ୍ତି । ମାତ୍ର ନିରୁକ୍ତ ଗ୍ରନ୍ଥ ତୁଳନାରେ ଏ ସମସ୍ତ ଉଦାହରଣ ଅଛି ନଗଣ୍ୟ । ଆମ୍ଭେମାନେ ପ୍ରାଚ୍ୟ ବା ପାଶ୍ଚାତ୍ୟ ମତର ପକ୍ଷପାତୀ ନୋହୁଁ । ଆତ୍ମବିବେକ ପରିଚାଳିତ ହୋଇ ଏ ସମ୍ବନ୍ଧରେ ନିମ୍ନୋକ୍ତ ମତ ବ୍ୟକ୍ତ କରିବାକୁ ସାହସ କରିଅଛୁଁ । ପାଠକେ ଏଥିର ମୀମାଂସକ ।

ପାଣିନି ଯାସ୍କଙ୍କ ପୂର୍ବେ ବିଦ୍ୟମାନ ଥିଲେ ଏବଂ ତାହାଙ୍କ ରଚିତ ବ୍ୟାକରଣ ପ୍ରସିଦ୍ଧି ଲାଭ କରିଥିଲେ ଯାସ୍କ ପାଣିନିଙ୍କର ନାମୋଲ୍ଲେଖ ଅବଶ୍ୟ କରିଥାନ୍ତେ । ଯଦି ଯାସ୍କ ତାଙ୍କ ପୂର୍ବରୁ ସତର ଜଣ ନୈରୁକ୍ତଙ୍କ ନାମୋଲ୍ଲେଖ କରିବାକୁ ଲଜ୍ଜା ବା କୁଣ୍ଠାବୋଧ ନ କଲେ, ତେବେ ପାଣିନିଙ୍କ ନାମ ଲେଖିବାକୁ ଲଜ୍ଜିତ ବା ଭୀତ ହୁଅନ୍ତେ କାହିଁକି ? ଯେଉଁଠାରେ ବ୍ୟାକରଣଦ୍ୱାରା ତାଙ୍କର ଅଭିପ୍ରାୟ ସମର୍ଥନ କରିବାର ପ୍ରୟୋଜନ ହେଲା, ସେଠାରେ ସେ 'ଇତି ବୈୟାକରଣାଃ' ବୋଲି ଲେଖିବାକୁ ଲଜ୍ଜିତ ହେଲେ ନାହିଁ; ତେବେ 'ଇତି ପାଣିନି' ବୋଲି ଲେଖିବାକୁ ଲଜ୍ଜିତ ହୁଅନ୍ତେ କି ?

ପାଣିନିଙ୍କ ପୂର୍ବେ ଓ ଯାସ୍କଙ୍କ ପୂର୍ବେ ସେ ଏ ଦେଶରେ ବୈୟାକରଣମାନେ ବିଦ୍ୟମାନ ଥିଲେ, ତାହା ଲେଖାଯାଇଅଛି । ସେମାନେ ସନ୍ଧି ଶବ୍ଦ ପ୍ରଭୃତିର ସାଧନା କରିପାରୁଥିଲେ ଏବଂ ଶବ୍ଦର ବ୍ୟୁତ୍ପତ୍ତି କରୁଥିଲେ, ଏଥିରେ ସନ୍ଦେହ ନାହିଁ; ସୁତରାଂ କେତେଗୁଡ଼ିଏ ସୂତ୍ର ଯେ ରଚିତ ହୋଇଥିଲା, ଏଥିରେ ମଧ୍ୟ ସନ୍ଦେହ କରିବାର କିଛି କାରଣ ନାହିଁ ।

ଏହି ପ୍ରାଚୀନ ସୂତ୍ରକୁ ଯାସ୍କ ଆପଣା ଗ୍ରନ୍ଥରେ ଏବଂ ପାଣିନି ଆପଣା ଗ୍ରନ୍ଥରେ ଲେଖିଅଛନ୍ତି । ଯେବେ ବିଶ୍ୱାସ କରିବାକୁ ହୁଏ ଯେ, ଶିବବାହନ ବୃଷଭର ଗଳଘଣ୍ଟା ଶବ୍ଦରୁ ପାଣିନି ଶବ୍ଦ ସୃଷ୍ଟି କରିଅଛନ୍ତି, ତେବେ ପାଣିନି ପରେ ଯାସ୍କ, ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ । ଯାସ୍କଙ୍କ ପୂର୍ବରେ ବୈୟାକରଣମାନେ ଥିଲେ, କିନ୍ତୁ ଲିଖିତ ବା ପ୍ରଚଳିତ ବ୍ୟାକରଣ ନ ଥିଲା । ଏଣୁ ଯାସ୍କ ନିଜ ମତ ସମର୍ଥନ ନିମନ୍ତେ ବାରମ୍ବାର 'ଇତି ବୈୟାକରଣାଃ' ଲେଖିଅଛନ୍ତି । ଯଦି ଆଧୁନିକ ସମୟ ପରି ଅନେକ ବୈୟାକରଣ ଥାଆନ୍ତି ବା ତାଙ୍କ ସମୟରେ ପାଣିନିଙ୍କ ଅଷ୍ଟାଧ୍ୟାୟୀ ବା ପାଣିନିଙ୍କ ନାମ ଅବଶ୍ୟ ଲେଖନ୍ତେ, ଯେପରି କି ଚର୍ମଶିରା, ଷ୍ଟୌଲାଷ୍ଠୀବି ପ୍ରଭୃତି ନାମ ଲେଖିଲେ । ପୂର୍ବେ ବ୍ୟାକରଣର କିଛି ନ ଥିଲା, ପାଣିନି ବ୍ୟାକରଣର ସୃଷ୍ଟି କଲେ, ଏହା ନୁହେଁ । ପୂର୍ବେ ବ୍ୟାକରଣ ଥିଲା, ତହିଁର ନିଦର୍ଶନ ଆମ୍ଭେମାନେ ଉପନିଷଦ୍ ପାଠରୁ ମଧ୍ୟ ଜାଣିପାରୁଁ । ଅଙ୍ଗିରା ସୌନକଙ୍କୁ କହିଲେ ଯେ, ବ୍ରହ୍ମବିଦ୍‌ମାନେ କହନ୍ତି ଯେ, ଦୁଇ ଗୋଟି ବିଦ୍ୟା ଜ୍ଞାତବ୍ୟ— ପରା ଏବଂ ଅପରା । 'ତତ୍ର ପରା ଋଗ୍‌ବେଦୋ ଯଜୁର୍ବେଦଃ ସାମବେଦୋଽଥର୍ବ ବେଦଃ ଶିକ୍ଷା କଳ୍ପୋ ବ୍ୟାକରଣଂ ନିରୁକ୍ତଂ ଛନ୍ଦୋ ଜ୍ୟୋତିଷମିତି । ଅଥ ପରାଯୟା ତଦକ୍ଷରମଧିଗମ୍ୟତେ' । ମୃ : ୧ । ୧ । ୫

ଶାକଟାୟନ ଜଣେ ପ୍ରାଚୀନ ବୈୟାକରଣ ବୋଲି ବିଦିତ । ଯାସ୍କ ଏହି ଶାକଟାୟନଙ୍କ ନାମୋଲ୍ଲେଖ କରିଅଛନ୍ତି । ଶାକଟାୟନ ପାଣିନିଙ୍କ ପୂର୍ବବର୍ତ୍ତୀ । ପାଣିନୀ ତାଙ୍କ ପୂର୍ବବର୍ତ୍ତୀ କେତେକ ବୈୟାକରଣଙ୍କ ନାମୋଲ୍ଲେଖ କରିଅଛନ୍ତି । ଏହାଛଡ଼ା ତାଙ୍କ ଦେଶରୁ ପ୍ରାଚ୍ୟ ଦେଶର ବୈୟାକରଣମାନଙ୍କୁ 'ପ୍ରାଞ୍ଚ' ଏବଂ ଉତ୍ତର ଦେଶର ବୈୟାକରଣମାନଙ୍କୁ 'ଉଦଞ୍ଚ' ବୋଲି ପ୍ରକାଶ କରିଅଛନ୍ତି । ସୁତରାଂ ପାଣିନିଙ୍କ ଆଗରୁ ଯେ ଏ ଦେଶରେ ଅନେକ ବୈୟାକରଣ ଥିଲେ, ଏଥିରେ ସନ୍ଦେହ ନାହିଁ । ଯାସ୍କହିଁ ନିରୁକ୍ତକାର ଏବଂ ଜଣେ ପ୍ରଧାନ ବୈୟାକରଣ ମଧ୍ୟ । ଗାର୍ଗ୍ୟ, ଶାକଟାୟନ ପ୍ରଭୃତି ବୈୟାକରଣଙ୍କ ଆଦେଶ ଉଲ୍ଲେଖ କରିବାକୁ ଯାସ୍କ ଯେବେ କୌଣସି ଲଜ୍ଜାବୋଧ ନ କଲେ, ତାଙ୍କ ପୂର୍ବରୁ ପାଣିନିଙ୍କ ପରି ବୈୟାକରଣ ବିଦ୍ୟମାନ ଥିଲେ ତାଙ୍କର ନାମୋଲ୍ଲେଖ କରିବାକୁ ଲଜ୍ଜାବୋଧ କରନ୍ତେ କାହିଁକି ? ପାଣିନିଙ୍କ ନାମୋଲ୍ଲେଖ କରି ନ ଥିବାରୁ ପାଣିନି ଯାସ୍କଙ୍କ ପରବର୍ତ୍ତୀ ବୋଲି ଆମ୍ଭେମାନଙ୍କର ହୃଦ୍‌ବୋଧ ହେଉଅଛି ।

ଯାସ୍କ ପାଣିନି ପ୍ରସଙ୍ଗ ନେଇ କେତେକ ପଂକ୍ତି ଲେଖାଗଲା । ପାଠକେ ବୋଧହୁଏ ଏହା ଅପ୍ରାସଙ୍ଗିକ ବୋଲି

ମନେ କରିବେ ନାହିଁ । ପାଣିନିଙ୍କ ପ୍ରଖ୍ୟାତି ଏ ଦେଶରେ ଯେପରି ଅଛି, ଯାସ୍କଙ୍କର ତାହା ନାହିଁ । ଯାସ୍କଙ୍କୁ ଅନେକେ ଜାଣନ୍ତି ନାହିଁ ବୋଇଲେ ଚଳେ । ମାତ୍ର ବେଦ ବ୍ୟାଖ୍ୟାନ ଲୋକରେ ପ୍ରଚାର କରିବା ବିଷୟରେ ଯାସ୍କ ଯେ ଅଗ୍ରଣୀ, ତାହା କହିବା ବାହୁଲ୍ୟ ମାତ୍ର । ବେଦ ବୁଝାଇବାକୁ ଅଷ୍ଟାଧ୍ୟାୟୀ ମଧ ଗୋଟିଏ ପାଣିନି ପ୍ରଣୀତ ଗ୍ରନ୍ଥ । ମାତ୍ର ବେଦ ବୁଝାଇବା ପକ୍ଷରେ ଯାସ୍କଙ୍କ ନିରୁକ୍ତ ହିଁ ଉଚ୍ଚାସନ ପାଇବା ଯୋଗ୍ୟ । ନୂଆପୁରୁଣା ହୋଇ ବ୍ୟାକରଣ ଅନେକ; ମାତ୍ର ନିରୁକ୍ତ ଗୋଟିଏ । ଦେବାନୁଗୃହୀତ ନ ହେଲେ ଭାରତବାସୀ ବିଖ୍ୟାତ ହୋଇପାରିବା ସମ୍ଭବ ନୁହେଁ । ଏଣୁ ପାଣିନି ଯେ ବିଖ୍ୟାତ, ସେ ମହେଶ୍ୱରାନୁଗ୍ରହରୁ । ମାତ୍ର ଯାସ୍କ ପାଣିନିଙ୍କ ପରି ଲୋକରେ ଖ୍ୟାତି ଅର୍ଜନ କରିପାରି ନାହାନ୍ତି, ଏଣୁ ସେ ଦେବାନୁଗୃହୀତ ନୁହନ୍ତି । ସୁଖର କଥା ।

ଯାସ୍କଙ୍କ ପ୍ରଥାନୁବର୍ତ୍ତୀ ହୋଇ ଭାରତବାସୀ ବେଦାଲୋଚନାରେ ରତ ହୋଇଥିଲେ ଆଜି ବେଦ ଦୁର୍ବୋଧ ହୋଇ ନ ଥାନ୍ତା । ଆଜି ପୁରାଣ ଘରେ ଘରେ ଯେଉଁ ପୂଜା ପାଉଅଛି, ବେଦ ମଧ ସେହିପରି ପୂଜା ପାଉଥାନ୍ତା ।

ବୌଦ୍ଧଧର୍ମର ପ୍ରତିପତ୍ତି ସଙ୍ଗେ ସଙ୍ଗେ ସଂସ୍କୃତ ଭାଷାର କ୍ରମୋନ୍ନତି ବୈଦିକ ଆଲୋଚନାର ପଥକୁ ସଂକୀର୍ଣ୍ଣ କଲା । ପୁରାଣ ରଚନାର ଖରସ୍ରୋତ ବେଦପ୍ରବାହକୁ ଆବିଳ କରି ପକାଇଲା । ପୁରାଣସ୍ରୋତ ସ୍ଥିର ହେଲାରୁ ଲୋକେ ତାର ରସାସ୍ୱାଦନରେ ତୃପ୍ତିଲାଭ କଲେ, ଆଉ ବେଦକୁ ପଚାରେ କିଏ । ବେଦାଲୋଚନା ସ୍ଥଗିତ ହେଲା । ଯାସ୍କ ଉତ୍ତାରୁ ବେଦର ବ୍ୟାଖ୍ୟା ବା ଭାଷ୍ୟ ବା ଟୀକା କେହି ପ୍ରଣୟନ କରିବାରେ ପ୍ରୟାସୀ ହେଲେ ନାହିଁ । ଏହା କି କମ ପରିତାପର ବିଷୟ । ଯାହାକୁ ଧର୍ମର ମୂଳ ବୋଲି ସମସ୍ତେ ସ୍ୱୀକାର କରନ୍ତି, ତାହା ସମ୍ବନ୍ଧରେ ଏ ଦେଶର ପଣ୍ଡିତଗଣ ନୀରବ ହୋଇ ରହିବାଦ୍ୱାରା ଦେଶର ଅବନତିର ବାଟ ଫିଟାଇଲେ ନାହିଁ କି ? ବେଦର ପ୍ରସାଦରେ ପୌରାଣିକଗଣ ପୁରାଣର ମାହାତ୍ମ୍ୟ ପଢ଼ାଇଲେ । ଦାର୍ଶନିକଗଣ ବେଦତତ୍ତ୍ୱକୁ ପ୍ରଚ୍ଛନ୍ନ ରଖି ନୂତନ ନୂତନ ତର୍କପଥରେ ଲୋକଙ୍କୁ ଚାଳିତ କରିବାକୁ ଚେଷ୍ଟା କଲେ । ସେହି ପ୍ରାଚୀନ ବେଦବିଦ୍ୟାମାନ ଅଛି, ମାତ୍ର ତାହାର ତତ୍ତ୍ୱ ଭାରତବାସୀଙ୍କୁ ଅଗୋଚର ।

ଯାସ୍କ ଓ ତାଙ୍କ ପୂର୍ବର କେତେଜଣ ଆଚାର୍ଯ୍ୟ ବେଦତତ୍ତ୍ୱ ଜନସାଧାରଣଙ୍କ ଗୋଚରୀଭୂତ କରାଇବାକୁ ଚେଷ୍ଟା କରିଥିଲେ । ମାତ୍ର ତଦାନୀନ୍ତନ ଲୋକବିଶ୍ୱାସ ଭିନ୍ନ ମାର୍ଗ ଅନୁଧାବନ କରୁଥିଲା । ଏଣୁ ଯାସ୍କଙ୍କ ଅଧବସାୟ କେବଳ ନିରୁକ୍ତ ନାମକ ପୁସ୍ତକରେ ପର୍ଯ୍ୟବସିତ ହେଲା । ପାଣିନି ବେଦ ଏବଂ ପ୍ରଚଳିତ ଭାଷା ନେଇ ବୃହତ୍ ବ୍ୟାକରଣ ରଚନା କଲେ; ସୁତରାଂ ତାଙ୍କ ବ୍ୟାକରଣ ସମାଦରଣୀୟ ଓ ଅନୁକରଣୀୟ ହେଲା । ଯାସ୍କ କେବଳ ବେଦ ସମ୍ବନ୍ଧୀୟ ବ୍ୟାକରଣ ଓ ବ୍ୟାଖ୍ୟା ରଚନା କରିବାରୁ ତାଦୃଶ ପ୍ରସିଦ୍ଧି ଲାଭ କରିପାରିଲେ ନାହିଁ । ଯାହାହେଉ, ଯାସ୍କ ହିଁ ଏକମାତ୍ର ପ୍ରାଚୀନ ବେଦବ୍ୟାଖ୍ୟାକର୍ତ୍ତା । ତାଙ୍କ ପରେ ବହୁ ଶତାବ୍ଦୀଯାଏ କେହି ଆଉ ବେଦବ୍ୟାଖ୍ୟା କରି ନ ଥିଲେ । ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ଭାଗରେ ଦକ୍ଷିଣ ଦେଶରେ ସାୟନାଚାର୍ଯ୍ୟ ଜନ୍ମଗ୍ରହଣ କରି ପୁଣି ବେଦବ୍ୟାଖ୍ୟାନ ସମ୍ବନ୍ଧରେ ପରିଶ୍ରମ କଲେ ଏବଂ ତାହାଙ୍କ ପରିଶ୍ରମର ଫଳରୁ ଆମ୍ଭେମାନେ ଋଗ୍‌ବେଦର ପୂର୍ଣ୍ଣ ବ୍ୟାଖ୍ୟାପ୍ରାପ୍ତ ହୋଇଅଛୁଁ । ଯାସ୍କଙ୍କ ନିରୁକ୍ତ ରଚନାର ପ୍ରାୟ ହଜାର ହଜାର ବର୍ଷ ପରେ ସାୟନଙ୍କ ବେଦାର୍ଥପ୍ରକାଶ ନାମକ ଟୀକା ପ୍ରକାଶିତ ହୋଇଅଛି । ଯାସ୍କଙ୍କ ବ୍ୟାଖ୍ୟା ତଦାନ୍ତୀନ୍ତନ ଲୋକପ୍ରଚଳିତ ବିଶ୍ୱାସ ଉପରେ ନିର୍ଭର କରିଅଛି । ସୁତରାଂ ଯାସ୍କଙ୍କ ନିରୁକ୍ତ ଅତି ପ୍ରାଚୀନ ହେତୁରୁ ଭ୍ରମଧାରଣାରହିତ ବୋଲାଯିବ । ସାୟନ ମହାପୌରାଣିକ, ତାଙ୍କ ବ୍ୟାଖ୍ୟା ପୁରାଣଗତ କଳ୍ପନାଦୃଷ୍ଟ । ଏଣୁ ସାଧାରଣତଃ କଳ୍ପନାପ୍ରସୂତ ଏବଂ ପୁରାଣ ଅନୁସରଣରେ ରଚିତ । ବର୍ତ୍ତମାନ ବେଦାର୍ଥପ୍ରକାଶ ଭିନ୍ନ ବେଦରେ ପ୍ରବେଶ କରିବାର ଉପାୟାନ୍ତର ନ ଥିଲେ ମଧ ସାୟନଙ୍କ ପୌରାଣିକ ଉକ୍ତି କେତେକ ବର୍ଜନ କରିବା ବିଧେୟ । ଏଥି ସମ୍ବନ୍ଧରେ ଯାସ୍କଙ୍କର ନିରୁକ୍ତ ଆମ୍ଭମାନଙ୍କୁ ସାହାଯ୍ୟ କରିବ ।

॥ ୫ ॥

ନିରୁକ୍ତ ରଚନାବେଳେ ବୋଧହୁଏ ଗ୍ରନ୍ଥପରିସମାପ୍ତି ନିମନ୍ତେ କୌଣସି ଦେବ ଦେବୀଙ୍କ ଅନୁଗ୍ରହ ଭିକ୍ଷା କରିବା ପ୍ରଥା ପ୍ରଚଳିତ ନ ଥିଲା । ଏଣୁ ସେ ଗ୍ରନ୍ଥାରମ୍ଭରେ ଗଜାନନଙ୍କୁ କିମ୍ବା ତାଙ୍କର ସ୍ଥୂଳହସ୍ତର ବିଧୂନନଙ୍କୁ, ଗୋପବଧୂଟୀ ଦୁକୂଳଚୋରଙ୍କୁ କିମ୍ବା ଧୂର୍ଜଟୀଙ୍କ ତାଣ୍ଡବକୁ ବନ୍ଦନା କରି ନ ଥିଲେ । ସାୟନାଚାର୍ଯ୍ୟ ପ୍ରଥମେ ଗଜାନନଙ୍କୁ ଏବଂ ଦ୍ୱିତୀୟରେ ବିଦ୍ୟାତୀର୍ଥ ମହେଶ୍ୱରଙ୍କୁ ସ୍ତୁତି କରି ବେଦାର୍ଥ ପ୍ରକାଶ ଆରମ୍ଭ କରିଅଛନ୍ତି ।

ସାୟନାଚାର୍ଯ୍ୟ ବେଦ ଅପୌରୁଷେୟ ଓ ନିତ୍ୟ ଏହି କଥା ପ୍ରମାଣ କରିବା ନିମନ୍ତେ ଅନେକ ପରିଶ୍ରମ କରି ଉପକ୍ରମଣିକାର ଅନେକ ଅଂଶ ଅଧିକାର କରିଅଛନ୍ତି । ଏ ସମ୍ବନ୍ଧରେ ଯାସ୍କ ବାକ୍ୟବ୍ୟୟ ମଧ କରି ନାହାନ୍ତି ।

ସେତେବେଳେ ଏ ଜଟିଳ ଭ୍ରାନ୍ତି ବୋଧହୁଏ ଲୋକମନକୁ ଆକ୍ରମଣ କରି ନ ଥିଲା । ମନ୍ତ୍ର ଋଷି ପ୍ରଣୀତ,ଏହାହିଁ ଲୋକେ ବିଶ୍ୱାସ କରୁଥିଲେ । ଏଣୁ ଯାସ୍କ ଲେଖିଅଛନ୍ତି—'ଯତ୍‌କାମ ଋଷିର୍ଯ୍ୟସ୍ୟାଂ ଦେବତାୟା-ମାର୍ଥପତ୍ୟମିଚ୍ଛନ୍ ସ୍ତୁତିଂ ପ୍ରୟୁଂକ୍ତେ ତଦ୍ଦୈବତଃ ସମନ୍ତ୍ରୋଭବତି' ।

ଯାସ୍କ ସମଗ୍ର ଋଗ୍‌ବେଦର ବ୍ୟାଖ୍ୟା କରି ନାହାନ୍ତି । ନିରୁକ୍ତ ପାଠ କଲେ ଋଗ୍‌ବେଦ ବୁଝାଯାଇପାରିବ, ଏହି ଧାରଣାରେ ସେ ଗ୍ରନ୍ଥ ରଚନା କରିଅଛନ୍ତି । ନିରୁକ୍ତରେ ବୈଦିକ ବ୍ୟାକରଣସୂତ୍ର, ପାଠନିୟମ, ଛନ୍ଦର ପରିଚୟ, ଏକାର୍ଥବାଚକ ବିଶେଷ୍ୟ ପ୍ରଭୃତି ପଦମାନଙ୍କର ତାଲିକା ଦେଇଅଛନ୍ତି । ବେଦସ୍ଥ ନିଗୂଢ଼ ଶବ୍ଦମାନଙ୍କର ବ୍ୟାଖ୍ୟା ଦେଇଅଛନ୍ତି ଏବଂ ଦେବତାମାନଙ୍କ ଗୁଣର ପରିଚୟ ଓ ଇତିହାସ ଦେଇଅଛନ୍ତି । ସମ୍ଭବତଃ, ସେକାଳରେ ଏତିକି ବେଦ ଶିକ୍ଷା ନିମନ୍ତେ, ଯଥେଷ୍ଟ ବୋଲି ବିବେଚିତ ହେଉଥିଲା । ପ୍ରାୟ ଅଢ଼ାଇ ହଜାର ବର୍ଷ ଉତ୍ତାରୁ ଆମ୍ଭମାନଙ୍କ ପକ୍ଷରେ ତାହା ଯଥେଷ୍ଟ ନୁହେଁ । ସାୟନଙ୍କ ବ୍ୟାଖ୍ୟା କାବ୍ୟ ପୁରାଣ ନାଟକ ବ୍ୟାଖ୍ୟା ତୁଲ୍ୟ ଅଟେ, ଏଣୁ ଲୋକଙ୍କର ବୁଝିବା ପକ୍ଷରେ ସୁବିଧା । ସୁତରାଂ ଏହି ବ୍ୟାଖ୍ୟାର ଆଦର ବେଶି । ମାତ୍ର ସାୟନଟୀକା ପାଠଦ୍ୱାରା କେବଳ ପୁରାଣବିଶ୍ୱାସ ଦୃଢ଼ୀଭୂତ ହୁଏ, ବେଦତତ୍ତ୍ୱ ଦୂରରେ ରହିଯାଏ । ଯାସ୍କଙ୍କଠାରୁ ଆରମ୍ଭ କରି ସାୟନଙ୍କ ପର୍ଯ୍ୟନ୍ତ ଦୁଇ ହଜାର ବର୍ଷରେ ବେଦର ଯେତେ ଟୀକା, ବ୍ୟାଖ୍ୟାପ୍ରଣୀତ ହୋଇ ନ ଥିଲା, ଗତ ଶତାବ୍ଦୀ ଭିତରେ ତଦପେକ୍ଷା ଅନେକ ଟୀକା, ବ୍ୟାଖ୍ୟା ପ୍ରଣୀତ ହୋଇଅଛି । ମାକ୍‌ସମୁଲାରଙ୍କର ଋଗ୍‌ବେଦର ସମ୍ପୂର୍ଣ୍ଣ ସଂସ୍କରଣ ପ୍ରକାଶିତ ହେବା ପରେ ଅନେକ ଟୀକା ଓ ମନ୍ତବ୍ୟ ପ୍ରକାଶ ପାଇଅଛି । ଅନେକ ଯାସ୍କ ଓ ସାୟନଙ୍କ ପଦାନୁସରଣ କରି ସୁଦ୍ଧା ସେ ଦୁହିଁଙ୍କି ପଦେ ପଦେ ଅପଦସ୍ଥ କରିବାକୁ ତ୍ରୁଟି କରି ନାହାନ୍ତି । ପାଶ୍ଚାତ୍ୟ ପଣ୍ଡିତଗଣ ଭାଷାତତ୍ତ୍ୱ ଉପରେ ସେମାନଙ୍କର ଗବେଷଣା ଓ ବ୍ୟାଖ୍ୟାର ଭିତ୍ତି ସ୍ଥାପନ କରିଅଛନ୍ତି । Roth ସାହେବଙ୍କ ମତ ଯେ, ବେଦ ଅଧ୍ୟୟନ ସମ୍ବନ୍ଧରେ ଯାସ୍କ ଓ ସାୟନଙ୍କ ବ୍ୟାଖ୍ୟାର ସାହାଯ୍ୟ ନେବା ନିଷ୍ପ୍ରୟୋଜନ । ସ୍ୱାଧୀନ ଗବେଷଣାଦ୍ୱାରା ପ୍ରକୃତ ତତ୍ତ୍ୱ ମିଳିପାରିବ । ପାଶ୍ଚାତ୍ୟ ଆଉ କେତେକ ପଣ୍ଡିତଙ୍କର ମଧ ମତ ଏହି ପ୍ରକାର । ସେ କଥା ଆମ୍ଭମାନଙ୍କ ଆଲୋଚନାର ସୀମା ବାହାରେ ।

ଯାସ୍କ ଦେବତା ଓ ମନ୍ତ୍ରର ବ୍ୟାଖ୍ୟା ଯାହା ଲେଖିଅଛନ୍ତି, ତାହା ପ୍ରକାଶ କରାଯାଇଅଛି । ତହିଁର ଅର୍ଥ ଏହି ଯେ, ଋଷି ଉପ୍‌ସିତ କାମନା ବା ବାଞ୍ଛା ପୂରଣ ହେବା ଅଭିପ୍ରାୟରେ ଯାହାର ସ୍ତୁତି କରନ୍ତି, ସେ ଦେବତା—ସେହି ସ୍ତୁତି ମନ୍ତ୍ର ଅଟେ । କେବଳ ଋକ୍‌ମାନଙ୍କୁ ଯାସ୍କ ମନ୍ତ୍ର ବୋଲି ଗ୍ରହଣ କରିଅଛନ୍ତି । ଏହି ଋକ୍ ତାଙ୍କ ମତରେ ତିନି ପ୍ରକାର । ପରୋକ୍ଷକୃତା, ପ୍ରତ୍ୟକ୍ଷକୃତା ଓ ଆଧ୍ୟାତ୍ମିକୀ ।

ଯେଉଁ ଋକ୍‌ରେ ସମସ୍ତ ନାମ ବିଭକ୍ତି ପ୍ରଥମ ପୁରୁଷରେ ଲିଖିତ, ତାହା ପରୋକ୍ଷକୃତା । 'ଇନ୍ଦ୍ରୋଦିବ ଇନ୍ଦ୍ର ଈଶେ ପୃଥିବ୍ୟାଃ' ।

ଯେଉଁ ଋକ୍‌ରେ ମଧ୍ୟମ ପୁରୁଷ ଯୋଗଦ୍ୱାରା ତ୍ୱଂ ବା ତୁମ୍ଭ ପ୍ରୟୋଗଦ୍ୱାରା ସ୍ତୁତି କରାହୁଏ, ତାହା ପ୍ରତ୍ୟକ୍ଷକୃତା । 'ତ୍ୱମିନ୍ଦ୍ର ବଳାଦଧି' ।

ଯେଉଁ ଋକ୍‌ରେ ଉତ୍ତମ ପୁରୁଷ ଯୋଗ ହୋଇ ଅହଂ, ମୁଁ ଏହି ସର୍ବନାମ ବ୍ୟବହୃତ ହୋଇଅଛି, ତାହା ଆଧ୍ୟାତ୍ମିକୀ । 'ଅହଂ ରୁଦ୍ରେଭିର୍ବସୁଭିଶ୍ଚରାମି' । ଏହି ତିନି ଶ୍ରେଣୀର ମନ୍ତ୍ର ମଧ୍ୟରୁ ପରୋକ୍ଷକୃତ ଓ ପ୍ରତ୍ୟକ୍ଷକୃତା ମନ୍ତ୍ର ଅନେକ; ମାତ୍ର ଆଧ୍ୟାତ୍ମିକୀ ମନ୍ତ୍ର ଅଳ୍ପସଂଖ୍ୟକ ଥିବାର ଯାସ୍କ ଲେଖିଅଛନ୍ତି । ମନ୍ତ୍ର ଯେ କେବଳ ସ୍ତୁତି, ତାହା ନୁହେଁ । ଏହି ମନ୍ତ୍ର ସମୂହରେ ଆଶୀର୍ବାଦ, ଶପଥ, ଅଭିଶାପ, ବ୍ୟପଦେଶ, ଖେଦୋକ୍ତି, ନିନ୍ଦା, ପ୍ରଶଂସା ଇତ୍ୟାଦି ମନ୍ତ୍ରମାନ ମଧ ବିଦ୍ୟମାନ ଅଛନ୍ତି ।

ଯାହାର ବେଦରେ ସ୍ତୁତି ପ୍ରଭୃତି ଅଛି, ସେ ଦେବତା, ଏହା ସ୍ଥୂଳକଥା । ମାତ୍ର ନୈରୁକ୍ତମାନଙ୍କ ମତାନୁସାରେ ତିନି ଗୋଟି ବେଦର ପ୍ରଧାନ ଦେବତା— ଅଗ୍ନି, ବାୟୁ, ସୂର୍ଯ୍ୟ । ଅଗ୍ନି ଭୂସ୍ଥାନ ଦେବତା, ବାୟୁ ଅନ୍ତରୀକ୍ଷସ୍ଥାନ ଦେବତା ଏବଂ ସୂର୍ଯ୍ୟ ଦ୍ୟୁସ୍ଥାନ ଦେବତା । ବାୟୁ ଇନ୍ଦ୍ରର ବିକଳ୍ପ । ଏମାନଙ୍କର ଐଶ୍ୱର୍ଯ୍ୟ ଯୋଗରୁ ଅନେକ ନାମଧେୟ ଦେବତା ଦେଖାଯାନ୍ତି । ଯଜ୍ଞକର୍ତ୍ତା ପୁରୋହିତଗଣ ଏକ ଦେବତାଙ୍କୁ ନାନା ନାମରେ ଆଖ୍ୟାତ କରନ୍ତି । ଅନ୍ୟ ଯେତେ ଦେବତା ଉପରୋକ୍ତ ତିନି ଦେବତାଙ୍କର ପ୍ରକାଶବିଶେଷ । ଏହି ବେଦରେ ଦେବତାମାନଙ୍କର ଆକାର ଚିନ୍ତା କରାଯାଇଅଛି । ଜଡ଼ରେ ଚେତନର ଆରୋପ କରାଯାଇଅଛି । ଜଡ଼ ପୁରୁଷ ବା ସ୍ତ୍ରୀର ବିଗ୍ରହ ଧାରଣ କରି ବାକ୍ୟାଦି ପ୍ରୟୋଗ କରିବାର ବର୍ଣ୍ଣନା ମନ୍ତ୍ରମାନଙ୍କରେ ଅଛି ଓ କର୍ମ କରିବାର ବର୍ଣ୍ଣନା ମଧ ମନ୍ତ୍ରମାନଙ୍କରେ ଅଛି ।

ପ୍ରାଗୁକ୍ତ ତିନି ଦେବତାଙ୍କର ନିର୍ଦ୍ଦିଷ୍ଟ କର୍ମର ବର୍ଣ୍ଣନା ଦେଖାଯାଏ, ଯଥା— ଅଗ୍ନିଙ୍କର ଅନ୍ୟ ଦେବତାଗାମୀ କର୍ମ— ହବି ବହନ ଦେବତାମାନଙ୍କର ଆବାହନ ।

ବାୟୁ ବା ଇନ୍ଦ୍ରଙ୍କର କର୍ମ— ବର୍ଷା କରିବା, ବୃତ୍ର ବା ମେଘ ବଧ (ମେଘ ନାଶ କରିବା) ।

ସୂର୍ଯ୍ୟଙ୍କର କର୍ମ— ରସାଦାନ, ରଶ୍ମିଦ୍ୱାରା ରସଧାରଣ ଏବଂ ରଶ୍ମିଦ୍ୱାରା ଆଚ୍ଛାଦନ ।

ଅଗ୍ନିଙ୍କର ସାହଚର୍ଯ୍ୟ—ଅଗ୍ନାୟୀ, ପୃଥିବୀ, ଇଳା ।

ବାୟୁ ବା ଇନ୍ଦ୍ରଙ୍କ ସାହଚର୍ଯ୍ୟ— ଅଦିତି, ସରମା, ସରସ୍ୱତୀ, ବାକ୍, ଅନୁମତି, ରାକା, ସିନୀ,ବାଲୀ, କୁହୁ, ଉର୍ବଶୀ, ପୃଥିବୀ, ଇନ୍ଦ୍ରାଣୀ, ଗୌରୀ, ଗୌ, ଧେନୁ, ଅଘ୍ନ୍ୟ, ପଥ୍ୟା, ସ୍ୱସ୍ତି ଉଷା, ରୋଦସୀ ।

ସୂର୍ଯ୍ୟଙ୍କର ସାହଚର୍ଯ୍ୟ— ଉଷା, ସୂର୍ଯ୍ୟ, ବୃଷାକପାୟୀ, ସରଣ୍ୟୁ, ଦେବପତ୍ନୀମାନେ ।

ଅଗ୍ନିଙ୍କର ସଂସ୍ତବିକା ଦେବତା— (ଯାହା ସହିତ ଅଗ୍ନି ସ୍ତୁତ ହୁଅନ୍ତି)—ଇନ୍ଦ୍ର, ସୋମ, ବରୁଣ, ପର୍ଜନ୍ୟ, ଋତୁମାନେ ।

ଇନ୍ଦ୍ରଙ୍କର ସଂସ୍ତବିକା ଦେବତା— ଅଗ୍ନି, ସୋମ, ବରୁଣ, ପୁଷା, ବୃହସ୍ପତି, ବ୍ରାହ୍ମଣସ୍ପତି, ପର୍ବତ, କୁତ୍ସ, ବିଷ୍ଣୁ, ବାୟୁ ।

ସୂର୍ଯ୍ୟଙ୍କର ସଂସ୍ତବିକା ଦେବତା— ଚନ୍ଦ୍ରମା, ବାୟୁ, ସମ୍ବତ୍ସର ।

ଉପରୋକ୍ତ ପ୍ରକାରେ ଯାସ୍କ ଓ ତାଙ୍କ ପୂର୍ବ ନୈରୁକ୍ତମାନେ ବୈଦିକ ଦେବତାମାନଙ୍କର ପରିଚୟ ଦେଇଅଛନ୍ତି ବା ବିଶ୍ଳେଷଣ ଦ୍ୱାରା ଦେବତାମାନଙ୍କ ତତ୍ତ୍ୱ ବୁଝାଇ ଦେଇଅଛନ୍ତି ।

ପୁରାଣବିଶ୍ୱାସୀମାନେ ତେତିଶ କୋଟି ଦେବତାଙ୍କ ନାମ ବେଦରେ ଅଛି ବୋଲି ବିଶ୍ୱାସ କରନ୍ତି । ମାତ୍ର ବେଦପାଠରୁ ଜଣାପଡ଼େ ଯେ, ବେଦରେ କେବଳ ତେତିଶ ଦେବତାଙ୍କର ଉଲ୍ଲେଖ ଅଛି, ଯଥା—

ଯେ ତ୍ରିଂଶତି ତ୍ରୟସ୍ପରୋ ଦେବା ସୋ ବର୍ହିରା ସଦନ୍ ।
ବିଦନ୍ନହ ଦ୍ୱିତାସନନ୍ । ଋ. ୮ । ୨୮ । ୧

ଯେଉଁ ତେତିଶସଂଖ୍ୟକ ଦେବଗଣ ଆମ୍ଭମାନଙ୍କର ଯଜ୍ଞସମ୍ବନ୍ଧୀୟ ହବିଃ ଗ୍ରହଣ କରିଥିଲେ, ସେହି ଦେବତାମାନେ ଆମ୍ଭମାନଙ୍କୁ ହବିଃଦାତା ବୋଲି ଜାଣନ୍ତୁ ଏବଂ ଆମ୍ଭମାନଙ୍କୁ ପୁନଃ ପୁନଃ ଧନଦାନ କରନ୍ତୁ ।

ଏତାଦୃଶ ଆଉ ଅନେକ ସୂକ୍ତ ଦେଖାଯାଏ, ଯହିଁରେ କି ୩୩ ଦେବତାଙ୍କର ଉଲ୍ଲେଖ ଅଛି ।

ତେବେ ଦଶମ ମଣ୍ଡଳରେ ଗୋଟିଏ ମନ୍ତ୍ର ଅଛି, ଯହିଁରେ ୩୩୩୯ ଦେବତାଙ୍କର ଉଲ୍ଲେଖ ଅଛି, ଯଥା—

ତ୍ରୀଣି ଶତା ତ୍ରିସହସ୍ରାଣ୍ୟଗ୍ନିଂ ତ୍ରିଂଶଚ୍ଚ ଦେବା ନବ ଚାସପର୍ଯ୍ୟନ ।
ଔକ୍ଷନ୍ ଘୃତୈରସ୍ତୃଣନ୍ ବର୍ହିରସ୍ମା ଆଦିଦ୍ଧୋତାରଂ ନ୍ୟସାଦୟନ୍ତି ।
ଋ: ୧୦ । ୫୨ । ୬

ତିନି ଶତ ତିନି ସହସ୍ର ତିରିଶ ଏବଂ ନଅ ଦେବତାମାନେ ଅଗ୍ନିଙ୍କର ପରିଚର୍ଯ୍ୟା କରିଥିଲେ । ତାହାଙ୍କୁ ଘୃତଦ୍ୱାରା ଅଭିଷିକ୍ତ କରୁଥିଲେ । ତାହାଙ୍କ ପାଇଁ କୁଶାସ୍ତରଣ ବିଛାଇଥିଲେ ଏବଂ ସେହି ଆହ୍ୱେତାଙ୍କୁ ଉପବେଶନ କରାଇଥିଲେ ।

ମାତ୍ର ଏଠାରେ 'ଦେବା' ଅର୍ଥ ଯେ ଇନ୍ଦ୍ରାଦି ଦେବତା, ଏପରି ଅର୍ଥ ପ୍ରକାଶ ପାଉ ନାହିଁ । ଏଠାରେ ସମ୍ଭବତଃ ଦେବତା ଅର୍ଥ ଯଜ୍ଞକର୍ତ୍ତା ବୋଲି ଅନୁମାନ କରାଯାଇପାରେ । ଟୀକାକାରମାନେ ଏହି ସଂଖ୍ୟା ସମ୍ବନ୍ଧରେ ସ୍ୱମତ ବ୍ୟକ୍ତ କରି ନାହାନ୍ତି ବା କିପରି ଏହି ସଂଖ୍ୟା ମିଳିଲା, ତହିଁର ଗବେଷଣା କରି ନାହାନ୍ତି । ସୁତରାଂ ଏ ଦେବତା ସଂଖ୍ୟା ଇନ୍ଦ୍ରାଦି ଦେବ ସଂଖ୍ୟା ନୁହେଁ । ସେ ଯାହା ହେଉ, ନିରୁକ୍ତ ଓ ସେ କାଳର ଲୋକବିଶ୍ୱାସ ଅନୁସାରେ ଦେବତା ସଂଖ୍ୟା ତିନି ।

''ତ୍ରିସ୍ର ଏବ ଦେବତା ଇତି ନୈରୁକ୍ତାଃ''
ନିରୁକ୍ତ ୭ । ୫ ।୧

''ଅଗ୍ନିଃ ପୃଥିବୀସ୍ଥାନୋ ବାୟୁର୍ବେନ୍ଦ୍ରୋ
ବାନ୍ତରୀକ୍ଷସ୍ଥାନଃ ସୂର୍ଯ୍ୟୋଦ୍ୟୁସ୍ଥାନଃ'' ନି ୭। ୫।୨

ନୈରୁକ୍ତ ମତରେ ତିନି ଦେବତା, ଅଗ୍ନି ପୃଥିବୀ ସ୍ଥାନ ଦେବତା, ବାୟୁ ବା ଇନ୍ଦ୍ର ଅନ୍ତରୀକ୍ଷ ବା ମଧ୍ୟସ୍ଥାନ ଦେବତା, ସୂର୍ଯ୍ୟ ଦ୍ୟୁସ୍ଥାନ ଦେବତା ।

ତାସାଂ ମହାଭାଗ୍ୟାଦେକୈକସ୍ୟା ଅପି ବହୂନି ନାମଧେୟାନି ଭବନ୍ତି । ନି : ୭ । ୫ । ୩

ଏହି ତିନି ଦେବତାଙ୍କର ମହାଭାଗ୍ୟରୁ ବା ଐଶ୍ୱର୍ଯ୍ୟ ଯୋଗରୁ ଅନେକ ନାମ ହୋଇଅଛି ।

ଅପି ବା କର୍ମପୃଥକ୍ତ୍ୱାଦ୍ୟଥା ହୋତାଧ୍ୱର୍ଯ୍ୟୁର୍ବ୍ର-ହ୍ମୋଦ୍‌ଗାତେତ୍ୱ ପ୍ୟେକସ୍ୟ ସତଃ । ନି ୭ । ୫ । ୪

ଅଥବା କର୍ମ ପୃଥକତ୍ୱ ହେତୁରୁ ହୋତା, ଅଧ୍ୱର୍ଯ୍ୟା, ବ୍ରହ୍ମା, ଉଦ୍‌ଗାତା ପ୍ରଭୃତି ନାମ ହେଲାପରି ଏମାନଙ୍କର ନାମକରଣ ହୋଇଅଛି । ଏ ପ୍ରକାର ଦେବତାମାନଙ୍କର ପୃଥକ୍ ନାମକରଣ ହୋଇଥିବା ନୈରୁକ୍ତଗଣ ଅନୁମାନ କରନ୍ତି ।

ଅଧୁନା ଆମ୍ଭେମାନେ ଦେବତା ଅର୍ଥରେ ଯାହା ବୁଝୁଁ, ବୈଦିକ ଋଷିଗଣ, ଏମନ୍ତ କି, ନୈରୁକ୍ତଗଣ ସେହି ଅର୍ଥରେ ବୁଝୁ ନ ଥିଲେ । ନିରୁକ୍ତ ମତରେ ଦେବତା ଅର୍ଥ ଯାହା, ତାହା ପୂର୍ବେ ଲେଖାଯାଇଅଛି । ବର୍ତ୍ତମାନ କାତ୍ୟାୟନଙ୍କର ଗୋଟିଏ ବାକ୍ୟ ଉଦ୍ଧୃତ କରାଯାଉ:—

ଯସ୍ୟ ବାକ୍ୟଂ ସ ଋଷିଃ
ଯା ତେନୋଚ୍ୟତେ ସା ଦେବତା ।
ତେନ ବାକ୍ୟେନ ପ୍ରତିପାଦ୍ୟଂ
ଯଦ୍‌ବସ୍ତୁ ସା ଦେବତା ॥

ଯାହାର ବାକ୍ୟ (ଯେ କଥକ ବା ମନ୍ତ୍ରରଚକ) ସେ ଋଷି । ଯାହାର ବିଷୟ ସେହି ବାକ୍ୟରେ ତାହାଙ୍କଦ୍ୱାରା ବୋଲାଯାଇଥାଏ, ସେ ଦେବତା । ସେହି ବାକ୍ୟର ପ୍ରତିପାଦ୍ୟ ଯେଉଁ ବସ୍ତୁ, ତାହା ହିଁ ଦେବତା । ବୃହଦେବତାରେ ଲିଖିତ ଅଛି—

ଅର୍ଥମିଚ୍ଛନ୍‌ୠଷି ର୍ଦେବଂ ଯଂ ଯମାହାୟମିସ୍ତ୍ୱିତି ।
ପ୍ରାଧାନ୍ୟେନ ସ୍ତବୁଞ୍ଚକ୍ତ୍ୟା ମନ୍ତ୍ରାସ୍ତଦେବ ଏବ ସଃ ।
। ବୃ ୧ । ୬

ଉପରୋକ୍ତ କେତେକ ପ୍ରମାଣରୁ ଆମ୍ଭେମାନେ ସ୍ପଷ୍ଟରୂପେ ଉପଲବ୍ଧ କରିପାରୁଅଛୁଁ ଯେ, ବୈଦିକ ଋଷିମାନେ ଯେଉଁ ପଦାର୍ଥର ସ୍ତୁତି କରିଅଛନ୍ତି, ଯେଉଁ ସଜୀବ ବା ନିର୍ଜୀବ ପଦାର୍ଥ ସମ୍ବନ୍ଧରେ ସ୍ତୁତି ବା ବାକ୍ୟ ପ୍ରକାଶ କରିଅଛନ୍ତି, ସେହି ଦେବତା । ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ର, ବାୟୁ, ଅଗ୍ନି ବା ଏମାନଙ୍କର ଦୃଶ୍ୟ ଓ ଅଦୃଶ୍ୟ କାଳ୍ପନିକ ରୂପ ବା ଆକୃତି ପ୍ରଭୃତି ଯେପରି ଦେବତା, ସେହିପରି ଅଶ୍ୱ, ରଥ, ମଣ୍ଡୂକ, ଶ୍ୟେନ, ନଦୀ, ବାକ୍, ଉଲୁଖେଳ, ମୂଷଳ ପ୍ରଭୃତି ସଜୀବ ଓ ନିର୍ଜୀବ ପଦାର୍ଥମାନେ ମଧ ଦେବବାଚ୍ୟ ଅଟନ୍ତି ।

ଦେବତା ଶବ୍ଦର ଅତି ପ୍ରାଚୀନ ଅର୍ଥ ବେଦରେ ଯେପ୍ରକାର ଭାବରେ ପ୍ରଯୋଜ୍ୟ ହୋଇଅଛି, ତହିଁରୁ ପରବର୍ତ୍ତୀ ଲୋକମାନେ ଧାତ୍ୱର୍ଥ ନିଷ୍ପନ୍ନ କରିବାରେ ଯତ୍ନଶୀଳ ହୋଇଅଛନ୍ତି । ଏହାର ପ୍ରକୃତ ଧାତ୍ୱର୍ଥ ଅନୁମାନ ମାତ୍ର । ଦେବତାର ଅର୍ଥ ଏହାହିଁ ନୈରୁକ୍ତମାନେ ଅନୁମାନ କରିଅଛନ୍ତି ଯେ, ଯାହାର ଦୀପ୍ତି ଅଛି, ସେ ଦେବ ବା ଦେବତା କିମ୍ବା ଯାହାଠାରୁ ଦାନ ଆଶା କରାଯାଏ ସେ ଦେବତା । ଦ୍ୟୁସ୍ଥାନବାସୀ ଯେ ସେ ମଧ ଦେବତା ।

''ଦାନ୍ୟଦ୍ ବା ଦୀପମଦ୍ ବା ଦ୍ୟୁସ୍ଥାନୋ ଭବତୀତି ବା ଯୋ ଦେବଃ ସା ଦେବତା ।''

ଆମ୍ଭମାନଙ୍କର ବାସସ୍ଥାନ ପୃଥିବୀ ଭୂସ୍ଥାନ ଅଟେ । ଊର୍ଦ୍ଧ୍ୱକୁ ଅନାଇଲେ ଊର୍ଦ୍ଧ୍ୱର ଦୂରତା କଳନା କରାଯାଇ ପାରେ ନାହିଁ । ଅତି ନିର୍ମଳ ଯେଉଁ ନୀଳ ଆକାଶର ଗଭୀରତା ବୁଦ୍ଧିର ଅଗମ୍ୟ, ତାହାହିଁ ଦିବ୍ ବା ଦ୍ୟୁସ୍ଥାନ ।

ଉଭୟ ମଧରେ ମେଘର ସ୍ଥାନ । ମେଘ ଦ୍ୟୁସ୍ଥାନର ଦେବତା ପ୍ରଭୃତିଙ୍କି ପୃଥିବୀବାସୀଙ୍କ ଚକ୍ଷୁର ଅନ୍ତରାଳରେ ରଖେ, ସୁତରାଂ ମେଘ ପୃଥିବୀ ଓ ଦ୍ୟୁସ୍ଥାନର ମଧବର୍ତ୍ତୀ । ଏଣୁ ପୃଥିବୀ ସ୍ଥାନ ଓ ଦ୍ୟୁସ୍ଥାନର ମଧବର୍ତ୍ତୀ ସ୍ଥାନର ନାମ— ମଧସ୍ଥାନ ବା ଅନ୍ତରୀକ୍ଷ ସ୍ଥାନ ।

ଏହି ତିନି ସ୍ଥାନର ତିନି ଦେବତା— ଅଗ୍ନି, ବାୟୁ ବା ଇନ୍ଦ୍ର ଏବଂ ସୂର୍ଯ୍ୟ କିମ୍ବା ଅଗ୍ନିର ତିନି ଭିନ୍ନ ରୂପ— ଅଗ୍ନି, ବିଦ୍ୟୁତାଗ୍ନି ଓ ସୂର୍ଯ୍ୟାଗ୍ନି । ସୂର୍ଯ୍ୟ, ଅଗ୍ନି ଓ ବିଦ୍ୟୁତାଗ୍ନି ମଧରେ ବୈଦିକ ଋଷିମାନଙ୍କର ଭେଦଜ୍ଞାନ ନ ଥିଲା । ସୁତରାଂ ସ୍ଥଳବିଶେଷରେ ତିନି ସ୍ଥାନର ତିନି ଅଗ୍ନି ସୂର୍ଯ୍ୟଙ୍କର ରୂପାନ୍ତର ମାତ୍ର ବୋଲି ଧାରଣା କରୁଥିଲେ ।

ସୂର୍ଯ୍ୟଠାରୁ ବଳି ତେଜୋମୟ ପଦାର୍ଥ କେହି ନୁହନ୍ତି । ସୁତରାଂ ଦୀପ୍ତ୍ୟର୍ଥରେ ସୂର୍ଯ୍ୟ ହିଁ ଦେବତା ନାମବାଚ୍ୟ । ପୃଥିବୀଠାରୁ କଳ୍ପନାତୀତ ଅତି ଊର୍ଦ୍ଧ୍ୱରେ ବା ଦିବରେ ରହନ୍ତି ଏଥିନିମନ୍ତେ ମଧ ସୂର୍ଯ୍ୟ ଦେବତାପଦବାଚ୍ୟ । ସୂର୍ଯ୍ୟଠାରୁ ବଳି ଅନ୍ୟ କୌଣସିଠାରେ ଦାନ ଆଶା କରାଯାଇପାରେ ନାହିଁ, ସୁତରାଂ ସୂର୍ଯ୍ୟ ହିଁ ଦାତା ବା ଦେବତା । ଆଦିମାନବ ହୃଦୟରେ ସୂର୍ଯ୍ୟଙ୍କ ପରି ଏ ସୃଷ୍ଟିର ଅନ୍ୟ କୌଣସି ପଦାର୍ଥ ଆଶାସୂଚକ ଭୟ ବା ଭକ୍ତି ଉଦ୍ରେକ କରିଥିବାର ସମ୍ଭବ ନୁହେଁ । ସୁତରାଂ ସୂର୍ଯ୍ୟଙ୍କୁ ହିଁ ଆଦିମାନବ ଦେବ ବା ଦେବତା ଆଖ୍ୟା ଦେଇଥିଲା । ଅନ୍ତରୀକ୍ଷରେ ବିଦ୍ୟୁଚ୍ଛଟାରେ ସେହି ସୂର୍ଯ୍ୟ ସଦୃଶ ତେଜ ଓ ଦୀପ୍ତି ଦେଖିପାରି ବିଦ୍ୟୁତ୍ ହିଁ ଅନ୍ତରୀକ୍ଷର ସୂର୍ଯ୍ୟ ବା ସୂର୍ଯ୍ୟର ରୂପାନ୍ତର ବୋଲି ଭାବିଲା ।

ପୃଥିବୀପୃଷ୍ଠରେ ଅଗ୍ନି ପ୍ରଜ୍ୱଳିତ ହେଲାରୁ ଅଗ୍ନିରେ ମଧ ସେହି ତେଜ ଓ ଦ୍ୟୁତି ଦେଖିପାରି ଦ୍ୟୁସ୍ଥାନର ସୂର୍ଯ୍ୟ ଓ ଭୂସ୍ଥାନର ଅଗ୍ନି ଏକ ବୋଲି ବିସ୍ମୟାବିଷ୍ଟ ଚିତ୍ତରେ ଅଗ୍ନିର ଆରାଧନା କଲା । ଏହା ଯେ ତଥ୍ୟ ଏଥିରେ ସନ୍ଦେହ ନାହିଁ । ମାତ୍ର ଆଦିମାନବର ସରଳ, ପ୍ରାକୃତିକ ଓ ପ୍ରକୃତ ବିଶ୍ୱାସ କାଳକ୍ରମେ ଯେପରି ବିକୃତି ଲାଭ କରିଅଛି ଏବଂ କଳ୍ପନାଜାଲରେ ପରବର୍ତ୍ତୀ ଲୋକମାନଙ୍କର ମନ ଯେପରି ଆବିଳ ଓ ମୋହାଚ୍ଛନ୍ନ ହୋଇଅଛି, ତାହା ପରିଷ୍କାର କରିବାର ସାଧ କାହାର ?

ଜଟା ବା ରଶ୍ମିଜଟା ଯାହାର ଅଛି, ତା'ର ବୈଦିକ ନାମ କେଶୀ । ତିନି ଜଣ କେଶୀ ଅଛନ୍ତି, ଯଥା—

ଅର୍ଚ୍ଚିଭି କେଶ୍ୟୟଂ ତ୍ୱଗ୍ନିର୍ବିଦ୍ୟୁଭିସ୍ତେଷ ମଧମଃ ।
ଅସୌ ତୁ ରଶ୍ମିଭିଃ କେଶୀ ତେନୈନାମାହ କେଶିନଃ ।
ବୃ : ଦେ : ୧ । ୯୩

ଅଗ୍ନିଙ୍କର ଦିଓଟି ପ୍ରଧାନ ନାମ ଜାତବେଦ ଓ ବୈଶ୍ୱାନର । ଏହି ଅଗ୍ନି ଯେ ଭୁବନର ରାଜା, ତାହା ନିମ୍ନୋକ୍ତ ଋକ୍ ପାଠରୁ ପ୍ରକାଶ ପାଇବ ।

''ବୈଶ୍ୱାନରସ୍ୟ ସୁମତୌ ସ୍ୟାମ ରାଜା
ହି କଂ ଭୁବନାନାମଭିଶ୍ରୀଃ ।
ଇତୋ ଜ ତୋ ବିଶ୍ୱମିଦଂ ବିଚଷ୍ଟେ
ବୈଶ୍ୱାନରୋ ଯତତେ ସୂର୍ଯ୍ୟେଣ ॥''
ଋ.୧। ୯୮।୧

ଏହି ପୃଥିବୀଠାରୁ ଜାତ ହୋଇ ବୈଶ୍ୱାନର ସମସ୍ତ ପ୍ରକାଶ କରୁଅଛନ୍ତି । ନିଜ ଦୀପ୍ତି ଦ୍ୱାରା ସୂର୍ଯ୍ୟ ସହିତ ମିଶ୍ରିତ ହୁଅନ୍ତି । ବୈଶ୍ୱାନର ସମସ୍ତ ଭୂତର ଆଶ୍ରୟଣୀୟ ରାଜା । ବୈଶ୍ୱାନରଙ୍କର ଉପକାର ପ୍ରାପ୍ତ୍ୟାଶାରେ ଆମ୍ଭେମାନେ ଥାଉଁ ।

ପୃଷ୍ଟୋ ଦିବି ପୃଷ୍ଟୋ ଅଗ୍ନିଃ ପୃଥିବ୍ୟାଂ
ପୃଷ୍ଟୋ ବିଶ୍ୱା ଓଷଧି ରାଦିବେଶ ।
ବୈଶ୍ୱାନରଃ ସହସା ପୃଷ୍ଟୋ ଅଗ୍ନିଃ
ସନୋ ଦିବା ସ ରିଷଃ ପାତୁ ନକ୍ତଂ ॥
ଋ.୧ । ୯୮ ।୨

ଅଗ୍ନି ଆକାଶରେ ବର୍ତ୍ତମାନ ଅଛନ୍ତି । ପୃଥିବୀରେ ବର୍ତ୍ତମାନ ଅଛନ୍ତି । ସମସ୍ତ ଶସ୍ୟରେ ବିଦ୍ୟମାନ ଅଛନ୍ତି ଏବଂ ଶସ୍ୟରେ ପ୍ରବେଶ କରିଅଛନ୍ତି । ସେହି ବଳଯୁକ୍ତ ବୈଶ୍ୱାନର ଆମ୍ଭମାନଙ୍କ ଦିବା ଓ ରାତ୍ରି ଶତ୍ରୁଠାରୁ ରକ୍ଷା କରନ୍ତୁ ।

ଉପରୋକ୍ତ ଦୁଇ ମନ୍ତ୍ରରୁ ଅଗ୍ନି, ସୂର୍ଯ୍ୟ ଓ ବିଦ୍ୟୁତାଗ୍ନି ଏକ ଥିବାର ପ୍ରତିପନ୍ନ ହେଉଅଛି ।

ଉଦୁ ତ୍ୟଂ ଜାତବେଦସଂ ଦେବଂ ବହନ୍ତି
କେତବଃ ଦୃଶେ ବିଶ୍ୱାୟ ସୂର୍ଯ୍ୟଂ ।
ଋ. ୧ । ୧୫୦ ।୧

କିରଣସମୂହ ଜାତବେଦ ଦେବଙ୍କୁ ଉର୍ଦ୍ଧ୍ୱକୁ ବହନ କରୁଅଛନ୍ତି ସୂର୍ଯ୍ୟଙ୍କୁ ସମସ୍ତ ଭୂତର ଦର୍ଶନ ନିମନ୍ତେ ।

ସୂର୍ଯ୍ୟ ଓ ଅଗ୍ନି ଜାତବେଦା, ଯେହେତୁ ଏ ଦୁହେଁ ଜାତ ହବା ମାତ୍ରକେ ସମସ୍ତେ ଏ ଦୁହିଁଙ୍କି ପରିଚୟ କରିପାରନ୍ତି । ଏ ଦୁହିଁଙ୍କି ପରିଚୟ କରାଇଦେବାର ପ୍ରୟୋଜନ ହୁଏ ନାହିଁ । ଅଗ୍ନି ଓ ସୂର୍ଯ୍ୟ ସ୍ୱପ୍ରକାଶ ।

ଚିତ୍ରଂ ଦେବାନାମୁଦଗାଦନୀକଂ
ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ ।
ଆପ୍ରା ଦ୍ୟାବ୍ୟ ପୃଥିବୀ ଅନ୍ତରୀକ୍ଷଂ
ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ॥
ଋ.୧ । ୧୧୫ ।୧

ବିଚିତ୍ର ରଶ୍ମି ସମୂହ ଉର୍ଦ୍ଧ୍ୱରେ ପ୍ରକାଶ ପାଇଅଛନ୍ତି । ସୂର୍ଯ୍ୟ, ମିତ୍ର, ବରୁଣ ଓ ଅଗ୍ନିର ଚକ୍ଷୁସ୍ୱରୂପ । ଦ୍ୟାବା ପୃଥିବୀ ଅନ୍ତରୀକ୍ଷକୁ ସ୍ୱକୀୟ ତେଜଦ୍ୱାରା ପରିପୂର୍ଣ୍ଣ କରିଅଛନ୍ତି । ସୂର୍ଯ୍ୟ ଜଙ୍ଗମ ଓ ସ୍ଥାବରର ଆତ୍ମାସ୍ୱରୂପ ।

ଉପରୋକ୍ତ ମନ୍ତ୍ର ସଦୃଶ ଅନେକ ମନ୍ତ୍ର ଋଗ୍‌ବେଦରେ ବିଦ୍ୟମାନ ଅଛି । ଅଧିକ ଉଦ୍ଧୃତ କରି ପ୍ରବନ୍ଧର କଳେବର ବଢ଼ାଇବାର ପ୍ରୟୋଜନ ନାହିଁ । ପାଠକଗଣ ସୂକ୍ଷ୍ମ ବିଚାର କଲେ ହୃଦୟଙ୍ଗମ କରିପାରିବେ ଯେ, ପ୍ରଥମରୁ ସୂର୍ଯ୍ୟହିଁ ଏକମାତ୍ର ଦେବପଦବାଚ୍ୟ ହୋଇଥିଲେ, ପରେ ଅଗ୍ନି ଓ ବିଦ୍ୟୁତାଗ୍ନି ସେହି ଦେବ ଆଖ୍ୟା ପ୍ରାପ୍ତ ହେଲେ । ସୂର୍ଯ୍ୟ, ଅଗ୍ନି ଓ ବିଦ୍ୟୁତାଗ୍ନି ଦ୍ୟୁସ୍ଥାନ, ଭୂସ୍ଥାନ ଓ ଅନ୍ତରୀକ୍ଷ ସ୍ଥାନର ଦେବତା ହେଲେ ମଧ ଏହି ତିନି ଦେବତାଙ୍କର ଏକତ୍ୱ ପ୍ରତିପାଦିତ ହୋଇଥିବାର ସ୍ପଷ୍ଟ ଜଣାଯାଉଅଛି । ପରେ ଏଥିର ବିଶେଷ ବିବରଣ ବର୍ଣ୍ଣିତ ହେବ ।

ଗାୟତ୍ରୀ ମନ୍ତ୍ର ଯାହା ପରବର୍ତ୍ତୀ ବ୍ରହ୍ମବାଦୀମାନଙ୍କଦ୍ୱାରା ଏବଂ ପୌରାଣିକମାନଙ୍କଦ୍ୱାରା ପରମେଶ୍ୱରଙ୍କର ସ୍ତୁତି ବୋଲି ପ୍ରଚାରିତ ହୋଇଅଛି ଏବଂ ଦ୍ୱିଜମାନଙ୍କର ନିତ୍ୟ ଉପାସ୍ୟ ବୈଦିକ ମହାମନ୍ତ୍ର ବୋଲି ହିନ୍ଦୁଶାସ୍ତ୍ରମାନଙ୍କରେ ଲିଖିତ ହୋଇଅଛି, ତାହା କେବଳ ସବିତା ବା ସୂର୍ଯ୍ୟଙ୍କର ଗୋଟିଏ ସ୍ତୁତି ମାତ୍ର । ସବିତାଙ୍କର ଏତାଦୃଶ ଅନେକ ସ୍ତୋତ୍ର ବିଦ୍ୟମାନ ସତ୍ତ୍ୱେ ଏହି ଋଗ୍ ବେଦର ତୃତୀୟ ମଣ୍ଡଳର ବାଷଠି ସୂକ୍ତର ଦଶମ ମନ୍ତ୍ରଟି କାହିଁକି ଯେ ଏପରି ପରମ ଉପାସ୍ୟ ହୋଇଅଛି, ତାହା ବୁଝାଯାଉ ନାହିଁ । ଋଗ୍ ବେଦ ତ୍ରିଷ୍ଟୁପ୍, ଅନୁଷ୍ଟୁପ୍, ବୃହତୀ, ଜଗତୀ ପ୍ରଭୃତି ଅନେକଗୁଡ଼ିଏ ଛନ୍ଦରେ ଲିଖିତ । ଗାୟତ୍ରୀ ସେମାନଙ୍କ ପରି ଗୋଟିଏ ଛନ୍ଦ । ଋଗ୍‌ବେଦର ପ୍ରଥମ ମଣ୍ଡଳ ପ୍ରଥମ ସୂକ୍ତ ଏହି ଗାୟତ୍ରୀ ଛନ୍ଦରେ ରଚିତ । ଯାସ୍କ ଓ ତାଙ୍କ ପୂର୍ବର ନୈରୁକ୍ତଗଣଙ୍କ ଦ୍ୱାରା ଗାୟତ୍ରୀ ମନ୍ତ୍ର ସମସ୍ତ ଋଗ୍‌ବେଦ ମନ୍ତ୍ର ଅପେକ୍ଷା ପବିତ୍ର ଓ ଶ୍ରେଷ୍ଠ ବୋଲି ବିବେଚିତ ହୋଇଥିବାର ଆଦୌ ନିଦର୍ଶନ ମିଳେ ନାହିଁ ।

ଗାୟତ୍ରୀ ମନ୍ତ୍ର ସୂର୍ଯ୍ୟଙ୍କର ସ୍ତୁତି । ଏହି ମନ୍ତ୍ରର ରଚକ ବା ପ୍ରବର୍ତ୍ତକ ବିଶ୍ୱାମିତ୍ର ଋଷି । ମଣ୍ଡଳ ଓ ସୂକ୍ତ, ମନ୍ତ୍ର କିମ୍ବା ଅଧ୍ୟାୟ, ଅନୁବାକ, ବର୍ଗ ଓ ମନ୍ତ୍ର ବିଭାଗକର୍ତ୍ତା ପ୍ରତ୍ୟେକ ମନ୍ତ୍ର କେଉଁ ଛନ୍ଦରେ ଲିଖିତ, ମନ୍ତ୍ରର ଋଷି କିଏ ଏବଂ ମନ୍ତ୍ରର ଦେବତା କିଏ, ତାହା ସ୍ପଷ୍ଟରୂପେ ନିର୍ଦ୍ଦେଶ କରି ଯାଇଅଛନ୍ତି । ବେଦପାଠୀ ପ୍ରତି ପ୍ରଥମରୁ ମନ୍ତ୍ରର ଋଷି, ଛନ୍ଦ ଓ ଦେବତା ନାମ ଜ୍ଞାତ ହେବା ଅବଶ୍ୟ କର୍ତ୍ତବ୍ୟ । ତାହା ନ ହେଲେ ମନ୍ତ୍ରପାଠର ଫଳ ପଣ୍ଡ । ଏଣୁ ସନ୍ଧ୍ୟା ଉପାସନା କଲାବେଳେ ଦ୍ୱିଜମାନେ ''ଗାୟତ୍ର୍ୟାଃ, ବିଶ୍ୱାମିତ୍ର ଋଷିଃ ଗାୟତ୍ରୀ ଛନ୍ଦଃ, ସୂର୍ଯ୍ୟୋଦେବତା, ଗାୟତ୍ରୀଜପେ ବିନିଯୋଗଃ'' ବୋଲି ଉଚ୍ଚାରଣ କରନ୍ତି । ସୁତରାଂ ପୌରାଣିକମାନେ ମଧ୍ୟ ଯେ ଗାୟତ୍ରୀ ମନ୍ତ୍ରର ଉପାସ୍ୟ ଦେବତା ସୂର୍ଯ୍ୟ ତାହା ମୁକ୍ତକଣ୍ଠରେ ସ୍ୱୀକାର କରି ଯାଇଅଛନ୍ତି । ତଥାପି ଏହା ପରମେଶ୍ୱରଙ୍କର ସ୍ତୁତି ବୋଲି ପ୍ରକାଶ କରିବାକୁ ଛାଡ଼ୁ ନାହାନ୍ତି ।

ଋଗ୍‌ବେଦର ୩ୟ ମଣ୍ଡଳର ୬୨ ସୂକ୍ତରେ ୧୮ ଗୋଟି ମନ୍ତ୍ର ଅଛି । ତନ୍ମଧ୍ୟରୁ ପ୍ରଥମ ୧୫ ମନ୍ତ୍ରର ଋଷି ବିଶ୍ୱାମିତ୍ର । ପ୍ରଥମ ତିନିଗୋଟି ମନ୍ତ୍ରର ଛନ୍ଦ ତ୍ରିଷ୍ଟୁପ୍, ଅବଶିଷ୍ଟ ମନ୍ତ୍ରଗୁଡ଼ିକ ଗାୟତ୍ରୀ । ୧ମ, ୨ୟ, ୩ୟ ମନ୍ତ୍ରର ଦେବତା ଇନ୍ଦ୍ର ବରୁଣ । ୪ର୍ଥ, ୫ମ ଓ ୬ଷ୍ଠ ମନ୍ତ୍ରର ଦେବତା ବୃହସ୍ପତି । ୭ମ, ୮ମ ଓ ୯ମ ମନ୍ତ୍ରର ଦେବତା ପୂଷା । ୧୦ମ, ୧୧ଶ, ୧୨ଶ ମନ୍ତ୍ରର ଦେବତା ସବିତା । ସବିତାଙ୍କର ଏହି ତିନିଗୋଟି ସ୍ତୁତି ନିମ୍ନରେ ଉଦ୍ଧୃତ କରାଗଲା—

ତତ୍ ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି<br>ଧିୟୋ ଯୋ ନଃ ପ୍ରଚୋଦୟାତ୍ । ୧୦

ଯେଉଁ ସବିତା ଆମ୍ଭମାନଙ୍କର ବୁଦ୍ଧିକୁ ପ୍ରେରଣ କରନ୍ତି, ସେହି ସବିତାଙ୍କର ବରଣୀୟ ତେଜକୁ ଧ୍ୟାନ କରୁଁ ।

ଦେବସ୍ୟ ସବିତୁର୍ବୟଂ ବାଜୟନ୍ତଃ ପୁରଂଧ୍ୟା ।<br>ଭର୍ଗସ୍ୟ ରାତିମୀମହେ । ୧୧

ଅନ୍ନାଭିଳାଷୀ ଆମ୍ଭେମାନେ ଦ୍ୟୋତମାନ ସବିତା ଦେବଙ୍କର ସ୍ତୁତିଦ୍ୱାରା ଭଜନୀୟ ଧନର ଯାଚ୍ଞା କରୁଁ ।

ଦେବଂ ନରଃ ସବିତାରଂ ବିପ୍ରା ଯଜ୍ଞୈଃ ସୁବୃକ୍ତିଭିଃ ।<br>ନମସ୍ୟନ୍ତି ଧିୟେଷିତା । ୧୨ ।

ନରମାନେ ଏବଂ ମେଧାବିମାନେ କର୍ମବୁଦ୍ଧିଦ୍ୱାରା ପ୍ରେରିତ ହୋଇ ଦ୍ୟୋତମାନେ ସବିତାଙ୍କୁ ଯଜନୀୟ ହବି ଦ୍ୱାରା ଏବଂ ଶୋଭନ ସ୍ତୋତ୍ର ଦ୍ୱାରା ପରିଚର୍ଯ୍ୟା କରୁଅଛନ୍ତି ।

ବିଶ୍ୱାମିତ୍ରକୃତ ଉପରୋକ୍ତ ତିନିଗୋଟି ମନ୍ତ୍ର ସବିତା ଦେବଙ୍କର ସ୍ତୁତି । ତିନିଗୋଟି ଗାୟତ୍ରୀ ଛନ୍ଦରେ ଲିଖିତ । ସେଥିମଧ୍ୟରୁ ୧୦ମ ମନ୍ତ୍ରଟି କେବଳ ଗାୟତ୍ରୀ ମନ୍ତ୍ର ଆଖ୍ୟାରେ ପ୍ରସିଦ୍ଧି ଲାଭ କରିଅଛି । ସାଧାରଣତଃ ଆମ୍ଭେମାନେ ଗାୟତ୍ରୀ ମନ୍ତ୍ର ବୋଲି ''ଓଁ ଭୂର୍ଭୁବଃ ସ୍ୱଃ ତତ୍ ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ।'' ମନ୍ତ୍ରକୁ ଜାଣୁ ଏବଂ ଏହାକୁ ଗାୟତ୍ରୀ ମନ୍ତ୍ର ବୋଲି ପାଠ କରୁଁ । ମାତ୍ର ଏହି ଲୋକପ୍ରସିଦ୍ଧ ମନ୍ତ୍ରଟି ଠିକ୍ ଋଗ୍‌ବେଦ ମନ୍ତ୍ର କି ? କିମ୍ବା ପ୍ରଣବ ଓ ବ୍ୟାହୃତି ସହିତ ଉପରୋକ୍ତ ମନ୍ତ୍ରଟି ବିଶ୍ୱାମିତ୍ରକୃତ ବା ବିଶ୍ୱାମିତ୍ର ପ୍ରବର୍ତ୍ତିତ ମନ୍ତ୍ର କି ? ନାହିଁ । ପ୍ରଣବ ବା ଓଁକାର ଏବଂ ବ୍ୟାହୃତି ଅର୍ଥାତ୍ ଭୂର୍ଭୁବଃ ସ୍ୱଃ ବିଶ୍ୱାମିତ୍ରକୃତ ସୂର୍ଯ୍ୟସ୍ତୁତିରେ ଯାଜ୍ଞବଲ୍‌କ୍ୟ ଦ୍ୱାରା ଯୋଗ ହୋଇଅଛି ଏବଂ ପ୍ରଣବ ଓ ବ୍ୟାହୃତି ମିଶ୍ରିତ ଗାୟତ୍ରୀ ମନ୍ତ୍ରର ନାମ ସାବିତ୍ରୀ ହୋଇଛି ।

ଓଁକାର ପୂର୍ବିକାସ୍ତିସ୍ରୋ ମହାବ୍ୟାହୃତୟୋଽବ୍ୟୟା ।<br>ତ୍ରିପଦା ଚୈବ ସାବିତ୍ରୀ ବିଜ୍ଞେୟ ବ୍ରହ୍ମଣୋମୁଖଂ ॥<br>ମନୁ. ୨ଅ. ୮୧

ଓଁକାର ଓ ବ୍ୟାହୃତି ମିଶ୍ରିତ ଗାୟତ୍ରୀର ନାମ ସାବିତ୍ରୀ ବୈଦିକ କାଳରେ ହୋଇ ନାହିଁ । ଏହି ନାମଟି ପରକାଳର ସୃଷ୍ଟି । ସାବିତ୍ରୀ ନାମରୁ ସ୍ପଷ୍ଟତଃ ଜଣାଯାଉଅଛି ଯେ, ଏହା ସୂର୍ଯ୍ୟଙ୍କର ସ୍ତୁତି । ଅଗ୍ନିପୁରାଣ ମଧ୍ୟ ତାହା ସ୍ପଷ୍ଟାକ୍ଷରରେ ଲେଖିଅଛନ୍ତି :—

''ସର୍ବଲୋକପ୍ରସବନାତ୍ ସବିତା ସ ତୁ କୀର୍ତ୍ତ୍ୟତେ ।<br>ସଦସ୍ତଦ୍ଦେବତା ଦେବୀ ସାବିତ୍ରୀତ୍ୟୁଚ୍ୟତେ ତତଃ ।''

ଉପରୋକ୍ତ ମନ୍ତ୍ରର ନାମ ସାବିତ୍ରୀ ହେଉ ବା ପ୍ରଣବ ବ୍ୟାହୃତି ମିଶ୍ରିତ ଗାୟତ୍ରୀ ହେଉ, ଏହା ଯେ ସୂର୍ଯ୍ୟସ୍ତୁତି ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଏହା ଈଶ୍ୱରସ୍ତୁତି ବୋଲିବା କ୍ଲିଷ୍ଟକଳ୍ପନା ଏବଂ ନିତାନ୍ତ ଯୁକ୍ତିବିରୋଧ ଅଟେ ।

ଏତିକିରେ ସୂର୍ଯ୍ୟ ସମ୍ବନ୍ଧୀୟ ଆଲୋଚନା ଶେଷ ପାଇବା କଥା ନୁହେଁ । ପରେ ଏଥିର ଆଲୋଚନା କରାଯିବ । ସୂର୍ଯ୍ୟ ଓ ଅଗ୍ନିର ଏକତ୍ୱ ସମ୍ପାଦନ ସମ୍ବନ୍ଧରେ ଏବଂ ଫଳତଃ ସୂର୍ଯ୍ୟ ବୈଦିକ ଋଷିଗଣଙ୍କର ପ୍ରଧାନ ଦେବତା ଏହା ଜଣାଇବା ଅଭିପ୍ରାୟରେ ଏଠାରେ ସାମାନ୍ୟ ଆଲୋଚନା କରାଗଲା ।

ଅଗ୍ନିଙ୍କର ତିନି ନାମ, ଯଥା— ଅଗ୍ନି, ଜାତବେଦ ଓ ବୈଶ୍ୱାନର । ଏହାଛଡ଼ା ଋଗ୍‌ବେଦରେ ତେର ଗୋଟି ପଦ ଅଛି, ଯାହା କି ଅଗ୍ନିଙ୍କର ଐଶ୍ୱର୍ଯ୍ୟପରିଚାୟକ ନାମାନ୍ତର ବୋଲି

ନୈରୁକ୍ତମାନେ ସ୍ୱୀକାର କରି ଯାଇଅଛନ୍ତି, ଯଥା— ୧. ଦ୍ରବିଣୋଦା, ୨. ଇଧ୍ମ, ୩ . ତନୂନପାତ୍, ୪. ନରାଶଂସ, ୫. ଇଳଃ, ୬. ବର୍ହି, ୭. ଦ୍ୱାର, ୮. ଉଷା ସାନକ୍ତା, ୯.ଦେବ୍ୟାହୋତାରା, ୧୦. ତିସ୍ରୋଦେବୀ, ୧୧. ତ୍ୱଷ୍ଟା, ୧୨. ବନସ୍ପତି, ୧୩. ସ୍ୱାହାକୃତୟ। ଏମାନଙ୍କୁ କେହି କେହି ଆଗ୍ନେୟ ଦେବତା କହନ୍ତି । ସମସ୍ତେ ଭୂସ୍ଥାନ ଦେବତା । ଏହାଛଡ଼ା ଏହି ପୃଥିବୀରେ ଯେଉଁ ଯେଉଁ ଦ୍ରବ୍ୟମାନେ ସ୍ତୁତିଲାଭ କରିଅଛନ୍ତି, ସେମାନେ ଯଥାକ୍ରମେ ୧ ଅଶ୍ୱ, ୨ ଶକୁନି, ୩ ମଣ୍ଡୁକ, ୪ ଅକ୍ଷା, ୫ ଗ୍ରାବଣ, ୬ ନରାଶଂସ, ୭ ରଥ, ୮ ଦୁନ୍ଦୁଭି, ୯ ଇଷୁଧି, ୧୦ ହସ୍ତଘ୍ନ, ୧୧ ଅଭୀଷକ, ୧୨ ଧନୁ, ୧୩ ଜ୍ୟା, ୧୪ ଇଷୁ, ୧୫ ଅଶ୍ୱାଜନୀ, ୧୬ ଉଲୂଖଳ, ୧୭ ବୃଷଭ, ୧୮ ଦୃଘଣ, ୧୯ ପିତୁ, ୨୦ ନଦୀ, ୨୧ ଆପ, ୨୨ ଔଷଧି, ୨୩ ରାତ୍ରି, ୨୪ ଅରଣ୍ୟାନି, ୨୫ ଶ୍ରଦ୍ଧା, ୨୬ ପୃଥିବୀ, ୨୭ ଅପ୍ୱା, ୨୮ ଅଗ୍ନାୟୀ, ୨୯ ଉଲୂଖଳ ମୂଷଳ, ୩୦ ହବିର୍ଧାନ, ୩୧ ଦ୍ୟାବା ପୃଥିବୀ, ୩୨ ବୀପାଚ୍ଛତ୍ରୁଦ୍ରୀ, ୩୩ ଆର୍ତ୍ନୀ, ୩୪ ସୁନାସୀର ଦୁହେଁ, ୩୫ ଦେବୀଜୋଷ୍ଟ୍ରୀ, ୩୬ ଦେବୀ ଉର୍ଜାହୁତି ।

ଅବିକଳ ପଦଗୁଡ଼ିକ ଉଲ୍ଲେଖ କରିବାର ଅଭିପ୍ରାୟ ଏହି ଯେ, ଏହି ୩୬ ଗୋଟି ଦ୍ରବ୍ୟ ସ୍ତୁତ ହୋଇଅଛନ୍ତି । ଏଥିମଧ୍ୟରୁ କେତେକ ସଜୀବ ପଦାର୍ଥ, କେତେକ ନିର୍ଜୀବ ପଦାର୍ଥ ଥିବାର ପାଠକଗଣ ହୃଦୟଙ୍ଗମ କରିପାରିବେ । ସମସ୍ତେ ଭୂସ୍ଥାନ ଦେବତା ବୋଲି ସ୍ତୁତ ହୋଇଅଛନ୍ତି ।

॥ ୬ ॥

ଏଥିଉତ୍ତାରୁ ମଧ୍ୟସ୍ଥାନ ଦେବତାମାନଙ୍କର ବିଚାର କରାଯାଉ । ପଦତଳେ ଭୂ । ଉର୍ଦ୍ଧ୍ୱରେ, ଅତି ଉର୍ଦ୍ଧ୍ୱରେ ଦ୍ୟୁ, ଯାହାକି ସୂର୍ଯ୍ୟାଦି ଜ୍ୟୋତିଷ୍କଗଣଙ୍କ ସ୍ଥାନ । ଏହି ଦୁଇ ସ୍ଥାନର ମଧ୍ୟବର୍ତ୍ତୀ ସ୍ଥାନର ନାମ ମଧ୍ୟସ୍ଥାନ ବା ଅନ୍ତରୀକ୍ଷ ସ୍ଥାନ ବୋଲି ବୈଦିକ ଋଷିମାନଙ୍କର ଧାରଣା । ମେଘ ଭୂ ଓ ଦ୍ୟୁର ମଧ୍ୟବର୍ତ୍ତୀ ଅର୍ଥାତ୍ ମେଘହିଁ ଏହି ଦୁଇସ୍ଥାନର ବ୍ୟବଧାନକର୍ତ୍ତା । ମେଘ ନ ଥିଲେ ଅନନ୍ତ ନୀଳଆକାଶ ଆଡ଼କୁ ଅନାଇ କେଉଁ ପର୍ଯ୍ୟନ୍ତ ଭୂର ସମ୍ପର୍କ ଅଛି ଏହା ଜଣାଯାଇ ପାରନ୍ତା ନାହିଁ । ମେଘ ପୃଥିବୀ ଓ ଦ୍ୟୁର ପ୍ରଭେଦକର୍ତ୍ତା; ଏଣୁ ମଧ୍ୟସ୍ଥାନବର୍ତ୍ତୀ ଏହି ଧାରଣାରେ ଋଷିମାନେ ମେଘର ସ୍ଥାନକୁ ମଧ୍ୟସ୍ଥାନ ବୋଲି ଆଖ୍ୟାତ କଲେ । ଋଷିମାନଙ୍କୁ ଏହା ମଧ୍ୟ ଜଣାଥିଲା ଯେ, ପୃଥିବୀ ଉତ୍ତାରୁ ଉର୍ଦ୍ଧ୍ୱକୁ ବାୟୁର ଗମନାଗମନ । ସୁତରାଂ ବାୟୁ ଯେତେଦୂର ପର୍ଯ୍ୟନ୍ତ ଉର୍ଦ୍ଧ୍ୱକୁ ବିସ୍ତୃତ, ତାହାହିଁ ମଧ୍ୟସ୍ଥାନ ବା ଅନ୍ତରୀକ୍ଷ ସ୍ଥାନ । ବାୟୁ ଅନ୍ତରୀକ୍ଷସ୍ଥାନ ବା ମଧ୍ୟସ୍ଥାନର ଅଧିପତି ।

ସତତଃ ଗମନଶୀଳ ହେତୁରୁ ବାୟୁ ନାମର ଉତ୍ପତ୍ତି । ମଧ୍ୟସ୍ଥାନର କାଳ୍ପନିକ ଦେବତାମାନଙ୍କ ମଧ୍ୟରୁ ବାୟୁ ପ୍ରଥମଗାମୀ ଅଟେ । ଗୁଣୋପଜନକ ଆନୁପୂର୍ବିକ ବାୟୁ, ବରୁଣ, ରୁଦ୍ର, ଇନ୍ଦ୍ର, ପର୍ଜନ୍ୟ ନାମର ସୃଷ୍ଟି ।

ମଧ୍ୟସ୍ଥାନରେ ବତିଶ ଜଣ ଦେବତା କଳ୍ପନା କରାଯାଇଅଛନ୍ତି । ଯଥା— ୧. ବାୟୁ, ୨. ବରୁଣ, ୩. ରୁଦ୍ର, ୪. ଇନ୍ଦ୍ର, ୫. ପର୍ଜନ୍ୟ, ୬. ବୃହସ୍ପତି, ୭. ବ୍ରାହ୍ମଣସ୍ପତି, ୮. କ୍ଷେତ୍ରସ୍ୟ ପତି, ୯. ବାସ୍ତୋଷ୍ପତି, ୧୦. ବାଚସ୍ପତି, ୧୧. ଅପାଁନପତି, ୧୨. ଯମ, ୧୩. ମିତ୍ର. ୧୪. କଃ, ୧୫. ସରସ୍ୱାନ୍, ୧୬. ବିଶ୍ୱକର୍ମା, ୧୭. ତାର୍କ୍ଷ୍ୟ, ୧୮. ମନ୍ୟୁ, ୧୯. ଦଧିକ୍ରା, ୨୦. ସବିତା, ୨୧. ତ୍ୱଷ୍ଟା, ୨୨. ବାତ, ୨୩. ଅଗ୍ନି, ୨୪. ବେନ, ୨୫. ଅସୁନୀତି, ୨୬. ଋତ, ୨୭. ଇନ୍ଦୁ, ୨୮.ପ୍ରଜାପତି, ୨୯. ଅହିଃ, ୩୦. ଅହିର୍ବୁଧ୍ନ୍ୟ, ୩୧. ସୁପର୍ଣ୍ଣ, ୩୨. ପୁରୁରବା ।

ଉପରୋକ୍ତ ଦେବତାଙ୍କ ଛଡ଼ା ଆଉ ଛତିଶଗୋଟି ଦେବତାଙ୍କ ନାମ ଦେଖାଯାଏ । ଯଥା— ୧. ଶ୍ୱେନ, ୨. ସୋମ, ୩. ଚନ୍ଦ୍ରମା, ୪. ମୃତ୍ୟୁ, ୫. ବୈଶ୍ୱାନର, ୬. ଧାତା, ୭. ବିଧାତା, ୮. ମରୁତ, ୯. ରୁଦ୍ରମାନେ, ୧୦. ଋତୁମାନେ, ୧୧. ଅଙ୍ଗିରାମାନେ, ୧୨. ପିତୃମାନେ, ୧୩. ଅଥର୍ବାମାନେ, ୧୪. ଭୃଗୁମାନେ, ୧୫. ଆପ୍ତ୍ୟମାନେ, ୧୬. ଅଦିତି, ୧୭. ସରମା, ୧୮. ସରସ୍ୱତୀ, ୧୯. ବାକ୍, ୨୦. ଅନୁମତି, ୨୧. ରାକା, ୨୨. ସିନୀବାଲୀ, ୨୩. କୁହୁ, ୨୪. ଜମୀ, ୨୫. ଉର୍ବଶୀ, ୨୬. ପୃଥିବୀ, ୨୭. ଇନ୍ଦ୍ରାଣୀ, ୨୮. ଗୌରୀ, ୨୯. ଗୌ, ୩୦. ଧେନୁ, ୩୧. ଅଘ୍ନ୍ୟା, ୩୨, ପଥ୍ୟା, ୩୩. ସ୍ୱସ୍ତି, ୩୪. ଉଷା, ୩୫. ଇଳା, ୩୬. ରୋଦସୀ ।

ମଧ୍ୟସ୍ଥାନର ଦେବତା ସଂଖ୍ୟା ୬୮ । ଭୂସ୍ଥାନ ଓ ଦ୍ୟୁସ୍ଥାନ ଅପେକ୍ଷା ମଧ୍ୟସ୍ଥାନ ବୈଦିକ ଋଷି ଓ କବିମାନଙ୍କର କଳ୍ପନାର କ୍ରୀଡ଼ାସ୍ଥଳ, ତାହା କହିବା ବାହୁଲ୍ୟ ମାତ୍ର । କାରଣ ବାସ୍ତବ ପକ୍ଷରେ ଭୂସ୍ଥାନ ଓ ଦ୍ୟୁସ୍ଥାନ ଅପେକ୍ଷା ଅନ୍ତରୀକ୍ଷରେ ବର୍ଷକଯାକର ଯାବତୀୟ ପରିବର୍ତ୍ତନ ସଂଘଟିତ ହୁଏ । ପ୍ରକୃତ ପକ୍ଷରେ ଦ୍ୟୁସ୍ଥାନର ପରିବର୍ତ୍ତନ ଆଦୌ ହୁଏ ନାହିଁ । ଦ୍ୟୁସ୍ଥାନର ଯେ କେତେଗୋଟି ଦେବତାର ପରିକଳ୍ପନା କରାଯାଇଅଛି, ସେ ଦେବତାମାନଙ୍କର ଜନ୍ମ ମଧ୍ୟ ଅନ୍ତରୀକ୍ଷରେ ବୋଲାଯାଇପାରେ । ସେ ବିଷୟ ଦ୍ୟୁସ୍ଥାନ ଦେବତାମାନଙ୍କର

ଆଲୋଚନା ପ୍ରସଙ୍ଗରେ ଦେଖାଯାଇ ପାରିବ । ଭୂସ୍ଥାନର ଯେ ପରିବର୍ତ୍ତନ ଘଟେ, ତାହା ମଧ୍ୟସ୍ଥାନ ସମ୍ପର୍କରହିତ ନୁହେଁ । ତାହାଛଡ଼ା ଭୂସ୍ଥାନର ସ୍ତୋତ୍ର୍ୟ ଦେବତାମାନଙ୍କର କଥା ଲୋକଙ୍କୁ ଜଣା, ଏଥିରେ କବି-କଳ୍ପନାର ଚାତୁରୀ ଦେଖାଯିବାର ଅବସର ନାହିଁ । ଏଣୁ ମଧ୍ୟସ୍ଥାନରେ ଦେବତାମାନଙ୍କର ପ୍ରାଧାନ୍ୟ, ଉତ୍କର୍ଷ, ଅଦ୍ଭୁତ ଜନ୍ମ, ଅଦ୍ଭୁତ କର୍ମର ପ୍ରାଞ୍ଜଳ ବର୍ଣ୍ଣନା ମନୁଷ୍ୟ ମନକୁ ବିମୋହିତ କରିଅଛି । ଅଦୃଶ୍ୟ ରୂପ ଓ ବର୍ଣ୍ଣନା ଯଦି ଆହ୍ଲାଦକ ଓ ସୁଖଦାୟକ ହୁଏ, ତେବେ ଲୋକର ଭକ୍ତି ଉଦ୍ରେକ କରେ; ଯେବେ ତାହା ବିଭୀଷିକାମୟ ହୁଏ, ତେବେ ଭୟ ଓ ରୋଷ ଆନୟନ କରେ ।

ମଧ୍ୟସ୍ଥାନର ଦେବତାମାନଙ୍କର ରୂପ ଓ ଗୁଣ କାଳ୍ପନିକ । କାଳ୍ପନିକ ବର୍ଣ୍ଣନାନୁସାରେ ଋଗ୍‌ବେଦର ସ୍ତୁତିମାନ ଲୋକଙ୍କ ମନରେ ବରୁଣ, ଇନ୍ଦ୍ର ପ୍ରଭୃତିଙ୍କ ଉପରେ ଶ୍ରଦ୍ଧା ଓ ଭକ୍ତି ଜନ୍ମାଇଅଛି; ରୁଦ୍ରାଦିଙ୍କ ପ୍ରତି ଭୟ ଜନ୍ମାଇଅଛି । କ୍ରମେ କ୍ରମେ କବି ଋଷିମାନେ ପ୍ରାକୃତିକ ଦୃଶ୍ୟ ଦେଖି ସ୍ତୁତି ରଚନା କରି ନାହାନ୍ତି । ପୂର୍ବ ପୂର୍ବ ଋଷିମାନେ ରଚିତ ସ୍ତୁତି ଉପରେ ଆପଣା ଆପଣା କଳ୍ପନାର ରସ ଢାଳି ଦେଇଅଛନ୍ତି । ପ୍ରଥମ କବି ପ୍ରାକୃତିକ ଦୃଶ୍ୟରେ ବିମୋହିତ ଓ ଅନୁପ୍ରାଣିତ ହୋଇ ଯେଉଁ ଲଳିତ ଓ ମୃଦୁ କବିତାଲହରୀ ଉଠାଇଥିଲେ, ତାହା ପରବର୍ତ୍ତୀ କବିଙ୍କ ଦ୍ୱାରା ଉତ୍ତାଳ ତରଙ୍ଗରେ ପରିଣତ ହେଲା । ଯାହା ସତ୍ୟ ଓ ଋଜୁ, ତାହା କ୍ରମେ ଭ୍ରାନ୍ତିପୂର୍ଣ୍ଣ ଓ କୁଟିଳ ହେଲା ।

ମଧ୍ୟସ୍ଥାନର ଏକମାତ୍ର ଦେବତା ବାୟୁଠାରୁ ଏତେଗୁଡ଼ିଏ ଦେବତାଙ୍କ ନାମ, ରୂପ ଓ ଗୁଣ କିପରି କଳ୍ପିତ ହେଲା, ତହିଁର ସାମାନ୍ୟ ବିବରଣ ନିମ୍ନରେ ପ୍ରକାଶ କରାଯାଉ ।

ଅଗ୍ନି, ବାୟୁ ଓ ସୂର୍ଯ୍ୟ ପ୍ରକୃତ । ମାତ୍ର ସେମାନଙ୍କର ରୂପାନ୍ତରିତ ନାମ ଓ ଗୁଣ କାଳ୍ପନିକ । ବାୟୁ ମଧ୍ୟସ୍ଥାନର ପ୍ରଧାନ ଦେବତା ହେଲେ ସୁଦ୍ଧା ବାୟୁ ନାମରେ କେବଳ ତିନିଗୋଟି ସ୍ତୋତ୍ର ଋଗ୍‌ବେଦରେ ଅଛି; ମାତ୍ର ବାୟୁର ବିକଳ୍ପ ଇନ୍ଦ୍ରଙ୍କର ସ୍ତୁତି ଋଗ୍‌ବେଦରେ ୨୫୦ ରୁ ଊଣା ନୁହେଁ । କବି କଳ୍ପନା ହେତୁରୁ ମହତ୍; ଏଣୁ କଳ୍ପନା ପ୍ରସୂତ ଇନ୍ଦ୍ରସ୍ତୁତିରେ ଋଗ୍‌ବେଦ ଏଡ଼େ ମହୀୟାନ୍ ।

ବାୟୁର ରୂପାନ୍ତର ପ୍ରଥମ ତାଲିକାଲିଖିତ ବତ୍ରିଶ ଦେବତାଙ୍କ ମଧ୍ୟରୁ ପ୍ରଧାନ କେତେ ଗୋଟି ଦେବତାର ବିବରଣ ଏ ସ୍ଥାନରେ ପାଠକମାନଙ୍କର କୌତୂହଳ ନିବାରଣ ନିମନ୍ତେ ଉଲ୍ଲେଖ କରିବାର ପ୍ରୟୋଜନ ବୋଲି ବିବେଚିତ ହୁଏ ।

ବରୁଣ, ରୁଦ୍ର, ଇନ୍ଦ୍ର, ବୃହସ୍ପତି, ବାଚସ୍ପତି ପ୍ରଭୃତି କେତେଗୋଟି ଦେବତା ଯେ ହିନ୍ଦୁଗଣଙ୍କଠାରେ ଅତି ପରିଚିତ, ଏହା କହିବା ବାହୁଲ୍ୟ ମାତ୍ର । ତେବେ ଏମାନେ ସ୍ୱତନ୍ତ୍ର ଦେବତା ବୋଲି ସମସ୍ତଙ୍କର ବିଶ୍ୱାସ । ଆମ୍ଭେମାନେ ଦେଖାଇବାକୁ ଚେଷ୍ଟା କରିଅଛୁଁ ଯେ, ବୈଦିକ କବିମାନେ ଅନ୍ତରୀକ୍ଷରେ ବାୟୁର ସାମୟିକ ପ୍ରାକୃତିକ ପରିବର୍ତ୍ତନକୁ ବର୍ଣ୍ଣନାଦ୍ୱାରା ରୂପାନ୍ତରିତ କରି ସ୍ୱତନ୍ତ୍ର ଦେବତା ରୂପରେ ଦଣ୍ଡାୟମାନ କରିଅଛନ୍ତି । ପରବର୍ତ୍ତୀ ଋଷି ଓ କବିମାନଙ୍କଠାରେ ସେସବୁ ରୂପ ଓ ଗୁଣ ସତ୍ୟ ବୋଲି ପ୍ରତିଭାତ ହେବାରୁ ସେମାନେ କଳ୍ପନା ତୂଳିକାରେ ଅତିରଞ୍ଜିତ କରି ନାନା ରୂପରେ ଚିତ୍ରିତ କରିଅଛନ୍ତି ।

ବରୁଣ—ବରୁଣୋ ବୃଣୋତୀତି ସତଃ । ଅର୍ଥାତ୍ ଜଳପୂର୍ଣ୍ଣ ମେଘଜାଳଦ୍ୱାରା ଆକାଶକୁ ବାୟୁହିଁ ଆବୃତ କରି ରଖେ । ଏଣୁ ବାୟୁର ନାମାନ୍ତର ବରୁଣ । ଜଳପୂର୍ଣ୍ଣ ଘନୀଭୂତ ମେଘ ଯାହା ଆକାଶମଣ୍ଡଳରେ ବିସ୍ତୀର୍ଣ୍ଣ ହୋଇ ଦ୍ୟୁଲୋକ ଓ ଭୂଲୋକର ବ୍ୟବଧାନ ରୂପରେ ପ୍ରତିଭାତ ହୁଏ, ତାହାକୁ ହିଁ ବରୁଣ ରୂପରେ ବର୍ଣ୍ଣନା କରାଯାଇଅଛି । ପ୍ରକୃତରେ ଏ ପରିବର୍ତ୍ତନ ଆନୟନ କରେ କିଏ ? ବାୟୁ । ଏଣୁ ଜଳୀୟବାଷ୍ପ ଦ୍ୱାରା ଆବରଣକାରୀ ବାୟୁ ହିଁ ବରୁଣ । ଏଣୁ ବୈଦିକ କବି ବର୍ଣ୍ଣନା କଲେ ଯେ, ପଶୁହନ୍ତା ଯେପରି ନିହତ ପଶୁଚର୍ମ ବିସ୍ତୃତ କରି ରଖେ ସେହିପରି ସୂର୍ଯ୍ୟଙ୍କର ଆସ୍ତରାଣାର୍ଥ ଯେ ଅନ୍ତରୀକ୍ଷକୁ ବିସ୍ତାରିତ କରି ରଖେ, ସେହି ବରୁଣର ସ୍ତୁତି କର । ସୂର୍ଯ୍ୟଙ୍କୁ ଘୋଡ଼ାଇ ରଖେ ମେଘ, ସେହି ମେଘ ଅନ୍ତରୀକ୍ଷରେ ବିସ୍ତାରିତ ହୁଏ ବାୟୁଦ୍ୱାରା । ସୁତରାଂ ଆବରଣକର୍ତ୍ତା ହେଲା ବାୟୁ । ଆବରଣକାରୀ ବାୟୁର ନାମାନ୍ତର ବରୁଣ । ଆକାଶରେ ବାଷ୍ପରୂପୀ ଜଳର ଯେ ପରିଚାଳକ ଓ ନିୟାମକ, ସେ କ୍ରମେ ପୃଥିବୀସ୍ଥ ଜଳଭାଗର ମଧ୍ୟ ନିୟାମକ ରୂପରେ ପ୍ରତିଭାତ ହେଲା । ଏଣୁ ସେ ଭୂଲୋକ ଓ ଅନ୍ତରୀକ୍ଷର ଜଳ ସମୂହର ଅଧିପତି । ଜଳ ସ୍ଥାବର ଜଙ୍ଗମର ଜୀବନ । ବରୁଣ ଜଳଦ୍ୱାରା ଚରାଚରକୁ ପାଳନ କରୁଥିବା ହେତୁରୁ ରାଜା । ପରବର୍ତ୍ତୀ କବିମାନେ ବରୁଣ ନାମ ପାଇଲେ ସେ ଜଳର ଅଧିପତି । ବରୁଣର ଉପାଧି ରାଜା, ଏହା ମଧ୍ୟ ପାଇଲେ । ଏଣୁ ବାୟୁ ଶବ୍ଦକୁ ତ୍ୟାଗ କରି ସେହି ବରୁଣର ରୂପ ଗୁଣର ବର୍ଣ୍ଣନା ଲେଖିବାକୁ ଆରମ୍ଭ କଲେ । ସୁତରାଂ ବରୁଣ ସ୍ୱତନ୍ତ୍ର ଦେବତା ହେଲାରୁ ବାୟୁକୁ ଆଉ ପଚାରେ କିଏ ?

ପ୍ରଚଣ୍ଡ ଗ୍ରୀଷ୍ମ— ପର୍ବତମାଳା, ବନାନୀ ସମସ୍ତେ ପତ୍ରଶୂନ୍ୟ; ସହସା ଦବଦାହ ଉତ୍ପନ୍ନ ହୋଇ ଅଗ୍ନିର ଲେଲିହାନ ଜିହ୍ୱା ଶୁଷ୍କ ବୃକ୍ଷ ଲତା ଗୁଳ୍ମମାନଙ୍କୁ ନିମିଷେକ ମଧ୍ୟରେ ଆତ୍ମସାତ୍ କରିବାକୁ ଲାଗିଲା । ବାୟୁର ସାହାଯ୍ୟରେ ଅଗ୍ନିର ଶିଖା କେବେ ଉର୍ଦ୍ଧ୍ୱକୁ, କେବେ ଆଗକୁ, କେବେ ଦୁଇ ପାର୍ଶ୍ୱକୁ ନିମିଷକେ ଅଗ୍ରସର ହୋଇ ମହାନ୍ ଶବ୍ଦ କରି ପଶୁ ଓ ପକ୍ଷୀକୁଳର ଆତଙ୍କ ଉପସ୍ଥିତ କଲା । ଅରଣ୍ୟବାସୀମାନଙ୍କର ମହାବ୍ୟାକୁଳତାର ସମୟ । ଅଗ୍ନିଦେବତାର ଏତାଦୃଶ ଆକସ୍ମିକ ଆବିର୍ଭାବ ଓ ଧ୍ୱଂସଲୀଳା ଋଷିମାନଙ୍କ ମନରେ ଏକ ଅନିର୍ବଚନୀୟ ଭୟମିଶ୍ରିତ ଭକ୍ତିର ଉଦ୍ରେକ କଲା । ସେମାନେ ଭାବିଲେ, ଅଗ୍ନିର ଏହା କାଳାନ୍ତକାରୀ ରୁଦ୍ରରୂପ । ବୈଶାଖ ମାସ, ନିର୍ମଳ ଦିଗ ମଣ୍ଡଳ, ନିର୍ମଳ ଆକାଶ ନିର୍ବାକ, ନିସ୍ପନ୍ଦ । ଅପରାହ୍ନରେ ଗ୍ରୀଷ୍ମାତିଶଯ୍ୟ ସତ୍ତ୍ୱେ ବ୍ୟବସାୟୀଗଣ ଆପଣା ଆପଣା କାର୍ଯ୍ୟରେ ବ୍ୟସ୍ତ । ପଶ୍ଚିମାକାଶରେ ସହସା ଖଣ୍ଡେ କ୍ଷୁଦ୍ର ମେଘର ଦେଖା । ଦୂରରେ ମେଘମନ୍ଦ୍ର ଶୁଣାଗଲା । ପଲକମାତ୍ରକେ ହୁହୁ ଶବ୍ଦରେ ପବନ ସଙ୍ଗେ ସଙ୍ଗେ ମେଘର ଆୟତନ ବୃଦ୍ଧି ହେବାକୁ ଲାଗିଲା । କୃଷ୍ଣ ମେଘବକ୍ଷରେ କାଳଭୁଜଙ୍ଗିନୀ ବିଦ୍ୟୁତ୍‌ର ଖେଳା, ବଜ୍ରନିନାଦ, ବଜ୍ରପାତ । ବଜ୍ର ଚଡ଼ ଚଡ଼ କଲା । ବୃକ୍ଷଶାଖାମାନେ ରଡ଼ ରଡ଼ ହୋଇ ଭାଙ୍ଗିଲେ । ଅଜସ୍ର ଧାରାପାତ ହେଲା । ମନୁଷ୍ୟ ପଶୁ ସମସ୍ତେ ଅଥୟ । ତୃଣାଚ୍ଛାଦିତ କୁଟୀର, ଚର୍ମନିର୍ମିତ ତମ୍ବୁ ବାୟୁପ୍ରବାହରେ ଆଶ୍ରୟ ଦେବାକୁ ଅଯୋଗ୍ୟ ଥିବାର ପରିଚୟ ଦେବାକୁ ଲାଗିଲେ । ଜନନୀ ଶିଶୁଗଣଙ୍କ ବିକଳରେ ଚିନ୍ତାମଗ୍ନା । ଗୃହସ୍ଥ ପୁତ୍ର କନ୍ୟା ଓ ଗୃହିଣୀର ଦୁର୍ଦ୍ଦଶା ଦେଖି ମ୍ରିୟମାଣ । ଗୃହପାଳିତ ଗୋମେଷାଦିଙ୍କର ବିପନ୍ନାବସ୍ଥାର ଚିନ୍ତାରେ ଆକୁଳ । ଆଶ୍ରୟର ସ୍ଥାନ ନାହିଁ । ବୃକ୍ଷମୂଳରେ ଆଶ୍ରୟ ନେବାକୁ ଯିବାବେଳେ ବୃକ୍ଷଗଣ ମସ୍ତକ ହଲାଇ ଇଙ୍ଗିତ କଲେ, ଆତ୍ମରକ୍ଷଣ ଆମ୍ଭମାନଙ୍କ ପକ୍ଷରେ ଅସମ୍ଭବ, ତୁମ୍ଭଙ୍କୁ ଆଶ୍ରୟ ଦେବୁ କିପରି ? ବରଂ ଆକାଶ ତଳରେ ଥିଲେ ତୁମ୍ଭର ପ୍ରାଣରକ୍ଷା ସମ୍ଭବ ଆମ୍ଭର ଆଶ୍ରୟ ଗ୍ରହଣ କଲେ ବଜ୍ରପାତରେ ଛିନ୍ନ ଶାଖାପତନରେ ମୃତ୍ୟୁ ହେବାର ଅଧିକ ସମ୍ଭାବନା । ମନୁଷ୍ୟ ଉପାୟଶୂନ୍ୟ, ନିରାଶ୍ରୟ । ଏହି ପ୍ରଳୟଙ୍କରୀ ଲୀଳା କାହାର ? ବାୟୁ ଓ ଅଗ୍ନିର । ଏହି ଚରାଚର ଧ୍ୱଂସକାରୀ ହିଁ ରୁଦ୍ର । ରୁଦ୍ରଙ୍କର ସ୍ତୁତି ଭିନ୍ନ ଏହି ଆକସ୍ମିକ ବିପତ୍ତିରୁ ରକ୍ଷା କରିବ କିଏ ? ଗୃହପାଳିତ ପଶୁମାନଙ୍କୁ ରୁଦ୍ରଙ୍କ କ୍ରୋଧରୁ ରକ୍ଷା କରିବାକୁ ସମର୍ଥ କିଏ ? ରୁଦ୍ର ସଂହାର ମୂର୍ତ୍ତି ଧାରଣ କରିଥିଲେ ସୁଦ୍ଧା ସ୍ତୁତିଦ୍ୱାରା ପ୍ରସନ୍ନ ହୋଇ ରକ୍ଷା କରିପାରିବେ । ରୁଦ୍ରଙ୍କର ସ୍ତୁତି କର । କବି ସ୍ତୁତି କଲେ— ପ୍ରଚଣ୍ଡ ଝଡ଼ର ଦେବତାର ନାମ ରୁଦ୍ର । ନିଜେ ପ୍ରଚଣ୍ଡ ଶବ୍ଦ କରେ ଏବଂ ଲୋକଙ୍କୁ ରୋଦନ କରାଏ, ଏ ହେତୁରୁ ରୁଦ୍ର ନାମର ଉତ୍ପତ୍ତି ।

ଅଳ୍ପକ୍ଷଣ ପରେ ରୁଦ୍ରର କୋପ ଶାନ୍ତି ହେଲା । ଅଖଣ୍ଡ ଶାନ୍ତି ବିରାଜମାନ କଲା । ମେଘ ଉଭେଇ ଗଲା । ଅସ୍ତଗାମୀ ସୂର୍ଯ୍ୟର ସୁବର୍ଣ୍ଣ କିରଣ ବିଶ୍ୱକୁ ଆଚ୍ଛାଦିତ କଲା । ବିଶ୍ୱ ଚରାଚର ସମସ୍ତେ ତୃପ୍ତ— ଆହ୍ଲାଦିତ । କବି ଗାଇଲେ, ସବିତା, ତୁମ୍ଭର ତ ଏହିସବୁ ଲୀଳାଖେଳା ।

ପ୍ରାତଃକାଳରୁ ଉଠି ଜଗତ୍‌ବାସୀ ଦେଖନ୍ତି ଯେ, ଶସ୍ୟକ୍ଷେତ୍ର ଓ ପଡ଼ିଆ ଭୂମିମାନ ଶସ୍ୟାଚ୍ଛାଦିତ, ଗୃହପାଳିତ ଗୋମେଷାଦି ଆନନ୍ଦ ମନରେ ଚରିବାରେ ବ୍ୟସ୍ତ । ଦିନକ ମଧ୍ୟରେ ଏତାଦୃଶ ଅସମ୍ଭବ ପରିବର୍ତ୍ତନ କେବଳ ଅସାଧାରଣ ଶକ୍ତିସମ୍ପନ୍ନ ଐନ୍ଦ୍ରଜାଲିକର କାର୍ଯ୍ୟ । ଏହା କେବଳ ନୁହେଁ— ଋଷିମାନେ ଭାବିଲେ ଯେ, ଭୂମିରେ ଯାହା ରୋପଣ କରାଯିବ, ତାହା ଶୀଘ୍ର ଅଙ୍କୁରିତ ହୋଇ ପ୍ରଭୂତ ଶସ୍ୟ ଉତ୍ପାଦନ କରିବ । ପ୍ରଜାକୁଳର ଅନ୍ନ ସଂସ୍ଥାନ ହେବ । ପ୍ରଚୁର ଘାସ ଭକ୍ଷଣ କରି ଗୋଜାତି ସବଳକାୟ ହେବେ । କୃଷିକର୍ମ ସୁଚାରୁରୂପେ ଚଳିବ । ଗାଭୀଗଣ ଦୁଗ୍ଧବତୀ ହେବେ । କି ସୁଖର କଥା । କି ଆନନ୍ଦର ବ୍ୟାପାର । କିଏ ଏହି ପରିବର୍ତ୍ତନ କଲା ? କିଏ ଆମ୍ଭମାନଙ୍କର ଅନ୍ନସଂସ୍ଥାନର ସୁବ୍ୟବସ୍ଥା କରିଅଛି ? କିଏ ବ୍ରିହୀ ଆଦି ଶସ୍ୟମାନଙ୍କୁ ବିଦାରିତ କରି ଅଙ୍କୁରିତ କରୁଅଛି ? ଇନ୍ଦ୍ର । 'ଇରାଂ ଅନ୍ନବ୍ରିହ୍ୟାଦିତୃଣାନି— ବିଦାରୟତି' । ବ୍ରିହ୍ୟାଦିକୁ ଯେ ବିଦାରିତ କଲା, ସେ ଇନ୍ଦ୍ର । ଇରାଂଦଦାତି— ଅନ୍ନ ଦାନ କରେ ଯେ ସେ ଇନ୍ଦ୍ର । ଏଥିଉତ୍ତାରୁ ଇନ୍ଦ୍ର ଶବ୍ଦ ପ୍ରଥମ କବିଦ୍ୱାରା ସୃଷ୍ଟି ହେବାରୁ ପରବର୍ତ୍ତୀ କବିମାନେ ଇନ୍ଦ୍ରଶବ୍ଦର ନାନା ବ୍ୟୁତ୍ପତ୍ତି କରିବାକୁ ଆରମ୍ଭ କଲେ, ଯଥା— ଇରା ଅର୍ଥ ଅନ୍ନ, ଏଣୁ ଇରାଂ ଧାରୟତି ଇନ୍ଦ୍ର । ଇନ୍ଦବେ ଦ୍ରବିତୀତି ବା ଇନ୍ଦ୍ରଃ ବା ସୋମ ନିକଟକୁ ଶୀଘ୍ର ଗମନ କରନ୍ତି, ଏଣୁ ଇନ୍ଦ୍ର । ଇନ୍ଦ୍ରା ଇନ୍ଦୌ ରମତ ଇତି ବା । ଅର୍ଥାତ୍ ସୋମରେ କ୍ରୀଡ଼ା କରନ୍ତି ବୋଲି ଇନ୍ଦ୍ର । କ୍ରମେ ଇନ୍ଦ୍ର ସର୍ବକର୍ତ୍ତା, ସର୍ବଦ୍ରଷ୍ଟା ହେତୁରୁ ଇନ୍ଦ୍ରନାମର ସୃଷ୍ଟି ବୋଲି କେତେକ ବ୍ୟାଖ୍ୟାକର୍ତ୍ତା ଭାବିଲେ । ଇନ୍ଦ୍ର ଛତ୍ରଂ ଦାରୟିତା ବା ଦ୍ରାବୟିତା ବା ଇନ୍ଦ୍ରଃ—ଅର୍ଥାତ୍ ଶତ୍ରୁଙ୍କୁ ବିଦାରଣ କରନ୍ତି ବା ଭୟ ଦେଖାଇ ତଡ଼ିଦିଅନ୍ତି, ଏଣୁ ଇନ୍ଦ୍ର ।

ଆଦରୟିତା ବା ଯଜ୍ୱାନାଂ—ଯଜମାନଙ୍କର ଆଦରକର୍ତ୍ତା ବା ଇନ୍ଦ୍ର ଇତ୍ୟାଦି । ବର୍ଷାଦ୍ୱାରା ପୃଥିବୀରେ ଶସ୍ୟାଦି ଉତ୍ପାଦନ ଯେ କରାଇଲା, ତାକୁ ପ୍ରଥମେ ଇନ୍ଦ୍ର ଉପାଧି

ଦିଆଯାଇଥିଲା । କ୍ରମେ ବ୍ୟୁତ୍ପତ୍ତିଦ୍ୱାରା ଏହି ଶବ୍ଦର ଅନେକାର୍ଥ ହୋଇଥିବାରୁ ବାୟୁର ବିକଳ୍ପ ଯେ ଇନ୍ଦ୍ର, ତାହା ପରବର୍ତ୍ତୀ କବିମାନଙ୍କୁ ଜଣାଗଲା ନାହିଁ । ଇନ୍ଦ୍ରର ରୂପ, ଗୁଣ, କ୍ଷମତା କ୍ରମେ ବୃଦ୍ଧିପ୍ରାପ୍ତ ହେଲା, ବାୟୁର ମାହାତ୍ମ୍ୟ ଲାଘବ ହେଲା ।

ଅଦର୍ଦରୁତ୍ସମସୃଜୋ ବିଖାନି
ତ୍ୱମର୍ଣ୍ଣବାନ୍ବଦ୍ଧଧାନାଁ ଅରମ୍ଣାଃ ।
ମହାନ୍ତମିନ୍ଦ୍ର ପର୍ବତଂ ବି ଯଦ୍ବଃ ସୃଜୋ
ବି ଧାରା ଅବଦାନବଂ ହନ୍ ॥ ର ୫। ୩୨।୧

ହେ ଇନ୍ଦ୍ର! ତୁମ୍ଭେ ମେଘକୁ ବିଦୀର୍ଣ୍ଣ କରି ଜଳମାର୍ଗ ଉନ୍ମୁକ୍ତ କଲ । ତୁମ୍ଭେ ରୁଦ୍ଧ ଜଳସମୂହକୁ ମୁକ୍ତ କଲ । ତୁମ୍ଭେ ପ୍ରକାଣ୍ଡ ମେଘଦ୍ୱାର ଉଦ୍‌ଘାଟିତ କରି ବୃଷ୍ଟିପାତ କରାଇଅଛ ଏବଂ ଜଳଦାତା ମେଘର ନାଶ କରିଅଛ । ବାୟୁ ନିଶ୍ଚଳ ହେଲେ ଆକାଶ ମେଘାବୃତ ହୋଇ ରହେ । ବାୟୁ ଚଳନରେ ମେଘ ଘନୀଭୂତ ହୋଇ ଧାରାପାତ ହୁଏ । ଧାରାପାତ ଶେଷରେ ଆକାଶରୁ ମେଘର ଅନ୍ତର୍ଦ୍ଧାନ ହୁଏ । ଏହା ପ୍ରାକୃତିକ ଘଟଣା । ଋଷି ବାୟୁକୁ ଇନ୍ଦ୍ର ନାମ ଦେଇ ଏହି ପ୍ରାକୃତିକ ଘଟଣାର ଅତି ମନୋହାରିଣୀ ସ୍ତୁତି ରଚନା କରିଅଛନ୍ତି । ଏହି ତ ଇନ୍ଦ୍ରର ପରିଚୟ । କ୍ରମେ ଇନ୍ଦ୍ର କି ପ୍ରକାରେ ଦେବରାଜ ବୃତ୍ରହନ୍ତା ହେଲେ, ତହିଁର ବିବରଣ ସାଧାରଣ ଭାବରେ ନ ଲେଖିଲେ ପ୍ରବନ୍ଧର ଅଙ୍ଗହାନି ହେବ ।

ବିବରଣ ଲେଖିବା ପୂର୍ବରୁ ପୁଣି ଇନ୍ଦ୍ର ଶବ୍ଦର ବ୍ୟୁତ୍ପତ୍ତିଗୁଡ଼ିକ ଦେଖାଯାଉ, ଯଥା— "ଇଦଂ କରଃସେନ୍ ଇନ୍ଦ୍ରଃ । ଏ ସର୍ବ କରନ୍ତି, ଏଣୁ ଇନ୍ଦ୍ର ।

ଇଦଂ ଦର୍ଶନାତ୍, ସୋଽୟଂ ଇଦନ୍ଦର୍ଶୀ ଇତି ଇନ୍ଦ୍ରଃ । ଅର୍ଥାତ୍ ସମସ୍ତ ଦେଖି ପାରନ୍ତି, ଏଣୁ ଇନ୍ଦ୍ର । ଇନ୍ଦତେ ବୈଶ୍ୱର୍ଯ୍ୟକର୍ମଣଃ । ଐଶ୍ୱର୍ଯ୍ୟ ଦାନ କରନ୍ତି, ଏଣୁ ଇନ୍ଦ୍ର । ଇନ୍ଦଚ୍ଛତ୍ରୂଣାଂ ଦାରୟିତା ବା ଦ୍ରାବୟିତାବା । ଶତ୍ରୁଙ୍କୁ ବିଦାରଣ କରନ୍ତି ବା ଭୟଦ୍ୱାରା ତଡ଼ି ଦିଅନ୍ତି, ଏଣୁ ଇନ୍ଦ୍ର ।

ଆଦରୟିତା ଚ ଯଜ୍ୱାନାଂ— ଯଜ୍ୱାମାନଙ୍କର ଆଦରକର୍ତ୍ତା, ଏଣୁ ଇନ୍ଦ୍ର ।

ଅନ୍ନଦାତା ବା ଅନ୍ନ ବା ବ୍ରିହ୍ୟାଦିର ବିଦାରଣକର୍ତ୍ତା ଅର୍ଥରେ ପ୍ରଥମେ ଇନ୍ଦ୍ର ଶବ୍ଦ ବ୍ୟବହୃତ ହୋଇଥିଲା, ପରେ ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟାଦ୍ୱାରା ଇନ୍ଦ୍ରର ମହତ୍ତ୍ୱ ବୃଦ୍ଧି କରାଗଲା । ଇନ୍ଦ୍ର ସର୍ବଦ୍ରଷ୍ଟା, ସର୍ବକର୍ତ୍ତା, ରାଜା, ପ୍ରଭୁ, ଭକ୍ତର ଆଦରକର୍ତ୍ତା ହେଲେ ।

ଇନ୍ଦ୍ର ବାୟୁର ବିକଳ୍ପ ହେଲେ ସୁଦ୍ଧା କବିମାନଙ୍କଦ୍ୱାରା ବାୟୁ ଅପେକ୍ଷା ପ୍ରଭେଦକାରକ ଗୁଣ କ୍ରିୟାଦି ଦ୍ୱାରା ବିଶେଷିତ ହୋଇ ସ୍ୱତନ୍ତ୍ର ଦେବତା ହୋଇପଡ଼ିଲେ । ଏଣୁ କ୍ରମେ ଦେବଗଣ ମଧ୍ୟରେ ପ୍ରଧାନ ଏବଂ ମେଧାବୀମାନଙ୍କର ଅଗ୍ରଗଣ୍ୟ ହେଲେ । ପ୍ରଭାବ ଓ ବଳଦ୍ୱାରା ଦ୍ୟାବା ପୃଥିବୀକୁ ଭୀତ କରି ରଖିଲେ । ପୁଣି ମହତୀ ସେନାର ନାୟକ ଓ ପ୍ରଧାନ ଅସୁରହନ୍ତା ବୋଲି ପରିଚିତ ହେଲେ ।

ଇନ୍ଦ୍ର ଯେ କିପରି ଧନଦାତା, ପୋଷଣକର୍ତ୍ତା ଓ ଭକ୍ତବତ୍ସଳ, ତାହା ଉପରେ ପ୍ରଦର୍ଶିତ ହୋଇଅଛି । ବର୍ତ୍ତମାନ ତାହାଙ୍କର ବୀରତ୍ୱ ଓ ଯୋଦ୍ଧୃତ୍ୱର ପରିଚୟ ଦିଆଯାଉ ।

ବୀରର ଅସ୍ତ୍ରର ପ୍ରୟୋଜନ, ଇନ୍ଦ୍ରଙ୍କର ଅସ୍ତ୍ର ବଜ୍ର । ରଥ ଅଛି, ସୈନ୍ୟ ଅଛନ୍ତି । ଇନ୍ଦ୍ର ପ୍ରଧାନ ଯୋଦ୍ଧା ।

ଇନ୍ଦ୍ରଙ୍କର ଶତ୍ରୁ ମନୁଷ୍ୟର ଶତ୍ରୁ । ମନୁଷ୍ୟ ଇନ୍ଦ୍ର ଓ ଦେବଭକ୍ତ, ଏଣୁ ମନୁଷ୍ୟର ଶତ୍ରୁ ଦେବତାମାନଙ୍କର ମଧ ଶତ୍ରୁ ।

ଇନ୍ଦ୍ରଙ୍କର ପ୍ରଧାନ ଶତ୍ରୁ ବୃତ୍ର । ପୌରାଣିକମାନେ ଇନ୍ଦ୍ରଙ୍କର ଅନେକଗୁଡ଼ିଏ ନାମର ସୃଷ୍ଟି କରିଅଛନ୍ତି । ପ୍ରତ୍ୟେକ ପୁରାଣଲିଖିତ ନାମ ସଂଗ୍ରହ ନ କରି କେବଳ ଅମରକୋଷର ଇନ୍ଦ୍ର ପର୍ଯ୍ୟାୟ ଉଦ୍ଧୃତ କଲେ ଯଥେଷ୍ଟ ହେବ ଏବଂ ଏହି ଇନ୍ଦ୍ର ପର୍ଯ୍ୟାୟ ସହିତ ବୈଦିକ ଇନ୍ଦ୍ରଙ୍କର ଗୁଣ କର୍ମର କିପରି ସମ୍ବନ୍ଧ ରକ୍ଷିତ ହୋଇଅଛି, ତତ୍‌ପ୍ରତି ତୀକ୍ଷ୍ଣ ଦୃଷ୍ଟି ଥିଲେ ବାୟୁବିକଳ୍ପ ଇନ୍ଦ୍ର କିପରି ସର୍ବଶ୍ରେଷ୍ଠ ଦେବରାଜ ହୋଇଉଠିଲେ, ତହିଁର ଅଭ୍ରାନ୍ତ ଧାରଣା ଜନ୍ମିବ ।

ଇନ୍ଦ୍ରୋ ମରୁତ୍ୱାନ୍ ମଘବା
ବିଡ଼ୋଜାଃ ପାକଶାସନଃ ।
ବୃଦ୍ଧଶ୍ରବାଃ ସୁନାସୀରଃ
ପୁରୁହୂତଃ ପୁରନ୍ଦରଃ ॥
ଜିଷ୍ଣୁର୍ଲେଖର୍ଷଭଃ ଶକ୍ରଃ
ଶତମନ୍ୟୁଃ ଦିବସ୍ପତିଃ ।
ସୁତ୍ରାମା ଗୋତ୍ରଭିଦ୍ ବଜ୍ରୀ
ବାସବୋ ବୃତ୍ରହା ବୃଷା ॥
ବାସ୍ତୋଷ୍ପତିଃ ସୁରପତିଃ
ବଳାରାତିଃ ଶଚୀପତିଃ ।
ଜମ୍ଭଭେଦୀ ହରିହୟଃ
ସ୍ୱରାନ୍ନ ସୂଚିସୂଦନଃ ॥

ସଂକ୍ରନ୍ଦନୋ ଦୁଶ୍ଚ୍ୟବନ-
ସ୍ତୁରାଷାଣ୍‌ମେଘବାହନଃ ।
ଆଖଣ୍ଡଳଃ ସହସ୍ରାକ୍ଷଃ ଋଭୁକ୍ଷା ॥
ଏତଦ୍ଭିନ୍ନ ଇନ୍ଦ୍ରଙ୍କର ଅନେକାନେକ ନାମ ଅଛି ।

ସେଥି ମଧ୍ୟରୁ କେତେଗୋଟି ଶବ୍ଦର ପରୀକ୍ଷା କରାଯାଉ । ତାହାହେଲେ ଜଣା ଯାଇପାରିବ ଯେ, ଇନ୍ଦ୍ର ବାୟୁର ବିକଳ୍ପ ଏବଂ ତାହାଙ୍କର ଶତ୍ରୁ କିଏ ଏବଂ ତାହାଙ୍କର ଯାନ ଅସ୍ତ୍ରଶସ୍ତ୍ର ପ୍ରଭୃତି କିମାକାରକ ପଦାର୍ଥ ।

ଇନ୍ଦ୍ର ଶବ୍ଦର ବ୍ୟାଖ୍ୟା ଓ ବିବରଣ ପୂର୍ବେ ବିସ୍ତୃତ ଭାବରେ ଦିଆଯାଇଅଛି । ମରୁତ୍ୱାନ୍ ଅର୍ଥ ଯେ ସ୍ପଷ୍ଟ ଏହା ଲେଖିବା ବାହୁଲ୍ୟମାତ୍ର । ଇନ୍ଦ୍ର ପର୍ଯ୍ୟାୟ ମଧ୍ୟରୁ ଗୋତ୍ରଭିଦ୍, ବଜ୍ରୀ, ବୃତ୍ରହନ୍, ବାସ୍ତୋଷ୍ପତି, ବଳାରାତି, ଶଚୀପତି, ଜମ୍ଭଭେଦୀ, ହରିହୟ, ସଂକ୍ରନ୍ଦନ, ତୁରାଷାଟ, ମେଘବାହନ, ସହସ୍ରାକ୍ଷ ପ୍ରଭୃତି କେତେଗୋଟି ଶବ୍ଦ ପରୀକ୍ଷାଯୋଗ୍ୟ । ଅନ୍ୟ ଶବ୍ଦମାନେ କେବଳ ପରିକଳ୍ପିତ ଦେବତାର ବଳ ଓ କ୍ଷମତାର ପରିଚାୟକ ମାତ୍ର । ଗୋତ୍ରଭିଦ୍ ବୈଦିକ କୋଷ ଅନୁସାରେ ଗୋତ୍ରମାନେ ମେଘ, ଇନ୍ଦ୍ର ମେଘକୁ ଭେଦ କରି ବୃଷ୍ଟି ଦାନ କରନ୍ତି, ଏଣୁ ଇନ୍ଦ୍ରଙ୍କ ନାମ ଗୋତ୍ରଭିଦ୍ । ପରେ ଗୋତ୍ର ଅର୍ଥ ପର୍ବତ କରାଯାଇଛି । ଇନ୍ଦ୍ର ପର୍ବତକୁ ବଜ୍ର ନିକ୍ଷେପ କରନ୍ତି, ଏଣୁ ଇନ୍ଦ୍ରଙ୍କ ନାମ ଗୋତ୍ରଭିଦ୍ । ପୌରାଣିକମାନଙ୍କର ଏହି କଳ୍ପନା କେବଳ ଏତିକି ନୁହେଁ । ପୂର୍ବେ ପର୍ବତମାନଙ୍କର ପକ୍ଷ ଥିଲା, ସେମାନେ ଉଡ଼ି ବୁଲୁଥିଲେ, ଇନ୍ଦ୍ର ପକ୍ଷ ଛେଦନ କରିବାରୁ ସେମାନେ ଆଉ ଉଡ଼ିପାରୁ ନାହାନ୍ତି । ଅଦ୍ୟାପି ଇନ୍ଦ୍ର ପର୍ବତମାନଙ୍କ ଉପରେ ଆକ୍ରୋଶ ରଖି ବଜ୍ରପାତ କରୁଅଛନ୍ତି । ପର୍ବତଚୂଡ଼ା ଭୂମି ଅପେକ୍ଷା ଉଚ୍ଚ । ପର୍ବତରେ ଅପେକ୍ଷାକୃତ ଅଧିକ ବଜ୍ରପାତ ହେବା ସ୍ୱାଭାବିକ । ଏବେ ମଧ୍ୟ ବଜ୍ରପାତ ହେଉଅଛି, ପୂର୍ବେ ମଧ୍ୟ ହେଉଥିଲା । ଇନ୍ଦ୍ର କି ପ୍ରକାର ଗୋତ୍ରଭିଦ୍, ତାହା ବୋଧହୁଏ ସ୍ପଷ୍ଟ ଜଣାଗଲା । ଅନ୍ୟାନ୍ୟ ଶବ୍ଦର ଅର୍ଥ ଲେଖିବା ଆଗରୁ ବୈଦିକ ମେଘବାଚକ ଶବ୍ଦର ତାଲିକା ଦେଲେ ଅତି ସହଜରେ ବୈଦିକ ଓ ପୌରାଣିକ ଇନ୍ଦ୍ରଙ୍କର ପରିଚୟ ମିଳି ପାରିବ ।

ଅଥ ମେଘନାମାନି—ଅଦ୍ରିଃ, ଗ୍ରାବା, ଗୋତ୍ର, ବଳଃ, ଅଶ୍ନଃ, ପୁରୁଭୋଜାଃ, ବଳିଶାନଃ, ଅଶ୍ମା, ପର୍ବତଃ, ଗିରିଃ, ବ୍ରଜଃ, ଚରୁଃ, ବରାହଃ, ଶମ୍ବରଃ, ରୌହିଣଃ, ରୈବତଃ, ଫଳିଗଃ, ଉପରଃ, ଉପଳଃ, ଚମସଃ, ଅହିଃ, ଅଭ୍ରଂ, ବଳାହକଃ, ମେଘଃ, ଦୃତିଃ, ଓଦନଃ, ବୃଷନ୍ଧିଃ, ବୃତ୍ରଃ, ଅସୁରଃ, କୋଶ ଇତି ତ୍ରିଂଶନ୍ମେଘନାମାନି । ନିଘଣ୍ଟୁ ୧। ୧୦

ଅମରକୋଷରେ ପର୍ବତର ତ୍ରୟୋଦଶ ନାମ ଅଛି ଏବଂ ମେଘର ନାମ ପନ୍ଦର ଗୋଟି । ବୈଦିକ ମେଘପର୍ଯ୍ୟାୟର ପର୍ବତ, ଅଦ୍ରି, ଗୋତ୍ର, ଗିରି, ଶ୍ରାବଣ ପାଶ୍ଚାଦ୍‌ବର୍ତ୍ତୀ ପୁରାଣାଦିରେ ଶୈଳ ପର୍ଯ୍ୟାୟଭୁକ୍ତ ହୋଇଅଛି । ବୈଦିକ ମେଘ ପର୍ଯ୍ୟାୟମଧ୍ୟରୁ କେବଳ ଅଭ୍ର, ମେଘ, ବଳାହକ ଏହି ତିନି ଗୋଟି ଶବ୍ଦ ପରବର୍ତ୍ତୀ କୋଷମାନଙ୍କରେ ମେଘପର୍ଯ୍ୟାୟରେ ଗୃହୀତ ହୋଇଅଛି ।

ଇନ୍ଦ୍ର, ବୃତ୍ରାରି; ଇନ୍ଦ୍ରଙ୍କର ପ୍ରଧାନ ଶତ୍ରୁ ବୃତ୍ର । ବୃତ୍ର କିଏ ? ବୃତ୍ର ଅର୍ଥ ମେଘ । ବର୍ଷାବିହୀନ ମେଘାଚ୍ଛନ୍ନ ଆକାଶକୁ ବୃତ୍ର ବୋଲଯାଏ । ସେହି ମେଘ ବିଦାରଣ କରି ଜଗଦ୍‌ବାସୀଙ୍କୁ ଜଳଦାନ କରନ୍ତି ଇନ୍ଦ୍ର । ଇନ୍ଦ୍ରଦେବ ମନୁଷ୍ୟର ମିତ୍ର ଓ ପ୍ରଭୁ । ବୃତ୍ରର ଶତ୍ରୁ— ଯେବେ ବୃତ୍ର ଅର୍ଥ ମେଘ; ତେବେ ଇନ୍ଦ୍ରର ଶତ୍ରୁ ହେଲା କିପରି ? ନୈରୁକ୍ତମାନେ କହୁଅଛନ୍ତି—

"ଅପାଂ ଜ୍ୟୋତିଷଶ୍ଚ ମିଶ୍ରୀ
ଭାବକର୍ମଣୋ ବର୍ଷ କର୍ମ ଜାୟତେ ।
ତତ୍ରୋପମାର୍ଥେନ ଯୁଦ୍ଧବର୍ଣ୍ଣା ଭବନ୍ତି ।"
ନି.୨।୧୬।୨

ଜଳ ଓ ଜ୍ୟୋତିର ମିଶ୍ରଣରେ ବର୍ଷା ହୁଏ ବା ଉଭୟର ଦ୍ୱନ୍ଦ୍ୱରେ ଜଳ ବର୍ଷଣ ହୁଏ । ଉପାମାର୍ଥରେ ରୂପକଳ୍ପନାଦ୍ୱାରା ଯୁଦ୍ଧ ବର୍ଣ୍ଣନା କରାଯାଇଅଛି । ଇନ୍ଦ୍ରଙ୍କର ଯେ କେହି ଶତ୍ରୁ ନାହିଁ; ଏହା ମଧ୍ୟ ଋଗ୍‌ବେଦରେ ଦେଖାଯାଏ, ଯଥା—

ଯଦଚରସ୍ତନ୍ୱା ବାବୃଧାନୋ ବଳାନୀନ୍ଦ୍ର—
ପ୍ରବ୍ରୁବାଣୋ ଜନେଷୁ ।
ମାୟେତସା ତେ ଯାନି ଯୁଦ୍ଧାନ୍ୟାହୁର୍ନାଦ୍ୟ
ଶତ୍ରୁଂ ନନୁ ପୁରା ବିବିତ୍ସେ ॥
ଋ.୧୦।୫୪।୨

ହେ ଇନ୍ଦ୍ର ! ତୁମ୍ଭେ ଯେ ବିଗ୍ରହବାନ୍ ହୋଇ ଏବଂ ପୁନଃପୁନଃ ବର୍ଦ୍ଧିତ ହୋଇ ରୂପ ଓ ସାମର୍ଥ୍ୟର ପ୍ରଚାର ଯାହା ଜନମାନଙ୍କଠାରେ କରିଥିଲ ବୋଲି ପ୍ରସିଦ୍ଧ ଅଛି, ତାହା କେବଳ ମାୟା ମାତ୍ର । ପୁରାବିଦ୍ ଋଷିମାନେ ତୁମ୍ଭର ଶତ୍ରୁ ବିଷୟରେ ଯୁଦ୍ଧ ସମ୍ବନ୍ଧରେ ଯାହା କହିଅଛନ୍ତି, ତାହା ମଧ୍ୟ ମାୟା । ଯେହେତୁ ଅଧୁନା ତୁମ୍ଭର ଶତ୍ରୁ ନାହିଁ । ପୂର୍ବେ ମଧ୍ୟ ତୁମ୍ଭର ଶତ୍ରୁ ନ ଥିଲେ ।

• ଏହି ମନ୍ତ୍ରରୁ ଇନ୍ଦ୍ରଙ୍କର ଶତ୍ରୁସଂହାର ଯେ ମାୟା ବା ମିଥ୍ୟା, ତାହା ପ୍ରତିପନ୍ନ ହେଉଅଛି ।

ବୃତ୍ର ଯେ କିଏ, ତାହା ଆମ୍ଭେମାନେ ଜାଣିପାରିଲୁଁ ଏବଂ ଇନ୍ଦ୍ର ଓ ବୃତ୍ର ଯୁଦ୍ଧ ଯେ ପ୍ରାକୃତିକ ଘଟଣାବଳୀ ଏବଂ ତାହାକୁ କବିମାନେ ଯେ କଳ୍ପନା ବଳରେ ମୂର୍ତ୍ତି ବର୍ଣ୍ଣନା କରିଅଛନ୍ତି, ତାହା ସେମାନଙ୍କର ଅସାଧାରଣ ମହତ୍ତ୍ୱ ଓ ବାହାଦୁରିର ପରିଚୟ ଦେଉଅଛି ।

ବୈଶ୍ୱାନର ମଧ୍ୟ ବୃତ୍ରକୁ ନାଶ କରିଥିବାର ଋଗ୍‌ବେଦରେ ବର୍ଣ୍ଣିତ ହୋଇଅଛି । ସେଠାରେ ବୈଶ୍ୱାନରଙ୍କୁ ବୃତ୍ରହଣ୍ ବୋଲାଯାଇଅଛି । ସାୟନ ଅର୍ଥ କରିଅଛନ୍ତି— "ବୃତ୍ରହଣଂ ଆବରକସ୍ୟ ମେଘସ୍ୟ ହନ୍ତାରଂ ବୈଶ୍ୱାନରଂ ସଚନ୍ତେ ବର୍ଷାର୍ଥିନଃ ସେବନ୍ତେ ।" କହିବା ବାହୁଲ୍ୟ ଯେ, ପୌରାଣିକ ସାୟନ ମଧ୍ୟ ବୃତ୍ର ଅର୍ଥ ଆବରକ ମେଘ ଏବଂ ତାହାକୁ ବୈଶ୍ୱାନର (ଅଗ୍ନି) ନାଶ କରନ୍ତି, ଏହା ଲେଖିଅଛନ୍ତି । ସୁତରାଂ ବୃତ୍ର ଯେ ଅବୟବଧାରୀ କୌଣସି ରାକ୍ଷସ ନ ଥିଲା, ଏହା କି ଆଧୁନିକ କି ପ୍ରାଚୀନ ସମସ୍ତ ବେଦବ୍ୟାଖ୍ୟାକର୍ତ୍ତାଙ୍କଦ୍ୱାରା ସ୍ଥିରୀକୃତ ଓ ପ୍ରମାଣିତ ହୋଇଅଛି । ପୁଣି ସେହି ବ୍ୟାଖ୍ୟାକର୍ତ୍ତାମାନେ ଯୁଦ୍ଧବର୍ଣ୍ଣନାର ବ୍ୟାଖ୍ୟା କଲାବେଳେ ବୃତ୍ର ମୂର୍ତ୍ତିମାନ୍ ଅସୁର ବୋଲି ହୃଦୟଙ୍ଗମ କରାଇବାକୁ ଛାଡ଼ି ନାହାନ୍ତି ।

ବୃତ୍ର ଆବରଣକାରୀ ମେଘ, ଇନ୍ଦ୍ର ତାକୁ ନାଶ କରି ବୃଷ୍ଟିଦାନ କଲେ, ଏଣୁ ଇନ୍ଦ୍ରର ନାମ ହେଲା ବୃତ୍ରହଣ୍ । ସେହିପରି ଜମ୍ଭ ଅର୍ଥ ମଧ୍ୟ ମେଘ, ଏଣୁ ଇନ୍ଦ୍ର ଜମ୍ଭାରାତି । ବଳ ମାନେ ମେଘ, ଏଣୁ ଇନ୍ଦ୍ର ବଳାରାତି । ଶମ୍ବର-ମେଘ, ଇନ୍ଦ୍ରଙ୍କ ନାମ ଶମ୍ବରାରି, ଇତ୍ୟାଦି । ଇନ୍ଦ୍ର ଗୋଟାଏ ମେଘର ଶତ୍ରୁ ହେଲାରୁ ଯେତେ ମେଘ ପର୍ଯ୍ୟାୟ ଅଛି, ତହିଁରେ ଅରି ଶବ୍ଦ ଯୋଜନାଦ୍ୱାରା ଇନ୍ଦ୍ରଙ୍କର ନାମ ତାଲିକା ବଢ଼ିଲା । ଅଧିକ ପ୍ରମାଣ ନିଷ୍ପ୍ରୟୋଜନ ।

ବଳ ନାମକ ଅସୁର ଗୋ ହରଣ କରିଥିଲା । ବଳକୁ ଇନ୍ଦ୍ର ବଧ କରି ଗୋଉଦ୍ଧାର କରିଥିବାର ଗୋଟିଏ ବୈଦିକ ଓ ପୌରାଣିକ ଗଳ୍ପ ଅଛି । ଆକାଶ ମେଘାଚ୍ଛନ୍ନ ହେବାରୁ ବହୁ ଦିନଯାଏ ସୂର୍ଯ୍ୟକିରଣ ଭୂପୃଷ୍ଠରେ ପଡ଼ିଲା ନାହିଁ । ସୂର୍ଯ୍ୟକିରଣ ପାଇବାକୁ ଋଷିମାନେ ପ୍ରାର୍ଥନା କଲେ । ବୃଷ୍ଟି ହୋଇ ଆକାଶ ନିର୍ମଳ ହେଲା, ସୂର୍ଯ୍ୟକିରଣ ଭୂପୃଷ୍ଠରେ ପଡ଼ିଲା । ଋଷିମାନେ ବର୍ଣ୍ଣନା କଲେ, ବଳ ଗୋ ହରଣ କରି ଗୋପନ କରି ରଖିଥିଲା, ଇନ୍ଦ୍ର ବଳକୁ ବଧ କରି ଗୋ ରକ୍ଷା ବା ଉଦ୍ଧାର କଲେ । ବଳ ଅର୍ଥ ମେଘ, ଗୋ ଅର୍ଥ ସୂର୍ଯ୍ୟରଶ୍ମି । ଏହିପରି ଅନେକ ଆଖ୍ୟାୟିକା ରଚିତ ହୋଇଅଛି ।

॥ ୭ ॥

ଇନ୍ଦ୍ରଙ୍କର ଅମରକୋଷ ଓ ଅନ୍ୟ କୋଷ ଲିଖିତ ନାମମାନଙ୍କର ଅର୍ଥ ଅନାୟାସରେ ବାୟୁ କରାଯାଇ ବୁଝାଇ ଦିଆଯାଇପାରେ । କାରଣ, ତାହା ବେଦ ଓ ନିରୁକ୍ତ ସମ୍ମତ । ତେବେ ସେ ସବୁର ବିଚାର କରିବାକୁ ଗଲେ ଯଦି ଏ ପ୍ରବନ୍ଧର କେହି ପାଠକ ଥାନ୍ତି, ସେମାନଙ୍କର ଧୈର୍ଯ୍ୟଚ୍ୟୁତ ହେବା ସମ୍ଭବ; ଏଣୁ ପ୍ରତ୍ୟେକ ପଦର ପରୀକ୍ଷା ବା ବିଚାର ନ କରି ଗୋଟାକେତେ ଶବ୍ଦର ପରୀକ୍ଷା କରାଯାଇପାରେ । ଇନ୍ଦ୍ରଙ୍କର ରାଣୀ ଶଚୀ, ଏହା ଗୋଟିଏ ସନ୍ଦେହ ସ୍ଥଳ ବୋଲି ବିବେଚିତ ହୋଇପାରେ । ମାତ୍ର ଶଚୀ ଅର୍ଥ ବାକ୍, କର୍ମ ଓ ପ୍ରଜ୍ଞା । ବାୟୁହିଁ ଶବ୍ଦ ଓ ବାକ୍‌ର ମୂଳ ବା ପତି । ଇନ୍ଦ୍ରଠାରୁ କର୍ମକ୍ଷମ ଓ ପ୍ରଜ୍ଞାବାନ୍ କେହି ନୁହନ୍ତି, ସୁତରାଂ ଇନ୍ଦ୍ର ଶଚୀପତି । ଶଚୀ ଚିର ସତୀ, ଯେହେତୁ ଇନ୍ଦ୍ର ବା ବାୟୁ ପ୍ରକୃତ ପତି ହେଲେ ମଧ୍ୟ ଯେ ପ୍ରଜ୍ଞାବାନ୍, କର୍ମଠ ଓ ପଣ୍ଡିତ ହେଲା, ଶଚୀ ତାର ଆଶ୍ରୟଭୂତା ହୁଅନ୍ତି । ଏହି ରୂପକ ବର୍ଣ୍ଣନା ଅବଶ୍ୟ ପୌରାଣିକ । ଐରାବତ ଇନ୍ଦ୍ରଙ୍କର ହସ୍ତୀ । ହେଉ, ଐରାବତ ହସ୍ତୀ, ସମୁଦ୍ରରୁ ଏହାର ଜନ୍ମ; ମେଘର ଜନ୍ମ ସମୁଦ୍ରରୁ ସୁତରାଂ ଐରାବତ ଯେ ମେଘ ଏବଂ ଇନ୍ଦ୍ରଙ୍କର ବାହନ, ଏହା ସ୍ୱଭାବସିଦ୍ଧ । ଇନ୍ଦ୍ର ସୋମ ପାନ କରନ୍ତି । ସୋମପାନ କଲାପରେ ସେ ବୃତ୍ରକୁ ବଧ କରନ୍ତି । ଏହା ବେଦରେ ବର୍ଣ୍ଣିତ । ମାତ୍ର ଇନ୍ଦ୍ର କି କେବେ ଆସି ସୋମଲତାରୁ ପ୍ରସ୍ତୁତ ମଦ୍ୟପାନ କରି ଯାଆନ୍ତି ? ସୋମ ସମ୍ବନ୍ଧରେ କୌଣସି ବ୍ୟାଖ୍ୟାକର୍ତ୍ତା ବା ନୈରୁକ୍ତଙ୍କ ମତର ଐକ୍ୟ ଦେଖାଯାଏ ନାହିଁ, କାରଣ କ'ଣ ? ସୋମର ବର୍ଣ୍ଣନା ଦେଖିଲେ ଏହା ପ୍ରକୃତ କି କାଳ୍ପନିକ, ଭୌମ କି ଅନ୍ତରୀକ୍ଷ ବା ଦିବ୍ୟ ତାହା ସ୍ପଷ୍ଟ କେହି କହିପାରୁ ନାହାନ୍ତି । ସୋମ ସହିତ ଅନ୍ୟାନ୍ୟ ଦେବତାର ବର୍ଣ୍ଣନା ଥିଲେ ସୁଦ୍ଧା ଇନ୍ଦ୍ରଙ୍କ ସହିତ ସୋମର ବେଶି ସମ୍ବନ୍ଧ । ଇନ୍ଦ୍ର ସୋମପାୟୀ । ସୋମ ସମ୍ବନ୍ଧରେ ଋଗ୍‌ବେଦର ୯ମ ମଣ୍ଡଳର ସମୁଦ୍ର ସୂକ୍ତ ରଚିତ ହୋଇଅଛି । ଏହାଛଡ଼ା ଅନ୍ୟାନ୍ୟ ମଣ୍ଡଳରେ ମଧ୍ୟ ସୋମ ନାମର ମନ୍ତ୍ର ବିଦ୍ୟମାନ ଅଛି । ଦେଖିବାକୁ ଗଲେ, ସୋମ ଯେ କି ପ୍ରାଚ୍ୟ କି ପାଶ୍ଚାତ୍ୟ ପଣ୍ଡିତଗଣଙ୍କୁ ଭ୍ରାନ୍ତ କରିଅଛି, ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ସୋମ ଯେ ପରବର୍ତ୍ତୀ କାଳରେ ସୋମଲତାନିଷ୍ପାଦିତ ମଦ୍ୟବିଶେଷ ବୋଲି ଗୃହୀତ ହୋଇଅଛି, ଏଥିରେ ସନ୍ଦେହ ନାହିଁ । ଏହା ମୂଜାବତ ଓ ହିମବନ୍ତ ପର୍ବତରେ ପ୍ରାପ୍ୟ ବୋଲି ମଧ୍ୟ ଲିଖିତ ହୋଇଅଛି । ଏହି ମତର ପକ୍ଷପାତୀ ଇଉରୋପୀୟ ପଣ୍ଡିତଗଣ ଅଟନ୍ତି ।

ଆମ୍ଭ ଦେଶର ପ୍ରାଚୀନ ମତ ମଧ ତାହାହିଁ । ତଥାପି କେହି କେହି ଚନ୍ଦ୍ର, କେହି ଅମୃତ ଓ କେହି କେହି ବ୍ରହ୍ମ ଇତ୍ୟାଦି କଳ୍ପନା କରିବାରେ ତ୍ରୁଟି କରି ନାହାନ୍ତି— ମାତ୍ର ସମସ୍ତ କଳ୍ପନା । ଦେବତାମାନଙ୍କର ରୂପ ଗୁଣ ଯେବେ କଳ୍ପନାପ୍ରସୂତ ରୂପକ ବର୍ଣ୍ଣନା ମାତ୍ର, ତେବେ ତାଙ୍କର ଖାଦ୍ୟାଦି ମଧ ତଦ୍ରୂପ ହେବା ସ୍ୱାଭାବିକ । କାଳ୍ପନିକ ବିଗ୍ରହମାନଙ୍କର ସ୍ୱାଭାବିକ ବ୍ୟବହାର୍ଯ୍ୟ ପଦାର୍ଥାଦି କାଳ୍ପନିକ, ଏହା ସ୍ୱତଃସିଦ୍ଧ । ଅମୃତ ଅବଶ୍ୟ କାଳ୍ପନିକ । 'ଗ୍ରାମୋ ନାସ୍ତି କୁତଃ ସୀମା' । ଯେବେ ଦେବତା କାଳ୍ପନିକ, ତେବେ ଅମୃତ କାଳ୍ପନିକ ।

ପ୍ରାକୃତିକ କେଉଁ ପଦାର୍ଥକୁ ସୋମ ଆଖ୍ୟା ଦିଆଗଲା ? ଅବଶ୍ୟ କ୍ରମେ ସେହି ସ୍ୱର୍ଗୀୟ ସୋମ ପାର୍ଥିବ ସୋମଲତା ବୋଲି ପରିଚିତ ହୋଇଅଛି ଏବଂ ତଦ୍ୱାରା କାର୍ଯ୍ୟ ସାଧିତ ହୋଇଅଛି, ଏଥିରେ ସନ୍ଦେହ ନାହିଁ । ମାତ୍ର ପ୍ରାଥମିକ ସୋମ କିଏ ? ସମସ୍ତଙ୍କ ସହିତ ସାଦୃଶ ଅଜ୍ଞଙ୍କ ଲୋକର ମତଦ୍ୱୈଧ ହେବାର ଦେଖିଲେ ବିଜ୍ଞ ଲୋକେ ନାସିକା କୁଞ୍ଚନ କରିଦେ; ମାତ୍ର ଭୀତ ହେବାର କଥା କି ? ଯାହା ହୃଦୟରେ ସତ୍ୟ ବୋଲି ଆଭାସୁ ଅଛି ତାହା କହିବାକୁ ଭୟ କାହିଁକି ?

ସୋମ ସମ୍ବନ୍ଧରେ ନୈରୁକ୍ତଗଣ ବିଶେଷ ବିବରଣ ଦେଇ ନାହାନ୍ତି । ଆମ୍ଭମାନଙ୍କ ବିବେଚନାରେ ପ୍ରାଥମିକ ବୈଦିକ ଋଷି ଆକାଶର ଯେଉଁ ବସ୍ତୁକୁ ସୋମ ଆଖ୍ୟା ଦେଇଥିବେ, ତହିଁର ବିବରଣ ନିମ୍ନରେ ଦିଆଯାଉଅଛି । ଏହା ଆମ୍ଭମାନଙ୍କ ପରି ଅଜ୍ଞଙ୍କ ବ୍ୟକ୍ତିର ଚିନ୍ତାପ୍ରସୂତ ବୋଲି ଯେପରି ହାସ୍ୟାସ୍ପଦ ନ ହୁଏ । ପାଠକଗଣ ଏଥି ସମ୍ବନ୍ଧରେ କିଞ୍ଚିତ୍ ମସ୍ତକଚାଳନା କଲେ ଆମ୍ଭମାନଙ୍କ ଧାରଣା ଯୁକ୍ତିଯୁକ୍ତ ଥିବାର ବିବେଚିତ ହେବ ବୋଲି ଆଶା ରହିଲା । ଶରତ୍କାଳୀନ ନିର୍ମଳ ନଭୋମଣ୍ଡଳ ଆଡ଼କୁ ଚନ୍ଦ୍ରଶୂନ୍ୟ ଅର୍ଦ୍ଧରାତ୍ରରେ ନିରୀକ୍ଷଣ କଲେ କ୍ଷୀଣଜ୍ୟୋତିବିଶିଷ୍ଟ ମେଖଳା ନୀଳ ଆକାଶର ଉତ୍ତର ଦିଗ୍‌ବଳୟଠାରୁ ଦକ୍ଷିଣ ଦିଗ୍‌ବଳୟ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିବାର ଦେଖାଯାଏ । ଏହା ମେଘ ନୁହେଁ । ମାତ୍ର ଶରତ୍କାଳୀନ ମେଘବତ୍ ଶୁଭ୍ର ଦେଖାଯାଏ । ଏହା ଏବେ ଲୋକଙ୍କୁ ବିସ୍ମୟାଭିଭୂତ କରୁଅଛି । ବହୁକାଳପୂର୍ବେ ମଧ ଭାବୁକ ଓ ଦ୍ରଷ୍ଟାମାନଙ୍କୁ ବିସ୍ମୟାଭିଭୂତ କରୁଥିଲା । ଆମ ଦେଶର ଲୋକେ ଯେପରି, ଅନ୍ୟ ଦେଶର ଲୋକେ ମଧ ସେହିପରି ଏହି ବିଚିତ୍ର ପଦାର୍ଥ ଆଡ଼କୁ ଅନାଇ ଆପଣାର ଭାବୋଚ୍ଛ୍ୱାସ ଫିଟାଇଅଛନ୍ତି । କି ବେଦ କି ପୁରାଣ କି କାବ୍ୟ ସମସ୍ତ ଶାସ୍ତ୍ରରେ ଏଥିର ବର୍ଣ୍ଣନା ଅଛି । ପାଶ୍ଚାତ୍ୟ ଜାତିମାନେ ମଧ ଆପଣା ଧର୍ମଗ୍ରନ୍ଥରେ ଓ କାବ୍ୟରେ ଏଥିର ବର୍ଣ୍ଣନା କରିଯାଇଅଛନ୍ତି । ସାଧାରଣତଃ ଏହାକୁ ଗୋଟିଏ ନଦୀ ସହିତ ଉପମା ଦିଆଯାଇଥାଏ । ଏହା ଅନନ୍ତ ଆକାଶର ଗୋଟିଏ ନଦୀ, ଏହାକୁ ଛାୟାପଥ Milky way, Via dacta ପାରସିକ ପ୍ରାଚୀନ ଧର୍ମଶାସ୍ତ୍ରରେ ଏହାକୁ ଅଦ୍ୱି ସୁରା ଅନହିତା— (ପ୍ରବଳ ଓ ପବିତ୍ର) ଆଧୁନିକ ପାରସିକମାନେ ଜଳମାର୍ଗ ନାମ ଦେଇଅଛନ୍ତି । ଆମର କବିମାନେ ଏହାକୁ ଛାୟାପଥ, ଦେବପଥ ସୋମଧାରା ସ୍ୱର୍ଣ୍ଣବର୍ଣ୍ଣା ଇତ୍ୟାଦି ଅନେକ ନାମ ଦେଇଅଛନ୍ତି । ସାଧାରଣ ଲୋକେ ଏହାକୁ ହାତୀଧଡ଼ସ ବୋଲି କହନ୍ତି । ହସ୍ତୀକର୍ଦ୍ଦମାକ୍ତ ଭୂମିରେ ଚାଲିଗଲେ ତାହାର ପଦଚିହ୍ନ ଯେପରି ଦେଖାଯାଏ; ଛାୟାପଥ ସେହିପରି ଦେଖାଯାଏ । ଇନ୍ଦ୍ରଙ୍କ ହସ୍ତୀର ପଦଚିହ୍ନ ଏହାହିଁ ଧାରଣା ।

ବୈଦିକ ଋଷିମାନେ ଏହି ଛାୟାପଥକୁ ଦେଖି ବିସ୍ମୟାଭିଭୂତ ହୋଇ ଏହାର ନାମ ସୋମ ରଖିଥିଲେ । ଏହାର ସ୍ଥାନ ଯେମନ୍ତ ଅତି ଉଚ୍ଚରେ, ତାହାର ସମ୍ମାନ ମଧ ତେମନ୍ତ ।

ପୂର୍ବେ କହୁଅଛୁଁ, ସୋମଙ୍କର ଅନେକ ସ୍ତୁତି ଅଛି ଏବଂ ସେହି ସ୍ତୋତ୍ରମାନଙ୍କୁ ନାନା ଟୀକାକାର ନାନା ଅର୍ଥ କରିଅଛନ୍ତି । ସେହି ମନ୍ତ୍ରମାନଙ୍କର ଏପ୍ରକାର ବିକୃତ ଅର୍ଥ ହୋଇଅଛି ଯେ, ତାହା ଦେଖିଲେ ଦୁଃଖାଭିଭୂତ ହେବାକୁ ହୁଏ । ଯାହାହେଉ, ସେ ସମ୍ବନ୍ଧରେ ଅଧିକ ଆଲୋଚନା ନ କରି ଦୁଇ ଚାରିଗୋଟି ସୂକ୍ତ ଉଦ୍ଧୃତ କରି ଛାୟାପଥ ବୈଦିକ ଋଷିମାନଙ୍କର ଯେ ସୋମ, ଏହା ପ୍ରମାଣ କରିବାକୁ ଚେଷ୍ଟା କରିବୁଁ । ଋଷିମାନେ ଏକ ଏକ ଦେବତାର ସ୍ଥାନ କେବଳ ଏକ ସ୍ଥାନରେ ନିର୍ଦ୍ଦେଶ କରିଅଛନ୍ତି, ଏପରି ନୁହେଁ । କୌଣସି କୌଣସି ଦେବତାର ସ୍ଥାନ ଭୂ, ଅନ୍ତରୀକ୍ଷ ଓ ଦ୍ୟୁ ବୋଲି ମଧ ନିର୍ଦ୍ଦେଶ କରିଅଛନ୍ତି । ଭାବୋଚ୍ଛ୍ୱାସରେ ଏପରି କରିବା ଅସ୍ୱାଭାବିକ ନୁହେଁ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ, ଅଗ୍ନିକୁ ଭୂସ୍ଥାନରେ, ଅନ୍ତରୀକ୍ଷରେ ସ୍ତୁତି କରାଯାଇଅଛି ଏବଂ ପୃଥିବୀକୁ ଭୂସ୍ଥାନରେ, ଅନ୍ତରୀକ୍ଷରେ ଏବଂ ଦ୍ୟୁସ୍ଥାନରେ ସ୍ତୁତି କରିଅଛନ୍ତି । ନୈରୁକ୍ତମାନେ ସୋମର ସ୍ଥାନ ମଧରେ ବୋଲି ନିର୍ଦ୍ଦେଶ କରିଅଛନ୍ତି । ଯେହେତୁ ଅଧିକଙ୍କର ଧାରଣା ଏହି ଯେ, ସୋମ ଅର୍ଥ ଚନ୍ଦ୍ର, ମାତ୍ର ଋଗ୍‌ବେଦ ଦେଖିଲେ ଜଣାଯାଏ, ସୋମର ସ୍ଥାନ ସୂର୍ଯ୍ୟଠାରୁ ମଧ ଉଚ୍ଚତର । ଯେବେ ଋଷିମାନେ ଜାଣିଥାନ୍ତେ ଯେ, ସୋମଲତାର ସ୍ଥାନ ମୂଜାବତ ବା ହିମବନ୍ତ ପର୍ବତରେ, ତାହାହେଲେ ସେମାନେ ସୋମ ସମ୍ବନ୍ଧରେ ଏପରି ସ୍ତୁତି କରନ୍ତେ କାହିଁକି ? ଗୋଟିଏ ସ୍ତୁତି ଦେଖାଯାଉ:—

ଅୟଂ ବିଶ୍ୱାନି ତିଷ୍ଠତି
ପୁନାନୋ ଭୁବନୋପରି ।
ସୋମଃ ଦେବୋ ନ ସୂର୍ଯ୍ୟଃ । ଋ. ୯ । ୫୪ । ୩

ପୂଜନୀୟ ଏହି ସୋମ ସମସ୍ତ ଭୁବନର ଉପରେ ଅଛନ୍ତି । ସୂର୍ଯ୍ୟ ଯେପରି ସମସ୍ତ ଭୁବନର ଉପରେ ଅଛନ୍ତି, ସେହି ପ୍ରକାର ସୋମ ମଧ୍ଯ ସର୍ବୋପରି ଅଟନ୍ତି । ବୋଧହୁଏ, ଏହା ମଧ୍ଯ ଅର୍ଥ କଲେ ଅସଙ୍ଗତ ହେବ ନାହିଁ ଯେ, ପୂଜନୀୟ ସୋମ ସମସ୍ତ ଭୁବନର ଉପରେ ବିଦ୍ୟମାନ ଅଛନ୍ତି । ସୋମ କେବଳ ଦେବ ବା ଦ୍ୟୁସ୍ଥାନବାସୀ ସୂର୍ଯ୍ୟ ନୁହନ୍ତି । ଏଥିରୁ ସ୍ପଷ୍ଟ ଜଣାଗଲା ଯେ, ସୋମ ସୂର୍ଯ୍ୟଠାରୁ ମଧ୍ଯ ଅତି ଊର୍ଦ୍ଧ୍ୱରେ । ଛାପାପଥ ଯେ ପୃଥିବୀଠାରୁ ସୂର୍ଯ୍ୟ ଅପେକ୍ଷା ମଧ୍ଯ ଅତି ଊର୍ଦ୍ଧ୍ୱରେ ଉପସ୍ଥିତ, ଏହା ବିଜ୍ଞାନସମ୍ମତ । ଚନ୍ଦ୍ର ଯେ କି କେବଳ ୨୪୦୦୦୦ ମାଇଲ ଦୂରରେ ଅବସ୍ଥିତ, ତାକୁ ନେଇ ସୂର୍ଯ୍ୟ ନିକଟବର୍ତ୍ତୀ ବା ସୂର୍ଯ୍ୟ ସହିତ ସମଦୂରବର୍ତ୍ତୀ ବା ସୂର୍ଯ୍ୟଠାରୁ ଊର୍ଦ୍ଧ୍ୱରେ ଅବସ୍ଥିତ ବୋଲି ଭାବିବା ସଙ୍ଗତ ନୁହେଁ । ସୋମଲତାର ରସକୁ ନେଇ ସୂର୍ଯ୍ୟଠାରୁ ଊର୍ଦ୍ଧ୍ୱରେ ରଖିବା ମତ୍ତ ମଦ୍ୟପର ପ୍ରଳାପ ଉକ୍ତି ବୋଲାଯିବ । ଆମ୍ଭମାନଙ୍କ ବିଶ୍ୱାସ, ଋଷିମାନେ ପ୍ରକୃତିର ଅନ୍ୟ ବସ୍ତୁମାନଙ୍କ ପରି ଛାୟାପଥକୁ ସୋମ ନାମ ଦେଇ ସ୍ତୁତି କରିଥିଲେ ।

ଏହି ଛାୟାପଥ ନଦୀତୁଲ୍ୟ ଦୃଶ୍ୟ ହୁଏ ନାହିଁ କି ? ଏଣୁ ଏହାର ନାମ ସୋମଧାରା ଦେଇଅଛନ୍ତି ।

ସୋମସ୍ୟ ଧାରା ପବତେ ନରକ୍ଷସ
ଋତେନ ଦେବାନ୍ ହବତେ ଦିବସ୍ପରି ।
ବୃହସ୍ପତେ ରବଥେନା ବିବିଦ୍ୟୁତେ
ସମୁଦ୍ରାସୋ ନ ସବନାନି ବିବ୍ୟଚୁଃ ।
ଋ. ୯ । ୮୦ । ୧

ଅତି ଊର୍ଦ୍ଧ୍ୱ ଦ୍ୟୁଲୋକରେ ସୋମଧାରା ବହୁଅଛି । ଲୋକଦୃଷ୍ଟିରେ ଯଜ୍ଞଭାଗୀ (ଇନ୍ଦ୍ରାଦି) ଦେବତାମାନଙ୍କୁ ବହନ କରିଅଛି, ବୃହସ୍ପତିର ଶବ୍ଦଦ୍ୱାରା ଏହାର ଦୀପ୍ତି ବୃଦ୍ଧି ଲାଭ କରୁଅଛି, ସମୁଦ୍ର ପରି ଏ ପୃଥିବୀକି ଯଜ୍ଞଦ୍ୱାରା ବ୍ୟାପ୍ତ କରିଅଛି ।

ଅଧିକ କଥା ଦୂରେ ଥାଉ, ଉପରୋକ୍ତ ଦୁଇ ସୂକ୍ତ ନିଷ୍ପିଡ଼ିତ ସୋମରସ ସ୍ତୁତି ବୋଲି ମଧ୍ଯ ଟୀକାକାର ଲେଖିବାକୁ ଛାଡ଼ି ନାହାନ୍ତି ।

ସୋମ ସିନ୍ଧୁମାନଙ୍କର ରାଜ୍ୟ ବୋଲି ସ୍ତୁତି ହୋଇଅଛି । ସୋମସ୍ତୁତି ମଧ୍ୟରୁ ଆମ୍ଭେମାନେ ଅନେକଗୁଡ଼ିଏ ସ୍ତୁତି ଦେଖିବାକୁ ପାଇଅଛୁଁ— ଯହିଁରୁ ପ୍ରତୀୟମାନ ହୁଏ ଯେ, ଆଦିକବି ଛାୟାପଥକୁ ହିଁ ସୋମ ଆଖ୍ୟା ଦାନ କରିଥିଲେ । ସୋମ ଅର୍ଥ ଛାୟାପଥ ହେଲେ କବିର ତତ୍ତ୍ୱାନ୍ୱେଷଣ ଓ ଭାବଧାରା ଅତି ଉଚ୍ଚ, ଏହା ଜଣାଯାଏ; ମାତ୍ର ସୋମ ଅର୍ଥ ମାଦକବିଶେଷ, ଏ ଅର୍ଥ ଗ୍ରହଣ କଲେ ମଦ୍ୟପର ଉକ୍ତି ଭିନ୍ନ ଆଉ କ'ଣ ବୋଲାଯାଇପାରେ ? ପରବର୍ତ୍ତୀ ଯାଜ୍ଞିକମାନେ ଯେପରି ଇନ୍ଦ୍ରାଦିଙ୍କୁ ଅବୟବଧାରୀ ବୋଲି ବିବେଚନା କଲେ, ତାହାଙ୍କର ପାନୀୟ ପଦାର୍ଥ ସୋମଲତା ନିଷ୍ପୀଡ଼ିତ ମାଦକ ରସ ବା ମଦ୍ୟ ବୋଲି ସୋମକୁ ସ୍ଥିର କଲେ । ଇନ୍ଦ୍ର ହିଁ ବେଶି ସୋମପ୍ରିୟ । ଏହି ରୂପକରେ ପ୍ରଥମ କବି ବର୍ଣ୍ଣନା କରିଥିଲେ ଏବଂ ସୋମପାନ କରି ଇନ୍ଦ୍ର ବୃତ୍ର, ଜମ୍ଭ ପ୍ରଭୃତି ଅସୁରମାନଙ୍କୁ ନାଶ କରନ୍ତି ବୋଲି ବର୍ଣ୍ଣନା ମଧ୍ଯ କରିଯାଇଅଛନ୍ତି । ମାତ୍ର ଏ ସମସ୍ତ ରୂପକ ବର୍ଣ୍ଣନା । ବାୟୁ ବା ଇନ୍ଦ୍ର କିପରି ବଜ୍ର ଧାରଣ କରି ବୃତ୍ର ନାଶ କରନ୍ତି, ତାହା ପୂର୍ବେ ଲେଖାଯାଇଅଛି । ସେହି ଇନ୍ଦ୍ର କିପରି ଏବଂ କେବେ ସୋମପାନ କରି ବୃତ୍ର ନାଶ କରନ୍ତି, ତାହା ଦେଖାଯାଉ । ଶାରଦୀୟ ନିର୍ମଳ ଆକାଶ ଆଡ଼କୁ ଅର୍ଦ୍ଧରାତ୍ରରେ ଦୃଷ୍ଟିପାତ କଲେ ଛାୟାପଥଟି ସ୍ପଷ୍ଟରୂପରେ ଦେଖାଯିବ । ଏହି ଛାୟାପଥ ଆମ୍ଭମାନଙ୍କର ସୋମ । ଏହି ଛାୟାପଥର ଉଭୟ ପାର୍ଶ୍ୱରେ ବୃଷ ଓ ମିଥୁନ ରାଶି ବିଦ୍ୟମାନ । ସୂର୍ଯ୍ୟ ବୃଷ ରାଶି ତ୍ୟାଗକରି ଛାୟାପଥ ବା ସୋମଧାରାରେ ପ୍ରବେଶ କରନ୍ତି । ଏହି ସମୟରେ ବୃଷ୍ଟି ଆରମ୍ଭ ହୁଏ । ବୃତ୍ର ସେତେବେଳଯାଏ ଜଳକୁ ଗୋପନ କରି ରଖିଥାନ୍ତି । ଇନ୍ଦ୍ର ସୋମପାନ କରି ବୃତ୍ର ବଧ କରନ୍ତି ଏଣୁ ବୃଷ୍ଟି ହୁଏ । ସୋମଧାରାର ଜଳ ପୃଥିବୀରେ ମୃଦୁଧାରାରେ ପଡ଼େ, ଏହା ମଧ୍ଯ ବର୍ଣ୍ଣିତ ହୋଇଅଛି । କ୍ରମେ ଶରତ୍‌କାଳ ହେଲେ ପଥ ସ୍ପଷ୍ଟ ଭାବରେ ଦେଖାଯାଏ । ଜଳବୃଷ୍ଟି ହେତୁରୁ ପୃଥିବୀର ପ୍ରଜା ଓ ଜୀବକୁଳ ମହାସୁଖାନୁଭବ କରନ୍ତି । ଛାୟାପଥ ସ୍ପଷ୍ଟ ଦେଖାଯିବାବେଳେ ଏହାକୁ ଅଭିସୁତ ସୋମ ଓ ପରିଷ୍କୃତ ସୋମ ବୋଲି ବର୍ଣ୍ଣନା କରିଅଛନ୍ତି । ଛାୟାପଥ ଯେ ବିୟଦ୍‌ଗଙ୍ଗା, ଏହା ପୌରାଣିକମାନେ ସ୍ୱୀକାର କରି ଯାଇଅଛନ୍ତି । ଏହାକୁ ରାମାୟଣ ଲେଖକ ସ୍ୱର୍ଗଙ୍ଗା ଏବଂ ତାହାର ପତନ ହୋଇ ଭାରତବର୍ଷରେ ଗଙ୍ଗାର ଉତ୍ପତ୍ତି ହୋଇଥିବାର ଲେଖିଅଛନ୍ତି । ଏତାଦୃଶ ମହତ୍ ପଦାର୍ଥକୁ ଆମ୍ଭମାନଙ୍କର କେତେକ ଋଷି ସୋମମଦ୍ୟ ବୋଲି ଯଜ୍ଞଦ୍ୱାରା ସ୍ୱାର୍ଥସିଦ୍ଧିର ଆକାଂକ୍ଷା କରିବାରୁ ଆମ୍ଭେମାନେ ଅଦ୍ୟାପି ଭ୍ରାନ୍ତ ହେଉଅଛୁଁ ।

ଅବଶ୍ୟ ସୋମ ମଦ୍ୟର ଉଲ୍ଲେଖ ଯେ ବେଦରେ ନାହିଁ ତାହା ନୁହେଁ । ମାତ୍ର ପ୍ରଥମ କଳ୍ପନା ଛାୟାପଥ । ପରେ

ବେଦର ପ୍ରକୃତ ଅର୍ଥ ଭୁଲି ଯଜ୍ଞର ବହୁଳ ପ୍ରଚାର ସଙ୍ଗେ ସଙ୍ଗେ ସୋମଲତାର ଅନ୍ୱେଷଣ ମୂଜାବତ ଗିରିରେ ହେବାକୁ ଲାଗିଲା । ଭାଗ୍ୟକ୍ରମେ ଏବେ ସୋମଲତା ଭାରତରେ ନାହିଁ କିମ୍ବା ସେ ଯଜ୍ଞର ଘଟା ଭାରତରେ ନାହିଁ (ମହାତ୍ମା ବୁଦ୍ଧଙ୍କ ପ୍ରଭାବରୁ) । ନୋହିଲେ ଆଧୁନିକ ଯୁଗରେ ସୋମ ରସ ସହିତ ଯଜ୍ଞରେ ପାଶ୍ଚାତ୍ୟ ମଦ୍ୟ ମିଶି ମଣିକାଞ୍ଚନ ଯୋଗ ଘଟିଥାନ୍ତା ।

ଏଥି ଉତ୍ତାରୁ ଆଉ ଗୋଟିକେତେ ମଧସ୍ଥାନ ଦେବତାର ସଂକ୍ଷେପ ପରିଚୟ ନିଆଯାଉ ।

ଏଥିଉତ୍ତାରୁ ପର୍ଜନ୍ୟ-ପର୍ଜନ୍ୟକୁ ପ୍ରାୟ ସମସ୍ତେ ଜାଣନ୍ତି, ତଥାପି ଗୋଟିଏ ଋଗ୍ ମନ୍ତ୍ରଦ୍ୱାରା ତାଙ୍କର ପରିଚୟ ଦିଆଯାଇପାରେ । ପର୍ଜନ୍ୟର ଅର୍ଥ ସର୍ବଜନପଦତର୍ପୟିତା-ମାତ୍ର ସର୍ବ ଜନପଦର ତର୍ପୟିତା ହେଲେ ମଧ ଲୋକଙ୍କୁ ଭୀତ କରନ୍ତି, ଶବ୍ଦ କରନ୍ତି, ବୃକ୍ଷମାନଙ୍କୁ ଛିନ୍ନ ଓ ଉନ୍ମୁକ୍ତ କରନ୍ତି, ଇତ୍ୟାଦି । ରୁଦ୍ର ଓ ପର୍ଜନ୍ୟ ମଧରେ ସାଦୃଶ୍ୟ ଅଛି ।

ବିବୃକ୍ଷାନ୍ ହନ୍ତ୍ୟୁତ ହନ୍ତି ରକ୍ଷସୋ ବିଶ୍ୱଂ
ବିଭାୟ ଭୁବନଂ ମହାବଧାତ୍ ।
ଉତାନାଗା ଈର୍ଷତେ ବୃଷ୍ୟାବତୋ
ଯତ୍ପର୍ଜନ୍ୟଃ ସ୍ତନୟନ୍ ହନ୍ତି ଦୁଷ୍କୃତଃ ।
ଋ.୫।୮୩।୨

ପର୍ଜନ୍ୟ ବୃକ୍ଷମାନଙ୍କୁ ନାଶ କରନ୍ତି (ଅଶନିପାତଦ୍ୱାରା) । ତସ୍କରାଦିଙ୍କୁ ଭୟ ପ୍ରଦର୍ଶନଦ୍ୱାରା ଉପଶମ କରନ୍ତି । ପର୍ଜନ୍ୟଙ୍କୁ ସମସ୍ତ ଭୂତ ଭୟ କରନ୍ତି । ଏମନ୍ତ କି, ଅନପରାଧୀ ବ୍ୟକ୍ତିମାନେ ମଧ ପର୍ଜନ୍ୟ ବୃଷ୍ଟି କଲାବେଳେ ବଜ୍ରନିର୍ଘୋଷ ଓ ଅଶନିପାତ ଦ୍ୱାରା ପ୍ରାଣଯିବା ଭୟରେ ଦୂରକୁ ପଳାୟନ କରନ୍ତି ।

ପର୍ଜନ୍ୟଙ୍କ ଗର୍ଜନ, ଅଶନିପାତ ପ୍ରଭୃତି ଭୀତିପ୍ରଦ କାର୍ଯ୍ୟଦ୍ୱାରା ଲୋକଙ୍କର ମଙ୍ଗଳ ହୁଏ, ଏହା ଏହି ମନ୍ତ୍ରରୁ ସୂଚିତ ହୋଇଅଛି । ବାୟୁ ଯେ ପର୍ଜନ୍ୟ, ଏହା ବୁଝାଇଦେବା ବାହୁଲ୍ୟ ମାତ୍ର ।

ବୃହସ୍ପତି— ବୃହସ୍ପତି ହିନ୍ଦୁଶାସ୍ତ୍ରର ଗୋଟିଏ ଅଜ୍ଞେୟ ଦେବତା । ଏ ସୁରଗୁରୁ, କବି ପୁଣି ଗ୍ରହ; ଆଉ ବା କ'ଣ ନୁହଁନ୍ତି । ମାତ୍ର ବେଦରେ ବୃହସ୍ପତି କେବଳ ବାୟୁର ରୂପାନ୍ତର ମାତ୍ର । ବୃହସ୍ପତି ଅର୍ଥ ବୃହତଃ ମହତୋ ଅସ୍ୟ ଜଗତଃ ଉଦକସ୍ୟ ପାତା ରକ୍ଷିତା ଇତି ବୃହସ୍ପତିଃ । ଜଳ ରକ୍ଷାକର୍ତ୍ତା ବାୟୁବିକଳ୍ପ ଇନ୍ଦ୍ର ଭିନ୍ନ ଆଉ କିଏ ହୋଇପାରେ ? ଋଗ୍‌ବେଦର ଦଶମ ମଣ୍ଡଳର ୬୭ ଓ ୬୮ ସୂକ୍ତ ପାଠ କଲେ ସ୍ପଷ୍ଟ ଜଣାପଡ଼ିବ ଯେ, ଇନ୍ଦ୍ରଙ୍କର ଓ ବୃହସ୍ପତିଙ୍କର କର୍ମ ଅଭିନ୍ନ । ଗୋଟିଏ ମନ୍ତ୍ର ଉଦ୍ଧୃତ କଲେ ସ୍ପଷ୍ଟ ଜଣାଯାଇପାରିବ ।

ଅଶ୍ନାପିନଦ୍ଧଂ ମଧୁ ପର୍ଯପଶ୍ୟନ୍ମସ୍ୟଂ
ନ ଦୀନ ଉଦନି କ୍ଷିୟନ୍ତଂ ।
ନିଷ୍ଟଜଭାରଚମସଂ ନ ବୃକ୍ଷାଦ୍ ବୃହସ୍ପତି—
ର୍ବିରବେଣା ବିକୃତ୍ୟ ॥ ଋ.୧୦ । ୬୮ । ୮

ବ୍ୟାପ୍ତ ମେଘଦ୍ୱାରା ଅଦୃଶ୍ୟ ଜଳକୁ ବୃହସ୍ପତି ଦେଖିବାକୁ ପାଇଲେ, ଯେମନ୍ତ ଧୀବର ଅଳ୍ପ ଜଳସ୍ଥ ମତ୍ସ୍ୟକୁ ଦେଖିପାରେ । କୁଶଳ ଶିଳ୍ପୀ ଯେମନ୍ତ ବୃକ୍ଷରୁ ଚମସ ନିଷ୍ପାଦିତ କରେ, ସେହିପରି (ବୃହସ୍ପତି) ମହତ୍ ଶବ୍ଦ ସହକାରେ ଜଳ ଆକର୍ଷଣ କଲେ ।

ବ୍ରାହ୍ମଣସ୍ପତି— ମଧସ୍ଥାନ ଦେବତା, ମାତ୍ର ବେଦାନ୍ତର ବ୍ରହ୍ମ ବା ପୌରାଣିକ ବ୍ରହ୍ମା ସହିତ ଏହାଙ୍କର ସମ୍ବନ୍ଧ ନାହିଁ । ଏ ମଧ ବାୟୁ ବା ଇନ୍ଦ୍ର । ବ୍ରହ୍ମା ଅନ୍ନଂ, ଅନ୍ନର ପାଳନକର୍ତ୍ତା ଅର୍ଥାତ୍ ବର୍ଷାଦ୍ୱାରା ଔଷଧି ଜନ୍ମ କରାଇ ସମସ୍ତଙ୍କୁ ପାଳନ କରନ୍ତି । ସ୍ପଷ୍ଟତଃ ବାୟୁକୁ ବୁଝାଉ ନାହିଁ କି ?

ଅସ୍ମାସ୍ୟ ମବତଂ ବ୍ରହ୍ମଣସ୍ପତିର୍ମଧୁଧାରମଭି
ଯମୋଜସାତୃଣତ୍ ।
ତମେବ ବିଶ୍ୱେ ପପିରେ ସ୍ୱଦୃଶୋ ବହୁସାଙ୍କ
ସିସିଚୁରୁତ୍ସମୁଦ୍ରିଣଂ ॥ ଋ । ୨ । ୨୪ । ୪

ଜଳଧାରଣକାରୀ ମେଘକୁ ବଳଦ୍ୱାରା ବ୍ରାହ୍ମଣସ୍ପତି ହନନ କଲେ । ସେହି ଜଳକୁ ସୂର୍ଯ୍ୟରଶ୍ମି ସମୂହ ପାନ କଲେ । ଏହି ସୂର୍ଯ୍ୟରଶ୍ମିମାନେ ପୁନର୍ବାର ଏହି ଜଳଦ୍ୱାରା ମେଘକୁ ଉଦକବନ୍ତ କରନ୍ତି ଏବଂ ସେଚନ କରନ୍ତି । ଅର୍ଥାତ୍ ଲୋକାନୁଗ୍ରହରେ ବ୍ରାହ୍ମଣସ୍ପତି ପ୍ରତି ବର୍ଷରେ ଯେଉଁ ବୃଷ୍ଟି କରନ୍ତି, ତାହା ପୁଣି ସୂର୍ଯ୍ୟରଶ୍ମିଦ୍ୱାରା ଶୋଷିତ ହୋଇ ମେଘରୂପରେ ପରିଣତ ହୁଏ ଏବଂ ପୁନର୍ବାର ବୃଷ୍ଟି ହୁଏ ।

ବାସ୍ତୋସ୍ପତି ଯେ ଇନ୍ଦ୍ରବାଚକ, ତାହା ପରବର୍ତ୍ତୀ କୋଷକାରମାନେ ଗ୍ରହଣ କରିଅଛନ୍ତି । ନିବାସ କର୍ମର ପତି । ସେହିପରି କ୍ଷେତ୍ରସ୍ୟ ପତି । ବୃଷ୍ଟି ଦ୍ୱାରା କ୍ଷେତ୍ର ସଫଳ ହୁଏ ଏବଂ ଗ୍ରାମ ବାସୋପଯୋଗୀ ହୁଏ । ଏଣୁ ବାୟୁ ବା ଇନ୍ଦ୍ର ହିଁ ବାସ୍ତୋସ୍ପତି କ୍ଷେତ୍ରପତି ନାମ ପାଇଅଛନ୍ତି ।

ବାଚସ୍ପତି— ବାଚଃ ପାତା ବା ପାଳୟିତା ବା । ବାକ୍ୟର ପତି ଯେ ବାୟୁ ତାହା କହିବା ବାହୁଲ୍ୟ ମାତ୍ର— ଅତଏବ ପ୍ରାଣବାୟୁକୁ ଋଗ୍‌ବେଦରେ ସ୍ଥାନବିଶେଷରେ ବାଚସ୍ପତି ଆଖ୍ୟା ଦିଆଯାଇଅଛି ।

ଯମ ଓ ବିଶ୍ୱକର୍ମା ଏହି ଦୁଇ ଦେବତାର ବିବରଣ ଲେଖି ମଧ୍ୟସ୍ଥାନ ଦେବତାମାନଙ୍କର ଆଲୋଚନା ବନ୍ଦ କରିବା ଉଚିତ । ବୋଧହୁଏ ଆଉ ଯେଉଁ ଦେବତାମାନଙ୍କର ତାଲିକା ଦିଆଯାଇଅଛି, ସେମାନେ ବହୁପରିଚିତ ନୁହନ୍ତି ।

ଯମ—ଯମ ମଧ୍ୟସ୍ଥାନ ଦେବତା । ଯମଃ ଯଚ୍ଛତୀତି— ଜୀବିତମାନଙ୍କୁ ଶାନ୍ତି ଦାନ କରନ୍ତି କିମ୍ବା ସର୍ବପ୍ରାଣଭୃତମାନଙ୍କର ରାଜା ବା ନିୟାମକ । ଅତଏବ ଯମ ବଳବାନ, ଏଣୁ ମଧ୍ୟସ୍ଥାନ ଦେବତା । ଋଗ୍‌ବେଦରେ ଯମ ଅର୍ଥ ଯମଜ । ବିବସ୍ୱାନଙ୍କର ପୁତ୍ର ଓ କନ୍ୟା ଯମ ଓ ଯମୀ । ଅଗ୍ନିଙ୍କୁ ମଧ୍ୟ ଯମ ଆଖ୍ୟା ଦିଆଯାଇଅଛି, ଯେହେତୁ ଅଗ୍ନି ଓ ଇନ୍ଦ୍ର ସହଜନ୍ମା ଓ ବିବସ୍ୱାନଙ୍କର ପୁତ୍ର ବୋଲି ବିବେଚିତ ହୋଇଥିଲେ ।

ଜୀବ ମାତ୍ରର ଚାଳକ ପ୍ରାଣବାୟୁ । ପ୍ରାଣବାୟୁ ଶରୀରରୁ ବହିର୍ଗତ ହେଲେ ମନୁଷ୍ୟର ମୃତ୍ୟୁ ହୁଏ । ମୃତ୍ୟୁକୁ ଚିର ଶାନ୍ତି ବୋଲି କହନ୍ତି । ପ୍ରାଣବାୟୁ ଜୀବିତାବସ୍ଥାରେ ପ୍ରାଣୀର ଯେପରି ଚାଳକ ଓ ନିୟାମକ, ମୃତ୍ୟୁପରେ ସେହିପରି ଚିରଶାନ୍ତିଦାୟକ— ଏହି କଳ୍ପନାରେ ବାୟୁକୁ ହିଁ ଯମ ଆଖ୍ୟା ଦିଆଯାଇ ମଧ୍ୟ ସ୍ଥାନର ଦେବତା କରାଯାଇଅଛି ।

ପରେୟିବାଂସଂ ପ୍ରବତୋ ମହୀରନୁ
ବହୁଭ୍ୟଃ ପନ୍ଥାମନୁ ପସ୍ପଶାନଂ ।
ବୈବସ୍ୱତଂ ସଙ୍ଗମନଂ ଜନାନାଂ
ଯମଂ ରାଜାନଂ ହବିଷା ଦୁବସ୍ୟ ॥
ଋ. ୧୦ । ୧୪ । ୧

ଅବଶ୍ୟ ଗନ୍ତବ୍ୟସ୍ଥାନ ରୂପ ବିବସ୍ୱାନଙ୍କର ପୁତ୍ର ନିୟନ୍ତା ଯମକୁ ହବିଦ୍ୱାରା ପରିଚର୍ଯ୍ୟା କର । ଯେ କି ନାନା ମନୁଷ୍ୟମାନଙ୍କ ନିମନ୍ତେ ଯଥାକ୍ରମେ ପ୍ରାପ୍ୟ ଅବାଧ ପନ୍ଥା କରି ଦେଇଅଛନ୍ତି ।

ଯଥାକ୍ରମେ ସମସ୍ତେ ନିର୍ଦ୍ଦିଷ୍ଟ ମୃତ୍ୟୁପନ୍ଥାର ପଥିକ ହେବେ, ଏହା କହିବା ବାହୁଲ୍ୟ ମାତ୍ର । ପ୍ରାଣବାୟୁ ଯେ ଅନନ୍ତ ବାୟୁରେ ମିଶିବ, ଏହା ଏହି ମନ୍ତ୍ରର ସାର ମର୍ମ । ବିବସ୍ୱାନ୍ ସୂର୍ଯ୍ୟ ଉଦୟ ଅସ୍ତଦ୍ୱାରା ଦୈନିକ ଜନ୍ମମରଣର ଅଭିନୟ ଦେଖାଉଅଛନ୍ତି । ଦିବାରାତି ସେହି ସୂର୍ଯ୍ୟଙ୍କର କରଣୀ । ଯମ ଓ ଯମୀ ଦିବା ରାତ୍ରି, ସୁତରାଂ ସୂର୍ଯ୍ୟଙ୍କର ଯମଜ ସନ୍ତାନ । ଦିବସ ଶେଷାବସ୍ଥାରେ ପ୍ରାଣୀମାନଙ୍କୁ ଶାନ୍ତିଦାୟିନୀ ରାତ୍ରିରେ ଉପଗତ କରାଏ । ଦିବ ରାତ୍ରି ଜୀବିତ ମରଣ, ପ୍ରାଣ ଓ ଅନନ୍ତ ବାୟୁ ଜାଗରଣ ଓ ନିଦ୍ରାର ସାମ୍ୟ ଯେ ଯମ ଓ ଯମୀଠାରେ ସ୍ପଷ୍ଟରୂପେ ପ୍ରମାଣିତ ହୋଇପଡ଼େ, ତାହା ଲେଖିବା ବାହୁଲ୍ୟ ମାତ୍ର ।

ବିଶ୍ୱକର୍ମା—ପୌରାଣିକମାନଙ୍କରେ ଦେବ ବିଜ୍ଞାଣି । ମାତ୍ର ପ୍ରକୃତ ପକ୍ଷରେ ବିଶ୍ୱକର୍ମା ବାୟୁ । ବିଶ୍ୱକର୍ମା ବା ବିଶ୍ୱକର୍ତ୍ତା ବାୟୁ ସମସ୍ତ ଚେଷ୍ଟାର ମୂଳୀଭୂତ କାରଣ; ଏଣୁ ସର୍ବକର୍ତ୍ତା ।

ମଧ୍ୟସ୍ଥାନର ଅନ୍ୟାନ୍ୟ ଦେବତାମାନଙ୍କ ବିବରଣ ଲେଖିବାରୁ କ୍ଷାନ୍ତ ହେବା ଉଚିତ୍ । ଯେହେତୁ ପ୍ରବନ୍ଧର କଳେବର ବୃଦ୍ଧି ହେବାର ଭୟ ଅଛି । ତାହାଛଡ଼ା ଅଗ୍ନି, ପୃଥିବୀ ଆଦି ଭୂସ୍ଥାନ ଦେବତା ଏବଂ ସବିତା ଆଦି ଦ୍ୟୁସ୍ଥାନ ଦେବତା ମଧ୍ୟ ଅନ୍ତରୀକ୍ଷସ୍ଥାନ ଦେବତାରୂପରେ ସ୍ତୁତ ହୋଇଅଛନ୍ତି । ସେମାନଙ୍କର ପରିଚୟ ଦିଆଯାଇଅଛି ଓ ଦ୍ୟୁସ୍ଥାନର ଆଲୋଚନା ତଳେ ଦିଆଯିବ । ଏଠାରେ ଲେଖିବା ଦ୍ୱିରୁକ୍ତି ମାତ୍ର । ତାହାଛଡ଼ା ଋଷିମାନେ ଭାବବିହ୍ୱଳ ହୋଇ ଏକ ସ୍ଥାନର ଦେବତାକୁ ଅନ୍ୟ ସ୍ଥାନରେ ସ୍ତୁତିକରି ସେହି ଦେବତାର ମହତ୍ତ୍ୱ ବଢ଼ାଇଥିବାର ଉଦାହରଣ ବିରଳ ନୁହେଁ । ତେବେ ଆଉ କେତେଗୁଡ଼ିଏ ଦେବତାଙ୍କର ପରିଚୟ ଦେବାଦ୍ୱାରା ପ୍ରବନ୍ଧର ସାଫଲ୍ୟ ହୁଅନ୍ତା । ମାତ୍ର ସଫଳତା ଦେଖିବାକୁ ଗଲେ ପାଠକମାନଙ୍କର ଧୈର୍ଯ୍ୟଚ୍ୟୁତ ଅବଶ୍ୟମ୍ଭାବୀ; ତେବେ ଉପାଖ୍ୟାନ ପ୍ରସଙ୍ଗରେ ସେହି ଦେବତାମାନଙ୍କ ମଧ୍ୟରୁ ଅନେକଙ୍କର ପ୍ରକୃତ ପରିଚୟ ଯେ ଲିପିବଦ୍ଧ ହେବ, ତହିଁର ସନ୍ଦେହ ନାହିଁ ।

ବର୍ତ୍ତମାନ ଦ୍ୟୁସ୍ଥାନର କେତେକ ଦେବତାଙ୍କର ପରିଚୟ କରାଯାଉ । ସୂର୍ଯ୍ୟ ଦ୍ୟୁସ୍ଥାନ ଦେବତା, ତାହା ସର୍ବବିଦିତ । ଏହି ଦ୍ୟୁସ୍ଥାନର ୩୧ଟି ଦେବତାଙ୍କର ବିବରଣ ଅଛି । ଏଥିମଧ୍ୟରୁ ଅଶ୍ୱିନୀଦ୍ୱୟ ପ୍ରଥମଗାମୀ ବୋଲି ନୈରୁକ୍ତମାନଙ୍କର ମତ ।

୧. ଅଶ୍ୱିନୌ, ୨. ଉଷା, ୩. ସୂର୍ଯ୍ୟ, ୪. ବୃଷାକପାୟୀ, ୫. ସରଣ୍ୟୁ, ୬. ତ୍ୱଷ୍ଟା, ୭. ସବିତା, ୮. ଭଗ, ୯. ସୂର୍ଯ୍ୟ, ୧୦. ପୂଷା, ୧୧. ବିଷ୍ଣୁ, ୧୨. ବୈଶ୍ୱାନର. ୧୩. ବରୁଣ, ୧୪. କେଶୀ, ୧୫. କେଶୀମାନେ, ୧୬. ବୃଷାକପି, ୧୭. ଯମ, ୧୮. ଅଜନିପାତ, ୧୯. ପୃଥିବୀ, ୨୦. ସମୁଦ୍ର, ୨୧. ଦଧ୍ୟଙ୍, ୨୨. ଅଥର୍ବ, ୨୩. ମନୁଃ, ୨୪. ଆଦିତ୍ୟମାନେ, ୨୫. ସପ୍ତ ଋଷିମାନେ, ୨୬. ଦେବତାମାନେ, ୨୭. ବିଶ୍ୱେଦେବତାମାନେ, ୨୮. ସାଧମାନେ, ୨୯. ବସୁମାନେ, ୩୦. ବାଜିମାନେ, ୩୧. ଦେବପତ୍ନୀମାନେ ।

ଦ୍ୟୁସ୍ଥାନ କବିଚାତୁରୀ କଳ୍ପନାକ୍ଷେତ୍ର ନୁହେଁ, ଯେହେତୁ ଦ୍ୟୁସ୍ଥାନ ସ୍ୱପ୍ରକାଶ । ସୂର୍ଯ୍ୟ ସେ ସ୍ଥାନର ଦେବତା । ଯାହା କିଛି ଦ୍ୟୁସ୍ଥାନର ପରିବର୍ତ୍ତନ ବୋଲି ମନେ ହୁଏ, ତାହା ସେ ସ୍ଥାନରେ ନୁହେଁ, ମାତ୍ର ବାୟୁ ପଟଳର ନିତ୍ୟ ପରିବର୍ତ୍ତନ ମର୍ତ୍ତ୍ୟବାସୀଙ୍କୁ ଦ୍ୟୁସ୍ଥାନର ପରିବର୍ତ୍ତନ ପରି ପ୍ରତିଭାତ ହୁଏ ।

ଅଶ୍ୱିନୀ ଦୁହେଁ ଯମଜ । ଯମଜ ଏଣୁ ପ୍ରକୃତିର କେଉଁ ଦୁଇ ଦେବତା, ତାହା ସ୍ଥିର କରିବାକୁ ଅନେକଙ୍କୁ ଧନ୍ଦା ଲାଗିଅଛି । କେହି କହନ୍ତି, ଅହୋରାତ୍ର, କେହି କହନ୍ତି ଚନ୍ଦ୍ର ସୂର୍ଯ୍ୟ, କେହି ଉଭୟ ସନ୍ଧ୍ୟାକୁ ଅଶ୍ୱିନୀ କହନ୍ତି । ନୈରୁକ୍ତ ମତରେ 'ତୟୋକାଳ ଊର୍ଦ୍ଧ୍ୱ ମର୍ଦ୍ଧରାତ୍ରାତ୍ ପ୍ରକାଶୀ ଭାବସ୍ୟନୁ ବିଷ୍ଟମ୍ଭଂ' ଅର୍ଦ୍ଧରାତ୍ରି ପୂର୍ବରୁ ଏବଂ ଜ୍ୟୋତି ପ୍ରକାଶ ପୂର୍ବରୁ ଯେ ଅନ୍ଧକାର ଓ କ୍ଷୀଣାଲୋକ ମିଶ୍ରିତ ସମୟ, ତାକୁ ଅଶ୍ୱିନୀକାଳ କୁହାଯାଏ । ଅର୍ଦ୍ଧରାତ୍ରି ଓ ଉଷାକାଳର ସନ୍ଧିସ୍ଥଳ ଅଶ୍ୱିନୀଦ୍ୱୟ । ପ୍ରକୃତ ପକ୍ଷରେ ଏହି ଦୁଇ ଦେବତାଙ୍କର ସ୍ୱରୂପ ସ୍ପଷ୍ଟରୂପେ ହୃଦୟଙ୍ଗମ କରିବା ବଡ଼ ଦୁରୂହ । ତେବେ ଅନୁମାନ ହୁଏ, ଦିବାରାତ୍ର ମଧ୍ୟରେ ଏହି ସନ୍ଧିକାଳ ଓ ମଧ୍ୟସମୟ ଶାନ୍ତିପ୍ରଦ ଓ ସୁଖଦାୟକ । ଏହି କଳ୍ପନାରେ ଆଦିକବି ରୂପକ ଛଳରେ ଏହି ଶାନ୍ତିପ୍ରଦ ଅନ୍ଧକାର ଓ ଆଲୋକ ଉଭୟଙ୍କୁ ଅଶ୍ୱିନୀକୁମାରଦ୍ୱୟ ବୋଲି ସମ୍ବୋଧନ କରିଅଛନ୍ତି । ଏହି ରୂପକରେ ସେ ଦୁହିଁଙ୍କର ରୂପ ଗୁଣ ବିବୃତ ହୋଇଅଛି । ପରବର୍ତ୍ତୀ କବିମାନେ ସେ ଦୁହିଁଙ୍କି ମୂର୍ତ୍ତି କରି ବର୍ଣ୍ଣନା କରିଅଛନ୍ତି । ଏମନ୍ତ କି, ସେ ଦୁହିଁଙ୍କର ମାତା ପିତା ଏବଂ ସେମାନଙ୍କର ଜନ୍ମବୃତ୍ତାନ୍ତ ବର୍ଣ୍ଣନା କରିବାକୁ ଛାଡ଼ି ନାହାନ୍ତି ।

ଋଗ୍‌ବେଦର ଦଶମ ମଣ୍ଡଳ ୧୭ ସୂକ୍ତରୁ ଜଣାଯାଏ, ସରଣ୍ୟୁ ଓ ବିବସ୍ୱାନଙ୍କର ସହବାସରୁ ଅଶ୍ୱିନୀଦ୍ୱୟଙ୍କର ଜନ୍ମ । କହିବା ବାହୁଲ୍ୟ ଯେ, ସରଣ୍ୟୁ ଅର୍ଥ ଉଷା ଓ ବିବସ୍ୱାନ୍ ସୂର୍ଯ୍ୟ । ସରଣ୍ୟୁର ପରିଚୟ ସ୍ଥଳରେ ଏଥିର ବିଷୟ ବିବୃତ ହେବ ।

ଅଶ୍ୱିନୀଦ୍ୱୟ ଅତି ଉପାଦେୟ ବିଶେଷଣ ଦ୍ୱାରା ବିଶେଷିତ— ଲୋକପ୍ରିୟ, ଆନନ୍ଦପ୍ରଦ, ଆରୋଗ୍ୟପ୍ରଦ, ସୁଖପ୍ରଦ, ପୁଣି ବ୍ୟାପକ, ନିଷ୍ପାପ, ଅଜେୟ, ନୃପତି ଜଳର ଅଧିପତି, ବର୍ଷଣଶୀଳ ଇତ୍ୟାଦି । ଅଶ୍ୱିନୀକୁମାରଦ୍ୱୟ, ଶାନ୍ତ ଶିଷ୍ଟ, ନିଷ୍ପାପ, ସତ୍ୟନିଷ୍ଠ ଓ ସତ୍ୟପାଳକ । ଏ ସମସ୍ତ ବିଶେଷଣଦ୍ୱାରା ଶାନ୍ତିପ୍ରିୟ ଓ ଶାନ୍ତିଗାମୀ ଋଷି ଅର୍ଦ୍ଧରାତ୍ରି ଦିବାରାତ୍ରର ସନ୍ଧିସ୍ଥଳକୁ ଅଶ୍ୱିନୀଦ୍ୱୟ ବୋଲି ବର୍ଣ୍ଣନା କରିଥିବା ସମ୍ବନ୍ଧରେ ସନ୍ଦେହ ଲେଖକର ହୁଏ ନାହିଁ । ଅଶ୍ୱିନୀଦ୍ୱୟର ସ୍ତୋତା ଉଷା ପୂର୍ବରୁ ଜାଗରିତ ହୁଅନ୍ତି ବୋଲି ଋଗ୍‌ବେଦର ୩ ମଣ୍ଡଳ ୩୮ ସୂକ୍ତରେ ଲିଖିତ ଅଛି କାହିଁକି ? ଯେହେତୁ ସେହି କାଳରେ ଅଶ୍ୱିନୀଦ୍ୱୟଙ୍କର ସ୍ତବ କଲେ ସୁଖଶାନ୍ତି ଅବଶ୍ୟ ପ୍ରାପ୍ତବ୍ୟ ବୋଲି କବିର ଧାରଣା ।

ଉଦ୍ୱାଂ ପୃକ୍ଷାସୋ ମଧୁମନ୍ତ ଈରତେ  
ରଥା ଅଶ୍ୱାସ ଉଷସୋ ବ୍ୟୁଷ୍ଟିଷୁ ।  
ଅପୋର୍ଣ୍ଣ ୱଂତସ୍ତମ ଆ ପରିବୃତଂ  
ସ୍ୱର୍ଣ୍ଣଶୁକ୍ରଂ ତନ୍ୱନ୍ତ ଆ ରଜଃ ।

ଋ.୪ । ୪୫।୨

ତ୍ରିବିଧ ଅନ୍ନବାନ୍ ସୋମରସୋପେତ ଅଶ୍ୱଯୁକ୍ତ ତୁମ୍ଭର ରଥ, ଚତୁର୍ଦ୍ଦିଗରେ ପରିବୃତ ତମକୁ ଦୂର କରି ଏବଂ ସୂର୍ଯ୍ୟ ସଦୃଶ ତେଜ ବିସ୍ତାର କରି ଉଷା ପୂର୍ବରୁ ଅନ୍ତରୀକ୍ଷକୁ ଦୀପ୍ତିମାନ୍ କରେ ।

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଉଷା ପୂର୍ବରୁ ହିଁ ଆଶ୍ୱିନକାଳ । ଅଶ୍ୱିନୀଦ୍ୱୟଙ୍କର ଉଦୟ ଉଷା ପୂର୍ବରୁ ବର୍ଣ୍ଣିତ ହୋଇଥିଲେ ମଧ୍ୟ ଉଷା ନ ହେଲେ ଏବଂ ସୂର୍ଯ୍ୟୋଦୟ ନ ହେଲେ ଯଜ୍ଞାଦି କରାଯାଏ ନାହିଁ; ଏଣୁ କବି ଉଷାକୁ ଲକ୍ଷ୍ୟ କରି କହୁଅଛନ୍ତି—

ଯଦୁଷୋ ଯାସି ଭାନୁନା ସଂସୂର୍ଯ୍ୟେଣ ରୋଚସେ ।  
ଆହାୟମଶ୍ୱିନୋ ରଥୋବର୍ତିର୍ଯ୍ୟାତି ନୃପାଯ୍ୟଂ ॥

ଋ. ୮ । ୯ । ୧୮

ହେ ଉଷା, ଯେତେବେଳେ ଦୀପ୍ତି ସହିତ ଉଦିତ ହୁଅ, ସେତେବେଳେ ସୂର୍ଯ୍ୟ ସମାନ ଶୋଭାପାଅ । ସେତେବେଳେ ପୁଣି ଅଶ୍ୱିନୀଦ୍ୱୟଙ୍କର ରଥ ଋତ୍ୱିକ୍‌ମାନଙ୍କର ଯଜ୍ଞକୁ ଆଗମନ କରେ ।

ପ୍ରବୋଧୟୋଷୋ ଅଶ୍ୱିନା ପ୍ରଦେବି ସୁନୃତେମହି ।  
ପ୍ର ଯଜ୍ଞହୋତରାନୁଷକ୍‌ପ୍ର ମଦାୟଶ୍ରବୋ ବୃହତ୍ ।

ଋ.୮।୯।୧୭

ହେ ଉଷା, ଅଶ୍ୱିନୀଦ୍ୱୟଙ୍କୁ ପ୍ରବୁଦ୍ଧ (ଜାଗରିତ) କର । ହେ ଦେବୀ, ହେ ସୁନୃତେ, ହେ ମହତି, ତୁମ୍ଭେ ଅଶ୍ୱିନୀଦ୍ୱୟଙ୍କୁ ପ୍ରବୁଦ୍ଧ କର । ହେ ଦେବତାମାନଙ୍କର ଆହ୍ୱାନକାରିଣୀ, ତୁମ୍ଭେ ଦେବତାମାନଙ୍କ ପରି ଅଶ୍ୱିନୀଦ୍ୱୟଙ୍କୁ ପ୍ରବୁଦ୍ଧ କର । ସେ ଦୁହିଁଙ୍କର ଆନନ୍ଦ ବର୍ଦ୍ଧନ ନିମନ୍ତେ ବୃହତ୍ ଶ୍ରବଣଯୋଗ୍ୟ ସ୍ତୋତ୍ର କଳ୍ପିତ ହୋଇଅଛି ।

ଅଶ୍ୱିନୀଦ୍ୱୟ ରାତ୍ରିର ଦେବତା ହେଲେ ମଧ୍ୟ ସେମାନେ ଉଷାରେ ପୂଜିତ ହୁଅନ୍ତି; ଏହାହିଁ ଉପରୋକ୍ତ ମନ୍ତ୍ରରୁ ସ୍ପଷ୍ଟ ଜଣାପଡୁଅଛି ଏବଂ ପାଶ୍ଚାତ୍ୟ ପଣ୍ଡିତମାନଙ୍କ କଳ୍ପନା ଅପେକ୍ଷା

ନୈରୁକ୍ତମାନଙ୍କର ମତ ସମୀଚୀନ; ତାହା ମଧ୍ୟ ସ୍ପଷ୍ଟ ହୃଦୟଙ୍ଗମ ହେଉଅଛି ।

କବିମାନେ ଋଷିମାନେ ଅଶ୍ୱିନୀଦ୍ୱୟଙ୍କୁ ପାଇବାକୁ କି ଆତୁରତା ଓ ଭକ୍ତିଭାବ ପ୍ରକାଶ କରିଅଛନ୍ତି, ତାହା ନିମ୍ନୋକ୍ତ ମନ୍ତ୍ରମାନଙ୍କରୁ ଜଣାପଡ଼ିବ—

ଯଦିନ୍ଦ୍ରେଣ ସରଥଂ ଯାଥୋ ଅଶ୍ୱିନା ଯଦ୍‌ବା
ବାୟୁନା ଭବଥଃ ସମୋକସା ।
ଯଦାଦିତ୍ୟେଭିର୍ଋଭୁଭିଃ ସଜୋଷସା
ଯଦ୍‌ବା ବିଷ୍ଣୋର୍ବିକ୍ରମଣେଷୁ ତିଷ୍ଠଥଃ ।

ହେ ଅଶ୍ୱିନୀଦ୍ୱୟ, ଯଦି ଇନ୍ଦ୍ରଙ୍କ ସହିତ ଏକ ରଥରେ ଗମନ କରୁଥାଅ, ଯଦି ବାୟୁ ସହିତ ସମାନ ନିବାସୀ ହୋଇଥାଅ, ଯଦ୍ୟପି ଆଦିତ୍ୟମାନଙ୍କର ଏବଂ ଋଭୁମାନଙ୍କ ସହିତ ସମାନ ଭାବରେ ପ୍ରୀତିଯୁକ୍ତ ହୋଇଥାଅ, ଯଦିବା ବିଷ୍ଣୁଙ୍କର ବିକ୍ରାନ୍ତ ତିନି ଲୋକରେ ଥାଅ; ତେବେ ଆଗମନ କର ।

କୁହସ୍ଥଃ କୁହ ଜଗ୍ମଥୁଃ କୁହଶ୍ୟେନେବ ପେତଥୁଃ
ଅନ୍ତିଷଭୁତୁ ବାମବଃ । ଋ. ୮ । ୭୩ । ୪

ହେ ଅଶ୍ୱିନୀଦ୍ୱୟ, ତୁମ୍ଭେ ଦୁହେଁ କେଉଁଠାରେ ଅଛ ? କେଉଁଠାକୁ ଯାଉଅଛ ? କେଉଁଠାରେ ଶ୍ୟେନପ୍ରାୟ ଶୀଘ୍ର ପତିତ ହେଉଅଛ ? ତୁମ୍ଭ ଦୁହିଁଙ୍କର ରକ୍ଷଣ ଆମ୍ଭମାନଙ୍କର ନିକଟବର୍ତ୍ତୀ ହେଉ ।

ଯଦଦ୍ୟ ବହିଃ କର୍ହିଚିଚ୍ଛୁଶ୍ରୁୟାତମିମଂ ହବଂ
ଅନ୍ତିଷଭୂତୁ ବାମବଃ । ଋ. ୮ । ୭୩ । ୫

ହେ ଅଶ୍ୱିନୀଦ୍ୱୟ, କେଉଁ ସ୍ଥାନରେ ଏବଂ କେଉଁ କାଳରେ ଆଦ୍ୟ ଆମ୍ଭମାନଙ୍କର ଆହ୍ୱାନ ଶ୍ରବଣ କରିବ ? ତୁମ୍ଭ ଦୁହିଁଙ୍କର ରକ୍ଷଣ ଆମ୍ଭମାନଙ୍କର ନିକଟବର୍ତ୍ତୀ ହେଉ ।

ଋତେନ ଦେବଃ ସବିତା ଶମାୟତ
ଋତସ୍ୟ ଶୃଙ୍ଗର୍ବିୟା ବି ପ୍ରପଥେ ।
ଋତଂ ସାମାହ ମହି ଚିତୃପନ୍ୟନତୋ
ମାନୋ ବି ଯୌଷ୍ଟଂ ସଂଖ୍ୟାମୁମୋଚ ତଂ ॥
ଋ. ୮ । ୮୬ । ୫

ହେ ଅଶ୍ୱିନୀଦ୍ୱୟ, ଦ୍ୟୁତମାନ ସବିତା ସତ୍ୟଦ୍ୱାରା ସାୟଂ କାଳରେ ରଶ୍ମିସମୂହ ସଂଯତ କରନ୍ତି । ସେହି ସବିତା ପ୍ରାତଃକାଳରେ ସେହି ସତ୍ୟର ଶୃଙ୍ଗ ବା ଅଗ୍ରକୁ ଅତିଶୟ ବିସ୍ତାର କରନ୍ତି । ପୁଣି ଏହି ସଂସାରରେ ପରସ୍ପର ଯୁଦ୍ଧ ବା ବିବାଦ ଇଚ୍ଛୁକ ଶତ୍ରୁମାନେ ସତ୍ୟର ଅତିଶୟ ବଳଦ୍ୱାରା ଅଭିଭୂତ ହୁଅନ୍ତି ।

ସେହି ସତ୍ୟଦ୍ୱାରା ଆମ୍ଭମାନଙ୍କର ସଂଖ୍ୟା ବିଯୁକ୍ତ ନ ହେଉ । (ଏଠାକୁ ଆସିବାକୁ) ଅଶ୍ରୁମୋଚନ କର ।

॥ ୮ ॥

ଉଷାର ବିବରଣ ଲେଖିବା ନିଷ୍ପ୍ରୟୋଜନ । ଉଷାକୁ ଆବାଳବୃଦ୍ଧ ସମସ୍ତେ ଚିହ୍ନନ୍ତି । ବୈଦିକ ଯୁଗର ଉଷା ସହିତ ଆଧୁନିକ ଉଷାର କୌଣସି ପାର୍ଥକ୍ୟ ନାହିଁ । ଅନ୍ୟ ଦେବତାମାନଙ୍କର ରୂପ ଗୁଣର ଅସାଧାରଣ ପରିବର୍ତ୍ତନ ହୋଇଥିଲେ ସୁଦ୍ଧା ଉଷାର କୌଣସି ପରିବର୍ତ୍ତନ କେହି ଘଟାଇ ନାହାନ୍ତି ।

ସୂର୍ଯ୍ୟା—ସୂର୍ଯ୍ୟ ପତ୍ନୀ ଅର୍ଥ କରାଯାଇଅଛି । ଉଷାକାଳ ପରେ ସୂର୍ଯ୍ୟର ଉଦୟ ନିକଟବର୍ତ୍ତୀ କାଳର ନାମ ସୂର୍ଯ୍ୟା ବୃଷାକପାୟୀ ଅର୍ଥ ମଧ୍ୟ ସୂର୍ଯ୍ୟା । ଉଷା, ବୃଷାକପାୟୀ ଓ ସୂର୍ଯ୍ୟା । ଯେ ସୂର୍ଯ୍ୟୋଦୟର ଅବ୍ୟବହିତ ପ୍ରାକ୍ କାଳର ନାମ, ତାହା ପ୍ରକାଶ କରିବା ବାହୁଲ୍ୟମାତ୍ର ।

ସରଣ୍ୟୁ ଅର୍ଥ ମଧ୍ୟ ସୂର୍ଯ୍ୟପତ୍ନୀ— ପ୍ରଭାତରେ ଉଦୟାବସ୍ଥାର ନାମାନ୍ତର ସରଣ୍ୟୁ । ସରଣ୍ୟୁ ଅଶ୍ୱିନୀଦ୍ୱୟଙ୍କର ମାତା । ଅଶ୍ୱିନୀଦ୍ୱୟଙ୍କର ଜନ୍ମ ଉତ୍ତାରୁ ସରଣ୍ୟୁ ଅଶ୍ୱିନୀ ରୂପ ଧାରଣ ପୂର୍ବକ ପଳାୟନ କଲେ । ବିବସ୍ୱାନ୍ ସୂର୍ଯ୍ୟ ମା'ଙ୍କର ପଶ୍ଚାଦ୍ଧାବନ କଲେ । ସୂର୍ଯ୍ୟ ଓ ସରଣ୍ୟୁ ବା ସୂର୍ଯ୍ୟ ଓ ଉଷାଙ୍କର ଉଦୟ ରୂପକ ଛଳରେ ଏତାଦୃଶ ଭାବରେ ବର୍ଣ୍ଣିତ ହୋଇଅଛି । ଅର୍ଦ୍ଧ ରାତ୍ରଠାରୁ ଉଷାକାଳଯାଏ ଅଶ୍ୱିନୀଦ୍ୱୟଙ୍କର କାଳ। ସରଣ୍ୟୁ ଅଶ୍ୱିନୀଦ୍ୱୟଙ୍କୁ ଜନ୍ମ ଦାନ କରି ପଳାୟନୋଦ୍ୟତା ହେଲେ । ଅର୍ଥାତ୍ ଆଶ୍ୱିନ କାଳ ଉତ୍ତାରୁ ଉଷାକାଳ ହେଲା । ସୂର୍ଯ୍ୟୋଦୟର ଅବ୍ୟବହିତ ପୂର୍ବକାଳ ସରଣ୍ୟୁ ସୂର୍ଯ୍ୟ ସମ୍ମୁଖରେ ଧାବମାନ ହେଲେ ବା ଉଷାର ତେଜ ଧାବମାନ ହେଲା । ତାକୁ ପାଇବା ନିମନ୍ତେ ସୂର୍ଯ୍ୟ ଅତି ବ୍ୟଗ୍ରତା ସହକାରେ ଉଦିତ ହେଲେ ଏବଂ ସରଣ୍ୟୁ ବା ଉଷାଲୋକର ନାମାନ୍ତରର ପଶ୍ଚାଦ୍ଧାବନ କଲେ । ଏହା ପ୍ରାକୃତିକ ଘଟଣା । କବିମାନେ ଏହା ରୂପକରେ ବର୍ଣ୍ଣନା କରି ଯାଇଥିଲେ । ପରବର୍ତ୍ତୀ ଋଷିମାନେ ତାହାକୁ ମୂର୍ତ୍ତି କରି ଗ୍ରହଣ କଲେ ଏବଂ ଅନେକ ଉପାଖ୍ୟାନର ସୃଷ୍ଟି କଲେ । ବାହୁଲ୍ୟ ଭୟରେ ଉପାଖ୍ୟାନମାନଙ୍କର ଉଲ୍ଲେଖ କରାଯାଇ ପାରିଲା ନାହିଁ । ଯମ ଓ ଯମୀଙ୍କ ଜନ୍ମ ଏହି ଉପାଖ୍ୟାନ ସଂଶ୍ଳିଷ୍ଟ ଅଟେ । ସେଥିରୁ ଯମୁନା ମଧ୍ୟ ସୂର୍ଯ୍ୟକନ୍ୟା ହୋଇଅଛନ୍ତି ।

ତ୍ୱଷ୍ଟା ସବିତାଙ୍କର ନାମାନ୍ତର । ତ୍ୱଷ୍ଟା, ଭଗ, ସୂର୍ଯ୍ୟ, ସୂର୍ଯ୍ୟଙ୍କର ନାମ— ସୂର୍ଯ୍ୟୋଦୟ ପୂର୍ବରୁ ସୂର୍ଯ୍ୟୋଦୟ ଜଗତକୁ କିରଣଜାଳରେ ମଣ୍ଡିତ କରିବା ପର୍ଯ୍ୟନ୍ତ ସୂର୍ଯ୍ୟ ନାନା ରୂପରେ ଲୋକଲୋଚନକୁ ଦେଖାଯାଆନ୍ତି, ସେହି ରୂପକୁ ବା ସୂର୍ଯ୍ୟଙ୍କର ପ୍ରାତଃକାଳୀନ ଛଅ ଅବସ୍ଥାକୁ ଛଅ ନାମ ଦିଆଯାଇଅଛି ।

ଆକୀର୍ଣ୍ଣରଶ୍ମି ଆକାଶରେ ଅନୁଦିତ ସୂର୍ଯ୍ୟର ନାମ ତ୍ୱଷ୍ଟା । ତ୍ୱଷ୍ଟା ବିଶ୍ୱକର୍ମା ଓ ରଥନିର୍ମାତା ବୋଲି ପରିଚିତ ହୁଅନ୍ତି । ଆକାଶରେ ସୂର୍ଯ୍ୟର ପ୍ରଥମ ରଶ୍ମିକୁ ଅବଲୋକନ କରି କବି ଗାଇଲେ ଯେ, ରଥନିର୍ମାତା ବିଶ୍ୱକର୍ମା ରଥ ନିର୍ମାଣ କଲେ, ଏଥର ସୂର୍ଯ୍ୟୋଦୟ ହେବ । ଏହି ଉପମାରୁ କ୍ରମେ ତ୍ୱଷ୍ଟା ସ୍ୱତନ୍ତ୍ର ଦେବତା ହୋଇ ଉଠିଲେ ।

ସବିତା— ଆକାଶରୁ ତମ ଦୂର ହୋଇ ରଶ୍ମି ଆକୀର୍ଣ୍ଣ ହେଲେ ତାହା ସବିତାର କାଳ । ଅର୍ଥାତ୍ ପୃଥିବୀରେ ସୂର୍ଯ୍ୟାଲୋକ ପଡ଼ିବା ଆଗରୁ ଯେତେବେଳେ ଆକାଶ ଆଲୋକିତ ହୋଇଯାଏ, ତାହା ସବିତାଙ୍କର କାଳ । ଉଦୟୋନ୍ମୁଖ ସୂର୍ଯ୍ୟର ନାମ ସବିତା । ସବିତାଙ୍କ ନାମ ପ୍ରସବିତା— ସବିତା ସମସ୍ତ ଭୂତକୁ ଜନ୍ମ ଦିଅନ୍ତି ବା ଜନ୍ମଦାତା । ସବିତାକାଳରେ ଜଗତ୍ ପ୍ରବୁଦ୍ଧ ହୁଏ, ଏହାହିଁ ଜନ୍ମ ଦେବାର ରୂପକ ମାତ୍ର ।

ଭଗ— ଅନାବିର୍ଭୂତ ମଣ୍ଡଳ ନାମ ଭଗ । ଭୂତମାନଙ୍କର ଭଜନୀୟ ବା ସ୍ୱକାର୍ଯ୍ୟନିଯୁକ୍ତ ବ୍ୟକ୍ତିମାନଙ୍କର ଭଜନୀୟ, ଏଣୁ ଭଗ । ଲୋକେ ସେତେବେଳେ ଆପଣା ଆପଣା କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି । ସବିତାଙ୍କର କାଳ ଉତ୍ତାରୁ ଭଗର କାଳ । ମାତ୍ର ଉଦୟ ପୂର୍ବର କାଳ ।

ଯେତେବେଳେ ଆଦିତ୍ୟ ଉଦୟାଚଳରେ ଉଦିତ ହେଲେ ଲୋକଚକ୍ଷୁକୁ ମଣ୍ଡଳ ମାତ୍ର ଦେଖାଯାଏ, ସେହି ସୂର୍ଯ୍ୟକାଳ ଏବଂ ପରିଦୃଶ୍ୟମାନ ସବିତାର ନାମ ସୂର୍ଯ୍ୟ । ସମସ୍ତଙ୍କୁ ଜନ୍ମ ଦିଅନ୍ତି ବୋଲି ଏବଂ ସମସ୍ତଙ୍କୁ କାର୍ଯ୍ୟରେ ପ୍ରେରଣ କରନ୍ତି ବୋଲି ଆଦିତ୍ୟଙ୍କ ନାମ ସୂର୍ଯ୍ୟ ।

ପୂଷା— ଉଦୟ ଉତ୍ତାରୁ ରଶ୍ମିଦ୍ୱାରା ପରିପୁଷ୍ଟ ହେଲେ ସୂର୍ଯ୍ୟର ନାମ ପୂଷା ।

ବିଷ୍ଣୁ— ଯେତେବେଳେ ସୂର୍ଯ୍ୟକିରଣ ବିଶ୍ୱବ୍ୟାପ୍ତ ହୁଏ, ତାହା ବିଷ୍ଣୁଙ୍କର କାଳ । ବ୍ୟାପକ ସୂର୍ଯ୍ୟ ବା ତେଜୋମୟ ସୂର୍ଯ୍ୟର ନାମ ବିଷ୍ଣୁ । ବିଶ୍ୱଂ ରଶ୍ମି ଭିର୍ବ୍ୟସ୍ନୁତେ ।

ଅନ୍ୟାନ୍ୟ ଦେବତାମାନଙ୍କ ବିବରଣ ଦେବା ବାହୁଲ୍ୟ ମାତ୍ର । ଦ୍ୟୁସ୍ଥାନର ସମସ୍ତ ଦେବତା ସୂର୍ଯ୍ୟଙ୍କର ରୂପାନ୍ତର ବା ସୂର୍ଯ୍ୟରଶ୍ମି ସମ୍ମିଳିତ ବାୟୁପଟଳର ବିଭିନ୍ନ ରୂପ ମାତ୍ର, ଏଥିରେ ସନ୍ଦେହ ନାହିଁ ।

ଅନେକ ପାର୍ଥିବ ପଦାର୍ଥ ଏବଂ ଯେଉଁ ଆଦିପୁରୁଷଗଣ ଆର୍ଯ୍ୟଜାତିର ଉପକାର କରିଥିଲେ, ଉନ୍ନତି ସାଧନାରେ ବ୍ରତୀ ଥିଲେ, ସେମାନେ ମଧ୍ୟ ଅନ୍ତରୀକ୍ଷସ୍ଥାନ ଓ ଦ୍ୟୁସ୍ଥାନରେ ସ୍ତୁତ ହୋଇଅଛନ୍ତି । ଅଙ୍ଗିରା, ଅଥବା ମନୁ ପ୍ରଭୃତି ଆର୍ଯ୍ୟଜାତିର ଆଦିପୁରୁଷ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ଅଟନ୍ତି । ଏମନ୍ତ କି, 'ଏତେ ଋଷୟ ଆଦିତ୍ୟସହଚାରିଣଃ' ବୋଲି ନୈରୁକ୍ତମାନେ ଲେଖିଯାଇଅଛନ୍ତି ।

ଏ ପର୍ଯ୍ୟନ୍ତ ଆମ୍ଭେମାନେ ଋଗ୍‌ବେଦୀୟ ଦେବତାମାନଙ୍କ ବିବରଣ ଓ ପ୍ରକୃତ ପରିଚୟ ଦେବାକୁ ଚେଷ୍ଟା କରିଅଛୁଁ ଏବଂ ପ୍ରାଚ୍ୟ ବେଦ ବ୍ୟାଖ୍ୟାକର୍ତ୍ତାମାନଙ୍କର ମତମାନ ଉଲ୍ଲେଖ କରି ତାହାର ସମାଲୋଚନାଦ୍ୱାରା ସ୍ୱମତ ସମର୍ଥନର ଚେଷ୍ଟା କରିଅଛୁଁ । ଆଉ ମଧ୍ୟ ଏଥିର ଯାଥାର୍ଥ୍ୟ ଉପଲବ୍ଧି କରି ମନ୍ତବ୍ୟ ଗଠନ କରିବାକୁ ପାଠକମାନଙ୍କୁ ଅନୁରୋଧ କରିଅଛୁଁ । ପାଠକମାନଙ୍କର ମନ୍ତବ୍ୟ ହିଁ ଆମ୍ଭମାନଙ୍କର ପରିଶ୍ରମର ପୁରସ୍କାର । ମନ୍ତବ୍ୟ ପକ୍ଷପାତରହିତ ହେବା ବାଞ୍ଛନୀୟ ।

ସେ ଯାହାହେଉ, ବର୍ତ୍ତମାନ ଆମ୍ଭେମାନେ ବେଦସମ୍ବନ୍ଧୀୟ ଗୁରୁତର ବିଷୟର ଆଲୋଚନା କରିବାକୁ ପ୍ରବୃତ୍ତ ହୋଇଅଛୁଁ । ଏ ଆଲୋଚନା ଓ ମନ୍ତବ୍ୟ ଅଧିକାଂଶ ଲୋକଙ୍କ ପ୍ରତି ବିରକ୍ତିଜନକ ହୋଇପାରେ । ମାତ୍ର ଅନ୍ୟାନ୍ୟମାନଙ୍କର ମନ୍ତବ୍ୟକୁ ଭୟ କରି ଆତ୍ମଗୋପନ କରିବାକୁ ପ୍ରବୃତ୍ତି ବଳୁ ନାହିଁ ।

ବର୍ତ୍ତମାନ ଆଲୋଚ୍ୟ ବିଷୟ ବେଦ ଓ ଈଶ୍ୱର, ବେଦ ଓ ବ୍ରହ୍ମ । ଏ ଦେଶର ପଣ୍ଡିତମାନଙ୍କର ଧାରଣା ଏହି ଯେ, ଭାରତବର୍ଷୀୟ ଶାସ୍ତ୍ରରେ ଈଶ୍ୱର ସମ୍ବନ୍ଧରେ ଯଥେଷ୍ଟ ଆଲୋଚନା ହୋଇଅଛି ଏବଂ ଏ ଶାସ୍ତ୍ରରୁ ବଳି ଅନ୍ୟ କୌଣସି ଦେଶର କୌଣସି ଶାସ୍ତ୍ରରେ ଈଶ୍ୱରତତ୍ତ୍ୱର ଆଲୋଚନା ହୋଇ ନାହିଁ ବା ହୋଇ ନ ପାରେ । ହିନ୍ଦୁର ଈଶ୍ୱରସମ୍ବନ୍ଧୀୟ ମତ ଅଟଳ ଓ ଧ୍ରୁବ । ଏହା ସ୍ୱତଃସିଦ୍ଧ ଯେ, ଏ କଥା ଯେ ସ୍ୱୀକାର ନ କରେ, ସେ ହିନ୍ଦୁ ପଦବାଚ୍ୟ ନୁହେଁ । ଏତାଦୃଶ ସ୍ୱତଃସିଦ୍ଧି ବା ନିର୍ଦ୍ଧାରଣର ବିରୋଧବାଦୀ ହେବାକୁ କେହି ଆଗ୍ରହାନ୍ୱିତ ନ ଥିଲେ ଓ ନୁହନ୍ତି । ଅନେକ ଧର୍ମାଲୋଚନାର ମୂଳରୁ ପରସ୍ପର

ବିରୋଧବାଦୀ ହୋଇ ବିଭିନ୍ନ ସମାଜ ଓ ସମ୍ପ୍ରଦାୟ ଗଠନ କଲେ ମଧ୍ୟ ଅବଶେଷରେ ବା ଉପସଂହାରରେ ଈଶ୍ୱରସିଦ୍ଧିକୁ ଅସ୍ୱୀକାର କରିବାକୁ ଭୀତ ଥିଲେ ଓ ଅଛନ୍ତି । ଏଣୁ ଏ ଦେଶର ଅସଂଖ୍ୟ ଗ୍ରନ୍ଥରେ କେବଳ ଈଶ୍ୱର ଜୀବନର ମୂଳ ଲକ୍ଷ୍ୟ ବୋଲି ପ୍ରତିପନ୍ନ କରା ହୋଇଅଛି । ଖ୍ରୀଷ୍ଟିୟାନ୍ ଓ ମୁସଲମାନଧର୍ମାବଲମ୍ବୀଗଣ ମଧ୍ୟ ଈଶ୍ୱର ସ୍ୱୀକାର କରିବାକୁ ବାଧ୍ୟ । ଆଉ କେତେକ ଈଶ୍ୱରବିଶ୍ୱାସୀ ଧର୍ମାବଲମ୍ବୀ ସମ୍ପ୍ରଦାୟ ଭିନ୍ନ ପୃଥିବୀବକ୍ଷରେ ପ୍ରକୃତି-ଉପାସକ ଜାତି ମଧ୍ୟ ଅଛନ୍ତି ।

ଆମ୍ଭେମାନେ ପୂର୍ବେ ପ୍ରକାଶ କରିଅଛୁଁ ଯେ, ଋଗ୍‌ବେଦ ରଚନା ପୂର୍ବେ ଆର୍ଯ୍ୟଜାତି ପ୍ରକୃତି ଉପାସକ ଥିଲେ । ସେହି ପନ୍ଥା ଅବଲମ୍ବନ କରି ଋଗ୍‌ବେଦର ରଚକଗଣ ମଧ୍ୟ ପ୍ରକୃତି-ଉପାସକ ଥିବାର ପରିଚୟ ଦେଇଅଛନ୍ତି । ସେମାନଙ୍କ ରଚିତ ସ୍ତୁତିସମୂହ ସେମାନଙ୍କର ଉପାସନା ଧାରାର ପରିଚାୟକ । ଏହିପରି ଦୃଶ୍ୟମାନ ବିଶ୍ୱବ୍ରହ୍ମାଣ୍ଡ ଜଣକଦ୍ୱାରା ସୃଷ୍ଟ, ଜଣକଦ୍ୱାରା ନିୟମିତ, ଜଣକଦ୍ୱାରା ଶାସିତ, ଏ ଜ୍ଞାନ ସେମାନଙ୍କର ଆଦୌ ନ ଥିଲା । ଈଶ୍ୱରବାଦ ସେମାନଙ୍କୁ ଜଣା ନ ଥିଲା । ପାଠକବର୍ଗ ଏ କଥା ଶୁଣି ବିଦ୍ରୂପ କରିବେ କି ? କରିବେ । ଆତ୍ମପ୍ରତ୍ୟୟ ବଳବତ୍ତର ।

ଈଶ୍ୱର ଶବ୍ଦ ଋଗ୍‌ବେଦରେ ନାହିଁ । ଏ ଶବ୍ଦ ପରବର୍ତ୍ତୀ କାଳରେ ସୃଷ୍ଟି । ବ୍ରହ୍ମ ଶବ୍ଦ ଋଗ୍‌ବେଦରେ ଦୃଷ୍ଟ ହୁଏ; ମାତ୍ର ଉପନିଷଦ ଓ ପୁରାଣର ବ୍ରହ୍ମ ଶବ୍ଦ ଓ ବେଦର ବ୍ରହ୍ମ ଶବ୍ଦ ଏକ ନୁହେଁ ଓ ଏକାର୍ଥବୋଧକ ନୁହେଁ । ଆମ୍ଭମାନଙ୍କର ହୃଦ୍‌ବୋଧ ହୁଏ ଯେ, ଯେତେବେଳେ ମନୁଷ୍ୟ ଦୃଢ଼ ସମାଜବଦ୍ଧ ହୋଇ ଜଣକ ଉପରେ ଏକାଧିପତ୍ୟ ଦେଲା, ସେତେବେଳେ ପରିକଳ୍ପିତ ଦେବସମାଜର ଜଣେ ଏକାଧିପତି ସୃଷ୍ଟି କଲା । ସୃଷ୍ଟି ବିଷୟ ଛାଡ଼ିଦେଲେ ଆଧିପତ୍ୟ ସମ୍ବନ୍ଧରେ ରାଜା ଓ ଈଶ୍ୱର ସମାନ । ପ୍ରକାରରେ ସମାନ; କେବଳ ପରିମାଣରେ ଇତର ବିଶେଷ ଅଛି । ଏ ସମ୍ବନ୍ଧରେ ବିଶେଷ ବିବରଣ ପରେ ଦିଆଯିବ । ବର୍ତ୍ତମାନ ଏକେଶ୍ୱରବାଦ ବେଦରେ ନ ଥିଲେ ସୁଦ୍ଧା ବେଦବ୍ୟାଖ୍ୟାକର୍ତ୍ତାମାନେ କିପରି ଭାବରେ ବେଦରେ ଏକେଶ୍ୱରବାଦ ଥିବାର ଧାରଣା ଲୋକମନରେ ଜନ୍ମାଇବାକୁ ଚେଷ୍ଟା କରିଅଛନ୍ତି ତାହା ଦେଖାଯାଉ । ନୈରୁକ୍ତଗଣଙ୍କୁ ଛାଡ଼ିଦେଲେ ଏ ମହାନ୍ ଗ୍ରନ୍ଥର ଏକମାତ୍ର ବ୍ୟାଖ୍ୟାକର୍ତ୍ତା କେବଳ ସାୟନାଚାର୍ଯ୍ୟ । ଊନବିଂଶ ଶତାବ୍ଦୀରେ ଅବଶ୍ୟ ପ୍ରାଚ୍ୟ ପାଶ୍ଚାତ୍ୟ ମିଳି ବ୍ୟାଖ୍ୟାକର୍ତ୍ତା ଅନେକ । ଏମାନଙ୍କ ମଧ୍ୟରୁ ଦୟାନନ୍ଦ ସ୍ୱାମୀ ସମଗ୍ର ଋଗ୍‌ବେଦ ଈଶ୍ୱରଙ୍କର ସ୍ତୁତି ବୋଲି ପ୍ରକାଶ କରିବାରେ ଦ୍ୱିଧାବୋଧ କରି ନାହାନ୍ତି । ଆର୍ଯ୍ୟସମାଜ ମତାବଲମ୍ବୀ ଅନେକ ତାହାହିଁ ସତ୍ୟଜ୍ଞାନରେ ସଂସ୍କୃତ, ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ଭାଷାରେ ଅନେକ ପୁସ୍ତକ ରଚନା କରିଅଛନ୍ତି ।

ବିଦ୍‌ଜ୍ଜନବନ୍ଦ୍ୟ ସ୍ୱାମୀଙ୍କର ମତଖଣ୍ଡନ କରିବାର କ୍ଷମତା ଆମ୍ଭମାନଙ୍କର ନାହିଁ । ତାଙ୍କର ମତ ଖଣ୍ଡନ କରିବାକୁ ଯିବାହିଁ ବାମନର ଉଚ୍ଚ ବୃକ୍ଷରୁ ଫଳ ତୋଳିବା ପ୍ରୟାସ ଭଳି ବୃଥା ବୋଲି ଲୋକେ ଭାବିବେ । ଆମ୍ଭେମାନେ ସ୍ୱାମୀଙ୍କର ଦୁଇ ଚାରି ଗୋଟି ମନ୍ତ୍ରର ବ୍ୟାଖ୍ୟା ଲିପିବଦ୍ଧ କରିବୁଁ । ପାଠକମାନେ ଏଥିର ମୀମାଂସକ ହେବେ ।

ଋଗ୍‌ବେଦର ପ୍ରଧାନ ବ୍ୟାଖ୍ୟାକର୍ତ୍ତା ସାୟନ । ସେ ବେଦାଲୋଚନା କରି ଜଣେ ନିୟନ୍ତାର ଉଦାହରଣ ସଂଗ୍ରହ କରିବାକୁ କିପରି ସମର୍ଥ, ତାହା ମଧ୍ୟ ଦେଖାଇବୁଁ । ଏହା ଛଡ଼ା ପ୍ରାଚ୍ୟ ଓ ପାଶ୍ଚାତ୍ୟ ବେଦାଲୋଚନାକାରୀମାନଙ୍କର ମତ ମଧ୍ୟ ପ୍ରୟୋଜନ ବେଳେ ଉଦ୍ଧୃତ କରିବୁଁ । ପାଠକଗଣ ତାହା ପାଠ କରି ଏବଂ ଆମ୍ଭମାନଙ୍କ ପ୍ରଦତ୍ତ ପ୍ରମାଣ ଓ ଯୁକ୍ତି ସହିତ ମିଳାଇ ଦେଖିବେ । ଆଲୋଚନା ନ କରି ଆଗରୁ ଛୋଟ ମୁହଁରେ ବଡ଼ କଥା ଏହା ଭାବି ଯେପରି ଆମ୍ଭମାନଙ୍କର ପ୍ରତ୍ୟୟକୁ ଦୂରକୁ ଫିଙ୍ଗି ନ ଦିଅନ୍ତି, ଏହାହିଁ ଅନୁରୋଧ ।

ପ୍ରଥମତଃ ଜିଜ୍ଞାସ୍ୟ ଏହି ଯେ, ଈଶ୍ୱର ପଦଟି ଓ ଈଶ୍ୱରଙ୍କ ଗୁଣକର୍ମ ମନୁଷ୍ୟ ଦ୍ୱାରା ଉଦ୍ଭାବିତ, କି ଈଶ୍ୱର ବା ନିୟନ୍ତା ବା ସ୍ରଷ୍ଟା ଆତ୍ମପରିଚୟ ଦେଇ ମନୁଷ୍ୟକୁ ନିଜର ଗୁଣକର୍ମର ପରିଚୟ କରାଇଅଛନ୍ତି ? ପୃଥିବୀର ଏପରି କୌଣସି ଧର୍ମଶାସ୍ତ୍ର ନାହିଁ, ଯେ କି ଏଥିର ନିଃସଂଶୟ ଉତ୍ତର ଦେବାକୁ ସମର୍ଥ; ବରଂ ଶାସ୍ତ୍ରମାନଙ୍କର ସମ୍ୟକ୍ ଆଲୋଚନାଦ୍ୱାରା ସ୍ପଷ୍ଟ ଜଣାଯାଉଅଛି ଯେ, ଈଶ୍ୱର ମାନବର କଳ୍ପନାପ୍ରସୂତ । କୌଣସି ଜାତିର ଆଦି ଧର୍ମଭାବର କ୍ରମୋନ୍ନତି ସଙ୍ଗେ ସଙ୍ଗେ ଈଶ୍ୱରମହିମାର ବୃଦ୍ଧି ପରିଲକ୍ଷିତ ହୁଏ । ବିଭିନ୍ନ ମନୁଷ୍ୟସମାଜର ପ୍ରାଥମିକ ଧର୍ମବିଶ୍ୱାସର କ୍ରମୋନ୍ନତି ପ୍ରତ୍ୟେକ ସମାଜର ମାନସିକ ଓ ସାହିତ୍ୟିକ ଉନ୍ନତି ଉପରେ ନିର୍ଭର କରେ । ପୃଥିବୀରେ ଅନେକ ଜାତି ଅଛନ୍ତି, ଯେଉଁମାନଙ୍କର ଧର୍ମବିଶ୍ୱାସ ଅଦ୍ୟାପି ସେହି ପ୍ରାଥମିକ ଅବସ୍ଥାରେ ବିଦ୍ୟମାନ ଅଛି । କିନ୍ତୁ ଯେଉଁ ଜାତିମାନେ ମାନସିକ ଓ ସାହିତ୍ୟିକ ଉନ୍ନତିପଥରେ ଅଗ୍ରସର ହୋଇଅଛନ୍ତି, ସେମାନେ ଧର୍ମବିଶ୍ୱାସର କ୍ରମୋନ୍ନତି କରିବାରେ ଚେଷ୍ଟା କରିଅଛନ୍ତି । ଭାରତୀୟ ଆର୍ଯ୍ୟଧର୍ମ ଏଥିର ପ୍ରକୃଷ୍ଟ ଉଦାହରଣ ।

ଆର୍ଯ୍ୟଜାତିର ପ୍ରଥମ ଲିପିବଦ୍ଧ ଧର୍ମଗ୍ରନ୍ଥ ଋଗ୍‌ବେଦ । ଋଗ୍‌ବେଦ ଲିପିବଦ୍ଧ ହେବା ପୂର୍ବରୁ ଶିକ୍ଷକମୁଖରୁ ଧର୍ମଶିକ୍ଷା କରାଯାଉଥିଲା ଏବଂ ସ୍ତୁତି ସ୍ତୋତ୍ର ମୁଖସ୍ଥ କରାଯାଉଥିଲା । ଋଗ୍‌ବେଦ ପାଠରୁ ଆମ୍ଭେମାନେ ଆର୍ଯ୍ୟଜାତି ପ୍ରକୃତିପୂଜକ ଥିବାର ଜାଜ୍ୱଲ୍ୟମାନ ପ୍ରମାଣ ପାଉଁ । ତତ୍‌ପୂର୍ବେ ଯେ ଆର୍ଯ୍ୟ ଋଷିଗଣ ପ୍ରକୃତିପୂଜକ ଥିଲେ, ସେଥିର ଦୃଷ୍ଟାନ୍ତ ମଧ୍ୟ ଋଗ୍‌ବେଦରୁ ଦେଖିବାକୁ ପାଉଁ ।

ଅଗ୍ନିଃ ପୂର୍ବେଭିର୍ଋଷିଭିରୀଡ଼୍ୟୋନୂତନୈରୁତ ।
ସହେବାଁ ଏହି ବାକ୍ଷତି । ୧। ୧ । ୨

ଅଗ୍ନି ପୂର୍ବ ଋଷିମାନଙ୍କ ଦ୍ୱାରା ସ୍ତୁତ ହେଉଥିଲେ । ଇଦାନୀନ୍ତନ ଆମ୍ଭମାନଙ୍କଦ୍ୱାରା ସ୍ତୁତ୍ୟା ସେହି ଅଗ୍ନି ସ୍ତୁତ ହୋଇ ଦେବତାମାନଙ୍କୁ ଏଠାକୁ ପ୍ରାପ୍ତ କରାନ୍ତୁ ।

ଅଗ୍ନି ଅର୍ଥ ଏଠାରେ ଅତି ସ୍ପଷ୍ଟ । ମନ୍ତ୍ରାର୍ଥରେ ମଧ୍ୟ ଆଦୌ କ୍ଲିଷ୍ଟତା ନାହିଁ ।

ଋଗ୍‌ବେଦ ରଚନା ପୂର୍ବରୁ ଆର୍ଯ୍ୟମାନେ ଅଗ୍ନିପୂଜକ ଥିଲେ । ଋଗ୍‌ବେଦ ରଚକମାନେ ଅଗ୍ନିପୂଜକ ଥିଲେ । ବର୍ତ୍ତମାନ ହିନ୍ଦୁମାନେ ମଧ୍ୟ ଅଗ୍ନିପୂଜକ । ହୋମକୁଣ୍ଡରେ ଅଗ୍ନି ପ୍ରଜ୍ୱଳିତ କରି ପୂର୍ବେ ଆର୍ଯ୍ୟଗଣ ଏହି ମନ୍ତ୍ର ବା ଏତାଦୃଶ ମନ୍ତ୍ରମାନ ଉଚ୍ଚାରଣ କରୁଥିଲେ । ଏବେ ଆମ୍ଭେମାନେ ମଧ୍ୟ ଅଗ୍ନି ପ୍ରଜ୍ୱଳିତ କରି ଏହି ମନ୍ତ୍ର ବା ଏତାଦୃଶ ଅନ୍ୟ ମନ୍ତ୍ର ଉଚ୍ଚାରଣ କରୁଅଛୁଁ । ଆମ୍ଭମାନଙ୍କର ଏତାଦୃଶ ପୂଜା ଅଗ୍ନିପୂଜା, ନା ଈଶ୍ୱରପୂଜା ନା ଈଶ୍ୱର ଆରାଧନା ? ତଥାପି ସ୍ୱାମିଜୀ ବ୍ୟାଖ୍ୟାରେ ଲେଖିଲେ—

'ଅଗ୍ନିଃ ପରମେଶ୍ୱରୋ ଭୌତିକୋ ବା' । ଏହିପରି ସ୍ୱାମିଜୀ 'ସୂର୍ଯ୍ୟସ୍ୟ ପରମେଶ୍ୱରସ୍ୟ, ଇନ୍ଦ୍ରସ୍ୟ ପରମେଶ୍ୱରସ୍ୟ ଏବଂ ବରୁଣସ୍ୟ ପରମେଶ୍ୱରସ୍ୟ' ଇତ୍ୟାଦି ଲେଖିଯାଇଅଛନ୍ତି । ଇନ୍ଦ୍ର ବା ବରୁଣ ଲୋକଙ୍କୁ ଜଣା ନ ପଡ଼ନ୍ତୁ; ମାତ୍ର ସୂର୍ଯ୍ୟ ଓ ଅଗ୍ନି ଯେ ସ୍ୱପ୍ରକାଶ, ଏ ଦୁହିଁଙ୍କି ତ ଲୋକେ ଚିହ୍ନି ପାରନ୍ତି । ଏପରି ସ୍ଥଳରେ ଅଗ୍ନି ଅର୍ଥ ପରମେଶ୍ୱର, ସୂର୍ଯ୍ୟ ଅର୍ଥ ପରମେଶ୍ୱର ବୋଲି ଲେଖିଲେ ଲୋକେ ବିଶ୍ୱାସ କରିବେ କି ? ଅନେକେ ବା ବିଶ୍ୱାସ କରିପାରନ୍ତି; ମାତ୍ର ତାହା ତ ଯୁକ୍ତିସିଦ୍ଧ ନୁହେଁ । ସୁତରାଂ ଯେଉଁଠାରେ ସ୍ପଷ୍ଟତଃ ଭୌତିକ ପଦାର୍ଥର ସ୍ତୁତି ଅଛି ବା ଉଲ୍ଲେଖ ଅଛି, ସେ ସ୍ଥଳରେ ଈଶ୍ୱର ଅପ୍ରାସଙ୍ଗିକ ଓ ଭ୍ରମାତ୍ମକ । ପ୍ରତ୍ୟେକ ଭୌତିକ ପଦାର୍ଥର ସ୍ତୁତିକୁ ଈଶ୍ୱର ସ୍ତୁତି ବୋଲିବାର ଯେଉଁ ଅର୍ଥ, ପରମପୌତ୍ତଳିକକୁ ଏକେଶ୍ୱରବାଦୀ ବୋଲିବା ସେହି ଅର୍ଥ ।

ଯେବେ କେହି ଜଣେ ଘୂର୍ଣ୍ଣିବାୟୁରେ ପଡ଼ି ବିନାଶ ପାଇଲାବେଳେ କହେ, ''ହେ ପବନଦେବତା, ତୁ ମୋତେ ରକ୍ଷା କର, ତୁ ସମସ୍ତଙ୍କର ପ୍ରାଣରକ୍ଷକ ।'' ପୁଣି ଦିନେ ବଜ୍ରପାତ ହେବାର ଦେଖି ସ୍ତୁତି କରେ, ''ହେ ଇନ୍ଦ୍ର, କୋପ ସଂହାର କର, ମୋର ହୃଦୟ କମ୍ପୁ ଅଛି । ତୁମ୍ଭେ ପ୍ରଭୁ, ତୁମ୍ଭେ ବଳଶାଳୀ, ତୁମ୍ଭଠାରୁ ବଳି ବଡ଼ କିଏ ?'' ଶିବଲିଙ୍ଗଟି ଦେଖି ପ୍ରଣିପାତପୂର୍ବକ ଜଣାଏ, ''ପ୍ରଭୁ, ତୁ ସର୍ବକର୍ତ୍ତା, ସର୍ବଦାତା, ମୋତେ ଗୋଟିଏ ବଳଶାଳୀ ପୁଅ ଦେ ।'' ନିକଟରେ ଦୁର୍ଗାମୂର୍ତ୍ତି ଦେଖି ସ୍ତୁତି କରେ, ''ମା' ଗୋ, ତୁ ତ ସମସ୍ତଙ୍କୁ ଜନ୍ମ କରିଛୁ, ତୋର କୋପ ହେଲେ ସମସ୍ତେ ନାଶ ଯିବେ । ମା, ମୁଁ ଅପରାଧ କରିଥିଲେ କ୍ଷମା ଦେ । ଭାର୍ଯ୍ୟା ପୁଅ ସମସ୍ତଙ୍କୁ ସୁଖରେ ରଖ, ଗୋ ମା' ।'' ଆସୁ ଆସୁ ଗଣ୍ଡଗ୍ରାମରେ ସିନ୍ଦୂରଜର୍ଜରିତ ଗୋଟିଏ ଗଣ୍ଡଶୈଳ ଦେଖି ଯେବେ କହେ, ''ବାପରେ । ଏହି ତ ରକ୍ତମୁହିଁ ଦେବୀ । ଶିବ ବିଷ୍ଣୁଙ୍କ କୋପରୁ ପଛେ ରକ୍ଷା ପାଇବାର ଆଶା, ଏ ମୂର୍ତ୍ତି କ୍ରୋଧାନ୍ୱିତା ହେଲେ ରଖେ କିଏ ?'' ତଳେ ପଡ଼ି କହେ, ''ମା'! ତୁ ସମସ୍ତଙ୍କଠାରୁ ବଡ଼, ତୋଠାରେ ମୋର ଅଚଳା ଭକ୍ତି, ମୋର ପରିବାରବର୍ଗର ମଙ୍ଗଳ କରିଥିବୁ ।'' ବେଳ ବୁଡ଼ୁଅଛି, ଆସୁ ଆସୁ ଜଣେ କୁମ୍ଭୀପଟିଆକୁ ଦେଖିଲା ଯେ, ସେ ପଶ୍ଚିମଆଡ଼କୁ ମୁହଁ କରି କ'ଣ କହୁଅଛି, ତଳରେ ଲମ୍ବ ହୋଇ ପଡ଼ୁଅଛି । ଭାବିଲା, ଏହି ତ ପ୍ରଧାନ ଭକ୍ତ, ଏ ଯାହାକୁ ସେବା କରୁଅଛି ସେ ବୋଧହୁଏ ସବୁଠାରୁ ବଡ଼ । ତା ଅନୁକରଣରେ ତଳେ ପଡ଼ି 'ଗୁରୁ ଶରଣ', 'ଗୁରୁ ଶରଣ' ବୋଲି ଡାକ ପକାଇଲା, ଧୂଳି ଚାଟିଲା, ମୁଣ୍ଡରେ ଲଗାଇଲା । ଦିନେ ଶୁଣିଲା ଯେ, ଖ୍ରୀଷ୍ଟଙ୍କୁ ବିଶ୍ୱାସ କଲେ ଐହିକ ଓ ପାରତ୍ରିକ ମଙ୍ଗଳ । ସେହି ଖ୍ରୀଷ୍ଟ ଆଶ୍ରୟ କରି ଇଂରେଜୀମାନେ ଭାରତ ଜୟ କରିଅଛନ୍ତି— ସେମାନଙ୍କର ସମ୍ପତ୍ତି ଅଚଳା । ପ୍ରଭୁତ୍ୱ ଅକ୍ଷୁଣ୍ଣ । ଭାବିଲା ସତ କଥା, ଖ୍ରୀଷ୍ଟ ମୋର ପରମଦେବତା । ପ୍ରଣାମ କଲା । ଇଂରାଜୀ ତୁଲ୍ୟ ବୁଦ୍ଧି ବିଦ୍ୟା ବଳ ପ୍ରଭୃତି ପାଇବାକୁ ପ୍ରାର୍ଥନା କଲା । ପୁଣି ବିଚାର କଲା; ନା ନା, ଜଣକୁ କାହିଁକି, ସୁବିଧା ଅନୁସାରେ ସମସ୍ତଙ୍କୁ ଧରିଥିଲେ ତ ଭଲ । କେହିହେଲେ ତ ମଙ୍ଗଳ କରିବେ । ସୁତରାଂ ସକାଳ ଓ ସଞ୍ଜରେ ଥରେ ସମସ୍ତଙ୍କୁ ଡାକୁଥିଲେ କ୍ଷତି କ'ଣ ? କେହିହେଲେ ତ ଶୁଣିବେ ? କହିବା ବାହୁଲ୍ୟ ଯେ, ଏପରି ଅନେକ ଲୋକ ଦୃଷ୍ଟିଗୋଚର ହୁଅନ୍ତି । ବ୍ରାହ୍ମଣାଦିଙ୍କର ପଞ୍ଚଦେବତା ଉପାସନା ଏହି ଧରଣର ନୁହେଁ କି ? ମାତ୍ର ସେଠାରେ ଖ୍ରୀଷ୍ଟଙ୍କର ସ୍ଥାନ ନାହିଁ । ଏତାଦୃଶ ପୂଜାକୁ ଉପାସନାକୁ ଯେବେ ଏକେଶ୍ୱର

ଉପାସନା ବୋଲାଯାଏ, ତେବେ ବେଦମନ୍ତ୍ରଗୁଡ଼ିକ ଏକେଶ୍ୱର ସ୍ତୋତ୍ର ବୋଲି ବିଶ୍ୱାସ କରିବା ଏତାଦୃଶ ବିଶ୍ୱାସୀଙ୍କ ପକ୍ଷରେ ଅସମ୍ଭବ ନୁହେଁ । ପଞ୍ଚଦେବତା ଉପାସନାକୁ ଯେପରି ଏକେଶ୍ୱରୋପାସନା ବୋଲିବା ସଙ୍ଗତ ନୁହେଁ, ତେମନ୍ତ ବେଦମନ୍ତ୍ରଗୁଡ଼ିକ ଏକେଶ୍ୱର ସ୍ତୁତି ବୋଲିବା ସଙ୍ଗତ ନୁହେଁ ।

॥ ୯ ॥

ବେଦମନ୍ତ୍ରଦ୍ରଷ୍ଟା ଋଷିମାନେ ପରା ସର୍ବଜ୍ଞ, ତ୍ରିକାଳଜ୍ଞ, ସେମାନେ ବେଦମନ୍ତ୍ରରେ ଏକ ମାତ୍ର ନିୟନ୍ତାର କୌଣସି ରୂପ ଗୁଣ ବା ଏକାଧିପତ୍ୟର କୌଣସି ନିଦର୍ଶନ ପାଇଥିଲେ କି ? କିମ୍ବା ଋଗ୍‌ବେଦର କୌଣସି ମନ୍ତ୍ରରେ ସେହି ନିୟନ୍ତାର ବାହୁଲ୍ୟ ବର୍ଣ୍ଣନା ବା ସ୍ତୁତି କରି ଯାଇଅଛନ୍ତି କି ? ତାହାଛଡ଼ା ମଣ୍ଡଳବିଭାଗକର୍ତ୍ତା ଓ ସୂକ୍ତନିର୍ବାଚନକର୍ତ୍ତା ପ୍ରାଚୀନ ଋଷି ଈଶ୍ୱର ବା ପରମେଶ୍ୱର କୌଣସି ମନ୍ତ୍ରର ଦେବତା ବୋଲି କୌଣସି ସୂକ୍ତରେ ଲେଖିଯାଇଅଛନ୍ତି କି ? ପୂର୍ବକାଳର ବେଦ ସଂଗ୍ରହକର୍ତ୍ତା ଋଷି ଯେବେ ୧୦୫୮୯ ମନ୍ତ୍ର ମଧ୍ୟରୁ ଗୋଟିଏ ମନ୍ତ୍ର ହେଲେ ଈଶ୍ୱରସ୍ତୁତି ବୋଲି ଲେଖି ନାହାନ୍ତି କିମ୍ବା କୌଣସି ମନ୍ତ୍ରର ଉପାସ୍ୟ ସର୍ବନିୟନ୍ତା ପରମେଶ୍ୱର ବୋଲି ନିର୍ଦ୍ଦେଶ କରିନାହାନ୍ତି, ତେବେ ପରବର୍ତ୍ତୀ ବ୍ୟାଖ୍ୟାକାରମାନେ ବେଦରେ ଈଶ୍ୱରଙ୍କର ନାମ ଗନ୍ଧ ପାଇଲେ କେଉଁଠାରୁ ? ବେଦରେ ଏକେଶ୍ୱରବାଦ ସିନା କେବଳ କପୋଳକଳ୍ପନା ? ଈଶ୍ୱରପରିଚାୟକ ଗୋଟିଏ ମନ୍ତ୍ର କେହି ଦେଖାଇଦେଇପାରି ନାହାନ୍ତି । କେବଳ ନିଜ ନିଜର ବିଦ୍ୟାବଳରେ ଆଧ୍ୟାତ୍ମିକ ଅର୍ଥ ନିଷ୍କାସନ କରିବାରେ ସମସ୍ତେ ବଦ୍ଧପରିକର । କାଳିଦାସଙ୍କର ବିଖ୍ୟାତ ମେଘଦୂତ ଖଣ୍ଡକାବ୍ୟକୁ କୌଣସି ଉତ୍କଳୀୟ ପଣ୍ଡିତ ଗୁଣ୍ଡିଚା ଉତ୍ସବର ବର୍ଣ୍ଣନା ବୋଲି ବୁଝାଉଅଛନ୍ତି । ମେଘଦୂତର ପ୍ରକୃତ ଅର୍ଥ ନ ଦେଖି ଯଦି କେହି ଏହି କଳ୍ପିତ ଅର୍ଥ ଶୁଣେ, ତା' ପ୍ରତି କାଳିଦାସଙ୍କ ମେଘଦୂତ ଗୁଣ୍ଡିଚା ଚମ୍ପୂ ବା ଆଉ କିଛି ବୋଲି ପ୍ରତୀୟମାନ ହୋଇପାରେ; ମାତ୍ର ପ୍ରକୃତରେ କାଳିଦାସ ଏପରି ଅଭିପ୍ରାୟରେ କାବ୍ୟ ରଚନା କରି ନ ଥିଲେ ।

ଶାରୀରିକ ଓ ଆଧ୍ୟାତ୍ମିକ ବ୍ୟାଖ୍ୟାରେ କେବଳ ବୁଦ୍ଧିର ଦୌଡ଼ ଜଣାପଡ଼େ, ମାତ୍ର ପ୍ରକୃତ ତତ୍ତ୍ୱ ରହିଯାଏ ବହୁ ଦୂରରେ । ରାଧାକୃଷ୍ଣଙ୍କର ଲୀଳା, କୁରୁପାଣ୍ଡବ ଯୁଦ୍ଧ, ରାମ ରାବଣ ଯୁଦ୍ଧ ପ୍ରଭୃତିର ଆଧ୍ୟାତ୍ମିକ କିମ୍ବା ଶାରୀରିକ ଅର୍ଥ ଯାହା ପଣ୍ଡିତଗଣ ପ୍ରକାଶ କରିଯାଇଅଛନ୍ତି, ତାହା ଅନେକ ପାଠକଙ୍କୁ ଜଣାଥିବ । ମାତ୍ର କବିମାନେ କି ଏତଦଭିପ୍ରାୟରେ ଏତାଦୃଶ ପ୍ରକାଣ୍ଡ ଗ୍ରନ୍ଥମାନ ଲେଖିଯାଇଅଛନ୍ତି ? କେବେ ନୁହେଁ ।

ପରିତାପର ବିଷୟ ଏହି ଯେ, ପୂର୍ବ ପ୍ରଚଳିତ ମତ କିମ୍ବା ସ୍ୱମତ ରକ୍ଷା ନିମନ୍ତେ ଭାରତବର୍ଷର ପାଣ୍ଡିତ୍ୟ । ଏତାଦୃଶ ଗବେଷଣା ଓ ଆଲୋଚନା ନିମନ୍ତେ ଯେ ସ୍ୱାଧୀନ ମତ ଓ ସ୍ୱାଧୀନ ବୃତ୍ତିସମୂହ ଖର୍ବ ହୋଇଅଛି, ଏଥିପ୍ରତି କାହାରି ଲକ୍ଷ୍ୟ ନାହିଁ ।

ଏତାଦୃଶ ଜଟିଳ ପନ୍ଥା ଅବଲମ୍ବନ କରି ଯେବେ ଆମ୍ଭମାନଙ୍କୁ ବେଦରୁ ଈଶ୍ୱର ସତ୍ତା ବା ଈଶ୍ୱରବାଦ ଆବିଷ୍କାର କରିବାକୁ ହୁଏ, ତାହାହେଲେ ବେଦରେ ଏକେଶ୍ୱରବାଦ ନାହିଁ ବୋଲିବାରେ ଆମ୍ଭେମାନେ ଦୋଷୀ ହେବୁଁ କାହିଁକି ?

ତାହାଛଡ଼ା ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ, ବେଦ ବହୁକାଳରେ ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇଅଛି; ସୁତରାଂ ବେଦର ଭାଷାରେ ତାରତମ୍ୟ ଦେଖାଯାଏ । କେତେଗୁଡ଼ିଏ ମନ୍ତ୍ର ସହଜବୋଧ, କେତେଗୁଡ଼ିକର ଭାଷା ଅତି ଦୁର୍ବୋଧ । ଅର୍ଥରେ ନୁହେଁ ଭାଷାରେ । ମାତ୍ର ମଣ୍ଡଳବିଭାଗକର୍ତ୍ତା କି ନିମନ୍ତେ ସେ ସବୁ ମନ୍ତ୍ର ଓଲଟପାଲଟ କରି ରଖିଅଛନ୍ତି, ତାହା ତାହାଙ୍କୁ ହିଁ ଜଣା ।

ଋଗ୍‌ବେଦରେ ଦେଖାଯାଏ, କୌଣସି କୌଣସି ଋଷି ଗୋଟିଏ ଗୋଟିଏ ଦେବତାଠାରେ ଅସାଧାରଣ ଗୁଣକର୍ମର ବର୍ଣ୍ଣନା କରିଅଛନ୍ତି ଏବଂ ସ୍ତୁତି କଲାବେଳେ ଭାବପ୍ରବଣ ହୋଇ ନିଜ କବିତ୍ୱର ଉତ୍ସ ଫିଟାଇଅଛନ୍ତି । ଏତାଦୃଶ ରଚନା ଦେଖି କବି ଏକେଶ୍ୱରବାଦୀ ବୋଲିବା ସଙ୍ଗତ କି ? କିମ୍ବା ତାଙ୍କର ସ୍ତୋତ୍ରଟି ଏକ ମାତ୍ର ନିୟନ୍ତାର ସ୍ତୁତି କି ?

ଉଦାହରଣସ୍ୱରୂପ ଦେଖାଯାଉ— ଇନ୍ଦ୍ର ଯେ କିପ୍ରକାର ଦେବତା, ତାହା ବୋଧହୁଏ ଅନେକଙ୍କୁ ଜଣା । ଯେବେ ଇନ୍ଦ୍ରଙ୍କୁ କୌଣସି ଋଷି ସ୍ତୁତି କଲାବେଳେ କହିଥାନ୍ତି ଯେ, "ହେ ଇନ୍ଦ୍ର ! ପୃଥିବୀ ଶତସଂଖ୍ୟକ ହେଲେ ମଧ୍ୟ ତୁମ୍ଭଠାରୁ ବଳି ନ ପାରେ । ସହସ୍ର ସହସ୍ର ସୂର୍ଯ୍ୟ ତୁମ୍ଭଙ୍କୁ ଅନୁଭବ କରି ନ ପାରନ୍ତି । ଦ୍ୟାବା ପୃଥିବୀ ମଧ୍ୟ ତୁମ୍ଭଙ୍କୁ ବାନ୍ଧି ନ ପାରେ ।" ତେବେ କି ଆମ୍ଭେମାନେ ଏହି ସ୍ତୁତି ଦେଖି ଏହା ଈଶ୍ୱରସ୍ତୁତି ବୋଲି ବିମୁଗ୍ଧ ହୋଇପଡ଼ିବା ? ଏହା ଅତିରଞ୍ଜିତ ଇନ୍ଦ୍ରସ୍ତୁତି ଭିନ୍ନ କ'ଣ ହୋଇପାରେ ? ଅଧୁନା ମଧ୍ୟ ଜଣେ କ୍ଷୁଦ୍ର କରଦ ରାଜାଙ୍କୁ ସଂସ୍କୃତଜ୍ଞ ପଣ୍ଡିତମାନେ ସସାଗରା ପୃଥିବୀର ଅଧୀଶ୍ୱର ବୋଲି ଆଶୀର୍ବାଦ କରନ୍ତି । ଆଜିକାଲିର ଦାନରେ ତ ବାରିର ପ୍ରୟୋଜନ ଥାଏ ନାହିଁ । ତଥାପି କେତେ ରାଜାଙ୍କର ଦାନବାରିରେ ପିଚ୍ଛିଳ ପ୍ରାଙ୍ଗଣରେ କାମଦେବ ଆଉ କେଉଁଠାରେ ବା କିଏ କଚାଡ଼ି ହୋଇ ପଡ଼ିଯାଉ ନାହାନ୍ତି କି ? ତେବେ ବୈଦିକ ଋଷି ଯେ ଇନ୍ଦ୍ରଙ୍କୁ ଟିକିଏ ଭାବୋଚ୍ଛ୍ୱାସରେ ଟେକିଦେଲେ, ସେଥିରେ ସେ ଏକେଶ୍ୱରବାଦୀ ହେଲେ କି ?

ଅଦିତିର ପରିଚୟ ଦେବାର ପ୍ରୟୋଜନ କି ? କିଏ ବା ଅଦିତିଙ୍କୁ ନ ଚିହ୍ନେ ? ଅଦିତି ଆକାଶ; ଏଣୁ ଅଦିତି ଦେବମାତା, ବେଦର ଦେବତା ସମସ୍ତେ ଆକାଶରୁ ଜାତ, ଏଣୁ ଅଦିତି ସମସ୍ତଙ୍କର ମାତା । ପୁରାଣରେ କାଶ୍ୟପପତ୍ନୀ ଏବଂ ଇନ୍ଦ୍ରାଦିଙ୍କର ମାତା, ତ୍ରେତାରେ ରାମମାତା କୌଶଲ୍ୟା, ଦ୍ୱାପରରେ କୃଷ୍ଣମାତା ଦେବକୀ, ଇତ୍ୟାଦି । ଯାହାଙ୍କୁ ବୈଦିକ ଋଷିମାନେ ସମସ୍ତ ଦେବତାଙ୍କର ମାତା ବୋଲି ଜ୍ଞାନ କରିଥିଲେ, ତାଙ୍କୁ ଅତି ଉଚ୍ଚ ଆସନ ଦେବା ଅସମ୍ଭବ ନୁହେଁ ।

ଅଦିତିର୍ଦ୍ୟୌରଦିତିରନ୍ତରୀକ୍ଷ
ଅଦିତିର୍ମାତା ସ ପିତା ସ ପୁତ୍ରଃ ।
ବିଶ୍ୱେଦେବା ଅଦିତିଃ ପଞ୍ଚଜନା
ଅଦିତିର୍ଜାତମଦିତିର୍ଜନିତ୍ୱଂ ।
୧ ।୮୯ ।୧୦

ଅଦିତି ଆକାଶ, ଅଦିତି ଅନ୍ତରୀକ୍ଷ, ଅଦିତି ମାତା, ଅଦିତି ପିତା, ସେହି ପୁତ୍ର, ଅଦିତି ସମସ୍ତ ଦେବ, ଅଦିତି ପଞ୍ଚଜନ, ଅଦିତି ଜାତ ଓ ଜନ୍ମର କାରଣ । ଏହି ମନ୍ତ୍ରରୁ ଅନେକ ଈଶ୍ୱର ଦର୍ଶନ ପାଆନ୍ତି । ଅଦିତି କି ଈଶ୍ୱର ? ଆକାଶ କି ନିୟନ୍ତା ?

ରାହୁଗଣ ପୁତ୍ର ଗୌତମ ଏଥିର ରଚକ । ସେ ଇନ୍ଦ୍ର, ମରୁତ୍, ଅଗ୍ନି, ସୋମ, ପ୍ରଭୃତିଙ୍କର ସୂକ୍ତ ରଚନା କରିଅଛନ୍ତି । ଏହି ମନ୍ତ୍ରଟି ଯେଉଁ ସୂକ୍ତରେ ଅଛି, ସେହି ସୂକ୍ତର ଦେବତା ବିଶ୍ୱେଦେବା । ଅନେକ ଦେବତାଙ୍କର ଏକ ବା ତତୋଽଧିକ ମନ୍ତ୍ର ଏକ ସୂତ୍ରରେ ରଖାଯାଇଥିଲେ ସେହି ସୂକ୍ତର ବିଶ୍ୱେଦେବା ଦେବତା ବୋଲି ଲେଖାଯାଏ । ଈଶ୍ୱର ସ୍ତୋତ୍ର ଯେଉଁ ଯେଉଁଠାରେ ବ୍ୟାଖ୍ୟାକର୍ତ୍ତାମାନେ ଦେଖିଅଛନ୍ତି, ସେହି ସେହି ସୂକ୍ତର ଦେବତା ବିଶ୍ୱେଦେବା । ଈଶ୍ୱର ବିଶ୍ୱେଦେବା ଭିତରେ ପଡ଼ିଲେ କାହିଁକି ? ଇନ୍ଦ୍ର, ଅଗ୍ନି, ବରୁଣ, ପ୍ରଭୃତିଙ୍କ ପରି ଈଶ୍ୱରଙ୍କ ନାମରେ ବେଦରେ ଗୋଟିଏ ହେଲେ ପୂର୍ଣ୍ଣ ସୂକ୍ତ ରଚିତ ହେଲା ନାହିଁ, ଏଥିର ବା କାରଣ କ'ଣ ?

ବେଦପାଠରୁ ସ୍ପଷ୍ଟରୂପେ ଜଣାଯାଏ ଯେ, ବୈଦିକ ଋଷିମାନେ ଅନନ୍ତ ସୁଖଲାଭେଚ୍ଛାରେ କିମ୍ବା ଈଶ୍ୱରଠାରେ ବିଲୀନ ହେବା ଇଚ୍ଛାରେ କୌଣସି ସୂକ୍ତ ବା ମନ୍ତ୍ର ରଚନା କରି ନାହାଁନ୍ତି କିମ୍ବା ସେଥିନିମନ୍ତେ କୌଣସି କାମ୍ୟ କର୍ମର ଆବିଷ୍କାର କରି ନାହାନ୍ତି । ଉପନିଷଦ୍ ଯୁଗରେ ବ୍ରହ୍ମ, ଈଶ୍ୱର, ଆତ୍ମା, ପରମାତ୍ମା ଏମାନଙ୍କର ତତ୍ତ୍ୱ ଅନୁସନ୍ଧାନ ହେବାକୁ ଲାଗିଲା । କ୍ରମେ ସ୍ଥୂଳ, ସୂକ୍ଷ୍ମ, ମହଦାଦିର ବିଚାର ଇତ୍ୟାଦି ଆର୍ଯ୍ୟଶାସ୍ତ୍ରକୁ ପରିପୂର୍ଣ୍ଣ କରିଅଛି । ସେଥିର ବିବରଣ ପରେ ପ୍ରକାଶ କରାଯାଉଅଛି । ବର୍ତ୍ତମାନ ବେଦରେ ବ୍ୟାଖ୍ୟାକାରମାନେ କିପରି ଈଶ୍ୱରସତ୍ତା ପାଇଅଛନ୍ତି, ତହିଁର ଆଲୋଚନା କରାଯାଉ ।

ଅନେକ ଦିନ ପୂର୍ବେ ଥରେ ଖବରକାଗଜରେ ପ୍ରକାଶିତ ହେଲା ଯେ, ଅମୁକ ଦିନ ଅମୁକ ବେଳରେ ସୂର୍ଯ୍ୟଗ୍ରହଣ ହେବ, ମାତ୍ର କେଉଁ ସ୍ଥାନକୁ ଦୃଶ୍ୟ ହେବ, କେଉଁ ସ୍ଥାନକୁ ଦୃଶ୍ୟ ହେବ ନାହିଁ, ତହିଁର ଉଲ୍ଲେଖ ନ ଥିଲା । ସମ୍ବାଦପତ୍ରରେ ଏହା ଲେଖାଥିଲା । ସମସ୍ତେ ଉତ୍କଳ ପାଞ୍ଜି ଓଲଟାଇଲେ, ପାଞ୍ଜିରେ ଲେଖା ନାହିଁ । ଧରିନେଲେ ଯେ ପାଞ୍ଜିକାର ଭ୍ରମରେ ଛାଡ଼ିଥିବ । ଗ୍ରହଣ ସମୟ ଉପସ୍ଥିତ ହେଲା । ଆପଣା ଆପଣା ଦ୍ୱାରରେ ଲୋକେ କଂସାଏ କଂସାଏ ହଳଦୀପାଣି ଧରି ଗ୍ରହଣ ନିରୀକ୍ଷଣ କରିବାକୁ ଲାଗିଲେ । କେହି ଜଣେ କହିଲା, ହେଇ ଦିଶିଲା ତ । ଆଉ ଜଣେ କହିଲା, ଦିଶିଲା ତ । ଏକ ସ୍ଥାନରୁ ଶଙ୍ଖ ବାଜି ଉଠିଲା । ସମସ୍ତେ ଭାବିଲେ, ସୂର୍ଯ୍ୟଗ୍ରହଣ ହେଲା । କ୍ରମେ ଶଙ୍ଖ, ଘଣ୍ଟା, ମୃଦଙ୍ଗ ବାଜିଲା । ଯେଉଁମାନେ ସୂର୍ଯ୍ୟ ଗ୍ରହଣ ଦେଖିବାଟା ପାପ ବୋଲି ବିଚାରନ୍ତି, ସେମାନେ ଗୃହରେ ଲୁଚି ରହିଲେ । କେହି ବା ଦାନ ପୁଣ୍ୟ ମଧ୍ୟ କଲେ । ସମସ୍ତେ ସୂର୍ଯ୍ୟ ଆଡ଼କୁ ଅନାଇ ରହିଲେ । ଗ୍ରହଣ ନାହିଁ । ଯେଉଁମାନେ ହଳଦୀପାଣିରେ ଗ୍ରହଣ ଦେଖିଥିବାର ରଟନା କରିଥିଲେ, ସେମାନେ କହିଲେ, ବୋଧହୁଏ ସାମାନ୍ୟ ଗ୍ରାସ, ଏଣୁ ଶୀଘ୍ର ଗ୍ରହଣ ଲାଗି ଛାଡ଼ିଗଲା, କେହି ଦେଖି ପାରିଲେ, କେହିବା ପାରିଲେ ନାହିଁ । କିନ୍ତୁ ଗ୍ରହଣ ଯେ ଲାଗିଥିଲା, ଏହା ସତ୍ୟ । ଏହି ବିଶ୍ୱାସରେ ଦାନ ଧର୍ମ ମଧ୍ୟ ହେଲା । ଗ୍ରହଣ ଲାଗିଥିବାର ସମସ୍ତେ ବିଶ୍ୱାସ କଲେ । ପ୍ରମାଣ ସମ୍ବାଦପତ୍ରରେ ଛାପା ଥିଲା, ତାହା ଅବିଶ୍ୱାସ୍ୟ ନୁହେଁ । ତାହାଛଡ଼ା ଜଣକେତେ ହଳଦୀପାଣିରେ ମଧ୍ୟ ଦେଖି ପାରିଥିଲେ । ଅବିଶ୍ୱାସ କରାଯିବ କିପରି ? ସେହିପରି ବୈଦିକ ଯୁଗରେ ବେଦରେ ଈଶ୍ୱରାନୁସନ୍ଧାନ କରାଯାଇ ନ ଥିଲା । ଉପନିଷଦ ଯୁଗରେ ବା ତହିଁର ପରେ ବେଦରେ ଈଶ୍ୱରତତ୍ତ୍ୱ ଅଛି କି ନାହିଁ, ଏହା ଅନୁସନ୍ଧାନ କରିବାକୁ ଲୋକଙ୍କର ଇଚ୍ଛା ବଳିଲା । ଏଣୁ ଆଧ୍ୟାତ୍ମ ଭାବରେ କେହି କେହି ବେଦରେ ଈଶ୍ୱରତତ୍ତ୍ୱ ପାଇଥିବାର ପ୍ରକାଶ କରିବାରୁ ଅନ୍ୟାନ୍ୟ ପଣ୍ଡିତମାନେ ମଧ୍ୟ ଅନୁସନ୍ଧାନ କରି ଜଣକେତେ ଗୋଟିକେତେ ମନ୍ତ୍ରରୁ ଆଧ୍ୟାତ୍ମବ୍ୟାଖ୍ୟା ଦ୍ୱାରା ଈଶ୍ୱର ସିଦ୍ଧି କରିବାକୁ ଚେଷ୍ଟା କଲେ । ଉପନିଷଦ୍ ଯୁଗର ପ୍ରଥମାବସ୍ଥାରେ ମଧ୍ୟ ଋଷିମାନଙ୍କର ବିଶ୍ୱାସ ଥିଲା ଯେ, ଋଗ୍‌ବେଦରେ ଈଶ୍ୱରତତ୍ତ୍ୱ ଓ ବ୍ରହ୍ମତତ୍ତ୍ୱ ନାହିଁ । ସୁତରାଂ କେହି

କେହି କହିଅଛନ୍ତି ଯେ, 'ଅନ୍ଧଂ ତମଃ ପ୍ରବିଶନ୍ତି ଯେଽସମ୍ଭୂତିମୁପାସତେ' । ଯେ ପ୍ରକୃତିର ଉପାସନା କରେ, ସେ ଅଜ୍ଞାନାନ୍ଧକାରରେ ପ୍ରବେଶ କରେ । ଏହାଛଡ଼ା କେହି କେହି କହିଅଛନ୍ତି ଯେ, 'ନାୟମାତ୍ମା ପ୍ରବଚନେନ ଲଭ୍ୟଃ' । ବେଦାଧ୍ୟୟନ ଦ୍ୱାରା ଏହି ଆତ୍ମା ଲଭ୍ୟ ନୁହନ୍ତି । ଏତାଦୃଶ ବଚନର ଅଭାବ ନାହିଁ । ସେ ଯାହାହେଉ, ଆମ୍ଭେମାନେ ବେଦରୁ ଗୋଟିକେତେ ମନ୍ତ୍ର ଉଦ୍ଧାର କରିବୁଁ— ଯହିଁରେ ଈଶ୍ୱର ବିଦ୍ୟମାନତାର ଆଧ୍ୟାତ୍ମିକ ଅର୍ଥ ବ୍ୟାଖ୍ୟାକର୍ତ୍ତାମାନେ ପାଇଅଛନ୍ତି ।

ଦଶମ ମଣ୍ଡଳର ୧୧୪ ସୂକ୍ତର ୪ ଓ ୫ ମନ୍ତ୍ରରେ ସାୟନାଚାର୍ଯ୍ୟ ପରମାତ୍ମାର ଉଲ୍ଲେଖ ଦେଖନ୍ତି । ଏହି ସୂକ୍ତର ଋଷି ସଧ୍ରି ଏବଂ ଦେବତା ବିଶ୍ୱେଦେବା । ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ, ଯେଉଁଠାରେ ବା ଯେଉଁ ସୂକ୍ତରେ ବିଶ୍ୱେଦେବା ଦେବତା, ସେହିଠାରେ ବ୍ୟାଖ୍ୟାକର୍ତ୍ତାମାନଙ୍କୁ ପରମାତ୍ମାର ଛାୟା ଦେଖାଯାଏ । କହିବା ବାହୁଲ୍ୟ ଯେ, ବିଶ୍ୱେଦେବାଗଣ ଇନ୍ଦ୍ରାଦି ଦେବତାଙ୍କଠାରୁ ନିମ୍ନ ମର୍ଯ୍ୟାଦାପନ୍ନ ।

ସୁପର୍ଣ୍ଣଂ ବିପ୍ରାଃ କବୟୋବଚୋଭି
ରେକଂ ସନ୍ତଂ ବହୁଧା କଳ୍ପୟନ୍ତି ।
ଛନ୍ଦାଂସି ଚ ଦଧତୋ ଅଧ୍ୱରେଷୁ
ଗ୍ରହାନ୍ ସୋମସ୍ୟ ମିମତେ ଦ୍ୱାଦଶ ।
୧୦ । ୧୪୪ ।୫

ମେଧାବୀ କବିମାନେ ସ୍ତୁତିବଚନଦ୍ୱାରା ଏକ ସୁପର୍ଣ୍ଣକୁ ବହୁ ପ୍ରକାର କଳ୍ପନା କରନ୍ତି । ସେହିମାନେ ପୁଣି ଯଜ୍ଞରେ ନାନା ଛନ୍ଦ ଉଚ୍ଚାରଣ କରନ୍ତି । ଦ୍ୱାଦଶ ସୋମ ଗ୍ରହଣଯୋଗ୍ୟ (ପାତ୍ର) ସଂସ୍ଥାପନ କରନ୍ତି ।

ଏଠାରେ "ଏକଂ ସୁପର୍ଣ୍ଣଂ ସନ୍ତଂ"ର ଅର୍ଥ "ପରମାତ୍ମାନଂ" ବୋଲି ସାୟନାଚାର୍ଯ୍ୟ ଲେଖିଲେ । ମାତ୍ର ତହିଁର କାରଣ କ'ଣ ? ତାହା ସେ ବ୍ୟାଖ୍ୟାଦ୍ୱାରା ବୁଝାଇ ନାହାନ୍ତି । ନୈରୁକ୍ତମାନଙ୍କ ମତାନୁସାରେ ସୁପର୍ଣ୍ଣ ଅର୍ଥ ରଶ୍ମିଯୁକ୍ତ ବା ଅଶ୍ୱଯୁକ୍ତ । ସାୟନ ସ୍ଥଳବିଶେଷରେ ଏହି ଅର୍ଥ ଗ୍ରହଣ କରିଅଛନ୍ତି; ମାତ୍ର ଏ ସ୍ଥଳରେ ସେ ଅର୍ଥ ନ କରିବାର କାରଣ କିଛି ନିର୍ଦ୍ଦେଶ କରି ନାହାନ୍ତି ।

ଏହି ମନ୍ତ୍ରର ପୂର୍ବ ମନ୍ତ୍ରରେ ମଧ୍ୟ ସୁପର୍ଣ୍ଣ ପଦଟି ଅଛି, ଯଥା—ଏକଃ ସୁପର୍ଣ୍ଣ ସସମୁଦ୍ର ମା ବିବେଶ
ସ ଇଦଂ ବିଶ୍ୱଂ ଭୁବନଂ ବିଚଷ୍ଟେ ।

ଏଠାରେ ସାୟନ ସୁପର୍ଣ୍ଣ ଅର୍ଥ ପରମାତ୍ମା କରି ନାହାନ୍ତି ।

ଏକଃ ସୁପର୍ଣ୍ଣସୁପତନଃ ମଧ୍ୟମସ୍ଥାନୋ ଦେବଃ ସମୁଦ୍ରଂ ଅନ୍ତରୀକ୍ଷଂ ଆବିବେଶ ସ ଇଦଂ ସର୍ବଭୂବନଂ ଭୂତଜାତଂ ବିଚଷ୍ଟେ ଅଭିପଶ୍ୟତି ।

ସେହି ଏକ ସୁପର୍ଣ୍ଣ ମଧ୍ୟମ ସ୍ଥାନ ଦେବତା ଅନ୍ତରୀକ୍ଷରେ ପ୍ରବେଶ କରି ସମସ୍ତ ଭୁବନକୁ ଅବଲୋକନ କରନ୍ତି ।

୪ର୍ଥ ମନ୍ତ୍ରରେ ଥିବା ସୁପର୍ଣ୍ଣ ଅର୍ଥ ମଧ୍ୟସ୍ଥାନ ଦେବତା କାହିଁକି ଏବଂ ୫ମ ମନ୍ତ୍ରରେ ଥିବା ସୁପର୍ଣ୍ଣ ଅର୍ଥ ପରମାତ୍ମା ହେଲା କାହିଁକି ? ଏହା ସାୟନାଚାର୍ଯ୍ୟଙ୍କର ସ୍ୱେଚ୍ଛାଚାରିତାର ପରିଚାୟକ ନୁହେଁ କି ?

ପକ୍ଷ ଯାହାର ଅଛି, ରଶ୍ମି ଯାହାର ଅଛି, ଅଶ୍ୱ ଯାହାର ଅଛି, ଯେ ଆଦିତ୍ୟ, ସେ ସୁପର୍ଣ୍ଣ, ଏହା ନୈରୁକ୍ତମାନଙ୍କର ଅର୍ଥ । ଏ ଅର୍ଥରେ ସୁପର୍ଣ୍ଣ ଅର୍ଥ ସୂର୍ଯ୍ୟ । ଏଠାରେ ସୂର୍ଯ୍ୟ ଅର୍ଥ କଲେ ଦୁଇ ମନ୍ତ୍ରର ଅର୍ଥ ସୁଗମ ଓ ସୁବୋଧ ହେବା ଛଡ଼ା ପାଠକମାନଙ୍କୁ କଦାପି ଭ୍ରାନ୍ତ କରାଇବ ନାହିଁ । ଏହାଛଡ଼ା ସାୟନ ଯେ ଅନେକ ସ୍ଥଳରେ ସୁପର୍ଣ୍ଣ ଅର୍ଥ ପରମାତ୍ମା କରିଅଛନ୍ତି, ତହିଁର ଉଦାହରଣ ନିମ୍ନରେ ଉଦ୍ଧୃତ କରି ସେଥିର ତାତ୍ପର୍ଯ୍ୟ ବୁଝାଇବାକୁ ଚେଷ୍ଟା କରିବୁଁ ।

ପ୍ରଥମ ମଣ୍ଡଳ ୧୬୪ ସୂକ୍ତରେ ଅନେକଗୁଡ଼ିଏ ସୁପର୍ଣ୍ଣ ଶବ୍ଦ ଦୃଷ୍ଟ ହୁଏ, ଯଥା—

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ
ବୃକ୍ଷଂ ପରିଷସ୍ୱଜାତେ ।
ତୟୋରନ୍ୟଃ ପିପ୍ପଳଂ ଆସ୍ୱାଦତ୍ୟ—
ନଶ୍ନନ୍ନନ୍ୟୋ ଅଭିଚାକଶୀତି ।
୧ ।୧୬୪।୨୦

ଯୋଡ଼ିଏ ସୁପର୍ଣ୍ଣ ସମାନ ଯୋଗ ଓ ସଖା ଭାବରେ ସମାନ ବୃକ୍ଷରେ ଆଶ୍ରୟ ନେଇଅଛନ୍ତି । ଏ ଦୁହିଁଙ୍କ ମଧ୍ୟରୁ ଜଣେ ସ୍ୱାଦୁ ପିପ୍ପଳ ଆସ୍ୱାଦନ କରେ, ଅପର ଆସ୍ୱାଦନ ନ କରି ଦେଖୁଥାଏ । ଏହା ମନ୍ତ୍ରର ପ୍ରକୃତ ଅର୍ଥ । ସାୟନ ଏପ୍ରକାର ଅର୍ଥ କରି ତହିଁର ଭାବାର୍ଥ ପ୍ରକାଶ କରିଅଛନ୍ତି ଯେ, ସୁପର୍ଣ୍ଣ ଏଠାରେ ଜୀବାତ୍ମା ପରମାତ୍ମା— ଏ ଦୁହିଁଙ୍କର ପରସ୍ପର ସମ୍ବନ୍ଧ ଅଛି । ଜୀବାତ୍ମା ଫଳଭୋଗୀ—ପରମାତ୍ମା କେବଳ ଦ୍ରଷ୍ଟା ।

କହିବା ବାହୁଲ୍ୟ ଯେ, ଏହି ମନ୍ତ୍ରର ଦେବତା ବିଶ୍ୱେଦେବା । ବେଦବିଭାଗକର୍ତ୍ତାର ଯେବେ ସୁପର୍ଣ୍ଣ ଅର୍ଥ

ଜୀବାତ୍ମା ଏବଂ ପରମାତ୍ମା ବୋଲି ଜ୍ଞାନ ହୋଇଥାନ୍ତା, ତାହା ସେ ନ ଲେଖି ବିଶ୍ୱେଦେବା ଲେଖନ୍ତେ କାହିଁକି ? ସୁପର୍ଣ୍ଣ ଅର୍ଥ 'ସୁପତନୌ ଶୋଭନଗମନୌ' ଏହି ଅର୍ଥ ସାୟନଙ୍କର । ଏହାର ଅର୍ଥ ପ୍ରକୃତରେ ରଶ୍ମି ଯୁକ୍ତ ନୁହେଁ । ଏଥିରୁ ଜୀବାତ୍ମା ପରମାତ୍ମା ଅର୍ଥ ଆସିଲା କିପରି ? ଏହି ମନ୍ତ୍ରର ଅର୍ଥ ଅତି ସ୍ପଷ୍ଟ ବୋଲି ବୋଧହୁଏ । ଏହି ସଂସାରରୂପ ବୃକ୍ଷରେ ଦୁଇଗୋଟି ପକ୍ଷୀ ଅଛନ୍ତି, ଗୋଟିଏ ଜଳ ଗ୍ରହଣ କରେ, ଗୋଟିଏ ଜଳ ଗ୍ରହଣ ନ କରି ଦେଖୁଥାଏ । ଉଭୟେ ଗମନଶୀଳ । ପିପ୍‌ପଳ ଅର୍ଥ ଫଳ ନୁହେଁ, ପିପ୍‌ପଳ ଅର୍ଥ ଜଳ । (ନିରୁକ୍ତ ୨ । ୨୪ । ୧ ।୧୨) ବୃକ୍ଷ ଥିବାରୁ ପିପ୍‌ପଳ ଅର୍ଥ ସୁସ୍ୱାଦୁ ଫଳ କରାଯାଇଅଛି । ଜୀବାତ୍ମା ପରମାତ୍ମା ସମ୍ପୂର୍ଣ୍ଣ କଳ୍ପନା— ଏଥିର ନାମଗନ୍ଧ ନାହିଁ ।

ସୂର୍ଯ୍ୟ ଓ ଚନ୍ଦ୍ର ରଶ୍ମିଯୁକ୍ତ, ଏଣୁ ସୁପର୍ଣ୍ଣ ଓ ଗମନଶୀଳ । ଆକାଶ ବୃକ୍ଷରେ ଉଭୟେ ଗମନ କରନ୍ତି । ସୂର୍ଯ୍ୟ ରଶ୍ମି ଦ୍ୱାରା ଜଳ ଗ୍ରହଣ କରେ । ଚନ୍ଦ୍ର ଜଳଗ୍ରହଣ ନ କରି କେବଳ ଦେଖୁଥାଏ । ଏହା ଅତି ସ୍ପଷ୍ଟାର୍ଥ । ଏଥିରେ ଜୀବାତ୍ମା ପରମାତ୍ମାର ନାମଗନ୍ଧ ନାହିଁ । ସେ ଭାବ ବେଦରଚକର କିମ୍ବା ସୂକ୍ତବିଭାଗକର୍ତ୍ତାର କଳ୍ପନାକୁ ଆସି ନ ଥିଲା ।

ପୁଣି ଦେଖାଯାଉ ୨୧ ମନ୍ତ୍ରର ଅର୍ଥ—

ଯାତ୍ରା ସୁପର୍ଣ୍ଣା ଅମୃତସ୍ୟ ଭାଗମନିମେଷଂ
ବିଦଥାଭିସ୍ୱରନ୍ତି ।
ଇନୋ ବିଶ୍ୱସ୍ୟ ଭୁବନସ୍ୟ ଗୋପାଃ
ସମାଧୀରଃ ପାକମତ୍ରାବିଶେଶ ।

ଏ ମନ୍ତ୍ରର ଦେବତା ବିଶ୍ୱେଦେବା, ପରମାତ୍ମା ବା ପରମେଶ୍ୱର ନୁହଁନ୍ତି ।

ଯତ୍ର ଆଦିତ୍ୟମଣ୍ଡଳେ ସୁପର୍ଣ୍ଣାଃ ଶୋଭନଗମନା ରଶ୍ମୟଃ ଅମୃତସ୍ୟ ଉଦକସ୍ୟ ଭାଗଂ ଆଦାୟଂ ଅନିମେଷଂ ଅନବରତଂ ବେଦନେନ ଜ୍ଞାନେନ ଅଭିସ୍ୱରନ୍ତି ଅଭିପ୍ରାପୟନ୍ତି ।

ଯେଉଁଠାରେ ରଶ୍ମିମାନେ ଉଦକର ଭାବ ସ୍ୱକୀୟ କର୍ତ୍ତବ୍ୟବୋଧରେ ଗ୍ରହଣ କରନ୍ତି, ଯେ ପୁଣି ସମସ୍ତ ଭୂତଜାତର ସ୍ୱାମୀ ଓ ରକ୍ଷାକର୍ତ୍ତା, ସେହି (ଆଦିତ୍ୟ) ପ୍ରାଣୀମାନଙ୍କର ପ୍ରତି ଅନୁଗ୍ରହ ବୁଦ୍ଧିଯୁକ୍ତ ହୋଇ ଅପକ୍ୱପ୍ରଜ୍ଞ ଯେ ମୁଁ ମୋତେ ସ୍ୱମଣ୍ଡଳରେ ପ୍ରବେଶ କରାଇଲେ । ଏହା ଏହି ମନ୍ତ୍ରର ପ୍ରକୃତାର୍ଥ । ଏଥିର ଆଧ୍ୟାତ୍ମ ଅର୍ଥ ପ୍ରକାଶ କରି ସାୟନ ପୁଣି 'ସଃ ପରମେଶ୍ୱରଃ' ଅର୍ଥ କରିଯାଇଅଛନ୍ତି ।

ପୁଣି ୨୨ ମନ୍ତ୍ରରେ ମଧ୍ୟ ସୁପର୍ଣ୍ଣ ଶବ୍ଦ ଦେଖାଯାଏ । ଏହି ସୁପର୍ଣ୍ଣ ଶବ୍ଦର ଅର୍ଥ 'ସୁପର୍ଣ୍ଣାଃ ରଶ୍ମୟଃ' ବୋଲି ସାୟନାଚାର୍ଯ୍ୟ ଅର୍ଥ କରିଅଛନ୍ତି ।

କହିବା ବାହୁଲ୍ୟ ଯେ, ସୁପର୍ଣ୍ଣ ଅର୍ଥ ରଶ୍ମି । ସାୟନ ମଧ୍ୟ ତାହାହିଁ ସ୍ଥଳବିଶେଷରେ ଅର୍ଥ କରିଅଛନ୍ତି । ଉପରୋକ୍ତ ତିନି ସ୍ତୋତ୍ର ଆଦିତ୍ୟ ଓ ସୂର୍ଯ୍ୟଙ୍କର । ସାୟନ ସୂର୍ଯ୍ୟାର୍ଥ କରି ପୁଣି ଆଧ୍ୟାତ୍ମିକ ବ୍ୟାଖ୍ୟାରେ ପରମେଶ୍ୱର ବୋଲି ଲେଖିଯାଇଅଛନ୍ତି ।

ଏହି ସୂକ୍ତର ୪୭ ମନ୍ତ୍ରରେ ମଧ୍ୟ ସୁପର୍ଣ୍ଣ ଶବ୍ଦ ଦେଖାଯାଏ । ଏହି ମନ୍ତ୍ରର ଦେବତା ବିଶ୍ୱେଦେବା ନୁହନ୍ତି, ମାତ୍ର ସୂର୍ଯ୍ୟ ଏବଂ ଏହି ମନ୍ତ୍ରରେ ଥିବା ସୁପର୍ଣ୍ଣର ଅର୍ଥ ରଶ୍ମି ।

୬।୭୫।୧୧ ରେ ମଧ୍ୟ ସୁପର୍ଣ୍ଣ ଶବ୍ଦ ଅଛି । ଏଥିର ଅର୍ଥ ବାଣ—ଶର; ଯେହେତୁ ଶରରେ ପକ୍ଷ ଯୋଜନା କରାଯାଇଥାଏ ।

ପୁଣି ୧୦।୧୧୪।୪ରେ ଥିବା ସୁପର୍ଣ୍ଣ ଶବ୍ଦର ଅର୍ଥ ସୁପତନଃ ବା ଗମନଶୀଳ ବାୟୁ । ପଣ୍ଡିତଗଣ ନିମ୍ନୋକ୍ତ ମନ୍ତ୍ରରେ ଏକେଶ୍ୱରବାଦ ଦେଖିବାକୁ ପାଆନ୍ତି । ଏହି ମନ୍ତ୍ରର ଦେବତା ସୂର୍ଯ୍ୟ । ଏହି ମନ୍ତ୍ରର ଋଷି ଉଚଥ୍ୟ ପୁତ୍ର ଦୀର୍ଘତମା । ସୂକ୍ତ ବିଭାଗକର୍ତ୍ତା ଉକ୍ତ ପ୍ରକାରେ ଋଷି ଓ ଦେବତା ନିର୍ଦ୍ଦେଶ କରିଯାଇଅଛନ୍ତି । ପଶ୍ଚାଦ୍‌ବର୍ତ୍ତୀ ବ୍ୟାଖ୍ୟାକର୍ତ୍ତାମାନେ ଏହି ମନ୍ତ୍ରରେ ଏକେଶ୍ୱରବାଦ ଅଛି ବୋଲି ପ୍ରକାଶ କରିବାଦ୍ୱାରା ସମସ୍ତଙ୍କ ମନରେ ବିଶ୍ୱାସ ଜନ୍ମାଇଅଛନ୍ତି ।

ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନି ମାହୁରଥୋ
ଦିବ୍ୟଃ ସ ସୁପର୍ଣ୍ଣୋ ଗୁରୁତ୍ମାନ୍ ।
ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତ୍ୟଗ୍ନିଂ
ଯମଂ ମାତରିଶ୍ୱାନମାହୁଃ । ୧।୧୬୪।୪୬

ଅଗ୍ନିକୁ ଇନ୍ଦ୍ର ମିତ୍ର ଓ ବରୁଣ ବୋଲି କହିଅଛନ୍ତି । ସେହି ଯେ କି ଦ୍ୟୁରେ ଜନ୍ମ, ରଶ୍ମିଯୁକ୍ତ ମହାନ୍ (ସୂର୍ଯ୍ୟ) ଅଛନ୍ତି, ସେ ସେହି ଅଗ୍ନି । ସେହି ଏକ ପଦାର୍ଥକୁ (ସୂର୍ଯ୍ୟ ଓ ଅଗ୍ନି) ମେଧାବୀମାନେ ଯମ, ମାତରିଶ୍ୱାଦି ଅନେକ ନାମରେ କହିଅଛନ୍ତି ।

ଆମ୍ଭେମାନେ ପୂର୍ବେ ଦେଖାଇଅଛୁଁ ଯେ ଅଗ୍ନି ସୂର୍ଯ୍ୟ ଏକ । ସୂର୍ଯ୍ୟ ପୃଥିବୀରେ ଅଗ୍ନି, ଅନ୍ତରୀକ୍ଷରେ ବିଦ୍ୟୁତ୍ । ତିନି ସ୍ଥାନର ତିନି ଦେବତା ଅଗ୍ନି, ବିଦ୍ୟୁତ୍ ଓ ସୂର୍ଯ୍ୟ ଏକ ବୋଲି ଋଷିମାନଙ୍କୁ ଜ୍ଞାତ ଥିଲା । ଅନେକ ସୂକ୍ତରେ ସେମାନେ ଏହି ଭାବ ପ୍ରକାଶ କରିଅଛନ୍ତି । ଏ ସ୍ଥଳରେ ତଦତିରିକ୍ତ କୌଣସି

ଭାବ ପ୍ରକାଶ ପାଉ ନାହିଁ । ଅନ୍ୟାନ୍ୟ ମନ୍ତ୍ର ଅପେକ୍ଷା ଏହି ମନ୍ତ୍ର ଯେ ଅଗ୍ନି ଓ ସୂର୍ଯ୍ୟ ଉପାସକର ଭକ୍ତିପ୍ରବଣତାର ଉନ୍ମେଷ ମାତ୍ର, ଏଥିରେ ସନ୍ଦେହ ନାହିଁ । ଏଥିରେ ଏକେଶ୍ୱରବାଦର ନାମଗନ୍ଧ ନାହିଁ ବା ଏହା ଈଶ୍ୱରସ୍ତୁତି ନୁହେଁ । ସାୟନ ମଧ ସେପରି ଭାବ ପ୍ରକାଶ କରି ନାହାନ୍ତି ବା ଏହା ଈଶ୍ୱରସ୍ତୁତି ବୋଲି ଲେଖି ନାହାନ୍ତି । ଯେଉଁମାନେ ବେଦର ପ୍ରତ୍ୟେକ ମନ୍ତ୍ର ଈଶ୍ୱରସ୍ତୁତି ବୋଲି ଅନୁମାନ କରନ୍ତି, ସେମାନେ ଯେ ଏହି ମନ୍ତ୍ରକୁ ଈଶ୍ୱରସ୍ତୁତି ବୋଲି କହିବେ, ଏଥିରେ ସନ୍ଦେହ କ'ଣ ?

ସୁପର୍ଣ୍ଣ ଅର୍ଥ ଯେ ସୂର୍ଯ୍ୟ, ତାହା ପୁରାଣକର୍ତ୍ତାମାନେ ସ୍ୱୀକାର କରିଯାଇଅଛନ୍ତି । ମହାଭାରତରଚକ ସୂର୍ଯ୍ୟସ୍ତୁତିରେ ଲେଖିଅଛନ୍ତି—

ମନଃ ମିତ୍ରଂ ସୁପର୍ଣ୍ଣୋ ଭୂତାଦିଃ ଶୀଘ୍ରଗଃ
ପ୍ରାଣଧାରଣଃ । ବନପର୍ବ ୩ ।୨୫

ଉପରେ ଯେଉଁ ବେଦମନ୍ତ୍ରମାନ ଉଦ୍ଧୃତ ହେଲା, ସେହି ମନ୍ତ୍ରମାନଙ୍କରେ ଥିବା ସମସ୍ତ ସୁପର୍ଣ୍ଣ ଶବ୍ଦର ଅର୍ଥ ସୂର୍ଯ୍ୟ । କେବଳ ଗୋଟିଏ ସୁପର୍ଣ୍ଣ ଅର୍ଥ ବାୟୁ ଓ ଗୋଟିକର ଅର୍ଥ ଶର । ସୁପର୍ଣ୍ଣ ଯେ ସୂର୍ଯ୍ୟର ନାମ ତାହା ମହାଭାରତର ପ୍ରମାଣଦ୍ୱାରା ସ୍ପଷ୍ଟୀକୃତ ହୋଇଅଛି ।

ଋଗ୍‌ବେଦର ଦଶମ ମଣ୍ଡଳର ୧୨୧ ସୂକ୍ତକୁ କେତେକ ବ୍ୟାଖ୍ୟାକାର ଈଶ୍ୱରସ୍ତୁତି ବୋଲି ପ୍ରକାଶ କରି ଯାଇଅଛନ୍ତି । ଏହି ସୂକ୍ତର ଦେବତା ପ୍ରଜାପତି ଏବଂ ଋଷି ହିରଣ୍ୟଗର୍ଭ । ଦଶମ ମଣ୍ଡଳର ଋଷି ନାମ କେତେକ କାଳ୍ପନିକ ବୋଲି ଅନୁମାନ ହୁଏ । ପୂର୍ବ ମଣ୍ଡଳ ଓ ସୂକ୍ତମାନଙ୍କରେ ଋଷିଙ୍କର ନାମ ପିତାର ନାମ ସହିତ ପ୍ରକାଶ କରାଯାଇଅଛି । ଏ ମଣ୍ଡଳରେ ତାହା କରାଯାଇ ନାହିଁ । ଏଣୁ ଅନୁମାନ ହୁଏ, ଋଷି ନାମ କାଳ୍ପନିକ ମାତ୍ର । ଯେହେତୁ ନିୟମଭଙ୍ଗ ହୋଇଅଛି । ଏହି ସୂକ୍ତର ମନ୍ତ୍ରଟିମାନ ପ୍ରଶ୍ନ ଓ ଉତ୍ତର ଏହି ନିୟମରେ ଲେଖାଯାଇଅଛି । ପ୍ରଶ୍ନଟି ଅଛି ପରେ ଓ ଉତ୍ତର ଅଛି ଆଗରେ । କସ୍ମୈ ଦେବାୟ ହବିଷା ବିଧେମ ? କେଉଁ ଦେବତାକୁ ହବିଦ୍ୱାରା ପୂଜା କରିବା ?

ପୁଣି ଏହାର ଅର୍ଥ ସାୟନାଦି କରିଅଛନ୍ତି ଯେ— କଂ ପ୍ରଜାପତିଂ କସ୍ମୈ ଅର୍ଥକାୟ ବା ପ୍ରଜାପତିଙ୍କୁ ହବିଦ୍ୱାରା ପୂଜା କରିବା ।

ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ
ଭୂତସ୍ୟ ଜାତଃ ପତିରେକ ଆସୀତ୍ ।
ସଦାଧାର ପୃଥିବୀଂ ଦ୍ୟାମୁତେମା
କସ୍ମୈ ଦେବାୟ ହବିଷା ବିଧେମ । ୧ ।

ହିରଣ୍ୟଗର୍ଭ ସର୍ବ ପ୍ରଥମରେ ବିଦ୍ୟମାନ ଥିଲେ । ସେ ଜାତ ମାତ୍ରେ ସମସ୍ତ ଭୂତର ଏକମାତ୍ର ପତି ହେଲେ । ସେ ପୃଥିବୀ ଓ ଆକାଶକୁ ଧାରଣ କଲେ । କେଉଁ ଦେବତାକୁ ହବିଦ୍ୱାରା ପୂଜା କରିବା ?

ଏହି ପ୍ରକାର ନଅ ଗୋଟି ମନ୍ତ୍ର ଅଛି । ଅବଶେଷରେ ଋଷି କହିଲେ—

ପ୍ରଜାପତେ ନ ତ୍ୱଦେତାନ୍ୟନ୍ୟୋ
ବିଶ୍ୱା ଜାତାନି ପରିତା ବଭୂବ ।
ଯତ୍କାମାସ୍ତେ ଜୁହୁମସ୍ତନ୍ନୋ ଅସ୍ତୁବୟଂ
ସ୍ୟାମ ପତୟୋ ରୟୀଣାଂ । ୧୦

ହେ ପ୍ରଜାପତି ! ତୁମ୍ଭ ବ୍ୟତୀତ ଅନ୍ୟ କେହି ଏହି ସମସ୍ତ ସୃଷ୍ଟି ପଦାର୍ଥକୁ ଆୟତ୍ତ କରି ରଖି ପାରି ନାହିଁ । ଆମ୍ଭେମାନେ ଯେଉଁ ଫଳ କାମନାରେ ତୁମ୍ଭର ହୋମ କରୁଅଛୁଁ, ସେହି ଫଳ ଆମ୍ଭମାନଙ୍କର ହେଉ, ତଥା ଆମ୍ଭେମାନେ ଧନର ପତି ହେଉଁ ।

ଆମ୍ଭେମାନେ ବାହୁଲ୍ୟ ଭୟରେ ପ୍ରଥମ ଓ ଶେଷ ବା ଦଶମ ମନ୍ତ୍ର ଓ ତହିଁର ଅର୍ଥ ଲେଖିଲୁଁ । ଏହା ଲେଖିବା ବାହୁଲ୍ୟ ଯେ, ଏହି ସୂକ୍ତଟି ପ୍ରଜାପତିଙ୍କର ସ୍ତୁତି । ମାତ୍ର ପରମେଶ୍ୱରଙ୍କର ସ୍ତୁତି ନୁହେଁ । ହିରଣ୍ୟଗର୍ଭ କି ଈଶ୍ୱର ? ଅନେକ କହନ୍ତି । ମାତ୍ର ହିରଣ୍ୟଗର୍ଭର ଉତ୍ପତ୍ତି କଥା ବର୍ଣ୍ଣିତ ହୋଇଅଛି । ଉପନିଷତ୍ ପ୍ରଭୃତି ଯେଉଁ ବ୍ରହ୍ମ ବା ପରମେଶ୍ୱର ସ୍ୱୀକାର କରନ୍ତି, ତାଙ୍କର ଜନ୍ମ ଅଛି କି ? ନାହିଁ । ତାହାଛଡ଼ା ଶେଷରେ ଋଷି ପ୍ରଜାପତି ଯେ ସମସ୍ତ ସ୍ତୁତିର ଦେବତା ଏବଂ ସେହି ପ୍ରଜାପତିଙ୍କୁ ଧନ ଦେବାକୁ ପ୍ରାର୍ଥନା କରିଅଛନ୍ତି, ତାହା ସ୍ପଷ୍ଟତଃ ଉଲ୍ଲେଖ ହୋଇଅଛି । ପ୍ରଜାପତି କି ପରମେଶ୍ୱର ? ଯେବେ ପ୍ରଜାପତି ପରମେଶ୍ୱରଙ୍କର ଆଦି ନାମ, ତାକୁ ତ୍ୟାଗ କରି ପଶ୍ଚାଦ୍‌ବର୍ତ୍ତୀ ଋଷିମାନେ ଈଶ୍ୱର, ପରମେଶ୍ୱର, ବ୍ରହ୍ମ ପ୍ରଭୃତି ନାମର ସୃଷ୍ଟି କଲେ କାହିଁକି ? 'ପ୍ରଜାପତୟେ ସ୍ୱାହା' ବୋଲି କହିଲେ କେହି ଈଶ୍ୱରଙ୍କ ନାମରେ ହୋମ କରାଯାଉଅଛି ବୋଲି ଭାବିବ କି ? ହିରଣ୍ୟଗର୍ଭ ଈଶ୍ୱର ନୁହନ୍ତି, ପ୍ରଜାପତି ଈଶ୍ୱର ନୁହନ୍ତି । ପ୍ରଜାପତି ଋଗ୍‌ବେଦର ସୁବିଦିତ ଦେବତା । ପ୍ରଜାପତି ଯେ ସୂର୍ଯ୍ୟର ନାମାନ୍ତର, ତାହା ଆମ୍ଭେମାନେ ପୂର୍ବେ ଦେଖାଇଅଛୁଁ । ତାହା ଛଡ଼ା ପ୍ରଜାପତି ଅର୍ଥ ମଧ ଯଜ୍ଞ । ଉପରୋକ୍ତ ସୂକ୍ତର ଦେବତା ପ୍ରଜାପତି ଅର୍ଥ ସୂର୍ଯ୍ୟ କଲେ ମଧ ଅନାୟାସରେ ଚଳିପାରେ ।

ମାର୍କଣ୍ଡ କେଶବ କୋଇଲି ରଚନା କଲାବେଳେ ପୁତ୍ରବିଚ୍ଛେଦଶୋକାତୁରା ବାତ୍ସଲ୍ୟପ୍ରେମାପ୍ଲୁତା କୃଷ୍ଣଜନନୀ ଯଶୋଦା ମୁହଁରେ ନିଜର ମର୍ମବେଦନା ବ୍ୟକ୍ତ କରାଇଥିଲେ, ନା ଜଗନ୍ନାଥ ଦାସଙ୍କ ବ୍ୟାଖ୍ୟାନୁସାରେ ଜୀବାତ୍ମା ପରମାତ୍ମାର ବ୍ୟାପାର ବର୍ଣ୍ଣନା କରିଥିଲେ ? ସରଳବିଶ୍ୱାସୀ ପାଠକ କହିବେ, କେଶବ କୋଇଲି ମାତାର ମର୍ମବେଦନା । ଯେଉଁ ପଣ୍ଡିତମାନଙ୍କଠାରେ କାଳ୍ପନିକ ଧର୍ମଭାବୋକ୍ତି ପ୍ରାକୃତିକ ସ୍ୱଭାବୋକ୍ତିଠାରୁ ମଧ୍ୟ ଅତି ଆଦରଣୀୟ, ସେମାନେ ଜଗନ୍ନାଥ ଦାସଙ୍କ ବ୍ୟାଖ୍ୟାକୁ ଦେଖି କୋଇଲିର ପ୍ରକୃତ ମର୍ମ ବୋଲି ପ୍ରକାଶ କରିବେ ଓ ଆଦର କରିବେ ।

ସରଳବିଶ୍ୱାସୀ ପାଠକ ପ୍ରତି ଋଗ୍‌ବେଦ ମନ୍ତ୍ରସମୂହ ନୈସର୍ଗିକ । ମାତ୍ର ବେଦାନ୍ତବ୍ୟୂହ ମଧ୍ୟଗତ ବ୍ୟକ୍ତି ପ୍ରତି ସେହି ମନ୍ତ୍ରସମୂହ ଆଧ୍ୟାତ୍ମିକ ତତ୍ତ୍ୱପରିପୂର୍ଣ୍ଣ । ଜଗନ୍ନାଥ କୋଇଲିରେ ଜୀବ ପରମ ଦେଖିଲା ପରି ପରବର୍ତ୍ତୀ ଋଷିମାନେ ବେଦରେ ଅନେକ ମନ୍ତ୍ରରେ ଈଶ୍ୱରତତ୍ତ୍ୱ ପାଇଥିବାର ପ୍ରକାଶ କରିଅଛନ୍ତି ।

ବେଦର ଆଧ୍ୟାତ୍ମିକ ବ୍ୟାଖ୍ୟା ଅପେକ୍ଷା ସରଳ ବ୍ୟାଖ୍ୟା ଅତ୍ୟନ୍ତ ହୃଦୟଗ୍ରାହୀ ।

ସାୟନାଚାର୍ଯ୍ୟ ବେଦକୁ ପୌରାଣିକ ଚକ୍ଷୁରେ ଦେଖିଲେ । ଏଣୁ ପୁରାଣ ଓ ବେଦାନ୍ତ ସହିତ ସମନ୍ୱୟ ରକ୍ଷା କଳ୍ପନାରେ ଅନେକ ମନ୍ତ୍ରର ସରଳାର୍ଥକୁ ପୁରାଣ ବ୍ୟାଖ୍ୟାଦ୍ୱାରା ଛଟିକ କଲେ ଏବଂ କୌଣସି କୌଣସି ମନ୍ତ୍ରରେ ବେଦାନ୍ତ ମତ ପୋଷଣ ଅଭିପ୍ରାୟରେ ଈଶ୍ୱର ବ୍ରହ୍ମ ଓ ଜୀବାତ୍ମା ପରମାତ୍ମାର ଦର୍ଶନ ପାଇଲେ ।

ସ୍ୱାମୀ ଦୟାନନ୍ଦ ସରସ୍ୱତୀ ବେଦର ମନ୍ତ୍ର ସମୂହ ଈଶ୍ୱରସ୍ତୁତି ବୋଲି ପ୍ରକାଶ କଲେ, ଏମନ୍ତ ନୁହେଁ— ଅଗ୍ନି ଅର୍ଥ ପରମେଶ୍ୱର, ଇନ୍ଦ୍ର ଅର୍ଥ ପରମେଶ୍ୱର, ବରୁଣ ଅର୍ଥ ପରମେଶ୍ୱର ବୋଲି ମଧ୍ୟ ଲେଖିଗଲେ । ଏହାଙ୍କ ଅନୁକରଣରେ ଏବଂ ସ୍ୱାଧୀନଭାବରେ ମଧ୍ୟ ଆଉ ଅନେକ ବ୍ୟାଖ୍ୟାକର୍ତ୍ତା ଆଧ୍ୟାତ୍ମ ତତ୍ତ୍ୱ ପାଇଥିବାର ଉଲ୍ଲେଖ କରିଗଲେ । ମୋଟ କଥା ଏହି ଯେ, ଯେବେ ବେଦ ହିନ୍ଦୁର ଆଦିଗ୍ରନ୍ଥ ଏବଂ ତହିଁରେ ଏକେଶ୍ୱରବାଦ ନାହିଁ, ତେବେ ଏକେଶ୍ୱରବାଦ ପରବର୍ତ୍ତୀ କାଳର ଉଦ୍ଭାବନ, ଏହି ଚିନ୍ତା ହିନ୍ଦୁପ୍ରାଣକୁ ଅସହ୍ୟ ମର୍ମନ୍ତୁଦ । ଏଣୁ କି ପ୍ରାଚୀନ କି ଅର୍ବାଚୀନ ସମସ୍ତେ ବେଦରେ ଏକେଶ୍ୱରବାଦ ଅଛି ବୋଲି ପ୍ରକାଶ କରିବାକୁ ଯତ୍ନ କରିଅଛନ୍ତି । ବେଦବିତ୍ ପଣ୍ଡିତମଣ୍ଡଳୀଙ୍କ କଥାକୁ ବା ଅବିଶ୍ୱାସ କରୁଛି କିଏ ? କରିବାର ତ କ୍ଷମତା ନାହିଁ ? ପୁଣି ନରକ ବଡ଼ ପାଟି ମେଲାକରି ବସିଅଛି ଅବିଶ୍ୱାସକୁ ଗ୍ରାସ କରିବାକୁ । ପୁଣି ବେଦମନ୍ତ୍ର ଭଙ୍ଗପ୍ରବଣ ନୁହେଁ— କୋମଳ, ନମନୀୟ । ତାକୁ ବ୍ୟାଖ୍ୟାକର୍ତ୍ତାମାନେ ଇଚ୍ଛାନୁରୂପେ ନିଜ ମତର ଅନୁଗାମୀ କରିପାରନ୍ତି । କେବଳ ନାମଜାଦା ପଣ୍ଡିତ ହେବା ଆବଶ୍ୟକ ଏବଂ ବ୍ୟାଖ୍ୟାଟା ସ୍ୱାଭାବିକ ନ ହୋଇ ଟିକିଏ ଆଧ୍ୟାତ୍ମ ଆଡ଼କୁ ଝୁଙ୍କିଥିବ— ଲୋକମତ ତା ଛାଏଁ ତାହା ଗ୍ରହଣ କରିବ ।

॥ ୧୦ ॥

ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଯେପରି ଅଗ୍ନି, ସୂର୍ଯ୍ୟ, ବରୁଣ ପ୍ରଭୃତି ଶବ୍ଦର ଅର୍ଥ ସ୍ଥଳବିଶେଷରେ ଈଶ୍ୱର କରିଅଛନ୍ତି, ସେହିପରି ଜଣ କେତେ ଆଧୁନିକ ବ୍ୟାଖ୍ୟାକର୍ତ୍ତା ସୂର୍ଯ୍ୟ, ଚନ୍ଦ୍ର, ବରୁଣ ପ୍ରଭୃତିଙ୍କୁ ପାର୍ଥିବ ମନୁଷ୍ୟ, ଋଷି, ରାଜା ରୂପରେ ବର୍ଣ୍ଣନା କରି ପାଠକମାନଙ୍କର ମନକୁ ସ୍ୱମତ ଆଡ଼କୁ ଟାଣି ଆଣିବାର ଯଥେଷ୍ଟ ଚେଷ୍ଟା କରିଅଛନ୍ତି । ପୁଣି ଡାକ୍ତର ଭିଜିରେଲେ ବୈଦିକ ଦେବତାମାନଙ୍କ ସମ୍ବନ୍ଧରେ ଏକ ଅଭିନବ ଶାରୀରିକ ବ୍ୟାଖ୍ୟାର ଅବତାରଣା କରିଅଛନ୍ତି । ଏହି ପ୍ରକାର ଅନେକ ମତ ଯେ ପ୍ରକାଶ ପାଇଅଛି ଓ ପ୍ରକାଶ ପାଇବ, ଏଥିରେ ସନ୍ଦେହ ନାହିଁ । ବେଦାଲୋଚନା ଆଦ୍ୟରୁ ଧାରାବାହିକ ରୂପେ ଚାଲି ନ ଥିବା ହେତୁ ତାର ପ୍ରକୃତ ଅର୍ଥ ବା ତାତ୍ପର୍ଯ୍ୟ ବୁଝାଇ ଦେବାକୁ କୌଣସି ବିଶ୍ୱାସଯୋଗ୍ୟ ଗ୍ରନ୍ଥ ନାହିଁ । ଏଣୁ ଲୋକେ ଆପଣା ବିଶ୍ୱାସାନୁସାରେ ଗୋଟିଏ ଲେଖାଏଁ ବ୍ୟାଖ୍ୟା ରଚନା ଓ ପ୍ରକାଶ କରିବାକୁ ଯତ୍ନଶୀଳ ହେଉଅଛନ୍ତି ।

ଆମ୍ଭମାନଙ୍କର ସୁପରିଚିତ ଉମେଶଚନ୍ଦ୍ର ବିଦ୍ୟାରତ୍ନ ଦ୍ୟୁ, ଅନ୍ତରୀକ୍ଷ, ସ୍ୱର୍ଗ ପ୍ରଭୃତି ଭୌମ ବୋଲି ମତ ବ୍ୟକ୍ତ କରିଯାଇଅଛନ୍ତି । ବାୟୁ, ଅଗ୍ନି ପ୍ରଭୃତିଙ୍କି ଋଷି ବୋଲି ପରିଚିତ କରାଇଅଛନ୍ତି । ଇନ୍ଦ୍ର, ବ୍ରହ୍ମା, ପରମେଷ୍ଠି ଓ ସୂର୍ଯ୍ୟଙ୍କ ମଧ୍ୟରେ ଭାଇ, ଖୁଲ୍ୟତାତ, ଜ୍ୟେଷ୍ଠ ପିତୃବ୍ୟ, ପିତାମହ ପ୍ରଭୃତି ସମ୍ବନ୍ଧ ଲଗାଇଅଛନ୍ତି । ତାହାଙ୍କର ମତ ମଧ୍ୟରୁ କେତେକଟା ସାରବାନ୍ ବୋଲି ବୋଧ ହୁଏ; ମାତ୍ର ତାହା ସର୍ବବାଦିସମ୍ମତ ହୋଇ ନ ପାରେ । ସେ ଜୀବିତ ଥିବାବେଳେ ତାଙ୍କ ସହିତ ଅନେକ ଥର ଆମ୍ଭେମାନେ ଏ ସମ୍ବନ୍ଧରେ ତର୍କ କରିଥିଲୁଁ । ତାହାଙ୍କର ଏହି ଅଭିନବ ବ୍ୟାଖ୍ୟା ସହିତ ସମସ୍ତ ବେଦମନ୍ତ୍ର ବା କେତେକ ମନ୍ତ୍ରର ମଧ୍ୟ ସମନ୍ୱୟ କରିବାକୁ ଯେ ସେ ଅକ୍ଷମ, ତାହା ଆମ୍ଭେମାନେ ଦେଖିପାରିଅଛୁଁ । ସେ ଗୋଟିଏ ଋଗ୍‌ବେଦ ଭାଷ୍ୟ ପ୍ରସ୍ତୁତ କରୁଥିଲେ, ତାହା ଅସମ୍ପୂର୍ଣ୍ଣ ହୋଇଯାଇଅଛି । ତାଙ୍କର

ବ୍ୟାଖ୍ୟାରେ ଓ ରଚନାରେ ସେ ଯାସ୍କଠାରୁ ଆରମ୍ଭକରି ସାୟନ, ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଏବଂ ପ୍ରାଚ୍ୟ ଓ ପାଶ୍ଚାତ୍ୟ ବ୍ୟାଖ୍ୟାକର୍ତ୍ତାମାନଙ୍କୁ ଅପଦସ୍ତ କରିବାରେ ତ୍ରୁଟି କରି ନାହାନ୍ତି ଏବଂ ତାଙ୍କ ବ୍ୟାଖ୍ୟା ଭିନ୍ନ ଅନ୍ୟ ସମସ୍ତଙ୍କର ବ୍ୟାଖ୍ୟା ପ୍ରମାଦଦୁଷ୍ଟ ବୋଲି ନିର୍ଦ୍ଦେଶ କରିଅଛନ୍ତି ।

ଡାକ୍ତର ରେଲେଙ୍କ ଶାରୀରିକ ବ୍ୟାଖ୍ୟା ତତୋଽଧିକ ଅଦ୍ଭୁତ । ତାଙ୍କ ମତ ଯେ, ଯେଉଁମାନେ ଆଧୁନିକ ଅବଚ୍ଛେଦରେ ସୁପଟୁତା ଉପାର୍ଜନ କରି ନାହାନ୍ତି, ସେମାନେ ତାଙ୍କ ବ୍ୟାଖ୍ୟାର ମର୍ମ ହୃଦୟଙ୍ଗମ କରିପାରିବେ ନାହିଁ । ହେଉ, ମାତ୍ର ସେ ଯେ ଦୁଇ, ଚାରି ଖଣ୍ଡ ଇଂରାଜୀ ତର୍ଜମା ପୁସ୍ତକ ପଢ଼ି ବେଦର ସମସ୍ତ ମନ୍ତ୍ର କେବଳ ଶାରୀରିକ ତତ୍ତ୍ୱ ବୋଲି ଲେଖିଯାଇଅଛନ୍ତି, ତାହା କଦାପି ଗ୍ରହଣଯୋଗ୍ୟ ନୁହେଁ । ତାଙ୍କର ଧାରଣା ଏହି ଯେ, ବୈଦିକ ଯୁଗର ଋଷିମାନେ ଶରୀରାଭ୍ୟନ୍ତରସ୍ଥ ଶିରାପ୍ରଶିରା, ମସ୍ତିଷ୍କ ଓ ସ୍ନାୟବିକ କ୍ରିୟାସମୂହକୁ ଦେବତାମାନଙ୍କର କାର୍ଯ୍ୟ ଏବଂ ମସ୍ତିଷ୍କ, ମେରୁଦଣ୍ଡ ଓ ସ୍ନାୟୁର ସ୍ଥାନବିଶେଷକୁ ଦେବତା ବୋଲି ନିର୍ଣ୍ଣୟକ କରିଥିଲେ ଓ ତଦନୁସାରେ ସୂକ୍ତ ରଚନା କରିଥିଲେ... ଯେପରି ମୁଣ୍ଡର ଖୋଳପି ଏବଂ ମସ୍ତିଷ୍କର ଝିଲ୍ଲୀ ମଧ୍ୟଗତ ଜଳୀୟ ପଦାର୍ଥ ବରୁଣ ଏବଂ ମସ୍ତିଷ୍କ ମଧ୍ୟସ୍ଥ ବିବେଚନା ଓ କାର୍ଯ୍ୟପରତାର ସ୍ଥାନ ଇନ୍ଦ୍ର ଇତ୍ୟାଦି । କହିବା ବାହୁଲ୍ୟ ଯେ, ଏ ମତ କେବେ ଗ୍ରହଣଯୋଗ୍ୟ ହେବ, ତାହା ବୋଧଗମ୍ୟ ହେଉ ନାହିଁ । ସେ ଯାହାହେଉ, ଆମ୍ଭେମାନେ ଏତାଦୃଶ ଅନ୍ୟାନ୍ୟ ମତ ସଂଗ୍ରହ କରି ପ୍ରବନ୍ଧବାହୁଲ୍ୟ କରିବାକୁ ପ୍ରସ୍ତୁତ ନୋହୁଁ ।

ବର୍ତ୍ତମାନ ହିନ୍ଦୁଧର୍ମ ସହିତ ବେଦର ଐକ୍ୟ ଓ ଅନୈକ୍ୟ କେଉଁଠାରେ ଏବଂ ହିନ୍ଦୁଧର୍ମ ସମ୍ପୂର୍ଣ୍ଣ ବେଦସମ୍ମତ କି ନା ବା କେତେକ ହିନ୍ଦୁଧର୍ମ ବିଶ୍ୱାସରେ ବେଦର ସମ୍ବନ୍ଧ ଆଦୌ ନାହିଁ, ତାହା ଆଲୋଚନା କରି ପ୍ରବନ୍ଧ ଶେଷ କରିବାର ଚେଷ୍ଟା କରିବୁଁ ।

ଆମ୍ଭେମାନେ ପୂର୍ବେ ବିଭିନ୍ନ ପ୍ରବନ୍ଧରେ କହିଅଛୁଁ ଯେ, କିଛି ହିଁ ସନାତନ ନୁହେଁ— ସବୁ ପରିବର୍ତ୍ତନଶୀଳ । ପରିବର୍ତ୍ତନଶୀଳ ନ ହୋଇ କିଛି ରହିପାରେ ନାହିଁ । ପଣ୍ଡିତମାନେ କହିବେ, ବେଦମତ ସନାତନ, ପୁରାଣମତ ସନାତନ, କୁଳାଚାର ସନାତନ— କେବଳ ଏତିକି ଯେ କହିବେ ତାହା ନୁହେଁ, ଲଢ଼ାଇ କରିବାକୁ ଖଡ଼ଗହସ୍ତ ମଧ୍ୟ ହେବେ । ଏତାଦୃଶ ବହୁବାର ଯୁଦ୍ଧରେ ଆମ୍ଭେମାନେ କ୍ଷତବିକ୍ଷତ ହୋଇଅଛୁଁ— ପ୍ରାଣ ହରାଇ ନାହୁଁ ବା ପରାସ୍ତ ହୋଇ ନାହୁଁ । ଯେଉଁମାନେ ଆମ୍ଭମାନଙ୍କର ଲେଖାକୁ ଆମୂଳ ଅନୁଧାବନ କରୁଅଛନ୍ତି ସେମାନେ ଅବଶ୍ୟ ବୁଝିପାରିଥିବେ ଯେ— ବେଦ ଚିର କାଳ ଥିଲା, ଚିରକାଳ ରହିବ, ଏ ଅନ୍ଧବିଶ୍ୱାସର ଖଣ୍ଡନ ଆମ୍ଭେମାନେ କରିଅଛୁଁ । ବେଦ ଋଷିରଚିତ, ଏଣୁ ସନାତନ ନୁହେଁ । କିନ୍ତୁ ଏତାଦୃଶ ମତବ୍ୟକ୍ତ କଲା ସତ୍ତ୍ୱେ ଆମ୍ଭେମାନେ ଯେ ବେଦକୁ ସନାତନ ବିଶ୍ୱାସୀଙ୍କ ଅପେକ୍ଷା ବହୁ ସମ୍ମାନ କରୁ ଏବଂ ଆମର ପୂର୍ବପୁରୁଷଙ୍କ ସମ୍ପାଦିତ ଗ୍ରନ୍ଥ ବୋଲି ଗୌରବ ବୋଧ କରୁଁ, ତାହା ମଧ୍ୟ ପାଠକଗଣ ହୃଦୟଙ୍ଗମ କରିପାରିଥିବେ ।

ମୋଟ କଥା— ଆମ୍ଭମାନଙ୍କ ଉକ୍ତିରେ ଭ୍ରମ ଥାଇପାରେ; ମାତ୍ର ଛଳନା ନାହିଁ, କାପଟ୍ୟ ନାହିଁ । କିନ୍ତୁ ବର୍ତ୍ତମାନ ହିନ୍ଦୁ ଧର୍ମ ଆଖ୍ୟାଧାୟୀ ସମ୍ପ୍ରଦାୟମାନଙ୍କ ମଧ୍ୟରୁ ଅନେକଙ୍କର ବେଦ ସହିତ ଆଦୌ ସମ୍ବନ୍ଧ ନାହିଁ । ଅନେକ ସମ୍ପ୍ରଦାୟର ସମ୍ବନ୍ଧ ସାମାନ୍ୟତଃ ଥିଲେ ମଧ୍ୟ ତାହା ନଗଣ୍ୟ । ସୁତରାଂ ହିନ୍ଦୁଧର୍ମକୁ ବୈଦିକ ଧର୍ମ ବୋଲିବାର କୌଣସି କାରଣ ନାହିଁ ।

ଆମ୍ଭେମାନେ ଅଭିବ୍ୟକ୍ତବାଦୀ କ୍ରମବିକାଶର ପକ୍ଷପାତୀ । ସୁତରାଂ ଧର୍ମ ଯେ ପରିବର୍ତ୍ତନଶୀଳ ଓ ଧର୍ମର କ୍ରମବିକାଶ ବା କ୍ରମାବନତି ହୁଏ, ଏହା ଆମ୍ଭେମାନେ ସ୍ୱୀକାର କରୁଁ । ଏଠାରେ ବିକାଶ ଅର୍ଥ ଗତି । ଲୋକମାନଙ୍କର ମାନସିକ ପରିବର୍ତ୍ତନ ହେତୁ ଧର୍ମର ଗତି ଭଲ ଆଡ଼କୁ ଚାଲିପାରେ ବା ମନ୍ଦ ଆଡ଼କୁ ଚାଲିପାରେ । ପ୍ରାଚୀନ ଭାରତବର୍ଷର ଆଦିଧର୍ମ ସେହି ଗତିର ବଶବର୍ତ୍ତୀ— ଏହା ଆମ୍ଭେମାନେ ଦେଖାଇବାକୁ ଚେଷ୍ଟା କରିବୁଁ ।

ଭାରତର ପ୍ରାଚୀନ ସଭ୍ୟତା ଓ ଧର୍ମ ଅପେକ୍ଷା ହିନ୍ଦୁ ଶବ୍ଦ ତଥା ହିନ୍ଦୁ ଧର୍ମ ଓ ହିନ୍ଦୁ ସଭ୍ୟତା ଯେ କେତେ ଅର୍ବାଚୀନ, ତାହା କୁହାଯାଇ ନ ପାରେ । ଯେଉଁ ଦିନଠାରୁ ଭାରତବାସୀ ପରପ୍ରଦତ୍ତ ହିନ୍ଦୁ ଆଖ୍ୟାରେ ନିଜର ପରିଚୟ ଦେବାକୁ ଗୌରବାନ୍ୱିତ ମନେକଲେ, ସେହି ଦିନଠାରୁ ଭାରତର ପ୍ରକୃତ ଗୌରବ ଲୋପ ପାଇଅଛି । ହିନ୍ଦୁ ଶବ୍ଦ ସଦୃଶ ଧର୍ମଟା ମଧ୍ୟ ଜଟିଳ ଓ ମିଶ୍ରିତ ହୋଇଅଛି ।

ବର୍ତ୍ତମାନ ହିନ୍ଦୁ ଧର୍ମ ଅର୍ଥ ଠିକ୍ କ'ଣ ତାହା ବୁଝାଇବା କଷ୍ଟସାଧ୍ୟ । ତଥାପି ଯେଉଁମାନେ ବେଦକୁ ସନାତନ ବୋଲି ବିଶ୍ୱାସ କରନ୍ତି କିମ୍ବା ବିଶ୍ୱାସର ଛଳନା କରନ୍ତି, ସେମାନେ ହିନ୍ଦୁ । ଯେଉଁମାନେ ପୁରାଣ ତନ୍ତ୍ର ମନ୍ତ୍ର ବିଶ୍ୱାସୀ ସେମାନେ ହିନ୍ଦୁ । ଯେଉଁମାନେ ବୈଷ୍ଣବ ସମ୍ପ୍ରଦାୟ, ଶୈବ, ଶାକ୍ତ,

ଗାଣପତ୍ୟ, ସୌର ସମ୍ପ୍ରଦାୟଭୁକ୍ତ ସେମାନେ ହିନ୍ଦୁ । ପୌତ୍ତଳିକ ହେଲେ ହିନ୍ଦୁ । ଯେଉଁମାନେ ଗୋମାଂସଭକ୍ଷଣବିରୋଧୀ ସେମାନେ ହିନ୍ଦୁ । ବିରୋଧୀ— କଥାଟା ଠିକ୍ ପ୍ରଯୁଜ୍ୟ ନୁହେଁ; ଯେହେତୁ ପ୍ରକାଶ୍ୟରେ ଓ ଲୁଚା ଛପା ଗୋମାଂସଭକ୍ଷଣକାରୀଗଣ ମଧ୍ୟ ଏବେ ହିନ୍ଦୁବାଚ୍ୟ ହୋଇପାରନ୍ତି । ଦେଶାଚାର ଓ କୁଳାଚାରରେ ଯେଉଁମାନେ ଅନ୍ଧବିଶ୍ୱାସୀ ସେମାନେ ହିନ୍ଦୁ । ଅନ୍ଧବିଶ୍ୱାସୀ ନୋହିଲେ ମଧ୍ୟ ଯେଉଁ ଜାତି ସମାଜ ରକ୍ଷା ନିମନ୍ତେ, ଆଉ ଜାତି ରକ୍ଷା ନିମନ୍ତେ, ସ୍ୱାର୍ଥରକ୍ଷା ନିମନ୍ତେ ଆତ୍ମପ୍ରତ୍ୟୟକୁ ସମ୍ପୂର୍ଣ୍ଣ ଗୋପନ କରି ପାରନ୍ତି ସେମାନେ ହିନ୍ଦୁ । ବିବେକ ବିରୋଧରେ ଯେଉଁମାନେ ଶୌଚ, ଅଶୌଚ, ମାନନ୍ତି, ଦାନ ଦିଅନ୍ତି, ମୂର୍ତ୍ତିମାନଙ୍କର ପଦାନତ ହୁଅନ୍ତି, ସ୍ୱଧର୍ମର ଅଯଥା ପ୍ରଶଂସା କରନ୍ତି, ସେମାନେ ହିନ୍ଦୁ । ପୁଣି ଯେଉଁ ଜାତି ଆପଣା ଅଧସ୍ତନ ଜାତିପ୍ରତି ଘୃଣା ପ୍ରକାଶ କରନ୍ତି, ଯେଉଁମାନଙ୍କ ହୃଦୟରେ ଜାତିଗତ ହିଂସା ବୃଦ୍ଧି ଦୃଢ଼ାସନ ପକାଇ ବସିଅଛି, ଯେଉଁ ଜାତି ସ୍ତ୍ରୀ ପ୍ରତି ଅସମ୍ମାନ ଓ ହେୟ ଜ୍ଞାନ କରନ୍ତି, ଯେଉଁ ଜାତି ପୁରୁଷ ଚରିତ୍ର ଅପେକ୍ଷା ସ୍ତ୍ରୀ ଚରିତ୍ର ଦୂଷଣୀୟ ମନେକରି କୁମାରୀ ବିବାହର ବିଧି ଜାରି କରିଅଛନ୍ତି ଏବଂ ବିଧବା ବିବାହ ପନ୍ଥା ବନ୍ଦ କରିଅଛନ୍ତି— ସେହି ଜାତି ହିନ୍ଦୁ । ଅଳମତି ବିସ୍ତରେଣ, ହିନ୍ଦୁ ଜାଣେ ହିନ୍ଦୁର ବ୍ୟାଖ୍ୟା ।

ବୈଦିକ ଆର୍ଯ୍ୟଗଣଠାରେ ଏହି ହିନ୍ଦୁତ୍ୱ ଥିଲା କି ? ଯେବେ ହିନ୍ଦୁର ଗୁଣକର୍ମ ତମାମ ଆର୍ଯ୍ୟଙ୍କର ଗୁଣକର୍ମ ସହିତ ସମାନ ଥିବାର ଦେଖା ଯାଇପାରେ, ତେବେ ହିନ୍ଦୁକୁ ଆର୍ଯ୍ୟ ଓ ଆର୍ଯ୍ୟକୁ ହିନ୍ଦୁ ବୋଲିବା ଅଯୌକ୍ତିକ ହେବ ନାହିଁ । ତାହା ନ ହେଲେ ଆଧୁନିକ ହିନ୍ଦୁ ବୈଦିକ ଆର୍ଯ୍ୟ ଆଖ୍ୟା ପାଇବା ଯୋଗ୍ୟ ନୁହଁନ୍ତି ବୋଲାଯିବ ଏବଂ ବେଦ ଯେ ହିନ୍ଦୁର ଧର୍ମ ନୁହେଁ ତାହା ମଧ୍ୟ ମୁକ୍ତକଣ୍ଠରେ ପ୍ରକାଶ କରାଯାଇପାରିବ ।

ଭଗବଦ୍‌ଗୀତା, ଭାଗବତ ପ୍ରଭୃତି କେତେକ ଗ୍ରନ୍ଥରେ ବେଦ ଓ ପୁରାଣର ସମନ୍ୱୟ ଚେଷ୍ଟା କରାଯାଇଥିଲେ ମଧ୍ୟ ସେଥିରେ ଗ୍ରନ୍ଥକର୍ତ୍ତାମାନେ କୃତକାର୍ଯ୍ୟ ହୋଇପାରି ନାହାନ୍ତି ।

ବୈଦିକ ଆର୍ଯ୍ୟଗଣ ସ୍ୱାଧୀନ ଥିଲେ । ହିନ୍ଦୁ ବହୁକାଳରୁ ପରାଧୀନ ।

ବୈଦିକ ଋଷି ଓ କବିମାନେ ସ୍ୱାଧୀନଚେତା ଓ ସ୍ୱାଧୀନଚିନ୍ତକ । ବୈଦିକ ମନ୍ତ୍ର ସମୂହ ସେମାନଙ୍କର ସ୍ୱାଧୀନ ଭାବୋଚ୍ଛ୍ୱାସର ନିଦର୍ଶନ । ପ୍ରକୃତିର ବୈଚିତ୍ର୍ୟରେ ମୋହିତ ହୋଇ ଆନ୍ତରିକ ଗୀତଲହରୀ ଯାହା ପ୍ରକାଶ କରିଥିଲେ, ତାହା ବଂଶଗତ ସ୍ତୋତ୍ର ହୋଇ ରହିଲା । ପ୍ରକୃତି ବୈଚିତ୍ର୍ୟ ଅନନ୍ତ— ଯେଉଁ କବିକୁ ଯେତେବେଳେ ଯେଉଁ ଭାବରେ ଭୌତିକ ବ୍ୟାପାର ଦେଖାଗଲା ଏବଂ ଭୌତିକ ବ୍ୟାପାରର ମୋହିନୀ ଶକ୍ତିର ତାନ କବିର ହୃଦୟ ତନ୍ତ୍ରୀରେ ଆଘାତ କଲା, ସେତେବେଳେ କବି ଭାବନା ବିହ୍ୱଳ ହୋଇ ଗାଇଲେ । ଏଣୁ ଏତେପ୍ରକାର ସ୍ତୁତି ସ୍ତୋତ୍ର ବେଦରେ ରହିଅଛି । ସଙ୍କୋଚମନା ଶାସ୍ତ୍ରନିଗଡ଼ରେ ଆବଦ୍ଧ ଆମ୍ଭେମାନେ ସେ ଉଦାର ଭାବକୁ ହୃଦୟଙ୍ଗମ କରିପାରିବା କିପରି ? ଏଣୁ ସେଥିରୁ ଏକେଶ୍ୱରବାଦ ନାହିଁ, ମୂର୍ତ୍ତିପୂଜା ନାହିଁ, କୌଣସି କଳ୍ପିତ ମୂର୍ତ୍ତିର ସ୍ତୁତିସ୍ତୋତ୍ର ନାହିଁ । ଋଗ୍‌ବେଦ ସ୍ୱାଧୀନ ଜାତିର ସ୍ୱାଧୀନ କବିତାଲହରୀ ମାତ୍ର ।

ବେଦରେ ମୂର୍ତ୍ତିପୂଜା ତ ନାହିଁ, ବରଂ ଅନାର୍ଯ୍ୟମାନଙ୍କର ଲିଙ୍ଗ ଉପାସନାର ନିନ୍ଦା ଅଛି । ଲିଙ୍ଗ ଉପାସକମାନଙ୍କୁ ଶିଶ୍ନ ଦେବାଃ ବୋଲି ବିଦ୍ରୂପ କରାଯାଇଅଛି । ଅଧୁନା ହିନ୍ଦୁମାନେ ଅସଂଖ୍ୟ ଦେବାଦେବୀ ମୂର୍ତ୍ତି ଗଠନ କରି ପୂଜା କରନ୍ତି । ମୂର୍ତ୍ତିପୂଜା ବୈଦିକ ଯୁଗ ତୁଳନାରେ ସେଦିନ ପ୍ରବର୍ତ୍ତିତ ହୋଇଅଛି ବୋଇଲେ ଅତ୍ୟୁକ୍ତି ନୁହେଁ ।

ଶିବ, ବ୍ରହ୍ମାଦିଙ୍କର ବହୁହସ୍ତ ବହୁମୁଣ୍ଡର କଳ୍ପନା ଅତି ଅର୍ବାଚୀନ । ଏ ସମସ୍ତ ବିଷୟର ଉଲ୍ଲେଖ ବେଦରେ ଆଦୌ ନାହିଁ । ସୁତରାଂ ଏତାଦୃଶ ମୂର୍ତ୍ତିପୂଜକମାନଙ୍କୁ ବେଦାନୁଗାମୀ ଉପାସକ ବୋଲାଯିବ କିପରି ? ବେଦର କଥା ଦୂରେ ଥାଉ, ଭାଗବତରେ ସ୍ଥଳବିଶେଷରେ ମୂର୍ତ୍ତିପୂଜାର ନିନ୍ଦା କରାଯାଇଅଛି । ଉଦାହରଣସ୍ୱରୂପ କୁହାଯାଇପାରେ ଯେ, କପିଳ ନିଜ ମାତା ଦେବହୂତିଙ୍କଠାରେ ଧର୍ମ ବ୍ୟାଖ୍ୟା କଲାବେଳେ ପ୍ରକାଶ କରିଅଛନ୍ତି ଯେ, ''ମା', ଯେ ମୂର୍ତ୍ତିପୂଜା କରେ, ସେ ଭସ୍ମରେ ଆହୁତି ପ୍ରଦାନ କରେ ।'' ଏଥିରୁ ବଳି ମୂର୍ତ୍ତିପୂଜାର ନିଷ୍ଫଳତ୍ୱର ଉଦାହରଣ ଅନ୍ୟତ୍ର ଖୋଜିବା କାହିଁକି ?

ସ୍ୱର୍ଗ ନରକ ସୃଷ୍ଟି ତ ଈଶ୍ୱରକୃତ ନୁହେଁ; ଯେହେତୁ ବେଦରେ ନାହିଁ, କଲା କିଏ ? ପୌରାଣିକଗଣ । ନରକ ଓ ନରକ ଯାତନାର ସୀମା ନାହିଁ । ମାତ୍ର ସ୍ୱର୍ଗ ଗୋଟିଏ ଦେବତାମାନଙ୍କର ସ୍ଥାନ । କିନ୍ତୁ ତାହା କେଉଁଠି ଅଛି କେହି କହିପାରି ନାହାନ୍ତି; ଅଥଚ ହୁରି ଛାଡୁଛନ୍ତି ଯେ ସ୍ୱର୍ଗ ନରକ ଅଛି । ଭାଗବତ ପ୍ରସିଦ୍ଧ ପୁରାଣ; ମାତ୍ର ମନୁଷ୍ୟ ରଚିତ ତ । ଅମାନୁଷିକ ଓ ଅତୀନ୍ଦ୍ରିୟ କଳ୍ପନା ଯେ ମନୁଷ୍ୟ କରି ନ ପାରେ, ଭାଗବତର ବୈକୁଣ୍ଠ ବର୍ଣ୍ଣନାରୁ ସ୍ପଷ୍ଟ ଜଣାପଡ଼େ ।

ଆମ୍ଭେମାନେ ବୈକୁଣ୍ଠ ଦେଖିବାକୁ ଯାଇଥିଲୁଁ । ସେଠାରେ ସରୋବର ଅଛି— ସରୋବରରେ ପଦ୍ମ କହ୍ଲାର ଫୁଟିଛି । ତଟରେ ଟଗର ସେବତୀ ମାଳତୀ ମନ୍ଦାର ପ୍ରଭୃତି ପୁଷ୍ପ ସର୍ବଦା ପ୍ରସ୍ଫୁଟିତ ଥାଇ ଦିଗମାନଙ୍କୁ ଆମୋଦିତ କରୁଅଛନ୍ତି । ସରୋବରରେ ହଂସ କାରଣ୍ଡବ ଦାତ୍ୟୁହ ପ୍ରଭୃତି ପକ୍ଷୀଗଣ ସୁଖରେ କ୍ରୀଡ଼ା କରୁଅଛନ୍ତି ବୃକ୍ଷ ଶାଖାରେ ଶୁକସାରିକା ପ୍ରଭୃତି ପକ୍ଷୀମାନେ ଗୀତଦ୍ୱାରା ପୁଣ୍ୟୋଦ୍ୟାନକୁ ମୁଖରିତ କରୁଅଛନ୍ତି । ମୟୂରମାନେ ନୃତ୍ୟ କରୁଅଛନ୍ତି । ଅଧିକ କହିବା କ'ଣ— ଭାରତୀୟ କବିଙ୍କୁ ଯେଉଁ ଭଲ ଭଲ ବୃକ୍ଷ ପୁଷ୍ପ ମାଛ ପକ୍ଷୀ ପଶୁ ଜଣାଥିଲା— ସେ ସମସ୍ତ ବୈକୁଣ୍ଠରେ ଅଛନ୍ତି ।

ମାତ୍ର ଚତୁର୍ଭୁଜ ବିଷ୍ଣୁଙ୍କ ଦେଖା ମିଳିଲା ନାହିଁ ବା ତାଙ୍କର ଅନୁଚରମାନଙ୍କର ସାକ୍ଷାତ୍ ଲାଭ ହେଲା ନାହିଁ । ଭାଗ୍ୟ ଅନୁସାରେ ତ ଫଳ— ଏଣୁ ପାର୍ଥିବ ପଦାର୍ଥ ଯାହା ଏଠାରେ ମିଳେ, ତାହା ବୈକୁଣ୍ଠରେ ଆମ୍ଭେମାନେ ଦେଖି ପାରିଲୁଁ । ଦୁଃଖର କଥା ଯେ, ବୈକୁଣ୍ଠପତି ଭାରି ସ୍ୱଦେଶ ପ୍ରେମିକ । ଏଣୁ ଫଳ ପୁଷ୍ପ ବୃକ୍ଷ ଲତା ପଶୁ ପକ୍ଷୀ ଯାହା ଭାରତୀୟ ତାହା ମାତ୍ର ବୈକୁଣ୍ଠରେ ରଖିଅଛନ୍ତି । ବିଦେଶୀୟ ମାଲମତା ଫଳ ପୁଷ୍ପ ବୃକ୍ଷ ଲତା ପଶୁ ପକ୍ଷୀ କିଛି ହିଁ ବୈକୁଣ୍ଠରେ ରଖି ନାହାନ୍ତି । ଏଣୁ ବୈକୁଣ୍ଠପତିଙ୍କର ସ୍ୱଦେଶ ପ୍ରେମ ଦେଖି ମନେ କଲୁଁ ଯେ, ବୈକୁଣ୍ଠପତି ପୃଥ୍ୱୀପତି ନୁହନ୍ତି— ସେ କେବଳ ହିନ୍ଦୁପତି । ହିନ୍ଦୁର ଦେବତା ଓ ହିନ୍ଦୁଦ୍ୱାରା ନିର୍ମିତ, କଳ୍ପିତ । ନରକ ଦର୍ଶନ କରିବାର ଇଚ୍ଛା ବା କାହାର ? ଏଣୁ ତହିଁର ଆଲୋଚନା ନିଷ୍ପ୍ରୟୋଜନ । ଏହା ପୌରାଣିକ ଅତ୍ୟଦ୍ଭୁତ କଳ୍ପନା । ଭାଗବତ ଅନୁସାରେ ଏହି ସ୍ଥାନ ପରା ଦକ୍ଷିଣ ଦିଗରେ ଜଳ ସ୍ଥଳ ମଧ୍ୟରେ ଅଛି । ଥାଉ, ତାର ଦୃଶ୍ୟ ଓ ବର୍ଣ୍ଣନା ଯେପରି ଜଘନ୍ୟ ଓ ପୈଶାଚିକ, ସେହିପରି ହେୟ । ବେଦରେ ଏହି ଅଦ୍ଭୁତ ସ୍ୱର୍ଗ ନରକର ସ୍ଥାନ ନାହିଁ; ମାତ୍ର ଅନ୍ୟାନ୍ୟ ଧର୍ମଶାସ୍ତ୍ରମାନଙ୍କରେ ଅଛି, ଯଥା:— ଖ୍ରୀଷ୍ଟାନ୍ ଓ ମୁସଲମାନ ଧର୍ମଶାସ୍ତ୍ର । ଏ ସମ୍ବନ୍ଧରେ ତିନି ଶାସ୍ତ୍ରରେ ସ୍ୱର୍ଗ ନରକର ବର୍ଣ୍ଣନା ଅଛି । ଏହି ତିନି ଧର୍ମାବଲମ୍ବୀ ଏଥିରେ ବିଶ୍ୱାସ କରନ୍ତି । ବୈଦିକଗଣ ଏଥିରେ ବିଶ୍ୱାସ କରୁ ନ ଥିଲେ । ବେଦରେ ସ୍ୱର୍ଗ ନରକର ବର୍ଣ୍ଣନା ନ ଦେଖି ବେଦବ୍ୟାଖ୍ୟାକର୍ତ୍ତା ଖ୍ରୀଷ୍ଟାନ ଧର୍ମବିଶ୍ୱାସୀ ମେକ୍‌ଡ଼ୋନେଲ ବୈଦିକ କବିମାନଙ୍କ ଉପରେ ଦୋଷାରୋପ କରିଅଛନ୍ତି :— The Vedic poet not being deeply moral, his verses do not convey, as would those of a man convinced of sin, warnings of future judgement. ଆହା, କି ନୀତିଶିକ୍ଷା । ଶେଷଦିନର ବିଚାର ବିଶ୍ୱାସୀ ପାଶ୍ଚାତ୍ୟ ଜାତିର ଧର୍ମଭୀରୁତା ଏବଂ ସେଥିନିମନ୍ତେ ପାପ କର୍ମରୁ ବିରତି କାହାକୁ ହିଁ ଅବିଦିତ ନାହିଁ । ବେଦ ଅପେକ୍ଷା ସ୍ୱର୍ଗ ନରକ ବିଶ୍ୱାସ ଘେନି ହିନ୍ଦୁ, ଖ୍ରୀଷ୍ଟାନ୍, ମୁସଲମାନ୍ ଏକ । ତଥାପି ଏକତା ଆସୁ ନାହିଁ—ଦୁଃଖର କଥା ନୁହେଁ କି ?

॥ ୧୧ ॥

ମୂର୍ତ୍ତି ପୂଜା ବୈଦିକ ଋଷିମାନେ ଜାଣୁ ନ ଥିଲେ । ମୂର୍ତ୍ତିପୂଜା ହିନ୍ଦୁମାନଙ୍କର ଅଦ୍ଭୁତ କପୋଳକଳ୍ପନା କିମ୍ୱା ଅନାର୍ଯ୍ୟ ଜାତିଠାରୁ ଏହା ଏମାନେ ଶିକ୍ଷା କରିଅଛନ୍ତି । ଏଥିମଧ୍ୟରୁ ତନ୍ତ୍ର ଉପାସନା ଅତି ଅର୍ବାଚୀନ— ଉତ୍ତର ଓ ଦକ୍ଷିଣରୁ ଏହି ଉପାସନା ପଦ୍ଧତି ଆର୍ଯ୍ୟଭୂମିକୁ ପ୍ରବେଶ କରି ଆର୍ଯ୍ୟ ଧର୍ମକୁ କଳୁଷିତ କରିଅଛି । ଏବେ ଏହି ପୂଜାର ଆଦର ସମସ୍ତ ପ୍ରକାର ଉପାସନାଠାରୁ ବଳିଅଛି । ଏଥିରେ ଯେ ଭାରତର ଅଧୋଗତି, ତାହା କହିବା ବାହୁଲ୍ୟ ମାତ୍ର । କେତେ ରାଜା ଏହି ବିଶ୍ୱାସରେ ରାଜ୍ୟ ହରାଇଲେ । କେତେ ବା ମଦ୍ୟ, ସ୍ତ୍ରୀ ନେଇ ଭ୍ରଷ୍ଟ ହୋଇ ଅଧଃପତିତ ହେଲେ । ଇତିହାସ ଏଥିର ସାକ୍ଷ୍ୟ ଦେବ । ଏହା ଆଦୌ ବୈଦିକ ଧର୍ମ ନୁହେଁ । ଯେଉଁମାନେ ଏତାଦୃଶ ଧର୍ମବିଶ୍ୱାସୀ, ସେମାନେ କି ଧର୍ମାବଲମ୍ବୀ ? ଅନେକ ଦେବୀମୂର୍ତ୍ତି ବୌଦ୍ଧତାନ୍ତ୍ରିକ ଦେବତା ଅଟନ୍ତି । ହିନ୍ଦୁମାନେ ସେମାନଙ୍କୁ ଅବାଧରେ ପୂଜା କରୁଅଛନ୍ତି ।

ବୈଦିକ କୁଳାଚାର ଓ ହିନ୍ଦୁ କୁଳାଚାର ମିଳାଇ ଦେଖିଲେ ଉଭୟ ମଧ୍ୟରେ ଆସ୍‌ମାନ ଜମିନ ଫରକ ଥିବାର ଜଣାଯାଏ । ସେମାନଙ୍କ ମଧ୍ୟରେ ବାଲ୍ୟବିବାହ ପ୍ରଚଳନ ନ ଥିଲା— ସେମାନେ ଯୁବତୀ ବିବାହ କରୁଥିଲେ; ବିଧବା ବିବାହର ପକ୍ଷପାତୀ ଥିଲେ । ଅଧୁନା ହିନ୍ଦୁମାନେ ବିଧବା ବିବାହ ବନ୍ଦ କରିଅଛନ୍ତି । ଯୁବତୀ ବିବାହ ଅପେକ୍ଷା ବାଲ୍ୟବିବାହ ଦେଶର ତଥା ସମାଜର ହିତକର ବୋଲି ତାହା ପ୍ରଚଳନ କରିଅଛନ୍ତି । ଏଥିରେ ଯେ ଅନିଷ୍ଟ, ତାହା ସେମାନଙ୍କ ଦୃଷ୍ଟିରେ ପଡୁଥିଲେ ହେଁ ତ୍ୟାଗ କରିବାକୁ ସେମାନେ ରାଜି ନୁହନ୍ତି । ଏ ସମ୍ବନ୍ଧରେ ବୈଦିକ ଧର୍ମ ଓ ହିନ୍ଦୁଧର୍ମର ମେଳ କେଉଁଠାରେ ?

ବୈଦିକ ଯୁଗରେ ଜାତିଭେଦ ନ ଥିଲା ଶେଷ ଆଡ଼କୁ ଅବଶ୍ୟ ଚାରି ଜାତିର ସୃଷ୍ଟି ହୋଇଥିବାର ଦେଖାଯାଏ— ତାହା କେବଳ ଗୁଣ କର୍ମ ଅନୁସାରେ; ମାତ୍ର ଅସ୍ପୃଶ୍ୟତା ଏକାବେଳକେ ଜଣା ନ ଥିଲା । ଏ ଅନିଷ୍ଟ ପସରା ଜାତିକୁ ସ୍ପର୍ଶ କଲା କେବେ ? ଆର୍ଯ୍ୟ ପବିତ୍ରତା ନଷ୍ଟ ହେଲା— ଆର୍ଯ୍ୟ ସନ୍ତାନମାନେ ହିନ୍ଦୁ ଆଖ୍ୟା ନେଲା ଦିନରୁ ।

ବର୍ତ୍ତମାନ ହିନ୍ଦୁମାନଙ୍କର ପ୍ରେତକୃତ୍ୟ ଏକ ମହାଜଟିଳ ବ୍ୟାପାର । ଜୀବ, ଆତ୍ମା, ଦେହ ସମ୍ବନ୍ଧରେ ଏଠାରେ ବିଚାର କରିବାର ଅବସର ନାହିଁ । ତେବେ କୁହାଯାଇପାରେ ଯେ, ହିନ୍ଦୁର ପ୍ରେତ କର୍ମ ବେଦବିରୋଧ ଏବଂ ବିବେକ ବୁଦ୍ଧି ବିରୋଧ, ତଥାପି ହିନ୍ଦୁ ଏହି ଅସଙ୍ଗତ ଅଯୌକ୍ତିକ କାର୍ଯ୍ୟ କରି ସର୍ବସ୍ୱାନ୍ତ ହେଉଅଛନ୍ତି । କେବଳ ଏତିକି ନୁହେଁ, ଏହି କର୍ମ ଦ୍ୱାରା ମୃତବ୍ୟକ୍ତିକୁ ନେଇ ଗୋଟାଏ ବିଦ୍ରୂପାତ୍ମକ ନାଟକର ଅଭିନୟ କରାହୁଏ । ମନୁଷ୍ୟ ମୃତ ହେଲା ପରେ ତାହାକୁ ଊର୍ଦ୍ଧ୍ୱପଥ ପିଣ୍ଡ ଦିଆଯାଏ । ଏହା ବିଦ୍ରୂପାତ୍ମକ ନାଟକର ପ୍ରଥମ ଅଙ୍କର ପ୍ରଥମ ଦୃଶ୍ୟ । ହିନ୍ଦୁମାନେ ଧାତୁପାଷାଣଗଠିତ ମୂର୍ତ୍ତିକୁ ଭୋଗ ଲଗାଇଲା ସଦୃଶ ମୃତ ଓ ଜଡ଼ ପିଣ୍ଡକୁ ପିଣ୍ଡବଳୀ ଦେବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କଥା କିଛି ନାହିଁ । ତେବେ ଏହି ହୃଦୟବିଦାରକ କାର୍ଯ୍ୟ ପୁତ୍ର ଭାଇ ପ୍ରଭୃତି ପ୍ରିୟଜନଙ୍କଦ୍ୱାରା କରାଇବା ଶାସ୍ତ୍ରର ନିଷ୍ଠୁର ବିଧି ଏବଂ ଶାସ୍ତ୍ରକର୍ତ୍ତାର କ୍ରୂରାନ୍ତଃକରଣର ପରିଚୟ ମିଳୁଅଛି । ଦାହଉତ୍ତାରୁ ପରା ମୃତର ଆତିବାହିକ ଦେହ ହୁଏ । ପିଣ୍ଡଦାନଦ୍ୱାରା ପ୍ରେତ ଦେହ ପ୍ରାପ୍ତ ହୁଏ । ମୃତ ବ୍ୟକ୍ତି ସପିଣ୍ଡୀକରଣ ଯାଏ ପ୍ରେତାବସ୍ଥାରେ ଥାଏ । ଏ ସମୟରେ ଏହି ପ୍ରେତର ଶୀତ ବା ତାତପୋଭବ ଘୋର ଯାତନା ହେଉଥାଏ । ସପିଣ୍ଡୀକରଣାନନ୍ତର ପ୍ରେତ ସ୍ୱକର୍ମ ଭୋଗ କରେ । ସ୍ୱର୍ଗ ବା ନରକ ଭୋଗ କରେ । ଏ ତ ଗଲା ଅଦେଖା କଥା । ପ୍ରମାଣଦ୍ୱାରା ଏଥିର ଅଯୌକ୍ତିକତା ଦେଖାଇବାକୁ ଯିବାର ବର୍ତ୍ତମାନ ଅବସର ନାହିଁ । ତେବେ ଦାହ ଉତ୍ତାରେ ଯେ ଦଶଟି ଦିନରେ ଦଶ ଗୋଟି ଅଙ୍କର ଅଭିନୟ ହୁଏ, ତାହା ଯେପରି ଜଘନ୍ୟ, ସେହିପରି କଷ୍ଟଦାୟକ । ଯେଉଁ ବ୍ୟକ୍ତି ମୃତ ହେଲା— ତାକୁ ଦାହ କରିଦେଇ ତାର ଚିହ୍ନ ବର୍ଣ୍ଣ ଲୋପ କଲ; ତହିଁ ଉତ୍ତାରୁ ଶୋକାପନୋଦନ ବାକ୍ୟ ପୁରୋହିତ ମୁଖରୁ ଶୁଣିଲ, ଯହିଁରେ କି ପୁରୋହିତ କହିଲେ ଯେ ପଞ୍ଚଭୂତରେ ନିର୍ମିତ ଶରୀର ଯେବେ ପଞ୍ଚଭୂତରେ ମିଶିଗଲା ସେଥି ନିମନ୍ତେ ପରିବେଦନା କାହିଁକି ? ଆଉ ଦିନ ପୁଣି ମାଟି ପିତୁଳା ନିର୍ମାଣ କରି ପୂରକପିଣ୍ଡ ଦ୍ୱାରା ମୃତ ବ୍ୟକ୍ତିର ପ୍ରେତ ଦେହ ନିର୍ମାଣ କରିବାର ବ୍ୟବସ୍ଥା କେଉଁଆଡ଼ୁ ଆସିଲା ? ଏହା ଏକ ଅତ୍ୟଦ୍ଭୁତ କଳ୍ପନା । ପ୍ରଥମ ପିଣ୍ଡରେ ମୃତର ମସ୍ତକ, ୨ୟ ପିଣ୍ଡରେ କର୍ଣ୍ଣ ଚକ୍ଷୁ ନାସିକା, ତୃତୀୟ ପିଣ୍ଡରେ ଗଳା, ଅଂସ, ଭୁଜ ଓ ବକ୍ଷସ୍ଥଳ, ୪ର୍ଥ ପିଣ୍ଡରେ ନାଭି, ଲିଙ୍ଗ ଓ ଗୁହ୍ୟ, ୫ମ ପିଣ୍ଡରେ ଜାନୁ, ଜଙ୍ଘା ଓ ପାଦଦ୍ୱୟ, ଷଷ୍ଠ ପିଣ୍ଡରେ ମର୍ମ ସ୍ଥାନମାନ, ସପ୍ତମରେ ନାଡ଼ୀସମୂହ, ଅଷ୍ଟମରେ ଦାନ୍ତ ଓ ଲୋମ, ନବମରେ ବୀର୍ଯ୍ୟ ଏବଂ ଦଶମ ଦିନରେ ବା ଦଶମ ପିଣ୍ଡରେ ସମସ୍ତ ଦେହ ପୂର୍ଣ୍ଣତା ପ୍ରାପ୍ତ ହୁଏ । ଆମ୍ଭେମାନେ ଅଦ୍ଭୁତ କଳ୍ପନା ବୋଲି ଦେଖିଲୁଁ କାହିଁକି ? ପ୍ରଥମ ଦିନରେ ମସ୍ତକ ତିଆରି ହେଲା, ସଙ୍ଗେ ସଙ୍ଗେ ଜ୍ଞାନର ମଧ୍ୟ ଉଦୟ ହେଲା । ଯେଉଁ ପ୍ରେତର କେବଳ ମସ୍ତକ ତିଆରି ହେଲା, ପରେ ଦଶ ଦିନଯାଏ ଗୋଟିଏ ଗୋଟିଏ ଅଙ୍ଗପ୍ରତ୍ୟଙ୍ଗ ତିଆରି ହେଉଥାଏ, ତା'ର ଆଉ କଷ୍ଟର ସୀମା ଥାଏ କି ? ଏ ତ ଗଲା ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ପ୍ରେତଙ୍କର ବ୍ୟବସ୍ଥା, ଶୂଦ୍ର ପ୍ରେତର ଟିକେ ଅଧିକ କଷ୍ଟ ପାଇବା ଉଚିତ ନୁହେଁ କି ? ଏଣୁ ତା'ର ଅବୟବ ନଅ ଦିନ ପର୍ଯ୍ୟନ୍ତ ପ୍ରସ୍ତୁତ କରାଯାଇ ପୂର୍ଣ୍ଣତା ପ୍ରାପ୍ତ କରାଯିବ ତ୍ରିଂଶ ଦିନରେ । କି କଷ୍ଟକର ବ୍ୟାପାର । ଶରୀର ଓ ଅବୟବମାନେ ତିଆରି ହେଲା ସତ୍ତ୍ୱେ ଶୂଦ୍ରର ପୂର୍ଣ୍ଣତ୍ୱ ପ୍ରାପ୍ତି ହେବ ତ୍ରିଂଶ ଦିନରେ—କଷ୍ଟର ତ ସୀମା ନ ଥିବ । ଏ ନାଟକର ପ୍ରତ୍ୟେକ ଅଭିନୟ ଦେଖାଇବାର ପ୍ରୟୋଜନ ନାହିଁ । ପ୍ରେତ ବିସର୍ଜନ ଓ ପ୍ରେତ ଆବାହନ ଆହୁରି ଜଘନ୍ୟ ବ୍ୟାପାର । ତା'ଛଡ଼ା ଦୋଷଯୁକ୍ତ ବାର ତିଥିରେ ମୃତ୍ୟୁ ହେଲେ ପୁଷ୍କର ହୋମ— ମୃତ ବ୍ୟକ୍ତି ପ୍ରତି ଶେଷ ଲାଞ୍ଛନା । ହିନ୍ଦୁର ଏସବୁ କର୍ମ ଯେବେ ବେଦସମ୍ମତ ନୁହେଁ, ତେବେ ହିନ୍ଦୁଧର୍ମର ଏ ଅଂଶଟା ଅନ୍ତତଃ ଅନାର୍ଯ୍ୟ ଧର୍ମ ନୁହେଁ କି ? ଏଣୁ ଏହା ନିନ୍ଦନୀୟ ଓ ଘୃଣ୍ୟ ବ୍ୟାପାର; ତଥାପି ହିନ୍ଦୁ ଆଖିବୁଜି କରି ଯାଉଅଛି ।

ମୃତାଷ୍ଟକ, ଦଶ ଦାନ, ଷୋଡ଼ଶ ପାଥେୟ, ଗାବ ପୃଥ୍ୱୀ ସରସ୍ୱତୀ ଏ ଚାରିଗୋଟି ଦାନ ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ ମଧ୍ୟ ଦିଆଯାଏ । ଏଥିମଧ୍ୟରୁ ପ୍ରଥମୋକ୍ତଟି ମୃତବ୍ୟକ୍ତି ମୁମୂର୍ଷୁ ଅବସ୍ଥାରେ ଥିବା ବେଳେ ତା'ର ଜ୍ଞାତସାରରେ କିମ୍ବା ତାର ଅଜ୍ଞାନାବସ୍ଥାରେ ଦିଆଯାଏ । ଏହି ଦାନ ମନ୍ତ୍ରର ଅର୍ଥ ନିତାନ୍ତ ଭୀତିପ୍ରଦ ଓ ହୃଦୟବିଦାରକ । ଏହି ଦାନ ଦେଲାବେଳେ ଥରେ ମୁମୂର୍ଷ ଆଡ଼କୁ ଓ ପରିବାରବର୍ଗଙ୍କ ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ ଏବଂ ମନ୍ତ୍ରାର୍ଥକୁ ଲକ୍ଷ୍ୟ କଲେ ଏପରି ପାଷାଣ ହୃଦୟ କାହାରି ନାହିଁ, ଯେ କି ଅଶ୍ରୁ ବିସର୍ଜନ ନ କରି ରହିପାରିବେ । କି ମର୍ମନ୍ତୁଦ ବ୍ୟାପାର । ମୁମୂର୍ଷୁ ବ୍ୟକ୍ତିର ବ୍ୟାକୁଳ ହୃଦୟ କ'ଣ ଭାବୁଥିବ ? କହିବାର ଶକ୍ତି ନାହିଁ; ଅଥଚ ବନ୍ଧୁବର୍ଗ ତାକୁ ତ୍ୟାଗ କରୁଅଛନ୍ତି, ସେ ସଂସାରଲୀଳା ତ୍ୟାଗ କରୁଅଛି । ଏ ଜ୍ଞାନ ହୃଦୟରେ ତାର ଖେଳୁଛି; ହୁଏତ ଚକ୍ଷୁର ଲୋତକ ଦୁଇଧାର ବୋହିଯାଉଅଛି । ଏ ଦୃଶ୍ୟ ଦେଖି ପୁତ୍ର ସ୍ତ୍ରୀ କନ୍ୟା ଅଜସ୍ର ଲୋତକବର୍ଷଣ କରୁଅଛନ୍ତି । ଦାନଗ୍ରହୀତାମାନେ ନିର୍ବିକାର ମନରେ ମର୍ମସ୍ପର୍ଶୀ ମନ୍ତ୍ରୋଚ୍ଚାରଣ ପୂର୍ବକ ଗୋଟି ଗୋଟି କରି ଦାନ ଗ୍ରହଣ କରୁଅଛନ୍ତି— ଯମଦ୍ୱାରାବସ୍ଥିତ

ମହାଅନ୍ଧକାର, ମହାଉଲଗ୍ନତା, ମହାକ୍ଷୁଧା, ମହାତୃଷା ନିବାରଣ ବ୍ୟବସ୍ଥା କରୁଅଛନ୍ତି । ତପ୍ତ ବାଲୁକାପୂର୍ଣ୍ଣ ବୈତରଣୀ ନଦୀ ପାରି ହେବା ନିମନ୍ତେ ଗୋଦାନ ଗ୍ରହଣ କରୁଅଛନ୍ତି । ଯମଦ୍ୱାର କାହିଁ, ମହାଅନ୍ଧକାର କାହିଁ, ମହାକ୍ଷୁଧା, ମହାତୃଷା କାହିଁ— ଯମଦ୍ୱାର ଆଗରେ ତପ୍ତ ବୈତରଣୀ କାହିଁ ? ଏହା କି ବେଦର ବ୍ୟବସ୍ଥା ? ନାହିଁ । —ତେବେ ଯେଉଁମାନେ ଏ ବ୍ୟବସ୍ଥାରେ ମୁମୂର୍ଷୁକୁ ଭୀତିପୂର୍ଣ୍ଣ କରି ଏ ସଂସାରରୁ ବିଦାୟ ଦେଉଅଛନ୍ତି, ସେମାନେ ବୈଦିକ ଆର୍ଯ୍ୟ ନା ବେଦ ଧର୍ମ ମାନନ୍ତି ?

ଦଶ ଦାନ ଓ ଷୋଡ଼ଶ ପାଥେୟ ମଧ ତଦ୍ରୂପ । ଯେବେ ମୃତ ବ୍ୟକ୍ତି ସପିଣ୍ଡୀକରଣାନନ୍ତର ସ୍ୱର୍ଗ ବା ନରକ ବାସକରେ, ତେବେ ମୃତ ବ୍ୟକ୍ତି ନିମନ୍ତେ ଯମଦ୍ୱାରରେ ଭୋଗ କରିବା ନିମନ୍ତେ— ଗାଈ, ଭୂମି, ସୁନା, ତଣ୍ଡୁଳ ପ୍ରଭୃତି ଦାନ ଦେବା ଦରକାର କ'ଣ ? ଆମ ଏ ଦେଶର କ୍ଷତ୍ରିୟମାନଙ୍କର ଅନ୍ତତଃ ଏହି ବିଧି ଅଛି ଯେ, ଆମ୍ଭେମାନେ ମୃତ ବ୍ୟକ୍ତିକୁ ପ୍ରେତ କରି ବହୁ ଦିନ ରଖିବାକୁ ପ୍ରସ୍ତୁତ ନୋହୁଁ । ଦ୍ୱାଦଶ ଦିନରେ ମୃତ ବ୍ୟକ୍ତିର ପ୍ରେତତ୍ୱରୁ ମୋଚନ କରୁଁ । ବର୍ଷକ ଉତ୍ତାରୁ ସପିଣ୍ଡୀକରଣ ବ୍ୟବସ୍ଥା କ୍ଷତ୍ରିୟଙ୍କଠାରେ ପ୍ରଯୋଜ୍ୟ ନୁହେଁ । ସେମାନେ ଦ୍ୱାଦଶ ଦିନରେ ସିପଣ୍ଡୀକରଣ କରି ମୃତବ୍ୟକ୍ତିକୁ ପ୍ରେତତ୍ୱର ମୁକ୍ତ କରନ୍ତି । ସୁତରାଂ କେବଳ ରାତ୍ରି କେତେ ଘଣ୍ଟା ନିମନ୍ତେ ମୃତବ୍ୟକ୍ତି ପାଇଁ ଏକାଦଶାହ ଦିନ ଖନିତ୍ର, କୁଦାଳ, ବର୍ଷାଶନ ପ୍ରଭୃତି ଦେବା ନିଷ୍ପ୍ରୟୋଜନ । ପ୍ରେତର ତ ପିଣ୍ଡ ଭୋଜନ ଶେଷ କରିବାର ଅବସର ନାହିଁ, ସେ ଖନିତ୍ର କୁଦାଳ ଘେନି କେଉଁ ଆଡ଼େ କନ୍ଦମୂଳ ଖନନ କରି ଉଦର ପୋଷଣ କରିବାକୁ ଯିବ ?

ତା'ଛଡ଼ା ବଡ଼ଲୋକ, ଧନୀ ବ୍ୟକ୍ତି, ବିଲାତଫେରନ୍ତା ପ୍ରଭୃତିଙ୍କ ନିମନ୍ତେ ଖନିତ୍ର, କୁଦାଳ ଦାନ ଦେବା ହାସ୍ୟାସ୍ପଦ ନୁହେଁ କି ? ଯେଉଁମାନେ ଆବାଲ୍ୟ ଦୁଗ୍ଧଘୃତାନ୍ନ ପୋଷିତ— ସେମାନେ କି ପ୍ରେତପୁରରେ କନ୍ଦମୂଳ ଖନନ କରି ଭକ୍ଷଣ କରିବେ ? ସେମାନଙ୍କ ନିମନ୍ତେ ଯଥୋପଯୁକ୍ତ ଖାଦ୍ୟର ବ୍ୟବସ୍ଥା କି ଯମରାଜ କରିଦେବେ ନାହିଁ ? ମର୍ତ୍ତ୍ୟ କାରାଗାରରେ ତ ମଧ ଇଦୃଶ ବ୍ୟବସ୍ଥା ନାହିଁ । A. B. C କ୍ଲାସ୍ ଭେଦରେ ଖାଦ୍ୟ ପାନୀୟ ଶୟନର ବ୍ୟବସ୍ଥା କରାଯାଉଅଛି । ଯମରାଜ ଛୋଟ ବଡ଼, ଧନୀ ଗରିବ, ରାଜା, ଜମିଦାର, ବିଲାତଫେରନ୍ତା ସମସ୍ତଙ୍କପାଇଁ ଏ ଖନିତ୍ର କୁଦାଳ ବ୍ୟବହାରଦ୍ୱାରା ପେଟ ପୋଷିବାର ବ୍ୟବସ୍ଥା କରିବେ କି ? ପୂର୍ବେ ଏ ବ୍ୟବସ୍ଥା ଥାଇପାରେ, ବର୍ତ୍ତମାନ ସେହି ବ୍ୟବସ୍ଥା ଅନୁସାରେ ଦାନ ଦେବାଦ୍ୱାରା ଯମରାଜାଙ୍କର ଶାସନରେ କଳଙ୍କାରୋପ କରାଯାଉ ନାହିଁ କି ? ନୂତନ ବ୍ୟବସ୍ଥା ହେବା ଉଚିତ । ବିଲାତଫେରନ୍ତାଙ୍କ ପାଇଁ କଠଉ ନ ଦେଇ ବୁଟ୍ ଜୋତା କପଡ଼ା ନ ଦେଇ କୋଟ୍ ପେଣ୍ଟଲୁନ୍— ମୋଟା ଚାଉଳ ମୁଗ ଘିଅ ନ ଦେଇ କେତେକ ଟିନ୍ ଫୁଡ୍ (Tin food) ଦେବା ଉଚିତ ନୁହେଁ କି ? ଏ ବ୍ୟବସ୍ଥା ବୈଦିକ ବ୍ୟବସ୍ଥା ନୁହେଁ— ଅର୍ବାଚୀନ ପୁରାଣ ବ୍ୟବସ୍ଥା । ତଥାପି ହିନ୍ଦୁ ବେଦବିଶ୍ୱାସୀ; ଯେହେତୁ କର୍ମ କଲାବେଳେ ଗୋଟିଏ ଯୋଡ଼ିଏ ବେଦମନ୍ତ୍ର ଉଚ୍ଚାରଣ କରିବାର ବ୍ୟବସ୍ଥା ଅଛି ।

ଗୋଟିକେତେ ସମ୍ପ୍ରଦାୟର ସାମାନ୍ୟ ଆଲୋଚନା କରାଯାଇ ପ୍ରବନ୍ଧ ଶେଷ କରାଯାଉ । ଦର୍ଶନର କଥା ଆମ୍ଭେମାନେ ପୂର୍ବେ କହିଅଛୁଁ । ନିଜ ମତକୁ ଲୋକପ୍ରିୟ କରିବା ନିମନ୍ତେ ବେଦ ନିତ୍ୟ ଅପୌରୁଷେୟ ବୋଲି ଯୁକ୍ତିଦ୍ୱାରା ଦେଖାଇ ଥିଲେ ମଧ ଦାର୍ଶନିକଗଣ ବେଦବିଶ୍ୱାସୀ ନୁହନ୍ତି । ବୈଷ୍ଣବ ସମ୍ପ୍ରଦାୟ ସମୂହର ବେଦ ସହିତ କୌଣସି ସମ୍ବନ୍ଧ ଅଛି କି ? ସେମାନେ ଅବତାରବାଦୀ । ରାମ କୃଷ୍ଣ ପ୍ରଭୃତିଙ୍କର ଶରଣାପନ୍ନ ହେଲେ, ସେମାନଙ୍କର ଦାସ୍ୟଭାବ ସ୍ୱୀକାର କଲେ ସେବା କଲେ, ପ୍ରସନ୍ନ ହେଲେ ସେମାନଙ୍କର ମୁକ୍ତି । ଅନେକ ମୁକ୍ତିର ଇଚ୍ଛା କରନ୍ତି ନାହିଁ । ଯୁଗେ ଯୁଗେ ଜନ୍ମ ଜନ୍ମାନ୍ତର ସେହି ମୂର୍ତ୍ତିର ସେବା— ତାଙ୍କର ଗୃହ ସମ୍ମାର୍ଜନା— ତାଙ୍କର ଚରଣୋଦକ ପାନ ସେମାନଙ୍କର କାମ୍ୟ । ଏ ଧର୍ମ ସହିତ ବେଦର ସମ୍ବନ୍ଧ କେଉଁଠାରେ ?

ଯେଉଁମାନେ କେବଳ 'ଗୌର ନିତାଇ, ରାଧେ ଶ୍ୟାମ'— ନାମ କୀର୍ତ୍ତନଦ୍ୱାରା ମୁକ୍ତି ମିଳିବାର ବିଶ୍ୱାସ କରନ୍ତି, ସେମାନଙ୍କ ପ୍ରତି ବେଦ କ'ଣ ? ଏ ଧର୍ମର ସହିତ ବେଦର କୌଣସି ସମ୍ବନ୍ଧ ନାହିଁ । ରାଧାଶ୍ୟାମ ତ ବେଦର ଦେବତା ନୁହଁନ୍ତି, ବିଶ୍ୱାସ ହିଁ ଏ ଧର୍ମର ମୂଳମନ୍ତ୍ର । ଏହି ବିଶ୍ୱାସ ହେତୁରୁ ଚୈତନ୍ୟ ଧର୍ମ ବଙ୍ଗୋତ୍କଳକୁ ନିମଜ୍ଜିତ କରିଅଛି । ବୈଦିକ ଧର୍ମ ତ ଏତାଦୃଶ ବିଶ୍ୱାସମୂଳକ ଧର୍ମ ନୁହେଁ— ଗୁରୁ ଶିଷ୍ୟ ସମ୍ବନ୍ଧ ଏବଂ କର୍ଣ୍ଣମନ୍ତ୍ର ବୈଦିକ ଧର୍ମରେ ଦେଖା ନାହିଁ ।

ଉପସଂହାରରେ କୁହାଯାଇପାରେ ଯେ, ସ୍ୱାଧୀନ ବୈଦିକଧର୍ମ ମାନବ ଜାତିର ପ୍ରାଥମିକ ଅବସ୍ଥାର ଧର୍ମଭାବରୁ ଆରମ୍ଭ କରି ବୈଦିକ ଆର୍ଯ୍ୟମାନେ ସେକାଳ ଉପଯୋଗୀ ସଭ୍ୟତା ଉପାର୍ଜନ କରିବାଯାଏ ଗୋଟିଏ ଧର୍ମସ୍ରୋତ ଚାଲିଥିଲା । ତହିଁର ବିବରଣ ପୂର୍ବେ ବିସ୍ତୃତ ଭାବରେ

ଦିଆଯାଇଅଛି । ଋଗ୍‌ବେଦରେ ଯେଉଁ ଧର୍ମର ଓ ଉପାସନାର ଉଲ୍ଲେଖ ଅଛି, ତାହା ବୈଦିକ ଆର୍ଯ୍ୟ ଧର୍ମ । ତାର କ୍ରମବିକାଶ ହୋଇ ବ୍ରାହ୍ମଣ ଓ ଆରଣ୍ୟକ ଯୁଗରେ ଯାଗଯଜ୍ଞର ନିନ୍ଦା କରି ସ୍ୱତନ୍ତ୍ର ମତ ଉଦ୍ଭାବନ କଲେ । ଏହି ଦୁଇ ଶାଖାର କ୍ରମବିକାଶ ହେତୁ ଭାରତର ଧର୍ମ ମତର ଗୋଟାଏ ଖେଚୁଡ଼ି ପ୍ରସ୍ତୁତ ହେଲା । ସେଥିରେ ଦାନାଏ କଣାଏ ମାଲମସଲା ଅଦ୍ୟାପି ମିଶୁଛି; ମାତ୍ର ପରିଷ୍କାର କରାଯାଉ ନାହିଁ । ବର୍ତ୍ତମାନ ଭାରତରେ ପ୍ରଚଳିତ ମତସମୂହ ସହିତ ବେଦର ବିଶେଷ ସମ୍ବନ୍ଧ ନାହିଁ । ସୁତରାଂ ହିନ୍ଦୁମାନଙ୍କର ଧର୍ମକୁ ବୈଦିକ ଧର୍ମ ବୋଲିବାର କୌଣସି କାରଣ ନାହିଁ । ଅଳମତି ବିସ୍ତରେଣ

•

## ବର୍ଣ୍ଣ ଓ ଜାତିର ବିଚାର

ଆମ୍ଭେମାନେ ଏଥିପୂର୍ବରେ 'ବେଦ ଓ ହିନ୍ଦୁଧର୍ମ' ପ୍ରବନ୍ଧରେ ପ୍ରକାଶ କରିଅଛୁଁ ଯେ, ଅଧୁନା ହିନ୍ଦୁମାନଙ୍କ ମଧ୍ୟରେ ଯେଉଁ ଜାତିଭେଦ ଅଛି, ତାହା ବୈଦିକ ଆର୍ଯ୍ୟମାନଙ୍କ ମଧ୍ୟରେ ନ ଥିଲା । ସେହି ସଂକ୍ଷିପ୍ତ ଉକ୍ତିକୁ ସ୍ପଷ୍ଟରୂପେ ବ୍ୟକ୍ତ କରିବାକୁ ଏହି ପ୍ରବନ୍ଧର ଅବତାରଣା ।

ଆମ ଦେଶର ପଣ୍ଡିତମାନେ କହନ୍ତି ଯେ, ଜାତି ନିତ୍ୟ ବା ସନାତନ ! ମାତ୍ର ତାହା ନୁହେଁ । ଏହା ମନୁଷ୍ୟକୃତ, କୃତ୍ରିମ । ଋଗ୍‌ବେଦ ଆମ୍ଭମାନଙ୍କର ଆଦି ଗ୍ରନ୍ଥ । ଏଥିରେ ଜାତିଭେଦ ଥିବା ତ ଦୂରର କଥା, ଜାତି ଶବ୍ଦଟା ମଧ୍ୟ ନାହିଁ । ଯେଉଁ ପ୍ରଥା ଆର୍ଯ୍ୟମାନଙ୍କ ମଧ୍ୟରେ ନ ଥିଲା ଏବଂ ଯାହା ଆର୍ଯ୍ୟମାନଙ୍କର ପ୍ରଥମ ରଚିତ ଗ୍ରନ୍ଥରେ ନାହିଁ, ତାକୁ ନିତ୍ୟ ବା ସନାତନ ବୋଲାଯାଇ ପାରିବ କିପରି ?

ବର୍ଣ୍ଣ ଶବ୍ଦ ବେଦ ପରି ପୁରୁଣା, ମାତ୍ର ଜାତି ଶବ୍ଦ ସେପରି ନୁହେଁ । ବର୍ଣ୍ଣ ଶବ୍ଦ ଋଗ୍‌ବେଦରେ ଅଛି, ଜାତି ଶବ୍ଦ ନାହିଁ । ବର୍ଣ୍ଣ ଅର୍ଥ ରଙ୍ଗ । ପରେ ଦୈହିକ ରଙ୍ଗ ଅର୍ଥ ହୋଇ ଆର୍ଯ୍ୟ ଓ ଆଦିମବାସୀଙ୍କର ପାର୍ଥକ୍ୟ ବୁଝାଇବାରେ ବ୍ୟବହୃତ ହୋଇଅଛି ।

ନବାଗତ ଆର୍ଯ୍ୟଗଣ ସ୍ୱଭାବତଃ ଆଦିମବାସୀଙ୍କ ଅପେକ୍ଷା ଗୌରକାନ୍ତିଯୁକ୍ତ ଥିଲେ । ନବାଗତମାନେ କମନୀୟରୂପ, ଆଦିମମାନେ ମ୍ଳାନରୂପ । ନବାଗତମାନେ ଆର୍ଯ୍ୟ ଆଖ୍ୟାରେ ଏବଂ ଆଦିମମାନେ ଦାସ ଆଖ୍ୟାରେ ପରିଚିତ ହେଲେ । ଋଗ୍‌ବେଦର କେତେକ ମନ୍ତ୍ରରୁ ଜଣାଯାଏ ଯେ, କେବଳ ବର୍ଣ୍ଣ ବୋଇଲେ ଆର୍ଯ୍ୟଙ୍କୁ ବୁଝାଏ ଏବଂ ତାହା ଛଡ଼ା ବର୍ଣ୍ଣ ବୋଇଲେ ଆର୍ଯ୍ୟଙ୍କର ଦେବତାଙ୍କୁ ବୁଝାଉଥିବାର ମଧ୍ୟ ଗୋଟିଏ ଯୋଡ଼ିଏ ମନ୍ତ୍ରରୁ ଜଣାପଡ଼େ । ବର୍ଣ୍ଣ ଦେହର ରଙ୍ଗ ଅର୍ଥରେ ବ୍ୟବହୃତ ହେଉଥିଲେ ସୁଦ୍ଧା ତାହାର ଅର୍ଥାତ୍ କେତେକ ସ୍ଥାନରେ ଆର୍ଯ୍ୟ ଦେବତା ଓ ଆର୍ଯ୍ୟ ପରେ ଦାସଠାରୁ ପୃଥକ୍ କରିବା ଅଭିପ୍ରାୟରେ ଆର୍ଯ୍ୟ ଶବ୍ଦରେ ବର୍ଣ୍ଣ ଶବ୍ଦ ଯୋଗ ହୋଇ ଆର୍ଯ୍ୟ ବର୍ଣ୍ଣ ହେଲା ଏବଂ ଦାସଙ୍କୁ ବୁଝାଇବାକୁ ଦାସ ବର୍ଣ୍ଣର ସୃଷ୍ଟି ହେଲା । ଏଣୁ ଆମ୍ଭେମାନେ ବେଦରେ ପାଉଁ, ଶୁଭ୍ରବପୁ ନବାଗତମାନଙ୍କ ନିମନ୍ତେ ବର୍ଣ୍ଣ ଓ ଆର୍ଯ୍ୟବର୍ଣ୍ଣ ଏବଂ ଆଦିମବାସୀଙ୍କ ନିମନ୍ତେ ଦାସବର୍ଣ୍ଣ । ସାରା ଋଗ୍‌ବେଦରେ ଏହି ଦୁଇ ଗୋଟି ବର୍ଣ୍ଣ ଭିନ୍ନ ଅନ୍ୟ କୌଣସି ବର୍ଣ୍ଣର ଉଲ୍ଲେଖ ଦେଖିବାକୁ ମିଳେ ନାହିଁ । ଏଣୁ ବର୍ଣ୍ଣ ଶବ୍ଦର ବହୁବଚନ 'ବର୍ଣ୍ଣାଃ' (ବର୍ଣ୍ଣମାନେ, ଏପରି ବ୍ୟବହାର ଋଗ୍‌ବେଦରେ ଆଦୌ ନାହିଁ, ଏଥିରୁ କି ସ୍ପଷ୍ଟ ପ୍ରତୀୟମାନ ହେଉ ନାହିଁ ଯେ ଋଗ୍‌ବେଦ ରଚନା ପୂର୍ବରୁ କିମ୍ବା ରଚନାବେଳେ ଚାରି ବର୍ଣ୍ଣର ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ବର୍ଣ୍ଣର ସୃଷ୍ଟି ହୋଇ ନ ଥିଲା ?

ଏହି ବର୍ଣ୍ଣ ଶବ୍ଦ କାଳକ୍ରମେ ବ୍ରାହ୍ମଣ ଉପନିଷଦ୍ ଗ୍ରନ୍ଥରେ କିପରି 'ବର୍ଣ୍ଣାଃ' (ବର୍ଣ୍ଣମାନେ ବିବରଣୀ) ରୂପ ଧାରଣ କଲା, ତହିଁର ସାମାନ୍ୟ ନିମ୍ନରେ ଦିଆଯାଉ— ଆର୍ଯ୍ୟଗଣ ଭାରତ ଅଧିବାସୀ ହେବା ମାତ୍ରକେ ଯେ ଭାରତମାତା ରାଜ୍ୟ ଦେଇ ବାସ ଦେଇ ଅନ୍ନ ବସ୍ତ୍ର ଯୋଗାଇଦେଲା, ଏପରି ନୁହେଁ । ସେମାନେ ଅଧ୍ୟବସାୟ ଓ ପରିଶ୍ରମଦ୍ୱାରା ଅନ୍ନବସ୍ତ୍ରର ଯୋଗାଡ଼ କଲେ । ପରିଶ୍ରମ ଅନୁସାରେ ଦୈହିକ ସୌଷ୍ଠବର ଓ ରଙ୍ଗର ପରିବର୍ତ୍ତନ ହେବା ସ୍ୱାଭାବିକ । ଦିନତମାମ ଖରାରେ ପରିଶ୍ରମ କରିବା, ବର୍ଷାରେ ତିନ୍ତିବା ଲୋକ ବର୍ଣ୍ଣସୌନ୍ଦର୍ଯ୍ୟ ରକ୍ଷା କରି ନ ପାରେ । ଯେଉଁ ବ୍ୟକ୍ତି ନିଶ୍ଚିନ୍ତ ଭାବରେ ପାନ ଭୋଜନ କରି ଗୃହରେ ବସି ରହିବ, ତା'ର ରଙ୍ଗ ମଳିନ ହେବା ସମ୍ଭବ ନୁହେଁ । ଆର୍ଯ୍ୟମାନଙ୍କର ପରିଶ୍ରମ ଓ ବ୍ୟବସାୟ ଅନୁସାରେ କାଳକ୍ରମେ ଶାରୀରିକ ରଙ୍ଗର ପ୍ରଭେଦ ଘଟିଥିବା ଅସମ୍ଭବ ନୁହେଁ । ଏଥିଉତ୍ତାରୁ ସତ୍ତ୍ୱ, ରଜ, ତମ ଗୁଣ ତ ଅଛି । ଯେଉଁମାନେ ଯାଗଯଜ୍ଞ ଓ ପୂଜାପାଠରେ ରତ, ସେମାନେ ସତ୍ତ୍ୱଗୁଣବିଶିଷ୍ଟ ଓ ଶୁକ୍ଳ । ଯୋଦ୍ଧା ଓ ବ୍ୟବସାୟୀ ରଜୋଗୁଣଯୁକ୍ତ ଏବଂ ରକ୍ତ ବର୍ଣ୍ଣ ଏବଂ ସେବାକାରୀମାନେ ତମୋଗୁଣଯୁକ୍ତ, ଏଣୁ କୃଷ୍ଣ ଓ ମ୍ଳାନ । ଏଣୁ ବ୍ୟବସାୟଜନିତ ଦୈହିକ ରଙ୍ଗ ଏବଂ ପ୍ରକୃତିର ଅବଶ୍ୟମ୍ଭାବୀ ପରିବର୍ତ୍ତନ କଳ୍ପନାରେ ପ୍ରତ୍ୟେକ ବ୍ୟବସାୟ ନିମନ୍ତେ ଗୋଟିଏ ଗୋଟିଏ ରଙ୍ଗ ବା ବର୍ଣ୍ଣ ନିର୍ଦ୍ଦେଶ କରାଗଲା । ଯାଗଯଜ୍ଞକାରୀ ସତ୍ତ୍ୱଗୁଣ

ଯୁକ୍ତ ବ୍ରାହ୍ମଣର ବର୍ଣ୍ଣ ଶୁକ୍ଳ । ଯୋଦ୍ଧା ଓ ବ୍ୟବସାୟୀ ରଜୋବାହୁଲ୍ୟ ହେତୁରୁ ରକ୍ତ (କାହାରି କାହାରି ମତରେ କ୍ଷତ୍ରିୟଧୂମ ଏବଂ ବୈଶ୍ୟ ପୀତ) ଏବଂ ତମଃପ୍ରଧାନ ଶୂଦ୍ର କୃଷ୍ଣ ଥିଲା । ଆର୍ଯ୍ୟ ବର୍ଣ୍ଣ କାଳକ୍ରମେ ହେଲା ଚାରି ବର୍ଣ୍ଣ । ଶତପଥ ବ୍ରାହ୍ମଣ ଲେଖିଲେ— 'ଚତ୍ୱାରୋ ବୈ ବର୍ଣ୍ଣାଃ— ବ୍ରାହ୍ମଣେ ରାଜନ୍ୟୋ ବୈଶ୍ୟାଃ' । ଶ : ବ୍ରା : ୫ । ୫ । ୪ । ୯

ଋଗ୍‌ବେଦରେ ଦଶଗୋଟି ମଣ୍ଡଳ ଅଛି । ପଣ୍ଡିତମାନେ ନିଶ୍ଚୟ କରିଅଛନ୍ତି ଯେ, ଋଗ୍‌ବେଦରେ ଏକାଦଶ ସ୍ଥାନରେ ବ୍ରାହ୍ମଣ ଶବ୍ଦର ଉଲ୍ଲେଖ ଅଛି । ପ୍ରଥମ ମଣ୍ଡଳରେ ଥରେ, ଷଷ୍ଠ ମଣ୍ଡଳରେ ଥରେ, ସପ୍ତମ ମଣ୍ଡଳରେ ଦୁଇଥର ଏବଂ ଦଶମ ମଣ୍ଡଳରେ ସାତ ଥର । କ୍ଷତ୍ରିୟ ଶବ୍ଦ ଅଷ୍ଟମ ମଣ୍ଡଳରେ ଥରେ ଏବଂ ଦଶମ ମଣ୍ଡଳରେ ଥରେ । ବୈଶ୍ୟ ଶବ୍ଦ ଓ ଶୂଦ୍ର ଶବ୍ଦ କେବଳ ଦଶମ ମଣ୍ଡଳରେ ଥରେ ଦେଖାଯାଏ । ରାଜନ୍ୟ ଶବ୍ଦର ଉଲ୍ଲେଖ ଦଶମ ମଣ୍ଡଳରେ ଥରେ ଦେଖାଯାଏ । ଏହି ବ୍ୟବହୃତ ଶବ୍ଦମାନ ବୃତ୍ତି ଓ ପ୍ରଭୁତ୍ୱର ପରିଚୟ ଦିଅନ୍ତି, ଜାତିଭେଦର ପରିଚୟ ନୁହେଁ ।

ଶତପଥ ବ୍ରାହ୍ମଣରେ ଯେଉଁ ଧରଣରେ ଚାରି ବର୍ଣ୍ଣର ଉଲ୍ଲେଖ ପ୍ରଥମେ ମିଳିଲା, ଋଗ୍‌ବେଦରେ ଦଶମ ମଣ୍ଡଳର ନବେ ସୂକ୍ତରେ ମଧ୍ୟ ସେହି ଧରଣରେ ଚାରି ବର୍ଣ୍ଣର ଉଲ୍ଲେଖ ଦେଖାଯାଏ । ଏହି ସୂକ୍ତ ବିଖ୍ୟାତ ପୁରୁଷସୂକ୍ତ । ଏହି ସୂକ୍ତରେ ଚରାଚର ବିଶ୍ୱସୃଷ୍ଟିର, ଚନ୍ଦ୍ରସୂର୍ଯ୍ୟ, ଅନ୍ତରୀକ୍ଷ, ଦ୍ୟୌ ପ୍ରଭୃତିର ସୃଷ୍ଟି ତିନି ବେଦ ଓ ମନୁଷ୍ୟ ପଶୁର ଉପତ୍ତି ପ୍ରଭୃତିର ବର୍ଣ୍ଣନା ହୋଇଅଛି । ମଧ୍ୟରେ ଦୁଇଗୋଟି ମନ୍ତ୍ର ଅସଙ୍ଗତ ଭାବରେ ସନ୍ନିବେଶିତ ହୋଇଥିବାର ବୋଧ ହୁଏ । ବେଦ ମଧ୍ୟରେ ମନ୍ତ୍ର ଯୋଡ଼ିଏ ସନ୍ନିବେଶିତ ହୋଇଅଛି ବୋଲି କହିବାକୁ ଶକ୍ତି କାହାର ? ଆଲୋଚନା କଲେ ସେପରି ତ ଜଣାପଡ଼େ । ନାଚାର । ଯାହାହେଉ; ଋଗ୍‌ବେଦର ଦଶମ ବା ଶେଷ ମଣ୍ଡଳରେ ଚାରି ବର୍ଣ୍ଣର ନାମ ଏକତ୍ର ଅଛି । ଋଗ୍‌ବେଦର ଅନ୍ୟତ୍ର ନାହିଁ । ପୁଣି ବୈଶ୍ୟ ଓ ଶୂଦ୍ରର ନାମ ତ ଅନ୍ୟ ମଣ୍ଡଳରେ ଆଦୌ ନାହିଁ । ତାହା ଛଡ଼ା ଋଗ୍‌ବେଦର ପୂର୍ବାପର ଭାଷାର ଆଲୋଚନା କରି ପଣ୍ଡିତଗଣ ପ୍ରକାଶ କରିଅଛନ୍ତି ଯେ, ପୁରୁଷସୂକ୍ତଟି ପରେ ବେଦରେ ସନ୍ନିବେଶିତ ହୋଇଅଛି ଏବଂ ସେତେବେଳକୁ ଚାରି ବର୍ଣ୍ଣର ବିଭାଗ ହୋଇସାରିଲାଣି । ଏହା ପଣ୍ଡିତଙ୍କର ଉକ୍ତି । ପଣ୍ଡିତଙ୍କ କଥା ପଣ୍ଡିତମାନେ ବୁଝିବେ, ଆମ୍ଭେମାନେ ମୂଳ କଥାର ଆଲୋଚନାରେ ପ୍ରବୃତ୍ତ ହେଉଁ ।

ଯେଉଁ ପୁରୁଷସୂକ୍ତରେ ଚାରି ବର୍ଣ୍ଣର ନାମ ଅଛି, ତାହା ସମ୍ପୂର୍ଣ୍ଣ ଉଦ୍ଧାର କରିବାର ଆବଶ୍ୟକ ନାହିଁ, କେ... ପାଞ୍ଚଗୋଟି ଋକ୍ ଉଦ୍ଧୃତ କଲେ ଯଥେଷ୍ଟ ହେବ ।

ତସ୍ମାତ୍ ଯଜ୍ଞାତ୍ ସର୍ବହୁତଃ ସମ୍ଭୃତଂ ପୃଷଦାଜ୍ୟ
ପଶୂଂସ୍ତାନ୍ ଚକ୍ରେ ବାୟବ୍ୟାନାରଣ୍ୟାନ୍ ଗ୍ରାମ୍ୟାଃ ଚ ଯେ । ୮

ତସ୍ମାତ୍ ଯଜ୍ଞାତ୍ ସର୍ବହୁତଃ ଋଚଃ ସାମାନି ଜଜ୍ଞିରେ ।
ଛନ୍ଦାସି ଜଜ୍ଞିରେ ତସ୍ମାଦ୍ ଯଜୁଃ ତସ୍ମାଦଜାୟତ । ୯।

ତସ୍ମାଦଶ୍ୱା ଅଜାୟନ୍ତ ଯେ କେଚୋଭୟାଦତଃ ।
ଗାବୋହ ଯଜ୍ଞିରେ ତସ୍ମାତ୍ ତସ୍ମାଦ୍‌ଜାତା ଅଜାବୟଃ । ୧୦।

ଯତ୍ ପୁରୁଷଂ ବ୍ୟଦଧୁଃ କତିଧା ବ୍ୟକଳ୍ପୟନ୍ ।
ମୁଖଂ କିମସ୍ୟ କୌ ବାହୂ କା ଉରୂପାଦା ଉଚ୍ୟେତେ ।୧୧

ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ୱାହୂ ରାଜନ୍ୟଃ କୃତଃ ।
ଉରୂତଦସ୍ୟ ଯଦ୍‌ବୈଶ୍ୟଃ ପଦ୍ଭ୍ୟାଂ ଶୂଦ୍ରୋ ଅଜାୟତ ।୧୨

ଚନ୍ଦ୍ରମା ମନସୋ ଜାତଃ ଚକ୍ଷୋଃ ସୂର୍ଯ୍ୟୋଽଜାୟତ ।
ମୁଖାଦିନ୍ଦ୍ରଶ୍ଚାଗ୍ନିଶ୍ଚ ପ୍ରାଣାଦ୍ବାୟୁରଜାୟତ । ୧୩

ସୃଷ୍ଟି ସାଧନଯୋଗ୍ୟ ସାଧ୍ୟମାନେ ଏବଂ ଋଷିମାନେ ପୂର୍ବରୁ ଜାତ ଯଜ୍ଞସାଧନଭୂତ ପୁରୁଷକୁ ପ୍ରୋକ୍ଷଣ କରି ମାନସଯଜ୍ଞ ନିଷ୍ପାଦନ କଲେ । ୭

ଏହି ଯଜ୍ଞରୁ ବାୟବ୍ୟ, ଆରଣ୍ୟ ଓ ଗ୍ରାମ୍ୟ ପଶୁ କଲେ ଏବଂ ଏହି ଯଜ୍ଞରୁ ଦଧି ଘୃତ ଜାତ ହେଲେ ।

ଏହି ଯଜ୍ଞରୁ ଋଗ୍, ସାମ ଓ ଛନ୍ଦ ଜାତ ହେଲେ । ସେହିଠାରୁ ଯଜୁ ଜାତ ହେଲେ ।୯

ସେହିଠାରୁ (ଯଜ୍ଞରୁ) ଅଶ୍ୱମାନେ ଜନ୍ମିଲେ ଏବଂ ଯେଉଁ ପଶୁମାନଙ୍କ ଉଭୟ ପାଟିରେ ଦନ୍ତ ଅଛି, ସେମାନେ ଜନ୍ମିଲେ । ସେହିଠାରୁ ଗାଭୀ, ଛାଗ ଓ ମେଷମାନେ ଜାତ ହେଲେ । ୧୦।

ଯେଉଁ ପୁରୁଷକୁ କଳ୍ପନାଦ୍ୱାରା ବିଭାଗ କଲେ, ତାର ମୁଖ କିଏ, ବାହୁ କିଏ, ଉରୁ କିଏ ଏବଂ ପାଦ କିଏ ବୋଲାଯାଏ ?୧୧

ବ୍ରାହ୍ମଣ ଏହାର ମୁଖ ହେଲେ । ରାଜନ୍ୟ ଏହାର ବାହୁ କରାଗଲେ । ଯେ ବୈଶ୍ୟ ସେ ଏହାର ଉରୁ କରାଗଲେ । ଶୂଦ୍ର ପଦ ଦୁଇପଦରୁ ଜାତ ହେଲେ । ୧୨

ଚନ୍ଦ୍ରମା ମନରୁ ଜାତ ହେଲେ । ଚକ୍ଷୁରୁ ସୂର୍ଯ୍ୟ ଜାତ ହେଲେ । ମୁଖରୁ ଇନ୍ଦ୍ର ଓ ଅଗ୍ନିର ପ୍ରାଣରୁ ବାୟୁ ଜାତ ହେଲେ ।୧୩

ପାଠକେ ଦେଖିପାରିବେ ଯେ, ଦଶମ ମନ୍ତ୍ର ଉତ୍ତାରୁ ...ଦଶ ମନ୍ତ୍ରର ପାଠ ସଙ୍ଗତ ଓ ସମୀଚୀନ । ଏକାଦଶ ଓ ...ଦଶ ମନ୍ତ୍ରର ସଙ୍ଗତି ଘଟୁ ନାହିଁ । ଏ ମନ୍ତ୍ର ଯୋଡ଼ିବା ଯୋ ...ମାନଙ୍କୁ ଅସଙ୍ଗତ ବୋଧ ହେଉଅଛି, ତାହା ଆଉ ନୁହେଁ । ...ବେଦବ୍ୟାଖ୍ୟାକର୍ତ୍ତାମାନଙ୍କୁ ମଧ୍ୟ ଅସଙ୍ଗତ ବୋଧ ହୋଇଥିଲା । କିନ୍ତୁ ସେମାନେ ଏହି ମନ୍ତ୍ର ଯୋଡ଼ିକ ସଙ୍ଗତ ବୋଲି ସମର୍ଥନ କରିବାକୁ ଯତ୍ପରୋନାସ୍ତି ଚେଷ୍ଟା କରିଅଛନ୍ତି; ବେଦବ୍ୟାଖ୍ୟାକର୍ତ୍ତା ସାୟନ ଲେଖନ୍ତି 'ପ୍ରଶ୍ନୋତ୍ତରରୂପେଣ ବ୍ରାହ୍ମଣାଦିସୃଷ୍ଟିଂ ବକ୍ତୁଂ ବ୍ରହ୍ମବାଦିନାଂ ପ୍ରଶ୍ନା ଉଚ୍ୟନ୍ତେ'। ଅର୍ଥାତ୍ ପ୍ରଶ୍ନୋତ୍ତରରୂପରେ ବ୍ରହ୍ମଣାଦି ସୃଷ୍ଟି କରି ପ୍ରକାଶ କରିବାକୁ ବ୍ରହ୍ମବାଦୀମାନଙ୍କର ଉକ୍ତ ହୋଇଅଛି । ସାୟନଙ୍କ ମତରେ ପ୍ରଥମଟି ବ୍ରହ୍ମବାଦୀଙ୍କର ପ୍ରଶ୍ନ, ଦ୍ୱିତୀୟଟି ବ୍ରହ୍ମବାଦୀଙ୍କର ଉତ୍ତର । ହେଉ, ମାତ୍ର ସୃଷ୍ଟିବିଲକ୍ଷଣତା ବର୍ଣ୍ଣନାବେଳେ ବ୍ରହ୍ମବାଦିଙ୍କର ଆଉ କୌଣସି ବିଷୟରେ ମନରେ ସନ୍ଦେହାତ୍ମକ ପ୍ରଶ୍ନର ଉଦୟ ହେଲା ନାହିଁ, କେବଳ ବର୍ଣ୍ଣଭେଦଟା ଜାଣିବାପାଇଁ ମନ ଏଡ଼େ ବ୍ୟାକୁଳ ହେଲା କାହିଁକି । ବ୍ରହ୍ମବାଦିମାନେ ଅଧୈର୍ଯ୍ୟ ହୋଇ ଅସମୟରେ ଅସ୍ଥଳରେ ଅସଙ୍ଗତ ପ୍ରଶ୍ନ କରି ବସିଲେ । ସାୟନ ଦୁଇ ପଦରେ ବ୍ରହ୍ମବାଦିମାନଙ୍କ ଅପ୍ରାସଙ୍ଗିକ ପ୍ରଶ୍ନୋତ୍ତରର ସମର୍ଥନ କରନ୍ତି । ସମର୍ଥ ହୋଇଥିବା ପାଠକେ ହୃଦ୍‌ବୋଧ କରିବେ କି ? ଏହି ବର୍ଣ୍ଣଭେଦ ଓ ବର୍ଣ୍ଣର ଶ୍ରେଷ୍ଠାଶ୍ରେଷ୍ଠ ଜ୍ଞାନ ପୂର୍ବରୁ ନ ଥିଲେ, ଏପରି ପ୍ରଶ୍ନ କରିବା କଦାପି ସମ୍ଭବ ନୁହେଁ । ସୁତରାଂ ଅନାୟାସରେ କୁହାଯାଇପାରେ ଯେ, ଏ ସୂକ୍ତ ଈଶ୍ୱରନିଶ୍ୱସିତ ନୁହେ, ମାତ୍ର ଜାତିଭେଦପ୍ରଥା ପ୍ରଚଳନ ଉତ୍ତାରୁ ଏହା ରଚିତ ହୋଇ ଋଗ୍‌ବେଦରେ ଯୋଗ କରା ହୋଇଅଛି ।

ଏଥିରେ ତିନି ଗୋଟି କ୍ରିୟା ପଦ ଅଛି; ଅସୀତ୍, କୃତ ଓ ଅଜାୟତ । କାହିଁକି ? ପ୍ରତ୍ୟେକଙ୍କ ପାଇଁ କି ଆସୀତ୍ କ୍ରିୟା ବ୍ୟବହାର କଲେ ଅସଙ୍ଗତ ଥିଲା ? ଏଥିର ତାତ୍ପର୍ଯ୍ୟ ଅଛି । ଆଦିରେ ଏକ ବର୍ଣ୍ଣ ଥିଲେ, ଯେଉଁମାନେ ପୂର୍ବ ପ୍ରଥାନୁସାରେ ଯଜ୍ଞ ପାଇଁ ନିଯୁକ୍ତ ରହିଲେ, ସେ ବ୍ରାହ୍ମଣ ହେଲେ । ଯାହା ଥିଲେ, ତାହା ରହିଲେ, ଏଣୁ ଆସୀତ୍ ବ୍ୟବହାର ହୋଇଅଛି । ସେହି ଆର୍ଯ୍ୟ ଭିତରୁ ଯେଉଁମାନେ ନୂଆ ବୃତ୍ତି ଓ ବ୍ୟବସାୟ ଆରମ୍ଭ କଲେ, ସେମାନେ କ୍ଷତ୍ରିୟ ଓ ବୈଶ୍ୟ ଆଖ୍ୟା ନେଲେ; ଏଣୁ କରାଗଲେ ବା ନୂତନ ବର୍ଣ୍ଣ କରାଗଲେ । ଶୂଦ୍ର ଜାତ ହେଲେ । ଯେଉଁମାନେ ଆର୍ଯ୍ୟ ଭିତରୁ ଅକର୍ମଣ୍ୟ ଓ ଅଳସ ହୋଇ ସେବାବୃତ୍ତି କଲେ, ସେମାନେ ଏବଂ ଯେଉଁ ଆଦିମବାସୀ ପଦାନତ ହୋଇ ସେବାନିରତ ହେଲେ, ସେମାନେ ଶୂଦ୍ର ହୋଇ ଜାତ ହେଲେ । ମିଶ୍ର ବର୍ଣ୍ଣ ଏମାନେ ଆର୍ଯ୍ୟଙ୍କର ତିଆରି ଜାତି, ଏମାନଙ୍କର ଜନ୍ମ ଏବଂ ଯୋଗ ବରାବର ଚାଲିବା ସମ୍ଭବ; ଏଣୁ ଜନ୍ମ ହେବା କ୍ରିୟା ପ୍ରଯୁକ୍ତ ହୋଇଅଛି ।

ପୁରୁଷସୂକ୍ତ ଯଜୁ ଓ ଅଥର୍ବ ବେଦରେ ଅଛି । ପ୍ରତ୍ୟେକ ବେଦରେ ମନ୍ତ୍ରସଂଖ୍ୟା ଅଳ୍ପ ବେଶି ଏବଂ ମନ୍ତ୍ର ଇତସ୍ତତଃ ହୋଇଥିବାର ଦେଖାଯାଏ । ଋଗ୍‌ବେଦର ଏକାଦଶ ଓ ଦ୍ୱାଦଶ ଯଜୁର୍ବେଦରେ ଉଦ୍ଧୃତ ହୋଇଥିଲେ ମଧ୍ୟ ଅଥର୍ବ ବେଦରେ କିଞ୍ଚିତ୍ ପାର୍ଥକ୍ୟ ଅଛି, ଯଥା– ମନ୍ତ୍ରପାଠ ଠିକ୍‌ରୂପେ

ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍‌ବାହୂ ରାଜନ୍ୟୋ ଅଭବତ୍ ।
ମଧ୍ୟଂ ତଦସ୍ୟ ଯଦ୍‌ବୈଶ୍ୟଃ ପଦ୍ଭ୍ୟାଂ ଶୂଦ୍ରୋ
ଅଜାୟତ । ଅ. ବେ. ୧୯ ।୬ । ୭

ଜାତିର ଅନ୍ନ ଉପାର୍ଜନକାରିଗଣ ବୈଶ୍ୟ । ବାଜସନେୟ ସଂହିତାରେ ପୁଣି ବର୍ଣ୍ଣସୃଷ୍ଟି ସମ୍ବନ୍ଧରେ ଗୋଟିଏ ଭିନ୍ନ ମତ ଅଛି । ଗୋଟାଏ ବେଦ ମଧ୍ୟରେ ଦୁଇ ମତ ଦେଖିଲେ ଗୋଟିଏ ମତ କୃତ୍ରିମ ବୋଲି ବିବେଚିତ ହେବା ସ୍ୱାଭାବିକ । ଦ୍ୱିତୀୟ ମତଟି ସଂକ୍ଷେପରେ ଦେଖାଯାଉ ।

ତିସୃଭିରସ୍ତୁବତ ବ୍ରହ୍ମାସୃଜ୍ୟତ
ବ୍ରହ୍ମଣସ୍ପତିରଧିପତିରାସୀତ୍ । ବା : ସ : ୧୪ ।୨୮

ପ୍ରାଣ, ଉଦାନ, ବ୍ୟାନଦ୍ୱାରା ସ୍ତବ କରିବାକୁ ବ୍ରାହ୍ମଣ ସୃଷ୍ଟି ହେଲେ— ବ୍ରାହ୍ମଣସ୍ପତି ସ୍ୱାମୀ ହେଲେ ।

ପଞ୍ଚଦଶଭିରସ୍ତୁବତ କ୍ଷତ୍ରମସୃଜ୍ୟତେ-
ନ୍ଦ୍ରୋଽଧିପତିରାସୀତ୍ । ବା : ସ : ୧୪ ।୨୯

ପଞ୍ଚଦଶଦ୍ୱାରା ଅର୍ଥାତ୍ ହସ୍ତର ଦଶ ଅଙ୍ଗୁଳି, ଦୁଇ କର, ଦୁଇ ବାହୁ, ନାଭିର ଊର୍ଦ୍ଧ୍ୱ ଭାଗଦ୍ୱାରା ସ୍ତବ କରିବାରୁ କ୍ଷତ୍ର ବା କ୍ଷତ୍ରିୟ ସୃଷ୍ଟି ହେଲେ । ଐଶ୍ୱର୍ଯ୍ୟଶାଳୀ ଇନ୍ଦ୍ର ଏମାନଙ୍କର ଅଧିପତି ।

ନବଦଶଭିରସ୍ତୁବତ ଶୂଦ୍ରାର୍ଯ୍ୟା
ବସୃଜ୍ୟେତାମହୋରାତ୍ରେ ଅଧିପତ୍ନୀ ଆସ୍ତାଂ ।
ବା: ସା: ୧୪ ।୩୦

ଉନବିଂଶଦ୍ୱାରା ଅର୍ଥାତ୍ ଦଶ ଅଙ୍ଗୁଳି, ଊର୍ଦ୍ଧ୍ୱ ଓ ଅଧସ୍ଥ ଛିଦ୍ରରୂପ ନବପ୍ରାଣଦ୍ୱାରା ସ୍ତୁତି କରିବାରୁ ଶୂଦ୍ର ଓ ବୈଶ୍ୟ ସୃଷ୍ଟି ହେଲେ । ଅହୋରାତ୍ର ଏହି ଦୁହିଁଙ୍କର ଅଧିପତି ।

ପୁରୁଷସୂକ୍ତ ଛଡ଼ା ଅଥର୍ବ ବେଦରେ ଗୋଟିଏ ମନ୍ତ୍ରରୁ ଜଣାଯାଏ ଯେ, ବ୍ରାତ୍ୟଠାରୁ ବ୍ରାହ୍ମଣ କ୍ଷତ୍ରିୟଙ୍କର ଜନ୍ମ । ଅଧୁନା ବ୍ରାତ୍ୟ ହିନ୍ଦୁମାନଙ୍କର ନିତାନ୍ତ ଘୃଣ୍ୟ । ତା'ଠାରୁ ବ୍ରାହ୍ମଣ କ୍ଷତ୍ରିୟର ଜନ୍ମକଥା ଶୁଣିଲେ ବ୍ରାହ୍ମଣ କ୍ଷତ୍ରିୟ ଚମକି ଉଠିବେ ।

ଚମକିବାର କଥା, ମାତ୍ର ଉପାୟ କ'ଣ ? ଅଛି ତ । ତେବେ ଅଥର୍ବ ବେଦ ହିନ୍ଦୁର ଘୃଣାର ସାମଗ୍ରୀ; ଏଣୁ ଅଥର୍ବ ବେଦରେ ଅଛି, ଏ କଥା ଶୁଣିଲେ କିଞ୍ଚିତ୍ ଆଶ୍ୱସ୍ତ ହେବାର କଥା ।

ତଦାସ୍ୟୈବ ବିଦ୍ୱାନ୍ ବ୍ରାତ୍ୟୋ ରାଜ୍ଞୋଽତିଥିଗୃହାଗଚ୍ଛେତ୍ ॥ ଶ୍ରେୟଽସମେନମାତ୍ମନୋ ମାନୟଽଥା କ୍ଷତ୍ରିୟ ନାବୃଶ୍ଚତେ ତଥା ରାଷ୍ଟ୍ରାୟନା ବୃଶ୍ଚତେ ॥ ଅତୋ ବୈ ବ୍ରହ୍ମ ଚ କ୍ଷତ୍ରଂ ରୋଦତିଷ୍ଠତାଂ ।

ଅ : ବେ. ୧୫ ।୧୦।୧୨।୩

ଯେଉଁ ରାଜାର ଗୃହରେ ଏତାଦୃଶ ବିଦ୍ୱାନ୍ ବ୍ରାତ୍ୟ ଅତିଥିରୂପରେ ଉପସ୍ଥିତ ହେବେ, ଏହା ହେଉଅଛି ଶ୍ରେୟ ଯେ, ତାହାକୁ ନିଜ ଅପେକ୍ଷା ଅଧିକ ସମ୍ମାନ କରାଯିବ । ଏଥିରେ କ୍ଷତ୍ରିୟତ୍ୱ ନଷ୍ଟ ହୁଏ ନାହିଁ । ରାଜ୍ୟର ହାନି ହୁଏ ନାହିଁ । ଏହାଠାରୁ (ବ୍ରାତ୍ୟଠାରୁ) ବ୍ରାହ୍ମଣ କ୍ଷତ୍ରିୟ ଉତ୍ଥାନ ହୋଇଥିଲେ ।

ଅଥର୍ବ ବେଦର ପଞ୍ଚଦଶ କାଣ୍ଡକୁ ବ୍ରାତ୍ୟସୂକ୍ତ ବୋଇଲେ ଚଳେ । ଏ ସୂକ୍ତଟି ବ୍ରାତ୍ୟ ମହିମାରେ ପରିପୂର୍ଣ୍ଣ । ଅଥର୍ବ ବେଦରେ ପୁରୁଷସୂକ୍ତ ମଧ ଅଛି । ଉଭୟକୁ ମିଳାଇ ଦେଖିଲେ ପୁରୁଷ ବର୍ଣ୍ଣନା ଓ ବ୍ରାତ୍ୟ ବର୍ଣ୍ଣନା ମଧ୍ୟରେ କମ୍ ପାର୍ଥକ୍ୟ ପରିଲକ୍ଷିତ ହେବ ।

ଋଗ୍ ଯଜୁ ଅଥର୍ବ ହେଲେ ପୁରୁଷସୂକ୍ତ ଏବଂ ଅଥର୍ବ ବେଦର ବ୍ରାତ୍ୟସୂକ୍ତ ଭିତରେ ଅନେକ ରହସ୍ୟ ଓ ଆଲୋଚନାର ବିଷୟ ଥିଲେ ମଧ ପାଠକମାନଙ୍କର ଧୈର୍ଯ୍ୟଚ୍ୟୁତି ଯାଏ ପ୍ରବନ୍ଧ ବଢ଼ାଇବା ସଙ୍ଗତ ନୁହେଁ, ତଥାପି ସଂକ୍ଷେପରେ ଦୁଇ ଚାରି କଥା ନ ଲେଖିଲେ ଆଲୋଚନାର ଅଙ୍ଗହାନି ହେବ ।

ଋଗ୍‌ବେଦରେ ଚଉଦ ଗୋଟି ପୁରୁଷ ଶବ୍ଦ ଅଛି । ପୁରୁଷସୂକ୍ତରେ କେବଳ ନଅ ଗୋଟି, ଅନ୍ୟାନ୍ୟ ମଣ୍ଡଳରେ ପାଞ୍ଚ ଗୋଟି । ପୁରୁଷ ଅର୍ଥ ଯେ ମନୁଷ୍ୟ ବା ମନୁଷ୍ୟଜାତି, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ସ୍ଥାନବିଶେଷରେ ଏହାର ଅର୍ଥ ଜଟିଳ କରିବାର ସୁବିଧା ଟୀକାକାରମାନଙ୍କୁ ମିଳିଅଛି । ପରବର୍ତ୍ତୀ ଶାସ୍ତ୍ରରଚକମାନେ ଏବଂ ନୈୟାୟିକମାନେ ପୁରୁଷ ଅର୍ଥ ଈଶ୍ୱର କରିଥିବା ହେତୁରୁ ସାୟନାଦି ବେଦବ୍ୟାଖ୍ୟାକର୍ତ୍ତାମାନେ ପୁରୁଷସୂକ୍ତର ପ୍ରଥମ କେତେଟା ପୁରୁଷ ଶବ୍ଦର ଅର୍ଥ ସର୍ବପ୍ରାଣିସମଷ୍ଟିରୂପ ବ୍ରହ୍ମାଣ୍ଡଦେହ ବିରାଡ଼ାଖ୍ୟ ପୁରୁଷ ବୋଲି ଗୋଟାଏ ଲମ୍ବା ଭୀତିପ୍ରଦ ଟୀକା ଝାଡ଼ିଅଛନ୍ତି । କେତେକ ସ୍ଥଳରେ ଏ ଅର୍ଥ ସଙ୍ଗତ ହେଉ, ମାତ୍ର 'ପୁରୁଷ ବ୍ୟଦଧୁଃ କତିଧା ବ୍ୟକଳ୍ପୟନ୍' । ଏ ସ୍ଥଳରେ ପୁରୁଷକୁ ଭାଗ କଲେ ଅର୍ଥାତ୍ ମନୁଷ୍ୟ ଏବା ଆର୍ଯ୍ୟଙ୍କୁ ଭାଗ କଲେ, ଏହି ଅର୍ଥ ସଙ୍ଗତ ମାତ୍ର ଜାତିଟା ଈଶ୍ୱରସୃଷ୍ଟି ବୋଲି ପ୍ରବାଦ [illegible] କଲେ ଯେ ଲୋକେ ମାନିବେ ନାହିଁ । ଏଣୁ ପୁରୁଷ ଅର୍ଥ ଈଶ୍ୱର ବୋଲିବାକୁ ସାୟନାଦି ବାଧ୍ୟ ।

ବ୍ରାତ୍ୟ ସମ୍ବନ୍ଧରେ ଆଉ ଦୁଇ ଚାରି କଥା କହିବାର ଅଛି । ବ୍ରାତ୍ୟ ବୈଦିକ ଶବ୍ଦ, ମାତ୍ର ଋଗ୍‌ବେଦରେ ନାହିଁ । ବ୍ରାତ୍ୟ କିଏ ? ଏ ଘେନି ପ୍ରାଚ୍ୟ ଓ ପାଶ୍ଚାତ୍ୟ ପଣ୍ଡିତଗଣଙ୍କ ମଧ୍ୟରେ ମତ ବିରୋଧ ଅଛି । ବିବେଚନା କଲେ ବ୍ରାତ୍ୟ ସମ୍ବନ୍ଧରେ ଆଲୋଚନା ନିମନ୍ତେ କେହି ଶୁଭଦୃଷ୍ଟି ଦେଇ ନାହାନ୍ତି । ଯାହା ହେଉ, ଆମ୍ଭେମାନେ ବେଦ, ବ୍ରାହ୍ମଣ ଓ ଉପନିବେଶ ପ୍ରଭୃତି ଆଲୋଚନା କରି ଯେଉଁ ମତ ପୋଷଣ କରିଅଛୁଁ, ତାହା ପ୍ରକାଶ ନ କରି ରହିପାରିଲୁ ନାହିଁ । ଏଥି ନିମନ୍ତେ ଆମ୍ଭେମାନେ ଦାରୁଣୟୀ ବେଦ ଲେଖିଲେ ପୁରୁଷଠାରୁ ଚାରି ବର୍ଷ ଉତ୍ପତ୍ତି । ଅଥର୍ବ ବେଦ ଲେଖିଲେ ବ୍ରାତ୍ୟଠାରୁ ବ୍ରାହ୍ମଣ କ୍ଷତ୍ରିୟ ଉତ୍ପନ୍ନ ହୋଇଥିଲେ । ଉଭୟ ବେଦବାକ୍ୟକୁ ଆମ୍ଭେମାନେ ମିଥ୍ୟା ବୋଲି କହି ନ ପାରୁଁ । ଏଣୁ ବ୍ରାତ୍ୟ ଓ ପୁରୁଷ ଏକ ଉଭୟ ଶବ୍ଦ ଆର୍ଯ୍ୟବାଚକ । ଏହି ବିରାଟ ଜାତି ବିସ୍ତୃତ ଦେଶବ୍ୟାପୀ । ଯେଉଁ ଆର୍ଯ୍ୟଭାଗ ଭାରତକୁ ଆସି ଏଠାରେ ବସବାସ କରି ନବ ଧର୍ମ ଓ ଜାତୀୟ ସଂସ୍କାର କଲେ, ସେମାନେ ଦ୍ୱିଜ ଆଖ୍ୟା ଧାରଣ କଲେ । ସେହି ଆର୍ଯ୍ୟ ମଧ୍ୟରୁ ଯେଉଁମାନେ ନବ ସଂସ୍କାର ଗ୍ରହଣ କଲେ ନାହିଁ, ସେମାନେ ବ୍ରାତ୍ୟ ହୋଇ ରହିଲେ । ସଂସ୍କୃତ ଆର୍ଯ୍ୟ ଦ୍ୱିଜ, ଅସଂସ୍କୃତ ଆର୍ଯ୍ୟ ବିରାଟ । କିନ୍ତୁ ଏ ସଂସ୍କାର ଋଗ୍‌ବେଦ ସମୟରେ ହୋଇ ନାହିଁ, ପରେ ହୋଇଅଛି; ଏଣୁ ଅଥର୍ବ ବେଦରେ ଏବଂ ପରବର୍ତ୍ତୀ ବୈଦିକ ଗ୍ରନ୍ଥରେ ଦ୍ୱିଜ ଶବ୍ଦର ଉଲ୍ଲେଖ ପାଉଁ । ଏ ମତ ଆମ୍ଭମାନଙ୍କର କପୋଳକଳ୍ପିତ ନୁହେଁ । ଗୋଟାକେତେ ପ୍ରମାଣଦ୍ୱାରା ଏଥିର ଯାଥାର୍ଥ୍ୟ ପ୍ରକାଶିତ ହେବ ।

କୌଷୀତକୀ ତାଣ୍ଡ୍ୟ ବ୍ରାହ୍ମଣ ଓ ଅନ୍ୟାନ୍ୟ ବ୍ରାହ୍ମଣ ଓ ଶ୍ରୌତ ଗ୍ରନ୍ଥରୁ ପ୍ରକାଶ ପାଏ ଯେ, ବ୍ରାତ୍ୟମାନଙ୍କର ବେଶଭୂଷା ଆର୍ଯ୍ୟମାନଙ୍କ ବେଶଭୂଷାଠାରୁ ପୃଥକ୍ ଥିଲା । ବ୍ରାତ୍ୟମାନଙ୍କର ଉଚ୍ଚାରଣରେ ଦୋଷ ଥିଲା । ବ୍ରାତ୍ୟମାନେ ବେଦମନ୍ତ୍ର ଶିକ୍ଷା କରୁ ନ ଥିଲେ । ଇତ୍ୟାଦି । ମାତ୍ର ଯେଉଁମାନେ ବେଦ ଶିକ୍ଷା କରୁଥିଲେ, ସେମାନେ ସ୍ୱର୍ଗକୁ ଯାଇ ପାରୁଥିଲେ । ଏମାନଙ୍କ ପ୍ରତି ବେଦପାଠ ଶୂଦ୍ର ବା ନିଷାଦଙ୍କ ପରି ନିଷିଦ୍ଧ ନ ଥିଲା । ଏହି ବର୍ଣ୍ଣନାରୁ ସ୍ପଷ୍ଟ ଜଣା ଯାଉଅଛି ଯେ, ଆର୍ଯ୍ୟଶାଖାରୁ ବିଚ୍ଛିନ୍ନ ଜାତି ଯେଉଁମାନେ ବୈଦିକ ସଂସ୍କାରର ପକ୍ଷପାତୀ ନ ଥିଲେ ଓ ବୈଦିକ ସଂସ୍କାର ଗ୍ରହଣ ନ କରି ପୂର୍ବ ଆଚାର ବ୍ୟବହାର ରକ୍ଷା

କରିଥିଲେ, ସେହିମାନେ ବ୍ରାତ୍ୟ । ମାତ୍ର ସେମାନେ ସଂସ୍କାର ଗ୍ରହଣ କରିବା ପ୍ରତି ବାଧା ନ ଥିଲା । ସେମାନେ ପ୍ରାଗ୍‌ବୈଦିକ ଭାଷା ବ୍ୟବହାର କରୁଥିଲେ,ଏଣୁ ସେ ଭାଷା ଭାରତୀୟ ଆର୍ଯ୍ୟଙ୍କ ପ୍ରତି ଅସ୍ପଷ୍ଟ ଥିଲା ।

ବ୍ରାତ୍ୟ ଶବ୍ଦ ପୁରାଣ ଯୁଗରେ ଏବଂ ଏବେ ଯେପରି ନିନ୍ଦନୀୟ ହୋଇଅଛି, ବ୍ରାହ୍ମଣ ଉପନିଷଦ୍ ଯୁଗରେ ସେପରି ହୋଇ ନ ଥିଲା । ବରଂ ସମ୍ମାନାର୍ହ ଓ ଶ୍ରେଷ୍ଠାର୍ଥବୋଧକ ଥିଲା । ପ୍ରଶ୍ନୋପନିଷଦର ଦ୍ୱିତୀୟ ପ୍ରଶ୍ନଟି ଗୋଟିଏ ସୁନ୍ଦର ଉପଦେଶଗର୍ଭକ ଉପାଖ୍ୟାନ । ଏଠାରେ ପ୍ରକାଶ କରିବାର ତାଦୃଶ ପ୍ରୟୋଜନ ନ ଥିଲେ ମଧ କେବଳ ବ୍ରାତ୍ୟ ଶବ୍ଦର ପ୍ରାଚୀନ ପ୍ରୟୋଗ ଦେଖାଇବାକୁ ତାହା ଉଦ୍ଧୃତ କରାଗଲା । ଭାର୍ଗବ ପିପ୍ପଳାଦଙ୍କୁ ପ୍ରଶ୍ନ କଲେ ଯେ, ଏହି ଶରୀରକୁ କେତେ ଜଣ ଦେବତା (ଇନ୍ଦ୍ରିୟାଦି) ରକ୍ଷା କରନ୍ତି ଏବଂ ସେଥି ମଧ୍ୟରୁ ଶ୍ରେଷ୍ଠ କିଏ ? ଏଥିର ଉତ୍ତରରେ ପିପ୍ପଳାଦ କହିଲେ ଯେ, କର୍ମେନ୍ଦ୍ରିୟସମୂହ, ଜ୍ଞାନେନ୍ଦ୍ରିୟସମୂହ ଓ ଅନ୍ତଃକରଣ ଶରୀର ରକ୍ଷା କରନ୍ତି । ପ୍ରାଣ ସର୍ବଶ୍ରେଷ୍ଠ । ପ୍ରାଣର ଶ୍ରେଷ୍ଠତ୍ୱ ଦେଖାଇବାକୁ ପିପ୍ପଳାଦ କହିଲେ, କର୍ମେନ୍ଦ୍ରିୟ ପ୍ରଭୃତି ଅଭିମାନ କରି କହିଲେ ଯେ, ସ୍ତମ୍ଭ ଯେପରି ପ୍ରସାଦକୁ ଧରି ରଖିଥାଏ, ସେହିପରି ଦେହାଦି ସମଷ୍ଟି ଆମ୍ଭମାନଙ୍କଦ୍ୱାରା ଧୃତ ହୋଇଅଛି । ଅର୍ଥାତ୍ ଏମାନେ ପ୍ରାଣର ଶ୍ରେଷ୍ଠତ୍ୱ ସ୍ୱୀକାର କଲେ ନାହିଁ । ପ୍ରାଣ ଅଭିମାନରେ ଉପରକୁ ଉଠିବାକୁ ବା ଶରୀର ତ୍ୟାଗ କରିବାକୁ ଚେଷ୍ଟା କଲା । ସେତେବେଳେ ସମସ୍ତ ଇନ୍ଦ୍ରିୟ ଉତ୍‌କ୍ରାନ୍ତ ହେବାକୁ ଲାଗିଲେ । ପ୍ରାଣ ସ୍ଥିର ହେବାରୁ ସମସ୍ତେ ସ୍ଥିର ହେଲେ । ତହୁଁ ଇନ୍ଦ୍ରିୟାଦି ପ୍ରାଣର ଶ୍ରେଷ୍ଠତ୍ୱ ବୁଝି ପ୍ରାଣର ସ୍ତବ କରିବାକୁ ଲାଗିଲେ । ଏହି ସ୍ତବ ମଧ୍ୟରୁ ନିମ୍ନୋଦ୍ଧୃତଟି ଗୋଟିଏ :—

ବ୍ରାତ୍ୟସ୍ତ୍ୱଂ ପ୍ରାଣୈକ ଋଷିରତ୍ତା
ବିଶ୍ୱସ୍ୟ ସତ୍‌ପତିଃ ।
ବୟମାଦ୍ୟସ୍ୟ ଦାତାରଃ ପିତା ତ୍ୱଂ
ମାତାରିଶ୍ୱନଃ ।

ହେ ପ୍ରାଣ, ତୁମ୍ଭେ ବ୍ରାତ୍ୟ, ତୁମ୍ଭେ ଏକର୍ଷି ଭୋକ୍ତା ଜଗତର ଉତ୍ତମ ପତି । ଆମ୍ଭେମାନେ ତୁମ୍ଭର ଭକ୍ଷଣୀୟ ଦ୍ରବ୍ୟଦାତା । ତୁମ୍ଭେ ବାୟୁର ପିତା । (ସମସ୍ତ ଜଗତର ପିତା) ।

ଏଠାରେ ପ୍ରାଣକୁ ବ୍ରାତ୍ୟ ବୋଲି ସମ୍ବୋଧନ କରାଯାଇଅଛି । ଜୀବର ଆଧାରଭୂତ ପ୍ରାଣକୁ ବ୍ରାତ୍ୟ ଶବ୍ଦଦ୍ୱାରା ସମ୍ବୋଧନ କରାଯାଇଥିବା ହେତୁରୁ ବ୍ରାତ୍ୟ ଶବ୍ଦର ଶ୍ରେଷ୍ଠତ୍ୱ ପ୍ରତିପାଦନ କରାଯାଇଅଛି । ସେ ଯୁଗରେ ବ୍ରାତ୍ୟର ପୌରାଣିକ ଯୁଗର କଦର୍ଯ୍ୟ ଅର୍ଥ ଥିଲେ ପ୍ରାଣକୁ ଏ ଶବ୍ଦଦ୍ୱାରା ସମ୍ବୋଧନ କରାଯାଇ ନ ଥାନ୍ତା । ପ୍ରାଣ ଯେପରି ଇନ୍ଦ୍ରିୟାଦି ଅପେକ୍ଷା ଶ୍ରେଷ୍ଠ ଏବଂ ସମସ୍ତଙ୍କର ପିତା, ବ୍ରାତ୍ୟ ମଧ ସମସ୍ତଙ୍କ ଅପେକ୍ଷା ଶ୍ରେଷ୍ଠ ଓ ଦ୍ୱିଜମାନଙ୍କର ପିତା । ବ୍ରାତ୍ୟ ଶବ୍ଦର ବ୍ୟୁତ୍ପତ୍ତି ଶଙ୍କରାଚାର୍ଯ୍ୟ କରିଅଛନ୍ତି— ବ୍ରାତ୍ୟଃ ପ୍ରଥମ ଜତ୍ୱାଦନ୍ୟସ୍ୟ ସଂସ୍କର୍ତ୍ତୁରଭାବାଦସଂସ୍କୃତଃ । ସର୍ବ ପ୍ରଥମରୁ ଜନ୍ମ ହେତୁରୁ ଅନ୍ୟ କେହି ସଂସ୍କାରକାରକ ନ ଥିଲେ ଏଣୁ ଅସଂସ୍କୃତ । ସଂସ୍କାରପଦ୍ଧତି ପ୍ରଚଳିତ ହେବା ପୂର୍ବରୁ ଯାହାର ଜନ୍ମ । ଏଥିରୁ ଅନୁମାନ କରିବା ଅସଙ୍ଗତ ନୁହେଁ ଯେ, ଆଦି ଜାତିଠାରୁ ବିଚ୍ଛିନ୍ନ ହୋଇ ଆର୍ଯ୍ୟଗଣ ସଂସ୍କୃତ ହେଲେ ଓ ଦ୍ୱିଜ ଆଖ୍ୟା ପାଇଲେ । ଆଦି ଜାତିର ନାମ ବ୍ରାତ୍ୟ ଏବଂ ଦ୍ୱିଜମାନଙ୍କର ପୂଜନୀୟ ।

ଆପାତତଃ ବ୍ରାତ୍ୟ ସହିତ ବ୍ରତର (ପଇତାର) ସମ୍ବନ୍ଧ ଥିବାର ଲୋକେ ଅନୁମାନ କରନ୍ତି । ମାତ୍ର ବ୍ରତ ସହିତ ବ୍ରାତ୍ୟର କିଛି ହିଁ ସମ୍ବନ୍ଧ ନାହିଁ । ବୈଦିକ କାଳରେ ବ୍ରତର (ପଇତାର) ସୃଷ୍ଟି ହୋଇ ନ ଥିଲା । ବୈଦିକ ଯୁଗ ତୁଳନାରେ ଏ ସଂସ୍କାର ଅର୍ବାଚୀନ ବୋଇଲେ ଚଳେ । ଋଗ୍‌ବେଦରେ ବ୍ରତ ବା ପଇତାର ନାମ ଗନ୍ଧ ନାହିଁ । ବ୍ରତ ପଇତାର ନାମ ତ ତେଣେ ଥାଉ, ଉପବୀତ ଓ ଯଜ୍ଞୋପବୀତର ନାମ ମଧ ନାହିଁ । ଏଥିରୁ କି ସ୍ପଷ୍ଟ ଜଣାଯାଉ ନାହିଁ ଯେ, ଋଗ୍‌ବେଦ ରଚନା ପୂର୍ବରୁ ଓ ଋଗ୍‌ବେଦ ରଚନାବେଳେ ଆର୍ଯ୍ୟମାନଙ୍କ ମଧ୍ୟରେ ଯଜ୍ଞୋପବୀତ ଧାରଣ କରିବାର ବିଧି ନ ଥିଲା । ଯଜ୍ଞୋପବୀତ ଧାରଣ କଲା ଦିନରୁ ଆର୍ଯ୍ୟଗଣ ଦ୍ୱିଜ ; ଏ ସଂସ୍କାର ବ୍ରାହ୍ମଣ ଯୁଗରେ ବା ତତ୍ ପୂର୍ବେ ପ୍ରଚଳିତ ହେଲା । ସେତେବେଳେ ମଧ ସର୍ବଦା ପଇତା ଧାରଣ କରିବାର ବିଧି ଥିବାର ଜଣାପଡ଼େ ନାହିଁ କେବଳ ଯଜ୍ଞ କଲାବେଳେ ଉପବୀତ ଧାରଣ କରୁଥିଲେ । ଯଜ୍ଞୋପବୀତ ଶବ୍ଦ ପ୍ରଥମେ ଶତପଥ ବ୍ରାହ୍ମଣରେ ଦୃଷ୍ଟିଗୋଚର ହୁଏ ।

''ଦେବା ଯଜ୍ଞୋପବୀତିନୋ ଭୂତ୍ୱା ।''

ଦେବତାମାନେ ଯଜ୍ଞୋପବୀତ ଗ୍ରହଣ କରି ଇତ୍ୟାଦି ।

ତୈତ୍ତିରୀୟ ବ୍ରାହ୍ମଣରୁ ମଧ ପ୍ରମାଣ ମିଳେ ଯେ, ଯଜ୍ଞ କଲାବେଳେ କେବଳ ଉପବୀତ ଧାରଣ କରାଯାଉଥିଲା । ଦ୍ୱିଜାତିମାନଙ୍କର ଯଜ୍ଞ କଲାବେଳେ ଯେଉଁ ଉପବୀତ ଗ୍ରହଣର ପ୍ରଥା ଥିଲା, ତାହା କାଳକ୍ରମେ ସର୍ବଦା ସ୍କନ୍ଧରେ ରହି ଯଜ୍ଞକର୍ତ୍ତା

ଜାତିର ପରିଚାୟକ ହେଲା । ଯଜ୍ଞୋପବୀତ ବୋଇଲେ ପୂର୍ବେ ବାସ ଏବଂ ଅଜୀନକୁ ବୁଝାଉଥିଲା । ଯଜ୍ଞ ବା କୌଣସି ମାଙ୍ଗଳିକ କାର୍ଯ୍ୟ କରିବାକୁ ହେଲେ ବାମସ୍କନ୍ଧୋ ପରି ଉପବୀତ ଅର୍ଥାତ୍ ବାସ ବା ଅଜିନ ପକାଇ କାର୍ଯ୍ୟ କରିବାର ବିଧି । ଉତ୍ତରୀୟର ଅଭାବ ଦୂର କରିବା ଅଭିପ୍ରାୟରେ ଯଜ୍ଞୋପବୀତର ସୃଷ୍ଟି ଉତ୍ତରୀୟ ଅଭାବରେ ଶ୍ରୌତ କାର୍ଯ୍ୟ ଅସିଦ୍ଧ। ଉତ୍ତରୀୟ ଅଥଚ ଶୁଦ୍ଧ ଉତ୍ତରୀୟ ସର୍ବଦା ମିଳିବା ସମ୍ଭବପର ନୁହେଁ, ଏଣୁ ଗୋଟିଏ ପ୍ରକାର ଉତ୍ତରୀୟ ସୃଷ୍ଟିର ପ୍ରୟୋଜନ ହୋଇପଡ଼ିଲା । ଯାହା ସର୍ବଦା ପ୍ରାପ୍ତବ୍ୟ ଅଥଚ ଶୁଦ୍ଧପୂତ । ଯଜ୍ଞଦ୍ୱାରା ପୂତ ଯେଉଁ ଉପବୀତ ବା ଉତ୍ତରୀୟ, ତାହାର ନାମ ହେଲା ଯଜ୍ଞୋପବୀତ ଉତ୍ତରୀୟର ଅଭାବ ପୂରଣକାରୀ ଉପବୀତ କ୍ରମେ ପଇତା ଓ ବ୍ରତର ନାମ ଧାରଣ କଲା । ଏହା ଗ୍ରହଣ କରିବାର ବିଧି ବ୍ୟବସ୍ଥା, ଖର୍ଚ୍ଚପତ୍ର ପବିତ୍ରତା ନ କଲେ ଦୋଷ, ପ୍ରାୟଶ୍ଚିତ୍ତ ଇତ୍ୟାଦିର ଅନେକ ଶାସ୍ତ୍ର ଆମ୍ଭେମାନେ ଦେଖିବାକୁ ପାଉଁ ।

ଏହି ପବିତ୍ର ସୂତ୍ର ବ୍ରାତ୍ୟ, ଶୂଦ୍ର, ଦାସ ବା ଭାରତୀୟ ଆଦିମବାସୀ ଏମନ୍ତ କି ପୃଥିବୀର ସମସ୍ତ ଜାତିଙ୍କଠାରୁ ଭାରତୀୟ ଆର୍ଯ୍ୟ ବା ଦ୍ୱିଜଙ୍କୁ ସମ୍ପୂର୍ଣ୍ଣ ପୃଥକ୍ କରି ରଖିଲା ।

॥ ୨ ॥

ଯଜ୍ଞସୂତ୍ରଦ୍ୱାରା ଆର୍ଯ୍ୟମାନଙ୍କର ଦ୍ୱିଜାତି ପ୍ରାପ୍ତି ହେଲା ଏବଂ ଅନ୍ୟାନ୍ୟ ସମସ୍ତ ଜାତିଙ୍କଠାରୁ, ଏମନ୍ତ କି, ଶୂଦ୍ରଠାରୁ ମଧ ସେମାନଙ୍କର ପାର୍ଥକ୍ୟ ଘଟିଲା । ମାତ୍ର ଦ୍ୱିଜମାନଙ୍କ ମଧରେ କିଏ ଶ୍ରେଷ୍ଠ କିଏ ଅଶ୍ରେଷ୍ଠ, ଏଥିର ନିଦର୍ଶନ ଆମ୍ଭେମାନେ ଏତେବେଳଯାଏ ପାଇ ନାହୁଁ । ବାହୁଲ୍ୟ ଭୟରେ କେବଳ ଐତରେୟ ବ୍ରାହ୍ମଣର ଗୋଟିଏ ଉପାଖ୍ୟାନ ପ୍ରକାଶ କରାଯାଉ । ତହିଁରୁ ଯାଗଯଜ୍ଞ ଓ ଗୃହରକ୍ଷାର ଭାର ଥିବା ଗୃହପତିମାନଙ୍କ ଚଳାଖିଦ୍ୱାରା କ୍ରମେ ଜାତିର ଉତ୍କର୍ଷାପକର୍ଷର କିପରି ଉତ୍ପତ୍ତି ହେଲା, ତାହା ଅନାୟାସରେ ଧରା ପଡ଼ିବ ।

ପୂର୍ବକାଳରେ ପ୍ରଜାପତି ଜ୍ୟୋତିଷ୍ଟୋମ ନାମକ ଯଜ୍ଞର ସୃଷ୍ଟି କଲେ । ତଦନନ୍ତର ବ୍ରାହ୍ମଣ କ୍ଷତ୍ରିୟ ଜାତିଦ୍ୱୟ, ତହିଁ ଉତ୍ତାରୁ ହୁତାଦ ଓ ଅହୁତାଦ ଏହି ଉଭୟବିଧ ପ୍ରଜା ସୃଷ୍ଟି କଲେ । ବ୍ରାହ୍ମଣ ପ୍ରଜା ହୁତାଦ, କ୍ଷତ୍ରିୟ ପ୍ରଜା ଅହୁତାଦ । ହୁତାଦ ଅର୍ଥ ଯେଉଁମାନେ ଯଜ୍ଞାବଶିଷ୍ଟ ଘୃତାଦି ଭକ୍ଷଣ କରନ୍ତି । ଯେଉଁମାନେ ଯଜ୍ଞବଶିଷ୍ଟ ଭକ୍ଷଣ କରନ୍ତି ନାହିଁ, ସେମାନେ ଅହୁତାଦ ।

ପୁଣି ବ୍ରାହ୍ମଣ କ୍ଷତ୍ରିୟ କାହିଁକି ହୁତାଦ ଓ ଅହୁତାଦ ହେଲେ, ତାହା ସ୍ପଷ୍ଟ କରି ସେହି ଗ୍ରନ୍ଥ ପ୍ରକାଶ କରେ—

ପ୍ରଜାପତିଙ୍କ ସୃଷ୍ଟ ଯଜ୍ଞ ଦୂରକୁ ପଳାୟନ କଲେ । ବ୍ରାହ୍ମଣ କ୍ଷତ୍ରିୟ ଆପଣା ଆପଣା ଆୟୁଧମାନ ଧରି ଯଜ୍ଞର ଅନୁସରଣ କଲେ । ବ୍ରାହ୍ମଣ ନିଜ ଆୟୁଧ ଅର୍ଥାତ୍ ସ୍ଫ୍ୟ, କପାଳ, ହବଣୀ, ସୁର୍ପ, କୃଷ୍ଣାଜିନ, ଶମ୍ୟା, ଉଲୂଖଳ, ମୂଷଳ, ବୃଷଦ, ଉପଳ ଏହି ଦଶବିଧ ଆୟୁଧ ଧରି ଯଜ୍ଞର ଅନୁସରଣ କଲେ । କ୍ଷତ୍ରିୟ କବଚ, ଅଶ୍ୱଯୁକ୍ତ ରଥ, ବାଣଯୁକ୍ତ ଧନୁ ପ୍ରଭୃତି ଅସ୍ତ୍ର ଶସ୍ତ୍ର ଧରି ଯଜ୍ଞର ଅନୁସରଣ କଲେ । କ୍ଷତ୍ରିୟ ଆୟୁଧ ଧରି ଯଜ୍ଞକୁ ପାଇଲେ ନାହିଁ । ଯେ ହେତୁରୁ ଯଜ୍ଞ କ୍ଷତ୍ରିୟଙ୍କ ଆୟୁଧ ଦେଖି ଭୟରେ ଦୂରକୁ ପଳାୟନ କଲେ । କ୍ଷତ୍ରିୟଗଣ ନିବୃତ୍ତ ହେଲେ । ବ୍ରାହ୍ମଣଗଣ ଆପଣା ଆୟୁଧ ଧରି ଯଜ୍ଞର ଅନୁସରଣ କଲେ ଏବଂ ଯଜ୍ଞକୁ ପାଇ ତାଙ୍କର ଗମନମାର୍ଗ ନିରୁଦ୍ଧ କଲେ । ବ୍ରାହ୍ମଣଙ୍କ ହସ୍ତରେ ସ୍ଫ୍ୟ, କପାଳ ପ୍ରଭୃତି ଯଜ୍ଞାୟୁଧମାନଙ୍କୁ ଦେଖି ଯଜ୍ଞ ସେମାନଙ୍କ ସମୀପକୁ ଆସିଲେ । ସେହି ହେତୁର ବ୍ରାହ୍ମଣ ଯଜ୍ଞଯୋଗ୍ୟ ହେଲେ ଏବଂ ପ୍ରୟୋଗ କୁଶଳ ବ୍ରାହ୍ମଣଠାରେ ଯଜ୍ଞ ପ୍ରତିଷ୍ଠିତ ହେଲେ ।

ଯଜ୍ଞ କହିଲେ, ହେ ବ୍ରାହ୍ମଣଗଣ । ଏହି ଯଜ୍ଞକୁ କ୍ଷତ୍ରିୟଙ୍କୁ ଆହ୍ୱାନ କର ନାହିଁ । ବ୍ରାହ୍ମଣଗଣ ତଥାସ୍ତୁ ବୋଲି କହିଲେ, ହେ କ୍ଷତ୍ରିୟଗଣ, ତୁମ୍ଭେମାନେ ଯଜ୍ଞପ୍ରାପ୍ତି ଅପେକ୍ଷା କଲେ ସ୍ୱକୀୟ ଆୟୁଧମାନଙ୍କୁ ଅନ୍ୟତ୍ର ରଖି ଦେଇ ଯଜ୍ଞଯୋଗ୍ୟ ସଂଖ୍ୟା, କପାଳ ପ୍ରଭୃତି ବ୍ରାହ୍ମଣଯୋଗ୍ୟ ଆୟୁଧ ଧରି ବ୍ରାହ୍ମଣରୂପରେ ବ୍ରହ୍ମ ସଦୃଶ ହୋଇ ଯଜ୍ଞ କରିପାରିବ । କ୍ଷତ୍ରିୟ ତାହା ହେଉ ବୋଲି ସ୍ୱୀକାର କଲେ ଏବଂ ଧନୁଶର ପ୍ରଭୃତି ପରିତ୍ୟାଗ କରି ଶାନ୍ତି ବେଶରେ ଯଜ୍ଞ କଲେ । (ଐ:ବ୍ରା.୪.୧.୧)

ନିରପେକ୍ଷଭାବରେ ଆଲୋଚନା କଲେ ଏହି ଉପାଖ୍ୟାନଟିରୁ ଅନେକ ରହସ୍ୟ ଉଦ୍ଘାଟନ କରାଯାଇପାରିବ । ଏଥିରୁ ବ୍ରାହ୍ମଣ କ୍ଷତ୍ରିୟଙ୍କର ପ୍ରତିଦ୍ୱନ୍ଦ୍ୱିତା, କଳହ, ପରେ ସନ୍ଧିର ଆଭାସ ମିଳୁଅଛି । ଆର୍ଯ୍ୟଗଣ ଆର୍ଯ୍ୟସଭ୍ୟତା ବୃଦ୍ଧି କଳ୍ପନାରେ ବହୁକାଳ ବିଭିନ୍ନ ବୃତ୍ତି ଅବଲମ୍ବନ କରିସାରିଲା ପରେ ଏହି ଉପାଖ୍ୟାନଟିର ରଚନା ହୋଇଅଛି । ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକ ଯାଗଯଜ୍ଞର ବିଧିବ୍ୟବସ୍ଥା, ଜାତିଭେଦର ଉପାୟ, ଜାତିଗତ ଧର୍ମବ୍ୟବସ୍ଥାରେ ପରିପୂର୍ଣ୍ଣ । ପ୍ରଚଳିତ ଓ ପୂର୍ବ ପ୍ରଚଳିତ ଆଚାର ବ୍ୟବହାରକୁ ସୁଶୃଙ୍ଖଳିତ କରି ସମସାମୟିକ ସମାଜର ଏବଂ ବଂଶଧରମାନଙ୍କର ବ୍ୟବହାର ଓ ଶିକ୍ଷା ନିମନ୍ତେ ଯେଉଁ

ଶାସ୍ତ୍ର ପ୍ରଣୟନ କରାଯାଏ, ସେହି ଶାସ୍ତ୍ରର ନାମ ହୋଇଅଛି ଧର୍ମଶାସ୍ତ୍ର । ବ୍ରାହ୍ମଣାଦି ଗ୍ରନ୍ଥ ଅତି ପ୍ରାଚୀନ ଧର୍ମଶାସ୍ତ୍ର । ମନ୍ୱାଦି ଧର୍ମଶାସ୍ତ୍ର ତଦପେକ୍ଷା ଅର୍ବାଚୀନ । ବ୍ରାହ୍ମଣାଦି ଗ୍ରନ୍ଥରେ ଜାତିଭେଦ ପ୍ରଥାର ପ୍ରଥମ ସୂତ୍ରପାତ ବୋଇଲେ ଚଳେ । ଉପରୋକ୍ତ ଆଖ୍ୟାୟିକାଟି ତହିଁର ନିଦର୍ଶନ ।

ଅନ୍ୟ ଦେଶରେ ଯେପରି ପାଦ୍ରି ପ୍ରଭୃତି ଧର୍ମଯାଜକଗଣ ଲୋକସମ୍ମାନିତ ହେଲେ, ଅସଭ୍ୟ ବର୍ବରଜାତିମାନଙ୍କ ମଧ୍ୟରେ ଗୁଣିଆ, ରାଉଳିଆ ପ୍ରଭୃତି ଲୋକମାନ୍ୟ କିମ୍ବା ଭୟସମ୍ମାନିତ ହେଲେ, ଆର୍ଯ୍ୟଜାତି ମଧ୍ୟରେ ଗୃହପୁରୋହିତଗଣ ସେହିପରି ଅନ୍ୟ ଜାତି ଭାଇମାନଙ୍କର ସମ୍ମାନର ପାତ୍ର ହେଲେ । ମାତ୍ର ଅନ୍ୟ ଦେଶମାନଙ୍କର ଧର୍ମଯାଜକ ପ୍ରଭୃତି ଏହି ସମ୍ମାନକୁ ବଂଶଗତ କରି ରଖିପାରିଲେ ନାହିଁ । ଭାରତୀୟ ଆର୍ଯ୍ୟଜାତି ବ୍ୟବସାୟକୁ ବଂଶଗତ କଲା କରି ପୌରୋହିତ୍ୟକୁ ମଧ୍ୟ ବଂଶଗତ କରି ଦେଲେ । ଅସମୀକ୍ଷିତ ଧନାଗାରର ଓ ମହାଫିସଖାନାର କଞ୍ଚି ଜଣକ ହାତରେ ବା କେତେଜଣଙ୍କ ହାତରେ ରହିଲେ ତାହା ବିପର୍ଯ୍ୟସ୍ତ ହୁଏ । ଧର୍ମ ଓ ଆଚାର ବ୍ୟବହାର ଗୃହର କଞ୍ଚି ମୟ ଖାତାପତ୍ର ତୌଜି ଦସ୍ତାବିଜ କେତେଜଣ ଲୋକଙ୍କ ହାତରେ ଅର୍ପଣ କରି ଦେଇ ଗୋଟାଏ ଅଭ୍ୟୁତ୍‌ଥାନୋନ୍ମୁଖ ଜାତି ନାନା ବ୍ୟବସାୟରେ ମାତି ରହିଲେ । ଦେଶରେ ଶାନ୍ତି ବିରାଜମାନ କଲାବେଳେ, ସଭ୍ୟତା ଓ ବାହ୍ୟାଡ଼ମ୍ବର ରାଜତ୍ୱ କଲାବେଳେ ଆଭ୍ୟନ୍ତରିକ ଧର୍ମ ଓ ଆଚାରରୂପ ଧନାଗାର ଓ ମହାଫିସଖାନାରେ ମହା ଗୋଳମାଳ । ଗନ୍ତାଘର ଓ ମହାଫିସଖାନାର ରକ୍ଷାକାରୀଗଣଙ୍କର ବଳ ସ୍ୱତ୍ୱ ଏ ପ୍ରକାର ବୃଦ୍ଧି ପ୍ରାପ୍ତ ଓ ସୁରକ୍ଷିତ ଯେ, ତହିଁରେ ହସ୍ତକ୍ଷେପ କରିବା ଅସମ୍ଭବ । ଲେଖା ପତ୍ର ଏତେ ଗୋଳମାଳ ଯେ, ତାହା ପରୀକ୍ଷା କରିବାର କ୍ଷମତା ନାହିଁ । ଯେଉଁ ବୁଦ୍ଧିମାନ୍ ବ୍ୟକ୍ତିମାନେ ଘରେ ବସି କୃତ୍ରିମ କରିଅଛନ୍ତି, ସେମାନଙ୍କର ବୁଦ୍ଧି ଓ ଜ୍ଞାନ ସେମାନଙ୍କ ଅପେକ୍ଷା କିଛି ଅଧିକ ବୁଦ୍ଧି ଓ ଜ୍ଞାନ ନ ଥିଲେ ସେହି ଲେଖା ସଂଶୋଧନ ଓ ପରୀକ୍ଷା କରିବାର କ୍ଷମତା ଆସିବ କେଉଁଠାରୁ ? ଯୁଦ୍ଧ କରି କରି, ଭୂମି କର୍ଷଣ ଓ ବ୍ୟବସାୟ କରି କରି ଯେଉଁମାନେ ଶ୍ରାନ୍ତକ୍ଳାନ୍ତ, ସେମାନଙ୍କର ପାଠ ପଢ଼ି ସ୍ୱଶିକ୍ଷିତ ହେବାର ସମୟ କାହିଁ ? ତର୍କ କରିବାର ବୁଦ୍ଧି କାହିଁ ? ଅଗତ୍ୟା ସନ୍ଧି । ସନ୍ଧିର ଫଳ ? ଗୃହରକ୍ଷକ ବା ପୁରୋହିତ (ବ୍ରାହ୍ମଣ) ବୋଲି ଗୋଷ୍ଠୀ ଜାତି ଧର୍ମ ଆଚାର ସମ୍ବନ୍ଧରେ ସର୍ବେସର୍ବା । ଉପରୋକ୍ତ ଆଖ୍ୟାୟିକା ତାହାର ଉଦାହରଣ । ପୁଣି ତାହାର ସଂକ୍ଷିପ୍ତ ସମାଲୋଚନା କରାଯାଉ ।

ସାମାଜିକ ଧର୍ମବିଶ୍ୱାସର ନାମାନ୍ତର କୁଳାଚାର ଯେପରି ସମୟରେ ଜାତିକୁ ଉନ୍ନତି ମାର୍ଗରେ ଚାଳିତ କରେ, ସେହିପରି ସମୟରେ ଜାତିକୁ ଅବନତିମାର୍ଗକୁ ଟାଣିଆଣେ । ଏଥିର ଉଦାହରଣ ବିରଳ ନୁହେଁ । ପୃଥିବୀର ସମଗ୍ର ଅଂଶରେ ଏଥିର ଉଦାହରଣ ମିଳିବ । ପୋପ୍‌ଙ୍କ ଆଧିପତ୍ୟ ଈଶ୍ୱରପ୍ରଦତ୍ତ ନୁହେଁ କିମ୍ବା ବ୍ରାହ୍ମଣ୍ୟ ଆଧିପତ୍ୟଠାରୁ କୌଣସି ଅଂଶରେ କମ୍ ମଧ୍ୟ ନୁହେଁ । ଅଳ୍ପକାଳ ମଧ୍ୟରେ ଏ ଆଧିପତ୍ୟ ଏତେ ବିସ୍ତୃତି ଲାଭ କଲା କିପରି ? ଲୋକଟିର ଅନ୍ଧ ଧର୍ମବିଶ୍ୱାସ ହେତୁରୁ ନୁହେଁ କି ଇଉରୋପରେ ପୋପ୍ ଆଧିପତ୍ୟ ବଂଶଗତ ହୋଇଥିଲେ ଏବଂ ପ୍ରଥମ ପୋପ୍‌ଙ୍କ ବଂଶଧରଙ୍କୁ ଲୋକେ ଗୋଟିଏ ପବିତ୍ର ପୋପ ଜାତି ବୋଲି ମାନି ଆସିଥିଲେ ଆଜି ଇଉରୋପରେ ଗୋଟିଏ ନୂତନ ଜାତିର ଦର୍ଶନ ଆମ୍ଭେମାନେ ପାଆନ୍ତେ ନାହିଁ କି ? ପୋପ୍ ଆଧିପତ୍ୟ ବଂଶଗତ ନୁହେଁ, ତଥାପି ଅଳ୍ପକାଳ ମଧ୍ୟରେ ପୋପ୍‌ଗଣ ସ୍ୱର୍ଗ ବଞ୍ଚି ନିଜ ହାତରେ ରଖି ନ ଥିଲେ କି ? ତେବେ ଆମ ଦେଶର ପୁରୋହିତଗଣ ଯଜ୍ଞାଗାରର ଓ ଧର୍ମଦ୍ୱାରର କଞ୍ଚି ଉତ୍ତରାଧିକାରୀ ସ୍ୱତ୍ୱରେ ବହୁକାଳ ନିଜ ପାଖରେ ରଖିଲା ପରେ ସେମାନଙ୍କୁ ଲୋକେ ଧର୍ମ ଓ ମୁକ୍ତିପଥ ପ୍ରଦର୍ଶକ ବୋଲି ବିଶ୍ୱାସ କରିବେ, ଏଥିରେ ଆଶ୍ଚର୍ଯ୍ୟର ବିଷୟ କ'ଣ ଅଛି ?

ଦେଶ ବିସ୍ତାର କରିବାର ଚେଷ୍ଟା ଲାଗିଅଛି, ଦାସଙ୍କ ସହିତ ଆର୍ଯ୍ୟଗଣ ଯୁଦ୍ଧରେ ବ୍ୟାପୃତ ଅଛନ୍ତି । ଏହା ଦିନକର କଥା ନୁହେଁ, ଅନେକ ଦିନ ଚାଲିଅଛି । ଥୋକାଏ ଲୋକ ଗୃହରେ ଯଜ୍ଞ କରୁଅଛନ୍ତି । ଯୋଦ୍ଧାମାନଙ୍କର ମଙ୍ଗଳ କାମନା କରୁଅଛନ୍ତି । ଦେଶ-ଉପଦ୍ରବ ରହିତ ହେବାକୁ ଇନ୍ଦ୍ର ବରୁଣ ପ୍ରଭୃତି ଦେବତାମାନଙ୍କୁ ପ୍ରାର୍ଥନା କରୁଅଛନ୍ତି । କାଳକ୍ରମେ ଯେ ରାଜ୍ୟବିସ୍ତାର ହେଲା ତାହା ନୁହେଁ, ଶାନ୍ତି ମଧ୍ୟ ବିରାଜମାନ ହେଲା । ଯୋଦ୍ଧାଗଣ ଯୁଦ୍ଧ ତ୍ୟାଗ କରି ଗୃହରେ ଶାନ୍ତିରେ ବାସ କଲେ । କଥା ହେଲା, ଯୁଦ୍ଧ ଜୟ ହେଲା କି ହେତୁରୁ ? ଯୋଦ୍ଧାମାନେ କହିଲେ, ବାହୁବଳରେ, ଅସ୍ତ୍ରବଳରେ, ବୁଦ୍ଧିବଳରେ । ଯଜ୍ଞକର୍ତ୍ତାମାନେ କହିଲେ, ଯଜ୍ଞରେ ଦେବତାମାନେ ତୃପ୍ତ ହୋଇ ଦସ୍ୟୁଗଣଙ୍କୁ ପରାସ୍ତ କଲେ । ଆୟୁଧ, ଯୋଦ୍ଧା କେବଳ ନିମିତ୍ତ ମାତ୍ର । ଦେବାନୁଗ୍ରହ ସବୁ । ଦେବତାଙ୍କୁ ନିମିତ୍ତ ମାତ୍ର । ଦେବାନୁଗ୍ରହ ସବୁ । ଦେବତାଙ୍କୁ ତୃପ୍ତ କରିବାକୁ ହେଲେ ଯଜ୍ଞ ହିଁ କରଣୀୟ । ଦେବବିଶ୍ୱାସୀ ଯୋଦ୍ଧୃଗଣ ଯଜ୍ଞ କରିବାକୁ ଅଗ୍ରସର ହେଲେ । ବ୍ରାହ୍ମଣ କ୍ଷତ୍ରିୟଙ୍କର ବିବାଦ ହେଲା । ବ୍ରାହ୍ମଣମାନେ କହିଲେ, ତୁମ୍ଭମାନଙ୍କୁ ପ୍ରଜାପତି ଯୁଦ୍ଧ ଜୟ କରିବାକୁ, ପ୍ରଜାପାଳନ

କରିବାକୁ ରଥ, ଅଶ୍ୱ, ଆୟୁଧ ଦେଇଅଛନ୍ତି । ଆମ୍ଭମାନଙ୍କୁ ଯଜ୍ଞ କରିବାକୁ ସ୍ତ୍ୟ, କପାଳାଦି ଦେଇଅଛନ୍ତି । ଆମ୍ଭେମାନେ ଯଜ୍ଞ କରିବୁଁ, ତୁମ୍ଭମାନଙ୍କର ଅଭ୍ୟୁଦୟ କାମନା କରିବୁଁ, ଏଥିନିମନ୍ତେ ଉଦ୍‌ବୃତ୍ତ ଯଜ୍ଞୋପକରଣ ଭୋଗ କରିବୁଁ । ରାଜା ପାଳନକର୍ତ୍ତା ଯୋଦ୍ଧା, ଏମାନଙ୍କର ଉଦ୍‌ବୃତ୍ତ ପଦାର୍ଥରେ ନଜର ଦେବା ବଡ଼ ନିନ୍ଦନୀୟ । ଆମ୍ଭେମାନେ କେବଳ ଯଜ୍ଞୋପକରଣାବଶିଷ୍ଟ ଭୋଗ କରିବୁଁ ବୋଲି ପ୍ରଜାପତି ଆମ୍ଭମାନଙ୍କର ନାମ ହୁତାଦ ଦେଇଅଛନ୍ତି । ତୁମ୍ଭମାନଙ୍କୁ ଓ ତୁମ୍ଭ ତଳର ଅନ୍ୟ ପ୍ରଜାମାନଙ୍କୁ ଅହୁତାଦ ନାମ ଦେଇଅଛନ୍ତି । ଏହା ନୂତନ କଥା ନୁହେଁ, ଏଥିର ନଜିର ଘରେ ସାଇତା ହୋଇଅଛି । ପୁସ୍ତକାଗାରର କଞ୍ଜି ବ୍ରାହ୍ମଣ ହାତରେ । ବ୍ରାହ୍ମଣ ଗ୍ରନ୍ଥମାନଙ୍କରୁ ଅକାଟ୍ୟ ପ୍ରମାଣ ବାହାରିଲା । ଧର୍ମବିଶ୍ୱାସୀ କ୍ଷତ୍ରିୟଗଣ ତାହା ଅମ୍ଳାନବଦନରେ ସ୍ୱୀକାର କରିଗଲେ । ବ୍ରାହ୍ମଣ କ୍ଷତ୍ରିୟଙ୍କର ସନ୍ଧି ଫଳରୁ କ୍ଷତ୍ରିୟ ରାଜ୍ୟଶାସକ ଓ ରକ୍ଷକ ଭାବରେ ଶ୍ରେଷ୍ଠ । ହେଲେ କ'ଣ ହେଲା, ଯଜ୍ଞାଧିକାରୀ ହେବା ଦ୍ୱାରା ବ୍ରାହ୍ମଣମାନେ ପଦରେ କିଞ୍ଚିତ ଶ୍ରେଷ୍ଠତ୍ୱ ଲାଭ କଲେ, ଅର୍ଥାତ୍ ଦେବତାମାନଙ୍କର କିଞ୍ଚିତ୍ ନିକଟବର୍ତ୍ତୀ ହେଲେ ଏବଂ ଧର୍ମଗ୍ରନ୍ଥ କୃତ୍ରିମ କରିବାର ସୁବିଧା ପାଇଲେ । ଏ ଉକ୍ତି ସତ୍ୟ ଥିବାର ପ୍ରତିପନ୍ନ ହେବ ଐତରେୟ ବ୍ରାହ୍ମଣ ଆଲୋଚନା କଲେ ।

ବାହ୍ମଣ ରାଜାର ଅଧୀନ ଥିବାର ପ୍ରତିପାଦିତ ହୋଇଥିଲେ ସୁଦ୍ଧା ବ୍ରାହ୍ମଣର ଶ୍ରେଷ୍ଠତ୍ୱ ପ୍ରାୟ ସମସ୍ତ ବ୍ରାହ୍ମଣଗ୍ରନ୍ଥରେ ଓ ବୃହଦାରଣ୍ୟକ ଉପନିଷଦରେ ପ୍ରକାଶିତ ହୋଇଅଛି ।

କ୍ଷତ୍ରିୟକୁ ଶାସକ ଓ ଯୋଦ୍ଧା ଆସନରେ ଉପବେଶନ କରାଇ ଜାତିମାନଙ୍କ ଉପରେ ଆଧିପତ୍ୟ ଦିଆଗଲା । ଏଥି ଉତ୍ତାରୁ ଜାତିମାନଙ୍କର ମହତ୍ୱ, ସମ୍ମାନ, ନିତ୍ୟକାର୍ଯ୍ୟ ଓ ଅଧିକାରର ଗୋଟିଏ ଖସଡ଼ା ପ୍ରସ୍ତୁତ ହୋଇ ସର୍ବସମ୍ମତିକ୍ରମେ ମଞ୍ଜୁର ହେଲା । ସେହି ଖସଡ଼ାର ଉଲ୍ଲେଖ ଐତରେୟ ବ୍ରାହ୍ମଣର ସପ୍ତମ ମଞ୍ଚିକାରେ ଦେଖାଯାଏ । ଏହି ଗ୍ରନ୍ଥରେ ବ୍ରାହ୍ମଣର ଗୁଣ ଓ କର୍ମର ଉଲ୍ଲେଖ ଅଛି । ଯଥା— ବ୍ରାହ୍ମଣ ପ୍ରତିଗ୍ରହ କରିପାରିବେ, ଏଣୁ ସେ 'ଆଦାୟୀ', ଋତ୍ୱିକ ହୋଇ ସୋମପାନ କରିପାରିବେ, ଏଣୁ ସେ 'ଆପାୟୀ'; ଭୋଜନ ଯାଚନ କରିପାରିବେ ଅର୍ଥାତ୍ ଖାଦ୍ୟପଦାର୍ଥ ମାଗିପାରିବେ, ଏଣୁ ସେ 'ଆବସାୟୀ'; ଅନ୍ୟକୁ ନିଷ୍କାସିତ କରିପାରିବେ, ଏଣୁ ସେ 'ପ୍ରଯାପ୍ୟ' । କ୍ଷତ୍ରିୟ ଏହା କଲେ ତାଙ୍କର ପୁତ୍ର ହେଉ ବା ପୌତ୍ର ହେଉ ବ୍ରାହ୍ମଣବୃତ୍ତି ଦ୍ୱାରା ଅର୍ଥାତ୍ ଭିକ୍ଷାବୃତ୍ତିଦ୍ୱାରା ଜୀବନୋପାର୍ଜନ କରି 'ବ୍ରହ୍ମ ବନ୍ଧୁ' ହେବ । କ୍ଷତ୍ରିୟ ଏହି ଚାରି ନିନ୍ଦନୀୟ କାର୍ଯ୍ୟରୁ ରହିତ ହୋଇ ଗର୍ବରେ ସ୍ଫୀତ ହେଲେ । ବ୍ରାହ୍ମଣ ମାଗିଯାଚି ବଞ୍ଚିଲେ, ତଥାପି ଧର୍ମକଞ୍ଚିଟା ରଖିଲେ ଏବଂ ଅଭିଶାପାସ୍ତ୍ର ଧରି ରହିଲେ । ଏବଂ ରାଜା ସାହାଯ୍ୟରେ ଅନ୍ୟ ଜାତିକୁ ନିଷ୍କାଶିତ କରିବାକୁ ଗୋଟାଏ ଜବର କ୍ଷମତା ତାଙ୍କ ପାଖରେ କିଛିଦିନ ରହିଲା ।

ବ୍ରାହ୍ମଣ ଗଲେ । ବୈଶ୍ୟ ଓ ଶୂଦ୍ରର ଗୁଣକର୍ମ ଦେଖାଯାଉ । ରାଜାଙ୍କୁ କର ଦେବ ବୈଶ୍ୟ, ଏଣୁ ସେ 'ଅନ୍ୟସ୍ୟ ବଳିକୃତ' । ପୁଣି ସେ ରାଜାର ଭକ୍ଷ୍ୟ ବା ଅଧୀନ, ଏଣୁ ସେ 'ଅନ୍ୟସ୍ୟାଦ୍ୟଃ' । ରାଜା ଇଚ୍ଛା କଲେ ବୈଶ୍ୟକୁ ଅତ୍ୟାଚାରିତ କରି ପାରନ୍ତି, ଏଣୁ ସେ 'ଯଥାକାମଜ୍ୟେୟ' । ଏ ତ ଗଲା ବୈଶ୍ୟର ଦଶା । ବାକି ଶୂଦ୍ର । ଶୂଦ୍ର ସେବା କରିବ, ଏଣୁ ସେ 'ଅନ୍ୟସ୍ୟ ପ୍ରେଷ୍ୟଃ' । ଇଚ୍ଛାନୁସାରେ ନିର୍ବାସିତ କରାଯାଇପାରିବ, ଏଣୁ ସେ 'କାମୋତ୍ଥାପ୍ୟଃ' । ଏତିକି ନୁହେଁ, ଇଚ୍ଛାନୁସାରେ ଶୂଦ୍ରକୁ ବଧ କରାଯାଇ ପାରିବ, ଏଣୁ ସେ 'ଯଥାକାମବଧଃ' । କ୍ଷତ୍ରିୟ ସବୁ ଗୁଣକର୍ମର ଅତୀତ । କ୍ଷତ୍ରିୟ ପ୍ରତି ଏ ତିନି ଜାତିର କୌଣସି ଗୁଣର ଆଚରଣ ନିନ୍ଦନୀୟ । ଚାରି ଜାତିକୁ ଭିନ୍ନ ଭିନ୍ନ ଶବ୍ଦଦ୍ୱାରା ଆହ୍ୱାନ କରିବାର ବିଧି ପର୍ଯ୍ୟନ୍ତ ବ୍ରାହ୍ମଣ ଗ୍ରନ୍ଥରେ ଲିଖିତ ହୋଇଅଛି । ସେ ସବୁ ଥାଉ ।

ବ୍ରାହ୍ମଣାଦି ଗ୍ରନ୍ଥରେ ଜାତିର ପାର୍ଥକ୍ୟ ବିସ୍ତୃତଭାବରେ ଲେଖା ହୋଇଥିଲେ ସୁଦ୍ଧା ସ୍ପର୍ଶଦୋଷର, ଅନ୍ନାଦି ଭକ୍ଷଣଦୋଷର ଉଲ୍ଲେଖ ଦେଖାଯାଏ ନାହିଁ ।

ବିବାହ ସମ୍ବନ୍ଧରେ ବେଦରେ କୌଣସି ବିଧିନିଷେଧ ଦେଖାଯାଏ ନାହିଁ । ଯେହେତୁ ସେତେବେଳେ ଜାତିସୃଷ୍ଟି ହୋଇ ନ ଥିଲା ସୂତ୍ରାଦି ଗ୍ରନ୍ଥରେ ଦେଖାଯାଏ ଯେ, ଉଚ୍ଚ ସ୍ତରର ପୁରୁଷ ନିମ୍ନସ୍ତରର ସ୍ତ୍ରୀକୁ ବିବାହ କରିପାରେ ।

କୌଣସି କୌଣସି ମତରେ ଶୂଦ୍ରା ସ୍ତ୍ରୀ ଉଚ୍ଚ ତିନି ଜାତିର ପୁରୁଷଦ୍ୱାରା ଗ୍ରହଣୀୟ, ମାତ୍ର ଏଥିରେ କେତେକ ଗ୍ରନ୍ଥକର୍ତ୍ତାଙ୍କର ମତଦ୍ୱୈଧ ଦେଖାଯାଏ । କୌଣସି କୌଣସି ସ୍ଥଳରେ ଦାସୀପୁତ୍ର ଓ ଶୂଦ୍ରସନ୍ତାନ ବ୍ରାହ୍ମଣ ହୋଇଥିବାର ନିଦର୍ଶନ ମିଳେ । ଏହି ରୂପେ କବଷ, ଐଲୁଷ, ବତ୍ସ ସତ୍ୟକାମ ଜାବାଳ ଦୀର୍ଘତମା ପ୍ରଭୃତି ଦାସୀପୁତ୍ର ବା ଶୂଦ୍ରାପୁତ୍ର ହୋଇ ବା ଅଜ୍ଞାତକୁଳଶୀଳ ହୋଇ ମଧ ବ୍ରାହ୍ମଣ ଋଷି ରୂପରେ ଗୃହୀତ ହୋଇଥିଲେ ତୈତ୍ତିରୀୟ ସଂହିତାର ମତ ଏହି ଯେ, ଶୁଶ୍ରୁବାନ୍ ଅର୍ଥାତ୍ ଶ୍ରୁତିଜ୍ଞ ବ୍ୟକ୍ତିକୁ ଋଷିକୁଳୋଦ୍ଭବ (ଆର୍ଷେୟ) ବା ବ୍ରାହ୍ମଣ

ବୋଲି ଗ୍ରହଣ କରାଯାଇପାରିବ । ଏଥିର ଭୂରି ଭୂରି ପ୍ରମାଣ ଅଛି, ବାହୁଲ୍ୟ ଭୟରେ ଦିଆଯାଇପାରିବ ନାହିଁ ।

ଅନ୍ୟାନ୍ୟ କେତେକ ବ୍ରାହ୍ମଣ ଗ୍ରନ୍ଥର ମତ ବାହୁଲ୍ୟ ଭୟ ଥିଲେ ମଧ ଏଠାରେ ଉଦ୍ଧୃତ କରିବାର ଲୋଭ ସମ୍ବରଣ କରାଯାଇପାରିଲା ନାହିଁ । ସମସ୍ତ ମତ ମିଳାଇ ଦେଖିଲେ ଜାତିଭେଦଟା ଯେ ସମ୍ପୂର୍ଣ୍ଣ କାଳ୍ପନିକ, ତାହା ଅନାୟାସରେ ହୃଦୟଙ୍ଗମ ହେବ ।

(୧) ତୈତ୍ତିରୀୟ ସଂହିତାରେ ଲେଖା ଅଛି ଯେ—ପ୍ରଜାପତି ଇଚ୍ଛା କଲେ ଯେ 'ମୁଁ ଜନ୍ମିବି' । ତାଙ୍କ ମୁଖରୁ ଅଗ୍ନି, ଗାୟତ୍ରୀ ଛନ୍ଦ, ମନୁଷ୍ୟମାନଙ୍କ ମଧ୍ୟରୁ ବ୍ରାହ୍ମଣ ଏବଂ ଅଜ (ଛାଗ) ଉତ୍ଥାନ ହେଲେ । ମୁଖରୁ ଉତ୍ପନ୍ନ ବୋଲି ଏମାନେ ମୁଖ୍ୟ ।

ବାହୁଦ୍ୱୟରୁ ଓ ବକ୍ଷରୁ ଇନ୍ଦ୍ର, ତ୍ରିଷ୍ଟୁପ୍ ଛନ୍ଦ, ରାଜନ୍ୟ ଓ ମେଷ ଉତ୍ଥାନ ହେଲେ । ବୀର୍ଯ୍ୟରୁ ଉତ୍ପନ୍ନ ବୋଲି ଏମାନେ ବୀର୍ଯ୍ୟବାନ୍ ।

ମଧ୍ୟରୁ ବିଶ୍ୱେଦେବା ଦେବତା, ଜଗତୀ ଛନ୍ଦ, ବୈଶ୍ୟ ଓ ଗୋଗଣ ଉତ୍ପନ୍ନ ହେଲେ । ଅନ୍ନାଧାରରୁ ଉତ୍ପନ୍ନ ବୋଲି ଏମାନେ ଅନ୍ନବାନ୍ ।

ପାଦରୁ ଶୂଦ୍ର ଓ ଅଶ୍ୱ ଉତ୍ପନ୍ନ ହେଲେ । ପାଦରୁ ଉତ୍ପନ୍ନ ବୋଲି ଏମାନେ ପର ଅର୍ଥାତ୍ ପାଦଦ୍ୱାରା ଜୀବନରକ୍ଷା କରିବେ ।

(୨) ତୈତ୍ତିରୀୟ ବ୍ରାହ୍ମଣାନୁସାରେ ସମସ୍ତେ ବିଶ୍ୱ ବ୍ରହ୍ମାଦ୍ୱାରା ସୃଷ୍ଟି (ବ୍ରହ୍ମା ସୃଷ୍ଟି କର୍ତ୍ତା) ଋଗ୍‌ବେଦରୁ ବୈଶ୍ୟର ଜନ୍ମ, ଯଜୁର୍ବେଦ କ୍ଷତ୍ରିୟର ଜନ୍ମସ୍ଥାନ । ସାମବେଦରୁ ବ୍ରାହ୍ମଣର ଉତ୍ପତ୍ତି ।

(୩) ଶତପଥ ବ୍ରାହ୍ମଣ ଲେଖନ୍ତି, 'ଭୂଃ,' ଏହି ଶବ୍ଦ ଉଚ୍ଚାରଣ କରି ପ୍ରଜାପତି ବ୍ରାହ୍ମଣକୁ ଜନ୍ମ କଲେ । ''ଭୂବଃ'' ଶବ୍ଦ ଉଚ୍ଚାରଣ କରି କ୍ଷତ୍ରିୟ ଏବଂ 'ସ୍ୱଃ' ଶବ୍ଦ ଉଚ୍ଚାରଣ କରି ବୈଶ୍ୟ ସୃଷ୍ଟି କଲେ । ଏହି ସମସ୍ତ ବିଶ୍ୱମଣ୍ଡଳ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ।

(୪) ତୈତ୍ତିରୀୟ ବ୍ରାହ୍ମଣର ଏକ ସ୍ଥାନରେ ଲେଖା ଅଛି ଯେ, ଦେବତାମାନଙ୍କଠାରୁ ବ୍ରାହ୍ମଣବର୍ଣ୍ଣର ଏବଂ ଅସୁରଠାରୁ (ଆସୂର୍ଯ୍ୟଠାରୁ) ଶୂଦ୍ରବର୍ଣ୍ଣର ଜନ୍ମ ।

(୫) ଅସତ୍‌ଠାରୁ ଜନ୍ମ ବୋଲି ଶୂଦ୍ର ନାମ, ଏହା ମଧ ଏହି ବ୍ରାହ୍ମଣ୍ୟ ମତ ।

ଆମ୍ଭେମାନେ ଉପରେ ଅନେକଗୁଡ଼ିଏ ମତ ସଂଗ୍ରହ କଲୁଁ, ଯାହା କି ପରସ୍ପର ବିରୋଧ ବୋଇଲେ ଚଳେ । କେଉଁ ମତଟି ଯୁକ୍ତିପୂର୍ଣ୍ଣ ତାହା ପାଠକଙ୍କର ବିଚାର୍ଯ୍ୟ ।

ସଂକ୍ଷେପରେ ଏହି ଗୁରୁତର ବିଷୟର ଆଲୋଚନା ବଡ଼ କଷ୍ଟସାଧ । ତେବେ ପ୍ରବନ୍ଧର କଥିତ ଅଂଶରୁ ଆମ୍ଭେମାନେ ଏତିକି ଜାଣିବାକୁ ପାଉଁ ଯେ, ଋଗ୍‌ବେଦରେ ଜାତିଭେଦର ଆଦୌ ଉଲ୍ଲେଖ ନାହିଁ; ସୁତରାଂ ତତ୍‌ପୂର୍ବେ ଯେ ଏହା ନ ଥିଲା, ତାହା କହିବା ବାହୁଲ୍ୟ ମାତ୍ର ।

॥ ୩ ॥

ଭଟ୍ଟ ଶ୍ରୀ ମୋକ୍ଷମୂଲାର ବୈଦିକ ଗ୍ରନ୍ଥମହୋଦଧି ଆଲୋଡ଼ନ କରି ଜାତିଭେଦ ସମ୍ବନ୍ଧରେ ଯେଉଁ ମତରେ ଉପନୀତ ହୋଇଅଛନ୍ତି, ତାହା ନିମ୍ନରେ ଅବିକଳ ଉଦ୍ଧୃତ ହେଲା ।

"If then, with all the documents before us, we ask the question, does caste, as we find it in Manu and at the present day, form part of the most ancient religious teaching of the Vedas ? We can answer with a decided "No".

ମନୁ ଓ ଅନ୍ୟାନ୍ୟ ପୁରାଣମତ ପରୀକ୍ଷା କରାଯାଉ । ଅନେକ ପୁରାଣ, ଅସଂଖ୍ୟ ମତ, ଗୋଟିକାତେ ନ ଦେଲେ ନ ଚଳେ ।

ମନୁଙ୍କ ମତ :—

ଲୋକାନାଂ ତୁ ବିବୃଦ୍ଧ୍ୟର୍ଥଂ
ମୁଖବାହୂ ରୂପାଦତଃ ।
ବ୍ରାହ୍ମଣଂ କ୍ଷତ୍ରିୟଂ ବୈଶ୍ୟଂ
ଶୂଦ୍ରଂ ଚ ନିରବର୍ତ୍ତୟତ୍ ।
୧ । ୩୧

ଲୋକମାନଙ୍କର ବିବୃଦ୍ଧି ନିମିତ୍ତ ମୁଖ, ବାହୁ, ଉରୁ ଓ ପାଦରୁ ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଓ ଶୂଦ୍ରକୁ ଉତ୍ପନ୍ନ କଲେ ।

ଏହା ଲେଖିବା ବାହୁଲ୍ୟ ଯେ, ଏହି ଶ୍ଳୋକଟି ପୁରୁଷସୂକ୍ତର ଦ୍ୱାଦଶ ଋଗ୍‌ର ପ୍ରତିଧ୍ୱନି ବା ଅନୁବାଦ । ଯାହା ହେଉ, ଏଥିରେ କୌଣସି କ୍ଷତି ନାହିଁ, ମାତ୍ର ପୁଣି ସେ ଲେଖିଲେ—

କିନ୍ନରାନ୍‌ବାନରାନ୍ମତ୍ସ୍ୟାନ୍ ବିବିଧାଂଶ୍ଚ ବିହଙ୍ଗମାନ୍ ।
ପଶୂନ୍ମୃଗାନ୍ମନୁଷ୍ୟାଂଶ୍ଚ
ବ୍ୟାଳାଂଶ୍ଚୋଭୟତୋଦତଃ । ୧ । ୩୯

କିନ୍ନର, ବାନର, ମତ୍ସ୍ୟ, ନାନା ପ୍ରକାର ପକ୍ଷୀ ପଶୁ, ମୃଗ, ମନୁଷ୍ୟ, ସର୍ପ ଏବଂ ଉଭୟ ପାଟିରେ ଦନ୍ତବିଶିଷ୍ଟ ପଶୁ ମୋର ଆଜ୍ଞାରେ ତଥା ସେମାନଙ୍କର ତପପ୍ରଭାବରୁ ମରୀଚ୍ୟାଦି ମହାତ୍ମାମାନେ ସ୍ଥାବର ଜଙ୍ଗମ ସୃଷ୍ଟି କଲେ ।

ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ରଙ୍କୁ ପ୍ରଭୁ ସୃଷ୍ଟି କଲେ । ମନୁଷ୍ୟକୁ ମନୁ ଆଜ୍ଞାରେ ମରୀଚି ଆଦି ସୃଷ୍ଟି କଲେ । ତେବେ ପ୍ରଭୁ ସୃଷ୍ଟ ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ମନୁଷ୍ୟ ବହିର୍ଭୂତ କି ? ମନୁର ପ୍ରଥମ ଅଧ୍ୟାୟ ୩୧ । ୩୯ ଓ ୪୦ ଶ୍ଳୋକର ମେଳ କାହିଁ ? ଏ ସମ୍ବନ୍ଧରେ ଟୀକାକାରଗଣ ନୀରବ । ବେଦବିଶ୍ୱାସୀଗଣ ପୁରୁଷସୂକ୍ତର ପକ୍ଷପାତୀ । ମନୁର ସୃଷ୍ଟି ବିବରଣ ପ୍ରକ୍ଷିପ୍ତ ବୋଲି କହନ୍ତି । ମାନବ ଧର୍ମଶାସ୍ତ୍ର ଆଧୁନିକ ଜାତିବିଭାଗ ନିମନ୍ତେ କେତେକାଂଶରେ ଦାୟୀ, ତାହା ପରେ ଆଲୋଚ୍ୟ । ବର୍ତ୍ତମାନ ଭାଗବତର ମତ ଦେଖାଯାଉ ।

ମୁଖତୋଽବର୍ତ୍ତତ ବ୍ରହ୍ମ ପୁରୁଷସ୍ୟ କୁରୂଦ୍‌ବହା
ଯସ୍ତୁ ଖତ୍ୱାଦ୍‌ବର୍ଣ୍ଣାନାଂ ମୁଖ୍ୟୋଭୂଦ୍—
ବ୍ରାହ୍ମଣୋଗୁରୁଃ । ୩ । ୬ । ୨୬ ।

ହେ କୁରୁଶ୍ରେଷ୍ଠ, ପୁରୁଷର ମୁଖରୁ ବ୍ରହ୍ମ (ବେଦ) ଉତ୍ପନ୍ନ, ବେଦ ଯାହାର ବୃତ୍ତି ସେ ବ୍ରାହ୍ମଣ, ବର୍ଣ୍ଣମାନଙ୍କର ମୁଖସ୍ୱରୂପ ଏବଂ ଗୁରୁ ।

ବାହୁଭ୍ୟୋଽବର୍ତ୍ତତ କ୍ଷତ୍ରଂ କ୍ଷତ୍ରିୟସ୍ତଦନୁବ୍ରତଃ ।
ଯୋ ଜାତସ୍ତ୍ରାୟତେ ବର୍ଣ୍ଣାନ୍ ।
ପୌରୁଷଃ କଣ୍ଟକକ୍ଷତାତ୍ । ୩ । ୬ । ୨୭

ପାଳନରୂପା ବୃତ୍ତି ବାହୁରୁ ଜନ୍ମ, ସେହି ବୃତ୍ତିର ଅନୁସରଣ କଲା ଯେ, ସେ କ୍ଷତ୍ରିୟ । ଅନ୍ୟ ବର୍ଣ୍ଣମାନଙ୍କୁ ଚୌରାଦି ଭୟରୁ ରକ୍ଷା କରିବା ଯାହାର ପୌରୁଷ ଏବଂ ଯେ ଜାତ ।

ବିଶୋଽବର୍ତ୍ତନ୍ତତସ୍ୟୋର୍ବୋ ର୍ଲୋକବୃତ୍ତି
କରୀର୍ବିଭୋଃ ।
ବୈଶ୍ୟସ୍ତଦୁଭବୋ ବାର୍ତ୍ତାଂ ନୃଣାଂ ଯଃ
ସମବର୍ତ୍ତୟତ୍ ।
୩ । ୬

ଲୋକମାନଙ୍କର ଜୀବିକାର ହେତୁସ୍ୱରୂପ କୃଷ୍ୟାଦି ବ୍ୟବସାୟ ସେହି ବିଭୁଙ୍କ ଉରୁଦ୍ୱୟରୁ ଜାତ । ଉରୁଜାତ ଜୀବିକାକୁ ଯେ ସ୍ୱବୃତ୍ତି ବୋଲି ସମ୍ପାଦନ କଲା, ସେ ବୈଶ୍ୟ ।

ପଦ୍ଭ୍ୟାଂ ଭଗବତୋ ଜଜ୍ଞେ
ଶୁଶ୍ରୂଷା ଧର୍ମସିଦ୍ଧୟେ ।
ତସ୍ୟାଂ ଜାତଃ ପୁରା ଶୂଦ୍ରୋ
ଯଦ୍‌ବୃତ୍ୟା ତୁଷ୍ୟତେ ହରିଃ ॥
୩ । ୬ । ୨୯

ଧର୍ମସିଦ୍ଧି ନିମିତ୍ତ ଭଗବତଙ୍କ ପାଦ ଦୁଇରୁ ଶୁଶ୍ରୂଷାବୃତ୍ତିର ଉଦ୍ଭବ । ଏହି ଶୁଶ୍ରୂଷା ବିଷୟରେ ପୂର୍ବ କାଳରେ ଶୂଦ୍ରର ଜନ୍ମ । ଯେଉଁ ବୃତ୍ତିଦ୍ୱାରା ହରି ତୁଷ୍ଟ ହୁଅନ୍ତି ।

ଏଥିରୁ ଜଣାଯାଏ, ବୃତ୍ତିଗୁଡ଼ିକ ପୁରୁଷର ଅବୟବରୁ ଜାତ, ମାତ୍ର ଜାତି ଅବୟବରୁ ଜାତ ନୁହେଁ । ପୃଥକ୍ ବୃତ୍ତି ଅନୁସରଣକାରୀ ପୃଥକ୍ ବର୍ଣ୍ଣ ।

ବ୍ରହ୍ମାଣ୍ଡପୁରାଣ ମତ ଯେ, ସ୍ୱୟମ୍ଭୂ ବ୍ରହ୍ମା ପ୍ରଜାର ଖାଦ୍ୟାଦି ସୃଷ୍ଟି କଲା ପରେ ଏମାନଙ୍କ ଜୀବନବୃତ୍ତି ନିର୍ଦ୍ଧାରଣ କଲେ । ତହିଁ ଉତ୍ତାରୁ ସେମାନଙ୍କର ମର୍ଯ୍ୟାଦା ନିରୂପଣ କଲେ ।

ଯେ ବୈ ପରିଗୃହୀତାର ସ୍ତାସାମାସନ୍
ବିବିଧାତ୍ମକାଃ ।
ଇତରେଷାଂ କୃତତ୍ରାଣାନ୍ ସ୍ଥାପୟାମାସ
କ୍ଷତ୍ରିୟାନ୍ । ୮ । ୧୫୬
ଉଥତିଷ୍ଠନ୍ତି ଯେ ତାନ୍ ବୈ ଯାବନ୍ତୋ
ନିର୍ଭୟାସ୍ତଥା ।
ସତ୍ୟବ୍ରହ୍ମ ଯଥାଭୂତଂ ବ୍ରୁବନ୍ତୋ
ବ୍ରାହ୍ମଣଶ୍ଚ ତେ । ୮।୧୫୭
ଯେ ଚାନ୍ୟେଽପ୍ୟବଳାସ୍ତେଷାଂ
ବୈଶ୍ୟସଂକର୍ମସଂସ୍ଥିତାଃ ।
ବିନାଶା ନାଶୟନ୍ତିସ୍ମ ପୃଥିବ୍ୟାଂ
ପ୍ରାଗତନ୍ଦ୍ରିତାଃ । ୮ । ୧୫୮
ବୈଶ୍ୟାନେବ ତୁ ତାନାହୁଃ କୀନାଶାନ୍
ବୃତ୍ତିସାଧକାନ୍ ।
ଶୋଚନ୍ତଶ୍ଚ ଦ୍ରବନ୍ତଶ୍ଚ ପରିଚର୍ଯ୍ୟାସ୍ମ ଯେ ରତାଃ ।
ନସ୍ତେଜସୋଽଳ୍ପବୀର୍ଯ୍ୟାଶ୍ଚ ଶୂଦ୍ରାସ୍ତାନବ୍ରବୀତ୍
ତୁସଃ । ୮ । ୧୫୯

ଯେଉଁମାନେ ପ୍ରଜାମାନଙ୍କଦ୍ୱାରା ସ୍ୱୀକୃତ ବିବିଧ ଗୁଣଯୁକ୍ତ ଏବଂ ଅନ୍ୟ ପ୍ରଜାମାନଙ୍କର ତ୍ରାଣକର୍ତ୍ତା, ସେମାନଙ୍କୁ କ୍ଷତ୍ରିୟ ବୋଲି ସ୍ଥାପନ କଲେ ।

ଯେଉଁମାନେ କ୍ଷତ୍ରିୟମାନଙ୍କ ଆଶ୍ରୟରେ ନିର୍ଭୟରେ ବାସ କରି ସର୍ବଭୂତ ବ୍ରହ୍ମମୟ ଏହି ଚିନ୍ତାରେ କାଳାତିପାତ କରନ୍ତି, ସେମାନେ ବ୍ରାହ୍ମଣ ।

ଯେଉଁମାନେ ସେମାନଙ୍କ ଅପେକ୍ଷା (କ୍ଷତ୍ରିୟ ବ୍ରାହ୍ମଣ) ଦୁର୍ବଳ ଏବଂ ଯେଉଁମାନଙ୍କର ଜୀବିକା କୃଷି ଓ ବାଣିଜ୍ୟ ହେଲା, ସେମାନଙ୍କୁ ବୈଶ୍ୟ ନାମରେ ଅଭିହିତ କରାଗଲା ।

ଯେଉଁମାନେ ଶୋକଦୁଃଖପରାୟଣ ତେଜୋହୀନ ଓ ବୀର୍ଯ୍ୟହୀନ ହୋଇ ସେବା କାର୍ଯ୍ୟରେ ରତ ରହିଲେ, ସେମାନଙ୍କୁ ଶୂଦ୍ର ବୋଲି ନାମ ଦେଲେ ।

ବ୍ରହ୍ମାଣ୍ଡପୁରାଣମତରେ ବୃତ୍ତି ଅନୁଯାୟୀ କ୍ଷତ୍ରିୟ, ବ୍ରାହ୍ମଣ, ବୈଶ୍ୟ ଓ ଶୂଦ୍ର ନାମ ହୋଇଅଛି ।

ବ୍ୟତିରିକ୍ତେନ୍ଦ୍ରିୟୋବିଷ୍ଣୁ, ଯୋଗାତ୍ମା
ବ୍ରହ୍ମସମ୍ଭବଃ ।
ଦକ୍ଷପ୍ରଜାପତି ର୍ଭୂତ୍ୱା ସୃଜତେ ବିପୁଳାଃ ପ୍ରଜାଃ ॥
ଅକ୍ଷରାଦ୍‌ବ୍ରାହ୍ମଣାଃ ସୌମ୍ୟାଃ
କ୍ଷରାତ୍ କ୍ଷତ୍ରିୟବାନ୍ଧବାଃ ।
ବୈଶ୍ୟା ବିକାରତଶ୍ଚୈବ
ଶୂଦ୍ରା ଧୂମବିକାରତଃ ।
ଶ୍ୱେତଲୋହିତକୈର୍ବର୍ଣ୍ଣୈଃ ପୀତୈ
ର୍ନୀଳୈଶ୍ଚ ବ୍ରାହ୍ମଣାଃ ।
ଅଭିନିର୍ବର୍ତ୍ତିତା ବର୍ଣ୍ଣାଶ୍ଚିନ୍ତୟାନେନ
ବିଷ୍ଣୁନା ।
ତତୋବର୍ଣ୍ଣତ୍ୱମାପନ୍ନଃ ପ୍ରଜା ଲୋକେ
ଚତୁର୍ବିଧାଃ ।
ବ୍ରାହ୍ମଣାଃ କ୍ଷତ୍ରିୟା ବୈଶ୍ୟାଃ ଶୂଦ୍ରାଶ୍ଚୈବ
ମହୀପତେ ।
ହ:ବ:୨୧୧

ବ୍ରହ୍ମସମ୍ଭବ ଦକ୍ଷ ବିପୁଳ ପ୍ରଜା ସୃଷ୍ଟି କଲେ । ବ୍ରହ୍ମସାଧନାରୁ ବ୍ରାହ୍ମଣ, ପାର୍ଥିବ ବ୍ୟାପାରରେ ପ୍ରବୃତ୍ତ ହେତୁ କ୍ଷତ୍ରିୟ, ବ୍ୟବସାୟ ପରିବର୍ତ୍ତନଦ୍ୱାରା ବୈଶ୍ୟ, ନୀଚବୃତ୍ତିଦ୍ୱାରା ଶୂଦ୍ର ହେଲେ । ବୃତ୍ତି ଅନୁସରଣଦ୍ୱାରା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର— ଶ୍ୱେତ, ଲୋହିତ, ପୀତ ଓ ନୀଳ ବର୍ଣ୍ଣ ବୋଲି ଚିହ୍ନିତ ହେଲେ ।

ମହାଭାରତ ଶାନ୍ତିପର୍ବରେ ସୃଷ୍ଟି ଓ ଜାତିଭେଦ ବିଷୟରେ ଗୋଟିଏ ଉପାଖ୍ୟାନ ଅଛି । ଏହା ଭରଦ୍ୱାଜ ଓ ଭୃଗୁ ସମ୍ବାଦ । ଭରଦ୍ୱାଜ ପ୍ରଶ୍ନକର୍ତ୍ତା, ଭୃଗୁ ଉତ୍ତରଦାତା ବା ସନ୍ଦେହଭଞ୍ଜନକର୍ତ୍ତା । ଭରଦ୍ୱାଜଙ୍କ ପ୍ରଶ୍ନାନୁସାରେ ଭୃଗୁ କହିଲେ, ବ୍ରାହ୍ମଣର ବର୍ଣ୍ଣ ଶୁକ୍ଳ, କ୍ଷତ୍ରିୟ ବର୍ଣ୍ଣ ଲୋହିତ, ବୈଶ୍ୟ ପୀତ ଏବଂ ଶୂଦ୍ରର ବର୍ଣ୍ଣ କୃଷ୍ଣ । ଭରଦ୍ୱାଜ ଛାଡ଼ିବା ପାତ୍ର ନୁହଁନ୍ତି, ଏଣୁ ପୁଣି ପଚାରିଲେ—

ଚାତୁର୍ବର୍ଣ୍ଣ୍ୟସ୍ୟ ବର୍ଣ୍ଣେନ ଯଦି ବର୍ଣ୍ଣୋ
ବିଭିଦ୍ୟତେ ।
ସର୍ବେଷାଂ ଖଲୁ ବର୍ଣ୍ଣାନାଂ ଦୃଶ୍ୟତେ
ବର୍ଣ୍ଣସଙ୍କରଃ ।
କାମକ୍ରୋଧଭୟଂ ଲୋଭ ଶୋକଶ୍ଚିନ୍ତା
କ୍ଷୁଧାଶ୍ରମଃ ।
ସର୍ବେଷାଂ ନଃ ପ୍ରଭବତି କସ୍ମାଦ୍‌ବର୍ଣ୍ଣୋ
ବିଭିଦ୍ୟତେ ॥
ସ୍ୱେଦମୂତ୍ରପୁରୀଷାଣି ଶ୍ଳେଷ୍ମା ପିତ୍ତଂ ସଶୋଣିତଂ ।
ତନୁଃ କ୍ଷରତି ସର୍ବେଷାଂ କସ୍ମାଦ୍‌ବର୍ଣ୍ଣୋ
ବିଭଜ୍ୟତେ ॥
ଜଙ୍ଗମାନାମସଂଖ୍ୟେୟାଃ ସ୍ଥାବରାଣାଂ ଚ
ଜାତୟଃ ।
ତେଷାଂ ବିବିଧବର୍ଣ୍ଣାନାଂ କୁତୋ
ବର୍ଣ୍ଣବିନିଶ୍ଚୟଃ ।

ଯଦି ବର୍ଣ୍ଣମାନଙ୍କର ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ରର ବର୍ଣ୍ଣତ୍ୱ ରଙ୍ଗଦ୍ୱାରା ପରିଚିତ ହୁଏ, ତେବେ ବର୍ଣ୍ଣମାନଙ୍କର ଦୈହିକ ବର୍ଣ୍ଣ ମିଶ୍ରିତ ଥିବାର ଦେଖାଯାଏ କାହିଁକି ?

ସମସ୍ତଙ୍କଠାରେ କାମ, କ୍ରୋଧ, ଭୟ, ଲୋଭ, ଶୋକ, ଚିନ୍ତା, କ୍ଷୁଧା, ଶ୍ରମ, ବିଦ୍ୟମାନ ଅଛି, ତେବେ ବର୍ଣ୍ଣବିଭାଗ କରାଯିବ କିପରି ?

ସମସ୍ତଙ୍କ ଶରୀରରୁ, ସ୍ୱେଦ, ମୂତ୍ର, ପୁରୀଷ, ଶ୍ଳେଷ୍ମା, ପିତ୍ତ, ରକ୍ତ, କ୍ଷରିତ ହେଉଅଛି, ତେବେ ବର୍ଣ୍ଣବିଭାଗ କରାଯିବ କିପରି ?

ଅସଂଖ୍ୟ ସ୍ଥାବର ଜଙ୍ଗମ ଜାତିମାନଙ୍କର ବିବିଧ ବର୍ଣ୍ଣ ଥିବା ସତ୍ତ୍ୱେ ବର୍ଣ୍ଣବିନିଶ୍ଚୟ ହେବ କିପରି ?

ଏଥିର ଉତ୍ତରରେ ଭୃଗୁ କହିଲେ—

ନ ବିଶେଷୋଽସ୍ତି ବର୍ଣ୍ଣାନାଂ ସର୍ବଂ ବ୍ରାହ୍ମମିଦଂ ଜଗତ୍ ।
ବ୍ରହ୍ମଣା ପୂର୍ବସୃଷ୍ଟଂ ହି କର୍ମଭିର୍ବର୍ଣ୍ଣତାଂ ଗତଂ ॥
କାମଭୋଗପ୍ରିୟାସ୍ତୀକ୍ଷ୍ଣାଃ କ୍ରୋଧନାଃ ପ୍ରିୟସାହସାଃ
ତ୍ୟକ୍ତସ୍ୱଧର୍ମରକ୍ତାଙ୍ଗାସ୍ତେ ଦ୍ୱିଜାଃ କ୍ଷତ୍ରତାଂ ଗତାଃ ॥
ଗୋଭ୍ୟୋ ବୃତ୍ତିଂ ସମାସ୍ଥାୟ ପୀତା କୃଷ୍ୟୁପଜୀବିନଃ ।
ସ୍ୱଧର୍ମାନ୍ନାନୁତିଷ୍ଠନ୍ତି ତେ ଦ୍ୱିଜା ବୈଶ୍ୟତାଂ ଗତାଃ ॥
ହିଂସାନୃତପ୍ରିୟା ଲୁବ୍ଧାଃ ସର୍ବକର୍ମୋପଜୀବିନଃ ।
କୃଷ୍ଣାଃ ଶୌଚପରିଭ୍ରଷ୍ଟା ସ୍ତେଦ୍ୱିଜାଃ ଶୂଦ୍ରତାଂ ଗତାଃ ॥

ଇତ୍ୟେତୈଃ କର୍ମଭିର୍ବ୍ୟସ୍ତା ଦ୍ୱିଜବର୍ଣ୍ଣାନ୍ତରୋ ଗତାଃ ।
ଧର୍ମୋ ଯଜ୍ଞକ୍ରିୟାସ୍ତେଷାଂ ନିତ୍ୟଂ ନ ପ୍ରତିଷିଧ୍ୟତେ ॥
ଇତ୍ୟେତେ ଚତୁରୋ ବର୍ଣ୍ଣା ଯେଷାଂ ବ୍ରାହ୍ମୀ ସରସ୍ୱତୀ ।
ବିହିତା ବ୍ରହ୍ମଣା ପୂର୍ବଂ ଲୋଭାଦଜ୍ଞାନ ତାଂ ଗତାଃ ॥
ବ୍ରାହ୍ମଣା ବ୍ରହ୍ମ ତନ୍ତ୍ରସ୍ଥା ସ୍ତପସ୍ତେଷାଂ ନ ନଶ୍ୟତି ।
ବ୍ରହ୍ମ ଧାରୟତାଂ ନିତ୍ୟଂ ବ୍ରତାନି ନିୟମାଂସ୍ତଥା ॥
ମ : ଭା : ଶା. ୧୮୮

ବର୍ଣ୍ଣମାନଙ୍କର ଇତରବିଶେଷ ନାହିଁ । ସମସ୍ତ ହିଁ ବ୍ରହ୍ମସୃଷ୍ଟ, ଅର୍ଥାତ୍ ସମସ୍ତେ ଏକ ଜାତି ବା ବ୍ରହ୍ମସମ୍ବନ୍ଧୀୟ ଜାତି । ପ୍ରଥମେ ବ୍ରହ୍ମାଦ୍ୱାରା ସୃଷ୍ଟି ହୋଇ କ୍ରମେ କର୍ମଦ୍ୱାରା ସମସ୍ତେ ବର୍ଣ୍ଣତ୍ୱ ପ୍ରାପ୍ତ ହୋଇଅଛନ୍ତି ।

ଯେଉଁ ଦ୍ୱିଜ ରଜୋଗୁଣଯୁକ୍ତ, କାମ ଭୋଗପ୍ରିୟ, କ୍ରୋଧପରତନ୍ତ୍ର, ତୀକ୍ଷ୍ଣ ଓ ସାହସୀ ହୋଇ ସ୍ୱଧର୍ମ ତ୍ୟାଗ କଲେ, ସେମାନେ କ୍ଷତ୍ରିୟ; ରଜ ଓ ତମ ପ୍ରଭାବରୁ ଯେଉଁ ଦ୍ୱିଜାତି ଗୋପାଳନ ଓ କୃଷି ବ୍ୟବସାୟ ଅବଲମ୍ବନ କଲେ, ସେମାନେ ବୈଶ୍ୟ ।

ତମୋଗୁଣ ପ୍ରଭାବରୁ ଯେଉଁମାନେ ହିଂସାପରାୟଣ, ଲୋଭୀ, ମିଥ୍ୟାବାଦୀ, ସର୍ବ କର୍ମୋପଜୀବୀ ଏବଂ ଶୌଚଭ୍ରଷ୍ଟ ଥିଲେ, ସେହି ଦ୍ୱିଜଗଣ ଶୂଦ୍ର ।

ଏହି କର୍ମମାନଙ୍କରୁ ପୃଥକ୍ ହୋଇପଡ଼ିଲେ ଯେଉଁ ଦ୍ୱିଜ, ସେମାନେ ବ୍ରାହ୍ମଣ । ଏମାନଙ୍କର ଧର୍ମ ଯଜ୍ଞକ୍ରିୟା ପରିଭ୍ରଷ୍ଟ ହୁଏ ନାହିଁ ।

ଏହି ଚାରି ବର୍ଣ୍ଣ ନିମନ୍ତେ ପୂର୍ବକାଳରେ ବ୍ରହ୍ମା ବେଦମୟୀ ସରସ୍ୱତୀ ବିଧାନ କରିଥିଲେ । ଲୋଭ ହେତୁରୁ ଶୂଦ୍ର ଅଜ୍ଞାନତାକୁ ପ୍ରାପ୍ତ ହେଲେ ଅର୍ଥାତ୍ ବେଦାଧିକାରୀ ହେଲେ ନାହିଁ ।

ବ୍ରାହ୍ମଣମାନେ ବେଦୋକ୍ତ ଅନୁଷ୍ଠାନ ଉତପର ହେତୁ ସେମାନଙ୍କର ତପ ନଷ୍ଟ ହୁଏ ନାହିଁ ଏବଂ ସେମାନଙ୍କର ବ୍ରହ୍ମହିଁ ପୁରୁଷାର୍ଥ ଏବଂ ଏହି ହେତୁରୁ ବ୍ରତ ନିୟମର ନାଶ ହୁଏ ନାହିଁ ।

ଆଉ ଅଧିକ ଶାସ୍ତ୍ର ପ୍ରମାଣର ପ୍ରୟୋଜନ ନାହିଁ । ହାଣ୍ଡିରୁ ଗୋଟାଏ ଭାତ ଚିପିଲେ ଯଥେଷ୍ଟ ବୋଲି କହନ୍ତି । ଆମ୍ଭେମାନେ ତ ଅନେକଗୁଡ଼ାଏ ଚିପି ଦେଖି ନେଲେ । ତଥାପି ଯେବେ ଜାତିଟା କୃତ୍ରିମ ବୋଲି ଆଧୁନିକ ଲୋକଙ୍କର ବିଶ୍ୱାସ ନ ହୁଏ, ତେବେ ନାଚାର ।

ପୂର୍ବେ ଏକ ବ୍ୟବସାୟୀ ଯେ ଗୁଣକର୍ମଦ୍ୱାରା ବା ଅପରର ବ୍ୟବସାୟ ଅବଲମ୍ବନ କରି ଉନ୍ନତ ହେଉଥିଲା ବା ଏକ ବର୍ଣ୍ଣ ଯେ କର୍ମଦ୍ୱାରା ଅପର ବର୍ଣ୍ଣ ହୋଇ ପାରୁଥିଲା, ତହିଁର ଦୁଇ ଚାରିଟା ଉଦାହରଣ ଦିଆଯାଉ— ବେଶି ନୁହେ, କେବଳ ଦୁଇ ଚାରିଟା ।

ମହାରାଜ ଦୁଷ୍ମନ୍ତଙ୍କ ପିତୃବ୍ୟପୁତ୍ର ମେଧାତିଥି । ଏହି ମେଧାତିଥି ଋଗ୍‌ବେଦର ମନ୍ତ୍ରଦ୍ରଷ୍ଟା ଋଷି । ମେଧାତିଥିଙ୍କ ବଂଶଧର ପ୍ରସ୍କଣ୍ୱ ଇନ୍ଦ୍ରଙ୍କର ସୁପ୍ରସିଦ୍ଧ ଅପ୍ରତିରଥ ସୂକ୍ତ (ଆଶୁଃ ଶିଶାନୋ ଇତ୍ୟାଦି) ରଚନା କରିଥିଲେ ।

ଭରତଙ୍କ ବଂଶବର୍ଣ୍ଣନା ପ୍ରସଙ୍ଗରେ ଭାଗବତ ଲେଖୁଅଛନ୍ତି ଯେ, ବିତଥ ନାମାନ୍ତର ଭରଦ୍ୱାଜଙ୍କ ପୁତ୍ର ମନ୍ୟୁ । ମନ୍ୟୁପୁତ୍ର ପାଞ୍ଚ ଜଣ ଯଥା— ବୃହତ୍‌କ୍ଷତ୍ର, ଜୟ, ମହାବୀର୍ଯ୍ୟ, ନର ଏବଂ ଗର୍ଗ ।

ଗର୍ଗାଚ୍ଛିନିସ୍ତତୋ ଗାର୍ଗ୍ୟଃ କ୍ଷତ୍ରବ୍ରହ୍ମ
ବ୍ୟବର୍ତ୍ତତ । ଭା ।୯।୨୧।୧୩

ଗର୍ଗଙ୍କଠାରୁ ଶିନିଙ୍କର ଜନ୍ମ, ଶିନିଙ୍କ ପୁତ୍ର ଗାର୍ଗ୍ୟ । କ୍ଷତ୍ରିୟଠାରୁ ବ୍ରାହ୍ମଣର ଜନ୍ମ ।

ଦୂରିତକ୍ଷୟୋ ମହାବୀର୍ଯ୍ୟାତ୍ତସ୍ୟ
ତ୍ରଯ୍ୟାରଣିଃ କବିଃ
ପୁଷ୍କରାରୁଣିରତ୍ୟତ୍ର ଯେ ବ୍ରାହ୍ମଣ
ଗତିଂ ଗତାଃ ।
ଭା. ୨୧।୧୪

ମହାବୀର୍ଯ୍ୟଠାରୁ ଦୂରିତକ୍ଷୟଙ୍କ ଜନ୍ମ, ଦୂରିତକ୍ଷୟଙ୍କଠାରୁ ଆରୁଣି, କବି ଏବଂ ପୁଷ୍କରାରଣି ନାମକ ତିନି ପୁତ୍ରଙ୍କର ଜନ୍ମ । ଏମାନେ କ୍ଷତ୍ରିୟକୁଳରେ ଜାତ ହୋଇ ବ୍ରାହ୍ମଣ ହେଲେ ।

ମୁଦ୍ଗଳ କ୍ଷତ୍ରିୟସନ୍ତାନ—ମୌଦ୍ଗଲ୍ୟ ବ୍ରାହ୍ମଣମାନେ ଏହାଙ୍କଠାରୁ ଜାତ । ଏତିକି ?

ବର୍ଣ୍ଣଭେଦ ହେଲା ଉତ୍ତାରୁ ମଧ ଏକ ବର୍ଣ୍ଣ ଅପର ବର୍ଣ୍ଣର କର୍ମ କରିପାରୁଥିଲେ । ଏଥିର ପ୍ରମାଣ ଉଦ୍ଧୃତାଂଶରୁ ସ୍ପଷ୍ଟ ଜଣାଯାଏ । ଭେଦପ୍ରଥାଟା ଦୃଢ଼ୀଭୂତ ହେଲା ଉତ୍ତାରୁ ମଧ ଯେ, ଅନ୍ୟ ଜାତିର କଥା ତ ଛାଡ଼ିଦିଅ, ଦାସୀପୁତ୍ର ମଧ ଜବରଦସ୍ତି ବ୍ରାହ୍ମଣ ଭିତରେ ଗୃହୀତ ହେବାର ଚେଷ୍ଟା କରିଅଛନ୍ତି ଏବଂ ବ୍ରାହ୍ମଣଙ୍କୁ ବାଧ୍ୟ କରି ତାଙ୍କ ଭିତରେ ପ୍ରବେଶ କରିଅଛନ୍ତି, ସେଥିର ଗୋଟିଏ ଉଦାହରଣ ଆଖ୍ୟାନ ଛଳରେ ନ ଦେଇ ରହି ହେଉ ନାହିଁ । ତାହା ଏହି ବ୍ରାହ୍ମଣମାନେ ଶୂଦ୍ର ପ୍ରତି କିପରି ଅତ୍ୟାଚାରଦ୍ୱାର ସେମାନଙ୍କର ଉନ୍ନତିପଥ ଅବରୋଧ କରିଅଛନ୍ତି, ଏଥିରୁ କିଞ୍ଚିତ୍ ଆଭାସ ମିଳିପାରିବ ।

ଋଷିମାନେ ସରସ୍ୱତୀତୀରରେ ସତ୍ର ଆରମ୍ଭ କଲେ । ବହୁ ଋଷି ସେଠାରେ ଉପଗତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଇଲୂଷର ପୁତ୍ର କବଷ ମଧ୍ୟ ଥିଲେ । ସେମାନଙ୍କ ମଧ୍ୟରୁ ଜଣକେତେ ଋଷି କବଷକୁ ଦାସୀପୁତ୍ର ବୋଲି ସରସ୍ୱତୀ ଟୀରଠାରୁ ନିର୍ଜଳ ପ୍ରଦେଶକୁ ବଳପ୍ରୟୋଗ ଦ୍ୱାରା ଅପସାରିତ କଲେ । ପାପିଷ୍ଠ କବଷ ସରସ୍ୱତୀ ଜଳ ପିଇବାକୁ ନ ପାଇ ମରୁ, ଏହା ଋଷିମାନଙ୍କର ଇଚ୍ଛା । କବଷ ନିତାନ୍ତ ପିପାସାକ୍ରାନ୍ତ ହୋଇ ଜଳ ପାଇବା ନିମନ୍ତେ ବେଦସୂକ୍ତ ଆବୃତ୍ତି କଲେ । ବେଦ ସ୍ତୁତିରେ ଜଳାଭିମାନୀ ଦେବତା ତୁଷ୍ଟ ହେଲେ । ସରସ୍ୱତୀ କବଷ ନିକଟରେ ପ୍ରବାହିତ ହେଲେ । ଏହା ଦେଖି ଋଷିଗଣ କବଷକୁ ବାଧ୍ୟ ହୋଇ ବ୍ରାହ୍ମଣ ବୋଲି ଗ୍ରହଣ କଲେ । ପରକାଳରେ କବଷ ତୁଲ୍ୟ ଜବର୍ଦସ୍ତ ଦାସୀପୁତ୍ର କିମ୍ୱା ଶୂଦ୍ର, ଜନ୍ମିଲେ କି ? ସୁତରାଂ ବ୍ରାହ୍ମଣମାନଙ୍କର ଇଚ୍ଛା ପୂର୍ଣ୍ଣ ହେଲା । ଆଉ ଦାସୀପୁତ୍ର ବା ଅନ୍ୟ ଜାତି ବିଦ୍ୟାଦ୍ୱାରା ଓ କର୍ମଦ୍ୱାରା ବ୍ରାହ୍ମଣ ହୋଇପାରିଲେ ନାହିଁ । ତୈତିରୀୟ ସଂହିତାର ମତ ଏହି ଯେ, ଶୁଶ୍ରୁବାନ୍ ଅର୍ଥାତ୍ ଶ୍ରୁତିଜ୍ଞ ବ୍ୟକ୍ତିକୁ ଋଷିକୁଳୋଦ୍ଭବ (ଆର୍ଷେୟ) ବ୍ରାହ୍ମଣ ବୋଲି ଗ୍ରହଣ କରାଯାଇପାରେ । ଏ ବିଧି ଥିଲେ ଆଜି କେତେ ବିଦ୍ୱାନ୍ ଶୂଦ୍ର ମଧ୍ୟ ବ୍ରାହ୍ମଣ ହୋଇପାରନ୍ତେ । ମାତ୍ର ସେ ବିଧି ବହୁଦିନରୁ ବନ୍ଦ ହୋଇଅଛି ।

ବର୍ତ୍ତମାନ ମାନବ ଧର୍ମଶାସ୍ତ୍ର ସମ୍ୱନ୍ଧରେ ଏବଂ ଭାରତର ଆଧୁନିକ ଜାତି ରୀତି ସମ୍ୱନ୍ଧରେ କିଞ୍ଚିତ୍ ଆଲୋଚନା କରାଯାଇ ପ୍ରବନ୍ଧ ଶେଷ କରାଯାଉ ।

ଲୋକରେ ପ୍ରସିଦ୍ଧ ଅଛି ଯେ, ମନୁଙ୍କ ମାନବ ଧର୍ମଶାସ୍ତ୍ର ମହାରାଜା ସ୍ୱାୟମ୍ଭୁବ ମନୁଙ୍କ ଦ୍ୱାରା ରଚିତ । ଶାସ୍ତ୍ରର ପ୍ରାଚୀନତ୍ୱ ଦେଖାଇବାକୁ ଏପରି ପ୍ରଚାରିତ ହୋଇଥିଲେ ସୁଦ୍ଧା ଏହି ପୁସ୍ତକ ଭୃଗୁପ୍ରଣୀତ । ଏହା ଅନୁମାନ ନୁହେଁ ବା କଳ୍ପନା ନୁହେଁ । ମାନବ ଧର୍ମଶାସ୍ତ୍ରରେ ଶେଷରେ ଲେଖା ଅଛି—

ଇତ୍ୟେତନ୍ମାନବଂ ଶାସ୍ତ୍ରଂ ଭୃଗୁପ୍ରୋକ୍ତଂ ପଠନ୍ ଦ୍ୱିଜଃ ।
ଭବତ୍ୟାଚାରବାନ୍ନିତ୍ୟଂ ଯଥେଷ୍ଟଂ ପ୍ରାପ୍ନୁୟାଦ୍ଗତିଂ ॥

ଏହି ପୁସ୍ତକାନୁସାରେ କେବଳ ଏ ପୁସ୍ତକ ରଚନା କାହିଁକି, ମନୁଷ୍ୟ, ପଶୁ, ସ୍ଥାବର, ଜଙ୍ଗମ ସୃଷ୍ଟି ସ୍ୱାୟମ୍ଭୁବ ମନୁଙ୍କ ଆଜ୍ଞାରେ ମରୀଚ୍ୟାଦି ଋଷି କରିଥିବାର ଲେଖା ଅଛି । ତାହା ଛଡ଼ା ସାତ ମନୁଙ୍କ ମଧ୍ୟରେ (ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ, ଚାକ୍ଷୁଷ, ବୈବସ୍ୱତ), ସ୍ୱାୟମ୍ଭୁବ ଆଦ୍ୟ ମନୁ । ମାତ୍ର ସ୍ୱାୟମ୍ଭୁବଙ୍କ ନାମ ବେଦରେ ନାହିଁ । ତେବେ ଏ ମହାତ୍ମା ସୃଷ୍ଟି କଲେ କିପରି ? ସେ ଯାହାହେଉ, ମନୁ ବା ମାନବ ଧର୍ମଶାସ୍ତ୍ର ଭାରତୀୟ ହିନ୍ଦୁଗଣଙ୍କର ଚାଳକ । କେତେ କାଳରୁ ଏ ଶାସ୍ତ୍ର ଭାରତୀୟ ଆର୍ଯ୍ୟମାନଙ୍କ ଉପରେ ଆଧିପତ୍ୟ କରିଅଛି, ତହିଁର ଆଲୋଚନା ଏ ପ୍ରବନ୍ଧର ବହିର୍ଭୂତ । ତେବେ ଏହାର ରଚନା ଯେ କଳିଯୁଗରେ, ତାହା ଅନାୟାସରେ ପ୍ରକାଶ କରାଯାଇପାରେ । ଯେହେତୁ ଦାନମେକଂ କଲୌ ଯୁଗେ । ଅର୍ଥାତ୍ କଳିଯୁଗର ପ୍ରଧାନ ଧର୍ମ ଦାନ, ଏହି ପୁସ୍ତକରେ ଲେଖା ଅଛି । ଦାନ ଧର୍ମଟା କେତେ ଦିନର ବା ପୁରୁଣା ହୋଇପାରେ । ତାହା ଛଡ଼ା କଳିଯୁଗର ଅନେକ ବିଷୟ ଏହି ପୁସ୍ତକରେ ଲେଖା ଅଛି । ଏଥି ମଧ୍ୟରେ ପ୍ରଧାନ କଥା ଜାତିଭେଦ ।

ଜାତିଭେଦର କ୍ରମୋନ୍ନତି ଆମ୍ଭେମାନେ ଏପରି ଭାବରେ ଦେଖିବାକୁ ପାଉଁ ଯେ, ବ୍ରାହ୍ମଣ ଯୁଗରେ ଏହାର ଉଦ୍ଭବ, ସୂତ୍ର ଯୁଗରେ ସ୍ୱଳ୍ପ ବିକାଶ, ମାନବଧର୍ମଚର୍ଚ୍ଚା ବେଳକୁ ଏହାର ପୂର୍ଣ୍ଣତାପ୍ରାପ୍ତି । ଯେହେତୁ ଏହି ପୁସ୍ତକରେ ଜାତିଭେଦଟା ଧରାବନ୍ଧା ହୋଇରହିଲା । ତହିଁ ଉତ୍ତାରୁ ଜାତିଭେଦର ବୃଦ୍ଧି ନାଦ୍ୟାପି ବିଶ୍ରାମ୍ୟତି ।

ମନୁରେ ଅନୁଲୋମ ପ୍ରତିଲୋମ ପ୍ରକ୍ରିୟାରେ କି ପ୍ରକାର ଅନେକଗୁଡ଼ିଏ ଜାତିର ସୃଷ୍ଟି ହେଲା ବା ହୋଇପାରେ, ତହିଁର ପ୍ରାଞ୍ଜଳ ଓ ବିସ୍ତୃତ ତାଲିକା ଲେଖି ଦେଇଅଛନ୍ତି । ପୁଣି ସେ ଲେଖିଅଛନ୍ତି ଯେ—

ବ୍ରାହ୍ମଣ କ୍ଷତ୍ରିୟା ବୈଶ୍ୟାସ୍ତ୍ରୟୋ ବର୍ଣ୍ଣା ଦ୍ୱିଜାତୟଃ ।
ଚତୁର୍ଥ ଏକ ଜାତିସ୍ତୁ ଶୂଦ୍ରୋ ନାସ୍ତି ତୁ ପଞ୍ଚମଃ ॥

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏ ତିନି ବର୍ଣ୍ଣ ଦ୍ୱିଜ । ଚତୁର୍ଥ ବର୍ଣ୍ଣ ଶୂଦ୍ର, ଏକ ଜାତି । ପଞ୍ଚମ ବର୍ଣ୍ଣ କେହି ନାହାନ୍ତି ।

ମନୁରେ ଏହା ଲେଖା ହେଲା ସତ, ମାତ୍ର ଏଥିର ସତ୍ୟତା ରହିଲା କେଉଁଠାରେ ? ପୂର୍ବ ନିର୍ଦ୍ଦିଷ୍ଟ ଶୂଦ୍ରର ଯଥାର୍ଥ ପରିଚୟ ନାହିଁ । ସଙ୍କୀର୍ଣ୍ଣମାନଙ୍କର ନିର୍ଦ୍ଦିଷ୍ଟ ଜାତି ମଧ୍ୟ ରହିପାରିଲା ନାହିଁ । ଅନୁଲୋମ ପ୍ରତିଲୋମ ପ୍ରକ୍ରିୟାରେ ଯେଉଁମାନଙ୍କର ଜନ୍ମ, ସେମାନେ ମନୁନିର୍ଦ୍ଦିଷ୍ଟ ନାମ ବରାବର ଗ୍ରହଣ କଲେ ନାହିଁ ବା ମନୁନିର୍ଦ୍ଦିଷ୍ଟ ଜାତିର ଗଣ୍ଡି ମଧ୍ୟରେ ରହିଲେ ନାହିଁ । ଉଦାହରଣସ୍ୱରୂପ କୁହାଯାଇ ପାରେ ଯେ, ବ୍ରାହ୍ମଣ ଓ ବୈଶ୍ୟକନ୍ୟା ସଂଯୋଗରୁ ଯେଉଁ ପୁତ୍ର, ସେ **ଅମ୍ୱଷ୍ଠ**, ମାତ୍ର ମାନବ ଧର୍ମଶାସ୍ତ୍ର ପରେ ବ୍ରାହ୍ମଣ ଓ ବୈଶ୍ୟକନ୍ୟା ସଂଯୋଗରୁ ଯେଉଁ ପୁତ୍ରମାନେ ଜନ୍ମିଲେ ବା ଏବେ ଜନ୍ମୁଅଛନ୍ତି, ସେମାନେ ଅମ୍ୱଷ୍ଠ ଶ୍ରେଣୀଭୁକ୍ତ ହୋଇଥିଲେ, ନା ଏବେ ହୋଇପାରିବେ ? କିମ୍ୱା ଶୂଦ୍ର ପୁରୁଷ ଓ ବ୍ରାହ୍ମଣକନ୍ୟା

ସଂଯୋଗରୁ ଯେଉଁ ପୁତ୍ରର ଜନ୍ମ, ସେ ବି ଏବେ ନା ଏଥିପୂର୍ବେ ଚଣ୍ଡାଳ ଆଖ୍ୟା ଧାରଣ କରିଅଛନ୍ତି ନା କରିବେ ? ଅନୁଲୋମ ହେଉ ବା ବିଲୋମ ପ୍ରକ୍ରିୟାରେ ହେଉ, ଯେଉଁମାନଙ୍କର ଜନ୍ମ, ସେମାନେ ମନୁଙ୍କ ସ୍ଥିରୀକୃତ ଜାତି ଅନ୍ତର୍ଭୁକ୍ତ ନ ହୋଇ ସ୍ୱତନ୍ତ୍ର ଜାତି ହେଉଅଛନ୍ତି । ମନୁ ଶ୍ରେଣୀ ପାର୍ଥକ୍ୟ କଲେ ସତ, ମାତ୍ର ପ୍ରକୃତିର ପରିବର୍ତ୍ତନ କରି ପାରିଲେ, ନା ସଂଯୋଗ ନିଷେଧ କରି ପାରିଲେ ? ଶ୍ରେଣୀ, ସମାଜ, ଜାତି କ୍ରମଶଃ ବୃଦ୍ଧିପ୍ରାପ୍ତ ହେଲା । କୌଣସି କୌଣସି ବେଦବ୍ୟାଖ୍ୟାନକାରୀ 'ନିଷାଦ ପଞ୍ଚମା ଚତ୍ୱାରୋ ବର୍ଣ୍ଣାଃ' ବୋଲି ପ୍ରକାଶ କରିଥିଲେ । ମନୁ କହିଲେ, ଚାରି ବର୍ଣ୍ଣ, ପଞ୍ଚମ ବର୍ଣ୍ଣ ନାହିଁ । ସଙ୍କରମାନଙ୍କୁ ବର୍ଣ୍ଣ ବୋଲାଯାଏ ନାହିଁ । ମିଶ୍ରିତମାନଙ୍କୁ ଅନୁଲୋମ ଓ ବିଲୋମ କ୍ରମେ ବିଭିନ୍ନ ନାମ ଦେଇ ରଖିଲେ । ମାତ୍ର ସେହି ସଙ୍କରମାନଙ୍କର ସଂଜ୍ଞା ଜନ୍ମ ଅନୁସାରେ ନିର୍ଦ୍ଦିଷ୍ଟ ସଂଜ୍ଞା ଅନ୍ତର୍ଭୂତ ହେବ ବୋଲି ଦୃଢ଼ ବିଧିବଦ୍ଧ କରି ପାରିଲେ ନାହିଁ । ଏଣୁ ତାଙ୍କର ବିଧି ସାର୍ବଜନୀନ ହେଲା ନାହିଁ, ହେବାର ମଧ୍ୟ କଥା ନୁହେଁ । ଏଣୁ ଯାହା ହେବାର ତାହା ହେଲା । ଆଜି ଭାରତବର୍ଷରେ ପ୍ରାୟ ଅର୍ଦ୍ଧସହସ୍ର ଜାତିର ଦର୍ଶନ ମିଳୁଅଛି । ମାନବ ଧର୍ମଶାସ୍ତ୍ର ଏ ଦେଶର କୀଦୃଶ ଉପକାରୀ, ତାହା ପାଠକଗଣ ପ୍ରଣିଧାନ ପୂର୍ବକ ବିବେଚନା କରନ୍ତୁ । ଏହାଛଡ଼ା ଚାରିବର୍ଣ୍ଣ ଯେ ବିଶୁଦ୍ଧ ଭାବରେ ଅଛନ୍ତି, ତାହା ମଧ୍ୟ ନୁହେଁ । ଏହି ବର୍ଣ୍ଣମାନଙ୍କର ସୃଷ୍ଟି ଓ ବ୍ୟବସ୍ଥା ଯେବେ କୌଣସି ନିୟନ୍ତାଦ୍ୱାରା ସ୍ଥିରୀକୃତ ହୋଇଥାନ୍ତା, ତେବେ ବର୍ଣ୍ଣମାନେ ଆପଣା ଆପଣା ମଧ୍ୟରେ ଶ୍ରେଣୀବିଭାଗ କରି ଜାତି ବିଭ୍ରାଟ ସୃଷ୍ଟି କରିପାରନ୍ତେ କି ? କେବେ ନୁହେଁ । ପ୍ରଥମରୁ ବ୍ରାହ୍ମଣ ତ ଗୋଟିଏ ବର୍ଣ୍ଣ, ବର୍ତ୍ତମାନ ସାରସ୍ୱତ, କାନ୍ୟକୁବ୍ଜ, ଓଡ୍ର, ଦ୍ରାବିଡ଼, କୁଳୀନ, ବାରେନ୍ଦ୍ର, ମୈଥିଳ, ଓଡ଼ିଆ, ଝାଡୁଆ, ରଘୁନାଥିଆ ପ୍ରଭୃତି ଏତେ ବ୍ରାହ୍ମଣ ଜାତି ଆସିଲେ କେଉଁଠାରୁ ? କେହି କହିପାରିବ କି, କେଉଁ ବ୍ରାହ୍ମଣ ପୁରୁଷର ମୁଖରୁ ଜନ୍ମ ? ସେହିପରି କ୍ଷତ୍ରିୟ ଓ ବୈଶ୍ୟ ଅନେକ । କେହି ଦେଖାଇ ଦେଇ ପାରିବେ କି, ବାହୁଜନ୍ୟା କ୍ଷତ୍ରିୟ କେଉଁଗୁଡ଼ିକ ଏବଂ ଉରୁସମ୍ଭୂତ ବୈଶ୍ୟ କେତେ ଜଣ ? ମନୁଙ୍କ ପରିକଳ୍ପିତ ଭ୍ରଷ୍ଟାଚାର, ପ୍ରାୟଶ୍ଚିତ୍ତ ଏବଂ ଆଭିଜାତ୍ୟ ଉପରେ ଭିତ୍ତି ସ୍ଥାପନ କରି ପରବର୍ତ୍ତୀ ବର୍ଣ୍ଣମାନେ ପ୍ରତ୍ୟେକେ ନିଜକୁ, ନିଜ ପରିବାରକୁ ଅନ୍ୟ ପରିବାର ଅପେକ୍ଷା ଶୁଦ୍ଧ ଓ ଶ୍ରେଷ୍ଠ ପ୍ରତିପାଦନ କରି ବସିବାରୁ ଗୋଟାଏ ବ୍ରାହ୍ମଣ ବର୍ଣ୍ଣରୁ ଆଜି ଏତେ ଜାତି । କେବଳ ଏତିକି ନୁହେଁ, ପରସ୍ପର ମଧ୍ୟରେ ବିବାହ ଅଚଳ, ଅନ୍ନ ଅଚଳ, ଏମନ୍ତ କି ଜଳ ଅଚଳ । କେଉଁ ଶ୍ରେଣୀର ବ୍ରାହ୍ମଣଠାରୁ ଜନ୍ମଦାତା ପୁରୁଷ ଜଳ ଗ୍ରହଣ କରିପାରିବେ, ତାହା କିଏ କହି ପାରିବ କି ? ପ୍ରାୟଶ୍ଚିତ୍ତବେଳେ, ଜଣକୁ ଜାତିପାତ କରିବା ବେଳେ ମନୁବାକ୍ୟ, ବ୍ରାହ୍ମଣଙ୍କ ପକ୍ଷରେ ଅଟଳ । ମାତ୍ର ମନୁ ତ ଗୋଟାଏ ବ୍ରାହ୍ମଣ ବର୍ଣ୍ଣର ଉଲ୍ଲେଖ କରିଅଛନ୍ତି । କଳିକାଳରେ ଯେ ଏତେ ବ୍ରାହ୍ମଣଜାତିର ସୃଷ୍ଟି ହେଲା, ସେ କଥା ମୀମାଂସା କରିବାକୁ ମାନବ ଧର୍ମଶାସ୍ତ୍ରର ମତ ଟଳମଳ କାହିଁକି ? ସ୍ଥଳବିଶେଷରେ ମାନବ ଧର୍ମଶାସ୍ତ୍ର ଅଟଳ, ପୁଣି ସ୍ଥାନ ବିଶେଷରେ ଟଳମଳ, ଏହା ଦେଖିଲେ ଲଜ୍ଜିତ ହେବାକୁ ପଡ଼େ । ଆର୍ଯ୍ୟଜାତିର କି ଭୟାନକ ପତନ, କି ଅଧୋଗତି ।

ମାନବ ଧର୍ମଶାସ୍ତ୍ର ଏବଂ ତତ୍‌ପୂର୍ବର ପ୍ରାଚୀନ ଧର୍ମଶାସ୍ତ୍ରମାନ ସମ୍ୟକ୍ ଆଲୋଚନା କଲେ ସ୍ପଷ୍ଟରୂପେ ହୃଦୟଙ୍ଗମ ହୁଏ ଯେ, ଆର୍ଯ୍ୟ ଜାତି ଅଧୋଗତି ଆଡ଼କୁ ଅଗ୍ରସର ଥିବାବେଳେ ବ୍ରାହ୍ମଣ କ୍ଷତ୍ରିୟଙ୍କ ସ୍ୱାର୍ଥ ରକ୍ଷା ନିମନ୍ତେ ବିଶେଷତଃ ବ୍ରାହ୍ମଣର ସ୍ୱାର୍ଥ ରକ୍ଷା ନିମନ୍ତେ ମନୁ ନାମରେ କାଳ୍ପନିକ ମାନବ ଧର୍ମଶାସ୍ତ୍ରର ସୃଷ୍ଟି ହେଲା । ଏ ଗ୍ରନ୍ଥରେ କ୍ଷତ୍ରିୟ ବ୍ରାହ୍ମଣେତର ଜାତିମାନେ କାହିଁକି ଅନୁରକ୍ତ, କାହିଁକି ଏହାର ବିଧିବ୍ୟବସ୍ଥାରେ ଆପଣା ଆପଣା ସ୍ୱାର୍ଥ ଜଳାଞ୍ଜଳି ଦେଇ ଅକର୍ମଣ୍ୟ ଦୁଇ ଜାତି ଉପରେ ଆପଣାର ଭବିଷ୍ୟତ୍ ଭାର ଅର୍ପଣ କଲେ, ତାହା ସ୍ୱପ୍ନରେ ମଧ୍ୟ ଅଗୋଚର । ମୁଷ୍ଟିମେୟ ବ୍ରାହ୍ମଣଙ୍କ ନିମନ୍ତେ ଜନବହୁଳ ଭାରତବର୍ଷ ? ଏହା ଭାବିବାକୁ ମଧ୍ୟ ହୃତ୍‌କମ୍ପ ଉପସ୍ଥିତ ହୁଏ । ଜନତାର ବହୁଳ ଭାଗ ଶୂଦ୍ର— ଏହି ଶୂଦ୍ର ବ୍ରାହ୍ମଣ କ୍ଷତ୍ରିୟ, ବିଶେଷତଃ ବ୍ରାହ୍ମଣର ସ୍ୱାର୍ଥରେ ଇଚ୍ଛାନୁସାରେ ନିର୍ବାସିତ କରାଯାଇପାରିବ, କେବଳ ଏତିକି ନୁହେଁ.. ଯଥାକାମବାଧ୍ୟଃ— ଇଚ୍ଛାନୁସାରେ ଶୂଦ୍ରକୁ ବଧ କରାଯାଇପାରିବ । ଏ ବ୍ୟବସ୍ଥା ଯେଉଁ ଶାସ୍ତ୍ରରେ ଥାଏ, ତାହାକୁ କି ଧର୍ମଶାସ୍ତ୍ର ବୋଲାଯାଇପାରେ ? ତଥାପି ଅନ୍ଧବିଶ୍ୱାସୀ ହିନ୍ଦୁ ଏତାଦୃଶ ଗ୍ରନ୍ଥକୁ ପ୍ରାମାଣିକ ଧର୍ମଶାସ୍ତ୍ର ବୋଲି ସ୍ୱୀକାର କରିବାକୁ କୁଣ୍ଠିତ ନୁହନ୍ତି । ସ୍ୱୀକାର ନ କରିବେ ବା କିପରି ? ଧର୍ମର କଞ୍ଚି ତ ବ୍ରାହ୍ମଣଠାରେ । ବିଦ୍ୟାଧାପନ ତ ବ୍ରାହ୍ମଣର ଅଧିକାରଭୁକ୍ତ । ଅପର ଦୁଇ ବର୍ଣ୍ଣ ପଢ଼ିବେ, ପଢ଼ାଇ ପାରିବେ ନାହିଁ । ଯେଉଁମାନଙ୍କ ନିମନ୍ତେ ବଧ ବନ୍ଧନ ନିଷ୍ପାସନ ସ୍ଥିର ଆଦେଶ ରହିଲା, ସେମାନେ ଉନ୍ନତି ନିମନ୍ତେ ମୁଣ୍ଡ ଟେକିଲେ, ମୁକ୍ତି ନିମନ୍ତେ ପୁସ୍ତକ ପଢ଼ିଲେ ଦଣ୍ଡ ପାଇବାର— ସ୍ଥଳ ବିଶେଷରେ ବଧ ହେବାର ବ୍ୟବସ୍ଥା ରହିଅଛି । ସାରା ପୃଥିବୀରେ କି ସଭ୍ୟ କି ଅସଭ୍ୟ କେଉଁ ଦେଶରେ ଏତାଦୃଶ ନିର୍ମମ କ୍ରୂର ବ୍ୟବସ୍ଥା ବୁଝାଯାଉ ନାହିଁ । ତଥାପି ଆମ୍ଭେମାନେ ଈଶ୍ୱରବିଶ୍ୱାସୀ ଓ ଆତ୍ମବିଶ୍ୱାସୀ ବୋଲି ସ୍ଫୀତ ଓ ଗର୍ବିତ ।

ସ୍ୱର୍ଗାର୍ଥମୁଭୟାର୍ଥଂ ବା ବିପ୍ରାନାରାଧୟେତ୍ତୁ ସଃ ।
ଜାତବ୍ରାହ୍ମଣଶବ୍ଦସ୍ୟ ସାହ୍ୟସ୍ୟ କୃତକୃତ୍ୟତା ।।
ମ : ୧୦। ୧୨୨

ସ୍ୱର୍ଗପ୍ରାପ୍ତି ନିମିତ୍ତ ଓ ସ୍ୱବୃତ୍ତିରକ୍ଷାର୍ଥ ଶୂଦ୍ର ବ୍ରାହ୍ମଣଙ୍କର ପରିଚର୍ଯ୍ୟା କରିବ । ଶୂଦ୍ର ବ୍ରାହ୍ମଣର ଆଶ୍ରିତ ଜାତି । ଏଥିରେ ଶୂଦ୍ରର କୃତକୃତ୍ୟତା ବ୍ରାହ୍ମଣର ସେବା ହିଁ ଶୂଦ୍ରର ଜୀବିକା ଏବଂ ସେଥିରେ ସ୍ୱର୍ଗପ୍ରାପ୍ତି, ଅନ୍ୟ କାହିଁରେ ନୁହେଁ । ପୁରସ୍କାର ତ ନାହିଁ, କେବଳ ତା'ର ଏବଂ ତା'ର ସ୍ତ୍ରୀ ପୁତ୍ରର ପେଟ ପୋଷିବା ଭଳି ଯାହା କିଛିମାତ୍ର ସେ ଉପାର୍ଜନ କରିପାରେ । ପାଇବ କ'ଣ— ଉଚ୍ଛିଷ୍ଟ ଅନ୍ନ, ଜୀର୍ଣ୍ଣ ବସନ, ପୁଲଧାନ । ପାଠକଗଣ, ଦେଖିଲେ ତ ଧର୍ମଶାସ୍ତ୍ରର ବ୍ୟବସ୍ଥା ? ତଥାପି ଶୂଦ୍ର ମଧ ମନୁ ମନୁ ବୋଲି ଆକୁଳ ହୁଏ ।

ଶକ୍ତେନାପି ହି ଶୂଦ୍ରେଣ ନାକାର୍ଯ୍ୟୋ ଧନସଞ୍ଚୟଃ ।
ଶୂଦ୍ରୋହି ଧନମାସାଦ୍ୟ ବ୍ରାହ୍ମଣାନେବ ବାଧତେ ।

ଧନାର୍ଜନସମର୍ଥ ଥିଲେ ମଧ ଶୂଦ୍ର ଧନ ସଞ୍ଚୟ କରି ପାରିବ ନାହିଁ । ଶୂଦ୍ର ଧନପ୍ରାପ୍ତ ହେଲେ ଶୁଶ୍ରୂଷା ନ କରି ବ୍ରାହ୍ମଣଙ୍କୁ ପୀଡ଼ା ଦେବ। ବ୍ୟବସ୍ଥା ଅତି ଉପାଦେୟ । ନିରପେକ୍ଷପାତ । ଈଶ୍ୱରାନୁମୋଦିତ ଓ ଧର୍ମଶାସ୍ତ୍ରସମ୍ମତ । ଏହିପ୍ରକାର ବ୍ୟବସ୍ଥାଦ୍ୱାରା ଯେଉଁ ଗ୍ରନ୍ଥ ପରିପୂର୍ଣ୍ଣ, ସେ ଭାରତବର୍ଷର ଧର୍ମଶାସ୍ତ୍ର । ଏହି ସାମାନ୍ୟ ଶ୍ଳୋକଟାଏ ଗୋଟାଏ ଅଭ୍ୟୁତ୍ଥାନୋନ୍ମୁଖ ଜାତିର ବଡ଼ଅଂଶକୁ ପଙ୍ଗୁ କରିଦେଲା । କିନ୍ତୁ ଏ ବ୍ୟବସ୍ଥା କାଳକ୍ରମେ ରହିଲା ନାହିଁ, ମାତ୍ର ଜାତି ପଙ୍ଗୁ ହୋଇ ପରାଧୀନ ହେଲା । ଆଜି ଲକ୍ଷ ଲକ୍ଷ ଶୂଦ୍ର ଲକ୍ଷପତି, ବ୍ରାହ୍ମଣ ଦରିଦ୍ର ଓ ଭିକ୍ଷୁକ । ମାତ୍ର ସେ କାଳରେ ଯେବେ ସମର୍ଥ ଶୂଦ୍ରମାନଙ୍କର ଧନୋପାର୍ଜନର କ୍ଷମତାରେ ବାଧା ଦିଆଯାଇ ନ ଥାନ୍ତା ଏବଂ ସମର୍ଥ ଶୂଦ୍ରମାନଙ୍କୁ ଯୁଦ୍ଧ ବ୍ୟବସାୟରେ ନିଯୁକ୍ତ କରାଯାଇଥାନ୍ତା, ପାଠକେ ଭାବି ଦେଖନ୍ତୁ, ଭାରତର କି ଏ ଦୁର୍ଦ୍ଦଶା ହୋଇଥାନ୍ତା ? ବ୍ରାହ୍ମଣ ନିଜ ସ୍ୱାର୍ଥରେ କ୍ଷତ୍ରିୟଜାତିର ସହାୟତାରେ ଜାତିର ବଡ଼ ଅଙ୍ଗକୁ ହତୋତ୍ସାହ, ପଙ୍ଗୁ ମୂର୍ଖ କରି ରଖିଲେ । ବ୍ରାହ୍ମଣର ସ୍ୱାର୍ଥରକ୍ଷା ହେଲା, ନା କ୍ଷତ୍ରିୟର ଆଧିପତ୍ୟ ରହିଲା ? କିଛି ନୁହେଁ । ଭ୍ରମାୟମାନ ଦାସତ୍ୱଶୃଙ୍ଖଳ ବ୍ରାହ୍ମଣ କ୍ଷତ୍ରିୟଙ୍କ ଅବିମୃଷ୍ୟକାରିତାର ଫଳ । ଏ ସମସ୍ତ ଦେଖିଲେ ମନ୍ୱାଦିଙ୍କର ଦୂରଦର୍ଶିତାର ପରିଚୟ ମିଳେ କି ?

ଶୂଦ୍ରଜାତିର ପରିଚୟ ମିଳେ, ମାତ୍ର ବୈଶ୍ୟ ଭାରତରେ ଅଛନ୍ତି କି ନାହିଁ, ତାହା ଠିକ୍ ଜାଣିବା କଠିନ । ଆଜି ପ୍ରଧାନତଃ ଶୂଦ୍ରମାନେ ବ୍ୟବସାୟୀ, ସେମାନେ ଜାତିର ଅନ୍ନ ସଂସ୍ଥାନ କରନ୍ତି । ମାତ୍ର ଯେଉଁ ଜାତି ଜାତିର ଅନ୍ନସଂସ୍ଥାନ କରନ୍ତି, ସେମାନେ ବୈଶ୍ୟ ବୋଲି ପୁରୁଷସୂକ୍ତରେ ଏବଂ ଧର୍ମଶାସ୍ତ୍ରରେ ଲେଖା ଥିଲା— ସେ ବ୍ୟବସ୍ଥା ଅନୁସାରେ ଆଜି ଶୂଦ୍ର କୃଷକ ଓ ଶୂଦ୍ର ବ୍ୟବସାୟୀ ବୈଶ୍ୟ ବୋଲି ଗଣ୍ୟ ହୁଅନ୍ତି କି ? ତେବେ ସେ ବ୍ୟବସ୍ଥାର ମୂଲ୍ୟ କ'ଣ ? ଯେଉଁ ଶୂଦ୍ରକୁ ଧନ ଉପାର୍ଜନ ଓ ଧନରକ୍ଷା କରିବାକୁ ଦୃଢ଼ ନିଷେଧ ଆଜ୍ଞା ଥିଲା, ସେ ଯେ ଏବେ ଧନ ଉପାର୍ଜନ କରେ, ତାହା ମନୁର ବ୍ୟବସ୍ଥାବିରୋଧ ନୁହେଁ କି ? ତା ମୁଖରୁ ପୁଣି ବର୍ଣ୍ଣାଶ୍ରମ ଧର୍ମର ପ୍ରଶଂସା ବାହାରିବାଟା ଲଜ୍ଜାକର ନୁହେଁ କି ? ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରୁ, ପାଶ୍ଚାତ୍ୟ ସଂସର୍ଗରୁ ଏବଂ ବ୍ରାହ୍ମଣ କ୍ଷତ୍ରିୟଙ୍କ ଆଧିପତ୍ୟ ଲୋପ ପାଇବାରୁ ଆଜି ଭାରତରେ ଏତେ ଧନୀ । ପାଠକେ ଭାବିବେ କି ସେହି ସମୟର କଥା, ଯେତେବେଳେ କେବଳ କ୍ଷତ୍ରିୟମାନେ ଶାସନ କରୁଥାନ୍ତେ, ବ୍ରାହ୍ମଣମାନେ ଘରେ ସ୍ୱଚ୍ଛନ୍ଦରେ ବସି ଘୃତାନ୍ନ ଭୋଜନ କରୁଥାନ୍ତେ, ବୈଶ୍ୟ କେବଳ ସମସ୍ତଙ୍କୁ ଉପାର୍ଜନ କରି ଯୋଗାଉଥାନ୍ତେ, ଶୂଦ୍ର ଜାତି କେବଳ ସମସ୍ତଙ୍କ ପାଦରେ ତୈଳ ମର୍ଦ୍ଦନରେ ନିଯୁକ୍ତ ଥାନ୍ତେ । ଏପରି ସମୟ ଯେ ନ ଥିଲା, ଏପରି ନୁହେଁ ଏବଂ ଭାରତର ପତନର କାରଣ ମଧ ଏହି ହେତୁରୁ । ଯାଉ ସେ କଥା ।

ଆମ୍ଭେମାନେ ଦୃଢ଼ତା ସହିତ କହିପାରୁଁ ଯେ, ଆଜିକାଲି ଯେତେ ପରିବର୍ତ୍ତନ ଆମ୍ଭମାନଙ୍କ ମଧରେ ଘଟୁଅଛି, ତାହା କେବଳ ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରୁ ଏବଂ ସଭ୍ୟ ଜଗତର ସଂସ୍ରବରୁ । ନୁହେଁ କି ? ମାଲବ୍ୟ ଶୁଦ୍ଧପୂତ ବ୍ରାହ୍ମଣ ପଣ୍ଡିତ— ଶାସ୍ତ୍ରଜ୍ଞ ସାରସ୍ୱତ ବ୍ରାହ୍ମଣ । ସେ ଦେଶକାଳ ବିବେଚନାରେ 'ଓଁ ନମୋନାରାୟଣାୟ' ମନ୍ତ୍ର ଦୀକ୍ଷା ଦେଇ ନୀଚମାନଙ୍କୁ ଉର୍ଦ୍ଧ୍ୱସ୍ତରକୁ ଉଠାଇବାର ଯେ ପ୍ରୟାସ କରୁଅଛନ୍ତି, ସେଥିରେ ତାଙ୍କର ଉଦାରତା ଅଛି । ସେ ବିଦ୍ୱାନ୍ ବ୍ରାହ୍ମଣ, ମନୁବାକ୍ୟ ଲଙ୍ଘନ କରିପାରନ୍ତି ଏବଂ କରି ସୁଦ୍ଧା ମାନବ ଧର୍ମଶାସ୍ତ୍ରର ଶ୍ରେଷ୍ଠତା ପ୍ରକାଶ କରିପାରନ୍ତି । ଯେହେତୁ ସେ ବ୍ରାହ୍ମଣ । ମାତ୍ର ଯେଉଁମାନେ ଶୂଦ୍ର ବୋଲି ଯୁଗଯୁଗାନ୍ତରରୁ ପରିଚିତ, ଯେଉଁମାନେ ବ୍ରାହ୍ମଣଙ୍କର ପଦଦଳିତ, ଯଦି ବ୍ରାହ୍ମଣ ଆଧିପତ୍ୟ ଥାଆନ୍ତା, ଯେଉଁମାନେ କି ଆଜି କୌଣସିପ୍ରକାର ଉନ୍ନତି କରିବାକୁ ସମର୍ଥ ହୁଅନ୍ତି ନାହିଁ, ସେହି ଶୂଦ୍ରମାନଙ୍କ ମୁଖରେ ମାନବ ଧର୍ମଶାସ୍ତ୍ରର ତଥା ବର୍ଣ୍ଣାଶ୍ରମ ଧର୍ମର ପ୍ରଶଂସା ଶୁଣିଲେ ଦିହରେ ଶତ ବୃଶ୍ଚିକ ଦଂଶନର ବେଦନା ଅନୁଭୂତ ହୁଏ । ଆଜି ଶୂଦ୍ର ଯେବେ ବ୍ରାହ୍ମଣ ଦେଖିଲେ ବିଚାରାସନରୁ ଖସି ଓଳଗି ହୁଅନ୍ତେ, ତାଙ୍କର ଉପାର୍ଜିତ ସମସ୍ତ ଧନ ବ୍ରାହ୍ମଣକୁ ଦେଇ

ବ୍ରାହ୍ମଣର ଚରଣସେବା କରନ୍ତେ, ତେବେ ତାଙ୍କ ମୁଖରେ ବର୍ଣ୍ଣାଶ୍ରମ ଧର୍ମର ପ୍ରଶଂସା ଶୋଭନୀୟ ହୁଅନ୍ତା । ଇଂରେଜ ପ୍ରସାଦରୁ ବିଚାରାସନରେ ବସି ନୈଷ୍ଠିକ ବ୍ରାହ୍ମଣର ସଲାମ ଗ୍ରହଣ କରୁଅଛନ୍ତି । ଦୁଇ ଚାରି ପଦ ଅପମାନଜନକ ବାକ୍ୟ ବା ଅପବାକ୍ୟ ଝାଡ଼ି ଦେଉଅଛନ୍ତି । ଦଣ୍ଡ ଦେଉଅଛନ୍ତି, ସ୍ଥଳବିଶେଷରେ ଫାଶି ମଧ ଦେଉଅଛନ୍ତି । ସେହି ଶୂଦ୍ରଗଣ ଜାଣନ୍ତି କି ଏଥି ନିମନ୍ତେ ସେମାନଙ୍କର କି ଶାସ୍ତି ଥିଲା ? ବ୍ରାହ୍ମଣ ଦେଖି ଆସନରୁ ନ ଉଠିଲେ ବା ବ୍ରାହ୍ମଣାସନରେ ବସିଲେ ଶୂଦ୍ରର ଅଣ୍ଡା କଟା ଯାଉଥିଲା । ଆଧୁନିକ ବିଚାରପତି ଯେଉଁ ଶାସ୍ତ୍ର ଅନୁସାରେ ନିଜର ଅଣ୍ଡା ଛେଦନ ଓ ମୁଣ୍ଡପାତ ଯୋଗ୍ୟ ଅପରାଧ କରୁଅଛନ୍ତି, ସେ ପୁଣି ସେହି ଶାସ୍ତ୍ରର ପ୍ରଶଂସା କରିବା ହାସ୍ୟାସ୍ପଦ କଥା ନୁହେଁ କି ? ଆଜିକାଲି ପତ୍ରିକାମାନଙ୍କରେ ଶୂଦ୍ର ଲେଖକମାନଙ୍କର ଅଭାବ ନାହିଁ, ଯେଉଁମାନେ କି ବର୍ଣ୍ଣାଶ୍ରମ ଧର୍ମର ଦୁଇ ଚାରି ପଦ ପ୍ରଶଂସା କରୁ ନାହାନ୍ତି । କାଳସ୍ୟ କୁଟିଳା ଗତିଃ ।

ଗାନ୍ଧି ବୈଶ୍ୟ କି ଶୂଦ୍ର କି ସଂକୀର୍ଣ୍ଣ ତାହା ଠିକ୍ ରୂପେ କିଏ କହି ପାରିବ କି ? ତାଙ୍କ ଦେଶୋଦ୍ଧାରର ପ୍ରଯତ୍ନ ପାଶ୍ଚାତ୍ୟ ଶିକ୍ଷାପ୍ରଭାବିତ ନୁହେଁ କି ? ଶୂଦ୍ର ବା ବୈଶ୍ୟ ହୋଇ ବ୍ରାହ୍ମଣର ନମସ୍କାର ଗ୍ରହଣ, ସମ୍ମାନ ସ୍ୱୀକରଣ, ବ୍ରାହ୍ମଣ ପ୍ରତି ଧର୍ମୋପଦେଶ ପାଶ୍ଚାତ୍ୟ ଶିକ୍ଷା ହେତୁରୁ ନୁହେଁ କି ? ମନୁ ବିରୋଧରେ ପ୍ରତିଲୋମକ୍ରମେ ଅସବର୍ଣ୍ଣ ବିବାହ କି ବର୍ଣ୍ଣାଶ୍ରମ ଧର୍ମସମ୍ମତ ? ତଥାପି ଗାନ୍ଧି କେଉଁ ବଳରେ ବର୍ଣ୍ଣାଶ୍ରମ ଧର୍ମର ପ୍ରଶଂସା କରନ୍ତି ଏବଂ ଜାତିଭେଦ ରହସ୍ୟ ପାଶ୍ଚାତ୍ୟ ଜାତିଙ୍କର ବୋଧାଗମ୍ୟ ବୋଲି ପ୍ରଚାର କରନ୍ତି, ତାହା ଆମ୍ଭମାନଙ୍କର କ୍ଷୁଦ୍ର, ବୁଦ୍ଧିର ଅଗୋଚର । ଇଚ୍ଛାନୁସାରେ ଧର୍ମଶାସ୍ତ୍ର ବିରୋଧରେ କାର୍ଯ୍ୟ କରିବା ଅଥଚ ଜଗତ୍ ସମକ୍ଷରେ ସେହି ଧର୍ମର ପ୍ରଶଂସା କରିବା କିପରି ଯୁକ୍ତିସିଦ୍ଧ ତାହା ମଧ ଆମ୍ଭମାନଙ୍କର ବୁଦ୍ଧିର ଅଗୋଚର । ଅଜ୍ଞ ଲୋକ ପ୍ରତି ଗନ୍ଧି ସଦୃଶ ମହତ୍ ବ୍ୟକ୍ତିଙ୍କର ଭାଷଣ ବୁଝିବା ମାନବର ଚନ୍ଦ୍ରସ୍ପର୍ଶପ୍ରୟାସ ବୋଲି ବିବେଚିତ ହୋଇପାରେ । କିନ୍ତୁ ବିବେକବୁଦ୍ଧି କହେ, ଏତାଦୃଶ ବାକ୍ୟ ଭାରତବାସୀର ଧର୍ମ ଧ୍ୱଜା—ଏଥିରେ ଦୋଷ କାହାର ?

ଭାରତ ଜାତିଭେଦ ହେତୁରୁ ଭେଦସମୁଦ୍ରରେ ବୁଡ଼ି ରହିଅଛି । ଏଥିରୁ ତାକୁ ଉଦ୍ଧାର କରିବ କିଏ ? କୃଷ୍ଣାଦି ଏ ଭୂମିରେ ଜନ୍ମଗ୍ରହଣ କରିଥିଲେ । ସେମାନଙ୍କ ଉପଦେଶରେ ଏକତା ଆସିଲା ନାହିଁ । କାରଣ ସେମାନଙ୍କ ଉପଦେଶ ଓ ପ୍ରଚାର ପ୍ରାଚୀନ ଧର୍ମଶାସ୍ତ୍ର ଉପରେ ପ୍ରତିଷ୍ଠିତ । ଭାରତମାତା ଅସଂଖ୍ୟ ସତ୍‌ପୁତ୍ରମାନଙ୍କ ମଧ୍ୟରୁ ଗୋଟିଏ ବୋଇଲେ ଗୋଟିଏ ଯୋଗ୍ୟପୁତ୍ର ପ୍ରସବ କରିବାକୁ ସମର୍ଥ ହୋଇଥିଲା ଯେ କି, ଆତ୍ମବିବେକଚାଳିତ, ଯାହାଙ୍କର ଭବିଷ୍ୟତ୍ ଦୃଷ୍ଟି ତୀକ୍ଷ୍ଣ ଓ ନିର୍ମଳ, ଯାହାଙ୍କ ଦୟା ଓ ଜ୍ଞାନ ଅଗାଧ । ଶାସ୍ତ୍ର ଦୋହାଇ ଦେଇ ଲୋକଙ୍କୁ ପ୍ରତାରିତ କରିବାର ଚେଷ୍ଟା ଯାହାଙ୍କର ଆଦୌ ନ ଥିଲା । ସ୍ନେହ ଦୟା ପ୍ରଦର୍ଶନଦ୍ୱାରା ଲୋକମନରୁ ଭେଦବୁଦ୍ଧି ଉନ୍ମୀଳିତ କରିବାର ଚେଷ୍ଟା କରିଥିଲେ ଏବଂ କୃତକାର୍ଯ୍ୟ ଯେ ହୋଇ ନ ଥିଲେ ଏମନ୍ତ ନୁହେଁ । ମାତ୍ର ଶିଷ୍ୟମାନେ ଅନେକ ସମୟରେ ଗୁରୁର ଉପଦେଶ ଅକ୍ଷରେ ଅକ୍ଷରେ ପାଳନ କରନ୍ତି ନାହିଁ, ଅନ୍ୟ ପନ୍ଥାର ଆବିଷ୍କାର କରନ୍ତି । ଭାରତରେ ତାହାହିଁ ଘଟିଥିଲା । ନିଜ ସ୍ୱାର୍ଥରେ ଭୟାନକ ବାଧା ଦେଖି ବ୍ରାହ୍ମଣମାନେ କ୍ଷତ୍ରିୟଙ୍କର ସାହାଯ୍ୟ ଲୋଡ଼ିଲେ । କ୍ଷତ୍ରିୟ ବ୍ରାହ୍ମଣ ମିଳିତ ହୋଇ ଭାରତର ଏକତା ଭଗ୍ନ କଲେ । ଭେଦପ୍ରଥା ବଢ଼ାଇଲେ । ଅସଂଖ୍ୟ ନିଚ ଜାତିର ସୃଷ୍ଟି ହେଲା । ଏହି ପତିତ ଜାତି ପେଟ ପୋଷିବା ନିମନ୍ତେ ଘୃଣ୍ୟ ବ୍ୟବସାୟ କରିବାକୁ ବାଧ ହେଲେ । ଜାତି ସଂଖ୍ୟା ବଢ଼ିଲା, ଭେଦବୁଦ୍ଧି ବଢ଼ିଲା, ଲାଭ ହେଲା ପରର । ଭାରତବାସୀ ହୀନବଳ, ହୀନବୀର୍ଯ୍ୟ ହୋଇ ତା'ର ପଦାନତ ହେଲେ ।

ଭାରତବାସୀ ତଥାପି ତା'ର ଧର୍ମ ଗୌରବର ପ୍ରଶଂସା ନ କରି ରହିପାରୁ ନାହିଁ । ହଜାର ହଜାର ବର୍ଷର ପରୀକ୍ଷାରେ ଭାରତର ଅକୃତକାର୍ଯ୍ୟତାର ଜାଜ୍ଜ୍ୱଲ୍ୟମାନ ପ୍ରମାଣ ଦେଖାଯାଉଥିଲେ ହେଁ ଯେବେ ଆଧୁନିକ ନେତାମାନେ ଲୋକଙ୍କୁ ସେହି ପନ୍ଥାର ପଥିକ ହେବାକୁ ଉପଦେଶ ଦେବେ, ତେବେ ଉନ୍ନତିର ଆଶା ଆଉ କେଉଁଠାରେ ? ଯେଉଁ ପୁତ୍ର ଶାସ୍ତ୍ର ନିଗଡ଼କୁ ଭାଙ୍ଗିବ, ଜ୍ଞାନାଞ୍ଜନ ଦେଇ ଧର୍ମାନ୍ଧତା ଦୂର କରିପାରିବ, ସେ ଭାରତରେ ଏକତା ଆଣିପାରିବ । ମନୁଷ୍ୟ ମନୁଷ୍ୟର ଦେବତା, ନିଜ ଆତ୍ମା ଭିନ୍ନ ମନୁଷ୍ୟ ସମଷ୍ଟିର ଆତ୍ମା ପରମାତ୍ମା ବୋଲି ଲୋକଙ୍କୁ ବୁଝାଇ ପାରିବ, ସେ ମାତ୍ର ଏକତା ଆଣିପାରେ । ମାତ୍ର ସେପରି ଜନ୍ମ କେବେ ଘଟିବ କିଏ କହିପାରେ ।

ବ୍ରାହ୍ମଣ ମୁଷ୍ଟିମେୟ । କ୍ଷତ୍ରିୟର ବ୍ୟକ୍ତିତ୍ୱ ନଗଣ୍ୟ । ବୈଶ୍ୟର ବିଶେଷତ୍ୱ ନାହିଁ । ଦେଖିବାକୁ ଗଲେ, ଭାରତ ଶୂଦ୍ରମୟ । ଏମାନଙ୍କୁ ହୀନ କରି, ପଙ୍ଗୁ କରି ରଖିବାକୁ ଯେଉଁ ଜାତିମାନେ ବରାବର୍ ଚେଷ୍ଟା କରିଅଛନ୍ତି, ସେମାନେ ପୁଣି ତାକୁ ନିଜେ ସମ୍ମାନ ଦେବେ, ସହଜରେ ଏହା ଧାରଣାର ଅତୀତ । ଶୂଦ୍ର ଜାତି, ନୀଚ ଜାତି ନିଜେ ଉଠିବାକୁ ଚେଷ୍ଟା କଲେ ଉଠି ପାରିବେ । ସେମାନଙ୍କର ସ୍ୱକୀୟ ଚେଷ୍ଟା କେବଳ

ଫଳଦାୟକ । ଉଚ୍ଚର ଚେଷ୍ଟା ମନ୍ଦିର ପ୍ରବେଶ— ନୀଚ ଶୂଦ୍ରଙ୍କୁ କ୍ରମେ କ୍ରମେ ମନ୍ଦିରପ୍ରବେଶ କରାଇ, ଦୀକ୍ଷା ଦେଇ କ୍ରମୋନ୍ନତିଦ୍ୱାରା ସୋପାନ ଆରୋହଣ କରାଇବା ପ୍ରଲୋଭନ ଏକପ୍ରକାର ପ୍ରତାରଣା ବୋଲାଯାଇପାରେ । ନୀଚଙ୍କର ସୋପାନ ଆରୋହଣ ପ୍ରଥା ମୂର୍ତ୍ତିପୂଜାରୁ ବ୍ରହ୍ମପ୍ରାପ୍ତି ତୁଲ୍ୟ ଅଟେ । ବ୍ରାହ୍ମଣ ବୃଦ୍ଧ ହୋଇଗଲେ ମଧ୍ୟ ସେହି ମୂର୍ତ୍ତି ପୂଜାରେ ତାଙ୍କର ବ୍ରହ୍ମପ୍ରାପ୍ତି ପର୍ଯ୍ୟବସିତ ହୁଏ । ନୀଚ ଜାତିକୁ ସେହି ପ୍ରକ୍ରିୟାରେ ସୋପାନ ଆରୋହଣ କରାଉ କରାଉ କାଳ ପାହି ଯିବ । ଇତି ମଧ୍ୟରେ ସୋପାନ ଆରୋହଣ ଉପାୟ ମୟ ସୋପାନ ନୀଚଜନଙ୍କ ଭାବରେ ଚୂର୍ଣ୍ଣୀଭୂତ ହେବ । ତଳେ ପଡ଼ି ଯେଉଁ ନୀଚକୁ ସେହି ନୀଚ ।

ଭାରତ ଶାସକଗଣ ମହାଭାରତୋକ୍ତ ସାମ, ଦାନ, ଦଣ୍ଡ, ଭେଦ ବଳରେ ବିଶେଷତଃ ଶେଷ ବଳରେ ଭାରତରେ ଅଖଣ୍ଡ ରାଜତ୍ୱ କରୁଅଛନ୍ତି । ଏହା କେହି ଅସ୍ୱୀକାର କରିବେ ନାହିଁ । ପାଶ୍ଚାତ୍ୟଶିକ୍ଷା ପ୍ରଭାବରେ ଦେଢ଼ ଶହ ବର୍ଷ ରହି ସୁଦ୍ଧା ଭାରତବାସୀ ଶାସନଭାର ଗ୍ରହଣଯୋଗ୍ୟ ବିବେଚିତ ହୋଇ ନାହାନ୍ତି । ହେବେ ବା କିପରି ? ଏ ଜାତିର ତ ପୌରୁଷ ନାହିଁ । କେବଳ ବାକ୍ୟଟୋପରେ କି ଜାତୀୟତା ଅଛି ? ଜନତାର ପ୍ରଧାନ ଭାଗଟା ଅଶିକ୍ଷିତ, ଅସମ୍ମାନିତ, ହେୟ ଓ ପଙ୍ଗୁ । ସେମାନଙ୍କର ଉଚ୍ଚ ହୋଇପାରିବାର ଆଶା ନାହିଁ ବା ଆକାଂକ୍ଷା ନାହିଁ । ବହୁକାଳ ପୂର୍ବରେ ସେମାନଙ୍କର ଆଶାଙ୍କୁର କୃତ୍ରିମ ଶାସ୍ତ୍ରକୁ ଠାରଦ୍ୱାରା ବାରମ୍ବାର କର୍ତ୍ତିତ ହୋଇଅଛି । ଯେଉଁ ଉଚ୍ଚ ଜାତିମାନେ ଚତୁର୍ଥ ଜାତିକୁ ଓ ମିଶ୍ରିତ ଜାତିକୁ ପଦଦଳିତ କରି ଅକର୍ମଣ୍ୟ କରିପାରିଥିବା ହେତୁରୁ ମନରେ ଅସାଧାରଣ ଗର୍ବଭାବ ବହନ କରନ୍ତି ଏବଂ ଆମ୍ଭେମାନେ ପରପଦଦଳିତ ହେଲେ ସୁଦ୍ଧା ଯେ କୌଣସି ପ୍ରକାରେ ଅନ୍ୟକୁ ପଦଦଳିତ କରି ପାରିବାର କ୍ଷମତା ଈଶ୍ୱରପ୍ରଦତ୍ତ ଏଣୁ ଆମ୍ଭେମାନଙ୍କଠାରେ ଅଛି ବୋଲି ଗର୍ବ କରନ୍ତି, ସେମାନେ କି କେବେ ନୀଚମାନଙ୍କୁ ଉଚ୍ଚ କରି ଦେବେ ? ଏହା ଆଦୌ ସମ୍ଭବ ନୁହେଁ ।

ଅନ୍ୟ ଦେଶମାନଙ୍କରେ ଉଚ୍ଚ ନୀଚର କି ଭେଦ ନାହିଁ ? ଜେତା ବିଜେତାର କି ଭେଦ ନାହିଁ । ଧନୀ ନିର୍ଦ୍ଧନର ଭେଦ ନାହିଁ ? ଅଛି । ମାତ୍ର ଜାତିଭେଦ ନାହିଁ । ଉଚ୍ଚଙ୍କ ମଧ୍ୟରେ ହୀନତା ନାହିଁ, କ୍ରୂରତା ନାହିଁ । ଭାରତୀୟ ଉଚ୍ଚ ଜାତିର ବାହାରଟା ବଡ଼ ନିର୍ମଳ, ଶୌଚାଚାର ପରିପୂର୍ଣ୍ଣ, ମାତ୍ର ଅନ୍ତରଟା ହୀନତା ଓ କ୍ରୂରତାର ଆବାସ । ଅନ୍ୟର ଶ୍ରେୟ ଏମାନଙ୍କ ପ୍ରତି ଅସହନୀୟ । ଯେହେତୁ ଈଶ୍ୱର ସାମୀପ୍ୟର ଆକାଂକ୍ଷା ନୀଚଙ୍କ ସଂସ୍ପର୍ଶରେ ଆସିଲେ ଈଶ୍ୱର ଯେ ସେମାନଙ୍କୁ ଘୃଣା କରିବେ । ଏ ବିଷୟ ଛାଡ଼େ କିଏ ? ଅନ୍ୟ ଦେଶର ନୀଚମାନେ କାଳକ୍ରମେ ଉନ୍ନତ, ମହତ୍ ଓ ବଡ଼ ହେଉଅଛନ୍ତି । ହଜାର ହଜାର ବର୍ଷରେ କୌଣସି ନୀଚ ଜାତି କି ସାମାଜିକ କି ରାଜନୈତିକ କ୍ଷେତ୍ରରେ ଶ୍ରେଷ୍ଠଙ୍କର ସମାନ ହୋଇଅଛନ୍ତି କି ? ନାହିଁ । ୧୮୯୮ ରେ ବୋଧ ହୁଏ ଇଂଲଣ୍ଡରେ ଅତି କଷ୍ଟରେ ଚାରି ଛଅ ଜଣ ମଜୁରିଦାର ପାର୍ଲିଆମେଣ୍ଟର ମେମ୍ବର ହୋଇପାରିଥିଲେ । ବୋଧ ହୁଏ, ସେତେବେଳେ ଶ୍ରମିକ ଶ୍ରେଣୀର କୌଣସି ବ୍ୟକ୍ତି ରାଜପ୍ରାସାଦକୁ ସମ୍ମାନ ସହିତ ନିମନ୍ତ୍ରିତ ହେବାର ତ ତେଣେ ଥାଉ, ଦର୍ଶକ ଭାବରେ ମଧ୍ୟ ପ୍ରବେଶ କରିପାରୁ ନ ଥିଲେ । କିନ୍ତୁ ଆଜି ସେହି ଶ୍ରମିକପୁତ୍ର ସମ୍ରାଟ୍‌ଙ୍କର ଦକ୍ଷିଣ ପାର୍ଶ୍ୱରେ ଆସନ ପାଉଅଛନ୍ତି, କରମର୍ଦ୍ଦନର ସୁଯୋଗ ପାଉଅଛନ୍ତି । ଶ୍ରମିକର ଏ ସମ୍ମାନ କି ଟୋରିଦଳଙ୍କ ସହାୟତାରୁ ? ଶ୍ରମିକମାନଙ୍କୁ କି ଟୋରିମାନେ ଉଠାଇଲେ ? ସେମାନେ ଅଧ୍ୟବସାୟବଳରେ ଏ ମହତ୍ତ୍ୱରେ ଉପନୀତ ହୋଇଅଛନ୍ତି । ଶ୍ରମିକ ଦଳ ଏକମତ ହୋଇ ଏକ ସାଧନାରେ କୃତକାର୍ଯ୍ୟ ହୋଇଅଛନ୍ତି । ପଦଦଳିତ ଉଚ୍ଚ ଜାତି ନୀଚକୁ ଉଠାଇବାର ଉପାୟ କାହିଁ ? 'ଆତ୍ମ ରକ୍ଷଣେ ଅସମ୍ଭବ, ସେ କାହୁଁ ପରକୁ ରଖିବ' । ଏଣୁ ଭାରତୀୟ ନୀଚ ଜାତିଙ୍କର ଉଚ୍ଚର ଚାଟୁବାକ୍ୟରେ ନ ଭୁଲି ଆତ୍ମଚେଷ୍ଟାରେ ପ୍ରବୃତ୍ତ ହେବା ଉଚିତ । ଏଥିରେ ଯେଉଁମାନେ ଯତ୍ନବାନ୍ ହେବେ, ସେମାନେ ଏକ । ହିତୈଷୀ ।

ଲେଖିବାଟା ବଡ଼ ସହଜ, ଭାବିବାଟା ବଡ଼ କଠିନ, କାର୍ଯ୍ୟରେ ପରିଣତ କରିବା ତତୋଧିକ କଠିନ । ନୀଚ ପ୍ରତି, ଅକ୍ଷମ ପ୍ରତି, ଅସହାୟ ପ୍ରତି ସହାନୁଭୂତି ଦେଖାଇବା ବଡ଼ ସହଜ କେବଳ ମୁଖରେ, ଉଚ୍ଚ ବାକ୍ୟରେ କାର୍ଯ୍ୟରେ ଦେଖାଇବାକୁ ଉପାୟ ଦିଶେ ନାହିଁ । ବ୍ରାହ୍ମଣ ଈଶ୍ୱରମୁଖରୁ ଜାତ ବୋଲି ସମସ୍ତଙ୍କର ବିଶ୍ୱାସ । ତେବେ ଭାରତର ସମସ୍ତ ବ୍ରାହ୍ମଣଙ୍କୁ ଏକ ସମାଜଭୁକ୍ତ କରିବାକୁ ମାଲବ୍ୟ ଶାସ୍ତ୍ରୀପ୍ରମୁଖ ବ୍ୟକ୍ତିମାନେ ଚେଷ୍ଟା କରୁଅଛନ୍ତି କି ? ଏବଂ କୃତକାର୍ଯ୍ୟ ହୋଇପାରିବ କି ? ତେବେ ଦୀକ୍ଷା ଦ୍ୱାରା ନୀଚଙ୍କୁ ଏକବର୍ଣ୍ଣ କରିବାର ପ୍ରୟାସ ଛଳନା ବୋଲି ଆମ୍ଭମାନଙ୍କର ବୋଧାଗମ୍ୟ ହେବା ଅଯୌକ୍ତିକ କି ?

ଧୂରନ୍ଧର କ୍ଷତ୍ରିୟ ରାଜାମାନେ ଅଛନ୍ତି । ଶାସ୍ତ୍ରନିଷିଦ୍ଧ ଅକର୍ମ କରିବାକୁ ତିଳେ ମାତ୍ର ଶଙ୍କା ନାହିଁ, ଅଥଚ ଭାରତର ସମସ୍ତ କ୍ଷତ୍ରିୟଙ୍କୁ ଏକ ଶ୍ରେଣୀଭୁକ୍ତ କରିବାକୁ ପ୍ରୟାସ କାହାର ? ବିଲାତ ଗଲେ ଜାତିପାତ ନାହିଁ । ଯବନାନ୍ନ ଭକ୍ଷଣରେ ଦୋଷ

ନାହିଁ । ଗଣ୍ଡାଏ ଦୁଇ ଗଣ୍ଡା ରକ୍ଷିତା— ସେ ମୁସଲମାନୀ ହେଉ ବା ଇଉରୋପିଆଣୀ ହେଉ— ରଖିଲେ ଦୋଷ ନାହିଁ । ମାତ୍ର ସମସ୍ତ କ୍ଷତ୍ରିୟ ରାଜା ଏକତ୍ର ବସି ଭୋଜନ କଲେ ଜାତିପାତ, ସ୍ୱର୍ଗଚ୍ୟୁତି, ଈଶ୍ୱରଙ୍କ ଅପ୍ରୀତି ସବୁ ଘଟିବା ସମ୍ଭବ ।

ମନୁଙ୍କ ମତରେ ଶୂଦ୍ର ଚତୁର୍ଥ ଜାତି । ଏମାନଙ୍କର ଭେଦଜ୍ଞାନ ଯେତେ, ଅପର ଉଚ୍ଚ ଜାତିଙ୍କର ମଧ ତାଦୃଶ ନାହିଁ ବୋଇଲେ ଚଳେ । ପାଶ୍ଚାତ୍ୟ ପ୍ରଭାବରୁ ଏବେ ଯେଉଁମାନେ ମୁଣ୍ଡ ଟେକିଲେ, ସେମାନଙ୍କୁ ଶୂଦ୍ର ଆଖ୍ୟାଟା ଘୃଣାସ୍ପଦ । ପିତାମାତା ଓ ପୂର୍ବପୁରୁଷ ଯେଉଁ ଜାତିଟାରୁ ଉତ୍ପନ୍ନ ଏବଂ ଯେଉଁ ଜାତି ନିମନ୍ତେ ଗର୍ବ ବୋଧ କରୁଥିଲେ, ଏବେ ଶିକ୍ଷିତମାନେ ଉଚ୍ଚସ୍ତରକୁ ଯିବା ଚେଷ୍ଟାରେ ଆପଣା ଜାତି ତ୍ୟାଗ କରିବାକୁ ବସୁଅଛନ୍ତି । ସେହି ଜାତିକୁ ଉନ୍ନତ କରିବାକୁ ଚେଷ୍ଟା କରିବା ତେଣେ ଥାଉ, ସେହି ଜାତିରୁ ବିଚ୍ଛିନ୍ନ ହୋଇ ଅନ୍ୟ ଜାତି ଗଢ଼ିବାକୁ ବସୁଅଛନ୍ତି । ଉଦାହରଣ ବିରଳ ନୁହେଁ । ଏକତା ଆସିବ କିପରି ? ଜାତିଭେଦ ଉନ୍ମୂଳିତ ହେବ କିପରି ?

ଉଚ୍ଚଜାତି ଏକତାର ପକ୍ଷପାତୀ ନୁହଁନ୍ତି ତଥାକଥିତ ଧର୍ମଶାସ୍ତ୍ର ଭୟରେ । ଅଶିକ୍ଷିତ ଶୂଦ୍ର ବା ନୀଚଜାତି ଉଚ୍ଚ ଜାତିକୁ ଦେବତାପରି ପବିତ୍ର ମନେ କରନ୍ତି ଏବଂ ଭୟ କରନ୍ତି ସେହି ଧର୍ମ ଶାସ୍ତ୍ରର ଭୟରେ । ତେବେ ଏକତା ଆସିବ କିପରି ? ହରିଜନ ସ୍ରଷ୍ଟାମାନଙ୍କର ଚିତ୍କାର ଆସ୍ଫାଳନ ବୃଥା ସିନା । ଜାତିର ଦୁର୍ବଳ ସ୍ଥାନ କେଉଁଠାରେ, ଶାସ୍ତ୍ରର ଗଳତି କେଉଁଠାରେ, ତାହାର ଅନୁସନ୍ଧାନ ହେଉ ନାହିଁ । ରୋଗ ବିନିର୍ଣ୍ଣୟ ହେଉ ନାହିଁ, ଉପାୟ ଦିଶିବ କିପରି ? ସମସ୍ତ ନିଷ୍ଫଳାରମ୍ଭ ଯତ୍ନ ।



## ରାଧାନାଥଙ୍କ କାବ୍ୟରେ ନାରୀର ସ୍ଥାନ *

''ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍ ନ ବ୍ରୂୟାତ୍ ସତ୍ୟମପ୍ରିୟଂ ।''

ମାତ୍ର ସହକାର ଚତୁର୍ଦ୍ଦଶ ଭାଗ ଚତୁର୍ଥ ସଂଖ୍ୟା ୨୯୪ ପୃଷ୍ଠାରେ ମୁଦ୍ରିତ ପ୍ରବନ୍ଧ ମତେ ଉପର୍ଯ୍ୟୁକ୍ତ ନୀତିସରଣୀରୁ ସ୍ଖଳିତ କରିଅଛି । ଏଥିନିମନ୍ତେ ମୁଁ ଦୁଃଖିତ ।

ରାଧାନାଥ ମୋର ଗୁରୁଜନ— ଭକ୍ତି ଓ ସ୍ନେହର ପାତ୍ର ଥିଲେ । ତାଙ୍କର ପୁତ୍ର ଶ୍ରୀ ଶଶିଭୂଷଣ ରାୟ ମୋର ଅନ୍ତରଙ୍ଗ ବନ୍ଧୁ । ନିମ୍ନରେ ଲେଖା ମୋର ଅପ୍ରିୟ ସତ୍ୟ ପ୍ରବନ୍ଧକୁ ଦେଖି ଶଶୀବାବୁଙ୍କର ଏବଂ ଆଉ ଅନେକଙ୍କର ମନରେ ଦୁଃ[illegible] ହେବ, ସନ୍ଦେହ ନାହିଁ । ତଥାପି ମୁଁ ଦୁଇପଦ ଲେଖିବାକୁ ବାଧ୍ୟ । ରାଧାନାଥଙ୍କ କାବ୍ୟରେ ନାରୀର ସ୍ଥାନ ପରି [illegible] କେଉଁଠାରେ ତହିଁର ସମାଲୋଚନା କରିବାକୁ ମୋର ଅଭିଜ୍ଞା[illegible] ନ ଥିଲା ବା ବର୍ତ୍ତମାନ ନାହିଁ । ସେ ସମ୍ବନ୍ଧରେ ପଦେ ଅଧେ ଲେଖିବାକୁ ମୁଁ ଆଦୌ ରାଜି ନୁହେଁ । ତେବେ ଏ ମୁଖବନ୍ଧ ଲେଖିବାର ପ୍ରୟୋଜନ କ'ଣ ବୋଲି ପାଠକେ ଭାବିପାରନ୍ତି— ଭାବିବା ସ୍ୱାଭାବିକ । ମୁଁ ଯେ ଅଗତ୍ୟା ଲେଖନୀ ଧାରଣ କଲି, ତାହା ନିମ୍ନ ଲେଖାରୁ ପାଠକେ ସହଜରେ ବୁଝିପାରିବେ ।

ମୁଁ ଶ୍ରୀ ନାରାୟଣ ତ୍ରିପାଠୀଙ୍କ ପ୍ରବନ୍ଧ ଆଦୌ ପାଠ କରି ନ ଥିଲି, ତେବେ ଦିନେ ଜଣେ ଏହି ପ୍ରବନ୍ଧ ପାଠ କଲାବେଳେ ତହିଁରୁ କିୟଦଂଶ ଶ୍ରବଣ କରିଥିଲି, ସେ ଆଜି ସାତମାସ ତଳର କଥା । କିଛି ମନେ ନ ଥିଲା, ଗତକାଲି 'ସଚ୍ଚିଦାନନ୍ଦ ଲାଇବ୍ରେରୀରେ ବସି ଅମନୋଯୋଗରେ 'ସହକାର'ର ପତ୍ରମାନ ଓଲଟାଇଲି ହଠାତ୍ ସାର୍ ସୁଢଳଦେବଙ୍କ ନାମ ମୋର ମନୋଯୋଗ ଆକର୍ଷଣ କଲା— ବୋଧହୁଏ ୪ ଚିହ୍ନ । ଏଣୁ ପ୍ରବନ୍ଧର କିୟଦଂଶ ପାଠ କରିବାର ଲୋଭ ସମ୍ବରଣ କରିପାରିଲି ନାହିଁ । ପ୍ରବନ୍ଧର କିୟଦଂଶ ପାଠକଲି ଏବଂ ମର୍ମବେଦନା ଅନୁଭବ କଲି ।

ତିରିଶ ବର୍ଷ ହେଲା ସୁଢଳଦେବ ଇହଧାମ ତ୍ୟାଗ କରିଅଛନ୍ତି । ଏତେ ବର୍ଷ ଯାଏ 'ପାର୍ବତୀ କାବ୍ୟ'ରେ ପାଠକବର୍ଗ ପାର୍ବତୀର ନାୟକ ନାୟିକାମାନଙ୍କର ଦୋଷ ଗୁଣ ସମ୍ବନ୍ଧରେ କବିଙ୍କୁ ଦାୟୀ କରି ଆସୁଥିଲେ । ତିରିଶବର୍ଷ ଉତ୍ତାରୁ ସୁଢଳଦେବଙ୍କୁ କୌଶଲ୍ୟା ଓ ଗଙ୍ଗେଶ୍ୱରଙ୍କର ଦୋଷ ରଚନାରେ ପ୍ରଧାନ ଦାୟୀ ବୋଲି ପ୍ରକାଶ କରିବାକୁ ଏବଂ ପାଠକବର୍ଗଙ୍କର ହୃଦୟରେ ଏ ଧାରଣା ବଦ୍ଧମୂଳ କରିଦେବାକୁ ଲେଖକ ଯତ୍ନଶୀଳ ହୋଇଅଛନ୍ତି । ସୁଢଳଦେବଙ୍କ ଉପରେ ଏ ଭଳି ଦୋଷାରୋପ ନିତାନ୍ତ ଅସଙ୍ଗତ ଏବଂ ମୋ ପକ୍ଷରେ ଏହା ଅସହ୍ୟ ।

ବାମଣ୍ଡା ପ୍ରେସରେ ସାର ସୁଢଳଦେବଙ୍କ ଇଚ୍ଛାକ୍ରମେ ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା ବୋଲି କି କାବ୍ୟର ପାତ୍ରପାତ୍ରୀମାନଙ୍କର ଚରିତ ଚିତ୍ରଣରେ ବା କବିଙ୍କ ରଚନାରେ ସୁଢଳଦେବ ଦାୟୀ ବୋଲାଯାଇ ପାରନ୍ତି ? ଏବଂ ବାମଣ୍ଡା ପ୍ରେସରେ ମୁଦ୍ରିତ ବୋଲି କି କବିଙ୍କି ଦୋଷ ଦିଆଯାଇପାରିବ

---

* ଶ୍ରୀ ଭବଭୂତି ରାୟ ବି.ଏ.ଙ୍କ ପ୍ରବନ୍ଧ ସମ୍ବନ୍ଧରେ କିଞ୍ଚିତ୍ ବକ୍ତବ୍ୟ।

ନାହିଁ ? ଏହା ଅତି ବିଚିତ୍ର ଯୁକ୍ତି । ପୁଣି ଲେଖକ ଲେଖିଅଛନ୍ତି ଯେ ସମସାମୟିକ ସାହିତ୍ୟିକ ବା ସମାଲୋଚକମଣ୍ଡଳୀ ତାଙ୍କୁ ବିଷୟରେ ଉତ୍ସାହ ଦେଇଥିବାରୁ ସେ ଏହା ଲେଖିଥିଲେ । କାବ୍ୟ ରଚିତ ହେବା ଆଗରୁ କି କବି କୌଶଲ୍ୟା, ଗଙ୍ଗେଶ୍ୱର ଓ ପାର୍ବତୀଙ୍କର ଦୋଷ ଗୁଣ ଦେଖାଇ ଗୋଟିଏ ଖସଡ଼ା ସାହିତ୍ୟିକ ଓ ସମାଲୋଚକମାନଙ୍କଠାକୁ ମନ୍ତବ୍ୟ ଦେବା ନିମନ୍ତେ ପଠାଇଥିଲେ ଏବଂ ସେମାନଙ୍କର ଉତ୍ସାହପାଇଁ କାବ୍ୟ ଲେଖିବାକୁ ଆରମ୍ଭ କଲେ ? ଏହା ତ ଆମ୍ଭେମାନେ ଆଦୌ ଜାଣି ନାହୁଁ । କାବ୍ୟର ନିନ୍ଦାସ୍ତୁତି, ଯଶ ଅପଯଶ କବିର ପ୍ରାପ୍ୟ— ଅନ୍ୟର ନୁହେଁ । ଉତ୍ସାହଦାତା, ପ୍ରକାଶକ, ମୁଦ୍ରାକର, ପାଠକ, ସାହିତ୍ୟିକ, ସମାଲୋଚକ ପ୍ରଭୃତି ଯେପରି କାବ୍ୟର ରସମାଧୁରୀ ଓ ରଚନାପରିପାଟୀ ନିମନ୍ତେ ଦାୟୀ ନୁହନ୍ତି, ସେହିପରି ପାତ୍ରପାତ୍ରୀଙ୍କର ଦୋଷାଦୋଷ ନିମନ୍ତେ ଦାୟୀ ନୁହନ୍ତି । କବିଙ୍କୁ ରକ୍ଷା କରିବାକୁ ଯାଇ ଅନ୍ୟ ଉପରେ ଦୋଷାରୋପ କରିବାକୁ ଗଲେ କବିର ତ ମହତ୍ତ୍ୱ ବଢ଼େ ନାହିଁ; ବରଂ ଲଘୁ ହୁଏ । ଏଠାରେ ତାହାହିଁ ଘଟିଅଛି ।

ମୁଁ ବୋଧକରେ, ଉତ୍କଳର ସାହିତ୍ୟିକମାନେ ଓ ସମ୍ପାଦକମାନେ ନୀଳମଣି ବିଦ୍ୟାରତ୍ନଙ୍କୁ ବିସ୍ମୃତ ହୋଇନାହାନ୍ତି । ସେ ଅତି ଦକ୍ଷତାର ସହିତ ''ସମ୍ବଲପୁର-ହିତୈଷିଣୀ'' ପତ୍ରିକା ବହୁଦିନ ଯାଏ ଚଳାଉଥିଲେ ଏବଂ ଏଥିନିମନ୍ତେ ସେ ଉତ୍କଳର ଶିକ୍ଷିତମଣ୍ଡଳୀଙ୍କଠାରେ ବିଶେଷ ଭାବରେ ପରିଚିତ ଥିଲେ । କବି ରାଧାନାଥ ରାୟ ଏହାଙ୍କର ଅଭିଭାବକ ଓ ମୁରବୀ ଥିଲେ ବୋଇଲେ ଅତ୍ୟୁକ୍ତି ନୁହେଁ । କବି ରାଧାନାଥ ନୀଳମଣି ବିଦ୍ୟାରତ୍ନଙ୍କୁ ସ୍ନେହଚକ୍ଷୁରେ ଦେଖୁଥିଲେ ଏବଂ ସମ୍ବଲପୁର-ହିତୈଷୀର ଶ୍ରୀବୃଦ୍ଧି ସଙ୍ଗେ ସଙ୍ଗେ ନୀଳମଣି ବିଦ୍ୟାରତ୍ନଙ୍କର ଉନ୍ନତି କାମନା କରିଥିଲେ । ସେତେବେଳେ ହିତୈଷୀର ବାଲ୍ୟାବସ୍ଥା । ତାହାର ଶ୍ରୀବୃଦ୍ଧି ନିମନ୍ତେ ସୁଦକ୍ଷ ସମ୍ପାଦକଙ୍କର ଯାହା କର୍ତ୍ତବ୍ୟ ତାହା କରିବାରେ ନୀଳମଣି ବିଦ୍ୟାରତ୍ନଙ୍କର ତ୍ରୁଟି ନ ଥିଲା । ସେ ଉତ୍କଳର ସୁଲେଖକମାନଙ୍କଠାରୁ ପ୍ରବନ୍ଧ କବିତା ପ୍ରଭୃତି ଯୋଗାଡ଼ କରିବାରେ ବିଶେଷ ଯତ୍ନଶୀଳ ଥିଲେ । ତାଙ୍କର ଅନୁରୋଧ କବି ରାଧାନାଥଙ୍କଠାରେ ନିଷ୍ଫଳ ହେଲା ନାହିଁ । କବି ରାଧାନାଥ ରଚିତ ପ୍ରକାଣ୍ଡ କାବ୍ୟଖଣ୍ଡେ ଧାରାବାହିକ ରୂପେ ସାପ୍ତାହିକ ପତ୍ରିକାରେ ମୁଦ୍ରିତ ହେବା ସମସ୍ତଙ୍କ ପକ୍ଷରେ ଆନନ୍ଦର ବିଷୟ । ଏହା ପତ୍ରିକାର ପ୍ରଶଂସାବାଦ ଓ ବିଜ୍ଞାପନ । ପତ୍ରିକାର ବହୁଳ ପ୍ରଚାର ନିମନ୍ତେ ସମ୍ପାଦକମାନେ ସୁଲେଖକମାନଙ୍କର ପ୍ରବନ୍ଧର ନାମ ଆଗରୁ ବାହାର କରିଦିଅନ୍ତି । ଏଥିରେ ପତ୍ରିକାର ମର୍ଯ୍ୟାଦା ବଢ଼େ । ଏ ଦେଶରେ ଓ ଅନ୍ୟ ଦେଶରେ ମଧ୍ୟ ଏ ରୀତି ଚଳୁଅଛି । ହିତୈଷିଣୀରେ ରାଧାନାଥଙ୍କର କାବ୍ୟ ଧାରାବାହିକ ରୂପେ ପ୍ରକାଶ କରିବା ନୀଳମଣିଙ୍କର ସମ୍ପାଦକତ୍ୱର ମହତ୍ତ୍ୱ । ଏଥିନିମନ୍ତେ ନୀଳମଣି ବିଦ୍ୟାରତ୍ନ ସଚ୍ଚିଦାନନ୍ଦ ଦେବଙ୍କ ନିକଟରେ ପ୍ରସ୍ତାବ କଲେ—ହିତୈଷିଣୀରେ ମୁଦ୍ରିତ ହେବା ନିମନ୍ତେ ପାର୍ବତୀ କାବ୍ୟ ତ କମ୍ପୋଜ ହେବ, ତାହା ଯେବେ ପୁସ୍ତକାକାରରେ ରଖାଯାଏ, ତେବେ କାବ୍ୟଟି ପୁନର୍ବାର ଛପାଇବାକୁ ହେବ ନାହିଁ । ସଚ୍ଚିଦାନନ୍ଦ ଏଥିରେ ସ୍ୱୀକୃତ ହେଲେ; ମାତ୍ର ତାଙ୍କ ପିତାଙ୍କର ସମ୍ମତି ଆବଶ୍ୟକ କଲେ । ନୀଳମଣି ବିଦ୍ୟାରତ୍ନ ଅନାୟାସରେ ସୁତଳଦେବଙ୍କର ସମ୍ମତି ପ୍ରାପ୍ତ ହେଲେ । ପାର୍ବତୀ କାବ୍ୟ ଧାରାବାହିକ ରୂପେ ହିତୈଷିଣୀରେ ମୁଦ୍ରିତ ହେବାକୁ ଲାଗିଲା । ମାତ୍ର ପାର୍ବତୀ କାବ୍ୟରେ କ'ଣ ଥିଲା ବା ନ ଥିଲା, ତାହା ସୁତଳଦେବ କିମ୍ବା ସଚ୍ଚିଦାନନ୍ଦ ଦେବଙ୍କୁ ଆଦୌ ଜଣା ନ ଥିଲା ।

ପାର୍ବତୀର କେତେକାଂଶ 'ହିତୈଷିଣୀ'ରେ ବାହାରିବା ପରେ ଉତ୍କଳର ସାହିତ୍ୟ-ବିପଣୀରେ ଲାଲ୍ ରାମନାରାୟଣ ସତ୍ ଓ ଅସତ୍ କାବ୍ୟ ବାଛି ବସିଲେ । ଭଞ୍ଜକାବ୍ୟର ନିନ୍ଦା ଏବଂ ରାଧାନାଥ କାବ୍ୟର ପ୍ରଶଂସା ତାହାଙ୍କର ପ୍ରଧାନ ବିଷୟ ଥିଲା । ପ୍ରାଚୀନ କାବ୍ୟର ନିନ୍ଦା ଗୌରୀଶଙ୍କର, ସୁଦାମ ଚରଣ ନାୟକ, ଗୋପାଳ ବଲ୍ଲଭ ଦାସ ପ୍ରମୁଖ ବ୍ୟକ୍ତିମାନଙ୍କର ଅତି ଅସ୍ପୃହଣୀୟ ହେଲା । କେତେକ ଲେଖକ ଲାଲ୍ ରାମନାରାୟଣଙ୍କ ବିରୋଧରେ ତୀବ୍ର ଲେଖନୀ ଧାରଣ କଲେ । କ୍ରମେ ବିବାଦର ବୃଦ୍ଧି ହେଲା । ଉତ୍କଳର ସାହିତ୍ୟିକଗଣ ଦୁଇ ଦଳରେ ବିଭକ୍ତ ହେଲେ । ଅନ୍ୟମାନଙ୍କ ଛଡ଼ା ରାମକୃଷ୍ଣ ସାହୁ ଓ ନୀଳମଣି ବିଦ୍ୟାରତ୍ନ ଲାଲାଙ୍କ ଦଳଭୁକ୍ତ ହେବା ସ୍ୱାଭାବିକ । ଉତ୍କଳ ଦୀପିକା ଓ 'ହିତୈଷିଣୀ'ରେ ପ୍ରଥମେ ଯୁଦ୍ଧାରମ୍ଭ ହେଲା । ମାତ୍ର ତାଦୃଶ ଅଶ୍ଳୀଳ ଓ ଅଶ୍ରାବ୍ୟ ଲେଖାମାନ ସ୍ଥାୟୀ ପତ୍ରିକାରେ ସ୍ଥାନ ପାଇବାର ଅଯୋଗ୍ୟ ଦେଖାଯିବାରୁ ଭଞ୍ଜ ପକ୍ଷରୁ 'ଇନ୍ଦ୍ରଧନୁ' ଓ ରାଧାନାଥଙ୍କ ପକ୍ଷରୁ 'ବିଜୁଳି' ବାହାରିଲା । ବିଜୁଳିର ସମ୍ପାଦକ ହେଲେ ନୀଳମଣି ବିଦ୍ୟାରତ୍ନ ଏବଂ ତାହା 'ହିତୈଷିଣୀ' ଅଫିସ୍‌ରେ ମୁଦ୍ରିତ ହେଲା । 'ବିଜୁଳି'ର ପକ୍ଷ ରକ୍ଷା କରିବା ନିମନ୍ତେ ସୁତଳଦେବ ଯଥୋନାସ୍ତି ଚେଷ୍ଟା କରୁଥିଲେ । ସୁତଳଦେବ ଯେ ପ୍ରାଚୀନ ଅଶ୍ଳୀଳ କାବ୍ୟବିରୋଧୀ ତାହା କୁହାଯାଇ ନ ପାରେ, ଯେହେତୁ ସେ ସଂସ୍କୃତ ପଣ୍ଡିତ ମାତ୍ର ଭଞ୍ଜଙ୍କର କାବ୍ୟପ୍ରତି ତାଙ୍କର ଟିକିଏ ବିଷ ଦୃଷ୍ଟି ଥିଲା ଖୋଲା ଅଶ୍ଳୀଳ ରଚନା ନିମନ୍ତେ ଏବଂ ଭଞ୍ଜ

ସଂସ୍କୃତ ବ୍ୟାକରଣର ଅନ୍ଧ ଅନୁକରଣ କରି ନ ଥିଲେ ଏଥିନିମନ୍ତେ । ସେ ଯାହାହେଉ ଅର୍ଥବ୍ୟୟରେ ଓ ଉତ୍ସାହ ଦାନରେ ରାଧାନାଥ ପକ୍ଷ ସମର୍ଥନ ନିମନ୍ତେ ସୁଡ଼ଳଦେବ କାତର ନ ଥିଲେ । ସାହିତ୍ୟିକଗଣ ଦୁଇ ଦଳ ହୋଇ ଘୋର ମସାଯୁଦ୍ଧରେ ବ୍ୟାପୃତ ଥିଲାବେଳେ ରାଧାନାଥବାବୁ ନିଷ୍ପକ୍ଷପାତ ଓ ନୀରବ ହୋଇଗଲେ । ତଥାପି ବିପକ୍ଷ ଦଳ ତାଙ୍କ ପ୍ରତି ବ୍ୟଙ୍ଗକଟୂକ୍ତି ବ୍ୟବହାର କରିବାକୁ ଛାଡ଼ୁ ନ ଥିଲେ । ବିଜୁଳି-ଇନ୍ଦ୍ରଧନୁ ଯୁଦ୍ଧ ଚାଲିଛି, ପାର୍ବତୀ କାବ୍ୟର ଛାପା ମଧ ହିତୈଷିଣୀରେ ଚାଲିଛି । ସମ୍ଭବତଃ ଶ୍ରାବଣ ମାସରେ କୌଶଲ୍ୟା ଓ ଗଙ୍ଗେଶ୍ୱରଙ୍କର ବୃତ୍ତାନ୍ତ ହିତୈଷିଣୀରେ ବାହାରିଲା । ତାହା ଦେଖି ସୁଡ଼ଳଦେବ ବିସ୍ମିତ ଓ ମର୍ମାହତ ହେଲେ । ସୁଡ଼ଳଦେବ ନୀଳମଣି ବିଦ୍ୟାରତ୍ନଙ୍କୁ ତିରସ୍କାର କଲେ ଏବଂ ପ୍ରକାଶ କଲେ—ଯାହାଙ୍କର ପକ୍ଷ ସମର୍ଥନ କରିବାକୁ ଆମ୍ଭେମାନେ ଅର୍ଥବ୍ୟୟ ଓ ମାନସିକ ପରିଶ୍ରମ କଲୁ, ସେ ଆମ୍ଭମାନଙ୍କର ମୁଖରେ କାଳି ଲଗାଇବାକୁ ତିଳେମାତ୍ର ସଙ୍କୋଚବୋଧ କଲେ ନାହିଁ । ଅବୈଧ ଅଶ୍ଳୀଳ ଇଙ୍ଗିତ ଦ୍ୱାରା ଏହାଙ୍କର ଲେଖନୀ ଭଞ୍ଜ କାବ୍ୟର ପ୍ରକାଶ୍ୟ ଅଶ୍ଳୀଳ ଲେଖାରୁ ବଳିଗଲା । ତା' ଛଡ଼ା ଏହା ଯେ କେବଳ ତାଙ୍କ ପକ୍ଷ ସମର୍ଥନକାରୀଙ୍କର ମୁଖ ବନ୍ଦ କଲା ତା ନୁହେଁ, ପୁଣି ଉତ୍କଳର ପବିତ୍ର ବଂଶର ପୁଣ୍ୟଶ୍ଳୋକ ଗଙ୍ଗେଶ୍ୱରଙ୍କ ମୁଖରେ କଳଙ୍କ-କାଳିମା ଲେପନ କଲା । ନୀଳମଣି ବିଦ୍ୟାରତ୍ନଙ୍କୁ କହିଲେ ଯେ, ଅନ୍ତତଃ କିଛିକାଳ ନିମନ୍ତେ ଏ ଅଂଶ ହିତୈଷିଣୀରେ ନ ଦେଲେ ତ କିଛି କ୍ଷତି ନ ଥିଲା—ଏପରି ସାହିତ୍ୟିକ ଉତ୍ପାତ ଉପସ୍ଥିତ କରି ଜୟ ପରାଜୟର ଫଳ ଜାଣିବା ପୂର୍ବରୁ ନିଜର ନାକ କାଟିବା ବଡ଼ ହାସ୍ୟାସ୍ପଦ କଥା । ଏତାଦୃଶ ଆଲୋଚନା ଦିନକେ ଶେଷ ହୋଇ ନାହିଁ । ବହୁଦିନ ଚାଲିଗଲା । ଏଥିଉତ୍ତାରୁ 'ବିଜୁଳି' ଚଳାଇବାକୁ ଆଉ ଇଚ୍ଛା ହେଲା ନାହିଁ । ଶରତକାଳ ନିକଟବର୍ତ୍ତୀ—ଶରତକାଳରେ ବିଜୁଳିର ଅନ୍ତର୍ଦ୍ଧାନ ହୁଏ, ଏହି ଛଳନାରେ ଶରତକାଳ ଉପସ୍ଥିତ ହେବା ମାତ୍ରେ ବିଜୁଳି ବନ୍ଦ ହେଲା—ଇନ୍ଦ୍ରଧନୁ ବହୁଦିନ ଯାଏ ଚାଲୁଥିଲା ।

ନିଜ ବଂଶ ଗୌରବ ନଷ୍ଟ କରିବାକୁ କାହାର ପ୍ରବୃତ୍ତି ହୁଏ— ସୁଡ଼ଳଦେବଙ୍କ ତୁଲ୍ୟ ବିଜ୍ଞ ବ୍ୟକ୍ତିଙ୍କ କଥା ତ ଛାଡ଼ । ସୁଡ଼ଳଦେବ ଗଙ୍ଗବଂଶ ସମ୍ଭୂତ, ସୁଡ଼ଳଦେବ ରାଜା, ସୁଡ଼ଳଦେବ ପଣ୍ଡିତ, ସୁଡ଼ଳଦେବ ବିଜ୍ଞ । ସୁଡ଼ଳଦେବ ଚୋଡ଼ଗଙ୍ଗ, ଗଙ୍ଗେଶ୍ୱର ପ୍ରଭୃତିଙ୍କର କୀର୍ତ୍ତିରଶ୍ମି ଦ୍ୱାରା ଉତ୍କଳର ତଥା ସ୍ୱବଂଶର ମୁଖ ଉଜ୍ଜ୍ୱଳ ବୋଲି ଗୌରବବୋଧ କରନ୍ତି । ଏ ପ୍ରକାର ବ୍ୟକ୍ତିଙ୍କର ହୃଦୟରେ ହୀନ ପ୍ରବୃତ୍ତି ଜାତ ହେଲା କିପରି ଯେ, ସେ ସ୍ୱବଂଶୀୟ ଉତ୍କଳ ସମ୍ରାଟ୍‌ଙ୍କର କଳଙ୍କ-କାଳିମା ବିସ୍ତାର କରିବାକୁ କବିଙ୍କୁ ବାରମ୍ବାର ଅନୁରୋଧ କଲେ ? କାବ୍ୟର Plot କି ସୁଡ଼ଳଦେବ କୃତ ? କିମ୍ବା ସୁଡ଼ଳଦେବ କବିଙ୍କଠାକୁ ଲେଖିଥିଲେ ଯେ, କବି ଯେବେ ପାର୍ବତୀ କାବ୍ୟରେ ଗଙ୍ଗେଶ୍ୱରଙ୍କର ଅଗମ୍ୟା-ସମ୍ଭୋଗ ବୃତ୍ତାନ୍ତ ନ ଦିଅନ୍ତି, କନ୍ୟା ପ୍ରତି ପିତାର ପାଶବିକ ଅତ୍ୟାଚାର ବୃତ୍ତାନ୍ତ ନ ଲେଖନ୍ତି ଏବଂ କୌଶଲ୍ୟାର ବୀଭତ୍ସ କାଣ୍ଡ ଓ ପାର୍ବତୀର ସ୍ୱାମୀହତ୍ୟା ବୃତ୍ତାନ୍ତ ନ ଲେଖନ୍ତି, ତାହାହେଲେ କାବ୍ୟର ଅଙ୍ଗହାନି ହେବ ଏବଂ ଗଙ୍ଗବଂଶ ତଥା ଉତ୍କଳର ଗୌରବହାନି ହେବ ? କବି ରାଧାନାଥ ରାୟ ଯେ ଏପରି ବୀଭତ୍ସ କାବ୍ୟ ଲେଖି ତାଙ୍କରି ସାହାଯ୍ୟରେ, ତାଙ୍କରି ପ୍ରେସ୍‌ରେ ମୁଦ୍ରିତ କରାଉଥିଲେ, ଏହା ସୁଡ଼ଳଦେବଙ୍କର ସ୍ୱପ୍ନର ଅଗୋଚର ଥିଲା । ବିଷୟଟି ଜାଣି ଶୁଣି ବାରମ୍ବାର ଅନୁରୋଧ କରିବା ତ ଦୂରର କଥା, ସୁଡ଼ଳଦେବଙ୍କର ଏଥିନିମନ୍ତେ ଯେ ମନସ୍ତାପ, ତାହା ଆମ୍ଭମାନଙ୍କୁ ଜଣା ।

କବି ରାଧାନାଥ ଅନେକଗୁଡ଼ିଏ କାବ୍ୟ ଲେଖିଅଛନ୍ତି କୌଣସିଟି ହେଲେ ସାପ୍ତାହିକ ପତ୍ରିକାରେ ସେ ପ୍ରକାଶ କରିଥିଲେ କି ? ତେବେ 'ପାର୍ବତୀ' ସାପ୍ତାହିକ ପତ୍ରିକାରେ ସ୍ଥାନ ପାଇଲା କାହିଁକି ? ସାପ୍ତାହିକ ପତ୍ରିକାରେ କାବ୍ୟ ପ୍ରକାଶିତ ହେଲେ ତା'ର ମହତ୍ତ୍ୱ ବଢ଼େ କି ହ୍ରାସ ପାଏ ? ପୁସ୍ତକ ବାହାରିଲାବେଳେ ତହିଁରେ ଭ୍ରମ, ପ୍ରମାଦ ଅନେକ ଭଲ ଛାପା ହୋଇ ନ ଥିଲା, କାଗଜ ଭଲ ନୁହେଁ, ଟାଇଟଲ୍ ପେଜ୍ ମଧ ତଦ୍ରୂପ କଦର୍ଯ୍ୟ, ପାତଳା କାଗଜରେ ଛାପା । କବିଙ୍କର ଆଉ କୌଣସି କାବ୍ୟ ଏପରି ବିଶୃଙ୍ଖଳା ଭାବରେ ମୁଦ୍ରିତ ହୋଇଥିଲା କି ? ପାର୍ବତୀ ପ୍ରତି ସୁଡ଼ଳଦେବଙ୍କର ଆଗ୍ରହ ଥିଲେ ସେ କବିଙ୍କି ସାହାଯ୍ୟ ଦେଇଥାନ୍ତେ । ତାଙ୍କ ତତ୍ତ୍ୱାବଧାନରେ ଛାପା ହୋଇଥାନ୍ତା— ସମ୍ବାଦପତ୍ରରେ ସ୍ଥାନ ପାଆନ୍ତା କାହିଁକି ? ପ୍ରତିବାଦୀ ଲେଖକଙ୍କର ଉଚିତ ଥିଲା ଯେ ସେ ପାର୍ବତୀ କାବ୍ୟର କୌଣସି ମହତ୍ତ୍ୱ ଥିଲେ ତାହା ଦେଖାଇ ପ୍ରଥମ ଲେଖକଙ୍କର ସମାଲୋଚନା କରିବାକୁ ଚେଷ୍ଟା କରିଥାନ୍ତେ । ସୁଡ଼ଳଦେବଙ୍କ ଉପରେ ଦୋଷ ଦେଇ କବିଙ୍କି ବଞ୍ଚାଇବା ଚେଷ୍ଟା ନିତାନ୍ତ ଗର୍ହିତ । ଏଥିରେ କାବ୍ୟର ମହତ୍ତ୍ୱ ବଢ଼ିଲା ନାହିଁ, ଅଥଚ ଜଣେ ସ୍ୱର୍ଗତ ମହତ୍ ବ୍ୟକ୍ତିଙ୍କ ଉପରେ ଅଯଥା ଦୋଷାରୋପ କରାଗଲା । (୧)

ମୁଁ ମୁକ୍ତକଣ୍ଠରେ ପ୍ରକାଶ କରୁଅଛି ଯେ ପ୍ରତିବାଦୀ ଲେଖକଙ୍କର ଉକ୍ତି ସମ୍ପୂର୍ଣ୍ଣ ମିଥ୍ୟା ଅଟେ । ଯେଉଁମାନେ ଲେଖକଙ୍କୁ ଏ କଥା କହିଅଛନ୍ତି, ସେମାନେ ସତ୍ୟର ଯଥେଷ୍ଟ ଅପଳାପ କରିଅଛନ୍ତି ।

(୧) ପରମାନନ୍ଦ ଆଚାର୍ଯ୍ୟଙ୍କ ଲିଖିତ 'ରାଧାନାଥଙ୍କ ପାର୍ବତୀ' ଶୀର୍ଷକ ପ୍ରବନ୍ଧ 'ଉତ୍କଳ ସାହିତ୍ୟ' ୩୩ ଭାଗ ୨ୟ ସଂଖ୍ୟା (୧୯୨୯ ମେ ମାସ) ରେ ପ୍ରକାଶିତ ।

ଏଥିରେ ପାର୍ବତୀ କାବ୍ୟର ବିଷୟବସ୍ତୁ ବିଦେଶୀ ଉପାଦାନ ଉପରେ ପ୍ରତିଷ୍ଠିତ ବୋଲି ପ୍ରମାଣ କରାଯାଇଅଛି ।



## ଉତ୍କଳ ସାହିତ୍ୟ ସମାଜର ଅଷ୍ଟାବିଂଶ ବାର୍ଷିକ ଅଧିବେଶନରେ ସଭାପତିଙ୍କ ଅଭିଭାଷଣ

ପ୍ରିୟ ସାହିତ୍ୟସେବୀ ଭାଇମାନେ,

ଆମ୍ଭେମାନେ ସମସ୍ତେ ବାଣୀର ସେବକ, ବାଣୀ ଆମ୍ଭମାନଙ୍କର ପାଳନକର୍ତ୍ତ୍ରୀ । ଏଣୁ ଆମ୍ଭେମାନେ ଭ୍ରାତୃସମ୍ବନ୍ଧଯୁକ୍ତ । ମାତୃଶାସିତ ଏ ସ୍ଥାନରେ କୂଟନୀତି ବା ଭେଦନୀତିର ସ୍ଥାନ ନାହିଁ, ଏଣୁ ଏଠାରେ ଆସନର ବା ସମ୍ମାନର ଭେଦ ନାହିଁ । ଏଠାରେ ବୟୋବୃଦ୍ଧି ଓ ଜ୍ଞାନବୃଦ୍ଧିର ସମ୍ମାନ ଓ ଆସନ ସମାନ ।

ଏହି ସାରଦାସଦନ ମାତୃ ଆରାଧନାର ସ୍ଥଳ, ଏଣୁ ମୁଁ ଆଶାକରେ, ଉପସ୍ଥିତ ସାହିତ୍ୟ ସେବୀମାନେ ଗୃହରେ ପ୍ରବେଶ କରିବା ଆଗରୁ ଦ୍ୱାରଦେଶରେ ଅସୂୟାକୁ ବିସର୍ଜନ କରି ଦେଇଛନ୍ତି । କଳୁଷମୁକ୍ତ ମନରେ ମାତୃପୂଜା ସୁଫଳପ୍ରଦ ହେଉ ।

ମନ ନିର୍ମଳ ଯାର ଦେହୀ
ଉର୍ଦ୍ଧ୍ୱ ଗଙ୍ଗାଜଳ ସେହି ।

ମାତୃ ଅର୍ଘ୍ୟ ନିମନ୍ତେ ନିର୍ମଳ ମନ ହିଁ ଗଙ୍ଗାଜଳ ।

ମୁଁ ଆପଣମାନଙ୍କ ସ୍ନେହପୂର୍ଣ୍ଣ ଆହ୍ୱାନରେ ବହୁ ଦୂରରୁ ପ୍ରଫୁଲ୍ଲ ମାନସରେ ଆସିଅଛି; ଏବଂ ଆଶା କରିଅଛି ଯେ, ଆପଣମାନଙ୍କ ସଦୃଶ ଏକନିଷ୍ଠ ପୂଜାରୀମାନଙ୍କ ସହିତ ବାଣୀପୂଜାରେ ଯୋଗ ଦେଇ ଜୀବନକୁ ଚରିତାର୍ଥ କରିବି । ଏତଦ୍‌ଭିନ୍ନ ମୋ ମନରେ ଅନ୍ୟ ଆକାଂକ୍ଷା ନାହିଁ ।

ଆପଣମାନଙ୍କ ଆହ୍ୱାନରେ ଆସିଲି; ମାତ୍ର କି ନିମନ୍ତେ ଆପଣମାନେ ମାଦୃଶ ଅଚଳ ଶାନ୍ତିପ୍ରିୟ ଅରଣ୍ୟାଶ୍ରମୀକୁ ସଭ୍ୟତାର କୋଳାହଳପୂର୍ଣ୍ଣ ଉତ୍କଳର ବିଦ୍ୟାନଗରୀର ଉଚ୍ଚ-ସାହିତ୍ୟିକ ଆସନରେ ଅଭିଷିକ୍ତ କରିବାକୁ ମନ ବଳାଇଲେ, ତାହା ମୁଁ ବୁଝିବାକୁ ଅକ୍ଷମ । ବୟୋବୃଦ୍ଧ ସାହିତ୍ୟ ପୁସ୍ତକ ଭାରବାହୀର ଜୀବନ-ସନ୍ଧ୍ୟା ଉପସ୍ଥିତ ହେବା ଦେଖି ଦୟାପରବଶ ହୋଇ ଏ ସମ୍ଭାବନା କଲେ କି ? କିମ୍ବା ଭାତହାଣ୍ଡିରୁ ଗୋଟାଏ ଚିପି ଜାଣିଲା ଭଳି ଅନ୍ଧାର ମୂଲକର ସାହିତ୍ୟ ସେବକମାନଙ୍କର ପରିଚୟ ପାଇବା ଇଚ୍ଛାରେ ଏ ସମ୍ଭାବନା କଲେ ? ଏତଦ୍ଭିନ୍ନ ଅନ୍ୟ କାରଣ ତ ମୋତେ ଦୃଶ୍ୟ ହେଉ ନାହିଁ । ଯାହାହେଉ ଆପଣମାନଙ୍କ ପ୍ରଦତ୍ତ ସମ୍ମାନରେ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଅଛି । ରାଜକୀୟ ସମ୍ମାନ ଏ ସମ୍ମାନର ସମକକ୍ଷ ନୁହେଁ ବୋଲି ମୁଁ ମନେ କରେ । ଏ ସମ୍ମାନଦାନ ନିମନ୍ତେ ମୁଁ ଆପଣମାନଙ୍କଠାରେ ଚିରକୃତଜ୍ଞ ରହିଲି ।

ପ୍ରକୃତ ବିଷୟର ଅନୁସରଣ କରାଯାଉ । କଥା ଅଛି, ସାହିତ୍ୟ ସାହିତ୍ୟର ମାପକାଠି; ମାତ୍ର ମୁଁ କହେଁ, ସାହିତ୍ୟ ସଭ୍ୟତା ଓ ଉନ୍ନତି ଦ୍ୱାରର କଞ୍ଚି— ନା, ଏତିକି ନୁହେଁ— ସାହିତ୍ୟ ସଭ୍ୟତା ଓ ଉନ୍ନତିର ଉପାୟ ଓ ପନ୍ଥା । ଆଉ ବା କ'ଣ ନୁହେଁ ? କେହି କହନ୍ତି, ଧର୍ମ ମନୁଷ୍ୟ ଓ ପଶୁର ପ୍ରଭେଦ କରେ; କେହି କହନ୍ତି, ଜ୍ଞାନ ମନୁଷ୍ୟ ଓ ପଶୁର ପ୍ରଭେଦ କରେ; ମାତ୍ର ପ୍ରକୃତ ପକ୍ଷରେ ଭାଷା ହିଁ କେବଳ ମନୁଷ୍ୟ ଓ ପଶୁର ପ୍ରଭେଦକାରକ । ଧର୍ମର କଥା ଛାଡ଼ । ଜ୍ଞାନ ମନୁଷ୍ୟ ଓ ପଶୁଠାରେ ବିଦ୍ୟମାନ; କେବଳ ପ୍ରକାର ଓ ପରିମାଣରେ ଇତର ବିଶେଷ ଅଛି । ପଶୁର ଭାଷା ନାହିଁ ବା ସାହିତ୍ୟ ନାହିଁ । ମନୁଷ୍ୟ କେବଳ ଭାଷା ଓ ସାହିତ୍ୟ ହେତୁରୁ ଉନ୍ନତ, ସାହିତ୍ୟ ହେତୁରୁ ତାର ଆଧିପତ୍ୟ । ଯେଉଁ ଜାତିର ସାହିତ୍ୟ ସଂକୀର୍ଣ୍ଣ ଏବଂ ଯେଉଁ ଜାତିର ସାହିତ୍ୟ ମାର୍ଜିତ ନୁହେଁ, ସେ ଅନୁନ୍ନତ ଓ ଅସଭ୍ୟ । ଯେଉଁ ଜାତିର ସାହିତ୍ୟ ମାର୍ଜିତ ଓ ବିସ୍ତୃତ ସେହି ଜାତି ସଭ୍ୟ ଓ ଉନ୍ନତ । ସାହିତ୍ୟଦ୍ୱାରା ଜାତିର କ୍ରମୋନ୍ନତି ଘଟେ । ଏଣୁ ସାହିତ୍ୟ ଅନୁଶୀଳନକାରୀ ଜାତିମାନଙ୍କର ଆଧିପତ୍ୟ ଓ ପ୍ରଭୁତ୍ୱ ଏ ଜଗତରେ ପରିବର୍ଦ୍ଧମାନ । ସାହିତ୍ୟଦ୍ୱାରା ହିଁ ଜାତିର ସମ୍ୟକ୍ ଉନ୍ନତି ହୁଏ ବୋଲି ଯେଉଁ ଜାତି ହୃଦୟଙ୍ଗମ କରିବାକୁ ଅକ୍ଷମ, ଏଣୁ ପ୍ରକୃତ ସାହିତ୍ୟ ଅନୁଶୀଳନରେ ସ୍ପୃହାଶୂନ୍ୟ ସେହି ଜାତିର ଅବନତି ଘଟିଅଛି ଓ କ୍ରମେ ଘଟୁଅଛି । ଭାରତବାସୀ ସାହିତ୍ୟର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖି ନ ପାରି ଜଗତରେ ହେୟ ହୋଇଅଛନ୍ତି । ଭାରତବାସୀ ଏ ତ୍ରୁଟି ନିମନ୍ତେ କେତେକାଂଶରେ ଭେଦନୀତି ବା ଜାତିଭେଦ ଦାୟୀ । ପୁଣି ସାହିତ୍ୟକ୍ଷେତ୍ରକୁ ସୀମାବଦ୍ଧ ଓ ସଂକୀର୍ଣ୍ଣ କରିବାକୁ ଆଳଙ୍କାରିକମାନଙ୍କର ସଂଜ୍ଞା ମଧ୍ୟ ଦାୟୀ । ସାହିତ୍ୟ କେବଳ କାବ୍ୟରସାଶ୍ରିତ ଗଦ୍ୟ, ବିଶେଷତଃ ପଦ୍ୟରେ ପର୍ଯ୍ୟବେସିତ ହେବା ଉଚିତ କି ? ଜ୍ୟୋତିଷଶାସ୍ତ୍ର, ବୈଦ୍ୟଶାସ୍ତ୍ର, ଶିଳ୍ପଶାସ୍ତ୍ର, କଳାବିଦ୍ୟା, ଭୂଗୋଳ ଓ ଇତିହାସ ପ୍ରଭୃତି କି ସାହିତ୍ୟର ଅନ୍ତର୍ଭୁକ୍ତ ନୁହେଁ ? ଏ ଦେଶର ସାହିତ୍ୟିକମାନଙ୍କ ହୃଦୟରୁ ଏ ଧାରଣା ବିଦାୟ ନେଇଅଛି । ଏଣୁ ଜାତୀୟ ଅବନତି ।

ଭାଷା ମନୁଷ୍ୟର ସହଜନ୍ମା । ଭାଷାର କ୍ରମୋନ୍ନତି ସାହିତ୍ୟ । ସାହିତ୍ୟ ଦୁଇ ପ୍ରକାର—ମୌଖିକ ଓ ଲିଖିତ । ଯେଉଁମାନଙ୍କର ସାହିତ୍ୟ ଅଦ୍ୟାପି ମୌଖିକ ସେମାନେ ଅଶିକ୍ଷିତ ଓ ଅସଭ୍ୟ । କ୍ରମୋନ୍ନତିର ଉପାୟ ସେମାନଙ୍କ ଦ୍ୱାରା ଆବିଷ୍କୃତ ହୋଇପାରି ନାହିଁ । ବୈଦିକ ଆର୍ଯ୍ୟଗଣଙ୍କ ସମୟରେ ଲିପି ପ୍ରଚାର ହୋଇ ନ ଥିଲେ ସୁଦ୍ଧା ସେମାନେ ଅଧ୍ୟବସାୟ ଓ ବୁଦ୍ଧିବଳରେ ପରିମାର୍ଜିତ ଭାଷା ଓ ସାହିତ୍ୟରେ ପରାକାଷ୍ଠା ଦେଖାଇଥିଲେ । ସେହି ବୈଦିକ ଆର୍ଯ୍ୟମାନଙ୍କର ମୌଖିକ ସାହିତ୍ୟ ଆମ୍ଭମାନଙ୍କର ଋଗ୍‌ବେଦାଦି ବୈଦିକ ଗ୍ରନ୍ଥ । ପ୍ରାଗ୍ ବୌଦ୍ଧଯୁଗରେ ଲିପିର ସୃଷ୍ଟି । କେବେ କେଉଁ ଦେଶରେ କେଉଁ ଜାତିଦ୍ୱାରା ପ୍ରଥମେ ଲିପିର ପ୍ରଚାର ହେଲା ତାହା ଅଦ୍ୟାପି ଅନୁମାନର ବିଷୟ । ଲିପି ବ୍ୟବହାର କରୁଥିବା ଜାତିମାନଙ୍କୁ ଶିକ୍ଷିତ ବୋଲାଯାଏ । ଲିପି ବ୍ୟବହାର ହେଲା ଉତ୍ତାରୁ ସାହିତ୍ୟର ଗତି କ୍ଷିପ୍ର ଓ ଅବାଧ । ଏହି ଲିପି ପ୍ରଭାବରୁ ଯେତେବେଳେ ଭାରତରେ ଉନ୍ନତ ସାହିତ୍ୟ-ରଶ୍ମି ଦିଗନ୍ତବ୍ୟାପୀ ହେବାକୁ ଆରମ୍ଭ କଲା, ସେତେବେଳେ ପୁଣି ଭାରତ ବକ୍ଷରେ ଧର୍ମ ବିଦ୍ୱେଷ ବହ୍ନି ପ୍ରଜ୍ୱଳିତ ହେଲା । କ୍ଷତ୍ରିୟ-ବ୍ରାହ୍ମଣର ମିଳିତ ଚେଷ୍ଟା ସାହିତ୍ୟ ଓ ଏକତାର ମୂଳରେ କୁଠାରାଘାତ କଲା । ବର୍ଦ୍ଧିଷ୍ଣୁ କାଣ୍ଡ ଛିନ୍ନ ହେଲା, କିନ୍ତୁ ମୂଳ ମୃତ ନ ହୋଇ ତହିଁରୁ ଭେଦମୂଳକ ଅଶେଷ ଅଙ୍କୁରୋଦ୍‌ଗମ ହେଲା । ସାହିତ୍ୟ, ଯାର ଏକ ଆକ୍ଷରିକ ଅର୍ଥ ମିଳନ, ସେ ପୁଣି ହିନ୍ଦୁଙ୍କ ହାତରେ ମିଳନର ପରିପନ୍ଥୀ ହେଲା । ସେହି ଉନ୍ନତି ପ୍ରବାହ ଅବାଧରେ ଅନନ୍ତ ଭବିଷ୍ୟତ ଆଡ଼କୁ ଅଗ୍ରସର ହୋଇଥିଲେ ଆଜି ଭାରତର ପରିଣାମ କି ଏପରି ହୁଅନ୍ତା । କଦାପି ନୁହେଁ ।

ମତଭେଦ ଥାଉ ପଛକେ ମୋଟରେ ସାହିତ୍ୟକୁ ତିନି ଭାଗରେ ବିଭକ୍ତ କରାଯାଇପାରେ, ଯଥା– କର୍ତ୍ତବ୍ୟମୂଳକ ପ୍ରୟୋଜନମୂଳକ ଏବଂ କୌତୁକମୂଳକ । ପ୍ରତ୍ୟେକ ଉନ୍ନତ ଜାତିର ଏହି ତିନି ଶ୍ରେଣୀର ସାହିତ୍ୟ ଅଛି, ଏଥିରେ ସନ୍ଦେହ ନାହିଁ । ଆମ ଦେଶରେ ଏହି ତିନି ପ୍ରକାର ସାହିତ୍ୟ ନ ଥିଲା ବା ଏବେ ନାହିଁ, ଏପରି ନୁହେଁ ମାତ୍ର ଭାରତବାସୀ କର୍ତ୍ତବ୍ୟମୂଳକ ଓ ପ୍ରୟୋଜନମୂଳକ ସାହିତ୍ୟ ଅପେକ୍ଷା କ୍ରୀଡ଼ାମୂଳକ ସାହିତ୍ୟର ଅଧିକ ଭକ୍ତ । ଏଣୁ ଏ ଦେଶରେ ଆଦିରସାଶ୍ରିତ ସାହିତ୍ୟର ପ୍ରାଚୁର୍ଯ୍ୟ ଓ ଆଦର ଏତେ ବେଶୀ । କର୍ତ୍ତବ୍ୟମୂଳକ ସାହିତ୍ୟ ନିତ୍ୟାଚାର ପଦ୍ଧତି ଓ ଧର୍ମଶାସ୍ତ୍ରରେ ଏବଂ ସ୍ୱର୍ଗାନ୍ୱେଷଣରେ ପର୍ଯ୍ୟବସିତ ହେଲା । ପ୍ରୟୋଜନମୂଳକ ସାହିତ୍ୟ ଏତଦ୍‌ପେକ୍ଷା ଊଣା, ଏଣୁ ଗଦ୍ୟ ଓ ବକ୍ତୃତାର ସ୍ରୋତ ମଧ୍ୟ ଅତି କମ୍ । ଜାତିଭେଦ ବୃଦ୍ଧି ସଙ୍ଗେ ସଙ୍ଗେ ପ୍ରୟୋଜନମୂଳକ ସାହିତ୍ୟର ପ୍ରସାର କମିବାକୁ ଆରମ୍ଭ କଲା । ଅନେକେ କହିପାରନ୍ତି, ଜାତିଭେଦ ସହିତ ସାହିତ୍ୟର ସମ୍ବନ୍ଧ କ'ଣ ? ମାତ୍ର ଅଛି । ତାହା ପ୍ରଣିଧାନ ସହ ସମାଲୋଚନା କଲେ ଅନାୟାସରେ ହୃଦୟଙ୍ଗମ ହୁଏ । ଯଦି ସାହିତ୍ୟ ଉପରେ ଜାତିଭେଦର ହସ୍ତକ୍ଷେପ ନାହିଁ, ତେବେ ଉଚ୍ଚଜାତିର ସ୍ୱାର୍ଥରକ୍ଷାମୂଳକ ଗ୍ରନ୍ଥସମୂହର ସମ ପରିମାଣ ଭାରତବାସୀଙ୍କ ପ୍ରୟୋଜନମୂଳକ ଗ୍ରନ୍ଥମାନ ଭାରତୀୟ ପାଠାଗାରମାନଙ୍କରେ ଅଲଭ୍ୟ କାହିଁକି ?

ମହେଞ୍ଜୋଦାରୋରେ ଅଧୁନା ଆବିଷ୍କୃତ ମୃଣ୍ମୟ ପାତ୍ର ସହିତ ଏ ଦେଶର କୁମ୍ଭକାରମାନଙ୍କର ନିର୍ମିତ ପାତ୍ରର ତୁଳନା କଲେ ଆମ୍ଭମାନଙ୍କୁ ଲଜ୍ଜିତ ହେବାକୁ ପଡ଼ିବ । ପାଞ୍ଚ ହଜାର ବର୍ଷ ପରେ ଏତାଦୃଶ ବ୍ୟାପାର ଭାରତବାସୀର ଉନ୍ନତି ବା ଅଧୋଗତିର ପରିଚାୟକ ? ପୋରସିଲେନ୍ ପାତ୍ର ସହିତ ବ୍ରିଟେନ୍‌ମାନଙ୍କ ହାଣ୍ଡିର ତୁଳନା କର, ଜାଣିପାରିବ ସାହିତ୍ୟ ଦ୍ୱାରା କୁଟୀରଶିଳ୍ପର ବି ଅଦ୍ଭୁତ ପରିବର୍ତ୍ତନ ଘଟିଅଛି । ଏହି ହାଣ୍ଡି ନିର୍ମାଣ କୌଶଳ ଜୀବନ ମରଣର ସମସ୍ୟା ସମାଧାନ କରେ ବୋଇଲେ ଅତ୍ୟୁକ୍ତି ନୁହେଁ, ତଥାପି ଭାରତବାସୀ ଏହି ଆବଶ୍ୟକ ଶିଳ୍ପର ଭାର 'ଦଶଶ୍ୱାନଃ ସମଷ୍ଟକ୍ରୀ' ର ହସ୍ତରେ ନ୍ୟସ୍ତ କରି ଦେଇ ନିଶ୍ଚିନ୍ତ । ଯେଉଁ ମୁଷ୍ଟିମେୟ ବ୍ୟକ୍ତି ଅନ୍ୟ ଜାତିଗୁଡ଼ାକୁ ରନ୍ଧନପାତ୍ର ଯୋଗାଇ ବଞ୍ଚାଇ ରଖିଅଛନ୍ତି ସେ ପୁଣି ହେୟ, ଘୃଣ୍ୟ, ଅସ୍ପୃଶ୍ୟ ଓ ଅଶିକ୍ଷିତ । କୁମ୍ଭକାରମାନେ ଶିକ୍ଷିତ ହୋଇଥିଲେ କି ପାଞ୍ଚ ହଜାର ବର୍ଷରେ ରନ୍ଧନପାତ୍ରର ଉନ୍ନତି ହୋଇ ନ ଥାନ୍ତା । ଇଉରୋପୀୟ ପାଠାଗାରମାନଙ୍କରେ ଦେଖ, ମୃଣ୍ମୟ ଶିଳ୍ପ ସମ୍ବନ୍ଧୀୟ ପୁସ୍ତକ ହଜାର ହଜାର ବାହାରିବ । ଭାରତ ପାଠାଗାରରେ କେତେ ଖଣ୍ଡ ଅଛି ?

ଲଳିତ-କଳା ଚିତ୍ରକର କେଉଁମାନେ ? ବ୍ରାହ୍ମଣ ନା କ୍ଷତ୍ରିୟ ? ନା, ନା, ଜଳ ଅସ୍ପୃଶ୍ୟ ଗୋଟାଏ ଜାତି, ଅଶିକ୍ଷିତ । ଚକ୍ଷୁ ଫେରାଇ ପାଶ୍ଚାତ୍ୟ ଦେଶ ଆଡ଼କୁ ଦେଖ, ପୁସ୍ତକର ଅଭାବ ନାହିଁ । ସେ ଦେଶମାନଙ୍କର ଚିତ୍ରକରଗଣ ସୁଦକ୍ଷ ସାହିତ୍ୟ-ଲେଖକ । ଶିଳ୍ପ ସମାଲୋଚନା ଯେପରି ଜଟିଳ ସେହିପରି କଠିଣ । ସେ ଦେଶର ଚିତ୍ରକରଗଣ ସମାଲୋଚନା କରିବାରେ ବିଚକ୍ଷଣ । ଏ ଦେଶର ଚିତ୍ରକରମାନଙ୍କ ଦୁର୍ଦ୍ଦଶାରେ ଜାତିଭେଦର ଛାପ ଦେଖାଯାଉ ନାହିଁ କି ? କେତେଗୋଟା ଗିରିଗୁହାରେ ମାତ୍ର ଆମ୍ଭେମାନେ ପ୍ରାଚୀନ ବୌଦ୍ଧଯୁଗର ଚିତ୍ର ଉନ୍ନତିର ନିଦର୍ଶନ ପାଉଁ, ମାତ୍ର ତତ୍ସମ୍ବନ୍ଧୀୟ ସାହିତ୍ୟ କାହିଁ ? ସାହିତ୍ୟ ନ ଥିବାରୁ ଏହା

ଭାରତବାସୀର ବିସ୍ମୃତ ଶିଳ୍ପ ହୋଇଥିଲା ବୋଇଲେ ଚଳେ । ବିଲାତି ଭାବରେ, ବିଲାତି ରଙ୍ଗରେ, ବିଲାତି ତୂଳୀରେ, ବିଲାତି ପଟରେ ବା ବିଲାତି ଶିକ୍ଷାରେ ଦୁଇ ହଜାର ବର୍ଷର ବିସ୍ମୃତ ଶିଳ୍ପର ଆଦ୍ୟାରମ୍ଭ ହାସ୍ୟାସ୍ପଦ ନୁହେଁ କି ? ହାଭେଲ ପ୍ରଶଂସିତ, ଅବନୀନ୍ଦ୍ର ନାଥ ପ୍ରବର୍ତ୍ତିତ ଗୃଧ୍ରକର୍ଣ୍ଣ ତିଳକୁସୁମନାଶା, ପଦ୍ମପଲାଶଲୋଚନ କିମ୍ବା 'ପଟଳଚେରା' ଆଖିଯୁକ୍ତ ପ୍ରାଚୀନ ଚିତ୍ର ଅପ୍ରାକୃତ ଅନୁକରଣ ବିଶ୍ୱର ଚିତ୍ର-ବିପଣୀରେ କେଉଁ ଆସନ ପାଇବା ଯୋଗ୍ୟ, ତାହା ମାଦୃଶ-କ୍ଷୁଦ୍ର ବୁଦ୍ଧିର ଅଗୋଚର । ପର ସାହିତ୍ୟରେ ଶିକ୍ଷିତ ହୋଇ ଆପଣା ଦେଶର ପ୍ରାଚୀନ ଶିଳ୍ପର ପୁନରୁଦ୍ଧାର ଚେଷ୍ଟା ନିଷ୍ଫଳାରମ୍ଭ ଯତ୍ନ ସମ ।

ଜୀବନ ମରଣର ସମସ୍ୟା ସମାଧାନ କରେ ବୈଦିକ ସାହିତ୍ୟ । ଭାରତବାସୀର ପ୍ରାଚୀନତ୍ୱ ତୁଳନା ଅନୁସାରେ ଏ ଜାତି ହାତରେ ଯଥେଷ୍ଟ ବୈଦିକ ସାହିତ୍ୟ ଅଛି କି ? ଏ କଥା କହିବାକୁ ନା ଭାବିବାକୁ ମଧ ଲଜ୍ଜା ବୋଧ ହୁଏ । ନରସେବା ଅପେକ୍ଷା ପାର୍ଥିବ ପଦାର୍ଥ ସେବା ମୁକ୍ତିପ୍ରଦ । ମୁକ୍ତିପସରା ଛାଡ଼ି ଦେଇ ଶିକ୍ଷିତ ଉଚ୍ଚ ଚିକିତ୍ସା ବ୍ୟାପାରରେ ଘାଣ୍ଟି ହୁଅନ୍ତେ କାହିଁକି ? ଚିକିତ୍ସା ବ୍ୟବସାୟ ଅଶିକ୍ଷିତ ହାତକୁ ଗଲା । ଶ୍ରୋତ୍ରୀୟ ବ୍ରାହ୍ମଣ ମାନ୍ତ୍ରିକ ବ୍ରାହ୍ମଣ ଦ୍ୱାରା ଶବଚ୍ଛେଦ (?) ଶବସ୍ପର୍ଶ ତ ମହାପାପ । ସାହିତ୍ୟିକ ଯେବେ ଶବଚ୍ଛେଦ କରେ ଏବଂ ତାର ଅନୁଭବ ଓ ପରୀକ୍ଷାର ଫଳଲିପିବଦ୍ଧ କରି ରଖେ, ତେବେ ସିନା ଚିକିତ୍ସା ଶାସ୍ତ୍ରର ଉନ୍ନତି । ଯେଉଁମାନଙ୍କ ପ୍ରତି ରୋଗୀ ଓ ଆତୁର ମଧ ଅସ୍ପୃଶ୍ୟ, ସେମାନେ ଚିକିତ୍ସା ଶାସ୍ତ୍ରରେ ହାତ ଦିଅନ୍ତେ କାହିଁକି ? ଏଣୁ ଚିକିତ୍ସା ସାହିତ୍ୟର ଅବନତି । ଖଣ୍ଡ କେତେ ଅତି ଉପାଦେୟ ପ୍ରାଚୀନ ଗ୍ରନ୍ଥ ଅଛି ମାତ୍ର ତାର ଦୋହାଇକୁ କି ରୋଗମାନେ ଅନନ୍ତକାଳ ମାନିବେ ? ନାହିଁ ତଥାପି ଭାରତବାସୀ ଗର୍ବରେ ସ୍ଫୀତ । ଅସ୍ତ୍ରଚିକିତ୍ସା ବୋଇଲେ ସୁଶ୍ରୁତ । ଏହା ବୌଦ୍ଧ କି ହିନ୍ଦୁ ଚିକିତ୍ସକ ଦ୍ୱାରା ଲିଖିତ, ତାହା କିଏ କହି ପାରିବ ? ବୌଦ୍ଧ ଯୁଗରେ ବୈଦିକ ସାହିତ୍ୟର ସମ୍ୟକ୍ ଉନ୍ନତି ଏବଂ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ସଙ୍ଗେ ସଙ୍ଗେ ଏହାର ଅବନତି, ଏହା କିଏ ଅସ୍ୱୀକାର କରିବ ?

ଦେଶରକ୍ଷା ନିମନ୍ତେ ଏ ଦେଶବାସୀ ଯେପରି ପଟୁ ତାହା ବା କ'ଣ କହିବା ? ବିଜ୍ଞ ବ୍ୟକ୍ତିମାନେ ଏକ ବାକ୍ୟରେ କହିବେ, ଏ ଦେଶର ଯୋଦ୍ଧାମାନଙ୍କ ପରି ଯୋଦ୍ଧା ଅନ୍ୟ କୌଣସି ଦେଶରେ ନ ଥିଲେ । ଥିଲେ, ମାତ୍ର ଏବେ ନାହାନ୍ତି ତ— ଏଥିର ଉତ୍ତର କ'ଣ ? ରାମ, ଭୀଷ୍ମ, କର୍ଣ୍ଣ, ଅର୍ଜୁନ, ହନୁମାନ ପ୍ରଭୃତିଙ୍କ ନାମ ତ ଯୁଗେ ଯୁଗେ ଭାରତବାସୀଙ୍କି ସ୍ୱାଧୀନ କରିପାରିଲା ନାହିଁ କିମ୍ବା ଏ ନାମ ଗୁଡ଼ାକରେ ଭୀ‌ତ ହୋଇ ତ କେହି ଭାରତ ଆକ୍ରମଣ ଆଶା ତ୍ୟାଗ କଲେ ନାହିଁ । ନାମ ତ ଅଛି, ଯୁଦ୍ଧ ବର୍ଣ୍ଣନା ତ ଅଛି; ମାତ୍ର ଯୁଦ୍ଧଶାସ୍ତ୍ର କେତେ ଖଣ୍ଡ ? ଅସ୍ତ୍ରଶସ୍ତ୍ର ନିର୍ମାଣ-ଶିକ୍ଷା ପୋଥି କେତେ ଖଣ୍ଡ ଅଛି ଧନୁର୍ବେଦ ନାମଟି ହିଁ ସାର । ଏପରି ଅର୍ବାଚୀନ ଅକର୍ମଣ୍ୟ ଶାସ୍ତ୍ର ଯେଉଁ ଜାତି ହାତରେ, ସେ ଜାତି ସ୍ୱେଚ୍ଛାକ୍ରମେ କାଳକ୍ରମେ ଅଧୀନତାଶୃଙ୍ଖଳ ପିନ୍ଧିବାକୁ ପ୍ରସ୍ତୁତ ବୋଲାଯିବ । ପ୍ରୟୋଜନମୂଳକ ସାହିତ୍ୟରେ ହିନ୍ଦୁର ଅମନୋଯୋଗିତାର ନିଦର୍ଶନ ଅନ୍ୟତ୍ର ଖୋଜିବାକୁ ଯିବାର ପ୍ରୟୋଜନ କ'ଣ ? କଳା, ଶିଳ୍ପ, ସ୍ଥାପତ୍ୟ କି ବିଦ୍ୟା ନୁହେଁ ? ଏ ସମ୍ବନ୍ଧରେ ଲୋକ ଶିକ୍ଷାପ୍ରଦ ପୁସ୍ତକ କେତେ ଖଣ୍ଡି ଅଛି ? ଯେ କେତେ ଖଣ୍ଡ ନଗଣ୍ୟ ପୁସ୍ତକ ଅଛି, ତଦ୍ୱାରା କି କୌଣସି ଜାତୀୟ ସାହିତ୍ୟ ତାଲିକା ପର୍ଯ୍ୟାପ୍ତ ବୋଲାଯାଇପାରେ ? ତଥାପି ମୟଦାନବ, ତ୍ୱଷ୍ଟ ଓ ବିଶ୍ୱକର୍ମା ଭାରତୀୟ ଶିଳ୍ପ-କୃଷକ ବୋଲିବାକୁ ହିନ୍ଦୁର ମୁଖ ଅବାରିତ । ସାହିତ୍ୟର ସାନଭିଜ୍ଞ ଅଶିକ୍ଷିତ ଅସ୍ପୃଶ୍ୟ ଜାତିଙ୍କ ହାତରେ ସମସ୍ତ ପ୍ରକାର କଳାବିଦ୍ୟାର ଭାର ଅର୍ପଣ କଲା କିଏ ? ଶିକ୍ଷିତ ସମାଜରକ୍ଷକ ବ୍ରାହ୍ମଣ କ୍ଷତ୍ରିୟ ତ । ସାହିତ୍ୟ ନାହିଁ, ବଂଶଧରଗଣ କ୍ରମୋନ୍ନତି କରନ୍ତେ କି ପ୍ରକାରେ ? କଳାବିଦ୍ୟାର ଅଧୋଗତି ଅନ୍ୟ ବିଦ୍ୟାମାନଙ୍କ ପରି ଏ ଦେଶରେ ଯେପରି ଘଟିଅଛି ଅନ୍ୟ ଦେଶରେ ତାହା ହୋଇ ନାହିଁ । ବିସ୍ତୃତ ଭାବରେ ସମସ୍ତ ପ୍ରକାର ସାହିତ୍ୟିକ ଅଧୋଗତିକୁ ବର୍ଣ୍ଣନା କରି କାଳକ୍ଷେପ କରିବା ମାର୍ଜନୀୟ ନୁହେଁ । ଜ୍ଞାତସାରରେ ହେଉ, ଅଜ୍ଞାତସାରରେ ହେଉ ବ୍ୟବସାୟ ବିଭାଗ ଦ୍ୱାରା ଏବଂ କୃତ୍ରିମ ସମାଜ ବନ୍ଧନଦ୍ୱାରା କ୍ଷତ୍ରିୟ, ବ୍ରାହ୍ମଣ ସାହିତ୍ୟର ଉନ୍ନତି ମାର୍ଗରେ ବିଷମ ବିଘ୍ନ ଉପସ୍ଥିତ କରି ଭାରତବାସୀଙ୍କୁ ଅଧୋଗତି ଆଡ଼କୁ ଟାଣି ନେଇଅଛନ୍ତି ।

ଯାହା ପ୍ରକାଶ କରାଗଲା ତାହା ଅବାନ୍ତର ବିଷୟ ନୁହେଁ କି ? ନୋହିଥିଲେ ମୁଁ ଆପଣମାନଙ୍କର ମୂଲ୍ୟବାନ୍ ସମୟକୁ ହେଳାରେ ନଷ୍ଟ କଲି, ଏଣୁ କ୍ଷମା ପ୍ରାର୍ଥନା କରେ ।

କୌଣସି ଭାଷାକୁ ଅନ୍ୟ କୌଣସି ଭାଷାର ଜନନୀ ବୋଲିବା ସଙ୍ଗତ ନୁହେଁ ବୋଲି ମୁଁ ମନେ କରେ । ବାଇବେଲ୍ ଲିଖିତ ଆଦମ୍ ଇଭଙ୍କଠାରୁ ସମସ୍ତ ମନୁଷ୍ୟ ଜାତ ହୋଇଥିଲେ, ଆଦମ୍ ଇଭ୍‌ଙ୍କ ଭାଷା ସମସ୍ତ ଭାଷାର ଜନନୀ ବୋଲି ସ୍ୱୀକାର କରିବାକୁ ହୁଅନ୍ତା, ମାତ୍ର ବାଇବେଲ୍‌ର ଯୁକ୍ତି ଅଯୌକ୍ତିକ ଓ ମିଥ୍ୟା

ଗୋଟିଏ ଭାଷା ଅନ୍ୟ ଗୋଟିଏ ଭାଷାର ଜନନୀ ହୋଇ ନ ପାରେ । ପାଳନକର୍ତ୍ତ୍ରୀ, ଧାତ୍ରୀ, ସହଚରୀ ସଖୀ ହୋଇପାରେ, ପୋଷଣକର୍ତ୍ତ୍ରୀ ହୋଇପାରେ— ଅନୁଧାବନରୁ ଏ କଥା ସ୍ପଷ୍ଟ ଜଣାଯିବ ।

ଋଗ୍‌ବେଦର ଭାଷା ଆର୍ଯ୍ୟମାନଙ୍କର ଅତି ପ୍ରାଚୀନ ଭାଷା । ପ୍ରାଗ୍‌ବୈଦିକ ଭାଷାର କିମ୍ବା ବ୍ରାତ୍ୟ ଭାଷାର ନିଦର୍ଶନ ଆମ୍ଭମାନଙ୍କ ହାତରେ ନାହିଁ । ବେଦ ଭାଷାକୁ ସଂସ୍କୃତ ଭାଷା ବୋଲିବା ଭୁଲ୍ । ବେଦ ଭାଷାର ସମସାମୟିକ ଅପର ପ୍ରାକୃତ ଭାଷା ଥିଲା । ପରବର୍ତ୍ତୀ ଯୁଗରେ ବିଜ୍ଞ ବ୍ୟକ୍ତିମାନେ ତଦାନୀନ୍ତନ ବୈଦିକ ଓ ପ୍ରାକୃତ ଭାଷାରୁ ଉଜ୍ଜ୍ୱଳ ସଂସ୍କୃତ ଭାଷା ସୃଷ୍ଟି କଲେ । ସଂସ୍କୃତ ଭାଷା-ପ୍ରବର୍ତ୍ତକଗଣ କାଳେ ଏ ଦେଶର ସାର୍ବଜନୀନ ଭାଷା (Lingua france) ହେବ ବୋଲି ଭାବିଥିଲେ; ମାତ୍ର ତାହା ହୋଇପାରିଲା ନାହିଁ । ତଥାପି ସଂସ୍କୃତ ଭାଷା ହୋଇ ରହିଲା । ପ୍ରାକୃତ ଭାଷାମାନଙ୍କର ପରିବର୍ତ୍ତନ ମୁହୁର୍ମୁହୁ ଘଟିଲା । ଏଣୁ ଭାରତବର୍ଷରେ ଏତେ ଭାଷାର ପ୍ରଚଳନ ।

ଉତ୍କଳ ଭାଷାର ଜନନୀ କେଉଁ ଭାଷା ? ପଣ୍ଡିତଗଣ କହିବେ ସଂସ୍କୃତ ଭାଷା । ତାହା ନୁହେଁ । ଅନେକ କହନ୍ତି, ଅର୍ଦ୍ଧମାଗଧୀ; ତାହା ବି ନୁହେଁ । ସଂସ୍କୃତ ଅର୍ଦ୍ଧମାଗଧୀ ଉତ୍କଳକୁ ପଦାର୍ପଣ କରିବା ଆଗରୁ କି ଏ ଦେଶରେ ଲୋକ ନ ଥିଲେ ଏବଂ ସେହି ଲୋକମାନଙ୍କର କି ଭାଷା ନ ଥିଲା ? ଲୋକ ଥିଲେ, ଭାଷା ମଧ୍ୟ ଥିଲା । ପ୍ରାଦେଶିକ ଭାଷା ଅର୍ଦ୍ଧମାଗଧୀ, ମହାରାଷ୍ଟ୍ରୀ, ସଂସ୍କୃତ ଓ ପାଲୀ ଭାଷାର ସମ୍ମିଶ୍ରଣରେ ଓଡ଼ିଆ ଭାଷାର ଅଙ୍ଗବୃଦ୍ଧି ଓ ସୌଷ୍ଠବ । ଏ ଭାଷା କେବେ ପୁଷ୍ଟାଙ୍ଗ ହୋଇ ଲିପିବଦ୍ଧ ହେଲା, ତାହା ବର୍ତ୍ତମାନ ଏକପ୍ରକାର ଅନୁମାନ ଗର୍ଭରେ । ଅନେକେ କହନ୍ତି— ଦେବନାଗରାକ୍ଷରୀ ଅନୁକରଣରୁ ଓଡ଼ିଆ ଲିପିର ଉତ୍ପତ୍ତି ଆକସ୍ମିକ । କେହି କେହି କହନ୍ତି, ବଙ୍ଗଳା ଓ କେହି କହନ୍ତି ତେଲୁଗୁର ଅନୁକରଣରୁ ଓଡ଼ିଆ ଲିପିର ଉତ୍ପତ୍ତି । ମୋର କ୍ଷୁଦ୍ର ବୁଦ୍ଧିରେ ମୁଁ ବିବେଚନା କରେ ଏହାର ଉଦ୍ଭାବନ ସ୍ଥିର ମସ୍ତିଷ୍କର କାର୍ଯ୍ୟ । ଲିପି ରଚନା ବେଳେ ଉଦ୍ଭାବକର ହୃଦୟରେ ନାଗରାକ୍ଷରର ଏବଂ ତେଲୁଗୁ ଅକ୍ଷରର ଆଦର୍ଶ ଜାଗରୂକ ହୋଇପାରେ; ମାତ୍ର ଲିପିସ୍ରଷ୍ଟା କାହାରି ଅନୁକରଣ ନ କରି ଛୋଟ ବଡ଼ ଅର୍ଦ୍ଧବୃତ୍ତ ଛୋଟ ବଡ଼ ଲମ୍ବ ଓ ତାର୍ଯ୍ୟକ୍ ସରଳରେଖା ସଂଯୋଗରେ ଓଡ଼ିଆ ଲିପିର ରଚନା କରିଅଛନ୍ତି । ଏହି ଉପାଦାନରୁ ପ୍ରତ୍ୟେକ ଲିପି ନିମନ୍ତେ ପାଞ୍ଚଗୋଟିରୁ ଅଧିକ ବ୍ୟବହାର କରିନାହାନ୍ତି । ଏପରି କୌଶଳ ଅନ୍ୟ ଲିପିରେ ଦେଖାଯାଏ ନାହିଁ । ଅବସନ୍ନ ମସ୍ତିଷ୍କ ପ୍ରସୂତ ଏ ମତ ସୁଧୀଜନଙ୍କର ଗ୍ରାହ୍ୟ ହେବ ବୋଲି ଆଶା କରାଯାଇ ନ ପାରେ । ଲିପି ପ୍ରଚଳନ ପୂର୍ବରୁ ଓଡ଼ିଆ ଭାଷା ଓ ସାହିତ୍ୟ ବିଦ୍ୟମାନ ଥିଲା । ଏହା ଅସ୍ୱୀକାର୍ଯ୍ୟ ନୁହେଁ; ମାତ୍ର ତାହା ଶ୍ରୁତି ଭଳି ଆମ୍ଭମାନଙ୍କଠାରେ ନାହିଁ । ହଳୁଆ ଗୀତ ଓ ଗ୍ରାମ୍ୟ କଥା ଯାହା ଜନ ମୁଖରେ ଅଛି, ପୁସ୍ତକାକାର ଧାରଣ କରି ନାହିଁ, ତାହା ମଧ୍ୟ ଆଧୁନିକ ଓଡ଼ିଆ । ଓଡ଼ିଆ ଭାଷାର ପ୍ରାଚୀନ ଶିଳାଲେଖ ଓ ଦାନଲିପି ଅତି କମ୍ । ମାଦଳାପାଞ୍ଜି ପ୍ରାଚୀନ ଓଡ଼ିଆ କି ଅପଭ୍ରଂଶ ତାହା ଅଦ୍ୟାପି ବିବେଚନାର ବିଷୟ । ଭାଷା ସମାଲୋଚକମାନେ କହନ୍ତି 'କୋଇଲି' ଓଡ଼ିଆ ଭାଷାର ପ୍ରଥମ କାବ୍ୟ । ଏହା ଯଦି ସତ୍ୟ ହୁଏ ତାହାହେଲେ କୋଇଲି ରଚନା ବେଳେ ଓଡ଼ିଆଭାଷା ପୂର୍ଣ୍ଣତା ପ୍ରାପ୍ତ ହୋଇଥିଲା । କାରଣ ଆଧୁନିକ ସରଳ ଓଡ଼ିଆ ସହିତ 'କୋଇଲି' ରଚନା ଉତ୍ତାରୁ ଓଡ଼ିଆ ଭାଷାର କ୍ରମବିକାଶ ଅତି ମୃଦୁ ଓ ମନ୍ଥର ।

କୋଇଲି ଲୋ, କେଶବ ଯେ ମଥୁରାକୁ ଗଲା
କାହା ବୋଲେ ଗଲା ପୁତ୍ର
ବାହୁଡ଼ି ନଇଲା ଲୋ କୋଇଲି ।
କୋଇଲି ଖଣ୍ଡକ୍ଷୀର ଦେବି ମୁଁ କାହାକୁ
ଖାଇବାର ପୁତ୍ର ଗଲା
ମଥୁରା ପୁରକୁ ଲୋ କୋଇଲି ।

ଏପରି ପ୍ରାକୃତିକ ସରଳ ସୁଶ୍ରାବ୍ୟ ବାତ୍ସଲ୍ୟ ରସପୂର୍ଣ୍ଣ କୋମଳ ପଦାବଳୀ କେଉଁ ଭାଷାରେ ଅଛି, ମୋତେ ଜଣା ନାହିଁ କିମ୍ବା ବାଲ୍ୟାବସ୍ଥାର କୋମଳ ହୃଦୟକୁ ଏହି ପଦାବଳୀ ସ୍ପର୍ଶ କରିଥିବାରୁ ତା'ର ମୋହକୁ ଅଦ୍ୟାପି ତ୍ୟାଗ କରିପାରୁ ନାହିଁ, ଏଣୁ ଅଯଥା ପ୍ରଶଂସା କରୁଅଛି । ସଭ୍ୟଗଣ ଏଥିର ବିଚାରକ । ଯେଉଁ ଭାଷାର ମୂଳଦୁଆ ଏତେ ଉଦାର ସେ ଭାଷା କାଳେ ଅତ୍ୟୁଦାର ହେବ ଏହା ଭାବିବା ଅସ୍ୱାଭାବିକ ନୁହେଁ । ପ୍ରଥମେ କବିଙ୍କ ପଦାନୁସରଣକାରୀ କବିମାନେ ଉତ୍କଳ ଭାଷାର ଔଦାର୍ଯ୍ୟ ରକ୍ଷା କରିବାକୁ ଯତ୍ନଶୀଳ ହୋଇଅଛନ୍ତି ଏବଂ ସେଥିରେ ସେ କୃତକାର୍ଯ୍ୟ ହୋଇଅଛନ୍ତି, ତାହା କହିବା ବାହୁଲ୍ୟ ମାତ୍ର ।

ଉତ୍କଳ ଜନନୀ କାବ୍ୟ ସମ୍ପଦରେ ଦରିଦ୍ରା ନୁହେଁ । ତା'ର ଯୋଗ୍ୟ ସନ୍ତାନମାନେ କାବ୍ୟ ଭଣ୍ଡାର ପୂର୍ଣ୍ଣ କରିଅଛନ୍ତି । କାବ୍ୟ ସମ୍ପଦ ଘେନି ଉତ୍କଳ ଯେକୌଣସି ଦେଶର ସମକକ୍ଷ ବୋଲାଯାଇପାରେ । ଏତିକି ନୁହେଁ, ଏ ଦେଶର କବିମାନେ ରଚନା ପରିପାଟୀରେ ଅଳଙ୍କାରରେ ରଚନାର

ପ୍ରକାରଭେଦରେ ଅନ୍ୟ ଦେଶର ସମସାମୟିକ କବିମାନଙ୍କୁ ଅତିକ୍ରମ କରିଅଛନ୍ତି । ଏ ଦେଶରେ ଛାନ୍ଦ, ବାଣୀ, ରାଗରାଗିଣୀ କାବ୍ୟରେ କବିମାନେ ବ୍ୟବହାର କରି ରଚନାଚାତୁରୀ ଦେଖାଇ ଅଛନ୍ତି । ଅନ୍ୟ ଦେଶର କବିମାନେ ତାହା କରିପାରି ନାହାନ୍ତି । ଉପେନ୍ଦ୍ରଭଞ୍ଜଙ୍କ ଅଦ୍ଭୁତ କ୍ଷମତା ଓ ପ୍ରତିଭା ଅନ୍ୟ କୌଣସି ଦେଶର କବିଙ୍କଠାରେ ଲକ୍ଷ୍ୟ ହୁଏ ନାହିଁ । ଏପରିକି ସଂସ୍କୃତଭାଷାରେ କୌଣସି ଜଣେ କବି ଭଞ୍ଜ ସଦୃଶ କାବ୍ୟବୈଚିତ୍ୟ ଦେଖାଇବାକୁ ସମର୍ଥ ହୋଇନାହାନ୍ତି । କିନ୍ତୁ ଏ ଯୁଗରେ ଏପରି ପ୍ରତିଭାଶାଳୀ କବିଙ୍କ କବିତ୍ୱ ଅଶ୍ଳୀଳ ଦୋଷରେ ନାରଖାର ହେଲା । ଏହା କବିର ଦୋଷ ନା କାଳର ଦୋଷ ? ଆମ୍ଭମାନଙ୍କର ଶିକ୍ଷାଜନିତ ରୁଚିର ପରିବର୍ତ୍ତନକୁ ସେ ଲକ୍ଷ୍ୟ କରି ପାରି ନ ଥିଲେ । ଯେଉଁ କାଳରେ ତାଙ୍କର ଜନ୍ମ, ଯେଉଁ କାଳରେ ଓ ଯେଉଁ ପ୍ରକାରରେ ତାଙ୍କର ଶିକ୍ଷା, ଯେଉଁମାନଙ୍କ ପାଇଁ ତାଙ୍କର ରଚନା-ସେହି କାଳର ଓ ପାଠକମାନଙ୍କର ରୁଚିକୁ ଲକ୍ଷ୍ୟ କରି ତାଙ୍କର ଲେଖା । ଆମ୍ଭେମାନେ ସମସ୍ତେ ଅଶ୍ଳୀଳ କାବ୍ୟ ବିରୋଧୀ, ଏହା ବୋଲି ଯେବେ ଓଡ଼ିଆ ସାହିତ୍ୟରୁ ଭଞ୍ଜ, ସାମନ୍ତ ସିଂହାର, ଦୀନକୃଷ୍ଣ ଦାସ ପ୍ରଭୃତିଙ୍କର ରଚନା ସମୂହକୁ ନିଷ୍କାସିତ କରିଦେବା, ତେବେ ଆମ୍ଭମାନଙ୍କର ଜାତୀୟ ସାହିତ୍ୟର ସତ୍ତା ରହିବ କେଉଁଠାରେ ? ସଂସ୍କୃତ କାବ୍ୟରେ ପ୍ରଚୁର ଅଶ୍ଳୀଳ ରଚନା ଅଛି । ସେହି ପୁସ୍ତକମାନ ମୁଦ୍ରିତ ହେଉ ନାହିଁ ନା ପାଠ୍ୟପୁସ୍ତକ ହେଉ ନାହିଁ ? ଅଶ୍ଳୀଳ ଅଂଶ ବର୍ଜନ କରି ପ୍ରାଚୀନ କାବ୍ୟମାନଙ୍କରୁ ପାଠ୍ୟପୁସ୍ତକ ମୁଦ୍ରିତ କରି ସ୍କୁଲ କଲେଜରେ ପ୍ରବର୍ତ୍ତିତ କଲେ ଜାତୀୟ ସାହିତ୍ୟର ମର୍ଯ୍ୟାଦା ବଢ଼ି ନ ଥାନ୍ତା କି ? ଉତ୍କଳର ହିତାକାଂକ୍ଷୀ କେଉଁ ବ୍ୟକ୍ତି ଏ ବିଷୟରେ ଯତ୍ନଶୀଳ ହୋଇଥିଲେ ଆମ୍ଭମାନଙ୍କୁ ତ ଜଣା ନାହିଁ । ଉତ୍କଳର କବି ମୌକ୍ତିକମଣିମାନଙ୍କର ରଚନାକୁ ଏକାବେଳକେ ପାଠ୍ୟପୁସ୍ତକ ତାଲିକାରୁ ବାଦ୍ ଦେବାଦ୍ୱାରା ପୁସ୍ତକ ନିର୍ବାଚକଗଣ ଜାତୀୟ ସାହିତ୍ୟର ମୂଳରେ କୁଠାରଘାତ କରିଅଛନ୍ତି ନା କର୍ତ୍ତିତ ମୂଳରୁ ଅଙ୍କୁରୋଦ୍‌ଗମ ହେଲାବେଳେ ତାକୁ ପଦଦଳିତ କରିଅଛନ୍ତି । ବହୁଦିନ ପୂର୍ବେ ଯେତେବେଳେ Calcutta University Calendar ଖୋଲି ଦେଖିଲି ଯେ କୃତ୍ତିବାସ ରାମାୟଣ ଏବଂ ତୁଳସୀଦାସ ରାମାୟଣ ପ୍ରବେଶିକା ପରୀକ୍ଷାର ପାଠ୍ୟପୁସ୍ତକ ରୂପେ ଗୃହୀତ, ଅଥଚ ଓଡ଼ିଆ ଭାଷାର କୌଣସି ପୁସ୍ତକର ନାମ ଗନ୍ଧ ନାହିଁ, ମନ କ୍ଷୁବ୍ଧ ହେଲା । କୃତ୍ତିବାସ ରାମାୟଣ ଭଳି ପୁସ୍ତକ ବି ଓଡ଼ିଆରେ ନାହିଁ । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କର ବୋଧହୁଏ ଏପରି ଜ୍ଞାନ ଥିଲା ଯେ, ଓଡ଼ିଆ ଦ୍ୱିତୀୟ ଭାଷା ହେବାର ଉପଯୁକ୍ତ ନୁହେଁ ଏବଂ ଉତ୍କଳ-ଭଣ୍ଡାରରେ କୃତ୍ତିବାସ ତୁଲ୍ୟ ଉପଯୁକ୍ତ ପୁସ୍ତକ ନାହିଁ । ମୁରବୀର ଅଭାବ, ଦୋଷ ଦେବା କାହାକୁ ? ଚାଳିଶ ବର୍ଷ ତଳେ ଉତ୍କଳ-ସାହିତ୍ୟ କ୍ଷେତ୍ରରେ ଘୋର ମସୀଯୁଦ୍ଧ ସଂଘଟିତ ହୋଇଥିଲା । ଉପସ୍ଥିତ ସାହିତ୍ୟିକମାନଙ୍କ ମଧ୍ୟରୁ କେତେଜଣଙ୍କୁ ତାହା ଜଣାଥିବ । ଅଧିକାଂଶ ତାହା ଜାଣନ୍ତି ନାହିଁ । ଜୟ ପରାଜୟ ସମ୍ବନ୍ଧରେ ଏଠାରେ ମୁଁ ମନ୍ତବ୍ୟ ଦେବାକୁ ପ୍ରସ୍ତୁତ ନୁହେଁ । ତେବେ ଏହି ଯୁଦ୍ଧ ଉତ୍ତାରୁ ନବ୍ୟ ଦଳ ଯେ ପ୍ରାଚୀନ ସାହିତ୍ୟ ପ୍ରତି ବିମୁଖ ହେଲେ ତାହା କହିବା ବାହୁଲ୍ୟ ମାତ୍ର ।

ଯେତେବେଳେ ଏ ଦେଶରେ ପାଶ୍ଚାତ୍ୟ ଧରଣର ବିଦ୍ୟାରମ୍ଭ ହେଲା, ସେତେବେଳେ ଓଡ଼ିଆ ପୁସ୍ତକର ଅଭାବ ଦେଖାଗଲା । ବଙ୍ଗଳା ପୁସ୍ତକମାନ ଭାଷାନ୍ତରିତ ହୋଇ ପାଠ୍ୟପୁସ୍ତକରୂପେ ଗୃହୀତ ହେଲା । ତର୍ଜମାକାରୀମାନେ ଓଡ଼ିଆ ସେମାନେ ମାତୃଭାଷା ପ୍ରତି ନିମକହାରାମି କରି ନ ଥିଲେ । ପ୍ରାଞ୍ଜଳ ଓଡ଼ିଆ ଭାଷାରେ ସୀତା ବନବାସ, ଶକୁନ୍ତଳା ଓ ଚାରୁପାଠ, ବୋଧୋଦୟ, ବୋଧାଙ୍କୁର, ଆଖ୍ୟାନମଞ୍ଜରୀ ପ୍ରଭୃତି ପୁସ୍ତକମାନ ବଙ୍ଗଳାରୁ ଭାଷାନ୍ତରିତ କରିଥିଲେ । ମଧୁସୂଦନଙ୍କ ପ୍ରବନ୍ଧମାଳା ଏବଂ ସୀତାନାଥଙ୍କ ପାଠାବଳୀ ଉପର୍ଯୁକ୍ତ ପୁସ୍ତକମାନଙ୍କର ସ୍ଥାନାଧିକାର କଲା ।

ଯେତେବେଳେ ଏ ଦେଶରେ ବାଗ୍‌ଦେବୀଙ୍କ ଅନୁଗୃହୀତ ପୁତ୍ରଗଣ ସରସ୍ୱତୀ-ଆରାଧନାରେ ମନ ନ ଦେଇ ଲକ୍ଷ୍ମୀ ଆରାଧନାରେ ମନ ଦେଲେ । ବାଗ୍‌ଦେବୀଙ୍କୁ ଅନ୍ତରରୁ ଚିରବିଦାୟ ଦେଲେ, ଆଉ ବାଗ୍‌ଦେବୀ ଅନୁଗୃହୀତ ଯେଉଁ ପୁତ୍ରମାନେ କେବଳ ଶିକ୍ଷାବିଭାଗରେ ଶାସକ କର୍ତ୍ତୃକ ନିଯୁକ୍ତ ହେଲେ, ସେଥିମଧ୍ୟରୁ ଜଣ କେତେ ବାଣୀ ଆରାଧନାରେ ମନ ଚଳାଇଲେ । ରାଧାନାଥ ଓ ମଧୁସୂଦନ ଏ ବିଷୟରେ ଅଗ୍ରଣୀ । ବାକି ଯେଉଁମାନେ ସ୍କୁଲ କଲେଜରୁ ଉତ୍ତୀର୍ଣ୍ଣ ହୋଇ ସାମାନ୍ୟ ବେତନଭୋଗୀ ହେଲେ ବା ସ୍ୱାଧୀନ ବ୍ୟବସାୟ ଆରମ୍ଭ କଲେ, ସେମାନଙ୍କ ମଧ୍ୟରୁ ଯେଉଁ କେତେ ଜଣ ସାହିତ୍ୟ-ସେବା ନିରତ ଥିଲେ, ସେମାନଙ୍କର ଲିଖିତ ପୁସ୍ତକ ପାଠ୍ୟପୁସ୍ତକ ନ ହେବାରୁ ସେମାନେ ଦୁଃଖରେ ଲେଖନୀ ଧାରଣ ବନ୍ଦ କଲେ । କୌଣସି କୌଣସି ଲେଖକ ଯେ ସେମାନଙ୍କର ହୃଦ୍‌ଗତ ଭାବ ପତ୍ରିକାରେ ପ୍ରକାଶ କରି ନ ଥିଲେ, ଏପରି ନୁହେଁ । ସେ ସମୟରେ ଉଚ୍ଚଶିକ୍ଷିତ ବ୍ୟକ୍ତିମାନେ ଯେଉଁ ପାଠ୍ୟପୁସ୍ତକ ପ୍ରତି ଭ୍ରୂକ୍ଷେପ ନ କରି କେବଳ ଭାଷାର ଉନ୍ନତିକଳ୍ପେ ଲେଖନୀ ଧାରଣ

କରିଥାନ୍ତେ, ତାହାହେଲେ ଆଜି ସରିକି ଓଡ଼ିଆ ସାହିତ୍ୟ ଯେ ଉନ୍ନତତର ହୋଇଥାନ୍ତା, ଏଥିରେ ସନ୍ଦେହ ନାହିଁ । ଜଣକେତେ ପ୍ରୟୋଜନାପେକ୍ଷୀ ନ ହୋଇ ପୁସ୍ତକ ଲେଖିବାକୁ ଆରମ୍ଭ କଲେ । ଫକୀର ମୋହନ ସେଥି ମଧ୍ୟରେ ଅଗ୍ରଗଣ୍ୟ । ପ୍ରକୃତରେ ଫକୀରମୋହନ ଶ୍ରେଷ୍ଠ ମାତୃଭକ୍ତ ସାହିତ୍ୟସେବୀ । ଏ ହେତୁରୁ ଗୁଣଗ୍ରାହୀ ସଚ୍ଚିଦାନନ୍ଦ ଦେବ ତାହାଙ୍କୁ 'ସରସ୍ୱତୀ' ଉପାଧି ଦେଇ ପୂଜା କରିଥିଲେ । ମୋ ଦେଖିବାରେ କେତେଜଣ ଉଦୀୟମାନ ଲେଖକ ସାହିତ୍ୟ କ୍ଷେତ୍ରରେ ଦେଖା ଦେଇ ଉଭେଇ ଗଲେ ।

ଉତ୍କଳ ସାହିତ୍ୟର ଉନ୍ନତି ମାର୍ଗରେ ବାଧାବିଘ୍ନ ଅନେକ । ତାହା ବର୍ଣ୍ଣନା କଲେ ଲାଭ କ'ଣ ?

ଅନେକେ କହିପାରନ୍ତି—ଏପରି ବାଧାବିଘ୍ନ ସବୁ ଦେଶର ଘଟେ ଏବଂ ଏପରି ବାଧାବିଘ୍ନ ସତ୍ତ୍ୱେ ବଙ୍ଗଭାଷା କାହିଁକି ଉତ୍କଳଭାଷା ଅପେକ୍ଷା ଉନ୍ନତତର । ବଙ୍ଗମାତାପ୍ରତି ଲକ୍ଷ୍ମୀ ସରସ୍ୱତୀ ପ୍ରସନ୍ନ । ବାଣିଜ୍ୟର କେନ୍ଦ୍ର, ପ୍ରଧାନ ରାଜଧାନୀ, ପ୍ରଥମରୁ ସ୍କୁଲ କଲେଜ ସେ ଦେଶରେ ପ୍ରତିଷ୍ଠିତ ହେଲା । ପାଶ୍ଚାତ୍ୟଶିକ୍ଷାର ବିସ୍ତାର ସଙ୍ଗେ ସଙ୍ଗେ ସାହିତ୍ୟର ଉନ୍ନତି ସାଧିତ ହେଲା । ମୁଦ୍ରାଯନ୍ତ୍ର, ମାସିକ, ସାପ୍ତାହିକ ଓ ଦୈନିକପତ୍ର ଲେଖକମାନଙ୍କୁ ଉତ୍ସାହିତ କଲା । ଏଣୁ ବଙ୍ଗ ସାହିତ୍ୟର ଉନ୍ନତି । କିନ୍ତୁ ଏଥି ନିମନ୍ତେ ଏ ଦେଶବାସୀ କ୍ଷୁଣ୍ଣ ହେବା ଉଚିତ ନୁହେଁ । ଆମ୍ଭମାନଙ୍କର ପ୍ରାଚୀନ ପ୍ରୋତ୍‌ଥିତ ସମ୍ପତ୍ତି ଯଥେଷ୍ଟ । ଆମ୍ଭେମାନେ ନିର୍ଦ୍ଧନ ନୋହୁଁ । କାଳ ସହିତ ଗତି କରିବାକୁ ଉତ୍ସାହ ଓ ସ୍ୱାର୍ଥତ୍ୟାଗ ମାତ୍ର ପ୍ରୟୋଜନ ।

ଗତସ୍ୟ ଶୋଚନା ନାସ୍ତି । ବର୍ତ୍ତମାନ ସୁଯୋଗ ଆସିଛି; ଯେବେ ଯୁବକଦଳ ଏକମନ ଏକପ୍ରାଣ ହୋଇ ସାହିତ୍ୟସେବାରେ ବ୍ରତୀ ହୁଅନ୍ତି ତାହାହେଲେ ଦେଶର ଅନେକ ହିତ ସାଧିତ ହେବ । ଭ୍ରାତୃବିବାଦରୁ ଭାରତ ନଷ୍ଟ, ଏହାକି ସ୍ମରଣ କରାଇଦେବାକୁ ହେବ ? ଏ କଳଙ୍କ କି ଭାରତବାସୀ ଯୁଗେ ଯୁଗେ ବହନ କରୁଥିବେ ? ଏ କଳଙ୍କ ମୋଚନର କ'ଣ ଉପାୟ ନାହିଁ ? ଜ୍ଞାନହିଁ ସକଳପ୍ରକାର ବିବାଦର ଉଚ୍ଛେଦ ସାଧନ କରେ । ଜ୍ଞାନ ବଢ଼େ ସାହିତ୍ୟ ଚର୍ଚ୍ଚାରୁ । ଏହି ସାରସ୍ୱତ ଭବନ ସାହିତ୍ୟ ଚର୍ଚ୍ଚାର ସ୍ଥଳ । ଏ ସ୍ଥଳରେ କାର୍ଯ୍ୟପଦ୍ଧତି ନିଶ୍ଚିତ ହୋଇ ସର୍ବସାଧାରଣରେ ବିତରିତ ହେଲେ ଦେଶର କି ହିତ ସାଧନ ହେବ ନାହିଁ ? ଏଣୁ ମୁଁ ଅନୁରୋଧ କରେ ଯେ, ଆପଣମାନେ ଏହି ସଦନରେ ଏକତାର ଅଙ୍କୁର ରୋପଣ କରନ୍ତୁ । ଏହା କାଳେ ବୃଦ୍ଧି ପ୍ରାପ୍ତ ହୋଇ ଦେଶର ସମସ୍ତଙ୍କୁ ଏକତା ସୂତ୍ରରେ ଆବଦ୍ଧ କରିବ । 'ବିଦ୍ୟା ବିବାଦୀୟ' ଏହା ଠିକ୍ ନୁହେଁ । ମାତ୍ର ସମାଲୋଚନା ନ କଲେ ଜ୍ଞାନ ବୃଦ୍ଧି ହେବ କିପରି ? ଦୋଷାଲୋଚନାର ଅର୍ଥ ବିବାଦର ସୂତ୍ରପାତ । ସାହିତ୍ୟିକମାନଙ୍କ ପକ୍ଷରେ ଦୋଷାଲୋଚନା ବଡ଼ ନିନ୍ଦନୀୟ । ଯେଉଁମାନଙ୍କର ବ୍ରତ କ୍ରମୋନ୍ନତି ସେମାନଙ୍କ ପକ୍ଷରେ ଭ୍ରାତୃବିରୋଧ ବ୍ରତର ବିଧାନଭଙ୍ଗ ।

ଆଜିକାଲି ଉତ୍କଳ ସାହିତ୍ୟ କ୍ଷେତ୍ରରେ ସାହିତ୍ୟିକ ଭାଇମାନଙ୍କ ମଧ୍ୟରେ ମନୋମାଳିନ୍ୟର ଗନ୍ଧ ମିଳେ । ମୋ ପରି ବ୍ୟକ୍ତି ପକ୍ଷେ ଏତାଦୃଶ ମନୋମାଳିନ୍ୟ ବଡ଼ ମର୍ମନ୍ତୁଦ । ସାହିତ୍ୟିକ ଭାଇମାନଙ୍କର ଏହା ଭାବିବା ଉଚିତ୍ ଯେ, ଏତାଦୃଶ ଶୁଷ୍କ ବିବାଦ ଦ୍ୱାରା ଉନ୍ନତିରେ ବାଧାପଡ଼େ । କେତେକ ଯୁବକ ବଙ୍ଗୀୟ ଓ ଓଡ଼ିଆ ସାହିତ୍ୟିକଙ୍କ ମଧ୍ୟରେ ସମୟ ସମୟରେ ବିବାଦ ଉପସ୍ଥିତ ହେବାର ଦେଖାଯାଏ । ମୁଁ ଏଥିର କାରଣ କିଛି ବୁଝିପାରେ ନାହିଁ । ଯେଉଁ ବଙ୍ଗୀୟ ଭାଇମାନେ ନିଜକୁ ଉତ୍କଳ ମାତାର ପାଳିତ ପୁତ୍ର ବା ପୌଷ୍ୟପୁତ୍ର ବୋଲି ମନେକରନ୍ତି, ସେମାନେ ଅବଶ୍ୟ ଓଡ଼ିଆ ସାହିତ୍ୟର ଉନ୍ନତି କରିବେ । ଓଡ଼ିଆ ସାହିତ୍ୟକୁ ଯେବେ ସେମାନେ ସଙ୍କର କରିବାକୁ ଚେଷ୍ଟା କରନ୍ତି, ତାହା ସେମାନଙ୍କ ପକ୍ଷରେ ଶୋଭନୀୟ ହେବ ନାହିଁ । ଆଉ ଯେବେ ଉତ୍କଳ-ଲେଖକମାନେ ଅଯଥା ବଙ୍ଗଭାଷାର ଅନୁକରଣ କରନ୍ତି କିମ୍ବା ଓଡ଼ିଆ ସାହିତ୍ୟରେ ଯେଉଁ ପଦାର୍ଥ ପ୍ରଚୁର ପରିମାଣରେ ଥିବା ସତ୍ତ୍ୱେ ସେମାନେ ଲୋଭ ପରବଶ ହୋଇ କିମ୍ବା କୌତୁକରେ ବଙ୍ଗସାହିତ୍ୟରୁ ଆତ୍ମସାତ୍ କରି ଓଡ଼ିଆ ସାହିତ୍ୟକୁ ସଜ୍ଜିତ କରିବାକୁ ପ୍ରୟାସ କରନ୍ତି, ସେହିମାନେ ହିଁ କେବଳ ନିନ୍ଦାର ପାତ୍ର ଓ ଭୟର କାରଣ । ଏପରି କାର୍ଯ୍ୟଦ୍ୱାରା ବଙ୍ଗ ସାହିତ୍ୟର କୌଣସି ଲାଭ ନାହିଁ, ଅଥଚ ନିଜ ସାହିତ୍ୟର ପ୍ରଭୂତ କ୍ଷତି ଏବଂ ଏଥି ନିମନ୍ତେ ଯଦି କେହି ଅନ୍ୟଙ୍କଠାରୁ ପ୍ରଶଂସା ପାଇବାର ଆଶା ରଖେ ସେ ଅସାହିତ୍ୟିକ । ଅନ୍ୟାନ୍ୟ ପନ୍ଥା ଅବଲମ୍ବନ କରି ପରସ୍ପର ମଧ୍ୟରେ ବୃଥା ବିବାଦ ଓ ଗୃହବିବାଦ ଲଗାଇବା ବୁଦ୍ଧିମନ୍ତାର କାର୍ଯ୍ୟ ନୁହେଁ । ଏପରି ସମୟ ଉପସ୍ଥିତ ହୋଇଅଛି ଯେତେବେଳେ ସମସ୍ତ ପ୍ରକାର ବିବାଦରୁ ନିଜକୁ ମୁକ୍ତ କରିବାକୁ ଚେଷ୍ଟା କରିବା ସମସ୍ତଙ୍କ ଉଚିତ । ଭାଇମାନେ— ଏହା ମୋର ଉପଦେଶ ନୁହେଁ ଅନୁରୋଧ । ଏହା କରିବାଦ୍ୱାରା ଯେବେ କାହାରି ମନରେ ମୁଁ ଦୁଃଖଜାତ କରିଥାଏ, ସେ ମୋତେ କ୍ଷମା ଦେବେ ।

ଯେଉଁମାନେ ଉଦ୍‌ଯୋଗର ଏବଂ ଯେଉଁମାନଙ୍କର ବଦାନ୍ୟତାରେ ଏହି ଗୃହର ପ୍ରତିଷ୍ଠା, ସେମାନେ ଆମ୍ଭମାନଙ୍କର ସମ୍ମାନ ଓ ଧନ୍ୟବାଦର ପାତ୍ର । ଯେଉଁମାନେ ଏହି ପ୍ରତିଷ୍ଠାନକୁ ରକ୍ଷା କରିବାକୁ ସମର୍ଥ ହୋଇଅଛନ୍ତି ସେମାନେ ମଧ ଧନ୍ୟବାଦର ପାତ୍ର ।

ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନ ଥିଲେ, ଜ୍ଞାନ ଚର୍ଚ୍ଚା କରାଯିବ କେଉଁଠାରେ ? ଘରତ ମିଳିଛି, ମାତ୍ର ସାହିତ୍ୟ-ଚର୍ଚ୍ଚାର ଉପକରଣ ତ ଆବଶ୍ୟକ ? ସେଥିପ୍ରତି ଦେଶବାସୀଙ୍କର ସହାନୁଭୂତି ଖୁବ୍ କମ୍ । ଯେହେତୁ ଏ ତୀର୍ଥ ମାହାତ୍ମ୍ୟ ସମସ୍ତଙ୍କ ହୃଦୟରେ ସ୍ଥାନ ପାଇ ନାହିଁ, ଏହାକୁ ହିଁ ମୁକ୍ତିତୀର୍ଥ ବୋଲିବାକୁ ହେବ । ଅନ୍ୟ ତୀର୍ଥମାନଙ୍କରେ ଧନିକଗଣ ଓ ରାଜାମହାରାଜାମାନେ ଯେଉଁ ପରିମାଣର ବ୍ୟୟ କରନ୍ତି, ତହିଁର କିୟଦଂଶ ଏ ତୀର୍ଥରେ ବ୍ୟୟିତ ହେଲେ ଯେ ମୁକ୍ତି ମିଳିବ, ଏହା ସମସ୍ତଙ୍କର ହୃଦୟଙ୍ଗମ ହେବା ଉଚିତ । ଏ ତୀର୍ଥରେ ପଣ୍ଡାମାନେ ସ୍ୱାର୍ଥତ୍ୟାଗୀ ହେବା ଉଚିତ । ଅନ୍ୟ ତୀର୍ଥମାନଙ୍କର ଦାନ ଠାକୁର ପେଟକୁ ନ ପାଇ ପଣ୍ଡାଙ୍କ ପେଟଜ୍ୱାଳା ନିବାରଣ କରେ । ଏ ତୀର୍ଥର ଦାନ ମନ୍ଦିରରେ, ଏବଂ ମନ୍ଦିର ଦେବତା ଗଠନରେ ବ୍ୟୟିତ ହୁଏ । ଏ ତୀର୍ଥ ପ୍ରତି ମହାରାଜା, ରାଜା ଓ ଧନିକମାନଙ୍କର ଦୃଷ୍ଟି ପଡ଼ିବା ଉଚିତ । ଏ ମନ୍ଦିର ନିର୍ମାଣ ହେଲେ ଯେ ସେମାନେ ପ୍ରକୃତ ଆନନ୍ଦ ଓ ମୁକ୍ତିବାଟ ପାଇବେ, ଏଥିରେ ସନ୍ଦେହ ନାହିଁ ।

ଦେଶରେ ଅନେକାନେକ ପ୍ରାଚୀନ ପୁସ୍ତକ ଅଛି । ତା'ର ମୁଦ୍ରଣ ଏହି ସମାଜ ଦ୍ୱାରା ହେବା ଉଚିତ । କିନ୍ତୁ ତାହା ଅର୍ଥାଭାବରୁ ହେବା ଅସମ୍ଭବ ହୋଇଛି । ପ୍ରାଚୀ ସମିତି ଏହି ଭାର ଗ୍ରହଣ କରି ଦେଶର ହିତସାଧନ କରୁଅଛନ୍ତି ଏବଂ ନାମ ବିଖ୍ୟାତ କରିବାରେ ଚେଷ୍ଟିତ । ଏହା ଭାବିଲେ ଆହ୍ଲାଦିତ ହେବାର କଥା ।

ଏ ଦେଶରେ ଚାରି ଛଅଖଣ୍ଡ ମାସିକ ପତ୍ର ପ୍ରଚାର ହୁଏ, ଏହା ଦେଶର ଦୈନ୍ୟାବସ୍ଥାର ପରିଚାୟକ । ଅନ୍ୟ ଦେଶରେ ସମ୍ପାଦକର ମହତ୍ତ୍ୱ ଓ ମର୍ଯ୍ୟାଦା ଅତି ଉଚ୍ଚ । ସମ୍ପାଦକର ସମ୍ମାନ ଯଥେଷ୍ଟ, ମାତ୍ର ଏ ଦେଶବାସୀ ସମ୍ପାଦକର ଦାୟିତ୍ୱ ଓ ମର୍ଯ୍ୟାଦା ବୁଝି ତାକୁ ସମ୍ମାନିତ କରିବାର ପ୍ରୟୋଜନୀୟତା ଅଦ୍ୟାପି ହୃଦୟଙ୍ଗମ କରିପାରି ନାହାନ୍ତି । ଏ ଦେଶରେ ସମ୍ପାଦକତ୍ୱ ଝକମାରୀ । ମୁଁ ଏଥିରେ ଜଣେ ଭୁକ୍ତଭୋଗୀ । ଏ ଦେଶରେ ଗ୍ରାହକତ୍ୱର ଅଭାବ । ଅର୍ଥାଭାବ ତ ଅଛି । ବିଳାସିତାରେ ଅର୍ଥବ୍ୟୟ ନ କରି କାଗଜ କେତେ ଫରଦ ନିମନ୍ତେ ଅର୍ଥବ୍ୟୟ କରିବା ଏ ଦେଶର ଅପବ୍ୟୟ । ଲେଖକର ଅଭାବ, ଲେଖକର ଅଭାବ ବୋଲି ତ ସମ୍ପାଦକମାନେ ଚିତ୍କାର କରି କରି ହତଶ୍ୱାସ ହେଲେଣି । ପ୍ରବନ୍ଧ ଲେଖିବ କିଏ ? ଶିକ୍ଷିତମାନେ ତ । ଯେଉଁମାନେ କଲେଜ ଛାଡ଼ି ରାଜାନୁଗ୍ରହ ପାଆନ୍ତି, ସେହିମାନେ ହିଁ ତ ଶିକ୍ଷିତ । ସେମାନେ ରାଜସଭାରେ ନିଯୁକ୍ତ ହେଲା ମାତ୍ରେ ଯାହା ପ୍ରସାଦରୁ ଏ ମହତ୍ତ୍ୱ ପ୍ରାପ୍ତି ତାକୁ ଭୁଲି ଯାଆନ୍ତି ଏବଂ ନିଜର ମହତ୍ତ୍ୱ ଗରିମା ନାଶ ହେବ ଭାବି ଦେଶର ଶୁଷ୍କ ପତ୍ରଗୁଡ଼ାକରେ ପଦେ ଅଧେ ଲେଖିବାକୁ କୁଣ୍ଠିତ ହୁଅନ୍ତି । ଥରେ ମୁହଁ ଟେକି ଇଉରୋପରେ ଉଚ୍ଚଶିକ୍ଷିତ ଓ ରାଜନୈତିକମାନଙ୍କର କାର୍ଯ୍ୟକଳାପ ଆଡ଼କୁ ଦୃଷ୍ଟି ପକାନ୍ତି ନାହିଁ । ଦେଶରେ ଜ୍ଞାନ ପ୍ରଚାର ହେବ କାହାଦ୍ୱାରା ? ମୋ ପରି ଅର୍ଦ୍ଧଶିକ୍ଷିତଙ୍କ ଦ୍ୱାରା ? ଏ ଆଶା ଦୁରାଶା । ଏ ଦେଶର ସମ୍ପାଦକୀୟ ଦୁର୍ଦ୍ଦଶାସତ୍ତ୍ୱେ ଯେଉଁମାନେ ସମ୍ପାଦକୀୟ ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବାକୁ ସମର୍ଥ, ସେମାନଙ୍କଠାରେ ଆମ୍ଭେମାନେ କୃତଜ୍ଞ ହେବା ଉଚିତ । ପ୍ରଥମ ସମ୍ମାନ ପାଇବା ଯୋଗ୍ୟ ଗୌରୀଶଙ୍କର ରାୟ । ଏ ଉତ୍କଳରେ ଜ୍ଞାନଦୀପ ଜାଳି ଅଜ୍ଞାନ ଅନ୍ଧକାରର ନାଶ ନିମନ୍ତେ ଯଥେଷ୍ଟ ଚେଷ୍ଟା କରିଅଛନ୍ତି । ପ୍ରାଚୀନ ପୁସ୍ତକ ପ୍ରଚାର ଏହାଙ୍କର ପ୍ରଥମ ଉଦ୍ଦେଶ୍ୟ । ଅନେକ ମାସିକ ପତ୍ର ଜନ୍ମଲାଭ କରି ଅକାଳରେ ଉଭେଇ ଗଲେ । ଉତ୍କଳ-ସାହିତ୍ୟ ଆଜି ଯାଏ ମୁଣ୍ଡ ଟେକି ଜୀବିତ ଅଛି । ତାହାର ସମ୍ପାଦକଙ୍କ କୃତିତ୍ୱ ଓ ସ୍ୱାର୍ଥତ୍ୟାଗକୁ ଅସ୍ୱୀକାର କଲେ ଆମ୍ଭେମାନେ ଦୋଷୀ । ଆଉ ଯେତେଖଣ୍ଡ ମାସିକ ପତ୍ର ଏ ଦେଶରେ ପ୍ରଚାର ହେଉଅଛି, ସେମାନଙ୍କର ପରିଣାମର କଥା କହିବାକୁ ସାହସ ନାହିଁ । କେତେଟା ଦୁଗ୍ଧପୋଷ୍ୟ କେହି ବା ଅନ୍ନପ୍ରାଶନ ମାତ୍ର କରିଅଛି । ଉତ୍କଳର ଶିକ୍ଷିତ ସମାଜ ଆହ୍ଲାଦରେ ପୋଷଣ ନ କଲେ ସେମାନଙ୍କର ଅକାଳ ମୃତ୍ୟୁ ଘଟିବ ସିନା ।

ଇଂରାଜୀ ବିଦ୍ୟା ଆମ୍ଭମାନଙ୍କର ଅର୍ଥକରୀ ବିଦ୍ୟା । ଅର୍ଥ ଉପାର୍ଜନ ନିମନ୍ତେ ତାହା ଅଧ୍ୟୟନ କରିବାକୁ ଆମ୍ଭମାନେ ବାଧ୍ୟ । ଦେଶ ଆମ୍ଭର, ଗୃହ ଆମ୍ଭର, ଭାଷା ଆମ୍ଭର । ଗୃହ ସଜାଇବାକୁ ଜମିବାଡ଼ି କିଣିବାକୁ ଇଂରାଜୀ ବିଦ୍ୟା ସାହାଯ୍ୟରେ ନିଜ ଘରକୁ ଧନ ଆଣିବା, ଆମ୍ଭ ଭାଷାକୁ ଉନ୍ନତତର କରିବାକୁ ଇଂରାଜୀ ସାହିତ୍ୟର ଭାବ ଆଣିବା, ମାତ୍ର ଶିକ୍ଷିତଗଣ କେବଳ ଅର୍ଥ ଚିନ୍ତାରେ ବ୍ୟସ୍ତ ରହି ଭାଷା ନିମନ୍ତେ ଭାବ ଆହରଣ ଓ ଭାବସଞ୍ଚୟ କରିବାକୁ ବିସ୍ମୃତ ହୁଅନ୍ତି । ଉତ୍ତରାଧିକାରୀଙ୍କପାଇଁ ଧନ ରଖ ବା ନ ରଖ ଜ୍ଞାନ ରଖିବା ପ୍ରୟୋଜନ । ଏହା ନୀତିବାକ୍ୟ । ଗୋଟିଏ ପ୍ରବାଦ ଅଛି, ଧନ ରଖୁ କାହିଁକି ଯେବେ

ପୁଅ ପଣ୍ଡିତ, ଧନ ରଖୁଁ କାହିଁକି ଯେବେ ପୁଅ ମୂରୁଖ ? ଏ ନୀତିବାକ୍ୟ ସ୍ମରଣ ରଖି ପ୍ରତ୍ୟେକ ଆପଣା ଉତ୍ତରାଧିକାରୀଙ୍କୁ ଶିକ୍ଷିତ ଓ ସାହିତ୍ୟିକ କରିବା ଉଚିତ ନୁହେଁ କି ? ବର୍ତ୍ତମାନ ବଙ୍ଗଭାଷା ଅର୍ଥକରୀ ନୁହେଁ । ତଥାପି ଶିକ୍ଷା ଓ ସଞ୍ଚୟର ଉପାଦାନ ଅନେକ ଅଛି । ଆମ୍ଭର ଭାଷାର ଉନ୍ନତି କଲ୍ପେ ସେଥିରୁ ଏବଂ ଅନ୍ୟାନ୍ୟ ଉନ୍ନତ ଭାଷାମାନଙ୍କରୁ ଭାବସଂଗ୍ରହ କରିବାକୁ ଆମ୍ଭେମାନେ ବାଧ୍ୟ, ମାତ୍ର ଅସତ୍ ଅନୁକରଣ ଓ ଚୋରି କଲେ ଆମ୍ଭମାନଙ୍କ ସାହିତ୍ୟର ପବିତ୍ରତା ସର୍ବଥା ନଷ୍ଟ ହେବ— ଏହା ଭାବି ରଖିବା ଉଚିତ। ମୋହରେ ପଡ଼ି ଗୋଟାଏ ଯୋଡ଼ାଏ ଶବ୍ଦ ଏ ଭାଷାରେ ଯୋଗ କଲେ କି ଶବ୍ଦ ଗନ୍ତାଘର ଭର୍ତ୍ତି ହେବ ? ଯାର ଅନଟନ ସେ ବା କେବେ ଚୋରି କରିପାରେ ? ମାତ୍ର ଯେଉଁ ଭାଷାର ଅସରନ୍ତି ଭଣ୍ଡାର, ତାର ରକ୍ଷକ ଯେବେ ଅନ୍ୟତ୍ର ଚୋରିର ଆକାଂକ୍ଷା କରେ ତାହା କେବଳ ନୀଚ ଲୋଭାଶୟର କାର୍ଯ୍ୟ କିମ୍ବା ନିଜ ଗନ୍ତାଘରର ସଞ୍ଚିତ ପଦାର୍ଥର ପରିଚୟ ସେ ପାଇ ନାହିଁ । ଯେଉଁ ଘରରୁ ମାଲମସଲା ନେଇ ଜଣେ କବି 'ଦ' ଅକ୍ଷରରେ ବାଉନଛାନ୍ଦ କାବ୍ୟରଚନା କରିପାରେ, 'ସ' ଅକ୍ଷରରେ ଖଣ୍ଡେ କାବ୍ୟ ରଚନା କରିପାରେ, ଅବନା ଅକ୍ଷରରେ ଖଣ୍ଡେ ରାମାୟଣ ଲେଖେ, ରସପଞ୍ଚକ ପାଞ୍ଚ ଅକ୍ଷରରେ ଲେଖେ ସେ ଘରରେ ଅଭାବ କ'ଣ ? ଭାବରାଜ୍ୟ କାହାରି ନୁହେଁ । ଭାବରାଜ୍ୟରେ କାହାରି ଅଧିକାର ନାହିଁ । ଯେ ଯେତିକି ଗ୍ରହଣ କରିପାରିଲା, ପ୍ରକାଶ କରିପାରିଲା, ସେ ସେତିକି ବିଜ୍ଞ । ଅନ୍ୟର ଶବ୍ଦ ଓ ରୀତିକୁ ବର୍ଜ୍ଜନ କରି ସମସ୍ତ ସାହିତ୍ୟରୁ ଭାବ ଆହରଣ କରି ନିଜ ସାହିତ୍ୟକୁ ଅଳଙ୍କୃତ କର ।

ଅନେକ ସାହିତ୍ୟିକ ଭାଷାର ଭଲମନ୍ଦ ବାଛନ୍ତି । ଅନେକ କହନ୍ତି ବଙ୍ଗଭାଷା ଲଳିତ ଓ ସୁମଧୁର । ଓଡ଼ିଆ, ହିନ୍ଦୀ, କର୍କଶ ଓ କର୍ଣ୍ଣକଟୁ । ମୋ ପକ୍ଷରେ ଏ ଉକ୍ତି ନିତାନ୍ତ ଅଯୌକ୍ତିକ । ଭାଷାର ସମ୍ବନ୍ଧ ମନ ସହିତରେ, କେବଳ ବର୍ଣ୍ଣ ସହିତରେ ନୁହେଁ । ପୁଣି ଉପଯ୍ୟୁକ୍ତ ମନ୍ତବ୍ୟ ବିଶ୍ୱାସମୂଳକ । ସେ ବିଶ୍ୱାସ ଭ୍ରାନ୍ତିମୂଳକ । ଓଡ଼ିଆ ଖ୍ରୀଷ୍ଟଧର୍ମାବଲମ୍ବୀ କୃଷ୍ଣ ବା ରାମ ଅପେକ୍ଷା ଖ୍ରୀଷ୍ଟ ଚରିତ୍ର ଅମୃତମୟ ବୋଲି ମନେକରେ । ଯେ ହେତୁ, ସେ ରାମକୃଷ୍ଣ ଅପେକ୍ଷା ଖ୍ରୀଷ୍ଟାନୁପ୍ରାଣିତ, ସେହିପରି ବଙ୍ଗଭାଷାରେ ଶିକ୍ଷିତ ଓ ପଣ୍ଡିତ ବ୍ୟକ୍ତି ଓଡ଼ିଆ ହେଲେ ମଧ୍ୟ ବଙ୍ଗଭାଷା ସୁଶ୍ରାବ୍ୟ ବୋଲିପାରେ, ମାତ୍ର ଓଡ଼ିଆ ଯାର ଭାଷା, ତାକୁ ଓଡ଼ିଆ ହିଁ ସୁଶ୍ରାବ୍ୟ ଓ ସୁଲଳିତ । ଦିନେ ବକ୍ତୃତାବେଳେ ଜଜ ଗୁରୁଦାସ ବନ୍ଦୋପାଧ୍ୟାୟ କହିଥିଲେ, ବିନା ସ୍ୱଦେଶେର ଭାଷା, ମିଟେ କି ମନେର ଆଶା । ଏହା ପ୍ରକୃତ ବଙ୍ଗାଳୀର ପ୍ରକୃତ ମାତୃଭକ୍ତ ସାହିତ୍ୟିକର ଅକୃତ୍ରିମ ହୃଦ୍‌ଗତ ଭାବ ଏବଂ ଏହା ଅକ୍ଷରେ ଅକ୍ଷରେ ସତ୍ୟ ।

ଉଷାକାଳରେ ନିର୍ଜନ ଶସ୍ୟକ୍ଷେତ୍ରରେ ହଳୁଆ ଭାଇ ଭୂମି କର୍ଷଣ କଲାବେଳେ ତାର ଦୁର୍ଦ୍ଦଶା କାହାଣୀ, ପ୍ରେମକାହାଣୀ, ବିଧବାର ମନୋବେଦନା, ସୃଷ୍ଟିରହସ୍ୟ, ବ୍ରହ୍ମଜ୍ଞାନ, ମନଚୈତନ୍ୟର କଥୋପକଥନ ଇତ୍ୟାଦି ବିଷୟକ ଓଡ଼ିଆ ସଙ୍ଗୀତ ସୁଲଳିତ ଦୀର୍ଘସ୍ୱରରେ ଗାନ କରେ, ଆପଣମାନଙ୍କୁ ତାହା ଶ୍ରବଣ କରିବାର ସୁଯୋଗ ମିଳିଅଛି କି । ଯେବେ ମିଳିଥାଏ, ତେବେ ବୁଝିପାରିଥିବେ, ଓଡ଼ିଆ ଗ୍ରାମ୍ୟ ସାହିତ୍ୟର ମାଧୁରୀ, ସାହିତ୍ୟର ଆକର୍ଷଣୀ ଶକ୍ତି । ଏହାଠାରୁ ସୁଶ୍ରାବ୍ୟ ମରହଟ୍ଟୀ, ତେଲଗୁ ବା ବଙ୍ଗଳା ମଧୁର ବୋଲି ମୋର ମନେ ହେଉ ନାହିଁ ।

ଆରେ ବାବୁ ଶ୍ୟାମଘନ, ତୁ ଗଲେ ମଧୁ ଭୁବନ
କାହା ମୁଖ ଅନାଇ ବଞ୍ଚିବି,
ହେବ ଦଶଦିଗ ଶୂନ୍ୟ ଅଥିର ହେବ ଜୀବନ
ନିଶି ଦିବସରେ ଭାଳୁଥିବିରେ ଜୀବଧନ
ଜୀବନ ବିହୁନେ ଯେହ୍ନେ ଝସ
ରାଜା ବିନେ ଯେହ୍ନେ ଗ୍ରାମ ଦେଶରେ ଜୀବଧନ ।

କି ମଧୁର, କି ସୁଶ୍ରାବ୍ୟ, କି ବାତ୍ସଲ୍ୟ ରସସିକ୍ତ ଏହି କ୍ଷୁଦ୍ର ପଦ୍ୟଟି । କି ଇଂରାଜୀ, କି ବଙ୍ଗଳା, କି ହିନ୍ଦୀ କୌଣସି କବିତାରେ ତ ଏ କବିତା ତୁଲ୍ୟ ମୋର ହୃଦୟତନ୍ତ୍ରୀରେ ଆଘାତ ଦେଇପାରି ନାହିଁ । ମାତୃସ୍ନେହାଶ୍ରୁରେ ନିମଜ୍ଜିତ କରିପାରି ନାହିଁ । ତେବେ ମୁଁ କିପରି କହିବି ଯେ ମୋ ମାତୃଭାଷା ଅପେକ୍ଷା ଅନ୍ୟ ଭାଷା ସୁଶ୍ରାବ୍ୟ ସୁଲଳିତ ? ତେବେ ମୁଁ କିପରି କହିବି ଯେ ମୋର ମା'ର ସ୍ନେହ ଅପେକ୍ଷା ଅନ୍ୟର ସ୍ନେହ ହୃଦୟଗ୍ରାହୀ, ଆକର୍ଷଣକାରୀ ? 'ଆରେ ବାବୁ' ଶବ୍ଦ ଯେ ମୋ କର୍ଣ୍ଣରେ ଅନ୍ତୁଡ଼ିଶାଳରୁ ଆରମ୍ଭି ଅଦ୍ୟାପି ବାଜୁଛି । ସେ ମୁଖରୁ ଏ ଶବ୍ଦ ଶୁଣିବାର ସମୟ ଚାଲିଗଲା । ତଥାପି ମନ ହେଉଛି, ଯଦି ଶୁଣି ପାରନ୍ତି । ଭାଇମାନେ, କେଉଁ ଭାଷାର ଡାକ ଆମ୍ଭମାନଙ୍କୁ ଏଡ଼େ ମଧୁର ଲାଗିବ ? କେଉଁ ଭାଷାର ଶବ୍ଦ ନିମନ୍ତେ ଆପଣମାନେ ଉଦ୍‌ଗ୍ରୀବ ହେବେ, ଓଡ଼ିଆ ଏବଂ ଓଡ଼ିଆ ମା'ର 'ଆରେ ବାବୁ' ପାଇଁ ? ଜଗତରେ କେହି ମା, ମାତୃଭୂମି ଓ ମାତୃଭାଷାଠାରୁ ଆଦରଣୀୟ ନୁହଁନ୍ତି । ତାହା ଜାଣୁ ଜାଣୁ ଅନ୍ୟର କଥାରେ ଆମ୍ଭେମାନେ ଭୁଲିବା କାହିଁକି ? ମାତୃଭାଷା ସରଳ, ମାତୃଭାଷା ସୁଶ୍ରାବ୍ୟ, ମାତୃଭାଷା ଉଦାର, ମାତୃଭାଷା ଓଜସ୍ୱିନୀ, ମାତୃଭାଷା ପ୍ରାଣତୋଷିଣୀ, ମାତୃଭାଷା କେବଳ ଆରାଧ୍ୟା ।

ଭାଇମାନେ କଥା ଅଛି 'କଳିଷଠା ଷାଠିଏ' । ଯେଉଁମାନେ ଷାଠିଏ. ବର୍ଷ ଅତିକ୍ରମ କଲେଣି, ସେମାନେ ଏ ମତାନୁସାରେ ପ୍ରେତ । ବୃଦ୍ଧମାନଙ୍କ ମତ ନବ୍ୟ ଶିକ୍ଷିତଙ୍କ ମତ ସମାନ ହେବା ସମ୍ଭବପର ନୁହେଁ । ଏକ ଶ୍ରେଣୀର ଜୁଆର ଉଠିଲାବେଳେ ଅନ୍ୟ ଶ୍ରେଣୀର ଭଟ୍ଟା ପଡ଼ି ଆସୁଅଛି । ବୃଦ୍ଧମାନଙ୍କର ଯୁବାମାନଙ୍କର ଉନ୍ନତି ସ୍ରୋତରେ ଅଯୌକ୍ତିକ ବାଧା ଉପସ୍ଥିତ କରିବା ଉଚିତ ନୁହେଁ । ବିପ୍ଳବ କ୍ରମୋନ୍ନତିର ଓ ଯୁବକର ଧର୍ମ, ମାତ୍ର ଉଚ୍ଛୃଙ୍ଖଳତା ନୁହେଁ । ଭୂତ କଥା ଜାଣିବାକୁ ବୃଦ୍ଧର ବାକ୍ୟ ଏବଂ ଭବିଷ୍ୟତର ଉନ୍ନତି ନିମନ୍ତେ ଆତ୍ମପ୍ରତ୍ୟୟ ଯୁବକମାନଙ୍କର ସହାୟଭୂତ ହେବା ଉଚିତ। ଦେଶର ଆଶା ଭରସା ଯୁବକମାନଙ୍କ ଉପରେ । ଯେଉଁ ବୃଦ୍ଧମାନେ ଯୁବକମାନଙ୍କର ପଦମର୍ଯ୍ୟାଦା ଗ୍ରହଣ କରି ବାର୍ଦ୍ଧକ୍ୟ ଶକ୍ତି ଅକ୍ଷୁଣ୍ଣ ରଖିବାକୁ ପ୍ରୟାସୀ ସେମାନେ ଉନ୍ନତିର ଓ ମୁକ୍ତିର ପକ୍ଷପାତୀ ନୁହନ୍ତି । କାଳସ୍ରୋତ ଅବାଧ, ମୁକ୍ତିର ବାଟ ଅବାଧ, ସାହିତ୍ୟ ବାଟ ଧର୍ମ ବାଟ ପ୍ରାୟ ସଂକୀର୍ଣ୍ଣ ନୁହେଁ । ଯୁବକ ଭାଇମାନେ, ଏହି ଅବାଧ ବାଟରେ ଅଗ୍ରସର ହୁଅ । ମାତୃଭୂମି ଓ ମାତୃଭାଷାର ଉନ୍ନତି ସାଧନ କର ।

ଉପସଂହାରରେ ଭାଇମାନେ, ମୁଁ ଆପଣମାନଙ୍କ ମୂଲ୍ୟବାନ୍ ସମୟକୁ ନଷ୍ଟ କଲି ବୋଲି ଶଙ୍କିତ । ଏଥି ନିମନ୍ତେ ମୋ ଅପେକ୍ଷା ଆପଣମାନେ ବେଶି ଦାୟୀ, ତାହା ମୁଁ ପୂର୍ବେ କହିଅଛି । ବିଷୟ ବସ୍ତୁର ଗୁରୁତ୍ୱରେ ସୁଶୃଙ୍ଖଳ ଓ ସଜ୍ଜିତ କରି ପାରିବାର କଥା । ସେ କ୍ଷମତା ମୋର ନାହିଁ । ଯାହା ମୁଁ କହିଗଲି ଏଥିରେ ତ୍ରୁଟି ଥିଲେ ଆପଣମାନେ ମାର୍ଜନ କରିବେ ।

ଏହି ସାରଦାସଦନରେ ଉପସ୍ଥିତ ସମସ୍ତ ବୃଦ୍ଧ ଓ ଯୁବକ ଭାଇମାନଙ୍କୁ ହସ୍ତାଞ୍ଜଳିବଦ୍ଧ ହୋଇ ଅନୁରୋଧ କରୁଅଛି ଯେ ସମସ୍ତେ ମନୋମାଳିନ୍ୟ ଦୂର କରି ସାହିତ୍ୟ ଚର୍ଚ୍ଚାରେ ମନୋନିବେଶ କରନ୍ତୁ, ପ୍ରତିଦ୍ୱନ୍ଦ୍ୱିତାରେ ଜୀବନ ସମସ୍ୟା ପୂରଣ ହୁଏ ସତ୍ୟ, ମାତ୍ର ସାହିତ୍ୟ ରାଜ୍ୟରେ ପ୍ରତିଦ୍ୱନ୍ଦ୍ୱିତାକୁ ସ୍ଥାନ ନ ଦେଲେ ସାହିତ୍ୟ ସମ୍ୟକ୍‌ଉନ୍ନତ ହୋଇପାରେ ବୋଲି ମୋର ବିଶ୍ୱାସ । ଭାଇମାନେ ଆଜିଠାରୁ ସଂଘବଦ୍ଧ ହୋଇ ମା' ମାତୃଭୂମି ପାଇଁ ଏ ପରାଣ ସମ୍ପି ଦେଇ ପାଅ ମୁକ୍ତି ।

•

## ନକ୍ଷତ୍ର

ଭାଷାକୋଷ ଓଡ଼ିଆ ଜାତିର ଶବ୍ଦ-ସମ୍ପଦ ହେବବୋଲି ଆଶା କରାଯାଏ । ଏହି ଭାଷାକୋଷ ବର୍ତ୍ତମାନ ଯନ୍ତ୍ରସ୍ଥ । ସେଥିରୁ ନକ୍ଷତ୍ର ବିବରଣ ପାଠକମାନଙ୍କ ଜ୍ଞାତାର୍ଥେ ପ୍ରକାଶ କରି ତହିଁର ମତ ଗ୍ରହଣ କରିବାକୁ ସଂଗ୍ରାହକ ଆଗ୍ରହ ପ୍ରକାଶ କରିଥିବା ହେତୁରୁ ତାଙ୍କର ଉଦାରତାର ଯଥେଷ୍ଟ ପରିଚୟ ମିଳୁଅଛି । କେବଳ ଏତିକି ନୁହେଁ । ଯେବେ କେହି ପାଠକ ଦୟା କରି ତାଙ୍କୁ ଏ ସମ୍ବନ୍ଧେ ଆଉକିଛି ଅଧିକ ସମ୍ବାଦ ଦେବେ ବା କୌଣସିଠାରେ ଭ୍ରମ ପ୍ରମାଦ ଥିବାର ଦେଖାଇବେ ତାହା ସେ କୃତଜ୍ଞତା ସହକାରେ ଗ୍ରହଣ କରି ଭାଷାକୋଷର ଯଥା ସ୍ଥାନରେ ଯଥା ସମୟରେ ଯଥା ସୁବିଧାରେ, ସେମାନେ ଯୋଗ ଓ ସଂଶୋଧନ କରିବେ । ଅତି ଉତ୍ତମ ପ୍ରସ୍ତାବ । ମାତ୍ର ଏ ଦେଶର ବୈଜ୍ଞାନିକ କିମ୍ବା ଜ୍ୟୋତିର୍ବିତ୍‌ମାନେ ଏ ସମ୍ବନ୍ଧେ ପଦେ ଅଧେ ଲେଖିବେ କି ? ଆଶା ନାହିଁ । ଆମ ତମ ଭଳିଆ ଲୋକେ ପଦେଅଧେ ବା ଲେଖିପାରନ୍ତି । ମାତ୍ର ତା'ର ମୂଲ୍ୟ କ'ଣ ? ତଥାପି ସଂଗ୍ରାହକଙ୍କର ଅନୁରୋଧ ରକ୍ଷା କରିବା ଉଚିତ। ଏଣୁ ରସଚକ୍ରର ସାମାନ୍ୟ ସ୍ଥାନାଧିକାର କରିବାକୁ ଆଗ୍ରହ ବଳିଅଛି । ଏତାଦୃଶ ଅପରାଧ ସାଳିସ୍‌ଯୋଗ୍ୟ । ଏଣୁ ଆଗତୁରା କ୍ଷମା ପ୍ରାର୍ଥନା ।

ଗୋଟିଏ ମୋର ବହୁକାଳର ଅଭ୍ୟାସ-ଭଲ କି ମନ୍ଦ ତାହା ମୁଁ କହିପାରୁ ନାହିଁ-ବିଜ୍ଞାନ ସମ୍ବନ୍ଧୀୟ, କ୍ରମବିକାଶ ସମ୍ବନ୍ଧୀୟ ଏବଂ ଜ୍ୟୋତିର୍ବିଦ୍ୟା ସମ୍ବନ୍ଧୀୟ ପ୍ରବନ୍ଧ ଉପରେ ମୋର ନଜର ପ୍ରଥମରେ ପଡ଼େ ଏବଂ ତାହା ପାଠ କରିବାର ଲୋଭ ସମ୍ବରଣ ମୁଁ କରିପାରେ ନାହିଁ । ଏଣୁ କହିବା ବାହୁଲ୍ୟ ଯେ ରସଚକ୍ରର ନକ୍ଷତ୍ର ପ୍ରବନ୍ଧ ପଢ଼ିବାକୁ ମୋର ଏଡ଼େ ଆଗ୍ରହ ।

ଅନ୍ୟ ପାଠକଙ୍କ ପ୍ରତି ଲେଖକଙ୍କ ସୂଚନା କୌତୁକପ୍ରଦ ହେଉ ବା ନ ହେଉ ମୋ ପ୍ରତି ଏହା ବଡ଼ କୌତୁକପ୍ରଦ । ଲେଖକ ଆକାଶରେ ନକ୍ଷତ୍ରମାନଙ୍କୁ ନିରୂପଣ କରିବା ସକାଶେ ଯେଉଁ ପଥର ପଥିକ ବହୁଦିନ ପୂର୍ବେ ମୁଁ ସେହି ପଥର ପଥିକ ହୋଇଥିଲି । ବିଦ୍ୟା ନାହିଁ ମାତ୍ର ଆଗ୍ରହଟା ବଡ଼ ବେଶୀ । ୧୯୧୦ ଇଂ ରେ ଯେଉଁଦିନ ହେଲିସ୍ ଧୂମକେତୁ ତା'ର ପୁଚ୍ଛଦ୍ୱାରା ଆମ୍ଭମାନଙ୍କୁ ଆବୃତ କଲା ସେଦିନ ମୁଁ ରାଞ୍ଚିରେ । ଏହି ଅଭୂତପୂର୍ବ ଘଟଣା ପର୍ଯ୍ୟବେକ୍ଷଣ ସୁଖ ବିଷୟରେ ଅନନ୍ୟୋପାୟ ହୋଇ ରାଞ୍ଚି ବିଶପ୍‌ଙ୍କ ଦ୍ୱାରସ୍ଥ ହେଲି । ବିଶପ୍‌ଙ୍କ ସୌଜନ୍ୟରେ ସେ ଦିନ ସକାଳ ଓଳିଟା ତାଙ୍କ ସହିତ ସୂର୍ଯ୍ୟବୀକ୍ଷଣରେ ଅତିବାହିତ କଲି । ସୂର୍ଯ୍ୟଦେହରେ ହେଲିର ତ ଚିହ୍ନ ବର୍ଣ୍ଣ ପାଇଲୁଁ ନାହିଁ । କେବଳ ଗୋଟାକେତେ ସୌର କଳଙ୍କ ଦେଖି ତୃପ୍ତିଲାଭ କଲୁଁ । ପୁରୀ ମୋକଦ୍ଦମା ଘେନି ୧୯୨୦ ଇଂ ରେ ମୁଁ କଟକରେ ଅବସ୍ଥାନ କରୁଥିବାବେଳେ

ଶୁକ୍ରର କଳା ପରିବର୍ତ୍ତନ ଦେଖିବାକୁ ଆଗ୍ରହ ବଳିଲା । ରେଭେନ୍ସା କଲେଜର ଦୁଇ ଜଣ ଅଧ୍ୟାପକଙ୍କ ସୌଜନ୍ୟରେ ଦିନେ ସନ୍ଧ୍ୟାରେ କଲେଜ ପଡ଼ିଆରେ କଲେଜର ଦୂରବୀକ୍ଷଣ ଯନ୍ତ୍ର ବ୍ୟବହାର କରିବାର ଅନୁମତି ପାଇଥିଲି । ଜଣେ ଅଧ୍ୟାପକ ଓ ତିନି ଚାରିଜଣ କଲେଜ ଛାତ୍ରଙ୍କ ସହିତ ସେ ସନ୍ଧ୍ୟାଟି ଶୁକ୍ର ଓ କେତେକ ନକ୍ଷତ୍ର ପର୍ଯ୍ୟବେକ୍ଷଣରେ ଅତି ଆନନ୍ଦରେ ଅତିବାହିତ ହୋଇଥିଲା । ସେ ଦିନଠାରୁ ମୋର ଦୃଢ଼ଧାରଣା ଏହି ଯେ ଅପରିଚିତ ହେଉ ପଛକେ ଜ୍ଞାନ-ପିପାସୁର-ତୃପ୍ତି ନିମନ୍ତେ କଲେଜ ଅଧ୍ୟାପକଗଣ ସଦା ମୁକ୍ତ-ହୃଦୟ । ଯେଉଁମାନେ ଅପରିଚିତ ହସ୍ତରେ ଯନ୍ତ୍ର ସମର୍ପଣ କରିପାରନ୍ତି—ସେମାନେ ଯେ ପୁସ୍ତକଦ୍ୱାରା ଏବଂ ଉପଦେଶ ଦ୍ୱାରା ଅନ୍ୟକୁ ଅକ୍ଳେଶରେ ଚରିତାର୍ଥ କରିବେ ଏଥିରେ ସନ୍ଦେହ କ'ଣ ?

ହାତ ପାଖରେ କଲେଜ ଲାଇବ୍ରେରୀ ଦୂରବୀକ୍ଷଣ ଯନ୍ତ୍ର ଏବଂ ସହୃଦୟ ଅଧ୍ୟାପକମାନେ ଥାଉଁ ଥାଉଁ ସତ୍ୟ-ସମାଚାରର ସମ୍ପାଦକ ଅସହଯୋଗ-ନୈତିକ ଗାନ୍ଧି-ପ୍ରତିଷ୍ଠିତ ଦୂର ଗୁଜରାଟ ବିଦ୍ୟାପୀଠର ଅସହଯୋଗୀ ଅଧ୍ୟକ୍ଷ କାକାଙ୍କର ପ୍ରସାଦ ଭିକ୍ଷା କଲେ କାହିଁକି ? ଏହା ଯେମନ୍ତ ଆଶ୍ଚର୍ଯ୍ୟ-ଜନକ ତେମନ୍ତ କୌତୁକାବହ ।

ସଂଗ୍ରାହକଙ୍କ ବହୁ ପରିଶ୍ରମ ଓ ଯନ୍ତ୍ରଲବ୍ଧ ନକ୍ଷତ୍ର ବିବରଣ ପ୍ରମାଦ-ଶୂନ୍ୟ ନୁହେଁ ବୋଲି ମୋର କ୍ଷୁଦ୍ର ବୁଦ୍ଧିର ଧାରଣା, ଏଣୁ ଶବ୍ଦକୋଷରେ ସ୍ଥାନ ପାଇବା ଉପଯୁକ୍ତ ନୁହେଁ । ପ୍ରତିଦ୍ୱନ୍ଦ୍ୱୀଙ୍କର ସାହଚର୍ଯ୍ୟରୁ ଏ ପ୍ରମାଦ ଘଟିଲା କି ?

ନକ୍ଷତ୍ର ବିବରଣରେ ନକ୍ଷତ୍ର ଅପେକ୍ଷା ସୂର୍ଯ୍ୟ ଚନ୍ଦ୍ର ଗ୍ରହମାନଙ୍କ ବିବରଣ ବିସ୍ତାର ଭାବରେ ରହିଲା । ଗ୍ରହମାନେ ଜ୍ୟୋତିଷ ପିଣ୍ଡ କି ? ଏହା ସର୍ବବାଦୀ ସମ୍ମତ ନୁହେଁ । କୌଣସି କୌଣସି ବଙ୍ଗଳା କୋଷରେ ଗ୍ରହମାନଙ୍କୁ ଜ୍ୟୋତିଷ ବୋଲା ଯାଇଅଛି ମାତ୍ର ତାହା ଯଥାର୍ଥ ନୁହେଁ । ଏମାନଙ୍କର ସ୍ୱତଃ ଦୀପ୍ତି ନାହିଁ । ଏମାନେ ସୂର୍ଯ୍ୟଦ୍ୱାରା ଆଲୋକିତ ।

''ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ଯେତେ ଦୂରରେ ଅବସ୍ଥିତ, ଗୋଟିଏ ଗୋଟିଏ ନକ୍ଷତ୍ର (ଯଥା– ସ୍ୱାତୀ, ଧନିଷ୍ଠା, ଶ୍ରବଣା) ତଦପେକ୍ଷା ୨୦ ହଜାର ୬ ଶହ ଗୁଣ ଅଧିକ ଦୂରରେ ଅବସ୍ଥିତ ।'' ନକ୍ଷତ୍ର ସମ୍ବନ୍ଧେ ଏ ପ୍ରକାର ମତ କୌଣସି ଜ୍ୟୋତିର୍ବିତ୍ ପ୍ରକାଶ କରି ନାହାନ୍ତି । ଆମ୍ଭମାନଙ୍କର ଅତି ନିକଟବର୍ତ୍ତୀ ନକ୍ଷତ୍ରର ନାମ ଏଲ୍‌ଫା ସେଣ୍ଟରି । ଆମ୍ଭମାନଙ୍କଠାରୁ ଏ ନକ୍ଷତ୍ରର ଦୂରତା ୪.୪ ଆଲୋକବର୍ଷ ଅର୍ଥାତ୍ ପୃଥିବୀଠାରୁ ସୂର୍ଯ୍ୟର ଦୂରତା ଅପେକ୍ଷା ୨୭୫୦୦୦ଗୁଣ ଅଧିକ ଦୂରରେ ଏହି ନକ୍ଷତ୍ର ଅବସ୍ଥିତ । ସ୍ୱାତୀ, ଧନିଷ୍ଠା, ଶ୍ରବଣାର ଦୂରତାର ହିସାବ କରେ କିଏ ? ତା'ଛଡ଼ା ଧନିଷ୍ଠା, ଶ୍ରବଣା ଗୋଟିଏ ଗୋଟିଏ ତାରା ନୁହନ୍ତି ଏମାନେ ତାରାପୁଞ୍ଜ । ପାଶ୍ଚାତ୍ୟ ମତ ଛାଡ଼ି ଦେଲେ ସୁଦ୍ଧା ହିନ୍ଦୁ ଶାସ୍ତ୍ରମତେ ଶ୍ରବଣା ତିନି ଏବଂ ଧନିଷ୍ଠା ପାଞ୍ଚ ତାରା ସମଷ୍ଟି ଏବଂ ଗୋଟିଏ ତାରା ଯେ ଅନ୍ୟଠାରୁ କେତେକୋଟି ମାଇଲ ଦୂରରେ ଅବସ୍ଥିତ ତାହା କେହି ଗଣନା କରିବାକୁ ସକ୍ଷମ ହୋଇ ନାହିଁ । ପୃଥିବୀଠାରୁ ଏମାନଙ୍କ ଦୂରତା ମଧ୍ୟ ସ୍ଥିରୀକୃତ ହୋଇ ନାହିଁ ।

''ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ୧୦୪ କୋଟି ୬୫ ଲକ୍ଷ ମାଇଲ ଦୂରରେ ଅଛନ୍ତି ।'' ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ଏତେ ଦୂରକୁ ଗଲେ କେବେ ? ମୁଁ ବାଲ୍ୟକାଳରୁ ୧୯୨୯ ଙ୍କ ପର୍ଯ୍ୟନ୍ତ ଜାଣିଅଛି ଯେ ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ୯,୩୦,୦୦,୦୦୦ ମାଇଲ୍ ଦୂରରେ ଅଛନ୍ତି । ଯେବେ ୧୯୩୩ ରେ ପୃଥିବୀ ଓ ସୂର୍ଯ୍ୟର ବ୍ୟବଧାନ ୧୦୪୬୫୦୦୦୦୦ ମାଇଲ୍ ହୋଇଥାଏ ତାହାହେଲେ ସ୍ୱୀକାର କରିବାକୁ ହେବ ଯେ ପୃଥିବୀ ପ୍ରତିବର୍ଷ ସୂର୍ଯ୍ୟଠାରୁ ୨୩୮୩୭୫୦୦୦ ମାଇଲ ଦୂରକୁ ଚାଲି ଯାଉଅଛି । ଏ ଅନୁପାତରେ ବାର୍ଷିକ ସୂର୍ଯ୍ୟ ଓ ପୃଥିବୀର ବ୍ୟବଧାନ ଘଟିଲେ ପୃଥିବୀ ଯେ ଅଚିରେ ଧ୍ୱଂସ ପ୍ରାପ୍ତ ହେବ ତାହା କହିବା ବାହୁଲ୍ୟ ମାତ୍ର । ତା'ଛଡ଼ା କେତେ ବର୍ଷରେ ପୃଥିବୀର ଦୁର୍ଦ୍ଦଶା ଘଟିବ ତାହା ମଧ୍ୟ ଅନାୟାସରେ ଗଣନା କରାଯାଇପାରେ । କାହାର ଗଣନା ଓ ସଂଖ୍ୟା ପ୍ରମାଦ-ଦୁଷ୍ଟ ? ବିଦ୍ୟାପୀଠର ଅଧ୍ୟକ୍ଷଙ୍କର କିମ୍ବା ପାଶ୍ଚାତ୍ୟ ଗଣିତ ଶାସ୍ତ୍ରର ? ସ୍କୁଲରେ ପ୍ରଚଳିତ ଭୂଗୋଳ ପ୍ରଭୃତିରେ ଯେବେ ଗୋଟାଏ ଭୁଲ୍ ଅଙ୍କ ଲେଖାଯାଉଥାଏ ତେବେ-ଗଭର୍ଣ୍ଣମେଣ୍ଟ ଓ ଶିକ୍ଷାବିଭାଗ କର୍ତ୍ତୃପକ୍ଷ ଦୋଷୀ ହେବେ ନାହିଁକି ?

ସୂର୍ଯ୍ୟର ବ୍ୟାସ ୮୬୬୦୦୦ ମାଇଲ୍ ଏହା ସମସ୍ତେ ଜାଣନ୍ତି । ସୂର୍ଯ୍ୟର ବ୍ୟାସ ୪୩୩୦୦୦ ମାଇଲ୍ ହେଲା କେବେ ? ଅବଶ୍ୟ ସୂର୍ଯ୍ୟ ବାର୍ଷିକ ତେଇଶ କୋଟି ମାଇଲ୍ ଦୂରକୁ ଚାଲିଲେ ଏତାଦୃଶ କ୍ଷୁଦ୍ରାବୟବ ଦେଖାଯିବା ଅସମ୍ଭବ ନୁହେଁ ।

ପୃଥିବୀର ଚାରିଆଡ଼େ ଚନ୍ଦ୍ର ଘୂରିଆସେ, ସତ । ମାତ୍ର କେତେଦିନରେ ? କୋଷ-ସଂଗ୍ରାହକ ଲେଖି ଅଛନ୍ତି ୩୦ ଦିନରେ । ଏହା କାହାର ମତ ? ପାଶ୍ଚାତ୍ୟ ଗଣିତ-ଶାସ୍ତ୍ର କି ଭାରତୀୟ ଗଣିତ-ଶାସ୍ତ୍ରର ? ସୂର୍ଯ୍ୟ ସିଦ୍ଧାନ୍ତ ମତରେ ଚନ୍ଦ୍ରର ଭ୍ରମଣ ଭୋଗକାଳ ୨୭.୩୨୧୬୭, ପାଶ୍ଚାତ୍ୟ ମତରେ ୨୭

ଦିନ ୭ ଘଣ୍ଟା ୪୩ ମିନିଟ୍ ୧୧ ସେକେଣ୍ଡ । ସୂର୍ଯ୍ୟର ସ୍ଥିତି ଓ ପୃଥିବୀର ଗତି ସହିତ ଚନ୍ଦ୍ରର ଗତିର ସମତା ରକ୍ଷା କରିବା ନିମନ୍ତେ ଚନ୍ଦ୍ରର ପ୍ରଦକ୍ଷିଣକାଳ ୨୯ ଦିନ ୧୨ ଘଣ୍ଟା ୪୪ ମିନିଟ୍ ୩ ସେକେଣ୍ଡ ନିଶ୍ଚୟ କରାଯାଇଅଛି । ଏ ଅନୁସାରେ ଚନ୍ଦ୍ରମାନ ବର୍ଷ ୩୫୫ ଦିନ ଧରାଯାଇପାରେ । ଏହା ଯେ କୌଣସି ବର୍ଷର ପାଞ୍ଜିରୁ ପରୀକ୍ଷା କରାଯାଇପାରେ । ୧୯୩୨-୩୩ ଇଂ ମେଷ ସଂକ୍ରାନ୍ତି ଆରମ୍ଭ ଏପ୍ରିଲ୍ ତା ୧୩ରେ ଏବଂ ବର୍ଷ ଶେଷ ଏପ୍ରିଲ୍ ତା ୧୨ରେ । ସଂକ୍ରାନ୍ତି ଆରମ୍ଭଦିନ ବୈଶାଖ କୃଷ୍ଣପକ୍ଷ ସପ୍ତମୀ ଚନ୍ଦ୍ର ଥିଲା ଆର୍ଦ୍ରା ନକ୍ଷତ୍ରରେ । ଶେଷଦିନ କୃଷ୍ଣପକ୍ଷ ଦ୍ୱିତୀୟା ଏବଂ ଚନ୍ଦ୍ରଥିଲା ସ୍ୱାତୀ ନକ୍ଷତ୍ରରେ । ସଂକ୍ରାନ୍ତି ଆରମ୍ଭଦିନ ସୂର୍ଯ୍ୟ ଯେଉଁ ନକ୍ଷତ୍ରରେ ଥିଲା ପୁଣି ବର୍ଷାରମ୍ଭକୁ ସେହି ନକ୍ଷତ୍ରକୁ ଆସିବାକୁ ତାକୁ ୩୬୫ ଦିନ ୬ ଘଣ୍ଟା ଲାଗିଲା । ଚନ୍ଦ୍ର ସଂକ୍ରାନ୍ତି ଦିନ ଆର୍ଦ୍ରା ନକ୍ଷତ୍ରରେ ଥିଲା-ସେହି ଆର୍ଦ୍ରା ନକ୍ଷତ୍ରକୁ ମେ ଏପ୍ରିଲ୍ ତା ୩ ରେ ପହଞ୍ଚିଲା ଅର୍ଥାତ୍ ୩୫୫ ଦିନରେ ତାର ଭ୍ରମଣ ଆରମ୍ଭ ସ୍ଥାନରେ ପହଞ୍ଚିଲା । ଏଣୁ ସୌରମାନବର୍ଷ ୩୬୫ ଦିନ ୬ ଘଣ୍ଟା ଏବଂ ଚାନ୍ଦ୍ରମାନବର୍ଷ ୩୬୦ ଦିନ ନ ହୋଇ ୩୫୫ ଅଟେ । ଏଣୁ ସୌରମାନ ଓ ଚାନ୍ଦ୍ରମାନ ବର୍ଷର ସମତା ରକ୍ଷା ନିମନ୍ତେ ପାଞ୍ଜିରେ ଏତେ କ୍ଷୟ ବୃଦ୍ଧି । ମୁସଲମାନ ପାଞ୍ଜିରେ କ୍ଷୟବୃଦ୍ଧି କରା ନ ଯାଇ ଚାନ୍ଦ୍ରମାନ ପ୍ରତି ଦ୍ୱିତୀୟାକୁ ମାସର ପ୍ରଥମଦିନ ଧରାଯାଉଥିବାରୁ ମାସ ଓ ପର୍ବ ଦିବସର ସାମ୍ୟରତୁ ସହ ରକ୍ଷା ହୋଇପାରୁ ନାହିଁ । ଏତିକି ।

ଏହା ସଂଗ୍ରାହକମାନଙ୍କ ଲେଖାର ପ୍ରତିବାଦ ନୁହେଁ । ତାଙ୍କ ଅନୁରୋଧକ୍ରମେ ତାଙ୍କର ଲେଖାର ସଂଶୋଧନ ନିମନ୍ତେ ଇଙ୍ଗିତ ମାତ୍ର । ଏହି ଲେଖାରେ ମୋର ମଧ ଭୁଲ୍ ଥାଇପାରେ । ତୃତୀୟ ବିଜ୍ଞବ୍ୟକ୍ତି ଦ୍ୱାରା ଏଥିରେ ମୀମାଂସା ହେଲେ ଭାଷାକୋଷର ନକ୍ଷତ୍ର ବିବରଣଟି ପରିଷ୍କାର ଓ ଶୁଦ୍ଧ ହୋଇରହିବ । ଏହି ଆଶାକରି କ୍ଷାନ୍ତ ହେଲି ।



## କଟକରେ ସାହିତ୍ୟଚର୍ଚ୍ଚା

କଟକ ଅର୍ଥ ଯେ ରାଜଧାନୀ, ଏହା ଶୈଶବରୁ ଜଣା । ଯେତେବେଳେ ଜଣେ କଥାଣି-ପ୍ରବୀଣା ସନ୍ଧ୍ୟାବେଳେ ଆରମ୍ଭ କରନ୍ତି ଯେ 'କି କହିବା ସେ କଟକର ଛଟକ', ସେତେବେଳେ ବାଳକ ଓ ଶ୍ରୋତାମାନଙ୍କର କଟକର ବର୍ଣ୍ଣନା ଶୁଣିବାକୁ ଯେ କି ଆଗ୍ରହ ବଢ଼େ, ତାହା ବର୍ଣ୍ଣନାତୀତ । ଯେତେବେଳେ ଓଡ଼ିଶାରେ ରାଜଧାନୀ ବସତି ହେଲା, ସେତେବେଳେ ବୋଧହୁଏ ଓଡ଼ିଶାରେ ଅନ୍ୟତ୍ର ଏଭଳି ରାଜଧାନୀ ନ ଥିଲା । ଏଣୁ ଏହାର ନାମ କଟକ ଦିଆଗଲା । କଟକ ଓଡ଼ିଆ ଭାଷାର ସୁପରିଚିତ । ଆହୁରି ଯେ କଟକ ଓଡ଼ିଶାର ବିଦ୍ୟାନଗରୀ, ଏହା କହିବା ବାହୁଲ୍ୟ ମାତ୍ର । ଆଜିଯାଏ ଇଂରାଜ ଅମଳରେ ଏହା ପ୍ରାଦେଶିକ ତୃତୀୟ ଶ୍ରେଣୀର ରାଜଧାନୀ ଥିଲା । ଏବେ ପୁଣି ପ୍ରକୃତ ରାଜଧାନୀ ହୋଇ ତା'ର ନାମକୁ ସାର୍ଥକ କରିବାକୁ ଯାଉଅଛି । ଆଜହୁଁ ଲୋକେ ରାଜଧାନୀର ଉପଯୁକ୍ତ ପାତ୍ର ହେବାକୁ ଚେଷ୍ଟା କରିବା ଉଚିତ । ଅନେକ ଦିନ ପରେ ଓଡ଼ିଶା ଗୋଟିଏ ପ୍ରଦେଶ ବୋଲି ପରିଗଣିତ ହେବ । ତାହାର ସୀମା ନିର୍ଦ୍ଦେଶ ହୋଇସାରିଛି । ଓଡ଼ିଶାର ପରିସର ବଢ଼ିଲା କି କମିଲା ? କେତେକ ଗଡ଼ଜାତ ଉତ୍କଳର ରାଜନୈତିକ ସୀମାନ୍ତର୍ଭୁକ୍ତ ନୁହନ୍ତି ପରା । ତାହାହେଲେ ସୀମା ବଢ଼ିଛି । କେତେକ ଗଡ଼ଜାତର ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ—ଥିଲେ ମଧ୍ୟପ୍ରଦେଶରେ । ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିରେ ଓଡ଼ିଶା ସହିତ ଯୋଗ ହୋଇ ବଙ୍ଗଳା ଗଭର୍ଣ୍ଣରଙ୍କ ଛତ୍ରତଳେ ରହିଲେ । ଦ୍ୱିତୀୟ ଦଶନ୍ଧିରେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ଏବଂ ଓଡ଼ିଶାର ଆଉ କେତୋଟି ରାଜ୍ୟକୁ ସଙ୍ଗରେ ନେଇ ଖାସ ବଡ଼ଲାଟଙ୍କ ବାହୁଛାୟାରେ ଆଶ୍ରୟ ନେବାକୁ ଚାଲିଲେ । ଚଳିତ ଶତାବ୍ଦୀର ଚାରିଦଶକ ମଧରେ ଆମ୍ଭେମାନେ ଚାରିଘାଟରେ ପାଣି ଚାଖିଲୁଁ । ସବୁ ସମାନ, ସବୁ ତୃପ୍ତିକର । ଏଣୁ ଆମ୍ଭେମାନେ ପ୍ରତ୍ୟେକ କହୁଁ ଯେ, 'ଯଥା ନିଯୁକ୍ତୋଽସ୍ମି ତଥା କରୋମି' । ଏହି ପରିବର୍ତ୍ତନରେ ଓଡ଼ିଶାର କ୍ଷତି କି ଲାଭ ତାହା କେବଳ ରାଜନୈତିକ ଉତ୍କଳବାସୀଙ୍କି ଜଣା । ଇନ୍ଦ୍ରପ୍ରସ୍ଥ ସୁଖାକାଙ୍କ୍ଷୀମାନଙ୍କୁ ଏହା ଭାବିବାର ଅବସର ନାହିଁ ।

ଆଧୁନିକ ଲେଖକମାନେ ଓଡ଼ିଆ ଶବ୍ଦ ଲେଖିଲାବେଳେ ପ୍ରାକୃତିକ ଶବ୍ଦ ସହିତ ଉତ୍କଳ ଶବ୍ଦର ନିତ୍ୟ ସମ୍ବନ୍ଧ ବୋଲି ବିବେଚନା କରନ୍ତି; ମାତ୍ର ପ୍ରାକୃତିକ ଉତ୍କଳର ଅର୍ଥ ଯେ କ'ଣ, ତାହା ଆମ୍ଭମାନଙ୍କୁ ବୋଧଗମ୍ୟ ହୁଏ ନାହିଁ । ପ୍ରକୃତି ସବୁ ସ୍ଥଳରେ ସୀମା ନିର୍ଦ୍ଦେଶ କରିପାରେ ନାହିଁ । କେବଳ ମନୁଷ୍ୟ ଓ ଶାସକମାନେ ହିଁ ସୀମା ନିର୍ଦ୍ଦେଶ କରିପାରନ୍ତି । ଏଣୁ ଅନେକ ସ୍ଥଳରେ ଜନସମୂହର ହିତ ଛଳନାରେ ଏତାଦୃଶ ସୀମା ନିର୍ଦ୍ଦେଶ ଶାସକଗଣଙ୍କର ଖାମଖିଆଲି ମାତ୍ର । ମାତୃଭାଷା ଓ ସାହିତ୍ୟ ଜନସମୂହର ନିୟାମକ ଏବଂ ଦେଶର ସୀମା ବିଭେଦକ । ଶାସକଗଣ ନିଜର ଶାସନ ସୁବିଧା ନିମନ୍ତେ ଉତ୍କଳର ଗଣ୍ଡିକୁ ଖଣ୍ଡବିଖଣ୍ଡ କରିଥିଲେ ସୁଦ୍ଧା ଅଦ୍ୟାପି ତାର ଉତ୍କଳଭାଷୀ ପୁତ୍ରମାନେ ତା ସୀମାର ପରିଚୟ ରକ୍ଷା କରିପାରିଅଛନ୍ତି । ରାଜ୍ୟଟି ମାନଭୌମ । ଶାସନ ସଂସ୍କାରର ପ୍ରୟୋଜନ ହେଲେ ରାଜ୍ୟମାନଙ୍କର ସ୍ଥାନ ପରିବର୍ତ୍ତନ

କରିବାର କାହାରି କ୍ଷମତା ନାହିଁ । ସର୍ବସାଧାରଣଙ୍କ କଥିତ ଭାଷା ପରିବର୍ତ୍ତନ ଶାସକଗଣଙ୍କର କ୍ଷମତାତୀତ; ସୁତରାଂ ଭାଷା ଓ ସାହିତ୍ୟକୁ ଅକ୍ଷୁଣ୍ଣ ରଖିପାରିଲେ 'ନାମକାବାସ୍ତେ' ସୀମା ବିଭାଗ ବା ନାମ ବଦଳି ଜାତୀୟତାର ଉଚ୍ଛେଦ କରିପାରେ ନାହିଁ । ଜାତୀୟତା ରକ୍ଷା କରିବାରେ ସମର୍ଥ ଭାଷା ଓ ସାହିତ୍ୟ । ସୁତରାଂ ସାହିତ୍ୟର ପ୍ରଧାନ କେନ୍ଦ୍ର ସ୍ଥଳରେ ଏକନିଷ୍ଠ ସାହିତ୍ୟିକମାନେ ଯଦି ଓଡ଼ିଆଭାଷୀ ଦେଶମାନଙ୍କରେ ସାହିତ୍ୟ ପ୍ରଚାରର ଚେଷ୍ଟା କରନ୍ତି, ତେବେ ଭାଷାସୂତ୍ରରେ ଓଡ଼ିଆ ସନ୍ତାନମାନେ ଚିରକାଳ ଉତ୍କଳମାତାର ଭକ୍ତ ହୋଇ ରହିବେ ।

କଟକ ଓଡ଼ିଶାର ପ୍ରଧାନ ରାଜଧାନୀ ଥିଲା । କଟକ ଓଡ଼ିଶାର ବିଦ୍ୟାନଗରୀ । କେଉଁ ବିଚାରରେ ଲୋକେ ନବ ପ୍ରଦେଶର ରାଜଧାନୀ କଟକ ଭିନ୍ନ ଅନ୍ୟ ସ୍ଥାନରେ ସ୍ଥାପିତ ହେବାକୁ ମତ ଦିଅନ୍ତି, ତାହା ଆମ୍ଭମାନଙ୍କର ବୋଧାତୀତ ।

ଶିକ୍ଷିତ ଓ ବିଜ୍ଞ ବ୍ୟକ୍ତିମାନଙ୍କର ଝୁଙ୍କ ବେଶି ଶାସନ-ମନ୍ଦିର ବା ହାଇକୋର୍ଟ ନିମନ୍ତେ । ବିଦ୍ୟାଳୟ ଯେ ଦେଶ ଉନ୍ନତିର ମୂଳରେ, ଏହା କେହି ଭାବୁ ନାହାନ୍ତି । ଯେଉଁମାନେ ମୋକଦ୍ଦମାବାଜ, ସେମାନେ ଯେ କୌଣସିଠାରେ ହାଇକୋର୍ଟ ଥାଉ ପଛକେ ସେଠାକୁ ଥରେ ଦୌଡ଼ିବେ— ଏଥିରେ ସନ୍ଦେହ ନାହିଁ । ନିଜର ଓ ନିଜ ଭାଇର ଅର୍ଥ ନଷ୍ଟ କରିବାକୁ ଲୋକେ ତ ପୁଣି ବିଲାତର ବିଚାରାଳୟ ପର୍ଯ୍ୟନ୍ତ ଝପଟୁଛନ୍ତି । ପାଟନା ବା କଲିକତା ହାଇକୋର୍ଟକୁ ବା ନ ଯିବେ କାହିଁକି ? ବ୍ୟବହାରାଜୀବମାନଙ୍କର ଲାଭ ସବୁଥିରେ । ସୁତରାଂ ହାଇକୋର୍ଟ ସମ୍ବନ୍ଧରେ ବର୍ତ୍ତମାନ ଆନ୍ଦୋଳନ ବନ୍ଦ କରି ବିଶ୍ୱବିଦ୍ୟାଳୟ ସ୍ଥାପନ ସମ୍ବନ୍ଧରେ ବିଜ୍ଞ ବ୍ୟକ୍ତିଗଣ ଯତ୍ନ କଲେ ଏ ଦେଶର ପ୍ରଭୂତ ଉପକାର ହେବ ଏବଂ ଓଡ଼ିଆଭାଷୀମାନଙ୍କ ମଧ୍ୟରେ ଏକତା ଦୃଢ଼ୀଭୂତ ହେବ । ମାତ୍ର ଏହା ଗୋଟିଏ 'ବାଇମୁଣ୍ଡିର କଟକ ଚିନ୍ତା ।'

ସାହିତ୍ୟସେବୀ 'ସାହିତ୍ୟ ସମାଜ'ର କାର୍ଯ୍ୟ ନିର୍ବାହକମାନଙ୍କ ଦ୍ୱାରା ମୁଁ ଏ ବର୍ଷ ସାହିତ୍ୟ ସମାଜର ସଭାପତି ରୂପେ ମନୋନୀତ ହୋଇ ଅନୁଗୃହୀତ ହୋଇଥିଲି । ଏଣୁ ଅନେକ ବର୍ଷ ମୋର କଟକ ଦର୍ଶନ ଏତେ ଦିନେ ସମ୍ଭବପର ହେଲା । ୧୬ । ୯ । ୩୩ ରିଖ ବଡ଼ି ଭୋର କଟକ ଷ୍ଟେସନ୍‌ରେ ପହଞ୍ଚିଲି । ସମାଜର ପ୍ରତିନିଧି ଶ୍ରୀଯୁକ୍ତ ବାଳକୃଷ୍ଣ କର ଓ ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ଚୌଧୁରୀ ମୋ ଅପେକ୍ଷାରେ ଷ୍ଟେସନରେ ଉପସ୍ଥିତ ଥିଲେ । ସେ ଦୁହିଙ୍କର ସୌଜନ୍ୟ ଓ ତତ୍ତ୍ୱାବଧାନ ହେତୁରୁ ମୋତେ ଷ୍ଟେସନରେ ଝଞ୍ଜଟରେ ପଡ଼ିବାକୁ ହେଲା ନାହିଁ । ମଟର ପ୍ରସ୍ତୁତ ଥିଲା । ତହିଁରେ ଚଢ଼ି ଶ୍ରୀଯୁକ୍ତ ଶଶୀବାବୁଙ୍କ ଗୃହାଭିମୁଖରେ ଚାଲିଲୁଁ । ସେହି ସ୍ଥାନରେ ରହିବାର ବନ୍ଦୋବସ୍ତ ପୂର୍ବରୁ ହୋଇଥିଲା ।

ସହରରେ ପ୍ରବେଶ କଲାମାତ୍ରେ ବିଦ୍ୟୁତାଲୋକ ଦୃଷ୍ଟିପଥରେ ପତିତ ହେଲା । ଯେଉଁ ସହରରେ ପାନୀୟ ଜଳର ବନ୍ଦୋବସ୍ତ ହୋଇ ନାହିଁ, ଯେଉଁ ସହରରେ ପୟଃପ୍ରଣାଳୀ ନ ଥିବାରୁ ବର୍ଷାଜଳରେ ଶହ ଶହ ଘର ଭାଙ୍ଗିପଡ଼େ, ସେ ସହରରେ ବିଦ୍ୟୁତାଲୋକ ନାଣ୍ଟି ମୁଣ୍ଡରେ ସେବତୀ ଗଭା ବା କାଣୀ ଆଖିରେ କଜ୍ଜଳ ଗାର ପରି ଶୋଭା ପାଏ ବୋଲି ସାହିତ୍ୟିକମାନଙ୍କର ଧାରଣା । ମୋର ମଧ୍ୟ ଏହି ଧାରଣା ହେଲା । ଭାବିଲି, ଏ ସହରବାସୀମାନେ ଏପରି ଅସୁନ୍ଦର ବିଷୟରେ ମତ ଦେଲେ କିପରି ? ମନେପଡ଼ିଲା ଅର୍ଜୁନଙ୍କ କଥା— 'ଯଥା ନିଯୁକ୍ତୋଽସ୍ମି ତଥା କରୋମି' ।

୧୬ ତାରିଖ ସନ୍ଧ୍ୟା ଘ ୭ । ୩୦ ମିନିଟରେ ସଭା । ଯଥା ସମୟରେ ରାମଚନ୍ଦ୍ର ଭବନରେ ପହଞ୍ଚିଲି । ସଭାଗୃହ ସାହିତ୍ୟସେବୀମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା । ସଭାପତି ଆସନ ଗ୍ରହଣ କରିବାର ପ୍ରସ୍ତାବ ଅନୁମୋଦିତ ହେଲା ଉତ୍ତାରୁ 'ସଭାସଦ୍‌ଭ୍ୟୋ ନମୋନମଃ' କହି ଆସନ ଗ୍ରହଣ କଲି । ମୋର ଅଭିଭାଷଣ ପାଠ କଲାବେଳେ ଶ୍ରୋତାମାନଙ୍କର ପ୍ରଫୁଲ୍ଲ ମୁଖାବଲୋକନ କରି ଅପାର ଆନନ୍ଦ ଅନୁଭବ କରୁଥାଏ ଏବଂ ପ୍ରତ୍ୟେକ ଥର ସେମାନଙ୍କ ଆଡ଼କୁ ଦୃଷ୍ଟି ପକାଇବା ବେଳେ ପ୍ରତ୍ୟେକ ସହୃଦୟ ମହୋଦୟଙ୍କର ପରିଚୟ ପାଇବାର ଆଗ୍ରହ ଓ ଇଚ୍ଛା ବଳବତୀ ହେଉଥାଏ । ମାତ୍ର ଏ ଇଚ୍ଛା ପୂରଣର ଉପାୟ କ'ଣ ? ଶ୍ରୋତାମାନଙ୍କର ଇଚ୍ଛା ଉପରେ ସବୁ ନିର୍ଭର କରେ । ସେମାନଙ୍କର ଦୟା ହେଲେ ପରିଚୟ ଅନାୟାସରେ ମିଳିପାରେ । ମୋର ଅନୁନୟ ଶୋଭନୀୟ ନୁହେଁ ଭାବି କର୍ତ୍ତବ୍ୟ କାର୍ଯ୍ୟ କରିଗଲି । ଅଭିଭାଷଣ ପଢ଼ା ସରିଲା । ଯୁବକମାନେ କ୍ଷଣେ ବାକ୍‌ଯୁଦ୍ଧ କଲେ । ସଭାପତିଙ୍କ ମନ୍ତବ୍ୟ ଉତ୍ତାରୁ ସଭାପତିଙ୍କୁ ଧନ୍ୟବାଦ ଇତ୍ୟାଦି ଯାହା ମାମୁଲି ତାହା ହେଲା । ଦେଖିଲି, ଜଣ ଜଣ ହୋଇ ଶ୍ରୋତାମାନେ ଆସନ ତ୍ୟାଗ କଲେ । ମୋର ପରିଚୟ ଲାଭାଶା ନିରାଶାରେ ପରିଣତ ହେବାକୁ ବସିଲା । ମୋର ଭାଗ୍ୟକ୍ରମେ କନିକା ଟୀକାୟତ ମହୋଦୟ ନିଜର ପରିଚୟ ଦେଇ ମୋତେ ଆପ୍ୟାୟିତ କଲେ । କେବଳ ଏତିକି ନୁହେଁ, ନିଜ ମଟରରେ ମୋତେ ନେଇଆସି ବସାରେ ଛାଡ଼ି ଦେବା ଦ୍ୱାରା ସୌଜନ୍ୟର

ପରାକାଷ୍ଠା ଦେଖାଇଥିଲେ । ତିନି ଜଣ ମହିଳା ସଭାରେ ଉପସ୍ଥିତ ଥିଲେ । ତନ୍ମଧ୍ୟରୁ ସ୍ୱର୍ଗୀୟ ଫକୀରମୋହନଙ୍କ କନ୍ୟା ଶ୍ରୀଯୁକ୍ତା ସରୋଜିନୀ ଚୌଧୁରୀ ନିଜର ପରିଚୟ ଦେଇଥିଲେ ଏବଂ ସଦାଳାପ ଦ୍ୱାରା ମୋତେ ଆପ୍ୟାୟିତ କରିଥିଲେ ।

ସଭାଭଙ୍ଗ ପରେ ସାହିତ୍ୟ ସଭା ଗୋଟାଏ ରେଳଗାଡ଼ି ବ୍ୟାପାର ପରି ମୋତେ ବୋଧ ହେଲା । ଯେପରି ରେଳଗାଡ଼ିରେ ଲୋକେ ଜଣ ଜଣ ହୋଇ ବସନ୍ତି, ଗାଡ଼ି ପୂର୍ଣ୍ଣ ହୁଏ, କେତେକ ସମୟ ପାଇଁ ଯାତ୍ରୀମାନଙ୍କ ମଧ୍ୟରେ ବାକ୍ୟାଳାପ, ବାକ୍‌ବିତଣ୍ଡା ଓ ତକରାଳ ପର୍ଯ୍ୟନ୍ତ ହୁଏ, ରେଲଗାଡ଼ି ଗନ୍ତବ୍ୟ ସ୍ଥାନରେ ପହଞ୍ଚିଲାରୁ ପ୍ରତ୍ୟେକ ତରତର ହୋଇ ଗାଡ଼ିରୁ ଉତୁରି ଚାଲିଯାଆନ୍ତି, କାହାରି ଖବର ଆଉ କେହି ନେବାକୁ ସମୟ ପାଆନ୍ତି ନାହିଁ—ରାମଚନ୍ଦ୍ର ଭବନ ସାହିତ୍ୟସେବୀମାନଙ୍କ ଦ୍ୱାରା ପରିପୂର୍ଣ୍ଣ ହେଲା, ସଭାକାର୍ଯ୍ୟ ଶେଷ ନ ହେଉଣୁ ସମସ୍ତେ ଯିବାକୁ ବ୍ୟସ୍ତ ହେଲେ, ସାହିତ୍ୟ ସଭା ଶେଷ ହେଲା, ସଭାପତିର ଅଭିଭାଷଣ ମଧ୍ୟ ଗୋଟାଏ ଫନୋଗ୍ରାଫ୍ ବ୍ୟାପାର ଭଳି । ସଭାପତିର ଅଭିଭାଷଣ ରେକର୍ଡ଼ ଯଦି ଶସ୍ତାରେ ପ୍ରସ୍ତୁତ ହୋଇପାରୁଥାନ୍ତା ତାହାହେଲେ ସଭାପତିଙ୍କ ଅଭ୍ୟର୍ଥନା ନ କରି ଫନୋଗ୍ରାଫ୍ ରେକର୍ଡ଼ ଦ୍ୱାରା ଅଭିଭାଷଣ ପାଠ ସମସ୍ତେ ଶୁଣି ପାରନ୍ତେ । ଅଭିଭାଷଣ ପଢ଼ିବା ଦ୍ୱାରା ସଭାପତିର କାର୍ଯ୍ୟ ଶେଷ ଏବଂ ତାହା ଶୁଣିବା ଦ୍ୱାରା ହିଁ ଉପସ୍ଥିତ ଶ୍ରୋତାଙ୍କର କର୍ତ୍ତବ୍ୟ ଶେଷ । ସାହିତ୍ୟ ସମାଜର ଭୂତ ଭବିଷ୍ୟତ ଆଲୋଚନା ନିମନ୍ତେ କି ସଭାପତି କି ସଭ୍ୟ କେହି ଧାର ଧାରନ୍ତି ନାହିଁ ? ଧରାବନ୍ଧା ନିୟମ ଓ ଅଭ୍ୟାସର ବ୍ୟତିକ୍ରମ କରିବାକୁ କେହି ରାଜି ନୁହନ୍ତି । ସଭାଭଙ୍ଗ ଉତ୍ତାରୁ ବୋଧହୁଏ ସମସ୍ତେ ଭାବିଲେ ଯେ, ସେମାନେ ବର୍ଷକର ଗୋଟିଏ ଦାୟିତ୍ୱରୁ ରକ୍ଷା ପାଇଲେ । ମୁଁ ଯଦି ସେହି ରାତ୍ରିରେ ରେଳଗାଡ଼ି ଚଢ଼ି ଫେରିଥାନ୍ତି, ବୋଧହୁଏ କାହାର ଦୁଃଖ ହୋଇ ନ ଥାନ୍ତା କିମ୍ବା ମୋର କର୍ତ୍ତବ୍ୟ ଶେଷ ନ କରି ଚାଲି ଆସିଲି ବୋଲି ମୋତେ କେହି ଦୋଷ ମଧ୍ୟ ଦେଇ ନ ଥାନ୍ତେ ।

ଏହି ବାର୍ଷିକ ସଭା ବ୍ୟାପାର ଦେଖି ମୁଁ ମନେକରେ ଯେ, ମାସିକ ବା ସାମୟିକ ସଭା ସାହିତ୍ୟସେବୀମାନଙ୍କର ଚିତ୍ତାକର୍ଷକ ହେଉ ନ ଥିବ । କାରଣ ଏହି ସମାଜର ଶ୍ରୋତା ଓ ସାହିତ୍ୟସେବୀମାନଙ୍କର ଚିତ୍ତାକର୍ଷଣ ଶକ୍ତି ନାହିଁ ବା ପ୍ରଲୋଭନ ନାହିଁ । ବର୍ଷ ମଧ୍ୟରେ ସାହିତ୍ୟାଲୋଚନା ନିମନ୍ତେ କେତେଟା ସଭା ଅନୁଷ୍ଠିତ ହୁଏ, ମୋତେ ଜଣା ନାହିଁ । ତେବେ ଅନ୍ତତଃ ବର୍ଷକୁ ଛଅ ଗୋଟି ଆଲୋଚନା ସଭା ହେବା ଉଚିତ ଏବଂ ସେଠାରେ ସାହିତ୍ୟସେବୀ ଦଳ ଏବଂ ଛାତ୍ରମାନେ ଉପସ୍ଥିତ ହେବା ଉଚିତ । ଆହୁରି ମଧ୍ୟ ସେହି ସଭାମାନଙ୍କରେ ବିଶୁଦ୍ଧ ସାହିତ୍ୟଚର୍ଚ୍ଚା, ବାକ୍‌ବିତଣ୍ଡା ଓ ତର୍କବିତର୍କ ହେବା ଉଚିତ । ତାହାହେଲେ ସାହିତ୍ୟିକମାନଙ୍କର ଭାବ ବିନିମୟ ଦ୍ୱାରା ସାହିତ୍ୟର କ୍ରମବିକାଶ ହେବ ଏବଂ ଆଲୋଚନାର ଧାରା ପରିସ୍ଫୁଟ ହେବ । ସାହିତ୍ୟସେବୀମାନଙ୍କର କହିବା ଶକ୍ତି ମଧ୍ୟ ବୃଦ୍ଧିଲାଭ କରିବ । ଏ ଦେଶରେ ସାହିତ୍ୟସେବୀମାନଙ୍କର ବାଗ୍ମିତା ବଢ଼ିବ । ବର୍ତ୍ତମାନ ଯୁଗରେ ବକ୍ତୃତାର ବଡ଼ ପ୍ରୟୋଜନ । ଏହା ଯେପରି ବୃଦ୍ଧିପାଏ, ସେଥିପ୍ରତି ସମାଜର ନଜର ଦେବା ଉଚିତ ନୁହେଁ କି ?

କବି ବା ଲେଖକ ହେଉନ୍ତୁ ବା ନ ହେଉନ୍ତୁ, ବିଦ୍ୱାନ୍ ଓ ପଣ୍ଡିତ ବ୍ୟକ୍ତି ମାତ୍ରେ ହିଁ ସାହିତ୍ୟସେବୀ । ସଭାରେ ସେମାନଙ୍କର ଯୋଗଦେବା ଉଚିତ ନୁହେଁ କି ? ମାତ୍ର ସଭାରେ ସ୍କୁଲ କଲେଜର ଅଧ୍ୟାପକମାନେ ଉପସ୍ଥିତ ଥିଲେ ବୋଲି ମୁଁ ଜାଣିପାରି ନାହିଁ । ସମାଜ ପ୍ରତି ସ୍କୁଲ କଲେଜର ଅଧ୍ୟାପକମାନଙ୍କର ସହାନୁଭୂତି ଓ ମନୋଯୋଗ ବୃଦ୍ଧି କରିବା ସମାଜର କାର୍ଯ୍ୟ ନିର୍ବାହକମାନଙ୍କର ଉଚିତ । ଛାତ୍ରମାନେ ସମାଜର ଜୀବନ । ସେମାନଙ୍କୁ ଛାଡ଼ି ଭବିଷ୍ୟତ ଆଶା ପଣ୍ଡ । ସେମାନଙ୍କୁ ନେଇ ସଭା କରିବା ଏବଂ ସେମାନଙ୍କ ସମକ୍ଷରେ ସାହିତ୍ୟ ଚର୍ଚ୍ଚାର ଆଦର୍ଶ ଦେଖାଇବା ସାହିତ୍ୟିକ ଦେଶହିତୈଷୀମାନଙ୍କର ଉଚିତ ନୁହେଁ କି ? ଏହା ନ କଲେ ସାହିତ୍ୟସେବା ଉଡୁପ ସାହାଯ୍ୟରେ ସମୁଦ୍ର ସନ୍ତରଣ ହେବ ସିନା ! !

ଓଡ଼ିଶାରେ ସାହିତ୍ୟସେବୀ ଓ ସାହିତ୍ୟିକଙ୍କ ସଂଖ୍ୟା ଅତି କମ୍ ବୋଇଲେ ଚଳେ । ଲେଖକ ସଂଖ୍ୟା ଜନସଂଖ୍ୟା ତୁଳନାରେ ତ ନଗଣ୍ୟ । ଏଥିରେ ଯେବେ 'ବିଦ୍ୟା ବିବାଦାୟ' ହୁଏ, ତେବେ ସାହିତ୍ୟର ଉନ୍ନତି ଆଶା ସୁଦୂର-ପରାହତ ବୋଲି କହିବାକୁ ହେବ । ସାହିତ୍ୟ ସମାଜ ସୁଦୃଢ଼ ଓ ସୁପରିଚାଳିତ ହେଲେ ସମସ୍ତ ବାଧାବିଘ୍ନ ଦୂର ହୋଇପାରିବ ବୋଲି ଆଶା କରାଯାଏ । ବୃଦ୍ଧ, ଯୁବକ ଏବଂ ସ୍କୁଲ କଲେଜ ଛାତ୍ରଙ୍କର ସହାନୁଭୂତି ଓ ସହଯୋଗ ସମାଜର ଉନ୍ନତି ନିମନ୍ତେ ନିତାନ୍ତ ପ୍ରୟୋଜନୀୟ । ସାହିତ୍ୟ କ୍ଷେତ୍ରରେ ଅସହଯୋଗ ନୀତି ଏକାବେଳକେ ବର୍ଜନୀୟ । ମୁଁ ଅନୁମାନ କରେ, କଟକ ସାହିତ୍ୟସେବୀମାନଙ୍କ ମଧ୍ୟରେ ଆନ୍ତରିକ ମନୋମାଳିନ୍ୟ ଯଥେଷ୍ଟ ଅଛି । ଏହା ରହିବା ଉଚିତ୍ ନୁହେଁ— ଘନ ଘନ ସଭା ଏବଂ ଭାବର ଆଦାନ ପ୍ରଦାନ ଦ୍ୱାରା ଏହା ଅନ୍ତର ହେବ ବୋଲି ମୁଁ ଆଶାକରେ ।

ଯୁବକମାନେ ବୃଦ୍ଧ ଓ ବୟଃସ୍କମାନଙ୍କର ଉତ୍ତରାଧିକାରୀ, ରାଜ୍ୟ ସେମାନଙ୍କର— ବୃଦ୍ଧ ଓ ବୟଃସ୍କମାନଙ୍କର ଜୀବନ ଆଶା ଥିବା ମଧରେ ଯୁବକମାନଙ୍କୁ ସ୍ୱାଧୀନ ଭାବରେ ସମସ୍ତ କ୍ଷେତ୍ରରେ ହାତ ବୁଲାଇବାକୁ ଦେବା ଉଚିତ । କେବଳ ବାଧାଦେବା ଯେପରି କ୍ଷତିଜନକ, ସେହିପରି ମଧ ଉନ୍ନତିର ଅନ୍ତରାୟ । ସେମାନଙ୍କର ଗତିକୁ ଚାଳିତ କରିବା ନିମନ୍ତେ ପ୍ରବୀଣଗଣ ଅହରହ ସେମାନଙ୍କ ସହିତ ଯୋଗଦାନ କରିବା ଉଚିତ। ଅନେକ ସମୟରେ ପ୍ରବୀଣମାନେ ଯାହାକୁ ଯୁବକମାନଙ୍କର ଔଦ୍ଧତ୍ୟ ଓ ଚପଳତା ବୋଲି ବିବେଚନା କରିଥାନ୍ତି, ତାହା କାର୍ଯ୍ୟତଃ ପ୍ରକୃତ ନୁହେଁ । ବର୍ତ୍ତମାନ ଜଗତରେ ଯୁବକମାନଙ୍କର ଭାବଧାରା ଏଥିର ନିଦର୍ଶନ । ପ୍ରବୀଣ ବୋଲି କରଛଡ଼ା ଦେଇ ରହିଲେ ଚଳିବ ନାହିଁ । ପଦେ ପଦେ ଯୁବକମାନଙ୍କର ସହଚର ଓ ସହଯୋଗୀ ହେବାକୁ ପଡ଼ିବ ।

ବର୍ତ୍ତମାନ ବନ୍ଦୋବସ୍ତଦ୍ୱାରା ଉତ୍କଳର କ୍ଷତି କି ଲାଭ, ତାହା ଚିନ୍ତାଶୀଳ ବ୍ୟକ୍ତିମାନେ ଥରେ ଚିନ୍ତାକରିବା ଉଚିତ। ସାହିତ୍ୟ ହିଁ କେବଳ ସମଗ୍ର ଉତ୍କଳକୁ ଏକତାବଦ୍ଧ କରିପାରେ । ସାହିତ୍ୟ ସୂତ୍ର ଛିନ୍ନ ହେଲେ ଚରିପୋଷିତ ଆଶା ଛାରଖାର ହେବ ।

ଉତ୍କଳ ଦେଶରେ ଅନେକ ସମ୍ବାଦପତ୍ରର ଆବିର୍ଭାବ ଓ ଅନ୍ତର୍ଦ୍ଧାନ ଘଟିଲା । କେବଳ 'ଉତ୍କଳଦୀପିକା' ଅଦ୍ୟାପି ଉତ୍କଳର ଦୀପସ୍ୱରୂପ ବିଦ୍ୟମାନ ରହିଅଛି । କିନ୍ତୁ ବର୍ତ୍ତମାନ ଯୁଗରେ ଦୈନିକପତ୍ର ଛଡ଼ା ସାପ୍ତାହିକ ସମ୍ବାଦପତ୍ରର ମୂଲ୍ୟ ଅତି ଅଳ୍ପ । 'ସମାଜ' ଉଦୀୟମାନ ଦୈନିକପତ୍ର ସୁପରିଚାଳିତ, ସନ୍ଦେହ ନାହିଁ । ଏ ଦରିଦ୍ର ଦେଶରେ ଦୈନିକ ପତ୍ରିକାର ପ୍ରତିଯୋଗିତା ଚଳାଇବାର ସମୟ ଆସି ନାହିଁ ବୋଲି ମନେହୁଏ । ଖଣ୍ଡେ ଦୁଇଖଣ୍ଡ ପତ୍ର ସୁପରିଚାଳିତ ହେବା ବିଷୟରେ ବିଜ୍ଞ ଓ ଧନିକମାନେ ଉଦ୍‌ଯୋଗୀ ହେଲେ ପ୍ରକୃତ ଉପକାର ହୋଇପାରେ ।

ନାନାପ୍ରକାର ମାସିକ ପତ୍ର ଯେତେ ପ୍ରଚାରିତ ହୁଏ, ସେତେ ଭଲ । ଅନେକ ମାସିକ ପତ୍ର ଉଇଁଲେ ଓ ବୁଡ଼ିଲେ; ମାତ୍ର ସୁଖର ବିଷୟ ଏହି ଯେ 'ଉତ୍କଳ-ସାହିତ୍ୟ' ତାର ସମ୍ପାଦକଙ୍କ ଅଧ୍ୟବସାୟ ଓ ସ୍ୱାର୍ଥ ତ୍ୟାଗ ହେତୁ ଅଦ୍ୟାପି ମୁଖ ଟେକି ରହିଅଛି । 'ଉତ୍କଳ-ସାହିତ୍ୟ' ଦ୍ୱାରା ଏ ଦେଶର ସାହିତ୍ୟ ଯେ ପ୍ରଭୂତ ଉପକାର ଓ ଉନ୍ନତି ହୋଇଅଛି, ଏହା କହିବା ନିଷ୍ପ୍ରୟୋଜନ । ସାହିତ୍ୟକମାନେ ତାହା ସ୍ୱୀକାର କରିବା ଉଚିତ। ସମ୍ପାଦକୀୟ ନିଷ୍ପକ୍ଷପାତ ମନ୍ତବ୍ୟଦ୍ୱାରା ପତ୍ରିକାର ଗୌରବ ଅକ୍ଷୁଣ୍ଣ ରହେ । ଏକ ସମୟରେ ଉତ୍କଳ-ସାହିତ୍ୟର ସମ୍ପାଦକଙ୍କୁ ନିର୍ଭୀକ ଓ ଉତ୍ସାହପ୍ରଦ ମନ୍ତବ୍ୟ ନିମନ୍ତେ (କି ସାମାଜିକ, କି ରାଜନୈତିକ, କି ସାହିତ୍ୟିକ) ପାଠକମାନେ ଚାହିଁ ରହିଥିଲେ । ମାତ୍ର କେତେକ ବର୍ଷ ହେଲା ବିଶ୍ୱନାଥବାବୁ ସାହିତ୍ୟ ପ୍ରଚାର କରୁଅଛନ୍ତି ସତ୍ୟ; ମାତ୍ର ସେଥିରେ ତାଙ୍କ ଲେଖା ଆଦୌ ବାହାରିବାକୁ ନାହିଁ । ଏଥି ନିମନ୍ତେ ଅନେକେ ବିଶେଷ ଦୁଃଖିତ । ପ୍ରବୀଣ ସମ୍ପାଦକଙ୍କର ଏଭଳି ସମୟରେ ସାହିତ୍ୟ କ୍ଷେତ୍ରରେ ଅହେତୁକ ନିବୃତ୍ତି କଦାପି ଅନୁମୋଦନୀୟ ନୁହେଁ । ବିଶ୍ୱନାଥବାବୁଙ୍କ ପ୍ରତି ଏଠାରେ ଭଗବଦ୍‌ଗୀତାର ଗୋଟିଏ ଶ୍ଳୋକ ଗାଣସ୍ୱରୂପ ପ୍ରଯୁଜ୍ୟ ବୋଲି ମୁଁ ମନେ କରେ—

''କ୍ଲୈବ୍ୟମାସ୍ମଗମଃ ପାର୍ଥ ନୈତତ୍ ତ୍ୱୟ୍ୟୁପପଦ୍ୟତେ
କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ ।''

'ସହକାର'ର ଜନ୍ମକର୍ମ ବଡ଼ ଆଶାପ୍ରଦ ନ ଥିଲା । ବର୍ତ୍ତମାନ ପ୍ରାୟ ଚାରି ବର୍ଷ ହେଲା ବାଳକୃଷ୍ଣବାବୁ ଏହାର ସମ୍ପାଦକତ୍ୱ ଗ୍ରହଣ କରି ଏହାର ଆକାର ବୃଦ୍ଧି ଓ ଅଙ୍ଗସୌଷ୍ଠବ ବଢ଼ାଇଅଛନ୍ତି । ଏହା ବର୍ତ୍ତମାନ ସୁପରିଚାଳିତ ମନେ ହୁଏ । ବାଳକୃଷ୍ଣବାବୁଙ୍କ ସମ୍ପାଦକତ୍ୱରେ ଏହାର କ୍ରମୋନ୍ନତି ହେବ ଏବଂ ଉତ୍କଳ ସାହିତ୍ୟର ମଧ ଉନ୍ନତି ହେବ ବୋଲି ମୋର ଦୃଢ଼ ବିଶ୍ୱାସ ।

ଅଭିନବ 'ରସଚକ୍ର' ଆସ୍ୱାଦନଯୋଗ୍ୟ । ଉତ୍କଳର ଶିକ୍ଷିତମାତ୍ରେ ଏହାକୁ ଆଦର କରିବେ ବୋଲି ମୋର ଆଶା । ଅନେକଙ୍କର ମତ ଯେ, ଏଭଳି ରହସ୍ୟପୂର୍ଣ୍ଣ ଏବଂ ସମାଲୋଚନାମୂଳକ ପତ୍ର ଉତ୍କଳ ଦେଶରେ ଚଳିବା ଭଳି ସମୟ ଆସି ନାହିଁ । ମୁଁ ମନେକରେ, ସମୟ ଆସିଛି ବୋଲି ତ ଏହାର ଜନ୍ମ । ଏହାର ଉନ୍ନତି ନେତ୍ରାଗ୍ରରେ ଦିଶୁଅଛି ।

ବାଳକମାନଙ୍କର ଉପଯୋଗୀ ଗୋଟିଏ ମାସିକ ପତ୍ରିକାର ନିତାନ୍ତ ପ୍ରୟୋଜନ ଥିଲା । ପ୍ରଥମେ ଚିନ୍ତାମଣିବାବୁ ବୋଧହୁଏ ଏଥିର ପଥପ୍ରଦର୍ଶକ । ମାତ୍ର ତାଙ୍କର ଉଦ୍ୟୋଗ ଲେଖକ ଅଭାବରୁ ବିଫଳ ହୋଇଥିଲା । 'ଜହ୍ନମାମୁଁ'ର ଉଦୟ ଆମ୍ଭମାନଙ୍କ ହୃଦୟରେ ଆଶାର ସଞ୍ଚାର କରିଛି । ବର୍ତ୍ତମାନ ନୂଆ ଜହ୍ନ । ସୁଲେଖକମାନେ ଏହାର କଳା ପୂର୍ଣ୍ଣ କରିବେ ବୋଲି ଖୁବ୍ ଆଶା ଅଛି ।

'ଯୁଗବୀଣା' ଗୋଟିଏ ଔପନ୍ୟାସିକ ମାସିକପତ୍ର— ଗୋଟିଏ ଅଭିନବ ଚେଷ୍ଟା ଓ ସତ୍ ଚେଷ୍ଟା । ନାନାପ୍ରକାର

ପତ୍ରପତ୍ରିକା ପ୍ରଚାର ଏବଂ ବିଚାର, ପୁସ୍ତକ ପ୍ରଚାର ଦେଶର ସାହିତ୍ୟୋନ୍ନତିର ପରିଚାୟକ । ସମସ୍ତ ବିଷୟ ଆଲୋଚନା କରି ଦେଖିଲେ ଦରିଦ୍ର ଉତ୍କଳ ଏ କ୍ଷେତ୍ରରେ ପଶ୍ଚାତ୍‌ପଦ ନୁହେଁ ବୋଲି ମନେ ହୁଏ । ସୁଲେଖକମାନେ ଉତ୍ସାହ ଓ ପ୍ରଶ୍ରୟ ପାଇବା ଉଚିତ। ଏହି କେତେଟା ବର୍ଷରେ ଅନେକଗୁଡ଼ିଏ ମୁଦ୍ରାଯନ୍ତ୍ର କଟକରେ ସ୍ଥାପିତ ହୋଇଅଛି—ବର୍ତ୍ତମାନ ପ୍ରୟୋଜନ ପକ୍ଷରେ ବୋଧହୁଏ ଯଥେଷ୍ଟ । କେତେଗୁଡ଼ିଏ ପୁସ୍ତକ ପ୍ରଚାରକ ସମିତି ପୂର୍ବରୁ ଥିଲା, ଏବେ ମଧ କେତେଗୋଟି ସ୍ଥାପିତ ହୋଇଅଛି । ଏହା ଦେଶର ସାହିତ୍ୟ-ଉନ୍ନତିର ପଥ । ଏହାର ଦୁଇ ଗୋଟି ସମିତି ସମ୍ବନ୍ଧରେ ପଦେ ଅଧେ ନ ଲେଖିଲେ ପ୍ରବନ୍ଧର ନାମ ସାର୍ଥକ ହେବ ନାହିଁ ।

**ପ୍ରାଚୀ ସମିତି**-ପ୍ରାଚୀନ ପୁସ୍ତକ ପ୍ରଚାର କରିବା ନିମନ୍ତେ ଏହି ସମିତି କେତେକ ବର୍ଷ ହେଲା ସ୍ଥାପିତ ହୋଇଅଛି । ଏହି ସମିତି ଉତ୍କଳର ନାନା ସ୍ଥାନରୁ ପ୍ରାଚୀନ ଉତ୍କଳ କବିମାନଙ୍କର ରଚିତ ପୁସ୍ତକମାନ ସଂଗ୍ରହ କରି ପ୍ରଚାର କରୁଅଛି । ଦେଖିଲି ଏ ସମିତି ପ୍ରତି ଅନେକ ନବୀନ ଓ ପୁରୁଣା ସାହିତ୍ୟିକ ବିମୁଖ କାହିଁକି ? ଅନେକଙ୍କର ମତ ଅଶ୍ଳୀଳ ପୁସ୍ତକ ପ୍ରଚାର ହେତୁ । ଅନେକ କହନ୍ତି, ସେମାନେ ଯାହା ପୂର୍ବ ସଂସ୍କରଣମାନଙ୍କରେ ପାଠ କରିଥିଲେ ସେଥିରୁ ଭିନ୍ନ ବା ଭୁଲ୍ କରି ଛାପିଥିବାରୁ ଉଭୟବିଧ ସଙ୍କଟ । ପ୍ରାଚୀନ କବି ମାତ୍ରେ ହିଁ ଅଶ୍ଳିଳ କାବ୍ୟ ଓ ଗୀତ ଲେଖକ । ଏହା ବୋଲି କି ଦେଶର ପ୍ରାଚୀନ ଲେଖାତକ କାଠଯୋଡ଼ିରେ ଭସାଇଦେବା ? ପ୍ରାଚୀନ ପୁସ୍ତକ, ପ୍ରାଚୀନ ମୂର୍ତ୍ତି, ପ୍ରାଚୀନ ଆଉ ଯାହାକିଛି, ସେଗୁଡ଼ିକ ଉଦ୍ଧାର ହିଁ ଦେଶର ଓ ଜାତିର ଗୌରବ । ଏହା ସବୁ ଦେଶର ପ୍ରଥା । ପ୍ରାଚୀନ ପାଣ୍ଡୁଲିପି ଯାହା ଆମ ଦେଶରେ ନାହିଁ ତାହା ଲଣ୍ଡନ ଓ ବର୍ଲିନର ପୁସ୍ତକାଗାରରେ ସ୍ଥାନ ପାଇଅଛି । ଏ ଦେଶରେ ବିଦଗ୍ଧ ମାଧବ, ଗୀତଗୋବିନ୍ଦ, ନୈଷଧ, କାଳୀ କର୍ପୂର, ଆଉ କେତେ ଅଶ୍ଳୀଳ ତନ୍ତ୍ର, କାବ୍ୟ, ନାଟକ ମୁଦ୍ରିତ ହୋଇ ବହୁଳ ପ୍ରଚାର ହୋଇଅଛି । ବୈଦେଶିକମାନେ ମଧ ଏହି ଗ୍ରନ୍ଥମାନ ଆଗ୍ରହରେ ମୁଦ୍ରିତ କରୁଅଛନ୍ତି ଓ ବହୁ ଅର୍ଥରେ ପ୍ରାଚୀନ ପାଣ୍ଡୁଲିପି କ୍ରୟ କରୁଅଛନ୍ତି । ତେବେ ଆମ ଦେଶରେ ଗୋଟିଏ ସମିତି ସେ ସବୁ ସଂଗ୍ରହ କରି, କ୍ରୟ କରି, ମୁଦ୍ରିତ କରି ଦେଶର ଧନ ସାଇତି ରଖିବା ହେତୁରୁ ଦୋଷୀ କାହିଁକି ? ଏ କାର୍ଯ୍ୟକୁ ଅଶ୍ଳୀଳ ସାହିତ୍ୟ ପ୍ରଚାର ବୋଲିବା ଯୁକ୍ତି ସଙ୍ଗତ ନୁହେଁ । ଯେବେ କୌଣସି ସମିତି ଆଧୁନିକ ଲେଖକମାନଙ୍କୁ ଏତାଦୃଶ ଅଶ୍ଳୀଳ କାବ୍ୟ ଲେଖିବାକୁ ପ୍ରୋତ୍ସାହିତ କରେ ଏବଂ ଅଶ୍ଳୀଳ କାବ୍ୟଦ୍ୱାରା ଦେଶର ଉନ୍ନତି ଇତ୍ୟାଦି ଉପଦେଶ ଦିଏ ବା କୌଣସି କବି ଅଧୁନା ଏପରି କାବ୍ୟ ଲେଖେ, ତେବେ ସେ ଦେଶଦ୍ରୋହୀ ଓ ସାହିତ୍ୟର ଅପକାରକ । ଏ ଯୁଗରେ ସେପରି କବିତା ବା ପୁସ୍ତକ ଯେ କେହି ଲେଖିବ, ସେ ଯେ ଅଚିରେ ଲାଞ୍ଛିତ ଓ ଅପମାନିତ ହେବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ତାଳପତ୍ର ପୋଥି ଲୁଚିକରି ରହିବ କେତେ ଦିନ ?

ଏଣୁ ଯାହାକିଛି ଏ ଦେଶରେ ରଚିତ ହୋଇଅଛି, ତାହା ମୁଦ୍ରିତ ହେବା ଅସଙ୍ଗତ ନୁହେଁ । ଏଣୁ ଏ ସମ୍ବନ୍ଧରେ ପ୍ରାଚୀ ସମିତିକୁ ନିନ୍ଦା ଦେବା ମଧ ବିଧେୟ ନୁହେଁ । ଚାଟଶାଳିଆ ପାଠକମାନେ ଜାଣନ୍ତି ଯେ, ବର୍ଣ୍ଣ ପରିଚୟ ଉତ୍ତାରୁ କୋଇଲି, କମଳଲୋଚନ ଓ ଗୋପୀଭାଷା ପଢ଼ା ହୁଏ । ଆମ୍ଭେମାନେ କ୍ଷୁଦ୍ରାବୟବ ଗୋପୀଭାଷା ପଢ଼ିଥିଲୁ । ସେହି କବିଙ୍କର ଏତେ ବଡ଼ ଗୋପୀଭାଷା ଅଛି ବୋଲି କିଏ ଜାଣିଥିଲା ? ପ୍ରାଚୀ ସମିତି ଯେବେ ଏପରି ଖଣ୍ଡିଏ ପୁସ୍ତକ ବା କବିର କୀର୍ତ୍ତି ଉଦ୍ଧାର କଲେ, ସେଥି ନିମନ୍ତେ ସମିତି ଦୋଷୀ କି ? ପ୍ରାଚୀ ସମିତି ଅନେକ ଗୁଡ଼ିଏ ପୁଷ୍ତିକର ପାଣ୍ଡୁଲିପିରୁ ପାଠୋଦ୍ଧାର କରୁଅଛନ୍ତି । ଏଣୁ ପୂର୍ବ ପ୍ରକାଶିତ ପୁସ୍ତକ ସହିତ ସେମାନଙ୍କ ପୁସ୍ତକର ଅମେଳ ଦେଖି ସେମାନଙ୍କୁ ଦୋଷୀ କରିବା ଉଚିତ ନୁହେଁ । ସେମାନେ ନାନା ପୁସ୍ତକର ପାଠୋଦ୍ଧାର କରୁଅଛନ୍ତି । ପ୍ରାଚୀନ ପୁସ୍ତକ ମୁଦ୍ରଣ କରିବାର ନିୟମ ଏହିପରି । ପାଠକ ଇଚ୍ଛାନୁସାରେ ଗୋଟିଏ ପାଠ ବାଛି ନେଇପାରନ୍ତି । ନିନ୍ଦା କରିବା ତେଣେ ଥାଉ, ସହୃଦୟ ସାହିତ୍ୟିକମାନଙ୍କର ଏହି ସମିତିକୁ ପ୍ରାଚୀନ ଲେଖା ଯୋଗାଇବାକୁ ଚେଷ୍ଟା କରିବା ଉଚିତ ।

ତା'ପରେ **ସବୁଜ ସାହିତ୍ୟ ସମିତି**-ପ୍ରାଚୀ ସମିତିର ଠିକ୍ ବିପରୀତ । ଗୋଟିଏ ପ୍ରାଚୀନ, ଆରଟି ସମ୍ପୂର୍ଣ୍ଣ ନବୀନ । ପ୍ରାଚୀନ ନବୀନ ମଧରେ ଚିରଦ୍ୱନ୍ଦ୍ୱ । ମଧବର୍ତ୍ତୀ ଯେଉଁମାନେ ସେମାନେ ଏପଟ ସେପଟ— ସମନ୍ୱୟ ଲିପ୍ସା କାହାରି ନାହିଁ । ସେଦିନ ସାହିତ୍ୟ ସମାଜରେ ସାମାନ୍ୟ ଆଲୋଚନା ହୋଇଥିଲା । ପ୍ରାଚୀନ ବିରୋଧରେ କେହି କିଛି କହିଥିଲେ କି ନା ସ୍ମରଣ ହେଉ ନାହିଁ । ମାତ୍ର ନୂତନ ଉପନ୍ୟାସ, ରଚନା, ଭାଷା ଓ କବିତାର ଦୋଷାଲୋଚନା ଯଥେଷ୍ଟ ରୂପେ ହୋଇଥିଲା । ସମାଲୋଚକ ଦୁଇ ଜଣ ସଂସ୍କୃତଜ୍ଞ ପ୍ରବୀଣ ସାହିତ୍ୟିକ । ସେମାନଙ୍କ ମଧରୁ ଜଣେ ଆଧୁନିକ କ୍ଷୁଦ୍ର କବିତାକୁ କୁଇନାଇନ୍ ସହିତ ତୁଳନା କରିଥିଲେ । କେବଳ ଯେ ତୁଳନା କଲେ ତାହା ନୁହେଁ, ଆଲୋଚନା ବେଳେ ତାହାଙ୍କର ମୁଖ କୁଇନାଇନ୍ ଆସ୍ୱାଦନ କଲା ଭଳିଆ ବିକୃତି

ଲାଭ କରୁଥିଲା । ସଂସ୍କୃତ ସାହିତ୍ୟ ଓ ଭଞ୍ଜ ସାହିତ୍ୟ ରସାସ୍ୱାଦୀ ପଣ୍ଡିତଗଣ ବୋଧହୁଏ ଏ ସବୁ କବିତା ଦେଖି ମନେ ମନେ ଭାବନା କରନ୍ତି ଯେ—

''ପୁରା ସରସୀ ମାନସେ ବହଳ ସାରସାଳୀ ସ୍ଖଳତ୍
ପରାଗସୁରଭିକୃତେ ପୟସି ଯେନ ନିତ୍ୟଂ ବୟଃ
ସପଲ୍ୱଳ ଜଳେଽଧୁନା ମିଳିତ ଲୋକ ଭେକାକୁଳେ
ମରାଳକୁଳନାୟକଃ କଥୟ ରେକଥଂ ବର୍ତ୍ତତାଂ ।''

ଭାବନାର ବିଷୟ । ମାତ୍ର ସମୟ ଯେ ଚାଲିଗଲା ବର୍ତ୍ତମାନ ପଦ୍ମ-ପରାଗ-ସୁରଭିତ ଜଳ ଯେ ଦୋଷଶୂନ୍ୟ ନୁହେଁ । ପଦ୍ମପତ୍ର ପଚା ଜଳ ଯେ ରୋଗର ଆକାର । ପଦ୍ମ ପୋଖରୀ ମନୁଷ୍ୟର ପ୍ରାଣନାଶକ ମ୍ୟାଲେରିୟା ମଶକର ବାସସ୍ଥଳ ହୋଇଅଛି । ବଙ୍ଗ ଭେକପୂର୍ଣ୍ଣ ସରୋବରର ଜଳ ଭଲ, କାରଣ ଭେକମାନେ ମଶକ ବଂଶର ଧ୍ୱଂସକର୍ତ୍ତା ବୋଇଲେ ଚଳେ । ଆଜିକାଲି ଜ୍ୱର ଶୁଣ୍ଠି, ଚିରାଇତା, ଗୁଳୁଚି ମୁଥା ପାଚନରେ ଛାଡ଼ିବାକୁ ନାହିଁ । ଏ କାଳରେ ଗୁଳୁଚି ଅମୃତ ନୁହେଁ—କୁଇନାଇନ୍ ହିଁ ଆମର ମହୌଷଧି ଏବଂ ଏ ଦେଶବାସୀଙ୍କ ପକ୍ଷରେ ଅମୃତ । ବୃଦ୍ଧବୃଦ୍ଧାମାନେ କୁଇନାଇନର ଯେପରି ବିଦ୍ୱେଷୀ, ଆଧୁନିକ ବାଳକ, ବାଳିକା, ଯୁବକ, ଯୁବତୀ ସେପରି ନୁହନ୍ତି । ଆଧୁନିକ କ୍ଷୁଦ୍ର କବିତା ଓ ଉପନ୍ୟାସ ଯାହା ପ୍ରବୀଣମାନଙ୍କର ବିଦ୍ୱେଷଭାଜନ ତାହା ଯୁବକ ଯୁବତୀଙ୍କ ପ୍ରତି ସ୍ପୃହଣୀୟ ହୋଇଆସୁଛି । ସମୟର ପୁନର୍ବାର ଗତିରୋଧ କରିବ କିଏ ? ଯେତେବେଳେ ପ୍ରଥମେ ମଧୁସୂଦନ ଦତ୍ତ ବଙ୍ଗ ଭାଷାରେ ଅମିତ୍ରାକ୍ଷରରେ କାବ୍ୟ ଲେଖିଲେ ସେତେବେଳେ ସାହିତ୍ୟିକମାନେ ଥଟ୍ଟା ବିଦ୍ରୂପ କରି ନ ଥିଲେ କି ? କେହି କି ମନେ କରିଥିଲେ ଯେ, ବଙ୍ଗ ଦେଶର ପ୍ରଧାନ ଛନ୍ଦ ହେବ ଅମିତ୍ରାକ୍ଷର ? ମଧୁସୂଦନ ଅଦମ୍ୟ ଚିତ୍ତରେ ଲେଖିଲେ, ''ରଚିବ ସୁମଧୁଚକ୍ର ଗୌଡ଼ଜନ ଯାହେ— ଆନନ୍ଦେ କରିବେ ପାନ ସୁଧା ନିରବଧି ।'' ଏହା ଅକ୍ଷରେ ଅକ୍ଷରେ ସତ୍ୟ ହୋଇଅଛି । ପରବର୍ତ୍ତୀ କବିମାନେ ତାହାର ପଦାନୁସରଣ କରି ଅସଂଖ୍ୟ କବିତା ଲେଖି ବଙ୍ଗଭାଷାର ମୁଖୋଜ୍ଜ୍ୱଳ କରିଅଛନ୍ତି ।

ରାଧାନାଥ ରାୟ ଅମିତ୍ରାକ୍ଷର ଛନ୍ଦରେ ଏ ଦେଶରେ ପ୍ରଥମେ 'ମହାଯାତ୍ରା' କାବ୍ୟ ଲେଖିଲେ । (୧) ସେତେବେଳେ ଇନ୍ଦ୍ରଧନୁ ବିଜୁଳିର ଯୁଦ୍ଧଧୂମରୁ ଉତ୍କଳର ସାହିତ୍ୟାକାଶ ନିର୍ମଳ ହୋଇ ନ ଥିଲା । ଏଣୁ କବିବରଙ୍କୁ ବହୁତ କଟୁ କଟାକ୍ଷପାତ ସହିବାକୁ ପଡ଼ିଥିଲା । (୨) ଏମନ୍ତ କି ସେତେବେଳେ ନବ୍ୟଶିକ୍ଷିତ ଦୈତ୍ୟାରୀ ଶଙ୍ଖୁଆ ମହାଯାତ୍ରା ଆକାରରେ ବିଦ୍ରୂପାତ୍ମକ ଅମିତ୍ରାକ୍ଷର କାବ୍ୟଟିଏ ଲେଖି ପକାଇଥିଲେ । (୩) ଅଦ୍ୟାପି ମୋର ଗୋଟିଏ ପଦ ମନେଅଛି 'ନିଆଁ ତନ୍ତୁ ଡିଆଁ ମାରି ବୋଇଲେ ହେ କିଆଁ'। ଶଙ୍ଖୁଆଙ୍କର ଲେଖିବା କ୍ଷମତା ଥିଲା ସେ ଯେବେ ବିଦ୍ରୂପାତ୍ମକ କାବ୍ୟ ନ ଲେଖି ରାଧାନାଥଙ୍କ ଧରଣରେ ଖଣ୍ଡିଏ ସତ୍‌କାବ୍ୟ ଲେଖିଥାନ୍ତେ ତାଙ୍କର ନାମ ଅଦ୍ୟାପି ସ୍ମରଣୀୟ ହୋଇଥାନ୍ତା । କ୍ଷମତାର ଅପବ୍ୟବହାର ହେତୁ ବିଦ୍ରୂପାତ୍ମକ କାବ୍ୟର ନାମ ଗନ୍ଧ ନାହିଁ । ଏବେ ଓଡ଼ିଶାରେ ଅମିତ୍ରାକ୍ଷର ରାଜତ୍ୱ କରୁଅଛି ।

ଧାରାବାହିକ ରୂପେ ବୋଧହୁଏ ପ୍ରଥମେ ବାବୁ ନନ୍ଦକିଶୋର ବଳ କ୍ଷୁଦ୍ରକବିତା ଲେଖିବାକୁ ଆରମ୍ଭ କଲେ । ସେତେବେଳେ 'ଆଲୋଚନା' ପତ୍ରିକା ନିମନ୍ତେ ତାଙ୍କ ସୌଜନ୍ୟରୁ ମୁଁ ଅନେକଗୁଡ଼ିଏ କବିତା ପାଇ ଉପକୃତ ହୋଇଥିଲି । ତା'ପରେ ଅନେକେ କ୍ଷୁଦ୍ରକବିତା ଲେଖିବାକୁ ଆରମ୍ଭ କଲେ । ତିନି ଦଶକ ଉତ୍ତାରୁ ଭାବଧାରାର ପରିବର୍ତ୍ତନ, ଛନ୍ଦବନ୍ଧର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ଏଣୁ ସବୁଜ ସାହିତ୍ୟର ଲେଖାର, ଛଟାର, ଭାବର, ଧରଣର ପରିବର୍ତ୍ତନ ଅଭୂତପୂର୍ବ, ତାହା ଅଗ୍ରଗତିର ପରିଚାୟକ । ସାହିତ୍ୟ କ୍ଷେତ୍ରରେ ଏପରି ପରିବର୍ତ୍ତନ ଘଟିଥାଏ । ଉତ୍କଳରେ ଏହା ନୂଆ, ମାତ୍ର ସଭ୍ୟ ଜଗତରେ ଅନ୍ୟତ୍ର ଏହା ନୂଆ ନୁହେଁ । ଅନ୍ୟ କଥା ଛାଡ଼, ଯେଉଁମାନେ Strand Magazine ପଢ଼ନ୍ତି, ସେହି ପତ୍ରିକାର ତିରିଶ ବର୍ଷ ମଧ୍ୟରେ କି ଲେଖା ଧାରା କି ସମ୍ପାଦନ ଧାରାର କି ପରିବର୍ତ୍ତନ ହୋଇଅଛି, ତାହା ସେମାନେ ବୁଝି ପାରୁଥିବେ ।

ଏ ଯୁଗରେ ମୁଦ୍ରାଯନ୍ତ୍ର ସୁଲଭ । ଆଇନ୍ ବିରୋଧ ଏବଂ ଗଭର୍ଣ୍ଣମେଣ୍ଟଙ୍କ ବିରୋଧ ନ ହେଲେ ଯେ କୌଣସି ପୁସ୍ତକର ମୁଦ୍ରଣ କେହି ବନ୍ଦ କରିପାରିବେ ନାହିଁ । ପୁଣି ଏ ଯୁଗରେ ଯେ ସ୍ୱଦଳ ପୁଷ୍ଟ କରିପାରିଲା, ସେ ଜୟୀ । ଏପରି ସ୍ଥଳେ ସାମାନ୍ୟ ବିଷୟ ଘେନି ବିଦ୍ୱେଷ-ବହ୍ନି ଜ୍ୱାଳିବା କଦାପି ଉଚିତ ନୁହେଁ । ଦେଶର ହିତୈଷୀମାନେ ସଂଘବଦ୍ଧ ହୋଇ କାର୍ଯ୍ୟ କରିବା ଉଚିତ୍ । ଯୁବକ ଦଳକୁ ତର୍ଜନୀ ନ ଦେଖାଇ ସେମାନଙ୍କର ପଶ୍ଚାତ୍‌ରେ ରହି ଉପଦେଶ, ଅନୁରୋଧ ଦ୍ୱାରା ବାଟ ଦେଖାଇବା ଉଚିତ ।

କ୍ଷମତାଶୂନ୍ୟ ବ୍ୟକ୍ତିର ଅତ୍ୟୁଚ୍ଚ ଚିତ୍କାରରେ ମଧ୍ୟ କେହି କର୍ଣ୍ଣପାତ କରନ୍ତି ନାହିଁ । ଯେଉଁମାନେ ନେତା ବା ଉପଦେଷ୍ଟା ହେବାକୁ ଇଚ୍ଛା କରନ୍ତି ସେମାନଙ୍କର ଆତ୍ମତ୍ୟାଗ, ଆତ୍ମସମ୍ମାନ ଓ ରଞ୍ଜକ ଗୁଣ ଥିବା ଆବଶ୍ୟକ । ଆକର୍ଷଣ ଶକ୍ତି ଥିବା ଉଚିତ; ନୋହିଲେ ଲୋକେ ଆକୃଷ୍ଟ ହେବେ କାହିଁକି ?

ମନୁଷ୍ୟ ସ୍ୱଭାବତଃ ଅନୁକରଣପ୍ରିୟ । ଅନୁକରଣଯୋଗ୍ୟ ଉଦାହରଣ ଦେଖିଲେ ଯୁବକମାନେ ସ୍ୱଭାବତଃ ଆକୃଷ୍ଟ ହୋଇପଡ଼ନ୍ତି । ଉଦାହରଣସ୍ୱରୂପ ଉଲ୍ଲେଖ କରାଯାଇପାରେ ଯେ, ଯେତେବେଳେ ଏ ଦେଶରେ ନୂତନ ଛାଞ୍ଚର କାବ୍ୟ ଓ କବିତାର ପ୍ରଚାର ନ ଥିଲା, ସେତେବେଳେ ଯୁବକମାନେ କେଉଁ ଧରଣରେ ଲେଖିବେ ବା ରଚନା କରିବେ ତାହା ଭାବିପାରୁ ନ ଥିଲେ । ରାଧାନାଥବାବୁଙ୍କର ଖଣ୍ଡ କେତେ କାବ୍ୟ ଓ କବିତାବଳୀ ପ୍ରକାଶିତ ହେଲାରୁ ଯୁବକ ଦଳକୁ ଗୋଟାଏ ବାଟ ଦିଶିଲା । କବିତାର ସ୍ରୋତ ଚାଲିଲା । ଗତିରୋଧ କରେ କିଏ ? ସେହି ତାଙ୍କରି ଲେଖାର ଭଙ୍ଗୀ, ତାଙ୍କର ଧରଣ, ସେହି ଉଷା ଓ ପ୍ରଦୋଷ ବର୍ଣ୍ଣନା । ତାଙ୍କର ନିର୍ବାଚିତ ଛନ୍ଦ ବଙ୍ଗଳାଶ୍ରୀ, କେଦାର, ନଟବାଣୀ । ଏତିକି ନୁହେଁ ରାଧାନାଥବାବୁ ଥିଲେ ଅନେକ କବିତାର ସଂଶୋଧକ, ସମାଲୋଚକ ଏବଂ ସାର୍ଟିଫିକେଟ୍ ଦାତା । ତାଙ୍କର ଅବସର ଥାଉ କି ନ ଥାଉ, ଏଥିପ୍ରତି କାହାରି ଦୃଷ୍ଟି ନାହିଁ । ତାଙ୍କର ମଧ ନବୋଦ୍ୟମୀ କବିମାନଙ୍କର ମନ ଭୁଲାଇବାକୁ କାମ ତୁଲାଇବାକୁ ଆଳସ୍ୟ ନ ଥିଲା । ରାଧାନାଥବାବୁଙ୍କଠାରେ ଏହି ରଞ୍ଜକ ଗୁଣ ଥିବାହେତୁ ସେ ଲୋକପ୍ରିୟ ହୋଇପାରିଥିଲେ ଏବଂ ତାଙ୍କ ପାଇଁ ଉତ୍କଳରେ ଅନେକ କବିଙ୍କର ଆବିର୍ଭାବ ଦେଖାଯାଏ । ତାଙ୍କ ଛଟା କବିତା ଲେଖିବାକୁ ଅଦ୍ୟାପି ଅନେକ କବି ଅଛନ୍ତି ।

କାଳ ରୁଚିର ପରିବର୍ତ୍ତନ କରେ । ବର୍ତ୍ତମାନ ଉପନ୍ୟାସ ଏବଂ ଭାବପ୍ରଧାନ ଓ ରସପ୍ରଧାନ କ୍ଷୁଦ୍ର କବିତାର ଯୁଗ ଆସିଛି । ଏ ଯୁଗରେ ସମୟର ମୂଲ୍ୟ ବଡ଼ ଅଧିକ । ଗୋଟିଏ ପ୍ରେମ କାହାଣୀ ପଢ଼ିବାକୁ ଖଣ୍ଡେ ବଡ଼ କାବ୍ୟ ? ସେହି ପ୍ରେମ କାହାଣୀ ଶୁଣିବାକୁ ତିନି ଶତ ପୃଷ୍ଠାର ଉପନ୍ୟାସ ? ଅସମ୍ଭବ । କବିତା ହେଲେ ଦଶ ପଦ— ଉପନ୍ୟାସ ହେଲେ ତିନିପୃଷ୍ଠା । ଏତିକି ଯଥେଷ୍ଟ । ଏଣୁ କ୍ଷୁଦ୍ର ଉପନ୍ୟାସ ଏବଂ ଭାବପ୍ରଧାନ କବିତାର ଆବିର୍ଭାବ ହୋଇଅଛି । ଉଚ୍ଚ ଧରଣର ପାଶ୍ଚାତ୍ୟ ଦେଶର ମାସିକ-ପତ୍ରମାନେ 'କ୍ରମଶଃ' ରୀତିକୁ ବିସର୍ଜନ ଦେଲେଣି । ଆମ ଦେଶର ଲେଖକମାନେ ସେ ପଥର ପଥିକ ହେବେ, ଆଶ୍ଚର୍ଯ୍ୟ କ'ଣ ? ଏ ରୀତି ଅବଲମ୍ବନ କରିବାରେ ଜଣଙ୍କର ବା କୌଣସି ସମିତିର ବା ସମାଜର ଦୋଷ ନାହିଁ । ଏହା ଏ ଯୁଗର ସଭ୍ୟତାର ରୀତି, ଧରଣ ।

ଆଧୁନିକ ଉତ୍କଳର ନବ୍ୟ ଶିକ୍ଷିତଙ୍କର ଲେଖାକୁ ଅନେକେ ବଙ୍ଗଭାଷା-ପ୍ରଭାବିତ ବୋଲି ହେୟ କରନ୍ତି । ହେୟ ନୁହେଁ । ସମସ୍ତ ପାଶ୍ଚାତ୍ୟ ଶିକ୍ଷାର ଓ ପାଶ୍ଚାତ୍ୟ ଗ୍ରନ୍ଥର ପ୍ରଭାବ । ବଙ୍ଗ ଯେଉଁ ପଥର ପଥିକ ଉତ୍କଳ ସେହି ପଥର ପଥିକ—ଆଗପଛ ହୋଇପାରେ । ଇଉରୋପର ପ୍ରତ୍ୟେକ ଦେଶର ପୁସ୍ତକ ଶିକ୍ଷିତଙ୍କ ହାତରେ ପଡୁଅଛି । ଏ ବର୍ଷ ଜଣେ ରୁଷିଆ ଦେଶର ଔପନ୍ୟାସିକ ନୋବେଲ୍ ପ୍ରାଇଜ୍ ପାଇଅଛନ୍ତି । ଏ ବର୍ଷ ଶେଷ ନ ହେଉଣୁ ତାଙ୍କର ପୁସ୍ତକର ଅନୁବାଦ ଶିକ୍ଷିତଙ୍କ ହାତରେ ପଡ଼ିବ । ସେ ପୁସ୍ତକର ଛଟା, ଭାବ, ହୃଦୟଗ୍ରାହୀ ଓ ଅନୁକରଣଯୋଗ୍ୟ ହେଲେ ସାହିତ୍ୟିକ ନିଜ ସାହିତ୍ୟ ଓ ଭାଷାକୁ ଉନ୍ନତ କରିବାକୁ, ପୁଷ୍ଟ କରିବାକୁ ସେ ଭାବଭଙ୍ଗୀର ଅନୁକରଣ କରିବ, ଏଥିରେ ସନ୍ଦେହ କ'ଣ ? ଏହା ଉନ୍ନତିର, ପ୍ରଗତିର ପନ୍ଥା ଓ ପରିଚାୟକ ।

ଯେଉଁ ଶବ୍ଦ ଆପଣା ଭାଷାରେ ନାହିଁ ତାହା ଅନ୍ୟ ଭାଷାରୁ ଆଣିବା ଦୋଷାବହ ନୁହେଁ । ଅନ୍ୟ ଭାଷାର ପାରିଭାଷିକ ଶବ୍ଦକୁ ଆପଣା ଭାଷାରେ କଟମଟିଆ ଅଶ୍ରାବ୍ୟ ଅବୋଧ ଅନୁବାଦ କରିବାର କିଛି ହିଁ ଲାଭ ନାହିଁ । ଅକ୍ସିଜେନକୁ ଅମ୍ଳଜାନ ଲେଖିବାର ମୁଁ ପକ୍ଷପାତୀ ନୁହେଁ, ଯେହେତୁ ଉଭୟ ଶବ୍ଦ ବିନା ବ୍ୟାଖ୍ୟାରେ ବୋଧଗମ୍ୟ ନୁହନ୍ତି । ଦେଖିବାକୁ ମିଳେ, ବଙ୍ଗ ଦେଶର କେତେ ଜଣ ବଡ଼ ଲେଖକ, ଏ ଦେଶର ମଧ ଜଣେ ଦୁଇ ଜଣ ଲେଖକ ନିଜ ଦ୍ୱାରା ବ୍ୟବହୃତ ଶବ୍ଦକୁ ପାଠକର ହୃଦୟଙ୍ଗମ କରାଇବାକୁ ବା ପାଠକକୁ ବୁଝାଇବାକୁ ବନ୍ଧନୀ ମଧରେ ତାର ଇଂରାଜୀ ପ୍ରତିଶବ୍ଦ ଲେଖନ୍ତି । ଏ ରୀତି କାହିଁକି ? ଲେଖକଙ୍କର ନିଶ୍ଚୟ ଧାରଣା ଥିବ ଯେ ଓଡ଼ିଆ ଶବ୍ଦ ଦ୍ୱାରା ଅର୍ଥ ଓ ଭାବ ଠିକ୍ ଇଂରାଜୀ ଶବ୍ଦପରି ବ୍ୟକ୍ତ ହୋଇ ନ ପାରେ । ଏହା ଭିନ୍ନ ଅନ୍ୟ କ'ଣ ହୋଇପାରେ ? ଏହି ବିବେଚନାରେ କେହି ଯେବେ ଗୋଟାଏ ଯୋଡ଼ାଏ ଶବ୍ଦ ଅନ୍ୟ ଭାଷାରୁ ଆଣି ସ୍ୱରଚିତ ପୁସ୍ତକାଦିରେ ବ୍ୟବହାର କରିଥାଏ, ସେଥିନିମନ୍ତେ ଲେଖକଙ୍କୁ ଘୃଣା କରିବା ଉଚିତ ନୁହେଁ । ଏହା ଲେଖକର ସଦିଚ୍ଛା ହୋଇପାରେ, ଦୁଷ୍ଟାମି ନୁହେଁ ଏବଂ ଏତଦ୍ୱାରା ଓଡ଼ିଆ ଭାଷା ନାରଖାର ହେବ ବୋଲି ଭାବିବା ଦୁର୍ବଳତାର ପରିଚାୟକ । ଓଡ଼ିଆ ଭାଷା ଏତେ ହୀନବୀର୍ଯ୍ୟ ନୁହେଁ ଯେ, ତାକୁ ଅନ୍ୟ ଭାଷା ନାଶ କରି ପାରିବ । ବଙ୍ଗାଳୀମାନଙ୍କର ବୋଧହୁଏ ସେପରି ଅସଦିଚ୍ଛା କେଭେ ନ ଥିଲା । ତାହାଥିଲେ ଆମ୍ଭେମାନେ ଭାଷାରେ ଅନେକ ପରିବର୍ତ୍ତନ ଦେଖି ପାରନ୍ତେ । ଆଧୁନିକ ଓଡ଼ିଆ ଭାଷା ଶୈଶବାବସ୍ଥାରେ ଯେତେବେଳେ ବଙ୍ଗ ଭାଷାର ଅନୂଦିତ ପୁସ୍ତକର ମୁଖାପେକ୍ଷୀ ହୋଇଥିଲା, ସେତେବେଳେ ଯେବେ ବଙ୍ଗାଳୀମାନେ ଓଡ଼ିଆକୁ ନଷ୍ଟ କରିବାକୁ ଚେଷ୍ଟା କରି ନାହାନ୍ତି ଓ କରିପାରି ନାହାନ୍ତି, ଆଜି ସେ ଚେଷ୍ଟା କରିବେ କାହିଁକି ବା

ଚେଷ୍ଟା କଲେ ମଧ ସେମାନେ କୃତକାର୍ଯ୍ୟତାର ଆଶା କରିବେ କାହିଁକି ? ଏ ଧାରଣା ସମ୍ପୂର୍ଣ୍ଣ ଭ୍ରାନ୍ତିପୂର୍ଣ୍ଣ ।

ଅନ୍ୟ ଦେଶବାସୀ ଓଡ଼ିଆ ପୁସ୍ତକ ଲେଖିଲେ ଓଡ଼ିଶାର କ୍ଷତି କି ଲାଭ ? ଲାଭ । ତାଦୃଶ ଲେଖକଙ୍କୁ ପ୍ରଶ୍ରୟ ଦେବା ଉଚିତ । ସେମାନଙ୍କ ଲେଖାରେ ନିଜ ଭାଷାର ଅର୍ଥ ବା ପ୍ରାଦେଶିକ ଶବ୍ଦ ଗୋଟାଏ ଯୋଡ଼ାଏ ରହିବା ଅସମ୍ଭବ ନୁହେଁ । ଏଥିନିମନ୍ତେ ସେମାନଙ୍କୁ ଘୃଣା ନ କରି ଧିକ୍‌କାର ନ ଦେଇ ବରଂ ସେମାନଙ୍କର ଉତ୍ସାହ ବର୍ଦ୍ଧନ କରିବା ଉଚିତ । ଲୋକସଂଖ୍ୟା ଓ ପାଠକସଂଖ୍ୟା ବୃଦ୍ଧିର ନାମାନ୍ତର ସାହିତ୍ୟର ଉନ୍ନତି । କେବଳ ଲେଖାଟା ଦେଶହିତକର ଓ ମାର୍ଜିତ ରୁଚିର ହେବା ଉଚିତ ।

ଆଜିକାଲି ନାଟକ ଓ ଉପନ୍ୟାସର ଯୁଗ । ଏ ହେତୁରୁ ଉପନ୍ୟାସ ବିଶେଷତଃ ସାମାଜିକ ଉପନ୍ୟାସ ଲେଖାର ଉନ୍ନତି ମାର୍ଗରେ ପାଠକମାନଙ୍କୁ ଟାଣିବା ସମସ୍ତ ଲେଖକଙ୍କର ଇଚ୍ଛା । ଆମ ଦେଶରେ ଏ ଚେଷ୍ଟା ଲାଗିଛି । ପ୍ରାୟ ପ୍ରତ୍ୟେକ ଛାପାଖାନାରୁ ଖଣ୍ଡେ ଖଣ୍ଡେ ଭଲ ଉପନ୍ୟାସ ବାହାରୁଅଛି । ସବୁଜ ସାହିତ୍ୟ ସମାଜର ଆବିର୍ଭାବ ବୋଧହୁଏ ପ୍ରଧାନତଃ ଏହି ଉଦ୍ଦେଶ୍ୟରେ । ମାତ୍ର କି ହେତୁରୁ କେଜାଣି ସମିତି ପ୍ରତି ଅନେକଙ୍କର ବିଷ ଦୃଷ୍ଟି । ଅନେକଙ୍କୁ ସବୁଜ ଶବ୍ଦଟା କର୍ଣ୍ଣପ୍ରିୟ ଓ ମୁଖରୋଚକ ନୁହେଁ । ଅନେକେ ଭାବନ୍ତି, ଏହା ବଙ୍ଗଳା ଶବ୍ଦ । ମାତ୍ର ସବୁଜ ବଙ୍ଗ ନୁହେଁ, ପାରସିକ ଶବ୍ଦ— ଅତି କୋମଳ ମଧୁର ଶ୍ରୁତିପ୍ରିୟ । ବର୍ଣ୍ଣଟା ନେତ୍ର ପ୍ରୀତିକର । ବର୍ଣ୍ଣମାନଙ୍କ ମଧ୍ୟରେ ସବୁଜ ରାଜା । ସବୁଜ ଶବ୍ଦ ଯେ ଓଡ଼ିଆ ସାହିତ୍ୟକୁ ଆଜିଯାଏ ଆସି ନ ଥିଲା, ଏହା ଅନୁତାପର କଥା । କବିସୂର୍ଯ୍ୟ ଏତେଗୁଡ଼ିଏ ପାରସିକ ଶବ୍ଦ ତାଙ୍କର ଗୀତରେ ବ୍ୟବହାର କଲେ ସେଥିନିମନ୍ତେ କେହି ଉଚ୍ଚବାଚ କରି ନାହାନ୍ତି । ବିଂଶ ଶତାବ୍ଦୀର ଚତୁର୍ଥ ଦଶକରେ ନବ୍ୟ ଶିକ୍ଷିତଙ୍କଦ୍ୱାରା ସବୁଜ ତୁଲ୍ୟ ଅମୂଲ୍ୟ ଶବ୍ଦ ଓଡ଼ିଆ ସାହିତ୍ୟିକୁ ପ୍ରବେଶ ଲାଭ କଲା ବୋଲି ଆକ୍ଷେପ କରିବା ଦୁଃଖର ବିଷୟ ନୁହେଁ କି ? କଟକରୁ ଫେରି ସବୁଜ ସାହିତ୍ୟ ସମିତି ଦ୍ୱାରା ପ୍ରଚାରିତ ଓ ଉପହୃତ ଅନେକଗୁଡ଼ିଏ ପୁସ୍ତକ ପାଠ କଲି । ମୁକ୍ତିପଥେ, ମୁକ୍ତାଗଡ଼ର କ୍ଷୁଧା, ଅମରଚିତା, ସୌମ୍ୟା, ବାସନ୍ତୀ, ଧାମରା ପ୍ରଭୃତିର ମୁଦ୍ରଣ ଯେକୌଣସି ସାହିତ୍ୟର ଗୌରବ ବୋଲି ବିବେଚିତ ହୋଇପାରେ । ବାସନ୍ତୀ ନଅ ଜଣ ଲେଖକ ଲେଖିକାଙ୍କ ଦ୍ୱାରା ରଚିତ । ନଅ ଜଣଙ୍କ ଦ୍ୱାରା ଗୋଟିଏ ଉପନ୍ୟାସର ବିଷୟ ଓ ଭାଷାର ସମନ୍ୱୟ ଓ ସାମ୍ୟରକ୍ଷା କମ୍ ବାହାଦୁରି ନୁହେଁ । ଏହା ଗୋଟିଏ ନୂତନ ଉପନ୍ୟାସ ।

ଏଣୁ ତେଣୁ ଚାରିକଥା ଲେଖିଲି । ଏହା ପାଠକରି କେତେକଙ୍କ ମନ ସରସ କେତେକଙ୍କ ମନ ବିରସ ହେବାର କଥା । କାହାରି ମନରେ ଦୁଃଖ ଦେବା ମୋର ଉଦ୍ଦେଶ୍ୟ ନୁହେଁ । କେବଳ ସାହିତ୍ୟ ସମାଜ ଉପରେ ମୋର ଅଭିଯୋଗ । ସାହିତ୍ୟ ସମାଜ ଅଛି— ଜୀବିତ ଅଛି; ମାତ୍ର ଯାହା କର୍ତ୍ତବ୍ୟ, ତାହା କରୁ ନାହିଁ । ବଙ୍ଗଦେଶର ବିଭିନ୍ନ ସାହିତ୍ୟ ପରିଷଦମାନଙ୍କର କାର୍ଯ୍ୟଧାରା ଦେଖିଲେ ଏବଂ ଆମ ସାହିତ୍ୟ ସହିତ ସେମାନଙ୍କୁ ତୁଳନା କଲେ ଲଜ୍ଜିତ ହେବାକୁ ହୁଏ । ମନୋମାଳିନ୍ୟ ହିଁ ଏଥିର ମୂଳ । କୌଣସି ଦେଶରେ କୌଣସି କାଳରେ ସଂଘ ବ୍ୟତିରେକେ କୌଣସି କାର୍ଯ୍ୟ ସୁସିଦ୍ଧ ହୁଏ ନାହିଁ । ସାହିତ୍ୟ କ୍ଷେତ୍ରରେ ମଧ ଯେବେ 'ବାର ଓଡ଼ିଆ ତେର ଚୂହ୍ଲୀ' ପଦ୍ଧତି ବର୍ଜନ କରିବା, ତେବେ ଏ ଯୁଗରେ ଏ ଜାତିର ସରମ ଥୋଇବାର ସ୍ଥାନ କାହିଁ । ମୁଁ ଆଶା କରେଁ ଓ ଅନୁରୋଧ କରେଁ, କର୍ତ୍ତାମାନେ କାର୍ଯ୍ୟତତ୍‌ପର ହୋଇ ସମାଜର ମୁଖୋଜ୍ଜ୍ୱଳ କରିବେ ।

ଗୋଟିଏ କଥା ଅଛି କବିତା, ବନିତା ଓ ଲତା ବିନା ଆଶ୍ରୟରେ ବଢ଼ିପାରନ୍ତି ନାହିଁ । ଏହି ଉପଦେଶ ଗ୍ରହଣ କରି ହିନ୍ଦୁଧର୍ମର ପୁନରୁତ୍‌ଥାନ ଯୁଗରେ କବିମାନେ ଆତ୍ମବିକ୍ରୟ କରିବାକୁ ଲଜ୍ଜାବୋଧ କଲେ ନାହିଁ । ରାଜାମାନଙ୍କର ବିନୋଦ ନିମନ୍ତେ ଅଶ୍ଳୀଳ କାବ୍ୟ ନାଟକର ଉତ୍ସ ଫିଟାଇଲେ । ଏଥିର ଉଦାହରଣ ବିରଳ ନୁହେଁ । କି ସାହିତ୍ୟିକ, କି ରାଜନୈତିକ, କି ସାମାଜିକ ଅବନତିର ମୂଳ କାରଣ ବିଦ୍ୱାନ ଓ ସାହିତ୍ୟିକମାନଙ୍କର ଆତ୍ମବିକ୍ରୟ । ଅଦ୍ୟାପି ଏ ରୀତି ତିରୋହିତ ହୋଇ ନାହିଁ । ସେ ଯୁଗରେ ମୁଦ୍ରାଯନ୍ତ୍ର ନ ଥିଲା ବା ପତ୍ରିକା ସମ୍ପାଦନ ହେଉ ନ ଥିଲା । ବର୍ତ୍ତମାନ ସମସ୍ତେ ପତ୍ରିକାର ମୁଖାପେକ୍ଷୀ । ସର୍ବସାଧାରଣ ଶିକ୍ଷିତମାନେ ପତ୍ରିକା ପାଠ ଦ୍ୱାରା ନିଜ ନିଜ ମତ ଗଠନ କରନ୍ତି । ଏଣୁ ସମ୍ପାଦକମାନେ ନିଷ୍ପକ୍ଷପାତ ନୋହିଲେ ଦେଶର ସମୂହ ଅନିଷ୍ଟ । ସମ୍ପାଦକମାନଙ୍କର ଆତ୍ମବିକ୍ରୟ ଦ୍ୱାରା ସର୍ବସାଧାରଣର ଆତ୍ମହତ୍ୟା ଭାବିବାକୁ ହେବ । ସମ୍ବାଦପତ୍ର ଓ ମାସିକପତ୍ର ଜନଶିକ୍ଷାର ପ୍ରଶସ୍ତ ପନ୍ଥା । ସମ୍ପାଦକମାନେ ଜଟିଳ କୁଟିଳ ହେଲେ ପନ୍ଥା ଭଲ ଭାବରେ ଦୃଶ୍ୟ ହେବ ନାହିଁ— ସମସ୍ତେ ଭ୍ରାନ୍ତ ହେବେ । ଯେଉଁମାନେ ଏତାଦୃଶ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟଭାର ମୁଣ୍ଡରେ ଗ୍ରହଣ କରିଅଛନ୍ତି,

ସେମାନଙ୍କର ଦାୟିତ୍ୱ ସେମାନେ ଆମ ଅପେକ୍ଷା ବେଶି ଜାଣନ୍ତି ଓ ବୁଝନ୍ତି । ତଥାପି ଜଣେ ଜଣେ ଆଗକୁହା ଥାଆନ୍ତି ଏବଂ ସମୟ ସମୟରେ ଆଗକୁହାଙ୍କ ଭିତରେ ସାମିଲ କରାଯାଉ, ମୋର ସେଥିରେ ଦୁଃଖ ନାହିଁ । କେବଳ ଉପସଂହାରରେ ନିତାନ୍ତ କେତେଟା କଥା ଦୟାପୂର୍ବକ ଘେନା ହେଉ:—

ସାହିତ୍ୟ ସମାଜର ମହତ୍ତ୍ୱ ଓ କର୍ତ୍ତୃତ୍ୱ ବୃଦ୍ଧି ମାନସରେ କାର୍ଯ୍ୟନିର୍ବାହକଗଣ ବଦ୍ଧପରିକର ହେଉନ୍ତୁ; ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ସାହିତ୍ୟ ସମିତି ସହିତ ସଂସ୍ରବ ରକ୍ଷା କରନ୍ତୁ ।

କୌଣସି ସାହିତ୍ୟିକ ସମିତି ବା ଦଳ ସମାଜର ବିପକ୍ଷ ବୋଲି ବିବେଚିତ ହେବା ଉଚିତ୍ ନୁହେଁ । ସମାଜ ଗୃହ ସମସ୍ତଙ୍କର ମିଳନ ସ୍ଥଳ ହେଉ ଏବଂ ତର୍କ ବିତର୍କ ଓ ଭାବବିନିମୟ ଦ୍ୱାରା ସମସ୍ତଙ୍କ ମନରେ ଭ୍ରାନ୍ତି ଦୂର ହେଉ ।

ପ୍ରାଚୀନ ପୁସ୍ତକ ମୁଦ୍ରଣ ଭିନ୍ନ ଆଧୁନିକ ଲେଖାରେ ଯେପରି ଅଶ୍ଳୀଳ ଓ କଦର୍ଯ୍ୟ ଭାବର ପ୍ରଶ୍ରୟ ଦିଆ ନ ଯାଉ ।

ଆତ୍ମପ୍ରତ୍ୟୟ ଯୁବକମାନଙ୍କର ପଥପ୍ରଦର୍ଶକ ହେଉ । ସାହିତ୍ୟିକମାନଙ୍କର ଚରମ ଉଦ୍ଦେଶ୍ୟ ରହୁ—ଦେଶର ଅନିଷ୍ଟମୂଳକ ଯାବତୀୟ କୁସଂସ୍କାର (ଧର୍ମ ସମ୍ବନ୍ଧୀୟ ଓ ସାମାଜିକ)ର ଉଚ୍ଛେଦ ସାଧନ କରିବାକୁ ।

(୧) ମହାଯାତ୍ରା ପ୍ରଥମ ଅମିତ୍ରାକ୍ଷର କାବ୍ୟ ନୁହେଁ । ରୁଦ୍ରନାରାୟଣ ପଟ୍ଟନାୟକଙ୍କ 'ଅଙ୍ଗଦ-ବିଜୟ' (୧୮୭୯ ଜୁନ୍ ୧୨ତାରିଖରେ ପ୍ରକାଶିତ) ଓଡ଼ିଆରେ ପ୍ରଥମ ଅମିତ୍ରାକ୍ଷର ଛନ୍ଦ ସମ୍ବଳିତ କାବ୍ୟ ।

(୨) ଉତ୍କଳପ୍ରଭାରେ 'ମହାଯାତ୍ରାର' ପ୍ରକାଶ ସମୟ ୧୮୯୨; କିନ୍ତୁ ଇନ୍ଦ୍ରଧନୁ—ବିଜୁଳିର ପ୍ରକାଶ ସମୟ ୧୮୯୩ ସାଲ ଅଗଷ୍ଟ-ସେପ୍ଟେମ୍ବର ।

(୩) ଏହି ବିଦ୍ରୂପାତ୍ମକ କାବ୍ୟର ନାମ 'ସମାଲୋଚନା' ଓ 'ସାରଳା ଦାସ' ଛଦ୍ମନାମଧାରୀ କୌଣସି ଅଜ୍ଞାତ ବ୍ୟକ୍ତି ଏହାର ଲେଖକ ।

●

## ଭୂମିକମ୍ପ

ଗତ ଜାନୁୟାରୀ ୧୫ ତାରିଖରେ ଭାରତବର୍ଷରେ ଯେ ସହସା ଗୋଟିଏ ଲୋମହର୍ଷଣ କାଣ୍ଡ ଘଟିଲା, ତାହା ଭାବିଲେ ବିସ୍ମୟାନ୍ୱିତ ହେବାକୁ ହୁଏ । ବସନ୍ତ, କଲେରା, ପ୍ଲେଗ୍, ଜଳପ୍ଲାବନ, ଦୁର୍ଭିକ୍ଷକୁ ଏ ଦେଶବାସୀ ସେମାନଙ୍କର ଭାଗ୍ୟଲିପି ବୋଲି ସହିଗଲେଣି । ଭୂମିକମ୍ପ ତା' ଉପରେ ପୁଣି ନୂତନ ଏକ ବିପଦ । ଭୂମିକମ୍ପର ଧ୍ୱଂସଲୀଳା ଭାରତବାସୀଙ୍କ ଜଣା ନ ଥିଲା ବୋଇଲେ ଚଳେ । ଏହି ଭୂମିକମ୍ପ ପାଞ୍ଚ ମିନିଟ ମଧ୍ୟରେ ବିହାର ପ୍ରଦେଶକୁ ଛାରଖାର କରିଦେଲା । ଏହି ଧନ ଓ ଜନକ୍ଷୟକରୀ ଉତ୍ପାତ ଏ ଦେଶରେ ପୂର୍ବେ ଘଟି ନ ଥିଲା ବା ବର୍ତ୍ତମାନ କୌଣସି ଜୀବିତ ବ୍ୟକ୍ତି ଏପରି କାଣ୍ଡ ଦେଖି ନ ଥିଲେ କିମ୍ବା କୌଣସି ଲେଖକ ଏପରି ଘଟଣା ଲିପିବଦ୍ଧ କରିଯାଇ ନାହାନ୍ତି ।

ଫୁଲଉଆରି ମସ୍‌ଜିଦ୍‌ର ଡାଏରିରେ ୧୦୦ ବର୍ଷ ପୂର୍ବେ ଗୋଟାଏ ବଡ଼ ଭୂମିକମ୍ପ ହୋଇଥିବାର ଉଲ୍ଲେଖ ଅଛି ଏବଂ ବିହାର ପ୍ରଦେଶର ନୀଳକର ବିଷୟକ ଇଂରାଜମାନଙ୍କର ଲେଖାରୁ ମଧ ଜଣାଯାଏ ଯେ, ୧୦୦ ବର୍ଷ ପୂର୍ବେ ଗୋଟାଏ ବଡ଼ ଭୂମିକମ୍ପ ହୋଇଥିଲା । ମାତ୍ର ସେହି ଭୂମିକମ୍ପର ବିଶଦ ବିବରଣୀ ଲେଖା ନ ଥିବାରୁ ବର୍ତ୍ତମାନର ଭୂମିକମ୍ପର କ୍ଷତି ସହିତ ତୁଳନା କରିବାର ସୁବିଧା ନାହିଁ । ଏ କ୍ଷତି ଭାରତବାସୀ ବିଶେଷତଃ ବିହାରବାସୀଙ୍କ ହୃଦୟରେ ବିଷମ ଆତଙ୍କ ଉପସ୍ଥିତ କରାଇଅଛି । ଏ କ୍ଷତିପୂରଣ ହେବାକୁ ବହୁ ବିଳମ୍ବ ଘଟିବ ଏବଂ ଏ କ୍ଷତି ଠିକ୍‌ରୂପେ ପୂରଣ ହୋଇପାରିବ କି ନା, କିଏ କହିପାରେ ? ତା' ଛଡ଼ା ଭବିଷ୍ୟତରେ ଏପରି କ୍ଷତି ପୁଣି ଘଟିବ କି ନା, ସେଥିନିମନ୍ତେ ମଧ ଲୋକଙ୍କୁ ଚିନ୍ତା କରିବାକୁ ପଡ଼ିବ । ଏ ଘଟଣା ଭାରତବାସୀଙ୍କର ଦୁର୍ଦ୍ଦଶା ଉପରେ ଦୁର୍ଦ୍ଦଶା । ମାତ୍ର ଏହା ଭାବି ଶାନ୍ତି ଲାଭ କରିବାକୁ ଚେଷ୍ଟା କରିବା ଉଚିତ୍ ଯେ, ଏ ଦୁର୍ଦ୍ଦଶା ନୂତନ ନୁହେଁ କିମ୍ବା ଏ ଦୁର୍ଦ୍ଦଶା ଯେ ଭାରତବର୍ଷରେ ଘଟି ନାହିଁ ବା ଅନ୍ୟ ଦେଶରେ ଘଟି ନାହିଁ ତାହା ନୁହେଁ, ଭୂପୃଷ୍ଠରେ ଏଥିରୁ ବଳି ଭୂମିକମ୍ପ ହୋଇଅଛି । ଏଥିରୁ ବଳି ଧନଜନକ୍ଷୟ ଘଟିଅଛି । ସମୃଦ୍ଧିଶାଳୀ ନଗରମାନ ଜଳମଗ୍ନ ହୋଇଅଛି । ଦ୍ୱୀପମାନ ସମୁଦ୍ରଗର୍ଭରେ ମଗ୍ନ ହୋଇଅଛି । ନୂତନ ଦ୍ୱୀପ ଓ ପର୍ବତ ଅତଳ ଜଳରୁ ଉପରକୁ ଉଠିଥିବାର ବିବରଣ ମିଳେ । ଧାତୁପ୍ରବାହ, ଉତ୍ତପ୍ତଙ୍କ ଓ ଉତ୍ତପ୍ତଜଳ ପ୍ରବାହରେ ଅସଂଖ୍ୟ ଗ୍ରାମ ନଗରୀ ଶସ୍ୟକ୍ଷେତ୍ର ଧ୍ୱଂସପ୍ରାପ୍ତ ହୋଇଅଛି । ଅସଂଖ୍ୟ ଜନପ୍ରାଣୀ ଜଳିପୋଡ଼ି ପ୍ରାଣ ହରାଇଅଛନ୍ତି । ଏହା ଗୋଟିଏ ପ୍ରାକୃତିକ ଘଟଣା । ଏହି ପୃଥିବୀପୃଷ୍ଠରେ ଆମ୍ଭେମାନେ ବାସ କରୁ । ପୃଥିବୀର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଆମ୍ଭମାନଙ୍କର ସୁଖ ଦୁଃଖ ଜଡ଼ିତ ରହିଅଛି । ତାର ସମୃଦ୍ଧିରେ ଆମ୍ଭମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ, ତାର ବିପର୍ଯ୍ୟୟରେ ଆମ୍ଭମାନଙ୍କୁ ଦୁଃଖ ଓ କ୍ଷତି ସହିବାକୁ ହେବ— ଏହା ମାନିଯିବାର କଥା ।

ସମୁଦ୍ର, ନଦୀ, ପ୍ରପାତ, ଉଷ୍ଣପ୍ରସ୍ରବଣ, ବାୟୁମଣ୍ଡଳ, ବନାନୀ, ଜୀବ ପ୍ରଭୃତି ଦେଖି ଆମ୍ଭେମାନେ ବୁଝୁଅଛୁଁ ଯେ ପୃଥିବୀ ଜୀବିତ ଅଛି । ଆଗ୍ନେୟଗିରି, ଭୂମିକମ୍ପ ଏବଂ ଏମାନଙ୍କଦ୍ୱାରା ଯେ ଭୂପୃଷ୍ଠରେ ପ୍ରଳୟଙ୍କର ଉତ୍ପାତ ଉପସ୍ଥିତ ହୁଏ, ତାହା ଦେଖି ଆମ୍ଭେମାନେ ଅନୁମାନ କରିପାରୁଁ ଯେ, ପୃଥିବୀ ଆଉ ଅସଂଖ୍ୟ ବର୍ଷ ଜୀବର ଲୀଳାଗାର ହୋଇରହିବ । ଭୂମିକମ୍ପ ଧରିତ୍ରୀର ସ୍ପନ୍ଦନ । ଏହି ସ୍ପନ୍ଦନ ବନ୍ଦ ହେଲେ ଧରିତ୍ରୀର ପରମାୟୁ ସୀମାବଦ୍ଧ ହେଲା ବୋଲି ଜଣାପଡ଼ିବ ।

ବର୍ତ୍ତମାନ ଭୂମିକମ୍ପରେ ଆମ୍ଭେମାନେ ଅଶେଷ କ୍ଷତିଗ୍ରସ୍ତ ଓ ଦୁଃଖିତ । ପ୍ରତ୍ୟେକର ଏହି ବିପଦକୁ ନିଜର ବୋଲି ଭାବିବା ଉଚିତ ଏବଂ ବିପଦ୍‌ଗ୍ରସ୍ତ ଭାଇଭଉଣୀମାନଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରିବା ଏବଂ ଯଥାସାଧ ଅର୍ଥ ସାହାଯ୍ୟ ଦେବା ଉଚିତ । ଏହା ନ କଲେ ଆମ୍ଭମାନଙ୍କର ମନୁଷ୍ୟତା ରହିବ ନାହିଁ । ଏହି ଘଟଣା ଗୋଟିଏ ମହାଶିକ୍ଷାର ସ୍ଥଳ । ବିହାର ପରି ପ୍ରଦେଶରେ ବାସ କରିବାକୁ ହେଲେ କି ପ୍ରକାର ଗୃହ ନିର୍ମାଣ କରିବା ଉଚିତ ଏବଂ ଗ୍ରାମ ଓ ସହରରେ ଯେ ଘନ ବସତି କରିବା ଉଚିତ ନୁହେଁ, ତହିଁର ଶିକ୍ଷା ମିଳିଅଛି । ଏଥିପ୍ରତି ବୈଜ୍ଞାନିକମାନଙ୍କର ଓ କର୍ତ୍ତୃପକ୍ଷଙ୍କର ବିଶେଷ ମନୋଯୋଗ ଦେବା ଓ ଉପଦେଶ ଦେବା ଉଚିତ୍ ହୋଇ ପଡ଼ିଅଛି । ଭୂମିକମ୍ପ ଯାହା କରିବାର କରିଗଲା ଏବଂ ଭବିଷ୍ୟତରେ—ଶତ ବର୍ଷ ପରେ ପଛକେ ହେଉ— ଏପରି ଘଟିବାର ଯେ ସମ୍ଭବ, ଏହା ମଧ ଜଣାଇ ଦେଇଗଲା । ହିମାଳୟ ତଳ ପ୍ରଦେଶର ବାସରେ ଯେ ସାମୟିକ ବିପତ୍ତିର ସମ୍ଭାବନା ଅଛି, ତହିଁର ସୂଚନା ମଧ ଦେଇଗଲା ଏବଂ ପୃଥିବୀର ଜୀବନ ଦୀର୍ଘକାଳବ୍ୟାପୀ ଏବଂ ଧରାପୃଷ୍ଠର ଜୀବକୁଳର ଭବିଷ୍ୟତ ଉନ୍ନତି ମାର୍ଗ ପ୍ରଶସ୍ତ, ତହିଁର ସୂଚନା ମଧ ଦେଲା । ଏଥି ନିମନ୍ତେ ଆମ୍ଭମାନଙ୍କର ଭବିଷ୍ୟତ୍ ଆଶାରେ ଆଶ୍ୱସ୍ତ ହେବା ଉଚିତ ।

ହାତର ନାଡ଼ି ଚିପିଲେ ଆମ୍ଭେମାନେ ଯେପରି ହୃତ୍‌କମ୍ପନର ପରିଚୟ ପାଉଁ, ବୈଜ୍ଞାନିକମାନେ ସେହିପରି ନବାବିଷ୍କୃତି ଭୂକମ୍ପ-ନିର୍ଣ୍ଣାୟକ ଯନ୍ତ୍ର ସାହାଯ୍ୟରେ ଭୂମିକମ୍ପର ପରିଚୟ ପାଆନ୍ତି । ନାଡ଼ି ପରୀକ୍ଷାଦ୍ୱାରା ବୈଦ୍ୟ ଜ୍ୱର ସମ୍ବନ୍ଧରେ ଭବିଷ୍ୟତ୍ ବାଣୀ ଦେଇ ନ ପାରେ; ମାତ୍ର ଜ୍ୱର ହେଲା କି ନା, ଏହା ଅନାୟାସରେ ବ୍ୟକ୍ତି କରିପାରେ । ସେହିପରି ଉପର୍ଯ୍ୟୁକ୍ତ ଯନ୍ତ୍ର ପରୀକ୍ଷାଦ୍ୱାରା ବୈଜ୍ଞାନିକ ଭୂମିକମ୍ପ ହେଲା କି ନା ଏବଂ କେତେ ଦୂରରେ ହେଲା, ତାହା ଅନାୟାସରେ କହିପାରେ । ଏହି ଯନ୍ତ୍ରର କ୍ରମୋନ୍ନତି ଚାଲିଛି । କ୍ରମେ ବୈଜ୍ଞାନିକମାନେ ଭୂମିକମ୍ପ ସମ୍ବନ୍ଧରେ ଭବିଷ୍ୟଦ୍‌ବାଣୀ ଦେଇପାରିବେ ବୋଲି ଆଶା କରାଯାଏ ।

ଭୂମିକମ୍ପ-ନିର୍ଣ୍ଣାୟକ ଯନ୍ତ୍ର ସାହାଯ୍ୟରେ ଏହା ସ୍ଥିରୀକୃତ ହୋଇଅଛି ଯେ—

ଭୂପୃଷ୍ଠରେ ହାରାହାରି ପ୍ରତି ଦଶ ମିନିଟ୍‌ରେ ଗୋଟିଏ ଗୋଟିଏ ଭୂମିକମ୍ପ ହେଉଅଛି, ତାହା ଛୋଟ ହେଉ ବା ବଡ଼ ହେଉ । ଅନେକ ଭୂମିକମ୍ପ ନିର୍ଜନ ପ୍ରଦେଶରେ ହୁଏ— ତାହା ସର୍ବସାଧାରଣଙ୍କୁ ଜଣାଯାଇପାରେ ନାହିଁ । ସ୍ଥଳଭାଗ ଅପେକ୍ଷା ଜଳଭାଗ ବେଶୀ । ଜଳଭାଗରେ ଯେଉଁ ଭୂମିକମ୍ପ ହୁଏ, ତାହା ମଧ ସର୍ବସାଧାରଣଙ୍କ ବୋଧଗମ୍ୟ ହେବ କିପରି ? ଜନାକୀର୍ଣ୍ଣ ସ୍ଥାନରେ ଯେଉଁ କ୍ଷୁଦ୍ର କ୍ଷୁଦ୍ର ଭୂମିକମ୍ପ ହୁଏ, ସେଥିପ୍ରତି ଲୋକଙ୍କର ମନୋଯୋଗ ବିଶେଷ ଭାବରେ ଆକର୍ଷିତ ହୁଏ ନାହିଁ । ଲୋକେ ତାହା ଭୁଲିଯାଆନ୍ତି । ବର୍ତ୍ତମାନ ଭୂମିକମ୍ପ ସଦୃଶ ବୃହଦ ଧନଜନକ୍ଷୟକାରୀ ଭୂମିକମ୍ପ ହେଲେ ଲୋକେ ତାହା ସ୍ମରଣ ରଖନ୍ତି । ଗତ ପଚାଶ ବର୍ଷ ଭିତରେ ବର୍ତ୍ତମାନ ଭୂମିକମ୍ପ ସହିତ ଚାରିଗୋଟି ବଡ଼ ଭୂମିକମ୍ପ ସହିତ ଚାରିଗୋଟି ବଡ଼ ଭୂମିକମ୍ପ ଭାରତବର୍ଷରେ ବୋଧହୁଏ ଘଟିଅଛି । ଏହି ଭୂମିକମ୍ପର ଉତ୍ପତ୍ତି ସ୍ଥଳ ହିମାଳୟ ପ୍ରଦେଶ । କିନ୍ତୁ କ୍ରମାଗତ ଭୂମିକମ୍ପର ପ୍ରକୋପ ବଢ଼ିଥିବାର ଅନୁମାନ ହୁଏ । କାରଣ ବର୍ତ୍ତମାନ ଭୂମିକମ୍ପ ପରି ପୂର୍ବେ କେବେ ଏ ଦେଶରେ କ୍ଷତିକାରୀ ଭୂମିକମ୍ପ ହୋଇଥିବାର କୌଣସି ଜୀବିତ ବ୍ୟକ୍ତିର ସ୍ମରଣ ନାହିଁ ।

ବୈଜ୍ଞାନିକମାନେ ଭୂମିକମ୍ପର ଅନେକ କାରଣ ନିର୍ଦ୍ଦେଶ କରନ୍ତି । ଏ ସ୍ଥଳରେ ଦୁଇ ଚାରିଟାର ଉଲ୍ଲେଖ କରାଯାଉ । ବହୁ ପୂର୍ବେ ପୃଥିବୀ ଉତପ୍ତ ଓ ତରଳ ଥିଲା । ସେତେବେଳେ ଭୂପୃଷ୍ଠରେ ବିସ୍ତାର ଉତ୍ପାତ ଘଟୁଥିଲା । ବହୁକାଳ ହେଲା କ୍ରମେ ତାହା କମ୍ ହୋଇଅଛି । ପୃଥିବୀର ଅଭ୍ୟନ୍ତର ଯେ ବର୍ତ୍ତମାନ ମଧ ଅତ୍ୟନ୍ତ ଗରମ, ତହିଁର ନିଦର୍ଶନ ଆମ୍ଭେମାନେ ପ୍ରତ୍ୟକ୍ଷ କରୁଥାଉଁ । ଭୂପୃଷ୍ଠରୁ ଉପରକୁ ଅର୍ଥାତ୍ ଆକାଶ ଆଡ଼କୁ ଗମନ କଲେ ଯେପରି ଥଣ୍ଡା ଅନୁଭୂତ ହୁଏ, ପୃଥିବୀର ଭିତର ଆଡ଼କୁ ପଶିଲେ ସେହିପରି ଗରମ ବୋଧ ହୁଏ । ଆଗ୍ନେୟଗିରି, ଉଷ୍ଣ ପ୍ରସ୍ରବଣ ମଧ ଏଥିର ପ୍ରକୃଷ୍ଟ ଉଦାହରଣ ।

ଲକ୍ଷ ଲକ୍ଷ ବର୍ଷ ହେଲା ପୃଥିବୀ ଭିତରେ ଭଙ୍ଗା ଗଢ଼ା ଲାଗିଛି । କେତେ କାଳ ଏହିପରି ଲାଗିଥିବ, ତାହା କେବଳ ଅନୁମାନର ବିଷୟ । ଉପରିଭାଗ କଠିଣ ଓ ଥଣ୍ଡା; କିନ୍ତୁ ଭିତର ଭାଗ ଉତପ୍ତ ଓ ସ୍ଥଳବିଶେଷରେ କମନୀୟ । ପୃଥିବୀର

ଆୟତନ ଓ ଆକାର ତୁଳନାରେ ଭିତର ପ୍ରଦେଶ ପ୍ରକାଣ୍ଡ ଗୁହା ଗହ୍ୱର ଫାଟ ପ୍ରଭୃତିରେ ପରିପୂର୍ଣ୍ଣ । ଅତ୍ୟଧିକ ଉତ୍ତାପ ହେତୁରୁ ଭିତରେ ପାଣି ରହିବାର ସମ୍ଭବ ନାହିଁ । ମାତ୍ର ସମୟ ସମୟରେ ସ୍ଥଳବିଶେଷରେ ଧୀରେ ଧୀରେ ସାଗରମଧ୍ୟରୁ ଏବଂ ଭୂପୃଷ୍ଠରୁ ମଧ୍ୟ ଭିତରକୁ ଜଳ ଗଳିପଡ଼େ ଏବଂ ଭିତରେ ଉତ୍ତାପ ପାଇ ବାଷ୍ପରେ ପରିଣତ ହୁଏ । ବୃଷ୍ଟିଜଳ ଓ ନଦୀସ୍ରୋତ ପର୍ବତ ଓ ଭୂପୃଷ୍ଠରୁ ମାଟି ବାଲି ପଥର ବହି ନେଇ ନିମ୍ନପ୍ରଦେଶମାନ ପୂର୍ଣ୍ଣ କରେ ଓ ସମୁଦ୍ରରେ ଢାଳି ଦିଏ । ଏଥି ନିମନ୍ତେ ଧରା ଦେହରେ ଚାପର ତାରତମ୍ୟ ଘଟେ । ସମୟ ବିଶେଷରେ ଅତ୍ୟୁଚ୍ଚ ପର୍ବତଚୂଡ଼ାରେ ବରଫର ଚାପ କମ୍ ନୁହେଁ । ବାୟୁପଟଳର ତାରତମ୍ୟ ସର୍ବଦା ଘଟିବାଦ୍ୱାରା ସମୟବିଶେଷରେ ଅତିବୃଷ୍ଟି, ଅତ୍ୟନ୍ତ ଶୀତ ହୁଏ ଏବଂ ସେଥି ନିମନ୍ତେ ବରଫ ପଡ଼େ ।

କୁଆରଭଟ୍ଟା ଦୈନନ୍ଦିନ ବ୍ୟାପାର । ଉପର୍ଯ୍ୟୁକ୍ତ ସମସ୍ତ କାରଣରୁ ଏବଂ ତାହାଛଡ଼ା ଅନ୍ୟାନ୍ୟ କେତେକ କାରଣରୁ ଭୂମିକମ୍ପ ଘଟେ । ଆମେ ଯାହା ଉପରେ ବାସ କରୁଅଛୁଁ ଓ ନିରାପଦ ବୋଲି ମନେ କରୁଅଛୁଁ, ତାର ଆଭ୍ୟନ୍ତର ଉତ୍ପାତର ଖଣି । ସେଥି ନିମନ୍ତେ ଆମ୍ଭମାନଙ୍କ ଉପରେ ବିପତ୍ତି ପଡ଼ିବ, ଏହା ଜାଣି ରଖିବା ଉଚିତ୍ । ଏହା ପ୍ରାକୃତିକ ନିୟମ, ଯୁଗ ଯୁଗ ଧରି ଚାଲି ଆସୁଛି । ଭବିଷ୍ୟତରେ ମଧ୍ୟ ଏ ନିୟମ ଚାଲିବ । ଜୀବକୁଳ ସହି ଆସୁଛନ୍ତି, ଆମ୍ଭେମାନେ ମଧ୍ୟ ସହିବା । ପୃଥିବୀ ଶିକ୍ଷାର ସ୍ଥଳ ଓ ପରୀକ୍ଷାର ଭୂମି । ଯେଉଁ ଜାତି ଏତାଦୃଶ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବେ, ସେ ଅନ୍ୟ ଜାତି ଅପେକ୍ଷା ଜୟୀ ହେବେ ଓ ବଞ୍ଚି ରହିବେ । ଜଗତର ଏତାଦୃଶ କଠିଣ ପରୀକ୍ଷାରେ ପ୍ରାଗୈତିହାସିକ ଯୁଗରେ ଜୀବର ନାଶ ଘଟିଅଛି । ସେ ବହୁଦୂରର ଘଟଣା ।

ଜାପାନ ଯେ ଭୂମିକମ୍ପ ଧ୍ୱଂସଦୋଳାରେ ସ୍ଥାପିତ, ଏହା କହିବା ବାହୁଲ୍ୟ ମାତ୍ର । ଜାପାନର ଧ୍ୱଂସ ତୁଳନାରେ ଭାରତର ଭୂମିକମ୍ପ ଅତି ସାମାନ୍ୟ ବୋଇଲେ ଚଳେ । ଗୋଟାଏ ଯୋଡ଼ାଏ ନୁହେଁ, ଜାପାନ ଅନେକ କମ୍ପର ଦାଉ ସହିଗଲାଣି— ସହିବାକୁ ମଧ୍ୟ ପ୍ରସ୍ତୁତ ଅଛି । ସାନ୍‌ଫ୍ରାନ୍‌ସିସ୍‌କୋବାସୀମାନେ ଗୋଟିଏ ପ୍ରଧାନ ଭୂମିକମ୍ପର ଭୁକ୍ତଭୋଗୀ । ଅନେକ ଜାତି ଆଗ୍ନେୟଗିରିର ଉତ୍ପାତ ଜାଣିଶୁଣି ମଧ୍ୟ ତହିଁ ନିକଟରେ ବସବାସ କରୁଅଛନ୍ତି । ଅନେକ ଜନପଦ ଭୂମିକମ୍ପର କେନ୍ଦ୍ରସ୍ଥଳରେ ମଧ୍ୟ ସ୍ଥାପିତ ହୋଇଅଛି ।

ଭାରତବର୍ଷର ଦକ୍ଷିଣ ଅଂଶ ପ୍ରାଚୀନ ଭୂଧରପୃଷ୍ଠରେ ସ୍ଥାପିତ ଏବଂ ଏ ଅଞ୍ଚଳରୁ ଭୂମିକମ୍ପର ପ୍ରକୋପ ଅନେକାଂଶରେ କମିଅଛି ବୋଲି ବୈଜ୍ଞାନିକମାନେ ଅନୁମାନ କରନ୍ତି । ତେବେ ନିରାପଦ ବୋଲି କିଏ କହିପାରିବ ? ମାତ୍ର ଉତ୍ତରାଂଶରେ ଯେ ସାମୟିକ ଭୂମିକମ୍ପର ଉତ୍ପାତ ଉପସ୍ଥିତ ହେବାର ଘୋର ସମ୍ଭାବନା, ଏହା ମଧ୍ୟ ବୈଜ୍ଞାନିମାନେ ଅନୁମାନ କରନ୍ତି । ଗଙ୍ଗାନଦୀ ପ୍ରବାହିତ ହେଉଥିବା ସମତଳ ଭୂମି ଯେ ଏକ ସମୟରେ ଗଭୀର ସମୁଦ୍ର ଥିଲା ଏବଂ ତାହା କ୍ରମେ ଜଳପ୍ରବାହ, ପତିତ ମୃତ୍ତିକା ଦ୍ୱାରା ପରିପୂର୍ଣ୍ଣ ହୋଇ ଉର୍ବର ସମତଳ ଭୂମିରେ ପରିଣତ ହୋଇଅଛି, ତାହା ମଧ୍ୟ ସ୍ଥିର ନିଶ୍ଚିତ । ଏହି ଉପତ୍ୟକାର ଉତ୍ତରରେ ହିମାଳୟଗିରିସମୂହ । ହିମାଳୟ ପର୍ବତର ଜନ୍ମ ଯେ ନୂତନ, ଏହା ବୈଜ୍ଞାନିକମାନେ ସ୍ଥିର କରିଅଛନ୍ତି ଏବଂ ଏହା ଅଦ୍ୟାପି ବଢୁଅଛି— ଏହା ମଧ୍ୟ ଅନେକଙ୍କର ଧାରଣା । ଏହି ପର୍ବତଶ୍ରେଣୀ ଅତ୍ୟୁଚ୍ଚ ହେତୁରୁ ଅନନ୍ତ ତୁଷାରମଣ୍ଡିତ । ହିମାଳୟର ମସ୍ତକରେ ତୁଷାରର ଚାପ କମ୍ ନୁହେଁ । ପୁଣି ସମୟବିଶେଷରେ ବାୟୁମଣ୍ଡଳର ପରିବର୍ତ୍ତନ ସଙ୍ଗେ ଋତୁର ପରିବର୍ତ୍ତନ ସଙ୍ଗେ ତୁଷାରର ପରିମାଣ ଓ ଚାପ ବଢ଼େ । ଏହି ହିମାଳୟକୁ ମଧ୍ୟ ଅତି ପ୍ରବଳ ତୋଫାନ ଓ ବୃଷ୍ଟିର ପ୍ରକୋପ ସହିବାକୁ ପଡ଼େ । ସିନ୍ଧୁ ଓ ଗଙ୍ଗାନଦୀର ଉପତ୍ୟକା ଉଭୟ ସଙ୍କଟ ମଧ୍ୟରେ ସ୍ଥାପିତ । ଦକ୍ଷିଣରେ କଠିଣ ପ୍ରାଚୀନ ପର୍ବତ— ଉତ୍ତରରେ ଅସ୍ଥିର ବର୍ଦ୍ଧିଷ୍ଣୁ, ତୁଷାରମଣ୍ଡିତ ହିମାଳୟ । ଆଭ୍ୟନ୍ତରିକ କୌଣସି ଶକ୍ତି ପ୍ରଭାବରୁ ହିମାଳୟର କୌଣସି ଅଂଶ ଉଠିବାବେଳେ ଭୂମିକମ୍ପ—ତୁଷାର ଚାପରେ କୌଣସି ଅଂଶ ବସିବା ବେଳେ ଭୂମିକମ୍ପ— ହିମାଳୟର ଭିତର ଗହ୍ୱରରୁ କୌଣସି କାରଣରୁ ପ୍ରକାଣ୍ଡ ପ୍ରସ୍ତର ଖସି ପଡ଼ିଲା ବେଳେ ମଧ୍ୟ ଭୂମିକମ୍ପ— ତା'ଛଡ଼ା ଅନ୍ୟାନ୍ୟ କ୍ଷୁଦ୍ର କାରଣମାନ ତ ରହିଛି । ସୁତରାଂ ଭାରତର ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ହିମାଳୟତଳବାସୀମାନଙ୍କର ଭୂକମ୍ପଜନିତ ବିପଦ ବେଶୀ, ଏହା କହିବା ବାହୁଲ୍ୟମାତ୍ର । ଭୂମିକମ୍ପ ରୋମବାସୀ, ଆମେରିକାବାସୀ, ଜାପାନବାସୀ ଏବଂ ପୂର୍ବ-ଭାରତ-ଦ୍ୱୀପପୁଞ୍ଜବାସୀମାନଙ୍କୁ ସତର୍କ କରାଉଅଛି । ବର୍ତ୍ତମାନ ଭାରତବାସୀଙ୍କୁ ସତର୍କ କରାଇବାକୁ ବିହାର ଭୂମିକମ୍ପର ପ୍ରାଦୁର୍ଭାବ ।

ଏତାଦୃଶ ଦୁର୍ଘଟଣାରେ ଅନ୍ୟ ଦେଶବାସୀମାନଙ୍କର ମନୋବୃତ୍ତିର ପରିଚୟ ଆମ୍ଭେମାନେ କେତେକାଂଶରେ ଜାଣି ପାରିଅଛୁ । ବର୍ତ୍ତମାନ ଭୂମିକମ୍ପରେ ଭାରତବାସୀର ମନୋବୃତ୍ତିର ପରିଚୟ ପାଇବା ।

ଏଥରରର ଭୂମିକମ୍ପ ସହିତ କାକତାଳିକ ନ୍ୟାୟରେ ଷଡ଼୍‌ଗ୍ରହକୂଟ ଘଟିଲା । 'ତାଳମୂଳକୁ ଯିବା ସମତାଳ ପଡ଼ିବା ସମ' ତା ୧୫ ରିଖରେ ଭୂମିକମ୍ପ ହେଲା ଏବଂ ଷଡ଼ଗ୍ରହ କୂଟ ହେଲା । ଏଥି ନିମନ୍ତେ ଜ୍ୟୋତିଷୀମାନେ ଏବଂ କେତେକ ଶିକ୍ଷିତ ଅଶିକ୍ଷିତ ଅନ୍ଧବିଶ୍ୱାସୀ ମହାଉତ୍‌ଫୁଲ୍ଲ । ଫଳତଃ ଜ୍ୟୋତିଷ ଜୟଯୁକ୍ତ ହେଉ— ଦେଶର ଫାଳେ ପଛେ ସମୁଦ୍ର ଗର୍ଭରେ ବୁଡ଼ିଯାଉ କିମ୍ବା ଭୂମିକମ୍ପ ପ୍ରଭୃତିରେ ଧ୍ୱଂସ ହେଉ । ଏହା ଆମ୍ଭମାନଙ୍କର କପୋଳପ୍ରସୂତ ନୁହେଁ । ଏଥର ଅନେକ ଭାରତବାସୀ ଏ ମନୋବୃତ୍ତିର ପରିଚୟ ଦେଇଅଛନ୍ତି । ପାଞ୍ଜି ଲେଖେ—

''ଏକତ୍ର ରାଶୌ ଯଦି ପଞ୍ଚ ଷଡ୍‌ବା
ସପ୍ତଗ୍ରହାଃ ସମ୍ମିଳିତା ଭବନ୍ତି ।
ରାଷ୍ଟ୍ରସ୍ୟ ଭଙ୍ଗୋ ନୃପତେ ର୍ବିନାଶ
ସ୍ତଦ୍ରାଶିଜାନାଂ ମରଣଂ ଧ୍ରୁବଂ ସ୍ୟାତ୍ ।''

ଏହି ତ ପଞ୍ଚ ଓ ଷଡ୍ ଗ୍ରହକୂଟର ଫଳ । ଅନ୍ୟ ଦେଶର ପାଞ୍ଜିରେ ବା ଭୂମିକମ୍ପର କଥା ଥାଇପାରେ, ଆମ୍ଭମାନଙ୍କୁ ଜଣା ନାହିଁ । ତେବେ ଭୂମିକମ୍ପ, ଧୂମକେତୁ, ଷଡ଼୍‌ଗ୍ରହ ଦିବସରେ ନକ୍ଷତ୍ର ଉଦୟ ପ୍ରଭୃତିକୁ ବିପ୍ଳାତ ଓ ଅମଙ୍ଗଳ ବୋଲି କହନ୍ତି । ମାତ୍ର ଏସବୁ ସମ୍ବନ୍ଧରେ ଭବିଷ୍ୟଦ୍‌ବାଣୀ ପ୍ରକାଶ କରିବାର ସେମାନଙ୍କର କୌଣସି ଉପାୟ ନାହିଁ । ଏସବୁ ଆକସ୍ମିକ ଦୈବୀ ଘଟଣା ବୋଲି ସେମାନଙ୍କର ବିଶ୍ୱାସ । ସୁତରାଂ ପୂର୍ବରୁ ଦୈବୀ ଘଟଣା ଜାଣିବେ କିପରି ? ତଥାପି ଆଜିକାଲି Reformed ଜ୍ୟୋତିଷୀମାନେ ପାଶ୍ଚାତ୍ୟ ବିଜ୍ଞାନର ସାହାଯ୍ୟ ନେଇ ବା ସେ ଦେଶର ଜ୍ୟୋତିଷୀଙ୍କ ଧରଣରେ ବର୍ଷକେ ଗୋଟାଏ ଉଡ଼ା ବର୍ଷଫଳ ଲେଖି ଦେଉଅଛନ୍ତି ଏବଂ ଗୃହରେ ବସି ସେହି ଅଶୁଭ ଘଟଣାଟି କିପରି ଘଟୁ ଏ ଚିନ୍ତାରେ ରହନ୍ତି । କାକତାଳିକ ନ୍ୟାୟରେ ତାହା ଘଟିଗଲେ ନିଜ ପ୍ରୌଢ଼ିର ସୀମା ନ ଥାଏ ଏବଂ ପୃଷ୍ଠପୋଷକ ଓ ଅନ୍ଧ ବିଶ୍ୱାସିଗଣ ସେଥିରେ ବିଶ୍ୱାସ ସ୍ଥାପନ କରି କୃତକୃତ୍ୟ ହୁଅନ୍ତି । ଏତାଦୃଶ ମନୋବୃତ୍ତିର ପରିଚୟ ବିହାରର ବିପତ୍ତି ବେଳେ ଯଥେଷ୍ଟ ମିଳିଅଛି । ଏତାଦୃଶ ଭବିଷ୍ୟଦ୍‌ବାଣୀ ଏଣିକି ଲୋକେ ବେଶୀ ଦେବେ ଏବଂ ଏ ଦେଶବାସୀଙ୍କର କୁସଂସ୍କାର ବଢ଼ିବ । ବଡ଼ ଦୁଃଖର କଥା ।

ପୂର୍ବେ ଏତାଦୃଶ ପଞ୍ଚଗ୍ରହ ବା ଷଡ଼ଗ୍ରହ କୂଟରେ ଏପରି ଭୂମିକମ୍ପ ହୋଇଥିଲା କି ନା ତାହା ସେମାନେ ଥରେ ଭାବି ଦେଖନ୍ତି ନାହିଁ । କିନ୍ତୁ କାକତାଳିକ ଘଟଣାଦ୍ୱାରା ଆପଣା ଆପଣା ଅନ୍ଧବିଶ୍ୱାସକୁ ଦୃଢ଼ କରନ୍ତି । ଏହା ଏ ଦେଶ ପକ୍ଷରେ କମ୍ କ୍ଷତିଜନକ ନୁହେଁ । ବହୁଦିନର କଥା ତେଣେ ଥାଉ, ଏ ବର୍ଷ ଗତ ଡିସେମ୍ବର ତା ୧୯ରେ ଗୋଟାଏ ପଞ୍ଚଗ୍ରହକୂଟ ଘଟିଥିଲା । ସେତେବେଳେ କୌଣସି ଭୂମିକମ୍ପ ଘଟିଥିଲା କି ? ସେତେବେଳେ କୌଣସି ଜ୍ୟୋତିଷୀ ଏଥିର ସୂଚନା ଦେଇଥିଲେ କି ? କିନ୍ତୁ ୧୫ ତାରିଖ ଜାନୁୟାରୀରେ ଭୂମିକମ୍ପ ହେବାର ଦେଖି ଜ୍ୟୋତିଷୀମାନେ ଏବଂ ଜ୍ୟୋତିଷୀବିଶ୍ୱାସୀମାନେ ଏ ଦେଶରେ ଗୋଟାଏ ଫଳିତ ଜ୍ୟୋତିଷ ଶାସ୍ତ୍ରର ଜୟଢକ୍କା ବଜାଇବାକୁ ଛାଡ଼ିଲେ ନାହିଁ । ଏପରି କି କେତେକ ଉଚ୍ଚ ଦରର ଖବରକାଗଜ ମଧ୍ୟ ଏଥିର ପ୍ରତିଧ୍ୱନି କଲେ ଏବଂ ଷ୍ଟେଟ କାଉନ୍‌ସିଲ୍‌ରେ ଜଣେ ମେମ୍ବର ମାନ୍ଦ୍ରାସି ଜ୍ୟୋତିଷୀର ଭବିଷ୍ୟତ୍ ବାଣୀର ସଫଳତା ସମ୍ବନ୍ଧରେ ଗୋଟାଏ ପ୍ରଶ୍ନ ଉତ୍ଥାପନ କଲେ । କିମାଶ୍ଚର୍ଯ୍ୟ ମତଃପରଂ । ପ୍ରାୟ ବର୍ଷେ ଦୁଇ ବର୍ଷ ଉତ୍ତାରେ ପଞ୍ଚଗ୍ରହ ଓ ଷଡ଼୍‌ଗ୍ରହ ମିଳିତ ହେବାର ଦେଖାଯାଏ । ଆମ୍ଭମାନଙ୍କର ସ୍ମରଣ ଅଛି, ୧୯୨୯ ରେ ବୋଧହୁଏ ପଞ୍ଚ ଓ ଷଡ଼୍‌ଗ୍ରହକୂଟ ଘଟିଥିଲା । କେତେ ଜଣଙ୍କର ଲାଭ ନିମନ୍ତେ ଗ୍ରହଣ ଓ ଗ୍ରହକୂଟ ଯେ ବର୍ଷେ ଦୁଇ ବର୍ଷରେ ଘଟିବ, ତାହା ସ୍ଥିରନିଶ୍ଚିତ ।

ପାଞ୍ଜିରୁ ଆମ୍ଭେମାନେ ଯେ ଶ୍ଳୋକଟି ଉଦ୍ଧୃତ କଲୁଁ, ସେଥିରୁ ଜଣାଯାଉ ନାହିଁ ଯେ, ଷଡ଼୍‌ଗ୍ରହକୂଟରୁ ଭୂମିକମ୍ପ ହୁଏ । ବରଂ ରାଷ୍ଟ୍ରଭଙ୍ଗ, ନୃପତିମାନଙ୍କର ବିନାଶ ଏବଂ ମକର ରାଶିରେ ଯେଉଁମାନଙ୍କର ଜନ୍ମ ସେମାନଙ୍କ ମୃତ୍ୟୁ ନିଶ୍ଚିତ ଏହା ଲେଖା ଅଛି । ଏଥିରୁ ଗୋଟିଏ ହେଲେ ଭବିଷ୍ୟଦ୍‌ବାଣୀ ଯେ ଘଟିଲା ନାହିଁ ? ପୃଥିବୀ ଅର୍ଥ କେବଳ ଭାରତବର୍ଷ ନୁହେଁ । ପୃଥିବୀରେ କେତେ କୋଟି ଲୋକ ଯେ ମକର ରାଶିରେ ଜନ୍ମଗ୍ରହଣ କରିଅଛନ୍ତି, ତା'ର ହିସାବ ନାହିଁ । ମକର ରାଶିରେ ଜନ୍ମିଥିବା ସମସ୍ତ ଲୋକ ତା ୧୫ରେ ମୃତ ହେଲେ କି ? କିମ୍ବା ବିହାରର ମୃତ ୮।୧୦ ହଜାର ଲୋକ ମକର ରାଶିରେ ଜନ୍ମିଥିଲେ କି ? ତେବେ ରାଜା ଓ ଧନିକମାନଙ୍କୁ ଭୟବିହ୍ୱଳ କରିବା ଭିନ୍ନ ଏହି ଶ୍ଳୋକର ଅନ୍ୟ ତାତ୍ପର୍ଯ୍ୟ କ'ଣ ?

ଆଉ ଗୋଟିଏ କଥା—ରାହୁ କେତୁ ଯେ ଗ୍ରହ ନୁହନ୍ତି, ଏହା ଆଜିକାଲି ଆବାଳବୃଦ୍ଧ ଜାଣନ୍ତି ବୋଇଲେ ମଧ୍ୟ ଅତ୍ୟୁକ୍ତି ନୁହେଁ । ବରାହ ସ୍ପଷ୍ଟାକ୍ଷରରେ ଲେଖି ଯାଇଅଛନ୍ତି— ରାହୁ କେତୁ ଆଦୌ ଗ୍ରହ ନୁହନ୍ତି । ରବିମାର୍ଗ (ପୃଥିବୀ ମାର୍ଗ) ଏବଂ ଚନ୍ଦ୍ରମାର୍ଗର ଉଭୟ ପାତର ନାମ ରାହୁ କେତୁ । ସୁତରାଂ କାଳ୍ପନିକ ଉକ୍ତ ଦୁଇ ଗ୍ରହର ଯେକୌଣସି ଆକର୍ଷଣୀ ଶକ୍ତି ନାହିଁ,

ଏହା ଲେଖିବା ବାହୁଲ୍ୟ ମାତ୍ର । ବାକି ପାଞ୍ଚ— ମଙ୍ଗଳ, ଶନି, ରବି, ବୁଧ ଓ ଶୁକ୍ର । ସମସ୍ତେ ମାଧ୍ୟାକର୍ଷଣଦ୍ୱାରା ଚାଳିତ । ପ୍ରତ୍ୟେକଙ୍କର କକ୍ଷ ଅଛି (ଏଠାରେ ପୃଥିବୀ କକ୍ଷକୁ ରବି କକ୍ଷ ଧରାଯାଉଅଛି) । ଚନ୍ଦ୍ର ପୃଥିବୀର ଅତି ନିକଟବର୍ତ୍ତୀ ବୃହତ୍ ପଦାର୍ଥ; ସୁତରାଂ ସେ ପୃଥିବୀରେ ଜୁଆରଭଟ୍ଟା ଉତ୍ପାଦନ କରେ, ଏହା ପ୍ରତ୍ୟକ୍ଷ ସିଦ୍ଧ । ଅନ୍ୟ ଗ୍ରହମାନଙ୍କଦ୍ୱାରା ପୃଥିବୀର ଜଳଭାଗ ବା ସ୍ଥଳଭାଗର କୌଣସି ପରିବର୍ତ୍ତନ କେବେ ଦେଖାଯାଏ ନାହିଁ— ପ୍ରକାଣ୍ଡ ହେଲେ ମଧ୍ୟ ଯେହେତୁ ସେମାନେ ଅତି ଦୂରବର୍ତ୍ତୀ । ଏହି ଗ୍ରହମାନେ ସମୟବିଶେଷରେ ପୃଥିବୀର ନିକଟବର୍ତ୍ତୀ ଏବଂ ସମୟବିଶେଷରେ ଅତି ଦୂରବର୍ତ୍ତୀ ହୁଅନ୍ତି । ନିକଟବର୍ତ୍ତୀ ହୋଇଥିଲା ବେଳେ ମଧ୍ୟ ଏମାନଙ୍କର ଆକର୍ଷଣ ନିମିତ୍ତ ଜଳଭାଗ ଓ ସ୍ଥଳଭାଗର ଆଦୌ ପରିବର୍ତ୍ତନ ହୁଏ ନାହିଁ । ବର୍ତ୍ତମାନ ୧୫ ତାରିଖ ଜାନୁୟାରିରେ ମଙ୍ଗଳ ଶନି ଅତି ଦୂରବର୍ତ୍ତୀ ବା ସୂର୍ଯ୍ୟର ଆର ପାଖରେ ଥିଲେ ଏବଂ ଶୁକ୍ର ଓ ବୁଧ ସୂର୍ଯ୍ୟ ଓ ପୃଥିବୀର ମଧ୍ୟରେ ଥିଲେ । ଶନି ଓ ମଙ୍ଗଳର ଆକର୍ଷଣ ପୃଥିବୀ ଅପେକ୍ଷା ସୂର୍ଯ୍ୟ ଉପରେ ବେଶୀ ବୋଲାଯାଇପାରେ । ଶୁକ୍ର, ବୁଧ, ଛଅ ମାସରେ ଥରେ ଲେଖାଏଁ ଏହି ଅବସ୍ଥାକୁ ଆସନ୍ତି । ଆକର୍ଷଣରେ ଇତର ଓ ବିଶେଷ ଘଟେ ନାହିଁ । ଏହାଛଡ଼ା ଏହି ପାଞ୍ଚ ଛଅଟି ଗ୍ରହ ପୃଥିବୀକୁ ଏକ ରାଶିସ୍ଥ ବୋଲି ଦୃଶ୍ୟ ହେଉଥିଲେ ସୁଦ୍ଧା ମୁଖ୍ୟ ଭାବରେ ତାହା ନୁହେଁ— ସୂର୍ଯ୍ୟ ମକର ରାଶିରେ । ଏଣୁ ବିଷୁବ ରେଖାର ଦକ୍ଷିଣରେ ଆପାତ ଦୃଷ୍ଟିରେ ଅନ୍ୟ ଚାରି ଗ୍ରହ ମଧ୍ୟ ବିଷୁବ ରେଖାର ଦକ୍ଷିଣରେ । ସଳଖ ଭାବରେ ପୃଥିବୀର ଦକ୍ଷିଣାଂଶରେ ଏମାନଙ୍କର ବଳ ପ୍ରକାଶ ହେବା ଉଚିତ । ବିହାର କର୍କଟ କ୍ରାନ୍ତି ବାହାରେ ଥିବା ହେତୁରୁ ସୂର୍ଯ୍ୟ କିରଣ ପର୍ଯ୍ୟନ୍ତ ତୀର୍ଯ୍ୟକ୍ ଭାବରେ ପଡ଼େ । ଏପରି ସ୍ଥଳେ ବିଷୁବର ନିକଟବର୍ତ୍ତୀ ମାଡ୍ରାସ୍ ଅଞ୍ଚଳରେ ଏ ବ୍ୟାପ୍ତାତପାତ ଉପସ୍ଥିତ ନ ହୋଇ ବିହାର ପ୍ରଦେଶରେ ଉପସ୍ଥିତ ହେଲା କାହିଁକି ? ଏ ସମସ୍ତ କାରଣ ଦୃଷ୍ଟିରେ ଯେବେ ଏ ଦେଶବାସୀ ଜ୍ୟୋତିଷୀମାନଙ୍କର ଭବିଷ୍ୟଦ୍‌ବାଣୀକୁ ଅସାର ଓ ପ୍ରତାରଣା ବୋଲି ନ ଭାବିବେ, ତେବେ ଉପାୟ କ'ଣ ? ବିହାରର ଦୁର୍ଘଟଣାରେ ଉଲ୍ଲସିତ ହୋଇ କେତେକ ଜ୍ୟୋତିଷୀ ଆପଣାର ଗାରିମା ଦେଖାଇବା ନିମନ୍ତେ ତା ୨୧ ରେ ଏବଂ ଚନ୍ଦ୍ରଗ୍ରହଣ ଦିନ ମଧ୍ୟ ଭୂମିକମ୍ପ ହେବ ବୋଲି ସରଳବିଶ୍ୱାସୀ ନିର୍ଭୀକ ବ୍ୟକ୍ତିଙ୍କୁ ତ୍ରସ୍ତ କରିଥିଲେ । ଲୋକେ ଯେ ଏହି ଅସାର କଥାରେ ଭୀତ ହୋଇ ଶୀତ କାକର ସହ ଘରବାହାରେ ରାତ୍ରିଯାପନ କଲେ, ଏଥିରେ କି ସେମାନଙ୍କର ତିଳେ ମାତ୍ର ଚିନ୍ତା ବା ଲଜ୍ଜା ଅଛି ? ଦିଲ୍ଲୀବାସୀମାନେ ଗୃହତ୍ୟାଗ କରି ରାତ୍ରି ଯାପନ କଲେ । ବାହାରେ ସେମାନଙ୍କର ଏହି ମିଥ୍ୟାବାଣୀର ଏତେ ବିଶ୍ୱାସ ଯେ, ସେମାନେ ଆଉ ଲୋକଙ୍କର ଏବଂ ଶାସକଗଣଙ୍କର ଅନୁରୋଧକୁ ମଧ୍ୟ ଅଗ୍ରାହ୍ୟ କଲେ । ଏଥିରୁ ବଳି ବିସ୍ମୟକର କଥା ଆଉ କ'ଣ ହୋଇପାରେ ?

ଭାରତବାସୀଙ୍କର ଶାସ୍ତ୍ରରେ ଆଧୁନିକ ରାଜନୈତିକ ଓ ଅର୍ଥନୈତିକ ବିଷୟ ଆଦୌ ନାହିଁ ବୋଇଲେ ଚଳେ । ତଥାପି ଆଧୁନିକ କେତେଜଣ ଜ୍ୟୋତିଷୀ ପାଶ୍ଚାତ୍ୟ ଜେଡ୍‌କିଲ୍ ପ୍ରଭୃତିଙ୍କର ଅନୁକରଣରେ ପୃଥିବୀର ବର୍ଷ ଫଳ, ଯଥା– ଭୂମିକମ୍ପ, ଝଡ଼ବୃଷ୍ଟି, ରାଷ୍ଟ୍ରବିପ୍ଳବ, ଯୁଦ୍ଧବିଗ୍ରହ, ଅର୍ଥନୀତି ଓ ରାଜନୀତି ସମ୍ବନ୍ଧରେ ଦୁଇ ପଦ ଭବିଷ୍ୟଦ୍‌ବାଣୀ ଲେଖି ଦେଉଅଛନ୍ତି । ତାହା ନ ଘଟିଲେ କାହାର ଗ୍ରାହ୍ୟ ହୁଏ ନାହିଁ— ଅକସ୍ମାତ୍ କୌଣସିଠାରେ ସେଥିରୁ ଗୋଟାଏ କିଛି ଘଟିଗଲେ ଭବିଷ୍ୟତ୍ ବକ୍ତାର ପ୍ରଶଂସାର ସୀମା ନାହିଁ ଏବଂ ଅନ୍ଧବିଶ୍ୱାସୀଙ୍କର ଆତ୍ମଶ୍ଳାଘାର ତ୍ରୁଟି ନାହିଁ । ଧନ୍ୟ ଦେଶ, ଧନ୍ୟ ବିଶ୍ୱାସ ।

ଉପର୍ଯ୍ୟୁକ୍ତ ଲେଖା ହେତୁରୁ ମୋର ଭାଗ୍ୟରେ ଲାଞ୍ଛନା ଥିଆ । ନିମ୍ନରେ ପୁଣି ଆଉ ଗୋଟିଏ ସର୍ବସାଧାରଣଙ୍କର ଅପ୍ରୀତିକର ବିଷୟ ଲେଖିବାକୁ ଯାଇ ନିନ୍ଦାଭାଜନ ହେବାକ ବସିଅଛି । ନାଚାର । ଆତ୍ମପ୍ରତ୍ୟୟ ଅପେକ୍ଷା ବଡ଼ ଚାଳକ ଆଉ କିଏ ? ମହାତ୍ମାଗାନ୍ଧୀଙ୍କର Divine Wrath, ଆମ୍ଭମାନଙ୍କ ପରି ଅଜ୍ଞ ବ୍ୟକ୍ତିର ହୃଦୟକୁ ଏ ଉକ୍ତିର ମର୍ମ ମଧ୍ୟ ସ୍ପର୍ଶ କରୁ ନାହିଁ । ଦୟାମୟର ମହାକ୍ରୋଧ ? ଅବଶ୍ୟ ଦୟାବାନ୍ ମନୁଷ୍ୟଠାରେ ଏପରି କ୍ରୋଧ ସମ୍ଭବ ହୋଇପାରେ । ମହାମାନବ, ଯାହାଙ୍କୁ ଆମ୍ଭେମାନେ ଅବତାର ବୋଲି ଗ୍ରହଣ କରିଥାଉ, ସେମାନଙ୍କଠାରେ କ୍ରୋଧର ସମ୍ଭବ ହୋଇପାରେ, ଯେପରି କୃଷ୍ଣ ଶିଶୁପାଳ ମୁଖରେ ନିଜର ଅପମାନ ଶୁଣି କ୍ରୋଧାନ୍ୱିତ ହୋଇ ଶିଶୁପାଳର ଶିରଚ୍ଛେଦନ କରିଥିଲେ— କ୍ରୋଧରେ ରଥଚକ୍ର ଘେନି ଭୀଷ୍ମଙ୍କ ପ୍ରତି ପ୍ରଧାବିତ ହୋଇଥିଲେ । ଏ ସ୍ଥଳରେ ଜଣକ ପ୍ରତି ଜଣକର କ୍ରୋଧ ମନୁଷ୍ୟ ପକ୍ଷରେ ସମ୍ଭବ । ମାତ୍ର ପରଶୁରାମଙ୍କ ପରି କ୍ରୋଧାନ୍ଧ ହୋଇ ନିରୀହ ଶିଶୁ ପର୍ଯ୍ୟନ୍ତ ବଧ ଅମାନୁଷିକ ବ୍ୟାପାର । ପରଶୁରାମଙ୍କର ଅମାନୁଷିକ କାଣ୍ଡ ଯେବେ ଈଶ୍ୱରଙ୍କଠାରେ ଦେଖାଯାଏ, ତେବେ ତାଙ୍କ ବିଭୁତ୍ୱ କାହିଁ ବହୁକାଳ ପୂର୍ବରୁ ଏହି ଭାରତବାସୀ ଉଚ୍ଚଜାତି ଗୋଟିଏ ଅସ୍ପୃଶ୍ୟ ଜାତିର ସୃଷ୍ଟି କରିଗଲେ । ତହିଁ ସମ୍ବନ୍ଧରେ ଉଚ୍ଚଜାତିମାନେ ଭଲମନ୍ଦ ବିଚାର ନ କରି ଗତାନୁଗତିକ ନ୍ୟାୟରେ ଚାଲି

ଆସୁଅଛନ୍ତି । ଏ ସମ୍ବନ୍ଧରେ ଉଚ୍ଚଜାତିମାନେ ଦାୟୀ; ମାତ୍ର ସେମାନଙ୍କ ଅପେକ୍ଷା ସେମାନଙ୍କର ପୂର୍ବପୁରୁଷ ଅର୍ଥାତ୍ ଜାତିବିଭାଗକର୍ତ୍ତାମାନେ ବେଶୀ ଦାୟୀ । ଅତ୍ୟାଚାରିତ ନୀଚ ଜାତିର ପତନ ଯେବେ ଈଶ୍ୱରାଭିପ୍ରେତ ନୁହେଁ, ତେବେ ଈଶ୍ୱରଙ୍କର ଆଇନ୍‌କର୍ତ୍ତାମାନଙ୍କ ଉପରେ ରୋଷ ଦୃଷ୍ଟି ପକାଇବା ଉଚିତ ଥିଲା କିମ୍ବା ଯେଉଁମାନେ ଏହି କୁବିଧିର ପ୍ରଶ୍ରୟ ଦେଇ ନୀଚ ଜାତିଙ୍କ ପ୍ରତି ଅତ୍ୟାଚାର କରୁଅଛନ୍ତି, ସେମାନଙ୍କର ଈଶ୍ୱରଙ୍କ କ୍ରୋଧର ଫଳଭୋଗୀ ହେବା ଉଚିତ । ତାହା ନ ହୋଇ ଜାତି ନିର୍ବିଶେଷରେ, ବୟସ ନିର୍ବିଶେଷରେ ବିହାର ପ୍ରଦେଶବାସୀଙ୍କ ଉପରେ ଈଶ୍ୱର ଏ ଅଭୂତପୂର୍ବ କ୍ରୋଧଝାଡ଼ିଲେ କାହିଁକି ? ଖ୍ରୀଷ୍ଟାନ୍ ଓ ମୁସଲମାନମାନେ ତ ହରିଜନ ଆନ୍ଦୋଳନର ବିପକ୍ଷରେ ନ ଥିଲେ— ସଦ୍ୟଜନ୍ମିତ ଶିଶୁ, ଦୁଗ୍ଧପୋଷ୍ୟ ଶିଶୁ, ଅବଳା, ଗର୍ଭିଣୀ, ରୋଗୀ ଏମାନେ ତ ହରିଜନ ଆନ୍ଦୋଳନ ବିପକ୍ଷରେ ମତ ଦେଇ ନାହାନ୍ତି ବା ପ୍ରତିବାଦ କରି ନାହାନ୍ତି— ଏମାନଙ୍କ ଉପରେ ଈଶ୍ୱରଙ୍କର ରୋଷାଗ୍ନି ବର୍ଷିତ ହେଲା କାହିଁକି ? ମାନ୍ଦ୍ରାସବାସୀ ବ୍ରାହ୍ମଣାଦି ଉଚ୍ଚ ଜାତିଙ୍କ ହେତୁ ହରିଜନ ଆନ୍ଦୋଳନର ସୂତ୍ରପାତ । ମାନ୍ଦ୍ରାସରେ ବ୍ରାହ୍ମଣ ଜାତି ଉପରେ ଏ ରୋଷାଗ୍ନି ବର୍ଷିତ ହେଲା ନାହିଁ କାହିଁକି ? ନିରୀହ ବିହାରବାସୀ ଈଶ୍ୱରଙ୍କର କି କ୍ରୋଧୋଦ୍ରେକ କାଣ୍ଡ କଲେ ? ବିହାର ବୁଦ୍ଧଦେବଙ୍କର ଲୀଳାକ୍ଷେତ୍ର ବୋଲି ଈଶ୍ୱରଙ୍କର କ୍ରୋଧ ହେଲା କି ? ଏତଭିନ୍ନ ଅନ୍ୟ କାରଣ କିଛି ଦିଶୁ ନାହିଁ । ତା' ଛଡ଼ା ହିନ୍ଦୁଜାତିର ଏବଂ ପାପର ପ୍ରାୟଶ୍ଚିତ୍ତ ବୋଲି କୌଣସି ସୂଚନା ମିଳୁଅଛି କି ? ନାହିଁ ତ, ତେବେ ହରିଜନମାନଙ୍କୁ ଉତ୍ତୋଳନ କରା ନ ଗଲା ବୋଲି ବିହାର ଭୂମିକମ୍ପ ଘଟିଲା ବୋଲିବାର କାରଣ ? ମହାତ୍ମାଙ୍କର ଏହା ଆଧାତ୍ମିକ ଉକ୍ତି ହୋଇପାରେ ଏବଂ ଏଥିର ମର୍ମ ବୁଝିବାକୁ ଆମ୍ଭମାନଙ୍କ ପରି ବ୍ୟକ୍ତିର ବୁଦ୍ଧି ଥାଇ ନ ପାରେ । ତେବେ ଏହା ନିଶ୍ଚୟ ଯେ, ଆମ୍ଭମାନଙ୍କ ପରି ବ୍ୟକ୍ତିମାନେ ଏହି ଉକ୍ତି ଶୁଣି ଭ୍ରାନ୍ତ ହେବେ ଏବଂ ଏହି ଉକ୍ତିର ଫଳରେ ଯେ ଭାରତବାସୀର ପତନ ଘଟିବ, ଏଥିରେ ସନ୍ଦେହ ନାହିଁ । ପୂର୍ବ ଋଷିମାନେ ଈଶ୍ୱରଙ୍କୁ (ବ୍ରହ୍ମଙ୍କୁ) ନିର୍ଲେପ, ନିଷ୍କ୍ରିୟ, ନିର୍ମଳ, ନିର୍ମତ୍ସର ବୋଲି କହି ଯାଇଛନ୍ତି । ପ୍ରାକୃତିକ ଘଟଣାରେ ତାଙ୍କୁ ଆଣି ଲିପ୍ତ କଲେ ଈଶ୍ୱରତ୍ୱ ବଜାୟ ରହିବ କିପରି ?

ପାଠକଗଣ ! ମୁଁ ଭୂତତ୍ତ୍ୱ ଓ ଭୂମିକମ୍ପନ ବିହାର ସୀମା ସ୍ପର୍ଶ କରି ନାହିଁ କହିଲେ ଚଳେ । ଯତ୍‌ସାମାନ୍ୟ ଯାହା ପଢ଼ିଶୁଣି ଜାଣିଛି, ତହିଁରେ ଆତ୍ମପ୍ରତ୍ୟୟ ଯୋଗ କରି ଉପର୍ଯ୍ୟୁକ୍ତ କେତେକ ପଙ୍‌କ୍ତି ଲେଖିଲି । ପାଣ୍ଡିତ୍ୟ ଦେଖାଇବା ଉଦ୍ଦେଶ୍ୟ ଆଦୌ ନାହିଁ । ତେବେ ଭାରତବାସୀଙ୍କର କୁବିଶ୍ୱାସ ଓ ମନୋବୃତ୍ତି ଦେଖି ଏହା ନ ଲେଖି ରହିପାରିଲି ନାହିଁ । ଏଥିରେ ଯେ ନିନ୍ଦା ପାଇବି, ଏହା ମୁଁ ପୂର୍ବରୁ ଜାଣିଅଛି । କିନ୍ତୁ ପାଠକଗଣଙ୍କୁ ଅନୁରୋଧ ଯେ, ତୁଳନା କରି ସେମାନେ ଦେଖିବେ— ଏପରି କୁସଂସ୍କାରପୂର୍ଣ୍ଣ ଚିନ୍ତାଧାରା ଦ୍ୱାରା ଦେଶର ଅନିଷ୍ଟ ହେବ କି ନା । ଯେବେ ଏପରି କୁସଂସ୍କାର ଓ କୁବିଶ୍ୱାସ ଦେଶବାସୀଙ୍କ ମନରୁ ଦୂର ହେବା ଉଚିତ୍ ମନେ କରନ୍ତି, ତେବେ ସେମାନେ ଏ ସମ୍ବନ୍ଧରେ ଦୁଇ ଚାରି ପଦ ଲେଖିବେ ।

●

## ରାଜା ରାମମୋହନ ରାୟ

ରାଜା 'ପ୍ରକୃତିରଞ୍ଜନାତ୍ ।' ଯେଉଁ ବ୍ୟକ୍ତି ଲୋକସମୂହର ହୃଦୟରେ ଅନୁରାଗ ଓ ସନ୍ତୋଷ ଉତ୍ପାଦନ କରିପାରେ, ସେହି ରାଜା । ଏହାହିଁ ରାଜା ଶବ୍ଦର ପ୍ରକୃତ ଅର୍ଥ ବୋଲି ହୃଦୟଙ୍ଗମ ହୁଏ ।

ରାମ ଶବ୍ଦର ଅର୍ଥ ଏହି — ଯେ ଜନସମୂହର ମନରେ କ୍ରୀଡ଼ା କରେ । ''ରମଣାତ୍ ରାମଃ ।'' ରାଜା ଶବ୍ଦ ଓ ରାମ ଶବ୍ଦ ସହଜ ଉଚ୍ଚାର୍ଯ୍ୟ ଓ ଶ୍ରୁତି ମଧୁର ।

ରାଜା ଶବ୍ଦ ବୈଦିକ ଶବ୍ଦ, ଉଦାରତା ଓ ଶାନ୍ତିବ୍ୟଞ୍ଜକ; ଏଣୁ ବୈଦିକ ଋଷିମାନେ ବରୁଣଙ୍କୁ ବିଶେଷ ଭାବରେ ରାଜା ଆଖ୍ୟାରେ ଭୂଷିତ କରିଥିଲେ ।

ରାଜା ଶବ୍ଦରୁ ରାଜ୍ୟ ଶବ୍ଦର ଉତ୍ପତ୍ତି; ସୁତରାଂ ରାଜ୍ୟ ଥାଉ ବା ନ ଥାଉ, ଯେଉଁ ବ୍ୟକ୍ତି ଜନସମୂହର ହୃଦୟରେ ଅନୁରାଗ ଓ ସନ୍ତୋଷ ଉତ୍ପାଦନ କରିପାରେ, ସେ ରାଜା । ଅଯୋଦ୍ଧାଧିପତିଙ୍କୁ କବିମାନେ ସସାଗରାଧରାଧୀଶ୍ୱର ବୋଲି ସମ୍ବୋଧନ କରିଯାଇଥିଲେ ମଧ ରାମନାମ ସହିତ ଉତ୍କଟ ସମ୍ରାଟ୍ ଇତ୍ୟାଦି ବଡ଼ ବଡ଼ ଶବ୍ଦ ଅପେକ୍ଷା ରାଜା ଶବ୍ଦର ଯୋଗ ବଡ଼ ପ୍ରୀତିକର, ବଡ଼ ମଧୁର । କାରଣ ସେ ସମୟରେ ମଧ ତାଙ୍କର ଶାସନ ଅପେକ୍ଷା ତାଙ୍କର ଗୁଣରେ ଲୋକେ ମୁଗ୍ଧ ଥିଲେ । ତ୍ରେତା ଯୁଗର ରାମ ଅଦ୍ୟାପି ଲୋକପୂଜିତ ଓ ଲୋକସମ୍ମାନିତ । ଏଣୁ ରାମଭକ୍ତ କହିଅଛନ୍ତି, ଭାରତବର୍ଷ ଥିବାଯାଏ ରାମଶବ୍ଦର ମାହାତ୍ମ୍ୟ ଲୋପ ପାଇବ ନାହିଁ । ଏହା ଅକ୍ଷରେ ଅକ୍ଷରେ ସତ୍ୟ ।

ରାମଚନ୍ଦ୍ରଙ୍କ ଉତ୍ତାରେ ତାଙ୍କ ନାମାନୁସାରେ ଏହି ଭାରତଭୂମିରେ ଅନେକ ରାମ ଜନ୍ମିଲେ ଓ ମଲେ । ହିସାବ ରଖିଛି କିଏ ? ମାତ୍ର ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ

ଏହି ଭାରତମାତାର କ୍ରୋଡ଼ରେ ଆଉ ଜଣେ ରାମ ଉପାଧିଧାରୀ ବ୍ୟକ୍ତି ଜନ୍ମିଥିଲେ, ଲାଳିତ ପାଳିତ ହୋଇଥିଲେ ଏବଂ ରାମ ନାମ ସାର୍ଥକ କରିଥିଲେ । ଏହା ସ୍ମରଣ କରିବାକୁ ଭାରତ ସନ୍ତାନ ବାଧ୍ୟ । ଏହି ରାମ ମଧ୍ୟ ପର ଦୁଃଖକାତର; ଏହି ରାମ ମଧ୍ୟ ଜନହୃଦୟରଞ୍ଜକ ।

ଗୁଣମୁଗ୍ଧ ବାଦସା ଏହାଙ୍କୁ ରାଜା ଉପାଧିରେ ଭୂଷିତ କରିଥିଲେ । ମଣିକାଞ୍ଚନ ସଂଯୋଗ । ରାମ ଶବ୍ଦ ସହିତ ରାଜା ଶବ୍ଦ ଜଗଦ୍‌ବାସୀଙ୍କ ବିମୋହିତ କରିଥିଲା । ଏହି ରାଜା ଭୂମିର ଅଧିପତି ନ ଥିଲେ, ଭୌମ ରାଜ୍ୟର ରାଜା ନ ଥିଲେ; ମାତ୍ର ହୃଦୟରାଜ୍ୟର ରାଜା ଥିଲେ । ଗତ ଦୁଇ ଶତାବ୍ଦୀ ମଧ୍ୟରେ ଅସଂଖ୍ୟ ଆତ୍ମବିକ୍ରୟୀ ରାଜ୍ୟଶୂନ୍ୟ ରାଜାର ସୃଷ୍ଟି ହୋଇଅଛି । ରାଜା ରାମମୋହନ ମଧ୍ୟ ରାଜ୍ୟଶୂନ୍ୟ ରାଜା । ମାତ୍ର ସେ ସ୍ୱାର୍ଥତ୍ୟାଗ ବିନିମୟରେ ଅସଂଖ୍ୟ ହୃଦୟରାଜ୍ୟ କ୍ରୟ କରିଥିଲେ । ପ୍ରଥମୋକ୍ତ ରାଜାମାନଙ୍କର ଜୀବିତାବସ୍ଥାରେ ମଧ୍ୟ ନାମ ସ୍ମରଣଯୋଗ୍ୟ ବୋଲି ବିବେଚିତ ହୁଏ ନାହିଁ । ମାତ୍ର ରାଜା ରାମମୋହନଙ୍କ ନାମ ଚିରସ୍ମରଣୀୟ ହୋଇ ରହିବ । କାଳର ଗତି ସଙ୍ଗେ ସଙ୍ଗେ ଏହି ନାମର ଆଦର ଓ ସମ୍ମାନ ବଢୁଥିବ । ଏଥିର ଜାଜ୍ୱଲ୍ୟମାନ ପ୍ରମାଣ ଆମ୍ଭେମାନେ ଶତବର୍ଷ ପରେ ତାଙ୍କର ଶତବାର୍ଷିକୀରେ ଲକ୍ଷ୍ୟ କରିଥାଉଁ । ଅଦ୍ୟାପି ଏ ଦେଶ ତାଙ୍କର ଆଦର୍ଶ ଗ୍ରହଣ କରିବାକୁ ସମର୍ଥ ହୋଇ ନାହିଁ । ମାତ୍ର ତାଙ୍କର ଆଦର୍ଶ ଗ୍ରହଣ କରିବାକୁ ଏ ଦେଶ ଯେ ବାଧ୍ୟ ଏବଂ ତଦ୍‌ଭିନ୍ନ ଏ ଦେଶବାସୀର ଯେ ଗତ୍ୟନ୍ତର ନାହିଁ; ତାହା ସ୍ପଷ୍ଟ ହୃଦୟଙ୍ଗମ ହୋଇଅଛି । କେତେବର୍ଷ ଉତ୍ତାରେ ଏ ଦେଶ ଯେ କେବେ ରାଜା ରାମମୋହନଙ୍କ ଭକ୍ତ ହୋଇ ତାର ମୁକ୍ତିବାଟ ଆବିଷ୍କାର କରିବ, ତାହା ଠିକ୍‌ରୂପେ କହିହେବ ନାହିଁ । କାରଣ ଏ ଦେଶବାସୀ ସୁସଂସ୍କାରର ବିରୋଧୀ । ତଥାପି ଆମ ତୁମ ଭଳିଆ ଅସଂଖ୍ୟ ଅକର୍ମଣ୍ୟ ଭକ୍ତଙ୍କ ହୃଦୟରେ ଯେ ଏହି ରାଜା ରାମଙ୍କ ଗୁଣଗ୍ରାମ କ୍ରୀଡ଼ା କରୁଅଛି, ଏଥିରେ ସନ୍ଦେହ ନାହିଁ ।

ରାଜା ରାମମୋହନଙ୍କ ସହିତ ମୋର ପ୍ରଥମ ପରିଚୟ— ସେ ବହୁବର୍ଷର କଥା, ମୋର ତରୁଣାବସ୍ଥାରେ ଯେତେବେଳେ ଉପାସକ ସମ୍ପ୍ରଦାୟ ପୁସ୍ତକ ମୋର ହସ୍ତଗତ ହେଲା । ଏହି ପୁସ୍ତକର ସଂକ୍ଷିପ୍ତ ବିବରଣ ମତେ ରାମମୋହନଙ୍କର ଭକ୍ତ କରିବା ପକ୍ଷରେ ଯଥେଷ୍ଟ, ଅଧିକ ଲୋଡ଼ା ନ ଥିଲା । ଏଥିନିମନ୍ତେ ମୁଁ ଉପାସକ ସମ୍ପ୍ରଦାୟର ଲେଖକଙ୍କୁ ଆନ୍ତରିକ ଧନ୍ୟବାଦ ଦିଏଁ ଯେ, ସେ ଏଡ଼େବଡ଼ ଜୀବନୀ ମଧ୍ୟରୁ ଏପରି ସାରୋଦ୍ଧାର କରି ଦେଇଅଛନ୍ତି, ଯାହା ଅଧ୍ୟୟନ କଲାମାତ୍ରକେ ରାମମୋହନଙ୍କ ମହାମାନବତ୍ୱର ସାରବତ୍ତା ଓ ମହତ୍ତ୍ୱ ଅତି ସହଜରେ ହୃଦୟଙ୍ଗମ ହୋଇଥାଏ ।

ବର୍ତ୍ତମାନ ସହିତ ଏକଶତ ବର୍ଷ ପୂର୍ବର କଥା ଚିନ୍ତାକଲେ ବିସ୍ମୟାଭିଭୂତ ହେବାକୁ ହୁଏ । ସେ ସମୟରେ ଏ ଦେଶର ରୀତି ନୀତି, ଆଚାର ବ୍ୟବହାର, ସମାଜବନ୍ଧନ, ଅନ୍ଧବିଶ୍ୱାସ, କୁସଂସ୍କାର ହିନ୍ଦୁଜାତିକି କିପରି ମୋହାଚ୍ଛନ୍ନ କରି ରଖିଥିବ, ତାହା ଅତି ସହଜରେ ବୁଝାଯାଏ । ସେହି ମୋହାନ୍ଧକାର ବିଦୀର୍ଣ୍ଣ କରି ଜ୍ଞାନଦୀପ ଶିକ୍ଷା ପ୍ରଜ୍ୱଳିତ ହେଲା ବଙ୍ଗଦେଶରେ, ମାତ୍ର ସେହି ଜ୍ଞାନଶିକ୍ଷା ସହସା ଦୀପରୁ ଦୀପାନ୍ତରକୁ ସଞ୍ଚରଣ କରିପାରିଲା ନାହିଁ । ଦୀପରଶ୍ମି ନିର୍ବାପିତ ହୋଇ ନାହିଁ, ହେବାର ନୁହେଁ । ଭାରତବାସୀ ସେହି ଆଲୋକ ସାହାଯ୍ୟରେ ଚାଲିବେ, ମୁକ୍ତି ପଥରେ ଅଗ୍ରସର ହେବେ ।

ଉପନିଷଦରୁ ଏ ଭାରତଭୂମିର ବହୁ ସନ୍ତାନ ଆପଣା ଆପଣା ମତ ଗଠନ କରି ଲୋକଙ୍କୁ ସେହି ପଥରେ ଚାଲିବାକୁ ଉପଦେଶ ଦେଇଅଛନ୍ତି । ବ୍ରହ୍ମପ୍ରାପ୍ତି ମୁଖ୍ୟ ଉଦ୍ଦେଶ୍ୟ । ବେଦାନ୍ତ ଯେ ମାନବଜାତିର ଶ୍ରେଷ୍ଠ ଧର୍ମ, ଏ ଚିତ୍କାର ସର୍ବତ୍ର ଶୁଣାଯାଏ । ଏ ଦେଶର ପୌତ୍ତଳିକମାନେ ମଧ୍ୟ 'ଏକମେବା ଦ୍ୱିତୀୟଂ'ର ମୌଖିକ ପକ୍ଷପାତୀ । ମାତ୍ର ସେ ଏକତ୍ୱବାଦରେ ଯେ କି ନୈତିକ, କି ଚାରିତ୍ରିକ ଉତ୍କର୍ଷ ଅନ୍ତର୍ନିହିତ ଅଛି, ତାହା ବୁଝନ୍ତି କେତେ ଜଣ ?

ଶଙ୍କରାଚାର୍ଯ୍ୟଙ୍କ ଧର୍ମମତ ବେଦାନ୍ତ ଉପରେ ପ୍ରତିଷ୍ଠିତ । ମାତ୍ର 'ସୋହଂ' 'ଶିବୋହଂ' ଉତ୍ତାରୁ ଧାତବ ଶିବ ଉପାସନା ପଦ୍ଧତି ଓ ବର୍ଣ୍ଣାଶ୍ରମ ଧର୍ମମତ ଆସିଲା କିପରି ? ଏକତ୍ୱର ବହୁତ୍ୱର ପ୍ରଚାର ହେଲା କିପରି ? ଏହା ବୁଝାଯାଏ ନାହିଁ । ଏଥିରେ ଶଙ୍କରାଚାର୍ଯ୍ୟ କେତେଦୂର ଦାୟୀ ବା ତାଙ୍କର ଶିଷ୍ୟବର୍ଗ କେତେ ଦୂର ଦାୟୀ, ତାହା କହିହେବ ନାହିଁ । ରାମମୋହନ ତାଙ୍କ ଧର୍ମମତ ସେହି ଉପନିଷଦରୁ ହିଁ ଉଦ୍ଧାର କରିଥିଲେ । ଉପନିଷଦର ଏକତ୍ୱବାଦରୁ ଭାରତରେ ଏକତା ଆଣିବାର ଇଚ୍ଛା ତାଙ୍କ ହୃଦୟରେ ବଳବତୀ ହୋଇଥିଲା । ଏ ଉପାସନାର ମୂଳମନ୍ତ୍ର ନୈତିକ ଓ ଚାରିତ୍ରିକ ଉତ୍କର୍ଷ ଏବଂ ସ୍ୱାର୍ଥତ୍ୟାଗ । ଏ ଦେଶର ଜନତା ତୁଳନାରେ ମୁଷ୍ଟିମେୟ ଲୋକ ଏକତ୍ୱ ଧର୍ମମତ ବଲମ୍ବୀ । ମାତ୍ର ସେଥିମଧ୍ୟରୁ କେତେ ଜଣ ସ୍ୱାର୍ଥତ୍ୟାଗୀ ଏବଂ ଗୁରୁଙ୍କ ଉଦ୍ଦେଶ୍ୟ ସିଦ୍ଧି ନିମନ୍ତେ ତତ୍‌ପର, ତାହା କହିବା ଅସମ୍ଭବ । ବିବେକାନନ୍ଦ ବେଦାନ୍ତଧର୍ମାବଲମ୍ବୀ ସତ ଏବଂ ତାଙ୍କଦ୍ୱାରା ରାମମୋହନଙ୍କ

ଜନହିତକର ବାସନା କେତେକାଂଶରେ ପୂର୍ଣ୍ଣ ହୋଇଅଛି ସତ; ମାତ୍ର ବିବେକାନନ୍ଦ ରାମମୋହନଙ୍କୁ ଗୁରୁ ସମ୍ମାନନା ନ ଦେଇ ରାମକୃଷ୍ଣଙ୍କୁ ଗୁରୁ ସମ୍ମାନନା ଦେବାକୁ ଶ୍ଲାଘା ମଣିଲେ । ବିବେକାନନ୍ଦ ହିନ୍ଦୁ, ରାମମୋହନ ରାୟ ବ୍ରାହ୍ମ । ବ୍ରାହ୍ମଧର୍ମ ଯେ ହିନ୍ଦୁଧର୍ମ ଏହା ସ୍ୱୀକାର କରିବାକୁ ଶିକ୍ଷିତମାନେ ମଧ ନାରାଜ । ଏଥିନିମନ୍ତେ ପାଶ୍ଚାତ୍ୟଶିକ୍ଷିତ ରିଫମଡ୍ ହିନ୍ଦୁମାନେ ଦାୟୀ ବୋଲି ମନେହୁଏ । ଏବେ ନବବେଦାନ୍ତ ଧର୍ମାବଲମ୍ବୀ ଅସଂଖ୍ୟ ସ୍ୱାମୀ ଅସଂଖ୍ୟ ଆଶ୍ରମର ପ୍ରତିଷ୍ଠା କରିଅଛନ୍ତି । ରାମମୋହନଙ୍କ ଏକତ୍ୱବାଦ ସମସ୍ତଙ୍କର ଗ୍ରାହ୍ୟ; ମାତ୍ର ତାଙ୍କର ବ୍ୟବସ୍ଥା ଓ ସ୍ୱାଧୀନ ମାର୍ଗ କାହାରି ଗ୍ରାହ୍ୟ ନୁହେଁ । ଏହା ବିସ୍ମୟକର ବ୍ୟାପାର ନୁହେଁ କି ? ମହତ୍ତ୍ୱର ପ୍ରଶଂସାର ନାମାନ୍ତର ମହତ୍ତ୍ୱର ଅନୁକରଣ । ଅନୁକରଣ ବା ଅନୁକରଣର ଚେଷ୍ଟା ନ କରି କେବଳ ମହତ୍ତ୍ୱ ପ୍ରଶଂସା ନିରର୍ଥକ ମାତ୍ର ।

ଶତ ବର୍ଷ ପୂର୍ବେ ଯେଉଁ ବ୍ୟକ୍ତି ଆମ୍ଭମାନଙ୍କର ହିତସାଧନକଳ୍ପେ ମନଃପ୍ରାଣ ନିୟୋଗ କରିଥିଲେ, ସେ କେଡ଼େବଡ଼ ସାଧକ ।

ମୋର ବାଲ୍ୟବସ୍ଥାରେ ଏହି ବାମଣ୍ଡା ରାଜ୍ୟର ପଶ୍ଚିମପ୍ରାନ୍ତସ୍ଥ ସଗରା ଗ୍ରାମରେ ଗୋଟିଏ ସତୀଦାହ ବ୍ୟାପାର ଘଟିଥିଲା । ସ୍ତ୍ରୀଟି ଗଣ୍ଡଜାତୀୟା । ଏଥିନିମନ୍ତେ ସେହି ସତୀର ଆତ୍ମୀୟ ଓ ଜାତିଭାଇ ଜଣକେତେ କାରାଦଣ୍ଡ ଭୋଗ କରୁଥିଲେ । ଏଥି ମଧ୍ୟରୁ ଅର୍ଜୁନ ବରିହା ପିତାଙ୍କର ଅନୁଗତ ଲୋକ । ସେ ଜେଲ୍‌ରେ ବାରକସିଆ ହେଲାରୁ ଆମ ଘରକୁ ଆସି କାର୍ଯ୍ୟ କରେ । ତାର ବାମ ଗୋଡ଼ରେ ଗୋଟିଏ ଲୁହାକଡ଼ା । ମୁଁ ତାକୁ ଲୁହାକଡ଼ାର କାରଣ ପଚାରିଲେ ସେ ସତୀଦାହର ବିସ୍ତୃତ ବିବରଣ ପ୍ରକାଶ କରେ । କୋମଳବାଳକମତି ମୁଁ ସତୀଦାହ କଥା ବୁଝନ୍ତି କ'ଣ ? ତେବେ ଏହି କଥା ଭାବେ ଯେ, ଯେବେ ବାପାମାନଙ୍କ ମୃତ୍ୟୁ ସଙ୍ଗେ ମା'ମାନେ ପ୍ରାଣ ଦେବାର ବ୍ୟବସ୍ଥା ଥିଲା, ତେବେ ଛୁଆଟିମାନଙ୍କର ଗତି କ'ଣ ? ପ୍ରାୟ ଅନେକ ଦିନ ଅର୍ଜୁନ ସହିତ ଏହି ଆଲୋଚନା ଚାଲିଥାଏ । ପ୍ରବୀଣଙ୍କଠାରୁ ଏଥିର ତତ୍ତ୍ୱ ଜାଣିବାକୁ ଇଚ୍ଛାକଲେ କହନ୍ତି, ଏହା ଚିରାଚରିତ ପ୍ରଥା ଥିଲା । କମ୍ପାନୀ ବାହାଦୂର ଏହା ବନ୍ଦ କଲେ । ମନ ମାନେ ନାହିଁ । ବାଲ୍ୟକାଳର ଅନୁସନ୍ଧିତ୍ସା ବଡ଼ ପ୍ରବଳ । ମୁରବୀମାନେ ସିନା ତାହା ଦବାଇ ପକାନ୍ତି । ରାମାୟଣରୁ ଜାଣିଲି ଯେ ରାମଜନନୀ କୌଶଲ୍ୟା ଦଶରଥଙ୍କର ସହ ଗମନ କରି ନ ଥିଲେ, ଏତିକି ଯଥେଷ୍ଟ । ମନେକଲି, ପ୍ରବୀଣମାନଙ୍କ 'ଚିରାଚରିତ' ଉକ୍ତି ଛଳନା ମାତ୍ର । ମାତ୍ର ମୋର ମତରକ୍ଷକ କିଏ ? ଶାସ୍ତ୍ରଜ୍ଞାନ ତ ନ ଥିଲା, ଏ ବିଷୟ ନେଇ ସମୟ ସମୟରେ ମନ ଘାଣ୍ଟି ହେଉଥିଲାବେଳେ 'ଉପାସକ ସମ୍ପ୍ରଦାୟ' ହାତରେ ପଡ଼ିଲା । ସେଠାରେ ଦେଖିପାରିଲି ସ୍ତ୍ରୀ ନିଧନ ବିରୋଧରେ ରାମମୋହନଙ୍କ ବୀରତ୍ୱ । ତାଙ୍କର ପରିଚୟ ପାଇ ନିଜକୁ ଧନ୍ୟ ମଣିଲି । ତରୁଣ ବୟସରେ ଏଥିନିମନ୍ତେ ହୃଦୟରେ ଯେ ଭକ୍ତିରେଖା ଅଙ୍କିତ ରହିଅଛି, ତାହା ଜୀବନରେ ଲିଭିବାର ନୁହେଁ ।

ରାମମୋହନଙ୍କର ଅନନ୍ୟସାଧାରଣ କୀର୍ତ୍ତିକଳାପ ମଧ୍ୟରେ ଇଂରାଜୀଶିକ୍ଷା ଏ ଦେଶରେ ପ୍ରଚଳିତ ହେବା ସମ୍ବନ୍ଧରେ ଯେ ଯୁକ୍ତି ତାହା ହୃଦୟସ୍ପର୍ଶୀ । ଜଗଦ୍‌ବାସୀ ଜ୍ଞାନ ବିଜ୍ଞାନରେ ବିଶ୍ୱଜୟ କଲାବେଳେ 'ମୋ ଦେଶବାସୀ କୁସଂସ୍କାରଜଡ଼ିତ ଓ ଅଜ୍ଞାନତାତମସାଚ୍ଛନ୍ନ। ରହିବେ' ? ଏହି ଉଦାରଭାବ ରାମମୋହନଙ୍କ ହୃଦୟକୁ ଆନ୍ଦୋଳିତ କରି ନ ଥିଲେ ଏବଂ ଭାରତର ଦୂର ଦୁର୍ଭାଗ୍ୟ ତାଙ୍କ ନେତ୍ର ଆଗରେ ପଡ଼ି ନ ଥିଲେ ସେ ଏଥିନିମନ୍ତେ ଅଣ୍ଟା ଭିଡ଼ି ଲାଗିଥାନ୍ତେ କି ? ଆଜି ଯେ ଦେଶବାସୀଙ୍କର ସ୍ୱାଧୀନତା କାମନା ଓ ପ୍ରଗତିର ଚେଷ୍ଟା, ତାହା କି ରାମମୋହନଙ୍କ ପ୍ରେରଣା ନୁହେଁ ?

ରାଜା ରାମମୋହନଙ୍କ ଜନହିତ ଚେଷ୍ଟା ଅତୁଳନୀୟ । ଜାତିନିର୍ବିଶେଷରେ ଭାରତବାସୀର ଉନ୍ନତି ତାଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ ଥିଲା । ପୃଥିବୀର ସମସ୍ତ ସଭ୍ୟ ଓ ଶିକ୍ଷିତ ଜାତି ସହିତ ଭାରତବାସୀ ସ୍ନେହ ଓ ଏକତା ସୂତ୍ରରେ ଆବଦ୍ଧ ନ ହେଲେ ଭାରତବାସୀଙ୍କର ମଙ୍ଗଳ ହେବା ସମ୍ଭବ ନୁହେଁ, ଏହା ସେ ଭଲଭାବରେ ବୁଝି ପାରିଥିଲେ ଏବଂ ସେଥିନିମନ୍ତେ ଯଥେଷ୍ଟ ଉପଦେଶ ରଖିଯାଇଛନ୍ତି ।

ମୋଟକଥା, ଆଜିକାଲି ଭାରତବାସୀ ମୁଣ୍ଡ ଟେକିବାକୁ ଯେତେ ସୁଚେଷ୍ଟା କରୁଅଛନ୍ତି, ସେ ସମସ୍ତର ରାମମୋହନ ଅଗ୍ରଣୀ ।

ତଦବଧି ଦେଶରେ ଅନେକ ଯୋଗ୍ୟ ସନ୍ତାନ ଜନ୍ମଗ୍ରହଣ କଲେଣି ଏବଂ ଏ ଦେଶର ଉନ୍ନତି ନିମନ୍ତେ ବହୁ ଚେଷ୍ଟା କଲେଣି; ମାତ୍ର ପ୍ରତ୍ୟେକଙ୍କର ଝୁଙ୍କ ସ୍ୱତନ୍ତ୍ର ଜନନାୟକତ୍ୱ ନିମନ୍ତେ; ସୁତରାଂ ଏକତାର ଅଭାବ ଘଟୁଅଛି ବୋଲି ମନେହୁଏ । ପୁଣି ଏହା ମଧ ମନେହୁଏ ଯେ, ଏ ଦେଶର ନେତାମାନଙ୍କ ଦ୍ୱାରା ରାମମୋହନଙ୍କ ଉଦାରତା ଓ ମହତ୍ତ୍ୱ ଠିକ୍ ରୂପେ ଅନୁସୃତ ହୁଏ ନାହିଁ ।

ରାମମୋହନଙ୍କ ଉନ୍ନତିର ଭାବଧାରା ଆଧୁନିକ ନେତାମାନଙ୍କଠାରୁ ସ୍ୱତନ୍ତ୍ର । ଟଳ ଟଳ ଜୀର୍ଣ୍ଣ ଭିତ୍ତି ଉପରେ

ଜାତୀୟତାର ପ୍ରାକାର ନିର୍ମାଣ କରିବାର ତାଙ୍କର ଅଭିପ୍ରାୟ ବିରୁଦ୍ଧ। ସେ ମୂଳଦୁଆକୁ ଦୃଢ଼ କରି ତହିଁରେ ଏ ଜାତିର ଉନ୍ନତିଧ୍ୱଜା ପୋତିବାକୁ ବାସନା ରଖିଥିଲେ । ଅନ୍ଧବିଶ୍ୱାସ କୁସଂସ୍କାରକୁ ଚୂର୍ଣ୍ଣୀଭୂତ କରି ଦେଶର ଯାହା ଶ୍ରେଷ୍ଠ, ଯାହା ଉନ୍ନତ, ଉଦାର; ତାହା ଜଗତ୍ ସମକ୍ଷରେ ପ୍ରଦର୍ଶନ କରିବାକୁ ଇଚ୍ଛା କରିଥିଲେ । ଆଧୁନିକ ପ୍ରଧାନ ନେତା କେତେ ଜଣ ଅନ୍ଧବିଶ୍ୱାସ ଓ କୁସଂସ୍କାର ରକ୍ଷା ଦ୍ୱାରା ଜାତୀୟ ଉନ୍ନତି ସମ୍ଭବ ବୋଲି ବିଶ୍ୱାସ କରନ୍ତି । ବିସ୍ମୟକର କଥା ।

ଶେଷରେ ରାମମୋହନଙ୍କର ଉପଦେଶ ଭାରତବାସୀର ହୃଦୟକପାଟରେ କରାଘାତ କରୁଅଛି । କପାଟ ଖୋଲିବାର ସମୟ ଆସି ନାହିଁ । ସମୟ ଆସିବ, ତେବେ ଲୋକେ ରାମମୋହନଙ୍କ ନିର୍ଦ୍ଦିଷ୍ଟ ପଥାନୁସରଣଦ୍ୱାରା ମୁକ୍ତି ପାଇବେ ।

ରାମମୋହନଙ୍କ ଗୁଣ ଲେଖିବାକୁ ଏ ଲେଖନୀରେ ଜୋର ନାହିଁ । ତାଙ୍କର ସଦ୍‌ଗୁଣାବଳୀ ପାଠକଙ୍କର ହୃଦୟଙ୍ଗମ କରାଇବାକୁ ଲେଖକର ସାମର୍ଥ୍ୟ ନାହିଁ—ଅଛି ହୃଦୟରେ ଶ୍ରଦ୍ଧା ଓ ଭକ୍ତି । ଶ୍ରଦ୍ଧାଭକ୍ତି ବଢୁ ଏବଂ ଅନୁକରଣ ଲିପ୍‌ସା ବଢୁ, ଏହି କାମନାରେ ଶତବାର୍ଷିକ ଶ୍ରାଦ୍ଧବାସରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରି କ୍ଷାନ୍ତ ହେଲି ।



## ଲଘୁ ସାହିତ୍ୟ ଓ ବଳିଷ୍ଠ ସାହିତ୍ୟ ସମ୍ବନ୍ଧେ ଦୁଇ ଚାରି କଥା

ଉତ୍କଳ ସାହିତ୍ୟର ଶ୍ରାବଣ ଓ ଶାରଦୀୟ ସଂଖ୍ୟାରେ ଲଘୁ ସାହିତ୍ୟ ଓ ବଳିଷ୍ଠ ସାହିତ୍ୟ ଏବଂ କଥା ସାହିତ୍ୟର ଆଲୋଚନା ଆମ୍ଭମାନଙ୍କର ସାହିତ୍ୟ ଚିନ୍ତାଧାରାକୁ ଜଡ଼ୀଭୂତ କରିଅଛି । ଏକ ଆଡ଼େ ଉତ୍କଳ ଭାଷାରେ ଲଘୁ ସାହିତ୍ୟର ବାହୁଲ୍ୟ ଦେଖି ଶଶୀବାବୁଙ୍କ ଭଳି ପ୍ରବୀଣ ସାହିତ୍ୟିକମାନଙ୍କର ଭୟ । ଅନ୍ୟ ଆଡ଼େ ଶଶୀବାବୁଙ୍କ ଭଳି ପ୍ରବୀଣ ସାହିତ୍ୟିକମାନଙ୍କର ମତକୁ ଅନୁବାଦ ଭାବି ହରିହରବାବୁଙ୍କ ତୁଲ୍ୟ ନବୀନ ସାହିତ୍ୟିକମାନଙ୍କର ମସୀଯୁଦ୍ଧର ଆୟୋଜନ । ଆମ୍ଭମାନଙ୍କର ଗତି କ'ଣ ? ଆମ୍ଭେମାନେ ନୂତନ ସାହିତ୍ୟିକ ଭାବବନ୍ୟା ଦେଖି ଭୀତତ୍ରସ୍ତ ହୋଇ ତଟସ୍ଥ-କୌଣସି ଉଚ୍ଚଭୂମିର ବୃକ୍ଷମୂଳରେ ଆଶ୍ରୟ ଗ୍ରହଣ କରିବା କିମ୍ବା ଯୁବା ସାହିତ୍ୟିକମାନଙ୍କୁ କର୍ଣ୍ଣଧାର ଭାବି ସେମାନଙ୍କ ସଙ୍ଗରେ ଏକା ନୌକାରେ ବସି ବନ୍ୟାସ୍ରୋତ ପାରିହେବାର ଚେଷ୍ଟା କରିବା ବିଷମ ସମସ୍ୟା । ତୀର ଅଗୋଚର, ସ୍ରୋତ ଭୟାବହ । ଆପାତତଃ ପୂର୍ବ ପରିଚିତ ବୃକ୍ଷମୂଳ ନିରାପଦ ବୋଲି ଭାବିବା, ସ୍ୱାଭାବିକ, ମାତ୍ର, ବୃକ୍ଷମୂଳରେ ନିଃସଙ୍ଗ ହୋଇ କି ସୁଖରେ ଜୀବନଯାପନ କରିବୁ କାହା ସହିତ ? କିଏ ଆମ୍ଭମାନଙ୍କର ପୌରୁଷାର୍ଥର ରକ୍ଷକ ହେବ ? ଆମ୍ଭେମାନେ ସନ୍ଦେହଭାବାପନ୍ନ । ପାଠକଗଣ ଏଥିର ମୀମାଂସକ ।

ସାହିତ୍ୟ ଶବ୍ଦ ପୁରାତନ; ମାତ୍ର ଏ ଶବ୍ଦର ଆକ୍ଷରିକ ସ୍ପଷ୍ଟାର୍ଥ କୌଣସି କୋଷାକାର ଦେଇନାହାନ୍ତି । ଯେଉଁ ପ୍ରେମଦ୍ୱାରା ଆମ୍ଭେମାନେ ଲୋକ ସଂଗ୍ରହ କରିପାରୁଁ ବା ଲୋକମତ ସଂଗ୍ରହ କରିପାରୁଁ ବା ଲୋକମଧ୍ୟରେ ଏକତା ଆଣିପାରୁଁ, ତା'ର ନାମ ସାହିତ୍ୟ । କହିବାକୁ ଗଲେ ଧର୍ମ ଓ ସାହିତ୍ୟର ଉଦ୍ଦେଶ୍ୟ ପ୍ରାୟ ଏକ । ଉଭୟେ ଦୋଷର ନିନ୍ଦା କରନ୍ତି ଏବଂ ଗୁଣର ପ୍ରଶଂସା କରନ୍ତି । ଲୋକଶିକ୍ଷା ହିଁ ଉଭୟର ଉଦ୍ଦେଶ୍ୟ । ଅର୍ଥ ଭେଦରେ ଧର୍ମର ଯେପରି ବ୍ୟଭିଚାର ଘଟିଅଛି, ସାହିତ୍ୟର ମଧ୍ୟ ତଦ୍ରୂପ ବ୍ୟଭିଚାର ଘଟିଅଛି ।

ଆଜିକାଲି ସାହିତ୍ୟିକମାନଙ୍କର କାଳ୍ପନିକ ସ୍ୱର୍ଗପ୍ରାପ୍ତ୍ୟାଶା ଅତି କମ୍, ସୁତରାଂ ଆଳଙ୍କାରିକମାନଙ୍କର 'କୀର୍ତ୍ତି ସ୍ୱର୍ଗଫଳା ମାହୁରାସଂସାରଂ ବିପଣ୍ଡିତଃ' ପ୍ରଭୃତି ବାକ୍ୟରେ ଆସ୍ଥା ସ୍ଥାପନ କରି କେବଳ ମହାଭାରତ ପୁରାଣାଦି ବର୍ଣ୍ଣିତ ବିଷୟମାନଙ୍କର ଚର୍ବିତ ଚର୍ବଣ କରିବାକୁ ରାଜି ନୁହନ୍ତି । ମନୁଷ୍ୟ ଯେତିକି ଉନ୍ନତି ପଥରେ ଅଗ୍ରସର ହେଉଛି, ମନୁଷ୍ୟ ଜାତି ପ୍ରତି ତା'ର ଶ୍ରଦ୍ଧା ଓ ମମତା ତେତିକି ବଢୁଛି ଏବଂ କ୍ରମେ ବଢ଼ିବ । ସୁତରାଂ ପରିଦୃଶ୍ୟମାନ ସଂସାରର ସୁଖ, ଦୁଃଖ, ରୀତି, ନୀତି ଓ ଯାବତୀୟ ପରିବର୍ତ୍ତନ ନେଇ ସାହିତ୍ୟର ଗଣ୍ଡିକୁ ସାହିତ୍ୟିକ ପୂରଣ କରିବ । ଜୀବ ନରପଦବାଚ୍ୟ ହେଲା ଦିନରୁ ତ ଏହି ପନ୍ଥା ଅନୁସରଣ କରି ଆସୁଅଛି । ଏହି ଉନ୍ନତି ସ୍ରୋତକୁ ପ୍ରତିରୋଧ କରିବାକୁ ସମୟ ସମୟରେ ଯେ ଦଳେ ଦଳେ ବ୍ୟକ୍ତି ଧର୍ମର ଦୋହାଇ ଓ ପ୍ରାଚୀନ ରୀତି ନୀତିର ଦୋହାଇ ଦେଇ ନାହାନ୍ତି ବା ଦେଉ ନାହାନ୍ତି ତାହା ନୁହେଁ, ମାତ୍ର ସ୍ରୋତ ଅପ୍ରତିହତ, ବାଧାବିଘ୍ନ ନ ମାନି ଗନ୍ତବ୍ୟ ସ୍ଥାନକୁ ଚାଲିଛି । ଇତିହାସ ଏଥିର ସାକ୍ଷୀ, ଆମ୍ଭେମାନେ ମଧ୍ୟ ପ୍ରତ୍ୟକ୍ଷ କରୁଥାଉଁ । ନା ଭୂମିକା ବଡ଼ ହୋଇଗଲା । ବିଷୟ ଅପେକ୍ଷା ଭୂମିକା ବଡ଼ ହେବା କ୍ଷମାଯୋଗ୍ୟ ନୁହେଁ ।

ସାହିତ୍ୟ ଦୁଇ ପ୍ରକାର— ପଦ୍ୟାତ୍ମକ ଓ ଗଦ୍ୟାତ୍ମକ । ପଦ୍ୟାତ୍ମକ ସାହିତ୍ୟର ଜନ୍ମ ଗଦ୍ୟାତ୍ମକ ସାହିତ୍ୟ ଅପେକ୍ଷା ବହୁ ପୂର୍ବରୁ । ସଂସ୍କୃତ ସାହିତ୍ୟ ପଦ୍ୟବହୁଳ, ପାଲୀଭାଷାରେ

ଗଦ୍ୟର ପ୍ରଚଳନ ଥିଲେ ମଧ ଆଧୁନିକ ଭାରତୀୟ ଭାଷାମାନଙ୍କରେ ଗଦ୍ୟର ପ୍ରଚାର ନ ଥିଲା । ଗଦ୍ୟଟା ପାଶ୍ଚାତ୍ୟ ଭାଷାର ଅନୁକରଣ । ଏ ଅନୁକରଣ ଉନ୍ନତି ବିଧାୟକ । ଏହା ଅତି ଆହ୍ଲାଦର ବିଷୟ ଯେ, ଅଳ୍ପ କେତେଟା ବର୍ଷରେ ଆମ୍ଭମାନଙ୍କର ଗଦ୍ୟସାହିତ୍ୟ ଆଶାତୀତ ରୂପେ ଅଗ୍ରସର ହୋଇଅଛି ଏବଂ ଉତ୍କଳ ଭାଷା ଯେ ଗଦ୍ୟ ସାହିତ୍ୟପାଇଁ ଅତି ଉପଯୁକ୍ତ ଏଥିରେ ମଧ ଯଥେଷ୍ଟ ପରିଚୟ ମିଳିଅଛି ।

ଭାବ ବିନିମୟ ନିମନ୍ତେ ଗଦ୍ୟର ସ୍ଥାନ ଯେ ପଦ୍ୟ ଅପେକ୍ଷା ଉଚ୍ଚତର, ତାହା କହିବା ବାହୁଲ୍ୟମାତ୍ର । ଗଦ୍ୟ ସାହାଯ୍ୟରେ ସଭ୍ୟତା ବିସ୍ତୃତ ଲାଭ କରୁଅଛି । ଏଣୁ ଉନ୍ନତିଶୀଳ ଜାତି ସମୂହ ଗଦ୍ୟର ପକ୍ଷପାତୀ । ଆମ ଦେଶରେ ଯୁବକମାନେ ସେହି ଉନ୍ନତି ପଥର ଯେ ପକ୍ଷପାତୀ ହେବେ, ଏଥିରେ ତ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ । ଯୁବକମାନେ ଯଥାସାଧ ନିଜ ଶିକ୍ଷାଦୀକ୍ଷା ଅନୁସାରେ ମାତୃଭାଷାର ସେବାରେ ମନଃପ୍ରାଣ ଦେଇଅଛନ୍ତି ସୁଖର କଥା, କିନ୍ତୁ ଆମ୍ଭେମାନେ ଦୂରରେ ଦଣ୍ଡାୟମାନ ହୋଇ ସେମାନଙ୍କର ଏତାଦୃଶ ସାହିତ୍ୟିକ କ୍ଷିପ୍ରଗତି ଦେଖି ଦୁଃଖିତ ଓ ଈର୍ଷାନ୍ୱିତ ମଧ ହେଉଁ । ଉପଦେଶ ଛଳରେ ପଦେ ଦୁଇ ପଦ ଗାଳି ମଧ ଦେଉଁ ଏବଂ କ୍ଷାନ୍ତ ହୁଅ, କ୍ଷାନ୍ତ ହୁଅ ବୋଲି ଚିତ୍କାର ମଧ କରୁଁ । ମାତ୍ର ସେମାନେ ଆମ୍ଭମାନଙ୍କର କଥା ମାନିବେ କାହିଁକି ? ସେମାନଙ୍କ ନିମନ୍ତେ ଆମ ସାହିତ୍ୟରେ କି ଆଦର୍ଶ ଥୁଆ ହୋଇଅଛି, କେଉଁ ପନ୍ଥା ପ୍ରଦର୍ଶିତ ହୋଇଅଛି, କେଉଁ ଉପଦେଶ ଲିପିବଦ୍ଧ ହୋଇଅଛି— ଯାହା ଦେଖି, ପାଠକରି ସେମାନେ ଅନ୍ୟ ସାହିତ୍ୟ ସହିତ ପ୍ରତିଯୋଗିତା କରିବାକୁ ଦଣ୍ଡାୟମାନ ହୋଇପାରିବେ ? ପ୍ରବୀଣତ୍ୱର ମର୍ଯ୍ୟାଦା ରକ୍ଷା କରିବାକୁ ଆମ୍ଭେମାନେ କ୍ଷମ ନୋହୁଁ । ଯୁବକମାନଙ୍କର ଚାଲିଚଳନ, ରୀତିନୀତିର ନିୟନ୍ତ୍ରଣ ନିମନ୍ତେ ଆମ୍ଭେମାନେ ସେମାନଙ୍କ ପଛରେ ଗୋଡ଼ାଇବା କି ସେମାନେ ନିୟନ୍ତ୍ରିତ ହେବା ନିମନ୍ତେ ଆମ୍ଭମାନଙ୍କର ପଶ୍ଚାଦ୍ଧାବନ କରିବେ, ଏଥିର ମୀମାଂସା ହୋଇ ନାହିଁ । ଏ ଦେଶରେ ପ୍ରବଳ ଆତ୍ମମର୍ଯ୍ୟାଦାସମ୍ପନ୍ନ ସାହିତ୍ୟ ସମାଜ ନାହିଁ, ଯେ ବିପଥଗାମୀ ସାହିତ୍ୟିକମାନଙ୍କୁ ସୁପନ୍ଥା ଦେଖାଇବ । ନିଜେ ନିଜର ଗୁରୁ । ଆବାଲ୍ୟରୁ ଯେଉଁ ଧୀମାନ୍‌ମାନଙ୍କର କାଳ କେବଳ ଇଂରାଜୀ ବିଦ୍ୟାଭ୍ୟାସରେ ବ୍ୟୟିତ ହେଲା, ସେମାନେ ଯେ ସ୍କୁଲ କଲେଜରୁ ଉତ୍ତୀର୍ଣ୍ଣ ହୋଇ ମାତୃଭାଷାର ଆଲୋଚନାରେ ପ୍ରବୃତ୍ତ ହୁଅନ୍ତି, ଏହା ବଡ଼ ଗୌରବର ବିଷୟ ।

ହଁ ଶଶୀବାବୁ ତାଙ୍କର ଦୁଇଗୋଟି ପ୍ରବନ୍ଧରେ ଅନେକ ବିଷୟ ସ୍ପଷ୍ଟାକ୍ଷରରେ, ଅନେକ ବିଷୟ ଇଙ୍ଗିତରେ ବ୍ୟକ୍ତ କରିଅଛନ୍ତି । ହରିହରବାବୁ ଆଲୋଚନାପୂର୍ବକ ତାଙ୍କ ପ୍ରବନ୍ଧକୁ ଛଅ ଭାଗରେ ବିଶ୍ଳେଷଣ କରିଅଛନ୍ତି ଏବଂ ପ୍ରତ୍ୟେକ ବିଭାଗର ଯଥାଯଥ ପ୍ରତିବାଦ କରିବାର ଚେଷ୍ଟା କରିଅଛନ୍ତି । କିନ୍ତୁ ପ୍ରବୀଣ ପ୍ରତି ଯେ ନବୀନର ସମ୍ମାନ ଅଛି, ତାହା ସେ ଦେଖାଇବାରେ ତ୍ରୁଟି କରି ନାହାନ୍ତି, ସୁଖର କଥା । ପ୍ରଥମତଃ, ଆମ୍ଭେମାନେ ଯେ ସାହିତ୍ୟ ଶବ୍ଦର ସ୍ଥୁଳ ବ୍ୟାଖ୍ୟା ଦେଲୁଁ, ସେ ଅନୁସାରେ ବଳିଷ୍ଠ ଓ ଲଘିଷ୍ଠ ସାହିତ୍ୟର ପାର୍ଥକ୍ୟ କିଛି ଦେଖାଯାଏ ନାହିଁ । ଭାବ, ଉଦ୍ଦେଶ୍ୟ, ଉପଦେଶ, ଉପାଦେୟତା ଯେବେ ସାହିତ୍ୟର ମଜ୍ଜା, ତେବେ ପଦ୍ୟ ହେଉ ବା ଗଦ୍ୟ ହେଉ ସରଳଲେଖାକୁ ଲଘୁ ସାହିତ୍ୟ ଆଖ୍ୟା ଦିଆଯିବ କାହିଁକି ? ବଳିଷ୍ଠ ସାହିତ୍ୟର ଅର୍ଥ କି ସମାସ ବାହୁଲ୍ୟ, ଶବ୍ଦ-କାଠିନ୍ୟ, ଦୂରାନ୍ୱୟତା, ଅପ୍ରଯୋଜ୍ୟତା, ଆଡ଼ମ୍ବରପୂର୍ଣ୍ଣ ଓ ଅଯଥା ବର୍ଣ୍ଣନା ? ଲେଖକ ବା ସମାଲୋଚକ ଏହି ଦୁଇ ଶ୍ରେଣୀର ସାହିତ୍ୟର ବ୍ୟାଖ୍ୟା ନ ଦେଇ ଆମ୍ଭମାନଙ୍କୁ ସନ୍ଦେହ-ସାଗରରେ ଭସାଇ ଦେଇଅଛନ୍ତି । ଆମ୍ଭମାନଙ୍କ କ୍ଷୁଦ୍ର ବୁଦ୍ଧିରେ ଏ ନିୟମରେ ସାହିତ୍ୟର ଶ୍ରେଣୀ ବିଭାଗ ଭ୍ରାନ୍ତି-ଉତ୍ପାଦକ ।

ସାହିତ୍ୟର କାବ୍ୟାଂଶକୁ ମହାକାବ୍ୟ, ଖଣ୍ଡକାବ୍ୟ, ସମ୍ପୂର୍ଣ୍ଣ ଅସମ୍ପୂର୍ଣ୍ଣ କାବ୍ୟ, ଗୀତି କବିତା ରୂପରେ ବିଭାଗ କରିବା ସମୀଚୀନ । ଏତାଦୃଶ ବିଭାଗ ଚିରକାଳ ହୋଇ ଆସୁଅଛି । ଚିରକାଳ କବିମାନେ ଏହି ଧରଣର କାବ୍ୟ, କବିତା, ଲେଖି ଆସୁଅଛନ୍ତି । ଶଶୀବାବୁ ଉତ୍କଳର ପ୍ରାଚୀନ କବିମାନଙ୍କର ତାଲିକା ପର୍ଯ୍ୟାୟକ୍ରମେ ସେମାନଙ୍କର ଲିଖିତ ପୁସ୍ତକର ତାଲିକା ସହିତ ପ୍ରବନ୍ଧରେ ପ୍ରକାଶ କରିଅଛନ୍ତି । ଏଗୁଡ଼ିକ ବଳିଷ୍ଠ କାବ୍ୟ କି ? ଅବଶ୍ୟ । ନୋହିଲେ ଯୁବା ଲେଖକମାନଙ୍କର ଲେଖାର ସମାଲୋଚନା କରିବାକୁ ଯାଇ ଏ ତାଲିକା ଦେବାର ଅର୍ଥ କ'ଣ ? ଏହି ତାଲିକାରେ ଯେମନ୍ତ ପଦାର୍ଥ ଅଛି, ସେହିପରି ଅପଦାର୍ଥ ମଧ ଅଛି । ଆଧୁନିକ ଲେଖାର ସବୁ ସାର ଅସାର ନାହିଁ । ଏହା କହିବାକୁ ଯାଉ ନାହିଁ । ପ୍ରତିଭାର ପାର୍ଥକ୍ୟ ସବୁ ଯୁଗରେ ଅଛି । ଉଚ୍ଚନୀଚର ଭେଦ ସବୁ ଯୁଗରେ ଅଛି ।

ଚୈତନ୍ୟ ଅବଶ୍ୟ ଓଡ଼ିଶାବାସୀଙ୍କି କାଠ-ମାଳି ପିନ୍ଧାଇ ନାମ ସଂକୀର୍ତ୍ତନ ଶିକ୍ଷା ଦେଇଥିଲେ; ମାତ୍ର ଓଡ଼ିଆ ସାହିତ୍ୟ ରଚନାରେ ତାଙ୍କର କୌଣସି ହାତ ଥିବାର ଆମ୍ଭମାନଙ୍କର ହୃଦୟଙ୍ଗମ ହେଉ ନାହିଁ । ଚୈତନ୍ୟ ସମ୍ପ୍ରଦାୟ ଭିନ୍ନ ଓଡ଼ିଶାରେ ଚୈତନ୍ୟଙ୍କ ଆବିର୍ଭାବ ପୂର୍ବରୁ ବୌଦ୍ଧଭାବ ସମ୍ମିଶ୍ରିତ ବିଶୁଦ୍ଧ

ବୈଷ୍ଣବ ଧର୍ମର ପ୍ରଭାବ ଥିବାର ଉଦାହରଣ ମିଳେ । ଜଗନ୍ନାଥ ଦାସ ବୌଦ୍ଧ ମାହାତ୍ମ୍ୟକୁ ହେୟ ଜ୍ଞାନ କରି ତାଙ୍କ ରଚନାରୁ ବିସର୍ଜନ ଦେଇ ନାହାନ୍ତି ।

ଦ୍ୱିତୀୟ :-୧୫୦ ବର୍ଷର କବିପୁଙ୍ଗବମାନଙ୍କୁ ଆମ୍ଭେମାନେ ବିଜୁଳୀ-ଇନ୍ଦ୍ରଧନୁ ଯୁଦ୍ଧରେ ଛାରଖାର କରି ଦେଇଅଛୁଁ । ସେମାନେ ଆମ୍ଭମାନଙ୍କର ଆଦର୍ଶ ନୁହନ୍ତି । ସେମାନଙ୍କର କଥା ଭାବି ଅରଣ୍ୟରୋଦନ କରିବାର ପ୍ରୟୋଜନ କ'ଣ ?

ତୃତୀୟ :- ୬୦ବର୍ଷର ପୂର୍ଣ୍ଣ କାବ୍ୟସମୂହ ଆମ୍ଭମାନଙ୍କର ଆଦର୍ଶରୂପେ ଗଣ୍ୟ ହେଉଥିଲେ । ଏବେ ମଧ ସେହି କାବ୍ୟମାନଙ୍କର ଆଧିପତ୍ୟ ଯୁବକମାନଙ୍କ ହୃଦୟରେ ସ୍ଥାନ ପାଇଅଛି । ଏହି ୬୦ ବର୍ଷ ମଧରେ କି କେବଳ ପୂର୍ଣ୍ଣକାବ୍ୟ ଓ ଖଣ୍ଡକାବ୍ୟ କବିମାନଙ୍କ ଦ୍ୱାରା ରଚିତ ହୋଇଥିଲା । ଖଣ୍ଡ କବିତାର ଓ ଗୀତି କାବ୍ୟର ଜନ୍ମ ହୋଇ ନାହିଁ ? ସେତେବେଳେ ଗୀତି ସାହିତ୍ୟ ମଧରେ କି ବିଚ୍ଛିନ୍ନତା ଓ ଖଣ୍ଡତାର ବୀଜ ନିହିତ ନାହିଁ ? ଏହି ସମୟର କବି ଫକୀରମୋହନ ସେନାପତି ବହୁ ପରିଶ୍ରମ କରି ରାମାୟଣ ଓ ମହାଭାରତ ଲେଖିଥିଲେ ମାତ୍ର ଦେଶବାସୀଙ୍କ ଗୃହରେ ତାଙ୍କର ଏହି ଦୁଇ ସମ୍ପୂର୍ଣ୍ଣ କାବ୍ୟ ସାରଳା ଦାସଙ୍କ ମହାଭାରତ ଏବଂ ବିଶି ରାମାୟଣ ଓ ଦାଣ୍ଡି ରାମାୟଣ ପରି ଆଦୃତ ହେଲା ନା ପୂଜା ପାଇଲା ? ଫକୀରମୋହନଙ୍କର ଉଦ୍ଦେଶ୍ୟ ମହତ ମାତ୍ର ସେ ଉଦ୍ଦେଶ୍ୟରେ ସଫଳତା କେଉଁଠାରେ । ଦେଖୁ ଦେଖୁ ଯୁବକମାନେ ଚର୍ବିତ ଚର୍ବଣ କରିବାକୁ ଯିବେ କାହିଁକି ? ରାଧାନାଥଙ୍କର କାବ୍ୟ ଅନୁକରଣରେ ଏ ଦେଶର କବିମାନେ କ୍ଷୁଦ୍ର ଓ ବୃହଦାକାରରେ ଅସଂଖ୍ୟ କାବ୍ୟ ଲେଖି ପକାଇଲେ । ସେ ଯୁଗ ଗଲା, ସେ ସବୁ କାବ୍ୟ ଲୁପ୍ତ ପ୍ରାୟ । ରାଧାନାଥ ଓ ମଧୁସୂଦନ ମଧ କ୍ଷୁଦ୍ର କବିତା ଓ ଗୀତି କାବ୍ୟର ପଥପ୍ରଦର୍ଶକ । ଗୀତିକାବ୍ୟର ଓ କ୍ଷୁଦ୍ର କବିତାର ସ୍ରୋତ ଚାଲିଛି । ମାତ୍ର ତାହା ଗଡ୍‌ଡ଼ାଳିକା ପ୍ରବାହ ତୁଲ୍ୟ ନୁହେଁ ।

ଚତୁର୍ଥ :- ୧୫ ବର୍ଷର ଯୁବା କବିମାନଙ୍କର କ୍ଷୁଦ୍ର କବିତା ଓ ଗୀତିକାବ୍ୟ ଆମ୍ଭେମାନେ ନୂଆ ଛନ୍ଦରେ ନୂଆ ଭାବରେ ଦେଖିବାକୁ ପାଉଁ, ତଥାପି କବିତାବଳୀ ଓ ଛାନ୍ଦମାଳାର କବିତା ସହିତ ଆଧୁନିକ ଲେଖକମାନଙ୍କର କବିତା ମଧରେ ଆସମାନ-ଜମିନର ପ୍ରଭେଦ ଆମ୍ଭମାନଙ୍କର ଦୃଶ୍ୟ ହୁଏ ନାହିଁ । ତୃତୀୟ ୬୦ ବର୍ଷର କବିମାନେ ନୂତନ ଛନ୍ଦରେ ଗୀତିକାବ୍ୟ ଓ କ୍ଷୁଦ୍ର କବିତା ଲେଖି ପ୍ରାଚୀନ ଛାନ୍ଦପ୍ରେମୀଙ୍କ ଦ୍ୱାରା ନିନ୍ଦିତ ହୋଇଥିଲେ କି ? ତେବେ ଚତୁର୍ଥ ୧୫ ବର୍ଷର କବିମାନେ ନୂତନ ଛାନ୍ଦ ନିମନ୍ତେ କିଛିଦିନ ନିନ୍ଦା ପାଇବେ ନାହିଁ କାହିଁକି ? ଅମିତ୍ରାକ୍ଷର ଛନ୍ଦ ନିମନ୍ତେ ରାଧାନାଥ ମଧ ନିନ୍ଦାଭାଜନ ହୋଇଥିଲେ । ଏବେ ଅମିତ୍ରାକ୍ଷର ଛନ୍ଦକୁ କେହି ଅସୁଖ ମଣୁ ନାହାନ୍ତି । ଯୁବା କବିମାନଙ୍କ ଦ୍ୱାରା ଲିଖିତ ନୂଆ ଛନ୍ଦ କିଛିଦିନ କର୍ଣ୍ଣ ଓ ରୁଚି ବହିର୍ଭୂତ ହୋଇପାରେ; ମାତ୍ର ସମୟ ଆସିବ, ଯେତେବେଳେ ସେହି ହେୟ ଛନ୍ଦଗୁଡ଼ିକ ସୁଶ୍ରାବ୍ୟ ଓ ସୁଖକର ହେବ ।

କବି ମାତ୍ରେ ହିଁ ନିଜ ରଚନାରେ ଭାବ-ବିକାଶର ବୈଚିତ୍ର୍ୟ ରକ୍ଷା କରିବାକୁ ଚେଷ୍ଟା କରିଥାନ୍ତି । ପ୍ରତିଭାର ତାରତମ୍ୟ ହେତୁ କବିତାର ତାରତମ୍ୟ ଘଟେ । ଏପରି ପୂର୍ବେ ଘଟୁଥିଲା, ଏବେ ମଧ ଘଟୁଅଛି । ସମ୍ପୂର୍ଣ୍ଣ ବା ଖଣ୍ଡକାବ୍ୟ ଲେଖକ ମାଳାକାର ନ୍ୟାୟ । ମାଳାକାର ଯେପରି ନାନା ପୁଷ୍ପକୁ ଏକତ୍ର ସନ୍ନିବେଶ କରି ଗୋଟିଏ ମାଳ ପ୍ରସ୍ତୁତ କରେ, କାବ୍ୟର କବି ସେହିପରି ନାନା ବିଷୟକୁ ନାୟକ ନାୟିକା ବା ବସ୍ତୁ ସୂତ୍ରରେ ଏକତ୍ର ଗୁନ୍ଥେ । ସୁଦକ୍ଷ ମାଳାକାର ଦ୍ୱାରା ହିଁ ପୁଷ୍ପହାର ସୁଶ୍ରୀ ଓ ମନୋରମ ହୁଏ । ସେହିପରି ସୁଦକ୍ଷ କବିର ହାତରେ କାବ୍ୟରସ ମାଧୁରୀପୂର୍ଣ୍ଣ ହୁଏ । ମାଳାକାରର ଦକ୍ଷତା ହେତୁରୁ କୀଟଦଂଷ୍ଟ ଓ ଅସାର ଫୁଲ ଦ୍ରଷ୍ଟାର ଲକ୍ଷ୍ୟ ବହିର୍ଭୂତ ହୁଏ । ସେହିପର ସୁକବିଙ୍କ ରଚନା-ଚାତୁରୀଦ୍ୱାରା ଅସାର ବସ୍ତୁ ସୁଦ୍ଧା ସାର ଓ ସୁନ୍ଦର ବୋଲି ବିବେଚିତ ହୋଇଥାଏ । ବଗିଚାର ମାଳୀ ହାର ପ୍ରସ୍ତୁତ ନିମନ୍ତେ ସାର ଅସାର ଫୁଲ ଗ୍ରହଣ କରିଥାଏ; କିନ୍ତୁ ଜଣକୁ ଗୋଟାଏ ଫୁଲ ଭେଟି ଦେବାର ପ୍ରୟୋଜନ ହେଲେ ତାକୁ ବହୁ କଷ୍ଟରେ ଗୋଟିଏ ନିଷ୍କଳଙ୍କ ଫୁଲ ଅନ୍ୱେଷଣ କରିବାକୁ ପଡ଼େ । କ୍ଷୁଦ୍ର କବିତା ଲେଖକକୁ ସେହିପରି ବସ୍ତୁ ବର୍ଣ୍ଣନା ବିଷୟରେ ବହୁ ଯତ୍ନ କରିବାକୁ ପଡ଼େ ।

ଗୀତି କବିତାର ବାଲ୍ୟାବସ୍ଥାରେ ଯୌବନ ସୌନ୍ଦର୍ଯ୍ୟ ଉପରେ ବାସନା ଦୁରାଶା ମାତ୍ର । ବେଶ ଚାଲିଛି, ଚାଲୁ ।

କବୀନ୍ଦ୍ର ରବୀନ୍ଦ୍ର ବିଶ୍ୱକବି । ତାଙ୍କର ସର୍ବତୋମୁଖୀ ପ୍ରତିଭାରେ ଖଣ୍ଡତାଭିମୁଖୀ ଶକ୍ତି ଯେ ବୈଚିତ୍ର୍ୟ ହିଁ ପ୍ରସବ କରିବ, ସେଥିରେ ଆଶ୍ଚର୍ଯ୍ୟାନ୍ୱିତ ହେବାର କିଛି ହିଁ କାରଣ ନାହିଁ । ମାତ୍ର ଖଣ୍ଡତା ବୈଚିତ୍ର୍ୟ ପ୍ରସବ କରୁଛି ଓ କରିବ । ମାତ୍ର ଖଣ୍ଡତା ତାଙ୍କ କଲମରେ ପୂର୍ଣ୍ଣତା ପ୍ରସବ କରିପାରିଛି କି ପାରିବ ? ସେ ପ୍ରବୀଣ ବହୁଦର୍ଶୀ, ତାଙ୍କର ଖଣ୍ଡତା ଯେଉଁ ବୈଚିତ୍ର୍ୟ ଏତେ ଦିନରେ ପ୍ରସବ କରୁଅଛି, ଆମ

ନବୋଦ୍ୟମୀ ଯୁବକମାନଙ୍କର ଲେଖନୀ ଯେ କାଳେ ତଦ୍ରୂପ ବୈଚିତ୍ର୍ୟ ପ୍ରସବ କରିପାରିବ ନାହିଁ, ଏହା କିଏ କହିପାରିବ ? ରବୀନ୍ଦ୍ରନାଥ ଯେଉଁ ଗୀତାଞ୍ଜଳି ହେତୁରୁ ନୋବେଲ ପ୍ରାଇଜ ପାଇଅଛନ୍ତି ସେହି ଗୀତାଞ୍ଜଳି ଅନେକ ପାଠକଙ୍କ ପ୍ରତି ଅବୋଧ ଓ ଦୁର୍ବୋଧ । ତା'ଛଡ଼ା ପ୍ରତିନିୟତ ତାଙ୍କ କଲମରୁ ନୂତନ ନୂତନ ଛନ୍ଦ ବାହାରୁଅଛି । ଏପରି ଛନ୍ଦ ବାହାରିଅଛି ଯାହା ଗଦ୍ୟ କି ପଦ୍ୟ ତାହା ମଧ୍ୟ ବୁଝାଯାଏ ନାହିଁ । ଅଥଚ ତାଙ୍କ ଲେଖା ବିରୋଧରେ କେହି ତ ପଦେ ହେଲେ ଉଚ୍ଚବାଚ କରି ନାହାନ୍ତି । ପୂର୍ବର କବିମାନେ ଅନ୍ୟଦ୍ୱାରା ଆବିଷ୍କୃତ ଛନ୍ଦରେ ରଚନା କରୁଥିଲେ । ଏଣିକି କବିମାନେ ନିଜ ଇଚ୍ଛାନୁସାରେ ଛନ୍ଦ ଓ କବିତା ଲେଖିବାର ପକ୍ଷପାତୀ । ମନା କରୁଛି କିଏ ? ମନା କଲେ ବା ମାନୁଛି କିଏ ?

ସାହିତ୍ୟପରା ସଭ୍ୟତାର ମାପକାଠି ? ସାହିତ୍ୟ ଓ ସଭ୍ୟତା ପରସ୍ପର ସମ୍ବନ୍ଧ । ଏକର ଅଭାବଦ୍ୱାରା ଅନ୍ୟର ଅବନତି ଜଣାଯାଏ । ଇଂରେଜ ଜାତି ଉନ୍ନତିର ଉଚ୍ଚ ସୋପାନରେ ଆରୋହଣ କରୁଥିବା ଅବସ୍ଥାରେ ତାଙ୍କ ସାହିତ୍ୟକୁ ବଳହୀନ ଓ ପତନୋନ୍ମୁଖ ବୋଲିବା ସମୀଚୀନ ନୁହେଁ ।

ଇଂରେଜ କବିମାନଙ୍କ ସମ୍ବନ୍ଧେ ଶଶୀବାବୁ ଯଥେଷ୍ଟ ଆଲୋଚନା କରିଅଛନ୍ତି । ହରିହରବାବୁ ସେ ସମ୍ବନ୍ଧେ ଯେଉଁ ପ୍ରତିବାଦ କରିଅଛନ୍ତି ସେ ବିଷୟରେ ପଦେଅଧେ କହିବାର ଅଧିକାର ଇଂରାଜୀ କାବ୍ୟରାନଭିଜ୍ଞ ଆମ୍ଭମାନଙ୍କର ନାହିଁ । ତେବେ ଏତିକି କୁହାଯାଇପାରେ ଯେ 'Milton is divine', ଏବଂ ସେ ବାଇବେଲ୍ ଲିଖିତ ସ୍ୱର୍ଗବିହାରୀ; ମାତ୍ର ଶେଲି ପ୍ରଭୃତି ମର୍ତ୍ତ୍ୟର ନରହୃଦୟସଞ୍ଚାରୀ । ଆଧୁନିକ ପାଠକମାନେ ମହାପ୍ରାଣତାର ପରିଚୟ କାହାଠାରୁ ପାଇବାର ଇଚ୍ଛା କରନ୍ତି, ସେମାନେ ଜାଣନ୍ତି ସେଲି, ବାଇରନ୍ ଯେ ନିଜ ଶକ୍ତ୍ୟାନୁସାରେ କାବ୍ୟ ରଚନା କରିନାହାନ୍ତି ଏପରି ନୁହେଁ ଏବଂ ମିଲଟନ୍ ଯେ ଗୀତିକାବ୍ୟ ଓ କ୍ଷୁଦ୍ର କବିତା ଲେଖି ନାହାନ୍ତି ଏପରି ମଧ୍ୟ ନୁହେଁ । ଶେଲିଙ୍କର କ୍ଷୁଦ୍ର ପଦ୍ୟ ଓ ଗୀତିକାବ୍ୟ ଯେ ମିଲଟନ୍‌ଙ୍କ ଅପେକ୍ଷା ଉଚ୍ଚଭାବ ସମନ୍ୱିତ, ଏହା ଅନେକଙ୍କର ମତ । ମିଲଟନ୍ ସ୍ୱର୍ଗ ନରକର ଦୃଶ୍ୟ ଚିତ୍ର କରିବାରେ ସିଦ୍ଧହସ୍ତ; ମାତ୍ର ଶେଲି ମର୍ତ୍ତ୍ୟର ନରହୃଦୟର ଅସ୍ଫୁଟ ଚିନ୍ତାଧାରା ବ୍ୟକ୍ତ କରିବାରେ ସିଦ୍ଧହସ୍ତ । ଶେଲିଙ୍କୁ ଆଦର କରିବାର ମହତ୍ତ୍ୱ ଏ ଦେଶବାସୀ ଅର୍ଜନ କରିବାକୁ ବିଳମ୍ବ ଅଛି । ଧୃଷ୍ଟତା ମାର୍ଜନୀୟ ।

ଆଉ ଦୁଇ କଥା । ଆମ ଦେଶରେ କେତେ ଗୁଡ଼ିଏ ସମ୍ବାଦପତ୍ର ଓ ମାସିକ ପତ୍ର ପ୍ରଚାରିତ ହେଉ ନ ଥିଲେ ଦେଶର ଶିକ୍ଷା କି ବର୍ତ୍ତମାନଠୁ ବଳି ବିସ୍ତାର ଲାଭ କରିଥାନ୍ତା ? କିମ୍ବା ବର୍ତ୍ତମାନଠାରୁ ବଳି ଉନ୍ନତତର କାବ୍ୟ-ଲେଖକ ଓ ଶିକ୍ଷିତ ... ବାହାରିଥାନ୍ତେ ? ଛାପାଖାନାର ବାହୁଲ୍ୟ ହେତୁ କି ସାହିତ୍ୟର ଅବନତି ? ବଳିଷ୍ଠ ସାହିତ୍ୟର ଲୋପ ଏବଂ ଲଘୁ ସାହିତ୍ୟର ଅଭ୍ୟୁଦୟ ? ହୋଇପାରେ । ନୋହିଲେ ଶଶିବାବୁ James Fitozmunice Kelly ଙ୍କର ନିମ୍ନୋକ୍ତ ମତ ଉଦ୍ଧୃତ କରନ୍ତେ କାହିଁକି ?

"This quick succession of diverse and violent impressions has confused the scheme of literature. Literature suffers like-wise from the competition of the newspaper press and as the press has multiplied, it has grown less literary. The diversity of the modern interest and the want of leisure of concentrated thought suggest that literature may become once more the pleasure of a small caste."

'ନାନାମୁନୀନାଂ ମତୟଶ୍ଚ ଭିନ୍ନାଃ' କେଲିଙ୍କର ଉଦ୍ଧୃତ ମତ ସର୍ବବାଦୀସମ୍ମତ ମତ ବୋଲାଯାଇ ନ ପାରେ । ଶଶିବାବୁଙ୍କର ପ୍ରବନ୍ଧର ମତ ପୋଷଣ କରିବ ଯେଉଁ ଅଂଶ, ସେ ତାହାହିଁ ଉଦ୍ଧୃତ କରିଅଛନ୍ତି । Kellyଙ୍କ ସେହି ନିବନ୍ଧରେ ଲିଖିତ ଶେଷ ଚାରି ଧାଡ଼ି ଉଦ୍ଧୃତ କଲେ ଜଣାପଡ଼ିବ ଯେ, ସାହିତ୍ୟ ନିଜକୁ ଅବସ୍ଥାର ଉପଯୋଗୀ କରେ; ମାତ୍ର ଅବସ୍ଥା ସାହିତ୍ୟର ଉପଯୋଗୀ ହେବା ସହଜ ନୁହେଁ ।

"But the desire of the one just from which always inspires the literature artist visits most men sometimes and it cannot be doubted that literature will continue to accommodate itself to new condition."

ଶଶୀବାବୁଙ୍କ ଶ୍ରଦ୍ଧେୟ ବନ୍ଧୁଙ୍କର ଗଳ୍ପ ସାହିତ୍ୟ କ୍ଷେତ୍ରରେ ପ୍ରଯୁଜ୍ୟ ନୁହେଁ ବୋଲି ଆମ୍ଭମାନଙ୍କର ଧାରଣା । କବି ବା ଲେଖକ ଯେ କେବଳ ସାହିତ୍ୟର ଭୃତ୍ୟ ତାହା ନୁହେଁ । ଯେଉଁମାନେ ସାହିତ୍ୟଚର୍ଚ୍ଚା କରନ୍ତି, ଯେଉଁମାନଙ୍କର ସାହିତ୍ୟରେ ଅବାଧ ପାଣ୍ଡିତ୍ୟ ଅଥଚ ସେମାନେ କବି ନୁହନ୍ତ ବା ପଦେଅଧେ ଲେଖିନାହାନ୍ତି, ସେମାନେ ମଧ୍ୟ ସାହିତ୍ୟର ଭୃତ୍ୟ, ପ୍ରଧାନ ଭୃତ୍ୟ । ଲେଖକ ଜନସମାଜର ପ୍ରକୃତ ଭୃତ୍ୟ, ସେହି ହେତୁରୁ ତାର ଶିକ୍ଷା ଏବଂ ଉନ୍ନତି । ନିଜକୁ କୌଣସି ଲେଖକ ପାଠକଙ୍କ ଭୃତ୍ୟ ବୋଲି ସ୍ୱୀକାର କରନ୍ତି ନାହିଁ । ଲେଖକର କ୍ଷମତା ଥିଲେ ସେ ଅସାର ଲେଖାଲେଖି ମଧ୍ୟ ଅନେକ ପାଠକ ଓ ଭକ୍ତ ଅନାୟାସରେ ଯୋଗାଡ଼ କରିପାରେ ।

[illegible] ମଙ୍କେ ଲେଖକଙ୍କୁ ପାଠକର ଭୃତ୍ୟ ବୋଲାଯିବା ଅପେକ୍ଷା [illegible] ଭକ୍ତିଭାଜନ ଓ ପୂଜ୍ୟ ବୋଲି ସ୍ୱୀକାର କରିବାକୁ [illegible] । କ୍ଷମତାପନ୍ନ ଲେଖକଙ୍କୁ ପାଠକମାନେ ପୁସ୍ତକର ମୂଲ୍ୟ [illegible]ଜୋପକରଣ ଦେଇ ସମୃଦ୍ଧ କରନ୍ତି । ଭକ୍ତି ପାଇଲେ [illegible]ବାନ୍ ଭୁଲନ୍ତି ବୋଲି କଥା ଅଛି । ପାଠକ ପାଇଲେ ଲେଖକ ସେ ସମ୍ମାନ ଓ ଉପାର୍ଜନପନ୍ଥା ଛାଡ଼ିବ କିପରି ? Wallaceଙ୍କ ପରି କୌଣସି ଲେଖକ ବାହାରି ଯେବେ ଏ ଦେଶରେ କୋଟ୍ୟଧିକ ମୁଦ୍ରା ବେଙ୍କରେ ଜମା କରିପାରନ୍ତି, ତେବେ ସେ ଆଶା ଓ ଆମଦାନୀ ତ୍ୟାଗ କରିବାକୁ କେଉଁ ସାହିତ୍ୟିକର ମନ ବଳନ୍ତା, ବୁଝାଯାଉ ନାହିଁ । ବୋଧହୁଏ ୱାଲେସ ପାଠକର ଭୃତ୍ୟ ବୋଲି ନିଜକୁ କେବେ ସ୍ୱୀକାର କରି ନାହାନ୍ତି । ପାଠକ ଆଡ଼କୁ ଚାହିଁ କେହି ସାହିତ୍ୟ (ଅନ୍ତତଃ କ୍ଷୁଦ୍ର କବିତା ଓ ଗୀତିକାବ୍ୟ) ସୃଷ୍ଟି କରୁଥିବେ ବୋଲି ତ ଜଣାଯାଏ ନାହିଁ ।

ଶଶୀବାବୁ ୭୫ ବର୍ଷର କଥା-ସାହିତ୍ୟର ଆଲୋଚନା ମଧ୍ୟରେ କେବଳ ୫୭ ଖଣ୍ଡ ପୁସ୍ତକର ନାମ ଲେଖି ଉତ୍କଳର ସାହିତ୍ୟିକ ଅଧୋଗତିର ଚିତ୍ର ଅଙ୍କନ କରିବାର ଚେଷ୍ଟା କରିଅଛନ୍ତି । ରାଧାନାଥ ଉତ୍କଳର ନୂତନ ସାହିତ୍ୟ ପନ୍ଥାର ଜଣେ ପଥପ୍ରଦର୍ଶକ, ଏହା ସମସ୍ତେ ସ୍ୱୀକାର କରନ୍ତି । ସେ କଥାର ପୁନର୍ବାର ଉଲ୍ଲେଖ ନିଷ୍ପ୍ରୟୋଜନ । ମାତ୍ର କଥାସାହିତ୍ୟରେ ରାଧାନାଥଙ୍କର ଦାନ ଯଥେଷ୍ଟ ନୁହେଁ । ସେଥିପାଇଁ ସେ କଥା-ସାହିତ୍ୟର ଆଦର୍ଶ ନୁହନ୍ତି ଏହା ସମସ୍ତେ ସ୍ୱୀକାର କରିବେ । ୧୮୬୭ ଇ. ଠାରୁ ୧୯୦୭ ଇ. ମଧ୍ୟରେ ରାଧାନାଥ ଯେବେ ଉତ୍କଳକୁ ଇଟାଲୀୟ ଯୁବା ନାମକ ଗୋଟିଏ ଗଳ୍ପ (ଅବଶ୍ୟ ସ୍ୱ-କପୋଳକଳ୍ପିତ ନୁହେଁ) ମାତ୍ର ଦାନ କଲେ, ତାହାହେଲେ ସେ କଥା-ସାହିତ୍ୟ ପ୍ରତି କେଡ଼େ ଉଦାସୀନ ନ ଥିଲେ ଏବଂ ତାଙ୍କର ଏହି ଲେଖାପାଇଁ ତାଙ୍କୁ କେହି କଥା-ସାହିତ୍ୟର ପୁରୋହିତ ବୋଲି ସ୍ୱୀକାର କରିବେ ନାହିଁ । ଶଶୀ ବାବୁଙ୍କର କଥା-ସାହିତ୍ୟ ଲେଖକ ତାଲିକା ସହିତ ଆଧୁନିକ କଥା-ସାହିତ୍ୟ ଲେଖକଙ୍କ ତାଲିକା ମିଳାଇ ସମାଲୋଚନା କରିବାର ଅବସର ନାହିଁ; ମାତ୍ର ଦୁଃଖର କଥା ଏହି ଯେ, ଶଶୀବାବୁ ଯୁବକମାନଙ୍କର ଲେଖା ମଧ୍ୟରୁ ବିଚିତ୍ର ଚମକପ୍ରଦ ଘଟଣାମୂଳକ କଥା ସାହିତ୍ୟର ଗୋଟାଏ ନାମ ମଧ ପାଇଲେ ନାହିଁ । ତେବେ ଶଶୀବାବୁଙ୍କ ବିବେଚନାରେ ଏ ଦେଶ ଅଧଃପତିତ ସାହିତ୍ୟିକଶୂନ୍ୟ, ବିବେଚକଶୂନ୍ୟ । ପୁରୁଣାଦଳର ଅବସାନ ଉତାରୁ ନବ୍ୟ ଦଳ ସାହିତ୍ୟ ରାଜ୍ୟଟାକୁ ବଙ୍ଗୋପସାଗରରେ ଭସାଇ ଦେବାର ଚେଷ୍ଟାରେ ଅଛନ୍ତି ।

ଶେଷରେ ଆମ୍ଭେମାନେ ଶଶିବାବୁଙ୍କର ଦୁଇଗୋଟି ପ୍ରବନ୍ଧର ବିଷୟକୁ ଦୁଇଭାଗରେ ବିଭକ୍ତ କରିପାରୁଁ । ପ୍ରଥମ ଭାଗ ଆଲୋଚନାମୂଳକ, ଦ୍ୱିତୀୟ ଭାଗ ଉପଦେଶମୂଳକ । ପ୍ରଥମୋକ୍ତ ଭାଗ ଆମ୍ଭମାନଙ୍କୁ ଅସାର ବୋଲି ବୋଧ ହେଉଅଛି, ଶେଷୋକ୍ତ ଭାଗରେ ଶିକ୍ଷଣୀୟ ବିଷୟ ଅଛି ବୋଲି ଅବଶ୍ୟ ସ୍ୱୀକାର କରିବାକୁ ହେବ ।

ଏହି ପ୍ରବନ୍ଧଦ୍ୱାରା ଶଶିବାବୁ ପ୍ରବୀଣ ଓ ନବ୍ୟ ମଧ୍ୟରେ ଗୋଟାଏ ବାଡ଼ ପକାଇବାର ବାସନା କରନ୍ତି ପରା । ଯେବେ ଯୁବକମାନେ ଆମ୍ଭମାନଙ୍କର ପ୍ରାଚୀନ ପନ୍ଥାର ପଥିକ ହେବାକୁ ଇଚ୍ଛା କରନ୍ତି ନାହିଁ, ତେବେ ତିରସ୍କାର ଓ ଅଯଥା ଆଲୋଚନା ଅପେକ୍ଷା ମୌନ ହେବାହିଁ ଶ୍ରେୟଃ ।

ଆମ୍ଭେମାନେ ଦେଖୁଅଛୁଁ, ଯୁବକମାନେ ଉନ୍ନତିକାମୀ ହୋଇ ଦ୍ରୁତବେଗରେ ପ୍ରଧାବିତ ହେଉଅଛନ୍ତି । ତାଙ୍କୁ ଗୋଡ଼ାଇ ପାରିବାର ପ୍ରବୀଣମାନଙ୍କର କ୍ଷମତା ନାହିଁ । ପ୍ରବୀଣତକ ପୂର୍ବ ରୀତିନୀତିର ଦାସ । ଯୁବକମାନଙ୍କୁ ଦାସବୃତ୍ତି ଅବଲମ୍ବନ କରିବାକୁ କହିଲେ ସେମାନେ ଶୁଣିବେ କାହିଁକି ? ସେମାନଙ୍କର ଉନ୍ନତି ଦେଖି ଆମ୍ଭେମାନେ ଉତ୍ସାହିତ ଓ ସୁଖୀ ହେବା ଉଚିତ । ଯୁବକମାନଙ୍କର ନୈତିକ ଆଚରଣ ଉନ୍ନତି ଲାଭ କରୁଅଛି, ସେମାନଙ୍କର ନିଶାପାନ ପ୍ରତି ବିତୃଷ୍ଣା ଜନ୍ମିଅଛି, ସ୍ତ୍ରୀ ପ୍ରତି ସମ୍ମାନ ବଢ଼ୁଅଛି ଏବଂ ବିପନ୍ନ ପ୍ରତି ସାହାଯ୍ୟ ନିମନ୍ତେ ହସ୍ତ ପ୍ରସାରିତ ହେଉଅଛି । ଏହା ଅତି ସୁଖର କଥା । ପ୍ରବୀଣମାନଙ୍କର କର୍ତ୍ତବ୍ୟ ଦୂରରେ ଦଣ୍ଡାୟମାନ ହୋଇ ସେମାନଙ୍କୁ ମନ୍ଦରୁ ଯାହା ଭଲ ତାହାହିଁ ମାତ୍ର ଦେଖାଇବା ଉଚିତ । ସେମାନଙ୍କର କେବଳ ଅଯୋଗ୍ୟତା ଆମ୍ଭମାନଙ୍କର ଆଲୋଚନାର ବିଷୟ ହେଲେ ଦେଶର ମଙ୍ଗଳ ହେବ ନାହିଁ ବୋଲି ବିବେଚିତ ହୁଏ ।

ସ୍ନେହ ଭକ୍ତି ଆଦର ରକ୍ତଚକ୍ଷୁଦ୍ୱାରା ବଳପ୍ରୟୋଗ ଓ ଛିଛିକାରଦ୍ୱାରା କଦାପି ଅସୁଲ କରାଯାଇ ନ ପାରେ । ଯୁବକମାନେ ମୃତଯୋଗ୍ୟ ଲୋକଙ୍କ ପ୍ରତି, କବି ଏବଂ ହିତୈଷୀମାନଙ୍କ ପ୍ରତି ଅଯଥା ତିରସ୍କାର ବା ଅସମ୍ମାନ କରୁ ନାହାନ୍ତି । ଏମାନଙ୍କଠାରେ ଭକ୍ତିର ଅଭାବ ନାହିଁ । ଏପରି ସ୍ଥଳେ ସମ୍ମାନିତ ବ୍ୟକ୍ତିଙ୍କ ବିଷୟ ଘେନି ଆଧୁନିକ ଯୁବକମାନଙ୍କୁ ବିଚଳିତ କରିବା ଶ୍ରେୟସ୍କର ନୁହେଁ । ଏଥିରେ ମୃତ ସମ୍ମାନିତ ବ୍ୟକ୍ତିମାନଙ୍କର ଅଯଥା ସମାଲୋଚନା ଓ ସମୟ ବିଶେଷରେ ଦୁଃଖପ୍ରଦ ପ୍ରତିଦ୍ୱନ୍ଦ୍ୱିତା ବାହାରିବ ସିନା ଲାଭ କିଛି ନାହିଁ ।

●

## ସାହିତ୍ୟିକ ଅଭିଭାଷଣ*

ପ୍ରିୟ ସାହିତ୍ୟସେବୀ ଭାଇ ଓ ଭଉଣୀମାନେ,

ଦିନେ କଟକରେ ଶ୍ରୀରାମଚନ୍ଦ୍ର ଭବନରେ ଉତ୍କଳ ସାହିତ୍ୟ ସମାଜର ସହୃଦୟ ସଭ୍ୟଗଣ ମୋତେ ସଭାପତି ପଦରେ ନିର୍ବାଚନ କରି ସମ୍ମାନିତ କରିଥିଲେ । ଆପଣମାନେ ଆଜି ରାମରାଜ୍ୟର ନବ ପ୍ରତିଷ୍ଠିତ ଶିଶୁ ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନର ପ୍ରଥମ ମଙ୍ଗଳାଚରଣ କରିବାକୁ ମୋତେ ନିର୍ବାଚନ କରି ତତୋଽଧିକ ସମ୍ମାନିତ କରିଅଛନ୍ତି । ଏକ ସମୟରେ ଆମ୍ଭେମାନେ କହିଥିଲୁଁ 'ଉତ୍କଳେ ରାମଚନ୍ଦ୍ରଃ', ସେହି ରାମଚନ୍ଦ୍ରଙ୍କର ରାଜ୍ୟ ଦର୍ଶନ ନିମନ୍ତେ ମୋର ବଳବତୀ ଇଚ୍ଛା ଥିଲା । ମାତ୍ର ସେ ସୁଯୋଗ କେବେ ପାଇ ନ ଥିଲି । ଆପଣମାନଙ୍କର ଅନୁଗ୍ରହରୁ ଆଜି ମୋର ଚିରପୋଷିତ ବାସନା ପୂର୍ଣ୍ଣ ହେଲା ।

ଆପଣମାନଙ୍କର ଶିଶୁ ସାହିତ୍ୟ ସମାଜ ଭଞ୍ଜଭୂମିରେ ପ୍ରତିଷ୍ଠିତ । ଭଞ୍ଜ ଶବ୍ଦ କର୍ଣ୍ଣ ପଟହରେ ଆଘାତ କଲାକ୍ଷଣି-ହୃଦୟ-ରାଜ୍ୟରେ କବି ମୌଳିମଣି ଉପେନ୍ଦ୍ର ଭଞ୍ଜଙ୍କର ସ୍ମୃତି ଆବିର୍ଭୂତ ହୁଏ । ଉତ୍କଳ ସାହିତ୍ୟ ସହିତ ଭଞ୍ଜ ଶବ୍ଦର ଅଚ୍ଛେଦ୍ୟ ସମ୍ବନ୍ଧ । ଏହି ଶିଶୁ ଅନୁଷ୍ଠାନ କ୍ରମେ ବର୍ଦ୍ଧିତ ହୋଇ ଉତ୍କଳ ସାହିତ୍ୟ ସହିତ ଏହି ଭଞ୍ଜ ଶବ୍ଦର ସମ୍ବନ୍ଧ ଚିରକାଳ ଅଚ୍ଛେଦ୍ୟ ରହିବ । ଏ ଆଶା ଆମ୍ଭମାନଙ୍କର ଦୁରାଶା ନୁହେଁ । ଭଞ୍ଜ ଭୂମିର ପ୍ରଥମ ସାହିତ୍ୟ ଅନୁଷ୍ଠାନରେ ମୋ ପରି ବ୍ୟକ୍ତି ମଙ୍ଗଳାଚରଣ କରିବାର ସୁଯୋଗ ପାଇବା କି କମ୍ ଗୌରବର ବିଷୟ ? ଆପଣମାନଙ୍କର ସୌଜନ୍ୟରୁ କେବଳ ମୋର ଏ ସମ୍ମାନ ଲାଭ, ଏଣୁ ଆପଣମାନଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

ଆପଣମାନେ ସମ୍ମାନ ଦେଇଛନ୍ତି ସତ; ମାତ୍ର ସଙ୍ଗେ ସଙ୍ଗେ ମସ୍ତକରେ ମୋର ଗୋଟାଏ ଗୁରୁଭାର ମଧ ଲଦି ଦେଇଅଛନ୍ତି । ମାତ୍ର ବୃଦ୍ଧର ଏ ଗୁରୁଭାର ବହନ କରିବା ଶକ୍ତି ଅଛି କି ନା, ତାହା ଆପଣମାନେ ବିଚାର କରିଅଛନ୍ତି କି ? ନାହିଁ । କେବଳ ଫଳରେ ଦେଖାଯିବ ଏହି ନୀତି ପନ୍ଥା ଅନୁସରଣ କରିଅଛନ୍ତି । ଇସପ୍‌ଙ୍କର ଗୋଟାଏ ଗଳ୍ପ ଅଛି— ଜଣେ ବୃଦ୍ଧ କାଷ୍ଠଭାର ଓହ୍ଲାଇ ରଖିବାକୁ ଅସମର୍ଥ ହୋଇ ଯମଦେବତାଙ୍କୁ ଡାକିଲା । ଯମଦେବତା ତାକୁ ଇହଧାମରୁ ନେଲେ ନାହିଁ । ବରଂ ଦୟାପରବଶ ହୋଇ ତା'ର କାଷ୍ଠ ବୋଝ ଓହ୍ଲାଇ ଦେଲେ । ମୁଁ କିନ୍ତୁ ମୋ ମୁଣ୍ଡର ଭାର ଓହ୍ଲାଇବା ନିମନ୍ତେ ଯମଦେବତାଙ୍କୁ ଡାକିବାକୁ ଯାଉ ନାହିଁ । ଆପଣମାନଙ୍କୁ ଆଗ୍ରହ ଅନୁରୋଧ କରୁଅଛି । ମୁଁ ଭାରାକ୍ରାନ୍ତ ହେଲେ ଆପଣମାନେ ହିଁ ମତେ ମୁକ୍ତିଦେବେ ।

ରସପରିପୂରିତ ଚାତୁରିପୂର୍ଣ୍ଣ ଲେଖାହିଁ କେବଳ ସାହିତ୍ୟ ରସିକମାନଙ୍କର ମନକୁ ମୋହିତ କରିପାରେ । ସେପରି ସମ୍ଭାର ମୋଠାରେ କାହିଁ ? ଆଦିରସ ପ୍ରତି ବିତୃଷ୍ଣ, ବୀର, ଭୟାନକ ଓ ରୌଦ୍ରରସ ପ୍ରତି ଭୟ, ଅଦ୍ଭୁତରେ ଅବିଶ୍ୱାସ, ବୀଭତ୍ସରେ ଘୃଣା, ହାସ୍ୟରସରେ ଲଜ୍ଜା—ବାକି କେବଳ ଶାନ୍ତ, କରୁଣ ଓ ବାତ୍ସଲ୍ୟ ରସ ଘେନି ଯୁବକମାନଙ୍କୁ ପରିତୃପ୍ତ କରିପାରିବି କି ? ବାତ୍ସଲ୍ୟରସରେ ବାଳକ ବାଳିକାମାନେ କେବଳ ଆହ୍ଲାଦିତ ହୁଅନ୍ତି । ଶାନ୍ତରସର ଭକ୍ତ କେବଳ ଗୃହତ୍ୟାଗୀ, ଯୋଗୀ ଓ ସନ୍ନ୍ୟାସୀ । କରୁଣରସ କେବଳ ପ୍ରୌଢ଼ା ଓ ବୃଦ୍ଧାମାନଙ୍କର ନିଜସ୍ୱ । ତେବେ ଉପସ୍ଥିତ ସାହିତ୍ୟ-ରସିକ ଯୁବକମାନଙ୍କୁ ମୁଁ କି ଦେଇ ପରିତୋଷ କରି ପାରିବି ? ଏ ଅରସିକର ଆଶା ଭରସା ସଭାପତି ନିର୍ବାଚକ ସଭ୍ୟଗଣ । ବର୍ତ୍ତମାନ ପ୍ରକୃତର ଅନୁସରଣ କରାଯାଉ ।

ସାହିତ୍ୟାଲୋଚନା ସଙ୍ଗେ ସଙ୍ଗେ ଆମ୍ଭମାନଙ୍କୁ ଶବ୍ଦ, ରସ, ଭାଷା ଓ ବାକ୍ୟର ଅସ୍ତିତ୍ୱ ଉପଲବ୍ଧ ହୁଏ । ଶବ୍ଦକୁ ମନୁଷ୍ୟ, ପଶୁ, ପକ୍ଷୀ, କୀଟ ଓ ପତଙ୍ଗ ବ୍ୟବହାର କରନ୍ତି ଓ ବୁଝନ୍ତି । ରସ ମଧ ଏମାନଙ୍କର ବୋଧଗମ୍ୟ । ରସ ଜ୍ଞାନ ଜୀବର ସହଜନ୍ମା । ଶବ୍ଦ ଅଭ୍ୟାସ ଓ ଶିକ୍ଷାପ୍ରସୂତ ବିଶେଷତଃ ମନୁଷ୍ୟ ଜାତିର । ପଶୁପକ୍ଷୀ ପ୍ରଭୃତି ଆଦିରସର ହାବଭାବ ଉତ୍ତମରୂପେ ଉପଲବ୍ଧ କରିପାରନ୍ତି । ବୀର, ରୌଦ୍ର, ଭୟାନକ ରସକୁ ସ୍ପଷ୍ଟ ରୂପେ ବୁଝିପାରନ୍ତି । ବାତ୍ସଲ୍ୟରସ ପୂର୍ଣ୍ଣମାତ୍ରାରେ ସେମାନଙ୍କଠାରେ ଦେଖାପଡ଼େ । କରୁଣରସର ସେମାନେ ଅନୁଭବୀ; ମାତ୍ର ତାହା ବ୍ୟକ୍ତ କରିବାର ପଟୁତା ସେମାନଙ୍କର ନାହିଁ । ହାସ୍ୟରସ ସେମାନେ କେତେଦୂର ଉପଭୋଗ କରନ୍ତି ମନୁଷ୍ୟ ନିଜର ଆଦର୍ଶରେ ତାହା ଜାଣିବାକୁ ଆଶା କରିବା ବିଡ଼ମ୍ବନା ମାତ୍ର । ପଶୁପକ୍ଷୀଙ୍କର ଶବ୍ଦ ଆମ୍ଭମାନଙ୍କର ଶ୍ରବଣଗୋଚର ହୁଏ । ଏହି ଶବ୍ଦ ବ୍ୟବହାରଦ୍ୱାରା ସେମାନେ ଆପଣା ଜାତୀୟ ଜୀବକୁ ଭୟର, ପ୍ରେମର, ଆହ୍ୱାନ ପଳାୟନର ସୂଚନା ଦିଅନ୍ତି । ଯାହା ବୁଝାଇବାକୁ ବ୍ୟକ୍ତ କରାଯାଏ, ତାହା ଯେବେ ଭାଷା ତେବେ ପଶୁମାନେ ଆପଣା ଜାତି ମଧ୍ୟରେ ନିଜର ପ୍ରୟୋଜନ ବ୍ୟକ୍ତ କରିବାକୁ ଯେଉଁ ଶବ୍ଦ

* ବାରିପଦା ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନରେ ସଭାପତିଙ୍କ ଅଭିଭାଷଣ

ବ୍ୟବହାର କରନ୍ତି, ତାହା ମଧ ଭାଷା । ତାହା ପଶୁ ଭାଷା । ପଶୁମାନେ ରସଜ୍ଞ ଏବଂ ସେମାନଙ୍କର ଭାଷା ମଧ ଅଛି ପ୍ରୟୋଜନ ଅନୁସାରେ । ଭୂ ପୃଷ୍ଠରେ ଅଦ୍ୟାପି ଏପରି ମନୁଷ୍ୟ ଜାତି ଅଛନ୍ତି ଯେଉଁମାନଙ୍କର ଶବ୍ଦ ସଂଖ୍ୟା ଦଶରୁ ଅଧିକ ନୁହେଁ । ଯେବେ ମାନବ ଆଖ୍ୟାଧାରୀ ଗୋଟିଏ ଜାତିର ଶବ୍ଦକୋଷ ମାତ୍ର ଦଶରୁ ଅନଧିକ ଏବଂ ଏହା ଘେନି ସେମାନଙ୍କର ସମାଜ ଚରିତାର୍ଥ ତେବେ ପଶୁ ବିଶେଷର ବ୍ୟବହୃତ ଚାରି ଛଅ ପ୍ରକାର ଶବ୍ଦ ସେମାନଙ୍କର ପ୍ରୟୋଜନ ନିମନ୍ତେ ପର୍ଯ୍ୟାପ୍ତ ବୋଲିବା ଅସଙ୍ଗତ ନୁହେଁ । ପଶୁର ରସଜ୍ଞାନ ଓ ଭାଷାଜ୍ଞାନ ଅଛି ମାତ୍ର ବାକ୍ୟଜ୍ଞାନ ନାହିଁ । ଯେହେତୁ ସେମାନେ ଆଦ୍ୟାବୁଦ୍ଧି ଚାଳିତ । ଜ୍ଞାନ ହିଁ ମନୁଷ୍ୟର ବିଶେଷତ୍ୱ । ସ୍ମରଣ ଶକ୍ତି ବଳରେ ମନୁଷ୍ୟ ଶବ୍ଦ ସଂଖ୍ୟା ବୃଦ୍ଧି କରିଅଛି । ବାକ୍ୟରଚନା କରିଅଛି । ଏହି ରୂପେ ତାର ସାହିତ୍ୟର କ୍ରମବିକାଶ ଘଟିଅଛି । ଦୟାନନ୍ଦ ସରସ୍ୱତୀ ପ୍ରମୁଖ ପଣ୍ଡିତଗଣ କହିବେ ଯେ ବେଦ ଈଶ୍ୱର ନିଃଶ୍ୱସିତ, ସଂସ୍କୃତ ଆଦିଭାଷା, ପୃଥିବୀର ଅନ୍ୟ ଯେତେ ଭାଷା ସଂସ୍କୃତର ଅପଭ୍ରଂଶ ମାତ୍ର । ଏକଥା ଆଜି କାଲି ସ୍କୁଲ ଛାତ୍ରମାନେ ମଧ ବିଶ୍ୱାସ କରିବାକୁ ରାଜି ନୁହଁନ୍ତି । ବାଇବେଲ୍ ବିଶ୍ୱାସୀ କ୍ରୀଷ୍ଟ୍ୟାନ ପାଦ୍ରୀ, ଯେଉଁମାନଙ୍କର ବିଶ୍ୱାସ ଯେ ପୃଥିବୀ ମାତ୍ର ପାଞ୍ଚ ହଜାର ବର୍ଷ ମଧରେ ପ୍ରଭୁକୃତ ନିର୍ମିତ, ସେମାନେ ଭାଷାର ଉତ୍ପତ୍ତି ଏହି ପରିମିତ ବର୍ଷ ମଧରେ ହୋଇଅଛି ଏବଂ ସମସ୍ତ ଭାଷା ଆଦି ବାଇବେଲ୍ ଭାଷାର ଅପଭ୍ରଂଶ ବୋଲି କହିବାର ଆଶ୍ଚର୍ଯ୍ୟ କ'ଣ ? ମାତ୍ର ମନୁଷ୍ୟ ଜାତିର କ୍ରମୋନ୍ନତି ସଙ୍ଗେ ସଙ୍ଗେ ଭାଷାର କ୍ରମୋନ୍ନତି, ଏହା କେହି ଅସ୍ୱୀକାର କରିପାରିବେ ନାହିଁ ।

ଆମ ଭାରତବର୍ଷର ଆଦି ଭାଷା ଋଗ୍‌ବେଦର ଭାଷା ବୋଲି ଅନେକେ ପ୍ରକାଶ କରନ୍ତି, ମାତ୍ର ଏହା ସତ୍ୟ କି ? ଅନ୍ୟ ତୁଳନା ତେଣେ ଥାଉ କେବଳ ଋଗ୍‌ବେଦର କେତେକ ମନ୍ତ୍ରର ଭାଷା ସଙ୍ଗେ ଶତପଥ ବ୍ରାହ୍ମଣର ଭାଷା ତୁଳନା କଲେ ଶତପଥ ବ୍ରାହ୍ମଣର ଭାଷା ତଦପେକ୍ଷା ପ୍ରାଚୀନ ବୋଲି ସନ୍ଦେହ ଜାତ କରାଇବ । ତାହାଛଡ଼ା ବୈଦିକ ଜାତି ଯେଉଁ ଜାତିଠାରୁ ଜନ୍ମ, ସେମାନଙ୍କର ନାମ, ବ୍ରାତ୍ୟାବ୍ରାତ୍ୟ; ଏମାନଙ୍କ ମଧରୁ ଯେଉଁମାନେ ବୈଦିକ ସଂସ୍କାର ଗ୍ରହଣ କଲେ ସେମାନେ ଦ୍ୱିଜ ଆଖ୍ୟା ଗ୍ରହଣ କଲେ । ଯେଉଁମାନେ ଏ ସଂସ୍କାର ଗ୍ରହଣର ପକ୍ଷପାତୀ ହେଲେ ନାହିଁ, ସେମାନେ ବ୍ରାତ୍ୟ ହୋଇରହିଲେ । ବ୍ରାତ୍ୟମାନଙ୍କର ଭାଷା ଯେ ଅଶୁଦ୍ଧ ଓ ସହଜ ବୋଧଗମ୍ୟ ନ ଥିଲା ଏହା ସ୍ପଷ୍ଟାକ୍ଷରରେ 'କୌଶିତକୀ ତାଣ୍ଡ୍ୟ ମହାବ୍ରାହ୍ମଣ'ରେ ଲିଖିତ ହୋଇଅଛି । ସୁତରାଂ ସେହି ବୈଦିକ ଗ୍ରନ୍ଥ ହିଁ ପ୍ରକାଶ କରୁଅଛି ଯେ ଋଗ୍‌ବେଦ ଲିଖିତ ଜାତି ଓ ଭାଷା ଭିନ୍ନ ବିଶାଳ ଭାରତରେ ଅନ୍ୟ ଜାତି ଓ ଅନ୍ୟ ଭାଷା ଥିଲା । ତଥାପି ବି ଲୋକେ କହିବେ ଯେ ବେଦ ହିଁ ସମସ୍ତ ଭାଷାର ଜନକ । ବହୁକାଳ ଯାଏ ଆଗପଛ ହୋଇ ଆର୍ଯ୍ୟସ୍ରୋତ ଭାରତକୁ ପ୍ରବାହିତ ହୋଇ ଆସିଥିଲା । କାଳଭେଦ, ଦେଶଭେଦ ଜଳବାୟୁର ଭେଦ ଯେ ଭାଷାର ପରିବର୍ତ୍ତନ କରିଥାଏ, ଏହା ଅସ୍ୱୀକାର କରିବାର ଉପାୟ ନାହିଁ । ତାହାଛଡ଼ା ବୈଦିକ ଯୁଗରେ ବେଦ ଭାଷା ସଙ୍ଗେ ଅପଭ୍ରଂଶ ଏବଂ ତତ୍‌କାଳୀନ ପ୍ରାକୃତ ଭାଷା ଯେ ନ ଥିଲା ଏହା ବା କିଏ କହିପାରେ ?

ବୈଦିକ ଯୁଗରୁ ବୈୟାକରଣମାନେ ଭାଷାର ପରିମାର୍ଜନାରେ ଚେଷ୍ଟିତ ଥିଲେ, ଆନୁମାନିକ ପାଣିନିଙ୍କ ଜନ୍ମର ଦୁଇ ଏକ ଶତାବ୍ଦୀ ପୂର୍ବରୁ । କିନ୍ତୁ ପାଣିନୀ ସୂତ୍ର ରଚନା କରି ଶବ୍ଦମାନଙ୍କର ସାମ୍ୟ ରକ୍ଷା କଲେ । ତଦବଧି ପାଣିନିଦ୍ୱାରା ନିୟମବଦ୍ଧ ପରିଷ୍କୃତ ଭାଷାର ନାମ ସଂସ୍କୃତ ହେଲା । ଏହି ନିୟମ ବଳରେ ଅସଂଖ୍ୟ ସଂସ୍କୃତ ଶବ୍ଦର ସୃଷ୍ଟି ହେଲା । ସଂସ୍କୃତର ଅପଭ୍ରଂଶ ପ୍ରାକୃତ ବୋଲିବା ଅପେକ୍ଷା ବୈଦିକ ଭାଷା ଓ ପ୍ରାକୃତ ଭାଷାରୁ ପରିଷ୍କୃତ ଭାଷାର ନାମ ସଂସ୍କୃତ ବୋଲିବା ସମୀଚୀନ । ତା' ନୋହିଥିଲେ ଭାଷାର ନାମ ସଂସ୍କୃତ ହେବାର ତାତ୍ପର୍ଯ୍ୟ କ'ଣ ?

ସଂସ୍କୃତ ଏକ ସମୟରେ ଏ ଦେଶର ସାର୍ବଜନୀନ ଭାଷା ଥିଲା କି ? ପଣ୍ଡିତମାନେ ଥିଲା ବୋଲି ମତ ଦିଅନ୍ତି । ମାତ୍ର ଆମ୍ଭମାନଙ୍କ ଅଳ୍ପ ବୁଦ୍ଧିରେ ତାହା ସତ୍ୟ ବୋଲି ପ୍ରତିପନ୍ନ ହେଉ ନାହିଁ । ଏହା ଉଚ୍ଚ ବଂଶଜ ଓ ଶିକ୍ଷିତମାନଙ୍କର ଭାଷା— ଯେମନ୍ତ ଅଧୁନା ଇଂରାଜୀ, ଭାରତବାସୀ ଉଚ୍ଚ ଜାତି ଉଚ୍ଚ ଶିକ୍ଷିତଙ୍କ ଭାଷା ଅଟେ । ଅନେକେ କହିପାରନ୍ତି ତେବେ ଏ ଦେଶରେ ଏତେ ସଂସ୍କୃତ ଗ୍ରନ୍ଥର ପ୍ରଚାର ହେଲା କିପରି ? ଏଥିର ସହଜ ଉତ୍ତର ଏହି ଯେ ବର୍ତ୍ତମାନ ଭାରତବର୍ଷରେ ଏତେ ପରିମାର୍ଜିତ ଭାଷା ଥିବା ସତ୍ତ୍ୱେ ଇଂରାଜୀ ଶିକ୍ଷିତମାନେ ଏବଂ ବିଶ୍ୱବିଦ୍ୟାଳୟମାନେ କେବଳ ଇଂରାଜୀ ଭାଷାରେ ପୁସ୍ତକ ଲେଖୁଅଛନ୍ତି ଓ ପୁସ୍ତକ ଲେଖିବାକୁ ଉତ୍ସାହ ଓ ପ୍ରଶ୍ରୟ ଦେଉଅଛନ୍ତି । ବୌଦ୍ଧଯୁଗରେ ଯେବେ ସଂସ୍କୃତ ଦେଶଭାଷା ହୋଇଥାନ୍ତା ଓ ସର୍ବସାଧାରଣଙ୍କର ବୋଧଗମ୍ୟ ଥାଆନ୍ତା ତାହାହେଲେ ବୁଦ୍ଧଦେବ ତାଙ୍କର ଉପଦେଶାବଳୀ ପ୍ରାକୃତରେ ପ୍ରଚାର କରି ନ ଥାନ୍ତେ, କିମ୍ବା ଅଶୋକ ତାଙ୍କର ଅନୁଶାସନମାନ ପ୍ରାକୃତ ଭାଷାରେ ଲେଖାଇ ନ ଥାନ୍ତେ । ଅଶୋକଙ୍କ ଉତ୍ତାରୁ ହିନ୍ଦୁ ପ୍ରଭୁତ୍ୱ ବ[illegible] । ବ୍ରାହ୍ମଣମାନଙ୍କର

ପ୍ରାଧାନ୍ୟ ସଙ୍ଗେ ସଙ୍ଗେ ସଂସ୍କୃତ ଚର୍ଚ୍ଚା ବଢ଼ିଲା ଏହି କାଳରେ ଏବଂ ପରେ ବିସ୍ତାର ପୁରାଣ ଉପପୁରାଣ ଲିଖିତ ହେଲା । ରାଜାମାନେ ସେମାନଙ୍କର ଦାନପତ୍ର ମଧ ସଂସ୍କୃତରେ ରଚନା କରାଇଲେ ।

ସଂସ୍କୃତ ନାଟକମାନଙ୍କରେ ସ୍ତ୍ରୀ ଓ ସାଧାରଣ ଲୋକଙ୍କ ମୁଖରେ ପ୍ରାକୃତ ଭାଷା ପ୍ରକାଶ କରାଇବାର ତାତ୍ପର୍ଯ୍ୟ କି ଏହା ନୁହେଁ ଯେ ସଂସ୍କୃତ କେବଳ ସତ୍ ବଂଶଜ ଉଚ୍ଚ ଶିକ୍ଷିତଙ୍କ କଥିତ ଭାଷା ? 'କର୍ପୂରମଞ୍ଜରୀ'ର ସୂତ୍ରଧର ତା'ର ସହକାରୀକି ପଚାରିଲା । କବିମାନେ ସଂସ୍କୃତ ତ୍ୟାଗ କରି ପ୍ରାକୃତରେ ରଚନା କଲେ କାହିଁକି ? ସହକାରୀ କହିଲା :—

ପୁରୁଷା ସକ୍‌କ୍‌ଅବନ୍ଧା ପାଉ ଅବନ୍ଧୋଭି ହୋଇ ସୁରମାରେ
ପୁରୁଷ ମହିଳାନଂ ଦେତିଅମ୍ ଇହାନ୍ତଂ ତେତିଅମ୍ ଇମାନମ୍ ।

ସଂସ୍କୃତ ବନ୍ଧ ପୁରୁଷ ବା କଠିଣ, ପ୍ରାକୃତ ବନ୍ଧ ସୁକୁମାର ବା କୋମଳ ଅଟେ । ପୁରୁଷ ସ୍ତ୍ରୀ ମଧ୍ୟରେ ଅନ୍ତର ବା ବ୍ୟବଧାନ ଯେତିକି ଏମାନଙ୍କ ମଧରେ (ସଂସ୍କୃତ ଓ ପ୍ରାକୃତ) ମଧ ବ୍ୟବଧାନ ତେତିକି ।

ଉପରୋକ୍ତ କେତେକ ପଂକ୍ତି ପ୍ରକାଶ କରିବାର ତାତ୍ପର୍ଯ୍ୟ ଏହି ଯେ ସଂସ୍କୃତ କୌଣସି ସମୟରେ ଭାରତର ସର୍ବସାଧାରଣ ଭାଷା ବା Lingua franca ନ ଥିଲା । ଅଧିକନ୍ତୁ ସଂସ୍କୃତ ସମସ୍ତ ଭାରତୀୟ ଭାଷାର ଜନନୀ ବୋଲିବା ମଧ ପ୍ରମାଦପୂର୍ଣ୍ଣ । ସଂସ୍କୃତ ଭାଷା ଓଡ଼ିଆ ଭାଷାର ଧାତ୍ରୀ ଓ ପୋଷଣକର୍ତ୍ତ୍ରୀ; ମାତ୍ର ଜନନୀ ନୁହେଁ ।

ଓଡ଼ିଆ ଭାଷା ଏ ଦେଶର ଅଧିବାସୀଙ୍କ ମୁଖରେ କିମାକାର ରୂପେ ବିଦ୍ୟମାନ ଥିଲା ତାହା କହି ହେବ ନାହିଁ, ମାତ୍ର ଏହା ଯେ ଥିଲା ତହିଁରେ କୌଣସି ସନ୍ଦେହ ନାହିଁ ଏବଂ ସେହି ଭାଷା ସହିତ ଅର୍ଦ୍ଧମାଗଧୀ ଏବଂ ମହାରାଷ୍ଟ୍ରୀ ଭାଷା ମିଶି ଓଡ଼ିଆ ଭାଷାର ଉତ୍ପତ୍ତି । ପରେ ସଂସ୍କୃତ ଭାଷାକୁ ନିଜର ପୋଷଣକର୍ତ୍ତ୍ରୀ ରୂପେ ପାଇ ତାହାର ଅସାଧାରଣ ଉନ୍ନତି ସାଧିତ ହୋଇଅଛି । ଓଡ଼ିଆ ଭାଷାରେ ପାଲୀ ଭାଷାର ପ୍ରତିପତ୍ତି ମଧ ଯେ ଅତ୍ୟଧିକ ତାହା କହିବା ବାହୁଲ୍ୟ ମାତ୍ର । ଉପରୋକ୍ତ ପାଞ୍ଚଗୋଟି ଭାଷାର ସମ୍ମିଶ୍ରଣରେ ଆମ୍ଭମାନଙ୍କର ସମୁଜ୍ଜ୍ୱଳ ମାତୃଭାଷାର ସୃଷ୍ଟି । ଆମ୍ଭମାନଙ୍କର ଏହି ଭାଷା ଭାରତର ଯେକୌଣସି ଭାଷାର ସମକକ୍ଷ ଏଥିରେ ସନ୍ଦେହ ନାହିଁ ।

ଅନୁମାନ ହୁଏ ପୂର୍ବେ ମନୁଷ୍ୟମାନଙ୍କ ପକ୍ଷରେ ପଦ୍ୟରେ ଭାବ ବ୍ୟକ୍ତ କରିବା ସହଜ ସାଧ ଥିଲା । ଏଣୁ ଆମ୍ଭେମାନେ ପ୍ରାଚୀନ ଗ୍ରନ୍ଥାଦି ବହୁଳ ଭାବରେ ପଦ୍ୟରେ ଦେଖିବାକୁ ପାଉଁ । ବେଦ ପଦ୍ୟମୟ । ଅବଶ୍ୟ ବ୍ରାହ୍ମଣ ଓ ସୂତ୍ରମାନ ଗଦ୍ୟରେ ଲିଖିତ, ମାତ୍ର ସେମାନଙ୍କୁ ମଧ ପଦ୍ୟପାଠ ପ୍ରଣାଳୀରେ ପଢ଼ାଯାଏ । ସ୍ମୃତି, ପୁରାଣ ପଦ୍ୟରେ ଲିଖିତ । ସଂସ୍କୃତ ଗ୍ରନ୍ଥମାନ ତଦ୍ରୂପ । ନାଟକମାନଙ୍କର ଗଦ୍ୟାଂଶ ଅତି ଅଳ୍ପ । ଦେଖିବାକୁ ଗଲେ ସଂସ୍କୃତ ପଦ୍ୟବହୁଳ । ତଦନୁକରଣରେ ପ୍ରାକୃତ ଭାଷାମାନ ମଧ ପଦ୍ୟବହୁଳ । କେବଳ ବୌଦ୍ଧଗ୍ରନ୍ଥନିଚୟ ପାଲୀ ଗଦ୍ୟରେ ଲିଖିତ । ସର୍ବସାଧାରଣଙ୍କର ବୋଧଗମ୍ୟ କରିବା ନିମନ୍ତେ ଏହି ରଚନାସମୂହ ସରଳ 'ସୁପାଠ୍ୟ' କରାଯାଇଥିଲା । ଓଜସ୍ୱୀ ଓ ଆଡ଼ମ୍ବରପୂର୍ଣ୍ଣ ରଚନାରେ ସଂସ୍କୃତର ପ୍ରଶସ୍ତି । ଆମ୍ଭମାନଙ୍କର ଓଡ଼ିଆ କବିମାନେ ମଧ ଗତାନୁଗତିକ ସେହି ପନ୍ଥାର ପଥିକ ହେଲେ ।

ଆଳଙ୍କାରିକମାନେ ସାଧାରଣତଃ ଲେଖାକୁ ତିନି ଶ୍ରେଣୀରେ ବିଭକ୍ତ କଲେ ଯଥା— ପ୍ରଭୁସମ୍ମିତ, ସୁହୃତ୍‌ସମ୍ମିତ ଏବଂ କାନ୍ତାସମ୍ମିତ । ପ୍ରଭୁସମ୍ମିତ ବେଦ, ସୁହୃତ୍‌ସମ୍ମିତ ପୁରାଣାଦି ଏବଂ କାନ୍ତାସମ୍ମିତ କାବ୍ୟାଦି । ଏହି ତିନି ପର୍ଯ୍ୟାୟଭୁକ୍ତ ଗ୍ରନ୍ଥାଦି ମନୁଷ୍ୟର କାର୍ଯ୍ୟନିର୍ବାହ ପକ୍ଷରେ ପର୍ଯ୍ୟାପ୍ତ ନୁହେଁ । ତଥାପି ପ୍ରାଚୀନମାନେ ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଅସଂଖ୍ୟ ଗ୍ରନ୍ଥ ପ୍ରଣୟନ କରିବାକୁ ଲାଗିଲେ । ଏମାନଙ୍କର ଧର୍ମମୂଳକ ଗ୍ରନ୍ଥ ଅନେକ, କ୍ରୀଡ଼ାମୂଳକ ପୁସ୍ତକ ଅସଂଖ୍ୟ; ମାତ୍ର କର୍ତ୍ତବ୍ୟମୂଳକ ଗ୍ରନ୍ଥର ପରିମାଣ ନଗଣ୍ୟ । ଅସଂଖ୍ୟ ରାଜା ଯାଗଯଜ୍ଞ କରି ସ୍ୱର୍ଗରେ ଇନ୍ଦ୍ରଙ୍କର ସମକକ୍ଷ ହେଲେ । ଅସଂଖ୍ୟ ପୁଣ୍ୟାତ୍ମା ବୈକୁଣ୍ଠବାସୀ ହେଲେ । ଭାରତବାସୀ କ୍ରୀଡ଼ାକୌତୁକରେ ଦିନ କଟାଇଲେ । କାବ୍ୟରସ ଆସ୍ୱାଦନ କରି ସୁଖୀ ହେଲେ । ମାତ୍ର କର୍ତ୍ତବ୍ୟମୂଳକ ଗ୍ରନ୍ଥାଭାବରୁ ଜୀବନସଂଗ୍ରାମରେ ପୃଥିବୀର କୌଣସି ଉଚ୍ଚ ଜାତିର ସମକକ୍ଷ ହୋଇପାରିଲେ ନାହିଁ ।

ମନୁଷ୍ୟ ମନରେ ସାହିତ୍ୟର ଅସାଧାରଣ ପ୍ରତିପତ୍ତି । ସାହିତ୍ୟ ଜାତୀୟ ଜୀବର ଗଠନରେ ସହାୟତା କରେ । ପୁଣି ଜାତୀୟ ଜୀବନ ପରିବର୍ତ୍ତନ ସଙ୍ଗେ ସଙ୍ଗେ ସାହିତ୍ୟର ପରିବର୍ତ୍ତନ ଘଟେ । ସାହିତ୍ୟକୁ ସଭ୍ୟତାର ମାପକାଠି ବୋଲି କୁହାଯାଇଅଛି ।

କାରଣ ଆମ୍ଭେମାନେ ସାହିତ୍ୟ ଅଧ୍ୟୟନ ଦ୍ୱାରା ପ୍ରାଚୀନ କାଳର ସଭ୍ୟତାର ଓ ଉନ୍ନତିର ପରିଚୟ ପାଉଁ ଏବଂ ସେହି ଜାତିର କ୍ରମବିକାଶ ବା ପରିବର୍ତ୍ତନ ସଙ୍ଗେ ସଙ୍ଗେ ଜାତୀୟ ଉନ୍ନତି ବା ଜାତୀୟ ଅଧୋଗତିର କଳ୍ପନା ଅନାୟାସରେ କରିପାରୁଁ ଏବଂ ସମସାମୟିକ ସାହିତ୍ୟ-ଲେଖାର ରୀତି ଏବଂ

ତତ୍‌ପ୍ରତି ଜାତୀୟ ରୁଚି ତୁଳନା କରି ଭବିଷ୍ୟତରେ ଜାତି ଉନ୍ନତ ହେବ କି ଅଧୋଗତି ପ୍ରାପ୍ତ ହେବ ସେଥିର ମଧ ଅନୁମାନ କରିପାରୁଁ ।

ଭାରତୀୟ ଜାତୀୟ ରୁଚି ଦ୍ୱାରା ସାହିତ୍ୟ ପ୍ରଭାବିତ କି ସାହିତ୍ୟ ଦ୍ୱାରା ଭାରତୀୟ ଜାତୀୟ ଜୀବନ ପରିଚାଳିତ ଏଥିର କିଞ୍ଚିତ୍ ଆଲୋଚନା ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

ବେଦ ଏ ଜାତିର ପ୍ରଧାନ ଓ ପ୍ରଥମ ସାହିତ୍ୟ । ଏ ଜାତି ବେଦ ବିଧାନ ମାନିବାକୁ ବାଧ । ଏହାର ଆଦେଶ ଉପଦେଶ ଏ ଜାତି ପ୍ରତି ଅଲଙ୍ଘନୀୟ । ଆଦ୍ୟରୁ ଏତାଦୃଶ ଦୃଢ଼ ବିଶ୍ୱାସଚାଳିତ ଜାତୀୟ ଜୀବନ ଗଠିତ ହେବାକୁ ଲାଗିଲା । ହୁଏତ ସେତେବେଳେ ଏତାଦୃଶ ବିଶ୍ୱାସ ଜାତୀୟ ଜୀବନର ଅନୁକୂଳ ହୋଇପାରେ, ମାତ୍ର ବିଶ୍ୱାସ କି କେବେ ଜାତୀୟ ପ୍ରଗତିର ସହାୟତା କରିପାରେ ? ଉପନିଷତ୍ ଯୁଗର ଋଷିମାନେ ଏବଂ ସାହିତ୍ୟିକମାନଙ୍କର ଅନ୍ତର୍ଦୃଷ୍ଟି ଏଥିପ୍ରତି ଆକୃଷ୍ଟ ହୋଇଥିଲା । ଜାତୀୟ ମତିଗତି ପରିବର୍ତ୍ତନ ନିମନ୍ତେ ସେମାନେ ଯେ ଚେଷ୍ଟା କରି ନ ଥିଲେ ଏବଂ ପଦେ ଅଧେ ଲେଖି ନ ଥିଲେ ଏମନ୍ତ ନୁହେଁ, ମାତ୍ର ସେମାନେ ବିଶ୍ୱାସ ସ୍ରୋତକୁ ବାଧା ଦେଇପାରିଲେ ନାହିଁ । ଯାଗଯଜ୍ଞର ପ୍ରବାହ ଅତି ପ୍ରଖର । ସେତେବେଳେ ଆଗପଛ ହୋଇ ଯୁଗାଚାର୍ଯ୍ୟ କେଣକେତେ ଏ ଦେଶରେ ଅବତୀର୍ଣ୍ଣ ହେଲେ । ସମସ୍ତେ ନବବିଧାନ ପ୍ରବର୍ତ୍ତକ । କେହି ବା ସାହିତ୍ୟ, କେହି ବିଜ୍ଞାନ, କେହି ଚିକିତ୍ସା, କେହି ଧର୍ମ, କେହି ଶାସନପଦ୍ଧତି ସଂସ୍କାରରେ ବ୍ରତୀ ହେଲେ । ଏ ଘଟଣା ବୌଦ୍ଧଯୁଗରେ ଘଟିଥିଲା । ସେତେବେଳେ ଏ ଜାତିର ଚରମ ଉନ୍ନତି ଘଟିଥିଲା ବୋଇଲେ ଅତ୍ୟୁକ୍ତି ନୁହେଁ । ଏ ଜଗତରେ ଜାତୀୟ ଉତ୍ଥାନ ପତନ ଘଟେ । ରୋମ ସାମ୍ରାଜ୍ୟର ପତନ ଘଟିଥିଲା । ଏଠାରେ କହି ରଖିବା ଉଚିତ ଯେ ବୌଦ୍ଧଯୁଗରେ ସାହିତ୍ୟ ଜନମତ ସାପେକ୍ଷ ଥିଲା । ସାହିତ୍ୟିକ ପ୍ରଭାବ ଜାତୀୟ ପ୍ରଗତିର ଅନ୍ତରାୟ ନ ହୋଇ ତହିଁର ଅନୁକୂଳ ଥିଲା । ଅଶୋକ ସାମ୍ରାଜ୍ୟ ପତନ ଉତ୍ତାରୁ ପୁଣି ପୂର୍ବବେଦ ବିଶ୍ୱାସ ମାନବ ହୃଦୟକୁ ସ୍ପର୍ଶ କଲା । ସାହିତ୍ୟର ଗତି ପରିବର୍ତ୍ତିତ ହେଲା । ପଣ୍ଡିତମାନେ ରାଜାଙ୍କର ସାହାଯ୍ୟ ଓ ଉତ୍ସାହରେ ଜନମତକୁ ଅପେକ୍ଷା ନ କରି ସାହିତ୍ୟ ସୃଷ୍ଟି କଲେ । ଗତାନୁଗତିକ ବେଦବିଶ୍ୱାସୀ ଲୋକମାନେ ନୂତନ ସାହିତ୍ୟ-ଧାରାରେ ସେମାନଙ୍କର ଜାତୀୟ ତରୀକି ଉସାଇ ଦେଲେ । ଅଧିକାଂଶ ପୁରାଣ, ଉପପୁରାଣ, ଧର୍ମଶାସ୍ତ୍ର ଏବଂ ପ୍ରାପ୍ତ ସମସ୍ତ କାବ୍ୟ ନାଟକାଦି ଏହି ସମୟରେ ରଚିତ ବୋଲାଯାଇପାରେ । ଏ ଯୁଗରେ ଧର୍ମମୂଳକ ଓ କ୍ରୀଡ଼ାମୂଳକ ସାହିତ୍ୟର ପ୍ରାଧାନ୍ୟ । ଏ କାଳର ମହା ମହା କବିମାନଙ୍କର ଉପଜୀବ୍ୟ ମହାଭାରତ ଓ ରାମାୟଣ—ସମସ୍ତେ ସେମାନଙ୍କର ନାୟକ ନାୟିକାମାନଙ୍କୁ ପୁରାଣ ଭିତରୁ ଅନ୍ୱେଷଣ କରି ବାହାର କରିଅଛନ୍ତି । ଜାତୀୟ ଚିତ୍ର, ସାମାଜିକ ଚିତ୍ର ଅତି ବିରଳ । ସେ କାଳର ଲୋକମାନେ କି କେବଳ ସୁଖ ସ୍ୱାଚ୍ଛନ୍ଦରେ କାଳାତିପାତ କରୁଥିଲେ ? ମହାମାରୀ, ମଡ଼କ, ଜଳପ୍ଳାବନ, ଭୂମିକମ୍ପର କି ଦର୍ଶନ ନ ଥିଲା ? ତେବେ ଆମ୍ଭେମାନେ କେଉଁ ସାହିତ୍ୟିକର ଲେଖାରେ ଉପରୋକ୍ତ ଘଟଣାବଳୀର ହୃଦୟସ୍ପର୍ଶୀ ବର୍ଣ୍ଣନା ଦେଖିବାକୁ ପାଉଁ, କେହି କହି ପାରିବେ କି ? ନାହିଁ ତ । ସେ କାଳର କାବ୍ୟନାଟକାଦି ପଢ଼ିଲେ ମନେହୁଏ ଯେପରିକି ଏ ଦେଶ ଅଖଣ୍ଡ ସୁଖ ଭୋଗର ରାଜ୍ୟ ଥିଲା । ସମସ୍ତେ ଭୋଗବିଳାସରେ ଉନ୍ମତ୍ତ ଥିଲେ । ସାହିତ୍ୟିକମାନଙ୍କର ପ୍ରାଶସ୍ତ୍ୟ କେବଳ ରୂପସୀଲଳନାମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ବର୍ଣ୍ଣନାର ପ୍ରତିଯୋଗିତାରେ ଏବଂ ରୂପଜୀବୀମାନଙ୍କର ରୂପ ଓ ଚାତୁରୀ ଚିତ୍ରଣରେ ଲୋକେ ଯାହା ସାଧାରଣତଃ ଲୋଡ଼ନ୍ତି ତାହା ସାହିତ୍ୟିକମାନଙ୍କର ପ୍ରସାଦରୁ ଅନାୟାସ ଲଭ୍ୟ ଥିଲା । ଜନମୁଖରେ କବିମାନଙ୍କର ଯଶ ଘୋଷିତ ହେଲା । କବିମାନେ ଉତ୍ସାହିତ ହୋଇ ଗଦ୍ୟ, ପଦ୍ୟ ନାଟକ, କାବ୍ୟ ଅଳଙ୍କାରରେ ନାୟକ ନାୟିକାର ସୁଖ ସମ୍ଭୋଗର ଚିତ୍ରାଙ୍କନ କଲେ । ଭାଇମାନେ ବିଚାର କରନ୍ତୁ, ଏହି ସାହିତ୍ୟଦ୍ୱାରା ଜାତୀୟ ଉନ୍ନତି ମାର୍ଗ ପ୍ରଶସ୍ତ କି ସଂକୀର୍ଣ୍ଣ । ଗତାନୁଗତିକ ଆମ ଦେଶର କବିମାନେ ମଧ ସଂସ୍କୃତ ଲେଖିବାକୁ ଆରମ୍ଭ କଲେ ଏବଂ ସଗର୍ବରେ କୁହାଯାଇପାରେ ଯେ ଆମ ଓଡ଼ିଆ କବିମାନେ ଅଳ୍ପଦିନ ଭିତରେ ନିଜ ଭାଷାର ଅଶେଷ ଉନ୍ନତି ସାଧନ କରିଥିଲେ ଏବଂ ଅସାଧାରଣ କୃତିତ୍ୱ ଦେଖାଇଥିଲେ । କେହି କେହି ଦକ୍ଷତାରେ ସଂସ୍କୃତ କବିମାନଙ୍କୁ ମଧ ଅତିକ୍ରମ କରିଅଛନ୍ତି । ପ୍ରତି ସାହିତ୍ୟିକ ଅଧିବେଶନରେ ଏ ସମ୍ବନ୍ଧରେ ଅଳ୍ପ ବିସ୍ତାର ଆଲୋଚନା ହୋଇଥାଏ । ଏଠାରେ ପୁନରୁକ୍ତି ନିଷ୍ପ୍ରୟୋଜନ ।

ମନୁଷ୍ୟକୁ ସାହିତ୍ୟାନୁରାଗୀ କରାଯାଇପାରେ, ପ୍ରଧାନତଃ ଦୁଇଟି ଉପାୟରେ—ପ୍ରିୟ କଥାଦ୍ୱାରା ଓ ଉପଦେଶଦ୍ୱାରା । ଲୋକେ ଆପାତମଧୁର ପ୍ରିୟକଥା ହିଁ ବେଶୀ ଆଦର କରନ୍ତି । ପରିଣାମରେ ଶୁଭଜନକ ଉପଦେଶକୁ ଅଗ୍ରାହ୍ୟ କରନ୍ତି । ବୌଦ୍ଧ ସାହିତ୍ୟ ଉପଦେଶପୂର୍ଣ୍ଣ କ୍ଷୁଦ୍ରଗଳ୍ପ ଓ ଆଖ୍ୟାୟିକା ପରିପୂର୍ଣ୍ଣ । ହିନ୍ଦୁ ସାହିତ୍ୟ ରସପରିପୂରିତ, ସହଜ

ଉପଭୋଗ୍ୟ କାବ୍ୟ, ଛାନ୍ଦ ଏବଂ ଗୀତ । ପଶ୍ଚାଲ୍ଲିଖିତ ସାହିତ୍ୟ ପ୍ରତି ଜନମନ ଆକୃଷ୍ଟ ହେବା ସ୍ୱାଭାବିକ, ତାହାହିଁ ଘଟିଅଛି ।

ଭାଇମାନେ ! ଭାରତୀୟ ସାହିତ୍ୟ ଏବଂ କବିମାନଙ୍କର ନାମ ଓ ଯଶ ଜଗତ୍ ବିଖ୍ୟାତ । ବିଶ୍ୱ ସାହିତ୍ୟ ରାଜ୍ୟରେ ସେମାନଙ୍କର କୃତିତ୍ୱ ଅସାଧାରଣ । ଏଥିନିମନ୍ତେ ସେମାନଙ୍କ ଚରଣ ତଳରେ ଏ ମସ୍ତକ ସ୍ଥାନ ପାଇବାକୁ ଯୋଗ୍ୟ ନୁହେଁ । ତଥାପି 'ଦୋଷାବାଚ୍ୟା ଗୁରୋଃରପି' । ଏହି ପ୍ରଥିତଯଶା ସାହିତ୍ୟିକମାନେ ଭାରତବାସୀଙ୍କୁ ଅମିୟ କାବ୍ୟରସ ଆସ୍ୱାଦନ କରାଇଲେ, ସୁଖସ୍ୱପ୍ନ ଦେଖାଇଲେ । ଅନ୍ତିମ ପୁରସ୍କାର ସ୍ୱର୍ଗଲାଭ ବୋଲି ଆଶା ଦେଲେ; ମାତ୍ର ଇହଧାମରେ ଜୀବନ ସଂଗ୍ରାମରେ ଏ ଜାତି କିପରି ଜୟୀ ହେବ, ସେଥିର ଉପାୟ କିଛି କଲେ ନାହିଁ । ଏଥିନିମନ୍ତେ ଥରେ ଥରେ ମନରେ କ୍ଷୋଭ ଜାତ ହୁଏ । ଆଜି ସୁଯୋଗ ମିଳିବାରୁ ଆପଣମାନଙ୍କ ଆଗରେ ନିଜର ମନୋବେଦନା ପ୍ରକାଶ କଲି । ତ୍ରୁଟି ଥିଲେ ମାର୍ଜନା କରିବେ ।

ଓଡ଼ିଶାରେ ଛୋଟବଡ଼ ଅନେକ କବି । ସେମାନେ ନିଜ ନିଜ ସାମର୍ଥ୍ୟାନୁସାରେ ମାତୃଭାଷାର ଯଥେଷ୍ଟ ସମ୍ମାନ ଓ ପୂଜା କରିଯାଇଅଛନ୍ତି । ସେମାନଙ୍କ ମଧ୍ୟରୁ ଶ୍ରେଷ୍ଠାଶ୍ରେଷ୍ଠ ବାଛିବାକୁ ଯାଇ ଆପଣା ମୁଣ୍ଡରେ ଦୋଷ ଓ ନିନ୍ଦାଭାର ବହନ କରିବାକୁ ମୁଁ ଯାଉ ନାହିଁ । ତେବେ ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଜନସାଧାରଣଙ୍କ ହୃଦୟରେ ଭଞ୍ଜଙ୍କର ସ୍ଥାନ ଅତି ଉଚ୍ଚରେ, ଏହା ସାମାନ୍ୟ ଗବେଷଣାଦ୍ୱାରା ବୁଝାଯାଏ । ଦୀନକୃଷ୍ଣ ଦାସଙ୍କର କେତେକ ପୁସ୍ତକ ସର୍ବସାଧାରଣଙ୍କର ଆଦରର ସାମଗ୍ରୀ । କହିବାକୁ ଗଲେ ସାମନ୍ତସିଂହାରଙ୍କର ପ୍ରବେଶାଧିକାର କେବଳ ଓଡ଼ିଆ ଶିକ୍ଷିତ ସମାଜରେ । ଆଜିକାଲି ପ୍ରାଚୀସମିତିଦ୍ୱାରା ଓ ଅନ୍ୟ ଛାପାଖାନାମାନଙ୍କଦ୍ୱାରା ଅନେକ ପ୍ରାଚୀନ ପୁସ୍ତକ ପ୍ରକାଶିତ ହୋଇଅଛି ଏବଂ କ୍ରମେ ପ୍ରକାଶିତ ହେବ । ପରବର୍ତ୍ତୀ ସମାଲୋଚକମାନେ ଏହି ପୁସ୍ତକମାନ ପାଠକଲାରୁ ଓଡ଼ିଆ ସାହିତ୍ୟର ଧାରାବାହିକ ସମାଲୋଚନା ଓ ଇତିହାସ ଲେଖି ପାରିବେ । ସମୟର ଅଭାବ ଜାଣି ମୁଁ ଅନେକ ଆଲୋଚ୍ୟ ବିଷୟ ତ୍ୟାଗ କରିବାକୁ ବାଧ ହୋଇଅଛି । ସାହିତ୍ୟରାଜ୍ୟରେ ସମୟ ସମୟରେ ବିପ୍ଳବ ଘଟେ, ଏହା ସ୍ୱାଭାବିକ । ବିଜୁଳି-ଇନ୍ଦ୍ରଧନୁ ଯୁଦ୍ଧ ଏଥିର ପ୍ରତ୍ୟକ୍ଷ ପ୍ରମାଣ । ଏଥିରେ ଜୟ ପରାଜୟର ପ୍ରଶ୍ନ ଉଠିବାର କଥା ନୁହେଁ । କୌଣସି ପକ୍ଷ ସନ୍ଧିର ପକ୍ଷପାତୀ ହୋଇ ନ ଥିଲେ କିମ୍ବା ମଧ୍ୟସ୍ଥ ମାନି ନ ଥିଲେ, ସ୍ୱେଚ୍ଛାକ୍ରମେ ଉଭୟପକ୍ଷ ଆଗପଛ ହୋଇ କ୍ଷାନ୍ତ ହେଲେ । ମୋଟ କଥା ନିଷ୍ଫଳ ମସୀଯୁଦ୍ଧ । ତେବେ ଏହା କୁହାଯାଇପାରେ ଯେ, ସାଧାରଣତଃ ସାହିତ୍ୟକ୍ଷେତ୍ରରେ ଏଭଳି ଯୁଦ୍ଧ ଘଟେ ନାହିଁ ।

ଏଥି ଉତ୍ତାରୁ ଆଧୁନିକ ସାହିତ୍ୟର ଯୁଗ । ଏ ସମ୍ବନ୍ଧେ ମୋର ବକ୍ତବ୍ୟ ବେଶି ନାହିଁ । ତେବେ ଏତିକି କହିପାରେ ଯେ, ମୋ ଦିହକରେ ସାହିତ୍ୟ ରଚନାର ଧାରା ଓ ସାହିତ୍ୟାଲୋଚନାର ଧାରା ଯଥେଷ୍ଟ ରୂପେ ପରିବର୍ତ୍ତିତ ହୋଇଅଛି । ଏଥିରେ ଚିନ୍ତିତ ବା କ୍ଷୋଭିତ ହେବାର କାରଣ ଦେଖାଯାଏ ନାହିଁ । ବରଂ ଏ ଦେଶର ଯୁବକମାନେ ମାତୃଭାଷାର ମୁଖୋଜ୍ଜ୍ୱଳ କରିବାକୁ ଅଣ୍ଟାଭିଡ଼ି ଲାଗିଥିବାର ଦେଖିଲେ ମନରେ ଅପାର ଆନନ୍ଦ ଜାତ ହୁଏ । ପାଶ୍ଚାତ୍ୟ ଜଗତରେ ସାହିତ୍ୟ ପ୍ରଭାବ ଦେଖି କେଉଁ ଯୁବକ ଖଣ୍ଡକେତେ କ୍ରୀଡ଼ାମୂଳକ କାବ୍ୟକୁ ଆପଣାର ଆଦର୍ଶ ରୂପେ ଗ୍ରହଣ କରି ପରିତୃପ୍ତି ଲାଭ କରିବ ? ଏ ଦେଶର ପ୍ରାଚୀନ ଆଧୁନିକ କେତେଖଣ୍ଡ କାବ୍ୟ ନବ୍ୟ ଶିକ୍ଷିତ ସାହିତ୍ୟିକର ଆଦର୍ଶ ହୋଇ ନ ପାରେ । ତାହା ପ୍ରତି ବର୍ତ୍ତମାନ ବିଶ୍ୱସାହିତ୍ୟର ଦ୍ୱାର ଅବାରିତ ଉନ୍ମୁକ୍ତ । ଇଚ୍ଛାନୁସାରେ ସେ ଯେ କୌଣସି ଦେଶର ସାହିତ୍ୟରସ ସଂଗ୍ରହ କରି ଆପଣା ମାତୃଭାଷାର ମଧୁଚକ୍ର ରଚନା କରିବାରେ ଯତ୍ନ କରିପାରେ ।

ନିର୍ଜନରେ ବସି ରମଣୀ ପ୍ରତିମା ଗଢ଼ିବାର କାଳ ଚାଲିଗଲା । ଏ କାଳର ନାରୀ ଅବଳା ନୁହେଁ । ଆଜି ଲବଣିପିତୁଳା ବୋଇଲେ ତାର ଅପମାନ । ଶିକ୍ଷିତ ସମାଜର ନାରୀମାନେ ବହୁଦିନରୁ ହରିଦ୍ରା ଓ କୁଙ୍କୁମ ବ୍ୟବହାର ତ୍ୟାଗ କଲେଣି । ତଥାପି ନାରୀମାନେ କେତକୀ ସ୍ୱର୍ଣ୍ଣବର୍ଣ୍ଣା, ଚମ୍ପକଦାମ ଗୌରୀ ବୋଲି ଉପହାସ କରିବା ନବ୍ୟଶିକ୍ଷିତ କବି ପକ୍ଷରେ ଶୋଭନୀୟ କି ? ବିଂଶ ଶତାବ୍ଦୀର କବିମାନଙ୍କୁ ଶିରୀଷ ଓ ପଦ୍ମର ମୋହ ଏ ପର୍ଯ୍ୟନ୍ତ ଛାଡ଼ି ନାହିଁ । ନାରୀ ଅଦ୍ୟାପି ଶିରୀଷ ମୃଦୁଳା, ପଦ୍ମଲୋଚନା । ଆଠଶତ ବର୍ଷରେ ପୁଷ୍ପରାଜ ଗୋଲାପ କବି ସମ୍ପ୍ରଦାୟରେ ଗ୍ରହଣଯୋଗ୍ୟ ହୋଇ ନାହିଁ । ଅଥଚ ଗନ୍ଧରେ ବର୍ଣ୍ଣରେ ତାହା ପଦ୍ମ ଅପେକ୍ଷା ଶ୍ରେଷ୍ଠ, ଶିରୀଷଠାରୁ ମୃଦୁଳ । ଗୋଲାପ ଏ ଦେଶର କବିମାନଙ୍କର ଉପମା-ସାମଗ୍ରୀ ନୋହୁ ଏଥିରେ କ୍ଷୋଭ ନାହିଁ । ମାତ୍ର କବି ସମ୍ପ୍ରଦାୟ ଯେ ଗଡ଼୍ଡାଳିକା ପ୍ରବାହତୁଲ୍ୟ ପରିଚାଳିତ, ନାରୀର ରୂପ ବର୍ଣ୍ଣନା ତହିଁର ପ୍ରକୃଷ୍ଟ ଉଦାହରଣ । ପ୍ରାଚୀନ କାବ୍ୟ ଏମନ୍ତ କି ରାଧାନାଥଙ୍କ ସମସାମୟିକ କାବ୍ୟରେ ମଧ୍ୟ ନାରୀ ପୁରୁଷର ବିଳାସର ସାମଗ୍ରୀ । ନବୀନ ସାହିତ୍ୟିକ ନିଜ

ହୃଦୟରୁ ଏ ଭାବ ବିସର୍ଜନ ଦେବାକୁ ବସିଅଛି । ଶୃଙ୍ଗାର-ରସ-ବହୁଳ-କାବ୍ୟ ପାଠରେ ଅମୂଲ୍ୟ ସମୟ ନଷ୍ଟ କରିବାକୁ ସେ କୁଣ୍ଠିତ । ଜାତୀୟ ଜୀବନ ଗଠନ ନିମନ୍ତେ ସମଗ୍ର ପୃଥିବୀର ଖବର ଦେବାକୁ ସେ ଉତ୍କଣ୍ଠିତ । ଆଜି ସେ ଖଣ୍ଡିଏ ସାପ୍ତାହିକ ପତ୍ର ପାଠରେ ତୃପ୍ତ ନୁହେଁ, ଦୁଇ ଚାରିଖଣ୍ଡ ଦୈନିକ ପଢ଼ିବାକୁ ତା'ର ଆଶା । ନୋବେଲ୍ ପୁରସ୍କାର ପ୍ରାପ୍ତ ସାହିତ୍ୟରଥୀମାନଙ୍କର ପୁସ୍ତକ ତା'ର ଅନାୟାସ ଲଭ୍ୟ । ସେ ଆଦର୍ଶ ତ୍ୟାଗ କରି ଆମ୍ଭମାନଙ୍କର ପ୍ରିୟ ପ୍ରାଚୀନ ପୁସ୍ତକ ସମୂହ ପାଠ ନ କଲା ବୋଲି ଆମ୍ଭେମାନେ ଦୁଃଖ ପ୍ରକାଶ କରିବାଦ୍ୱାରା ଆମ୍ଭମାନଙ୍କର ଅମନୁଷ୍ୟତାର ପରିଚୟ ଦେବା ସିନା । ନବ୍ୟ କବି ବା ଲେଖକ ଏ ଦେଶର ଆଦରଣୀୟ ଶୈଳୀ ତ୍ୟାଗ କଲେ ବୋଲି ଦୁଃଖିତ ହେଲେ ଅମନୁଷ୍ୟତାର ପରିଚୟ ମିଳିବ ସିନା । କ୍ଷୁଦ୍ରଗଳ୍ପ ଓ କ୍ଷୁଦ୍ରକବିତା ଲେଖିବାର ଯୁଗ ଆସିଅଛି । ପାଶ୍ଚାତ୍ୟ ଦେଶର ମାସିକ ପତ୍ରିକା ଆମ୍ଭମାନଙ୍କର ଆଦର୍ଶ । ଅନେକ ସମ୍ପାଦକ କ୍ରମାନ୍ୱୟରେ ବହୁ ସଂଖ୍ୟାରେ ଗଳ୍ପ ବାହାର କରିବାକୁ ନାରାଜ । ପୁଣି ଜଣେ ଜଣେ ସମ୍ପାଦକ ଲେଖକମାନଙ୍କୁ କେତେକ ପଂକ୍ତିରେ ଗଳ୍ପ ଲେଖିବାକୁ ହେବ ତାହା ନିର୍ଦ୍ଦେଶ କରି ଦେଉଅଛନ୍ତି । କ୍ରମେ କବିତାର ସ୍ଥାନ ମାସିକ ପତ୍ରରୁ ଉଠିଯାଉଅଛି । ଲେଖକ ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ କେବଳ କ୍ଷୁଦ୍ର ପ୍ରବନ୍ଧ ସମ୍ପାଦକର ଆଦରର ସାମଗ୍ରୀ ହେବ । ଜଣେ ଲେଖକର ପ୍ରବନ୍ଧ ପତ୍ରିକାରେ ଅଧିକାଂଶ ସ୍ଥାନ ଅଧିକାର କଲେ ଅନ୍ୟ ଲେଖକମାନଙ୍କ ପାଇଁ ସ୍ଥାନ ମିଳିବ କାହିଁ ? ପୁଣି ପ୍ରତ୍ୟେକ ଭଲ ଲେଖକର ପ୍ରବନ୍ଧ ବା ଗଳ୍ପ ପଢ଼ିବାକୁ ପାଠକ ଆଗ୍ରହାନ୍ୱିତ । ପାଠକଙ୍କର ମନ ରକ୍ଷା ନିମନ୍ତେ ସମ୍ପାଦକ କ୍ଷୁଦ୍ରଗଳ୍ପ ଛପାଇବାକୁ ବାଧ୍ୟ । ଏହା ସାହିତ୍ୟର ଉନ୍ନତିର ପରିଚୟ ।

କ୍ରମେ ପଦ୍ୟ ଅପେକ୍ଷା ଗଦ୍ୟରେ ଲୋକମାନଙ୍କର ଆଦର ବଢ଼ୁଛି । ଏପରି ଅବସ୍ଥାରେ ଭାବପୂର୍ଣ୍ଣ କ୍ଷୁଦ୍ର କବିତାକୁ ଲୋକେ ଆଦର କରିବେ, ସନ୍ଦେହ ନାହିଁ । କ୍ଷୁଦ୍ର କବିତାରେ ପାଣ୍ଡିତ୍ୟ ଓ କ୍ଷମତାର ପରିଚୟ ମିଳେ ।

ଭାବରାଜ୍ୟରେ ସମସ୍ତଙ୍କର ଅଧିକାର ଅଛି; ମାତ୍ର ରଚନା ଓ କଳ୍ପନା ନିଜସ୍ୱ । ପରର ରଚନା ବା ପରର କଳ୍ପନା ନିଜ ରଚନାରେ ଭର୍ତ୍ତି କରିବା ବଡ଼ ନିନ୍ଦନୀୟ । ଓଡ଼ିଆ ଭାଷା ଶବ୍ଦ ସମ୍ପଦରେ ଦରିଦ୍ର ନୁହେଁ । ନିଜ ଘରେ ନ ଥିଲେ ପର ଘରୁ ଉଧାର ଆଣିବା ଦୋଷାବହ ବା ନିନ୍ଦନୀୟ ନୁହେଁ; ମାତ୍ର ନିଜ ଘରେ ଥିବା ସତ୍ତ୍ୱେ ଲୋଭ ପରବଶ ହୋଇ ପରଠାରୁ ଆଣିବା ଦୋଷାବହ ଓ ନିନ୍ଦନୀୟ ।

ଗ୍ରାମ୍ୟ ଓ ଅପଭ୍ରଂଶ ଶବ୍ଦ ସାହିତ୍ୟରେ ସ୍ଥାନ ପାଉଥିବାର ଦେଖାଯାଏ । ମାର୍ଜିତ ରୁଚିର ସାହିତ୍ୟ ନିମନ୍ତେ ଏତାଦୃଶ ଶବ୍ଦ ବର୍ଜନୀୟ । ଏ ଦେଶର ସର୍ବସାଧାରଣଙ୍କ ବୋଧଗମ୍ୟ ସାଧୁ ଶବ୍ଦ ଥିବାସ୍ଥଳେ ଗ୍ରାମ୍ୟ ଲୋକଙ୍କୁ ବୁଝାଇବା ଛଳନାରେ ଗ୍ରାମ୍ୟ ଓ ଅପଭ୍ରଂଶ ଶବ୍ଦର ବ୍ୟବହାର ଆଦୌ କ୍ଷମାଯୋଗ୍ୟ ନୁହେଁ । ବର୍ତ୍ତମାନ ଓଡ଼ିଶାରେ ନୂତନ ଶିକ୍ଷାର ପ୍ରାରମ୍ଭ ବୋଲିଲେ ଚଳେ । ଏପରିସ୍ଥଳେ ଅଶିକ୍ଷିତ ଓ ଅଳ୍ପ ଶିକ୍ଷିତଙ୍କୁ ଉଚ୍ଚ ସ୍ତରକୁ ଆଣିବା ନିମନ୍ତେ ଅତି ସରଳ ସାଧୁ ଶବ୍ଦ ନବ ସାହିତ୍ୟରେ ବ୍ୟବହାର କରିବା ଉଚିତ।

ସଭ୍ୟତାର ଆଦର୍ଶ ନିମନ୍ତେ ଆମ୍ଭମାନଙ୍କୁ ପଶ୍ଚିମ ଦିଗକୁ ମୁଖ ଫେରାଇବାକୁ ପଡୁଥିଲା । ଏବେ ପ୍ରାଚ୍ୟଦେଶ ଜାପାନ ମଧ୍ୟ ଆମ୍ଭମାନଙ୍କର ଆଦର୍ଶ ହେବାକୁ ବସିଲାଣି । ଆମ୍ଭ ଦେଶର ଧର୍ମ ଓ ସାହିତ୍ୟ ଦ୍ୱାରା ଚୀନ ଓ ଜାପାନ ଉଦ୍‌ବୁଦ୍ଧ । ସାହିତ୍ୟ ଓ ଚରିତ୍ର ବଳରେ ଜାପାନ ପାଶ୍ଚାତ୍ୟ ଜାତିର ସମକକ୍ଷ ହେଲାଣି । ସିଦ୍ଧାର୍ଥ ଜାପାନର ଗୁରୁ ଓ ପ୍ରଭୁ, ଆମ ଜାତିର କେହି ନୁହନ୍ତି ।

ସାହିତ୍ୟ ଓ ସଭ୍ୟତା ମଧ୍ୟରେ ଅକାଟ୍ୟ ସମ୍ବନ୍ଧ ବିଦ୍ୟମାନ ଅଛି । ସାହିତ୍ୟ ଯେ ପାଶ୍ଚାତ୍ୟ ଓ ପ୍ରାଚ୍ୟ ସଭ୍ୟତାର ଜନକ ତାହା କି ବିଶେଷଭାବରେ ବୁଝାଇ ଦେବାକୁ ହେବ ? ଯେଉଁମାନେ ଜଗତର ସଭ୍ୟ ବିପଣୀରେ ମହତ ଓ ପ୍ରଧାନ ବୋଲି ନିର୍ବାଚିତ, ସେମାନଙ୍କ ସାହିତ୍ୟର ଭାବଧାରା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ସେହି ପ୍ରକ୍ରିୟାରେ ସାହିତ୍ୟଚର୍ଚ୍ଚା ଭିନ୍ନ ଆମ୍ଭମାନଙ୍କର ଗତ୍ୟନ୍ତର ନାହିଁ । ଆମ୍ଭମାନଙ୍କର ସାହିତ୍ୟରେ ସବୁ ଅଛି, ଆମ୍ଭମାନଙ୍କ ସାହିତ୍ୟ ସବୁଠାରୁ ଭଲ, ଏ ପ୍ରଶଂସାବାଦ ନିଜମୁଖରେ ଶୋଭାପାଏ ନାହିଁ । ଯାହା ଆମ୍ଭ ସାହିତ୍ୟରେ ନାହିଁ, ଯେଉଁ ସାହିତ୍ୟ ଆମ ସାହିତ୍ୟଠାରୁ ଭଲ, ତାହାର ଅନୁସନ୍ଧାନରେ ମନଯୋଗ ଦେବାକୁ ହେବ । ପୂର୍ବପୁରୁଷଙ୍କ ନାମ ବିକ୍ରୟ କରି ନାମ ଯଶ ଉପାର୍ଜନ କରିବାର ଦିନ ଗଲାଣି । ପ୍ରତିଦ୍ୱନ୍ଦ୍ୱିତାର ଯୁଗ ଆସିଅଛି । ପ୍ରତିଦ୍ୱନ୍ଦ୍ୱିତାରେ ଯେ ଯୋଗ୍ୟ ନ ହେବ ସେ କୃପଣ; ତା'ର ଅଭ୍ୟୁଦୟର ଆଶା ନାହିଁ । ଆମ୍ଭ ଦେଶର ସାହିତ୍ୟଚର୍ଚ୍ଚାର ବିଷୟ ଭାବିଲେ ଥରେ ଥରେ ବିଷଣ୍ଣ ହେବାକୁ ହୁଏ । ଉଦୟମାନ ଯୁବକମାନେ ଆଶାଭରସାର ସ୍ଥଳ । ମାତ୍ର ଜାତୀୟ ଭୟ, ସାମାଜିକ ଭୟ, ଶାସ୍ତ୍ରର ଦୋହି ଏବଂ ପ୍ରବୀଣମାନଙ୍କର ରକ୍ତଚକ୍ଷୁ ବିଂଶ ଶତାବ୍ଦୀର ଯୁବକ ସାହିତ୍ୟିକମାନଙ୍କୁ ମଧ୍ୟ ଭୀତ ଓ ତ୍ରସ୍ତ କରୁଅଛି । ଦୁଃଖର କଥା ଯେ ମୋ ପରି ବୃଦ୍ଧମାନଙ୍କ

ଆଶାଭରସାର ସ୍ଥଳ ଯୁବକଦଳ । ଜୀବନ-ଦୀପ ଲିଭିବା ପୂର୍ବରୁ ସେମାନଙ୍କର କରାମତି ଦେଖିଯିବାକୁ ଆଶା ଥାଏ । ଆଶାବଧଂ କୋଗତଃ ।

ଭାରତଭୂମି ଆମ୍ଭମାନଙ୍କର କର୍ମଭୂମି । ମୟୂରଭଞ୍ଜ କର୍ମଭୂମିରେ 'ଉତ୍କଳପ୍ରଭା'ର ଉଦୟ । ଜ୍ଞାନଶିକ୍ଷା ଥରେ ପ୍ରକାଶ ପାଇଲେ ତାହାର ନାଶ ହୁଏ ନାହିଁ । ଏହା ଜ୍ଞାନଗୁରୁ ବୁଦ୍ଧଦେବଙ୍କର ବଚନ । କେଉଁ ସୂତ୍ରରେ ସେହି ଜ୍ଞାନରଶ୍ମି ଜନମାନସରେ ରହିଥାଏ ଏବଂ ଲୋକରୁ ଲୋକାନ୍ତରକୁ ଯାଏ ତାହା ଅବଶ୍ୟ କହିହେବ ନାହିଁ । 'ଉତ୍କଳ ପ୍ରଭା' ଭଞ୍ଜଭୂମିରେ ନିଷ୍ପ୍ରଭ ହୋଇ ନାହିଁ; କେବଳ କ୍ଷୀଣପ୍ରଭ ହୋଇଥିଲା । ରାମଚନ୍ଦ୍ରଙ୍କର ହୃଦୟନନ୍ଦନ ଆୟୁଷ୍ମାନ୍ ମହାରାଜା ପ୍ରତାପଚନ୍ଦ୍ର ସେହି ପ୍ରଭାରୁ 'ଭଞ୍ଜପ୍ରଦୀପ' ଦୀପ୍ତ କରିଅଛନ୍ତି । 'ଭଞ୍ଜ ପ୍ରଦୀପ' ଉତ୍କଳର ଅନ୍ଧକାର ସାହିତ୍ୟ କ୍ଷେତ୍ରକୁ ଆଲୋକିତ କରିବ, ଏଥିରେ କୌଣସି ସନ୍ଦେହ ନାହିଁ ।

ଭଞ୍ଜଭୂମି ଆପଣମାନଙ୍କର କର୍ମଭୂମି । ଗଡ଼ଜାତ ମଧ୍ୟରେ ଏହି ଭଞ୍ଜଭୂମିର ସ୍ଥାନ ଉଚ୍ଚରେ । ଏହି ଭୂମିରେ ସାହିତ୍ୟଚର୍ଚ୍ଚାର ଉପାଦାନ ଯଥେଷ୍ଟ । ବଙ୍ଗ ଓ ଉତ୍କଳର ସୀମାରେ ଏହି ରାଜ୍ୟର ଅବସ୍ଥିତି । ଏଣୁ ଏହି ରାଜ୍ୟରେ ପ୍ରାଚୀନ ସଭ୍ୟତାର ଛାପ ଅଛି । ହିନ୍ଦୁ ବୌଦ୍ଧଧର୍ମର ପ୍ରଭାବ ଏ ଦେଶରେ ଯଥେଷ୍ଟ ଥିଲା । ଏ ଦେଶରେ ଇତିହାସର ସାମଗ୍ରୀ ଯେତିକି ପ୍ରତ୍ନତତ୍ତ୍ୱର ସାମଗ୍ରୀ ମଧ୍ୟ ତେତିକି । ଆପଣମାନଙ୍କର ଯତ୍ନ ଓ ଅଧ୍ୟବସାୟ ଏଥିପ୍ରତି ଲୋଡ଼ା, ପୃଷ୍ଠପୋଷକର କି ଅଭାବ ? ଉତ୍କଳର ପୂର୍ଣ୍ଣଚନ୍ଦ୍ର ଆୟୁଷ୍ମାନ୍ ଶ୍ରୀମାନ୍ ପ୍ରତାପଚନ୍ଦ୍ର ଭଞ୍ଜ ଦେବ ଆପଣମାନଙ୍କର ପୃଷ୍ଠପୋଷକ ଓ କର୍ଣ୍ଣଧାର । ଆପଣମାନଙ୍କର ଶିଶୁ ପ୍ରତିଷ୍ଠାନର ସମ୍ୟକ ଉନ୍ନତି ଦେଖି ଚକ୍ଷୁ ମୁଦ୍ରିତ କରିବି, ଏ ଆଶା ମୁଁ କରିପାରେଁ । ଯେବେ ଅଚିରେ ଇହଧାମ ତ୍ୟାଗ କରିବାର ଥାଏ, ତେବେ ମଧ୍ୟ ଏ ନବ ଉଦ୍ୟୋଗର ପ୍ରଥମ ମଙ୍ଗଳାଚରଣ ମୁଁ କଲି— ଏହା ମୋର ଆତ୍ମପ୍ରସାଦ, ଏଥିରେ ମୁଁ ତୃପ୍ତ ଓ ଆନନ୍ଦିତ ।

ସାହିତ୍ୟ ରସିକମାନଙ୍କୁ ପରିତୋଷ କରିବା ଭଳି ସାମଗ୍ରୀ ମୋଠାରେ ନାହିଁ ବୋଲି ତ ମୁଁ ଆପଣମାନଙ୍କୁ ଆଗରୁ ଜଣାଇଅଛି । ଫଳରେ ବୋଧହୁଏ ଆପଣମାନେ ତାହାହିଁ ଅନୁଭବ କଲେ । ରସାସ୍ୱାଦ ସୁଖରୁ ବଞ୍ଚିତ ହୋଇ ସୁଦ୍ଧା ଆପଣମାନେ ଧୈର୍ଯ୍ୟାବଲମ୍ବନ ପୂର୍ବକ ଏତେ ସମୟ ମୋର ନିରସ ଅଭିଭାଷଣ ଶ୍ରବଣରେ ଅତିବାହିତ କଲେ, ଏଥିନିମନ୍ତେ ମୁଁ ଆପଣମାନଙ୍କଠାରେ ଋଣୀ । ଅନୁରୋଧ କରୁଅଛି, ତ୍ରୁଟି ମାର୍ଜନା କରିବେ ।

ଉପସଂହାରରେ ପୁଣି ମୋର ଦୁଇକଥା ନ କହି ରହିପାରିଲି ନାହିଁ । ଜୀବ ମାତ୍ରରେ ହିଁ ଆତ୍ମା ବିଦ୍ୟମାନ । ମନୁଷ୍ୟଠାରେ ଏହାର ପୂର୍ଣ୍ଣ ଅଭିବ୍ୟକ୍ତି ଓ ବିକାଶ । ନିଜ ଆତ୍ମା ଭିନ୍ନ ଅପରର ଆତ୍ମା, ପରାତ୍ମା ଜନସମଷ୍ଟିର ଆତ୍ମା; ପରାତ୍ମା ନିଜ ପ୍ରତି ସମସ୍ତଙ୍କୁ ଆକୃଷ୍ଟ କରିବା ଓ ସମସ୍ତଙ୍କ ସହିତ ମିଳିତ ହେବାର ନାମ ପରାମାତ୍ମାର ସଂଯୋଗ । ପ୍ରେମର ନାମାନ୍ତର ଧର୍ମଦ୍ୱାରା ଏବଂ ସାହିତ୍ୟଦ୍ୱାରା ଏହି ଅପୂର୍ବ ମିଳନ ହୋଇପାରେ ।

ପ୍ରଜ୍ଞାନଂ ବ୍ରହ୍ମ । ପ୍ରକୃଷ୍ଟ ଜ୍ଞାନଦ୍ୱାରା ବ୍ରହ୍ମପ୍ରାପ୍ତି ବା ବ୍ରହ୍ମଜ୍ଞାନ । ସାହିତ୍ୟ ଭିନ୍ନ କିଛିରେ ହିଁ ଆମ୍ଭମାନଙ୍କର ଜ୍ଞାନୋନ୍ନତି ହୋଇ ନ ପାରେ । ସୁତରାଂ ପରମାତ୍ମା ଲାଭର ଓ ବ୍ରହ୍ମଜ୍ଞାନର ବାଟ ସାହିତ୍ୟ । ଆଉ କ'ଣ ବା ସାହିତ୍ୟଚର୍ଚ୍ଚା ଓ ଶିକ୍ଷାରୁ ଲାଭ ହୋଇ ନ ପାରେ । ଏଣୁ ଉଚ୍ଚନୀଚ ଭେଦରେ ସମସ୍ତେ ସାହିତ୍ୟ ଚର୍ଚ୍ଚା କରିବା ଉଚିତ। ସାହିତ୍ୟ ସମସ୍ତ ପ୍ରକାର ମୁକ୍ତିର ବାଟ । କ୍ରତୁଂ ସ୍ମର, କୃତଂ ସ୍ମର ।



## ନର ଓ ନାରୀ
## (କ)

ଯେତେବେଳେ ପୃଥିବୀରୁ ଅତ୍ୟୁଷ୍ଣାବସ୍ଥା ଗଲା, ଜଳ ଓ ସ୍ଥଳଭାଗ ସ୍ୱତନ୍ତ୍ର ହେବାକୁ ବସିଲା, ସେତେବେଳେ ଜୀବର ଉତ୍ପତ୍ତି । ଜୀବ ଉତ୍ପତ୍ତି ବିବରଣ ଗୁରୁତର ବିଷୟ; ତହିଁର ଆଲୋଚନା ଗୋଟାଏ ବୃହତ୍ ପୁସ୍ତକରେ ମଧ୍ୟ ଶେଷ ହେବ ନାହିଁ । ଏ ପ୍ରବନ୍ଧରେ ସେଥିର ବିବରଣ ଅନାବଶ୍ୟକ । ଜୀବର ବୈଜ୍ଞାନିକ ବ୍ୟାଖ୍ୟା ଲେଖି ପ୍ରବନ୍ଧକୁ ଦୀର୍ଘାବୟବ କରିବାର ମଧ୍ୟ ଆବଶ୍ୟକତା ଜଣାପଡୁ ନାହିଁ । ଯାହା ଖାଦ୍ୟ ଗ୍ରହଣ କରିପାରେ ଏବଂ ତାକୁ ଜୈବିକ ଉପାଦାନରେ ପରିଣତ କରିପାରେ, ଯାହା ଗୃହୀତ ପଦାର୍ଥ ମଧ୍ୟରୁ ଅନାବଶ୍ୟକ ବସ୍ତୁକୁ ତ୍ୟାଗ କରିପାରେ, ଯାହାର ଉତ୍ପାଦନ ବା ଜନନଶକ୍ତି ଅଛି, ଯାହା ବହିଃସ୍ଥ ବା ପାରିପାର୍ଶ୍ୱିକ ଉତ୍ତେଜନାରେ ଉତ୍ତେଜିତ ଓ ବିଚଳିତ ହୁଏ, ସେ ସବୁ ମୋଟାମୋଟି ଜୀବର ଲକ୍ଷଣ । ଜୀବର କ୍ରମବିକାଶ ଓ ପରିବର୍ତ୍ତନର ଦୀର୍ଘ ବର୍ଣ୍ଣନା ଅନାବଶ୍ୟକ; ତେବେ ଏତିକି କହି ରଖିବାର ଉଚିତ ଯେ, ଜୀବର ବିସ୍ତାର, ବଂଶବୃଦ୍ଧି ଶରୀରବିଭାଗଦ୍ୱାରା ଘଟୁଥିଲା ।

ସେତେବେଳେ ସ୍ତ୍ରୀ ପୁରୁଷର ପ୍ରୟୋଜନ ହୋଇ ନ ଥିଲା । ଏଣୁ ସ୍ତ୍ରୀ ପୁରୁଷର ଉତ୍ପତ୍ତି ମଧ ହୋଇ ନ ଥିଲା । ସେ ଅସୀମ, ଅତୀତର କଥା । ଅଦ୍ୟାପି ଯେ ଏପରି ଜୈବିକ ବଂଶବୃଦ୍ଧିର ପ୍ରତ୍ୟକ୍ଷ ଉଦାହରଣ ନାହିଁ, ଏପରି ନୁହେଁ; ସାମୁଦ୍ରିକ ଓ ପାର୍ଥିବ କେତେକ ଜୀବର ଏବଂ କେତେକ ଉଦ୍ଭିଦର ବଂଶବୃଦ୍ଧି ବା ବିସ୍ତୃତି ଶରୀର ବିଭାଗଦ୍ୱାରା ଘଟୁଅଛି । ପୃଥିବୀର ପରିବର୍ତ୍ତନ କ୍ରମେ ଘଟିଲା, କ୍ରମେ ଜଳ ଓ ସ୍ଥଳ ଜୀବର ବାସଯୋଗ୍ୟ ହେଲା । ପ୍ରାଥମିକ ଜୀବ କ୍ରମବିକାଶ ନିୟମରେ ଉଚ୍ଚରୁ ଉଚ୍ଚତର ଜାତି ହେବାକୁ ଲାଗିଲେ । ଏଥିର ଇତିହାସ ପୃଥିବୀ ଆପଣା ଗର୍ଭରେ ସଞ୍ଚୟ କରି ରଖିଅଛି । ଭୂତତ୍ତ୍ୱବିତ୍‌ମାନେ ପୃଥିବୀର ସ୍ତର ଭେଦ କରି ଏଥିର ପ୍ରତ୍ୟକ୍ଷ ଉଦାହରଣ ଆମ୍ଭମାନଙ୍କ ସମକ୍ଷରେ ଉପସ୍ଥିତ କରୁଅଛନ୍ତି ।

ପ୍ରାଣୀତତ୍ତ୍ୱବେତ୍ତା ଏବଂ ଭୂତତ୍ତ୍ୱବେତ୍ତାମାନେ ଜୀବର ଜନ୍ମରହସ୍ୟ ଉଦ୍‌ଘାଟନ ପନ୍ଥାରେ ଯେତେଦୂର ଅଗ୍ରସର ହୋଇଅଛନ୍ତି, ତାହା ଭାବିଲେ ବିସ୍ମୟାଭିଭୂତ ହେବାକୁ ହୁଏ । ମନୁଷ୍ୟର ଓ ଅନ୍ୟାନ୍ୟ ଜୀବମାନଙ୍କର ଉତ୍ପତ୍ତି ଯେ ପୃଥିବୀର ପ୍ରାଥମିକ ଜୈବିକ ପଙ୍କରୁ ହୋଇଅଛି, ଏହା ସେମାନେ ସ୍ଥିର କରିସାରିଲେଣି । ଈଶ୍ୱର ନିର୍ମିତ ଆଦାମ୍ ଇଭ୍ ପ୍ରଥମ ପୁରୁଷ ଓ ସ୍ତ୍ରୀ ଗର୍ଭରୁ ସାରା ମାନବଜାତିର ଜନ୍ମ, ଏହା ଅଳୀକ ଗଳ୍ପ ବୋଲି ବାଇବେଲ୍ ବିଶ୍ୱାସୀମାନେ ମଧ ମାନିନେଲେଣି । ଶତରୂପା ବିଶ୍ୱାସୀମାନେ ମଧ ମାନି ନେଲେଣି । ଶତରୂପା ମନୁଷ୍ୟ ଜାତିର ଆଦ୍ୟ ଜନ୍ମଦାତ୍ରୀ, ଏହା କେହି ବିଶ୍ୱାସ କରିବାକୁ ରାଜି ନୁହନ୍ତି । ଏ ସମସ୍ତ ପୌରାଣିକ ଆବର୍ଜନା, ଉନ୍ନତିର ଅନ୍ତରାୟ ଓ ଶିକ୍ଷିତ ସମ୍ପ୍ରଦାୟଦ୍ୱାରା ଏକାନ୍ତ ବର୍ଜନୀୟ । ଜୈବିକ ପଙ୍କରୁ ମନିରା, ଆମିବା, ପ୍ରଟୋପ୍ଲାଜମ୍ କ୍ରମେ ଉଚ୍ଚରୁ ଉଚ୍ଚତର ଜୀବର ଜନ୍ମ, ଏହା ଅଗ୍ରାହ୍ୟ କରିବାର ଉପାୟ ନାହିଁ ।

ଯେପରି ଅବୟବ ବିଭାଗଦ୍ୱାରା ଜୀବର ବଂଶବୃଦ୍ଧି ଘଟୁଥିଲା ଏବଂ ତା'ର ଉଦାହରଣ ମଧ ଅଛି, ସେହିପରି ଏକ ଅବୟବରେ ପୁଂଇନ୍ଦ୍ରିୟ ଓ ସ୍ତ୍ରୀ ଇନ୍ଦ୍ରିୟ ବିଦ୍ୟମାନ ଥିଲା ଏବଂ ପ୍ରଜନନ ଇଚ୍ଛା ପ୍ରବଳ ହେଲେ ଉଭୟ ଇନ୍ଦ୍ରିୟ ସଂଯୋଗଦ୍ୱାରା ନୂତନ ତଜ୍ଜାତୀୟ ବଂଶଧର ଜନ୍ମ, ଏଥିର ଜୀବନ୍ତ ଉଦାହରଣ ଭୂପୃଷ୍ଠରେ ଅଦ୍ୟାପି ବିଦ୍ୟମାନ ।

ଅସୀମ ଅତୀତ କାଳର କେଉଁ ମୁହୂର୍ତ୍ତରେ ସ୍ତ୍ରୀ ପୁରୁଷର ଭେଦ ଘଟିଲା କିମ୍ୱା ସ୍ତ୍ରୀ ଇନ୍ଦ୍ରିୟ ଓ ପୁରୁଷଇନ୍ଦ୍ରିୟ ସ୍ୱତନ୍ତ୍ର ଅବୟବରେ ରହିଲା ଏବଂ ଉଭୟର ସଂଯୋଗରୁ ବଂଶବୃଦ୍ଧିର ସୂତ୍ରପାତ ହେଲା ତାହା ନିଶ୍ଚିତ ରୂପେ ବୋଲାଯାଇ ନ ପାରେ । ତେବେ ଏହା ଜୀବ ଇତିହାସର ଅସାଧାରଣ ମୁହୂର୍ତ୍ତ ଏବଂ ତଦବଧି ଜୀବମାନଙ୍କର ଜନ୍ମ ଏହି ନିୟମର ବଶବର୍ତ୍ତୀ । ଯେଉଁ ଜୀବଗଣ ଏ ନିୟମର ବଶବର୍ତ୍ତୀ ନୁହନ୍ତି, ସେମାନେ ତତ୍‌ପୂର୍ବକାଳୀନ ନିକୃଷ୍ଟ ଜୀବ ଏବଂ ସେହି ନିକୃଷ୍ଟ ଜୀବ ମଧ ନାନା ଜାତିର ପୃଥିବୀରେ ଅଛନ୍ତି ଆମ୍ଭମାନଙ୍କୁ ସୃଷ୍ଟିକ୍ରମର ଶିକ୍ଷା ଦେବା ନିମନ୍ତେ ।

ମନୁଷ୍ୟର ଜନ୍ମ ଅତୀବ ରହସ୍ୟମୟ । ଆଜି ମନୁଷ୍ୟ ନିଜ ବୁଦ୍ଧିବଳରେ ଜୀବମାନଙ୍କ ମଧରେ ଶ୍ରେଷ୍ଠ, ଏଣୁ ନିଜକୁ ଈଶ୍ୱରଙ୍କ କାରିଗରୀର ଉତ୍କୃଷ୍ଟ ଛାଞ୍ଚ ବୋଲି ମନେକରେ । ମାତ୍ର ଈଶ୍ୱର ଯେ ତାକୁ ନରନାରୀ ରୂପ ଦାନ କରି ପୃଥ୍ୱୀଭୋଗ କରିବାକୁ ଛାଡ଼ି ଦେଇଅଛନ୍ତି ତାହା ନୁହେଁ । ସେ ଯଦି ଆପଣାର ପୂର୍ବ ଜାତକ ଅନୁସନ୍ଧାନ କରିବାକୁ ବସେ, ତାହାହେଲେ ସ୍ୱଚ୍ଛନ୍ଦରେ ଜାଣିପାରିବ ଯେ, ଅନ୍ୟ ଇତର ଜୀବ ପରି ତା'ର ମଧ ଉତ୍ପତ୍ତି ସେହି ପ୍ରାଥମିକ ଜୈବିକ ପଙ୍କରୁ । ନିକୃଷ୍ଟ କୃମି, କୀଟ, ପୋକ, କେଞ୍ଚୁଆଙ୍କର ଯେଉଁ ପ୍ରତିକ୍ରିୟାରେ ଜନ୍ମ ଓ ଜୀବନ, ତା'ର ପୂର୍ବ ପୁରୁଷମାନଙ୍କର ମଧ ସେହି ପ୍ରତିକ୍ରିୟାରେ ଜନ୍ମ ଓ ଜୀବନ ହୋଇଥିଲା । ବଂଶବୃକ୍ଷର ଅଗ୍ରଶାଖାରେ ମନୁଷ୍ୟର ସ୍ଥାନ ହେଲେ ମଧ ତନ୍ନିକଟବର୍ତ୍ତୀ ନିମ୍ନ ଶାଖାରେ ଯେ ଗରିଲା ପ୍ରଭୃତି ବାନରମାନଙ୍କର ସ୍ଥାନ ଏହା ଅସ୍ୱୀକାର କରିବାର ସାଧ କାହିଁ । ବଂଶବୃକ୍ଷର ଶାଖାରୁ ଶାଖାକୁ ଅବତରଣ କରିଗଲେ ବିଭିନ୍ନ ଜାତୀୟ ଜୀବମାନଙ୍କର ସ୍ଥାନ ଦେଖାପଡ଼ିବ ଏବଂ ସେହି ବଂଶବୃକ୍ଷ ମୂଳରେ ପ୍ରାଥମିକ ଜୀବ ପ୍ରଟୋପ୍ଲାଜମ୍ । ବଂଶ ବୃକ୍ଷର ଉତ୍ପତ୍ତି ପ୍ରାଥମିକ ଜୈବିକ ପଙ୍କରୁ । ଏ ସବୁର ଆଲୋଚନା ଥାଉ ।

ପ୍ରାଣିତତ୍ତ୍ୱବିତ୍‌ମାନଙ୍କଦ୍ୱାରା ଏହା ପ୍ରମାଣୀକୃତ । ପୁରାଣବିଶ୍ୱାସୀମାନଙ୍କର ଏଥିରେ ଆସ୍ଥା ନାହିଁ । ପୂର୍ବକାଳର ଲୋକେ ବିଶେଷତଃ ଭାରତବାସୀ ଧର୍ମମୋହାଚ୍ଛନ୍ନ ହୋଇ ଏସବୁ ବିଷୟରେ ଗବେଷଣା କରିବାକୁ ଭୀତ ଥିଲେ । ତେବେ ଜୀବର ଆହାର ଯେ ଜୀବ ଏ କଥା ସେମାନେ ମଧ ସ୍ୱୀକାର କରୁଥିଲେ ।

ଅହସ୍ତାନି ଚ ହସ୍ତାନାଂ,
ଆପଦାନି ଚତୁଷ୍ପଦାଂ
ଲଘୁନି ତତ୍ର ମହତାଂ
ଜୀବୋ ଜୀବସ୍ୟ ଜୀବନଃ ।
(ଭାଗବତ)

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଉଦ୍ଭିଦ ମଧ୍ୟ ଜୀବ । ଜୀବମାନଙ୍କ ମଧ୍ୟରେ ଖାଦ୍ୟ ଖାଦକଭାବ ସଦା ବିଦ୍ୟମାନ । ଜୀବ ଜୀବଭକ୍ଷଣ ଭିନ୍ନ ତିଷ୍ଠି ପାରିବ ନାହିଁ । କେହି ଉଦ୍ଭିଦ ଜୀବ ଭକ୍ଷଣ କରି ଜୀବନ ଧାରଣ କରେ, କେହି ଜରାୟୁଜ, ଅଣ୍ଡଜ ପ୍ରଭୃତି ଜୀବ ଭକ୍ଷଣ କରି ଜୀବନ ଧାରଣ କରେ— ଏହି ମାତ୍ର ପ୍ରଭେଦ ।

ଜୀବ ଇତିହାସରେ ସ୍ତ୍ରୀ ପୁରୁଷର ସୃଷ୍ଟି ହେଲା । ଏଥି ସଙ୍ଗେ ସଙ୍ଗେ ଉଭୟ ଜାତିର ଆକାର ବୈଷମ୍ୟ, ଆକୃତିର ତାରତମ୍ୟ ଓ ସୌନ୍ଦର୍ଯ୍ୟ ଓ କମନୀୟତାର ପ୍ରଭେଦ ଘଟିଲା । ଜୀବର ଲୈଙ୍ଗିକ ପରିବର୍ତ୍ତନ ସଙ୍ଗେ ସଙ୍ଗେ ପ୍ରାକୃତିକ ଶୋଭା ସମ୍ପଦ ବଢ଼ିଲା । ମାତ୍ର ଏହା ମନେ ରଖିବାକୁ ହେବ ଯେ, ଏ ସମସ୍ତ ପରିବର୍ତ୍ତନର ମୂଳରେ ବଂଶବୃଦ୍ଧିର ଉଦ୍ଦେଶ୍ୟ ବିଦ୍ୟମାନ ଏବଂ ପ୍ରତ୍ୟେକ ଜୀବ ବଂଶବୃଦ୍ଧିଦ୍ୱାରା ବଳବାନ୍ ହେବା ଦ୍ୱାରା ଅନ୍ୟ ଜାତିକୁ ପରାସ୍ତ କରିବାକୁ ଏବଂ ଅନ୍ୟ ଜାତି ଉପରେ ଆଧିପତ୍ୟ ବିସ୍ତାର କରିବାକୁ ଯତ୍ନଶୀଳ ହେଲା । କେତେକ ଜ୍ଞାତସାରରେ କେତେକ କେବଳ ଆଦ୍ୟ ବୃଦ୍ଧିଦ୍ୱାରା ଚାଳିତ ହୋଇ ଏହି କ୍ରମୋନ୍ନତି ପଥରେ ଅଗ୍ରସର । ଯେତେବେଳେ ଶରୀର ବିଭାଗଦ୍ୱାରା ବଂଶବୃଦ୍ଧି ଘଟୁଥିଲା, ସେତେବେଳେ ଜୀବର ପ୍ରତିଦ୍ୱନ୍ଦ୍ୱିତା ଆପଣା ଜାତି ମଧ୍ୟରେ ପ୍ରାୟ ନ ଥିଲା । ମାତ୍ର ଜୀବର ସ୍ତ୍ରୀ ପୁରୁଷ ଭେଦ ହେଲା ପରେ ସ୍ତ୍ରୀ ଓ ପୁରୁଷ ଯୋଡ଼ିଏ ଜାତି ରୂପରେ ପରସ୍ପର ଉପରେ ଆଧିପତ୍ୟର ଆକାଂକ୍ଷା କଲେ । ଏହା ସର୍ବବାଦୀସମ୍ମତ ହୋଇ ନ ପାରେ; ମାତ୍ର ପ୍ରକୃତ ବୋଲି ପ୍ରତୀତ ହୁଏ । ସ୍ତ୍ରୀ ପୁରୁଷ ମଧ୍ୟରେ ଯେ ସହଯୋଗିତା ଓ ପ୍ରତିଦ୍ୱନ୍ଦ୍ୱିତା ଅଛି, ଏହା ଅସ୍ୱୀକାର କରାଯାଇ ନ ପାରେ । ସ୍ତ୍ରୀ ସ୍ୱତନ୍ତ୍ର ଭାବରେ ଆପଣା ଜାତିର ବୈଶିଷ୍ଟ୍ୟ ରକ୍ଷାର ଚେଷ୍ଟା କରେ; ପୁରୁଷ ତାଙ୍କୁ ନିଜାୟତ୍ତରେ ରଖିବାର ଇଚ୍ଛା କରେ । ନୀଚ ଉଚ୍ଚ ଉଭୟ ଜୀବର ଏହି ପ୍ରବୃତ୍ତି ଦେଖାଯାଏ; ତେବେ ଉଚ୍ଚ ଜୀବ ମଧ୍ୟରେ ଏଥିର ଉଦାହରଣ ବା ଲକ୍ଷଣ ସ୍ପଷ୍ଟ । ସହଯୋଗ ଓ ସହବାସ ବ୍ୟତିରେକେ ସନ୍ତାନ ଉତ୍ପତ୍ତି ଅସମ୍ଭବ, ଏହା ଜୀବ ମାତ୍ରେ ହିଁ ଜାଣନ୍ତି; ଏଣୁ ଗର୍ଭଧାରଣ ଲିପ୍‌ସା ବଳବତୀ ହେଲେ ସ୍ତ୍ରୀ ପୁରୁଷର ସହବାସ ଓ ସହଯୋଗ ଘଟେ । ମାତ୍ର ତହିଁ ଉତ୍ତାରୁ ଉଭୟେ ସ୍ୱତନ୍ତ୍ର ଓ ସ୍ୱାଧୀନ ରହିବାକୁ ବାସନା କରିଥାଆନ୍ତି । ସମାଜବଦ୍ଧ କେତେକ ଜୀବର ରୂପ ନିୟମ କ୍ରମେ ବିକଶିତ ହୋଇ କିମାକାର ଧାରଣ କରିଅଛି ତାହା କ୍ରମେ ବ୍ୟକ୍ତ କରାଯିବ ।

ଉପରୋକ୍ତ ବିଷୟ ଆଲୋଚନା ବେଳେ ଏକଥା ଭାବିବାକୁ ହେବ ଯେ, ସ୍ତ୍ରୀ ବଳବତୀ କି ପୁରୁଷ ବଳବାନ୍ ? ସ୍ଥଳବିଶେଷରେ ନିୟମର ବ୍ୟତିକ୍ରମ ଲକ୍ଷ୍ୟ ହେଲେ ମଧ୍ୟ ପୁରୁଷକୁ ସ୍ତ୍ରୀ ଅପେକ୍ଷା ବଳିଷ୍ଠ ସ୍ୱୀକାର କରିବାକୁ ହେବ । ଯୁଗଯୁଗାନ୍ତରରୁ ଆରମ୍ଭି ପୁରୁଷ ପରିବର୍ତ୍ତନଦ୍ୱାରା ଏ ବିଶେଷତ୍ୱ ରକ୍ଷା କରିଅଛି । ଆଦ୍ୟାବୃଦ୍ଧି ଚାଳିତଠାରୁ ପକ୍ଷୀମାନଙ୍କ ପର୍ଯ୍ୟନ୍ତ ସବୁ ଜୀବମାନଙ୍କର ମଧ୍ୟ ଏହି ଇଚ୍ଛା ଯେ ସ୍ତ୍ରୀ ପୁରୁଷର ଆୟତ୍ତାଧୀନ ରହିବ । ଏହି ପ୍ରେରଣାର ବଶବର୍ତ୍ତୀ ହେବାରୁ ପୁରୁଷର ବଳ ଓ ଆକାର ସ୍ତ୍ରୀ ଅପେକ୍ଷା କ୍ରମେ ବଢ଼ିଅଛି । ଖାଲି ଯେ ବଳ ଓ ଆକାର ବଢ଼ିଅଛି, ଏପରି ନୁହେଁ ସ୍ତ୍ରୀକୁ ଆୟତ୍ତ କରିବାକୁ ଓ ପ୍ରତିଦ୍ୱନ୍ଦ୍ୱୀ ପୁରୁଷ ସହିତ ଯୁଦ୍ଧ କରି ସ୍ତ୍ରୀକୁ ଛଡ଼ାଇ ଆଣିବାକୁ ପୁରୁଷର ନଖ, ଦନ୍ତ, ଶୃଙ୍ଗ ପ୍ରଭୃତିର ଜନ୍ମ ହୋଇଅଛି । ଏଥିର ଉଦାହରଣ ବିରଳ ନୁହେଁ । ନର ଉତ୍ତରାଧିକାରୀ ନିୟମରେ ପଶୁଠାରୁ ସ୍ତ୍ରୀ ବଶ କରିବା ପ୍ରବୃତ୍ତିର ଉପାୟ ପ୍ରାପ୍ତ ହୋଇଅଛି । ପ୍ରକୃତ ବିଷୟର ଅବତାରଣା ଆଗରୁ ଜୀବର ଆଉ ଗୋଟିଏ ସାଧାରଣ ନିୟମର ସାମାନ୍ୟ ଆଲୋଚନା କରିବା ପ୍ରୟୋଜନ । ସ୍ତ୍ରୀ ସୁନ୍ଦରୀ କି ପୁରୁଷ ସୁନ୍ଦର ? ଜୀବଜଗତରେ ଏହି ନିୟମ ସ୍ୱଚ୍ଛ ଓ ସ୍ପଷ୍ଟ ନୁହେଁ । ଏ ନିୟମର ବ୍ୟତିକ୍ରମ ସ୍ଥଳବିଶେଷରେ ଦେଖାପଡ଼େ; କିନ୍ତୁ ମାନବ ଚକ୍ଷୁକୁ ଯାହା ନିୟମର ବ୍ୟତିକ୍ରମ ବୋଲି ଜଣାଯାଏ, ତାହା ତଜ୍ଜାତୀୟ ଜୀବ ଚକ୍ଷୁକୁ ବ୍ୟତିକ୍ରମଶୂନ୍ୟ ହୋଇପାରେ ।

ପଶୁ, ପକ୍ଷୀ, କୀଟ ପତଙ୍ଗ, ଫଳ ପୁଷ୍ପ ଓ ମନୁଷ୍ୟର ସୌନ୍ଦର୍ଯ୍ୟ ନୈସର୍ଗିକ ଓ ଯୌନ ନିର୍ବାଚନର ଫଳ । ଏକ ଜାତିର ନେତ୍ରପ୍ରୀତି ନିମନ୍ତେ ଅନ୍ୟ ଜାତିର ସୌନ୍ଦର୍ଯ୍ୟ ବା ଅଙ୍ଗ ସୌଷ୍ଠବ ସମ୍ପାଦିତ ହୋଇ ନାହିଁ । ନିଜ ଜାତିର ଉପକାରାର୍ଥ ଏବଂ ତଜ୍ଜାତୀୟ ସ୍ତ୍ରୀ ବା ପୁରୁଷ (ବିଶେଷତଃ ସ୍ତ୍ରୀ) ନେତ୍ରପ୍ରୀତି ଓ ମନୋରଞ୍ଜନ ନିମନ୍ତେ ସୌନ୍ଦର୍ଯ୍ୟର ଅଭିବ୍ୟକ୍ତି । ମନୁଷ୍ୟର ନେତ୍ରପ୍ରୀତି ନିମନ୍ତେ ଈଶ୍ୱରକୃତ ଶୋଭାର ସୃଷ୍ଟି ଏହା ଭାବିବା ଭ୍ରମାତ୍ମକ ।

ଗାଭୀର ନେତ୍ରପ୍ରୀତି ନିମନ୍ତେ ବୃଷଭର କକୁଦ, ନୀଳବର୍ଣ୍ଣ ଓ କଜ୍ଜ୍ୱଳ ଲୋଚନ । ଛାଗର ନୀଳବର୍ଣ୍ଣ ଗଳଦେଶ ଓ ଶ୍ମଶ୍ରୁ ଛାଗୀର ନେତ୍ରାହ୍ଲାଦକ ଅଟେ । କୁକ୍‌କୁଟର ନାନାବର୍ଣ୍ଣ ବିଶିଷ୍ଟ ଉଜ୍ଜ୍ୱଳପକ୍ଷ, କୁକ୍‌କୁଟୀ ନିମନ୍ତେ ମୟୂରର ଇନ୍ଦ୍ରଧନୁବିନିନ୍ଦିତ କଳାପ ମୟୂରୀର ଚିତ୍ତାକର୍ଷଣ ନିମନ୍ତେ । ସମ୍ବର ଓ ମୃଗର ଶିଙ୍ଗ ତଜ୍ଜାତୀୟ ସ୍ତ୍ରୀମାନଙ୍କର ମନମୋହନ ନିମନ୍ତେ । ମନୁଷ୍ୟ ବା ଅନ୍ୟ ଜାତି ଏସବୁ ସୌନ୍ଦର୍ଯ୍ୟାବଲୋକନରେ ମୁଗ୍ଧ ବା ପ୍ରୀତି ହୋଇପାରନ୍ତି,

ମାତ୍ର ସେମାନଙ୍କ ସକାଶେ ଏ ବୈଚିତ୍ର୍ୟର ରଚନା ହୋଇ ନାହିଁ । ସାଧାରଣତଃ ନରଚକ୍ଷୁକୁ ପଶୁ ଓ ପକ୍ଷୀ ଜାତିର ପୁରୁଷ ସୁନ୍ଦର ବୋଲି ଜଣାଯାଏ, ବସ୍ତୁତଃ ତାହା ସତ୍ୟ । ପଶୁପକ୍ଷୀଙ୍କ ଚକ୍ଷୁକୁ ନର ସୁନ୍ଦର କି ନାରୀ ସୁନ୍ଦରୀ ଦେଖାଯାଏ, ଏହା କିଏ କହି ପାରିବ ? ଉଭୟଙ୍କ ରୂପ ପଶୁ ପକ୍ଷୀଙ୍କୁ ଭୀତିପ୍ରଦ ଓ କଦର୍ଯ୍ୟ ମନେ ହେଉଥିବ ପରା ! ସେ ଯାହାହେଉ, ବର୍ତ୍ତମାନ ସ୍ତ୍ରୀ ପୁରୁଷର ଆଲୋଚନା ତ୍ୟାଗ କରି ନରନାରୀର ଆଲୋଚନାରେ କିଞ୍ଚିତ୍ କାଳକ୍ଷେପଣ କରାଯାଉ ।

ନାରୀ ଅପେକ୍ଷା ନର ଯେ ବଳଶାଳୀ ଓ ବୀର୍ଯ୍ୟବାନ୍ ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ । ଆଦିମ ଅବସ୍ଥାରେ ଯେତେବେଳେ ନରଜାତି ସମାଜ ଗଠନ କଲା, ସେତେବେଳରୁ ହିଁ ନର ଓ ନାରୀର ବଳ ବୀର୍ଯ୍ୟ ଓ କ୍ଷମତା ତୁଳନା କରାଯାଇ କାର୍ଯ୍ୟ ବିଭାଗ କରାଯାଇଅଛି । ଅଦ୍ୟାପି ସେହି ବ୍ୟବସ୍ଥା ଚାଲିଅଛି, ସୁତରାଂ ଚିରାଭ୍ୟାସ ହେତୁରୁ ନର ଯାହା କରିପାରେ ନାରୀ ତାହା କରିପାରେ ନାହିଁ । ଅଭ୍ୟାସ ଅନେକାଂଶରେ ଶାରୀରିକ ଓ ମାନସିକ ପରିବର୍ତ୍ତନ ନିମନ୍ତେ ଦାୟୀ । ଅଭ୍ୟାସ ହେତୁରୁ ସ୍ୱଭାବରେ ମଧ ପରିବର୍ତ୍ତନ ଘଟେ । ଏହା ଆମ୍ଭେମାନେ ପ୍ରତ୍ୟକ୍ଷ କରୁଥାଇଁ; ସୁତରାଂ ଏହା ଅସ୍ୱୀକାର କରାଯିବ କିପରି ? ଭୂପୃଷ୍ଠରେ ସୁସଭ୍ୟ ଜାତି ଅଛନ୍ତି । ଅତି ଅସଭ୍ୟ ଓ ଅଶିକ୍ଷିତ ଜାତି ମଧ ଅଛନ୍ତି । ଉଭୟ ଶ୍ରେଣୀର ସ୍ତ୍ରୀମାନଙ୍କର ସାଂସାରିକ କାର୍ଯ୍ୟଭାର ଆଲୋଚନା କଲେ ଗୁରୁ ଲଘୁ ଭେଦରେ ତାହା ଏକ ଶ୍ରେଣୀର ବୋଲି ହୃଦୟଙ୍ଗମ ହେବ । ପୁରୁଷ ଯାହା କରିପାରେ ସ୍ତ୍ରୀ ତାହା କରିପାରେ ନାହିଁ । ପୁଣି ନାରୀ ଯାହା କରିପାରେ, ପୁରୁଷ ତାହା କରିବାକୁ ଯାଇ ଅପଟୁତାର ପରିଚୟ ଦିଏ; ଏଣୁ ଆଦିମମାନଙ୍କଦ୍ୱାରା ନର ନାରୀ ମଧରେ କାର୍ଯ୍ୟ ଭାର ସନ୍ଧିଆବଦ୍ଧ ଏବଂ ତାହା ଅଦ୍ୟାପି ଚାଲିଛି । ଉଦାହରଣ ଦିଆଯାଇପାରେ ଯେ, ଭୂମିକର୍ଷଣ କେବଳ ପୁରୁଷଦ୍ୱାରା ଚିରକାଳ ଚାଲି ଆସୁଅଛି । ସ୍ତ୍ରୀ ଏ ଅଧିକାର ଆଦିମ ଯୁଗରୁ ପାଇ ନାହିଁ । ସାରା ପୃଥିବୀରେ ନାରୀ ଗୃହର ଅଗ୍ନିରକ୍ଷା କରେ । ରନ୍ଧନ କରେ, ପରିଜନମାନଙ୍କୁ ପରିବେଷଣ କରେ ।

ଏହା ବୈଦିକ ଯୁଗର ପ୍ରଥା, ଆଜିକାଲିର ପ୍ରଥା ମଧ ଏହି ତ । ପାର୍ବତୀୟ ଅଭ୍ୟାସ ନାରୀ କାଷ୍ଠ ସଞ୍ଚୟ କରେ; ମାତ୍ର ବୃହତ୍ ବୃକ୍ଷଚ୍ଛେଦନ କରେ ପୁରୁଷ, କ୍ଷେତ୍ର ନିର୍ମାଣ କରେ ପୁରୁଷ, ଗୃହ ନିର୍ମାଣ କରେ ପୁରୁଷ, ସନ୍ତାନ ରକ୍ଷାଣବେକ୍ଷଣ ଭାର ନାରୀ ଉପରେ । ଉପାର୍ଜନ ନିମନ୍ତେ ବିଦେଶକୁ ଯାଏ ପୁରୁଷ— ନାରୀ ଗୃହଚାଳନା କରେ । ସନ୍ତାନ ଲାଳନ ପାଳନ ପୁରୁଷ ପକ୍ଷରେ ଅସମ୍ଭବ । ଅତି ପ୍ରାଚୀନକାଳରୁ ଏ ବ୍ୟବସ୍ଥା ନର ସମାଜର ରକ୍ଷା ନିମନ୍ତେ ଚାଲିଛି । କାଳର ପରିବର୍ତ୍ତନ ସଙ୍ଗେ ସଙ୍ଗେ, ବିଶେଷତଃ ବର୍ତ୍ତମାନଯୁଗରେ, ସ୍ତ୍ରୀ ପୁରୁଷର ସନ୍ଧିସର୍ତ୍ତର ପରିବର୍ତ୍ତନ କରଣୀୟ କି ନା, କିପରି ଭାବରେ, କି ପରିମାଣରେ କରଣୀୟ ତାହା ପରେ ଆଲୋଚ୍ୟ । ବର୍ତ୍ତମାନ ନର ନାରୀର ସୌନ୍ଦର୍ଯ୍ୟର ଏବଂ ସଙ୍ଗେ ସଙ୍ଗେ ଚାରିତ୍ରିକ ପରିବର୍ତ୍ତନର ସାମାନ୍ୟ ଉଲ୍ଲେଖ କରାଯାଉ ।

ବୋଲାଯାଇଛି ଯେ, ବଂଶବୃଦ୍ଧି ହିଁ ପ୍ରକୃତିର ମୂଳଲକ୍ଷଣ । ସ୍ତ୍ରୀ ପୁରୁଷର ସଂଯୋଗ ବଂଶବୃଦ୍ଧିର ଉପାୟ । ସଂଯୋଗର ଅନେକ କାରଣ ମଧରୁ ସୌନ୍ଦର୍ଯ୍ୟବୋଧ ଓ ସୌନ୍ଦର୍ଯ୍ୟପ୍ରୀତି ଅନ୍ୟତମ । ପଶୁପକ୍ଷୀଙ୍କର ନିର୍ବାଚନକର୍ତ୍ତ୍ରୀ ସ୍ତ୍ରୀ । ଏହା ଆଦିମ ନିୟମ । ମନୁଷ୍ୟଠାରେ ଏଥିର ବିପରୀତ ଲକ୍ଷଣ ଦେଖାଯାଏ ।

ସନ୍ତାନର ସ୍ୱତ୍ୱାଧିକାରିଣୀ ସ୍ତ୍ରୀ, ସନ୍ତାନର ମଙ୍ଗଳାକାଂକ୍ଷିଣୀ ସ୍ତ୍ରୀ; ସୁତରାଂ ପଶୁମାନଙ୍କର ସ୍ତ୍ରୀ ହିଁ ସହବାସ ନିମନ୍ତେ ପୁରୁଷ ନିର୍ବାଚନ କରେ । ପୁରୁଷର ତାଦୃଶ ମଙ୍ଗଳେଚ୍ଛା ନାହିଁ । ଯଦି ଥାଆନ୍ତା ତେବେ ରୁଗ୍ଣ ଓ କୁପୁରୁଷ ସ୍ତ୍ରୀ ସଂଯୋଗଦ୍ୱାରା ସନ୍ତାନ କାମନା କରନ୍ତା କାହିଁକି ? ବ୍ୟାଘ୍ରୀ ନିକଟରେ ଗୋଟିଏ ବ୍ୟାଘ୍ର ଉପଗତ ହେଲେ ବ୍ୟାଘ୍ରୀ ଅନ୍ୟ ବ୍ୟାଘ୍ର ସହିତ ଦ୍ୱନ୍ଦ୍ୱ ଯୁଦ୍ଧରେ ଇଙ୍ଗିତ କରେ । ଦ୍ୱନ୍ଦ୍ୱ ଯୁଦ୍ଧରେ ଯେ ଜୟୀ ସେ ତା'ର ପତି ହୁଏ । ଗର୍ଭଧାରଣ ଉତ୍ତାରୁ ସନ୍ତାନର ଦାୟିତ୍ୱ ବ୍ୟାଘ୍ରୀ ଉପରେ । ସୁଗାୟିକା ବିହଙ୍ଗୀ ସଙ୍ଗପ୍ରାର୍ଥୀ ପକ୍ଷୀମାନଙ୍କୁ ଇଙ୍ଗିତ କରେ, ଯେ ସୁଗାୟକ ସେ ତା'ର ପତି ହେବ, ଜୟୀ ତା'ର ପତି ହୁଏ । ସନ୍ତାନଲାଳନାରେ ସ୍ତ୍ରୀ ପୁରୁଷ ଉଭୟେ ଯତ୍ନଶୀଳ ହୁଅନ୍ତି । କୋକିଳା ସୁଗାୟକର ପତ୍ନୀତ୍ୱ ସ୍ୱୀକାର କରି ଡିମ୍ୱ ପ୍ରସବ କରେ କାକ ନୀଡ଼ରେ । ମୋଟ ଉପରେ କହିବାକୁ ଗଲେ ସନ୍ତାନର ଦାୟିତ୍ୱ ଯାହା ଉପରେ ସେ ପ୍ରାୟୀ ବା ପ୍ରଣୟୀ ନିର୍ବାଚନ କରିବାକୁ ଯୋଗ୍ୟ ।

ମନୁଷ୍ୟ ଜ୍ଞାନବାନ୍ ଜୀବ । ସେ ପଶୁପକ୍ଷୀଙ୍କ ଅପେକ୍ଷା ଶାରୀରିକ ବଳରେ ହୀନ, ମାତ୍ର ମାନବର ବୁଦ୍ଧିବୃତ୍ତି ପଶୁବୁଦ୍ଧି ସହିତ ତୁଳନୀୟ ହୋଇ ନ ପାରେ; ମନୁଷ୍ୟ ବୁଦ୍ଧି ବଳରେ ଗୁହା ଅନ୍ୱେଷଣ କରିଅଛି । ପ୍ରଥମେ ତାଳ ପତ୍ରରେ ବାସସ୍ଥାନ ନିର୍ମାଣ କରିଅଛି; କ୍ରମେ କାଷ୍ଠ ଖଣ୍ଡଦ୍ୱାରା ଗୃହ ନିର୍ମାଣ କରିଅଛି । ହର୍ମ୍ୟ ଅଟ୍ଟାଳିକା ନିର୍ମାଣ ତା'ର ଚରମୋନ୍ନତି ।

ବାସସ୍ଥାନ ଅନ୍ୱେଷଣ ଓ ଗୃହ ନିର୍ମାଣର ପ୍ରୟୋଜନ ହେଲା କେବଳ ସନ୍ତାନ ରକ୍ଷା ପ୍ରୟୋଜନ ନିବନ୍ଧନରୁ । ବ୍ୟାଘ୍ର, ଭଲ୍ଲୁକ, ଶୃଗାଳ ଗୁହା ବା ଗର୍ତ୍ତ ଅନ୍ୱେଷଣ କରନ୍ତି ସନ୍ତାନ ରକ୍ଷା ନିମନ୍ତେ । ପକ୍ଷୀ ନୀଡ଼ ପ୍ରସ୍ତୁତ କରେ ଅଣ୍ଡ ପ୍ରସବ କରି ଶାବକ ପାଳନ ନିମନ୍ତେ । ସନ୍ତାନମାନେ ଆତ୍ମରକ୍ଷଣକ୍ଷମ ହେଲେ ସେମାନଙ୍କର ବାସସ୍ଥାନର ପ୍ରୟୋଜନ ହୁଏ ନାହିଁ । ଆଦିକାଳରେ ମନୁଷ୍ୟ ସେହି ସନ୍ତାନରକ୍ଷା ନିମନ୍ତେ ଅନ୍ୟ ପଶୁ ପକ୍ଷୀ ପରି ସାମୟିକ ବାସସ୍ଥାନ ନିର୍ମାଣ ବା ଅନ୍ୱେଷଣ କରୁଥିଲା । କ୍ରମେ ସେଥିରେ ରହିବାର ନିରାପଦ ଓ ସୁଖକର ଜାଣି ତାହାର ସ୍ଥାୟିତ୍ୱରେ ଯତ୍ନବାନ୍ ହେଲା । ଅଦ୍ୟାପି ଭୂପୃଷ୍ଠରେ ଗୁହାବାସୀ, ତାଳପତ୍ର ନିର୍ମିତ ଗୃହବାସୀ, ଛଣଗୃହବାସୀ ଓ ଅଟ୍ଟାଳିକାବାସୀ ମନୁଷ୍ୟ ଅଛନ୍ତି । ଏହା ଦେଖି ସୁଦ୍ଧା ଆମ୍ଭେମାନେ କି କ୍ରମବିକାଶ ଓ କ୍ରମୋନ୍ନତିରେ ଆସ୍ଥାବାନ୍ ହେବା ନାହିଁ ? ଆଦିମ ମନୁଷ୍ୟର ସମସାମୟିକ ପଶୁ ତାହାଠାରୁ ବଳବାନ୍ ଓ କ୍ଷମତାଶାଳୀ ଥିଲେ, ସୁତରାଂ ସେମାନଙ୍କଠାରୁ ରକ୍ଷା ପାଇବା ନିମନ୍ତେ ମନୁଷ୍ୟକୁ ଉପାୟ ଅନ୍ୱେଷଣ କରିବାର ପ୍ରୟୋଜନ ହୋଇଥିଲା । କିଛିକାଳ ବୃକ୍ଷ ହିଁ ତାହାର ପ୍ରଧାନ ଆଶ୍ରୟ ସ୍ଥାନ ଥିଲା । ମାତ୍ର ତାହା ଚିରକାଳ ସୁବିଧାଜନକ ହୋଇପାରିଲା ନାହିଁ । ମନୁଷ୍ୟର ଆଦିମ ଜାତିଭାଇ ଗରିଲା, ଓରାଙ୍ଗ, ସିମ୍ପାଞ୍ଜୀ ଅଦ୍ୟାପି ବୃକ୍ଷଶାଖାରେ ବାସ କରନ୍ତି । ଡାଳରେ ବସା ପ୍ରସ୍ତୁତ କରି ପାରନ୍ତି ।

ସନ୍ତାନପାଳନ ଓ ରକ୍ଷା ନିମନ୍ତେ ଗୃହ । ମାତ୍ର ଗୃହ ରକ୍ଷାକର୍ତ୍ତା କିଏ ? ସନ୍ତାନ ପାଳନ କରିବ କିଏ ? ସ୍ତ୍ରୀ ଗର୍ଭଧାରଣକର୍ତ୍ତ୍ରୀ; ସୁତରାଂ ପ୍ରାକୃତିକ ନିୟମାନୁସାରେ ସେ ନିରାପଦ ସ୍ଥାନରେ ରହିବାକୁ ବାଧ । ମାତ୍ର ଖାଦ୍ୟ ଯୋଗାଇବ କିଏ ? ପୁରୁଷ ପକ୍ଷରେ ଖାଦ୍ୟ ଯୋଗାଇବା ପାଇଁ ଅନିବାର୍ଯ୍ୟ ବାଧା ନାହିଁ; ଅତଏବ ପୁରୁଷ ଖାଦ୍ୟ ଯୋଗାଇବାର ଭାର ଗ୍ରହଣ କଲା । କେତେକ ପଶୁପକ୍ଷୀ ଜାତିର ପୁରୁଷ ଅଦ୍ୟାପି ସେ ଅଭ୍ୟାସ ରଖିଅଛନ୍ତି । ଉଦାହରଣସ୍ୱରୂପ ଉଲ୍ଲେଖ କରାଯାଇପାରେ ଯେ, ଧଣ୍ଡସା ବା କୋଚିଲାଖାଇ (Hornbill) ସ୍ତ୍ରୀ ପକ୍ଷୀ ବୃକ୍ଷକୋଟରରେ ରହି ଅଣ୍ଡ ପ୍ରସବ କରିବା ପରେ ଅଣ୍ଡକୁ ଉଷୁମାଇବାକୁ ବସାରେ ରହେ, ପୁରୁଷ ପକ୍ଷୀ ସେହି କ୍ରୋଟର ଦ୍ୱାରକୁ ପଙ୍କ ବା ମୃତ୍ତିକାଦ୍ୱାରା ବନ୍ଦ କରିଦିଏ । କେବଳ ଚଞ୍ଚୁ ମାତ୍ର ଦୃଶ୍ୟ ହେବା ଭଳି ବାଟ ରଖିଦିଏ । ସ୍ତ୍ରୀ ପକ୍ଷୀ କ୍ରୋଟରରେ ଆବଦ୍ଧ ରହି ଶାବକ ଉଡ଼ିବାକୁ କ୍ଷମ ହେବାଯାଏ ସେହି କ୍ରୋଟରରେ ଥାଏ । ପୁରୁଷ ପକ୍ଷୀ, ସ୍ତ୍ରୀ ପକ୍ଷୀ ଓ ଶାବକ ନିମନ୍ତେ ଖାଦ୍ୟ ସରବରାହ କରେ । ମନୁଷ୍ୟ ଆପଣା ସ୍ତ୍ରୀ ସନ୍ତାନ ପାଇଁ ଏଥିରୁ ଅଧିକ କିଛି କରେ ବୋଲି ଅନୁମାନ ହୁଏ କି ? ଅତୀତ କାଳରେ ଆଦିମ ମନୁଷ୍ୟମାନଙ୍କ ମଧ୍ୟରେ ସନ୍ତାନପାଳନ ସୂତ୍ରରେ ସ୍ତ୍ରୀ ପୁରୁଷର କର୍ମ ବିଭାଗ ସ୍ଥିରୀକୃତ ହୋଇଅଛି । ଆବହମାନ କାଳରୁ ସ୍ତ୍ରୀ ପୁରୁଷ ଏହି ନିୟମ ପାଳନ କରି ଆସୁଅଛନ୍ତି । ଗର୍ଭଧାରଣ ବେଳେ ଏବଂ ସନ୍ତାନ ପାଳନ ବେଳେ ନାରୀ ପୁରୁଷର ସାହାଯ୍ୟ ଓ ବଶବର୍ତ୍ତିତା ସ୍ୱୀକାର କରିବାକୁ ବାଧ ହେଲା । କାଳକ୍ରମେ ଏହା ଦୃଢ଼ାଭ୍ୟାସରେ ପରିଣତ ହେଲା । ଜୀବିତକାଳ ମଧ୍ୟରୁ କେତେକ କାଳ ସ୍ତ୍ରୀ ନିରାପଦରେ ଓ ନିରାପଦ ସ୍ଥାନରେ ରହିବାର ନିତାନ୍ତ ପ୍ରୟୋଜନ ହେବାରୁ ସେ ସ୍ୱେଚ୍ଛାପୂର୍ବକ ପୁରୁଷର ସହାନୁଭୂତି ଓ ଅନୁକମ୍ପା-ପ୍ରାର୍ଥିନୀ ଥିଲା । ନରର ଯୌନ ସମ୍ପର୍କ ହେତୁରୁ ନାରୀର ଯେ ବିପନ୍ନାବସ୍ଥା ଏହା ନରର ହୃଦୟକୁ ଆର୍ଦ୍ର କଲା; ସ୍ତ୍ରୀକୁ ସାହାଯ୍ୟ କରିବାକୁ ତା'ର ପ୍ରବୃତ୍ତି ବଳିଲା । ପଶୁମାନଙ୍କଠାରେ ମଧ୍ୟ ଏ ପ୍ରବୃତ୍ତି ଦେଖାପଡ଼େ । ନବପ୍ରସୂତା ହସ୍ତିନୀ କି ବିପଦ୍‌ଗ୍ରସ୍ତା ବିବେଚନା କରି ଦନ୍ତା ତା'ର ସଙ୍ଗ ତ୍ୟାଗ କରେ ନାହିଁ ।

ସ୍ତ୍ରୀ ପୁରୁଷର ସଂଯୋଗ, ସ୍ତ୍ରୀର ଗର୍ଭଧାରଣ, ପ୍ରସବ ଓ ସନ୍ତାନପାଳନ ହେତୁରୁ ନରନାରୀ ମଧ୍ୟରେ ସୌହାର୍ଦ୍ଦ୍ୟ । ପୁରୁଷ ସ୍ତ୍ରୀର ଏହି ରକ୍ଷଣାବେକ୍ଷଣ ଭାର ଗ୍ରହଣ କରିବା ହେତୁ ବିବାହର ଉତ୍ପତ୍ତି । ସ୍ତ୍ରୀର ରକ୍ଷା ଓ ସାହାଯ୍ୟ ନିମନ୍ତେ ପୁରୁଷ କଠିନ ଓ କର୍କଶ କାର୍ଯ୍ୟ କରିବାକୁ ବାଧ ହେଲା । ସ୍ତ୍ରୀ ଅନ୍ତତଃ ଜୀବନର କେତେକ କାଳ ତାଦୃଶ କାର୍ଯ୍ୟ କରିପାରିବାକୁ କ୍ଷମ ହେଲା ନାହିଁ ଏବଂ କଠିଣ ଓ କୋମଳ କାର୍ଯ୍ୟ ବିଭାଗ ଅନୁସାରେ ପୁରୁଷ ଓ ସ୍ତ୍ରୀର ଦୈହିକ ପରିବର୍ତ୍ତନ ଘଟିଲା । ପୁରୁଷର ଗୋଡ଼ ହାତ ସବଳ ଅସ୍ଥି, ଦୃଢ଼ ମାଂସପେଶୀ ଓ ଚର୍ମ କର୍କଶ ହେଲା । ସ୍ତ୍ରୀର ଶରୀର ଗଠନ କମନୀୟ ଓ ନମନୀୟ ହେଲା । ଏହା ଅସ୍ୱୀକାର୍ଯ୍ୟ ନୁହେଁ । ଆଧୁନିକ ଶିକ୍ଷିତାମାନଙ୍କଦ୍ୱାରା ମଧ୍ୟ ଏହା ବୋଧହୁଏ ଅସ୍ୱୀକୃତ ହୋଇପାରିବ ନାହିଁ ।

ପଶୁ ପକ୍ଷୀ ପ୍ରଭୃତିଙ୍କର ସଙ୍ଗୀନିର୍ବାଚନ ଭାର ରହିଲା ସ୍ତ୍ରୀଠାରେ । ମନୁଷ୍ୟ ଜାତିର ସ୍ତ୍ରୀ ନିର୍ବାଚନ ଭାର ପୁରୁଷଠାରେ । ପୁରୁଷ ମନୋରମାର ପକ୍ଷପାତୀ । ଏଣୁ ନାରୀର ସୌନ୍ଦର୍ଯ୍ୟ ବୃଦ୍ଧି, ପୁରୁଷ ଚକ୍ଷୁକୁ ନାରୀ ସୁନ୍ଦରୀ । ସଂଯୋଗ ସମୟ ଉପସ୍ଥିତ ହେଲେ ନାରୀର ରୂପଲାବଣ୍ୟ ବଢ଼େ, ତାହା ପୁରୁଷ ଚକ୍ଷୁକୁ ଲୋଭନୀୟ । ପୁରୁଷର ପରିବର୍ତ୍ତନ ନିଶ, ଦାଢ଼ି, କର୍କଶ ସ୍ୱର ଏହା ପୁରୁଷତ୍ୱର ଲକ୍ଷଣ । ସ୍ତ୍ରୀ ଉପରେ ନିର୍ବାଚନ ଭାର ନ ଥିବାରୁ ବୋଧହୁଏ ପୁରୁଷର ରୂପଲାବଣ୍ୟର ଅଭିବ୍ୟକ୍ତି ଘଟି ନାହିଁ ।

ସ୍ତ୍ରୀମାନେ ଯେ କେବଳ ପୁରୁଷ ଚକ୍ଷୁକୁ ସ୍ୱାଭାବିକ ଲୋଭନୀୟ ଅଟନ୍ତି ଏତିକି ନୁହେଁ— ଏମାନେ ପୁରୁଷକୁ ମୋହିତ ଓ ଆକୃଷ୍ଟ କରିବାକୁ ପ୍ରସାଧନର ସାହାଯ୍ୟ ଲୋଡ଼ି ଅଛନ୍ତି । ଏହା ବହୁକାଳର ଅଭ୍ୟାସ । ଆଦିମ ନାରୀ ଗେରୁ, ହଳଦିଆ ମାଟି ଓ ଶ୍ୱେତ ମାଟିଦ୍ୱାରା ଅଙ୍ଗ ଚିତ୍ରିତ କରୁଥିଲା, ଅଳଙ୍କାରର ଅଭାବ ଲତା, ମୃଣାଳଦ୍ୱାରା ପୂରଣ କରୁଥିଲା । କାଇଁଚ, ଗୁଞ୍ଜ, ସର୍ବଜୟା ପ୍ରଭୃତି ଫଳର ମାଳା ଆଦିମ ନାରୀର ସୌନ୍ଦର୍ଯ୍ୟବର୍ଦ୍ଧକ ଅଳଙ୍କାର ବୋଲି ବିବେଚିତ ହେଉଥିଲା । ଗମନ ଓ ଅଙ୍ଗଚାଳନାର ସଙ୍କେତ ନିମନ୍ତେ କୌଡ଼ି ପ୍ରଭୃତିର ବ୍ୟବହାର । ଧାତବ ପଦାର୍ଥର ଆବିଷ୍କାର ଉତ୍ତାରୁ ଅଳଙ୍କାର ସ୍ତ୍ରୀମାନଙ୍କଦ୍ୱାରା ପୁରୁଷର ମନ ଆକର୍ଷଣ ନିମନ୍ତେ ବ୍ୟବହୃତ ହେଲା ।

ଅଳଙ୍କାରର ପ୍ରକାର ହେବ ଉଭୟ ସ୍ତ୍ରୀ ଓ ପୁରୁଷଙ୍କ କୃତ ନିର୍ବାଚନ । ସ୍ତ୍ରୀର ବିଭୂଷଣ ପୁରୁଷର ନେତ୍ର ପ୍ରୀତି ନିମନ୍ତେ, କେବଳ ଏତିକି ନୁହେଁ, ତାକୁ ମୋହିତ ଓ ଆକୃଷ୍ଟ କରିବା ନିମନ୍ତେ । ନରନାରୀର ସୌନ୍ଦର୍ଯ୍ୟ ଅନୁଭୂତି ବୃଦ୍ଧି ସଙ୍ଗେ ସଙ୍ଗେ ଅଳଙ୍କାରର ବିକାଶ ଘଟିଅଛି । ଏଣୁ ଆମ୍ଭେମାନେ ରଙ୍ଗ, ତମ୍ବା, କଂସା, ପିତଳ, ରୁପା, ସୁନା ଅଳଙ୍କାରର ଦର୍ଶନ ପାଉଁ । ଯାହା ସୁନ୍ଦର, ଯାହା ଲୋଭନୀୟ, ଯାହା ମୂଲ୍ୟବାନ୍, ତାହା ନାରୀର ସୌନ୍ଦର୍ଯ୍ୟବୃଦ୍ଧି ନିମନ୍ତେ ବ୍ୟବହୃତ ହୋଇଅଛି । ହୀରା, ନୀଳା, ମୋତି, ମାଣିକ୍ୟ, ପ୍ରବାଳ ଏବଂ ଅନ୍ୟାନ୍ୟ ମୂଲ୍ୟବାନ୍ ମଣି ନାରୀମାନଙ୍କ ଉପଭୋଗର ସାମଗ୍ରୀ । ବର୍ଣ୍ଣବିନ୍ୟାସ ନିମନ୍ତେ ହରିଦ୍ରା, କୁଙ୍କୁମ ଓ ଅନ୍ୟାନ୍ୟ ପ୍ରସାଧନ ଦ୍ରବ୍ୟର ପ୍ରୟୋଜନ ଓ ସୁଗନ୍ଧ ଦ୍ରବ୍ୟର ଉଦ୍‌ଭାବନ ନାରୀର ଅଙ୍ଗସୌଷ୍ଠବ ଓ ଶାରୀରିକ ଶୋଭାବର୍ଦ୍ଧନ ନିମନ୍ତେ । କେଉଁ ଦୂର ଅତୀତରୁ ଆଜିଯାଏ ସ୍ତ୍ରୀର ଅଙ୍ଗସୌଷ୍ଠବ ଓ ଶୋଭାବୃଦ୍ଧି ନିମନ୍ତେ ପୁରୁଷ ନାନାବିଧ ଅଳଙ୍କାର, ନାନାବର୍ଣ୍ଣର ମୂଲ୍ୟବାନ୍ ବସ୍ତ୍ର ଓ ପ୍ରସାଧନ ଦ୍ରବ୍ୟ ନିର୍ମାଣ କରିବାରେ ବୁଦ୍ଧି ଓ ସମୟ ବ୍ୟୟ କରିଅଛି— ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । କବି ସାଳଙ୍କରା ନାରୀର ରୂପଲାବଣ୍ୟ ବର୍ଣ୍ଣନା କରିବାରେ ବ୍ୟସ୍ତ । ଚିତ୍ରକର ନାରୀର ଛବିକି ଅଳଂକୃତା ଓ ସ୍ୱର୍ଣ୍ଣ କେତକୀ, ଚମ୍ପକବର୍ଣ୍ଣା କରିବାକୁ ଅସ୍ତବ୍ୟସ୍ତ । ଶିଳ୍ପୀ ପ୍ରସ୍ତର ଦେହରେ ପୁରୁଷର ଲୋଭନୀୟ ନାରୀର ଅଙ୍ଗପ୍ରତ୍ୟଙ୍ଗ ପରିସ୍ଫୁଟ କରିବା ନିମନ୍ତେ ଚିନ୍ତାଗ୍ରସ୍ତ କାହିଁକି ? ସୁଦୂର ଭୂତକାଳରେ ନରରୂପୀ ପଶୁ ପ୍ରଥମେ ନାରୀ ନିର୍ବାଚନର ଭାର ଗ୍ରହଣ କଲା । ସେଦିନୁ ସୁନ୍ଦରୀର ଆଦର୍ଶ ସେ ଧ୍ୟାନ କଲା, ଯେ କି ତା'ର ନେତ୍ରପ୍ରୀତିକର ହେବ, ଯେ ତା'ର ଇନ୍ଦ୍ରିୟଲାଳସା ତୃପ୍ତି କରିପାରିବ । ଏହି ଇଚ୍ଛା କ୍ରମେ ସ୍ୱଭାବରେ ପରିଣତ ହେଲା । ଯୌନ ନିର୍ବାଚନ ଫଳରୁ ଓ ପାରିପାର୍ଶ୍ୱିକ ନିୟମରୁ ନାରୀର ରୂପଲାବଣ୍ୟ ମଧ୍ୟ ବଢ଼ିଲା । ନରର ତୃପ୍ତି ନାହିଁ । ସେ ନାରୀକୁ ଆହୁରି ସୁନ୍ଦରୀ ଦେଖିବାକୁ ଇଚ୍ଛା କଲା । ସ୍ତ୍ରୀ ଅଧିକତର ସୁନ୍ଦରୀ ହେବାକୁ ପ୍ରୟାସୀ ହେଲା । ପ୍ରକୃତିଦତ୍ତ ଶରୀରର ରଙ୍ଗ ଓ ସୌନ୍ଦର୍ଯ୍ୟରେ ମଧ୍ୟ ତୃପ୍ତ ନ ହୋଇ ବେଶଭୂଷାର ଉଦ୍‌ଭାବନ କଲା । ପୁରୁଷ ଯେତେ ଅଳଙ୍କାର ବସ୍ତ୍ର ଓ ପ୍ରସାଧନ ଦ୍ରବ୍ୟର ଉଦ୍‌ଭାବନ କଲେ ମଧ୍ୟ ନାରୀର ତହିଁରେ ତୃପ୍ତି ନାହିଁ, ଆବିଷ୍କାର କରିଚାଲିଛି । ଆଜି ଅଶିକ୍ଷିତା ଗ୍ରାମ୍ୟ ଗରିବ ସ୍ତ୍ରୀମାନେ କାଚ, ଲାଖ ଓ ପିତଳ କଂସାର ଅଳଙ୍କାର ପିନ୍ଧନ୍ତି । ଧନୀ ଘରର ନାରୀମାନେ ସ୍ୱର୍ଣ୍ଣାଳଙ୍କାର ଓ ହୀରକାଳଙ୍କାର ପିନ୍ଧନ୍ତି । ପାଶ୍ଚାତ୍ୟ ଶିକ୍ଷିତାମାନେ ପାଶ୍ଚାତ୍ୟ ଧରଣର ଅଳ୍ପ ଅଳଙ୍କାର ଓ ପ୍ରସାଧନ ଦ୍ରବ୍ୟ ବ୍ୟବହାର କରନ୍ତି ।

କି ସଭ୍ୟ, କି ଅସଭ୍ୟ ପୁରୁଷ ସ୍ତ୍ରୀକୁ ସୁନ୍ଦରୀ ଦେଖିବାକୁ ଓ ସୁନ୍ଦରୀ ସାଜିବାକୁ ବ୍ୟସ୍ତ ଏବଂ ସ୍ତ୍ରୀଜାତି ପୁରୁଷର ଉଭାବିକା ଶକ୍ତିରୁ ବଳି କିଛି ବ୍ୟବହାର କରିବାକୁ ମଧ୍ୟ ସଦା ଉତ୍କଣ୍ଠିତ । ଏ ରୀତି ଚାଲିଛି ଚାଲିବ । ଏହା ପୃଥିବୀର ଗୋଟାଏ ସ୍ୱାଭାବିକ୍ ରହସ୍ୟ ବୋଇଲେ ଚଳେ । ପଶୁ, ପକ୍ଷୀ, ମନୁଷ୍ୟାଦିର ସ୍ତ୍ରୀ ପୁରୁଷ ଭେଦରେ ପାର୍ଥକ୍ୟ ଉପଲବ୍ଧ ହୁଏ । ରୂପ ନ ଦେଖି ମଧ୍ୟ ସ୍ୱରଦ୍ୱାରା ସ୍ତ୍ରୀ କି ପୁରୁଷ ତାହା ଅନାୟାସରେ ଜଣାଯାଏ । ଉଷାକାଳ ପୂର୍ବରୁ କୁକ୍‌କୁଟର ଶବ୍ଦ ଗ୍ରାମବାସୀଙ୍କି ଜାଗ୍ରତ କରେ । ଏଣୁ ଆବାଳବୃଦ୍ଧ ସମସ୍ତେ କୁକ୍‌କୁଟ ଶବ୍ଦର ପରିଚୟ ପାଇଛନ୍ତି । ଏହି ପ୍ରକାରେ କୋକିଳ, ମୟୂର, କୁଜିହଂସ, ବିଡ଼ାଳ ପ୍ରଭୃତିଙ୍କ ଧ୍ୱନିରୁ ସ୍ତ୍ରୀ ପୁରୁଷଙ୍କର ଭେଦ ଜଣାଯାଇଥାଏ । ନାରୀର ସ୍ୱର ଓ ସଙ୍ଗୀତ ନରକର୍ଣ୍ଣକୁ ସୁମଧୁର ଓ ସୁଶ୍ରାବ୍ୟ ବୋଧ ହୁଏ । ନାରୀର ବଚନ ଲାଳିତ୍ୟପୂର୍ଣ୍ଣ ନାରୀର ହାସ୍ୟ, ଅଙ୍ଗଚାଳନା, ଲାସ୍ୟ ଆଦି ନରର ନେତ୍ରପ୍ରୀତିକର ଓ ମନୋମୁଗ୍ଧକର ନୁହେଁ କି ? କବିମାନେ ଶିଳ୍ପୀମାନେ ନାରୀର ସୌନ୍ଦର୍ଯ୍ୟ ଓ ଭାବଭଙ୍ଗୀର ଅତିରଞ୍ଜିତ ପସରା ପ୍ରଦର୍ଶନଦ୍ୱାରା ନରର ସୌନ୍ଦର୍ଯ୍ୟପିପାସା ବଢ଼ାଇଅଛନ୍ତି, ନାରୀ ସମ୍ଭୋଗସାମଗ୍ରୀ ବୋଲି ନର ହୃଦୟରେ ବିଶ୍ୱାସ ଜନ୍ମାଇଅଛନ୍ତି । ପଶୁପକ୍ଷୀ ପ୍ରଭୃତିଙ୍କ ମଧ୍ୟରେ ସ୍ତ୍ରୀ ପୁରୁଷର ନିତ୍ୟ ସମ୍ଭୋଗସାମଗ୍ରୀ ନୁହେଁ । ନର ବିବେଚନା କରେ, ନାରୀ ତା'ର ନିତ୍ୟ ସମ୍ଭୋଗ ସାମଗ୍ରୀ ଏବଂ ନାରୀ ଯେ ତାହା ସ୍ୱୀକାର ନ କରେ ଏପରି ନୁହେଁ । ମନୁଷ୍ୟ ବୁଦ୍ଧିଜୀବୀ । ତା'ର ସ୍ମରଣଶକ୍ତି ଇତର ଜୀବ ଅପେକ୍ଷା

ଅସାଧାରଣ; ଏଣୁ ସନ୍ତାନ ଉତ୍ପାଦନ ନିମନ୍ତେ ଯେ ସ୍ତ୍ରୀ ପୁରୁଷର ସଂଯୋଗ ଆବଶ୍ୟକ ତାକୁ ମନୁଷ୍ୟ ସୁଖକର ମନେକଲା ଓ ସ୍ମରଣ ରଖିଲା । କାଳକ୍ରମେ ତାହା ଅଭ୍ୟାସ ଓ କ୍ରମେ ସ୍ୱଭାବରେ ପରିଣତ ହୋଇଅଛି । ବୟଃପ୍ରାପ୍ତ, ହୃଷ୍ଟପୁଷ୍ଟ, ସୁନ୍ଦରୀଗାଭୀ ବୃଷଭ ସମକ୍ଷରେ ଦଣ୍ଡାୟମାନ ଥିଲେ ବା ବିଚରଣ କରୁଥିଲେ ସୁଦ୍ଧା ବୃଷଭ ଗାଭୀଙ୍କ ପ୍ରତି ଦୃକ୍‌ପାତ କରେ ନାହିଁ । ତା'ର କାମଲାଳସାର ଉଦ୍ରେକ ହୁଏ ନାହିଁ।

ଅନ୍ୟାନ୍ୟ ପଶୁ ଓ ପକ୍ଷୀମାନଙ୍କଠାରେ ତଦ୍ରୂପ ଆଚରଣର ନିଦର୍ଶନ ମିଳେ । ଗର୍ଭଧାରଣର ଉପଯୁକ୍ତ ସମୟ ଭିନ୍ନ ଅନ୍ୟ କୌଣସି ସମୟରେ ସେମାନଙ୍କର କାମ ପ୍ରବୃତ୍ତିର ଉଦ୍ରେକ ହୁଏ ନାହିଁ । କେବଳ ଏତିକି ନୁହେଁ, ସ୍ତ୍ରୀ ଯେ ସହବାସ ଫଳରେ ଗର୍ଭଧାରଣ କରେ, ଏହା ସେମାନଙ୍କୁ ତତ୍‌କ୍ଷଣାତ୍ ଜଣାପଡ଼େ । ଏଣୁ ସେମାନେ ଗର୍ଭିଣୀର ସହବାସ କରନ୍ତି ନାହିଁ । ଗର୍ଭିଣୀ ପ୍ରତି ସେମାନଙ୍କର ଅସାଧାରଣ ସମ୍ମାନ । ନରର ତାହା ନାହିଁ । ସହବାସ ଉତ୍ତାରୁ ନାରୀ ଗର୍ଭଧାରଣ କଲା କି ନା, ତାହା ନର ବୁଝିପାରେ ନାହିଁ । ନରର ବିବେଚନାରେ ସନ୍ତାନ ଜନ୍ମ ସମ୍ଭୋଗ ଅପେକ୍ଷା ଗୌଣ । ଏଣୁ ସେ ନାରୀର ଗର୍ଭଧାରଣ ଜ୍ଞାନ ହରାଇଅଛି । ଏଣୁ ମଧ ସେ ଅନ୍ତତଃ କିଛିକାଳ ନିମନ୍ତେ ଗର୍ଭବତୀର ସମ୍ମାନ ରକ୍ଷା କରିପାରେ ନାହିଁ । ସ୍ତ୍ରୀର ଗର୍ଭଲକ୍ଷଣର ଜ୍ଞାନ ମନୁଷ୍ୟ ଅପେକ୍ଷା ପଶୁ ଓ ପକ୍ଷୀଙ୍କର ଅଧିକ ।

## (ଖ)

ନର ଓ ନାରୀର ଶକ୍ତିର ଓ ଗୁଣର ତାରତମ୍ୟ ଅଛି । ଶାରୀରିକ ବଳରେ ନର ନାରୀ ଅପେକ୍ଷା ଶ୍ରେଷ୍ଠ । ଶାରୀରିକ ଗଠନ ଏଥିର ମୂଳ କାରଣ, ତାହା ଆମ୍ଭେମାନେ ପୂର୍ବେ କହିଅଛୁଁ । ନରର ଏ ଶ୍ରେଷ୍ଠତ୍ୱ ପ୍ରକୃତିଦତ୍ତ ବୋଇଲେ ଅତ୍ୟୁକ୍ତି ନୁହେଁ । ପୁଣି ଚିରାଭ୍ୟାସ ଶକ୍ତି ଓ ସାମର୍ଥ୍ୟକୁ କ୍ରମେ ବୃଦ୍ଧି କରିଅଛି । ସହଜ କର୍ମଲିପ୍‌ସା ହେତୁରୁ ନାରୀର ଶକ୍ତି ଓ ସାମର୍ଥ୍ୟ କ୍ରମେ ହ୍ରାସ ହୋଇଅଛି । ଏ ହେତୁରୁ ଆମ୍ଭେମାନେ ନର ନରୀର ଶକ୍ତି ଓ ବଳରେ ତାରତମ୍ୟ ଦେଖିବାକୁ ପାଉଁ । ଯେତେ ଯତ୍ନ କଲେ ମଧ ନାରୀ ନରର ଶକ୍ତିମତ୍ତା ଅର୍ଜନ କରିବାକୁ କଦାପି କ୍ଷମ ହେବା ସମ୍ଭବ ନୁହେଁ । ଏତାଦୃଶ ଶକ୍ତିବୈଷମ୍ୟ ସତ୍ତ୍ୱେ ନର ଓ ନାରୀର ସମାଜ ରକ୍ଷା ସନ୍ନିବଦ୍ଧ । ସମାଜବଦ୍ଧ ନିକୃଷ୍ଟ ଜୀବମାନଙ୍କ ମଧରେ ମଧ ଏ ଦୃଷ୍ଟାନ୍ତର ଅଭାବ ନାହିଁ ।

ସମାଜ ରକ୍ଷା ଓ ବଂଶରକ୍ଷା ନିମନ୍ତେ ନାରୀ ନରର ବଶବର୍ତ୍ତିତା ସ୍ୱୀକାର କରେ । ଏହି ବଶବର୍ତ୍ତିତା ସ୍ୱେଚ୍ଛାକୃତ । ଏହାକୁ ଅଧୀନତା ବୋଲାଯାଇପାରେ କି ନା, ତାହା ସନ୍ଦେହର ବିଷୟ । ତେବେ ନାରୀ ନରର ଅଧୀନା ନୁହଁ ଏହା ନିଶ୍ଚିତ । ନର ଓ ନାରୀର ସମ୍ପର୍କ ବା ସମ୍ବନ୍ଧ ପରସ୍ପର ସମ୍ମତିପ୍ରସୂତ । ବୈବାହିକ ସମ୍ପର୍କ ଦ୍ୱାରା ଏହା ସ୍ଥିରୀକୃତ ହୁଏ । ଗୋଟାଏ ହୀନବଳ ଜାତିକୁ ଅପର ବଳଶାଳୀ ଜାତି ଯେପରି ଛଳେ ବଳେ କୌଶଳେ ନିଜର ଅଧୀନ କରି ରଖେ ଏବଂ ପରାଜିତ ଜାତିକୁ ଯେପରି ଜେତାର ପରାଧୀନ ବୋଲାଯାଏ, ସେପରି ନାରୀକୁ ନରର ଅଧୀନ ବୋଲିବା ସଙ୍ଗତ ନୁହେଁ । ନର ନାରୀର ପର ବା ଶତ୍ରୁ ନୁହେଁ; ମାତ୍ର ଜେତା ସବୁବେଳେ ବିଜିତର ପର ବା ଶତ୍ରୁ ବୋଲି ବିବେଚିତ ହୁଏ । ଏଣୁ ପର ବା ଶତ୍ରୁର ଅଧୀନ ଯେଉଁ ଜାତି ସେ କେବଳ ପରାଧୀନ ।

ଅତି ପୁରାକାଳରେ ନର ଓ ନାରୀର ଗାର୍ହସ୍ଥ୍ୟ ସମ୍ବନ୍ଧ ସ୍ଥିରୀକୃତ ହେଲା । ସେହି ସନ୍ଧି ସୂତ୍ରରେ ନର ଓ ନାରୀର କାର୍ଯ୍ୟବିଭାଗ ଥିଲା । ନର ଗ୍ରହଣ କଲା କଠିନ କାର୍ଯ୍ୟଭାର, ନାରୀ ପାଇଲା ସହଜ କର୍ମର ଭାର । କ୍ରମେ ତାହା ଅଭ୍ୟାସରେ ପରିଣତ ହେଲା । ନର ହେଲା ସବଳ, ନାରୀ ହେଲା ଅନୁପାତାନୁସାରେ ଦୁର୍ବଳ । ଯୁଦ୍ଧାଦି ଗୁରୁତର ଭାର ନର ଉପରେ, ଏହା ଦେଖି ନାରୀ ଆପଣାକୁ ଦୁର୍ବଳ ଭାବେ । ବସ୍ତୁତଃ ତାହା ସତ୍ୟ । ଉପରେ ଯାହା ଲେଖାଗଲା, ତାହା କେବଳ ଶାରୀରିକ ବଳ ସମ୍ବନ୍ଧରେ । ମାନସିକ ବଳ ବିଷୟ ପରେ ବିଚାର୍ଯ୍ୟ । ନାରୀ ଯେଉଁ ଶାରୀରିକ ବିଶେଷତ୍ୱ ହରାଇଅଛି, ତାହା ଲାଭ କରିବା ସମ୍ଭବ କି ? ଅର୍ଥାତ୍ ଶାରୀରିକ ଶକ୍ତିରେ ସେ ନରର ସମକକ୍ଷ ହୋଇପାରିବ କି ? ଅସମ୍ଭବ । ନାରୀଜାତି ଯାହା କାଳକ୍ରମେ ହରାଇଅଛି, ତାହା ବହୁ ଚେଷ୍ଟା ସତ୍ତ୍ୱେ ଆଉ ପାଇବ ନାହିଁ । ଏହା ଜଣେ ଦୁଇ ଜଣର କଥା ନୁହେଁ, ଗୋଟିଏ ଜାତିର କଥା, ଯାହା ପ୍ରକୃତିଦତ୍ତ ତାହା ଅନ୍ୟଥା ହେବାର ନୁହେଁ । ଚିରକାଳ ନର ଓ ନାରୀର ଶକ୍ତିବୈଷମ୍ୟ ରହିବ । ତେବେ କେତେକ ଶାରୀରିକ ଶକ୍ତି ବ୍ୟବହାରରୁ ନର ନାରୀକୁ ଯାହା ବଞ୍ଚିତ କରି ରଖିଅଛି ତାହା ନାରୀ କରିପାରିବାର ଅଧିକାର ପାଇବ ଓ କରିପାରିବ ।

ନର ଓ ନାରୀର ମାନସିକ ବଳ ତୁଳନା କରିବା ସହଜ ନୁହେଁ । ସହଜ ନୁହେଁ ଏହି ନିମିତ୍ତ ଯେହେତୁ ନାରୀ ଆପଣାର ମାନସିକ ବଳ ଦେଖାଇବାକୁ ଅଧିକାରଚ୍ୟୁତା । ନାରୀ ଧନ ଉପାର୍ଜନ ଅଧିକାରରୁ ଯେପରି ବଞ୍ଚିତା, ବିଦ୍ୟା ଉପାର୍ଜନର

ଅଧିକାରରୁ ତତୋଽଧିକ ବଞ୍ଚିତା । ସ୍ୱାର୍ଥପର ନର ଏହି ଦୁଇ ପନ୍ଥାର ନିୟନ୍ତ୍ରଣଦ୍ୱାରା ଆପଣାର ବୈଶିଷ୍ଟ୍ୟ ରକ୍ଷା କରିବାକୁ ସମର୍ଥ ହୋଇଅଛି । ପ୍ରଶ୍ରୟ ପାଇଲେ ନାରୀ ବିଦ୍ୟାର୍ଜନରେ ନରର ସମକକ୍ଷା ହୋଇପାରନ୍ତା, ଏଥିରେ ସନ୍ଦେହ ନାହିଁ । ପ୍ରଶ୍ରୟ ପାଇଲେ ଯେ କୌଣସି ଜାତିର ନର ଯେପରି ବୁଦ୍ଧି ଅନୁସାରେ ବିଦ୍ୟାଲାଭ ଓ ଜ୍ଞାନଲାଭ କରିପାରେ, ନାରୀ ମଧ ପ୍ରଶ୍ରୟ ପାଇଲେ ତଦ୍ରୂପ ଜ୍ଞାନ ଓ ବିଦ୍ୟାଲାଭ କରିପାରିବ ।

ପୁରୁଷ ନାରୀର ଯେଉଁ ଅଧିକାର ଜୋରପୂର୍ବକ ଛଡ଼ାଇ ନେଇଅଛି, ତାହା ସ୍ତ୍ରୀ ଜୋର୍‌ଦ୍ୱାରା ପୁନଃପ୍ରାପ୍ତ ହୋଇପାରିବ ନାହିଁ । ଯେହେତୁ ବହୁକାଳର ଅନଭ୍ୟାସ ସେ ଜୋର୍‌ରୁ ନାରୀକୁ ବଞ୍ଚିତ କରି ରଖିଅଛି । ନାରୀ ଯାହା ପାଇବାର ଅଧିକାରିଣୀ, ତାହା ସନ୍ଧିସୂତ୍ରରେ ପାଇବ । ନର କ୍ରମେ ଉଦାରଭାବାପନ୍ନ ହୋଇ ତାହା ନାରୀଙ୍କୁ ଦେବାକୁ ଦ୍ୱିଧାବୋଧ କରିବ ନାହିଁ ।

ଜେତା ଓ ବିଜିତ ମଧରେ ଯେମନ୍ତ ସନ୍ଦେହ ଚିର ରାଜତ୍ୱ କରେ, ସେହିପରି ନର ଓ ନାରୀ ମଧରେ ସନ୍ଦେହ ରାଜତ୍ୱ କରେ । ଏଥିନିମନ୍ତେ ନର ନାରୀକୁ ତାହାର ନ୍ୟାଯ୍ୟ ଦାବି ମଧ ଛାଡ଼ିବାକୁ ରାଜି ହୁଏ ନାହିଁ । ନାରୀ ଅବଳା ହୋଇଥିବା ହେତୁ ନର ଆପଣା ସ୍କନ୍ଧରେ ନାରୀର ରକ୍ଷଣ ଭାର ପ୍ରକୃତିଦତ୍ତ ବୋଲି ବିବେଚନା କରେ; ସୁତରାଂ ନାରୀ ନରଠାରୁ ସ୍ୱତନ୍ତ୍ର ରହିଲେ କୌଣସି ଅନିଷ୍ଟ ଘଟିବ (ବିଶେଷତଃ ଯୌନ ସମ୍ବନ୍ଧୀୟ ଅନିଷ୍ଟ) ଏ ଆଶଙ୍କା ନରର ଥାଏ । ଏହି ହେତୁରୁ ଈର୍ଷାର ସୃଷ୍ଟି; ନାରୀରକ୍ଷାକୁ ସ୍ୱସ୍ୱତ୍ୱରକ୍ଷା ତୁଲ୍ୟ ନର ବିଚାର କରେ । ବହୁକାଳର ଅଭ୍ୟାସ ଦୃଢ଼ୀଭୂତ ହୋଇଅଛି । ସନ୍ଦେହ ଦୂର ହେବ କିପରି ? ପଶୁମାନଙ୍କ ମଧରେ ମଧ ଏ ଈର୍ଷା ବିଦ୍ୟମାନ ଥିବା ଦେଖାଯାଏ । ନର ଉତ୍ତରାଧିକାରୀ ସ୍ୱତ୍ୱରେ ଏହି ହିଂସାବୃତ୍ତି ପଶୁଠାରୁ ପାଇଅଛି । ପଶୁ ମଧରେ ଆପଣା ଦଳଭୁକ୍ତ ସ୍ତ୍ରୀ ପଶୁଠାରେ ଅପର ପୁରୁଷ ଉପଗତ ହେଲେ ବା ଉପଗତ ହେବାକୁ ଉଦ୍‌ଯୋଗ କଲେ ପୁରୁଷ-ପଶୁ ଈର୍ଷାରେ ପ୍ରଜ୍ୱଳିତ ହୋଇ ଅନଧିକାରୀ ପଶୁକୁ ମାରେ ବା ଲଢ଼େଇ କରୁ କରୁ ନିଜେ ମରେ । ମାତ୍ର ତଜ୍ଜାତୀୟ ସ୍ତ୍ରୀ-ପଶୁ ନିଜର ଦଳପତିକୁ ଅନ୍ୟ ସ୍ତ୍ରୀ-ପଶୁଠାରେ ଉପଗତ ହେବା ଦେଖି ଈର୍ଷାନ୍ୱିତା ହୁଏ ନାହିଁ କିମ୍ବା ସେଥିନିମନ୍ତେ ଯୁଦ୍ଧାରମ୍ଭ କରେ ନାହିଁ । ନର ଓ ନାରୀଠାରେ ମଧ ଇଦୃଶ ବ୍ୟବହାର ଦେଖାଯାଏ । ନାରୀ ଅପେକ୍ଷା ନର ବେଶୀ ଈର୍ଷାନ୍ୱିତ ଖୁଣଖରାପି (ହତ୍ୟାକାଣ୍ଡ ବା ରକ୍ତପାତ) ନରଦ୍ୱାରା ଯେତେ ହୁଏ ତା'ର ଶତାଂଶରେ ଏକାଂଶ ନାରୀଦ୍ୱାରା ହୁଏ କି ନାହିଁ ସନ୍ଦେହ । ନର ବଳଶାଳୀ ଓ ସହାୟବାନ; ଏଣୁ ନାରୀଧର୍ଷଣରେ ତା'ର ଭୟ ବା ଲଜ୍ଜା ନ ଥାଏ । ତାହାର ପଶୁପୂର୍ବପୁରୁଷର ଅଭ୍ୟାସ ଅଦ୍ୟାପି ରହିଥିବା ନର ପକ୍ଷରେ କି କମ୍ ଲଜ୍ଜାର ଓ ଦୁଃଖର କଥା ।

ଶାସ୍ତ୍ରକାର ଓ କବିମାନେ ନାରୀର ନିନ୍ଦା ଓ ଅବମାନନା କରିବାରେ ଶତମୁଖ । ସେମାନଙ୍କ ମତରେ ନାରୀର ସଂଯମ ନର ତୁଳନାରେ କମ୍ । ସେମାନେ କୁହନ୍ତି ନାରୀ ସ୍ୱତନ୍ତ୍ରା ରହିବା ଉଚିତ୍ ନୁହେଁ । ସ୍ୱତନ୍ତ୍ରା ହେଲେ ସେ ଭ୍ରଷ୍ଟା ହେବ । ଏହା ବୋଧହୁଏ ସେମାନଙ୍କର ହୃଦ୍‌ଗତ ଭାବ । ମାତ୍ର ନାରୀକୁ ଭ୍ରଷ୍ଟା କରେ କିଏ ? ନର ତ । ତେବେ ସଂଯମର ଅଭାବ କାହାଠାରେ ? ନାରୀର ତ କୌଣସି ବଳ ନାହିଁ । ଅଛି ମାତ୍ର ରୂପ । ଯେବେ ରୂପ ଦେଖି ନର ଆକୃଷ୍ଟ ହୁଏ ଏବଂ ଛଳରେ ବଳରେ ବା କୌଶଳରେ ନାରୀକୁ ପାଇବାକୁ ଚେଷ୍ଟା କରେ ଏବଂ ପାଏ ତେବେ ଦୋଷ କାହାର ?

ଷଷ୍ଠିତମବର୍ଷୀୟ ବୃଦ୍ଧ ଯେବେ ଦଶବର୍ଷୀୟା ବାଳିକା ପାଣିପୀଡ଼ନ କରି ଅଳ୍ପକାଳ ପରେ ଇହଧାମ ତ୍ୟାଗ କରେ, ବାଳିକା ଯେ ସାରାଜୀବନ ପତି ଧ୍ୟାନରେ ପରଜନ୍ମରେ ବୃଦ୍ଧପତି ପ୍ରାପ୍ତ୍ୟାଶାରେ ବ୍ରହ୍ମଚର୍ଯ୍ୟ ପାଳନ କରି ହବିଷ୍ୟାନ୍ନ ଓ ଏକାଦଶୀ ବ୍ରତ ପାଳନରେ ନିଯୋଜିତ ହୁଏ, ଏହା କି ପୁରୁଷ ପକ୍ଷରେ ଘୋର ଅସଂଯମର ପରିଚାୟକ ନୁହେଁ ? ତଥାପି ସ୍ତ୍ରୀର ଚରିତ୍ରରେ ଦୋଷାରୋପ କରିବା ନରର ସଂକୀର୍ଣ୍ଣ ପକ୍ଷପାତିତା ନୁହେଁ କି ? ଆମ୍ଭେମାନେ ଯେବେ ନିଷ୍ପକ୍ଷପାତ ବିବେଚନା କରିବା, ତାହା ହେଲେ ଅନାୟାସରେ ଜାଣିପାରିବା ଯେ, ନାରୀର ଯାବତୀୟ ଦୋଷ ଓ ନିନ୍ଦା ନିମନ୍ତେ ନର ଦାୟୀ । ନର ସମୂହ ଉଚ୍ଚଚେତା, ସଂଯମୀ ଓ ଦୋଷଶୂନ୍ୟ ହେଲେ ନାରୀସମୂହ ସେହିପରି ଦୋଷଶୂନ୍ୟା ହେବେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ମାତ୍ର ତାହା କି କେବେ ହେବ ଫଳରେ ?

ନାରୀ ବିଶ୍ୱାସଯୋଗ୍ୟା ନୁହେଁ ବୋଲି ଶାସ୍ତ୍ରକାରମାନେ କହନ୍ତି । ଏ ଉକ୍ତି ଠିକ୍ ବା ଭୁଲ୍ ଏହା ସ୍ପଷ୍ଟ ଭାବରେ ପ୍ରକାଶ କରିବା କଠିନ । ଏହା ସର୍ବବାଦିସମ୍ମତ ନୁହେଁ କିମ୍ବା ସବୁ ସ୍ଥଳରେ ପ୍ରଯୋଜ୍ୟ ନୁହେଁ । ନାରୀ ଅବିଶ୍ୱାସିନୀ ହୁଏ; ଯେବେ ସେ ଅନ୍ୟ ପୁରୁଷ ଦ୍ୱାରା ନଷ୍ଟ ହୋଇଥାଏ, ନାରୀ ଅବିଶ୍ୱାସିନୀ ହୁଏ, ଯେବେ ଆପଣା ସ୍ୱାମୀ ଅତ୍ୟାଚାରୀ ହୁଏ କିମ୍ବା ବୃଥାରେ ନିଜ ସ୍ତ୍ରୀ ଉପରେ ବିଶ୍ୱାସ ହରାଇଥାଏ । ମୁକ୍ତି ଆକାଙ୍କ୍ଷା ଯାହାର ସବୁଠାରୁ ଶ୍ରେଷ୍ଠ, ନର ହେଉ ବା ନାରୀ ହେଉ, ତାହାର ଅନୁଧାବିତ ପନ୍ଥାକୁ ଅତ୍ୟାଚାରୀ ବା ଅଧିକାରୀ ଅବିଶ୍ୱାସ

ଚକ୍ଷୁରେ ଦେଖିବ, ଏହା ସ୍ଥିର ନିଶ୍ଚିତ କଥା । କେତେଜଣଙ୍କ ଦୋଷ ସମଗ୍ର ଜାତିର ଦୋଷ ବୋଲି ବିବେଚିତ ହେବା ସଙ୍ଗତ ନୁହେଁ । ଅଧିକାର ବଞ୍ଚିତ, କି ନରର, କି ନାରୀର, ମନ ଓ କାର୍ଯ୍ୟ କୁଟିଳ ହେବା ସ୍ୱାଭାବିକ । ଏଣୁ ନର ତୁଳନାରେ ନାରୀର ମନ କିଞ୍ଚିତ୍ କୁଟୀଳ । ଏହା ଅସ୍ୱୀକାର୍ଯ୍ୟ ନୁହେଁ ।

ନର ଅପେକ୍ଷା ନାରୀଦ୍ୱାରା ବେଶି ମନ୍ତ୍ରଭେଦ ହୁଏ, ଅର୍ଥାତ୍ ନାରୀ ରହସ୍ୟରକ୍ଷା କରିବାକୁ ସାଧାରଣତଃ ନର ଅପେକ୍ଷା ବେଶୀ ଅକ୍ଷମ । କି ହେତୁ ନାରୀର ଏ ଅଭ୍ୟାସ ହେଲା, ତାହା କହିବା କଠିନ । ତେବେ ନାରୀର କର୍ଣ୍ଣଗୋଚର ହେଲେ ଗୁପ୍ତକଥା କର୍ଣ୍ଣରୁ କର୍ଣ୍ଣାନ୍ତରକୁ ଯାଏ, ଏହା ଅସ୍ୱୀକାର କରିହେବ ନାହିଁ ।

ଅନୁକରଣପଟୁତା ନାରୀଠାରେ ବେଶୀ । ସୁବିଧା ମିଳିଲେ ନାରୀ ସତ୍ ହେଉ ବା ଅସତ୍ ହେଉ କୌଣସି କାର୍ଯ୍ୟକୁ, ନର ଅପେକ୍ଷା ଅଧିକତର ଶୀଘ୍ର ଅନୁକରଣ କରିପାରେ । ଅନୁକରଣଶକ୍ତି ଉନ୍ନତି ବିଧାୟକ । ସତ୍‌ର ଅନୁକରଣ ହେଲେ ଉତ୍ତମ-ଅସତ୍‌ର ଅନୁକରଣ ହେଲେ ଅନିଷ୍ଟ । ଯାହାହେଉ, ଏ କ୍ଷମତା ନାରୀଠାରେ ବେଶୀ ମାତ୍ରାରେ ବିଦ୍ୟମାନ ।

ଅନ୍ୟଭାଷାରେ ଉଚ୍ଚାରଣ ଯେପରି ନାରୀ କଣ୍ଠରେ ଅନୁଭୂତ ହୁଏ, ପୁରୁଷ କଣ୍ଠରେ ତାହା ହୋଇପାରେ ନାହିଁ । ନାରୀ ଯେପରି ଅନ୍ୟ ଭାଷା ଶିକ୍ଷାରେ ପଟୁତା ଅର୍ଜନ କରିପାରେ, ନର ସେଭଳି ପାରେ ନାହିଁ । ଏହା ଅବଶ୍ୟ କଥ୍ୟ ଭାଷା ସମ୍ବନ୍ଧେ ପ୍ରଯୋଜ୍ୟ ।

ନର ଓ ନାରୀର ସମ୍ବନ୍ଧ ଅବିଚ୍ଛେଦ୍ୟ । ଏ ସମ୍ବନ୍ଧ ଚିରକାଳ ରହିବ । ଏଣୁ ନାରୀ ନିଜକୁ ନରର ପରାଧୀନ କିମ୍ବା ନର ନାରୀକୁ ତାହାର ପରାଧୀନା ଭାବିବା ଉଚିତ ନୁହେଁ । ଉଭୟଙ୍କ ଗାର୍ହସ୍ଥ୍ୟ ଓ ସାମାଜିକ କାର୍ଯ୍ୟଭାର ମଧ୍ୟରେ ବୈଷମ୍ୟ ଥିଲେ ସୁଦ୍ଧା ଉଭୟଙ୍କ ମହତ୍ତ୍ୱ ଓ ମର୍ଯ୍ୟାଦା ସମାନ ବୋଲି ଭାବିବା ଉଚିତ । ମାତ୍ର ନର ସ୍ୱାର୍ଥପର ହୋଇ ଏହା ଭାବିବାକୁ ଭୁଲିଯାଏ । ଏଣୁ ସମାଜ ଓ ଜାତିଭେଦରେ ନର ଓ ନାରୀର ସମ୍ମାନ ଏବଂ ମର୍ଯ୍ୟାଦାରେ ଭେଦ ଘଟିଅଛି । ପ୍ରବାଦ ଅଛି 'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା' । ଏହା ସିନା ପୋଥିରେ ଅଛି; ମାତ୍ର କାର୍ଯ୍ୟରେ ତ ଦେଖାଯାଏ ନାହିଁ । ହିନ୍ଦୁନାରୀ ପୂଜିତା ହେବା କଥା ତେଣେ ଥାଉ, ଅନେକଙ୍କ ମତରେ ନାରୀ ଜିଅନ୍ତା ଅସ୍ଥାବର ସମ୍ପତ୍ତିତୁଲ୍ୟ କେବଳ ହସ୍ତାନ୍ତର ହେବା ବ୍ୟତୀତ ଅନ୍ୟ ସବୁ ପ୍ରକାର ଗାର୍ହସ୍ଥ୍ୟ ବ୍ୟବହାରରେ ଲାଗିପାରେ । ନାରୀର ସମ୍ମାନ ଏ ଦେଶରେ ଅତି କମ୍, ସ୍ଥଳବିଶେଷରେ ନାହିଁ କହିଲେ ଚଳେ । ଏହାର ଫଳରେ ଆମର ଜାତୀୟ ଅବନତି ଓ ନୈତିକ ଅଧୋଗତି । ଏଥିନିମନ୍ତେ ଆମ ଶାସ୍ତ୍ରକାରମାନେ ଓ ନୀତିଜ୍ଞମାନେ ଦାୟୀ ନୁହନ୍ତି କି ?

## (ଗ)

ସମଗ୍ର ଜଗତରେ ଦୁଇ ଗୋଟି ଜାତି—ପୁରୁଷ ଓ ସ୍ତ୍ରୀ, ନର ଓ ନାରୀ । ନରମାନଙ୍କ ମଧ୍ୟରେ ଯେପରି ପ୍ରତିଯୋଗିତା ଓ ପ୍ରତିଦ୍ୱନ୍ଦ୍ୱିତା ଅଛି, ନାରୀ ମଧ୍ୟରେ ସେପରି ନାହିଁ । ତହିଁର ବିସ୍ତାର କାରଣ ଅଛି । ତହିଁର ବିଶେଷ ଆଲୋଚନା ନିମନ୍ତେ ପ୍ରବନ୍ଧରେ ସ୍ଥାନ ମିଳିବା ସମ୍ଭବ ନୁହେଁ ସମ୍ଭବତଃ ଅତି ପ୍ରାଚୀନ କାଳରୁ ଗୃହକର୍ମ ଓ ସନ୍ତାନ ପାଳନ ନାରୀକୁ ସ୍ୱଜାତି ସହିତ କିମ୍ବା ନର ସହିତ ପ୍ରତିଦ୍ୱନ୍ଦ୍ୱିତା ଓ ପ୍ରତିଯୋଗିତା ଭିଆଇବାକୁ ଅବସର ଦେଇ ନାହିଁ, ଏଣୁ ନାରୀ ନୈଜ ଓ ସ୍ୱଜାତୀୟ ପ୍ରତିଦ୍ୱନ୍ଦ୍ୱିତା ଓ ପ୍ରତିଯୋଗିତାଦ୍ୱାରା ଲାଭବତୀ ହେବାକୁ ଆଶା ରଖେ ନାହିଁ । ନରର ପ୍ରତିଦ୍ୱନ୍ଦ୍ୱିତା ଓ ପ୍ରତିଯୋଗିତାଦ୍ୱାରା ନାରୀ ଆପଣାର ଓ ଆପଣା ଜାତିର ସ୍ୱାର୍ଥ ଲାଭାଂଶରୁ ନିରସ୍ତ ଥାଏ । ପ୍ରତିଦ୍ୱନ୍ଦ୍ୱିତା ଓ ପ୍ରତିଯୋଗିତାଦ୍ୱାରା ନିଜର ଓ ନିଜ ଜାତିର ମହତ୍ୱ ବିଶେଷତଃ ବଢାଇବାକୁ ନର ସଦା ଯତ୍ନଶୀଳ । ଯୁଦ୍ଧ ବିଗ୍ରହ ପ୍ରଭୃତି ନରଦ୍ୱାରା ଉଦ୍ଭାବିତ ହୁଏ । ଦେଶ ଲୁଣ୍ଠନ, ପ୍ରଜାପୀଡ଼ନ, ଅତ୍ୟାଚାର ହିଁ ନର କରିଥାଏ । ଏପରି କାର୍ଯ୍ୟରେ ନାରୀର ସହାୟତା ନାହିଁ କିମ୍ବା ହାତ ନାହିଁ । କ୍ରୂର ଓ କଠିନ ଦଣ୍ଡର ଉଦ୍ଭାବକ ନର । ଦଣ୍ଡର ଉପାୟ ବା ଯନ୍ତ୍ରପାତିର ଉଦ୍ଭାବନ କର୍ତ୍ତା ନର । ବିଚାରକର୍ତ୍ତା ଓ ଦଣ୍ଡଦାତା ନର । ନରର ବିଚାରରେ ଓ ଦଣ୍ଡଦାନରେ ନାରୀର ହୃଦୟ ଭୟାର୍ତ୍ତ ହୁଏ । ନର ଓ ନାରୀ ଏକାସନରେ ବସି ପ୍ରଥମରୁ ଶାସନପନ୍ଥା ଓ ଦଣ୍ଡନିୟମ ପ୍ରଣୟନ କଲେ ମାନବଜାତିର ଦଣ୍ଡବିଧି କି ଆକାର ଧାରଣ କରିଥାନ୍ତା ତାହା ବର୍ତ୍ତମାନ ଚିନ୍ତାର ଅଗୋଚର । ନର ବଳପୂର୍ବକ ନାରୀକୁ ବିଚାର ଆସନରୁ ବଞ୍ଚିତ କଲା କିମ୍ବା ନାରୀ ନରର କର୍କଶ ଭାବ ଦର୍ଶନ କରି ନିଜେ ଅପସରିଗଲା, ଏହା ନିର୍ଦ୍ଦେଶ କରିବା କଠିନ । ତେବେ ଅନୁମାନ କରାଯାଇପାରେ ଯେ କୋମଳପ୍ରାଣା ନାରୀକୁ ଶାସନ ଓ ଦଣ୍ଡବିଧାନ ନିମନ୍ତେ ଅନୁପଯୁକ୍ତା ଭାବି ନର ତାକୁ ଏ ଅଧିକାରରୁ ବଞ୍ଚିତ କରି ରଖିଅଛି । ଅଧୁନା ସେ ଅଧିକାର ନାରୀର ପାଇବା ଉଚିତ କି ନା, ଏହା ଭବିଷ୍ୟତ ବଂଶଧରମାନଙ୍କର ବିଚାର୍ଯ୍ୟ ।

ନାରୀକୁ ପାଇବା ନିମନ୍ତେ ନର ଯୁଦ୍ଧ କରିଥିବାର ନିଦର୍ଶନ ଇତିହାସ ଓ ପୁରାଣାଦିରେ ଦେଖାଯାଏ; ମାତ୍ର ନାରୀର ପ୍ରେରଣାରେ ସ୍ୱଜାତିରକ୍ଷା କଳ୍ପେ ବା ଦେଶବିସ୍ତାର ନିମନ୍ତେ କୌଣସି ଯୁଦ୍ଧଘୋଷଣା ହୋଇଥିବା ନିଦର୍ଶନ କ୍ୱଚିତ୍ ଦୃଷ୍ଟ ହୁଏ ।

ସମାଜ, ଜାତି ଓ ଦେଶରକ୍ଷା ନିମନ୍ତେ ଯାବତୀୟ କଠିନ, କ୍ରୁର ଓ ବର୍ବର କର୍ମ ଓ ବିଧିବ୍ୟବସ୍ଥା ପ୍ରଣୟନ ନିମନ୍ତେ ନର ହିଁ ଉପଯୁକ୍ତ । କୋମଳପ୍ରାଣା ନାରୀର ସହାନୁଭୂତି ଓ ସାହଚର୍ଯ୍ୟ ନାମମାତ୍ର ଥାଇପାରେ; ମାତ୍ର ମୂକଭାବରେ; ନାରୀର ସେଥିରେ ହାତ ନ ଥାଏ । ଏବଂବିଧ ନାନା କାରଣରୁ ନାରୀ ଦେଶରକ୍ଷା, ଗୃହରକ୍ଷା ଏମନ୍ତ କି ଆତ୍ମରକ୍ଷା ନିମନ୍ତେ ଅସମର୍ଥ । ନାରୀ କେବେ ଯେ ନରର ଏ ସମସ୍ତ ବିଷୟରେ ସମକକ୍ଷ ହୋଇପାରିବ, ଏ ଆଶା କଦାପି କରାଯାଇ ନ ପାରେ । ଏ ବୈଷମ୍ୟ ପ୍ରାକୃତିକ ବୋଲିବା ଭିନ୍ନ ଆମମାନଙ୍କ ପରି ବ୍ୟକ୍ତିର ମସ୍ତିଷ୍କରେ ଅନ୍ୟ ଧାରଣା ଜନ୍ମିବା ଅସମ୍ଭବ ।

ନାନା ଆଲୋଚନା ଉତ୍ତାରୁ ହୃଦୟରେ ଏ ଭାବ ପୋଷିତ ହୋଇଅଛି ଯେ, ନାରୀ ନରର ସାହଚର୍ଯ୍ୟ ନିମନ୍ତେ ଉପଯୁକ୍ତା । ପ୍ରତିଦ୍ୱନ୍ଦ୍ୱିତା ଓ ପ୍ରତିଯୋଗିତା ଦ୍ୱାରା ତାହାର ଅନିଷ୍ଟର ସମ୍ଭାବନା ଅଛି । ସଭ୍ୟ ଜଗତରେ ନାରୀମାନେ ଯେଉଁ ଅଧିକାର ପାଇଁ ଘୋରତର ଆନ୍ଦୋଳନ ଉପସ୍ଥିତ କରନ୍ତି ଏବଂ ସେଥିନିମନ୍ତେ ସେମାନେ ଯେଉଁ ଅଧିକାର ପାଇବେ, ତାହା କେବଳ ନାରୀର ଉପଯୁକ୍ତ । ସେଥିରେ ଆଧିପତ୍ୟ ଓ ନର ଉପରେ ନାରୀର କର୍ତ୍ତୃତ୍ୱ ନ ଥିବ । ନର ସର୍ବଦା ହିଁ ଦୁଇ ଜାତି ଭିତରେ ଶ୍ରେଷ୍ଠ ରହିବ । ଭାରତୀୟ ନରନାରୀଙ୍କ ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କରାଯାଇ ପ୍ରବନ୍ଧର ଉପସଂହାର କରାଯାଉ ।

ପ୍ରତ୍ୟେକ ଦେଶର ନରନାରୀ ମଧ୍ୟରେ ଆଚାର ବ୍ୟବହାର ରୀତିନୀତି ଓ ଚାଲିଚଳନରେ ପାର୍ଥକ୍ୟ ରହିଅଛି । ଶିକ୍ଷା, ସଭ୍ୟତା, ଆବଭାବ ଓ ପାରିପାର୍ଶ୍ୱିକ ବ୍ୟାପାରଦ୍ୱାରା ଆଚାର ବ୍ୟବହାର ପରିଚାଳିତ । ଆଚାର ବ୍ୟବହାର ସ୍ୱାଭାବିକ୍ କୃତ୍ରିମ ଥିବାର ପରିଲକ୍ଷିତ ହୁଏ । ଆର୍ଯ୍ୟଜାତି ପ୍ରାଚୀନ ସଭ୍ୟ । ଏ ଜାତିର ନାରୀମାନଙ୍କର ଆଚାର ବ୍ୟବହାର କିପରି ସ୍ୱାଭାବିକ ଅବସ୍ଥାରୁ କ୍ରମେ କୃତ୍ରିମ ଅବସ୍ଥାକୁ ଆସିଅଛି, ତାହା ବେଦ ପୁରାଣପାଠରୁ ଓ ଆଧୁନିକ ଆଚାର ବ୍ୟବହାର ତୁଳନାରୁ ଅନାୟାସରେ ଜଣାପଡ଼େ । ଏ ଦେଶର ବର୍ତ୍ତମାନ ଅବସ୍ଥାରେ କେଉଁ ପନ୍ଥା ଅବଲମ୍ବନ ବା କେଉଁ ପନ୍ଥା ତ୍ୟାଜ୍ୟ, ତାହା ପ୍ରକାଶ କରିବାକୁ ସାହସ ଓ କ୍ଷମତା ଲେଖକଙ୍କର ନାହିଁ । ତେବେ ପ୍ରାଚୀନ ଆଚାର ବ୍ୟବହାରାଦିର କିଞ୍ଚିତ ଆଲୋଚନା ନ କଲେ ପ୍ରବନ୍ଧ ଅସମ୍ପୂର୍ଣ୍ଣ ହେବ ।

ବୈଦିକ ଯୁଗରେ ବିଦ୍ୟାଧ୍ୟୟନରେ ନର ଓ ନାରୀର ସମାନ ଅଧିକାର ଥିଲା । ଗୃହଜଞ୍ଜାଳ ଓ ସନ୍ତାନ ଜନନ ନିବନ୍ଧନ ନାରୀ ନରର ସମକକ୍ଷା ବିଦ୍ୱେଷୀ ନ ଥିଲେ । ଗୃହ ରାଜା ଧନରେ, ନାରୀର ଅଧିକାର ଅଧୁନା ଅପେକ୍ଷା ପ୍ରାଚୀନ କାଳରେ ଅଧିକ ଥିବା ଜଣାପଡ଼େ । ନାରୀର ସମ୍ମାନ ମଧ୍ୟ ଅପେକ୍ଷାକୃତ ବେଶୀ ଥିଲା । ନାରୀର ସମ୍ମାନ ରକ୍ଷଣୀୟ । ଏ ଧାରଣା ପୁରୁଷ ମନରେ ବଦ୍ଧମୂଳ ଥିଲେ ନାରୀଜାତିର ସମ୍ମାନ ବୃଦ୍ଧିଲାଭ କରନ୍ତା ଏଥିରେ ସନ୍ଦେହ ନାହିଁ । ବହୁ କାଳର ଅଭ୍ୟାସର ବଶବର୍ତ୍ତୀ ହେବାରୁ ଆମ୍ଭେମାନେ ନାରୀକୁ ପର୍ଦ୍ଦା ବାହାରେ ଦେଖିଲେ ଅସହିଷ୍ଣୁତାର ପରିଚୟ ଦେଉ । କିନ୍ତୁ ପ୍ରାଚୀନ କାଳରେ ନାରୀମାନେ ଯେ ପର୍ଦ୍ଦାର ଅନ୍ତରାଳରେ ରହୁ ନ ଥିଲେ, ଏଥିର ଅସଂଖ୍ୟ ପ୍ରମାଣ ବେଦପୁରାଣରୁ ମିଳେ । ସ୍ୱୟଂବର ପ୍ରଥା ଏଥିର ଏକ ପ୍ରଧାନ ଉଦାହରଣ । ଯୁବତୀ କନ୍ୟା ଯେବେ ଶତ ଶତ ଦର୍ଶକଙ୍କ ସମ୍ମୁଖରେ ଆପଣାର ପତି ଅନ୍ୱେଷଣରେ ବହିର୍ଗତ ହେବାକୁ ଅନୁମତି ପାଉଥିଲା, ତେବେ ତାହାର ଜନନୀ କିମ୍ବା ଆତ୍ମୀୟମାନଙ୍କ ପ୍ରତି ତଦ୍ରୂପ ଅନୁମତି ନ ଥିଲା ଏଥିର ପ୍ରମାଣ କେଉଁଠାରେ ? ଘୋର ବିପତ୍ତି ସତ୍ତ୍ୱେ ମଧ୍ୟ ଆଜିକାଲି ପର୍ଦ୍ଦାନସିନ ନାରୀ ସର୍ବସମକ୍ଷରେ ପତିର ଅନୁଗାମିନୀ ହେବା କ୍ୱଚିତ୍ ଦେଖାପଡ଼ିବ; ମାତ୍ର ରାଜରାଣୀ ସୀତା ଚତୁର୍ଦ୍ଦଶ ବର୍ଷ ଭାରତର ଅରଣ୍ୟ ଓ ନଗରରେ ସର୍ବସମକ୍ଷରେ ବିଚରଣ କରିଥିଲେ, ସେହିପରି ଦ୍ରୌପଦୀ ଓ ଦମୟନ୍ତୀ ମଧ୍ୟ ଆପଣା ଆପଣା ପତି ସହ ସର୍ବସାଧାରଣଙ୍କ ସମକ୍ଷରେ ବିଚରଣ କରିବାକୁ ଲଜ୍ଜାବୋଧ କରୁ ନ ଥିଲେ ।

ବାଲ୍ୟବିବାହ ଜାତୀୟ ଅବନତିର ଗୋଟିଏ ପ୍ରଧାନ କାରଣ । ଭାରତୀୟ ଆର୍ଯ୍ୟ ବଂଶ ସଂଭୂତ ନର ଏ ଅବନତି ପସରାକୁ କେତେଦିନ ମୁଣ୍ଡାଇ ରଖିବ ଏବଂ କାହିଁକି ରଖିବ, ଏଥିର କାରଣ ଜଣାପଡୁ ନାହିଁ । ସମାଜଗତ ବିଧିବ୍ୟବସ୍ଥାରେ ନାରୀର ହାତ ଥିଲେ ନାରୀ ଆପଣା ଜାତିର ଏହି ଅନିଷ୍ଟକର ବିଧିକୁ ଓଲଟାଇ ପାରି ନ ଥାନ୍ତା କି ? ନାରୀର ଚିରବୈଧବ୍ୟ ଆଉ ଗୋଟିଏ ମର୍ମନ୍ତୁଦ ଘଟଣା । ଏ ଦେଶ ଭିନ୍ନ ଅନ୍ୟ କୌଣସି ଦେଶରେ ଏ ପନ୍ଥା ନାହିଁ । ମୋଟରେ କହିବାକୁ ଗଲେ ଅନ୍ୟ ଦେଶ ତୁଳନାରେ ଭାରତୀୟ ନର ଓ ନାରୀର

ଅବସ୍ଥାରେ ତାରତମ୍ୟ ବେଶୀ । ଏ ଦେଶର ଅସଭ୍ୟ ଓ ଅଶିକ୍ଷିତ ଜାତି ମଧ ତାହା ଅନୁକରଣ କରିଥାଆନ୍ତି । ସୁତରାଂ ଭାରତର ସମଗ୍ର ନର ଓ ନାରୀ ମଧରେ ଯେ ପାର୍ଥକ୍ୟ ତାହା ଅନ୍ୟଠାରେ ଦେଖାଯାଏ ନାହିଁ । ଏ ଦେଶର ଅବନତି ସଙ୍ଗେ ନର ନାରୀର ଈଦୃଶ ପାର୍ଥକ୍ୟର ସମ୍ବନ୍ଧ ଅଛି କି ନା, ପାଠକେ ତାହା ବିଚାର କରିବେ ।

ଭାରତବାସୀ (ଆର୍ଯ୍ୟ) ସଭ୍ୟ ଓ ମାର୍ଜିତ ଜାତି ବୋଲି ପ୍ରସିଦ୍ଧ, ଅନ୍ତତଃ ଭାରତବାସୀଙ୍କ ମୁହଁରେ ମାତ୍ର ନରର ଦୁର୍ଗତିର ସୀମା ନାହିଁ । ନାରୀର ଦୁର୍ଗତି ଯେ ତତୋଽଧିକ ଏହା କହିବା ନିଷ୍ପ୍ରୟୋଜନୀୟ । ନର ମଧରେ ଜାତିଭେଦ, ବର୍ଣ୍ଣଭେଦ, ଆର୍ଥିକ ଅବସ୍ଥାଭେଦ, ଇତ୍ୟାଦି ନାନା ଭେଦର ତ ସୀମା ନାହିଁ । ନାରୀର କଥା ପଚାରେ କିଏ ? ସମଗ୍ର ପାଶ୍ଚାତ୍ୟ ଦେଶରେ ସମ୍ରାଟ୍‌ଠାରୁ ଆରମ୍ଭ କରି ଅତି ଗରିବର ପୋଷାକର କାଟଛାଟରେ ପ୍ରଭେଦ ନାହିଁ, ଥାଇପାରେ ବସ୍ତ୍ରର ମୂଲ୍ୟରେ । ମାତ୍ର ଏ ଦେଶରେ ସମସ୍ତେ ହିନ୍ଦୁ, ତଥାପି ପ୍ରଦେଶ ଭେଦରେ ଜିଲ୍ଲା ଭେଦରେ ପୁଣି ଜାତିଭେଦରେ ପୋଷାକର ପ୍ରଭେଦ ରହିଅଛି । ପୋଷାକଦ୍ୱାରା ନର ଆପଣାର ଅମେଳର ପରିଚୟ ଦେଇଥାଏ । ନାରୀ ପରିଚ୍ଛେଦର ପାର୍ଥକ୍ୟ ତତୋଽଧିକ । ଏତିକି ନୁହେଁ, ନାରୀ ଅଳଙ୍କାର ଦ୍ୱାରା ମଧ ଜାତିର ଓ ଅବସ୍ଥାର ସ୍ୱାତନ୍ତ୍ର୍ୟ ରକ୍ଷା କରେ । ଅଥଚ ସ୍ୱାଧୀନତାକାମୀ ନର ଓ ନାରୀ ଏକତାର ପ୍ରତିବନ୍ଧକ ଚୁଟି, ଚିତା, ପରହିତ ବସନ ଭୂଷଣଦ୍ୱାରା ବିରୋଧ ଭାବର ପତାକା ଉତ୍ତୋଳନ କରନ୍ତି ।

ଅନ୍ୟ ଦେଶର ଶିକ୍ଷିତ ସଂଖ୍ୟା ତୁଳନାରେ ଏ ଦେଶର ଶିକ୍ଷିତ ସଂଖ୍ୟା ଅତି କମ୍ । ନାରୀର ଶିକ୍ଷା କଥା ଭାବିଲେ ବିସ୍ମିତ ହେବାକୁ ପଡ଼େ । ଭାରତୀୟ ନାରୀଗଣ ସ୍ୱାଧୀନତା ପାଇବାର ବୃଥା ଆଶାରେ ଯେତେଦୂର ଯତ୍ନବାନ୍, ସ୍ୱାଧୀନତାର ପ୍ରଥମ ସୋପାନ ଶିକ୍ଷା ପାଇଁ ତହିଁର ଶତାଂଶ ଯତ୍ନଶୀଳ ଥିବା ଦେଖାଯାଏ ନାହିଁ ।

ଧରାଯାଉ, ଭାରତର ନାରୀସଂଖ୍ୟା ଆନୁମାନିକ ପନ୍ଦର କୋଟି । ସେଥିମଧରୁ କେତେଜଣ ନାରୀ ଆସେମ୍ବ୍ଲି ଓ କାଉନ୍‌ସିଲ୍‌ର ମହତ୍ତ୍ୱ ଓ ପ୍ରୟୋଜନୀୟତା ବୁଝନ୍ତି । ଆଉ ତନ୍ମଧରୁ ସଭ୍ୟା ସ୍ୱର୍ଦ୍ଧିନୀ କେତେ ଜଣ ? ଜଣ କେତେ ଭାରତୀୟ ନାରୀ ଏ ଆକାଙ୍କ୍ଷା ବା ଏ ପଦଲାଭରେ ନାରୀଜାତିର କେଉଁ ଉପକାର ସାଧନର ପ୍ରୟାସ ରଖନ୍ତି । ନାରୀ ଜାତିର ଅବସ୍ଥା ପରିବର୍ତ୍ତନ ଓ ଶିକ୍ଷା ନିମନ୍ତେ ଶିକ୍ଷିତା ନାରୀମାନେ ଯତ୍ନଶୀଳା ହେଲେ ନାରୀଜାତିର ତଥା ଦେଶର ପ୍ରଭୂତ ଉପକାର ହେବାର ଆଶା କରାଯିବ । ତାହାଛଡ଼ା ଶାସକଙ୍କଠାରୁ ସ୍ୱାଧୀକାର ଛଡ଼ାଇବାର ଚେଷ୍ଟା ଅପେକ୍ଷା ସ୍ୱଜାତୀୟ ନରମାନଙ୍କଠାରୁ ନାରୀ ଜାତିର ନ୍ୟାର୍ଯ୍ୟଦାବି ପାଇବାକୁ ଚେଷ୍ଟାକଲେ ସୁଫଳ ମିଳିପାରେ ।

ଆମ୍ଭେମାନେ ପୂର୍ବେ କହିଅଛୁ ଯେ ନରର ସାହାଯ୍ୟ ଓ ସାହଚର୍ଯ୍ୟ ନାରୀର କର୍ତ୍ତବ୍ୟ କର୍ମ; ଏଣୁ ନାରୀ ନରର ଉନ୍ନତି ପନ୍ଥାର ଅନ୍ତରାୟ ନ ହୋଇ ନରର ଉନ୍ନତି ସହିତ ଆପଣା ଉନ୍ନତିର କାମନା କରିବା ଉଚିତ ।



## ଭାରତ ଇତିହାସ

"My son must often read history and reflect upon it, that is the only true philosophy." ନିର୍ବାସିତ ମହାମତି ନେପୋଲିୟନ ସେଣ୍ଟ ହେଲେନା ଦ୍ୱୀପରେ ଏହା ପ୍ରକାଶ କରିଥିଲେ । ଇତିହାସ କି ଅମୂଲ୍ୟଶାସ୍ତ୍ର । ନେପୋଲିୟନଙ୍କ ପକ୍ଷରେ ଇତିହାସର ଆସନ, କାବ୍ୟନାଟକ ଅଳଙ୍କାର ଧର୍ମଶାସ୍ତ୍ର ଅପେକ୍ଷା ଉଚ୍ଚତର । କେବଳ ନେପୋଲିୟନ କାହିଁକି, ପାଶ୍ଚାତ୍ୟ ଦେଶର ମନୀଷୀମାନଙ୍କର ହୃଦୟରେ ମଧ ଏହି ଧାରଣା ବଦ୍ଧମୂଳ ।

ଇତିହାସ ସତ୍ୟ, କାବ୍ୟ ନାଟକ କାଳ୍ପନିକ, ଏମନ୍ତ କି ଅମୂଳକ ମଧ ହୋଇପାରେ । ଇତିହାସ ଜାତୀୟ ଜୀବନ ଗଠନରେ ଯେପରି ସାହାଯ୍ୟ କରେ, ଅନ୍ୟ କୌଣସି ଶାସ୍ତ୍ର ତାହା କରିପାରେ ନାହିଁ । ଏଣୁ ଦେଶପ୍ରେମିକ, ସ୍ୱଦେଶବତ୍ସଳ ଜାତିମାନେ ଇତିହାସକୁ ଅଧିକ ସମ୍ମାନ ଦିଅନ୍ତୁ । ଯେଉଁ ଜାତିର ଧାରାବାହିକ ଇତିହାସ ନାହିଁ, ସେ ଜାତି ଇତିହାସର ମର୍ଯ୍ୟାଦା ବୁଝେ ନାହିଁ, ବୁଝିବାକୁ ଚେଷ୍ଟା ମଧ କରେ ନାହିଁ ।

ଅତୀତ କାଳରେ ଘଟନାମାନଙ୍କର ପ୍ରକୃତ ବିବରଣର ନାମ ଇତିହାସ । ଇତିହାସ ରୂପ ଦୀପାଲୋକ ସାହାଯ୍ୟରେ ଭବିଷ୍ୟତର ଅନ୍ଧକାର ଭେଦ କରି ଜାତି ଅଗ୍ରଗାମୀ ହୁଏ । ମାତ୍ର ଯେଉଁ ଜାତିର ଇତିହାସ ନାହିଁ, ସେ ଜାତିର ଭବିଷ୍ୟତ ପଥ ଭ୍ରାନ୍ତିସଙ୍କୁଳ ହେବା ସ୍ୱାଭାବିକ । ଭାରତବାସୀର ଅତୀତ ଅଛି; ମାତ୍ର ଅତୀତ କାଳର ଘଟନାମାନଙ୍କର ପ୍ରକୃତ ବିବରଣ ନାହିଁ ବା ଇତିହାସ ନାହିଁ ବେଦ, ଅଛି, ପୁରାଣ ଅଛି, ଧର୍ମଶାସ୍ତ୍ର ଓ ଅନ୍ୟାନ୍ୟ ଶାସ୍ତ୍ର, କାବ୍ୟ ନାଟକ, ଅଳଙ୍କାର ଅଛି; ମାତ୍ର ଇତିହାସ ନାହିଁ ।

ଭାରତବର୍ଷରେ ଅନନ୍ତ ଶାସ୍ତ୍ର ଅଛି; ମାତ୍ର ଧାରାବାହିକ ଇତିହାସ ନାହିଁ । ଏଥିନିମନ୍ତେ ଏ ଦେଶର କୌଣସି କ୍ଷତି ଘଟିଅଛି କି ? ଏଥିର ଉତ୍ତର ମୁଁ ଦେବାକୁ ଯାଉ ନାହିଁ । ଅତୀତ ଘଟନାର ପ୍ରକୃତ ବିବରଣ ଲିପିବଦ୍ଧ ହୋଇ ନ ଥିବା ହେତୁରୁ ଭାରତ ସନ୍ତାନ, ଆଧ୍ୟାତ୍ମିକ, ଆଧିଭୌତିକ ବା ଆଧିଦୈବିକ କ୍ଷତିଗ୍ରସ୍ତ କି ? ଏଥିର ଉତ୍ତର ଦେବାକୁ ମୋର କ୍ଷମତା ନାହିଁ । ଇତିହାସ ନ ଥିଲେ ଧର୍ମର ହାନି ହୁଏ କି ? ଇତିହାସ କ'ଣ ସ୍ୱର୍ଗର ସୋପାନ— ପଂକ୍ତି ଦେଖାଇବାର ଦୀପାଲୋକ ? ଇତିହାସ ବ୍ୟତିରେକେ କ'ଣ ସ୍ୱର୍ଗରାଜ୍ୟ ଲାଭ ହୋଇ ନ ପାରେ ? ଏ ଜଟିଳ ପ୍ରଶ୍ନର ଉତ୍ତର ଦେବାକୁ କେବଳ ସଂସ୍କୃତଜ୍ଞ ପଣ୍ଡିତଗଣ ଯୋଗ୍ୟ । ମୋର ଉତ୍ତର ଗ୍ରାହ୍ୟ ହେବ କାହିଁକି ?

ଏ ଦେଶର ଧାରାବାହିକ ଇତିହାସ ନ ଥିଲେ ହେଁ ଦେଶର କ୍ଷତି କ'ଣ ? ଗତିର ବିପର୍ଯ୍ୟୟ ଦେଖାଗଲା କେଉଁଠାରେ ? ଗଗନସ୍ପର୍ଶୀ ହିମାଳୟର ମସ୍ତକରେ ତ ଅଦ୍ୟାପି ଧବଳ ଉଷ୍ଣୀଷ ବିଦ୍ୟମାନ; ସିନ୍ଧୁ, ବ୍ରହ୍ମପୁତ୍ର, ଗଙ୍ଗା, ଯମୁନା ତ ପ୍ରବାହିତ; ମହୋଦଧି ତ ବେଳା ଲଙ୍ଘନ କରି ନାହିଁ; କୃଷ୍ଣଙ୍କର ପ୍ରାଚୀନ ବଂଶୀଧ୍ୱନି ଅଦ୍ୟାପି କବି ଜରିଆରେ ଭକ୍ତମାନଙ୍କର କର୍ଣ୍ଣ ପବିତ୍ର କରେ; ଅଦ୍ୟାପି ଲୋକେ ବିଷ୍ଣୁଙ୍କୁ ଗୋବ୍ରାହ୍ମଣ ହିତାୟ ବୋଲି ପ୍ରମାଣ କରନ୍ତି । ଅଧୁନା ଦୁଇ ଜାତିର ହିତସାଧନ ହେଉ ନ ଥିଲେ ମଧ୍ୟ ଶେଷୋକ୍ତ ଜାତିଟିର ହିତସାଧନ ଧର୍ମରକ୍ଷା ପ୍ରତି ଯଥେଷ୍ଟ ବୋଲାଯାଇପାରେ । 'ଜଗଦ୍ଧିତାୟ କୃଷ୍ଣାୟ' ବୋଲି ଲୋକେ ବହୁକାଳରୁ ପ୍ରମାଣ କରି ଆସୁଅଛନ୍ତି । ଘନଶ୍ୟାମ କୃଷ୍ଣ ଗୌରାଙ୍ଗ ହେଲା ଦିନଠାରୁ 'ଜଗଦ୍ଧିତାୟ' ନୋହିଲେ ମଧ୍ୟ 'ଗୌରଜାତି ହିତାୟ' ଏଥିରେ ତ ଭୁଲ୍ ନାହିଁ । ଏ ଦେଶର ଧାରାବାହିକ ଇତିହାସ ନ ଥିଲେ ମଧ୍ୟ କୃଷ୍ଣ ଗୌରାଙ୍ଗ ହେଲା ଦିନରୁ ଗୌରାଙ୍ଗୀ ରାଧାର ରୂପଲାବଣ୍ୟ ବଢ଼ିଛି, ଆଧିପତ୍ୟ ବଢ଼ିଛି, ଏହା ତ କେହି ଅସ୍ୱୀକାର କରି ପାରିବେ ନାହିଁ । ଇତିହାସ ନ ଥିବାରୁ ମହିଳାମାନଙ୍କର କମନୀୟତା କମିଛି, ନା ପୁରୁଷର ପୁରୁଷତ୍ୱ କମିଛି ? ଇତିହାସ ନ ଥିଲେ ମଧ୍ୟ ତ ଏ ଦେଶର ଜନସଂଖ୍ୟା ବଢୁଛି; ଘର୍ମାକ୍ତ କୃଷକ ଭାଇ ତ 'ପରାର୍ଥେ କ୍ରିୟତେକୃଷି ।'

ଏପରି ସ୍ଥଳେ ଏ ଦେଶବାସୀ ଇତିହାସର ଅଭାବ ବୋଧ କରିବେ କାହିଁକି ? ପୁଣି ଇହ-ଜୀବନରେ କେଉଁ ପୌରୁଷର ଧାରାବାହିକ ବିବରଣୀ ଲେଖି ବଂଶଧରମାନଙ୍କର ଅବଶ୍ୟ ପାଠ୍ୟ ଓ ଚିନ୍ତାଯୋଗ୍ୟ ବୋଲି ଚାଲିଯିବେ ? ଇତିହାସ ସମ୍ବନ୍ଧରେ ଭାରତବାସୀଙ୍କ ଅତୀତ ଓ ଭବିଷ୍ୟତ ଫାଙ୍କା ।

ଭାରତବାସୀର ଲେଖା ତ୍ରୁଟି ସ୍ୱେଚ୍ଛାକୃତ ନା ସ୍ୱାଭାବିକ ? ପ୍ରତ୍ୟେକ ଜାତିର ଐତିହାସିକ ସୀମା ଅଛି; ତହିଁର ପୂର୍ବକାଳକୁ ପ୍ରାଗୈତିହାସିକ ଯୁଗ ବୋଲାଯାଏ ।

ଜାତୀୟ ପ୍ରତିଦ୍ୱନ୍ଦ୍ୱିତା, ଯୁଦ୍ଧ ବିଗ୍ରହ, ବିପ୍ଳବ ବିପର୍ଯ୍ୟୟ ଇତିହାସ ଲେଖିବାକୁ ଜାତିକି ପ୍ରେରଣା ଦିଏ । ଇତିହାସ ଜାତିକି ଉଦ୍‌ବୁଦ୍ଧ କରେ । ଭାରତବର୍ଷରେ ଯେ ଏ ସବୁ ଘଟଣା ଘଟି ନାହିଁ, ଏପରି ନୁହେଁ; ତଥାପି ଧାରାବାହିକ ଇତିହାସ ଲେଖା ହୋଇ ନାହିଁ । ସୁତରାଂ ବୋଲାଯାଇପାରେ ଯେ ଇତିହାସ ଲେଖା ତ୍ରୁଟି ସ୍ୱେଚ୍ଛାକୃତ । ଅନ୍ୟ ଦେଶ ତୁଳନାରେ କବି, ସାହିତ୍ୟିକ ଏ ଦେଶରେ ପ୍ରଚୁର ଥିବା ସତ୍ତ୍ୱେ ଇତିହାସ ଲେଖା ହୋଇ ନାହିଁ; ଏଣୁ ବୋଲାଯାଇପାରେ ଯେ, ଇତିହାସ ଲେଖା ତ୍ରୁଟି ସ୍ୱେଚ୍ଛାକୃତ ।

ଗୃହ-ବିଦ୍ରୋହ, ସ୍ୱଜାତି-ବିଦ୍ରୋହ ଏଥିର ପ୍ରଥମ କାରଣ । ଦ୍ୱିତୀୟ କାରଣ ଧର୍ମଯୁଦ୍ଧ । ବୁଦ୍ଧଙ୍କ ଜନ୍ମର କିଞ୍ଚିତ୍ ପୂର୍ବରୁ ଧର୍ମ ଯୁଦ୍ଧର ଆରମ୍ଭ ଏବଂ ତାହାଙ୍କ ତିରୋଭାବ ପରେ କେତେକ ଶତାବ୍ଦୀ ଯାଏ ଘୋର ଧର୍ମଯୁଦ୍ଧ ଚାଲିଲା । ଦେଶର ଘୋରତର ସଙ୍କଟ ସମୟରେ ମଧ୍ୟ ପ୍ରତିଭାଶାଳୀ ଅଶୋକ ଭାରତ ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇଥିଲେ— ଯାହା ପୂର୍ବେ କିମ୍ବା ପରେ ହୋଇ ନାହିଁ । ଅଶୋକଙ୍କ ଅନ୍ତେ ହିନ୍ଦୁତ୍ୱର ଅଭ୍ୟୁତ୍ଥାନ ହେଲା । ବୌଦ୍ଧଧର୍ମର ଅସ୍ତିତ୍ୱ ଲୋପ ସାଧନ ବ୍ରାହ୍ମଣ କ୍ଷତ୍ରିୟଙ୍କର ଚରମ ଲକ୍ଷ୍ୟ ହେଲା । ଏଣୁ ଅତୀତର ପ୍ରକୃତ ବିବରଣୀ ଲୋପ କରି କାଳ୍ପନିକ ସୃଷ୍ଟି ପାଳନ-ସଂହାର-ଲୀଳା ପ୍ରଚାର କଲେ । ମାନବ କର୍ତ୍ତୃତ୍ୱକୁ ପଙ୍ଗୁ କରି କାଳ୍ପନିକ ଦେବତାମାନଙ୍କର କର୍ତ୍ତୃତ୍ୱ ବଢ଼ାଇଲେ; ସର୍ବସାଧାରଣଙ୍କୁ ଜ୍ଞାନାଲୋକରୁ ବଞ୍ଚିତ କଲେ, ରାଜଭକ୍ତି ଓ ବ୍ରାହ୍ମଣ ଭକ୍ତିରେ ବାଧା ଘଟିବ— ଏ ଧାରଣା ଘେନି ଅତୀତର ପ୍ରକୃତ ଘଟଣାବଳୀକୁ କାଳ୍ପନିକ ଦେବତାମାନଙ୍କର ଜନ୍ମ, କର୍ମ, କର୍ତ୍ତବ୍ୟ ସହିତ ସଂଶ୍ଳିଷ୍ଟ କଲେ; ପ୍ରକୃତ ଭାଷାର ଉଚ୍ଛେଦ ସାଧନ ନିମନ୍ତେ ଯଥେଷ୍ଟ ଚେଷ୍ଟା କଲେ; ଧର୍ମଶାସ୍ତ୍ର ପୁରାଣ ପ୍ରଭୃତି ସଂସ୍କୃତ ଭାଷାରେ ଲେଖି ଜ୍ଞାନ ଓ ଧର୍ମର କିଞ୍ଚିତ୍ ଶିକ୍ଷିତ ବିଶେଷତଃ ବ୍ରାହ୍ମଣ ହାତରେ ରଖିଲେ; ସୁତରାଂ ଏ ଦେଶର ଇତିହାସ ନାହିଁ । ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରୁ ଏବଂ ପାଶ୍ଚାତ୍ୟମାନଙ୍କ ଅନୁକରଣରେ ଏ ଦେଶର ଅନନ୍ତ ଶାସ୍ତ୍ର-ସମୁଦ୍ରରୁ ଇତିହାସ ଉଦ୍ଧାର କରିବାର ଚେଷ୍ଟା ଚାଲିଛି । ତାହା ହାସ୍ୟୋତ୍ପାଦକ । ଚିରକୁସଂସ୍କାର-ଦୋଳାରେ ଲାଳିତ-ପାଳିତ ଭାରତ ସନ୍ତାନମାନେ ମନେ କରନ୍ତି ଯେ, ବୋଧହୁଏ ପୂର୍ବ ଧାରଣା ତ୍ୟାଗ କଲେ ପ୍ରାଚୀନ ହିନ୍ଦୁ କୁଳଚାରକୁ ଅତଳ

ସଲିଳରେ ନିମଜ୍ଜମାନ କରିବେ । କିନ୍ତୁ ହିନ୍ଦୁ ଜାତିର ଏହି କୁ ଧାରଣା, ଏହି କୁସଂସ୍କାର ଯେ ତାକୁ ଏତେ ଅଧୋଗତିକୁ ଟାଣି ଆଣିଲାଣି ଏବଂ ଉତ୍ତରୋତ୍ତର ଅଧୋଗତି ଆଡ଼କୁ ଟାଣି ନେବ, ଏହା କେହି ଥରେ ମଧ୍ୟ ଚିନ୍ତା କଲେ ନାହିଁ । ନେପୋଲିୟନଙ୍କର ଦେଶ ଗଲା, ମହତ୍ତ୍ୱ ପ୍ରଭୃତ୍ୱ ଗଲା, ବାକି ଥିଲା କେବଳ ମୃତ୍ୟୁ । ସେତେବେଳେ ମଧ୍ୟ ସେ ନିଭୃତ ସ୍ଥାନରେ ବସି ଭାବୀ ବଂଶଧରମାନଙ୍କ କଥା ଭାବନା କରୁଥିଲେ ଏବଂ ତାହାଙ୍କ ଜୀବନର ଇତିହାସ ଭାବୀ ବଂଶଧରମାନଙ୍କର ଦର୍ଶନ ଶାସ୍ତ୍ର ହେବ ବୋଲି ଚିନ୍ତା କରୁଥିଲେ । ଏ ଦେଶର କପଟପୂର୍ଣ୍ଣ ଧର୍ମ ଜାଲକୁ ଛିନ୍ନଭିନ୍ନ କରି ବିଶୁଦ୍ଧ ଜାତୀୟ ଇତିହାସ, ଯାହାକି ଭାବୀ ବଂଶଧରମାନଙ୍କର ଦର୍ଶନଶାସ୍ତ୍ର ହୋଇପାରେ, ତାହା ଆବିଷ୍କାର କରିବାକୁ ଜଣେ ମଧ୍ୟ ନେପୋଲିୟନ୍ ଭାରତମାତା ଜନ୍ମ ଦେଇପାରୁ ନାହିଁ । ଏହାଠାରୁ ବଳି କ୍ଷୋଭର ବିଷୟ ଆଉ କ'ଣ ଅଛି ?

ଆଉ ଦୁଇ ପଦ । ଇତିହାସ ଗୋପନ ଯେ ସ୍ୱେଚ୍ଛାକୃତ, ତାର ଦୁଇ ଚାରିଟା ଉଦାହରଣ କେବଳ ଭାରତବାସୀ ଈଶ୍ୱରାନୁଗୃହୀତ ଜାତି ବୋଲି ଗର୍ବରେ ସ୍ଫୀତ ହେଉନ୍ତୁ ପଛକେ, ଏ ଜାତି ନିମନ୍ତେ ପ୍ରାକୃତିକ ନିୟମର ବିପର୍ଯ୍ୟୟ ଘଟିବା ସମ୍ଭବ ନୁହେଁ; ମାତ୍ର ତାହା ମଧ୍ୟ ସମ୍ଭବ ବୋଲି ଏମାନଙ୍କର ବିଶ୍ୱାସ । ତାହା ଭାରତ, ରାମାୟଣ, ଉପାଖ୍ୟାନମାନଙ୍କର କିଛି କିଛି ଐତିହାସିକ ସତ୍ୟ ଯେ ନ ଥିଲା, ଏପରି ନୁହେଁ; ମାତ୍ର ଦେବତା-ଭାବ ପ୍ରଭାବିତ ସଂସ୍କୃତ ମହାଭାରତ ସେ ସତ୍ୟର ଅପଲାପ କରିଅଛି । ମହାଭାରତର କେତେକ ବୀରପୁରୁଷ ଐତିହାସିକ ମନୁଷ୍ୟ ହୋଇପାରନ୍ତି; ମାତ୍ର ସେମାନଙ୍କ ଜନ୍ମ ବୃତ୍ତାନ୍ତ ପ୍ରକୃତିଛଡ଼ା କାହିଁକି ? ସୂର୍ଯ୍ୟଙ୍କୁ ସୌର ଜଗତର କର୍ତ୍ତା ବୋଲା ଯାଇପାରେ ଏବଂ ପ୍ରାକୃତିକ ନିୟମାନୁସାରେ ସେ ସୌରଜଗତର ଚାଳକ; ମାତ୍ର ସୂର୍ଯ୍ୟର ଏପରି କ୍ଷମତା ନାହିଁ ଯେ, ସେ ପ୍ରକାଣ୍ଡ କାୟା ଓ ତେଜୋରାଶି ପରିତ୍ୟାଗ କରି ନର ରୂପରେ ଅପ୍ରାପ୍ତବୟସ୍କା ବାଳିକାର ସହବାସ କରି ଅବୈଧ ଆଚରଣ କରିଥିବେ, 'ବାୟୁବ, ସର୍ବତ୍ର, ଗୋ ମହାନ୍' ସେ ଯଦି ନର ରୂପ ଧାରଣ କରି ସ୍ତ୍ରୀ ଗର୍ଭରେ ପୁତ୍ର ଉତ୍ପାଦନ କରୁଥାନ୍ତେ, ତେବେ ଭାରତ ବର୍ଷରେ ବନ୍ଧ୍ୟାତକ ବୀର ପ୍ରସବିନୀ ହୁଅନ୍ତେ । ଇଦୃଶ ବର୍ଣ୍ଣନା ତ ଇତିହାସର ସୀମାସ୍ପର୍ଶ କରି ନ ପାରେ । ଏପରି ଘଟଣା ବା ବର୍ଣ୍ଣନାକୁ ଧର୍ମବୋଲି ଜ୍ଞାନ କଲେ, ସେଥିରେ ପାପ ହେବ କି ପୁଣ୍ୟ ହେବ ତା ବୋଧଗମ୍ୟ ନୁହେଁ । ପ୍ରାଚୀନ, ଅର୍ବାଚୀନ ସମସ୍ତ ପୁରାଣର ଏହି ରୀତି । ପୁରାଣରେ ଇତିହାସ ନାହିଁ । ଧର୍ମଶାସ୍ତ୍ର ପାଠରୁ ଏ ଜାତିର କୌଣସି ଐତିହ୍ୟ ଆବିଷ୍କାର କରାଯାଇ ପାରେ କି ? ଅସମ୍ଭବ । ହିନ୍ଦୁଜାତିଙ୍କ ବିବେଚନାରେ ପ୍ରାଚୀନତ୍ୱ ହିଁ ଗ୍ରନ୍ଥର ମହତ୍ତ୍ୱ । ସୁତରାଂ ସମସ୍ତ ଲେଖକ ଅସମ୍ଭବ ଅତୀତ କାଳରେ ସ୍ୱପୁସ୍ତକ ରଚିତ ହୋଇଥିବାର ଆଭାସ ଦିଅନ୍ତି । ଗ୍ରନ୍ଥ ପ୍ରଚାର ହିଁ ସେମାନଙ୍କର କାମ୍ୟ । ନାମ ଉପାର୍ଜନର ଆକାଙ୍କ୍ଷା ନାହିଁ । ମାନବ ଧର୍ମଶାସ୍ତ୍ର, ଯାହା କି ମନୁ ନାମରେ ବିଦିତ, ତାହାକୁ ସମସ୍ତେ ମନୁଙ୍କ ଦ୍ୱାରା ରଚିତ ବୋଲି ବିଶ୍ୱାସ କରନ୍ତି । ଏ ବିଶ୍ୱାସ ଭ୍ରମାତ୍ମକ । ଯଦ୍ୟପି ପୁରାଣରେ ଚଉଦ ମନୁର ନାମ କଳ୍ପନା କରାଯାଇଅଛି, ବେଦରେ କେବଳ ବୈବସ୍ୱତ ମନୁଙ୍କ ନାମ ମିଳେ । ମାନବ ଧର୍ମଶାସ୍ତ୍ର ଭୃଗୁ ନାମକ ଋଷିପ୍ରୋକ୍ତ; କିନ୍ତୁ ଲେଖାଅଛି ଯେ ସର୍ବଶାସ୍ତ୍ରାର୍ଥ ପାରଗ ସ୍ୱାୟମ୍ଭୁଃ ମନୁଙ୍କ ମୁଖନିର୍ଗତ ଏହି ଗ୍ରନ୍ଥ । ଭୃଗୁଋଷି ପ୍ରଣୀତ ବା ଅନ୍ୟ କାହାରି ପ୍ରଣୀତ ଗ୍ରନ୍ଥ ସେପରି ଲୋକମାନ୍ୟ ହେବା ସମ୍ଭବପର ନୁହେଁ, ଯେପରି କି ଅତୀତ କାଳର ଅଶ୍ରୁତପୂର୍ବ ଲୋକ ନିର୍ମାଣକର୍ତ୍ତା ସ୍ୱାୟଂଭୁବ ମନୁଙ୍କ ମୁଖ ନିର୍ଗତ ଶାସ୍ତ୍ର ବୋଇଲେ ହେବା ସମ୍ଭବ । ଘୋର କଳିଯୁଗରେ ଲିଖିତ ମନୁ, ଭୃଗୁ ଓ ଅନ୍ୟ ଋଷି ଲିଖିତ, ଅତି ପ୍ରାଚୀନକାଳର ଏବଂ ସ୍ୱାୟଂଭୁବ ମନୁଙ୍କ ରଚିତ ବୋଲି ପ୍ରକାଶ କରିବାଦ୍ୱାରା ଗ୍ରନ୍ଥର ମର୍ଯ୍ୟାଦା ବୃଦ୍ଧି କରାଗଲା; ମାତ୍ର ସତ୍ୟ ଗୋପନ କରାଗଲା । ଏଣୁ ଧର୍ମଶାସ୍ତ୍ରରୁ ଇତିହାସ ଅନ୍ୱେଷଣ ବୃଥା ।

ସଂସ୍କୃତ ବ୍ୟାକରଣ ପ୍ରଥମେ ପାଣୀନିରଚିତ । ଉତ୍ତମ କଥା; ମାତ୍ର ପାଣୀନି କି ସତ୍ୟ ସତ୍ୟ ଶିବଙ୍କ ବାହନର ଗଳଘଣ୍ଟାର ସ୍ୱନରୁ 'ଏଉଣ୍' ରଙ୍ଗକ ପ୍ରଭୃତି ଶବ୍ଦ ପ୍ରାପ୍ତ ହୋଇଥିଲେ ? ଏ କଳ୍ପନା ନିଶ୍ଚୟ ପରବର୍ତ୍ତୀ ଲୋକଙ୍କର ଅଟେ । ଏପରି ଅନେକ ଉଦାହରଣ ଦେଖିଲେ ସାହିତ୍ୟରେ ଇତିହାସ ସମ୍ବନ୍ଧରେ ହତାଶ ହେବାକୁ ପଡ଼େ । ବୈଦ୍ୟଶାସ୍ତ୍ର ମଧ୍ୟ ତଦ୍ରୂପ ।

ଜ୍ୟୋତିଷ ସଂହିତା ଧରିବାକୁ ଗଲେ ବିଜ୍ଞାନ, ସେଥିରେ ମଧ୍ୟ କପଟତାର ଆଭାସ ମିଳେ । ସଂହିତା ମଧ୍ୟରେ ସୂର୍ଯ୍ୟ-ସିଦ୍ଧାନ୍ତ ପ୍ରଧାନ । ତାର ରଚକଙ୍କ ନାମ ଗୋପନ କରାଯାଇଅଛି । ମୟ ଦୈତ୍ୟ ସୂର୍ଯ୍ୟ ଆରାଧନା କରି ଏହି ସଂହିତାକୁ ସୂର୍ଯ୍ୟଙ୍କ ମୁଖରୁ ଟିପି ନେଇଥିଲେ, ସୂର୍ଯ୍ୟଙ୍କର ବାକ୍‌ଶକ୍ତି ଏବେ ନାହିଁ, କେବେ ନ ଥିଲା; ଏହା ସ୍ଥିର ନିଶ୍ଚିତ । ଏପରି ସ୍ଥଳେ ପ୍ରକୃତ ବିଷୟ ଗୋପନ କରି ଆଳୀକ ଗଳ୍ପ ରଚନା କରିବାର ତାତ୍ପର୍ଯ୍ୟ କି ଇତିହାସ ଓ ତଥ୍ୟ ଗୋପନ ନୁହେଁ ?

ସଂସ୍କୃତରେ ଶ୍ରେଷ୍ଠ କାବ୍ୟଲେଖକଗଣଙ୍କ ଅଭ୍ୟୁଦୟ ଖ୍ରୀଷ୍ଟଜନ୍ମ ପରେ । ଖ୍ରୀଷ୍ଟଜନ୍ମ ପୂର୍ବେ ବା ପରେ ଭାରତବର୍ଷରେ ଯେ ରାମାୟଣ ଓ ମହାଭାରତ ଘଟଣା-ବ୍ୟତୀତ ଅନ୍ୟ ଘଟନା ଘଟି ନ ଥିଲା, ଏପରି ତ ନୁହେଁ । ଭାରତବର୍ଷରେ କାବ୍ୟର ସାମଗ୍ରୀ ନଦୀ ପର୍ବତ ବୃକ୍ଷଲତା ପଶୁପକ୍ଷୀ ସବୁ ଥିଲା । କେବଳ କୌଣସି ପ୍ରାକୃତିକ ଘଟଣା କିମ୍ବା ଯୁଦ୍ଧବିଗ୍ରହ ଘଟି ନ ଥିଲା କି ? ପ୍ରାକୃତିକ ବିପ୍ଲବ ଘଟି ନ ଥିଲା, କି ମଡ଼କ ଭୂମିକମ୍ପ ଜଳପ୍ଲାବନ କି ସେ କାଳରେ ନ ଥିଲା ? ଅବଶ୍ୟ ଥିଲା । କୌଣସି କବିର ରଚନାରେ ଏସବୁ ଦେଖାଯାଏ କି ? ଆଲେକ୍‌ଜାଣ୍ଡରଙ୍କ ଭାରତ ଆକ୍ରମଣର ବିବରଣୀ କେଉଁ ଗ୍ରନ୍ଥରେ ଅଛି ? ଅଶୋକଙ୍କ ସାମ୍ରାଜ୍ୟ, ମହତ୍ତ୍ୱ ଓ ସ୍ୱାର୍ଥତ୍ୟାଗର ବର୍ଣ୍ଣନା କେଉଁ କାବ୍ୟରେ ସ୍ଥାନ ପାଇଅଛି ? ଚିରକାଳ କି ମହାଭାରତ ରାମାୟଣର ବିଷୟ ଭାରତୀୟ କ ଓ ଲେଖକମାନଙ୍କର ଉପଜୀବ୍ୟ ହେବା ବିଧି ନିର୍ଦ୍ଦିଷ୍ଟ ?

ଏଣୁ ମୁଁ ପ୍ରକାଶ କରିବାକୁ କୁଣ୍ଠିତ ନୁହେଁ ଯେ, ହିନ୍ଦୁଗଣ ସ୍ୱାର୍ଥରକ୍ଷା ଇଚ୍ଛାରେ ସାହିତ୍ୟର ଇତିହାସ ଅଂଶ ବର୍ଜନ କରିଅଛନ୍ତି । ଅତୀତ ବିଷୟରେ ଅନ୍ଧ ହିନ୍ଦୁଜାତି ଭବିଷ୍ୟତର ବାଟ ପାଇପାରୁ ନାହାନ୍ତି ।

●

## ଶିକ୍ଷାପଦ୍ଧତି

### ॥ ୧ ॥

ଦେଶ-ଭେଦରେ ଶିକ୍ଷାପଦ୍ଧତିର ବିଭିନ୍ନତା ପରିଲକ୍ଷିତ ହୁଏ । କେବଳ ତାହା ନୁହେଁ, ଯୁଗଭେଦରେ ମଧ୍ୟ ଶିକ୍ଷାପଦ୍ଧତିର ପରିବର୍ତ୍ତନ ଦେଖାଯାଏ । ପାଶ୍ଚାତ୍ୟ ଶିକ୍ଷାପଦ୍ଧତି ଆମ ଦେଶର ଶିକ୍ଷାପଦ୍ଧତି ସମାନ ନ ଥିଲା । ବର୍ତ୍ତମାନ ଆମ ଦେଶର ସ୍କୁଲ ଓ କଲେଜରେ ପାଶ୍ଚାତ୍ୟ ରୀତି ଅନୁସାରେ ଶିକ୍ଷା ଦେବାର ଚେଷ୍ଟା କରାଯାଇଅଛି ସତ ମାତ୍ର ଉଭୟ ଦେଶର ଶିକ୍ଷା-ରୀତିରେ ଅଦ୍ୟାପି ବିଶେଷ ପାର୍ଥକ୍ୟ ରହିଅଛି । ଏଥିର କାରଣ ଅନେକ । ଏକ ଦେଶର ବିଧିବ୍ୟବସ୍ଥା ଅନ୍ୟ ଦେଶପ୍ରତି ଠିକ୍ ପ୍ରଯୁଜ୍ୟ ନୁହେଁ । ବିଧି ପ୍ରବର୍ତ୍ତକମାନେ ଏ ଦେଶ ତୁଳନାରେ ଶିକ୍ଷାପଦ୍ଧତି ପ୍ରବର୍ତ୍ତନ ସମ୍ବନ୍ଧେ ଉଦାରତା ଦେଖାଇବାକୁ ସମର୍ଥ ହୋଇ ନାହାନ୍ତି । ପାଶ୍ଚାତ୍ୟ ଶିକ୍ଷାର ମହତ୍ତ୍ୱ ଗ୍ରହଣ କରିବାକୁ ଏ ଦେଶବାସୀଙ୍କ ମନ ଅଦ୍ୟାପି ଉର୍ବର ନୁହେଁ ଇତ୍ୟାଦି । ପାଶ୍ଚାତ୍ୟ ଶିକ୍ଷା ପ୍ରଭାବିତ ଭାରତବାସୀ କେତେଦୂର ସଭ୍ୟ ତାହା ମନୀଷୀମାନଙ୍କର ଚିନ୍ତାର ବିଷୟ ହୋଇଅଛି ।

ଧରାଯାଉ, ନାନା ବିଷୟକ ଜ୍ଞାନ ଉପାର୍ଜ୍ଜନ ପ୍ରତି ସ୍ପୃହା ଜନ୍ମାଇବାର ନାମ ଶିକ୍ଷା । ପାଶ୍ଚାତ୍ୟ ଦେଶର ଶିକ୍ଷକ ଓ ଛାତ୍ର ତାହା କରିବାକୁ କ୍ଷମ ହୋଇ ନାହାନ୍ତି । କୌଣସି ବିଷୟରେ ଉତ୍କର୍ଷ ସାଧନ ସେମାନଙ୍କର ଜୀବନର ଚରମ ଲକ୍ଷ୍ୟ । ଏବଂ ସେହି ଲକ୍ଷ୍ୟରେ ସେମାନେ ଶିକ୍ଷା ଗ୍ରହଣ କରନ୍ତି । କିନ୍ତୁ କହିବାକୁ ଗଲେ ଆମ ଦେଶର ଛାତ୍ରମାନଙ୍କର ଶିକ୍ଷା ଲକ୍ଷ୍ୟବିହୀନ । ସେ ଦେଶର ଛାତ୍ରମାନେ ଚତୁର୍ଥ କ୍ଲାସରୁ ଉତ୍ତୀର୍ଣ୍ଣ ହେଲା ଉତ୍ତାରୁ ଜୀବନର ଲକ୍ଷ୍ୟ ନିର୍ଦ୍ଧାରଣ କରନ୍ତି । ଆମ ଦେଶର ଛାତ୍ରମାନେ ଉଚ୍ଚଶିକ୍ଷା ସମାପନ କରି ଜୀବିକା ନିର୍ବାହର ପନ୍ଥା ଅନ୍ୱେଷଣରେ ତତ୍ପର ହୁଅନ୍ତି । ଏ ପାର୍ଥକ୍ୟ ନିମନ୍ତେ ଦେଶର ଶିକ୍ଷାପଦ୍ଧତି ଏବଂ ପରମ୍ପରାଗତ ମନୋବୃତ୍ତି ଉଭୟ ଦାୟୀ ।

ଶିକ୍ଷାପଦ୍ଧତିରେ କାଳର ପ୍ରଭାବ ଯଥେଷ୍ଟ । ଏପରି ସମୟ ଥିଲା ଯେତେବେଳେ ଜାତିମାନଙ୍କର ଭାଷା ଥିଲା, ମାତ୍ର ଅକ୍ଷର ନ ଥିଲା । ସେତେବେଳେ ଲୋକେ ଯାହା ଶୁଣୁଥିଲେ ତାହା ସ୍ମରଣ ରଖୁଥିଲେ । ଅଦ୍ୟାପି ମୁଣ୍ଡାରି ପ୍ରଭୃତି ଭାଷାର ଅକ୍ଷର ନାହିଁ । ଏଣୁ ଲିଖିତ ସାହିତ୍ୟ ନାହିଁ । ସେମାନଙ୍କର ଗୀତ ଓ କଥାଣି ଲୋକମୁଖରୁ ମାତ୍ର ଶିକ୍ଷା ହୁଏ । ବେଦ ବହୁକାଳ ଯାଏ ଏହି ରୂପେ ଶିକ୍ଷା ହେଉଥିଲା । ଏଣୁ ବେଦର ନାମ ଶ୍ରୁତି । ବେଦ ଶିକ୍ଷା ପଦ୍ଧତି ବଡ଼ କଠିନ ପଦ୍ଧତି । ଗୁରୁ ମୁଖରୁ ଏତେବଡ଼ ବେଦ ନିର୍ଭୁଲ୍ କ୍ରମେ ସ୍ମରଣ ରଖିବା ବଡ଼ ସହଜସାଧ୍ୟ ନୁହେଁ । ତଥାପି ଗୁରୁଶିଷ୍ୟ ପରମ୍ପରାରେ ବେଦ ଆମ୍ଭମାନଙ୍କର ହସ୍ତଗତ ହୋଇଅଛି । ଅକ୍ଷର ସୃଷ୍ଟି ସଙ୍ଗେ ସଙ୍ଗେ ଶିକ୍ଷାର ଧାରା ପରିବର୍ତ୍ତିତ ହେଲା । ଶ୍ରୁତି ଯୁଗରେ ଜଣେ ବ୍ୟକ୍ତି ଗୋଟାଏ ବିଷୟ ନେଇ ସାରା ଜୀବନ ଅତିବାହିତ କରୁଥିଲା । ଅକ୍ଷର ହେଲାରୁ ଅନେକ ବିଷୟ ଶିକ୍ଷା କରିବାର ସୁବିଧା ମିଳିଲା । ମୁଦ୍ରାଯନ୍ତ୍ର ପ୍ରଭାବରୁ ଜ୍ଞାନ-ଖଣି ମନୁଷ୍ୟ ହାତରେ; ଯେତେବେଳେ ସେ ଯାହା ଇଚ୍ଛା କଲେ ତାହା ଅନାୟାସରେ ଜାଣିପାରେ ।

ଭାରତବର୍ଷର ପ୍ରଥମ ବର୍ଣ୍ଣମାଳା ବ୍ରାହ୍ମୀ ବୋଲି ଜଣାଯାଇଛି । ଭାରତ ପ୍ରାକୃତ ଭାଷାର ସମସାମୟିକ ଭାଷା; ପ୍ରାଚ୍ୟରେ ଚୀନ ଦେଶର ଭାଷା ଏବଂ ପାଶ୍ଚାତ୍ୟ ପାରସିକ, ଗ୍ରୀକ୍ ଲାଟିନ୍ ପ୍ରଭୃତି ଭାଷା । ପ୍ରତ୍ୟେକ ଜାତି ଆପଣାର ବୁଦ୍ଧି ଅନୁସାରେ ସାହିତ୍ୟ ଓ ଶିକ୍ଷାପଦ୍ଧତିର ପ୍ରଚଳନ କରି ଦେଶର ଉନ୍ନତିସାଧନ କରିଅଛନ୍ତି । ଅଧୁନା ଇଉରୋପୀୟ ଶିକ୍ଷାପଦ୍ଧତି ଗ୍ରୀକ୍ ଓ ଲାଟିନ୍ ଶିକ୍ଷାପଦ୍ଧତିର ଅଭିବ୍ୟକ୍ତି ବୋଇଲେ ଚଳେ ।

ମାତ୍ର ଆମ ଦେଶର ଶିକ୍ଷାପଦ୍ଧତିର କ୍ରମବିକାଶ ନାହିଁ । ଏ ପଦ୍ଧତି ନୁହେଁ ସମ୍ପୂର୍ଣ୍ଣ ପ୍ରାଚ୍ୟ ନା ପ୍ରତୀଚ୍ୟ, ଏହା ଉଭୟର ସମ୍ମିଶ୍ରଣ ମାତ୍ର । ରକ୍ଷଣଶୀଳମାନେ ପ୍ରାଚୀନ ଗୌରବ ସ୍ମରଣକରି ପ୍ରାଚୀନ ଶିକ୍ଷାପଦ୍ଧତି ପ୍ରଚଳନ ଦ୍ୱାରା ଦେଶର ସମ୍ୟକ୍ ଉନ୍ନତି ସାଧନ ରୂପ ଆକାଶ-କୁସୁମ ସଞ୍ଚୟ କରିବାର ସ୍ୱପ୍ନ ଦେଖନ୍ତି । ସେ ଦୁରାଶା ତ୍ୟାଗ କରିବାକୁ ହେବ । ଭାରତବର୍ଷ ସକାଶେ ସୁଚିନ୍ତିତ ଅଭିନବ ପନ୍ଥାର ପ୍ରୟୋଜନ । କି ରାଜନୀତି କି ସମାଜନୀତି କି ଅର୍ଥନୀତି ସମ୍ବନ୍ଧେ ଯେପରି ଆମୂଳ ପରିବର୍ତ୍ତନ ଆବଶ୍ୟକ ହୋଇଅଛି, ଶିକ୍ଷା ସମ୍ବନ୍ଧେ ସେହିପରି ବା ତତୋଽଧିକ ଆମୂଳ ପରିବର୍ତ୍ତନ ଆବଶ୍ୟକ ହୋଇଅଛି । ଶିକ୍ଷା ହିଁ କେବଳ ମନୁଷ୍ୟତା ଓ ସଭ୍ୟତାର ଜନକ । ସେଥିରେ ଗଲ୍‌ତି ରହିଲେ ଏ ଜାତିର ଉନ୍ନତି ଆଶା ସୁଦୂର ପରାହତ ।

ଜାତୀୟ ପ୍ରଗତି ନିମନ୍ତେ ସାହିତ୍ୟ ଦାୟୀ । ଜାତୀୟ ସାହିତ୍ୟରେ ଅନ୍ୟ ସାହିତ୍ୟର ହସ୍ତକ୍ଷେପ ହେଲେ ଜାତୀୟ ପ୍ରଭାବ କ୍ଷୀଣପ୍ରଭା ହୁଏ । ଭାରତର ଜାତୀୟ ସାହିତ୍ୟ କେଉଁଟା, ତାହା କେହି କହିପାରିବେ କି ? ନାହିଁ । ଗୋଟାଏ ଜାତୀୟ ସାହିତ୍ୟ ଓ ଭାଷା ଥିଲେ ଆଜି ଭାରତମାତାର ଶରୀରକୁ ଖଣ୍ଡବିଖଣ୍ଡ କରିବାକୁ ଲୋକେ ଚେଷ୍ଟିତ ହୁଅନ୍ତେ କାହିଁକି ?

ଅଶୋକଙ୍କ ପୂର୍ବେ ବିଶାଳ ଭାରତ କୌଣସି ଏକ ଶାସନାଧୀନରେ ନ ଥିଲା । ଅଶୋକ ନିଜ ଶାସନାଧୀନରେ ବିଶାଳ ଭାରତବାସୀଙ୍କି ରଖି ପାରିଥିଲେ । ତାଙ୍କର ଅନୁଶାସନ ଏଥିର ଜାଜ୍ୱଲ୍ୟମାନ ପ୍ରମାଣ । ପାଲୀ ଭାଷାରେ ବ୍ରାହ୍ମୀ ଅକ୍ଷରରେ ସମସ୍ତ ଅନୁଶାସନ ଲିଖିତ । ଏଥିରୁ ଅନୁମାନ କରାଯାଇପାରେ ଯେ ସେ କାଳର ଲୋକେ ଅଳ୍ପ ବିସ୍ତାର ଭାବରେ ପାଲୀ ଭାଷା ବୁଝିବାକୁ କ୍ଷମ ଥିଲେ । ଅଶୋକଙ୍କର ବଂଶଧରମାନେ ଏବଂ ତତ୍‌ପରବର୍ତ୍ତୀ ସମ୍ରାଟ୍‌ମାନେ ଭାରତବର୍ଷକୁ ଏକ ଶାସନାଧୀନରେ ରଖି ପାରିଥିଲେ ଦେଶର ଗୋଟାଏ ଭାଷା ଚଳିଥାନ୍ତା ଏବଂ ତାହା ସାର୍ବଜନୀନ ଭାଷା ବା Lingua franc ହୋଇଥାନ୍ତା ବୋଲି ଅନୁମାନ କରାଯାଇଥାଏ । ମାତ୍ର ସେ ମହତ୍ତ୍ୱ ଭାରତ ଭାଗ୍ୟରେ କାହିଁ ? କୂଟନୀତି, ଷଡ୍‌ଯନ୍ତ୍ର, ଭ୍ରାତୃବିରୋଧ, ଜାତିବିଦ୍ରୋହ ଜାତୀୟତାର ଓ ଶିକ୍ଷାପଦ୍ଧତିର ମୂଳରେ କୁଠାରାଘାତ କଲା । ପୌରାଣିକ ଯୁଗ ଉପସ୍ଥିତ ହେଲା । ସଂସ୍କୃତିର ବହୁଳ ପ୍ରଚାର ସଙ୍ଗେ ସଙ୍ଗେ ଶିକ୍ଷାପଦ୍ଧତିର ଘୋର ପରିବର୍ତ୍ତନ ଘଟିଲା । ଯେଉଁ ଭାଷା କେବଳ ଉଚ୍ଚ ଜାତି ଓ ସଦ୍‌ବଂଶଜଙ୍କର ପଠନଯୋଗ୍ୟ ତାହା କେବେ ଦେଶଭାଷା ହୋଇ ନ ପାରେ । ସଂସ୍କୃତ ଦେଶଭାଷା ହୋଇ ନ ଥିଲା । ଏହାର ଶିକ୍ଷା ରୀତି ବଡ଼ କଠିନ । ଏଣୁ ଏ ଭାଷା ସାଧାରଣଙ୍କର ଗ୍ରହଣଯୋଗ୍ୟ ହୋଇପାରିଲା ନାହିଁ । ରାଜଦରବାରରେ ଧନିକ ଗୃହରେ ଏ ଭାଷାର ପ୍ରଚାର । ଏ ଭାଷାର ଦଖଲକାର ବା ସ୍ୱତ୍ୱାଧିକାରୀ କେବଳ ବ୍ରାହ୍ମଣ । ଏଣୁ କେବଳ ବ୍ରାହ୍ମଣ ରଚିତ ସଂସ୍କୃତ ପୁସ୍ତକ ଆମ୍ଭେମାନେ ଦେଖିବାକୁ ପାଉଁ । ସଂସ୍କୃତ ଶିକ୍ଷାପଦ୍ଧତି ଏବଂ ରାଜାମାନଙ୍କର ପୃଷ୍ଠପୋଷକତା ଜାତୀୟ ପ୍ରଗତିର ଅନ୍ତରାୟ, ଏହା ଆମ ଦେଶବାସୀ ସ୍ୱୀକାର କରିବେ କି ? ନାହିଁ, ବରଂ ପ୍ରକୃତ କଥା କହିଲେ ଖଡ୍‌ଗହସ୍ତ ହେବେ । ଉଚ୍ଚାଙ୍ଗର ପୁସ୍ତକମାନ ସଂସ୍କୃତିରେ ଲିଖିତ । ଜ୍ୟୋତିର୍ବିଦ୍ୟା, ଚିକିତ୍ସାଶାସ୍ତ୍ର, ଧର୍ମଶାସ୍ତ୍ର କେଉଁ ଭାଷାରେ ଲିଖିତ ? ସଂସ୍କୃତରେ ତ ? ବ୍ରାହ୍ମଣ ଭିନ୍ନ ଲେଖିଛି କିଏ ? ଦେଶର ସର୍ବସାଧାରଣ ଶାସ୍ତ୍ର ଅଧ୍ୟୟନ କରି ଦେଶର ମୁଖୋଜ୍ଜ୍ୱଳ କରନ୍ତୁ, ଏ ଧାରଣା କେତେଜଣଙ୍କର ଥିଲା ? ଚରକ, ସୁଶ୍ରୁତ, ବାଣଭଟ୍ଟ, ସାର୍ଙ୍ଗଧର କେଉଁ ଭାଷାରେ ଲେଖା ? ବ୍ୟାକରଣ ପାଠ ନ କରି ଏ ପୁସ୍ତକମାନରୁ ବର୍ଣ୍ଣ ଗ୍ରହଣ କରାଯାଇ ପାରେ କି ? ବର୍ତ୍ତମାନ ଦେଶରେ କବିରାଜ ନାହାନ୍ତି, ଲୋକେ ରୋଗରେ ପ୍ରାଣ ହରାଉଅଛନ୍ତି, ଏଥିନିମନ୍ତେ ଭାରତୀୟ ଶିକ୍ଷାପଦ୍ଧତି ଦାୟୀ ନୁହେଁ କି ? ଯାବତୀୟ ଗ୍ରନ୍ଥ ସଂସ୍କୃତରେ ଲିଖିତ ହେବାରୁ ଏବଂ ସଂସ୍କୃତ ଶିକ୍ଷା ଗୋଟାଏ ଜାତିର ନିଜସ୍ୱ ରୂପେ ଗୃହୀତ ହେବାରୁ ଆମ ଦେଶର ଅଧୋଗତି—ଏହା କହିବା ଦ୍ୱାରା ବୋଧହୁଏ ଆମ୍ଭେମାନେ ଦୋଷୀ ନୋହୁଁ ।

ପାଶ୍ଚାତ୍ୟ ଶିକ୍ଷାପଦ୍ଧତି ଉଦାର । ଯେ ଦେଶଭାଷା ଜାଣିଲା ସେ ଯେକୌଣସି ଶାସ୍ତ୍ର ଅଧ୍ୟୟନ କରିପାରିଲା । ଏହି ପାର୍ଥକ୍ୟ ହେତୁ ଦୁଇ ହଜାର ବର୍ଷରେ ଆମ ଦେଶର ଘୋର ଦୁର୍ଦ୍ଦଶା ଏବଂ ପାଶ୍ଚାତ୍ୟ ଦେଶର ସୁଦଶା ।

କହିବାକୁ ଗଲେ ଇଂରାଜୀ ଏ ଦେଶର Lingua franca ହେବାକୁ ବସିଲାଣି । ଅନ୍ୟଥା କରିବାର ଉପାୟ ନାହିଁ । ହେଉ, ମାତ୍ର ଏ ଦେଶବାସୀଙ୍କି ପାଶ୍ଚାତ୍ୟ ଜାତି ଭଳି ସଭ୍ୟ ଓ ଉନ୍ନତ କରିବା ଭଳି ଉପଯୁକ୍ତ ଶିକ୍ଷାପଦ୍ଧତି ପ୍ରଚଳନ କରାଯିବା ଉଚିତ । ମାତ୍ର କ୍ଷୋଭର ବିଷୟ, ତାହା କରାଯାଉ ନାହିଁ ।

ଆଜିକାଲି ଦେଶବ୍ୟାପୀ ଆନ୍ଦୋଳନ ଚାଲିଅଛି ହିନ୍ଦୀକୁ ସାର୍ବଜନୀନ ଭାଷା କରିବା ନିମନ୍ତେ । ଏ ଦେଶବାସୀ ହୁଜୁଗପ୍ରିୟ । ଏ ଦେଶରେ ଦୁଇ ଚାରିଟା ସ୍କୁଲ ସ୍ଥାପନ କରି ପକାଇବେ ସନ୍ଦେହ ନାହିଁ । ଫଳ କ'ଣ ? ଲାଭ କେତେ ? ଓଡ଼ିଆ ଭାଷାର ଏବଂ ଓଡ଼ିଆ ଜାତିର ଏତଦ୍ଦ୍ୱାରା କିମ୍ଭୂତକିମାକାର ଉନ୍ନତି ହେବ ତାହା ଆମ୍ଭେମାନେ ବୁଝିବାକୁ ଅକ୍ଷମ । ଇଂରାଜୀ ଭାଷା ଓ ଅନ୍ୟାନ୍ୟ ଭାଷାର ସ୍ୱାଭାବିକ ଚାପ ଉପରେ ନବ ଉଦ୍ୟୋଗର ଚାପ ଅସହନୀୟ ହୋଇ ପଡ଼ିବ ।

ଦୁଃଖର ବିଷୟ, ଉଦ୍ୟୋଗୀମାନେ ଏହା ବୁଝୁ ନାହାନ୍ତି । ଇଂରାଜୀ ଭାଷା ସହ ଓଡ଼ିଆ ଭାଷାର ପ୍ରତିଦ୍ୱନ୍ଦ୍ୱିତା ନାହିଁ । ମାତ୍ର ହିନ୍ଦିଭାଷା ସହିତ ଅଛି । ପ୍ରତିଦ୍ୱନ୍ଦ୍ୱୀ ଦୁଇ ଗୋଟା ଭାଷା ଏକ ଦେଶର ଭାଷା ହେଲେ ବଳବତ୍ତର ଭାଷାର ପରେ ଜୟହେବ ଏଥିରେ ସନ୍ଦେହ କ'ଣ ? ଏ ଆନ୍ଦୋଳନ ଓଡ଼ିଶା ପ୍ରତି ନିତାନ୍ତ ଅମଙ୍ଗଳସୂଚକ ।

ଶେଷରେ କର୍ତ୍ତୃପକ୍ଷଙ୍କ ବିଧିବ୍ୟବସ୍ଥା ଲଙ୍ଘନ ନ କରି ମଧ ଶିକ୍ଷକମାନେ ନିଜ ନିଜ ସ୍କୁଲ୍ ନିମନ୍ତେ ଶିକ୍ଷାପଦ୍ଧତି କଳ୍ପନା କରିପାରନ୍ତି । ଏପରି ଅନ୍ୟାନ୍ୟ ଦେଶରେ ଘଟୁଅଛି । ଜ୍ଞାନର ବୃଦ୍ଧି ନିମନ୍ତେ ଛାତ୍ରର ଆନ୍ତରିକ ଶ୍ରଦ୍ଧା ଜନ୍ମାଇ ପାରିଲେ ଶିକ୍ଷକର ବାହାଦୂରୀ । ଇଉରୋପୀୟ ଶିକ୍ଷକ ଓ ଶିକ୍ଷୟିତ୍ରୀମାନେ ଏହା ଭଲରୂପେ ଜାଣନ୍ତି । ବାଳକମାନଙ୍କର ଅନୁସନ୍ଧିତ୍ସା ଅତି ପ୍ରବଳ । ତାହା ବୃଦ୍ଧି କରିବାର ତେଣେଥାଉ ଏ ଦେଶର ଶିକ୍ଷକ ଏବଂ ଅଭିଭାବକମାନେ ସଙ୍କୁଚିତ କରିବାକୁ ଚେଷ୍ଟା କରନ୍ତି । ସତ୍ୟ ଅନ୍ୱେଷଣ ହିଁ ଜୀବନର ପ୍ରଧାନ ଲକ୍ଷ୍ୟ । ଏହି ହେତୁରୁ ମନୁଷ୍ୟର ଅନୁସନ୍ଧାନ-ଲିପ୍ସା ଏଡ଼େ ପ୍ରବଳ । ବାଳକମାନଙ୍କଠାରେ ଏହା ତତୋଽଧିକ ପ୍ରବଳ । ଏଣୁ ସେମାନେ ଅନେକ ଓ ଅଯଥା ପ୍ରଶ୍ନ କରିଥାନ୍ତି । ଶିକ୍ଷକ ଓ ପିତାମାତା ସେ ପ୍ରଶ୍ନର ପକ୍ଷପାତୀ ନ ହୋଇ ରକ୍ତଚକ୍ଷୁ ଦେଖାନ୍ତି । ବିଶେଷତଃ ସେମାନଙ୍କର ବିଶ୍ୱାସ-ବିରୋଧୀ ଓ ଧର୍ମ-ବିରୋଧ ପ୍ରଶ୍ନ ବାଳକ ମୁଖରୁ ଶୁଣିଲା ମାତ୍ରେ ବାଳକର ଘୋର ପାପର ଆଶଙ୍କା କରି ତା'ର ପ୍ରଗ[illegible]ା ଦିଅନ୍ତି । ଆମମାନଙ୍କ ମତରେ ଏତାଦୃଶ୍ୟ [illegible]ାଧାବିଘ୍ନ ଶିକ୍ଷାପଦ୍ଧତିର ବିରୋଧ ।

ଆକାଶରେ ଗ୍ରହନକ୍ଷତ୍ର ଚନ୍ଦ୍ରସୂର୍ଯ୍ୟ, ଭୂମିରେ ପର୍ବତ ବୃକ୍ଷଲତା ନଦୀପ୍ରପାତ ଫୁଲଫଳ ଆଉ କ'ଣ ବା ନାହିଁ । ଏ ଦେଶର ଶିକ୍ଷକ, ଛାତ୍ର, ଅଭିଭାବକ କେହି ଏ ସମସ୍ତର ପର୍ଯ୍ୟବେକ୍ଷଣ ଓ ପର୍ଯ୍ୟାଲୋଚନାରେ ଶ୍ରଦ୍ଧାବାନ୍ ବୋଲି ମନେ ହୁଏ ନାହିଁ । ପାଶ୍ଚାତ୍ୟ ଶିକ୍ଷାପଦ୍ଧତିରେ ସମସ୍ତେ ପ୍ରାକୃତିକ ବସ୍ତୁ ଓ ଘଟଣାବଳୀ ସମ୍ବନ୍ଧେ ଶ୍ରଦ୍ଧାବାନ୍ । ଏହା ପରମ୍ପରାଗତ ଅଭ୍ୟାସ ହୋଇଯାଇଅଛି । ଦେଶ ସେବା ନିମନ୍ତେ, କୌଣସି ବିଷୟ ଆବିଷ୍କାର ନିମନ୍ତେ ସ୍ୱାର୍ଥତ୍ୟାଗ ଓ ଆତ୍ମବଳି ଶିକ୍ଷକ ଓ ଛାତ୍ର ପାଇଁ କି ବାହା ବାହା ଓ ପ୍ରଶଂସା ଆନୟନ କରେ । ଛାତ୍ରାବସ୍ଥାରୁ ଏ ସବୁ ମହତ୍‌ଭାବର ଅଙ୍କୁରରୋପଣ ଛାତ୍ର ହୃଦୟରେ ଶିକ୍ଷକମାନେ ଏମନ୍ତ କି ଅଭିଭାବକମାନେ ମଧ କରିଥାନ୍ତି । ସ୍ଥଳବିଶେଷରେ ପ୍ରାଣହାନିଜନକ ସାହସିକତାର ପ୍ରଶଂସା ମଧ ଛାତ୍ରମାନଙ୍କ ହୃଦୟରେ ଜାତ କରାଯିବାର ବିଧି ପାଶ୍ଚାତ୍ୟ ଶିକ୍ଷାପଦ୍ଧତିରେ ଅଛି । ଆମ ଦେଶର ଶିକ୍ଷାପଦ୍ଧତି ଏଥିର ପକ୍ଷପାତୀ ନୁହେଁ । ଏପରି ଅନେକ ତ୍ରୁଟି ଆମ ଦେଶର ଶିକ୍ଷାପଦ୍ଧତିରେ ରହିଅଛି । ଗତ ଅର୍ଦ୍ଧଶତାବ୍ଦୀ ମଧରେ ୟୁରୋପରେ ଅସଂଖ୍ୟ ଅଦ୍ଭୁତ ଓ ଆଶ୍ଚର୍ଯ୍ୟଜନକ ଆବିଷ୍କାର ହୋଇଅଛି । ସେହି ପାଶ୍ଚାତ୍ୟ ବିଜ୍ଞାନ ଓ ରସାୟନ ଓ ଚିକିତ୍ସା ଶାସ୍ତ୍ର ଅଧ୍ୟୟନ କରି ଏ ଦେଶରେ ଶିକ୍ଷିତମାନେ କେତେଗୋଟା ବିସ୍ମୟକର ଆବିଷ୍କାର କଲେ ? ଏଥିରୁ ବଳି ଶିକ୍ଷାପଦ୍ଧତିର ଓ ମନୋବୃତ୍ତିର ତାରତମ୍ୟର ସୁସ୍ପଷ୍ଟ ନିଦର୍ଶନ ଆଉ କ'ଣ ଲୋଡ଼ା ?

॥ ୨ ॥

ଭାରତବର୍ଷର ପ୍ରାଚୀନକାଳର ଶିକ୍ଷାପଦ୍ଧତି ସମ୍ବନ୍ଧେ ଆମ ଦେଶର ଅଧିକାଂଶ ଲୋକ ସମ୍ପୂର୍ଣ୍ଣ ଅଜ୍ଞ ବୋଇଲେ ଅତ୍ୟୁକ୍ତି ନୁହେଁ । ପ୍ରାଚୀନ କାଳର କଥା ତ ଦୂରେ ଥାଉ ପଞ୍ଚଶତ ବର୍ଷ ପୂର୍ବର ଶିକ୍ଷାପଦ୍ଧତି ମଧ ଆଧୁନିକ ସ୍କୁଲ ଛାତ୍ରମାନଙ୍କର ବୋଧଗମ୍ୟ ନୁହେଁ । କାରଣ ପାଶ୍ଚାତ୍ୟ ସ୍କୁଲ ଶିକ୍ଷାପଦ୍ଧତି ଏବଂ ଭାରତୀୟ ଚାଟଶାଳୀ ଓ ସଂସ୍କୃତଟୋଲ ଶିକ୍ଷାପଦ୍ଧତି ମଧରେ ପାର୍ଥକ୍ୟ ବିସ୍ତର । ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ ଆମ ଦେଶର ପ୍ରାଚୀନ ଶିକ୍ଷାପଦ୍ଧତିର କ୍ରମବିକାଶ ଘଟି ନାହିଁ । ପ୍ରଚଳିତ ଶିକ୍ଷାପଦ୍ଧତି ନୁହେଁ ପ୍ରାଚ୍ୟ, ନୁହେଁ ପାଶ୍ଚାତ୍ୟ । ଏ ପଦ୍ଧତି ପ୍ରାଚ୍ୟ ପ୍ରତୀଚୀର ସମ୍ମିଶ୍ରଣ ।

ଏ ଦେଶର ଅତି ପ୍ରାଚୀନ ପଦ୍ଧତି କି ପ୍ରଶଂସା ବା ନିନ୍ଦା କରିବାରେ ଆମ୍ଭମାନଙ୍କର ଯୋଗ୍ୟତା ନାହିଁ । ଯେହେତୁ ସେ ବିଷୟରେ ଆମେମାନେ ସମ୍ପୂର୍ଣ୍ଣ ଅଜ୍ଞ । ମାତ୍ର ଏ କଥା ମୁକ୍ତକଣ୍ଠରେ ସ୍ୱୀକାର କରାଯାଇପାରେ ଯେ ବୈଦିକ ଯୁଗର ଶିକ୍ଷାପଦ୍ଧତି ତତ୍‌କାଳୋପଯୋଗୀ ଥିଲା । ବ୍ରହ୍ମଚର୍ଯ୍ୟାଶ୍ରମ ତା'ର ପ୍ରକୃଷ୍ଟ ପ୍ରମାଣ । ଦ୍ୱିଜାତି ବାଳକମାନେ ଉପନୟନ ଉତ୍ତାରୁ ପିତୃଗୃହ ତ୍ୟାଗକରି ଗୁରୁ ଗୃହରେ ବାସ କରୁଥିଲେ ।

ଗୁରୁ ଗୃହରେ ବାସ କରିବାର କାଳ ବାର, ଚବିଶ କିମ୍ବା ଛତିଶ ବର୍ଷ । ଏତାବତ୍ କାଳ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବାକୁ ଛାତ୍ର ବାଧ ।

ବେଦାନଧୀତ ବେଦୌବା ବେଦଂବାପି ଯଥାକ୍ରମଂ ।
ଅବିପ୍ଳୁତ ବ୍ରହ୍ମଚର୍ଯ୍ୟ ଗୃହସ୍ଥାଶ୍ରମବିଶେତ୍ ॥

ବେଦମାନ କିମ୍ବା ଦୁଇ ବେଦ କିମ୍ବା ଗୋଟିଏ ବେଦ ଅଧ୍ୟୟନ କରି ବ୍ରହ୍ମଚର୍ଯ୍ୟ ବିଧି ନଷ୍ଟ ନ କରି ଗୃହସ୍ଥାଶ୍ରମରେ ପ୍ରବେଶ କରିବା ବଡ଼ କଠିଣ ସାଧନା । ମାତ୍ର ବେଦାଧ୍ୟାୟୀମାନେ ଏହା କରୁଥିଲେ ।

ବୀର୍ଯ୍ୟଧାରଣଂ ବ୍ରହ୍ମଚର୍ଯଂ ।

ବ୍ରହ୍ମଚାରୀକୁ ଅନେକ ଗୁଡ଼ିଏ ଆଚାର ପାଳନ କରିବାକୁ ପଡ଼େ, ମାତ୍ର ଉକ୍ତ ସୂତ୍ରଟି ପ୍ରଧାନ ଓ ପ୍ରଥମ ପାଳନୀୟ । ଛାତ୍ର ଗୁରୁ ଗୃହରେ ବ୍ରହ୍ମଚାରୀ ହୋଇ ରହୁଥିଲେ । ମାନସିକ ପରିଶ୍ରମ ସଙ୍ଗେ ସଙ୍ଗେ କାଷ୍ଠଚ୍ଛେଦନ, ଫଳସଂଗ୍ରହ ଓ ଭିକ୍ଷା ସଂଗ୍ରହ ଛାତ୍ରର ଦୈନନ୍ଦିନ କାର୍ଯ୍ୟ ଥିଲା । ପାଠଶାଳା ଯେ ଆଧୁନିକ ସ୍କୁଲ କଲେଜ ପରି ପକ୍କା ଅଟ୍ଟାଳିକା ବା ଉତ୍କୃଷ୍ଟ ଛଣ ବଙ୍ଗଳା ଥିଲା, ଏପରି ନୁହେଁ । ଛାତ୍ରମାନେ ବୃକ୍ଷମୂଳରେ ଅଧ୍ୟୟନ କରୁଥିଲେ । ଗ୍ରୀକ୍ ନୀତିଜ୍ଞ ଶିକ୍ଷକ ପ୍ଲାଟୋ ଛାତ୍ରମାନଙ୍କୁ ମୁକ୍ତ ଆକାଶତଳେ ଶିକ୍ଷା ଦେଉଥିଲେ । ଚିତ୍ର ଦର୍ଶନରୁ ଓ ବର୍ଣ୍ଣନା ପାଠରୁ ଆମେମାନେ ତାହା ଜାଣିବାକୁ ପାଉଁ । ପୂର୍ବକାଳରେ ଏ ରୀତିର ଶିକ୍ଷା ସବୁ ଦେଶରେ ପ୍ରଚଳିତ ଥିବାର ଅନୁମାନ ହୁଏ ।

ଆମ୍ଭମାନଙ୍କ ମନରେ ସନ୍ଦେହର ଛାୟାପାତ ହୁଏ, ଯେତେବେଳେ ଆମ୍ଭେମାନେ ସଂସ୍କୃତ ଗ୍ରନ୍ଥ ପାଠକରି ଜାଣିପାରୁଁ ଯେ ପୂର୍ବକାଳରେ ଜଣେ ଜଣେ ଋଷିର ତତ୍ତ୍ୱାବଧାନରେ ଦଶ ସହସ୍ର ସଂଖ୍ୟକ ଛାତ୍ର ଓ ଶିକ୍ଷକ ଅଧ୍ୟୟନ ଓ ଅଧ୍ୟାପନା କରୁଥିଲେ । ଶକୁନ୍ତଳାଙ୍କର ପିତା କଣ୍ୱ ଦଶସହସ୍ର ମୁନିଙ୍କୁ ପାନଭୋଜନ ଓ ଶିକ୍ଷାପ୍ରଦାନ କରୁଥିବାର ପ୍ରକାଶ ପାଏ । ଏତାଦୃଶ ଋଷିମାନଙ୍କର କୁଳପତି ଆଖ୍ୟା ଥିଲା ।

'ମୁନୀନାଂ ଦଶସହସ୍ରଂ ଯୋଽନ୍ନପାନାଦି ପୋଷଣାତ୍ ।
ଅଧ୍ୟାପୟତି ବିପ୍ରର୍ଷିଃ ସର୍ବୈକୁଳପତିଃ ସ୍ମୃତଃ ॥'

ଏଥିରେ ଅତ୍ୟୁକ୍ତି ଥାଇପାରେ ତଥାପି ବହୁସଂଖ୍ୟକ ଛାତ୍ର ଓ ଶିକ୍ଷକ ଯେ ଜଣେ ଜଣେ ଋଷିଙ୍କର ତତ୍ତ୍ୱାବଧାନରେ ରହି ବିଦ୍ୟାଧ୍ୟୟନ କରୁଥିଲେ, ଏଥିରେ ସନ୍ଦେହ କରିବାର କିଛି ହିଁ କାରଣ ନାହିଁ । ଅରଣ୍ୟବାସୀ ଜଣେ ଋଷି ଦ୍ୱାରା ପୂର୍ବେ ଯେଉଁ ଶିକ୍ଷା ରୂପ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସାଧିତ ହେଉଥିଲା, ବର୍ତ୍ତମାନ ରାଜା ମହାରାଜା ଏବଂ କୋଟିପତି ମଧ୍ୟ ତାହା କରିବାକୁ କ୍ଷମ ନୁହନ୍ତି । ଏଥିର କାରଣ ଅନେକ, ତହିଁର ବିସ୍ତର ଆଲୋଚନା ନିଷ୍ପ୍ରୟୋଜନ । ତେବେ ସ୍ଥୂଳଭାବରେ ଏତିକି କୁହାଯାଇପାରେ ଯେ ସେତେବେଳେ ଗୁରୁ ଶିଷ୍ୟ ମଧ୍ୟରେ ପ୍ରଗାଢ଼ ପ୍ରେମ ବିଦ୍ୟମାନ ଥିଲା; ବିଦ୍ୟା ବାଧ୍ୟତାମୂଳକ ନ ହୋଇ ଶ୍ରଦ୍ଧାମୂଳକ ଥିଲା । ଶିକ୍ଷକ ଥିଲେ ସ୍ୱାର୍ଥତ୍ୟାଗୀ ଏବଂ ଛାତ୍ରମାନଙ୍କର ନିତ୍ୟ ବ୍ୟବହାର୍ଯ୍ୟ ବସନ ଭୂଷଣ ଓ ଆହାର୍ଯ୍ୟର ବ୍ୟୟ ନଗଣ୍ୟ ଥିଲା । ଶିକ୍ଷକ ଓ ଛାତ୍ରମାନେ ବିଦ୍ୟାକୁ ଜୀବନର ଏକମାତ୍ର ତପବୋଲି ବିବେଚନା କରୁଥିଲେ । ଗୁରୁ ଗୃହରେ ଥିଲାବେଳେ ଛାତ୍ରମାନେ ପିତା ମାତା ଓ ଗୃହର ଚିନ୍ତାକୁ ହୃଦୟରେ ସ୍ଥାନ ଦେଉ ନ ଥିଲେ । ସେ ଯୁଗ ଆଉ ନାହିଁ । ସେ ଯୁଗର ଶିକ୍ଷାପଦ୍ଧତିର ପ୍ରବର୍ତ୍ତନ ଚେଷ୍ଟା ଏ ଯୁଗରେ ନିଷ୍ଫଳ ଯତ୍ନ ।

ବୌଦ୍ଧଯୁଗରେ ଉପରୋକ୍ତ ଶିକ୍ଷା ପଦ୍ଧତିର କ୍ରମବିକାଶ ଘଟିଥିଲା । ମନୁଷ୍ୟମାନଙ୍କର ଆଚାର ବ୍ୟବହାର ମଧ୍ୟ ଯଥେଷ୍ଟ ରୂପେ ପରିବର୍ତ୍ତିତ ହୋଇଥିଲା । ମୁକ୍ତ ଆକାଶରେ ବିଦ୍ୟାଚର୍ଚ୍ଚା ହେଉଥିଲେ ମଧ୍ୟ ଛାତ୍ର ଓ ଶିକ୍ଷକମାନେ ଅଟ୍ଟାଳିକା ଓ ଉତ୍ତମ ଗୃହରେ ବାସ କରୁଥିଲେ । ନାଳନ୍ଦା ବିଶ୍ୱବିଦ୍ୟାଳୟ ତାର ଅତ୍ୟୁଜ୍ଜ୍ୱଳ ଉଦାହରଣ । ଏ ବିଦ୍ୟାଳୟର ଆକର୍ଷଣ ଶକ୍ତି ଏତେଥିଲା ଯେ ଭାରତବର୍ଷର ଛାତ୍ରଙ୍କ କଥା ତ ଛାଡ଼, ସୁଦୂର ଚୀନ୍ ଦେଶରୁ ମଧ୍ୟ ଛାତ୍ରମାନେ ଏଠାକୁ ଆସି ବିଦ୍ୟାର୍ଜନ କରି ଯାଉଥିଲେ । ଚୀନ୍ ହୁଏନ୍‌ସାଂ ଲେଖିଅଛନ୍ତି ଯେ ସେ ଏଠାରେ ଅଧ୍ୟୟନ କରୁଥିବାବେଳେ ନାଳନ୍ଦାର ଛାତ୍ର ଓ ଶିକ୍ଷକ ସଂଖ୍ୟା ଦଶହଜାର । ସ୍ୱଭାବତଃ ଏହା ଅତିରଞ୍ଜିତ ବର୍ଣ୍ଣନା ବୋଲି ବୋଧ ହୋଇପାରେ । ନାଳନ୍ଦାର ଖନନ କାର୍ଯ୍ୟ ଚାଲିଥିବାବେଳେ ମୁଁ ତାହା ଦେଖିଅଛି । ଛାତ୍ରର ବାସଗୃହ ଏବଂ ଛାତ୍ରର ବ୍ୟବହାରଯୋଗ୍ୟ ପଦାର୍ଥ ଦେଖିଲେ ମନେହୁଏ ଯେ ଛାତ୍ରମାନେ ବିଦ୍ୟା ଅପେକ୍ଷା ଭୋଗବାସନାକୁ ତୁଚ୍ଛ ଓ ହେୟ ବୋଲି ଜ୍ଞାନ କରୁଥିଲେ । ନାଳନ୍ଦା ବିଶ୍ୱବିଦ୍ୟାଳୟ ଅସଂଖ୍ୟ ପଣ୍ଡିତ ଓ ଜ୍ଞାନୀଙ୍କର ଜନ୍ମଦାତା । ଏ ବିଦ୍ୟାଳୟରୁ ଅନେକ ବିଦ୍ୱାନ ପରିବ୍ରାଜକ, ଚୀନ୍, ତିବ୍ବତ, ମଧ୍ୟଏସିଆ ଦେଶକୁ ଯାଇ ସେଠାରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ ଏବଂ ଅନେକ ଛାତ୍ର ଚୀନ୍ ଭାଷାରେ ଲେଖିଥିଲେ ଏବଂ ଭାଷାନ୍ତରିତ କରିଥିଲେ । ଚୀନ୍ ଓ ତିବ୍ବତରୁ ଆମ୍ଭେମାନେ ବର୍ତ୍ତମାନ ବୁଦ୍ଧଧର୍ମର ମହିମା ବୁଝିବାକୁ କ୍ଷମ ହେଉଅଛୁଁ । ନାଳନ୍ଦା ସଦୃଶ ବିକ୍ରମଶିଳା, ଧାନ୍ୟକଟକ, କାଶୀ ପ୍ରଭୃତିରେ ମଧ୍ୟ ବିଶ୍ୱବିଦ୍ୟାଳୟ ବିଦ୍ୟମାନ ଥିଲା । ଏ

ବିଶ୍ୱବିଦ୍ୟାଳୟମାନଙ୍କରେ ସଂସ୍କୃତ, ପ୍ରାକୃତ ଓ ପାଲିଭାଷାରେ ଶିକ୍ଷା ଦିଆଯାଉଥିଲା । ସୁତରାଂ ଜାତି ନିର୍ବିଶେଷରେ ଛାତ୍ରମାନେ ଶିକ୍ଷା ପାଉଥିଲେ । ହିନ୍ଦୁଧର୍ମର ଅଭ୍ୟୁତ୍‌ଥାନ ସଙ୍ଗେ ସଙ୍ଗେ ସାର୍ବଜନୀନ ଶିକ୍ଷା ଲୋପ ପାଇଲା ।

ଉଲ୍ଲିଖିତ ଶିକ୍ଷାପ୍ରଣାଳୀ ସହିତ ଟୋଲ ଚାଟଶାଳୀର ଶିକ୍ଷାପ୍ରଣାଳୀ ତୁଳନାଯୋଗ୍ୟ ନୁହେଁ । ଉଚ୍ଚାଙ୍ଗର ଟୋଲମାନଙ୍କର ବର୍ଣ୍ଣଭେଦ ଅନୁସାରେ ଛାତ୍ର ନିର୍ବାଚନ ଚାଲିଲା ଏବଂ ଟୋଲମାନଙ୍କରେ ସଂସ୍କୃତ ଶିକ୍ଷା ଭିନ୍ନ ଅନ୍ୟ ପ୍ରାକୃତ ଭାଷା ଶିକ୍ଷା ପ୍ରଚଳନ ନୋହିବାରୁ, କେବଳ ଧନୀ ଓ ବ୍ରାହ୍ମଣ ଛାତ୍ରମାନେ ସ୍ଥାନ ପାଇଲେ । ପାଲୀଭାଷା ଲୋପ ହେଲା, ଅନ୍ୟାନ୍ୟ ପ୍ରାକୃତ ଭାଷାମାନଙ୍କର ସୃଷ୍ଟି ହେଲା । ପ୍ରାକୃତ ଚାଟଶାଳୀର ପ୍ରତିଦ୍ୱନ୍ଦ୍ୱୀ ବିଜ୍ଞ ବ୍ରାହ୍ମଣଗଣ; ପ୍ରାକୃତଭାଷା ଶିକ୍ଷା ସେମାନଙ୍କ ପ୍ରତି ଅସହ୍ୟ କଷ୍ଟଦାୟକ । ପ୍ରାକୃତଭାଷା ସେମାନଙ୍କର କର୍ଣ୍ଣକଣ୍ଟକ । ପ୍ରାକୃତଭାଷାରେ ସଂସ୍କୃତ ଶାସ୍ତ୍ରର ଅନୁବାଦ ସେମାନଙ୍କର ଇଚ୍ଛାବିରୋଧ ଏବଂ ସେହିହେତୁ ଦେଶୋପଦ୍ରବକାରକ । ଏକଥା କାଳ୍ପନିକ ନୁହେଁ, ପୂର୍ବର କଥା ଛାଡ଼ି ଦିଆଯାଉ, ଆମ୍ଭେମାନେ ମଧ ଉପରୋକ୍ତ ମନ୍ତବ୍ୟ ସୁଧୀଜନଙ୍କଠାରୁ ଅବଗତ ହୋଇଅଛୁଁ । ଏଣୁ ଚାଟଶାଳୀ ପ୍ରତି ରାଜା ମହାରାଜାମାନଙ୍କର ସହାନୁଭୂତି କମ୍ । ଗ୍ରାମବାସୀମାନେ ଆପଣା ଆପଣା ଶକ୍ତ୍ୟନୁସାରେ ଚାଟଶାଳୀ ବସାନ୍ତି । ଗୁରୁ ଶିଷ୍ୟର ସ୍ନେହବନ୍ଧନ ନ ଥିଲା ବରଂ ଅତ୍ୟାଚାରର ରାଜତ୍ୱ ଥିଲା । ସୁତରାଂ ଏ ଦେଶର ସାଧାରଣ ଶିକ୍ଷାର ବାଧା ଅନେକ । ଏଣୁ ସର୍ବସାଧାରଣ ଅଶିକ୍ଷିତ ହୋଇପଡ଼ିଲେ । ଶିକ୍ଷାର ଏପରି ଅଧୋଗତି ବେଳେ ମୁସଲମାନ ରାଜତ୍ୱ ଉପସ୍ଥିତ ହେଲା । ଶାସକଗଣ ଏ ଦେଶିକ ଭାଷାର ପ୍ରଚାର ଓ ଶିକ୍ଷାନିମନ୍ତେ ଯତ୍ନଶୀଳ ଥିଲେ ବୋଲି ଅନୁମିତ ହୁଏ ନାହିଁ । ସେମାନେ ପାର୍ଶି ଓ ଉର୍ଦ୍ଦୁର ପକ୍ଷପାତୀ । ପାର୍ଶି ଉର୍ଦ୍ଦୁରେ ବ୍ୟୁତ୍ପନ୍ନ ବ୍ୟକ୍ତିମାନେ ଉଚ୍ଚପଦାଭିଷିକ୍ତ ହେଲେ, ଶାସକଙ୍କର ସିରସ୍ତାରେ କାମ ପାଇଲେ । ଏଣୁ ଉର୍ଦ୍ଦୁର ଆଦର ବଢ଼ିଲା । ଦେଶଭାଷା ଉନ୍ନତ ହେବାର ପନ୍ଥା ବନ୍ଦ ହେଲା । ମୁସଲମାନ ଶିକ୍ଷାପଦ୍ଧତି ଭାରତୀୟ ଶିକ୍ଷାପଦ୍ଧତି ଅପେକ୍ଷା ଉନ୍ନତତର ନ ଥିଲା । ପୁଣି ଶିକ୍ଷାପଦ୍ଧତି ସହିତ ଧର୍ମବିଦ୍ୱେଷ ଜଡ଼ିତ ଥିବାରୁ ଏ ଦେଶବାସୀଙ୍କ ପକ୍ଷରେ ତାହା ଆଦରଣୀୟ ହେଲା ନାହିଁ । ସୁତରାଂ ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ଜଣାଗଲା ଯେ ଇଂରେଜମାନେ ଏ ଦେଶର ଶାସନଭାର ଗ୍ରହଣ କରିବାଯାଏ ଏ ଦେଶର ଶିକ୍ଷାପଦ୍ଧତିର କ୍ରମବିକାଶ ହେବାର ଦୂରେଥାଉ ପଦ୍ଧତିଶୂନ୍ୟ ଶିକ୍ଷାସ୍ରୋତରେ ମଧ ବାଧା ଘଟିଅଛି ।

ଏ ଦେଶବାସୀଙ୍କି ଶିକ୍ଷିତ କରିବାକୁ ଇଂରେଜମାନଙ୍କର ଆନ୍ତରିକ ଇଚ୍ଛା । ସେମାନଙ୍କର ପ୍ରଥମ ଧାରଣା ଏହି ଯେ ଭାରତବାସୀ ଅଶିକ୍ଷିତ ଥିଲେ ଶାସନରେ ବାଧା ଘଟିବ । ଏଣୁ ଶିକ୍ଷା ସଂସ୍କାର ଆରମ୍ଭ କଲେ । ଏ ଦେଶ ଭାଷାର ଅବନତି ଘଟୁ ଏ କାମନା ସେମାନଙ୍କର ହୃଦୟରେ ଆଦୌ ସ୍ଥାନ ପାଇ ନାହିଁ । ଏ ଦେଶବାସୀଙ୍କ ଶିକ୍ଷାକଳ୍ପେ ଇଂରାଜୀ ଭାଷା ଉପଯୁକ୍ତ କି ଦେଶୀୟଭାଷା ଉପଯୁକ୍ତ ଏଥିର ଆନ୍ଦୋଳନ ଚାଲିଥିଲା । ନାନା ତର୍କ ବିତର୍କ ଉତ୍ତାରୁ ଇଂରାଜୀ ହିଁ ଏ ଦେଶର ରାଜଭାଷା ହେବା ସ୍ଥିର ହେଲା । ଏତଦ୍ୱାରା ଏ ଦେଶବାସୀ ଯେ ବିଶେଷ ଉପକୃତ, ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ । ଇଂରାଜୀ ଭାଷାର ବହୁଳ ପ୍ରଚାର ହୋଇ ନ ଥିଲେ ଅଖଣ୍ଡ ବିଜ୍ଞାନ ରାଜ୍ୟକୁ ଏ ଦେଶବାସୀର ପ୍ରବେଶାଧିକାର ମିଳି ନ ଥାନ୍ତା ଏବଂ ସ୍ୱାଧୀନ ଚିନ୍ତା ସ୍ୱାଧୀନ ମତିଗତିର ବିକାଶ ଘଟି ନ ଥାନ୍ତା । ପାଶ୍ଚାତ୍ୟ ଶିକ୍ଷାପଦ୍ଧତିରୁ ଏ ଦେଶବାସୀଙ୍କର ପ୍ରଧାନ ଲାଭ ଏତିକି । ପୁଣି ବ୍ୟୟବାହୁଲ୍ୟ ପାଶ୍ଚାତ୍ୟ ଶିକ୍ଷାପଦ୍ଧତି ଏ ଦେଶବାସୀଙ୍କର ଉନ୍ନତିର ଅନ୍ତରାୟ ବୋଇଲେ ଚଳେ । ସେ ଯାହାହେଉ ଏଥିରେ ହସ୍ତକ୍ଷେପ କରିବା କାହାରି ଅଧିକାର ନାହିଁ । ଯାହା ଚାଲିଛି ଚାଲିଥାଉ । ତେବେ ଶିକ୍ଷକମାନେ ଆପଣାର ଅନ୍ନ ବଜାଏ ରଖି ସ୍ୱେଚ୍ଛାକ୍ରମେ ଛାତ୍ରମାନଙ୍କର ଉନ୍ନତିକଳ୍ପେ କିଛି ସ୍ୱାର୍ଥତ୍ୟାଗ କରିପାରନ୍ତି ଏବଂ ଛାତ୍ରମାନେ ସ୍ୱାର୍ଥତ୍ୟାଗପୂର୍ବକ ନିଜ ଦେଶର ଓ ଜାତିର ଉନ୍ନତିକଳ୍ପେ ଦୃଢ଼ବ୍ରତ ହୋଇପାରନ୍ତି ।

ସାଧାରଣଙ୍କୁ ବୁଦ୍ଧିକି ଯାହା ଶିକ୍ଷକ ଓ ଛାତ୍ରମାନଙ୍କର କର୍ତ୍ତବ୍ୟ ବୋଲି ବିବେଚିତ ହୁଏ ତାହା ଏଠାରେ ଉଲ୍ଲେଖ କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

ଛାତ୍ର ଓ ଶିକ୍ଷକ ମଧରେ ସୌହାର୍ଦ୍ଦ୍ୟ ଜନ୍ମାଇବା ଶିକ୍ଷକର ପ୍ରଥମ କର୍ତ୍ତବ୍ୟ ହେବା ଉଚିତ୍ । ଏ ଦେଶରେ ଶିକ୍ଷକ ଛାତ୍ର ମଧରେ ଶାସକ ଶାସିତ ଭାବ ବରାବର ରହିଅଛି । ଏଥିର ସଂସ୍କାର ବା ପରିବର୍ତ୍ତନ ନିତାନ୍ତ ଦରକାର । ପାଶ୍ଚାତ୍ୟ ଦେଶରେ ଶିକ୍ଷକ ଶିକ୍ଷୟତ୍ରୀ ଏବଂ ଛାତ୍ରଛାତ୍ରୀମାନଙ୍କ ମଧରେ ଯେଉଁ ପରିମାଣରେ ସୌହାର୍ଦ୍ଦ୍ୟ ଓ ସ୍ନେହ ଆନ୍ତରିକତା ପରିଦୃଷ୍ଟ ହୁଏ ଆମ ଦେଶରେ ସେ ପରିମାଣରେ ତାହା ଦେଖାଯାଏ ନାହିଁ । ପାଶ୍ଚାତ୍ୟ ଦେଶବାସୀ ଯେଉଁ ପରିମାଣରେ ଏଥିର ପ୍ରୟୋଜନୀୟତା ବୁଝି ପାରିଲେଣି ଆମ ଦେଶର ଲୋକେ ତାହା ବୁଝିବାକୁ କ୍ଷମ ହୋଇ ନାହାନ୍ତି ।

ଦୋଷ ନିମନ୍ତେ ଦଣ୍ଡର ପ୍ରୟୋଜନ, ଏହା କେହି ଅସ୍ୱୀକାର କରିବେ ନାହିଁ; ମାତ୍ର ସତ୍ୟ ନିମନ୍ତେ ପୁରସ୍କାର ମଧ

ଦରକାର । ଅଦାଲତରେ ସତ୍ୟର ପୁରସ୍କାର ନାହିଁ । ସ୍କୁଲରେ ମଧ୍ୟ ଶିକ୍ଷକମାନେ ସତ୍ୟର ପୁରସ୍କାର ଦେବାକୁ କୁଣ୍ଠିତ । ଏଥିର ସଂସ୍କାର ନିଜେ ଶିକ୍ଷକ ଆପଣା ଇଚ୍ଛାନୁସାରେ କରିପାରନ୍ତି । ଏଥିରେ ପଦ୍ଧତିର ହାନି ହେବ ନାହିଁ ।

କର୍ତ୍ତୃପକ୍ଷଙ୍କ ନିର୍ଦ୍ଧାରିତ ପୁସ୍ତକ ପଢ଼ାଇବାରେ କେବଳ ଶିକ୍ଷକର କର୍ତ୍ତବ୍ୟ ପର୍ଯ୍ୟବସିତ ହେବା ଉଚିତ ନୁହେଁ । ପରିଦୃଶ୍ୟମାନ ପ୍ରକୃତି ରାଜ୍ୟରେ ପ୍ରତ୍ୟେକ ବିଷୟରେ ଛାତ୍ରର ସ୍ପୃହା ଜନ୍ମାଇବାକୁ ଚେଷ୍ଟା କରିବା ଶିକ୍ଷକ ନିଜର ଗୁରୁତର କର୍ତ୍ତବ୍ୟ ବୋଲି ମନେକରିବା ଉଚିତ୍ ।

ଛାତ୍ର ମନରୁ ଯେତେଦୂର ସମ୍ଭବ କୂପମଣ୍ଡୂକତ୍ୱ ଓ କୁସଂସ୍କାର ଦୂର କରିବାକୁ ଶିକ୍ଷକ ସର୍ବଦା ଜାଗ୍ରତ ରହିବା ଉଚିତ।

ଧର୍ମସମ୍ବନ୍ଧୀୟ ଜଟିଳ ବିଷୟ ଯାହା ଶିକ୍ଷକର ମଧ୍ୟ ବୋଧଗମ୍ୟ ନୁହେଁ, ପାଠବେଳେ କିମ୍ବା କଥୋପକଥନ ବେଳେ ତହିଁର ଅବତାରଣା ବାଞ୍ଛନୀୟ ନୁହେଁ । ଏତାଦୃଶ ବିଷୟ ବାଲ୍ୟାବସ୍ଥାରୁ ହୃଦୟରେ ବଦ୍ଧମୂଳ ହେଲେ ପରେ ତାହା କୁସଂସ୍କାର ଓ ଅନ୍ଧବିଶ୍ୱାସରେ ପରିଣତ ହୁଏ ।

କେବଳ ସତ୍ୟାନୁସନ୍ଧାନ ନିମନ୍ତେ ଛାତ୍ରକୁ ସର୍ବଦା ପ୍ରେରଣା ଦେବା ଉଚିତ୍ । ବୈଜ୍ଞାନିକ ସତ୍ୟ ଓ ବିଜ୍ଞାନରେ ଛାତ୍ରର ସ୍ପୃହା ବୃଦ୍ଧି କରିବାକୁ ଚେଷ୍ଟା କରିବା ଉଚିତ।

ପାଠ୍ୟପୁସ୍ତକ ଛଡ଼ା ଅନ୍ୟ ପୁସ୍ତକ ଅଧ୍ୟୟନର ପ୍ରଶ୍ରୟ ଦେବା ଉଚିତ। 'ବାଳାନାମଧ୍ୟୟନସ୍ତପଃ'— ଏହି ନୀତିବାକ୍ୟ ଛାତ୍ର ହୃଦୟରେ ଜାଗ୍ରତ କରିବା ଉଚିତ।

ଛାତ୍ରମାନଙ୍କର ମଧ୍ୟରେ ଯେପରି ମନୋମାଳିନ୍ୟ ନ ଘଟେ ସେଥି ନିମନ୍ତେ ଶିକ୍ଷକ ସତର୍କ ଦୃଷ୍ଟିଦେବା ଉଚିତ। ଛାତ୍ରାବସ୍ଥାରେ ସଙ୍ଘବଦ୍ଧ ହେବାର ଯେ ସୁବର୍ଣ୍ଣ ସୁଯୋଗ ତାହା ସଂସାର କ୍ଷେତ୍ରରେ ଘଟେ ନାହିଁ । ଏଣୁ ଏଥିନିମନ୍ତେ ଶିକ୍ଷକ ଯତ୍ନକଲେ ସୁଫଳ ହେବା ସମ୍ଭବ ।

ସ୍କାଉଟ ମୁଭମେଣ୍ଟ ଦ୍ୱାରା ମନୁଷ୍ୟ ସମାଜର ପ୍ରଭୂତ ଉପକାର ହେବାର ଆଶା କରାଯାଏ । ଛାତ୍ରମାନଙ୍କୁ ଏଥି ନିମନ୍ତେ ଉତ୍ସାହିତ କରିବା ଉଚିତ୍ ।

ଛାତ୍ରମାନଙ୍କୁ ସ୍ୱାର୍ଥତ୍ୟାଗର ଶିକ୍ଷା, ପର ପ୍ରତି ସହାନୁଭୂତି ଏବଂ ଅନ୍ୟର ଉପକାର ନିମନ୍ତେ ସାମାନ୍ୟ ଶାରୀରିକ ପରିଶ୍ରମ ଓ ସାମାନ୍ୟ ବ୍ୟୟ କରିବାକୁ ଶିକ୍ଷାଦେବା ଶିକ୍ଷକମାନଙ୍କର କର୍ତ୍ତବ୍ୟ ।

ଶୟନ ସମୟ ଭିନ୍ନ ଅନ୍ୟ ସମୟରେ ଛାତ୍ରର ମନ ପ୍ରଫୁଲ୍ଲ ରହିବା ଉଚିତ। ଯାହାର ମନ ବିମର୍ଷ ଓ ଚିନ୍ତାଗ୍ରସ୍ତ ତା'ର ଭବିଷ୍ୟତ ଜୀବନ ସୁଖମୟ ହୁଏ ନାହିଁ । ଏଥିନିମନ୍ତେ ଆନନ୍ଦୋଦ୍ଦୀପକ ଖେଳ ଓ ଭ୍ରମଣରେ ଛାତ୍ରର ସମୟ ବ୍ୟୟିତ ହେବା ଉଚିତ।

'ପରପୁଅ ବୁଦ୍ଧିମଲା, ମୁଁ ଦେଖୁଥିଲି ଟୁପକଲା' ଏ ପ୍ରବାଦ ପ୍ରକାଶ କରି ଏ ଦେଶର ଅନେକ ଲୋକେ ପରୋପକାରରୁ ବିରତ ହୁଅନ୍ତି । ମାତ୍ର ଏହାଠାରୁ ବଳି କୁତ୍ସିତ ମନୋବୃତ୍ତିର ଉଦାହରଣ ଆଉ ନାହିଁ । ଗୃହଦାହ ବେଳେ ଦର୍ଶକ ଅନେକ; ମାତ୍ର ନିଆଁ ନିଭାଇବାକୁ କେତେ ଜଣ ଅଗ୍ରସର ହୁଅନ୍ତି ? ମନୁଷ୍ୟର ବିପନ୍ନାବସ୍ଥା ବେଳେ ଜାତିବିଚାର ହୀନ ପ୍ରକୃତିର ପରିଚାୟକ । ତଥାପି ବିପଦଗ୍ରସ୍ତ ନୀଚ ଜାତିକି ସ୍ପର୍ଶ କରିବାକୁ ତଥାକଥିତ ଧାର୍ମିକମାନେ ପରାଙ୍ମୁଖ ହେଉଥିବାର ସ୍ଥଳବିଶେଷରେ ଜଣାପଡ଼େ । ଜାତି ନିର୍ବିଶେଷରେ ବିପନ୍ନକୁ ସାହାଯ୍ୟ କରିବା ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ ଓ ଧର୍ମ । ମନୁଷ୍ୟ ଏତିକି ନ କଲେ ତା'ର ମନୁଷ୍ୟତ୍ୱ କେଉଁଠାରେ ? ଏସବୁ ବିଷୟର ଦୋଷଗୁଣ ଆଲୋଚନା ଶିକ୍ଷାର ଅଙ୍ଗ ବୋଲି ବିବେଚିତ ହୁଏ ।

ଛାତ୍ରର ସ୍ୱାଧୀନ ଚିନ୍ତାବୃତ୍ତିକୁ ଦମନ କରିବାକୁ ଚେଷ୍ଟା କରିବା ଉଚିତ ନୁହେଁ; ମାତ୍ର ତାକୁ ସୁମାର୍ଗରେ ପ୍ରଧାବିତ କରିବାକୁ ସାହାଯ୍ୟ କରିବା ଉଚିତ।

ଆଜି ଯେ ଛାତ୍ର, କାଲେ ସେ ଦେଶର ମୁଖ୍ୟବ୍ୟକ୍ତି ହୋଇପାରେ ଏହି ଧାରଣା ହୃଦୟରେ ପୋଷଣ କରି ପ୍ରତ୍ୟେକ ଛାତ୍ରର ମାନସିକ ଓ ଶାରୀରିକ ଉନ୍ନତି ନିମନ୍ତେ ଶିକ୍ଷକମାନେ ଯତ୍ନଶୀଳ ହେବା ଉଚିତ। ବୃତ୍ତିଦ୍ୱାରା ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ସାଧନାରେ ଶିକ୍ଷକର ଧର୍ମାଂଶ ନାହିଁ । ଛାତ୍ରର ଉନ୍ନତିକଳ୍ପେ ଶିକ୍ଷକ ତଦତିରିକ୍ତ ଯାହା କରିବେ ସେଥିରେ ତାଙ୍କର ଧର୍ମ ଓ ମହତ୍ୱ ଅଛି । କର୍ମ କରିବାକୁ ମନୁଷ୍ୟର ଜନ୍ମ । ପରୋପକାର ବ୍ରତ ବା ଉଦ୍ଦେଶ୍ୟ ମନୁଷ୍ୟର ଶ୍ରେଷ୍ଠ କର୍ତ୍ତବ୍ୟ । ଯେଉଁ କର୍ମରେ ଫଳ ଅଛି ସେ କର୍ମକୁ ପରୋପକାର ବୋଲାଯାଇପାରେ ନାହିଁ ।

କର୍ମ କରିବାକୁ ମନୁଷ୍ୟର ଅଧିକାର ଅଛି ମାତ୍ର ଫଳରେ ତାର ଅଧିକାର ନାହିଁ ।

''କର୍ମଣ୍ୟେ ବାଧିକାରସ୍ତେ
ମା ଫଳେଷୁ କଦାଚନ ।'' (ଗୀତା)

## ସରୋଜନଳିନୀ

ମୁଁ ପ୍ରଥମେ ଭାବିଥିଲି ଯେ ସରୋଜନଳିନୀ ଖଣ୍ଡିଏ ଉପନ୍ୟାସ ବା କାବ୍ୟ । ଗତ ସେପ୍ଟେମ୍ବର ମାସରେ ମୁଁ ରସଚକ୍ର ଅଫିସ୍‌ରୁ ଖଣ୍ଡ କେତେ ପୁସ୍ତକ ଉପହାର ପାଇଥିଲି । ସେଥିମଧ୍ୟରୁ ସରୋଜନଳିନୀ ଖଣ୍ଡିଏ । ଅନେକ ଦିନଯାଏ ତାହା ପାଠ କରି ନ ଥିଲି । ଅବଶେଷରେ ପାଠ କଲି । ପାଠ କଲି, ଥରେ ନୁହେଁ ଦୁଇଥର ନୁହେଁ ଅନେକ ଥର । କେତେବେଳେ କେଉଁ ଅଧ୍ୟାୟଟି କେତେବେଳେ କେଉଁ ପରିଚ୍ଛେଦଟି ।

ମୁଁ ପୁସ୍ତକର ପ୍ରଶଂସା, ସମାଲୋଚନା ବା ଦୋଷ ଦର୍ଶନ କରିବାକୁ ଯାଉ ନାହିଁ । କାରଣ ଏଥିରେ ଜୀବନୀର ପବିତ୍ରତାରେ ହସ୍ତକ୍ଷେପ କରା ହୁଏ । ତେବେ ମୋଟରେ ଏତିକି କୁହାଯାଇପାରେ ଛାପା ଭଲ, ଲେଖା ଭଲ, ଲେଖା ସରଳ ଓ ହୃଦୟଗ୍ରାହୀ ହୋଇଅଛି । ହେବାର ହିଁ କଥା, ଯେହେତୁ ପୁସ୍ତକର ବିଷୟ ଉପାଦେୟ ଓ ଶିକ୍ଷାଯୋଗ୍ୟ ।

ମୁଁ ସମାଲୋଚନା କରିବାକୁ ଯାଉ ନାହିଁ । ଯାଉଛି ସରୋଜନଳିନୀଙ୍କର ସାରା ଜୀବନୀକୁ ନେତ୍ରାଗ୍ରରେ ରଖି ତାଙ୍କ ସମ୍ବନ୍ଧେ ମୋର ହୃଦ୍‌ଗତ ଭାବ ବ୍ୟକ୍ତ କରିବାକୁ ।

ଆମ୍ଭମାନଙ୍କ ଭଳି ସାମାନ୍ୟ ଲୋକର ପ୍ରଶଂସା ନିନ୍ଦାରେ ସରୋଜନଳିନୀଙ୍କର କିଛି ଯାଏ ଆସେ ନା । ସେ ନିନ୍ଦା ସ୍ତୁତିର ବାହାରେ । ଜୀବିତାବସ୍ଥାରେ ସେ ଅନେକ ନିନ୍ଦୁକ ପରଶ୍ରୀକାତର ବ୍ୟକ୍ତିଙ୍କଠାରୁ ନିଜ ନିନ୍ଦା ଶୁଣି ଗ୍ରାହ୍ୟ କରି ନାହାନ୍ତି ଏବଂ ସହୃଦୟ ମହତ୍ ବ୍ୟକ୍ତିମାନଙ୍କର ପ୍ରଶଂସା ଶୁଣି ଗର୍ବିତା ହୋଇନାହାନ୍ତି । ତାଙ୍କର ଜୀବନତରୀକୁ ସେ କର୍ତ୍ତବ୍ୟ-ସ୍ରୋତରେ ଭସାଇ ଚାଲିଗଲେ ।

ସରୋଜନଳିନୀ ଆଦର୍ଶ-କନ୍ୟା, ଆଦର୍ଶ-ପତ୍ନୀ, ଆଦର୍ଶ-ଗୃହିଣୀ, ଭାରତର ଆଦର୍ଶ-ନାରୀ । ଏହା ଲେଖିବା ବାହୁଲ୍ୟ ମାତ୍ର । ଏ ସବୁ ଜୀବନୀରେ ଉପଯୁକ୍ତ ଭାବେ ପ୍ରଦର୍ଶିତ ହୋଇଅଛି । ପୁନରୁକ୍ତି କଲେ ଗୋଟିଏ ଜୀବନୀ ଲେଖିବାକୁ ହେବ । ମୋର ସେ ଉଦ୍ଦେଶ୍ୟ ନୁହେଁ ।

Full many a gein, of purest ray serene,
The dark unfaithomad caves of ocean fear:
Full many of flower is born to blush unseeen,
And waste its sweetness on the desert air.

ଅମରକବି ଗ୍ରେଙ୍କର ଉଦ୍ଧୃତ ପଦଟିରେ ତ ଟିକିଏ ଅତ୍ୟୁକ୍ତି ନାହିଁ । ଏ ଦେଶର ଅସଂଖ୍ୟ ମାଳତୀ ଫୁଲର ସୌରଭ ତ ସରୋଜନଳିନୀର ସୌରଭ ତୁଲ୍ୟ ଦିଗନ୍ତବ୍ୟାପୀ ହେଉ ନାହିଁ ? ଏଥି ନିମନ୍ତେ ଦାୟୀ କିଏ ? ପୁରୁଷ ନା ସ୍ତ୍ରୀ ?

ଆମ୍ଭେମାନେ ଜୀବନୀରୁ ସରୋଜନଳିନୀଙ୍କ ଜନକ, ଜନନୀ ଓ ପିତୃବ୍ୟ, ପିତାମହୀଙ୍କର ଯଥେଷ୍ଟ ପରିଚୟ ପାଉଅଛୁଁ । ପିତା ବି.ଦେ ପାଶ୍ଚାତ୍ୟ ଶିକ୍ଷିତ ସିଭିଲିୟାନ୍ ସଂସ୍କାର ପ୍ରୟାସୀ । ପିତୃବ୍ୟମାନେ ସୁଶିକ୍ଷିତ ଓ ଉନ୍ନତମନା । ଜନନୀ ନଗେନ୍ଦ୍ରନନ୍ଦିନୀ ସୁଶିକ୍ଷିତା ଓ ଉନ୍ନତମନା ଥିଲେ । ପିତାମହୀ ତ୍ରୈଲୋକ୍ୟମୋହିନୀ ଯେ ହିନ୍ଦୁ ଗୃହର ସୁଶିକ୍ଷିତା ଓ ଉଚ୍ଚ ହୃଦୟା ନାରୀ ଥିଲେ ଏଥିରେ ମଧ୍ୟ କୌଣସି ସଂଶୟ ନାହିଁ । ଏବଂ ସେ ନିଜେ ହିନ୍ଦୁ ଆଚାର ବ୍ୟବହାରର ପକ୍ଷପାତୀ ଥିଲେ ସୁଦ୍ଧା ଏବଂ ସେଥିପାଇଁ ଲାଳିତାପାଳିତା ହୋଇଥିଲେ ସୁଦ୍ଧା ପାଶ୍ଚାତ୍ୟ ଶିକ୍ଷା ଓ କେତେକ ପାଶ୍ଚାତ୍ୟ ଆଚାର ବ୍ୟବହାରର ବିରୋଧବାଦିନୀ ନ ଥିଲେ । ଯେଉଁ ମାତା, ପୁତ୍ରକୁ ବିଦ୍ୟାଶିକ୍ଷା ନିମନ୍ତେ ବିଲାତ ପଠାଇ ପାରେ ଏବଂ ପୁତ୍ରବଧୂକୁ ଓ ନାତୁଣୀକୁ ବିଲାତ ଭ୍ରମଣ ନିମନ୍ତେ ପୁତ୍ର ସହିତ ସମୁଦ୍ରଯାତ୍ରା କରିବାକୁ ବାଧା ଦିଏ ନାହିଁ ସେହି ମାତା ଯେ ପାଶ୍ଚାତ୍ୟ ଶିକ୍ଷା ଏବଂ ସଂସ୍କାର ଏ ଦେଶର ସ୍ତ୍ରୀ ପୁରୁଷମାନଙ୍କର ନିତାନ୍ତ ପ୍ରୟୋଜନ ତାହା ନିଶ୍ଚୟ ହୃଦୟଙ୍ଗମ କରିଥାଏ । ତ୍ରୈଲୋକ୍ୟମୋହିନୀ ନିଜେ ଆପଣାର ଶିକ୍ଷା ଦୀକ୍ଷା ଅନୁସାରେ ଆଦର୍ଶ ହିନ୍ଦୁରମଣୀର ଅନୁକରଣରେ ଗୃହରେ କର୍ତ୍ତୃତ୍ୱ ଚଳାଉଥିଲେ ସତ କିନ୍ତୁ ଅନ୍ଧ ବିଶ୍ୱାସର ବଶବର୍ତ୍ତିନୀ ହୋଇ ପୁତ୍ର ଓ ପୁତ୍ରବଧୂଙ୍କର ଇଚ୍ଛାରେ ବାଧା ଦେଇ ସେମାନଙ୍କର ଅସନ୍ତୋଷର ପାତ୍ରୀ ହୋଇ ନ ଥିଲେ । ବରଂ ସେମାନଙ୍କର ବିବେକ ବୁଦ୍ଧି ଅନୁସାରେ କାର୍ଯ୍ୟ କରିବାକୁ ପ୍ରଶ୍ରୟ ଦେଉଥିଲେ । ମାତ୍ର ସଂଯମଶିକ୍ଷା ତାଙ୍କର ଆଦର୍ଶ ଥିଲା । ମାତାଙ୍କର ଶିକ୍ଷା ପ୍ରଭାବରୁ ବି. ଦେଙ୍କଠାରେ ସିଭିଲିୟାନ୍‌ମାନଙ୍କର ଔଦ୍ଧତ୍ୟ ନ ଥିଲା । ସରୋଜନଳିନୀ ଯେଉଁ ଗୃହରେ ଜନ୍ମଗ୍ରହଣ କରିଥିଲେ ତାହା ଶିକ୍ଷା ଓ ସଂଯମର ଆଗାର । ପରମ୍ପରା ବଂଶଗତ ଶାଳୀନ ଓ ମାଧୁର୍ଯ୍ୟ ଗୁଣ ସରୋଜନଳିନୀଙ୍କଠାରୁ ପ୍ରସରି ଥିଲା ।

ଅନେକ ବିଲାତ ଫେରନ୍ତାଙ୍କ ଘରେ ପରମ୍ପରା ଗତ ଆଚାର ଓ ପର୍ବ (ଯାହା କି ଉନ୍ନତିର ଅନ୍ତରାୟ ନୁହେଁ) ପ୍ରତିପାଳିତ ହୁଏ । ବି.ଦେଙ୍କର ଜନନୀଙ୍କର ପ୍ରଭାବରୁ ସରୋଜନଳିନୀଙ୍କ ପିତୃଗୃହରେ ହିନ୍ଦୁଗୃହର ସେହିପରି କେତେକ ଆଚାର ଓ ପର୍ବ ପ୍ରତିପାଳିତ ହେଉଥିଲା, ଏଣୁ ସରୋଜନଳିନୀ ସେଥିମଧ୍ୟରୁ କେତେକ ରକ୍ଷାଯୋଗ୍ୟ ବୋଲି ମନେ କରୁଥିଲେ; ସେଥିର ଆଭାସ ଆମ୍ଭେମାନେ ତାଙ୍କ ଜୀବନୀରୁ ପାଉଁ ।

ସରୋଜନଳିନୀଙ୍କ ବିଦ୍ୟାଶିକ୍ଷା ଗୃହରେ । ପିତା ତାଙ୍କୁ କୌଣସି ଚାକିରି ପ୍ରତ୍ୟାଶାରେ ଶିକ୍ଷା ଦେଇ ନ ଥିଲେ ଏଣୁ ତାଙ୍କୁ ସ୍କୁଲକୁ ପଠାଉ ନ ଥିଲେ । ବି.ଦେଙ୍କର ଶିକ୍ଷା ଆଦର୍ଶ ଭିନ୍ନ । ସରୋଜନଳିନୀଙ୍କ ନିଜ ଇଚ୍ଛାନୁସାରେ ଶିକ୍ଷା ଦେଇ ସୁଶିକ୍ଷିତା କରି ଉପଯୁକ୍ତ ପାତ୍ରରେ ଅର୍ପଣ କରିବାରେ ତାଙ୍କର ଇଚ୍ଛା ଥିଲା । ତାହାହିଁ କାର୍ଯ୍ୟରେ ପରିଣତ କଲେ । ଭବିଷ୍ୟତରେ ସରୋଜନଳିନୀ ଜଣେ ସିଭିଲିୟାନ୍ ବା ଏ ଦେଶର ବଡ଼ ହାକିମର ସହଧର୍ମିଣୀ ହୋଇପାରିବେ ଏବଂ ସାହାଯ୍ୟକାରିଣୀ ଓ ସହଚାରିଣୀ ହୋଇପାରିବେ ଏହି ଆଶା ମନରେ ରଖି ସରୋଜନଳିନୀଙ୍କି ଘୋଡ଼ାଚଢ଼ା, ଟେନିସ୍, ବ୍ୟାଡ଼ମିଣ୍ଟନ୍ ଖେଳ ପ୍ରଭୃତି ଶିକ୍ଷା ଦେଇଥିଲେ । ଦେଶାଟନରେ ଯେ ଅଭିଜ୍ଞତା ଓ ଶିକ୍ଷା ମିଳେ ତାହା ସରୋଜନଳିନୀ ବାପଘରୁ ପାଇଥିଲେ । ସରୋଜନଳିନୀ ୧୯ ବର୍ଷ କାଳ ପିତାଙ୍କ ଗୃହରେ ଓ ତତ୍ତ୍ୱାବଧାନରେ ଅନ୍ଧବିଶ୍ୱାସ ଓ କୁସଂସ୍କାର ବର୍ଜିତ ସୁଶିକ୍ଷା ଲାଭ କରିଥିଲେ ।

'ଯୋଗ୍ୟଂ ଯୋଗ୍ୟେନ ଯୋଜୟେତ୍' । ଉପଯୁକ୍ତ ବୟସରେ ଉପଯୁକ୍ତ ପାତ୍ରରେ ସର୍ବଗୁଣାନ୍ୱିତା କନ୍ୟାକୁ ଅର୍ପଣ କରି ବି.ଦେ ଦାୟିତ୍ୱମୁକ୍ତ ହେଲେ ।

ନବ୍ୟଭାରତର ନାରୀ ପ୍ରତିଭାକୁ ବି. ଦେ ଗଢ଼ିଥିଲେ । ପାଶ୍ଚାତ୍ୟ ଆଦର୍ଶକୁ ଭାରତରମଣୀ ଛାଞ୍ଚରେ ଗଢ଼ିଥିଲେ କି ପ୍ରାଚ୍ୟ ଆଦର୍ଶକୁ ଇଉରୋପୀୟ ଛାଞ୍ଚରେ ଗଢ଼ିଥିଲେ ଏହା ପାଠକମାନଙ୍କର ବିବେଚନାର ବିଷୟ ।

ସରୋଜନଳିନୀଙ୍କର ସ୍ୱାମୀକୁଳର ଜ୍ଞାତି କୁଟୁମ୍ବଙ୍କର କୌଣସି ପରିଚୟ ଏ ଜୀବନୀରେ ନାହିଁ । ସେମାନଙ୍କର ପରିଚୟର ପ୍ରୟୋଜନ ମଧ ନାହିଁ । ଏ ଜୀବନୀରେ ସରୋଜନଳିନୀଙ୍କର ସ୍ୱାମୀଙ୍କର ବ୍ୟକ୍ତିତ୍ୱ ଓ ମହତ୍ତ୍ୱ ଉଜ୍ଜ୍ୱଳରୂପେ ବ୍ୟକ୍ତ ହୋଇଅଛି ।

ସରୋଜନଳିନୀଙ୍କର ସ୍ୱାମୀ କିଏ ? ସୁଶିକ୍ଷିତ, ସୁସଭ୍ୟ, ସିଭିଲସାର୍ଭିସ୍ ପରୀକ୍ଷୋତ୍ତୀର୍ଣ୍ଣ ବିଲାତରୁ ନବାଗତ ଯୁବକ । ଏ ଦେଶକୁ ଫେରିଲା ଉତ୍ତାରୁ ବିବାହ କଲେ; ତାଙ୍କର ପ୍ରାଣସଙ୍ଗିନୀଙ୍କ ପ୍ରତି ସେ କିପରି ବ୍ୟବହାର କରିବେ ଏବଂ କିପରି ସୁଖସ୍ୱଚ୍ଛନ୍ଦରେ ରଖିଲେ ପତିପତ୍ନୀ ଜୀବନରେ ସୁଖ ଲାଭ କରିବେ ଏହା ଗୁରୁ ସଦୟ ଦତ୍ତ ବିଲାତରୁ ଅଧ୍ୟୟନ କରି ଆସିଥିବାର ଅନୁମାନ ହୁଏ । ଫେରିଆସି ବିବାହ ହେଲେ । ଦାମ୍ପତ୍ୟ ଜୀବନ ଉଭୟେ ଆରମ୍ଭ କଲେ । ଅନ୍ୟର ସାହାଯ୍ୟ ଉପଦେଶ ପ୍ରତି ଅପେକ୍ଷା କରି ନ ଥିଲେ । ନବଦମ୍ପତି ପରସ୍ପର ପ୍ରତି ସୌହାର୍ଦ୍ଦ୍ୟ ଓ ଅଟଳ ବିଶ୍ୱାସ ରଖି ଜୀବନଯାତ୍ରା ଆରମ୍ଭ କଲେ । ଆଚାର ବ୍ୟବହାରରେ ବୈଷମ୍ୟ ନ ଥିଲା । ଗୃହସ୍ଥାଳିରେ ଉଭୟଙ୍କର ଦାୟିତ୍ୱ ସମାନ ରଖିଥିଲେ । କାର୍ଯ୍ୟକ୍ଷେତ୍ରରେ ଯେତେଦୂର ସମ୍ଭବ ଜଣେ ଜଣକର ସାହାଯ୍ୟ କରୁଥିଲେ । ଉଭୟେ ହୃଦୟକୁ ଧରି ରଖିଥିଲେ । ଜଣେ ଜଣକର କାର୍ଯ୍ୟ ଦେଖି ସହସା ଅଧୀର ବା ଅସ୍ଥିର ହେଉ ନ ଥିଲେ । ଉପରୋକ୍ତ ଏବଂ ଏପରି ଆଉ କେତେଟା ବିଷୟ ଅଚ୍ଛେଦ୍ୟ ଦାମ୍ପତ୍ୟ ସୁଖର ମୂଳମନ୍ତ୍ର ସରୋଜନଳିନୀ ଓ ଗୁରୁ ସଦୟ ଦତ୍ତ ତାହା ଅକ୍ଷରେ ଅକ୍ଷରେ ପାଳନ କରିଥିବାର ନିଦର୍ଶନ ଜୀବନୀରୁ ମିଳେ ।

ସରୋଜନଳିନୀ ଅଳ୍ପ କାଳମାତ୍ର ଜୀବିତା ଥିଲେ । ଏହି ଅଳ୍ପ ସମୟ ମଧରେ ଦାମ୍ପତ୍ୟ ପ୍ରେମ ଓ ପତିସେବାର ପରାକାଷ୍ଠା ଦେଖାଇ ଏବଂ ନାରୀ-ଜୀବନର ଆଦର୍ଶ ରଖି ଏବଂ ଗୁରୁ ସଦୟଙ୍କୁ ଶୋକସାଗରରେ ଭସାଇ ଚାଲିଗଲେ । ତାଙ୍କର ଜୀବିତାବସ୍ଥାରେ ଏବଂ ତାଙ୍କର ବିୟୋଗ ପରେ ତାଙ୍କର ନାମ ଓ ଯଶ ବିସ୍ତାର ଭାବରେ ଘୋଷିତ ହୋଇଅଛି, ଏବେ ମଧ ଘୋଷିତ ହେଉଅଛି । ସରୋଜନଳିନୀ ନାରୀମାନଙ୍କର ମଙ୍ଗଳ ନିମନ୍ତେ ମନ ପ୍ରାଣ ଲଗାଇଥିଲେ । ସେଥି ନିମନ୍ତେ ତାଙ୍କ ଜୀବିତାବସ୍ଥାରେ ଏବଂ ଏବେ ମଧ ତାଙ୍କ ନାମରେ କେତେଗୁଡ଼ିଏ ନାରୀ ପ୍ରତିଷ୍ଠାନ ଗଠିତ ହୋଇଅଛି । ସରୋଜନଳିନୀଙ୍କର ଗୁଣ ଗ୍ରାମ ତାଙ୍କ ଜୀବନୀରେ ବିସ୍ତର ଭାବରେ ବର୍ଣ୍ଣିତ ହୋଇଅଛି, ଏଠାରେ ସେ ସବୁର ପୁନରୁକ୍ତି ନିଷ୍ପ୍ରୟୋଜନ । ତେବେ ଏଥିରେ ଗୁରୁସଦୟ ଦତ୍ତଙ୍କର କୃତିତ୍ୱ କେତେ ତାହା ପ୍ରକାଶ ନ କଲେ ଆମ୍ଭମାନଙ୍କୁ ଦାୟିତ୍ୱରୁ ମୁକ୍ତି ମିଳିବ ନାହିଁ ।

ସରୋଜନଳିନୀଙ୍କର ପ୍ରଥମ ୧୯ ବର୍ଷର କଥା ପ୍ରକାଶ କରାଯାଇଅଛି । ଶେଷ ୧୯ ବର୍ଷର ଆଚାର ବ୍ୟବହାର ଓ କର୍ମପଦ୍ଧତି ନିମନ୍ତେ ଗୁରୁ ସଦୟ ଦତ୍ତ ଦାୟୀ । ଏହା ଅସ୍ୱୀକାର କଲେ ସତ୍ୟର ଅପଳାପ ହୁଏ ।

ସରୋଜନଳିନୀ ପିତାଙ୍କ ଘରେ ଯେଉଁ ବିଦ୍ୟା ପଢ଼ିଥିଲେ ତାହା ସ୍ୱାମୀଙ୍କ ଦ୍ୱାରା ପରିମାର୍ଜିତ ଓ ବୃଦ୍ଧି ପ୍ରାପ୍ତ ହେଲା । ମାଜିଷ୍ଟ୍ରେଟ ଗୃହିଣୀର ଯାହା କର୍ତ୍ତବ୍ୟ ତାହା ଗୁରୁ ସଦୟ ଶିଖାଇଲେ । ଉଚ୍ଚପଦସ୍ଥ ରାଜକର୍ମଚାରୀ ଏବଂ ସେମାନଙ୍କୁ ଗୃହିଣୀମାନଙ୍କର ସହିତ ମିଳାମିଶା କରିବା ନିମନ୍ତେ ଯେଉଁ ପାଶ୍ଚାତ୍ୟ ଆଚାର ବ୍ୟବହାର ଏବଂ କାଏଦା ଶିକ୍ଷାର ଆବଶ୍ୟକ ତାହା ଉତ୍ତମରୂପେ ଗୁରୁ ସଦୟ ଶିକ୍ଷା ଦେଇଥିଲେ । ଗୁରୁ ସଦୟ ସରୋଜନଳିନୀଙ୍କି ଜୀବନସଙ୍ଗିନୀ କରି ବିପଦ

ସମ୍ପଦରେ ବରାବର ନିଜ ସଙ୍ଗରେ ରଖିଥିଲେ । ଘୋଡ଼ା ଚଢ଼ିବା ଅଭ୍ୟାସ ବଢ଼ାଇ ଥିଲେ । ହାତୀ ଚଢ଼ି ଶିକାର କରିବାର ଶିକ୍ଷା ଦେଇଥିଲେ । ଏହି ପ୍ରକାରରେ ପରସ୍ପରର ସାହଚର୍ଯ୍ୟ ଦ୍ୱାରା ଦୁହିଁଙ୍କର ସ୍ନେହ, ମମତା, ବିଶ୍ୱାସ ଓ ଧୈର୍ଯ୍ୟ ଉତ୍ତରୋତ୍ତର ବୃଦ୍ଧି ପାଇଥିଲା । ପିତା ଓ ସ୍ୱାମୀଙ୍କର ଯତ୍ନ ଓ ସ୍ନେହବର୍ଦ୍ଧିତା ସରୋଜନଳିନୀଙ୍କୁ ଆମ୍ଭେମାନେ ଜଣେ ଆଦର୍ଶ ନାରୀ ରୂପେ ପାଉଁ ।

ଆମ୍ଭେମାନେ ଚାବୁକମରା ସିଭିଲିୟାନ୍ ଦେଖି ଅଛୁଁ । ଆମ୍ଭେମାନେ ବି.ଦେ. ଏବଂ ଗୁରୁ ସଦୟ ଦତ୍ତଙ୍କୁ ମଧ୍ୟ ଦେଖିଲୁଁ । ମାତାଙ୍କ ଭରଣପୋଷଣ ନିମନ୍ତେ ଯାହା ଦିଆଯାଏ, ତାହାର ନାମ 'ଖୁଦୁମ ଭାଡ଼' ନାମ ଦେଇଥିବା ସିଭିଲିୟାନଙ୍କୁ ମଧ୍ୟ ଦେଖିଅଛୁଁ । ବି.ଦେ. ଏବଂ ଗୁରୁ ସଦୟଙ୍କୁ ମଧ୍ୟ ଦେଖିଲୁଁ । ଚାବୁକ ମରା ଓ ଖୁଦୁମ ଭାଡ଼ ଦେନେବାଲା ସିଭିଲିୟାନ୍‌ମାନେ କି କେବେ ସରୋଜନଳିନୀ ଗଢ଼ିବାର ସମ୍ଭବ ? ନାହିଁ । ଆମ୍ଭେମାନେ ପ୍ରଣିଧାନପୂର୍ବକ ଦେଖିଅଛୁଁ ଯେ ଏ ଦେଶରେ ଶତକଡ଼ା ନବେଜଣ ସରୋଜନଳିନୀ ଗଢ଼ିବା ସମ୍ଭବ ମାତ୍ର ଶତକଡ଼ା ଦଶଜଣ ବି.ଦେ. ଏବଂ ଗୁରୁ ସଦୟ ଦତ୍ତ ଗଢ଼ିବାର ସମ୍ଭବ ନୁହେଁ ।

ଏ ଦେଶରେ ଦୟାର୍ଦ୍ର ହୃଦୟା, ଦାନଶୀଳା, ପରଦୁଃଖକାତରା ନାରୀର ଅଭାବ ନାହିଁ । ମାତ୍ର ସେମାନଙ୍କର ଦୟା ସହାନୁଭୂତି 'ଆହା'ରେ ପର୍ଯ୍ୟବସିତ ହୁଏ । ସେମାନଙ୍କର ଦାନଶୀଳ ହସ୍ତ ଭିକ୍ଷା ଦେବା ଏବଂ ଅଜଣା ଦାନ ଦେବା ଭିନ୍ନ ନାମ ଉପାର୍ଜନ ବିଷୟକ ଦାନ ଆଡ଼କୁ ଦେଉଁରାନ୍ତରାଳରୁ ବିସ୍ତାରିତ ହୋଇପାରେ ନାହିଁ । ଏ ଦେଶର ପୁରୁଷଙ୍କ ଅପେକ୍ଷା ସ୍ତ୍ରୀମାନେ ସଂସ୍କାରର ପକ୍ଷପାତିନୀ । ସେମାନେ କେବଳ ପୁରୁଷର ସାହାଯ୍ୟ ଓ ଉପଦେଶର ଅପେକ୍ଷା କରିଥାନ୍ତି । ପୁରୁଷ ଯେଉଁ ଆଚାର ବ୍ୟବହାରର ପରିବର୍ତ୍ତନ ହିତକର ବୋଲି ବିବେଚନା କରନ୍ତି ସେଥିରେ ସେମାନେ ବାଧା ଦିଅନ୍ତି ନାହିଁ । ସୁତରାଂ ଏ ଦେଶର ଆଦୌ ପୁରୁଷ ସୁଶିକ୍ଷିତ, ସଂସ୍କାରର ଓ ପ୍ରଗତିର ପକ୍ଷପାତୀ ହେଲେ ସ୍ତ୍ରୀ ଓ ପୁରୁଷ ଉଭୟେ ଦେଶର ମୁଖୋଜ୍ଜ୍ୱଳ କରିପାରିବେ । ସ୍ତ୍ରୀ ଅପେକ୍ଷା ପୁରୁଷ ଅଧିକ ଅନ୍ଧବିଶ୍ୱାସୀ, କୁସଂସ୍କାରପୂର୍ଣ୍ଣ ଅହମିକା ଭାବଯୁକ୍ତ ଏହା ଆମ୍ଭେମାନେ ପ୍ରତ୍ୟହ ପ୍ରତ୍ୟକ୍ଷ କରିଥାଉଁ । ପୁରୁଷ ସ୍ତ୍ରୀ ଅପେକ୍ଷା ଚଟୁଳ ଓ ସଂଯମହୀନ, ଚରିତ୍ରହୀନ । ସ୍ତ୍ରୀମାନଙ୍କର ଯାବତୀୟ ଦୋଷ ପୁରୁଷ ହେତୁରୁ ଜନ୍ମ । ପୁରୁଷ ସତ୍ ଓ ସାଧୁ ହେଲେ ସ୍ତ୍ରୀମାନେ କଦାପି ଅସତ୍‌ଚରିତ୍ରା ହେବା ସମ୍ଭବ ନୁହେଁ, ମାତ୍ର ଏହା ପୁରୁଷ ଜାତି ମାନିବାକୁ ରାଜି ନୁହେଁ । ସ୍ଥିର ଚିତ୍ତରେ ଏହା ଭାବିଲେ ଅନାୟାସରେ ବୁଝାଯାଏ । ସ୍ତ୍ରୀ ପୁରୁଷର ଚାରିତ୍ରିକ ଓ ନୈତିକ ବଳର ଅଭାବ କେବଳ ପରସ୍ପର ପ୍ରତି ଅବିଶ୍ୱାସରୁ ଜନ୍ମ ଏହା କହିବା ନିଷ୍ପ୍ରୟୋଜନ ।

ସରୋଜନଳିନୀ ମଧ୍ୟ ଶିକ୍ଷିତା— ଏବେ ସ୍କୁଲ୍ କଲେଜରେ ମଧ୍ୟ ଅନେକ ସ୍ତ୍ରୀ ଶିକ୍ଷା ପ୍ରାପ୍ତ ହେଉଅଛନ୍ତି । ପାଶ୍ଚାତ୍ୟ ଶିକ୍ଷା ପ୍ରଣାଳୀ ଯେପରି ଏ ଦେଶର ପୁରୁଷଙ୍କ ପ୍ରତି ଉପଯୁକ୍ତ ନ ଥିବା ହେତୁ ବର୍ତ୍ତମାନ ବିଶୃଙ୍ଖଳା ଦେଖା ଯାଉଅଛି ।

ପାଶ୍ଚାତ୍ୟ ଧରଣରେ ସ୍ତ୍ରୀ ଶିକ୍ଷାର ଫଳ ମଧ୍ୟ ତାହା ହିଁ ହେବ । ଅନେକ ବିଜ୍ଞ ବ୍ୟକ୍ତି ସ୍ତ୍ରୀ ଶିକ୍ଷାପଦ୍ଧତି ପ୍ରତି ଅମନୋଯୋଗୀ । ବର୍ତ୍ତମାନ ସ୍ତ୍ରୀ ଶିକ୍ଷା ଦ୍ୱାରା ବିଳାସିତା ଏବଂ ଔଦ୍ଧତ୍ୟର ମାତ୍ରା ବଢୁଅଛି । ତଥାକଥିତ ଶିକ୍ଷିତ ଯୁବକ ଯେପରି ଦେଶର ଗଳଗ୍ରହ ହେବାକୁ ବସିଲେଣି ସ୍ତ୍ରୀମାନେ ମଧ୍ୟ ସେହିପରି ହେବେ । ପୁଣି ଏ ଶିକ୍ଷାଦ୍ୱାରା ସ୍ତ୍ରୀମାନେ ନିଜକୁ ପୁରୁଷର ପରାଧୀନା ବୋଲି ଭାବିବାକୁ ଶିଖୁ ଅଛନ୍ତି । ପୁରୁଷ ବି ସ୍ତ୍ରୀର ବଶବର୍ତ୍ତୀ । ପୁରୁଷ ବି ସ୍ତ୍ରୀକୁ ଜୟ କରି ରଖିଅଛନ୍ତି । ଦାସୀ କରି ରଖିଅଛନ୍ତି ଏ ଭାବ ନବ୍ୟଶିକ୍ଷିତ ରମଣୀମାନଙ୍କ ମୁଖରୁ ଓ ଲେଖାରୁ ସମୟ ସମୟରେ ବ୍ୟକ୍ତ ହୁଏ । ଏପରି ଭାବ ଦେଶର ଅମଙ୍ଗଳକର । ଗୃହସ୍ଥାଳିରେ ପୁରୁଷ କରିବ ସ୍ତ୍ରୀର ସାହାଯ୍ୟ ଏବଂ ସ୍ତ୍ରୀ କରିବ ପୁରୁଷର ସାହାଯ୍ୟ । ଏହା ଏକରକମ ପ୍ରାକୃତିକ ନିୟମ ବୋଲିବାକୁ ହେବ । ଏ ନିୟମଭଙ୍ଗ ହେତୁରୁ ପୁରୁଷ ଓ ସ୍ତ୍ରୀ ମଧ୍ୟରେ ବିବାଦ ଓ ଅସ୍ୱାଚ୍ଛନ୍ଦ୍ୟ ଘଟେ । ଏଥିନିମନ୍ତେ ପୁରୁଷର ଦୋଷ ବାରଅଣା ।

ଆମ୍ଭେମାନେ ଅନେକଥର କହିଅଛୁଁ ଯେ ପାଶ୍ଚାତ୍ୟ ରୀତିନୀତି ସମସ୍ତ କ୍ଷେତ୍ରରେ ଏ ଦେଶ ପ୍ରତି ମଙ୍ଗଳଜନକ ନୁହେଁ । ଶିକ୍ଷା ପଦ୍ଧତି ଯାହା ବର୍ତ୍ତମାନ ଚଳୁଅଛି ତାହା ଏ ଦେଶ ପ୍ରତି ଉପଯୁକ୍ତ ନୁହେଁ ବିଶେଷତଃ ସ୍ତ୍ରୀ ଶିକ୍ଷା । ସରୋଜନଳିନୀଙ୍କର ଶିକ୍ଷା ଏ ଦେଶ ପ୍ରତି ଉପଯୁକ୍ତ ବୋଲି ମନେ ହୁଏ । ଜ୍ଞାନର ଉପାର୍ଜନ ପାଶ୍ଚାତ୍ୟଧରଣରେ ଅଥଚ ସଂଯମଶିକ୍ଷା ଗୃହ ଚାଳନା ଏ ଦେଶ ରୀତି ଅନୁସାରେ । ସରୋଜନଳିନୀ ଜୀବନରେ ଏତାଦୃଶ ଶିକ୍ଷା ଦ୍ୱାରା କିପରି କୃତିତ୍ୱ ଲାଭ କରିଯାଇଅଛନ୍ତି ତାହା ଜୀବନୀ ପାଠ କଲେ ଆମ୍ଭେମାନେ ଅନାୟାସରେ ବୁଝିପାରୁଁ । ବି. ଦେଙ୍କର ଶିକ୍ଷାପଦ୍ଧତି ଏବଂ ଗୁରୁ ସଦୟ ଦତ୍ତଙ୍କର ସାହଚର୍ଯ୍ୟ ଓ ସ୍ତ୍ରୀ

ପ୍ରତି ଅଟଳ ବିଶ୍ୱାସ ଏ ଦେଶର ମଙ୍ଗଳଜନକ ବୋଲି ବୋଧ ହୁଏ ।

ଆମ୍ଭେମାନେ ମନେ କରୁଁ ଏ ଦେଶରେ ଶତକଡ଼ା ୨୦ ଜଣ ବି.ଦେ. ଓ ଗୁରୁ ସଦୟ ଦତ୍ତ ଗଢ଼ିପାରିଲେ ଅନେକ ସରୋଜନଳିନୀ ସହଜରେ ମିଳିପାରିବେ ।

ଜୀବନୀ ଲେଖକ ଏହି ପୁସ୍ତକ ପାଠ ନିମନ୍ତେ ମୋ ଭଉଣୀମାନଙ୍କୁ ଅନୁରୋଧ କରିଅଛନ୍ତି । ଏଥିରେ କିଛି ଫଳ ହେବା ସମ୍ଭବ ନୁହେଁ । ଆମ୍ଭେମାନେ ପ୍ରତ୍ୟେକ କନ୍ୟାପିତା ଓ ସୁଶିକ୍ଷିତ ଯୁବକମାନଙ୍କୁ ଏହି ପୁସ୍ତକ ପଢ଼ିବାକୁ ଅନୁରୋଧ କରୁଁ । ଏହି ପୁସ୍ତକ ପାଠଦ୍ୱାରା ଯେବେ କନ୍ୟାପିତାମାନେ ବି.ଦେ ହେବାକୁ ଏବଂ ଯୁବକମାନେ ଗୁରୁ ସଦୟ ହେବାକୁ ଯତ୍ନ କରନ୍ତି ତେବେ ସ୍ତ୍ରୀ ଶିକ୍ଷା ଓ ସ୍ତ୍ରୀମାନଙ୍କର ଅବସ୍ଥା ଅନେକ ପରିମାଣରେ ଉନ୍ନତି ପଥରେ ଅଗ୍ରସର ହେବ ସନ୍ଦେହ ନାହିଁ ।

●

## ଜିଜ୍ଞାସା

ମନୁଷ୍ୟର ଜାଣିବା ଇଚ୍ଛା ଅତି ପ୍ରବଳ । ଏଣୁ ମନୁଷ୍ୟ ଅନ୍ୟ ଜୀବଠାରୁ ଶ୍ରେଷ୍ଠ । ବଳବତୀ ଜାଣିବା ଇଚ୍ଛା ହେବାରୁ ତା'ର ଅଭ୍ୟୁଦୟ ଓ କ୍ରମୋନ୍ନତି । ସ୍ୱାଧୀନତା ଓ ଶିକ୍ଷାଦ୍ୱାରା ଅନୁସନ୍ଧାନ କରିବା ଇଚ୍ଛାରେ ବିକାଶ ହୁଏ । କାଳ ଭେଦରେ ଓ ଦେଶ ଭେଦରେ  ମାନବର ଜାଣିବା ଇଚ୍ଛାର ପରିବର୍ତ୍ତନ ଏବଂ ହ୍ରାସ ବୃଦ୍ଧି ହୁଏ । ଏ ବିଷୟରେ ଅନେକେ ଏକମତ ହେବାକୁ ରାଜି ନୋହିଲେ ମଧ୍ୟ ସାମାନ୍ୟ ଗବେଷଣାଦ୍ୱାରା ଏହାର ସତ୍ୟତା ଉପଲବ୍ଧ ହେବ । ବହୁ ଶତାବ୍ଦୀ ପୂର୍ବରୁ ଭାରତବାସୀ ବିଜ୍ଞ ବ୍ୟକ୍ତିଙ୍କର ଚିନ୍ତାଧାରା ସହିତ ଆଧୁନିକ ବିଜ୍ଞ ବ୍ୟକ୍ତିଙ୍କର ଚିନ୍ତାଧାରାର ତୁଳନା ଏଥିର ପ୍ରକୃଷ୍ଟ ଉଦାହରଣ ।

ଭୂପୃଷ୍ଠରେ ଜାତିବିଶେଷର ଜାତୀୟ ଗତିପଥ ପ୍ରଶସ୍ତ ଓ ଋଜୁ । ଭାରତବାସୀର ଗତିପଥ ସଂକୀର୍ଣ୍ଣ ଓ ବହୁ ଶାଖାରେ ବିଭକ୍ତ । ଏଣୁ ଜିଜ୍ଞାସୁ ପକ୍ଷରେ ପ୍ରମାଦପୂର୍ଣ୍ଣ । ଭାରତବାସୀ କର୍ତ୍ତବ୍ୟ ନିର୍ଦ୍ଧାରଣ ନିମନ୍ତେ ଅକ୍ଷମ ଓ ଲଣ୍ଡଭଣ୍ଡ । ଭାରତବାସୀର ଜୀବନ-ପ୍ରବାହ ମୂଳରେ ଜାତୀୟ ମହତ ପ୍ରେରଣା ନାହିଁ ଏବଂ ତାହାର ଲକ୍ଷ୍ୟ ସ୍ଥିରୀକୃତ ନୁହେଁ । ଏହା ବିସ୍ତୃତ ଭାବରେ ବୁଝାଇବାର ପ୍ରୟୋଜନ ନାହିଁ । ଏହା ଏତେ ସ୍ପଷ୍ଟ ଯେ ସାମାନ୍ୟ ଚିନ୍ତାଦ୍ୱାରା ମଧ୍ୟ ଅନାୟାସରେ ହୃଦୟଙ୍ଗମ କରି ହେବ ।

ଅନ୍ୟ ଦେଶ ଓ ଅନ୍ୟ ଜାତି ତୁଳନାରେ ଭାରତବାସୀ ଜାତୀୟ ପରାଭବ ସ୍ୱୀକାର କଲା କାହିଁକି ? ଏହାହିଁ ଜିଜ୍ଞାସ୍ୟ ଏବଂ ସେଥି ନିମନ୍ତେ ଏହି କ୍ଷୁଦ୍ର ପ୍ରବନ୍ଧର ଅବତାରଣା ।

ଭାରତବାସୀର କର୍ତ୍ତବ୍ୟ ନିର୍ଦ୍ଧାରଣ ନିମନ୍ତେ ପୂର୍ବକାଳରେ ବିଜ୍ଞ ବ୍ୟକ୍ତିମାନେ ଅନେକ ଗ୍ରନ୍ଥ ଲେଖି ଯାଇଅଛନ୍ତି, ଅନେକ ଉପଦେଶ ଦେଇ ଯାଇଅଛନ୍ତି । ସେ ସମସ୍ତ ପୁସ୍ତକ ଆମ୍ଭମାନଙ୍କର ଅନାୟାସଲଭ୍ୟ ଏବଂ ପ୍ରାଚୀନ ଓ ନବ୍ୟ ବିଧି ବ୍ୟବସ୍ଥାର ତୁଳନା ଓ ଆଲୋଚନା ଆମ୍ଭମାନଙ୍କର ଇଚ୍ଛାଧୀନ ।

ହିନ୍ଦୁ ଦର୍ଶନରେ କର୍ମ-ଜିଜ୍ଞାସା, ଧର୍ମ-ଜିଜ୍ଞସା ଓ ବ୍ରହ୍ମ ଜିଜ୍ଞାସାର ବିସ୍ତର ଆଲୋଚନା ହୋଇଅଛି । ବ୍ରହ୍ମ ଜିଜ୍ଞାସା ସମ୍ବନ୍ଧେ ଆପାତତଃ ନୀରବ ରହିବା ଉଚିତ୍ । କର୍ମ ଓ ଧର୍ମର ବ୍ୟାଖ୍ୟା ଏତେ ଜଟିଳ ଯେ ତାହା କ୍ଷୁଦ୍ର ପ୍ରବନ୍ଧରେ ବୁଝାଇବାକୁ ଚେଷ୍ଟା କରିବା ଦୁରାଶା ମାତ୍ର । ତଥାପି କହିବାକୁ ଗଲେ କର୍ମକୁ ତିନି ଭାଗରେ ବିଭକ୍ତ କରାଯାଇଛି—ନିତ୍ୟନୈମିତ୍ତିକ ଓ କାମ୍ୟ । ଏହା ଧର୍ମମୂଳକ ବିଭାଗ । ଭଗବଦ୍‌ଗୀତାର ତୃତୀୟ ଅଧ୍ୟାୟର ନାମାନ୍ତର କର୍ମଯୋଗ । ଏଥିରେ କର୍ମର ପ୍ରକାର ଭେଦ, କର୍ମଦ୍ୱାରା ଐହିକ ପାରତ୍ରିକ କ୍ଷତି ଲାଭ ଇତ୍ୟାଦି ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ଗ୍ରନ୍ଥକର୍ତ୍ତା ଉପନିଷଦ୍ ମତ ସମୂହର ପିଷ୍ଟପେଷଣ କରିଅଛନ୍ତି । ଏ ବୃହତ୍ ଆରମ୍ଭର ଶେଷ ମୀମାଂସା ଏହି ଯେ କର୍ମଦ୍ୱାରା ସ୍ୱର୍ଗ ଲାଭ ହୁଏ, ପୁଣି ସେହି କର୍ମଦ୍ୱାରା ନରକ ଦର୍ଶନ ହୁଏ ଏବଂ ସେହି କର୍ମଦ୍ୱାରା ମନୁଷ୍ୟ ପୁନଃ ପୁନଃ ଧରାଧାମରେ ଜନ୍ମ ଗ୍ରହଣ କରେ । ଏଥିରେ କର୍ତ୍ତବ୍ୟ ନିର୍ଦ୍ଧାରଣ ନିମନ୍ତେ ଗୁରୁ ଉପଦେଶ ହିଁ ପ୍ରଶସ୍ତ । ସର୍ବୋପରି ଭଗବତ୍ ଭକ୍ତି କର୍ମର ମୂଳ ଲକ୍ଷ୍ୟ ବୋଲି ମନୁଷ୍ୟ ମନରେ ଜାଗରିତ ହେବା ଉଚିତ। ଏହା ଦେଖିବାକୁ ଗଲେ କର୍ମ-ଜିଜ୍ଞାସା ଓ ଧର୍ମ-ଜିଜ୍ଞାସା ଉଭୟ ସମ୍ପୃକ୍ତ ।

ଧର୍ମ-ଜିଜ୍ଞାସା ଘେନି ଅନେକ ପୁସ୍ତକ ଲିଖିତ ହୋଇଅଛି । ସ୍ଥୂଳତଃ କହିବାକୁ ଗଲେ ଯେଉଁ କାର୍ଯ୍ୟ କଲେ ପୁରୁଷର ମଙ୍ଗଳ ହୁଏ ତାହାର ନାମ ଧର୍ମ । ଧର୍ମ ଶବ୍ଦର ଅନେକ ଅର୍ଥ ଥିଲେ ମଧ୍ୟ  ମୀମାଂସକଗଣ ଉକ୍ତ ଅର୍ଥରେ ଧର୍ମ ଶବ୍ଦର ତାତ୍ପର୍ଯ୍ୟ ଗ୍ରହଣ କରିଅଛନ୍ତି, ଏବଂ 'ଚୋଦାନା ଲକ୍ଷଣୋଽର୍ଥୋ ଧର୍ମଃ' ଏ ପ୍ରକାର ନିର୍ଦ୍ଦେଶ କରିଅଛନ୍ତି । ଅର୍ଥାତ୍ ଆଚାର୍ଯ୍ୟ ପ୍ରେରିତ ହୋଇ ଯେ ଯାଗାଦି କରାଯାଏ ତାହାକୁ ହିଁ ଧର୍ମ କୁହାଯାଏ । ପାଠକଙ୍କୁ ପ୍ରବୋଧ ଦେବାକୁ ଏବଂ ନିଜ ମତରେ ଲୋକମାନଙ୍କୁ ଦୀକ୍ଷିତ କରିବାକୁ ଭାଷ୍ୟକାରଗଣ

ଅସଂଖ୍ୟ ସୂତ୍ର ଓ ଭାଷ୍ୟ ଲେଖିଥିଲେ ଏବଂ ଗୁରୁଉପଦେଶ ଭିନ୍ନ ଧର୍ମସାଧନା ଯେ ହୋଇ ନ ପାରେ ଏହା ହିଁ ତ ମୂଳଲକ୍ଷ୍ୟ ? ଭାରତବାସୀ ଗୁରୁ ଉପଦେଶ ଭିନ୍ନ କର୍ମ କରି ନ ପାରେ, ଧର୍ମ କରି ନ ପାରେ ।

ଆର୍ଯଂ ଧର୍ମୋପଦେଶଃ ବେଦଶାସ୍ତ୍ରା ବିରୋଧିନା ।
ଯସ୍ତର୍କେନାନୁସନ୍ଧତ୍ତେ ସ ଧର୍ମଂ ବେଦ ନେତରଃ ॥

ଆର୍ଯ୍ୟମାନଙ୍କର ଧର୍ମୋପଦେଶକୁ ବେଦ-ଶାସ୍ତ୍ର-ଅବିରୋଧୀ ତର୍କଦ୍ୱାରା ଯେ ଅନୁସନ୍ଧାନ କରେ, ସେହି କେବଳ ଧର୍ମକୁ ଜାଣିପାରେ; ଅନ୍ୟ ତାହା ଜାଣିପାରେ ନାହିଁ । ଏଥିରୁ ସ୍ପଷ୍ଟ ଜଣାଗଲା ଯେ, ଋଷିମାନେ ଯାହା କହି ଯାଇଅଛନ୍ତି ତାହା ବେଦବିରୋଧୀ ନୁହେଁ । କିମ୍ବା ଯେଉଁ ତର୍କ ବେଦବିରୋଧୀ ନୁହେଁ ସେପରି ତର୍କଦ୍ୱାରା ଋଷିମାନଙ୍କର ଉପଦେଶର ଆଲୋଚନା କରାଯାଇପାରେ । ଭାରତବାସୀର ଗର୍ବର ନିୟାମକ ବେଦ ଓ ଋଷିବାକ୍ୟ । ଏହିଠାରୁ ଭାରତବାସୀର ସ୍ୱାଧୀନ ପ୍ରବୃତ୍ତି ପ୍ରତିହତ ।

ଉତ୍ଥାନୋନ୍ମୁଖ ଗୋଟିଏ ଜାତିର ଏତାଦୃଶ ସଂସ୍କାର ଓ ସ୍ଥିତିଶୀଳତା ଜନ୍ମ ହେଲା କିପରି; ଏହା ଭାବିଲେ ବିସ୍ମିତ ହେବାର କଥା । ଅନ୍ୟାନ୍ୟ ଜାତି ଯେପରି ନିଜର ଧର୍ମ-ଶାସ୍ତ୍ରକୁ ଈଶ୍ୱର ପ୍ରଦତ୍ତ ବୋଲି ଭାବିଲେ, ଭାରତବାସୀ ସେହିପରି ବେଦକୁ ଅପୌରୁଷେୟ ଓ ନିଃଶ୍ୱସିତ ବୋଲି ଭାବିଲେ । ଖ୍ରୀଷ୍ଟିଆନମାନେ ବାଇବେଲ୍ ବଚନକୁ ଯେପରି ସମ୍ମାନ କରନ୍ତି ହିନ୍ଦୁମାନେ ବେଦକୁ ତଦ୍ରୂପ ବା ତତୋଽଧିକ ସମ୍ମାନ କରନ୍ତି । ଖ୍ରୀଷ୍ଟ ଧର୍ମଯାଜକମାନେ ବାଇବେଲ୍ ଅଧ୍ୟୟନ କରିବାର ଓ ଆଲୋଚନା କରିବାର ସୁବିଧା ପାଇଅଛନ୍ତି, ହିନ୍ଦୁମାନେ ବେଦ ଅଧ୍ୟୟନ ସୁବିଧାରୁ ବଞ୍ଚିତ; କେବଳ ଆର୍ଯ୍ୟ ବା ଗୁରୁ ଉପଦେଶ ଅନୁସାରେ ବେଦକୁ ସମ୍ମାନ କରିବାକୁ ଶିକ୍ଷା କରିଅଛନ୍ତି । ଦ୍ୱିତୀୟତଃ ଆର୍ଯ୍ୟ ଋଷି ଓ ଆଚାର୍ଯ୍ୟଗଣ ତ୍ରିକାଳଜ୍ଞ, ତ୍ରିକାଳଦର୍ଶୀ ଓ ଅତୀନ୍ଦ୍ରିୟ-ଗୋଚର ବୋଲି ପରବର୍ତ୍ତୀ ଶାସ୍ତ୍ର ଲେଖକମାନେ ଲେଖିଯାଇଅଛନ୍ତି ଏବଂ ଏଥିରେ ପାଠକଙ୍କର ଅଟଳ ବିଶ୍ୱାସ ଏବଂ ଏହି ଅମୂଳକ ବିଶ୍ୱାସ ହେତୁରୁ ଏ ଜାତିର ଅଧୋଗତି ।

ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ତିନି ଗୋଟି କାଳ । ଭୂତ କାଳ ଅସୀମ, ଭବିଷ୍ୟତ କାଳ ଅସୀମ ବର୍ତ୍ତମାନ କାଳ ଉଭୟଙ୍କର ସନ୍ଧି ସ୍ଥଳ ନଗଣ୍ୟ । ଭୂତ ଭବିଷ୍ୟତ୍ କାଳର ତୁଳନାରେ ଉଭୟର ସନ୍ଧିସ୍ଥଳରେ ବର୍ତ୍ତମାନ କାଳର ଅସ୍ତିତ୍ୱ ରେଖା ବା ବିନ୍ଦୁର ଅସ୍ତିତ୍ୱ ପରି କାଳ୍ପନିକ ବୋଲା ଯାଇପାରେ ।

ପ୍ରତି ମୁହୂର୍ତ୍ତରେ ଭୂତକାଳ ବର୍ତ୍ତମାନକୁ ଆତ୍ମସାତ୍ କରିଅଛି । ତା'ର ଅବ୍ୟବହିତ ନିକଟବର୍ତ୍ତୀ ଭବିଷ୍ୟତ୍କାଳଟିକ ମାତ୍ର ବର୍ତ୍ତମାନ ବୋଲି ପ୍ରତିଭାତ ହେଉଅଛି । ଏହା ମଧ ପ୍ରକାଶ କରାଯାଇପାରେ ଯେ ବର୍ତ୍ତମାନକାଳ ଭବିଷ୍ୟତକୁ ଅନିଶ ଭୂତକାଳରେ ପରିବର୍ତ୍ତନ କରୁଅଛି ।

ତ୍ରିକାଳଜ୍ଞ ଅର୍ଥାତ୍ ଯେଉଁ ବ୍ୟକ୍ତି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍କାଳ ତ୍ରୟର ବୃତ୍ତାନ୍ତ ଅବଗତ । କୌଣସି ଜାତିର କ୍ରୋଡ଼ରେ ଏପରି ବ୍ୟକ୍ତି କେବେ ଜନ୍ମ ଗ୍ରହଣ କରି ସେହି ଜାତିର ମୁଖୋଜ୍ଜ୍ୱଳ କରିଅଛନ୍ତି କି ? ଏହା ଜାଣିବାକୁ ମନ ସ୍ୱଭାବତଃ ଉତ୍କଣ୍ଠାଯୁକ୍ତ ହୁଏ । ଆମ ଦେଶରେ ଅନେକ ତ୍ରିକାଳଜ୍ଞ ଜନ୍ମ ଗ୍ରହଣ କରିଥିଲେ ବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି । ବେଦକର୍ତ୍ତା ପକ୍ଷରେ ଅତୀତ ବୋଲି କିଛି ନ ଥିଲା । ସୃଷ୍ଟି ତାଙ୍କଠାରୁ ଆରମ୍ଭ, ତଥାପି ଏ ବିଶ୍ୱ ବ୍ରହ୍ମାଣ୍ଡ ଏମନ୍ତ କି ସୂର୍ଯ୍ୟ ଓ ପୃଥିବୀର ନିର୍ମାଣ ରହସ୍ୟ ମଧ ସେ ସ୍ପଷ୍ଟାକ୍ଷରରେ ବେଦରେ ପ୍ରକାଶ କରି ନାହାନ୍ତି । ପୃଥିବୀ ବେଦକର୍ତ୍ତାର ବାସସ୍ଥାନ ହୋଇଥିଲା କି ନା ତାହା ବର୍ତ୍ତମାନ ଆଲୋଚନାର ବାହାରେ । ତେବେ ପୃଥିବୀ ଯେ ମନୁଷ୍ୟର ବାସସ୍ଥାନ ଏଥିରେ ତ ସନ୍ଦେହ ନାହିଁ । କିନ୍ତୁ ମନୁଷ୍ୟର ବାସଯୋଗ୍ୟ ହେଲାବେଳେ ପୃଥିବୀର ଅବସ୍ଥା କିପରି ଥିଲା ତାହା ବେଦରେ ଦେଖାଯାଏ ନାହିଁ । ଏଥି ଉତ୍ତାରୁ ବେଦର ମନ୍ତ୍ର-ଦ୍ରଷ୍ଟାମାନେ, ଋଷିମାନେ—ବିଶ୍ୱବ୍ରହ୍ମାଣ୍ଡ କଥା ତେଣେ ଥାଉ—ପୃଥିବୀର ନିର୍ମାଣ କୌଶଳ ସମ୍ବନ୍ଧେ କିଛି ହିଁ ବ୍ୟକ୍ତ କରିବାକୁ କ୍ଷମ ହୋଇ ନାହାନ୍ତି । ବେଦ, ପୁରାଣ, ଉପନିଷଦ୍ ଓ ଦର୍ଶନ ଶାସ୍ତ୍ରରେ ସୃଷ୍ଟି ସମ୍ବନ୍ଧେ ପରସ୍ପର ବିରୋଧ ମତ ମଧ ଦେଖାଯାଏ । ଏହା ଦେଖିଲେ ପୂର୍ବର ଋଷିମାନଙ୍କୁ ତ୍ରିକାଳଜ୍ଞ ଓ ଅତୀନ୍ଦ୍ରିୟଗୋଚର ବୋଲି ବିଶ୍ୱାସ କରାଯାଇପାରିବ କି ?

ପୃଥିବୀ ଜୀବର ବାସଯୋଗ୍ୟ ଅଟେ । ମନୁଷ୍ୟଛଡ଼ା ଏ ଧରା ପୃଷ୍ଠରେ ଅସଂଖ୍ୟ ଜୀବ ଅତୀତକାଳରେ ବାସ କରୁଥିଲେ, ଏବେ ମଧ ବାସ କରୁଅଛନ୍ତି । ଦେଶଭେଦରେ ଜୀବଜନ୍ତୁର ଭେଦ ଦେଖାଯାଏ । ଆଫ୍ରିକା ଓ ଆମେରିକା ମହାଦେଶରେ ଏବଂ ଅଷ୍ଟ୍ରେଲିଆ ଦ୍ୱୀପରେ ବାସ କରୁଥିବା ଜୀବମାନେ ଆକାର ଓ ରୂପରେ ଭାରତୀୟ ଜୀବମାନଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଅତୀତକାଳରେ ବହୁ ଜୀବ ଜୀବନ ସଂଗ୍ରାମରେ ପ୍ରାଣ ଦେଇଅଛନ୍ତି । ଅଦ୍ୟାପି ଧରା ପୃଷ୍ଠରେ ସେମାନଙ୍କର ଅସ୍ଥି, କଙ୍କାଳ ଓ ଚର୍ମ ବିଦ୍ୟମାନ ଅଛି । ସେହି ଅତୀତକାଳର ଜୀବ ସମ୍ବନ୍ଧେ ଆମ୍ଭମାନଙ୍କର ମନ୍ତ୍ରଦ୍ରଷ୍ଟା ଓ ତ୍ରିକାଳଦର୍ଶୀମାନଙ୍କର ଜ୍ଞାନ କେତେଦୂର ତାହା ଜାଣିବା

ନିମନ୍ତେ ବେଦ ଓ ବୈଦିକ ଗ୍ରନ୍ଥମାନଙ୍କର ପୃଷ୍ଠା ଓଲଟାଇବାର ପ୍ରୟୋଜନ । ବେଦର ପଶୁ ତାଲିକାରୁ ଜଣାଯାଏ ଯେ ମନ୍ତ୍ରଦ୍ରଷ୍ଟାମାନଙ୍କୁ କେବଳ ଭାରତବର୍ଷର କେତେ ଗୋଟି ପଶୁର ନାମ ଜଣାଥିଲା । ମନୁଷ୍ୟର ଆବିର୍ଭାବ ପୂର୍ବରୁ ଯେ ଅତିକାୟ ଓ ଅଦ୍ଭୁତ ଜୀବମାନେ ଯଥା :— Brontosaurus, Megalosaurus, Dimoxphodor Maetodon ଇତ୍ୟାଦି ଏ ଧରା ପୃଷ୍ଠରେ ବିଚରଣ କରୁଥିଲେ । ଏଥିର ନାମ ଗନ୍ଧ ବେଦ ପୁରାଣରେ ନାହିଁ । Scolosaurus Cutteri ପ୍ରକାଣ୍ଡ କୀଟଭୋଜୀ ଜୀବର କଙ୍କାଳ ୧୯୧୪ରେ ଆବିଷ୍କୃତ ହୋଇଅଛି । ଜୀବିତାବସ୍ଥାରେ ଏହାର ଓଜନ ଆନୁମାନିକ ୫୪ ମହଣ, ଏହାର ଚର୍ମର କେତେକାଂଶ ମଧ୍ୟ ଅବିକୃତ ଅବସ୍ଥାରେ ମିଳିଅଛି । ପଣ୍ଡିତମାନେ ବିଚାର କରନ୍ତି ଯେ ଏହି ଜୀବ ୭,୫୦,୦୦,୦୦୦ ବର୍ଷ ପୂର୍ବରେ ଜୀବିତ ଥିଲା । ଏପରି ଜୀବର ଉଦରଜ୍ୱାଳା ନିବାରଣ ନିମନ୍ତେ ଅସଂଖ୍ୟ କୀଟର ପ୍ରୟୋଜନ । କାଳକ୍ରମେ କୀଟ ପତଙ୍ଗ ଦୁଷ୍ପ୍ରାପ୍ୟ ହେଲା । ଉପଯୁକ୍ତ ଆହାର ଅଭାବରୁ ଏ ଜୀବ ପ୍ରାଣ ହରାଇଲା । ଏ ଜୀବର ଅସ୍ତିତ୍ୱ ପ୍ରମାଣ କରିବାକୁ କଙ୍କାଳ ମାତ୍ର ଭୂସ୍ତରରେ ବିଦ୍ୟମାନ ଅଛି । ଏ ପ୍ରକାର ଅସଂଖ୍ୟ ଲୁପ୍ତ ଜୀବର ଜୀବନ-ଇତିହାସ ଭୂସ୍ତରରୁ ଅଧ୍ୟୟନ କରିବାର ସୁଯୋଗ ମିଳୁଅଛି । ତ୍ରିକାଳଦର୍ଶୀମାନେ ଅତୀତକାଳର ଏ ଜୀବ ସମ୍ବନ୍ଧେ ଅଜ୍ଞ ଥିଲେ କାହିଁକି ?

ଜ୍ୟୋତିଷିକ ରହସ୍ୟ ବର୍ତ୍ତମାନ ବିବର୍ତ୍ତନବାଦର ବୃହତ୍ ଅଧ୍ୟାୟ ଅଟେ । ନୀଳ ଆକାଶରେ ଏବେ ମଧ୍ୟ ସୂର୍ଯ୍ୟ ଓ ଗ୍ରହର ଭଙ୍ଗା ଗଢ଼ା ଲାଗିଛି । ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ନକ୍ଷତ୍ରମାନଙ୍କର ଆକାର ଆଲୋକ ଗତି ଓ ଦୂରତା ସମ୍ବନ୍ଧେ ତ୍ରିକାଳଜ୍ଞ ଓ ଅତୀନ୍ଦ୍ରିୟ-ଗୋଚରମାନେ କିଛି ହିଁ ଜାଣିଥିବାର ପରିଚୟ ଦେଇପାରି ନାହାଁନ୍ତି । ସେମାନଙ୍କର ଗବେଷଣା ଓ ଜ୍ଞାନ କାଳ୍ପନିକ ସ୍ୱର୍ଗ ନରକ ଏବଂ ପୃଥିବୀରେ ସୀମାବଦ୍ଧ । ଅଥଚ ଏହି ନିକଟତମ ବାସ୍ତବ ପୃଥିବୀ ସମ୍ବନ୍ଧରେ ବିଶେଷ ଗବେଷଣା କରି ତତ୍ତ୍ୱ ନିର୍ଦ୍ଧାରଣ କରିଥିବାର ଜଣାପଡ଼େ ନାହିଁ । ଜଳଭାଗ କି ପୃଥିବୀରୁ ସ୍ୱତନ୍ତ୍ର ? ପୃଥିବୀ କି ମହାସାଗରରେ ଭାସମାନ ? ତଥାପି ତ୍ରିକାଳଜ୍ଞ ଋଷି ବା ବ୍ରହ୍ମା ବରାହରୂପୀ ବିଷ୍ଣୁଙ୍କୁ ସ୍ତୁତି କରୁଅଛନ୍ତି ।

ଦଂଷ୍ଟ୍ରାଗ୍ରକୋଟ୍ୟା ଧରଣୀତ୍ୱୟା ଧୃତା,
ବିରାଜସେ ଭୂଧର ଭୂସଭୂଧରା ।
ଯଥା ବନାନ୍ନିସରତୋ ଦତା ଧୃତା,
ମତଙ୍ଗଜେନେବ ସପତ୍ର ପଦ୍ମିନୀ ।

ସପତ୍ର ପଦ୍ମିନୀକୁ ଦନ୍ତରେ ଧାରଣ କରି ମତଙ୍ଗଜ ଜଳରୁ ବହିର୍ଗତ ହେଲା ବେଳେ ଯେପରି ଦୃଶ୍ୟ ହୁଏ ବରାହ ଦନ୍ତାଗ୍ରରେ ବନପର୍ବତ ସହିତ ଧରାକୁ ଧାରଣ କରି ବାହାରିଲା ବେଳେ ସେହିପରି ଦୃଶ୍ୟ ହୋଇଥିଲା । ଏହା ଶ୍ରୀମଭାଗବତର ବାକ୍ୟ । ବିଶ୍ୱାସ ଚାଲିଛି ଚାଲିବ । ଏହା କିନ୍ତୁ ଉପାଦେୟ କାବ୍ୟ ମାତ୍ର, ଏଥିରେ ତତ୍ତ୍ୱ କିଛି ନାହିଁ ।

ଶାସ୍ତ୍ରରେ ସ୍ୱର୍ଗ ଅଛି, ନରକ ଅଛି । ଅଧିକନ୍ତୁ ବୈକୁଣ୍ଠଧାମ ମଧ୍ୟ ଅଛି । କେହି ଦେଖିଥିବାର କୌଣସି ପ୍ରମାଣ ନାହିଁ; ତଥାପି ବିଶ୍ୱାସ କରିବାକୁ ହେବ । ଯାହା ଋଷିମାନେ କହିଅଛନ୍ତି ତାହା ଏକମାତ୍ର ସତ୍ୟ ଓ ଧର୍ମ ହେଉ । କିନ୍ତୁ ବିଶ୍ୱପତି କି ଏଡ଼େ ଭାରତପ୍ରିୟ ଯେ କେବଳ ଭାରତୀୟ ବୃକ୍ଷଲତା ପଶୁପକ୍ଷୀ ଫୁଲଫଳ ତାଙ୍କର ବୈକୁଣ୍ଠ ଧାମରେ ରହିଅଛନ୍ତି । ବୈଦେଶୀୟ କିଛି ହିଁ ବୈକୁଣ୍ଠ ଧାମରେ ପ୍ରବେଶ ନିଷେଧ ? ଭାଗବତରୁ 'ଗାଇଡ୍ ବୁକ୍‌ରୁ' ଜଣାଯାଏ ବୈକୁଣ୍ଠରେ ପଦ୍ମିନୀ ମଣ୍ଡିତ ପୁଷ୍କରିଣୀ, ପୁଷ୍କରିଣୀରେ କୁମୁଦ, କହ୍ଲାର ଇତ୍ୟାଦି; ତଟରେ ଅଶୋକ, ଚୂତ, ଚମ୍ପକ, ନାଗେଶ୍ୱର, ପୁନ୍ନାଗ, ମଲ୍ଲୀ, ମାଳତୀ, ଭ୍ରମର, ଗୁଞ୍ଜନ, ଝିଙ୍କାରୀ ଝଙ୍କାର, କୋକିଳର କୁହୁତାନରେ ପ୍ରମୋଦୋଦ୍ୟାନ ମୁଖରିତ । ପକ୍ୱ ଆମ୍ର, ପଣସ, କଦଳୀ, ଋଷିମାନଙ୍କର ଚକ୍ଷୁ, ଭର୍ସନା ଓ ଉଦର ତୃପ୍ତିକର । ଗୀତବାଦ୍ୟ ବେଶ୍ୟାନୃତ୍ୟ ହରଦମ ଚାଲିଛି ଏବଂ ଲକ୍ଷ୍ମୀ ବେଚାରୀ ଭାରତୀୟ ଗୃହିଣୀ ପ୍ରଥା ଅବଲମ୍ବନ କରି ବୈକୁଣ୍ଠପତିଙ୍କର ପାଦ ମର୍ଦ୍ଦନରେ ବ୍ୟସ୍ତ । ବୈକୁଣ୍ଠପତି ମଧ୍ୟ ଲକ୍ଷ୍ମୀଙ୍କଦ୍ୱାରା ସ୍ୱପାଦ ମର୍ଦ୍ଦନ କରାଇ ଦୈନିକ ପରିଶ୍ରମଜନିତ ଶାରୀରିକ ପୀଡ଼ାରୁ ଅବ୍ୟାହତି ଲଭୁ ଅଛନ୍ତି । ବୈକୁଣ୍ଠରେ ବିଷ୍ଣୁଙ୍କ ପାଦସ୍ପର୍ଶ କରିବାର ଯୋଗ୍ୟତା କେହି ଅର୍ଜନ କରି ନାହିଁ । ସୁତରାଂ କେବଳ ପାଦ ମର୍ଦ୍ଦନ କର୍ତ୍ତବ୍ୟ କିମ୍ବା ଚାକିରି ଲକ୍ଷ୍ମୀଙ୍କର । ଏ କଥା ଦେଖି ଋଷିବାକ୍ୟ ସତ୍ୟ ଓ ଧର୍ମ୍ମ ବୋଲି ବିଶ୍ୱାସ କରିବା ବଡ଼ କଠିଣ; ଘୋର ସାଧନାର ଦରକାର । ତ୍ରିକାଳ ମଧ୍ୟରୁ ଭୂତ କାଳର ପରୀକ୍ଷା କିଞ୍ଚିତ୍ କରାଗଲା । ସଙ୍ଗେ ସଙ୍ଗେ ବର୍ତ୍ତମାନ ମଧ୍ୟ ଗଲା । ତ୍ରିକାଳଜ୍ଞମାନଙ୍କର ଭବିଷ୍ୟତ୍ ଜ୍ଞାନ ସମ୍ବନ୍ଧେ ସାମାନ୍ୟ ଆଲୋଚନା କରାଯାଉ ।

ପଞ୍ଜିକା ଅନୁସାରେ କଳିକାଳର ଭୋଗ ବହୁ ବର୍ଷ । କୃଷ୍ଣ, ବ୍ୟାସ, ପରାଶର, ଭୃଗୁ ପ୍ରଭୃତିଙ୍କ ପ୍ରତି କଳିଯୁଗଟା ଭବିଷ୍ୟତ କାଳର ଅନ୍ତର୍ଭୂତ । ଏହି ମହାପୁରୁଷମାନେ ଏତାବତ୍ କାଳ ମଧ୍ୟରେ ଏ ପବିତ୍ର ଭାରତ ଭୂମିରେ ଯାହା ଘଟିବ ତାହା କଳ୍ପନା କରି ପାରିଥିଲେ କି ?

**ଭୃଗୁପ୍ରଣୀତ ଧର୍ମଶାସ୍ତ୍ର—** ଯାହାର ନାମ ମାନବ ...ା ମନୁ—ତାହାଦ୍ୱାରା ଭାରତବାସୀର ଜୀବନଯାତ୍ରା ...ନ୍ତିତ ବୋଇଲେ ଅତ୍ୟୁକ୍ତି ନୁହେଁ । ମନୁ ବା ଭୃଗୁ ଭବିଷ୍ୟତ ...ାନ **ସ୍ପଷ୍ଟରୂପେ** ବୁଝିପାରି ଶାସ୍ତ୍ର ଲେଖିଥିବାର ପ୍ରମାଣ ...। ଅଛନ୍ତି କି ? ଭବିଷ୍ୟତ କାଳ ତ ଅସୀମ, ତହିଁ ମଧ୍ୟରୁ ଏହି କେତେ ହଜାର ବର୍ଷ ଭିତରେ ତାଙ୍କର ବିଧିବ୍ୟବସ୍ଥା ପାଳନକର୍ତ୍ତା ଭାରତ ସନ୍ତାନମାନଙ୍କର ଯେ ଏ ଦୁର୍ଦ୍ଦଶା ହେବ ତାହା ସେ ବୁଝିପାରିବେ ନାହିଁ କାହିଁକି ? ତାଙ୍କର ବର୍ଣ୍ଣବିଭାଗ ରହିଲା ନାହିଁ, ତାଙ୍କର ବର୍ଣ୍ଣାଶ୍ରମ ବିଭାଗ ରହିଲା ନାହିଁ, ତାଙ୍କର ଅନୁଶାସନ ମାନିଲେ ନାହିଁ ଧନୀ, ରାଜା ଓ ବ୍ରାହ୍ମଣ— ଯତି ହେଲା ଅଧସ୍ତନ ଜାତି ସମୂହର । ତ୍ରିକାଳଜ୍ଞଦର୍ଶିତାର ପରିଚୟ କି ଏହି ?

ଭଗବତ୍‌ଗୀତା ଯେ ବ୍ୟାସରଚିତ ନୁହେଁ ଏହା ଠିକ୍ । ଗୀତାର ଶ୍ଳୋକଗୁଡ଼ିକ ଯେ କୃଷ୍ଣାର୍ଜୁନଙ୍କର ସଠିକ୍ କଥୋପକଥନ (Verbatim) ନୁହେଁ ଏହା ମଧ ଠିକ୍ । ଗୀତାରଚକ କୃଷ୍ଣାର୍ଜୁନ ମୁଖରେ ଆପଣାର ମତ ବ୍ୟକ୍ତ କରାଇ ଅଛନ୍ତି ମାତ୍ର । ସେ ଯାହା ହେଉ କୃଷ୍ଣ ଯେ ଅର୍ଜୁନଙ୍କୁ ଯୁଦ୍ଧ କରିବାକୁ ପ୍ରବୃତ୍ତି ଦେଇ କୁରୁକ୍ଷେତ୍ରରେ ମହାଯୁଦ୍ଧର ଅନୁଷ୍ଠାନ କଲେ, ତାହାର ପ୍ରତିଷ୍ଠା କେଉଁଠାରେ ? ଭାରତବାସୀ ଏହି ମହାହବର କେଉଁ ସୁଫଳ ପାଇଲେ ? ଭଗବତ୍‌ଭକ୍ତି ଓ ଗୁରୁଭକ୍ତିରେ କ'ଣ ଏହି ମହାଯୁଦ୍ଧର ପ୍ରତିଷ୍ଠା ? ଯୁଦ୍ଧ ଆରମ୍ଭ ହେଲା, ଯୁଦ୍ଧ ଶେଷ ହେଲା । ମହାଭାରତ ମହାକାବ୍ୟ ଲିଖିତ ହେଲା । ଲୋକେ ବିଶ୍ୱାସ କଲେ, ଯାହା ଋଷିମାନେ କହି ଅଛନ୍ତି ତାହା ସତ୍ୟ ଓ ଧର୍ମ ।

କୃଷ୍ଣ କହିଲେ ମୁଁ ଯେବେ କର୍ମ ନ କରେଁ 'ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ' । ଭାରତର ପୁଅମାନଙ୍କ ନିମନ୍ତେ କୃଷ୍ଣ କେଉଁ କର୍ମ ପନ୍ଥା (ଯେଉଁ ପନ୍ଥାଦ୍ୱାରା ଜାତି ଜୀବନ ସଂଗ୍ରାମରେ ଜୟୀ ହୁଏ) ଥୋଇଗଲେ ? ଜଣା ଯାଉ ନାହିଁ । ତାହାଛଡ଼ା ଭବିଷ୍ୟତ୍ ଭାରତ ସନ୍ତାନମାନଙ୍କର ମତି ଗତିର ଆଭ୍ୟନ୍ତରିକ ଆଲୋଚନା କୃଷ୍ଣ ତ କରିପାରି ନ ଥିଲେ । ଏ ଜାତି ତାଙ୍କର ପ୍ରଥାନୁବର୍ତ୍ତୀ ହେବେ କ'ଣ ତାଙ୍କୁ କାଳ୍ପନିକ ରାଧା ପ୍ରେମରେ ଲଟପଟ କରାଇଦେଲେ । କୃଷ୍ଣ ଯେବେ ତାଙ୍କର ନିକଟ ଭବିଷ୍ୟତର ଏ କଥା ବୁଝି ପାରିଲେ ନାହିଁ, ତେବେ ସେ ଭାରତର କି ଭାଗ୍ୟ ବିଧାତା ?

ମୋର ଏ ପ୍ରବନ୍ଧ ଲେଖିବାର ଉଦ୍ଦେଶ୍ୟ ଯେ ପ୍ରାଚୀନ ଶାସ୍ତ୍ରର ନିନ୍ଦା ଏବଂ ମହାଜନ ନିନ୍ଦା, ତାହା ନୁହେଁ । ତେବେ ଏହା ସତ୍ୟ ଯେ ଏ ଦେଶରେ କୌଣସି ତ୍ରିକାଳଜ୍ଞ କେବେ ଜନ୍ମ ହୋଇ ନ ଥିଲେ । ଅତୀନ୍ଦ୍ରିୟଗୋଚର ମଧ କେହି ନ ଥିଲେ । ଜ୍ଞାନବାନ୍, ବୁଦ୍ଧିମାନ୍, ପଣ୍ଡିତ, କବି, ମନୀଷୀ ଅନେକେ ଏକ ଦେଶରେ ଜନ୍ମଗ୍ରହଣ କରି ଏ ଦେଶର ମୁଖୋଜ୍ଜ୍ୱଳ କରିଥିଲେ ମାତ୍ର । ସେମାନଙ୍କ ମଧ୍ୟରୁ କେହି ତ୍ରିକାଳଜ୍ଞ ବା ଅତୀନ୍ଦ୍ରିୟ-ଗୋଚର ନ ଥିଲେ ।

ଋଷି ବାକ୍ୟ ସତ୍ୟ ଓ ଧର୍ମ ଏହା ଏ ଜାତିର ଉନ୍ନତି ପଥର ଅନ୍ତରାୟ । ଯାଗଯଜ୍ଞ, ତପସ୍ୟା ଓ ସନ୍ନ୍ୟାସୀଦ୍ୱାରା ବ୍ୟକ୍ତିବିଶେଷର ଆଧ୍ୟାତ୍ମିକ ଉନ୍ନତି ବା କଳ୍ପିତ ସ୍ୱର୍ଗ-ଗତି ହୋଇପାରେ ମାତ୍ର ଏଥିରେ ଜନସାଧାରଣର ଉପକାର ନାହିଁ । ଶାସ୍ତ୍ରବିହିତ ଉପରୋକ୍ତ କର୍ମ ସ୍ୱାର୍ଥଶୂନ୍ୟ ମଧ ନୁହେଁ । ଶାସ୍ତ୍ରକର୍ତ୍ତୃକ ଏହି ପନ୍ଥାରେ ଲୋକେ ପ୍ରେରଣା ପାଇ ସାଂସାରିକ କର୍ତ୍ତବ୍ୟ କର୍ମରେ ଅଳ୍ପ ମନୋନିବେଶ କଲେ; ସୁତରାଂ ଦେଶର ଅବନତି । ତନ୍ନ ତନ୍ନ କରି ଏହା ଲେଖିବାକୁ ଗଲେ ଏ ବିଷୟ ଗୋଟାଏ ବୃହତ୍ ପୁସ୍ତକରେ ମଧ ଶେଷ ହେବ ନାହିଁ ।

ମୋର ମୁଖ୍ୟ ଉଦ୍ଦେଶ୍ୟ ଜିଜ୍ଞାସା । ହଜାର ହଜାର ବର୍ଷ ଅତିବାହିତ ହେଲା, ହିନ୍ଦୁ ସେହି ପନ୍ଥାରେ ଚାଲିଛନ୍ତି । ନୂତନ ପନ୍ଥା ଆବିଷ୍କାରର ବାସନା କାହାରି ନାହିଁ । ଏ ବିଂଶଶତାବ୍ଦୀରେ ମଧ ତହିଁର ଇଙ୍ଗିତ ଦୃଷ୍ଟିଗୋଚର ହୁଏ ନାହିଁ । ଦେଶ ପରଶାସିତ; ଏହା ବୋଲି କ'ଣ ଆତ୍ମଶାସନ, ସମାଜଶାସନ ଭାରତବାସୀ ସ୍ୱେଚ୍ଛାରେ କରିବାରେ ବାଧା ଅଛି ? ପୂର୍ବ ଋଷିମାନେ କାଳୋଚିତ ବିଧିବ୍ୟବସ୍ଥା କରିଥିଲେ । ତାଙ୍କୁ ଯାହା ଭଲ ବର୍ତ୍ତମାନ ଆମ ପକ୍ଷରେ ମଧ ତାହା ଭୁଲ୍ ବୋଲି କହିବା ମୂଢ଼ତା ଭିନ୍ନ ଆଉ କ'ଣ ବୋଲାଯାଇପାରେ । ମନୁ ପରାଶର କି କେବଳ ନିର୍ଦ୍ଧନ, ମୂର୍ଖ ଓ ବ୍ରାହ୍ମଣ କ୍ଷତ୍ରିୟେତର ଜାତିଙ୍କପାଇଁ ରଚିତ ? ବିଂଶ ଶତାବ୍ଦୀର ଉଚ୍ଚମାନେ ଓ ଉଚ୍ଚଶିକ୍ଷିତମାନେ ବର୍ଜିତ ବିଧିର ସୁଫଳ ଭୋଗ କରନ୍ତି । ଅଶିକ୍ଷିତମାନେ ନତମସ୍ତକରେ ଦଣ୍ଡ ସ୍ୱୀକାର କରନ୍ତି ।

ଋଷି ବଚନ ସତ୍ୟ ଓ ଧର୍ମ— ଏହା ଅକାଟ୍ୟ ସତ୍ୟ ବୋଲି ଶିକ୍ଷିତମାନଙ୍କର ବିଶ୍ୱାସ ନାହିଁ କିନ୍ତୁ ତାହା ପ୍ରକାଶ କରିବାକୁ କାହାରି ସାହସ ନାହିଁ । ଯାହାଅଛି ତାହା ଥାଉ— ଏ ବିଶ୍ୱାସ ଏ ଦେଶବାସୀ କେବେ ତ୍ୟାଗ କରିବେ ? ମୂର୍ଖମାନେ ସର୍ବଦା ମୂର୍ଖ ହୋଇଥାଉନ୍ତୁ ଏ ନୀତି ଗୀତା କହିଯାଇଅଛନ୍ତି ।

ନ ଭେଦବୁଦ୍ଧି ଜନୟେଦଜ୍ଞାନଂ କର୍ମସଙ୍ଗିନାଂ ।
ଅଜ୍ଞାନକୁ ଜ୍ଞାନ ଦେଲେ ସ୍ୱାର୍ଥରେ ବାଧା ଘଟିବ ।

ଏ ଜିଜ୍ଞାସାର କେହି ମୀମାଂସା କରିବେ କି ? ନା, ଲକ୍ଷ୍ୟଭ୍ରଷ୍ଟ ହୋଇ ଚାଲିଥିବା ?

●

## କୁଶଳେଶ୍ୱର କାର୍ତ୍ତିକେୟ

ପ୍ରାୟ ଅର୍ଦ୍ଧଶତାବ୍ଦୀ ପୂର୍ବର କଥା । ଶୁଣିଥିଲି ଯେ, କୁଶଳେଶ୍ୱର ମହାଦେବ ପ୍ରତ୍ୟକ୍ଷ ଫଳଦାତା, ବରଦାତା; ଏହାଙ୍କର ତୁଳନା ନାହିଁ । କେନ୍ଦୁଝର ରାଜ୍ୟରେ ଏହାଙ୍କର ଅବସ୍ଥାନ । ଜନଶ୍ରୁତିରୁ ମୁଁ ଗୋଟାଏ କୁଶଳେଶ୍ୱରର ମାନସଚିତ୍ର ବାଲ୍ୟକାଳରୁ ଅଙ୍କନ କରିଥିଲି । ଦୁର୍ଗମ ଅରଣ୍ୟମଧ୍ୟସ୍ଥ ଗିରିବେଷ୍ଟିତ କ୍ଷୁଦ୍ର ଉପତ୍ୟକା, କଳନାଦିନୀ, ଚିରପ୍ରବାହମାନ ନିର୍ଝରିଣୀ କୂଳରେ ନାଗେଶ୍ୱର ଅଶୋକ ଏବଂ ଭ୍ରମରମାରୀ ବୃକ୍ଷ । ଉପତ୍ୟକାର ନିଭୃତ ସ୍ଥାନରେ ଶିବଙ୍କର ମନ୍ଦିର ।

କୁଶଳେଶ୍ୱରଙ୍କ ପ୍ରସାଦରୁ କୁଷ୍ଠରୋଗ ଆରୋଗ୍ୟ ହୁଏ ବୋଲି ଶୁଣିଥିଲି । ଭ୍ରମରମାରୀ ବୃକ୍ଷ ମଧ କୁଷ୍ଠରୋଗର ଅବ୍ୟର୍ଥ ମହୌଷଧି ବୋଲି ପ୍ରବାଦ ଅଛି । ଶିବପ୍ରସାଦରୁ ହେଉ ବା ଭ୍ରମରମାରୀ ବୃକ୍ଷ ପ୍ରସାଦରୁ ହେଉ କୁଶଳେଶ୍ୱରକୁ ଗଲେ କୁଷ୍ଠରୋଗ ଆରୋଗ୍ୟ ହୁଏ, ଏ ବିଶ୍ୱାସ ମଧ ଏ ଅଞ୍ଚଳର ଅନେକଙ୍କର ହୃଦୟରେ ବଦ୍ଧମୂଳ ଥିଲା । କେବଳ ଦୁର୍ଗମ ଅରଣ୍ୟ ଓ ଦୁରାରୋହ ପର୍ବତ କୁଷ୍ଠରୋଗୀଙ୍କର ନିରାମୟ ନିମନ୍ତେ ଏକମାତ୍ର ଅନ୍ତରାୟ ଏ ଧାରଣା ମଧ ଥିଲା । ଅର୍ଦ୍ଧଶତାବ୍ଦୀର କଥା ବିସ୍ମୃତି ଗର୍ଭରେ ଲୀନ ହୋଇଥିଲା ।

ଶ୍ରୀମାନ୍ ତାଳଚେର ରାଜା ମହୋଦୟ ସୁକିନ୍ଦା ରାଜ୍ୟରେ ହାତୀ ଧରିବାର ଆୟୋଜନ କରିଥିଲେ । ତାଙ୍କର ଆନୁକୂଲ୍ୟରୁ ହାତୀଧରା ଦେଖିବାକୁ ଗତମାସ ଛଅ ତାରିଖରେ ସୁକିନ୍ଦା ରାଜ୍ୟର ଚମ୍ପାଝରରେ ଉପସ୍ଥିତ ହେଲି । ସେତେବେଳକୁ ହାତୀଦଳ ସୁକିନ୍ଦା ରାଜ୍ୟ ତ୍ୟାଗ କଲେଣି । ତଥାପି ହାତୀମାନେ ଫେରିପାରନ୍ତି, ଏହି ଆଶାରେ ଏକ ସପ୍ତାହକାଳ କେତେଜଣ କର୍ମଚାରୀଙ୍କ ସହିତ ମୁଁ ଚମ୍ପାଝରରେ ଅପେକ୍ଷା କଲି । ଜଣକଠାରୁ ଶୁଣିପାରିଲି ଯେ, ଚମ୍ପାଝରଠାରୁ କୁଶଳେଶ୍ୱର ମାତ୍ର ବାରମାଇଲ୍ ବାଟ । ଏହା କୁଶଳେଶ୍ୱର ଦେଖିବାର ବଡ଼ ସୁଯୋଗ ବୋଲି ମନେକଲି । ପ୍ରାତଃକାଳର ନିତ୍ୟକ୍ରିୟା ସମାପନ କରି କୁଶଳେଶ୍ୱର ଅଭିମୁଖରେ ଚାଲିଲି । ଚମ୍ପା ପର୍ବତର ପାଦଦେଶ ତ୍ୟାଗ କରି ଯେତିକି କୁଶଳେଶ୍ୱର ଆଡ଼କୁ ଅଗ୍ରସର ହେଲି, ବାଲ୍ୟକାଳର ମାନସଚିତ୍ର ସେତିକି ଉଭେଇଯିବାକୁ ଆରମ୍ଭ କଲା । ଦୁର୍ଗମ ଘନ ଅରଣ୍ୟ, ଦୁରାରୋହ ପର୍ବତ କ୍ରମେ ଧାନ୍ୟକ୍ଷେତ୍ର ଓ ସମତଳ ଭୂମିରେ ପରିଣତ ହେଲା । ଏ କ'ଣ ? ବାଲ୍ୟକାଳରେ ଶୁଣିବା ଏବଂ ବର୍ତ୍ତମାନ ଦେଖିବା ମଧରେ ଏତେ ପ୍ରଭେଦ ? ମୋଟ କଥା, କୁଶଳେଶ୍ୱର ମୋଗଲବନ୍ଦିର ସମତଳ ଭୂମିରେ । ଏଠାରେ ନେତ୍ରପ୍ରୀତିକର ଆରଣ୍ୟ ଶୋଭାସମ୍ପଦ କିଛି ନାହିଁ । ପ୍ରାୟ ଅର୍ଦ୍ଧ ପଥରେ ମାଣତ୍ରି ଗ୍ରାମର ପୂର୍ବରେ ଏକମାଇଲ୍ ଦୂରରେ ଦୁଇ ଗୋଟି ଭଗ୍ନ ମୂର୍ତ୍ତି ଦେଖିଲି । ଗୋଟିଏ ଲକ୍ଷ୍ମୀ ମୂର୍ତ୍ତି, ଅନ୍ୟଟି ବିଷ୍ଣୁ ମୂର୍ତ୍ତି । ମୂର୍ତ୍ତି ଯୋଡ଼ିକ ସୁଦକ୍ଷ ବିନ୍ଧାଣିଦ୍ୱାରା ନିର୍ମିତ ବୋଲି ଅନୁମାନ ହେଲା । ମାତ୍ର ସୌନ୍ଦର୍ଯ୍ୟ ଉପଲବ୍ଧ ନିମନ୍ତେ ମୂର୍ତ୍ତି ଯୋଡ଼ିକ ପୂର୍ଣ୍ଣାଙ୍ଗ ନୁହନ୍ତି । ଲକ୍ଷ୍ମୀମୂର୍ତ୍ତି ବକ୍ଷସ୍ଥଳରୁ ଦ୍ୱିଖଣ୍ଡିତ, ବିଷ୍ଣୁଙ୍କର ମସ୍ତକ ଭଗ୍ନ । ଭଗ୍ନ ମୂର୍ତ୍ତି ପୂଜା ପାଉ ନାହାନ୍ତି । କୌଣସି ମିଉଜିୟମକୁ ଆଣିଲେ ବୋଧହୁଏ କାହାରି ଆପତ୍ତି ନାହିଁ । ଏ ମୂର୍ତ୍ତି ଯୋଡ଼ିକ ଏ ସ୍ଥାନକୁ ଆସିଲେ କିପରି ? ଜଣେ ଗୌଡ଼ ପିଲାକୁ ନିକଟରେ ଦେଖି ପଚାରିଲି । ସେ କହିଲା ଯେ, ଏ ମୂର୍ତ୍ତି ଯୋଡ଼ିକ ଜଣେ ମୁସଲ୍‌ମାନ ଏଠାକୁ ଆଣି ଗୋଟାଏ ମନ୍ଦିର ନିର୍ମାଣ କରି ରଖିବାର ବାସନା କରିଥିଲା ଏବଂ ନିକଟରେ ଦୁଇ ଗୋଟା ପୋଖରୀ ନିଜ ନାମରେ ଓ ତା'ର ସ୍ତ୍ରୀ ନାମରେ ଖନନ କରାଇଥିଲା । ପୋଖରୀ ଗୋଟିକର ନାମ କଇଁ, ଅପରଟିର ନାମ ଦୀଘ । ମନ୍ଦିର ନିର୍ମାଣ ବେଳେ ମୁସଲମାନର ସମସ୍ତେ ମୃତ ହେବାରୁ ସେ ରାଗାନ୍ୱିତ ହୋଇ ମୂର୍ତ୍ତିଯୋଡ଼ିକ ଭାଙ୍ଗିଦେଲା ଏବଂ ଆଉ କେତୋଟି ମୂର୍ତ୍ତି ନେଇ ପୋଖରୀରେ ପକାଇଦେଲା । ଗଉଡ଼ପିଲା ପୋଖରୀ ଯୋଡ଼ିକ ଏବଂ ଦେଉଳ ଡିହ ଦେଖାଇଦେଲା । ଗୋପାଳ ନନ୍ଦନର କ୍ଷୁଦ୍ର ଉପନ୍ୟାସଟି ସମ୍ପୂର୍ଣ୍ଣ ବିଶ୍ୱାସଯୋଗ୍ୟ ବୋଲି କୁହାଯାଇ ନ ପାରେ । ତେବେ ମୂର୍ତ୍ତି ଯୋଡ଼ିକ ଯେ କୌଣସି ମୁସଲମାନଦ୍ୱାରା ବିକଳାଙ୍ଗ, ବିକୃତ ହୋଇଅଛନ୍ତି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

କୁଶଳେଶ୍ୱର ମନ୍ଦିର କ୍ଷୁଦ୍ର; ଦର୍ଶନଯୋଗ୍ୟ ସ୍ଥାପତ୍ୟ କିଛି ନାହିଁ । ମହାଦେବ ସ୍ୱୟମ୍ଭୂଲିଙ୍ଗ ବୋଲି ବ୍ରାହ୍ମଣମାନେ କହିଲେ । ଲିଙ୍ଗଟି ଅର୍ଦ୍ଧ-ଗୋଲାକାର, ବିନ୍ଧାଣି ଛେଣି, ହାତୁଡ଼ି ଲଗାଇଥିବା ଅସମ୍ଭବ ନୁହେଁ । ପାର୍ଶ୍ୱଦେବ ମଧରେ ଗଣେଶ, ଦୁର୍ଗା, କାର୍ତ୍ତିକେୟ, ଭୈରବ । ଗଣେଶ ଓ ଦୁର୍ଗା ମୂର୍ତ୍ତି ସର୍ବସାଧାରଣ; ମାତ୍ର ଭୈରବ ଓ କାର୍ତ୍ତିକେୟ ମୂର୍ତ୍ତିରେ ବିଶେଷତ୍ୱ ଦେଖାଗଲା ।

ମୋଗଲବନ୍ଦି ଓ ମୋଗଲବନ୍ଦି ନିକଟସ୍ଥ ଗଡ଼ଜାତମାନଙ୍କରେ ଏକଗୋଡ଼ିଆ ଭୈରବର ଆଧିପତ୍ୟ ଅଛି । ତାଳଚେର ରାଜପ୍ରାସାଦରେ ଅନେକ ଏକଗୋଡ଼ିଆ ଭୈରବର ଚିତ୍ର ଦେଖିଥିଲି । କୁଶଳେଶ୍ୱରରେ ଏକଗୋଡ଼ିଆ ଭୈରବର ପାଷାଣ ମୂର୍ତ୍ତି ଦେଖିପାରିଲି ।

ଭାଦ୍ରବସ୍ୟାସିତେ ପକ୍ଷେ ପଞ୍ଚମ୍ୟାଂ ରାତ୍ରିଯୋଗତଃ
ଭୈରବଂ ପୂଜୟେଦ୍ୱାରି କପାଟସ୍ଥ ସୁରଞ୍ଜିତଂ ।

ଏହା ଏକଗୋଡ଼ିଆ ଭୈରବର ନାମ ମଧ ଘଣ୍ଟାକର୍ଣ୍ଣ । ଏକଗୋଡ଼ିଆ ନାମାନୁସାରେ ଗୋଟିଏ ଗୋଡ଼ ମାତ୍ର ଅଛି ସତ; ମାତ୍ର ନାମାନୁସାରେ କର୍ଣ୍ଣଟା ଘଣ୍ଟା ସଦୃଶ ନୁହେଁ । ଏହି ଘଣ୍ଟାକର୍ଣ୍ଣ ପରା ସର୍ବବ୍ୟାଧି ନିବାରକ, ସର୍ବୋପଦ୍ରବ ନିବାରକ ଏବଂ ମନ୍ଦିର ରକ୍ଷକ । ଏ ମୂର୍ତ୍ତିଙ୍କର ଉତ୍ପତ୍ତି ଓ କରାମତି ସମ୍ବନ୍ଧରେ ପରେ ବିଚାର୍ଯ୍ୟ । ଆମ ଅଞ୍ଚଳରେ ଏହାଙ୍କର ଆଧିପତ୍ୟ ଆଦୌ ନାହିଁ । ଲୋକେ ଏ ଭୈରବଙ୍କର ନାମ ମଧ ଜାଣନ୍ତି ନାହିଁ ।

କୁଶଳେଶ୍ୱରର କାର୍ତ୍ତିକେୟ— ଏପରି ମୂର୍ତ୍ତି ମୁଁ ଅନ୍ୟ କୌଣସିଠାରେ ଦେଖିଥିବାର ସ୍ମରଣ ହେଉ ନାହିଁ । କାର୍ତ୍ତିକେୟଙ୍କର ସର୍ବସାଧାରଣ ଧ୍ୟାନ—

କାର୍ତ୍ତିକେୟଂ ମହାଭାଗଂ ମୟୂରୋପରି ସଂସ୍ଥିତଂ
ତପ୍ତକାଞ୍ଚନ ବର୍ଣ୍ଣାଭଂ ଶକ୍ତିହସ୍ତଂ ବରପ୍ରଦଂ
ଦ୍ୱିଭୁଜଂ ଶତ୍ରୁହନ୍ତାରଂ ନାନାଳଙ୍କାରଭୂଷିତଂ
ପ୍ରସନ୍ନବଦନଂ ଦେବଂ ସର୍ବସେନାସମାବୃତଂ

କାର୍ତ୍ତିକେୟଙ୍କର ଛଅଗୋଟି ମୁଖ । ଏଣୁ ତାଙ୍କ ନାମ ଷଡ଼ାନନ । ତାହାଙ୍କର ଦ୍ୱାଦଶ ହସ୍ତ; ମାତ୍ର ସାଧାରଣତଃ ଛଅଆନନ ଏଇ ଦୁଇ ହସ୍ତର ମୂର୍ତ୍ତି ମନ୍ଦିରମାନଙ୍କରେ ଦେଖାଯାଏ । ମୁଖର ଦ୍ୱିଗୁଣ ଯେ ଦେବତାମାନଙ୍କର ହାତ ହେବ, ଏହା ସ୍ୱତଃସିଦ୍ଧ ନୁହେଁ । ବ୍ରହ୍ମାଙ୍କର ଚାରିମୁଖ କିନ୍ତୁ ସେ ଅଷ୍ଟହସ୍ତ ନୁହନ୍ତି । ବିଷ୍ଣୁଙ୍କର ଏକ ମୁଖ ଥାଇ ସୁଦ୍ଧା ଚାରିଗୋଟି ହାତ । ଶିବ ପଞ୍ଚମୁଖ ହେଲେ ସୁଦ୍ଧା ତାଙ୍କର ହସ୍ତସଂଖ୍ୟା ନିର୍ଦ୍ଦିଷ୍ଟ ନୁହେଁ । ସାଧକ ନିଜ ଧ୍ୟାନାନୁସାରେ ଦେବତାର ମାନସମୂର୍ତ୍ତି କଳ୍ପନା କରନ୍ତି । ଧ୍ୟାନାନୁସାରେ ଶିଳ୍ପୀ ମୂର୍ତ୍ତି ନିର୍ମାଣ କରେ । କୁଶଳେଶ୍ୱରର କାର୍ତ୍ତିକେୟ କେଉଁ ଧ୍ୟାନାନୁସାରେ ନିର୍ମିତ ତାହା ପାଠକମାନଙ୍କ ଦ୍ୱାରା ଅନୁସନ୍ଧେୟ । ଏହାଙ୍କର ଏକ ମୁଖ, ଚାରି ବାହୁ । ଦକ୍ଷିଣ ପ୍ରଥମ ହସ୍ତରେ ଗୋଟିଏ ଖଡ଼୍‌ଗ କିମ୍ବା ଶକ୍ତି । ଦକ୍ଷିଣ ଦ୍ୱିତୀୟ ହସ୍ତପଦ୍ମରୁ ଗୋଟିଏ ମୟୂର ଚଞ୍ଚୁଦ୍ୱାରା ସ୍ପର୍ଶସୁଖାନୁଭବ କରୁଅଛି । ପ୍ରଥମ ବାମ ବାହୁରେ ଧୃତ ଗୋଟିଏ ଗଦା କିମ୍ବା ଲଗୁଡ଼ ଭୂମି ସ୍ପର୍ଶ କରିଅଛି । ଦ୍ୱିତୀୟ ଦକ୍ଷିଣ ହସ୍ତରେ ଗୋଟିଏ କୁକ୍‌କୁଟ ଉପବେଶନ କରିଅଛି । ମସ୍ତକରେ ଗୋଟିଏ ଟୋପି । ମୂର୍ତ୍ତି ଦଣ୍ଡାୟମାନ । ମୟୂର ମଧ ନିକଟରେ ଦଣ୍ଡାୟମାନ । ହିନ୍ଦୁ ଦେବତାର ହସ୍ତରେ କୁକ୍‌କୁଟ ସ୍ଥାନ ପାଇବା ବଡ଼ ଆଶ୍ଚର୍ଯ୍ୟର ବିଷୟ ନୁହେଁ କି ? ପୂଜକ ବ୍ରାହ୍ମଣମାନଙ୍କ ଉକ୍ତିରୁ ଅନୁମାନ ହେଲା, ମନ୍ଦିର ଦଶମ ଶତାବ୍ଦୀରେ ନିର୍ମିତ ହୋଇଥିବ । ସେତେବେଳକୁ କ'ଣ କୁକ୍‌କୁଟ ଘୃଣ୍ୟ ଜୀବ ବୋଲି ଗଣ୍ୟ ହେଉ ନ ଥିଲା ? ଏହା ତ ସମ୍ଭବପର ନୁହେଁ । ପୁତ୍ର କୁକ୍‌କୁଟ ପ୍ରିୟ ହେବା ହିନ୍ଦୁର ପରମ ଦେବତା ଶିବଙ୍କ ପକ୍ଷରେ ବିଶେଷ ନିନ୍ଦା ଓ ଲଜ୍ଜାଜନକ । ତଥାପି ହିନ୍ଦୁ ମନ୍ଦିରରେ କାର୍ତ୍ତିକେୟ ହସ୍ତରେ କୁକୁଡ଼ା କିମ୍ବା କୁଶଳେଶ୍ୱର ମନ୍ଦିରର ପାର୍ଶ୍ୱଦେବତା, ଯେ କି କାର୍ତ୍ତିକେୟ ବୋଲି ପରିଚିତ ଓ ପୂଜିତ, ସେ କାର୍ତ୍ତିକେୟ ନୁହଁନ୍ତି; ଅନ୍ୟ ଦେବତା, ଏତାଦୃଶ ଉଦାହରଣର ଅଭାବ ନାହିଁ । ସୁକିନ୍ଦା ରାଜ୍ୟର ମହାରଣ୍ୟରେ ଥିବା ରଖଦା ନାମକ କ୍ଷୁଦ୍ର ପାର୍ବତ୍ୟ ଶବର ପଲ୍ଲୀର ଅତି ସୁନ୍ଦର ଈଶ୍ୱର-ପାର୍ବତୀ ଯୁଗଳ ମୂର୍ତ୍ତି ଛାଗ ଓ ମହିଷ ରକ୍ତରେ ତୃପ୍ତ ହୁଅନ୍ତି ଏବଂ ତନ୍ନିକଟବର୍ତ୍ତୀ ଦେ ଗାଁର ଖଣ୍ଡୁରି ଶିବଲିଙ୍ଗ ମଧ ଛାଗ ଓ ମହିଷ ବଳୀ ଗ୍ରହଣ କରନ୍ତି । କଥାରେ ଅଛି— 'ଯାଦୃଶୀ ଭାବନା ଯସ୍ୟ ସିଦ୍ଧି ର୍ଭବତି ତାଦୃଶୀ' ।

କାର୍ତ୍ତିକେୟଙ୍କର ଅନେକ ନାମ । ତନ୍ମଧ୍ୟରୁ ଗୋଟିଏ କୃକବାକୁଧ୍ୱଜ । କୃକବାକୁ ଅର୍ଥ ମୟୂର ଏବଂ କୁକ୍‌କୁଟ । ମହୀଧର ସ୍ପଷ୍ଟ ଲେଖିଅଛନ୍ତି 'କୃକବାକୁ ତାମ୍ର ଚୂଡ଼େ' । ଏହାଛଡ଼ା କୃକବାକୁ ବୈଦିକ ଶବ୍ଦ । ସବିତାଙ୍କ ପକ୍ଷରେ ଏହି ପକ୍ଷୀ ପବିତ୍ର । କେହି କେହି କହନ୍ତି, ଅଶ୍ୱମେଧ ଯଜ୍ଞରେ କୁକ୍‌କୁଟ ବନ୍ଦୀ ହୁଏ । ଯାସ୍କ ଅର୍ଥ କରନ୍ତି ଯେ, କୃକବାକୁ ବା କୁକ୍‌କୁଟ ସବିତାଙ୍କ ପ୍ରିୟ । ଯେହେତୁ ଏହି ପକ୍ଷୀ ସବିତାଙ୍କର କାଳାନୁବାଦ କରେ ବା ସବିତାଙ୍କର କାଳ ଜଣାଇଦିଏ । କୃକ୍‌ବାକୁ ନାମ ହେବାର କାରଣ ଏହି ଯେ, ପୂର୍ବ ଶବ୍ଦ ଅନୁକରଣ କରେ ବା 'କୃକ' ଶବ୍ଦ କରେ । ସୁତରାଂ କୃକବାକୁ ଧ୍ୱଜ ଅର୍ଥ ଯେ କୁକ୍‌କୁଟ ଧ୍ୱଜ ଏଥିରେ ସନ୍ଦେହ ନାହିଁ । କାର୍ତ୍ତିକେୟ ଯେ କେବଳ ମୟୂର ପ୍ରତି ଅନୁରକ୍ତ, ତାହା ନୁହେଁ; ତଜ୍ଜାତୀୟ କୁକ୍‌କୁଟ ପ୍ରତି ମଧ ଅନୁରକ୍ତ ।

ନେତ୍ର ପ୍ରୀତିକର ପ୍ରାକୃତିକ ଦୃଶ୍ୟ ସମନ୍ୱିତ ଗିରି କନ୍ଦରରେ କୁଶଳେଶ୍ୱରଙ୍କର ମନ୍ଦିର ନ ଥିବାରୁ ଏବଂ ସେଠାରେ ଭ୍ରମରମାରୀ ବୃକ୍ଷର ନାମଗନ୍ଧ ନ ଥିବା ହେତୁ ମନରେ ଯେ

ହତାଶା ଆସିଥିଲା, ତାହା କାର୍ତ୍ତିକେୟ ମୂର୍ତ୍ତି ଅପନୋଦନ କଲେ । ଅନ୍ୟତ୍ର ଏଭଳି ମୂର୍ତ୍ତି ଅଛି କି ନା ଏବଂ ଏ ମୂର୍ତ୍ତିର ଧ୍ୟାନ କ'ଣ ତହିଁର ଅନୁସନ୍ଧାନରେ ରହିଲି ।

●

## ସୂର୍ଯ୍ୟ

### ।। ୧ ।।

ସୂର୍ଯ୍ୟ ଚନ୍ଦ୍ର ମାନବର ସୁପରିଚିତ । ଆକାଶରେ ଗ୍ରହନକ୍ଷତ୍ର ଅସଂଖ୍ୟ । ଆକାଶର ଶୋଭା ବର୍ଦ୍ଧନ ଏବଂ ମନୁଷ୍ୟର ନେତ୍ର ପ୍ରୀତିକର ଭିନ୍ନ ଏମାନଙ୍କର କୌଣସି ପ୍ରୟୋଜନୀୟତା ସର୍ବସାଧାରଣଙ୍କର ଅଗୋଚର । ଶରତକାଳୀନ ଅମାବାସ୍ୟାରେ ଅସଂଖ୍ୟ ଖଦ୍ୟୋତାଲୋକ ସାଧାରଣ ନର ଚକ୍ଷୁ ପ୍ରତି ଯେତେ ଆନନ୍ଦୋଦ୍ଦୀପକ, ଗ୍ରହନକ୍ଷତ୍ର ତତୋଽଧିକ ଆନନ୍ଦୋଦ୍ଦୀପକ ବୋଲି ବୋଧହୁଏ ନାହିଁ ।

ସୂର୍ଯ୍ୟ ଚନ୍ଦ୍ର ଯୋଡ଼ିଏ । ଆକାଶର ଗ୍ରହନକ୍ଷତ୍ର ଅପେକ୍ଷା ଚକ୍ଷୁକୁ ବୃହତ୍ ଦେଖାଯାଆନ୍ତି । ଆଲୋକ ଦିଅନ୍ତି ବୋଲି ନରସାଧାରଣ ଏ ଯୋଡ଼ିକୁ ବିଶେଷ ଭାବରେ ଜାଣନ୍ତି; ଜାଣନ୍ତି ଅର୍ଥାତ୍ ଏ ଯୋଡ଼ିକୁ ପରିଚୟ କରିଅଛନ୍ତି ମାତ୍ର, ଏ ଦୁହେଁ କିମ୍ଭୂତ କିମାକାର ବସ୍ତୁ ଏମାନଙ୍କର ଆକାର ଆୟତନ ଦୂରତା ସମ୍ବନ୍ଧେ ସାଧାରଣ ବ୍ୟକ୍ତିମାନେ କିଛି ହିଁ ଅବଗତ ନୁହଁନ୍ତି ବୋଲିବା ଅତ୍ୟୁକ୍ତି ନୁହେଁ । ବିଶ୍ୱାସ କରନ୍ତି ସୂର୍ଯ୍ୟ ଓ ଚନ୍ଦ୍ର ଦୁଇ ଗୋଟି ମହାଗ୍ରହ; ଏହି ଦୁହିଁଙ୍କ ସୁଦୃଷ୍ଟିରେ ମନୁଷ୍ୟର ଶୁଭ କୁଦୃଷ୍ଟିରେ ଅମଙ୍ଗଳ, ବିଶ୍ୱାସ କରନ୍ତି, ପୂଜା, ହୋମଦ୍ୱାର ଏବଂ ଶାସ୍ତ୍ରନିର୍ଦ୍ଦିଷ୍ଟ ମନ୍ତ୍ରଦ୍ୱାରା ଏମାନଙ୍କର କୋପଶାନ୍ତି କରାଯାଇପାରେ, ଶରୀର ରୋଗଶୂନ୍ୟ କରାଯାଇପାରେ । ମାତ୍ର ସୂର୍ଯ୍ୟ ଚନ୍ଦ୍ରର ସୁ ବା କୁ ଦୃଷ୍ଟି କ'ଣ ଏବଂ ସେ ଦୁହିଁଙ୍କର କୋପ ବା କିପରି ହୋଇପାରେ ସେ ସମ୍ବନ୍ଧେ କେହି ଚିନ୍ତା କରନ୍ତି ନାହିଁ ।

ଯେଉଁମାନଙ୍କର ମତରେ ଏ ବିଶ୍ୱ ବ୍ରହ୍ମାଣ୍ଡ ମଧ୍ୟରେ ପୃଥିବୀ ହିଁ ଶ୍ରେଷ୍ଠ, ପୃଥିବୀ ହିଁ ପ୍ରକାଣ୍ଡ ସେମାନଙ୍କ ପକ୍ଷରେ ସୂର୍ଯ୍ୟ ସହିତ ଚନ୍ଦ୍ରର ତୁଳନା କରିବାଟା ଶୋଭା ପାଇପାରେ ଏବଂ ଉଭୟଙ୍କୁ ମହାଗ୍ରହ ବୋଲିବା ଯୁକ୍ତିଯୁକ୍ତ ମନେ ହୋଇପାରେ ମାତ୍ର ତୁଳନାମୂଳକ ଆଲୋଚନା କଲେ ଏହି ତିନିଙ୍କ ମଧ୍ୟରେ ଯେ କି ଅସାଧାରଣ ବିସ୍ମୟୋଦ୍ଦୀପକ ପାର୍ଥକ୍ୟ ଅଛି ତାହା ସହଜରେ ହୃଦୟଙ୍ଗମ ହୋଇପାରେ । ପୁରାଣାଦିର ମତକୁ ଛାଡ଼ି ଦେଲେ ମଧ୍ୟ ଟଲେମୀ ଓ ସୂର୍ଯ୍ୟସିଦ୍ଧାନ୍ତ ମତରେ ପୃଥିବୀ ଗ୍ରହମାନଙ୍କର କେନ୍ଦ୍ର ସ୍ଥଳରେ ଅବସ୍ଥିତ ଏବଂ ସୂର୍ଯ୍ୟ କେନ୍ଦ୍ରର ଚତୁର୍ଥ ସ୍ଥାନରେ ବା ଆଧୁନିକ ମତାନୁସାରେ ପୃଥିବୀର ସ୍ଥାନରେ ଭ୍ରାମ୍ୟମାଣ,

ମନ୍ଦାମରେଜ୍ୟ ଭୂପୁତ୍ର
ସୂର୍ଯ୍ୟ ଶୁକ୍ରେନ୍ଦୁ ଜେନ୍ଦବଃ
ପରିଭ୍ରମନ୍ତ୍ୟ ଧୋର୍ଦ୍ଧ୍ୱସ୍ଥା
ସିଦ୍ଧବିଦ୍ୟାଧରା ଘନାଃ ।

ଏହା ଭୂକୈନ୍ଦ୍ରିକ ଜଗତ । ଆଧୁନିକ ମତ ସୌର କୈନ୍ଦ୍ରିକ ବା ସୌରଜଗତ । ଟଲେମୀ ଓ ସୂର୍ଯ୍ୟ ସିଦ୍ଧାନ୍ତ ମତରେ—

ଶନି
|
ବୃହସ୍ପତି
|
ମଙ୍ଗଳ
|
ସୂର୍ଯ୍ୟ
|
ଶୁକ୍ର
|
ବୁଧ
|
ଚନ୍ଦ୍ର
|
ପୃଥିବୀ (କେନ୍ଦ୍ରସ୍ଥଳର)

ପୃଥିବୀକୁ କେନ୍ଦ୍ରକରି ଗ୍ରହ ଓ ସୂର୍ଯ୍ୟ ଭ୍ରମଣ କରୁଥିବାର ମତ ପ୍ରକାଶ ହୋଇଥିଲା । ସୁତରାଂ ସୂର୍ଯ୍ୟକୁ ଗୋଟିଏ ଗ୍ରହବୋଲି ଗଣା ଯାଇଥିଲା । ଆଧୁନିକ ବିଜ୍ଞାନସମ୍ମତ ସୌରଜଗତର ନିୟାମକ ସୂର୍ଯ୍ୟ । ସୂର୍ଯ୍ୟର ନିକଟବର୍ତ୍ତୀ ବୁଧ-କ୍ରମେ ଶୁକ୍ର, ପୃଥିବୀ, ମଙ୍ଗଳ, ତହିଁ ଉତ୍ତାରୁ ଶତାଧିକ କ୍ଷୁଦ୍ରଗ୍ରହ, ବୃହସ୍ପତି, ଶନି, ଇଉରେନ୍ସ, ନେପ୍‌ଚ୍ୟୁନ୍ ଏବଂ ପ୍ଲୁଟସ୍ । ଏଥି ଉତ୍ତାରୁ ମଧ୍ୟ ଆହୁରି ଗ୍ରହ ଆବିଷ୍କୃତ ହେବାର ଆଶା କରାଯାଏ । ଏହାଛଡ଼ା ଏହି ସୌର ପରିବାରଭୁକ୍ତ ଅଟନ୍ତି ଅସଂଖ୍ୟ ଉଲ୍‌କା, ଧୂମକେତୁ ଉପଗ୍ରହ ଏବଂ ସୌରକଣା । ସୂର୍ଯ୍ୟ ଏତାଦୃଶ ପ୍ରକାଣ୍ଡ ପରିବାରର ଚାଳକ । ତାହା ସହିତ ପୃଥିବୀ ବା ଚନ୍ଦ୍ରକୁ ତୁଳନା କରିବାକୁ ଯିବା କେବଳ ହାସ୍ୟାସ୍ପଦର ବିଷୟ ।

ସୂର୍ଯ୍ୟର ବ୍ୟାସ ୮୬୬୫୦୦ ମାଇଲ୍ ପୃଥିବୀର ବ୍ୟାସ ୮୦୦୦, ବା ମୋଟାମୋଟି ପୃଥିବୀର ବ୍ୟାସ ଅପେକ୍ଷା ସୂର୍ଯ୍ୟର ବ୍ୟାସ ୧୦୯ ଗୁଣ ଅଧିକ, ସୂର୍ଯ୍ୟର ବର୍ଗଫଳ ପୃଥିବୀର ବର୍ଗଫଳ ଅପେକ୍ଷା ୧୨୦୦୦ ଗୁଣ ଅଧିକ । ସୂର୍ଯ୍ୟର ଅବୟବ ପୃଥିବୀର ଅବୟବ ଅପେକ୍ଷା ୧୩୦୦୦୦୦ ଗୁଣ ବଡ଼ । କହିବାକୁ ଗଲେ ସୂର୍ଯ୍ୟ ଯେବେ ଗୋଟିଏ ଫମ୍ପା ବା ପୋଲା ଗୋଲକ ହୋଇଥାନ୍ତା ତାହା ହେଲେ ପୃଥିବୀ ଆପଣା ଉପଗ୍ରହ ଚନ୍ଦ୍ରକୁ ଧରି ନିଜ କକ୍ଷରେ ସୂର୍ଯ୍ୟ ଗୋଲକ ମଧ୍ୟରେ ଅନାୟାସରେ ଭ୍ରମଣ କରି ପାରନ୍ତା, ତଥାପି ସୂର୍ଯ୍ୟର ଆଭ୍ୟନ୍ତରିକ ସ୍ଥାନରୁ ଆହୁରି ଅର୍ଦ୍ଧେକ ବାକି ରହନ୍ତା ।

ଗୋଟିଏ ଚଣା ସହିତ ଗୋଟିଏ ଦୁଇଫୁଟ ବ୍ୟାସର ଗୋଲକ କିମ୍ବା ଫୁଟବଲ୍‌ର ଯେଉଁ ପାର୍ଥକ୍ୟ ପୃଥିବୀର ଓ ସୂର୍ଯ୍ୟର ଆକାର ମଧ୍ୟରେ ସେହି ପାର୍ଥକ୍ୟ । ପୃଥିବୀ ଚନ୍ଦ୍ର ଅପେକ୍ଷା ୪୯ ଗୁଣ ବଡ଼ । ତଥାପି ଚନ୍ଦ୍ର ସୂର୍ଯ୍ୟର ତୁଳନାଯୋଗ୍ୟ କିପରି ହେଲା ଭାବିଲେ ବିସ୍ମିତ ହେବାକୁ ହୁଏ ।

ସାଧାରଣତଃ ସୂର୍ଯ୍ୟ ଚନ୍ଦ୍ରର ଦୂରତା ପୃଥିବୀଠାରୁ ଏକ ବୋଲି ଲୋକେ ଭାବନ୍ତି । ଲୋକେ ଭାବନ୍ତି କାହିଁକି ଶାସ୍ତ୍ର ବିଶେଷରେ ଲିଖିତ ହୋଇଅଛି ଯେ ପୃଥିବୀଠାରୁ ସୂର୍ଯ୍ୟ ଚନ୍ଦ୍ରର ଦୂରତା ଲକ୍ଷେ ଦୁଇ ଲକ୍ଷ ଯୋଜନ ମାତ୍ର । ପ୍ରକୃତ ପକ୍ଷରେ ଦୁହିଁଙ୍କର ଦୂରତାର ପାର୍ଥକ୍ୟ ବିସ୍ମୟୋତ୍ପାଦକ । ପୃଥିବୀଠାରୁ ସୂର୍ଯ୍ୟ ୯୩୦୦୦୦୦୦ମାଇଲ ଦୂରରେ ଅବସ୍ଥିତ ଏବଂ ଚନ୍ଦ୍ର ମାତ୍ର ୨୪୦୦୦୦ ମାଇଲରେ ଅବସ୍ଥିତ । ଆକାଶସ୍ଥ ସମସ୍ତ ଜ୍ୟୋତିଷ୍କ ଅପେକ୍ଷା ଚନ୍ଦ୍ର ନିକଟବର୍ତ୍ତୀ ।

ଚନ୍ଦ୍ର ସୂର୍ଯ୍ୟ ରଶ୍ମିଦ୍ୱାରା ଆଲୋକିତ ହୁଏ । ସୂର୍ଯ୍ୟ ସ୍ୱୟଂ ଦୀପ୍ତ ଏବଂ ସେ ସୌରଜଗତକୁ ଆଲୋକ ଓ ଉତ୍ତାପ ଦାନକରି ବଞ୍ଚାଇ ରଖିଅଛି । ସୂର୍ଯ୍ୟର ଆଲୋକ ଉତ୍ତାପ ବ୍ୟତିରେକେ ପୃଥିବୀରେ କୌଣସି ଜୀବ ଜୀବନଧାରଣ କରିବାକୁ କ୍ଷମ ହେବ ନାହିଁ । ସୂର୍ଯ୍ୟ ପୃଥିବୀର ଚାଳକ ଓ ନିୟାମକ ।

ଦୂରତା ଅନୁପାତରେ ଉତ୍ତାପର ତାରତମ୍ୟ ଘଟେ । ଉତ୍ତାପର ଉତ୍ସଠାରୁ ଯେତିକି ଦୂରକୁ ଗୋଟିଏ ବସ୍ତୁ ଅପସୃତ ହେଉଥିବା ଅନୁପାତାନୁସାରେ ଉତ୍ତାପର ମାତ୍ରା ତେତିକି କମିଯାଉଥିବାର ସ୍ୱାଭାବିକ । ଆମେମାନେ ୯୩୦୦୦୦୦୦ ଦୂରରେ ଥାଇ ସୂର୍ଯ୍ୟର ଯେ ଉତ୍ତାପ ପାଉଁ । ସୂର୍ଯ୍ୟର ଶରୀରର ଉତ୍ତାପ ସହିତ ତହିଁର କୌଣସି ତୁଳନା ହୋଇପାରେ କି ? ଅଧିକ କହିବାର କି ଅଛି ସୂର୍ଯ୍ୟ ଦିହରେ ପଡ଼ିଲେ ପୃଥିବୀରେ ଏପରି କଠିନ ପଦାର୍ଥ ନାହିଁ ଯାହା ତତ୍‌କ୍ଷଣାତ୍ ଅଗ୍ନିରେ କାଗଜ ଜଳିଯିବା ପରି ଜଳି ନ ଯିବ ।

ସୂର୍ଯ୍ୟ କୋଟି କୋଟି ବର୍ଷ ହେଲା ନିଜେ ଉତପ୍ତ ଥାଇ ସାରା ସୌରଜଗତକୁ ଆଲୋକିତ ଓ ଉତପ୍ତ କରୁଅଛି । ଉତ୍ତାପର ବିରାମ ନାହିଁ । କି ମାଲ ମସଲା ଏହା ଦିହରେ ଅଛି ଯେ ଚିରକାଳ ଜଳିଲେ ମଧ୍ୟ ସରୁ ନାହିଁ । ସୂର୍ଯ୍ୟର ଉତ୍ତାପ ଶେଷ ହେବ ସୌର ଜଗତ ବଞ୍ଚିରହିବ କିପରି ? ସୂର୍ଯ୍ୟ ଶରୀର କୋଇଲା ନୁହେଁ ବା କାଠ ନୁହେଁ । ଆମେ ଧରାବାସୀମାନେ ଭାବିଥାଉଁ ଯେ କାଠ, କୋଇଲା, ଘାସ ହେଲେ ଜଳିବ କିପରି ? ମାତ୍ର ସୂର୍ଯ୍ୟରେ ଜଳିବା ଉପାଦାନ ସେପରି ନୁହେଁ । ସୂର୍ଯ୍ୟ ନିଜ ଶରୀର ସଂକୋଚଦ୍ୱାରା ଏହି ଉତ୍ତାପ ଉତ୍ପାଦନ କରୁଅଛି ଏବଂ ରେଡ଼ିୟମ୍ ଧାତୁ ପ୍ରଚୁର ପରିମାଣରେ ତାହା ଦିହରେ ଅଛି ଏଣୁ ତାର ଉତ୍ତାପର ହ୍ରାସ ବୃଦ୍ଧି ହେଉ ନାହିଁ, କେବେ ହେବ ତାହା କଳ୍ପନାତୀତ ବୋଲାଯାଇପାରେ । କୌଣସି ଉତପ୍ତପିଣ୍ଡ ସଂକୋଚିତ ହେଲାବେଳେ ତାର ଶରୀରର ଉତ୍ତାପ ବିକିରଣ କରି ଥଣ୍ଡା ହୋଇଯାଏ । ସେହିପରି ସୂର୍ଯ୍ୟ ନିଜ ଦେହର ଉତ୍ତାପକୁ ସୌର ଜଗତର ଉପକାର ନିମନ୍ତେ ବିକିରଣ କରୁଅଛି । ସଂକୋଚ ଅନୁସାରେ ବିକିରଣ । ସୂର୍ଯ୍ୟ ନିଜ ଅବୟବକୁ ପ୍ରତି ଏଗାର ବର୍ଷରେ ଏକମାଇଲ୍ ସଂକୋଚ କରେ । କହିବାକୁ ଗଲେ ଦୈନିକ ଏକଫୁଟ୍‌ରୁ କିଞ୍ଚିତ୍ ଅଧିକ ସଂକୋଚିତ ହେଉଅଛି । କଳିଯୁଗ ଆରମ୍ଭରୁ ଆଜିଯାଏ ସୂର୍ଯ୍ୟର ଅବୟବ ୮୪୦ ମାଇଲ୍ ସଂକୋଚିତ ହେଲାଣି, ତଥାପି ବୋଧହୁଏ ଯୁଧିଷ୍ଠିର ସୂର୍ଯ୍ୟକୁ ଯେଉଁ ଆକାରରେ ଦେଖିଥିଲେ ଆମେମାନେ ମଧ୍ୟ ସେହି ଆକାରରେ ଦେଖୁଅଛୁଁ । ତା'ର ପୂର୍ଣ୍ଣାବୟବ ତୁଳନାରେ ୮୪୦ ମାଇଲ୍ ବା କେତେ ।

ସୂର୍ଯ୍ୟର ଦିହରେ ପ୍ରତ୍ୟହ ଆଗ୍ନେୟ ଝଡ଼ ଖେଳୁଅଛି । ତା'ର ଦିହର ତରଳ ବା ବାୟବୀୟ ପଦାର୍ଥର ଚଳନଦ୍ୱାରା ସୌର କଳଙ୍କ ସୃଷ୍ଟି ହୁଏ । ଗୋଟିଏ ଗୋଟିଏ ସୌର କଳଙ୍କର ଆୟତନ ବିଷୟ ଭାବିଲେ ବିସ୍ମିତ ହେବାର କଥା— ଏହି ସୌର ଗତିରେ ଅନେକ ପୃଥିବୀ ଏକାବେଳକେ ନିମଜ୍ଜମାନ ହୋଇପାରିବ ଅନାୟାସରେ ।

ସୂର୍ଯ୍ୟର ଅଗ୍ନିଶିଖା ତତୋଧିକ ବିସ୍ମୟୋତ୍ପାଦକ— ବୈଜ୍ଞାନିକମାନେ ପ୍ରତ୍ୟକ୍ଷ କରିଅଛନ୍ତି; ଗୋଟିଏ ଗୋଟିଏ ଶିଖାର ଉଚ୍ଚତା ଏକ ମାଇଲ୍ ଦୁଇ ମାଇଲ୍ ନୁହେଁ ୬୦୦୦୦, ୮୦୦୦୦ ମାଇଲ୍ । ଏମନ୍ତ କି ସମୟ ବିଶେଷରେ ୩୦୦୦୦୦ ମାଇଲ୍‌ର ଲେଲିହାନ୍ ଅଗ୍ନି ଶିଖା ସୂର୍ଯ୍ୟପୃଷ୍ଠରେ ଆକାଶ ଆଡ଼କୁ ଉତ୍‌କ୍ଷିପ୍ତ ହେବାର ଦେଖା ଯାଇଅଛି ।

ପୃଥିବୀଠାରୁ ଚନ୍ଦ୍ର ଦୂରତା ଅପେକ୍ଷା ଆହୁରି ୬୦୦୦୦ ମାଇଲ୍ ଊର୍ଦ୍ଧ୍ୱକୁ ଉଠିଥାଏ । ପୃଥିବୀସ୍ଥାନରେ ସୂର୍ଯ୍ୟଥିଲେ ବେଚାରା ଚନ୍ଦ୍ରର କି ଗତି ହୁଅନ୍ତା । ତଥାପି ଆମେମାନେ ସୂର୍ଯ୍ୟ ଓ ଚନ୍ଦ୍ରକୁ ଏକାସନ ଦେଇ ମହାଗ୍ରହ ବୋଲି ହୋମ ପ୍ରାୟଶ୍ଚିତଦ୍ୱାରା ଆପ୍ୟାୟିତ କରିବାର ପ୍ରୟାସ ରଖୁ । କିମାଶ୍ଚର୍ଯ୍ୟମତଃପରଂ ।

॥ ୨ ॥

ସୂର୍ଯ୍ୟକୁ ସମସ୍ତେ ଚିହ୍ନନ୍ତି, ଜାଣନ୍ତି ଓ ଦୈନିକ ଦେଖନ୍ତି । ମାତ୍ର ଆହୁରି ଚିହ୍ନିବାକୁ ହେବ, ବେଶି ଜାଣିବାକୁ ହେବ ଓ ଦେଖିବାକୁ ଶିକ୍ଷା କରିବାକୁ ହେବ ଏବଂ ସୂର୍ଯ୍ୟ ସହିତ ଆମମାନଙ୍କର, ପୃଥିବୀର କି ସମ୍ବନ୍ଧ, ଆମମାନଙ୍କର ତଥା ଜୀବ ସମୂହର କି ସମ୍ବନ୍ଧ ତାହା ସର୍ବଦା ମନଯୋଗ ସହିତ ବୁଝିବାକୁ ହେବ । କାରଣ ବିଶ୍ୱର ଯାବତୀୟ ଜ୍ୟୋତିଷ୍କମାନଙ୍କ ଅପେକ୍ଷା ସୂର୍ଯ୍ୟ ସହିତ ଆମ ପୃଥିବୀର ପ୍ରବଳ ଘନିଷ୍ଠତା ଅଛି । ଏ ସମ୍ବନ୍ଧ ଯୁକ୍ତିତର୍କଦ୍ୱାରା ଖଣ୍ଡିତ ହେବାର ନୁହେଁ ଏବଂ ଏହା ଅସ୍ୱୀକାର କରିବାର କାହାରି ଯୋଗ୍ୟତା ନାହିଁ ।

ଏ ବିଶ୍ୱ କେବେହେଁ ଅନ୍ଧକାରମୟ ନ ଥିଲା । ଅନନ୍ତ ଆକାଶ ଅସଂଖ୍ୟ ନକ୍ଷତ୍ରମାନଙ୍କଦ୍ୱାରା ଚିର ଜାଜ୍ୱଲ୍ୟମାନ, କାହାରି ଇଚ୍ଛାରେ, ଦିନକରେ ସମସ୍ତ ଆକାଶ ନକ୍ଷତ୍ରଦ୍ୱାରା ଉଦ୍ଭାସିତ ହୋଇଉଠିଲା ଏପରି ନୁହେଁ । ଏ ନକ୍ଷତ୍ର ରାଜିର ଆଦି ନାହିଁ, ଅନ୍ତ ନାହିଁ । ଭଙ୍ଗାଗଢ଼ା ଲାଗିଛି ସତ ମାତ୍ର ଏକସମୟରେ ସମସ୍ତଙ୍କର ଜନ୍ମ ବା ଏକକାଳୀନ ସମସ୍ତଙ୍କର ନାଶ ହେବ ଏହା ନୁହେଁ । ଏ ବିଶ୍ୱରେ ପଦାର୍ଥର ଧ୍ୱଂସ ହୁଏ ନାହିଁ । କାଳ ବିପର୍ଯ୍ୟୟରୁ ରୂପର ବା ଆକାରର ପରିବର୍ତ୍ତନ ଘଟେ ମାତ୍ର ।

କୋଟି କୋଟି ବର୍ଷ ପୂର୍ବେ ଆମ୍ଭମାନଙ୍କର ସୂର୍ଯ୍ୟ ଏହି ଆକାରରେ ନ ଥିଲା । ମାତ୍ର ଗୋଟିଏ ନକ୍ଷତ୍ର ରୂପରେ ଆକାଶରେ ଥିଲା । କୌଣସି ବୃହତ୍ତର ନକ୍ଷତ୍ରର ସଂଘାତରୁ ଉଭୟେ ପ୍ରଜ୍ୱଳିତ ହେଲେ । ସେହି ପ୍ରଜ୍ୱଳିତ ବସ୍ତୁସମଷ୍ଟି ସୂକ୍ଷ୍ମ ଆଗ୍ନେୟ ନୀହାରିକାରେ ଅନନ୍ତ ଆକାଶର ବିସ୍ତର ସ୍ଥାନ ଅଧିକାର କରି ରହିଲା । ଏହି ନୀହାରିକା ସ୍ଥୂଳ ମଧ୍ୟମ କାଚପରି ଆକାର ଧାରଣ କଲା । ଏବଂ କୋଟି କୋଟି ମାଇଲ୍ ବିସ୍ତୃତ ହୋଇ ରହିଲା । ପ୍ରାକୃତିକ ନିୟମ କ୍ରମେ ଏହି ନୀହାରିକା ଘନୀଭୂତ ହେବାକୁ ଲାଗିଲା ଏବଂ କେନ୍ଦ୍ରଆଡ଼କୁ ସଂକୋଚ ହେବାକୁ ଲାଗିଲା । ଏହି ନୀହାରିକା ପିଣ୍ଡରୁ ଗ୍ରହମାନଙ୍କର ଜନ୍ମ:—ପ୍ଲୁଟ୍ସ, ଇଉରେନାସ୍, ନେପଚୁନ୍, ଶନି, ବୃହସ୍ପତି, ମଙ୍ଗଳ, ପୃଥିବୀ, ଶୁକ୍ର ଓ ବୁଧ ।

ଟେଲିସ୍‌କୋପ୍ ଯନ୍ତ୍ର ଆବିଷ୍କାର ପୂର୍ବରୁ ପ୍ରଥମୋକ୍ତ ତିନି ଗ୍ରହର ଅସ୍ତିତ୍ୱ ଜଣା ନ ଥିଲା । ଶନି ଓ ବୃହସ୍ପତି ଗ୍ରହର ଆକାର ଓ ଆୟତନ ତୁଳନାରେ ମଙ୍ଗଳ ଗ୍ରହର ଅବୟବ କ୍ଷୁଦ୍ରହେତୁ ପଣ୍ଡିତମାନେ ଏଥିର କାରଣ ଜିଜ୍ଞାସୁ ହୋଇ ଗବେଷଣା ଆରମ୍ଭ କରେ । ଫଳରେ ଜଣାଗଲା ଯେ ମଙ୍ଗଳ ଓ ବୃହସ୍ପତି ଗ୍ରହ ମଧ୍ୟରେ ବହୁସଂଖ୍ୟକ କ୍ଷୁଦ୍ର ଗ୍ରହ ସୂର୍ଯ୍ୟକୁ ପ୍ରଦକ୍ଷିଣ କରୁଅଛନ୍ତି ଯେଉଁମାନେ କି ମଙ୍ଗଳ ଗ୍ରହର ଅବୟବକୁ ପୂରଣ କରି ତାକୁ ବୃହସ୍ପତିର ସମକକ୍ଷ କରିଥାନ୍ତେ ମାତ୍ର ସେତେବେଳେ ମୂଳପିଣ୍ଡର କି ଅବସ୍ଥା ଥିବାରୁ ତାହା ହୋଇପାରିଲା ନାହିଁ । ମଙ୍ଗଳ ଅପେକ୍ଷା ପୃଥିବୀ ବଡ଼, ତା'ଠାରୁ ଶୁକ୍ର ଛୋଟ, ତା'ଠାରୁ ବୁଧ ଛୋଟ । ବୁଧ ଉତ୍ତାରୁ ସୂର୍ଯ୍ୟ ନିକଟବର୍ତ୍ତୀ ଆଉ ଗ୍ରହ ନାହିଁ । ସେହି ନୀହାରିକା ପିଣ୍ଡ ସଂକୋଚିତ ହୋଇ ଆମମାନଙ୍କର ସୂର୍ଯ୍ୟରେ ପରିଣତ ହେଲା । ଅଦ୍ୟାପି ସୂର୍ଯ୍ୟ ସଂକୁଚିତ ହେଉଅଛି ଏବଂ ସଂକୋଚିତ ହେବାଦ୍ୱାରା ତାହାର ତେଜ ବଢ଼ୁଅଛି ଏବଂ ତା'ର ସୌରଜଗତର ଉପକାରରେ ଲାଗୁଅଛି ।

ସୂର୍ଯ୍ୟ ଏହି ଆବିଷ୍କୃତ ନବଗ୍ରହର ମଧ୍ୟବର୍ତ୍ତୀ । ଏହି ନବଗ୍ରହ ସୂର୍ଯ୍ୟକୁ ପ୍ରଦକ୍ଷିଣ କରୁଅଛନ୍ତି । ଦୂରତା ବା ଭାଗଅନୁସାରେ ତା'ଠାରୁ ଆଲୋକ ଓ ଉତ୍ତାପ ପାଉଅଛନ୍ତି ।

ଆମ ପୃଥିବୀ ସୂର୍ଯ୍ୟଠାରୁ ନଅ କୋଟି ତିରିଶ ଲକ୍ଷ ମାଇଲ୍ ଦୂରରେ ଅବସ୍ଥିତ ।

ପୃଥିବୀ ମୂଳପିଣ୍ଡଠାରୁ ବିଚ୍ଛିନ୍ନ ହୋଇ ବହୁବର୍ଷ ଯାଏ, ତରଳ ହୋଇ ସ୍ୱକକ୍ଷରେ ଅତି ପ୍ରବଳ ବେଗରେ ଘୂର୍ଣ୍ଣାୟମାନ ହେଉଥିଲା । ସେହି ସମୟରେ ତା'ର ଏକ ଅଂଶ ବିଚ୍ଛିନ୍ନ ହୋଇ ଚନ୍ଦ୍ର ହୋଇଅଛି । ଚନ୍ଦ୍ର ପୃଥିବୀ କି ପ୍ରଦକ୍ଷିଣ କରେ ।

ପୃଥିବୀ ପ୍ରଥମେ ନକ୍ଷତ୍ରପରି ଜାଜ୍ୱଲ୍ୟମାନ ଥିଲା, କ୍ରମେ କ୍ରମେ ଥଣ୍ଡାହୋଇ ଜଳସ୍ଥଳର ଭାଗ ହେଲା— ନଦୀ ପ୍ରବାହିତ ହେଲା ବୃକ୍ଷ ଲତାମାନେ ଜନ୍ମହେଲେ କ୍ରମେ ଜୀବର ବାସଯୋଗ୍ୟ ହେଲା ।

ସୂର୍ଯ୍ୟ ଆମମାନଙ୍କର ରାଜା, ପ୍ରାଣଦାତା, ପାଳନକର୍ତ୍ତା ପୋଷଣକର୍ତ୍ତା । ଆଲୋକ ଓ ଉତ୍ତାପ ବିନା ପୃଥିବୀ ଜୀବ ଓ ଉଦ୍ଭିଦର ବାସଯୋଗ୍ୟ ହୁଅନ୍ତା ନାହିଁ । ସୂର୍ଯ୍ୟ ହେତୁରୁ ବୃଷ୍ଟି ଓ ନଦୀର ଉତ୍ପତ୍ତି । ବାୟୁ ଯାହା ଆମମାନଙ୍କର ପ୍ରାଣ ତାହା ସେହି ସୂର୍ଯ୍ୟ ହେତୁରୁ । ପ୍ରାକୃତିକ ସୌନ୍ଦର୍ଯ୍ୟ ସେହି ସୂର୍ଯ୍ୟଲାଗି । ବୃକ୍ଷର ଶ୍ୟାମଳତା ସେହି ସୂର୍ଯ୍ୟଲାଗି । ସବୁଜ ବର୍ଣ୍ଣ ଶାକ ପ୍ରଭୃତି ଯାହା ଆମମାନଙ୍କର ଶରୀର ପୋଷଣର

ପ୍ରଧାନ ଉପାଦାନ ତାହା ସୂର୍ଯ୍ୟ କିରଣଦ୍ୱାରା ନିର୍ମିତ ହୁଏ । ସୂର୍ଯ୍ୟକିରଣପୋଷିତ ଖାଦ୍ୟପଦାର୍ଥଦ୍ୱାରା ଆମ୍ଭମାନଙ୍କର ମାଂସପେଶୀ କାର୍ଯ୍ୟ କରେ । ଆମମାନଙ୍କର ଚକ୍ଷୁକୁ ଦୃଶ୍ୟ ହୁଏ, ମସ୍ତିଷ୍କ କାର୍ଯ୍ୟ କରେ । ମୋଟରେ କହିବାକୁ ଗଲେ ସୂର୍ଯ୍ୟ ବ୍ୟତିରେକେ ଆମମାନଙ୍କର ପୃଥିବୀର ଏ ଶୋଭାଭଣ୍ଡାର ନ ଥାନ୍ତା ଏବଂ ଆମମାନଙ୍କର ସୁଖଭୋଗର ସାମଗ୍ରୀ ନ ଥାନ୍ତା ଏବଂ ପୃଥିବୀ ସହିତ ଆମମାନଙ୍କର ଅସ୍ତିତ୍ୱ ନ ଥାନ୍ତା ।

ଯାହା ସହିତ ଆମମାନଙ୍କର ଏତେ ଘନିଷ୍ଠ ସମ୍ବନ୍ଧ ଜୀବନ ମୃତ୍ୟୁର ସମସ୍ୟା, ତାହା ସମ୍ବନ୍ଧରେ ଆମମାନଙ୍କର ଅଧିକ ଜାଣିବାର ଉଚିତ ନୁହେଁ କି ? ଆକାଶରେ ଅନନ୍ତ ନକ୍ଷତ୍ର ଛଡ଼ା ଚନ୍ଦ୍ର ସୂର୍ଯ୍ୟ ଆମମାନଙ୍କର ମନଯୋଗ ଆକର୍ଷଣ କରନ୍ତି । ମାତ୍ର ସୂର୍ଯ୍ୟର ତୁଳନାରେ ଚନ୍ଦ୍ର ଯେ ନଗଣ୍ୟ ଏହା କେହି ଭାବନ୍ତି ନାହିଁ । ଚନ୍ଦ୍ର ପୃଥିବୀ ଦିହରୁ ଜନ୍ମ— ସୁତରାଂ ଅତି କ୍ଷୁଦ୍ର— ପୃଥିବୀ ଅପେକ୍ଷା ଅଣଞ୍ଚାଶ ଗୁଣ ଛୋଟ । ଆଉ ସୂର୍ଯ୍ୟ—ପୃଥିବୀଠାରୁ ସାଢ଼େ ତେର ଲକ୍ଷ ଗୁଣ ବଡ଼, ପୃଥିବୀର ବ୍ୟାସ ୮୦୦୦ ମାଇଲ୍ ଏବଂ ସୂର୍ଯ୍ୟର ବ୍ୟାସ ୮୫୬୦୦୦ ମାଇଲ୍ । ପରିଧିର ପରିମାଣ ଅଙ୍କଦ୍ୱାରା ନ ଲେଖି ଅନ୍ୟ ପ୍ରକାର ପ୍ରକାଶ କଲେ ଭଲ ବୋଧଗମ୍ୟ ହେବ । ଘଣ୍ଟାକୁ ଷାଠିଏ ମାଇଲ୍ ବେଗଗାମୀ ରେଳଗାଡ଼ି ପୃଥିବୀକୁ ପ୍ରଦକ୍ଷିଣ କରିବାକୁ ପ୍ରାୟ ୧୮ ଦିନ ଲାଗିବ । କିନ୍ତୁ ସୂର୍ଯ୍ୟକୁ ପ୍ରଦକ୍ଷିଣ କରିବାକୁ କ୍ଷାନ୍ତ ନ ହୋଇ ବରାବର ଚାଲିଥିଲେ ପାଞ୍ଚ ବର୍ଷ ଲାଗିବ ।

ସୂର୍ଯ୍ୟ ପ୍ରଜ୍ୱଳିତ ଗ୍ୟାସ ସମଷ୍ଟି, ଏଠାରେ ଘନ ବା ତରଳ ବୋଲି କୌଣସି ପଦାର୍ଥ ନାହିଁ । ଏହାର ଉତ୍ତାପ ଭୂମଣ୍ଡଳରେ ଅଗୋଚର । ୯୩୦୦୦୦୦ ମାଇଲ ଦୂରରେ ଥାଇ ମଧ ପୃଥିବୀକୁ ଯେଉଁ ପରିମାଣ ଉତ୍ତାପ ଓ ଆଲୋକ ବିତରଣ କରୁଅଛି ସେଥିରୁ ଉତ୍ତାପର ପରିମାଣ ସହଜେ ଅନୁମେୟ । ସୂର୍ଯ୍ୟର ଶରୀରରୁ ଯେଉଁ ପ୍ରଚଣ୍ଡ ବହ୍ନିଶିଖା ଉତ୍କ୍ଷିପ୍ତ ହେଉଅଛି ତାହା ଭାବିଲେ ବିସ୍ମୟାଭିଭୂତ ହେବାକୁ ହୁଏ । ଏହି ବହ୍ନିଶିଖା ଉତ୍କ୍ଷିପ୍ତବେଳେ କିମ୍ଭୂତ ପ୍ରବଳ ଝଡ଼ ଓ ଶବ୍ଦ ଉତ୍ପତ୍ତି ହେଉଥିବା ତାହା ଭାବନାର ଅଗୋଚର । ଆଲୋକପରି ଶବ୍ଦ ବେଗଗାମୀ ଓ ଦୂରଗାମୀ ନୁହେଁ । ଏଣୁ ଧରାବାସୀ ତାହା ଜାଣୁ ନାହାନ୍ତି ।

ସ୍ୱସ୍ଥାନରେ ଥାଇ ସୂର୍ଯ୍ୟ ନଅ ଗୋଟି ଗ୍ରହର ଚାଳକ ହୋଇଅଛି । ଗ୍ରହମାନେ ତାକୁ ପ୍ରଦକ୍ଷିଣ କରୁ ଅଛନ୍ତି ମାତ୍ର ସୂର୍ଯ୍ୟ କାହାକୁ ପ୍ରଦକ୍ଷିଣ କରେ ନାହିଁ । ସ୍ୱକକ୍ଷରେ ଆବର୍ତ୍ତିତ ହୁଏ । ବେଢ଼େ ବୁଲିବାକୁ ପଚିଶ ଦିନ ଲାଗେ ।

ସୂର୍ଯ୍ୟ ଦେହରେ କେତେଗୁଡ଼ିଏ ଗର୍ତ୍ତ ଦେଖାଯାଏ । କୃଷ୍ଣବର୍ଣ୍ଣ ଚିହ୍ନ ଯାହାକୁ ସୂର୍ଯ୍ୟ କଳଙ୍କ ବୋଲାଯାଏ । ଏଥିର ହ୍ରାସବୃଦ୍ଧି ହୁଏ । କାରଣ, ଆଜିଯାଏ ସ୍ଥିର ନିଶ୍ଚିତ ହୋଇ ନାହିଁ । ଏଗାର ବର୍ଷରେ ଥରେ କଳଙ୍କର ଆୟତନ ବଢ଼େ, ସେହି ସମୟରେ ଏହି ପୃଥିବୀରେ ଚୁମ୍ବକର ବିପର୍ଯ୍ୟୟ ଘଟେ । ଉତ୍ତାପ ବଢ଼େ ବରଷା ଓ ଫସଲର ହ୍ରାସ ଘଟେ । ମାତ୍ର ପଣ୍ଡିତଗଣ ଏ ସମ୍ବନ୍ଧେ କୌଣସି ନିଶ୍ଚିତ ମତରେ ଉପସ୍ଥିତ ହୋଇ ନାହାନ୍ତି ।

ସୂର୍ଯ୍ୟର ଆଲୋକ ଏତେ ପ୍ରଖର ଯେ ଆମେମାନେ ତାକୁ ନିରୀକ୍ଷଣ କରିପାରୁ ନାହିଁ । ସୂର୍ଯ୍ୟ ଶୁକ୍ଳ ଆଲୋକମୟ ଦେଖାଯାଏ ମାତ୍ର ତା'ର ଜ୍ୱଳନ୍ତଅଗ୍ନି ଶିଖାର ବର୍ଣ୍ଣ ଯେ ଭିନ୍ନପ୍ରକାର ତାହା କେବଳ ପୂର୍ଣ୍ଣ ସୂର୍ଯ୍ୟଗ୍ରହଣ ସମୟରେ ଦେଖାଯାଇଥାଏ । ମାତ୍ର ପୂର୍ଣ୍ଣଗ୍ରାସ ତ ସାଧାରଣ ଘଟଣା ନୁହେଁ, ଏଣୁ ସୂର୍ଯ୍ୟର ବହ୍ନି ମୁକୁଟ ପର୍ଯ୍ୟବେକ୍ଷଣ କରିବା ନିମନ୍ତେ ଯନ୍ତ୍ର ନିର୍ମାଣ କରିଅଛନ୍ତି ଯାହାର ସାହାଯ୍ୟରେ ପ୍ରତ୍ୟହ ଏହି ଭୟପ୍ରଦ ଶୋଭା ରାଶି ପର୍ଯ୍ୟବେକ୍ଷଣ କରାଯାଇଥାଏ । ସୂର୍ଯ୍ୟ ଦିହରୁ ଯେଉଁ ଶିଖା ବହିର୍ଗତ ହୁଏ ତାହା ଏକ ସେକେଣ୍ଡରେ ପାଞ୍ଚଶ ମାଇଲ୍ ଗତି କରେ ଏବଂ ଗୋଟିଏ ଗୋଟିଏ ଶାଖା ତିନି ଲକ୍ଷ ମାଇଲ ଊର୍ଦ୍ଧ୍ୱକୁ ଉତ୍କ୍ଷିପ୍ତ ହୋଇଥିବାର ବୈଜ୍ଞାନିକଗଣ ଦେଖିଅଛନ୍ତି । ଅହୋ ! ଆମମାନଙ୍କର ରକ୍ଷାକର୍ତ୍ତାର କ୍ଷମତା କି ଅସାଧାରଣ । ତାହା ଭାବିଲେ ମନରେ ଶ୍ଲାଘା ଜାତ ହୁଏ ।

ଏହି ସୂର୍ଯ୍ୟକୁ ଜୀବଜନ୍ତୁ ସମସ୍ତେ ଚିହ୍ନନ୍ତି ଓ ଜାଣନ୍ତି ଏବଂ ତା'ଠାରୁ ଯେ ଉପକାର ମିଳେ ତାହା ମଧ ଅନୁଭବ କରନ୍ତି । ଶୀତକାଳରେ କୀଟପତଙ୍ଗ ମଧ ଖରା ତାପନ୍ତି, ସେମାନଙ୍କର ଗୁପ୍ତ ବସାରୁ ବାହାରି ଖରାରେ କିଛିକାଳ ପଡ଼ି ରହନ୍ତି । ସମ୍ବର ମୃଗ ପ୍ରଭୃତି ପଶୁମାନେ ଅରଣ୍ୟର ନିଭୃତ ସ୍ଥାନରୁ ବାହାରି କୌଣସି ଖୋଲା ପଡ଼ିଆରେ ଘଣ୍ଟେ ଦୁଇ ଘଣ୍ଟା କ୍ରୀଡ଼ାକରି ପୁଣି ଅରଣ୍ୟ ମଧକୁ ପ୍ରବେଶ କରନ୍ତି ।

ମନୁଷ୍ୟ ଜ୍ଞାନବାନ୍ ହେଲାରୁ ସୂର୍ଯ୍ୟର ରୂପ, ତେଜ, ଉଦୟ, ଅସ୍ତ ଏବଂ ଆକାଶର ଏକ ପ୍ରାନ୍ତରୁ ଅପର ପ୍ରାନ୍ତକୁ ଯିବାବେଳେ ଆଲୋକ ଉତ୍ତାପ ବିତରଣ ଦ୍ୱାରା ଜୀବ ଓ ବୃକ୍ଷ ଲତାଦିର ଅଶେଷ ଉପକାର ସାଧନ କରୁଥିବାର ହୃଦୟଙ୍ଗମ କରି ତାକୁ ଜଗତର ଏକମାତ୍ର ଦେବତା ବୋଲି ଭାବିଲେ । ଅସଭ୍ୟମାନେ ତାକୁ ଗୋଟିଏ ନାମ ଦେଇ କ୍ଷାନ୍ତ ହେଲେ । ମାତ୍ର ବୈଦିକ ଋଷିମାନେ ତାକୁ ପୁଷା, ସବିତା, ବିଷ୍ଣୁ, ସୂର୍ଯ୍ୟ,

ଡର୍ଜନ୍ୟ, ଇନ୍ଦ୍ର, ରୁଦ୍ର ଇତ୍ୟାଦି ନାମରେ ସ୍ତୁତି କରୁଥିଲେ । କ୍ରମେ ସେହି ନାମାନୁସାରେ ଓ ଗୁଣାନୁସାରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଦେବତାର କଳ୍ପନା କଲେ । ଏହି ରୂପରେ ଇନ୍ଦ୍ର ବୃଷ୍ଟିର ଦେବତା, ବିଷ୍ଣୁ କ୍ଷୀରାବ୍ଧିଶାୟୀ ଚତୁର୍ଭୁଜ ବିଷ୍ଣୁ ହେଲେ । ଏମାନଙ୍କର ଆଧିପତ୍ୟ ପୌରାଣିକମାନଙ୍କ କଳ୍ପନାରେ ସ୍ଥାନ ପାଇବାରୁ ସୂର୍ଯ୍ୟଙ୍କୁ ଆଉ ପଚାରେ କିଏ ? ମାତ୍ର ସୂର୍ଯ୍ୟ ସତ । ଆଉ ସବୁ କଳ୍ପନା । କଳ୍ପନାରେ ମାତି ପ୍ରକୃତିକୁ ଆମେମାନେ ଭୁଲିଅଛୁଁ । ସୂର୍ଯ୍ୟ ପ୍ରତ୍ୟହ ଆକାଶରେ ବିଚରଣ କରୁଥିବାର ଦେଖି ସୁଦ୍ଧା ତା'ପ୍ରତି ଦୃଷ୍ଟି କରୁ ନାହିଁ, ଭକ୍ତି ନାହିଁ । ମାତ୍ର ମନ୍ଦିର ମଧ୍ୟସ୍ଥ ହିଁ ଭୁଜଯୁକ୍ତ ମୂର୍ତ୍ତିକୁ ସୂର୍ଯ୍ୟ ବୋଲି ପୂଜା କରୁଅଛୁଁ କିମ୍ବା ମନ୍ଦିରସ୍ଥ ପାଷାଣରେ ଖୋଦିତ ଯନ୍ତ୍ରକୁ ଫୁଲ ଚନ୍ଦନ ଦେଇ ପୂଜା କରୁଅଛୁଁ ଓ ପ୍ରଣାମ କରୁଅଛୁଁ ।

ସୂର୍ଯ୍ୟ ତେଜ ଓ ଉତାପରେ ଅସାଧାରଣ ଗୁଣ ଅଛି ଯାହା ବ୍ୟବହାର କରିପାରିଲେ ଆମମାନଙ୍କର ଅନେକ ପ୍ରକାର ରୋଗନାଶ କରିବାର ଉପାୟ ଉଦ୍ଭାବନ କରାଯାଇପାରେ । ଯନ୍ତ୍ର ଚାଳନା କରାଯାଇପାରେ ମାତ୍ର ତତ୍‌ପ୍ରତି ବୈଜ୍ଞାନିକମାନଙ୍କର ମନୋଯୋଗ ଆକର୍ଷଣ ହୋଇ ନାହିଁ ।

ଆଜିକାଲି ଲୋକଙ୍କର ସୂର୍ଯ୍ୟକୁ ଦେଖିବାକୁ ଭୟ । ଖରାରେ କିଛିକାଳ ବୁଲିବାକୁ ଭୟ, ମାତ୍ର ଦେଖି ଜାଣିଲେ ଓ ବୁଲି ଜାଣିଲେ ଯେ ଶରୀରର ଉପକାର ଅଛି ଏହା କେହି ବୁଝୁ ନାହାନ୍ତି । ପୂର୍ବେ ଅସୂର୍ଯ୍ୟଂଶାରୂପା ଥିଲେ ଏବେ ଧନିକମାନଙ୍କ ମଧ୍ୟରେ ଅସୂର୍ଯ୍ୟଂପଶ୍ୟ ରୂପ ଜନ୍ମ ହେଉଅଛନ୍ତି । ସୂର୍ଯ୍ୟ କିରଣରୁ ଆମମାନଙ୍କର ଶକ୍ତିସଞ୍ଚାର ହୁଏ ଏବଂ ଆମମାନଙ୍କର ଖାଦ୍ୟଶକ୍ତି ମିଳେ । ଏହାର ଶକ୍ତି ତେଜ ଅସାଧାରଣ— ଉଚ୍ଛୃଙ୍ଖଳ ବ୍ୟବହାର କଲେ ବିପତ୍ତି ମାତ୍ର ସୁଶୃଙ୍ଖଳଭାବେ ବ୍ୟବହାର କରିପାରିଲେ ସୁସ୍ଥଶରୀର ଓ ବଳବାନ୍ ହେବା ସ୍ୱାଭାବିକ । ଦୁଃଖର ବିଷୟ କେହି ସେଥିର ସମ୍ବନ୍ଧେ ଚିନ୍ତା କରନ୍ତି ନାହିଁ ।

ସୂର୍ଯ୍ୟ ଜଡ଼— ତା'ଠାରୁ ଚେତନ ଆମମାନଙ୍କର ଜନ୍ମ । ଏଥିରେ ଦ୍ୱିରୁକ୍ତି ନାହିଁ । ଜଡ଼ରୁ ଚେତନ, ପୁଣି ଚେତନରୁ ଜଡ଼ ଏହା ସ୍ଥିର ନିଶ୍ଚିତ, ସୂର୍ଯ୍ୟର ଆରାଧନା ଆମମାନଙ୍କର ମଙ୍ଗଳପ୍ରଦ ଏ କାମନା କରିବା ଉଚିତ। ଆରାଧନା ଅର୍ଥ ଫୁଲ ପାଣି ଚନ୍ଦନ ଦ୍ୱାରା ପୂଜା ନୁହେଁ କିମ୍ବା ଭୋଗ ଲଗାଇବା ନୁହେଁ । ତା' ସମ୍ବନ୍ଧରେ ବିଶେଷ ଗବେଷଣା ଓ ତାକୁ ଚିହ୍ନିବା ଏବଂ ତାର ଆଲୋକ ଓ ଉତ୍ତାପର ସଦ୍‌ବ୍ୟବହାର କରିବା ।

ହୀରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ
ଭୂତସଂଜାତ ପତିରେକ ଆସିତ୍
ସଦାଧର ପୃଥିବୀଂ ଦ୍ୟାମୁତେମା
କସ୍ମୈଦେବାୟ ହବିଷାବିଧମ ॥

•

## ଶୂଦ୍ରଜାତି କେଉଁଟା ?

ଏ ଯୁଗରେ ଶୂଦ୍ରଜାତିକୁ ଠିକ୍ ରୂପେ ପରିଚୟ କରିବା ବଡ଼ କଠିଣ ବ୍ୟାପାର । ବେଦ ଲେଖିଗଲେ ନିଷାଦ ପଞ୍ଚମା ଚତ୍ୱାରୋବର୍ଣ୍ଣାଃ । ଚତ୍ୱାରୋ ବର୍ଣ୍ଣାଃ ବା ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଓ ଶୂଦ୍ର; ଏହି ବାକ୍ୟ ଅନୁସାରେ ଏବଂ ପୁରାଣାଦିର ଅନୁଗ୍ରହରୁ ଏ ଦେଶର କେତେକ ଜାତି ଆପଣାକୁ ବ୍ରାହ୍ମଣ, କେତେକ ଆପଣାକୁ କ୍ଷତ୍ରିୟ, କେତେକ ଆପଣାକୁ ବୈଶ୍ୟ, ପୁଣି କେତେକ ଶୂଦ୍ର ବୋଲି ପରିଚୟ ଦିଅନ୍ତି । ଏ ଦେଶର ଅସଂଖ୍ୟ ଲୋକ ଚାରି ବର୍ଣ୍ଣରୁ ବହିଷ୍କୃତ ଏଣୁ କାଳ୍ପନିକ ଜାତି ନାମରେ କିମ୍ବା ବ୍ୟବସାୟ ବା ବୃତ୍ତି ଅନୁସାରେ ଆପଣାର ଜାତିର ପରିଚୟ ଦିଅନ୍ତି । ଗାନ୍ଧିଜୀଙ୍କର ଆଶା ଯେ ଯେଉଁମାନେ ଏ ଚାରି ବର୍ଣ୍ଣରୁ ବହିର୍ଭୂତ ସେମାନେ ହରିଜନ ଆଖ୍ୟାରେ ପରିଚିତ ହେଲେ ଭବିଷ୍ୟତ୍ ଭାରତର ମଙ୍ଗଳ । ତାହାହେଉ । ମାତ୍ର ଶୂଦ୍ର କିଏ ? ହିନ୍ଦୁଙ୍କ ପ୍ରତି ଶାସ୍ତ୍ରୀୟ ବିଧିବ୍ୟବସ୍ଥା ଯେମନ୍ତ ସହଜ ମୀମାଂସ୍ୟ ବୋଲି ଅନୁମିତ ହୁଏ ଜାତି ଭେଦଟା ମଧ୍ୟ ସେହିପରି ସହଜ ମୀମାଂସ୍ୟ ବୋଲି ବୋଧ ହୋଇପାରେ ମାତ୍ର ତାହା ନୁହେଁ । ଆଲୋଚନା କଲେ ସମସ୍ତ ଅମୀମାଂସ୍ୟ ଏବଂ ସମସ୍ତ ଜଟିଳରୁ ଜଟିଳତର ବୋଲି ବୋଧ ହୁଏ ।

ପୂର୍ବେ ବର୍ଣ୍ଣ ଓ ଜାତି ସମ୍ବନ୍ଧରେ ଅନେକ ପ୍ରବନ୍ଧ ଲେଖାଯାଇଅଛି, ଶୂଦ୍ର ସମ୍ବନ୍ଧେ ପୁନରାବୃତ୍ତି ଏ ପ୍ରବନ୍ଧର ଉଦ୍ଦେଶ୍ୟ ।

କେତେକ ପୁରାଣ ଓ ଉପପୁରାଣ ଓ କେତେକ ତଥାକଥିତ ଧର୍ମଶାସ୍ତ୍ର ପ୍ରାଚୀନ ଓ ପ୍ରଧାନ । କେତେଗୋଟା ପୁରାଣ ଓ ଧର୍ମଶାସ୍ତ୍ର ପ୍ରାଚୀନ ଶାସ୍ତ୍ରର ପୁନରୁକ୍ତି ମାତ୍ର; ଏଣୁ ପ୍ରାୟ ସମସ୍ତ ପୁରାଣାଦିରେ ଏକମାତ୍ର ପୁନରୁଲ୍ଲେଖ ଦେଖାଯାଏ । ଏକ ବର୍ଣ୍ଣରୁ ଚାରି ବର୍ଣ୍ଣ ଏହା ସମସ୍ତ ଧର୍ମଶାସ୍ତ୍ର ଓ ପୁରାଣରେ ଦେଖାଯାଏ । ବ୍ରହ୍ମଠାରୁ ଉତ୍ପନ୍ନ ଏଣୁ ପ୍ରଥମ ମନୁଷ୍ୟ ବ୍ରାହ୍ମଣ, ତା'ର ଗୁଣ କର୍ମାନୁସାରେ ଚାରି ବର୍ଣ୍ଣର ସୃଷ୍ଟି ।

''ଏକ ବର୍ଣ୍ଣ ମିଦଂ ପୂର୍ବଂ ବିଶ୍ୱମାସୀତ୍ ଯୁଧିଷ୍ଠିର ।
କର୍ମକ୍ରିୟା ବିଶେଷେଣ ଚାତୁର୍ବର୍ଣ୍ଣ୍ୟଂ ପ୍ରତିଷ୍ଠିତଃ ।''

ହେ ଯୁଧିଷ୍ଠିର, ପୂର୍ବରେ ଏହି ବିଶ୍ୱରେ ଏକ ବର୍ଣ୍ଣ ଥିଲା, କର୍ମକ୍ରିୟା ବିଶେଷରୁ ଚାରି ବର୍ଣ୍ଣ ପ୍ରତିଷ୍ଠିତ ହୋଇଅଛି । ଯୁଧିଷ୍ଠିରଙ୍କୁ ବ୍ୟାସଦେବ ଶାନ୍ତି ପର୍ବରେ ଏହା ବୁଝାଇ ଅଛନ୍ତି । ଉଦ୍ୟୋଗ ପର୍ବର ଗୀତାରେ ଅର୍ଜୁନଙ୍କୁ କୃଷ୍ଣ କହିଥିଲେ—

'ଚାତୁର୍ବର୍ଣ୍ଣ୍ୟଂ ମୟାସୃଷ୍ଟ୍ୟ ଗୁଣକର୍ମ ବିଭାଗଶଃ'

ଏହାଛଡ଼ା ଭାଗବତର :

'ଏକ ଏବ ପୁରାବେଦଃ ପ୍ରଣବଃ ସର୍ବବାଙ୍ମୟଃ
ଦେବୋ ନାରାୟଣୋ ନାନ୍ୟ ଏକୋଽଗ୍ନିର୍ବର୍ଣ୍ଣ ଏବଚ'

ପୂର୍ବେ ଗୋଟିଏ ମାତ୍ର ବେଦ ଥିଲା । ବାଙ୍ମୟ ଏକମାତ୍ର ପ୍ରଣବ ଥିଲା, ଏକମାତ୍ର ନାରାୟଣ ଥିଲେ ଅଗ୍ନି ଗୋଟିଏ ଏବଂ ଚ ବର୍ଣ୍ଣ ଗୋଟିଏ ଥିଲା । ଅଧିକ ଉଲ୍ଲେଖର ନିଷ୍ପ୍ରୟୋଜନ, ଋଗ୍‌ବେଦର ପୁରୁଷ ସୂକ୍ତର ବ୍ରାହ୍ମଣ ରାଜନ୍ୟ ବୈଶ୍ୟ ଶୂଦ୍ରର ଉଲ୍ଲେଖକୁ ଉପରୋକ୍ତ ତିନିଶ୍ଳୋକ ଜାଲ ପ୍ରମାଣ କରୁଅଛନ୍ତି । ଅର୍ଥାତ୍ ଋଗ୍‌ବେଦ ସମୟରେ ବର୍ଣ୍ଣ ବିଭାଗ ହୋଇ ନ ଥିଲା । ବାୟୁ ପୁରାଣ ଏ ବିଷୟକୁ ସ୍ପଷ୍ଟ ରୂପରେ ପ୍ରକାଶ କରି ଅଛନ୍ତି ଯେ ତ୍ରେତାଯୁଗରେ ବର୍ଣ୍ଣ ବିଭାଗ ହୋଇଅଛି ।

''ବର୍ଣ୍ଣାନାଂ ପ୍ରବିଭାଗାଶ୍ଚ ତ୍ରେତାୟାଂ ସମ୍ପ୍ରକୀର୍ତ୍ତିତାଃ ।''

ଅଧିକ ଉଦାହରଣର ପ୍ରୟୋଜନ କ'ଣ ? ଯେଉଁ ଗ୍ରନ୍ଥମାନଙ୍କର ବଚନ ଉଦ୍ଧୃତ କରି ଆମେମାନେ ଜାତିର ଆଧିକ୍ୟ ଦେଖାଉଁ, ସେହି ଗ୍ରନ୍ଥମାନେ ସ୍ଥଳବିଶେଷରେ ବର୍ଣ୍ଣ ଓ ଜାତି ବିଭାଗର କୃତ୍ରିମତା ପ୍ରତିପାଦନ କରିଅଛନ୍ତି ।

ଯେଉଁ ମହାଭାରତ ପ୍ରକାଶ କଲେ ଯେ ଏ ସଂସାରର ସମସ୍ତ ଜାତି ବ୍ରାହ୍ମଣ ଥିଲେ କ୍ରିୟାକର୍ମ ବିଶେଷରୁ ଚାରି ବର୍ଣ୍ଣ ପ୍ରତିଷ୍ଠିତ ହେଲା ସେହି ମହାଭାରତ ପୁଣି କହୁଅଛନ୍ତି ।

ହିଂସା ନୃତା ପ୍ରିୟା ଲୁବ୍ଧାଃ ସର୍ବ କର୍ମୋପଜୀବିନଃ,
କୃଷ୍ଣା ଶୌଚ ପରି ଭ୍ରଷ୍ଟାସ୍ତେ ଦ୍ୱିଜାଃ ଶୂଦ୍ରତାଂଗତାଃ ।

ହିଂସାକାରୀ, ମିଥ୍ୟାବାଦୀ ଅପ୍ରିୟବାଦୀ ଲୋଭୀ ସର୍ବକର୍ମକାରୀ କୃଷ୍ଣବର୍ଣ୍ଣ ଶୌଚପରିଭ୍ରଷ୍ଟ ଦ୍ୱିଜଗଣ ଶୂଦ୍ର ବର୍ଣ୍ଣ ହେଲେ । ବର୍ତ୍ତମାନ ଭାରତୀୟ ଜାତିଙ୍କି ଦେଖି ଉପରୋକ୍ତ ଲକ୍ଷଣାନୁସାରେ ଶୂଦ୍ର ଜାତି ନିଶ୍ଚିତ କରାଯାଇପାରେ କି ? ଅସମ୍ଭବ । ତେବେ ଶୂଦ୍ର ବର୍ଣ୍ଣର ପରିଚୟ କ'ଣ ?

''ଏକ ମେବତୁ ଶୂଦ୍ରସ୍ୟ ପ୍ରଭୁଃକର୍ମସମାଦିଶତ୍ ।
ଏତେଷାମେବ ବର୍ଣ୍ଣାନାଂ ଶୁଶ୍ରୂଷାମନ ସୂୟୟାଃ ।''

ପ୍ରଭୁ ଶୂଦ୍ରର ନିମନ୍ତେ ଗୋଟିଏ କର୍ମ ନିର୍ଦ୍ଦିଷ୍ଟ କରିଦେଲେ ଯେ ସେ ଅସୂୟା ବିହୀନ ହୋଇ ଏହି ବର୍ଣ୍ଣମାନଙ୍କର (କ୍ଷତ୍ରିୟ, ବ୍ରାହ୍ମଣ, ବୈଶ୍ୟ) ଶୁଶ୍ରୂଷା କରିବ ।

ଅନ୍ୟାନ୍ୟ ଶାସ୍ତ୍ର ଅପେକ୍ଷା ମନୁ ହିଁ ଜାତି ବିଶେଷର ଗୁଣ କର୍ମ ବିଶେଷ ଭାବରେ ବର୍ଣ୍ଣନା କରିଯାଇଅଛନ୍ତି । ସୁତରାଂ ମନୁରୁ ଆଉ ଦୁଇ ତିନିଟା ଶ୍ଳୋକ ଉଦ୍ଧୃତ କରିବାଦ୍ୱାରା ଶୂଦ୍ର ବର୍ଣ୍ଣର ପରିଚୟ ଦିଆଯାଉ ।

''ଶୂଦ୍ରନ୍ତୁ କାରୟେ ଦାସ୍ୟଂ କ୍ରୀତମକ୍ରୀତ ମେବା ବା ।
ଦାସ୍ୟଯୈବହି ସୃଷ୍ଟୋଽସୌ ବ୍ରାହ୍ମଣସ୍ୟ ସ୍ୱୟମ୍ଭୂବା ।''

ଶୂଦ୍ର କ୍ରୀତ ହେଉବା ଅକ୍ରୀତ ହେଉ ତଦ୍ୱାରା ଦାସ୍ୟ କାର୍ଯ୍ୟ କରାଇବ, ବିଧାତା ଦାସ୍ୟକର୍ମ ନିମନ୍ତେ ଶୂଦ୍ରକୁ ସୃଷ୍ଟି କରିଅଛନ୍ତି ।

କେବଳ ଏତିକି ନୁହେଁ ଶୂଦ୍ର ଦାସତ୍ୱରୁ କଦାପି ନିଷ୍କୃତ ପାଇ ନ ପାରେ ଯେହେତୁ ଦାସତ୍ୱ କାର୍ଯ୍ୟ ତା'ର ଜନ୍ମଗତ ।

ପାଶ୍ଚାତ୍ୟ ଶାସନ ପ୍ରସାଦରୁ ଏ ଦେଶରେ ଦାସତ୍ୱ ଆଉ ନାହିଁ । ଜୀବନୋପାୟ ପନ୍ଥା ଅବଲମ୍ବନ ଇଚ୍ଛାଧୀନ । କୌଣସି ଗୋଟାଏ ନିର୍ଦ୍ଦିଷ୍ଟ ଜାତି ବଂଶ ପରମ୍ପରାରେ ବ୍ରାହ୍ମଣ କ୍ଷତ୍ରିୟାଦିକୁ ସେବା କରିବାକୁ ଅଧୁନା ବାଧ ନୁହେଁ । ସୁତରାଂ ମନୁଙ୍କର ଏ ଅନୁଶାସନ ରଦ୍ଦ ବୋଲାଯିବ । ଅଧୁନା କୌଣସି ଜାତି ସେବା କରିବାକୁ ବାଧ ନୁହେଁ । ଏବଂ ସେବା ନ କଲେ କୌଣସି ଜାତି ଦଣ୍ଡାର୍ହ ନୁହେଁ । ସେବା ଇଚ୍ଛାଧୀନ, ସୁତରାଂ ଶୂଦ୍ରର ପ୍ରକୃତ ପରିଚୟ କାହିଁ ?

ମନୁଙ୍କର ଦଣ୍ଡବିଧି ଦୋଷ ଭେଦରେ ନୁହେଁ, ଜାତି ଭେଦରେ । ଶୂଦ୍ରର ଜୀବନର ମୂଲ୍ୟ କ'ଣ ? ଶୂଦ୍ର ଯେବେ ବ୍ରାହ୍ମଣପ୍ରତି କଠିନ ବାକ୍ୟ ପ୍ରୟୋଗ କରେ ତା'ର ଦଣ୍ଡ କ'ଣ ? ତା'ର ଜିହ୍ୱା ଛେଦନ କରାଯିବ । ଶୂଦ୍ର ଯେବେ ଆକ୍ରୋଶରେ ବ୍ରାହ୍ମଣର ଜାତି ଓ ନାମ ଉଚ୍ଚାରଣ କରେ ତାହାହେଲେ ଜ୍ୱଳନ୍ତ ଦଶାଙ୍ଗୁଳି ଲୌହମୟ ଶଙ୍କୁ ତା'ର ଜିହ୍ୱାରେ ନିକ୍ଷେପ କରାଯିବା ବିଧି ।

ଯେବେ ଶୂଦ୍ର ବ୍ରାହ୍ମଣକୁ ଧର୍ମୋପଦେଶ ଦେବ ତେବେ ରାଜା ତାହାର କର୍ଣ୍ଣରେ ଓ ମୁଖରେ ତପ୍ତ ତୈଳ ଢାଳି ଦେବେ । ବ୍ରିଟିଶ୍ ଶାସକମାନେ ମନୁଙ୍କ ଉପଯୁକ୍ତ ଶିଷ୍ୟ ନୁହନ୍ତି ଯେହେତୁ ଏସବୁ ବ୍ୟବସ୍ଥାକୁ ରଦ୍ଦ କରିଅଛନ୍ତି ।

''ନ ଶୂଦ୍ରେ ପାତକଂ କିଞ୍ଚିତ୍ ନଚସଂସ୍କାର ମର୍ହତି
ନାସ୍ୟାଧିକାରୋ ଧର୍ମୋଽସ୍ତି ନଧର୍ମାତ ପ୍ରତିଷେଧନଂ ।''

ଶୂଦ୍ର କୌଣସି ସଂସ୍କାରଯୋଗ୍ୟ ନୁହେଁ ତା'ର କୌଣସି ଧର୍ମରେ ଅଧିକାର ନାହିଁ । ଧର୍ମ କାର୍ଯ୍ୟାଦି ନ କଲେ କୌଣସି ପାପ ନାହିଁ । କୌଣସି ମନୁଷ୍ୟ ପ୍ରତି କୌଣସି ମନୁଷ୍ୟ ଏ

ପ୍ରକାର ଅମାନୁଷିକ ହେୟ ପ୍ରକାଶ କରିବା ସମ୍ଭବ ନୁହେଁ ତଥାପି ମନୁ ମହାରାଜ ଗୋଟାଏ ଜାତିକୁ ଚିରକାଳ ପଶୁଧର୍ମୀ କରିବାର ପ୍ରୟାସ କରିଯାଇଅଛନ୍ତି । ଆମେମାନେ ଏ ଦେଶରେ କୌଣସି ଗୋଟାଏ ଜାତିକୁ ଦେଖିବାକୁ ପାଉଁ କି ଯେଉଁ ଜାତି କୌଣସି ଧର୍ମାଚରଣ କରିବାକୁ ଇଚ୍ଛା ନ କରେ କିମ୍ବା କୌଣସି ଧର୍ମାଦି କାର୍ଯ୍ୟ ନ କଲେ ଯେଉଁ ଜାତିର ପାପ ନାହିଁ ? ତେବେ କେଉଁ ଜାତିଟା ଶୂଦ୍ର ?

ମନୁରେ ଶୂଦ୍ରକୁ ବିଦ୍ୟାଶିକ୍ଷା ଦେବାକୁ ଧର୍ମୋପଦେଶ ଦେବାକୁ ନିଷେଧ । ଶୂଦ୍ର ଧନ ଉପାର୍ଜନର ଅଧିକାରୀ ନୁହେଁ । ଅଧୁନା ଭୃତ୍ୟକୁ ଉପଯୁକ୍ତ ପ୍ରାପ୍ୟ ନ ଦେଲେ ନାଲିସ୍ କରି ବସିବ । ଭର୍ତ୍ସନା କରିବ ଏବଂ ସେଥି ନିମନ୍ତେ ତା'ର ଜିହ୍ୱାରେ ତପ୍ତ ଲୌହଶଳାକା ଦିଆଯିବ ନାହିଁ । ତେବେ ମନୁଙ୍କର ଅନୁସାରେ ଏବେ କେଉଁ ଜାତିଟି ଶୂଦ୍ର ?

ବ୍ରାହ୍ମଣ କ୍ଷତ୍ରିୟଙ୍କର ସୁବିଧା ନିମନ୍ତେ ଗୋଟାଏ ଜାତିକୁ ଚିରକାଳ ହୀନ ଓ ହେୟ କରି ରଖିଥିବାର ଯେ ବ୍ୟବସ୍ଥା ତାହା କି ଚିରକାଳ ତିଷ୍ଠିପାରେ ? ସୁତରାଂ ତାଙ୍କ ବ୍ୟବସ୍ଥା ଅନୁସାରେ ବର୍ତ୍ତମାନ କେଉଁ ଜାତିଟା ଶୂଦ୍ର ତାହା ଜାଣିବା କଠିନ ଅଥଚ କେତେକ ଜାତି ନିଜକୁ ଶୂଦ୍ର ବୋଲି ପରିଚୟ ଦେବାକୁ କୁଣ୍ଠିତ ନୁହନ୍ତ ଏବଂ ଶୂଦ୍ର ଜାତିର ଏତେ ନିନ୍ଦା ଓ ଅପମାନ ଯେଉଁ ଶାସ୍ତ୍ରରେ ଲେଖା ଯାଇଅଛି, ତାକୁ ଲୋକେ ଅଧୁନା ନତମସ୍ତକରେ ମାନିବାକୁ କୁଣ୍ଠିତ ନୁହନ୍ତି । କିମାଶ୍ଚର୍ଯ୍ୟ ମତଃପରଂ ।

•

## ନାରାୟଣ

ଆହା ! ହିନ୍ଦୁ ପ୍ରତି ନାରାୟଣ ରୂପ କି କମନୀୟ, କି ଲୋଭନୀୟ ! ଏ ରୂପର ଭାବନାରେ ମନ ପୁଲକିତ ହୁଏ, ଶରୀର ରୋମାଞ୍ଚିତ ହୁଏ । ପୁରୁଷାନୁକ୍ରମିକ ଅଭ୍ୟାସ । ନାରାୟଣ ନାମ ଉଚ୍ଚାରଣ କଲେ ସମସ୍ତ ପାପ ବିନଷ୍ଟ ହୁଏ । ଅନ୍ୟେ ପରେ କା କଥା, ନାରାୟଣ ଶବ୍ଦ ଉଚ୍ଚାରଣ କଲେ ମୋକ୍ଷ ଲାଭ ହୁଏ ।

ନାରାୟଣେତି ଶବ୍ଦୋସ୍ତି ବାଗସ୍ତି ବଶବର୍ତ୍ତିନୀ ।
ତଥାପି ନରକେ ମୂଢ଼ା ପତନ୍ତୀହ କିମଦ୍ଭୁତଂ ॥

ନାରାୟଣ ଶବ୍ଦ ଥାଉ ଥାଉ ଏବଂ ବଶବର୍ତ୍ତିନୀ ବାକ୍‌ଶକ୍ତି ଥାଉ ଥାଉ ମୂଢ଼ମାନେ ଯେ ନରକରେ ପଡ଼ନ୍ତି, ଏଥିରୁ ବଳି ଅଦ୍ଭୁତ କଥା କି ଅଛି ? ଏଣୁ ନାରାୟଣ ନାମ ହିନ୍ଦୁର ଜପଯୋଗ୍ୟ ଏବଂ ଏହାଙ୍କ ରୂପ ଧ୍ୟାନଯୋଗ୍ୟ ।

ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ, କମଳଲୋଚନ, ନୀଳାମ୍ବୁଛବି, ଶ୍ରୀବତ୍ସଲାଞ୍ଛନ, ବନମାଳାଧର, କେୟୂରକୁଣ୍ଡଳ କିରୀଟ-ମୁକୁଟ-ଶୋଭୀ, ଗରୁଡ଼ୋପରିସଂସ୍ଥିତ, ପଦ୍ମାସନ ନାରାୟଣସ୍ୱରୂପମାଧୁରୀ ଯୁଗେ ଯୁଗେ ହିନ୍ଦୁର ମନକୁ ମୋହିତ କରି ରଖିଅଛି । ନାରାୟଣଙ୍କର ଧାତବ ମୂର୍ତ୍ତି ଏବଂ ଚିତ୍ର ହିନ୍ଦୁର ନେତ୍ର-ପ୍ରୀତିକର ।

ନାରାୟଣଙ୍କର ପତ୍ନୀ ଦୁଇ ;— ଜଳଧି ସୁତା ଲକ୍ଷ୍ମୀ ଏବଂ ବିଶ୍ୱଧାତ୍ରୀ ସରସ୍ୱତୀ । ଜଣେ ଧନଦାତ୍ରୀ, ଜଣେ ବିଦ୍ୟାଦାତ୍ରୀ । ନାରାୟଣଙ୍କର ନିବାସ ବୈକୁଣ୍ଠ । ସେହି ବୈକୁଣ୍ଠ ପ୍ରାପ୍ତି ହିନ୍ଦୁର ପରମ କାମ୍ୟ; ଏଣୁ ନାରାୟଣ ଧ୍ୟାନ, ନାରାୟଣ ପୂଜା ଓ ଜପ ।

ନାରାୟଣଙ୍କର ଆଉ ଗୋଟିଏ ଧ୍ୟାନ ଅଛି । ଆମ୍ଭେମାନେ ସନ୍ଧ୍ୟୋପାସନା କରୁଥିଲା ବେଳେ ସେହି ନାରାୟଣ ଆମ୍ଭମାନଙ୍କର ଧ୍ୟେୟ ଥିଲେ :—

ଓଁ ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ
ନାରାୟଣସରସୀଜାସନସନ୍ନିବିଷ୍ଟଃ
କେୟୂରବାନ୍ କନକ କୁଣ୍ଡଳବାନ୍ କିରୀଟି—
ହାରୀ ହିରଣ୍ମୟ ବପୁଃ ଧୃତଶଙ୍ଖଚକ୍ରଃ ॥

ପ୍ରଚଣ୍ଡ ସୂର୍ଯ୍ୟମଣ୍ଡଳ ମଧ୍ୟବର୍ତ୍ତୀ ଦେହଧାରୀ ନାରାୟଣଙ୍କ ଧ୍ୟାନ ଅସମ୍ଭବ, ତଥାପି ଧ୍ୟାନଟି ମୁଖରେ ଉଚ୍ଚାରଣ କରିବାକୁ ହିନ୍ଦୁ ବାଧ୍ୟ । ଆମ୍ଭେମାନେ ଅନେକ ଦିନ ଏହି ଧ୍ୟାନ ମୁଖରେ ଉଚ୍ଚାରଣ କରିଥିଲୁଁ । ସ୍ୱାଧୀନ ଉଚ୍ଚ ଶିକ୍ଷା ମନକୁ ବିଚଳିତ କଲା । ସ୍ୱାଧୀନ ଶିକ୍ଷାର ଏହା ଗୋଟିଏ ଦୁର୍ଗୁଣ— ତାହା ଭକ୍ତି ଓ ବିଶ୍ୱାସରେ ବ୍ୟାଘାତ ଜନ୍ମାଏ, ସନ୍ଦେହରେ ମନକୁ ଆନ୍ଦୋଳିତ କରେ, ତତ୍ତ୍ୱାନ୍ୱେଷଣ ନିମନ୍ତେ ଆଗ୍ରହ ଜନ୍ମାଏ ।

ପାଶ୍ଚାତ୍ୟ ଶିକ୍ଷା ଓ ସ୍ୱାଧୀନ ଶିକ୍ଷା ସିନା ସନ୍ଦେହ ଜାତ କରେ; ମାତ୍ର ହିନ୍ଦୁର ଆରାଧ୍ୟ ଦେବତାମାନଙ୍କର ତତ୍ତ୍ୱ ବୁଝାଇବାକୁ ତାହା କ୍ଷମ କି ? ବେଦ ହିଁ ହିନ୍ଦୁ ଶାସ୍ତ୍ର ଓ ଜ୍ଞାନର ଶାସ୍ତ୍ର । ତତ୍ତ୍ୱ ମିଳିବ ବେଦରୁ । ଏଣୁ ଧର୍ମାଲୋଚନାରେ ବେଦର ଶରଣ ନେବାକୁ ପଡ଼େ । ଋଗ୍‌ବେଦ ଦେଖାଗଲା । ଋଗ୍‌ବେଦରେ ନାରାୟଣଙ୍କର ନାମ, ରୂପ ଓ ଗୁଣର କୌଣସି ଉଲ୍ଲେଖ ନାହିଁ, କିମ୍ବା ଅନ୍ୟ ବେଦରେ ନାହିଁ । ଶତପଥ ବ୍ରାହ୍ମଣରେ କେବଳ ନାରାୟଣ ଶବ୍ଦର ଉଲ୍ଲେଖ ଅଛି । ଏହା ଗୋଟିଏ ନରମେଧ ଯଜ୍ଞର ବିବରଣ ।

ପୁରୁଷୋହନାରାୟଣୋଽକାମୟତ ଅତିତିଷ୍ଠେୟଂ ସର୍ବା̐ଣି ଭୂତାନ୍ୟହ ମେବେଦଂ ସର୍ବସ୍ୟାମିତି ।

''ସ ଏତଂ ପୁରୁଷମେଧଂ ପଞ୍ଚରାତ୍ରଂ ଯଜ୍ଞଂ'' ଇତ୍ୟାଦି ।

ଏଥିରୁ ଜଣାଯାଏ ଯେ ନାରାୟଣ ଜଣେ ପୁରୁଷ, ଯେ କି ବିଧିପୂର୍ବକ ନରମେଧ ଯଜ୍ଞ କରି ଶ୍ରେଷ୍ଠତ୍ୱ ଲାଭ କରିଥିଲେ। ଶତ୍‌ପଥ ବ୍ରାହ୍ମଣର ନାରାୟଣ ଆମ୍ଭମାନଙ୍କର ପ୍ରିୟଦର୍ଶନ ବୈକୁଣ୍ଠବିହାରୀ ନାରାୟଣ ନୁହନ୍ତି । ଏ ନାରାୟଣ ଚତୁର୍ଭୁଜ ନୁହନ୍ତି, ବା ଶଙ୍ଖ-ଚକ୍ର-ଗଦା ପଦ୍ମଧାରୀ ନୁହଁନ୍ତି, କିମ୍ବା ସୂର୍ଯ୍ୟମଣ୍ଡଳ ମଧବର୍ତ୍ତୀ ନୁହଁନ୍ତି । ତେବେ ବୈଦିକ ଯୁଗରେ ନାରାୟଣ ରୂପ ପରିକଳ୍ପିତ ହୋଇ ନ ଥିଲା ବୋଇଲେ କି ଆମ୍ଭେମାନେ ଦୋଷୀ ସାବ୍ୟସ୍ତ ହେବୁଁ ?

ଦୁର୍ଗା, କାଳୀ, ଗଣେଶ, ମହେଶ୍ୱର, ଇନ୍ଦ୍ର, ବ୍ରହ୍ମା, ପ୍ରଭୃତି ମୂର୍ତ୍ତି ସମୂହ ଯେମନ୍ତ ତାନ୍ତ୍ରିକ ସାଧକମାନଙ୍କର କଳ୍ପନାପ୍ରସୂତ, ସେହିପରି ନାରାୟଣ ରୂପ ମଧ ସାଧକର କଳ୍ପନାପ୍ରସୂତ । ଭୟରୁ ଭକ୍ତି ଏବଂ ପ୍ରେମରୁ ଭକ୍ତି । ଉଗ୍ର ସାଧକମାନେ ଭୟ ଜନ୍ମାଇ ଭକ୍ତମାନଙ୍କଠାରୁ ଭକ୍ତି ଆଦାୟ କରନ୍ତି । ଶାନ୍ତ ସାଧକମାନେ ଆପଣାର କଳ୍ପିତ ଦେବତାର ସଦ୍‌ଗୁଣ ବର୍ଣ୍ଣନାରେ ଭକ୍ତମାନଙ୍କୁ ମୋହିତ କରନ୍ତି । କାଳୀ ତାରା ଉଗ୍ରସାଧକର କଳ୍ପନାର ଫଳ ଏବଂ ନାରାୟଣ ଶାନ୍ତ ସାଧକର କଳ୍ପନାର ଫଳ ।

ପୁରାଣରେ ନାରାୟଣଙ୍କର ବର୍ଣ୍ଣନାର ସୀମା ନାହିଁ । ପୁରାଣରେ ନାରାୟଣ ଶବ୍ଦର ବ୍ୟୁତ୍ପତ୍ତିର ଅଭାବ ନାହିଁ । କାହାରି ମତରେ 'ନାରା' ଅର୍ଥ ଆତ୍ମା, କେହି କହନ୍ତି 'ନାରା' ଅର୍ଥ ପାପ, କେହି କହନ୍ତି ମୋକ୍ଷ, କେହି କହନ୍ତି ଜୀବ । ଆପଣା ଆପଣା ଅଭୀଷ୍ଟ ସିଦ୍ଧି କଳ୍ପନାରେ ଗୋଟାଏ ଶବ୍ଦର ଏତେ ଅର୍ଥ । ପୁଣି ଅନେକଙ୍କ ମତରେ 'ନାର' ଅର୍ଥ ଜଳ । ମନୁଙ୍କ ମତରେ 'ନାର' ଅର୍ଥ ଜଳ । ପୁଣି 'ଅୟନ' ଅର୍ଥ ଗମନ, ଜ୍ଞାନ, କ୍ରୀଡ଼ା ଇତ୍ୟାଦି । ଗୋଟାଏ ଶବ୍ଦ ଘେନି ପୌରାଣିକ ବ୍ୟାଖ୍ୟାକ ଅନେକ । ବାହୁଲ୍ୟ ଭୟରେ ଅଧିକ ଲେଖାଗଲା ନାହିଁ । ମନୁଙ୍କ ମତରେ :—

''ଆପୋ ନାରା ଇତି ପ୍ରୋକ୍ତା ଆପୋ ବୈ ନରସୂନବଃ ।
ତା ଯଦସ୍ୟାୟନଂ ପୂର୍ବ ତେନ ନାରାୟଣଃ ସ୍ମୃତଃ ।।''

ବ୍ୟାଖ୍ୟାକାରମାନେ ଏହି ଶ୍ଳୋକର ଅର୍ଥକୁ ଯେତେଦୂର ସମ୍ଭବ ଜଟିଳ କରିବାକୁ ଚେଷ୍ଟା କରିଅଛନ୍ତି । ଏଥିର ସ୍ଥୂଳ ଅର୍ଥ ଏହି ଯେ ଜଳରେ କ୍ରୀଡ଼ା କରେ ସେ ନାରାୟଣ । ଏହିଁ ଅର୍ଥକୁ ହୃଦୟଙ୍ଗମ କଲେ ପ୍ରତୀତି ଜନ୍ମେ ଯେ ଜୀବ ମାତ୍ରେ ହିଁ ନାରାୟଣ, ବା ଜୀବର ନାମାନ୍ତର ନାରାୟଣ । ଭୂପୃଷ୍ଠରେ ଏପରି ଜୀବ ନାହିଁ ଯେ କି ଜଳରେ କ୍ରୀଡ଼ା କରେ ନାହିଁ । ଉଦ୍ଭିଦ, ଅଣ୍ଡଜ, ଜରାୟୁଜ ସମସ୍ତଙ୍କର ଜନ୍ମ ଜଳରୁ ବା ଜଳ ସାହାଯ୍ୟରେ । ଏହା ଅସ୍ୱୀକାର୍ଯ୍ୟ ନୁହେଁ । ଏହା ଶାସ୍ତ୍ର ଓ ବିଜ୍ଞାନସମ୍ମତ ।

ଜୀବମାନଙ୍କ ମଧରେ ମନୁଷ୍ୟ ଶ୍ରେଷ୍ଠ ଜୀବ; ଜଳରେ ଏହାର ଉତ୍ପତ୍ତି ଓ ଜନ୍ମ, ଏଣୁ ସେ ନାରାୟଣ । ନରରୂପୀ ନାରାୟଣର କିଞ୍ଚିତ୍ ଆଲୋଚନା କରାଯାଉ ।

ନାରାୟଣ ରୂପ ଓ ଧ୍ୟାନ କଳ୍ପନା-ପ୍ରସୂତ ଏବଂ ନାରାୟଣ ଶବ୍ଦର ଜଟିଳ ବ୍ୟାଖ୍ୟା ସମୂହ ମଧ କଳ୍ପନା-ପ୍ରସୂତ । ମାତ୍ର ତାହା ହିନ୍ଦୁର ଶିରୋଧାର୍ଯ୍ୟ । କୌଣସି ନୂତନ ବ୍ୟାଖ୍ୟା ହାସ୍ୟୋଦ୍ଦୀପକ ଓ ହେୟ । ଏହା ଆମ୍ଭମାନଙ୍କୁ ଜଣା । ତଥାପି ଗୋଟିଏ ବ୍ୟାଖ୍ୟା ପାଠକମାନଙ୍କୁ ନିବେଦନ କଲେ କ୍ଷତି କ'ଣ ?

ପୁନରୁଲ୍ଲେଖର କିଞ୍ଚିତ୍ ପ୍ରୟୋଜନ ଅଛି :— ଜଳରେ ଯେ କ୍ରୀଡ଼ା କରେ ସେ ନାରାୟଣ । ଜୀବ ମାତ୍ରର ଜଳରୁ ଉତ୍ପତ୍ତି ଓ ଜନ୍ମ ଏବଂ ଜୀବ ସମସ୍ତେ ଜଳରେ କ୍ରୀଡ଼ା କରନ୍ତି; ଏଣୁ ଜୀବ ସମୂହ ନାରାୟଣ ପଦବାଚ୍ୟ । ନର ଶ୍ରେଷ୍ଠ ଜୀବ । ଏଣୁ ନାରାୟଣ । ଅନ୍ୟ ଜୀବର କଥା ଛାଡ଼ି ଆମ୍ଭେମାନେ ଏଠାରେ କେବଳ ନର ନାରାୟଣଙ୍କର ଆଲୋଚନାରେ ପ୍ରବୃତ୍ତ ହେବୁଁ ।

ମାତୃଗର୍ଭ ଅନନ୍ତ ବ୍ରହ୍ମାଣ୍ଡ ଗୋଲକ । ତହିଁର ଜଳରାଶିରେ ଶିଶୁର ଉତ୍ପତ୍ତି । ସେହି ଜଳ ରାଶିରେ ବଟପୁଟଶାୟୀ ନାରାୟଣର କ୍ରୀଡ଼ା; ଶିଶୁ ନାରାୟଣ ଗର୍ଭସ୍ଥ ଜଳରାଶି ଭିନ୍ନ ବାହ୍ୟିକ ବସ୍ତୁ ସହିତ ସମ୍ପର୍କଶୂନ୍ୟ । ଆହାର ନାହିଁ ନିଦ୍ରା ନାହିଁ ନିଃଶ୍ୱାସ ପ୍ରଶ୍ୱାସ ନାହିଁ । ସଦ୍ୟ ଜାଗ୍ରତ ବୋଇଲେ ଚଳେ । ଶିଶୁନାରାୟଣର ନାଭିରେ କମଳ । ମାତୃଦେବୀ ଏହି କମଳର ଅଧିଷ୍ଠାତ୍ରୀ ଦେବତା, ସୃଷ୍ଟିକର୍ତ୍ତ୍ରୀ । ଶିଶୁ-ନାରାୟଣର ଜନ୍ମ ବା ସଂସାର ଦର୍ଶନ ମାତୃ କର୍ତ୍ତୃକ ଜଗତ ସୃଷ୍ଟି । ଶିଶୁ ଭୂମିଷ୍ଠ ହେଲାରୁ ସୃଷ୍ଟି କାର୍ଯ୍ୟ ଶେଷ । ଶିଶୁର ନାଭି-ଛେଦନ ଉତ୍ତାରୁ ନାଭି କମଳର ଅନ୍ତର୍ଦ୍ଧାନ । ଜନ୍ମାବଧି ଗର୍ଭସ୍ଥ ଶିଶୁର କାର୍ଯ୍ୟକଳାପଦ୍ୱାରା ସାଧକ ମନରେ ସୃଷ୍ଟି ପ୍ରଣାଳୀର ଅଙ୍କୁରୋଦ୍‌ଗମ୍ ହେଲା । ନର ଜୀବ ମଧରେ ଶ୍ରେଷ୍ଠ ହେତୁ ନରକୁ ନାରାୟଣ ଆଖ୍ୟା ଦିଆଗଲା । ନର ଏବଂ ନାରାୟଣ ଭେଦ ନାହିଁ । କ୍ରମେ ଶ୍ରେଷ୍ଠ ନରକୁ ନାରାୟଣ ଆଖ୍ୟାରେ ପରିଚୟ କରାଗଲା । ସେ ଯାହାହେଉ, ତାନ୍ତ୍ରିକମାନେ ଯେ ନରଠାରୁ ନାରାୟଣ ରୂପ ସ୍ୱତନ୍ତ୍ର କରି

ତାହାଙ୍କୁ ବୈକୁଣ୍ଠବାସୀ ଓ ସୂର୍ଯ୍ୟ ମଣ୍ଡଳ-ମଧବର୍ତ୍ତୀ କରିଅଛନ୍ତି ଏଥିରେ ସନ୍ଦେହ ନାହିଁ । ସାଧକର କଳ୍ପନା ବଳରୁ ନରଠାରୁ ନାରାୟଣ ସ୍ୱତନ୍ତ୍ର ହୋଇଅଛନ୍ତି । ଶିଷ୍ୟମାନେ କ୍ରମେ ନର ନାରାୟଣର ପ୍ରଭେଦକୁ ବୃଦ୍ଧି କରିଅଛନ୍ତି । ସୁତରାଂ ପରବର୍ତ୍ତୀ ପୁରାଣ ବିଶ୍ୱାସୀମାନେ ନର ଯେ ନାରାୟଣ, ଏଥିରେ ଆସ୍ଥା ସ୍ଥାପନ କରିବାର କାରଣ ଦେଖିପାରିଲେ ନାହିଁ— ଏମାନେ ସାଧକର କାଳ୍ପନିକ ନାରାୟଣରୂପର ଧ୍ୟାନ ଓ ପୂଜାରେ ଲାଗିଲେ । ଆଶା ରହିଲା କାଳ୍ପନିକ ବୈକୁଣ୍ଠବାସରେ ।

ପ୍ରଥମରୁ ଯେବେ ଭାରତବାସୀର ନର ନାରାୟଣ ମଧ୍ୟରେ ଅଭେଦ ଜ୍ଞାନ ଜନ୍ମିଥାନ୍ତା ତାହାହେଲେ ଏ ଜାତିର ଅସାଧାରଣ ଉପକାର ହୋଇଥାନ୍ତା । ଏବଂ 'ସକଳ ଦେହେ ନାରାୟଣ' ଭାଗବତର ଏହି ପଦଟି ସାର୍ଥକ ହୋଇଥାନ୍ତା । ନର ହିଁ ସେବ୍ୟ, ନର ହିଁ ପୂଜ୍ୟ— ନରର ପୂଜା ହିଁ ନାରାୟଣର ପୂଜା, ନର ସେବା ହିଁ ନାରାୟଣ ସେବା । ନରର ଉନ୍ନତି ଇଚ୍ଛା ହିଁ ନାରାୟଣ ଧ୍ୟାନ— ନରର ଚରମୋନ୍ନତି ମୁକ୍ତି, ନରର ଅବନତି ଅଧୋଗତି । ବିଜ୍ଞ ବ୍ୟକ୍ତିମାନେ ଏହା ପ୍ରତ୍ୟକ୍ଷ କରି ସୁଦ୍ଧା ନର ଭିନ୍ନ ସ୍ୱତନ୍ତ୍ର କାଳ୍ପନିକ ନାରାୟଣ ରୂପରେ ପ୍ରତ୍ୟୟ ରଖନ୍ତି । ଅଭ୍ୟାସ, ପାରିବାରିକ ବିଶ୍ୱାସ । ଯେଉଁଦିନ ନରନାରାୟଣ ଭେଦ ଜ୍ଞାନ ମାନବ ହୃଦୟରୁ ତିରୋହିତ ହେବ ସେଦିନ ନରର ପୂର୍ଣ୍ଣତା ପ୍ରାପ୍ତି, ସେଦିନ ହିଂସା-ଦ୍ୱେଷ ଦୂର ହେବ, ଭେଦଜ୍ଞାନ ରହିବ ନାହିଁ ଓ ମନୁଷ୍ୟ ସୁଖରେ କାଳାତିପାତ କରିବ ।

•

## ସୃଷ୍ଟି

ସୃଷ୍ଟି-ବିଶ୍ୱାସ ମୂଳରୁ ବିଭିନ୍ନ ଧର୍ମ-ବିଶ୍ୱାସର ଉତ୍ପତ୍ତି । ନର ହିଁ ଜଗତ୍-ସୃଷ୍ଟିର ସୃଷ୍ଟିକର୍ତ୍ତା । ସୁତରାଂ ବିଭିନ୍ନ ଜାତି ବିଭିନ୍ନ ସୃଷ୍ଟିର ଇତିହାସ ପ୍ରକାଶ କରିଅଛନ୍ତି । ଏକ ଇତିହାସ ସହିତ ଅପର ଇତିହାସର ମେଳ ନାହିଁ । ହେବ ବା କିପରି ? କଳ୍ପନା ସତ୍ୟ ନୁହେଁ, କଳ୍ପନା ଯୁକ୍ତିମୂଳକ ଅନୁମାନ ମଧ୍ୟ ନୁହେଁ । ଯେଉଁ ଯେଉଁ ଜାତି ସୃଷ୍ଟିର କଳ୍ପନା କଲେ ସେମାନଙ୍କର ନିଃଶ୍ୱସିତ ବା Revelation ଉପରେ ଘୋରତର ବିଶ୍ୱାସ ଥିଲା । ଏଣୁ ସେମାନଙ୍କର ପୂର୍ବପୁରୁଷଙ୍କ ମୁଖରୁ ବା ଲେଖାରୁ ସେମାନେ ଯାହା ଜ୍ଞାତ ହେଲେ ତାକୁ ଧ୍ରୁବ ସତ୍ୟ ଭାବିଲେ ଏବଂ ତାହାର ପ୍ରଚାର ବିଷୟରେ ସଚେଷ୍ଟ ହେଲେ । ମାତ୍ର ଯାହା ସତ୍ୟ ନୁହେଁ ତାହା ସମସ୍ତଙ୍କର ହୃଦୟଙ୍ଗମ ହେବା ଅସମ୍ଭବ— ଏଣୁ ସୃଷ୍ଟି-ପ୍ରକ୍ରିୟା ଏବଂ ସୃଷ୍ଟିକର୍ତ୍ତା ବିଭିନ୍ନ କବି ଓ ଦ୍ରଷ୍ଟା ପ୍ରତି ବିଭିନ୍ନ ରୂପ ପ୍ରତିଭାତ ହେଲା ।

ସତ୍ୟ ଉଦ୍‌ଘାଟନ ଓ ସତ୍ୟ ଆବିଷ୍କାର ନିମନ୍ତେ ମାନବର ଯେ ଚେଷ୍ଟା ଓ ସ୍ପର୍ଦ୍ଧା ତାହା ପ୍ରଶଂସନୀୟ । ମାତ୍ର ସୃଷ୍ଟି ତତ୍ତ୍ୱକୁ କଳନା କରିପାରିଥିବାର ଯେ ସ୍ପର୍ଦ୍ଧା ତାହା ହାସ୍ୟାସ୍ପଦ ଓ ଅସହନୀୟ । ମାନବ । ବିଶ୍ୱବ୍ରହ୍ମାଣ୍ଡ ମଧ୍ୟରେ ତୁମ୍ଭର ଧରିତ୍ରୀ କି ଛାର । ଧରିତ୍ରୀ ପୃଷ୍ଠର ଜଳ, ସ୍ଥଳ ଓ ବାୟୁରେ ବାସ କରୁଥିବା ଅସଂଖ୍ୟ ଜୀବମଧ୍ୟରୁ ତୁମେ ଗୋଟିଏ ଜୀବ ତ ? କାଳ ଘଣ୍ଟାର କେତେ ସେକେଣ୍ଡ୍ ହେଲା ବା ତୁମର ଜନ୍ମ ? ତୁମର ପ୍ରଗତିର କେତେ ସମୟ ବା ଅତିବାହିତ ହୋଇଅଛି ? ଅଦ୍ୟାପି ଜ୍ଞାନର ଚରମ ବିକାଶ ହେଲାଣି କି ? ତଥାପି ଆଜି ଦୁଇ ଅଢ଼ାଇ ହଜାର ବର୍ଷର ଦ୍ରଷ୍ଟାମାନଙ୍କ ମୁଖରୁ ଯାହା ଉଚ୍ଚାରିତ ହେଲା । ତାହାକୁ କ୍ରମେ ଅଭ୍ରାନ୍ତ ସତ୍ୟ ବୋଲି ଭାବୁଛ ଏବଂ ତାହା ଉପରେ ଟୀକାଟିପ୍ପଣୀ ଓ ବ୍ୟାଖ୍ୟା ଲେଖି ସମସ୍ତଙ୍କ ଚକ୍ଷୁରେ ଅନ୍ଧ-ପୁଟୁଳି ବାନ୍ଧିବାର ଚେଷ୍ଟା କରୁଅଛ ।

'ନା ଛିଲ୍ ଏ ସବ୍ କିଛୁ' ଅର୍ଥାତ୍ ଏ ଅନନ୍ତ ଆକାଶରେ ସୂର୍ଯ୍ୟ ନକ୍ଷତ୍ରାଦି ଜ୍ୟୋତିଷ୍କ ବା କୌଣସି ବସ୍ତୁ ନ ଥିଲା ବୋଲିବାଠୁଁ ବଳି ଭ୍ରାନ୍ତିମୂଳକ ଉକ୍ତି କିଛି ହିଁ ନାହିଁ । ପୁଣି ଆଲୋକ ନ ଥିଲା ଏହା ତତୋଽଧିକ ଭ୍ରମପୂର୍ଣ୍ଣ ବିଶ୍ୱାସ । ତଥାପି ବାଇବେଲ୍ ଓ ପୁରାଣ ବିଶ୍ୱାସୀମାନେ ଅମ୍ଳାନ ବଦନରେ ଏ ଉକ୍ତି ଯୋଡ଼ିକୁ ଧ୍ରୁବ ସତ୍ୟ ବୋଲି ଘୋଷଣା କରିବାକୁ ପଛୁ ନାହାନ୍ତି ।

କୁମ୍ଭ ଦେଖି କୁମ୍ଭକାରର ଅନୁମାନ ସହିତ ଜଗତ୍ ଦେଖି ଜଣେ ସୃଷ୍ଟି କର୍ତ୍ତାର ଅନୁମାନ ସାମଞ୍ଜସ୍ୟ ବିହୀନ । ଜ୍ଞାନ ବିକାଶର ବାଲ୍ୟାବସ୍ଥାରେ ଏ ଅନୁମାନ ଆଦରଣୀୟ ହୋଇପାରେ; ମାତ୍ର ଏ ଯୁଗରେ ଏତାଦୃଶ ବିଶ୍ୱାସ ଆଦରଣୀୟ ହୋଇ ନ ପାରେ । ବାଇବେଲ୍ ଯୁଗରେ ଜ୍ୟୋତିଷ ସମ୍ବନ୍ଧେ ଲୋକମାନଙ୍କର ଜ୍ଞାନର ଅଭାବ ଥିଲା । ଏଣୁ ଆଲୋକ ନ ଥିଲା ବୋଲି ବ୍ୟକ୍ତ କରିବାଟା ସଙ୍ଗତ । ଯାହା ନ ଥିଲା ତାହା ହେଲା, ଏ କଥା ଯେମନ୍ତ ଅଯୌକ୍ତିକ, ତାହା ତେମନ୍ତ ହାସ୍ୟାସ୍ପଦ । ଏକ ସମୟରେ ସୂର୍ଯ୍ୟ ନ ଥିଲା, ଚନ୍ଦ୍ର ନ ଥିଲା, ପୃଥିବୀ ନ ଥିଲା, ଏହା ସତ୍ୟ; ମାତ୍ର ଆଲୋକ ନ ଥିଲା ବା ଅନ୍ୟ ସୂର୍ଯ୍ୟ ନକ୍ଷତ୍ର ନ ଥିଲେ ବୋଲି କହିବାଦ୍ୱାରା ଅଜ୍ଞତାର ପରିଚୟ ଦିଆହୁଏ— କାରଣ, କାଳର ସୀମା ନାହିଁ, ଆକାଶ ଅନନ୍ତ, ଆଲୋକ ଚିର ବିଦ୍ୟମାନ ।

ଯେଉଁମାନେ ସୃଷ୍ଟିକର୍ତ୍ତାଦ୍ୱାରା ଏ ଜଗତ ସୃଷ୍ଟି ବୋଲି ଆମ୍ଭମାନଙ୍କୁ ଭ୍ରାନ୍ତ କରିଅଛନ୍ତି ଓ ଅଦ୍ୟାପି ଭ୍ରାନ୍ତ କରୁଅଛନ୍ତି, ସେମାନଙ୍କର ବିଶ୍ୱବ୍ରହ୍ମାଣ୍ଡର ଧାରଣା କୂପମଣ୍ଡୂକର ପାରାବାରର ଧାରଣା ତୁଲ୍ୟ । ଆଧୁନିକ ବୈଜ୍ଞାନିକ ଓ ଜ୍ୟୋତିର୍ବେତ୍ତାମାନେ ଅନନ୍ତ ଓ ଅସୀମ ଆଡ଼କୁ ଯେପରି ଧାବମାନ ହେଉଅଛନ୍ତି, ମନ୍ତ୍ରଦ୍ରଷ୍ଟାମାନେ ସେପରି ଭାବରେ ଅଗ୍ରସର ହେବାକୁ ଶକ୍ତିସମ୍ପନ୍ନ ହୋଇ ନ ଥିଲେ । ସୂର୍ଯ୍ୟ, ଗ୍ରହ ନକ୍ଷତ୍ର, ସ୍ଥିତି ଓ ଦୂରତା ଯେଉଁମାନଙ୍କର ବୋଧଗମ୍ୟ ନ ଥିଲା ସେମାନେ ବିଶ୍ୱବ୍ରହ୍ମାଣ୍ଡକୁ କଳନା କରିପାରୁଥିଲେ, ବୋଲିବା ହାସ୍ୟାସ୍ପଦ ନୁହେଁ କି ? ଆଲୋକ ଏକ ସେକେଣ୍ଡରେ ୧୮୬୦୦୦ ମାଇଲ ଗତି କରେ । ଏ ଗତିର କଥା ଭାରତବାସୀ ବା ଜେରୁଜେଲମବାସୀ ଜାଣୁଥିଲେ କି ? ସୂର୍ଯ୍ୟର ଆକାର ଓ ଦୂରତାର କଳନା ସେମାନେ କରିପାରିଥିଲେ କି ? ନକ୍ଷତ୍ରମାନଙ୍କର ଆକାର, ଦୂରତା ଓ ତୁଳନା ତେଣେ ଥାଉ, ପୃଥିବୀଠାରୁ ଅତି ନିକଟବର୍ତ୍ତୀ ନକ୍ଷତ୍ରର ଦୂରତା ୪୫ ଆଲୋକ ବର୍ଷ । ଧ୍ରୁବ ନକ୍ଷତ୍ରର ଦୂରତା ୬୪ ଆଲୋକ ବର୍ଷ । ଅନ୍ୟାନ୍ୟ ନକ୍ଷତ୍ରମାନଙ୍କର ଦୂରତାର ହିସାବ କରିବାକୁ ଯାଏ କିଏ ? କଳ୍ପନାର ଦୌଡ଼ କେତେ ? କନ୍ୟାଦାନର ଫଳରେ ଲେଖାଅଛି—ପୃଥିବୀ ଉପରେ ଯବ, ବ୍ରୀହି ଓ ସର୍ଷପ ଗଦା କଲେ ତାହାର ଅଗ୍ରଭାଗ ସୂର୍ଯ୍ୟ-ଚନ୍ଦ୍ର-ମଣ୍ଡଳ ଓ ଧ୍ରୁବ-ଲୋକ ପର୍ଯ୍ୟନ୍ତ ଲାଗିବ ଏବଂ ସେହି ଶସ୍ୟ ସ୍ତୂପରୁ ଗୋଟିଏ ଗୋଟିଏ ପ୍ରତିବର୍ଷ ଆହରଣ କରିବାକୁ ଯେତେବର୍ଷ ଲାଗିବ, କନ୍ୟାଦାନ କର୍ତ୍ତା ପିତା ସେତିକି ବର୍ଷ ଧ୍ରୁବଲୋକରେ ବାସ କରିବ । ଯେଉଁ ସୂର୍ଯ୍ୟଗ୍ରହ ଉଚ୍ଚତା ୬୪ ଆଲୋକ ବର୍ଷ, ତା'ର ଭୂମିର ପରିମାଣ ରଚକର ମସ୍ତିଷ୍କକୁ ସ୍ପର୍ଶ କରିପାରେ କି ?

ବାଇବେଲ୍ ଲେଖକମାନେ ପୃଥିବୀର ବୟସ ୫୦୦୦ ବର୍ଷରୁ ଉର୍ଦ୍ଧ୍ୱକୁ ଉଠାଇ ପାରିଲେ ନାହିଁ । ଆଜି ସେହି ବାଇବେଲ୍‌କୁ ଈଶ୍ୱରଦତ୍ତ ବୋଲି ସଭ୍ୟମାନେ ସ୍ୱୀକାର କରନ୍ତି, ଯେହେତୁ ସ୍ୱାର୍ଥ ସେମାନଙ୍କୁ ଅନ୍ଧ କରିଅଛି ।

ଆଦାମ୍ ଇଭ୍ କଥା ତତୋଽଧିକ ହାସ୍ୟାସ୍ପଦ ଭିନ୍ନ କିଛି ନୁହେଁ । ନୋଆର ଆର୍କ ଏବଂ ମନୁଙ୍କର ନୌକା ବିବରଣ ଏକ ମୂଳରୁ ଉତ୍ପତ୍ତି । ଉଭୟବ୍ୟକ୍ତି ସମସ୍ତ ସୃଷ୍ଟ ବସ୍ତୁ ଓ ଜୀବରୁ ଯୋଡ଼ିଏ ଲେଖାଏଁ ନେଇ ନୌକାରେ ରଖିଲେ ଏବଂ ପ୍ରଳୟରୁ ଜୀବ-ସୃଷ୍ଟିକୁ ରକ୍ଷା କଲେ । ବ୍ରାହ୍ମଣ ଓ ବାଇବେଲ୍ ଲେଖକଙ୍କୁ ଜଣାଥିଲା କି ଯେ ତାଙ୍କର ଏହି କାଳ୍ପନିକ ଲେଖା ପୂର୍ବରୁ ଅତି ପ୍ରକାଣ୍ଡକାୟ ଜୀବମାନେ ଏହି ପୃଥିବୀରୁ ଅନ୍ତର୍ହିତ ହୋଇଥିଲେ ଯେଉଁମାନଙ୍କର ଧାରଣା, ସୃଷ୍ଟିକର୍ତ୍ତାଙ୍କର ସୃଷ୍ଟି ଜୀବର ଧ୍ୱଂସ ନାହିଁ କିମ୍ବା ନୂତନ ଜୀବର ଅଭିବ୍ୟକ୍ତି ନାହିଁ, ସେମାନେ ଭୂପୃଷ୍ଠରୁ ଅନ୍ତର୍ହିତ ପ୍ରକାଣ୍ଡ ଜୀବମାନଙ୍କର କଙ୍କାଳ ଦେଖି କି ଉତ୍ତର ଦେବେ ? ଯେତେବେଳେ ଏହି ଅତିକାୟ ଜୀବମାନେ ବିଚରଣ କରୁଥିଲେ ସେତେବେଳେ ମନୁଷ୍ୟର ପୂର୍ବ ପୁରୁଷଗଣ ଏବଂ ଅଶ୍ୱ ହସ୍ତୀ ପ୍ରଭୃତି ଜୀବମାନେ ଯେ ସୃଷ୍ଟି ହୋଇଥିବାର ନିଦର୍ଶନ ନାହିଁ, ଏଥିର ଉତ୍ତର ସୃଷ୍ଟି-ବିଶ୍ୱାସୀମାନେ କ'ଣ କହିବେ ? ଅଭିବ୍ୟକ୍ତି ଚାଲିଛି, ଏହା ଦେଖି ସୁଦ୍ଧା ଲୋକେ ସୃଷ୍ଟି-ବିଶ୍ୱାସରେ ଭ୍ରାନ୍ତ ।

ସୃଷ୍ଟି-ବିଶ୍ୱାସ କ୍ରମୋନ୍ନତିର ମୂଳରେ କୁଠାରାଘାତ କରିଅଛି । ସୃଷ୍ଟି-ବିଶ୍ୱାସୀମାନେ ଆପଣାକୁ ଜୀବଜଗତରେ ଶ୍ରେଷ୍ଠ ବୋଲି ବିଶ୍ୱାସ କରିପାରନ୍ତି ଏବଂ ପୃଥିବୀରେ ଯାହା ସୁନ୍ଦର, ତାହା ନରର ନେତ୍ରପ୍ରୀତି ନିମନ୍ତେ, ଯାହା ବ୍ୟବହାର୍ଯ୍ୟ ତାହା ନର ନିମନ୍ତେ ବୋଲି ଭାବିପାରନ୍ତି; ଯେହେତୁ ସେମାନେ ପୂର୍ବପୁରୁଷଠାରୁ ଆଶ୍ୱାସବାଣୀ ପାଇଅଛନ୍ତି । ମାତ୍ର ସମୁଦ୍ରଗର୍ଭରେ ଯେ ଅତି କ୍ଷୁଦ୍ର ଜୀବ ଅଛନ୍ତି ଯାହାଙ୍କର ଶାରୀରିକ କାରୁକାର୍ଯ୍ୟ ଅଦ୍ୟାପି ସୂର୍ଯ୍ୟାଲୋକ ଦେଖିଲା ନାହିଁ, ତାହା କି ତୁଚ୍ଛ ନରର ନେତ୍ରପ୍ରୀତି ନିମନ୍ତେ ? ନର । ତୁମେ ସମସ୍ତଙ୍କର ପ୍ରଭୁ ବୋଲି ମନେକର; ମାତ୍ର ତୁମକୁ ଯେ ପିପୀଲିକା ପଦାଘାତ କରେ— ତୁମର ନର-ଦେବତା ସମ୍ରାଟ୍ ରାଜା ମହାରାଜଙ୍କର ଶରୀରରେ ଚଢ଼ି ବିଚରଣ କରିବାର ସ୍ପର୍ଦ୍ଧା ରଖେ—ତୁମର ସଭ୍ୟତାକୁ ଉଜାଡ଼ କରିବାକୁ ଯେ ପିପୀଲିକା ଓ ଉଇ ସଚେଷ୍ଟ—ଏଥିନିମନ୍ତେ ଯେ ତୁମ୍ଭେ ଚିନ୍ତାଗ୍ରସ୍ତ । ତେବେ ତୁମେ ଜୀବଜଗତର ପ୍ରଭୁ କିପରି— ଈଶ୍ୱରଙ୍କର ପ୍ରିୟପାତ୍ର କିପରି ? ଜୀବମାନଙ୍କ ସହିତ ତୁମ୍ଭର ଜୀବନ-ସଂଗ୍ରାମ ଲାଗିଛି, ଜୟଯୁକ୍ତ କିଏ ହେବ ଏତେ ବେଳଯାଏ ସ୍ଥିର ହୋଇ ନାହିଁ । ନରମାନଙ୍କ ମଧ୍ୟରୁ ମଧ୍ୟ ଏକ ଜାତି ସହିତ ଅପର ଜାତିର ଯୁଦ୍ଧ ଲାଗିଛି, ମାତ୍ର ସମଗ୍ର ମାନବ ଜାତି ଜ୍ଞାତ ବା ଅଜ୍ଞାତସାରରେ ସମସ୍ତ ଜୀବ ବିରୋଧରେ ଯୁଦ୍ଧ କରୁଅଛି । ଚିରକାଳ ଏହା ଲାଗିଥିବ, ତଥାପି ନିଜକୁ ପ୍ରଭୁ ବୋଲିବା ସେ ଛାଡ଼ିବ ନାହିଁ ।

•

# କୃଷି

॥ ୧ ॥

ଆଦିଯୁଗରେ ମନୁଷ୍ୟ ବନ୍ୟ ଶାକ ଫଳମୂଳ ଓ ମାଂସଦ୍ୱାରା ଜୀବନ ଧାରଣ କରୁଥିଲା । କ୍ରମେ ଭୂମି କର୍ଷଣ କରି ଶସ୍ୟ ଓ ଫଳ ଉତ୍ପନ୍ନ କରିବାର ଉପାୟ ଉଦ୍ଭାବନ କଲା ।

ମନୁଷ୍ୟ ଜାତିର ବଂଶବୃଦ୍ଧି ସଙ୍ଗେ ସଙ୍ଗେ ମାଂସ ଓ ବନ୍ୟ ଫଳମୂଳ ସହଜଲଭ୍ୟ ହେଲା ନାହିଁ । ଏଣୁ କ୍ରମେ କର୍ଷଣଦ୍ୱାରା ଖାଦ୍ୟ ଉତ୍ପାଦନର ସ୍ପୃହା ବଢ଼ିଲା ଏବଂ କର୍ଷଣଦ୍ୱାରା ଖାଦ୍ୟପଦାର୍ଥ ଉତ୍ପାଦନ କରି ପାରିବା ହେତୁ ମନୁଷ୍ୟ କେବଳ ଜୀବନ-ସଂଗ୍ରାମରେ ଅନ୍ୟ ପଶୁ ଅପେକ୍ଷା ଜୟଯୁକ୍ତ ହେଲା । ଅଧୁନା ମନୁଷ୍ୟ ତା'ର ଆଦି ପୁରୁଷର ଜୀବନୋପାୟ ସ୍ୱଭାବଲଭ୍ୟ ମାଂସ ଓ ବନ୍ୟ ଫଳମୂଳ ବ୍ୟତିରେକେ ମଧ ଅନାୟାସରେ ବଞ୍ଚିପାରେ ।

କର୍ଷଣ ହିଁ ମନୁଷ୍ୟର ସଭ୍ୟତାର ସହାୟଭୂତ ଆଦି ମାନବ କେବେ ପ୍ରଥମରୁ ଭୂମି କର୍ଷଣ କରି ଖାଦ୍ୟ ଉତ୍ପାଦନର ପନ୍ଥା ଶିକ୍ଷା କଲା, ତାହା କେହି ସ୍ଥିର କରି କହି ନ ପାରେ । ତାହା ଯୁଗ ଯୁଗାନ୍ତରର କଥା । ଇତିହାସର ମଧ ଅଗୋଚର ।

ଏହା ଅନୁମାନ କରାଯାଇପାରେ ଯେ ମନୁଷ୍ୟ ପ୍ରଥମେ ପଶୁଶୃଙ୍ଗ ଓ ବକ୍ର କାଷ୍ଠ ଖଣ୍ଡ ସାହାଯ୍ୟରେ ଭୂମି କର୍ଷଣ ବା ଖନନ କରିବାକୁ ଶିକ୍ଷା କରିଥିଲା କାରଣ ସେତେବେଳେ ମନୁଷ୍ୟ ଲୁହା ପ୍ରଭୃତି ଧାତୁର ବ୍ୟବହାର ଆଦୌ ଶିକ୍ଷା କରି ନ ଥିଲା । ତା'ର ପ୍ରୟୋଜନ ତୁଳନାରେ ପଶୁଶୃଙ୍ଗ ଓ ବକ୍ରକାଷ୍ଠ ଖଣ୍ଡ ଭୂମି କର୍ଷଣ ନିମନ୍ତେ ଯଥେଷ୍ଟ ବୋଲି ବିବେଚିତ ହେଉଥିଲା । ଅଭାବ-ଜ୍ଞାନ ବୃଦ୍ଧି ସଙ୍ଗେ ସଙ୍ଗେ ଚାଷ କାର୍ଯ୍ୟ ବୃଦ୍ଧି କରିବାର ପ୍ରୟୋଜନ ହେଲା । ମନୁଷ୍ୟ ଚାଷୋପଯୋଗୀ ଯନ୍ତ୍ରପାତି ପ୍ରସ୍ତୁତ କରିବାକୁ ଶିକ୍ଷା କଲା । ପଶୁଶୃଙ୍ଗ ଓ ବକ୍ରକାଷ୍ଠ ଖଣ୍ଡର ଅଭିବ୍ୟକ୍ତି ଆମ୍ଭମାନଙ୍କର ଲଙ୍ଗଳ । ଏହାର କ୍ରମୋନ୍ନତିର ବିସ୍ତାର ବିବରଣ ଏଠାରେ ଉଲ୍ଲେଖ କରିବାର ନିଷ୍ପ୍ରୟୋଜନ । ମାତ୍ର ଏହା ଯେ ସତ୍ୟ, ଏଥିରେ ସନ୍ଦେହ କରିବାର କିଛି ହିଁ କାରଣ ନାହିଁ ।

ଭାରତବର୍ଷ କୃଷିପ୍ରଧାନ ଦେଶ, ଏହା ସମସ୍ତେ ସ୍ୱୀକାର କରନ୍ତି ଏବଂ ଏ ଦେଶବାସୀଙ୍କର ପ୍ରଧାନ ଜୀବନୋପାୟ ଯେ କୃଷି ଏହା ମଧ କେହି ଅସ୍ୱୀକାର କରିବେ ନାହିଁ । ମାତ୍ର ବୈଦିକଯୁଗରୁ ଆରମ୍ଭି ଆଜିଯାଏ ଭାରତବାସୀ ଧୀର ମନ୍ଥର ଗତିରେ ତା'ର କୃଷି କାର୍ଯ୍ୟରେ ଚାଲିଛି । ପୂର୍ବପୁରୁଷଙ୍କର ପ୍ରଚଳିତ ପନ୍ଥାର ନିୟମ ଓ ଗତି ଭଙ୍ଗ କରୁ ନାହିଁ । ଏ ଜାତି ଅନ୍ୟ ହିତକର ସଂସ୍କାରରେ ଯେପରି [illegible]ଯୋଗୀ ଏକମାତ୍ର ଜୀବନୋପାୟ କୃଷି କର୍ମରେ ମଧ ତଦନୁରୂପ ଅମନୋଯୋଗୀ । ଏଣୁ ଏ ଦେଶର ଦାରିଦ୍ର୍ୟ କେବେ ଘୁଞ୍ଚୁ ନାହିଁ ।

ଚାଷ ସାମଗ୍ରୀ କିମ୍ବା ଆୟ ବୃଦ୍ଧିର ଉନ୍ନତତର ପନ୍ଥା ଆବିଷ୍କାର ନିମନ୍ତେ ବହୁ କାଳରୁ ଏ ଦେଶବାସୀର ମସ୍ତିଷ୍କ ଅନୁର୍ବର । ଏଣୁ ପ୍ରତ୍ୟେକ ବିଷୟର ସାହାଯ୍ୟ ନିମନ୍ତେ ଏ ଦେଶବାସୀ ପାଶ୍ଚାତ୍ୟ ଦେଶବାସୀଙ୍କ ମୁଖାପେକ୍ଷୀ ହୋଇ ରହିବାକୁ ବାଧ୍ୟ । କ୍ଷତି ନାହିଁ, ମାତ୍ର ସର୍ବସାଧାରଣଙ୍କ ନିମନ୍ତେ ସେ ସୁବିଧା କାହିଁ ବା ଜାଣିବାର ପନ୍ଥା କାହିଁ ? ଏଣୁ ପାର୍ବତୀୟ ଛୁଆଙ୍ଗ ପ୍ରଭୃତି ମୃଗ ଶୃଙ୍ଗ ସାହାଯ୍ୟରେ ବିରିଙ୍ଗା ଚାଷ କରନ୍ତି ଏବଂ ଆମ୍ଭେମାନେ ପୂର୍ବପୁରୁଷଙ୍କ ଆବିଷ୍କୃତ ସେହି ଲଙ୍ଗଳ, ମଇ, ସାହାଯ୍ୟରେ ସମତଳ ଭୂମି କର୍ଷଣ କରୁଁ । ଏ ପନ୍ଥା ଚାଲିଛି, ପୁଣି କେତେ ଯୁଗ ଚାଲିବ କିଏ କହିପାରେ ?

ପାଶ୍ଚାତ୍ୟ ଦେଶ ଆମ୍ଭମାନଙ୍କଠାରୁ ଅନେକ ପଛରେ କୃଷି କାର୍ଯ୍ୟ ଆରମ୍ଭ କରିଥିବାର ଜଣାଯାଏ । ମାତ୍ର ସେମାନେ କୃଷି କର୍ମରେ ଆମ୍ଭମାନଙ୍କଠାରୁ କେତେ ଦୂର ଯେ ଅଗ୍ରସର ହେଲେଣି ତାହା ଚିନ୍ତା କଲେ ବିସ୍ମୟାଭିଭୂତ ହେବାକୁ ହୁଏ । ଆମ୍ଭମାନଙ୍କର ଲଙ୍ଗଳ ସହିତ ସେମାନଙ୍କର ନବ-ଉଦ୍ଭାବିତ Tractor, Engineplough (କଳ ଲଙ୍ଗଳ)ର ତୁଳନା କଲେ ସହଜରେ ଜଣାଯିବ ଯେ ଆମ୍ଭମାନଙ୍କୁ ଛାଡ଼ି ପାଶ୍ଚାତ୍ୟ ଦେଶବାସୀଙ୍କୁ କାହିଁକି ଲକ୍ଷ୍ମୀ ଆଲିଙ୍ଗନ କରିଅଛି । ଗଭୀର ଚାଷ ଓ ଶୀଘ୍ର ଚାଷଦ୍ୱାରା ଜମିର ଉର୍ବରତା ବଢ଼େ ଓ ଶୀଘ୍ର କାର୍ଯ୍ୟକାରୀ ହୁଏ । ମାତ୍ର ଆମ ଦେଶବାସୀ ତାହା ବୁଝି ସୁଦ୍ଧା କେହି ହେଲେ ଜଣେ ଏ ଦେଶର ଅଭାବ ଓ ଅର୍ଥ ତୁଳନାରେ ଗୋଟିଏ ଚାଷ ଯନ୍ତ୍ର ଉଦ୍ଭାବନ କରିପାରି ନାହିଁ ।

ଜମିରୁ ଉତ୍ପନ୍ନ ଦ୍ରବ୍ୟ ଯେତେ ଶୀଘ୍ର ଗୃହକୁ ଅଣାଯାଇପାରେ ତେତେ ମଙ୍ଗଳ । ଏହା ବିବେଚନା କରି ସେ ଦେଶବାସୀ ଏପରି ପ୍ରକାଣ୍ଡ ପ୍ରକାଣ୍ଡ ଯନ୍ତ୍ର ନିର୍ମାଣ କରିଅଛନ୍ତି ଯେ ଘଣ୍ଟାକ ମଧରେ ମାଣେ ଦୁଇ ମାଣ ଜମିରୁ ଗହମ କର୍ତ୍ତିତ ହୁଏ । କେବଳ ଏତିକି ନୁହେଁ ସେହି କଳ ଗହମ କର୍ତ୍ତନ କରୁ କରୁ ତାହାକୁ ମଳି ପରିଷ୍କାର କରି ବସ୍ତା ବନ୍ଦ କରି ଫୋପାଡ଼ି ଦିଏ । ଏ ପ୍ରକାର ଛୋଟ ବଡ଼ କୃଷିକ୍ଷେତ୍ର ଓ ବଗିଚାର କେତେ ପ୍ରୟୋଜନୀୟ ଓ କାର୍ଯ୍ୟକାରୀ ଯନ୍ତ୍ର ଆବିଷ୍କୃତ ହୋଇଅଛି ଯେ ତହିଁର ବିବରଣ ଲେଖି ହେବ ନାହିଁ । ମସ୍ତିଷ୍କବାନ୍ ବ୍ୟକ୍ତିମାନେ ଆବିଷ୍କାର କରୁଅଛନ୍ତି ଏବଂ ଚାଷୀ ଓ ବଗିଚାବାଲାମାନେ ତାହା ବ୍ୟବହାର କରି ଲାଭବାନ୍ ହେଉଅଛନ୍ତି ।

କୃଷି କର୍ମର ପ୍ରଧାନ ଉପାଦାନ ଭୂମି ଓ ସାର । ଏତେ ଦିନରେ ଭାରତବାସୀ ଗୋବର ସାର ଭିନ୍ନ ଅନ୍ୟ କୌଣସି କୃତ୍ରିମ ବା ରାସାୟନିକ ସାର ଆବିଷ୍କାର କରିପାରି ନାହାନ୍ତି କିମ୍ବା ଏହି ସଭ୍ୟ ଯୁଗରେ ସଭ୍ୟ ଦେଶର ଉଦ୍ଭାବିତ ସାର

ପ୍ରୟୋଗଦ୍ୱାରା ନିଜର ଶସ୍ୟ କ୍ଷେତ୍ର ଉର୍ବର କରି ଯଥେଷ୍ଟ ଲାଭବାନ୍ ହୋଇପାରୁ ନାହାନ୍ତି । ବ୍ୟୟ ନ କଲେ କଦାପି ସନ୍ତୋଷଜନକ ଲାଭ ହେବା ସମ୍ଭବ ନୁହେଁ । ଆମ ଦେଶବାସୀ ଭବିଷ୍ୟତ ପ୍ରାପ୍ତ୍ୟାଶାରେ ବ୍ୟୟ କରିବାକୁ ନିତାନ୍ତ କୁଣ୍ଠିତ, ଏହା ସମସ୍ତେ ସ୍ୱୀକାର କରିବେ । ପାଶ୍ଚାତ୍ୟ ଜାତି ଆପଣାର ବିଶ୍ୱାସ ଉପରେ ନିର୍ଭର କରି ଅକାତରେ ବ୍ୟୟ କରନ୍ତି । ଭବିଷ୍ୟତରେ କି ଘଟିବ ତତ୍ ପ୍ରତି ସେମାନଙ୍କର ସଙ୍କୋଚ ନ ଥାଏ । କେବେ ଯେ କ୍ଷତି ନ ହୁଏ ଏପରି ନୁହେଁ, ତେବେ କୃତକାର୍ଯ୍ୟ ହିଁ ସେମାନଙ୍କର ଅଧ୍ୟବସାୟ ଓ ନିର୍ଭରଶୀଳତାର ପୁରସ୍କାର— ଏହା ସର୍ବଦା ଦୃଷ୍ଟିଗୋଚର ହୁଏ । ଇଂଲଣ୍ଡର ଚାର୍‌ଲି ସିବୃକ ଅତ୍ୟଧିକ ଓ ନାନାବିଧ ସାର ପ୍ରୟୋଗଦ୍ୱାରା ତାଙ୍କର ଭୂମିର ଉତ୍ପାଦିକା ଶକ୍ତି କି ପରିମାଣରେ ବୃଦ୍ଧି କରି ଲାଭବାନ୍ ହୋଇଥିଲେ ତାହା ଭାବିଲେ ବିସ୍ମିତ ହେବାକୁ ହୁଏ । ତାଙ୍କର ଏବଂବିଧ ଦୁଃସାହସିକତା ଦେଖି ତାଙ୍କର ସହକର୍ମୀ ଚାଷୀମାନେ ପ୍ରଥମେ ତାଙ୍କ ଉପରେ ଥଟା ବିଦ୍ରୂପ ବର୍ଷଣ କରୁଥିଲେ । ମାତ୍ର ଚାର୍‌ଲି ଯେତେବେଳେ ଦେଖାଇଦେଲେ ଯେ ଏକ ମାଣ ଜମିର ଉତ୍ପନ୍ନ ୪୦୦୦ ପାଉଣ୍ଡ ଦ୍ରବ୍ୟ, ସେତେବେଳେ ସମସ୍ତେ ତାଙ୍କର କୃଷି ଅଭିଜ୍ଞତାର ଭୂୟସୀ ପ୍ରଶଂସା ନ କରି ରହିପାରିଲେ ନାହିଁ ।

ଆମ୍ର, ପଣସ, କଦଳୀ, କମଳା ପ୍ରଭୃତି ଆମ ଦେଶର ଫଳ । ଆମ ପୂର୍ବପୁରୁଷଗଣ ଯେଉଁ ରୀତିରେ ତୋଟା ପ୍ରସ୍ତୁତ କରୁଥିଲେ ଅଦ୍ୟାପି ଆମ୍ଭେମାନେ ତା'ର କିଞ୍ଚିତ୍ ବ୍ୟବଧାନ ବା ଉନ୍ନତି କରିପାରି ନାହୁଁ । କଲମ ପ୍ରଥା ଆଧୁନିକ ବୋଇଲେ ଚଳେ । ପାଶ୍ଚାତ୍ୟ ଦେଶରେ ନାନା ପ୍ରକାର କଲମ କଲେଣି ଏବଂ ନାନାପ୍ରକାର ଶଙ୍କର ବୃକ୍ଷ ଓ ଫଳ ଉତ୍ପାଦନ କଲେଣି । ଆମେରିକାର କାଲିଫର୍ଣିୟା ଫଳ ନିମନ୍ତେ ପ୍ରସିଦ୍ଧ । ସେଠାର ଜଣେ କୃତୀ ସନ୍ତାନ ଲୁଥାର ବର୍‌ବେଙ୍କ । ତାଙ୍କର କୃତିତ୍ୱର ସାମାନ୍ୟ ପରିଚୟ ପାଠକଙ୍କର ହୃଦୟଗ୍ରାହୀ ହେବ ବୋଧହୁଏ । ଲୁଥାର ବ୍‌ରବେଙ୍କ ଜଣେ ଅଳ୍ପ ଶିକ୍ଷିତ ଗରିବ ବାଳକ । ତାଙ୍କର ଅଭିଜ୍ଞତା ଓ ଅଧ୍ୟବସାୟଦ୍ୱାରା ସେ ଯେଉଁ ନୂତନ ଆଳୁ ଉତ୍ପନ୍ନ କରିଥିଲେ ତାହାର ନାମ ଦିଆଯାଇଥିଲା— ବରବେଙ୍କ ପଟାଟୋ । ପ୍ରତି ବର୍ଷ ଲକ୍ଷାବଧି ଟଙ୍କାର ଏହି ଆଳୁ ଯୁକ୍ତରାଜ୍ୟରେ ଉତ୍ପନ୍ନ ହୁଏ । ଏଥିରୁ ଅନାୟାସରେ ହୃଦୟଙ୍ଗମ ହୋଇପାରେ ଯେ ଜଣେ ମନୁଷ୍ୟର ଅଭିଜ୍ଞତାର ଫଳରୁ ଗୋଟାଏ ଦେଶ କେତେ ଦୂର ଉପକୃତ ଓ ଲାଭବାନ୍ ହୁଏ ।

ବରବେଙ୍କର କୃତିତ୍ୱ ଫଳଚାଷରେ ଓ ଶଙ୍କର ଫଳବୃକ୍ଷ ଉତ୍ପାଦନରେ । ସେ ଦୁଇ ଗୋଟି ନୂତନ ବାଲନଟ ବୃକ୍ଷ ଉତ୍ପାଦନ କରିବା ଦ୍ୱାରା ବୈଜ୍ଞାନିକମାନଙ୍କର ପ୍ରଶଂସାଭାଜନ ହୋଇଥିଲେ । ଗୋଟିଏ ବୃକ୍ଷର ନାମ ପ୍ୟାରାଡ଼କସ୍‌ବାଲନଟ୍, ଗୋଟିକର ନାମ ରଏଲ୍ ବାଲନଟ୍ । ଏ ବୃକ୍ଷ ଉତ୍ପାଦନର ବିବରଣ ଚମତ୍କାର, ମାତ୍ର ତହିଁର ବିସ୍ତାର ଆଲୋଚନା ନିମନ୍ତେ ପତ୍ରିକାରେ ସ୍ଥାନ ନାହିଁ ।

ବରବେଙ୍କ ନୂତନ ପ୍ରକାର ଏପଲ ଫଳ ଉତ୍ପାଦନ କରିଅଛନ୍ତି । ଚେରି, ବ୍ଲୁଇମିସ୍ ପ୍ରଭୃତି ଫଳ ମଧ୍ୟ ଉତ୍ପାଦନ କରିଅଛନ୍ତି । ଏହାଙ୍କର ଉତ୍ପାଦିତ ଫଳର ସୁଗନ୍ଧି ଓ ଦୃଶ୍ୟ ସାଧାରଣ ଫଳଠାରୁ ସ୍ୱତନ୍ତ୍ର ।

ସପ୍ତଫେଣୀ କଣ୍ଟାର କଥା ଭାରତବାସୀ କିଏ ବା ନ ଜାଣେ ? ଭାରତବାସୀ ପ୍ରତି ଏହାର ପ୍ରୟୋଜନୀୟତା କିଛି ନାହିଁ । ବରବେଙ୍କ ଏହି କଣ୍ଟା ବୃକ୍ଷକୁ ପଶୁ ଖାଦ୍ୟରେ ପରିଣତ କରିଅଛନ୍ତି । ସେ ଦେଖିଲେ ଏହି ବୃକ୍ଷ ଗୋଟିଏ ପୁଷ୍ଟିକର ପଶୁଖାଦ୍ୟ ହୋଇପାରେ ଯେବେ ବୃକ୍ଷରୁ କଣ୍ଟା ନିଷ୍କାସିତ କରାଯାଇପାରେ । ବହୁ ଚେଷ୍ଟା ଓ ଅଧ୍ୟବସାୟଦ୍ୱାରା କେତେକ ବର୍ଷ ପରେ ବରବେଙ୍କ ଏହି ସପ୍ତଫେଣୀ ବା ନାଗଫେଣୀକୁ କଣ୍ଟକଶୂନ୍ୟ କରି ପଶୁଖାଦ୍ୟରେ ପରିଣତ କଲେ । ଆଜି ପୃଥିବୀର ସର୍ବତ୍ର ଏହା ପଶୁଖାଦ୍ୟ ରୂପେ ଗୃହୀତ ହୋଇଅଛି । ଭାରତ ଗଭର୍ଣ୍ଣମେଣ୍ଟ କୃଷି-କେନ୍ଦ୍ରମାନଙ୍କରେ ୧୦୦୦ ଗଣ୍ଡକୁ ବୋଧହୁଏ ଟ ୩୧ ଦରରେ ବିକ୍ରୟ ହେଉଅଛି । ଅନ୍ୟାନ୍ୟ ଫଳ ଓ ପୁଷ୍ପ ଉତ୍ପାଦନରେ ଏହାଙ୍କର କୃତିତ୍ୱ ବିସ୍ମୟୋତ୍ପାଦକ ।

ଆମ ଦେଶରେ ଏତାଦୃଶ ଲୋକ ଜନ୍ମଲାଭ କରିବାର ଦେଖା ନାହିଁ । ତାହାର କାରଣ ଅନେକ । ସେ ସବୁ ଲେଖି ପ୍ରବନ୍ଧ ବାହୁଲ୍ୟ କରିବାର ପ୍ରୟୋଜନ ମନେ ହେଉ ନାହିଁ ।

## ॥ ୨ ॥

'କୃଷିର୍ମେଧ୍ୟା କୃଷିର୍ଧନ୍ୟା, ଜନ୍ତୁନାଂ ଜୀବନଂ କୃଷିଃ'

କର୍ଷଣଦ୍ୱାରା ଆମ୍ଭମାନଙ୍କର ଖାଦ୍ୟବସ୍ତୁ ଉତ୍ପାଦନ ହୁଏ । ଏଣୁ ଜୀବନ ଧାରଣ ନିମନ୍ତେ ମନୁଷ୍ୟର ପ୍ରଧାନ ଓ ଏକମାତ୍ର ଉପାୟ କୃଷି । ମାତ୍ର ଦୁଃଖର ବିଷୟ ଏହି ଯେ ଆମ ଦେଶବାସୀ କୃଷିର ଉନ୍ନତିକଳ୍ପେ ବିଶେଷ ଯତ୍ନଶୀଳ ନୁହନ୍ତି । ଆମେମାନେ ଭୂମିକର୍ଷଣ କରିଅଛୁଁ ଏବଂ ଭୂମିରୁ ଶସ୍ୟାଦି ଉତ୍ପନ୍ନ କରି ଉଦର ପୋଷଣ କରୁଅଛୁଁ, ଯେହେତୁ ଉଦରପୋଷଣର ଅନ୍ୟ ଉପାୟ ନାହିଁ । କିନ୍ତୁ ଉନ୍ନତଧରଣର ଚାଷ ଆମମାନଙ୍କୁ

ଜଣା ନାହିଁ କିମ୍ବା ଜଣା ନାହିଁ ବୋଲି ଆମେମାନେ ଦୁଃଖିତ ନୋହୁଁ ବା ଚିନ୍ତିତ ନୋହୁଁ ଏହା ବଡ଼ ପରିତାପର ବିଷୟ । ଆଜି ପାଶ୍ଚାତ୍ୟ ସଭ୍ୟଜାତି କୃଷିର ଯେ ଅସାଧାରଣ ଉନ୍ନତି କରିଅଛନ୍ତି ତାହା କହିବା ବାହୁଲ୍ୟମାତ୍ର । କୃଷିଯନ୍ତ୍ର ଓ ସାରର ଆବିଷ୍କାର ତତୋଽଧିକ ବିସ୍ମୟୋତ୍ପାଦକ । ଏ ସବୁ ବିଷୟ ଆମମାନଙ୍କର ଦେଶବାସୀଙ୍କର ବୋଧଗମ୍ୟ ନୁହେଁ । କାରଣ ଚାଷର ଚର୍ଚ୍ଚା ଏ ଦେଶରେ ନାହିଁ ବୋଇଲେ ଚଳେ । ପ୍ରାଚୀନକାଳରେ ମଧ ବିଦ୍ୱାନ୍ ଓ ଶାସ୍ତ୍ରଜ୍ଞମାନଙ୍କର ଚାଷ ପ୍ରତି ବେଶୀ ସହାନୁଭୂତି ଥିବାର ଜଣା ପଡ଼େ ନାହିଁ । ଭୂମିର ଉତ୍ପାଦନର ଅଂଶ ଭୋଗିଥିଲେ ରାଜା, ମନ୍ତ୍ରୀ ଓ ପଣ୍ଡିତ ଓ ବିଦ୍ୱାନ୍‌ମାନେ ମାତ୍ର ଚାଷର ଉନ୍ନତିକଳ୍ପେ ସେମାନଙ୍କର ଦାନ ନଗଣ୍ୟ, କିଛି ନାହିଁ ବୋଇଲେ ଚଳେ । ଆମ୍ଭ ଦେଶରେ କୃଷି ବିଷୟକ ଗ୍ରନ୍ଥ ମଧ କିଛି ନାହିଁ କହିଲେ ଚଳେ । ଖଣ୍ଡେ କୃଷି ପରାଶର ନାମକ ଗ୍ରନ୍ଥ ଅଛି ଏବଂ ବୃହତ୍‌ସଂହିତାରେ କୃଷି ସମ୍ବନ୍ଧୀୟ ଉପଦେଶ ଅଛି, ମାତ୍ର ତାହା ଉପଯୋଗୀ ନୁହେଁ ବା କାର୍ଯ୍ୟକାରୀ ନୁହେଁ । ସେ ଗ୍ରନ୍ଥମାନେ ସଂସ୍କୃତରେ ଲେଖା ସଂସ୍କୃତଜ୍ଞ ବ୍ୟକ୍ତିଙ୍କ ଭିନ୍ନ ଅନ୍ୟର ବୋଧଗମ୍ୟ ନୁହେଁ । ବ୍ରାହ୍ମଣ, କ୍ଷତ୍ରିୟ, ପରା ଲଙ୍ଗଳ କଣ୍ଠିରେ ହାତଦେଲେ ସେମାନଙ୍କର ଜାତି ଯାଏ । କୃଷି ପରାଶର ବିଚାର ଚଷାଭାଇଙ୍କୁ ବୁଝାଇବ କିଏ ? ସେ ଗ୍ରନ୍ଥମାନ ମଧ ଏ ଯୁଗର ଆଦୌ ଉପଯୁକ୍ତ ନୁହନ୍ତି । ଆଧୁନିକ ଶିକ୍ଷିତମାନେ ବିଦ୍ୟା ଗର୍ବରେ ମତ୍ତ, ସେମାନେ ଗୋଟାଏ ଶିକ୍ଷିତ ଜାତି ସୃଷ୍ଟି କଲେଣି ଅଶିକ୍ଷିତ ମୂଲିଆ ଚାଷୀ ସେମାନଙ୍କର ସହାନୁଭୂତି ଓ ଦୟାର ପାତ୍ର ହେବା ତ ଡେଣେ ଥାଉ ଘୃଣାର ପାତ୍ର ହେଲେଣି । ଶିକ୍ଷିତମାନଙ୍କର ଚାଷ ନିମନ୍ତେ କେବେ ମୁଣ୍ଡବ୍ୟଥା ହୋଇ ନାହିଁ ବା ହେବ ବୋଲି ବୋଧ ହେଉ ନାହିଁ । ଏ ଦେଶର ପାଶ୍ଚାତ୍ୟଶିକ୍ଷିତ ଯୁବକମାନେ କି ପାଶ୍ଚାତ୍ୟଦେଶର କୃଷିଉନ୍ନତି ବିଷୟ ପଢ଼ନ୍ତି ନାହିଁ କିମ୍ବା ଚିନ୍ତା କରନ୍ତି ନାହିଁ ? କରୁଥିଲେ ସେମାନଙ୍କର ଲେଖାରୁ ମନ୍ତବ୍ୟରୁ ଜଣାପଡ଼ନ୍ତା । ଛାଡ଼ ସେ କଥା କେବଳ ଓଡ଼ିଶାରେ କାହିଁକି ଭାରତବର୍ଷରେ ସରକାର ସାହାଯ୍ୟ ବ୍ୟତୀତ କୃଷି ପୁସ୍ତକ ଓ କୃଷି ମାସିକପତ୍ର ସଂଖ୍ୟା ଅତି କମ୍ । ଓଡ଼ିଆ ସବୁ ବିଷୟରେ ପଶ୍ଚାତ୍ପଦ ଏ ବିଷୟରେ କାହିଁକି ଅଗ୍ରସର ହେବ । ଏହି 'ଶଙ୍ଖ' ପତ୍ରିକାରେ ଅନେକ ପ୍ରେମପୂର୍ଣ୍ଣ ଗଳ୍ପ ଓ ପ୍ରେମସଙ୍ଗୀତ ପ୍ରକାଶ ନିମନ୍ତେ ମୁଁ ପାଉଅଛି ମାତ୍ର ଦେଶ ଉନ୍ନତି ବିଧାୟକ କୌଣସି ପ୍ରବନ୍ଧ ଓ କୃଷି ସମ୍ବନ୍ଧୀୟ କୌଣସି ଲେଖା ପାଉ ନାହିଁ । 'ଶଙ୍ଖ'ର ପତ୍ରରୁ କେତେକ ପୃଷ୍ଠା ମୁଁ କୃଷି ନିମନ୍ତେ ଗଚ୍ଛିତ ରଖିବାକୁ ପ୍ରସ୍ତାବ କରିଅଛି । ଯଦି ଶିକ୍ଷିତ ଏବଂ ଯେଉଁମାନଙ୍କର କୃଷି ବିଷୟରେ ଅଭିଜ୍ଞତା ଅଛି ସେମାନେ କିଛି କିଛି ଲେଖନ୍ତି ସେମାନଙ୍କର ଲେଖାକୁ ଆଗ୍ରହ ସହିତ ସ୍ଥାନ ଦେବି । କୌଣସି ଲେଖା ନ ପାଇଲେ ମଧ ମୋର ବିଦ୍ୟାବୁଦ୍ଧି ଅନୁସାରେ ଏବଂ ଅଭିଜ୍ଞତାର ଫଳ ଯାହା ମୋର ଅଛି ତାହା ପ୍ରକାଶ କରିବି । ଅବଶ୍ୟ ଯେତେଦିନ ଶଙ୍ଖର ସମ୍ପାଦକ ଥିବି । ଏହି ନୂଆ କାର୍ଯ୍ୟରେ ହାସ୍ୟାସ୍ପଦ ନ ହେଲେ ମଙ୍ଗଳ । ହାସ୍ୟାସ୍ପଦ ହେବା ନିନ୍ଦା ପାଇବାକୁ ମୁଁ ଭୀତ ନୁହେଁ ଯେହେତୁ ମୁଁ ଚଷା-ଜାତି ନାମକା ବାସ୍ତେ କ୍ଷତ୍ରିୟ ଏବଂ ପ୍ରଧାନ ରାଜକର୍ମଚାରୀ ଥାଇ ବାମଣ୍ଡାର ଭାଗ୍ୟ ନିୟନ୍ତ୍ରଣରେ ମନ ପ୍ରାଣ ଦେଇଥିଲେ ମଧ ମୁଁ ଚଷା । ଆବାଲ୍ୟକାଳରୁ ଚଷା । ଗୁରୁଠାରୁ ଏ ଶିକ୍ଷା ପାଇ ନାହିଁ ଉତ୍ସାହ ଅନୁଭୂତି ପାଇ ନାହିଁ । ଶିକ୍ଷା ଦୀକ୍ଷା ମୋର ପିତାଠାରୁ, ପାଞ୍ଚ ବର୍ଷ କାଳରୁ ମୁଁ ଏହି କର୍ମରେ ବ୍ରତୀ । ରାଜକାର୍ଯ୍ୟରୁ ଅବସର ପାଇଲାକ୍ଷଣି ଯାଇ ମାଟି ଚକଟିବାରେ ବ୍ୟୟ କରେ ଓ ଅପାର ଆନନ୍ଦ ଅନୁଭବ କରେ । ପୁସ୍ତକପାଠ ଓ ଚାଷକାର୍ଯ୍ୟ ମୋର ଏକ ମାତ୍ର ଆନନ୍ଦୋତ୍ପାଦକ । ଆଜି ୭୫ ବର୍ଷରେ ମଧ ମାଟିରେ ହାତ ନ ଦେଲେ ମତେ ସୁଖ ଲାଗେ ନାହିଁ । ଏହା ପ୍ରକାଶ କରିବାରେ ମୋର ଲଜ୍ଜା ନ ଥିଲା ଏବେ ମଧ ନାହିଁ । ରାଧାନାଥ ପ୍ରଭୃତି ଅନେକ ଭଦ୍ରବ୍ୟକ୍ତି ଏବଂ ପୋଲିଟିକେଲ୍ ଏଜେଣ୍ଟ ପ୍ରଭୃତି ଅନେକ ଇଉରୋପୀୟନ ମୁଁ ମାଟି ଖୋଳୁଥିବାର, ଗଛ ପୋତୁଥିବାର ଦେଖିଅଛନ୍ତି । ମୁଁ ଏଥିରେ ଗର୍ବ ବୋଧ କରିଅଛି କେବେ ଲଜ୍ଜିତ ହୋଇ ନାହିଁ ଓ ଆଉ ଲଜ୍ଜା କରିବାର ସମୟ ନାହିଁ ।

ମୁଁ ରାଜକାର୍ଯ୍ୟରୁ ଅବସର ନେଲା ଉତ୍ତାରୁ ମୋର ବାଳିଆପିଟା ଖମାର ଗ୍ରାମରେ ଗୋଟିଏ କମଳା ବଗିଚା ତୟାର କଲି । କମଳାବୃକ୍ଷାନ୍ତରାଳରେ ଖଣ୍ଡିଏ ଛଣ କୁଟୀର ନିର୍ମାଣ କଲି । ଏହି କୁଟୀର ମୋର ହଳିଆ ମୂଲିଆଙ୍କ ଘର ଅପେକ୍ଷା ବଡ଼ ନୁହେଁ ସୁନ୍ଦର ନୁହେଁ ବରଂ ଛୋଟ ହୋଇପାରେ । ଗୃହର ଆସବାବ ମଧରେ ଗୋଟିଏ ଦଉଡ଼ି ଖଟ ଏବଂ ଖଣ୍ଡିଏ ଦରି । ଏହି ନିର୍ଜନ ସ୍ଥାନ ମୋର ଘରଠାରୁ ପ୍ରାୟ ଅଢ଼ାଇ ମାଇଲ୍ । ପ୍ରତିଦିନ ସକାଳେ ସେଠାକୁ ଯାଏ ଏବଂ ସନ୍ଧ୍ୟାବେଳେ ଘରକୁ ଫେରେ । ସେଠାରେ ସ୍ୱ-ହସ୍ତରେ ପାକ କରି ପରିତୋଷ ସହିତ ଭକ୍ଷଣ କରେ । ଅଧଘଣ୍ଟା ବିଶ୍ରାମ ପରେ ଅଧୟନ ଓ ଚାଷ କାର୍ଯ୍ୟରେ ଆଉ ସମୟ ବ୍ୟୟିତ ହୁଏ । ସ୍ୱହସ୍ତରେ ରନ୍ଧନ କରିବାଦ୍ୱାରା ମାନବର ପ୍ରଥମ ଆବିଷ୍କାର ଉନ୍ନତିର ମୂଳ ସୋପାନ ଅଗ୍ନି ଦେବର ଆରାଧନା କରି ପ୍ରତ୍ୟହ ଚରିତାର୍ଥ ହୁଏ ।

ଚଷାର ଗୋ ପାଳନ କରିବା ବିଧି । ମୋର ପିତା ଗୋ-ପାଳନ ଓ ଗୋ ସେବା କରୁଥିଲେ । ମୁଁ ତଦବଧି ଆପଣା ଘରରେ ଦୁଇତିନିଟି ଗାଈ ପ୍ରତିପୋଷଣ କରେ । ବାଲ୍ୟ କାଳରୁ ଗୋ-ଦୋହନ କରିବାର ଅଭ୍ୟାସ ଥିଲା ଏବଂ ଆନନ୍ଦ ମଧ ଥିଲା ଏବେ ତାହା ତ୍ୟାଗ କରିଅଛି । ମାତ୍ର ପ୍ରୟୋଜନ ହେଲେ ଗୋ ଦୋହନ ଯେ କରିପାରିବି ନାହିଁ, ଏପରି ନୁହେଁ । ଚାଷ ବଳଦ ଓ ଗୋଠଗାଈ ଅଛନ୍ତି । ପ୍ରୟୋଜନ ଅନୁସାରେ ଅବଶ୍ୟ ସେମାନଙ୍କର ଚିକିତ୍ସା କର୍ତ୍ତବ୍ୟ ଏଣୁ ଗୋ ମହିଷାଦିଙ୍କର ଚିକିତ୍ସା କରି ସୁଖାନୁଭବ କରେଁ । ପାର୍ବତୀୟ ପ୍ରଦେଶର ଗାଈ ବଳଦର ପ୍ରାୟ ଗୋଡ଼ ଭାଙ୍ଗିଯାଏ ପଖା ଖସିଯାଏ, ଗୁଳି ଖସିଯାଏ । ଏ ସବୁର ଚିକିତ୍ସା ମଧ କରୁଥିଲି । କାର୍ଯ୍ୟ କଷ୍ଟ ସାଧ ଏଣୁ ଶେଷୋକ୍ତ ଚିକିତ୍ସା କରିବାର ସାମର୍ଥ୍ୟ ନାହିଁ ମାତ୍ର ଭଙ୍ଗାଗୋଡ଼ ଯୋଡ଼ିବା କାର୍ଯ୍ୟ ଅଦ୍ୟାପି ସ୍ୱ ହସ୍ତରେ ସମାଧାନ କରେଁ ।

ଆବାଲ୍ୟ କାଳରୁ କୁକୁର ମୋର ସଙ୍ଗୀ ଏଥିରେ ବଡ଼ ଆମୋଦ ମିଳେ । ଆଜକୁ ଚାରିବର୍ଷ ହେଲା ମୋର ସୁଲତାନ୍ ନାମକ କୁକୁର ମୋର ସହିତ-ଜମି ନିର୍ମାଣ କଲାବେଳେ ପାଣିରେ ଭିଜି ଭିଜି ନିମୋନିଆ ରୋଗଗ୍ରସ୍ତ ହେଲା । ବହୁ ଯତ୍ନ ଓ ଚିକିତ୍ସାରେ ରକ୍ଷା କରିପାରିଲି ନାହିଁ । ସେହି ଜମିର ନାମ ସୁଲତାନ୍‌ପସି ଦେଇଅଛି । ଜମିର ନାମ ରହିଲା ମାତ୍ର ସୁଲତାନ୍ ଆଉ ନାହିଁ । ଭଲ କୁକୁର ନ ମିଳିବାରୁ ମୁଁ ସଙ୍ଗୀଶୂନ୍ୟ ।

କୃଷକର ଛେଳି ମେଣ୍ଢା ପୋଷଣ କରିବା ପ୍ରୟୋଜନ ମୁଁ ତାହା କରିଅଛି । ହଂସ, ପାରା ଓ କୁକୁଡ଼ା ମଧ ପାଶ୍ଚାତ୍ୟ କୃଷକମାନେ ରଖନ୍ତି । ତାଙ୍କର ଅନୁକରଣରେ ମୁଁ ମଧ ପାଳନ କରୁଅଛି । ହିନ୍ଦୁପକ୍ଷରେ କୁକୁଡ଼ା ନିତାନ୍ତ ଘୃଣ୍ୟଜୀବ-ମାତ୍ର ମୁଁ ପାଳନ କରେ ଯେହେତୁ ମୁଁ ନିଜକୁ ହିନ୍ଦୁ ନ କହି ଭାରତବାସୀ ବୋଲି କହେଁ । ମତ୍ସ୍ୟ ଗୋଟିଏ ପ୍ରଧାନ ଖାଦ୍ୟସାମଗ୍ରୀ । ଆଧୁନିକ କୃଷକ ସେ ଚାଷରୁ ନିରସ୍ତ ହେବା ଉଚିତ ନୁହେଁ । ଏଣୁ ମୁଁ ମୋର ସାମର୍ଥ୍ୟାନୁସାରେ ଦୁଇ ଗୋଟି ପୁଷ୍କରିଣୀରେ ମାଛ ପାଳନ କରେଁ ।

ଜୀବନରେ ବିଶେଷ କୃତକାର୍ଯ୍ୟ ହୋଇ ନ ଥିଲେ ମଧ ମୁଁ କୃଷିକାର୍ଯ୍ୟର ସେବକ, ଚଷା ଏଣୁ ଶଙ୍ଖର ପ୍ରଥମ ପ୍ରବନ୍ଧ ମୋଦ୍ୱାରା ଲିଖିତ ହେବା ଉଚିତ ହେବ ମନେକରେଁ ।

ନାନା ପୁସ୍ତକରୁ ସଂଗ୍ରହ ସହିତ ନିଜ ଅଭିଜ୍ଞତାକୁ ଯୋଗ କରି ପ୍ରତି ମାସରେ ଯେଉଁ ଯେଉଁ ଫସଲ ରୋପଣ କରିବା ଉଚିତ ତାହା ଲେଖାଯିବ । ସର୍କାରୀ କୃଷିକ୍ଷେତ୍ରର ଅଭିଜ୍ଞ କର୍ମଚାରୀମାନେ ଯଦି ଏଥିରେ ସାହାଯ୍ୟ କରନ୍ତି ତାହାହେଲେ ପ୍ରଭୃତି ଉପକାର ହେବ, ଆମେମାନେ ସେମାନଙ୍କଠାରେ ଚିରୋପକୃତ ରହିବୁ ।

ସମୟ ବିଶେଷରେ ପାଠକମାନଙ୍କର ସନ୍ଦେହମୋଚନ କରିବାର ବିଶେଷ ଚେଷ୍ଟାକରିବୁଁ ।

ଲେଖକମାନେ ଓ ଚାଷୀମାନେ ନିଜ ଅଭିଜ୍ଞତାର ଫଳ ଜଣାଇଲେ ତାହା ଏହି ପତ୍ରିକାରେ ପ୍ରକାଶ କରାଯିବ ।

'ଅୟମାରମ୍ଭ ଶୁଭାୟ ଭବତୁ'

ମାର୍ଗଶିର ଓ ପୌଷ December ବିଲାତ ଶାକସବଜି ରୋପଣ କରିବା ସମୟ ଅତିକ୍ରାନ୍ତ ହୋଇଅଛି ଏଣୁ ସେ ସମ୍ବନ୍ଧରେ ଲେଖିବାର ପ୍ରୟୋଜନ ଦେଖାଯାଉ ନାହିଁ ।

ପୋଟଳ-ଗୋଟିଏ ଅତି ଉପାଦେୟ ଦେଶୀୟ ତର୍କାରୀ ମାତ୍ର ଅନେକ ସ୍ଥଳରେ ଏହାର ଚାଷ ହୁଏ ନାହିଁ । ସାମାନ୍ୟ ଚେଷ୍ଟାରେ ଏହା ସର୍ବତ୍ର ଚାଷ କରାଯାଇପାରେ । ପୁରୁଣା ପୋଟଳ ଗଛର ମୋଟା ଚେରକୁ ଗେଣ୍ଡୁ କହନ୍ତି । ଏହି ଗେଣ୍ଡୁ ରୋପଣଦ୍ୱାରା ନୂତନ ପୋଟଳ ଗଛ ଉତ୍ପନ୍ନ ହୁଏ । ପୋଟଳ ବାଲିଆ ମାଟିରେ ଭଲ ହୁଏ ବାଲିଆ ମାଟି ନ ଥିଲେ ଅନ୍ୟ ମାଟିରେ ଜନ୍ମିବ ନାହିଁ ଏପରି ନୁହେଁ । ଚାରି ହାତ ଅନ୍ତର ଗୋଟିଏ ଗୋଟିଏ ଗର୍ତ୍ତ ଖୋଳିବାକୁ ହେବ । ଗର୍ତ୍ତର ଗଭୀର ଦେଢ଼ ହାତ ବ୍ୟାସ ଏକ ହାତ । ଗଭୀର-ଗର୍ତ୍ତର ମାଟି ଅଲଗା କରି ଦେଇ ଏହି ଗର୍ତ୍ତକୁ ଭଲ ଚାଷମାଟି ଓ ପୁରୁଣା ଗୋବର ସାର ଦ୍ୱାରା ପୂର୍ଣ୍ଣ କରିବାକୁ ହେବ । ଗର୍ତ୍ତକୁ ପୂରଣ କରିବା ଆଗରୁ ସେଥିରେ କିଛି ଆବର୍ଜନା ବା ପତ୍ରପୂରଣ କରି ପୋଡ଼ାଇ ଦେଲେ ଭଲ ହୁଏ ଉଇ ଆକ୍ରମଣର ଭୟ ଦୂର ହୁଏ । ଭଲ ମାଟିଦ୍ୱାରା ଗର୍ତ୍ତ ପୂରଣ ହେଲାରୁ ତିନି ଚାରି ଖଣ୍ଡ ମୋଟ ଚେର ବା ଗେଣ୍ଡୁ ରୋପଣ କରି ମାଟି ଘୋଡ଼ାଇ ଦେବାକୁ ହେବ-ତତ୍‌ପର ଯଥେଷ୍ଟ ପାଣି ଦେଇ ପୁଆଳି ଘୋଡ଼ାଇ ଦେବାକୁ ହେବ । ଦଶ ବାର ଦିନରେ ନୂଆ ପୋଟଳ ଗଜା ବାହାରିବ । ତେଣିକି ପୁଆଳି ଘୋଡ଼ାଇବା ଉଚିତ ନୁହେଁ । ଏଣିକି ୪।୬ ଦିନ ଅନ୍ତର ପାଣି ଦେବାକୁ ହେବ । ଲହ ଉପରକୁ ଯିବା ନିମନ୍ତେ ରାଞ୍ଚ ପୋତି ଦେବାକୁ ହେବ-ରାଞ୍ଚରେ ଫଳିବ,ନତୁବା ମଞ୍ଚା ବା ଭାଡ଼ି କରିପାରିଲେ ଆହୁରି ଭଲ । ସମୟ ସମୟରେ ମୂଳକୁ ଖୋଡ଼ିଦେବା ଭିନ୍ନ ଓ ଜଳସେଚନ ଭିନ୍ନ ଆଉ କୌଣସି ଯତ୍ନର ପ୍ରୟୋଜନ ନାହିଁ । ଫୁଲ ଧରିବା ବେଳେ ବା ପୂର୍ବରୁ ସାମାନ୍ୟ ପିଡ଼ିଆ ଦେଲେ ଫଳ ବେଶୀ

ହୁଏ ଓ ଫଳ ବଡ଼ ହୁଏ । ଫଗୁଣ ଆରମ୍ଭରୁ ଫଳ ଧରିବ- ଦଶହରା ପର୍ଯ୍ୟନ୍ତ ଫଳ ମିଳୁଥିବ । ଫଳକୁ ଭଜା ଓ ତର୍କାରି କରାଯାଏ । ଏହାଛଡ଼ା ଏହାର କୋମଳ ପତ୍ର ଓ ଅଗ୍ରଭାଗକୁ ଚାଉଳବଟା ବିରିବଟା କିମ୍ବା ବେସନ ସହିତ ଗୋଳାଇ ଭାଜିଲେ ରୁଚିକର ସୁଖାଦ୍ୟ ହୁଏ । ପତରକୁ ସନ୍ତୁଳି ଝୋଳ କଲେ ମୁଖରୋଚକ ତର୍କାରି ହୁଏ । ଏହା ପିତ୍ତନାଶକ । ପୋଟଳ ପତ୍ରରେ ବୈଦ୍ୟମାନଙ୍କର ପାଚନର ସାମଗ୍ରୀ । ଏହା ଯେ ଜ୍ୱର ନାଶକ ତାହା ସମସ୍ତଙ୍କୁ ଜଣା ଏହା ସମସ୍ତଙ୍କ ବାଡ଼ିରେ ସ୍ଥାନ ପାଇବା ଉଚିତ ।

କୁନ୍ଦୁରୁ—· ବିମ୍ବୀ, ବିମ୍ବଫଳ ବଙ୍ଗଳା ନାମ ତେଳାକଚୁ— ଏହା ଗୋଟିଏ ସହଜଲଭ୍ୟ ଉପାଦେୟ ତର୍କାରି ମାତ୍ର ଅନେକେ ଏହାର ଚାଷ କରନ୍ତି ନାହିଁ ବା ଜାଣନ୍ତି ନାହିଁ । ଏହାର ଚାଷର ପରିଶ୍ରମ ତୁଳନାରେ ଏହାର ଲାଭ ଅତ୍ୟଧିକ । ଯାହାର ଖଣ୍ଡେ ଅଳ୍ପାୟତନ ବାଡ଼ି ଅଛି ସେ ମଧ ଗୋଟିଏ ଯୋଡ଼ିଏ ଗଛ ରୋପଣ କରିବା ଉଚିତ । ପୁରୁଣା ଲତାରୁ ନୂତନ ଗଛ ଜନ୍ମାଇବାକୁ ହୁଏ । ମଞ୍ଜିରୁ ମଧ ଜନ୍ମେ ମାତ୍ର କଷ୍ଟସାଧ । ଏଣୁ ଲତାରୁ ଗଛ ଜନ୍ମାଇବା ଉଚିତ । କାର୍ତ୍ତିକ ମାର୍ଗଶିରରେ ରୋପଣ କରିବାର ପ୍ରଶସ୍ତ ସମୟ । ଗୋଟିଏ ଦେଢ଼ ହାତ ପରିମିତ ଏବଂ ଏକହସ୍ତ ଗଭୀର ଗର୍ତ୍ତକରି ତହିଁରେ କିଛି ପୂଆ କୁଟା ଦେଇ ପୋତି ଦେବାକୁ ହେବ । ଗର୍ତ୍ତକୁ କାଟି ଓ ପୁରୁଣା ଗୋବର ସାରଦ୍ୱାରା ପୂରଣ କରିବାକୁ ହେବ । ତିନି ଚାରି ହାତ ଲମ୍ବର ଖଣ୍ଡିଏ ପୁରୁଣା ଲହକୁ ଚକ୍ରାକାରରେ ଗୁଡ଼ାଇ ଏହି ମାଟିରେ ପୋତି ଦେବାକୁ ହେବ-ପାଣି ଦେଇ ଉପରେ କଞ୍ଚା ଗୋବର ଗୋଳି ଅଜାଡ଼ି ଦେବାକୁ ହେବ— ମଧରେ ମଧରେ ପାଣି ଦେବାକୁ ହେବ-୧୦।୧୨ ଦିନରେ ଗଜା ବାହାରିବ । ରାଞ୍ଚ ବା ବାଉଁଶ ପୋତି ଦେବାକୁ ହେବ ଏବଂ ଗୋଟିଏ ମଞ୍ଚା ବା ଭାଡ଼ି ପ୍ରସ୍ତୁତ କରି କୁନ୍ଦୁରୁ ଗଛ ଉଠାଇଦେଲେ ତା'ର ଚାଷ ଶେଷ କେବଳ ସମୟ ବିଶେଷରେ ପ୍ରୟୋଜନ ଅନୁସାରେ ପାଣି ଦେବାକୁ ହେବ । ମାଘ ଫଗୁଣ ମାସରେ ଫଳ ଆରମ୍ଭ ହେବ ବର୍ଷତମାମ ଫଳ ମିଳିବ । ସମୟରେ ପିଡ଼ିଆ ଦିଆଯାଇପାରେ । କୁନ୍ଦୁରୁ ମୁଖରୋଚକ ତର୍କାରି । ଭଜା ଓ ରାଇତା ବା ରାୟିରେ ଏହାର ପ୍ରାଶସ୍ତ୍ୟ । ପତ୍ରକୁ ଶାକରୂପେ ବ୍ୟବହାର କରାଯାଇପାରେ । ବୁଟ ବେସନ କିମ୍ବା ବିରିବଟା ବା ଚାଉଳବଟା ଚାରି ପାଞ୍ଚଟା ପତ୍ର ମଧରେ ଲେପନ କରି ପତ୍ରଗୁଡ଼ିକୁ ଖୋବ କଡ଼ାକରି ଭାଜିନେଲେ ଖାଇବାକୁ ସୁଖକର ହୁଏ ।

ଏ ମାସରେ ଅନେକ ଗୁଡ଼ିଏ ଖାଦ୍ୟୋପଯୋଗୀ ବୀଜ ରୋପଣ କରିବାର କଥା ମାତ୍ର ସ୍ଥାନାଭାବ ହୋଇପଡ଼ିଲେ ... ଏତିକି ।

ଭାରତବାସୀ ଗୋ-ସେବାର ଗର୍ବ କରନ୍ତି । ମାତ୍ର ପାଶ୍ଚାତ୍ୟ ଦେଶବାସୀ ଗୋ-ଖାଦକ ହେଲେ ମଧ ସେମାନଙ୍କର ଗୋରୁ ପାଳନ ପ୍ରଥା ଅତୁଳନୀୟ । ଅଳ୍ପକାଳରେ ଦୁଗ୍ଧବତୀ ଗାଈ ଜନ୍ମାଇବାରେ ଯେଉଁ ଦକ୍ଷତା ଉପାର୍ଜନ କରିଅଛନ୍ତି, ତାହା ସର୍ବଥା ଅନୁକରଣୀୟ- ଏ ଦେଶରେ ମଧ ସେମାନଙ୍କର ଶିକ୍ଷାରୁ ଏବଂ ଅନୁକରଣରୁ କିଞ୍ଚିତ୍ ଗୋପାଳନ ଚେଷ୍ଟା ଚାଲିଅଛି । ଦିଲ୍ଲୀର ପ୍ରଦର୍ଶନୀରେ ମିଲିଟେରୀ ଫାର୍ମର ଗାଈ ମହିଷି ଦୁଗ୍ଧ ପରୀକ୍ଷା କରାଯାଇଥିଲା । ଅମ୍ବାଲା ଫାର୍ମର ମୃଦିନୀ ନାମକ ଗୋଟିଏ ଗାଭୀ ଏକ ମହଣ ପନ୍ଦର ସେର ଦୁଗ୍ଧ ଦୈନିକ ଦେବାରେ ପ୍ରମାଣିତ ହୋଇଅଛି । ଏଥିପ୍ରତି ପାଠକ, ଧନୀ ଏବଂ କୃଷକମାନଙ୍କର ଚିତ୍ତାକର୍ଷଣ କରୁଅଛୁଁ ।

•

## ॥ ୩ ॥

ଇଉରୋପ, ଆମେରିକାର ଯନ୍ତ୍ରଚାଳିତ କୃଷି କାର୍ଯ୍ୟର ବିଷୟ ଚିନ୍ତାକଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼େ । ଆମଦେଶର କୃଷିକର୍ମ ସେହି ଧରଣରେ ଚାଳିତ ହେବାକୁ କେତେଦିନ ଲାଗିବ ତାହା କିଏ କହିପାରିବ । ତଥାପି ଆମେମାନେ ସେହି ପନ୍ଥାର କୃଷି ସମ୍ବନ୍ଧୀୟ ଆଲୋଚନାରେ ପ୍ରବୃତ୍ତ ହେବା ଉଚିତ ଅଟେ । କ୍ରମେ ଏହି କୃଷି ପ୍ରବନ୍ଧରେ ସେଥିର ଆଲୋଚନା କରିବାକୁ ବାସନା ରହିଲା ଏବଂ ଦେଶର ବିଜ୍ଞ କୃଷି ଉନ୍ନତିକାମୀମାନଙ୍କର ଲେଖା ପାଇଲେ ପତ୍ରିକାର ଏହି ଅଂଶରେ ପ୍ରକାଶ କରିବାକୁ ଆଗ୍ରହାନ୍ୱିତ ରହିଲୁଁ । ବର୍ତ୍ତମାନ ଆମ ଦେଶର ଫସଲ ଚାଷ ସମ୍ବନ୍ଧେ ନିମ୍ନରେ ଜାନୁୟାରୀ ମାସରେ ବପନଯୋଗ୍ୟ ଗୋଟାକେତେ ପରିବା ସମ୍ବନ୍ଧେ ଲେଖାଯାଉ—

ବୋଇତାଳୁ—ବୋହିତଆଳୁ, ବଙ୍ଗଳାମିଠା କୁମୁଡ଼ା— ଉତ୍କଳବାସୀ ଏହି ତର୍କାରିର ବ୍ୟବହାର ଉତ୍ତମ ରୂପେ ଜାଣନ୍ତି ଏହା ଉତ୍କଳବାସୀର ନିତ୍ୟ ବ୍ୟବହାର୍ଯ୍ୟ ଖାଦ୍ୟଦ୍ରବ୍ୟ ବୋଇଲେ ଅସଙ୍ଗତ ନୁହେଁ । ବୋଇତାଳୁ ଦୁଇ ପ୍ରକାର । ବର୍ଷାମାସର ବୋଇତାଳୁ ଓ ଖରାମାସିଆ ବୋଇତାଳୁ । ଖରାମାସିଆ ବୋଇତାଳୁ ସାଧାରଣତଃ ବାଲି ବୋଇତାଳୁ ବୋଲନ୍ତି । ନଦୀର ପଟାଳଭୂମିରେ ଏହାର ପ୍ରଥମ ଚାଷ ଆରମ୍ଭ ହୋଇଥିଲା ଏଣୁ ଏହାର ନାମ ବାଲି ବୋଇତାଳୁ

ହୋଇଥିବାର ଅନୁମାନ ହୁଏ । ମହାନଦୀ ପଠାରେ ପ୍ରଚୁର ପରିମାଣରେ ଚାଷ ହୁଏ । ମାତ୍ର ପାଣିର ଅଭାବ ନ ଥିଲେ ଯେ କୌଣସିସ୍ଥାନରେ ଏହାର ଚାଷ କରାଯାଇପାରେ । ବାଲିଆ ମାଟିରେ ଉତ୍ତମରୂପେ ଜନ୍ମେ । ଗଡ଼ଜାତ ଅଞ୍ଚଳରେ ଏହାର ଚାଷ ପୂର୍ବେ ଜଣା ନ ଥିଲା ଏବେ ଏଥିର ଚାଷକରି ଆମେମାନେ ଯଥେଷ୍ଟ ଫଳଲାଭ କରିଅଛୁଁ ।

ଜମିକୁ ଦୁଇ ତିନି ଥର ଚଷିବାକୁ ହେବ । ଚାରି ହାତ ଅନ୍ତରରେ ଗୋଟିଏ ଗୋଟିଏ ଏକ ଫୁଟ ଗଭୀର ଦେଢ଼ ଫୁଟ ଚଉଡ଼ାର ଗର୍ତ୍ତ କରାଯିବ— କୁଟାପୁଆଳ ଦେଇ ଗର୍ତ୍ତକୁ ପୋଡ଼ିବାକୁ ହେବ— ପରେ ଭଲମାଟି ଓ ଖତମିଶ୍ରିତ କରିବାକୁ ହେବ— ମନ୍ଦାରେ ୪।୫ଟି ମଞ୍ଜି ପୋତି ପାଣିଦେଇ ପୁଆଳ ଘୋଡ଼ାଇବାକୁ ହେବ । ୫।୬ ଦିନରେ ଗଛ ଉଠିବ । ଗଛ ଦେଖାଗଲାକ୍ଷଣି ପୁଆଳକୁ ଆଡ଼େଇଦେବାକୁ ହେବ । କିମ୍ବା ଗୋଟାଏ କିଆରିରେ କେତେ ଗୋଡ଼ିଏ ମଞ୍ଜି ପକାଇବାକୁ ହେବ—ଚାରା ଦୁଇପତ୍ର ହେଲାମାତ୍ରେ ଉପରୋକ୍ତ ମନ୍ଦାମାନଙ୍କରେ ରୋପଣ କରିବାକୁ ହେବ । ଶେଷୋକ୍ତ ପ୍ରଥା ଉତ୍ତମ । କାରଣ ମନ୍ଦାରେ ମଞ୍ଜି ରୋପଣକଲେ ବେଶୀ ମନୋଯୋଗର ଆବଶ୍ୟକ । ଗଛ ଉଠିଲାରୁ କେବଳ ପାଣି ଦେବାକୁ ହେବ ଏବଂ ମଧରେ ମଧରେ ମନ୍ଦାକୁ ଖୋଳିବାକୁ ହେବ—ପତ୍ର ବଡ଼ ହେଲା ଉତ୍ତାରୁ ହିଡ଼ଦେଇ କିଆରି ବାନ୍ଧିବାକୁ ହେବ—କ୍ଷେତ୍ରରେ ଯଥେଷ୍ଟ ପାଣି ଦେବାକୁ ହେବ । ଏବଂ ଖୋଳିବାକୁ ହେବ । ଗଛର ପବରେ ଚେର ବାହାରି ମାଟି ଭିତରେ ପଶେ ଏବଂ ଭୂମିରୁ ସାର ଗ୍ରହଣ କରି ଗଛକୁ ସତେଜ କରେ, ଏଣୁ ଫଳ ଭଲ ହୁଏ ।

ତରମୁଜ, ତରଭୁଜ—ଏହା ଗ୍ରୀଷ୍ମକାଳର ଅତି ଉପାଦେୟ ଖାଦ୍ୟ, ଏହାର ଚାଷ ଅବିକଳ ବାଲିବୋଇତାଳୁ ପରି, ସୁତରାଂ ବିସ୍ତର ବିବରଣ ଲେଖିବାର ଅନାବଶ୍ୟକ । ବାଲିବୋଇତାଳୁର ପଦମାନଙ୍କରୁ ଚେର ବାହାରେ । ତରଭୁଜରୁ ଚେର ବାହାରେ ନାହିଁ-ମୂଳରୁ କେବଳ ସାର ସଂଗ୍ରହ କରେ । ସୁତରାଂ ମୂଳରେ ବେଶୀ ସାର ଓ ପାଣି ପ୍ରୟୋଗର ଆବଶ୍ୟକ । ଗଛରେ ଫୁଲ ଫୁଟିଲାବେଳେ କିଛି ପିଡ଼ିଆ ଦେଲେ ଫଳ ବଡ଼ ଓ ପୁଷ୍ଟ ହୁଏ । ମାତ୍ର କାଣ୍ଡରେ କିମ୍ବା ପତ୍ରରେ ସାର ଲାଗିବା ଉଚିତ ନୁହେଁ । କେବଳ ମାଟିରେ ଭଲ କରି ସାରମିଶାଇ ଦେବାକୁ ହେବ । ଏ ଦେଶରେ ଅନେକ ପ୍ରକାର ତରଭୁଜ ଅଛି ମାତ୍ର ବିଦେଶରୁ ଆମଦାନୀ ଦୁଇ ଚାରିଟା ତରଭୁଜ ଅତି ଉତ୍କୃଷ୍ଟ ଯେମନ୍ତ, ନେତ୍ର ପ୍ରୀତିକର ତେମନ୍ତ ରସନାର ତୃପ୍ତିକର । Tom Watson, Dixi Queen, Quben Queen ଉଲ୍ଲେଖଯୋଗ୍ୟ ।

ଖରଭୁଜା— ଆମ ଦେଶର ଚାଷୀମାନେ ଏ ପଦାର୍ଥକୁ ପ୍ରାୟ ଜାଣନ୍ତି ନାହିଁ କିମ୍ବା ଯେଉଁମାନେ ଜାଣନ୍ତି ସେମାନେ ଏଥିର ଚାଷରେ ଉଦ୍ୟୋଗୀ ନୁହନ୍ତି । ମାତ୍ର ଏହା ଯେ ଗୋଟିଏ ଉତ୍କୃଷ୍ଟ ଖାଦ୍ୟ ଏଥିରେ ସନ୍ଦେହ ନାହିଁ । ଏହାର ଚାଷ ଏ ଦେଶରେ ପ୍ରଚାର ହେବା ଉଚିତ ମନେ ହୁଏ । ଖରଭୁଜା, ଫୁଟି ଓ ତରଭୁଜର ମଧ୍ୟବର୍ତ୍ତୀ ଅର୍ଥାତ୍— ଫୁଟି ପରି ଦେଖାଯାଏ ଏବଂ ତରଭୁଜ ପରି ମିଷ୍ଟ ଅଧିକନ୍ତୁ ଏହାର ସୁଗନ୍ଧ ଉକ୍ତ ଉଭୟ ଫଳରେ ନାହିଁ । ଏହାର ଚାଷ ବୋଇତାଳୁ ତରଭୁଜ ପରି । କିନ୍ତୁ ବେଶୀ ଯତ୍ନର ଆବଶ୍ୟକ । ଏହି ଗଛର ଶତ୍ରୁ କୁଳୁକୁଳିଆ ପୋକ ଜାତୀୟ ଲାଲ୍‌ପୋକ ବଡ଼ ଅନିଷ୍ଟକାରୀ । ପତ୍ର ବାହାରିଲାକ୍ଷଣି ଏହି କୀଟ ପତ୍ର ଖାଇବାକୁ ଚେଷ୍ଟା କରେ । ସୁତରାଂ ମାଟିକୁ ମଧରେ ମଧରେ ଖୋଳିବା ଦରକାର, ପାଉଁଶ ବିଶେଷତଃ ପୁଆଳ କାଳି କିମ୍ବା ରାଶିଗଛର କାଳି ପତ୍ରରେ ଦେବାକୁ ହୁଏ— ସାବୁନପାଣି ଓ କିରାସିନିତେଲ ଏକତ୍ର ମିଶ୍ରିତକରି ପିଚକାରୀ ଦ୍ୱାରା ଦେବାକୁ ହୁଏ । ପ୍ରଥମାବସ୍ଥାରେ ପୋକର ଅତ୍ୟାଚାରରୁ ରକ୍ଷା କରିପାରିଲେ ତେଣିକି ବିଶେଷ ଯନ୍ତ୍ରର ପ୍ରୟୋଜନ ନାହିଁ, କେବଳ ପାଣି ପ୍ରୟୋଜନ ଅନୁସାରେ ଦେବାକୁ ହୁଏ । ଥରେ ବା ଦୁଇ ଥର ପିଡ଼ିଆ ଦେଲେ ଫଳ ଉତ୍ତମ ହୁଏ । ଜଳୀୟ ସାର ମଧ ଉପରୋକ୍ତ ସମସ୍ତ ଗଛପ୍ରତି ଉପକାରୀ । ଜଳୀୟସାର ଅର୍ଥାତ୍ ହାଣ୍ଡିରେ କଞ୍ଚାଗୋବର ପାତଳାକରି ଗୋଳି ଦେବାକୁ ହେବ— ତହିଁର ଗୋଟିଏ ଖାରପୁଟଳି ବା ଅଳନ୍ଧୁ ପୁଟଳି ବାନ୍ଧି ପକାଇ ଦେବାକୁ ହେବ । ଆଠ ଦିନରେ ଏହି ଗୋବରପାଣି ଈଷତ୍ ଲାଲ୍ ଦିଶିବ— ଏହି ସମୟରେ ଏହି ସାର ପ୍ରୟୋଗର ଉପଯୁକ୍ତ ସମୟ । ଏକ ଭାଗ ଏହି ଗୋବରପାଣିରେ ଆଠ ଭାଗ ପାଣି ମିଶାଇ ଉପରୋକ୍ତ ଜାତୀୟ ଗଛର ମନ୍ଦାରେ ଦେଲେ ବିଶେଷ ଉପକାର ହୁଏ, ମାତ୍ର ଗଛର ଦିହରେ ବା ପତ୍ରରେ ସାର ଲଗାଇବାକୁ ହେବ ନାହିଁ ।

ଫୁଟି, କଲରା, ଜହ୍ନି— ମଧ ଏହି ସମୟରେ ରୋପଣ କରାଯାଇପାରେ । ବଙ୍ଗଦେଶରେ ତଳେ ମଡ଼ାନ୍ତି ଏଣୁ ଭୂଇଁ କଲରା ଝିଙ୍ଗା ନାମ ଦେଇଅଛନ୍ତି ।

**ମାଛ :** ପଞ୍ଜାବ ମତ୍ସ୍ୟ-କୃଷି ବିଭାଗର ପରୀକ୍ଷାଦ୍ୱାରା ଜଣାଯାଇଅଛି ଯେ, ଏକମାଣ ଆୟତନ ଜଳରେ ବା ପୋଖରୀରେ ୨୦୦୦ ଠାରୁ ୩୦୦୦ କାନି ଆଙ୍ଗୁଳି ଭଳିଆ

ମାଛଚୁଆ ଛାଡ଼ି ଦିଆଯାଇପାରେ । ଗୋଟାଏ ପୋଖରୀରେ ତିନି ଜାତିର ମାଛ ଅଛି, ଯଥା— କତଳା (ଭାକୁଡ଼), ରୋହି ଏବଂ ମୃଗାଳ (ମିର୍କାଳ) ମାଛ ଛଡ଼ା ଯାଇପାରେ, କତଳା ଜଳର ଊର୍ଦ୍ଧ୍ୱଅଂଶରୁ ଖାଦ୍ୟ ସଂଗ୍ରହ କରେ । ରୋହି ମଧ୍ୟଅଂଶରୁ ଖାଦ୍ୟ ସଂଗ୍ରହ କରେ ଏବଂ ମୃଗାଳ ତଳରେ ଚରେ । କହିବାକୁ ଗଲେ ଖାଦ୍ୟ ନିମନ୍ତେ ଏହି ତିନି ଜାତି ମାଛର ପ୍ରତିଦ୍ୱନ୍ଦ୍ୱିତା ନାହିଁ। ପୋଖରୀରେ ଉତ୍ତମ ଖାଦ୍ୟଥିଲେ ବର୍ଷକ ଭିତରେ କାତଳା (ଭାକୁଡ଼) ତିନି ସେର, ଅଢ଼େଇ ସେର ବଢ଼େ । ରୋହି ଦୁଇ ବା ଦେଢ଼ସେର ଏବଂ ମୃଗାଳ ଏକ ବା ଦେଢ଼ସେର ବଢ଼ିପାରେ ।

●

॥ ୪ ॥

ଆବହମାନକାଳରୁ ମନୁଷ୍ୟ ଚାଷଦ୍ୱାରା ଜୀବନ ଧାରଣ କରୁଅଛି । କେବେ କୃଷିକାର୍ଯ୍ୟ ମାନବଦ୍ୱାରା ଆରମ୍ଭ ହେଲା ଏବଂ କେଉଁ ଦେଶରେ ପ୍ରଥମେ ଏହାର ପ୍ରଚଳନ ହେଲା ତାହା ଆଲୋଚନା କରିବା ନିଷ୍ପ୍ରୟୋଜନ । ଉଦରପୋଷଣ ନିମନ୍ତେ ପୃଥିବୀର ସମଗ୍ର ଦେଶରେ ଏଥିର ପ୍ରଚଳନ ଆଗ ପଛ ହୋଇ ଆରମ୍ଭ ହୋଇଅଛି । ଶୃଙ୍ଗ, ବଙ୍କାଗଛ ସାହାଯ୍ୟରେ ପ୍ରଥମ ଚାଷର ଆରମ୍ଭ ହୁଏ, ତହିଁ ଉତ୍ତାରୁ ଲୌହଦ୍ୱାରା କ୍ରମେ ଲଙ୍ଗଳ ଦ୍ୱାରା । ବୈଦିକଯୁଗରେ ଲଙ୍ଗଳଚାଷ ଆରମ୍ଭ ହୋଇଥିବାର ସ୍ପଷ୍ଟ ଜଣାଯାଏ । ସେତେବେଳେ ଜଟିଳ ଜାତିଭେଦ ନ ଥିଲା ଉପାର୍ଜନ ନିମନ୍ତେ ଜାତିର ବିଚାର ଥିବାର ଜଣାଯାଏ ନାହିଁ । ବ୍ରାହ୍ମଣ କ୍ଷତ୍ରିୟ ଲଙ୍ଗଳମୁଠିରେ ହାତ ଦେଉଥିଲେ ଯେ ଜାତିଚ୍ୟୁତ ହେଉଥିଲେ ଏପରି ନୁହେଁ । ଜନକରାଜା ସ୍ୱହସ୍ତରେ କର୍ଷଣ କରୁଥିବାର ବିଷୟ ଅଳୀକ ନୁହେଁ । ଆଜିକାଲି ବ୍ରାହ୍ମଣ ବା କ୍ଷତ୍ରିୟ ଲଙ୍ଗଳରେ ହାତ ଦେଲା ମାତ୍ରେ ନିଶ୍ଚୟ ଜାତିପାତ । ଆଜିକାଲି ସେବା ଓ ଭିକ୍ଷା ବ୍ରାହ୍ମଣର ବଂଶଗତ ବ୍ୟବସାୟ ଅଟେ । କୃଷିକର୍ମ, ଧନ ଉପାର୍ଜନର ଯେ ଦ୍ୱିତୀୟ ପନ୍ଥା ତାହା ଏ ଦେଶବାସୀ ଭୁଲିଗଲେଣି । ପ୍ରାକ୍‌ବୈଦିକଯୁଗର କୃଷି ଯନ୍ତ୍ରପାତି ଅଦ୍ୟାପି ବ୍ୟବହାର ହେଉଅଛି । ତା'ର କୌଣସି ଉନ୍ନତି ଆଜିଯାଏ ହେଉ ନାହିଁ ଏବଂ ପାଶ୍ଚାତ୍ୟଦେଶର କୃଷି ସମ୍ବନ୍ଧୀୟ ଯନ୍ତ୍ରାଦିର ଆବିଷ୍କାର ଓ ବ୍ୟବହାର ଦେଖିଲେ ଏବଂ ଆମଦେଶର ଯନ୍ତ୍ର ସହିତ ତୁଳନା କଲେ ଲଜ୍ଜାରେ ମୁଣ୍ଡନତ ହୁଏ ।

ପୁଣି ଆମେମାନେ କ୍ରମାଗତ ଚାଷଦ୍ୱାରା ଭୂମିର ସାର ଗ୍ରହଣ କରୁଅଛୁ, ଭୂମିର ଉତ୍ପାଦିକା ଶକ୍ତି ବୃଦ୍ଧି ନିମନ୍ତେ ସାର ପ୍ରୟୋଗର ପ୍ରୟୋଜନୀୟତା ଉପଲବ୍ଧି କରୁ ନାହୁଁ । ଏହା ବଡ଼ ପରିତାପର ବିଷୟ ଓ ବିଶେଷ କ୍ଷତିକାରକ ନୁହେଁ କି ? ପୁଣି ଖତ ଓ ସାର ଭିନ୍ନ ଅନ୍ୟ ସାରର କଥା ଏ ଦେଶବାସୀଙ୍କୁ ଜଣା ନାହିଁ ବୋଇଲେ ଅତ୍ୟୁକ୍ତି ନୁହେଁ । ଖତ ସାର ମଧ ବହୁଳ ପରିମାଣରେ ପ୍ରାପ୍ୟ ନୁହେଁ । ରାସାୟନିକ ସାର ପ୍ରଭୃତି ଏ ଦେଶ ଲୋକଙ୍କୁ ଜଣା ନାହିଁ । କ୍ରମେ ଏ ସବୁ ବିଷୟରେ ଆମମାନଙ୍କୁ ମନଯୋଗୀ ହେବାକୁ ପଡ଼ିବ । ପୂର୍ବପୁରୁଷଙ୍କର ପ୍ରଦର୍ଶିତ ପନ୍ଥାରେ କେତେ ଦିନ ଚାଲିବା ?

ଆମ ଉତ୍କଳ ଦେଶରେ ଡାକରଷି ବୋଲି ଜଣେ ଥିଲେ, ବାଲ୍ୟବସ୍ଥାରୁ ସେ କୃଷି ଶାସ୍ତ୍ରାଭିଜ୍ଞ ବାଲ୍ୟଚପଳତା ଥିଲା । ସାହି ପଡ଼ିଶାର ପିଲାଙ୍କ ସହିତ ବାଟି ଖେଳନ୍ତି । କିନ୍ତୁ କୃଷିକର୍ମର ଉପଦେଷ୍ଟା ବୋଲି ତାଙ୍କର ପ୍ରଖ୍ୟାତି ଥିଲା ଏଣୁ ଚାଷୀମାନେ ସମୟ ସମୟରେ ତାଙ୍କର ଉପଦେଶ ଶୁଣିବାକୁ ଆସନ୍ତି । ସେ ମଧ ଆଗନ୍ତୁକ ବ୍ୟକ୍ତିର ଅଭିପ୍ରାୟ ବୁଝିପାରନ୍ତି ଏଣୁ ପ୍ରଶ୍ନ କରିବା ଆଗରୁ ସମୟ ସମୟରେ ପରାମର୍ଶ ଦିଅନ୍ତି । ବାଳକମାନଙ୍କ ସହିତ ଦିନେ ବାଟି ଖେଳୁଥିବାବେଳେ ଜଣେ କୃଷକ ନିକଟରେ ଠିଆ ହେଲା । ଡାକରଷି ଆଗମନର ଅଭିପ୍ରାୟ ବୁଝିପାରିଲେ ମାତ୍ର ଖେଳଛାଡ଼ି କଥୋପକଥନ ହେବାର ସମୟ ନ ଥିଲା ଏଣୁ ବାଟି ଖେଳୁ ଖେଳୁ କହିଲେ— ''ଛାଡ଼ ଷୋହଳ ଧର ଚାରି, ଗଣ୍ଡିମୁଠି କରି ବାନ୍ଧ କିଆରି; ବାଟି ଟାନରେ, ଯହିଁ ପାଣି ତହିଁ ଧାନରେ ।'' ଅର୍ଥାତ୍ ସାମର୍ଥ୍ୟାନୁସାରେ ଜମି ଚାଷ କରିବ ଅତିରିକ୍ତ ଜମି ରଖିବ ନାହିଁ ଖୁବ୍ ଭଲ ଭାବରେ ହିଡ଼ ଦେବ ଯେପରି କି ଜଳ ଠିକ୍ ରହେ । ଜମିକୁ ସମତଳ କରିବ ପାଣି ହେଲେ ହିଁ ଧାନ ହେଲା । ଉପଦେଶପୂର୍ଣ୍ଣ ବାକ୍ୟ; ମାତ୍ର ଚାଷୀମାନେ ଏ ଉପଦେଶ ମାନନ୍ତି କି ? ବେଶୀ ଜମି ଚାଷ କରିବାର ଆକାଂକ୍ଷା ରଖନ୍ତି । ପାଶ୍ଚାତ୍ୟବାସୀଙ୍କର କଥା ଅଛି Extensive cultivation ଏବଂ intensive cultivation ଅର୍ଥାତ୍ ବହୁଳ ଚାଷ ଓ ଭଲଚାଷ ଡାକରଷିର କଥା ସହିତ ଠିକ୍ ମେଳ ଅଟେ ବୋଲାଯିବ । ଆଉ ଗୋଟାଏ ଅଛି— ଲମ୍ବା ଚାଷ ଘରେ ଉପାସ ।

ଅଳ୍ପଜୀବୀ ବୃକ୍ଷଲତା ପ୍ରଭୃତିଙ୍କ ପାଇଁ ବେଶୀ ସାରର ପ୍ରୟୋଜନ— ଦୀର୍ଘଜୀବୀ ବୃକ୍ଷଲତାମାନଙ୍କ ପାଇଁ ବେଶୀ ସାରର ପ୍ରୟୋଜନ ହୁଏ ନାହିଁ । କାରଣ ପ୍ରଥମୋକ୍ତ ଶାକସବଜି ପ୍ରଭୃତିକୁ ଶୀଘ୍ର ଶୀଘ୍ର ବଢ଼ାଇ ତହିଁରୁ ଫଳଲାଭ

କରିବାକୁ ହୁଏ, ଏଣୁ ବେଶୀ ସାର ନ ଦେଲେ ସେମାନେ ଅଳ୍ପସମୟରେ ବଢ଼ିପାରନ୍ତି ନାହିଁ, ପୁଷ୍ଟିଲାଭ କରନ୍ତି ନାହିଁ । ବଢ଼ିବାରେ ବିଳମ୍ବ ହେଲେ ଫସଲ ମିଳିବା ପୂର୍ବରୁ ସେମାନଙ୍କର ବୟସ ଯାଏ ଏବଂ ମରିବା ଅବସ୍ଥା ପହଞ୍ଚିଯାଏ । ଉଦାହରଣସ୍ୱରୂପ ଗୋଟିଏ କୋବିଗଛର ଜୀବିତ କାଳ ପାଞ୍ଚ ମାସ । ଅତି କ୍ଷୁଦ୍ରଚାରାରୁ ପାଞ୍ଚ ମାସ ମଧରେ ଗୋଟିଏ ଦୁଇସେର ଓଜନର କୋବି ବା ତହିଁରୁ ବେଶୀ ଓଜନର କୋବି ପାଇବାର ଆଶା କରାଯାଏ— ଏପରିସ୍ଥଳେ ପ୍ରଚୁର ସାର ଓ ଶୀଘ୍ର ଶୀଘ୍ର ବେଉଷଣ ନ କଲେ ଆଶାପ୍ରଦ ଫଳ ଲାଭ ହେବ କିପରି ? ଏଣୁ ବଗିଚା ଓ ଚାଷ ଫସଲ ନିମନ୍ତେ ବିଶେଷତଃ ପରିବା ଚାଷ ନିମନ୍ତେ ପ୍ରଚୁର ସାରର ଦରକାର ।·

ଏ ମାସରେ ଯାହା ଯାହା ରୋପଣ କରିବାକୁ ହେବ ବା ବେଉଷଣ କରିବାକୁ ହେବ ତାହା ପୂର୍ବ ମାସରେ ଲେଖା ଯାଇଅଛି— ବର୍ତ୍ତମାନ ଖଡ଼ା ବଙ୍ଗଳାଡାଣ୍ଟା ଏ ମାସରେ ରୋପଣ କରିବାର ପ୍ରୟୋଜନ । ଖଡ଼ା ଅନେକ ପ୍ରକାରର ଅଛି—ଲାଲ୍‌ଖଡ଼ା, ଧୋବଖଡ଼ା, ଅସନଖଡ଼ା, ଲହଙ୍ଗାଖଡ଼ା, କନକାଗୁଙ୍ଗା ଇତ୍ୟାଦି । ଲାଲ୍‌ଖଡ଼ା, ଧୋବ ବା ପଦ୍ମଖଡ଼ା ଉତ୍କୃଷ୍ଟ । ଶେଷୋକ୍ତ ତିନିପ୍ରକାର ଖଡ଼ା ସୁମିଷ୍ଟ ନୁହେଁ । ପ୍ରଥମେ ଗୋଟିଏ ଛୋଟ କିଆରି ତୟାରକରି ତହିଁରେ ପ୍ରଚୁର ଗୋବର ସାର ଦେଇ ଖଡ଼ାମଞ୍ଜିକୁ ବୁଣିବାକୁ ହୁଏ ଏବଂ ପ୍ରତ୍ୟହ ପ୍ରୟୋଜନାନୁସାରେ ପାଣି ସିଞ୍ଚିବାକୁ ହୁଏ । ଖଡ଼ାଗଛ ଚାରି ପାଞ୍ଚ ଆଙ୍ଗୁଳି ଉଚ୍ଚ ହେଲାରୁ ସ୍ଥାନାନ୍ତରିତ କରିବାକୁ ହୁଏ । ପ୍ରାୟ ତିନି ଚାରି ହାତ ଚଉଡ଼ା ଏବଂ ଭୂମିର ପରିମାଣ ଅନୁସାରେ ଲମ୍ବ ଗୋଟିଏ ଗୋଟିଏ କିଆରି କରିବାକୁ ହୁଏ । ଏହି କିଆରିରେ ସମାନଭାବରେ ପାଣି ମାଡ଼ିବା ପ୍ରତି ଦୃଷ୍ଟିଦେଇ ତୟାର କରିବାକୁ ହେବ । ପ୍ରାୟ ଏକ ହାତ ଅନ୍ତରରେ ଗୋଟିଏ ଗୋଟିଏ ଗଛ ରୋପଣ କରିବାକୁ ହେବ ଏବଂ ପାଣି ମଡ଼ାଇବାକୁ ହେବ । ଦଶ ବାର ଦିନ ପରେ କୋଦାଳଦ୍ୱାରା ମୂଳ ଖୋଳିବାକୁ ହେବ ପରେ କୋଡ଼ି ଦ୍ୱାରା ଦୁଇ ତିନିଥର କୋଡ଼ି ମାଟି ହାଲୁକା କରିବାକୁ ହେବ ଏବଂ ରୀତିମତ ପାଣି ଦେବାକୁ ହେବ । ଖଡ଼ାର ବେଉଷଣ ଏତିକି ମାତ୍ର, ଲାଭ ମନ୍ଦ ନୁହେଁ । ଥର ଥର କରି ଲଗାଇଲେ ଶ୍ରାବଣ ଭାଦ୍ରବ ପର୍ଯ୍ୟନ୍ତ ଖଡ଼ା ତର୍କାରି ଅନାୟାସରେ ମିଳେ ।

●

॥ ୫ ॥

ସମାନଧର୍ମୀ ଓ ସମାନକର୍ମୀ ଲୋକ ଦୁଇ ଜଣଙ୍କ ଦେଖାସାକ୍ଷାତ୍ ହେଲେ ଆପଣା ଆପଣା ଧର୍ମ ଓ ବ୍ୟବସାୟର ଆଲୋଚନା ସାଧାରଣତଃ ହୋଇଥାଏ । ମୁଁ ଚଷା, ଏଣୁ ଚ... ଦେଖିଲେ ସେ ବଡ଼ଲୋକ ହେଉବା ସାମାନ୍ୟ ମୂଲିଆ ହେଉ ତା ସଙ୍ଗରେ ଦୁଇ ପଦ କଥା ହେବାର ଅଭ୍ୟାସ ରଖିଅଛି । ଏତଦ୍ୱାରା ଅନେକ ଶିକ୍ଷା ମିଳେ ।

ଅଳ୍ପଦିନ ପୂର୍ବେ ମୋର ସମ୍ବନ୍ଧୀ ଶ୍ରୀ ରଘୁନାଥ ସିଂହ କାଙ୍କେର ରାଜଧାନୀରୁ ଆସି ମୋ ଘରେ ଅବସ୍ଥାନ କରୁଥିଲେ । ସନ୍ଧ୍ୟାବେଳେ ଦୁଃଖର ସୁଖର କଥା ପଡ଼େ । ଉଭୟେ ଖୋରପୋଷଦାର ଏବଂ ଉଭୟେ ଚାଷୀ । ପ୍ରଥମେ ତ ରାଜାମାନଙ୍କର ଭାଗ୍ୟ ବିପର୍ଯ୍ୟୟ ସଙ୍ଗେ ଖୋରପୋଷଦାରଙ୍କର କ୍ଷତିର ସମ୍ଭାବନା କଥା ପଡ଼ିଲା । ମୁଁ କହିଲି ''ଆଉ ଭାବନାରେ ଫଳ କ'ଣ ?'' ''ଡିଲୀଶ୍ୱରୋ ବା ଜଗଦୀଶ୍ୱରୋ ବା'' ଡିଲୀରେ ଯେ ଅଧୀଶ୍ୱର ହେଲା ସେହି ତ ଜଗଦୀଶ୍ୱର । ତା'ର କଥା ଅନ୍ୟଥା ହେବ ନାହିଁ । 'ଡିଲୀଶ୍ୱର କିଏ ଗାନ୍ଧିମହାରାଜ କି' କହିବାକୁ ହେବ । ଯାହାର ଇଙ୍ଗିତରେ ସମସ୍ତକାର୍ଯ୍ୟ ଚଳୁଅଛି । ମୁଁ କହିଲି । ''ତେବେ ମାଉଣ୍ଟବେଟେନ ଡିଲୀଶ୍ୱର ନୁହନ୍ତି ?'' ମୁଁ କହିଲି ଗାନ୍ଧିଙ୍କ ମତରେ ସେ ତ ଜଣେ ଚପ୍ରାସିତୁଲ୍ୟ ଚାକର ।'' ସମ୍ବନ୍ଧୀ ହସିଲେ ଏବଂ କହିଲେ ''ଯାହା ହେବାର ହେଲା ଭାବିଲେ କିହେବ, ତେବେ ଆମର ଚାଷଜମି ଖଣ୍ଡମାନ ସ୍ଥାୟୀହେଲେ କୌଣସି ପ୍ରକାର କାର୍ଯ୍ୟ ନିର୍ବାହ କରାଯାଇପାରିବ ଏହାହିଁ ଚିନ୍ତା ।'' ପୁଣି ପଚାରିଲେ ''ଖାଦ୍ୟପଦାର୍ଥ ଏଠାରେ କିପରି ମିଳୁଅଛି ? ମୁଁ କହିଲି ତଣ୍ଡୁଳହିଁ ଆମମାନଙ୍କର ଏକମାତ୍ର ଖାଦ୍ୟ, ରାଜାଙ୍କର ସୁବନ୍ଦୋବସ୍ତରୁ ବଜାରରେ ଛଅସେରରୁ କେବେ କମ୍ ହୋଇ ନାହିଁ । ଆପଣା ବଗିଚାରୁ କୌଣସି ପ୍ରକାରେ ତରକାରି ଚଳେ । ଗହମର ନାମ ପର୍ଯ୍ୟନ୍ତ ପାସୋରିବାକୁ ବାଧ ହେଲୁଣି, କାହିଁକି ଗହମ ଚାଷ କରନ୍ତି ନାହିଁ କି ? ବାମଣ୍ଡାରେ ଗହମଚାଷ ହୁଏ ନାହିଁ ? ସେ କହିଲେ, ଆମେମାନେ ତ ରୋଟିଖିଆ ଲୋକ, ଏଣୁ ଗହମଚାଷ କରୁ ଏବଂ ଆମକୁ କ୍ରୟ କରିବାକୁ ପଡ଼େ ନାହିଁ ।

ମୁଁ ପଚାରିଲି ଗହମ ଚାଷର ପ୍ରକ୍ରିୟା ଭଲା କୁହ ତ । ସେ କହିଲେ ଗହମ କଳାଖଳିରେ ଭଲ ହୁଏ, ଅନ୍ୟ ଖଳିମାଟିରେ ଯେ ନ ହୁଏ ତାହା ନୁହେଁ । କାଙ୍କେରରେ କଳା ଖଳିଅଛି ଏବଂ ସେଠାରେ ଗହମ ଭଲ ହେଉଅଛି । ବାଲିଆ

ଜମିରେ ଗହମ ଭଲ ହୁଏ ନାହିଁ । ଜମିରେ ପାଣିଥିଲେ କାଟିଦେଇ ଦଶହରା ମାସରେ ଶୁଷ୍କ କରିଦେବ । ଜମି ଫାଟି ଆସିଲେ ତହିଁରେ ଗହମ ବୁଣିବାକୁ ହେବ । ଗହମ ବୁଣି ଦେଇ ତିନି ଶିର ହଳ ଧରିବାକୁ ହେବା ପଟାଦେବାକୁ ହେବ ନାହିଁ । ପଟାଦେଲେ ମାଟି ବସିଯାଏ, ଗହମ ଠିକ୍‌ଭାବେ ଉଠିପାରେ ନାହିଁ । ଗହମ ଜମିରେ ପାଣିଦେବାର ଆବଶ୍ୟକ ନାହିଁ । ଜମିରେ ଗହମ ଉଠିବାଭଳି ହାଲ ଥିଲେ ଗହମ ଉଠିଯାଏ, ଆଉ ପାଣି ଦେବାର ଦରକାର କି ? ଗହମ ଭିତର ଚେରିଆଗଛ, ଏଣୁ ଗଭୀର ଚାଷର ଦରକାର । ଧାନ ଉପରେ ଚେରିଆ ଏଣୁ ଖୁବ୍ ଭଲକରି ମାଟି ଗୁଣ୍ଡକରି ଧାନ ବୁଣିଲେ ଫସଲ ଭଲହୁଏ । ଗହମ ଗୁଣ୍ଡଚାଷରେ ଭଲ ହୁଏ ନାହିଁ । ଆଗାମୀ ବର୍ଷ ଏ ନିୟମରେ ଚାଷ କରିବାର ବାସନା ରହିଲା,ଏବଂ ଚାଷ ଉତ୍ତାରୁ ତହିଁର ଫଳ ପାଠକଙ୍କୁ ଜଣାଇବାକୁ ହେବ । କୃଷକମାନେ ଏହି ନିୟମରେ ଗହମ ଚାଷର ପରୀକ୍ଷା କରିବେ କି ?

ବୁଟଚଣାର ଚାଷ ମଧ ଏହି ପ୍ରକ୍ରିୟାରେ କରିବା ନିମନ୍ତେ ସେ କହିଲେ । ବୁଟକୁ ଜମିରେ ବୁଣିଦେଇ ତିନିଶିର ଚାଷ କରିବାକୁ ହେବ ପଟା ଦିଆଯିବ ନାହିଁ । ବୁଟଗଛ ୭।୮ ଇଞ୍ଚ ଉଚ୍ଚା ହେଲାରୁ ଶାଗତୋଳି ଖାଇବାକୁ ହେବ— ଶାଗତୋଳିଲେ ଗଛ ଖୁବ୍ ବୃଶାଳ ହୁଏ ଏବଂ ବେଶୀ ବୁଟ ଫଳେ । ମୁଗ ବୁଣିବା ଆଗରୁ ଭଲଚାଷ କରିବାକୁ ହୁଏ, ମାତ୍ର ବୁଟଚଣା ପକ୍ଷରେ ସେପରି ଚାଷ ଉପଯୁକ୍ତ ନୁହେଁ । ଗହମ ଓ ବୁଟଚାଷ ଏକପ୍ରକାର ।

ଭାରତ ବର୍ଷ ଅପେକ୍ଷା ଅଷ୍ଟ୍ରେଲିଆରେ ଗହମ ଚାଷର ଜମି ଅନେକ କମ୍, ତଥାପି ସେ ଦେଶରେ ଏତେ ପ୍ରଚୁର ପରିମାଣରେ ଗହମ ଉତ୍ପନ୍ନ ହୁଏ ଯେ ସେ ଦେଶର ଲୋକଙ୍କର ପ୍ରୟୋଜନ ପୂରଣ ହୋଇ ଉଦ୍‌ବୃତ୍ତ ହୁଏ ଏବଂ ଆମଦେଶକୁ ରପ୍ତାନି ହୁଏ । ସେ ଦେଶରେ ମଜୁରି କମାଇବା ନିମନ୍ତେ ଟ୍ରାକ୍ଟର (କଳ, ଲଙ୍ଗଳଦ୍ୱାରା) ଚାଷ ହୁଏ ।

ଆମେରିକାର କାଲିଫର୍ଣିଆ ଦେଶରେ ଧାନବୁଣାକାର୍ଯ୍ୟ ଏରୋପ୍ଲେନଦ୍ୱାରା କରାଯାଉଅଛି । ଘାସବଛାରୁ ରକ୍ଷା ପାଇବା ନିମନ୍ତେ ଏ ଉପାୟ କରାଯାଉଅଛି ।

ପ୍ରଥମେ ଜମିକୁ ଟ୍ରାକ୍ଟରଦ୍ୱାରା ଭଲଭାବରେ ଚାଷ କରାଯାଏ । ଚାଷ ଉତ୍ତାରୁ ଜମିରେ ଛ' ଇଞ୍ଚ ଜଳ ପୂରଣ କରାଯାଏ । ଏପରି ବନ୍ଦୋବସ୍ତ ଥାଏ, ଯେପରିକି ଜଳ ଶୁଷ୍କ ହେବ ନାହିଁ । ଧାନକୁ ଅଖାରେ ଭର୍ତ୍ତି କରି ଦୁଇ ଦିନ ପାଣିରେ ଭିଜାଇବାକୁ ହୁଏ । ଦୁଇଦିନରେ ଧାନ ଗଜା ହୁଏ । ସେହି ଗଜାଧାନକୁ ଏରୋପ୍ଲେନରେ ରଖି ଆକାଶରୁ ବପନ କରିବାକୁ ହୁଏ, ୨୦।୨୫ ଫୁଟ ଉପରରୁ ବୁଣିବାକୁ ହୁଏ । ଧାନ ପାଣିରେ ପଡ଼ିରହେ, ଏବଂ କ୍ରମେ ଉପରକୁ ବାହାରେ । ପାଣିଥିବାରୁ ଘାସ ଜନ୍ମିପାରେ ନାହିଁ । ପ୍ରକାଣ୍ଡ ପ୍ରକାଣ୍ଡ ଶସ୍ୟକ୍ଷେତ୍ର ଏଥିନିମନ୍ତେ ଦରକାର ଓ ସମତଳ ହେବା ଦରକାର । ଏରୋପ୍ଲେନରେ ବୁଣା ନ ହେଲେ ମଧ ଏହି ପ୍ରକ୍ରିୟାରେ କ୍ଷୁଦ୍ର ଜମିରେ ମଧ ପରୀକ୍ଷା କରିବା ଉଚିତ ମନେ କରାଯାଏ ।

•

## ସତ୍ୟଂ ପରଂଧୀମହି

ଏହା ଶ୍ରୀମଦ୍‌ଭାଗବତ ପ୍ରଥମ ସ୍କନ୍ଧ ପ୍ରଥମ ଶ୍ଳୋକର ଶେଷ ବାକ୍ୟ । କବି ପରମ ସତ୍ୟକୁ ଧ୍ୟାନ କରି ଗ୍ରନ୍ଥାରମ୍ଭ କରିଅଛନ୍ତି । ଏ ଶ୍ଳୋକରେ ସାମ୍ପ୍ରଦାୟିକତା ନ ଥିଲେ ମଧ 'ତେନେ ବ୍ରହ୍ମହୃଦାୟ ଆଦି କବୟେ' ବାକ୍ୟ ଥିବାରୁ ପରମେଶ୍ୱରଙ୍କର ଲକ୍ଷ୍ୟରେ ଏହି ସ୍ତୁତି ରଚିତ, ଏହା ସ୍ପଷ୍ଟ ଜଣାଯାଉଅଛି । ଏଥିରେ ଅଛି ସୃଷ୍ଟିସ୍ଥିତି ଲୟ, କ୍ଷିତି, ଅପ୍, ତେଜ । ରଜ୍ଜୁରେ ସର୍ପଭ୍ରମ, ସୂକ୍ତିରେ ରଜତଭ୍ରମ ଇତ୍ୟାଦି କେତେଗୁଡ଼ିଏ ଦାର୍ଶନିକମାନଙ୍କଦ୍ୱାରା ସ୍ଥିରୀକୃତ ସୂତ୍ର ଯାହାର ଭିତ୍ତି ଉପରେ ଈଶ୍ୱର ସିଦ୍ଧି ଓ ବେଦର ଅପୌରୁଷେୟତ୍ୱ ଦଣ୍ଡାୟମାନ । ଶୈବ, ଶାକ୍ତ, ବୈଷ୍ଣବ ପ୍ରଭୃତି ସମ୍ପ୍ରଦାୟବାଦୀମାନେ ଉପରୋକ୍ତ ନିର୍ଦ୍ଧାରିତ ସୂତ୍ର ଅବଲମ୍ବନରେ ଆପଣା ଆପଣା ଇଷ୍ଟ ଦେବତାର ସ୍ତବ ଆରମ୍ଭ କରିଥାନ୍ତି । ଭାଗବତ ରଚକ ''ସତ୍ୟଂ ପରଂଧୀମହି'' ଲେଖିଲେ ମଧ ବିଷ୍ଣୁ ଯେ ତାହାଙ୍କର ଧ୍ୟାନର ବିଷୟ ଏହା ସ୍ପଷ୍ଟ ଜଣାଯାଉଅଛି ।

'ଓ ତତ୍‌ସତ', 'ସତ୍ୟଂ ପରଂଧୀମହି' ବେଦାନ୍ତ ବାକ୍ୟ । ବେଦ ବେଦାନ୍ତ ଓ ପୁରାଣ ସମନ୍ୱୟରେ ଭାଗବତରଚକଙ୍କର ପ୍ରୟାସ । ଏଣୁ ଭାଷାରେ, ରଚନାରେ ଭାବରେ ଅନ୍ୟାନ୍ୟ ପୁରାଣ ଅପେକ୍ଷା ଭାଗବତର ଉତ୍କର୍ଷରକ୍ଷା ନିମନ୍ତେ ରଚକ ଯତ୍ନଶୀଳ, ଏହା ମଧ କେହି ଅସ୍ୱୀକାର କରି ନାହାନ୍ତି । 'ବିଦ୍ୟାଭାଗବତାବଧି' ଏଥିରୁ ବଳି ଭାଗବତର ଅନ୍ୟ କି ପ୍ରଶଂସା କରାଯାଇପାରେ । ଭାଗବତ ବେଦାନ୍ତମୂଳକ ଗ୍ରନ୍ଥ ଏହା ପ୍ରତିପାଦନ କରିବା ଅଭିପ୍ରାୟରେ ପ୍ରଥମ ଶ୍ଳୋକରେ କୃଷ୍ଣ ବା ବିଷ୍ଣୁଙ୍କର ନାମୋଲ୍ଲେଖନ କରି ବେଦାନ୍ତର ସାର ବାକ୍ୟ 'ସତ୍ୟଂ ପରଂ ଧୀମହି'ର ଅବତାରଣା କରିଅଛନ୍ତି ।

ଗ୍ରନ୍ଥ ମୁଖରେ ପରମ ସତ୍ୟର ଧ୍ୟାନକଲେ ସୁଦ୍ଧା ରଚକ ଯେ ବିଶୁଦ୍ଧ ବ୍ରହ୍ମବାଦୀ ନୁହନ୍ତ ଏବଂ ସେ ଯେ ବିଶୁଦ୍ଧ ବିଶିଷ୍ଟାଦ୍ୱୈତବାଦୀ ତାହା ସ୍ପଷ୍ଟତଃ ଗ୍ରନ୍ଥପାଠରୁ ଜଣାଯାଏ । କବି ବିଶିଷ୍ଟାଦ୍ୱୈତବାଦୀ ବୈଷ୍ଣବ, ଅବତାରବାଦୀ ଏବଂ ଅବତାର ମଧ୍ୟରୁ କୃଷ୍ଣହିଁ ସ୍ୱୟଂ ଭଗବାନ୍ 'ଏତେଚାଁଶ କଳାପୁଂଷଃ କୃଷ୍ଣସ୍ତୁଭଗବାନ୍ ସ୍ୱୟଂ' ଏହା ତାଙ୍କର ମତ ।

'କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ' ଏହାକି ଜଗତବାସୀ ସମସ୍ତେ ସ୍ୱୀକାର କରିବେ ? ସମସ୍ତ ଜଗତବାସୀଙ୍କ କଥା ତେଣେ ଥାଉ ଭାରତବାସୀ ସର୍ବ ସମ୍ପ୍ରଦାୟର ଉପାସକମାନେ କୃଷ୍ଣଙ୍କୁ ସ୍ୱୟଂ ଭଗବାନ୍ ବୋଲି ସ୍ୱୀକାର କରିବେ କି ? ଶୈବାଚାର୍ଯ୍ୟଗଣ ଏବଂ ବୈଷ୍ଣବାଚାର୍ଯ୍ୟଗଣ ବିଶିଷ୍ଟାଦ୍ୱୈତବାଦୀ ହେଲେ ମଧ୍ୟ କୃଷ୍ଣ ସମସ୍ତଙ୍କର ଆରାଧ୍ୟ ନୁହନ୍ତି ଏବଂ ସମସ୍ତ ସମ୍ପ୍ରଦାୟଦ୍ୱାରା ସ୍ୱୟଂ ଭଗବାନ୍ ବୋଲି ସ୍ୱୀକୃତି ନୁହନ୍ତି ।

କେବଳ ବୈଷ୍ଣବ ମତାବଲମ୍ବୀ ମଧ୍ୟରେ ବିଶିଷ୍ଟା ଦ୍ୱୈତବାଦୀ, ଶୁଦ୍ଧା, ଦ୍ୱୈତବାଦୀ, ଦ୍ୱୈତାଦ୍ୱୈତବାଦୀ, ଅଚିନ୍ତ୍ୟ ଭେଦବାଦୀ, ସ୍ୱତନ୍ତ୍ରା ସ୍ୱତନ୍ତ୍ରବାଦୀ ଇତ୍ୟାଦି ବାଦୀ ଅନେକ । ଶୈବମାନେ ବିଶିଷ୍ଟ ଦ୍ୱୈତବାଦୀ । ଶଙ୍କର ଅଦ୍ୱୈତ ବା ଅଭେକ ବାଦୀ । ଏତେ ସ୍ୱତନ୍ତ୍ର ବା ଭେଦବାଦର ଉଦ୍ଭବ ହେଲା କିପରି ଯେବେ ସତ୍ୟହିଁ କେବଳ ସମସ୍ତଙ୍କର ଧ୍ୟାନର ବିଷୟ ? ଭକ୍ତମାନେ କହିବେ ପନ୍ଥା ଅନେକମାତ୍ର ଲକ୍ଷ୍ୟ ଏକ । ମାତ୍ର ଏ ଉକ୍ତିର ଅଳୀକତା ସ୍ପଷ୍ଟ ଏବଂ ଏଥିର ଆଲୋଚନା ଏ ପ୍ରବନ୍ଧର ବିଷୟ ନୁହେଁ ।

ଯେବେ ବେଦ ସ୍ୱତଃସିଦ୍ଧ ଅପୌରୁଷେୟ ବେଦଜ୍ଞାନର ଖଣି ଏବଂ ନିର୍ବିଶେଷ ବ୍ରହ୍ମପ୍ରତିପାଦନ ହିଁ ଶ୍ରୁତି ବା ବେଦର ତାତ୍ପର୍ଯ୍ୟ ତେବେ ବ୍ରହ୍ମସିଦ୍ଧି ନିମନ୍ତେ ଏତେ ବାଦ ବିବାଦ ତର୍କ ବିତର୍କ କାହିଁକି ? କେବଳ ବେଦାଧ୍ୟୟନ ହିଁ ତଦ୍‌ବ୍ରହ୍ମପ୍ରାପ୍ତିର ଏକମାତ୍ର ଉପାୟ ଏବଂ ପୁରୁଷାର୍ଥତା । ପୂର୍ବଋଷିମାନେ ଯଦି ଏହା ଏକବାକ୍ୟରେ ସ୍ୱୀକାର କରିଯାଇଥାନ୍ତେ ତାହାହେଲେ ତ ବ୍ରହ୍ମ ଈଶ୍ୱର ଆତ୍ମା ପ୍ରଭୃତି ନେଇ ଏତେ ବାଗ୍‌ବିତଣ୍ଡା ନ ଥାନ୍ତା । ଏତେ ପରସ୍ପର ବିରୋଧୀ ମତର ଅବତାରଣା, ଏତେ ସମ୍ପ୍ରଦାୟର ସୃଷ୍ଟି ହୋଇ ନ ଥାନ୍ତା ।

ବେଦ ବେଦାନ୍ତ ଦୁଇଗୋଟି ଶବ୍ଦ ମଧ୍ୟରେ ନିତ୍ୟ ସମ୍ବନ୍ଧ ବିଦ୍ୟମାନ । ବେଦାନ୍ତ ଅର୍ଥ ଉପନିଷଦ ସମୂହ । ବେଦ ଉତ୍ତାରୁ ଉପନିଷଦର ଲେଖାବୋଲି ଉପନିଷଦ୍‌ର ନାମ ବେଦାନ୍ତ କିମ୍ବା ବେଦର ସାରଭାଗ ବା ବେଦର ପ୍ରତିପାଦ୍ୟ ବସ୍ତୁ ଯେଉଁ ଶାସ୍ତ୍ରରେ ଆଲୋଚିତ ତାର ନାମ ଉପନିଷଦ ? ଉଭୟତଃ ଉପନିଷଦ ବେଦର ପରବର୍ତ୍ତୀ ଗ୍ରନ୍ଥ ବୋଲି ସ୍ୱତଃ ପ୍ରମାଣିତ ହୋଇପଡ଼େ ଯେହେତୁ ଯେଉଁ ଗ୍ରନ୍ଥରେ ବେଦର ପ୍ରତିପାଦ୍ୟ ବସ୍ତୁ ପ୍ରତିପାଦିତ ହୁଏ ତାହା ଅବଶ୍ୟ ବେଦର ପରେ । ଏହା କିପରି ଅସ୍ୱୀକାର କରାଯିବ ? ଯେବେ ଉପନିଷଦ୍ ଋଷିମାନେ ବେଦାଧ୍ୟୟନରୁ ଅଖଣ୍ଡ ବହ୍ମଲଭ୍ୟ ବୋଲି ସ୍ପଷ୍ଟ ଲେଖିଯାଇଥାନ୍ତେ ତାହା ହେଲେ ଏତେ ଧର୍ମମତ ବିପ୍ଳବ ଘଟି ନ ଥାନ୍ତା ବେଦ ପାଠରୁ ବା ଅଧ୍ୟୟନରୁ ବ୍ରହ୍ମ ଲାଭ ହୁଏ । ଏକଥା ପ୍ରକାଶ କରିବା ତ ତେଣେ ଥାଉ ଉପନିଷଦ୍ ଋଷି ଜଣେ କହିଲେ, 'ନାୟମାତ୍ମା ପ୍ରବଚନେନ ଲଭ୍ୟଃ' ଅର୍ଥାତ୍ ବେଦ ପାଠରୁ ବ୍ରହ୍ମଲଭ୍ୟ ନୁହନ୍ତି । ଜଣେ କହିଲେ, 'ଅପରା ଋଗ୍‌ବେଦୋ ଯଜୁର୍ବେଦ ସାମବେଦ ଅଥର୍ବାଙ୍ଗିରସ × × × ପରାଯୟାତଦକ୍ଷରଂ ଅଧିଗମ୍ୟତେ, ଅର୍ଥାତ୍ ଋଗ୍‌ବେଦ ଇତ୍ୟାଦି ଅଶ୍ରେଷ୍ଠ ବିଦ୍ୟା; ତାହାହିଁ ଶ୍ରେଷ୍ଠ ବିଦ୍ୟା ଯାହାଦ୍ୱାରା ଅକ୍ଷର ବା ବ୍ରହ୍ମ ଜଣାଯାଏ ଇତ୍ୟାଦି ଅନେକ ବାକ୍ୟ ଅଛି । ଉପନିଷଦ୍ ସଂଖ୍ୟା ଦଶ ଏବଂ ମୁନି ଅନେକ । 'ନାନା ମୁନିନାଂ ମତୟଶ୍ଚ ଭିନ୍ନାଃ' । ବେଦର ଋଷିମାନେ ଯେପରି ଆପଣା ଅଭୀଷ୍ଟ ସିଦ୍ଧି ନିମନ୍ତେ ଅନେକ ଦେବତାର ସ୍ତୁତି କରିଅଛନ୍ତି ଉପନିଷଦର ଦାର୍ଶନିକ ଋଷିଗଣ ଆତ୍ମବୁଦ୍ଧି ଚାଳିତ ହୋଇ ବ୍ରହ୍ମଲାଭର ପନ୍ଥା ଲେଖିଅଛନ୍ତି । ଏହା ମଧ୍ୟ ସେମାନଙ୍କର ମତ ଯେ ସ୍ତୁତିଦ୍ୱାରା ବ୍ରହ୍ମଲଭ୍ୟ ନୁହେଁ, ମନନଦ୍ୱାରା ଲଭ୍ୟ । କେହି କହିଲେ 'ପ୍ରଜ୍ଞାନଂ ବ୍ରହ୍ମ', କେହି କହିଲେ 'ଆନନ୍ଦଂ ବ୍ରହ୍ମ', କେହି କହିଲେ 'ଖଲ୍ୱିଦଂ ବ୍ରହ୍ମ' । ବ୍ରହ୍ମ ନିର୍ମଳ, ନିର୍ବିକାର, ନିଷ୍କ୍ରିୟ, ଶାନ୍ତ ଓ ନିରଞ୍ଜନ । ସୁତରାଂ ମନନ ଭିନ୍ନ ବ୍ରହ୍ମ ଉପଲବ୍ଧିର ଉପାୟାନ୍ତର ନାହିଁ ।

ଉପନିଷଦ୍‌ର ବ୍ରହ୍ମ ଯେ କି ବଚନ ନ ମନର ଅଗୋଚର ସେ ପୁଣି ପୁରାଣ ଯୁଗରେ ରକ୍ତମାଂସ ଶରୀରରେ ଭାରତବାସୀଙ୍କ ସହିତ ସହବାସ ଓ କ୍ରୀଡ଼ା କୌତୁକରେ କିଛିଦିନ କାଳାତିପାତ କରିଥିଲେ ଏବଂ ଅବଶେଷରେ ତାଙ୍କର ବନ୍ଧୁବାନ୍ଧବ ବୟସ୍ୟ ପ୍ରେମିକ ଓ ଭକ୍ତଗଣଙ୍କୁ ଅପାର ଦୁଃଖ ଓ ଦାସ୍ୟସାଗରରେ ଭସାଇ ଚାଲିଗଲେ ଏବଂ ଡାକିଲେ କର୍ଣ୍ଣପାତ ମଧ୍ୟ କରୁ ନାହାନ୍ତି, ଏହା ଭାବିଲେ ବିସ୍ମୟର ସୀମା ରହେ ନାହିଁ ।

ବେଦରେ ଅବତାରବାଦର ନାମଗନ୍ଧ ନାହିଁ । ଉପନିଷଦରେ ମଧ୍ୟ ନାହିଁ । ପୁରାଣରେ ଅସଂଖ୍ୟ ଦେବଦେବୀର ଶାରୀରିକ ଆବିର୍ଭାବ ହେଲା କିପରି ଏବଂ ଭାରତବାସୀ ବେଦବେଦାନ୍ତ ଛାଡ଼ି ପୁରାଣ ବିଶ୍ୱାସୀ ହେଲେ କିପରି ? ଏହା ବିଶେଷ ଚିନ୍ତାର ବିଷୟ । ମାତ୍ର ତହିଁର

ଆଲୋଚନା ଏ ପ୍ରବନ୍ଧର ବିଷୟ ନୁହେଁ । ଆହୁରି ଆଶ୍ଚର୍ଯ୍ୟକଥା ଏହି ଯେ ପୁରାଣ ଲେଖକମାନେ ଆପଣା ଆପଣା ରଚନା ମଧରେ ବୈଦିକ ଉପାଖ୍ୟାନମାନଙ୍କୁ ସ୍ଥାନ ଦେଇ ଏବଂ ବେଦାନ୍ତ ବଚନ ଉଦ୍ଧୃତ କରି ପୁରାଣର ମର୍ଯ୍ୟାଦା ବଢ଼ାଇ ଅଛନ୍ତି । ଏଣୁ 'ପୁରାଣଂ ବେଦ ସମ୍ମତଂ' ଲେଖିବାକୁ କୁଣ୍ଠାବୋଧ କରିନାହାନ୍ତି ।

ଅବତାରମାନଙ୍କ ମଧରୁ ଚାରିଗୋଟି ପ୍ରକୃତ ମନୁଷ୍ୟାବତାର ଯେଉଁମାନେ କି ନିରାକାରରେ ଜନ୍ମଗ୍ରହଣ କରି ଲୀଳାଖେଳା କରି ଅବଶେଷରେ ଦେହତ୍ୟାଗ କରିଥିଲେ । ଅଷ୍ଟମାବତାର ବଳରାମ ବୋଲି ଅନେକ ପୁରାଣରେ ଲିଖିତ ହୋଇଥିଲେ ସୁଦ୍ଧା ପ୍ରକୃତ ସେ ଯୁଗର ଅବତାର କୃଷ୍ଣ ଏହା କହିବା ବାହୁଲ୍ୟମାତ୍ର । ଭାଗବତରେ ପ୍ରଥମ ଶ୍ଳୋକ ନେଇ ଏ ପ୍ରବନ୍ଧର ନାମକରଣ ସୁତରାଂ କୃଷ୍ଣଙ୍କ ସମ୍ବନ୍ଧେ କେବଳ ଦୁଇକଥା ଲେଖି ଉପସଂହାର କରିବୁଁ । ହିନ୍ଦୁର ଅନେକ ଦର୍ଶନ ଶାସ୍ତ୍ର ଅଛି; ମାତ୍ର ସମସ୍ତେ ଆପ୍ତବାକ୍ୟର ପକ୍ଷପାତୀ । ଏହାକୁ ଛାଡ଼ି ଜଣେ ମଧ ସ୍ୱାଧୀନ ପନ୍ଥାର ପଥିକ ନୁହନ୍ତି । ବେଦବେଦାନ୍ତ ରହିଲେ ଗୁପ୍ତ ଅଥଚ ସମସ୍ତେ ପୁରାଣ ପୋତଦ୍ୱାରା ସଂସାର-ସମୁଦ୍ର ପାରିହୋଇ ପାରିବାର ଅଜସ୍ର ଉପଦେଶ ଦେଲେ । ଏମନ୍ତ କି ଶଙ୍କରାଚାର୍ଯ୍ୟ ମଧ ଯେ କି ଅଭେଦବାଦୀ ସେ ବି ମୁକ୍ତକଣ୍ଠରେ ପ୍ରକାଶ କରିଅଛନ୍ତି ଯେ, ଶୂଦ୍ରାଦିମାନେ କେବଳ ପୁରାଣ ଶ୍ରବଣରୁ ମୁକ୍ତି ଲାଭ କରିବେ । ଶୂଦ୍ରବହୁଳ ଭାରତବର୍ଷ, ଏଣୁ ପୁରାଣର ଆଦର ବେଶୀ ଓ ମାହାତ୍ମ୍ୟ କ୍ରମେ ବୃଦ୍ଧି ପାଇଅଛି ।

ବୀରପୂଜକମାନଙ୍କର ହୃଦୟରେ ରାମଙ୍କର ସ୍ଥାନ ଅତି ଉଚ୍ଚରେ । ମାତ୍ର ପ୍ରେମଧର୍ମାବଲମ୍ବୀମାନଙ୍କଠାରେ କୃଷ୍ଣ ଅତି ଆଦରଣୀୟ । ମହାଭାରତ, ହରିବଂଶର କୃଷ୍ଣ ଓ ଭାଗବତର କୃଷ୍ଣ ମଧରେ ପାର୍ଥକ୍ୟ ଅଛି । ମାତ୍ର ତାହା ସ୍ୱୀକାର କରିବାକୁ କେହି ରାଜି ହେବେ କି ? ପ୍ରଥମୋକ୍ତ ଗ୍ରନ୍ଥମାନଙ୍କରେ କାର୍ଯ୍ୟର କୃଷ୍ଣ, ଶେଷୋକ୍ତ ଗ୍ରନ୍ଥରେ ଭକ୍ତିର କୃଷ୍ଣ । ଏଣୁ ଭାଗବତର କୃଷ୍ଣଙ୍କ ପ୍ରତି ବେଶୀ ଆଦର । କୃଷ୍ଣଙ୍କର ଜନ୍ମ, ବାଲ୍ୟଖେଳା, ବ୍ରତ ବିବାହ ଯୁଦ୍ଧାଦିକାର୍ଯ୍ୟମାନ ବେଦର ନୁହେଁ । କେବଳ ମଧେ ମଧେ ଗ୍ରନ୍ଥ କର୍ତ୍ତାମାନେ ଗୋଟିଏ ଯୋଡ଼ିଏ ବିଶେଷଣ ବା ଅମାନୁଷିକ କର୍ମର ଆରୋପଣ କରି ସମସ୍ତଙ୍କୁ ଭ୍ରାନ୍ତ ଓ ଚମକୃତ କରିଅଛନ୍ତି ।

ଶଙ୍କରାଦିଙ୍କର ମତ ଯେ ମାୟାକୁ ବଶୀଭୂତ ବା ମାୟାଶୂନ୍ୟ ହୋଇ ଯାହାର ଜନ୍ମ, ସେ ଅବତାର । ମନୁଷ୍ୟ ଅଧବସାୟ ଓ ସାଧନାଦ୍ୱାରା ମାୟାକୁ ଜୟ କରେ । କୃଷ୍ଣ ମାୟାକୁ ଜୟକରି ଜନ୍ମ ହୋଇଥିବାର କୌଣସି ଲକ୍ଷଣ ଆମେ ଦେଖି ପାରିଲୁଁ ନାହିଁ । ଶିଶୁପାଳ ବଧରେ ଆକସ୍ମିକ କ୍ରୋଧ, ଜରାସନ୍ଧ ବଧରେ କପଟ, ଜୟଦ୍ରଥ ବଧରେ ପ୍ରତାରଣା, ଦ୍ରୋଣ ନାଶରେ ମିଥ୍ୟାଭାଷଣର ଶିକ୍ଷା ଇତ୍ୟାଦି ଅନେକ ରିପୁଦମନ ଅସାମର୍ଥ୍ୟର ଉଦାହରଣରେ ପୁରାଣ ଭରା । ଭୀଷ୍ମଙ୍କୁ ବଧ କରିବାକୁ ରଥଚକ୍ର ଧରି ଧାବମାନ ହେବାଦ୍ୱାରା ପ୍ରତିଜ୍ଞାଭଙ୍ଗ ପୁରାଣ ସ୍ପଷ୍ଟାକ୍ଷରରେ ଲେଖି ପୁଣି ଯେବେ କହେ ଯେ, ଈଶ୍ୱର ଯେ ତାଙ୍କଠାରେ ସବୁ ଶୋଭନୀୟ ତାହା ଅନ୍ଧବିଶ୍ୱାସୀର ମସ୍ତକ ଅବନତି ସହିତ ଗ୍ରହଣୀୟ; ମାତ୍ର ତାହା ପ୍ରକୃତ ଭଗବାନ୍‌ର କାର୍ଯ୍ୟ ବୋଲି ସମସ୍ତେ ସ୍ୱୀକାର କରିବେ ନାହିଁ । ନିଜ ଇଚ୍ଛା ପୂରଣ ନିମନ୍ତେ ନାନା ଉପାୟ ଥିବା ସତ୍ତ୍ୱେ ଲୋକଗର୍ହିତ କାର୍ଯ୍ୟକରି ଈଶ୍ୱରତ୍ୱର ଦୁହାଇଦେଲେ ଚଳେ କି ?

ସଂସାରରେ ଗୋଟିଏ ମାତ୍ର ସତ୍ୟ ଅଛି ଯାହା ସମସ୍ତେ ଜାଣନ୍ତି ତାହା ମୃତ୍ୟୁ । ମୃତ୍ୟୁ ପୂର୍ବରୁ ଅର୍ଜୁନ ଯେତେବେଳେ ଯାଇ ''ବାମଭରା ବଧ୍‌ଶ୍ରିତ୍ୟ ଦକ୍ଷିଣାଂଘ୍ରୀ ସରୋରୁହଂ । ସମାଶ୍ରିତ୍ୟା ର୍ଭକାସ୍ୱତ୍ ମଶୋକ୍ତଂତ୍ୟକ୍ତ ପିମ୍ପଳଂ ॥''

ବାସନା ତ୍ୟାଗକରି ଅଶ୍ୱତ୍ଥ ବୃକ୍ଷରେ ଆଶ୍ରୟ ନେଇ କୃଷ୍ଣ ବସିଥିଲେ । ସ୍ୱାଭାବିକ । ଅର୍ଜୁନଙ୍କୁ ସ୍ତ୍ରୀ ବର୍ଗଙ୍କର ରକ୍ଷଣ ଭାର ଦେଇ ଏବଂ ଅନ୍ୟ ଉପଦେଶ ଦେଇ ବିଦାୟ କଲେ । ଅର୍ଜୁନ ଯେ ତାଙ୍କ ସାହାଯ୍ୟ ବ୍ୟତୀତ ଅସମର୍ଥ କୃଷ୍ଣ ନିଜେ ବୁଝିପାରିଲେ ନାହିଁ ।

କୃଷ୍ଣ ବ୍ୟତୀତ ଅର୍ଜୁନ ପଙ୍ଗୁ, ଏକଥା ଦେଖାଇ କୃଷ୍ଣର ମହତ୍ତ୍ୱ ବୃଦ୍ଧି କରିବା ଅପେକ୍ଷା ସ୍ତ୍ରୀଗଣଙ୍କର ଅପମାନ ନ ଘଟିବ ଏଥିର ପ୍ରତିକାର କରିଥିଲେ କୃଷ୍ଣଙ୍କର ଭଗବାନ୍‌ତ୍ୱର ବିଶେଷ ପରିଚୟ ମିଳିଥାନ୍ତା । ମୋଟ କଥା ଏହି ଯେ ଭକ୍ତି ବିନା ଈଶ୍ୱର ସାହାଯ୍ୟପ୍ରାପ୍ତି ସୁଲଭ ନୁହେଁ ଏବଂ ଈଶ୍ୱର ସାହାଯ୍ୟ ବ୍ୟତିରେକେ ମନୁଷ୍ୟ ପଙ୍ଗୁ ଏହି କଥା ଦେଖାଇବା ପୁରାଣର ଅଭିପ୍ରାୟ । କୃଷ୍ଣ ପ୍ରଭୃତିଙ୍କୁ ସ୍ୱୟଂ ଭଗବାନ୍ କରି ନରମହତ୍ତ୍ୱ ଖର୍ବ କରାଯାଇଅଛି ଏବଂ ସତ୍ୟ ଅନୁସନ୍ଧାନ କରିବାରୁ ଭାରତବାସୀ କି ବିରତ କରାଯାଇଅଛି ବୋଇଲେ ଚଳେ ।

ବ୍ରହ୍ମ କାହାକୁ ଧରାଦେଇ ନାହିଁ । ଈଶ୍ୱରଙ୍କୁ କେହି ଦେଖି ନାହିଁ ବା ପାଇ ନାହିଁ । ଯେହେତୁ ସେ ମନ ଓ ବଚନର ଅଗୋଚର । ଅନୁସନ୍ଧାନ ଓ ଧ୍ୟାନଜନିତ ଆନନ୍ଦ ଅପାର । ସତ୍ୟର ଅନୁସନ୍ଧାନ ବେଳେ ଯେଉଁ ଆନନ୍ଦ ଉପଲବ୍ଧ ହୁଏ ତାହାହିଁ ପରମାନନ୍ଦ ବା ବ୍ରହ୍ମାନନ୍ଦ ଏବଂ ଉପନିଷଦ୍‌ର ଆନନ୍ଦ 'ବ୍ରହ୍ମ' ତାହାହିଁ ।

ଶେଷରେ ବକ୍ତବ୍ୟ ଏହି ଯେ ଭାଗବତ ରଚକ କୃଷ୍ଣଙ୍କୁ ସ୍ୱୟଂ ଭଗବାନ୍ ବୋଲି ପ୍ରମାଣ କରିବାକୁ ପ୍ରୟାସ କରିଥିଲେ ମଧ ରାଧାକୃଷ୍ଣ ପ୍ରେମଧର୍ମ ନିମନ୍ତେ ରାଧାର ଆବିର୍ଭାବ ବିଷୟ ଭାଗବତରେ ଲେଖିଯାଇ ନାହାନ୍ତି । ଦୁଃଖର କଥା ।

●

## ଅଭିବ୍ୟକ୍ତିବାଦର ଆଭାସ

ଯାହା ଗତ ହୋଇ ଯାଇଅଛି ତାକୁ ଆମେମାନେ ଅତୀତ କହୁଁ । ଯେଉଁ ସମୟରେ ଆମମାନଙ୍କର କାର୍ଯ୍ୟ ନିର୍ବାହ ହେଉଅଛି ତାକୁ ବର୍ତ୍ତମାନ କହୁଁ, ଯେଉଁ ସମୟ ଆସିବ ତାକୁ ଭବିଷ୍ୟତକାଳ କହୁଁ । କେଉଁଠାରୁ ଅତୀତ ଶେଷ ଓ କେଉଁଠାରୁ ଭବିଷ୍ୟତ ଆରମ୍ଭ ତାହା ନିଶ୍ଚିତ କରିବା ବଡ଼ କଠିନ, ତଥାପି ଅଭ୍ୟାସବଶତଃ କାର୍ଯ୍ୟ ନିର୍ବାହ ନିମନ୍ତେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ କାଳର ନାମକରଣ କରାଯାଇଅଛି । ବର୍ତ୍ତମାନ ଓ ଭବିଷ୍ୟତ ଘେନି ମାନବଗଣ ବ୍ୟସ୍ତ । ଅତୀତର ଭାବନା କମ୍ ଲୋକଙ୍କ ହୃଦୟକୁ ଆନ୍ଦୋଳିତ କରେ । କିନ୍ତୁ ପ୍ରକୃତପକ୍ଷରେ ଦେଖିବାକୁ ଗଲେ ବର୍ତ୍ତମାନ ନଗଣ୍ୟ, ତାକୁ ଭୂତ ଓ ଭବିଷ୍ୟତ ସୀମାବଦ୍ଧ କରୁଅଛନ୍ତି— ଏହାର ସ୍ଥିତି ନଗଣ୍ୟ । ଭବିଷ୍ୟତ ଅନ୍ଧକାର ଓ ଅଜ୍ଞେୟ, ଭୂତ ଉଜ୍ଜ୍ୱଳ ଓ ସତ୍ୟ । ଜର୍ମାନ କବି ଗେଟେ କହିଅଛନ୍ତି, "The Past, the Past alone is true to me" ଏହା ଅକ୍ଷରେ ଅକ୍ଷରେ ସତ୍ୟ ନୁହେଁ କି ? ପଛକୁ ଅନାଇଁ ଦେଖ ନିଜ ଜୀବନରେ ଯାହା ଘଟିଅଛି ତାହା ସ୍ପଷ୍ଟରୂପେ ଦିଶିବ, ଜଣାପଡ଼ିବ, ସତ୍ୟବୋଲି ପ୍ରତିଭାତ ହେବ । ଭବିଷ୍ୟତର ଆଶା କଳ୍ପନା ସବୁ ଅନ୍ଧକାର । ଅତୀତର ଶିକ୍ଷା, ଅନୁଭବ ଆମମାନଙ୍କର ସାହାଯ୍ୟ, ଅବଲମ୍ବନ । ସେହି ଆଲୋକ ଘେନି ଭବିଷ୍ୟତ ଅନ୍ଧକାରକୁ ଜୟ କରାଯାଏ । ମାତ୍ର କେହି ଚିନ୍ତା କରନ୍ତି ନାହିଁ କାରଣ ଏହା ଅଭ୍ୟାସରେ ପରିଣତ ହୋଇଅଛି । ଅତୀତ ଆମମାନଙ୍କର ସର୍ବସ୍ୱ ।

କ୍ରୀଷ୍ଟ୍ୟାନ୍ କହିପାରେ Let the dead past bury its dead. କିନ୍ତୁ ବୈଜ୍ଞାନିକର ଲୀଳା-ଖେଳା ଭୂତରେ । ଧର୍ମଶାସ୍ତ୍ରମାନେ ଅତୀତକୁ ସୀମାବଦ୍ଧ କରି ଦେଇଅଛନ୍ତି । ଅତୀତ ଅନନ୍ତ, ଅସୀମ । ଆଜି ସେହି ଅତୀତ ଘେନି ସାମାନ୍ୟ ଆଲୋଚନା କରାଯାଉ ।

ରାଜନୀତି, ଉଦରନୀତି, ଦ୍ୱନ୍ଦ୍ୱନୀତି ବର୍ତ୍ତମାନର ଭାବନା । ଆମ୍ଭେମାନେ ହେଲୁ କିପରି ଅତୀତର କଥା । କ୍ରୀଷ୍ଟ୍ୟାନ୍ କହିବ ୫୦୦୦ ବର୍ଷ ହେଲା ଈଶ୍ୱର ଇଡ଼ନ୍ ଉଦ୍ୟାନ୍ ପ୍ରସ୍ତୁତ କରି ସେଠାରେ ମନୁଷ୍ୟର ଆଦି ପିତା-ମାତା ଏଡ଼ାମ ଓ ଇଭକୁ ବାସ କରିବାକୁ ଅନୁମତି ଦେଲେ । ହିନ୍ଦୁଶାସ୍ତ୍ର କହିବ— ସୃଷ୍ଟି ପ୍ରଜାପତିର କାରିଗରୀ । ମନୁ ଶତରୂପାଠାରୁ ମନୁଷ୍ୟମାନଙ୍କର ଜନ୍ମ । ଏହାହିଁ କି ମାନବର ଅତୀତ ? ଆହୁରି ପଛକୁ ଅନାଇ ଦେଖ ଜଣାଯିବ ଏଡ଼ାମ, ଇଭ୍, ମନୁ ଶତରୂପାର ବୃତ୍ତାନ୍ତ ତ ସେ ଦିନର ଘଟଣା, ଅଳୀକ କାଳ୍ପନିକ ଗଳ୍ପ । ଆହୁରି ପଛକୁ ଅନାଇ ଦେଖ ଯେତେବେଳେ ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ଓ ଗ୍ରହଗଣ ବାଷ୍ପମୟ ଥିଲେ । କ୍ରମେ ସେହି ବାଷ୍ପ ଘନୀଭୂତ ହୋଇ ଗ୍ରହରେ ପରିଣତ ହେଲା । ସେହି ଘନୀଭୂତ ବାଷ୍ପରୁ ଆମମାନଙ୍କର ଧରିତ୍ରୀର ଜନ୍ମ । କେତେକାଳରେ ବାଷ୍ପ ଜଡ଼ ପିଣ୍ଡରେ ଓ ଜଳ ସ୍ଥଳରେ ପରିଣତ ହେଲା ତାହା ଚିନ୍ତା କଲେ ବିସ୍ମିତ ହେବାକୁ ହୁଏ । ଆହୁରି ବିସ୍ମିତ ହେବାକଥା— ଯେତେବେଳେ କ୍ରମେ ଜଳ ସ୍ଥଳର ବିଭାଗ ହେଲା । ପ୍ରଥମ ଜୀବୋତ୍ପତି ଏଥିର ସମସାମୟିକ ଘଟଣା । କି ଗୌରବାନ୍ୱିତ ଅତୀତ । ଏହା କବିକଳ୍ପିତ କାବ୍ୟ ନୁହେଁ । ଆମେମାନେ ପୁରାଣାଦିରେ ପଢ଼ିବାକୁ ପାଉଁ ଯେ ବରାହରୂପୀ ଭଗବାନ୍ ପୃଥ୍ୱୀକୁ ଜଳରୁ ଦନ୍ତଦ୍ୱାରା ଉଦ୍ଧାର କଲେ । ଭାଗବତ ଲେଖିଅଛନ୍ତି ଯେ ଯେତେବେଳେ ବରାହ ଦନ୍ତାଗ୍ରରେ ପୃଥ୍ୱୀକୁ ଧାରଣ କରି ଜଳରୁ ଉଠିଲେ ସେତେବେଳେ ଦେଖାଗଲା ''ଯଥା ବନାନ୍ନି ସରତା, ଦଣ୍ଡାଧୃତା, ମତଙ୍ଗଜେନେବ ସପତ୍ର—ପଦ୍ମିନୀ ।''

୧/୨

ଜଳରେ ଭାସମାନ୍ ପୃଥିବୀ ବା ନିମଜ୍ଜମାନ ପୃଥିବୀ—ନିତାନ୍ତ ଭ୍ରାନ୍ତ ଧାରଣା । ଜଳ ଓ ସ୍ଥଳ ଉଭୟ ଧରିତ୍ରୀର ଅଂଶ । ବାୟବୀୟ, ତରଳ ଓ ଘନ ପଦାର୍ଥ ମିଳିତ ପୃଥିବୀ— ଏବଂ ଏହି ପୃଥିବୀରେ ଜୀବର ଲୀଳା ଖେଳା ।

ନୀହାରିକାରୁ ସୌରଜଗତର ନିର୍ମାଣ । ସୂର୍ଯ୍ୟ ମୂଳପିଣ୍ଡ ରୂପେ ମଧ୍ୟବର୍ତ୍ତୀ ରହି ଗ୍ରହ ଓ ପୃଥିବୀର ଚାଳକ । ଚନ୍ଦ୍ର ପୃଥିବୀର ଉପଗ୍ରହ । ପୃଥିବୀ ଘନୀଭୂତ ହେବା ପୂର୍ବରୁ ଯେତେବେଳେ ଅଠାଳିଆ ବା କାଦୁଆ ଅବସ୍ଥାରେ ସଜୋରେ ସୂର୍ଯ୍ୟକୁ ପ୍ରଦକ୍ଷିଣ କରୁଥିଲା ସେତେବେଳେ ପୃଥିବୀ ଦିହରୁ ଚନ୍ଦ୍ର ନିକ୍ଷିପ୍ତ ହେଲା । ଏଣୁ ଚନ୍ଦ୍ର ପୃଥିବୀକୁ ପ୍ରଦକ୍ଷିଣ କରେ । ଏପରି ସମୟ ଥିଲା ଯେତେବେଳେ ଚନ୍ଦ୍ର ପୃଥିବୀକୁ ଏକ ଦିନରେ ପ୍ରଦକ୍ଷିଣ କରୁଥିଲା । ଏବେ ତାକୁ ପ୍ରଦକ୍ଷିଣ କରିବାକୁ ଏକମାସ ଲାଗୁଅଛି । ଚନ୍ଦ୍ରର ଗତିର ବିପର୍ଯ୍ୟୟ ସମୟସାପେକ୍ଷ, ଏହା ସମୟ ଅଳ୍ପ ନୁହେଁ ବହୁ କୋଟି ବର୍ଷର କଥା ।

ପୃଥିବୀ ଜୀବର ଲୀଳାକ୍ଷେତ୍ର । ପ୍ରଥମ ଜୀବର ଉତ୍ପତ୍ତି ଏକ ଶତ କୋଟି ବର୍ଷରୁ କମ୍ ନୁହେଁ । ଏ ଜୀବ ଯେ ମନୁଷ୍ୟ ହାତୀ ଘୋଡ଼ା ଗୋରୁ ତାହା ନୁହେଁ । ଅତି ନିମ୍ନସ୍ତରର ଜୀବ । ଏହି ଜୀବ କ୍ରମୋନ୍ନତ ଜୀବ ଓ ଉଦ୍ଭିଦର ଆଦି ପୁରୁଷ । ଏହି ନିମ୍ନସ୍ତରର ଜୀବ–ମନୁଷ୍ୟର ଆଦି । ଏହା ଶୁଣିଲେ ବିଶ୍ୱକର୍ମାର ହସ୍ତ ନିର୍ମିତ ସର୍ବାବୟବସମ୍ପନ୍ନ ବୁଦ୍ଧିଶାଳୀ ଉଚ୍ଚବର୍ଣ୍ଣମାନେ ଘୃଣାରେ ଜର୍ଜରିତ ହେବେ ସନ୍ଦେହ ନାହିଁ । ମାତ୍ର ଜନ୍ମଦାତ୍ରୀ ପୃଥିବୀ ସାକ୍ଷ୍ୟପ୍ରଦାନ କରୁଅଛି ଯେ ତା'ର କୁଳରେ ଜନ୍ମ ପ୍ରଥମ ନିମ୍ନସ୍ତରର ଜୀବରୁ ବୁଦ୍ଧିଜୀବୀ ମନୁଷ୍ୟର ଉତ୍ପତ୍ତି । ଏଥିକି ଉପାୟ କ'ଣ ? ପଣ୍ଡିତଗଣ ଭୂଗର୍ଭ ଖନନ ଦ୍ୱାରା ନାନା ଭୂସ୍ତର ପାଇଅଛନ୍ତି । ଅତି ନିମ୍ନସ୍ତରରେ ଯେଉଁ ଜୀବର ସନ୍ଧାନ ମିଳିଅଛି, ତଦୂର୍ଦ୍ଧ୍ୱ ସ୍ତରରେ ତହିଁରୁ କିଞ୍ଚିତ୍ ଉନ୍ନତ ଜୀବର ସନ୍ଧାନ ମିଳେ । କ୍ରମେ ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱତର ସ୍ତରରେ ଯେଉଁ ଜୀବର ଅସ୍ତିତ୍ୱ ମିଳେ ତାହା ନିମ୍ନସ୍ତରର ଜୀବର ସହିତ ଅଳ୍ପ ସାମଞ୍ଜସ୍ୟ ରକ୍ଷା କରେ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ପୃଥିବୀର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଏକ ସାମୟିକ ବିପର୍ଯ୍ୟୟ ହେତୁ ଜୀବଜଗତର ପରିବର୍ତ୍ତନ ଅବଶ୍ୟମ୍ଭାବୀ ।

ଏହି ସ୍ତରମାନଙ୍କୁ ସ୍ଥୂଳତଃ ଚାରି ଭାଗରେ ଅର୍ଥାତ୍, ପ୍ରାଥମିକ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଭାଗରେ ବିଭକ୍ତ କଲେ ସ୍ପଷ୍ଟତଃ ଦେଖାଯାଏ ଯେ ପ୍ରଥମ ଅର୍ଥାତ୍ ଅତି ନିମ୍ନ ଭାଗରେ ଯେଉଁ ଜୀବର ଅସ୍ତିତ୍ୱ ମିଳେ ସେହି ଜୀବମାନଙ୍କର ଅସ୍ତିତ୍ୱ ଚତୁର୍ଥ ବା ସର୍ବ ଉର୍ଦ୍ଧ୍ୱ ଭାଗରେ ନାହିଁ । ଦ୍ୱିତୀୟ ଭାଗରେ ଯେଉଁ ଜୀବର ଚିହ୍ନ ମିଳେ ତାହା ଅଳ୍ପ ବିସ୍ତର ଭାବରେ ଚତୁର୍ଥ ଭାଗର ଜୀବ ସହିତ ସାମଞ୍ଜସ୍ୟ ରକ୍ଷା କରେ । ତୃତୀୟ ଭାଗରେ ଜୀବ ଓ ବୃକ୍ଷାଦିର ଯେଉଁ ଅବୟବ ମିଳେ ସେଥିରୁ ଅନେକ ଚତୁର୍ଥ ଭାଗର ଜୀବ ବୃକ୍ଷ ସହିତ ସମାନ । ଅବଶ୍ୟ ତୃତୀୟ ଭାଗରୁ କେତେକ ଜାତି ଏକବାରିକ ନଷ୍ଟ ବା ମୃତ । ଚତୁର୍ଥ ଭାଗର ନିମ୍ନ ସ୍ତରର ଜୀବ ଓ ବୃକ୍ଷାଦିର ଆଧୁନିକ ଜୀବିତ ଜାତିର ସହିତ ସାମ୍ୟ ଅଛି । ପ୍ରଥମ ଭାଗରୁ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ତରରେ କେବଳ କ୍ଷୁଦ୍ର ସାମୁଦ୍ରିକ ଜୀବର ଅସ୍ତିତ୍ୱ ଦେଖାଯାଏ । ମେରୁଦଣ୍ଡ ବିଶିଷ୍ଟ କୌଣସି ଜୀବର ଅସ୍ତିତ୍ୱ ନାହିଁ । ଏ ବିଭାଗର ଚତୁର୍ଥ ସ୍ତରରେ ନିମ୍ନ ଅଂଶରେ ମତ୍ସ୍ୟର ଆବିର୍ଭାବ ଦୃଷ୍ଟି ହୁଏ, ଏବଂ ଉପର ଅଂଶରେ ସରୀସୃପ ଅସ୍ତିତ୍ୱ ବିଦ୍ୟମାନ ।

ଏହି ବିଭାଗର ପଞ୍ଚମ ସ୍ତରରେ ପ୍ରକାଣ୍ଡ ବୃକ୍ଷ ବିଦ୍ୟମାନ ଥିବାର ସ୍ପଷ୍ଟ ଜଣାଯାଏ । ଏହି ବୃକ୍ଷମାନଙ୍କ ଦ୍ୱାରା ପଥର କୋଇଲା ଉତ୍ପନ୍ନ ହୋଇଅଛି । ଏହି ସ୍ତରରେ ହାଙ୍ଗର, ଜାତିବିଶିଷ୍ଟ, ଉଭୟଚର ଏବଂ ଏଣ୍ଡୁଅ ଜାତୀୟ ମତ୍ସ୍ୟର ଆବିର୍ଭାବ । ଷଷ୍ଠ ସ୍ତରମାନଙ୍କରେ ବହୁଜାତୀୟ ମତ୍ସ୍ୟ ଉଭୟଚର ଏବଂ ଝିଟିପିଟି ପ୍ରଚୁର ପରିମାଣରେ ବିଦ୍ୟମାନ ଥିଲେ । ସପ୍ତମ ସ୍ତରମାନଙ୍କରେ ପ୍ରକାଣ୍ଡକାୟ ସରୀସୃପ ଏକ ପକ୍ଷୀ ସଦୃଶ ଉଭୟଚର ପ୍ରକାଶ ପାଇଲେ । ଏହି ସ୍ତରର ଉର୍ଦ୍ଧ୍ୱରେ ପ୍ରଥମ ସ୍ତନ୍ୟପାୟୀ ଜୀବର ଆବିର୍ଭାବ । ଅଷ୍ଟମ ସ୍ତରରେ ଉଡ଼ିବା ଶକ୍ତି ସମ୍ପନ୍ନ ସରୀସୃପ ଓ ହାଙ୍ଗର ଦ୍ୱିଗର୍ଭ ଜନ୍ତୁର ଦେଖା ।

ନବମ ସ୍ତରରେ ଉଚ୍ଚଜାତୀର ମତ୍ସ୍ୟ, ସନ୍ତରଣକାରୀ ପକ୍ଷୀ ଓ ଦନ୍ତ ବିଶିଷ୍ଟ ପକ୍ଷୀ, ଜଳ ବିହାରୀ ଝିଟିପିଟି ଇତ୍ୟାଦି ଦେଖାଗଲେ; ଏହି ସ୍ତରର ଉର୍ଦ୍ଧ୍ୱ ଦେଶରେ କ୍ଷୁଦ୍ର ସ୍ତନ୍ୟପାୟୀ ଜୀବର ଆବିର୍ଭାବ । ଏହି ଭାଗର ଶେଷରେ ଉଡ଼ିବା ସରୀସୃପ, ଡିବସର ପ୍ରଭୃତି ଏବଂ କେତେକ ସାମୁଦ୍ରିକ ଜୀବର ଅଦୃଶ୍ୟ ଲକ୍ଷିତ ହୁଏ । ଦଶମ ସ୍ତରର କେତେକ ଜୀବର ସାମ୍ୟ ଆଧୁନିକ ଜୀବ ସହିତ ବିଦ୍ୟମାନ୍ । ଏହି ସ୍ତରରେ ଭୂମିର ମେରୁଦଣ୍ଡ ବିଶିଷ୍ଟ ଜୀବର ବିଶେଷ ପରିବର୍ତ୍ତନ ଦୃଷ୍ଟ ହୁଏ ଏବଂ ଏହି ସ୍ତରରେ ମାଂସାଶୀ କୀଟାଣୁ ଏବଂ କ୍ଷୁରବିଶିଷ୍ଟ ଜୀବର ପୂର୍ବ ପୁରୁଷର ଆବିର୍ଭାବ ଦେଖାଯାଏ । ଏବଂ ସ୍ତନ୍ୟପାୟୀ ଜୀବ ଯେଉଁମାନଙ୍କର ନାଭୀ ମାତୃଗର୍ଭ ସହିତ ସଂଯୋଗ ସେମାନଙ୍କର ଆବିର୍ଭାବ ଏବଂ ଘୋଟକ ଜାତିର ଆଦି ପୁରୁଷର ଆବିର୍ଭାବ । ତଦୂର୍ଦ୍ଧ୍ୱ ସ୍ତରରେ ଏକପ୍ରକାର ବିଡ଼ାଳ, ଭଲ୍ଲୁକ, କୁକୁର, ମାଷ୍ଟୋଡ଼ନ ଏବଂ ପ୍ରାଥମିକ ଘୋଟକ ଏବଂ ମର୍କଟର ଆବିର୍ଭାବ । ତଦୂର୍ଦ୍ଧ୍ୱରେ ଆଧୁନିକ ବିଡ଼ାଳ ଜାତି, ହରିଣ, ବରାହ ଓ ମାଙ୍କଡ଼ର ଜନ୍ମ ।

ଏଥି ଉତ୍ତାରୁ ଚତୁର୍ଥ ବିଭାଗରେ ଉଚ୍ଚତର ଜୀବ ଏବଂ ମନୁଷ୍ୟ ଓ ମନୁଷ୍ୟର ଆବିର୍ଭାବ ଦେଖାଯାଏ ।

ଏସବୁ ବର୍ଣ୍ଣନା କରିବା ବୃହତର ବ୍ୟାପାର । ତଥାପି ପ୍ରଣିଧାନପୂର୍ବକ ଆଲୋଚନା କଲେ ଏତିକିରୁ ମଧ୍ୟ ହୃଦୟଙ୍ଗମ କରାଯାଇ ପାରେ ଯେ ଜୀବଉତ୍ପତ୍ତିବ୍ୟାପାର ଏକଦିନର ଘଟଣା ନୁହେଁ କିମ୍ବା କୀଟ, ପତଙ୍ଗ, ମର୍କଟ, ମନୁଷ୍ୟ ଏକ ସଙ୍ଗରେ କୌଣସି ବିଶ୍ୱକର୍ମା ହାତରେ ପ୍ରସ୍ତୁତ ହୋଇ ଭୂପୃଷ୍ଠରେ ବିଚରଣ ଓ ପ୍ରଭୁତ୍ୱ କରିବାକୁ ଛାଡ଼ି ଦିଆଯାଇଅଛନ୍ତି । ଜୈବିକ ପଙ୍କରୁ ମନୁଷ୍ୟର ଜନ୍ମ— କୋଟି କୋଟି ବର୍ଷରେ ମାନବର ପୂର୍ବ ପୁରୁଷ ଯୋଗ୍ୟତାଦ୍ୱାରା ଏହି ନରଜନ୍ମ ଲାଭ କରିଅଛି । ବିବର୍ତ୍ତନବାଦୀମାନଙ୍କର 'ଯୋଗ୍ୟତମର ଅଭ୍ୟୁଦୟ' କଥା ମାନିବାଠାରୁ ସମ୍ପୂର୍ଣ୍ଣରୂପେ ପ୍ରମାଣିତ ହୁଏ ।

କିପରି ନର ଏବଂ ତା'ର ଗୃହପାଳିତ ପଶୁ ଏବଂ ଅନ୍ୟାନ୍ୟ ପଶୁର ଅଭ୍ୟୁଦୟ ଘଟିଅଛି ତାହା ବର୍ଣ୍ଣନା କରିବାକୁ ସମୟ ସାପେକ୍ଷ ।

ଶେଷରେ ଏତିକି କହି ରଖିବା ଉଚିତ ଯେ ପାଞ୍ଚ ଗୋଟି ସୂତ୍ରଦ୍ୱାରା ବିବର୍ତ୍ତନବାଦୀମାନେ ପ୍ରାଚୀନ ମତ ସମୂହକୁ ଜୟ କରିଅଛନ୍ତି ।

ପ୍ରଥମ ଉତ୍ତରାଧିକାରୀ ନିୟମ— ଜନ୍ମଦାତାର ଆକୃତିରେ ସନ୍ତାନ ଜନ୍ମ ହୁଏ ।

ଦ୍ୱିତୀୟ ସୂତ୍ରଃ— ଆକୃତିର ବିପର୍ଯ୍ୟୟ । ପାରିପାର୍ଶ୍ୱିକ ସ୍ଥାନ ଓ ଘଟଣା ଏଥିର ମୂଳ କାରଣ ।

ତୃତୀୟ ସୂତ୍ରଃ— ଯେତିକି ବଞ୍ଚିବ । ସମ୍ଭବ ତହିଁରୁ ଅଧିକ ପରିମାଣ ଜନ୍ମ ଘଟେ ।

ଚତୁର୍ଥ ସୂତ୍ରଃ— ଅତ୍ୟଧିକ ଜନ୍ମ ନିବନ୍ଧନ ବଞ୍ଚିବା ନିମନ୍ତେ ଜୀବନସଂଗ୍ରାମ ସ୍ୱତଃସିଦ୍ଧ ।

ପଞ୍ଚମ ସୂତ୍ରଃ— ଜୀବନ ସଂଗ୍ରାମରେ ଯୋଗ୍ୟତମର ଅଭ୍ୟୁଦୟ ।

•

## ଆକୃତି ଅନାଦି କାଳରୁ ଅଛି କି ?

ଶଙ୍କରଙ୍କ ମତରେ ବେଦ ନିତ୍ୟ । ଶଙ୍କର କାହିଁକି ସମସ୍ତ ଦାର୍ଶନିକମାନଙ୍କ ମତରେ ବେଦ ନିତ୍ୟ । ବେଦ ନିତ୍ୟ କି ନା ଏ ଘେନି ବୃଥା ସମୟ କ୍ଷେପ ଆଉ କରିବାକୁ ପ୍ରବୃତ୍ତି ବଳୁ ନାହିଁ । ଅନେକ ଥର ଏଥିର ଆଲୋଚନା ହୋଇଯାଇଅଛି । ତେବେ ଆକୃତି ଓ ଜାତି ଜନ୍ମ ହୁଏ ନାହିଁ । ଜାତି ଓ ଆକୃତି ଅନାଦି କାଳରୁ ଅଛି । ଗୋତ୍ୱ ବା ଗୋଜାତି ଚିରକାଳ ଅଛି ଓ ଥିବ, ଏହା ଶଙ୍କରଙ୍କର ମତ । ଆକୃତି ଜନ୍ମ ହୁଏ ନାହିଁ, ଏଥିର ତାତ୍ପର୍ଯ୍ୟ କ'ଣ ? ଆକୃତିବିଶିଷ୍ଟ ଜୀବ ଯାହା ଆମେମାନେ ଦେଖୁଅଛୁଁ ସେହି ଜୀବମାନେ ଆବହମାନ କାଳରୁ ସେହି ଆକୃତିରେ ଅଛନ୍ତି, ଚିରକାଳ ଥିବେ । ସେମାନଙ୍କର ପରିବର୍ତ୍ତନ ନାହିଁ ବା ନାଶ ନାହିଁ ।

ଦାର୍ଶନିକଗଣ ମଧ୍ୟ ଏହା ପ୍ରକାଶ କରିଅଛନ୍ତି ଯେ, ଶବ୍ଦ ଓ ଅର୍ଥ ମନରେ ନ ଥିଲେ କେହି କିଛି ପ୍ରସ୍ତୁତ କରିପାରିବ ନାହିଁ । ସୃଷ୍ଟି କର୍ତ୍ତା ପ୍ରଜାପତିଙ୍କ ମନରେ ବୈଦିକ ଶବ୍ଦର ଆବିର୍ଭାବ ହୋଇଥିଲା; ଏଣୁ ସେ ସୃଷ୍ଟି କରିବାକୁ କ୍ଷମ ହୋଇଥିଲେ । ଅଦ୍ଭୁତ କଳ୍ପନା । ଅଥଚ ବିଦ୍ୟାବଳରେ ଓ ଯୁକ୍ତି ସାହାଯ୍ୟରେ ଦାର୍ଶନିକଗଣ ଆମମାନଙ୍କୁ ଅଦ୍ୟାପି ଭ୍ରାନ୍ତ କରି ରଖିଅଛନ୍ତି, ଏ ବିଷୟ ପରୀକ୍ଷା କରିବାକୁ ପ୍ରବନ୍ଧର ଅବତାରଣା ।

ଯେଉଁମାନେ ଏତାଦୃଶ ମତର ପକ୍ଷପାତୀ, ସେମାନେ ଯେ ଅଭିବ୍ୟକ୍ତିବାଦ ବା କ୍ରମୋନ୍ନତିର ସୀମା ସ୍ପର୍ଶ କରି ନ ଥିଲେ, ତାହା କହିବା ବାହୁଲ୍ୟ ମାତ୍ର । ବେଦ ନିତ୍ୟ ଓ ବୈଦିକ ଶବ୍ଦ ଆଦି ବୋଲି ପ୍ରକାଶ କରିବାଦ୍ୱାରା ଏମାନେ ଅତୀତ କାଳକୁ ସୀମାବଦ୍ଧ କରିଅଛନ୍ତି । ବସ୍ତୁତଃ କ୍ରମୋନ୍ନତିର ଭାବ ଏମାନଙ୍କର ହୃଦୟକୁ ସ୍ପର୍ଶ କରିବ କିପରି ? ଆହୁରି ଗୋଟିଏ କଥା— ସୃଷ୍ଟି ଓ ସୃଷ୍ଟିକର୍ତ୍ତା ଅଭିବ୍ୟକ୍ତିବାଦର ଅନ୍ତରାୟ । ସୃଷ୍ଟି କାହାଣୀ ପ୍ରଜାପତିଠାରୁ ପର୍ଯ୍ୟବସିତ । ପ୍ରଜାପତିର ସୃଷ୍ଟି ଅଦ୍ୟାପି ଲାଗିଛି । ମାତୃଗର୍ଭରେ ନର ଆକାର ସୃଷ୍ଟି କରନ୍ତି ପ୍ରଜାପତି । ଏତିକି ନୁହେଁ, ନର କପାଳରେ ଅଢ଼ାଇଟି ଅକ୍ଷରରେ ତାର ଜୀବିତ କାଳର ବିବରଣ ଲେଖିଦିଅନ୍ତି । ଭାରତବାସୀ ସାଧ କ'ଣ ଯେ ସେ ଲଲାଟଲିପି ଅତିକ୍ରମ କରିବ; ଏଣୁ ପ୍ରଜାପତିର ସୃଷ୍ଟି ଓ ବେଦର ନିତ୍ୟତ୍ୱ ବିଶ୍ୱାସରେ ଘାଣ୍ଟି ଚକଟି ହେଉଅଛି । ଏ ଘେନି ଲେଖିବାର ବିଷୟ ଅନେକ ଅଛି; ମାତ୍ର ଥାଉ ।

ଜାତି ନିତ୍ୟ । ଶବ୍ଦପୂର୍ବିକା ସୃଷ୍ଟି, ଅର୍ଥାତ୍ ବୈଦିକ ଜାତିବାଚକ ଶବ୍ଦ ସ୍ମରଣରେ ପ୍ରଜାପତି କେବଳ ଜୀବ ସୃଷ୍ଟି କରିବାକୁ କ୍ଷମ । ଭଙ୍ଗ୍ୟନ୍ତରରେ ଏହାର ତାତ୍ପର୍ଯ୍ୟ ଏହି ଯେ, ବେଦରେ ଯେଉଁ ଜାତିର ଉଲ୍ଲେଖ ଅଛି, ତାହା ନିତ୍ୟ; ତଭିନ୍ନ ଅନ୍ୟ ଜାତି ବା ଜୀବ ପୂର୍ବେ ସୃଷ୍ଟି ହୋଇ ନ ଥିଲେ ବା ବେଦ ପରେ ହୋଇନାହାନ୍ତି । ଏଥିର କିଞ୍ଚିତ୍ ଆଲୋଚନା କରି କ୍ଷାନ୍ତ ହେବାକୁ ପଡ଼ିବ ।

ଯେଉଁ ସୂତ୍ର ଘେନି ଏଥିର ଆଲୋଚନା କରାଯିବ, ତାହା ପାଠକଙ୍କ ପ୍ରତି ସୁଖପାଠ୍ୟ ହୋଇ ନ ପାରେ; ମାତ୍ର ତାହା ପ୍ରଶସ୍ତ ପନ୍ଥା ବୋଲି ବିବେଚିତ ହୁଏ । ଋଗ୍‌ବେଦ ଏବଂ ଯେଉଁ ଗ୍ରନ୍ଥମାନ ବୈଦିକ ଗ୍ରନ୍ଥ ବୋଲି ଗୃହୀତ, ସେଥି ମଧ୍ୟରେ ଉଲ୍ଲେଖ ଥିବା ପଶୁପକ୍ଷୀ, କୀଟପତଙ୍ଗ ପ୍ରଭୃତିର ତାଲିକା ସହିତ ଅଭିବ୍ୟକ୍ତିବାଦୀମାନଙ୍କ ପ୍ରଦତ୍ତ ପଶୁପକ୍ଷୀ ପ୍ରଭୃତିର ତାଲିକା ତୁଳନା କଲେ ଏବଂ ଆମମାନଙ୍କର ପ୍ରତ୍ୟକ୍ଷୀଭୂତ ଯାବତୀୟ ଜୀବ ବୈଦିକ ଜୀବ କି ନା ଏହା ତୁଳନା କଲେ ସମସ୍ତ ବିଷୟ ସ୍ପଷ୍ଟ ଜଣାପଡ଼ିବ । ତେବେ କଥା ଏହି ଯେ, ଦାର୍ଶନିକମାନଙ୍କ ମତରେ ପ୍ରତ୍ୟକ୍ଷ ଅପେକ୍ଷା ଶାବ୍ଦ ଓ ପରୋକ୍ଷ ବା ଗୁରୁପଦିଷ୍ଟ ଉପଦେଶ ନତମସ୍ତକରେ ଗ୍ରହଣୀୟ । ପାଠକଙ୍କର ଅଭିରୁଚି ଉପରେ ଆମମାନଙ୍କର ହାତ ନାହିଁ ।

ଯେଉଁମାନଙ୍କର ବିଶ୍ୱାସ ଯେ, ବେଦ ରଚିତ ନୁହେଁ, ସେମାନଙ୍କୁ ଆମମାନଙ୍କର ଯୁକ୍ତି ହୃଦୟଙ୍ଗମ କରାଇବା ସହଜ ନୁହେଁ; ଏଣୁ ଆଗରୁ କହି ରଖିବା ଉଚିତ୍ ଯେ, ବେଦ ମନୁଷ୍ୟରଚିତ ।

ସୂକ୍ତର ଆରମ୍ଭରେ ଯେ ଛନ୍ଦ, ଋଷି ଓ ଦେବତାର ଉଲ୍ଲେଖ ଥାଏ, ତାହା ମନୁଷ୍ୟ ରଚିତ ଥିବାର ଗୋଟିଏ ପ୍ରମାଣ । ଆଉ ଗୋଟିଏ ପ୍ରମାଣ ଉଲ୍ଲେଖ କଲେ ଆମ୍ଭମାନଙ୍କର ଉକ୍ତିର ଯାଥାର୍ଥ୍ୟ ଉପଲବ୍ଧି ହୋଇପାରିବ ବୋଲି ଆଶା କରାଯାଏ । ଋଗ୍‌ବେଦ ପ୍ରଥମ ମଣ୍ଡଳ ପ୍ରଥମ ସୂକ୍ତର ଦ୍ୱିତୀୟ ମନ୍ତ୍ର ଏହି "ଅଗ୍ନିଃ ପୂର୍ବେଭି ଋଷିଭିରିଡ୍ୟୋ ନୂତନୈର୍ଗୁତ । ସଦେବାଂ ଏହ୍ୟ ବକ୍ଷତି ।"

ଅଗ୍ନି ପୂର୍ବେ ଋଷିମାନଙ୍କଦ୍ୱାରା ସ୍ତୁତ ହୋଇଥିଲେ ଏବେ ନୂତନ (ବା ଆମ)ମାନଙ୍କଦ୍ୱାରା ସ୍ତୁତ । ସେ ଦେବତାମାନଙ୍କୁ ଏ ଯଜ୍ଞକୁ ଆଣନ୍ତୁ । ଏ ପ୍ରକାର ଉଦାହରଣ ଅସଂଖ୍ୟ । ଭାତ ଗୋଟିଏ ଚିପିଲେ ହାଣ୍ଡିକଯାକ ଜଣାଯାଏ ।

ବୈଦିକ ଗ୍ରନ୍ଥ ପରୀକ୍ଷାରୁ ଆମ୍ଭେମାନେ ନିମ୍ନୋକ୍ତ ପଶୁମାନଙ୍କର ଉଲ୍ଲେଖ ପାଉଁ, ଯଥା— ହସ୍ତୀ,ଘୋଟକ, ଗୋ, କୁକୁର, ଶୃଗାଳ, ଛାଗ, ମେଷ, ଗଦର୍ଭ, ହରିଣ, ବରାହ, ହୁଣ୍ଡାଳ, ଦ୍ୱିପୀ (ପେଣ୍ଡରା), ସିଂହ, ମୂଷିକ, ମର୍କଟ, ଭଲ୍ଲୁକ, ଶଲ୍ଲକୀ, ଗୋଧା, ମଗର, ଗୟଳ, ମହିଷ, କଚ୍ଛପ, ମୃଗ, ସମ୍ବର, ଗଣ୍ଡା, ଉଷ୍ଟ୍ର ଓ ନକୁଳ ଇତ୍ୟାଦି । ଏ ସମସ୍ତ ଆମମାନଙ୍କର ପରିଚିତ ପଶୁ ।

ଅନେକ ପଶୁର ନାମାନ୍ତର ଅଛି, ଯଥା— ହସ୍ତୀ, ଇଭ, ଗଜ । ପୁଣି ପ୍ରକାରଭେଦ ମଧ୍ୟ ଅଛି । ସେ ସମସ୍ତ ଲେଖି ତାଲିକା ବୃଦ୍ଧି କରିବା ନିଷ୍ପ୍ରୟୋଜନ । ପକ୍ଷୀର ସଂଖ୍ୟା ଓ ତାଲିକା ଦେଖିଲେ ଆମମାନଙ୍କର ପରିଚିତ ପକ୍ଷୀ ଭିନ୍ନ ବୈଦିକ ଯୁଗରେ ଅନ୍ୟ ପ୍ରକାର ପଶୁପକ୍ଷୀ ବା ସର୍ପାଦି ଥିବାର ଦେଖାଯାଏ ନାହିଁ । ତେବେ ଅଶ୍ୱମେଧ ଯଜ୍ଞର ପ୍ରୋକ୍ଷଣୀୟ କେତେକ ପଶୁ ପକ୍ଷୀ ଓ ସର୍ପାଦିର ନାମ ଦେଖାଯାଏ, ଯାହା ସହଜବୋଧ ନୁହେଁ । ଯଜୁର୍ବେଦ ସଂହିତାର ବଳାୟନାମକ ଗୋଟିଏ ପଶୁବଳିର ନାମ ଲେଖାଅଛି, ଯାହାର ଅର୍ଥ ଘେନି ଟୀକାକାରମାନେ ସନ୍ଦିହାନ । ଅଶ୍ୱମେଧ ଯଜ୍ଞର ବଳି ନିମନ୍ତେ ଆଉ କେତେ ଗୋଟି ପଶୁ ପକ୍ଷୀର ନାମ ମିଳେ; ଯାହାର ଅର୍ଥ ସ୍ପଷ୍ଟ ନୁହେଁ ।

ବୈଦିକ ପଶୁ ତାଲିକା ଭିତରେ ଆଫ୍ରିକା ମହାଦେଶୀୟ ପଶୁମାନଙ୍କର କୌଣସି ନାମ ନାହିଁ, ଯଥା— ଜେବ୍ରା, ଜିରାଫ, ହିପୋପଟେମୋସ ଇତ୍ୟାଦି କିମ୍ବା ଉତ୍ତରପ୍ରଦେଶର, ସିଲ ବାଲରସ୍, ତିମିର ନାମ ନାହିଁ । ସମ୍ଭବତଃ ଏମାନେ ବିଶୁଦ୍ଧ ଭାରତୀୟ ଜୀବନ ହୋଇ ମ୍ଳେଚ୍ଛ ଦେଶର ଜୀବ ହେତୁ ବେଦ ଅପବିତ୍ର ହେବା ଭୟରେ ଏମାନଙ୍କର ନାମ ବେଦରେ ପ୍ରବେଶ ହୋଇ ନାହିଁ ।

ପଣ୍ଡିତମାନଙ୍କ ମୁହଁରୁ ଶୁଣାଯାଏ ଏକ ଶ୍ଳୋକାର୍ଦ୍ଧ—

ତିମିଙ୍ଗିଳଗିଳୋଽପ୍ୟସ୍ତି ତଦ୍ ଗିଳୋଽପ୍ୟସ୍ତି ରାଘବଃ ।

ରାଘବ ପରା ସବୁଠାରୁ ବଡ଼ । ଦେଖାଯାଉ ବେଦର ମତ୍ସ୍ୟ ତାଲିକାରେ କେବଳ ଚଉଦ ଗୋଟି ନାମ ଅଛି, ଯଥା— କୁଳୁଡ଼ା, କକଟ, ମକର, ମତ୍ସ୍ୟ, ମହାମତ୍ସ୍ୟ, ରଜସ, ଶକୁଳ, ଶିଶୁମାର । ଉପର୍ଯ୍ୟୁକ୍ତ ଆଲୋଚନାରୁ ବେଦର ପ୍ରାଚୀନତ୍ୱ ଏବଂ ପ୍ରଜାପତିର ଶବ୍ଦପୂର୍ବିକା ସୃଷ୍ଟିର କଥା ଅନାୟାସରେ ଜଣାଯାଇପାରିବ । ଜୈବିକ ପଙ୍କରୁ ଆଜିଯାଏ ଜୀବ ଜନ୍ମ ଓ ମରଣର ବିବରଣ ଏଠାରେ ଆଲୋଚନା କରିବାକୁ ଆମମାନଙ୍କୁ ଅବସର ମିଳିପାରିବ କି ? ଅସମ୍ଭବ । ଏହି ବସୁନ୍ଧରାରେ ଜୀବ ଉତ୍ପତ୍ତିଠାରୁ ଆରମ୍ଭ କରି ଆଜିଯାଏ ଜୀବର ଯୁଗନିର୍ଣ୍ଣାୟକ ଗୋଟିଏ ତାପମାନ ସଦୃଶ ମାପକାଠି ଯେବେ ପ୍ରସ୍ତୁତ କରାଯାଇ ତାକୁ ୧୦୦ ଭାଗରେ ବିଭକ୍ତ କରାଯାଏ, ତାହାହେଲେ ଦେଖାଯିବ ଯେ, ମନୁଷ୍ୟର ପ୍ରଥମ ଆବିର୍ଭାବ ୯୯ରେ ଆରମ୍ଭ ହୋଇଅଛି ।

ମନୁଷ୍ୟର ଆବିର୍ଭାବ— ୯୯ ଚତୁର୍ଥ ଜୀବଯୁଗ
—୮୦ ତୃତୀୟ ଜୀବଯୁଗ
—୬୪ ଦ୍ୱିତୀୟ ଜୀବଯୁଗ
—୦ ପ୍ରାଥମିକ ଜୀବଯୁଗର ଆରମ୍ଭ ଅନିଶ୍ଚିତ ।

ଏ ଅତୀତ କି ଦୀର୍ଘ, ଏଥିର ଗଣନା ବିସ୍ମୟୋତ୍ପାଦକ । ଧରିତ୍ରୀ ଆପଣା ଗର୍ଭରେ ତା'ର କୋଳରେ ଜନ୍ମ ଅସଂଖ୍ୟ ଜୀବଗଣଙ୍କର କଙ୍କାଳମାଳା ଧାରଣ କରିଅଛି । ବର୍ତ୍ତମାନ ଭୂପୃଷ୍ଠରେ ବିଚରଣ କରୁଥିବା ମନୁଷ୍ୟ ପଶୁପକ୍ଷୀ, କୀଟ ପତଙ୍ଗଗଣଙ୍କର କ୍ରମୋନ୍ନତି କି ନିୟମରେ କି ପ୍ରଣାଳୀରେ ଘଟିଅଛି ଏବଂ ଯେଉଁ ବୃହତ୍‌କାୟ ଜୀବଗଣ ଜୀବନ ସଂଗ୍ରାମରେ ଜୟୀ ହୋଇପାରିଲେ ନାହିଁ, ସେମାନଙ୍କ ଜୀବନର ଇତିହାସ କଙ୍କାଳଦ୍ୱାରା ପ୍ରକାଶ କରୁଅଛି । ମନୁଷ୍ୟର ଜନ୍ମ ସେ ଦିନ ମାତ୍ର, ତା'ର ପ୍ରଥମ ସଭ୍ୟତା ଜୀବ ଯୁଗର ମାପକାଠିରେ ଅଢ଼ାଇ କଳାର ସମାନ କି ନା ସନ୍ଦେହ । ମନୁଷ୍ୟ କି ପ୍ରକ୍ରିୟାରେ ଜୈବିକ ପଙ୍କଠାରୁ ଆରମ୍ଭ କରି ଆଜିଯାଏ ତା'ର ମହତ୍ତ୍ୱ ଲାଭ କଲା, ତାହା ସେ ଅନାଇ ଦେଖିବାକୁ

ପରାଙ୍ମୁଖ । ତାର କ୍ରମୋନ୍ନତି, ତା'ର ମହତ୍ତ୍ୱ ପ୍ରଜାପତିର ସୃଷ୍ଟିରେ ଲୀନ କରିବାକୁ ସେ ଅଭ୍ୟସ୍ତ ହୋଇଅଛି । ପ୍ରଜାପତିର ସୃଷ୍ଟିରେ ପ୍ରଜାପତିର ଲଲାଟ ଲିପିରେ ଆସ୍ଥା ରଖି ନିଶ୍ଚିନ୍ତ ।

ଶେଷରେ ବକ୍ତବ୍ୟ ଏହି ଯେ Brontosanrus. Megatosanrus. Dimorphodon. Icthyornis Mestodom ପ୍ରଭୃତି ଅସଂଖ୍ୟ ଜୀବର କଙ୍କାଳ ଯାହା ଭୂଗର୍ଭରୁ ବୈଜ୍ଞାନିକଗଣ ଆବିଷ୍କାର କରି ମିଉଜିୟମ୍‌ମାନଙ୍କରେ ରଖିଅଛନ୍ତି; ସେ ଜୀବମାନଙ୍କର ନାମଗନ୍ଧ ତ ବେଦରେ ନାହିଁ । ତେବେ ଏ ଅସ୍ଥିମାଳା କି ଜୀବର ଅସ୍ଥି ନୁହେଁ, ବୈଜ୍ଞାନିକମାନେ ଭ୍ରମ ପ୍ରମାଦଯୁକ୍ତ । ପ୍ରତ୍ୟକ୍ଷଠାରୁ ମଧ ଆପ୍ତ ଓ ଗୁରୁବାକ୍ୟ ବିଶ୍ୱାସଯୋଗ୍ୟ କି ଦାର୍ଶନିକ ଆସ୍ପର୍ଦ୍ଧା !

•

## ଆର୍ଯ୍ୟ ସଂସ୍କୃତିର କି ଏହି ପରିଣତି ?

ଜ୍ଞାନ ତୁଳନାମୂଳକ । ତୁଳନା ବ୍ୟତିରେକେ ପ୍ରକୃତ ତଥ୍ୟ ବା ସତ୍ୟର ଉପଲବ୍ଧି ହୁଏ ନାହିଁ । ଛୋଟ ବଡ଼, ଉନ୍ନତ ଅବନତ, ହ୍ରସ୍ୱଦୀର୍ଘ, ଭଲମନ୍ଦ ଇତ୍ୟାଦି ତୁଳନାପ୍ରସୂତ । କୌଣସି ବସ୍ତୁ ବା ବ୍ୟକ୍ତିର ପ୍ରଶଂସା କଲାମାତ୍ରେ ସ୍ୱତଃ ଏହା ମନରେ ଉଦୟ ହୁଏ ଯେ, ବ୍ୟକ୍ତି ବା ବସ୍ତୁ କାହାଠାରୁ ଭଲ, କେଉଁ ଗୁଣରେ ଭଲ ଇତ୍ୟାଦି । ଆମମାନଙ୍କର ଜନ୍ମଭୂମି ଓ ତାହାର ସନ୍ତାନମାନଙ୍କ ସମ୍ବନ୍ଧରେ ଦୁଇ କଥା ଲେଖିବାର ପ୍ରବୃତ୍ତି ଜନ୍ମିଅଛି, ଏଣୁ ଉପରୋକ୍ତ କ୍ଷୁଦ୍ର ଭୂମିକା ।

ପୃଥିବୀ ଗୋଲ । ପ୍ରାକୃତିକ ନିୟମର ବଶବର୍ତ୍ତୀ ହୋଇ ଭ୍ରମଣ କରୁ କରୁ ତାହାର ଆକାର ଗୋଲ ହୋଇଅଛି । ଉଷ୍ଣ, ସମଶୀତୋଷ୍ଣ ଓ ଶୀତ କଟିବନ୍ଧ ଅଛି । ଦେଶମାନେ ଏହି କଟିବନ୍ଧମାନଙ୍କରେ ଥାଇ କାଳକ୍ରମେ ବିଭିନ୍ନ ବୃକ୍ଷ, ଲତା, ପଶୁପକ୍ଷୀ ଓ ମନୁଷ୍ୟର ବାସଯୋଗ୍ୟ ହୋଇଅଛନ୍ତି । ନଦୀ, ପର୍ବତ, ହ୍ରଦ, ସମୁଦ୍ର, ଆଗ୍ନେୟଗିରି, ପ୍ରସ୍ରବଣ, ପ୍ରଭୃତି ପୃଥିବୀର ଆଭ୍ୟନ୍ତରୀଣ ସ୍ତରର ପରିବର୍ତ୍ତନଦ୍ୱାରା ନିର୍ମିତ ହୋଇଅଛି । କୌଣସି ସୁଦକ୍ଷ କାରିଗର କୌଣସି ଜାତି ବିଶେଷର ସୁବିଧା ଓ ସୁଖସ୍ୱାଚ୍ଛନ୍ଦ୍ୟ ନିମନ୍ତେ କୌଣସି ଦେଶ ନିର୍ମାଣ କରି ନାହିଁ । ଅନ୍ୟାନ୍ୟ ଦେଶମାନଙ୍କ ପରି ଭାରତବର୍ଷ ମଧ ଗୋଟିଏ ଦେଶ । ହିମାଳୟ ଜନ୍ମର ବହୁ ଲକ୍ଷ ବର୍ଷ ପରେ ମନୁଷ୍ୟମାନେ ଉତ୍ତରରୁ ଆସି ଏଠାରେ ଉପନିବେଶ ସ୍ଥାପନ କଲେ । କ୍ରମେ ଆର୍ଯ୍ୟ ଜାତିଦ୍ୱାରା ଏହି ଭାରତଭୂମି ଅଧ୍ୟୁଷିତ ।

ଭାରତର ଅବୟବ ପ୍ରକାଣ୍ଡ ଏବଂ ଏହି ପ୍ରକାଣ୍ଡ ଭୂଖଣ୍ଡ ଅନେକ ପ୍ରକାର ଲୋକଙ୍କର ବାସଭୂମି । ଆର୍ଯ୍ୟ ଅନାର୍ଯ୍ୟ, ପୁଣି ସେହି ଆର୍ଯ୍ୟମାନଙ୍କର ରୂପ ଆକାର ଆଚାର ବ୍ୟବହାର ଓ ଭାଷାର ସ୍ଥାନ ଓ ଋତୁ ପ୍ରଭାବରୁ ଏପରି ପରିବର୍ତ୍ତନ ଘଟିଅଛି ଯେ ସମସ୍ତଙ୍କୁ ଏକ ମୂଳର ଶାଖା ବୋଲି ପ୍ରମାଣ କରିବାକୁ ବିଶେଷ ଗବେଷଣା ଆବଶ୍ୟକ । ଏହି ଭୂମିଖଣ୍ଡ ଅନେକ ଜାତି, ଆଦିମ ଆର୍ଯ୍ୟ ଅନାର୍ଯ୍ୟଙ୍କର ଜନନୀ, ଜନ୍ମଭୂମି । ଜନ୍ମଭୂମି, ଜନ୍ମ କରିଛି, ପ୍ରତିପୋଷଣ କରିଛି; ମାତ୍ର ସମସ୍ତଙ୍କୁ ଏକ କରିପାରି ନାହିଁ । ଏକାସନରେ ବସାଇପାରି ନାହିଁ । ଏକ ପାତ୍ରରେ ସମସ୍ତଙ୍କୁ ଖୁଆଇ ପାରି ନାହିଁ । ମା' ଜନ୍ମଭୂମି, ଏ ଦୋଷ କାହାର ? ପରେ ବିବେଚ୍ୟ ।

ଦେଶନିନ୍ଦା ବା ଜାତିନିନ୍ଦା ନିମନ୍ତେ ଏ ପ୍ରବନ୍ଧର ଅବତାରଣା ନୁହେଁ । ତୁଳନାମୂଳକ ଜ୍ଞାନଦ୍ୱାରା ପରିଚାଳିତ ଆମ୍ଭେମାନେ ଏ ଦେଶର, ଏ ଜାତିର ଏବଂ ଭାରତୀୟ ସଂସ୍କୃତିର ଅନ୍ୟ ଦେଶର ଜାତିର ଓ ସଂସ୍କୃତିର ସହିତ ପୁଙ୍ଖାନୁପୁଙ୍ଖ ରୂପେ ତୁଳନା କରି ଉପସଂହାର କରିବୁଁ, ଏହି ଇଚ୍ଛା ।

ଭୂପୃଷ୍ଠରେ ଦେଶ ଅଛି, ଯାହା ଚିର ତୁଷାରାଚ୍ଛାଦିତ । ନିର୍ଜଳ ପ୍ରଦେଶ ଅଛି, ମରୁଭୂମି ଅଛି । ପ୍ରକୃତି ମନୁଷ୍ୟର ବାସଯୋଗ୍ୟ ନିମନ୍ତେ ପ୍ରତ୍ୟେକ ଦେଶକୁ ସୁବିଧା ପୂର୍ଣ୍ଣ କରି ପ୍ରସ୍ତୁତ କରି ନାହିଁ । ମନୁଷ୍ୟର ଯାହା ବାସଯୋଗ୍ୟ ତାହା ବର୍ତ୍ତମାନ ନରାଧିକୃତ । ମେରୁ ପ୍ରଦେଶରେ ବାସ କରିବାକୁ ମଧ ଲୋକଙ୍କର ଆସ୍ପର୍ଦ୍ଧା । ଭାରତ ସମ୍ୟକ୍ ପ୍ରକାରେ ନରର ବାସଯୋଗ୍ୟ ସ୍ଥାନ ।

ଭାରତ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା, ଏଥିରେ ସନ୍ଦେହ ନାହିଁ; ମାତ୍ର ସମୟ ବିଶେଷରେ ଜଳବହୁଳା ମଧ । ମୌସୁମୀବାୟୁ ପ୍ରବାହଦ୍ୱାରା ଏ ଦେଶର ବୃଷ୍ଟି । ଇନ୍ଦ୍ରଦେବଙ୍କର କୌଣସି କାଳରେ ହେଲେ ମୌସୁମୀ ପ୍ରବାହ ଉପରେ ଆଧିପତ୍ୟ ନ ଥିଲା, ଏବେ ମଧ ନାହିଁ । ସୁତରାଂ ସ୍ଥାନ ବିଶେଷରେ ପ୍ରବଳ ବୃଷ୍ଟି ବା ଅତି ବୃଷ୍ଟି ଦ୍ୱାରା ଶସ୍ୟ କ୍ଷତି ହୋଇ ଦୁର୍ଭିକ୍ଷ ପଡ଼େ । ପୁଣି କେବେ କେବେ ଅନାବୃଷ୍ଟି ପ୍ରଭାବରୁ ଅସଂଖ୍ୟ ପ୍ରାଣୀ କାଳକବଳରେ ପଡ଼ନ୍ତି । ଅତିବୃଷ୍ଟି, ଅନାବୃଷ୍ଟି, ସଲଭ, ମୂଷିକ, ଖଗ ଭାରତବାସୀର ପ୍ରାଣ ନାଶ ନିମନ୍ତେ ଯଥେଷ୍ଟ । ଇନ୍ଦ୍ରଙ୍କୁ ହୋମଦ୍ୱାରା, ଯୋଗିନୀମାନଙ୍କୁ ମଣ୍ଡାପିଠା ଗଜମୁଆଁ ପ୍ରଭୃତି ଲାଞ୍ଚଦେଲେ ମଧ ସେମାନେ ପ୍ରାକୃତିକ ନିୟମରେ ହସ୍ତକ୍ଷେପ କରିବାକୁ ନାରାଜ । ଭାରତବାସୀର ଦୁର୍ଭାଗ୍ୟ । ଏବେ ନୁହେଁ ଯେତେବେଳେ ଦେବତାମାନେ ଅତି ଏ ଦେଶବାସୀଙ୍କ ସହିତ ଖେଳା

କରୁଥିଲେ ଏବଂ ଘୃତାହୁତି ପାନ କରି ଯଜ୍ଞ ମାଂସ ଭକ୍ଷଣ କରି ଜଳିତ ଚର୍ମଦ୍ୱାରା ସେମାନଙ୍କର ଆଖି ଢାଙ୍କି ହେଉଥିଲା, ସେତେବେଳେ ମଧ୍ୟ ସେମାନଙ୍କ ଆଧିପତ୍ୟ ମୌସୁମୀବାୟୁ ଉପରେ ନ ଥିଲା । ବେଦରେ ସମ୍ପାତିଙ୍କ ରାଜ୍ୟରେ ଘୋରତର ଦୁର୍ଭିକ୍ଷର ବର୍ଣ୍ଣନା ଅଛି । ଲୋମପାଦଙ୍କ ରାଜ୍ୟରେ ବାର ବର୍ଷ ଦୁର୍ଭିକ୍ଷ ହୋଇଥିଲା ।

ମୌସୁମୀବାୟୁ ଭାରତବର୍ଷର ଖାଦ୍ୟ ନିୟନ୍ତ୍ରଣ କରେ । ଏହାର ସମ୍ୟକ୍‌ଲୋଚନାଦ୍ୱାରା ଦେଶବାସୀଙ୍କର ପ୍ରଭୂତ ଉପକାର ହୁଅନ୍ତା; ମାତ୍ର ଦେଶବାସୀ ଏ ସମ୍ବନ୍ଧରେ ଅଜ୍ଞ ବୋଇଲେ ଚଳେ ଏବଂ କର୍ତ୍ତାଙ୍କ ଦ୍ୱାରା ଏ ସମ୍ବନ୍ଧେ ଯେ ବନ୍ଦୋବସ୍ତ ହୋଇଅଛି ତାହା ନଗଣ୍ୟ ।

ରତ୍ନଗର୍ଭା—ଭାରତ ଯେ କେବଳ ରତ୍ନଗର୍ଭା ଏହା ଭୁଲ୍ । ପୃଥିବୀ ରତ୍ନାଗର୍ଭା । ଉନ୍ନତ ଜାତିମାନେ ଭୂଗର୍ଭ ଖନନ କରି ସ୍ୱର୍ଣ୍ଣାଦି ଧାତୁ ଓ ହୀରକାଦି ରତ୍ନ ସଞ୍ଚୟ କରନ୍ତି । ପ୍ରାଚୀନ କାଳରୁ ନାନା ଦେଶର ଲୋକେ ନାନା ଉପାୟରେ ଭୂଗର୍ଭରୁ ଧାତୁ ଓ ରତ୍ନ ସଂଗ୍ରହ କରି ବ୍ୟବହାର କରୁଥିବାର ପ୍ରମାଣ ମିଳେ । ଅଷ୍ଟ୍ରେଲିଆ, ଆମେରିକା ଓ ଆଫ୍ରିକାରେ ଯେ ସ୍ୱର୍ଣ୍ଣ ଓ ହୀରକ ଖଣି ଅଛି ତାହାର ତୁଳନାରେ ବର୍ତ୍ତମାନ ଭାରତରେ ଖଣି ନାହିଁ ବୋଇଲେ ଚଳେ । କିମ୍ବା ଯାହା ଅଛି ତାହା କାର୍ଯ୍ୟକାରୀ କରାଯାଇ ନାହିଁ ।

ଅରଣ୍ୟ ସମ୍ପଦ ପୃଥିବୀରେ ସର୍ବତ୍ର । କେବଳ ଭାରତର ଅରଣ୍ୟ ଅପେକ୍ଷାକୃତ ଶ୍ରେଷ୍ଠ କହିଲେ ସତ୍ୟର ଅପଳାପ ହୁଏ । ଆବହାୱା ଅନୁସାରେ, ଦେଶର ପରିସ୍ଥିତି ଅନୁସାରେ ଅରଣ୍ୟ ସମ୍ପଦର ସ୍ଥାୟିତ୍ୱ । ଏକ ଦେଶର ଅରଣ୍ୟ ସହିତ ଅନ୍ୟ ଦେଶର ଅରଣ୍ୟ ତୁଳନୀୟ ନୁହେଁ ।

ଭାରତରେ ଆଗ୍ନେୟଗିରି ନାହିଁ; ମାତ୍ର ହିମାଳୟ ଯାହା ପର୍ବତମାନଙ୍କ ମଧ୍ୟରେ ଅର୍ବାଚୀନ, ଯାହାର ଉଦ୍ଦାମ ଯୌବନଲୀଳା ପ୍ରୌଢ଼ତ୍ୱରେ ପରିଣତ ହୋଇ ନାହିଁ ଏବଂ ଅଭ୍ୟନ୍ତରସ୍ଥ ଅବୟବମାନ ଯଥାସ୍ଥାନରେ ରହିପାରି ନାହିଁ, ତାହା ସମୟ ସମୟରେ ଉତ୍ପାତ ସୃଷ୍ଟି କରିଥାଏ ।

ବିହାର ଭୂମିକମ୍ପ ଓ କ୍ୱେଟା ଭୂମିକମ୍ପ ଅଳ୍ପଦିନର ଘଟଣା । ଉଷ୍ଣପ୍ରସ୍ରବଣ ଯେ ଏ ଦେଶରେ ନାହିଁ ଏପରି ନୁହେଁ; ମାତ୍ର ନିଉଜିଲାଣ୍ଡର ଏବଂ ଆଇସଲାଣ୍ଡର ଉଷ୍ଣପ୍ରସ୍ରବଣ ବିସ୍ମୟୋତ୍ପାଦକ ଏବଂ ନିଉଜିଲାଣ୍ଡର ଉତ୍ତପ୍ତ ଜଳ ଭୂଗର୍ଭର ଉଷ୍ଣତାର ଦ୍ୟୋତକ । ଏ ଦେଶର ସୀତାକୁଣ୍ଡ ରାଜଗିରି ପ୍ରଭୃତିରେ ଉଷ୍ଣ ଜଳକୁଣ୍ଡ ଯାହା ଅଛି ତଦ୍ୱାରା ମନୁଷ୍ୟର କୁସଂସ୍କାର ବୃଦ୍ଧି ପାଉଅଛି; ମାତ୍ର ଉପକାରରେ ଆସୁ ନାହିଁ । ଇଉରୋପରେ ଏତାଦୃଶ ଉଷ୍ଣ ଜଳରେ ଧାତୁ ମିଶ୍ରିତ ଥିବାର ଲକ୍ଷ୍ୟକରି ତତ୍‌ଦେଶୀୟ ଜନସାଧାରଣର ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ପାନୀୟ ଓ ସ୍ନାନଯୋଗ୍ୟ ବୋଲି ନିର୍ଦ୍ଦେଶିତ ହୋଇଅଛି ।

ଜଳପ୍ରପାତ ଏ ଦେଶରେ ଅନେକ ଅଛି; ମାତ୍ର ଆଫ୍ରିକା ଓ ଆମେରିକାର ଜଳପ୍ରପାତ ତୁଳନାରେ ନଗଣ୍ୟ । ଆଫ୍ରିକାର ଭିକ୍ଟୋରିଆ ପ୍ରପାତ, ବ୍ଲୁନାଇଲ ପ୍ରପାତ ଏବଂ ଆମେରିକାର ନାଏଗ୍ରା ପ୍ରପାତ ଅତୁଳନୀୟ ।

ଏ ଦେଶରେ ବି ନଦୀର ଅଭାବ । ଅନେକ ନଦୀ । ତନ୍ମଧ୍ୟରୁ ପ୍ରଧାନ ସିନ୍ଧୁ, ଗଙ୍ଗା, ଯମୁନା ଓ ବ୍ରହ୍ମପୁତ୍ରର ପବିତ୍ରତା ଓ ବିଷ୍ଣୁ ପାଦାଗ୍ରସଂଭୂତ ସମ୍ବନ୍ଧରେ ଆମେମାନେ ଅନ୍ଧଜ୍ଞ ଏବଂ ମନ୍ତବ୍ୟ ଦେବାରେ ଯୋଗ୍ୟତା ନାହିଁ; ହେଲେ ଅନାର୍ଯ୍ୟ ଦେଶର ଅନେକ ଗୁଡ଼ିଏ ନଦୀ ଦୀର୍ଘତାରେ, ବିସ୍ତୃତିରେ ଉପରୋକ୍ତ ଭାରତୀୟ ଯେ କୌଣସି ନଦୀ ଅପେକ୍ଷା ଶ୍ରେଷ୍ଠ ।

ପୃଥିବୀର ମାନଦଣ୍ଡ ସ୍ୱରୂପ ବିଦ୍ୟମାନ ନଗାଧିରାଜ ହିମାଳୟ ଯାର ଶିରରେ ଭୂଷଣ ତା'ର ପାର୍ବତୀୟ ଶୋଭା ସମ୍ପଦର କଥା କହିବା କ'ଣ ? ହିମାଳୟ ଘେନି ଭାରତର ଶ୍ରେଷ୍ଠତ୍ୱ; ମାତ୍ର ତୋର କ୍ରୋଡ଼ରେ ଗଙ୍ଗୋତ୍ରୀ, ବଦ୍ରୀନାଥ, ଅମରନାଥ ଓ କୈଳାସ ନ ଥିଲେ ଭାରତୀୟ କୌଣସି ଜାତି ତା'ର ପଦସ୍ପର୍ଶ ମଧ୍ୟ କରନ୍ତେ ନାହିଁ । ଗୌରୀଶଙ୍କର, ଧବଳଗିରି, କାଞ୍ଚନଜଙ୍ଘା, ନନ୍ଦାଦେବୀ ପ୍ରଭୃତି ଅନନ୍ତ ତୁଷାରମଣ୍ଡିତ ଅତ୍ୟୁଚ୍ଚ ଶୃଙ୍ଗମାନ ଭାରତବାସୀଙ୍କର ଶୋଭା ସମ୍ପଦ ନୁହେଁ ବା ନେତ୍ର ପ୍ରୀତିକର ନୁହେଁ; କାରଣ ସେମାନଙ୍କଠାରେ ପଣ୍ଡାର ଆଧିପତ୍ୟ ନାହିଁ । ଆଲୋକ ରଶ୍ମି ଆକୃଷ୍ଟ ସାଲଭ ପ୍ରାୟ ପାଶ୍ଚାତ୍ୟ ବୈଜ୍ଞାନିକ ଓ ଦର୍ଶକଗଣ ହିମାଳୟର ମହିମାରେ ଆକୃଷ୍ଟ ହୋଇ ଜୀବନ ହରାଉଛନ୍ତି । ଜଣକର ଜୀବନ ନାଶ ଅନ୍ୟର ଦର୍ଶନ ପିପାସା ବଢ଼ାଉଅଛି । ସେ ମହିମା ପୂଜାରେ ଜୀବନ ବଳି ଯେ ଦେଇପାରେ ସେ ସିନା ଶ୍ରେଷ୍ଠ ପୂଜକ । ଯେଉଁମାନେ ଏତାଦୃଶ ମହିମା ପୂଜାରେ ସତ୍ୟାନ୍ୱେଷଣରେ ପ୍ରାଣ ଦେଉଅଛନ୍ତି ସେମାନଙ୍କୁ ଆମମାନଙ୍କର ଶତ ନମସ୍କାର ।

ଦୃଶ୍ୟ ଓ ଶୋଭା ପ୍ରକୃତି ନିର୍ମିତ । ପ୍ରାକୃତିକ ପ୍ରତ୍ୟେକ ବସ୍ତୁ ମହିମା ଓ ଶୋଭାପୂର୍ଣ୍ଣ । ଦେଖି ଜାଣିବାର ଯାର ଶକ୍ତି ଅଛି ସେ ଶାନ୍ତି ସୁଖ ଉପଭୋଗ କରେ, ବଛାବଛିର ପ୍ରୟୋଜନ ହୁଏ ନାହିଁ, ନିନ୍ଦା ପ୍ରଶଂସା କରେ ନାହିଁ । ଦେଖେ ଏବଂ ସୁଖ

ହିଁ ଅନୁଭବ କରେ । ଏ ଅନୁସାରେ ଭାରତମାତାର ଯାହା ପ୍ରାକୃତିକ ତାହା ଭଲ, ତାହା ସୁଖକର ଏବଂ ଆମମାନଙ୍କ ପ୍ରତି ହିତକର । ତାହାର ସମ୍ପଦ ଭୋଗ କରିବାକୁ ଆମେମାନେ ଯୋଗ୍ୟ ନୋହୁଁ । ତାର ଦୃଶ୍ୟ ଓ ଶୋଭା ଦେଖି ମୁଗ୍‌ଧ ହେବାର ଯୋଗ୍ୟତା ଅର୍ଜନ କରି ନାହୁଁ । ଗତାନୁଗତିକ କେବଳ ପ୍ରଶଂସା କରିବାକୁ ଶିଖିଅଛୁଁ ଯାର ପ୍ରକୃତ ମୂଲ୍ୟ ଅତି ଅଳ୍ପ, ନା ତୁଚ୍ଛ ।

ଦେଶର ପ୍ରାକୃତିକ ଶୋଭା ସମ୍ପଦ ଓ ମହିମା ମହତ୍ତ୍ୱ ଯାହା ଅଛି ତାହା ବଢ଼ାଇବାକୁ ମନୁଷ୍ୟର ସାଧ ନାହିଁ, କ୍ଷମତା ନାହିଁ । ଏଥି ନିମନ୍ତେ କୌଣସି ଦେଶର ଲୋକେ ନିନ୍ଦା ସ୍ତୁତିର ଭାଗୀ ତହିଁର ସାମାନ୍ୟ ଆଲୋଚନା କରାଯାଉ । ପୃଥିବୀସ୍ଥ ସମଗ୍ର ଦେଶର ଆଲୋଚନା ଯେ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ ତାହା ଶିରୋନାମାରୁ ବ୍ୟକ୍ତ ।

ଭାରତବାସୀ ଉନ୍ନତ କି ଅନୁନ୍ନତ ? କିମ୍ବା ଯଥା ପୂର୍ବଂ ତଥା ପରଂ ? କଠିନ ସମସ୍ୟା କ୍ରମ ଶବ୍ଦ ଗୋଟାଏ ସୀମାର ଅପେକ୍ଷା କରେ । ଆମମାନଙ୍କର ସୀମା ବୈଦିକ ଯୁଗ, ବୈଦିକ ସଭ୍ୟତା କେବେ ଆରମ୍ଭ କେବେ ତା'ର ଶେଷ ତାହା ନିଶ୍ଚିତ ହୋଇପାରି ନାହିଁ । ବୈଦିକ ସଭ୍ୟତାରୁ ନିଦର୍ଶନ କେବଳ ଋକ୍‌ବେଦରୁ ଆମେମାନେ ଦେଖିବାକୁ ପାଉଁ । ଋଗ୍‌ବେଦ ପୂଜା ପୋଥି ନୁହେଁ କିମ୍ବା ଧର୍ମଗ୍ରନ୍ଥ ନୁହେଁ— ଏହା ଗୋଟିଏ ପ୍ରକାଣ୍ଡ ସାହିତ୍ୟ । ଋଗ୍‌ସମୂହ ରଚକମାନଙ୍କର ବଂଶଧରମାନେ ମୁଖସ୍ଥ କରି ରଖିଥିଲେ । କ୍ରମେ ସଂଗୃହୀତ ହୋଇ ଋଗ୍ ସଂହିତା ନାମ ପାଇଅଛି । ଏହି ସଂହିତା ପାଠରୁ ଆର୍ଯ୍ୟ ଜାତିର ଆଚାର ବ୍ୟବହାର ମର୍ଯ୍ୟାଦା, ରାଜତ୍ୱ, ଯୁଦ୍ଧ, ଦେଶ, ବିସ୍ତାର, ଧର୍ମ ବିଶ୍ୱାସର କଥା ଜଣାଯାଏ । ଶୃଙ୍ଖଳା ଓ ଧାରାବାହିକ ରୂପେ କୌଣସି ବିଷୟର ଉଲ୍ଲେଖ ନ ଥିଲେ ମଧ ଅନ୍ୱେଷଣ ଓ ଆଲୋଚନା ଦ୍ୱାରା ହୃଦୟଙ୍ଗମ ହୁଏ, ସନ୍ଦେହ ନାହିଁ । ସେ ଜାତି ଥିଲେ ବୀର ପୁରୁଷ । ରାଜ୍ୟବୃଦ୍ଧି ସେମାନଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ଏବଂ ସଭ୍ୟତା ଅକ୍ଷୁଣ୍ଣ ନିମନ୍ତେ ଧନୀପୁତ୍ର, ବୀରପୁତ୍ରର ପ୍ରୟୋଜନ ଥିଲା । ସେମାନେ ପ୍ରକୃତିପୂଜକ ସ୍ତୋତା ଥିଲେ । ସେମାନେ ଯୋଦ୍ଧା, ଅଯଥା ପାପଭୟତ୍ରସ୍ତ ନ ଥିଲେ । ଆଦିମବାସୀ ଅନାର୍ଯ୍ୟ ସେମାନଙ୍କର ଶତ୍ରୁ । ସେମାନଙ୍କୁ ପରାସ୍ତ କରି ଦେଶ ବିସ୍ତାର କଲେ । ଉତ୍ତରରୁ ନବାଗତ ଆର୍ଯ୍ୟମାନଙ୍କୁ ସେମାନଙ୍କର ଭୟ ନ ଥିଲା । ନବାଗତମାନେ ମଧ ମିଶି ଆର୍ଯ୍ୟାବର୍ତ୍ତର ସଭ୍ୟତା ବୃଦ୍ଧି କଲେ । କେତେକାଳ ଗଲା କିଏ କହିପାରେ ? ନିଷ୍କଣ୍ଟକ ଆର୍ଯ୍ୟଭୂମି ବଂଶଧରଙ୍କ ହସ୍ତରେ ରହିଲା । ବଡ଼ ଆଶ୍ଚର୍ଯ୍ୟର ବିଷୟ ଋଗ୍‌ବେଦର ପରବର୍ତ୍ତୀ କୌଣସି ଜାତୀୟ ସାହିତ୍ୟ ବା ଇତିହାସ ନାହିଁ । କିମାକାର ପରିବର୍ତ୍ତନ ଘଟିଲା କିଏ ଜାଣେ ? ଆମମାନଙ୍କର ହସ୍ତଗତ ହୁଏ ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ୍ । ଏ ସବୁ ଗ୍ରନ୍ଥରେ ବୈଦିକ ସଂସ୍କୃତିର ସତ୍ତା ମାତ୍ର ନାହିଁ । ଦେଶ ବୃଦ୍ଧିର ଆକାଙ୍କ୍ଷା, ବୀରପୁତ୍ର ଇଚ୍ଛା, ଉତ୍ତେଜନା ବାକ୍ୟ, ଜାତୀୟ ଜୀବନ ଗଠନର ଉତ୍ତେଜନା କିଛି ହିଁ ତ ନାହିଁ । ଋଗ୍‌ବେଦ ସଂସ୍କୃତିର ପରିଣାମ କି ଏହି ଯାଗ ଯଜ୍ଞ, ଅରଣ୍ୟବାସ ଓ ମୁକ୍ତିବାଟ ଅନ୍ୱେଷଣ, ବ୍ରହ୍ମଚିନ୍ତା । ଆର୍ଯ୍ୟ ସଂକଳ୍ପର ବିଚ୍ୟୁତି ଘଟିଲା ବୋଲି ଅନୁମାନ ହୁଏ । ଏହି ଦୀର୍ଘକାଳର ଯେ ପୁସ୍ତକାଦି ଆମମାନଙ୍କର ହସ୍ତଗତ ହୁଏ ତାହା କେବଳ ଧର୍ମସମ୍ବନ୍ଧୀୟ; ମାତ୍ର ବୀରତ୍ୱ ବା ଯୁଦ୍ଧ ବ୍ୟାପାରର ପୁସ୍ତକ ଗୋଟିଏ ନାହିଁ ବୋଇଲେ ଚଳେ । ଦେଶ କି ସହସା ଏଡ଼େ ଶାନ୍ତିପୂର୍ଣ୍ଣ ହେଲା ? ଯୋଦ୍ଧାଙ୍କ ମନରୁ କି ଦେଶ ଜୟ ଆଶା ନିର୍ମୂଳ ହେଲା ? ତଦାନୀନ୍ତନ କବିମାନେ ଏ ସମ୍ବନ୍ଧରେ ନିର୍ବାକ୍ । ଜାତୀୟ ଅବନତିର ସୂତ୍ରପାତ ।

ଉପନିଷଦ ଯୁଗ ପରେ ବୁଦ୍ଧ ଯୁଗ । ତହିଁର ଉଲ୍ଲେଖ ଏଠାରେ ନିଷ୍ପ୍ରୟୋଜନ । ବୁଦ୍ଧ ଭାରତମାତାର ତ୍ୟାଜ୍ୟ ପୁତ୍ର ।

ଏଥିଉତ୍ତାରୁ ପୁରାଣ ଯୁଗ । ବାଲ୍ମୀକି ରାମାୟଣ ପୁରାଣଭୁକ୍ତ ନୁହେଁ ଏହା ଗୋଟିଏ କାବ୍ୟ; ମାତ୍ର ଏଥିରେ ପ୍ରାଚୀନ ଇତିହାସ ଅଛି । ସୂର୍ଯ୍ୟବଂଶ ସୂର୍ଯ୍ୟ ତୁଲ୍ୟ ଦେଦୀପ୍ୟମାନ ବଂଶ; ମାତ୍ର ଏମାନଙ୍କ ଅସ୍ତିତ୍ୱ ଥିଲା କେବେ ? ଏମାନେ ଋଗ୍‌ବେଦର ପରବର୍ତ୍ତୀ ଲୋକ । ଲୋକ ମୁଖରେ ଏମାନଙ୍କର କାହାଣୀ ଥିଲା; ମାତ୍ର କୌଣସି ଗ୍ରନ୍ଥରେ ନ ଥିଲା । କବିମାନେ ବୀରଗାଥା ଅପେକ୍ଷା ଧର୍ମଗାଥାରେ ମନ ବଳାଇଲେ । ବାଲ୍ମୀକି ରାମଙ୍କର ସମସାମୟିକ ଲୋକ ନୁହନ୍ତି, ପରବର୍ତ୍ତୀ । ଯାହାହେଉ ସେ ଯେଉଁ ବୀର ଗାଥା ଓ ଅପୂର୍ବ ଚରିତ୍ର ଲୋକ ମୁଖରୁ ଶୁଣି ଗ୍ରନ୍ଥ ରଚନା କରି ଭାରତବାସୀଙ୍କୁ ଦେଇଯାଇଅଛନ୍ତି ଏଥିନିମନ୍ତେ ସେ ନମସ୍ୟ ।

ମହାଭାରତ ଓ ଅନ୍ୟାନ୍ୟ ପୁରାଣ ତଦ୍ରୂପ । ଏହି ରାଜା ଯୋଦ୍ଧା ଓ ବୀରମାନେ ଅନ୍ଧକାର ଯୁଗର ଲୋକ । କବିମାନେ ପ୍ରଚଳିତ କଥାରୁ ପ୍ରକାଣ୍ଡ ପ୍ରକାଣ୍ଡ ଗ୍ରନ୍ଥ ରଚନା କରିଅଛନ୍ତି ଏବଂ ଏଥିରେ ଦୈବୀଶକ୍ତିର ପ୍ରଭାବର ବାହୁଲ୍ୟ ଯୋଗୁଁ ଗୋଟିଏ ହେଲେ ଜାତୀୟ ଜୀବନର ସହାୟଭୂତ ନୁହେଁ ।

ପୁରାଣ ବା ଅନ୍ଧକାର ଯୁଗର ରାଜାମାନେ ସମ୍ରାଟ୍, ସସାଗରା, ପୃଥିବୀର ଅଧୀଶ୍ୱର ବୋଲି ବର୍ଣ୍ଣିତ ହୋଇଥିଲେ ସୁଦ୍ଧା ପ୍ରତ୍ୟେକେ ପୂର୍ଣ୍ଣ ଭାରତଭୂମିର ମଧ ଅଧୀଶ୍ୱର ନ

ଥିଲେ । ଏ ଦେଶ ପୂର୍ବରୁ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇଥିଲା ।

ସାମୟିକ ଯୁଦ୍ଧରେ ଯେ ପରାସ୍ତ ହେଲା ସେ ତା'ର ଅଧୀନ । ରାମ, ବାଳି, ଖରଦୂଷଣ ପ୍ରଭୃତିଙ୍କୁ ଅଜ୍ଞାତ ଥିଲେ । ଗୃହ ନିକଟସ୍ଥ ଲବଣକୁ ପରାସ୍ତ କରି ମଥୁରା ଜୟ କରିବାକୁ ପଡ଼ିଥିଲା । ଅର୍ଜୁନ ଯୁଧିଷ୍ଠିରଙ୍କ ନିମନ୍ତେ ଦିଗ୍‌ବିଜୟ କଲେ । ପୁଣି ଥରେ କର୍ଣ୍ଣ ଦୁର୍ଯ୍ୟୋଧନଙ୍କ ପାଇଁ ଦିଗ୍‌ବିଜୟ କଲେ । ଭାରତ ପ୍ରଜାର ସବୁଦିନେ ଦୁର୍ଦ୍ଦଶା । ଏଥିରୁ ଜଣାଯାଏ ଭାରତରେ କେବେ ଏକଛତ୍ର ଶାସନ ନ ଥିଲା କିମ୍ବା ମିଳିତ ଶାସନ ନ ଥିଲା । ଭ୍ରାତୃବିରୋଧ ବା ପରସ୍ପର ବିରୋଧ ନିତ୍ୟ ବ୍ୟାପାର । ପୂର୍ବ ସଂସ୍କୃତି କ୍ରମାନ୍ୱୟ ଚାଲିବ କିପରି ?

ଏ ତ ଗଲା ପୂର୍ବର କଥା । ଚନ୍ଦ୍ରଗୁପ୍ତଙ୍କଠାରୁ ଏଣିକି କି ଘଟଣା ? ଏ ତ ଅଳ୍ପ ଦିନର କଥା, ଐତିହାସିକ ଯୁଗର ବ୍ୟାପାର । ଚନ୍ଦ୍ରଗୁପ୍ତ ଓ ଅଶୋକ ଭାରତବର୍ଷର ଏକଛତ୍ର ସମ୍ରାଟ୍ ଥିଲେ । ଏ ଦୁହେଁ ଗୁପ୍ତବଂଶୀୟ ଏବଂ ଅଶୋକ ବୌଦ୍ଧ ହେତୁ ଏମାନଙ୍କର ନାମ ଜାତୀୟ ଜୀବନର କଳଙ୍କ । ଏମାନଙ୍କର ନାମ ଗୁଣ ଲେଖିବାକୁ ଗଲେ ଲେଖନ ମୁନ ଅପବିତ୍ର ହେବା କଥା । ଏଣୁ ଭାରତୀୟ କୌଣସି କାବ୍ୟ ବା ପୁରାଣରେ ଏମାନଙ୍କର ନାମ ନାହିଁ । ଏମାନଙ୍କ ଉତ୍ତାରେ ଭାରତର କାବ୍ୟ ଯୁଗ । ଏ ସମୟରେ ବଡ଼ ବଡ଼ କବିମାନେ ଜନ୍ମଗ୍ରହଣ କରିଥିଲେ । କାଳିଦାସ ମହାଭାରତରୁ, ଶୈବପୁରାଣରୁ, ରାମାୟଣରୁ ନାୟକ ନାୟିକାମାନଙ୍କର ଅନୁସନ୍ଧାନ କରି ଆଦିରସାତ୍ମକ କାବ୍ୟ ଲେଖି ଭାରତବାସୀଙ୍କି ସୁଖସାଗରରେ ଭାସମାନ କଲେ; ମାତ୍ର ସମସାମୟିକ ବା ତତ୍‌ପୂର୍ବ ବୀରମାନଙ୍କର ନାମୋଲ୍ଲେଖ କଲେ ନାହିଁ । ବୀରରସର ମାହାତ୍ମ୍ୟ କେବଳ କୁସୁମାୟୁଧରେ ଭବନେତ୍ର ଜନ୍ମା ବହ୍ନିରେ । ମାଘ, ଭାରବୀ ନୈଷଧ ଚରିତ ତଥୈବଚ । ସାହିତ୍ୟ ପରା ସଭ୍ୟତାର ମାପକାଠି ? କେଉଁ ସାହିତ୍ୟରେ ସଭ୍ୟତାର, ସଂସ୍କୃତିର, ବୀରତ୍ୱର ଉଲ୍ଲେଖ ଅଛି ? ଜାତୀୟ ଜୀବନ ଉଦ୍‌ବୋଧନ, ଉତ୍ତେଜନା ବାକ୍ୟ କେଉଁ ସାହିତ୍ୟରେ ଅଛି ?

ଯେଉଁ ସାହିତ୍ୟ କେବଳ କାଳ୍ପନିକ ଦେବଦେବୀ ଉପରେ ଆସ୍ଥା ରଖି ଓ ଭକ୍ତି କରି କାଳନିର୍ବାହ କରିବାର ଉପଦେଶ ଦିଏ ସେହି ସାହିତ୍ୟ, ସେହି ଜାତି ଆତ୍ମନିର୍ଭରଶୀଳ ହେବ କିପରି ? ସାହିତ୍ୟ ସମ୍ବନ୍ଧେ ଏତିକି ।

ଆଉ କାହିଁରୁ ପ୍ରାଚୀନ ସଂସ୍କୃତିର ବିଷୟ ଜାଣିପାରୁଁ ?

ପ୍ରାଚୀନ ସ୍ଥାପତ୍ୟ, ଗୃହ, ଅଟ୍ଟାଳିକା, ପୂର୍ତ୍ତକାର୍ଯ୍ୟରୁ ତ ? ଏସବୁ କୀର୍ତ୍ତିର ସ୍ଥାୟିତ୍ୱ ଶାସନର ଧର୍ମବିଶ୍ୱାସରୁ, ଦେଶ ନିଷ୍କଣ୍ଟକ କରିବାର ପ୍ରୟୋଜନରୁ, ଦେଶକୁ ସମୃଦ୍ଧିଶାଳୀ କରିବା ଇଚ୍ଛାରୁ, ଦେଶ ଜୟର ସ୍ମାରକ ଏବଂ ଶତ୍ରୁ ନି ାସନର ସ୍ମାରକ ନିମନ୍ତେ । ନିର୍ମାତାର ଧର୍ମବିଶ୍ୱାସ ହେତୁରୁ ବିଶେଷତଃ ନାମ ଚିରସ୍ଥାୟୀ କରିବା ଇଚ୍ଛାରୁ ମନ୍ଦିରର ଅସ୍ତିତ୍ୱ । ଭାରତବର୍ଷରେ ବଡ଼ ଛୋଟ ଅସଂଖ୍ୟ ମନ୍ଦିର ଅଛି; ମାତ୍ର ନାମଜାଦା ହିନ୍ଦୁ ମନ୍ଦିର ଅଷ୍ଟମ ଶତାବ୍ଦୀରୁ ପ୍ରାଚୀନତର ଥିବାର ଜଣାଯାଏ ନାହିଁ । ବିଦ୍ୟମାନ କେତେଗୋଟି ହିନ୍ଦୁ ମନ୍ଦିର ସମ୍ବନ୍ଧରେ ଆମର ଜାତିଭାଇମାନେ ଶତମୁଖରେ ପ୍ରଶଂସା କରି କହିଥିଲେ, ଏପରି ବୃହତ୍ ସୁନ୍ଦର ପ୍ରାଚୀନ ମନ୍ଦିର ଜଗତରେ ଆଉ ନାହିଁ । ପୁରୀ, କୋଣାର୍କ, ତାନଜୋର ପ୍ରଭୃତି । ତଥ୍ୟ ନିର୍ଦ୍ଧାରଣ ନିମନ୍ତେ ଭୂପୃଷ୍ଠର ଅନ୍ୟାନ୍ୟ ଦେଶର ପ୍ରାଚୀନ ମନ୍ଦିର ଓ ସ୍ଥାପତ୍ୟାଦି ପରୀକ୍ଷା କଲେ ଜଣାଯାଇପାରେ, ଉକ୍ତ ତିନି ଗୋଟି ଭାରତୀୟ ଶ୍ରେଷ୍ଠ ମନ୍ଦିର ସେମାନଙ୍କ ତୁଳନାରେ ନଗଣ୍ୟ ।

ପୁରୀ ଜଗନ୍ନାଥ ମନ୍ଦିରର ଉଚ୍ଚତା ୧୯୨ ଫୁଟ; ମାତ୍ର ଦ୍ୱାଦଶ ଶତାବ୍ଦୀରେ ଏହି ମନ୍ଦିର ନିର୍ମିତ । ପଣ୍ଡାମାନେ ମୁକ୍ତକଣ୍ଠରେ ପ୍ରକାଶ କରନ୍ତି ଏହି ମନ୍ଦିରମାନ ନିର୍ମାଣ ହେବା ସମୟ ମନୁଷ୍ୟର କଳ୍ପନାତୀତ । ସ୍ୱୟମ୍ଭୁ ଏଥିର ନିର୍ମାତା, ଭକ୍ତଗଣ ମୁଣ୍ଡ ହଲାଇ ସ୍ୱୀକାର କରିବେ ଏବଂ କହିବେ ଯେ ମନୁଷ୍ୟ ଛାର କି ଏହା ଗଢ଼ିପାରେ ? ଦେବକୃତ ଭାଇ, ଦେବକୃତ । ଦକ୍ଷିଣ ଆମେରିକାର ମାୟା ସଭ୍ୟତା ଓ ଇଙ୍କା ସଭ୍ୟତାର ନିଦର୍ଶନ ଯାହା କାଳକବଳରୁ ବଞ୍ଚିଛି ଏବଂ ଇଉରୋପୀୟ ସଭ୍ୟମାନଙ୍କର ଧର୍ମ ଜିଦିରୁ ଯାହା ରକ୍ଷା ପାଇଅଛି ତାହା ଦେଖିଲେ ବିସ୍ମୟାଭିଭୂତ ହେବାକୁ ପଡ଼େ । ଆଜି ମାୟା ନାହିଁ, ଆଜି ଇଙ୍କା ନାହିଁ, ଅଛି ସେମାନଙ୍କ ହସ୍ତ ନିର୍ମିତ ପ୍ରସ୍ତର ସ୍ତମ୍ଭ ଓ କାରିଗରି । ସେହି ଦକ୍ଷିଣ ଆମେରିକାର ଟିଆହୁଆନାକୋ ଜାତିର ନଗର, ମନ୍ଦିର, ରାଜସିଂହାସନର ଧ୍ୱଂସାବଶେଷ ୧୪୦୦୦ ବର୍ଷ ପୂର୍ବର ସଭ୍ୟତାର ସାକ୍ଷ୍ୟ ପ୍ରଦାନ କରୁଅଛି ।

ଆଫ୍ରିକା ମହାଦେଶର ପିରାମିଡ୍ ମହତ୍ତ୍ୱ ଆମମାନଙ୍କର କଳ୍ପନାର ଅଗୋଚର । ତାଞ୍ଜୋର ମନ୍ଦିରର ଶିଖରରେ ୭ ଟନ୍ ଓଜନର ଗୋଟିଏ ପ୍ରସ୍ତର ଅଛି; ମାତ୍ର କ୍ଷେଅପସ୍ ପିରାମିଡ଼ରେ ୨୩୦୦୦୦୦ ଗୋଟି ପ୍ରସ୍ତର ଅଛି, ପ୍ରତ୍ୟେକର ଓଜନ ୨୧ ଟନ୍ । ଏହି ପିରାମିଡ୍‌ର ଉଚ୍ଚାଗ୍ର ୨୫୦ ଫୁଟ, ଏହି

ମରୁପ୍ରଦେଶର ପ୍ରାଚୀନ ରାଜାମାନଙ୍କ ନିର୍ମିତ ସ୍ତମ୍ଭ, ତୋରଣ, ୍ସ, ଚିତ୍ର ଚିତ୍ରାକ୍ଷର ବାସ୍ତବିକ ବିସ୍ମୟୋତ୍ପାଦକ ।

ଶତ୍ରୁ ହସ୍ତରୁ ରକ୍ଷା ପାଇବା ଆଶାରେ ଖାଇ ଖନନ ଓ ାନ୍ଥୁ ନିର୍ମାଣ ଅନେକ ଦେଶରେ ଦେଖାଯାଏ । ଚୀନ ରାଜ୍ୟର ାନ୍ଥୁ ଏକ ଆଶ୍ଚର୍ଯ୍ୟ ବ୍ୟାପାର । ଭାରତବାସୀଙ୍କର କାନ୍ଥୁ ହିମାଳୟ; ସୁତରାଂ ଏ ଦେଶବାସୀଙ୍କର କାନ୍ଥୁ ନିର୍ମାଣର ବ୍ୟୟ ବହନ କରିବାକୁ ପଡ଼ି ନାହିଁ ।

ପୟଃପ୍ରଣାଳୀ, ଜଳ ନିର୍ଗମ ମାର୍ଗ, ଜଳ ନିରୋଧ ମାର୍ଗ ପ୍ରବାହିତ ନିମନ୍ତେ, ଦେଶର ଧନବୃଦ୍ଧି ନିମନ୍ତେ, ଶାସନକର୍ତ୍ତା । ନିର୍ମାଣ କରିବାର ବିଧେୟ । ଜୁଲିଆ କାର୍ଥଗୋ ନଗରର ଜଳ ସରବରାହ ନିମନ୍ତେ ଦ୍ୱିତୀୟ ଶତାବ୍ଦୀରେ ଯେ ବହୁ ମାଇଲ୍ ବିସ୍ତୃତ ପକ୍କା ବନ୍ଧ ନିର୍ମାଣ ହୋଇଥିଲା ସେଥିରୁ ୭ $\frac{୧}{୨}$ ମାଇଲ୍ ଲମ୍ବ ପକ୍କା ସ୍ତମ୍ଭ ଅଦ୍ୟାପି ବିଦ୍ୟମାନ । ସମକାଳୀନ ସେପରି କୌଣସି ଦେଶହିତକର ପକ୍କା ବନ୍ଧ ଏ ଦେଶରେ ବିଦ୍ୟମାନ ଥିବାର କିମ୍ବା କୌଣସି ରାଜମସ୍ତକକୁ ନିର୍ମାଣ ବିଷୟରେ ଆଲୋଡ଼ନ କରିଥିବାର ଜଣାଯାଏ ନାହିଁ । ଆମମାନଙ୍କର ଅଜ୍ଞତା ହୋଇପାରେ ।

ପ୍ରଥମ ଶତାବ୍ଦୀରେ ରୋମ୍ ଉପନିବେଶ ଟିଚ୍‌ମଡ଼ରେ ଗୋଟିଏ ରଙ୍ଗମଞ୍ଚ ନିର୍ମାଣ ହୋଇଥିଲା, ଯେଉଁଠାରେ କି ୪୦୦୦ ଦର୍ଶକର ସ୍ଥାନ ଥିଲା । ସହର ନିକଟସ୍ଥ ପର୍ବତ ଦେହ ଖନନ କରି ଏହି ରଙ୍ଗମଞ୍ଚ ପ୍ରସ୍ତୁତ ହୋଇଥିଲା । ପ୍ରାଚୀନ ଗ୍ରୀସ୍ ଦେଶରେ ଦୁଇ ଗୋଟି ଛୋଟ ବଡ଼ ବାହ୍ୟ ରଙ୍ଗମଞ୍ଚ ଥିଲା, ଯହିଁରେ ଯଥାକ୍ରମେ ୧୭୦୦୦ ଓ ୪୦୦୦୦ ଦର୍ଶକଙ୍କ ନିମନ୍ତେ ପ୍ରସ୍ତରାସନ ଥିଲା । ଗ୍ରୀସ୍ ଦେଶର ଅନ୍ୟାନ୍ୟ ସ୍ଥାପତ୍ୟ ବିଭବର ଉଲ୍ଲେଖ ବର୍ଣ୍ଣନାନୀତ ।

ଅନ୍ୟ ଦେଶମାନଙ୍କ କୀର୍ତ୍ତିମେଖଳାର ଯେ ଯତ୍‌ସାମାନ୍ୟ ବର୍ଣ୍ଣନା ଦିଆଗଲା ତା'ର ତୁଳନାରେ ଭାରତବର୍ଷର ଜନକୃତ ଗୌରବମୟ ପ୍ରାଚୀନ କୀର୍ତ୍ତ୍ୟାଦି ଅଛି କି ? ନାହିଁ, କାରଣ ? ଧର୍ମବିଦ୍ୱେଷ ଓ ଭାଇ ଭାଗ । ରାଜାମାନେ ମାତୃଭୂମିକୁ ଛିନ୍ନବିଛିନ୍ନ କରି ଭାଗ କଲେ ।

ସର୍ବୋପରି ଜାତିଭେଦ ଓ ଜାତିବିଦ୍ୱେଷ ଏକତାର ଅନ୍ତରାୟ ହେଲା । ରାଜ୍ୟମାନ ଖଣ୍ଡ ଖଣ୍ଡ ହେବାରୁ ବୃହତ୍ ବ୍ୟାପାର ନିମନ୍ତେ ଅର୍ଥର ଅନଟନ ହେଲା । ଆଜି ଯେଉଁ ରାଜ୍ୟ ସୂର୍ଯ୍ୟବଂଶର କାଲି ତାହା ଚନ୍ଦ୍ରବଂଶର କିମ୍ବା ଭୋଜବଂଶର । ଅକ୍ଷୟକୀର୍ତ୍ତି ରଖାଯିବ କେଉଁ ଆଶାରେ ?

କ୍ଷତ୍ରିୟଯାକ ଯୁଦ୍ଧ କରି ମଲେ । ବ୍ରାହ୍ମଣଙ୍କର ଯାଏଆସେ କେତେ ? ଯେ କୌଣସି ରାଜ୍ୟର ଅଧୀନରେ ମଧ୍ୟ ପୌରୋହିତ୍ୟ ବା ପାଚକତ୍ୱ ମିଳିପାରେ । ବୈଶ୍ୟ ବ୍ୟବସାୟୀ, କ୍ରୟ ବିକ୍ରୟ, ସର୍ବତ୍ର ସମାନ । ଶୂଦ୍ର ତ ଭୃତ୍ୟ ଜାତି, ତା'ର ମହତ୍ତ୍ୱ ବା କ'ଣ ? ଜାତି କି ନିୟମରେ କ୍ରମେ ଦୁର୍ବଳ ଓ ହତବୀର୍ଯ୍ୟ ହେଲା ଏବଂ ପ୍ରାଚୀନ ସଂସ୍କୃତି ରକ୍ଷା କରି ନ ପାରିବାର କାରଣ ଯାହା ତାହା ସଂକ୍ଷେପରେ ପ୍ରକାଶ କରାଗଲା ।

ଯୁଦ୍ଧ ବ୍ୟାପାର ଓ ବୀରତ୍ୱର ବର୍ଣ୍ଣନା ଯାହାକିଛି କାବ୍ୟ ନାଟକରେ ଅଛି ବା ଲୋକମୁଖରେ ଅଛି, ତାହା କେବଳ ଭ୍ରାତୃବିରୋଧ ଭ୍ରାତୃହତ୍ୟାର ବଡ଼ାଇ । କୌଣସି ରାଜା ଭାରତ ଛଡ଼ା ଅନ୍ୟତ୍ର ରାଜ୍ୟବିସ୍ତାର ନିମନ୍ତେ ଯାଇ ନାହାନ୍ତି ବା ଦେଶ ଜୟ କରି ନାହାନ୍ତି । ଅବଶ୍ୟ ବିଦେଶୀ ଶତ୍ରୁ କମ୍‌ସଂଖ୍ୟକ ଏ ଦେଶକୁ ଆକ୍ରମଣ କରିଥିଲେ; ମାତ୍ର ଯେଉଁମାନେ ଆକ୍ରମଣ କରିଅଛନ୍ତି ସେମାନେ ପରାସ୍ତ ହୋଇ ଫେରି ନାହାନ୍ତି ।

ଗ୍ରୀକ୍ ଆକ୍ରମଣରୁ ଯେ ଭାରତ ରକ୍ଷା ପାଇଥିଲା ତାହା ନୁହେଁ । ଆଲେକ୍‌ଜାଣ୍ଡାରଙ୍କର ଉପନିବେଶ ସ୍ଥାପନରେ ଲୋକସାନ ଥିଲା । ମୁସଲମାନ, ମୋଗଲ, ପଠାଣ ଭାରତବର୍ଷରୁ ପରାସ୍ତ ହୋଇ ଦେଶକୁ ଫେରିଯିବାର ତେଣେ ଥାଉ ରାଜ୍ୟ ବିସ୍ତାର କରି ବସିଲେ । ସେତେବେଳେ କ୍ଷତ୍ରିୟମାନଙ୍କର ବୀରତ୍ୱ କେଉଁଆଡ଼େ ଥିଲା ? କ୍ରମେ ଇଂରେଜ ଆସି ସମଗ୍ର ଦେଶ ହିନ୍ଦୁ ମୁସଲମାନ ହାତରୁ ଛଡ଼ାଇ ନେଲେ । ଏ ଦୁଇ ଜାତି କେଉଁ ବୁଦ୍ଧିମତ୍ତା କେଉଁ ଯୁଦ୍ଧ କୌଶଳ ବା କେଉଁ ବୀରତ୍ୱ ଦେଖାଇ ଦେଶ ରକ୍ଷା କଲେ ? ଭାରତରେ କି ଲୋକର ଅଭାବ ? ମନୁଷ୍ୟର କି ବୁଦ୍ଧିର ଅଭାବ ? ଦଶହଜାର ମାଇଲ ଦୂରରୁ କାଷ୍ଠନିର୍ମିତ ଅର୍ଣ୍ଣବ ପୋତରେ ଭାରତ ତୁଳନାରେ ମୁଷ୍ଟିମେୟ ଯୋଦ୍ଧା ଆସି ଭାରତକୁ ସ୍ୱାୟତ୍ତ କରିନେଲେ । ଭାରତୀୟ ରାଜପୁରୁଷମାନେ ପୁତ୍ତଳିକା ପରି କେତେକଙ୍କର ହସ୍ତର କ୍ରୀଡ଼ନକ ହେଲେ ।

ଭାରତୀୟ ଜାତିର ପତନର ପନ୍ଥା କେଉଁ ଦିନରୁ ଚାଲିଲା ତାହା ନିଶ୍ଚିତ ରୂପେ କହିବା କଠିନ । ତଥାପି ବିଜ୍ଞ ଲୋକେ ଭାରତୀୟ ସଂସ୍କୃତିର ଏତେ ପ୍ରଶଂସା କରିବାକୁ ବଦ୍ଧପରିକର ହୁଅନ୍ତି, ତାହା ଶୁଣିଲେ ଲଜ୍ଜିତ ଓ ମର୍ମାହତ ହେବାକୁ ହୁଏ ।

ମୁର୍ଶିଦାବାଦରେ କ୍ଲାଇବ୍ ପ୍ରବେଶ କରିବା ଦିନ ଯେ ଜନତା ତାଙ୍କର ଦୃଷ୍ଟିଗୋଚର ହେଲା ତାହା ତାହାଙ୍କୁ ବିସ୍ମିତ କରିଥିଲା, ସେ ସାକ୍ଷ୍ୟ ଦେଇଅଛନ୍ତି ।

"If they had an inclination to have destroyed the Europians they could have done it with sticks and stones."

ଭୟ ନାହିଁ, ଭାରତ ସନ୍ତାନ ଯେ ଭକ୍ତ, ବୈଷ୍ଣବ କାଷ୍ଠପୁତ୍ତଳିକା ।

•

## ବୁଦ୍ଧ

ବୁଦ୍ଧ ଯେ ଭାରତ ଜନନୀର ଜଣେ ଶ୍ରେଷ୍ଠ ପୁତ୍ର ଏହା ଅଧିକାଂଶ ଭାରତବାସୀଙ୍କର ଅଗୋଚର । ବୁଦ୍ଧ କାଳ୍ପନିକ ଦେବତା ନୁହନ୍ତି, ପ୍ରାଗୈତିହାସିକ ବୀରପୁରୁଷ ବା ଧର୍ମପ୍ରବର୍ତ୍ତକ ନୁହନ୍ତି । ଇତିହାସ ଯୁଗର ସେ ମହାପୁରୁଷ ନିର୍ମଳଚିତ୍ତରେ ବିଚାର କଲେ ବୁଦ୍ଧ ଜଗତର ଶ୍ରେଷ୍ଠ ପୁରୁଷ । ଯେଉଁ ମହାପୁରୁଷର ଜ୍ଞାନ, ଦୟା ଓ ମହତ୍ତ୍ୱ ଅଗାଧ ବୋଲି ଆଜି ସମସ୍ତ ଦେଶର ବିଜ୍ଞବ୍ୟକ୍ତିମାନେ ନତମସ୍ତକରେ ସ୍ୱୀକାର କରୁଅଛନ୍ତି, ତାଙ୍କୁ ହିନ୍ଦୁମାନେ ସନାତନ ଧର୍ମ ବିଦ୍ୱେଷୀ ବୋଲି ତ୍ୟାଗ କରିବା ଦ୍ୱାରା ଅଯୋଗ୍ୟତାର ପରିଚୟ ଦେଲେ ସିନା !

ବୌଦ୍ଧଧର୍ମର ନିନ୍ଦା, ବୌଦ୍ଧମାନଙ୍କୁ ଅପବାଦ ଦେବା ଏକ ସମୟରେ ହିନ୍ଦୁ କବିମାନଙ୍କର ବ୍ୟବସାୟ ଥିଲା । ପୁରାଣର ରାଜା ଓ ବୀରପୁରୁଷମାନେ ବୁଦ୍ଧ ଜନ୍ମ ପୂର୍ବରୁ ବୋଲି ଶାସ୍ତ୍ରମାନେ ମୁକ୍ତକଣ୍ଠରେ ଉଲ୍ଲେଖ କରିଥିଲେ ମଧ ପ୍ରକ୍ଷିପ୍ତକାରୀମାନଙ୍କର ସେ ଜ୍ଞାନର ଅଭାବ ଥିଲା । ଏଣୁ ସେମାନେ ପୁରାଣ ଓ କାବ୍ୟର ମହତ୍‌ବ୍ୟକ୍ତିଙ୍କ ମୁଖରେ ବୁଦ୍ଧନିନ୍ଦାର ଉଲ୍ଲେଖ କରିଅଛନ୍ତି । ଏମନ୍ତ କି ରାମ ମୁଖରେ ବୁଦ୍ଧ ନିନ୍ଦା କରାଇବାକୁ କବିମାନେ ଛାଡ଼ି ନାହାନ୍ତି । ଚିତ୍ରକୂଟରେ ଯେତେବେଳେ ରାମ ଅବସ୍ଥାନ କରୁଥିଲେ ଭରତ ତାଙ୍କୁ ଫେରାଇବା ନିମନ୍ତେ କୌଶଲ୍ୟା ବଶିଷ୍ଠାଦିଙ୍କ ସହିତ ଉପସ୍ଥିତ ହେଲେ । ସେହି ପବିତ୍ରାଶ୍ରମରେ ପୁଣ୍ୟାତ୍ମାମାନଙ୍କ ସମକ୍ଷେ ରାମ ଭରତଙ୍କୁ ରାଜ୍ୟ ଶାସନ ପଦ୍ଧତି ଉପଦେଶ ଦେବା ଛଳରେ କହିଲେ, 'ଯଃ ବୁଦ୍ଧ ସଚୌରଃ'। କବିର କଳ୍ପନା ଯେ ରାମ ଯେଉଁ ବ୍ୟକ୍ତିଙ୍କୁ ନିନ୍ଦାକଲେ ଭାରତବାସୀ ଅବଶ୍ୟ ତାଙ୍କୁ ଘୃଣା କରିବେ । କି ନୀଚ ପ୍ରବୃତ୍ତି । କି ଅବିମୃଷ୍ୟକାରିତା । ରାମ କାହିଁ ବୁଦ୍ଧ କାହିଁ ? ଯୁଗଯୁଗାନ୍ତରର ପ୍ରଭେଦ ? ରାମ ପରମ ପୁରୁଷ, ବୁଦ୍ଧ ପରମ ପୁରୁଷ । ସ୍ୱାର୍ଥପର ଯେ ନିତାନ୍ତ ଅପକର୍ମ କରିପାରେ ଏହା ତହିଁର ଜାଜ୍ୱଲ୍ୟମାନ ନିଦର୍ଶକ ।

ସ୍ୱାର୍ଥପର ହିନ୍ଦୁ ଧର୍ମଧ୍ୱଜୀମାନେ ନିନ୍ଦା ଅପବାଦ ଦ୍ୱାରା ଭାରତବାସୀଙ୍କ ମନରୁ ବୁଦ୍ଧଙ୍କୁ ନିର୍ବାସିତ କରିଅଛନ୍ତି । ପାଶ୍ଚାତ୍ୟ ପଣ୍ଡିତଗଣ କେତେ ବର୍ଷ ହେଲା ଭାରତ, ସିଂହଳ, ବ୍ରହ୍ମଦେଶ, ଚୀନ୍, ଜାପାନ, ତିବ୍ବତର ପୁସ୍ତକାଗାରମାନ ତନ୍ନ ତନ୍ନ କରି ଦେଖି ବୁଦ୍ଧ ମହିମା ପ୍ରକାଶ କରିବାରେ ଯତ୍ନଶୀଳ ହୋଇଅଛନ୍ତି । ଏଣୁ ଆଜି ଭାରତୀୟ ପାଠ୍ୟପୁସ୍ତକରେ ମଧ ବୁଦ୍ଧଙ୍କର ନାମ ଓ ସାମାନ୍ୟ ଜୀବନୀ ପ୍ରକାଶ ପାଉଅଛି । ଅଦ୍ୟାପି ଭାରତବାସୀ ବୁଦ୍ଧ ସମ୍ବନ୍ଧରେ ଅଜ୍ଞ ଏବଂ ଜାଣିବାକୁ ମଧ କାହାରି ଚେଷ୍ଟା ନାହିଁ ।

ଆହୁରି ଗୋଟିଏ କଥା । ଭାରତବାସୀ କେହି ଯେ ବୁଦ୍ଧଙ୍କ ମହତ୍ତ୍ୱ ବୁଝି ନ ଥିଲେ ଏପରି ନୁହେଁ । ତାଙ୍କୁ ମହାଯୋଗୀ ଈଶ୍ୱରାବତାର ବୋଲି ସ୍ୱୀକାର କରିଥିଲେ ମାତ୍ର ସ୍ୱାର୍ଥ ଉପରେ ବିଶ୍ୱାସ ଏ ଦେଶବାସୀଙ୍କ ବଡ଼ ନୁହେଁ । ଶଙ୍କରାଚାର୍ଯ୍ୟ ବୌଦ୍ଧ ବିଦ୍ୱେଷୀ ହେଲେ ମଧ ମୁକ୍ତକଣ୍ଠରେ ଗାଇଅଛନ୍ତି—

ଧରାବଦ୍ଧପଦ୍ମାସନସ୍ଥାଙ୍ଗଯଷ୍ଟି
ନିଁୟମର୍ଯ୍ୟାନୀକଂ ଦତ୍ତନାଶାଗ୍ର ଦୃଷ୍ଟି
ଯ ଆସ୍ତେ କଲୌ ଯୋଗିନାଂ ଚକ୍ରବର୍ତ୍ତୀ
ସ ବୁଦ୍ଧ ପ୍ରବୁଦ୍ଧୋଽସ୍ତି ମେ ଚିତ୍ତବୃତ୍ତିଃ ।

ଜୟଦେବ ଆପଣା ସ୍ତୁତିରେ ବୁଦ୍ଧଙ୍କର ମତ ସଂକ୍ଷେପରେ ବର୍ଣ୍ଣନା କରି ଜୟଜଗଦୀଶହରେ ବୋଲି ନମସ୍କାର କରିଅଛନ୍ତି—

ନିନ୍ଦସି ଯଜ୍ଞବିଧେ ରହହଶ୍ରୁତି ଜାତଂ
ସଦୟ ହୃଦୟ ଦର୍ଶିତ ପଶୁଘାତଂ
କେଶବ ଧୃତବୁଦ୍ଧଶରୀର,
ଜୟ ଜଗଦୀଶ ହରେ ।

ଅବତାର ବାଦରେ ବୁଦ୍ଧଙ୍କର ସ୍ଥାନ ଅଛି ନୀଳାଚଳ ବିହାରୀ ବୁଦ୍ଧ ବୋଲି ଲୋକମୁଖରୁ ଶୁଣାଯାଏ । ଓଡ଼ିଆ ରାମରତନ ଗୀତା ପ୍ରଭୃତି ଅନେକ କ୍ଷୁଦ୍ର ପୁସ୍ତକରେ ଉକ୍ତ ବିଷୟର ସ୍ପଷ୍ଟ ଉଲ୍ଲେଖ ଅଛି । ତଥାପି ବୁଦ୍ଧ ଭାରତବାସୀଙ୍କି ଅଜ୍ଞାତ ।

ବୁଦ୍ଧ ଜୀବନୀ ଲେଖିବା କିମ୍ବା ବୌଦ୍ଧଧର୍ମ ସମ୍ବନ୍ଧେ ଆଲୋଚନା ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ହଠାତ୍ ଅହିଂସା ବିଷୟସ୍ମରଣ ହେବାରୁ ଏ ପ୍ରବନ୍ଧର ଆରମ୍ଭ ଏବଂ ପ୍ରସଙ୍ଗକ୍ରମେ ଉପରୋକ୍ତ ମନ୍ତବ୍ୟ । କାରଣ ବୁଦ୍ଧଠାରୁ ଅହିଂସା ଧର୍ମର ପ୍ରଚାର ବୋଲିବା ଅଯୌକ୍ତିକ ନୁହେଁ ।

ଯେତେବେଳେ ଯାଗଯଜ୍ଞର ପ୍ରାଦୁର୍ଭାବ ଥିଲା ପଶୁବଳିକୁ ବ୍ରାହ୍ମଣମାନେ ବିଧିଜାତ ହିଂସା ବୋଲି ପ୍ରଚାର କରୁଥିଲେ, ସେତେବେଳେ ବୁଦ୍ଧଦେବଙ୍କର ଆବିର୍ଭାବ । ସ୍ୱର୍ଗବାସ ଲାଳସାରେ ରାଜାମାନେ ଗୋମେଧ, ଅଶ୍ୱମେଧ ଯାଗଦ୍ୱାରା ଭାରତାକାଶକୁ ଧୂମାୟମାନ କରୁଥିଲେ ଏବଂ ଏଥିନିମନ୍ତେ ବ୍ରାହ୍ମଣ ମୁଖରେ ଅଜସ୍ର ପ୍ରଶଂସାବାଦ ଘୋଷିତ ହେଉଥିଲା । ବିଜ୍ଞଚୂଡ଼ାମଣି ବୁଦ୍ଧଦେବଙ୍କର ଏତାଦୃଶ ପଶୁବଳି ଅସହ୍ୟଣୀୟ ଥିଲା । ତଦାନୀନ୍ତନ ଲୋକମାନଙ୍କୁ ନୈତିକ ଆଚରଣରେ ସ୍ଖଳିତ ହେବାର ଦେଖି ତାହାଙ୍କ ମନ ବ୍ୟାକୁଳ ହେଲା । ସତ୍ୟଧର୍ମର ପ୍ରତିଷ୍ଠା ନିମନ୍ତେ ଦେଶ, ଐଶ୍ୱର୍ଯ୍ୟ, ସ୍ତ୍ରୀ, ପୁତ୍ର ଓ ରାଜଶ୍ରୀ ତ୍ୟାଗ କରି ତପସ୍ୟା ନିମନ୍ତେ ସେ ବନକୁ ଗଲେ । ନିରାହାର, କାୟକ୍ଳେଶରେ ନିବିଷ୍ଟଚିତ୍ତରେ ସତ୍ୟର ତତ୍ତ୍ୱାନୁସନ୍ଧାନ କଲେ । ସେ ଯେଉଁ ଧର୍ମ ଆବିଷ୍କାର କଲେ ସେଥିରେ ସାମାଜିକତା ନୁହେଁ । ଜାତି ନିର୍ବିଶେଷରେ ତାହା ଦେୟ ଓ ଗ୍ରାହ୍ୟ । ବିଜ୍ଞାନସମ୍ମତ ଯାହା କାଳଭେଦରେ ପରିବର୍ତ୍ତନୀୟ ନୁହେଁ । ଜ୍ଞାନ ଉପଲବ୍ଧିଦ୍ୱାରା ଦୋଷ ବା ପାପରୁ ମୁକ୍ତି ଏହି ଧର୍ମର ଭିତ୍ତି । ଜ୍ଞାନ ଅର୍ଥ ସତ୍ୟର ପରିଚୟ ଏବଂ ସତ୍ୟ ଗାଢ଼ ଗବେଷଣା ଦ୍ୱାରା ଲଭ୍ୟ । ସତ୍ୟ ନିମନ୍ତେ ଅହମିକା ଓ ସମଗ୍ର ସ୍ୱାର୍ଥାବଳୀ ଦ୍ୱାରା ପାପରୁ ମୁକ୍ତି ଏବଂ ତଜ୍ଜନିତ ସୁଖ ନିର୍ବାଣ । ଅହିଂସା ପରମଧର୍ମ । ଶୀଳ, ଦୟା ଓ ପ୍ରେମଦ୍ୱାରା ଜନମନ ଜୟକରିବା ହିଁ ବୌଦ୍ଧର କର୍ତ୍ତବ୍ୟ ।

କାଳକ୍ରମେ ବୌଦ୍ଧଧର୍ମ ବିସ୍ତୃତି ଲାଭ ସଙ୍ଗେ ସଙ୍ଗେ ଅନେକ ମତ ଓ ଶାଖାପ୍ରଶାଖାରେ ପରିଣତ ହେଲା । ହିନ୍ଦୁମାନଙ୍କର ଅଯଥା ଲାଞ୍ଛନା ଭାରତୀୟ ମନରେ ସେ ଶିକ୍ଷାସ୍ରୋତକୁ କଳୁଷିତ କଲା । ପୁରାଣମାନଙ୍କର ଅଧ୍ୟାୟ ଅଧ୍ୟାୟରେ ବୌଦ୍ଧମତର ଦୟା ଅହିଂସା ସ୍ୱାର୍ଥତ୍ୟାଗର ଉଦାହରଣ ବିଦ୍ୟମାନ ଥିଲେ ସୁଦ୍ଧା ତାହା ବୌଦ୍ଧଧର୍ମ ପ୍ରସୂତ ବୋଲି ଜାଣିବାର ଉପାୟ ନାହିଁ । ଏଣୁ ବୁଦ୍ଧଙ୍କର ପ୍ରକୃତ ମହତ୍ତ୍ୱ ଓ ଉଦାରତା ସମ୍ବନ୍ଧେ ମନ୍ତବ୍ୟ ପ୍ରକାଶ କରିବାକୁ ଭାରତବାସୀର ଯୋଗ୍ୟତା ନାହିଁ ।

ଆଜିକାଲି ଅହିଂସା ଓ ସ୍ୱାର୍ଥତ୍ୟାଗଦ୍ୱାରା ଶତ୍ରୁ କିମ୍ବା ଅତ୍ୟାଚାର କବଳରୁ ରକ୍ଷା ପାଇବାର ଆକାଂକ୍ଷା ବଳବତୀ ହେଉଅଛି । ଏ ଚେଷ୍ଟା ନୂତନ ନୁହେଁ । ବୁଦ୍ଧ କହିଅଛନ୍ତି ଯେ, କର୍ମ ପୁନର୍ଜନ୍ମ ଲାଭ କରେ, ଯେଉଁ କର୍ମ କରାଯାଏ ତାହା ଅମର । ଜନ୍ମରୁ ଜନ୍ମାନ୍ତରକୁ ତାହା କିପରି ପ୍ରସାର ଲାଭକରେ ତାହା ଅଭାବନୀୟ, ତଥାପି ଏହା ସତ୍ୟ । ଥରେ ଯେ ଅହିଂସାର ଉପଦେଶ ଓ ଉଦାହରଣଦ୍ୱାରା ଚାଳିତ ହୋଇଅଛି, ତାହା ହିଂସା ସହିତ ସମାନ ଗତିରେ ଚାଲିଛି । କେହି ହିଂସାର ପକ୍ଷପାତୀ, କେହି କେହି ଅହିଂସାର ପକ୍ଷପାତୀ । ବୀରମାନେ ହିଂସାର ପକ୍ଷପାତୀ । ଗୀତା ଧର୍ମମତର ଖିଚୁଡ଼ି ତଥାପି ହିଂସାର ପକ୍ଷପାତୀ । ଅହିଂସାଦ୍ୱାରା ଜଗତ ଜୟକରିବାର ପ୍ରଥମ ଉପାୟ ବୋଲି ବୁଦ୍ଧ ପ୍ରକାଶ କରିଅଛନ୍ତି । ବୁଦ୍ଧଙ୍କ ଜୀବିତାବସ୍ଥାରେ ଅହିଂସା କିପରି ଭାବରେ ପାଳିତ ହେଉଥିଲା ଏବଂ ଲୋକେ ତାକୁ ପରମଧର୍ମ ବୋଲି ସ୍ୱୀକାର କରିଥିଲେ ତହିଁର ଗୋଟିଏ ଉଦାହରଣ ଉଲ୍ଲେଖ କରି ଉପସଂହାର କରାଯାଉ ।

ପୂର୍ଣ୍ଣନାମକ ଜଣେ ଦାସୀପୁତ୍ର ବୁଦ୍ଧଦେବଙ୍କର ଶରଣ ନେଇ ଦୀକ୍ଷା ଗ୍ରହଣ କଲା । ବୁଦ୍ଧ ଉପଦେଶ ଦେଲେ ଯେ ତ୍ୟାଗହିଁ ଧର୍ମର ମୂଳ । ପୂର୍ଣ୍ଣ ଧର୍ମପ୍ରଚାରରେ ମନ ବଳାଇଲା । ସେ ସମୟରେ ଶ୍ରୋଣାପରାନ୍ତ ନାମରେ ଗୋଟିଏ ଦେଶ ଥିଲା । ସେଠାର ଲୋକମାନେ କ୍ରୂର ଓ ବର୍ବର ଥିଲେ । ଏହି ଲୋକମାନଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରିବା ଅଭିପ୍ରାୟରେ ପୂର୍ଣ୍ଣ ବୁଦ୍ଧଦେବଙ୍କର ଅନୁମତି ମାଗିଲା । ବୁଦ୍ଧଦେବ କହିଲେ ସ୍ରୋଣା ପରାନ୍ତଲୋକମାନେ ଯେଉଁମାନଙ୍କ ମଧ୍ୟରେ ତୁମେ ବାସ କରିବାକୁ ଇଚ୍ଛାକର— କ୍ରୋଧୀ, କ୍ରୂର କଠୋରକର୍ମା ଓ ଦାମ୍ଭିକ । ହେ ପୂର୍ଣ୍ଣ, ତମକୁ ଦେଖି ତମ ସମ୍ମୁଖରେ ଦୁର୍ବାକ୍ୟ, କହିବେ, ଅପମାନ ସୂଚକ ଗାଳି ଦେବେ ଏବଂ କ୍ରୋଧାନ୍ଧ ହୋଇ ତର୍ଜନ ଗର୍ଜନ କରିବେ, ସେ କଥାକି ତମେ ବିଚାରିଅଛ ? ପୂର୍ଣ୍ଣ ଉତ୍ତର ଦେଲା ଯଦି ସ୍ରୋଣାପରାନ୍ତକବାସୀ—କ୍ରୋଧାନ୍ଧ ହୋଇ ମତେ ବୀଭତ୍ସ ଗାଳି ଦେବେ, ତର୍ଜନ ଗର୍ଜନ କରିବେ, ତେବେ ମୁଁ ଏହା ଭାବିବି ଯେ ସ୍ରୋଣାପରାନ୍ତକମାନେ ବଡ଼ ଶାନ୍ତ, ସୁଶୀଳ ଓ ଉତ୍ତମ, ଯେହେତୁ ସେମାନେ ମତେ ମୁଷ୍ଟ୍ୟାଘାତ କଲେ ନାହିଁ କିମ୍ବା ପ୍ରସ୍ତର ମାଇଲେ ନାହିଁ ।

କିନ୍ତୁ ଯେବେ ସ୍ରୋଣାପରାନ୍ତକମାନେ ତମକୁ ମୁଷ୍ଟ୍ୟାଘାତ କରନ୍ତି କିମ୍ବା ପ୍ରସ୍ତର ମାରନ୍ତି ତେବେ କି ବିଚାର କରିବ ?

ମୁଁ ସେମାନଙ୍କୁ ବଡ଼ ଶାନ୍ତ, ସୁଶୀଳ, ଉତ୍ତମ ବୋଲି ଭାବିବି, ଯେହେତୁ ସେମାନେ ମୋ ପ୍ରତି ଖଣ୍ଡାଘାତ ଓ ଯଷ୍ଟ୍ୟାଘାତ କଲେ ନାହିଁ ।

କିନ୍ତୁ ଯେବେ ସେମାନେ ଖଣ୍ଡାରେ କିମ୍ବା ବାଡ଼ିରେ ତମକୁ ଆଘାତ କରନ୍ତି ସେ ସମ୍ବନ୍ଧେ ବିଚାର କରିଅଛ କି ?

ମୁଁ ସେମାନଙ୍କୁ ସୁଶୀଳ ଓ ଉତ୍ତମ ଭାବିବି, ଯେହେତୁ ସେମାନେ ମୋତେ ଜୀବନରୁ ବଞ୍ଚିତ ନ କଲେ ।

କିନ୍ତୁ ଯଦି ସେମାନେ ତମର ଜୀବନ ନାଶ କରନ୍ତି ତାହା ତମେ ଭାବିଅଛ କି ?

ସ୍ରୋଣାନ୍ତକମାନେ ସୁଶୀଳ ଓ ଉତ୍ତମ ବୋଲି ଭାବିବି, କାରଣ ସେମାନେ ମତେ ସାମାନ୍ୟ ଯନ୍ତ୍ରଣାରେ ଏହି ବାସନାପୂର୍ଣ୍ଣ ଜୀବନରୁ ମୁକ୍ତି ପ୍ରଦାନ କଲେ ।

ବୁଦ୍ଧଦେବ କହିଲେ—''ପୂର୍ଣ୍ଣ । ଉତ୍ତମ, ତୁମେ ଜିତକ୍ରୋଧ, ତମେ ସ୍ରୋଣାପରାନ୍ତକ ଭୂମିରେ ବାସ କରିପାରିବାକୁ ଯୋଗ୍ୟ । ନିଜେ ଶାନ୍ତିଲାଭ କର, ସେମାନଙ୍କୁ ଶାନ୍ତ କର, ପରକୁ ମୁକ୍ତି ଦିଅ, ତମେ ମୁକ୍ତ ହୁଅ ତମେ ନିର୍ବାଣ ଲାଭକର ଏବଂ ଅନ୍ୟମାନଙ୍କର ନିର୍ବାଣଲାଭରେ ସହାୟ ହୁଅ ।''

ଏହାହିଁ ବୌଦ୍ଧ ଧର୍ମର ପ୍ରକୃତ ଆଦର୍ଶ । କେଉଁ ସୂତ୍ରରେ ଗାନ୍ଧିଙ୍କଠାରୁ ଏଥିର ଲେଶମାତ୍ର ଆସିଲା ତାହା ତାଙ୍କୁ ଜଣା ।



## ଯୁଦ୍ଧ ଓ ଗୀତା

ଅଦ୍ୟ 'ଭଞ୍ଜପ୍ରଦୀପ' ସମ୍ପାଦକଙ୍କର ସ୍ମାରକ ଲିପି ବା ତାଗିଦ୍ ପତ୍ର ହସ୍ତଗତ ହେଲା । ଅଦ୍ୟ ଦୁର୍ଗାଷ୍ଟମୀ ପର୍ବ ଓ ରାଜପୁତ୍ରୀଙ୍କର ଜନ୍ମତିଥି । ମହିଷ-ମର୍ଦ୍ଦିନୀଙ୍କର ପୂଜା, ଶକ୍ତି ପୂଜାର ସ୍ମାରକ । ଶକ୍ତି-ପ୍ରଦର୍ଶନର ପାତ୍ର ନାହିଁ । ଏଣୁ ଭାରତ ସନ୍ତାନ ମହିଷ ଛାଗ ବଳିଦ୍ୱାରା ଶକ୍ତିର ପ୍ରଭାବ ପ୍ରକାଶ କରନ୍ତି । ଆଜି ରାତ୍ରରେ ନିଶାପୂଜାରେ ଅସଂଖ୍ୟ ମହିଷ ଓ ଛାଗର ପ୍ରାଣ ନାଶ ହେବ, ଏଣୁ ଏ ରାତ୍ରିର ନାମ ମଧ କାଳରାତ୍ରି । ଶକ୍ତିର ଅଯଥା ପ୍ରୟୋଗ କରିବାର ଯୋଗ୍ୟତା ନାହିଁ । ମାନ୍ତ୍ରିକମାନେ ଓ ଶକ୍ତି ଭକ୍ତିମାନେ ଖଡ଼୍ଗହସ୍ତ ହେବେ ।

ରାମ ରାବଣର ଯୁଦ୍ଧକଥା ମନେପଡ଼େ । ବଳଦର୍ପିତ ରାବଣ କେବଳ ଭାର୍ଯ୍ୟା ଓ ଭ୍ରାତା ସହାୟଭୂତ ରାମଙ୍କୁ ଅଯଥା କି କଷ୍ଟ ନ ଦେଲା ? ରାମ ବୀର୍ଯ୍ୟ ଓ ବୁଦ୍ଧିଦ୍ୱାରା ରାବଣକୁ ନାଶ କରି ଦୁଃଖିନୀ ସୀତାଙ୍କୁ ଉଦ୍ଧାର କଲେ । ସ୍ୱଶକ୍ତି ପ୍ରଭାବରୁ ରାମଙ୍କର ଜୟ । ଶାକ୍ତମାନେ ଶକ୍ତି ବା ଦୁର୍ଗାଙ୍କର ସାହାଯ୍ୟରେ ରାମଙ୍କର ଜୟ ଓ ଶରତ୍‌କାଳୀନ ପୂଜାର ସୃଷ୍ଟି ବା ଅକାଳରେ ଉଦ୍‌ବୋଧନ ବୋଲି ଗୋଟିଏ ମତ ସୃଷ୍ଟି କରିଅଛନ୍ତି । ଆଜି ରାମାୟଣରେ ଏ ପ୍ରସଙ୍ଗ ନ ଥିଲେ ମଧ ଲୋକେ ବିଶ୍ୱାସ କରନ୍ତି ।

ପୁଣି ଦେବାସୁର ଯୁଦ୍ଧ ବ୍ୟାପାର ଚଣ୍ଡୀରେ ବିସ୍ତାର ଭାବରେ ବର୍ଣ୍ଣିତ । ବଳଦର୍ପିତ ଅସୁରମାନେ ଦେବତାମାନଙ୍କୁ ଅଯଥା ଅତ୍ୟାଚାର କରନ୍ତି, କଷ୍ଟ ଦିଅନ୍ତି; କିନ୍ତୁ ଶେଷରେ ଦେବଦ୍ୱାରା କିମ୍ବା ଦେବୀଦ୍ୱାରା ଅସୁରମାନଙ୍କର ପରାଜୟ ହୁଏ । ଦେବୀ ମହିଷାସୁର, ଶୁମ୍ଭ, ନିଶୁମ୍ଭ, ରକ୍ତବୀଜ ପ୍ରଭୃତି ଅନେକ ଦୈତ୍ୟ ନିଧନ କରି ଦେବତାମାନଙ୍କୁ ଶତ୍ରୁ କବଳରୁ ରକ୍ଷା କରିଥିବାର ଚଣ୍ଡୀ ବା ଦେବୀ-ମାହାତ୍ମ୍ୟରେ ବର୍ଣ୍ଣିତ ହୋଇଅଛି । ଏହି ମାହାତ୍ମ୍ୟରୁ ତନ୍ତ୍ର ପୂଜାର ସୃଷ୍ଟି । ଅସୁରମାନେ ଏବେ ଏକାନ୍ତ ବିରଳ; ତଥାପି ବଳି, ହୋମ, ମାଂସ ଓ ମଦ୍ୟ ପ୍ରଭୃତି ଆସୁରୀ ଉପଚାରର ଅଭ୍ୟାସ ଚାଲିଛି । ମନୁଷ୍ୟ ହିଁ ଦେବତା, ମନୁଷ୍ୟ ହିଁ ଅସୁର । ରୂପ ଆକାରର ବା ସାହସରେ ଭୀଷ୍ମ ଓ ଶିଶୁପାଳକୁ ଏକ ବୋଲାଯାଇପାରେ, ମାତ୍ର ଗୁଣର ବୈଷମ୍ୟ ଥିଲା । ଜଣେ ସାଧୁ, ଶାନ୍ତ; ଧୀର ଓ ସ୍ଥିର; ଜଣେ ଦର୍ପିତ, ଉଦ୍ଧତ । ଏଣୁ ଭୀଷ୍ମ ଶ୍ରେଷ୍ଠ ମନୁଷ୍ୟ ବା ଦେବତୁଲ୍ୟ । ଶିଶୁପାଳ କୃଷ୍ଣଭ୍ରାତା, ମାତ୍ର ନରପୀଡ଼କ, ଉଦ୍ଧତ ହେତୁ ଅସୁର । କୃଷ୍ଣ ପିତା ବସୁଦେବ ଶ୍ରେଷ୍ଠମାନବ, ମାତୁଳ କଂସ ଅସୁର, ଭାଗୀନେୟ କୃଷ୍ଣ ଦେବତା, ଭଗବାନ । କୌଣସି କାଳରେ ଏ ଧରାପୃଷ୍ଠରେ ଦେବତା ନ ଥିଲେ, ଅସୁର ନ ଥିଲେ । ଦୋଷଗୁଣାନୁସାରେ ମନୁଷ୍ୟ ଅସୁର ବା ଦେବତା । ମାତ୍ର ଶାସ୍ତ୍ରାନୁସାରେ ଆମ୍ଭେମାନେ ଦେବତା ଓ ଅସୁର ଥିଲେ ବୋଲି ବିଶ୍ୱାସ କରିବାକୁ ବାଧ୍ୟ ।

ପତ୍ରିକାରୁ ସମ୍ବାଦ ମିଳିଅଛି, ପୋଲାଣ୍ଡ ରାଜ୍ୟ ଜର୍ମାନ୍ ଓ ରୁଷ୍ କର୍ତ୍ତୃକ ବିଧ୍ୱସ୍ତ ହେଲା । ଫ୍ରାନ୍‌ସ ବ୍ରିଟିଶ୍ ଏକପକ୍ଷ, ଜର୍ମାନ ଅପରପକ୍ଷ । ଉଭୟ ଘୋର ଯୁଦ୍ଧାୟୋଜନରେ ବ୍ୟସ୍ତ । ଅଚିରେ ତୁମୂଳ ଯୁଦ୍ଧ ହେବ । କୌଣସି ଯୁଦ୍ଧ ଧର୍ମଯୁଦ୍ଧ ନୁହେଁ । ତଥାପି ପ୍ରଥମ ପକ୍ଷ ଅଳ୍ପଶକ୍ତିସମ୍ପନ୍ନ ଜାତିମାନଙ୍କର ରକ୍ଷଣାରେ ଯୁଦ୍ଧ କରିବାକୁ ଉଦ୍ୟତ । ଦ୍ୱିତୀୟ ପକ୍ଷ ଶକ୍ତି ପ୍ରଭାବରୁ ପରଦେଶ କବଳିତ କରିବାକୁ ପ୍ରୟାସୀ । ପୂର୍ବ ମହାଯୁଦ୍ଧରେ ଆମ୍ଭେମାନେ ଶୁଣିବାକୁ ପାଉଥିଲୁଁ 'Right is might'. ପୁଣି 'Might is right'. କେଉଁ କଥାଟି ଠିକ୍, ମୀମାଂସା କରିବା ବଡ଼ କଠିଣ ବୋଲି ଲୋକେ କହନ୍ତି । ତେବେ ଆମ୍ଭମାନଙ୍କ କ୍ଷୁଦ୍ର ବୁଦ୍ଧିରେ ଆପାତତଃ 'Might is right'. ଉଭୟ ପକ୍ଷ ଶକ୍ତିଶାଳୀ । ସମରାୟୋଜନକାର ଅଧିକ ଏ କଥା ପ୍ରକାଶ କରିବା ଅସମ୍ଭବ । ପ୍ରତ୍ୟେକ ପକ୍ଷ ଆପଣା ସୈନ୍ୟ ଓ ରଣ ସମ୍ଭାର ଯଥେଷ୍ଟ ବୋଲି ମନେକରନ୍ତି । ଏ ବିଶ୍ୱାସ ନ ଥିଲେ କିଏ ବା ଯୁଦ୍ଧ ବ୍ୟାପାରରେ ପ୍ରବୃତ୍ତ ହୁଏ ? ଉଭୟ ଦଳ ଶକ୍ତି ବିଶ୍ୱାସୀ ଓ ଶକ୍ତି-ପୂଜକ । ମାତ୍ର ଶକ୍ତିର ପ୍ରତୀକ ପୂଜକ ନୁହଁନ୍ତି । ଭାରତବାସୀ ପ୍ରତୀକ ପୂଜକ । ଏଣୁ ମୂର୍ତ୍ତି ପୂଜାର ଏଡ଼େ ବାହୁଲ୍ୟ । ପ୍ରତୀକ ପୂଜା ଦ୍ୱାରା ପ୍ରକୃତ

ଶକ୍ତି ପୂଜାର କ୍ରମ ହ୍ରାସ ହୁଏ, ଏହା କହିବା ବାହୁଲ୍ୟ ମାତ୍ର । ବ୍ରିଟିଶ୍ ପକ୍ଷ ଓ ଜର୍ମାନର ଶକ୍ତି ଓ ସମ୍ଭାରର ନ୍ୟୁନାଧିକ ଥିଲେ ବା ଥାଇପାରେ, ତାହା ପ୍ରତିପକ୍ଷକୁ ଅଗୋଚର ଆମେ ବା ଜାଣିବା କିପରି ? ତେବେ ଏହା ନିଶ୍ଚିତ ଯେ ଜର୍ମାନ୍ ଅପେକ୍ଷା ବ୍ରିଟିଶ୍ ଯେମନ୍ତ ଶକ୍ତିଶାଳୀ ତେମନ୍ତ ସହାୟ-ସମ୍ପନ୍ନ ଏବଂ ନ୍ୟାୟ ପକ୍ଷ ଗ୍ରହଣ କରିଥିବା ହେତୁରୁ ନିଶ୍ଚୟ ଜୟଲକ୍ଷ୍ମୀ ଆଲିଙ୍ଗନ କରିବ ସନ୍ଦେହ ନାହିଁ ।

ଗୋଟିଏ ବଚନ ଅଛି— 'ଯତୋ ଧର୍ମ ସ୍ତତୋ ଜୟଃ' । ଧର୍ମର ଜୟ, ଏ ଧର୍ମର ଅର୍ଥ ବୈଷ୍ଣବ, ଶାକ୍ତ, କ୍ରିଷ୍ଟ୍ୟାନ କି ମୁସଲିମ୍ ନୁହେଁ । ଇଟାଲୀ ହାବୁସିମାନଙ୍କୁ ଜୟ କଲା । ଧର୍ମରେ ? ନାହିଁ । ଜଗତରେ ଦେଶ ଅନେକ, ଜାତି ଅନେକ । ସମସ୍ତେ ଶକ୍ତିଶାଳୀ ନୁହନ୍ତି । ସମସ୍ତେ ଶିକ୍ଷିତ ଓ ସଭ୍ୟ ନୁହନ୍ତି । ଜେତା ଯେବେ ବିଜିତର ସ୍ୱାର୍ଥ-ରକ୍ଷା ନିମନ୍ତେ ପ୍ରେମରେ ସେହି ଜାତିକୁ ଆତ୍ମୀୟ କରେ ତେବେ ସେ ଜୟ ଚିରସ୍ଥାୟୀ ହୁଏ । ବଳପୂର୍ବକ ବଶ୍ୟତା, ଅସ୍ଥାୟୀ ଓ ଚିର ଅସନ୍ତୋଷର ବିଷୟ । ଏହା ମହାଭାରତର ଉକ୍ତି । ଭାରତରେ ଏହା ମଧ ଅଛି 'ଯତୋ କୃଷ୍ଣ ସ୍ତତୋ ଜୟଃ' । ଆଜିକାଲିର ମହାସମର ସହିତ ତୁଳନୀୟ ନୋହିଲେ ମଧ ମହାକାବ୍ୟ ଲିଖିତ ମହାଭାରତ ଯୁଦ୍ଧ ଅତି ପ୍ରକାଣ୍ଡ ଯୁଦ୍ଧ । କୌରବମାନଙ୍କର ସମ୍ପୂର୍ଣ୍ଣ ପରାଜୟ— ପାଣ୍ଡବମାନଙ୍କର ଜୟ । କୃଷ୍ଣଙ୍କ ମନ୍ତ୍ରଣା କୌଶଳରୁ ଓ ସହାୟତାରୁ ପାଣ୍ଡବମାନଙ୍କର ଜୟ ଏହା ସ୍ୱୀକାର୍ଯ୍ୟ; ମାତ୍ର ପାଣ୍ଡବମାନେ ଧର୍ମ ପନ୍ଥା ଆଶ୍ରୟ କରିଥିବାରୁ ଜୟ ସ୍ୱକୀୟ ଧର୍ମାଚରଣର ପୁରସ୍କାର ଏହା ସ୍ୱୀକାର କରାଯାଇ ନ ପାରେ । ମାତ୍ର ପଣ୍ଡିତବର୍ଗଙ୍କର ମତ ଯେ ପାଣ୍ଡବମାନଙ୍କର ଯୁଦ୍ଧ ଧର୍ମଯୁଦ୍ଧ । ଏଥିର ବିସ୍ତାର ପ୍ରତିବାଦ ନିମନ୍ତେ କାଳକ୍ଷେପ କରିବା ସଙ୍ଗତ ମନେ ହୁଏ ନାହିଁ । ପୁଣି ଧାର୍ମିକବର୍ଗଙ୍କ ଏହି ପ୍ରସଙ୍ଗରେ ବକ୍ତବ୍ୟ ଏହି ଯେ, ଭଗବଦ୍‌ଗୀତା ସ୍ୱୟଂ ଶ୍ରୀକୃଷ୍ଣଙ୍କର ମୁଖାରବିନ୍ଦରୁ ନିଃସୃତ ଏବଂ ସେହି ଗୀତା ଶ୍ରବଣରେ ଅର୍ଜୁନ ଉଦ୍‌ବୁଦ୍ଧ ହୋଇ ପାଣ୍ଡବ ବିପକ୍ଷ ଶତ୍ରୁ ସଂହାର କଲେ ଏବଂ ପାଣ୍ଡବ ପକ୍ଷ ଜୟଯୁକ୍ତ ହେଲେ ।

ମହାକାବ୍ୟ କିମ୍ବା ପୁରାଣ ଲେଖାର ଗୋଟିଏ ନିୟମ ବିଧିବଦ୍ଧ ଅଛି । ତଦନୁସାରେ ମହାଭାରତ ଲିଖିତ । ମହାଭାରତରେ ପ୍ରଧାନ ବିଷୟ କୌରବ ପାଣ୍ଡବ ଯୁଦ୍ଧ । ସ୍ୱତ୍ୱରକ୍ଷା ଓ ନୀତିରକ୍ଷା ଯୁଦ୍ଧର ଉଦ୍ଦେଶ୍ୟ । ପୂର୍ବେ ଯାହା ଏବେ ମଧ ତାହା । ପାଣ୍ଡବମାନଙ୍କର ଯେଉଁ ସ୍ୱତ୍ୱ ଓ ନୀତି ରକ୍ଷା କଳ୍ପନାରେ କୃଷ୍ଣ ସାରଥ୍ୟ ସ୍ୱୀକାର କଲେ ଓ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ଅର୍ଜୁନ ସେହି ଆଶାଭରସାକୁ ପଣ୍ଡ କରିବାକୁ ବସିଲେ । କୃଷ୍ଣ ଉପଦେଶଦ୍ୱାରା ଅର୍ଜୁନଙ୍କୁ ଯୁଦ୍ଧରେ ପ୍ରବୃ୍ତ କଲେ । ଅର୍ଜୁନ ଯୁଦ୍ଧରୁ ନିବୃତ୍ତ ହୋଇଥିଲେ ପାଣ୍ଡବ ଜୟ ଆଶା ନିର୍ମୂଳ ହୋଇଥାନ୍ତା । ମହାଭାରତର ପ୍ରଧାନ ଉପାଦାନ ଗୀତ ବୋଲିବାକୁ ହେବ । ଏହାହିଁ ଗୀତାବିଶ୍ୱାସୀ ପଣ୍ଡିତବର୍ଗଙ୍କର ମତ । ଗୀତା ଆଲୋଚନା ଭାରତ ଯୁଦ୍ଧର ପ୍ରଧାନ ଉପାଦାନ ନୁହେଁ । କାରଣ ଗୀତା ପ୍ରକ୍ଷିପ୍ତ । ଗୀତା ଅଠର ଅଧ୍ୟାୟ । ଭୀଷ୍ମ ପର୍ବରୁ ଉଠାଇଦେଲେ ଭୀଷ୍ମପର୍ବର ପୂର୍ବାପର ସମ୍ବନ୍ଧଚ୍ୟୁତ ହେବ ନାହିଁ । ଗୀତା ବ୍ୟାଖ୍ୟାନର ସ୍ଥାନ ଓ ସମୟ ବିଶ୍ୱାସଯୋଗ୍ୟ ନୁହେଁ । ସେହିପରି ସହସା ଭୀଷ୍ମ ପର୍ବର ୨୩ ଅଧ୍ୟାୟଟି ଦୁର୍ଗାସ୍ତବ ହେବା ଆଦୌ ବିଶ୍ୱାସଯୋଗ୍ୟ ନୁହେଁ । ଯାହାର ପ୍ରଧାନ ଓ ଏକମାତ୍ର ସହାୟ ଯୋଗେଶ୍ୱର କୃଷ୍ଣ ଭଗବାନ୍ ସେ ପୁଣି ଦୁର୍ଯ୍ୟୋଧନ ରଣସଜ୍ଜାରେ ଭୀତ ହୋଇ ଦୁର୍ଗାର ଶରଣ ଗ୍ରହଣ କରିବ ଏହା ବିଶ୍ୱାସଯୋଗ୍ୟ ନୁହେଁ । ଏତଦ୍ୱାରା ଏକାଗ୍ର ଭକ୍ତି ଓ ବିଶ୍ୱାସର ବ୍ୟାଘାତ ଘଟେ । କରାଯାଏ କ'ଣ ? ଶାକ୍ତମାନଙ୍କର ମନୋରକ୍ଷା ନିମନ୍ତେ ଭୀଷ୍ମ ପର୍ବର ୨୩ ଅଧ୍ୟାୟ ବା ଦୁର୍ଗାସ୍ତବ ପ୍ରକ୍ଷିପ୍ତ ବୋଲିବାରେ ଦୋଷୀ ହେବୁଁ କି ? ଭାରତ ପ୍ରାଚୀନ ଓ ବୈଦିକ ଉପାଖ୍ୟାନବହୁଳ । ବେଦାନ୍ତ ଉପନିଷଦ୍ ଅଂଶ ବିସ୍ତର ଭାବରେ ଏକାଂଶରେ ସନ୍ନିବେଶିତ ରହିବା ଅଭିପ୍ରାୟରେ ଗୀତାର ସୃଷ୍ଟି, ଏହା କହିବା ଅସଙ୍ଗତ କି ? ଏଥିର ଆଲୋଚନା ବିସ୍ତର ଭାବରେ ଗୀତାଲୋଚନା ଓ ଅନ୍ୟାନ୍ୟ ପ୍ରବନ୍ଧରେ ବ୍ୟକ୍ତ କରାଯାଇଅଛି । ପିଷ୍ଟପେଷଣ ନିଷ୍ପ୍ରୟୋଜନ । ଆଜି ଯୁଦ୍ଧାଲୋଚନା ପ୍ରସଙ୍ଗ ଘେନି ଗୀତା ସମ୍ବନ୍ଧରେ ନୂତନ ଅବତାରଣା କରାଗଲା ।

ମହାଭାରତ ଯୁଦ୍ଧର ସୈନ୍ୟସଂଖ୍ୟା ଅଠର ଅକ୍ଷୌହିଣୀ, ଅଠର ଦିନ ଯୁଦ୍ଧ, ପର୍ବସଂଖ୍ୟା ଅଠର ଗୀତା ଅଠର ଅଧ୍ୟାୟ । ଏତାଦୃଶ ଅଠର ସଂଖ୍ୟାର ତାତ୍ପର୍ଯ୍ୟ କ'ଣ ? ଅଠର ସଂଖ୍ୟା ହେବା ଆକସ୍ମିକ କି କବିମାନଙ୍କର ଇଚ୍ଛାକୃତ ? ଗୀତା ଆଗରୁ ପାଞ୍ଚଗୋଟି ପର୍ବର ଘଟଣା ଘଟିଥିଲା, ବାକି ତେର ପର୍ବର ଘଟଣା ପରେ । ଗୀତା ଅନୁକରଣରେ କି ଭାରତ-ରଚକମାନେ ଆଉ ତେର ପର୍ବ ରଚନାକରି ଗୀତା ସହିତ ସାମ୍ୟ ରକ୍ଷାକଲେ ? ଗବେଷଣାର ସାମଗ୍ରୀ ଅଛି । ବର୍ତ୍ତମାନ ଥାଉ ।

ଅର୍ଜୁନ ବିଷାଦ ହେତୁ କଥୋପକଥନ ପ୍ରସଙ୍ଗରେ ଗୀତା ଅଠର ଅଧ୍ୟାୟ ଆକସ୍ମିକ କି ଇଚ୍ଛାକୃତ ? କୃଷ୍ଣ ଅଧ୍ୟାୟ ଭାଗକ ? କି ସଞ୍ଜୟ କି ବ୍ୟାସ କି ଆଉ କୌଣସି କବି ? ସଞ୍ଜୟ ଜ୍ଞାନଚକ୍ଷୁରେ ଯୁଦ୍ଧ ବ୍ୟାପାର ଦେଖୁଥିଲେ ଏବଂ ଦିବ୍ୟ କର୍ଣ୍ଣରେ କୃଷ୍ଣାର୍ଜୁନଙ୍କର କଥୋପକଥନ ଶ୍ରବଣ କରି

ଧୃତରାଷ୍ଟ୍ରଙ୍କୁ ବୁଝାଉଥିଲେ । କୃଷ୍ଣାର୍ଜୁନ ଗୀତା ଅଧ୍ୟାୟ ଅଠରଟି ନାନା ଛନ୍ଦରେ (ଶ୍ଳୋକରେ) କଥାବାର୍ତ୍ତା କରୁଥିଲେ ଏବଂ ସଞ୍ଜୟ ତାହା ଟିପି ରଖୁଥିଲେ କି ? କୃଷ୍ଣାର୍ଜୁନଙ୍କର କଥୋପକଥନ ଭାଷାକୁ ନିଜ ଇଚ୍ଛାନୁସାରେ ଶ୍ଳୋକର ଛନ୍ଦରେ ପରିବର୍ତ୍ତନ କରିଯାଉଥିଲେ ଏବଂ ସଙ୍ଗେ ସଙ୍ଗେ ଅଧ୍ୟାୟ ବିଭାଗ କରିଯାଉଥିଲେ କି ? ଗୀତା ଆଉ ଉପାଦେୟ ଜ୍ଞାନଗର୍ଭକ ବେଦାନ୍ତ ଗ୍ରନ୍ଥ, କିଏ ଅସ୍ୱୀକାର କରିବ ? ମାତ୍ର ଏହା କୃଷ୍ଣ ମୁଖ ବିନିସୃତ ବୋଲି ପ୍ରକାଶ କଲେ ଉପରୋକ୍ତ ଓ ଆଉ କେତେ ସନ୍ଦେହ ସ୍ୱଭାବତଃ ମନକୁ ଆନ୍ଦୋଳିତ କରେ ନାହିଁ କି ?

ଗୀତା ଅଠର ଅଧ୍ୟାୟକୁ ତ୍ରିଷଟ୍‌କ ବୋଲାଯାଏ । ପ୍ରଥମ ଷଟ୍‌କ କର୍ମଯୋଗ, ଦ୍ୱିତୀୟ ଷଟ୍‌କ ଭକ୍ତିଯୋଗ ଓ ତୃତୀୟ ଷଟ୍‌କ ଜ୍ଞାନଯୋଗ । ଏହି ତିନି ଷଟ୍‌କର ପରସ୍ପର ସମ୍ବନ୍ଧ ବିଦ୍ୟମାନ । ବିଷାଦ ଛାୟାରୁ ଏହି ତିନି ଯୋଗର କଳ୍ପନା ଆସିଲା କିପରି ? ଏହି ପରସ୍ପର ସମ୍ବନ୍ଧ ତିନି ଷଟ୍‌କ ସମ୍ବନ୍ଧୀୟ ପ୍ରଶ୍ନୋତ୍ତର ଆକସ୍ମିକ କି ଇଚ୍ଛାକୃତ ? ଆକସ୍ମିକ ହୋଇ ନ ପାରେ, ଇଚ୍ଛାକୃତ । ଅନ୍ତର୍ଯାମୀ କି ଜାଣିଥିଲେ ଯେ ଅର୍ଜୁନର ବିଷାଦ ନିଶ୍ଚୟ ହେବ ଏବଂ ତାକୁ ତିନି ପନ୍ଥାରେ ପ୍ରବୃତ୍ତି ଦେଇ ଯୁଦ୍ଧରେ ବ୍ୟାପୃତ କରିବେ ? ନୁହେଁ ନୁହେଁ, ପରବର୍ତ୍ତୀ କବିର କଳ୍ପନା । ଏଣୁ ଅସ୍ଥାନରେ ଓ ଅସମୟରେ ଏ ପ୍ରସଙ୍ଗର ବର୍ଣ୍ଣନା କରାଯାଇଅଛି ।

କଳ୍ପାବ୍ଦ ବର୍ଷ । ତହିଁର କେତେକ ବର୍ଷ ପୂର୍ବେ ଭାରତ ଯୁଦ୍ଧ ଏବଂ ଗୀତାର ପ୍ରକାଶ । ଗୀତା ଗ୍ରନ୍ଥ ବିଶୁଦ୍ଧ, ସଂସ୍କୃତ ଭାଷାରେ ଏବଂ ପଦ୍ୟରେ କଥୋପକଥନ କରନ୍ତି । ପାଣିନି କର୍ତ୍ତୃକ ପରିଷ୍କୃତ ଭାଷା ଯେବେ ସଂସ୍କୃତ, ତାହାହେଲେ ତ ଗୀତା ପାଣିନିଙ୍କର ପରେ ଲିଖିତ । ତେବେ ଗୀତା କୃଷ୍ଣମୁଖପଦ୍ମ ବିନିଃସୃତା ହୋଇପାରେ କିପରି ?

ଗୀତା ସୁଗୀତା କର୍ତ୍ତବ୍ୟା
କିମନ୍ୟୈଃ ଶାସ୍ତ୍ର ବିସ୍ତରୈଃ
ଯାସ୍ୱୟଂ ପଦ୍ମନାଭସ୍ୟ
ମୁଖପଦ୍ମବିନିଃସୃତା ।

ଭାରତରେ ନାନା ସ୍ଥାନରେ, ଭାଗବତରେ ଓ ଅନ୍ୟାନ୍ୟ ପୁରାଣରେ କୃଷ୍ଣଙ୍କର ବାକ୍ୟ ବୋଲି ଅନେକ ଶ୍ଳୋକ ଲେଖାଥିବାର ଦେଖାଯାଏ । ସେଗୁଡ଼ିକ ମଧ୍ୟ ତ କୃଷ୍ଣମୁଖପଦ୍ମବିନିଃସୃତ । ତେବେ ଅନ୍ୟାନ୍ୟ ବାକ୍ୟ ଅପେକ୍ଷା ଗୀତାର ମାହାତ୍ମ୍ୟ ଏତେ ଅଧିକ କାହିଁକି ?

କାହାରି କାହାରି ମତରେ ଗୀତା ପଦ୍ମନାଭମୁଖବିନିଃସୃତ । ଏଣୁ ଗୀତାର ପ୍ରାଧାନ୍ୟ ପୁଣି କେହି କେହି କହନ୍ତି 'ସର୍ବ ଶାସ୍ତ୍ର ସାରଭୂତା ବିଶୁଦ୍ଧା ସା ବିଶିଷ୍ୟତେ' ।

ଅର୍ଜୁନ କହିଲେ ଆତ୍ମୀୟ ସ୍ୱଜନ ବନ୍ଧୁବାନ୍ଧବ ଗୁରୁଜନ ବଧକରି ରୁଧିର ପ୍ରଦିଗ୍ଧ ଭୋଗବାସନା ମୋର ନାହିଁ । ଗୀତାପାଠରୁ ଜଣାଯାଏ ଯେ କେବଳ ଅଠର ବା କୋଡ଼ିଏ ଶ୍ଳୋକ ପ୍ରବୃତ୍ତି-ମୂଳକ ଆଉ ସମସ୍ତ ଉପଦେଶ ନିବୃତ୍ତିପର । ଏପରି ନିବୃତ୍ତିପର ଉପଦେଶ ଶ୍ରବଣରେ ହିଂସା ପ୍ରବୃତ୍ତି ଜନ୍ମ ହେବା ଅସମ୍ଭବ । ତଥାପି ଅର୍ଜୁନ ପିତାମହ ଭୀଷ୍ମ, ଗୁରୁ ଦ୍ରୋଣ ଏବଂ ଭ୍ରାତା କର୍ଣ୍ଣଙ୍କୁ ଅନ୍ୟାୟ ଉପାୟରେ ବଧ କଲେ । ଗୀତାର ଉପଦେଶ ଏବଂ ଅର୍ଜୁନଙ୍କର ପରବର୍ତ୍ତୀ କର୍ମର ଚିନ୍ତାକଲେ ମନେହୁଏ ଭୀଷ୍ମପର୍ବର ୨୫, ୪୨ ଓ ମଧ୍ୟବର୍ତ୍ତୀ ଅଧ୍ୟାୟ ବା ଗୀତା ପର୍ବ ମହାଭାରତରେ ସ୍ଥାନ ପାଇବାର ଉଚିତ ନ ଥିଲା । ଏଠାରେ ଗୀତା ମାହାତ୍ମ୍ୟ ଖର୍ବ ହେଉଅଛି । ରାମାନୁଜ ପ୍ରଭୃତି ଟୀକାକାରମାନେ କେବଳ ଗୀତାର ଟୀକାକର୍ତ୍ତା । ମହାଭାରତର ଟୀକାକର୍ତ୍ତା ନୁହନ୍ତି । ସେମାନେ ଗୀତାର ଉପଦେଶ ସହିତ ଭାରତ ଯୁଦ୍ଧର ସମନ୍ୱୟ କରିବାକୁ କଦାପି ପ୍ରୟାସୀ ହୁଅନ୍ତି ନାହିଁ ।

ଗୀତାରେ ବେଦାନ୍ତର ସାର ପଦାର୍ଥର ବା ତତ୍ତ୍ୱ ବିଦ୍ୟମାନ । କୃଷ୍ଣମୁଖବିନିଃସୃତ ବୋଲି ଏବଂ ମହାଭାରତରେ ପ୍ରବେଶ କରାଇ ରଚକ ଗୀତାର ବହୁଳ ପ୍ରଚାରରେ ଲବ୍ଧକାମ ହେଲେ ସତ, ମାତ୍ର ବେଦାନ୍ତ ବା ଉପନିଷଦର ମହତ୍ତ୍ୱ ଲାଘବ କଲେ ବୋଲାଯିବ । ଦେଖାଯାଏ ଗୀତାରେ ଉପନିଷଦର ଭାବ ଛଡ଼ା, ବାକ୍ୟମାନ, ଶ୍ଳୋକାର୍ଦ୍ଧ ଓ ଶ୍ଳୋକ ମଧ୍ୟ ଉଦ୍ଧୃତ ହୋଇଅଛି । ବିଶେଷତଃ କଠୋପନିଷଦ୍‌ର ବାକ୍ୟ ଶ୍ଳୋକାର୍ଦ୍ଧ ବା ଶ୍ଳୋକ । କୃଷ୍ଣ ଉପନିଷଦ୍ ଶ୍ଳୋକ ଚୋରି କଲେ ବୋଲି ଦୋଷଯୁକ୍ତ କରାଯିବ ? ନବନୀତ-ଚୋରି ଓ ଶ୍ଳୋକ-ଚୋରି ମଧ୍ୟରେ ପାର୍ଥକ୍ୟ ଅନେକ ।

ଦଶମ ଅଧ୍ୟାୟ ବିଭୂତି ଯୋଗ ଅର୍ଥାତ୍ ସୃଷ୍ଟ ଓ ଜାତ ବସ୍ତୁ ଏବଂ ଜୀବ ମଧ୍ୟରୁ ଶ୍ରେଷ୍ଠ-ନିର୍ବାଚନ ପୌରାଣିକ ଓ ବୈଦିକ ଋଷି ଓ ଦେବତାମାନଙ୍କ ମଧ୍ୟରୁ କିଏ କାହିଁକି ଶ୍ରେଷ୍ଠ ତାହା ବିଚାର କରିବାର ଆମମାନଙ୍କର କ୍ଷମତା ନାହିଁ । ମାତ୍ର 'ଅଶ୍ୱତ୍‌ଥ ସର୍ବ ବୃକ୍ଷାଣାଂ' ଏବଂ 'ନକ୍ଷତ୍ରାଣା ମହଂଶଶୀ' ସମ୍ବନ୍ଧରେ ଆମ୍ଭେମାନେ ସନ୍ଦେହଯୁକ୍ତ । ସୃଷ୍ଟିକର୍ତ୍ତା ସ୍ୱୟଂ ବିଭୂତି ପ୍ରକାଶ କରିବାକୁ ଯାଇ ଏତାଦୃଶ ଭ୍ରମ ପ୍ରମାଦ ଘଟାଇବେ ଏହା ମନକୁ ପାଉ ନାହିଁ । ଯେ କି ପ୍ରାକୃତିକ ଇତିହାସବେତ୍ତା ନୁହେଁ କିମ୍ବା ବୈଷୟିକ ଜ୍ଞାନରେ ଉଦାସୀନ, ସେ କହିପାରେ ନକ୍ଷତ୍ରମାନଙ୍କ ମଧ୍ୟରେ ଚନ୍ଦ୍ର ପ୍ରଧାନ ଏବଂ ବୃକ୍ଷମାନଙ୍କରେ

ଅଶ୍ୱତ୍ଥ ଶ୍ରେଷ୍ଠ ଏବଂ ମତ୍ସ୍ୟମାନଙ୍କ ମଧରେ ମକର ଶ୍ରେଷ୍ଠ । ଅଶ୍ୱତ୍ଥ, ସୁଦୃଶ୍ୟ ବା ଘନ ଛାୟାପ୍ରଦ ନୁହେଁ । ପୁଷ୍ପ ଫଳ ଦ୍ୱାରା ସୁଶୋଭିତ— ପ୍ରାଣିଗଣର ତାଦୃଶ ଉପକାରୀ ନୁହେଁ । ତଥାପି ଅଶ୍ୱତ୍ଥ ବୃକ୍ଷମାନଙ୍କ ମଧରେ ଶ୍ରେଷ୍ଠ । ଅଶ୍ୱତ୍ଥର କେବଳ ଶ୍ରେଷ୍ଠତ୍ୱ ଏହି ଯେ ତାହାର ଛାୟାରେ ବସି ସିଦ୍ଧାର୍ଥ ତପସ୍ୟା କରି ବୁଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ । ମାତ୍ର ଏଥିନିମନ୍ତେ ଗୀତା ଲେଖକ ତାକୁ ଶ୍ରେଷ୍ଠତ୍ୱ ଦେବେ କି ? କୃଷ୍ଣ ବାଳଅଶ୍ୱତ୍ଥ ବୃକ୍ଷରେ ଆଶ୍ରୟ ନେଇ ମହାନିଦ୍ରାଭିଭୂତ ହେଲେ । ସେ ତ ପରର ଘଟଣା । ସେଥି ନିମନ୍ତେ ଅଶ୍ୱତ୍ଥର ମାହାତ୍ମ୍ୟ କି ? ପ୍ରକୃତ ପକ୍ଷରେ ସ୍ୱୟଂ କୃଷ୍ଣ ଯେବେ ଈଶ୍ୱର ଏବଂ ବରଭୂତିକୁ ସଂକ୍ଷେପରେ ବ୍ୟକ୍ତ କରିଥାନ୍ତେ ତାହାହେଲେ ଆମ୍ଭେମାନେ ଅନେକାନେକ ଅଦ୍ଭୁତ ବିଷୟରେ ବର୍ଣ୍ଣନା ଶୁଣି ପାରିଥାନ୍ତୁ ଯାର ତୁଳନାରେ ଆଧୁନିକ ବୈଜ୍ଞାନିକ ଆବିଷ୍କାର ମଧ ତୁଚ୍ଛ ।

ଏକାଦଶ ଅଧ୍ୟାୟରେ ଅର୍ଜୁନ କୃଷ୍ଣଙ୍କର ବିଶ୍ୱରୂପ ଦର୍ଶନ କଲେ । ସଙ୍ଗେ ସଙ୍ଗେ ସଂଜୟ ମଧ ଦର୍ଶନ କରିଥିବେ । ଈଶ୍ୱରଙ୍କର ବିଶ୍ୱରୂପ କି ଅନେକ ବାହୁ, ଉଦର, ଅନେକ ପାଦନେତ୍ରରେ ପର୍ଯ୍ୟବସିତ । ଏ କି ଛାୟାବାଜି ? କେବଳ ବିଶ୍ୱରୂପ ଅର୍ଜୁନ ଦେଖିପାରିଲେ । ଅନ୍ୟ କେହି ଦେଖିଲେ ନାହିଁ । କଥାର ଚାତୁରୀ ଭିନ୍ନ କ'ଣ ବୋଲାଯାଇପାରେ । ପୂର୍ବ ଶାସ୍ତ୍ରମାନଙ୍କରେ ବିଶେଷତଃ ଋଗ୍‌ବେଦର 'ସହସ୍ର ଶୀର୍ଷା ପୁରୁଷ' ଏହି ସୂକ୍ତ ରୂପାନ୍ତରିତ କରି କବି ଆଜି ସମସ୍ତଙ୍କୁ ଭ୍ରାନ୍ତ କରୁଅଛନ୍ତି । ବିଶ୍ୱରୂପରେ ବସ୍ତ୍ର ଅଳଙ୍କାର ଆୟୁଧ କେଉଁଠାରେ ରହିପାରେ ? ଅନନ୍ତ ଗୌରବ ଯାହା ବେଦାନ୍ତର ଶ୍ରେଷ୍ଠଦାନ ତହିଁର ଗନ୍ଧର ଲେଶ ତ ଏ ବିଶ୍ୱରୂପରେ ନାହିଁ । ଇନ୍ଦ୍ରିୟାତୀତ କଳ୍ପନା କବି ପକ୍ଷରେ ଅସମ୍ଭବ, ସୁତରାଂ ମୁଖ, ଉଦର, ଅଳଙ୍କାର, ବସନକୁ ଅନେକ ବିଶେଷଣଦ୍ୱାରା ପୁଷ୍ଟ କରିବା ଭିନ୍ନ ଉପାୟ କ'ଣ ?

ନଚ ଉର୍ଦ୍ଧ୍ୱଂ ନତିର୍ଯ୍ୟଞ୍ଚ
ନମଧ୍ୟେ ପରିଜଗ୍ରଭତ୍
ନତସ୍ୟ ପ୍ରତିମା ଅସ୍ତି ଯସ୍ୟ
ନାମ ମହଦ୍‌ଯଶଃ ।

ଯେଉଁ ଗୌରବମୟର ଉପମା ନାହିଁ, ପ୍ରତିମା ନାହିଁ, ଯାହାର ଉର୍ଦ୍ଧ୍ୱତୀର୍ଯ୍ୟକ୍ ଓ ମଧ ନାହିଁ, ତାକୁ ଭଗବଦ୍‌ଗୀତା ଲେଖକ ବିଶ୍ୱରୂପ ନାମରେ ଅନେକ ମସ୍ତକ, ହାତ, ପାଦ, ଅଳଙ୍କାର, ଆୟୁଧ ଦ୍ୱାରା ବ୍ୟକ୍ତ କରିବାକୁ ପ୍ରୟାସୀ ହେବେ ନାହିଁ ।

ବିଶ୍ୱରୂପ ଦର୍ଶନ ଉତ୍ତାରୁ କୃଷ୍ଣ କହିଲେ, 'ଋତେଽପି ତ୍ୱାଂ ନଭବିଷ୍ୟନ୍ତି ସର୍ବେ ଯେଽବସ୍ଥିତାଃ ପ୍ରତ୍ୟନିକେଷୁଯୋଧାଃ' ଅର୍ଜୁନ ତୋ ଭିନ୍ନ ପ୍ରତିପକ୍ଷ ଯେତେ ଯୋଦ୍ଧା ଅଛନ୍ତି କେହି ବଞ୍ଚିବେ ନାହିଁ ।

ପୁଣି କହିଲେ :—

ତସ୍ମାତ୍ ତ୍ୱମୁତ୍ତିଷ୍ଠ ଯଶୋଲଭସ୍ୱ,
ଜିତ୍ୱା ଶତ୍ରୁନ ଭୁଙ୍‌କ୍ଷ୍ୟ ରାଜ୍ୟଂ ସମୃଦ୍ଧମ୍ ।
ମୟୈବୈତେ ନିହତାଃ ପୂର୍ବମେବ୍
ନିମିତ୍ତ ମାତ୍ରଂ ଭବ ସବ୍ୟସାଚିନ୍ ।

ଅର୍ଜୁନରେ ! ମୁଁ କାଳ ରୂପରେ ସମସ୍ତଙ୍କୁ ହତ କରିଅଛି । ତୁ କେବଳ ନିମିତ୍ତମାତ୍ର ହୁଅ, ତୁ ଜାଗ୍ରତ ହୁଅ, ଶତ୍ରୁମାନଙ୍କୁ ଜୟ କରି ରାଜ୍ୟ ଭୋଗ କର । କୃଷ୍ଣଙ୍କର ଅଭୀଷ୍ଟ ସିଦ୍ଧ ହେଲା । ଅର୍ଜୁନ ଯୁଦ୍ଧ କରିବାର ଯଥେଷ୍ଟ ପ୍ରବୃତ୍ତି ଅବଶ୍ୟ ପାଇଲେ । ତହିଁ ଉତ୍ତାରୁ ତୃତୀୟ ଷଟ୍‌କ ବା ଜ୍ଞାନ-ଯୋଗର ଆବଶ୍ୟକତା କ'ଣ ? କୃଷ୍ଣ ସାରଥୀ ଅର୍ଜୁନ ରଥୀ । କୃଷ୍ଣଙ୍କଠାରୁ ଏହି ତିନି ଯୋଗର ଉପଦେଶ ଶୁଣି ଅର୍ଜୁନ ଯୁଦ୍ଧରେ ପ୍ରବୃତ୍ତ ଥିବା ତେଣେ ଥାଉ ଗୃହ, ଭାଇ, ବନ୍ଧୁ, ସମସ୍ତଙ୍କୁ ତ୍ୟାଗ କରି ବନକୁ ଯିବାର କଥା; କିନ୍ତୁ ଅର୍ଜୁନ ଯୁଦ୍ଧ କରି ପିତାମହ, ଗୁରୁ, ବଡ଼ଭାଇ ପ୍ରଭୃତିଙ୍କୁ ଉତ୍ସାହ ସହିତ ବଧ କଲେ । ଗୀତା ପାଠର ଫଳ କି ହିଂସା ବୃତ୍ତି ? ତନ୍ମୟ ହୋଇ ଗୀତାପାଠ କଲେ କି ଲୋକର ହିଂସା କରିବାକୁ ପ୍ରବୃତ୍ତି ଜନ୍ମିବ ? ଯୁଦ୍ଧ କର, ଶତ୍ରୁମାର, ଜୟ କର ଇତ୍ୟାଦି ହୋଇ ୧୮ ଗୋଟି ଶ୍ଳୋକ ଇତସ୍ତତଃ ରହିଅଛି । ନତୁବା ସମସ୍ତ ନିବୃତ୍ତିପର ଉପଦେଶ । ତଥାପି ଅର୍ଜୁନ ଗୀତା ଶ୍ରବଣ କରି ଗୁରୁଜନମାନଙ୍କୁ ସଂହାର କଲେ । ଏହା କହିଲେ ଗୀତାର ମାହାତ୍ମ୍ୟ ଲାଘବ ହୁଏ । ଗୀତା ମହାଭାରତର ଅଂଶ ନ ହେଲେ ଗୀତାର ମର୍ଯ୍ୟାଦା ରକ୍ଷା ହୁଏ ଏବଂ ମହାଭାରତର ମଧ ଅଙ୍ଗ ହାନି ହୁଏ ନାହିଁ ।

ପ୍ରସଙ୍ଗକ୍ରମେ ଚଣ୍ଡୀ, ରାମାୟଣ ଓ ଗୀତାର ପ୍ରକୃତି ଆଲୋଚନାଦ୍ୱାରା ପ୍ରତ୍ୟୟ ଜନ୍ମ ଏବଂ ଅମୂଳକ ବିଶ୍ୱାସର ଉଚ୍ଛେଦ ହେଉ, ନ୍ୟାୟ ପକ୍ଷର ଜୟ ହେଉ, ଏହି ଇଚ୍ଛାରେ ଯୁଦ୍ଧ ଓ ଗୀତାର ଅବତାରଣା ।

●

## ଭାରତୀୟ ସାହିତ୍ୟର ଅଭିବ୍ୟକ୍ତି ଓ ଗତି

ଆଗରୁ ଭାଷା ଓ ସାହିତ୍ୟର ତାରତମ୍ୟ ପରୀକ୍ଷା କରିବା ଉଚିତ୍ । ମାନବଗଣ ମନୋଗତଭାବ ପ୍ରକାଶ କରିବାକୁ ମୁଖରେ ଯାହା ଉଚ୍ଚାରଣ କରନ୍ତି ତାହା ଭାଷା । ଭୂପୃଷ୍ଠରେ ଏପରି ମନୁଷ୍ୟ ଜାତି ନାହାନ୍ତି ଯେଉଁମାନଙ୍କର କି ଭାଷା ନାହିଁ । ଭାବ ବିନିମୟ ନିମନ୍ତେ ପଶୁପକ୍ଷୀ ମଧ ଶବ୍ଦ ଉଚ୍ଚାରଣ କରନ୍ତି, ମାତ୍ର ତାକୁ ଭାଷା ଆଖ୍ୟା ଦେବାକୁ କେହି ସାହସ କରି ନାହାନ୍ତି । ମନୁଷ୍ୟର ଅଛି ଭାଷା । ଦେଶ ଭେଦରେ ଭାଷାର ପ୍ରଭେଦ ଆବହମାନକାଳରୁ ଚାଲିଆସିଅଛି । ଭୂପୃଷ୍ଠରେ ଏତେ ଜାତି କାହିଁକି ଏବଂ ଏତେ ଭାଷା କାହିଁକି ? ଏ ପ୍ରଶ୍ନର ମୀମାଂସାର ଏଠାରେ ସ୍ଥାନ ନାହିଁ । ତେବେ ନିର୍ଭୀକ ଭାବରେ ଏହା ପ୍ରକାଶ କରାଯାଇପାରେ ଯେ ଶତରୂପା ମନୁଠାରୁ ସମଗ୍ର ମନୁଷ୍ୟ ଜାତିର ଜନ୍ମ ହୋଇ ନାହିଁ କିମ୍ବା ଆଡ଼ାମ୍ ଇଭ୍‌ଠାରୁ ସମଗ୍ର ମନୁଷ୍ୟ ଜାତିର ଜନ୍ମ ହୋଇ ନାହିଁ । ସେହିପରି ଋଗ୍‌ବେଦରୁ ବା ବୈଦିକ ଭାଷାରୁ ସମଗ୍ର ଭାଷାର ଉତ୍ପତ୍ତି ହୋଇ ନାହିଁ । ଏହା ପୌରାଣିକ କଳ୍ପନା । ଏଥିରେ ଆସ୍ଥା ସ୍ଥାପନ ସ୍ୱାଧୀନ ଗବେଷଣାର ଅନ୍ତରାୟ ମାତ୍ର ।

ଭୂପୃଷ୍ଠରେ ଅନେକ ଜାତି ଅଛନ୍ତି ଏବଂ ଭାଷା ମଧ ଅନେକ । ଭାଷାକୁ ଜନମନ ଆକୃଷ୍ଟ ହେବାଭଳି ମନୋରଞ୍ଜନ ଭାବ ଓ ଶବ୍ଦ ବିନ୍ୟାସ ଦ୍ୱାରା ଯେଉଁ ବାକ୍ୟାବଳୀ ରଚନା କରାଯାଏ— କଥାରେ ହେଉ, ଗଦ୍ୟରେ ହେଉ ବା ପଦ୍ୟରେ ହେଉ ତାହା ସାହିତ୍ୟ । ଭାଷା ଥିଲା, ସେଥିରୁ ସାହିତ୍ୟର ଅଭିବ୍ୟକ୍ତି । ବୈଦିକ ଯୁଗର ଲୋକେ ଯେଉଁ ଭାଷା ବ୍ୟବହାର କରୁଥିଲେ ସେଥିରୁ ବୈଦିକ ସାହିତ୍ୟ ସୃଷ୍ଟି ହେଲା । ଏ ଦେଶ ଆଗରୁ ଅନାର୍ଯ୍ୟମାନଙ୍କଦ୍ୱାରା ଅଧ୍ୟୁଷିତ ଥିଲା । କ୍ରମେ ଆର୍ଯ୍ୟମାନେ ଆସି ଉପନିବେଶ ସ୍ଥାପନ କଲେ । ଏକାଥରକେ ଯେ ସେମାନଙ୍କ ଆଗମନ ସ୍ରୋତ ବନ୍ଦ ହେଲା ଏପରି ନୁହେଁ । ବହୁ କାଳଯାଏ ସେ ସ୍ରୋତ ଚାଲିଥିଲା । ପ୍ରଥମରୁ ଯେଉଁମାନେ ଏ ଦେଶକୁ ଆସିଲେ ପାରିପାର୍ଶ୍ୱିକ ଅବସ୍ଥା ଓ ସ୍ଥାନ ପରିବର୍ତ୍ତନ ହେତୁରୁ ସେମାନଙ୍କର ଭାଷା ଓ ନବାଗନ୍ତୁକମାନଙ୍କର ଭାଷାର ତାରତମ୍ୟ ଘଟିଲା । ବୈଦିକ ସାହିତ୍ୟରୁ ପ୍ରମାଣ ମିଳେ ଯେ ଏ ଦେଶକୁ ଆଗତ ଆର୍ଯ୍ୟମାନେ ସମାଜବଦ୍ଧ ହୋଇ ଗୋଟାଏ ସାମାଜିକ ଆର୍ଯ୍ୟସଂସ୍କାର ସ୍ଥିର କଲେ । ପରବର୍ତ୍ତୀ ଆଗନ୍ତୁକମାନଙ୍କ ମଧ୍ୟରୁ ଯେଉଁମାନେ ସେହି ସଂସ୍କାରକୁ ମାନିନେଲେ ସେମାନେ ଆର୍ଯ୍ୟଶ୍ରେଣୀଭୁକ୍ତ ହେଲେ, ଯେଉଁମାନେ ନତମସ୍ତକରେ ତାହା ସ୍ୱୀକାର ନ କଲେ ସେମାନେ 'ବ୍ରାତ୍ୟ' ଆଖ୍ୟାରେ ପରିଚିତ ହେଲେ । ବ୍ରାତ୍ୟମାନଙ୍କର ପୋଷାକ ପରିଚ୍ଛଦ ଓ ଭାଷା ସ୍ୱତନ୍ତ୍ର ଥିବାର ସ୍ପଷ୍ଟ ଉଲ୍ଲେଖ ଅଛି ଏବଂ ବ୍ରାତ୍ୟମାନେ ଭାରତର ଉତ୍ତରାଞ୍ଚଳରୁ ସମୟ ସମୟରେ ଆର୍ଯ୍ୟମାନଙ୍କୁ ଦେଖିବାକୁ ଆସୁଥିବାର ମଧ ଲେଖାଅଛି । କ୍ରମେ ଆର୍ଯ୍ୟମାନେ ଦକ୍ଷିଣାଭିମୁଖରେ ଯାତ୍ରା କରି ନାନା ସ୍ଥାନରେ ବାସ କଲେ । ସୁତରାଂ କ୍ରମେ ସ୍ଥାନଭେଦରୁ ସେମାନଙ୍କର ଉଚ୍ଚାରଣଭେଦ ଘଟିଲା, ଏହା ଅସ୍ୱୀକାର କରାଯାଇ ନ ପାରେ । ଉତ୍କଳ ହିଁ ଏଥିର ପ୍ରକୃଷ୍ଟ ଉଦାହରଣ ସ୍ଥଳ । ବର୍ତ୍ତମାନ ଭାରତରେ ଅନେକ ଭାଷାର ପ୍ରଚଳନ ଅଛି ଏବଂ ସାହିତ୍ୟର ଅଭାବ ନାହିଁ ।

ସଂସ୍କୃତ ଭାଷା ଓ ସଂସ୍କୃତ ସାହିତ୍ୟର ସାମାନ୍ୟ ଆଲୋଚନା ପ୍ରଥମରୁ କରାଯାଉ । ସଂସ୍କୃତ ଭାଷା ଜନ୍ମହେବା ଆଗରୁ ଗାନ୍ଧାର, କାଶ୍ମୀର ଓ ପଞ୍ଜାବ ପ୍ରଦେଶର ଏବଂ ଉତ୍ତର ପ୍ରଦେଶରେ ବୈଦିକ, ବ୍ରାହ୍ମଣ ଓ ଉପନିଷଦ ଭାଷା ବିଦ୍ୟମାନ ଥିଲା ଏବଂ ପାଲୀ, ପୈଶାଚୀ ଓ ଅପର କେତେଗୋଟି ଭାଷା କଥିତ ଭାଷାରୂପେ ବିଦ୍ୟମାନ ଥିଲା । ସେକାଳର ବୈୟାକରଣମାନଙ୍କ ହୃଦୟରେ ଗୋଟିଏ ବିଶୁଦ୍ଧ ଭାଷାର ପରିକଳ୍ପନା ଜାଗ୍ରତ ହେଲା । ଲୋକମୁଖରେ ଉଚ୍ଚାରିତ ଅଶୁଦ୍ଧ ଭାଷାକୁ ବିଶୁଦ୍ଧ କରିବାରେ ବରାବର ଚେଷ୍ଟିତ ରହିଲେ । ଏହିପରି କେତେକାଳ ଉତ୍ତାରୁ ପାଣିନିଙ୍କର ଜନ୍ମ । ପାଣିନି ପୂର୍ବ ବୈୟାକରଣମାନଙ୍କର ପଦାନୁସରଣ କରି ଗୋଟିଏ ବ୍ୟାକରଣ ରଚନା କଲେ । ତାଙ୍କର ବ୍ୟାକରଣ ସୂତ୍ରାନୁସାରେ ଶବ୍ଦମାନଙ୍କର ସଂସ୍କାର ଆରମ୍ଭ ହେଲା । ବ୍ୟାକରଣ-ବିଧିବଦ୍ଧ ଭାଷା, ତଦାନୀନ୍ତନ ପ୍ରଚଳିତ ପ୍ରାକୃତ ଭାଷାମାନଙ୍କଠାରୁ ସ୍ୱତନ୍ତ୍ର ହୋଇପଡ଼ିଲା । ଦୁଗ୍ଧ ଭାଣ୍ଡରୁ ମଥିତ ନବନୀତ ତୁଲ୍ୟ ସମଗ୍ର ଭାଷା ଭାଣ୍ଡରୁ ମଥିତ ସଂସ୍କୃତ ଭାଷାର ଉଦ୍ଭବ ହେଲା ।

ଏ ଭାଷା ବ୍ୟାକରଣଦ୍ୱାରା ସୁରକ୍ଷିତ; ଏଣୁ ଜନ୍ମାବଧି ବିଶୁଦ୍ଧ ରହି ଆସିଅଛି ଓ ରହିବ, ବିକୃତ ହେବ ନାହିଁ । ବ୍ୟାକରଣର ବିଧି ବା ଧାରା ଅଲଙ୍ଘନୀୟ, ଲଙ୍ଘନ କଲେ ଲେଖା ବା କଥା ଅସଂସ୍କୃତ ପଦବାଚ୍ୟ ହେବ । ଲିଙ୍ଗାନୁଶାସନ ଗୋଟିଏ ଅପୂର୍ବ ବିଧାନ । ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଓ ନପୁଂସକ ବା କ୍ଲୀବଲିଙ୍ଗ । ପୁରୁଷ ମାତ୍ରେ ଯେ ପୁଂଲିଙ୍ଗ, ସ୍ତ୍ରୀମାନେ ଯେ ସ୍ତ୍ରୀଲିଙ୍ଗ କିମ୍ବା ଅଚେତନ ପଦାର୍ଥ ମାତ୍ରେ ଯେ କ୍ଲୀବଲିଙ୍ଗ ଏପରି ନୁହେଁ । ଶବ୍ଦର ଆକାର ଅନୁସାରେ ଲିଙ୍ଗ ନିର୍ଦ୍ଧାରଣ । ପାଣିନିଙ୍କ ପରେ ଅସଂଖ୍ୟ ଶବ୍ଦ ସଂସ୍କୃତ ଭାଷାରେ ଯୋଗ

ହୋଇଅଛି । ଶବ୍ଦ ସଂଗ୍ରହକର୍ତ୍ତା ଶବ୍ଦର ରୂପ ଅନୁସାରେ ଲିଙ୍ଗ ନିର୍ଦ୍ଧାରଣ କରିବାକୁ ବାଧ ହୋଇଅଛନ୍ତି । ଉଦାହରଣସ୍ୱରୂପ ଅମର ଦେବ ପୁଂଲିଙ୍ଗ ମାତ୍ର ଦେବତା ସ୍ତ୍ରୀଲିଙ୍ଗ । ହାର ପୁଂଲିଙ୍ଗ, ମାଳା ସ୍ତ୍ରୀଲିଙ୍ଗ, ମାଲ୍ୟ କ୍ଲୀବଲିଙ୍ଗ । ତଦାନୀନ୍ତନ ପ୍ରଚଳିତ ନାନା ଭାଷାରୁ ଶବ୍ଦ ସଂଗୃହୀତ ହୋଇଥିବାର ଏହା ଗୋଟିଏ ପ୍ରକୃଷ୍ଟ ଉଦାହରଣ ।

ସଂସ୍କୃତ ଭାଷା ଅତୁଳନୀୟ । ଏ ଭାଷାରେ କେଉଁ ଗୁଣର ଯେ ଅଭାବ ଅଛି ତାହା ହୃଦୟରେ ସ୍ଥାନ ପାଉ ନାହିଁ । ଭାବବ୍ୟକ୍ତ ନିମନ୍ତେ ଯେପରି, ଅପୂର୍ବ ବାକ୍ୟ ନିର୍ମାଣ ନିମନ୍ତେ ସେପରି ପ୍ରାଞ୍ଜଳ । ବିଦ୍ୱାନ୍‌ମାନେ ଏ ଭାଷାର ଉଜ୍ଜ୍ୱଳତା, ଗମ୍ଭୀରତା ଓଜସ୍ୱିତା ଅନୁଭବ କରି ଗବେଷଣାରେ ପ୍ରବୃତ୍ତ ହେଲେ । ଅଚିରେ ଭାଷା କ୍ରମୋନ୍ନତି ପଥରେ ଅଗ୍ରସର ହେଲା ଏବଂ ଏ ଭାଷାର ଉତ୍କର୍ଷ ବଢ଼ିଲା । ଏହା ଗୋଟିଏ ରାଜଭାଷା । ତଦାନୀନ୍ତନ ରାଜାମାନେ ଏହାର ପୃଷ୍ଠପୋଷକ ହେଲେ । ବ୍ୟାକରଣ ସାହାଯ୍ୟ ବ୍ୟତିରେକେ ଏ ଭାଷା ଆୟତ୍ତ ହେବାର ନ ଥିଲା । ଏଣୁ କେବଳ ଉଚ୍ଚକୋଟୀର ଲୋକମାନେ ଏହା ଶିକ୍ଷା କରିପାରୁଥିଲେ । କ୍ରମେ ଏହା ବ୍ରାହ୍ମଣ ଜାତିର ବିଦ୍ୟାରେ ପରିଣତ ହେଲା ।

ଆଉ ଗୋଟିଏ କଥା, ଏପରି ଉଜ୍ଜ୍ୱଳ ଭାଷା ଯାହାର ନାମ କି ଦେବଭାଷା ବା ଗୀର୍ବାଣବାଣୀ ତାହା କି କୌଣସି ଦେଶ ଭାଷା ଥିଲା ବା ସର୍ବସାଧାରଣ ଆପାମର ଜନଗଣଙ୍କର କଥିତ ଭାଷା ଥିଲା ? ଗାଢ଼ ଆଲୋଚନା କରି ଦେଖିଲେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଏହା କସ୍ମିନ୍ କାଳରେ ଦେଶ ଭାଷା ବା ପ୍ରାଦେଶିକ ଭାଷା ବା ଭାରତର ବ୍ୟାପକ ଭାଷା ନ ଥିଲା । ଏ ଭାଷାର ମାଧୁରୀରେ ଆକୃଷ୍ଟ ହୋଇ ନାନା ଦେଶର ବିଦ୍ୱାନ୍‌ଗଣ ଦେଶ ବିଶେଷରେ ବିଦ୍ୟମାନ ଥିବା ପାଠାଗାରମାନଙ୍କରେ ଅଧ୍ୟୟନ ସମାପନ କରି ଆପଣା ଆପଣା ଦେଶକୁ ଫେରିଆସି ପାଠାଶାଳା ସ୍ଥାପନ କଲେ । ଏହି ରୀତିରେ ଭାରତର ସର୍ବତ୍ର ସଂସ୍କୃତ ଭାଷାର ପ୍ରଚାର ହେଲା, ମାତ୍ର ଏହାର ପଠନ ପାଠନ ଗୁରୁ ଶିଷ୍ୟରେ ସୀମାବଦ୍ଧ ହେଲା । କାଳିଦାସ ଯେଉଁ ଦେଶର କବି ଥିଲେ ସେହି ଦେଶର ହଳିଆ ମୂଲିଆ ତେଲି ଚମାର ସମସ୍ତେ ସଂସ୍କୃତଭାଷୀ ଥିଲେ କି ? ତାହା କଦାପି ନୁହେଁ । ସେହିପରି ବଙ୍ଗଦେଶରେ ଅନେକ କବିଙ୍କର ଜନ୍ମ; ଏହା ଦେଖି ଆମ୍ଭେମାନେ ଯେବେ କହୁଁ ଯେ ବଙ୍ଗଦେଶର ସମସ୍ତେ ସଂସ୍କୃତଭାଷୀ ଥିଲେ କିମ୍ବା ଶଙ୍କରାଚାର୍ଯ୍ୟ ଧୁରନ୍ଧର ବେଦାନ୍ତବାଦୀ ପଣ୍ଡିତ ଏବଂ ଦିଗ୍‌ବିଜୟ କରିଥିଲେ ଏଣୁ ଦାକ୍ଷିଣାତ୍ୟମାନେ ସଂସ୍କୃତଭାଷୀ ବୋଲିବା ସେପରି ସତ୍ୟ ନୁହେଁ, ଯେପରି ଗଦାଧର ରାଜଗୁରୁ 'ଗଦାଧର ପଦ୍ଧତି' ଲେଖିଥିବାରୁ ପୁରୀବାସୀମାନେ ସଂସ୍କୃତଭାଷୀ କିମ୍ବା ଭୁବନେଶ୍ୱର ବଡ଼ପଣ୍ଡା 'ଆନନ୍ଦ ଦାମୋଦର ଚମ୍ପୂ'ର ରଚକ ବୋଲି ତିଗିରିଆବାସୀମାନେ ସଂସ୍କୃତଭାଷୀ ବୋଲି କହିବା ସତ୍ୟ ନୁହେଁ ।

ବନାରସ, ନବଦ୍ୱୀପ, ପୁରୀ ପ୍ରଭୃତିରେ ସଂସ୍କୃତ ବିଦ୍ୟାଳୟମାନ ଅଛି । ପଣ୍ଡିତ ଓ ବିଦ୍ୟାର୍ଥୀମାନେ ନାନା ଶାସ୍ତ୍ରପାଠ ଓ ଆଲୋଚନା କରୁଅଛନ୍ତି; ମାତ୍ର ସେ ପାଠଶାଳାମାନଙ୍କ ପରିଷ୍କାରିଣୀ, ଦୌବାରିକ, ସୂପକାର ତହିଁର ବର୍ଣ୍ଣଗ୍ରହଣରୁ ସମ୍ପୂର୍ଣ୍ଣ ବଞ୍ଚିତ । ଏବେ ଯାହା, କାଳିଦାସଙ୍କର ସମୟରେ ମଧ ତାହା, ଏଥିରେ ସନ୍ଦେହର କାରଣ କିଛି ନାହିଁ । ଅଧୁନା ଭାରତର ବହୁସଂଖ୍ୟକ ବ୍ୟକ୍ତି ଇଂରାଜୀ ବିଦ୍ୟାରେ ପଣ୍ଡିତ ଏବଂ ସେହି ବିଦ୍ୱାନ୍‌ମାନଙ୍କଦ୍ୱାରା ନାନା ବିଷୟର ଅସଂଖ୍ୟ ପୁସ୍ତକ ଲିଖିତ ହୋଇଅଛି । ଏହି ଗ୍ରନ୍ଥମାନ ଦେଖି ଇଂରାଜୀ ଭାରତର କଥିତ ଭାଷା ବୋଲିବା ଅସଙ୍ଗତ ନୁହେଁ କି ? ପାର୍ଥକ୍ୟ ଏତିକି ଇଂରାଜୀ ଶିକ୍ଷା ବାଧବାଧକତାମୂଳକ, ସଂସ୍କୃତ ଭାଷାର ଉପାଦେୟତା ଶିକ୍ଷା ନିମନ୍ତେ ପଣ୍ଡିତ ମନକୁ ଆକୃଷ୍ଟ କଲା । ଏବଂ ଧର୍ମଶାସ୍ତ୍ର ପ୍ରଭୃତି ସଂସ୍କୃତ ଭାଷାରେ ଲିଖିତ ହୋଇଥିବା ହେତୁ ନାନା ଦେଶର ବ୍ରାହ୍ମଣ ପଣ୍ଡିତମାନେ ତାହା ଶିଖିବାକୁ ବାଧ ହେଲେ । ଏହି ନିୟମରେ ସଂସ୍କୃତର ପ୍ରଚାର ଦ୍ରୁତଗତିରେ ଚାଲିଲା । ସଂସ୍କୃତ ନାଟକରେ ସ୍ତ୍ରୀ, ଶୂଦ୍ର ଓ ଅଶିକ୍ଷିତ ମୁଖରେ ପ୍ରାକୃତ କଥା କୁହାଇବା ବିଧି ନାଟ୍ୟଶାସ୍ତ୍ରରେ ନିୟମାବଦ୍ଧ ହୋଇଥିବାରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ସଂସ୍କୃତ ଭାଷା ରଚନା ଓ ପ୍ରଚଳନ ବେଳେ ସର୍ବସାଧାରଣ ପ୍ରାକୃତ ଭାଷାରେ ବାକ୍ୟାଳାପ କରୁଥିଲେ । ନାଟ୍ୟଶାସ୍ତ୍ରର ଆଦେଶ ଏହି ଯେ ସଂସ୍କୃତ ନାଟକରେ ଅଶିକ୍ଷିତମାନେ ଆପଣା ଭାଷାରେ ମନୋଗତ ଭାବ ବ୍ୟକ୍ତ କରିବେ । ପ୍ରଥମେ ପୈଶାଚୀ, ପାଲୀର ବ୍ୟବହାର ଥିଲା । ପରେ ସୌରସେନୀ, ମାଗଧୀ, ମହାରାଷ୍ଟ୍ରୀ ମଧ ନାଟକରେ ସ୍ଥାନ ପାଇଲା । ଦେଶବିଶେଷର ନାଟକ ଲେଖକମାନେ ସେହି ସେହି ଦେଶର କଥିତ ଭାଷାକୁ ନାଟକରେ ସଂଯୋଗ କରୁଥିଲେ ଶାସ୍ତ୍ରର ନିୟମଭଙ୍ଗ ହୁଅନ୍ତା ନାହିଁ ଅଥଚ କେଉଁ ଦେଶରେ ନାଟକ ଲିଖିତ କିମ୍ବା କେଉଁ ଦେଶର କବି ଦ୍ୱାରା ଲିଖିତ ତାହା ଅନାୟାସରେ ଜଣାଯାଆନ୍ତା । ମାତ୍ର ପରବର୍ତ୍ତୀ ଲେଖକମାନେ ପୂର୍ବବର୍ତ୍ତୀ କବିମାନଙ୍କର ପଦାନୁସରଣ କରି ପୂର୍ବ ରୀତିରେ ପ୍ରାକୃତ କଥାରେ ଭାଷା ବ୍ୟକ୍ତ କରିଅଛନ୍ତି । ଆଉ ଦୁଇ ଚାରି କଥା ଲେଖିବାକୁ ମନରେ ଅଛି, ମାତ୍ର ଥାଉ ।

ସଂସ୍କୃତଜ୍ଞ ପଣ୍ଡିତମାନଙ୍କଠାରୁ ଗାଳି ଶୁଣିବାକୁ ଏତିକି ଯଥେଷ୍ଟ ।

'ଅନନ୍ତ ଶାସ୍ତ୍ରଂ ବହୁବେଦିତବ୍ୟଂ'— ଏଥିରେ ସନ୍ଦେହର ଅବସର ନାହିଁ ଏବଂ ପାଠକର କାଳ ଅଳ୍ପ ଏବଂ ବହୁବିଘ୍ନ ସଙ୍କୁଳ ଏଥିରେ ମଧ୍ୟ ସନ୍ଦେହ ନାହିଁ । ଏଣୁ ଭୃଙ୍ଗ ନାନା ପୁଷ୍ପରୁ ମଧୁସଂଗ୍ରହ କଲାପରି ଶାସ୍ତ୍ରମାନଙ୍କରେ ଯାହା ସାରଭୂତ ତାହା ଗ୍ରହଣ କରିବା ଉଚିତ। ଅତି ଉପାଦେୟ ଉପଦେଶ ନତମସ୍ତକରେ ସ୍ୱୀକାର୍ଯ୍ୟ । ମଧୁ ସମସ୍ତଙ୍କ ପ୍ରତି ମଧୁର । ମାତ୍ର ମାଦୃଶ ଅଳ୍ପ ଶିକ୍ଷିତର ସଂଗୃହୀତ ଶାସ୍ତ୍ରଜ୍ଞାନ ପଣ୍ଡିତମାନଙ୍କ ନିନ୍ଦାର ସାମଗ୍ରୀ । ହେଉ ପଛକେ, ପ୍ରକୃତିର ଅନୁରୋଧ ହେଳା କରିବାର ତ କ୍ଷମତା ନାହିଁ ।

•

## ନିବେଦନ

ଆୟୁଷ୍ମାନ୍ ଶ୍ରୀମାନ୍ ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବଙ୍କ ଆନୁକୂଲ୍ୟ ଓ ପୃଷ୍ଠପୋଷକତାରୁ 'ଶଙ୍ଖ'ର ଜନ୍ମ । ପ୍ରାରମ୍ଭରୁ 'ଶଙ୍ଖ'ର ରକ୍ଷଣାବେକ୍ଷଣ ଭାର ଶ୍ରୀଯୁକ୍ତ ମାୟାଧର ମାନସିଂହଙ୍କ ହସ୍ତରେ ନ୍ୟସ୍ତ ଥିଲା । ସେ ବର୍ଷାଧିକକାଳ ଏହାର ଲାଳନପାଳନ ଭାର ଗ୍ରହଣ କରିଥିଲେ । ବର୍ତ୍ତମାନ ନାନା ପ୍ରତିବନ୍ଧକ ନିବନ୍ଧନ ଏହି ଦାୟିତ୍ୱରୁ ସ୍ୱତନ୍ତ୍ର ରହିଲେ । ଏଥିନିମନ୍ତେ ମୁଁ ଆନ୍ତରିକ ଦୁଃଖିତ ।

ଶ୍ରୀମାନ୍ ରାଜା ମହୋଦୟଙ୍କର ଅନୁରୋଧ କ୍ରମେ 'ଶଙ୍ଖ'ର ସମ୍ପାଦନାଭାର ଗ୍ରହଣ କରିବାକୁ ମୁଁ ବାଧ୍ୟ ହୋଇଅଛି । ତାଙ୍କର ଇଚ୍ଛା ଅବଶ୍ୟ ପାଳନୀୟ । ଏ ବୟସରେ ମୁଁ ଏ ଭାର ଗ୍ରହଣ କଲି ଏହି ଭରସାରେ ଯେ, ଉତ୍କଳର ଅଧ୍ୟାପକଗଣ, ଲବ୍ଧପ୍ରତିଷ୍ଠ ଲେଖକଗଣ ଏବଂ ସହୃଦୟ ଗ୍ରାହକଗଣ ମତେ ଏହି କାର୍ଯ୍ୟରେ ଯଥେଷ୍ଟ ସାହାଯ୍ୟ କରିବେ । ଏବଂ 'ଶଙ୍ଖ'ର ଶ୍ରୀବୃଦ୍ଧି କାମନା କରିବେ ।

ବଙ୍ଗଦେଶରେ ଶତାଧିକ ମାସିକ ପତ୍ରର ପ୍ରଚାର ଥିବାସ୍ଥଳେ ଆମ ଦେଶରେ ଗୋଟିଏ ପତ୍ରର ମଧ୍ୟ ଅସ୍ତିତ୍ୱ ନ ଥିବାର ଦେଖିଲେ ହୃଦୟରେ ଘୋରତର କ୍ଷୋଭ ଜାତ ହୁଏ । ଦୁଇ ତିନିଟା ମାସିକ ପତ୍ରର ଅକାଳ ବିୟୋଗ ତତୋଽଧିକ ମର୍ମନ୍ତୁଦ । ଏହା କି ଦେଶବାସୀ ବୁଝୁ ନାହାନ୍ତି, ଦେଖୁ ନାହାନ୍ତି । ଏଥିର ମୂଳ କାରଣ ଦେଶର ଶ୍ରେଷ୍ଠ ବ୍ୟକ୍ତିମାନଙ୍କର ତାଚ୍ଛଲ୍ୟ । ଶ୍ରେଷ୍ଠ ବ୍ୟକ୍ତିମାନେ ପଥପ୍ରଦର୍ଶକ ହେଲେ ଏବଂ ଉତ୍ସାହ ଦେଲେ ଅନ୍ୟମାନେ ସେମାନଙ୍କର ପଦାନୁସରଣ କରିବା ସ୍ୱାଭାବିକ । 'ଯଯଦା ଚରତିଶ୍ରେଷ୍ଠ ସ୍ତତ୍ତଦେବେତରୋଜନାଃ ।

ଯଦି 'ଶଙ୍ଖ'କୁ ବଞ୍ଚାଇ ରଖିବାର ବାସନା ଥାଏ, ତେବେ ଶ୍ରେଷ୍ଠ ବ୍ୟକ୍ତିମାନେ ଏହାପ୍ରତି ସୁଦୃଷ୍ଟି ଦେଇ ସର୍ବସାଧରଣକୁ ଉତ୍ସାହିତ କରନ୍ତୁ । ଏହାହିଁ ଆମର ନିବେଦନ ।

'ଶଙ୍ଖ' ଭାରତବାସୀଙ୍କର ଶ୍ରେଷ୍ଠ ଶୁଭସୂଚକ ବସ୍ତୁ । ଏହାର ଶବ୍ଦ ଭାରତବାସୀଙ୍କ ହୃଦୟରେ ଶୁଭ ସୂଚନା ଦିଏ । ପୂର୍ବେ ଶଙ୍ଖ ଶବ୍ଦ ଦ୍ୱାରା ସୈନ୍ୟ ଚାଳନା ହେଉଥିଲା । ବୀରପୁରୁଷମାନେ ଶଙ୍ଖର ଇଙ୍ଗିତରେ ସେନାମାନଙ୍କୁ ଯୁଦ୍ଧରେ ପ୍ରବୃତ୍ତ ଓ ନିବୃତ୍ତ କରୁଥିଲେ । ଭୀଷ୍ମ, କୃଷ୍ଣ ପ୍ରଭୃତି ବୀରମାନେ ମହାଭାରତ ଯୁଦ୍ଧରେ ଯେଉଁ ତୁମୁଳ ଶଙ୍ଖ ଘୋଷ କରିଥିଲେ ତାହା ଅଦ୍ୟାପି ମହାଭାରତ ପାଠକମାନଙ୍କ କର୍ଣ୍ଣରେ ବାଜୁ ଥିବାର ଅନୁମାନ ହୁଏ । ସେହି ଶଙ୍ଖଶବ୍ଦ ଅଦ୍ୟାପି ଭାରତବାସୀର ଶରୀରକୁ ରୋମାଞ୍ଚିତ କରେ ।

ସେହି ଶଙ୍ଖ ଆଜି ମାସିକ ପତ୍ର ରୂପେ ଉତ୍କଳବାସୀଙ୍କ ସମକ୍ଷରେ ବିଦ୍ୟମାନ । ଶଙ୍ଖ ଶବ୍ଦ ଆର୍ଯ୍ୟଜାତିକୁ ଉଦ୍‌ବୁଦ୍ଧ କରୁଥିଲା ଏବେ ଏହି 'ଶଙ୍ଖ' ଉତ୍କଳବାସୀଙ୍କି ଉଦ୍ଧାର କରିବାକୁ ପ୍ରସ୍ତୁତ ଅଛି ।

ଶଙ୍ଖ କହୁଛି— ଉତ୍କଳବାସୀ ଜାଗ୍ରତ ହୁଅ, ମୋହ ନିଦ୍ରା ପରିତ୍ୟାଗ କର । ପାଶ୍ଚାତ୍‌ପଦ ହୁଅ ନାହିଁ । ବିଜ୍ଞାନବର୍ତ୍ତିକା ଧରି ଅଗ୍ରଗାମୀ ହୁଅ, ସେହି ବିଜ୍ଞାନବର୍ତ୍ତିକାଦ୍ୱାରା କୁସଂସ୍କାର, କୁବିଶ୍ୱାସ, ଅନ୍ଧବିଶ୍ୱାସ ଓ ଜାତୀୟ ବିଦ୍ୱେଷକୁ ଉତ୍ସନ୍ନସାତ୍ କର ।

ଉତ୍ତିଷ୍ଠତ ଜାଗ୍ରତ, ଉତ୍ତିଷ୍ଠତ ଜାଗ୍ରତ, ଉତ୍ତିଷ୍ଠତ ଜାଗ୍ରତ ।

ସମ୍ପାଦକ ଯିବେ ସମ୍ପାଦକ ଆସିବେ, ମାତ୍ର 'ଶଙ୍ଖ' ସର୍ବଦା ରହିବ । ସମ୍ପାଦକର ପରିବର୍ତ୍ତନ ନିମନ୍ତେ ଗ୍ରାହକ ଓ ଲେଖକ ନିରୁତ୍ସାହିତ ହେବା ସମୀଚୀନ ନୁହେଁ । 'ଶଙ୍ଖ'ର ଉଦ୍ଦେଶ୍ୟ ଦେଶସେବା, ସାହିତ୍ୟଚର୍ଚ୍ଚା । ସମ୍ପାଦକ ପରିବର୍ତ୍ତନସତ୍ତ୍ୱେ ଓ ଲେଖକ ଓ ଗ୍ରାହକଙ୍କ ଆନୁକୂଲ୍ୟରୁ 'ଶଙ୍ଖ' ଆପଣା ଗତି ପଥରେ ସ୍ଥିର ନିଶ୍ଚିତ ଭାବରେ ଅଗ୍ରସର ହେବ । ସମ୍ପାଦକ ନିମିତ୍ତ ମାତ୍ର ।

ଶଙ୍ଖର ପରିଚାଳନା ଭାର ମୋ ଉପରକୁ କାଲି ଆସିଅଛି । ଏତେବେଳକୁ ଦୁଇ ସଂଖ୍ୟା ବାକି । ଆଶ୍ୱିନମାସ

ମଧ୍ୟରେ ଏ ଦୁଇ ସଂଖ୍ୟା ବାହାର କରି ଗ୍ରାହକମାନଙ୍କୁ ଦେବାର ବାସନା ରହିଲା । କାର୍ତ୍ତିକ ସଂଖ୍ୟା କାର୍ତ୍ତିକମାସରେ ନିଶ୍ଚୟ ବାହାରିବ । ମାର୍ଗଶୀର ମାସଠାରୁ ତେଣିକି ପ୍ରତିମାସରେ **'ଶଙ୍ଖ'** ମାସର ଶେଷ ସପ୍ତାହରେ ରୀତିମତ ଗ୍ରାହକମାନଙ୍କର ଦ୍ୱାରସ୍ଥ ହେବ । ଗ୍ରାହକମାନଙ୍କୁ ଏଣୁ ଅନୁରୋଧ କରେ ଯେ ସେମାନେ ଉଦ୍‌ବିଗ୍ନମନା ହେବେ ନାହିଁ ।

ପ୍ରାର୍ଥନା— ଉତ୍କଳର ଶ୍ରେଷ୍ଠବ୍ୟକ୍ତି, ଆଧ୍ୟାତ୍ମିକ, ଲେଖକ, ଗ୍ରାହକ ଏକ ମନରେ ଥରେ 'ଶଙ୍ଖ' ପ୍ରତି ସଦୟ ଦୃଷ୍ଟି ପକାନ୍ତୁ, 'ଶଙ୍ଖ' ଦେଶର ସେବା ସୁଚାରୁରୂପେ ନିଶ୍ଚୟ କରିପାରିବ ।

•

## ଧର୍ମପଦ

ଏହାକୁ କହନ୍ତି ଧର୍ମପଦ, ଧର୍ମର ପଥ ଯାହାକୁ ବୁଦ୍ଧଙ୍କର ଶିଷ୍ୟଗଣ ସନ୍ଧାନ କରି ଚଳନ୍ତି । (୧)

ଜୀବ ସେମାନଙ୍କ ମନରୁ ସେମାନଙ୍କର ପ୍ରକୃତିକୁ ଉତ୍ପନ୍ନ କରନ୍ତି; ମନଃଚାଳିତ ସେମାନେ, ମାନସ କୃତ, ମନ ଅଟେ ସୁଖ କିମ୍ବା ଦୋଷର ଉତ୍ସ । (୨)

ନିଜଦ୍ୱାରା ଅନିଷ୍ଟକୃତ ହୁଏ; ନିଜଦ୍ୱାରା ଆପେ ଦୁଃଖ ପାଏ; ନିଜ ଦ୍ୱାରା ପାପ ଅକୃତ ରହେ । ନିଜଦ୍ୱାରା ନିଜେ ପବିତ୍ର ହୁଏ । ପବିତ୍ରତା ଓ ଅପବିତ୍ରତା ନୈଜ, ଜଣେ ଅନ୍ୟ ଜଣକୁ ପବିତ୍ର କରିପାରେ ନାହିଁ । (୩)

ତୁମ୍ଭେ ନିଜେ ଅବଶ୍ୟ ଉଦ୍ୟମ କରିପାରିବ । ତଥାଗତମାନେ କେବଳ ଧର୍ମୋପଦେଶକ । ଚିନ୍ତାଶୀଳ ବ୍ୟକ୍ତିମାନେ ଯେଉଁମାନେ କି ଏହି ପଥରେ ପ୍ରବେଶ କରନ୍ତି ସେମାନେ ମାରର ▸ ଦାସତ୍ୱରୁ ରକ୍ଷା ପାଆନ୍ତି । (୪)

ଜାଗ୍ରତ ହେବା ଉପଯୁକ୍ତ ସମୟରେ ଯେଉଁ ବ୍ୟକ୍ତି ଜାଗ୍ରତ ନ ହୁଏ ସେ ଯୁବକ ହେଉ ବା ସବଳ ହେଉ ପଛକେ ଆଳସ୍ୟପୂର୍ଣ୍ଣ, ଯାହାର ଇଚ୍ଛା ଓ ଚିନ୍ତା ସମୂହ ଦୁର୍ବଳ ସେହି କର୍ମକୁଣ୍ଠ ଓ ଆଳସ୍ୟବ୍ୟକ୍ତି କଦାପି ସେହି ଧର୍ମପଥ ପାଇପାରିବ ନାହିଁ । (୫)

ଜଣେ ବ୍ୟକ୍ତି ଯେବେ ନିଜକୁ ପ୍ରିୟକରି ମଣେ ତେବେ ସେ ନିଜକୁ ଯତ୍ନ ସହକାରେ ପ୍ରହରାଦେଉ । ସେ ନିଜକୁ ଜଗିପାରେ ତାକୁ ସତ୍ୟ ଜଗେ । (୬)

ଯେବେ ଜଣେ ବ୍ୟକ୍ତି ନିଜକୁ ସେହିପରି କରିପାରେ ଯେପରି ହେବାକୁ ସେ ଅନ୍ୟକୁ ଶିକ୍ଷା ଦିଏ, ତେବେ ଆପଣାକୁ ବଶ କରିପାରିଲେ ସେ ଅନ୍ୟମାନଙ୍କୁ ବଶ କରିପାରିବ । ପ୍ରକୃତରେ ନିଜକୁ ନିଜେ ବଶ କରିପାରିବାର ବଡ଼ କଷ୍ଟସାଧ୍ୟ ।(୭)

ଯେବେ ଜଣେ ବ୍ୟକ୍ତି ଯୁଦ୍ଧରେ ସହସ୍ରଥର ସହସ୍ର ବ୍ୟକ୍ତିକୁ ଜୟକରେ ଏବଂ ଯଦି ଆଉ ଜଣେ ବ୍ୟକ୍ତି ନିଜକୁ ଜୟ କରେ ତେବେ ଶେଷୋକ୍ତ ବ୍ୟକ୍ତି ଶ୍ରେଷ୍ଠତମ ଜୟକର୍ତ୍ତା । (୮)

ସାଧାରଣ ଲୋକ ହେଉନ୍ତୁ ବା ଯାଜକ ମଣ୍ଡଳୀର ଲୋକ ହେଉନ୍ତୁ ପଛକେ ନିର୍ବୋଧମାନଙ୍କର ଅଭ୍ୟାସ ଏହି ଯେ ସେମାନେ ବିଚାର କରନ୍ତି ''ଏହା ମୋଦ୍ୱାରା କୃତ ଅନ୍ୟମାନେ ମୋର ବଶ ହେଉନ୍ତୁ । ଏହି କାର୍ଯ୍ୟରେ ବା ସେହି କାର୍ଯ୍ୟରେ ପ୍ରଧାନ ଅଂଶ ମୋରଦ୍ୱାରା ସାଧିତ ହେଉ ।'' ନିର୍ବୋଧମାନେ କର୍ତ୍ତବ୍ୟ କାର୍ଯ୍ୟ ସାଧିତ ହେବା ବିଷୟରେ ଯତ୍ନ କରନ୍ତି ନାହିଁ କିମ୍ବା କେଉଁ ଲକ୍ଷ୍ୟରେ ଉପସ୍ଥିତ ହେବାର ପ୍ରୟୋଜନ ତାହା ଭାବନ୍ତି ନାହିଁ । କେବଳ ନିଜର ସ୍ୱାର୍ଥର ବିଚାର କରନ୍ତି । ଏ ସମସ୍ତ ସେମାନଙ୍କର ଅହମିକାର ପାଦ ଭୂମି । (୯)

ମନ୍ଦକାର୍ଯ୍ୟ ସମୂହ ଏବଂ ଆମ୍ଭମାନଙ୍କର କ୍ଷତିକାରକ କାର୍ଯ୍ୟ ସମୂହ କରିବା ବଡ଼ ସହଜ; ଯାହା ଉପକାରକ ଏବଂ ଉତ୍ତମ, ତାହା କରିବା ବଡ଼ ଦୁଃସାଧ୍ୟ । (୧୦)

ଯଦି କିଛି କର୍ତ୍ତବ୍ୟ ଥାଏ, ତାହା ମନୁଷ୍ୟ କରୁ ଏବଂ ଅତି ପ୍ରବଳ ଭାବରେ କରୁ । (୧୧)

ଆହା ! ଅଳ୍ପ ଦିନରେ ଏହି ଶରୀର ଭୂମିରେ ପଡ଼ିରହିବ, ଘୃଣିତ, ଅଜ୍ଞାତ, ଖଣ୍ଡିଏ ଅବ୍ୟବହାର୍ଯ୍ୟ କାଷ୍ଠଖଣ୍ଡ ପରି, ତଥାପି ଆମ୍ଭମାନଙ୍କର ଚିନ୍ତାଧାରା ବଞ୍ଚି ରହିବ । ସେହି ଚିନ୍ତା ପୁଣି ଭାବନାର ବିଷୟ ହେବ ଏବଂ କାର୍ଯ୍ୟ ଉତ୍ପନ୍ନ କରିବ । ସୁଚିନ୍ତା ସୁକାର୍ଯ୍ୟ ଜନ୍ମ କରିବ ଓ କୁଚିନ୍ତା କୁକାର୍ଯ୍ୟ ଜନ୍ମ କରିବ । (୧୨)

ପ୍ରକୃତତ୍ୱ ଅଟେ ଅମରତ୍ୱର ବାଟ, ଚିନ୍ତା ଶୂନ୍ୟତା ମୃତ୍ୟୁର ବାଟ । ଯେଉଁମାନେ ପ୍ରକୃତର ଆଶ୍ରୟୀ ସେମାନେ ମରନ୍ତି ନାହିଁ । ଯେଉଁମାନେ ଚିନ୍ତା ଶୂନ୍ୟ ସେମାନେ ବଞ୍ଚିଥିଲେ ମଧ୍ୟ ଆଗରୁ ମୃତ । (୧୩)

ଯେଉଁମାନେ ଅସତ୍ୟରେ ସତ୍ୟର କଳ୍ପନା କରନ୍ତି, ଏବଂ ସତ୍ୟରେ ଅସତ୍ୟ ଦେଖାନ୍ତି, ସେମାନେ କେବେ ସତ୍ୟରେ ପ୍ରବେଶ କରନ୍ତି ନାହିଁ, କେବଳ ବୃଥା ଆଶାମାନଙ୍କୁ ଅନୁସରଣ କରନ୍ତି । ଯେଉଁମାନେ ସତ୍ୟରେ ସତ୍ୟକୁ ଜାଣନ୍ତି ଏବଂ ଅସତ୍ୟକୁ ଅସତ୍ୟରେ ଜାଣନ୍ତି ସେମାନେ ସତ୍ୟରେ ପ୍ରବେଶ କରନ୍ତି ଏବଂ ପ୍ରକୃତ କାମନାମାନଙ୍କୁ ଅନୁସରଣ କରନ୍ତି । (୧୪)

ଯେପରି ଭଲ ଛାଉଣି ହୋଇ ନ ଥିବା ଗୃହ ଭିତରକୁ ବୃଷ୍ଟିଜଳ ପ୍ରବେଶ କରିପାରେ, ପ୍ରବୃତ୍ତି ପ୍ରବେଶ କରିପାରେ ଭାବନାଶୂନ୍ୟ ମନ ମଧ୍ୟକୁ ସେହିପରି । ଭଲ ଛାଉଣି ହୋଇଥିବା ଗୃହଭିତରକୁ ଯେପରି ବୃଷ୍ଟିଜଳ ପ୍ରବେଶ କରିପାରେ ନାହିଁ, ସେହିପରି ପ୍ରବୃତ୍ତି ସୁଚିନ୍ତାକାରୀ ମନ ମଧ୍ୟକୁ ପ୍ରବେଶ କରିପାରେ ନାହିଁ । (୧୫)

କୂପନିର୍ମାତାମାନେ ଯେଉଁଠାକୁ ଇଚ୍ଛା ସେହିଠାକୁ ଜଳ ଚଳାଇ ପାରନ୍ତି, କାଣ୍ଡ ନିର୍ମାତାମାନେ କାଣ୍ଡକୁ ବନାଇ ପାରନ୍ତି, ବଢ଼ାଇମାନେ ଗୋଟାଏ କାଠ ଗଣ୍ଡିକୁ ବଙ୍କାଇ ପାରନ୍ତି । ଜ୍ଞାନୀ ବ୍ୟକ୍ତିଗଣ ଆପଣାକୁ ସୁଚାଳିତ କରିପାରନ୍ତି, ଜ୍ଞାନୀ ବ୍ୟକ୍ତିମାନେ ଦୋଷ ଓ ପ୍ରଶଂସାରେ ବିଚଳିତ ହୁଅନ୍ତି ନାହିଁ । ମନୋଯୋଗ ସହିତ ଧର୍ମକଥା ଶ୍ରବଣ କରି ସେମାନେ ଅବିଚଳିତ ହୁଅନ୍ତି ଗଭୀର, ଅଚଞ୍ଚଳ, ମସୃଣହ୍ରଦ ପରି । (୧୬)

ଯଦ୍ୟପି କୌଣସି ବ୍ୟକ୍ତି ମନ୍ଦବୁଦ୍ଧିରେ କିଛି କହେ ବା କିଛି କାର୍ଯ୍ୟ କରେ ଦୁଃଖ ତାହାକୁ ଅନୁସରଣ କରେ ଯେପରିକି ଗାଡ଼ିକୁ ଟାଣୁଥିବା ବଳଦମାନଙ୍କର ପାଦକୁ ଗାଡ଼ିଚକ ଅନୁସରଣ କରେ । (୧୭)

ଗୋଟିଏ ମନ୍ଦକାର୍ଯ୍ୟ ଅକୃତ ରହିବା ଭଲ, କାରଣ ମନ୍ଦକାର୍ଯ୍ୟ ନିମନ୍ତେ ମନୁଷ୍ୟକୁ ପରେ ପଶ୍ଚାତ୍ତାପ କରିବାକୁ ହୁଏ, ଗୋଟିଏ ସତ୍‌କାର୍ଯ୍ୟ କରାଯିବା ଭଲ କାରଣ ଏହା କରାଗଲା ବୋଲି ଜଣକୁ ପଶ୍ଚାତ୍ତାପ କରିବାକୁ ହେବ ନାହିଁ । (୧୮)

ଯଦ୍ୟପି ଜଣେ ଗୋଟିଏ ପାପ କରି ପକାଏ ସେ ଆଉଥରେ ତାହା କରୁ ନାହିଁ । ସେ ପାପକାର୍ଯ୍ୟରେ ଆନନ୍ଦିତ ହେଉ ନାହିଁ; ମନ୍ଦର ପରିଣାମ ଅଟେ ଦୁଃଖ । ଯେବେ ଜଣେ ଲୋକ ଯାହା ଉତ୍ତମ ତାହା କରେ ସେ ସେହି କାର୍ଯ୍ୟକୁ ପୁନର୍ବାର କରୁ, ସେ ସେଥିରେ ଆନନ୍ଦିତ ହେଉ, ସତ୍‌କାର୍ଯ୍ୟର ପରିଣାମ ଅଟେ ସୁଖ । (୧୯)

ମନ୍ଦକୁ ହେଳାରେ କେହି ବିଚାର କରିବ ନାହିଁ, ହୃଦୟରେ ଏହି ଭାବନା କରି ଯେ ''ଏହା ମୋ ନିକଟକୁ ଆସିବ ନାହିଁ ।'' ଯେପରି ଜଳବିନ୍ଦୁ ପତନରେ ଗୋଟିଏ ଜଳପାତ୍ର ପୂର୍ଣ୍ଣ ହୁଏ ସେହିପରି ନିର୍ବୋଧ ବ୍ୟକ୍ତି ଅସାର ପୂର୍ଣ୍ଣ ହୁଏ ଯଦ୍ୟପି ସେ ଏହି ଅସାରକୁ ଧୀରେ ଧୀରେ ସଂଗ୍ରହ କରେ । (୨୦)

ସତ୍‌କାର୍ଯ୍ୟକୁ କେହି ହେଳା ସହିତ ବିଚାର କରିବ ନାହିଁ, ହୃଦୟରେ ଏହି ଭାବନା କରି ଯେ ଏହା ମୋ ନିକଟକୁ ଆସିବ ନାହିଁ । ଜଳବିନ୍ଦୁ ପତନରେ ଯେପରି ଜଳପାତ୍ର ପୂର୍ଣ୍ଣ ହୁଏ ସେହିପରି ଜ୍ଞାନୀ ବ୍ୟକ୍ତି ସତ୍‌ପୂର୍ଣ୍ଣ ହୁଏ ଯଦ୍ୟପି ସେ ଏହି ସତ୍‌କୁ ଧୀରେ ଧୀରେ ସଂଗ୍ରହ କରେ । (୨୧)

ଯେଉଁ ବ୍ୟକ୍ତି କେବଳ ସୁଖ ନିମନ୍ତେ ବାସକରେ, ତାହାର ଇନ୍ଦ୍ରିୟମାନେ ଅଶାସିତ, ଖାଦ୍ୟରେ ଅମିତାଚାର, ଅଳସ, ଦୁର୍ବଳ ହୁଅନ୍ତି । ପ୍ରଲୋଭନକାରୀ ମାର ତାକୁ ନିଶ୍ଚୟ ଭୂମିସାତ୍ କରିବେ ଯେପରି ପବନ ଗୋଟାଏ ଦୁର୍ବଳ ଗଛକୁ ଉତ୍ପାଟନ କରିପାରେ । ଯେଉଁ ବ୍ୟକ୍ତି ସୁଖ ଆଶା ନ କରି ଜୀବନଧାରଣ କରେ ତା'ର ଇନ୍ଦ୍ରିୟମାନେ ସୁଶାସିତ ଖାଦ୍ୟରେ ମିତାଚାର, ବିଶ୍ୱାସଯୋଗ୍ୟ ଓ ସବଳ, ତାକୁ ଅବଶ୍ୟ ମାର ନଷ୍ଟ କରିପାରିବ ନାହିଁ ଯେପରିକି ପାଷାଣ ନିର୍ମିତ ପର୍ବତକୁ ପବନ ଉତ୍ପାଦନ କରିପାରିବ ନାହିଁ । (୨୨)

ନିର୍ବୋଧବ୍ୟକ୍ତି ଯେ କି ନିଜର ନିର୍ବୁଦ୍ଧିତାକୁ ଜାଣେ ସେ ଏତିକି ହେଲେ ଜ୍ଞାନବାନ୍ । କିନ୍ତୁ ଜଣେ ନିର୍ବୋଧ ଯେ କି ଆପଣାକୁ ଜ୍ଞାନୀ ବୋଲି ମନେକରେ ସେ ପ୍ରକୃତରେ ଅବିବେକୀ । (୨୩)

ଜଣେ ପାପକାରୀ ବ୍ୟକ୍ତି ପ୍ରତି ପାପ ମଧୁତୁଲ୍ୟ ମଧୁର ଜଣାପଡ଼େ; ସେ ଏହାକୁ ସୁଖକର ମଣୁଥାଏ । ଯେତେବେଳଯାଏ ଫଳ ଫଳି ନ ଥାଏ; କିନ୍ତୁ ଯେତେବେଳେ ଏହାର ଫଳ ପକ୍ୱ ହୁଏ ସେତେବେଳେ ସେ ଏହାକୁ ପାପ ବୋଲି ଦେଖେ । ଏବଂ ଏହି ରୂପେ ସତ୍‌ବ୍ୟକ୍ତି ଧର୍ମର ସାରବତ୍ତାକୁ ଗୋଟାଏ ବୋଝଭଳି ଏବଂ ମନ୍ଦ ବୋଲି ମଣୁଥାଏ ଯେତେବେଳଯାଏ ଏହାର ଫଳ ଫଳି ନ ଥାଏ, କିନ୍ତୁ ଯେତେବେଳେ ଏହାର ଫଳ ପକ୍ୱ ହୁଏ, ସେତେବେଳେ ଏହାର ମହତ୍ତ୍ୱକୁ ସେ ବୁଝିପାରେ । (୨୪)

ଜଣେ ଘୃଣାକାରୀ ଅପର ଘୃଣାକାରୀର ବିସ୍ତାର କ୍ଷତି କରିପାରେ କିମ୍ବା ଜଣେ ଶତ୍ରୁ ଅନ୍ୟ ଜଣେ ଶତ୍ରୁର; ମାତ୍ର ଗୋଟିଏ ଅସତ୍‌ଚାଳିତ ମନ ନିଜର ଅଧିକତର ଅନିଷ୍ଟ କରିପାରିବ । ଜଣେ ମାତା, ଜଣେ ପିତା କିମ୍ବା ଜଣେ ଆତ୍ମୀୟ ଅନେକ ଉପକାର କରିବେ କିନ୍ତୁ ସୁଚାଳିତ ମନ ନିଜର ଅଧିକତର ଉପକାର କରିବ । (୨୫)

ଯାହାର ଦୁଷ୍ଟପଣିଆ ଅତି ପ୍ରବଳ ଅଟେ ତାହାକୁ ତାହା ସେହି ଅବସ୍ଥାକୁ ଟାଣିଆଣେ ଯେଉଁ ଅବସ୍ଥାରେ ସେ ରହିବାକୁ ତା'ର ଶତ୍ରୁମାନେ ଇଚ୍ଛା କରନ୍ତି । ସେ ନିଜେ ତା'ର ଅତି ପ୍ରବଳ ଶତ୍ରୁ । ଏହି ପ୍ରକାରେ ଗୋଟାଏ ଲତା ଗଛର ଜୀବନଧ୍ୱଂସ କରେ ଯାହାର ଦିହରେ ସେ ଆଶ୍ରୟ ନେଇଥାଏ । (୨୬)

ତୁମ୍ଭର ମନକୁ ଚାଳିତ କର ନାହିଁ ତାହା ଆଡ଼କୁ ଯାହା ସୁଖ ଦିଏ; ଯେତେବେଳେ ଜଳିବ ସେତେବେଳେ ଚିତ୍କାର କରିବାକୁ ପଡ଼ିବ ନାହିଁ ଯେ 'ଏହା ଯନ୍ତ୍ରଣା' । ଦୁଷ୍ଟଲୋକ ଆପଣା କର୍ମଦ୍ୱାରା ଜଳେ ନିଆଁରେ ଜଳିଲା ପରି । (୨୭)

ସୁଖ ନିର୍ବୋଧକୁ ନାଶ କରେ, ନିର୍ବୋଧବ୍ୟକ୍ତି ନିଜର ସୁଖ ପିପାସାରେ ଆପଣାକୁ ଧ୍ୱଂସ କରେ ଯେପରିକି ସେ ନିଜେ ନିଜର ଶତ୍ରୁ । ଶସ୍ୟକ୍ଷେତ୍ର ପ୍ରବଳ ବାୟୁ ଦ୍ୱାରା କିମ୍ବା ତୃଣଦ୍ୱାରା ନଷ୍ଟ ହୁଏ । ମନୁଷ୍ୟଜାତି ପ୍ରବୃତ୍ତିଦ୍ୱାରା, ଘୃଣାଦ୍ୱାରା, ଅହମିକା ଦ୍ୱାରା ଏବଂ ଅବୈଧ ଲାଳସାଦ୍ୱାରା ନଷ୍ଟ ହୁଅନ୍ତି । (୨୮)

ଗୋଟାଏ ପଦାର୍ଥ ସୁଖକର କି ଅସୁଖକର ତାହା କୌଣସି ମନୁଷ୍ୟ ଆପଣା ବିବେଚନାକୁ ଆଣୁ ନାହିଁ । ସୁଖପ୍ରତି ଅନୁରାଗ ଦୁଃଖ ଜନ୍ମ କରେ ଏବଂ ଯନ୍ତ୍ରଣାର ପ୍ରତି ଆଶଙ୍କା ଭୟକୁ ଜନ୍ମ କରେ; ଯେ କି ସୁଖର ଅନୁରାଗରୁ ମୁକ୍ତ ଏବଂ ଯନ୍ତ୍ରଣାର ଶଙ୍କାରୁ ମୁକ୍ତ ସେ ଦୁଃଖ ଜାଣେ ନାହିଁ କିମ୍ବା ଭୟକୁ ଜାଣେ ନାହିଁ । (୨୯)

ଯେ ନିଜକୁ ଅହମିକାକୁ ଦେଇଅଛି ଏବଂ ନିଜକୁ ସମାଧିକୁ ଦେଇ ନାହିଁ, ସେ ଜୀବନର ପ୍ରକୃତ ଲକ୍ଷ୍ୟକୁ ଭୁଲିଯାଇ ଏବଂ ସୁଖକୁ ଦୃଢ଼ଭାବରେ ଧରି, ସମୟ ଆସିଲେ ତାହାର ପ୍ରତି ଈର୍ଷାକରେ ଯେ କି ନିଜକୁ ସମାଧିରେ ନିବିଷ୍ଟ କରିଅଛି । (୩୦)

ଅନ୍ୟର ଦୋଷ ସହଜରେ ଅନୁଭୂତ ହୁଏ କିନ୍ତୁ ନିଜର ଦୋଷ ଅନୁଭବ କରିବାର ବଡ଼ କଷ୍ଟ । ଜଣେ ମନୁଷ୍ୟ ଆପଣା ପ୍ରତିବେଶୀର ଦୋଷକୁ ଅଗାଡ଼ି ପରି ପାଛୁଡ଼ିପାରେ କିନ୍ତୁ ତା'ର ନିଜର ଦୋଷକୁ ଗୋପନ କରେ ଯେପରି କି ପ୍ରବଞ୍ଚକ ଆପଣାର ଜାଲ ପଶାକାଠିକୁ ଜୁଆଡ଼ୀଠାରୁ ଗୋପନ ରଖେ । (୩୧)

ଯଦ୍ୟପି ଜଣେ ମନୁଷ୍ୟ ଅନ୍ୟର ଦୋଷ ଅନ୍ୱେଷଣ କରେ, ଏବଂ ସବୁବେଳେ ଦୋଷଗ୍ରହଣର ଅଭିମୁଖୀ ହୁଏ, ତାହାର ନିଜର ଆସକ୍ତି ବଢ଼ିବ ଏବଂ ତା'ର ଆସକ୍ତି ନାଶର ଦୂରରେ ସେ ରହିବ । (୩୨)

ପରର ଅପକର୍ମ ସମ୍ବନ୍ଧରେ ନୁହେଁ କିମ୍ବା ପରଦ୍ୱାରା ପାପକୃତ ବା ଅକୃତ ସମ୍ବନ୍ଧରେ ନୁହେଁ କିନ୍ତୁ ନିଜର ଅପକର୍ମ ଏବଂ ତ୍ରୁଟି ସମ୍ବନ୍ଧରେ କେବଳ ଜ୍ଞାନୀବ୍ୟକ୍ତି ଚିନ୍ତିତ ରହିବ । (୩୩)

ସତ୍‌ବ୍ୟକ୍ତି ଦୂରରୁ ଉଜ୍ଜ୍ୱଳ ଦେଖାଯାଆନ୍ତି ତୁଷାର ଧବଳ ପର୍ବତ ପରି; ମନ୍ଦବ୍ୟକ୍ତି ଦେଖଯାନ୍ତି ନାହିଁ ରାତ୍ରରେ ନିକ୍ଷେପ କରାଯିବା ଶର ପରି । (୩୪)

ଯଦ୍ୟପି ଜଣେ ବ୍ୟକ୍ତି ଅନ୍ୟର ପୀଡ଼ାର କାରଣ ହୋଇ ନିଜେ ସୁଖ ପାଇବାର ବାସନା କରେ, ସେ ସ୍ୱାର୍ଥପରତାର ବନ୍ଧନରେ ଛନ୍ଦି ହୋଇ କେବେହେଁ ଘୃଣାରୁ ମୁକ୍ତି ପାଇବ ନାହିଁ । (୩୫)

ଜଣେ ମନୁଷ୍ୟ ସ୍ନେହଦ୍ୱାରା କ୍ରୋଧକୁ ଜୟ କରୁ, ଉତ୍ତମ ଦ୍ୱାରା ମନ୍ଦକୁ ଜୟ କରୁ, ଦାନ ଦ୍ୱାରା ଲୋଭୀକୁ ବଶକରୁ ଏବଂ ମିଥ୍ୟାବାଦୀକୁ ସତ୍ୟଦ୍ୱାରା । (୩୬)

କୌଣସି କାଳରେ ଘୃଣାଦ୍ୱାରା ଘୃଣା କ୍ଷାନ୍ତ ହୁଏ ନାହିଁ । ଘୃଣା ପ୍ରେମଦ୍ୱାରା କ୍ଷାନ୍ତ ହୁଏ; ଏହା ଗୋଟିଏ ପ୍ରାଚୀନ ବିଧି । (୩୭)

ସତ୍ୟ କୁହ କ୍ରୋଧର ଅଧୀନ ହୁଅ ନାହିଁ, ମାଗିଲେ ଦିଅ ଏହି ତିନି ପନ୍ଥାରେ ତୁମ୍ଭେ ପାରମାର୍ଥିକ ହେବ । (୩୮)

ଜ୍ଞାନୀବ୍ୟକ୍ତି ଆପଣାର ଅପବିତ୍ରତା ସମୂହ ଉଡ଼ାଇ ଦେଉ ଯେପରି କି ବଣିଆ ରୌପ୍ୟର ମଇଳା ଉଡ଼ାଇ ଦିଏ ଗୋଟି ଗୋଟି କରି ଅଳ୍ପ ଅଳ୍ପ କରି ଏବଂ ସମୟ ସମୟରେ । (୩୯)

ଅନ୍ୟମାନଙ୍କୁ ତୁମ୍ଭର ପଥରେ ଚଳାଅ, ହିଂସା ଦ୍ୱାରା ନୁହେଁ ମାତ୍ର ବିଧି ଏବଂ ବିବେକ ବିଚାରଦ୍ୱାରା । (୪୦)

ଯେ ଚରିତ୍ର ଶୁଦ୍ଧି ଓ ଜ୍ଞାନ ଉପାର୍ଜନ କରିଅଛି, ଯେ ନ୍ୟାୟ ପରାୟଣ, ସତ୍ୟ କହେ ଏବଂ କରେ ଯାହା ତାହାର କର୍ତ୍ତବ୍ୟ ତାହାକୁ ଜଗତ ସ୍ନେହ କରିବ । (୪୧)

ଯେପରି ମଧୁମକ୍ଷିକା ମଧୁସଂଗ୍ରହ କରେ ଏବଂ ପ୍ରସ୍ଥାନ କରେ ଫୁଲକୁ, ରଙ୍ଗ କିମ୍ବା ବାସନାକୁ ନଷ୍ଟ କରେ ନାହିଁ ସେହି ପ୍ରକାର ଜ୍ଞାନୀବ୍ୟକ୍ତି ଗ୍ରାମରେ ବାସକରୁ । (୪୨)

ଯଦ୍ୟପି ଜଣେ ପଥିକ ଜଣେ ଲୋକକୁ ସାକ୍ଷାତ୍ ନ ପାଏ ଯେ କି ତା'ଠାରୁ ଉଚ୍ଚଶିକ୍ଷିତ କିମ୍ବା ତାହାର ସମାନ, ସେ ଏକାକୀ ତାହାର ଗନ୍ତବ୍ୟ ପଥରେ ଦୃଢ଼ ଭାବରେ ଚାଲୁ, ନିର୍ବୋଧ ସହିତ ସଙ୍ଗ ହେବାର ନୁହେଁ । (୪୩)

ଯେଉଁ ବ୍ୟକ୍ତି ଅନିଦ୍ରା ତା'ପ୍ରତି ରାତ୍ରି ଦୀର୍ଘ, ଯେଉଁ ବ୍ୟକ୍ତି କ୍ଳାନ୍ତ ତା' ପ୍ରତି ଗୋଟିଏ ମାଇଲ୍ ଦୀର୍ଘ, ନିର୍ବୋଧ ପ୍ରତି ଜୀବନ ଦୀର୍ଘ ଯେ କି ପ୍ରକୃତ ଧର୍ମକୁ ଜାଣେ ନାହିଁ । (୪୪)

ଉଚ୍ଚଧର୍ମକୁ ଦର୍ଶନ ନ କରି ଏକଶତ ବର୍ଷ ବଞ୍ଚିବା ଅପେକ୍ଷା ଉଚ୍ଚ ଧର୍ମକୁ ଦର୍ଶନ କରିଥିବା ଜଣେ ମନୁଷ୍ୟର ଜୀବନର ଗୋଟିଏ ଦିନ ଶ୍ଳାଘ୍ୟ । (୪୫)

ଅନେକ ଆପଣାଧର୍ମକୁ ଇଚ୍ଛା ଅନୁସାରେ ଗଠନ କରନ୍ତି ଏବଂ କୃତ୍ରିମ ଭାବରେ ବୁଣନ୍ତି; ସେମାନେ ଜଟିଳ ଅନୁଧ୍ୟାନକୁ ଖାଡ଼ା କରନ୍ତି ଏବଂ କଳ୍ପନା କରନ୍ତି ଯେ ସେମାନଙ୍କର ସିଦ୍ଧାନ୍ତ ଗ୍ରହଣ ଦ୍ୱାରା କେବଳ ଉତ୍ତମଫଳ ପ୍ରାପ୍ତ ହେବ, ତଥାପି ଗୋଟିଏ ମାତ୍ର ସତ୍ୟ ଅଛି, ପୃଥିବୀରେ ବିଭିନ୍ନ ସତ୍ୟ ନାହିଁ । ଅନେକ ଯୁକ୍ତିକୁ ଚିନ୍ତାକରି ଆମେମାନେ ତାହାଙ୍କ ସହିତ ଯୋଗ ହେବାକୁ ଯାଇଅଛୁ ଯେ କି ସମସ୍ତ ପାପରୁ ମୁକ୍ତ । କିନ୍ତୁ ଆମ୍ଭେମାନେ କି ତାଙ୍କ ସହିତ ଅଗ୍ରଗତି କରିପାରିବୁଁ । (୪୬)

ପଥମାନଙ୍କ ମଧ୍ୟରୁ ଅଷ୍ଟପଥ ପ୍ରଧାନ । ଏହି ଗୋଟିକ ପଥ-ବୁଦ୍ଧିକୁ ପରିଷ୍କାର କରିବାକୁ, ଅନ୍ୟ କୌଣସି ବାଟ ନାହିଁ । ଏହି ବାଟରେ ଚାଲ । ଅନ୍ୟ ସମସ୍ତ ପ୍ରଲୋଭନକାରୀ ମାରର ପ୍ରତାରଣା । ଯଦ୍ୟପି ତୁମ୍ଭେ ଏହି ବାଟରେ ଚାଲ, ତୁମ୍ଭେ ଯନ୍ତ୍ରଣା ନାଶ କରିବ । ତଥାଗତ କହି ଅଛନ୍ତି; ଏହି ପଥ ମହ ଦ୍ୱାରା ପ୍ରଚାରିତ ଯେତେବେଳେ ମୁଁ ଜାଣିଲି ଯେ ମାଂସରୁ କଣ୍ଟକ ଉତ୍ପାଟିତ ହେଲା । (୪୭)

କେବଳ ଶିକ୍ଷା ଓ ବ୍ରତଦ୍ୱାରା ନୁହେଁ, କେବଳ ଅନେକ ପଢ଼ିବାଦ୍ୱାରା ନୁହେଁ, ମୁଁ ମୁକ୍ତିର ସୁଖ ଉପାର୍ଜନ କଲି ଯାହା ଏ ଜଗତର କେହି ଜାଣିପାରିବେ ନାହିଁ । ଭିକ୍ଷୁ, ତାବତ ବିଶ୍ୱାସଗ୍ରସ୍ତ ହୁଅ ନାହିଁ ଯାବତ ତୃଷ୍ଣାର ବିନାଶ ପ୍ରାପ୍ତ ହୋଇ ନାହିଁ । ପାପପୂର୍ଣ୍ଣ ଆସକ୍ତିର ନାଶ ଅଟେ ଉଚ୍ଚତମ ଧର୍ମ । (୪୮)

ଧର୍ମର ଦାନ ସମସ୍ତ ଦାନକୁ ବଳିଅଛି, ଧର୍ମର ସ୍ୱାଦୁତା ସମସ୍ତ ସ୍ୱାଦୁତାକୁ ବଳିଅଛି, ଧର୍ମରୁ ଆନନ୍ଦ ସମସ୍ତ ଆନନ୍ଦକୁ ବଳିଅଛି; ତୃଷ୍ଣାର ନାଶ ସମସ୍ତ ଯନ୍ତ୍ରଣାକୁ ଜୟ କରେ । (୪୯)

ମନୁଷ୍ୟମାନଙ୍କ ମଧ୍ୟରୁ ଅଳ୍ପ ସଂଖ୍ୟକ ଅଛନ୍ତି ଯେଉଁମାନେ କି ନଦୀ ପାରି ହୋଇପାରନ୍ତି ଏବଂ ନିର୍ଦ୍ଦିଷ୍ଟ ସ୍ଥଳରେ ପହଞ୍ଚି ପାରନ୍ତି । ବହୁସଂଖ୍ୟକ ଲୋକ କୂଳର ତଳକୁ ଉପରକୁ ଧାବିତ ହେଉଥାଆନ୍ତି; କିନ୍ତୁ ଯେ ଗନ୍ତବ୍ୟ ପଥ ଶେଷ କରିଅଛି ତାହାର କୌଣସି ଦୁଃଖ ନାହିଁ । (୫୦)

ଯେମନ୍ତ ସୁଗନ୍ଧପୂର୍ଣ୍ଣ ଓ ଆନନ୍ଦଦାୟକ ପୁଷ୍ପ ଆବର୍ଜନାର ଗଦାରେ ଜନ୍ମ ହୁଏ, ସେହି ପ୍ରକାର ପ୍ରକୃତ ଜ୍ଞାନପ୍ରାପ୍ତ ବୁଦ୍ଧଙ୍କର ଶିଷ୍ୟ ତା'ର ଜ୍ଞାନଦୀପ୍ତିଦ୍ୱାରା ପ୍ରକାଶିତ ହୁଏ ସେହିମାନଙ୍କ ମଧ୍ୟରେ ଯେଉଁମାନେ ଆବର୍ଜନା ତୁଲ୍ୟ, ମନୁଷ୍ୟମାନଙ୍କ ମଧ୍ୟରେ ଯେଉଁମାନେ ଅନ୍ଧକାରରେ ଭ୍ରମଣ କରନ୍ତି । (୫୧)

ଆସ, ଆମେମାନେ ତେବେ ସୁଖରେ ଜୀବନଯାତ୍ରା ନିର୍ବାହ କରିବା ସେହିମାନଙ୍କୁ ଘୃଣା ନ କରି ଯେଉଁମାନେ ଆମମାନଙ୍କୁ ଘୃଣା କରନ୍ତି । ଯେଉଁମାନେ ଆମ୍ଭମାନଙ୍କୁ ଘୃଣା କରନ୍ତି ସେମାନଙ୍କ ସହିତ ବାସକରିବା ଘୃଣା ବିବର୍ଜିତ ହୋଇ । (୫୨)

ଆସ, ଆମ୍ଭେମାନେ ତେବେ ସୁଖରେ ବାସକରିବା ରୋଗୀମାନଙ୍କ ସହିତ ରୋଗମୁକ୍ତ ରହି । ମନୁଷ୍ୟମାନଙ୍କ ମଧ୍ୟରେ ଯେଉଁମାନେ ରୋଗଗ୍ରସ୍ତ ସେମାନଙ୍କ ସହିତ ବାସ କରିବା ରୋଗମୁକ୍ତ ହୋଇ । (୫୩)

ଆସ,ଆମ୍ଭେମାନେ ବାସ କରିବା ସୁଖରେ ଲୋଭଗ୍ରସ୍ତଙ୍କ ସହିତ ଲୋଭରୁ ମୁକ୍ତ ରହି । ମନୁଷ୍ୟମାନଙ୍କ ମଧ୍ୟରେ ଯେଉଁମାନେ ଲୋଭୀ ସେମାନଙ୍କ ସହିତ ବାସକରିବା ଲୋଭରୁ ମୁକ୍ତ ରହି ।'' (୫୪)

ସୂର୍ଯ୍ୟ ଦିନରେ ଉଜ୍ଜ୍ୱଳ, ଚନ୍ଦ୍ର ରାତ୍ରିରେ ଆଲୋକ ଦିଏ, ଯୋଦ୍ଧା ତାହାର ବର୍ମଦ୍ୱାରା ଉଜ୍ଜ୍ୱଳ, ଭାବୁକମାନେ ତାଙ୍କର ଧ୍ୟାନଦ୍ୱାରା ଉଜ୍ଜ୍ୱଳ, କିନ୍ତୁ ସମସ୍ତ ଦିବା ରାତ୍ରରେ ଉଜ୍ଜ୍ୱଳ ସମସ୍ତଙ୍କ ଅପେକ୍ଷା ଜାଜ୍ୱଲ୍ୟମାନ ଜ୍ୟୋତି, ବୁଦ୍ଧ, ସଦାଜାଗ୍ରତ, ପବିତ୍ର ଏବଂ ମହା ମଙ୍ଗଳମୟ । (୫୫)

▶ Paul Carus କଥିତ The Gospel of Buddha ପୁସ୍ତକର ଧର୍ମପଦର ଅନୁବାଦ । ଆକ୍ଷରିକ ଅନୁବାଦର ଚେଷ୍ଟାରୁ ଲେଖା ପ୍ରାଞ୍ଜଳ ହୋଇପାରି ନାହିଁ ।

▶ ସଂସ୍କୃତ ମାର ଅର୍ଥ : ଯେ କାମ ପ୍ରଭୃତିର ପ୍ରଭୁ ଓ ପ୍ରବର୍ତ୍ତକ । ବୌଦ୍ଧ ଗ୍ରନ୍ଥର ମାର ଅର୍ଥ ସମସ୍ତ ପ୍ରକାର ପ୍ରଲୋଭନକାରୀ-କଷ୍ଟଦାୟକ ଧ୍ୱଂସକାରକ ଇତ୍ୟାଦି ।



## ଉତ୍ତରାକାଣ୍ଡ ରାମାୟଣ ନୁହେଁ ଏବଂ ବାଲ୍ମୀକି ରଚିତ ନୁହେଁ

ସହକାରରେ ପ୍ରକାଶିତ ସାହିତ୍ୟର ଅଭିବ୍ୟକ୍ତି ଓ ଗତି ପ୍ରବନ୍ଧରେ ମୁଁ ଲେଖିଥିଲି ଯେ ଉତ୍ତରାକାଣ୍ଡ ବାଲ୍ମୀକି ରଚିତ ନୁହେଁ। ଏହା ପାଠ କରି ଶ୍ରୀ ବାଇକୋଳି ମହାପାତ୍ର ତା'ର ସାମାନ୍ୟ ପ୍ରତିବାଦ ସହିତ ମୋଠାରୁ ଏଥିର ବିବରଣୀ ଜାଣିବା

ନିମନ୍ତେ ପ୍ରଶ୍ନ କରିଥିଲେ। ମୁଁ ଶ୍ରୀ ବାଇକୋଳି ମହାପାତ୍ରଙ୍କର ପ୍ରଶ୍ନରେ ସନ୍ତୋଷ ହୋଇ ଗୋଟିଏ ପ୍ରବନ୍ଧ ଲେଖିଲି ଏବଂ ପ୍ରକାଶ ନିମନ୍ତେ ସହକାର ଅଫିସ୍‌କୁ ପଠାଇଲି। ସେତେବେଳେ ସହକାର ଉତ୍କଳ ପରିଷଦର ମୁଖପତ୍ର ହୋଇଥିଲା। ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ ଥିଲେ ସମ୍ପାଦକ। ସାହିତ୍ୟ ପରିଷଦର ଅନ୍ତର୍ଦ୍ଧାନ ସଙ୍ଗେ ସଙ୍ଗେ ସହକାରର ମଧ ଅଦର୍ଶନ ଘଟିଲା। ମୋର ପ୍ରବନ୍ଧର କଥା ପଚାରେ କିଏ? ପୁଣି ସହକାର ବାହାରିବାରୁ ସମ୍ପାଦକଙ୍କଠାରୁ ଲେଖିଥିଲି ସେ ଜଣାଇଲେ ଯେ ପ୍ରବନ୍ଧ ମିଳିଲା ନାହିଁ। ଏଣୁ ପୁଣି ଗୋଟାଏ ଲେଖିବାର ବାସନା କଲି। ଯେ ହେତୁ ପ୍ରଶ୍ନର ଉତ୍ତର ଦେବା କର୍ତ୍ତବ୍ୟ ମାତ୍ର ସମୟ ଅନଟନ ଯୋଗୁଁ ବିଳମ୍ବ ହେଲା।

ମୋର ଦୃଢ଼ ବିଶ୍ୱାସ ଯେ ଉତ୍ତରାକାଣ୍ଡ ବାଲ୍ମୀକି ରଚିତ ନୁହେଁ। ଏହା ପରବର୍ତ୍ତୀ ପୌରାଣିକ ଦ୍ୱାରା ଲିଖିତ। ବିଶ୍ୱାସର କାରଣ ଓ ପ୍ରମାଣ ନିମ୍ନରୁ ସ୍ପଷ୍ଟ ଜଣାପଡ଼ିବ।

ମୁଁ ରାମଭକ୍ତ। ଆବାଲ୍ୟ କାଳରୁ ଏ ଭକ୍ତି ପିତୃଦତ୍ତ। ପିତା ରାମଭକ୍ତ ଥିଲେ ଏବଂ ଅତି ସୁନ୍ଦର ରୌପ୍ୟନିର୍ମିତ କୋଦଣ୍ଡ ରାମମୂର୍ତ୍ତି ପୂଜା କରୁଥିଲେ। ପିତା ପୂଜାରେ ବସିଲେ ମୁଁ ଯାଇ ନିକଟରେ ବସି ପୂଜା ଦେଖେ। ଭକ୍ତିରେ କି ଭୋଗ ପାଇବା ଲାଳସାରେ ତାହା ଠିକ୍ ସ୍ମରଣ ନାହିଁ। ତେବେ ଧୀରେ ଧୀରେ ରାମଙ୍କ ଉପରେ ଭକ୍ତି ବଦ୍ଧମୂଳ ହେଲା। ପ୍ରଥମେ ରାମଲୀଳା ନାଟରୁ ମୋର ରାମାୟଣ ଜ୍ଞାନ। ବହୁ ଦିନଯାଏ ରାମଙ୍କର ପ୍ରଶଂସା ଭିନ୍ନ ନିନ୍ଦାବାଦ ଆଦୌ କର୍ଣ୍ଣରେ ପଡ଼ି ନ ଥିଲା। ଅନୁମାନ ହୁଏ ଏଗାର ବାର ବର୍ଷ ବୟସରେ କଟକରେ ମୁଦ୍ରିତ ଅଶ୍ୱମେଧ ଯଜ୍ଞ ନାମକ କ୍ଷୁଦ୍ର ପୁସ୍ତକ ପାଠକଲି। ରାମଙ୍କର ଦୁଇ ପୁତ୍ର କୁଶ ଲବ ରାମଙ୍କୁ ଯୁଦ୍ଧରେ ପରାସ୍ତ କରି ବ୍ୟତିବ୍ୟସ୍ତ କରିଥିଲେ। ଏହା ପାଠକରି ମନରେ ଲେଖକ ପ୍ରତି ଅବିଶ୍ୱାସ ଜନ୍ମିଲା। ରାମପରି ପରାକ୍ରମଶାଳୀ ବୀରଙ୍କୁ ଦୁଇ ଜଣ ବାଳକ ପରାସ୍ତ କରିବା ଅସମ୍ଭବ। କବିର ଅସମ୍ଭବ ଓ ମିଥ୍ୟା କଳ୍ପନା। ବାଲ୍ମୀକି ମନରେ ବିସ୍ମୟ ଜାତ ହେଲା। ପୁସ୍ତକକୁ ପିଙ୍ଗି ଦେଲି। ତାଳପତ୍ର ପୋଥି ବାଲ୍ମୀକି ରାମାୟଣ ପଢ଼ିଲି। କି ଅଦ୍ଭୁତ କଥା! ଆମ ଓଡ଼ିଆ ରାମାୟଣମାନଙ୍କରେ ଯାହା ନାହିଁ କୃତିବାସ ରାମାୟଣରେ ଦେଖିଲି ତାହା। ଅଥଚ ସମସ୍ତେ ବାଲ୍ମୀକିଙ୍କର ନାମ ଦେଇ ନିଷ୍କୃତି ପାଇବାର ବାସନା ରଖନ୍ତି। ମହୀରାବଣ ରାମ ଲକ୍ଷ୍ମଣଙ୍କୁ ପାତାଳକୁ ନେଇ ମସ୍ତକ ବପନ କରି ଦୁର୍ଗାଠାରେ ବଳି ଦେବାକୁ ଉଦ୍ୟତ। ଏ ଅତ୍ୟାଚାରର ବର୍ଣ୍ଣନା ଶୁଣିଲେ କାହା ମନରେ ବିପ୍ଳବ ଜାତ ନ ହେବ। ଏମାନେ ପୁଣି ରାମଭକ୍ତ। ବଙ୍ଗାଳୀ କବି ରାମଙ୍କର ଯଶ ପୌରୁଷର ଆଧିକ୍ୟ ଦେଖି ଆପଣା ଇଷ୍ଟଦେବୀ ଦୁର୍ଗାଙ୍କର ପଦାନତ କରିବାକୁ ଏ ରଚନା କଲେ ଭୁଲିଯିବ ସିନା। କବିମାନେ ଲେଖକମାନେ ନାନା ଧର୍ମ ପନ୍ଥାର ପଥିକ ଥିବାରୁ ନିଜ ଆରାଧ ଦେବତାର ଶ୍ରେଷ୍ଠତ୍ୱ ଫଳାଇବାକୁ ଅନ୍ୟ ଦେବତାର ନିନ୍ଦାବାଦ କରନ୍ତି। ହିନ୍ଦୁ ଜାତି ଆଖ୍ୟାଧାରୀ ଭାରତବାସୀର ଧର୍ମଦ୍ୱେଷ ଘଟିଅଛି ଏହି ହେତୁରୁ।

କାଳ୍ପନିକ ଦେବତାର ଅନୁଗ୍ରହ ଓ ସାହାଯ୍ୟ ବ୍ୟତୀତ ମନୁଷ୍ୟଦ୍ୱାରା କିଛି ହୋଇ ନ ପାରେ। ଏ ବିଶ୍ୱାସର ବଶବର୍ତ୍ତୀ ହୋଇ ଅନ୍ୟର ପ୍ରାଶସ୍ତ୍ୟ ମହତ୍ତ୍ୱ ପ୍ରତିଭା ହ୍ରାସ କରିବାକୁ ସତତ ଚେଷ୍ଟିତ। ବାଲ୍ମୀକି ପ୍ରତିଭାର ଲାଘବ ଚେଷ୍ଟା ଏଥିରେ ଜାଜ୍ୱଲ୍ୟମାନ ପ୍ରମାଣ। ନିଷ୍କଳଙ୍କ ରାମ ଚରିତରେ କଳଙ୍କ ଲଗାଇବା ଇଚ୍ଛାରେ ଏବଂ ବ୍ରାହ୍ମଣର ଶ୍ରେଷ୍ଠତ୍ୱ ଦେଖାଇବା ନିମନ୍ତେ ଉତ୍ତରାକାଣ୍ଡର ରଚନା।

ମୂଳ ବିଷୟର ଆଲୋଚନା କରାଯାଉ– ବାଲ୍ମୀକି ପ୍ରଥମ କାବ୍ୟ ରଚକ ଏଣୁ କବି। ମାତ୍ର ତାଙ୍କ ମୁଖରୁ ପ୍ରଥମେ ବିନା ଚେଷ୍ଟାରେ ଅନୁଷ୍ଟୁପଛନ୍ଦ ନିର୍ଗତ ହେବା ପ୍ରବାଦ ସମ୍ପୂର୍ଣ୍ଣ ମିଥ୍ୟା- ଯେହେତୁ ବାଲ୍ମୀକିଙ୍କ ଲେଖା ଆଗରୁ ଅନୁଷ୍ଟୁପ ଛନ୍ଦ ବିଦ୍ୟମାନ ଥିଲା।

ରାମାୟଣ ଅର୍ଥ ରାମ + ଅୟନ ଅର୍ଥାତ୍ ରାମଙ୍କର ଗତି ବା ଗମନାଗମନ। ସୂର୍ଯ୍ୟଙ୍କର ଦକ୍ଷିଣାୟଣ, ଉତ୍ତରାୟଣ ଗତିପରି ସୂର୍ଯ୍ୟବଂଶୀୟ ରାମଚନ୍ଦ୍ର ଦକ୍ଷିଣକୁ ଗମନ କଲେ ଏବଂ ଦକ୍ଷିଣରୁ ଉତ୍ତରକୁ ଫେରି ଆସିଲେ ଏବଂ ଏହି ଯିବା ଆସିବାରେ ଯାବତୀୟ ଘଟଣା ଘଟିଲା ତହିଁର ପ୍ରାଞ୍ଜଳ ବର୍ଣ୍ଣନାର ନାମ ରାମାୟଣ, ବିଶେଷତଃ ରାମକର୍ତ୍ତୃକ ରାବଣ ବଧ ବିଷୟକ ବାକ୍ୟ। ରାମାୟଣ ନାମ ଏଡ଼େ ସ୍ପଷ୍ଟ ଯେ ଏଥିରେ ଅନ୍ୟ ପ୍ରସଙ୍ଗ ମିଶିବାର ଅବସର ନାହିଁ ଅଥଚ ପରଶ୍ରୀକାତର ବ୍ରାହ୍ମଣ କେତେଜଣ ବାଲ୍ମୀକି ପ୍ରତିଭା ଦେବଦତ୍ତ ଏବଂ ରାମବ୍ରାହ୍ମଣ ଉପଦେଶ ଚାଳିତ ଏ କଥା ପ୍ରକାଶ କରିବାକୁ ଯାଇ ରାମାୟଣ ପ୍ରଥମ ଚାରି ଅଧ୍ୟାୟ ଏବଂ ଉତ୍ତରାକାଣ୍ଡକୁ ରାମାୟଣରେ ଯୋଗ କରିଅଛନ୍ତି। ଏବଂ ସମାଲୋଚନା ବିମୁଖ ହିନ୍ଦୁଗଣ ସେଥିରେ ବିଶ୍ୱାସ ସ୍ଥାପନ ନ କରିବାକୁ ଛାଡ଼ୁ ନାହାନ୍ତି। ଏହାଛଡ଼ା ରାମାୟଣ ଭିତରେ ଏତେ ଅପ୍ରାସଙ୍ଗିକ ବିଷୟ ଓ ଶ୍ଳୋକ ଯୋଗ କରିଅଛନ୍ତି ଯେ ତାହା ସମାଲୋଚକ ପ୍ରତି ଧନ୍ଦା। ଭାରତ ପଣ୍ଡିତବହୁଳ ଦେଶ– ବିଦ୍ୱାନ୍‌ମାନଙ୍କ ଘରେ ଘରେ ତାଳପତ୍ର ପୋଥି ଥିଲା।

ବିଦ୍ୱାନ୍‌ମାନେ ଇଚ୍ଛାନୁସାରେ ଗୋଟିଏ ଯୋଡ଼ିଏ ଶ୍ଳୋକ ଯୋଗ କରିବାକୁ ଲୋଭ ଛାଡ଼ି ନାହାନ୍ତି । ଏଣୁ ଏ ଦେଶର ସମସ୍ତ ଗ୍ରନ୍ଥ ମୂଳ କବିର ରଚନାକୁ ବଳି ଅନେକ ଶ୍ଳୋକ ସ୍ୱଶରୀରରେ ଧାରଣ କରି ପାଠକମାନଙ୍କୁ ଭ୍ରାନ୍ତ କରୁଅଛନ୍ତି । କଡ଼କ ଯେ କି ରାମାୟଣ ପ୍ରଥମ ଓ ପ୍ରଧାନ ଟୀକା କର୍ତ୍ତା ସେ ଉତ୍ତରାକାଣ୍ଡକୁ ପ୍ରକ୍ଷିପ୍ତ ଜାଣି ଟୀକା ଲେଖିଲେ ନାହିଁ ।

ଅନୁକ୍ରମଣିକା ବା ଭୂମିକା ଗ୍ରନ୍ଥ ଲେଖା ଶେଷ ହେଲେ ଲେଖା ଯାଇଥାଏ । ଗ୍ରନ୍ଥକର୍ତ୍ତା ଲେଖନ୍ତି ବା ଅନ୍ୟ କେହି ଲେଖନ୍ତି । ରାମାୟଣର ପ୍ରଥମ ଚାରି ସର୍ଗ ତା'ର ଅନୁକ୍ରମଣିକା । ଲେଖିଛି କିଏ । ପରବର୍ତ୍ତୀ କୌଣସି ବ୍ୟକ୍ତିମାନେ ଲେଖି ଅଛନ୍ତି । ଅନୁମାନ ହୁଏ ଚାରି ଜଣ ଏଥିରେ ଲେଖକ । ବାଲ୍ମୀକି ନିଜେ ଲେଖି ନାହାନ୍ତି କାରଣ ନିଜେ କେହି ନିଜକୁ ପ୍ରଶଂସା କରେ ନାହିଁ ନିଜକୁ ମହତ, ଜ୍ଞାନୀ, ପଣ୍ଡିତ ପ୍ରଭୃତି ଆଖ୍ୟା ଦିଏ ନାହିଁ, ଯଥା- ବାକ୍ୟ ବିଶାରଦ, ଧର୍ମାତ୍ମା, ମୁନିପୁଙ୍ଗବ ଇତ୍ୟାଦି ବିଶେଷଣଦ୍ୱାରା ନିଜକୁ ତୃତୀୟ ପୁରୁଷରେ ପ୍ରକାଶ କରିବା ସମ୍ଭବ ନୁହେଁ । ବାଲ୍ମୀକି ଭିନ୍ନ ଅନ୍ୟ ଦ୍ୱାରା ଲିଖିତ ଏହା ସ୍ପଷ୍ଟ ପ୍ରମାଣିତ ହେଉଅଛି ।

ପ୍ରଥମ ସର୍ଗଟି ରାମାୟଣର ଅନୁକ୍ରମଣିକା ବୋଲାଯାଇପାରେ, କାରଣ ରାମାୟଣରେ ଆରମ୍ଭରୁ ରାବଣ ବଧାନ୍ତେ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରି ଅଭିଷେକ ହୋଇ ସୁଖରେ ରାଜ୍ୟ ଶାସନ ଓ ପ୍ରଜାପାଳନ କରିଥିବାର ଉଲ୍ଲେଖ ଅଛି, ଶତସଂଖ୍ୟକ ଅଶ୍ୱମେଧ ଯଜ୍ଞ କଲା ଉତ୍ତାରୁ ବ୍ରହ୍ମଲୋକକୁ ଗଲେ ବୋଲି ମଧ ଲେଖା ଅଛି । ମାତ୍ର ନାରଦଙ୍କୁ ଏଠାକୁ ଆଣିବାର କୌଣସି ସଙ୍ଗତ କାରଣ ନାହିଁ । ବାଲ୍ମୀକି ରାମ ଚରିତ୍ର ସମ୍ବନ୍ଧେ ଏଡ଼େ ଅଜ୍ଞ ଥିଲେ ଯେ ନାରଦ ମୁଖରୁ ରାମଚରିତ୍ର ଶୁଣି ରାମାୟଣ ରଚନା କଲେ । ଦେବସଭାର ବିଦୂଷକ ନାରଦ ସତ୍ୟ ତ୍ରେତା ଦ୍ୱାପର ଯୁଗରେ ବିଦ୍ୟମାନ ଥାଇ ଅବାଧ ଗମନାଗମନ କରନ୍ତି ଓ ଉପଦେଶ ଦିଅନ୍ତି । ଏହି କାଳ୍ପନିକ କଥାରେ ଅନୁକ୍ରମଣିକା ଲେଖକ ନାରଦଙ୍କୁ ଠିଆ କଲେ । ଏଠାରେ ଗୋଟିଏ ପ୍ରଶ୍ନ ସ୍ୱତଃ ମନରେ ଜାଗ୍ରତ ହୁଏ । ବାଲ୍ମୀକି ରାମଙ୍କର ପୂର୍ବବର୍ତ୍ତୀ କବି କି ସମସାମୟିକ ନା ପରବର୍ତ୍ତୀ । ପୂର୍ବବର୍ତ୍ତୀ ଯେ ନୁହନ୍ତି ତାହା 'କୋନ୍ୱସ୍ମିନ୍ ସାପ୍ରତ ଲୋକେ ଗୁଣବାନ୍ କଶ୍ଚ ବୀର୍ଯ୍ୟବାନ୍' । ପ୍ରଶ୍ନ ଦ୍ୱାରା ନିରାକୃତ ହେଉଅଛି । ସମସାମୟିକ କି ? ଏହା ମଧ ସମ୍ଭବ ନୁହେଁ ଯେହେତୁ ଆମମାନଙ୍କ ହସ୍ତଗତ ରାମାୟଣ ବିଶୁଦ୍ଧ ସଂସ୍କୃତ ଭାଷାରେ ଲିଖିତ (ଅବଶ୍ୟ ଆର୍ଷ ପ୍ରୟୋଗ ମଧ ସ୍ଥଳ ବିଶେଷରେ ଅଛି) । ରାମ ବୈଦେହ ଜନକଙ୍କ ଜାମାତା- ଏବଂ ସେତେବେଳେ ଉପନିଷଦ ଭାଷା ପ୍ରଚଳିତ ଥିଲା । ବାଲ୍ମୀକି ସମସାମୟିକ କବି ହୋଇଥିଲେ ବୃହଦାରଣ୍ୟକ ଉପନିଷଦ ଭାଷା ପରି ରାମାୟଣ ଭାଷା ହୋଇଥାନ୍ତା । ପୁଣି ବାଲ୍ମୀକି କୌଣସି ରାଜସଭା ପ୍ରଭୃତିରେ ଉପସ୍ଥିତ ଥିବାର ବା ନିମନ୍ତ୍ରିତ ହୋଇଥିବାର ଜଣାଯାଏ ନାହିଁ । ଭରଦ୍ୱାଜଙ୍କର ଗୁରୁ କି ବାଲ୍ମୀକି ? ଏହା ଦ୍ୱିତୀୟ ସର୍ଗରେ ଲେଖାଅଛି । ରାମଙ୍କର ସହିତ ଭରଦ୍ୱାଜଙ୍କର ଏତେ ଘନିଷ୍ଠତା ଅଥବା ବାଲ୍ମୀକି ରାମଙ୍କୁ ଚିହ୍ନନ୍ତି ନାହିଁ ବା ଜାଣନ୍ତି ନାହିଁ ? ଏହା ଅସମ୍ଭବ । ଦ୍ୱିତୀୟ ସର୍ଗ ଲେଖକର ମନଃପୂତ ହେଲା ନାହିଁ ନାରଦ କଥିତ ଅନୁକ୍ରମଣିକାରେ । ଏଣୁ ବ୍ରହ୍ମାଙ୍କୁ ଆଣିବା ଏବଂ କ୍ରୌଞ୍ଚବଧ ବୃତ୍ତାନ୍ତ ସନ୍ନିବେଶ କରିବାର ପ୍ରୟାସ । ମାତ୍ର ସୁଖର କଥା ଏହି ଯେ ବ୍ରହ୍ମା ନାରଦ କଥାକୁ ସମର୍ଥନ କରି ଗୋଟାଏ ଭଲ ସାର୍ଟିଫିକେଟ ଦେଲେ ।

ପୁଣି ବାଲ୍ମୀକି ତୃତୀୟ ସର୍ଗରେ ଧ୍ୟାନ ଦ୍ୱାରା ରାମାୟଣ ବୃତ୍ତାନ୍ତ ଜାଣିଲେ । ନାରଦଠାରୁ ଶୁଣିଲା ଉତ୍ତାରୁ ଏବଂ ବ୍ରହ୍ମା ନାରଦ ବାକ୍ୟ ଅନୁସାରେ ରାମାୟଣ ଲେଖ ବୋଲି କହିଲା ଉତ୍ତାରୁ ଧ୍ୟାନର ଆବଶ୍ୟକ କ'ଣ ? ତୃତୀୟ ଲେଖକର ମନଃପୂତ ନିମନ୍ତେ ଏ ସର୍ଗର ସୃଷ୍ଟି ଯହିଁର ଶେଷରେ ଲେଖା ହେଲା 'ତଚ୍ଚକାରୋତ୍ତରେ କାବ୍ୟେ ବାଲ୍ମୀକି ଭଗବାନୃଷିଃ' । ପୁଣି ରାମାୟଣ ରଚନାରେ ଏହା ଗାଇବା ନିମନ୍ତେ କୁଶ ଲବଙ୍କୁ ଭଗବାନ୍ ବାଲ୍ମୀକି ଦେଲେ । ଏହାଦ୍ୱାରା ବାଲ୍ମୀକି ଉତ୍ତରାକାଣ୍ଡାଧ ରଚନା କରିଥିବାର ପ୍ରଚାର କରାଗଲା ଚତୁର୍ଥ ସର୍ଗରେ । ପାଠକମାନେ ଅନାୟାସରେ ବୁଝିପାରିବେ ଯେ ଏତାଦୃଶ୍ୟ ରଚନା ବାଲ୍ମୀକିଙ୍କର ନୁହେଁ । ମାତ୍ର ଅପର ପୌରାଣିକମାନଙ୍କର ଯେଉଁମାନେ ଏହି ପ୍ରଥମ କାବ୍ୟକୁ ମଧ ପୁରାଣ ଶ୍ରେଣୀଭୁକ୍ତ କରିବାର ପ୍ରୟାସ କରିଥିଲେ ।

ପ୍ରଥମ ଚାରି ସର୍ଗ ପ୍ରକ୍ଷେପ । ରାମାୟଣ ଆରମ୍ଭ ପଞ୍ଚମ ସର୍ଗରୁ । ପ୍ରଥମ ଚାରି ସର୍ଗରେ କାବ୍ୟର ଲକ୍ଷଣ ନାହିଁ ପୁରାଣର ଲକ୍ଷଣ ବିଦ୍ୟମାନ ।

'ଆଶୀ ନମସ୍କ୍ରିୟାବସ୍ତୁ ନିର୍ଦ୍ଦେଶୋବାପି ତନ୍ମୁଖଂ' । ଏହା କାବ୍ୟ ଆରମ୍ଭର ନିୟମ ।

କବି ବସ୍ତୁ ନିର୍ଦ୍ଦେଶ କଲେ ସୃଷ୍ଟିର ନାମ ପୂର୍ବ ନାୟକଙ୍କର ଆଦ୍ୟ ପୁରୁଷଙ୍କର ନାମ ଓ ଯଶ ସହିତରେ ଏବଂ ଶେଷ କଲେ ରାବଣ ବଧ ଉତ୍ତାରୁ ଅଯୋଧ୍ୟାକୁ ରାମ ପ୍ରତ୍ୟାବର୍ତ୍ତନ କରି ଅଭିଷେକ, ପ୍ରଜାପାଳନ ଏବଂ ଶତ

ଅଶ୍ୱମେଧ ଯଜ୍ଞ କରି ଅବଶେଷରେ ସ୍ୱଧାମକୁ ଗମନରେ। ...ତଦ୍ୱାରା ରାମାୟଣ ନାମ ସ୍ୱାର୍ଥ ହୋଇଅଛି। ରାମାୟଣରେ ଉତ୍ତରାକାଣ୍ଡର ସ୍ଥାନ କାହିଁ ?

ନାରଦଙ୍କର ଉପଦେଶରେ ଏବଂ କଥିତାନୁସାରେ ଯେବେ ରାମାୟଣ ଲେଖା ହେଲା ତେବେ ନାରଦ ତ ଉତ୍ତରାକାଣ୍ଡର ପ୍ରସଙ୍ଗ ଉଲ୍ଲେଖ କରି ନାହାନ୍ତି ଏବଂ ସୀତା ବନବାସର କଥା ଓ ଶମ୍ବୂକ ଶୂଦ୍ରର ବଧ ବୃତ୍ତାନ୍ତ ପ୍ରକାଶ କରି ନାହାନ୍ତି ତେବେ ବାଲ୍ମୀକି ଉତ୍ତରାକାଣ୍ଡର ସୃଷ୍ଟି କଲେ କି ମନରୁ ? ତେବେ ନାରଦ ଓ ବ୍ରହ୍ମାଙ୍କର ସତ୍ୟରକ୍ଷା ହେଲା କିପରି ? ନାରଦ ବ୍ରହ୍ମାଙ୍କର ଉକ୍ତି ଏବଂ ବାଲ୍ମୀକିଙ୍କର ଧ୍ୟାନର ମିଳନ କେଉଁଠାରେ ? ବିଶୁଦ୍ଧ ରାମ ଚରିତ୍ରରେ କଳଙ୍କ କାଳିମା ଲେପନ ପ୍ରୟାସରେ ପ୍ରଥମ ଚାରି ସର୍ଗ ଏବଂ ଉତ୍ତରାକାଣ୍ଡର ସୃଷ୍ଟି। ସାଧାରଣ ପାଠକ ପ୍ରତି ଏ ଜାଲ କାଟି ବାହାରିବା ସହଜ ନୁହେଁ। ପାଠକ, ପୌରାଣିକ, ପଣ୍ଡିତଙ୍କର ରାମାୟଣ ପଢ଼ିବା ହିଁ ସାର। ସେମାନେ ସମାଲୋଚକ ନୁହନ୍ତି ଏବଂ ସମାଲୋଚନାଦ୍ୱାରା ସେମାନଙ୍କର ସ୍ୱାର୍ଥରେ ବାଧା ପଡ଼ିବା ସ୍ୱାଭାବିକ। ଯେଉଁମାନେ ରାମଭକ୍ତ ଏବଂ ବିଶୁଦ୍ଧ ରାମ ଚରିତ୍ର ଜାଣିବାକୁ ଇଚ୍ଛୁକ ସେମାନଙ୍କର ରଚିତ ଯେ ରାମାୟଣ ମଧ୍ୟରେ ସନ୍ନିବେଶିତ ହୋଇଥିବା ଉପୋଦ୍‌ଘାତ ଚାରି ଅଧ୍ୟାୟ ଏବଂ ଉତ୍ତରାକାଣ୍ଡକୁ ବର୍ଜନ କରିବେ।

ରାମାୟଣ ପାଠକଲେ ଜଣାଯାଏ ଯେପରି କି କବି କାଣ୍ଡ ଭାଗ କରି ନ ଥିଲେ। ଯେଉଁ ରୀତିରେ ଅନ୍ୟାନ୍ୟ କାବ୍ୟର ସର୍ଗ ଶେଷରେ ବା ଭାଗ ଶେଷରେ ଭଣିତା ଥାଏ ଏଠାରେ ତାହା ନାହିଁ। ବାଲ୍ମୀକି କାଣ୍ଡ ଭାଗ କରି ନାହାନ୍ତି, କରିଥିଲେ, ପ୍ରତ୍ୟେକ କାଣ୍ଡର ଶେଷରେ କାଣ୍ଡ ପାଠର ଫଳଶ୍ରୁତି ଲେଖାଥାନ୍ତା। କେବଳ ଲଙ୍କାକାଣ୍ଡର ଶେଷରେ ବା ରାମାୟଣ ଚରିତ ସମାପ୍ତିରେ ପାଠଫଳ ଲେଖିଅଛନ୍ତି। ଉତ୍ତରାକାଣ୍ଡ ସମାପ୍ତିରେ ଉତ୍ତରାକାଣ୍ଡ ଶ୍ରବଣର ଫଳ ଲେଖାଅଛି। ଏଥିରୁ କି ଜଣା ଯାଉ ନାହିଁ ଯେ ଛଅ କାଣ୍ଡ କେବଳ ରାମାୟଣ ଉତ୍ତାରାକାଣ୍ଡ ନୁହେଁ। ପୂର୍ବେ ମୁଁ ରାମାୟଣ ସମାଲୋଚନା କଲାବେଳେ ଏସିଆଟିକ୍ ସୋସାଇଟିର ସୌଜନ୍ୟରୁ ବାଲି ଦ୍ୱୀପରେ ବିଦ୍ୟମାନ ଥିବା ରାମାୟଣ ବୃତ୍ତାନ୍ତ ପାଇଥିଲି। ବାଲି ଦ୍ୱୀପରେ ବିଦ୍ୟମାନ ଥିବା ରାମାୟଣ କବି ଭାଷାରେ ଲିଖିତ ତା'ର ନାମ ରାମାୟଣ କାଣ୍ଡ ବା କାଣ୍ଡ- ମାତ୍ର। ଛଅ ଗୋଟି କାଣ୍ଡରେ ବିଭକ୍ତ ନୁହେଁ କିମ୍ବା କାଣ୍ଡର ନାମକରଣ ହୋଇ ନାହିଁ। ସେ ଦେଶରେ ରାମାୟଣରେ ଉତ୍ତରାକାଣ୍ଡ ନାହିଁ। ଏଣୁ ସେ ଦେଶବାସୀ ରାମଙ୍କର କଳଙ୍କ ବାର୍ତ୍ତା ଶୁଣି ଦଗ୍ଧୀଭୂତ ହୁଅନ୍ତି ନାହିଁ। ଭାରତବାସୀ ରାମଙ୍କର କଳଙ୍କ କଥା ଶୁଣି ମଧ୍ୟ ଦଗ୍ଧୀଭୂତ ହେବାର ତ ତେଣେ ଥାଉ-ସୁଖାନୁଭବ କରନ୍ତି। କାଳିଦାସ ପ୍ରଭୃତି ମଧ୍ୟ ବୃତ୍ତାନ୍ତ ବଡ଼ ଉପାଦେୟ ମନେ କଲେ। ''ବିଜ୍ଞାନୀ କୈବର୍ତ୍ତ ଧୋଇଲା। ବିଶ୍ୱେ ପତିତପାବନ ନାମ ରହିଲା।'' ଅସ୍ପୃଶ୍ୟ କୈବର୍ତ୍ତ ରାମ ପାଦ ଧୋଇବାକୁ ଅନୁମତି ଦେଲେ। ସୌରାଚାରୀ ବ୍ରାହ୍ମଣମାନଙ୍କର ସହ୍ୟ ହେବା କିପରି ? ଗୁହଶବର ସହିତ କୋଳାକୋଳି କଲେ, ତା' ପ୍ରଦତ୍ତ ଖାଦ୍ୟପଦାର୍ଥ ସନ୍ତୋଷରେ ଗ୍ରହଣ କଲେ। ଶବରୀର ପ୍ରଦତ୍ତ ଫଳ ଭକ୍ଷଣ କଲେ। ହନୁମାନ ସୁଗ୍ରୀବ ପ୍ରଭୃତିଙ୍କ ସହିତ ସଂଖ୍ୟା ସ୍ଥାପନ କଲେ। ଏ ଗୁରୁ ଦୁଷ୍କର୍ମ ଶ୍ରୋତ୍ରୀୟ ବ୍ରାହ୍ମଣେ ସମ୍ଭାଳି ପାରନ୍ତେ କିପରି ? ଏଣୁ ଉତ୍ତରାକାଣ୍ଡରେ ଶୂଦ୍ର ପ୍ରତି ଅତ୍ୟାଚାର ଏବଂ ସୀତା ବର୍ଜନ ରୂପ ଅସ୍ତ୍ରଦ୍ୱାରା ରାମଙ୍କର ମହତ୍ତ୍ୱ ନାଶ କରିବାର ଚେଷ୍ଟା କରିଅଛନ୍ତି ଏବଂ ଉତ୍ତରାକାଣ୍ଡ ଲେଖିଅଛନ୍ତି ଏବଂ ଅନ୍ଧବିଶ୍ୱାସୀଠାରେ ସାଦରେ ତାହା ପାଠ କରୁଅଛନ୍ତି।

ରାମଙ୍କର ମହତ୍ତ୍ୱ ଏବଂ ବାଲ୍ମୀକିଙ୍କର ବିଶୁଦ୍ଧ ଚରିତ୍ର ଚିତ୍ରରେ ଦେଖି ଅନେକ କବିଙ୍କର ମନଃପୂତଃ ହେଲା ନାହିଁ। ଏଣୁ ଲଙ୍କାକାଣ୍ଡରେ ରାବଣ ବଧ ପୂର୍ବରୁ ବର୍ଣ୍ଣନାରେ କୃତ୍ରିମ ଲେଖା ଯୋଗ କରିବାର ଚେଷ୍ଟା କଲେ। ରାମ କେବଳ ନିଜ ଭାଇ ଲକ୍ଷ୍ମଣ ଭିନ୍ନ ମହା ବିପତ୍ତିରେ କାହାରି ସାହାଯ୍ୟ ଲୋଡ଼ି ନାହାନ୍ତି କିମ୍ବା କେହି ସାହାଯ୍ୟ ଦେବାକୁ ଅଗ୍ରସର ହୋଇ ନାହାନ୍ତି। ରାବଣ ସହିତ ଶେଷ ଯୁଦ୍ଧରେ ଇନ୍ଦ୍ର ରଥ ଆସିଲା। ମାତଳି ରଥ ଚଳାଇଲା। ରାମଙ୍କୁ ଉପଦେଶ ଦେଲା ଇତ୍ୟାଦି। ଏତିକି ନୁହେଁ ହଠାତ୍ କେଉଁ ଉପାୟରେ କେଉଁଠାରୁ ଅଗସ୍ତି ଋଷି ଆସି ରାମଙ୍କୁ ରାବଣ ବଧ ଉପାୟ ବତାଇଲେ। ଅର୍ଥାତ୍ ସୂର୍ଯ୍ୟ କବଚ ପାଠ କଲେ ରାବଣ ବିନାଶ ଅବଶ୍ୟ ଘଟିବ ବୋଲି ରାମଙ୍କୁ କବଚ ପଢ଼ାଇଲେ। ଏହି ଅଗସ୍ତି ଋଷି ଉତ୍ତରାକାଣ୍ଡର ପ୍ରଧାନ ସୂତ୍ରଧାର। କି ଛଳନା ! ସେ ସମୟରେ ସୂର୍ଯ୍ୟ କବଚର ରଚନା ହୋଇଥିଲା କି ? ଏବଂ ସୂର୍ଯ୍ୟ କବଚ ଦୁଇ ପଦ ପଢ଼ି ରାମ ରାବଣକୁ ଜୟ କଲେ କି ? ଏ ଅଂଶ ବାଲ୍ମୀକିର ଲେଖା ନୁହେଁ। ଅଗସ୍ତି ଉତ୍ତରାକାଣ୍ଡର ସୂତ୍ରଧାର ହେବା କଳ୍ପନାରେ ଯୁଦ୍ଧ ବେଳେ ରାମଙ୍କୁ ସୂର୍ଯ୍ୟ କବଚ ପଢ଼ାଇବାର ଅଦ୍ଭୁତ କଳ୍ପନା।

ଅବଶେଷରେ ବକ୍ତବ୍ୟ ଏହି ଯେ, ବାଲ୍ମୀକିଙ୍କର ବିଶୁଦ୍ଧ ଓ ଉପଦେଶପୂର୍ଣ୍ଣ କବିତା ପାଠକରି ପରବର୍ତ୍ତୀ ଲୋକେ ଅସୂୟା ପରବଶ ହୋଇ କୃତ୍ରିମ କରିବାକୁ ଆରମ୍ଭ କଲେ ଏବଂ ଯେଉଁମାନେ ସୀତାରାମଙ୍କର ଅବିନଶ୍ୱର ପ୍ରେମ ଭଙ୍ଗ ବାର୍ତ୍ତା ପ୍ରଚାର କଲେ ସେହିମାନେ ପ୍ରକୃତ ନିଷାଦ। ସେସବୁ

ଆଲୋଚନାର ଅବସର ଏଠାରେ ନାହିଁ। ପୂର୍ବେ ରାମାୟଣ ଆଲୋଚନାରେ ଏହା ଲେଖାଯାଇଅଛି। ମୋର ଦୃଢ଼ ବିଶ୍ୱାସ ଯେ, ବିଶୁଦ୍ଧ ରାମଚରିତ୍ର ଯାହା ବାଲ୍ମୀକି ଲିଖିତ ତାହା ଅବିକଳ ଆମମାନଙ୍କଠାରେ ନାହିଁ। ଉତ୍ତରାକାଣ୍ଡକୁ ରାମାୟଣ ଗ୍ରନ୍ଥରୁ ବିସର୍ଜନ ଦେବାକୁ ହେବ ଏବଂ ପ୍ରଥମ ଚାରି ଅଧ୍ୟାୟ ପ୍ରକ୍ଷେପ ବୋଲି ତ୍ୟାଗ କରିବାକୁ ହେବ ଏବଂ ସମାଲୋଚକ ଚକ୍ଷୁରେ ସଂସ୍କୃତ ରାମାୟଣ ପାଠକଲେ ବାଲ୍ମୀକିଙ୍କର ମହତ୍ତ୍ୱ ଏବଂ ସୀତାରାମଙ୍କର ପ୍ରେମ ଅନୁଭବ କରାଯିବ। ମୁଁ ଯେତିକି ରାମାୟଣର ସମାଲୋଚନା କରୁଛି ରାମଙ୍କଠାରେ ମୋର ଭକ୍ତି ଓ ପ୍ରେମ ବଢ଼ୁଛି। ଏଥି ନିମନ୍ତେ ମୁଁ ସୁଖୀ। ରାମ ହିଁ ମହାପୁରୁଷ।

ସୁରେନ୍ଦ୍ର ବାଞ୍ଛିତ ରାଜ୍ୟ-ଲକ୍ଷ୍ମୀ ତ୍ୟାଗକରି।
ଧର୍ମିଷ୍ଠ ପିତୃ ବଚନେ ହେଲେ ବନଚାରୀ॥
ଦୟିତାନୁରୋଧେ ମୃଗ ପଛେ ଯେ ଧାବନ୍ତି।
ସେ ମହାପୁରୁଷ ପାଦପଦ୍ମେ ମୋ ପ୍ରଣତି॥

•

# ବିବିଧ ରଚନା

## (କ) ମହରମର ଇତିବୃତ୍ତ

### ଅବତରଣିକା

ମାନବ ହୃଦୟର ସ୍ୱଭାବଦତ୍ତ ଧର୍ମ ପ୍ରବୃତ୍ତିର ଉନ୍ମେଷ ନିମନ୍ତେ ସମୟେ ସମୟେ ମହାପୁରୁଷ ଜନ୍ମଗ୍ରହଣ କରନ୍ତି । ଏହି ବାକ୍ୟଟି ଇତିହାସର ଗୋଟିଏ ପରୀକ୍ଷିତ ସତ୍ୟ । ଦେଶ ବିଦେଶ ନାନାପ୍ରକାର ବ୍ୟଭିଚାରରେ ଭର୍ତ୍ସନାପ୍ରାୟ ହେଲେ ଧର୍ମ ସ୍ଥାପନାର୍ଥ ଅହିତାଚାର ନିବାରଣ ନିମନ୍ତେ ଭିନ୍ନ ଭିନ୍ନ ସମୟରେ ମହାପୁରୁଷ ଜନ୍ମଗ୍ରହଣ କରିଅଛନ୍ତି । ଏହା ଇତିହାସଜ୍ଞ ମାତ୍ରେ ସ୍ୱୀକାର କରିବେ । ଦେଶ, କାଳ, ପାତ୍ର ଭେଦରେ ଏହି ମହାପୁରୁଷମାନଙ୍କର କାର୍ଯ୍ୟକ୍ଷେତ୍ର ଓ ଜୀବନ ବିଚିତ୍ର ଘଟଣାରେ ପରିପୂର୍ଣ୍ଣ । ସମଦର୍ଶୀ ପଣ୍ଡିତମାନେ ମହାପୁରୁଷମାନଙ୍କୁ ଶ୍ରଦ୍ଧା ଓ ଭକ୍ତିରେ ପୁଷ୍ପାଞ୍ଜଳି ପ୍ରଦାନ କରନ୍ତି । ଏପରି ସଂକୀର୍ଣ୍ଣମନା ବ୍ୟକ୍ତି ମଧ୍ୟ ଅଛନ୍ତି । ଯେ ସେମାନେ ସ୍ୱ-ସ୍ୱ ସମ୍ପ୍ରଦାୟ କି ସ୍ୱ-ଜାତିର ମହାପୁରୁଷ ଭିନ୍ନ ତତ୍ତୁଲ୍ୟ ଅପର ବ୍ୟକ୍ତିଙ୍କୁ ମନୁଷ୍ୟ ଧର୍ମ ବିଧର୍ମୀ କହିବାକୁ ତ୍ରୁଟି କରନ୍ତି ନାହିଁ । ଏହି ଶ୍ରେଣୀର ଲୋକ ଅତୀବ କୃପା ପାତ୍ର । ଯେଉଁ ବୁଦ୍ଧଦେବଙ୍କ ସମୟରେ ଏବେ ମଧ୍ୟ ଜଗତର ଏକ ତୃତୀୟାଂଶ ଲୋକ ମସ୍ତକ ଅବନତ କରି ରହି ଅଛନ୍ତି, ତାହାଙ୍କୁ ନାସ୍ତିକ, ବିଚାରକ, ବୋଲି ଉପେକ୍ଷା କଲେ କୌଣସି ପୌରୁଷ ବୃଦ୍ଧି ହୁଏ ନାହିଁ । ଯେଉଁ ଖ୍ରୀଷ୍ଟଙ୍କ ନାମରେ ପୃଥିବୀରେ ଆନନ୍ଦ ଧ୍ୱନି ହୁଏ ତାଙ୍କର ସଦୁପଦେଶ ପୂର୍ଣ୍ଣ ବାକ୍ୟ ଶ୍ରବଣ ମାତ୍ରକେ କର୍ଣ୍ଣରେ ଅଙ୍ଗୁଳି ପ୍ରଦାନ କରି ପ୍ରସ୍ଥାନ କଲେ ଯେ କି ଧର୍ମାନୁଷ୍ଠାନ ହୁଏ ଜାଣୁ ନାହିଁ । ମହାପୁରୁଷ ବିଶେଷତଃ ଧର୍ମ ପ୍ରବର୍ତ୍ତକ ମହାତ୍ମାମାନଙ୍କ ପ୍ରତି ଯେଉଁମାନେ କୌଣସି ପ୍ରକାର ଅବଜ୍ଞା ପ୍ରକାଶ କରନ୍ତି, ସେମାନେ ମହାପାତକୀ ।

ଭିନ୍ନ ଭିନ୍ନ ସମ୍ପ୍ରଦାୟରେ ମହାପୁରୁଷ ଲକ୍ଷଣ ବିଭିନ୍ନ ରୂପରେ ବର୍ଣ୍ଣିତ ହୋଇଅଛି । ସେ ଲକ୍ଷଣଗୁଡ଼ିକ ଅବଗତ ନ ଥିଲେ ମଧ୍ୟ ପୂର୍ବବର୍ତ୍ତୀ ମହାପୁରୁଷ ନିର୍ଣ୍ଣୟ କରିବା ଅତି ସହଜ । ଯେତେବେଳେ ସମସାମୟିକ ପ୍ରତାପାନ୍ୱିତ ବଳଦୃପ୍ତ ସମ୍ରାଟମାନେ ବିସ୍ମୃତିର ଅତଳ ସାଗରରେ ମଗ୍ନ ହୋଇଯାଆନ୍ତି ଏବଂ ସାମାନ୍ୟ ବଂଶୋଦ୍ଭବ, ତତ୍କାଳୀନ ନଗଣ୍ୟ କୌଣସି ଏକ ବ୍ୟକ୍ତି ମାନବ ହୃଦୟର ଅତି ଉଚ୍ଚସ୍ଥାନରେ ଆସନପ୍ରାପ୍ତ ହୋଇ ଜଗତବାସୀଙ୍କର ଦୃଷ୍ଟି ଆକର୍ଷଣ କରନ୍ତି । ତେତେବେଳେ ସ୍ୱତଃ ମନରେ ହୁଏ ଯେ, ଶେଷୋକ୍ତ ବ୍ୟକ୍ତିର ମଧ୍ୟରେ ଏପରି କିଛି ନିହିତ ଅଛି, ଯାହା ସାଧାରଣରେ ଥାଏ ନାହିଁ, ଯେ ପୁରୁଷ ଶତାବ୍ଦୀ, ସହସ୍ରାବ୍ଦୀ ଅତୀତ ହେଲେ ସୁଦ୍ଧା ମାନବ ହୃଦୟର ଶ୍ରଦ୍ଧା ଓ ଭକ୍ତି ଆକର୍ଷଣ କରନ୍ତି, ସେ ପ୍ରକୃତ ମହାପୁରୁଷ । ତାଙ୍କର ନାମରେ ଯାହାଙ୍କ ମସ୍ତକ ଅବନତ ନ ହୁଏ ସେ ମନୁଷ୍ୟ ପଦବାଚ୍ୟ ନୁହେଁ । ଏହି ଶ୍ରେଣୀର ମହାପୁରୁଷଙ୍କ ସଂଖ୍ୟା ଜଗତରେ ଅତି ଅଳ୍ପ । ଏମାନଙ୍କର କାର୍ଯ୍ୟ ପର୍ଯ୍ୟାଲୋଚନା କଲେ ପୁଣ୍ୟ ହୁଏ । ନାମସ୍ମରଣ କଲେ ପାପ କ୍ଷୟ ହୁଏ ।

ଇଦାନୀନ୍ତନ ମୁସଲ୍‌ମାନମାନେ ଅଧିକାଂଶ ହିଁ ଏକେଶ୍ୱରବାଦୀ । ଏମାନଙ୍କ ମଧ୍ୟରେ ଏକମେବା ଦ୍ୱିତୀୟଂ । ଏହି ମହାସତ୍ୟଟି ଦୃଢ଼ ଭାବରେ ଅଧିକାର ବିସ୍ତାର କରିଅଛି । ଲୋକମାନଙ୍କର ମନ ସାଧାରଣତଃ ସାକାର ଉପାସନା ପ୍ରତିମା ପୂଜାପ୍ରତି ଆକୃଷ୍ଟ ହୁଏ । ମୁସଲମାନମାନଙ୍କ ମଧ୍ୟରେ ଏହି ପ୍ରକୃତି ସୁଲଭଭାବ ପରିପୁଷ୍ଟ ହେବାରୁ ସେମାନେ ମଧ୍ୟ ନାନାପ୍ରକାର କୁ-ସଂସ୍କାରମୟ ପୂଜା ପ୍ରଣାଳୀ ଅବଲମ୍ବନ କରୁଥିଲେ । ପ୍ରକୃତ ଭଗବାନ୍ ଅର୍ଚ୍ଚାନାଦି ନ କରି, ଆରବ ଦେଶ ଯେତେବେଳେ କଳ୍ପିତ ମୂର୍ତ୍ତିର ଉପାସନାରେ ମଗ୍ନ ହୋଇ ଦିନକୁ ଦିନ ନିମ୍ନଗାମୀ ହେଉଥିଲେ, ତେତେବେଳେ ସେହି ଦେଶରେ ଏକ ମହାପୁରୁଷ ଜନ୍ମ ଗ୍ରହଣ କରିଥିଲେ । ସେ ବିଧର୍ମୀମାନଙ୍କ ସହିତ ଧର୍ମ ଯୁଦ୍ଧରେ ପ୍ରବୃତ୍ତ ହୋଇ ଏକାକୀ ସଂଗ୍ରାମ କରି ଅଦ୍ୱିତୀୟ ଈଶ୍ୱରଙ୍କ ନାମ ଜୟଯୁକ୍ତ କରିଅଛନ୍ତି ।

ତହିଁ ହେତୁରୁ ମାନବ କୁଳର ସେ ଯେ କେତେଦୂର କୃତଜ୍ଞତା ଭାଜନ ହୋଇଅଛନ୍ତି କିଏ ତହିଁର ଇୟତ୍ତା କରିପାରିବ ।

ସେହି ମହାପୁରୁଷ କିଏ ? ହଜରତ ମହମ୍ମଦ । ତାଙ୍କର ଅଦମ୍ୟ ତେଜଃ, ଅଲୌକିକବଳ, ଆଲୋକ ସାମାନ୍ୟ ଈଶ୍ୱରାରାଧନ ଜଗତରେ ଅତୁଳନୀୟ । ତାଙ୍କର ନାମୋଚ୍ଚାରଣ କଲେ ହୃଦୟ ତୃପ୍ତ ହୁଏ । ଏବଂ ତାଙ୍କର ମହତ୍ୱ ସମ୍ବନ୍ଧରେ କିଛି ଲେଖିବା ବା କିଛି କହିବା ବଡ଼ ସୌଭାଗ୍ୟର ବିଷୟ । ଆମ୍ଭର ତୁଦନୁରୂପ ବିଜ୍ଞତା ଓ ଚିତ୍ତ ଶୁଦ୍ଧି ନାହିଁ, ସୁତରାଂ ହଜରତ ମହମ୍ମଦଙ୍କର ନାମମାତ୍ର ସ୍ମରଣ ଓ ଭକ୍ତି ଭାବରେ ତାହାଙ୍କର ଉଦ୍ଦେଶ୍ୟରେ ମସ୍ତକ ଅବନତ କରି, ତାଙ୍କ ବଂଶରେ ଯେଉଁ ବିଷଦ୍‌ମୟ ଘଟଣା ସ୍ରୋତ ପ୍ରବାହିତ ହୋଇଥିଲା ସଂକ୍ଷେପରେ ସେହି ଘଟଣା ବର୍ଣ୍ଣନା କରିବୁ ।

ଏତଦ୍ଦେଶୀୟ ସମସ୍ତେ ଅବଗତ ଅଛନ୍ତି ଯେ, ମୁସଲ୍‌ମାନମାନଙ୍କର ମଧ୍ୟରେ 'ମହରମ୍' ଗୋଟିଏ ପ୍ରଧାନ ପର୍ବ । ଏହି ପର୍ବୋପଲକ୍ଷ୍ୟରେ ମୁସଲ୍‌ମାନମାନଙ୍କ ସ୍ତ୍ରୀ, ପୁରୁଷ, ଆବାଳ ବୃଦ୍ଧ ମତ୍ତ ହୋଇ ପ୍ରତିବର୍ଷ, ''ହାୟ ହୋସେନ୍ । ହାୟ ହୋସେନ୍'' ରବରେ ବିଶାଳ ରୋଳ ଉତ୍‌ଥିତ କରି ସର୍ବଦା ବକ୍ଷରେ କରାଘାତ କରିଥାନ୍ତି । ଏହି ବିଷାଦମୟ ଘଟଣାର ମୂଳ ବୃତ୍ତାନ୍ତ ଅଧିକାଂଶ ଲୋକ ଏମନ୍ତ କି ଅଧିକାଂଶ ମୁସଲ୍‌ମାନ ସୁଧା ଅବଗତ ହୋଇ ନାହାନ୍ତି, ଏଥି ସକାଶେ ଅତି ସଂକ୍ଷେପ ଓ ସରଳ ଭାଷାରେ ମୂଳ ବିବରଣ ପ୍ରକାଶ କରୁଅଛୁଁ । ଭରସା କରୁଁ ସକଳ ଶ୍ରେଣୀର ସମଦର୍ଶୀ ପାଠକ ମହୋଦୟମାନେ ଏହି ଆଖ୍ୟାୟିକାଟି ଶ୍ରଦ୍ଧାର ସହିତ ପାଠ କରିବେ ।

## କଥାରମ୍ଭ !

ଏକଦା ମହାପୁରୁଷ ମହମ୍ମଦ ଶିଷ୍ୟ ସମୂହରେ ପରିବୃତ୍ତ ହୋଇ ଧର୍ମାସନରେ ଆସୀନ ଅଛନ୍ତି । ଏମନ୍ତ ସମୟରେ ସହସା ତାଙ୍କର ବଦନ କମଳ ଈଷତ୍ ନିଷ୍ପ୍ରଭ ହେଲା । ଏହି ଅଦୃଷ୍ଟପୂର୍ବ ଓ ଅଭାବନୀୟ ପରିବର୍ତ୍ତନ ସନ୍ଦର୍ଶନ କରି ଶିଷ୍ୟମାନେ ବ୍ୟାକୁଳ ହେଲେ । ସେମାନଙ୍କ ମଧ୍ୟରେ ମାଭିୟା ନାମକ ଏକ ବ୍ୟକ୍ତି ଅତ୍ୟନ୍ତ ଈଶ୍ୱରାପରାୟଣ ଧାର୍ମିକ ଥିଲେ, ସୁତରାଂ ମହମ୍ମଦ ତାହାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ପ୍ରିୟ ଶିଷ୍ୟ ମାଭିୟା ହଜରତ ମହମ୍ମଦଙ୍କୁ ସମ୍ବୋଧନ କରି କହିଲେ 'ପ୍ରଭୋ'! ଅକସ୍ମାତ୍ ଆପଣ କାହିଁକି ବିମର୍ଷ ହେଲେ ? ଆପଣଙ୍କର ମନ ବିଷଣ୍ଣ ଦେଖି ଆମ୍ଭମାନଙ୍କର ହୃଦୟ ବିଦୀର୍ଣ୍ଣ ହୋଇଯାଉଅଛି । ଶୀଘ୍ର ବିଷାଦର କାରଣ ପ୍ରକାଶ କରି ହୃଦୟ ଯନ୍ତ୍ରଣା ଦୂର କରନ୍ତୁ । 'ପ୍ରଭୁ ମହମ୍ମଦ ଏହି ପ୍ରକାର ଜିଜ୍ଞାସିତ ହୋଇ କହିଲେ', ''ଉପସ୍ଥିତ ଶିଷ୍ୟବର୍ଗ ମଧ୍ୟରେ କୌଣସି ଏକ ଜଣର ବଂଶଧର ମୋହର ପ୍ରିୟକନ୍ୟା ଫାତିମାର ପୁତ୍ରଦ୍ୱୟଙ୍କୁ ବିନାଶ କରି ମଦିନାର ସମ୍ରାଟ୍ ହେବାକୁ ପ୍ରୟାସୀ ହେବେ ।'' 'ମାଭିୟା' ଉତ୍ତର ଶ୍ରବଣ କରି ଅତି ବ୍ୟଗ୍ର ଚିତ୍ତରେ ଜିଜ୍ଞାସା କଲେ, ''ସେହି ପ୍ରିୟ ଶିଷ୍ୟ କିଏ ?'' ମହମ୍ମଦ ତାହାଙ୍କର ଆଗ୍ରହାତିଶୟ ନିବନ୍ଧନ ଉତ୍ତର କଲେ, ''ମାଭିୟା, ଆଉ କ'ଣ କହିବି । ତୁମ୍ଭେ ସେହି ପ୍ରିୟ ଶିଷ୍ୟ । ତୁମ୍ଭର ଔରସରେ ଏକ ସନ୍ତାନ ଜନ୍ମଗ୍ରହଣ କରିବ, ସେହି ପୁତ୍ର ହୋସେନ୍ ହୋସନ୍‌ଙ୍କୁ ବଧ କରି ମଦିନାର ସିଂହାସନ ଅଧିକାର କରିବାକୁ ଚେଷ୍ଟା କରିବେ ।''

ମାଭିୟା ହଜରତ୍ ମହମ୍ମଦଙ୍କୁ ପ୍ରାଣପେକ୍ଷା ପ୍ରିୟ ଜ୍ଞାନ କରନ୍ତି । ସର୍ବଦା କାୟମନୋବାକ୍ୟରେ ତାଙ୍କର ମଙ୍ଗଳ ପ୍ରାର୍ଥନା କରନ୍ତି । ସୁତରାଂ ଏହି ବାକ୍ୟ ଶ୍ରବଣ କରି ସେ ମର୍ମାନ୍ତିକ ଆହତ ହେଲେ । ମାଭିୟା ସେ ସମୟକୁ ବିବାହ କରି ନ ଥିଲେ । ସେ ପ୍ରତିଜ୍ଞା କରି କହିଲେ ''ପ୍ରଭୋ ! ମୁଁ ବର୍ତ୍ତମାନ ସୁଦ୍ଧା ପରିଣୟ ସୂତ୍ରରେ ଆବଦ୍ଧ ହୋଇ ନାହିଁ । ଚିର କୌମାର୍ଯ୍ୟ ବ୍ରତାବଲମ୍ବନ କରି ବ୍ରହ୍ମଚାରୀ ପରି ଜୀବନ ଅତିବାହିତ କରିବି । ପ୍ରାଣାନ୍ତ ହେଲେ ସୁଦ୍ଧା ନାରୀ ଜାତିର ମୁଖ ସନ୍ଦର୍ଶନ କରିବି ନାହିଁ । ଏପରି କଲେ ମୋହର ଔରସରେ ସନ୍ତାନ ସମ୍ଭାବନା କି ରୂପେ ହେବ ? ଅତଏବ ବିଷାଦ ତ୍ୟାଗ କରନ୍ତୁ ।''

ପ୍ରଭୁ ମହମ୍ମଦ କହିଲେ, ''ମାଭିୟା ! ତୁମ୍ଭେ କି ଜାଣ ନାହିଁ ଯେ, ସର୍ବଶକ୍ତିମାନ୍ ଭଗବାନ୍‌ଙ୍କର ଇଚ୍ଛାପୂର୍ଣ୍ଣ ହେବ ହିଁ ହେବ । ଯାହାକି କୌଶଳରେ ଏହି ସମସ୍ତ ବ୍ରହ୍ମାଣ୍ଡ ପରିଚାଳିତ ହେଉଅଛନ୍ତି । ଯାହାଙ୍କର ଇଚ୍ଛାରେ ସମୁଦ୍ରର ତଳ ଅଭ୍ରଭେଦୀ ଶୈଳଶୃଙ୍ଗରେ ପରିଣତ ହେଉଅଛି, ପୁଣି ସେହି ଗିରିଚୂଡ଼ା ଅତଳ ସଲିଳରେ ନିମଗ୍ନ ହେଉଅଛି, ଯାହାଙ୍କର ଇଙ୍ଗିତରେ ଏକ ମୁହୂର୍ତ୍ତ ମଧ୍ୟରେ କୋଟି କୋଟି ଜଗତର ଧ୍ୱଂସ ଓ ନିର୍ମାଣ ସମ୍ଭବ ସେହି ବିଶ୍ୱଶିଳ୍ପୀ ଇଚ୍ଛାମୟଙ୍କର ଇଚ୍ଛା କାର୍ଯ୍ୟରେ ପରିଣତ ହେବା ବିଷୟରେ ବାଧା ଜନ୍ମାଇବାକୁ ସାଧ କାହାର ? ପ୍ରିୟ ମାଭିୟା । ଦୁଃଖ କର ନାହିଁ । ମଙ୍ଗଳମୟଙ୍କର ଇଚ୍ଛା ପୂର୍ଣ୍ଣ ହେଉ ।''

ଏହି ଭବିଷ୍ୟଦ୍‌ବାଣୀର କିଂୟଦିବସ ପରେ, ମାଭିୟାଙ୍କର ଶରୀର ରୋଗ ପୀଡ଼ିତ ହେଲା, ସେ ରୋଗ ଯନ୍ତ୍ରଣାରେ ଅସ୍ଥିର ହୋଇ ନାନାପ୍ରକାର ଚିକିତ୍ସା କରିବାକୁ

ଲାଗିଲେ । କିନ୍ତୁ କୌଣସିମତେ ଉଦ୍ଦେଶ୍ୟରେ ଶାନ୍ତି ନ ହୋଇ ଦିନକୁ ଦିନ ପୀଡ଼ାବୃଦ୍ଧି ହେବାରୁ ଯନ୍ତ୍ରଣା ଅସହ୍ୟ ହୋଇଉଠିଲା । ଅତଃପର ଏହି ବ୍ୟବସ୍ଥା ହେଲା ଯେ, ଦାର ପରିଗ୍ରହ ଭିନ୍ନ ଏହି ରୋଗର ଉପଶମ ହେବ ନାହିଁ, ଅଥଚ ମାଭିୟା ପ୍ରାଣାନ୍ତରେ ଏପରି ବ୍ୟବସ୍ଥା ଅବଲମ୍ବନ କରିବେ ନାହିଁ, କାରଣ ସେ ସବୁବେଳେ ପ୍ରଭୁଙ୍କର ଭବିଷ୍ୟଦ୍‌ବାଣୀ ଚିନ୍ତା କରୁଥିଲେ । ତାହାଙ୍କ ଦ୍ୱାରା ପ୍ରଭୁଙ୍କର ବଂଶଧରର ବିନାଶ ସୂଚନା ସେ ପ୍ରାଣାନ୍ତରେ ସୁଦ୍ଧା ହେବାକୁ ଦେବେ ନାହିଁ । ଏହି ପ୍ରକାର ସଂକଳ୍ପ କରି ସକଳ ପ୍ରକାର ଯନ୍ତ୍ରଣା ସହ୍ୟ କରିବାକୁ ଲାଗିଲେ ।

ଏକଦା ହଜରତ ମହମ୍ମଦ୍ ମାଭିୟାଙ୍କୁ କହିଲେ ଆଉ କାହିଁକି ? ଇଚ୍ଛାମୟଙ୍କର ଇଚ୍ଛା ଯେ କୌଣସି ପ୍ରକାରେ ହେଉ ନିଶ୍ଚୟ କାର୍ଯ୍ୟରେ ପରିଣତ ହେବ । ଅତଏବ ବ୍ୟବସ୍ଥାନୁସାରେ କାର୍ଯ୍ୟକରି ରୋଗ ଯନ୍ତ୍ରଣାରୁ ମୁକ୍ତି ଲାଭ କର । ଆତ୍ମବିନାଶ ବାସନା ତ୍ୟାଗ କର, ଆତ୍ମହତ୍ୟା ମହାପାପ ।

ମାଭିୟା, ପ୍ରଭୁଙ୍କର ଆଦେଶ ଶିରୋଧାର୍ଯ୍ୟ ମନେକରି ଉପସ୍ଥିତ ଯନ୍ତ୍ରଣାରୁ ମୁକ୍ତିଲାଭ କରିବା ସକାଶେ ବିବାହ କରିବାକୁ ସ୍ୱୀକୃତି ହେଲେ । ସଚରାଚର ଦେଖାଯାଏ ଯେ, ଅଧିକ ବୟସରେ ସ୍ତ୍ରୀଲୋକମାନଙ୍କର ଗର୍ଭଧାରଣ ଶକ୍ତି ନଷ୍ଟ ହୁଏ, ତନ୍ନିମିତ୍ତ ମାଭିୟା ଅଶୀତିବର୍ଷୀୟା ଏକ ବୃଦ୍ଧାକୁ ବିବାହ କଲେ । ଅନନ୍ତର ଅଳ୍ପଦିନ ମଧ୍ୟରେ ସେ ଆରୋଗ୍ୟ ଲାଭ କଲେ । ବିଧାତାଙ୍କର ବିଧି କି ଅଲଙ୍ଘନୀୟ । ସେହି ଅଶୀତିବର୍ଷୀୟା ବୃଦ୍ଧା ଅଚିରେ ଗର୍ଭବତୀ ହେଲେ । ଈଶ୍ୱରଙ୍କ ସମ୍ବନ୍ଧରେ କିଛି ହିଁ ଅସମ୍ଭବ ନୁହେଁ । ମନୁଷ୍ୟ ଯେତେ ଚେଷ୍ଟା କରୁ ନା କାହିଁକି, ସେହି ବିଶ୍ୱଶିଳ୍ପୀଙ୍କର କୌଶଳ ବ୍ୟର୍ଥ କରିପାରିବ ଏପରି ସାଧ୍ୟ କାହାରି ନାହିଁ ।

ଯଥା ସମୟରେ ମାଭିୟା ପତ୍ନୀ ପୁତ୍ର ପ୍ରସବ କଲେ । ମାଭିୟା, ତତ୍‌କ୍ଷଣାତ୍ ସଦ୍ୟଜାତ ଶିଶୁକୁ ବଧ କରିବାକୁ ସଂକଳ୍ପ କଲେ । ମାଭିୟା, ପ୍ରଭୁ ପ୍ରେମରେ ଏହି ନିଷ୍ଠୁର ବ୍ୟାପାର ମଧ୍ୟ ସମ୍ପାଦନ କରିବାକୁ ଉଦ୍ୟତ ହେଲେ । କିନ୍ତୁ ପୁତ୍ର ସ୍ନେହର କି ମୋହିନୀଶକ୍ତି, ପୁତ୍ର ମୁଖ ସନ୍ଦର୍ଶନ ମାତ୍ରକେ, ସ୍ନେହ ରସରେ ତାଙ୍କର ହୃଦୟ ବିଗଳିତ ହୋଇଗଲା । ନିଷ୍ଠୁର ସଂକଳ୍ପ ହୃଦୟରୁ ଏକାବେଳକେ ଅନ୍ତର୍ହିତ ହେଲା । ସେ ସତୃଷ୍ଣ ନୟନରେ ବାରମ୍ବାର ଶିଶୁର ମୁଖଚନ୍ଦ୍ର ନିରୀକ୍ଷଣ କରିବାକୁ ଲାଗିଲେ । ଉଚ୍ଛଳିତ ହୃଦୟାବେଗ ସମ୍ବରଣ କରି ନ ପାରି ପ୍ରେମପୂର୍ଣ୍ଣ ହୃଦୟରେ ଅଜସ୍ର ମୁଖ ଚୁମ୍ବନ କରିବାକୁ ଲାଗିଲେ ।

ପ୍ରାଣ ସଂହାର କରିବା ଦୂରେ ଥାଉ, ଆତ୍ମପ୍ରାଣ ପୁତ୍ର ସକାଶେ ତୁଚ୍ଛଜ୍ଞାନ କରିବାକୁ ଲାଗିଲେ । ଦିନକୁ ଦିନ ପୁତ୍ର ସ୍ନେହ ବୃଦ୍ଧି ପାଇଲା । ପିତାମାତାଙ୍କର ଆନନ୍ଦ ବର୍ଦ୍ଧନ କରି କାଳକ୍ରମେ ମାଭିୟା କୁମାର ଏଜିଦ୍ ମଧ୍ୟ ଯୌବନରେ ପଦାର୍ପଣ କଲେ ।

ଯୌବନ ବିଷମ କାଳ ଭୟଙ୍କର ସଂଗ୍ରାମର ସମୟ । ଏହି ସମୟରେ ମନଃ ହୃଦୟରେ ସମସ୍ତ ପ୍ରବୃତ୍ତି ଉତ୍ତେଜିତ ହୋଇ ପ୍ରତ୍ୟେକ ସମାଧିପତ୍ୟ ବିସ୍ତାର କରିବା ନିମିତ୍ତ ହୃଦୟରାଜ୍ୟରେ ଘୋରତର ବିପ୍ଳବ କରାଇବା ସତ୍ ଓ ଅସତ୍ ପ୍ରବୃତ୍ତି ଉଭୟେ ସମାନ ଭାବରେ ପ୍ରଲୋଭିତ କରୁଥାନ୍ତି । ଯେଉଁମାନଙ୍କର ହୃଦୟ ରାଜ୍ୟରେ ଅଧିଷ୍ଠାତ୍ରୀ ଦେବୀ ବିବେକ ବାଣୀର ଆଜ୍ଞାଧୀନ ହୋଇ ଅସତ୍ ପ୍ରବୃତ୍ତିର ଉତ୍ତେଜନା ଦମନ କରି ସତ୍ ପ୍ରବୃତ୍ତିର ଉତ୍କର୍ଷ ସାଧନ କରନ୍ତି ସେହିମାନେ ଧନ୍ୟ, ସେହିମାନେ ଯୁଦ୍ଧଜୟୀ,ବୀର ନାମରେ ସାଧୁ ସମାଜରେ ପରିଗଣିତ ହୁଅନ୍ତି, ଯେଉଁମାନେ ଆତ୍ମସଂଯମ ଅଭାବରୁ ପ୍ରବୃତ୍ତି ସ୍ରୋତରେ ଅବାଧ ଶରୀର ମନ ଅର୍ପଣ କରନ୍ତି ଦିନକୁ ଦିନ ସେମାନଙ୍କର ଅଧୋଗତି ହୁଏ । ଏବଂ ଅବଶେଷରେ ଏକାବେଳକେ ବିନାଶ ହୁଅନ୍ତି ।

ଦମସ୍କ ରାଜ୍ୟର ଅନ୍ତର୍ଭୁତ କୌଣସି ଏକ ନଗରରେ ଜୋଦାର ନାମରେ ଭଦ୍ରବଂଶ ସମ୍ଭୂତ ଏକ ବ୍ୟକ୍ତି ବାସ କରୁଥିଲେ । ତାଙ୍କର ଅବସ୍ଥା ମଧ୍ୟବିତ୍ ଥିଲା । ଧନସମ୍ପତ୍ତି ଯାହାଥିଲା ତଦ୍ୱାରା ସ୍ୱଚ୍ଛନ୍ଦ ଭାବରେ ସାମାଜିକ ଆଚାର ବ୍ୟବହାର ରକ୍ଷାକରି ଜୀବନଯାତ୍ରା ନିର୍ବାହ କରିବାକୁ ସକ୍ଷମ ହୋଇଥାନ୍ତେ । କିନ୍ତୁ ସେ ଅତ୍ୟନ୍ତ ଅର୍ଥଲୋଲୁପ ଥିଲେ । ନିଜର ଅବସ୍ଥା ପ୍ରତି ଲକ୍ଷ୍ୟକରି ସର୍ବଦା ଅସନ୍ତୋଷ ପ୍ରକାଶ କରୁଥିଲେ । ଅର୍ଥଲୋଭରେ ସର୍ବଦା ନାନାବିଧ ଉପାୟ ଅବଲମ୍ବନ କରି ଅକ୍ଳାନ୍ତ ଭାବରେ ପରିଶ୍ରମ କରୁଥିଲେ । ଅନ୍ୟର ସୌଭାଗ୍ୟ ଦର୍ଶନ କରି ନିଜକୁ ଧିକ୍କାର ଦେଉଥିଲେ । ସେ ଦେଖିବାକୁ ସେତେ ସୁନ୍ଦର ନ ଥିଲେ । ତଥାପି ତାଙ୍କର ଏକମାତ୍ର ସ୍ତ୍ରୀ ଜୟନାବ ତାହାଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ । ଜୟନାବ ଅତି ସାଧ୍ୱୀ ଓ ସୁଶୀଳା ଥିଲେ । ସେ ପତି ସେବାକୁ ମୋକ୍ଷ ସାଧନାର ଏକମାତ୍ର ଉପାୟ ଜ୍ଞାନ କରି କାୟମନୋବାକ୍ୟରେ ତାଙ୍କର ଶୁଶ୍ରୂଷା କରୁଥିଲେ । କାହିଁରେ ସ୍ୱାମୀଙ୍କର ଆନନ୍ଦବର୍ଦ୍ଧନ ହେବ, ଏହି ଚିନ୍ତା ସର୍ବଦା ତାଙ୍କର ହୃଦୟରେ ଜାଗରୂକ ଥାଏ । ସ୍ୱାମୀଙ୍କର ଅବସ୍ଥାରେ ପରିତୃପ୍ତ ଥାଇ ତାହାଙ୍କୁ କହନ୍ତି, ଈଶ୍ୱର ଯାହାଙ୍କୁ ଯେ ଭାବରେ ରଖନ୍ତି, ତହିଁରେ ପ୍ରଫୁଲ୍ଲ ଥିବା ଉଚିତ । ତାଙ୍କର ବିଚାରରେ ଦୋଷାର୍ପଣ କରିବା ପାପ । ଯାହାର ଯାହା ପ୍ରୟୋଜନ ଓ ମଙ୍ଗଳପ୍ରଦ ତାହା

ତାହାକୁ ପ୍ରଦାନ କରିବାରେ ସେ ତ୍ରୁଟି କେତେବେଳେ କରନ୍ତି ନାହିଁ । ଅତଏବ କୃତଜ୍ଞ ସହକାରେ ତାଙ୍କର ଦାନ ଗ୍ରହଣ କରିବା କର୍ତ୍ତବ୍ୟ, ଜୟନାବ ଯେପରି ଅସାମାନ୍ୟ ଧାର୍ମିକା ସେହିପରି ରୂପବତୀ ମଧ ଥିଲେ ।

ଏଜିଦ୍ ଯୌବନ ସୀମାରେ ପଦାର୍ପଣ କରି ଏକଦା ହଠାତ୍ ଜୟନାବକୁ ଦର୍ଶନ କଲେ । ଦର୍ଶନମାତ୍ରେ ତାଙ୍କର ହୃଦୟରେ ଜୟନାବ ହେତୁ ପ୍ରଣୟ ସଞ୍ଚାର ହେଲା । ତଦବଧି ଜୟନାବଙ୍କର ମୂର୍ତ୍ତି ତାଙ୍କର ହୃଦୟ ପଟରେ ଅଙ୍କିତ ହୋଇ ରହିଲା ଦିନକୁ ଦିନ ଜୟନାବ ଲାଭ ବାସନା ତାଙ୍କର ସର୍ବଚିନ୍ତା ଗ୍ରାସ କଲା । କିପରି ଜୟନାବର ସାକ୍ଷାତ୍ ଲାଭ ହେବ, କି ଉପାୟରେ ସେହି ରମଣୀରତ୍ନ ହସ୍ତଗତ ହେବ ଏହା ଭାବି ଭାବି ଏଜିଦ୍ ଦିନକୁ ଦିନ ମଳିନ ଓ କ୍ଷୀଣ ହୋଇପଡ଼ିଲେ ।

ପୁତ୍ର ସ୍ନେହ ସ୍ୱଭାବତଃ ପ୍ରବଳ, ବୃଦ୍ଧ ବୟସରେ ଏହା ଅଧିକତର ପ୍ରବଳ ହେବାର ଦେଖାଯାଏ । ଦମସ୍କାଧିପତି ବୃଦ୍ଧ ମାଭିୟା ଓ ତନ୍ମହିଷୀ ପୁତ୍ରର ଇଦୃଶ ଅବସ୍ଥା ଅବଲୋକନ କରି ଅତ୍ୟନ୍ତ ବ୍ୟାକୁଳ ହେଲେ । ଦମସ୍କ ରାଜସିଂହାସନରେ ଭାବୀ ଉତ୍ତରାଧିକାରୀ, ଧନ, ଜନ କୌଣସି କଥାରେ ଅଭାବ ନାହିଁ, ତଥାପି ଏପରି ବିଷଣ୍ଣ ଭାବ କାହିଁକି, କୌଣସି ପ୍ରକାର ନିର୍ଣ୍ଣୟ କରି ନ ପାରି ମାଭିୟା ପୁତ୍ରକୁ ମନସ୍ତାପର କାରଣ ପ୍ରଶ୍ନ କଲେ । ଏଜିଦ୍ ପିତାଙ୍କ ନିକଟରେ ମନୋଭାବ ପ୍ରକାଶ କରିବାର ଅବସର ପାଇଲେ ସତ୍ୟ କିନ୍ତୁ ମନୋଭାବ ବ୍ୟକ୍ତ କରିପାରିଲେ ନାହିଁ । ଅନେକ ପ୍ରୟାସ ପାଇଲେ, କିନ୍ତୁ ଅନ୍ତର କଥା ମୁଖରେ ପ୍ରକାଶ କରିପାରିଲେ ନାହିଁ । କେବଳ 'ଜୟ' ଶବ୍ଦ ଉଚ୍ଚାରଣ କଲେ । ପୁନଶ୍ଚ କହିଲେ ମୁଁ ରାଜ୍ୟ, ଧନ, ସମ୍ମାନ କୌଣସି କଥାର ଅଭିଳାଷୀ ନୁହେଁ । ମୋହର ଆଶା ପୂର୍ଣ୍ଣ ହେବାର ନୁହେଁ । ମାଭିୟା ଏହା ଶୁଣି ମହିଷୀଙ୍କ ନିକଟରେ କହିଲେ, ''ଅଦ୍ୟ ଅନେକ ଚେଷ୍ଟା କଲେ ମଧ ଏଜିଦ୍‌ର ମନର ପ୍ରକୃତଭାବ ବୁଝିପାରିଲି ନାହିଁ । କିନ୍ତୁ ମୋହର ଅନୁମାନ ହୁଏ ଯେ, କୌଣସି ମାୟାବିନୀର କୁହୁକରେ ମୁଗ୍ଧ ହୋଇ ତାହାର ଏହି ଶୋଚନୀୟ ଅବସ୍ଥା ହୋଇଅଛି ।''

ମହିଷୀ ଅନେକ ଅନୁସନ୍ଧାନ କରି ଏଜିଦ୍‌ର ମନୋଭାବ ପୂର୍ବରୁ ଅବଗତ ହୋଇଥିଲେ । ସମ୍ପ୍ରତି ସ୍ୱାମୀ ସଦନରେ ଅତି କଷ୍ଟରେ ମସ୍ତକୋତ୍ତଳନ କରି ରୁଦ୍ଧ କଣ୍ଠରେ କହିଲେ, ''ଏଜିଦ୍ ଜୋଦାର ପତ୍ନୀ ଜୟନାବର ମୂର୍ତ୍ତି ସନ୍ଦର୍ଶନ କରି ତାହା ସକାଶେ ପାଗଳ ହୋଇଅଛି ।''

ମହିଷୀର ବାକ୍ୟ କର୍ଣ୍ଣକୁହରରେ ପ୍ରବିଷ୍ଟ ହେବା ମାତ୍ରକେ ଧର୍ମଗତ ପ୍ରାଣା ମାଭିୟା ରୋଷଭରରେ କହିଲେ ''ଏଜିଦ୍‌ର ଜୀବନ ମୃତ୍ୟୁ ଉଭୟ ସମାନ । ପର ସ୍ତ୍ରୀ ପ୍ରତି କୁଭାବରେ ଯେ ଥରେ ମାତ୍ର ଦୃଷ୍ଟି କରିବ କି କୌଣସି ପ୍ରକାର କୁଭାବ ମନରେ ପୋଷଣ କରିବ, ଘୋର ନରକରେ ମଧ ତାହାର ସ୍ଥାନ ହେବ ନାହିଁ । ଏଜିଦ୍ ପ୍ରାଣତ୍ୟାଗ କରିବାକୁ ଇଚ୍ଛା କରେ ତ କରୁ । ତାହା ମୃତ୍ୟୁରେ ମାଭିୟା ବିନ୍ଦୁମାତ୍ର ଶୋକାଶ୍ରୁପାତ କରିବ ନାହିଁ ।

ଏତଦ୍‌ବାକ୍ୟ ଶ୍ରବଣ କରି ମହିଷୀ ବିନୟ ନମ୍ର ବଚନରେ କହିଲେ, ''ଯଦି ଏଜିଦ୍ ପ୍ରାଣତ୍ୟାଗ କରେ, ତେବେ ଏ ଜୀବନରେ ରାଜୈଶ୍ୱର୍ଯ୍ୟରେ କି ଫଳ ?'' ବିଶେଷ ଚିନ୍ତାକରି ଦେଖିଲେ ଏଜିଦ୍ ଯେ ପ୍ରେମୋନ୍ମତ୍ତ ହୋଇଅଛି, ତାହା ମାନବ ହୃଦୟରେ ସ୍ୱତଃଉଦିତ ହୋଇଥାଏ । ତାହା ଶିକ୍ଷାସାପେକ୍ଷ ନୁହେଁ । କେତେ କେତେ ଜ୍ଞାନୀ ଲୋକ ପ୍ରୀତିର କୁହୁକରେ ପଡ଼ି ମୁଗ୍ଧ ହୋଇଅଛନ୍ତି । ରକ୍ତ ମାଂସଧାରୀ ବ୍ୟକ୍ତି ମାତ୍ରର ହୃଦୟରେ ପ୍ରେମ ଅଛି । ଯେଉଁ, ହୃଦୟ ପ୍ରେମଶୂନ୍ୟ, ତାହା ଶୁଷ୍କ ମରୁଭୂମି ଓ ଦଗ୍ଧ ଶ୍ମଶାନ କ୍ଷେତ୍ର । ଅତଏବ ଯହିଁରେ ଧର୍ମରକ୍ଷା ହୋଇ ଏଜିଦ୍‌ର ଅଭୀଷ୍ଟ ସିଦ୍ଧି ହୋଇପାରେ, ତାହା କରିପାରିଲେ କ୍ଷତି କି ? ମାଭିୟା କହିଲେ, ମହିଷୀ, ସ୍ନେହ, ବିବର୍ଜିତ, ପ୍ରେମଶୂନ୍ୟ ହୃଦୟ ହୃଦୟ ନୁହେଁ । କିନ୍ତୁ ଏଜିଦ୍ ଯେ ପ୍ରେମରେ ମତ୍ତ ସେ ପ୍ରେମ ନୁହେଁ । ପ୍ରେମର ବିକାର, ଧର୍ମଶାସ୍ତ୍ର ଶାସନ ଲଙ୍ଘନ ନ କରି ପ୍ରାଣାଧିକ ପୁତ୍ରର ପ୍ରାଣ ରକ୍ଷା କରିପାରିଲେ । ମୁଁ କୌଣସି ପ୍ରକାର ବାଧା ଜନ୍ମାଇବି ନାହିଁ । ସକଳଦିଗ ରକ୍ଷା କରି ଏଜିଦ୍‌ର ମନୋବାଞ୍ଛା ପୂରଣ କରିପାରିଲେ ସର୍ବପ୍ରକାର ମଙ୍ଗଳ ହେବ । ମୁଁ ମଧ ନିଶ୍ଚିନ୍ତ ମନରେ ଈଶ୍ୱରୋପାସନା କରିପାରିବି ।

ମାଭିୟା ଏହିପରି ଅନୁକୂଳଭାବ ପ୍ରକାଶ କରିବା ମାତ୍ରେ ଏଜିଦ୍ ଅତ୍ୟନ୍ତ ତ୍ରସ୍ତ ଭାବରେ ବିଶେଷ ସତର୍କତାର ସହିତ ଅବଦୁଲ୍ ଜୋଦାରଙ୍କୁ ରାଜଧାନୀରେ ଉପସ୍ଥିତ ହେବା ନିମନ୍ତେ ଏକ ପତ୍ର ଲେଖି ତାଙ୍କ ନିକଟକୁ ଦୂତ ପଠାଇଲେ । ପତ୍ରରେ ପ୍ରଧାନ ଉନର ମାଭିୟାଜୀଙ୍କର ସ୍ୱାକ୍ଷର ଥିଲା ।

ଦ୍ରୁତଗତି ନିବନ୍ଧନ ଦୂତ ବ୍ୟସ୍ତ ଓ ଅତିଶୟ ପରିଶ୍ରାନ୍ତ ହୋଇ ମଧ୍ୟାହ୍ନ ସମୟରେ ଜୋଦାରଙ୍କ ନିବାସରେ ଉପସ୍ଥିତ ହେଲେ । ଅର୍ଥଲୋଭୀ ଜୋଦାର ତାଙ୍କର ବ୍ୟବସାୟର ହିସାବପତ୍ର ସଂଗ୍ରହ କରୁଅଛନ୍ତି । ଅର୍ଥାଗମର ନାନାବିଧ କୌଶଳ ଚିନ୍ତା କରୁଅଛନ୍ତି । ଏପରି ସମୟରେ ତାଙ୍କର ଏକ ଆତ୍ମୀୟ ସମ୍ବାଦ ଦେଲେ ଯେ, ଦମସ୍କାଧିପତିଙ୍କର ଆଦେଶ

ପତ୍ର ସହିତ ତାଙ୍କର ଏକ ଦୂତ ତାଙ୍କର ଅନୁସନ୍ଧାନ କରୁଅଛନ୍ତି ଏହି ବାର୍ତ୍ତା ଶୁଣିଲେ । ସେ ବ୍ୟସ୍ତରେ ବହିଃଦ୍ୱାରରେ ଉପସ୍ଥିତ ହେଲେ । ରାଜଦୂତ ସମମ୍ଭବ ସହକାରେ ତାଙ୍କ ହସ୍ତରେ ପତ୍ର ପ୍ରଦାନ କଲେ । ଜୋଦାର ତାହା ପାଠ କରି ଆପଣାକୁ ଶ୍ଲାଘ୍ୟ ମନେ କଲେ । ମୁଁ ଏପରି କି ପୁଣ୍ୟ କାର୍ଯ୍ୟ କରିଅଛି ଯେ, ସ୍ୱୟଂ ଦାମସ୍କାଧିପତି ମୋହ ସହିତ ସାକ୍ଷାତ୍ କରିବାକୁ ଇଚ୍ଛା କରିଅଛନ୍ତି । ଜୟନାବ, ମୁଁ ବର୍ତ୍ତମାନ ବାହାରିଲି । ଏହି କଥା କହି ସ୍ତ୍ରୀ ନିକଟରୁ ବିଦାୟ ଗ୍ରହଣ କଲେ । ରାଜସଭାର ଗମନୋପଯୋଗୀ ତାଙ୍କର ଯାହାକିଛି ବେଶଭୂଷା ଥିଲା ସଂଗ୍ରହ କରି କତିପୟ ଅନୁଚର ସହ ରାଜଧାନୀ ଅଭିମୁଖେ ଯାତ୍ରା କଲେ । ଜୟନାବ ବାଷ୍ପ ପରିପୂର୍ଣ୍ଣ ଲୋଚନରେ ଜୋଦାରଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ । କିନ୍ତୁ ଅର୍ଥପିଶାଚ ଜୋଦାର ଉଲ୍ଲାସରେ ଏତେଦୂର ବିହ୍ୱଳ ହୋଇଥିଲେ ଯେ, ଗମନ କାଳରେ ପତିପ୍ରାଣା ସତୀ ଜୟନାବଙ୍କୁ କୌଣସି ପ୍ରକାର ସାନ୍ତ୍ୱନା କଲେ ନାହିଁ ।

ଏଣେ 'କି ଉପାୟରେ ଜୟନାବ ଲାଭ ହେବ' ଏଜିଦ୍ ପ୍ରଧାନ ପ୍ରଧାନମନ୍ତ୍ରୀ ମାଭିୟାନଙ୍କ ସହିତ ସର୍ବଦା ତହିଁର ପରାମର୍ଶ କରୁଅଛନ୍ତି । ଏକମାତ୍ର ପ୍ରଧାନମନ୍ତ୍ରୀ ମାଭିୟାନଙ୍କ ତାଙ୍କର ବୁଦ୍ଧି, ବଳ, ସାହସ ଓ ସମ୍ପଦ ଥିଲେ । ସମୟ ଅସମୟରେ ତାଙ୍କ ସହିତ ପରାମର୍ଶ କରନ୍ତି । ଧର୍ମ ବିରୋଧ ନ ହେଲେ ମାଭିୟା ତାଙ୍କ କାର୍ଯ୍ୟରେ ବାଧା ଦିଅନ୍ତି ନାହିଁ । ଏହି ସୂତ୍ର ଅବଲମ୍ବନ କରି ମାଭିୟାନ ଏକ ଉପାୟ ନିର୍ଦ୍ଧାରଣ କରିଥିଲେ । ସେ ଏଜିଦ୍‌କୁ କହିଲେ ''ସେ ଉପାୟରେ କୃତକାର୍ଯ୍ୟ ହୋଇପାରିଲେ ନରହତ୍ୟା ପାପରେ ଲିପ୍ତ ହେବାର ପ୍ରୟୋଜନ କି ?

ଉଭୟେ ଏହି ପ୍ରକାର ଆଲୋଚନା କରୁଅଛନ୍ତି ଇତ୍ୟବସରରେ ହଠାତ୍ ଆଗମନୀୟ ବାଦ୍ୟଧ୍ୱନି ହେଲା, ଏଜିଦ୍ ମନେ କଲେ ଜୋଦାରଙ୍କର ଶୁଭାଗମନ ହେତୁ ଏହି ବାଦ୍ୟଧ୍ୱନି, ସୁତରାଂ ସେମାନେ ବ୍ୟଗ୍ରତାର ସହିତ ସମ୍ରାଟ୍ ମାଭିୟାଙ୍କର ଆନନ୍ଦ ମନ୍ଦିରରେ ଉପସ୍ଥିତ ହେଲେ । ଜୋଦାର ଯଥାରୀତି ମହାରାଜାଙ୍କୁ ଅଭିବାଦନ କରି ଆସନ ଗ୍ରହଣ କଲେ । ପୁତ୍ରଙ୍କର ପରାମର୍ଶାନୁସାରେ ମହିଷୀ ମହାରାଜାଙ୍କୁ ଯେପରି କରିବାକୁ କହିଥିଲେ, ମାଭିୟା ତଦ୍ରୂପ କଲେ । ସେ କ୍ରିୟାକାଳ ଆଳାପ କଲାପରେ ଜୋଦାରଙ୍କୁ କହିଲେ— ''ଆମ୍ଭର ମନୋଗତ ଅଭିପ୍ରାୟ ମଭିୟାନ୍ ତୁମ୍ଭଙ୍କୁ ଜଣାଇବେ ।'' ଏହା କହି ସେ ଦିନ ସକାଶେ ବିଦାୟ ଗ୍ରହଣ କରି ଭୋଜନାଳୟକୁ ଗମନ କଲେ ।

ମାଭିୟାନ ମହାରାଜଙ୍କର ପ୍ରତିନିଧି ସ୍ୱରୂପ କହିଲେ ''ହେ ମାନନୀୟ ଜୋଦାର ସାହେବ, ଆମ୍ଭମାନଙ୍କର ଇଚ୍ଛା ଯେ, ନିତ୍ୟ ନୈମିତ୍ତିକ ବ୍ୟୟୋପଯୋଗୀ ସମ୍ପତ୍ତି ପ୍ରଦାନପୂର୍ବକ ରାଜକୁମାରୀ ସାଲେହାଙ୍କୁ ଆପଣଙ୍କ ସହିତ ପରିଣୟ ସୂତ୍ରରେ ଆବଦ୍ଧ କରିବୁ । ଏବଂ ଆପଣ ଏଠାରେ ସ୍ଥାୟୀଭାବରେ ବାସ କରିବେ ।'' ଏଜିଦ୍ ଭିନ୍ନ ମାଭିୟାଙ୍କର ଅନ୍ୟ ସନ୍ତାନ ନ ଥିଲେ । ସାଲେହା ମାଭିୟାନର କଳ୍ପନା ପ୍ରସୂତ ରାଜକୁମାରୀ ମାତ୍ର ।

ଆଶାତୀତ ସମ୍ମାନ ଏବଂ ସହସା ଧନସମ୍ପତ୍ତି ଲାଭର ପ୍ରସ୍ତାବରେ ଜୋଦାର ଏପରି ଆନନ୍ଦିତ ହେଲେ ଯେ, କ୍ଷଣକାଳ ସକାଶେ ସ୍ତବ୍ଧ ହୋଇ ରହିଲେ । ଆନନ୍ଦର ଆତିଶଯ୍ୟ ହେତୁ ତାଙ୍କର ବାକ୍ୟରୋଧ ହୋଇ ନ ଥିଲେ ସେ ତତ୍‌କ୍ଷଣାତ୍ ସମ୍ମତି ପ୍ରଦାନ କରିଥାନ୍ତେ । କ୍ଷଣକାଳ ପରେ ବାକ୍‌ଶକ୍ତି ପ୍ରାପ୍ତ ହୋଇ ଉତ୍ତର କଲେ, ''ମନ୍ତ୍ରିବର ! ମୋହର ପରମ ସୌଭାଗ୍ୟ, ମହାରାଜାଙ୍କର ଆଜ୍ଞା ଶିରୋଧାର୍ଯ୍ୟ ।''

ମାଭିୟାନ୍ ଓ ଏଜିଦ୍ ପୂର୍ବାବଧି ଜୋଦାରଙ୍କୁ ପ୍ରତାରିତ କରିବା ସକାଶେ କୌଶଳ ଜାଲ ବିସ୍ତାର କରି ରଖିଥିଲେ । ଜୋଦାର ଯେପରି ସମ୍ମତିସୂଚକ ଇଚ୍ଛା ପ୍ରକାଶ କଲେ, ତତ୍‌କ୍ଷଣାତ୍ ଏଜିଦ୍‌ଙ୍କର ଇଙ୍ଗିତରେ ମାଭିୟାନ୍ ପୁରୋହିତ ଅମାତ୍ୟ ପରିଜନ ସମୂହଙ୍କୁ ଉପସ୍ଥିତ କରାଇଲେ । ମୁସଲ୍‌ମାନମାନଙ୍କର ପ୍ରଥାନୁସାରେ ପୁରୋହିତଙ୍କର ଆଦେଶ କ୍ରମେ ଏଜିଦ୍ ପାତ୍ରୀ ପକ୍ଷର ପ୍ରତିନିଧି ନିର୍ଦ୍ଧାରିତ ହେଲେ ମରିୟାନ୍ ଓ ଅର୍ଥର ଏକ ବ୍ୟକ୍ତି ସାକ୍ଷୀ ନିଯୁକ୍ତ ହେଲେ ।

ପାତ୍ରୀର ସ୍ୱୀକାର ବାକ୍ୟ ସ୍ୱକର୍ଣ୍ଣରେ ଶ୍ରବଣ କରିବା ସକାଶେ ସାକ୍ଷୀସହ ପ୍ରତିନିଧି ଏଜିଦ୍ ଅନ୍ତଃପୁରରେ ପ୍ରବେଶ କଲେ । କିଛିକ୍ଷଣ ପରେ ବିବାହ ସଭାରେ ଉପସ୍ଥିତ ହୋଇ ସଭ୍ୟାମାନଙ୍କୁ ଅଭିବାଦନ ପୂର୍ବକ କହିଲେ, ''ବିବି ସାଲେହା ଏ ବିବାହରେ ଅସମ୍ମତ ନୁହନ୍ତି । କିନ୍ତୁ ସେ ପରସ୍ପରର ଅବଗତ ହୋଇଅଛନ୍ତି ଯେ, ଜୋଦାରଙ୍କର ଜୟନାବ ନାମରେ ଅନ୍ୟତମ ଭାର୍ଯ୍ୟା ଅଛନ୍ତି । ତାହାଙ୍କୁ ତ୍ୟାଗ ନ କଲେ ଶାସ୍ତ୍ରାନୁସାରେ ସେ ବିବାହରେ ମତ ଦେଇପାରିବେ ନାହିଁ ।''

ଅର୍ଥଭିନ୍ନ ଏ ସଂସାରରେ କୌଣସି କାର୍ଯ୍ୟ ସମ୍ପନ୍ନ ହେବା ଦୁଷ୍କର । ସୁଖ ମାନବମାତ୍ରର ସ୍ପୃହଣୀୟ । ଏକମାତ୍ର ନ ହେଲେ ବି ଅର୍ଥ ହିଁ ତହିଁର ପ୍ରଧାନତମ ସାଧନ । ଅନେକ ମୂଳ ଉଦ୍ଦେଶ୍ୟକୁ ବିସ୍ମୃତ ହୋଇ ତହିଁର ସାଧନକୁ ଚରମଲକ୍ଷ୍ୟ ମନେ କରନ୍ତି । ଅର୍ଥପିପାସୁମାନଙ୍କ ମଧରେ ଏହା ସଚରାଚର

ପରିଲକ୍ଷିତ ହୁଏ । ସେମାନେ ଅର୍ଥ ସକାଶେ ଏତେଦୂର ଲାଳାୟିତ ହୁଅନ୍ତି ଯେ, ତାହା କାମରେ ନ କରିପାରନ୍ତି ଏପରି ଦୁଷ୍କର୍ମ ନାହିଁ । ଜୋଦାର ଏହି ଶ୍ରେଣୀର ଲୋକ । ସାଲେହାଙ୍କୁ ବିବାହ କରିବେ, ବହୁତ ଅର୍ଥ ଲାଭ ହେବ, ରାଜୋଚିତ ସମ୍ମାନ ପ୍ରାପ୍ତ ହେବେ, ଏହି ସବୁ କଥା ବାକ୍ୟାବସାନରେ କ୍ଷଣମାତ୍ର ଚିନ୍ତା ନ କରି ଶୃଙ୍ଖଳରୁ ବିଚ୍ଛିନ୍ନ କଲେ । ଧନ୍ୟ ଅର୍ଥ ତୋର କୁହୁକରେ ଯେ ମଗ୍ନ ହୋଇଅଛି, ତାହା ନିକଟରେ ପୁତ୍ରସ୍ନେହ, ପିତୃଭକ୍ତି, ଦାମ୍ପତ୍ୟପ୍ରେମ ସବୁ ତୁଚ୍ଛ ।

ପ୍ରତିନିଧି ଏଜିଦ୍, ସାକ୍ଷୀସହ ପୁନରାୟ ଅନ୍ତପୁରରେ ପ୍ରବେଶ କରି କ୍ରିୟକ୍ରାଜାନନ୍ତର ସଭାକୁ ପ୍ରତ୍ୟାବର୍ତ୍ତନ କଲେ । ଏବଂ ଉପସ୍ଥିତ ଭଦ୍ରମଣ୍ଡଳୀଙ୍କୁ ସମ୍ବୋଧନ କରି କହିଲେ, ''ଯେଉଁ ବ୍ୟକ୍ତି ଅର୍ଥଲାଳସାରେ ସତୀ ସାଧ୍ୱୀ ସହଧର୍ମିଣୀଙ୍କୁ ଅନାୟାସରେ ତ୍ୟାଗ କରିପାରେ, ଯେଉଁବ୍ୟକ୍ତି ବହୁଦିନର ପ୍ରେମ, ଅନୁରାଗ ମୁହୂର୍ତ୍ତ ମଧରେ ବିସ୍ମୃତ ହୋଇ ପବିତ୍ର ପ୍ରେମବନ୍ଧନ ଅକାତରରେ ଛିନ୍ନ କରିପାରେ । ଏପରି ନିର୍ମମ ଅର୍ଥପିଶାଚ ବିଶ୍ୱାସଘାତକକୁ ଆତ୍ମସମର୍ପଣ କରିବାକୁ ସାଲେହା ସ୍ୱୀକୃତ ନୁହନ୍ତି ।

ଏଜିଦ୍‌ଙ୍କର ବାକ୍ୟ ଶ୍ରବଣରେ ଜୋଦାର ଏକାବେଳକେ ସ୍ତମ୍ଭୀଭୂତ ହେଲେ । ଶତ ଶତ ଅଶନୀ ଯେପରି ଏକ ସମୟରେ ତାଙ୍କର ମସ୍ତକରେ ପତିତ ହେଲା, ସମସ୍ତ ଆଶା ଏକାବେଳକେ ନିଃଶେଷ ହେଲା । ମନ ଦୁଃଖିତ ହୋଇ ରାଜଦତ୍ତ ପରିଣୟ ପରିଚ୍ଛଦାଦି ପରିତ୍ୟାଗ କଲେ । ସାମାନ୍ୟ ଭିଖାରିର ବେଶରେ ରାଜପ୍ରାସାଦରୁ ବହିର୍ଗତ ହୋଇ ବନେ ବନେ ଭ୍ରମଣ କରିବାକୁ ଲାଗିଲେ । ଗୃହକୁ ଆଉ ପ୍ରତ୍ୟାବର୍ତ୍ତନ କଲେ ନାହିଁ ।

କୁକଥା ପ୍ରଚାରିତ ହେବାକୁ ଅଧିକ ବିଳମ୍ବ ହୁଏ ନାହିଁ । ଅଳ୍ପ କାଳ ମଧରେ ଜୟନାବ ଓ ତାଙ୍କର ପ୍ରତିବେଶୀ ବର୍ଗ ଏହି ଶୋକବାର୍ତ୍ତା ଓ ଜୋଦାରଙ୍କର ବିଶ୍ୱାସଘାତକତାର ସମ୍ବାଦ ଅବଗତ ହେଲେ । ଜୟନାବ କେତେବେଳେ ବିଶ୍ୱାସ କରନ୍ତି, କେତେବେଳେ ସନ୍ଦିହାନ୍ ହୋଇ ଅପେକ୍ଷା କରନ୍ତି । କିନ୍ତୁ ପ୍ରକୃତ ସମ୍ବାଦ ଯଥାର୍ଥ ରୂପରେ ଜ୍ଞାତ ହୋଇ ସେ ଏକାବେଳକେ ବିଷାଦ ସାଗରରେ ନିମଗ୍ନ ହେଲେ । ଅତି ମଳିନ ବେଶରେ ଓ ଶୋକ ସନ୍ତପ୍ତ ହୃଦୟରେ ପିତ୍ରାଳୟକୁ ବାହାରିଗଲେ ।

ଏଜିଦ୍ ମେରିୟାନ୍‌ଙ୍କର କୌଶଳକ୍ରମେ ଜୋଦାର ପ୍ରତାରିତ ହେଲେ । ଜୟନାବ ପରିତ୍ୟକ୍ତ ହେଲେ । ଏଜିଦ୍‌ଙ୍କର ଆଶାପୂର୍ଣ୍ଣ ହେବାର ସମ୍ଭାବନା ଦେଖାଗଲା । ମୁସଲ୍‌ମାନ୍‌ମାନଙ୍କର ଜାତୀୟ ପ୍ରଥା ଅନୁସାରେ ପତି ବର୍ଜିତା ସ୍ତ୍ରୀକୁ ତିନିମାସ ବୈଧବ୍ୟ ବ୍ରତ ପାଳନ କରିବାକୁ ହୁଏ । ଏହି ସମୟରେ ସେମାନେ ସାମାନ୍ୟ ବସ୍ତ୍ର ପରିଧାନ କରନ୍ତି । ନିୟମିତ ଆଚାର ଅବଲମ୍ବନ କରି, ମୃତ୍ତିକା ଶୟନ କରନ୍ତି, ସୌନ୍ଦର୍ଯ୍ୟବର୍ଦ୍ଧକ କୌଣସି ପ୍ରକାର ଅଙ୍ଗରାଗ ବ୍ୟବହାର କରନ୍ତି ନାହିଁ । ଜୟନାବ ଶାସ୍ତ୍ରାନୁଯାୟୀ ବୈଧବ୍ୟବ୍ରତ ପାଳନ କରିବାକୁ ଲାଗିଲେ ।

ଏଜିଦ୍ ଜୟନାବ ଚିନ୍ତାରେ ଆତ୍ମହରା ହୋଇଥିଲେ । ମାଭିୟା ତାଙ୍କର ଦୁଃଖରେ ଦୁଃଖିତ ହୋଇ ସ୍ୱୀୟ ଭାର୍ଯ୍ୟାର ଅନୁରୋଧରେ ବିଧିମତେ ଜୟନାବ ପ୍ରାପ୍ତିର ଚେଷ୍ଟା କରିବାକୁ କହିଥିଲେ । କିନ୍ତୁ ମରିୟାନ୍ ଯେଉଁ ଚାତୁରୀ ଜାଲ ବିସ୍ତାର କରି ଜୋଦାରଙ୍କର ସର୍ବନାଶ କରିଅଛନ୍ତି, ଏହା ଶ୍ରବଣ କରି ମାଭିୟା ମୋସେଲମ ନାମକ ଏକ ବ୍ୟକ୍ତିକୁ ଏଜିଦ୍‌ଙ୍କର ବିବାହ ପ୍ରସ୍ତାବ ସହିତ ଜୟନାବଙ୍କ ନିକଟକୁ ପ୍ରେରଣ କଲେ । ମୋସେଲମ୍ ପ୍ରଭୁଙ୍କ ଆଜ୍ଞାନୁସାରେ ଦ୍ରୁତ ପଦରେ ଜୟନାବଙ୍କ ଗୃହକୁ ବାହାରିଲେ। ଏକେ ମରୁଭୂମି, ତହିଁରେ ପୁଣି ପ୍ରଖର ସୂର୍ଯ୍ୟୋତ୍ତାପରଶ୍ମି । ସମ୍ବାଦ ବାହକ ପଥାଶ୍ରାନ୍ତିରେ କ୍ଳାନ୍ତ ହୋଇ ବିଶ୍ରାମ କରୁଅଛନ୍ତି । ଏପରି ସମୟରେ ଆଦାମ୍ ନାମକ ଏକ ବ୍ୟକ୍ତିଙ୍କ ସହିତ ତାଙ୍କର ସାକ୍ଷାତ୍ ହେଲା । ଆଦାମ୍ ମୋସଲେମ୍‌ଙ୍କର ଦୌତ୍ୟ କାର୍ଯ୍ୟର ଆମୂଳ ବୃତ୍ତାନ୍ତ ଶ୍ରବଣ କରି କହିଲେ ''ଭାଇ, ପ୍ରଥମେ ଏଜିଦ୍‌ଙ୍କର ପ୍ରସ୍ତାବ ଜଣାଇ ଶେଷରେ ଧର୍ମଶୀଳା, ସୁଶୀଳା, ଜୟନାବଙ୍କୁ ମୋହର ପ୍ରାର୍ଥନା ଜଣାଇବ । ମୁଁ ତାଙ୍କର ପାଣି ଗ୍ରହଣରେ ଇଚ୍ଛୁକ ହୋଇ ତୁମ୍ଭଙ୍କୁ ପ୍ରତିନିଧି ନିଯୁକ୍ତି କଲି । ମୋସଲେମ୍ କ୍ଷଣକାଳ ବିଶ୍ରାମ କରି ପୁଣି ଚାଲିବାକୁ ଲାଗିଲେ । କିଛିଦୂର ଅଗ୍ରସର ହୋଇ ଦେଖିଲେ ହଜରତ୍ ମହମ୍ମଦଙ୍କର ଦୋହିତ୍ର ମାନବୀୟ ଏମମହୋସେନ୍ ସଶସ୍ତ୍ର ମୃଗୟା ନିମନ୍ତେ ବହିର୍ଗତ ହୋଇଅଛନ୍ତି । ସେ ସେହି ସମୟରେ ମଦିନାର ସିଂହାସନରେ ଆରୋହଣ କରି ରାଜ୍ୟଶାସନ କରୁଥିଲେ । ମୋସାଲେମ୍ ତାଙ୍କର ବାଲ୍ୟ ସଖା । ତାହାଙ୍କୁ ଦର୍ଶନ କରି, ହାସେନ୍ ଅତ୍ୟନ୍ତ ପ୍ରୀତ ହୋଇ ଆଲିଙ୍ଗନ କରିବା ସକାଶେ ଦୂରରୁ ହସ୍ତ ପ୍ରସାରଣ କଲେ । ମୋସାଲେମ୍ ଅବନତ ମସ୍ତକରେ ଧାର୍ମିକ ପ୍ରବର ହାସେନ୍‌ଙ୍କର ପଦଚୁମ୍ବନ କରି କୃତାଞ୍ଜଳି ପୁଟରେ ଦଣ୍ଡାୟମାନ ହୋଇ ରହିଲେ । ହାସେନ୍ ତାଙ୍କର ଇଦୃଶ ବିନୟ ନମ୍ରଭାବ ଦେଖି କହିଲେ, 'ଏତେ ସମ୍ମାନ' କିପାଁ, ତୁମେ ମୋର ବାଲ୍ୟ ସୁହୃଦ । ତୁମ୍ଭେ ବର୍ତ୍ତମାନ କୁଆଡ଼େ ଯାଉଅଛ ? ମୋସାଲେମ୍ ଗମନ

ପ୍ରୟୋଜନ ପ୍ରକାଶ କଲାରୁ ହାସେନ୍ ହାସ୍ୟକରି କହିଲେ, ''ଭାଇ ପ୍ରଥମେ ଏଜିଦ୍‌ଙ୍କର, ତତ୍ପରେ ଆବ୍ଦାସଙ୍କର ପ୍ରସ୍ତାବ ଜଣାଇଁ ଅବଶେଷରେ ଏଇ ଗରିବର ପ୍ରାର୍ଥନା ଜଣାଇବ । ମୁଁ ତାଙ୍କର ପାଣି ଗ୍ରହଣରେ ଇଚ୍ଛୁକ ହୋଇ ତୁମ୍ଭଙ୍କୁ ପ୍ରତିନିଧି ନିଯୁକ୍ତ କଲି ।

କୋମଳ ବୁଦ୍ଧି ରମଣୀମାନଙ୍କର ମନ ବାହ୍ୟ ଚାକଚକ୍ୟରେ ସହଜରେ ପ୍ରଲୁବ୍ଧ ହୁଏ । ଅର୍ଥାଭିଳାଷ ସେମାନଙ୍କ ମଧ୍ୟରେ ଅଳ୍ପ ପ୍ରବଳ ନୁହେଁ । ରୂପରେ ମୋହରେ ମଧ ଅନେକ ଛଳରେ ସେମାନଙ୍କର ମୁଗ୍ଧ ହେବାର ଦେଖାଯାଏ । ପରିଣୟ ପ୍ରାର୍ଥୀଙ୍କ ମଧ୍ୟରେ ଏଜିଦ୍ ଧନ ସମ୍ପତ୍ତି ଓ ରୂପରେ ସର୍ବାପେକ୍ଷା ଶ୍ରେଷ୍ଠ । ଆବ୍ଦାସ୍ ମଧ ଯେପରି ଧନବାନ୍ ସେହିପରି ସୁରୂପ । ହାସେନ୍ ଯଦିବା ମଦିନାର ସିଂହାସନରେ ଆରୋହଣ କରିଅଛନ୍ତି । କିନ୍ତୁ ତାଙ୍କର ବାହ୍ୟାଡ଼ମ୍ବର ନାହିଁ । ଧର୍ମକାର୍ଯ୍ୟରେ ସର୍ବଦା ବ୍ୟାପୃତ ଥାନ୍ତି । ଈଶ୍ୱର ଚିନ୍ତା, ଈଶ୍ୱର ପୂଜା, ବ୍ୟତୀତ ହାସେନ୍‌ଙ୍କ ଗୃହରେ ବିଳାସର ଅନ୍ୟ ଉପକରଣ ନାହିଁ । ଏହିପରି ଅବସ୍ଥାରେ ଜୟନାବ କାହାର ପ୍ରସ୍ତାବ ଗ୍ରହଣ କରିବେ କିଏ କହିପାରେ ?

କିନ୍ତୁ ଜୟନାବ ସାମାନ୍ୟ ରମଣୀ ନୁହନ୍ତି, ତାଙ୍କ ତୁଲ୍ୟ ବୁଦ୍ଧିମତୀ, ସତୀ, ପତିପ୍ରାଣା, ଧାର୍ମିକ ସ୍ତ୍ରୀ ଜଗତରେ ଦୁର୍ଲଭ ମୋସାଲେମ୍ ଯଥା ସମୟରେ ତାଙ୍କ ଗୃହରେ ଉପସ୍ଥିତ ହୋଇ ଯଥାକ୍ରମେ ତିନିଜଣଙ୍କର ପ୍ରାର୍ଥନା ଜ୍ଞାପନ କଲେ । ପ୍ରଭୁ ମହମ୍ମଦଙ୍କର ଦୋହିତ୍ର ଧାର୍ମିକ ପ୍ରବର ଏମାମ୍ ହୋସେନ୍‌ଙ୍କର ପ୍ରସ୍ତାବ ସେ ସର୍ବାଗ୍ରରେ ବିବେଚନା କଲେ । ସେ ମୋସାଲେମ୍‌ଙ୍କୁ କହିଲେ ''ବଡ଼ ଲୋକର ମନ ବଡ଼, ଆଶା ବଡ଼, ସେମାନଙ୍କର ସକଳ କାର୍ଯ୍ୟ ଆଡ଼ମ୍ବର ବିଶିଷ୍ଟ ଅଥଚ ସବୁ ବାଲିବନ୍ଧ ପରି କ୍ଷଣସ୍ଥାୟୀ, ବିଶ୍ୱାସର ଭାଗ ଅଳ୍ପ ରାଜପ୍ରାସାଦ ବିଭବର ଆକାଂକ୍ଷା ମୁଁ ନୁହେଁ । ସାଧୁ ପୁରୁଷମାନଙ୍କ କୃପା କଟାକ୍ଷରେ ଶତ ଶତ ପାପ ଦୂର ହୋଇ ପାପୀମାନେ ପୂତ ଏବଂ ସ୍ୱର୍ଗକୁ ନୀତ ହୁଅନ୍ତି । ପ୍ରଭୁ ହାସେନ୍ ଯେତେବେଳେ ମୋତେ ଦାସୀତ୍ୱରେ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରିଅଛନ୍ତି, ସେତେବେଳେ ମୋ ପରି ଭାଗ୍ୟବତୀ ରମଣୀ ନାରୀ ଜଗତରେ କେତେଜଣ ଅଛନ୍ତି ବୈଧବ୍ୟବ୍ରତ ପୂର୍ଣ୍ଣ ହେଲାରୁ ମୁଁ ତାଙ୍କର ପବିତ୍ର ଚରଣ ପ୍ରାନ୍ତରେ ଆତ୍ମସମର୍ପଣ କରିବି । ଅନ୍ୟ କୌଣସି ପ୍ରାର୍ଥୀର କଥା ମନରେ ସ୍ଥାନ ଦେବି ନାହିଁ ।

ତେଣେ ମାଭିୟା ଅତିଶୟ ପୀଡ଼ିତ । ଜୀବନର ଆଶା ଅତି ଅଳ୍ପ । ଏଜିଦ୍ ମୁହୂର୍ତ୍ତକ ସକାଶେ ମଧ ପିତାଙ୍କର ଅବସ୍ଥା ଭାବନ୍ତି ନାହିଁ । ତାଙ୍କର ସେବାଶୁଶ୍ରୂଷା ମନ ନାହିଁ । କେବେ ଜୟନାବଙ୍କର ବଦନ କମଳର ଲାବଣ୍ୟ, ତାହାଙ୍କର ରମଣୀୟ ମୁଖାକୃତି ମନେ ମନେ ଚିନ୍ତା କରନ୍ତି । ମୋସାଲେମ କେବେ ପ୍ରତ୍ୟାବୃତ୍ତ ହେବେ ସେହି ସମୟ ପ୍ରତୀକ୍ଷା କରି ଦିନ ଗଣନା କରୁଅଛନ୍ତି । ଏକଦିନ ଏଜିଦ୍‌ଙ୍କ ପକ୍ଷରେ ଏକବର୍ଷ ପରି ସୁଦୀର୍ଘ ବୋଧ ହେଲା, ମୋସଲେମ୍ ଜୟନାବଙ୍କ ନିକଟରେ କି ପ୍ରକାରେ ପ୍ରସ୍ତାବ ଉତ୍ଥାପନ କଲେ, ଜୟନାବ କି ଭାବରେ ଉକ୍ତ ପ୍ରସ୍ତାବ ଗ୍ରହଣ କଲେ, ମୋସାଲେମଙ୍କୁ ସେହି ସମ୍ବାଦ ପ୍ରଶ୍ନ କରିବେ । ପ୍ରଥମ ସାକ୍ଷାତ୍‌ରେ ଜୟନାବଙ୍କୁ କ'ଣ କରି ସମ୍ବୋଧନ କରିବେ, ଏହି ସମସ୍ତ ଭାବନା ହିଁ, ତାଙ୍କର ମସ୍ତିଷ୍କ ଆନ୍ଦୋଳିତ କରୁଥିଲା, ଆଶାର କୁହୁକରେ ପରିଣୟ ଅବଶ୍ୟମ୍ଭାବୀ ସ୍ଥିର କରି ଏଜିଦ୍ ମୋସେଲାମ୍‌ଙ୍କର ଆଗମନ ପ୍ରତୀକ୍ଷା କରୁଅଛନ୍ତି । ଏମନ୍ତ ସମୟରେ ତାଙ୍କର ମାତାଙ୍କର ପ୍ରଧାନ ପରିଚାରୀ ତ୍ରସ୍ତ ଭାବରେ ଆସି କହିଲେ, ''ଦମସ୍କାଧିପତି ଆପଣଙ୍କୁ ସ୍ମରଣ କରିଅଛନ୍ତି, ଶୀଘ୍ର ଆସନ୍ତୁ ।''

ଏଜିଦ୍ ସସବ୍ୟସ୍ତରେ ପିତୃଭବନକୁ ଯାଇ ଦେଖିଲେ ମାତା, ଶଯ୍ୟାର ପାର୍ଶ୍ୱରେ ବିଷଣ୍ଣ ବଦନରେ ବସିଅଛନ୍ତି । ଏଜିଦ୍ ସସମ୍ଭ୍ରମରେ ମାତାଙ୍କୁ ପ୍ରଣାମ କରି ପିତୃ ସନ୍ନିଧାନରେ ଉପବେଶନ କଲେ । ମାଭିୟା ମୃଦୁସ୍ୱରରେ କହିଲେ ''ମୋସାଲେମ୍ ଫେରି ଆସିଅଛନ୍ତି ।'' ଜୟନାବ୍‌ଙ୍କର ବୁଦ୍ଧିକୁ ମୁଁ ଶତ ଶତବାର ପ୍ରଶଂସା କରୁଅଛି । ଏପରି ଧର୍ମ ପରାୟଣା, ସତୀ ସ୍ୱାଧୀର ନାମ କଲେ ପୁଣ୍ୟ ଅଛି । ଏଜିଦ୍ ତୁମ୍ଭେ ଯେ ହାସେନ୍-ହୋସେନ୍ ନାମରେ କ୍ରୋଧରେ ଜଳି ଉଠ, ସ୍ତ୍ରୀବୁଦ୍ଧି ପ୍ରଭାବରେ ଜୟନାବ ତାହାଙ୍କର ମାହାତ୍ମ୍ୟ ଉପଲବ୍ଧି କରି ହାସେନ୍‌ଙ୍କର ବିବାହ ପ୍ରସ୍ତାବ ଅତି ସମାଦର ଓ ହୃଷ୍ଟମନରେ ଗ୍ରହଣ କରି ଅଛନ୍ତି, ଏବେ ମଧ କହୁଅଛି, ସେମାନଙ୍କ ପ୍ରତି କ୍ରୋଧ କରି ନାହିଁ । ବିଦ୍ୱେଷଭାବ ପରିତ୍ୟାଗ କର । ସତ୍ୟପଥ ଧର୍ମପଥ ଅବଲମ୍ବନ କର । ମୁଁ ଯେପରି ଦାସତ୍ୱ ଅବଲମ୍ବନ କରିଥିଲି । ତଦପେକ୍ଷା ଅଧିକତର ବଶ୍ୟତା ସ୍ୱୀକାର କରି ସେମାନଙ୍କର ପଦପ୍ରାନ୍ତରେ ଶରଣ ପଶ । ତୁମ୍ଭ ଅପେକ୍ଷା ସେମାନେ ସକଳ ବିଷୟରେ ଶ୍ରେଷ୍ଠ ।

ମାଭିୟାଙ୍କ ବାକ୍ୟରେ ଏଜିଦ୍‌ଙ୍କର ବକ୍ଷ ଯେପରି ବିଦୀର୍ଣ୍ଣ ହେବାକୁ ଲାଗିଲା । ଶତ ଶତ ଆକାଶ ଯେପରି ତାଙ୍କର ମସ୍ତକରେ ଭାଙ୍ଗିପଡ଼ିଲା । ସକଳ ଆଶା ବ୍ୟର୍ଥ ହେଲା । ମହାଶୋକରେ ଶରୀର ମନ ଜର୍ଜରିତ ହେଲା । ଶୋକ ଦୁଃଖରେ ଅଧୀର ହୋଇ ପିତାଙ୍କ ବାକ୍ୟ ଅମାନ୍ୟ କରି

ଏଜିଦ୍ କହିଲେ, 'ମୁଁ ଦାମସ୍କ ରାଜପୁତ୍ର' ଧନଜନ ସୈନ୍ୟ ସାମନ୍ତ କିଛି ଅଭାବ ନାହିଁ । ସର୍ବବଳରେ ମୁଁ ବଳିୟାନ୍, ମୁଁ ଯାହା ସକାଶେ ଜୀବନ ଉତ୍ସର୍ଗ କରିଅଛି ଯାହା ସକାଶେ, କେତେ କଷ୍ଟ ସହ୍ୟ କରିଅଛି, ସେହି ଜୟନାବକୁ ହାସେନ୍ ବିବାହ କରିବେ, ଏଜିଦ୍ ଜୀବିତ ଥାଇ ତାହା ସହ୍ୟ କରିବେ ନାହିଁ । ଯେ ହାସେନ୍‌ଙ୍କର କିଛିମାତ୍ର ସଞ୍ଚିତ ଅର୍ଥ ନାହିଁ, ଉପବ୍ରତ, ସଂଯମ, ଯାହାର ବଂଶର ଚିରପ୍ରଥା, ସେହି ହାସେନ୍‌କୁ ଏଜିଦ୍ ମାନ୍ୟ କରିବେ ? ମାନ୍ୟ କରିବା ଦୂରେ ଥାଉ, ଏଜିଦ୍ ସେମାନଙ୍କୁ ଜୟନାବ ରତ୍ନାପହରଣର ପ୍ରତିଶୋଧ ଓ ଶାସ୍ତି ଅବଶ୍ୟ ଦେବ । ଏହାହିଁ ମୋର ପ୍ରତିଜ୍ଞା ।

ମହମ୍ମଦ ଭକ୍ତ, ଈଶ୍ୱର ପ୍ରେମିକ ମାଭିୟା । ପୁତ୍ରଙ୍କର ଈଦୃଶ ମର୍ମାନ୍ତିକ ବାକ୍ୟ ଶ୍ରବଣ କରି ସେମାନଙ୍କୁ ବିବିଧ ଭର୍ତ୍ସନା କଲେ । ଏଜିଦ୍ ମ୍ଳାନ ମୁଖରେ ସ୍ଥାନାନ୍ତରକୁ ପ୍ରସ୍ଥାନ କଲେ । ମାଭିୟା, ମୃତ୍ୟୁ ଶତ ଶତ ବାର ଶ୍ଳାଘ୍ୟ ମନେ କରିବାକୁ ଲାଗିଲେ । ଦୁଇହସ୍ତ ଉର୍ଦ୍ଧ୍ୱକୁ ଉତ୍ତୋଳନ କରି ମୋତେ ''ଉଦ୍ଧାର କର'' ବୋଲି ଈଶ୍ୱରଙ୍କ ସମିପରେ ସକାତରରେ ପ୍ରାର୍ଥନା କଲେ ।

ସମୟ କାହାରି ସକାଶେ ଅପେକ୍ଷା କରଇ ନାହିଁ । ଦିନପରେ ଦିନ ଅତୀତ ହେଲା । କ୍ରମରେ ଜୟନାବଙ୍କର ବୈଧବବ୍ରତ ନିର୍ଦ୍ଦିଷ୍ଟ ସମୟରେ ଅତିବାହିତ ହେଲା । ଶୁଭ ଦିନରେ ହାସେନ୍ ଜୟନାବ ଭବନକୁ ଗମନ କରି ଶୁଭକ୍ଷଣରେ ବିବାହ କ୍ରିୟା ସମାପ୍ତ କଲେ ।

ଇତିପୂର୍ବେ ହାସେନ୍ ବାନୁ ଓ ଜାଏଦା ନାମରେ ହାସେନ୍ ଅପର ଦୁଇ ମହିଳାର ପାଣିଗ୍ରହଣ କରିଥିଲେ । ପ୍ରଧାନପତ୍ନୀ ହାସେନ୍ ବାନୁ ଗର୍ଭରୁ ଅବଦୁଲ୍ କାସେମ୍ ନାମକ ଏକମାତ୍ର ପୁତ୍ର ଜନ୍ମଗ୍ରହଣ କରନ୍ତି । ଜାଏଦା ନିଃସନ୍ତାନା ଏକ ବସ୍ତୁର ଦୁଇପ୍ରାର୍ଥୀ ଥିଲେ । ପ୍ରାର୍ଥୀମାନଙ୍କ ମଧ୍ୟରେ ସର୍ବତ୍ର ହିଁ ବିଦ୍ୱେଷଭାବ ଦୃଷ୍ଟ ହୁଏ । ବିଶେଷ ସପତ୍ନୀ ବିଦ୍ୱେଷ ଅବଶ୍ୟମ୍ଭାବୀ । ଜାଏଦା ପ୍ରଥମାବଧି ହାସେନ୍ ବାନୁଙ୍କ ସହିତ ବିରୋଧ କରୁଥିଲେ । କିନ୍ତୁ ସେ ପ୍ରଧାନମହିଷୀ ଥିଲେ । ସୁତରାଂ ଜାଏଦା ତାହାଙ୍କ ସହିତ କୌଣସି ପ୍ରକାରେ ପ୍ରତିଦ୍ୱନ୍ଦ୍ୱିତାରେ ଜୟଲାଭ କରିପାରନ୍ତି ନାହିଁ । କିନ୍ତୁ ଜୟନାବ ସହିତ ସବିଶେଷ ପ୍ରତିଯୋଗିତା ଆରମ୍ଭ କଲେ । ଯଦିବା ସମଦର୍ଶୀ ହାସେନ୍ ସମସ୍ତଙ୍କୁ ସମାନ ଭାବରେ ପ୍ରେମ କରନ୍ତି, ତଥାପି ଜାଏଦା ମନରେ କରନ୍ତି ଯେ, ସେ ଜୟନାବଙ୍କଠାରେ ଅଧିକତର ଅନୁରକ୍ତ । ଏହିଭାବ କ୍ରମେ କ୍ରମେ ତାଙ୍କର ହୃଦୟରେ ବଦ୍ଧମୂଳ ହେବାକୁ ଲାଗିଲା । ଜୟନାବଙ୍କୁ ସେ ବିଷ ନୟନରେ ଦେଖିବାକୁ ଲାଗିଲେ । ପକ୍ଷାନ୍ତରରେ ଜୟନାବ ତାହାଙ୍କୁ ଯେ ଭଗିନୀ ତୁଲ୍ୟ ମନେକରି ତଦୁଚିତ ସମ୍ମାନ କରନ୍ତି । ସ୍ୱାମୀଙ୍କର ଅକପଟ ଅପରିବର୍ତ୍ତିତ ସ୍ନେହ ଜୟନାବଙ୍କର ଯଥୋଚିତ ସମ୍ମାନ କାହିଁରେ ଜାଏଦାର ମନ ମାନିଲା ନାହିଁ । ଦିନକୁ ଦିନ ହାସେନ୍‌କୁ ମଧ୍ୟ ଶତ୍ରୁ ଭାବେ ଦେଖିବାକୁ ଲାଗିଲେ । ଜୟନାବ ଲାଭକରି ହାସେନ୍ ଚିରଶତ୍ରୁ ଏଜିଦର ରୋଷାଗ୍ନି ବୃଦ୍ଧି କଲେ । ଗୃହାଭ୍ୟାନ୍ତରରେ ଜାଏଦା ମଧ୍ୟ ତାଙ୍କର ପରମ ଶତ୍ରୁ ହୋଇଉଠିଲେ ।

ମାଭିୟା ଏଜିଦ୍‌ଙ୍କର ଉଦ୍ଧୃତ ବାକ୍ୟ ଶ୍ରବଣାବଧି ମର୍ମାହତ ହୋଇ ପୁତ୍ରମୁଖ ଦେଖିବେ ନାହିଁ ବୋଲି ପ୍ରତିଜ୍ଞା କରିଅଛନ୍ତି । ସେହି ସମୟଠାରୁ ଦିନକୁ ଦିନ ପୀଡ଼ା କ୍ରମଶଃ ବୃଦ୍ଧି ହେବାକୁ ଲାଗିଲା । ଏବେ ସେ ନିଜେ ଗାତ୍ରୋତ୍ଥାନ କରିପାରନ୍ତି ନାହିଁ । ଶମନ ନିକଟବର୍ତ୍ତୀ ହେବା ଦେଖି ମନେ ମନେ ସ୍ଥିର କଲେ ଦାମସ୍କରାଜ୍ୟ ହାସେନ୍ ହୋସେନ୍‌ଙ୍କୁ ପ୍ରଦାନ କରିବେ । ଏହି ସଂକଳ୍ପ କରି ସେମାନଙ୍କ ନିକଟକୁ ଦୂତ ପଠାଇଲେ । ଦୂତ ଏଜିଦ୍‌ଙ୍କର ଚକ୍ରାନ୍ତରେ ପଥ ମଧ୍ୟରେ ନିହତ ହେଲେ । ହାସେନ୍ ହୋସେନ୍ ଆସିବାର କୌଣସି ସମ୍ବାଦ ନ ପାଇ ମାଭିୟା ଉଦ୍‌ବିଗ୍ନ ହୋଇ ପ୍ରଧାନମନ୍ତ୍ରୀ ହାସେନ୍‌ଙ୍କୁ କହିଲେ ''ହାସେନ୍ ହୋସେନ୍ ନ ଆସିବାର କାରଣ ନିର୍ଣ୍ଣୟ କରିପାରୁ ନାହିଁ । ଅତଏବ ଚିର ବିଶ୍ୱାସୀ ବହୁଦର୍ଶୀ ମୋସଲେମଙ୍କୁ ସେମାନଙ୍କ ନିକଟକୁ ପଠାଅ । ମୋର ଆଉ ଜୀବନର ଆଶା ନାହିଁ । ଅନ୍ତିମକାଳରେ ଆପଣମାନଙ୍କୁ ଥରେ ଦେଖିବାକୁ ଇଚ୍ଛା କରେ । ଦମସ୍କ ରାଜସିଂହାସନରେ ଆପଣମାନଙ୍କୁ ଉପବିଷ୍ଟ ଦେଖି ଜୀବନ ସାର୍ଥକ କରିବି । ''ଏହି ମର୍ମର ଖଣ୍ଡେ ପତ୍ର ଲେଖି ମୋସଲେମଙ୍କ ହସ୍ତରେ ଦେଇ ତାଙ୍କୁ ଗୋପନରେ ମଦିନାକୁ ପ୍ରେରଣ କଲେ ।''

ଏଜିଦ୍ ପ୍ରଚ୍ଛନ୍ନ ଥାଇ ହାସାନ୍‌ଙ୍କୁ ମାଭିୟା ଯାହା ଯାହା କହିଲେ, ତାହା ଆଦ୍ୟୋପ୍ରାନ୍ତ ଶ୍ରବଣ କଲେ । ମୋସାଲେମ୍ ପତ୍ର ସହିତ ମଦିନାକୁ ପ୍ରେରିତ ହେଲେ । ସେ ଦ୍ରୁତଗତିରେ ଅବିଶ୍ରାନ୍ତ ଚାଲୁଅଛନ୍ତି । ଏମନ୍ତ ସମୟରେ କେତେଜଣ ଅସ୍ତ୍ରଧାରୀ ପୁରୁଷ ଛଦ୍ମବେଶରେ ତାହାଙ୍କୁ ଆକ୍ରମଣ କଲେ । ସେ ଅଶୀ ନିଷ୍କାଷିତ କରି ସେମାନଙ୍କୁ ପ୍ରତିରୋଧ କରିବାକୁ ଲାଗିଲେ । ତାଙ୍କର ଅସ୍ତ୍ର ସଞ୍ଚାଳନ କୌଶଳ ଦେଖି ଅସ୍ତ୍ରଧାରୀମାନେ କେହି କେହି ଅଗ୍ରସର ହେଲେ ନାହିଁ । ଅବଶେଷରେ ଏଜିଦ୍ ମୁଖାବରଣ ଦୂର କରି କହିଲେ 'ମୋସାଲେମ୍ ତୁମେ ଏ କଅଣ କରୁଅଛ'? ପ୍ରଭୁ ପୁତ୍ରଙ୍କୁ

ଦେଖିବା ମାତ୍ରେ ମୋସାଲେମ୍ ତରବାରୀ ଦୂରରେ ନିକ୍ଷେପ କରି କୃତାଞ୍ଜଳି ପୁଟରେ ଦଣ୍ଡାୟମାନ ରହିଲେ । ଏଜିଦ୍ ତାହାଙ୍କର ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ବାହାର କରି ନେଲେ । ମାଭିୟାଙ୍କର ପତ୍ରଖଣ୍ଡ ଛିଣ୍ଡାଇ ପକାଇଲେ । ଏବଂ ଆଦେଶ ଦେଲେ ''ଯେତେ ଦିନ ଯାଏ ପିତାଙ୍କର ମୃତ୍ୟୁ ନ ହେବ, ତେତେ ଦିନ ଯାଏ ତୁମ୍ଭେ ବନ୍ଦୀ ଭାବରେ ନିର୍ଜ୍ଜନ କାରାବାସ ଭୋଗ କର ।'' ଏହି ଆଦେଶ ହେବା ମାତ୍ରେ ଲୌହ ଶୃଙ୍ଖଳରେ ଆବଦ୍ଧ ହୋଇ ସୋମଲେମ୍ କାରାଗାରକୁ ନୀତ ହେଲେ ।

ମାଭିୟାଙ୍କର ପୀଡ଼ା ବୃଦ୍ଧି ହେଉ ହେଉ ଅବଶେଷରେ ସମସ୍ତ ମୃତ୍ୟୁଲକ୍ଷଣ ଦେଖାଗଲା । ତଦ୍ଦର୍ଶନରେ ସମସ୍ତେ ବ୍ୟତିବ୍ୟସ୍ତ ହେଲେ । ଆତ୍ମୀୟସ୍ୱଜନମାନେ ତାହାଙ୍କୁ ଚତୁର୍ଦ୍ଦିଗରେ ବେଷ୍ଟନ କରି ଈଶ୍ୱର ନାମୋଚ୍ଚାରଣ କରିବାକୁ ଆରମ୍ଭ କଲେ । ଏଜିଦ୍‌ଙ୍କର ମନୋବାଞ୍ଛା ସଫଳ ହେଲା । ପିତାଙ୍କର ମୃତ୍ୟୁରେ ଏଜିଦ୍ ଦୁଃଖିତ ହେଲେ ନାହିଁ । କେବେ ମଧ ପିତାଙ୍କ ମୃତ୍ୟୁ ହେତୁ ଏକ ବିନ୍ଦୁ ଶୋକାଶ୍ରୁ ବିସର୍ଜନ କଲେ ନାହିଁ । ଏଜିଦ୍ ଯଥାରୀତି ପିତାଙ୍କ ମୃତଦେହର ସତ୍କାର କରି ପୈତୃକ ସିଂହାସନୋପବିଷ୍ଟ ହେଲେ ।

ଏଜିଦ୍ ରାଜା, ମରିୟାନ୍ ମନ୍ତ୍ରୀ, ରାଜ୍ୟର ଭବିଷ୍ୟତ ଭାବନା କରି ସମସ୍ତେ ଉଦ୍‌ବିଗ୍ନହେଲେ । ସିଂହାସନରେ ଆରୋହଣ କରିବାର ଅବ୍ୟବହିତ ପରେ ଏଜିଦ୍ ଯଥେଷ୍ଟ ଭାବରେ ସ୍ୱୀୟକ୍ଷମତା ପରିଚାଳନା କରିବାକୁ ଆରମ୍ଭ କଲେ । ପ୍ରଥମେ ମୋସାଲେମ୍‌ଙ୍କର ବିଚାର । ଦମସ୍କରାଜା ହାସେନ୍ ହୋସେନ୍‌ଙ୍କୁ ପ୍ରଦାନ କରିବା ସକାଶେ ମାଭିୟା ଯେଉଁ ପତ୍ର ଲେଖିଥିଲେ, ସେହି ପତ୍ରର ବାହକ ମୋସାଲେମ୍ ଏଜିଦ୍‌ଙ୍କର ବିରୋଧାଚରଣ କରି ରାଜଦ୍ରୋହୀ ହୋଇଅଛି, ଏବଂ ଜୟନାବ ନିକଟରେ ହାସେନ୍‌ଙ୍କର ବିବାହ ପ୍ରସ୍ତାବ ଜ୍ଞାପନ କରି ବିଶ୍ୱାସଘାତକତା କରିଅଛି । ଏହି ଦୁଇ ଗୁରୁତର ଅପରାଧ ତାହାଙ୍କ ସ୍କନ୍ଧରେ ଅର୍ପଣ କରି ପ୍ରାଣଦଣ୍ଡର ଆଜ୍ଞା ଦେଲେ । ମୃତ ମାଭିୟାଙ୍କର ଚିରବିଶ୍ୱାସୀ ପ୍ରିୟତମ ଭୃତ୍ୟ ମୋସାଲେମ୍‌ଙ୍କ ପ୍ରତି ନିଷ୍ଠୁର ଆଜ୍ଞା ଶ୍ରବଣ କରି ସଭାସ୍ଥ ବ୍ୟକ୍ତି ମାତ୍ରେ ଦୁଃଖିତ ହେଲେ ପ୍ରାଣ ଭୟରେ ସମସ୍ତେ ଦୁଃଖକୁ ଅନ୍ତରରେ ଗୋପନ ରଖି ରାଜ୍ୟର ପରିଣାମ ଚିନ୍ତା କରିବାକୁ ଲାଗିଲେ ।

ଏଜିଦ୍ ବର୍ତ୍ତମାନ ରାଜପୁତ୍ର ନୁହନ୍ତି । ସେ ଏବେ ଦମସ୍କ ରାଜ୍ୟର ରାଜା । ତାଙ୍କର ଉଚ୍ଛୃଙ୍ଖଳତାରେ ବାଧା ଦେବ, ଏପରି ସାହସ କି ସାଧ କାହାରି ନାହିଁ । କୋଷାଗାର ଧନରେ ପରିପୂର୍ଣ୍ଣ । ସୈନ୍ୟସାମନ୍ତର ଅଭାବ ନାହିଁ, ମହାଗର୍ବର ଗର୍ବିତ ହୋଇ ଏଜିଦ୍ ଚିରଶତ୍ରୁ ହାସେନ୍ ହୋସେନ୍‌ଙ୍କର ବିନାଶ ସଂକଳ୍ପ କରି ସେମାନଙ୍କ ପ୍ରତି ଏକ ଆଦେଶ ପ୍ରଚାର କଲେ । ତହିଁର ମର୍ମ ଏହି ଯେ, ''ସେମାନେ ଶୀଘ୍ର ଦମସ୍କ ରାଜାଙ୍କର ପଦାନତ ହୋଇ ବଶ୍ୟତା ସ୍ୱୀକାର କରନ୍ତୁ । ନତୁବା ସେମାନଙ୍କର ମଙ୍ଗଳ ନାହିଁ। ଏହି ମର୍ମର ଆଦେଶ ଲିପି ଦୂତ ଦ୍ୱାରା ମଦିନାରାଜାଙ୍କ ନିକଟକୁ ପ୍ରେରିତ ହେଲା ।

ହାସେନ୍ ହୋସେନ୍ ଲୋକ ପରମ୍ପରାରୁ ମାଭିୟାଙ୍କର ଉତ୍କଟ ରୋଗବାର୍ତ୍ତା ଶ୍ରବଣ କରି ତାହାଙ୍କୁ ଦେଖିବା ସକାଶେ ମଦିନାରୁ ଦମସ୍କ ଯାତ୍ରା କରିଥିଲେ । କିନ୍ତୁ ପଥ ମଧରେ ତାଙ୍କର ମୃତ୍ୟୁ ସମ୍ବାଦ ଶ୍ରବଣ କରି ଦୁଃଖିତ ହୃଦୟରେ ସେହିଠାରୁ ସ୍ୱ-ସ୍ୱ ଭବନକୁ ପ୍ରତ୍ୟାବର୍ତନ ହେଲେ ।

ଏଜିଦ୍ ପ୍ରେରିତ ଦୂତ ଯଥା ସମୟରେ ତାଙ୍କର ଆଦେଶ ପତ୍ର ସହ ମଦିନାରେ ଉପସ୍ଥିତ ହୋଇ ସସମ୍ଭ୍ରମରେ ଉକ୍ତ ପତ୍ର ହାସେନ୍‌ଙ୍କୁ ପ୍ରଦାନ କଲେ । ହାସେନ୍ ପତ୍ର ପାଠ କରି, କ'ଣ କରିବେ, କିଛି ସ୍ଥିର କରି ନ ପାରି ସ୍ୱୀୟ ଅମାତ୍ୟବର୍ଗ ଓ ପ୍ରାଣପ୍ରତିମ ସହୋଦର ହୋସେନ୍‌ଙ୍କ ସହିତ ପରାମର୍ଶ କରିବା ନିମନ୍ତେ ସମସ୍ତେ ମିଳି ପ୍ରଭୁଙ୍କର ସମାଧି ମନ୍ଦିରରେ ଉପସ୍ଥିତ ହେଲେ । (ଯେତେବେଳେ କୌଣସି ଗୁରୁତର କାର୍ଯ୍ୟ ଉପସ୍ଥିତ ହୁଏ, ସେତେବେଳେ କର୍ତ୍ତବ୍ୟ ନିର୍ଦ୍ଧାରଣ ସକାଶେ, ମାତାମହ ପ୍ରଭୁ ମହମ୍ମଦଙ୍କର ସମାଧି ପ୍ରାଙ୍ଗଣକୁ ଯିବାର ରୀତି ଥିଲା) । ସେଠାରେ ସମସ୍ତେ ମିଳି ପରାମର୍ଶ କରିବାକୁ ଲାଗିଲେ । କେହି କହିଲେ ଏଜିଦ୍ ପାଗଳ ହୋଇଅଛନ୍ତି, କେହି କହିଲେ ପାପମତି ମରିୟାନଙ୍କର ମନ୍ତ୍ରଣାନୁସାରେ ଏଜିଦ୍ ଏପରି ସ୍ପର୍ଦ୍ଧାନ୍ୱିତ ହୋଇଅଛନ୍ତି, ହାସେନ୍ କହିଲେ, ଯେଉଁ କାରଣରୁ ଏପରି ଉଦ୍ଧତ ହେଉ, ପତ୍ର ଫେରାଇଦେବା ଉଚିତ । କନିଷ୍ଠ ହୋସେନ୍ କ୍ରୋଧବିହୀନ ହୋଇ କହିଲେ ''ଆପଣମାନେ ଯାହା ଇଚ୍ଛା କରନ୍ତୁ । ପତ୍ରଖଣ୍ଡକ କେବଳ ଫେରାଇ ଦେବା ମୋହର ଇଚ୍ଛା ନୁହେଁ । ଯେଉଁ ପୂଜ୍ୟପାଦ ପିତା ଅଲ୍ଲୀଙ୍କ ନାମରେ ଦମସ୍କରାଜ୍ୟ କମ୍ପିତ ହେଉଥିଲା, ଆମ୍ଭେମାନେ ସେହି ବୀରବରଙ୍କ ବଂଶଧର ହୋଇ ଏତେ ସ୍ପର୍ଦ୍ଧା, ଏତେ ଅପମାନ ସହ୍ୟ କରିବୁଁ ? ହାସେନ୍ ଭ୍ରାତା ହୋସେନ୍‌ଙ୍କୁ ବିବିଧ ପ୍ରବୋଧ ଦେଇ କହିଲେ ''ପାପାତ୍ମା ଏହି ଯେଉଁ ପତ୍ର ଦେଇ ତୁମ୍ଭଙ୍କୁ ପଠାଇଅଛି ଏହାର ପ୍ରତି ଅକ୍ଷରରେ ଶତ ଶତ ପାଦୁକାଘାତ କଲେ ମଧ ମହାକ୍ରୋଧର ଅଣୁମାତ୍ର ଉପଶମ ହେବ ନାହିଁ । ଧର୍ମଗ୍ରନ୍ଥରେ ଯେଉଁ ସବୁ ଅକ୍ଷର ଅଛି

ଏଥିରେ ମଧ ସେହି ଅକ୍ଷରମାନ ସନ୍ନିବେଶିତ ହୋଇଅଛି— ମନରେ ଭାବି ତାହା କଲୁ ନାହିଁ ।'' ପତ୍ର ଖଣ୍ଡ ଖଣ୍ଡ କରି ଦୂତ ହସ୍ତରେ ପ୍ରଦାନ କଲେ ''ଏହି ନିଅ ଏଜିଦ୍‌ର ପତ୍ରୋତ୍ତର, ଆଉ ମୁଁ ଯାହା ଯାହା କହିଲି, ଅବିକଳ ତାହାକୁ ଜଣାଅ । ଏହା କହି ଏଜିଦ୍‌ଙ୍କ ଦୂତକୁ ବିଦାୟ ଦେଲେ । ଏଜିଦ୍ ବୈର ସାଧନ ବାସନା ତୃପ୍ତ କରିବା ସକାଶେ ପୂର୍ବରୁ ଯୁଦ୍ଧର ଆୟୋଜନ କରିଥିଲେ । ଯେପରି ଆଜ୍ଞା ସହିତ ଦୂତ ମଦିନାକୁ ଯାଇଅଛି,ତହିଁରେ ସେ ଯେ ପ୍ରାଣ ଘେନି ପ୍ରତ୍ୟାବୃତ୍ତ ହେବ, ଏଜିଦ୍‌ଙ୍କର ଏପରି ଆଶା ନ ଥିଲା । ସୁତରାଂ ଯୁଦ୍ଧର ସାଜସଜ୍ଜା କରାଗଲା । ଏଜିଦ୍ ସ୍ୱୀୟ ସୈନ୍ୟ ଦୁଇ ଦଳରେ ବିଭକ୍ତ କରି ସେମାନଙ୍କର ଅସ୍ତ୍ରଚାଳନା ବ୍ୟୂହ ରଚନା ବିଷୟରେ ସମର ନୈପୁଣ୍ୟ ଦେଖି ପରମ ଉଲ୍ଲାସିତ ଓ ଆଶାନ୍ୱିତ ହେଲେ । ହାସେନ୍ ହୋସେନ୍ ତ ଦୂରର କଥା; ସୁ-ପ୍ରସିଦ୍ଧ ବୀର ଅଲ୍ଲୀ ଯଦ୍ୟପି ସ୍ୱୟଂ ସମାଧି ମନ୍ଦିରରୁ ଉତ୍ଥିତ ହୋଇ ସଂଗ୍ରାମରେ ପ୍ରବୃତ୍ତ ହୁଅନ୍ତି, ତଥାପି ଏହି ସମସ୍ତ ସମର ବିଶାରଦ ଯୋଦ୍ଧାବର୍ଗ ପରାଭୂତ ହେବେ ନାହିଁ । ଏହି ପ୍ରକାର ଏଜିଦ୍ ଆତ୍ମବଳରେ ପ୍ରଶଂସା କରୁଅଛନ୍ତି, ଏପରି ସମୟରେ ଦୂତ ଫେରିଆସି ମଦିନାର ଆନୁପୂର୍ବିକ ଅବସ୍ଥା ଜ୍ଞାପନ କଲା ।

ଏକେ ଯୌବନ କାଳ, ତହିଁରେ ପୁଣି ଅର୍ଥ ଓ ଆତ୍ମମ୍ଭରିତା ଓ ପୃଷ୍ଠପୋଷକ, ଦୂତମୁଖରେ ହୋସେନ୍‌ଙ୍କର ଆଚରଣ ବିବରଣ ଶ୍ରବଣ କରି ଏଜିଦ୍ କ୍ରୋଧରେ ଜଳି ଉଠିଲେ । ଅଧୀର ଚିତ୍ତରେ ସୈନ୍ୟମାନଙ୍କୁ ସମ୍ବୋଧନ କରି କହିଲେ, ''ଆଉ କ୍ଷଣେ ବିଳମ୍ବ ନ କରି ତୁମ୍ଭେମାନେ ଏହି ମୁହୂର୍ତ୍ତରେ ମଦିନା ଯାତ୍ରା କର । ହାସେନ୍-ହୋସେନ୍ ବଧ ନିମନ୍ତେ ଏହିକ୍ଷଣି ଅଗ୍ରସର ହୁଅ, ଯେଉଁ ବ୍ୟକ୍ତି ଅନତି ବଳମ୍ବରେ ହାସେନ୍‌ଙ୍କର ଦେହ ବିଚ୍ଛିନ୍ନ ମସ୍ତକ ମୋତେ ଦେଖାଇ ପାରିବ, ତାହାକୁ ଲକ୍ଷମୁଦ୍ରା ପୁରସ୍କାର ଦେବୁ ।'' ସୈନ୍ୟମାନଙ୍କୁ ଏବଂ ବିଧ ବାକ୍ୟଦ୍ୱାରା ଉତ୍ତେଜିତ କରି ମନ୍ତ୍ରୀ ମରିୟାନ୍‌ଙ୍କୁ ସମ୍ବୋଧନ କରି ଏଜିଦ୍ କହିଲେ—''ମରିୟାନ୍ ତୁମ୍ଭେ ମୋର ସମ୍ବଳ, ବୁଦ୍ଧି, ସାହସ ଏବଂ ସମ୍ପଦ, ଅଦ୍ୟ ତୁମ୍ଭଙ୍କୁ ସେନାପତି ପଦରେ ବରଣ କରି ସଂଗ୍ରାମକୁ ପଠାଇବି । ହାସେନ୍ ହୋସେନ୍‌ଙ୍କୁ ସଂହାର କରି ପାରିଲେ ଦମସ୍କାଧିପତିଙ୍କର ଧନଭଣ୍ଡାର ତୁମ୍ଭ ନିକଟରେ ଅବାରିତ ହେବ । ପରାଭୂତ ହେଲେ ମଧ ନିରୁତ୍ସାହ ହେବ ନାହିଁ । ଛଳ, କଳ କି କୌଶଳରେ-ଯେ ପ୍ରକାରରେ ହେଉ ହାସେନ୍‌ଙ୍କର ପ୍ରାଣ ସଂହାର ନ କରି ଦମସ୍କ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିବ ନାହିଁ । ସେମାନଙ୍କୁ ଏହି ପ୍ରକାର ଉତ୍ତେଜିତ କରି ନଗର ପ୍ରାନ୍ତ ପର୍ଯ୍ୟନ୍ତ ସେମାନଙ୍କ ସାଂଖ୍ୟକ ଗଲେ । ତତ୍ପରେ ସମସ୍ତଙ୍କ ନିକଟରୁ ବିଦାୟ ଗ୍ରହଣ କରି ସ୍ୱୀୟ ପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କଲେ ।

ଯେଉଁ ଦିନଠାରୁ ପତ୍ରମର୍ମ ମଦିନାବାସୀମାନେ ଅବଗତ ହୋଇଅଛନ୍ତି, ତଦବଧି ଆବାଳ ବୃଦ୍ଧ, ସମସ୍ତେ ହାସେନ୍‌ଙ୍କର ଅପମାନଜନିତ କ୍ରୋଧରେ ନୂତନଭାବ ଧାରଣ କରିଅଛନ୍ତି । ସମସ୍ତଙ୍କର ମୁଖାକୃତିରେ ରୋଷାଗ୍ନି ପ୍ରତିଭାତ । ସମସ୍ତେ ଏଜିଦ୍‌ଙ୍କ ନାମରେ ଶତ ଶତ ଧିକ୍କାର ଦେଉଅଛନ୍ତି । ଦେହରେ ଏକବିନ୍ଦୁ ଶୋଣିତ ଥାଉ ଥାଉ ହୋସେନ୍‌ଙ୍କ ପ୍ରତି ଅତ୍ୟାଚାର କରିବ ଏପରି ସାଧ କାହାର ? ସମସ୍ତଙ୍କ ମୁଖରେ ଏହି କଥା । ସମସ୍ତେ ରଣ ମଦରେ ମତ୍ତ ହୋଇ ଯୁଦ୍ଧ ସମୟକୁ ପ୍ରତୀକ୍ଷା କରୁଅଛନ୍ତି ।

ନିଶା ଅବସାନ ପ୍ରାୟ । ଏପରି ସମୟରେ ରଣବାଦ୍ୟ ବାଜି ଉଠିଲା । ଅକସ୍ମାତ୍ ବାଦ୍ୟଧ୍ୱନିର କାରଣ କେହି ନିର୍ଣ୍ଣୟ କରିପାରିଲେ ନାହିଁ । ଅନେକେ ଆସି ଦେଖିଲେ, ବହୁସଂଖ୍ୟକ ସୈନ୍ୟ ବୀରଦର୍ପରେ ନଗରାଭିମୁଖରେ ଆସୁଅଛନ୍ତି । ଏହି ବାର୍ତ୍ତା ଶ୍ରବଣ କରି ହାସେନ୍ ଏଜିଦ୍‌ଙ୍କ ବିରୋଧରେ ଧର୍ମଯୁଦ୍ଧ ଘୋଷଣା କଲେ । ମହମ୍ମଦୀୟମାନେ ଧର୍ମଯୁଦ୍ଧରେ ଚିରକାଳ ପ୍ରଧାନ । ତହିଁରେ ପୁଣି ପ୍ରାଣାପେକ୍ଷା ପ୍ରିୟ ହାସେନ୍ ହୋସେନ୍‌ଙ୍କର ଅବମାନନା, ସୁତରାଂ ଯେପରି ଘୋଷଣା ପ୍ରଚାର, ସେହିପରି ଶତଶତ ମଦିନାବାସୀ ଧର୍ମଯୁଦ୍ଧରେ ପ୍ରାଣୋତ୍ସର୍ଗ କରିବା ସକାଶେ ଶତ୍ରୁ ଉଦ୍ଦେଶ୍ୟରେ ଯାତ୍ରା କଲେ । ହାସେନ୍ ସେମାନଙ୍କୁ ପରିଚାଳିତ କରିବା ସକାଶେ ଯୋଦ୍ଧା ବେଶରେ ସଂଗ୍ରାମ କ୍ଷେତ୍ରାଭିମୁଖେ ଅଗ୍ରସର ହେଉଅଛନ୍ତି । ପ୍ରଷ୍ଠାଦିଗକୁ ଦୃଷ୍ଟି କରି ଦେଖିଲେ ଯେ, ମଦିନାର ଅବଳାମାନେ କୋମଳ କରରେ ଆସି ଧାରଣ କରି ଧର୍ମଯୁଦ୍ଧର ସାହାଯ୍ୟ ସକାଶେ ଉତ୍ତେଜିତ ହୋଇ ତାଙ୍କର ଅନୁସରଣ କରୁଅଛନ୍ତି । ହାସେନ୍ ନିଦର୍ଶନରେ ସେମାନଙ୍କୁ ନାନାପ୍ରକାର ପ୍ରବୋଧ ଦେଇ ପ୍ରତି ନିବୃତ୍ତ କଲେ । ଧନ୍ୟବୀର ରମଣୀବୃନ୍ଦ । ଆପଣମାନେ ହିଁ ସ୍ୱ-ଦେଶର ସ୍ୱାଧୀନତାର ଗୌରବ । ଜାତୀୟ ଧର୍ମର ମର୍ଯ୍ୟାଦା ବୁଝିଥିଲ, ସେହି ସକାଶେ ମଦିନାର ପୁରୁଷମାନେ ମଧ ଧର୍ମ ସକାଶେ ପ୍ରାଣୋତ୍ସର୍ଗ କରିବାକୁ ଶିକ୍ଷା କରିଅଛନ୍ତି ବୀର ପ୍ରସବିନୀ ନ ଥିଲେ ବୀର ପ୍ରସବ କରିବ କିଏ ?

ରମଣୀଗଣଙ୍କୁ ପ୍ରତି ନିବୃତ୍ତ କରି ହାସେନ୍ ଘୋରତର ସଂଗ୍ରାମରେ ପ୍ରବୃତ୍ତ ହେଲେ । ମହାବୀରର ବୀରତ୍ୱ କିଏ ସହ୍ୟ କରିବ ? ସେ ଏକାକୀ ଅସଂଖ୍ୟ ବିପକ୍ଷ ସୈନ୍ୟ ବଧ କରି ସମର କ୍ଷେତ୍ରରେ ରକ୍ତସ୍ରୋତ ପ୍ରବାହିତ କଲେ । ହାସେନ୍‌ଙ୍କ

ପକ୍ଷର ଅପରାଧର ଯୋଦ୍ଧାମାନେ କିଏ କେଉଁଠାରେ ଅଛନ୍ତି ପରସ୍ପର ଜାଣନ୍ତି ନାହିଁ । ଯେ, ଯେଉଁଠାରେ ଯୁଦ୍ଧ କରୁଅଛନ୍ତି, ସେ ସେହିଠାରେ ଶୋଣିତ ପ୍ରବାହ ଉତ୍ପନ୍ନ କରୁଅଛନ୍ତି । ଅବଶିଷ୍ଟ ଯେଉଁମାନେ ଥିଲେ, ସେମାନେ ପ୍ରାଣଭୟରେ ଇତଃସ୍ତତ ପଳାୟନ କଲେ । ମରିୟାନ୍ ଉପାୟାନ୍ତର ନ ଦେଖି ସଂଗ୍ରାମ କ୍ଷେତ୍ରରୁ ପଳାୟନ କରି ପ୍ରାଣରକ୍ଷା କଲେ ।

ମଦିନାବାସୀମାନେ ଶତ୍ରୁମାନଙ୍କୁ ଧର୍ମଯୁଦ୍ଧରେ ପରାସ୍ତ କରି ବିଜୟ ପତାକା ଉଡ୍ଡୟ କରି ନଗରକୁ ପ୍ରତ୍ୟାବର୍ତ୍ତନ କଲେ । ମଦିନା ଆନନ୍ଦଧ୍ୱନିରେ ପ୍ରତିଧ୍ୱନୀତ ହେଲା । ଏଣେ ମରିୟାନ୍ ମଦିନାବାସୀଙ୍କର ରଣ ଚାତୁର୍ଯ୍ୟର ପରିଚୟ ପାଇ କଅଣ କରିବେ ଏ ବିଷୟରେ ଭାବନା କରିବାକୁ ଲାଗିଲେ । କିନ୍ତୁ ଏକାବେଳକେ ହତାଶ ହେଲେ ନାହିଁ । ପୁନରାୟ ସୈନ୍ୟ ସଂଗ୍ରହ କରିବାକୁ ଚେଷ୍ଟା କଲେ । ହାସେନ୍‌ଙ୍କୁ ବଧ ନ କରି ପ୍ରତ୍ୟାବର୍ତ୍ତନ କରିବେ ନାହିଁ, ଯେପରି ହେଉ ଏଜିଦ୍‌ଙ୍କର ଆଜ୍ଞା ସାଧନା କରିବାକୁ ହେବ । ଏହିପରି ସ୍ଥିର କରି ପୁନରାୟ ସୈନ୍ୟ ପ୍ରେରଣର ପ୍ରାର୍ଥନା କରି ଦାମସ୍କ ନଗରକୁ ଏଜିଦ୍‌ଙ୍କ ନିକଟକୁ ଲୋକ ପଠାଇଲେ ।

ମାନସିକ ବଳ ଲୋକଙ୍କୁ ଯେତେ ତେଜସ୍ୱୀ ବଳବାନ୍ କରେ ଧନବଳ କି ଜନବଳ-ଅପର କୌଣସି ବଳ ମନୁଷ୍ୟକୁ ସେତେ ଶକ୍ତି ସମ୍ପନ୍ନ କରିପାରନ୍ତି ନାହିଁ । ବୀଜାଭ୍ୟାନ୍ତର-ସ୍ଥିତଶକ୍ତି ଯେପରି ପ୍ରକାଣ୍ଡ ବୃକ୍ଷାଦି ଉତ୍ପନ୍ନ କରି ଫଳପୁଷ୍ପରେ ବୃକ୍ଷକୁ ଶୋଭାନ୍ୱିତ କରେ । ତଦ୍ରୂପ ମାନସିକ ତେଜଃ ଧର୍ମବଳ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ସେହି ତେଜୀୟାନ୍ ପୁରୁଷଙ୍କୁ ଜନସମାଜର ଶୀର୍ଷସ୍ଥାନକୁ ଆନୟନ କରେ । ତାହାଙ୍କର ତେଜ ଅଦମ୍ୟ, ଉପାୟ, ପ୍ରଶସ୍ତ ଓ ସତ୍ । କିନ୍ତୁ କ୍ଷୁଦ୍ର ଚେତା ମରିୟାନ୍ ବାହ୍ୟ ଶକ୍ତିରେ ବଳୀୟାନ୍ ସତ୍ୟ, କିନ୍ତୁ ତାହାଙ୍କର ମାନସିକ ବଳ ଥିଲା ନାହିଁ । ସେ ସମ୍ମୁଖ ସଂଗ୍ରାମ ବାସନା ପରିତ୍ୟାଗ କରି ଅବୈଧ ଉପାୟରେ ହାସେନ୍‌ଙ୍କୁ ବଧ କରିବା ନିମନ୍ତେ କୃତ ସଂକଳ୍ପ ହେଲେ । ତଦବଧି ଛଦ୍ମ ବେଶରେ ମରିୟାନ୍ ମଦିନା ନଗରରେ ପରିଭ୍ରମଣ କରିବାକୁ ଆରମ୍ଭ କଲେ ।

ପୂର୍ବେ ଉକ୍ତ ହୋଇଅଛି ଯେ, ଜାଏଦା ଜୟନାବ୍‌ଙ୍କୁ ସପତ୍ନୀ ଜ୍ଞାନରେ ଅତ୍ୟନ୍ତ ବିଦ୍ୱେଷ କରୁଥିଲେ, ତାହାଙ୍କର ବିଶ୍ୱାସ ଥିଲା, ଯେ ହାସେନ୍ ଜୟନାବ୍‌ଙ୍କୁ ଅଧିକତର ସ୍ନେହ କରନ୍ତି । ଏହି କଳ୍ପିତ ଧାରଣା ଉପରେ ଦିନକୁ ଦିନ ତାହାଙ୍କର ଆସ୍ଥା ବୃଦ୍ଧି ହେବାକୁ ଲାଗିଲା । କି ଉପାୟରେ ଜୟନାବ୍‌ଙ୍କୁ ସ୍ୱାମୀଙ୍କର ଅନୁରାଗରୁ ବଞ୍ଚିତ କରିବେ । ଏହି ଚିନ୍ତା ହିଁ ତାହାଙ୍କର ମସ୍ତିଷ୍କରେ କ୍ରୀଡ଼ା କରୁଥିଲେ । ମୟମୁନା ନାମ୍ନୀ ମଦିନାବାସିନୀ ଏକ ଦୁଷ୍ଟା ବୃଦ୍ଧାର ସହିତ ଏହାର ଉପାୟ ନିର୍ଦ୍ଧାରଣ କରନ୍ତି । ମୟମୁନା ମଧ ମନ୍ତ୍ରବଳରେ ହେଉ ବା ଦ୍ରବ୍ୟ ବଳରେ ହେଉ ଜାଏଦାର ଅଭିବୃଚ୍ଛା ସିଦ୍ଧ କରି ଦେବ ବୋଲି ତାହାଙ୍କୁ ଆଶ୍ୱସ୍ତ କରୁଥିଲା । ଜାଏଦା ବିଚାର କରନ୍ତି, ସଂସାରରେ ମୟମୁନା ପରି ତାହାଙ୍କର ଆଉ ଦ୍ୱିତୀୟ ବାନ୍ଧବୀ ନାହିଁ । ମୟମୁନା ନିକଟରେ ଜାଏଦା ଅକପଟ ଭାବରେ ଆତ୍ମ ମନୋବେଦନା ପ୍ରକାଶ କରନ୍ତି । ମୟମୁନା ମଧ ତାହାଙ୍କର ଦୁଃଖ କାହାଣୀ ଶ୍ରବଣ କରି ସଜଳ ନୟନରେ ସହାନୁଭୂତି ପ୍ରକାଶ କରି ନାନାପ୍ରକାର ସାନ୍ତ୍ୱନା କରେ । ଏହି ପ୍ରକାର ଉଭୟଙ୍କ ମଧ୍ୟରେ ଦିନକୁ ଦିନ ଆତ୍ମୀୟତା ବୃଦ୍ଧି ପାଇଲା । ମୟମୁନା ସର୍ବଦା ଜାଏଦାଙ୍କ ନିକଟକୁ ଯାତାୟାତ କରିବାକୁ ଲାଗିଲେ । ମରିୟାନ୍ ଛଦ୍ମ ବେଶରେ ମଦିନା ଭ୍ରମଣ କରି ମନୋମତ ଲୋକ ପାଉ ନାହାନ୍ତି । ଦୈବ ଯୋଗରେ ଏକଦା ମୟମୁନା ସହିତ ସାକ୍ଷାତ୍ ହେଲା । ଅନେକ କଥୋପକଥନ ପରେ ମରିୟାନ୍ ମୟମୁନାର ପ୍ରକୃତି ଜାଣିପାରି ଏହାଦ୍ୱାରା ହାସେନ୍ ସଂହାର ବୋଲି ସ୍ଥିର କଲେ । ପରୋକ୍ଷ ଭାବରେ ନିଜର ଆନ୍ତରିକ ଅଭିପ୍ରାୟ ତାହାକୁ ଜ୍ଞାତ କରାଇଲେ । ଆଶାତୀତ ପୁରସ୍କାର ମଧ କଥା ପ୍ରସଙ୍ଗରେ ଜଣାଇବାକୁ ତ୍ରୁଟି କଲେ ନାହିଁ । ଯେଉଁ ସ୍ଥାନରେ ମନ୍ତ୍ରୀର ମନ୍ତ୍ରଣା ବ୍ୟର୍ଥ ଯେଉଁ ସ୍ଥାନରେ ବୀରର ବୀରତ୍ୱ ନିଷ୍ଫଳ ସେହି ସ୍ଥାନରେ ମୋହର ବୁଦ୍ଧି ଏବଂ କାର୍ଯ୍ୟପଟୁତାର ପ୍ରୟୋଗ କରଇ ମୋତେ ଯତ୍‌ସାମାନ୍ୟ ସ୍ତ୍ରୀ ବୋଲି ମନରେ କରିବ ନାହିଁ । ଏହିପରି ଆତ୍ମପ୍ରଶଂସା କରି ମୟମୁନା ପୁରସ୍କାର ଲୋଭରେ ମରିୟାନ୍‌ର ପ୍ରସ୍ତାବ କାର୍ଯ୍ୟରେ ପରିଣତ କରିବାକୁ ପ୍ରତିଶ୍ରୁତି ଦେଲା । ଯେତେବେଳେ ଯାହା ପ୍ରୟୋଜନ ହେବ ଅବିଳମ୍ବରେ ପୂରଣ କରିଦେବୁଁ ।'' କହି ମରିୟାନ୍ ଆଶାନ୍ୱିତ ହୃଦୟରେ ବିଦାୟ ଗ୍ରହଣ କଲେ ।

ମାନବ ପ୍ରକୃତି ଯେତେଦୂର ଅଧଃପତିତ ହେଉନା କାହିଁକି, ପାପ କାର୍ଯ୍ୟ କରିବାକୁ ଟିକିଏ କ୍ଲିଷ୍ଟ ନ ହୋଇ ରହି ହେବ ନାହିଁ । ମୟମୁନା ସ୍ତ୍ରୀ ଜାତିର କଳଙ୍କ, ନରକର କୀଟାଣୁ, କିନ୍ତୁ ତାହାର ହୃଦୟ ମଧ ବିବେକଶୂନ୍ୟ ନୁହେଁ । ସେ ଯେଉଁ ଦିନଠାରୁ ହାସେନ୍ ବଧରୂପ ଗର୍ହିତ ପାପକର୍ମର ଭାର ଗ୍ରହଣ କରିଅଛି ତଦବଧି ତାହାର ଦଉ ନାନାପ୍ରକାର ବିଭୀଷିକା ଦର୍ଶନ କରୁଅଛି, କିନ୍ତୁ ଅର୍ଥର କି ଆଶ୍ଚର୍ଯ୍ୟ ପ୍ରଲୋଭନ । ମୟମୁନା ସକଳ ପ୍ରକାର ବିଭୀଷିକା ଉପେକ୍ଷା

କରି ସଂକଳ୍ପିତ କାର୍ଯ୍ୟୋଦ୍ଧାର କରିବା ସକାଶେ ଏମାମ ହୋସେନ୍‌ଙ୍କ ଗୃହକୁ ଜାଏଦାଙ୍କ ନିକଟକୁ ଗମନ କଲା ।

ସପତ୍ନୀବାଦ କି ଭୟଙ୍କର । ଏହି ବିଷୟରେ ଆକ୍ରାନ୍ତ ହେଲେ ସ୍ତ୍ରୀଲୋକର ହିତାହିତ ଜ୍ଞାନ ରହଇ ନାହିଁ । ସ୍ୱାମୀ ଅଭାବରେ ସମସ୍ତେ ସମାନ ଦୁଃଖ ପାଇବେ, ସମସ୍ତଙ୍କୁ ତାହାଙ୍କ ପ୍ରେମରୁ ବଞ୍ଚିତ ହେବାକୁ ପଡ଼ିବ । ସ୍ୱାମୀ ସପତ୍ନୀ ଓ ନିଜ ଉଭୟର ସୁଖ ଦୁଃଖର ସାଧାରଣ ନିୟନ୍ତା । ଏକଥା ଆଉ କେତେବେଳେ ମନରେ ରହିଲା ନାହିଁ । ସ୍ୱାମୀର ପ୍ରାଣ ସଂହାର କରି ସପତ୍ନୀର ପ୍ରତିଶୋଧ ନେବାର ପ୍ରୟାସ ଜନ୍ମେ । ଜାଏଦାର ହୃଦୟରେ ଯଦିବା ଏହି ନିକୃଷ୍ଟଭାବ ଏ ପର୍ଯ୍ୟନ୍ତ ଉଦିତ ହୋଇ ନାହିଁ ତଥାପି ସେ ସମୟ ସମୀପବର୍ତ୍ତୀ, ମୟମୁନା ଏଜିଦ୍‌ଙ୍କର ଐଶ୍ୱର୍ଯ୍ୟର ବିଷୟ, ଦମସ୍କ ରାଜ୍ୟର ପାଟରାଣୀ ହେବାର ସମ୍ଭାବନା ଇତ୍ୟାଦି କଥା ପ୍ରସଙ୍ଗରେ ଜାଏଦାଙ୍କର ଚିତ୍ତ କ୍ରମଶଃ ପ୍ରଲୋଭିତ କରି ଅବଶେଷରେ ହାସେନ୍ ବଧର ପ୍ରସ୍ତାବ ଉଲ୍ଲେଖ କଲା । ଶେଷ ବାକ୍ୟଟି ଶୁଣି ଜାଏଦା ଚମକିତ ହୋଇ କହିଲେ, ବରଂ ସପତ୍ନୀବାଦ ଶେଷରେ ଜର୍ଜରିତ ହୋଇ ଅଶେଷ ଦୁର୍ଗତି ଭୋଗ କରିବି, ତଥାପି ସ୍ୱାମୀ ବଧରୂପ ମହାପାପ ପଙ୍କରେ ନିମଗ୍ନ ହେବି ନାହିଁ । ସ୍ତ୍ରୀ ଜାତି ଶୋଭାବତଃ କୋମଳହୃଦୟା, ସହସା ମନ ପରିବର୍ତ୍ତନ ହେବାର ବିଚିତ୍ର ନୁହେଁ, ତହିଁରେ ପୁଣି ମୟମୁନା ଯାହାର ଉପଦେଷ୍ଟି ସେ କିପରି ବା ସ୍ଥିର ରହିପାରିବ ? ଜାଏଦା ଏଜିଦ୍‌ଙ୍କର ବିଭବ, ସୁଖ ଓ ହୋସେନ୍‌ଙ୍କର ପ୍ରେମ ତୁଳନା କରିବାକୁ ଆରମ୍ଭ କଲେ । କିନ୍ତୁ କୌଣସି ମତେ ମୟମୁନାର ପ୍ରସ୍ତାବ କାର୍ଯ୍ୟରେ ପରିଣତ କରିବାକୁ ମନ ଅଗ୍ରସର ହେଲା ନାହିଁ । ଅବଶେଷରେ ଜୟନାବର କଥା ସ୍ମରଣ ହେବାରୁ ତାହାଙ୍କର ସୁଖର ବିଷୟ ଚିନ୍ତା କଲେ ଉକ୍ତ ଚିନ୍ତା ସଙ୍ଗେ ସଙ୍ଗେ ହାସେନ୍ ପ୍ରେମ ବିସ୍ମୃତ ହେଲେ । ହାସେନ୍‌ର ଅଭାବରେ ତାହାର ଯେ ଦଶା, ମୋର ମଧ ସେହି ଦଶା । ଏହି କଥା କହି ନିଜର ସର୍ବନାଶ କରି ମଧ ଜୟନାବର ସର୍ବନାଶ କରିବାକୁ କୃତ ସଂକଳ୍ପ ହେଲେ । ମୟମୁନାର ପ୍ରସ୍ତାବରେ ସ୍ୱୀକୃତ ହୋଇ ସ୍ୱାମୀଙ୍କର ପ୍ରାଣ ସଂହାରରେ ପ୍ରବୃତ୍ତ ହେଲେ । ମୟମୁନା ଜାଏଦାଙ୍କର ସମ୍ମତି ଲାଭ କରି ଅତ୍ୟାନ୍ତ ସନ୍ତୁଷ୍ଟ ହେଲେ । ସେ ପୂର୍ବରୁ ତୀକ୍ଷ୍ଣ ବିଷ ସଂଗ୍ରହ କରି ରଖିଥିଲା । ଉକ୍ତ ବିଷ କି ପ୍ରକାରେ ବ୍ୟବହାର କରିବାକୁ ହେବ, ଇତ୍ୟାଦି ପ୍ରୟୋଜନୀୟ ବିଷୟରେ ସମସ୍ତ ଉପଦେଶ ପ୍ରଦାନ କରି ମୟମୁନା ଜାଏଦାଙ୍କ ହସ୍ତରେ ବିଷ ପୁଡ଼ିଆ ପ୍ରଦାନ [illegible] କହିଲା, ସାବଧାନ, କାର୍ଯ୍ୟ ଗୋପନରେ [illegible] କରିବ । ସୁଯୋଗ ଦେଖି ବ୍ୟବହାର କଲେ ମନସ୍କାମନା ପୂର୍ଣ୍ଣ ହେବ ଜୟନାବର ସର୍ବନାଶ ହେବ ।

ଇତି ମଧ୍ୟରେ ହାସେନ୍ ପ୍ରୟୋଜନ ବଶତଃ ପ୍ରାୟ ଆଠ ଦିନ କାଳ ଜାଏଦାଙ୍କ ଭବନକୁ ଗମନ କରି ନ ଥିଲେ । ଏଣୁ ସେ ମନରେ ଭାବିଥିଲେ ଯେ ନ ଜାଣେ ଜାଏଦା ଆଜି ତାହାଙ୍କୁ ଦେଖି କେତେ ଅଭିମାନ କରିବେ । କିନ୍ତୁ କାର୍ଯ୍ୟରେ ତହିଁର ସମ୍ପୂର୍ଣ୍ଣ ବିପରୀତ ଦେଖିଲେ । ଆଜି ଜାଏଦା ପୂର୍ବାପେକ୍ଷା ଶତଗୁଣାରେ ସରଳ । ଏହି ଆଶାତୀତ ସରଳତା ସନ୍ଦର୍ଶନ କରି ହାସେନ୍ ସେହି ରଜନୀ ଜାଏଦାଙ୍କ ଗୃହରେ ଅବସ୍ଥାନ କରିବାକୁ ସଂକଳ୍ପ କଲେ । ଜାଏଦା ସ୍ୱୀୟ ଅଭୀଷ୍ଟ ସିଦ୍ଧିର ସୁଯୋଗ ପ୍ରାପ୍ତ ହେଲେ । ସେ ଏକ ହସ୍ତରେ ବିଷ ମିଶ୍ରିତ ମଧୁପାତ୍ର ଏବଂ ଅପର ହସ୍ତରେ ସ୍ନିଗ୍ଧ ଜଳପାତ୍ର ଧାରଣକରି ସ୍ୱାମୀ ସମୀପରେ ଦଣ୍ଡାୟମାନ ହୋଇ କପଟ ପ୍ରେମଭରରେ କହିଲେ, ଅଷ୍ଟାଦିବସାବଧି ଏହି ମଧୁ ସଞ୍ଚୟ କରି ରଖିଅଛି । ଏହା ଅତି ଉପାଦେୟ । ''ଆପଣ ଏକବାର ସେବନ କରି ଦେଖନ୍ତୁ ।'' ନାରୀ ପ୍ରକୃତିର ପ୍ରକୃତି ତତ୍ତ୍ୱ ନିର୍ଣ୍ଣୟ କରିବା ସହଜ ନୁହେଁ । ସରଳ ପ୍ରେମିକ ହାସେନ୍ ମାୟାବିନୀର ବାକ୍ୟ ଜାଲରେ ଆବଦ୍ଧ ହୋଇ ପ୍ରଫୁଲ୍ଲ ଚିତ୍ତରେ ମଧୁ ପାନ କଲେ, ମୁହୂର୍ତ୍ତ ମଧ୍ୟରେ ହାସେନ୍‌ଙ୍କ ଶରୀରରେ ବିଷର କ୍ରିୟା ଆରମ୍ଭ ହେଲା । ଶରୀର କ୍ଳାନ୍ତି ପରିବର୍ତ୍ତନ ହେଲା । ଅଧିକ ପିପାସା ଜାତ ହେଲା । କ୍ରମରେ ଦୃଷ୍ଟିଶକ୍ତିହୀନ ଓ ଶରୀର ଅବଶ ହେଲା । ହାସେନ୍ ଜାଏଦାଙ୍କୁ ସମ୍ବୋଧନ କରି କହିଲେ, ''ପ୍ରିୟେ ଏ କିପରି ମଧୁ ? ଯନ୍ତ୍ରଣାରେ ପ୍ରାଣ ଯେ ଅସ୍ଥିର ହେଲା ।''

ଜାଏଦା ତାହାଙ୍କୁ ତାଳବୃନ୍ତଦ୍ୱାରା ସ୍ୱହସ୍ତରେ ବ୍ୟଜନ କରୁଅଛନ୍ତି, ମସ୍ତକରେ ଶୀତଳ ବାରୀ ସିଞ୍ଚନ କରୁଅଛନ୍ତି କିନ୍ତୁ କୌଣସି ପ୍ରକାରେ ତାଙ୍କର ଜ୍ୱାଳାର ବିଶ୍ରାମ ହେବାକୁ ନାହିଁ, ଚେଷ୍ଟା ସଫଳ ହେବାର ଭାବି ଜାଏଦା ଅନ୍ତରରେ ଆଶାନ୍ୱିତ ହେଲେ, କିନ୍ତୁ ପ୍ରକାଶ୍ୟରେ ସେହି ପ୍ରଫୁଲ୍ଲ ଭା[illegible] ଗୋପନ କରି କପଟ ଭାବରେ କହିଲେ ''ମୋର କପା[illegible] ମନ୍ଦ'' ମୁଁ ଟିକିଏ ମଧୁପାନ କରି ଦେଖେଁ । କିନ୍ତୁ ହାସେ[illegible] ତାହାଙ୍କୁ ସେବନ କରିବାକୁ ଦେଲେ ନାହିଁ । ତାହାଙ୍କୁ ଈଶ୍[illegible] ନାମୋଚ୍ଚାରଣ କରିବାକୁ କହିଲେ । ହାସେନ୍ ମଧ ସ୍ୱ[illegible] ଉପାସନାରେ ପ୍ରବୃତ୍ତ ହେଲେ । ଈଶ୍ୱରଙ୍କ ପ୍ରତି ନିର୍ଭୟ କର[illegible] ଜାଏଦାଙ୍କ ଗୃହରେ ସେହି ରାତ୍ରି ଅବସ୍ଥାନ କଲେ । କାହାରିକୁ ତତ୍ତ୍ୱବାର୍ତ୍ତା ଦେଲେ ନାହିଁ । ନାମ ସାଧନାର କି ଅଲୌକିକ [illegible] ? ସେହି [illegible] ଭଗବାନ୍‌ଙ୍କ ନାମ କରୁ କରୁ

ଯନ୍ତ୍ରଣା ଲାଘବ ହେଲା । ରାତ୍ରି ଅତିବାହିତ ହେଲାରୁ ପ୍ରତ୍ୟାହିକ ରିତ୍ୟାନୁସାରେ ମାତାମହଙ୍କର ସମାଧି ମନ୍ଦିରକୁ ଯାଇ ବିନୀତରେ ପ୍ରାର୍ଥନା କାର୍ଯ୍ୟ ସମାଧାନ କଲେ, କ୍ରମରେ ତାହାଙ୍କର ଶରୀର ସୁସ୍ଥ ହେଲା କିନ୍ତୁ ବିଷ ଦୋଷ ଏକାବେଳକେ ନିରାକୃତ ହେଲା ନାହିଁ ।

ଜାଏଦାଙ୍କର ଚେଷ୍ଟା ନିଷ୍ଫଳ ହେଲା । ସ୍ତ୍ରୀଜାତି ସ୍ୱଭାବତଃ ପ୍ରେମମୟୀ । କିନ୍ତୁ ଥରେ ଶତ୍ରୁତା ସାଧନାରେ ଉତ୍ତେଜିତ ହେଲେ ତାହା ଶେଷ ନ କରି କେବେ ହେଁ କ୍ଷାନ୍ତ ହୁଅନ୍ତି ନାହିଁ । ଜାଏଦା ମଧ ଭଗ୍ନୋଦ୍ୟମ ହେଲେ ନାହିଁ । ଯେଉଁ ପ୍ରକାରେ ହେଉ ସ୍ୱାମୀଙ୍କ ପ୍ରାଣ ସଂହାରରେ କୃତସଂକଳ୍ପ ହୋଇ ମୟମୁନାକୁ କହିଲେ "ଏଥର ବଜାରରୁ ମୋତେ କେତେଗୁଡ଼ିଏ ଖର୍ଜୁର ଫଳ ଆଣିଦିଅ । ତନ୍ମଧରେ କାଳକୁଟ ପୂର୍ଣ୍ଣ କରି ଏଥର ଏପରି ଭାବରେ ତାହା ବ୍ୟବହାର କରିବି, ଯେପରି କୌଣସି ପ୍ରକାର ସନ୍ଧାନ ବ୍ୟର୍ଥ ନ ହୁଏ ।"

ଜାଏଦାଙ୍କର ଆଦେଶାନୁଯାୟୀ ପରିପକ୍ୱ ଖର୍ଜୁର ଫଳ ମୟମୁନା ଅତି ଗୋପନରେ ବଜାରରୁ କ୍ରୟ କରି ଆଣି ଦେଲା । ଜାଏଦା ସେହି ଖର୍ଜୁର ସମୂହ ମଧରୁ କେତେକାଂଶରେ ଏପରି ଭାବରେ ଚିହ୍ନ ଦେଲେ ଯେ, ତାହା ଅନ୍ୟ କାହାର ଚକ୍ଷୁରେ ପଡ଼ିବାର ସମ୍ଭାବନା ରହିଲା ନାହିଁ । ପୂର୍ବୋକ୍ତ ପୁଡ଼ିଆରୁ ପ୍ରାଣାନ୍ତକ ବିଷ ବାହାର କରି ଅବଶିଷ୍ଟ ଖର୍ଜୁରରେ ତାହା ପୂର୍ଣ୍ଣ କରି ରଖିଲେ । ତତ୍ପରେ ସମସ୍ତ ଖର୍ଜୁର ମିଶ୍ରିତ କଲେ ।

ପୂର୍ବଦିନ ହାସେନ୍ ଜାଏଦା ମୁହୂର୍ତ୍ତ କାଳ ନିମନ୍ତେ ସୁସ୍ଥରେ ଥିଲେ ନାହିଁ, ଯନ୍ତ୍ରଣାରେ ସର୍ବଦା, ଛଟପଟ କରୁଥିଲେ । ଜାଏଦାଙ୍କ ସହିତ ଗୋଟିଏ ସୁଦ୍ଧା ବାକ୍ୟାଳାପ କରିନାହାନ୍ତି । ଏଥିସକାଶେ ଅଦ୍ୟ ରଜନୀ ମଧ ତାଙ୍କର ଭବନରେ ଅବସ୍ଥାନ କରିବାର ଇଚ୍ଛା ଜୟନାବ ଜ୍ଞାପନ କଲେ । ସେ ଜାଣନ୍ତି ଯେ, ସପତ୍ନୀର ମନରେ କଷ୍ଟ ଦେବା ପାପ ଅଟଇ । ସ୍ୱାମୀ ଧନରେ କାହାରିକୁ ବଞ୍ଚିତ କରିବା ଉଚିତ୍ ନୁହେଁ । ସୁତରାଂ ଜୟନାବ ସାନନ୍ଦରେ ହାସେନ୍‌ଙ୍କୁ ବିଦାୟ ଦେଲେ । ହାସେନ୍ ଜୟନାବଙ୍କ ନିକଟରୁ ବିଦାୟ ନେଇ ଜାଏଦାଙ୍କ ଭବନକୁ ଗମନ କଲେ । ଜାଏଦା ଆପଣାର କୌଶଳ ଜାଲ ଆଗରୁ ବିସ୍ତାର କରି ବସିଅଛନ୍ତି । ଗୃହରେ ପ୍ରବେଶ କରିବା ମାତ୍ରେ ସେ ଅତି ଆନନ୍ଦର ସହିତ ତାହାଙ୍କୁ ଅଭ୍ୟର୍ଥନା କଲେ । ସରଳ ପ୍ରେମରେ କେତେବେଳେ ମାନ, ଅଭିମାନ, ଘୃଣା ତାଚ୍ଛଲ୍ୟ ଦେଖାଯାଏ କିନ୍ତୁ କପଟ ପ୍ରେମରେ ବିରକ୍ତି ଭାବର ସମ୍ପୂର୍ଣ୍ଣ ଅଭାବ । ହାସେନ୍ ଜାଏଦ୍‌ଙ୍କ ଆଦରରେ କୌଣସି ପ୍ରକାର ସନ୍ଦିଗ୍ଧ ହେଲେ ନାହିଁ । ପରମ ଆନନ୍ଦିତ ହୋଇ ତାଙ୍କ ସହିତ ଆଳାପ ଆରମ୍ଭ କଲେ । ହାସେନ୍ ଶୈଶବକାଳଠାରୁ ଖର୍ଜୁର ଭଲ ପାଆନ୍ତି । ସୁଯୋଗ ବୁଝି ଜାଏଦା ଖର୍ଜୁର ଖାଇବା ସକାଶେ ତାହାଙ୍କୁ ଅନୁରୋଧ କଲେ । ଗତ ରଜନୀରେ ମଧୁପାନ କରିବା ସମୟରୁ ହାସେନ୍ କିଞ୍ଚିତ୍ ସନ୍ଦିହାନ ଥାଆନ୍ତି । ସେ ଇତସ୍ତତଃ କରୁଅଛନ୍ତି, ଇତ୍ୟବସରରେ ଚତୁରା ଜାଏଦା, ଚିହ୍ନିତ ଖର୍ଜୁର ସ୍ୱାମୀଙ୍କର ଭକ୍ଷଣ ପୂର୍ବରୁ ଭକ୍ଷଣ କରିବାକୁ ଲାଗିଲେ । ତଦ୍ଦର୍ଶନରେ ହାସେନ୍ ମଧ ଅସନ୍ଦିଗ୍ଧ ଚିତ୍ତରେ ଖର୍ଜୁର ଭକ୍ଷିବାକୁ ଆରମ୍ଭ କଲେ । ଗୋଟି କେତେ ଭକ୍ଷଣ କଲା ପରେ ବିଷର କାର୍ଯ୍ୟ ଆରମ୍ଭ ହେଲା, ହାସେନ୍ ସନ୍ଦେହ ପ୍ରଯୁକ୍ତ ଆଉ ଭକ୍ଷଣ କଲେ ନାହିଁ । ତଥାପି ଶରୀର ବିଷ ଜ୍ୱାଳାରେ ଦଗ୍ଧୀଭୂତ ହେବାକୁ ଲାଗିଲା । କୌଣସି ବାକ୍ୟାଳାପ ନ କରି ସେ ଅବିଳମ୍ବରେ ପ୍ରିୟଭ୍ରାତା ହୋସେନ୍‌ଙ୍କର ଗୃହାଭିମୁଖରେ ଗମନ କଲେ । ସେଠାରେ କିୟତ୍‌କାଳ ଅପେକ୍ଷା କଲେ, ନିଦାରୁଣ ବିଷଜ୍ୱାଳା କ୍ରମଶଃ ଅସହ୍ୟ ହୋଇଉଠିଲା । କିନ୍ତୁ ମଙ୍ଗଳମୟଙ୍କର ଇଚ୍ଛାରେ ଏଥର ମଧ ପୂର୍ବବତ୍ ଈଶ୍ୱରଙ୍କ ନାମ ଜପ କରୁ କରୁ ହାସେନ୍ ଆରୋଗ୍ୟ ଲାଭ କଲେ । ଏଥର ଜାଏଦାଙ୍କର ଅଭିସନ୍ଧି ହାସେନ୍ ସ୍ପଷ୍ଟ ବୁଝିପାରିଲେ କିନ୍ତୁ କାହାରିକୁ କିଛି କହିଲେ ନାହିଁ । ବାହାରର ଚିରଶତ୍ରୁ ହସ୍ତରୁ ସତର୍କତା ଅବଲମ୍ବନ କଲେ ଅନେକ ସମୟରେ ଆତ୍ମରକ୍ଷା ସମ୍ଭବ, କିନ୍ତୁ ମିତ୍ର ଯଦି ଶତ୍ରୁ ହୁଏ, ବିଶ୍ୱାସୀ ଯଦି ବିଶ୍ୱାସଘାତକତା କରେ ତେବେ ସେମାନଙ୍କ ଆକ୍ରମଣରୁ ରକ୍ଷା ପାଇବା ଅସମ୍ଭବ । ଯେଉଁ ଜାଏଦା ହାସେନ୍‌ଙ୍କର ପ୍ରିୟ ଥିଲେ, ଯେ ସର୍ବଦା ହାସେନ୍‌ଙ୍କ ସକାଶେ ମହାବ୍ୟସ୍ତ ଥାଆନ୍ତି, ଯେ ସୁଖଦୁଃଖରେ ହାସେନ୍‌ଙ୍କର ସମଭାଗିନୀ ସେହି ଅର୍ଦ୍ଧାଙ୍ଗିନୀ ଆଜି ସ୍ୱାମୀ ବିନାଶ ନିମନ୍ତେ ଅସଙ୍କୁଚିତ ଚିତ୍ତରେ ସ୍ୱ ହସ୍ତରେ ବିଷ ପ୍ରଦାନ କଲେ । ଏହିପରି ଶତ୍ରୁ ସଙ୍କୁଳ ଭବନରେ ଅବତୀର୍ଣ୍ଣ କରିବା ବିପଦଜନକ ମନେ କରି ହାସେନ୍ ସ୍ୱୀୟ ପୁରୀ ପରିତ୍ୟାଗପୂର୍ବକ କତିପୟ ମିତ୍ର ସମଭିବ୍ୟାହାରରେ ମଦିନାର ନିକଟସ୍ଥ ମୁସଲ୍‌ମାନ୍ ନଗରକୁ ଗମନ କଲେ । ମୁସଲ୍‌ମାନବାସୀମାନେ ତାହାଙ୍କ ଆଗ୍ରହରେ ପ୍ରୀତ ହୋଇ ତାହାଙ୍କୁ ଭକ୍ତି ସହକାରେ ଅଭ୍ୟର୍ଥନା କଲେ ।

ଏଠାରେ ମଧ ସେ ଅନେକ ଦିନ ବିଶ୍ରାମ କରିପାରିଲେ ନାହିଁ । ବିପଦ ଏବେ ତାଙ୍କର ପଦେ ପଦେ ଅନୁସରଣ କରିବାକୁ ଲାଗିଲା । ଦମସ୍କ ନଗରବାସୀ ଜନୈକ ଏକ ଚକ୍ଷୁ ବୃଦ୍ଧ ହଜରତ୍ ମହମ୍ମଦଙ୍କର ପରମ ଶତ୍ରୁ ଥିଲେ । ମହମ୍ମଦଙ୍କ

ବଂଶର ଯାହାକୁ ସୁଯୋଗ ମତେ ପାଇବେ, ତାଙ୍କରି ପ୍ରାଣ ସଂହାର କରିବା ତାଙ୍କର ସଂକଳ୍ପ ଥିଲା । ହାସିନ୍ ମଦିନା ତ୍ୟାଗ କରି ମୁସଲ୍‌ମାନ ନଗରୀରେ ଅବସ୍ଥାନ କରିଅଛନ୍ତି । ଏହି ସମ୍ବାଦ ଦମସ୍କ ନଗରୀରେ ପ୍ରଚାର ହେବା ମାତ୍ରେ ଉକ୍ତ ବୃଦ୍ଧ ବିଷ ସଂଯୁକ୍ତ ଏକ ସୁତୀକ୍ଷ୍ଣ ବର୍ଚ୍ଛା ହସ୍ତରେ ଧରି ଶତ୍ରୁର ପ୍ରାଣ ସଂହାର ଉଦ୍ଦେଶ୍ୟରେ ମୁସଲ୍‌ମାନନଗରୀଭିମୁଖେ ଯାତ୍ରା କଲା । ଅବିଶ୍ରାମ ଗମନ କରି ଯଥା ସମୟରେ ସେଠାରେ ଉପନୀତ ହେଲେ । ହାସେନ୍ ଉକ୍ତ ନଗରର ଉପାସନା ମନ୍ଦିରରେ ବାସ କରୁଥିଲେ । ଉକ୍ତ ବୃଦ୍ଧ ବିଷାକ୍ତ ବର୍ଚ୍ଛା ଲୁକ୍କାୟିତ ରଖି ହାସେନ୍‌ଙ୍କ ସମୀପରେ ଉପସ୍ଥିତ ହେଲା । ସୟତାନର କୁହୁକରେ ପଡ଼ି ଏତେକାଳ ମହମ୍ମଦୀୟ ଧର୍ମ ତୁଚ୍ଛ କରିଅଛି, ବର୍ତ୍ତମାନ ଈଶ୍ୱରଙ୍କ କୃପାରୁ ସତ୍ୟଧର୍ମର ଜ୍ୟୋତିରେ ମୋହର ଭ୍ରମାନ୍ଧକାର ବିଦୂରିତ ହୋଇଅଛି । ବିଧର୍ମୀକୁ ସତ୍ୟ ଧର୍ମରେ ଦୀକ୍ଷିତ କରିବା ମହାପୁଣ୍ୟ କର୍ମ । ଅତଏବ ମୋତେ ପବିତ୍ର ସନାତନ ଧର୍ମରେ ଦୀକ୍ଷିତ କରନ୍ତୁ । ଏହା କହି ବୃଦ୍ଧ ହାସେନ୍‌ଙ୍କର ପାଦତଳେ ଲୋଟିଲା । ହାସେନ୍ ଈଦୃଶ ଅନୁତାପର ଭାବ ଦର୍ଶନ କରି ଦୟାର୍ଦ୍ର ଚିତ୍ତରେ ତାହାକୁ ମୁସଲ୍‌ମାନ ଧର୍ମରେ ଦୀକ୍ଷିତ କଲେ । ବୃଦ୍ଧ ସଂସାର ବନ୍ଧନ ଛିନ୍ନ କରି ମୁସଲ୍‌ମାନ ଧର୍ମ ଗ୍ରହଣ କରିବାରୁ ହାସେନ୍‌ଙ୍କର ବିଶେଷ ପ୍ରିୟପାତ୍ର ଓ ବିଶ୍ୱାସଭାଜନ ହୋଇଉଠିଲେ ।

ବୃଦ୍ଧ କାର୍ଯ୍ୟାନ୍ତରରେ ଗମନ କରିବା ପରେ ଆଦାସ ନାମକ ହାସେନ୍‌ଙ୍କର ଜୈନିକ ସଙ୍ଗୀ ଆଗନ୍ତୁକ ବୃଦ୍ଧର କାର୍ଯ୍ୟ ଦର୍ଶନରେ ସନ୍ଦିହାନ ହୋଇ ହାସେନ୍‌ଙ୍କୁ ସତର୍କ କରି କହିଲେ, —'' ଏହି ବ୍ୟକ୍ତି କୌଣସି ସ୍ୱାର୍ଥ ସାଧନ ଉଦ୍ଦେଶ୍ୟରେ ସୁଯୋଗ ପ୍ରତୀକ୍ଷାରେ ଏପରି ଶରଣାଗତ ହୋଇଅଛି ।'' ସରଳମନା ହାସେନ୍ ସେ କଥାରେ କର୍ଣ୍ଣପାତ କଲେ ନାହିଁ । ବିଷୟାନ୍ତର ଆଲୋଚନା ଆରମ୍ଭ କଲେ । ସେମାନେ କଥୋପକଥନ କରୁଅଛନ୍ତି, ଏଣେ ବୃଦ୍ଧ ଲୁକାୟିତ ଥାଇ ହାସେନ୍‌ଙ୍କର ପ୍ରାଣ ସଂହାରର ସୁଯୋଗ ପ୍ରତୀକ୍ଷା କରୁଅଛି । ଆଦାସ୍ ସର୍ବଦା ସଚକିତ ନୟନରେ ଏଣେତେଣେ ଦୃଷ୍ଟି କରୁଅଛନ୍ତି । ସେ ବଡ଼ ଚତୁର, ନିକଟକୁ ଗଲେ, କୌଣସି ପ୍ରକାର ନିଷ୍କୃତି ନାହିଁ । ବିବେଚନା କରି ଦୂର ଦେଶରୁ ପୃଷ୍ଠଦେଶ ଲକ୍ଷ୍ୟ କରି ବର୍ଚ୍ଛା ନିକ୍ଷେପ କଲା । ବର୍ଚ୍ଛା ଲକ୍ଷ୍ୟଭ୍ରଷ୍ଟ ହୋଇ ହାସେନ୍‌ଙ୍କର ପଦତଳେ ବିଦ୍ଧ କଲା । ବର୍ଚ୍ଛା ଆଘାତରେ ସେ ଭୂତଳରେ ପଡ଼ିଗଲେ । ଆଦାସ୍ ସେ ଆଡ଼େ ଦୃଷ୍ଟି ନ କରି ଅତି ତ୍ରସ୍ତରେ ଯାଇ ବୃଦ୍ଧକୁ ଧୃତ କଲେ । ଆଦାସ୍ ତାହାକୁ ଧରି ଆଣି ବର୍ଚ୍ଛା ଦ୍ୱାରା ତାହା ବକ୍ଷସ୍ଥଳ ବିଦୀର୍ଣ୍ଣ କରିବାକୁ ଉଦ୍ୟତ । ଏପରି ସମୟରେ କ୍ଷମାବତାର ହାସେନ୍ ଅନୁନୟ କରି କହିଲେ ''ଭାଇ ଯାହା ହେବାର ହୋଇ ଯାଇଅଛି, କ୍ଷମା କର । ବିଚାରର ଭାର ସ୍ୱ-ହସ୍ତରେ ନିଅ ନାହିଁ । ସର୍ବ ବିଚାରକଙ୍କ ପ୍ରତି ବିଶ୍ୱାସ କରି ତାଙ୍କ ପ୍ରତି ବିଚାରର ଭାବ ଅର୍ପଣ କର । ବୃଦ୍ଧକୁ ମୁକ୍ତି ଦିଅ । ଏହାହିଁ ମୋର ପ୍ରାର୍ଥନା । ଧନ୍ୟ ହାସେନ୍, ଧନ୍ୟ ତୁମ୍ଭର କ୍ଷମାଶୀଳତା !!!

ଆଦାସ୍ ବୃଦ୍ଧଙ୍କୁ ଛାଡ଼ି ଦେଲେ । ହାସେନ୍ ବର୍ଚ୍ଛାର ଆଘାତରେ ବିଷର ଯନ୍ତ୍ରଣାରେ କ୍ରମେ କ୍ରମେ ଅବସନ୍ନ ହୋଇପଡ଼ିଲେ । ପିତାମହଙ୍କର ସମାଧି ମନ୍ଦିର ପରିତ୍ୟାଗ କରିବା ଉଚିତ କାର୍ଯ୍ୟ ହୋଇ ନାହିଁ ? ଏହା କହି ସେଠାକୁ ଯିବାର ଇଚ୍ଛା ପ୍ରକାଶ କଲେ । ସଙ୍ଗୀୟ ମିତ୍ରମାନେ ଶୀଘ୍ର ଶୀଘ୍ର ତାହାଙ୍କୁ ମଦିନାକୁ ଘେନି ଆସିଲେ । ତାଙ୍କର ଶରୀର କ୍ରମେ କ୍ରମେ ଅବଶ ହୋଇପଡ଼ିଲା । ସ୍ୱର କ୍ଷୀଣ ହେଲା । ସେହି କ୍ଷୀଣ କଣ୍ଠରେ ପବିତ୍ର ସମାଧି ମନ୍ଦିରରେ ମଙ୍ଗଳମୟ ଜଗଦୀଶ୍ୱରଙ୍କର ନାମୋଚ୍ଚାରଣ କରିବାକୁ ଲାଗିଲେ । କ୍ରମରେ ବିଷର ଯନ୍ତ୍ରଣା କିଞ୍ଚିତ୍ ଲାଘବ ହେଲା । କିନ୍ତୁ କ୍ଷତ ଦିନକୁ ଦିନ ବୃଦ୍ଧି ହେବାକୁ ଲାଗିଲା । ତତ୍ ସଙ୍ଗେ ସଙ୍ଗେ ଜ୍ୱାଳା ଯନ୍ତ୍ରଣା ମଧ୍ୟ ବୃଦ୍ଧି ପାଇଲା । ହାସେନ୍‌ଙ୍କର ଚଳତ୍‌ଶକ୍ତିରହିତ ହେଲା । ଜ୍ୟେଷ୍ଠ ଭ୍ରାତାଙ୍କର ଈଦୃଶ ଶୋଚନୀୟ ଅବସ୍ଥା ଦର୍ଶନ କରି ଭ୍ରାତୃବତ୍ସଳ ହୋସେନ୍ ଅତିଶୟ ଉଦ୍‌ବିଗ୍ନ ହେଲେ । ସୁଚିକିତ୍ସା ଓ ସେବା ଶୁଶ୍ରୂଷା ନିମନ୍ତେ ତାହାଙ୍କୁ ସ୍ୱୀୟ ବାସଭବନକୁ ଘେନିଗଲେ ।

ହାସେନ୍ ଜାଏଦାଙ୍କର ଅଭିସନ୍ଧି ବିଶେଷ ରୂପେ ଜାଣି ପାରିଥିଲେ । ବର୍ତ୍ତମାନ ସେ ଅନ୍ତଃପୁରସ୍ଥ ସ୍ତ୍ରୀଲୋକମାନଙ୍କୁ ସନ୍ଦେହ କରିବାକୁ ଲାଗିଲେ । ଜାଏଦାଙ୍କୁ ଦେଖିଲେ ବର୍ତ୍ତମାନ ତାଙ୍କର ଶରୀର ଚମକି ଉଠେ । ପ୍ରଧାନ ମହିଷୀ ହାସେନ୍‌ବାନୁଙ୍କ ପରିଚର୍ଯ୍ୟାରେ ସେ ପ୍ରୀତ ହୋଇ ତାହାଙ୍କୁ ମନର ଭାବ ଆଭାସରେ ଜଣାଇ କହିଲେ, ''ମୋହର ଆହାରୀୟ ଓ ପାନୀୟ ଦ୍ରବ୍ୟ ସାବଧାନରେ ରଖିବ । ହାସେନ୍‌ବାନୁ ତଦବଧି ଅତ୍ୟନ୍ତ ସତର୍କ ହୋଇ ଆହାରୀୟ ସାମଗ୍ରୀ ବିଶେଷ ଯତ୍ନରେ ରଖିଲେ । ଉତ୍ତମରୂପେ ପରୀକ୍ଷା ନ କରି ସ୍ୱାମୀଙ୍କୁ କିଛି ଆହାର କରିବାକୁ ଦିଅନ୍ତି ନାହିଁ । ଜଳ ଯେଉଁ ପାତ୍ରରେ ଥାଏ ତାହାକୁ ମୁଖ ପରିଷ୍କାର ବସ୍ତ୍ରରେ ଆବୃତ କରି ମୋହର ଦ୍ୱାରା ମୁଦ୍ରାଙ୍କିତ କରି ରଖନ୍ତି ।

ଜାଏଦା ସମୟେ ସମୟେ ସ୍ୱାମୀଙ୍କୁ ଦେଖିବାକୁ ଆସନ୍ତି । ଏକ ସମୟରେ ମୟମୁନା ମଧ୍ୟ ହାସେନ୍‌ଙ୍କୁ

ଦେଖିବାକୁ ଆସିଲା । କିୟତକାଳ ଅପେକ୍ଷା କରି ଉଭୟେ ଜାଏଦାଙ୍କ ଗୃହକୁ ଫେରିଗଲେ । ''ଈଶ୍ୱର ଯାହାକୁ ରକ୍ଷା କରନ୍ତି କୌଣସିମତେ ତାହାର ବିନାଶ ନାହିଁ । ନତୁବା ବିଷପାନ କରି ମନୁଷ୍ୟ କିପରି ଜୀବିତ ଥାଏ ? ଜାଏଦା ହତାଶ ଚିତ୍ତରେ ଏହିକଥା କହିଲେ । ମୟମୁନା ପୁଣି ତାହାଙ୍କୁ ଉତ୍ସାହିତ କଲା । ଚେଷ୍ଟାର ଅସାଧ କିଛି ନାହିଁ । ଥରେ, ଦୁଇଥର, ତିନିଥର, ଯେତେଥରରେ କାର୍ଯ୍ୟୋଦ୍ଧାର କରିବା ଶ୍ରେୟଃ, ହତାଶ ହୁଅ ନାହିଁ । ଏହି କଥା କହି ମୟମୁନା କଟିଦେଶରୁ ଏକ କ୍ଷୁଦ୍ର ପୁଟୁଳୀ ବାହାର କରି ଜାଏଦାଙ୍କ ହସ୍ତରେ ପ୍ରଦାନ କଲା । ଏବଂ କହିଲା ଏ ବିଷ ଅତି ତୀକ୍ଷ୍ଣ । କୌଣସି ପ୍ରକାରେ ଏକ ବିନ୍ଦୁ ପେଟରେ ପଡ଼ିଲେ ଆଉ ରକ୍ଷା ନାହିଁ । ଜାଏଦା କହିଲେ, ହାସେନ୍ ଆଉ ମୋ ଗୃହକୁ ଆସିବେ ନାହିଁ । ହାସେନ୍‌ବାନୁ ପ୍ରଭୃତି ଯେପରି ସତର୍କ, ତହିଁରେ ଏହି ବିଷ ବ୍ୟବହାର ସୁଯୋଗ ବା କିପରି ହେବ ? ଅସତ୍‌ର ଅସତ୍ ବୁଦ୍ଧିର ଇୟତ୍ତା ନାହିଁ । ମୟମୁନା ଏହାର ମଧ ଉପାୟ ନିର୍ଦ୍ଧାରଣ କରି କହିଲା, ''ତୁମ୍ଭର ସେ ଘରକୁ ଯିବାର ନିଷେଧ ହୋଇ ନାହିଁ । ସର୍ବଦା ସେଠାକୁ ଯାତାୟାତ କର । ସୁଯୋଗ ମତେ ଜଳପାତ୍ରାଚ୍ଛାଦିତ ବସ୍ତ୍ରାବରଣର ଉପରେ ବିଷ ଘର୍ଷଣ କର । ଜଳ ଯେପରି ସେପରି ଥିବ, ବସ୍ତ୍ରର ସୂକ୍ଷ୍ମ ସୂକ୍ଷ୍ମ ଛିଦ୍ର ଦେଇ ବିଷକଣିକା ଜଳରେ ପଡ଼ି ମିଶିଯିବ । ସେହି ଜଳପାନ କଲେ ହାସେନ୍‌ଙ୍କର ଆଉ ନିସ୍ତାର ନ ଥିବ ।

ଏହି ରୂପେ ଉପଦିଷ୍ଟ ହୋଇ ଜାଏଦା ସେଦିନ ଘନ ଘନ ହାସେନ୍‌ଙ୍କକ କକ୍ଷକୁ ଯାତାୟାତ କଲେ । ଦିବା ଭାଗରେ କୌଣସି ସୁଯୋଗ ପାଇଲେ ନାହିଁ । ହାସେନ୍‌ବାନୁ ସ୍ୱାମୀଙ୍କର ଶଯ୍ୟା ପାର୍ଶ୍ୱରେ ବିଷଣ୍ଣ ବଦନରେ ବସି ସ୍ୱାମୀଙ୍କର ପରିଚର୍ଯ୍ୟା କରନ୍ତି । ତାଙ୍କର ପୀଡ଼ା ହେବା ଅବଧି ସେ ନିୟମିତ ରୂପେ ଈଶ୍ୱର ଉପାସନାଦି ମଧ କରିପାରନ୍ତି ନାହିଁ । ଜୟନାବ ହାସେନ୍‌ବାନୁଙ୍କର ଉପଦେଶ ଅନୁସାରେ ସ୍ୱାମୀଙ୍କ ସକାଶେ ଦିନରାତି ପରିଶ୍ରମ କରୁଅଛନ୍ତି । ବିନା ପ୍ରୟୋଜନରେ ତିଳାର୍ଦ୍ଧ କାଳ ମଧ ସ୍ୱାମୀଙ୍କର ପାଦତ୍ୟାଗ କରୁ ନାହାନ୍ତି । ଅଦ୍ୟ ହାସେନ୍‌ବାନୁ ନିଶୀଥ ସମୟରେ ଭଗବାନ୍‌ଙ୍କର ଅର୍ଚ୍ଚନା ସକାଶେ ଭଜନାଳୟକୁ ବାହାରିଲେ । ଗୃହସ୍ଥିତ ଅନ୍ୟାନ୍ୟ ସମସ୍ତ ନିଦ୍ରିତ, ସ୍ୱାମୀ ପଦବକ୍ଷରେ ଧାରଣ କରି ଜୟନାବ ତାଙ୍କର ସେବା କରୁ କରୁ ନିଦ୍ରାଭିଭୂତ ହୋଇ ପଡ଼ିଅଛନ୍ତି । ଜାଏଦା ଯେଉଁ ସୁଯୋଗର ଅନୁସନ୍ଧାନ କରୁଥିଲେ, ସେହି ସୁବିଧାର ସମୟ ଉପସ୍ଥିତ ହେଲା, ସେ ଅତି ଧୀରେ ଧୀରେ ଗୃହରେ ପ୍ରବେଶ କରି ଜଳପାତ୍ରର ମୁଖାବୃତ ବସ୍ତ୍ର ଉପରେ ବିଷଚୂର୍ଣ୍ଣ ଘର୍ଷଣ କରିବାକୁ ଲାଗିଲେ । ଅତି ସହଜରେ ବିଷ ଚୂର୍ଣ୍ଣଗୁଡ଼ିକ ଜଳରେ ପତିତ ହେଲା । ଭୟବିହ୍ୱଳ ଚିତ୍ତରେ ଜାଏଦା ଉକ୍ତ ଗୃହରୁ ବହିର୍ଗତ ହୋଇ ନିଜ କକ୍ଷକୁ ବାହାରିଲେ ।

ଜାଏଦା ବ୍ୟସ୍ତ ହୋଇ ବାହାରିବା ସମୟରେ ଦ୍ୱାରରେ ଆଘାତ ଲାଗି ସାମାନ୍ୟ ଶବ୍ଦ ହେଲା । ସେହି ଶବ୍ଦରେ ହାସେନ୍‌ଙ୍କର ନିଦ୍ରାଭଙ୍ଗ ହେଲା । କିନ୍ତୁ ଚକ୍ଷୁ ଉନ୍ମୀଳ କରି ଦେଖିଲେ ପ୍ରଦୀପ ପୂର୍ବବତ୍ ଜଳୁଅଛି, ଯେଉଁଠାରେ ଯାହାଥିଲା ସମସ୍ତ ଠିକ୍ ଅଛି । ଉକ୍ତ ଶବ୍ଦର ପ୍ରକୃତ କାରଣ କିଛି ନିର୍ଣ୍ଣୟ କରିପାରିଲେ ନାହିଁ । ଜାଗ୍ରତ ହୋଇ ହାସେନ୍ ଅତ୍ୟନ୍ତ ତୃଷା ବୋଧ କଲେ । ଜୟନାବଙ୍କୁ ଜଳ ମାଗିଲେ । ଜୟନାବ ଅଜୁ କରିବାର ଜଳ ଆଣିବାକୁ ବାହାରି ଯାଇଥିଲେ । ଏହି ସମୟରେ ହାସେନ୍‌ବାନୁ ଗୃହରେ ପ୍ରବେଶ କରି ସ୍ୱାମୀଙ୍କୁ ଜାଗ୍ରତ ଦେଖି ତାଙ୍କର ଶାରୀରିକ ଅବସ୍ଥା କିପରି ପ୍ରଶ୍ନ କଲେ । ଇତ୍ୟବସରେ ହାସେନ୍ କହିଲେ ''ଏହିମାତ୍ର ସ୍ୱପ୍ନରେ ଦେଖିଲି, ଯେପରି ପିତା, ମାତା, ମାତାମହ ମୋହର ଅପେକ୍ଷାରେ ସ୍ୱର୍ଗଦ୍ୱାରରେ ଦଣ୍ଡାୟମାନ ଅଛନ୍ତି ।'' ଏହି କଥା କହି ତାଙ୍କ ନିକଟରେ ମଧ ଜଳପ୍ରାର୍ଥନା କଲେ । ସ୍ୱପ୍ନବୃତ୍ତାନ୍ତ ଶ୍ରବଣ କରି ହାସେନ୍‌ବାନୁ ଅତ୍ୟନ୍ତ ଅସ୍ଥିର ହେଲେ, ତାଙ୍କର ବୁଦ୍ଧି ବୃତ୍ତି ଲୋପ ହେଲା, ମସ୍ତକ ବିଘୂର୍ଣ୍ଣିତ ହେଲା । ପାତ୍ରରୁ ଜଳଆଣି ପରୀକ୍ଷା ନ କରି ସ୍ୱାମୀଙ୍କ ହସ୍ତରେ ପ୍ରଦାନ କଲେ । ହାସେନ୍ ଜଳପାନ କରିବା ମାତ୍ରେ ବିଷରେ ତାଙ୍କର ସର୍ବ ଶରୀର ଆଚ୍ଛନ୍ନ ହେଲା । ସମସ୍ତ ଶରୀର ବିଷଜ୍ୱାଳାରେ ଦଗ୍ଧୀଭୂତ ହେବାକୁ ଲାଗିଲା । ପରିଜନ ବର୍ଗ ସମସ୍ତେ ହାହାକାର କରିବାକୁ ଲାଗିଲେ । ହୋସେନ୍ ଭ୍ରାତାଙ୍କର ଈଦୃଶ ଘଟଣା ଦେଖି ଶୋକ ଓ ଦୁଃଖରେ ବିହ୍ୱଳ ହୋଇ ପାତ୍ରାବଶିଷ୍ଟ ଜଳପାନ କରିବାକୁ ଉଦ୍ୟତ ହେଲେ । ହାସେନ୍ ସେହି ମୁମୂର୍ଷୁ ଅବସ୍ଥାରେ ମଧ ଭ୍ରାତାଙ୍କର ହସ୍ତରୁ ଭାଣ୍ଡ ଗ୍ରହଣ କରି ଦୂରରେ ନିକ୍ଷେପ କଲେ । ତାହା ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ହୋସେନ୍ ଅତି କ୍ରୋଧଭରେ କହିଲେ ମୋହର ପରମାରାଧ ଭ୍ରାତାଙ୍କର ପ୍ରାଣ ଯେ ନଷ୍ଟ କରିଅଛି, ମୁଁ ତାହାର ପ୍ରତିଶୋଧ ନେବି ।'' ତପ୍‌ରେ ହାସେନ୍‌ଙ୍କୁ ସମ୍ବୋଧନ କରି କହିଲେ, ''ଭାଇ ! କହ କିଏ ତୁମର ପ୍ରାଣ ନଷ୍ଟ କଲା ? ମୋର ହୃଦୟ ଏଡ଼େ କଠୋର, ମୁଁ କି ଏଡ଼େ ଭ୍ରାତୃପ୍ରେମ ବିବର୍ଜ୍ଜିତ ଯେ ଧମନୀରେ ରକ୍ତ ପ୍ରବାହ ଥାଉଁ ଥାଉଁ ଭାତୃହତ୍ୟାର ପ୍ରତିଶୋଧ ନେବି ନାହିଁ ? ଭାଇ ଶୀଘ୍ର ସେହି ପାପାତ୍ମାର ନାମ କହ ।''

ହାସେନ୍ ପୂର୍ବାବଧି ବିଷକାଣ୍ଡ ଗୋପନ କରି ଥିଲେ । ଜାଏଦାର କାହିଁକି ଯେ ତାଙ୍କ ସହିତ ଏପରି ବ୍ୟବହାର କଲେ, କିଛିମାତ୍ର ବୁଝିପାରୁ ନାହାନ୍ତି । ତଥାପି ତାଙ୍କ ପ୍ରେମର ବ୍ୟତ୍ୟୟ ନାହିଁ । ତାଙ୍କ ପ୍ରତି ହାସେନ୍ କ୍ରୋଧ, ହିଂସା, ବିଦ୍ୱେଷ କିଛି କଲେ ନାହିଁ । ବରଂ ତାଙ୍କ ଆତ୍ମାର ସଦ୍‌ଗତି ନିମିତ୍ତ ଈଶ୍ୱରଙ୍କ ସମୀପରେ ପ୍ରାର୍ଥନା କଲେ । ଭ୍ରାତାଙ୍କୁ କହିଲେ ଭାଇ, ମୁଁ ମୋର ବିଷଦାତାଙ୍କୁ ଚିହ୍ନିଅଛି, ଈଶ୍ୱର ତାହାର ବିଚାର କରିବେ । ମୁଁ ତାହାର ନାମ ପ୍ରକାଶ କରିବି ନାହିଁ । କିନ୍ତୁ ତୁମେ ପ୍ରତିଜ୍ଞା କରି କୁହ, ସମୟରେ ତାହାର ନାମ ପ୍ରକାଶ ହେଲେ, ମଧ ତୁମେ ତା'ପ୍ରତି କୌଣସି ଦଣ୍ଡବିଧାନ କରିବ ନାହିଁ । ମୋହର ଶରୀର ଅବସନ୍ନ ବୋଧ ହେଉଅଛି, ମୃତ୍ୟୁ ନିକଟ । ପୁତ୍ର କାସେମ୍‌ଙ୍କ ତୁମ୍ଭ ହସ୍ତରେ ଅର୍ପଣ କଲି । ବଡ଼ ଇଚ୍ଛା ଥିଲା ତୁମ୍ଭର କନ୍ୟା ସଖିନା ସହିତ କାସେମ୍‌ର ବିବାହ ଦେବି । କିନ୍ତୁ ସେ ବାସନା ପୂର୍ଣ୍ଣ ହେଲା ନାହିଁ । ଅନୁରୋଧ କରେ ଏହାର ବିବାହ କ୍ରିୟା ଯେପରି ସଖିନା ସହିତ ସମ୍ପନ୍ନ ହୁଏ ।

ମୁମୂର୍ଷୁ ହାସେନ୍ ଯନ୍ତ୍ରଣାରେ ଅସ୍ଥିର, ସେ ହୋସେନ୍‌ଙ୍କୁ ସମ୍ବୋଧନ କରି କହିଲେ, ଭାଇ ! ତୁମ୍ଭେମାନେ ସମସ୍ତେ ବାହାରକୁ ଯାଅ, ନିର୍ଜନରେ ଜାଏଦାଙ୍କ ସହିତ ମୋହର ଗୋଟିଏ କଥା ଅଛି । ସମସ୍ତେ ବାହାରକୁ ବାହାରିଗଲେ । ହାସେନ୍ ପ୍ରେମଭରରେ ଧୀରେ ଧୀରେ ଜାଏଦାଙ୍କୁ କହିଲେ ''ଜାଏଦା ! ତୁମ୍ଭଙ୍କୁ ବଡ଼ ବିଶ୍ୱାସ କରୁଥିଲି, ବଡ଼ ସ୍ନେହ କରୁଥିଲି, ତାହାର ଫଳ ହାତେ ହାତେ ଦେଲ, ଏଥିରେ ମୁଁ ଦୁଃଖିତ ହୋଇ ନାହିଁ । ମୁଁ ତୁମ୍ଭଙ୍କୁ କ୍ଷମା ଦେଲି । ପ୍ରାର୍ଥନା କରୁଅଛି, ତୁମ୍ଭେ ସୁଖରେ ଥାଅ ।'' ପ୍ରେମିକର ହୃଦୟ କି ମହାନ୍ । ହାସେନ୍ ତୁମେ ହିଁ ପ୍ରକୃତ ପ୍ରେମିକ ।

ପତି ବାକ୍ୟ ଶ୍ରବଣ କରି ଜାଏଦା ଅଧୋବଦନରେ ବସି ରହିଲେ । ସମସ୍ତେ ପୁନରାୟ ଗୃହରେ ପ୍ରବେଶ କଲେ । ହାସେନ୍ ଜଣ ଜଣ କରି ସମସ୍ତଙ୍କଠାରୁ ବିଦାୟ ଗ୍ରହଣପୂର୍ବକ ସର୍ବଶେଷରେ ଭ୍ରାତାଙ୍କୁ ସମ୍ବୋଧନ କରି କହିଲେ, ''ଆସ ଭାଇ, ଜନ୍ମକ ସକାଶେ ପ୍ରେମାଳିଙ୍ଗନ କରେ ।'' ଏହା କହି ଅନୁଜଙ୍କର ଗଳା ଧରି ଅବିକଳ କ୍ରନ୍ଦନ କରି କରି କହିଲେ, ''ଭାଇ, ସମୟ ହୋଇଅଛି, ଏବେ ବିଦାୟ ଦିଅ ।'' ଅନନ୍ତର ଏକ ମେବା ଦ୍ୱିତୀୟଂ ଈଶ୍ୱରଙ୍କର ନାମ କରି କରି ହାସେନ୍ ଅପରଧାମକୁ ଯାତ୍ରା କଲେ ।

ହାସେନ୍ ବିୟୋଗରେ ପରିବାର ବର୍ଗ ଶୋକ ବିହ୍ୱଳ ହୋଇ ହାହାକାର କରିବାକୁ ଲାଗିଲେ । ମଦିନା ନଗର ହାସେନ୍ ସୂର୍ଯ୍ୟ ଅସ୍ତମିତ ହେବାରୁ ଏକାବେଳକେ ତମସାଚ୍ଛନ୍ନ ହେଲା ମଦିନାବାସୀମାନେ ''ହାୟ ହାସେନ୍ !'' ହାୟ ହାସେନ୍ !'' ହାୟ ହାସେନ୍ !'' ଇତ୍ୟାକାର ରବ କରି କରାଘାତରେ ବକ୍ଷସ୍ଥଳ କ୍ଷୀତ କରି ପକାଇଲେ । ଏହି ବିଷାଦମୟ ଦୃଶ୍ୟ ଅନୁକରଣ କରି ଅଦ୍ୟପର୍ଯ୍ୟନ୍ତ ମୁସଲ୍‌ମାନମାନେ ମହରମ୍ ପର୍ବ ସମୟରେ 'ବକ୍ଷ ତାଡ଼ନ' କରିଥାନ୍ତି ।

ହାସେନ୍‌ଙ୍କର ମୃତ୍ୟୁର ଅବ୍ୟବହିତ ପରେ ତାଙ୍କର ମୃତ୍ୟୁ ସମ୍ବନ୍ଧରେ ନାନା ଜନରବ ପ୍ରଚାରିତ ହେଲା । ତାଙ୍କର ମୃତ୍ୟୁ ଯେ ଅସ୍ୱାଭାବିକ ସେ ସମ୍ବନ୍ଧରେ କାହାରି କିଛି ମାତ୍ର ସନ୍ଦେହ ରହିଲା ନାହିଁ । ଜାଏଦା ବିଷ ପ୍ରୟୋଗ କରି କିପରି ପ୍ରିୟତମ ସ୍ୱାମୀର ପ୍ରାଣ ବିନାଶ କଲା । ଏପରି ପାପିନୀର ସ୍ଥାନ କେଉଁଠାରେ ହେବ ? ପାପାଗାର ନରକ ମଧ ଏପରି ପାପୀୟସୀର ଉପସ୍ଥିତିରେ କଳଙ୍କ ହେବ । ଜନସାଧାରଣ ଏହିପରି ଆଲୋଚନା କରିବାକୁ ଲାଗିଲେ । ଜାଏଦା ଲଜ୍ଜାଧୀନ ହୋଇ କେତେକ ଦିବସ ହାସେନ୍ ଆଶ୍ରମରେ ଥିଲେ । କିନ୍ତୁ ଏଜିଦ୍‌ର ପୁରସ୍କାର ସାମ୍ରାଜ୍ଞୀ ହେବା ଇତ୍ୟାଦି ବିଷୟ ହିଁ ତାହାର ଚିନ୍ତାର ବିଷୟ ହେଲା । କ୍ରମେ କ୍ରମେ ଜନରବ ଦ୍ରୁତଗତିରେ ପ୍ରଚାରିତ ହେବାକୁ ଲାଗିଲା । ପାପକାର୍ଯ୍ୟ କଦାପି ଗୋପନ ରହଇ ନାହିଁ । ଜାଏଦା ଅତି ସାବଧାନରେ ଓ ସଂଗୋପନରେ ଯାହା କରିଥିଲା, ତାହା ସମସ୍ତେ ଜାଣିପାରିଲେ । ଜାଏଦା ହାସେନ୍‌ପୁରୀ ପରିତ୍ୟାଗ କରିବା ସକାଶେ ପୂର୍ବାବଧି ଉତ୍ସୁକ । ଏ ସ୍ଥାନରେ ରହିବା ବର୍ତ୍ତମାନ ନିରାପଦ ମଧ ନୁହେଁ । ସୁତରାଂ ମୟମୁନା ସହିତ ପରାମର୍ଶ କରି ରାତ୍ରି ଯୋଗେ ଦମସ୍କ ଯାତ୍ରା କଲା ।

ସମୟର କି ଅଲୌକିକ ଶକ୍ତି ।

ଯେଉଁ ଶୋକ ଲୋକଙ୍କୁ ଉନ୍ମତ୍ତ କରୁଅଛି, ଏବଂ ସାନ୍ତ୍ୱନାବାକ୍ୟ ଦ୍ୱାରା ଯେଉଁ ଶୋକାଗ୍ନି ପ୍ରଶମିତ ହେଉ ନାହିଁ, ସମୟ ସ୍ରୋତରେ ସେହି ଶୋକ ଆପେ ନିର୍ବାପିତ ହେଉଅଛି । ହୋସେନ୍‌ଙ୍କର ଶୋକ କିଞ୍ଚିତ୍ ଅପନୋଦିତ ହେଲା । ସେ ତାଙ୍କର ଭୃତ୍ୟବର୍ଗଙ୍କୁ ସାନ୍ତ୍ୱନା ବାକ୍ୟରେ ପ୍ରକୃତିସ୍ଥ କରି ଈଶ୍ୱରଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ହାସେନ୍ ବଧ ସଂକ୍ରାନ୍ତ କଥା ତାଙ୍କର କର୍ଣ୍ଣରେ ମଧ ପ୍ରବିଷ୍ଟ ହେଲା । ହାସେନ୍‌ଙ୍କ ନିକଟରେ ସେ ପ୍ରତିଜ୍ଞାବଦ୍ଧ ଥିଲେ ଯେ, ବିଷର ଅନୁସନ୍ଧାନ ପାଇଲେ ମଧ ତାହାର ଶାସ୍ତି ବିଧାନ କରିବେ ନାହିଁ । ସୁତରାଂ

ଜାଏଦାର ଅନୁସନ୍ଧାନ ଆଉ କଲେ ନାହିଁ । ସ୍ୱୟଂ ପ୍ରତିଜ୍ଞା ପାଳନ କଲେ ।

ଜାଏଦା ଓ ମୟମୁନା ଯଥା ସମୟରେ ଦମସ୍କ ନଗରରେ ଉପସ୍ଥିତ ହେଲେ । ଚିରଶତ୍ରୁ ହାସେନଙ୍କର ବଧବାର୍ତ୍ତା ଶ୍ରବଣରେ ଏଜିଦ୍ ମହାନନ୍ଦରେ ଉନ୍ମତ୍ତ ହୋଇ ଅନବରତ ସୁରାପାନ କରୁଅଛନ୍ତି । କିନ୍ତୁ ମାନବୀୟ ମନର କି ଆଶ୍ଚର୍ଯ୍ୟ ପରିବର୍ତ୍ତନ । ହଠାତ୍ ଏଜିଦ୍‌ଙ୍କ ମନରେ ଅନୁତାପାଗ୍ନି ପ୍ରଜ୍ୱଳିତ ହେଲା । ପୂର୍ବାପର ସମସ୍ତ ଘଟଣାବଳୀ ସ୍ମରଣ କରି ସେ ସ୍ତମ୍ଭିତ ହେଲେ । ଚିରଶତ୍ରୁ ବିନାଶର ପ୍ରଧାନ ସାହାଯ୍ୟକାରିଣୀମାନଙ୍କ ସହିତ ସେଦିନ ସାକ୍ଷାତ୍ କଲେ ନାହିଁ । ପରଦିନ ସାକ୍ଷାତ୍ କରିବେ ବୋଲି ଅଦ୍ୟ ବିଶେଷ ମର୍ଯ୍ୟାଦା ସହିତ ସେମାନଙ୍କର ତତ୍ତ୍ୱାବଧାନ ଆଦେଶ ଦେଲେ ।

ଯେପରି ଘୋରକାଳ ମେଘାଭ୍ୟାନ୍ତରରେ ବିଦ୍ୟୁତ୍ କ୍ଷଣଦୃଷ୍ଟ ହୋଇ ବିଲୁପ୍ତ ହୁଏ ତଦ୍ରୂପ ଏଜିଦ୍‌ଙ୍କ ଅନ୍ତରରେ ଅନୁତାପାଗ୍ନି ପ୍ରଜ୍ୱଳିତ ହୋଇ ପର ମୁହୂର୍ତ୍ତରେ ନିର୍ବାପିତ ହେଲା । ପୁଣି ସୁରା ସ୍ରୋତରେ ଶରୀର ଭସାଇ ଦେଲେ । ପୁନରାୟ ଏଜିଦ୍, ସ୍ୱୀୟମୂର୍ତ୍ତି ଧାରଣ କଲେ । ନିଶାକୁ ଆଶ୍ରୟ କରି ନିଦ୍ରାଦେବୀ କ୍ରମେ କ୍ରମେ ତାହାଙ୍କର ଅଧିକାର ଜ୍ଞାପନ କଲେ ।

ଏଜିଦ୍ ପରଦିନ ପ୍ରଭାତରେ ଗାତ୍ରୋତ୍ଥାନ କରି ଜାଏଦା ଓ ମୟମୁନାକୁ ଡକାଇଲେ । ରାଜଦରବାରରେ ଯଥୋଚିତ ମର୍ଯ୍ୟାଦାସହ ସେମାନଙ୍କର ଅଭ୍ୟର୍ଥନା କରି ନିଜ ଅଙ୍ଗୀକାର ପୂର୍ଣ୍ଣ କରିବା ସକାଶେ ପ୍ରତିଶ୍ରୁତ ଅର୍ଥ ଦେବାର ଆଦେଶ କଲେ । ଧନଭଣ୍ଡାରରୁ ଅର୍ଥ ଆଣି ଦିଆଗଲା । ପାପ ଯେ କି, ଘୃଣିତ ବସ୍ତୁ, ବାକ୍ୟରେ ତାହା ପ୍ରକାଶ କରିବା ସାଧ ନାହିଁ । ଯେଉଁ ଏଜିଦ୍ ହାସେନ୍ ବଧ ନିମନ୍ତେ ସର୍ବସ୍ୱ ପଣକରି ବସିଥିଲେ, ଯାହାଙ୍କର ଚିରଶତ୍ରୁ ହନ୍ତା ତାଙ୍କ ନିକଟରେ ପୂର୍ବାହ ହେବେ ବୋଲି ବିଶ୍ୱାସ ହେଉଥିଲା, ସେହି ପାପାତ୍ମା ଏଜିଦ୍ ମଧ ଜାଏଦା ଓ ମୟମୁନାର ଘୃଣିତ ପାପକାର୍ଯ୍ୟ ସମର୍ଥନ କରିପାରିଲେ ନାହିଁ । ତାହାଙ୍କର କଳୁଷିତ ହୃଦୟ ମଧ ବିଶ୍ୱାସଘାତିନୀ ସ୍ୱାମୀବଧ-କାରିଣୀର କାର୍ଯ୍ୟରେ ରୋଷାଗ୍ନିରେ ପରିପୂର୍ଣ୍ଣ ହେଲା, ସେ ସ୍ୱହସ୍ତରେ ସଭା ମଧରେ ଜାଏଦାକୁ ଦ୍ୱିଖଣ୍ଡିତ କଲେ । ଏବଂ ମୟମୁନାକୁ ମଧ ପ୍ରାଣଦଣ୍ଡର ଆଦେଶ ଦେଲେ । ସେମାନେ ପାପର ଫଳ ହାତେ ହାତେ ପାଇ କର୍ମାନୁସାରେ ପୁରସ୍କାର ଲାଭ କଲେ ।

ହାସେନ୍‌ଙ୍କର ପ୍ରାଣ ସଂହାର ହେଲା । ଏଜିଦ୍‌ଙ୍କର ପ୍ରଧାନ ଶତ୍ରୁର ପତନ ହେଲା । କିନ୍ତୁ ଏଜିଦ୍‌ଙ୍କର ଆଶାପୂର୍ଣ୍ଣ ହେଲା ନାହିଁ । ଯାହା ସକାଶେ ସର୍ବସ୍ୱପଣ ପିତୃଆଜ୍ଞା ଲଙ୍ଘନ ସେହି ଜୟନାବ ରତ୍ନ ଲାଭ ହେଲା ନାହିଁ, ହୋସେନ୍ ବର୍ତ୍ତମାନ ଥାଉ ଥାଉ ସେ ବାଞ୍ଛା ପୂର୍ଣ୍ଣ ହେବାର ସମ୍ଭାବନା ବା କଅଣ ? ସୁତରାଂ ଏଜିଦ୍ ନୂତନ ସଂଗ୍ରାମରେ ପ୍ରବୃତ୍ତ ହେଲେ । ହୋସେନ୍ ବିନାଶ ବର୍ତ୍ତମାନ ପ୍ରଧାନ ଉଦ୍ଦେଶ୍ୟ ହେଲା ।

ମାରିୟାନ୍ ଛଦ୍ମବେଶ ପରିତ୍ୟାଗ ପୂର୍ବକ ମଦିନାର ସମୀପବର୍ତ୍ତୀ ସ୍ଥାନରେ ଶିବିର ସନ୍ନିବେଶ କରି ଏଜିଦ୍‌ଙ୍କ ଆଜ୍ଞାର ପ୍ରତୀକ୍ଷା କରୁଥିଲେ । ଶୀଘ୍ର କୌଣସି ଆଦେଶ ନ ପାଇ ସେ ଉଦ୍‌ବିଗ୍ନ ମନରେ ସ୍ୱୟଂ ଦମସ୍କ ନଗରକୁ ଯାଇ ଏଜିଦ୍‌ଙ୍କ ସହିତ ସାକ୍ଷାତ୍ କଲେ । ଏଜିଦ୍ ହାସେନ୍ ବଧ ନିମନ୍ତେ ତାହାଙ୍କୁ ବିଶେଷ ପ୍ରଶଂସା କରି ହୋସେନ୍ ବଧ କାର୍ଯ୍ୟରେ ବ୍ରତୀ ହେବାକୁ ଆଦେଶ କଲେ । ହୋସେନ୍ କାସେମ୍ ପ୍ରଭୃତି ବିଖ୍ୟାତ ବୀର କିନ୍ତୁ ଭ୍ରାତୃ ଶୋକରେ ଓ ପିତୃ ବିୟୋଗଜନିତ ଯନ୍ତ୍ରଣା ସେମାନଙ୍କୁ ଏକପ୍ରକାର ଅକର୍ମଣ୍ୟ କରିଅଛି, ଏହି ଶୋକ ଅପନୋଦିତ ହେଲେ ସେହି ପୁରୁଷ ସିଂହ ଦ୍ୱୟ ଅବଶ୍ୟ ହିଁ ପ୍ରତିଶୋଧ ଗ୍ରହଣ କରିବେ । ସୁତରାଂ ଯେତେ ଶୀଘ୍ର ହୁଏ ହାସେନ୍‌ଙ୍କୁ ବଧ କରିବାର ଉଦ୍ୟୋଗରେ ବିଳମ୍ବ କର ନାହିଁ । ଏହା କହି ମାରିୟାନ୍‌ଙ୍କୁ ପୁନରାୟ ମଦିନାକୁ ପ୍ରେରଣ କଲେ ।

କାରବାଲାର ଏକ ପାର୍ଶ୍ୱରେ ଘୋର ଅରଣ୍ୟ ସମ୍ମୁଖରେ ବିସ୍ତୃତ ପ୍ରାନ୍ତର । ଜୀବଜନ୍ତୁର କୌଣସି ନିଦର୍ଶନ ନାହିଁ । ଏହି ବିସ୍ତୀର୍ଣ୍ଣ ମରୁଭୂମି ଫେରାତ କୂଳରେ ଅବସ୍ଥିତ । ହୋସେନ୍ ଏହି ସ୍ଥାନରେ ଶିବିର ସନ୍ନିବେଶ କରିବାକୁ ଆଜ୍ଞା ଦେଲେ । ଶିବିର ସନ୍ନିବେଶ କରି ସମସ୍ତେ ଯଥାସମ୍ଭବ ବିଶ୍ରାମ କରିବାକୁ ଲାଗିଲେ ।

ଏକେ ମରୁଭୂମି, ତହିଁରେ ପଥଶ୍ରମରେ କ୍ଳାନ୍ତ ସମସ୍ତେ ପିପାସିତ, ସଙ୍ଗରେ ଯେଉଁ ଜଳ ଆସିଥିଲା, ତାହା ମଧ ପ୍ରାୟ ନିଃଶେଷିତ ହୋଇଅଛି । ଫେରାତ ନଦୀ କାରବାଲାର ସମୀପବର୍ତ୍ତୀ ହୋସେନ୍ ଏହା ଜାଣିଥିଲେ, କିନ୍ତୁ ସେ ସ୍ଥାନର କେଉଁ ଦିଗରେ ପ୍ରବାହିତ ତାହା ଜ୍ଞାତ ନ ଥିଲେ । ଦାସମାନେ ଅନୁସନ୍ଧାନ କରୁ କରୁ ପଶ୍ଚିମ ଦିଗରେ ସ୍ୱଚ୍ଛ ପ୍ରବାହିନୀ ଫେରାତ ନଦୀର ପୂର୍ବପାର ଅତି ସତର୍କ ଭାବରେ ରକ୍ଷା କରୁଥିଲେ । ସୁତରାଂ ପିପାସାର ଦାସମାନେ ଜଳ ଆନୟନ କରିବାର ଦୂରେ ଥାଉ, ଏକ ବିନ୍ଦୁ ଜଳ ପାନ କରି ତୃଷା ନିବୃତ୍ତି ମଧ କରିପାରିଲେ ନାହିଁ । ସ୍ୱଚ୍ଛଜଳ ସନ୍ଦର୍ଶନ କରି ବର୍ଦ୍ଧିତ

ପିପାସାଯୁକ୍ତ କଣ୍ଠରେ ଭଗ୍ନ ହୃଦୟରେ କାରବାଲ୍ୟରେ ଉପସ୍ଥିତ ହୋଇ ଯଥାଯଥ ବୃତ୍ତାନ୍ତ ହୋସେନ୍‌ଙ୍କୁ ଜଣାଇଲେ ।

ହୋସେନ୍ ଏହି ବାର୍ତ୍ତା ଶ୍ରବଣ କରି ଅତି ବ୍ୟାକୁଳ ହେଲେ । ଖାଦ୍ୟାଭାବରେ କ୍ଷଣକାଳ ଜୀବନଧାରଣ କରିବା ସମ୍ଭବ କିନ୍ତୁ ପିପାସା ଯେ ମୁହୂର୍ତ୍ତକାଳ ମଧ ସହ୍ୟ ହୁଅଇ ନାହିଁ । ସଙ୍ଗରେ ଅନେକ ଶିଶୁ ସନ୍ତାନ ଅଛନ୍ତି, ସେମାନଙ୍କର ବା କି ଉପାୟ ହେବ ଷାଠିଏ ହଜାର ଲୋକର ଜଳାଭାବ ସାମାନ୍ୟ ବିଷୟ ନୁହେଁ । କିପରି ଜଳକଷ୍ଟ ଦୂର କରିବେ । ହୋସେନ୍ ଏକ ମନରେ ତାହା ହିଁ ଚିନ୍ତା କରିବାକୁ ଲାଗିଲେ ।

କ୍ରମରେ ପିପାସାରେ ଅସ୍ଥିର ହୋଇ ସମସ୍ତେ ହୋସେନ୍‌ଙ୍କ ନିକଟରେ ଉପସ୍ଥିତ ହେବାକୁ ଆରମ୍ଭ କଲେ । ଶୁଷ୍କ କଣ୍ଠରେ ଅନେକ ଛଟପଟ ହୋଇ ପ୍ରାଣ ବିସର୍ଜନ କରିବାକୁ ଲାଗିଲେ । ହୋସେନ୍ ଅନନ୍ୟୋପାୟ ହୋଇ ସମସ୍ତଙ୍କୁ କହିଲେ ଯେ, ବର୍ତ୍ତମାନ ଏକ ବିନ୍ଦୁ ମଧ ଜଳପ୍ରାପ୍ତିର ପ୍ରତ୍ୟାଶା ନାହିଁ । ସେହି ଅନନ୍ତ ପ୍ରସ୍ରବଣ ଭଗବାନ୍‌ଙ୍କର ପ୍ରେମବାରି ପାନ କରି ହେଦ ମନ ଶୀତଳ କର । ବର୍ତ୍ତମାନ ପ୍ରାଣାନ୍ତ ହେଲେ ସୁଦ୍ଧା ପରକାଳରେ ଶୀତଳ ହୋଇପାରିବ । ଈଶ୍ୱରଙ୍କର ନାମାମୃତ ପାନ ଭିନ୍ନ ବର୍ତ୍ତମାନ ଆଉ ଉପାୟ ନାହିଁ । ସମସ୍ତଙ୍କୁ ଏହି ଉପଦେଶ ଦେଲେ । ସେମାନେ ସ୍ୱ ସ୍ୱ ଶିବିରକୁ ଗମନ କରି ନିର୍ଦ୍ଦିଷ୍ଟ ମନରେ ଭଗବାନ୍‌ଙ୍କ ପୂଜାରେ ନିଯୁକ୍ତ ରହିଲେ ।

ପରଦିନ ପ୍ରାତଃକାଳରେ ସର୍ବତ୍ର ଏକ ହାହାକାର ଉଠିଲା । ଆଉ ସହ୍ୟ ହେଉ ନାହିଁ । ତୃଷ୍ଣାରେ ପ୍ରାଣଗଲା । ଏହିପରି ଭୀଷଣ ଚିତ୍କାର ଚତୁର୍ଦ୍ଦିଗରୁ ଶୂନ୍ୟପଥକୁ ଉତ୍‌ଥିତ ହେବାକୁ ଲାଗିଲା । ସେହି ଆର୍ତ୍ତନାଦ ଶ୍ରବଣକରି ହୋସେନ୍ ଆଉ ସୁସ୍ଥିର ରହିପାରିଲେ ନାହିଁ । ଉପାସନାରହିତ କରି ସମସ୍ତଙ୍କୁ ସାନ୍ତ୍ୱନା କରିବାକୁ ବାହାରିଲେ । କନ୍ୟା ପୁତ୍ର ଓ ଛୋଟ ଛୋଟ ବାଳକ ବାଳିକାମାନେ ଆସି ଏକ ବିନ୍ଦୁ ସଲିଳ ସକାଶେ ତାହାଙ୍କୁ ବେଷ୍ଟନ କରି ଦଣ୍ଡାୟମାନ ହେଲେ । ହୋସେନ୍‌ଙ୍କର ସ୍ତ୍ରୀ ସାହେରବାନୁ ଦୁଗ୍ଧପୋଷ୍ୟ ଶିଶୁ ସନ୍ତାନଟିକୁ କ୍ରୋଡ଼ରେ ନେଇ କ୍ରନ୍ଦନ କରି କରି କହିଲେ, ''ଅଦ୍ୟ ସାତ ଦିନ ହେଲା, ଏକ ବିନ୍ଦୁ ଜଳପାନ କରି ନାହିଁ । ତହିଁ ହେତୁରୁ ସ୍ତନର ଦୁଗ୍ଧ ଏକାବେଳକେ ଶୁଷ୍କ ହୋଇଯାଇଅଛି, ଏହି ସମୟରେ ଏହାର କଣ୍ଠରେ ଏକ ବିନ୍ଦୁ ଜଳ ଦେଇପାରିଲେ, ବୋଧହୁଏ ବଞ୍ଚି ଯାଇପାରିବ । ଅତଏବ ଏହାର ଜୀବନରକ୍ଷା ସକାଶେ ଯଦି ସ୍ୱୟଂ ଯାଇ ଏକବିନ୍ଦୁ ଜଳ ଆଣିପାର ତେବେ ଅନ୍ତତଃ ଗୋଟିଏ ପ୍ରାଣ କ୍ଷଣକାଳ ନିମନ୍ତେ ରକ୍ଷା ହେବ । ଅବଶେଷରେ ଜଳ ପିପାସାରେ ଶିଶୁଟି ପ୍ରାଣତ୍ୟାଗ କରିବ । ଏହା କିପରି ସହ୍ୟ କରି ରହିବି ।''

ହୋସେନ୍ ଏହିପରି କାତରୋକ୍ତି ଶ୍ରବଣ କରି ଶିଶୁ ସନ୍ତାନଟିକୁ କ୍ରୋଡ଼ରେ ଧରି ଫେରାତ ନଦୀ କୂଳକୁ ଗଲେ । ପାର୍ଥିବ ପଦାର୍ଥ ସକାଶେ ଜୀବନରେ କେବେ ସୁଦ୍ଧା ପ୍ରାର୍ଥନା କରି ନ ଥିଲେ । ତଥାପି ହୋସେନ୍ ଏଜିଦ୍‌ଙ୍କର ସୈନ୍ୟମାନଙ୍କୁ ସମ୍ବୋଧନ କରି କହିଲେ ''ତୁମ୍ଭମାନଙ୍କ ମଧ୍ୟରେ ଯଦି କେହି ମୁସଲ୍‌ମାନ ଥାଏ,—ଏକବିନ୍ଦୁ ଜଳଦାନ କରି ଶିଶୁର ଜୀବନ ରକ୍ଷା କର । ଜଳର ଅଭାବରେ ଶିଶୁଟି ମୃତପ୍ରାୟ । ଏହାର ମୁଖପ୍ରତି ଦୃଷ୍ଟି କର । ପିପାସାରେ ଜଳଦାନ, ମହାପୁଣ୍ୟ । ତହିଁରେ ଏ ଶିଶୁ, ଭ୍ରାତୃବୃନ୍ଦ । ଅନୁଗ୍ରହ ପୂର୍ବକ ଏହାର ଜୀବନ ଦାନ କର । ମୁଁ ସକାତରେ ତୁମ୍ଭମାନଙ୍କ ନିକଟରେ ପ୍ରାର୍ଥନା କରୁଅଛି ।

ଏଜିଦ୍ ସୈନ୍ୟଙ୍କର ହୃଦୟ ପାଷାଣରେ ନିର୍ମିତ । ଶିଶୁଙ୍କର ସ୍ୱର୍ଗୀୟ ପ୍ରଭାରେ ସେମାନଙ୍କର ମନ ବିଚଳିତ ହେଲା ନାହିଁ । ଦୁଗ୍ଧପୋଷ୍ୟ ଶିଶୁ, ତୃଷାର୍ତ୍ତ ଓ ତନ୍ନିମିତ୍ତ କଣ୍ଠଗତପ୍ରାଣ ହୋଇଥିବାର ଶୁଣି ମଧ ସେମାନଙ୍କର ହୃଦୟ ମୁହୂର୍ତ୍ତକ ସକାଶେ କୋମଳ ହେଲା ନାହିଁ । ସେମାନଙ୍କ ମଧ୍ୟରେ ଜଣେ ଏତେ ଦୂର ନୃଶଂସ ଯେ, ସେ ଅଗ୍ରସର ହୋଇ ହୋସେନ୍‌ଙ୍କୁ ଲକ୍ଷ୍ୟ କରି ସୁତୀକ୍ଷ୍ଣ ଶର ନିକ୍ଷେପ କଲେ । କିନ୍ତୁ ହାୟ ! କ'ଣ ଲେଖିବୁଁ । ସ୍ମରଣ କଲେ ବକ୍ଷ ବିଦୀର୍ଣ୍ଣ ହୋଇଯାଏ । ଉକ୍ତ ଶର ହୋସେନ୍‌ଙ୍କର ବକ୍ଷଭେଦ ନ କରି କ୍ରୋଡ଼ସ୍ଥ ଶିଶୁର ବକ୍ଷ ବିଦାରଣ କରି ପୃଷ୍ଠଦେଶ ପାର ହୋଇଗଲା । ହୋସେନ୍‌ଙ୍କର କ୍ରୋଡ଼ ଦେଶ ରକ୍ତରେ ସିକ୍ତ ହେଲା । ଶିଶୁ, ଯନ୍ତ୍ରଣାମୟ ସଂସାର ପରିତ୍ୟାଗ କରି ପିତାମାତାଙ୍କର ହୃଦୟରେ ଦ୍ୱିଗୁଣଜ୍ୱାଳା ପ୍ରଦାନ କରି ସ୍ୱର୍ଗର ସୁ-ଶୀତଳ ସୁଧା ପାନ କରିବା ନିମିତ୍ତ ଅମର ଧାମକୁ ଯାତ୍ରା କଲେ ।

ହୋସେନ୍ ଶିଶୁର ମୃତଦେହ କ୍ରୋଡ଼ରେ ଧାରଣ କରି ଶିବିରକୁ ପ୍ରତ୍ୟାଗମନ କଲେ । ଏବଂ ସ୍ୱୀୟ ସହଧର୍ମିଣୀଙ୍କ ହସ୍ତରେ ଉକ୍ତ ଶିଶୁକୁ ସମର୍ପଣ କଲେ । ସାହେରବାନୁ ଶିଶୁର ବକ୍ଷ ପ୍ରତି ଦୃଷ୍ଟି ପାତ କରି ଏକାବେଳକେ ହତ ଚେତନ ହୋଇ ଭୂତଳରେ ପତିତ ହେଲେ । ଏହି ଅଭୂତପୂର୍ବ ଶୋକ ସଂଘଟନରେ ସମସ୍ତେ କ୍ରନ୍ଦନ କରିବାକୁ ଲାଗିଲେ । କୌଣସି ବ୍ୟକ୍ତିର କାହାରିକୁ ସାନ୍ତ୍ୱନା କରିବାର କ୍ଷମତା ରହିଲା ନାହିଁ । ମଦିନାବାସୀମାନଙ୍କ ମଧ୍ୟରେ ଓହାବ ନାମକ ଜଣେ ବୀର

ପୁରୁଷ ହୋସେନ୍‌ଙ୍କର ସଙ୍ଗୀ ଥିଲେ । ତଦୀୟ ମାତା ହୋସେନ୍ ପରିବାରର ଈଦୃଶ ଦୁଃଖ ଦେଖି ପୁତ୍ରକୁ ସମ୍ବୋଧନ କରି କହିଲେ, ''ଓହାବ୍ ତୁମ୍ଭକୁ କି ସକାଶେ ଗର୍ଭରେ ଧାରଣ କରିଥିଲି ? ଏବେ ସୁଦ୍ଧା ତୁମ୍ଭେ ଏଥିର ପ୍ରତିଶୋଧ ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇ ନାହଁ ? ସାହେରବାନୁଙ୍କର କ୍ରୋଡ଼ସ୍ଥ ଶିଶୁସନ୍ତାନର ଶୋଚନୀୟ ମୃତ୍ୟୁ ଦେଖି ସୁଦ୍ଧା ସ୍ଥିର ରହିଅଛ ? ନୟନ ଜଳବର୍ଷଣ କରିବାର କି ଏହା ପ୍ରକୃତ ସମୟ ? ପ୍ରତିହିଂସା ବୃତ୍ତି ଚରିତାର୍ଥ କର । ତୁମ୍ଭର କାର୍ଯ୍ୟରେ ମୁଁ ଅତ୍ୟନ୍ତ ଲଜ୍ଜିତ । ତୁମ୍ଭକୁ ଧିକ ।''

ମାତାଙ୍କର ଉତ୍ତେଜନା ବାକ୍ୟରେ ଉତ୍ତେଜିତ ହୋଇ ବୀରବର ଓହାବ ଯୁଦ୍ଧକ୍ଷେତ୍ରରେ ପ୍ରବେଶ କରି ଅସାଧାରଣ ବୀରତ୍ୱ ପ୍ରଦର୍ଶନପୂର୍ବକ ବିପକ୍ଷ ଦଳକୁ ସ୍ତମ୍ଭିତ କଲେ । ଅନେକ ବିପକ୍ଷ ସୈନ୍ୟ ତାଙ୍କର ଅସ୍ତ୍ରଘାତରେ ଦ୍ୱିଖଣ୍ଡିତ ହୋଇ ଭୂ-ତଳରେ ପତିତ ହେଲେ । ଯେ ଯୁଦ୍ଧ କରିବାକୁ ଆସେ ସେ ଯମପୁରୀ ପ୍ରାପ୍ତ ହୁଏ । ଏହା ଦର୍ଶନ କରି ବିପକ୍ଷଦଳ ସମ୍ମୁଖ ସଂଗ୍ରାମ କରିବାକୁ ସାହସୀ ହେଲେ ନାହିଁ । ଦୂରରୁ ସେମାନେ ଓହାବଙ୍କୁ ଶରଦ୍ୱାରା ବଧ କରିବାର ଚେଷ୍ଟା କଲେ । ଓହାବ ଶତ୍ରୁନିକ୍ଷିପ୍ତ ଶର ପ୍ରତି ସଂହାର କଲେ । ମଧ୍ୟେ ମଧ୍ୟେ ଦୁଇଟା ଗୋଟାଏ ଶର ତାଙ୍କର ଶରୀର ବିଦ୍ଧ କରି ରକ୍ତ ପ୍ରବାହ ଉତ୍ପନ୍ନ କଲା । ସେ ଆଡ଼କୁ ଭ୍ରୂକ୍ଷେପ ନାହିଁ, ଓହାବ୍ ଶତ୍ରୁ ସଂହାରରେ ତତ୍ପର କ୍ରମରେ ପରିଶ୍ରମ କରୁ କରୁ ଅଧିକତର ପିପାସାକାତର ହୋଇ ଯୁଦ୍ଧ କ୍ଷେତ୍ର ପରିତ୍ୟାଗ କରି ହୋସେନ୍‌ଙ୍କର ସମୀପରେ ଉପସ୍ଥିତ ହେଲେ ଏବଂ ଏକ ବିନ୍ଦୁ ଜଳ ପ୍ରାର୍ଥନା କଲେ ।

ଓହାବ୍ ଜନନୀ ପୁତ୍ରକୁ ପ୍ରତ୍ୟାବୃତ୍ତ ଦେଖି ତୀବ୍ର ସ୍ୱରରେ କହିଲେ କି ଘୃଣା । କି ଲଜ୍ଜା! କାହିଁକି ତୁ ମୋର ଗର୍ଭରେ ଜନ୍ମଗ୍ରହଣ କରିଥିଲୁ ? ସାମାନ୍ୟ ଜଳ ପିପାସାତୁର ହୋଇ ପ୍ରାଣରକ୍ଷାର୍ଥ ଶତ୍ରୁକୁ ପୃଷ୍ଠଦେଶ ଦେଖାଇ ଯୁଦ୍ଧକ୍ଷେତ୍ରରୁ ପ୍ରସ୍ଥାନ କରିଅଛୁ । ଅତଏବ ତୋର ଏହି କଳଙ୍କିତ ମୁଖ ମୁଁ ଆଉ ଦେଖିବି ନାହିଁ । ହୁଏତ ଫେରାତ କୂଳ ଉଦ୍ଧାର କରି ହୋସେନ୍‌ଙ୍କର ପରିଜନମାନଙ୍କୁ ରକ୍ଷା କରି ନଚେତ୍, ହୋସେନ୍‌ଙ୍କ ସକାଶେ ତୋର ଦେହ ରଣକ୍ଷେତ୍ରରେ ବିସର୍ଜନ କରି ମୋର ବୃଦ୍ଧ ବୟସରେ ତାପିତ ପ୍ରାଣ ଶୀତଳ କର ।

ମାତାଙ୍କର ଈଦୃଶ ଭର୍ତ୍ସନା ଓ ଉତ୍ସାହ ବାକ୍ୟରେ ଉତ୍ସାହିତ ହୋଇ ଓହାବ ପୁନରାୟ ଯୁଦ୍ଧକ୍ଷେତ୍ରକୁ ଗମନ କରିବାକୁ ଉଦ୍ୟତ ହେଲେ । ସ୍ନେହମୟୀ ଜନନୀଙ୍କର ଚରଣ ବନ୍ଦନା କରି ସ୍ୱୀୟ ସହଧର୍ମିଣୀମାନଙ୍କ ନିକଟରୁ ଚିର ବିଦାୟ ଗ୍ରହଣ କରିବାକୁ ଗଲେ । ଯେପରି ମା, ସେହିପରି ସ୍ତ୍ରୀ । ସେ କହିଲେ ଯୁଦ୍ଧକ୍ଷେତ୍ରରେ ଅନ୍ତପୁରର କଥା ଯାହାର ମନରେ ପଡ଼େ, ସେ କିପରି ବୀର ଶତ୍ରୁକୁ ପୃଷ୍ଠ ପ୍ରଦର୍ଶନ କରି ଯେଉଁ ବ୍ୟକ୍ତି ସ୍ତ୍ରୀର ମୁଖ ଦେଖିବାକୁ ଆସେ ସେ ବୀର ନାମର ଅଯୋଗ୍ୟ । ଯଦି ଆପଣମାନେ ଯୁଦ୍ଧ କ୍ଷେତ୍ରକୁ ଭୟ କରନ୍ତି, ତେବେ ଆମ୍ଭେମାନେ କୋମଳ କରରେ ଅସୀଧାରଣ କରି ରଣରଙ୍ଗିନୀ ବେଶରେ ସମର କ୍ଷେତ୍ରକୁ ଯିବା ସକାଶେ ପ୍ରସ୍ତୁତ ଅଛୁଁ । ରଣସାଜରେ ସଜ୍ଜିତ ହେବାକୁ ଆମ୍ଭେମାନେ ମଧ୍ୟ କୁଣ୍ଠିତ ହେବୁ ନାହିଁ । ସ୍ତ୍ରୀଙ୍କର ବୀରତ୍ୱବ୍ୟଞ୍ଜକ ବାକ୍ୟରେ ଈଷତ୍ ଲଜ୍ଜିତ ଓ ଦ୍ୱିଗୁଣରେ ଉତ୍ସାହରେ ଉତ୍ସାହିତ ହୋଇ ଓହାବ୍ ନକ୍ଷତ୍ର ବେଗରେ ଶତ୍ରୁଦଳରେ ପ୍ରବେଶ କଲେ । ଚତୁର୍ଦ୍ଦିଗରୁ ତାଙ୍କ ପ୍ରତି ଶର ନିକ୍ଷେପ ହେଲା । ଶରାଘାତରେ ଜର୍ଜରିତ ହୋଇ ଶୁଷ୍କ କଣ୍ଠରେ ପ୍ରାଣତ୍ୟାଗ କଲେ । ଓହାବ ଜନନୀ ଅନ୍ତରାଳରେ ଥାଇ ସ୍ୱୀୟ ପୁତ୍ରର ରଣ ଚାତୁର୍ଯ୍ୟ ସନ୍ଦର୍ଶନ କରି ପରମ ପ୍ରୀତ ହେଲେ । ଏବଂ ଶୋକାନ୍ୱିତ ହୋଇ ପୁତ୍ରହନ୍ତାକୁ ଏକ ଆଘାତରେ ଯମାଳୟକୁ ପ୍ରେରଣ କଲେ ।

ଓହାବ୍‌ଙ୍କର ମୃତ୍ୟୁରେ ହୋସେନ୍ ଅତ୍ୟନ୍ତ ପରିତପ୍ତ ହେଲେ । ଏକବିନ୍ଦୁ ଜଳାଭାବ ନିମନ୍ତେ ଏତେ ଆତ୍ମୀୟ ସ୍ୱଜନ ନିହତ ହେଲେ, କାର୍‌ବାଲା ପ୍ରାନ୍ତରରେ ଶୋଣିତ-ସ୍ରୋତ ପ୍ରବାହିତ ହେଲା । ତଥାପି ଫେରାତକୂଳ ଉଦ୍ଧାର ହେଲା ନାହିଁ । ବର୍ତ୍ତମାନ ଆଉ ବଞ୍ଚିବାର ଆଶା ନାହିଁ, ଆକାଙ୍କ୍ଷା ମଧ୍ୟ ନାହିଁ । ଏହା କହୁ କହୁ ହୋସେନ୍ ଶୋକାଭରେ ଦୀର୍ଘନିଃଶ୍ୱାସ ପରିତ୍ୟାଗ କଲେ ।

ହୋସେନ୍ ପୁତ୍ର-କାସେମ୍ ପିତୃବ୍ୟଙ୍କର ଈଦୃଶ ବ୍ୟାକୁଳତା ସନ୍ଦର୍ଶନ କରି ବିନୀତ ଭାବରେ କହିଲେ, ତାତ, କାସେମ୍ ଅଦ୍ୟାପି ଜୀବିତ, ଆଜ୍ଞା ପାଇଲେ ଚିରଦାମ୍ ଶତ୍ରୁକୁଳ ନିର୍ମୂଳ କରିବ ।

କାସେମ୍ ପିତୃହୀନ ବାଳକ । ହାସେମ୍ ମୃତ୍ୟୁକାଳରେ ହୋସେନ୍ ହସ୍ତରେ ତାହାକୁ ଅର୍ପଣ କରିଯାଇଅଛନ୍ତି । ସେ କେଉଁ ପ୍ରାଣରେ ତାହାଙ୍କୁ ଶତ୍ରୁ ମଧ୍ୟକୁ ପ୍ରେରଣ କରିବେ । କୌଣସିମତେ ସମ୍ମତ ହେଲେ ନାହିଁ । କାସେମ୍ ମଧ୍ୟ ଆଗ୍ରହ ପରିତ୍ୟାଗ କଲେ ନାହିଁ । ଅତଃପର ହୋସେନ୍ କହିଲେ ''ବାବୁ ଯାହା ଇଚ୍ଛା କର, ମାତାଙ୍କର ଅନୁମତି ନେଇ କର ।''

ଏପରି ଆଦିଷ୍ଟ ହୋଇ କାସେମ୍ ହାସେନ୍‌ବାନୁଙ୍କର ପଦଚୁମ୍ବନ କରି ସ୍ୱୀୟ ଅଭିପ୍ରାୟ ଜ୍ଞାପନ କଲେ । ତାଙ୍କର ମାତା ଅନୁମତି ପ୍ରଦାନ କଲେ । ନାନାପ୍ରକାର ଉତ୍ସାହପୂର୍ଣ୍ଣ

ବାକ୍ୟରେ ଉତ୍ତେଜିତ କରି ସେ ଆଶୀବଚନ ପ୍ରୟୋଗ କଲେ । କାସେମ୍ ମାତୃ ଆଜ୍ଞା ପ୍ରାପ୍ତ ହୋଇ ହୃଷ୍ଟମନରେ ଯୁଦ୍ଧଯାତ୍ରା କରିବାର ଉଦ୍ୟୋଗ କରୁଅଛନ୍ତି । ଏମନ୍ତ ସମୟରେ ହୋସେନ୍ କହିଲେ କାସେମ୍ ତୁମ୍ଭର ପିତାଙ୍କ ନିକଟରେ ମୁଁ ଗୋଟିଏ ପ୍ରତିଜ୍ଞାର ଆବଦ୍ଧ ଅଛି, ମୋତେ ପ୍ରଥମେ ସେହି ସତ୍ୟପାଳନ କରିବାକୁ ଦିଅ । ତତ୍ପରେ ତୁମେ ସଂଗ୍ରାମକୁ ଯାଅ । ମୃତ୍ୟୁକାଳରେ ତୁମ୍ଭ ପିତା ମୋତେ ପ୍ରତିଜ୍ଞାବଦ୍ଧ କରିଅଛନ୍ତି ଯେ, ସଖିନା ସହିତ ତୁମ୍ଭର ବିବାହ ହେବ । ବିବାହ କ୍ରିୟା ସମ୍ପନ୍ନ କରି ସଂଗ୍ରାମରେ ପ୍ରବୃତ୍ତ ହୁଅ । ମୋହର କୌଣସି ଆପତ୍ତି ନାହିଁ ।

ଏ ସମୟ ବିବାହର କିପରି ଉପଯୋଗୀ କହିବା ନିଷ୍ପ୍ରୟୋଜନ । କାର୍‌ବାଲା ପ୍ରାନ୍ତରେ ତୃଷାର୍ତ୍ତ ହୃଦୟରେ ଶତ ଶତ ଲୋକ ମୃତପ୍ରାୟ । କେତେ ବାଳକ ବାଳିକା ଶୁଷ୍କ କଣ୍ଠରେ ପ୍ରାଣତ୍ୟାଗ କରିଅଛନ୍ତି । ସମସ୍ତଙ୍କ ମୁଖରେ ହାହାକାର ରବ । ତଥାପି ପିତୃବାକ୍ୟ ଆଜ୍ଞା ଶିରୋଧାର୍ଯ୍ୟ ମାନି କାସେମ୍ ସଖିନାକୁ ବିବାହ କଲେ ।

ଶୁଭ ପରିଣୟ ବ୍ୟାପାର କି ରୂପେ ସମ୍ପନ୍ନ ହେଲା ସହଜରେ ଅନୁମାନ କରାଯାଏ, କାହାରି ମୁଖରେ ହାସ୍ୟ ନାହିଁ । ପାତ୍ର ପାତ୍ରୀର ପରିଣୟୋପଯୋଗୀ ଅଙ୍ଗରାଗ କି ବେଶଭୂଷା ନାହିଁ । ମଙ୍ଗଳ ଗାନର ପରିବର୍ତ୍ତେ ହାହାକାର ରବ, ମଙ୍ଗଳ ବାଦ୍ୟର ପରିବର୍ତ୍ତେ ରଣବାଦ୍ୟ । ଏହିପରି ବିଷାଦ ମଧ୍ୟରେ ଶୁଭ ପରିଣୟ କ୍ରିୟା ସମ୍ପନ୍ନ ହେଲା । କାସେମ୍ ଓ ସଖିନା ପରସ୍ପର ସ୍ନେହ ବନ୍ଧନରେ ଆଜନ୍ମ ବନ୍ଧା, ନୂତନ ସମ୍ପର୍କରେ ପ୍ରଣୟସୂତ୍ର ଆହୁରି ଦୃଢ଼ତର ହେଲା । କିନ୍ତୁ ସେ ପ୍ରଣୟ ପରିଭୋଗର ସମୟ ନାହିଁ । ଯେପରି ବିବାହ ଶେଷ, ସେହିପରି ଯୁଦ୍ଧାର୍ଥେ ଗମନ । ଅସଂଖ୍ୟ ଶତ୍ରୁ ସ୍ୱୀୟ ବାହୁବଳରେ, ବିନାଶକରି ସମସ୍ତଙ୍କୁ କନ୍ଦାଇ କାସେମ୍, ଯୁଦ୍ଧକ୍ଷେତ୍ରରେ ନିହତ ହେଲେ । ହୋସେନ୍ ସାହେରବାନୁ, ସଖିନା ପ୍ରଭୃତି ଶୋକାର୍ଣ୍ଣବରେ ନିମଜ୍ଜିତ ହେଲେ ।

ଭ୍ରାତୃଷ୍ପୁତ୍ରର ଶୋକରେ ଅଧୀର ହୋଇ ହୋସେନ୍ ସ୍ୱୀୟ ଅଶ୍ୱ ଅନୟନ କରିବାକୁ ଆଜ୍ଞା ଦେଲେ । ତତ୍ ଶ୍ରବଣରେ ତାଙ୍କର ଅଳ୍ପ ବୟସ୍କ ପୁତ୍ରମାନେ ସମୀପବର୍ତ୍ତୀ ହୋଇ କହିଲେ ପିତଃ, ଆମ୍ଭେମାନେ ଯଦିବା ଶିଶୁ ତଥାପି, ଆମ୍ଭେମାନେ ଜୀବିତ ଥାଉ ଥାଉ ଆପଣ କଦାପି ଯୁଦ୍ଧ କ୍ଷେତ୍ରକୁ ଯାଇପାରିବେ ନାହିଁ । ଏହା କହି ପ୍ରଥମ ପୁତ୍ର ଆକବର ଦ୍ରୁତ ବେଗରେ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହୋଇ ରଣଚାତୁର୍ଯ୍ୟରେ ଶତ୍ରୁପକ୍ଷକୁ ତ୍ରାସିତ କଲେ । ଯାହାକୁ ସମ୍ମୁଖରେ ପାଇଲେ ତାହାକୁ ଶମନ ସଦନକୁ ପ୍ରେରଣ କଲେ । ଏହିପରି ଅବିଶ୍ରାନ୍ତ ପରିଶ୍ରମ କରି ପିପାସାର୍ତ୍ତ ହୋଇ ପିତୃ ସନ୍ନିଧାନରେ ତୃଷ୍ଣା ବାରଣ ନିମନ୍ତେ ଜଳ ପ୍ରାର୍ଥନା କଲେ । ହୋସେନ୍ ବା ଜଳ କେଉଁଠାରୁ ପାଇବେ ? ଉପାୟାନ୍ତର ନ ଦେଖି ପୁତ୍ରକୁ କହିଲେ, ''ମୋର ଜିହ୍ୱା ତୁମ୍ଭର ମୁଖ ମଧ୍ୟକୁ ନେଇ ଶୋଷଣ କର । ଟିକିଏ ଶାନ୍ତିଲାଭ କରିପାରିବ । ଜିହ୍ୱାର ରସରେ ତୁମ୍ଭର କିଞ୍ଚିତ୍ ତୃପ୍ତି ହୋଇପାରେ । ଆକବର ତଦ୍ରୂପ କରି କହିଲେ 'ପ୍ରାଣ ଶୀତଳ ହେଲା । ପିପାସା ଦୂର ହେଲା ।'' ଈଶ୍ୱର ନାମୋଚ୍ଚାରଣ ପୂର୍ବକ ପୁନଶ୍ଚ ସଂଗ୍ରାମ କ୍ଷେତ୍ରରେ ସଂହାର ମୂର୍ତ୍ତି ଧାରଣ କଲେ । ଅନେକ ଶତ୍ରୁ ବିନାଶ କରି ସେ ମଧ୍ୟ ଯୁଦ୍ଧ କ୍ଷେତ୍ରରେ ପ୍ରାଣ ପରିତ୍ୟାଗ କରି ସ୍ୱର୍ଗବାସୀ ହେଲେ ।

ଏହିରୂପେ ପ୍ରଧାନ ପ୍ରଧାନ ଯୋଦ୍ଧା ଆତ୍ମୀୟ, ପ୍ରାଣାଧିକ ଭ୍ରାତୃଷ୍ପୁତ୍ର ଏକ ଏକ ହୋଇ ଯୁଦ୍ଧ କ୍ଷେତ୍ରରେ ପ୍ରାଣ ପରିତ୍ୟାଗ କଲେ । ତର୍ଦ୍ଦଶନରେ ହୋସେନ୍ ଅତ୍ୟନ୍ତ ପରିତୃପ୍ତ ହୋଇ ସ୍ୱୟଂ ଯୁଦ୍ଧକ୍ଷେତ୍ରକୁ ଗମନ କଲେ । ସେହି ବୀରପୁରୁଷର ବୀରଗତିର ପ୍ରତିରୋଧ କିଏ କରିବ ? ତାଙ୍କ ଅଶ୍ୱର ପଦଧ୍ୱନିରେ ସମସ୍ତଙ୍କର ଅନ୍ତରରେ ଭୟ ସଞ୍ଚାର ହେଲା । ଏଜିଦ୍‌ଙ୍କର ପ୍ରଧାନ ପ୍ରଧାନ ଯୋଦ୍ଧାମାନେ ଅଚିରେ ହୋସେନ୍‌ଙ୍କ ଶସ୍ତ୍ରାଘାତରେ ଶମନାଳୟକୁ ପ୍ରେରିତ ହେଲେ । ତଦର୍ଶନରେ ଆଉ କେହି ହୋସେନ୍‌ଙ୍କର ସମ୍ମୁଖୀନ ହେବାକୁ ସାହସୀ ହେଲେ ନାହିଁ । ପ୍ରାଣଭୟରେ ସମସ୍ତେ ପ୍ରସ୍ଥାନ ହେଲେ । ହୋସେନ୍ ସମର କ୍ଷେତ୍ରରେ କାହାରିକୁ ନ ପାଇ ବିପକ୍ଷ ଦଳର ଶିବିରାଭିମୁଖେ ଗମନ କଲେ । ତାଙ୍କର ଆଗମନରେ ସୈନ୍ୟଗଣ ଛତ୍ରଭଙ୍ଗ ଦେଇ ଏଣେ ତେଣେ ପଳାଇବାକୁ ଲାଗିଲେ । ଫେରାତ ନଦୀକୂଳ ଉଦ୍ଧାର ହେଲା । ଅନବରତ ପରିଶ୍ରମ କରିବା ହେତୁ ପୂର୍ବ ପିପାସା ଆହୁରି ଅଧିକତର ପ୍ରବଳ ହୋଇଥିଲା । ହୋସେନ୍ ସ୍ୱଚ୍ଛ ପ୍ରବାହିନୀ ଫେରାତ ନଦୀରେ ଅବଗାହନ କରି ତହିଁର ସ୍ନିଗ୍ଧ ବାରି ପାନ କରିବା ନିମନ୍ତେ ଅଞ୍ଜଳି ପୂର୍ଣ୍ଣକରି ଜଳ ଉଠାଇ ପାନ କରିବେ, ଏପରି ସମୟରେ ଆତ୍ମୀୟ ବନ୍ଧୁମାନଙ୍କର କଥା ସ୍ମରଣ ହେଲା । କାସେମ୍‌ଙ୍କର ତୃଷ୍ଣା କ୍ଳିଷ୍ଟ ମୁଖଛବି ହୃଦୟ ଦର୍ପଣରେ ପ୍ରତିଫଳିତ ହେଲା । ଏକ ବିନ୍ଦୁ ଜଳ ସକାଶେ କି ପ୍ରକାର ଆକବରଙ୍କୁ କଷ୍ଟଭୋଗ କରିବାକୁ ହୋଇଥିଲା । ସେ କଥା ତୃଷ୍ଣାର୍ତ୍ତ ଦୁଗ୍ଧପୋଷ୍ୟ ଶିଶୁର କଥା ସେ ସମସ୍ତ କଥା ଏକାବେଳକେ ସ୍ମୃତି ପଥରେ ଦେଖାଦେଲା । ଯେଉଁଜଳ ସକାଶେ ଷଷ୍ଟି ସହସ୍ର ଲୋକ କେତେ କଷ୍ଟଭୋଗ କରିଅଛନ୍ତି ପରିଜନବର୍ଗ ପତି ପୁତ୍ର

ହରାଇ ଅଛନ୍ତି ଫେରାତ କୂଳ ଉଦ୍ଧାର କରି ସେ ସେହି ଜଳ ପାନ କରିବେ, ଏହା ତାଙ୍କର ସହ୍ୟ ହେଲା ନାହିଁ । ଅଞ୍ଜଳିରୁ ଜଳ ନିକ୍ଷେପ କରି ତୀରକୁ ଉଠି ସମସ୍ତେ ଅସ୍ତ୍ର ବେଶଭୂଷା ପରିତ୍ୟାଗ କରି ଏକାନ୍ତ ମନରେ ଈଶ୍ୱର ଚିନ୍ତାରେ ନିଯୋଜିତ ହେଲେ ।

ଅନ୍ତରାଳରେ ଥାଇ ସୀମାର ପ୍ରଭୃତି ଶତ୍ରୁମାନେ ହୋସେନ୍‌ଙ୍କର କାର୍ଯ୍ୟ ପର୍ଯ୍ୟବେକ୍ଷଣ କରୁଥିଲେ । ହୋସେନ୍‌ଙ୍କୁ ନିରସ୍ତ୍ର ଦେଖି ତାହାଙ୍କୁ ଚତୁର୍ଦ୍ଦିଗକୁ ବେଷ୍ଟନ କରି ସେମାନେ ଦଣ୍ଡାୟମାନ ହେଲେ । ଯୋଗନିଦ୍ରା ହୋସେନ୍ ତାହା କିଛି ଦେଖିପାରିଲେ ନାହିଁ, ଶତ୍ରୁମାନେ ପଶ୍ଚାଦିଗକୁ ତାହାଙ୍କର ପୃଷ୍ଠ ଦେଶ ଲକ୍ଷ୍ୟ କରି ବିଷାକ୍ତଶର ନିକ୍ଷେପ କରିବାକୁ ଲାଗିଲେ । ନିକ୍ଷିପ୍ତ ଗୋଟିଏ ଶର ସୁଦ୍ଧା ତାଙ୍କ ଶରୀର ବିଦ୍ଧ କରୁ ନ ଥିବାର ଦେଖି ସୀମାର ବିଶେଷ ସନ୍ଧାନ କରି ଶର ନିକ୍ଷେପ କଲା, ତାହା ପୃଷ୍ଠଦେଶରେ ନ ଲାଗି ଗ୍ରୀବାଦେଶ ବିଦ୍ଧ କଲା । ତେତେବେଳେ ମଧ ହୋସେନ୍‌ଙ୍କର ଭ୍ରୂକ୍ଷେପ ନାହିଁ । ମହାପ୍ରଭୁଙ୍କର ଧ୍ୟାନରେ ସେ ଆତ୍ମବିସ୍ମୃତ ।

କ୍ରମରେ ବିଷାକ୍ତ ଶରର ବିଷ ରକ୍ତ ସଂଯୋଗରେ ହୋସେନ୍‌ଙ୍କର ସର୍ବ ଶରୀରରେ ସଞ୍ଚାରିତ ହେଲା । ତାଙ୍କର ବଦନ କମଳ ନିଷ୍ପ୍ରଭ ଓ ଶରୀର ଅବସନ୍ନ ହେଲା । ସେ ଉତ୍ଥାନ ଶକ୍ତିରହିତ ହୋଇ ଧରାଶାୟୀ ହେଲେ । ଶତ୍ରୁମାନେ ନିଶ୍ଚୟ ମୃତ୍ୟୁ ହୋଇଅଛି । ଅବଧାରଣ କରି ମଧ କେହି ଭୟରେ ଅଗ୍ରସର ହେଉନାହାନ୍ତି । କିନ୍ତୁ ତାଙ୍କର ଭିନ୍ନମସ୍ତକ ନ ଦେଖାଇଲେ ଏଜିଦ୍ ହୋସେନ୍‌ଙ୍କର ମୃତ୍ୟୁ ସମ୍ବାଦ ବିଶ୍ୱାସ କରିବେ ନାହିଁ । ବିବେଚନା କରି ପାଷଣ୍ଡ ସୀମାର ଲମ୍ଫ ଦେଇ ହୋସେନ୍‌ଙ୍କର ବକ୍ଷୋପରି ଆସୀନ ହେଲା । ତେତେବେଳେ ମଧ ହୋସେନ୍‌ଙ୍କର ଜୀବନ ଶେଷ ହୋଇ ନାହିଁ । ବକ୍ଷୋପରି ଭାର ପଡ଼ିବାରୁ ଶ୍ୱାସରୋଧ ହେଲା । ହୋସେନ୍ ଅତ୍ୟନ୍ତ ଯନ୍ତ୍ରଣା ଅନୁଭବ କଲେ । ସୀମାର ଖଞ୍ଜର ନାମକ ଅସ୍ତ୍ରଦ୍ୱାରା ହୋସେନ୍‌ଙ୍କର ଗଳଦେଶ ଛେଦନ କରିବା ସକାଶେ ଯେତେଥର ଚେଷ୍ଟା କଲା, ସକଳ ଥର ତାର ଚେଷ୍ଟା ବ୍ୟର୍ଥ ହେଲା । ଅତଃପର ହୋସେନ୍ କହିଲେ ''ଭାଇ ସୀମା ର ଆଉ କାହିଁକି ? ଏହିକ୍ଷଣି ମୋର ପ୍ରାଣ ଶେଷ ହେବ । ବିଷରେ ଶରୀର ଜର୍ଜରିତ ହୋଇଅଛି । ବକ୍ଷରୁ ଅବତୀର୍ଣ୍ଣ ହୁଅ । ମୋତେ ନିଶ୍ୱାସ ମାରିବାକୁ ଦିଅ ।'' ସୀମାର କହିଲା, ''ତୁମ୍ଭର ମସ୍ତିଷ୍କ ବିଚ୍ଛିନ୍ନ ନ କରି ମୁଁ ବକ୍ଷରୁ ଅବତରଣ କରିବି ନାହିଁ ।'' ବକ୍ଷୋପରି ବସି ଅନେକ ଚେଷ୍ଟା ଉପରେ ଯତ୍ପରୋନାସ୍ତି ଯନ୍ତ୍ରଣା ଦେଇ ସୀମାର ହୋସେନ୍‌ଙ୍କର ମସ୍ତକ ଦେହ ବିଚ୍ଛିନ୍ନ କଲା । ମହାବୀର ଆଲିଙ୍କର ପୁତ୍ର ମଦିନାର ରାଜା, ଭଗବତ୍‌ଭକ୍ତ, ଏମାମ୍ ହୋସେନ୍ ନିରସ୍ତ୍ର ଅବସ୍ଥାରେ ଶତ୍ରୁହସ୍ତରେ ପ୍ରାଣ ପରିତ୍ୟାଗ କରି ଅମରଧାମକୁ ଯାତ୍ରା କଲେ । ସ୍ୱର୍ଗ ମର୍ତ୍ତ୍ୟ ଭେଦ କରି ଚତୁର୍ଦ୍ଦିଗରୁ 'ହାୟ ହୋସେନ୍' ! ହାୟ ହୋସେନ୍ ! ହାୟ ହୋସେନ୍ ! ବିଳାପଧ୍ୱନି ଉତ୍ଥିତ ହେଲା, ଶତ ଶତ ବର୍ଷ ଅତୀତ ହେଲା । ତଥାପି ସେ କରୁଣଧ୍ୱନି ଅଦ୍ୟାପି ନିବୃତ୍ତ ହେଲା ନାହିଁ । କେତେ ଜାତିର ଅଭ୍ୟୁତ୍‌ଥାନ ଓ ପତନ ହେଲା । କେତେ କେତେ ଯୋଦ୍ଧା ଦିଗ୍‌ବିଜୟୀ ହୋଇ କାଳକ୍ରମେ ବିସ୍ମୃତିର ଅତୀତ ସାଗରରେ ନିମଗ୍ନ ହେଲେ, କିନ୍ତୁ ଯେତେ ଅଧିକ ସମୟ ଅତିବାହିତ ହେଇଅଛି । ଭଗବତ୍‌ଭକ୍ତ ମହାପୁରୁଷ ହାସେନ୍ ହୋସେନ୍‌ଙ୍କର ସ୍ମୃତି ତେତିକି ଉଜ୍ଜ୍ୱଳତର ହୋଇ ମାନବ ଜାତିର ହୃଦୟ ରାଜ୍ୟ ଆଲୋକିତ କରୁଅଛି । ଏବଂ ଜାତି ନିର୍ବିଶେଷରେ ମାନବର ଶ୍ରଦ୍ଧା ଓ ଭକ୍ତି ଆକର୍ଷଣ କରୁଅଛନ୍ତି, ସେମାନଙ୍କର ବିଷାଦମୟ ପରିଣତି ସ୍ମରଣ କରି ଅଦ୍ୟାପି ମୁସଲ୍‌ମାନଗଣ ବର୍ଷକୁ ବର୍ଷ 'ହାୟ ହାସେନ୍' 'ହାୟ ହୋସେନ୍' ରବରେ ଜଗତକୁ କନ୍ଦାଇ ଅଛନ୍ତି, ଉନ୍ମତ୍ତ କରୁଅଛନ୍ତି ।

•

## ପଣ୍ଡିତଙ୍କୁ ପ୍ରଶ୍ନ

ବାମଣ୍ଡା ଆଲୋଚନା ସଭାର ଗତ ଅଧିବେଶନରେ ପଣ୍ଡିତ ଶ୍ରୀଯୁକ୍ତ ମଧୁସୂଦନ ମିଶ୍ର ଗୋଟିଏ ବକ୍ତୃତା ପ୍ରଦାନ କରିଥିଲେ । ତହିଁରେ ସେ କହିଥିଲେ ଅଦୃଷ୍ଟ ଜନ୍ମାନ୍ତର ସ୍ୱର୍ଗ ଏବଂ ନରକ ଅଛି ଏବଂ ଲୋକମାନଙ୍କର ସେହି ସଂସ୍କାର ମଜ୍ଜାଗତ ଥିବାରୁ ଉପକାର ହେଉଅଛି ଇତ୍ୟାଦି । ତାଙ୍କର ବ୍ୟାଖ୍ୟାଦ୍ୱାରା ଆମ୍ଭମାନଙ୍କର ସନ୍ଦେହ ଦୂର ହୋଇ ନ ଥିବାରୁ ତତ୍ ସମ୍ବନ୍ଧରେ ଗୋଟି କେତେ ପ୍ରଶ୍ନ କରୁଅଛୁଁ । ଭରସା କରୁଁ । ପଣ୍ଡିତ ମହାଶୟ ଆମ୍ଭମାନଙ୍କର ପ୍ରଶ୍ନର ସଦୁତ୍ତର ପ୍ରଦାନ କରି ଧନ୍ୟବାଦର ପାତ୍ର ହେବେ ।

୧. ପାପ କାହାକୁ କହନ୍ତି ଏବଂ ତାହା କି ପଦାର୍ଥ ?

୨. ପିଣ୍ଡଦାନର ଉଦ୍ଦେଶ୍ୟ କି ?

୩. ସ୍ୱର୍ଗ ଏବଂ ନରକ ନାମକ ବିଶେଷ ସ୍ଥାନ ଅଛି କି ନା ଏବଂ ତାହା ଶାସ୍ତ୍ରସମ୍ମତ ସତ୍ୟ କି ନା ? ସେହି ବିଶେଷ ସ୍ଥାନ କେଉଁଠାରେ ?

୪. ମନୁଷ୍ୟ ସ୍ୱକୃତ ପାପର ଶାସ୍ତିସ୍ୱରୂପ ନରକ ଯନ୍ତ୍ରଣା ଭୋଗ କରନ୍ତି କି ନା ଏବଂ ତାହା କେଉଁ ପାପର ଫଳ ତାହା ତା'ର ସ୍ମରଣ ଥାଏ କି ନା ?

୫. ଏକତ୍ୱବୋଧକ ଜ୍ଞାନ ଭିନ୍ନ ଆତ୍ମାର ଅସ୍ତିତ୍ୱ ସମ୍ଭବପର କି ନା ?

୬. ଅଦୃଷ୍ଟ ସ୍ୱୀକାର କଲେ ଗତଜନ୍ମର ପାପ ପୁଣ୍ୟର କଥା ଏ ଜନ୍ମରେ ମନେ ନ ହେବାର କାରଣ କି ?

୭. ପ୍ରତ୍ୟେକ କାର୍ଯ୍ୟ ଓ କଥାର ସକଳବିଧ ତଥ୍ୟ ପୁଙ୍ଖାନୁପୁଙ୍ଖ ରୂପେ ଅନୁସନ୍ଧାନ କରିବା ଉଚିତ କି ନା ?

### ଉତ୍ତରର ଆଲୋଚନା

ଶ୍ରୀଯୁକ୍ତ ପଣ୍ଡିତ ମଧୁସୂଦନ ମିଶ୍ର ମହାଶୟଙ୍କୁ ସ୍ୱର୍ଗ ନରକାଦି ବିଷୟରେ ଗୋଟି କେତେ ପ୍ରଶ୍ନ କରିଥିଲୁଁ । ମିଶ୍ର ମହାଶୟଙ୍କ ପରିବର୍ତ୍ତେ ଶତପଥୀ ମହାଶୟ ପ୍ରଶ୍ନର ଉତ୍ତର ପ୍ରଦାନ କରିଅଛନ୍ତି । ସେ ଆମ୍ଭର ପ୍ରଶ୍ନପାଠ କରି ବିସ୍ମିତ ଓ ସନ୍ଦିଗ୍ଧ ହୋଇ ଯୁକ୍ତ୍ୟାଶ୍ରୟ ନ କରି ରହି ପାରିଲେ ନାହିଁ ବୋଲି ଲେଖି ଅଛନ୍ତି କିନ୍ତୁ ତାଙ୍କର ପତ୍ର ମଧ୍ୟରେ ଗୋଟିଏ ସୁଦ୍ଧା ଯୁକ୍ତି ଦେଖିଲୁଁ ନାହିଁ ।

ଶତପଥୀ ମହାଶୟ ଲେଖିଅଛନ୍ତି, ''ସମସ୍ତ ଆର୍ଯ୍ୟ ଦର୍ଯ୍ୟମାନେ ଏହି ପ୍ରଶ୍ନର ଉତ୍ତର ଦାନ ବିଷୟରେ ଅଧିକାରୀ ।'' ସତକଥା, ସ୍ୱୀକାର କଲୁଁ କିନ୍ତୁ ସଦୁତ୍ତର ଦାନକ୍ଷମତା ସମସ୍ତଙ୍କର ନାହିଁ । ସମସ୍ତଙ୍କର ସେ କ୍ଷମତା ଥିଲେ 'ପଣ୍ଡିତଙ୍କୁ ପ୍ରଶ୍ନ' ବୋଲି ଲେଖିବାର ଆବଶ୍ୟକ ହୋଇ ନ ଥାନ୍ତା ।

କେତେକ ବର୍ଷ ପୂର୍ବେ ବିଦ୍ୟାଳୟ ସମୂହର ପାସ୍ ପରୀକ୍ଷାରେ ଗୋଟିଏ ପ୍ରଶ୍ନ ଥିଲା— ଚୈତନ୍ୟଙ୍କୁ ଜାଣ ? ତଦୁତ୍ତରରେ ଜଣେ ଛାତ୍ର ଲେଖିଥିଲେ ହଁ । ଶତପଥୀ ମହାଶୟଙ୍କ ଉତ୍ତରଗୁଡ଼ିକ ଠିକ୍ ସେହି ରୀତିରେ ଲିଖିତ ହୋଇଥିବାରୁ ଆମ୍ଭର ପ୍ରଶ୍ନ କରିବାର ଉଦ୍ଦେଶ୍ୟ ବିଫଳ ହୋଇଅଛି ଏବଂ ସନ୍ଦେହରାଶି ଅକ୍ଷୁଣ୍ଣ ରହିଅଛି ।

ଶତପଥୀ ମହାଶୟଙ୍କ ପ୍ରଥମ ଉତ୍ତର, ''ଆଚାର ବିରୋଧ କାର୍ଯ୍ୟକୁ ପାପ କହନ୍ତି । ଆଚାର କାହାକୁ କହନ୍ତି ସେ ବୁଝାଇ ନାହାନ୍ତି । ତେବେ କଅଣ ଦେଶାଚାର କୁଳାଚାର ଲଙ୍ଘନ କଲେ ପାପ ହେବ ? ସମାଜ ଶୃଙ୍ଖଳା ବା ଶାସନାର୍ଥ ମାନବ କଳ୍ପିତ ବିଧାନଗୁଡ଼ିକ ଯେବେ ପାପ ହୁଏ ତେବେ ବାଚନିକ, ମାନସିକ, କାୟିକ, ଅପକାର୍ଯ୍ୟମାନଙ୍କୁ କଅଣ ବୋଲାଯିବ ? ପାପ କି ପଦାର୍ଥ ଏ ପ୍ରଶ୍ନର ଉତ୍ତର ନାହିଁ । ପାପର କିଛି ଅସ୍ତିତ୍ୱ ଅଛି ନା ଅଭାବ ପଦାର୍ଥ ?

୨ୟ ଦଣ୍ଡଦାନର ଉଦ୍ଦେଶ୍ୟ ସମାଜ ରକ୍ଷା ବୋଲି ଶତପଥୀ ମହାଶୟ ଲେଖିଅଛନ୍ତି । ଯେବେ ତାହା ହିଁ ଉଦ୍ଦେଶ୍ୟ ହୁଏ ତେବେ ସାମାଜିକ ଶାସନ ଯଥେଷ୍ଟ । ପାପର ଦୁଇପ୍ରକାର ଶକ୍ତି କଳ୍ପନା କରିବାର ଆବଶ୍ୟକତା ନାହିଁ, ଏକ ପାପ ସକାଶେ ଦୁଇ ଅଦାଲତରେ ପୃଥକ୍ ପୃଥକ୍ ଦଣ୍ଡବିଧାନ ନୀତି ଓ ଧର୍ମବିରୋଧ । ବର୍ତ୍ତମାନ ଜିଜ୍ଞାସ୍ୟ ''ଦଣ୍ଡଦାନର ଉଦ୍ଦେଶ୍ୟ କି ?'' ଏହି ପ୍ରଶ୍ନୋକ୍ତ ଦଣ୍ଡକୁ କି ଦଣ୍ଡ ମନେ କରିଅଛନ୍ତି ? ଈଶ୍ୱରଦତ୍ତ ଦଣ୍ଡର ଆବଶ୍ୟକ ଏହା ହିଁ ଆମ୍ଭର ପ୍ରଶ୍ନ ।

୩ୟ ଉତ୍ତର ''ସ୍ୱର୍ଗନରକ ନାମକ ବିଶେଷ ସ୍ଥାନ ଓ ତା'ର ସତ୍ୟତା । ଇହଲୋକ ଏବଂ ସୁଖ ଦୁଃଖାଦି ପରି ସତ୍ୟ ଅଟେ ।'' ପାଠକବର୍ଗ ! ଏ ଉତ୍ତର ହୃଦୟଙ୍ଗମ ହୋଇପାରିଲା କି ? ସ୍ୱର୍ଗ ନରକର ଅସ୍ତିତ୍ୱ ସମ୍ବନ୍ଧରେ ରହିଥିବା ଲୋକର ସନ୍ଦେହ ଏପରି ଉତ୍ତର ଦ୍ୱାରା ଦୂର ହୋଇପାରେ କି ? ଶତପଥୀ ମହାଶୟ କେବଳ ବୃଥାଶ୍ରମ କରିଅଛନ୍ତି ।

୪ର୍ଥ ଉତ୍ତର ସ୍ୱର୍ଗ ନରକରେ ପାପପୁଣ୍ୟ ଭୋଗ କରିବାରେ ତାହା କେଉଁ କାର୍ଯ୍ୟର ଫଳ ସ୍ମରଣ ଥାଏ । ପୂର୍ବ ସୁକୃତର ଫଳାଫଳ ସକାଶେ ସ୍ୱର୍ଗ ନରକ ନ ଥିବା × × × ଜନ୍ମାନ୍ତର ମାନିବାର ଭଲ କି ସ୍ୱର୍ଗନରକ × × × ବିଷୟରେ ସନ୍ଦିହାନ ବ୍ୟକ୍ତିକୁ ଶତପଥୀଙ୍କ ଉତ୍ତରରେ ମନ ମାନିବ କି ? ସେ ଏ ବିଷୟ ମନାଇବାକୁ ଇଚ୍ଛାକଲେ ତୃତୀୟ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଉନ୍ତୁ ।

୫ମ ଉତ୍ତର ଏକତ୍ୱବୋଧକ ଜ୍ଞାନ ବିନା ଆତ୍ମାର ଅସ୍ତିତ୍ୱ ସମ୍ଭବପର ବୋଲି ଶତପଥୀ ମହାଶୟ ଲେଖିଅଛନ୍ତି । ଆମ୍ଭର ବିଶ୍ୱାସ ଆତ୍ମାର ଅସ୍ତିତ୍ୱ ସମ୍ଭବପର × × × ।

ଷଷ୍ଠ ଉତ୍ତର—ବୁଦ୍ଧି ଏକ ନ ଥିବାରୁ ଗତଜନ୍ମର ପାପପୁଣ୍ୟ ମନେ ହୁଏ ନାହିଁ । ଦୋଷ କଅଣ ଜଣାଇ ନ ଦେଇ ଦଣ୍ଡଦେବା ଅତ୍ୟାଚାରୀ ରାଜାପକ୍ଷେ ଅସମ୍ଭବ ଥିବାସ୍ଥଳେ ସଦା ନ୍ୟାୟଶୀଳ ଈଶ୍ୱର ସେପରି କରନ୍ତେ ଏହା କଦାଚ ବିଶ୍ୱାସ୍ୟ ନୁହେଁ ।

୭ମ ଉତ୍ତର— ''ପ୍ରତ୍ୟେକ କାର୍ଯ୍ୟ ଏବଂ କଥାର ଆଲୋଚନା ଯେତେ ଅନିଷ୍ଟକର ନ ହୁଏ ଏବଂ ସମାଜର ମଙ୍ଗଳକର ହୁଏ ତେବେ କର୍ତ୍ତବ୍ୟ ।'' ପ୍ରତ୍ୟେକ ବିଷୟର ଆଲୋଚନା ଉପକାରପ୍ରଦ, ଯଦିବା କେତେକ ବିଷୟର ଆଲୋଚନା ଆପାତତଃ ସାଧାରଣ ମତ ବିଶ୍ୱାସର ପ୍ରତିକୂଳ ହେବା ସମ୍ଭବ ତଥାପି ତାହାର ପରିଣାମ ମଙ୍ଗଳଜନକ ।



## ବିଜ୍ଞାପନ

॥ ୧ ॥

ଆଲୋଚନା- ୨୩.୦୫.୧୯୦୦

ବାମଣ୍ଡା ଆଲୋଚନା ସଭାର ତତ୍ତ୍ୱାବଧାନରେ ଗତ ମାର୍ଚ୍ଚ ମାସଠାରୁ ଆଲୋଚନା ନାମ୍ନୀ ଖଣ୍ଡିଏ ମାସିକ ପ୍ରକାଶ ଆରମ୍ଭ ହୋଇଅଛି । ପତ୍ରିକାର କଳେବର ଡିମାଇ ଆଠପେଜି ୨୪ ପୃଷ୍ଠା ବାର୍ଷିକ ମୂଲ୍ୟ ମାଶୁଲ ସମେତ ଏକ ଟଙ୍କା ମାତ୍ର । ଏହି ପତ୍ରିକାରେ ରାଜନୀତି ବ୍ୟତୀତ ଅନ୍ୟ ସକଳ ବିଷୟରେ ଆଲୋଚନା ହୋଇଥାଏ । ସାଧାରଣର ସୁବିଧା ସକାଶେ ପତ୍ରିକାର ମୂଲ୍ୟ ଆଶାତୀତ ସୁଲଭ କରାଯାଇଅଛି । ଯେଉଁମାନେ ନମୁନାସ୍ୱରୂପ ଏକ ସଂଖ୍ୟାରେ କାଗଜ ପାଇବାକୁ ଇଚ୍ଛା କରନ୍ତି ସେମାନେ ଦେଢ଼ ଅଣା ମୂଲ୍ୟର ଏକ ବା ଦୁଇ ପଇସିଆ ଡାକ ଟିକଟ ପଠାଇଲେ ନମୁନା ପଠାଯିବ ।

ଦେବଗଡ଼ ପୋ : ଶ୍ରୀ ଜଳନ୍ଧର ଦେବ
ବାମଣ୍ଡା 'ଆଲୋଚନା' ସମ୍ପାଦକ

॥ ୨ ॥

ଆଲୋଚନା- ୨୨.୦୮.୧୯୦୦

ପ୍ରେସର ତ୍ରୁଟିରୁ ଗତ ଜୁଲାଇ ମାସର 'ଆଲୋଚନା' ଯଥା କାଳରେ ପ୍ରକାଶିତ ହୋଇପାରି ନାହିଁ । ଜୁଲାଇ ମାସର ୩ ଫରମା ଏବଂ ଅଗଷ୍ଟ ମାସର ଏକ ଫରମା ଶୀଘ୍ର ପ୍ରକାଶିତ ହେବ । ଅଗଷ୍ଟ ମାସର ଅବଶିଷ୍ଟ ଦୁଇ ଫରମା ପରବର୍ତ୍ତୀ ସଂଖ୍ୟା ସଙ୍ଗେ ପ୍ରକାଶିତ ହେବ ।

ଶ୍ରୀ ଜଳନ୍ଧର ଦେବ
ସମ୍ପାଦକ, ଆଲୋଚନା
ଦେବଗଡ଼

## ଚତୁର୍ଥ ବର୍ଷୀୟ ପ୍ରାଜ୍ଞ ପରୀକ୍ଷା ପ୍ରଶ୍ନପତ୍ର

ବିଷୟ : ଅଭିବ୍ୟକ୍ତିବାଦ ଓ ପୃଥିବୀର ଇତିହାସ
ତା.୨୩.୧.୧୯୧୩ ପୂର୍ବାହ୍ନ, ମୋଟ ନମ୍ବର -୫୦

**ପରୀକ୍ଷକ : ଶ୍ରୀଯୁକ୍ତ ଜଳନ୍ଧରଦେବ**

**୧ମ :** ଆଧୁନିକ ମତାନୁସାରେ ଅଭିବ୍ୟକ୍ତି ଶବ୍ଦର ତାତ୍ପର୍ଯ୍ୟ କଅଣ ? ଗୁଣୋତ୍ତର ବୃଦ୍ଧି କାହାକୁ ବୋଲାଯାଏ ? ଗୁଣୋତ୍ତର ବୃଦ୍ଧିର ପରିଣାମ କଅଣ ? (୫)

**୨ୟ :** ଜୀବନ ସଂଗ୍ରାମର କାର୍ଯ୍ୟ ପ୍ରଣାଳୀର ବିବରଣ ଲେଖ ଓ ପ୍ରୟୋଜନ ସ୍ଥଳେ ଉଦାହରଣ ଦେଇ ବୁଝାଇ ଲେଖ । (୫)

**୩ୟ :** ପ୍ରାକୃତିକ ନିର୍ବାଚନ, କାମ୍ୟ ନିର୍ବାଚନ ଓ ପରିପାର୍ଶ୍ୱ ପ୍ରଭାବଦ୍ୱାରା ଜୀବଜଗତର କିଦୃଶ ପରିବର୍ତ୍ତନ ଘଟୁଅଛି ଉଦାହରଣ ସହ ବୁଝାଇ ଲେଖ । (୫)

**୪ର୍ଥ :** ବର୍ଣ୍ଣଭେଦ କଅଣ ? ଉପକାରପାଇଁ କି ଉଦ୍ଭିଦସ୍ଥ ଓ ଜୀବଜଗତର ବର୍ଣ୍ଣ ବୈଚିତ୍ର୍ୟର ସୃଷ୍ଟି କି ମାନବର ନେତ୍ର ପ୍ରୀତି ନିମନ୍ତେ ? (୫)

**୫ମ :** ପ୍ରାକୃତିକ ନିର୍ବାଚନ ଦ୍ୱାରା ଜଟିଳବସ୍ତୁର ଉତ୍ପତ୍ତି କିପରି ସମ୍ଭବ ହୋଇପାରେ ବୁଝାଇ ଲେଖ । ତୁମ୍ଭମାନଙ୍କର ଦୃଷ୍ଟିଗୋଚର ହେଉଥିବା ଜୀବମାନଙ୍କ ମଧ୍ୟରୁ କେଉଁ କେଉଁ ଜୀବର ପ୍ରାକୃତିକ ନିର୍ବାଚନ, କାମ୍ୟ ନିର୍ବାଚନ ଓ ପରିପାର୍ଶ୍ୱ ପ୍ରଭାବ ହେତୁରୁ ଶାରୀରିକ ପରିବର୍ତ୍ତନ ଘଟିଥିବାର ଅନୁମାନ କରୁଅଛ ? (୫)

**୬ଷ୍ଠ :** ଆର୍ଯ୍ୟମାନଙ୍କର ଆଦି ବାସସ୍ଥାନ ଭାରତବର୍ଷ ଥିବାର ଯେ ପ୍ରମାଣ ଯାଇଅଛି ତାହା ଲେଖ । (୭)

**୭ମ :** ମିଶର, ପାରସ୍ୟ, ଗ୍ରୀସ୍, ଚୀନ୍ ଦେଶରେ ଭାରତୀୟ ସଭ୍ୟତାର କି ନିଦର୍ଶନ ମିଳେ । (୮)

**୮ମ :** ଆର୍ଯ୍ୟ ଜାତିର ଆଦିବାସ ପ୍ରସଙ୍ଗରେ ପଣ୍ଡିତଗଣଙ୍କର ବିଭିନ୍ନ ମତ ଦେଖାଯାଏ । ଗ୍ରନ୍ଥକର୍ତ୍ତା ସମସ୍ତ ମତ ଖଣ୍ଡନ କରି କିପରି ଭାରତବର୍ଷକୁ ସଭ୍ୟତାର କେନ୍ଦ୍ରଭୂମି ଓ ଆଦିଭୂମି ପ୍ରମାଣ କରିଅଛନ୍ତି ତାହା ବୁଝାଇ ଲେଖ । (୫)

**୯ମ :** ଋଗ୍‌ବେଦ ଆଲୋଚନାଦ୍ୱାରା ଆର୍ଯ୍ୟଗଣଙ୍କର ଆଦିବାସସ୍ଥାନର ନିର୍ଣ୍ଣୟ ମିଳେ କି ? ଋଗ୍‌ବେଦର ପ୍ରମାଣଗୁଡ଼ିକ କଅଣ ନିଜ ଭାଷାରେ ଲେଖ । (୫)

•

## ଉତ୍କଳ ସମ୍ମିଳନୀ ସଭାର ୧୨ଶ ଅଧିବେଶନ ସନ ୧୯୧୬ ଡିସେମ୍ବର ୨୯/୩୦ ବାଲେଶ୍ୱର ଉପଲକ୍ଷେ ଶୁଭେଚ୍ଛା ପତ୍ର

**୨୩।୧୨।୧୯୧୬**

ମହାଶୟ !

ଆପଣଙ୍କଦ୍ୱାରା ପ୍ରେରିତ ଉତ୍କଳ ସମ୍ମିଳନୀର ନିମନ୍ତ୍ରଣପତ୍ର ପାଇ ପରମ ଆହ୍ଲାଦିତ ହୋଇଅଛି । ନାନା ଅସୁବିଧା ଓ ପ୍ରତିବନ୍ଧକ ଯୋଗୁଁ ସମ୍ମିଳନୀରେ ଉପସ୍ଥିତ ହୋଇ ପାରିବାକୁ ମୋର ଯୋଗ୍ୟତା ନାହିଁ ।

ସମ୍ମିଳନୀ ଯେଉଁ ହିତକର କାର୍ଯ୍ୟ କରିବାକୁ ମନୋନୀତ କରିବେ ତହିଁରେ ମୋର ସମ୍ପୂର୍ଣ୍ଣ ସହାନୁଭୂତି

ଥିବାର ଜ୍ଞାପନ କରୁଅଛି । ଦେଶ ହିତ ସାଧକ ଏପରି ସମ୍ମିଳନୀରେ ଯୋଗଦାନ ଦେବାକୁ ଅକ୍ଷମ ହେବାରୁ ନିତାନ୍ତ ଲଜ୍ଜିତ ଓ ଦୁଃଖିତ ଅଛି । ତ୍ରୁଟି ମାର୍ଜନା କରିବା ହେବେ । ଦେଶ ସମ୍ୟକ୍ ଉନ୍ନତି ଲାଭ କରୁ । ସମ୍ମିଳନୀର ମଙ୍ଗଳ ହେଉ; ଏହା ନିର୍ବିଘ୍ନରେ ସୁସମ୍ପନ୍ନ ହେଉ ଏହାହିଁ ଏକମାତ୍ର କାମନା ।

ଶ୍ରୀଯୁକ୍ତ ଜଳନ୍ଧର ଦେବ

ବାମଣ୍ଡା

•

## ବିଶ୍ୱନାଥ କରଙ୍କୁ ପତ୍ର
### ଦେବଗଡ଼
### ତା । ୮ । ୮ । ୧୯୩୨

ପ୍ରିୟ ବିଶ୍ୱନାଥ ବାବୁ,

ଆଜକୁ ପ୍ରାୟ ଏକ ସପ୍ତାହ ହେବ ଆପଣଙ୍କ କାର୍ଡ ପାଇ ଅତିଶୟ ସୁଖାନୁଭବ କଲି । ଆଶା କରେଁ ଆପଣ ସପରିବାର କୁଶଳରେ ଥିବେ । ଦିନେ ଦିନେ ବୃଷ୍ଟି ହେଉଥିଲେ ମଧ ଗରମର ବାଧାରୁ ରକ୍ଷା ମିଳି ନାହିଁ । ଉତ୍କଳ ସାହିତ୍ୟ ଅଦ୍ୟାପି ହସ୍ତଗତ ହୋଇ ନାହିଁ ।

'ବେଦ ଓ ହିନ୍ଦୁଧର୍ମ' ପ୍ରବନ୍ଧର କେତେକାଂଶ ଅଦ୍ୟ ପଠାଇଲି, ଯେତେ ସଂକ୍ଷେପ କରିବାକୁ ଇଚ୍ଛା କଲେ ସୁଦ୍ଧା ହୋଇପାରୁ ନାହିଁ । ଆଉ ୪।୫ଟା ପ୍ରବନ୍ଧରୁ କମ୍ ହେବ ନାହିଁ । ଆପଣଙ୍କୁ ଏ ପ୍ରବନ୍ଧ କିପରି ଲାଗିଲା ଲେଖିବେ । ତା' ଛଡ଼ା ଆଉ ଯୋଡ଼ିଏ ଗଳ୍ପ ପଠାଇଅଛି । ଆଜିକାଲି ଅଧିକାଂଶ ସମୟ କୃଷି କ୍ଷେତ୍ରରେ ବ୍ୟୟ କରେ; ସେଠାରେ ମୋତେ ଆନନ୍ଦ ମିଳେ ଏବଂ ମୂଲିଆ ମୂଲିଆଣୀଙ୍କ ସହିତ ବାକ୍ୟାଳାପ ଆଧୁନିକ ଭଦ୍ରବ୍ୟକ୍ତିଙ୍କ ବାକ୍ୟାଳାପ ଅପେକ୍ଷା ସୁଖକର ଓ ଶିକ୍ଷଣୀୟ ବୋଲି ମନେହୁଏ ।

ଦୁଇ ପ୍ରବନ୍ଧ କୃଷିକ୍ଷେତ୍ରରେ ବସି କାମ ଦେଖିବା ଅବସରରେ ଲେଖିଅଛି, ଲେଖାର ଧାରାରୁ ଜାଣିପାରିବେ । ପସନ୍ଦ ହେଲେ ସାହିତ୍ୟରେ ଦେବେ— ପସନ୍ଦ ନ ହେଲେ ରଖିଥିବେ, ନଷ୍ଟ କରିବେ ନାହିଁ । କେତେବେଳେ ହେଲେ କାର୍ଯ୍ୟକୁ ଆସିପାରିବ । ଆଗରୁ ଗୋଟିଏ ଏକାଙ୍କିକା ନାଟକ ଆପଣଙ୍କଠାରେ ଅଛି, ଆଉ ଗୋଟା କେତେ କ୍ଷୁଦ୍ର ଗଳ୍ପ ଶୀଘ୍ର ଲେଖିବି । ଏଠାରେ ପଡ଼ିଥିବା ଅପେକ୍ଷା ଆପଣଙ୍କଠାରେ ଥିଲେ ଭଲ । 'ଜାତି ବର୍ଣ୍ଣ ବିଚାର' ଶେଷ ପାଇ ନାହିଁ । ଶେଷ ହେଲେ ତାହା ମଧ ପଠାଇ ଦେବି ।

ସାହିତ୍ୟ ଠିକ୍ ସମୟରେ ବାହାରୁ ନ ଥିବାର ଦେଖି ମୋର ହୃଦୟରେ ଦାରୁଣ ଦୁଃଖାନୁଭବ ହୁଏ । ଅନ୍ୟାନ୍ୟ ପତ୍ରିକା ବିଷୟରେ ସେପରି ଚିନ୍ତା ନାହିଁ । ସାହିତ୍ୟ ପଥପ୍ରଦର୍ଶକ-ତା'ର ଦୁର୍ଦ୍ଦଶା ଉତ୍କଳର ଦୁର୍ଦ୍ଦଶା ବୋଲାଯିବ, ଆପଣ ତା' ନିମନ୍ତେ ଯତ୍‌ପରୋନାସ୍ତି କଷ୍ଟ ଓ କ୍ଷତି ସ୍ୱୀକାର କରିଅଛନ୍ତି । ଏହା ଅନେକଙ୍କୁ ଜଣା ଏବଂ ଏହା ମଧ ସତ ଯେ ଆପଣଙ୍କର ପ୍ରଖ୍ୟାତିର ମୂଳରେ ଉତ୍କଳ ସାହିତ୍ୟ । ସୁତରାଂ ଆପଣ ବଞ୍ଚିଥିବାଯାଏ ତା'ର ଯେପରି ପତନ ନ ହୁଏ, ତତ୍‌ପ୍ରତି ଦୃଷ୍ଟି ଦେବା ଆପଣଙ୍କର କର୍ତ୍ତବ୍ୟ । ଆମ୍ଭମାନଙ୍କର ହୃଦୟ ଥିଲେ ମଧ ଧନ ନାହିଁ ବା ବିଦ୍ୟା ନାହିଁ । ଯେଉଁମାନଙ୍କର ଧନ ଅଛି, ସେମାନେ ସାହିତ୍ୟିକ ନୁହନ୍ତି । ଯେଉଁମାନେ ବିଦ୍ୱାନ୍ ସେମାନେ ଓଡ଼ିଆ ଲେଖନୀ ଧାରଣ କଲେ ଅପମାନିତ ହେବାର ଆଶଙ୍କା କରନ୍ତି । ଜଗତର ବିଚିତ୍ର ରୀତି । ଯାର ମନ ଅଛି ତା'ର ଧନ ନାହିଁ, ଯାର ଧନ ଅଛି ତା'ର ମନ ନାହିଁ- କିମାଶ୍ଚର୍ଯ୍ୟ ମତଃପରଂ । ଯାହା ହେଉ ସାହିତ୍ୟ ସମ୍ବନ୍ଧେ ଆପଣ ଟିକେ ଯତ୍ନଶୀଳ ଥିବା ଉଚିତ— ଏହା ଲେଖିଲି ବୋଲି କିଛି ମନେ କରିବେ ନାହିଁ । ହୃଦୟବେଦନା ପ୍ରକାଶ କରିବା ଉଚିତ ନୁହେଁ କି ?

ଆପଣଙ୍କର ସ୍ନେଃ

ଜଳନ୍ଧର ଦେବ

•

## ମୁଖବନ୍ଧ
### (ଗିରିଜାଶଙ୍କର ରାୟଙ୍କ 'ସାହିତ୍ୟ ସନ୍ଦର୍ଭ')
### (୧୯୩୩) ପୁସ୍ତକର ମୁଖବନ୍ଧ)

ଅନେକ ପୁସ୍ତକର 'ନାମବଡ଼ା ଦର୍ଶନ ଥୋଡ଼ା' । କିନ୍ତୁ ସାହିତ୍ୟ ସନ୍ଦର୍ଭ ପକ୍ଷରେ ତାହା ସମ୍ପୂର୍ଣ୍ଣ ବିପରୀତ । କହିବାକୁ ଗଲେ ପୁସ୍ତକ ଭିତରେ ଯାହା ଅଛି ତାହା ନାମରୁ ହୋଇପାରୁ ନାହିଁ । ଏଥିରେ ଜ୍ଞାତବ୍ୟ ଓ ଶିକ୍ଷଣୀୟ ବିଷୟ ଅନେକ ଅଛି ।

ରମଣୀମାନଙ୍କର ଅଳଙ୍କାର ସ୍ପୃହା ଚିରପ୍ରସିଦ୍ଧ । ଅଙ୍ଗସୌଷ୍ଠବ ନିମନ୍ତେ ସେମାନେ ଅଳଙ୍କାର ଓ ଫୁଲରୁ ବାଛନ୍ତି । କବି ଓ ଲେଖକମାନେ ଅଳଙ୍କାର ପ୍ରିୟ । କାବ୍ୟ ଓ ରଚନାକୁ ଅଳଂକୃତ କରିବାକୁ ସେମାନେ ସର୍ବଦା ଯତ୍ନଶୀଳ । ସାହିତ୍ୟିକ ସୁରୁଚିସମ୍ପନ୍ନ ଓ ପରିମାର୍ଜିତ ଲେଖାର ପକ୍ଷପାତୀ ।

ଅଳଙ୍କାର ବ୍ୟବହାର ଅଜ୍ଞା ରମଣୀର ବେଶଭୂଷା ସକାଶେ ଯେମନ୍ତ ସୌନ୍ଦର୍ଯ୍ୟ ହାନିକର ତେମନ୍ତ ଲେଖକର ଅଯଥା ଶବ୍ଦ ଓ ଅଳଙ୍କାର ଆଡ଼ମ୍ବର ରୁଚିବିରୋଧ ଓ ସାହିତ୍ୟିକର ଉଦ୍ଦେଶ୍ୟବିହୀନ ଲେଖା ନିଷ୍ଫଳ। ଏଣୁ ସାହିତ୍ୟ ସନ୍ଦର୍ଭ ସଂକ୍ଷେପରେ ସାହିତ୍ୟର ସ୍ୱରୂପ ଓ ଉଦ୍ଦେଶ୍ୟ ଉଦୟମାନ ଲେଖକମାନଙ୍କର ସପକ୍ଷରେ ଉପସ୍ଥାପିତ କରିବାର ପ୍ରୟାସ କରେ।

ଏ ପୁସ୍ତକର ଉଦ୍ଦେଶ୍ୟ ଓ ସୀମା ବିସ୍ତାର ଭାବରେ ବର୍ଣ୍ଣନା କରିବାର ନିଷ୍ପ୍ରୟୋଜନ। ପୁସ୍ତକର ସୂଚୀପତ୍ର ତାହା ସ୍ପଷ୍ଟ ଭାବରେ ବ୍ୟକ୍ତି କରୁଅଛି।

ସାହିତ୍ୟ ପ୍ରତି ପାଠକର ମନ ଆକୃଷ୍ଟ ଓ ମୁଗ୍ଧ ହେବା ଅଭିପ୍ରାୟରେ ପୁସ୍ତକର ଅଧ୍ୟାୟମାନ ପର୍ଯ୍ୟାୟ ଗ୍ରଥିତ।

ବିଷୟ ଗୁରୁତର ଓ ଦୀର୍ଘ। ଲେଖକ ଯତ୍ନ ଓ ଅଧ୍ୟବସାୟ ସହିତ ଏହି କ୍ଷୁଦ୍ର ପୁସ୍ତକରେ ଏହି ଗୁରୁତର ବିଷୟକୁ ମଧ ପାଠକର ହସ୍ତାମଳକବତ୍ କରିବାରେ କୃତକାର୍ଯ୍ୟ ହୋଇଅଛନ୍ତି ବୋଲି ମୋର ବିଶ୍ୱାସ। ବିଷୟ ତୁଳନାରେ ଲେଖା ସୁବୋଧ ଓ ସରଳ ହୋଇଅଛି।

ସାହିତ୍ୟସେବୀମାନଙ୍କର ଜ୍ଞାତବ୍ୟ ବିଷୟ ଯାହା ସାଧାରଣତଃ ମାସିକ ପତ୍ରିକାଦିରେ ଆଲୋଚିତ ହୋଇଥାଏ ତାହା ଏହି ପୁସ୍ତକରେ ପ୍ରଚୁର ଭାବରେ ଅଛି। ତା'ଛଡ଼ା ସାହିତ୍ୟରେ ଆନନ୍ଦ ଓ ତରୁଣ ସାହିତ୍ୟ ଅଧ୍ୟାୟ ଯୋଡ଼ିକ ଏହି ପୁସ୍ତକର ବିଶେଷତ୍ୱ। ତରୁଣ ସାହିତ୍ୟ ସମ୍ବନ୍ଧେ ମୁଁ ଲେଖକଙ୍କ ସହିତ ସମ୍ପୂର୍ଣ୍ଣ ଏକମତ।

ଅସାର ଓ କୁସଂସ୍କାରବର୍ଜିତ ପୁରୁଣା ନୂଆ ସମନ୍ୱୟରେ ଅଭିନବ ସାହିତ୍ୟ ସମ୍ପତ୍ତି ସୃଷ୍ଟି ଆଶା ଯାହା ଏ ପୁସ୍ତକରେ ରଚିତ ହୋଇଅଛି ତାହା ଜାତୀୟ ସାହିତ୍ୟର ଉନ୍ନତିକର।

ସାହିତ୍ୟର ସ୍ୱରୂପ ଓ ସାହିତ୍ୟର ପ୍ରୟୋଜନ ଜଣାଇବା ଭଳି ଖଣ୍ଡିଏ। ପୁସ୍ତକର ଅଭାବ ଲକ୍ଷିତ ହେଉଥିଲା। ସାହିତ୍ୟସନ୍ଦର୍ଭ ସେହି ଅଭାବ ପୂରଣ କରିବ ବୋଲି ମୋର ବିଶ୍ୱାସ।

ଉପସଂହାରରେ ମୁଁ ଏହି ପୁସ୍ତକକୁ ସାହିତ୍ୟର ଉପକ୍ରମଣିକା ବୋଲିବି କି ? ନା, ଏତଦ୍ୱାରା ପୁସ୍ତକର ଇଜ୍ଜତ ଓ ପ୍ରୟୋଜନ ସ୍ପଷ୍ଟରୂପେ ସୂଚିତ ହେବ ନାହିଁ। ଏଣୁ ଗୋଟିଏ ପାଶ୍ଚାତ୍ୟ ବାକ୍ୟ ବ୍ୟବହାର କରିବି। ସାହିତ୍ୟ ସନ୍ଦର୍ଭ ଉଦୀୟମାନ ସାହିତ୍ୟସେବୀମାନଙ୍କ ନିମନ୍ତେ ଖଣ୍ଡିଏ Vada Macun.

ଦେବଗଡ଼ **ଜଳନ୍ଧରଦେବ**
ତା ୭ । ୧୨ । ୩୩



## ଶଙ୍ଖ ସମ୍ପାଦକୀୟ
## ଦ୍ୱିତୀୟବର୍ଷ ତୃତୀୟସଂଖ୍ୟା
## ନି, ନାହିଁ

ନି, ନା, ନାହିଁ ଇତ୍ୟାଦି ନିଷେଧାର୍ଥକଶବ୍ଦ ପୂର୍ବ ବ୍ୟାକରଣମାନଙ୍କରେ ଦେଖା ଯାଉଥିଲା । ନିଷେଧାର୍ଥରେ 'ନି' ଶବ୍ଦଟି କେବେ ବ୍ୟାକରଣଭୁକ୍ତ ହୋଇଅଛି ତାହା ଆମ୍ଭମାନଙ୍କୁ ଜଣା ନାହିଁ । କାରଣ ଆଧୁନିକ ବ୍ୟାକରଣ ପାଠର ସୁବିଧା ଆମମାନଙ୍କୁ ମିଳି ନାହିଁ । ଓଡ଼ିଶା ଲେଖାରେ ଲେଖକମାନେ ନ ଞ୍ଜାର୍ଥରେ ନି ଶବ୍ଦର ବହୁଳ ବ୍ୟବହାର ଏବେ ଆରମ୍ଭ କଲେଣି । ଏହି ଶବ୍ଦଟି ଆମ୍ଭମାନଙ୍କର ଦୃଷ୍ଟିକୁ ଅସୁନ୍ଦର ଏବଂ କାନକୁ ଅଶ୍ରାବ୍ୟ ବୋଧ ହେଉଅଛି । 'ନି' ପୂର୍ବରେ ଶିଷ୍ଟ ପ୍ରୟୋଗ ନ ଥିଲା, ଏବେ ମଧ ଏହା ଶିଷ୍ଟ ପ୍ରୟୋଗ ନୁହେଁ । କୌଣସି ବିଶିଷ୍ଟ ଲେଖକଙ୍କ ଲେଖନୀରେ 'ନି'ର ପ୍ରୟୋଗ ଦେଖି ଆଧୁନିକ ଲେଖକମାନେ ଏହା ବ୍ୟବହାର କରୁଅଛନ୍ତି । ଏହାକୁ ଆମେମାନେ ଅନ୍ୟାୟ ଅନୁକରଣ କହିପାରୁ । ପୂର୍ବରେ ଏଥିର ଆଲୋଚନା କରାଯାଇ ଥିଲେ ମଧ କେହି ଦୃଷ୍ଟିପାତ କଲେ ନାହିଁ । 'ନି'ର ବ୍ୟବହାର ଭିନ୍ନ ସ୍ଥାନରେ ଭିନ୍ନ ପ୍ରକାର । 'ନି' ନିଶ୍ଚୟାର୍ଥରେ ମଧ ବ୍ୟବହୃତ ହୁଏ । ଜଣେ ଜଣକୁ ଡାକିଲା ''ଆସ ଯିବା ।'' ଉତ୍ତର ମିଳିଲା ତମେ ଯାଅ ମୁଁ ଯିବିନି । ଏଠାରେ ଅର୍ଥ ଏହି ଯେ ମୁଁ ପରେ ନିଶ୍ଚୟ ଯିବି । ବାଳକ, ବାପକୁ, ଭାଇକୁ ବା ଅନ୍ୟକୁ କିଛି ମାଗିଲା ଅସ୍ୱୀକାର କଲେ ବାଳକ ହଟ ଲଗାଇ କହେ ଦିଅନି, ଦିଅନି, ଅର୍ଥାତ୍ ଅବଶ୍ୟ ଦିଅ । ଆମମାନଙ୍କର ପୂର୍ବ ସମ୍ପାଦକ ଶ୍ରୀ ମାୟାଧର ମାନସିଂହ ନଞ୍ଜାର୍ଥର 'ନି' ଶବ୍ଦର ବ୍ୟବହାରରେ ପଟୁ । ତାଙ୍କରି ଲେଖାରୁ ଦେଖାଯାଉ ନିମ୍ନୋକ୍ତ ପଙ୍କ୍ତିର 'ନି'ର ନଞ୍ଜାର୍ଥ କି ନିଶ୍ଚୟାର୍ଥ ବାହାରୁ ଅଛି :— ''ସେ ତ ମଗାଉଛନ୍ତି , ତାଙ୍କଠୁ ମାଗି ଆଣି କେତେବେଳେ ପଢ଼ି ଦେବାନି ।'' (ଶଙ୍ଖ ୧୨ ସଂଖ୍ୟା ସମ୍ପାଦକୀୟ) କିନ୍ତୁ ନବ୍ୟଲେଖକମାନେ ବୁଝିବେ ଏହାର ଅର୍ଥ ନାହିଁ । ଏପରି ଦ୍ୱାର୍ଥବୋଧକ ଶବ୍ଦର ବ୍ୟବହାରର ପ୍ରୟୋଜନ କ'ଣ ? ସମ୍ବଲପୁର ଅଞ୍ଚଳର ଅଶିକ୍ଷିତ

ଗ୍ରାମ୍ୟଭାଷାରେ ନଞ୍ଚାର୍ଥରେ 'ନି'ର ବ୍ୟବହାର ଅଛି କିନ୍ତୁ 'ନି' ବସେ ପଦର ଆଗରେ, ଯଥା ନିଯାଏଁ, ନିଖାଏଁ, ଅର୍ଥ ଯିବି ନାହିଁ ଖାଇବି ନାହିଁ । ମାତ୍ର 'ନି'ଟା କ୍ରିୟାର ଶେଷରେ ବସେ ନାହିଁ । ଯାଏଁ ନି, ଖାଏଁ ନି, ବ୍ୟବହାର ନାହିଁ ।

ଓଡ଼ିଶାର ଯେକୌଣସି ଅଞ୍ଚଳରେ ଭଦ୍ରବ୍ୟକ୍ତିଙ୍କ ସହିତ କଥୋପକଥନ ବେଳେ 'ନି' ଶବ୍ଦ ବ୍ୟବହାର ହେବାର ଶୁଣି ନାହୁଁ । ଯାହା ଶିଷ୍ଟମାନେ ବାକ୍ୟାଳାପରେ ବ୍ୟବହାର କରନ୍ତି ନାହିଁ ତାକୁ ସାହିତ୍ୟିକଗଣ ଲେଖା ସାହିତ୍ୟରେ ସ୍ଥାନ ଦେବାକୁ ପ୍ରୟାସୀ କାହିଁକି ? ସାହିତ୍ୟରେ ଏପରି ବ୍ୟବହାର ଉନ୍ନତି ବା ଅଧୋଗତିର ପରିଚାୟକ ? ସମ୍ପାଦକମାନଙ୍କ ପାଖରେ କାଗଜ କାଳି ଓ ସ୍ଥାନ ଯଥେଷ୍ଟ । ନାହିଁକୁ ସଙ୍କୋଚ କରି 'ନି' କରିବାର ପ୍ରୟୋଜନ ନାହିଁ । ଗୋଟାଏ ଅକ୍ଷରକୁ ସ୍ଥାନ ଦେବାକୁ ସମ୍ପାଦକମାନେ କୁଣ୍ଠିତ ହେବେ ନାହିଁ । ଏହି ଅନୁରୋଧ ଯେ ନବ୍ୟ ଲେଖକମାନେ ନାହିଁ ପରିବର୍ତ୍ତେ 'ନି' ଲେଖିବେ ନାହିଁ । ଭ୍ରମରେ 'ନି' ଶବ୍ଦ ଲେଖାରେ ଥିଲେ ତାକୁ ସଂଶୋଧନ କରି ନାହିଁ ଲେଖିବାକୁ ସମ୍ପାଦକମାନଙ୍କ ଅନୁମତି ଦେବେ ।

**ବୃଥା ବିବାଦ :** ହିଟଲାରଙ୍କର ସ୍ୱଜାତି ମମତା ଅତ୍ୟଧିକ ହେବାରୁ ଜିଉମାନଙ୍କ ଉପରେ ହତିଆର ଚଲାଇବାକୁ ଆରମ୍ଭ କଲେ । କ୍ରମେ ସମସ୍ତ ଜାତିର ଶୀର୍ଷସ୍ଥାନରେ ଜାର୍ମାନ ଜାତି ରହିବେ । ଏହି ବାସନା ମନରେ ପୋଷଣ କରି ସମରାରମ୍ଭ କଲେ । ସୁବିଧାବାଦୀ ଇଙ୍ଗରାଜ ସୁବିଧା ଖୋଜୁ ଖୋଜୁ ସମରରେ ଜଡ଼ିତ ହେବାକୁ ବାଧ ହେଲେ । ସମରାଗ୍ନି ଜଳିଲା । ଏହି ସ୍ୱାର୍ଥାନ୍ୱେଷୀଜାତିମାନଙ୍କ ହେତୁରୁ ରଣଢେଉ ଭୂଖଣ୍ଡରେ ପ୍ରସାରିତ ହେଲା । ଲକ୍ଷ ଲକ୍ଷ ଲୋକ ହେଲେ ସମରାନଳର ଆହୁତି । ଯେଉଁମାନଙ୍କର ଯୁଦ୍ଧ ସହିତ ସମ୍ବନ୍ଧ ଅତିକମ୍ ବା ନାହିଁ ବଇଲେ ଚଳେ ସେମାନେ ମଧ ଅନ୍ନକଷ୍ଟରେ ବସ୍ତ୍ରକଷ୍ଟରେ ଗଭୀର ଦୁଃଖ କ୍ଳେଶ ପାଇଲେ । ଲୋକେ ଆଶା କରିଥିଲେ ସମରାଗ୍ନି ନିର୍ବାପିତ ହେଲେ— ଲୋକେ କାହିଁକି ବଡ଼ ବଡ଼ ନେତାମାନେ ମଧ ଆଶ୍ୱାସବାଣୀ ଦେଇଥିଲେ ଯେ ଲୋକଙ୍କର ଅଭାବ ଦୂର ହେବ, ସମସ୍ତେ ସ୍ୱାଧୀନତା ପାଇବେ ଇତ୍ୟାଦି । ଯୁଦ୍ଧ ଶେଷ ହେଲା ମାତ୍ର ଲୋକଙ୍କର ଆଶାପୂରଣ ହେଲା କି ? ପୁଣି ଯୁଦ୍ଧର ଆୟୋଜନ ଭିତରେ ଭିତରେ ଚାଲୁଅଛି କି ନା କିଏ କହିପାରେ ? ହେଉ ଯେଉଁମାନଙ୍କର ରାଜ୍ୟଲାଳସା ଅଛି ସେମାନେ ସେହି ଚିନ୍ତାରେ ଥାଉନ୍ତୁ, ମାତ୍ର ଆମ ଦେଶବାସୀ ଆପଣା ଆପଣା ମଧରେ ଅନ୍ତର୍ବିବାଦ କରି ହାଣକାଟ ମାରପିଟ୍ କରୁଅଛନ୍ତି କାହିଁକି । ବ୍ରିଟିଶ୍ ସିଂହର ଉଦରପୂର୍ତ୍ତି ପାଇଁ କି ସିନା ! ଏ ତ ସ୍ୱାଧୀନତା ଲାଭ ପାଇ ନୁହେଁ । ଭାରତ ସନ୍ତାନମାନଙ୍କର ବାସନା ଏହାହିଁ ହେବା ଉଚିତ ଯେ ଜନ୍ମଭୂମି ସର୍ବଦା ଅଖଣ୍ଡ ଭାବରେ ଥାଇ ଆମମାନଙ୍କୁ ସୁଖ ସ୍ୱାଚ୍ଛନ୍ଦ୍ୟ ଦେଉ । ଅନ୍ୟମାନଙ୍କର ଅଦ୍ଭୁତ ବାସନା ଯେ ମା'କୁ ଖଣ୍ଡ ଖଣ୍ଡ ନ କଲେ ଶାନ୍ତି ମିଳିବାର ଆଶା ନାହିଁ । ଭାରତବାସୀ ପରାଧୀନ ଥାଇ ଥାଇ ସ୍ୱାଧୀନତାକୁ ଭୁଲି ଯାଇଅଛନ୍ତି । ସ୍ୱାଧୀନତାର ଆସ୍ୱାଦ ଏମାନଙ୍କୁ କେବେ ମିଳିନାହିଁ ଏଣୁ ପ୍ରକୃତ ସ୍ୱାଧୀନତା ପାଇଁ କି ଏମାନେ ଲାଳାୟିତ ନୁହନ୍ତି । ଜାତିଗତ ବିବାଦ ଧର୍ମଗତ ବିବାଦ, ଆର୍ଥିକ ବିବାଦ, ଗୃହବିବାଦ ଏମାନଙ୍କର ମଜ୍ଜାଗତ ଦୋଷ । ଏ ଜାତିର ସଦ୍‌ବୁଦ୍ଧି କେବେ ହେବ କିଏ ଜାଣେ ?

**ହୀରାକୁଦ ଡ୍ୟାମ୍ :** ସମ୍ପାଦକୀୟ ମତ ପ୍ରକାଶ ନିମନ୍ତେ ହୀରାକୁଦଡ୍ୟାମ୍ ବିରୋଧୀ ସମିତିରୁ ଖଣ୍ଡିଏ ପୁସ୍ତକ ପାଇ ଅଛୁଁ । ତାହା ଆମୂଳଚୂଳ ବାର ବାର ପାଠ କଲୁଁ ଏହି ହୀରାକୁଦ ଡ୍ୟାମ ସମ୍ବନ୍ଧୀୟ ଗଭର୍ଣ୍ଣମେଣ୍ଟଙ୍କ ପ୍ରଚାର ପତ୍ର ମଧ ପାଠ କରିବାକୁ ବାଧ ହେଲୁଁ । ଏଥି ସଙ୍ଗେ ସଙ୍ଗେ ଏ ସମ୍ପର୍କୀୟ ଅନ୍ୟାନ୍ୟ ମତମାନ ମଧ ଦେଖିଲୁଁ । ମତ ଦେବା ସମ୍ବନ୍ଧେ ଆଁମେମାନେ ବିସମ ସମସ୍ୟାରେ ପଡ଼ିଅଛୁଁ । କାରଣ ନିତିବାକ୍ୟ ଅଛି—

''ସତ୍ୟଂବ୍ରୁୟାତ୍ ପ୍ରିୟଂ ବ୍ରୁୟାତ୍ ନବ୍ରୁୟାତ୍ ସତ୍ୟମପ୍ରିୟଂ''

ମାତ୍ର ନିରପେକ୍ଷ ସମ୍ପାଦକମାନେ ସମୟ ବିଶେଷରେ ଅପ୍ରିୟ ସତ୍ୟ କହିବାକୁ ବାଧ ହୁଅନ୍ତି ।

ଗଭର୍ଣ୍ଣମେଣ୍ଟ ନିର୍ଦ୍ଧାରଣ ପତ୍ର ପାଠକଲେ ସ୍ପଷ୍ଟ ଜଣାଯାଏ ଯେ ସମ୍ବଲପୁରବାସୀଙ୍କର ଭବିଷ୍ୟତ ଉନ୍ନତିର ଆଶା ଭରସାର ରଜତରେଖା ସମୁଜ୍ଜ୍ୱଳ । ଏ ବାଟେ ଡ୍ୟାମ୍ ବିରୋଧୀ ଦଳର ଶୋଭାଯାତ୍ରା ରିପୋର୍ଟ ପାଠକଲେ ୧୩୦ ବର୍ଗ ମାଇଲ୍ ଭୂମି ସହିତ ୯୫ ଗୋଟି ଗ୍ରାମ ୨୧ ହଜାର ମାଣ ଉର୍ବର ଜମି ସହିତ ଜଳମଗ୍ନ ହେବା ବୃତ୍ତାନ୍ତ ନିତାନ୍ତ ଦୁଃଖଦାୟକ ସନ୍ଦେହ ନାହିଁ ।

ଏତାଦୃଶ ବୃହତ୍ ଆୟୋଜନ ସହିତ ପୂର୍ବେ ଆମ ଦେଶବାସୀମାନଙ୍କର ପରିଚୟ ନ ଥିଲା । ଏତାଦୃଶ ବୃହତ୍ ବ୍ୟାପାରର କ୍ଷତି ବୃଦ୍ଧି, ଆୟବ୍ୟୟ, ଆମମାନଙ୍କର ଗଣନାର ଅଗୋଚର । ବ୍ୟକ୍ତିଗତ ଧନ, ଗୋଟିଏ ଜିଲ୍ଲାର ଧନ, ସାମ୍ରାଜ୍ୟର ଧନ ସହିତ ତୁଳନୀୟ ନୁହେଁ । ମହାନଦୀ ବନ୍ଧ ନିମନ୍ତେ ଯେ ବ୍ୟୟର ପରିକଳ୍ପନା କରାଯାଇଅଛି ତାଦୃଶ ବ୍ୟୟ ପୂର୍ବେ କେବେ ଏ ଦେଶରେ ହୋଇ ନାହିଁ ବୋଲି ମନେହୁଏ ।

ଯେଉଁ ବୃହତ୍ କାର୍ଯ୍ୟର ପରିକଳ୍ପନା କରାଯାଇଅଛି ସେପରି ବୃହତ୍ ବ୍ୟୟସାଧ କାର୍ଯ୍ୟ ଭାରତରେ କେତେଟା ଅଛି ? ଏହି ବ୍ୟୟ ବିଷୟଟା ହିଁ ପ୍ରଥମ ପ୍ରଣିଧାନ ସାପେକ୍ଷ । ସାମାନ୍ୟ ଚିନ୍ତାରେ ଏ କାର୍ଯ୍ୟ ହେବା ନୋହିବା ଔଚିତ୍ୟ ସମ୍ବନ୍ଧେ ନିଷ୍ପତ୍ତି କରିବା ଅପରିଣାମ ଦର୍ଶିତାର ପରିଚୟ ଦେବ ।

ଭାରତ ଗଭର୍ଣ୍ଣମେଣ୍ଟ ଏହି ବନ୍ଧ ନିମନ୍ତେ କୋଟି କୋଟି ଟଙ୍କା ବ୍ୟୟ କରିବାକୁ ବସିଅଛନ୍ତି । ଭାରତ ଗଭର୍ଣ୍ଣମେଣ୍ଟ କି ଚିନ୍ତାଶୂନ୍ୟ ଯେ ସମ୍ବଲପୁର ଜିଲ୍ଲା ନିମନ୍ତେ ଅଜସ୍ର ଟଙ୍କାରେ ପିଲା ଖେଳ ଖେଳୁ ଅଛନ୍ତି ? ଏହା ଆମମାନଙ୍କର ମନକୁ ପାଉ ନାହିଁ । ପ୍ରତିବାଦୀ ଦଳ ଯେଉଁ ଦୁଇକଥାରେ ଏଡ଼େ ବଡ଼ ଆୟୋଜନକୁ ତ୍ୟାଗ କରିବାକୁ ନିଷ୍ପତ୍ତି କରିଅଛନ୍ତି ଆମେମାନେ ଏଡ଼େ ତରତର ହୋଇ ସେପରି ମତ ଦେବାକୁ ଆଦୌ ପ୍ରସ୍ତୁତ ନୋହୁଁ । ଆମେମାନେ ମନେକରୁ ଯେଉଁମାନେ ଆପତ୍ତି ଉତ୍ଥାପନ କରୁଅଛନ୍ତି ସେମାନଙ୍କ ଅପେକ୍ଷା ଗଭର୍ଣ୍ଣମେଣ୍ଟକର୍ତ୍ତୃକ ନିଯୁକ୍ତ ବ୍ୟକ୍ତିଗଣଙ୍କର ପାରଦର୍ଶିତା ବେଶୀ ଏହା କହିବା ଦ୍ୱିରୁକ୍ତି ମାତ୍ର ।

ସମ୍ବଲପୁର ଅସମତଳ ଭୂମି ହେଲେ ମଧ କେନାଲ ପ୍ରସ୍ତୁତ ହେଲେ କେନାଲ ଜଳଦ୍ୱାରା ବିସ୍ତାର ଚାଷ ଜମି ପ୍ଲାବିତ ହେବ ଏଥିରେ କି ସନ୍ଦେହ ଅଛି ? ଏବଂ ଏହି କେନାଲ ବାରମାସ ନାବ୍ୟ ହୋଇପାରିବ ଏଥିରେ କି ସନ୍ଦେହ ଅଛି ? ଏ ଯୋଡ଼ିକ ବିଷୟରେ ବିରୋଧବାଦୀମାନେ ଯେଉଁ ମତ ଦିଅନ୍ତି ତାହା ଆମମାନଙ୍କ ମନକୁ ପାଉ ନାହିଁ ।

ଏମାନଙ୍କର ମନରେ ଏହି ମତ ପୋଷିତ ହୋଇଅଛି ଯେ ଜଳପ୍ଲାବନରୁ ପୁରୀ କଟକକୁ ବଞ୍ଚାଇବା ନିମନ୍ତେ ଏହି ବୃହତ୍ ଆୟୋଜନ । ଏହି ବୃହତ ଆୟୋଜନ ହେତୁରୁ ସମ୍ବଲପୁରର ବିସ୍ତାର କ୍ଷତି । କଟକ ପୁରୀ ଏହି ଆୟୋଜନ ନିମନ୍ତେ ଜଳ ପ୍ଲାବନରୁ ଆଂଶିକ ରକ୍ଷା ପାଇବ ଏଥିରେ ସନ୍ଦେହ ନାହିଁ । ଏହି ଦୁଇ ଜିଲାକୁ ଆଂଶିକ ରକ୍ଷା ନିମନ୍ତେ ସମ୍ବଲପୁର ସହରର ଉପକଣ୍ଠରେ କୋଟି କୋଟି ଟଙ୍କା ଗଚ୍ଛିତ ରହିବ ତାହାକି ଅନ୍ୟ ଜିଲାର ସମ୍ପତ୍ତିରୂପେ ଗୃହୀତ ହୋଇପାରିବ ? ଯଦି ସମ୍ବଲପୁରର ଅଜସ୍ର ଲାଭ ସହିତ ପଡ଼ୋଶୀ ଦୁଇ ଜିଲ୍ଲାର ଲୋକମାନେ ଜଳପ୍ଲାବନରୁ ରକ୍ଷା ପାଇବେ ଏଥି ନିମନ୍ତେ ଦୁଃଖିତ ହେବାର କି କୌଣସି କାରଣ ଅଛି ?

ପ୍ରଶ୍ନ କରାଯାଇଅଛି ଯେ ଏବେ କିଏ ଓଡ଼ିଶାକୁ ଶାସନ କରୁଅଛି ? ଭାରତ ଗଭର୍ଣ୍ଣମେଣ୍ଟ ଅର୍ଥାତ୍ ବ୍ରିଟିଶ୍ ସିଂହ ଯେ ଅଦ୍ୟାପି ଶାସନକର୍ତ୍ତା ଏହା କି ବୁଝାଇ ଦେବାକୁ ହେବ । କଂଗ୍ରେସ ନାମ ମାତ୍ର ଶାସକ ବୋଲି ଆମମାନଙ୍କର ଧାରଣା, ଦିଲ୍ଲୀରେ ଭାଇସରାୟ, ଜିଲ୍ଲାମାନଙ୍କରେ ଗଭର୍ଣ୍ଣର, ସୈନ୍ୟର ଚାଳକ କମାଣ୍ଡର-ଇନ୍‌ଚିଫ୍ ଇଙ୍ଗରାଜ । ପୋଲିସ୍‌ର ଚାଳକ ଇଙ୍ଗରାଜ । ଗଭର୍ଣ୍ଣରଙ୍କର ସେକ୍ରେଟେରୀ ବ୍ରିଟିଶ୍ ବାଚ୍ଛା ତଥାପି ଓଡ଼ିଶାର ଶାସକ କିଏ ଏ ପ୍ରଶ୍ନ ଅଦ୍ଭୁତ ଓ ଅସଙ୍ଗତ ନୁହେଁ କି ?

ହୀରାକୁଦ ଡ୍ୟାମ୍ କଂଗ୍ରେସ ମିନିଷ୍ଟରଙ୍କ ଉଦ୍ଭାବନ ଶକ୍ତିପ୍ରସୂତ ନୁହେଁ । ଏହି ପ୍ରସ୍ତାବର ଜନ୍ମ ଦିଲ୍ଲୀରେ । ଦିଲ୍ଲୀରେ ଏହାର ନିଷ୍ପତ୍ତି ହୋଇପାରେ । ଏହାର ଆସ୍ତିନାସ୍ତି କରିବାକୁ କଂଗ୍ରେସ ମିନିଷ୍ଟର କ୍ଷମ ନୁହଁନ୍ତି ବୋଲି ଆମମାନଙ୍କର ଧାରଣା ।

ଗ୍ରାମଉନ୍ନତି ନିମନ୍ତେ କୌଣସି ବ୍ୟକ୍ତି କଟା ପ୍ରସ୍ତୁତ କଲେ ସମୟ ବିଶେଷରେ ଅନ୍ୟର ମାଣେ ଅଧେ ଚାଷ ଜମିରେ ପାଣି ମାଡ଼ିଯାଏ । ଆପୋଷିରେ କିମ୍ବା ଅଦାଲତଦ୍ୱାରା ତାହା ନିର୍ଦ୍ଧାରିତ ହୋଇ କ୍ଷତିଗ୍ରସ୍ତ ବ୍ୟକ୍ତିକୁ ଉପଯୁକ୍ତ କ୍ଷତିପୂରଣ ଦିଆଯାଇଥାଏ । ଏପରି ଘଟଣା ପ୍ରାୟ ଘଟିଥାଏ । ଗୋଟାଏ ଅସାଧାରଣ ବ୍ୟୟ ସାଧ ବନ୍ଧ ବନ୍ଧାଗଲେ ତା ତୁଳନାରେ ଚାଷଜମି ବା ଗ୍ରାମ ଜଳମଗ୍ନ ହେବା ସ୍ୱାଭାବିକ ଏହା ହୀରାକୁଦରେ ଘଟୁଅଛି ।

ହୀରାକୁଦରେ ବନ୍ଧ ପ୍ରସ୍ତୁତ ହେବାର କଳ୍ପନା ପ୍ରାୟ ଦଶନ୍ଧିରୁ ଅଧିକ ସମୟ ହେଲା ଚାଲିଅଛି । ସମ୍ବଲପୁରବାସୀ ଆରମ୍ଭରୁ ଏଥିର ପ୍ରତିବାଦ କରିଆସୁଅଛନ୍ତି ବୋଲି ଜଣା ଯାଉ ନାହିଁ । ସମ୍ବଲପୁର ନିବାସୀ ଶ୍ରୀ ବୁଧୁରାମ ଦୁବେ ପ୍ରାରମ୍ଭରୁ ଏହା ସହିତ ସଂଶ୍ଲିଷ୍ଟ ଜଣାପଡ଼େ । ସେ ସେତେବେଳେ ନୀରବ କାହିଁକି ? ହୀରାକୁଦ ଡ୍ୟାମ ସମ୍ବନ୍ଧ ନେଇ ଯେ ଏତେ କାଣ୍ଡ ହୋଇଯାଇଅଛି ତାହା କି ସମ୍ବଲପୁରବାସୀ ବିଜ୍ଞ ବ୍ୟକ୍ତିଙ୍କ ଅଜ୍ଞାତରେ ? କେବେ ତ ଏମାନଙ୍କର କୌଣସି ପ୍ରତିବାଦ ବିଶିଷ୍ଟ ପତ୍ରିକାମାନଙ୍କରେ ବାହାରି ଥିବାର ଆମମାନଙ୍କର ଦୃଷ୍ଟିରେ ପଡ଼ି ନାହିଁ ।

ଗଭର୍ଣ୍ଣରେ ଲୁଇ ବନ୍ଧର ଶୁଭପ୍ରସ୍ତର ସ୍ଥାପନ କଲେ ଏହା କି ଗୁପ୍ତ ବ୍ୟାପାର ? ପୂର୍ବରୁ ଏଥିର ବିଚାର ସମ୍ବଲପୁରବାସୀଙ୍କୁ ଜଣାଥିବ । ଗଭର୍ଣ୍ଣର ସମ୍ବଲପୁରରେ ରହି ଶୁଭ ପକାଇବା କଥା ବିଶିଷ୍ଟ ଲୋକଙ୍କ ସହିତ ପରାମର୍ଶ କରିଥିବେ । ସେମାନେ କି ପ୍ରତିବାଦ କରିଥିଲେ ? ଆଜି ଯେଉଁମାନେ ଡ୍ୟାମର ପ୍ରତିପକ୍ଷ ସେମାନେ କଳା ପତାକା ଧରି 'ଲୁଇ ଫେରି ଯାଅ' ବୋଲି ପ୍ରତିବାଦ ଯାତ୍ରା କରିଥିଲେ କି ? ଶୁଭଦେବାକୁ ହୀରାକୁଦକୁ ଗୁପ୍ତରେ କେବଳ ଗଭର୍ଣ୍ଣର ଯାଇ ପଥରଟିଏ ରଖି ଦେଇ

ଆସିଲେ, ସମ୍ବଲପୁରବାସୀ ଜାଣିପାରିଲେ ନାହିଁ ଏପରି ସମ୍ଭବ ନୁହେଁ । ସମ୍ବଲପୁରର ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଅବଶ୍ୟ ସେଠାରେ ଉପସ୍ଥିତ ଥିବେ ଏବଂ ସମ୍ଭବତଃ ଶୁଭ ଦେଲାବେଳେ କେହି କେହି ସାମାନ୍ୟ ଅଭିଭାଷଣ ଦେଇଥିବେ । ଗଭର୍ଣ୍ଣରଙ୍କ ଗଳାରେ ପୁଷ୍ପହାର ପକାଇଥିବେ । ହୀରାକୁଦ ବିରୋଧୀ ଦଳ ସେତେବେଳେ କେଉଁଠାରେ ଥିଲେ ? ଗଭର୍ଣ୍ଣର ଲୁଇ ପ୍ରକାଶ କରିଥିଲେ ଯେ ସେ ସମ୍ବଲପୁରରେ ଡିପୋଟି କମିସନର ଥିଲାବେଳେ ସମ୍ବଲପୁରର ଲୋକମାନଙ୍କର ସାହାଯ୍ୟ ପାଇ ଉପକୃତ ହୋଇଥିଲେ । ବିଦାୟ ନେବାବେଳେ ସମ୍ବଲପୁରବାସୀଙ୍କର ଅନ୍ତତଃ ଗୋଟିଏ ଉପକାର କରିଯିବେ— ସେ ସମ୍ବଲପୁରବାସୀଙ୍କର ବନ୍ଧୁ । ଏ ମୋଲାଏମ ବାକ୍ୟରେ ସମ୍ବଲପୁରବାସୀ ମୁଗ୍ଧ ହେଲେ କାହିଁକି ? ଶୁଭଦେବା ସ୍ଥଳରେ କଳା ପତାକା ଉଡ୍ଡୀୟମାନ ହୋଇଥିଲା କି ? ତେବେ ଆଜି ଏ ପ୍ରତିବାଦ କାହିଁକି ? ଲୁଇ ସମ୍ବଲପୁରବାସୀଙ୍କର ପ୍ରକୃତବନ୍ଧୁ ହେତୁ ଏ ମହତ୍ ଉପକାର କରି ସ୍ୱଦେଶକୁ ଚାଲିଗଲେ କି ସେ ଗଲାପରେ ସମ୍ବଲପୁରବାସୀ କଂଗ୍ରେସ ବିରୋଧରେ ବା କଟକବାସୀଙ୍କ ସହିତ କୁକୁରବିରାଡ଼ି ପରି ଯୁଦ୍ଧ କରି ଦକ୍ଷ ଯଜ୍ଞର ଅଭିନୟ କରିବେ ଏ ବାସନା ତାଙ୍କ ହୃଦୟରେ ଥିଲା ? କଂଗ୍ରେସ ଅଳ୍ପଦିନ ପରେ ଓଡ଼ିଶାର ମନ୍ତ୍ରିତ୍ୱ ପାଇବେ ବୋଲି ସେ ଜାଣି ଶୁଣି ତର ତର ହେଇ ଶୁଭ ପକାଇଲେ କାହିଁକି ? ଭାରତ ଗଭର୍ଣ୍ଣମେଣ୍ଟଙ୍କ ଇଚ୍ଛା ପୂରଣ କରିବାକୁ ଏବଂ ସମ୍ବଲପୁରବାସୀଙ୍କର ଉପକାର କଳ୍ପନା ନିଶ୍ଚୟ ତାଙ୍କ ହୃଦୟରେ ସ୍ଥାନ ପାଇଥିଲା ଏଣୁ ସେ ଶୁଭ ସ୍ଥାପନ କରିଗଲେ । କଂଗ୍ରେସ ଅଧିକାର ପାଇଲେ ଏ ମହତ୍ ପ୍ରସ୍ତାବରେ ହାତ ଦେବେ କି ନା ଏ ସନ୍ଦେହ ମଧ୍ୟ ତାଙ୍କ ମନରେ ଥାଇପାରେ । ଏହା ସ୍ପଷ୍ଟ କଥା । ଏଥିରେ ବର୍ତ୍ତମାନ ପ୍ରତିବାଦ ବା ଆପତ୍ତିର ସମୟ କାହିଁ ? ପ୍ରଚାରିତ ପ୍ରତିବାଦ ପୁସ୍ତକରେ ଇଞ୍ଜିନିୟରମାନଙ୍କର ଅଜ୍ଞତା ଓ ଅଯୋଗ୍ୟତାର ବର୍ଣ୍ଣନାରେ ବହୁତ ସ୍ଥାନ ବ୍ୟୟିତ ହୋଇଅଛି । ଗଭର୍ଣ୍ଣର ଲୁଇଙ୍କର କଥା ଆଦୌ ସ୍ଥାନ ପାଇ ନାହିଁ । ଶୁଣିବାକୁ ମିଳେ ଏଆଡ଼େ କାର୍ଯ୍ୟ ଅନେକ ଅଗ୍ରସର ହେବାକୁ ବସିଲାଣି । ଏପରିସ୍ଥଳେ ପ୍ରତିବାଦ ଦ୍ୱାରା ପ୍ରତିବାଦୀଦଳ କିପରି କୃତକାର୍ଯ୍ୟ ହୋଇପାରିବେ ତାହା ଆମ୍ଭମାନଙ୍କୁ ଭ୍ରାନ୍ତ କରୁଅଛି ।

ବହୁଦିନ ପୂର୍ବେ ଆମ୍ଭେମାନେ T.V.A. ସୂଚିତ୍ରିତ ବିବରଣୀ ପାଠ କରିବାର ସୁବିଧା ପାଇଥିଲୁଁ । ତାହାରି ପାଠରୁ ଆମ୍ଭମାନଙ୍କ ମନରେ ଏହି ଭାବ ଜାଗ୍ରତ ହୋଇଥିଲା ଯେ ଭାରତ ନଦୀମାତୃକ ଦେଶ । ଏଥିରେ ଏ ପ୍ରକାର ବୃହତର ବନ୍ଧ ପ୍ରସ୍ତୁତ କରିପାରିଲେ ଏ ଦେଶର ପ୍ରଭୂତ ଉପକାର ସାଧିତ ହୁଅନ୍ତା, ଜଳଯୋଗାଡ଼ଦ୍ୱାରା ବିସ୍ତାର ଶସ୍ୟକ୍ଷେତ୍ରରେ ଉନ୍ନତି, କ୍ଷୁଦ୍ରନୌକାଦ୍ୱାରା ବ୍ୟବସାୟର ସୁବିଧା, ବୈଦ୍ୟୁତିକ ଶକ୍ତିଦ୍ୱାରା କେବଳ ବୃହତ୍ କାରଖାନା ନୁହେଁ କ୍ଷୁଦ୍ର କ୍ଷୁଦ୍ର ଗୃହଶିଳ୍ପର ପ୍ରସାର ଓ ପ୍ରଚାର ହେବାର ଆଶା କରାଯାଉଥିଲା । ଘଟଣାକ୍ରମେ ଗଭର୍ଣ୍ଣମେଣ୍ଟ ଗୋଟାଏ ଯୋଗାଡ଼ କଲାବେଳେ ଏଥିରେ ଅସମୟରେ ସମ୍ବଲପୁରର କେତେକ ଲୋକଙ୍କର ପ୍ରତିବାଦ । ପ୍ରତିବାଦ କରିବାର ସେମାନଙ୍କର ଅଧିକାର ଅଛି ମାତ୍ର ପ୍ରତିବାଦ ନିମନ୍ତେ ନିଷ୍ଫଳ ପ୍ରତିବାଦ ଆଦୌ କାର୍ଯ୍ୟକାରୀ ନୁହେଁ । ପ୍ରତିବାଦ କରାଗଲା ଏହି ଆଶ୍ୱାସ ହିଁ ସାର । ବୈଦ୍ୟୁତିକ ଶକ୍ତି ବିଜ୍ଞାନର ଅତି ଉତ୍କୃଷ୍ଟ ଦାନ ଏ ଅଦ୍ଭୁତଶକ୍ତି ଯେ ମାନବ ଜାତିର ସେବକ ଭାବରେ କାର୍ଯ୍ୟ କରିବ ଏହା ସ୍ୱପ୍ନର ଗୋଚର ଥିଲା । ବିଶୃଙ୍ଖଳ ଭାବରେ ଏହା ଜୀବନ ସଂହାରକ-ଶୃଙ୍ଖଳିତ ହେଲେ ଏହା ମାନବର ସେବକ । ଏ ଶକ୍ତି ଲାଭ କରିବାକୁ ପାଶ୍ଚାତ୍ୟ ଜାତି ସଦା ଉତ୍କଣ୍ଠିତ । ଯେ କୌଣସି ଉପାୟରୁ ଏ ଶକ୍ତି ପାଇବାକୁ ସେମାନେ ସଦା ଚେଷ୍ଟିତ ଓ ଜାଗ୍ରତ ଅଛନ୍ତି । ଦୁଃଖର ବିଷୟ ସମ୍ବଲପୁର ଭାଇମାନେ ଏହି ସୁଲଭ୍ୟ ୫୦,୦୦୦ କି, କି, ବୈଦ୍ୟୁତିକ ଶକ୍ତି କି ନିରର୍ଥକ ବୋଲି ଅବଜ୍ଞା ଦୃଷ୍ଟିରେ ଦେଖୁଅଛନ୍ତି । ଏହା ଶୁଣି ମର୍ମବେଦନା ଜାତ ହେଉଅଛି । ସମ୍ବଲପୁରବାସୀ ଆଲୋକ ପାଇବେ । ଇଚ୍ଛାକଲେ ଯୌଥକାରବାରଦ୍ୱାରା ବୃହତ୍ କାରଖାନାମାନ ଖୋଲି ପାରିବେ । ଗୃହେ ଗୃହେ ଏହି ଶକ୍ତି ପ୍ରଭାବରେ କ୍ଷୁଦ୍ର କ୍ଷୁଦ୍ର ଗୃହଶିଳ୍ପ ଯଥା ତେଲକଳ, ମଇଦାକଳ, ଲୁଗାବୁଣାକଳ ଏବଂ ଅନ୍ୟାନ୍ୟ ପ୍ରୟୋଜନୀୟ ପଦାର୍ଥର କଳବସାଇ ପ୍ରତ୍ୟେକ ପରମୁଖାପେକ୍ଷୀ ହେବାରୁ ରକ୍ଷା ପାରିପାରିବେ । ଏହା କି ସାମାନ୍ୟ ଲାଭ ? ବୈଦ୍ୟୁତିକ ଶକ୍ତିକୁ ଅପେକ୍ଷା କଲେ ପାଶ୍ଚାତ୍ୟ ଦେଶବାସୀଙ୍କର ହାସ୍ୟାସ୍ପଦ ହେବାକୁ ପଡ଼ିବ ।

ଏହି ପ୍ରଚାର ପ୍ରସ୍ତୁତ ଶେଷରେ ଅଯଥା ଭଣ୍ଡାର ଅଭିନୟ କରାଯାଇଅଛି । ଗୋଟାଏ ସ୍ୱଜାତିଚାଳିତ ପ୍ରଦେଶ ହେବା ସଙ୍ଗେ ସଙ୍ଗେ ତାକୁ ବିଧ୍ୱସ୍ତ କରିବାର ବାସନା ସମ୍ବଲପୁରବାସୀ ପ୍ରକାଶ କରି ହାସ୍ୟାସ୍ପଦ ହେବାର ଆଶା କଲେ ନାହିଁ ଏହା ଗଭୀର ଦୁଃଖର କଥା । ହୀରାଖଣ୍ଡ ବାଦସାହୀ କି ଏଡ଼େ ସହଜ ଲଭ୍ୟ । ଏହା ହାସ୍ୟାସ୍ପଦ ପ୍ରସ୍ତାବ ମାତ୍ର ।

ସମ୍ବଲପୁର ଭାଇମାନଙ୍କୁ ଶେଷରେ ଏହି ଅନୁରୋଧ ଯେ ସେମାନେ ନିଷ୍ଫଳ ପ୍ରଯତ୍ନରୁ କ୍ଷାନ୍ତ ହେବେ । ପ୍ରତିବାଦ କରିବା ବେଳ ସେ ବୁଡ଼ାଇ ଅଛନ୍ତି । କର୍ତ୍ତାର ଇଚ୍ଛାରେ କର୍ମ— ଭାରତ ଗଭର୍ଣ୍ଣମେଣ୍ଟ ଯେଉଁ ତୋଡ଼ରେ ଏହି କାର୍ଯ୍ୟାରମ୍ଭ କରିବାକୁ ବସି ଅଛନ୍ତି ତାହା ସମ୍ବଲପୁର ଭାଇଙ୍କର ଚେଷ୍ଟାରେ ନିଷ୍ଫଳ ହେବ ଏ ଆଶା ପୋଷଣ କରାଯାଇ ପାରୁ ନାହିଁ । ତେବେ ସେମାନଙ୍କର ଆଶା ଫଳବତୀ ହେବାର ସେମାନେ ଦୃଢ଼ବିଶ୍ୱାସ କରନ୍ତି । କରିପାରନ୍ତି । 'ଉଦ୍ୟୋଗୀ ନଂ ପୁରୁଷସିହ ମୁପୈତିଲକ୍ଷ୍ମୀ' । ମାତ୍ର ପ୍ରକୃତ କହିବାକୁ ଗଲେ— ଡ୍ୟାମ ବନ୍ଧା ରଦି ହୋଇପାରେ ମାତ୍ର ସମ୍ବଲପୁର ଭାଇମାନଙ୍କ ଭାଗ୍ୟରେ ଲକ୍ଷ୍ମୀର ସୁଦୃଷ୍ଟି ଯଥା– ପୂର୍ବଂତଥାପରଂ ।

ଶେଷରେ ଆମମାନଙ୍କ ଅନୁରୋଧ ଯେ ସମ୍ବଲପୁର ଭାଇମାନେ ବୃଥାରେ କଂଗ୍ରେସକୁ ଦୋଷ ଦେବାରୁ ବିରତ ହେବେ ଏବଂ କଟକଭାଇମାନଙ୍କ ସହିତ ବିରୋଧଭାବ ଜନ୍ମାଇବେ ନାହିଁ । ନିମଜ୍ଜମାନ ଗ୍ରାମମାନଙ୍କର ବାସିନ୍ଦାମାନଙ୍କର ଉପଯୁକ୍ତରୁ ଅତ୍ୟଧିକ ଲାଭ କରାଇବାର ଚେଷ୍ଟା କରିବେ ଏବଂ କଂଗ୍ରେସ ମନ୍ତ୍ରୀମାନଙ୍କୁ ଆମମାନଙ୍କର ଅନୁରୋଧ ଯେ ତାଙ୍କ ହାତରେ ଡ୍ୟାମ ବନ୍ଦ କରିବାର ଶକ୍ତି ନ ଥିଲେ ମଧ ଯେଉଁମାନେ ଡ୍ୟାମ ଦ୍ୱାରା ଉଚ୍ଛନ୍ନହେବେ ସେମାନଙ୍କର ପ୍ରଭୂତ ଉପକାର କରି ପାରିବାର ଏବଂ ସେମାନଙ୍କୁ ସନ୍ତୁଷ୍ଟ କରିବାର ଶକ୍ତି ଅଛି । ସେମାନଙ୍କୁ ଆର୍ଥିକ ସାହାଯ୍ୟ ବ୍ୟତିରେକେ ସେମାନଙ୍କର କ୍ଷତି ପରିମିତ ଆବାଦୀ ବା ଅନାବାଦୀ ଭୂମି ଦେଖାଇ ଦିଅନ୍ତୁ ଏବଂ କେନାଲ ପ୍ରସ୍ତୁତ ହେଲେ ସେହିମାନେ ହିଁ ତନ୍ନିକଟରେ ଉତ୍କୃଷ୍ଟ ଚାଷଭୂମି ପାଇବାର ଅଧିକାରୀ ଏହା କଂଗ୍ରେସ ମନ୍ତ୍ରୀଙ୍କର ହୃଦୟରେ ଆଜହୁଁ ସ୍ଥାନ ପାଇଥିବାର ଉଚିତ।

ଅନୁରୋଧ ସମ୍ବଲପୁର ଭାଇମାନେ ଆମମାନଙ୍କୁ ଏହି ଅପ୍ରିୟ ସତ୍ୟଉକ୍ତି ନିମନ୍ତେ କ୍ଷମାଦେବେ । ଭାରତର ନାନା ସ୍ଥାନରେ ହୀରାକୁଦ ଅନୁକରଣରେ ନୂତନ ନୂତନ ଡ୍ୟାମ ପ୍ରସ୍ତୁତ ହୋଇ ଭାରତମାତାର ଶ୍ରୀ ବୃଦ୍ଧି ସାଧିତ ହେଉ । ଭାରତବାସୀ ସଭ୍ୟଜାତିଙ୍କ ମଧରେ ଖଡ଼ିଗାର ପାଉ ।

**ସମ୍ପାଦକ ଓ ଲେଖକର ସମ୍ବନ୍ଧ :** ଏ ଦୁହିଁଙ୍କ ମଧରେ ସହାନୁଭୂତି ଓ ସହଯୋଗ ଥିବା ନିତାନ୍ତ ପ୍ରୟୋଜନ ତାହା ନ ଥିଲେ ସମସ୍ତ ପ୍ରୟାସ ବୃଥା । ଲେଖକମାନେ କେବଳ ଲେଖିବେ ପତ୍ରିକାରେ ପ୍ରକାଶ ହେବା ବା ନ ହେବା ସମ୍ପାଦକ ଉପରେ ନ୍ୟସ୍ତ କରିଦେବେ । ସମ୍ପାଦକଙ୍କ ଉପରେ ସନ୍ଦେହ ରଖିବା ଉଚିତ ନୁହେଁ । ଯେଉଁ ସମ୍ପାଦକ ନିଷ୍ପକ୍ଷପାତୀ ନୁହନ୍ତି ସେ ସମ୍ପାଦକ ପଦବାଚ୍ୟ ନୁହନ୍ତି । ସମସ୍ତ ଲେଖକ ଯେବେ ଆପଣା ପ୍ରବନ୍ଧ ଛପାହେବାକୁ ଆଗ୍ରହ ରଖିବେ ଅଥଚ ସମ୍ପାଦକର ଦାୟିତ୍ୱ ଓ ବିବେଚନା ଉପରେ ନିର୍ଭର ନ କରିବେ ତାହା ହେଲେ ପତ୍ରିକାର ଅପଯଶ ହେବ । ଏହା କି ଲେଖକମାନଙ୍କୁ ଜଣା ନାହିଁ ? ସମ୍ପାଦକର କର୍ତ୍ତବ୍ୟ ଏହା ଯେ ସେ ଦେଶର ବିଜ୍ଞ ବ୍ୟକ୍ତିମାନଙ୍କଠାରୁ ଭଲ ଲେଖା ଆଣି ଗ୍ରାହକମାନଙ୍କୁ ବିତରଣ କରିବେ ଏବଂ ବିଜ୍ଞ ବ୍ୟକ୍ତିମାନଙ୍କର ପରୀକ୍ଷାଲବ୍ଧ ଜ୍ଞାନର ଫଳ ସଂଗ୍ରହ କରି ନବୀନ ଲେଖକମାନଙ୍କୁ ଉତ୍ସାହିତ କରିବେ ଓ ସେହି ପଥର ପଥିକ କରିବେ । ନବୀନ ଲେଖକମାନେ ବିଜ୍ଞ ବ୍ୟକ୍ତିଙ୍କ ପଥାନୁସରଣ କରିବାକୁ ସତତ ଯତ୍ନଶୀଳ ହେବେ ।

ସମ୍ପାଦକ ଲେଖାର କାଙ୍ଗାଳ ଏହା ଏ ଦେଶବାସୀ ଜାଣନ୍ତି । ମାତ୍ର ଯାର ତା'ର ଲେଖା ଏବଂ ଲୋକ ଅଗ୍ରାହ୍ୟ ଲେଖା ବା ଯାହା ଦେଶର ବା ସମାଜର ପ୍ରୟୋଜନୀୟ ଲେଖା ନୁହେଁ ତାହା ପତ୍ରିକାସ୍ଥ କରି ବିତରଣ କଲେ ବା ପରଷିଲେ ଗ୍ରାହକ ଆଦର କରିବେ କାହିଁକି ? ଏଥିପ୍ରତି ଲେଖକମାନଙ୍କ ଦୃଷ୍ଟି ଦେବା ଉଚିତ। ଲେଖକମାନେ ଲେଖନ୍ତୁ ଓ ସମ୍ପାଦକଙ୍କଠାକୁ ପଠାନ୍ତୁ । ସମ୍ପାଦକ ଉପରେ ଛପାଇବାର ଭାର ସମ୍ପୂର୍ଣ୍ଣ ରୂପେ ନ୍ୟସ୍ତ କରନ୍ତୁ । ତାହାହେଲେ ପତ୍ରିକାର ଆୟୁଷ ବଢ଼ିବ ଏବଂ ଲେଖକମାନେ କ୍ରମେ ସୁଲେଖକ ହୋଇ ଦେଶରେ ସୁଖ୍ୟାତି ଲାଭ କରିବେ । ଏ ସାହାଯ୍ୟ ଲେଖକମାନେ ନିଶ୍ଚୟ କରିବେ ଏ ଆଶା ଆମେମାନେ ଅନାୟାସରେ ହୃଦୟରେ ପୋଷଣ କରି ସୁଖୀ ହେବୁ ଓ ଦେଶବାସୀଙ୍କ ସେବାରେ ତତ୍ପର ରହିବୁଁ ।

## ଦ୍ୱିତୀୟ ବର୍ଷ ଚତୁର୍ଥ ସଂଖ୍ୟା

**ଦଶହରା :** ଏ ଦେଶର ଗୋଟିଏ ପ୍ରଧାନ ପର୍ବ । ନାନା ସ୍ଥାନରେ ନାନା ପ୍ରକାରରେ ଏ ପର୍ବ ପ୍ରତିପାଳିତ ହୁଏ । ଆଶ୍ୱିନ ଶୁକ୍ଳାଷ୍ଟମୀ ପର୍ବତ ରାଜପୁତ୍ରୀଙ୍କର ଜନ୍ମଦିନ । ଏହି ରାତ୍ରିର ନାମ କାଳ ରାତ୍ରି । ସତେ କାଳରାତ୍ରି । ଏ ରାତ୍ରିରେ ଅସଂଖ୍ୟ ପଶୁର ପ୍ରାଣ ନାଶ ହୁଏ । ପୂର୍ବେ ଓଡ଼ିଶାର ଜଣକେତେ ଅଶିକ୍ଷିତ ଅନ୍ଧବିଶ୍ୱାସୀ ରାଜା ନରବଳି ଦେଇଥିବାର ଜନଶ୍ରୁତି । ଏବଂ ଘୁମୁସର, ବଉଦ କନ୍ଧମାଳର କନ୍ଧମାନେ ଆପଣା ଆପଣା ହଳଦୀ କ୍ଷେତରେ ନରବଳି ଦେଉଥିଲେ । ସେ କଦର୍ଯ୍ୟ ପ୍ରଥାର ବିଷୟ ଶୁଣିଲେ ଦିହ ଥରିଉଠେ ଓ

କଣ୍ଟକିତ ହୁଏ । ଏ ନୃଶଂସ ବ୍ୟାପାର ଅନ୍ୟ ଦେଶରେ ନାହିଁ । ଯେଉଁମାନେ ଏହି ବଳି ସଂଗ୍ରହ କରନ୍ତି ସେମାନଙ୍କୁ ବନ୍ଦରିଆ ବୋଲାଯାଏ । ଆମେମାନେ ବନ୍ଦରିଆ ଭୟରେ ବାଲ୍ୟକାଳରେ ତ୍ରସ୍ତ ଥିଲୁଁ । ଲୋକେ ଏବେ ମଧ୍ୟ ପିଲାମାନଙ୍କୁ ଭୟ ଦେଖାନ୍ତି । ପିଲାମାନେ ଭୟ କରନ୍ତି । ଇଂରାଜ୍ ଗଭର୍ଣ୍ଣମେଣ୍ଟଙ୍କ ପ୍ରତାପରୁ ନରବଳି ଲୋପ ପାଇଅଛି । ଏଥିସଙ୍ଗେ ସତୀଦାହ କଥା ମନେପଡ଼େ । ଯଦିଓ ସତୀଦାହର ସହିତ ଦଶହରାର ସମ୍ପର୍କ ନାହିଁ, ତଥାପି ନରବଳିର କ୍ରୁରତାକୁ ସ୍ମରଣ କଲେ ସଙ୍ଗେ ସଙ୍ଗେ କ୍ରୁରତାର ସତୀଦାହର ବିଷୟ ମନରେ ଜାଗ୍ରତ ହୁଏ । ଈଶ୍ୱର ପ୍ରିୟ ହିନ୍ଦୁ ଆଖ୍ୟାଧାରୀ ଉଚ୍ଚଜାତି ଆଜି ଲକ୍ଷାଧିକ ଜନନୀଙ୍କୁ ଚିତାନଳରେ ଦଗ୍ଧ କରିଥାନ୍ତେ ଏବଂ ସହସ୍ର ସହସ୍ର ନରକୁ-ପାଷାଣୀ ବା ମୃଣ୍ମୟୀ ମୂର୍ତ୍ତି ଆଗରେ ବଳି ଦେଇଥାନ୍ତେ । କି ନୃଶଂସ ହୃଦୟବିଦାରକ ବ୍ୟାପାର । ଏ ଦେଶବାସୀ ଏ ଧର୍ମପଦ୍ଧତି ଅଭ୍ୟସ୍ତ ହୋଇଥିଲେ । ଧନ୍ୟ ଇଂରାଜୀ ଜାତି, ନାନା ପ୍ରତିବାଦ ଓ ବିଘ୍ନସତ୍ତ୍ୱେ ଏହି କୁପ୍ରଥାକୁ ଏ ଦେଶରୁ ନିର୍ମୂଳ କଲେ । ଏଥିନିମନ୍ତେ ସେମାନଙ୍କଠାରେ ଭାରତବାସୀ ଚିରକୃତଜ୍ଞ ।

ଅଦ୍ୟାପି ଦଶହରା ପର୍ବ ଆସିଲେ ଭାବୁକ ମନରେ ଆନନ୍ଦ ସଙ୍ଗେ ସଙ୍ଗେ ବିଷାଦର ଛାୟା ମାଡ଼ିଆସେ । ନରବଳି ବନ୍ଦ ହୋଇଅଛି ସତ ତଥାପି ମୃଣ୍ମୟୀର ରକ୍ତପିପାସା ତୁଟି ନାହିଁ । ବଙ୍ଗଦେଶରେ ମୃଣ୍ମୟୀର ବିସର୍ଜନ ଦିବସରେ ନରହତ୍ୟା ଯେ ହେଉ ନାହିଁ ଏପରି ନୁହେଁ । ଭକ୍ତମାନେ ବଳି ଦେଉ ନାହାନ୍ତି । ଭକ୍ତମାନେ ହିଁ ଧର୍ମଦ୍ୱେଷୀମାନଙ୍କର ଖଣ୍ଡାଘାତରେ ମୃଣ୍ମମୟୀର ଖର୍ପରରେ ପଡୁଅଛନ୍ତି । ଏ ମର୍ମନ୍ତୁଦ ବ୍ୟାପାରର କି ଅବସାନ ହେବ ନାହିଁ ?

ଏ ବର୍ଷ ଦଶହରା ମାସ ଆସିବା ପୂର୍ବରୁ କଲିକତା ଓ ବଙ୍ଗର ନାନାସ୍ଥାନରେ ଆଠହଜାରରୁ ଅଧିକ ନରବଳି ହୋଇଯାଇଅଛି । ଏଥିରେ କି ମୃଣ୍ମୟୀର ରକ୍ତପିପାସା ମେଣ୍ଟି ନାହିଁ ଯେ ଆଉ ରକ୍ତର ଆବଶ୍ୟକ କରିବ ? ଏତେଲୋକ ହତ୍ୟାପରେ ଶାନ୍ତି ଅବଶ୍ୟ ଆସିବ । ଏ ଆଶା ସମସ୍ତେ କରନ୍ତି । ପ୍ରବଳ ଝଡ଼ଉତ୍ତାରୁ ନିସ୍ତବ୍ଧତା ଆସେ; ଯୁଦ୍ଧଉତ୍ତାରୁ ଶାନ୍ତି ଆସେ, ବଙ୍ଗଦେଶରେ କି ଦଶହରାରେ ଶାନ୍ତି ବିରାଜମାନ ହେବ ନାହିଁ ? ହିନ୍ଦୁ ମୁସଲ୍‌ମାନ ସହଯୋଗ କରିବେ ନାହିଁ ? ହିନ୍ଦୁମାନେ କି ମୁସଲମାନ୍ ଭାଇମାନଙ୍କୁ ପର୍ବରେ ଯୋଗ ଦେବାକୁ ଆହ୍ୱାନ କରିବେ ନାହିଁ ଏବଂ ମୁସଲମାନମାନେ ଅନୁରୋଧ ରକ୍ଷାକରି ଏକ ଅସାନରେ ବସିବେ ନାହିଁ ଏବଂ ପରସ୍ପରକୁ କୋଳାକୁଳି କରିବେ ନାହିଁ ? ଏହି ଦଶହରାରେ ଏହି ବିଷୟ ସମାଧାନ ହୋଇଯାଉ ଏବଂ ଭବିଷ୍ୟତରେ ମୁସଲମାନ ପର୍ବରେ ହିନ୍ଦୁମାନେ ଯୋଗାଦାନ କରନ୍ତୁ ଏହା କାମନା ।

**ଦାୟୀ କିଏ—** କଲିକତାରେ ବୀଭତ୍ସ ହତ୍ୟାକାଣ୍ଡ ସଂଘଟିତ ହେଲା, ପାଞ୍ଚହଜାର ଲୋକ ମଲେ, କୋଡ଼ିଏ ହଜାର ହତାହତ ହେଲେ । କାହିଁକି ? ଜାତୀୟ ଅନ୍ତର୍ବିବାଦ ହେତୁରୁ ଧର୍ମର ଦୁହାଇରେ । ଏ ନୃଶଂସ ବ୍ୟାପାରରେ ଦାୟୀ କିଏ ? ଗଭର୍ଣ୍ଣର ଜେନେରେଲ୍ କେବିନେଟ୍ ସହିତ ବସିଅଛନ୍ତି ଦିଲ୍ଲୀରେ । ଗଭର୍ଣ୍ଣର ମନ୍ତ୍ରୀ ଦଳ ସହିତ କଲିକତା ଗଦିରେ ବିରାଜମାନ । ପୂର୍ବପରି ସହରରେ ପୋଲିସ୍ ଅଛି-ମିଲିଟାରୀ ସୈନ୍ୟ ମଧ୍ୟ ଅଛନ୍ତି ତଥାପି ବ୍ରିଟିଶ୍ ଶାସନର ଦ୍ୱିତୀୟ ରାଜଧାନୀରେ ଏ ହୃଦୟ ବିଦାରକ ଘଟଣା ଘଟିଲା କାହିଁକି ? ଏଥିର ଉତ୍ତର କିଏ ଦେବ ? ଦାୟୀ କିଏ ? କେହି ନୁହନ୍ତି । ଯେଉଁମାନେ ମୃତ୍ୟୁମୁଖରେ ପତିତ ହେଲେ ସେହିମାନେ ହିଁ ଦାୟୀ । ଅହିଂସାନୀତି ଅନୁସାରେ ଯେଉଁମାନେ ପରକୁ ହିଂସା ନ କରି ମରିବେ ସେମାନଙ୍କ ପାଇଁ କି ସ୍ୱର୍ଗଦ୍ୱାର ଉନ୍ମୁକ୍ତ । ପ୍ରାଦେଶିକ ସ୍ୱାୟତଶାସନ ଓ ଭୋଟର ଜୟ ।

**ନରବ୍ୟାଘ୍ରଃ—** କଲିକତାର ଜାତିବିଦ୍ରୋହବହ୍ନି ଅବଶ୍ୟ ଲିଭିବ ବିଳମ୍ବରେ ହେଉ ବା ଶୀଘ୍ର ହେଉ ମାତ୍ର ଏହି ଘଟଣାରେ ଯେ ଦନ୍ତ ନଖ ରୂପ ଖଡ଼୍‌ଗ ଓ ବର୍ଚ୍ଛାଧାରୀ ବହୁସଂଖ୍ୟକ ନରବ୍ୟାଘ୍ରର ସୃଷ୍ଟି ବା ଆମଦାନୀ ହେଲା ସେମାନଙ୍କୁ ଆୟତ୍ତାଧୀନ କରିବ କିଏ ? ଲୋକେ ସର୍ବଦା ଶଙ୍କିତ ଓ ଆତଙ୍କିତ ରହିବେ ସିନା । ଅରଣ୍ୟ ବ୍ୟାଘ୍ର ଅପେକ୍ଷା ନରବ୍ୟାଘ୍ର ଯେ ଅତ୍ୟନ୍ତ ଭୟଙ୍କର ଓ ବିଶ୍ୱାସଘାତକ । ବିନା ଅସ୍ତ୍ରଶସ୍ତ୍ରରେ ଅରଣ୍ୟକୁ ଯିବାକୁ ଲୋକେ ଭୟ କରନ୍ତି, ଏବେ ରେଳରେ ବା ମଟରରେ ବିଭିନ୍ନ ସହରକୁ ଯିବାକୁ ଭୟ ।

**ନିଶାଦ୍ରବ୍ୟ ନିବାରଣ :** ମିସମନରୋ ଦୁଇ ଥର ଓଡ଼ିଶା କାଉନ୍‌ସିଲ୍‌ରେ ମଦ୍ୟ ନିବାରଣର ପ୍ରସ୍ତାବ ଉପସ୍ଥିତ କଲେଣି । ଏଥିନିମନ୍ତେ ସେ ସମସ୍ତଙ୍କର ଧନ୍ୟବାଦର ପାତ୍ରୀ । ଏ ପ୍ରସ୍ତାବକୁ ମନ୍ତ୍ରୀମାନେ ବରାବର ମୁଲତବି ରଖୁଅଛନ୍ତି । ମଦ୍ୟ, ଅଫିମ ଓ ଗଞ୍ଜାଇ ହେତୁରୁ ଦେଶ ଉତ୍ସନ୍ନ ହେବାକୁ ବସିଲାଣି । ଅଶିକ୍ଷିତ ଲୋକଙ୍କର କାଞ୍ଚନିକ ଆର୍ଥିକ ଉନ୍ନତି ଅପେକ୍ଷା ନୈତିକ ଉନ୍ନତି ଓ ଚାରିତ୍ରିକ ଉନ୍ନତି ନିମନ୍ତେ କର୍ତ୍ତୃପକ୍ଷ ବେଶୀ ଦୃଷ୍ଟିଦେବା ଉଚିତ ନୁହେଁ କି ? ଅଶିକ୍ଷିତ ଓ ଗରିବର ଦୈନିକ ଉପାର୍ଜନ ଅର୍ଦ୍ଧେକ ଯେ ଗଞ୍ଜାଇ ଓ ଅଫିମ ବ୍ୟବସାୟୀର ପାଣ୍ଠି ବୃଦ୍ଧି କରେ ଏହା କିଏ ନ ଜାଣେ ?

ଶୁଭେଚ୍ଛାଃ— Orissa first ପତ୍ରିକା ଶଙ୍ଖର ଶ୍ରୀବୃଦ୍ଧି କାମନା କରିଅଛି । ଏଥିନିମନ୍ତେ ଆମ୍ଭେମାନେ କୃତଜ୍ଞ । ଓଡ଼ିଆ ସାହିତ୍ୟକୁ 'ଶଙ୍ଖ' ଉନ୍ନତି ମାର୍ଗରେ ନେଇ ପାରିବାର ଭାର ଅଛି— ସହୃଦୟ ଲେଖକ ଓ ଗ୍ରାହକଙ୍କ ଉପରେ । ସମ୍ପାଦକ କେବଳ ପତ୍ରବାହାକ ତୁଲ୍ୟ । ରାଜମିସ୍ତ୍ରୀ ସୌଧ ଓ ଦେଉଳ ନିର୍ମାଣ କରିବାକୁ କ୍ଷମ, ଯେବେ ସୁପକ୍ୱ ଇଟା— ଭଲ ପଥର ଓ ଉତ୍କୃଷ୍ଟ ମାଲ ମସଲା ତାକୁ ଯୋଗାଇ ଦିଆଯାଏ ।

ସହକାର— ସହକାର କିଛିଦିନ ଅନ୍ତର୍ଦ୍ଧାନ ହୋଇଥିଲା । ତାର ପୁନଃପ୍ରକାଶ ବାର୍ତ୍ତା ଶୁଣି ଆମେମାନେ ସୁଖୀ ହୋଇଅଛୁ ।

## ଦ୍ୱିତୀୟ ବର୍ଷ ପଞ୍ଚମ ସଂଖ୍ୟା

ଶବାରୂଢ଼ାଂ ମହାଭୀମାଂ ଘୋରଦଂଷ୍ଟ୍ରାଂ ବରପ୍ରଦାଂ
ହାସ୍ୟ ଯୁକ୍ତାଂ ତ୍ରିନେତ୍ରାଂଚ କାପାଳ କର୍ତ୍ତିକା କରାଂ
ମୁକ୍ତ କେଶୀଂ ଲଳଜିହ୍ୱାଂ ପିବନ୍ତି ରୁଧିରଂ ମୁହୁଃ
ଚତୁର୍ବାହୁୟତାଂ ଦେବୀଂ ବରାଭୟ କରାଂ ସ୍ମରେତ୍ ।

ଏହି କାଳୀମୂର୍ତ୍ତିର ସ୍ତୁତି । ବଙ୍ଗଦେଶର ଘରେ ଘରେ କାର୍ତ୍ତିକ ଅମାବାସ୍ୟାରେ କାଳୀର ପୂଜା । ଏ ବର୍ଷ ପୂର୍ଣ୍ଣ ମାତ୍ରାରେ କାଳୀପୂଜା ସମାଧାନ ହୋଇଅଛି । କାର୍ତ୍ତିକରେ ହଜାର ହଜାର ମୁଣ୍ଡ କର୍ତ୍ତିତ ହେଲା ରୁଧିର ଧାରାରେ କପାଳ ଉଛୁଳି ପଡ଼ିଲା । ଲଲ୍ଲଜିହ୍ୱା ମୁକ୍ତକେଶୀ ରୁଧିର ପାନକଲା । ଯବନ ବା ଅସୁର ରକ୍ତ ନୁହେଁ, ଭକ୍ତ ଓ ଶାକ୍ତମାନଙ୍କର ଏବଂ ଭକ୍ତମାନଙ୍କର ସ୍ତ୍ରୀ ଓ ଶିଶୁ ଗଣଙ୍କର ରକ୍ତପାନ । ଏଲୋ କେଶୀର ରକ୍ତ ପିପାସା ତୁଟିଲା ନାହିଁ । ହତ୍ୟାକାଣ୍ଡ ଚାଲିଛି । ଦୁଃଖର ବିଷୟ । ଏ ହତ୍ୟାକାଣ୍ଡ ବନ୍ଦ କରିବାକୁ ଶିବ ନାହାନ୍ତି । ଚଳୁ । ଆମେମାନେ ତ ନାଚାର ।

**Quit India:**— ଶୁଣିବାକୁ ବାଧୁର । ହୃଦୟ ହ୍ଲାଦକ ଆଶ୍ୱାସପ୍ରଦ । ମାତ୍ର ଦେଶ ଛାଡୁଛି କିଏ ? ଛାଡ଼ିବାର ଯତ୍ନ କଲାବେଳେ ଏ ଦେଶକୁ ସମ୍ଭାଳୁଛି କିଏ ? ବ୍ରିଟିଶ ଜାତିର କୂଟବୁଦ୍ଧି ଯେ ଅସୀମ ଓ ଅଭେଦ୍ୟ । ତାହା ଭେଦ କରିବାକୁ ଭାରତବାସୀର ଶକ୍ତି କାହିଁ ? ଗରମ ନରମ ଦୁଇ ଅଛି । ଗରମ ବେଳେ ଜେଲ ଦେଲେ, ନରମ ବେଳେ ଦେଶଛାଡ଼ିବୁଁ ବୋଲି ପ୍ରକାଶ କଲେ । ସମସ୍ତେ ଖୁସୀ । ଭିତିରି ରହସ୍ୟ କେହି ବୁଝିଲେ ନାହିଁ । ଭାଇରେ ଭାଇରେ ଲଢ଼ାଇ ଲାଗିଲା । ରଖୁଛି କିଏ ? ଏଥିର ଉତ୍ତର ଦେବ କିଏ ? ଦଶବାର ହଜାର ପୁରୁଷ ସ୍ତ୍ରୀ ବାଳକ ପ୍ରାଣ ଦେଲେ, ରକ୍ଷା କରିବାକୁ କେହି ନାହାନ୍ତି । ଭାରତବାସୀଙ୍କର ଅଦୃଷ୍ଟ ।

**ନେତା**— ନେହରୁ କିମ୍ବା କୃପାଳିନୀ କଂଗ୍ରେସର ନେତା, ସେ ଦୁହେଁ ଯେଉଁ ଆଦେଶ ଦେବେ କଂଗ୍ରେସଓ୍ୱାଲେ ତାହା ମାନିବେ ବୋଲି ଆମମାନଙ୍କର ଦୃଢ଼ ବିଶ୍ୱାସ । ପୂର୍ବରେ ଏହା ଦେଖାଯାଇଅଛି । ଜିନ୍ନା ମୁସଲିମ୍ ଲିଗ୍‌ର ନେତା— ସେ ନିଷେଧ କଲେ ମୁସଲ୍‌ମାନ ଗଣ ଏ ନୃଶଂସ ବ୍ୟାପାରରୁ କ୍ଷାନ୍ତ ହୁଅନ୍ତେ ନାହିଁ କି ? କାହିଁ ? ଜିନ୍ନାତ କୌଣସି ଆଦେଶ ଦେଉ ନାହାନ୍ତି । ଅଥଚ ଦ୍ୱନ୍ଦ୍ୱ ବନ୍ଦହେବା ପ୍ରୟୋଜନ ବୋଲି ମୌଖିକ ଆଶାବାଦ ପ୍ରକାଶ କରୁଅଛନ୍ତି । ତାଙ୍କର ନେତାପଣ କେଉଁଠାରେ ? କିମ୍ବା ଆଦେଶ ପ୍ରଚାର ନ କରିବାକୁ ଅନ୍ୟଦ୍ୱାରା ଆଦିଷ୍ଟ, କିଏ କହିପାରେ ?

**ସୀତା**— ଗାନ୍ଧିଜୀ କହିଅଛନ୍ତି—ବଙ୍ଗଦେଶର ସ୍ତ୍ରୀମାନେ ସୀତାଙ୍କ ଅନୁକରଣରେ ଆପଣାର ସତୀତ୍ୱ ଓ ପ୍ରାଣରକ୍ଷା କରିବା ଶ୍ରେୟସ୍କର । କାହିଁ ସୀତା କାହିଁ ବଙ୍ଗୀୟା ଲଳନା, ଅବଳା । ଯେଉଁମାନେ ବା ନିଜ ବୁଦ୍ଧିବଳରେ ନିଜକୁ ରକ୍ଷା କରି ବଞ୍ଚି ରହିବେ ତାଙ୍କୁ ଉଦ୍ଧାର କରିପାରିବ କିଏ ? ଏଥିର କି ଚେଷ୍ଟା ଚାଲିଛି ବା ଚାଲିବ ?

**ରାବଣ ଜଣେ**— ବଙ୍ଗଳାର ଦୁର୍ବୃତ୍ତ ଯେ ପଣେ । ରାବଣ ଜିଦ୍‌ରେ ଓ କ୍ରୋଧରେ ସୀତାଙ୍କୁ ଲଙ୍କାକୁ ନେଇଗଲା । ତାଙ୍କପ୍ରତି ଅତ୍ୟାଚାର କରିବାର ଚେଷ୍ଟା କରି ନାହିଁ । ନିଜ ଗୃହକୁ ନେଇ ନାହିଁ, ଅଶୋକ ବନରେ ରଖାଇଲା । ରାବଣ ଯେ ବିଦ୍ୱାନ୍ ପଣ୍ଡିତ ବହୁଦର୍ଶୀ— ବର୍ତ୍ତମାନ ବଙ୍ଗଦେଶର ନରବ୍ୟାଘ୍ରମାନଙ୍କର କେଉଁ ଗୁଣ ଅଛି ? ପଶୁ ଆଚରଣ, ଘୋର ଅତ୍ୟାଚାର । ଏମାନଙ୍କଠାରୁ ସ୍ତ୍ରୀ ନିଜର ସତୀତ୍ୱ ରକ୍ଷା ବା ପ୍ରାଣରକ୍ଷାର ଉପାୟ କାହିଁ ? ଆତ୍ମହତ୍ୟା । କେହି ଦେଖି ଦେଖୁ ନାହାନ୍ତି, ଶୁଣି ଶୁଣୁ ନାହାନ୍ତି ।

**ଇଂରାଜ ରାଜତ୍ୱ**— ଇଙ୍ଗରାଜ ରାଜତ୍ୱରେ ଏପରି ଲୋମହର୍ଷଣ ହତ୍ୟାକାଣ୍ଡ ଓ ଅତ୍ୟାଚାର ଘଟି ନାହିଁ । ଏବେ ମଧ ଇଂରାଜ ରାଜତ୍ୱ ସମ୍ପୂର୍ଣ୍ଣ ଏଠାରୁ ଯାଇ ନାହିଁ । ତେବେ ଏପରି ଘଟଣା ଘଟୁଛି କାହିଁକି ? ପୂର୍ବେ ଦେଶବାସୀ ସମସ୍ତେ ଏପରି ଘଟଣାରେ ଚିତ୍କାର କରନ୍ତେ । ଏବେ ମୁଷ୍ଟିମେୟ ମୁସଲମାନ ଘୋର ଅନ୍ୟାୟ ଅତ୍ୟାଚାରରେ ପ୍ରବୃତ୍ତ, ତାହା ବନ୍ଦ କରିବାକୁ କେହି ପାଟି ଖୋଲିବାକୁ ନାହିଁ କାହିଁକି ? ବ୍ରିଟିଶ କୂଟନୀତି ଆମର ପାଟି ବନ୍ଦ କରି ଦେଇଅଛି । ସମ୍ଭାଳେ କିଏ ? ଦୁର୍ଗା ନା ଦୁର୍ଗାର ବାହନ ? ଦୁର୍ଗା, କ କୀ, ମୃଣ୍ମୟୀ

ପୂଜା ମାତ୍ର ସାର । ମୃଣ୍ମୟୀର ବାହନ ନିମିଷକେ ରକ୍ଷା [illegible] ମାତ୍ର କେଉଁ ମୁଖରେ ତାକୁ ବର୍ତ୍ତମାନ ପ୍ରାର୍ଥନା [illegible]ଯାଏ । ସେ ବାଟ ଯେ ବନ୍ଦ । ଲୋକ ମରୁ ଅଛନ୍ତି । [illegible]ମାନେ ଅକର୍ମଣ୍ୟ । ହା ହତାଶ ବାଣୀ ପ୍ରକାଶ [illegible]ଉଁ ।

**ଶାସକଗଣ—** ବଙ୍ଗ ଗଭର୍ଣ୍ଣରଙ୍କର କ୍ଷମତା ଓ ଚାତୁରୀ ବୁଝା ପଡ଼ିଅଛି । ଏତେ ଦିନକେ ଦିଲ୍ଲୀରେ ଚହଳ ପଡ଼ିଲା । କୃପାଳିନି, ନେହରୁ, ଗାନ୍ଧି ଏବଂ ଲର୍ଡ଼ଭଏଭେଲ୍ ହତ୍ୟାସ୍ଥଳ ପରିଦର୍ଶନ ନିମନ୍ତେ ଯାଉଅଛନ୍ତି । ଫଳରେ କ'ଣ ହେବ କେ ଜାଣେ ? ଗୋଟିଏ ଇଙ୍ଗରାଜ ଲଳନାର ଦିହରେ ହାତ ପଡ଼ିଥିଲେ ସାରା ମୁସଲମାନ ଗୁଣ୍ଡାଦଳ ଇଙ୍ଗରାଜ କ୍ରୋଧାନଳରେ ଭସ୍ମ ହୋଇଥାନ୍ତେ । ହିନ୍ଦୁ ଲଳନାର ମୂଲ୍ୟ ନାହିଁ । ରକ୍ଷା କରିବାକୁ ଭାରତବାସୀ କ୍ଷମ ନୁହନ୍ତି । ଭବିଷ୍ୟତ ଅନ୍ଧାର । ବର୍ତ୍ତମାନ ସ୍ୱାଧୀନତାର ଆଭାଷ ପାଇ ସୁଦ୍ଧା ଇଙ୍ଗରେଜ ମୁଖାପେକ୍ଷୀ ସମସ୍ତେ ।

କଂଗ୍ରେସ ଶାସିତ ପ୍ରଦେଶମାନଙ୍କର ମହତ୍ତ୍ୱ । ବାସ୍ତବରେ କଂଗ୍ରେସନେତା ଓ ଶାସକମାନଙ୍କର ଓ ଶାସିତମାନଙ୍କର ଧୈର୍ଯ୍ୟ ଶ୍ଲାଘ୍ୟ । ଏମାନେ ଲିଗ୍ ଷଡ଼୍‌ଯନ୍ତ୍ରକୁ ହିନ୍ଦୁ ମୁସଲ୍‌ମାନ୍ ଦ୍ୱନ୍ଦ୍ୱ ବୋଲି ଭାବୁ ନାହାନ୍ତି । ଏହା ପାକିସ୍ତାନର ଉତ୍ପାତ ବୋଲି ଧରି ନେଇଅଛନ୍ତି । ଏ ସାଧୁଇଚ୍ଛା ପ୍ରଶଂସନୀୟ । ଓଡ଼ିଶାର ମୁଷ୍ଟିମେୟ ମୁସଲମାନ ହିନ୍ଦୁମାନଙ୍କର ସହାନୁଭୂତି ଓ ସହଯୋଗଦ୍ୱାରା ନିର୍ଦ୍ୱନ୍ଦ୍ୱରେ କାଳାତିପାତ କରନ୍ତୁ ଏହି କାମନା ।

**କଂଗ୍ରେସ ମନ୍ତ୍ରୀପଣ—** ପ୍ରାୟ ଚାରିମାସ ହେଲା କଂଗ୍ରେସ୍ ମନ୍ତ୍ରିତ୍ୱ ପାଇଅଛି । ଇତିମଧ୍ୟରେ ବିଷମ ସମସ୍ୟାମାନ ଉପସ୍ଥିତ । ଦେଶ ମିଶ୍ରଣ, ତୁତୁମା, ହୀରାକୁଦ, ରାଜ୍ୟଗୁଡ଼ିକ ଆତ୍ମସାତ୍‌ର ପ୍ରୟାସ ଇତ୍ୟାଦି ଇତ୍ୟାଦି । ବଙ୍ଗଳାରେ କଥାଅଛି ''ଯତ ଦୋଷ ନନ୍ଦ ଘୋଷ'' । ଏ ସବୁକୁ କିଏ କଲା, କେବେ କରିବାକୁ ଆରମ୍ଭ କରାଗଲା ତହିଁର ହିସାବ ନାହିଁ । କଂଗ୍ରେସ ଭାରଗ୍ରହଣ କରିବା ମାତ୍ରେ ଆକାଶ ମେଘାଚ୍ଛନ୍ନ ହେଲାପରି ଦେଖା ଯାଉଅଛି । ଓଡ଼ିଶା କଂଗ୍ରେସୱାଲେ ପେଟ ବିକଳିଆ ଥିଲେ । ଅଧିକାର ପାଇଲା ମାତ୍ରେ ସମସ୍ତ ଅଧିକାର ପାଇବାକୁ ହସ୍ତ ପ୍ରସାରଣ କରୁଅଛନ୍ତି । ଏଡ଼େ ତର ତର କାହିଁକି ? ଲୋକପ୍ରିୟ ଶାସନପରା ? ଲୋକମତ ହରାଇଲେ ସ୍ୱେଚ୍ଛାଚାର ଶାସନ ଓ କଂଗ୍ରେସ ଶାସନ ମଧ୍ୟରେ ପ୍ରଭେଦ କ'ଣ ?

**ଗଦ୍ୟ ଓ ପଦ୍ୟ—** ଆଜିକାଲି ଗଦ୍ୟଯୁଗ । ପାଶ୍ଚାତ୍ୟ ଦେଶର ପ୍ରସିଦ୍ଧ ପତ୍ରିକାମାନଙ୍କରେ ପଦ୍ୟର ସ୍ଥାନ ଅତି କମ୍ । ଆମମାନଙ୍କର ଦିହକ ଭିତରେ ଏ ପରିବର୍ତ୍ତନ ଘଟି ଯାଉଅଛି । କିନ୍ତୁ ଆମ ଓଡ଼ିଶାର ଲେଖକ ଲେଖିକାମାନେ ପଦ୍ୟର ଏଡ଼େ ପକ୍ଷପାତୀ କାହିଁକି ? ଆମ ଓଡ଼ିଶା ଛାନ୍ଦ ଚୌପଦୀର ଦେଶ ଏଥିରେ ସନ୍ଦେହ ନାହିଁ । ପୂର୍ବ କବିମାନେ ଚୌପଦୀଦ୍ୱାରା ଦେଶବାସୀଙ୍କି ମୋହିତ କରିଥିଲେ, ସାହିତ୍ୟ ଓ ସଙ୍ଗୀତପ୍ରିୟ କରିଥିଲେ । ସେ ଯୁଗ ଗଲାଣି । ସେ ଚୌପଦୀ ନାଟୁଆଙ୍କଠାରେ ପାଲାବାଲାଙ୍କ ମୁଖରେ ବିଦ୍ୟମାନ ଅଛି । ସୁଶ୍ରାବ୍ୟ ସୁମଧୁର ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଭାବଅର୍ଥ ବୁଝିବାକୁ ଅବସର ନ ଥାଏ, ଗାଇବା ଭଙ୍ଗି ଶ୍ରୋତାର ମନକୁ ହରଣ କରିନିଏ । ଆଜିକାଲିର ଲେଖକମାନେ ପୂର୍ବ ରାଗରାଗିଣୀର ଚୌପଦୀଛାଡ଼ି ମୁକ୍ତ ଛନ୍ଦରେ ଚୌପଦୀ ଲେଖିବାକୁ ଆରମ୍ଭ କରିଅଛନ୍ତି । ମୁକ୍ତଛନ୍ଦ ହେତୁ ଗାଇବା ଯୋଗ୍ୟ ନୁହେଁ କିମ୍ବା ସ୍ମରଣଯୋଗ୍ୟ ନୁହେଁ । ପଢ଼ା ଶେଷ ସଙ୍ଗେ ସଙ୍ଗେ ମନରୁ ଅନ୍ତର୍ହିତ ହୋଇଯାଏ । ଯୁଗର ମହିମା ଲେଖକମାନେ ଲେଖିବେ । ପାଠକମାନେ ପଢ଼ିବେ । ଏଥିରେ ସାହିତ୍ୟର ଶ୍ରୀବୃଦ୍ଧି ଓ ଗୌରବ ବଢ଼ୁଛି କି ନା ତତ୍‌ପ୍ରତି ଦୃଷ୍ଟି ଦେବାକୁ ନିଷେଧ । ଏତିକି ନୁହେଁ, ନବୀନ ଲେଖକମାନେ ଚାହାନ୍ତି ଛନ୍ଦରୁ ମୁକ୍ତି, ଶ୍ଳୀଳତାରୁ ମୁକ୍ତି, ବ୍ୟାକରଣରୁ ମୁକ୍ତି, ଶବ୍ଦରୁ ମୁକ୍ତି, ଉପମାରୁ ମୁକ୍ତି । ସ୍ୱେଚ୍ଛାଚାର କି ସାହିତ୍ୟର ଭିତ୍ତି ଓ ଭବିଷ୍ୟତ ଉନ୍ନତି ବିଧାୟକ ? ସବୁ କ୍ଷେତ୍ରରେ ବିପ୍ଳବର ପ୍ରୟୋଜନ-ବିନା ବିପ୍ଳବରେ ଉନ୍ନତି ହୁଏ ନାହିଁ ସତ । ମାତ୍ର ସାହିତ୍ୟର ବିପ୍ଳବ ସ୍ୱତନ୍ତ୍ର । ବିପ୍ଳବ ନାମରେ ପ୍ରତ୍ୟେକେ ଗୋଟିଏ ଲେଖା ପନ୍ଥା ଅନୁସରଣ କଲେ ତା'ର ନାମ ସ୍ୱେଚ୍ଛାଚାର । ସମାଜର, ଦେଶର ବା ସାହିତ୍ୟର ଉନ୍ନତି ମାର୍ଗରେ ଅନ୍ତରାୟ ଦେଖି ସମଷ୍ଟିର ମିଳିତ ପ୍ରତିବାଦ କିମ୍ବା ପରିବର୍ତ୍ତନ ବିପ୍ଳବ । ଓଡ଼ିଶାରେ ସାହିତ୍ୟରେ ଭାବପ୍ରବଣ କବିତା ସ୍ୱେଚ୍ଛାପ୍ରଣୋଦିତ ସ୍ୱେଚ୍ଛାଚାର ।

ବିଶ୍ୱ କବି ରବୀନ୍ଦ୍ରନାଥଙ୍କର ଅନୁକରଣରେ ଜଣକେତେ ଏତାଦୃଶ କବିତା ଲେଖିବାକୁ ଆରମ୍ଭ କଲେ, କ୍ରମେ ତାର ସ୍ରୋତ ପ୍ରବଳ ହେବାକୁ ଚାଲିଛି । ରବୀନ୍ଦ୍ରଙ୍କର ବୟସ ୬୦ରୁ ଊର୍ଦ୍ଧ୍ୱ ନୋହିବାଯାଏ ଏ ଧରଣର କବିତା ସେ ଲେଖି ନ ଥିଲେ ମାତ୍ର ଅନୁକରଣକାରୀମାନଙ୍କର ବୟସ ୧୮।୨୦ରୁ ଏପରି ଲେଖା ଆରମ୍ଭ ହେଲା । ଫଳରେ ଆମ୍ଭେମାନେ ଦେଖିପାରୁଛୁ ସାହିତ୍ୟର ଅବନତି । ଭାବାତିଶର୍ଯ୍ୟ ସ୍ଥଳରେ ଛନ୍ଦଭଙ୍ଗ କରାଯାଇଥାଏ । ମାତ୍ର ଭାବ ନାହିଁ ଅଥଚ କବିତା ନିବନ୍ଧର

ସମସ୍ତ ପ୍ରକାର ମୁକ୍ତି । ଏହାକୁ ଗୁରୁମାରି ବିଦ୍ୟାଛଡ଼ା ଆଉ କି ବୋଲାଯାଇପାରେ । ଆଜିକାଲି କବିତାମାନଙ୍କର ନାମ ସହିତ ବିଷୟର ସମ୍ବନ୍ଧ କମ୍; କ୍ଲିଷ୍ଟ ଶବ୍ଦ ପ୍ରୟୋଗ କ୍ଲିଷ୍ଟକଳ୍ପନା ଯେବେ ଆଧୁନିକ କବିତାର ଲକ୍ଷଣ ତେବେ ଆମ୍ଭେମାନେ ନାଚାର । ଏ ଧରଣର କବିତାର ସ୍ରୋତ ବହୁଅଛି । ପତ୍ରିକାରେ ପ୍ରକାଶ ହେବା ନିମନ୍ତେ ପ୍ରବନ୍ଧ ଯେତିକି ତାର ଦୁଇଗୁଣ ବା ତିନିଗୁଣ ଗଳ୍ପ ମାତ୍ର କୁଡ଼ିଏ ଗୁଣ କବିତା । ନାମ ସ୍ୱତନ୍ତ୍ର ଥିଲେ ମଧ୍ୟ ଭାବ ପ୍ରାୟ ଏକ । ଅବୈଧ ପ୍ରଣୟ ପରକୀୟାପ୍ରେମ ପ୍ରାୟ କବିତାରେ ଦୃଷ୍ଟିଗୋଚର ହୁଏ । ଆଧୁନିକ ନବୀନ ଲେଖକ ଲେଖିକାମାନେ ଯେବେ ଟିକିଏ ସାବଧାନ ନ ହୁଅନ୍ତି ତେବେ ସମ୍ପାଦକମାନଙ୍କର ଗତି କ'ଣ ? ଓଡ଼ିଆ ଭାଷାର ଅଗାଧ ସାହିତ୍ୟ ସମ୍ପଦ ଅଛି । ଛନ୍ଦର ଅଭାବ ନାହିଁ । ସବୁ ବିଷୟରେ ସାହିତ୍ୟ ଭଣ୍ଡାର ଭରପୂର । ତାକୁ ଖୋଲି ଜଗତବାସୀଙ୍କୁ ଦେଖାଇ ପାରିଲେ ନବୀନ ସାହିତ୍ୟିକମାନଙ୍କର ସାମର୍ଥ୍ୟ ସହିତ ଦେଶର ଓ ଜାତିର ନାମ ଉଦ୍‌ଘୋଷିତ ହେବ । ଏହା ଛାଡ଼ି ଅନ୍ୟ ଦେଶର ଛିଣ୍ଡା ପଚା କୋଟ୍ କାମିଜି ପିନ୍ଧି ଦେଖାଇ ହେଲେ ଦେଶର ନିନ୍ଦା ସିନା ।

## ଦ୍ୱିତୀୟ ବର୍ଷ ଷଷ୍ଠ ସଂଖ୍ୟା

**ଡୁଡୁମା**— ବିଷୟବସ୍ତୁ ସଦୃଶ ଆକାର, ଆକାର ସଦୃଶ ପରିପାଟୀ । ବିଷୟ ଭଲ, କାଗଜ ଭଲ, ଅକ୍ଷର ଭଲ, ଛାପା ଭଲ । ଆଜିକାଲି ଡୁଡୁମା ଉତ୍କଳଭାଷୀଙ୍କର ଆଲୋଚନା ସାମଗ୍ରୀ ଅଟେ । ଡୁଡୁମା କାବ୍ୟ ସାହିତ୍ୟିରସିକ ଓ ଦେଶର ହିତାକାଂକ୍ଷୀ ଯୁବକମାନଙ୍କର ହସ୍ତାମଳକ ହେବା ଯୋଗ୍ୟ । ଠିକ୍ ସମୟରେ ଏହାର ଆବିର୍ଭାବ ।

କବି ଓ ସୂଚନା ଲେଖକ ବନାନୀ ଓ ପ୍ରପାତର ଦୃଶ୍ୟ ସଙ୍ଗେ ସଙ୍ଗେ ପର୍ବତ ସଞ୍ଚାରିଣୀ ପରଜା ରମଣୀମାନଙ୍କର ଗତିବିଧି ପର୍ଯ୍ୟବେକ୍ଷଣ କରି ଅଛନ୍ତି ଏଣୁ ସଠିକ୍ ବର୍ଣ୍ଣନା ପାଠକଗଣଙ୍କର ହୃଦୟଗ୍ରାହୀ ହୋଇଅଛି ।

ରଚନା କେତେକାଂଶରେ ଭଞ୍ଜୀୟ ପ୍ରଣାଳୀରେ ହୋଇଥିବାର ଦେଖି ହୃଦୟ ଆହ୍ଲାଦିତ ହୁଏ । ପାର୍ବତୀୟ ଲଳନାମାନଙ୍କ ସ୍ୱଚ୍ଛନ୍ଦ ଗତିବିଧି, ସ୍ୱାଭାବିକ ବେଶଭୂଷା ପ୍ରାକୃତିକ ଶୋଭାଦ୍ୟୋତକ । କୌଣସି କୌଣସି ସଂସ୍କୃତ କବି ଏତାଦୃଶ ବେଶଭୂଷାକୁ ନିର୍ଲଜ୍ଜା, ଉରଜ ଘନବତୀ ବୋଲି ଲେଖିଅଛନ୍ତି, ମାତ୍ର କବି ସମ୍ରାଟ୍ କାଳିଦାସ ଶକୁନ୍ତଳାଙ୍କୁ 'ବଳ୍କଳେ ନାପିରମ୍ୟା' ଦେଖିଥିଲେ । ଏବଂ ଉଦ୍ୟାନ ଲତା ଅପେକ୍ଷା ବନଲତାର ପ୍ରଶଂସା କରିଯାଇଅଛନ୍ତି । କବି ଓ ସୂଚନା ଲେଖକ ମଧ୍ୟ ପରଜା ରମଣୀମାନଙ୍କୁ ସ୍ୱାଭାବିକ ବେଶଭୂଷାରେ ଦେଖି ମୁଗ୍ଧ ହୋଇଅଛନ୍ତି । ପ୍ରପାତର ତାଣ୍ଡବ, ବନଶୋଭା ଓ ପର୍ବତାରୋହଣର ଅନୁଭୂତି ଯଥାର୍ଥ ରୂପେ ବର୍ଣ୍ଣିତ ହୋଇଅଛି । କବି କଳ୍ପନାବଳରେ ବସନ୍ତ, ଗ୍ରୀଷ୍ମ, ବରଷା ଓ ଶରତ ଋତୁର ଚିତ୍ର ଅଙ୍କନ କରିବାଦ୍ୱାରା କବି ମହତ୍ୱର ପରିଚୟ ଦେଇଅଛନ୍ତି । ଶବ୍ଦ ସୃଷ୍ଟି କରିବାରେ କବି ସ୍ୱାଧୀନ ପନ୍ଥା ଗ୍ରହଣ କରିଅଛନ୍ତି । ସେଥିରେ ତାଙ୍କର ଉଦ୍ଭାବନୀ ଶକ୍ତିର ପରିଚୟ ମିଳେ; ଏତାଦୃଶ ସ୍ୱାଧୀନତାର ଆମେମାନେ ନିତାନ୍ତ ପକ୍ଷପାତୀ । କବିର ଉତ୍ତରୋତ୍ତର ଉନ୍ନତି ହେଉ ଏବଂ ଏଭଳି ଆଉ ବାକ୍ୟ ଆମ୍ଭମାନଙ୍କର ହୃଦୟମୋଦକ ହେଉ ।

ଡୁଡୁମା ଆଲୋଚନା କଲାବେଳେ ଗୋଟାଏ ଭାବ ହୃଦୟରେ ଜାଗରୂକ ହେଲା । ବୋଧହୁଏ ଲେଖିଲେ ଅପ୍ରାସଙ୍ଗିକ ହେବ ନାହିଁ ।

ଦୁଗ୍ଧ ପ୍ରାକୃତ ଭାଷାରେ ଦୁଧ, ବାଳକମାନେ ଦୁ ଦୁ ବୋଲନ୍ତି । ପଶ୍ଚିମରେ ଏବଂ ଓଡ଼ିଶାର ସ୍ଥାନ ବିଶେଷରେ ଏ ବ୍ୟବହାର ଅଛି । ଧାତ୍ରୀକୁ ଦେଶୀୟ ଭାଷାରେ ଧାଈମା ବଲନ୍ତି । ଦୁଗ୍ଧଦାତ୍ରୀ ଧାତ୍ରୀକୁ ଦୁଦୁମା ବୋଲାଯାଏ । ଦୁଗ୍ଧଦାତ୍ରୀର ପୁତ୍ରକୁ ଦୁଧଭାଇ ବୋଲାଯାଏ । ବାଦୀଗଡ଼ ପ୍ରପାତର ଦୁଗ୍ଧ ଫେନ ନିଭ ଶୁକ୍ଳ ଜଳଧାରକୁ କେହି ପ୍ରକୃତ ଦୁଧ ଧାର କଳ୍ପନା କଲା ଏବଂ ଏହି ଜଳଧାର ଓଡ଼ିଆଭାଷୀମାନଙ୍କୁ ପୋଷଣ କରୁଥିବାରୁ ପ୍ରପାତକୁ ଦୁଦୁମା ବୋଲି ଡାକିଲା । ଶିଶୁ ଓ ଅଶିକ୍ଷିତମାନେ ଦୁଦୁ କୁ ଡୁଡୁ ଉଚ୍ଚାରଣ କରନ୍ତି । ବାଦୀଗଡ଼ ପ୍ରପାତ ଏ ଦେଶବାସୀ ଓଡ଼ିଆଙ୍କର ଦୁଦୁମା ଅପଭ୍ରଂଶରେ ଡୁ ଡୁ ମା ହୋଇଅଛି । ଓଡ଼ିଆ ଆପଣାର ଦୁଦୁମାକୁ ପରହସ୍ତଗତ କରିଦେବେ କିପରି ? ଏଥିନିମନ୍ତେ ଆନ୍ଧ୍ରଭାଇଙ୍କ ସହିତ ବିବାଦ । ସେମାନେ ବଡ଼ ଲୋକ ସହାୟ (ଲାଟ ସହାୟ) ଥିଲେ । ଏଣୁ ଡୁ ଡୁ ମାକୁ ନେବାକୁ ବଳ ପାଉଥିଲେ । ଯାହାହେଉ ଅଧାଅଧି ଭାଗ ହେଲା । କିନ୍ତୁ ପୁଣି ସେହି ଭାଗରୁ ଶତକରା ୩୦ ଅଂଶ ଠିକାରେ ମେଡ୍ରାସ ଭାଇଙ୍କି ଦେଲା କିଏ ? ୯୯ ବର୍ଷ ବନ୍ଧା ମାଲକୁ ମୁକ୍ତ କରିବାକୁ ସହଜ କି ? ବିଦ୍ୟୁତ ଶକ୍ତି ଯେତିକି ବେଶୀ ମିଳିବ ତେତିକି ଫଳଦାୟକ ହେବ । ଅଳ୍ପ ଶକ୍ତି ଗ୍ରହଣ କରି ଓଡ଼ିଆ ଭାଇମାନେ କି ଲାଭବାନ୍ ହେବେ ? ବର୍ତ୍ତମାନ ଯେ ଆନ୍ଦୋଳନ ଚାଲିଛି ତାହା ଶ୍ଲାଘନୀୟ । ଏହି ଶକ୍ତିର ପ୍ରାପ୍ତି

ନିମନ୍ତେ ଓଡ଼ିଆ ଭାଇମାନଙ୍କର ଯାବତୀୟ ଶକ୍ତି ପ୍ରୟୋଗ ପ୍ରୟୋଜନୀୟ ତାହା କରିବାର ଉଚିତ୍ ।

**ସହକାର—** 'ସହାକାର' ବହୁଦିନ ଅନ୍ତର୍ଦ୍ଧାନ ପରେ ଆମମାନଙ୍କର ସୁପରିଚିତ ସହକାର ନୂତନ ଆବରଣରେ ହସ୍ତଗତ ହେବାର ଦେଖି ପରମ ପ୍ରୀତିଲାଭ କରିଅଛୁଁ । ପ୍ରଚ୍ଛଦପଟଟି ସମ୍ପୂର୍ଣ୍ଣ ନୂତନ ଧରଣର ଅଟେ । ଚିନ୍ତା ନ କଲେ ଚିତ୍ରର ଭାବ ହୃଦୟଙ୍ଗମ ହେବା ସହଜ ନୁହେଁ । ସହକାର ଆମମାନଙ୍କର ସହାୟଭୂତ ହେବାକୁ ଦୀର୍ଘ ଜୀବନ ଲାଭକରୁ ।

**ରଶ୍ମି—** ଲଜ୍ଜାବନତ ମୁଖରେ ସ୍ୱୀକାର କରିବାକୁ ବାଧ ଯେ ଆମେମାନେ ତିନି ବର୍ଷ ପୂର୍ବରେ ରଶ୍ମି ପାଇ ନ ଥିଲୁଁ । ରଶ୍ମିର ପୁନଃପ୍ରକାଶ ଦେଖି ହୃଦୟରେ ଯେ କି ଅସୀମ ଆନନ୍ଦ ଲାଭ ହୋଇଅଛି ତାହା ଲେଖି ହେବ ନାହିଁ । କାରଣ ରଶ୍ମି ରେଭେନ୍ସା କଲେଜ ଓଡ଼ିଆ ସାହିତ୍ୟ ସମାଜର ମୁଖପତ୍ର । ଛାତ୍ରମାନେ ହିଁ ଦେଶର ଜୀବନ ଓ ଆଲୋକ । ସମସ୍ତ ଆଶା ଭରଷା ସେମାନଙ୍କର ଉନ୍ନତି ଉପରେ ନିର୍ଭର କରେ । ଛାତ୍ରମାନେ ଉଦୟମାନ ସୂର୍ଯ୍ୟ । ସେମାନଙ୍କ ରଶ୍ମିଦ୍ୱାରା ଦେଶ ସମୁଦ୍ଭାଷିତ ହେବ । ରଶ୍ମିଦ୍ୱାରା ସେମାନଙ୍କର ଗତିବିଧି ପ୍ରତାପ ଓ କ୍ଷମତାର ପରିଚୟ ମିଳିବ । ତାହା ଅବଗତ ହୋଇ ଦେଶବାସୀ ଆଶ୍ୱାସାନ୍ୱିତ ହେବେ । ଆମେମାନେ ଏହାର ଶ୍ରୀବୃଦ୍ଧି, କ୍ରମୋନ୍ନତି ଓ ଦୀର୍ଘ ଜୀବନ କାମନା କରୁଁ । ରଶ୍ମି ନାମଟି ବଡ଼ ଉପଯୁକ୍ତ । ସୂର୍ଯ୍ୟରଶ୍ମି ପରି ଏହାର ଯଶବିସ୍ତାର ଲାଭ କରିବ ।

**ବିଶାଳ ଉତ୍କଳ ପାକ୍ଷିକ ପତ୍ର—** ସମ୍ପାଦକ ଶ୍ରୀ ଘନଶ୍ୟାମ ନାୟକ । ପତ୍ର ପ୍ରକାଶର କେତେକ ମାସ ପୂର୍ବେ ଏହାଙ୍କ ସହିତ ସାକ୍ଷାତ ହୋଇଥିଲା । ହୃଦୟରେ ଗୋଟାଏ ଉତ୍ସାହଶିଖା ବିଦ୍ୟମାନ ଥିବାର ଜଣା ଯାଉଥିଲା । ବିଚ୍ଛିନ୍ନ ଅଂଶ ଗୋଡ଼ିକ ଏକତ୍ର କରିବାର ଯତ୍ନ ଓଡ଼ିଆ ଭାଇଙ୍କଠାରେ ଅଭାବ ଦେଖି ଘନଶ୍ୟାମଙ୍କର ମନ ଅସ୍ତବ୍ୟସ୍ତ ହେଉଥିଲା । ତା'ର ଫଳରେ ବିଶାଳ ଉତ୍କଳର ଆବିର୍ଭାବ । ଭାରତର ନାନାସ୍ଥାନରୁ ବଡ଼ ବଡ଼ ଲୋକଙ୍କର ମତ ସଂଗ୍ରହ କରି ସମ୍ପାଦକ ପତ୍ରିକାରେ ସ୍ଥାନ ଦେଇଥିଲେ । ଏହି ମତମାନଙ୍କରେ କେତେଦୂର ଆନ୍ତରିକତା ବିଦ୍ୟମାନ ତାହା ଦେଖିବାକୁ ହେବ । ସମ୍ପାଦକ ଉଦ୍‌ଯୋଗରେ ତ୍ରୁଟି କରୁ ନାହାନ୍ତି । ମାତ୍ର ଏହା ଜଣକର କାମ ନୁହେଁ । ବହୁ ଉଦ୍ୟୋଗ ଓ ଯତ୍ନସାପେକ୍ଷ । ବିଚ୍ଛିନ୍ନ ଅଂଶର ଓଡ଼ିଆମାନେ ଓଡ଼ିଶାକୁ ଆସିବାକୁ ଆଗ୍ରହାନ୍ୱିତ ନ ହେଲେ ଓ ଆସିବାକୁ ଉଦ୍‌ଯୋଗ ନ କଲେ ସେମାନଙ୍କୁ ଆଣିବାର କଠିନ । ସେମାନଙ୍କ ମଧରେ ରହି ସେମାନଙ୍କୁ ଶିକ୍ଷା ଦେବାର ଦରକାର । ତାହା କରୁଛି କିଏ ? ବଙ୍ଗ ଦେଶରେ ଅନେକ ଓଡ଼ିଆ ଅଛନ୍ତି ଏବଂ ସେମାନେ ଆସିବାକୁ ମଧ ଆଗ୍ରହାନ୍ୱିତ । ମାତ୍ର ସେ ଦେଶର କର୍ତ୍ତା ଲିଗ । କଂଗ୍ରେସ ଓ ମୁସଲିମ ଲିଗରେ ବିନା ସଂଘର୍ଷରେ ଏହା ସମାଧା ହେବ ନାହିଁ । ଏ ଦେଶ ମନ୍ତ୍ରୀମାନେ ସାହାସ କରିବେ କି ? ମାଡ୍ରାସ୍, ମଧପ୍ରଦେଶ ଓ ବିହାର କଂଗ୍ରେସଦଳ ଏଥିରେ ସଂଘର୍ଷ ନାହିଁ କେବଳ ଆପୋସି ବନ୍ଦୋବସ୍ତ । କିନ୍ତୁ କ୍ଷମତାଶାଳୀ ଭାଇମାନଙ୍କୁ ଅସନ୍ତୁଷ୍ଟ କରି ଓ ଓଡ଼ିଆ ଭାଇମାନଙ୍କୁ ଓଡ଼ିଶାକୁ ଆଣିବାକୁ କଂଗ୍ରେସ କେତେଦୂର ସାହସ କରିବେ କେଜାଣି ?

**ଡଗର—** ଆମ୍ଭମାନଙ୍କର ବୟୋଜ୍ୟେଷ୍ଠ ଓ ପ୍ରବୀଣ । ଏଥର ତା'ର ନୂତନ ପ୍ରଚ୍ଛଦପଟ ଓ ନୂଆ କଳେବର ଦେଖି ଆନନ୍ଦ ଲାଭ କଲୁଁ । ପ୍ରତ୍ୟେକେ ଆପଣା ଆପଣା ମତାନୁସାରେ ଚାଲିବେ, ଏଥିରେ ବାଧା ନାହିଁ । ପ୍ରତ୍ୟେକଙ୍କର ବାସନା ଆଉ ଦେଶ ଉନ୍ନତିରେ ଓ ସ୍ୱାଧୀନତା ଲାଭରେ । କଳିଦ୍ୱନ୍ଦ୍ୱ ଅତି ତୁଚ୍ଛାକଥା, ଚିରସ୍ଥାୟୀ ନୁହେଁ । ପ୍ରତ୍ୟେକେ ନିଷ୍ପକ୍ଷପାତ ହେବା ଉଚିତ ।

**ସର୍ଦ୍ଦେଇକଳା ରୁଲାର୍‌ଙ୍କ ଅଭିଭାଷଣ ଓ ଘୋଷଣା :**
ଶ୍ରୀମାନ୍ ଶ୍ରୀରାଜା ଆଦିତ୍ୟ ପ୍ରତାପ ସିଂହ ଦେବ ଉନଷଷ୍ଠିତମ ବର୍ଷରେ ଉପନୀତ ହୋଇଥିବାର ଜାଣି ଆମ୍ଭେମାନେ ପରମପ୍ରୀତି ଲାଭ କଲୁଁ । ରାଜାମାନେ ଦୀର୍ଘାୟୁହେଲେ ପ୍ରଜାଙ୍କର ମଙ୍ଗଳ । ଶ୍ରୀମାନ୍ ରାଜା ମହୋଦୟଙ୍କର ରାଜର୍ଷି ପ୍ରତିମ ପିତାମହ ଦୀର୍ଘଜୀବୀ ଥିଲେ, ସେତେବେଳେ ତାଙ୍କ ତୁଲ୍ୟ ବୃଦ୍ଧରାଜା ଗଡ଼ଜାତରେ ନ ଥିଲେ । ବର୍ତ୍ତମାନ ରାଜା ମହୋଦୟ ପିତାମହ ତୁଲ୍ୟ ଦୀର୍ଘ ଜୀବନ ଲାଭ କରନ୍ତୁ ଓ ପ୍ରଜାସହ ସୁଖସ୍ୱଚ୍ଛନ୍ଦରେ କାଳାତିପାତ କରନ୍ତୁ ଏହି କାମନା । ରାଜା ମହୋଦୟଙ୍କର ଅଭିଭାଷଣ ଓ ଘୋଷଣା ସମୟୋପଯୋଗୀ ଅଟେ । ଏହା ପାଠକଲେ ଗଡ଼ଜାତ ପ୍ରଜାଙ୍କର ଭବିଷ୍ୟତ ଉଜ୍ଜ୍ୱଳ ଓ ସୁଖସ୍ୱାଚ୍ଛନ୍ଦ୍ୟମୟ ବୋଲି ମନେହୁଏ । ରାଜା ମହୋଦୟ ବର୍ତ୍ତମାନ ରାଜାମାନଙ୍କ ମଧରେ ପ୍ରବୀଣ ତାଙ୍କର ଅଭିଭାଷଣ ଓ ଘୋଷଣାନୁସାରେ ସମସ୍ତ ପ୍ରକାର ଶ୍ରୀବୃଦ୍ଧି କାମନାରେ ଉନ୍ନତି ମାର୍ଗ ଉନ୍ମୁକ୍ତ କଲେ ରାଜା ଓ ପ୍ରଜାର ଯେ ମଙ୍ଗଳ ହେବ ଏଥିରେ ସନ୍ଦେହ ନାହିଁ । ଆଜିକାଲି ଏକତା ଓ ସହଯୋଗ ଦ୍ୱାରା ହିଁ ଉନ୍ନତି ହୁଏ । ରାଜନ୍ୟ ଗୋଷ୍ଠୀ ସଂଘବଦ୍ଧ ହୋଇ, ଏକମନ, ଏକପ୍ରାଣରେ ପ୍ରଜାର ଉନ୍ନତି ଓ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଭାରତର ପ୍ରାଦେଶିକ

ଅଗ୍ରଗତିର ସମକକ୍ଷ କରିପାରିଲେ ରାଜ୍ୟରକ୍ଷା ସହିତ ଭାରତମାତାର ମୁଖୋଜ୍ଜ୍ୱଳ ହେବ ।

Wither Koshal ଏବଂ Fermation of Hirakhand : ଆମ୍ଭମାନଙ୍କର ହସ୍ତଗତ ହୋଇଅଛି । ସମୟ ଅନାଟନ ହେତୁ ଆଲୋଚନା କରାଯାଇପାରିଲା ନାହିଁ । ଆଗାମୀ ସଂଖ୍ୟାରେ ମନ୍ତବ୍ୟ ପ୍ରକାଶ ପାଇବ ।

## ଦ୍ୱିତୀୟ ବର୍ଷ ସପ୍ତମ ସଂଖ୍ୟା

୰ମଦନମୋହନ ମାଳବ୍ୟ ଜନ୍ମ ୧୮୬୧ ମୃତ୍ୟୁ ୧୯୪୭ ଭାରତମାତାର ଗଳମାଳୀର ଗୋଟିଏ ଉଜ୍ଜ୍ୱଳ ରତ୍ନ ଅପସାରିତ ହୋଇଅଛି । ଏ ରତ୍ନ ସହଜ ଲଭ୍ୟ ନୁହେଁ । ଭାରତମାତାଙ୍କୁ ସ୍ୱାଧୀନ କରିବା ପ୍ରୟାସୀ ତାର ସୁଯୋଗ୍ୟ ସନ୍ତାନମାନଙ୍କ ମଧ୍ୟରୁ ଗୋଟି ଗୋଟି ହୋଇ ଚାଲି ଯାଉଅଛନ୍ତି । ସେମାନଙ୍କର ଆଶାପୂରଣ ହୋଇପାରୁ ନାହିଁ । ମାଳବ୍ୟ ଭାରତମାତାଙ୍କୁ ସ୍ୱାଧୀନ ଦେଖିବା ଆଶାରେ ବଞ୍ଚି ରହିଥିଲେ ମାତ୍ର ତାଙ୍କର ଆଶାର ଅନ୍ତରାୟ ହିନ୍ଦୁ ମୁସଲମାନ ଦ୍ୱନ୍ଦ୍ୱ । ଏ ଦ୍ୱନ୍ଦ୍ୱ ତାଙ୍କର ଜୀବିତ କାଳକୁ ହ୍ରାସ କରିଦେଲା । ହତାଶାରେ ପ୍ରାଣ ତ୍ୟାଗ କରିଅଛନ୍ତି । ତାଙ୍କର ଆଶାପୂରଣ ହେବା ପୂର୍ବରୁ ସେ ମୃତ ହୋଇଥିଲେ ମଧ୍ୟ ତାଙ୍କର ଆନ୍ତରିକ ଆଶା ଯେ ନିଶ୍ଚୟ ପୂରଣ ହେବ ଏଥିରେ ସନ୍ଦେହ ନାହିଁ । ମାଳବ୍ୟ ଭାରତମାତାର ସୁଯୋଗ୍ୟ ସନ୍ତାନ, ତାଙ୍କର ମନୀଷା, କର୍ମନିଷ୍ଠା, ହିତୈଷଣା ଅତୁଳନୀୟ । ତାଙ୍କ ପରି ନିର୍ଭୀକ ସତ୍ୟବାଦୀ ହିନ୍ଦୁପ୍ରେମୀ ବ୍ୟକ୍ତି ଅତି କମ୍ । ସେ ହିନ୍ଦୁଧର୍ମର ଅତ୍ୟନ୍ତ ପକ୍ଷପାତୀ ଥିଲେ ମଧ୍ୟ ତାଙ୍କର ମତ ଭାରତୀୟ ପ୍ରଗତିର ଅନ୍ତରାୟ ନ ଥିଲା । ତାଙ୍କର ଚରିତ୍ର ଓ କର୍ମନିଷ୍ଠା ଆମ୍ଭମାନଙ୍କର ଶ୍ରଦ୍ଧାର ସାମଗ୍ରୀ ଏବଂ ସେ ସମସ୍ତର ଅନୁକରଣ ଓ ଆଚରଣ ପ୍ରୟାସ ତାଙ୍କର ଶ୍ରାଦ୍ଧ ।

ଧନ୍ୟା ମାତା ସ୍ୱରୂପରାଣୀ ଯାର ଗର୍ଭରୁ ଜବାହର୍ ଲାଲ୍ ଏବଂ ବିଜୟଲକ୍ଷ୍ମୀର ଜନ୍ମ । ଏତାଦୃଶ ପୁତ୍ର କନ୍ୟା ଥାଉଁ ଥାଉଁ ଭାରତମାତାର ଉଦ୍ଧାର ହେଉ ନାହିଁ । ଭାରତବାସୀର ଦୃଷ୍କୃତିର ଫଳ । ଭାରତବାସୀଙ୍କ ଚେତା ଆସି ନାହିଁ କିମ୍ବା ସ୍ୱାଧୀନ ପରାଧୀନର ପାର୍ଥକ୍ୟ କ'ଣ ସେମାନେ ତାହା ଭୁଲି ଯାଇ କେବଳ ସ୍ୱାର୍ଥ ପଙ୍କରେ ଘାଣ୍ଟି ହେଉଅଛନ୍ତି । ଧନ୍ୟ ଏ ଭାଇ ନେହେରୁ । ସେ ଯେ ଭାରତମାତାର ଉଦ୍ଧାର ନିମନ୍ତେ ସ୍ୱାର୍ଥତ୍ୟାଗ ଓ କାୟକ୍ଳେଶ ସ୍ୱୀକାର କରିଥିଲେ ଏପରି ନୁହେଁ ଭାରତମାତାର ସେବା ନିମନ୍ତେ ସୁଯୋଗ୍ୟ ପୁତ୍ର କନ୍ୟା ଯୋଡ଼ିଏ ଦେଇଯାଇଅଛନ୍ତି । ନେହେରୁ ପରିବାରର ସ୍ୱାର୍ଥତ୍ୟାଗ ଓ ଦେଶପ୍ରେମ ଯେବେ ଭାରତବାସୀ ଅନୁକରଣ କରନ୍ତେ ବା ଶିକ୍ଷା କରନ୍ତେ ତେବେ କି ଭାରତମାତାର ଦୁଃଖ ଘୁଞ୍ଚନ୍ତା ନାହିଁ ? ଆମମାନଙ୍କର ମନ ଏକନିଷ୍ଠ ନୁହେଁ । ଅଧିକାଂଶ ବ୍ୟକ୍ତିଙ୍କର ମନ କେବଳ ସୁଖ ଓ ସ୍ୱାର୍ଥ ଅନ୍ୱେଷଣରେ ତତ୍ପର । କଂଗ୍ରେସର ପୃଷ୍ଠପୋଷକ ହେବାକୁ ଲୋକେ ଭୀତ । ଅଦ୍ୟାପି ଲୋକଙ୍କ ହୃଦୟରେ ବ୍ରିଟିଶ୍ ସିଂହର ହୁଂକାର ପତିଧ୍ୱନିତ ହେଉଅଛି । ନେହେରୁ ପରିବାର ପରି ପ୍ରତ୍ୟକ୍ଷ ଉଦାହରଣ ଉପସ୍ଥିତ ଥିବା ସ୍ଥଳେ ଏ ଦେଶବାସୀ ଆଉ କେଉଁ ଉଦାହରଣ, କେଉଁ ଆଦର୍ଶ ଇଚ୍ଛା କରନ୍ତି ତାହା କିଏ ଜାଣେ ? ମୁସଲମାନଙ୍କ ପାଇଁ ଖାନଅବଦୁଲ୍, ଗଫର ଖାନ୍, ଖାନ ସାହେବ ଅସଫ୍ ଆଲି ଦମ୍ପତି ଏବଂ ଆଜଦ କି ପ୍ରକୃଷ୍ଟ ଉଦାହରଣ ନୁହନ୍ତି ? ମୁସଲ୍ମାନଗଣ ସ୍ୱାର୍ଥାନ୍ୱେଷୀ ଜିନ୍ନାଦଳଙ୍କୁ ଛାଡ଼ି ମାତୃଭକ୍ତ ମୁସଲ୍ମାନମାନଙ୍କର ପଦାଙ୍କ ଅନୁସରଣ କରିବେ କି ? ଭବିଷ୍ୟତ ଅନ୍ଧକାର ।

ରାମ ରହିମ ନ ଜୁଦା କରୋ ଜି
ଦିଲକୋ ସଚ୍ଚା କରୋ ଜି ।

ଏହା ଜଣେ ପ୍ରକୃତ ଧର୍ମ ବିଶ୍ୱାସୀ ମୁସଲ୍ମାନଙ୍କର ଉକ୍ତି । ହିନ୍ଦୁ ମୁସଲ୍ମାନ୍ ଯେବେ ଏହି ହିତୋପଦେଶକୁ ଗ୍ରହଣ କରି ଚଳିଥାନ୍ତେ ତେବେ ଆଜି କି ଭାରତର ଏ ଦୁର୍ଦ୍ଦଶା ହୁଅନ୍ତା । ଆଜି ଭାରତର ବଡ଼ପଣ୍ଡା ଜିନ୍ନା । ଜିନ୍ନାର ଉକ୍ତି ଏହି ଯେ—

ରାମ ରହିମକୋ ଯୁଦା କରୋଜି
ଦିଲକୋ ମଇଲା କରୋଜି ।

କି ଘୋର ନୈତିକ ପତନ । କି ଅବନତି । ଏହି ଉପଦେଶକୁ ମାନି ଆଜି ମୁସଲମାନଗଣ ଉନ୍ମତ୍ତ । ଭାଇ କାଟୁଛି ଭାଇର ମୁଣ୍ଡ । ଭାଇ ପୋଡୁଛି ଭାଇର ଘର । ସ୍ନେହ, ସୌହାର୍ଦ୍ଦ୍ୟ, ମମତା ମନରୁ ଅନ୍ତର୍ହିତ ହୋଇଅଛି । ମନେକର ଯଦି ଏ ଭାବ ମୁସଲମାନ୍ ହୃଦୟରୁ ଅନ୍ତର ନ ହୁଏ ତେବେ ଭାରତର କି ସୁଖ ଶାନ୍ତି ଆଉ ବିରାଜମାନ କରିବ ? ସ୍ୱାର୍ଥପର ମୁସଲମାନ୍ ଜଣକେତେ ଜିନ୍ନାଙ୍କର ଉପରୋକ୍ତ ଉପଦେଶରେ ମାତି ଧର୍ମକୁ ଆଣି ରାଜନୀତି କ୍ଷେତ୍ରରେ ପ୍ରବେଶ କରାଇ ଏହି ବିଭ୍ରାଟ ଉପସ୍ଥିତ କରିଅଛନ୍ତି । ଭବିଷ୍ୟତ ଆଶା ଭରସା ନିର୍ମୂଳ କରିବାକୁ ବସି ଅଛନ୍ତି । ଦୁଃଖର ବିଷୟ ଏହି ଯେ ଅଧିକାଂଶ ମୁସଲମାନ୍ ସେହି ମତରେ ମାତି ଅଛନ୍ତି । ବିଦ୍ୱେଷ ବହ୍ନି ଜାଳୁ ଅଛନ୍ତି । ବିଲାତର ରକ୍ଷଣଶୀଳ ସାମ୍ରାଜ୍ୟବାଦୀ ଗଣ ସେହି

ବିଦ୍ୱେଷ ବହ୍ନି କି ପ୍ରବଳ ବାୟୁ ଦ୍ୱାରା ଉଦ୍ଦୀପ୍ତ କରିବାରେ ଯତ୍ନଶୀଳ । ଫଳରେ ହିନ୍ଦୁ ମୁସଲ୍ମାନର ସର୍ବନାଶ । ଭାରତମାତାର ଗୋଡ଼ରେ ପୁଣି ଶିକୁଳି ଲାଗିବ ? ଭାରତବାସୀର ପ୍ରାଣରେ କି ଏହା ସହ୍ୟ ହେବ ? ମୁସଲିମ୍ ଲିଗ୍ ଦେଶମାତୃକାକୁ ଖଣ୍ଡ ଖଣ୍ଡ କରି ବ୍ରିଟିଶ୍ ଶାସନ ବଜାୟ ରଖିବାକୁ ଚେଷ୍ଟିତ । ଦେଶ ପରାଧୀନ ହେଉ ପଛକେ କଂଗ୍ରେସ ଆଧିପତ୍ୟ ନ ରହୁ । ତଥାକଥିତ ଅଛବ ଜାତି ମଧ କଂଗ୍ରେସକୁ ମାନିବାକୁ ପ୍ରସ୍ତୁତ ନୁହନ୍ତି । ପ୍ରାୟ ତିରିଶକୋଟି ଲୋକ ଯେ କି ବାକି ରହିଲେ ସେମାନେ ଯେ ଏକମତ ଏବଂ ଦେଶର ଉଦ୍ଧାର ସଂକଳ୍ପରେ ଜୀବନ ପଣ କରିବାକୁ ପ୍ରସ୍ତୁତ ଏପରି ନୁହେଁ । ଦେଶବାସୀ ସ୍ୱାଧୀନତାକାମୀ ବୋଲି ମୁଖରେ କହନ୍ତି ମାତ୍ର କେଉଁ ଉପାୟରେ ସ୍ୱାଧୀନତା ମିଳିବ ତାହା କେହି ଜାଣନ୍ତି ନାହିଁ । ଅଥଚ ସୈନ୍ୟମାନେ ସ୍ୱାଧୀନତା ହାସଲ କରିବାର ପ୍ରକୃଷ୍ଟ ଉପାୟ ଜାଣନ୍ତି ସେମାନଙ୍କର ମତ ବା ଉପଦେଶ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । ତେବେ ଏକତା ଆସିବ କିପରି ? ଏକତା ଭିନ୍ନ କି ପ୍ରବଳକୁ ବାଧ କରି ଦେଶର ସ୍ୱାଧୀନତା ଛଡ଼ାଇ ଆଣିବାର କି ଉପାୟନ୍ତର ନାହିଁ । ସମସ୍ତେ ଏହା ଜାଣି ଶୁଣି ଅମନଯୋଗୀ କାହିଁକି ? ଅଦ୍ୟାପି ବିଭିନ୍ନ ଦଳ ଗଠନ ଚାଲିଛି । ଦେଶର ଅନେକ ସୁଯୋଗ୍ୟ ସନ୍ତାନ ଅଦ୍ୟାପି ସ୍ଥିରମତରେ ଉପସ୍ଥିତ ହେଉ ନାହାନ୍ତି ଏଥିରୁ ବଳି କ୍ଷୋଭର ବିଷୟ ଆଉ କ'ଣ ଅଛି ?

ଭାରତମାତାର ଚାରି ହସ୍ତ ପଦରେ ସୁଦୃଢ଼ ଇସ୍ପାତ୍ ଶୃଙ୍ଖଳ ଲାଗିଥିଲା । କଂଗ୍ରେସର ଅଧବସାୟ, ସ୍ୱାର୍ଥତ୍ୟାଗ ଓ ପ୍ରାଣପାତରେ ତିନି ଗୋଟି ଶୃଙ୍ଖଳ କଟା ଯାଇଅଛି । ବାକି ଗୋଟିଏ ଛିନ୍ନ କରିବାକୁ ଦେଶବାସୀ ଏଡ଼େ ଅମନୋଯୋଗୀ କାହିଁକି ?

ଦେଢ଼ଶହ ବର୍ଷର ରାଜତ୍ୱ ଆଧିପତ୍ୟ କି ବ୍ରିଟିଶ ସିଂହ ସହଜରେ ଛାଡ଼ିବାକୁ ପ୍ରସ୍ତୁତ ? ନାନା ଛଳ କୌଶଳ ଉଦ୍ଭାବନ କରି ଭ୍ରାତୃବିରୋଧ ଜନ୍ମାଇ ଏ ଦେଶରେ ପ୍ରଭୁତ୍ୱ ରକ୍ଷା କରିବାକୁ ଚେଷ୍ଟିତ । ଏତିକିବେଳେ ସମସ୍ତେ ଏକମତ ହୋଇ ତହିଁର ପ୍ରତିରୋଧ ନ କଲେ ପୁଣି ସମସ୍ତ ଯତ୍ନ ଓ ଚେଷ୍ଟା ବିଫଳ ହେବ ସିନା ।

ପ୍ରଧାନମନ୍ତ୍ରୀ ଆଟଲି ବଡ଼ ଆଗ୍ରହରେ ଜିନ୍ନା ଓ ନେହେରୁଙ୍କୁ ଲଣ୍ଡନକୁ ନିମନ୍ତ୍ରଣ କଲେ । ଭାରତବାସୀ ଭାବିଲେ ଗୋଟାଏ ବଡ଼ ଲଡୁ ଭାଗ୍ୟରେ ଅଛି ପରା । ମାତ୍ର ଲଣ୍ଡନର ଲଡୁ ଉପଭୋଗ୍ୟ ଆଦୌ ନୁହେଁ ବରଂ ତିକ୍ତ ଓ ଅନିଷ୍ଟକର । ନେହେରୁ ବିରକ୍ତ ହୋଇ ଫେରିଲେ, ଜିନା ପ୍ରଭୁମାନଙ୍କ ତାବେଦାରିରେ ରହିଲେ । ଭିତିରି କଥା ଜାଣେ କିଏ ? ତେବେ ବିଶେଷ କୃତକାର୍ଯ୍ୟ ଯେ ହୋଇନାହାନ୍ତି ତାହା ଅନୁମାନ କରାଯାଇପାରେ । ଆସିଲାବେଳେ ଇଜିପଟ୍ରେ ମୁସଲ୍ମାନମାନଙ୍କୁ ସ୍ୱମତକୁ ଆଣିବା ଚେଷ୍ଟାରେ ତ୍ରୁଟି କରି ନାହାନ୍ତି । ଆରବ ମୁସଲ୍ମାନମାନଙ୍କର ନାଡ଼ି ମଧ ଟିପିଲେ ମାତ୍ର ଜିନ୍ନାଙ୍କର ଅଯଥା ଅନୁରୋଧରେ ବିଦେଶୀମାନେ ଭୁଲିବେ କିପରି ? ଜିନ୍ନାଙ୍କର ଆସ୍ପର୍ଦ୍ଧା ଦେଖି ଯେବେ ଏ ଦେଶବାସୀ ସର୍ତକ ନ ହୋଇ କେବଳ ଜିନ୍ନାକୁ ସ୍ୱଦଳକୁ ଆଣିବାକୁ ଆହୁରି ପ୍ରଶ୍ରୟ ଦିଅନ୍ତି ତେବେ ଅମଙ୍ଗଳ ଅବଶ୍ୟାମ୍ଭାବୀ । ଭାରତବାସୀ କେବେ ସାମ୍ରାଜ୍ୟ ସ୍ଥାପନ କରିବାକୁ ହସ୍ତ ପ୍ରସାରଣ କରିଥିଲେ ଯେ, ଜିନ୍ନା ବିଦେଶୀ ମୁସଲମାନ୍ମାନଙ୍କୁ କଂଗ୍ରେସର ଆଧିପତ୍ୟ ବାଢ଼ିଲେ । ମୁସଲ୍ମାନ ରାଜ୍ୟମାନ ପାତାଳଗାମୀ ହେବ ବୋଲି ଭୟ ଦେଖାଉଅଛନ୍ତି । ଆଉ ଭାରତ ଦୁଇ ଭାଗରେ ବିଭକ୍ତ ହୋଇ ପାକିସ୍ତାନ ପ୍ରତିଷ୍ଠିତ ହେଲେ ମସୁଲ୍ମାନ୍ ରାଜ୍ୟମାନ ନିଷ୍କଣ୍ଟକ ହେବ ବୋଲି ଆଶାବାଣୀ ଦେଉଅଛନ୍ତି । କାପଟ୍ୟର କି ସୀମା ନାହିଁ ? ଧନ୍ୟ ଜିନ୍ନା-ଚାର୍ଚ୍ଚ ହିଲ ପ୍ରଭୃତିଙ୍କର ଆଶ୍ୱାସନା ପାଇଲେ ରୁଷକୁ ମଧ ଭୟ ଦେଖାଇବାକୁ ପଶ୍ଚାତ୍ପଦ ହେବେ ନାହିଁ ।

ସେ ଯାହାହେଉ ଗଣ ପରିଷଦ ଯାହା ଗଠିତ ହୋଇଅଛି ସେଥିରୁ ତିଳେମାତ୍ର ବିଚଳିତ ହେବା । ଦେଶବାସୀଙ୍କର କାର୍ଯ୍ୟ ନୁହେଁ । ଯାହାହେବାର ହେଉ— ଗଣପରିଷଦ ବିଧିବ୍ୟବସ୍ଥା ପ୍ରଣୟନ ଓ ରାଜ୍ୟ ଚାଳନାରେ ବ୍ରତୀ ହେଉନ୍ତୁ ।

**ପ୍ରଗତି**—ପ୍ରଗତିର ଉଦୟରେ ଆମେମାନେ ବିଶେଷ ଆଶାନ୍ୱିତ । 'ରଶ୍ମି' ପଛକୁ 'ପ୍ରଗତି' ଓଡ଼ିଶା ଛାତ୍ର ସମାଜର ମାନସିକ ପ୍ରଗତି ସୂଚନା ଦେଉଅଛି । ଛାତ୍ରମାନେ ଦେଶମାତୃକାର ଉତ୍ତରାଧିକାରୀ, ସେମାନେ ଦେଶର ଏ ସଙ୍କଟ ସମୟରେ ସତର୍କ ନ ହେଲେ ଦେଶର ମୁଖୋଜ୍ୱଳ ହେବ କିପରି ? ଏ ସମୟରେ ଉପରୋକ୍ତ ଦୁଇପତ୍ରର ଉଦୟ ଦେଖି ମନରେ ଆଶ୍ୱାସ ଜନ୍ମୁଅଛି । ଅନ୍ୟାନ୍ୟ କଲେଜମାନଙ୍କର ମଧ ମୁଖପତ୍ରପରି ଖଣ୍ଡିଏ ଲେଖାପତ୍ର ବାହାରୁ । ଏବଂ ଦେଶର ଭବିଷ୍ୟତ ଓ ଉନ୍ନତିର ଉପାୟର ବଳିଷ୍ଠ ଆନ୍ଦୋଳନ ଚାଲୁ ଏହି କାମନା ।

## ଦ୍ୱିତୀୟ ବର୍ଷ ଅଷ୍ଟମ ସଂଖ୍ୟା

୧୯୩୫ ଇଃ ଜାନୁୟାରୀ ୧୭ ତାରିଖ ଦିନ ଆୟୁଷ୍ମାନ୍ ଶ୍ରୀମାନ୍ ଭାନୁଗଙ୍ଗ ଦେବ ପୂର୍ବପୁରୁଷଙ୍କର ପବିତ୍ର ରାଜସିଂହାସନରେ ସମାସୀନ ହେଲେ । ପୂର୍ଣ୍ଣ ଦଶବର୍ଷ କାଳ ରାୟପୁର ରାଜକୁମାର କଲେଜରେ ଏବଂ ସମ୍ବଲପୁର ଅଦାଲତରେ ଶିକ୍ଷାନିମନ୍ତେ ବ୍ୟୟିତ ହୋଇଥିଲା । ୧୯୨୦ ଇଃ ଜାନୁୟାରୀ ପ୍ରଥମ ଦିନ ଦିବଶଙ୍କର ଦେବ ବାମଣ୍ଡା ପ୍ରଜାଙ୍କୁ ଶୋକ-ସାଗରରେ ଭସାଇ ଇହଲୀଳା ସାଙ୍ଗ କଲେ । ଏଣୁ ବାମଣ୍ଡା ରାଜଶାସନ ପୂର୍ଣ୍ଣ ଚଉଦ ବର୍ଷ ଗଭର୍ଣ୍ଣମେଣ୍ଟଙ୍କ ହାତରେ ଥିଲା । ପୂର୍ବେ କେବେ ଏପରି ଘଟି ନ ଥିଲା ।

ଶ୍ରୀମାନ୍ ରାଜା ଭାନୁଗଙ୍ଗ ଗୋଟିଏ ଯୁଗ ସୁଚାରୁରୂପେ ଆପଣାର ରାଜ୍ୟ ପାଳନ କଲେଣି । ଭାବିଲେ ମନରେ ଅପାର ଆନନ୍ଦ ଜାତ ହୁଏ । ଆଜିକାଲି ଅନେକଙ୍କୁ ସୁଚାରୁ ଶବ୍ଦଟା ରୁଚିକର ହୋଇ ନ ପାରେ । ମାତ୍ର ଆଧୁନିକ ଦେଶର ପରିସ୍ଥିତି ଓ କାଳର ଗତି ତୁଳନାରେ ବାମଣ୍ଡା ରାଜାଙ୍କ ଏକ ଯୁଗ ବ୍ୟାପୀ ଶାସନକୁ ସୁଚାରୁ ଆଖ୍ୟା ଦେବା ନିତାନ୍ତ ସଙ୍ଗତ ଏହା ଭୁକ୍ତଭୋଗୀ ମାତ୍ରେ ସ୍ୱୀକାର କରିବେ । ରାଜା ଶାସନ ଭାର ଗ୍ରହଣ କଲାବେଳେ ଭାରତବ୍ୟାପୀ ଘୋର ଅଶାନ୍ତି ରାଜତ୍ୱ କରୁଥିଲା । ବ୍ରିଟିଶ ସିଂହ ଯେତେବେଳେ ଅସ୍ତବ୍ୟସ୍ତ, ରାଜାମାନଙ୍କର କଥା ପଚାରେ କିଏ ? ଗଭର୍ଣ୍ଣମେଣ୍ଟଙ୍କୁ ତୁଷ୍ଟ ଏବଂ ପ୍ରଜାମାନଙ୍କୁ ଶାନ୍ତି ରଖିବା ନିମନ୍ତେ ବିଚକ୍ଷଣତାର ପ୍ରୟୋଜନ ଥିଲା । ଉଭୟ ସଂକଟରୁ ଯେଉଁ ବ୍ୟକ୍ତି ରକ୍ଷା ପାଇଅଛନ୍ତି ତାଙ୍କୁ ବିଚକ୍ଷଣ ଆଖ୍ୟା ଦେବା ସଙ୍ଗତ ନୁହେଁ କି ? କଂଗ୍ରେସମାନଙ୍କ ଯତ୍ନ ଅଧ୍ୟବସାୟ ଓ ସ୍ୱାର୍ଥତ୍ୟାଗ ହେତୁ ପ୍ରାଦେଶିକ ସ୍ୱାୟତ୍ତ ଶାସନ ମିଳିଲା । ମାତ୍ର ଦେଶୀୟ ରାଜ୍ୟ ସମ୍ବନ୍ଧେ କୌଣସି ମତ ନିର୍ଦ୍ଧାରିତ ହୋଇ ନ ଥିବା ହେତୁ ରାଜାମାନଙ୍କ ମନ ସନ୍ଦେହ ଦୋଳାରେ ଆନ୍ଦୋଳିତ ହେଉଥିଲା । ପ୍ରାୟ ପ୍ରତ୍ୟେକ ଦେଶର ପ୍ରଜାମଧ୍ୟରୁ କେତେଜଣ ଲେଖା ସୁଖ ସ୍ୱପ୍ନ ଦେଖିବାକୁ ପାଇଲେ । ସେହି ଅଶାନ୍ତ ବାୟୁମଣ୍ଡଳଦ୍ୱାରା ବାମଣ୍ଡାର ସାମାନ୍ୟ କେତେଜଣ ପ୍ରଜା ଯେ ପ୍ରଭାବିତ ହୋଇ ନ ଥିଲେ ଏପରି ନୁହେଁ । ମାତ୍ର ଶାନ୍ତିପୂର୍ଣ୍ଣ କୌଶଳଦ୍ୱାରା ଅଶାନ୍ତି ବଢ଼ି ପାରିଲା ନାହିଁ । କହିବାକୁ ଗଲେ ବାମଣ୍ଡାର ପ୍ରଜା ଶାନ୍ତ ଓ ରାଜଭକ୍ତ ।

୧୯୩୯ ଇଃ ରେ ଘୋର ସମରାନଳ ଜଳିଲା—ପୃଥିବୀବ୍ୟାପୀ, ଗୋଟାଏ ଯୋଡ଼ାଏ ଦେଶବ୍ୟାପୀ ନୁହେଁ । ଏଣେ ଗଭର୍ଣ୍ଣମେଣ୍ଟ ତେଣେ ପ୍ରଜା ଉଭୟ ସଂକଟ । ଏହା ବ୍ରିଟିଶ୍ ଭାରତବର୍ଷର ପ୍ରଜାମାନଙ୍କର ବୋଧଗମ୍ୟ କଦାପି ହୋଇ ନ ପାରେ । ଏକପକ୍ଷରେ ଗଭର୍ଣ୍ଣମେଣ୍ଟଙ୍କର ସର୍ତ୍ତରକ୍ଷା ଅନ୍ୟ ପକ୍ଷରେ ପ୍ରଜାମାନଙ୍କଠାରୁ ଯୁଦ୍ଧ ସମ୍ପର୍କୀୟ ସାହାଯ୍ୟ ଓ ଚାନ୍ଦା ସଂଗ୍ରହ । ଉଭୟଙ୍କର ମନଃତୁଷ୍ଟି ସହଜସାଧ୍ୟ ନ ଥିଲା । ଯେଉଁ ରାଜା ଏହା ସାଧନ କରିବାକୁ କ୍ଷମ ତାଙ୍କୁ ବିଚକ୍ଷଣ ନ କହିବା ଅନ୍ୟାୟ । ଯୁଦ୍ଧପୂର୍ବ କେତେବର୍ଷ ଏବଂ ପୂରା ଯୁଦ୍ଧକାଳରେ ବାମଣ୍ଡା ଶାନ୍ତିପୂର୍ଣ୍ଣ ଥିଲା । ଯୁଦ୍ଧକାଳୀନ ଓ ପରବର୍ତ୍ତୀ ମାନବକୃତ ଦୁର୍ଭିକ୍ଷ ଲୋକଙ୍କର ସ୍ମରଣଯୋଗ୍ୟ ଅଟେ । ଏହି ଦୁଃସ୍ଥକାଳର ଅନ୍ନବସ୍ତ୍ରାଭାବ କେଉଁ ପ୍ରଦେଶର ଲୋକେ ଭୋଗି ନାହାନ୍ତି ? ବାମଣ୍ଡା ରାଜାଙ୍କୁ ନିଜ ଦେଶର ପ୍ରଜାମାନଙ୍କର ପ୍ରୟୋଜନ ପୂରଣ କରି ଗଭର୍ଣ୍ଣମେଣ୍ଟର ତଣ୍ଡୁଳ ଦାବି ପୂରଣ କରିବାକୁ ପଡ଼ିଥିଲା । ସାଧାରଣତଃ ସମସ୍ତେ ଅନ୍ନାଭାବର ଆଶଙ୍କା କରୁଥିଲେ । ଗଭର୍ଣ୍ଣମେଣ୍ଟଙ୍କର ଠିକାଦାରକୁ ଚାଉଳ ଦେବା ଅନ୍ୟାୟ ବୋଲି ଭାବୁଥିଲେ ମାତ୍ର ରାଜା ମହୋଦୟ ଏପରି ସୁବନ୍ଦୋବସ୍ତ କରିଥିଲେ ଯେ ଗଭର୍ଣ୍ଣମେଣ୍ଟ ତାଙ୍କର ଦାବି ଚାଉଳ ନେଲେ, ଏତଦ୍‌ଦ୍ୱାରା ଚାଷୀମାନେ କିଛି ଲାଭବାନ୍ ହେଲେ ଏବଂ ଏ ଦେଶର କିଣିଖାଇବା ଲୋକେ ବର୍ଷତମାମ ଟଙ୍କାକୁ ଛଅସେର ଚାଉଳ ଅନାୟାସରେ ପାଇପାରିଲେ । ଅଦ୍ୟାପି ସେ ଦର ଲାଗିଅଛି । ଗତବର୍ଷର ଫସଲ ଭଲ ହୋଇ ନାହିଁ ଏଣୁ ପୁଣି ଦର ଖସିବା ବଢ଼ିବାର ଭୟ ହୁଏ । ଯଦି ଗଭର୍ଣ୍ଣମେଣ୍ଟ ଚାଉଳଦାବି ନ କରନ୍ତି ତେବେ ବାମଣ୍ଡାର ଦର ଛଅସେର ରହିବ ବୋଲି ଆଶା କରାଯାଏ । ବସ୍ତ୍ର ଷ୍ଟେଟ ହାତରେ ନାହିଁ ତଥାପି ସୁବନ୍ଦୋବସ୍ତଦ୍ୱାରା ବସ୍ତ୍ର ନିମନ୍ତେ ହାହାକାର ପଡ଼ି ନ ଥିଲା । ସୁଖର ବିଷୟ ଏହି ଯେ ଶ୍ରୀମାନ୍ ଭାନୁଗଙ୍ଗଙ୍କ ରାଜତ୍ୱରେ ଅନ୍ନବସ୍ତ୍ରର ଅତ୍ୟନ୍ତାଭାବ ଘଟି ନାହିଁ । ଏ ରାଜ୍ୟର ପ୍ରଜାକୁଳ ଶାନ୍ତ ଓ ରାଜଭକ୍ତ । କେବେହେଁ ବିଦ୍ରୋହ ଓ ପ୍ରଜାମେଳି ଏବଂ ସେଥିନିମନ୍ତେ ରକ୍ତପାତ ଦ୍ୱାରା ବାମଣ୍ଡା ପୁଣ୍ୟଭୂମି ଅପବିତ୍ର ହୋଇ ନାହିଁ । କାଳସ୍ୟ କୁଟିଳା ଗତି । ଭବିଷ୍ୟତରେ କ'ଣ ଘଟି ପାରେ ତାହା କିଏ କହି ପାରିବ ? 'ରାଜା ପ୍ରକୃତି ରଞ୍ଜନାତ୍' ପ୍ରଜାରଞ୍ଜକ ଯିଏ ସେ ରାଜା । ରାଜା ପ୍ରଜା ମଧ୍ୟରେ ବିଦ୍ୱେଷଭାବ ରହିବା ଉଚିତ୍ ନୁହେଁ । ଏଥି ନିମନ୍ତେ ବାମଣ୍ଡା ରାଜା ଓ ପ୍ରଜା ସତର୍କ ଥିବାର ଆମେମାନେ ବିଶ୍ୱାସ କରୁ । ଶ୍ରୀମାନ୍ ଭାନୁଗଙ୍ଗ ପୂର୍ବ ପୁରୁଷଗଣଙ୍କର ପଦାନୁସରଣ କରି ସଳଖବାଟରେ ଚାଲିଲେ, ପ୍ରଜାମାନଙ୍କ ପ୍ରତି ସଦୟଦୃଷ୍ଟି ପକାଇ ଶାସନ କଲେ, କୌଣସି କ୍ଷତି ହେବାର ବା ନିନ୍ଦା ପାଇବାର ଆଶଙ୍କା ନାହିଁ ବୋଲି ଆମମାନଙ୍କର ବିଶ୍ୱାସ ।

ଗୋଟାଏ ଯୁଗ ନିଷ୍କଣ୍ଟକରେ ରାଜ୍ୟ ଶାସନ କଲେ । ଆମେମାନେ ଏହା କାମନା କରୁଁ ଯେ ଶ୍ରୀମାନ୍ ରାଜା ମହୋଦୟ ଦୀର୍ଘଜୀବୀ ହୋଇ ସୁଖସ୍ୱଚ୍ଛନ୍ଦରେ ପ୍ରଜା ପାଳନ କରନ୍ତୁ ।

ରାଜ୍ଞ ପ୍ରଜାନାଂ ଶାନ୍ତିର୍ଭବତୁ ।

**ଉତ୍କଳ ସମ୍ମିଳନୀ—**

ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ସେକ୍ରେଟେରୀଙ୍କଦ୍ୱାରା ପ୍ରେରିତ ବିବରଣୀ ପ୍ରାପ୍ତ ହୋଇଥିଲୁଁ । ଗତମାସରେ ଏଥି ସମ୍ବନ୍ଧେ ଦୁଇପଦ ଲେଖି ନ ପାରି ଲଜ୍ଜିତ ।

ବିବରଣୀ ପାଠରୁ ହୃଦ୍‌ବୋଧ ହୁଏ ଯେ ସମ୍ମିଳନୀର କାର୍ଯ୍ୟ ସୁଚାରୁରୂପେ ଚାଳିତ ହୋଇଥିଲା ।

ବିବରଣୀ ଇଂରେଜୀ ଭାଷାରେ ମୁଦ୍ରିତ । ଓଡ଼ିଆ ଅନଭିଜ୍ଞ ଅନ୍ୟ ଦେଶବାସୀଙ୍କ ନିମନ୍ତେ ଏହି ବିବରଣୀ, ନା ସଭାରେ ଇଂରେଜୀରେ ବିବରଣୀ ପାଠ, ଅଭିଭାଷଣ ପାଠ ଓ ବକ୍ତୃତାଦି ଦିଆଯାଇଥିଲା । ତାହା ସ୍ପଷ୍ଟ ବୁଝାଯାଉ ନାହିଁ । ସଭାରେ ଯେତେ ଉପସ୍ଥିତ ଥିଲେ ସମସ୍ତେ ଓଡ଼ିଆଭାଷୀ ଓ ଓଡ଼ିଆବାସୀ । ସୁତରାଂ ସମସ୍ତ ଓଡ଼ିଆ ଭାଷାରେ ହେବାର କଥା । ଯେବେ ଓଡ଼ିଆରେ ନ ହୋଇ ଇଂରେଜୀ ଭାଷା ପ୍ରତି ଏତେ ଆଦର ଦେଖାଯାଇଥାଏ ତେବେ ଆମେମାନେ ବିଶେଷ ଦୁଃଖିତ । ଆଉ ଯେବେ ଓଡ଼ିଆ ଭାଷାରେ ଅଭିଭାଷଣାଦି ପଠିତ ହୋଇଥାଏ ଅଥଚ ଇଂରେଜୀ ବିବରଣୀରୁ ଅନବଧାନତାବଶତଃ ତହିଁର ଇଙ୍ଗିତ ମଧ ଆମେମାନେ ବୁଝିପାରି ନ ଥାଉଁ ସେଥିନିମନ୍ତେ ଲଜ୍ଜିତ ହୋଇ କ୍ଷମା ପ୍ରାର୍ଥନା କରୁଁ ।

ସମସ୍ତ ଓଡ଼ିଆଭାଷୀ ଏକତ୍ରିତ ହେବା ଅଭିପ୍ରାୟରେ ଉତ୍କଳ ସମ୍ମିଳନୀର କଳ୍ପନା । ପ୍ରଥମ ସଭାରେ ସାର ବାସୁଦେବ ସୁଢଳଦେବ ସଭାପତି ହେବାର ନିଶ୍ଚିତ ହୋଇଥିଲା । ମାତ୍ର ସେ ଇତିପୂର୍ବରୁ ମାନବଲୀଳା ସମ୍ବରଣ କରିବାରୁ ସଭାପତିର ଭାର ରାଜା ରାମଚନ୍ଦ୍ର ଭଞ୍ଜଦେବ ମୟୂରଭଞ୍ଜ ଗ୍ରହଣ କଲେ । ତାହା ସେ ଅଭିଭାଷଣରେ ମଧ ପ୍ରକାଶ କରିଥିଲେ । ଦେଶମିଶ୍ରଣ ସମ୍ବନ୍ଧେ ଆନ୍ଦୋଳନ କରିବାକୁ ରାଜାମାନଙ୍କୁ ସଭାପତି କରାଯିବାର ଆମମାନଙ୍କର ମତ ନ ଥିଲା । କାରଣ ଏହା ବ୍ରିଟିଶ୍ ଇଣ୍ଡିଆର କାରବାର, ମିତ୍ର ରାଜାମାନେ ଗଭର୍ଣ୍ଣମେଣ୍ଟ ବିରୋଧରେ ପଦେ ଅଧେ କହିବାକୁ କ୍ଷମତାପନ୍ନ ନ ଥିଲେ । ରାଜା ଓ ବଡ଼ଲୋକଙ୍କ ସଭାପତିତ୍ୱରେ ପ୍ରଥମେ କେତେ ସଭା ହେଲା, କ୍ରମେ ଲୋକଙ୍କର ଓ ଉଦ୍‌ଯୋକ୍ତାମାନଙ୍କର ଉତ୍ସାହ କମିଲା । ସମ୍ମିଳନୀର ପୁନଃଗଠନ ଆଶାପ୍ରଦ ଅଟେ । ପ୍ରତିବର୍ଷ ସମ୍ମିଳନୀ ବିଚ୍ଛିନ୍ନ ଅଞ୍ଚଳମାନଙ୍କରେ ବସିଲେ ସେ ଅଞ୍ଚଳର ଲୋକେ ଉତ୍ସାହିତ ହେବେ, ଏହା ପୂର୍ବେ ହୋଇ ନାହିଁ କହିଲେ ଚଳେ । ଆଣିବା ଲୋକଙ୍କର ଉଦ୍ୟୋଗ ଅପେକ୍ଷା ଆସିବା ଲୋକଙ୍କର ଉଦ୍‌ଯୋଗ ଓ ଉତ୍ସାହର ବିଶେଷ ଦରକାର । ପୂର୍ବ ପୂର୍ବ ସଭାର ଉଦ୍‌ଯୁକ୍ତାମାନଙ୍କ ମଧରେ ନୀଳମଣି ବିଦ୍ୟାରତ୍ନଙ୍କର ନାମ ଦେଖିଲୁ ନାହିଁ । ଗଞ୍ଜାମ ଅଞ୍ଚଳ ମିଶାଇବା ବିଷୟରେ ସେ ବିଶେଷ ଚେଷ୍ଟା କରିଥିଲେ । ବିଚ୍ଛିନ୍ନ ଅଞ୍ଚଳ ଯେପରି ଆସିବ ସେଥିନିମନ୍ତେ ବିଶେଷ ଯତ୍ନ ହେବା ଦରକାର । ଓଡ଼ିଆଭାଷୀ ଏକତ୍ର ହେଉନ୍ତୁ ଏବଂ ଓଡ଼ିଆ ଭାଷାର ଶ୍ରୀବୃଦ୍ଧି ହେଉ ଏହି କାମନା ।

ପତାକା ଉତ୍ତୋଳନବେଳେ ସ୍ନେହାସ୍ପଦ ଲକ୍ଷ୍ମୀନାରାୟଣ ସାହୁଙ୍କର ବକ୍ତୃତା ଅତି ରମଣୀୟ ଓ ଉଦ୍ଦୀପକ ସନ୍ଦେହ ନାହିଁ । ମାତ୍ର ଆମମାନଙ୍କର ମତୈକ୍ୟ ଘଟି ପାରୁ ନାହିଁ; ନୀଳଚକ୍ରବାନାର ଯେ ବିବରଣ ଦେଇଅଛନ୍ତି ତାହା ଆମମାନଙ୍କର ମନକୁ ପାଇଲା ନାହିଁ । କାରଣ ଏ ନାମରେ ଆମେମାନେ ଅଭ୍ୟସ୍ତ ନୁହୁଁ କିମ୍ବା ଦେଶବାସୀ ମଧ ବିଶେଷ ଅଭ୍ୟସ୍ତ ବୋଲି ବିଶ୍ୱାସ ହେଉ ନାହିଁ । ଜଗନ୍ନାଥ ଦେଉଳର ଚକ୍ରର ନାମ ନୀଳଚକ୍ର ମାତ୍ର ବାନାର ନାମ ପତିତପାବନ । ଏହି ନାମ ଆମମାନଙ୍କ କାନରେ ବାଲ୍ୟକାଳରୁ ପ୍ରବେଶ କରୁଅଛି । ଏ ବାନାର ଆଦର୍ଶ ଅତି ଉଚ୍ଚ ମାତ୍ର ବ୍ରାହ୍ମଣ୍ୟ ଅହମିକତାର ପ୍ରଚାରର ଅନ୍ତରାୟ । ଦଶ ଗୋଟି ଅବତାର ମଧରୁ ପ୍ରକୃତ ଅବତାର ତିନି ଏବଂ ଏହି ତିନି ଅବତାର ପତିତପାବନ । ରାମ ପ୍ରଥମ ପତିତ ପାବନ ''ବିଜ୍ଞାନୀ କୈବର୍ତ୍ତ ଧୋଇଲା । ବିଶ୍ୱେ ପତିତ ପାବନ ନାମ (ବାନା) ରହିଲା ।'' କୃଷ୍ଣ ସ୍ୱପଚ ବାଲ୍ମୀକିର ଅନ୍ନଭକ୍ଷଣ କରିଥିଲେ । ବିଦୁର ଘରେ ଶାକାନ୍ନ ଭକ୍ଷଣ ଭାରତବିଦିତ । ପତିତ ଉଦ୍ଧାରର ପୂର୍ଣ୍ଣବିକାଶ ବୁଦ୍ଧଙ୍କଠାରେ । ଜଗନ୍ନାଥ ଯେ ବୁଦ୍ଧ ପ୍ରତୀକ ଏହା ସପ୍ରମାଣିତ ଏବଂ ଦେଶବାସୀଙ୍କ ଦୃଢ଼ ବିଶ୍ୱାସ ଥିଲା । ଚାଟଶାଳୀରେ ପ୍ରଥମ ପାଠ୍ୟଥିଲା କୋଇଲି, କମଳଲୋଚନ, ନାମରତନମାଳା । ନାମରତନ ମାଳା ବାଳକ ମନରେ ଜଗନ୍ନାଥ ଯେ ବୁଦ୍ଧ ତାହା ଜାଗ୍ରତ କରୁଥିଲା । ସେ ନାମସ୍ମରଣ ଆମମାନଙ୍କ ମନରେ ଅଦ୍ୟାପି ରାଜତ୍ୱ କରୁଅଛି କାରଣ ଆମେମାନେ ଚାଟଶାଳୀର ପାଠୁଆ । ''ନୀଳାଚଳ ବୁଦ୍ଧ ରୂପେ ଛନ୍ତି ବିଜେ କରି । ତୋଷେ ବର ଦ୍ୟନ୍ତୁ ସ୍ୱାମୀ ଦେବ ନରହରି ।'' କଞ୍ଚା ମାଠିଆର ଗାର କଦାପି ଲିଭିବାକୁ ନାହିଁ । ଏ ଦେଶରେ ନାନା ଗୀତ ଚୌତିଶାରେ

ଜଗନ୍ନାଥ ଯେ ବୁଦ୍ଧ ତା'ର ଉଲ୍ଲେଖ ଅଛି । ଭାଗବତରେ ମଧ ତହିଁର ଆଭାଷ ମିଳେ । ବୁଦ୍ଧଙ୍କର ନାମ ବିସ୍ମୃତ କରାଇବାକୁ ବ୍ରାହ୍ମଣଙ୍କର କି ଯେ ପ୍ରବଳ ଚେଷ୍ଟା ଭିତରେ ଭିତରେ କାର୍ଯ୍ୟ କରିଅଛି ତାହା ଲୋକଙ୍କୁ ଅଜଣା । ପ୍ରକୃତକୁ ଛାଡ଼ିବାରୁ ଆମମାନଙ୍କର ଦୁର୍ଦ୍ଦଶା । ଜଗନ୍ନାଥ ବୁଦ୍ଧ, ସୁଭଦ୍ରା ଧର୍ମ ଏବଂ ବଳଦେବ ସଂଘ । ଶଙ୍କରାଚାର୍ଯ୍ୟ, ଜୟଦେବ ବୁଦ୍ଧଙ୍କୁ ନବମାବତାର କହି ସ୍ତୁତି କରିଅଛନ୍ତି । ଭାଗବତ ବୁଦ୍ଧଙ୍କୁ ଅବତାର ବୋଲି ସ୍ୱୀକାର କରିଅଛନ୍ତି । ନେପାଳର ଶୟମ୍ଭୁନାଥ ମନ୍ଦିରରେ ତିନିମୂର୍ତ୍ତି ଅଛନ୍ତି ରଙ୍ଗ—କଳା ଧଳା ଓ ହଳଦିଆ ସେଠାର ଧର୍ମର ମଧ ହାତ ଗୋଡ଼ ନାହିଁ ଆମମାନଙ୍କ ମନ୍ଦିରର ସୁଭଦ୍ରାଙ୍କର ହାତଗୋଡ଼ ନାହିଁ । କୌଣସି ଅନ୍ୟାୟକଥା ଶୁଣିଲାକ୍ଷଣି ଏ ଦେଶର ସ୍ତ୍ରୀ ପୁରୁଷ ସମସ୍ତେ କହନ୍ତି ''ଧର୍ମର ତ ହାତଗୋଡ଼ ନାହିଁ ?'' ଏ ଦେଶର ଚିତ୍ରକାରମାନେ ବଳଦେବଙ୍କର ମୂର୍ତ୍ତି ଗଢ଼ିଲେ ପିଠିରେ ଗୋଟିଏ ସ୍ୱସ୍ତିକଚିହ୍ନ ଅଙ୍କନ କରନ୍ତି ।

ଜଗନ୍ନାଥ ଯେ ବୁଦ୍ଧ ଏବଂ ବୁଦ୍ଧ ହିଁ କେବଳ ଦାରୁବହ୍ମ ତାହା ସ୍କନ୍ଦ ପୁରାଣ ଏମନ୍ତ କି ନୀଳାଦ୍ରି ମହୋଦୟ ପାଠରୁ ସ୍ପଷ୍ଟ ଜଣାଯାଏ ।

''ଅଦ୍ୱିତୀୟ ପରାର୍ଦ୍ଧସ୍ୟ
ପ୍ରମାପୂରଣକାରିଣେ
ଦାରୁବ୍ରହ୍ମ ସ୍ୱରୂପାୟ
ତସ୍ମୈବୁଦ୍ଧାତ୍ମନେ ନମଃ ।''

ତଥାପି ବୁଦ୍ଧଙ୍କୁ ଅମାନ୍ୟ କରିବାକୁ ଲୋକଶିକ୍ଷା ଚାଲିଛି ।

ମନ୍ଦିରରେ ନୀଳଚକ୍ର ଅଛି ମାତ୍ର ନୀଳମାଧବ ଗଲେ କୁଆଡ଼େ ? ନୀଳମାଧବ ଯେ ବୁଦ୍ଧମୂର୍ତ୍ତି ନୁହଁନ୍ତି ଏହା କିଏ କହିପାରେ ?

ମନ୍ଦିର ଉପରେ ବି ପ୍ରକୃତ ସୁଦର୍ଶନ ଚକ୍ର ଅଛି । ଗୋଲାକାର ଚକ୍ର ଯାହା ଅଙ୍ଗୁଳିରେ ବୁଲାଇ ମରାଯାଇପାରେ । ମନ୍ଦିରର ନୀଳଚକ୍ର ଅଷ୍ଟଅର ଯୁକ୍ତଚକ୍ର । ସୁଦର୍ଶନ ଚକ୍ରର ଆଠଗୋଟି ଅର ଥିବାର କି କୌଣସି ହିନ୍ଦୁଶାସ୍ତ୍ରରେ ବିବୃତ ଅଛି । ଅଷ୍ଟଅର ଯୁକ୍ତଚକ୍ରରେ କି ଧର୍ମଚକ୍ର ନୁହେଁ ? ଅଷ୍ଟସିଦ୍ଧି ବା ଅଷ୍ଟ ସୁପଥ । ଏହି ଧର୍ମ ଚକ୍ର ଉପରେ ପତିତପାବନବାନା ପତିତକୁ ଉଦ୍ଧାର କରିବା ନିମନ୍ତେ ଆହ୍ୱାନ କରୁଅଛି । ଯେଉଁ ମନ୍ଦିର ଧ୍ୱଜା ପତିତପାବନର ବୋଲି ସୁବିଖ୍ୟାତ ସେ ମନ୍ଦିରକୁ ପତିତଙ୍କର ପ୍ରବେଶ ନିଷେଧ । ପତିତମାନେ ଉଦ୍ଧାର ପାଇବେ ବୋଲି ବାଇଶ ପାବଛର ଦକ୍ଷିଣପାର୍ଶ୍ୱ କାନ୍ଥରେ ଗୋଟିଏ ଜଗନ୍ନାଥ ମୂର୍ତ୍ତି ଅଙ୍କିତ । ଯାହାର ନାମ ଦଧିବାମନ ବା ପତିତପାବନ । କି ଘୋର କପଟାଗ୍ରହ ! ବୁଦ୍ଧ ହିଂସାରହିତ, ପଶୁଘାତର ବିରୋଧି । ଜଗନ୍ନାଥ ମଧ ତଦ୍ରୂପ । ବୁଦ୍ଧପ୍ରସାଦ ବ୍ରାହ୍ମଣମାନଙ୍କର ଅଗ୍ରହଣୀୟ ଖାଦ୍ୟ ଏଣୁ ବିମଳାନାମକ ଦେବୀଙ୍କି ସ୍ଥାପନ କରାଯାଇ ମନ୍ଦିରରେ ପଶୁବଳି ଦିଆ ଯାଉଅଛି, ଏବଂ ଜଗନ୍ନାଥ ଭୋଗ ବିମଳାର ଦୃଷ୍ଟିପାତ ନୋହିଲେ ପ୍ରସାଦ ଗ୍ରହଣଯୋଗ୍ୟ ନୁହେଁ । ବୌଦ୍ଧ ପ୍ରଭାବରୁ ପଞ୍ଚକୋଷ ମଧରେ ଜାତିଭେଦ ନାହିଁ । ତାକୁ ବ୍ରାହ୍ମଣେ କଲେ ଭୈରବୀଚକ୍ର । ପାଞ୍ଚକୋଷ ବାହାରେ ମହାପ୍ରସାଦ ନୁହେଁ ଓ ପଞ୍ଚଦେବତା ଉପାସକ ବ୍ରାହ୍ମଣମାନଙ୍କର ଗ୍ରହଣୀୟ ନୁହେଁ ବୋଲି ମୁକ୍ତକଣ୍ଠରେ ପ୍ରକାଶ କରାଯାଏ ।

ଏତିକି ନୁହେଁ ଜଗନ୍ନାଥର ପଣ୍ଡା ସୂପକାର ପ୍ରଭୃତି ଯେଉଁମାନଙ୍କର ମହତ୍ୱ ମର୍ଯ୍ୟାଦା ଜଗନ୍ନାଥଙ୍କର ମହାପ୍ରସାଦ ଖଞ୍ଜାରେ ସେମାନେ ମଧ ତାନ୍ତ୍ରିକ ବ୍ରାହ୍ମଣମାନଙ୍କର ଅନୁକରଣରେ ସାହିରେ ସାହିରେ ଶିବଲିଙ୍ଗ ସ୍ଥାପନ କଲେଣି । ଜଗନ୍ନାଥଙ୍କର ଭକ୍ତି ଓ ଉପାସନାରେ ସେମାନେ ତୃପ୍ତ ନୁହଁନ୍ତି । ଆଉ ଅନେକ କଥା ଅଛି ସମ୍ପାଦକୀୟରେ ଏତେ ବିଷୟ ଲେଖା ଯାଇ ନ ପାରେ । ବହୁଦିନ ପୂର୍ବେ ପିଲାଦିନରେ ଭିଖାରୀଙ୍କଠାରୁ ଶୁଣିଥାଉଁ—

ପତିତପାବନବାନା ଆଉ କେତେ କାଳକୁ
ପତିତରେ ଦୟା ତ ନ କଲ ଏତେବେଳକୁ
ଲୋକେହେବ ଅପଯଶ, ନିନ୍ଦାହେବ ତୁମ୍ଭଙ୍କୁ ।

ପତିତ ଡାକିଛି, ଡାକୁଛି, ଡାକିବ ମାତ୍ର ତା'ର ଡାକ ଶୁଣୁଛି କିଏ ? ଦୁର୍ଭାଗ୍ୟରୁ ତା'ର ଜନ୍ମ ଯେ ଭାରତରେ ।

ଆଶାକରୁଁ ସ୍ନେହାସ୍ପଦ ଲକ୍ଷ୍ମୀନାରାୟଣ ସାହୁ—କ୍ଷମାଦେବେ ।

—୦—

ଛାତ୍ରମାନେ ତ ଦେଶର ଉତ୍ତରାଧିକାରୀ । ସେମାନେ ଦେଶ ରକ୍ଷାର ଭାର ପାଇବେ । ସେମାନଙ୍କଦ୍ୱାରା ଶାସନ ସୁଶୃଙ୍ଖଳିତ ହେବ । ଲୋକେ ସୁଖ ଓ ସ୍ୱାଧୀନତା ପାଇବେ । ଏହି ଆଶା ଦେଶବାସୀମାନେ କରନ୍ତି । ଏଥି ନିମନ୍ତେ ସ୍କୁଲ କଲେଜ ।

''ବାଳାନାଂ ଅଧ୍ୟୟନଂତପଃ''

ଦେଶର ଅବସ୍ଥା ବଡ଼ ସଙ୍କଟଜନକ । ଏତେବେଳେ ଛାତ୍ରମାନେ ସଂଯତ ହୋଇ କର୍ତ୍ତବ୍ୟ ପଥରେ ନ ଚଳିଲେ

ଦେଶର ମଙ୍ଗଳ ହେବାର ଆଶା ନାହିଁ ? ଅଭିଭାବକମାନଙ୍କର କର୍ତ୍ତବ୍ୟ ରକ୍ତଚକ୍ଷୁ ଦେଖାଇବା ନୁହେଁ । ସେ ଦିନ ଚାଲି ଯାଇଅଛି । କେବଳ ଅଙ୍ଗୁଳି ନିର୍ଦ୍ଦେଶଦ୍ୱାରା ପଥ ଦେଖାଇବା ସେମାନଙ୍କର କର୍ତ୍ତବ୍ୟ । ଶାନ୍ତିପଥ ଅବଲମ୍ବନ ଛାତ୍ରମାନଙ୍କର କର୍ତ୍ତବ୍ୟ । ଯୋର ଜବରଦସ୍ତରେ କୌଣସି ଫଳ ନାହିଁ । ଶାସକମାନଙ୍କର ଶକ୍ତି ଅତି ପ୍ରବଳ କେବଳ ଶାନ୍ତ ଉପାୟ ଅବଲମ୍ବନ କରିବା କର୍ତ୍ତବ୍ୟ । ଏବଂ ଏଥିରେ ସିଦ୍ଧି ହେବ । ମନେ ରଖିବା ଉଚିତ୍ ଯେ

''ଶାନ୍ତିଖଡ୍ଗକରେଯସ୍ୟ କିଂକରିଷ୍ୟତି ଦୁର୍ଜ୍ଜନଃ''

**ଅପରାଧୀନତା ମୁକ୍ତି—**

ମାତ୍ର ଏ ଦେଶର ଲୋକେ ଅଦ୍ୟାପି ଯାଗଯଜ୍ଞ ପୂଜା ପାଠଦ୍ୱାରା ମୁକ୍ତି ପାଇବାର ଆଶା ରଖନ୍ତି । ଯାଗଯଜ୍ଞରେ ପାରତ୍ରିକ ମୁକ୍ତି କେତେଦୂର ସୁଲଭ ତାହା କିଏ କହିପାରିବ ? ମାତ୍ର ପରାଧୀନରେ ଆରାଧମାନେ ମଧ ଯେ ପରାଧୀନ ଏହା କି କହିବାକୁ ହେବ ? ପରାଧୀନର ଯାଗଯଜ୍ଞ ମଧ ପଣ୍ଡ ନୁହେଁ କି ? ଯେ ନିଜ ଜନ୍ମଭୂମିରେ ମୁକ୍ତ ନୁହେଁ ତା'ର ସ୍ୱର୍ଗ ରାଜ୍ୟରେ ମୁକ୍ତି ପାଇବା ଆଶା ଆକାଶ-କୁସୁମ ମାତ୍ର ।

**ଗୁରୁ ଓ ଶିଷ୍ୟ—**

ଗାନ୍ଧିଗୁରୁ, ଅବଦୁଲ୍ ଗଫରଖାନ୍ ଶିଷ୍ୟ । ଉଭୟଙ୍କ ଜାତିଗତ ଓ ଜନ୍ମଗତ ବୈଶିଷ୍ଟ୍ୟ ବିଦ୍ୟମାନ ଅଛି । ଉଭୟଙ୍କର ଧର୍ମରେ ସାମ୍ୟ ନାହିଁ । ଗୁରୁ ବଂଶାନୁକ୍ରମେ ବୈଷ୍ଣବ— ଶିଷ୍ୟର ପୂର୍ବପୁରୁଷମାନେ ରକ୍ତପିପାସୁ ବୋଲିବା ଅତ୍ୟୁକ୍ତି ନୁହେଁ । ଫ୍ରଣ୍ଟିଆର ପ୍ରଦେଶର ଲୋକମାନଙ୍କର ଆଚରଣ କଥା କାହାରିକୁ ଅବିଦିତ ନୁହେଁ । ସେମାନେ ସ୍ୱାଧୀନତାକାମୀ ମାତ୍ର ସେ ପ୍ରଦେଶବାସୀ ଅହିଂସା ନୀତିର ପକ୍ଷପାତୀ ନୁହନ୍ତି । ଅବଦୁଲ୍ ଗଫରଖାଁନ୍ ଦେଖିଲେ ହିଂସାଦ୍ୱାରା ଫଳଲାଭ ହେବାର ଆଦୌ ସମ୍ଭବ ନୁହେଁ । ଏଣୁ ଅହିଂସା ନୀତିର ଅନୁସରଣ କଲେ । ନିଜକୁ ଖୁଦାଇ ଖିଦମଦଗାର ବୋଲି ପରିଚୟ ଦେଲେ ଏବଂ ସେଥି ସଙ୍ଗେ ସେ ପ୍ରଦେଶର ମୁସଲମାନଙ୍କ ମଧରେ ଏକଦଳ ଖୁଦାଇ ଖିଦମଦଗାର ସୈନ୍ୟ ଗଢ଼ିଲେ । ସୈନ୍ୟର ପୋଷାକ ଲାଲ୍ କାମିଜ୍ । ହିଂସାବର୍ଜିତ ରକ୍ତବସ୍ତ୍ରଧାରୀ ଦେଶ ସେବକ ଗଢ଼ିଲେ କି ହେବ, ରକ୍ତବସ୍ତ୍ର ଯେ ବ୍ରିଟିଶର ଚକ୍ଷୁଶୂଳ । ରୁଷ୍ ବ୍ରିଟିଶର ଶତ୍ରୁ । ରୁଷ୍ ପ୍ରଭାବିତ ଗଫରଖାନ୍ ଭାରତରେ କମ୍ୟୁନିଷ୍ଟ ନୀତି ପ୍ରଚାର କରିବାକୁ ଲାଲ୍‌ଫୌଜ ଗଢ଼ି ଅଛନ୍ତି ଏବଂ ରୁଷ୍‌ର ସାହାଯ୍ୟ ଗ୍ରହଣ କରି ଦେଶର ଅନିଷ୍ଟ କରିବାର ସମ୍ଭବ ଏହି ଅପବାଦ ପ୍ରଚାର କରି ଗଫରଖାନ୍‌ଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲେ । ଏବଂ ତାଙ୍କର ଖୁଦାଇ ଖିଦମଦଗାରଙ୍କ ଉପରେ ଘୋର ଅତ୍ୟାଚାର ଆରମ୍ଭ କଲେ । ଦୃଢ଼ ପ୍ରତିଜ୍ଞା ମୁସଲମାନ୍ ଦାହିକ ବଳ ପ୍ରବଳ । ନିଜ କର୍ତ୍ତବ୍ୟ ପଥରୁ ସ୍ଖଳିତ ଓ ଶଙ୍କିତ ହେଲେ ନାହିଁ । ଅତ୍ୟାଚାରର ମାତ୍ରା ବଢ଼ିଲା, ଅତ୍ୟାଚାରର ବୃଦ୍ଧି ସଙ୍ଗେ ସଙ୍ଗେ ଅହିଂସା ନୀତି ଅତ୍ୟାଚାରିତ୍‌ମାନଙ୍କ ହୃଦୟରେ ମରଣ ଫଂକଛ ଦୃଢ଼ାସନ ପାଇଲା । କଂଗ୍ରେସ କର୍ମୀମାନେ ଜେଲ୍ ଦଣ୍ଡ ପାଇଲେ । ଗଫରଖାନ୍ ମଧ ଜେଲ୍‌ଦଣ୍ଡ ପାଇଲେ । ମାତ୍ର ଦଣ୍ଡରେ ତାରତମ୍ୟ ଅନେକ । ଗାନ୍ଧୀଙ୍କ ପ୍ରତି ବିନାପରିଶ୍ରମର କାରାବାସ । ଗଫରଖାନ୍ ସପରିଶ୍ରମ କାରାଦଣ୍ଡ ଭୋଗ କଲେ । ଗାନ୍ଧୀଙ୍କପ୍ରତି କର୍ତ୍ତୃପକ୍ଷ ସୁବିଧାର ତ୍ରୁଟି କରି ନ ଥିଲେ ମାତ୍ର ଗଫରଖାନ୍‌ଙ୍କୁ ଦୈନିକ ଦଶ ପନ୍ଦର ସେର ଚଣାଡ଼ାଲି ଦଳିବାକୁ ପଡୁଥିଲା । ଗୋଡ଼ରେ ଖୁବ୍ ଭାରି ବେଡ଼ି ବେକରେ ଲୁହାର କଡ଼ା । ସେ ଅତ୍ୟାଚାରର କାହାଣୀ ଏ ଦେଶବାସୀ କ୍ୱଚିତ୍ ଜାଣନ୍ତି । ଇଚ୍ଛାପୂର୍ବକ କଷ୍ଟଦେବା ଅଭିପ୍ରାୟରେ କର୍କଶ ଓ ଛୋଟ ବେଡ଼ି ଗଫରଖାନଙ୍କର କାରା ଭୂଷଣ ହୁଏ । ବେଡ଼ି ପିନ୍ଧାଇଲାବେଳେ ରକ୍ତ ଝର ଝର ହୋଇ ବହି ଯାଉଥାଏ । ଆହା । ସେ କରୁଣ ଦୃଶ୍ୟ । ଜେଲ୍ ରକ୍ଷକମାନଙ୍କର ବିଦ୍ରୂପାତ୍ମକ ହାସ୍ୟ; ଦୟା ମାୟାର ଲେଶ ନାହିଁ ଅଥଚ ଗଫରଖାନାଙ୍କ ମୁଖରେ ବିରକ୍ତିର ଲେଶମାତ୍ର ନାହିଁ, ଚକ୍ଷୁରେ ଅଶ୍ରୁ ନାହିଁ । ଦଣ୍ଡ ଓ କଷ୍ଟପ୍ରତି ଭ୍ରୂକ୍ଷେପ ନାହିଁ । ଧନ୍ୟ ମାନସିକ ବଳ, ସହିଷ୍ଣୁତା । ଦୁଃଖରୁ ଆନନ୍ଦ ସମସ୍ତଙ୍କର ଲଭ୍ୟ ନୁହେଁ ।

ପୁତ୍ରର ଇଦୃଶ ଦେଶସେବାର ପରାକାଷ୍ଠା ଓ ସ୍ୱାର୍ଥତ୍ୟାଗ ନିମନ୍ତେ କାରାଦଣ୍ଡ ସନ୍ଦର୍ଶନ କରି ଗଫରଖାଁନ୍‌ଙ୍କର ନବେ ବର୍ଷ ବୟସ୍କ ବୃଦ୍ଧପିତା ବହରାମଖାନ କାରାବରଣ କଲେ । ବହରାମଖାନପରି ପିତା ସିନା ଗଫରଖାନ ପରି ପୁତ୍ର ଜନ୍ମ କରିପାରେ । ଜ୍ୟେଷ୍ଠଭ୍ରାତା ଡକ୍ଟର ଖାନ୍ ସାହେବ ଗଫରଖାନଙ୍କ ସହୋଦର ହେତୁ ଜେଲ୍‌ଦଣ୍ଡ ପାଇଲେ; ଆଶ୍ଚର୍ଯ୍ୟ ନ୍ୟାୟବିଚାର । ଖାନସାହେବଙ୍କ ତିନିଜଣ ସୁଯୋଗ୍ୟ ସନ୍ତାନ ସହଦୁଲା, ଓବାଏଦୁଲା ହିଦାୟ ତୁଲା ପିତାମହ ପିତା ଓ ପିତୃବ୍ୟଙ୍କୁ ରାଜଅତିଥି ହେବାର ଦେଖି ସେହି ପଥରେ ପଥିକ ହେଲେ । ସଶ୍ରମ କାରାଦଣ୍ଡ ପାଇଲେ । ସଏଦୁଲ୍ଲା ଅଣସ୍ତରି ଦିବସ ଅନଶନ ବ୍ରତ ପାଳନ କରିଥିଲେ । ପିତା ଖାନ୍‌ସାହେବ କର୍ତ୍ତୃପକ୍ଷଙ୍କୁ ଲେଖିଲେ ପୁତ୍ର ତା କର୍ତ୍ତବ୍ୟ କାର୍ଯ୍ୟ କରୁଅଛି । ଦେଖିବାର କିଛି ନାହିଁ ତେବେ ସେ ମୃତହେଲେ ତା'ର ସମାଧି ଯେପରି ଯୋଗ୍ୟତାନୁସାରେ କରାଯାଏ । ଏପରି ସ୍ୱାର୍ଥତ୍ୟାଗୀ ପରିବାର କେତେଟା ଦେଖାପଡ଼େ । ଏପରି ଦେଶ ହିତକାମୀ

ବ୍ୟକ୍ତି କେତେ ଜଣ ? ଭାରତବାସୀ ଭେଖର ଭ୍ୟକ୍ତି— ଗୁଣର ଭୁକ୍ତ ନୁହଁନ୍ତି ।

**ଛାତ୍ରମାନଙ୍କର ଜୟ—**

କଟକ ରେଭେନ୍ସା କଲେଜ ଛାତ୍ର ଏବଂ କର୍ତ୍ତୃପକ୍ଷଙ୍କ ମନର ଅମେଳ ହେବାରୁ ଛାତ୍ର କେତେଜଣ ବଳପୂର୍ବକ ଇଉନିୟନ ପତାକାକୁ ଉତାରି ଦେଇ ପତାକାର ଅପମାନ କଲେ । ଏତେଦୂର ଅଗ୍ରସର ହେବା ଛାତ୍ରମାନଙ୍କ ପକ୍ଷରେ ଉଚିତ୍ ବୋଲି ମନେ ହୁଏ ନାହିଁ । ଅଭିଭାବକଗଣ ଏଥିର ମିଳାମିଶା ନ କରି ବୋଧହୁଏ ଦୃଢ଼ ଶାସନର ପନ୍ଥା ଅନୁସରଣ କଲେ । ଏଣୁ ଛାତ୍ରମାନେ ହରତାଳ ଆରମ୍ଭ କଲେ । ଛାତ୍ର ଛାତ୍ରୀମାନେ ଆହତ ହେଲେ, ଗୁଳି ବାଜିଲା, ଗିରଫ ହେଲେ । ମାତ୍ର ସଂକଳ୍ପଚ୍ୟୁତ ହେଲେ ନାହିଁ । ମରଣ ପଣ କଲେ । ଏଣୁ ଶେଷରେ ଛାତ୍ରମାନଙ୍କର ଜୟ ହେଲା । ଇଉନିୟନ ଜ୍ୟାକ୍ ଯେ ଅତୁଳ ପ୍ରତାପର ପ୍ରତୀକ ଆଜି ଛାତ୍ରମାନଙ୍କ ତେଜରେ ତଳକୁ ଖସିଲା । ଆଉ କଲେଜ ସ୍କୁଲରେ ଇଉନିୟନ ଜ୍ୟାକ ଫର ଫର ହୋଇ ଉଡ଼ିବ ନାହିଁ । ଏକତାର ଯେ କି ବଳ ତାହା ସ୍ପଷ୍ଟ ପ୍ରମାଣିତ ହେଲା । ସୁଖର ବିଷୟ ଛାତ୍ରମାନେ ଶାନ୍ତି ପୂର୍ଣ୍ଣ ଅହିଂସା ହରତାଳ କରିଥିଲେ ।

**ନିମନ୍ତ୍ରଣ—**

ଦୁଇ ଖଣ୍ଡ ନିମନ୍ତ୍ରଣପତ୍ର ପାଇଅଛୁଁ । ଖଣ୍ଡେ ଓଡ଼ିଆ ଥିଏଟାର, ଖଣ୍ଡେ ବ୍ରଜବନ୍ଧୁ ବୈଶ୍ୟ ବିଦ୍ୟାଳୟ । ପ୍ରଥମୋକ୍ତଟି ଫେବୃୟାରୀ ତା ୧ ରେ ଅନୁଷ୍ଠିତ ହେଲା । ନିମନ୍ତ୍ରଣ ପତ୍ର ତା ୧ । ୨ । ୪୭ ଦଶ ଘଣ୍ଟାରେ ଆମମାନଙ୍କର ହସ୍ତଗତ ହେଲା । ଶେଷୋକ୍ତଟିର ସଭା ତା ୨୭ ରେ ହେବାର କଥା, ନିମନ୍ତ୍ରଣ ପତ୍ର ହସ୍ତଗତ ହେଲା ତା ୨ । ୨। ୪୭ରେ । ଉତ୍ତର ଦେବାକୁ ମଧ ଅବସର ନ ଥିଲା । ଏଣୁ ଦୁଃଖିତ; ଚାଳକମାନଙ୍କର ସୌଜନ୍ୟ ନିମନ୍ତେ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରୁଅଛୁଁ । ଉଭୟ ଅନୁଷ୍ଠାନର ଭାବି ଉନ୍ନତି ହେଉ ।

## ଦ୍ୱିତୀୟ ବର୍ଷ ନବମ ସଂଖ୍ୟା

**ଜନ୍ମତିଥୀ—**

ଭାରତବର୍ଷ ରାଜଶାସିତ ଦେଶ— ଗଣତନ୍ତ୍ର ଏ ଦେଶରେ ପ୍ରଚଳିତ ନ ଥିଲା । ଇଙ୍ଗରାଜ ଏ ଦେଶକୁ ଆସି ଦେଶବାସୀଙ୍କି ଦାସତ୍ୱ ଶୃଙ୍ଖଳରେ ବାନ୍ଧି ସ୍ୱେଚ୍ଛାମତ ଶାସନ କରି ନ ଥିଲେ ଏ ଦେଶରେ ଆଜକୁ କି ଭଳି ଶାସନ ପ୍ରଥା ଚଳିଥାନ୍ତା, ତାହା କିଏ କହିପାରିବ ? ଇଂଲଣ୍ଡ ଯେ ଗଣତନ୍ତ୍ର ଶାସନର ଜନ୍ମସ୍ଥଳ ଏହା ଅସ୍ୱୀକାର୍ଯ୍ୟ ନୁହେଁ । ଇଂରାଜ ଜାତି ରାଜାଙ୍କଠାରୁ ଗଣ ହାତକୁ ଶାସନ କ୍ଷମତାର ଭାର ନେଲେ ଏବଂ ରାଜାଙ୍କୁ ନାମମାତ୍ର କ୍ଷମତାରକ୍ଷକ କଲେ, ଏହା ଆଜିଯାଏ ଚଳି ଆସୁଅଛି । ରାଜା ପ୍ରଜାର ମୁଖ୍ୟ ସମ୍ବନ୍ଧ ନାହିଁ । ଫ୍ରାନ୍ସ ଦେଶର ରାଜାମାନେ କ୍ଷମତାପନ୍ନ ହୋଇ ପ୍ରଜା ପୀଡ଼ିକ ହେବାରୁ ପ୍ରଜାମାନେ ତାଙ୍କର ଉଚ୍ଛେଦ ସାଧନ କରି ଗଣତନ୍ତ୍ର ଗଢ଼ିଲେ । ସ୍ୱାୟତ୍ତଶାସନରେ ଇଂରାଜୀଠାରୁ ଏକସ୍ତର ଉପରକୁ ଉଠିଲେ । ଇଉରୋପୀୟମାନେ ଆମେରିକାକୁ ଯାଇ ଉପନିବେଶ ସ୍ଥାପନ କଲେ, ମାତ୍ର କିଛିକାଳ ଇଂରାଜରାଜାଙ୍କ ଅଧୀନରେ ଥିଲେ । ସେମାନେ ଚିନ୍ତାକଲେ ଯାହା ସେମାନଙ୍କର ବାହୁବଳ ଓ ବୁଦ୍ଧି ବଳରେ ଅର୍ଜନ କରି ଅଛନ୍ତି ସେଥିରେ ଅନ୍ୟର ଅଧିକାର କାହିଁକି ? ଇଂରାଜ ସହିତ ଦ୍ୱନ୍ଦ୍ୱ ଓ ଯୁଦ୍ଧ ହେଲା । ଆମେରିକାବାସୀ ସ୍ୱାଧୀନତା ଘୋଷଣା କଲେ— ସେ ଦେଶରେ ଗଣତନ୍ତ୍ର ଚାଲିଲା । ଚୀନ୍ ଦେଶବାସୀ ମଧ ରାଜାଙ୍କୁ ପଦଚ୍ୟୁତ କରି ଗଣତନ୍ତ୍ର ଗଢ଼ିଲେ । ବଡ଼ ଅତ୍ୟାଚାରିତ ରୁଷଜନତା, ଜନବଳଠାରୁ ରାଜଶକ୍ତି ପ୍ରବଳ ଥିଲା । ଏଣୁ ସେମାନେ ବହୁଦିନ ଯାଏ ଅତ୍ୟାଚାରିତ ଜାତି ଥିଲେ । ଅନେକ ନେତା, ଲେଖକ ଦେଶବାସୀଙ୍କ ମଧରେ ବିଦ୍ରୋହ-ବହ୍ନି ଜାଳିବାର ଚେଷ୍ଟାକଲେ ମାତ୍ର ଜାର ପ୍ରତାପରୁ ତାହା ଦମିତ ହୋଇଯାଉଥିଲା । କାଳର ଗତି ଏକପ୍ରକାର ଚିରକାଳ ନ ଥାଏ; ପ୍ରଥମ ବିଶ୍ୱ ସମର ବେଳେ ଜନତାର ପାଳି ଆସିଲା । ଜାରବଂଶ ନିର୍ମୂଳ କରି ଗଣତନ୍ତ୍ର ଶାସନ ପ୍ରତିଷ୍ଠା କଲେ । ଯାହା ଇଂଲଣ୍ଡ, ଫ୍ରାନ୍ସ, ଇଉନାଇଟେଡ୍‌ଷ୍ଟେଟ ଅପେକ୍ଷା ଉଗ୍ରଧରଣର ଅଟେ । ଏ ଶାସନପ୍ରଥା ପୁଞ୍ଜିପତି ଓ ଧନିକମାନଙ୍କ ହୃଦୟରେ ଭୀତିର ସଞ୍ଚାର କରୁଥିଲା, ଏ ସାମ୍ରାଜ୍ୟବାଦୀଗଣ ରୁଷିଆର ଶାସନ ନୀତି ଓ ଉନ୍ନତି ବିଷୟ ଆପଣା ସାମ୍ରାଜ୍ୟ ଲୋକଙ୍କ ଚକ୍ଷୁର ଅନ୍ତରାଳରେ ରଖିବାକୁ ସର୍ବଦା ଚେଷ୍ଟିତ ଥିଲେ । ଏବଂ ରୁଷିଆ ଦେଶର ପ୍ରଜାଗଣ ଅତ୍ୟାଚାରିତ ଓ ତାଙ୍କ ଶାସନ ପଦ୍ଧତି କଠୋର ବୋଲି ମୁକ୍ତକଣ୍ଠରେ ଘୋଷଣା କରୁଥିଲେ । ଦ୍ୱିତୀୟ ଯୁଦ୍ଧ ବେଳେ ସେ ଦେଶର କଥା ଆଉ ଗୋପନ ରହିପାରିଲା ନାହିଁ । ଏବେ ପୃଥିବୀରେ ଏପରି ଦେଶ ନାହିଁ ଯେଉଁଠାରେ କି ରୁଷିଆ ପ୍ରବର୍ତ୍ତିତ କମ୍ୟୁନିଷ୍ଟ ଦଳ ନାହାନ୍ତି । ଏ ଦଳର ପ୍ରାଦୁର୍ଭାବ କେତେଦୂର ବଢ଼ିବ ତାହା କହି ହେବ ନାହିଁ ।

ଭାରତବର୍ଷ ଚିରକାଳ ରାଜଶାସିତ ଦେଶ ଥିଲା । ମୁସଲ୍‌ମାନ ବାଦସାହମାନେ ଏ ଦେଶ ଜୟକରି ଆଧିପତ୍ୟ ସ୍ଥାପନ କରିଥିଲେ ମଧ ଇଂରାଜମାନଙ୍କର ପରି ପୂରା ଭାରତବର୍ଷରେ ଏକାଧିପତ୍ୟ କରି ପାରି ନ ଥିଲେ ।

ଇଂରେଜର ଆୟତ୍ତାଧୀନ ଥାଇ ସୁଦ୍ଧା ଅନେକ ରାଜ୍ୟ ରାଜାମାନଙ୍କଦ୍ୱାରା ଶାସିତ ହେବାର ସୁବିଧା ପାଇଥିଲେ । ଏହି ରାଜ୍ୟମାନଙ୍କରେ ରାଜା ଓ ପ୍ରଜା ଶତ ଶତ ବର୍ଷ ପ୍ରବର୍ତ୍ତିତ ଶାସନ ପଦ୍ଧତି କି ମାନି ସୁଖରେ କାଳାତିପାତ କରୁଥିଲେ । ରାମ ରାଜ୍ୟ ସେମାନଙ୍କର ଆଦର୍ଶ । ଏହା ବୋଲି ଯେ ସମସ୍ତ ରାଜା ସେହି ଆଦର୍ଶ ଅନୁସାରେ ଶାସନ କରୁଥିଲେ ଏପରି ନୁହେଁ— ଅତ୍ୟାଚାରୀ ମଧ ଥିଲେ । ମୁସଲ୍‌ମାନ ରାଜତ୍ୱବେଳେ ଏବଂ ମରହଟ୍ଟା ଅମଳରେ କହିବାକୁ ଗଲେ ରାଜାମାନେ ଆପଣା ରାଜ୍ୟମାନଙ୍କରେ ସମ୍ପୂର୍ଣ୍ଣ ସ୍ୱାଧୀନ ଥିଲେ । କେବଳ ରାଜସ୍ୱ ସହିତ ସମ୍ରାଟ୍‌ମାନଙ୍କର ସମ୍ବନ୍ଧ । ଇଂରେଜ ସନ୍ଧିସୂତ୍ରରେ ରାଜାମାନଙ୍କର ସ୍ୱାଧୀନତା ହରଣ କରିଥିଲେ । ନାମରେ ବନ୍ଧୁ । ଇଂରେଜ ଆଗମନ ପୂର୍ବରୁ ଯେଉଁ ରାଜା ଯେପରି ରୀତିନୀତି ଅନୁସରଣ କରି ଶାସନ କରୁଥିଲେ ଉତ୍ତରାଧିକାରୀମାନେ ମଧ ସେହି ପନ୍ଥା ଅନୁସରଣ କରିଥିଲେ । ଏହି ଦେଢ଼ଶହ ବର୍ଷରେ ବ୍ରିଟିଶ୍ ରାଜ୍ୟର ପ୍ରଜା ନିଜକୁ ସୁଖୀ ଓ ଭାଗ୍ୟବାନ୍ ମନେ କରନ୍ତି ଏବଂ ଗଡ଼ଜାତ ପ୍ରଜା ଅତ୍ୟାଚାରିତ ଓ ଦୁଃଖୀ ମନେ କରନ୍ତି । ମାତ୍ର ସମ୍ପର୍କଶୂନ୍ୟ ବ୍ୟକ୍ତି ଅନ୍ୟର ସୁଖ ଦୁଃଖ ବିଚାର କରିବାକୁ ସମର୍ଥ ବୋଲି ମନେ ହୁଏ । ରାଜ୍ୟର ପରିସ୍ଥିତି ବା ବ୍ୟବସାୟ ବାଣିଜ୍ୟର ଅସୁବିଧା ହେତୁ ଗଡ଼ଜାତ ପ୍ରଜା ଧନୀ ନୁହନ୍ତି ସତ, ମାତ୍ର ରାଜା ଦୟାଳୁ ଓ ପ୍ରଜାଦୁଃଖକାତର ହେଲେ ପ୍ରଜା ସନ୍ତୁଷ୍ଟ । ରାଜା ପ୍ରଜା ମଧରେ ସୁହୃଦ୍‌ଭାବ ଥାଏ, ଏଣୁ ସୁଶାସିତ ରାଜ୍ୟର ପ୍ରଜା ରାଜଭକ୍ତ ହୁଅନ୍ତି ।

ବାଧ ହୋଇ ପ୍ରଜାର ମଙ୍ଗଳ କରିବା ଏବଂ ପ୍ରଜାକୁ ଅଧିକାର ଦେବା ଦ୍ୱାରା ପ୍ରଜାର ଭକ୍ତି ଆସିପାରେ ନାହିଁ, ମାତ୍ର ପ୍ରଜାର ଅବସ୍ଥା ଓ ପ୍ରୟୋଜନ ଜାଣି ରାଜା ସ୍ୱେଚ୍ଛାପ୍ରଣୋଦିତ ହୋଇ କୌଣସି କାର୍ଯ୍ୟ କଲେ କିମ୍ୱା ପ୍ରଜାର ଉପକାର କଲେ ପ୍ରଜା କୃତକୃତ୍ୟ ମନେକରେ । ଏପରି ଉଦାହରଣ ଅନେକ ଅଛି । ଆମେମାନେ ବାମଣ୍ଡାର ଚାରି ପୁରୁଷର କଥା ଉଲ୍ଲେଖ କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

ରାଜା ସାର୍ ବାସୁଦେବ ପ୍ରଜାର ହିତ ନିମନ୍ତେ ତତ୍ପର ଥିବାର ନିଦର୍ଶନ ଅନେକ । ଆଜି ଅର୍ଦ୍ଧଶତାବ୍ଦୀ ପୂର୍ବେ ପ୍ରଜାମାନଙ୍କୁ ଅଦାଲତରେ ବୃଥା ଖର୍ଚ୍ଚରୁ ରକ୍ଷା କରିବା ଅଭିପ୍ରାୟରେ ଗ୍ରାମ୍ୟପଞ୍ଚ ଓ ସାହିପଞ୍ଚ ସୃଷ୍ଟି କରିଥିଲେ । ଏବେ କଂଗ୍ରେସ ସେହି ପନ୍ଥାର ପକ୍ଷପାତୀ । ଯେତେବେଳେ ଅଫିମ ଓ ଗଞ୍ଜାଇ କମିସନ ବସିଥିଲା ସାର୍ ବାସୁଦେବ ତହିଁର ସାକ୍ଷୀ ମୁକ୍ତ କଣ୍ଠରେ ପ୍ରକାଶ କରିଥିଲେ ଯେ ଭାରତବର୍ଷରୁ ଅଫିମ, ଗଞ୍ଜାଇ ସମ୍ପୂର୍ଣ୍ଣ ଉଠାଇ ଦିଆଯାଉ, କେବଳ ଔଷଧ ନିମନ୍ତେ ଏଥିର ବ୍ୟବହାର ନିୟନ୍ତ୍ରଣ ସହିତ ରଖାଯାଉ ।

୧୮୯୭ ସାଲରେ ଦେଶରେ ପ୍ରବଳ ଦୁର୍ଭିକ୍ଷ ହେବାର ଜାଣି ସାର୍ ବାସୁଦେବ ଷ୍ଟେଟରୁ ଚାଉଳ ରପ୍ତାନୀ ବନ୍ଦ କଲେ । ବେଙ୍ଗଲ୍ ନାଗପୁର ରେଳ କମ୍ପାନୀ ଏହା ଘୋର ଅନ୍ୟାୟ ବୋଲି ଭାଇସ୍‌ରାୟଙ୍କୁ ଜଣାଇଁଲେ । ଏଥିନିମନ୍ତେ ମି : ସ୍ଲାଏ ବାମଣ୍ଡାକୁ ପ୍ରେରିତ ହୋଇଥିଲେ । କଥୋପକଥନ ବେଳେ ସମ୍ପାଦକ ଉପସ୍ଥିତ ଥିଲା । ପୋ : ଏ. କହିଲେ ରପ୍ତାନୀ ବନ୍ଦ କରିବାଦ୍ୱାରା ଆପଣା ଟ୍ରିଟ୍ ଭଙ୍ଗ କରୁଅଛନ୍ତି । ବାସୁଦେବ କହିଲେ ବର୍ତ୍ତମାନ କ୍ଷେତ୍ରରେ ଯେ ରପ୍ତାନୀ ବନ୍ଦ କରାଯାଇଅଛି ତାକୁ ଟ୍ରିଟ୍‌ର ନିୟମଭଙ୍ଗ ବୋଲାଯାଇ ନ ପାରେ । ଦେଢ଼ଲକ୍ଷ ପ୍ରଜାର ଜୀବନ ମରଣର ଭାର ମୋ ଉପରେ । ବର୍ତ୍ତମାନ ବିଦେଶକୁ ଚାଉଳ ଛାଡ଼ିଦେଲେ ମୋର ପ୍ରଜା ଭୋକରେ ପ୍ରାଣ ହରାଇବେ । ସେତେବେଳେ ମୋର ପ୍ରଜାଙ୍କୁ ବଞ୍ଚାଇବ କିଏ ? ମୋର ପ୍ରଜା ପାହାଡ଼ ପର୍ବତରେ ବାସ କରନ୍ତି ଯେଉଁଠାକୁ କୌଣସି ସାହାଯ୍ୟ ପହୁଞ୍ଚାଇବାର ଉପାୟ ନାହିଁ । ଯେବେ ଗଭର୍ଣ୍ଣମେଣ୍ଟ ଦାୟିତ୍ୱ ନେବେ ଚାଉଳ ବିଦେଶକୁ ଛାଡ଼ି ଦେବାରେ ମୋର ଆପତ୍ତି ନାହିଁ । ଏ ସ୍ୱୀକୃତି ନ ପାଇଲେ ମୁଁ ଚାଉଳ ଛାଡ଼ିବି ନାହିଁ, ଏଥି ନିମନ୍ତେ ଟ୍ରିଟ୍ ଭଙ୍ଗ ଦୋଷରେ ମୁଁ ଦୋଷୀ ନୁହେଁ । ରପ୍ତାନୀ ବନ୍ଦ ହେଲା ।

ପ୍ରଜା ହିତାର୍ଥେ ଏପରି ଜୋର କଥା ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟଙ୍କୁ କିଏ କହିପାରେ ? ଯାର ପ୍ରଜାପ୍ରତି ମମତା ଅଛି ସିନା !

ସେ ବାଲ୍ୟ ବିବାହର ବିରୋଧୀ ଥିଲେ ଏଣୁ କ୍ରମେ ଲୋକଙ୍କୁ ଯୁବତୀ ବିବାହର ପକ୍ଷପାତ କରିବା ଅଭିପ୍ରାୟରେ ପ୍ରଥମ ଦଫା ନିମନ୍ତେ ଏହି ନିୟମ ପ୍ରଚାର କଲେ ଯେ, କନ୍ୟାକୁ ୧୨ ବର୍ଷ ପୂର୍ବେ କେହି ବିବାହ ଦେବେ ନାହିଁ । ଏହି ଘୋଷଣା ସମ୍ପାଦକଦ୍ୱାରା ଲିଖିତ ବିବାହ ବିଚାର ପୁସ୍ତକରେ ଅବିକଳ ଉଦ୍ଧୃତ କରାଯାଇଅଛି । ଏପରି ଆଉ ଅନେକ କଥା ପ୍ରକାଶ ଯୋଗ୍ୟ ଥିଲେ ମଧ ବର୍ତ୍ତମାନ କ୍ଷେତ୍ରରେ ଏତିକି ଯଥେଷ୍ଟ ।

ରାଜା ସଚ୍ଚିଦାନନ୍ଦ ଯେ ପିତାଙ୍କ ପଦାଙ୍କ ଅନୁସରଣ କରି ଦେଶର ଅନେକ ହିତକର କାର୍ଯ୍ୟ କରିଯାଇଅଛନ୍ତି ତାହା କହିବା ବାହୁଲ୍ୟମାତ୍ର । ତାଙ୍କ ସମୟରେ ଦୁଇ ଗୋଟି ଦୁର୍ଭିକ୍ଷ ଘଟିଥିଲା । ରପ୍ତାନୀ ବନ୍ଦ ଦ୍ୱାରା ପ୍ରଜାଙ୍କୁ ବଞ୍ଚାଇ ଥିଲେ । ଯେତେବେଳେ ତାହା ମଧ ପ୍ରର୍ଯ୍ୟାପ୍ତ ହେଲା ନାହିଁ ରେଙ୍ଗୁନ୍ ଚାଉଳ ଛଅ ସେରରେ କ୍ରୟ କରି ପ୍ରଜାଙ୍କୁ ଆଠ ସେରରେ

ବିକ୍ରୟ କରାଗଲା । ପିତାଙ୍କ ପ୍ରତିଷ୍ଠିତ ଦୁର୍ଭିକ୍ଷ ଫଣ୍ଡକୁ ବୃଦ୍ଧି କରିଥିଲେ ।

ରାଜା ଦିବ୍ୟଶଙ୍କରଙ୍କର କୀର୍ତ୍ତିକଳାପ ଏ ଦେଶର ପ୍ରଜା କଦାପି ଭୁଲି ପାରିବେ ନାହିଁ । ଯେତେବେଳେ ଦୁର୍ଭିକ୍ଷ ସହିତ ଇନ୍‌ଫ୍ଲୁଏଞ୍ଜା ମହାମାରୀ ଉପସ୍ଥିତ ହେଲା ପ୍ରଜା ଦୁଃଖକାତର ଦିବ୍ୟଶଙ୍କରଙ୍କର ଚିନ୍ତାର ସୀମା ନ ଥିଲା । ଅନ୍ନସଂସ୍ଥାନ ନିମନ୍ତେ ରେଙ୍ଗୁନ୍ ଚାଉଳ ଆମଦାନୀ ଓ ଶସ୍ତା ଦରରେ ବିକ୍ରିରେ ରୋଗୀମାନଙ୍କର ଚିକିତ୍ସା ନିମନ୍ତେ ଡାକ୍ତର ଅନାଟନ ଭାବି ଅଧିକା ଚାରି ଜଣ ଭ୍ରମଣକାରୀ ଡାକ୍ତର ନିଯୁକ୍ତ କରିଥିଲେ । ଡାକ୍ତରମାନେ ଗ୍ରାମେ ଗ୍ରାମେ ବୁଲି ଔଷଧ ଓ ପଥ୍ୟ ବିତରଣ କରୁଥିଲେ, ସାଗୁ ଓ ଚିନି ପ୍ରତ୍ୟେକ ରୋଗୀ ପାଇବାର ବ୍ୟବସ୍ଥା କରାଯାଇଥିଲା । କବିରାଜମାନେ ମଧ୍ୟ ଚିକିତ୍ସା କରିବାକୁ ସାହାଯ୍ୟ ପାଇ ରୋଗୀଙ୍କର ଉପକାର କରୁଥିଲେ । ଦୁଃଖର ବିଷୟ ରାଜା ଦିବ୍ୟଶଙ୍କର ଅଳ୍ପାୟୁ । ଚାରି ବର୍ଷ ମାତ୍ର ରାଜତ୍ୱ କରି ମାନବଲୀଳା ସମ୍ବରଣ କଲେ । ମାତ୍ର ପ୍ରଜାଙ୍କ ମନରେ ରାଜା ଯେ ସର୍ବଦା ପ୍ରଜାର ହିତକାମୀ ତାହା ଲେଖି ଦେଇଗଲେ ।

'ଆକରେ ପଦ୍ମରାଗଣାଂ, ଜନ୍ମକାଚ ମଣେଃ କୁତଃ,' ଯେଉଁ ପବିତ୍ର ଉଜ୍ଜ୍ୱଳ ବଂଶରେ ବାସୁଦେବ, ସଚ୍ଚିଦାନନ୍ଦ ଓ ଦିବ୍ୟ ଶଙ୍କରଙ୍କର ଜନ୍ମ, ସେଇ କୁଳରେ ଭାନୁଗଙ୍ଗଙ୍କର ଜନ୍ମ ହେବାର ସମ୍ଭବ ସିନା । ପୃଥିବୀ ଦୁଃସମୟରେ ଏହାଙ୍କର ରାଜତ୍ୱପ୍ରାପ୍ତି । ତଥାପି ପ୍ରଜାମାନଙ୍କୁ ସୁଖ ସ୍ୱଚ୍ଛନ୍ଦରେ ରଖିବାକୁ ଏହାଙ୍କର ପ୍ରବଳ ଇଚ୍ଛା । ବାମଣ୍ଡାର ପ୍ରଜା ଅଧିକାର ପାଇ ଯେପରି ସୁଖରେ ଚଳିବେ ଇତିପୂର୍ବେ କେତେକ ବିଧିବିଧାନ ପ୍ରଚଳନ କରିଅଛନ୍ତି । ଗତ ୨୨ ଫେବୃୟାରୀ ଏହାଙ୍କର ଜନ୍ମ ଦିବସ; ପ୍ରଜାହିତୈଷୀ ରାଜାସାହେବ ନିଜର ଜନ୍ମତିଥିରେ ପ୍ରଜା ସାଧାରଣଙ୍କର ଉପକାରାର୍ଥେ ସ୍ୱେଚ୍ଛାରେ ନିମ୍ନ କେତୋଟି ବିଷୟର ଘୋଷଣା କରି ଜନ୍ମତିଥିକୁ ମହତ୍ତ୍ୱପୂର୍ଣ୍ଣ କରି ଅଛନ୍ତି ।

୧. ବାମଣ୍ଡା ଷ୍ଟେଟ ଭିତରେ ଉତ୍ତରାଧିକାରୀ, ସ୍ୱତ୍ୱାଧିକାରୀ ସମ୍ପର୍କରେ ପୂର୍ବ ପ୍ରଚଳିତ ନିୟମ ସବୁ ରଦ୍ଦ କରାଗଲା । ଏଣିକି ବ୍ୟକ୍ତିଗତ ଆଇନ୍ ଅନୁସାରେ ବାମଣ୍ଡାର ଜନସାଧାରଣ ଉକ୍ତ ସ୍ୱତ୍ୱମାନଙ୍କରେ ହକ୍‌ଦାର ହେବେ । କିନ୍ତୁ ଖୋରପୋଷଦାର, ଲାଖରାଜଦାର, ମାଫିଦାର ଓ ଜାୟଗୀଦାରମାନଙ୍କ ନିମନ୍ତେ ଯେଉଁ ବିଶେଷ ବିଧାନ ବର୍ତ୍ତମାନ ରହିଛି ତାହା ସେହିପରି ରହିବ ।

୨. ଷ୍ଟେଟ୍ ଭିତରେ ପୋଷ୍ୟପୁତ୍ର ଗ୍ରହଣ ବା ଉଇଲନାମା କରିବା ବିଷୟରେ ଦରବାରର ଆଉ ମଞ୍ଜୁର ଦରକାର ପଡ଼ିବ ନାହିଁ ।

୩. ୧୯୨୪ ଖ୍ରୀଷ୍ଟାବ୍ଦର ବାମଣ୍ଡା ଜଙ୍ଗଲନିୟମାନୁସାରେ ସାଧାରଣଙ୍କ ଉପରେ ଯେଉଁ ସବୁ ପାଟକି ଟେକ୍ସ ଧାର୍ଯ୍ୟ ଥିଲା ତାହା ଉଠାଇ ଦିଆଗଲା । ଏଣିକି ଆଦାୟ ହେବ ନାହିଁ ।

୪. ୧୯୨୪ ଖ୍ରୀଷ୍ଟାବ୍ଦ ବାମଣ୍ଡା ଜଙ୍ଗଲ ନିୟମାନୁସାରେ ସାଧାରଣଙ୍କ ନିକଟରୁ ଯେଉଁ ସବୁ 'ସୁଖବାସୀ' ଟ୍ୟାକ୍‌ସ ଅସୁଲ ହେଉଥିଲା ତାହା ସମୂଳେ ଉଠାଇ ଦିଆଗଲା ।

୫. ଯେଉଁମାନେ ଏ ଷ୍ଟେଟ୍‌ରେ ଚାଷ କରନ୍ତି ସେହି ଚାଷୀମାନେ ଚାଷୋପକରଣ ନିମନ୍ତେ ସାଧାରଣ ଜଙ୍ଗଲରୁ ବିନା ମାସୁଲରେ ବାରଣ ଗଛ ପାଇପାରିବେ ।

୬. ସାଧାରଣ ଜଙ୍ଗଲରେ ଚରାଉଥିବା ଯୋଗୁଁ ବଳଦ ଓ ପୋଢ଼ ନିମନ୍ତେ ବାମଣ୍ଡା ଜଙ୍ଗଲ ନିୟମାନୁସାରେ ଅସୁଲ ହେଉଥିବା ଖର୍ଚ୍ଚରି ଉଠାଇ ଦିଆଗଲା ।

ଆମ୍ଭେମାନେ ଦେଖିବାକୁ ପାଇଅଛୁଁ ଦେଶର ବର୍ତ୍ତମାନ ଅବସ୍ଥା ଲକ୍ଷ୍ୟରେ ବାମଣ୍ଡାର ପ୍ରଜାଙ୍କ ଅସୁବିଧା ନିବାରଣ ସମ୍ବନ୍ଧେ ରାଜା ସର୍ବଦା ତତ୍‌ପର ଅଛନ୍ତି । ରାଜା ପ୍ରଜାବତ୍ସଳ ହେଲେ ପ୍ରଜାଙ୍କର ସୁବିଧା ଓ ସୁଖସ୍ୱାଚ୍ଛନ୍ଦ୍ୟ ନିମନ୍ତେ ସର୍ବଦା ସତର୍କ ରୁହନ୍ତି । ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ପରିସ୍ଥିତିରେ ରାଜ୍ୟର ପ୍ରଜାମାନଙ୍କୁ ଉଚ୍ଛୃଙ୍ଖଳ ହେବାକୁ ଶିକ୍ଷା ଦେବା ସଙ୍ଗତ ନୁହେଁ ।

ଭାରତର ଅବସ୍ଥା ନିକଟ ଭବିଷ୍ୟତରେ କି ଆକାର ଧାରଣ କରିବ ତାହା ସ୍ପଷ୍ଟରୂପେ ଜଣା ଯାଇ ନାହିଁ । ଦେଶରେ କେବଳ ଅଶାନ୍ତି ସୃଷ୍ଟି କଲେ ମଙ୍ଗଳର ଆଦୌ ସମ୍ଭାବନା ନାହିଁ, ବହୁଦିନ ପର୍ଯ୍ୟନ୍ତ ସାଧନା କଲେ କେବଳ ଏ ଦେଶରେ ଏକତା ଓ ଶାନ୍ତି ବିରାଜମାନ କରିପାରେ । ଇତିମଧ୍ୟରେ ଅଶାନ୍ତି ସ୍ଥଳେ ଅଧିକତର ଅଶାନ୍ତ କରିବା— ଏବଂ ଶାନ୍ତିପ୍ରିୟ ଲୋକମାନଙ୍କୁ ବୃଥା ଆଶ୍ୱାସନା ଦେଇ ଉତ୍ତେଜିତ କରିବା ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ମତ ବିରୋଧ ।

**ବ୍ରିଟିଶ ସିଂହର ଘୋଷଣା—**

ମହାରାଣୀ ଭିକ୍ଟୋରିଆଙ୍କର ପ୍ରଥମ ଘୋଷଣା ଶୁଣି ଦେଶବାସୀ ସମୁଲ୍ଲସିତ ହେଲେ, ଉତ୍‌ଫୁଲ୍ଲ ହେଲେ ଉତ୍ସାହିତ

ହେଲେ, ଭକ୍ତିଭରେ ନମ୍ର ହୋଇପଡ଼ିଲେ । ସାହାଯ୍ୟ ଦେଲେ ଏବଂ ଭକ୍ତି ଡୋରରେ ବାନ୍ଧି ହେଲେ । ବିନିମୟରେ ଚାକିରିର ସୁବିଧା ପାଇଲେ । ଜଜ ମାଜିଷ୍ଟ୍ରେଟ୍ ଅଣ୍ଟ, ଇନ୍‌ସପେକ୍ଟର ଦାରୋଘା ଇତ୍ୟାଦି ଅନେକ । ରାଜାମାନେ ବନ୍ଧୁ ଆଖ୍ୟା ପାଇଲେ । ଭାରତବାସୀକୃତାର୍ଥ ହେଲେ । ସିପାହୀ ବିଦ୍ରୋହରେ ଯେ ଅଶାନ୍ତି ଆସିଥିଲା ତାହା ଏ ଘୋଷଣାଦ୍ୱାରା ଉପଶମିତ ହେଲା । ୧୮୮୪ ରେ କଂଗ୍ରେସ ନାମକ ବ୍ରିଟିଶ୍ ସିଂହପ୍ରତି ଅସହ୍ୟ ଦୁର୍ଗନ୍ଧ ଉଠିଲା । ସେ ଦୁର୍ଗନ୍ଧ ବ୍ରିଟିଶ୍ ସିଂହପ୍ରତି ଯେପରି ଅସହ୍ୟ ତହିଁରୁ ଅସହ୍ୟହେଲା ତା'ର ବୃତ୍ତିଭୋଗୀ କର୍ମଚାରୀଙ୍କ ପ୍ରତି ଓ ରାଜ୍ୟମାନଙ୍କ ପ୍ରତି । କଂଗ୍ରେସରେ ଯେ ଯୋଗଦେଲା ବା ଯେ କଂଗ୍ରେସ ପ୍ରତି ସହାନୁଭୂତି ଦେଖାଇଲା ତା'ର ନାମ ରହିଲା କଳା କିତାବରେ । ଅଦମ୍ୟ ଉତ୍ସାହୀ ଜଣକେତେ ଦେଶବାସୀ ଓ ଜଣକେତେ ଇଂରେଜୀ କଂଗ୍ରେସକୁ ଯେ ବଞ୍ଚାଇ ରଖିଲେ ଏପରି ନୁହେଁ, ମେମ୍ବର ସଂଖ୍ୟାବୃଦ୍ଧି କଲେ ମଧ । ମଝିରେ ମଝିରେ ବିଦ୍ରୋହ ବହ୍ନି ଜଳି ଉଠୁଥାଏ ମାତ୍ର ନିର୍ବାପିତ କରିବାକୁ ଇଂରେଜ ଗଭର୍ଣ୍ଣମେଣ୍ଟ ଯଥେଷ୍ଟ ସମର୍ଥ । ଭାରତବାସୀଙ୍କି ଆଶ୍ୱାସନାଦେଇ ଶୁଆଇ ରଖିବା ନିମନ୍ତେ ମହାରାଣୀଙ୍କର ପୁତ୍ର ଆସିଲେ, ନାତି ଆସିଲେ, ତଥାପି ଏ ଦେଶବାସୀଙ୍କ ଭିତରୁ ଜଣକେତେ ଏଡ଼େ ଅକୃତଜ୍ଞ ଯେ ମହାରାଣୀଙ୍କର ବମ୍ବେସ୍ଥିତ ମର୍ମର ମୂର୍ତ୍ତିର ଗାଲରେ କଳା ଲଗାଇ ଦେଲେ । ଜଣ କେତେ ଇଂରେଜ ହତ୍ୟା କଲେ । ଲୋକମାନ୍ୟ ତିଳକ ଏଥିରେ ସଂଶ୍ଲିଷ୍ଟ ଥିବାର ପ୍ରକାଶ ପାଇଲା । ଏଥି ନିମନ୍ତେ ସେ ନାନା ନିର୍ଯାତନା ଭୋଗ କଲେ । କଂଗ୍ରେସ ଦମିଲା ନାହିଁ, ତା'ର କ୍ଷମତା ବଢ଼ିଲା । ବିଦେଶରୁ ମଧ ସହାନୁଭୂତି ପାଇଲା । ଗଭର୍ଣ୍ଣମେଣ୍ଟ ମଧ ଏହାର କ୍ଷମତାର କ୍ରମବୃଦ୍ଧି ଦମନ ନିମନ୍ତେ ଅସମର୍ଥ ଥିବାର ବୁଝି ପାରିଥିଲେ । ୧୯୦୭ ରେ ଦାଦାଭାଇ ନାରୋଜି ପ୍ରଥମେ ସ୍ୱରାଜ୍ୟର ଦାବୀ କଲେ, ଏ ସ୍ୱରାଜ୍ୟ ଚାଲିଛି । ବଙ୍ଗ ବିଚ୍ଛେଦ ଆନ୍ଦୋଳନ ବଡ଼ ଉତ୍କଟ । ସେଥିରେ ହିନ୍ଦୁ ମୁସଲମାନ୍ ଏକତ୍ର ହୋଇଥିଲେ । ଢାକା ନବାବ ବଂଶର ଉନ୍ନତି ଆଶା ବିଫଳ ହେଲା— ଲର୍ଡ଼ ମରଲିଙ୍କ ଘୋଷିତ Settled fact ଅଚିରେ unsettled ହୋଇଗଲା । ୧୯୧୨ ରେ କିଙ୍ଗ ଜର୍ଜ ଆସି ସବୁ ଓଲଟପାଲଟ କରିଦେଲେ । ଭାରତବାସୀ ପୁଣି ସୁଖ ନିଦ୍ରା ଗଲେ । କିନ୍ତୁ ଭିତରେ ଭିତରେ ଇଂରେଜଙ୍କ କି ମତଲବ ଏବଂ କେତେ ପର ସେ ମତଲବ କାର୍ଯ୍ୟରେ ପରିଣତ ହେବ ତାହା କେହି ବୁଝିଲେ ନାହିଁ । ମୁଣ୍ଡରେ ହାତ ଆଉଁସିଲେ ଭାରତବାସୀ ଶୁଅନ୍ତି, ନିଦ୍ରିତ ଶୋଇଥନ୍ତି । ପୁଣି ନିକେ ଗୋଳମାଳ ପାଇ

ମଣ୍ଟେଗୁ ଭାରତକୁ ଆସି ପୁଣି ମୁଣ୍ଡ ଆଉଁସିଲେ । ଅନ୍ତତଃ ପ୍ରଥମ ଯୁଦ୍ଧକାଳଟା ସମ୍ଭାଳି ନେଲେ ।

ଲୋକମାନ୍ୟ ତିଳକ ଉଗ୍ର ବିପ୍ଳବୀ, ଗାନ୍ଧି ତାଙ୍କ ଶିଷ୍ୟ ହେଲେ ମଧ ଅହିଂସା ବିପ୍ଳବୀ । କଂଗ୍ରେସ ଗାନ୍ଧୀଙ୍କର ଉପଦେଶ ଅନୁସାରେ ଅହିଂସାବାଦୀ ।

ଜହରଲାଲ୍ ଯୁବକ, ଏଣୁ ସ୍ୱାଧୀନ ମନ୍ତ୍ର ଘୋଷଣାକଲେ— ସେଥିରେ ସମସ୍ତେ ସ୍ୱୀକୃତ ହୋଇ ମାତିଛନ୍ତି । ସହଯୋଗ ଅସହଯୋଗ ଦୁଇ ନୀତି । କଂଗ୍ରେସ ପ୍ରଥମେ ଅସହଯୋଗ ଆରମ୍ଭ କଲେ ମାତ୍ର ତାହା ରହିପାରିଲା ନାହିଁ । ଏଣୁ ସହଯୋଗ ନୀତି ଅବଲମ୍ବନ କରି ପ୍ରାଦେଶିକ ଶାସନ ଭାର ଗ୍ରହଣ କଲେ । ଏଥିରେ କିଞ୍ଚିତ୍ ଗଲ୍‌ତି ରହିଥିବାର ଅନୁମାନ ହୁଏ । ଯୁଦ୍ଧ ବେଳେ କଂଗ୍ରେସ ଚାହିଁଲେ ଯୁଦ୍ଧର ଭାର ଗ୍ରହଣ କରି ଶତ୍ରୁ ଜୟ କରିବାକୁ । ଏଥିରେ କଂଗ୍ରେସର ଆକାଂକ୍ଷା ଥିଲା ଯେ—ଯଦିପୂରା ଭାର ଗ୍ରହଣ କରି ଯୁଦ୍ଧ ଜୟ କରିପାରନ୍ତି, ତାହାହେଲେ ଭାରତର ସ୍ୱାଧୀନତା ନିଶ୍ଚିତ ଏବଂ ବିଶ୍ୱବଜାରରେ ଏ ଜାତିର ଖଡ଼ିଗାର ପଡ଼ିବ । ଇଂରେଜ ଭାବିଲେ ଯଦି କଂଗ୍ରେସ ଏ ଭାର ନେଇ ଜୟଯୁକ୍ତ ହୁଅନ୍ତି ତେବେ ବ୍ରିଟିଶର ମାନମର୍ଯ୍ୟାଦା ନାହିଁ ? ଏଣୁ ଦ୍ୱନ୍ଦ୍ୱ ଭିଆଇ କଂଗ୍ରେସିମାନଙ୍କୁ ଗିରଫଦାର କରି ଜେଲ୍ ଦେଲେ । ଯୁଦ୍ଧଶେଷରେ ମୁକ୍ତି ।

ଚାର୍ଚ୍ଚିଲ୍ ଭାବିଲେ ସେ ମହାସମରର ନେତା, ଯୁଦ୍ଧଶେଷରେ ଯେବେ ଗଣ ନିର୍ବାଚନ ହୁଏ ତେବେ ତାଙ୍କର ଜୟ ସୁନିଶ୍ଚିତ । ମାତ୍ର ମଜୁରି ସୈନିକ ଯେଉଁମାନଙ୍କ ହେତୁରୁ ଯୁଦ୍ଧ ଜୟ ତାଙ୍କର ଯଶ ଭାଗ ନାହିଁ କିମ୍ବା ଦାବୀ ନାହିଁ କି । ଶ୍ରମିକମାନଙ୍କର ଜୟ ହେଲା । ତର ତର ହୋଇ ଭାରତବର୍ଷରେ ମଧ ଗଣ ନିର୍ବାଚନର ପ୍ରସ୍ତାବ କଲେ । ଏଥିର ଅଭିପ୍ରାୟ ଏହି ଯେ କଂଗ୍ରେସବାଲେ ଜେଲ୍‌ରେ ଥିଲେ ତାଙ୍କର ପ୍ରତିପତ୍ତି ଅବଶ୍ୟ କମିଅଛି । ଜିନା ପ୍ରମୁଖ ମୁସଲ୍‌ମାନ୍ ଗଣ ଯୁଦ୍ଧବେଳେ ଆପଣାପକ୍ଷ ବୃଦ୍ଧି କରିଥିବେ ଏଣୁ ସେମାନଙ୍କର ଜୟ ସ୍ୱାଭାବିକ । ଗଣ ନିର୍ବାଚନ ହେଲା, କଂଗ୍ରେସର ଜୟ ହେଲା, ଇଂରେଜଙ୍କର ମନ ତୁଷ୍ଟି ହେଲା ନାହିଁ । ଥରକୁ ଥର ଘୋଷଣା ତା'ର ଥରକୁ ଥର ବ୍ୟାଖ୍ୟା ।

କେନ୍ଦ୍ରରେ ଦୃଢ଼ଶାସନ ଭାର ନ ରଖି ଆଗରୁ ପ୍ରାଦେଶିକ ସ୍ୱାୟତ୍ତ ଶାସନ ଦେବାଦ୍ୱାରା ଏକ ବିଷମ ଚାତୁରୀ ଅଣାଯାଇଅଛି । ତା'ର ପ୍ରଥମ କୁଫଳ ବଙ୍ଗଳାର ନରହତ୍ୟା, ଗୃହ ଦାହ ଓ ନାରୀଧର୍ଷଣ ଯାହାକି ପୃଥିବୀର ଅନ୍ୟ କୌଣସି

ସ୍ଥାନରେ ଦେଖାଯାଇ ନ ଥିଲା । ଏଥିରେ କଂଗ୍ରେସର ବୁଦ୍ଧିଭ୍ରଂଶ ବୋଲାଯିବ । ପଦଦୂତ ନିଯୁକ୍ତିରେ ଏ ଦେଶବାସୀ ଯାହା ଭାବିଥିଲେ ତାହା ଭାରତ ସହକାରୀ ସଚିବଙ୍କ ଘୋଷଣାରୁ ଅନ୍ୟଥା ହେଲା । ବର୍ତ୍ତମାନ ପ୍ରଧାନ ମନ୍ତ୍ରୀଙ୍କର ଘୋଷଣା ଆହୁରି ସନ୍ଦେହ ଜନକ ଓ କ୍ଷତିକାରକ ବୋଲି ମନେ ହୁଏ ।

୧୯୪୮ ଜୁନ୍‌ରେ ସ୍ୱାଧୀନତା ମିଳିବ ବୋଲି ଲୋକେ ଉଲ୍ଲସିତ ମାତ୍ର ଏହା କି ସତ ? ହୁଏତ ୧୯୪୮ ଜୁନ୍ ପୂର୍ବରୁ ଇଂରାଜ ଗଭର୍ଣ୍ଣମେଣ୍ଟ ଦେଶ ଛାଡ଼ିବେ ଏବଂ ଏ ଦେଶରୁ ସୈନ୍ୟ ଉଠାଇ ନେବେ ତଥାପି କି ଦେଶ ସ୍ୱାଧୀନତା ପାଇବ ? ବର୍ତ୍ତମାନ ଘୋଷଣାରୁ ଆମମାନଙ୍କ ପରି ଅଳ୍ପ ବୁଦ୍ଧିର ଲୋକମାନଙ୍କୁ ଏହା ହିଁ ପ୍ରତୀତ ହୁଏ ଯେ ଇଙ୍ଗ୍‌ରାଜ ଛାଡ଼ି ଯିବାବେଳେ ଦେଶ ଖଣ୍ଡ ଖଣ୍ଡ ହୋଇଥିବ । ସେତେବେଳକୁ ଦୁର୍ବଳ ପ୍ରଦେଶ ଏବଂ ମୁସଲ୍‌ମାନ ଗରିବ ପ୍ରଦେଶ ଇଙ୍ଗରାଜର ସାହାଯ୍ୟ ଲୋଡ଼ିବାକୁ ବାଧ ହେବେ । ମୋଟ କଥା ପ୍ରଦେଶମାନ ପରସ୍ପରର ସ୍ୱାଧୀନ ରହିବେ ବ୍ରିଟିଶ ହିଁ ସେଥିପ୍ରତି ତୀକ୍ଷ୍ଣଦୃଷ୍ଟି ଦେଇ ଭିନ୍ନ ପ୍ରକାରେ ସ୍ୱାର୍ଥସାଧନ କରିବେ । ଏକତା ଆଣିବାକୁ ଏ ଦେଶବାସୀ କେବେ ଶିଖିବେ ।

ଦେବଗଡ଼ରେ ଖାଦ୍ୟ ଓ ସ୍ୱାସ୍ଥ୍ୟ ପ୍ରଦର୍ଶନୀ—

ଦେବଗଡ଼ରେ ପୂର୍ବେ ଅନେକ ଗୁଡ଼ିଏ କୃଷି ଓ ଶିଳ୍ପ ପ୍ରଦର୍ଶନୀ ହୋଇଯାଇଅଛି ମାତ୍ର ଖାଦ୍ୟ ଓ ସ୍ୱାସ୍ଥ୍ୟ ପ୍ରଦର୍ଶନୀ ଏ ସ୍ଥାନରେ ସମ୍ପୂର୍ଣ୍ଣ ନୂତନ । ଏପରି ଜନହିତକର ବିଷୟରେ ଅର୍ଥ ବ୍ୟୟ ସମୀଚୀନ । ଏହି ପ୍ରଦର୍ଶନୀର ଦ୍ୱାରୋଦ୍‌ଘାଟନ କରିଥିଲେ Hon. Mr. H.J. Todd Resident E.S.A. । ଏହି ପ୍ରଦର୍ଶନୀ ପ୍ରତି ସର୍ବସାଧାରଣଙ୍କର ମନ ଆକୃଷ୍ଟ ହେଉଥିଲା ମାତ୍ର ଇନ୍ଦ୍ର ଏହା ସହ୍ୟ କରିପାରିଲେ ନାହିଁ । ଇନ୍ଦ୍ର ତପସ୍ୟା ଭଗ୍ନ କରନ୍ତି ବୋଲି ପ୍ରବାଦ ଅଛି ଏଠାରେ ତାହାହିଁ ଘଟିଲା, ପ୍ରବଳ ବର୍ଷା ଓ ଝଡ଼ ଦ୍ୱାରା ସବୁ ନଷ୍ଟ ହେବାକୁ ବସିଲା । ଲୋକଙ୍କର ଆଶା ଆକାଂକ୍ଷା ନଷ୍ଟ ହେବାକୁ ବସିଥିଲା ଯାହା ହେଉ ଯତ୍ନ ସହକାରରେ କର୍ତ୍ତୃପକ୍ଷ ମାଲପତ୍ର ରକ୍ଷା କଲେ । ପୁଣି ଲୋକେ ଦେଖିବାକୁ ପାଇଲେ ।

ଏହି ପ୍ରଦର୍ଶନୀ ଚିତ୍ତାକର୍ଷକ ହୋଇଥିଲା ଯେହେତୁ କଟକରୁ ସମସ୍ତ ଚିତ୍ର ଏବଂ ଅନ୍ୟାନ୍ୟ ପଦାର୍ଥ ସବୁ ଆସିଥିଲା । ଖାଦ୍ୟପଦାର୍ଥ ଏ ସମୟରେ ସୁଲଭ ଏଣୁ ଚିତ୍ର ତଳମାନଙ୍କରେ ଫଳମୂଳ, ଧାନଚାଉଳ, ମକା ପ୍ରଭୃତି ସୁନ୍ଦର ଭାବରେ ସଜାଇ ଦିଆଯାଇଥିଲା । ଲୋକେ ଚିତ୍ର ଓ ପଦାର୍ଥ ଏକ ସାଙ୍ଗରେ ଦେଖି ସହଜରେ ପଦାର୍ଥର ବ୍ୟବହାର ପ୍ରଭୃତି ବିଷୟ ବୁଝିପାରୁଥିବାର ସମ୍ଭବ ।

ଚିକିତ୍ସା ସମ୍ବନ୍ଧୀୟ ପ୍ରଦର୍ଶନୀ ମଧ ଉତ୍ତମ ହୋଇଥିଲା । ସଂକ୍ରାମକ ରୋଗର ଚିତ୍ର ସହିତ ଔଷଧ ପ୍ରଭୃତି ଯାହା ପ୍ରୟୋଜନ ତାହା ଠିକ୍ ରୂପେ ସଜ୍ଜିତ ହୋଇ ରହିଥିଲା । ସେଥିରୁ ମଧ ରୋଗର ବିଭୀଷିକା ପ୍ରତି ଦର୍ଶକର ଭୟ ଜନ୍ମ ସହିତ ଔଷଧ ବ୍ୟବହାରର ଆଶ୍ୱାସନା ଲୋକଙ୍କ ମନରେ ଜନ୍ମ ହେଉଥିବାର ମନେ ହେଉଥିଲା । ବସନ୍ତ, କଲେରା, ମେଲେରିଆ ପ୍ରଭୃତିର ଚିତ୍ର ସହିତ ପ୍ରତିଷେଧ ଓ ଆରୋଗ୍ୟର ଉପାୟ ପ୍ରଦର୍ଶନୀ ଅତି ହୃଦୟଗ୍ରାହୀ । ଗ୍ରାମ ମଙ୍ଗଳର ଉପାୟ- କୂପ, ପୁଷ୍କରିଣୀ ନାଳ ପରିଷ୍କାର କରିବାର ଉପଦେଶ ଏବଂ ତଦ୍ୱାରା ସ୍ୱାସ୍ଥ୍ୟ ଲାଭର ଆଶା ସ୍ପଷ୍ଟ ରୂପେ ଚିତ୍ର ଓ ନିର୍ମିତ କୂପ ପ୍ରଭୃତି ଦ୍ୱାରା ଦେଖାଇ ଦିଆଯାଇଥିଲା । Grow more food ପ୍ରଚାରରେ ଯେଉଁ ବୃଥା ଅର୍ଥବ୍ୟୟ ହୋଇଅଛି ତହିଁର ଦଶମାଂଶ ଏହି ସ୍ୱାସ୍ଥ୍ୟ ଓ ଖାଦ୍ୟ ପ୍ରଦର୍ଶନୀରେ ବ୍ୟୟ ହେଲେ ଲୋକେ ଶିକ୍ଷିତ ହେବେ ଓ ଉପକାର ପାଇବେ ବୋଲି ଆଶା କରାଯାଏ । ଏତାଦୃଶ ଚିତ୍ର ପ୍ରତ୍ୟେକ ସ୍କୁଲର ଏକାଂଶରେ ରହିବା ଉଚିତ୍, ତାହାହେଲେ ଛାତ୍ରମାନେ ଯେ କି ଭବିଷ୍ୟତର ଉନ୍ନତିକାରକ ସେମାନେ ମୂଳରୁ ଶିକ୍ଷିତ ହୋଇ ଗ୍ରାମୋନ୍ନତି ଓ ସ୍ୱାସ୍ଥ୍ୟୋନ୍ନତି କରିପାରିବେ ।

**ଶିକ୍ଷକ ସଂକଟ :** ଦେଶର ମନୁଷ୍ୟ ଗଢ଼ୁଛନ୍ତି କେଉଁମାନେ ? ଶିକ୍ଷକମାନେ ତ ? ପ୍ରାଥମିକ ଶିକ୍ଷକମାନେ ତ ? ଯେବେ ଶିକ୍ଷକମାନେ ଅଶିକ୍ଷିତ ଓ ଅନୁପଯୁକ୍ତ ତେବେ ଛାତ୍ରମାନେ ଉପଯୁକ୍ତ ହେବା ଆଶା ଦୁରାଶା ନୁହେଁ କି ? ଏଥିପ୍ରତି କର୍ତ୍ତୃପକ୍ଷ ତଥା ଦେଶବାସୀ ଦୃଷ୍ଟି ଦେଉ ନାହାନ୍ତି । ଅଳ୍ପ ବେତନରେ ଯଥାତଥା ଜଣେ ଶିକ୍ଷକ ଉପରେ ଛାତ୍ରମାନଙ୍କର ଶିକ୍ଷାର ଭାରଦେଇ ଖଲାସ । ଏ ରୀତି ମାନଧାତା ଅମଳରୁ ଚାଲି ଆସିଅଛି, ଚାଲୁଛି । ଅନ୍ୟାନ୍ୟ ବିଭାଗରେ ବେଶି ବେତନରେ ଲୋକ ରଖାଯିବେ, ମାତ୍ର ଶିକ୍ଷାବିଭାଗରେ ତା'ର ବ୍ୟତିକ୍ରମ; ଚରିତ୍ରବାନ୍ ସୁଶିକ୍ଷିତ ଲୋକ ଶିକ୍ଷକ ହେଲେ ଛାତ୍ରମାନେ ଚରିତ୍ରବାନ୍ ଓ ସୁଶିକ୍ଷିତ ହେବେ, ଏ ଆଶା ସମସ୍ତେ ରଖନ୍ତି ମାତ୍ର ଶିକ୍ଷକ ନିଯୁକ୍ତିବେଳେ ଓ ଶିକ୍ଷକର ବୃତ୍ତି ଧାର୍ଯ୍ୟବେଳେ ତାହା ସମ୍ପୂର୍ଣ୍ଣ ଭୁଲି ଯାଆନ୍ତି । ଆଜିକାଲି ଶିକ୍ଷକର ଅଭାବ ଅନୁଭୂତ ହେଉଛି । କାରଣ ଶିକ୍ଷକମାନେ ଶିକ୍ଷକ କାର୍ଯ୍ୟ ଛାଡ଼ି ଅନ୍ୟ ଫନ୍ଦାର ଅନ୍ୱେଷଣ କରୁଅଛନ୍ତି ଓ ଉପଯୁକ୍ତ ପରିମାଣ ବୃତ୍ତି ମଧ ପାଉଅଛନ୍ତି । ଆଜିକାଲି ଯୋଗାଣ ବିଭାଗ ଏବଂ ଅନ୍ୟାନ୍ୟ ଯୁଦ୍ଧ ସଂକ୍ରାନ୍ତ ଧନ୍ଦା ହେତୁରୁ ସ୍କୁଲ ଶିକ୍ଷକମାନେ ଶିକ୍ଷକତା ଛାଡ଼ି ସେଆଡ଼କୁ ଚାଲିଛନ୍ତି । ସୁତରାଂ ଶିକ୍ଷକର ଅଭାବ ଘଟୁଛି । ଅନ୍ୟ

ଯୋଜନାପ୍ରତି କର୍ତ୍ତୃପକ୍ଷମାନଙ୍କର ଯେତେ ଆଗ୍ରହ ମଣିଷ ଗଢ଼ିବା ଯୋଜନାପ୍ରତି ତେତେ ଆଗ୍ରହ ଦେଖାଯାଏ ନାହିଁ । ସମସ୍ତେ ଏଥିପ୍ରତି ସତର୍କ ହେବା ଉଚିତ୍ ।

**ନି, ନାହିଁର ପ୍ରତିବାଦ—**

ଏ ପ୍ରତିବାଦ ଓ ଆଉ ଦୁଇ ତିନିଟି ପ୍ରତିବାଦ ଆମ୍ଭମାନଙ୍କର ହସ୍ତଗତ ହୋଇଥିଲା, ମାତ୍ର ସେ ସବୁ ପ୍ରକାଶ କରିବାର ଅବସର ମିଳି ନ ଥିଲା; ଗୋଟିଏ ପ୍ରତିବାଦ 'ନବଭାରତ'ରେ ପାଠକରି ସୁଖୀ ହୋଇଅଛୁଁ; ନା, ନାହିଁ ନିଷେଧାର୍ଥକ ଶବ୍ଦ ପୂର୍ବେ ବ୍ୟାକରଣମାନଙ୍କରେ ଦେଖା ଯାଉଥିଲା ଏହା ମୂଳଲେଖାରେ ଥିଲା । ମୁଦ୍ରାକରଦୋଷରୁ ନି, ନା, ନାହିଁ, ବୋଲି ପ୍ରକାଶ ପାଇଅଛି । ଏହା ଆମ୍ଭେମାନେ ସ୍ୱୀକାର କରୁଅଛୁଁ, ପ୍ରତିବାଦକଙ୍କର ଲେଖା ଉପରେ ଆଉ ପ୍ରତିବାଦ କରିବାର କିଛି ନାହିଁ । କାରଣ ମୂଳ ପ୍ରବନ୍ଧରେ 'ନି' ବ୍ୟବହାର ନ କରିବାର କାରଣ ସବୁ ଲେଖାଯାଇଛି । ନିଷେଧାର୍ଥରେ ବଙ୍ଗଳାର ନି ର ବ୍ୟବହାର ଖୁବ୍ ଅଛି । ବାଲେଶ୍ୱର ଜିଲା ବଙ୍ଗ ସଂଲଗ୍ନ ହେତୁ ସେଠାରେ ଲୋକେ 'ନି' ବ୍ୟବହାର କରନ୍ତି । ଅନ୍ୟ ଅଞ୍ଚଳରେ କ୍ୱଚିତ୍ । ନିଶ୍ଚୟାର୍ଥରେ ମଧ 'ନି'ର ବ୍ୟବହାର ହୁଏ । ଏପରି ସ୍ଥଳେ ନାହିଁର ସଂକ୍ଷେପ 'ନି' କରିବାର ଉଚିତ୍ ନୁହେଁ ଏହା ଆଜକୁ ପ୍ରାୟ ଦଶ ବର୍ଷ ପୂର୍ବେ ଉତ୍କଳ ସାହିତ୍ୟରେ ବା ସହକାରରେ ପ୍ରକାଶ କରି ଲେଖକମାନଙ୍କର ମନୋଯୋଗ ଆକର୍ଷଣ କରିଥିଲୁଁ । ସେଥିରେ କିଛି ଫଳ ହୋଇଥିବାର ମନେ ହେଲା ନାହିଁ । ଶଙ୍କର ସମ୍ପାଦନାଭାର ନେଲା ପୂର୍ବରୁ 'ନି'ର ଏତାଦୃଶ ବହୁଳ ବ୍ୟବହାର ଅନୁଭବ କରି ନ ଥିଲୁଁ । ଏଣୁ ଲେଖକମାନଙ୍କୁ 'ନି' ବ୍ୟବହାର ବନ୍ଦ କରିବାକୁ ଅନୁରୋଧ କରିଥିଲୁଁ । ବର୍ତ୍ତମାନ ଦେଖିବାକୁ ପାଇଲୁଁ ଯେଉଁମାନେ କଥାରେ ବା ଲେଖାରେ 'ନି' ବ୍ୟବହାର କରୁ ନ ଥିଲେ, ସେମାନେ ମଧ ତାହା ଲେଖାରେ ବ୍ୟବହାର କଲେଣି; ସୁତରାଂ ସଂଖ୍ୟା ଗରିଷ୍ଠ ଦ୍ୱାରା 'ନି' ଗୃହୀତ, ଏହା ହୃଦୟଙ୍ଗମ କରି ଆଉ କୌଣସି କଥା ଲେଖିବାରୁ କ୍ଷାନ୍ତ ହେଲୁଁ । ଯେଉଁମାନଙ୍କ ପାଇଁ ସାହିତ୍ୟ, ଯେଉଁମାନେ ଭବିଷ୍ୟତରେ ସାହିତ୍ୟିକ, ସେମାନଙ୍କର ସହିତ ପ୍ରତିବାଦ ଆମମାନଙ୍କର କାମ୍ୟ ନୁହେଁ ।

**ମର୍କଟ–ଦମନ**

ଓଡ଼ିଶାର ବିଭିନ୍ନାଞ୍ଚଳରେ ବାନରମାନଙ୍କର ଉତ୍ପାତ ଦେଖାଯାଇଥାଏ । ବିବିଧ—ଶସ୍ୟହାନି କରି କୃଷକର ସର୍ବନାଶ କରିବାକୁ ଏ ଜାତିଟା ସର୍ବଦା ସଚେଷ୍ଟ ଥାନ୍ତି । ଧର୍ମହାନି ହେବବୋଲି ଆମ ଦେଶର ଲୋକେ ମର୍କଟ—ବଧ କରନ୍ତି ନାହିଁ । ଏଣୁ ଏହି ବାନର ଜାତିର ଉତ୍ପାତ ଦିନକୁ ଦିନ ଅସହ୍ୟ ଅକଥନୀୟ ହୋଇ ଉଠୁଅଛି ।

ବର୍ତ୍ତମାନ ଲୋକପ୍ରିୟ ଗବର୍ଣ୍ଣମେଣ୍ଟ ଅଣି ହଜାର ଟଙ୍କା ବ୍ୟୟ କରି ଅଣତ୍ରିଶ ହଜାର ବାନର ବଧ କରିଥିବାର ପ୍ରକାଶ ପାଇଅଛି । ମୃତ ମର୍କଟର ଚର୍ମଗୁଡ଼ିକ ବିକ୍ରୟ ବା କୌଣସି କାର୍ଯ୍ୟରେ ନିୟୋଜିତ କରାଯାଇଅଛି କି ନା ତାହା ପ୍ରକାଶ ପାଇ ନାହିଁ, ମୃତ ମର୍କଟ—ଚର୍ମରେ ଦ୍ରବ୍ୟାଦି ପ୍ରସ୍ତୁତ କରାଯାଇପାରେ କି ନା ? ତାହା ବିଶେଷଜ୍ଞଙ୍କଦ୍ୱାରା ପରୀକ୍ଷିତ ହେବା ବାଞ୍ଛନୀୟ । ଉତ୍କଳବରେଣ୍ୟ ମଧୁସୂଦନ ଟେନାରୀ ବସାଇ ଯେଉଁ ଅନୁଷ୍ଠାନ ଆରମ୍ଭ କରିଥିଲେ ସେହି ଅନୁଷ୍ଠାନକୁ ବାନର—ଚର୍ମ ସାହାଯ୍ୟରେ ପୁନଃ ପ୍ରତିଷ୍ଠିତ ସଞ୍ଜୀବିତ କରିପାରିଲେ— 'ମଧୁସ୍ମୃତି' ରକ୍ଷା ସଙ୍ଗେ ସଙ୍ଗେ ଦେଶରେ ଗୋଟିଏ ଶିଳ୍ପର ପ୍ରଚଳନ ହୁଅନ୍ତା ଓ ବାନର ଚର୍ମଗୁଡ଼ିକର ସଦ୍‌ବ୍ୟବହାର ହୁଅନ୍ତା ବୋଲି ଭାବିବା ଅସଙ୍ଗତ ନୁହେଁ ପରା ?

**ଷ୍ଟୁଡେଣ୍ଟସ୍ ଷ୍ଟୋର ବା ଛାତ୍ର ଭଣ୍ଡାର—** ନାମରେ ଗୋଟିଏ ବ୍ୟବସାୟିକ ଅନୁଷ୍ଠାନ ଓଡ଼ିଶାରେ ଚଳୁଥିବା ଅନେକେ ଜାଣନ୍ତି । ଏହି ଅନୁଷ୍ଠାନରେ ପୁସ୍ତକ ବିକ୍ରୟ ଓ ପ୍ରକାଶ ହୋଇଥାଏ । ପୁସ୍ତକ ବିକ୍ରୟ ଓ ପ୍ରକାଶ କରିବା ନିମନ୍ତେ ନାନାବିଧ ଅନୁଷ୍ଠାନ ଭାରତର ବିଭିନ୍ନ ସ୍ଥାନରେ ଅଛି । ଇଉରୋପର ବିଭିନ୍ନ ଦେଶରେ ପୁସ୍ତକ ପ୍ରକାଶ କରିବା ଏବଂ ତାହା ବିକ୍ରୟ କରିବା ନିମନ୍ତେ ଯେଉଁସବୁ ବିଶାଳ ବିସ୍ତୃତ ବ୍ୟବସାୟ ଚଳୁଅଛି, ତାହା ଆମ୍ଭମାନଙ୍କ ଦେଶରେ ଅସମ୍ଭବ ବୋଇଲେ ଚଳେ । ଏହି ବ୍ୟବସାୟ ଚଳାଇବା ନିମନ୍ତେ ଯୋଗ୍ୟ କର୍ମକ୍ଷମ ସୁଶିକ୍ଷିତ ବ୍ୟକ୍ତିମାନେ ଅଗ୍ରସର ହୋଇ ଦେଶରେ ସାହିତ୍ୟ ପ୍ରଚାର ସଙ୍ଗେ ଅସହାୟ ଲେଖକବର୍ଗଙ୍କୁ ପ୍ରତିପୋଷଣ କଥା ସହାନୁଭୂତି ପ୍ରଦର୍ଶନ କରି ଜ୍ଞାନର ପଥ ବିସ୍ତୃତ କରି ଲୋକ ସମାଜର ଅଶେଷ କଲ୍ୟାଣ ସାଧନ କରୁଥିବାର ଅନେକେ ଜାଣନ୍ତି । ଜ୍ଞାନ ବିସ୍ତାର କରିବା ମାନବର ମୁଖ୍ୟ କର୍ମ । ଯେଉଁଠାରେ ଜ୍ଞାନର ଚର୍ଚ୍ଚା ହୁଏ ଗୁଣର ଆଦର ହୁଏ, ସେ ସ୍ଥାନକୁ ଦେବନିବାସ ବୋଲିବା ଅସଙ୍ଗତ ହେବ ନାହିଁ । ଓଡ଼ିଶାରେ ଦଳଗତ ବା ବ୍ୟକ୍ତିଗତ ସଦନୁଷ୍ଠାନର ଅସ୍ତିତ୍ୱ କ୍ୱଚିତ ଦେଖାଯାଇଥାଏ । ସହଯୋଗିତାଦ୍ୱାରା ଶିଳ୍ପ ବାଣିଜ୍ୟ ଓ ସାହିତ୍ୟର ପ୍ରସାର କରି ସମାଜରେ ନବ ଚେତନା ଆଣି ଆର୍ଥିକ ପରିସ୍ଥିତି ପ୍ରଚାର କରିବାର ପ୍ରଚେଷ୍ଟା ଆମଦେଶରେ ନାହିଁ ବୋଇଲେ ଚଳେ ।

ଉତ୍କଳବାସୀଙ୍କର ଚେଷ୍ଟାରେ ବ୍ୟାଙ୍କ, ଏସୁରେନ୍‌ସ ପ୍ରଭୃତି କୌଣସି ସଦନୁଷ୍ଠାନ ଥିବାର ଦେଖା ଯାଏ ନାହିଁ । ଅନ୍ୟ ଦେଶବାସୀଙ୍କ ହାତରେ ଓଡ଼ିଶାର ଧନଜୀବନ ରଖା ଯାଇଅଛି । ଏଣୁ ଓଡ଼ିଆର ଆର୍ଥିକ ଅବସ୍ଥା ଦିନକୁ ଦିନ ମ୍ଲାନ ଅବସନ୍ନ ତଥା ଅବସାଦ ଗ୍ରସ୍ତ ବୋଇଲେ ଅସଙ୍ଗତ ହେବ ନାହିଁ । ଷ୍ଟୁଡ଼େଣ୍ଟସ୍ ଷ୍ଟୋର ଓଡ଼ିଶାରେ ସାହିତ୍ୟ ପ୍ରଚାର ବ୍ୟବସାୟ ସୁନିୟମରେ ପରିଚାଳିତ କରି ଅର୍ଥଲାଭ ସଙ୍ଗେ ସଙ୍ଗେ ଦେଶରେ ସାହିତ୍ୟ ପ୍ରଚାରର ସହାୟକ ହେଉଥିବା ଅତୀବ ଆନନ୍ଦର କଥା । ଉତ୍କଳର ବିଭିନ୍ନାଞ୍ଚଳରେ ଏହି ଅନୁଷ୍ଠାନ ସ୍ଥାପିତ ତଥା ବର୍ଦ୍ଧିତ ହେଉ, ଏହାହିଁ ଆମ୍ଭମାନଙ୍କ କାମନା । ପୁସ୍ତକ ବିକ୍ରୟ ବା ପ୍ରକାଶ କରି ଅର୍ଥୋପାର୍ଜ୍ଜନ କରିବା ସଙ୍ଗେ ସଙ୍ଗେ ଏହି ଉଦ୍ୟମର ଚାଳକବର୍ଗ ଯେଉଁ ମହାପ୍ରାଣତାର ପରିଚୟ ଦେଇଅଛନ୍ତି, ତାହା ଆଦର୍ଶରୂପେ ଗୃହୀତ ହେବା ପ୍ରୟୋଜନ । ଏହି ଅନୁଷ୍ଠାନରୁ ଆମ୍ଭେମାନେ ଖଣ୍ଡିଏ ପ୍ରଚାର ପତ୍ର ପାଇଅଛୁ । ସେଥିରୁ ଅବଗତ ହେଲୁଁ— ଏ ବର୍ଷ ଏହି ଅନୁଷ୍ଠାନରୁ ପଞ୍ଚସହସ୍ରାଧିକ ଟଙ୍କା ଉତ୍କଳର ବିଭିନ୍ନାଞ୍ଚଳର ଦରିଦ୍ର ଛାତ୍ରଙ୍କୁ ସାହାଯ୍ୟ ସ୍ୱରୂପ ଦିଆଯାଇଅଛି । ଏହି ଦାନରୁ ଅନୁଷ୍ଠାନର ମହତ୍ୱ ସହଜେ ଅନୁମିତ ହେଉଅଛି । ଉତ୍କଳଦେଶ ଦରିଦ୍ର ଦେଶ । ଗୋଟିଏ ପୁସ୍ତକ ଭଣ୍ଡାରରୁ ପଞ୍ଚସହସ୍ରାଧିକ ଟଙ୍କା ଏକ ବର୍ଷ ମଧରେ ଶିକ୍ଷାପ୍ରଚାରାର୍ଥେ ଦରିଦ୍ର ଛାତ୍ରମାନଙ୍କୁ ଦାନ କରିବା ଅତୀବ ଆନନ୍ଦ ଓ ଆଶାର ବିଷୟ । ଆମ୍ଭେମାନେ ଛାତ୍ରଭଣ୍ଡାରର ଚାଳକବର୍ଗଙ୍କୁ ଧନ୍ୟବାଦ ଦେଉଅଛୁଁ । ଏହି ଅନୁଷ୍ଠାନଟି ବର୍ଦ୍ଧିତ ଓ ପରିପୁଷ୍ଟ ହୋଇ ଓଡ଼ିଶାରେ ନୂତନ ଆଦର୍ଶ ପ୍ରଚାରକରୁ—ଏହାହିଁ କାମନା କରୁଅଛୁଁ । ଓଡ଼ିଶାରେ ଯେଉଁମାନେ ପୁସ୍ତକ ବିକ୍ରୟ ବା ପ୍ରକାଶ କରି ଅର୍ଥୋପାର୍ଜ୍ଜନ କରନ୍ତି ସେମାନେ ଛାତ୍ର ଭଣ୍ଡାରର ଆଦର୍ଶକୁ ସମ୍ମୁଖରେ ରଖି ଅଗ୍ରସର ହେଲେ ଓଡ଼ିଶାର ମଙ୍ଗଳ ସାଧନ ହୋଇପାରିବ ।

**ପ୍ରଭାତ:—**

ପ୍ରଭାତ, ସମୁଜ୍ୱଳ ପ୍ରଭାତ ତୁଲ୍ୟ ଆମମାନଙ୍କ ଆଗରେ ଉଦୀୟମାନ । ଏହା ପାଇ ଆମେମାନେ ଅତ୍ୟନ୍ତ ପ୍ରୀତ ହୋଇଅଛୁ । ଉତ୍କଳ ନାରୀଦ୍ୱାରା ପୂର୍ବେ ଆଶା ପତ୍ରିକା ବାହାରୁଥିଲା । ତା'ର ସମ୍ପାଦକ ଥିଲେ ରେବାରାୟ, ସେ ବହୁ ଦିନ ପୂର୍ବରୁ ଅଦୃଶ୍ୟ ହୋଇଅଛି । ବର୍ତ୍ତମାନ ପ୍ରଭାତ ଦେଖି ଆମମାନଙ୍କ ହୃଦୟରେ ଏହି ଆଶା ସଞ୍ଚାର ହେଉଅଛି ଯେ ପ୍ରଭାତର ସମ୍ପାଦିକାଙ୍କ ଅନୁକରଣରେ ଅନ୍ୟାନ୍ୟ ଲେଖିକାମାନେ ଲେଖିବେ ଓ ଉତ୍ସାହିତା ହେବେ । ଆମେମାନେ ପ୍ରଭାତର ଅଭ୍ୟୁଦୟ କାମନା କରୁଅଛୁଁ । ନାରୀ ପ୍ରଗତି ଆମମାନଙ୍କର କାମ୍ୟ ।

## ଦ୍ୱିତୀୟ ବର୍ଷ ଦଶମ ସଂଖ୍ୟା

ନେହେରୁଙ୍କର ଆଉ ଗୋଟିଏ କାର୍ଯ୍ୟ ମହତ କାର୍ଯ୍ୟ— ନିର୍ମଳ ଦୂରଦୃଷ୍ଟି । ଆସିଆ ଭୂଖଣ୍ଡର ପ୍ରତିନିଧି ସମ୍ମେଳନ ପରିକଳ୍ପନା କେଉଁ ଲକ୍ଷ୍ୟରେ ଏବଂ ଆସିଆବାସୀଙ୍କର ଭବିଷ୍ୟତ ସୁଖଶାନ୍ତି କି ସୂତ୍ରରେ ସ୍ଥାପିତ ହେବ ତହିଁର ସ୍ପଷ୍ଟ ସୂଚନା ଦେଉଅଛି । ପରିକଳ୍ପନା ନେହେରୁଙ୍କର ମସ୍ତିଷ୍କ ସମ୍ଭୂତ । ଖାଲି ପରିକଳ୍ପନା ନୁହେଁ । ପରିକଳ୍ପନା କାର୍ଯ୍ୟରେ ପରିଣତ । ଏଡ଼େ ଚଞ୍ଚଳ ଏଡ଼େବଡ଼ ମହତ କାର୍ଯ୍ୟ ସାଧିତ ହେବ ଏହା ଭାବନାର ଅଗୋଚର । ପୁଣି ଭାରତର ନିମନ୍ତ୍ରଣରେ ଆସିଆବାସୀମାନେ ବିନା ବାକ୍ୟବ୍ୟୟରେ ବିନା କାଳକ୍ଷେପରେ ଏହି ସମ୍ମେଳନରେ ଯୋଗଦାନ ଦେବେ ଏହା ତତୋଽଧିକ ଆଶ୍ଚର୍ଯ୍ୟର ବିଷୟ । ଏହା ଦେଖିଲେ ମନେହୁଏ ଯେ ପୃଥିବୀରେ ଏପରି କାଳର ପ୍ରାଦୁର୍ଭାବ ଉପସ୍ଥିତ ହୋଇଅଛି, ଯହିଁରେ ସମସ୍ତ ଜାତି ଆପଣା ଆପଣା ମହତ୍ତ୍ୱ ମର୍ଯ୍ୟାଦା ଓ ସଂସ୍କୃତି ବଜାଏ ରଖିବାକୁ ତତ୍ପର । ପରାଧୀନତା, ପରାଧିପତ୍ୟ, ପରର ମୁରବିତ୍ୱ ସ୍ୱୀକାର କରିବାକୁ ରାଜି ନୁହନ୍ତି । ନିଜ ଗୃହରେ ନିଜ ଦେଶରେ ସମସ୍ତେ ସ୍ୱାଧୀନ ବୋଲି ଘୋଷଣା କରିବାର ଯୁଗ ଆସିଲା । ଯୁଦ୍ଧ ଉତ୍ତାରୁ ଏସିଆବାସୀଙ୍କ ମନରେ ଏହି ଭାବୋଦୟର ସୂଚନା ଦେଖି ଜବାହରଲାଲ୍ ଅସାଧାରଣ ବୁଦ୍ଧିମତ୍ତାର ଓ ସାହସର ପରିଚୟ ଦେଲେ ଏବଂ ଏସିଆବାସୀଙ୍କି ସାଦର ଆହ୍ୱାନ କଲେ । ପ୍ରତ୍ୟେକ ଦେଶର ପ୍ରତିନିଧି ଆଜି ଦିଲ୍ଲୀରେ ସମ୍ମିଳିତ । ଏ ଦେଶ ପକ୍ଷରେ ଏହା ଅତି ଗୌରବର ବିଷୟ । ପ୍ରତ୍ୟେକ ଭାରତବାସୀ ଏଥିରେ ଗୌରବାନ୍ୱିତ ମନେକରିବା ଉଚିତ୍ ।

ପୂର୍ବେ ଏ ଦେଶରେ ଅଶ୍ୱମେଧ, ରାଜସୂୟ ଯଜ୍ଞଦ୍ୱାରା ସାମ୍ରାଜ୍ୟ ବିସ୍ତାରର ବିଶେଷ ଉଲ୍ଲେଖ ଶାସ୍ତ୍ରମାନଙ୍କରେ ଦେଖାଯାଏ । ସେ ସବୁ ସାମ୍ରାଜ୍ୟବାଦର ବିଷୟ । ଯଜ୍ଞପ୍ରାରମ୍ଭରୁ ଯୁଦ୍ଧର ଅବତାରଣା, ଯଜ୍ଞ ଉତ୍ତାରୁ ମଧ ଯୁଦ୍ଧ ବିଗ୍ରହର ଭବିଷ୍ୟତର ସୂତ୍ରପାତ । ସେ ସମସ୍ତର ଆଲୋଚନା ନିଷ୍ପ୍ରୟୋଜନ । ତେବେ ଏକଥା ସତ ଯେ ଶାନ୍ତି ଯଜ୍ଞର ଆରମ୍ଭ କେବେ ହୋଇଥିବାର ସୂଚନା ମିଳେ ନାହିଁ । ପୁଣ୍ୟଭୂମି ଭାରତରେ ଆଜି ଶାନ୍ତି ଯଜ୍ଞର ସମ୍ଭବ ହୋଇଅଛି । ଏହି

ଜଗତରେ ଭାରତବାସୀର ମସ୍ତିଷ୍କରୁ ଏହି ଶାନ୍ତି ଅଙ୍କୁରର [illegible] । ଆଶା କରାଯାଏ ଏସିଆବାସୀଙ୍କର ସହଯୋଗ ଓ ଅଧ୍ୟବସାୟ ଓ ଯତ୍ନଦ୍ୱାରା ଏହି ଅଙ୍କୁର ପ୍ରକାଣ୍ଡ ଶାନ୍ତିଦ୍ରୁମରେ ପରିଣତ ହେବ । ପୃଥିବୀବାସୀଙ୍କି ଅନ୍ତତଃ ଆସିଆବାସୀଙ୍କି [illegible]ତଳେ ରଖି ସୁଖଶାନ୍ତି ଦେବ । ଆରମ୍ଭର ନାଶ ନାହିଁ । ଅନ୍ୟ ମହାଦେଶବାସୀଙ୍କଦ୍ୱାରା ଏହି ମହାଯଜ୍ଞ ଭଙ୍ଗର ସମ୍ଭାବନା ଥିଲେ ମଧ ଧ୍ୱଂସର ସମ୍ଭାବନା ନାହିଁ ।

ଅତି ପ୍ରାଚୀନ କାଳର କଥା ଛାଡ଼ିଦେଲେ ମଧ ମୁସଲ୍‌ମାନ ରାଜତ୍ୱଠାରୁ ଆରମ୍ଭି ଆଜିଯାଏ ଗୋଟାଏ ଶାନ୍ତି ସମିତି କୌଣସି ଦେଶରେ ବସି ନାହିଁ । ଯୁଦ୍ଧ ଉତ୍ତାରୁ ଯେ ଶାନ୍ତିସଭା ବସେ ତାହା ନାମମାତ୍ର ଶାନ୍ତିସଭା ସେଥିରେ ଜେତାମାନଙ୍କର ସ୍ୱାର୍ଥରକ୍ଷାର ଆଲୋଚନାହିଁ ହୋଇଥାଏ । ପରାଜିତ ଜାତି, ପଦଦଳିତ ଜାତି, ଅସମର୍ଥ ଜାତିର ମଙ୍ଗଳକାମନା ସେ ସଭାର ଆଦୌ ଆଲୋଚ୍ୟ ବିଷୟ ନୁହେଁ । କହିବାକୁ ଗଲେ ଆସିଆବାସୀ ସମସ୍ତେ ଏକ ଅବସ୍ଥାପନ୍ନ ସୁତରାଂ ଏକତ୍ର ମିଳିତ ହୋଇ ସମସ୍ତେ ଦୁଃଖର କାହାଣୀ ଗାଇବେ । ତାହା ଶୁଣିଲେ ସହାନୁଭୂତି ସ୍ୱତଃ ଜାଗ୍ରତ ହେବ । ଦେଶ ଓ ଧନରକ୍ଷାର ଉପାୟ ଦିଶିବ ।

ଏସିଆ ଭୂଖଣ୍ଡର କେଉଁ ଦେଶ ଯେ ଇଉରୋପୀୟ ଔଦ୍ଧତ୍ୟରେ ଧର୍ଷିତ ହୋଇ ନାହିଁ, ଏପରି ନୁହେଁ । ଭାରତର ସ୍ୱାଧୀନତା ହରଣ, ଧନ ହରଣ, ଅପମାନ ଅକଥନୀୟ । ଭବିଷ୍ୟତ ବଂଶଧରମାନେ ଇତିହାସରୁ ଏଥିର ତୀବ୍ରତା ଉପଲବ୍ଧ କରି ପାରିବେ । ଆମମାନଙ୍କର ଦିହ ଏ ଅପମାନ ସହି ଯାଇଛି । ଭାରତବାସୀ ବହୁ ଦୁଃଖ ଅପମାନ ସହି ଆସି ଅଛନ୍ତି । ସହିବାର ଥିଲା ମାତ୍ର ଯୁଦ୍ଧ ଉତ୍ତାରୁ ପୃଥିବୀ ଲୋକମାନଙ୍କର ଚକ୍ଷୁ ଫିଟିବା ସଙ୍ଗେ ଏ ଦେଶବାସୀଙ୍କର ମଧ ଚକ୍ଷୁ ଫିଟିଲା । ଆଜି ଭାରତବାସୀ ଶାନ୍ତି ଓ ମୁକ୍ତିକାମୀ । ଏଣୁ ଭାରତମାତାର ସୁଯୋଗ୍ୟ ସନ୍ତାନ ଜବାହାରଲାଲ୍ ପ୍ରଥମେ ଏସିଆ ଖଣ୍ଡରେ ଶାନ୍ତି ଓ ମୁକ୍ତି ଆଣିବାକୁ ଭିନ୍ନ ଦେଶବାସୀଙ୍କି ଡାକିଲେ । ଏସିଆବାସୀ ଅଳ୍ପ ବିସ୍ତାର ଭାବରେ ଇଉରୋପୀୟ ଜାତିଙ୍କଦ୍ୱାରା ଅବମାନିତ ଓ ଭୀତ । ମୁକ୍ତିପାଇବା ନିମନ୍ତେ ସମସ୍ତଙ୍କ ମନ ଉତ୍କଣ୍ଠିତ ଥିଲା । ଭାରତର ଆହ୍ୱାନରେ ଶାନ୍ତି ସ୍ୱାଧୀନତାର ପଥ ଦେଖିଲେ ଏଣୁ ସମସ୍ତେ ଆଜି ଦିଲ୍ଲୀରେ ଉପଗତ । ସାଧାରଣ ଭାବରେ ଦେଖିବାକୁ ଗଲେ ସମସ୍ତଙ୍କର ଗତି ଏକମୁଖୀ । ସମସ୍ତଙ୍କର ହୃଦୟରେ ଭବିଷ୍ୟତ ସ୍ୱାଧୀନ ଓ ମୁକ୍ତି ବାସନା ଜାଗ୍ରତ୍-ଏଥିରେ ରାଜନୈତିକ କାପଟ୍ୟର ଗନ୍ଧ ମାତ୍ର ନାହିଁ । ଯାହା ହବାର ନ ଥିଲା ତାହା ହେଲା, ସବୁଠାରୁ ଏହାକୁ ହିଁ ହୃଦୟରେ ସ୍ଥାନ ଦେଇ ଏଥିର ବୃଦ୍ଧି ନିମନ୍ତେ ସର୍ବଦା କାମନା କରିବା ଭାରତ ଭାଇଙ୍କର କର୍ତ୍ତବ୍ୟ ।

ଆର୍ମେନିଆଠାରୁ ଚୀନ୍ ପର୍ଯ୍ୟନ୍ତ ସମସ୍ତ ଦେଶର ପ୍ରତିନିଧି ଉପସ୍ଥିତ ହୋଇଅଛନ୍ତି । ଯେଉଁ ଦେଶର ପ୍ରତିନିଧିଗଣ ପ୍ରତିବନ୍ଧକ ନିବନ୍ଧନ ଉପସ୍ଥିତ ହେବାକୁ ଅକ୍ଷମ, ସେମାନେ ଶୁଭେଚ୍ଛା ଜଣାଇଅଛନ୍ତି । ସମସ୍ତଙ୍କର ଇଚ୍ଛା ଏକ । ଦୁଃଖର ବିଷୟ ଏହି ଯେ ଏହି ଅସାଧାରଣ ସୁଯୋଗ ପ୍ରତି ମଧ ମୁସ୍‌ଲିମ୍‌ଲିଗ୍ ଔଦ୍ଧତ୍ୟ ଦେଖାଇବାକୁ ତ୍ରୁଟି କରି ନାହିଁ । ମୁସଲିମ୍‌ଲିଗ୍ ଯୋଗ ଦେଇ ନାହିଁ, ବରଂ ଦିଲ୍ଲୀରେ ସମିତିର କାର୍ଯ୍ୟାରମ୍ଭବେଳେ ନାନା ପ୍ରଦେଶରେ ହାଣକାଟ ଲୁଟ୍‌ତରାଜ ଚଳାଇଛନ୍ତି । ଚାର୍ଚ୍ଚିଲୀୟ ଶିକ୍ଷାବଳରେ ମୁସଲିମ୍‌ଲିଗ୍ ପୃଥିବୀର ସମସ୍ତ ମତକୁ ପଦଦଳିତ କରିବାକୁ ଛାଡୁ ନାହିଁ । ଏ ଆଚରଣ ଭାରତର କଳଙ୍କ ।

ଆଫଗାନି ପ୍ରତିନିଧି ଦଳର ନେତା ଅବଦୁଲ୍ ମଜିଦ୍ ଖାନ୍ କହି ଅଛନ୍ତି ଯେ ''ଯଦି ଆମମାନଙ୍କୁ ବଞ୍ଚିବାକୁ ହେବ ତେବେ ଏକତ୍ର ବଞ୍ଚିବାକୁ ହେବ'' । ମାତ୍ର ଜିନା ପ୍ରମୁଖ ମୁସଲ୍‌ମାନଗଣଙ୍କର ଅଭିପ୍ରାୟ ଯେ ଦେଶବିଭାଗ ଓ ଜାତିବିଭାଗ ଦ୍ୱାରା ଶ୍ରୀବୃଦ୍ଧିର ସମ୍ଭାବନା ।

ଆର୍ମେନିଆ ଦଳର ପ୍ରତିନିଧି କହିଲେ ଆମଜାତି ଚିରକାଳ ଅବନତ ଓ ପଶ୍ଚାତପଦ ଥିଲେ, ଯାବତ ସେ ଦେଶ ରୁଷିଆର ଅଙ୍ଗୀଭୂତ ହୋଇ ନ ଥିଲା । ସେମାନଙ୍କର ଦୁର୍ଦ୍ଦଶା ଚିରକାଳ ନିମନ୍ତେ ଏବେ ଶେଷ ପାଇଅଛି । ସେମାନେ ଏହି ଶାନ୍ତିବିଧାନର ସମ୍ପୂର୍ଣ୍ଣ ପକ୍ଷପାତୀ ଓ ସହଯୋଗ କରିବାକୁ ପ୍ରସ୍ତୁତ । ଆମେମାନେ ରୁଷିଆ ଶାସନ ସମ୍ବନ୍ଧେ ଅଜ୍ଞ ସୁତରାଂ ସେ ସମ୍ବନ୍ଧେ ପଦେଅଧେ ଲେଖିବାକୁ ଅକ୍ଷମ । ଅନ୍ୟାନ୍ୟ ପ୍ରତିନିଧିଗଣ ଏ ଅନୁଷ୍ଠାନରେ ସମ୍ପୂର୍ଣ୍ଣ ପକ୍ଷପାତୀ ଓ ସହଯୋଗ କରିବାକୁ ପ୍ରସ୍ତୁତ ଥିବାର ମତପ୍ରକାଶ କରି ଅଛନ୍ତି । ଜବାହାରଲାଲ୍‌ଙ୍କର ଏହି ସଂକଳ୍ପ ଯେ ସଫଳ ହେଲା ଏଥିରେ ସନ୍ଦେହ ନାହିଁ । ଭାରତବାସୀ, ଆହ୍ଲାଦିତ ହୁଅ, ଉତ୍ସାହିତ ହୁଅ ଏବଂ ଏତାଦୃଶ ନୂତନ ପନ୍ଥା ଉଦ୍ଭାବନ କରିବାକୁ ସର୍ବଦା ଚେଷ୍ଟିତ ରହ । ଭାରତ ମାତାର ଜୟ ।

କଂଗ୍ରେସଦ୍ୱାରା ଦେଶ ଉନ୍ନତିର ଯେତିକି ସୁପନ୍ଥା ଆବିଷ୍କୃତ ହେବ ତାହା ଜିନାକୁ ଦୁଷ୍କର୍ମ କରିବାକୁ ତେତିକି ଉତ୍ତେଜିତ କରିବ, କରୁଅଛି । ଆମେମାନେ ତାହା ପ୍ରତ୍ୟକ୍ଷ କରୁଥାଇଁ । ଥରକୁଥର ରକ୍ତନଦୀ ବହୁଅଛି । ପାପଶବ୍ଦ କି ଜିନାଦଳର ଅଭିଧାନରେ ନାହିଁ । ଆଲ୍ଲାହୋ ଆକବର !

ମାନ୍ଦ୍ରାସରେ ଆଇନ୍ ପାସ୍ ହୋଇଅଛି ଯେ ଏଣିକି ଅଛବ ଜାତି ମନ୍ଦିର ପ୍ରବେଶ କରିପାରିବେ । ଗତ ଶିବରାତ୍ରିରେ ଅଛବମାନେ ମନ୍ଦିର ଭିତରକୁ ଗଲେ । ପୂଜକ କିମ୍ବା ଦେବାଳୟ ଅଧିକାରୀମାନଙ୍କର କମ୍ ଲାଭ ହୋଇ ନ ଥିବ । ବାଲ୍ୟବିବାହ ନିଷେଧ ଆଇନ୍ ପରି ଏ ଆଇନ୍‌ରେ ପ୍ରତାରଣା ଅଛି କି ନା କିଏ ଜାଣେ ? ଏ ମନ୍ଦିର ପ୍ରବେଶରେ କୌଣସି ପ୍ରକୃତ ଲାଭ ନାହିଁ, ଯାବତ୍ ଏହି ଅଛବ ଜାତିଙ୍କର ସମାଜଗତ ପାଣ, କଣ୍ଡରା, ଘାସି ପ୍ରଭୃତି ନାମ ଉଠାଯାଇ କେବଳ ଭାରତବାସୀ ବୋଲି ପରିଚୟ ଦେବାକୁ ଶିକ୍ଷା ଦିଆ ଯାଇ ନାହିଁ । ଏବଂ ଅନୁନ୍ନତ ଜାତିଙ୍କି ପ୍ରାଥମିକ ଓ ଉଚ୍ଚଶିକ୍ଷା ଉତ୍ତମରୂପେ ଦିଆଯାଇ ନାହିଁ । ଦେବମନ୍ଦିର ଅପେକ୍ଷା ଶିକ୍ଷା ମନ୍ଦିରକୁ ନିର୍ବାଧ ଅନୁମତି ପାଇବା ଅନୁନ୍ନତ ଜାତିର ପ୍ରକୃତ ଉନ୍ନତି ଓ ଉନ୍ନତ ଜାତିର ଅନୁଗ୍ରହ ।

ଓ୍ୱାଲଟାୟାରରେ ଜଳର ବଡ଼ ଅନଟନ ଅଳ୍ପ ସଂଖ୍ୟକ କୂଅ । ଗଲ୍‌ଫ ପଡ଼ିଆରେ ଗୋଟିଏ ଗଭୀର କୂପ ଅଛି, ଏଥିର ଜଳ ମଧ ନିର୍ମଳ । ନିକଟବର୍ତ୍ତୀ ବାସିନ୍ଦା କି ଉଚ୍ଚଜାତି କି ନୀଚଜାତି ଏହି କୂପର ଜଳ ବ୍ୟବହାର କରନ୍ତି । ଆମେମାନେ ଅବସ୍ଥାନ କରୁଥିବା ବଙ୍ଗଳାର ବ୍ୟବହାର ନିମନ୍ତେ ଏହି କୂପର ଜଳ ଅଣାଯାଏ । ଲଛମିଆ ନାମକ ତେଲଙ୍ଗି ଗୌଡ଼ ଆମମାନଙ୍କର ଜଳ ଯୋଗାଡ଼ କରେ । ଏବଂ ଆପ୍ପାମ, ମାରଡ଼େମା ନାମକ ଦୁଇଜଣ ହାଡ଼ିଆଣୀ ବଙ୍ଗଳା ପରିଷ୍କାର କରିବାକୁ ନିଯୁକ୍ତା । ବିନା ବିବାଦରେ ଲଛମିଆ ଆଉ ହାଡ଼ିଆଣୀ ଯୋଡ଼ିକ କୂଅରୁ ପାଣି ଆଣୁଅଛନ୍ତି । ସେମାନଙ୍କୁ ପାଣି ବ୍ୟବହାର ନିମନ୍ତେ କେହି ଅନୁମତି ଦେଇ ନାହିଁ କିମ୍ବା କେହି ନିଷେଧ କରୁ ନାହିଁ । ଅଳ୍ପସଂଖ୍ୟକ କୂପହେତୁ ପୂର୍ବରୁ ପାଣି ବ୍ୟବହାର ଏହି ଭାବରେ ଚାଲି ଆସିଅଛି । ପାରିପାର୍ଶ୍ୱିକ ଘଟଣା ଜାତିଭେଦର ବିଧାନ ରକ୍ଷାକରି ଦେଲା ନାହିଁ । ଅଭ୍ୟାସରେ ପରିଣତ ହେଲା । ଏହା ପ୍ରାକୃତିକ ନିୟମ ।

ଲର୍ଡ଼ ଓ୍ୟାଭେଲ୍ ଗଲେ, ଲର୍ଡ଼ ମାଉଣ୍ଟବେଟେନ ଆସିଲେ । ଜଣେ ଯାଆନ୍ତି, ଜଣେ ଆସନ୍ତି ଏହା ଚିରାଚରିତ ନିୟମ ମାତ୍ର ଅଭ୍ୟର୍ଥନାରେ ପାର୍ଥକ୍ୟ ଅଛି । ପୂର୍ବର ଆଡ଼ମ୍ବର ଆଉ ନାହିଁ । ଲୋକେ ସେ ଆଡ଼ମ୍ବରର ପକ୍ଷପାତୀ ନୁହଁନ୍ତି କିମ୍ବା ଭାଇସ୍‌ରାୟ ମଧ ସେ ଆଡ଼ମ୍ବର ଇଚ୍ଛା କରୁ ନାହାନ୍ତି । ସ୍ୱାଧୀନ ଯୁଗର ଗତି ଏପରି । ମାଉଣ୍ଟବେଟନ ଭାରତର ଉଦ୍ଧତ ଗତିକୁ କିପରି ଚଳାଇବେ ତାହା ଅଳ୍ପ ଦିନରେ ଜଣାଯିବ । ଆଶା ଏତିକି ଯେ ମାଉଣ୍ଟବେଟନ ଚାର୍ଚ୍ଚିଲଙ୍କ ଶିଷ୍ୟ ନୁହନ୍ତି— ଆଟଲିଙ୍କର ଶିଷ୍ୟ ।

ଭାରତରେ ଏକ ଆଡ଼େ ଉନ୍ନତି ବିଧାୟକ ଉପାୟର ଆଲୋଚନା— ସଭା ସମିତି ଚାଲିଛି । ଅନ୍ୟଆଡ଼େ ରକ୍ତପାତ, ନରହତ୍ୟା ଚାଲିଛି । କୌଣସି କୌଣସି ମୁସଲ୍‌ମାନ୍ ନେତା କହନ୍ତି ପାକିସ୍ତାନ ପ୍ରାପ୍ତି ନିମନ୍ତେ ଏକ କୋଟି ମୁସଲ୍‌ମାନ୍ ପ୍ରାଣ ଦେବାଟା ଶ୍ଳାଘନୀୟ ଓ କାମ୍ୟ । ହିନ୍ଦୁ ଓ ଅନ୍ୟଜାତିମାନେ ମଧ କହି ପାରନ୍ତି ଯେ ଅଖଣ୍ଡ ଭାରତଭୂମି ରକ୍ଷା ନିମନ୍ତେ ତିନି କୋଟି ହିନ୍ଦୁର ବଳି ଦେବା ଶ୍ଳାଘ୍ୟ ଓ କାମ୍ୟ । ଏ ଭାବ ଗୁଆଁରମାନଙ୍କ ହୃଦୟରେ କାର୍ଯ୍ୟ କରୁଅଛି । ଗାନ୍ଧିଜୀ ପ୍ରମୁଖ ମହାଶୟମାନେ କହନ୍ତି ଯେ ରକ୍ତପାତ ଦ୍ୱାରା ପାକିସ୍ତାନ ପ୍ରାପ୍ୟ ନୁହେଁ କିମ୍ବା ଅଖଣ୍ଡ ଭାରତର ରକ୍ଷା ନାହିଁ । ଶାନ୍ତି ଓ ସହଯୋଗ ହିଁ ଦେଶର ଉନ୍ନତି ବିଧାୟକ । ପ୍ରବାଦ ଅଛି ଝଡ଼ ଉତ୍ତାରୁ ଶାନ୍ତି ଆସେ । ମାରପିଟ୍ ହାଣକାଟ ଉତ୍ତାରୁ ଔଦ୍ଧତ୍ୟ ଭାଙ୍ଗିବ । ଶାନ୍ତି ଆସିବ । ଏଥିରେ ବିଚଳିତ ହେବାର କଥା ନାହିଁ । କଳାପାହାଡ଼ର ଅକୀର୍ତ୍ତିର କଥା ଅଦ୍ୟାପି ଏ ଦେଶବାସୀଙ୍କ ମନରେ ଅଛି । ମାତ୍ର ସେ ରାଜତ୍ୱ ନାହିଁ ବା କଳାପାହାଡ଼ ନାହିଁ । ନରହତ୍ୟାକାରୀ ମନରେ, ଡକାୟତ ମନରେ ମଧ ଅନୁତାପ ଆସେ । ଆଜି ଯେଉଁମାନେ ଉନ୍ମତ୍ତ ଓ ହତ୍ୟାକାରୀ ସେମାନଙ୍କ ମନରେ ଅନୁତାପ ଆସିବ । ହତ୍ୟାକାରୀର ହାତ ଅବଶ ହେବ । ଚିରକାଳ ଏକଭାବ ଥାଏ ନାହିଁ । ଉନ୍ମତ୍ତମାନେ କିଛିଦିନ ମାତିବେ ଏଟା ଏକ ପ୍ରକାର ମାନବ ପ୍ରକୃତି । ଶାନ୍ତି ବାଟ ଫିଟିଲାଣି । ଶାନ୍ତି ଆସିବ, ଏହି ଦୁର୍ଦ୍ଦଶାର ପ୍ରାଥମିକ ଅବସ୍ଥାରେ କେବଳ ବିଜ୍ଞ ଓ ମହତମାନଙ୍କର ପଥାନୁସରଣ କରିବା ଉଚିତ୍ ।

ଜନପ୍ରବାଦରୁ ଜଣାଯାଏ ଯେ ଆମେରିକାନ୍ ଗଭର୍ଣ୍ଣମେଣ୍ଟ ବିଲାତ ମନ୍ତ୍ରିସଭାର ସାହାଯ୍ୟାର୍ଥ ଭାରତବର୍ଷରେ କୌଣସି କୌଣସି ବଡ଼ରାଜ୍ୟମାନଙ୍କରେ ଏଆରପୋର୍ଟ ବା ଉଡ଼ାଜାହାଜ ଷ୍ଟେସନ ପ୍ରସ୍ତୁତ କରିବେ । ଏ ଆରମ୍ଭ କାହିଁକି ? ରୁଷିଆର ଭୟରେ କିମ୍ବା ରୁଷିଆର ତଣ୍ଟିଚିପିବାର ଇଚ୍ଛାରେ କି ? ସ୍ମରଣ ରଖିବା ଉଚିତ୍ ଯେ ଇଂରେଜମାନେ ଗୋଟାକେତେ ଗୁଦାମଘର ଖୋଲିବାର ପଟ୍ଟା ଗ୍ରହଣ କରି ଭାରତ ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ଖାଲ ଖୋଳି କୁମ୍ଭୀର ଆଣିବା ଇଚ୍ଛା କେଉଁ ମହାରାଜମାନଙ୍କର ମନକୁ ଲୁବ୍ଧ କରୁଅଛି ?

ଦିଲ୍ଲୀରେ ଶାନ୍ତିସଭା ଆରମ୍ଭ ହେଲା ଯାହାର ଆରମ୍ଭ ଭଲ, ତା'ର ଶେଷ ମଧ ମଙ୍ଗଳପ୍ରଦ । ଏ ଆଶା ପୋଷଣ କରି ଆମ୍ଭମାନଙ୍କର କାର୍ଯ୍ୟରେ ପ୍ରବୃତ୍ତ ହେବା ଉଚିତ୍ ।

ପ୍ରତ୍ୟେକଙ୍କ ମନରୁ ହିଂସା ଦ୍ୱେଷ ଦୂର ହେଉ । ଭ୍ରାତୃଭାବ ହୃଦୟରେ ସ୍ଥାନ ପାଉ । ଆଗନ୍ତୁକମାନେ ଭାରତର ମଙ୍ଗଳକାମନା କରି ଶୁଭରେ ନିଜ ନିଜ ଦେଶକୁ ପ୍ରତ୍ୟାବୃତ୍ତ ହେଉନ୍ତୁ । ପରସ୍ପର ସହିତ ସହଯୋଗ କରନ୍ତୁ । ଏହି କାମନା । ଶାନ୍ତି, ଶାନ୍ତି, ଶାନ୍ତି ।

## ଦ୍ୱିତୀୟ ବର୍ଷ ଏକାଦଶ ସଂଖ୍ୟା

**ଶୁଭେନ୍ଦ୍ର ସଂଖ୍ୟା (ଚତୁରଙ୍ଗ)**—ମୟୂର ଜୀବମାନଙ୍କ ମଧ୍ୟରେ ଶ୍ରେଷ୍ଠ ନର୍ତ୍ତକ । ତା'ର ଅଙ୍ଗପ୍ରତ୍ୟଙ୍ଗ, ରୂପରେଖ, ବର୍ଣ୍ଣ, ଚୂଳ, ଗଳ, ପୁଚ୍ଛ ଶୋଭା ସମ୍ପଦ ପ୍ରକୃତିଦତ୍ତ, ଏଣୁ ନୃତ୍ୟପ୍ରିୟ । କଳାପ— ତତ୍ପରେ ଶୁଭେନ୍ଦ୍ରର ସ୍ଥାନ ଅତି ରମଣୀୟ ଓ ହୃଦୟଗ୍ରାହୀ । ଏହି ସମାବେଶ ଚିତ୍ରକାରର କଳ୍ପନାପ୍ରସୂତ କି ଘଟଣାକ୍ରମେ ସୌନ୍ଦର୍ଯ୍ୟ ବୃଦ୍ଧି ଉଦ୍ଦେଶ୍ୟରେ ଏପରି କରାଯାଇଅଛି ? ଯେବେ ପ୍ରଥମୋକ୍ତ ଉଦ୍ଦେଶ୍ୟରେ ପ୍ରଚ୍ଛଦପଟ ପ୍ରସ୍ତୁତ ହୋଇଥାଏ ତେବେ ଚିତ୍ରକର ଆମମାନଙ୍କର ଧନ୍ୟବାଦର ପାତ୍ର ଏବଂ ତାଙ୍କର କଳ୍ପନା ପ୍ରଶଂସନୀୟ, ତାଙ୍କର ଭାବ ଗଭୀର । ଆମମାନଙ୍କର ମନକୁ ଉଭୟ ନର୍ତ୍ତକଙ୍କ ଶ୍ରେଷ୍ଠତ୍ୱ ଏକତ୍ର ଦେଖାଇ ଦିଆଗଲା ବୋଲି ପାଇଲା ।

ମରଣଃ ପ୍ରକୃତି ଶରୀରିଣାଂ ବିକୃତି ର୍ଜୀବିତ ମୁଚ୍ୟତେବୁଦ୍ଧୈଃ ।

ମରଣଧର୍ମୀ ମନୁଷ୍ୟ । ମରିବାଟା ସୁନିଶ୍ଚିତ । ମାତ୍ର କଥାଅଛି 'କୀର୍ତ୍ତିର୍ଯସ୍ୟ ସଜୀବତି' ଶୁଭେନ୍ଦ୍ର ସ୍ୱ ଉପାର୍ଜିତ କଳା ଚାତୁରୀ ଓ ବିଭବଦ୍ୱାରା ମନୋହାରୀ କୀର୍ତ୍ତି ଅର୍ଜନ କରିଯାଇଅଛନ୍ତି । ଏବଂ ସେଥିନିମନ୍ତେ ଲୋକେ ତାଙ୍କୁ ଅଜସ୍ର ପ୍ରଶଂସା କରି ଅଛନ୍ତି । ତାଙ୍କର ଲୋକାନ୍ତରରେ କେବଳ ଭାରତବାସୀ ନୁହଁନ୍ତି, ଇଉରୋପ ଓ ଆମେରିକାବାସୀମାନେ ମଧ୍ୟ ଆହା, ଆହା କରିଅଛନ୍ତି । ଏ ଦେଶବାସୀ କେତେଜଣଙ୍କ ଭାଗ୍ୟରେ ଏତାଦୃଶ ସମ୍ମାନ ମିଳିଅଛି । ଶୁଭେନ୍ଦ୍ର ଜଣେ ରାଜପୁତ୍ର— ମାତ୍ର ରାଜପୁତ୍ରର କି ଏ ସମ୍ମାନ ପ୍ରାପ୍ୟ ? ଶତସହସ୍ର ରାଜପୁତ୍ର କି ଭାରତରେ ନାହାନ୍ତି ? ଅଧ୍ୟବସାୟଦ୍ୱାରା ପ୍ରତିଭାର ବିକାଶ ଶୁଭେନ୍ଦ୍ରଙ୍କୁ ଏ ମହତ୍ୱ ଅର୍ପଣ କଲା । ଆପଣା ରାଜ୍ୟବାସୀ କେବଳ ରାଜାଙ୍କୁ ଜାଣନ୍ତି, ମାନନ୍ତି ଭୟରେ ହେଉ ବା ଭକ୍ତିରେ ହେଉ । ମାତ୍ର ଗୁଣୀ ବ୍ୟକ୍ତିର ସମ୍ମାନ ଓ ଆଦର ସର୍ବତ୍ର ।

ଶୁଭେନ୍ଦ୍ରଙ୍କର ପିତା ଶ୍ରୀମାନ୍ ଆଦିତ୍ୟପ୍ରତାପ ସିଂହଦେବ ମହାରାଜ ସର୍ଚ୍ଚେକଳାଙ୍କୁ ଆମେମାନେ ଧନ୍ୟବାଦ ନ ଦେଇ ରହି ନ ପାରୁ, ଯେହେତୁ ସେ ପୁତ୍ର ପ୍ରଗତିରେ ବାଧା ନ ଦେଇ ସ୍ୱକୀୟ ପ୍ରତିଭାବଳରେ ଯଶଲାଭ ନିମନ୍ତେ ନିର୍ବାଧରେ ପଥାନ୍ୱେଷଣ ନିମନ୍ତେ ଅନୁମତି ଦେଇଥିଲେ । ଏ ଦେଶରେ ଅତି କମ୍ ସଂଖ୍ୟକ ଲୋକ ପ୍ରଗତିର ପକ୍ଷପାତୀ । ରାଜପୁତ୍ର ନୃତ୍ୟକୌଶଳରେ ଯଶଲାଭ କରିବ ଏହା ସ୍ୱପ୍ନର ଅଗୋଚର । ତଥାପି ପୁତ୍ରଗୁଣାସ୍ପର୍ଦ୍ଧୀ ପିତା ପୁତ୍ରକୁ ସ୍ୱାଧୀନ କଲେ, ପୁତ୍ର ବଂଶ ଓ ଦେଶର ମୁଖୋଜ୍ଜ୍ୱଳ କରି ଚାଲିଗଲେ ।

ଏପରି ଗୁଣଧର ବ୍ୟକ୍ତିର ଜୟନ୍ତୀ ପାଳିତ ନ ହେବ ତେବେ ହେବ କାହାର ? ସର୍ଚ୍ଚେକଳାବାସୀ ଯେ ଗୁଣ ପୂଜା ବା ବୀର ପୂଜାର ଆଦ୍ୟାରମ୍ଭ କଲେ ଏଥିନିମନ୍ତେ ଆମେମାନେ ଗର୍ବିତ । ଶୁଭେନ୍ଦ୍ର ସ୍ମୃତିମନ୍ଦିରର ପରିକଳ୍ପନା ଉପଯୁକ୍ତ ଅଟେ ।

'ଚତୁରଙ୍ଗ' ଶୁଭେନ୍ଦ୍ର ସଂଖ୍ୟା ହୃଦୟଗ୍ରାହୀ ଅଟେ ବିଶେଷତଃ ଶୁଭେନ୍ଦ୍ରଙ୍କର କବିତା ଓ ଲେଖା ପ୍ରକାଶ ହେବାଦ୍ୱାରା ଶୁଭେନ୍ଦ୍ର ଯେ କେବଳ ଶିଳ୍ପୀ ବା ନାଟ୍ୟକବି ଥିଲେ ଏପରି ନୁହେଁ ସେ ସାହିତ୍ୟିକ ଓ କବି ଥିଲେ ଏହା ପାଠକଙ୍କର ହୃଦୟକୁ ସ୍ପର୍ଶ କରିବ ।

ଶୁଭେନ୍ଦ୍ରଙ୍କର ପତ୍ରଦ୍ୱାରା ଶ୍ରୀଶମ୍ଭୁନାଥ ମୋଦକ ବିଭବଶାଳୀ ବୋଲି ପାଠକ ନିଶ୍ଚୟ ମନେ କରିବେ ।

ଆମେମାନେ ମନେକରୁ ଚତୁରଙ୍ଗର ପ୍ରବନ୍ଧଗୁଡ଼ିକ ଶୁଭେନ୍ଦ୍ର ଜୟନ୍ତୀର ପୁଷ୍ପାଞ୍ଜଳି । ଏଥିରେ ବାତ୍ସଲ୍ୟ ପୁଷ୍ପାଞ୍ଜଳି ଅଛି, ପ୍ରେମ ପୁଷ୍ପାଞ୍ଜଳି, ପ୍ରୀତି ପୁଷ୍ପାଞ୍ଜଳି, ସ୍ନେହ ପୁଷ୍ପାଞ୍ଜଳି ଅଛି । ଏଥିସହିତ ଆମେମାନେ ଆନ୍ତରିକ ପୁଷ୍ପାଞ୍ଜଳି ସହିତ କାମନା କରୁଅଛୁଁ ଯେ ବର୍ଷେ ବର୍ଷେ ଶୁଭେନ୍ଦ୍ର ଜୟନ୍ତୀ ପ୍ରତିପାଳିତ ହେଉ ।

ଚୋରମାନେ ଧନଲୋଭରେ ଚୋରି କରନ୍ତି । ଡକାୟତମାନେ ଅଧିକ ଧନ ଲାଳସାରେ ଡକାୟତି କରନ୍ତି । ଦେଶ ପ୍ରାପ୍ତ୍ୟାଶାରେ ଯୁଦ୍ଧ ହୁଏ । ଅକାରଣରେ ନିରୀହ ମନୁଷ୍ୟମାନଙ୍କୁ ବଧ କରିବାର ଘଟଣା ବିରଳ, ତଥାପି ବିଂଶ ଶତାବ୍ଦୀର ମଧ୍ୟଭାଗରେ ସଭ୍ୟଦେଶରେ ଏ ଘଟଣା ଘଟୁଥିବାର ଦେଖିଲେ କାର ମନ ବିଚଳିତ ନ ହେବ ? ଲିଗ୍ ଯେ ହତ୍ୟାକାଣ୍ଡର ଆରମ୍ଭ କରିଅଛି ତା'ର କି ପ୍ରତିକାର ନାହିଁ ? ପ୍ରତିକାରର ଉପାୟ ଥିଲେ ଆଜକୁ ଦଶମାସ ହେଲା ଦେଶରେ ରକ୍ତନଦୀ ପ୍ରବାହିତ ହେଉଥାଆନ୍ତା କାହିଁକି ? କେନ୍ଦ୍ରୀୟ ଗଭର୍ଣ୍ଣମେଣ୍ଟ ସ୍ୱହସ୍ତରେ ଦମନଶକ୍ତି ନ ରଖିବାରୁ ଏ ଦୁର୍ଦ୍ଦଶା ।

ପ୍ରାଦେଶିକ ଶାସକମାନେ ନିଜ ପ୍ରଦେଶରେ ଯାହା ଇଚ୍ଛା ତାହା କରିବେ ତା'ର ପ୍ରତିରୋଧ କରିବାର କି ଉପାୟ ନାହିଁ । ଏପରି ଶାସନ ଖସଡ଼ାଯୁକ୍ତ ସ୍ୱାଧୀନତାର ଲାଭ କ'ଣ ବରଂ କ୍ଷତି ସିନା । ପ୍ରାଦେଶିକ ଲଘୁ ସଂଖ୍ୟାର ଅବ୍ୟାହତି ନାହିଁ । ତାଙ୍କର ରକ୍ଷକ କେହି ନାହିଁ । ବଙ୍ଗଦେଶରେ ଏଥର ପୂର୍ଣ୍ଣ ଅଭିନୟ ଦେଖାଗଲା—ବଡ଼ଲାଟ ପଙ୍ଗୁ, ଜବହାର୍‌ଲାଲ୍ ପଙ୍ଗୁ, ଗାନ୍ଧି ପଙ୍ଗୁ । ସୁରାବର୍ଦ୍ଦି ବଳଶାଳୀ ବୀର, ଯେହେତୁ ତାଙ୍କର ଭୋଟ ବଳ ଅଛି । ବଙ୍ଗଦେଶର ହିନ୍ଦୁସଂଖ୍ୟା କମାଇ ପାରିଲେ ମୁସଲ୍‌ମାନଙ୍କର ଲାଭ ଏହି କଳ୍ପନାରେ ମୂର୍ଖଙ୍କଦ୍ୱାରା ହିନ୍ଦୁଙ୍କର ପ୍ରାଣନାଶ କରାଯାଇଅଛି ବା ଭୟ ଦେଖାଇଲେ ହିନ୍ଦୁମାନେ ଦେଶତ୍ୟାଗକୁ ପରମ ସୁକୃତି ବୋଲି ବିବେଚନା କରିବେ ଏଣୁ ମୁସଲ୍‌ମାନ୍‌ମାନଙ୍କର ପରମ ଲାଭ ହେବ । କିନ୍ତୁ ଅନ୍ୟ ପ୍ରଦେଶବାସୀ ଯେଉଁମାନେ ଅର୍ଥ ଉପାର୍ଜନ ଆଶାରେ କୁଲିମଜୁରୀ କାର୍ଯ୍ୟରେ ବଙ୍ଗଦେଶକୁ ଯାଇଅଛନ୍ତି, ଯେଉଁମାନେ ନିଃସ୍ୱ ସେମାନଙ୍କୁ ବଧକରି ମୁସଲ୍‌ମାନ୍‌ମାନଙ୍କର ଲାଭ କ'ଣ ? ତଥାପି ବହୁସଂଖ୍ୟକ ନିରୀହ ଓଡ଼ିଆ ଭାଇ କଲିକତାରେ ପ୍ରାଣଦେଲେ । ଏମାନଙ୍କର ରକ୍ଷକ କିଏ ? ଓଡ଼ିଶା ମନ୍ତ୍ରୀସଭାବାଲା ତ ? ଭୂତପୂର୍ବ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ତର ତର ହୋଇ କଲିକତାକୁ ଧାଇଁଲେ ମାତ୍ର ଫଳ କିଛି ହେଲା ବୋଲି ତ ଜଣାଯାଉ ନାହିଁ । ଅବଶ୍ୟ କିଛି ଅର୍ଥ ଗଭର୍ଣ୍ଣମେଣ୍ଟ ବହନ କରିଥିବେ, ଯାହାକି ପ୍ରଜାର ଧନ । ମୃତବ୍ୟକ୍ତିମାନଙ୍କର ବିଧବାମାନଙ୍କର କ୍ରନ୍ଦନ ମାତ୍ର ସାର । ବିଧବାର କ୍ରନ୍ଦନ ତ ହିନ୍ଦୁ କର୍ଣ୍ଣରେ ପ୍ରବେଶ କରିବାର ନୁହେଁ । ବିଧବାର କ୍ରନ୍ଦନପ୍ରତି ହିନ୍ଦୁର ପ୍ରାଣ ଯେ କଠିଣ ଇସ୍ପାତ । ଗାର ପଡ଼େ ନାହିଁ । ସେଦିନ ଚେକୋଶ୍ଲୋଭେକିଆରେ ଦୁଇ ଜଣ ଆମେରିକାନ୍ ବିମାନ ବାହୀଙ୍କର ପ୍ରାଣ ନାଶ ହେତୁ—ପୃଥିବୀମୟ ହୁଲସ୍ଥୂଳ ପଡ଼ିଗଲା— କୈଫିୟତ, କ୍ଷମାପ୍ରାର୍ଥନା, କ୍ଷତିପୂରଣ କ'ଣ ବା ନ ହେଲା । ସହସ୍ର ଓଡ଼ିଆ ପ୍ରାଣଦେଲେ କଲିକତାରେ ଅଶ୍ରୁପାତ କଲା କିଏ, କ୍ଷତିପୂରଣ ଦେଲା କିଏ ?

ଇଂରେଜ ଏ ଦେଶ ତ୍ୟାଗ କରିବେ ନିଶ୍ଚୟ ମାତ୍ର ଛାଡ଼ିବା ପୂର୍ବରୁ ଲଣ୍ଡଭଣ୍ଡ କରିଦେଇ ଯିବାର କଳ୍ପନା ଲାଗିଛି । ବ୍ରିଟିଶ୍ ସେ କଳ୍ପନା କରିପାରେ ମାତ୍ର ଏ ଦେଶବାସୀ ପ୍ରାୟ ଦୁଇ ଶତ ବର୍ଷ ବ୍ରିଟିଶ୍‌ର ପଦାନତ ରହି ବହୁ ଅପମାନ ଓ ଲାଞ୍ଛନା ଭୋଗ ଉତାରୁ ପୁଣି ସେହି ବ୍ରିଟିଶର୍ ଆଶ୍ରୟ ଖୋଜିବା ଆଶ୍ଚର୍ଯ୍ୟର ବିଷୟ ନୁହେଁ କି ? ଏ ଦେଶବାସୀଙ୍କର ମନୋଭାବ ବୁଝିବା ସହଜ ନୁହେଁ ।

—୦—

ରାଜାମାନେ ଏସେମ୍ବ୍ଲିରେ ଯୋଗଦେବାକୁ ସ୍ୱୀକୃତ ହୋଇଅଛନ୍ତି ବଡ଼ ସୁଖର କଥା । ପ୍ରଜା ପ୍ରତିନିଧି ଦିଲ୍ଲୀରେ ଉପସ୍ଥିତ ଥାଇ ଆପଣାର ସୁବିଧା ଅସୁବିଧାର କଥା ଜଣାଇବେ । ଦେଶର ଶାସନ ସଂସ୍କାରର ପ୍ରସ୍ତାବ କରିପାରିବେ । ଇତ୍ୟାଦି । ମୟୂରଭଞ୍ଜ ଛାଡ଼ି ଓଡ଼ିଶାର ସମସ୍ତ ଗଡ଼ଜାତରୁ ଦୁଇଜଣ ମାତ୍ର ପ୍ରତିନିଧି ଯିବେ । ୨୫୦୦ ଲୋକ ଜଣେ ଲୋକକୁ ପ୍ରତିନିଧି ନିର୍ବାଚନ କରିବେ । ସେହି ନିର୍ବାଚିତ ସଭ୍ୟମାନେ ଦୁଇଜଣ ପ୍ରତିନିଧି ନିର୍ବାଚନ କରିବେ । ଏହି ପ୍ରଜା ନିର୍ବାଚିତ ସଭ୍ୟ ଦିଲ୍ଲୀ ସଭାକୁ ଯିବେ । ବାମଣ୍ଡାର ପ୍ରଜାମାନେ ଆଠଜଣ ସଭ୍ୟଙ୍କୁ ନିର୍ବାଚନ କରିବେ ଯେହେତୁ ବାମଣ୍ଡାରେ ଦୁଇ ଲକ୍ଷ ପ୍ରଜା ଅଛନ୍ତି । ସେହିପରି କେନ୍ଦୁଝର ପ୍ରଜା ଷୋହଳଜଣଙ୍କୁ, ବଣାଇ ପ୍ରଜା ଚାରିଜଣଙ୍କୁ ବାଛିବେ । ଏହି ନିୟମରେ ଅନ୍ୟରାଜ୍ୟର ପ୍ରଜାମାନେ ବାଛିବେ । ସମସ୍ତ ଗଡ଼ଜାତର ନିର୍ବାଚିତ୍ ସଭ୍ୟମାନେ ଏକତ୍ରିତ ହୋଇ କେବଳ ତାଙ୍କ ଭିତରୁ ଦୁଇଜଣଙ୍କୁ ଦିଲ୍ଲୀ ସଭା ନିମନ୍ତେ ବାଛିବେ । ଏହି ଦୁଇ ଜଣ ଦିଲ୍ଲୀକୁ ଯାଇ ପ୍ରଜାର ଗୁହାରି ଜଣାଉଥିବେ । ଏହି ବଛାବଛି ବେଳେ ରାଜା ଅଫିସର କିମ୍ବା ପୋଲିସ୍ ହସ୍ତକ୍ଷେପ କରିବେ ନାହିଁ । ପ୍ରଜା ଆପଣା ଇଚ୍ଛାନୁସାରେ ଉପଯୁକ୍ତ ଓ ଯେଉଁଲୋକ ପ୍ରଜାହିତୈଷୀ ତାକୁ ବାଛିବେ । ଏହା ଗୋଟିଏ ସମ୍ପୂର୍ଣ୍ଣ ନୂତନ ଆରମ୍ଭ ଏବଂ ପ୍ରଜାର ନୂତନ ଅଧିକାର । ଏଣୁ ସାବଧାନ ସହିତ କାର୍ଯ୍ୟ ନିର୍ବାହ କରିବାକୁ ହେବ । ରାଜଦରବାରରୁ ଶୀଘ୍ର ଏଥିର ନିୟମ ବାହାରିବାର ଆଶା କରାଯାଏ ।

—୦—

ମନୀଷୀମାନଙ୍କର ବହୁବର୍ଷର ସାଧନା ଯେତେବେଳେ ଫଳବତୀ ହେବାକୁ ବସିଲା ସେତେବେଳେ ବିଭ୍ରାଟ କାହିଁକି ? ଆଶାଙ୍କୁରକୁ ମୂଳୋତ୍ପାଟନ କରିବାର ପ୍ରୟାସ କାହିଁକି ? ଆଶାଥିଲା ଭାରତ ସ୍ୱାଧୀନ ହେବ, ଏକତା ଆସିବ, ଜାତି ନିର୍ବିଶେଷରେ ସମସ୍ତେ ମିଳିମିଶି ନିଜ ଦେଶ ସମ୍ଭାଳିବେ, ସୁଖସ୍ୱଚ୍ଛନ୍ଦରେ ରହିବେ, ଏହି ଶୁଭେଚ୍ଛାକୁ ଯେଉଁମାନେ ପଣ୍ଡ କରିବାକୁ ବଦ୍ଧପରିକର ସେମାନେ ଦେଶର ଶତ୍ରୁ କି ନୁହନ୍ତି ? ପରର ତର୍ଜନୀ ସଂକେତରେ ଚାଳିତ ହେଉଥିଲାବେଳେ ସମସ୍ତେ ନିରୀହ ନିର୍ଦ୍ୱନ୍ଦ୍ୱ ଥିଲେ । ଏବେ ସ୍ୱାଧୀନତାର ସଂକେତ ମିଳିବାବେଳେ ଜାତି, ଧର୍ମର କନ୍ଦଳ ଉଠୁଅଛି । ସାମ୍ପ୍ରଦାୟିକ ଧର୍ମ ଅନେକ । ରାଜନୀତି କ୍ଷେତ୍ରରେ, ଅର୍ଥନୀତି କ୍ଷେତ୍ରରେ ଧର୍ମର ସ୍ଥାନ ରହିବା ଉଚିତ ନୁହେଁ । ତଥାପି ସମାଜଗତ

ଧର୍ମର ରାଣପକାଇ ଅଶିକ୍ଷିତ ଲୋକଙ୍କୁ ଉତ୍ତେଜିତ କରି ଗୃହଦାହ, ନରହତ୍ୟା, ସ୍ତ୍ରୀ ଧର୍ଷଣ, ଶିଶୁହତ୍ୟା ପ୍ରଭୃତି ଅନିଷ୍ଟକର ଦୋଷ ଘଟାଉଛନ୍ତି, ସେମାନେ କି ଦେଶଦ୍ରୋହୀ ନୁହନ୍ତି ? ଆମେମାନେ ଚକ୍ଷୁ ଅଗ୍ରତରେ ଏହି ପାପକାର୍ଯ୍ୟମାନ ଅନୁଷ୍ଠିତ ହେବାର ଜାଣୁଅଛୁ । ଜିନ୍ନା ପ୍ରମୁଖ ବ୍ୟକ୍ତିଙ୍କର ଲିଗ୍‌ଦଳଦ୍ୱାରା ଏହି ଯେ ପାଶବିକ, ନୃଶଂସକାଣ୍ଡ ସଂଘଟିତ ହେଉଅଛି ତା'ର କି କୌଣସି ପ୍ରତିକାର ନାହିଁ ? ତେତିଶ କୋଟି ହିନ୍ଦୁଦେବତା ନିଃସହାୟ ହିନ୍ଦୁର ପ୍ରାଣ ବଞ୍ଚାଉ ନାହାନ୍ତି କିମ୍ବା ଆଲ୍ଲା ମୁସଲ୍‌ମାନ୍‌ମାନଙ୍କୁ ଏ ପାପକାର୍ଯ୍ୟରୁ ନିରସ୍ତ ହେବାକୁ ସଦ୍‌ବୁଦ୍ଧି ଦେଉ ନାହାନ୍ତି । ହତ୍ୟାକାଣ୍ଡ ଲାଗିଛି, ଲାଗିବ ।

ଆଶାଥିଲା ଇଂରେଜମାନେ ଛାଡ଼ିଗଲେ ଅଖଣ୍ଡ ଭାରତ ନିଜ ସନ୍ତାନମାନଙ୍କଦ୍ୱାରା ସୁରକ୍ଷିତ ଓ ପାଳିତ ହେବ । ମାତ୍ର ଇଂରେଜ ଏ ଦେଶ ଛାଡ଼ିବା ପୂର୍ବରୁ ଭାରତମାତାର ସନ୍ତାନଗଣ ଭାରତକୁ ଖଣ୍ଡ ଖଣ୍ଡ କରିବାର ଚେଷ୍ଟାରେ ଲାଗି ଗଲେଣି । ବଙ୍ଗ ବିଭାଗ ଓ ପଞ୍ଜାବ ବିଭାଗ ତା'ର ପ୍ରଥମ ସୂତ୍ରପାତ । ଉପାୟ ନ ଥିଲାବେଳେ ବିଭାଗ କରିବା ଶ୍ରେୟସ୍କର ବୋଲି ଅନୁମିତ ହୁଏ । ଏହା କରିବା ଦ୍ୱାରା ଭାରତମାତାର କେତେଗୁଡ଼ିଏ ନିରୀହ ସନ୍ତାନର ଧନ ପ୍ରାଣ ଯେବେ ରକ୍ଷାହୁଏ ତାହା ପରମ ଲାଭ । ଏଥିନିମନ୍ତେ ବଙ୍ଗବାସୀ ଓ ପଞ୍ଜାବବାସୀଙ୍କର ଦୃଢ଼ ସଂକଳ୍ପ ଆବଶ୍ୟକ ।

—୦—

ବାଳକ ବାଳିକାମାନେ ପିମ୍ପି ବନାଇଲାବେଳେ ଆମ୍ବଟାକୁ ପଥରରେ ଘଷନ୍ତି ଓ କହନ୍ତି ହାତୀ ଦେବି ଘୋଡ଼ାଦେବି ମୋର ପିମ୍ପି ବାଜ, ବାଜ । ଗାନ୍ଧି ପ୍ରମୁଖ କଂଗ୍ରେସବାଲେ ଜିନ୍ନାକୁ ସ୍ୱମତକୁ ଆଣିବାକୁ ନାନା ପ୍ରଲୋଭନ ଦେଖାଇଛନ୍ତି । ଜିନ୍ନା ନଛୋଡ଼ବନ୍ଧା । ଯେତିକିଦେଲେ ତାଙ୍କର ଲୋଭ ତେତିକି ବଢୁଛି । ଜିନ୍ନା ସହିତ ମିତ୍ରତା ସ୍ଥାପନ କରିବାକୁ ଯାଇ ଏ ଦେଶର ଯେ ଅନେକ କ୍ଷତି ହୋଇଅଛି ତାହା କହିବା ବାହୁଲ୍ୟ ମାତ୍ର । ପାକିସ୍ଥାନ ଜିନ୍ନାଙ୍କର ମୂଳ ମନ୍ତ୍ର ବା ଗୁରୁମନ୍ତ୍ର ଯାହାକି ସେ ବିଲାତି ଗୁରୁଙ୍କଠାରୁ ପାଇଛନ୍ତି । ନେହେରୁ ପ୍ରଭୃତି ଇଣ୍ଟାରିମ ଗଭର୍ଣ୍ଣମେଣ୍ଟର ଖସଡ଼ା କରି ଚଳାଇବାକୁ ବସିଲାବେଳେ ଭାରତହିତୈଷୀ ଓ୍ୟାଭେଲ ଜିନ୍ନାକୁ ନିମନ୍ତ୍ରଣ କରି କଂଗ୍ରେସକୁ ଅନୁରୋଧ କରି ଲିଗମେମ୍ବରମାନଙ୍କୁ ସଭାରେ ପ୍ରବେଶ କରାଇଲେ । ଓ୍ୟାଭେଲ୍ ସାହେବ ନେହେରୁଙ୍କୁ ଲେଖିଲେ ଯେ, ଜିନ୍ନାଦଳ ସହଯୋଗ କରିବେ ସଭାଭଙ୍ଗର ଯତ୍ନ କରିବେ ନାହିଁ । ତହିଁ ପରଦିନ ଜିନ୍ନା କହିଲେ ଯେ ଆମଦଳ ଗଭର୍ଣ୍ଣମେଣ୍ଟରେ ପ୍ରବେଶ କରିଛନ୍ତି, କାର୍ଯ୍ୟ ପର୍ଯ୍ୟବେକ୍ଷଣ ନିମନ୍ତେ-ସହଯୋଗ ନିମନ୍ତେ ନୁହେଁ । କାହା କଥା ସତ ? ବର୍ତ୍ତମାନ ଲାଟ ଜିନ୍ନା ଓ ଗାନ୍ଧିଙ୍କୁ ଡକାଇ ମିତ୍ରତା ସ୍ଥାପନର ଚେଷ୍ଟାକଲେ । ଉଭୟେ ମିଳି ଗୋଟାଏ ଘୋଷଣା କଲେ ଯେ, ହିନ୍ଦୁ ମୁସଲ୍‌ମାନ୍ ଏଣିକି ଅହିଂସା ନୀତି ଅବଲମ୍ବନ କରି ଆନ୍ଦୋଳନ ଚଳାଇବେ । ଘୋଷଣାର ଫଳ ତ ପ୍ରତ୍ୟକ୍ଷ । ବଙ୍ଗଳାରେ, ପଞ୍ଜାବ ଓ ଉତ୍ତରପ୍ରଦେଶରେ ପ୍ରତ୍ୟକ୍ଷ ହିଂସାନୀତି ଚଳୁଅଛି । ବିହାରର ଦୁଇଜଣ ଲିଗ୍‌ନେତା ଗାନ୍ଧିଙ୍କ ସହିତ ସହଯୋଗ ଆନ୍ଦୋଳନ କରିବାକୁ ମତପ୍ରକାଶ କରିବାରୁ ଜିନ୍ନା ସେ ଦୁହିଁଙ୍କ ପ୍ରତି ତୀବ୍ର କଟାକ୍ଷପାତ କରି କହିଲେ ଯେ ମୁସଲ୍‌ମାନ୍ ଲିଗ୍ ପାକିସ୍ତାନର ଚେଷ୍ଟା କରୁଥିବା ବେଳେ ଲିଗ୍‌ନେତାମାନେ ଗାନ୍ଧି ସହିତ ମିଳିତ ହେବାର ଯୁକ୍ତିଯୁକ୍ତ ନୁହେଁ । ଗାନ୍ଧି ଜିନ୍ନାଙ୍କର ଘୋଷଣାର ମୂଲ୍ୟ କାହିଁ ? ତଥାପି ଯେ, ଗାନ୍ଧି ଜିନ୍ନା ଜାଲରେ ନ ପଡ଼ିବେ ଏ ଆଶା ଅତିକମ୍ । ଗାନ୍ଧି ନୀତି ଓ ଜିନ୍ନା ନୀତି ସୁମେରୁ କୁମେରୁ ତୁଲ୍ୟ ପ୍ରଭେଦ । ସେଥିରେ ମିଳନ ଆଶା ବୃଥା ନୁହେଁ କି ?

—୦—

ଆମେମାନେ ପ୍ରଥମରେ ଶଙ୍ଖ ଲେଖାର କାଙ୍ଗାଳ ବୋଲି ମନେ କରିଥିଲୁଁ । ମାତ୍ର ଉତ୍କଳର ନବୀନ ଲେଖକ ଲେଖିକାଙ୍କ ବଦାନ୍ୟତା ଓ ସୌଜନ୍ୟରୁ ଶଙ୍ଖ ସମୃଦ୍ଧିଶାଳୀ । ତାର ଭଣ୍ଡାର ପରିପୂର୍ଣ୍ଣ । ବିତରଣ କରି ଶେଷକରି ହେଉ ନାହିଁ । ଏହି ରଚନା ସମୂହକୁ କିପରି ବିତରଣ କରି ଲେଖକ ଲେଖିକାଙ୍କ ଇଚ୍ଛାପୂରଣ କରିପାରିବୁଁ ଏହା ହେଲାଣି ଆମମାନଙ୍କର ଘୋର ଭାବନାର ବିଷୟ । ପ୍ରତ୍ୟେକେ ଆପଣା ଆପଣା ଲେଖା ଶୀଘ୍ର ବାହାରିବାର ବାସନା କରନ୍ତି । ତାହା କରିବାର କଥା । କାରଣ ସେମାନେ ଶଙ୍ଖ ଭଣ୍ଡାରରେ ପ୍ରବନ୍ଧ, କବିତା, ଗଳ୍ପ ପ୍ରଭୃତି ସାଇତି ହେବା ନିମନ୍ତେ ଲେଖି ନାହାନ୍ତି ବା ଖର୍ଚ୍ଚକରି ପଠାଇ ନାହାନ୍ତି । ଲେଖା ବାହାରିଲେ ସେମାନଙ୍କ ମନ ଖୁସୀ ଏବଂ ଆମମାନଙ୍କର ଦାୟିତ୍ୱରୁ ରକ୍ଷା । ବହୁ ଯତ୍ନରୁ ତାହା ହେଉ ନାହିଁ । ଏଥିର ସାମାନ୍ୟ କୈଫିୟତ ନ ଦେଲେ ଚଳିବ ନାହିଁ । ବର୍ତ୍ତମାନ ଆମମାନଙ୍କ ହାତରେ ତିନିଶତରୁ ଅଧିକ ପ୍ରବନ୍ଧ, ଗଳ୍ପ ଓ କବିତା ଅଛି । କବିତା ସଂଖ୍ୟା ଅଧିକ । ପୁଣି ପ୍ରତିଦିନ ଦି' ଚାରିଟା ହସ୍ତଗତ ହେଉଅଛି । ଏତେଗୁଡ଼ିଏ ଲେଖାରୁ ଭଲ ମନ୍ଦ ବାଛିବା ଯେ କି କଷ୍ଟସାଧ ବ୍ୟାପାର ତାହା ଭୁକ୍ତଭୋଗୀମାତ୍ରେ ଜାଣନ୍ତି ।

ପତ୍ରିକାର ଅବୟବ ଛୋଟ । ପ୍ରତି ସଂଖ୍ୟାରେ ଦଶ ବାରରୁ ଅଧିକ ଲେଖାର ସ୍ଥାନ ନାହିଁ । ଏଣୁ ନିର୍ବାଚିତ ପ୍ରବନ୍ଧ ମଧ୍ୟ ମୁଦ୍ରିତ ହୋଇପାରୁ ନାହିଁ । ଏ ତ୍ରୁଟି ସଂଶୋଧନ କରିବାକୁ ଆମେମାନେ ଯତ୍ପରୋନାସ୍ତି ଚେଷ୍ଟା କରି ସୁଦ୍ଧା ଲେଖକ ଲେଖିକାଙ୍କ ସନ୍ତୋଷ ଭାଜନ ହୋଇପାରୁ ନାହିଁ । ନାନା ଅସୁବିଧା ସତ୍ତ୍ୱେ ଆମେମାନେ ଶଙ୍ଖ ପାଠକମାନଙ୍କୁ ଯୋଗାଇବାରେ ତ୍ରୁଟି କରି ନାହୁଁ । ଆଉ ଗୋଟିଏ ସଂଖ୍ୟା ଉତ୍ତାରେ ଶଙ୍ଖ ନୂତନ ବର୍ଷରେ ପଦାର୍ପଣ କରିବ । ସେତେବେଳେ ଲେଖକ ଲେଖିକାମାନଙ୍କର ସହଯୋଗଦ୍ୱାରା ଅସୁବିଧା ଦୂରୀକରଣର ବିଶେଷ ଚେଷ୍ଟା କରାଯିବ । ଇତିମଧ୍ୟରେ ପ୍ରବନ୍ଧ ସଂଖ୍ୟା ନିର୍ବାଚନଦ୍ୱାରା କମ୍ କରିବାର ଚେଷ୍ଟାରେ ରହିଲୁଁ । ଆମମାନଙ୍କର ତ୍ରୁଟି ମାର୍ଜନୀୟ ।

**ପ୍ରାପ୍ତି ସ୍ୱୀକାର—**

ନିମ୍ନଲିଖିତ ପୁସ୍ତକ ଆମ୍ଭମାନଙ୍କର ହସ୍ତଗତ ହୋଇଛି— ବାରାନ୍ତରେ ତହିଁର ଆଲୋଚନା କରିବୁଁ ।

ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁଙ୍କ ରଚିତ— ଲାଇବ୍ରେରୀ ଆନ୍ଦୋଳନ, ମା', ପ୍ରବାସୀ, କରୁଣା, ପାଶୋରାକାବ୍ୟ, ପରଶ, ମଧୁରେଖା, ମୋହନ, ଧୂଳି, ଆଶୀର୍ବାଦ, ଚିନ୍‌ଦେଶର କଥା ।

ଶ୍ରୀଯୁକ୍ତ ବିନାୟକ ତ୍ରିପାଠୀ ରଚିତ— ନବଦୁର୍ଗ ଗୌରବ ।

ମାସିକ ପତ୍ର— ରଶ୍ମି, ବାଣୀ ।

## ଦ୍ୱିତୀୟ ବର୍ଷ ଦ୍ୱାଦଶ ସଂଖ୍ୟା

କଂଗ୍ରେସର ଅର୍ଦ୍ଧଶତାବ୍ଦୀବ୍ୟାପୀ ଘୋରତର ଆନ୍ଦୋଳନ ଓ ଆତ୍ମତ୍ୟାଗର ଫଳ କି ଦ୍ୱିଖଣ୍ଡିତ ଭାରତବର୍ଷ ? ଭାରତବାସୀର ସାଧନାର ପରିଣତି କି ଏହିଠାରେ ? ସ୍ୱାଧୀନତାର ଆଶା ଭରସା ପଣ୍ଡ ହେଲା ସିନା । ଯେଉଁ ଭାରତବାସୀ ପରଠାରୁ ଦେଶର ନ୍ୟାଯ୍ୟଦାବି ସ୍ୱାଧୀନତାକୁ ଛଡ଼ାଇ ଆଣିବାକୁ ପ୍ରୟାସୀ ଥିଲେ ସେହି ଭାରତବାସୀ ପରଦତ୍ତ କିଞ୍ଚିତ୍ ଦାନଗ୍ରହଣ କରିବାକୁ ଏଡ଼େ ଲୋଲୁପ ହେଲେ କାହିଁକି ? ଯୁଦ୍ଧର ସାମଗ୍ରୀ ବିଦ୍ୟମାନ ଥିବା ସତ୍ତ୍ୱେ ଯୁଦ୍ଧରୁ ନିରସ୍ତ ହେବା ପରାସ୍ତବାଦର ପରିଚାୟକ ନୁହେଁ କି ? କେଉଁ ଲୋଭ କେଉଁ ମୋହ କଂଗ୍ରେସ ନେତାମାନଙ୍କୁ ମାଉଣ୍ଟବେଟନ୍‌ଙ୍କର ପ୍ରସ୍ତାବ ଗ୍ରହଣ କରିବାକୁ ଉତ୍କଣ୍ଠିତ କଲା ? ବ୍ରିଟିଶ ସହିତ ଏତାଦୃଶ ସଖ୍ୟ ସ୍ଥାପନ ଅପେକ୍ଷା ଆଉ କିଛିକାଳ ଦ୍ୱନ୍ଦ୍ୱ ଓ ଯୁଦ୍ଧ ଶ୍ରେୟସ୍କର ଥିଲା ।

ଭାରତମାତା, ତୁ ଚିରକାଳ ଅଯୋଗ୍ୟ ପୁତ୍ର ଜନ୍ମ କରି ଆସିଅଛୁ । ଏଣୁ ତୋର ଦୁଃଖ ଚିର ଅନିବାର୍ଯ୍ୟ । ତୁ ସ୍ୱାଧୀନତା ଲାଭ କରିପାରିବୁ ଏ କ୍ଷୀଣ ଆଶା ହୃଦୟରେ ମାତ୍ର ସ୍ଥାନ ପାଇଥିଲା କିନ୍ତୁ ସେ ଆଶାଙ୍କୁର ନିର୍ମୂଳ ହେବାକୁ ବସିଲା । ତା'ର ପୁତ୍ରମାନେ ଆପଣା ବଳଶକ୍ତି ହ୍ରାସହେଲା ଭାବି ତା'ର ମୁକ୍ତି ଉପାୟରୁ ନିରସ୍ତ ହେଲେ । ବ୍ରିଟିଶ୍ ଭାରତକୁ ବିଖଣ୍ଡିତ କରିବାକୁ ଆଦୌ କ୍ଷମତାପନ୍ନ ନୁହେଁ । ଏଣୁ ଆଜିଯାଏ ଜୋର୍‌ସହିତ କରି ନ ଥିଲା । କଂଗ୍ରେସ ଓ ଲିଗ୍ ଭାଗ କରିଦେବାକୁ ସମ୍ମତ ହେବାରୁ ଭାଗ କରିବାର ପ୍ରସ୍ତାବ ଚାଲିଅଛି ।

କଂଗ୍ରେସ ଜୟୀ କି ଲିଗ୍ ଜୟୀ ? ଲିଗ୍ ବ୍ରିଟିଶ୍‌ଙ୍କୁ କହିଲା ଭାରତକୁ ଭାଗକରି ମୁସଲ୍‌ମାନଙ୍କୁ ତାଙ୍କ ଭାଗ ଦିଅ ଏବଂ ହିନ୍ଦୁଙ୍କୁ ତାଙ୍କ ଭାଗଦେଇ ଏ ଦେଶରୁ ଚାଲିଯାଅ । କଂଗ୍ରେସ କହିଲା ଦେଶକୁ ଭାଗ ନ କରି ଏ ଦେଶତ୍ୟାଗ କର । ବ୍ରିଟିଶ୍‌ର ଭାଗ କରିବାର କ୍ଷମତାଥିଲେ ବହୁଦିନରୁ ତାହା କରିଥାନ୍ତେ ମାତ୍ର ବ୍ରିଟିଶ୍ ଦୁଇ ପକ୍ଷର ମତ ଅନ୍ୱେଷଣ ତତ୍ପର ଥିଲା । ଉଭୟଙ୍କଠାରୁ ଅନୁମତି ପାଇବାକୁ । ୧୯୪୮ରେ ଏ ଦେଶତ୍ୟାଗର ସ୍ୱୀକୃତି ପାଇ ବଡ଼ ବଡ଼ ନେତାମାନେ ଉତ୍‌ଫୁଲ୍ଲ ହୋଇଉଠିଲେ । ମାତ୍ର ଲିଗ୍ ଭାରତ ଭାଗକରି ନ ଦେଲେ ବ୍ରିଟିଶ୍‌ଙ୍କୁ ଛାଡ଼ିବ ନାହିଁ । ଏଣୁ ଚଳିତବର୍ଷ ଅଗଷ୍ଟରେ ଏ ଦେଶତ୍ୟାଗର ଘୋଷଣା କରି କଂଗ୍ରେସଠାରୁ ଦେଶ ବିଭାଗର ସ୍ୱୀକୃତି ମିଳିଲା । ପାକିସ୍ତାନ ଓ ହିନ୍ଦୁସ୍ତାନ ଗଡ଼ା ଲାଗିଲା । ମୁସଲିମ୍ ଲିଗ୍‌ର ଜୟ ହେଲା ।

ମନ୍ଦରୁ ଭଲ । ଦେଶର ଅଙ୍ଗବ୍ୟବଚ୍ଛେଦ ହେଲା ଉତ୍ତାରୁ ଉଭୟ ହିନ୍ଦୁସ୍ତାନ ଓ ପାକିସ୍ତାନ ପରସ୍ପର ପ୍ରତିଯୋଗିତା ଦ୍ୱାରା ଉନ୍ନତି ମୁଖରେ ପ୍ରଭାବିତ ହେବେ କ୍ରମେ ସହାନୁଭୂତି ଆସିବ । ଉଭୟସ୍ଥାନରେ ଲୋକେ ସୁଖ ସ୍ୱଚ୍ଛନ୍ଦରେ ବାସ କରିବେ ଆଶାବାଦୀ ଗାନ୍ଧିଜି ଏବଂ କଂଗ୍ରେସ ନେତାମାନେ ଏ ମତ ପୋଷଣ କଲେଣି । ଏହା ସତକି ? ନୁହେଁ । ମୁସଲିମଲିଗ୍ ସୃଷ୍ଟି ଦିନରୁ, ଲିଗ୍‌ଦଳ ବରାବର କଂଗ୍ରେସର ବିରୋଧତା କରି ଆସିଲେ । ଏଥିରେ ବ୍ରିଟିଶ୍‌ର ମତ ଥିଲା ଓ ଉତ୍ତେଜନା ଥିଲା । ପାକିସ୍ତାନ ପାଇବା ହିଁ ସେମାନଙ୍କର ଏକମାତ୍ର ଲକ୍ଷ୍ୟ । କଂଗ୍ରେସ ତାହା ନିରୋଧ କରି ପାରିଲେ ନାହିଁ । ସହ୍ଲାରେ ଉଭୟଦଳ ଏହିପରି ଭାଗ କରିଥିଲେ ଭଲ । ପରସ୍ପର ମଧ୍ୟରେ ସହଯୋଗ ଓ ସହାନୁଭୂତି ଥାନ୍ତା ମାତ୍ର 'ଲଡ଼କେ ଲେଙ୍ଗେ' ଥିଲା ଲିଗ୍‌ର ପ୍ରତିଜ୍ଞା । ଛୋଟ ଅଂଶ ହେଉ ପଛକେ ଜୋର୍

ଜବରଦସ୍ତିରେ ସେମାନେ ବ୍ରିଟିଶ୍ ହାତରୁ ପାକିସ୍ତାନ ପାଇଲେ । ସୁତରାଂ ଭାରତବାସୀ ଅପର ଜାତିକି ମୁସଲିମ୍ ଲିଗ୍ ଶତ୍ରୁ ବୋଲି ଭାବୁଅଛନ୍ତି । ଏ ମନୋଭାବ କି ଭବିଷ୍ୟତରେ ମଙ୍ଗଳକର ହେବ ? ବଡ଼ଲାଟ୍‌ଙ୍କର ଘୋଷଣାକୁ ଉଭୟଦଳ ମାନି ନେଲା ଉତାରୁ ମଧ ହିନ୍ଦୁ ଉପରେ ଅତ୍ୟାଚାର ତ ବନ୍ଦ ହେଲା ନାହିଁ । ଭବିଷ୍ୟତରେ ବନ୍ଦ ହେବ ବୋଲି କେଉଁ ଆଶା ଅଛି ?

ଯାହାହେଉ ଯେତେବେଳେ ଦେଶ ଭାଗର କୌଶଳ ଚାଲିଛି ଏବଂ ବ୍ରିଟିଶ୍ ମଧ ଦେଶ ତ୍ୟାଗ କରି ନାହିଁ ସେତେବେଳେ ଆମେମାନେ ଅଧିକ କିଛି ଲେଖିବାକୁ ଅଗ୍ରସର ହେବା, ସମୀଚୀନ ନୁହେଁ । ଦେଶର ନେତାମାନେ ଯାହା କରିଗଲେ ତାହା ସ୍ୱୀକାର କରିବାକୁ ହେବ । ଯାହା ହେବାର ଶୀଘ୍ର ହୋଇଯାଉ । ତା ୧୫ ଅଗଷ୍ଟରେ ଇଂରେଜ ଏ ଦେଶ କିପରି ତ୍ୟାଗ କରୁଅଛନ୍ତି ତାହା ଦେଖିବାର ବାସନା ରହିଲା ।

ଦେଶରେ କେବେ ଶାନ୍ତି ବିରାଜମାନ କରିବ, ଉଭୟ ସ୍ଥାନର ଲୋକେ ମିଳିମିଶି ରହିବେ ତାହା ଭବିଷ୍ୟତ ଅନ୍ଧାରରେ ଆଚ୍ଛନ୍ନ । ଲିଗ୍ ଯେ ଅସଂଖ୍ୟ ନରପଶୁ ଜନ୍ମ କରିଅଛି, ସେମାନେ ମନୁଷ୍ୟତ୍ୱ ଲାଭ କରିବା ବଡ଼ ସହଜ ନୁହେଁ । ଖକସାର ଦଳ ଯେ କି ଲିଗ୍ ବିରୋଧୀ ଥିବାର ପ୍ରକାଶ ପାଉଥିଲା, ସେ ପୁଣି ଲିଗ୍ ସ୍ୱୀକୃତ ପାକିସ୍ତାନ ଛୋଟ ହେଲା ବୋଲି ଆଜି ଦ୍ୱନ୍ଦ୍ୱ ଆରମ୍ଭ କଲେଣି । ଏପରି ମନୋବୃତ୍ତି ଯେଉଁ ଦଳର ସେମାନେ ଶାନ୍ତିକାମୀ ହେବେ ବୋଲି କେଉଁ ଆଶା ? ଦେଖାଯାଉ କେତେ ଦିନରେ ଶାନ୍ତି ଆସିବ ।

ଯୁଦ୍ଧତ ବହୁଦିନ ହେଲା ଶେଷ ହେଲା । କଣ୍ଟ୍ରୋଲ କି ଶେଷ ପାଇବ ନାହିଁ । କଣ୍ଟ୍ରୋଲ୍ ପ୍ରଥା ତ ଲୋକଙ୍କୁ ସୁଖସ୍ୱାଚ୍ଛନ୍ଦ୍ୟ ଦେବା ନିମନ୍ତେ । ମାତ୍ର ଆମ୍ଭେମାନେ ଦେଖିପାରୁ ଅଛୁଁ ଯେ ଯୁଦ୍ଧବେଳେ ଲୋକଙ୍କର ଯେ ଅନ୍ନ ବସ୍ତ୍ରର ଅଭାବ ପରିଲକ୍ଷିତ ହେଉଥିଲା ତହିଁରୁ ତିଳେମାତ୍ର ଉନ୍ନତି ଆଡ଼କୁ ଅଗ୍ରସର ହୋଇ ନାହିଁ । ଅନ୍ନାଭାବ ସହିତ ବସ୍ତ୍ରାଭାବର ନିତ୍ୟ ସମ୍ବନ୍ଧପରା ନ ହେଲେ ଏକ ସଙ୍ଗରେ ଲୋକେ ଲଙ୍ଗଳା ହୁଅନ୍ତେ କାହିଁକି ଓ ରୋଗରେ ମରନ୍ତେ କାହିଁକି ? କେହି ବୁଝାଇ ଦେବେ କି ? ବର୍ତ୍ତମାନ ଅବସ୍ଥା ପ୍ରାକୃତିକ କି ଲୋକକୃତ ? ଉଚ୍ଚପଦସ୍ଥ ନେତାମାନେ ବୁଝିଛନ୍ତି ଯେ ସେମାନଙ୍କର କଣ୍ଟ୍ରୋଲ୍ ବ୍ୟବସ୍ଥାରେ ଲୋକେ ସୁଖସ୍ୱାଚ୍ଛନ୍ଦ୍ୟରେ କାଳାତିପାତ କରୁଅଛନ୍ତି ମାତ୍ର ଭୁକ୍ତଭୋଗୀମାନେ ଜାଣନ୍ତି ଯେ ଅନ୍ନକଷ୍ଟ ଓ ବସ୍ତ୍ରକଷ୍ଟ ବର୍ତ୍ତମାନ ଦେଶବାସୀ ବିଶେଷତଃ ଗରିବମାନେ ଯାହା ଭୋଗ କରୁଅଛନ୍ତି ପୂର୍ବେ ଏପରି କେବେ ଘଟି ନ ଥିଲା । ପ୍ରଥମ ମହାସମରରେ ମଧ ଘଟି ନ ଥିଲା । ଏହା ପରା ଉଚ୍ଚ ଧରଣର ଜୀବନ ଧାରଣର ସୂତ୍ରପାତ ? ଦରକାର ନାହିଁ । ଲୋକେ ଗରିବ ଭାବରେ ଥାଇ ଅଣ୍ଟାକୁ ଖଣ୍ଡେବସ୍ତ୍ର ଓ ପେଟକୁ ମୁଠେ ଅନ୍ନ ପାଉନ୍ତୁ ବଡ଼ ସନ୍ତୁଷ୍ଟ ହେବେ । ସୁଖରେ କାଳାତିପାତ କରିବେ ।

—୦—

**Black Market :** ଅନ୍ଧାରୀ ବଜାର କି ଅନ୍ଧା ବଜାର । ଏ ଶବ୍ଦ ପୂର୍ବେ ଶୁଣା ନ ଥିଲା ବୋଇଲେ ଚଳେ । 'କିସ ପୁଣି ଦେଖା ନ ଯାଇ ଯେବେ ଥାଇ ଜୀବରେ ?' କିଏ ଏ ଅନ୍ଧବଜାର ଖୋଲିଲା । ଗଭର୍ଣ୍ଣମେଣ୍ଟର ଉଚ୍ଚକର୍ମଚାରୀମାନେ ନୁହନ୍ତି କି ? ଦୋଷ କି କେବଳ କ୍ରେତା ବିକ୍ରେତାମାନଙ୍କର ? ଅଫିସରମାନେ ନୁହନ୍ତି ? ଭାଗଦାରୀ ଯୌଥ କାରବାର ବୋଲି ମନେ ହୁଏ । ବଡ଼ ଛୋଟଙ୍କ ଅଙ୍କ ବିସ୍ତାର ଲାଭ ଅଛି, ନ ହେଲେ ଏହା ଚଳି ପାରନ୍ତା କିପରି ? ଯେଉଁମାନଙ୍କ ଅନୁମତିକ୍ରମେ ଲୁଗାପଟା ମାଲ ମସଲା ବିକ୍ରି ହୁଏ ସେମାନଙ୍କ ଅଜ୍ଞାତସାରରେ ଅନ୍ଧାବଜାର ତିଷ୍ଠି ପାରେ କି ? ଅନ୍ନ ବସ୍ତ୍ର କଣ୍ଟ୍ରୋଲ ନିମନ୍ତେ ଏତେ କର୍ମଚାରୀ ସତ୍ତ୍ୱେ ଅନ୍ଧାବଜାର ଚଳୁଛି କିପରି ? ଭାରପ୍ରାପ୍ତମାନଙ୍କର ଭାଗ ଏହି ବଜାରରେ ନ ଥିଲେ ତଳିଆ ଲୋକେ ଏହା କେବେ ରଖି ପାରନ୍ତେ ନାହିଁ । ଏଥିର ଉଦାହରଣ ଓ ପ୍ରମାଣ ଯଥେଷ୍ଟ ମାତ୍ର କହୁଛି କିଏ ଶୁଣୁଛି କିଏ ? ଉଦାହରଣସ୍ୱରୂପ କୁହାଯାଇପାରେ ଯେ ପେଟ୍ରଲ ଏ ଦେଶର ଧାନଚାଉଳ ପରି ବିଲରୁ ଉତ୍ପନ୍ନ ହେଉ ନାହିଁ ଯେ କୃଷକମାନେ ଘରେ ସଞ୍ଚୟ କରି ଦର ବଢ଼ାଉଛନ୍ତି ବୋଲାଯିବ । ପେଟ୍ରଲ ଆସୁଛି ଅନ୍ୟ ସ୍ଥାନରୁ ଏବଂ ଯାହାର ଇଚ୍ଛା ସେ ଆଣି ନ ପାରେ । ଗଭର୍ଣ୍ଣମେଣ୍ଟଙ୍କ ଜ୍ଞାତସାରରେ ଏହାର ଆମଦାନୀ । ଏପରି ସ୍ଥଳେ ମଟରଗାଡ଼ି ବାଲାଙ୍କୁ ପେଟ୍ରଲ ମିଳୁ ନାହିଁ ଅଥଚ ବ୍ଲାକମାର୍କେଟରେ ଯଥେଷ୍ଟ । ଟ ୪ ସ୍ଥଳେ ଟ ୧୫ ବା ଅଧିକା ଦିଅ ପେଟ୍ରଲ୍ ବହିଆସିବ । ଏହା ସମସ୍ତଙ୍କ ଜଣା କଣ୍ଟ୍ରୋଲ୍ ନାମରେ ଦୁଷ୍ଟ ଲୋକଙ୍କ ପେଟ ପୋଷିବାର ଅର୍ଥ ବୁଝା ଯାଉ ନାହିଁ । ଆଶା କରାଯାଏ ନୂତନ ଗଭର୍ଣ୍ଣମେଣ୍ଟ ସର୍ବସାଧାରଣଙ୍କର ମଙ୍ଗଳ ନିମନ୍ତେ ଶୀଘ୍ର କଣ୍ଟ୍ରୋଲ୍ ପଦ୍ଧତି ଉଠାଇ ଦେବେ ସଙ୍ଗେ ସଙ୍ଗେ ଅନ୍ଧାବଜାରର ନିରୋଧ ଓ ଉତ୍କୋଚ ଗ୍ରହଣ ଏକବାରିକ ବନ୍ଦ କରିବେ । ଉତ୍କୋଚ ଗ୍ରହଣ ଏ ଦେଶର ଅଲେଖ ନିୟମ ହେଲା ପରି ବୋଧ ହୁଏ ।

ଯାହା ହେବାର ହେଲା ଏଥିରେ ବାଦ କଲେ ବା ଦୁଃଖ ପ୍ରକାଶ କଲେ ଲାଭ ନାହିଁ । ନେହେରୁଙ୍କ ଅନୁରୋଧ କ୍ରମେ ସମସ୍ତ ଦେଶବାସୀ ସହଯୋଗ ସହକାରେ ପୂର୍ଣ୍ଣ ସ୍ୱାଧୀନ ଲାଭାଶାରେ ଦୃଢ଼ବ୍ରତ ଆଚରଣ କରନ୍ତୁ ।

ବଙ୍ଗ ବିଭାଗ ନିଶ୍ଚୟ ହେବ ତାର କାର୍ଯ୍ୟାରମ୍ଭ ହେଲାଣି । ବିଭିନ୍ନ ଭାଷା ଭାଷୀଙ୍କର ସ୍ଥାନ ସମ୍ବନ୍ଧରେ ବିଚାର ହେବ । ଭାଗ ନିଶ୍ଚୟ କରିବା ମେମ୍ବର ନିଯୁକ୍ତ ମଧ୍ୟ ହେଲେଣି । ଏହି କମିଟିରେ ଓଡ଼ିଆର ନାମ ଥିଲା ପରି ବୋଧ ହେଉ ନାହିଁ ଯେ କି ଓଡ଼ିଆ ସପକ୍ଷରେ ଦୁଇ ପଦ କହିବ । ଭାଗହେଲା ଉତାରୁ ପରେ ପୁଣି ବିଚ୍ଛିନ୍ନ ଅଞ୍ଚଳର ବିଚାର ସମ୍ଭବ ନୁହେଁ । ଓଡ଼ିଶା ମନ୍ତ୍ରୀମାନେ ପ୍ରାଣପଣେ ଲାଗିବେ କି ? ହେଲାରେ ଭେଳା ବୁଡ଼େ । ନାଥଯୋଗୀମାନେ ଗୀତ ଗାଆନ୍ତି "ପାଣି ଥାଉଁ ବନ୍ଧ ବାନ୍ଧରେ କୁମର ପାଣି ସୁଖିଗଲେ କି ବନ୍ଧ ବାନ୍ଧିବୁ, ସବୁ ହେବ ନାରଖାର । ଗୀତଟା ଠିକ୍ ମନେ ନାହିଁ । କଥାଟା ସମ୍ପୂର୍ଣ୍ଣ ସତ୍ୟ । ଉତ୍କଳ ମନ୍ତ୍ରୀ ନିଶ୍ଚେଷ୍ଟ ରହିଲେ ବିଚ୍ଛିନ୍ନାଞ୍ଚଳ ଆନୟନର ଆଶା ନିର୍ମୂଳ ହେବ ।

'ଶଙ୍ଖ' ଦ୍ୱିତୀୟ ବର୍ଷର ଶେଷ ସଂଖ୍ୟା ବାହାରିଲା । କୃତକାର୍ଯ୍ୟ ହେବାର ଆଶା କମ୍ ଥିଲା । ବହୁଯତ୍ନରେ ଏବଂ ଲେଖକ ଲେଖିକାମାନଙ୍କର ସହଯୋଗରେ ଏବଂ ଗ୍ରାହକମାନଙ୍କର ସହାନୁଭୂତି ହେତୁ ଆମେମାନେ ଉତ୍ସାହିତ ଓ ସଫଳକାମ ହୋଇଅଛୁଁ ମାତ୍ର । ଏଥିନିମନ୍ତେ ଲେଖକ ଲେଖିକା ଗ୍ରାହକ ଓ ପାଠକ ପାଠିକାମାନଙ୍କୁ ଆମମାନଙ୍କର ଆନ୍ତରିକ ଧନ୍ୟବାଦ । ଆଶାକରୁଁ ଏଭଳି ସହାନୁଭୂତି ଓ ସହଯୋଗ ଦ୍ୱାରା 'ଶଙ୍ଖକୁ' ବଞ୍ଚାଇ ରଖିବେ ଏବଂ ତାର ଉତ୍ତରୋତ୍ତର ଶ୍ରୀବୃଦ୍ଧି ନିମନ୍ତେ ଯତ୍ନଶୀଳ ହେବେ ।

ପ୍ରକୃତ ଉନ୍ନତିକର ଅନୁଷ୍ଠାନରେ ନାନା ବାଧାବିଘ୍ନ ଉପସ୍ଥିତ ହୁଏ ଏହା କିଏବା ନ ଜାଣେ । ଆଜିକାଲି ସମ୍ପାଦକମାନେ ନିଜର ଦାୟିତ୍ୱରକ୍ଷା ନିମନ୍ତେ କି ହଇରାଣ ହେଉଅଛନ୍ତି ତାହା ଭୁକ୍ତଭୋଗୀ କେବଳ ଜାଣନ୍ତି । କାଗଜର ଅଭାବ କିମ୍ବା ଯଥାସମୟରେ କାଗଜ ଅପ୍ରାପ୍ୟ ଯୋଗୁଁ ପତ୍ରିକା ସବୁ ରୀତିମତ ଏବଂ ଯଥା ସମୟରେ ପ୍ରକାଶିତ ହୋଇପାରୁ ନାହିଁ । କଣ୍ଟ୍ରୋଲ୍ ବିଭ୍ରାଟ କେବେ ଯିବ କିଏ ଜାଣେ ? ମୁସଲ୍‌ମାନ ଦଙ୍ଗାହାଙ୍ଗାମା କେବେ ଶେଷ ପାଇବ ତାହା ବା କିଏ କହିପାରିବ ? ବ୍ୟବସାୟୀମାନଙ୍କ ଠାକୁ ପତ୍ର ଲେଖିଲେ ଉକ୍ତ ଉଚ୍ଚୋହାତରେ କିଛି ଯୋଗାଉ ନାହାନ୍ତି । ଏଥର ଶଙ୍ଖର ପ୍ରଚ୍ଛଦପଟ ଶେଷ । ବାଧ ହୋଇ ସାଧାରଣ ପ୍ରଚ୍ଛଦରେ ପ୍ରକାଶ କରିବାକୁ ବାଧ ହୋଇଅଛୁଁ ।

ଆଶାଥିଲା ତୃତୀୟ ବର୍ଷ ପ୍ରଥମ ସଂଖ୍ୟାକୁ ସୁନ୍ଦର କରି ପ୍ରକାଶ କରିବାକୁ, ମାତ୍ର କାଗଜ ଅଭାବ ଓ ପ୍ରଚ୍ଛଦ ପଟର ଅଭାବରୁ ମନୋମତ ପ୍ରକାଶ କରି ପାରୁ ନାହିଁ । ଦୁଃଖର କଥା ।

ଏ ଦେଶରେ ଲେଖକ ଲେଖିକା ଅନେକ । ଦେଖି ହୃଦୟ ଆନନ୍ଦପୂର୍ଣ୍ଣ ହୁଏ । ଅନେକଗୁଡ଼ିଏ ପତ୍ରିକା ପୂରଣ ହୋଇପାରନ୍ତା କିମ୍ବା ଖଣ୍ଡକେତେ ବଡ଼ ପତ୍ରିକାର ଆବୟବ ପୂରଣ ହୋଇପାରନ୍ତା ମାତ୍ର, ଦୁର୍ଯୋଗ ତାହା କରାଇ ଦେଉ ନାହିଁ । ଅଚିରେ ଶାନ୍ତି ଆସିଲେ ଲେଖକ, ପାଠକ ଓ ସମ୍ପାଦକର କାମନାପୂର୍ଣ୍ଣ ହେବ ନିଶ୍ଚୟ ।

ଲେଖକମାନଙ୍କୁ ଅନୁରୋଧ ସେମାନେ ପତ୍ରିକାମାନଙ୍କରେ ଲେଖା ଶୀଘ୍ର ନ ବାହାରିବାରୁ ହତାଶ ହେବେ ନାହିଁ । ଲେଖିଲେ ହିଁ ସେମାନଙ୍କର ଉନ୍ନତି । ଛପା ନ କରିବା ସମ୍ପାଦକମାନଙ୍କର ନାନା ପ୍ରତିବନ୍ଧକରୁ ଅପାରଗତା ଏବଂ ତାହା ମାର୍ଜନୀୟ ।

ଲେଖକମାନଙ୍କୁ ବିଶେଷ ଅନୁରୋଧ ଯେ, ସେମାନେ ସମ୍ପାଦକର ମନ୍ତବ୍ୟ ଜାଣିବା ନିମନ୍ତେ ପ୍ରବନ୍ଧ ସହିତ କାର୍ଡ଼ ବା ଟିକଟ ପଠାଇ ସମ୍ପାଦକଙ୍କୁ ବିବ୍ରତ କରିବେ ନାହିଁ । ଲେଖା ପ୍ରାପ୍ତମାତ୍ରେ ତାହା ପାଠକରି ଗୋଟାଏ ତରତରିଆ ମତ ଦେବା ସମ୍ପାଦକର କାର୍ଯ୍ୟ ନୁହେଁ । ପ୍ରାପ୍ତ ଲେଖାମାନ ଆମେମାନେ ରେଜେଷ୍ଟରି ଭୁକ୍ତ କରି ରଖିଥାଉଁ ଏବଂ ପ୍ରବନ୍ଧମାନ ନଷ୍ଟ କରୁ ନାହିଁ । ମାସକପରେ ଯେବେ ଲେଖା ନ ବାହାରେ ତେବେ ତାର ଅନୁସନ୍ଧାନ କରିବାକୁ ଲେଖକମାନେ ନ୍ୟାୟବାନ୍ । ପ୍ରବନ୍ଧ ଫେରାଇ ନେବା ନିମନ୍ତେ ଅନୁରୋଧ କଲେ ତାହା ଫେରାଇ ଦିଆଯିବ ମାତ୍ର ଏଥିପାଇଁ କି ଟିକଟ ପଠାଇବାକୁ ହେବ ।

ଆଲୋକ ନାମକ ପତ୍ରିକା କଲିକତାରେ ସମ୍ପାଦିତ ହେଉଥିବାର ଦେଖି ଆମେମାନେ ଆଶାନ୍ୱିତ ହୋଇଅଛୁଁ । ଏପରି ଖଣ୍ଡେ ପତ୍ରିକା ବହୁ ଆଗରୁ ବାହାରିବାର ଦରକାର ଥିଲା । ଏବେ ଏ ପତ୍ରିକାଦ୍ୱାରା ଓଡ଼ିଆ ପ୍ରବାସୀମାନଙ୍କର ମଙ୍ଗଳ ହେବ ସନ୍ଦେହ ନାହିଁ; ଆମେ ଏ ପତ୍ରିକାର ସର୍ବବିଧ ଉନ୍ନତି କାମନା କରୁଁ ।

## ତୃତୀୟବର୍ଷ ପ୍ରଥମ ସଂଖ୍ୟା

'ଶଙ୍ଖ' ତୃତୀୟବର୍ଷରେ ପଦାର୍ପଣ କଲା । ଲେଖକ, ଲେଖିକା, ପାଠକ, ପାଠିକାମାନଙ୍କର ସହାନୁଭୂତି ଓ ସଦିଚ୍ଛାରୁ

କେବଳ ଆମେମାନେ ତା'ର ପରିଚାଳନାରେ କ୍ଷମ ହୋଇଅଛୁଁ । ଏଥିନିମନ୍ତେ ଲେଖକ ଲେଖିକା ଓ ପାଠକ ପାଠିକାମାନେ ଧନ୍ୟବାଦର ପାତ୍ର ଅଟନ୍ତି । ଚଳିତବର୍ଷ ଆମେମାନେ ଶଙ୍ଖ ନିମନ୍ତେ ପାଠକ ପାଠିକା, ଲେଖକ, ଲେଖିକାମାନଙ୍କର ସେହିପରି ସହାନୁଭୂତି ଓ ସଦିଚ୍ଛା ଏବଂ ଉତ୍କଳସୁଧୀବର୍ଗଙ୍କର ଶୁଭାଶୀର୍ବାଦ ପାଇବାର କାମନା କରୁଁ ।

ସର୍ବପ୍ରକାର ଦୁର୍ଦ୍ଦଶା ଭାରତକୁ ଘୋଟିଛି । ଅନ୍ନବସ୍ତ୍ରର ଅଭାବ ସଙ୍ଗେ ସଙ୍ଗେ ଜ୍ଞାନବୃଦ୍ଧିର ପନ୍ଥାରେ ମଧ ବାଧା ଘଟୁଛି । ଭାବ ବିନିମୟ ନିମନ୍ତେ ପତ୍ର ପତ୍ରିକା ପ୍ରଚାର ପ୍ରୟୋଜନ । କଣ୍ଟ୍ରୋଲ୍ ପ୍ରସାଦରୁ ସମ୍ପାଦକମାନଙ୍କୁ କାଗଜ ମିଳୁ ନାହିଁ । ମାସିକପତ୍ର-ସମ୍ବାଦପତ୍ର ପ୍ରକାଶ ପାଇବ କି ଉପାୟରେ ? କାଗଜ ଯୋଗାଡ଼ ନ କରି ସମ୍ପାଦକ ହେବା ବିଡ଼ମ୍ବନା ସିନା । କେତେଟା ପତ୍ର ଉଦୟ ହୋଇ ଅସ୍ତୋନ୍ମୁଖ ହେଲାପରି ବୋଧ ହୁଏ । ଦୋଷ କାର ? କଣ୍ଟ୍ରୋଲକାରୀ ଗଭର୍ଣ୍ଣମେଣ୍ଟର । ଦେଶରେ କାଗଜକଳ ଯଥେଷ୍ଟ ଅଛି, ଘାସ ବାଉଁଶର ତ ଅଭାବ ନାହିଁ । ତେବେ କାଗଜର କଟକଣା କାହିଁକି ? ଏ ଦେଶରେ ଯଥେଷ୍ଟ କାଗଜ ନ ଥିଲେ, ବିଦେଶରୁ ଅଣାଯାଉ ମାତ୍ର ମନ୍ତବ୍ୟ ପ୍ରକାଶର ସ୍ୱାଧୀନତାରୁ ଲୋକଙ୍କୁ ବଞ୍ଚିତ କରା ନ ଯାଉ ।

ସମ୍ପାଦକମାନେ ଯତ୍ନରେ ତ୍ରୁଟି କରୁ ନାହାନ୍ତି ମାତ୍ର ଅଭାବନୀୟ ପ୍ରତିବନ୍ଧକ ପ୍ରତି ସେମାନେ ନାଚାର ।

ଦୁର୍ମୂଲ୍ୟ କାଳ ଉପସ୍ଥିତ । ସମ୍ବାଦପତ୍ର ଓ ମାସିକ ପତ୍ରମାନଙ୍କର ଗ୍ରାହକ ସଂଖ୍ୟା କମ୍ ହେଲେ ଚଳିବ କିପରି ? ବଙ୍ଗଦେଶ ତୁଳନାରେ ଏ ଦେଶର ଗ୍ରାହକ ସଂଖ୍ୟା ଅତି କମ୍ । ଦୈନିକ, ସାପ୍ତାହିକ ଓ ମାସିକ ପତ୍ରର ପ୍ରଚାର ଏବଂ ଗ୍ରାହକ ସଂଖ୍ୟାଦ୍ୱାରା ସଭ୍ୟତା ଓ ଶିକ୍ଷାର ପରିଚୟ ମିଳେ ଏବଂ ଏସବୁର କ୍ରମବୃଦ୍ଧି ସଙ୍ଗେ ସଙ୍ଗେ ସାହିତ୍ୟିକ ଓ ଜାତୀୟ ପ୍ରଗତିର ଆଶା ସଞ୍ଚାର ହୁଏ ।

ତା ୨୮ ଜୁଲାଇର ଅମୃତବଜାର ପତ୍ରିକାରେ ପ୍ରକାଶିତ ଶ୍ରୀ ବୀରେନ୍ଦ୍ର କୁମାର ଦେ, ବି.ଏ., ଏ ଲିଖିତ ପତ୍ର ଏବଂ ସମ୍ପାଦକୀୟ ମନ୍ତବ୍ୟ ପାଠ କରି ଦୁଃଖାନୁଭବ କଲୁଁ ଓ ବିଶେଷ ଚିନ୍ତିତ ହୋଇଅଛୁଁ । ପୂର୍ବେ ଏପରି କଥା ଶୁଣା ନ ଥିଲା । ବର୍ତ୍ତମାନ ବଙ୍ଗ ଏବଂ ଓଡ଼ିଆ ବିଦ୍ୱେଷ ସୂତ୍ରପାତ କି ଭାରତ ସ୍ୱାଧୀନତାର ଫଳ ? ପତ୍ର ଲେଖକ କେଉଁ ଦୋଷ ଯେ ଓଡ଼ିଆ ଉପରେ ଅଜାଡ଼ି ନାହାନ୍ତି ତାହା ଦିଶୁ ନାହିଁ । ସ୍କୁଲ କଲେଜର ଛାତ୍ରମାନଙ୍କଦ୍ୱାରା ସ୍ତ୍ରୀଲୋକମାନେ ଅବମାନିତ ଓ ଦୂଷିତ ହେବାର ଏବଂ ସ୍କୁଲ କଲେଜ ଛାତ୍ରମାନେ ଅଶିକ୍ଷିତ ସର୍ବସାଧାରଣଙ୍କୁ ବଙ୍ଗାଳୀ ବିରୋଧରେ କାର୍ଯ୍ୟ କରିବାକୁ ଶିକ୍ଷା ଦେଉଥିବାର ସେ ଲେଖନ୍ତି । ସ୍କୁଲ କଲେଜ ଛାତ୍ରମାନଙ୍କର ଉନ୍ନତି ଓ ସତ୍‌କାର୍ଯ୍ୟର କଥା ଶୁଣିଲେ ହୃଦୟ ପ୍ରଫୁଲ୍ଲ ହୋଇଉଠେ । ସେମାନଙ୍କର ନିନ୍ଦା ମର୍ମବେଦନା ଦିଏ । ସତେ କି ପୁରୀର ଛାତ୍ରମାନେ ଏପରି ଅସତ୍ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛନ୍ତି । ପତ୍ରର ମର୍ମ ମିଥ୍ୟାବୋଲି ମନେ ହୁଏ । ତଥାପି ଯେବେ କିଛି ସତ୍ୟ ଥାଏ, ତେବେ ଯେଉଁ ଛାତ୍ରମାନେ କିଛି ହିଁ ଦୋଷ କରିଛନ୍ତି—ସେମାନଙ୍କର ଉଚିତ ଯେ, ସେମାନେ ମୁକ୍ତକଣ୍ଠରେ ଦୋଷ ସ୍ୱୀକାର କରି ନିଜକୁ ଦୋଷମୁକ୍ତ କରନ୍ତୁ ଏବଂ ଓଡ଼ିଆ ମୁଖରେ କାଳିମା ଲେପନ କରନ୍ତୁ ନାହିଁ ।

ଶ୍ରୀ ବୀରେନ୍ଦ୍ର କୁମାର ଓଡ଼ିଶାର ପୋଲିସ୍‌ଙ୍କୁ ଦୋଷୀଙ୍କ ସହିତ ଜଡ଼ିତ କରିଅଛନ୍ତି । ଯେ କୌଣସି ସ୍ତ୍ରୀ ପ୍ରତି ଅତ୍ୟାଚାର ହେଲେ ପୋଲିସ୍ ଦୋଷୀକୁ ବାରଣ ନ କରି ବରଂ ଅପମାନ କରିବାକୁ ଇଙ୍ଗିତ ଦିଅନ୍ତି । ଅର୍ଥାତ୍ ଦୋଷୀ ଓ ପୋଲିସ୍ ବଙ୍ଗାଳୀ ନିର୍ଯାତନାରେ ଓ ଅପମାନ କରିବାରେ ଏକମତ । ବଙ୍ଗାଳୀଙ୍କଠାରୁ ବେଶୀ ଦାମ ନେଇ ପଦାର୍ଥ ଦିଆଯାଏ । ସାମାନ୍ୟ କଥାରେ ବଙ୍ଗାଳୀଙ୍କି ବଜାର ଓ ସଡ଼କରେ ଓଡ଼ିଆମାନେ ଅପମାନ କରନ୍ତି ଏବଂ ମାଡ଼ ମଧ ଦିଅନ୍ତି ।

ଏହି ପତ୍ରର ମର୍ମ ଏହି ଯେ ଓଡ଼ିଆମାନଙ୍କର ବଙ୍ଗାଳୀ ବିଦ୍ୱେଷ ବଦ୍ଧମୂଳ ହେଉଅଛି ଏବଂ ଶିକ୍ଷିତ ଲୋକେ ଏପରି କରୁଅଛନ୍ତି । କାହିଁକି ? ପୂର୍ବେ ତ କେବେ ଶୁଣା ନ ଥିଲା, ଏବେ ଏ ଦୁର୍ଦ୍ଦଶା କାହିଁକି ? ଏ ପତ୍ରରେ କି ଗୂଢ଼ ନୀତି ଅନ୍ତର୍ନିହିତ ଅଛି । ମନ୍ତ୍ରୀମାନେ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ବୁଝିବେ ଏବଂ ଏସବୁ ବିଷୟରେ ସାବଧାନ ହେବାକୁ ଦେଶବାସୀଙ୍କି ଶିକ୍ଷା ଦେବେ । ଝିମାଣି ଖେଳରୁ ମହାଭାରତ । ଶ୍ରୀ ବୀରେନ୍ଦ୍ରଙ୍କର ପତ୍ରରୁ ଓଡ଼ିଆ ବଙ୍ଗାଳୀ ବିଦ୍ୱେଷର ସୂତ୍ରପାତ ନ ହୁଏ ଏବଂ ଓଡ଼ିଆର ଅନିଷ୍ଟ ନ ହୁଏ । ଦୁଃଖର କଥା ଯେ 'ଅମୃତ ବଜାର' ପତ୍ରିକାର ସମ୍ପାଦକ, ଶ୍ରୀ ବୀରେନ୍ଦ୍ରଙ୍କର ଅପ୍ରମାଣିତ ଏ ଅସଙ୍ଗତ ପତ୍ର ଉପରେ ବିଶ୍ୱାସ ସ୍ଥାପନ କରି ଦୁଇପଦ ଅଯଥା ମନ୍ତବ୍ୟ ପ୍ରକାଶ କଲେ । ଶ୍ରୀ ବୀରେନ୍ଦ୍ର ଦେ ପୁରୀର କୌଣସି ଘଟନା ଦୃଷ୍ଟିରେ ଏତେଗୋଟ଼ାଏ କଳ୍ପନା କରିପାରିଲେ କିପରି ? ପୁରୀରେ ଅନେକ ଚଗଲା ଛୋଟଲୋକ ଅଛନ୍ତି ତାହା ସତ । ଘଟଣାକ୍ରମେ କେହି ଚଗଲା ଅସଙ୍ଗତ କଥା କହି, ଅନ୍ୟାୟ ଦୃଷ୍ଟି ସ୍ତ୍ରୀ ଉପରେ ଦେଇ ପାରିଥାଏ । ଏଥି ନିମନ୍ତେ ସମସ୍ତ ଓଡ଼ିଆ ନିନ୍ଦନୀୟ, ସମସ୍ତ

ଓଡ଼ିଆ ଚରିତ୍ରଭ୍ରଷ୍ଟ ଓ ବଙ୍ଗାଳୀ ବିଦ୍ୱେଷୀ ? ପଥରେ ଘାଟରେ ବଜାରରେ ବଙ୍ଗାଳୀଙ୍କି ଅତି ସାମାନ୍ୟ କାରଣରୁ ଓଡ଼ିଆମାନେ ମାଡ଼ମାରିବା ଅପମାନ ଦେବା, ଆଜିକାଲି ଏଡ଼େ ସହଜ ହୋଇପଡ଼ିଲା କି ? ସ୍କୁଲ କଲେଜର ଛାତ୍ରମାନେ କେବେ ଏତେ ବିପଥଗାମୀ ହେଲେ ଯେ, ସମୁଦ୍ରକୂଳକୁ ଯାଇ ବଙ୍ଗ ଦେଶର ଯୁବତୀମାନଙ୍କୁ କାର୍ଯ୍ୟଦ୍ୱାରା ଓ ବାକ୍ୟଦ୍ୱାରା ଅପମାନ ଓ ଅମର୍ଯ୍ୟାଦା କରୁଅଛନ୍ତି । କେଉଁ ପୁରପଲ୍ଲୀକୁ ଯାଇ ଶ୍ରୀ ବୀରେନ୍ଦ୍ର ଯେ ଜାଣିପାରିଲେ ବଙ୍ଗାଳୀ ବିରୋଧରେ ଏ ଦେଶରେ ପ୍ରଚାର କାର୍ଯ୍ୟ ଲାଗିଛି ? ଏତେଗୋଡ଼ାଏ ଦୋଷଜନକ କାର୍ଯ୍ୟ ଓଡ଼ିଆମାନେ କରୁଥିବାର ଆମମାନଙ୍କର ଆଦୌ ବିଶ୍ୱାସ ନାହିଁ । ଉଭୟ ପ୍ରଦେଶର ମନ୍ତ୍ରୀଙ୍କ କାନକୁ ଯେତେବେଳେ ଏକଥା ଗଲାନି, ସେତେବେଳେ କଥା ସାମାନ୍ୟ ବୋଲି ଭାବିବା ଉଚିତ୍ ନୁହେଁ । ପଛକୁ ମନ୍ଦ ଫଳ ଫଳିବ । ଆମମାନଙ୍କ ମତରେ ଛାତ୍ରମାନେ ଦୋଷ ପ୍ରକ୍ଷାଳନ ନିମନ୍ତେ ବଦ୍ଧପରିକର ହୋଇ, ଦୋଷଥିଲେ ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତୁ ଏବଂ ପ୍ରକୃତ ଘଟନାର ପ୍ରଚାର କରନ୍ତୁ 'ଅମୃତବଜାର' ପତ୍ରିକାରେ । ଚିଫ୍‌ମିନିଷ୍ଟରଙ୍କୁ ଅନୁରୋଧ ଯେ ଶ୍ରୀ ବୀରେନ୍ଦ୍ର ଦେଙ୍କ ପତ୍ରକୁ ମନୋଯୋଗ ସହିତ ପାଠକରି, ଭଲ ତଦନ୍ତ ଆରମ୍ଭ କରନ୍ତୁ । ଦୋଷୀଥିଲେ ଦଣ୍ଡ ଦିଅନ୍ତୁ ଏବଂ ତଦନ୍ତର ଫଳ ବଙ୍ଗୀୟମାନଙ୍କ ଅବଗତି ନିମନ୍ତେ 'ଅମୃତବଜାର' ପତ୍ରିକାରେ ପ୍ରକାଶ କରନ୍ତୁ । ଜଣେ ବା ଜଣକେତେ ଚଗଲାଙ୍କ କାର୍ଯ୍ୟ ନିମନ୍ତେ ସମସ୍ତେ ଓଡ଼ିଆଜାତି ନିନ୍ଦିତ ହେବେ କାହିଁକି ?

ଗାନ୍ଧିଜି ପ୍ରତି ସନ୍ଧ୍ୟାରେ ପ୍ରାର୍ଥନା ଉତାରୁ ଅନେକ କଥା ଶ୍ରୋତାମାନଙ୍କୁ ଶୁଣାଇ ଥାଆନ୍ତି ଏବଂ ଅନେକ କଥା ହରିଜନ ପତ୍ରିକାରେ ଲେଖି ଥାଆନ୍ତି । ତାଙ୍କର ପ୍ରତ୍ୟେକ ଉକ୍ତି ଯେ ଚିତ୍ତାକର୍ଷକ ଓ ଶିକ୍ଷଣୀୟ ତାହା ନୁହେଁ । ଦିନେ କହିଲେ ଯେବେ ପନ୍ଦର ବର୍ଷର ବାଳିକା ଇଂଲଣ୍ଡର ରାଣୀ ହୋଇପାରେ, ତେବେ ଜଣେ ହରିଜନ ବାଳିକା ଭାରତର ଶାସନକର୍ତ୍ତ୍ରୀ ହୋଇପାରିବ ନାହିଁ କାହିଁକି ? କୁଇନ୍ ଭିକ୍ଟୋରିୟା ସହିତ ହରିଜନ ବାଳିକାର ତୁଳନା । ଏ ଉକ୍ତିର ପ୍ରୟୋଜନ କ'ଣ ? ଏଥିରେ କି ବିଦ୍ରୂପର ଆଭାସ ନାହିଁ ବା ହିଂସାର ଗନ୍ଧ ନାହିଁ ? ଲର୍ଡ଼ମାଉଣ୍ଟ ବେଟନଙ୍କ ନିଯୁକ୍ତି ପରା ଜଣେ ଚପ୍ରାସିର ନିଯୁକ୍ତି ସହିତ ସମାନ । ଇଚ୍ଛାକଲେ ଚପ୍ରାସିପରି ତାଙ୍କୁ ନିକାଲି ଦିଆଯାଇପାରେ । ସତ କି ? ତେବେ ଜଣେ ଚପ୍ରାସି ଗାନ୍ଧିଜୀଙ୍କ ପାଖକୁ ବା ନେହେରୁଙ୍କ ପାଖକୁ ଆସଯା କରେ, ମାତ୍ର ଗାନ୍ଧିଜୀ ଗଭର୍ଣ୍ଣର ଜେନେରାଲଙ୍କ ପାଖକୁ ଧପଟିବାର ଜଣାଯାଏ । ପ୍ରଭେଦ ଏତିକି । ଲର୍ଡ଼ ଚପ୍ରାସି ରାଜାମାନଙ୍କୁ ଯେଉଁ ଉପଦେଶ ଦେଲେ ଏବଂ ସେଥିରେ ଯେ ଗୂଢ଼ନୀତି ଅନ୍ତର୍ନିହିତ ଅଛି, ଏବଂ ଭବିଷ୍ୟତରେ ତା'ର କି ଫଳ ଫଳିବ ତାହା ଭାବନାର ବିଷୟ ।

ଚପ୍ରାସି ଭଳିଆ ପଛେ ହେଉ ଲର୍ଡ଼ମାଉଣ୍ଟ ବେଟନ ଗଭର୍ଣ୍ଣର ଜେନେରାଲ୍ ରହିଲେ । ଦୁଇ ଚାରିଟି ଇଂରେଜ ଗଭର୍ଣ୍ଣର ରହିବେ । ସିଭିଲିୟାନ୍ ଜଣକେତେ ରହିବେ । କମେଣ୍ଡାର ଚିଫ୍ ଉଭୟ ଡୋମିନିୟନରେ ସୈନ୍ୟ ଚାଳକ ରହିଲେ । ପଟେଲ ଖୋଦ୍ ନୀତିଜ୍ଞବୋଲି ସାର୍ଟିଫିକେଟ ପାଇଲେ । ୧୫ ଅଗଷ୍ଟରେ ସ୍ୱାଧୀନତା ଲାଭର ପତାକା ଉଡ଼ିବ । ଦେଶବ୍ୟାପୀ ମହୋତ୍ସବ ହେବ । ଅଗଷ୍ଟ ବଡ଼ ବିଷମ ମାସ, ଏହି ମାସରେ ଅନେକ ମର୍ମବିଦାରକ ଘଟନା ଘଟିଯାଇଛି । ଭବିଷ୍ୟତ କଥା କେଜାଣେ ?

The Servant of India Society ର ବାର୍ଷିକ ରିପୋର୍ଟ ବିଳମ୍ବରେ ଆମମାନଙ୍କର ହସ୍ତଗତ ହୋଇଥିଲା । ଏଣୁ ଯଥାସମୟରେ ତତ୍ସମ୍ବନ୍ଧେ ମନ୍ତବ୍ୟ ପ୍ରକାଶ କରିବାକୁ ଅକ୍ଷମ ହୋଇ ଦୁଃଖ ପ୍ରକାଶ କରୁଅଛୁଁ ।

ଭାରତ ସେବକ ସମିତିର ପ୍ରତିଷ୍ଠାତା ସ୍ୱନାମଧନ୍ୟ ଜି, କେ, ଗୋଖଲେ । ଏହି ସମିତି ୧୯୦୫ ରେ ପ୍ରତିଷ୍ଠିତ ହୋଇଥିଲା । ଯେଉଁ ମହତ୍ ଉଦ୍ଦେଶ୍ୟରେ ଏହି ସମିତିର ପ୍ରତିଷ୍ଠା ତାହା ଅଦ୍ୟାପି ପ୍ରତିଷ୍ଠାତାଙ୍କର ଇଚ୍ଛା ଅନୁସାରେ ପାଳିତ ହୋଇ ଆସୁଅଛି । ଏହା ଗୌରବର ବିଷୟ । ଏହି ସମିତିର ପରିଚାଳକ ଓ ସଭ୍ୟମାନଙ୍କର କର୍ମନିଷ୍ଠା ଓ ସ୍ୱାର୍ଥତ୍ୟାଗ ଅତୀବ ପ୍ରଶଂସନୀୟ । ସର୍ବସାଧାରଣ ଏ ସମିତିର ସମ୍ବନ୍ଧେ ବିଶେଷ କିଛି ଜାଣନ୍ତି ନାହିଁ । ଭିତରେ ଭିତରେ ବିନା ଆଡ଼ମ୍ବରରେ ଦେଶବାସୀଙ୍କ ପାଇଁ ବହୁ ହିତକର କାର୍ଯ୍ୟ ଏହି ସମିତି ଦ୍ୱାରା ସାଧିତ ହେଉଅଛି ।

ସେବାକାର୍ଯ୍ୟ ସମିତିର ମୂଳ ଲକ୍ଷ୍ୟ ଥିବାହେତୁ ଏ ଦେଶର ପ୍ରତ୍ୟେକ ଆନ୍ଦୋଳନ-କି ରାଜନୀତି କି ଅର୍ଥନୀତି, କି ଧର୍ମନୀତିରେ ସଭ୍ୟମାନେ ପ୍ରବେଶ କରି ବାଦ ପ୍ରତିବାଦ ଦ୍ୱାରା ବା ପ୍ରାର୍ଥନାଦ୍ୱାର—ଅକ୍ଷମମାନଙ୍କର ଦାବୀ ପୂରଣ କରିବାରେ ସର୍ବଦା ତତ୍ପର ଅଛନ୍ତି । ଗତବର୍ଷରେ ପ୍ରତ୍ୟେକ ହିତକର କାର୍ଯ୍ୟ ସୁଚାରୁରୂପେ ସାଧିତ ହୋଇଥିବାର ପାଠରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ।

ଗ୍ରାମ୍ୟ ସଙ୍ଗଠଣ ଅସ୍ପୃଶ୍ୟ ଜାତିର ଶିକ୍ଷା ଓ ଉନ୍ନତି ଏବଂ ଆଦିବାସୀମାନଙ୍କର ଶିକ୍ଷା ଓ ଉନ୍ନତି ବିଷୟରେ ଏ ସମିତି ସାହାଯ୍ୟ କରୁଅଛନ୍ତି ତାହା କହିବା ବାହୁଲ୍ୟ ମାତ୍ର ।

ଦିଲ୍ଲୀର ହରିଜନ ଉପନିବେଶ କେବଳ ଅଳ୍ପପାଇଁ କି, ମାତ୍ର ଏମାନଙ୍କର କାର୍ଯ୍ୟ ଭାରତବ୍ୟାପୀ । ସୁଖର ବିଷୟ ଆମ ଦେଶର ହରିଜନ ଓ ଆଦିମବାସୀଙ୍କ ଶିକ୍ଷା ଓ ଉନ୍ନତି ନିମନ୍ତେ ଶ୍ରୀ ଏସ୍.ଏସ୍.ମିଶ୍ର ଓ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ନାମ ବିଶେଷଭାବରେ ରିପୋର୍ଟରେ ସ୍ଥାନ ପାଇଅଛି । ଓଡ଼ିଶା ଗଭର୍ଣ୍ଣମେଣ୍ଟ ହରିଜନ ଉନ୍ନତି କଳ୍ପେ ଗତବର୍ଷ ଯଥେଷ୍ଟ ସାହାଯ୍ୟ କରିଥିବାର ରିପୋର୍ଟରୁ ପ୍ରକାଶ— ଏଥି ନିମନ୍ତେ ଆମେମାନେ ଧନ୍ୟବାଦ ଦେବାକୁ ବାଧ । ଅଶିକ୍ଷିତମାନଙ୍କୁ ଶିକ୍ଷାଦେବା, ଅନୁନ୍ନତମାନଙ୍କୁ ଉନ୍ନତ କରିବା ଶାସନକର୍ତ୍ତାର କର୍ତ୍ତବ୍ୟ କର୍ମ । ଓଡ଼ିଶା ଗଭର୍ଣ୍ଣମେଣ୍ଟ ତାହା ପାଳନ କରିଅଛନ୍ତି ।

ଗୋଖଲେ ଦେଶର ଅନେକ ହିତକର କାର୍ଯ୍ୟ କରିବାରେ ପ୍ରୟାସୀ ଥିଲେ । ସେବାସମିତି ଗଠନ କରିବାରେ କୃତକାର୍ଯ୍ୟ ହୋଇଅଛନ୍ତି । ଆଉ ଗୋଟିଏ ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ସାରା ଦେଶବାସୀଙ୍କୁ ସ୍ୱାକ୍ଷର କରିବାକୁ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାଦ୍ୱାରା । ଏ ପ୍ରସ୍ତାବ ଭିତରେ ଭାରତବାସୀର କି ଉପକାର ଅନ୍ତର୍ନିହିତ ଥିଲା ତାହା ଅକଥନୀୟ । ମାତ୍ର ଭାରତ ଗଭର୍ଣ୍ଣମେଣ୍ଟର କୂଟନୀତି ତାହା କରାଇ ଦେଲା ନାହିଁ । ଏହି ଗୋଟିଏ ଇଚ୍ଛା କାର୍ଯ୍ୟରେ ପରିଣତ ହୋଇଥିଲେ ଆଜି ଭାରତ ସ୍ୱାଧୀନତା ପକ୍ଷରେ ଅନେକ ଅଗ୍ରସର ହୋଇଥାନ୍ତା ଏବଂ ଅନେକ ସମସ୍ୟା ଯାହା ବଡ଼ ବଡ଼ ମଥାକୁ ମଧ ବ୍ୟତିବ୍ୟସ୍ତ କରୁଅଛି ତାହା କରନ୍ତା ନାହିଁ । ଗଭର୍ଣ୍ଣମେଣ୍ଟ କୂଟନୀତିରୁ ଦେଶବାସୀଙ୍କର ସ୍ୱାର୍ଥପରତାରୁ ମହାମନୀଷୀର ମହଦିଚ୍ଛା ପୂରଣ ହେଲା ନାହିଁ । ଗୋଖଲେ ପ୍ରାଣତ୍ୟାଗ କଲେ । ମାତ୍ର ତାଙ୍କର ସଦିଚ୍ଛାର ନାଶ ନାହିଁ, କ୍ରମେ କାର୍ଯ୍ୟରେ ପରିଣତ ହେବ ।

ସେବା ସମିତିର ଉତ୍ତରୋତ୍ତର ଉନ୍ନତି କାମନା କରୁଁ ।

ଭାରତ ଗଭର୍ଣ୍ଣମେଣ୍ଟଙ୍କ Department of food ବିଭାଗରୁ ପ୍ରଚାରିତ ବୁଲେଟିନ୍ ନଂ ୩୦ Nutrition ପୁସ୍ତକର ଶେଷ ପୃଷ୍ଠାରେ ପ୍ରକାଶିତ ଅଂଶ ପାଠକରି ପାଠକମାନଙ୍କ ଅବଗତି ନିମନ୍ତେ ମୂଳ ଇଂରେଜୀ ଲେଖାଟି ଉଦ୍ଧୃତ କରିବାର ଲୋଭ ସମ୍ବରଣ କରିପାରିଲୁଁ ନାହିଁ ।

ତାହା ଏହି:—

"For centaries a war has been fought in the fields of India. It is a war between nature, armed with a fierce climate and a growing population, and man whose weapons are the green shoots of growing food-crops. To gain victory over nature, better methods of cultivation, improved seed extended irrigation and more land under the plough are all needed.

The production of India factories depends just as much as her agriculture on more and better food for the workers. But the cultivater has to depend on bullock-power which cannot be increased without more fodder. A complete diet in which India's workers will find their full strength must have plenty of milk, which is impossible without more fodder for the cows.

ନିତାନ୍ତ ସତ— ଏଥିରେ ପଦେ ମିଛ ନାହିଁ । ଏପରି ସତ୍ୟ ଉକ୍ତି ଗଭର୍ଣ୍ଣମେଣ୍ଟ ଦପ୍ତରରୁ କଦାଚିତ ବାହାରେ ।

ପରିବର୍ଦ୍ଧନଶୀଳ ଭାରତୀୟ ପ୍ରକୃତିପୁଞ୍ଜ ଉଦର ପୋଷଣ ନିମନ୍ତେ ଅନିଶ୍ଚିତ ଆବହାବା ସତ୍ତ୍ୱେ ଶସ୍ୟ ଉତ୍ପାଦନ ନିମନ୍ତେ ପ୍ରକୃତି ବିରୋଧରେ ଯୁଗ ଯୁଗ ବ୍ୟାପୀ ଯୁଦ୍ଧ ଚଳାଉଛନ୍ତି । ଏଥିରେ ସନ୍ଦେହ ନାହିଁ । ଏହି ଯୁଦ୍ଧ ଜୟ ନିମନ୍ତେ ଚାଷୀମାନଙ୍କର ଅସ୍ତ୍ର ମାନଧାତା ଅମଳରୁ ଆବିଷ୍କୃତ ଯୁଆଳି, ଲଙ୍ଗଳ, ଯୁତ ଓ ମଇ ଏବଂ ଖାଦ୍ୟକ୍ଲିଷ୍ଟ ମୁମୂର୍ଷୁ ବଳଦ । ଉନ୍ନତତର ଚାଷ ସରଞ୍ଜାମ ନିର୍ମାଣ କରିବାକୁ କୃଷକ ଦଳର ଯୋଗ୍ୟତା ନାହିଁ । ଯେହେତୁ ନିରକ୍ଷର । ବିଦ୍ୱାନ ପଣ୍ଡିତଗଣ କୃଷିକାର୍ଯ୍ୟରୂପ ନୀଚକାର୍ଯ୍ୟ ଆଡ଼କୁ ମନୋନିବେଶ କରିବେ କାହିଁକି ? ଦେଶରେ ବୈଜ୍ଞାନିକ ନାହିଁ ଯେଉଁମାନେ କି ଏ ଦେଶଭଳି ଅଳ୍ପ ବ୍ୟୟସାଧ ଉନ୍ନତତର ଚାଷ ସରଞ୍ଜାମ ତୟାରର ବ୍ୟବସ୍ଥା କରନ୍ତେ । ଯାହାକିଛି ବର୍ତ୍ତମାନ ଗଭର୍ଣ୍ଣମେଣ୍ଟ କୃଷିକଲେଜ ଇତ୍ୟାଦିରେ ଶିକ୍ଷିତମାନେ ଲଙ୍ଗଳ ପ୍ରଭୃତି ତୟାର କରାଉଛନ୍ତି ବା ଇଂରେଜ କମ୍ପାନୀମାନେ ବିକ୍ରୟ କରୁ ଅଛନ୍ତି ତାହା କ୍ରୟ କରିବାକୁ ଗରିବ ପ୍ରଜାର ପାଣ୍ଠି କାହିଁ ? ଉନ୍ନତ ଧରଣର ଲଙ୍ଗଳ, ମଇ ଚଳାଇବା ନିମେନ୍ତ ବଡ଼ ବଡ଼ ବଳବାନ୍ ବଳଦର ଦରକାର । ଭାରତୀୟ ପ୍ରଜାର ସେପରି ବଳଦ କ୍ରୟ କରିବାକୁ ହାତରେ ଟଙ୍କା ନାହିଁ । ତଥାପି ଦୂରବସ୍ଥ ପ୍ରଜା ଚାଷ କରି ପରିବାରର ପେଟ ପୋଷି ଖଜଣା ଗଣ୍ଡାକ ଅତି କଷ୍ଟରେ ବୁଝାଇ ଆପଣା ପୈତୃକ ଜମି ଖଣ୍ଡିକ ରକ୍ଷା କରିବାରେ ଲାଗିଛି । ଏଥିନିମନ୍ତେ ତା' ପ୍ରତି ଧନ୍ୟବାଦ ନାହିଁ, ସହାନୁଭୂତି ନାହିଁ, ଅଛି ଲାଞ୍ଛନା, ଧିକ୍କାର । ଚାଷ ଆୟରୁ ଦେଶ ଚଳୁଛି । କାରଖାନାମାନଙ୍କର ଫେକଟରି-ମାନଙ୍କ କୁଲି ମଜୁରିଦାରମାନଙ୍କର ଗୁହାରି ଶୁଣାଯାଏ ମାତ୍ର ଚାଷୀର ଗୁହାର କେହି ଶୁଣନ୍ତି ନାହିଁ । ନିର୍ଦ୍ଧାରିତ କର ନ ଦେଲେ ଦୋଷ ।

ମାତ୍ର ତାର ଅଭାବ ଅସୁବିଧା ନିମନ୍ତେ କୌଣସି ସାହାଯ୍ୟର ବ୍ୟବସ୍ଥା ନାହିଁ ।

ଉଚ୍ଚଧରଣର କୃଷି କାର୍ଯ୍ୟ ଚଳାଇବା ପନ୍ଥା ଗଭର୍ଣ୍ଣମେଣ୍ଟ କରିପାରନ୍ତି । ପ୍ରଚୁର ଜଳସେଚନ ବ୍ୟବସ୍ଥା ଗଭର୍ଣ୍ଣମେଣ୍ଟ କରି ପାରନ୍ତି, ନିଃସ୍ୱପ୍ରଜାର ଏ ସବୁ ବିଷୟରେ ହାତ ଦେବାର କ୍ଷମତା କାହିଁ ? ପ୍ରଜା ଆଗରେ ଏ ପ୍ରକାର ପ୍ରଚାର ଫଳ ଅତି କମ୍ । ଗଭର୍ଣ୍ଣମେଣ୍ଟ ସ୍ୱପ୍ରବୃତ୍ତହୋଇ କୃଷି ଉନ୍ନତିର ବହୁଚେଷ୍ଟା କରିବା ଉଚିତ୍ ।

ଜମି ପ୍ରଜାମାନଙ୍କର ଅନଟନ । ବେଶୀ ଜମି ଚାଷ କର ବୋଲି ପ୍ରଜାଙ୍କୁ ଉପଦେଶ ଦେଲେ ଫଳ କ'ଣ ? ଜମି ଦେବ କିଏ ? ଗଭର୍ଣ୍ଣମେଣ୍ଟ ଓ ରାଜାମାନେ ତ ? ଗଭର୍ଣ୍ଣମେଣ୍ଟର ଜଙ୍ଗଲ ରକ୍ଷାରେ ବେଶୀ ଲାଭ କି ଚାଷଜମିରେ ବେଶୀ ଲାଭ ? ଆଜି ଯୁଦ୍ଧୋତ୍ତର କାଳରେ ବେଶୀ ଚାଷକର, ବେଶୀ ଜମିରେ ଚାଷ କର ଚିତ୍କାର ଉଠିଛି । ପୂର୍ବେ ତ ଏହା ଶୁଣା ନ ଥିଲା । ଗଭର୍ଣ୍ଣମେଣ୍ଟ ଚାଷୀ ପ୍ରତି ଦୃଷ୍ଟି ଦେଉନ୍ତୁ, ଦେଶର ଉନ୍ନତି ହେବ । ଆଉ ପ୍ରଜାଙ୍କର ତଣ୍ଟିଚିପି କର୍ମଚାରୀଙ୍କର ପାଣ୍ଠିବୃଦ୍ଧି କରିବାକୁ ବସିଲେ ଏତାଦୃଶ ପ୍ରଚାରକର୍ମ ସମ୍ପୂର୍ଣ୍ଣ ନିଷ୍ଫଳ ।

ପୁଣି ଅଛି ବଳଦ ବିନା ଚାଷ ହୋଇ ନ ପାରେ, ବଳଦମାନଙ୍କ ପୁଷ୍ଟି ନିମନ୍ତେ ଖାଦ୍ୟ ଦରକାର, ଆସିବ କେଉଁଠାରୁ ? ଗୋଚର ଭୂମିକୁ ଚାଷ ଭୂମିରେ ପରିଣତ କଲେ କିମ୍ବା ଗୋଚର ଭୂମିରେ କର ବସାଇଲେ ? ଯେଉଁ ବ୍ୟବସ୍ଥା ଚାଲି ଆସିଅଛି ତା'ର ଓଲଟ ପାଲଟ ନ କଲେ ଚାଷୀର ଅବସ୍ଥା ଉନ୍ନତ ହେବ ନାହିଁ ଏବଂ ଗୋଜାତିର ମଧ୍ୟ ଉନ୍ନତି ହେବ ନାହିଁ ।

କୃଷକ ଓ ମଜୁରିଦାରମାନଙ୍କର ବଳରକ୍ଷା ନିମନ୍ତେ ଦୁଗ୍ଧର ଦରକାର ଏବଂ ଦୁଗ୍ଧ ନିମନ୍ତେ ଗାଈମାନଙ୍କର ଖାଦ୍ୟର ଦରକାର । ଏହା ଶୁଣିଲେ ନିଜେ ସ୍ୱପ୍ନ—ରାଜ୍ୟରେ ବିଚରଣ କରୁଥିବାପରି ବୋଧ ହୁଏ । ପ୍ରଚାରକବର୍ଗ କି ଜାଣନ୍ତି ନାହିଁ ଯେ ଭାରତର ଶତକରା ନବେ ଜଣ ବା ତତୋଽଧିକ ବ୍ୟକ୍ତି ଦୁଗ୍ଧ ବିହୀନ ଜୀବନଯାପନ କରନ୍ତି ? ଦୁଗ୍ଧବତୀ ଗାଈ ପୋଷଣ ନିମନ୍ତେ ଗୋ ଚାରଣ ଭୂମି ରଖାଯିବ କିମ୍ବା ଯାହା ବା ଜଙ୍ଗଲରେ ଅଛି ତହିଁରେ କର ଧାର୍ଯ୍ୟ ହେବ ଏହା ଦେଖିବାକୁ ଅଛି ।

ଚାଷୀ ଭାଇ ବେଶୀ ଖାଦ୍ୟ ଉତ୍ପାଦନକରି ଗଭର୍ଣ୍ଣମେଣ୍ଟର ସାହାଯ୍ୟ ମିଳୁ ବା ନ ମିଳୁ ନିର୍ଦ୍ଦିଷ୍ଟ କର ଗଣ୍ଡାକ ଦେଉଥାଅ ଏବଂ ଉପଦେଶକୁ କାନେଇ ଥାଅ । ସୁଖ ଶାନ୍ତି ସବୁ ମିଳିବ ଯେ ।

ସ୍ୱରାଜ ଶବ୍ଦର ସ୍ରଷ୍ଟା ଦାଦାଭାଇ ନାରୋଜୀ । ୧୯୦୬ କଲିକତା କଂଗ୍ରେସରେ ଏହାର ପ୍ରଚ୍ଚର । ଅନେକେ ଏହାର ଅର୍ଥ ଜାଣନ୍ତି ଅନେକେ ଜାଣନ୍ତି ନାହିଁ । ସ୍ୱରାଜ ଅର୍ଥ ସ୍ୱାଧୀନ ନୁହେଁ । କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନ ହେବାକୁ ବାସନା ରଖି ଥିଲେ, ଗର୍ବ କରୁଥିଲେ । ପାଇଲେ ସ୍ୱରାଜ ଅର୍ଥାତ୍ ଏ ଦେଶ ଲୋକ ନିର୍ବାଚିତ ସ୍ୱାୟତ୍ତ ଶାସନ ମାତ୍ର ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବା ଇଂଲଣ୍ଡ ରାଜାଙ୍କ ଅଧୀନରେ । ତାହା ପଛେ ହୋଇଥାନ୍ତା ଭାରତ ଗୋଟିଏ Dominion ରହିଥିଲେ କିଛି ଆଶା ଭରସା ଥିଲା । 'ଅତି ଗର୍ବେ ହତାଲଙ୍କା' ଭାରତକୁ ଦୁଇ ଖଣ୍ଡ କଲେ ଆମ ଲୋକେ; ଏଥିରେ ଇଂରେଜ କେବଳ ଦୋଷୀ ନୁହନ୍ତି । ଆମେମାନେ ପୂର୍ବେ କହିଛୁ ଭାରତ କେବଳ ଦୁଇ ଖଣ୍ଡ ହେବ ତାହା ନୁହେଁ ଭାରତ ବହୁ ଖଣ୍ଡ ବା ଖଣ୍ଡ ଖଣ୍ଡ ହେବ । ଏଥିର ସୂତ୍ରପାତ ଆମ ଦେଶ ଲୋକଙ୍କ ଦ୍ୱାରା ହୋଇଅଛି । ଗାନ୍ଧିଜୀ ପ୍ରମୁଖ କଂଗ୍ରେସ ଦଳ ଆପଣାକୁ ଯେତେ ରାଜନୀତି କୁଶଳ ଓ ବୁଦ୍ଧିମାନ୍ ମନେ କରନ୍ତୁ ପଛକେ ଇଂରେଜଙ୍କ କୂଟନୀତି କୌଶଳରେ ଏମାନେ ହତବୁଦ୍ଧି । ଅଟକ୍ଳି, ମାଉଣ୍ଟବେଟନ କି ଅଦ୍ଭୁତ କୌଶଳରେ ଏମାନଙ୍କଠାରୁ ଦେଶ ବିଭାଗ କରାଇନେଲାରୁ ଭବିଷ୍ୟତ ସ୍ୱାଧୀନ ଲାଭର ପଥ ବନ୍ଦ କରିବାର ଯେ ଚେଷ୍ଟା ଲାଗିଅଛି ତାହା କେତେ ଜଣଙ୍କର ଚିନ୍ତାର ବିଷୟ ? କଂଗ୍ରେସ ଯେ ଛୋଟବଡ଼ ସମସ୍ତଙ୍କୁ ସୁଖ ସ୍ୱାଚ୍ଛନ୍ଦ୍ୟ ବିତରଣ କରିପାରିବେ ଏହା ସନ୍ଦେହ ଗର୍ଭରେ ନିହିତ । ଭାରତକୁ ଘୋର ଅଶାନ୍ତି ଆସି ଚାର୍ଚ୍ଚିହିଲର ବାଣୀକୁ ସତ୍ୟ ପ୍ରତିପନ୍ନ ନ କରୁ ଏଥିନିମନ୍ତେ ଲର୍ଡ଼ ମାଉଣ୍ଟବେଟନକୁ ଭାରତ ଇଉନିୟନର ଗଭର୍ଣ୍ଣର ଜେନେରାଲ୍ କରାଗଲା କି ? ଜିନ୍ନା କିନ୍ତୁ ପାକିସ୍ତାନର ଗଭର୍ଣ୍ଣର ଜେନେରେଲ୍ ହେଲେ । ଅଜ୍ଞଙ୍କମାନେ ଏ ବନ୍ଦୋବସ୍ତକୁ ନିନ୍ଦା କରୁଅଛନ୍ତି । କହନ୍ତି ଯେଉଁମାନେ ଇଂରେଜକୁ ଦେଶରୁ ତଡୁଥିଲେ ସେମାନେ ଇଂରେଜକୁ କଲେ ଶ୍ରେଷ୍ଠ ଶାସକ । ଯେଉଁମାନେ ଇଂରେଜକୁ ରକ୍ଷକ ବୋଲି ରହିବାକୁ ଅନୁରୋଧ କରୁଥିଲେ ସେମାନେ ଜିନ୍ନାଙ୍କୁ କଲେ ଶ୍ରେଷ୍ଠ ଶାସକ । ଆରେ ମୂର୍ଖେ, ତମେ ସେଥିରୁ ବୁଝିବ କ'ଣ ? ଗାନ୍ଧିପ୍ରମୁଖ କଂଗ୍ରେସ ଓ ଜିନ୍ନା ଉଭୟେ ମାଉଣ୍ଟବେଟେନଙ୍କୁ ଭାରତ ଓ ପାକିସ୍ତାନର ଗଭର୍ଣ୍ଣର ଜେନେରେଲ୍ କରିବାର ପ୍ରସ୍ତାବ ଅନୁମୋଦନ କରିଥିଲେ । ମାତ୍ର ବିଲାତରୁ କି ଚାଲ ଆସିଲା ଜିନ୍ନା ଗଭର୍ଣ୍ଣର ଜେନେରେଲ୍ ହେଲେ ପାକିସ୍ତାନର । ଏଥି ନିମନ୍ତେ ପରା ଗାନ୍ଧିଜୀ ଜିନ୍ନାଙ୍କ

କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କଲେ ତାଙ୍କର ଦୈନିକ ପ୍ରାର୍ଥନା ସଭାରେ ।

ଗାନ୍ଧିଜୀ କାଶ୍ମୀର ଯିବା ରାସ୍ତାରେ ଲୋକେ କଳାପତାକା ଦେଖାଇଲେ । ଏବଂ ଗାନ୍ଧି ଫେରିଯାଅ, ଗାନ୍ଧି ଫେରିଯାଅ ବୋଲି ଚିତ୍କାର କଲେ । ଗାନ୍ଧିଜୀ ଏପରି ନିନ୍ଦାଜନକ ଅଶ୍ରାବ୍ୟ ଶବ୍ଦ ତାଙ୍କ କାନକୁ ନ ଯିବ ବୋଲି ରେଲ ଦରୋଜା ବନ୍ଦ କଲେ । ଆତ୍ମନିନ୍ଦା ଶ୍ରବଣରେ ଗାନ୍ଧି ମଧ ବିଚଳିତ ହୁଅନ୍ତି, ବିରକ୍ତ ହୁଅନ୍ତି । ଅହିଂସା ନୀତି ପ୍ରଚାର ସୁଯୋଗ ପାଇ ସୁଦ୍ଧା ତାହା ଛାଡ଼ି ଦିଅନ୍ତି ।

ଭାରତ ପକ୍ଷରେ ଅଗଷ୍ଟ ପନ୍ଦର ତାରିଖ ଗୋଟିଏ ପ୍ରଶସ୍ତ ଦିବସ। ଭାରତବ୍ୟାପୀ ଉତ୍ସବ ହେବ । ସମସ୍ତ ଅଫିସ ଓ ଅନ୍ୟାନ୍ୟ କାର୍ଯ୍ୟାଳୟମାନ ବନ୍ଦ ରହିବ । ସର୍ବତ୍ର ଭାରତର ଦ୍ୱିବିଧ ପତାକା ଉତ୍ତୋଳିତ ହେବ । ଅର୍ଦ୍ଧେକରୁ ଅଧିକ ଭାରତବାସୀ ଆହ୍ଲାଦିତ ହେବେ । ଅନେକେ ଆନ୍ତରିକ ଅବସାଦ ସତ୍ତ୍ୱେ ଓ ଆମୋଦରେ ବାଧ ହୋଇ ଯୋଗ ଦେବେ । ଯାହାହେଉ ଭାରତ ଯେ ଅନେକ ଅଧିକାର ପାଇଅଛି ଏଥିରେ ସନ୍ଦେହ ନାହିଁ । ଏଥିନିମନ୍ତେ ଅନ୍ତତଃ ଲୋକେ ଏହି ଦିନରେ ଆମୋଦପ୍ରମୋଦରେ ଯୋଗଦେବା ଉଚିତ ନୁହେଁ କି ?

ଏହି ଅଗଷ୍ଟ ବଡ଼ ବିଷମ ମାସ— ଏହି ମାସରେ ଭାରତରେ ଅନେକ ଦୁର୍ଘଟଣା ଘଟିଅଛି । ଏହି ଅଗଷ୍ଟ ମାସରେ ପ୍ରଥମ ରକ୍ତବିପ୍ଳବୀ ଖୁଦିରାମର ଫାଶୀ ଯେଉଁ ବିପ୍ଳବର ଜଣେ ସୂତ୍ରଧାର ଥିଲେ ବର୍ତ୍ତମାନ ଯୋଗୀ ଅରବିନ୍ଦ ଘୋଷ । ବିପ୍ଳବର ସୂତ୍ରପାତ ଅଗଷ୍ଟରେ ବିପ୍ଳବର ଶାନ୍ତି ମଧ ଅଗଷ୍ଟରେ । ଦେଶରେ ଶାନ୍ତି ଆସିଲେ ରକ୍ଷା ।

**ଦ୍ରଷ୍ଟବ୍ୟ :** ଆମେମାନେ ଦ୍ୱିତୀୟ ବର୍ଷ ଶଙ୍ଖର ଲେଖକମାନଙ୍କୁ ନିୟମାନୁସାରେ ପୁରସ୍କାର ଦେଇ ଆସିଅଛୁଁ । ଏତାଦୃଶ ପୁରସ୍କାର ବିତରଣରେ ଅନେକଙ୍କର ଅମତ । ଏଣୁ ପୁରସ୍କାର ବିତରଣର ନିୟମ ବଦଳାଇବାର ନିତାନ୍ତ ଦରକାର । ଆଗାମୀ ମାସରେ ଶଙ୍ଖରେ ନିୟମ ପ୍ରକାଶ ପାଇବ । ଏ ମାସରୁ ପୁରସ୍କାର ବିତରଣ ବନ୍ଦ କରାଗଲା । ଲେଖକମାନେ ଧୈର୍ଯ୍ୟସହିତ କ୍ଷମାଦେବେ ।

**ସମ୍ପାଦକ**

## ତୃତୀୟ ବର୍ଷ ଦ୍ୱିତୀୟ ସଂଖ୍ୟା

**ଶାନ୍ତିଃ ଶାନ୍ତିଃ ଶାନ୍ତିଃ**

**ଭାରତ ମାତା କି ଜୟ ।**

ଆମେମାନେ ସମସ୍ତେ ଚାଲିଯିବା । ମାତୃଭୂମି ସତ୍ୟ । ଭାରତମାତା ଚିରସ୍ଥାୟୀ । ଆଦିକାଳରୁ ଭାରତ ଅସଂଖ୍ୟ ପୁତ୍ର କନ୍ୟାଙ୍କୁ ଜନ୍ମ ଦେଇଅଛି । ତା'ର କଳନା କିଏ କରିପାରିବ ? ମାତୃଭୂମିର ମଙ୍ଗଳ କାମନାରେ ଓ ଉନ୍ନତିକଳ୍ପେ ବହୁ ନରନାରୀ ଆପଣା ଆପଣା କର୍ତ୍ତବ୍ୟ କର୍ମ କରି ମାନବଲୀଳା ସମ୍ବରଣ କରିଅଛନ୍ତି । କିଏ କେତେ କଲା, କିଏ କେତେଦୂର ମାତୃଭୂମି ଭକ୍ତ, କିଏ କେତେଦୂର ମାତୃଭୂମି ପାଇଁ ଆତ୍ମୋତ୍ସର୍ଗ କରିଅଛି ତା'ର ବା କିଏ ହିସାବ ରଖିଅଛି ? ପ୍ରାକ୍‌ଐତିହାସିକ ଯୁଗରୁ ମାତୃପୂଜା ଚାଲି ଆସିଅଛି । ପ୍ରାକ୍‌ଐତିହାସିକ ଯୁଗର ଲୋକେ ଦେଶର ତ ରକ୍ଷକ, ସେମାନେ ତ ପ୍ରଥମ ପୂଜକ, ସେମାନେ ତ ଦେଶରକ୍ଷା ନିମନ୍ତେ ପ୍ରଥମେ ଆତ୍ମବଳି ଦେବାକୁ ଶିକ୍ଷାଦେଲେ, ସେମାନଙ୍କର ପଥାନୁସରଣ କରି ଐତିହାସିକ ଯୁଗର ଲୋକେ ଦେଶଭକ୍ତ ହେଲେ, ଜାତି ଚିହ୍ନିଲେ, ସମାଜବଦ୍ଧ ହେଲେ ଏବଂ ଦେଶରକ୍ଷା ନିମନ୍ତେ ସ୍ୱାର୍ଥତ୍ୟାଗୀ ହେଲେ । ଏହା ମାନବଜାତିର ଚିରାଚରିତ ପନ୍ଥା । ମାତ୍ର ସ୍ୱାର୍ଥପର ସଭ୍ୟମାନଙ୍କର ପ୍ରଦର୍ଶିତ ଲୋଭ କିମ୍ବା ଆକ୍ରମଣକାରୀ ଶତ୍ରୁର ଭୟ, ଲୋକମାନଙ୍କୁ ଭ୍ରାନ୍ତି କରେ । ଲୋକଙ୍କର ଏକତା ଭାଙ୍ଗି, ଜାତିକୁ ଦୁର୍ବଳ କରେ, ଦାସତ୍ୱ ଆଣେ । ଭାରତୀୟ ଜାତି ପ୍ରକୃଷ୍ଟ ଉଦାହରଣ ସ୍ଥଳ । ସମୟ ସମୟରେ ଦେଶୋଦ୍ଧାର ନିମନ୍ତେ ଏବଂ ଜାତୀୟ ମୁକ୍ତି କାମନାରେ ଜଣେ ଜଣେ ଲୋକ ବଦ୍ଧପରିକର ହୋଇ ବାହାରନ୍ତି ମାତ୍ର ସେମାନଙ୍କର ମୁକ୍ତ କରବାଳ ସ୍ୱାର୍ଥପର ସ୍ୱଜାତିଙ୍କଦ୍ୱାରା କିମ୍ବା ଭୟଯୁକ୍ତ ବ୍ୟକ୍ତିଙ୍କଦ୍ୱାରା ସହସା ଭୂପତିତ ହୁଏ । ସ୍ୱାର୍ଥତ୍ୟାଗୀ ଦେଶହିତୈଷୀ, ଅପରିଣାମଦର୍ଶୀ ରାଜଦ୍ରୋହୀ ବୋଲି ଦୂଷିତ ହୁଏ ଏବଂ ଦଣ୍ଡନୀୟ ମଧ ହୁଏ । ଏପରି ଉଦାହରଣ ଭାରତ ଇତିହାସରେ ବିରଳ ନୁହେଁ । ଭାରତୀୟ ବୀରପୂଜା ଭାରତରେ ନିଷିଦ୍ଧ ଓ ଦଣ୍ଡଯୋଗ୍ୟ ।

ମାତ୍ର ଆଜି ସେଦିନ ଗଲା । ଆମ ଜାତିର ଆମଦେଶର ବୀରମାନଙ୍କୁ, ସ୍ୱାର୍ଥତ୍ୟାଗୀମାନଙ୍କୁ ଦେଶଭକ୍ତମାନଙ୍କୁ ଇତିହାସ ମଧରୁ ବାଛିବାକୁ କେହି ବାଧା ଦେବେ ନାହିଁ । ସେମାନଙ୍କର ପୂଜା କଲେ କେହି ନିନ୍ଦା କରିବେ ନାହିଁ । ବୀର ପୂଜାର ଦିନ ଆସିଲା । ଇତିହାସ ମଧରୁ ବୀରମାନଙ୍କର ନାମ ଓ ସେମାନଙ୍କର କାର୍ଯ୍ୟପନ୍ଥା ବାଛି ସେମାନଙ୍କର ଗୁଣ ସ୍ମରଣ କର, ପ୍ରଚାର କର । ବୀରପୂଜା ମନକୁ ବଳିଷ୍ଠ କରେ, ଶରୀରରେ ଶକ୍ତି ସଞ୍ଚାର କରେ ଏବଂ ସେହି ବୀରତୁଲ୍ୟ କାର୍ଯ୍ୟ କରିବାକୁ ଉତ୍ସାହ ଦିଏ । ମନୁଷ୍ୟ ଭ୍ରମପ୍ରମାଦପୂର୍ଣ୍ଣ । ଗୋଟିଏ କାର୍ଯ୍ୟ ନିମନ୍ତେ ମନୁଷ୍ୟର ସମଗ୍ର

ଜୀବନବ୍ୟାପୀ ଦୋଷ ଗୁଣର ଅନୁସନ୍ଧାନ କରଣୀୟ ନୁହେଁ । ମନୁଷ୍ୟର ଭଲ କାର୍ଯ୍ୟଟିକୁ କେବଳ ଗ୍ରହଣ କରିବାକୁ ହେବ ଓ ଅନୁକରଣ କରିବାକୁ ହେବ, ଯାହା ଜାତିର ପକ୍ଷରେ ମୂଲ୍ୟବାନ୍ । ଆମ ଦେଶ ଲୋକେ ତାହା କରନ୍ତି ନାହିଁ । କ୍ଷମତାଧାରୀଗଣ ତାହା କରାଇ ଦିଅନ୍ତି ନାହିଁ ।

ଦେଢ଼ଶହ ବର୍ଷରୁ ଅଧିକ ହେଲା ଆମେମାନେ ପରାଧୀନ । ଇଂରେଜମାନେ ଏ ଦେଶର ଲୋକଙ୍କର ରୀତି ନୀତି ଓ ଲୋଭ ଦେଖି ଯେଉଁ ଶାସନ ପନ୍ଥା ଆବିଷ୍କାର କଲେ ଏବଂ ଲୋଭଯୁକ୍ତ ଲୋକମାନଙ୍କୁ କ୍ରୟ କରିବାକୁ ଯେଉଁ ବିପଣି ବସାଇଲେ ସେ ଅତି ଅଦ୍ଭୁତ । ପୃଥିବୀର ଅନ୍ୟତ୍ର ଏପରି ଶାସନ ପନ୍ଥା ଚଳି ନ ଥିଲା ବା ଲୋକ କିଣିବା ହାଟ ବସି ନ ଥିଲା । ଇଂରେଜଙ୍କ ଚେଷ୍ଟାରେ ଇଉରୋପ, ଆଫ୍ରିକା ଓ ଆମେରିକାର ଦାସତ୍ୱପ୍ରଥା ଦୂରୀଭୂତ ହେଲା, କିନ୍ତୁ ସେହି ଇଂରେଜ ଅର୍ଥ ବିତରଣଦ୍ୱାରା ଏ ଦେଶର ବହୁ ଶିକ୍ଷିତ ଅଶିକ୍ଷିତଙ୍କୁ ଦାସ କଲେ । ସେ ଦେଶମାନଙ୍କରେ ବଳକୃତ ବାଧ୍ୟତାମୂଳକ ଦାସ ପ୍ରଥା ସିନା ବନ୍ଦ କଲେ, ଏ ଦେଶର ବଂଶଗତ ମାନସ ଦାସ ପ୍ରଥା ଚଳାଇଲେ ଯଦ୍ୱାରା ଭାରତର ସମୂହ ଅନିଷ୍ଟ ସାଧିତ ହେଲା । ଦାସ ବନାଇବା ଲୋକେ ଏବେ ଏ ଦେଶରୁ ଗଲେ । ବର୍ତ୍ତମାନ ଶାସନକର୍ତ୍ତାମାନେ ନିଜ ନିଜ ମତ ରକ୍ଷା ନିମନ୍ତେ ଇଂରେଜଙ୍କ ପ୍ରଚଳିତ ଦାସତ୍ୱ ପ୍ରଥାକୁ ରକ୍ଷାକରି ଦେଶର ଅନିଷ୍ଟ କରିବେ କି ? ଏବଂ ଦେଶବାସୀ ଯେଉଁମାନେ ଧନ ମାନ ନିମନ୍ତେ ଇଂରେଜମାନଙ୍କଠାରେ ଦାସ୍ୟସ୍ୱୀକାର କରିଥିଲେ, ସେମାନେ ବା ତାଙ୍କର ପୂର୍ବପୁରୁଷର ଦୁଷ୍କୃତିକୁ ଅନୁତାପାନଳରେ ଦଗ୍ଧ କରିବେ କି ? ଦେଶର ମଙ୍ଗଳ ନିମନ୍ତେ ଏହା କରିବା ଉଚିତ୍ ।

ବନାଗ୍ନି ନିର୍ବାପିତ ହୁଏ, ମାତ୍ର ଦେଶହିତ ସାଧନ ନିମନ୍ତେ କୌଣସି ମହତବ୍ୟକ୍ତି ହୃଦୟରେ ଯେଉଁ ଉତ୍ସାହ-ବହ୍ନି ଉଦ୍ଦୀପ୍ତ ହୁଏ ତାହା ଏକବାରିକ ଲିଭି ଯାଏ ନାହିଁ । ଲୋକରୁ ଲୋକାନ୍ତରଠାକୁ ଯାଏ । କାହାରି କାହାରି ହୃଦୟ କନ୍ଦରରେ ଭସ୍ମାଚ୍ଛାଦିତ ହୋଇଥାଏ । ସମୟ ବିଶେଷରେ ଉଦ୍ଦୀପ୍ତ ହୋଇଉଠେ । ଗବେଷଣା କଲେ ଇତିହାସରୁ ଏଥିର ଉଦାହରଣ ଅନାୟାସରେ ମିଳିପାରିବ । ଇଂରେଜମାନେ ଏ ଦେଶ ନେଲା ଉତ୍ତାରୁ ବରାବର ଲୋକଙ୍କ ମନରେ ଇଂରେଜ ବିରୋଧରେ ଦ୍ୱନ୍ଦ୍ୱ ଚଳାଇବା ପନ୍ଥା ଲୋଡ଼ା ଯାଇଛି । ଇଂରେଜଜାତି ବଡ଼ ଚଲାକ, ସାମଦାନ ଦଣ୍ଡଭେଦ ନୀତି ଏମାନଙ୍କୁ ବେଶ୍ ଜଣା, ବିଶେଷତଃ ଶେଷୋକ୍ତ ନୀତିଟି । ଏଣୁ ଏ ଦେଶବାସୀଙ୍କ ଦ୍ୱାରା ଏ ଦେଶର ଯାବତୀୟ ଉଦ୍ୟୋଗ ଓ ସ୍ୱାଧୀନତାର ଆକାଂକ୍ଷାକୁ ପଣ୍ଡ କରି ଦିଅନ୍ତି । ଛୋଟ ଛୋଟ ଚେଷ୍ଟାମାନ ଇତିହାସରେ ସ୍ଥାନ ପାଇ ନାହିଁ, ଯେହେତୁ ଇତିହାସ ଲେଖା ଇଂରେଜ ଦ୍ୱାରା କିମ୍ବା ଇଂରେଜଙ୍କ ଅର୍ଥ ପୋଷ୍ୟଙ୍କ ଦ୍ୱାରା । ଇଂରେଜଙ୍କୁ ଏ ଦେଶରୁ ଉଚ୍ଛେଦ କରି ଦେଶ ସ୍ୱାଧୀନତାର ପ୍ରଖର ଚେଷ୍ଟା ୧୮୫୭ର ସିପାହୀ ବିଦ୍ରୋହ ବୋଲାଯିବ—ଦେଶଦ୍ରୋହୀ ବିଶ୍ୱାସଘାତକମାନେ ଏବଂ ମହାରାଜାମାନେ ଇଂରେଜଙ୍କ ସହାୟତା କରି ଇଂରେଜଙ୍କୁ ଏ ଦେଶର ପ୍ରଭୁ କଲେ । ଏଥି ଉତ୍ତାରୁ ଇଂରେଜମାନେ ମହାରାଜାମାନଙ୍କର ସହାୟତାରେ ଏବଂ ନିଜର ପ୍ରଗାଢ଼ ବୁଦ୍ଧିବଳରେ ପ୍ରଧାନ ଓ ଅଦ୍ୱିତୀୟ ହୋଇଉଠିଲେ । ନାନାସାହେବ ପ୍ରଭୃତି ଦେଶରକ୍ଷକମାନେ ବିଦ୍ରୋହୀ ବୋଲି ଦଣ୍ଡ ପାଇଲେ । ଦେଶବାସୀଙ୍କ ମନରେ ଆତଙ୍କ ଉପସ୍ଥିତ ହେଲା ଏବଂ ଇଂରେଜ ବିରୋଧୀ ହେବାକୁ ଆଉ ସାହସ କଲେ ନାହିଁ । ଭିକ୍ଟୋରିଆଙ୍କର ଘୋଷଣା ଭାରତବାସୀଙ୍କି ସ୍ୱର୍ଗରାଜ୍ୟ ଦାନ କଲା । ଏ ଦେଶବାସୀଙ୍କର ଲକ୍ଷଣ ଏହି ଯେ ପିଠି ଆଉଁସି ଦେଲେ ସବୁ ଭୁଲି ଯାଇ ଶୋଇପଡ଼ନ୍ତି । ସ୍ଥାନେ ଦୁଇସ୍ଥାନରେ ବିଦ୍ରୋହ ବହ୍ନି ଜଳି ଉଠିଥିଲେ ମଧ୍ୟ ଅଚିରେ ଲିଭି ଯାଉଥାଏ । ଅସ୍ତ୍ର ବିପ୍ଳବ ସିନା ଆଉ ହେଲା ନାହିଁ ମାତ୍ର ଲୋକଙ୍କର ଅସନ୍ତୋଷ ଓ ନ୍ୟାୟନୁମୋଦିତ ଦାବି ମଧ୍ୟ ଇଂରେଜଙ୍କୁ ବିଷ ହେଲା । ଘୋଷଣା ଦ୍ୱାରା ଓ ଲୋଭ ଦେଖାଇ କେତେକଙ୍କ ମନ ଶାନ୍ତି କରିବା ଏବଂ ସଙ୍ଗେ ସଙ୍ଗେ ଶୋଷଣ ନୀତିର ଆଇନ୍ ଗଢ଼ିବା ଛାଡ଼ନ୍ତି ନାହିଁ ।

ଶିକ୍ଷିତ ଲୋକେ ଦେଖିଲେ ଯେ ଇଂରେଜଙ୍କର ଭାରତ ଅଧିକାର ଯେମନ୍ତ ନ୍ୟାୟାନୁମୋଦିତ ନୁହେଁ ସେମାନଙ୍କର ଶାସନ ନୀତି ତେମନ୍ତ ଆଇନ୍‌ସଙ୍ଗତ ନୁହେଁ । ଏଣୁ ଏଥିର ପ୍ରତିବାଦ ନିତାନ୍ତ ପ୍ରୟୋଜନ ମନେ କଲେ । ଏବଂ ଲୋକଙ୍କ ପ୍ରତି ଯେ ଅନ୍ୟାୟ ଅତ୍ୟାଚାର ହେଉଥିଲା ତାହା ଜଗତ ସମକ୍ଷରେ ପ୍ରକାଶ କରିବା ହିଁ ଜାତିର ଗୋଟିଏ କର୍ତ୍ତବ୍ୟ ବୋଲି ମନେ କଲେ । ଏହି ବିବେଚନାରୁ କଂଗ୍ରେସର ସୃଷ୍ଟି ।

ଯେଉଁମାନେ କଂଗ୍ରେସର ଭିତ୍ତିସ୍ଥାପନ କଲେ ସେମାନେ ଆମମାନଙ୍କର ପୂଜ୍ୟ । ସେମାନଙ୍କ ଉଦ୍ୟୋଗ, ବାସନା ଆଜି ଅଂଶିକ ପୂରଣ ହେଲା । କଂଗ୍ରେସ ନେତା ସମସ୍ତେ ଆଜି ନାହାନ୍ତି । ସେମାନେ ଉତ୍ତରାଧିକାରୀମାନଙ୍କୁ ଦେଶ ଉଦ୍ଧାର ଭାର ଅର୍ପଣ କରି ଚାଲିଯାଇଅଛନ୍ତି । ମାତ୍ର ଉତ୍ତରାଧିକାରୀମାନଙ୍କଦ୍ୱାରା ଯେ ଦେଶ ଉଦ୍ଧାର ନିଶ୍ଚୟ ହେବ

ଏ ଆତ୍ମପ୍ରସାଦ ସେମାନଙ୍କୁ ହୃଦୟରେ ସ୍ଥାନ ପାଇଥିଲା । ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଯେ ସଂଘର୍ଷ ଚାଲିଲା ଏବଂ ସେଥିରେ ଇଂରେଜ ଜାତିର ଯେ ଔଦ୍ଧତ୍ୟ ପ୍ରକାଶ ପାଇଲା ଏବଂ ଅତ୍ୟାଚାର ସୀମାଲଙ୍ଘନ କରି ଏ ଦେଶର ଅନେକ ଦେଶହିତୈଷୀଙ୍କର ପ୍ରାଣନଷ୍ଟ ହେଲା ଏହା ଲେଖିବା ବାହୁଲ୍ୟ ମାତ୍ର । କୋଟି କୋଟି ଭାରତବାସୀଙ୍କର କଷ୍ଟଜନିତ ଉତ୍ତପ୍ତ ନିଶ୍ୱାସ— ଏବଂ ନିରୀହମାନଙ୍କର ରକ୍ତ ପ୍ରବାହ ଇଂରେଜମାନଙ୍କର ସାମ୍ରାଜ୍ୟ ଐଶ୍ୱର୍ଯ୍ୟକୁ ଭସାଇ ନେଲା । ବର୍ତ୍ତମାନ ଯୁଗର ଜାଗତିକ ପାରିପାର୍ଶ୍ୱିକ ପରିସ୍ଥିତି ଇଂରେଜ ଜାତିକି ଅସମ୍ଭାଳ କରି ପକାଇବାରୁ ଇଂରେଜ ଏ ଦେଶ ଛାଡ଼ିବାକୁ ବାଧ ହେଲେ । ଦେଶ ଛାଡ଼ିଛନ୍ତି ସତ ମାତ୍ର ଏ ଦେଶର ଲୋଭ ଅନ୍ତରରୁ ଯାଇ ନାହିଁ । ଆଶା ରଖିଛନ୍ତି କେବେ ଯଦି କୌଣସି ସୁବିଧାକ୍ରମେ ଆଙ୍ଗୁଳି ପ୍ରବେଶ ହୋଇପାରେ । ହାତ ପଶାଇବାକୁ କେତେ ମାତ୍ର ? ଏ ଦେଶବାସୀ ତାହା ଏତେବେଳଯାଏ ବୁଝି ନାହାନ୍ତି ।

ଇଂରେଜ ଶାସନର ମୂଳମନ୍ତ୍ର ଥିଲା ଭେଦନୀତି; ଭେଦବୁଦ୍ଧି ଜାତି ମଧ୍ୟରେ ପ୍ରବେଶ କରାଇବାକୁ ଇଂରେଜ ଅର୍ଥବ୍ୟୟରେ ଲୋକଙ୍କୁ କଳୁଷିତ କରିବାରେ କୁଣ୍ଠିତ ନ ଥିଲେ । ଏ ଦେଶବାସୀ ଅର୍ଥ ଲାଳସାରେ ଇଂରେଜ ପାଖରେ ନିଜକୁ ବିକିଲେ । ଦାସ ହେଲେ । ଅର୍ଥଲୋଭରେ ଜାତି, ବନ୍ଧୁ, ଭାଇ, ଧର୍ମାଙ୍କ ପ୍ରଭୃତିର ଅହିତ ସାଧନ କରିବାକୁ କୁଣ୍ଠାବୋଧ କଲେ ନାହିଁ । ଏଣୁ ଦେଶର ସମୂହ ଦୁର୍ଗତି । ଏ ଦେଶବାସୀ ଅନେକେ ତୁଚ୍ଛ ଟାଇଟଲର ଲୋଭୀ ଏହା ଜାଣିପାରି ଇଂରେଜ ବଡ଼ ଛୋଟ ଅନେକଙ୍କୁ ଟାଇଟଲ୍ ଦ୍ୱାରା କ୍ରୟ କରିବାର ସୁବିଧା ପାଇଥିଲେ । ଆଜି ସେ ଖିତାପ, ସେ ଟାଇଟଲର ମୂଲ୍ୟ ଅଛି କି ? ଯେଉଁମାନେ ଅର୍ଥ ବ୍ୟୟକରି ଟାଇଟଲ୍ କିଣିଥିଲେ ସେମାନେ ଖରିଦ ମୂଲ୍ୟ ଫେରିପାଇବେ କି ?

କଂଗ୍ରେସ ପ୍ରେସିଡେଣ୍ଟ ୪୬ ଜଣ । ଏମାନେ ଦେଶ ଉଦ୍ଧାରକଳ୍ପେ ଧୁରନ୍ଧର । କେହି କାହାକୁ ଊଣା ନୁହନ୍ତି । ଏଥିମଧ୍ୟରେ ଗରମ ଓ ନରମପନ୍ଥୀ ଥିଲେ; ଆପଣା ବୁଦ୍ଧି ଓ ବିବେଚନା ଅନୁସାରେ କଂଗ୍ରେସକୁ ଚଳାଇ ଆସିଲେ । ଭିନ୍ନ ରୁଚି ହିଁଲୋକାଃ । ସମୟ ବିଶେଷରେ ମତାନୈକ ଦେଖି କାହାକୁ ହେଲେ ଦୋଷୀ କରିବା ଉଚିତ୍ ନୁହେଁ । ସମସ୍ତଙ୍କ ଯତ୍ନରୁ ସ୍ୱାଧୀନତା ମିଳିଅଛି । ଜାତି ନିର୍ବିଶେଷରେ ଓ ଧର୍ମ ନିର୍ବିଶେଷରେ ପ୍ରେସିଡେଣ୍ଟମାନେ ଏ ଦେଶବାସୀଙ୍କଦ୍ୱାରା ବିବେଚିତ ହୋଇଥିଲେ । ଇଂରେଜ, ପାର୍ଶୀ, ମୁସଲମାନ୍‌ମାନଙ୍କୁ ଦେଶବାସୀ ଦେଶ ଉଦ୍ଧାରର କର୍ଣ୍ଣଧାର କରିଥିଲେ । ୪୬ ଜଣ ମଧ୍ୟରୁ ଆଠଜଣ ମୁସଲ୍‌ମାନ୍ । ଦେଶବାସୀଙ୍କ ମୁସଲ୍‌ମାନଙ୍କ ଉପରେ କି ଆସ୍ଥା ଥିଲା ତାହା ଏହି ନିର୍ବାଚନରୁ ହିଁ ଜଣାଯିବ । ମାତ୍ର ପୁଣି ସେହି ଇଂରେଜଙ୍କର ଭେଦନୀତି ହିନ୍ଦୁ ମୁସଲ୍‌ମାନଙ୍କୁ ସ୍ୱତନ୍ତ୍ର କରିବାର ଚେଷ୍ଟା କଲା ଓ ସଫଳକାମ ହେଲା ।

ଇଂରେଜ ଗଲେ । ଇଂରେଜ ଯିବାରୁ କେବଳ ପାକିସ୍ତାନ ଓ ଭାରତ ୟୁନିୟନର ଲୋକମାନେ ଏକ ମେଳରେ ସ୍ୱାଧୀନତା ଦିବସ ପାଳନ କଲେ । ଏହା କମ୍ ଗୌରବର କଥା ନୁହେଁ ଏବଂ ଏହା ଭବିଷ୍ୟତ ମିଳନର ପ୍ରଥମ ନମୂନା ବୋଲି ମନେ ହୁଏ । ଭାଇ ଭାରତବାସୀ, ଇଂରେଜ କୂଟନୀତି ସୂତ୍ର ଦ୍ୱାରା ଆମମାନଙ୍କୁ ଭାନୁମତୀ ନାଟର ପୁତଳି ପରି ନଚାଉ ଥିଲେ । ସେମାନେ ଗଲା ଉତ୍ତାରୁ ଆମେ ସମସ୍ତେ ଭାରତବାସୀ ଭାଇ ଭାଇ । ବୃଥା ଜାତି ଓ ଧର୍ମ ମମତା ଘେନି ନାଚିବା କାହିଁକି ? କିପାଇଁ ଭାଇରେ ଭାଇରେ ଶତ୍ରୁତା କରି ଦୁଃଖ ଭୋଗ କରିବା । ଆସ ସମସ୍ତେ ମିଳିମିଶି ରହିବା, କଳି ଲଗାଇବା ଲୋକେ ତ ଗଲେ, କଳହ କରିବା କାହିଁକି ? କି ସ୍ୱାର୍ଥରେ ?

କ୍ଲାଇବ, ଯେ କି ପ୍ରତାରଣା ଦ୍ୱାରା ଲାଞ୍ଚ ଘୁସ୍ ଦ୍ୱାରା ଦେଶ ଜୟ କଲେ, ଦାସତ୍ୱର ପ୍ରଥମ ଶୃଙ୍ଖଳ ଗଢ଼ିଲେ, ତାଙ୍କର ପ୍ରତିମୂର୍ତ୍ତି ଏହି ଦେଶର ଅର୍ଥରେ ନିର୍ମିତ ହୋଇ ଭିକ୍ଟୋରିଆ ମେମୋରିଏଲ୍ ପ୍ରାସାଦରେ ସୁରକ୍ଷିତ । ସିରାଜଉଦ୍‌ଦଉଲ୍ଲା ଯେ ଦେଶରକ୍ଷା ନିମନ୍ତେ, ଭାରତବାସୀଙ୍କି ଚିର ଦାସତ୍ୱରୁ ମୁକ୍ତ କରିବା ନିମନ୍ତେ ଅସାଧାରଣ ଯତ୍ନ କରିଥିଲେ ଦେଶବାସୀଙ୍କ ବିଶ୍ୱାସଘାତକତା ଯୋଗୁଁ ପଲାସୀ ଯୁଦ୍ଧରେ ପରାସ୍ତ ହୋଇଥିଲେ ଏବଂ ଇଂରେଜଙ୍କ ସ୍ୱାର୍ଥ ପାଇଁ ନିଜର ଜାତି ଭାଇ ଦ୍ୱାରା ପ୍ରାଣ ହରାଇଲେ ସେହି ସିରାଜଉଦଲ୍ଲାଙ୍କର ଚିହ୍ନ ବର୍ଣ୍ଣ ଲୋକେ ସ୍ମରଣ କରନ୍ତି ନାହିଁ । ତାଙ୍କ ନିମନ୍ତେ ସୌଧଗଢ଼ା ହେବା ତାଙ୍କର ପ୍ରତିମୂର୍ତ୍ତି ଗଢ଼ା ହେବା ତ ଦୂରର କଥା ତାଙ୍କର ଅପକର୍ମ ପ୍ରଚାର ନିମନ୍ତେ ଇତିହାସରେ ଯଥେଷ୍ଟ ସ୍ଥାନ ମିଳିଲା । ମାତ୍ର ତାଙ୍କ ଦେଶହିତୈଷିତା ଏ ଦେଶବାସୀଙ୍କର ସ୍ମରଣ ନିମନ୍ତେ ଇତିହାସ ଧାଡ଼ିଏ ମଧ ଦାନ କଲା ନାହିଁ । ସିରାଜଉଦ୍ଦଲ୍ଲାର କାଳ୍ପନିକ ଅପକର୍ମ ଜଗତ ସମ୍ମୁଖରେ ପ୍ରକାଶ କରିବାକୁ ଏବଂ ଏ ଦେଶବାସୀଙ୍କ ହୃଦୟରେ ଘୃଣା ଉଦ୍ରେକ କରାଇବା ନିମନ୍ତେ କଲିକତା ସହରର ଛାତି ଉପରେ ଲାଟ କର୍ଜନ ଗୋଟାଏ ମର୍ମର ପ୍ରସ୍ତରର ବ୍ୟୟସାଧ୍ୟ ସ୍ତମ୍ଭ ନିର୍ମାଣ କଲେ । ଟଙ୍କା ବିଲାତରୁ ଆସି ନ ଥିଲା, ଏ ଦେଶର ଟଙ୍କାରେ ନିର୍ମିତ ହେଲା ଏହି କାଳ୍ପନିକ ପରିକଳ୍ପନାର ନାମ ଅନ୍ଧକୂପ

ହତ୍ୟାର ସ୍ମାରକସ୍ତମ୍ଭ । ବର୍ତ୍ତମାନ ସ୍ୱାଧୀନ ଦେଶବାସୀ ସିରାଜଉଦ୍ଦଲ୍ଲାର ମହତ କାର୍ଯ୍ୟ ନିମନ୍ତେ ଏବଂ ସର୍ବସ୍ୱାନ୍ତ ହୋଇ ଆତ୍ମବଳି ଦେବାର ସ୍ମାରକ ସ୍ୱରୂପ ଗୋଟାଏ ମର୍ମର ସ୍ତମ୍ଭ ବା ମର୍ମର ସୌଧ ନିର୍ମାଣ କରିପାରିବେ କି ? ସେ ମହତ୍ତ୍ୱ ସେ ହୃଦୟବତ୍ତା ଭାରତବାସୀଙ୍କଠାରେ ନାହିଁ ।

ନାନାସାହେବ ଓ ତାଙ୍କର ସହକର୍ମୀମାନେ ଦେଶଦ୍ରୋହୀ ବିଦ୍ରୋହୀ । କାହା ସ୍ୱାର୍ଥରେ ? ଏ ଦେଶ ନିମନ୍ତେ ନୁହେଁ କି ଏବଂ ଏ ଦେଶବାସୀକି ଦାସତ୍ୱ ଶୃଙ୍ଖଳରୁ ମୁକ୍ତ କରିବା ଅଭିପ୍ରାୟରେ ନୁହେଁ କି ? ତେବେ ଆମେମାନେ ନାନାସାହେବଙ୍କୁ ଆଜି ମଧ୍ୟ ବିଦ୍ରୋହୀ ଦେଶଦ୍ରୋହୀ ବୋଲିବା କେଉଁ ନ୍ୟାୟରେ ? ଇଂରେଜଙ୍କ ଶତ୍ରୁକୁ ଆମ ଦେଶର ଶତ୍ରୁ ଭାବିବା କେଉଁ ନ୍ୟାୟସଙ୍ଗତ ? ଭୟରେ ଯାହା କରିଅଛୁଁ ସେଥି ନିମନ୍ତେ ପଶ୍ଚାତାପ କରିବା ଉଚିତ୍ । ଏବଂ ନାନାସାହେବ ନିମନ୍ତେ କୌଣସି ସ୍ତମ୍ଭ ବା ସୌଧ ଦିଲ୍ଲୀଠାରେ ନିର୍ମିତ ହେବା ଉଚିତ । ସିପାହୀବିଦ୍ରୋହ ବେଳେ ଭାରତର ନାନା ସ୍ଥାନର ହିତୈଷୀଗଣ ଆପଣା ସାଧ୍ୟାନୁସାରେ ଇଂରେଜଙ୍କ ବିରୋଧାଚରଣ କରି ଦେଶୋଦ୍ଧାରର ଯତ୍ନ କରିଥିଲେ । କେହିବା ଫାଶୀ କାଠରେ ଝୁଲିଲେ, କେହିବା ଜେଲ୍‌ରେ ସଢ଼ିଲେ । ଐତିହାସିକମାନେ ତାଙ୍କର ନାମ ଗନ୍ଧ ପାଇଲେ ନାହିଁ । ପ୍ରତ୍ୟେକ ପ୍ରଦେଶର ଲୋକେ ଯାହା ଜାଣନ୍ତି ତାହା ପ୍ରକାଶ କରି ସେହି ହିତୈଷୀମାନଙ୍କ ନାମ କ୍ରମେ ଲୋକର ସ୍ମରଣକୁ ଆଣିବାକୁ ଯତ୍ନ କରିବା ଉଚିତ୍ ଏବଂ ଇତିହାସରେ ସ୍ଥାନ ପାଇବା ନିମନ୍ତେ ଯତ୍ନ କରିବା ଉଚିତ୍ । ସୁରନ୍ଦର ସା ଏବଂ ତାଙ୍କ ଭାଇମାନେ ଏହି ବିପ୍ଳବରେ ଯୋଗଦେଇ ଆପଣାର ସ୍ୱତ୍ୱ ସାବ୍ୟସ୍ତ କରିବାର ଚେଷ୍ଟା କରିଥିଲେ । ସେମାନଙ୍କ ଭୁଲିଯିବାର ଆମମାନଙ୍କର ଉଚିତ୍ କି ?

ସମସ୍ତଙ୍କ ସ୍ମରଣ ରଖିବା ଉଚିତ୍ ଯେ ସିପାହୀ ବିଦ୍ରୋହ ଇଂରଜଙ୍କ ହୃଦୟରେ ଆତଙ୍କ ଉପସ୍ଥିତ କରିଥିଲା ଏବଂ ସେଥିରୁ ରକ୍ଷାପାଇବା ନିମନ୍ତେ ନାନା ଉପାୟ ଉଦ୍ଭାବନ କରି ଏହି ଦେଶର ଲୋକଙ୍କ ସହାୟତାରେ ଏହି ଦେଶର ହିତୈଷୀମାନଙ୍କୁ ଯସ୍ତ କଲେ । ଲାଞ୍ଚ ଘୁସ୍‌ଟାଇଟଲ ଖିତାବର ସୃଷ୍ଟି ହେଲା । ଗୁପ୍ତଚର ବା ଗୁପ୍ତପୋଲିସ୍ ଦ୍ୱାରା ଦେଶର ଯାବତୀୟ ଗୁପ୍ତ ରହସ୍ୟ ଭେଦ କଲେ ଏବଂ ଦାସତ୍ୱ ଶୃଙ୍ଖଳ ଦୃଢ଼ତର କଲେ । ସମସ୍ତଙ୍କ ସ୍ମରଣ ରଖିବାର ଉଚିତ ଯେ ସିପାହୀ ବିଦ୍ରୋହାନଳର ସ୍ଫୁଲିଙ୍ଗ ଜନହୃଦୟ ଭସ୍ମାଚ୍ଛାଦିତ ହୋଇଥିଲା ଏବଂ ସମୟରେ ଜଳି ଉଠୁଥିଲା ଏବଂ ପ୍ରଥମ ବିଦ୍ରୋହର ଫଳ ଏବେ ଫଳିଲା, ଦେଶବାସୀ ଆଂଶିକ ସ୍ୱାଧୀନତା ପାଇଲେ । ସାବଧାନ ହୋଇ ଦେଶ ଚଳାଇ ନ ପାରିଲେ ପୁଣି ବିପ୍ଳବ ଉପସ୍ଥିତ ହେବ ।

ଆଜି ବାଳଗଙ୍ଗାଧର ତିଳକ ନାହାନ୍ତି । ସେ ଗୀତାର ମାହାତ୍ମ୍ୟ ବଢ଼ାଇ ଲୋକଙ୍କୁ ମତାଇ ଥିଲେ । ସେ ଥିଲେ ଉଗ୍ରପନ୍ଥୀ । ସେ ଇଂରେଜମାନଙ୍କୁ ହୃଦୟରେ ଯେପରି ଆତଙ୍କ ଉପସ୍ଥିତ କରିଥିଲେ, କଂଗ୍ରେସ ହୃଦୟରେ ମଧ୍ୟ ଭୀତି ସଞ୍ଚାର କରୁଥିଲେ । କଂଗ୍ରେସ ଦଳ ତାଙ୍କର ତେଜକୁ ଅସହ୍ୟ ମନେକରି ତାଙ୍କୁ ଥରେ ମଧ୍ୟ ପ୍ରେସିଡେଣ୍ଟ କଲେ ନାହିଁ । ମାତ୍ର ତାଙ୍କର ଦେଶଭକ୍ତି ଓ ପାଣ୍ଡିତ୍ୟ ଅଗାଧ । ତାଙ୍କୁ ସ୍ମରଣ କରିବା ଆମମାନଙ୍କ ଉଚିତ୍ । ରଣଜିତ୍ ସିଂହ ଯେ ଦିନେ କହିଥିଲେ, ମୁଠାଟାକର ରକ୍ତ ମେଘ ଆକାଶକୁ ମେଘାଚ୍ଛନ୍ନ କରେ ସେହିପରି ଇଂରେଜ ଅଧିକୃତ ସାମାନ୍ୟ ମାନଚିତ୍ରର ଲାଲ୍‌ରଞ୍ଜିତ ଅଂଶ କ୍ରମେ ବିସ୍ତାର ଲାଭ କରି ସମସ୍ତ ଭାରତକୁ ଲାଲ୍ କରିଦେବ । 'ସବ୍ ଲାଲ୍ ହୋ ଯାଏଗା' ବାସ୍ତବରେ ସମସ୍ତ ଭାରତ ଲାଲ୍ ହୋଇଗଲା । ସ୍ଥାନବିଶେଷରେ ହଳଦିଆ ରଙ୍ଗ ଦିଆଯାଉଥିଲେ ସୁଦ୍ଧା—ସେହି ହଳଦିଆ ସ୍ଥାନମାନଙ୍କୁ ଗାଢ଼ତର ଲାଲ୍ ବୋଲାଯିବ । କି ଦୂରଦର୍ଶୀ ରଣଜିତ୍ ସିଂହ, ସେ ପ୍ରକୃତ ନରସିଂହ । ବଙ୍ଗବିଭାଗ ଘେନି ଯେ ଦେଶବାସୀ ଆନ୍ଦୋଳନ ଚଳାଇଲେ ତାହା ଅଭୂତପୂର୍ବ । ଯେଉଁ ବୀରମାନେ ଦେଶ ଉଦ୍ଧାର ନିମନ୍ତେ ପ୍ରାଣ ଦେଲେ ସେମାନଙ୍କୁ ଆମେମାନେ ଦେଶଦୋହ୍ରୀ ବୋଲିବା କି ? ଯେଉଁମାନଙ୍କର ସ୍ୱାର୍ଥତ୍ୟାଗ ଓ ପ୍ରାଣତ୍ୟାଗ ହେତୁ Mosley ଙ୍କର Settled fact unsettled ହେଲା ସେମାନେ କି ଆମମାନଙ୍କର ସ୍ମରଣୀୟ ନୁହନ୍ତି ? ପଞ୍ଜାବ କେଶରୀ ଲଜପତରାୟ ସାଇମନ୍ କମିସନର ପ୍ରତିରୋଧ କଲାବେଳେ ଇଂରେଜ ସୈନିକ ହାତରେ ପ୍ରାଣ ହରାଇଲେ । ଭକତ୍‌ସିଂହ ତାଙ୍କର ସହକର୍ମୀ, ତହିଁର ପ୍ରତିଶୋଧ ନେବା ନିମନ୍ତେ ପ୍ରକାଶ୍ୟରେ— ଗୁପ୍ତରେ ନୁହେଁ ସଭାଗୃହ ମଧ୍ୟରେ ବମ୍ ନିକ୍ଷେପ କରି ଦେଶବାସୀଙ୍କର ଆନ୍ତରିକ ଭାବ ଜଣାଇ ଥିଲେ । ବମ୍ ନିକ୍ଷେପ କଲେ ମାତ୍ର କାହାରି ପ୍ରାଣନାଶ କରି ନାହିଁ । ତଥାପି ତାଙ୍କର ପ୍ରାଣଦଣ୍ଡ ଦେଲେ ବିଚାରକମାନେ । ତାର ରକ୍ତମାଂସ ଅଗ୍ନିରେ ଜାଳିଲେ, ନଦୀ ଜଳରେ ନିକ୍ଷିପ୍ତ ହେଲା । ମାତୃଭୂମି ଆଦରରେ ତା'ର ଶବ ଦାହ ନିମନ୍ତେ ସ୍ଥାନ ଦେଲା । ନଦୀ ଜଳରେ ବୋଳାଭସ୍ମଦେହରେ ଲେପନ କରିଅଛି ମାତ୍ର ତାର ଦେଶର ଭାଇମାନେ ତାର ପ୍ରତି ସହାନୁଭୂତି ସୂଚକ ବାକ୍ୟ ପଦେ ତୁଣ୍ଡରେ ଫିଟାଇ ନାହାନ୍ତି । ତାଙ୍କୁ ସ୍ମରଣ ରଖି ନାହାନ୍ତି । ଦାସର ବା କର୍ତ୍ତବ୍ୟ କ'ଣ— ଭୟରେ ପ୍ରାଣ ଥରହର । ଦେଖାଯାଉ ଏବେ କ'ଣ ହେବ ?

ଆଜି ଭାରତ ସ୍ୱାଧୀନ ବୋଲି ସମସ୍ତେ କହୁଅଛନ୍ତି, ଇଣ୍ଡିଆ ସ୍ୱାଧୀନ ହୋଇ ଥାଇପାରେ ମାତ୍ର ଭାରତ ସ୍ୱାଧୀନ ହେଲା କି ? ଦେଶମାତୃକା ତା'ର ନିଜ ନାମରେ ଅଭିହିତ ହୋଇ ନାହିଁ । ତେବେ ସ୍ୱାଧୀନତାକାର । ସହରର ନାମ, ଗଳିର ନାମ, ସଡ଼କର ନାମ ପରିବର୍ତ୍ତନ କରାଯାଉଅଛି ମାତ୍ର ଇଣ୍ଡିଆ ପରିବର୍ତ୍ତେ ଭାରତ ଲେଖିବାକୁ କହିବାକୁ କର୍ତ୍ତାମାନଙ୍କର ମନ ବଳୁ ନାହିଁ । ଭୟ ଅଛି କି ? ଆଜି ଇଣ୍ଡିଆ ଇଉନିୟନ, ଇଣ୍ଡିଆ, ଇଣ୍ଡିଆନ୍ ଉଚ୍ଚାରଣ ନ କଲେ କର୍ତ୍ତାମାନଙ୍କ ମନରେ ଶାନ୍ତି ଆସୁ ନାହିଁ । ଏହା କି ସ୍ୱାଧୀନତାର ଚିହ୍ନ ? ଘୃଣ୍ୟ ଇଣ୍ଡିଆ ଶବ୍ଦ ପରିବର୍ତ୍ତେ ଭାରତ ଶବ୍ଦ ବ୍ୟବହାର ନ କରିବାଯାଏ ଆମେମାନେ ସନ୍ତୁଷ୍ଟ ନୋହୁଁ ।

ଯାହା ହୋଇଅଛି ସେଥି ନିମନ୍ତେ ଆମେମାନେ ସୁଖୀ ହେବା ଉଚିତ୍ । ସୁଖର ବିଷୟ ଏହି ଯେ ଭାରତବାସୀ ହିତୈଷୀ ଓ ସ୍ୱାର୍ଥତ୍ୟାଗୀମାନଙ୍କର ଯତ୍ନରେ ଆଜି ଆମେମାନେ ସ୍ୱାଧୀନତା ପାଇଅଛୁଁ । ସେମାନଙ୍କୁ ଆମମାନଙ୍କର ଜୁହାର । ଗାନ୍ଧିଜୀ ଓ ଜବାହରଲାଲ୍‌ଜୀ ଭାରତବାସୀଙ୍କର ସ୍ନେହ, ଆଦର ଓ ଭକ୍ତିର ପାତ୍ର ଅଟନ୍ତି— ସେମାନଙ୍କର ଦୀର୍ଘଜୀବନ କାମନା କରୁଅଛୁଁ । ଇଂରେଜଙ୍କ ପ୍ରଚଳିତ ଶାସନ ନୀତିକୁ ପରିବର୍ତ୍ତନ କରି ଏ ଦେଶର ଲୋକଙ୍କର ସହନୀୟ ପଦ୍ଧତି ପ୍ରଚଳିତ କରିବାର ପନ୍ଥା ଉଦ୍ଭାବନ କରନ୍ତୁ । ବ୍ୟୟ ବାହୁଲ୍ୟ ଶାସନ ପନ୍ଥା ଲୋକଙ୍କୁ ଅସମ୍ଭାଳ କରିଅଛି ଏବଂ ସୈନ୍ୟବିଭାଗର ବହୁବ୍ୟୟ ଲୋକଙ୍କୁ ଅସ୍ଥିର କରିଅଛି । ଏଥିର ନିନ୍ଦା ବକ୍ତୃତାରେ ପତ୍ରିକାରେ ବରାବର କରାଯାଇଅଛି । ପ୍ରଥମେ ଏହି ଯୋଡ଼ିକ ଖର୍ଚ୍ଚ କମାଇ ନ ପାରିଲେ ସୁଖ ଶାନ୍ତି ଆସିବ ନାହିଁ । ଏ ଦେଶରେ ଘୁସ୍, ଲାଞ୍ଚ ଉତ୍କୋଚର ସ୍ରୋତ ବହିଥିଲା । ତାହା ସମ୍ପୂର୍ଣ୍ଣ ବନ୍ଦ ନ କଲେ ଲୋକେ ଶାନ୍ତି ପାଇବେ ନାହିଁ । ଆଶା ଅଛି ଜବାହରଲାଲ୍‌ଙ୍କର କର୍ତ୍ତୃତ୍ୱରେ ଏହି ସଂସ୍କାର ଶୀଘ୍ର ଲୋକଙ୍କୁ ସୁଖ ଓ ଶାନ୍ତି ଦେବ । ପୂର୍ବେ ଆମେ ଲେଖିଅଛୁଁ ଏବଂ ବର୍ତ୍ତମାନ ମଧ ଲେଖୁଅଛୁଁ ଯେ—

ଦୁଃଖୀ ଲୋକଙ୍କ ଅବସ୍ଥା ହୋଇଲେ ସ୍ୱଚ୍ଛଳ
ଭାରତ ମାତାର ମୁଖ ହେବ ସମୁଜ୍ଜ୍ୱଳ ।

ଆଜି ମହମଦ ଜିନ୍ନାଙ୍କର ଆଶ୍ୱାସ ବାଣୀ ଶୁଣି ଭବିଷ୍ୟତରେ ହିନ୍ଦୁ ମୁସଲ୍‌ମାନ ଏକତା ଆସିବ ଏବଂ ଭାରତ ଅଖଣ୍ଡ ହେବ ବୋଲି ଆଶା କରାଯାଉଅଛି । ଭାରତର ଉଭୟ ଅଂଶର କର୍ତ୍ତାମାନଙ୍କର ଉଦ୍ୟୋଗ ଓ ଯତ୍ନ ଏଥିପ୍ରତି ବିଶେଷ ଲୋଡ଼ା, ଏହାଙ୍କର ପ୍ରଚାର ଫଳରେ କିଛି ମିଳନର ବାଟ ଫିଟି ଅଛି ଏଥିରେ ସନ୍ଦେହ ନାହିଁ । ଏଥିନିମନ୍ତେ ପାକିସ୍ତାନର ଗଭର୍ଣ୍ଣର ଜେନେରେଲ୍‌ଙ୍କୁ ଆମମାନଙ୍କର ମଧ ଆନ୍ତରିକ ଧନ୍ୟବାଦ ।

ଇଂରେଜ ଶାସନ ପଦ୍ଧତି ଗଲା । ଇଂରେଜମାନେ ଏ ଦେଶ ଛାଡ଼ିଲେ । ତାଙ୍କ ଶାସନପଦ୍ଧତି ଲୋପ ପାଇଲା, ଏଥିନିମନ୍ତେ ଲୋକେ ସୁଖୀ ହେବେ ବୋଲି ଆଶା କରନ୍ତି । ଇଂରେଜଙ୍କର ଭାରତ ଶାସନ ପଦ୍ଧତି ନିନ୍ଦନୀୟ । ଏଥିନିମନ୍ତେ ଇଂରେଜ ଜାତି ନିନ୍ଦନୀୟ ନୁହନ୍ତି । ଇଂରେଜ ଜାତିର ଅନେକ ଗୁଣ ଅଛି ଯାହା ଭାରତବାସୀର ଅନୁକରଣଯୋଗ୍ୟ । ମାତ୍ର ଆମ ଦେଶବାସୀ ସେମାନଙ୍କର ସୁଗୁଣ ଶିକ୍ଷା ଓ ଅନୁକରଣ ଅପେକ୍ଷା ଦୁର୍ଗୁଣ ଅନୁକରଣର ବିଶେଷ ପକ୍ଷପାତୀ ହୋଇପଡ଼ିଲେ । ଇଂରେଜୀ ଭାଷା ପ୍ରଚଳନ ଦ୍ୱାରା ଭାରତୀୟ ଜାତିର ଅନିଷ୍ଟ କରି ନାହାନ୍ତି, ଇଷ୍ଟ କରିଅଛନ୍ତି । ଏଥିସଙ୍ଗେ, ରାମମୋହନ ରାୟଙ୍କର ନାମ ଆମମାନଙ୍କର ସ୍ମରଣ ହୁଏ । ଇଂରେଜୀ ଭାଷା ଶିକ୍ଷା ଦ୍ୱାରା ଦେଶବାସୀଙ୍କର ଆଖି ଫିଟିଲା, କୁସଂସ୍କାର ଦୂର ହେଲା— ବିଜ୍ଞାନଚର୍ଚ୍ଚା ଦ୍ୱାରା ମନ ଉନ୍ନତ ହେଲା ଏବଂ ଯେଉଁ ଜାତୀୟ ଆନ୍ଦୋଳନ ଓ ବିପ୍ଳବ ଦ୍ୱାରା ଆଜି ସ୍ୱାଧୀନତାର ଆସ୍ୱାଦ ମିଳି ଅଛି ତାହା କେବଳ ଇଂରେଜୀ ଶିକ୍ଷାର ଫଳରୁ ଏଥି ନିମନ୍ତେ ଇଂରେଜ ଜାତିକୁ ପ୍ରଶଂସା ନ କଲେ ଦୋଷୀ ହେବାକୁ ପଡ଼ିବ ।

ଯୁଦ୍ଧ ଆରମ୍ଭ ହେଲା ମାତ୍ରେ ଯେମନ୍ତ କି ବିଦେଶୀ କି ସ୍ୱଦେଶୀ ପଦାର୍ଥର ମହାର୍ଘ ହେଲା ତେମନ୍ତ ଶିକ୍ଷିତ ଲୋକଙ୍କର ମଧ ମହାର୍ଘ ହେଲା । କେବଳ ମହାର୍ଘ ହେଲା ତାହା ନୁହେଁ ଦୁଃଷ୍ପ୍ରାପ୍ୟ ମଧ ହେଲା ବିଶେଷତଃ ଶିକ୍ଷକ ନ ମିଳିବାରୁ ଶିକ୍ଷୋନ୍ନତିରେ ବାଧା ଘଟିଅଛି । ଅନ୍ୟ ବିଭାଗର କାର୍ଯ୍ୟରେ ଜଣକଦ୍ୱାରା ଦୁଇଜଣର କାମ କଷ୍ଟରେ ଚଳିପାରେ ମାତ୍ର ଜଣେ ଶିକ୍ଷକ ଦୁଇ ଜଣ ଶିକ୍ଷକର କାମ କରିବା ଅସମ୍ଭବ । ଅନେକ ସ୍କୁଲ ଚାଳକ ଏ କେତେବର୍ଷ ଦୁଇଜଣର କାମ ଜଣକଦ୍ୱାରା ଚଳାଇବାକୁ ବାଧ ହୋଇଅଛନ୍ତି । ଏଥିରେ କ୍ଷତି ହୋଇଅଛି ଛାତ୍ରଙ୍କର । ବାମଣ୍ଡା ହାଇସ୍କୁଲ ଏଥିର ଭୁକ୍ତଭୋଗୀ । ଆମେମାନେ ଶୁଣି ସୁଖୀ ହେଲୁଁ ଯେ ଆୟୁଷ୍ମାନ୍ ବାମଣ୍ଡା ରାଜା ମହୋଦୟ ଏହି ଅସୁବିଧା ଅନୁଭବ କରି ବାମଣ୍ଡାବାସୀ ଛାତ୍ରମାନଙ୍କ ନିମନ୍ତେ ଗୋ ୧୬ ଟି ବୃତ୍ତି ନିର୍ଦ୍ଧାରଣ କରି ଅଛନ୍ତି । ବାମଣ୍ଡାର କୃତୀ ଛାତ୍ର ଏ ବର୍ଷ ୧୬ ଜଣ ଯଥାକ୍ରମେ ଟ ୧୫, ଟ ୨୦, ଟ ୨୫, ଟ ୩୦, ଟ ୩୫ ହିସାବେ ବୃତ୍ତିପାଇ ଓଡ଼ିଶାର ବିଭିନ୍ନ କଲେଜରେ ଅଧୟନ କରୁଅଛନ୍ତି । ବି.ଏ.ଡ଼ି.

ଇତ୍ୟାଦି, ଅଧ୍ୟୟନ ଶେଷ କରି ଏହିମାନଙ୍କ ମଧ୍ୟରୁ ଅନେକେ ସ୍କୁଲରେ କାର୍ଯ୍ୟ ଗ୍ରହଣ କରିବେ । ଏତଦ୍ୱାରା ସ୍କୁଲର ଶିକ୍ଷକ ଅଭାବ ଦୂରୀଭୂତ ହେବ ଏବଂ ଛାତ୍ରମାନେ ସୁଶିକ୍ଷା ପାଇ ଦେଶରେ ଜ୍ଞାନାଲୋକ ବିସ୍ତାର କରିବେ ।

କେବଳ ଏତିକି ନୁହେଁ ଷ୍ଟେଟ ଅନୁଷ୍ଠାନର ବିଭିନ୍ନ ବିଭାଗରେ ଦେଶୀପିଲା ତାଲିମ୍ ହୋଇ ଆସି ଷ୍ଟେଟ କାର୍ଯ୍ୟ ତୁଲାଇବା ପାଇଁ ବିଭିନ୍ନ ଟ୍ରେନିଂସ୍କୁଲ ଓ କଲେଜକୁ କେତୋଟି ଛାତ୍ରକୁ ମଧ ପଠାଇଛନ୍ତି ।

ଏଥିନିମନ୍ତେ ବାମଣ୍ଡାଧିପତିଙ୍କୁ ଆମମାନଙ୍କର ଆନ୍ତରିକ ଧନ୍ୟବାଦ ।

ଆମେମାନେ ସମାଲୋଚନା ନିମନ୍ତେ ଅନେକଗୁଡ଼ିଏ ପୁସ୍ତକ ପାଇଅଛୁଁ । ନାନା ପ୍ରତିବନ୍ଧକବଶତଃ ସେ ପୁସ୍ତକମାନଙ୍କର ସମାଲୋଚନା ଯଥାସମୟରେ ପ୍ରକାଶ କରିବାକୁ ଅକ୍ଷମ ହୋଇ ଦୁଃଖପ୍ରକାଶ କରୁଅଛୁଁ । ଯେତେଶୀଘ୍ର ସମ୍ଭବ— ସମାଲୋଚନା ପ୍ରକାଶ କରିବୁଁ ଏବଂ ଏଣିକି ଧାରାବାହିକ ରୂପେ ପ୍ରତି ମାସରେ ପୁସ୍ତକ ସମାଲୋଚନା ପ୍ରକାଶ ପାଇବ ।

ଶଙ୍ଖର ପୁରସ୍କାର ବିତରଣ ନିୟମାବଳୀ ଏ ସଂଖ୍ୟାରେ ପ୍ରକାଶ କରିବାର ଆଶାପୋଷଣ କରିଥିଲୁଁ । ଏଥର ସ୍ଥଗିତ କରାଯାଇଅଛି ।

## ତୃତୀୟ ବର୍ଷ ତୃତୀୟ ସଂଖ୍ୟା

### ଗାନ୍ଧି ଜୟନ୍ତୀ

ଗାନ୍ଧିଜୀ ୭୯ ବର୍ଷରେ ପଦାର୍ପଣ କଲେ । ଏଥି ନିମନ୍ତେ ଦେଶବ୍ୟାପୀ ମହୋତ୍ସବ ଲାଗିଅଛି । ଏତାଦୃଶ ମହାପୁରୁଷର ଜନ୍ମଉତ୍ସବ ପାଳିତ ହେବା ଯେ ନିତାନ୍ତ ସୌଭାଗ୍ୟଦ୍ୟୋତକ ଏଥିରେ ସନ୍ଦେହ ନାହିଁ । ଭାରତର ଭାଗ୍ୟନିୟନ୍ତା ଗାନ୍ଧିଜୀ ଆଉ ବହୁ ବର୍ଷ ଜୀବିତ ଥାଇ ଦେଶର ଉପକାର ଏବଂ ଲୋକ ପ୍ରକୃତିର ପରିବର୍ତ୍ତନ କରନ୍ତୁ, ଏହା ଆମମାନଙ୍କର ଆନ୍ତରିକ କାମନା ।

ଦେଢ଼ମାସ ହେଲା ଭାରତମାତା ଇଂରେଜଙ୍କ କବଳରୁ ନିସ୍ତାର ଲଭିଛି । ଏତେ ଶୀଘ୍ର ଏବଂ ଏପରି ଭାବରେ ଭାରତର ମୁକ୍ତି ହେବ ତାହା ଅଳ୍ପ ଲୋକଙ୍କ ମନରେ ସ୍ଥାନ ପାଇଥିଲା । ଏଣୁ ସାଧାରଣ ଲୋକେ ଏ ପରିବର୍ତ୍ତନକୁ ହୃଦୟରେ ସ୍ଥାନ ଦେଇପାରି ନାହାନ୍ତି ଏବଂ ଏ ପରିବର୍ତ୍ତନର ଫଳ କ'ଣ ହେବ ତାହା ମଧ ଚିନ୍ତା କରି ପାରୁନାହାନ୍ତି । **ଅଜ୍ଞ ଅଶିକ୍ଷିତ** ଲୋକେ ବୁଝି ପାରିବେ କିପରି ?

ଭାରତମାତାର ଦେହ ଖଣ୍ଡ ଖଣ୍ଡ ହେଲା ପଛକେ ସେ ଯେ ପରହସ୍ତରୁ ମୁକ୍ତି ପାଇଅଛି ଏହା ଅବିସମ୍ବାଦିତ ସତ୍ୟ । ଭାରତ ଯେ ପୁଣି ଇଂରେଜ ଜାତିର କରକବଳିତ ହେବ ଏହା ଆଦୌ ବିଶ୍ୱାସଯୋଗ୍ୟ ନୁହେଁ । ଏପରି ବିଶ୍ୱାସ ଯେଉଁମାନେ ହୃଦୟରେ ପୋଷଣ କରନ୍ତି ସେମାନେ ନିତାନ୍ତ ଭ୍ରାନ୍ତ । ଆମର ଜନ୍ମଭୂମିକୁ ଆମେମାନେ ପାଇଲୁଁ, ତା'ର ମୁଖୋଜ୍ଜ୍ୱଳ କରିବା ଆମମାନଙ୍କର କର୍ତ୍ତବ୍ୟ ।

ପୂର୍ଣ୍ଣ ଏକ ବର୍ଷ ହେଲା ସ୍ଥାନେ ସ୍ଥାନେ ଯେ ଘୋର ଦ୍ୱନ୍ଦ୍ୱ, ଲୁଟ ଚୋରି, ଗୃହଦାହ, ନରହତ୍ୟା ଲାଗିଥିଲା ତତ୍ସମ୍ବନ୍ଧେ ଆମେମାନେ ପୂର୍ବେ ଅନେକ ଥର ଲେଖି ସାରିଅଛୁଁ । ଅନ୍ୟ କଥା ତେଣେ ଥାଉ, ଏ ଘଟଣାମାନଙ୍କୁ ଆମେମାନେ ଇଂରେଜ ଶାସନ ପଦ୍ଧତିର ଜୋର ବୋଲିପାରୁଁ । ଆମ ଦେଶବାସୀ ସିପାହୀ, ଗୁପ୍ତଚର ପ୍ରଭୃତି ଯେ କି ଦେଶର ଲୋକଙ୍କ ଉପରେ ଶତ୍ରୁତା କରି ଇଂରେଜଙ୍କଠାରୁ ବାହାବା, ପୁରସ୍କାର, ଟାଇଟଲ ପାଉଥିଲେ ସେମାନଙ୍କ ମନ କି ଏକାବେଳକେ ବଦଳି ଯିବାର କଥା— ସେମାନେ କି ଇଂରେଜଙ୍କ ଗୁଣ ସ୍ମରଣ କରି ଅଶ୍ରୁ ତ୍ୟାଗ କରୁ ନାହାନ୍ତି ? ଏବଂ ସେହି ଇଂରେଜ ପଦ୍ଧତି କିପରି ବର୍ତ୍ତମାନ ଭାରତ ଶାସନରେ ପ୍ରଚଳିତ ହେଉ ବୋଲି ସେମାନେ କି ଦେବତା ଚରଣ ତଳେ ମୁଣ୍ଡ ମାରୁ ନାହାନ୍ତି ? ବହୁଦିନର ଅଭ୍ୟାସ ସହସା ଛାଡ଼ିଯାଏ ନାହିଁ, ତାହାକୁ ଛଡ଼ାଇବାକୁ ଛାଡ଼ିବାକୁ ପରିଶ୍ରମ ଓ ଉଦ୍ୟୋଗ କରିବାକୁ ହୁଏ । କର୍ତ୍ତୃପକ୍ଷଗଣ ଏଥିପ୍ରତି ବିଶେଷ ସତର୍କ ହେବା ଉଚିତ।

ଏପରି କି ଲୋକ ନାହାନ୍ତି ଯେଉଁମାନଙ୍କର ବିଶ୍ୱାସ ଅଛି ଯେ ଏ ଦେଶରେ ଗୋଳମାଳ ହେଲେ, ଅଶାନ୍ତି ରାଜତ୍ୱ କଲେ, ଲୋକ କ୍ଷୟ ହେଲେ, ପରସ୍ପର ହଣାକଟା ହେଲେ ମଧ୍ୟସ୍ଥତା କରିବାକୁ ବ୍ରିଟିଶସିଂହ ପୁଣି ଆସିବ । ଏବଂ ମଧ୍ୟସ୍ଥତା କରୁ କରୁ ସିଂହର ଅଂଶ ନେବ ଓ ରାଜତ୍ୱ କରିବ । ଏପରି ମନୋବୃତ୍ତି ଯେଉଁମାନଙ୍କର ଅଛି ସେମାନଙ୍କୁ ବାଛିନେଇ ସେମାନଙ୍କୁ ଶିକ୍ଷା ଦେଇ ସେମାନଙ୍କ ଆଖି ଫିଟାଇବାକୁ ହେବ ।

ଆମେମାନେ ପୂର୍ବେ କହିଅଛୁଁ ଯେ ସୁରାଓ୍ୱାର୍ଦ୍ଦି ପ୍ରମୁଖ ବ୍ୟକ୍ତିଗତ ଯେଉଁ ଅସଂଖ୍ୟ ନର ପଶୁ ତୟାର କରିଥିଲେ— ଅବାଧରେ ଛାଡ଼ି ଦେଇଥିଲେ, ସେମାନେ ଧ୍ୱଂସହେଲେ କି ଗୁପ୍ତରେ ବିଚରଣ କରୁଅଛନ୍ତି ? ଦେଶରେ ଆପାତତଃ ଶାନ୍ତି ବିରାଜମାନ କରିଥିଲେ ସେମାନଙ୍କର ମନ କି ଶାନ୍ତି ଲାଭ

କରିଅଛି ? କିଏ କହିବ ? ସୁବିଧା ପାଇଲେ ସେମାନେ ଯେ ପୁଣି ଦୁଷ୍କାଚରଣ ନ କରିବେ ଏଥିର ପ୍ରମାଣ କ'ଣ ? ଆଶା ଭରସା କାହିଁ ? ହିନ୍ଦୁମାନେ ମଧ ଯେ ନରପଶୁ କରି ନାହାନ୍ତି ଏପରି ନୁହେଁ । ଏହି ଉଭୟଧର୍ମୀ ନରପଶୁଙ୍କୁ ଆୟତ୍ତ କରିବା କର୍ତ୍ତୃପକ୍ଷଙ୍କର ପ୍ରଥମ କର୍ତ୍ତବ୍ୟ ।

ସୁରାଓ୍ୟାର୍ଦିଙ୍କ କର୍ମପନ୍ଥା ପ୍ରତି ଦୃଷ୍ଟି ପକାଇଲେ ମନେହୁଏ ଯେ ସେ ସଇତାନ ଦଳରୁ ମୁକ୍ତି ଲାଭ କରି ଏନ୍‌ଜେରି ଦଳଭୁକ୍ତ ହେଲେ । ଏ ପରିବର୍ତ୍ତନ ଅସାଧାରଣ, ଯଦି ହାର୍ଦିକ ହୋଇଥାଏ । ଯଦି ଏପରି ଜଣେ ଜଣେ ଶାନ୍ତିକାମୀ ବାହାରନ୍ତି ତାହାହେଲେ ଦେଶର ନିଶ୍ଚୟ ଉପକାର ହେବ ।

ସୋସିଆଲିଷ୍ଟ ଓ କମ୍ୟୁନିଷ୍ଟମାନେ ମନେ କରନ୍ତି ଯେ ଆରମ୍ଭରୁ ନୂତନ ଶାସନପଦ୍ଧତି ପ୍ରଚଳିତ ହେବା ସଙ୍ଗେ ସଙ୍ଗେ— ଗଣ୍ଡଗୋଳ ବା ବିପ୍ଳବ ଉପସ୍ଥିତ ନ କଲେ ପଛେ ଇପ୍ସିତ ଫଳଲାଭ ହେବ ନାହିଁ । ଦେଢ଼ମାସ ମାତ୍ର ହେଲା ଭାରତ ମୁକ୍ତ ହୋଇଛି, ତା'ର ଦାୟିତ୍ୱ ଭାରଗ୍ରହଣ କର୍ତ୍ତାମାନେ ଆତ୍ମସମର୍ଥନକ୍ଷମ ହୋଇ ନାହାନ୍ତି, ଏପରି ଅବସ୍ଥାରେ ଯେବେ ସବୁ ଦଳ ଆପଣା ଆପଣା ଦଳର ସ୍ୱାର୍ଥସିଦ୍ଧି ନିମନ୍ତେ ନାନା ଦ୍ୱନ୍ଦ୍ୱ ଲଗାଇଲେ ତେବେ ଦେଶରେ ଅଶାନ୍ତି ବିରାଜମାନ କରିବ ସିନା । ଆମେମାନେ କହୁଁ କର୍ତ୍ତୃପକ୍ଷଙ୍କୁ କିଛିଦିନ ସ୍ଥିର ମନରେ ଶାସନ ପଦ୍ଧତିର ଖସଡ଼ା ତୟାର କରିବାକୁ ଦିଅ ଏବଂ ସମସ୍ତେ ସହଯୋଗ କର । ଭାରତମାତାର ସ୍ୱାଧୀନତା ଦୃଢ଼ୀଭୂତ ହେଲାରୁ ସମସ୍ତଙ୍କ ଆପତ୍ତି ଚାଲିବ-ସେତେବେଳେ କର୍ତ୍ତୃପକ୍ଷ ସମସ୍ତଙ୍କର ଯଥାବିହିତ ବ୍ୟବସ୍ଥା ନ କଲେ ବିପ୍ଳବ ଚାଲିବ । ବିପ୍ଳବର ଧକ୍କାରେ ଇଂରେଜ ସିଂହ ହଟିଗଲା, ଏ ଦେଶବାସୀ କି ଏ ଦେଶବାସୀଙ୍କର ଦାବିରେ ବଶ ହେବେ ନାହିଁ । ସଭା ସଭ୍ୟ, ପ୍ରେସିଡ଼େଣ୍ଟ ତ ଏ ଦେଶବାସୀଙ୍କ ହାତରେ ।

ଯେଉଁମାନେ ଅଳ୍ପକାଳରେ ଇଂରେଜୀଙ୍କ ଶିକ୍ଷାପ୍ରରୋଚନାରେ ଭାରତଶରୀରକୁ ବିଖଣ୍ଡିତ କଲେ ଏବଂ ରାଜନୀତିରେ ଧର୍ମନୀତି ମିଶାଇ ସ୍ୱତନ୍ତ୍ର ହେବାର ଚେଷ୍ଟାକଲେ ଓ ସ୍ୱତନ୍ତ୍ର ହେଲେ ସେମାନେ ଯେ ପୁଣି ଦୁଇ ଦେଶକୁ ମିଶାଇ ଏକଚ୍ଛତ୍ର କରିବେ ଏ ଆଶା ଦୁରାଶା ବା ଅନିତ୍ୟ ଆଶା ବୋଲି ମନେ ହୁଏ । ହିନ୍ଦୁ ଓ ମୁସଲ୍‌ମାନ ଧର୍ମନାମ ଛାଡ଼ି କେବଳ ଭାରତବାସୀ ବୋଲି ପରିଚୟ ଦେଲେ ଏକତା ଆସିପାରେ । ସାଧନାର ଅସାଧ କିଛି ନାହିଁ । ଏଥିନିମନ୍ତେ ଉଭୟ ସ୍ଥାନକୁ ଏକତ୍ର କରିବା ବାସନାରେ ଯେଉଁ ଉପାୟର ଦରକାର ତାହା ଅନ୍ୱେଷଣ କରି କାର୍ଯ୍ୟରେ ଲଗାଇବା ଉଚିତ୍ । ବିଳମ୍ୱରେ କାର୍ଯ୍ୟ ନାଶ । ଏଣୁ ଆଜହୁଁ ଏ ଯତ୍ନ କରିବା ବିଧେୟ ।

ଭାରାକ୍ରାନ୍ତ ପ୍ରଜାକୁଳକୁ ସୁଖୀ କରିବାକୁ ହେଲେ ଦରମା ହାର ହ୍ରାସ କରିବା ଏବଂ ସୈନ୍ୟ ବିଭାଗର ବ୍ୟୟ ଲାଘବ କରିବା ନିତାନ୍ତ ପ୍ରୟୋଜନ, ମାତ୍ର ଏହି କାର୍ଯ୍ୟ ବିଶେଷ ଅଗ୍ରସର ହୋଇଥିବାର ହୃଦ୍‌ବୋଧ ହେଉ ନାହିଁ ।

ଇଂରେଜ ରାଜତ୍ୱ ବେଳେ ଯେଉଁସବୁ କାର୍ଯ୍ୟକୁ ଲୋକେ ଭୟ କରୁଥିଲେ, ଘୃଣା କରୁଥିଲେ ସେ ସବୁ କାର୍ଯ୍ୟକୁ ବନ୍ଦ କରି ଲୋକ ମନକୁ ନିର୍ଭୟ କରିବା ଉଚିତ୍ । ଘୃଣାସ୍ଥଳରେ ଶାସନ ପଦ୍ଧତି ପ୍ରତି ସ୍ନେହ ଜନ୍ମାଇବା ଉଚିତ୍ ।

ଏ ଦେଶକୁ ସୁଖଶାନ୍ତି ଆଣିବା କେବଳ ଜବାହରଲାଲ୍‌ଙ୍କ କର୍ତ୍ତବ୍ୟ ନୁହେଁ କିମ୍ୱା ଜିନ୍ନାଙ୍କ କର୍ତ୍ତବ୍ୟ ନୁହେଁ । ପ୍ରତ୍ୟେକ ମନୁଷ୍ୟ କି ସ୍ତ୍ରୀ କି ପୁରୁଷଙ୍କ ସହଯୋଗ ଓ ସହାନୁଭୂତି ଦ୍ୱାରା ସୁଖ ଆସିବ । ଦେଶ ଜଣକର ନୁହେଁ, ସମସ୍ତଙ୍କର ଆପଣା ଆପଣା ଶକ୍ତି ଅନୁସାରେ ସହଯୋଗ କରିବା କର୍ତ୍ତବ୍ୟ । ଏହାର ନାମ ଲୋକପ୍ରିୟ ସ୍ୱାୟତ୍ତ ଶାସନ ।

**ବିଜ୍ଞାନର ଜୟ:—** ଆମେରିକାରୁ ଗୋଟିଏ ଏରୋପ୍ଲେନ ବିଲାତକୁ ୧୪ ଜଣ ଯାତ୍ରୀ ଧରି ଆସିଲା । ଏହି ଏରୋପ୍ଲେନରେ ଚାଳକ ନାହିଁ । ଆମେରିକାର ବିଦ୍ୟୁତାଗାରର ନିର୍ଦ୍ଦେଶ କ୍ରମେ ଅଢ଼ାଇ ହଜାର ମାଇଲ ଅଜଣା ଆକାଶମାର୍ଗରେ ଉଡ଼ିଆସି ଇଂଲଣ୍ଡରେ ଦଶ ଘଣ୍ଟାରେ ପହଞ୍ଚିଲା । ଏହାକୁ କହିବା ଆବିଷ୍କାର । ଧନ୍ୟ ଆବିଷ୍କାରକର୍ତ୍ତା । ବିଜ୍ଞାନ ବିଶ୍ୱାସୀ ୧୪ ଜଣଙ୍କର ସାହସ ଧନ୍ୟ । ଯେଉଁମାନେ ଆପଣା ଜୀବନତରୀକୁ ବ୍ୟୋମତରୀ ସହିତ ଆକାଶ ମାର୍ଗରେ ଭସାଇଦେଲେ । ''କିସ ପୁଣି ଦେଖା ନ ଯାଏ ଯେବେ ଥାଇ ଜୀବରେ'' । ଆଉ କିଛିଦିନ ବଞ୍ଚିଥିଲେ ଆଉ କେତେ କ'ଣ ଦେଖିବା । ଏହି ବିଜ୍ଞାନ ରାଜ୍ୟରେ ଆମମାନଙ୍କର ଜନ୍ମ ବଡ଼ ଆଗରୁ ହୋଇପଡ଼ିଲା । ଏଣୁ ମନରେ ଦୁଃଖ ହୁଏ । ଆଜିକାଲି ଯେଉଁମାନେ ଜନ୍ମ ହେଉଅଛନ୍ତି ସେମାନେ ଆମମାନଙ୍କଠାରୁ ବେଶୀ ଦେଖିପାରିବେ ଜାଣିପାରିବେ । ଭାରତ ସନ୍ତାନ, କେବଳ ବିଜ୍ଞାନରେ ବିଶ୍ୱାସ କର, ଆଉ କୁସଂସ୍କାର ସବୁଛାଡ଼ି ଆବିଷ୍କାର କରିବା ପନ୍ଥାଧର, ଯେବେ ଦେଶର ଉନ୍ନତି ବାସନା କର ।

ଇଂରେଜ ପ୍ରଦତ୍ତ ନାମମାନଙ୍କୁ ଦେଶରୁ ନିର୍ବାସିତ କରିବା ଉଚିତ । ଦେଶର ସହରଗଳି, ସଡ଼କ ପ୍ରତିଷ୍ଠାନ ପ୍ରଭୃତିର ନାମ ନିର୍ବାସିତ କରି ନୂତନ ନାମ ଦେବା ଅପେକ୍ଷା India ନାମର ପରିବର୍ତ୍ତରେ ଭାରତ ନାମ ଉଚ୍ଚାରଣ କରିବା

ଲେଖିବା, ଘୋଷିବାର ଆଦୌ କର୍ତ୍ତବ୍ୟ । ମ୍ୟାପରୁ India ନାମ ଉଠାଇ ଭାରତ ନାମ ଲେଖିଲେ କୋମଳମତି ବାଳକମାନଙ୍କର ଭାରତ ପ୍ରତି ଭକ୍ତି ସ୍ନେହ ଜନ୍ମାଇବା ସ୍ୱାଧୀନତାର ମୂଳ ଲକ୍ଷଣ ।

ପାକିସ୍ତାନର ଗଭର୍ଣ୍ଣର ଜେନେରାଲ୍ ଉଭୟ ଡୋମିନିୟନର ଲୋକ ଗୋଳମାଳ ଦେଖି ବ୍ରିଟିଶ୍ ସିଂହର ମଧ୍ୟସ୍ଥତା ଲୋଡ଼ିଲେଣି । ଏସବୁ ବ୍ୟାପର ଦେଖି ସୁଦ୍ଧା ଏ ଦେଶବାସୀ ଏକତା ଆଣିବାକୁ ଚେଷ୍ଟା କରୁ ନାହାନ୍ତି ଏବଂ ଅରାଜକତା ବଢ଼ାଇବାର ଯତ୍ନରେ ଅଛନ୍ତି ଏଥିରୁ ବଳି ଅନୁତାପର ବିଷୟ କ'ଣ ଅଛି ?

ଉତ୍କଳ ବିଶ୍ୱବିଦ୍ୟାଳୟ ଗଡ଼ଜାତର ମେମ୍ବର ନେଇ ସଭା ଗଢ଼ି ଅଛନ୍ତି । ପ୍ରୟୋଜନ ବେଳେ ଗଡ଼ଜାତର ମେମ୍ବର ଉପସ୍ଥିତ ନ ହେଲେ ମଧ କାର୍ଯ୍ୟ ସମାଧାନ କରିବାର ସ୍ଥିର ହୋଇଅଛି । ବାସ୍ତବିକ ମେମ୍ବର ଉପସ୍ଥିତ ନ ହେବାହେତୁ ସଭା ବନ୍ଦ କଲେ ବିଶ୍ୱବିଦ୍ୟାଳୟ କାର୍ଯ୍ୟକ୍ରମରେ ବାଧା ଘଟିବ ସନ୍ଦେହ ନାହିଁ । ଗଡ଼ଜାତର ମେମ୍ବରଗଣ ଏପରି ତ୍ରୁଟି କରିବା ବାଞ୍ଛନୀୟ ନୁହେଁ ଏବଂ ଗଡ଼ଜାତ ମେମ୍ବରଙ୍କ ଅନୁପସ୍ଥିତ ହେତୁ ସଭା ବନ୍ଦକରି ସ୍କୁଲ ସମୂହର କ୍ଷତି କରିବା ବିଶ୍ୱବିଦ୍ୟାଳୟ ସଭାର କର୍ତ୍ତବ୍ୟ ନୁହେଁ ।

ଇଂରେଜୀ ପାଠପୁସ୍ତକ ଆଜିଯାଏ ଦୁଷ୍ପ୍ରାପ୍ୟ ଏଣୁ ଛାତ୍ରମାନଙ୍କର ପଢ଼ାରେ କ୍ଷତି ଘଟୁଅଛି । ଏଥିପ୍ରତି ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କର ମନୋଯୋଗ ଆକର୍ଷଣ କରୁଅଛୁଁ ।

ବର୍ତ୍ତମାନ ପୃଥିବୀର ଉଭୟ ପ୍ରାନ୍ତର ପ୍ରଧାନ ଦୁଇଶକ୍ତିଙ୍କ ମଧ୍ୟରେ ମନୋମାଳିନ୍ୟ ଘଟୁଅଛି । ଏଥିର ଭବିଷ୍ୟତ ଫଳ ଶୁଭ ନୁହେଁ ।

ପାରସ୍ୟର ତୈଳ ଠିକା ନେଇ ଉଭୟ ଶକ୍ତି ମଧ୍ୟରେ ବିବାଦର ସୂତ୍ରପାତ ଘଟିବ ବୋଲି ଅନୁମାନ ହୁଏ । ଧନକୁବେର ଆମେରିକା-ଧନଦ୍ୱାରା, ରଣଦ୍ୱାରା ପୃଥିବୀର ସମସ୍ତ ଦେଶକୁ ବଶ କରିବାକୁ ବସିଅଛି । ଏଥିପ୍ରତି ପ୍ରତ୍ୟେକ ଜାତି ସାବଧାନ ହେବା ଉଚିତ । ରଣଦ୍ୱାରା ଦେଶକୁ ବାଧ୍ୟ ରଖିବା ଏକ ନୂତନ ଧରଣର ସାମ୍ରାଜ୍ୟ ବିସ୍ତାରର ପନ୍ଥା । ପାରସ୍ୟ ସତର୍କ ହେବା ଉଚିତ । ଆମେରିକା ଅପେକ୍ଷା ରୁଷିଆ ସହିତ ମିତ୍ରତା ସ୍ଥାପନ ପାରସ୍ୟ ପକ୍ଷରେ ଶ୍ରେୟସ୍କର ବୋଲି ମନେହୁଏ ।

## ତୃତୀୟ ବର୍ଷ ଚତୁର୍ଥ ସଂଖ୍ୟା

ପ୍ରବାଦ ଅଛି :— ''ଦୁଇ ନାବେ ପାଦଦେଲେ ହୁଅଇ ଯେମନ୍ତ,'' , ଆଜି ହି:ହା:କାଶ୍ମୀର ମହାରାଜାଙ୍କର ଅବସ୍ଥା ସେହିପରି । ଇଂରେଜ ଏ ଦେଶ ଛାଡ଼ିବାରୁ ସ୍ୱାଧୀନ ହାଓଆ ବହିଛି ସତ ମାତ୍ର ତାହା ଉପଭୋଗ କରିବାକୁ ରାଜାପ୍ରଜା ସମସ୍ତେ ଅଧିକାରୀ । ରାଜ୍ୟ ଯେତିକି ବଡ଼ ପ୍ରଜାର ସ୍ୱତ୍ୱ ତେତିକି ବେଶୀ । ଶାସନର ନାମ ପ୍ରଜାତନ୍ତ୍ର । ପ୍ରଜାର ମତ ଭିନ୍ନ ଶାସନ କାର୍ଯ୍ୟ ଚଳିବା ସମ୍ଭବ ନୁହେଁ । ରାଜା ଓ ପ୍ରଜା ଏ ନୀତିକି ଉତ୍ତମରୂପେ ବୁଝିବା ପୂର୍ବରୁ ବ୍ରିଟିଶ ଏ ଦେଶକୁ ଛାଡ଼ି ଗଲେ । ଛାଡ଼ିଗଲେ-ଏତିକି ନୁହେଁ ଭବିଷ୍ୟତ ଗଣ୍ଡଗୋଳର ସୂତ୍ରପାତ କରିଗଲେ । ସେଥିନିମନ୍ତେ ଅଶାନ୍ତି ଚାଲିଛି ଓ କିଛିକାଳ ଚାଲିବ । ଗଲାବେଳେ ଦେଶକୁ ଖଣ୍ଡ ଖଣ୍ଡ କରି ଚାଲିଗଲେ, ମଧ୍ୟବର୍ତ୍ତୀ ଶାସକଙ୍କ ହାତରେ କୌଣସି କ୍ଷମତା ନାହିଁ । ଏବଂ ପ୍ରଦେଶ ବା ରାଜ୍ୟ ଇଚ୍ଛାକଲେ ସ୍ୱତନ୍ତ୍ର ହୋଇପାରିବେ ଏ ଘୋଷଣା ମଧ କରିଗଲେ । କେନ୍ଦ୍ରୀୟ ଶାସକମାନେ ତାହା ନିର୍ବିବାଦରେ ଗ୍ରହଣ କଲେ । ଫଳ ଯାହାହେବାର ତାହା ଘଟୁଛି ।

ମହାରାଜା କାଶ୍ମୀର ବ୍ରିଟିଶର କପଟ ବାକ୍ୟରେ ଆଶ୍ୱାସ ସ୍ଥାପନ କରି ସ୍ୱାଧୀନ ରହିବାର ବାସନା କଲେ । ଏତିକି ନୁହେଁ ଦୁଇ ଡୋମିନିୟନର ସହିତ ସମ୍ବନ୍ଧ ରଖି ନିଜେ ସ୍ୱାଧୀନ ରହିବାର ବାସନା ମଧ କଲେ । କାଶ୍ମୀର ମହାରାଜା ହିନ୍ଦୁ । ତାଙ୍କ ହିନ୍ଦୁ ପ୍ରଜା ମାତ୍ର ଶତକରା କୋଡ଼ିଏ, ଶତକରା ୮୦ ମୁସଲ୍‌ମାନ ଏପରି ଦୂରାବସ୍ଥାରେ ଥାଇ ସୁଦ୍ଧା ସେ କିପରି ଭାରତ ଇଉନିୟନର ଆଶ୍ରୟ ନ କଲେ ଏହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ସଇକ ଆବଦୁଲ୍ଲା ଯେ କି କାଶ୍ମୀରର କଂଗ୍ରେସ ନେତା ସେ ଭାରତ ଇଉନିଅନରେ ଯୋଗଦେବାର ପକ୍ଷପାତୀ ତାଙ୍କୁ କାରାଗାରରେ ବହୁ ଦିନଯାଏ ଆବଦ୍ଧକରି ରଖିଲେ ସମାଧାନ କରିବା ନିମନ୍ତେ କାଶ୍ମୀରକୁ ନେହେରୁ ଗଲେ— ଗାନ୍ଧି ଗଲେ କିଛି ହେଲା ନାହିଁ । ପାକିସ୍ତାନ କାଶ୍ମୀର ଗ୍ରାସ କରିବାକୁ ବସିଲା । ଚାରିଆଡ଼ୁ ମୁସଲ୍‌ମାନମାନେ କାଶ୍ମୀର ମଧ୍ୟକୁ ପ୍ରବେଶ କଲେ ଲୁଟ୍ ଗୃହଦାହ, ନରହତ୍ୟା ଏବଂ ସ୍ତ୍ରୀପ୍ରତି ଅତ୍ୟାଚାରର ମାତ୍ର ବୃଦ୍ଧି ହେବାର ଦେଖି ହି : ହା କାଶ୍ମୀର ମହାରାଜାଙ୍କର ନିଦ୍ରାଭଙ୍ଗ ହେଲା । ଏତେବେଳେ ଭାରତ ଇଉନିଅନ ଭିନ୍ନ ରକ୍ଷକ କିଏ ? କାଶ୍ମୀରର ଏତାଦୃଶ ବିପତ୍ତି ଦେଖି ସହସା ସେଠାକୁ ସୈନ୍ୟ ପ୍ରେରିତ ହେଲେ ଏବଂ ମୁସଲ୍‌ମାନ୍‌ମାନଙ୍କୁ ବାଧ ହୋଇ

ହଟିବାକୁ ପଡ଼ିବ, ଏଥିରେ ସନ୍ଦେହ ନାହିଁ । ଭାରତ ଇଉନିୟନ ଯେ ଅହିଂସା ନୀତି ତ୍ୟାଗକରି ସହସା ସୈନ୍ୟ ପଠାଇଲେ ଏହା ଅତି ବୁଦ୍ଧିମତ୍ତାର କାର୍ଯ୍ୟ । ୧୯୪୬ ଅଗଷ୍ଟରେ ବଙ୍ଗଦେଶ ନିମନ୍ତେ ଏତାଦୃଶ ବ୍ୟବସ୍ଥା କରିଥିଲେ, କଲିକତାରେ ରକ୍ତପାତ ଓ ଅତ୍ୟାଚାର ହୋଇ ନ ଥାନ୍ତା କିମ୍ବା ନୂଆଖାଲି ଉଜାଡ଼ ହୋଇ ନ ଥାନ୍ତା । କିନ୍ତୁ ପ୍ରାଦେଶିକ ସ୍ୱାଧୀନତା ହେତୁରୁ ଦିଲ୍ଲୀ ଏଥିରେ ହସ୍ତକ୍ଷେପ କଲେ ନାହିଁ ଏବଂ ପଞ୍ଜାବରେ ମଧ ସେହି ଘଟଣା ଘଟିଗଲା, ଦିଲ୍ଲୀର ଶାସକମାନେ କାଷ୍ଠପୁତ୍ତଳିକା ପ୍ରାୟ ଅନାଇ ରହିଲେ ।

କାଶ୍ମୀର ମହାରାଜାଙ୍କ ବିପତ୍ତି ଶେଷପାଇ ନାହିଁ । ବର୍ତ୍ତମାନ ଅଶାନ୍ତି ଶେଷହେଲାରୁ କାଶ୍ମୀରର ପ୍ରଜାଙ୍କର ମତ ଗ୍ରହଣ କରାଯିବ— ସେମାନେ ପାକିସ୍ତାନକୁ ଯିବେ କି ଭାରତ ଇଉନିୟନରେ ଯୋଗ ଦେବେ । ଏହା ଲର୍ଡ଼୍ ମାଉଣ୍ଟବେଟେନ୍‌ଙ୍କର ଆଦେଶ । ପ୍ଲିବିସାଇଟ ନିଷ୍ପତ୍ତି ହେବ । ଏଥିରେ କାଶ୍ମୀର ଯେବେ ପାକିସ୍ତାନକୁ ଯାଏ ତେବେ ମହାରାଜାଙ୍କର ସମୂହଦୁର୍ଗତି ନୁହେଁ କି ? କେବଳ କାଶ୍ମୀର ମହାରାଜାଙ୍କର ନୁହେଁ ଭାରତ ଇଉନିୟନର ମଧ ଭବିଷ୍ୟତରେ ଅନିଷ୍ଟର ଆଶଙ୍କା ଅଛି ।

କାଶ୍ମୀର ସୀମାନ୍ତ ରାଜ୍ୟ— ତିନିପାଖ ମୁସଲ୍‌ମାନ୍ ରାଜାଦ୍ୱାରା ବେଷ୍ଟିତ ଅଧିକନ୍ତୁ ରୁଷିଆର ଏବଂ ଚୀନ୍ ସଂଲଗ୍ନ ଏପରିସ୍ଥଳେ ଯେବେ ପାକିସ୍ତାନ ସହିତ ମିଶେ ତେବେ ଭାରତ ଇଉନିୟନର ଗୋଟାଏ ପ୍ରଧାନ ଅଂଶ ଦୁର୍ବଳ ରହିଯିବ ଏଥିରେ ସନ୍ଦେହ ନାହିଁ ଏବଂ ଏଥିର ପରିଣାମ କଦାପି ମଙ୍ଗଳପ୍ରଦ ନୁହେଁ ।

ଭାରତର ରକ୍ଷା ନିମନ୍ତେ ଇଂରେଜମାନେ ଆଫଗାନିସ୍ତାନକୁ ଜୟ କରିବାର ବାସନା କରିଥିଲେ । ବହୁ ଚେଷ୍ଟାରେ ସୁଦ୍ଧା କାବୁଲିଜାତିଙ୍କୁ ଅଧୀନ କରିବାର ସମ୍ଭବ ନ ଥିବାରୁ ସେ ଦେଶତ୍ୟାଗ କରି ଆସିଲେ ବା କାବୁଲ୍‌ଙ୍କ ଦ୍ୱାରା ତାଡ଼ିତ ହେଲେ ଏବଂ ରୁଷିଆର ଭୟ ସେତେବେଳେ ଏତେ ପ୍ରବଳ ଥିଲା ଯେ ଆଫଗାନିସ୍ତାନକୁ ବାର୍ଷିକ ଚାରି ଲକ୍ଷ ଟଙ୍କା ବୃତ୍ତି ଦେବାକୁ ପଡ଼ିଥିଲା । ୧୮୮୪-୮୫ ରେ ଭାରତବର୍ଷ ତମାମ 'ରୁଷ୍ ଆସିବ ରୁଷ୍ ଆସିବ' ବୋଲି ମହାଆତଙ୍କ ଉପସ୍ଥିତ ହୋଇଥିଲା । ରୁଷିଆର ଆକ୍ରମଣ ଆଶଙ୍କାରେ ଉତ୍ତର ପଞ୍ଜାବରେ ଦୁର୍ଗ ଓ ସୈନ୍ୟ ରକ୍ଷାର ପ୍ରଭୂତ ଆୟୋଜନ । ଭାରତର ସୈନ୍ୟବିଭାଗର ଅତ୍ୟଧିକ ବ୍ୟୟିତ ସେହି ଉତ୍ତର ସୀମା ରକ୍ଷା ନିମନ୍ତେ । ଯଦି ବର୍ତ୍ତମାନ ସେହି ସୀମାକୁ ଭାରତ ଇଉନିୟନ ଦୁର୍ବଳ କରି ରଖନ୍ତି ତେବେ ଅହିଂସା ପନ୍ଥାଦ୍ୱାରା କି ଭାରତ ରକ୍ଷା ପାଇବ ? କାଶ୍ମୀର ଜେଲରୁ ମୁକ୍ତ ସଇକ ଅବଦୁଲା ଏତେବେଳେ ଆଶା ଭରସାର ସ୍ଥଳ । ଭୂତପୂର୍ବ କାଶ୍ମୀରର ମନ୍ତ୍ରୀ କାକ ସମସ୍ତ ଅନିଷ୍ଟର ମୂଳ । ନାମ ଯେପରି ପ୍ରକୃତି ମଧ ସେହିପରି ।

କି ଦୁର୍ଯୋଗରେ ପାକିସ୍ତାନର ସୃଷ୍ଟି ? ଏଥିନିମନ୍ତେ ଭାରତବାସୀ କଷ୍ଟଭୋଗ କଲେଣି ଏବଂ କଷ୍ଟଭୋଗ କରିବେ । ସୁଶାସନ ଓ ସୁଖଶାନ୍ତି ଅପେକ୍ଷା ଦେଶଲାଳସା ଧନଲାଳସା ଓ ଧର୍ମଗତ ବିବାଦ ଯେଉଁମାନଙ୍କର କାମ୍ୟ ସେମାନେ ପାକିସ୍ତାନର ଭାଗ୍ୟନିୟନ୍ତା ଏବଂ ଭାରତ ଇଉନିୟନର ପଡ଼ୋଶୀ କେତେବେଳେ କେଉଁ ସୂତ୍ରରେ ଭାରତର ଶ୍ରୀ ଦେଖି ବିଚଳିତ ହେବେ ଓ ଉତ୍ପାତ ଘଟାଇବେ ତାହା କଳ୍ପନାର ଅଗୋଚର, ଏଥିପ୍ରତି ଭାରତ ଇଉନିୟନ କର୍ତ୍ତୃପକ୍ଷ ବିଶେଷ ସତର୍କ ଓ ସାବଧାନ ରହିବା ଉଚିତ୍ । ମୌଖିକ ବନ୍ଧୁତ୍ୱସ୍ଥାପନ, ଅହିଂସା ଉପାୟ ଅବଲମ୍ବନ ଆଦୌ କାର୍ଯ୍ୟକାରୀ ହେବ ନାହିଁ । ନେହରୁ ଭାରତର ଉନ୍ନତି ବିଷୟ କଳ୍ପନା କରୁ କରୁ ପଞ୍ଜାବରେ ଲୁଟ୍, ହତ୍ୟା, ଗୃହଦାହ, ସ୍ତ୍ରୀଧର୍ଷଣ ଆରମ୍ଭ କଲା କିଏ ? ପାକିସ୍ତାନ କର୍ତ୍ତୃପକ୍ଷଙ୍କ ଅଜ୍ଞାତରେ କେବଳ ଉଭୟ ଦେଶର ଧର୍ମ ବାସୀଗଣ କିଏ ଉତ୍ପାତ ଉପସ୍ଥିତ କଲେ ଏବଂ ଧନ, ମାନ, ମର୍ଯ୍ୟାଦା ନଷ୍ଟ କରି ଲକ୍ଷ ଲକ୍ଷ ଲୋକ ସ୍ଥାନ ତ୍ୟାଗୀ ହେଲେ ? ଆଜି ବିଂଶଲକ୍ଷ ବା ତତୋଽଧିକ ଲୋକଙ୍କୁ ଭାରତ ଇଉନିୟନରେ ସ୍ଥାନ ଘର, ଅନ୍ନ, ବସ୍ତ୍ର ଯୋଗାଇବାକୁ କି ଭାରତର କମ୍ କ୍ଷତି ଘଟୁଅଛି । ଶରଣାଗତକୁ ଆଶ୍ରୟ ଦେବାର କର୍ତ୍ତବ୍ୟ ଶାସକର । ନେହରୁ ମନ୍ତ୍ରିସଭା ତାହା କରିବାକୁ ତ୍ରୁଟି କରି ନାହାନ୍ତି । କି କଳ୍ପନାତୀତ କ୍ଷତି । ଭାରତ ଉନ୍ନତି ବିଧାୟକ ଯୋଜନାର ବ୍ୟୟ ପାକିସ୍ତାନ ପଞ୍ଜାବ ଗୋଳମାଳ ଶୋଷଣ କରିଅଛି । ଥରକୁଥର ଯେବେ ଏପରି ଘଟଣା ଘଟେ ଉନ୍ନତି ଆଶା ସୁଦୂରପରାହତ ସିନା ।

କାଶ୍ମୀରକୁ ଗ୍ରାସ କରିବାକୁ ପାକିସ୍ତାନର ଆଗ୍ରହ, ଉଦ୍ୟୋଗ ଓ ଚେଷ୍ଟା । ପାକିସ୍ତାନ ମନ୍ତ୍ରୀସଭା ଓ ଗଭର୍ଣ୍ଣର ଜେନେରାଲ୍ ଏହା ଅସ୍ୱୀକାର କଲେ ସୁଦ୍ଧା ଲୁଣ୍ଠନକାରୀଙ୍କ ହାତରୁ ଯେଉଁ ଆଧୁନିକ ପାଶ୍ଚାତ୍ୟ ଅସ୍ତ୍ରଶସ୍ତ୍ର ଓ ମଟର ପ୍ରଭୃତି ମିଳିଅଛି ତାହା ପାକିସ୍ତାନର ପ୍ରତିବାଦର ଅଳୀକତା ସ୍ପଷ୍ଟ ପ୍ରକାଶ କରୁଅଛି । ଅସଭ୍ୟ ଅଶିକ୍ଷିତ ଆଫ୍ରିଦି ପ୍ରଭୃତି ଜାତି ଯେଉଁମାନେ କାଶ୍ମୀର ଆକ୍ରମଣରେ ବ୍ୟସ୍ତ ସେମାନେ ପାକିସ୍ତାନର ସାହାଯ୍ୟ ବ୍ୟତିରେକେ ମେସିନ୍‌ଗନ୍ ଷ୍ଟେନ୍‌ଗନ୍,

ବ୍ରେନ୍‌ଗନ ପାଇଲେ କେଉଁଠାରୁ ଏବଂ ଏସବୁ ଚଳାଇବାର ଉପାୟ ଜାଣିଲେ କେଉଁ ଶିକ୍ଷା ବଳରୁ । ପୁଣି ପାକିସ୍ତାନ ଅତିକ୍ରମ କରି ଏହି ଲୁଣ୍ଠନକାରୀମାନେ କାଶ୍ମୀର ପହଞ୍ଚିଲେ କିପରି ? ଆଫ୍ରିଦି ପ୍ରଭୃତି ଜାତି ପାକିସ୍ତାନ ଅତିକ୍ରମ କଲାବେଳେ ପାକିସ୍ତାନ କର୍ତ୍ତୃପକ୍ଷ କି ଘୋର ନିଦ୍ରାଭିଭୂତ ଥିଲେ । ଏହା ଆଦୌ ବିଶ୍ୱାସଯୋଗ୍ୟ ନୁହେଁ । ପାକିସ୍ତାନର କର୍ତ୍ତୃପକ୍ଷଙ୍କ କାର୍ଯ୍ୟ ଓ ବାକ୍ୟ ମଧ୍ୟରେ ସାମ୍ୟତା ନାହିଁ । ଏମାନଙ୍କର କଥାରେ ବିଶ୍ୱାସ କଲେ କିମ୍ବା ଆସ୍ଥା ସ୍ଥାପନ କଲେ ପଛେ ମନସ୍ତାପ କରିବାକୁ ପଡ଼ିବ ।

ପାକିସ୍ତାନ ଓ ଭାରତ ଅଲଗା ହେଲା । ପାକିସ୍ତାନରୁ ହିନ୍ଦୁ ଓ ଶିଖ୍‌ମାନଙ୍କୁ ବହିଷ୍କୃତ କରାଗଲା ଏଥି ର ଉଦ୍ଦେଶ୍ୟ କ'ଣ ? ଜିନ୍ନା ସାହେବଙ୍କ ମସ୍ତିଷ୍କ ନିସୃତ ଦୁଇ ଜାତିବାଦକୁ ସପ୍ରମାଣ ଉଦ୍ଦେଶ୍ୟ ନୁହେଁ କି ? ଯେଉଁମାନଙ୍କର କଥା ସହିତ କାର୍ଯ୍ୟର ମେଳ ନାହିଁ ସେମାନଙ୍କୁ ବିଶ୍ୱାସ କରିବା ଉଚିତ୍ ନୁହେଁ । ବିଶ୍ୱାସ କଲେ କ୍ଷତି ଅବଶ୍ୟମ୍ଭାବୀ । ଏହା ପାକିସ୍ତାନବାସୀଙ୍କର କାର୍ଯ୍ୟକଳାପର ପ୍ରତ୍ୟକ୍ଷ ପ୍ରମାଣ ହୋଇଅଛି । ଭାରତ ଇଉନିୟନ ଏହା ଦେଖି ସୁଦ୍ଧା ଯେବେ ଲିଗ୍‌ଦଳକୁ ବିଶ୍ୱାସ କରନ୍ତି ତେବେ ଭାରତବାସୀଙ୍କ ଦୁର୍ଭାଗ୍ୟ ସୁନିଶ୍ଚିତ ।

''ଅଣବିଶ୍ୱାସୀ ଯେଉଁ ନର ତା' ପାଦେ ମୋର ନମସ୍କାର'' ଯେଉଁ ଲିଗ୍‌ପନ୍ଥୀ ବାରମ୍ବାର ଅବିଶ୍ୱାସର ଉଦାହରଣ ଆମମାନଙ୍କର ସମକ୍ଷରେ ଉପସ୍ଥାପିତ କରୁଅଛନ୍ତି ତାଙ୍କୁ ବନ୍ଧୁବୋଲିବା ଯୁକ୍ତିସଙ୍ଗତ କି ? ଲର୍ଡ୍‌ ଓ୍ୟାଭେଲ ନେହେରୁଙ୍କୁ କହିଲେ ଯେ ଲିଗ୍‌ମାନଙ୍କୁ ମଧ୍ୟବର୍ତ୍ତୀ ମନ୍ତ୍ରୀ ସଭାରେ ଭର୍ତ୍ତି କରାଯାଉ ସେମାନେ ସହଯୋଗ କରିବେ— ''ଆଲି ଖାନ ପ୍ରଭୃତି ମନ୍ତ୍ରୀ ସଭାରେ ଯୋଗ ଦେଇ ବିପରୀତ କାର୍ଯ୍ୟର ସୂତ୍ରପାତ କଲେ । ଜିନ୍ନାଙ୍କୁ ପ୍ରଶ୍ନ କରାଯିବାରୁ ସେ କହିଲେ ଲିଗ୍ ଯେ ମନ୍ତ୍ରୀ ସଭାକୁ ଗଲେ ସାହାଯ୍ୟ କରିବା ନିମନ୍ତେ ନୁହେଁ କାର୍ଯ୍ୟକଳାପ ପରିଦର୍ଶନ ନିମନ୍ତେ ଏବଂ ଶାସନ ପଦ୍ଧତି ଭଙ୍ଗକରିବା ନିମନ୍ତେ, ଫଳତଃ ତାହାହିଁ ହେଲା । ପାକିସ୍ତାନର ସୃଷ୍ଟି ହେଲା । ବର୍ତ୍ତମାନ ଭାରତରେ ଅନେକ ଲିଗ୍‌ବାଲା ଅଛନ୍ତି ଏବଂ କେନ୍ଦ୍ର ଓ ପ୍ରାଦେଶିକ ଏସେମ୍ବ୍ଲିରେ ଯୋଗ ଦେଇଅଛନ୍ତି । ଜିନ୍ନା ସାହେବ କହୁ ଅଛନ୍ତି ଶିକ୍ଷା ଦେଉଅଛନ୍ତି ନା ଆଦେଶ ଦେଉଅଛନ୍ତି କି ଭାରତ ଇଉନିୟନରେ ଥିବା ଲିଗ୍ ମେମ୍ବରମାନେ ଯେଉଁଠାରେ ଥାଉନ୍ତୁ ପଛକେ ସେମାନେ ବାଧ୍ୟହୋଇ ପାକିସ୍ତାନର ସ୍ୱାର୍ଥସାଧନ ନିମନ୍ତେ ସର୍ବଦା ତତ୍ପର ରହିବେ । ଭଲକଥା ଯେଉଁମାନେ ଆମ ସଙ୍ଗରେ ମିଳିମିଶି ରହିବେ ଆମଠୁ ଭାଗ ଖାଇବେ ସମୟ ଉପସ୍ଥିତ ହେଲେ ଆମର ତଣ୍ଡି କାଟିବେ । ଭାରତବାସୀ ଭାଇଗଣ ଜିନ୍ନାଙ୍କୁ ଚିହ୍ନ । ଲିଗ୍‌ପନ୍ଥୀଙ୍କୁ ଚିହ୍ନ, ଭଲକରି ଚିହ୍ନ, ଏମାନେ 'ବିଷକୁମ୍ଭ ପୟୋମୁଖ' ।

ମୁସଲିମ୍ ଲିଗ୍ ପାକିସ୍ତାନ ପାଇଲେ ଆଉ ସେମାନେ ଭାରତରେ ରହିବେ କାହିଁକି ? ଗୁପ୍ତରେ ଭାରତବାସୀଙ୍କର ଅନିଷ୍ଟ କରିବାକୁ ? ସେମାନେ ସ୍ୱ-ସ୍ଥାନକୁ ଯାଉନ୍ତୁ, ସେମାନଙ୍କ ଉପରେ ଆମମାନଙ୍କର ଦୟାମାୟା ରଖିବାର ପ୍ରୟୋଜନ ନାହିଁ । ଯେଉଁ ମୁସଲ୍‌ମାନ୍ ଭାଇମାନେ ଲିଗ୍‌ପନ୍ଥୀ ନୁହନ୍ତି ଯେଉଁମାନେ ଆମ ସହିତ ଏକମତ ଏକପ୍ରାଣ ହୋଇ ଜାତିର ଓ ଭାରତମାତାର ଉନ୍ନତିକଳ୍ପେ ଯତ୍ନଶୀଳ ସେମାନେ ଆମମାନଙ୍କର ବନ୍ଧୁ ଭାଇ । ସେମାନେ ପାକିସ୍ତାନର ଆଶା ତ୍ୟାଗ କରନ୍ତୁ । ଆମେ ସମସ୍ତେ ମିଳିମିଶି ରହିବା କାର୍ଯ୍ୟ କରିବା ଦେଶର ସମ୍ୟକ୍ ଉନ୍ନତି କରିବା । ସୁଖର ବିଷୟ ଅବଦୁଲ୍ଲା କଲିମ୍ ଆଜଦ ଏ ଦେଶର ପ୍ରାୟ ଚାରି କୋଟି ମୁସଲ୍‌ମାନ୍‌ମାନଙ୍କୁ ଏକତ୍ର କରି ଏହି ଶିକ୍ଷା ଦେବାର ଯତ୍ନ କରିଅଛନ୍ତି । ଏହା ଯେ ନିଶ୍ଚୟ କାର୍ଯ୍ୟକାରୀ ହେବ ତା'ର ସୂଚନା ମିଳିଲା ନି ? ରାଜନୀତି କ୍ଷେତ୍ରରେ ଧର୍ମର ପ୍ରବେଶ ନ ହେଲେ ହିନ୍ଦୁ ମୁସଲ୍‌ମାନ ଖ୍ରୀଷ୍ଟାନ ଶିଖ୍ ମଧ୍ୟରେ ପାର୍ଥକ୍ୟ କ'ଣ ? ଧର୍ମ ଯାହା ଲୋକମାନଙ୍କୁ ସମାଜବଦ୍ଧ କରିବାର କଥା, ତାହା ଭାରତରେ ଲୋକମାନଙ୍କୁ ସ୍ୱତନ୍ତ୍ର କରିଅଛି । ଦୁଃଖର କଥା । ସମସ୍ତ ଭାରତବାସୀର ହୃଦୟରେ ଏକତା ଦୃଢ଼ାସନ ପାଇଲେ କୌଣସି ଗୋଳମାଳର ଆଶଙ୍କା ନାହିଁ ।

ଭାରତ ସ୍ୱାଧୀନତା ଘୋଷଣା ହେବାମାତ୍ରେ ସମସ୍ତେ ଉଚ୍ଛୃଙ୍ଖଳ ହୋଇପଡ଼ିଲେ । ଉଚ୍ଛୃଙ୍ଖଳ ହେବାର କୌଣସି ଦରକାର ନ ଥିଲା । ଶାସନ ପଦ୍ଧତି ସ୍ଥିରୀକୃତ ହେଲାରୁ ଛାଏଁ ସମସ୍ତେ ଆପଣା ଆପଣା ଅଧିକାର ପାଇବେ ଏଥିରେ ସନ୍ଦେହ କ'ଣ ? ମାତ୍ର ଚାରିଆଡ଼େ ଉଚ୍ଛୃଙ୍ଖଳତା ସୃଷ୍ଟି ହେବାରୁ ଚାଳକ ଓ ନିୟାମକମାନଙ୍କୁ କି ଚିନ୍ତା ଓ ଭାବନାରେ ପଡ଼ି କାର୍ଯ୍ୟ ଚଳାଇବାକୁ ହେଉଅଛି ତାହା କେହି ବୁଝୁ ନାହାନ୍ତି । କିଛିଦିନ ସ୍ୱାଧୀନତାର ମାଧୁରୀ ଉପଭୋଗ କରିବାର ଚେଷ୍ଟା କରିଥିଲେ କି କ୍ଷତି ଥିଲା ? ବୁଝୁଛନ୍ତି କିଏ ?

ଜୁନାଗଡ଼ ଆଜି ଭାରତ ଇଉନିୟନ୍‌ରେ ମିଶିଲା । ଆଗରୁ ଏହା ହୋଇଥିଲେ କି କ୍ଷତି ଥିଲା ? ସେହି ପାକିସ୍ତାନର ପ୍ରରୋଚନାରେ ଏତେ ଗଣ୍ଡଗୋଳ ହେଲା । କେତେ ଲୋକ ପ୍ରାଣ ହରାଇଲେ, ଗୃହଦାହ ସତୀତ୍ୱ ନଷ୍ଟ ଆଉ ବା କ'ଣ ନ

ହେଲା ? କ୍ଷତି କା'ର ? ଜୁନାଗଡ଼ ନବାବଙ୍କର ତ । ନେହୁରଙ୍କର ହାତକୁ ଜୁନାଗଡ଼ ଆସିଲାବେଳେ ଖଜଣାରେ ଗୋଟିଏ ମଧ ଟଙ୍କା ନାହିଁ । ଦିଲ୍ଲୀରୁ ଏରୋପ୍ଳେନ୍‌ରେ ଟଙ୍କା ପଠାଗଲାରୁ ଜୁନାଗଡ଼ର ଶାସନ କାର୍ଯ୍ୟ ଚଳିବ । ଜୁନାଗଡ଼ ଖଜଣାକୁ ଅର୍ଥ ଶୂନ୍ୟ କଲା କିଏ ? ପାକିସ୍ତାନର ଜଣ କେତେ ଯାଇ ଦୁଇ ଦିନ ଜୁନାଗଡ଼ ଗାଦି ମାଡ଼ିବସିଲେ ଏବଂ ଲୁଟତ୍‌ରାଜ କରି ସବୁ ନେଇଆସିଲେ । ଏମାନେ ଜୁନାଗଡ଼ ନବାବର ହିତୈଷୀ । କାଶ୍ମୀରରେ ଏ ଅବସ୍ଥା ଘଟିଥାନ୍ତା ମାତ୍ର ପୂର୍ବରୁ ସତର୍କତା ଅବଲମ୍ବନ କରିଥିବାରୁ— କାଶ୍ମୀର ଟ୍ରେଜାରୀ ଅର୍ଥ ଶୂନ୍ୟ ହେବାର ସମ୍ଭବ ନୁହେଁ ।

ରାଜ୍ୟ ଚାଳନାରେ ଅହିଂସାନୀତି କଦାପି ପ୍ରଯୁଜ୍ୟ ନୁହେଁ । ରାଜ୍ୟ ଚଳାଇବାକୁ ହେଲେ ସାମ, ଦାନ, ଦଣ୍ଡ, ଭେଦ ଅଙ୍ଗ ବିସ୍ତାର ଚଳାଇବାକୁ ହେବ । ଅହିଂସାନୀତି କେବେ ରାଜ୍ୟଶାସନରେ ଚଳି ନାହିଁ— ଚଳିବ ନାହିଁ । ଶତ୍ରୁ ପରାକ୍ରମୀ ହେଲେ ତାକୁ ଦମନ କରିବା ନିମନ୍ତେ ସୈନ୍ୟ ପ୍ରୟୋଗ କରିବାକୁ ହେବ, ଶତ୍ରୁକୁ ନାଶ କରିବାକୁ ହେବ— ନ ହେଲେ ନିରୀହ ପ୍ରାଣୀଙ୍କର ନାଶ ଓ କଷ୍ଟ ଏବଂ ସେଥିନିମନ୍ତେ ଶାସକର ପାପ । ''ଦହଶତ୍ରୁଂଦୁରାସଦଂ'' । ଅହିଂସାନୀତି ଅବଲମ୍ବନ କରି ଜୁନାଗଡ଼ ଓ କାଶ୍ମୀରକୁ ସୈନ୍ୟ ପଠାଇ ଶତ୍ରୁଙ୍କ ସହିତ ଯୁଦ୍ଧ କରି ନ ଥିଲେ ଏହି ଦୁଇଦେଶର କି ଗତି ହୋଇଥାନ୍ତା ତାହା ସହଜରେ ଅନୁମେୟ । ମନ୍ତ୍ରୀସଭା ସୈନ୍ୟ ପ୍ରେରଣରେ ତତ୍ପରତା ଦେଖାଇ ଆମମାନଙ୍କର ଧନ୍ୟବାଦର ପାତ୍ର ହୋଇଅଛନ୍ତି ।

ଅହିଂସାନୀତି ବୁଦ୍ଧଦେବଙ୍କର ସୃଷ୍ଟି ଓ ପ୍ରଚାରିତ; ଏହା କେହି ଅସ୍ୱୀକାର କରିବେ ନାହିଁ । ତାହାଙ୍କଠାରୁ ଏହି ନୀତି ସାରା ପୃଥିବୀରେ ବିସ୍ତୃତି ଲାଭ କରିଅଛି ବୋଇଲେ ଅତ୍ୟୁକ୍ତି ନୁହେଁ । ତଥାପି ସେହି ବୁଦ୍ଧଦେବ ସ୍ଥଳବିଶେଷରେ ଯୁଦ୍ଧ ଚଳାଇବା ପ୍ରୟୋଜନ ମନେ କରିଥିଲେ । ଯେତେବେଳେ ବୁଦ୍ଧଦେବ ମଗଧର ବେଣୁବନରେ ବାସ କରୁଥିଲେ ସେତେବେଳେ ସେ ଦେଶର ପ୍ରଧାନ ସେନାଧ୍ୟକ୍ଷ ସିଂହ ତାଙ୍କର ଉପଦେଶ ଶୁଣିବାକୁ ଯାଇ ତାଙ୍କୁ ପ୍ରଶ୍ନ କଲେ ଯେ— ଆପଣ ତ ଅହିଂସାନୀତିର ଉପଦେଶ ଦିଅନ୍ତି ଏବଂ ମୁଁ ତାହା ଶୁଣିଲି ମାତ୍ର ମୁଁ ଏ ଦେଶର ପ୍ରଧାନ ସେନାଧ୍ୟକ୍ଷ ଯୁଦ୍ଧ କରିବାର ମୋର କର୍ତ୍ତବ୍ୟ, ମୁଁ ହିଂସାବୃତ୍ତି ଛାଡ଼ି ସେନାଧ୍ୟକ୍ଷ କାର୍ଯ୍ୟରୁ ଅବସର ନେବି କି ? ବୁଦ୍ଧଦେବ କହିଲେ— ଇଚ୍ଛାପୂର୍ବକ ହିଂସାକରିବା ଉଚିତ ନୁହେଁ । ତେବେ ଶତ୍ରୁ ଯେବେ ଦେଶ ଆକ୍ରମଣ କରି ପ୍ରଜାକୁଳକୁ ନାଶ କରିବାକୁ ବସିବ ଏବଂ ସେମାନଙ୍କର ଧନସମ୍ପତ୍ତି ହରଣର ଚେଷ୍ଟା କରିବ ଓ ଶତ୍ରୁ ନିଷେଧ ନ ମାନିବ-ତେବେ ତା ବିରୋଧରେ ଯୁଦ୍ଧ କରିବା ଦୋଷାବହ ନୁହେଁ । ଅତ୍ୟାଚାରୀଠାରୁ ନିରୀହ ବ୍ୟକ୍ତିଙ୍କୁ ରକ୍ଷା କରିବା ଶାସକର ଧର୍ମ । ସିଂହ ବୁଦ୍ଧଧର୍ମ ଗ୍ରହଣ କରି ସେନାଧ୍ୟକ୍ଷ କାର୍ଯ୍ୟ ନିର୍ବାହ କରିଥିଲେ ।

''ଭୋ ନାଥ ସର୍ପକଲୁ ମୋତେ
ସ୍ୱଭାବ ଛାଡ଼ିବି କେମନ୍ତେ ।''

କଲିକତାକୁ ପାକିସ୍ତାନ କରିବା ଅଭିପ୍ରାୟରେ କିଏ ଲକ୍ଷାଧିକ ଲୋକର ଧନ ପ୍ରାଣ ନଷ୍ଟ କରାଇଲା । ନାରୀଧର୍ଷଣ, ନାରୀହରଣ କାହା ପ୍ରରୋଚନାରେ ? ସୁରାବର୍ଦ୍ଦି ସାହେବ ପ୍ରଧାନମନ୍ତ୍ରୀ ଥିବାବେଳେ ଏ କାଣ୍ଡ ଘଟିଲା, ଏହା କି କେହି ଅସ୍ୱୀକାର କରିପାରେ ? ନୂଆଖାଲି ଦୁର୍ଦ୍ଦଶା କାହା ଯୋଗୁଁ ? ସୁରାବର୍ଦ୍ଦିସାହେବ ବଙ୍ଗଦେଶର ଯେଉଁ କ୍ଷତି କରିଅଛନ୍ତି ତାହା ଅକଥନୀୟ । ମାତ୍ର ସେ କେଉଁ ସୂତ୍ରରେ ଗାନ୍ଧିଜୀଙ୍କୁ ହାତ କରିନେଲେ ତାହା ବୁଝାଯାଉ ନାହିଁ । ଗାନ୍ଧିଜୀ ତାଙ୍କର ଅଜସ୍ର ପ୍ରଶଂସା କଲେ ତାଙ୍କ ବନ୍ଧୁ ବୋଲି ଲୋକରେ ଘୋଷଣା କଲେ । କଲିକତାବାସୀ ଅନୁଭବ କଥାକୁ ମଧ ଭୁଲିଗଲେ । ସୁରାବର୍ଦ୍ଦିଙ୍କର ବିପକ୍ଷରେ କେହି ପଦେ ମଧ ଉଚ୍ଚାରଣ କଲେ ନାହିଁ । ଯେଉଁମାନେ ଦୁଇ ପଦ କହିଲେ ସେମାନେ ତିରସ୍କୃତ ହେଲେ । ହେଉ ଗଲା କଥା ଯାଉ । ବର୍ତ୍ତମାନ ଏ ମହୋଦୟ ଯେ, ପାକିସ୍ତାନ ଓ ଭାରତ ଇଉନିୟନ ମୁସଲ୍‌ମାନ୍ ମଧରେ ଏକତା ରଖିବାର ପ୍ରସ୍ତାବ କରୁଅଛନ୍ତି ତାହା କି ଭାରତର ମଙ୍ଗଳଜନକ ହେବ । ଆଜଦସାହେବ ଯେଉଁ ପ୍ରସ୍ତାବ କରୁଅଛନ୍ତି ତାହା ପ୍ରଚାରିତ ହେବା ପୂର୍ବରୁ ସୁରାବର୍ଦ୍ଦି ନେତା ହେବାର ଚେଷ୍ଟାରେ ରହିଲେଣି । ସୁରାବର୍ଦ୍ଦିଙ୍କର ପ୍ରସ୍ତାବଗୃହୀତ ହେଲେ ଏବଂ ଲିଗ୍‌ପନ୍ଥୀଙ୍କ ମତରେ ଅନ୍ୟ ମୁସଲ୍‌ମାନ୍‌ଗଣ ସ୍ୱୀକୃତ ହେଲେ ଏବଂ ତାହା ଭାରତର ନେତାମାନେ ମାନିନେଲେ ଭାରତବାସୀଙ୍କର ଆତ୍ମହତ୍ୟା ସୁନିଶ୍ଚିତ । ଲିଗ୍ ନାମ ଭାରତରେ ନ ରହୁ ଏହା ଆମମାନଙ୍କର ମତ ।

ବଡ଼ ମୁହଁରେ ବଡ଼ କଥା । କିଏ ମନା କରିପାରେ । ସର୍ବସାଧାରଣଙ୍କର ଜୀବନପୋଷଣର ମାନବୃଦ୍ଧି କରାଯିବ ବୋଲି ଭାରତ ସ୍ୱାଧୀନ ହେବାଆଗରୁ ଶୁଣିଥିଲୁଁ ଏବେ ମଧ ଶୁଣୁଅଛୁଁ । ଖୁବ୍ ଜୋର୍ ସହିତ ନେତାମାନେ ପ୍ରକାଶ କରୁଅଛନ୍ତି । କେବେ ଏବଂ କି ଉପାୟରେ ଏହା କାର୍ଯ୍ୟରେ

ପରିଣତ ହେବ ତାହା ବୁଝା ଯାଉ ନାହିଁ । ପରିଧେୟ ବସ୍ତ୍ରର ମୂଲ୍ୟ ବୃଦ୍ଧି କି ମାନବୃଦ୍ଧି ? ଖାଦ୍ୟପଦାର୍ଥର ମୂଲ୍ୟ ବୃଦ୍ଧି କି ଧନବୃଦ୍ଧିର ପରିଚାୟକ ? ଚାଉଳ ସେରକୁ ଟଙ୍କେ, ଅଟା ସେରକୁ ପାଞ୍ଚସୁକା, ଘିଅସେର ଛଅଟଙ୍କା, ତେଲସେର ତିନିଟଙ୍କା, ପରିଧେୟ ବସ୍ତ୍ର ଯାହା ସାଧାରଣଲୋକେ ଦଶଅଣାରେ ପାଉଥିଲେ, ତା'ର ଦାମ୍ ହେଲା ଚାରି ଟଙ୍କା । ଏହା ଦେଖିଲେ ମନେହୁଏ ତେଲିଆମୁଣ୍ଡରେ ତେଲ ଅଜାଡ଼ା ହେବ ସିନା । ମୂଲିଆର ମୁଣ୍ଡ ନୁଖୁରା ଏବଂ ପେଟ ଖାଲି ରହିବ । ଆଉ ଜୀବନ ପୋଷଣର ମାନ ବୃଦ୍ଧି ହେବ କିପରି ?

ଏ ଦେଶରେ ଚାଷୀନାମକ ଯେ ହେୟ ଜୀବ, ସେମାନେ କପାଳରୁ ଝାଳ ବୁହାଇ ଦିନତମାମ ପରିଶ୍ରମ କରି ଆପଣା ବୁଦ୍ଧି ଅନୁସାରେ ଯାହା ଜମିରୁ ଉତ୍ପନ୍ନ କରିବେ ସେଥିରେ ଆପଣା ପରିବାରର ପେଟ ପୋଷିବେ, କର, ମାଲଗୁଜାରୀ ଗଣ୍ଡାକ ଦେବେ । ଏଥିରେ ତାଙ୍କର ଉପାର୍ଜନ ନିଅଁଣ୍ଟ । ଏ ବିଚାରାଙ୍କର ମାନବୃଦ୍ଧିର ଉପାୟ ତ ଦିଶୁ ନାହିଁ ।

ଦିନାକେତେ 'ଅଧିକ ଖାଦ୍ୟ ଉତ୍ପାଦନ କର' ବୋଲି ଚିତ୍କାର ଉଠିଲା । ଚିତ୍କାରରେ କିମ୍ବା ବିଜ୍ଞାପନରେ କି ଖାଦ୍ୟ ଉତ୍ପନ୍ନ ହୁଏ ? ବିସ୍ତୃତ ଅର୍ଥବ୍ୟୟ ହେଲା । ଗୋଟାଏ ବିଜ୍ଞାପନର ବିଷୟ ମନେଅଛି— ଗୋଟାଏ ଆଳୁ ଡାଳାର ଚିତ୍ର ଥିଲା, ତଳରେ କୋଡ଼ି (Rake) ରଫାର ଚିତ୍ର ଥିଲା । ବିଜ୍ଞାପନରେ ଲେଖାଥିଲା ଏକହଜାର ବର୍ଗଫୁଟ ପରିମିତ କ୍ଷେତ୍ରରେ ୩୦୦ ପାଉଣ୍ଡ ଆଳୁ ଉତ୍ପନ୍ନ କରାଯାଇପାରେ । ଏତିକି କାହିଁକି ଏଥିରୁ ମଧ ଅଧିକ ଆଳୁ ଉତ୍ପନ୍ନ ହୋଇପାରେ ମାତ୍ର ଉପାୟ କ'ଣ ? ତାହା ଲେଖା ନ ଥିଲା । କିପରି ଚାଷ କରାଗଲେ କି କି ସାର କେତେବେଳେ କିପରି ଭାବରେ ଦିଆଗଲେ ୧୦୦୦ ବର୍ଗ ଫୁଟରେ ମ ୩ ।୩୦ ସେର ଆଳୁ ହେବ ଏହା ଲେଖା ଯାଇଥିଲେ ଅବଶ୍ୟ କୃଷକମାନଙ୍କର କିଛି ଶିକ୍ଷା ହୁଅନ୍ତା ତାହା ନ ହୋଇ କେବଳ ଆଳୁର ଓ କୋଡ଼ିକୋଦାଳ ପ୍ରଭୃତିର ଚିତ୍ର ଥିବାରୁ ଆମେମାନେ ମନେକଲୁଁ ଏହା ଲୌହ କାର୍ବାରୀମାନଙ୍କର ବିଜ୍ଞାପନ ପବ୍ଲିକ୍‌ର ଅର୍ଥବ୍ୟୟରେ ମୁଦ୍ରିତ ହେଲା । କୃଷକର ତିଳେମାତ୍ର ଲାଭ ବା ଉପକାର ନାହିଁ । ଏତାଦୃଶ ପ୍ରଚାରକର୍ମରେ କେତେ ଯେ ନିରର୍ଥକ ଅର୍ଥ ବ୍ୟୟହେଲା ତା'ର ହିସାବ ରଖିଛି କିଏ ? ଯୁଦ୍ଧୋତ୍ତର କାଳରେ ସ୍ୱାଧୀନଭାରତ ମଧ କି ଏହିପରି ଅର୍ଥବ୍ୟୟ କରି ପ୍ରଜାବର୍ଗଙ୍କର ଉପକାର ସାଧନ କରିବେ ?

ଏ ଦେଶର ଧନବୃଦ୍ଧି ବ୍ୟବସାୟ ଓ କୃଷି ଉନ୍ନତି ଦ୍ୱାରା ହେବ । ବ୍ୟବସାୟ ଅନ୍ୟ ଦେଶ ସହିତ ସମ୍ବନ୍ଧ ରକ୍ଷା କରୁଥିବାରୁ ତା'ର ଉନ୍ନତି ଓ ସହଯୋଗିତା ଓ ପ୍ରତିଯୋଗିତା ଅବଶ୍ୟମ୍ଭାବୀ ମାତ୍ର କୃଷି କେବଳ ଏ ଦେଶର ଭୂମି ଏ ଦେଶର ଲୋକଙ୍କ କର୍ତ୍ତୃତ୍ୱାଧୀନ ସୁତରାଂ କୃଷିର ଉନ୍ନତିକଳ୍ପେ ବିଶେଷ ଯତ୍ନ ଓ ଶିକ୍ଷା ପ୍ରଚାରର ଆବଶ୍ୟକ । କି ଉପାୟରେ କୃଷିର ଉନ୍ନତି ହେବ ସେଥିନିମନ୍ତେ କର୍ତ୍ତୃପକ୍ଷ ବିଶେଷ ଭାବେ ବୁଦ୍ଧି ଚାଳନା କରିବା କର୍ତ୍ତବ୍ୟ ।

## ତୃତୀୟ ବର୍ଷ ପଞ୍ଚମ ସଂଖ୍ୟା

ଗଡ଼ଜାତ ଆଉ ଗଡ଼ଜାତ ହୋଇ ରହିଲା ନାହିଁ । ୧୪ ତାରିଖଠାରୁ ଗଡ଼ଜାତ ସମୂହ ଓଡ଼ିଶା ପ୍ରଦେଶର ଅନ୍ତର୍ଭୁକ୍ତ ହେଲା । ବ୍ରିଟିଶ୍ ଯେପରି ଆଉ ଭାରତକୁ ଆସିବାର ଆଶା ନାହିଁ ସେପରି ଗଡ଼ଜାତ ରାଜାମାନେ ସେମାନଙ୍କର ରାଜତ୍ୱ ଫେରିପାଇବାର ଆଶା ଆଦୌ ନାହିଁ । ଭାରତର ଶାସନତନ୍ତ୍ର ସୁଚାରୁରୂପେ ଚଳାଇବା ନିମନ୍ତେ କଂଗ୍ରେସ ଶାସକଗଣ ଯେଉଁ ପନ୍ଥା ଚଳାଇବେ ତାହା ମାନିନେବା ଭିନ୍ନ ରାଜାମାନଙ୍କର ଅନ୍ୟ ଉପାୟ ନାହିଁ । ଏଣୁ ଗଡ଼ଜାତ ରାଜାମାନେ ସ୍ୱେଚ୍ଛାପୂର୍ବକ ଆପଣା ବଂଶ ପରମ୍ପରାଗତ ସାର୍ବଭୌମ କ୍ଷମତା ଭାରତ ଶାସକଗଣଙ୍କ ହସ୍ତରେ ଅର୍ପଣ କଲେ । ଏବଂ ଗଡ଼ଜାତ ପ୍ରଜା ପୁଞ୍ଜର ସୁଖ ଦୁଃଖର ଦାୟିତ୍ୱରୁ ମୁକ୍ତିଲାଭ କଲେ । ଦେଶର ପରିସ୍ଥିତି, ପ୍ରଜାସମୂହର ବୃଦ୍ଧିପ୍ରାପ୍ତ ଔଦ୍ଧତ୍ୟ ପ୍ରତି ଦ ଷ୍ଟିପାତ କଲେ ରାଜାମାନେ ସୁଖସ୍ୱଚ୍ଛନ୍ଦରେ ତିଷ୍ଠି ପାରିବା ଆଶା ନ ଥିଲା । ସୁତରାଂ ବର୍ତ୍ତମାନ ବନ୍ଦୋ ବସ୍ତକୁ ମନ୍ଦର ଭଲ ବୋଲାଯାଇପାରେ । ଏଥିରେ ରାଜାମାନେ ନ୍ମମନା ହେବା ଉଚିତ ନୁହେଁ । ଦେଶବାସୀଙ୍କର ସ୍ନେହ ସ ।ନୁଭୂତି ଲାଭ କରିବା ଉପାୟ ସେମାନଙ୍କର ହା ରେ । ଦେଶରେ ସେମାନଙ୍କର ନାମ ଓ ମହତ୍ତ୍ୱ ବଜାୟ ରଖିବା ନିମନ୍ତେ ଆଜହୁଁ ସଚେଷ୍ଟ ହେବା ଉଚିତ୍ । ଭବିତବ୍ୟ ଯା । ତାହା ଘଟିଲା । ବର୍ତ୍ତମାନ ରାଜାପ୍ରଜାର ଦୋଷଗୁଣ ବାଛିବାର ସମୟ ନାହିଁ । ସମସ୍ତେ ଅସୂୟା ଈର୍ଷା ଓ ଅହମିକାକୁ ଭୁଲିଯାଇ ପରସ୍ପର ସହାନୁଭୂତି ଓ ସହଯୋଗଦ୍ୱାରା ଦେଶମାତୃକାର ପ୍ରଗତି ନିମନ୍ତେ ଆତ୍ମୋତ୍ସର୍ଗ କରନ୍ତୁ ଏହାହିଁ ଆମମାନଙ୍କର ଆନ୍ତରିକ କାମନା ।

ଅଜସ୍ର ଧାରାପାତଦ୍ୱାରା ଯେପରି ଜଳପ୍ରବାହ ପ୍ରବଳ ହୋଇଉଠେ, ବାଧାବିଘ୍ନ ମାନେ ନାହିଁ ସେହିପରି ମହାଯୁଦ୍ଧ

ଉତ୍ତାରୁ ସ୍ୱାଧୀନତାର ପ୍ରବାହ ଅତ୍ୟନ୍ତ ପ୍ରବଳ ଭାବରେ ଚାଲିଛି, କେଉଁଠାରେ ଏବଂ କେତେ ଦିନରେ ଏହା ବନ୍ଦ ହେବ ଏବଂ ପୃଥିବୀ ଶାନ୍ତି ଲାଭ କରିବ ତାହା ଭାବନାର ଅଗୋଚର । ବହୁ ଶତାବ୍ଦୀବ୍ୟାପୀ ପରାଧୀନତା ଲୋକ ମନକୁ ଯେଉଁ ଅଶାନ୍ତି ଓ ଦୁଃଖଜ୍ୱାଳାରେ ଧୂମାୟିତ କରିଥିଲା ତାହା ସହସା ପ୍ରଦୀପ୍ତ ହୋଇଉଠିଲା । ସହସା ଲିଭିବାର ନୁହେଁ । ଭାରତର ଜାଗୃତି ଗଡ଼ଜାତର ଜାଗୃତି ପ୍ରତି ସ୍ୱାଭାବିକ, ମାତ୍ର ଏତେ ସହସା ଏବଂ ନିର୍ଦୟଭାବରେ ରାଜା ଶାସନରୂପ ମହୀରୁହକୁ ଉନ୍ମୂଳିତ କରିଦେବ ବୋଲି କେହି ଭାବି ପାରି ନ ଥିଲେ । ଯାହାହେଉ ଏ ପରିବର୍ତ୍ତନ ରାଜା ଓ ପ୍ରଜାପୁଞ୍ଜର ଅବିମୃଶ୍ୟକାରିତାର ଫଳ । ଆରମ୍ଭରୁ ଉଭୟପକ୍ଷ ସାବଧାନତା ଅବଲମ୍ବନ କରିଥିଲେ ଏତେ ଶୀଘ୍ର ଏପରି ଭାବରେ ପରିବର୍ତ୍ତନ ଘଟିପାରି ନ ଥାନ୍ତା । ଏଥିରେ ଶାସକଗଣଙ୍କୁ ଆମେମାନେ ଦୋଷ ଦେଇ ନ ପାରୁଁ ପୁଣି କହୁଁ ଏ ପରିବର୍ତ୍ତନ ରାଜା ଓ ପ୍ରଜାଙ୍କର ଅବିମୃଶ୍ୟତାର ଫଳ । ଅଧିକ ଆଲୋଚନା ମନସ୍ତାପକୁ ବୃଦ୍ଧି କରିବ ସିନା ଶାନ୍ତି ଦେବ ନାହିଁ ।

ଗଡ଼ଜାତର ନାମ ଅନ୍ଧାରି ମୁଲକ । ଆମେମାନେ ଆଲୋକପ୍ରାପ୍ତ ମୁଲକରେ ପ୍ରବେଶ କଲୁଁ । କେତେଦିନରେ ଆଲୋକପ୍ରାପ୍ତ ହୋଇପାରିବୁ ତାହା ଭବିଷ୍ୟତ ଗର୍ଭରେ ନିହିତ । ପ୍ରତିଯୋଗିତାରେ ଗଡ଼ଜାତବାସୀ ତିଷ୍ଠିପାରିବା ବଡ଼ ସହଜ ନୁହେଁ । ଗଡ଼ଜାତବାସୀଙ୍କି ଯେବେ ଶିକ୍ଷା, ଦୀକ୍ଷା ଧନ ଉପାର୍ଜନ, ଅବସ୍ଥା ସ୍ୱଚ୍ଛଳ କରିବାର ପନ୍ଥାରେ ସାହାଯ୍ୟ ଦିଆ ନ ଯାଇ ଯୋଗ୍ୟତମର ଅଭ୍ୟୁଦୟ ନୀତି ଶାସକ ତଥା ଶିକ୍ଷିତ ଲୋକେ ଅବଲମ୍ବନ କରନ୍ତି ତାହାହେଲେ ଗଡ଼ଜାତ ଲୋକେ ଆହୁରି ଅନ୍ଧକାରରେ ନିମଜ୍ଜମାନ ହେବେ ।

ଗଡ଼ଜାତ ରାଜାମାନେ ଆପଣା ଶିକ୍ଷା ଓ ସଂସ୍କୃତି ଅନୁସାରେ ଲୋକହିତ କାମନାରେ ଯାହା କରିଯାଇଅଛନ୍ତି, ସେମାନଙ୍କର ସ୍ଥାପିତକୀର୍ତ୍ତିନିଚୟକୁ ପ୍ରାଦେଶିକ ଶାସକଗଣ ବଜାଏ ରଖିବାକୁ, ସେହି ଜନହିତକର କାର୍ଯ୍ୟମାନଙ୍କର ରକ୍ଷା ଓ ଅଭିବୃଦ୍ଧି ନିମନ୍ତେ ଚେଷ୍ଟାକରିବା ଉଚିତ । ଗଡ଼ଜାତ ଅଞ୍ଚଳରେ ଶିକ୍ଷା-ବୃଦ୍ଧି ନ ହେଲେ ଲୋକେ ଅଧୋଗତି ଆଡ଼କୁ ଅଗ୍ରସର ହେବେ— ପରେ ଅବନତ ଏବଂ ମୂର୍ଖପ୍ରଜା ନେଇ ଶାସନ ଧାରାରେ ଯେଉଁ ପ୍ରତିବନ୍ଧକ ଘଟେ ତାହା ଘଟିବ ।

ଆମେମାନେ ଯାହା ଘଟିଲା ସେଥିନିମନ୍ତେ ଦୁଃଖ କରିବା ଉଚିତ ନୁହେଁ ବୋଲି ଗଡ଼ଜାତ ଭାଇମାନଙ୍କୁ ଉପଦେଶ ଦେଉଅଛୁଁ, ଏବଂ ଉତ୍କଳର ଶିକ୍ଷିତ ଓ ସଦାଶୟ ବ୍ୟକ୍ତିମାନଙ୍କୁ ଅନୁରୋଧ କରୁଅଛୁଁ ଯେ ସେମାନେ ଯେପରି ଗଡ଼ଜାତିମାନଙ୍କର ଉନ୍ନତି ମାର୍ଗର ପରିପନ୍ଥୀ ନ ହୁଅନ୍ତି । ଏଥର ଏତିକି —ଏଣିକି ଶିକ୍ଷିତ ଓ ଅଶିକ୍ଷିତ ମିଶି ସମସ୍ତେ ସମାନ ଉତ୍କଳମାତାର ଉନ୍ନତିକଳ୍ପେ ନୂତନ ଯୋଜନାମାନ ସ୍ଥିର କରିବାକୁ ସମସ୍ତେ ଅଗ୍ରସର ହେବା ଉଚିତ ।

ଓଡ଼ିଶା ପ୍ରଦେଶବାସୀମାନେ ଗଡ଼ଜାତକୁ ପାଇ ଅବଶ୍ୟ ଖୁସୀ ହେବାର କଥା— ମାତ୍ର ରାଜାମାନେ ଯେଉଁମାନଙ୍କର ପ୍ରଭୁତ୍ୱ, ମହତ୍ତ୍ୱ, ମର୍ଯ୍ୟାଦାର ହାନି ଘଟିଲା— ବଂଶପରମ୍ପରାଗତ ରାଜତ୍ୱ ଗଲା ସେମାନେ ସୁଖୀ ହେବେ କିପରି ? ସେମାନେ ନିଶ୍ଚୟ ସନ୍ତାପ ସାଗରରେ ଭାସମାନ ଏହା କି ବୁଝାଇବାକୁ ହେବ ? ରାଜାପରିବାରବର୍ଗଙ୍କର ଦୁଃଖ ଓ ମନସ୍ତାପ ତତୋଽଧିକ । ଏହା ଗୋଟିଏ ଆକସ୍ମିକ ଘଟଣା । ଏଥିପ୍ରତି କେହି ଆଦୌ ସତର୍କ ନ ଥିଲେ କେହି ଚିନ୍ତା କରି ନ ଥିଲେ । ଗଡ଼ଜାତର ପ୍ରଜାକୁଳ ମଧ ସନ୍ତୁଷ୍ଟ ଓ ସୁଖୀ ନୁହନ୍ତି ତାହା ଆମେମାନେ ସ୍ପଷ୍ଟରୂପରେ ବୁଝି ପାରିଅଛୁଁ । ଦେଶରେ ଗୋଟିଏ ମାତ୍ର ରାଜା, ରାଜାର ଭାଇଠାରୁ ଆରମ୍ଭି ସମସ୍ତେ ପ୍ରଜା । ଏ ପରିବର୍ତ୍ତନରେ ରାଜା ଓ ପ୍ରଜା ସମସ୍ତେ ଅନୁତପ୍ତ ଚିନ୍ତିତ । ଓଡ଼ିଶା ପ୍ରାଦେଶିକ ଶାସନ ରୀତିରେ ଅଭ୍ୟସ୍ତ ନ ହେବାଯାଏ ଗଡ଼ଜାତର ସମସ୍ତଙ୍କୁ ଅନୁତାପ କରିବାକୁ ପଡ଼ିବ । ଶାନ୍ତି ଆସୁ, ଦୁଃଖକୁ ସୁଖ ମଣନ୍ତୁ । ଗଡ଼ଜାତ ରାଜା ପ୍ରଜାଙ୍କୁ ଆମମାନଙ୍କର ଏହି ଉପଦେଶ ।

ଗଡ଼ଜାତ ଓଡ଼ିଶାରେ ମିଶିଲା, ଓଡ଼ିଶାରେ କଳେବର ବୃଦ୍ଧି ହେଲା ସତ, ମାତ୍ର ଉତ୍କଳ ପୂର୍ଣ୍ଣାଙ୍ଗ ହୋଇ ନାହିଁ । ଯେବେ ପ୍ରାଦେଶିକ କର୍ତ୍ତୃପକ୍ଷ ଘୋଷ ବୋସଙ୍କୁ ଜୟକରି ବଙ୍ଗ ଦେଶରେ ଥିବା ଅଞ୍ଚଳକୁ ଆଣି ପାରିବେ ଏବଂ ରାଜାଦି ଓ ରେଡ଼ିଙ୍କୁ ଯୁକ୍ତିତର୍କରେ ଜୟକରି ମାଡ୍ରାସରେ ଥିବା ଅଞ୍ଚଳକୁ ଆଣିପାରିବେ ତେବେ ସେମାନେ ମହତ୍ ଯଶ ଉପାର୍ଜ୍ଜନ କରିପାରିବେ । ଶ୍ରୀ ମହତାବଙ୍କ ମହତ୍ତ୍ୱ ବଢ଼ିବ ।

## ପୁସ୍ତକ ପ୍ରାପ୍ତି ସ୍ୱୀକାର

**ଦକ୍ଷିଣୀ ହିନ୍ଦୀ—** ଏହା ମେଡ୍ରାସ ସରକାରଙ୍କର ହିନ୍ଦୁସ୍ଥାନୀ ମାସିକ ପତ୍ର । ମେଡ୍ରାସରେ ହିନ୍ଦୀ ଓ ଉର୍ଦ୍ଦୁଭାଷା ଶିକ୍ଷା କଳ୍ପେ ଏହାର ପ୍ରକାଶ । ଏ ପତ୍ରିକାର ପ୍ରଥମ ଅଂଶ ହିନ୍ଦୀ ଏବଂ ଦ୍ୱିତୀୟ ଅଂଶ ଉର୍ଦ୍ଦୁ ଅକ୍ଷରରେ ମୁଦ୍ରିତ । ଉର୍ଦ୍ଦୁ ଅକ୍ଷରଗୁଡ଼ିକ ଅତି ପରିପାଟୀ ସହିତ ମୁଦ୍ରିତ । କେତେଗୋଟି ପୂର୍ବ ଭାଗର ହିନ୍ଦୀ ପ୍ରବନ୍ଧ ଶେଷ ଭାଗରେ ଅବିକଳ ଉର୍ଦ୍ଦୁ ଅକ୍ଷରରେ ମୁଦ୍ରିତ

ହୋଇଥିବାରୁ ଉର୍ଦ୍ଦୁ ଶିକ୍ଷାର୍ଥୀମାନଙ୍କ ପକ୍ଷରେ ଏହା ଗୋଟିଏ ପୂର୍ଣ୍ଣ ସୁଯୋଗ । ହିନ୍ଦୀ ଓ ଉର୍ଦ୍ଦୁ ଶିକ୍ଷାର ପ୍ରଶସ୍ତ ଉପାୟ ଏହି ପ୍ରତିକାରୁ ମେଡ୍ରାସବାସୀ ପାଇପାରିବେ । ବଡ଼ ସୁଖର ବିଷୟ । ଆମେମାନେ ଏହି ପତ୍ରିକାର ଦୀର୍ଘ ଜୀବନ ଓ ବହୁଳ ପ୍ରଚାର କାମନା କରୁଁ । ପତ୍ରିକାର କାଗଜ ଓ ଛାପା ଭଲ ।

**ପୂର୍ଣ୍ଣିମା—** ଭୁବନେଶ୍ୱରରୁ ପ୍ରକାଶିତ ଓ ଏହାର କାଗଜ ଛାପା ପରିଷ୍କାର ଓ ସୁନ୍ଦର । ଯୋଗ୍ୟ ଲେଖକମାନଙ୍କର ଲେଖା ପ୍ରକାଶ ପାଇଅଛି । ପ୍ରଚ୍ଛଦପଟରେ ବର୍ଣ୍ଣନା ସମ୍ପୂର୍ଣ୍ଣ ନୂତନ ଧରଣର ଅଟେ । କିଛିକାଳ ଠିକ୍‌ରୂପେ ପ୍ରକାଶ ନ ପାଇଲେ ଏ ଦେଶର ପତ୍ରିକା ସ୍ଥାୟୀହେବ ଏ ଆଶା କରାଯାଇ ନ ପାରେ । ଯାହାହେଉ ପୂର୍ଣ୍ଣିମାର ଶ୍ରୀବୃଦ୍ଧି କାମନା କରୁଅଛୁଁ ।

## ତୃତୀୟ ବର୍ଷ ଷଷ୍ଠ ଓ ସପ୍ତମ ସଂଖ୍ୟା

ଶଙ୍ଖର ପ୍ରତିଷ୍ଠାତା ଓ ପୃଷ୍ଠପୋଷକ ଆୟୁଷ୍ମାନ୍ ଶ୍ରୀମାନ୍ ରାଜା ଭାନୁଗଙ୍ଗ ଦେବ । ତାଙ୍କର ସାହାଯ୍ୟ ବ୍ୟତୀତ ଶଙ୍ଖ ତିଷ୍ଠିବାର ସମ୍ଭବପର କି ନା ଏହା ବହୁକାଳରୁ ଆମ୍ଭମାନଙ୍କୁ ଚିନ୍ତାନ୍ୱିତ କରିଥିଲା । କାରଣ ୧୯୪୭ ପ୍ରାରମ୍ଭରୁ ଆମେମାନେ ପର ଶିକ୍ଷାପ୍ରାପ୍ତ ଗଡ଼ଜାତ ପ୍ରଜାଙ୍କର ଔଦ୍ଧତ୍ୟ, ରାଜାମାନଙ୍କ ନିଶ୍ଚେଷ୍ଟତା ଏବଂ ଓଡ଼ିଶା ଗଭର୍ଣ୍ଣମେଣ୍ଟର ଗଡ଼ଜାତ ମିଶ୍ରଣର ଚେଷ୍ଟା ଦେଖି ଜାଣି ପାରିଥିଲୁଁ ଯେ ରାଜାମାନେ ସାର୍ବଭୌମକ୍ଷମତା ଭ୍ରଷ୍ଟ ହେବା ସୁନିଶ୍ଚିତ । ଶ୍ରୀମାନ୍ ବାମଣ୍ଡା ରାଜାଙ୍କର ଆର୍ଥିକ ଲାଭରୁ 'ଶଙ୍ଖ' ବଞ୍ଚିତ ହେବା ସ୍ୱାଭାବିକ ଭାବି ପୁରସ୍କାର ବିତରଣ ବନ୍ଦ କରିଥିଲୁଁ । ବର୍ତ୍ତମାନ ସମସ୍ୟା ଏହି ଯେ ଶଙ୍ଖ ତିଷ୍ଠି ପାରିବ କି ? ଆୟୁଷ୍ମାନ୍ ଆମ୍ଭମାନଙ୍କୁ ବାମଣ୍ଡା ପ୍ରେସ ତଥା ଶଙ୍ଖର ଟ୍ରଷ୍ଟି ନିଯୁକ୍ତ କରିଅଛନ୍ତି ସତ ମାତ୍ର ପାଣ୍ଠି କାହିଁ ? ଓଡ଼ିଶାପ୍ରାଦେଶିକ ସରକାର ଶଙ୍ଖ ପ୍ରତି ସହାନୁଭୂତି ଦେଖାଇ ତାକୁ ବଞ୍ଚାଇବାପାଇଁ ସାହାଯ୍ୟ କରିବେ ବୋଲି ଆମମାନଙ୍କର ଆଶା, କାରଣ ଓଡ଼ିଶା ସରକାର ଯାହାଠାରୁ ରାଜ୍ୟଭାର ଗ୍ରହଣ କଲେ ଶଙ୍ଖ ତାହାଙ୍କର ରୋପିତ ଶିଶୁ ବୃକ୍ଷ; ପ୍ରାଦେଶିକ ସରକାର ଶଙ୍ଖର ବାଲ୍ୟାବସ୍ଥାରୁ ତାକୁ ମୂଳୋତ୍ପାଟିତ କରିବାର ଚେଷ୍ଟା କରିବେ କି ? ଗ୍ରାହକ ସଂଖ୍ୟା ଅତି କମ୍ । ଉତ୍କଳର ପାଠକଗଣ ଅନ୍ଧାରିମୂଳକରେ ଜନ୍ମ, ଶଙ୍ଖ ପ୍ରତି ସହାନୁଭୂତି ଦେଖାଇବେ ନାହିଁ କି ? ଗ୍ରାହକ ବ୍ୟତୀତ ପତ୍ରିକାର ଜୀବନରକ୍ଷା ଅସମ୍ଭବ । ବର୍ତ୍ତମାନଅବସ୍ଥାରେ ପ୍ରାଦେଶିକ ସରକାରଙ୍କର ଉତ୍ସାହ ଓ ସାହାଯ୍ୟ ପାଇବା ଆମମାନଙ୍କର କାମନା ।

ଇଂରେଜମାନେ ଭାରତବାସୀଙ୍କ ହାତରେ ଭାରତଶାସନ ଭାର ଦେଇଗଲେ ସତ ମାତ୍ର ଏ ଦେଶବାସୀ ସ୍ୱାଧୀନତାର ଯେଉଁ ଆକାଂକ୍ଷା ହୃଦୟରେ ପୋଷଣ କରିଥିଲେ ତାହା ଉପଭୋଗ କରିବାର ସୁବିଧା ଅଦ୍ୟାପି ପାଇ ନାହାନ୍ତି । କେତେ ଦିନରେ ପାଇବେ ଏବଂ ସ୍ୱାଧୀନତାର ସୁଖ ଉପଲବ୍ଧ କରିପାରିବେ, ତାହା ପ୍ରକାଶ କରିବା ସହଜ ନୁହେଁ । ସ୍ୱାଧୀନତା କି ଉଦ୍‌ବାର୍ଯ୍ୟତା ଓ ଉଚ୍ଛୃଙ୍ଖଳତା ? ଦେଢ଼ଶତବର୍ଷପରେ ପରାଧୀନତାର ଶୃଙ୍ଖଳ ଛିଣିବାରୁ ସମସ୍ତେ ଉଚ୍ଛୃଙ୍ଖଳତା ଆଡ଼କୁ ଧାବମାନ ହେଲେ । କାରାଦ୍ୱାର ଉଦ୍‌ଘାଟିତ ହେଲେ ସମସ୍ତେ ଅଗ୍ରସର ହେବା ବାସନାରେ ବାହାରକୁ ଦୌଡ଼ିବାର ଚେଷ୍ଟା କରନ୍ତି, ଫଳରେ ଗୋଳମାଳ ଉପସ୍ଥିତ ହୁଏ, ପ୍ରାଣହାନି ହୁଏ । ବର୍ତ୍ତମାନ ଦେଶରେ ସେହି ଅବସ୍ଥା ଉପସ୍ଥିତ ହୋଇଅଛି । ଶିକ୍ଷିତ ଅଶିକ୍ଷିତ ସମସ୍ତେ ଅସମ୍ଭାଳ । ଶିକ୍ଷିତମାନେ ଦେଶର ଅବସ୍ଥା ପ୍ରତି ଲକ୍ଷ୍ୟ ନ କରି ଆପଣାର ମହତ୍ତ୍ୱ ଘୋଷଣାକରି ଅଶିକ୍ଷିତମାନଙ୍କୁ ଉଚ୍ଛୃଙ୍ଖଳ ପଥରେ ଚାଲିବାକୁ ଉପଦେଶ ଦେଉଅଛନ୍ତି । ଅଯଥା ଆଶାବାଣୀ ଶୁଣାଇବାରେ ବ୍ୟସ୍ତ । ଅଶିକ୍ଷିତଗଣ ସହସା ଆକାଶ କୁସୁମ ହସ୍ତଗତ କରିବା କଳ୍ପନାରେ ଭ୍ରାନ୍ତ ଓ ଇତସ୍ତତଃ ଧାବିତ ଦେଶରେ ଶାନ୍ତି ବିରାଜମାନ କରିବ କିପରି ?

ଜାତୀୟ ବିବାଦ ଓ ଜାତିଭେଦ ତ ଭାରତର ଭାଗ୍ୟଲିପି । ଲିଭାଇବା ଚେଷ୍ଟା ତ ଦୂରର କଥା । ତାହାକୁ ଉଜ୍ଜ୍ୱଳରଙ୍ଗ ଦ୍ୱାରା ବିଚ୍ଛୁରିତ କରାଯାଉଅଛି । ଭାରତ ଓ ପାକିସ୍ତାନର ରକ୍ତପାତର ବିବରଣ ଭବିଷ୍ୟତ ଇତିହାସ ପାଠକମାନଙ୍କର ଦେହରେ ଶିହରଣ ଓ ହୃଦୟରେ ଦାହ ଆଣିବ ସନ୍ଦେହ ନାହିଁ ।

ଡିସେମ୍ବର ତା ୧୪ ରିଖରେ ଗଡ଼ଜାତର ଭାଗ ଭାଗ୍ୟ ନିଷ୍ପତ୍ତି ହେଲା ବୋଲି ଭାବିନେଲୁଁ । କେବଳ ରାଜାମାନଙ୍କର ମହତ୍ତ୍ୱ ମର୍ଯ୍ୟାଦା ରକ୍ଷା ଓ ପ୍ରଜାପୁଞ୍ଜର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ପ୍ରାଦେଶିକ ସରକାରଙ୍କର ଶୁଭଦୃଷ୍ଟି ପଡୁ ବୋଲି କାମନା କରିଥିଲୁଁ । ଏଥିଉତ୍ତାରୁ ପୁଣି ଯେ ନୂତନ ନୂତନ ଗୋଳମାଳ ଓ ଚକ୍ରାନ୍ତ ଉପସ୍ଥିତ ହେବ ଏ ଭାବନା ହୃଦୟରେ ସ୍ଥାନ ପାଇ ନ ଥିଲା । ସରେଇକଳା ଓ ଖରସୁଆଁ ରାଜ୍ୟରେ କେତେକ ଆଦିବାସୀ ଅଛନ୍ତି । ଅଳ୍ପ ବହୁତ କେଉଁଠାରେ ବା ନାହାନ୍ତି ? ରାଞ୍ଚିଅଞ୍ଚଳରେ ଆଦିବାସୀ ସଂଖ୍ୟା ବହୁଳ । ଏଥିନିମନ୍ତେ ବିହାର ସରକାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ସବୁକୁ ବିହାର ଅନ୍ତର୍ଭୁକ୍ତ କରିବା ପ୍ରୟାସ ସଙ୍ଗତ କି ? ସରେଇକଳା

ଖରସୁଆଁ ସଙ୍ଗେସଙ୍ଗେ ବଣାଇଁ, ବାମଣ୍ଡା, ଗାଙ୍ଗପୁରକୁ ମଧ ବିହାରକୁ ନେବାକୁ ଜଣକେତେ ବିହାରୀ ସୂଚନା ଦିଅନ୍ତି । ଏ ଅନ୍ତର୍ବିବାଦର ସୂତ୍ରପାତ କାହିଁକି ? ଚୋର ଯାର ମୁଳକ ତା'ର ଏ ନୀତି କଂଗ୍ରେସ ରାଜ୍ୟରେ ମଧ ଚାଲିବ କି ? ବିହାରଗଭର୍ଣ୍ଣମେଣ୍ଟ ଆଦିବାସୀମାନଙ୍କୁ ଅମୃତଚକ୍ଷୁରେ ଦେଖିବେ ଓଡ଼ିଶା ଗଭର୍ଣ୍ଣମେଣ୍ଟ କି ସେମାନଙ୍କୁ ବିଷଚକ୍ଷୁରେ ଦେଖିବେ । ପ୍ରଥମୋକ୍ତ ସରକାର ଦେବେ ସୁଖ ଏବଂ ଶେଷୋକ୍ତ ସରକାର ଦେବେ ଦୁଃଖ ଏ କଳ୍ପନା କାହୁଁ ଜନ୍ମ ହେଲା ? ବଙ୍ଗାଳୀମାନେ ପୁଣି ଖରସୁଆଁ ଓ ସଢ଼େଇକଳାକୁ ଦାବୀ କଲେଣି । ବଙ୍ଗାଳୀମାନେ ଭାବିଲେ କି ''ଦ୍ୱୟୋବିବାଦେ ତୃତୀୟସ୍ୟ ଲାଭଃ'' ? ବିହାରୀ ଓଡ଼ିଆଙ୍କ ବିବାଦହେତୁ ବଙ୍ଗାଳୀ ଲାଭବାନ୍ ହେବ । କି ବିପ୍ରାତ ? ଇଂରେଜ ରାଜତ୍ୱବେଳେ ଏ ଜାତିପ୍ରେମ ତ କାହାରି ନ ଥିଲା ଏବେ କଂଗ୍ରେସ ରାଜତ୍ୱରେ ପ୍ରାଦେଶିକ କଂଗ୍ରେସ ସରକାରମାନଙ୍କ ଏ ଜାତିପ୍ରେମ ବିଶେଷତଃ ଆଦିବାସୀ ପ୍ରେମ ଜନ୍ମିଲା କିପରି ? କେନ୍ଦ୍ରୀୟସରକାର ଦୁର୍ବଳ କି ? ଏପରି ସାମାନ୍ୟ କଥା ନେଇ ଯେବେ ବିବାଦ ମାରପିଟ୍ ଓ ଅସ୍ତ୍ରଚାଳନା ଚଳେ ତେବେ ଭାରତର ଦୁର୍ଦ୍ଦଶାର ସୀମା କାହିଁ ? ସଢ଼େଇକଳା ଖରସୁଆଁ ଓଡ଼ିଶାରେ ଥିଲା, ଆଉ ରାଜା ଦୁହେଁ ଓଡ଼ିଆ । ପ୍ରଜା ଅଧିକାଂଶ ମଧ ଓଡ଼ିଆ ବଙ୍ଗପ୍ରଦେଶର ସଂଲଗ୍ନ ହେତୁ ବଙ୍ଗାଳୀ କିଛିଅଛନ୍ତି ବା ବଙ୍ଗଭାଷା କହି ଶିଖିଛନ୍ତି । ଏଥି ନିମନ୍ତେ ବଙ୍ଗାଳୀଙ୍କ ଦାବୀ ଅସଙ୍ଗତ । ଆଦିବାସୀ ପ୍ରେମରୁ ବିହାରୀଙ୍କୁ ନିରସ୍ତ କରିବା କେନ୍ଦ୍ରୀୟ ସରକାରଙ୍କର ଉଚିତ। ଆଦିବାସୀ ଅଳ୍ପବିସ୍ତାର ଭାବରେ ଓଡ଼ିଶାରେ ସର୍ବତ୍ର ।

ପୁଣି ଖରସୁଆଁ ଓ ସଢ଼େଇକଳା ଉଦାହରଣ ନେଇ ଯଶପୁର, ସୁର୍ଗୁଜା ଓ ଛୋଟନାଗପୁର ମିଶି ଗୋଟାଏ ପ୍ରଦେଶ ଗଠନର ପ୍ରୟାସ ଚାଲିଲାଣି— ଏହାର ନାମ ଧର୍ମରାଜ୍ୟ ଏବଂ ପ୍ରଦେଶର ନାମହେବ ଧର୍ମପ୍ରାନ୍ତ । ଏହା କ୍ରୀଷ୍ଟ୍ୟାନ୍‌ମାନଙ୍କର କରାମତି— ଯେହେତୁ ଏ ଅଞ୍ଚଳର ଅନେକ ଆଦିବାସୀ କ୍ରିଷ୍ଟ୍ୟାନ୍ । କାହିଁକି ବା ବାକି ରହିବ ? ପ୍ରଭୁ ଯୀଶୁଙ୍କର ଧର୍ମଧ୍ୱଜା ଉଡୁ । ଧର୍ମରାଜ୍ୟ ପ୍ରତିଷ୍ଠିତ ହେଉ । ଯୀଶୁ ମାତା ମେରୀଙ୍କର ସହସ୍ର ସହସ୍ର ପ୍ରତିକୃତି ବିତରିତ ହେଉଅଛି । କ୍ରିଷ୍ଟ୍ୟାନ୍‌ଦଳ ମାତିବେ ନିଶ୍ଚୟ । ପଟେଲଜୀ ପୁଣି ଗୋଟିଏ ପ୍ରଦେଶ ଗଠନ କରନ୍ତୁ । ସୌରାଷ୍ଟ୍ର ହେଉଛି । କର୍ଣ୍ଣାଟକ ହେବାକୁ ବସିଛି । ପ୍ରାର୍ଥନା ଏହି ଯେ ଯାହା ହେବାର ହେଉ— • ଆମମାନଙ୍କୁ ଯେପରି ଘିଞ୍ଚା ଓଟରା କରା ନ ଯାଉ ।

ଭାରତ ବିଭାଗର ପରିଣତି ଅନୁଭୂତ ହେବାକୁ ଆଉ ବାକି ନାହିଁ । ତରତର ହୋଇ ନେତାମାନେ ପାକିସ୍ତାନ ଗଠନର ମତ ଦେଲେ । ପୁଣି ତର ତର ହୋଇ ଜଣେ ଇଂରେଜଦ୍ୱାରା ସୀମାନିର୍ଦ୍ଦେଶ କରାଇଲେ । ହିନ୍ଦୁ ମୁସଲ୍‌ମାନ ଶିଖ୍‌ମାନଙ୍କ ମଧରେ ଶାନ୍ତି ସ୍ଥାପନ ହେଲା କି ? ଅନ୍ତର୍ବିବାଦ ବଢ଼ିଲା ? କାଶ୍ମୀରର ଜଟିଳପ୍ରଶ୍ନ ଆଜି ପାଶ୍ଚାତ୍ୟ ବିଚାରକଙ୍କ ହାତରେ ମୀମାଂସିତ ହେବାକୁ ଅଛି । ଏଥିରୁ ଭାରତ ଇଉନିୟନ ଓ ପାକିସ୍ତାନ ମଧରେ ବନ୍ଧୁତାସ୍ଥାପନ ହେବାର ଆଶା ସୁଦୂରପରାହତ । ହାଇଦ୍ରାବାଦର ପ୍ରଶ୍ନ ଯେ ପୁଣି ଆମେରିକାକୁ ନ ଯିବ ତାହା କିଏ କହିପାରିବ ? ଗାନ୍ଧିଜୀଙ୍କର ଉପବାସ ହିନ୍ଦୁମାନଙ୍କ ପ୍ରତି ପ୍ରଯୁଜ୍ୟ ଓ ସମ୍ମାନଯୋଗ୍ୟ ମାତ୍ର ଲିଗ୍‌ପନ୍ଥୀମାନେ ଯେ ତାହା ନତମସ୍ତକରେ ସ୍ୱୀକାର କରିବେ ଏହା ଭାବନାରେ ଅଗୋଚର । ଫଳରେ ଯାହା ଦେଖାଯାଉଅଛି ତାକୁ ଯେଉଁମାନେ ଅବିଶ୍ୱାସ କରନ୍ତି ସେମାନେ ଭ୍ରାନ୍ତ ବୋଲିବା ଅସଙ୍ଗତ ନୁହେଁ ।

ପ୍ରାଦେଶିକ ଗଭର୍ଣ୍ଣର ମହାମାନ୍ୟବର ଡାଃ କାଟ୍‌ଜୁ ସର୍ବସାଧାରଣ ଭାଷା ନିମନ୍ତେ Lingua Franca ସଂସ୍କୃତକୁ ପସନ୍ଦ କରନ୍ତି । ସଂସ୍କୃତ ବହୁ କାରଣରୁ ମୃତ ଭାଷା ହୋଇଅଛି ତାକୁ ପୁନର୍ଜୀବିତ କରିବା ଆଶା ଦୁରାଶା ବୋଲି ମନେହୁଏ । ସଂସ୍କୃତ ବହୁ ଆୟାସସାଧ୍ୟ ବିଦ୍ୟା । ବ୍ୟାକରଣରେ ପାଣ୍ଡିତ୍ୟ ନ ଥିବା ଲୋକମୁଖରେ ଭାଷା ଅସଂସ୍କୃତ ହୋଇପଡ଼ିବ । ବହୁ କାରଣରୁ ସଂସ୍କୃତ କେବେ କଥିତ ଭାଷା ନ ଥିଲା । ଏବେ ତାକୁ କଥିତ ଭାଷା କରିବା ପ୍ରୟାସ ନିଶ୍ଚୟ ପଣ୍ଡ ହେବ ।

ମୟୂରଭଞ୍ଜ ମହାରାଜ ଶାସନ ଦାୟିତ୍ୱ ସମ୍ପୂର୍ଣ୍ଣ ରୂପେ ପ୍ରଜାଙ୍କ ଉପରେ ନ୍ୟସ୍ତ କରି ବର୍ତ୍ତମାନ ଶାସନ ଦାୟିତ୍ୱ ଶୂନ୍ୟ । ଏହା ଅତି ବୁଦ୍ଧିମତ୍ତାର ପରିଚାୟକ । ପ୍ରଜାପୁଞ୍ଜ ଏପରି କ୍ଷମତାପ୍ରାପ୍ତ ହୋଇ ଯେବେ ମୟୂରଭଞ୍ଜକୁ ସ୍ୱାୟତ୍ତ ଶାସନଦ୍ୱାରା ରକ୍ଷାକରି ନ ପାରନ୍ତି ସେଥି ନିମନ୍ତେ ପ୍ରଜା ପୂର୍ଣ୍ଣଦାୟୀ । ମହାରାଜାଙ୍କୁ ଏଥିନିମନ୍ତେ କେହି ଦୋଷୀ କରିପାରିବେ ନାହିଁ । ଭାରତରେ ବରୋଦା ଏବଂ ମୟୂରଭଞ୍ଜ ଏ ସ୍ୱାତନ୍ତ୍ର୍ୟ ରକ୍ଷାକରି ଯଶସ୍ୱୀ ହୋଇଅଛନ୍ତି । ଏତଦ୍ୱାରା ପ୍ରାଚୀନ କୃଷ୍ଟି ରକ୍ଷା ପାଇଅଛି । ପ୍ରଜାପୁଞ୍ଜ ସନ୍ତୋଷ ଥିବା ସତ୍ତ୍ୱେ ଏହି ରୀତିକୁ ଭଙ୍ଗ କରିବା ନିମନ୍ତେ ପ୍ରାଦେଶିକ ସରକାରମାନେ ଚେଷ୍ଟିତ ହେବା ଉଚିତ୍ ନୁହେଁ । ଏଥିରେ ପ୍ରଦେଶର କ୍ଷତି ବା ଅମଙ୍ଗଳ ତ ନାହିଁ ? ଶୁଣାଯାଏ ଯେଉଁ କମ୍ୟୁନିଷ୍ଟଦଳ କଂଗ୍ରେସର ବିରୋଧୀ ସେମାନେ ପୁଣି ମୟୂରଭଞ୍ଜରେ

ଗୋଳମାଳ ଉପସ୍ଥିତ କରିବାକୁ ଚେଷ୍ଟା କରୁଅଛନ୍ତି । କଂଗ୍ରେସ ସରକାର ମୟୂରଭଞ୍ଜବାସୀଙ୍କି କମ୍ୟୁନିଷ୍ଟ ହାତରୁ ରକ୍ଷାକରିବା ବିଧେୟ ନୁହେଁ କି ?

କଟକ ବେତାର କେନ୍ଦ୍ରର ଉଦ୍‌ବୋଧନ ସମିତିର ନିମନ୍ତ୍ରଣ ପତ୍ର ପାଇ ଧନ୍ୟବାଦ ପ୍ରଦାନ କରୁଅଛୁଁ । ମାତ୍ର ଃଖର ବିଷୟ ଏହି ଯେ— ନିମନ୍ତ୍ରଣ ପତ୍ର ଏପରି ସମୟରେ ପ ହଁଚିଲା ଯେ ସେଥିର ଉତ୍ତର ଦେବା ଓ ପ୍ରାପ୍ତିସ୍ୱୀକାର କରିବାର ସମୟ ମଧ୍ୟ ନ ଥିଲା । ଯାହାହେଉ ରେଡ଼ିଓ ଯୋଗେ ଉଦ୍‌ବୋଧନର ବିବରଣୀ ଓ କାର୍ଯ୍ୟାବଳୀ ତଥା ମହାମାନ୍ୟ ଗଭର୍ଣ୍ଣର ଏବଂ ମାନ୍ୟବର ପ୍ରଧାନମନ୍ତ୍ରୀଙ୍କର ଭାଷଣ ଏବଂ ସଙ୍ଗୀତାଦି ଶ୍ରବଣ କରି ତୃପ୍ତ ଓ ଚରିତାର୍ଥ ହେଲୁଁ ଏବଂ ଆଶ୍ୱସିତ ହେଲୁଁ । ଏଣିକି ଓଡ଼ିଶାବାସୀମାନେ ଏମନ୍ତ କି ପଲ୍ଲୀବାସୀମାନେ ମଧ୍ୟ ବେତାର ସମ୍ବାଦ ଶ୍ରବଣ କରି ପାରିବେ ଓ ବିଜ୍ଞାନର ମହତ୍ତ୍ୱ ଉପଲବ୍ଧି କରିପାରିବେ । ଆଶାକରୁ ବେତାରଦ୍ୱାରା ଶିକ୍ଷା ପ୍ରଚାରର ବ୍ୟବସ୍ଥା କରାଯିବ । ଉନ୍ନତି ବିଧାୟକ ଏହି ମହତ ଅନୁଷ୍ଠାନ ନିମନ୍ତେ ଆମେମାନେ ପ୍ରାଦେଶିକ କର୍ତ୍ତୃପକ୍ଷଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଅଛୁଁ ।

ତା ୩୦ । ୧ । ୪୮

## NONVIOLENCE & TRUTHS
## ଅହିଂସା ଓ ସତ୍ୟ

ଯେଉଁ ମହାପୁରୁଷ ଅହିଂସାଧର୍ମ ପ୍ରଚାର ନିମନ୍ତେ ଜଗତରେ ଅବତୀର୍ଣ୍ଣ ହୋଇଥିଲେ ସେ ଆଜି ଜୀବିତ ନାହାନ୍ତି । ଆଜି ଦିବା ଚାରିଘଣ୍ଟା ବେଳେ ଜଣେ ହିଂସାପରାୟଣ ହିନ୍ଦୁ ତାଙ୍କୁ ପିସ୍ତଲ ଦ୍ୱାରା ବଧ କରିଅଛି । ଭାରତମାତାର ମୁଖରେ ଏ ଘୋର କଳଙ୍କ କାଳିମା ଲେପନ କଲା-ଜଣେ ହିନ୍ଦୁ । ଏହା ଚିନ୍ତା କଲେ ଅଶ୍ରୁପାତ ନ କରି ଲୋକ ଧୈର୍ଯ୍ୟ ଧରିବ କିପରି ? ଭାରତ ଉଦ୍ଧାର ନିମନ୍ତେ ଯେ ଜୀବନ ସର୍ବସ୍ୱ ପଣ କରି ଭାରତକୁ ସ୍ୱାଧୀନତା ଆଣିଲେ, ଜନସମୂହର ଦୁଃଖ, କ୍ଳେଶ ଦୂରକରିବା ଉପାୟ ଉଦ୍ଭାବନ ନିମନ୍ତେ ସଦା ବ୍ୟତିବ୍ୟସ୍ତ, କାଲି ଅହିଂସା ଓ ଦୟା ଦ୍ୱାରା ଦୁଃଖୀଜନର ଦୁଃଖମୋଚନ ନିମନ୍ତେ ରେଡ଼ିଓରେ ବକ୍ତୃତା ଦେଲେ ଆଜି ସେହି ଦୟାର୍ଦ୍ରହୃଦୟ ଗାନ୍ଧିଜୀ ପିସ୍ତଲ ଆଘାତରେ ଧରାଶାୟୀ ? ଭାବିଲେ ହୃଦୟ ବିଦୀର୍ଣ୍ଣ ହୁଏ; ମନ କଳୁଷିତ ହୁଏ । ଯେଉଁ ମନୁଷ୍ୟ, ଯେଉଁ ଜାତି ମୂଢ଼ ଧାର୍ମିକତାରେ ଏପରି ଅପକର୍ମ କରିପାରେ, ସେ ମନୁଷ୍ୟକୁ ଧିକ୍, ସେ ଜାତିକୁ ଧିକ୍ । ଏ ଜାତିର ହୃଦୟରେ ଅଦ୍ୟାପି ପଶୁତ୍ୱ ବିଦ୍ୟମାନ ଅଛି-ଅହିଂସା ନୀତି ଶିକ୍ଷା କରିବାକୁ କେତେ ଶତାବ୍ଦୀ ଲାଗିବ, କେଜାଣି ? ଅହିଂସା ଯାହାର ମନ୍ତ୍ର, ଅହିଂସା ଯାର ଶିକ୍ଷା ଓ ଦୀକ୍ଷା ଅହିଂସାରେ ଯାର ଅତୁଳ ଓ ଅଟଳ ବିଶ୍ୱାସ ସେ ପୁଣି ହିଂସକର ହସ୍ତରେ ନିହତ । ''କେ ଅବା ଅଛି କେଉଁ ମତେ, ମୁଁ ତାହା ଜାଣିବି କେମନ୍ତେ ।''

ଯୁଗପୁରୁଷ ଆସିଥିଲେ ଯୁଗପୁରୁଷ ଗଲେ । ଯିବା ଆସିବା ସଂସାରର ନିୟମ ଏଥିରେ ପରିବେଦନା କ'ଣ ? କର୍ତ୍ତବ୍ୟ ଏହି ଯେ ତାଙ୍କର ପ୍ରଚାରିତ ଏବଂ ତାଙ୍କର ପ୍ରିୟ ଉପଦେଶ ଅହିଂସାବ୍ରତ ଆଚରଣ ଶିକ୍ଷାରେ ବ୍ରତୀ ହେବାଦ୍ୱାରା ତାଙ୍କର କାମନା ପୂର୍ଣ୍ଣ କରିବାର ଚେଷ୍ଟା ପାପର ପ୍ରାୟଶ୍ଚିତ୍ତ ଏବଂ ତାଙ୍କର ଅନୁକରଣ-ତାଙ୍କର ଶ୍ରାଦ୍ଧ । ଜାତିର ହିଂସାବୃତ୍ତି କ୍ରମେ ନାଶ ହେଉ, ଏକତା ଆସୁ ଦେଶର ମୁଖୋଜ୍ଜ୍ୱଳ ହେଉ ।

ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

## ତୃତୀୟ ବର୍ଷ ଅଷ୍ଟମ ସଂଖ୍ୟା

ଶାନ୍ତି :— ନରଜାତିର ଅତି ଅମୂଲ୍ୟ ସମ୍ପଦ ବୋଲାଯାଏ । ମାତ୍ର ସହଜଲଭ୍ୟ ନୁହେଁ । ସମସ୍ତେ ଶାନ୍ତିପିପାସୁ ମାତ୍ର ପିପାସା କେବେ ନିବାରିତ ହୁଏ ନାହିଁ । କାରଣ ଶାନ୍ତିର ଅନ୍ତରାୟ ସ୍ୱାର୍ଥ । ସ୍ୱାର୍ଥପରତା ଶାନ୍ତି ଭଙ୍ଗ କରେ । କୌଣସି ଦେଶବାସୀ ବା ସମାଜ ଶାନ୍ତିକାମୀ ଥିବାର ଘୋଷଣା କରିପାରନ୍ତି କଥାରେ । ମାତ୍ର ମନରେ ସେମାନଙ୍କର ଦେଶଗତ ବା ସମାଜଗତ ସ୍ୱାର୍ଥ ଲୁକ୍‌କାୟିତ ଥାଏ । ସମୟରେ ତାହା ପ୍ରକାଶ ପାଇ ଶାନ୍ତିଭଙ୍ଗ କରେ । ପୃଥିବୀର କ୍ଷମତାପନ୍ନ ଜାତିମାନେ ଶାନ୍ତି ସ୍ଥାପନ ସମ୍ବନ୍ଧୀୟ ଘୋଷଣା କରିବାରେ ମୁଖର ମାତ୍ର ମନଖୋଲି ସେମାନେ ଭାବନ୍ତୁ ତ ସେମାନଙ୍କର ହୃଦୟରାଜ୍ୟରେ ଶାନ୍ତି କାମନା ବା ସ୍ୱାର୍ଥପରତା ରାଜତ୍ୱ କରୁଅଛି ?

ପ୍ରଥମ ଜର୍ମାନୀ ଯୁଦ୍ଧ ଶେଷରେ ସମସ୍ତ ଯୋଦ୍ଧାଜାତି ଭାବିଲେ ଯେ ସମନ୍ତେ ନଷ୍ଟସର୍ବସ୍ୱ ଏପରି ଯୁଦ୍ଧ ହେଲେ ସଭ୍ୟତାର ନାଶ ଘଟିବ ଏଣିକି ଯୁଦ୍ଧର ଆୟୋଜନ ନ କରି ସମସ୍ତ ଜାତି ଶାନ୍ତିକବଚ ଧାରଣ କରିବା ଉଚିତ୍ । ବାହ୍ୟାଡ଼ମ୍ବର ହେଲା— ସଭାସମିତି ହେଲା । ଶାନ୍ତିସଭାର ନେତୃତ୍ୱ ନେଲେ ସେହିମାନେ ଯେଉଁମାନେ ସ୍ୱାର୍ଥପର, ଲୋଭୀ

ଓ ସାମ୍ରାଜ୍ୟବାଦୀ । ଶାନ୍ତି ମନ୍ତ୍ରଣା ସଙ୍ଗେ ସଙ୍ଗେ ମାରଣାସ୍ତ୍ର ଗଠନର ଉଦ୍ୟୋଗ ଚାଲିଥିଲା; ଚିରଶାନ୍ତି ବିରାଜମାନ କରିବାର ତେଣେ ଥାଉ ଏକ ଦଶନ୍ଧି ଭିତରେ ପୂର୍ବାପେକ୍ଷା ପ୍ରବଳ ଯୁଦ୍ଧାରମ୍ଭ ହେଲା, ଏହି ଯୁଦ୍ଧର ନାମ ପୃଥିବୀବ୍ୟାପୀ ସମର । ଧନକ୍ଷୟ ଜନକ୍ଷୟର ସୀମା ନାହିଁ । ପୁଣି ଶାନ୍ତି ଓ ରକ୍ଷା ସଭା ବସିଛି । ଏ ସଭାର ସଭ୍ୟ ସେହି ଜାତି ଯେଉଁମାନଙ୍କର ଆକାଂକ୍ଷା ଦୁର୍ବଳଜାତି ଉପରେ ଆଧିପତ୍ୟ । ଫଳରେ ନିକଟରେ ବା ଦୂରରେ ପୁଣି ଘୋର ସମରାନଳ ଜଳିବାର ପ୍ରବଳ ଆୟୋଜନ ଚାଲିଛି ବୋଇଲେ ଅନ୍ୟାୟ ନୁହେଁ ।

ଇଂରେଜ ଜାତିର ପ୍ରବଳ ଆଧିପତ୍ୟର କିଞ୍ଚିତ୍ ହ୍ରାସ ହୋଇଥିଲେ ସୁଦ୍ଧା ସେ ଜାତିର କୂଟନୀତି ଖେଳୁଛି, ସୁବିଧା ପଡ଼ିଲେ କୌଣସି ଜାତିର ସଙ୍ଗରେ ମିଶି ପୋଳାଏ ମାରିବାର ଚେଷ୍ଟା ମନରେ ଜାଗ୍ରତ ଅଛି । ଆମେରିକା ଧନଦ୍ୱାରା ସର୍ବଶ୍ରେଷ୍ଠ । ଧନଗର୍ବ ତା'ର ନୈତିକ ବଳକୁ କ୍ରମେ ହ୍ରାସ କରି ପୃଥିବୀରେ ସାର୍ବଭୌମ କ୍ଷମତା ବିସ୍ତାର ବିଷୟରେ ଚେଷ୍ଟିତ । ଏଣୁ ପୃଥିବୀର ନାନା ସ୍ଥାନରେ ବନ୍ଦର ଓ ଘାଟିମାନ ପ୍ରସ୍ତୁତ କରିବାରେ ବ୍ୟସ୍ତ, ଏଥିରେ ଇଂରେଜର ଆନ୍ତରିକ ଅନୁମତି ବିଦ୍ୟମାନ । ଆଧୁନିକ ଯୁଗର ଯୁଦ୍ଧସାମ୍ରଗୀ ମଧ୍ୟରୁ ପେଟ୍ରଲ ଗୋଟିଏ ପ୍ରଧାନ । କି କପଟ ଓ ଉଦ୍ୟୋଗ ଦ୍ୱା । କି ଧପ୍‌ପାବାଜି ଦ୍ୱାରା ତୈଳଖଣିର ଆୟୋଜନରେ ଆମେ କା ବ୍ୟସ୍ତ ତାହା ଭାବିଲେ ଆମେରିକା ଶାନ୍ତିସଭାର ଅଧିନ ୟକ ଯୋଗ୍ୟ ବୋଲି କିଏ କହିବ ? ମାର୍ସେଲ ଯେଉଁ ଉପାୟଦ ।ରା ଇଉରୋପୀୟ ଜାତିକି ଋଣଗ୍ରସ୍ତ କରି ଆପଣାର ପକ୍ଷପାତୀ କରିବାକୁ ଚେଷ୍ଟା କରୁଅଛନ୍ତି ତାହା ଅତି କପଟପୂର୍ଣ୍ଣ ଏବଂ ଭବିଷ୍ୟତ ଯୁଦ୍ଧର ଭିତ୍ତିସ୍ଥାପନ ବୋଲାଯାଇପାରେ । କ୍ରମେ ଏସିଆବାସୀ କି ମଧ ଅର୍ଥଲୋଭରେ ପ୍ରଲୋଭିତ କରିବାରେ ଚେଷ୍ଟା ଯେ ଭିତରେ ଭିତରେ ଚାଲି ନାହିଁ ଏହା କିଏ କହିପାରିବ ? ଏ ସମସ୍ତ ଆୟୋଜନ କେବଳ ରୁଷିଆ ବିପକ୍ଷରେ, ଏଥିରେ ସନ୍ଦେହ ନାହିଁ । ରୁଷିଆ ଥିବାଯାଏ ଆମେରିକା ସର୍ବଶ୍ରେଷ୍ଠ ହୋଇପାରୁ ନାହିଁ ଏଣୁ ରୁଷିଆ ବିରୋଧରେ ନାନା ଦେଶବାସୀଙ୍କି ଆମେରିକା ସାହାଯ୍ୟ ଦେବାରେ ମୁକ୍ତହସ୍ତ ଥିବାର ଛଳନା ଚାଲିଛି । ଏ ପରିସ୍ଥିତିରେ ରକ୍ଷା ସଭାରୁ ଶାନ୍ତି ଆଶା ଏବଂ ସାହାଯ୍ୟ ଆଶା ଦୁରାଶା ନୁହେଁ କି ? ଶାନ୍ତି କାହିଁ, ଶାନ୍ତି କାହିଁ ?

ଇଣ୍ଡୋନେସିଆନ୍‌ମାନେ Security Council ରୁ ଯେଉଁ ସାହାଯ୍ୟ ପାଇଲେ ତାହା ସମସ୍ତଙ୍କୁ ଜଣା । କାଶ୍ମୀର ରାଜ୍ୟର ସହସ୍ର ସହସ୍ର ନରନାରୀ ପାକିସ୍ତାନ ସାହାଯ୍ୟରେ ଲୁଣ୍ଠନକାରୀ ଦ୍ୱାରା ନିର୍ଯାତିତ ଧର୍ଷିତ ଲୁଣ୍ଠିତ ହେଉଅଛନ୍ତି । ସ୍ତ୍ରୀମାନେ ମହତ୍ତ୍ୱ ସତୀତ୍ୱ ହରାଇଅଛନ୍ତି । ଶାନ୍ତିକାମୀ ରକ୍ଷାସଭା ନିଶ୍ଚିନ୍ତ ମନରେ ଆମେରିକାରେ ଥାଇ ଭାରତୀୟ ଦୁର୍ଗତି ଅବଲୋକନ କରୁଛନ୍ତି ।

କାଶ୍ମୀର :— କାଶ୍ମୀର ଭାରତର ଶୀର୍ଷସ୍ଥାନ । ଏବେ ପାକିସ୍ତାନ ଅନ୍ତର୍ଭୁକ୍ତ ହେବାକୁ ବସିଛି । ଏହା ଯଦି ସମ୍ଭବ ହୁଏ ତେବେ ଭାରତ ହତଶ୍ରୀ ହେବ ଏଥିରେ ସନ୍ଦେହ ନାହିଁ । ଉଦାରଭାବ ଓ ଅହିଂସା ନୀତିର ଆଡ଼ମ୍ବରରୁ କାଶ୍ମୀର ଘଟଣା ଏତେଦୂର ଯାଏ ଘଟିଲା । ବର୍ତ୍ତମାନ କି ଉପାୟ ଅବଲମ୍ବନ କଲେ ତାକୁ ପରହସ୍ତକୁ ଛାଡ଼ି ଦିଆଯିବ ନାହିଁ ସେଥିସମ୍ବନ୍ଧେ ଗାଢ଼ ଚିନ୍ତା କରିବାକୁ ହେବ । ନିରାପତ୍ତାସଭା (Security Council) ର ମତିଗତି ଯେଉଁ ଆଡ଼କୁ ଅଗ୍ରସର ତାହା ଜଣା ପଡ଼ିଲାଣି । ବର୍ତ୍ତମାନ ପରିସ୍ଥିତିରେ ଅତି ପ୍ରବଳ ଭାବରେ ପ୍ରବଳ ବେଗରେ ଲୁଣ୍ଠନକାରୀମାନଙ୍କୁ କାଶ୍ମୀରରୁ ତଡ଼ି ଦିଆଯାଉ ଯେପରି କି ଗୋଟିଏ ସୁଦ୍ଧା ପାକିସ୍ତାନ କିମ୍ବା ସୀମାନ୍ତର ମୁସଲ୍‌ମାନ ଆକ୍ରମଣକାରୀଙ୍କର ଚିହ୍ନବର୍ଣ୍ଣ କାଶ୍ମୀରରେ ମିଳିବ ନାହିଁ । ଭାରତର ଶାସକଗଣ ଲୋକନିର୍ବାଚନର ପକ୍ଷପାତୀ ଏବଂ ସିକ୍ୟୁରିଟି କାଉଁନ୍‌ସିଲ୍‌ର ଝୁଙ୍କ ମଧ ସେହି ଆଡ଼କୁ । ଏହା ନିଶ୍ଚୟ ହେବ । ସୁତରାଂ କାଶ୍ମୀରବାସୀ ଯେପରି ଭାରତ ଇଉନିୟନରେ ମିଶିବାର ପକ୍ଷପାତୀ ହେବେ ସେଥିପ୍ରତି ପ୍ରବଳ ଚେଷ୍ଟା କରାଯାଉ । କାଶ୍ମୀର ପ୍ରଜାପୁଞ୍ଜ ସେଦିନ ସଏଦ ଅବଦୁଲ୍ଲା ପ୍ରତି ଯେଉଁ ବିଶ୍ୱାସ ଓ ଭକ୍ତିର ନିଦର୍ଶନ ଦେଖାଇ ଅଛନ୍ତି ତାହା ଦେଖିଲେ ଆଶ୍ୱାସାନ୍ୱିତ ହେବାର କଥା । ଆମ୍ଭେମାନେ ପୂର୍ବେ କହିଅଛୁଁ ଏବଂ ବର୍ତ୍ତମାନ ମଧ କହୁଅଛୁଁ ଯେ ସଏଦ୍ ଅବୁଦୁଲ୍ଲା ଏକ ମାତ୍ର ଆଶା ଭରସାର ସ୍ଥଳ । ଏବଂ ପ୍ରବଳ ପରାକ୍ରମ ସହକାରେ ଅଯଥା ହସ୍ତକ୍ଷେପକାରୀମାନଙ୍କର ବହିଷ୍କରଣର ଏକମାତ୍ର ଉପାୟ ।

ଇଂରେଜମାନେ ଭେଦନୀତି ନିମନ୍ତେ ଦୋଷଣୀୟ ଓ ଘୃଣାସ୍ପଦ ହେଉଥିଲେ । ଲୋକପ୍ରିୟ ଶାସକଗଣ ଏ ଦୋଷରେ ଲିପ୍ତ ହେବାକୁ ଯାଉଛନ୍ତି କାହିଁକି ? ଭାରତ ନାମ ମାତ୍ର ସ୍ୱାଧୀନତା ଲାଭ କରିବାର କେବଳ ଛଅମାସ ହୋଇଅଛି । ସ୍ୱାଧୀନତାର ଆସ୍ୱାଦନ ସମସ୍ତଙ୍କର ତୃପ୍ତିକର ହୋଇଅଛି କି ? ଶାସକଗଣ ଚିନ୍ତାକରି ଦେଖନ୍ତୁ । ଆମମାନଙ୍କର ବିବେଚନାରେ ଶାସନ ପଦ୍ଧତି ଲୋକପ୍ରିୟ ହୋଇ ନାହିଁ ଏବଂ ଶାସକମାନେ ଶାସନକୁ ଲୋକପ୍ରିୟ କରିବାର ଚେଷ୍ଟାରେ

ଥିବାର ଜଣାଯାଉ ନାହିଁ । ଶାସକମାନେ ଯେବେ ଲୋକପ୍ରିୟ, ଯେବେ ପଦ୍ଧତି ଆଶ୍ୱାସପ୍ରଦ ଓ ଶାସିତମାନେ ତୃପ୍ତ ତେବେ ଇଂରେଜ ପ୍ରଚଳିତ ପଦ୍ଧତିର ପରିବର୍ତ୍ତନ ଦେଖାଯାଉ ନାହିଁ କାହିଁକ ? ଶାସକମାନଙ୍କର ପ୍ରାଣାଶଙ୍କା କାହିଁକି ? କାହାଠାରୁ ? ଶାସକଗଣ ଭେଦନୀତିର ପକ୍ଷପାତୀ ହୋଇ ଭେଦ ଦୃଷ୍ଟିରେ ଲୋକଙ୍କୁ ଦେଖିଲେ ଲୋକେ ଅସନ୍ତୋଷ ହୁଅନ୍ତି ଏବଂ ଅନିଷ୍ଟର ଆଶଙ୍କା କଲେ ପ୍ରତିହିଂସା ନେବାର ଚେଷ୍ଟା କରନ୍ତି ଏହା ପ୍ରାକୃତିକ ନିୟମ । ମୌଖିକ ଅହିଂସାନୀତି କାର୍ଯ୍ୟକାରୀ ନୁହେଁ । ଯେଉଁମାନଙ୍କର ଚକ୍ଷୁରେ ଭେଦଦୃଷ୍ଟି ଅଛି ଏବଂ ହୃଦୟରେ ସ୍ୱାର୍ଥପରତା ରାଜତ୍ୱ କରୁଅଛି, ସେମାନେ ମୁଖରେ ଅହିଂସାର ପ୍ରଚାର କରୁଥିଲେ ମଧ ହିଂସାବାଦୀ । ଲୋକେ ଯେବେ ସ୍ୱାଧୀନତାରେ ତୃପ୍ତ ଓ ସନ୍ତୁଷ୍ଟ ତେବେ ଗୁପ୍ତଚର ଗୁପ୍ତ ପୋଲିସ୍ ରକ୍ଷା କରିବାର ପ୍ରୟୋଜନ କ'ଣ ? ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ଓ କଂଗ୍ରେସ ଗଭର୍ଣ୍ଣମେଣ୍ଟ ମଧରେ ଏ ବିଷୟରେ ପାର୍ଥକ୍ୟ କାହିଁ ? ଲୋକପ୍ରିୟ ବ୍ୟକ୍ତିର ଶାସକର ଶାରୀରିକ କର୍ମ ଲୋକପ୍ରୀତି, ତା'ର ଶରୀର ରକ୍ଷାର ପ୍ରୟୋଜନ କ'ଣ ? ଯେଉଁ ବ୍ୟକ୍ତି ଲୋକଙ୍କଦ୍ୱାରା ପ୍ରାଣନାଶର ଆଶଙ୍କା କରେ ସେ ଶାସକ ପଦ ଗ୍ରହଣ କରେ କାହିଁକି ଏବଂ କେତେଦିନ ଲାଗି ? ଅବସର ନେବା ଉଚିତ୍ ସିନା । କଂଗ୍ରେସ କି କେବଳ କଂଗ୍ରେସ ପରିବାରର ରକ୍ଷକ । ପୋଷକ ଓ ବର୍ଦ୍ଧକ ? ଏ ଭାବ ଲୋକମନରେ ଜନ୍ମିଲେ ଦଳଗତ ବିଦ୍ୱେଷ ଉପୁଜିବା ଅସମ୍ଭବ ନୁହେଁ । ଗାନ୍ଧିଜୀଙ୍କର ହତ୍ୟା ଏହା ସ୍ପଷ୍ଟଭାବରେ ସୂଚାଇ ଦେଇଅଛି ଏବଂ ଏହା ଜାଣି ଶୁଣି କଂଗ୍ରେସ ନେତାମାନେ ଆପଣାର ପ୍ରାଣରକ୍ଷା ନିମନ୍ତେ ବଡ଼ିଗାର୍ଡ଼ ରଖୁଛନ୍ତି ଏବଂ ଅର୍ଡ଼ିନାନ୍ସ ଜାରି କରୁଅଛନ୍ତି । ଏ ସବୁ ଦେଖିଲେ ମନେହୁଏ ଯେ, କଂଗ୍ରେସ ନୂତନ ଏ ଦେଶୋଚିତ ପନ୍ଥା ଅବଲମ୍ବନ ନ କରି ଇଂରେଜଙ୍କର ପଦ୍ଧତିର ଅନ୍ଧ ଅନୁକରଣ କରୁଅଛନ୍ତି ।

**ରୁଷିଆ କମ୍ୟୁନିଷ୍ଟ :—** କମ୍ୟୁନିଷ୍ଟ କ'ଣ ଲୋକେ ଜାଣି ନ ଥିଲେ । ରୁଷିଆ ଇଂରେଜମାନଙ୍କର ପରମ ଶତ୍ରୁ ବିବେଚିତ ହେଉଥିଲେ । ଏଣୁ ଇଂରେଜମାନେ ଏ ଦେଶବାସୀଙ୍କୁ ରୁଷିଆ ସମ୍ବନ୍ଧରେ କିଛି ହିଁ ଜାଣିବାକୁ ଦେଉ ନ ଥିଲେ ଏମନ୍ତ କି ରୁଷିଆର ବହିପତ୍ର ମଧ ଜାଣିବାର ସୁବିଧା ଦେଇ ନ ଥିଲେ । ଭଲ ମନ୍ଦ ବିବେଚନା ନ କରି ଏ ଦେଶର କମ୍ୟୁନିଷ୍ଟ ଦଳ କେବଳ ପରସ୍ପର ମଧରେ ଦ୍ୱନ୍ଦ୍ୱ ଓ ଭେଦନୀତି ପ୍ରବେଶ କରାଇବା ଚେଷ୍ଟାରେ ଲାଗିଛନ୍ତି । ରୁଷିଆର ଅଭୁତ ଉନ୍ନତି ଦେଖି ସୁଦ୍ଧା ପାଶ୍ଚାତ୍ୟ ସଭ୍ୟଜାତି ରୁଷିଆର ପଦ୍ଧତି ଓ ନୀତିରେ ଭୀତ । ରୁଷିଆ ସାମ୍ରାଜ୍ୟବାଦୀ ନୁହେଁ ଦେଶ ଗ୍ରାସ କରିବାର ଲୋଭ ତା'ର ନାହିଁ; ତଥାପି ତା'ର ପ୍ରତି ପାଶ୍ଚାତ୍ୟ ଦେଶବାସୀଙ୍କର ଘୃଣା ଓ ବିଦ୍ୱେଷ । ଧନ କୁବେର ଓ ଦରିଦ୍ରର ପାର୍ଥକ୍ୟ ଘୁଞ୍ଚାଇବାକୁ ରୁଷିଆର ଯତ୍ନ । ଏଣୁ ସେ ଘୃଣାର ପାତ୍ର ହୋଇଅଛି । ଏ ଦେଶର ଏକ ଦଳ ତା'ର ନୀତି ଶିକ୍ଷା କରି ବଡ଼ ଲୋକଙ୍କୁ ଓ ଧନୀକମାନଙ୍କୁ ଛୋଟ କରିବାର ପ୍ରୟାସରେ ଲାଗିଛନ୍ତି । ଏ ଦେଶରେ କେଉଁ ପନ୍ଥା ଚଳନୀୟ ଦେଖିବାକୁ ଅଛି । ସ୍ୱାଧୀନତା ମିଳିବା ସଙ୍ଗେ ପୃଥିବୀରେ ଯେତେ ଶାସନ ନୀତି ପ୍ରଚଳିତ ଅଛି ତାହା ଏକ ସଙ୍ଗରେ ଏ ଦେଶବାସୀଙ୍କୁ ଗଳାଦ୍ଧକରଣ କରାଇଲେ ଅଜୀର୍ଣ୍ଣ ଓ ବିଷ ବମନ ତାହାର ଫଳ । କଂଗ୍ରେସର ନୀତି ମଧ ତଦ୍ରୂପ ବୋଧଗମ୍ୟ ନୁହେଁ । ଲୋକଙ୍କୁ ବୃଥା ଆଶାଭରସା ଦେଇ ତାହା କାର୍ଯ୍ୟରେ ପରିଣତ କରିବାର ଅପାରଗତା ହେତୁ ଅସନ୍ତୋଷର ପାତ୍ର ହେଉଅଛନ୍ତି । କଂଗ୍ରେସଠାରୁ କମ୍ୟୁନିଷ୍ଟ ବାଛିବାର ସହଜ ବ୍ୟାପାର ନୁହେଁ । ସ୍ୱାର୍ଥସିଦ୍ଧି ପାଇଁ କଂଗ୍ରେସ କମ୍ୟୁନିଷ୍ଟ ଓ କମ୍ୟୁନିଷ୍ଟ କଂଗ୍ରେସ ପାଲଟୁଛନ୍ତି । ଏପରି ହେବା ବିଧେୟ ନୁହେଁ ।

**ନିଶାଦ୍ରବ୍ୟ :—** ବ୍ରିଟିଶ ଏ ଦେଶରେ ଥିଲାବେଳେ ମଦ, ତାଡ଼ି, ଅଫିମ, ଗଞ୍ଜେଇ ଉଠାଇ ଦେବାନିମନ୍ତେ କଂଗ୍ରେସ ଦଳର କି ଘୋରତର ଆନ୍ଦୋଳନ । ବିହାରରେ ମଦଭାଟିରେ ସତ୍ୟାଗ୍ରହ କରିବାରୁ ହଣାକଟା ମଧ ଘଟିଥିଲା । ସ୍ୱଧୀନତା ମିଳିବାରୁ ଆଜି ନିଶା ଦ୍ରବ୍ୟର ଆନ୍ଦୋଳନ ନିଷ୍ପ୍ରୟୋଜନ । ଅନ୍ତତଃ ମଦ୍ୟ ଓ ଅଫିମ ଦ୍ୱାରା ତ ବିସ୍ତର ଲାଭର ଆଶାଅଛି । ବର୍ତ୍ତମାନ ଅବସ୍ଥାରେ ଏତେ ଗୋଡ଼ାଏ କ୍ଷତ ସହ୍ୟ କରିପାରିବ କିପରି ଶିଶୁ ଗଭର୍ଣ୍ଣମେଣ୍ଟ ।

**ପାକିସ୍ତାନ ଓ ଭାରତ :—** ଗୋଟାଏ ଦେଶ ହେଲା ତିନି ଭାଗ । ମଧ ଅଂଶର ନାମ ଭାରତ ଇଉନିୟନ, ପୂର୍ବ ଓ ପଶ୍ଚିମ ଅଂଶ ପାକିସ୍ତାନ । ଦୁଇ ଭାଗ ଶତ୍ରୁର ଚାପ ନିରୀହ ହିନ୍ଦୁନାମକ ଜୀବ ସହ୍ୟ କରିପାରିବେ କି ? ପୁଣି ଅହିଂସାବାଦୀ । ଆକ୍ରମଣ ଏ ଜାତିର ଧର୍ମ ନୁହେଁ । ଆକ୍ରମଣ କଲେ ଗାନ୍ଧିଙ୍କର ଅପମାନ । କାଶ୍ମୀର ଯିବାକୁ ବସିଛି । ପୂର୍ବ ପଞ୍ଜାବରେ ମଝିରେ ମଝିରେ ପାକିସ୍ତାନବାସୀମାନେ ଲୁଟ୍, ଗୃହଦାହ ନାରୀଧର୍ଷଣ ଓ ସ୍ତ୍ରୀ ହରଣ ଗେଲରେ ଉଲାଉଛନ୍ତି । ଶାନ୍ତିକାମୀ ଭାରତ ଗଭର୍ଣ୍ଣମେଣ୍ଟ ପାକିସ୍ତାନ ସଂକଟକୁ ସମ୍ଭାଳିବେ କି ଦେଶ ଉନ୍ନତି ନିମନ୍ତେ ମନ୍‌ଯୋଗ ଦେବେ ।

ପାକିସ୍ତାନର ଆକାଂକ୍ଷା ଯେ କେତେ ଦୂର ବଢ଼ି ଅଛି ତାହା ଭାବିଲେ ବିସ୍ମିତ ହେବାର କଥା । ''ବଡ଼ଲୋକ ସହାୟୋ ଯ ସଏବ ବଡ଼ ପଣ୍ଡିତଃ ।'' ଜିନ୍ନା ସାହେବ

ଆମେରିକା ଓ ଇଂରେଜର ନେକ ନଜରରେ ପଡ଼ିଅଛନ୍ତି । ତେବେ ପେଲେଷ୍ଟାଇନ୍‌ଠାରୁ ଆରମ୍ଭି ପଞ୍ଜାବ ପର୍ଯ୍ୟନ୍ତ ଗୋଟାଏ ବିଶାଳ ପାକିସ୍ତାନ ଗଢ଼ିବାର ପ୍ରୟାସ ଛାଡ଼ିବେ କାହିଁକି ? କାଶ୍ମୀରରୁ କିଛି ମିଳିବାର ଆଶା ହେଲାଣି । ପୂର୍ବ ପଞ୍ଜାବରୁ କିଛି ମିଳିବାର ବା ଅସମ୍ଭବ କ'ଣ ବାକି ଅଛି । ଆମେରିକାର ଋଣ, ତାହା ତ ସହଜରେ ଲଭ୍ୟ । ହାତ ପାତିଲେ ମିଳିଲା ଜିନ୍ନା ବା ହାତ ପାତିବେ ନାହିଁ କାହିଁକି ? ଆମେରିକା ଋଣଦାତା, ନ୍ୟାୟକର୍ତ୍ତା, ସିକ୍ୟୁରିଟି କାଉନ୍‌ସିଲ୍‌ର ହର୍ତ୍ତା କର୍ତ୍ତା ବୋଇଲେ ଆମେମାନେ ଦୋଷୀ ହେବୁଁ କି ? ଚିନ୍ତାକଲେ ଭାରତରେ ଚିରଅଶାନ୍ତି ଓ ଅମଙ୍ଗଳର ସୂଚନା ମିଳୁଅଛି ।

ପାକିସ୍ତାନର ଆହୁରି ଗୋଟିଏ କୀର୍ତ୍ତି । ପୂର୍ବ ପାକିସ୍ତାନରେ ବଙ୍ଗଳା ଭାଷା ଅଦାଲତୀୟ ଭାଷା ହେବ ନାହିଁ ଓ ଏସେମ୍ଲିରେ ବକ୍ତୃତା ମଧ ହେବ ନାହିଁ । ପାକିସ୍ତାନ ପ୍ରଧାନମନ୍ତ୍ରୀ କହିଲେ ପାକିସ୍ତାନ ମୁସଲ୍‌ମାନ୍ ରାଜ୍ୟ କେବଳ ମୁସଲମାନ ଭାଷା ବା ଉର୍ଦ୍ଦୁର ଭାଷା ଚଳିବ ଅନ୍ୟ ଭାଷାର ଏଠାରେ ସ୍ଥାନ ନାହିଁ । ଏଥିରୁ କି ଅନୁମାନ ହେଉ ନାହିଁ ଯେ ପାକିସ୍ତାନରେ ଅନ୍ୟ ଭାଷା ଚଳିବ ନାହିଁ ଏବଂ କ୍ରମେ ସମସ୍ତେ ଉର୍ଦ୍ଦୁଭାଷୀ ହେବେ ବୋଲି ଜିନ୍ନାଙ୍କର ଇଚ୍ଛା । ପଛେ ପାକିସ୍ତାନବାସୀମାନେ ମୁସଲମାନ ଧର୍ମାବଲମ୍ବୀ ନ ହେଲେ ସେମାନଙ୍କର ଦୁର୍ଗତି ବୋଲି ଘୋଷଣା କରିବାର ଅସମ୍ଭବ କ'ଣ ? ଭାରତବାସୀର ସ୍ୱାଧୀନତାର ପନ୍ଥା ବଡ଼ ସଂକୀର୍ଣ୍ଣ ।

## ତୃତୀୟବର୍ଷ ନବମ ସଂଖ୍ୟା

ଇଣ୍ଡିଅଷ୍ଟିମ ନେଭିଗେସନ କମ୍ପାନୀ ଏ ଦେଶରେ ସମୁଦ୍ରରେ ଜାହାଜ ଚଳାନ୍ତି । ଆଗରୁ ଏ ଦେଶର ଲୋକଙ୍କ ଯତ୍ନରେ ଜାହାଜ ଚଳିବାର ଚେଷ୍ଟା ଚାଲିଥିଲେ ମଧ ବାଧାବିଘ୍ନ ପ୍ରତିବନ୍ଧକ ଅନେକ ଏଣୁ ସାମାନ୍ୟ ଭାବରେ ନୌବ୍ୟବସାୟ ଚାଲିଥିଲା । ଆଜକୁ କେତେକ ବର୍ଷ ହେଲା ବମ୍ବେର କେତକ ଉଦ୍ୟୋଗୀ ପୁରୁଷମାନଙ୍କଦ୍ୱାରା ଭାଇଜାଗଠାରେ ଜାହାଜ ନିର୍ମାଣର ବନ୍ଦର ଓ ସ୍ଥାନ ସ୍ଥିର କରାଯାଇଥିଲା । ବହୁବ୍ୟୟରେ ତାହା ଗୋଟିଏ କ୍ଷୁଦ୍ର ସହରରେ ପରିଣତ ହୋଇଅଛି । ସେଠାରେ କର୍ମଚାରୀ ଓ ମଜୁରିଦାରମାନେ ବାସ କରିବାର ସୁବିଧା ହୋଇଅଛି । ଏ ସ୍ଥାନର କ୍ରମବୃଦ୍ଧି ହେଉଅଛି ଏବଂ ହେବା ଅବଶ୍ୟମ୍ଭାବୀ । ଏହା ଦେଶ ଉନ୍ନତିକର ପ୍ରଧାନ ଓ ପ୍ରଥମ ଯତ୍ନ ବୋଲାଯିବ । ଆମେମାନେ ବହୁପୂର୍ବେ କହିଅଛୁ ଯେ ଯାବତ ଏ ଦେଶବାସୀ ନାନାସ୍ଥାନରେ ଆପଣାର ଆୟତ୍ତାଧୀନ ବନ୍ଦର କରିପାରିବେ ନାହିଁ ଏବଂ ଜାହାଜ ନିର୍ମାଣ କରି ବାଣିଜ୍ୟ ବିସ୍ତାର କରିପାରିବେ ନାହିଁ ତାବତ ଏ ଦେଶର ଉନ୍ନତି ଆଶା ସଙ୍କୋଚିତ ବୋଲାଯିବ । ଓଡ଼ିଶାର ଉପକୂଳରେ ବନ୍ଦର ହେବାଭଳି ସ୍ଥାନ ଯେ ନାହିଁ ଏପରି ନୁହେଁ, ଏ ଦେଶରେ ଉଦ୍‌ଯୋଗୀ ବ୍ୟବସାୟୀ କାହିଁ ଏବଂ ଏ ଦେଶର ଧନ ବା କାହିଁ ?

ଭାଇଜାଗରେ ଯାହାହୋଇଅଛି ସେଥି ନିମନ୍ତେ ସମସ୍ତ ଭାରତବାସୀ ଗର୍ବିତ ହେବା ଉଚିତ ।

ଭାଇଜାଗରେ ଗୋଟିଏ ପ୍ରଥମ ଜାହାଜ ପ୍ରସ୍ତୁତ ହେଲା ଏହା କମ୍ ଗୌରବର ବିଷୟ ନୁହେଁ । ଏହି ଜାହାଜର ନାମ ଜଳଉଷା । ପ୍ରଧାନମନ୍ତ୍ରୀ ଶ୍ରୀଜବାହରଲାଲ୍ ଏହି ଜାହାଜର ନାମକରଣକରି ଓ ପ୍ରତିଷ୍ଠା କରି ସମୁଦ୍ର ଯାତ୍ରା ନିମନ୍ତେ ପ୍ରେରଣ କଲେ ସୁଖର ବିଷୟ । ପୋତକାର୍ଯ୍ୟ ସାଧନ କରି ଶୁଭରେ ଭାଇଜାଗକୁ ଫେରିଆସୁ ଏହି କାମନା । ପଛକୁ ଆହୁରି ତା'ଠାରୁ ବଡ଼ ବଡ଼ ଜାହାଜ ନିର୍ମିତ ହେଉ । ଏମନ୍ତ କି ଯୁଦ୍ଧ ଜାହାଜମାନ ନିର୍ମିତ ହୋଇ ଭାରତର ମୁଖୋଜ୍ଜ୍ୱଳ କରନ୍ତୁ ଏବଂ ଭାରତକୁ ସମୃଦ୍ଧ କରନ୍ତୁ । ପ୍ରାଚୀନକାଳରେ ଭାରତ ପୋତ ବାଣିଜ୍ୟଦ୍ୱାରା ଯଶ ଉପାର୍ଜନ କରିଥିଲା । ସେ ଗୌରବ ପୁନର୍ଜନ୍ମ ଲାଭ କରୁ । ପାଶ୍ଚାତ୍ୟମାନେ ଏହି ପୋତ ବାଣିଜ୍ୟ ଦ୍ୱାରା ଧନୀ । ଇଂରାଜୀ ଏହି ପୋତ ସାହାଯ୍ୟରେ ଆମମାନଙ୍କୁ ଦୁଇଶତ ବର୍ଷ ଦାସ କରି ରଖିଥିଲା । ଆଜି ସ୍ୱାଧୀନ ଭାରତ ପୂର୍ବକଥା ସ୍ମରଣ କରି ଆପଣା ମହତ୍ତ୍ୱ ମର୍ଯ୍ୟାଦା ବୃଦ୍ଧି କରିବାର ଚେଷ୍ଟାରୁ ପରାଂମୁଖ ହେବ କି ?

ପୂର୍ବେ ଉତ୍କଳବାସୀମାନେ 'ବୋଇତ ବାଣିଜ୍ୟ'ରେ ସୁଦକ୍ଷ ଥିଲେ । ଗୀତରେ କଥାରେ ଶୁଣିବାକୁ ମିଳେ । ଏ ଦେଶର ଯୁବକମାନେ ସାଗର ବକ୍ଷରେ ପୋତ ଚଳାଇ ଦେଶର ପୂର୍ବ ନାମ ଅର୍ଜନ କରିବାକୁ ଗର୍ବବୋଧ କରିବେ ନାହିଁ କି ?

—୦—

ଜଣକେତେ ହରିଜନ ଓ ଆଦିବାସୀ ସ୍ତ୍ରୀ ପୁରୁଷ ଆସି ଉପସ୍ଥିତ । ଆଗମନର କାରଣ ପଚାରିବାରୁ କହିଲେ '' ଆମେମାନେ ଦୈନିକ ଜଙ୍ଗଲରୁ କାଠପତ୍ର ଆଣି ବିକ୍ରୟ କରୁଁ, ଯାହା ପାଉଁ ସେଥିରେ ଚାଉଳ କିଣି ପେଟ ପୋଷୁ । ରାଜା ଥିଲାବେଳେ ଫଗୁଣମାସରେ ଆଠ ଦଶ ସେର ଚାଉଳ ପାଉଥିଲୁଁ ଏବେ କ'ଣ ହେଲା ଯେ ଫଗୁଣମାସରେ ଟଙ୍କାକେ ଚାରିସେର ଚାଉଳ ? ଅତି କଷ୍ଟରେ ଦୁଇ ତିନି ଅଣା ପାଉଁ । ଚାଉଳ ଦର ଦେଖିଲାବେଳେ ହିଆ ଶୁଖି ଯାଉଅଛି । ଆମମାନଙ୍କର ଉପାୟ କ'ଣ ଏହା ଜାଣିବାକୁ ଆସିଅଛୁଁ । ତିନିବର୍ଷ ହେଲା କାହିଁକି କେଜାଣି ଦଶ ଆଠ ସେରରୁ

ଛଅସେରକୁ ଆସିଥିଲା । ତଥାପି ରାଜା ବର୍ଷତମାମ ଛଅ ସେର ରଖି ଥିଲେ ତେବେ ମଧ୍ୟ କିଣିଖିଆ ଲୋକେ କଷ୍ଟ ପାଉଥିଲୁଁ । ଚାରି ସେର କିଣି ଆମେମାନେ ଛୁଆପିଲା ବଞ୍ଚାଇବୁ କିପରି ? ଛଅସେର ଦର କରିଦେବାର କି ଆଶା ନାହିଁ ? ଏଥିରି ଉତ୍ତର ଆମେମାନେ ଦେବୁ କ'ଣ ? ଦିଲ୍ଲୀଶ୍ୱର ଯେ କି ଜଗଦୀଶ୍ୱର ସେ ଦେଇପାରନ୍ତି । କିମ୍ବା ପ୍ରାଦେଶିକ ଅଧୀଶ୍ୱର ଏଥିର ଉତ୍ତର ଦେଇପାରନ୍ତି । ଆମମାନଙ୍କର ଦୁର୍ଭାଗ୍ୟ ଏହି ଯେ ତମମାନଙ୍କର ଦୁଃଖ ଦେଖିବାକୁ ଓ ଶୁଣିବାକୁ ଅଦ୍ୟାପି ବଞ୍ଚିଅଛୁଁ । କିସ ପୁଣି ଦେଖା ନ ଯାଇ ଯେବେ ଥାଇ ଜୀବରେ ?

ମାନ୍ୟବର ପ୍ରାଦେଶିକ ପ୍ରଧାନମନ୍ତ୍ରୀ ଶ୍ରୀ ମହତାବ ଆର୍ତ୍ତ ଓ ଅନ୍ନକ୍ଲିଷ୍ଟମାନଙ୍କର ପ୍ରଶ୍ନର ଉତ୍ତର ଦେବେ କି ? ଏବଂ ସୁବିଧା କରିବେ କି ?

—o—

ଯୁଦ୍ଧ, ଯୁଦ୍ଧ, କାଲି କାଗଜରେ ଯୁଦ୍ଧଶେଷ ପାଇଅଛି, ଲୋକେ ବ୍ୟତିବ୍ୟସ୍ତ, ତଥାପି ସ୍ୱାର୍ଥପର ଜାତିମାନଙ୍କର ମନତୃପ୍ତ ହୋଇ ନାହିଁ । ପୁଣି ଯୁଦ୍ଧାରମ୍ଭର ଆୟୋଜନ ଚାଲିଛି । ଗତଯୁଦ୍ଧର ଏପରି ଆୟୋଜନ ଓ କଷାକଷି ଲାଗି ନ ଥିଲା । ତଥାପି ସହସା ମନୋମାଳିନ୍ୟର ସ୍ଫୁଲିଙ୍ଗ ବାହାରି ସାରା ପୃଥିବୀକୁ ଜାଳିଦେଲା । ଏବେ ତ ଏଟମବମ୍‌ର ଯୋଗାଡ଼ ଚାଲିଛି, ଭିତରେ ଭିତରେ ଆଉ କ'ଣ ହେଉଅଛି ତାହା କିଏ ଜାଣେ ? ଆମେରିକା ଓ ଇଂଲଣ୍ଡ ଏକପକ୍ଷ, ରୁଷିଆ ଏକପକ୍ଷ । ବଳଶାଳୀ ଓ କ୍ଷମତାପନ୍ନ ଜାତି । କିପରି ଯୁଦ୍ଧ ନ ହୋଇ ସଂସାରରେ ଶାନ୍ତି ଆସିବ, ତା'ର ପ୍ରକୃତ ଉପାୟ ଭାବୁଥିବାର ଅନୁମାନ ହୁଏ ନାହିଁ । କେବଳ ଏ ଦୁଇଦଳରୁ ଦଳେ ଅଗ୍ରସର ହେଲେ ଅପର ଦୋଷାରୋପ କରିପାରିବାର ସୁବିଧା ଖୋଜୁଅଛନ୍ତି । ଏହା ଆମମାନଙ୍କର ବିଶ୍ୱାସ । ସଂସ୍କୃତରେ ଗୋଟାଏ ଗଳ୍ପ ଅଛି ଯେ ଜଣେ ପ୍ରାଚୀନ ରାଜାଙ୍କ ଅଶ୍ୱଶାଳାରେ କେତେଗୁଡ଼ିଏ ମେଷ ଥିଲେ ଏବଂ କେତେଗୁଡ଼ିଏ ବାନର ମଧ୍ୟ ଥିଲେ । ମେଷମାନେ ଖାଦ୍ୟଲୋଲୁପ ହୋଇ ରାଜାଙ୍କର ମହାନସକୁ ଯାତାୟାତ କରିବାକୁ ଲାଗିଲେ ଏବଂ ପାଚକମାନେ ସମୟ ସମୟରେ ନିଆଁଖୁଣ୍ଟା ଫୁପାଡ଼ି ମେଷମାନଙ୍କୁ ତଡୁଥିଲେ । ଏହାଦେଖି ଗୋଟିଏ ପ୍ରବୀଣ ବାନର କହିଲା— ବାନରଭାଇମାନେ ଚାଲ, ଏଠାରୁ ପଳାଇବା, ଏଠାରେ ଥିଲେ ଆମମାନଙ୍କର ପ୍ରାଣର ଆଶଙ୍କା, ବାନରମାନେ କାରଣ ପଚାରିବାରୁ ବୃଦ୍ଧ କହିଲା ମେଷ ଓ ସୂପକାର କଳହ ଚାଲୁଥିବାରୁ ଅବଶ୍ୟ ଦିନେ ନା ଦିନେ କୌଣସି ମେଷର ଲୋମରେ ଅଗ୍ନି ଲାଗିବ । ସେହି ସେହି ମେଷ ଯାଇ ଅଶ୍ୱଶାଳାରେ ନିଆଁ ଲଗାଇବ, ସେଥିନିମନ୍ତେ ଘୋଡ଼ା କେତେକ ଅବଶ୍ୟ ପୋଡ଼ିବେ । ଘା ହେବ । ଏଣୁ ରାଜା ଆମଙ୍କୁ ମାରି ଆମମାନଙ୍କର ବସାଦ୍ୱାରା ଘୋଡ଼ାର କ୍ଷତ ଆରୋଗ୍ୟର ଉପାୟ ଖୋଜିବେ, ବାନର ଚର୍ବିରେ ପୋଡ଼ାଘା ଆରୋଗ୍ୟ ହୁଏ । କେତେ ପଳାଇଲେ କେତେକ ଲୋଭ ପରବଶ ହୋଇ ଅଶ୍ୱଶାଳାରେ ରହିଲେ ଏବଂ ପ୍ରାଣ ହରାଇଲେ । ଯୁଦ୍ଧ ଅବଶ୍ୟମ୍ଭାବୀ ଆମ ଭାରତ ୟୁନିୟନ କି ଉପାୟ ଧରିବେ ଜଣାଯାଉ ନାହିଁ, ଅଦ୍ୟାପି ତ ଇଂରେଜର ମାତ ହାତରେ ଅଛନ୍ତି । ପୂର୍ବରୁ ସାବଧାନ ହେବା ଓ ଉପାୟ ନିର୍ଦ୍ଧାରଣ କରା ଉଚିତ ନୁହେଁ କି ?

ପାକିସ୍ତାନର ମନ୍ତ୍ରୀମାନଙ୍କର ଦର୍ମା ସ୍ଥିର ହେଲା । ପ୍ରଧାନମନ୍ତ୍ରୀ ମାସକୁ ପାଇବେ ଟ ୧୮୦୦ଟଙ୍କା ଅନ୍ୟ ମନ୍ତ୍ରୀମାନେ ପାଇବେ ମାସକୁ ୧୩୦୦ ଟଙ୍କା । ଏତିକି ନୁହେଁ ପ୍ରଧାନମନ୍ତ୍ରୀଙ୍କର ବିଳାସ ଏଲାଉନ୍ସ ୧୫୦୦୦ ଟଙ୍କା ବାର୍ଷିକ । ଭାରତ ଇଉନିୟନ ପ୍ରଧାନମନ୍ତ୍ରୀମାନଙ୍କର ଦରମା କଥା ଆମମାନଙ୍କୁ ଜଣା ନାହିଁ । ଏ ବନ୍ଦୋବସ୍ତରେ ଶାସନ ବ୍ୟୟ ଅବଶ୍ୟ କମିବ ଏବଂ ଦୁଃଖୀମାନେ ସୁଖୀ ହେବେ । ନୁହେଁ କି ?

ବଡ଼ ସୁଖର ବିଷୟ ଏହି ଯେ ମୟୂରଭଞ୍ଜ ରାଜ୍ୟ, କୁଚବେହାର, ତ୍ରିପୁରାଭଳି ସ୍ୱତନ୍ତ୍ର ରହିବ । ଏହା କୌଣସି ପ୍ରଦେଶ ସଙ୍ଗରେ ମିଶିବ ନାହିଁ । ମାନ୍ୟବର ପଣ୍ଡିତ ଜବାହରଲାଲ୍ ନେହରୁ ସ୍ପଷ୍ଟଭାବରେ ପ୍ରକାଶ କରି ଅଛନ୍ତି । ରାଜା ପ୍ରଜା ଉଭୟେ ମିଳି କ୍ରମେ ରାଜ୍ୟ ଓ ପ୍ରଜା ସମୂହର ସୁଖ ସମୃଦ୍ଧି ବୃଦ୍ଧିର ଚେଷ୍ଟାରେ ବୁଡ଼ି ରହିଲେ ଏ ବନ୍ଦୋବସ୍ତ ଚିରକାଳ ରହିବ ନାହିଁ କାହିଁକି ? ମୟୂରଭଞ୍ଜ ଅନୁକରଣରେ ଓଡ଼ିଶାର ଗୋଟିଏ ରାଜ୍ୟ ମଧ୍ୟ ସ୍ୱତନ୍ତ୍ର ରହିପାରିଲେ ନାହିଁ ଏହା ପରିତାପର ବିଷୟ ନୁହେଁ କି ?

Indian Illustrated Weekly ପତ୍ରିକାର ଚିତ୍ର ଦେଖିବାକୁ ମିଳିଲା ଯେ ମୟୂରଭଞ୍ଜ ରାଜ୍ୟର ଆୟୁଷ୍ମାନ୍ ଟିକାୟତ ଓ ପଞ୍ଚାଏତ ପ୍ରଧାନମନ୍ତ୍ରୀଙ୍କ ସହିତ ମିଳିତ ହୋଇ ମଜୁରିଦାର ପ୍ରଜାମାନଙ୍କ ସହିତ ବନ୍ଧୁ ବାନ୍ଧୁ ଅଛନ୍ତି ହାତରେ ମାଟି ଖୋଳିବାର ଅସ୍ତ୍ରଧରି । ଏ ଚିତ୍ର ଦେଖି ହର୍ଷ ଜାତ ହେଲା । ଏହା ମୟୂରଭଞ୍ଜ ଭବିଷ୍ୟତ ଶାସନର ପ୍ରଥମ ଓ ପ୍ରଧାନ ଭିତ୍ତି ସୁବିଧା ପାଇଥିଲେ ଅନ୍ୟ ରାଜପୁତ୍ରମାନେ କି ଏ ପନ୍ଥା ଧରି ନ ଥାନ୍ତେ ?

ଧନଗର୍ବିତ ଆମେରିକା ଯେ ଯୁଦ୍ଧ ଆୟୋଜନରୁ କ୍ଷାନ୍ତ ନୁହେଁ ତାହା ସ୍ପଷ୍ଟ ଜଣାଯାଏ । ସେଠାର ବିଜ୍ଞ ଲୋକେ ପ୍ରକାଶ କରନ୍ତି ଯେ ଆମେରିକାର ମାରଣାସ୍ତ୍ର ଭଣ୍ଡାରରେ ଏତେ ଏଟମ୍ ଜାତୀୟ ପଦାର୍ଥ ଅଛି ଯେ ଯାହା ବ୍ୟବହାର କଲେ ପୃଥିବୀର ସମସ୍ତ ମନୁଷ୍ୟ ନାଶ ହେବେ । ଆମେରିକାର ଏ ଦୁଷ୍ପ୍ରକୃତି ବଢ଼ାଉଛି ସିନା ଅତ୍ୟଧିକ ଧନ ଓ ଜଗତର ଏକାଧିପତ୍ୟ ବାସନା ? ତେବେ ଲୋକତକ ମଲେ ଆମେରିକା କି ସୁଖରେ ଘର କରିବେ ।

କମ୍ୟୁନିଷ୍ଟ ଏବଂ ଧନକୁବେରଙ୍କ ମଧ୍ୟରେ ଯେଉଁ ମନୋମାଳିନ୍ୟ ଘଟିଲାଣି ଏଥିରେ ଯେ ଶୀଘ୍ର ଯୁଦ୍ଧ ଘଟିବ ସନ୍ଦେହ ନାହିଁ । କମ୍ୟୁନିଷ୍ଟ ପନ୍ଥାର ପ୍ରସାର ଦେଖି ଆମେରିକା, ଇଂଲଣ୍ଡ ପ୍ରଭୃତି ଦେଶମାନେ ଚମକିତ ହେଉଛନ୍ତି । କ୍ଷୁଧା କ୍ଷୁଧା ଧନବାନ୍ ଓ ସାମ୍ରାଜ୍ୟର କାଞ୍ଚନିକ କ୍ଷୁଧା ଏବଂ ପ୍ରକୃତ କ୍ଷୁଧା ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ଲାଗିଛି— ଆଜି ନୁହେଁ, ଏ ଧରାରେ ଜୀବ ସୃଷ୍ଟି ହେଲା ଦିନରୁ । ଆଦ୍ୟ ଅଓା ଯୋଡ଼ିଏ ଶବ୍ଦ ଉପନିଷଦରେ ଅଛି । ଏହାର ଅର୍ଥ ଖାଦ୍ୟ-ଖାଦକ କିମ୍ବା ଖାଦକ ଓ ଖାଦ୍ୟ ଯୋଗାଡ଼କର୍ତ୍ତା । ଖାଦ୍ୟ ଖାଦକ ଜୀବଲୀଳା । ଏଥିରୁ ଜୀବନ ସ୍ରୋତର ଉନ୍ନତି ଅଭିବ୍ୟକ୍ତି । ଏଥିରେ ଅହିଂସାର ସମ୍ବନ୍ଧ ନାହିଁ । ମାନବ ଜ୍ଞାନବାନ ଜନ୍ତୁ ହେଲା ଉତ୍ତାରୁ ସମାଜରକ୍ଷା ନିମନ୍ତେ ଗୁଡ଼ିଏ ନିୟମ ବାନ୍ଧି ଅଛି । ଦେଶ ଭେଦରେ ଜାତି ଭେଦରେ ସେ ନିୟମର ସ୍ୱାତନ୍ତ୍ର୍ୟ ଅଛି, ମାତ୍ର ପ୍ରାକୃତିକ ନିୟମ, କ୍ଷୁଧା, ସର୍ବତ୍ର ସମାନ । ଖାଦ୍ୟ ନିୟନ୍ତ୍ରଣ କରିବାକୁ ଖାଦକ ବା ଅଓାର ପ୍ରୟୋଜନ । ଆମ୍ଭମାନଙ୍କର ଶରୀର ଅଓ୍ୟା ବା ଖାଦକ ହେଉଛି ଉଦର । ଖାଦ୍ୟ ଯୋଗାଡ଼ କର୍ତ୍ତା ହସ୍ତାଦି ଅବୟବ ଏବଂ ଖାଦ୍ୟ ମନୁଷ୍ୟାତିରିକ୍ତ ଜୀବ-ଜୀବ ଓ ଉଦ୍ଭିଦ । ଉଦର ଖାଦ୍ୟ ଗ୍ରହଣ କରେ, ମାତ୍ର ଅନ୍ୟାନ୍ୟ ଅବୟବ ଓ ଅନ୍ୟାନ୍ୟ ଇନ୍ଦ୍ରିୟମାନଙ୍କର ପ୍ରୟୋଜନ ପୂରଣ କରେ । ବର୍ତ୍ତମାନ ମନୁଷ୍ୟ ସମାଜର ଅଓାମାନେ କ୍ରୂପେ ଆଦାୟ କରିବାକୁ ଜାଣନ୍ତି ମାତ୍ର ପ୍ରୟୋଜନ ନୁସାରେ ଭାଗ ବା ବିତରଣ କରିବାକୁ ଜାଣନ୍ତି ନାହିଁ । ଣ୍ଣ ସାମାଜିକ ଦ୍ୱନ୍ଦ୍ୱ । ଉଦର ଓ ଅବୟବମାନଙ୍କ ମଧ୍ୟରେ ଏହ ଦ୍ୱନ୍ଦ୍ୱ ଚାଲିଥିଲା କିନ୍ତୁ ପରେ ନିଷ୍ପତ୍ତି ସ୍ଥିର ହେଲା, ଏଣୁ ଉଦର ଅବୟବ ମଧ୍ୟରେ ଦ୍ୱନ୍ଦ୍ୱ ନାହିଁ, ହେଲେ ଅନିଷ୍ଟ ମୃତ୍ୟୁ । ମନୁଷ୍ୟ ସମାଜ ନିୟାମକ ଓ ରାଜ୍ୟ ସୃଷ୍ଟି ହେଲା ସୁଶୃଙ୍ଖଳରେ ରାଜ୍ୟ ଚାଲିବାର କଥା, ମାତ୍ର-ଶାସନକର୍ତ୍ତା ଲୋଭ ପରବଶ ହେବାରୁ ଶାସକ ଶାସିତ ମଧ୍ୟରେ ଦ୍ୱନ୍ଦ୍ୱ ଚାଲିଲା, ଏ ଆଜିର କଥା ନୁହେଁ, ଚିରକାଳ ଲାଗିଛି । ମନୁଷ୍ୟ ସଭ୍ୟ ଓ ଚତୁର ହେବାରୁ ଆଧିପତ୍ୟକୁ ଶ୍ରେଷ୍ଠକରି ମଣିଲା । ଲୋଭ କ୍ରମେ ବଢ଼ିଲା । ଜୋର ଯାର ମୁଲକ ତା'ର ଏହି ପନ୍ଥାକୁ ଧରିଲେ । ଏଣୁ ଅଧିକାଂଶ ଲୋକ କଷ୍ଟ ପାଇଲେ । ସୁତରାଂ ଶାସକ ଶାସିତ ମଧ୍ୟରେ ବିବାଦ ବଢ଼ୁଛି । ସୁଶୃଙ୍ଖଳ ଶାସନ ନାମରେ କର ବୃଦ୍ଧି ବଢ଼ି ଚାଲିଛି । ସମାଜରକ୍ଷକ ଆଖ୍ୟାଧାରୀଙ୍କର ଆୟବୃଦ୍ଧି ହେଉଛି-ଅବସ୍ଥା ସ୍ୱଚ୍ଛଳ ହେଉଛି । ଶାସକମାନେ ଆପଣା ସ୍ୱାର୍ଥ ସିଦ୍ଧି ନିମନ୍ତେ ଏବଂ ଆପଣା ଦଳକୁ ତୁଷ୍ଟ ରଖିବା ନିମନ୍ତେ ସେମାନଙ୍କର ପ୍ରାପ୍ୟ ବଢ଼ାଉଛନ୍ତି ଏବଂ ଦଳବୃଦ୍ଧି ନିମନ୍ତେ ଅଧିକ ଆପଣା ପକ୍ଷୀୟ ଲୋକ ରକ୍ଷା କରୁଅଛନ୍ତି । ଏଣୁ ମୁଲିଆ ମଜୁରି ପ୍ରଜାମାନଙ୍କର ଅସନ୍ତୋଷ ଭାଜନ ହେଉଛନ୍ତି । ଶାସକମାନେ ନିଜ ସ୍ୱାର୍ଥ ଅପେକ୍ଷା ସ୍ୱପକ୍ଷର ଲୋକଙ୍କ ସ୍ୱାର୍ଥକୁ ବେଶୀ ଦେଖିବାକୁ ଯାଇ ସର୍ବସାଧାରଣ ପ୍ରତି ଅବହେଳା କରୁଛନ୍ତି । ଏଣୁ ଅସନ୍ତୋଷର ଜନ୍ମ । ପୁଣି ନିଜ ପକ୍ଷର ରକ୍ଷାନିମନ୍ତେ ଲୋକମାନଙ୍କୁ ଅଯଥା ଆଶା ଭରସା ଦେଖନ୍ତି, ମାତ୍ର ସ୍ୱାର୍ଥ ସିଦ୍ଧି ହେଲାରୁ ସେମାନଙ୍କ ଦୁଃଖ ଦୈନ୍ୟର ଉନ୍ନତି ଚେଷ୍ଟାରେ ଅମନୋଯୋଗ ହୁଅନ୍ତି, ଏଣୁ ଅସନ୍ତୋଷର ଜନ୍ମ । ପୃଥିବୀବ୍ୟାପୀ ଏହି ଘଟନା । ରୁଷିଆବାସୀ ଜାର୍ ରାଜତ୍ୱରେ ଅତି କଷ୍ଟ ପାଉଥିଲେ ଅତ୍ୟାଚାରିତ ହେଉଥିଲେ । ଅତ୍ୟଧିକ ହେତୁ ବିଦ୍ରୋହ ଏବଂ କମ୍ୟୁନିଷ୍ଟ ଦଳର ସୃଷ୍ଟି । ସେମାନେ ଯେଉଁ ଉପାୟ ର ଉଠିଲେ ଏବଂ ଯେଉଁ ପନ୍ଥା ଉଦ୍ଭାବନ କରି ସୁଖରେ ବଞ୍ଚୁଅଛନ୍ତ ସେହି ପନ୍ଥା ଓ ସେହି ରୀତିରେ ସମସ୍ତ ପୃଥିବୀ ଚାଳିତ ହେଉ, ଏହାହିଁ ସେମାନଙ୍କର ଇଚ୍ଛା । ଯେବେ ସାମ୍ରାଜ୍ୟବାଦୀମାନେ ମ ନ କରନ୍ତି ଯେ, ସାମ୍ରାଜ୍ୟବାସୀମାନେ କମ୍ୟୁନିଷ୍ଟମାନଙ୍କ ଅପେକ୍ଷା ସୁଖୀ, ତେବେ କମ୍ୟୁନିଷ୍ଟ ଭାବିବ ନାହିଁ କାହିଁକି ଯେ ସାମ୍ରାଜ୍ୟବାସୀ ଅପେକ୍ଷା ସୋଭିଏତ୍ ରୁଷିଆ ସୁଖୀ । ଉଭୟର ତାରତମ୍ୟ ଦେଖାଇ ଦେଇ ସୁଖ ଦୁଃଖର ମାତ୍ରା ଦେଖାଉଛି କିଏ ? କଂଗ୍ରେସ ଯେଉଁ ଆଶା ଭରସା ଦେଇ ଲୋକଙ୍କଠାରୁ ଭୋଟ ସଂଗ୍ରହ କଲେ ସେ ଆଶା ଭରସା ପୂରଣ କଲେ କି ? ଏଣୁ ଅସନ୍ତୋଷ ବୃଦ୍ଧି ପାଉଛି । କ୍ରମବର୍ଦ୍ଧନଶୀଳ କମ୍ୟୁନିଷ୍ଟ ନୀତି ବଢ଼ିବ । ଏହା ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ଲୋକ ହତ୍ୟାଦ୍ୱାରା ମଧ୍ୟ ବନ୍ଦ କରାଯାଇପାରିବ ନାହିଁ । କେବଳ ଶାସନ ରୀତି ପରିବର୍ତ୍ତନ କଲେ— ଲୋକେ ସୁଖୀ ହେଲେ ତା'ର ଇଚ୍ଛାରେ ଶାନ୍ତି ଆସିବ । ବର୍ତ୍ତମାନ କଂଗ୍ରେସ ନୀତି ଲୋକ ସନ୍ତୋଷର ଅନ୍ତରାୟ । କଂଗ୍ରେସ ନୀତି ଓ କମ୍ୟୁନିଷ୍ଟଙ୍କର ମୂଳ ନୀତିରେ କିଛି ପ୍ରଭେଦ ନ ଥିଲା ପରି ବୋଧ ହେଉଥାଏ । କାର୍ଯ୍ୟରେ ଅବଶ୍ୟ ସ୍ୱତନ୍ତ୍ର । ବୃଥା ଆଶା ପ୍ରଦର୍ଶନରୁ କମ୍ୟୁନିଷ୍ଟର ପ୍ରସାର

ଶୀଘ୍ର ଶୀଘ୍ର ହେଉଅଛି । କମ୍ୟୁନିଷ୍ଟ ଦଳ ରାଜତ୍ୱ ପାଇବାକୁ ସହସା ବଡ଼ ଲୋକ ହେବାର ବାସନା ରଖି ଏପରି ଦ୍ୱନ୍ଦ୍ୱ ଘଟାଉଅଛନ୍ତି । ଆମ୍ଭେମାନେ ବହୁଦିନ ପୂର୍ବରୁ ଏଥିର ସୂଚନା ଦେଇଅଛୁଁ । ଆମ କଥା ଶୁଣୁଛି କିଏ ? ଅରଣ୍ୟ ରୋଦନ !! କମ୍ୟୁନିଷ୍ଟ ଦ୍ୱାରା କଂଗ୍ରେସ ଆପଣା ଇଚ୍ଛା ସାଧନ କରିଅଛନ୍ତି ଏହା କହିବା ବାହୁଲ୍ୟ ମାତ୍ର । ଗଡ଼ଜାତ ମଞ୍ଜନ କମ୍ୟୁନିଷ୍ଟମାନଙ୍କ ଦ୍ୱାରା କଂଗ୍ରେସ ସାଧନ କଲେ । ଗଡ଼ଜାତ ପ୍ରଜାମାନଙ୍କୁ ଯେଉଁ ବୃଥା ଆଶା ଭରସା ଦେଇ କମ୍ୟୁନିଷ୍ଟମାନେ ମତାଇଲେ ପ୍ରଜାମାନଙ୍କ ସେ ଆଶା ପୂରଣ କରିବାକୁ କଂଗ୍ରେସ କ୍ଷମ ହେବେ କି ? ଚେଷ୍ଟା କରୁଅଛନ୍ତି କି ? ଗଡ଼ଜାତବାସୀ ଦରିଦ୍ର ଦୁଃଖୀ ପ୍ରଜାମାନେ ଯେ କ୍ରମେ କମ୍ୟୁନିଷ୍ଟ ନ ହେବେ ତାହା କିଏ ନିଷେଧ କରିବ ? ପୁଣି କମ୍ୟୁନିଷ୍ଟମାନେ ସେମାନଙ୍କୁ ଅବାଧରେ ସେହି ଶିକ୍ଷା ଦେଉଅଛନ୍ତି ଓ ଦେବେ । ଆମେମାନେ ଏହା ପ୍ରତ୍ୟକ୍ଷ କରୁଅଛୁଁ, ମାତ୍ର କହିବୁଁ କାହାକୁ ? କେବଳ ଗଡ଼ଜାତ ବୁଡ଼ାଇଲେ ଏହା ନୁହେଁ ପ୍ରଜାଙ୍କୁ ସୁଖ ସ୍ୱାଚ୍ଛନ୍ଦ୍ୟରେ ପାଳନ କରିବା ଦାୟିତ୍ୱ କାର ? କଂଗ୍ରେସର ତ !

ମହାତ୍ମାଜୀ କି ଏପରି କଥା ପ୍ରକାଶ କରି ନାହାନ୍ତି, ଯାହା ସ୍ମରଣ କରି ଲୋକେ କମ୍ୟୁନିଷ୍ଟ ହେବେ । ଗାନ୍ଧି ବାକ୍ୟ ଗୁରୁବଚନ । ଦିନେ ସେ କହିଥିଲେ ନେହରୁ ଅପେକ୍ଷା ଜଣେ କୃଷକ (ଯେ କି ନିଜ ହାତରେ ଚାଷ କରେ) ପ୍ରଧାନମନ୍ତ୍ରୀ ହେବା ଉପଯୁକ୍ତ, ଯେ ନିଜ ହାତରେ ଚାଷ କରିବ ସେ ଦିଲ୍ଲୀରେ ମନ୍ତ୍ରୀ ଆସନରେ ବସିବ । ଏବଂ ନେହରୁ ତା'ର ସେକ୍ରେଟେରି ହୋଇପାରନ୍ତି । ଏ କଥାରେ ଚାଷୀମାନେ ମନ୍ତ୍ରିତ୍ୱ ପାଇବାକୁ ବିଦ୍ରୋହୀ ହେଲେ ସେମାନଙ୍କୁ ଦୋଷ ଦିଆଯାଇପାରେ କି ? ଏଠାରୁ କମ୍ୟୁନିଷ୍ଟବାଦ ଆଉ କ'ଣ ହୋଇପାରେ ? ଗାନ୍ଧି ବଚନ କମ୍ୟୁନିଷ୍ଟମାନଙ୍କର ଅସ୍ତ୍ର ହେବ । କଂଗ୍ରେସ ସାବଧାନ । ଏତିକି ।

ଅବିଶ୍ୱାସ ସମସ୍ତ ଅନିଷ୍ଟର ମୂଳରେ ଏବଂ ଏହି ହେତୁରୁ ଭାରତରେ ସମୂହ ଅନିଷ୍ଟ, ଆମ୍ଭେମାନେ ଏହା ଦଶବାର ବର୍ଷ ପୂର୍ବରେ 'ସ୍ୱାଧୀନ ଚିନ୍ତାରେ' ପ୍ରକାଶ କରିଅଛୁଁ । ଜନ ସମାଜରେ ବିଶ୍ୱାସ ସ୍ଥାପନ ତେଣେ ଥାଉ କ୍ରମେ ଅବିଶ୍ୱାସ ବୃଦ୍ଧି ପାଉଅଛି । ଗଡ଼ଜାତ ଧ୍ୱଂସ ହେଲା ଏଥିରେ ଆମେମାନେ ପ୍ରତିବାଦ କରି ନାହିଁ କାରଣ ଯାହା ଅବଶ୍ୟମ୍ଭାବୀ ସେଥିରେ ବିଜ୍ଞ ଲୋକମାନେ ବିଚଳିତ ହୁଅନ୍ତି ନାହିଁ । ଅବଶ୍ୟ ପ୍ରତିକାରର ଉପାୟ ଥିଲେ ଏବଂ ସୁଫଳ ହେବାର ଆଶା ଥିଲେ ଲୋକେ ଯତ୍ନ କରନ୍ତି । ମାତ୍ର ଗଡ଼ଜାତ ମିଶ୍ରଣ ନିଷ୍ପତ୍ତି ପୂର୍ବକଳ୍ପିତ ଭାବି ଆମେମାନେ ତୁଷ୍ଣିଭାବ ଅବଲମ୍ବନ କଲୁଁ । ଗଡ଼ଜାତ ମିଶିଲା । ତିନି ମାସ ଚାଲିଗଲା । କଂଗ୍ରେସର ନିଯୁକ୍ତ ଲୋକ ଶାସନ ଚଳାଉଅଛନ୍ତି । ଏପରି ସ୍ଥଳେ ଆଉ କି ରାଜା ରାଜ୍ୟ ପାଇବାର ଆଶା ଅଛି ? ଯେଉଁମାନେ ଏ ପରିସ୍ଥିତିରେ ଲୋକମାନଙ୍କୁ ମତାଇ ଶାସନ ରୀତିରେ ବିଶୃଙ୍ଖଳା ଘଟାଇବେ ସେମାନେ ମୂଢ଼ । ଆମେମାନେ ଭୂତ ଭବିଷ୍ୟ ବର୍ତ୍ତମାନ ଅବସ୍ଥା ଓ ଶାସନ ପଦ୍ଧତି ବେଶ ରୂପେ ଜାଣୁ । ଆମେମାନେ ଶାସନ ପଦ୍ଧତିର ଉମେଦାର ନୋହୁଁ ! ଏପରି ଅବସ୍ଥାରେ କଟକୀ ଜଣକେତେ ଆମମାନଙ୍କୁ Saboteur ଉପାଧିରେ ଭୂଷିତ କରୁଥିବାର ଜନଶ୍ରୁତିରୁ ଜାଣିପାରିଲୁଁ । ମନ୍ତ୍ରୀମଣ୍ଡଳୀ ମଧ ଏହି ବିଶ୍ୱାସର ବଶବର୍ତ୍ତୀ କି ନା ଜଣା ନାହିଁ । ଯେଉଁ ବ୍ୟକ୍ତିମାନେ ଆମମାନଙ୍କ ପରି ନିରୀହ ବ୍ୟକ୍ତି ଉପରେ ଏତାଦୃଶ ଦୋଷାରୋପଣ କରନ୍ତି ସେମାନେ କୃପାର ପାତ୍ର । ଯେଉଁମାନେ ଏପରି କଥା ପ୍ରଚାର କରନ୍ତି ସେମାନେ କଂଗ୍ରେସ ପୋଷାକଧାରୀ କମ୍ୟୁନିଷ୍ଟ ଏବଂ କଂଗ୍ରେସର ଅନିଷ୍ଟକାରୀ । କଂଗ୍ରେସ ସାବଧାନ ହେବା ଉଚିତ ।

ତେବେ ଆମେମାନେ ଏହା ନିଶ୍ଚୟ କହିବୁଁ ଯେ ପ୍ରଜା ମଜୁରିଆ ଅଯଥା କଷ୍ଟ ପାଇଲେ ତାଙ୍କ ପକ୍ଷରୁ ଦୁଇ ପଦ ଲେଖିବାକୁ ବାଧ । ଏହା ଯେବେ Saboteur କାର୍ଯ୍ୟ ତେବେ ନାଚାର । କଂଗ୍ରେସପନ୍ଥୀ ବଡ଼ ଲୋକଙ୍କର ଯେବେ ଏ ବିବେଚନା ନାହିଁ ସେମାନେ ମଧ ସ୍ୱାଧୀନତା ବିରୋଧୀ ।

ସୁଭାଷ ବୋଷ I.N.A. (ଭାରତୀୟ ଜାତୀୟ ସେନା) ସୃଷ୍ଟିକରି ଅସାଧ ସାଧନ କରିଅଛନ୍ତି । ଏବଂ ସେଥିନିମନ୍ତେ କଂଗ୍ରେସ ଆନ୍ଦୋଳନ ଅପେକ୍ଷା ଭାରତ ତ୍ୟାଗର ତର୍ଜନ ଇଂରାଜଙ୍କ ହୃଦୟରେ ଜାଗରୂକ ହୋଇଥିଲା ବୋଲି ଆମମାନଙ୍କର ବିଶ୍ୱାସ । ସେ ଯେଉଁ ଏକତା ଓ ସୈନ୍ୟ ସୃଷ୍ଟି କରିଥିଲେ ତାହା କେବଳ ସୁଭାଷ ବୋଷର ଯୋଗ୍ୟତା । ଆଜି ତାର ସୈନ୍ୟକୁ ଭାରତ ପୋଷି ନ ପାରିବା ବଡ଼ ଦୁଃଖର ବିଷୟ । ଗାନ୍ଧିଜୀଙ୍କର ସମ୍ମାନ ରକ୍ଷା ନିମନ୍ତେ ଅନ୍ତତଃ ଏହା କରିବା ଉଚିତ ଥିଲା, ଏବଂ ଏମାନଙ୍କଦ୍ୱାରା ଭାରତର ଯୋଦ୍ଧା ମଧରେ ଏକତା ଆସିଥାଆନ୍ତା । ପଣ୍ଡିତଜୀ ସେମାନଙ୍କ ନିମନ୍ତେ କାହିଁକି ଅବିଚାର କଲେ ବୁଝାଯାଉ ନାହିଁ । ସାଧାରଣ ଲୋକେ କହିବେ ସୁଭାଷ ବୋଷ ଗାନ୍ଧିଜୀଙ୍କ ଶୁଭଦୃଷ୍ଟିର ଅଲଗରେ ଏଣୁ କଂଗ୍ରେସ ସୁଭାଷ ବୋଷର ସୈନ୍ୟକୁ ସ୍ଥାନ ଦିଅନ୍ତେ କିପରି ? ଆମମାନଙ୍କୁ ଏହା ଲେଖିବାକୁ ପଡ଼ିଲା ବଡ଼ ଦୁଃଖ କଥା ।

କି ମହତ ଆଶା ପୋଷଣ କରି ଏହି ଯୋଦ୍ଧାମାନେ ଜାତି ବର୍ଣ୍ଣ ଧର୍ମ ଭେଦ ତ୍ୟାଗକରି ଏକହୋଇ ଭାରତ ଉଦ୍ଧାରପାଇଁ ଲଢୁଥିଲେ । ଭାରତ ସ୍ୱାଧୀନ ହେବାରୁ ସେମାନେ ପଦଚ୍ୟୁତ ହେଲେ କାହିଁକି ? ହତାଶା ହେତୁରୁ କେତେକ ଭାରତ ୟୁନିୟନ ତ୍ୟାଗ କରିବେ— ପାକିସ୍ତାନକୁ ଯିବେ, କେତେ ପେଟଜ୍ୱାଳାରେ କମ୍ୟୁନିଷ୍ଟ ହେବେ ନାହିଁ କି ? ଏଥିର କି ଉତ୍ତମ ସମାଧାନ କରିଥିଲେ ଭାରତର ପ୍ରଭୃତ ଉପକାର ହୋଇ ନ ଥାଆନ୍ତା ?

## ତୃତୀୟ ବର୍ଷ ଦଶମ ଏକାଦଶ ସଂଖ୍ୟା

ଅପରାଧୀନତା ମୁକ୍ତି ।
ମୁଖ ବନ୍ଦକରିବାକୁ ଯାର କ୍ଷମତା ଅଛି ।
କଲମ ବନ୍ଦ କେତେ ମାତର । ସମ୍ପାଦକୀୟ ଏତିକି ।

•

## ସମ୍ପାଦକଙ୍କୁ ପତ୍ର ଉପରେ ଟୀପ୍ପଣି

ଆଜିକାଲି କାଗଜ ଦୁଷ୍ପ୍ରାପ୍ୟ ଯୋଗୁଁ 'ସମ୍ପାଦକଙ୍କୁ ପତ୍ର' ଅବିକଳ ଛପାଇବା ସୁବିଧା ଜନକ ନୁହେଁ, ଏଣୁ ପତ୍ରକୁ ସଂକ୍ଷେପ କରି ସମ୍ପାଦକୀୟ ମନ୍ତବ୍ୟ ସହିତ ପ୍ରକାଶ କରାଯାଉ ଅଛି । କାଗଜର ଅଭାବ ଦୂରହେବା ଯାଏ ଏ ରୀତି ଚାଲିବ ।

ଶ୍ରୀମତୀ ଶାନ୍ତିଲତା ସାହାଣି ବଲାଙ୍ଗିର– ଲେଖିକା ଯେ ଶଙ୍ଖ ପାଠକରି ସେଥିର ପ୍ରବନ୍ଧାଦିର ସମାଲୋଚନା କରନ୍ତି ଏହା ବଡ଼ ସୁଖର ବିଷୟ । ଏଥି ନିମନ୍ତେ ତାଙ୍କୁ ଆମମାନଙ୍କର ନ୍ୟବାଦ । 'ମାଲୋ ଚରିତ୍ର' ସମ୍ବନ୍ଧେ ସେ ଯେଉଁ ପତ୍ର ଦେଇଅଛନ୍ତି ତାହା ପ୍ରକାଶ କରାଯାଇ ପାରିଲା ନାହିଁ । ତହିଁର ମର୍ମ ଏହି ଯେ ସେ ଏହି ଗଳ୍ପଟିକି ବାରବାର ପଢ଼ିଲେ ସୁଦ୍ଧା ତାଙ୍କ ପକ୍ଷରେ ଏହା ବୁଝିବା ଅସମ୍ଭବ ଏବଂ ଏହି ଗଳ୍ପ କେଉଁ ଯୁଗର ଭାଷା ଓ କେଉଁ ଶୈଳୀ ନେଇ ଲିଖିତ ତାହା ସେ ବୁଝି ପାରିଲେ ନାହିଁ ଏବଂ ଏହା ଶିକ୍ଷଣୀୟ ହେବାର ତ ଦୂରର କଥା ବୋଧଗମ୍ୟ ମଧ୍ୟ ନୁହେଁ ଇତ୍ୟାଦି ।

ବିକ୍ରମଦେବ ବର୍ମା ଜଣେ ପ୍ରଧାନ ସାହିତ୍ୟିକ– ଏହାଙ୍କର ଓଡ଼ିଆ ସଂସ୍କୃତ-ଇଂରାଜୀ ଓ ତେଲୁଗୁ ଭାଷାରେ ପାଣ୍ଡିତ୍ୟ ଅସାଧାରଣ । ଏହାଙ୍କର ସଂସ୍କୃତର ଗ୍ରନ୍ଥ ଅତୀବ ସରଳ ଓ ରମଣୀୟ । ତେଲୁଗୁ ଭାଷାରେ ରଚିତ ପୁସ୍ତକ ସ୍କୁଲ କଲେଜର ପାଠ୍ୟ ହୋଇଅଛି । ନାଟକମାନ ଆନ୍ଧ୍ର ରଙ୍ଗମଞ୍ଚରେ ଅଭିନୀତ ହେଉଅଛି । ଓଡ଼ିଆ ଭାଷାରେ ତାହାଙ୍କର ପ୍ରଥମ ଭାଗ ଗ୍ରନ୍ଥାବଳୀ (ରଚନାଳି) ପ୍ରକାଶିତ ହୋଇଅଛି । ବିକ୍ରମଦେବ ଜଣେ ଲବ୍‌ଧପ୍ରତିଷ୍ଠ ସାହିତ୍ୟିକ ଏହାଙ୍କର ଲେଖା 'ଉତ୍କଳ ସାହିତ୍ୟ', 'ସହକାର' ଓ 'ନବଭାରତ' ପ୍ରଭୃତି ପ୍ରସିଦ୍ଧ ପତ୍ରିକାମାନଙ୍କରେ ସ୍ଥାନ ପାଇଅଛି ଏବଂ ଏହି ପତ୍ରିକାମାନଙ୍କର ସମ୍ପାଦକମାନେ ଏହାଙ୍କର ଲେଖାକୁ ଆଦରେ ଗ୍ରହଣ କରିଥାନ୍ତି । ଏ ଲେଖାକୁ ଅଗ୍ରାହ୍ୟ କରିବାର ଆମର ଯୋଗ୍ୟତା କାହିଁ ? ଲେଖିକାଙ୍କ ମତାନୁସାରେ ଆମମାନଙ୍କୁ ସ୍ୱୀକାର କରିବାକୁ ହେବ ଯେ ଏହାଙ୍କର ଲେଖା ଆଧୁନିକ ଲେଖକମାନଙ୍କ ଭାଷା ସହିତ ମେଳ ଖାଏ ନାହିଁ । ବିକ୍ରମଦେବ ତାଙ୍କର ଭାଷାର ସ୍ୱାତନ୍ତ୍ର୍ୟ ରକ୍ଷା କରିବା ନିମନ୍ତେ ସର୍ବଦା ଚେଷ୍ଟିତ । ତାଙ୍କର ଶୈଳୀ ମଧ୍ୟ ସ୍ୱତନ୍ତ୍ର । ସେ କି ବୃଦ୍ଧ ବୟସରେ ତାହା ତ୍ୟାଗ କରିବେ ? ଏବଂ ତାଙ୍କର ସ୍ୱାଧୀନ ଭାବ ଓ ସ୍ୱାତନ୍ତ୍ର୍ୟ ନିମନ୍ତେ ସମ୍ପାଦକମାନେ କି ତାଙ୍କୁ ତ୍ୟାଗ କରିବେ ? ତାଙ୍କର ଅନେକ ଶିକ୍ଷଣୀୟ ଓ ସ୍ୱାଧୀନ ଲେଖା ଅଛି ତାହା ବୁଝିବାକୁ ସମୟ ଲାଗେ, ସାହିତ୍ୟିକମାନେ ତାଙ୍କ ଲେଖାର ଅନୁକରଣ କରି ନ ପାରନ୍ତି ମାତ୍ର ତାହା ବୁଝିବାକୁ ଚେଷ୍ଟା କରିବା ଉଚିତ । ଚେଷ୍ଟା କଲେ ଅବୋଧ୍ୟ ରହିବ ନାହିଁ । 'ମାଲୋ' ଉପଦେଶପୂର୍ଣ୍ଣ ଗଳ୍ପ । ଆମେମାନେ ଅନାୟାସରେ ତାହା ବୁଝି ପାରିଅଛୁଁ । ଶ୍ରୀ ଅଜୟଚନ୍ଦ୍ର ଦାସଙ୍କର କବିତାର ଭାଷା ଓ ଶୈଳୀ ଆଧୁନିକ ଲେଖକମାନଙ୍କଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଥିଲା । ସେ ନିଜର ସ୍ୱାତନ୍ତ୍ର୍ୟ ରକ୍ଷାକରି ଇହଧାମ ତ୍ୟାଗ କରିଅଛନ୍ତି । କେତେକ ସାହିତ୍ୟିକ ଅଛନ୍ତି ଯେଉଁମାନେ ଆପଣା ଶକ୍ତି ଉପରେ ନିର୍ଭର କରି ସ୍ୱାତନ୍ତ୍ର୍ୟ ତ୍ୟାଗ କରିବାକୁ ଇଚ୍ଛୁକ ନୁହନ୍ତି ।

**ସମ୍ପାଦକ**

•

## ପୁସ୍ତକ ପରିଚୟ

**ସତୀ ପାର୍ବତୀ–** ଖଣ୍ଡିଏ କ୍ଷୁଦ୍ର କାବ୍ୟ । ଏଥିରେ ଧରାକୋଟ ଅଧୀଶ୍ୱର ଜୟସିଂହଙ୍କର କନ୍ୟା ପାର୍ବତୀଙ୍କର ଦୁଃଖପୂର୍ଣ୍ଣ ଜୀବନକାହାଣୀ ବର୍ଣ୍ଣିତ ହୋଇଅଛି । ଟିକାଲି ଅଧୀଶ୍ୱର ପାର୍ବତୀଙ୍କର ପାଣିଗ୍ରହଣ କରି ପ୍ରାସାଦକୁ ନେଲେ । ପାର୍ବତୀଙ୍କ ଛଡ଼ା ଟିକାଲିରାଜା ପଦ୍ମନାଭଦେବଙ୍କର ତିନିଜଣ ରାଣୀ ଥିଲେ । ପାର୍ବତୀଙ୍କ ରୂପ ଗୁଣରେ ତିନିରାଣୀ ଅସୂୟାନ୍ୱିତା ହୋଇ ପାର୍ବତୀଙ୍କର ଆଜୀବନ ଦୁଃଖର କାରଣ ହେଲେ । ବହୁ ବିବାହର କୁଫଳ ଯାହା ତାହିଁ ଘଟିଲା । ପଦ୍ମନାଭଦେବ କିଂକର୍ତ୍ତବ୍ୟବିମୂଢ଼ ବା ମୂଢ଼ ଥିଲେ ଏଣୁ ରାଣୀମାନଙ୍କ କୂଟ

କ୍ରରେ ପଡ଼ି ପାର୍ବତୀକି ଦୁଃଖସାଗରରେ ଭସାଇ ଦେଲେ। ପାର୍ବତୀ ଗୃହରେ ଥାଇ ସୁଦ୍ଧା ତପସ୍ୱିନୀ। ପତିଭକ୍ତା, ସ୍ୱାର୍ଥତ୍ୟାଗିନୀ ଓ ଦୁଃଖୀସେବାନିରତା। ପଦ୍ମନାଭଦେବ ପାରଳାଖେମଣ୍ଡିରେ ଅବସ୍ଥାନ କରୁଥିବା ବେଳେ ପ୍ରାଣତ୍ୟାଗ କଲେ। ପାର୍ବତୀଦେବୀ ଏହା ଶ୍ରବଣ କଲା ମାତ୍ରେ ସେଠାକୁ ଯାଇ ପତିର ସହଗମନ କଲେ। କାବ୍ୟର ବିଷୟବସ୍ତୁ ଏହା ଅଟେ।

ନୂତନ କବି ଏହି କାବ୍ୟ ଲେଖାରେ ନିଜର କ୍ଷମତାର ଯଥେଷ୍ଟ ପରିଚୟ ଦେଇ ଅଛନ୍ତି। ଆଶାକରୁ ଭବିଷ୍ୟତରେ ଉଜ୍ଜ୍ୱଳ ଓ ବଳିଷ୍ଠ ରଚନା କରି ଯଶଲାଭ କରିପାରିବେ।

ସତୀପ୍ରଥା ବଡ଼ ମର୍ମନ୍ତୁଦ। ଏହି କାବ୍ୟରେ ତହିଁର ସ୍ଥୂଳ ବର୍ଣ୍ଣନା ଅଛି। ବହୁ ବିବାହର ଦୋଷ ଓ ସପତ୍ନୀମାନଙ୍କର ଈର୍ଷା, ରଚନାରେ ପ୍ରକାଶ ପାଇଅଛି। କବି କାବ୍ୟ ଲେଖି ଯଶସ୍ୱୀ ହେଉନ୍ତୁ ଏହି ଆଶୀର୍ବାଦ–

**ନବଦୁର୍ଗ–** ଏହି ପୁସ୍ତକ ନୂଆଁଗଡ଼ ବା ନୟାଗଡ଼ ନିବାସୀ ବିନାୟକ ତ୍ରିପାଠୀଙ୍କଦ୍ୱାରା ରଚିତ। ପୁସ୍ତକ ଖଣ୍ଡି ନୟାଗଡ଼ ନରପତି ଶ୍ରୀଶ୍ରୀଶ୍ରୀ କୃଷ୍ଣଚନ୍ଦ୍ର ସିଂହ ମାନଧାତା ତଥା ନୟାଗଡ଼ର ଚିଫ୍ ମିନିଷ୍ଟାରଙ୍କ ନାମରେ ଉତ୍ସର୍ଗିକୃତ। ପୁସ୍ତକର ବିଷୟବସ୍ତୁ ଏହି ଯେ, ନୟାଗଡ଼ ରାଜବଂଶର ପ୍ରତିଷ୍ଠାତା ରେବା ରାଜ୍ୟରୁ ଆସିଥିଲେ। ତଦାନିନ୍ତନ ରେବା ରାଜାଙ୍କର କନିଷ୍ଠ ଦୁଇପୁତ୍ର ଚନ୍ଦ୍ରମଣି ଓ ସୂର୍ଯ୍ୟମଣି ପିତାଙ୍କର ଅନୁମତି ନେଇ ପୁରୀ ଅଭିମୁଖରେ ଯାତ୍ରା କଲେ। ସହାୟ ମାତ୍ର ଅଶ୍ୱ ଓ ଅସ୍ତ୍ରଶସ୍ତ୍ର। ଆପଣା ବୁଦ୍ଧି ଓ ବାହୁ ବଳରେ ଦୁର୍ଗମ ପଥର ବାଧାବିଘ୍ନ ଅତିକ୍ରମ କରି ନୟାଗଡ଼ରେ ଉପସ୍ଥିତ ହୋଇ ରାଜ୍ୟ ପ୍ରତିଷ୍ଠା କଲେ। ଉପରୋକ୍ତ କିମ୍ବଦନ୍ତୀ ଉପରେ ଆସ୍ଥା ସ୍ଥାପନ କରି କବି ଆପଣା ଶକ୍ତିର ପରାକାଷ୍ଠା ଦେଖାଇ ଅଛନ୍ତି। କାବ୍ୟଟି ଯେପରି ଅଦ୍ଭୁତ ଘଟଣା ପରିପୂର୍ଣ୍ଣ, ତେମନ୍ତ ବର୍ଣ୍ଣନା ଚାତୁରୀରେ ବାହୁଲ୍ୟ। କାବ୍ୟଟି ସୁଖପାଠ୍ୟ ଅଟେ।

ପୁସ୍ତକର ନାମ **'ନୂଆଁଗଡ଼ ଗୌରବ'** ହେବାର ଉଚିତ ଥିଲା। ପ୍ରଚଳିତ ନାମର ପରିବର୍ତ୍ତନ ଆମମାନଙ୍କର ମନୋମତ ନୁହେଁ। ଲଡୁକେଶ୍ୱର ମାନଧାତା ଓ ବର୍ତ୍ତମାନ ରାଜା ଶ୍ରୀକୃଷ୍ଣ ଚନ୍ଦ୍ର ମାନଧାତାଙ୍କ ନାମ ବ୍ୟତିରେକେ ନୂତନ ପାଠକ ପ୍ରତି ଏହା ନୂଆଗଡ଼ର ଇତିହାସ ବୋଲି, ବୁଝିବା କଷ୍ଟକର। ଦେବଗଡ଼କୁ 'ଦେବଦୁର୍ଗ', ଆଠଗଡ଼କୁ 'ଅଷ୍ଟଦୁର୍ଗ' ଲେଖିବା କବିମାନଙ୍କର ଅଭ୍ୟାସ ହୋଇଅଛି ମାତ୍ର ପ୍ରଚଳିତ ନାମର ଏତାଦୃଶ ପରିବର୍ତ୍ତନ ସମୀଚୀନ ନୁହେଁ। ଗଡ଼ ଓ ଦୁର୍ଗ ମଧ୍ୟରେ ସାମାନ୍ୟ ପାର୍ଥକ୍ୟ ମଧ୍ୟ ଅଛି। ସେ ଯାହାହେଉ କବିଙ୍କର ଉଦ୍ୟମ ପ୍ରଶଂସନୀୟ।

**'କଚଟତପ'**– ପୁସ୍ତକର ନାମ ଶୁଣିବା ମାତ୍ରେ ପାଠକ ଏହା କିମ୍ଭୂତକିମାକାର ପୁସ୍ତକ ବୋଲି କ୍ଷଣେ ଚିନ୍ତା କରିବେ, ମାତ୍ର ପୁସ୍ତକ ଫିଟାଇ ଦେଖିଲେ ଜାଣିପାରିବେ ଯେ ଏହା ଗୋଟିଏ ସମ୍ପୂର୍ଣ୍ଣ ନୂଆଧରଣର ଲେଖା। ଏଥିର ଶୈଳୀ ପ୍ରଚଳିତ ଓଡ଼ିଆ ସାହିତ୍ୟ ଲେଖାଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ବୋଇଲେ ଚଳେ। ଗୋଟା ପୁସ୍ତକ ପାଞ୍ଚଗୋଟି ପ୍ରବନ୍ଧରେ ସମ୍ପୂର୍ଣ୍ଣ। କ ଚ ଟ ତ ପ ଅକ୍ଷର ନିୟମରେ ଲିଖିତ। ଯେପରି ବୈଦେହୀଶ ବିଳାସରେ ନିୟମ ବ ରଚିତ, ସୁଭଦ୍ରା ପରିଣୟ ସ ନିୟମରେ ଲିଖିତ, କଚଟତପ ସେହି ପ୍ରକାର କ, ଚ, ଟ, ତ, ପ, ନିୟମରେ ଲିଖିତ। ଓଡ଼ିଆ ଗଦ୍ୟରେ ଆଜି ପର୍ଯ୍ୟନ୍ତ ଅକ୍ଷର ନିୟମ ରଖି କେହି ରଚନା କରି ନାହିଁ। ଏହି ନବୋଦ୍ୟମ ଓ ଆଦର୍ଶ ନିମନ୍ତେ ଲେଖକ ପ୍ରଶଂସାଯୋଗ୍ୟ। କ ପର୍ଯ୍ୟାୟରେ କଳାକୃଷ୍ଣ ବା ଅଫିମର ଅପକାରିତା, ଚରେ ଚ୍ହ'ର, ଟରେ ଟଙ୍କଧରଙ୍କ ଟିପ ବା ଗଞ୍ଜାଇ, ତ ରେ ତମାଖୁ, ପ ରେ ପାନର ବ୍ୟବହାରର ଅପକାରର ବିଶଦ ବର୍ଣ୍ଣନା ହୋଇଅଛି। ବୁଝିବାକୁ ଟିକେ କଷ୍ଟସାଧ ହେଲେ ମଧ ପାଠକ ନ ହସି ରହିପାରିବ ନାହିଁ। ଏପରି ଲେଖା ନିମନ୍ତେ କ୍ଲିଷ୍ଟ କଳ୍ପନାଦ୍ୱାରା ଶବ୍ଦ ସଂଗ୍ରହ, ଯେକୌଣସି ଭାଷାରୁ– କରିବାକୁ ଲେଖକ ବାଧ। ଲେଖକ ଏପରି ଲେଖାର ଉଦ୍‌ଭାବନ କରିଥିବା ହେତୁ ପାଠକବର୍ଗଙ୍କର ପ୍ରଶଂସାଭାଜନ ହେବେ ସନ୍ଦେହ ନାହିଁ।

ମୂଳ ଉଦ୍ଦେଶ୍ୟ ଏହି ପାଞ୍ଚ ପଦାର୍ଥର ନିନ୍ଦା ଲେଖା ଚାତୁରୀଦ୍ୱାରା ଲୋକ ମନରେ ତାହା ଉଦ୍ରେକ କରିପାରିବା ଲେଖକଙ୍କର ବାହାଦୁରୀ।

ପୁସ୍ତକ ପ୍ରଚ୍ଛଦ ପଟର ପରିକଳ୍ପନା ତତୋଽଧିକ ବୁଦ୍ଧିମତାର ପରିଚାୟକ। ଗୋଟାଏ ରଙ୍ଗପାନ (ତାସର ପାନ) ପତ୍ର ଉପରେ ରକ୍ତବର୍ଣ୍ଣରେ ଭାରତବର୍ଷର ମାନଚିତ୍ର। ପାନପତ୍ରର ଚତୁଃପାର୍ଶ୍ୱରେ ଗୋଟାକେତେ ସାପ ବିଚିତ୍ର ଭଙ୍ଗୀରେ ଚିତ୍ରିତ। ସେମାନେ ମଦବୋତଲ– ହୁକ, ଗିଲାସ, କାଚ, ଗଟାଚିଲମ, ସିଗାରେଟ୍‌କୁ ଗୁଡ଼ାଇ ଧରି ଅଛନ୍ତି। ଗୋଟାଏ ତୀକ୍ଷ୍ଣଧାର ଛୁରିକା ଭାରତର ଅନ୍ତଃକରଣ ସ୍ଥଳରେ ବିଦ୍ଧ, ଏବଂ ଏହି ଛୁରିକା ଆଘାତ ଜନିତ ରକ୍ତଧାରା ଭାରତ ମହାସାଗରରେ ପଡୁଅଛି। ଅଦ୍ଭୁତ ଅଥଚ ପ୍ରକୃତ ଚିତ୍ର, ନ ଦେଖିଲେ ସହଜରେ ବର୍ଣ୍ଣନାଦ୍ୱାରା ପାଠକର ମନରେ ଛବିର ଗାମ୍ଭୀର୍ଯ୍ୟ ଓ ତାତ୍ପର୍ଯ୍ୟ ହୃଦୟଙ୍ଗମ କରାଇବା ସହଜ ନୁହେଁ।

ପୁସ୍ତକ ନିମନ୍ତେ ଲେଖକଙ୍କୁ ଏବଂ ପ୍ରଚ୍ଛଦପଟର ପରିକଳ୍ପନା ନିମନ୍ତେ ଚିତ୍ରକାରଙ୍କୁ ପ୍ରଶଂସା ନ କରି ରହି ନ ପାରୁଁ।

''ପୁଣ୍ୟାହ ପୁଷ୍ୟାଭିଷେକର ପୁଣ୍ୟପାଠରେ ପରମକାରୁଣିକ ପ୍ରଜାପ୍ରାଣ ପୂଜାସ୍ପଦ ମହାରାଜା ଶ୍ରୀ ପ୍ରତାପଚନ୍ଦ୍ର ଭଞ୍ଜଦେବଙ୍କର ପବିତ୍ର ପାଦପଦ୍ମେ ପାନ୍ତ କଚଟତପେ ପ୍ରଣେତାର ପ୍ରଣିପାତ'' ଉତ୍ସର୍ଗପତ୍ରରେ ପୁସ୍ତକର ଅକ୍ଷର ନିୟମର ନମୂନା। ଏତିକି ନୁହେଁ– ମୟୂରଭଞ୍ଜର ପ୍ରଧାନମନ୍ତ୍ରୀ ଯେଉଁ ପ୍ରାଗ୍‌ଭାଷା ଲେଖିଅଛନ୍ତି ତାହା ମଧ ପ ଅକ୍ଷର ନିୟମରେ ଲିଖିତ ହୋଇଅଛି। ପାଞ୍ଚଟା ନିକୃଷ୍ଟ ପଦାର୍ଥର ନାମରେ ଏହା ରଚିତ ହୋଇଥିଲେ ମଧ ଆମମାନଙ୍କ ମତରେ କଚଟତପ ଅର୍ଥ ଏହି ଯେ ଯେଉଁ ପାଞ୍ଚପଦାର୍ଥ ତପକୁ କଚଟ ବା ମର୍ଦ୍ଦିତ ବା ନଷ୍ଟ କରେ। ଗୁଣଗ୍ରାହୀ ମୟୂରଭଞ୍ଜାଧିପତିଙ୍କ ଆନୁକୂଲ୍ୟରେ ପ୍ରକାଶିତ। ସୁତରାଂ ପୁସ୍ତକର କାଗଜ, ମୁଦ୍ରଣ ଏବଂ ପ୍ରଚ୍ଛଦପଟ ଯେ ଅତିସୁନ୍ଦର ହେବ ତାହା କହିବା ବାହୁଲ୍ୟ ମାତ୍ର।

•

## ଓଡ଼ିଶା ବିଧାନସଭାରେ ପ୍ରଦତ୍ତ ଭାଷଣ

**Voting for Demands for grants Police For the year- 1950-51 (23rd March - 1950)**

**Sri Jalandhar Deb :** Sir, this is my maiden speech. Perhaps I will sit down like Emerson after conceiving thrice. I have nothing to say more that what my predecessors have said. But I will say a few words on what I know from my experience of the police administration. In 1884 when Mr. Wodderborn and Mr. Dadabhai Naoroji made the Congress, at that time they criticised the British policy about the police and in every session they were criticising and the National papers, such as Amritbazar Patrika and Indian Leader were also criticising the British policy about the police. But it was quite impossible for the Britishers to hear their criticism because the British Governiment's stability depended on police and military force. So we cannot say anything about them because they came here to rule the State and they did so with the help of the police and military. When this present Congress regime came a few days before they thought that the British will quite India. Other Leaders, even Mahatma Gandhi, were saying that when the British would quite India and the reign of the Government would go to the people of India, then the people of India will not keep any police. I am not saying an imaginary thing. I have read it and I have heard it from many Congressmen and Congress leaders. Now we have got our popular administration here. What is our duty ? If the Government is a popular Government, they should at once minimise the expenditure on police. If they are not popular and the people are not governing the State, then they can do whatever they like. From this police budget I believe that the Government, our popular Ministers do not believe the people. So they are keeping so many police and military and detective police to watch the movement of their brothers and sisters and at the same time to depress them and to restrict their activities; otherwise they should not keep them. Because they have forgotten their promises and because they are not popular, they do not believe the people. Therefore, I pray the Government to spend half the money that they are now spending on police on education and other nation-building activities at least. They should also take Steps to educate the police officers and police constables as these men were trained by the British Government in their way to suits their purpose. They had kept them and they are doing the same work as they were doing during the British administration. The present Government think that if they will minimise the expenditure and minimise the number of police, they would not be able to manage the Government. But that is their mistake. If they will believe the people, if they will minimise the number of constables, then the administration will go on very smoothly. These police officers were trained on the British principle and they are now working according to that principle. These police officers think that if they commit anything wrong they will escape from the hands of the Ministers. This is the general belief of all the police officers. Otherwise how could they do all these things to harass the people ? I have heard from many European lady friends and I have read in many novels that the police of Europe and America think themselves as servants of the people and not servants of the

Government. So in that way they never harass the people but here they think that they are the masters and even they are not afraid of the men in whose hands the real Government is. So our subjects and people are being harassed by the Police. I request, if the police of Europe and America think themselves the servants of the people, why the police of this State should not be tutored to think themselves to be the servants of the people. It is not a difficult task if the Ministers and the Government will try to do that. Therefore the police should be reformed and they should think themselves the servants of the people and not of the Government.

× × ×

**Sri Jalandhar Deb :** Mr. Speaker Sir, the Orissa Government says that they are popular Government. But whether they are popular or not will be known from the Bill they are going to pass in this Assembly or a Select Committee. They may be popular or not, but they do not believe the people of this Provine. If they believe in the people why should they go to pass such a stringment Bill which will deter the people's liberty, equality and fraternity. These three words were invented by the French people when they killed their King and made their country a republic and they have not gone out of these things yet. But our popular Government who speak so much of their popularity are going to distrust the people and have brought already a stringent measure to oppress the people. Still they are not satisfied with these measures and are going to make themselves armed with other stringent measures. They will oppress the people of Orissa at their own sweet will. Any Government who goes to do such thing cannot be a popular one. Lastly the hon'ble the Chief Minister went to give the definition of liberty. But as my knowledge goes liberty like truth has no definition. It is a thing that is known to all animals that has life. Even from bacteria to the man and everything know the meaning of liberty. So why the Government or why any people in authority go to define liberty. An ignorant man knows the meaning of liberty.

Men say that they are the image of God. If that is so why have not aquired the quality of God and why they are of different quality and why they pose in the name of God. We are only the social creature in this world. The creatures have even their society in this world. They are managing their society so nicely and so smoothly that men have no comparision with then. But man who pose to be the image of God always try to take the liberty of men. Therefore, all these things the people are very dissatisfied and one after the other they are oppressed, punished and kept in incarceration. If the Government will be popular there will be no such thing as punishment and other things.

King John was an oppressor and he took away the powers of people of England. Then the Parliament brought that power by habeas corpus and still we are enjoying here in India that power. As regards the French Republic they have not gone out of that fraternity, equality and liberty. But in three months time Government have taken away fraternity, equality and liberty. They are willing to take more and more day after day. In every Budget session they will take fraternity and liberty. There is no fraternity between that Treasury Bench and this where we sit. If we will say that we want that the Bill be circulated to the people so that they can give their opinion, there is no question of passing that Bill, but they want it to press it.

**The Hon'ble Sri Lal Ranjit Singh Bariha :** Sir, the hon'ble member has been referring to equality, fraternity and liberty. But does he know whether the ladies of France have got franchise even now or how many years after that they have got it ?

**Sri Jalandhar Deb :** This has no connection because the ladies in France have not got the vote to send their representatives to the Parliament. Therefore they have not got liberty, equality and fraternity. These are separate things. So we wish to send the Bill to the public to give their opinion.

Without their will, if we sitting under the fan will pass that bill 1 crore and 50 lakhs of people will be oppressed by this Bill which the Government are going to pass. Such a drastic

Bill should not be given in the hands of a Government that is willing to oppress the people. Therefore, I wish Government must think it over and they must send it to the public for their opinion.

## THE ORISSA MAINTENANCE OF PUBLIC ORDER Bill-1950 (25th- March-1950)

**ଶ୍ରୀ ଜଳନ୍ଧରଦେବ :** ସଭାପତି ମହୋଦୟ, ମୁଁ ଯେତେବେଳେ ବସାରୁ ଆସିଲି, ସେତେବେଳେ ମୋର କହିବାର ଇଚ୍ଛା ନ ଥିଲା । ଆଉ ମଧ ଏଠାରେ ବସି ଯେତେବେଳେ ସଭ୍ୟମାନଙ୍କର ଜବାବ ଶୁଣିଥିଲି, ତଥାପି ମଧ ମୋର କିଛି କହିବାର ନ ଥିଲା କିନ୍ତୁ ବର୍ତ୍ତମାନ ଏପରି ଗୋଟିଏ ଅବସ୍ଥା ହେଲା, ଯହିଁରେ କି ମଣିଷର ପାଷାଣ ହୃଦୟ ବି ତରଳିଯିବ । ମୋ ପଛରେ ମୋର ସମକକ୍ଷ ଜଣେ M.L.A. ବସି ଏଠାରେ ଲୋତକ ବର୍ଷଣ କରୁଛନ୍ତି । ତାଙ୍କ ଉପରେ ଘୋର ଅତ୍ୟାଚାର ହୋଇଛି । Govt. ଧାନ ଚାଉଳ କିଣିବା ପାଇଁ ଯେଉଁ Purchasing Agent ନିଯୁକ୍ତ କରିଛନ୍ତି, ତାଙ୍କୁ Govt କି ଅଧିକାର ଦେଇଛନ୍ତି ଯେ, ସେମାନେ ପ୍ରଜାମାନଙ୍କର ଘର ଜବତ କରିବେ । ଇଚ୍ଛା ଅନୁସାରେ ଅତ୍ୟାଚାର କରି ଘରୁ ଧାନ ନେଇଯିବେ । ଏ ଜଣେ M.L.A. । ମାନ୍ୟବର ମନ୍ତ୍ରୀମାନଙ୍କ ସଙ୍ଗେ ତାଙ୍କର ଯୁକ୍ତିତର୍କ କରିବାର କ୍ଷମତା ଅଛି । ସେ ଲୋକ ଯଦି ଏଠାରେ ଲୋତକବର୍ଷଣ କରେ, ତାହାହେଲେ ପ୍ରଜାମାନେ, ଯେଉଁମାନଙ୍କର କ୍ଷମତା ନାହିଁ, ସେମାନେ କି ଦୁଃଖ ପାଉ ନ ଥିବେ । ଆମେ Memberମାନେ କ'ଣ କରୁଛୁ ? ଆମ୍ଭେମାନେ ଯଦି ସେମାନଙ୍କର ଦୁଃଖ ମୋଚନ ନ କରୁ, ତାହାହେଲେ ଆମ୍ଭେମାନେ ଏ Assembly ରେ ବସିବାର ପ୍ରୟୋଜନ କ'ଣ ? ଆମ୍ଭେମାନେ କ'ଣ ଗଧ ? ଆମ୍ଭେମାନେ କ'ଣ ବାକ୍‌ହୀନ ?

ଯଦି ଏ ପ୍ରକାର ଅତ୍ୟାଚାର— ସାଧାରଣ ମହାଜନମାନେ ଧାନ ଚାଉଳ କିଣନ୍ତି, Governmentଙ୍କୁ ସେମାନେ କେତେ ଦିଅନ୍ତି ନ ଦିଅନ୍ତି ତାହା ମଧ ଜଣା ନାହିଁ । ଅଥଚ ସେମାନେ ପୁଲିସ୍‌ଠାରୁ ବଳିକରି ଅତ୍ୟାଚାର କରିବେ । କିଏ ସେମାନଙ୍କୁ ଏ ଅଧିକାର ଦେଇଛି ? ଏ ଅତ୍ୟାଚାର କରିବା ପାଇଁ କିଏ ଅଧିକାର ଦେଇଛି ?

× × ×

**Sri Jalandhar Deb :** President, Sir. When Mr. Churchil and Mr. Roosvelt made a Charter. We Indians hoped that when the Englishmen would go away from here we would get freedom from want, freedom of press and freedom of speech, but now that has been forgotten by every one. Now we have no freedom from want. We are suffering from want. We had a little freedom of speech but now that too we are going to lose. For a few Communists that may come or go, we are going to put a fetter and handcuffs that would be used not only against those Communists who threaten our lenient Ministers but against all the members of this House and also against the total population of Orissa. It is a great regret that people who boast that they are popular and their Government is popular...

**Sri Nilamani Routray :** We are actually popular.

**Sri Jalandhar Deb :** It is a great regret that peoples who boast that they are popular and their Government is popular and who say that the people believe in them, are going to make such harsh and stringent measures. What is there now for us ? We cannot speak; cannot write, cannot do anything. We are undone. Whatever we want to do will be done by these Ministers and not by us. They won't require us. They feel that they are the only patriots as if there are no other patriots in our State. They have also love for the state as the English and their henchmen had for this country.

The Hon'ble the Speaker : The expression 'henchmen' is not parliamentary and it should not be used here.

**Sri Jalandhar Deb :** This is a common term but if the Hon'ble Speaker objects to it, I withdraw.

The Ministers and their supporters do not think about the people whom they are representing here. But they only think of themselves and nothing else, The Government are very soft with their supports. Only and they do not think of the people whom they are representing here as to how these people will suffer after this Bill is passed.

I cannot say anything more about this. But I can say that our Government on whom we had

all hopes of liberty and progress have failed us. It is I think only the imitation of the British Government. The laws that they promulgated after 150 years of their regime here, our Government is going to do it in course of there years. I can say that our present Governments is the British Governments plus corruption and minus injustice.

## VOTING OF DEMANDS FOR GRANTS FOR THE YEAR- 1950-51

### (27th March-1950)

**ଶ୍ରୀ ଜଳନ୍ଧରଦେବ :** ସଭାପତି ମହୋଦୟ, ଆମ୍ଭେମାନେ ସ୍ୱାଧୀନତା ପାଇଛୁ କିନ୍ତୁ ସେ ସ୍ୱାଧୀନତା ସମସ୍ତେ ଠିକ୍ ଭାବରେ ଭୋଗ କରୁଛନ୍ତି ବୋଲି ମୋର ବିଶ୍ୱାସ ହେଉ ନାହିଁ । ତା'ର କାରଣ ହେଉଛି ଯେ, ଆମ୍ଭମାନଙ୍କ Govt. ସେମାନଙ୍କୁ ବିଶ୍ୱାସ କରୁ ନାହାନ୍ତି, ଏ କଥା ସେମାନଙ୍କୁ ଏତେବେଳ ପର୍ଯ୍ୟନ୍ତ ଜଣା ହେଉ ନାହିଁ । ତା'ର କାରଣ ହେଉଛି ଯେ, ଆମ୍ଭେମାନେ ସ୍ୱାଧୀନତା ପାଇବା ସଙ୍ଗେ ସଙ୍ଗେ କେତେଗୁଡ଼ିଏ ବିଷୟ ଘଟିଗଲା, ଯାହାଦ୍ୱାରା ଦେଖାହେଉଛି ଯେ, ସେମାନେ ମନେକରୁଛନ୍ତି Govt. ଆମକୁ ବିଶ୍ୱାସ କରୁ ନାହିଁ ମୁଁ Govt. ଙ୍କୁ ଏ କଥା Suggest କରୁଛି ସେମାନେ ପ୍ରତ୍ୟେକ ଲୋକଙ୍କୁ ବିଶ୍ୱାସ କରନ୍ତୁ । ଯେଉଁମାନେ ଏ ସଭାକୁ ଆସିଛନ୍ତି ଖାଲି ତାଙ୍କୁ ବିଶ୍ୱାସ କରିଦେଲେ ହେବ ନାହିଁ । ସର୍ବସାଧାରଣଙ୍କୁ ବିଶ୍ୱାସ କରନ୍ତୁ । ଯେଉଁ ସମାଲୋଚନା ହେଉଛି ସେହି ସମାଲୋଚନାକୁ ଭୟ କରନ୍ତୁ ନାହିଁ । କାରଣ ସମାଲୋଚନାର ଉଦ୍ଦେଶ୍ୟ ଯେ, ଦୋଷ ଦେଖିବା ନୁହେଁ । ସେମାନଙ୍କ କଥା ଶୁଣିବା ଉଚିତ ଯେଉଁମାନେ ସମାଲୋଚନା କରିବେ ସେମାନଙ୍କୁ ସହଯୋଗ ଦେବା ଉଚିତ ଯେ ସେମାନେ ସମାଲୋଚନା କରନ୍ତୁ ।

## THE ORISSA BASIC EDUCATION BILL-1951

### (7th March-1951)

**Sri Jalandhara Deba :** ସଭାପତି ମହାଶୟ, ମୋର କଲେଜ ଶିକ୍ଷା ନାହିଁ ତଥାପି ଏ ଶିକ୍ଷା ସମ୍ବନ୍ଧରେ ଦୁଇ କଥା କହିବି ବୋଲି ଦଣ୍ଡାୟମାନ ହେବା ମୋ ଭଳିଆ ଜରଦ୍‌ଗବ ପକ୍ଷରେ ହାସ୍ୟାସ୍ପଦ କଥା । ତଥାପି ଏ ଯେଉଁ ଗୋଟିଏ ଗୁରୁତର ବିଷୟ ପଡ଼ିଛି ସେଥିରେ ପଦେ ଅଧେ ନ କହିଲେ ମୋର ମନୁଷ୍ୟତ୍ୱ ରହିବ ନାହିଁ ବୋଲି ମୁଁ ଭାବୁଛି । ବେଶିକ୍ ଏଡୁକେସନର ନାମ ଦେଇଛନ୍ତି ମୌଳିକ ଶିକ୍ଷା । ବେଶିକ୍ ଏଡୁକେସନର ମୌଳିକ ଶିକ୍ଷା କିପରି ତର୍ଜମା ହେଲା ବୁଝାପଡୁ ନାହିଁ । ମୂଳରୁ ଏ ଶିକ୍ଷା ଦିଆଯିବ ବୋଲି କ'ଣ ମୌଳିକ ଶିକ୍ଷା ହୋଇଛି କି ? କିମ୍ବା ବେଶିକର ଅର୍ଥ ମୌଳିକ ବୋଲି ଏହାକୁ ସେପରି କୁହାଯାଉଛି । ଆମ୍ଭମାନଙ୍କ ଦେଶରେ ମୌଳିକ ଶିକ୍ଷା ଅପେକ୍ଷା ଲିଟରାରୀ ଅର୍ଥାତ୍ ସାହିତ୍ୟ ଶିକ୍ଷାର ପ୍ରୟୋଜନ ବେଶୀ ଅଛି । ଆପଣମାନେ ଯଦି ବିଶ୍ୱାସ କରନ୍ତି ବାସ୍ତବିକ ମୌଳିକ ଶିକ୍ଷାର ଦରକାର କଅଣ ? ଆମର ଏ ଗୃହରେ ଯେତେ ଲୋକ ଅଛନ୍ତି ତାଙ୍କ ଭିତରୁ କେତେ ଲୋକ ନିଜ ଭିତରେ ଇଟା ବନାଇଛନ୍ତି । କିଏ ଘର ବନେଇଛି, କିଏ ନିଜେ ନିଜର ଘର କବାଟ ତିଆରି କରି ନିଜେ ଘରେ ଲଗାଇଛି ? ଏପରି ଜଣେ ଲୋକ ଆପଣ ଏଠି ପାଇପାରିବେ ନାହିଁ । ମୁଁ କହିବି ଯେ ପିତା ମାତାଙ୍କର ସହାନୁଭୂତି ଏବଂ ପିତାମାତା ଏବଂ ଶିକ୍ଷକଙ୍କର ଆନୁକୂଲ୍ୟଦ୍ୱାରା ବେଶିକ ଏଡୁକେଶନ ହୋଇପାରେ 'ତା' ନ କଲେ ବାଧତାମୂଳକ ଶିକ୍ଷା ଦ୍ୱାରା କୌଣସି ଛାତ୍ରର ଉନ୍ନତି ହେବ ବୋଲି ମୁଁ ମନେ କରୁ ନାହିଁ । ମୁଁ ଏହି ସମ୍ପର୍କରେ ଅନେକ ଗୁଡ଼ିଏ ପ୍ରବନ୍ଧ ଲେଖିଛି । ବେଶିକି ଶିକ୍ଷା ଏବଂ ସାହିତ୍ୟିକ ଶିକ୍ଷା କିପରି ଦିଆଯିବ ମୁଁ ସେ ବିଷୟରେ ଗୋଟିଏ ପ୍ରବନ୍ଧ ଲେଖିଛି । ଯେଉଁମାନେ ସେ ପ୍ରବନ୍ଧ ପଢ଼ିଥିବେ ସେମାନେ ଅବଶ୍ୟ ଜାଣିଥିବେ ଯେ ମୋର ଲେଖାର କିଛି ମୂଲ୍ୟ ଅଛି କି ନାହିଁ । ୫ ବର୍ଷ ସମୟରୁ ମୁଁ ଏହି ଶିକ୍ଷା କରିଛି । ଏଥିରେ ମୋର ପିତାମାତାଙ୍କର ଆନୁକୂଲ୍ୟ ଥିଲା । ଏହା କରିବାଦ୍ୱାରା ମୋର ଦେହରେ କାଦୁଅ ଲାଗିଲେ କିମ୍ବା ମୋର ଲୁଗାପଟା ମଇଳା ହେଲେ ମଧ ସେମାନେ ମୋତେ କିଛି କହୁ ନ ଥିଲେ । ଆପଣମାନେ ଜାଣିଥିବେ ମୋର ଗୋଟିଏ ପକାଘର ଅଛି । ସେହି ଘର ତିଆରି କରିବାରେ ଗୋଟିଏ ମିସ୍ତ୍ରୀ ଛଡ଼ା ୨ଟି ମିସ୍ତ୍ରୀ ଲାଗି ନ ଥିଲେ । ଦୁଇ ଜଣ ବଢ଼େଇ ଛଡ଼ା ୪ ଜଣ ବଢ଼େଇ ଲାଗି ନ ଥିଲେ, ମୁଁ ସେହି ଘରର ସମସ୍ତ କାମ ନିଜ ହାତରେ କରିଛି । ବର୍ତ୍ତମାନ ମୋର ବୟସ ୮୦ ବର୍ଷ ହେଲେ ମୋର ସେ ପ୍ରକୃତି ରହିଛି । ଆଜି କାଲି ମୋ ହାତରେ ବଳ ନ ଥିବାରୁ ମୁଁ କୋଡ଼ି ଧରି ମାଟି ନ ହାଣିଲେ ସୁଦ୍ଧା ମୋ ବଗିଚାରେ ଅନ୍ୟାନ୍ୟ କାମ ମୁଁ ହାତରେ କରେ । ଅତଏବ ବେଶିକ ଏଡୁକେଶନ ପାଇବା ମନୁଷ୍ୟର ନିଜ ଇଚ୍ଛା ଉପରେ ନିର୍ଭର କରେ । ଆମ ଦେଶରେ ଶିକ୍ଷକମାନଙ୍କର ସେ ଆନୁକୂଲ୍ୟ ନାହିଁ । ସେମାନେ କେବଳ ଟଙ୍କା ପାଇବା ଆଶାରେ ପିଲାମାନଙ୍କୁ ପଢ଼ାଇବାକୁ ଆସନ୍ତି । ସମୟ ହେଲେ ଘରକୁ ଫେରିଯାନ୍ତି । ପିଲା ଭଲ ପଢ଼ିଲେ କି ନାହିଁ ସେ ବିଷୟରେ

ସେ ମୁଣ୍ଡ ଖେଳାନ୍ତି ନାହିଁ । ଜର୍ମାନୀ ପ୍ରଭୃତି ଶିକ୍ଷକ ପିଲାଙ୍କ ମନରେ କିପରି ଆନନ୍ଦ ଜନ୍ମାଇ ପାରିବ, ସେ ବିଷୟରେ ସଚେଷ୍ଟ ହୁଅନ୍ତି । ସେ ଦେଶରେ ପିଲାମାନଙ୍କ ମନରେ ପଢ଼ାରେ ଆନନ୍ଦ ଜନ୍ମାଇବା ଶିକ୍ଷକମାନଙ୍କର କର୍ତ୍ତବ୍ୟ । କେବଳ ପାଠ ପଢ଼ିଲେ ହେବ ନାହିଁ । ଭାଇସ୍ ଚାନ୍‌ସେଲର ବା ଶିକ୍ଷାମନ୍ତ୍ରୀଙ୍କ ପରି ଲୋକେ ଯେଉଁମାନେ କି ଉଚ୍ଚଶିକ୍ଷା ପାଇଛନ୍ତି, ସେମାନେ ବେଶିକ୍ ଶିକ୍ଷା ଦେଇପାରିବେ କି ନା ସନ୍ଦେହ । ଏପରି ସ୍ଥଳେ ପ୍ରାଇମେରୀ ସ୍କୁଲର ଶିକ୍ଷକମାନେ ଯେଉଁମାନଙ୍କର ଶିକ୍ଷା ଖୁବ୍ କମ୍ ଏବଂ ସେମାନଙ୍କର ଶିକ୍ଷା ଦେବାରେ ଆନୁକୂଲ୍ୟ ନାହିଁ ସେମାନେ କି ବେଶିକ୍ ଶିକ୍ଷା ଦେବେ ? ଏହି ଯେଉଁ ବେଶିକ୍ ଏଡୁକେଶସନର ଯୋଜନା ହୋଇଛି ସେଥିରେ ୧୦ବର୍ଷ ପର୍ଯ୍ୟନ୍ତ ପିଲାମାନଙ୍କୁ ଶିକ୍ଷା ଦେଇ ଦେଲେ ଫଳ କ'ଣ ହେବ ? ବେଶିକ୍ ଏଡୁକେଶନ୍ ଗୋଟିଏ ଠିକ୍ ଜିନିଷ ହେବ ବୋଲି ମୋର ଧାରଣା । ବେଶିକ୍ ଏଡୁକେଶନ ମହାତ୍ମାଗାନ୍ଧି ଆରମ୍ଭ କରିଛନ୍ତି କିନ୍ତୁ ଗାନ୍ଧିଜୀଙ୍କର ଯେଉଁ ଆଇଡ଼ିଆ ସେହି ଆଇଡ଼ିଆ ସହିତ ଆମ୍ଭମାନଙ୍କର ଆଇଡ଼ିଆ ମିଶୁ ନାହିଁ । ଗାନ୍ଧିଜୀଙ୍କର ଆଇଡ଼ିଆ ଥିଲା ବେଶିକ୍ ଏଡୁକେଶନ୍ ଦ୍ୱାରା ଛାତ୍ରମାନେ ନିଜ ଜୀବିକା ନିର୍ବାହ କରିପାରିବେ, କିନ୍ତୁ ଆମର ଏହି ବେଶିକ୍ ଏଡୁକେଶନ୍ ଦ୍ୱାରା ତାହା ସମ୍ଭବପର ହେବ ନାହିଁ । ଏପରି ସ୍ଥଳେ ଆମ ସରକାର ବେଶିକ ଏଡୁକେଶନ୍‌କୁ ବେଶୀ ସାହାଯ୍ୟ ଦେବା ଦ୍ୱାରା ଆମର ପ୍ରାଥମିକ ଶିକ୍ଷା ଅନୁଷ୍ଠାନଗୁଡ଼ିକ ଆସ୍ତେ ଆସ୍ତେ ଭାଙ୍ଗି ଯିବାକୁ ବସିଲାଣି । କିଛି ଦିନ ତଳେ ମୁଁ କେନ୍ଦୁପଲ୍ଲୀ ସ୍କୁଲରେ ବକ୍ତୃତା ଦେଲାବେଳେ ଅନୁଗୁଳର ଗୋଟିଏ ପିଲା ମୋତେ କେତେକ ଆଳୁ ଦେଖାଇଥିଲା । ତାକୁ ପଚାରିବାରେ ସେ କହିଲା ଯେ ସେ ଏ ଆଳୁକୁ ନିଜେ ଚାଷ କରିଛି । ମୁଁ ତାକୁ ପଚାରିଲେ ଯେ ଏ ସ୍ଥାନରେ ଜଳର ଅଭାବ, ତୁ କିପରି ଆଳୁ ଚାଷ କରିପାରିଲୁ ? ସେ କହିଲା ଯେ ଏଠାରେ ଗୋଟିଏ କେନାଲ୍ ଅଛି ଏବଂ ସେ ପାଣି ସାହାଯ୍ୟରେ ଏ ଆଳୁ ଚାଷ କରିଛି । ତାକୁ ପଚାରିଲି ଯେ ମୋତେ ଏହି କେନାଲଟି ମ୍ୟାପ୍‌ରେ ଦେଖାଇ ପାରିବୁ କି ? କିନ୍ତୁ ଦୁଃଖର କଥା ସେ ସ୍କୁଲରେ ୫୪ ଜଣ ପିଲା ଶିକ୍ଷା ପାଉଥିଲେ ମଧ୍ୟ ସେଠାରେ ଗୋଟିଏ ମ୍ୟାପ ନାହିଁ ।.ମାଷ୍ଟ୍ରଙ୍କୁ ପଚାରିବାରେ ଜାଣିଲି ଯେ ୩ ବର୍ଷ ହେଲା ସ୍କୁଲଘର ପୋଡ଼ି ଯାଇଥିବା ଦିନଠାରୁ ସ୍କୁଲରେ ମ୍ୟାପ ଖଣ୍ଡିଏ ନାହିଁ ଏବଂ ଛାତ୍ରମାନଙ୍କ ସକାଶେ ଗୋଟିଏ ମାଷ୍ଟ୍ର ରହିଛି । ଲାଇବ୍ରେରୀରେ ଖଣ୍ଡିଏ ହେଲେ ପୁସ୍ତକ ନାହିଁ । ଏପ୍ରକାର ଏଡୁକେଶନ ଯେଉଁ ଦେଶରେ ଦିଆଯାଉଛି ବେଶିକ୍ ଏଡୁକେଶନ କିପରି ଦିଆଯାଇପାରେ ତାହା ଆପଣମାନେ ଜାଣୁଥିବେ । ବେଶିକ ଏଡୁକେଶନ ଦ୍ୱାରା ଯେଉଁ ପିଲା ବଢ଼େଇ କାମ କରିପାରିବ ବା କରିବାର ଇଚ୍ଛାଅଛି ଏବଂ କାହାର ଲୁହା କାମ କରିବାର ଇଚ୍ଛା ଅଛି, ତାଙ୍କୁ ସେହିପରି ଭାବରେ ଶିକ୍ଷା ଦିଆଯିବା ଉଚିତ । କିନ୍ତୁ ଆମ ଦେଶରେ ଏତେ ବେଶିକ ଶିକ୍ଷା ଦିଆଗଲେ ସୁଦ୍ଧା ଏପରି ଗୋଟିଏ ଲୋକ ଦେଖିବାକୁ ମିଳେ ନାହିଁ । ଗାନ୍ଧିଜୀ କହିଥିଲେ ଯେ ଯେଉଁ ଲୋକ ଯେଉଁ କାମ କରିବାକୁ ସମର୍ଥ ବା ଇଚ୍ଛାପ୍ରକାଶ କରିବ ତାକୁ ସେହି ଶିକ୍ଷା ଦିଆଯିବ । କିନ୍ତୁ ବର୍ତ୍ତମାନ କୁହାଯାଉଛି ଯେ ଆଜିକାଲି ଅବସ୍ଥାକୁ ଚାହିଁ କାର୍ଯ୍ୟ କରିବାକୁ ହେଲେ ଗାନ୍ଧିଜୀଙ୍କର ନୀତି ମାନି ଚଳିହେବ ନାହିଁ । ବର୍ତ୍ତମାନ ଅବସ୍ଥା ବଦଳି ଯାଇଛି । ଯାହାହେଉ ଆପଣମାନେ ବୁଝି ବିଚାରି ଗୋଟିଏ ୨ କାମ କରନ୍ତୁ ଏବଂ ତାହା କିପରି ସଫଳ ହେବ ସେଥିରେ ମନୋଯୋଗ ଦିଅନ୍ତୁ । ବହୁତଗୁଡ଼ାଏ କାମ ଏକାବେଳକେ ହାତରେ ନେଇ ପିଲାମାନଙ୍କର ଭବିଷ୍ୟତ ନଷ୍ଟ କରିବା ଉଚିତ ନୁହେଁ । ମୋ ମତରେ ୧୦।୧୫ ବର୍ଷ ପର୍ଯ୍ୟନ୍ତ ପିଲାମାନଙ୍କୁ ପ୍ରାଇମେରୀ ଏବଂ ସାହିତ୍ୟ ଶିକ୍ଷା ଦେଇ ତାପର ପିଲାମାନଙ୍କର ମନର ଭାବ ବୁଝି କିଏ କେଉଁ କାର୍ଯ୍ୟ ଶିଖିବାକୁ ଆଗ୍ରହ ପ୍ରକାଶ କରିବ ତାଙ୍କ ଶିକ୍ଷା ସେହିପରି ହେଲେ ନିଶ୍ଚୟ ଭଲ ଫଳ ହେବ । ଏହା ନ କରି ବାଧ୍ୟତାମୂଳକ ଶିକ୍ଷା ଦେଲେ ସରକାରଙ୍କର ପଇସା ଖର୍ଚ୍ଚ କିନ୍ତୁ କୌଣସି ଲାଭ ହେବ ନାହିଁ । ଅନ୍ୟାନ୍ୟ ସଭ୍ୟଦେଶମାନଙ୍କର ପିଲାଙ୍କୁ ଏ ବିଷୟରେ ସ୍ୱାଧୀନତା ଦିଆଯାଏ ସେ ଯଦି ଇଞ୍ଜିନିୟରଂ ପଢ଼ିବାକୁ ଚାହେଁ, ତାହାହେଲେ ତାକୁ ଇଞ୍ଜିନିୟରିଂ ପଢ଼ିବାପାଇଁ ପଠାଯାଏ । ସେ ଯଦି କହେ, ମୁଁ ବଢ଼େଇକାମ ବା ଇଟାଗଢ଼ାକାମ କରିବି ତେବେ ସେଥିପାଇଁ ତାକୁ ସୁବିଧା ଦିଆଯାଏ, ଏହା ହେଲା ସେ ଦେଶର ନୀତି । କିନ୍ତୁ ଆମ ଦେଶର ନୀତି ହେଉଛି ଯେ, ବାଧ୍ୟବାଧକତା କରି ସେମାନଙ୍କ ଭବିଷ୍ୟତକୁ ନଷ୍ଟ କରିବା । ମୋ ବିବେଚନାରେ ଏହି କଥାଟି ଭଲ ହେଉ ନାହିଁ । ବିଶେଷତଃ ଏହି ଯେ ଗ୍ରାମପଞ୍ଚାୟତ କରାହେଉଛି, ଏମାନେ ଏ ପର୍ଯ୍ୟନ୍ତ ଏସବୁ କାମ କରିବା ପାଇଁ ଉପଯୁକ୍ତ ହୋଇନାହାନ୍ତି । ତେଣୁ ବେଶିକ୍ ଏଡୁକେଶନ୍‌ର ଭାର ସେମାନଙ୍କ ଉପରେ ଦେଲେ ସେମାନେ ଏହାର ଯେ ଉନ୍ନତି କରିବେ, ଏହା କେବଳ ଗୋଟିଏ ସ୍ୱପ୍ନ । ମ୍ୟୁନିସିପାଲିଟି ହାତରେ ଦିଅନ୍ତୁ ବା ଗ୍ରାମପଞ୍ଚାୟତ ହାତରେ ଦିଅନ୍ତୁ, ସେମାନେ କେହି ପିଲାଙ୍କର ପଢ଼ିବାର ଯତ୍ନ ନେବେ ନାହିଁ । ପିଲା ପଢ଼ିଲେ ନ ପଢ଼ିଲେ ନାହିଁ ତାଙ୍କର କ'ଣ ଯାଉଛି । ଆମ୍ଭମାନଙ୍କର ଯଦି

ସମସ୍ତ ଭାରତବର୍ଷକୁ ମୂର୍ଖ କରିବାର ଇଚ୍ଛା ଥାଏ ତାହାହେଲେ ଆମ୍ଭେମାନେ ଏ ବିଲ୍‌କୁ ପାସ୍ କରିବା । ମୋ ମତରେ ବର୍ତ୍ତମାନ ଏହି ବିଲ୍‌କୁ ପାସ୍ ନ କରି କିଛିଦିନ ଅପେକ୍ଷା କରି ପରେ ଆଣିବା ।

**Voting on Demands for Grants for 1951-52 Excise Duties (10th March-1951)**

**Shri Jalandhar Deb :** Madam, though I have not given any cut motion, I want to speak something about prohibition. May I be given some time ?

The Deputy Speaker; The hon`ble member is given only two minutes within which he has to finish his Speech.

**Shri Jalandhar Deb :** ସଭାନେତ୍ରୀ ମହୋଦୟା, ମୁଁ ବେଶି କହିବି ନାହିଁ । ମୁଁ ପ୍ରତ୍ୟକ୍ଷରେ ଯାହା ଦେଖୁଛି, ସେଥିରୁ ପଦେ ଅଧେ କହିବି । ଆମେ ଅନ୍ଧାରି ମୂଳକର ଲୋକ । ପ୍ରାୟ ୩ ବର୍ଷ ହେଲା ଆମେ ଆଲୋକ ମଧ୍ୟକୁ ଆସିଛୁ । ସେହି ଆଲୋକ ମଧ୍ୟରେ ଆମର ନିଶା ନିବାରଣ ନେଇ ଯେଉଁ ଅନୁଭୂତି ହୋଇଛି, ତାହା ହୃଦୟବିଦାରକ । ଏହି ନିଶା ନିବାରଣ କଥା କହିଲା ବେଳେ ୧୮୯୨ ମସିହାର ଗୋଟିଏ ଘଟଣା ମୋର ମନେ ପଡ଼ିଯାଉଛି । ସେହି ସୁଢଳଦେର ରାଜୁତି ବେଳର କଥା । ନିଶା ନିବାରଣ ହେବ କ ନାହିଁ ସେ ବିଷୟରେ ଗୋଟିଏ Questionnaire ଆସିଲା, ଲୋକମତ ସଂଗ୍ରହ ପାଇଁ ମୋତେ ତାର ଓଡ଼ିଆ ତର୍ଜମା କରିବାକୁ ପଡ଼ିଲା । ମୁଁ ନିଜେ ସେଥିରେ ସ୍ୱାକ୍ଷର କଲି । ସୁଢଳଦେବ କହିଲେ ଯଦି ବ୍ରିଟିଶ ସରକାର ଆମର ଏ ଭାରତବର୍ଷରେ କୌଣସି ପ୍ରକାର ଉନ୍ନତି ଚାହାନ୍ତି ତା' ହେଲେ

ଏ ଦେଶରୁ ପ୍ରଥମ ମଦ ଗଞ୍ଜାଇ ଅଫିମ ଉଠାଇବାକୁ ହେବ । କେବଳ ଔଷଧ ବ୍ୟତୀତ ସେ ସବୁ କଦାପି ବ୍ୟବହାର ହେବ ନାହିଁ । ଦେଶରେ ଆନ୍ଦୋଳନ ଚାଲିଲା । ମଦ ଦେଶରୁ ଉଠାଇ ଦେବାପାଇଁ ୧୯୦୨ରେ ଠିକ୍ ହେଲା । ପୁଲିସ୍‌ମାନଙ୍କ ଜରିଆରେ କେବଳ ଅଫିମ ବିକ୍ରିର ବ୍ୟବସ୍ଥା ହେଲା, କେବଳ ମ୍ୟୁନିସିପାଲିଟି ଅଫିସ୍‌ରେ ବିକ୍ରିର ବନ୍ଦୋବସ୍ତ କରାଗଲା । ଯେଉଁ ଅନ୍ଧାରିମୂଳକର ରାଜାମହାରାଜାମାନଙ୍କୁ ନିନ୍ଦା ଦିଆଯାଉଛି, ସେମାନେ ଦେଶର ପ୍ରଗତିରେ ବାଧା ଦେଉଛନ୍ତି, ସେହି ରାଜା ମହାରାଜାମାନେ ବହୁଦିନ ଆଗରୁ ଏହି ନିଶାଦ୍ରବ୍ୟ ବର୍ଜନ କରିଥିଲେ । ତାହାର ଏହି ଜ୍ୱଳନ୍ତ ନିଦର୍ଶନ ।

The Hon`ble Shri Nabakrushna Chaudhuri : ମାନ୍ୟବର ସଭ୍ୟ ରାଜାମାନଙ୍କର ବ୍ୟକ୍ତିଗତ ଜୀବନରେ ନିଶା ନିବାରଣ ନେଇ କହୁଛନ୍ତି ନା ଅନ୍ୟ କେଉଁ ବିଷୟରେ କହୁଛନ୍ତି ?

**Shri Jalandhar Deb :** ବହୁବର୍ଷ ପୂର୍ବରୁ ରାଜା ସୁଢଳଦେବ ତାଙ୍କ ରାଜ୍ୟରେ ପ୍ରଜାମାନଙ୍କ ମଧ୍ୟରେ ନିଶା ନିବାରଣ ଆନ୍ଦୋଳନ ଚଳାଇଥିଲେ ଓ କିପରି ନିଶା ନିବାରଣ କରିଥିଲେ ସେହି କଥା କହୁଛି । ସେତେବେଳେ କେବଳ ପୁଲିସ୍‌ଙ୍କ ଜରିଆରେ ନିଶାଦ୍ରବ୍ୟ ବିକ୍ରି ହେଉଥିଲା କିନ୍ତୁ ବର୍ତ୍ତମାନ ଠିକାଦାର ଦ୍ୱାରା ଅବାଧ ବିକ୍ରି ଚାଲିଛି । ସେତେବେଳେ ସେ ସବୁ ପଡ଼ି ଆକାରରେ ବିକ୍ରି ହେଉଥିଲା । କିନ୍ତୁ ବର୍ତ୍ତମାନ କି ଅଫିମ କି ଗଞ୍ଜାଇ ଅଧତୋଳା ଚାହିଁଲେ ବି ତୋଳାଏ ମିଳୁଛି । ୧୯୦୨ ମସିହାର କଥା ପୁନରାବୃତ୍ତି କରୁଛି । ସେତେବେଳେ ଦେବଗଡ଼ର ବାରମାଇଲ୍ ଭିତରେ ମଦ ବିକ୍ରି ବନ୍ଦ କରାଗଲା ଏପରିକି ଆଦିବାସୀମାନେ ମଧ୍ୟ ମଦ ଛାଡ଼ିଦେଲେ ତାପରେ Court of Wards ଆସିଲା । ସେତେବେଳେ ବି ସ୍ଥିର ହେଲା Sudhal Deb's Order must be respected. ଯେତେଦିନ ପର୍ଯ୍ୟନ୍ତ Court of Wards ରହିଲା ସେତେଦିନ ପର୍ଯ୍ୟନ୍ତ ସେ ନିୟମ ଚାଲୁ ରହିଲା । ତା'ପରେ ଆସିଲା ଦେଓ୍ୟାନ୍ ଅମଳ । ରାଜାମାନେ ଦେଓ୍ୟାନ୍‌ଙ୍କ ଉପଦେଶରେ ଚାଲିଲେ । ଠିକାଦାର ନିଯୁକ୍ତ ସେହି ଦିନରୁ ଆରମ୍ଭ ହେଲା ଏଠି ସେଠି ଚାରିଆଡ଼େ ମଦ ବିକ୍ରି ହେଲା ଯେତେବେଳେ ଆମେ ଅନ୍ଧାରରୁ ଆଲୋକକୁ ଆସିଲୁ, ଭାବିଥିଲୁ ଆଲୋକ ପ୍ରଭାବରେ ଅନ୍ଧାର ଉଭେଇ ଯିବ । କିନ୍ତୁ ଯେତେବେଳେ ସେହି ଆଦିବାସୀ ଜାତି ତ୍ରିସନ୍ଧ୍ୟାରେ ମଦ ଖାଇ ତା'ର ସେହି ପଲ୍ଲୀ ଗୃହରୁ ଢଳି ଢଳି ବାହାରୁଛି ତା ଦେଖି ସେତେବେଳେ ମୋର ସେ ଆଶା ଆଶ୍ୱାସନା ଚୂରମାର୍ ହୋଇଯାଏ ।

●



କଳନ୍ଧର ଦେବଙ୍କ ଦ୍ୱାରା ନିର୍ମିତ କୁଚିଣ୍ଡାର ଝୁଲା ପୋଲ

# ଭ୍ରମଣ ସାହିତ୍ୟ ବିଭାଗ

## (ଡାଏରୀର କିୟଦଂଶ)



---

## ପ୍ରାକ୍ ସୂଚନା

ଜଳନ୍ଧରଦେବ ସ୍ୱାସ୍ଥ୍ୟୋନ୍ନତିପାଇଁ ୧୯୧୦ରେ ଶ୍ରୀଲଙ୍କା ଯାତ୍ରା କରିଥିଲେ। ଏହି ଭ୍ରମଣର ଅନୁପମ ସ୍ମୃତିକୁ ସେ ଡାଏରୀ ଆକାରରେ ଲିପିବଦ୍ଧ କରିଥିଲେ। ସେହି ଡାଏରୀ ସମ୍ପାଦିତ ଅଂଶ ଡାଏରୀର କିୟଦଂଶ ଶୀର୍ଷକରେ ଉତ୍କଳ ସାହିତ୍ୟରେ ଧାରାବାହିକ ପ୍ରକାଶ ପାଇଥିଲା। ଉତ୍କଳ-ସାହିତ୍ୟ ୧୪।୧୨ ସଂଖ୍ୟାରୁ ୧୬।୫ ପର୍ଯ୍ୟନ୍ତ ପ୍ରକାଶିତ ଶ୍ରୀଲଙ୍କା ଭ୍ରମଣ ବୃତ୍ତାନ୍ତକୁ ପରବର୍ତ୍ତୀ ପର୍ଯ୍ୟାୟରେ ତାଙ୍କର ସୁଯୋଗ୍ୟ ସନ୍ତାନ ହରପ୍ରସାଦ ଦେବ 'ଡାଏରୀର କିୟଦଂଶ' ରୂପେ ପୁସ୍ତକାକାରେ (୧୯୫୧) ପ୍ରକାଶ କରନ୍ତି।

'ଡାଏରୀର କିୟଦଂଶ'ରେ ଶ୍ରୀଲଙ୍କା ଭ୍ରମଣ ବ୍ୟତିରେକେ ତାଳଚେର, ପୁରୀ, ଅଜନ୍ତା ଓ ଏଲୋରା ଭ୍ରମଣ ମଧ୍ୟ ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଥିଲା। ଉତ୍କଳ ସାହିତ୍ୟ ୩୧।୧୦ ସଂଖ୍ୟାରେ ତାଳଚେର ଭ୍ରମଣ, ୩୧।୧୧ ଓ ୩୨।୧ ରେ ତାଳଚେରଠାରୁ ପୁରୀ ଭ୍ରମଣ ଏବଂ ୩୨। ୧ ଓ ୩୨।୨ ସଂଖ୍ୟାରେ ଦାକ୍ଷିଣାତ୍ୟ ଭ୍ରମଣର ବୃତ୍ତାନ୍ତ ସନ୍ନିବେଶିତ।

ଜଳନ୍ଧରଙ୍କ ଭ୍ରମଣ କାହାଣୀ ସମକାଳୀନ ସମାଜର ଏକ ଜ୍ଞାନକୋଷ। ସେ ଦ୍ରଷ୍ଟବ୍ୟ ସ୍ଥାନର ସାଂସ୍କୃତିକ ଓ ସାମାଜିକ ପ୍ରେକ୍ଷାପଟକୁ ନିଜ ମାତୃଭୂମିର ସମାଜ ଜୀବନ ସହ ତୁଳନା କରିଛନ୍ତି। ପ୍ରକୃତିଠାରୁ ପ୍ରତ୍ନତତ୍ତ୍ୱ, କଳାଠାରୁ ସାହିତ୍ୟ ପର୍ଯ୍ୟନ୍ତ ସେ ସତ୍ୟ-ଶିବ-ସୁନ୍ଦରର ଉପାସକ। ତାଙ୍କର କ୍ରାନ୍ତିକାରୀ ସୂକ୍ଷ୍ମଦୃଷ୍ଟି ଯେଉଁଠାରେ ହେଲେ ବି ସତ୍ୟ ଦର୍ଶନକୁ ପ୍ରାଣଭରି ଶ୍ରଦ୍ଧାଞ୍ଜଳି ଜଣାଇଛି ଏବଂ କୁତ୍ସିତ ମନବୃତ୍ତିକୁ ନିଷ୍ଠୁର ଭାବେ ଖଣ୍ଡନ କରିଛି। ଭ୍ରମଣ ବିବରଣୀରେ ମଧ୍ୟ ଜାତୀୟ ଜୀବନର ସହାୟକ ତଥ୍ୟକୁ ସଂଯୋଜିତ କରିଛନ୍ତି; କୁସଂସ୍କାର ପୂର୍ଣ୍ଣ ଅଂଶର ସଂସ୍କାର ସାଧନ କରିଛନ୍ତି। ଏଣୁ ଜଳନ୍ଧରଙ୍କ ଭ୍ରମଣ ସାହିତ୍ୟ ଜାତୀୟ ଜୀବନକୁ ପ୍ରବୋଧିତ କରିଛି।

ଉତ୍କଳ ସାହିତ୍ୟରେ ପ୍ରକାଶିତ ଡାଏରୀର କିୟଦଂଶର ସିଂହଳ ଭ୍ରମଣ ଅଂଶ ଅବିକଳ ଭାବରେ ପୁସ୍ତକସ୍ଥ ହୋଇଛି। କେବଳ ନିମ୍ନୋକ୍ତ ପ୍ରଥମ ପାରାଟି ପୁସ୍ତକସ୍ଥ କରାଯାଇ ନାହିଁ।

''ମୋର ଡାଏରି ଲେଖିବା ଅଭ୍ୟାସ ନାହିଁ। କାରଣବଶତଃ ଆଠ ମାସ ଡାଏରି ଲେଖିବାକୁ ପଡ଼ିଥିଲା। ତହିଁରୁ କିୟଦଂଶ ସଂକ୍ଷେପ କରି ଲେଖିଥିଲି। ପ୍ରକାଶ କରିବାର ଇଚ୍ଛା ହେଲା। ଏହା ପଢ଼ିବାକୁ ପାଠକମାନଙ୍କୁ ସୁଖକର ହେବ କି ନାହିଁ, ସମ୍ପାଦକ ଜାଣନ୍ତି ଓ ପାଠକ ଜାଣନ୍ତି।''

ଡାଏରୀର କିୟଦଂଶ ଶୀର୍ଷକରେ ଭ୍ରମଣ କାହାଣୀଗୁଡ଼ିକ ସିଂହଳ ଭ୍ରମଣ, ତାଳଚେର ଭ୍ରମଣ, ପୁରୀ ଭ୍ରମଣ ଓ ଅଜନ୍ତା ଓ ଏଲୋରା ଭ୍ରମଣ ରୂପେ ସ୍ଥାନିତ କରାଗଲା। ସିଂହଳ ଭ୍ରମଣ ଅଂଶଟି ଜଳନ୍ଧରଙ୍କ ପୁତ୍ର ହରପ୍ରସାଦ ଦେବଙ୍କ ପ୍ରକାଶିତ ପୁସ୍ତକ ଅନୁସାରେ ସ୍ଥାନିତ କରାଗଲା। ହରପ୍ରସାଦଙ୍କ ଉଦ୍ୟମକୁ ସମ୍ମାନ ଜଣାଇ ତାଙ୍କର ଐତିହାସିକ ମୁଖବନ୍ଧଟି ଗ୍ରହଣ କରାଯାଇଛି।

**ସମ୍ପାଦକ**

# ମୁଖବନ୍ଧ

ମୋର ପୂଜ୍ୟପାଦ ପିତା ଶ୍ରୀଯୁକ୍ତ ଜଳନ୍ଧରଦେବଙ୍କୁ ଉତ୍କଳର ସାହିତ୍ୟ କ୍ଷେତ୍ରରେ ନୂଆ କରି ଚିହ୍ନାଇବାର ଧୃଷ୍ଟତା ମୋର ନାହିଁ। ଗତ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ସେ ସାହିତ୍ୟ ସାଧନାରେ ବ୍ୟାପୃତ ରହି ଉତ୍କଳର ସାହିତ୍ୟ କ୍ଷେତ୍ରରେ ଯେଉଁ ପ୍ରତିଷ୍ଠା ଅର୍ଜନ କରିଛନ୍ତି– ସେଇ ତାଙ୍କର ପରିଚୟପାଇଁ ଯଥେଷ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ।

ଏଇ ଦୀର୍ଘକାଳ ମଧରେ ସେ ଗଳ୍ପ, ଭ୍ରମଣକାହାଣୀ, ପ୍ରବନ୍ଧ, ନାଟକ ପ୍ରଭୃତି ବହୁ ଲେଖା ଲେଖିଛନ୍ତି ଏବଂ ତାହା ଉତ୍କଳର ତଦାନୀନ୍ତନ ପତ୍ର ପତ୍ରିକାମାନଙ୍କରେ ପ୍ରକାଶିତ ହୋଇ ବହୁଳ ଆଦର ପାଇଛି। କିନ୍ତୁ ପୁସ୍ତକାକାରରେ ଏ ସବୁକୁ ପ୍ରକାଶିତ କରି ବ୍ୟବସାୟର ପ୍ରସାର ବା ନାମର ବିଜ୍ଞାପନ ଦେବାର କଳ୍ପନା ତାଙ୍କର କେବେ ହେଁ ନ ଥିଲା ଆଉ ଏବବି ନାହିଁ।

ସେ ଆଜି ବୟସର କୋଠାରେ ଅଶୀରୁ ଊର୍ଦ୍ଧ୍ୱରୁ ଉପନୀତ। ତାଙ୍କ ପରେ ପରେ ହୁଏତ ତାଙ୍କର ସାହିତ୍ୟିକ ଜୀବନର ମହାର୍ଘ ସ୍ମୃତି ଛପି ଯିବ ଏଇ ଆଶଙ୍କାରେ କେବଳ ପିତୃସ୍ମୃତି ରକ୍ଷାକଳ୍ପେ, ଆଜି ମୁଁ ସେଇ ରଚନା ସବୁ ସଂଗୃହୀତ କରି ପ୍ରକାଶ କରିବାକୁ ଯାଉଛି। ମୋର କେତେକ ସାହିତ୍ୟିକ ବନ୍ଧୁ ମଧ ଏ କାର୍ଯ୍ୟ କରିବାକୁ ମୋତେ ବାରବାର ପ୍ରେରଣା ଦେଇଛନ୍ତି। ସେମାନଙ୍କ ଉପଦେଶ ଆଜି ଫଳବତୀ ହୋଇଛି।

ଶ୍ରୀଯୁକ୍ତ ଜଳନ୍ଧରଦେବ ୧୯୧୦ରେ ଲଙ୍କା ଭ୍ରମଣ କରିବାକୁ ଯାଇଥିଲେ। ସେତେବେଳେ ଅତି ଅନଭ୍ୟସ୍ତ ଭାବରେ ସେ ତାଙ୍କର ସେହି ଭ୍ରମଣର ଡାଏରୀ ଲେଖି ରଖିଥିଲେ। ତାହା ମଧ କେତେକ ସ୍ଥଳରେ ଅତି ସଂକ୍ଷେପରେ। ଦୀର୍ଘ ଚାଳିଶ ବର୍ଷ ତଳେ ଏ ଲେଖା ଉତ୍କଳ ସାହିତ୍ୟରେ ଧାରାବାହିକ ଭାବେ ପ୍ରକାଶ ପାଇଥିଲା। ଆଜି ତାହା ପୁସ୍ତକାକାଳରେ ପ୍ରକାଶିତ ହେଲା ବେଳକୁ ସ୍ୱର୍ଗତ ବିଶ୍ୱନାଥ କରଙ୍କର ମୋର ପିତାଙ୍କ ପ୍ରତି ଯେଉଁ ଶ୍ରଦ୍ଧା ଭାବଥିଲା, ମନ ଭିତରେ ସେ ସ୍ମୃତି ଜାଗୁଛି ଆଉ ମୁଁ ସେଇ ଏକନିଷ୍ଠ ସାଧକଙ୍କ ଆତ୍ମା ପ୍ରତି ଶ୍ରଦ୍ଧା ଜଣାଉଛି।

ଏଇ ଲେଖାଗୁଡ଼ିକ ବିଭିନ୍ନ ପତ୍ରପତ୍ରିକାର ସଂଗ୍ରହ କରିବାରେ ବାମଣ୍ଡାର ପ୍ରବୀଣ ସାହିତ୍ୟିକ ଶ୍ରୀ ବୃନ୍ଦାବନ ନାଥଶର୍ମା ମୋତେ ଯଥେଷ୍ଟ ସାହାଯ୍ୟ କରିଛନ୍ତି- ତାଙ୍କୁ ମୁଁ କୃତଜ୍ଞତା ଜଣାଉଛି।

ଏଇ ବହିଖଣ୍ଡକର ଲେଖାକାଳ ଓ ଆଜି ମଧରେ ପୃଥିବୀରେ ବହୁ ପରିବର୍ତ୍ତନ ଘଟିଯାଇଛି। ଲଙ୍କା ଆଜି ସ୍ୱାଧୀନ ହୋଇଛି। ତଥାପି ଆଜି ସେଇ ପୁରୁଣା ଲଙ୍କାର ବର୍ଣ୍ଣନା ପାଠକଙ୍କ ଆଗରେ ଉପସ୍ଥାପିତ କରାଯାଉଛି ବୋଲି ଯେପରି କେହି କ୍ଷୋଭ ପ୍ରକାଶ ନ କରନ୍ତି। ପୁରୁଣା କଥାର ମଧ ମୂଲ୍ୟ ଅଛି। ଶେଷରେ ମୋର ଆଶା, ଅତୀତ ଦିନରେ ଯେପରି ଶ୍ରୀଯୁକ୍ତ ଜଳନ୍ଧରଦେବଙ୍କ ଲେଖାକୁ ତାଙ୍କର ପାଠକମାନେ ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଦେଖାଇଥିଲେ ଆଜି ମଧ ସେଇପରି ଆଦରରେ ଗ୍ରହଣ କରିବେ।

କଟକ **ହରପ୍ରସାଦଦେବ**
ତା.୧୮.୧୦.୫୧

# ସିଂହଳ ଭ୍ରମଣ

ଆଜିକାଲି କୌଣସି ଯାପ୍ୟ ରୋଗ ହେଲେ ସ୍ୱସ୍ତ୍ୟୟନ ଓ ଗ୍ରହଯୋଗଦ୍ୱାରା ରୋଗମୁକ୍ତ ହେବାର ଦୂରାଶା ଯେଉଁମାନଙ୍କର ନାହିଁ, ସେମାନେ ଔଷଧର, ଚିକିତ୍ସାର, ବାୟୁ ପରିବର୍ତ୍ତନ ଓ ସ୍ଥାନ ପରିବର୍ତ୍ତନର ନିତାନ୍ତ ପକ୍ଷପାତୀ। ସେମାନେ ମନେ କରନ୍ତି, ଗ୍ରହ ଶାନ୍ତ ନିମନ୍ତେ ଅର୍ଥବ୍ୟୟ ହେବା ଅପେକ୍ଷା ଚିକିତ୍ସକର ଉଦରଶାନ୍ତି ନିମନ୍ତେ ବ୍ୟୟିତ ହେବା ଶ୍ରେୟସ୍କର। ଦକ୍ଷିଣା ପାଇଲେ ପୁରୋହିତ ସ୍ୱସ୍ତିବାଚନ କରି ବାଚନିକ-ଶାନ୍ତି ହାତରେ ଧରାଇ ଦେବେ ସିନା, ରେଳ କୋମ୍ପାନି ସେହି ଦକ୍ଷିଣା ପାଇଲେ ପ୍ରକୃତ ସ୍ୱାସ୍ଥ୍ୟକର ସ୍ଥାନରେ ନେଇ ପହଞ୍ଚାଇ ଦେବେ। ସ୍ଥାନର ଗୁଣ ଅଛି, ସ୍ଥାନବିଶେଷରେ ରୋଗର ହ୍ରାସ ବା ବୃଦ୍ଧି ହୁଏ, ଏହା ଅସ୍ୱୀକାର କରାଯାଇ ନ ପାରେ। ରୋଗ ବିଶେଷର ଉପଶମ ସକାଶେ ସ୍ଥାନ ବିଶେଷର ନିର୍ବାଚନ ହୋଇଅଛି। ଆଜିକାଲି କେତେକ ରୋଗୀଙ୍କ ପକ୍ଷେ ପୁରୀ ବା ଉଆଲଟେୟାର ସ୍ୱାସ୍ଥ୍ୟପ୍ରଦ ସ୍ଥାନ ବୋଲି ସ୍ଥିରୀକୃତ ହୋଇଅଛି। ମୋର ଶରୀର ଅସୁସ୍ଥ ଥିଲା। କଲିକତାର ଜଣେ ପ୍ରସିଦ୍ଧ ଡାକ୍ତର ଉଆଲଟେୟାରରେ କିଛିଦିନ ରହିବାକୁ ଉପଦେଶ ଦେଲେ। ତାଙ୍କ ମତରେ, ଔଷଧ ସେବନ ନିମନ୍ତେ ବା ରୋଗ ପରୀକ୍ଷା ନିମନ୍ତେ କଲିକତାରେ ରହିବା ଅପେକ୍ଷା ବିନା ଔଷଧରେ ସ୍ୱାସ୍ଥ୍ୟକର ସ୍ଥାନରେ ରହିବା ଭଲ।

ମେ ମାସ ୫ ତାରିଖ ସାନ୍ଧ୍ୟ ଆକାଶରେ ହେଲିର ଧୂମକେତୁ ପଶ୍ଚିମକୁ ମୁଣ୍ଡ ଓ ପୂର୍ବକୁ ପୁଚ୍ଛ ବିସ୍ତାର କରି ନକ୍ଷତ୍ରମାନଙ୍କ ସହିତ ଆକାଶର ଶୋଭା ବର୍ଦ୍ଧନ କରୁଥିଲା। ମୁଁ କଲିକତା ତ୍ୟାଗ କଲି। ଏ ଯାତ୍ରାରେ ହେଲିର ଧୂମକେତୁ ମୋର ବରାବର ଅନୁକୂଳ। ଯେଉଁ ଦିନ ଚନ୍ଦ୍ର, ଶୁକ୍ର ଓ ଧୂମକେତୁ ପୂର୍ବାକାଶରେ ସମବାହୁ ତ୍ରିଭୁଜ ଅଙ୍କନ କରିଥିଲେ ସେ ଦିନ ମୁଁ ଘରୁ ଅନୁକୂଳ କଲି। ଯେଉଁଦିନ ଧୂମକେତୁ ପୃଥିବୀ ଓ ସୂର୍ଯ୍ୟ ମଧରେ ଥାଇ ପୃଥିବୀକୁ ସ୍ୱପୁଚ୍ଛ ଦ୍ୱାରା ଆବୃତ କରି ରଖିଥିଲା ସେହି ଦିନ ରାଞ୍ଚି ତ୍ୟାଗ କରିଥିଲି। ଆଜି ପୁଣି ସେହି ଧୂମକେତୁକୁ ମସ୍ତକ ଉପରେ ଦେଖି କଲିକତା ତ୍ୟାଗ କଲି। ଗ୍ରୀଷ୍ମକାଳରେ କଲିକତା ବାସ କି କଷ୍ଟଦାୟକ, ତାହା ବୋଧହୁଏ ଅଧିକାଂଶ ପାଠକଙ୍କୁ ଜଣା। ସହର ତ୍ୟାଗ କରି ଗଙ୍ଗାକୂଳକୁ ଆସିବା ମାତ୍ରକେ ଶୀତଳ ପବନ ଧୀରେ ଧୀରେ ଶାରୀରିକ କ୍ଳାନ୍ତି ଦୂର କରିବାକୁ ଲାଗିଲା। ଦୁଃଖ ପରେ ସୁଖ, ସୁଖ ପରେ ଦୁଃଖ; ଏହା ଅନିବାର୍ଯ୍ୟ। ଷ୍ଟେସନରେ ଭିଡ଼। ଲୋକ ଗହଳ ଶାନ୍ତି ଟିକ ହରଣ କରିନେଲା। ଟିକଟ୍ କରିବା, ମାଲ୍ ଓଜନ କରିବା, ଏଣିକି ତେଣିକି ଆସିବା ଯିବାର ଝଂଝଟ୍ ଅଳ୍ପକ୍ଷଣ ସ୍ଥାୟୀ ହେଲେ ମଧ ବଡ଼ ବିରକ୍ତିଜନକ ଓ କଷ୍ଟଦାୟକ। ଗାଡ଼ିରେ ସ୍ଥାନାଧିକାର କଲା ଉତ୍ତାରୁ ଗାଡ଼ି ଛାଡ଼ିବାର ବିଳମ୍ବ ଘଟିଲେ କି ଯନ୍ତ୍ରଣା, କି ଉତ୍କଣ୍ଠା କି ମନଃକଷ୍ଟ। ଦୁଇ ମିନିଟ୍ ଅଟକିଲେ ମନେହୁଏ ଯେପରି କି ବହୁକାଳ ଚାଲିଗଲା। ପୁଣି ଗାଡ଼ି ଛାଡ଼ିବାର ଦୁଇ ମିନିଟ୍ ଆଗରୁ ସ୍ଥାନ ଅଧିକାର କରି ବସି ରହିଲେ ମନେ ହୁଏ ଯେପରି କି ଘଡ଼ିର କଣ୍ଟାଟି ଆଉ ଚଳୁ ନାହିଁ, ଚିରକାଳ ନିମନ୍ତେ ଅଟକି ରହିଲେ। ଯାହାହେଉ ସିଟି ବାଜିଲା। ମାନ୍ଦ୍ରାଜ ମେଲ୍ ପ୍ଲାଟଫର୍ମ ତ୍ୟାଗ କଲା।

ମୁଣ୍ଡରୁ କି ବୋଝ ଗଲା, କି ବେଦନା ଦୂର ହେଲା। ଗାଡ଼ି ପ୍ରବଳ ବେଗରେ ଧାବମାନ ହେବାକୁ ଲାଗିଲା। ଶୀତଳ ଓ ସୁଖକର ବାୟୁ ବାତାୟନ ଦେଇ ଯାବତୀୟ ତା'ପର ଶାନ୍ତିବିଧାନ କଲା। କିଛିକ୍ଷଣ ପରେ ଦିଗ୍‌ବଳୟରେ ସାମାନ୍ୟ ମେଘ କ୍ରୋଡ଼ରେ ବିଜୁଳିର ଆଭା ଦୃଷ୍ଟିଗୋଚର ହେଲା। କ୍ରମେ ସମସ୍ତ ଆକାଶ ମେଘାଚ୍ଛନ୍ନ ହୋଇ ବୃଷ୍ଟିପାତ ହେବାକୁ ଲାଗିଲା ଓ ସଙ୍ଗେ ସଙ୍ଗେ ପ୍ରବଳ ତୋଫାନ ବୋହିଲା। ଅଗତ୍ୟା କାଚ କବାଟ ଉତ୍ତୋଳନ କରିବାକୁ ହେଲା। ବିଶ୍ୱଚରାଚର ଅନ୍ଧକାରାବୃତ ହେଲା। କେବଳ ଗୋଟିଏ କ୍ଷୀଣ ତୈଳାଲୋକ ଆମ୍ଭମାନଙ୍କ ପ୍ରକୋଷ୍ଠକୁ ସାମାନ୍ୟ ଭାବରେ ଆଲୋକିତ କରୁଥାଏ। ମୋର ସହଯାତ୍ରୀ ଦୁଇ ଜଣ ଅବତରଣ କଲାରୁ ମୁଁ ମନେ କଲି, କ୍ଷୀଣାଲୋକଟି ନ ଥିଲେ ମୁଁ ସଂସାରର ଅପର ପଦାର୍ଥ ପରି ଅନ୍ଧକାରରେ ବୁଡ଼ି ରହିଥାନ୍ତି। ଏ ଚକ୍ଷୁଃଶୂଳରେ ପ୍ରୟୋଜନ କ'ଣ ? ମାତ୍ର ନିଭାଇବାର ଉପାୟ ନ ଥିଲା। କାଚ ପ୍ରତିରୁଦ୍ଧ ଆଲୋକିତ କୋଠରି ମଧରେ ଥାଇ ତମସାଚ୍ଛନ୍ନ ପ୍ରକୃତିର ଭୀଷଣ ଶୋଭା ଦେଖିବାକୁ ବାଧା ଜନ୍ମେ। ଭୀଷଣ ଝଟିକା ହେତୁରୁ କବାଟ ଖୋଲା ଯାଉ ନ ଥିଲା। ଅଥଚ ଗାଡ଼ି ଭିତରେ ଶାନ୍ତି ନାହିଁ। ଆଲୋକ ମାର୍ଗ ଦେଇ ଅବିରଳ ଜଳଧାରା ବହି ଜିନିଷପତ୍ର ନଷ୍ଟ କରିବାକୁ ଲାଗିଲା। ମାନ୍ଦ୍ରାଜ ମେଲ ଗାଡ଼ି ପରି ବୋଧହୁଏ ଅନ୍ୟ କୌଣସି ମେଲଗାଡ଼ି କଦର୍ଯ୍ୟ ନୁହେଁ। ବମ୍ବେ ମେଲ ଗାଡ଼ି ମଧ ଯାତ୍ରୀମାନଙ୍କ ପକ୍ଷରେ ସୁବିଧାଜନକ ଓ ସୁଖପ୍ରଦ। ଅନୁମାନ ହେଲା ବିଲାତୀ ଯାତ୍ରୀମାନେ ବମ୍ବେ ଦେଇ ଅନବରତ ଯିବା ଆସିବା କରନ୍ତି ବୋଲି ବମ୍ବେ ମେଲ୍ ଏଡ଼େ ସୁନ୍ଦର ଓ ସୁଖପ୍ରଦ, ଆଉ ମାନ୍ଦ୍ରାଜ ମେଲ୍ ଏତେ ହେୟ

ଓ କଦର୍ଯ୍ୟ। କ୍ରମେ ଝଡ଼ ଓ ବୃଷ୍ଟି ପ୍ରବଳ ହେବାକୁ ଲାଗିଲା। ଏଣୁ ନୈଶ୍ୟ ଦୃଶ୍ୟ ଦେଖିବାର ଆଶା ତ୍ୟାଗ କରି ନିଦ୍ରାଦେବୀଙ୍କୁ ଆହ୍ୱାନ କଲି। ଶୀତ ବାତ ସହାୟତାରୁ ନିଦ୍ରାଦେବୀ ଶୀଘ୍ର ମୋର ପ୍ରାର୍ଥନା ମଞ୍ଜୁର କରି ଚେତନ ଶକ୍ତି ହରଣ କଲେ। ପାହାନ୍ତା ପୂର୍ବରୁ ହଠାତ୍ ନିଦ୍ରାଭଙ୍ଗ ହେଲା। ଉଠି ଦେଖିଲି, ଗାଡ଼ି ମହାନଦୀର ମଧ୍ୟଭାଗରେ। ପୂର୍ବ ପରିଚିତ କଟକ ଷ୍ଟେସନକୁ ଉଠି ଦେଖିଲି। ଅଳ୍ପକ୍ଷଣ ପରେ ଗାଡ଼ି ଅଗ୍ରସର ହେଲା।

ଭୋର ଘ ୫।୩୪ ମିନିଟ୍ ସମୟରେ ଗାଡ଼ି ଖୋରଧା ଷ୍ଟେସନରେ ଉପନୀତ ହୋଇ ଦୀର୍ଘକାଳ ବିଶ୍ରାମ ନେଲା। ଏଠାରୁ ପୁରୀ ଯିବାର ଶାଖା ପଥ। ଅନେକ ଯାତ୍ରୀ ଜଗନ୍ନାଥଙ୍କୁ ଲକ୍ଷ୍ୟ କରି ମୁଣ୍ଡିଆ ମାଇଲେ। ଗୋଟାଏ, ଯୋଡ଼ାଏ ହରିବୋଲ ଡାକ ମଧ୍ୟ ଶୁଭିଲା। ଅନେକେ ଜଳଯୋଗର ବ୍ୟବସ୍ଥା କଲେ। ଇଞ୍ଜିନ ପ୍ରାତଃଭୋଜନ ଶେଷ କରି ଆପଣା ବୋଝ ନେଇ ଅଗ୍ରସର ହେବାକୁ ଲାଗିଲା। ଗାଡ଼ି ଯେତିକି ଅଗ୍ରସର ହେବାକୁ ଲାଗିଲା, ଦୃଶ୍ୟାବଳୀ ତେତିକି ଅଭିନବ ବୋଲି ବୋଧ ହେଲା ଏବଂ କ୍ରମେ ମାନ୍ଦ୍ରାଜ ପ୍ରେସିଡ଼େନ୍ସିର ସୀମାର ନିକଟବର୍ତ୍ତୀ ହେଉଥିବାର ଅନୁମାନ ହେଲା। ମଧ୍ୟପ୍ରଦେଶର ନିବିଡ଼ ପାର୍ବତ୍ୟ ପ୍ରଦେଶ ନିବାସୀ ବ୍ୟକ୍ତିର ଚକ୍ଷୁରେ ଆଜି ସକାଳୁ ଏକ ନୂତନ ଦୃଶ୍ୟ ଉଦ୍‌ଘାଟିତ ହେଲା। ଉଚ୍ଚ ପର୍ବତ ବେଷ୍ଟିତ ସଂକୀର୍ଣ୍ଣ ଉପତ୍ୟକା, ଉଦଣ୍ଡ ଶାଳବନ, ନିବିଡ଼ ବଂଶକୁଞ୍ଜ, ସିଆରୀ-ଅତଣ୍ଡି-ମାଧବୀ-ପଳାଶଜଡ଼ିତ ବୁଦା ବଣ, ଝରଣାଜଳ, ନଦୀ, ପ୍ରପାତ ପ୍ରଭୃତି ଦୃଶ୍ୟାବଳୀ ଦର୍ଶନରେ ଚିରାଭ୍ୟସ୍ତ ବ୍ୟକ୍ତି ହୃଦୟରେ ଦାକ୍ଷିଣାତ୍ୟ ପ୍ରଦେଶର ବିରଳ ପାଦପଯୁକ୍ତ ବନ୍ଧ୍ୟୋପଳ ମଣ୍ଡିତ ପର୍ବତ ଶ୍ରେଣୀର ଦୃଶ୍ୟ ଏକ ବିପରୀତ ଭାବ ଜାଗ୍ରତ କଲା। କିନ୍ତୁ ପ୍ରାକୃତିକ ଦୃଶ୍ୟ ସର୍ବତ୍ର ମନୋମୁଗ୍ଧକର। ଏକଦୃଶ୍ୟ ଅପର ଦୃଶ୍ୟ ସହିତ ତୁଳନୀୟ ନୁହେଁ। ଯାହା ଦେଖ ତାହାହିଁ ସୁଦୃଶ୍ୟ, ମନମୁଗ୍ଧକର ଓ ହୃଦୟହ୍ଲାଦକ। ସ୍ରୋତ ବିଧୌତ ନଦୀ ଗର୍ଭସ୍ଥ ଦନ୍ତୁରିତ କୃଷ୍ଣବର୍ଣ୍ଣ ପର୍ବତରେ ଯେ ମାଧୁରୀ ଦୃଷ୍ଟହୁଏ, ମହିମାପୂର୍ଣ୍ଣ ତୁଷାରମଣ୍ଡିତ ଧବଳଗିରିରେ ମଧ୍ୟ ସେହି ମାଧୁରୀ ପରିଲକ୍ଷିତ ହୁଏ। କେବଳ ଦେଖି ଜାଣିବାର କଥା। ଯେଉଁମାନେ ଆଜନ୍ମ ପ୍ରକୃତିର ବୈଚିତ୍ର୍ୟ ମଧ୍ୟରେ ଜଡ଼ିତ, ଯେଉଁମାନଙ୍କର ଦୈନନ୍ଦିନ କ୍ରୀଡ଼ାସାମଗ୍ରୀ ଖାଣ୍ଟି ପ୍ରାକୃତିକ, ପ୍ରାକୃତିକ ଭୀଷଣତା ଯେଉଁମାନଙ୍କୁ ଭୟ ଦେଖାଇବାର ତେଣେ ଥାଉ, ବରଂ ଆଶ୍ୱାସ ଦିଏ, ସେମାନଙ୍କ ପକ୍ଷରେ ପୃଥିବୀର ସବୁହିଁ ସୁନ୍ଦର। ଦେଖୁ ଦେଖୁ ଚିଲିକାହ୍ରଦ ଦୃଷ୍ଟିପଥରେ ପଡ଼ିଲା। କ୍ରମେ ରେଳଗାଡ଼ି ଯେତିକି ଜଳ ନିକଟବର୍ତ୍ତୀ ହେବାକୁ ଲାଗିଲା, ହୃଦୟରେ ଏକ ଅପୂର୍ବ ଭାବ ଜାତ ହେଲା। ଅରଣ୍ୟାନୀର ଦୃଶ୍ୟ ଓ ଏ ଦୃଶ୍ୟ ସମ୍ପୂର୍ଣ୍ଣ ଭିନ୍ନ, ତଥାପି ବିସ୍ତୀର୍ଣ୍ଣ ଓ ମହିମାପୂର୍ଣ୍ଣ। ବିସ୍ତୀର୍ଣ୍ଣ ବାରିରାଶିର ଏଡ଼େ ପ୍ରକାଣ୍ଡ ଦୃଶ୍ୟ ଗାଡ଼ିରେ ବସିଥିବା ବେଳେ ଦେଖାପଡ଼ିବା ଅନ୍ୟତ୍ର ବିରଳ। ସମୁଦ୍ର ପରି ଏହାର ତରଙ୍ଗ ନ ଥିଲା। ପୂର୍ବାହ୍ନ ସୂର୍ଯ୍ୟକର ପ୍ରତିଫଳିତ ହୋଇ ଗୋଟିଏ ପ୍ରକାଣ୍ଡ ଦର୍ପଣ ତୁଲ୍ୟ ଦେଖାଯାଉଥିଲା। ତୀରସ୍ଥ ପର୍ବତଶ୍ରେଣୀ ସେଥିରେ ଆପଣା ଆପଣା ମୁଖ ଦର୍ଶନ କରୁଥିଲେ। ଜଳସ୍ତରରୁ ଉନ୍ନତ ପ୍ରସ୍ତର ସମୂହ ଓ ଅଳ୍ପ ଉଚ୍ଚ ଭୂମି ଖଣ୍ଡମାନ ସାମୁଦ୍ରିକ ଜନ୍ତୁ କିମ୍ବା ହସ୍ତୀଗଣ ନିମଜ୍ଜନ ସ୍ନାନରେ ରତ ଥିଲା ପରି ଦେଖାଯାଉଥିଲେ। ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା କରିବା ବଡ଼ କଠିନ। ସେ ଯାହା ଥରେ ଦେଖେ ତାହା ଅନ୍ୟର ହୃଦୟଙ୍ଗମ କରାଇପାରେ ନାହିଁ। କବି ଓ ଚିତ୍ରକର ବଡ଼ ସ୍ପର୍ଦ୍ଧାଯୁକ୍ତ। କବି ମନେ କରନ୍ତି, ଲେଖନୀଦ୍ୱାରା ସେ ମାନବ ହୃଦୟର ପ୍ରକୃତ ଚିତ୍ରପଟ ଅଙ୍କନ କରିପାରନ୍ତି। ଚିତ୍ରକର ମନେ କରନ୍ତି, ସେ ଚିତ୍ର ଆଙ୍କିଦେଇ ମନୁଷ୍ୟଙ୍କୁ ପ୍ରକୃତ ଛବି ଦେଖାଇଦିଅନ୍ତି। ମୋ ବିବେଚନାରେ ଉଭୟେ ଭ୍ରାନ୍ତ। ଉଭୟେ ବୃଥା ଗର୍ବ କରନ୍ତି। କବିର ଶ୍ରେଷ୍ଠ ଲେଖା ଖଣ୍ଡିକ ନେଇ ପ୍ରକୃତ ବସ୍ତୁ ସଙ୍ଗେ ତୁଳନା କଲେ କିଛି ହିଁ ମେଳ ହୁଏ ନାହିଁ। କବି ପ୍ରାକୃତିକ ଦୃଶ୍ୟାବଳୀ ବର୍ଣ୍ଣନା କରିବାରେ ନିତାନ୍ତ ଅକ୍ଷମ। ଦୃଶ୍ୟବର୍ଣ୍ଣନା କରିବାକୁ ଯାଇ ସେ ନିଜର ମନ ଅନୁସାରେ ଅଲକ୍ଷିତ ଭାବରେ ଭିନ୍ନ ଭାବରେ ସମାବେଶ କରନ୍ତି। ଚିତ୍ରକର ଏ ସମ୍ବନ୍ଧେ କବି ଅପେକ୍ଷା ଶ୍ରେଷ୍ଠ। ଚିତ୍ରକର ହେଲେ ଦୃଶ୍ୟର ଭାବ ଆନୟନ କରିପାରନ୍ତି। ମାତ୍ର କବି ତହିଁର ସୀମା ସୁଦ୍ଧା ସ୍ପର୍ଶ କରିପାରନ୍ତି ନାହିଁ। ଚିତ୍ରକରର ଏହି କ୍ଷମତା ଥିଲେ କ'ଣ ହେବ, ଗତି, ବିଧି, ଭାବ, ଭଙ୍ଗୀ, ଫଳାଇବାର ଯୋଗ୍ୟତା ନାହିଁ। ସୁତରାଂ ଛବି ନିରସ ଓ ଭାବଶୂନ୍ୟ ହୋଇପଡ଼େ। ମାନସିକ ଭାବ ବ୍ୟକ୍ତ କରିବାରେ କବି ଶ୍ରେଷ୍ଠ। ବାହ୍ୟ ଦୃଶ୍ୟ ହୃଦୟଙ୍ଗମ କରିବାକୁ ଚିତ୍ରକର ସୁଦକ୍ଷ। କବି କିମ୍ବା କବିତାକୁ ଆମ୍ଭେମାନେ ଯେ ପ୍ରଶଂସା କରୁଁ ବା ବର୍ଣ୍ଣନା ଦେଖି ପ୍ରକୃତ ଓ ସ୍ୱାଭାବିକ ବୋଲି କହୁଁ, ତାହା କେବଳ ସଂସ୍କାରଜନିତ।

ଦେଖୁଁ ଦେଖୁଁ ଓଡ଼ିଶାର ସୀମା ଅତିକ୍ରମ କଲି। ଅଳ୍ପକ୍ଷଣ ପରେ ମଧ୍ୟ ଓଡ଼ିଆଭାଷୀଙ୍କି ଛାଡ଼ିବି। ବସ୍ତୁତଃ ତାହାହିଁ ଘଟିଲା। ପାଲୁମା, ପାଲୁମା, ପାଲୁଃ ଶବ୍ଦ କର୍ଣ୍ଣଗୋଚର ହେଲା। ସଙ୍ଗେ ସଙ୍ଗେ ମାଉଡ଼ିପାଣ୍ଡୁ, ମାଉଡ଼ିପାଣ୍ଡୁ, ମାଉଡ଼ିପାଣ୍ଡୁଉଃ ଡାକ ଦେଇ ଜଣେ କେତେଗୁଡ଼ିଏ ସୁପକ୍ୱ ଆମ୍ବ ଗାଡ଼ି ନିକଟକୁ ଆଣିଲା। ଜାଣିଲି ଏଠାରୁ ଖାଣ୍ଟି ତେଲଙ୍ଗା ଦେଶ। ଭାରତର

ନାନାସ୍ଥାନ ଭ୍ରମଣ କରିଅଛି । ଅନ୍ୟ ଦେଶବାସୀଙ୍କୁ ଆତ୍ମଭାବ ବୁଝାଇ ଦେବାର ଆଶା ଥାଏ । ମାତ୍ର ନିଜ ଦେଶର ଏତେ ନିକଟସ୍ଥ ଲୋକମାନଙ୍କୁ ନିଜର ଭାବ ବୁଝାଇ ହେବ ନାହିଁ । ଆଶ୍ଚର୍ଯ୍ୟର ବିଷୟ ।

ପୁଣି ନୂତନ ନୂତନ ଦୃଶ୍ୟ ଦେଖାଗଲା । ସ୍ଥାନେ ସ୍ଥାନେ ବିସ୍ତୀର୍ଣ୍ଣ ବାଲୁକାମୟ ଭୂମି– ଏଣେ ତେଣେ ଗୋଟିଏ ଗୋଟିଏ ମୁମୂର୍ଷୁ ବୃକ୍ଷ, ମଧ୍ୟାହ୍ନ ଖରା ଧୁ-ଧୁ କରୁଅଛି । ଚାରିଆଡ଼େ ମୃଗତୃଷ୍ଣା ଅବିରଳ ଧାରାରେ ପ୍ରବାହିତ ହେଉଅଛି । ସ୍ଥାନେ ସ୍ଥାନେ ରକ୍ତବର୍ଣ୍ଣ ଉଷର ଭୂମି, ଏଣେ ତେଣେ ଗୋଟାଏ ଗୋଟାଏ ପୁଷ୍କରିଣୀ, ଗେରୁଆ ରଙ୍ଗର ଅବ୍ୟବହାର୍ଯ୍ୟ ଦୂଷିତ ଜଳ । ମଧ୍ୟେ ମଧ୍ୟେ ଉର୍ବର କ୍ଷେତ୍ର । କୃଷକଗଣ ମଧ୍ୟାହ୍ନ ସୂର୍ଯ୍ୟତାପକୁ ଗ୍ରାହ୍ୟ ନ କରି ମାଣ୍ଡିଆ ରୋପଣ କରୁଅଛନ୍ତି । ମେଷ ପାଳକଗଣ ଶତାଧିକ ମେଷ ବା ଛାଗଳ କ୍ଷେତ୍ର ମଧ୍ୟରେ ରଖି ପହରା ଦେଉଅଛନ୍ତି । ଗ୍ରାମଗୁଡ଼ିକ କ୍ଷୁଦ୍ର-ଘରଗୁଡ଼ିକ ତାଳବରଡ଼ାଦ୍ୱାରା ଆଚ୍ଛାଦିତ । ଖଞ୍ଜା ଘର ଗୋଟିଏ ମଧ୍ୟ ନାହିଁ । ଦେଖିଲେ ମନେହୁଏ ଗ୍ରାମବାସୀଗୁଡ଼ିକ ଅତି ଗରିବ । ସହସା ଏକ ତାଳ ବଣ ଦେଖାଗଲା । ଏପରି ବଣ ପୂର୍ବରେ ଦେଖା ନ ଥିଲା । ଉପକୂଳ ଭିନ୍ନ ଏପରି ତାଳବଣ ଅନ୍ୟତ୍ର ହେବାର ସମ୍ଭବପର ନୁହେଁ । ଏପରି ତାଳବଣ ଦେଖି କରି ତାଡ଼କାସୁରୀର ଗୃହ ବର୍ଣ୍ଣନା କରି ଅଛନ୍ତି । ଏହି ପ୍ରଦେଶର ଜଣେ ଜଣେ ସ୍ତ୍ରୀ ପ୍ରକୃତ ପକ୍ଷରେ ଅସୁରୀ ପରି ଦେଖାଯାନ୍ତି ।

ଦିବା ଦୁଇ ଘଣ୍ଟା ବେଳେ ଗାଡ଼ି ବିଜୟନଗରରେ ପହଞ୍ଚିଲା । ଏଠାରେ ଜଳଯୋଗର ବ୍ୟବସ୍ଥା । ତାହା ସମାପନ ପରେ ପ୍ରକାଣ୍ଡ ଦୁଇ ପର୍ବତ ମଧ୍ୟ ଦେଇ ଗାଡ଼ି ଚାଲିବାକୁ ଲାଗିଲା । ଜିନିଷପତ୍ର ସଜ କରୁ କରୁ ଗାଡ଼ି ନିର୍ଦ୍ଦିଷ୍ଟ ସ୍ଥାନରେ ଆସି ପହଞ୍ଚିଗଲା ।

ଉଆଲଟେୟାର–ବହୁକ୍ଷଣ ଏହି ଷ୍ଟେସନ୍‌ରେ ଗାଡ଼ି ଅପେକ୍ଷା କରେ । କାରଣ ଇଞ୍ଜିନ ବଦଳା ଯାଇ ପଛ ପାଖେ ଲଗାଯାଏ । ଉପକୂଳରେ ଲାଇନ୍ ନେବା ନିମନ୍ତେ ଇଷ୍ଟକୋଷ୍ଟ ରେଲଉୟେ କୋମ୍ପାନୀ ବାଟ କାଟୁଥିଲେ । ମାତ୍ର ଅସୁବିଧା ହେବାରୁ କିଛିଦୂର ପଛକୁ ଫେରାଇ ଗାଡ଼ି ଅନ୍ୟବାଟରେ ନିଆଯିବାର ବନ୍ଦୋବସ୍ତ କଲେ । ଗାଡ଼ି ବହୁକ୍ଷଣ ରହେ । ଏଣୁ ବ୍ୟଗ୍ରତା ସହକାରେ କୁଲି ଖୋଜିବାର ଆବଶ୍ୟକ ନ ଥିଲା । ଟିକଟ୍ କଲେକ୍ଟର ଅନୁଗ୍ରହରୁ କୁଲି ଶୀଘ୍ର ମିଳିଗଲେ । ଝଟକା ବନ୍ଦୋବସ୍ତ କରି ଭାଇଜାଗପଟମ ଅଭିମୁଖରେ ପ୍ରସ୍ଥାନ କଲି । ସହରରେ ପ୍ରବେଶ ହେବା ମାତ୍ରକେ ଏକ ଅପୂର୍ବ ଦୃଶ୍ୟ ଦେଖିଲି । ଗୋଟିଏ ସ୍ୱର୍ଣ୍ଣାଳଙ୍କାର ଭୂଷିତା, ସୁବାସ ପରିହିତା, ଅବଗୁଣ୍ଠନବିହୀନା, ପରମାସୁନ୍ଦରୀ ଯୁବତୀ ଦୁଇ ଜଣ ବାଦ୍ୟକାରଙ୍କ ପଛେ ପଛେ ରାଜମାର୍ଗରେ ଯାଉଅଛନ୍ତି । କାରଣ କିଛି ହିଁ ଠିକ୍ କରିପାରିଲି ନାହିଁ । ଝଟକା ବାଲା ଖାଣ୍ଟି ତେଲଙ୍ଗା, ସୁତରାଂ ସେ ମୋହର କୌଣସି ସାହାଯ୍ୟକୁ ଆସିଲା ନାହିଁ । ଜୟପୁର ମହାରାଜଙ୍କ ଏଜେଣ୍ଟଙ୍କ ଗୃହକୁ ଗଲି । ସେ ମୋର ଆସିବା ସମ୍ବାଦ ପୂର୍ବରୁ ପାଇଥିଲେ । ମାତ୍ର ମୁଁ ୪।୫ ଦିନ ପରେ ଆସିବାର ଅନୁମାନ କରି ଗୃହର ବନ୍ଦୋବସ୍ତ କରିପାରି ନ ଥିଲେ । ଏଣୁ ସହର ମଧ୍ୟରେ ଥିବା ଗୋଟିଏ ଚୋଲଟ୍ରିରେ (ଛତ୍ରମ୍ ବା ଯାତ୍ରୀନିବାସ) ରହିବାର ବନ୍ଦୋବସ୍ତ କରି ଦେଲେ । ଏଠାରେ ମାଲପତ୍ର ରଖି ଓ ଚାକରକୁ ଛାଡ଼ି ଦେଇ ଉପକୂଳ ଭ୍ରମଣ ନିମନ୍ତେ ବାହାରିଲି । ଉପକୂଳରେ ପହଞ୍ଚିବା ପୂର୍ବରୁ ଶିକର କଣବାହୀ ଶୀତଳ ସମୀରଣ ଦୀର୍ଘ ପଥଶ୍ରାନ୍ତଜନିତ ତାପକୁ ଉପଶମ କରିବାକୁ ଲାଗିଲା । କୂଳରେ ଦଣ୍ଡାୟମାନ ହେବା ମାତ୍ରକେ ଉତ୍ତାଳ ତରଙ୍ଗମାଳା ଖେଳ ସଙ୍ଗେ ସଙ୍ଗେ ଭାବ ତରଙ୍ଗ ଖେଳା କରିବାକୁ ଲାଗିଲା । ବମ୍ବେ ଉପକୂଳରେ ଯେଉଁ ଦୃଶ୍ୟ ଆଜି ଉଆଲଟେୟାରରେ ମଧ୍ୟ ସେହି ଦୃଶ୍ୟ । ଯାହା ଅନନ୍ତ, ଯାହା ଅସୀମ, ତାହା ସର୍ବତ୍ର ଓ ସବୁକାଳରେ ସମାନ । ନୀଳ ସମୁଦ୍ର ଦୂର ଦିଗ୍‌ବଳୟରେ ନୀଳ ଆକାଶ ସଙ୍ଗେ ମିଶିଅଛି । ତଳେ ଅନନ୍ତ, ଉପରେ ଅନନ୍ତ, ଉଭୟର ସମନ୍ୱୟ ମନକୁ ଅନନ୍ତ ଭାବାପନ୍ନ କଲା । କିଛିକ୍ଷଣ ଏହି ଅନନ୍ତ ଆଡ଼କୁ ନିରୀକ୍ଷଣ କରୁ କରୁ ମନରେ ହେଲା– । ''ଆଜି କୋନ ଧନ ହାତେ ବିଶ୍ୱେ ଅମାରେ କୋନ ଦିନେ କରେ ବଞ୍ଚିତ ? ତବ ଚରଣ କମଲ ରତନ ରେଣୁକା ଅନ୍ତରେ ଆଛେ ସଞ୍ଚିତ !'' ଦେଖୁ ଦେଖୁ ସୂର୍ଯ୍ୟଦେବ ଅସ୍ତାଚଳ ଚୂଡ଼ାକୁ ସ୍ପର୍ଶ କଲେ । ଆକାଶ ନାନା ରଙ୍ଗରେ ବିଚ୍ଛୁରିତ ହେଲା । ଆକାଶର ଛାୟା ସମୁଦ୍ର ଜଳରେ ପ୍ରତିଫଳିତ ହୋଇ ଏକ ଅପୂର୍ବ ଶୋଭା ଧାରଣ କଲା । ମୁଁ ଆପଣା ବସାକୁ ଲେଉଟିଲି ।

ବସାଟି ବଡ଼ ସଡ଼କର ଏକ ଧାରରେ, ସୁତରାଂ ସହରର ଯାବତୀୟ ବ୍ୟାପାର ଦୃଷ୍ଟିଗୋଚର ହେଉଥାଏ । ସନ୍ଧ୍ୟା ହେଲାରୁ ପୁଣି ସୁମଧୁର ବାଦ୍ୟଧ୍ୱନି ଶୁଣିବାକୁ ପାଇଲି । ଉଠି ଦେଖିଲି କେତେଗୁଡ଼ିଏ ସୁଶ୍ରୀ ସୁବସନା, ସାଲଙ୍କୃତା ଅବଗୁଣ୍ଠନବିହୀନା ଯୁବତୀ ପୂର୍ବପରି ବାଦ୍ୟ ଓ ରୋଷନାଇ ପଛେ ପଛେ ଯାଉଛନ୍ତି । କାରଣ ଜ୍ଞାତ ହେବାକୁ ବଡ଼ କୌତୂହଳ ଜାତ ହେଲା । ଏଣୁ ସେମାନଙ୍କର ପଶ୍ଚାତ୍‌ଗାମୀ ହେଲି । କିଛି ଦୂର ଗଲା ପରେ ଜଣେ ବୃଦ୍ଧ ମାରୁଆଡ଼ି ଆପଣା ଦୋକାନ ପିଣ୍ଡାରେ ନଡ଼ିଆ ହୁକା ଟାଣୁ ଟାଣୁ ଏହି ଦୃଶ୍ୟ ଦେଖିବାରେ ତନ୍ମୟ ହୋଇ ବସିଥିବାର ଦେଖିଲି । ଏ ଜାତିର ଅଗନ୍ତବ୍ୟ

ସ୍ଥାନ ନାହିଁ। ବ୍ୟବସାୟ କ'ଣ, ଏମାନେ ବେଶ୍ ବୁଝନ୍ତି। ସେମାନେ ଯେଉଁଠାରେ ଦୁଇ ପଇସା ରୋଜଗାରର ଆଶା ଦେଖନ୍ତି, ସେଠାରେ ବସବାସ କରି ରହନ୍ତି। ଭିଜାଗାପଟ୍ଟମ୍‌ରେ ଦୁଇ ଜଣ ମାରୁଆଡ଼ି ଅଛନ୍ତି। ବୃଦ୍ଧ ନିକଟରେ ଠିଆ ହୋଇ ସମ୍ବୋଧନ କଲି– ଭ୍ରୂକ୍ଷେପ ନାହିଁ। ଦୋକାନ ବନ୍ଦ କଲାରୁ ଅନ୍ୟ ସଙ୍ଗରେ ଏହାଙ୍କର ସମ୍ପର୍କ କ'ଣ ? ଜିନିଷର ଦର ପଚାରିବାରୁ ଓ ଦୁଇ ମାସ ଅବସ୍ଥାନ କରିବାର ବାସନା ଜ୍ଞାପନ କରିବାରୁ ବୃଦ୍ଧ ଆଳାପ କରିବାକୁ ଲାଗିଲା। ମୁଁ ବୃଦ୍ଧକୁ ସ୍ତ୍ରୀମାନଙ୍କର ଏତାଦୃଶ ଗତିବିଧିର କାରଣ ପଚାରିଲି। ବୃଦ୍ଧ କହିଲା, ବାବୁସାହେବ, ହାମ୍ ବିଶ୍ ବରଷ ଇସ୍ ଜାଗାପର ରହତାହୁଁ, ଲେକିନ୍ ଇନ୍ ଲୋକକା ଢଙ୍ଗ୍ ଆଜତକ୍ ସମଝା ନାହିଁ।'' ମନେକଲି ଲୋକଟା ଭାରି ଗବେଷଣା ପ୍ରିୟ କି ନା କୋଡ଼ିଏ ବର୍ଷରେ ତାହା ବୁଝିପାରିଲା ନାହିଁ। କହିଲା, ଏତିକି ଜାଣେ ଯେ ନିମନ୍ତ୍ରଣ ଦେବାକୁ ସ୍ତ୍ରୀମାନେ ଏପରି ଯାନ୍ତି। ଆଜି କି ନିମନ୍ତେ ଯାଉଅଛନ୍ତି, ତାହାକୁ ହିଁ ଜଣା। ପୁଣି କହିଲା, ଏ ଦେଶର ସ୍ତ୍ରୀମାନେ ପୁରୁଷ ଓ ପୁରୁଷମାନେ ସ୍ତ୍ରୀ। ଯେଉଁ ଲୋକ କୋଡ଼ିଏ ବର୍ଷ ରହି ସୁଦ୍ଧା ଦେଶର ଢଙ୍ଗ ବୁଝିବାକୁ ଅକ୍ଷମ, ସେ ମନ୍ତବ୍ୟ ପ୍ରକାଶ କରିବାକୁ ଭାରି ମଜଭୁତ୍। ଜାତିଗତ ବିଦ୍ୱେଷ ହିଁ ଏତାଦୃଶ ମତର ମୂଳ କାରଣ। ବୃଦ୍ଧ ସହିତ ବହୁ ବାକ୍ୟ ବ୍ୟୟ ନ କରି ବସାକୁ ଫେରିଲି। ପରେ ଜାଣିପାରିଲି ଯେ କୌଣସି ନୈମିତ୍ତିକ କାର୍ଯ୍ୟୋପଲକ୍ଷରେ ସ୍ତ୍ରୀମାନେ ନିମନ୍ତ୍ରଣ ଦେବାକୁ ଯାନ୍ତି। ସ୍ତ୍ରୀମାନେ ନିମନ୍ତ୍ରଣ ଦେବାକୁ ନ ଗଲେ ନିମନ୍ତ୍ରିତ ଘରର ସ୍ତ୍ରୀମାନେ ଆସନ୍ତି ନାହିଁ। ପ୍ରଥାଟି ଉତ୍ତମ ବୋଲାଯିବ। ଏ ଦେଶର ଭଦ୍ରମହିଳାମାନେ ପର୍ଦାନସିନ ନୁହନ୍ତି। ଏଣୁ ସର୍ବସମକ୍ଷରେ ପାଦଚାରିଣୀ ହୋଇଯାନ୍ତି। ମୋ ପକ୍ଷରେ ଏ ଦୃଶ୍ୟ ନୂତନ ହେବା ଯୋଗରୁ ଏଡ଼େ କୌତୂହଳୀ ହୋଇଥିଲି। କୌଣସି ପ୍ରକାରେ ରାତ୍ରି ଯାପନ କଲି। ବସା ସ୍ଥିର ହେବାଯାଏ ଚାରି ଦିନ ଏଠାରେ ରହିଲି।

**ଭିଜାଗାପଟ୍ଟମ–** ଏହାକୁ ବିଶାଖାପାଟଣା ମଧ୍ୟ ବୋଲନ୍ତି। ଏହା ଗୋଟିଏ ପ୍ରାଚୀନ ସହର। ପ୍ରଥମରେ ଓଲନ୍ଦାଜମାନେ ଏଠାରେ ଉପନିବେଶ ସ୍ଥାପନ କରିଥିଲେ। ସମୁଦ୍ର କୂଳେ କୂଳେ ସମାନ୍ତରାଳଭାବରେ ଏହାର ବସତି। ଦକ୍ଷିଣରେ ଡଲଫିନ୍ ନୋଜ ପର୍ବତ, ଉତ୍ତରରେ ଉଆଲଟେୟାର। ସମୁଦ୍ରକୂଳରେ ଗୋଟାଏ ସଡ଼କ ଉଆଲଟେୟାର ପର୍ଯ୍ୟନ୍ତ ବିସ୍ତୃତ। ସହରରେ ଗଭର୍ଣ୍ଣମେଣ୍ଟ ଅଫିସ୍ ଭିନ୍ନ ଆଧୁନିକ ଧରଣର ଭଲ ପକ୍‌କା ଘର ନାହିଁ। ସାଧାରଣ ରକମର ପ୍ରାଚୀନ ଧରଣର ଅଟ୍ଟାଳିକା ଓ ଖପରଘର ଅଛି। ସହରଟି ତାଦୃଶ ସୁଦୃଶ୍ୟ ନୁହେଁ। ଏଥିରେ ଲୋକସଂଖ୍ୟା ୩୫୦୦୦ ରୁ କିଛି ଅଧିକ। ବନ୍ଦର ନ ଥିଲେ ମଧ୍ୟ କୋଇଲା ନେବା ନିମନ୍ତେ କୌଣସି କୌଣସି ଜାହାଜ ଏଠାରେ ଆଶ୍ରୟ ନିଅନ୍ତି। ଏଠାରେ ଗୋଟିଏ ବତିଘର ଅଛି। ଖାଦ୍ୟପଦାର୍ଥ ଶସ୍ତା– ବିଶେଷତଃ, ସପୁରୀ ପଣସ ଓ ଅନ୍ୟ କେତେକ ଫଳ। ୯ ତାରିଖ ଦିନ ଜୟପୁର ମହାରାଜାଙ୍କଠାରୁ ସମ୍ବାଦ ପାଇଲି ଯେ ତାଙ୍କ ଅନୁରୋଧକ୍ରମେ ମହାରାଣୀ ଗଜପତ୍ ରାଓ ତାଙ୍କର ମେସନ୍ ବିଲ୍ଡିଙ୍ଗ ନାମକ ଗୃହରେ ଦୁଇ ମାସ ରହିବା ନିମନ୍ତେ ଅନୁମତି ଦେଇଅଛନ୍ତି। ଏଠାକୁ ମୋର ବସା ପରିବର୍ତ୍ତନ କଲି। ଉଆଲଟେୟାର ଗ୍ରାମର ଉତ୍ତର ପ୍ରାନ୍ତରେ ଏହି ଗୃହଟି ଅବସ୍ଥିତ। ଏହି ସ୍ଥାନକୁ ଗଲ୍‌ଫଲିଙ୍କ ବୋଲନ୍ତି। ଏହାର ତିନି ପାଖ ସମୁଦ୍ର ବେଷ୍ଟିତ ବୋଇଲେ ଚଳେ। ପଶ୍ଚିମରେ କୁରପମ ରାଜାଙ୍କର ଘର। ଉତ୍ତରରେ ଜଲାର ପେଟ (ମାଛୁଆମାନଙ୍କ ଗ୍ରାମ) ଗ୍ରାମ ଏଠାରୁ ଅର୍ଦ୍ଧମାଇଲ। ଏହା ଗୋଟିଏ ନିର୍ଜନ ସ୍ଥାନ। ଗୃହଟି ଦ୍ୱିତଳ। ଏହି ଗୃହ ୧୮୩୪ ସାଲରେ ମେସନ୍ ସାହେବଙ୍କଦ୍ୱାରା ନିର୍ମିତ ହୋଇଥିଲା। ପରେ ମହାରାଜ ଗଜପତ୍ ରାଓ ଏହାକୁ କ୍ରୟ କରିଥିଲେ। ଗୃହର ଚତୁର୍ଦ୍ଦିଗ ଉନ୍ମୁକ୍ତ। ସମୁଦ୍ରବାୟୁ ଗୃହକୁ ସୁଶୀତଳ କରୁଅଛି। ଲୋକ ସମାଗମ ନାହିଁ, ନୀବ ଓ ଜନଶୂନ୍ୟ। ଏକଶତ ଲୋକ ରହିବା ଉପଯୁକ୍ତ ଘର ମା ବର୍ତ୍ତମାନ ଅଧିବାସୀ ଚାରି ଜଣ। ଉପର ତଳରେ କେବଳ ଏକାକୀ ମୁଁ। ବାୟୁ ପରିବର୍ତ୍ତନ ନିମନ୍ତେ ଓଆଲଟେୟାରରେ ଏ ଗୃହଟି ଅଦ୍ୱିତୀୟ। ରାତ୍ରି ହେଲାକ୍ଷଣି ସମସ୍ତ ନିସ୍ତବ୍ଧ। କେବଳ ପେଚକମାନଙ୍କର ଧ୍ୱନି ଓ ଶୃଗାଳର ରବ ଏବଂ ସମୁଦ୍ରର ଘୁ ଘୁ ଶବ୍ଦ ନିର୍ଜନତାର ପରିଚୟ ଦେଉଥିଲା ଓ ନିସ୍ତବ୍ଧତାକୁ ଭଙ୍ଗ କରି ସୁଦ୍ଧା ଶାନ୍ତି ଆନୟନ କରୁଥିଲା। ସମୟ ସମୟରେ ସାମୁଦ୍ରିକ ସର୍ପଭୋଜି ଶ୍ୟେନପକ୍ଷୀର ସ୍ୱପ୍ନଜନିତ କେଁ କେଁ ଶବ୍ଦ ନିଦ୍ରା ଭଙ୍ଗ କରୁଥିଲା। ଏହି ଘରେ ଭୂତ ଦେଖାଯିବାର ପ୍ରବାଦ ଅଛି। ମୂର୍ଖଙ୍କ କଥା ତ ଛାଡ଼। ଆଜିକାଲି ନବ୍ୟ ଶିକ୍ଷିତମାନେ ମଧ୍ୟ ଭୂତ କଥା ବିଶ୍ୱାସ କରନ୍ତି।

Theosophical Society ଗୋଟାଏ ଅଦ୍ଭୁତ ସମାଜ। ଲୋକେ ଏହାର ସଭ୍ୟ ହେବା ମାତ୍ରକେ ପଣ ପଣ ଭୂତ ଦେଖନ୍ତି। ଆଜନ୍ମ କେତେ ଭୂତବାସ, କେତେ ଶ୍ମଶାନ, କେତେ ନିର୍ଜନ ସ୍ଥାନ ଦେଖିଲି, ମାତ୍ର ଦିନେ ହେଲେ ଭୂତର ନାମଗନ୍ଧ ପାଇଲି ନାହିଁ। ମେସନ୍ ବିଲଡିଙ୍ଗ୍‌ରେ ଇଂରାଜ ଭୂତ। ଏଣୁ ମନେ କରିଥିଲି, ଇଂରେଜମାନେ ଯେମନ୍ତ ନିର୍ଭୀକ, ଭୂତମାନେ ତେମନ୍ତ ବା ତତୋଧିକ ନିର୍ଭୀକ ହୋଇଥିବେ। ସୁତରାଂ ନେଟିଭର ଗନ୍ଧପାଇ ନିଶ୍ଚୟ ଭୟ ଦେଖାଇବେ। ମାତ୍ର

ଦୁଇମାସ ମଧ୍ୟରେ କୌଣସି ଉପଦ୍ରବ ଦେଖାଗଲା ନାହିଁ, ଏଣୁ ନିରାଶ ହେଲି। Theosophist ମାନେ ସତ୍ୟ ସତ୍ୟ ଭୂତ ଦେଖନ୍ତି କି ନିଜେ ଭୂତ ପାଳଚନ୍ତି ତାହା ଘୋର ସନ୍ଦେହର କଥା।

ଉଆଲଟେୟାର ଗୋଟିଏ ପାର୍ବତ୍ୟ ଗ୍ରାମ। ଏହା ସହର ନୁହେଁ। ସ୍ୱାସ୍ଥ୍ୟକର ସ୍ଥାନ ବୋଲି ଏହାର ଏଡ଼େ ଗୌରବ। ଏହାକୁ ଭାରତରେ ବ୍ରାଇଟନ (Brighton) ବୋଲନ୍ତି। ଦିନ, ରାତ୍ରି ଉତ୍ତାପର ତାରତମ୍ୟ ଅତି ଅଳ୍ପ, ନଗଣ୍ୟ ବୋଇଲେ ଚଳେ, ଏଣୁ ଏ ସ୍ଥାନ ଏତେ ସ୍ୱାସ୍ଥ୍ୟକର। ଉପକୂଳରେ କେତୋଟି କ୍ଷୁଦ୍ର କ୍ଷୁଦ୍ର ପାହାଡ଼ ଅଛି। ସେଗୁଡ଼ିକରେ ଗଭର୍ଣ୍ଣମେଣ୍ଟ ଅଫିସରମାନେ ଘର କରିଅଛନ୍ତି। ମୋର ଦୈନନ୍ଦିନ କାର୍ଯ୍ୟ ଥିଲା– ତରଙ୍ଗ ବିଧୌତ ବାଲୁକା ଉପରେ ମାଇଲିଏ, ଦୁଇ ମାଇଲ ଭ୍ରମଣ କରୁ କରୁ ସାମୁଦ୍ରିକ ଗଙ୍ଗଶୁକ୍ତି ପ୍ରଭୃତି ଅନ୍ୱେଷଣ। ଦଶ ଘଣ୍ଟାରେ ସମୁଦ୍ର ସ୍ନାନ, ତିନି ଘଣ୍ଟାଠାରୁ ସନ୍ଧ୍ୟା ସାତ ଘଣ୍ଟା ପର୍ଯ୍ୟନ୍ତ ସେହିପରି ଭ୍ରମଣ ଓ ଉପକୂଳରେ ଉପବେଶନ। ସାତ ଘଣ୍ଟା ପରେ ଭୋଜନ ଉତ୍ତାରୁ ଅଧ୍ୟୟନ କିମ୍ବା ନକ୍ଷତ୍ର ପର୍ଯ୍ୟବେକ୍ଷଣ। ଅନେକ କହନ୍ତି ବାକ୍ୟାଳାପ ବ୍ୟତିରେକେ ଏତେ ଦୀର୍ଘକାଳ ଜଣେ ମନୁଷ୍ୟ କିପରି କର୍ତ୍ତନ କରିପାରିବ ? ବାକ୍ୟାଳାପ, ହସ ଥଟ୍ଟା, ଗଳ୍ପ ତ କେବଳ ଚିନ୍ତା ଦୂର କରିବାର ଓ କାଳକ୍ଷେପ କରିବାର ଉପାୟ। ତେବେ ପୁସ୍ତକ ରୂପ ଚିର ବନ୍ଧୁଙ୍କ ପରାମର୍ଶ ଅନୁସାରେ ଯେଉଁ ବ୍ୟକ୍ତି ପ୍ରକୃତିର ପ୍ରତ୍ୟେକ ବସ୍ତୁର ଆମୋଦ ପ୍ରମୋଦ ଉପଭୋଗ କରିବାର ଆଶା କରେ, ତାହା ପ୍ରତି ଜନତା କ'ଣ, ନିର୍ଜନତା କ'ଣ, ସବୁ ତ ସମାନ। ରାତ୍ରିରେ ଏକ ଭାବରେ ଅନନ୍ତର ଚିନ୍ତା, ଦିନରେ ଅନ୍ୟଭାବରେ ସେହି ଅନନ୍ତର ଚିନ୍ତା, ଏଥିରୁ ବଳି ସୁଖ ଆଉ କ'ଣ ଅଛି ?

ଏହି କେତେ ଦିନ ମଧ୍ୟରେ ଅନେକ ସାମୁଦ୍ରିକ ଜୀବର ଖୋଳ, ଅସ୍ଥି ଓ ଅନେକ ଜୀଅନ୍ତା ଜୀବପାଇ ଆପଣାକୁ କୃତାର୍ଥ ମନେ କରିଅଛି। ଜୀବିତ ପ୍ରାଣୀ ମଧ୍ୟରେ ପ୍ରଥମେ ଗୋଟାଏ ସାମୁଦ୍ରିକ ସର୍ପ ସୂର୍ଯ୍ୟାସ୍ତ ସମୟରେ ଦେଖିପାରିଲି। ଏହା ଦେଖିବାକୁ ଠିକ୍ ରଣାସାପ ପରି। ହାତରେ ଥିବା ବାଡ଼ିରେ ଅସଂଖ୍ୟ ଭୟାନକ, ବିଷାକ୍ତ ସର୍ପ ପଞ୍ଚତ୍ୱ ପ୍ରାପ୍ତ ହୋଇଥିଲେ ସୁଦ୍ଧା ଏହାକୁ ଦେଖିବା ମାତ୍ରକେ ଦେହ ଚମକି ଉଠିଲା। ଅମନଯୋଗୀ ହୋଇ ଯାଉଁ ଯାଉଁ ବୀଚି ସହସା ପାଦ ତଳରେ ଏହି ସର୍ପକୁ ପକାଇଦେଇ ଅପସୃତ ହେଲା। ପୁଣି ତରଙ୍ଗ ନେଇଯିବ ବୋଲି ବାଡ଼ିଦ୍ୱାରା ଉପରକୁ ଉଠାଇଲି। ବସାକୁ ଆଣିବାର ଉପାୟ ନ ଥିଲା। ପରୀକ୍ଷା କରିବାର ଅବସର ନ ଥିଲା, ଏଣୁ ଛାଡ଼ି ଆସିବା ଅପେକ୍ଷା ମାରି ରଖିବା ଭଲ ବୋଲି ବିବେଚନା କଲି। ଏହାର ଲାଞ୍ଜ ଚେପ୍ଟା– ସନ୍ତରଣ କରିବା ନିମନ୍ତେ ଏହି ପ୍ରାକୃତିକ ପରିବର୍ତ୍ତନ ଘଟିଅଛି। ସେ ଜଳରେ ସନ୍ତରଣ କରିପାରେ। ମାତ୍ର ଭୂମିରେ ଚାଲିପାରେ ନାହିଁ। ଏଥିଉତ୍ତାରୁ ଅନେକ ସର୍ପ ଦେଖିଲି, ମାତ୍ର କ୍ରୂରକାର୍ଯ୍ୟ କରିବାର ଆଉ ଆବଶ୍ୟକ ହୋଇ ନ ଥିଲା। ସ୍ଥଳରେ ଏହା ଏଡ଼େ ଅସମର୍ଥ ଯେ, ଏହାକୁ ଧରି ବାଲି ଉପରକୁ ଆଣି ଛାଡ଼ି ଦେଲେ ପୁଣି ନିଜେ ଜଳ ନିକଟକୁ ଯାଇପାରେ ନାହିଁ। ପୁଣି ନେଇ ତରଙ୍ଗରେ ଛାଡ଼ି ଦେବାକୁ ହୁଏ। ମୁଁ ଧରିଥିବା କେତେକ ଗୁଡ଼ିଏ ଜୀବର ବିବରଣ ଏଠାରେ ଦେବା ଅସଙ୍ଗତ ହେବ ନାହିଁ ମନେ କରୁଅଛି।

**Jelly fish (ଜେଲିଫିସ୍) :** ଦୈନିକ ଦୁଇ ଚାରି ଗୋଟା ଧରାଯାଇଥାନ୍ତି। ଛୋଟଗୁଡ଼ିକ ଠିକ୍ ତାଳସଜ ପରି ଦେଖାଯାନ୍ତି। ଛୋଟଗୁଡ଼ିକର ଗୋଡ଼ ନ ଥାଏ। ବଡ଼ମାନଙ୍କର ଚାରି ଯୋଡ଼ା ଗୋଡ଼ ଥାଏ ଏବଂ ଏହାଛଡ଼ା ବାଳତୁଲ୍ୟ ସରୁ ସରୁ ସ୍ପର୍ଶେନ୍ଦ୍ରିୟ ଥାଏ। ଉପରିଭାଗ ଅର୍ଦ୍ଧ ଗୋଲାକାର ବା ଝାଲରବାଲା ଛତାପରି। ତଳକୁ ଉପରକୁ ଓ ଇତସ୍ତତଃ ଗମନ କ୍ରିୟା, ଶାରୀରିକ ସଙ୍କୋଚ ଓ ପ୍ରସାରଣ ଦ୍ୱାରା ଓ ଗୋଡ଼ ହଲାଇବା ଦ୍ୱାରା ନିଷ୍ପନ୍ନ ହୁଏ। ଏ ଜୀବର ରକ୍ତ ଅସ୍ଥି ମାଂସ କିଛି ନାହିଁ। ଏହାର ଦେହ ଜଳୀୟ ପଦାର୍ଥରେ ନିର୍ମିତ। ସୂର୍ଯ୍ୟତାପରେ କେତେକ ଘଣ୍ଟା ରଖିଦେଲେ ଫୁଟିକାକୁଡ଼ି ମିଳାଇ ଗଲାପରି ଏହାର ଶରୀର ମିଳାଇଯାଏ। କେବଳ ଚିହ୍ନମାତ୍ର ରହେ। ଏକ ପ୍ରକାର ବିଷାକ୍ତ ଜେଲି ଫିସ୍ ଅଛନ୍ତି। ଏମାନଙ୍କ ବଂଶ ବୃଦ୍ଧି କ୍ରମ ଓ ଭକ୍ଷଣ ପ୍ରଥା ଅତି ଆଶ୍ଚର୍ଯ୍ୟଜନକ। ମୁଁ ଗୋଟାଏ ଗୋଟାଏ ପାଞ୍ଚ ଇଞ୍ଚର ଜେଲିଫିସ୍ ପାଇଅଛି।

**Sea-Urchins (ସାମୁଦ୍ରିକ ଝିଙ୍କ):** ଦିନେ ବୁଲୁ ବୁଲୁ ଦେଖିଲି, ଦୂରରେ ଗୋଟାଏ କଳା ପଦାର୍ଥ। ଢେଉଦ୍ୱାରା ବାଲି ଉପରେ ଏଣିକି ତେଣିକି ଗଡ଼ି ଯାଉଅଛି। ହଠାତ୍ ଦୌଡ଼ିଗଲି ଓ ବାଡ଼ିଦ୍ୱାରା ତାହାକୁ ଅଟକାଇଲି। ଦେଖିଲି, ଗୋଟିଏ ସାମୁଦ୍ରିକ ଝିଙ୍କ। ଆନନ୍ଦର ସୀମା ରହିଲା ନାହିଁ। ଉପରକୁ ଆଣି ପରୀକ୍ଷା କଲି ଯେ ଏହାକୁ ଧରିବାରେ ଭୟର କାରଣ କିଛି ନାହିଁ। କାଠିଗୁଡ଼ିକୁ ହଲାଇ ପାରେ, ମାତ୍ର ଭୁସିଦେଇପାରେ ନାହିଁ। ବସାକୁ ଆଣିଲି। ଗୋଟାଏ ପାତ୍ରରେ ଜଳଦେଇ ଏହାକୁ ଛାଡ଼ିଦେଲି। ଏହାର ଗତିବିଧି ପର୍ଯ୍ୟବେକ୍ଷଣ କରୁଁ କରୁଁ ପଞ୍ଚତ୍ୱ ପ୍ରାପ୍ତ ହେଲା। ତହିଁର ଦୁଇ ଚାରି ଦିନ ପରେ ଦିନେ ମଧ୍ୟାହ୍ନ ସମୟରେ ସମୁଦ୍ରରେ ଅତ୍ୟନ୍ତ ଭଟ୍ଟା ହେଲା। ଏଣୁ ଅନେକ ଦୂର ଭିତରକୁ ଯାଇ ଅନ୍ୱେଷଣରେ ତତ୍ପର ହେଲି। ଗୋଟାଏ

ଗୋଟାଏ ପଥରରେ ଅନେକ ଝିଙ୍କ ଦେଖିବାକୁ ପାଇଲି । ବଡ଼ ବଡ଼ ପାଞ୍ଚ ଗୋଟା ଝିଙ୍କ ନେଇ ଆସିଲି । କଲିକତାର ଚିଡ଼ିଆଖାନାକୁ ପଠାଇବାର ଅଭିପ୍ରାୟରେ ହାଣ୍ଡିମାନଙ୍କରେ ସମୁଦ୍ରଜଳ ଭରି ଦୁଇ ଚାରିଟା ପଥର ଦେଇ ଏମାନଙ୍କୁ ଛାଡ଼ିଦେଲି । ମାତ୍ର ଚବିଶ ଘଣ୍ଟାରୁ ଅଧିକ ସମୟ ବଞ୍ଚିଲେ ନାହିଁ । ଏମାନଙ୍କର ଶରୀର ମଧ୍ୟରୁ ଜୋକ ପରି ସହଜରେ ସଙ୍କୋଚ, ବିସ୍ତାର, କରାଯାଇପାରେ, ଏପରି ଅସଂଖ୍ୟ ଗୋଡ଼ ବାହାରେ । ତାହାଦ୍ୱାରା ଏମାନେ ପ୍ରସ୍ତରକୁ ଏଡ଼େ ଜୋରରେ ଧରିପାରନ୍ତି ଯେ ସେଥିରୁ ଛଡ଼ାଇବାକୁ ଅତ୍ୟନ୍ତ ବଳ ଆବଶ୍ୟକ ହୁଏ । କାଠିଗୁଡ଼ିକ ଝିଙ୍କର କାଠିପରି ଦିଶୁଥିଲେ ମଧ ଏକ ଉପାଦାନରେ ପ୍ରସ୍ତୁତ ନୁହେଁ । ଝିଙ୍କର କାଠିଗୁଡ଼ିକ ପକ୍ଷୀ କଲମ ପରି ଏବଂ ସାମୁଦ୍ରିକ ଝିଙ୍କର କାଠି ଠିକ୍ ପେନସିଲ୍ ପରି । ସ୍ଲେଟ୍‌ରେ ଲେଖିବା କାର୍ଯ୍ୟ ସୂଚାରୁ ରୂପେ ଚଳେ ।

ଏଦିନ ଅସଂଖ୍ୟ ସଞ୍ଜ ବସା ଦେଖିବାକୁ ଯାଇଥିଲି । ଗୋଟାଏ ଗୋଟାଏ ବଡ଼ ପ୍ରସ୍ତର ଏକାବେଳେକେ ଏହି ଜୀବଦ୍ୱାରା ଆବୃତ ଥାଏ, ସୁତରାଂ ସେମାନଙ୍କ ଉପରେ ପାଦ ପକାଇ ଚାଲିବାକୁ ବାଧ ହୋଇଥିଲି । ଏଠାର ସଞ୍ଜ ନିତାନ୍ତ ଛୋଟ ଓ ନିକୃଷ୍ଟ ଦରର । ଏମାନଙ୍କ ଆକାର ଓ ଗଠନ ଅତି ଅଦ୍ଭୁତ । ବହୁସଂଖ୍ୟକ ଅତି କ୍ଷୁଦ୍ର କ୍ଷୁଦ୍ର ଛତୁ ଦିହକୁ ଦିହ ଲଗାଇ ରଖିଲେ ଯେପରି ଦେଖାଯାଏ, ଏମାନଙ୍କର ବସା ସେହିପରି ଦେଖାଯାଏ । ଏମାନଙ୍କର ହସ୍ତପଦ କିଛି ନାହିଁ । ଶରୀର ବିଭାଗ ଦ୍ୱାରା ବଂଶବୃଦ୍ଧି ହୁଏ ।

ଏହାଛଡ଼ା ନକ୍ଷତ୍ର ମତ୍ସ୍ୟ (Star fish) ପାଇଥିଲି । ଏମାନଙ୍କଠାରେ ମତ୍ସ୍ୟର ଉପାଦାନ ବା ଆକାର ନାହିଁ । ତଥାପି ଏମାନଙ୍କର ନାମ ନକ୍ଷତ୍ର ମତ୍ସ୍ୟ । ହଂସ ପାଦର ଯୋଡ଼ା ଅଂଶ ପରି ଏହା ଦିଶେ । ସ୍ପର୍ଶ କରିବାକୁ ଠିକ୍ ସେହିପରି । ଏହାର ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ଗୋଡ଼ ଥାଏ । ତାହା ସେ ଇଚ୍ଛାନୁସାରେ ଶରୀରାଭ୍ୟନ୍ତରରେ ପ୍ରବେଶ କରାଇପାରେ ଓ ବାହାର କରିପାରେ । ଶରୀରର ମଧ୍ୟଭାଗରେ ଗୋଟାଏ ଛିଦ୍ର ଅଛି । ଏହା ତାହାର ମୁଖ । ହଜମ ନ ହେବା ପଦାର୍ଥ ସବୁ ଏହି ବାଟେ ଉଦ୍‌ଗିରଣ କରେ ।

କେତେଗୁଡ଼ିଏ ଲତା ଓ କ୍ଷୁଦ୍ର କ୍ଷୁଦ୍ର ଗଛ ଦେଖାଯାଇଥିଲା । ଏମାନଙ୍କର ଉପାଦାନ ଓ ଗଠନ ପାର୍ଥିବ ବୃକ୍ଷ ଲତାଠାରୁ ବିଭିନ୍ନ । ଗୋଟାଏ ଲତାର ପତ୍ର ଲମ୍ବରେ ୮।୧୦ ଫୁଟ । ଢେଉଦ୍ୱାରା ଛିନ୍ନ ନୋହିବ ବୋଲି ଏହା ଅତି କୋମଳ ଓ ନମନୀୟ, ଅଥଚ ବିଭାଗରୋଧକ ।

ପୃଥିବୀର ଜଳଭାଗ ଓ ସ୍ଥଳଭାଗ ଜୀବପୂର୍ଣ୍ଣ । ମାତ୍ର ଜଳଭାଗରେ ଅପେକ୍ଷାକୃତ ଜୀବ ବେଶୀ ଅଛନ୍ତି । ପ୍ରତ୍ୟେକ ଶାମୁକା, ଗେଣ୍ଡା ଓ କଉଡ଼ିର ଆବରଣ କ୍ଷୁଦ୍ର ଜୀବଦଂଷ୍ଟ ଥିବାର ଦେଖାଯାଏ । ସମୁଦ୍ରତୀରସ୍ଥ ପ୍ରସ୍ତରଖଣ୍ଡ ପଥରକୋଇଲା ବା ଖଣ୍ଡେ ଭା ମାନ କାଷ୍ଠ ଦେଖାଯିବ ନାହିଁ, ଯହିଁରେ କି କ୍ଷୁଦ୍ର ଜୀବର ଦ ଚିହ୍ନ ନାହିଁ ବା ବସା ନାହିଁ ! ଗୋଟାଏ ପଥରରେ ଏତେ ପ୍ରକାର ଗେଣ୍ଡା ଶାମୁକା ଦେଖାଯାନ୍ତି ଯେ ତାହା ଗଣନା କରିବା ଅସମ୍ଭବ । ଭଟା ସମୟରେ ଗୋଟାଏ ପ୍ରସ୍ତରରେ ଦଣ୍ଡାୟମାନ ହେବାକୁ ଗଲେ କ୍ଷୁଦ୍ର କ୍ଷୁଦ୍ର ଅସଂଖ୍ୟ ଶାମୁକା ଧ୍ୱଂସ ନ କରି ରହି ହୁଏ ନାହିଁ । ଏମାନଙ୍କର ଜୀବନରକ୍ଷା ଓ ଶିଶୁପାଳନର କୌଶଳ ଦେଖିଲେ ବିସ୍ମୟାଭିଭୂତ ହେବାକୁ ହୁଏ । ତଥାପି ମନୁଷ୍ୟ ଆପଣାର ଗୃହନିର୍ମାଣ ଓ ଶିଶୁପାଳନର କୌଶଳ ଦେଖିଲେ ବିସ୍ମୟାଭିଭୂତ ହେବାକୁ ହୁଏ । ତଥାପି ମନୁଷ୍ୟ ଆପଣାର ଗୃହନିର୍ମାଣ ଓ ଶିଶୁପାଳନ କୌଶଳରେ ଗର୍ବିତ ହୋଇ ଆପଣାକୁ ଈଶ୍ୱରଙ୍କର ପ୍ରିୟପାତ୍ର ବୋଲି ମନେକରେ ଏବଂ ଅପର ଜୀବକୁ ନିକୃଷ୍ଟ ବୋଲି ଘୃଣାଚକ୍ଷୁରେ ଦେଖେ । ଏହି ଜଗତ୍ ଏମନ୍ତ କି ଗ୍ରହ ନକ୍ଷତ୍ର ମଧ ତାହାର ନେତ୍ରପ୍ରୀତି ନିମନ୍ତେ ଈଶ୍ୱର ସୃଷ୍ଟି କରିଥିବାର ବୃଥା ଗର୍ବ କରେ ।

ସାମୁଦ୍ରିକ ଅଧିକାଂଶ ଜୀବ ଅଭିବ୍ୟକ୍ତିବାଦର ଉତ୍କୃଷ୍ଟତର ସାକ୍ଷ୍ୟପ୍ରଦାନ କରନ୍ତି । ନୈସର୍ଗିକ ନିର୍ବାଚନ ସମ୍ବନ୍ଧରେ ମୁଁ ଯେତେଗୋଟି ଉଦାହରଣ ଦେଖିଅଛି, ତହିଁ ମଧ୍ୟରୁ ଦୁଇ ଚାରି ଗୋଟି ପ୍ରକାଶ କରିବା ଅସଙ୍ଗତ ନୁହେଁ । ଚେପ୍‌ଟା ମାଛ (Flat fish) ଏକ ପ୍ରକାର କ୍ଷୁଦ୍ର କ୍ଷୁଦ୍ର ମତ୍ସ୍ୟ । ଏମାନେ ସମୁଦ୍ର ବାଲିରେ ଏକପାଖିଆ ହୋଇ ରହନ୍ତି । ଏଣୁ ଉପର ପାଖ ବାଲୁକାପୂର୍ଣ୍ଣ ବା ଚିତ୍ର ବିଚିତ୍ର, ଅପର ପାଖ ଧୋବ । ଗୋଟିଏ ମାଛକୁ ମେରୁଦଣ୍ଡରେ ସମାନ୍ତରାଳଭାବରେ କାଟି ଦୁଇ ଭାଗ କରି ରଖି ଦେଲେ ଯେପରି ଦେଖାପଡ଼ିବ, ଏହି ମତ୍ସ୍ୟଗୁଡ଼ିକ ଠିକ୍ ସେହିପରି ଦେଖାଯାନ୍ତି । ଉପର ପାଖକୁ ରଖିବା ଅଂଶରେ ଦୁଇ ଗୋଟି ଚକ୍ଷୁ ଥାଏ । ଅପର ପକ୍ଷରେ ଚକ୍ଷୁ ନାହିଁ । ଏଥିମଧ୍ୟରୁ ଦୁଇ ଗୋଟି ମତ୍ସ୍ୟ ଉଲ୍ଲେଖଯୋଗ୍ୟ । (୧) ନାଉଲି ଅଲକା (ତେଲିଙ୍ଗ ଜାଲିକଙ୍କ ମତେ) । ଏହାର ଡାହାଣ ପାଖ ବାଲୁକାବର୍ଣ୍ଣ । ବାମ ପାଖ ଧୋବ । ବାଲି ଉପରେ ଶୋଇଥିବା ବେଳେ ଠିକ୍ ବାଲି ପରି ଦେଖାଯାଉଥାଏ । ସୁତରାଂ ଅପର ମତ୍ସ୍ୟ ବା ଜୀବ ଜାଣିପାରନ୍ତି ନାହିଁ, ଏଣୁ ସେ ସେମାନଙ୍କ କବଳରୁ ରକ୍ଷାପାଏ । –ନାଉଲି ପୋତୁ । ଏହାର ବାମ ପାଖ ଚିତ୍ର ବିଚିତ୍ର ଓ ଦକ୍ଷିଣ ପାଖ ଧୋବ । ଯେଉଁ ଅଂଶ ବାଲୁକା ଉପରେ ଚାପି ହୋଇଥାଏ, ସେ ଅଂଶରେ ଚକ୍ଷୁର

ପ୍ରୟୋଜନୀୟତା ନାହିଁ । ସୁତରାଂ ଉଭୟ ଚକ୍ଷୁ ଏକ ପାର୍ଶ୍ୱରେ ସ୍ଥାପିତ ହୋଇଅଛି । ଶତ୍ରୁଠାରୁ ରକ୍ଷା ପାଇବା ନିମନ୍ତେ ଓ ତଳରୁ ସହଜେ ଆହାର ଖାଇବା ନିମନ୍ତେ ଚତୁର୍ଦ୍ଦିଗସ୍ଥ ବିଷୟ ଲକ୍ଷ୍ୟରେ ଏହି ନୈସର୍ଗିକ ନିର୍ବାଚନ ସଂଘଟିତ ହୋଇଅଛି ।

ସମୁଦ୍ରରେ ଅନେକ ପ୍ରକାର କଙ୍କଡ଼ା ଅଛନ୍ତି, ତନ୍ମଧ୍ୟରୁ ତିନି ଗୋଟି କଙ୍କଡ଼ାଠାରେ ଏହି ନୈସର୍ଗିକ ନିର୍ବାଚନ ଅର୍ଥାତ୍ ବ୍ୟବହାର ଓ ଅବ୍ୟବହାର ଦ୍ୱାରା ଅବୟବ ପରିବର୍ତ୍ତନ ସଙ୍ଘଟିତ ହେବାର ଉଦାହରଣ ପରିଲକ୍ଷିତ ହୁଏ ।

ତରଙ୍ଗ ନିକଟ ବାଲୁକାରେ ଏକ ପ୍ରକାର ସାନ ସାନ କଙ୍କଡ଼ା ବାସ କରନ୍ତି ।—ରଙ୍ଗ ଈଷତ୍ ରକ୍ତାଭ ବା ବାଲି ରଙ୍ଗ ଶରୀର ଶକ୍ତ । ଏମାନେ ବାଲିରେ ଗର୍ତ୍ତ କରନ୍ତି । ଗର୍ତ୍ତ ନିକଟରେ ବାଲି ନିକ୍ଷେପ କଲେ ତରଙ୍ଗଦ୍ୱାରା ବା ବାୟୁଦ୍ୱାରା ଗର୍ତ୍ତ ବନ୍ଦ ହେବାର ସମ୍ଭବ । ଏଣୁ ଦୂରକୁ ବାଲି ବାହିନେଇ ଯିବା ନିମନ୍ତେ ଶକ୍ତ ଦାଢ଼ର ପ୍ରୟୋଜନ; ସୁତରାଂ ଦାଢ଼ ଯୋଡ଼ିକ ଶକ୍ତ ଓ ବାଲି ବାହି ନେବାର ଉପଯୁକ୍ତ । ଏମାନଙ୍କ ଚକ୍ଷୁ ଶରୀର ତୁଳନାରେ ଅତି ବଡ଼– ପ୍ରାୟ ଅର୍ଦ୍ଧ ଇଞ୍ଚ ଲମ୍ବ, ସ୍ଥୂଳ, ମଧ୍ୟମ ଅଥଚ ଲମ୍ବ କାଚ ପ୍ରାୟ ଏହା ଦେଖାଯାଏ । ଦୂରରୁ ମନୁଷ୍ୟ ବା ପକ୍ଷୀ ଦେଖି ପାରି ଆତ୍ମରକ୍ଷାର ଚେଷ୍ଟା କରିବା ନିମନ୍ତେ ଚକ୍ଷୁ ଇଦୃଶଭାବରେ ନିର୍ମିତ ହୋଇଅଛି । ଏମାନଙ୍କର ଚାଞ୍ଚଲ୍ୟ, କ୍ଷିପ୍ରଗତି ଓ କୀଟ ଧରି ଭକ୍ଷଣ କରିବା ରୀତି ଅତି କୌତୂହଳପୂର୍ଣ୍ଣ । ତରଙ୍ଗ ବିତାଡ଼ିତ ସମୁଦ୍ର ମଧ୍ୟସ୍ଥ ପ୍ରସ୍ତର ମଧ୍ୟରେ ଆଉ ପ୍ରକାର କଙ୍କଡ଼ା ଅଛନ୍ତି, ଏମାନଙ୍କ ବର୍ଣ୍ଣ ଅତି କଳା ଓ ଈଷତ୍ ସବୁଜବର୍ଣ୍ଣର ଛୋଟ ଛୋଟ ଗାର ଅଛି । ଏମାନଙ୍କ ଗୋଡ଼ଗୁଡ଼ିକ ଶକ୍ତ । ଏମାନେ ଏହି ଗୋଡ଼ଦ୍ୱାରା ପ୍ରସ୍ତରକୁ ଏପରି ଭାବରେ ଧରନ୍ତି ଯେ, ଅତି ପ୍ରବଳ ଢେଉ ହେଲେ ମଧ୍ୟ ଏମାନଙ୍କୁ ପ୍ରସ୍ତରକୁ ବିଚ୍ଛିନ୍ନ କରିପାରେ ନାହିଁ । ଏମାନଙ୍କ ଦାଢ଼ ଅତି ପାତଳ-ଦାଢ଼ ନାହିଁ କହିଲେ ଚଳେ ।—କେବଳ ଯୋଡ଼ିଏ ଚିମୁଟ । ଏଥିରେ ଏମାନଙ୍କର ଅନ୍ୟ ପ୍ରୟୋଜନ ନାହିଁ । ଏହା କେବଳ କଣ୍ଟା ଚାମଚ ପରି ଭୋଜନ କାର୍ଯ୍ୟରେ ବ୍ୟବହୃତ ହୁଏ । ତରଙ୍ଗରୁ ଛୋଟ ଛୋଟ କୀଟ ଧରି ଶୀଘ୍ର ଶୀଘ୍ର ଭକ୍ଷଣ କରନ୍ତି । ବହୁକାଳ ପ୍ରସ୍ତରରେ ରହିବାରୁ ଗୋଡ଼ଗୁଡ଼ିକ ଶକ୍ତ ହୋଇଅଛି । ଗର୍ତ୍ତ କରିବାର ପ୍ରୟୋଜନୀୟତା ନ ଥିବାରୁ ଦାଢ଼ ଶକ୍ତ ଓ ବଡ଼ ନ ହୋଇ କେବଳ ଖାଦ୍ୟ ଉତ୍ତୋଳନ କରିବା ଉପଯୋଗୀ ଚିମୁଟା ପରି ହୋଇଅଛି ।

ସମୁଦ୍ର ମଧ୍ୟସ୍ଥ ଏକ ଜାତୀୟ କଙ୍କଡ଼ା ଦେଖିବାକୁ ଅତି ସୁନ୍ଦର ଓ ବଡ଼ । ଶତ୍ରୁକୁ ଭୟ ଦେଖାଇ ରକ୍ଷା ପାଇବା ସକାଶେ ଶରୀର ଚିତ୍ରବିଚିତ୍ର । ଏମନ୍ତ କି, ଖୋଳ ଉପରେ ବାଇଗିଣିଆ ଗୋଲାକାର ଦାଗ ତିନି ଗୋଟି ଠିକ୍ ତିନି ଗୋଟି ଚକ୍ଷୁ ତୁଲ୍ୟ ଦେଖାଯାଏ । ତଳୁ ଉପରକୁ ଉଠିବା ଓ ସନ୍ତରଣ କରିବା ଉପଯୋଗୀ.ଅଙ୍ଗ ଆବଶ୍ୟକ । ସୁତରାଂ ସର୍ବ ପଛ ଗୋଡ଼ ଦୁଇ ଗୋଟି ଡଙ୍ଗା ବାହିବା ଆହୁଲା ପରି ଚେପ୍‌ଟା ହେଇଅଛି । ଏହି ଗୋଡ଼ଦ୍ୱାରା ଏମାନେ ସନ୍ତରଣ କରିପାରନ୍ତି ମତ୍ର ଉପରେ ନିକ୍ଷିପ୍ତ ହେଲେ ଆଦୌ ଚାଲିପାରନ୍ତି ନାହିଁ । ଏପରି କଙ୍କଡ଼ା ମୁଁ ଅନେକ ପାଇଅଛି । ଶେଷୋକ୍ତ କଙ୍କଡ଼ାଟି ସୁସ୍ୱାଦୁ ଓ ଖାଦ୍ୟୋପଯୋଗୀ, ମାତ୍ର ପୂର୍ବୋକ୍ତ ଯୋଡ଼ିକ ଅଖାଦ୍ୟ । ଦିନେ ପଥର କଙ୍କଡ଼ା ବହୁ କଷ୍ଟରେ ମାରି ଖାଦ୍ୟର ଅନୁପଯୁକ୍ତ ଦେଖି ହତାଶ ହୋଇଥିଲି ।

ଏଠାରେ ସାର୍କ ଦୁଇ ପ୍ରକାର ଦେଖାଯାଏ । ସାର୍କ ମତ୍ସ୍ୟ ପରି ଦୁର୍ଗନ୍ଧଯୁକ୍ତ ଅନ୍ୟ କୌଣସି ମତ୍ସ୍ୟ ଥିବାର ଅନୁମାନ ହୁଏ ନାହିଁ । ଉଡୁକ ମତ୍ସ୍ୟ ମଧ୍ୟ ଏଠାରେ ମିଳନ୍ତି ।

**Cuttle (କାଲିବେନ୍ଧା) :** ଏହା ଅଷ୍ଟପଦଯୁକ୍ତ ଏକପ୍ରକାର ଜୀବ । ଏହାର ଆଠ ଗୋଟି ଯୋକପରି ଗୋଡ଼ ଅଛି । ଗୋଡ଼ଗୁଡ଼ିକ ଓ ଦେହ ଧୋବ । ଗଳନଳୀ ତଳେ ଗୋଟିଏ ଥଳି ଅଛି । ଏହା ସିପିଆ (Sepia) ନାମକ କଳା ରଙ୍ଗରେ ପରିପୂର୍ଣ୍ଣ । ଶତ୍ରୁକୁ ଦେଖିଲେ ଏହି କଳାରଙ୍ଗ ଜଳରେ ଗୋଳିଦେଇ ନିଜେ ଅନ୍ତର୍ହିତ ହୁଏ । ଶତ୍ରୁ ଆଉ ଦେଖିପାରେ ନାହିଁ । ଏହା ଗନ୍ଧଯୁକ୍ତ ନୁହେଁ; ସୁତରାଂ ଚିତ୍ରକରିବା ନିମନ୍ତେ ମୁଁ ଏହା ବ୍ୟବହାର କରୁଥିଲି । ମନୁଷ୍ୟର ଶତ୍ରୁ ଆଖିରେ ଧୂଳି ଦେଇ ରକ୍ଷା ପାଇବାର ଏପରି ଉପାୟ ଅଛି କି ?

ଦୁଇ ପ୍ରକାର ପକ୍ଷୀ ଉଲ୍ଲେଖଯୋଗ୍ୟ । Flamingo (ଫ୍ଲେମିଙ୍ଗୋ) ପକ୍ଷୀ ଉଆଲଟେୟାରରେ ଥିବାର ମୋର ଧାରଣା ନ ଥିଲା । ଦିନେ ପ୍ରକାଣ୍ଡ ଏକ ଦଳ ମୋ ବସା ନିକଟରେ ବସିଥିବାର ଦେଖିଲି । ବନ୍ଧୁକକୁ ସ୍ମରଣ ହେଲା । ବନ୍ଧୁକ ଥିଲେ ଏ ପକ୍ଷୀ ସମ୍ବନ୍ଧରେ ଅନେକ ବିଷୟ ଶିକ୍ଷା କରିପାରିଥାନ୍ତି । ପକ୍ଷୀଗୁଡ଼ିକ ରାଜହଂସ ପରି । ବେକ ଓ ଗୋଡ଼ ଅତି ଲମ୍ବ, ଥଣ୍ଟ ବଡ଼, ଦେହ ଈଷତ୍ ରକ୍ତବର୍ଣ୍ଣ । ଏକ ପ୍ରକାର ମାଂସାଶୀ ପକ୍ଷୀ ବସା ନିକଟରେ ସର୍ବଦା ବସା କରିଥାଏ । ଏହା ପ୍ରତ୍ୟହ ସମୁଦ୍ର ଆଡ଼କୁ ଯାଇ ସମୁଦ୍ରରୁ ସାପ ଧରିଆଣି ଭକ୍ଷଣ କରେ । ପ୍ରଥମେ ସାପ ଆଣୁଥିବାର ବିଶ୍ୱାସ ନ ଥିଲା । କିନ୍ତୁ ଦୁଇ ଚାରି ଦିନ ଗତିବିଧି ପର୍ଯ୍ୟବେକ୍ଷଣ କରୁ କରୁ ଜଣାପଡ଼ିଲା ଯେ, ପ୍ରକୃତରେ ସମୁଦ୍ରରୁ ସାପ ଆଣେ– ଅନ୍ୟ କୌଣସିଠାରୁ ଆଣେ ନାହିଁ । ସମୁଦ୍ର ମଧ୍ୟ ସାପରେ ପୂର୍ଣ୍ଣ, ଏହା ଜଣାପଡ଼ିଲା । ଏକରକମ ସାପ ଅଛନ୍ତି ଯେ ସେମାନେ ତରଙ୍ଗ ସହିତ ପଲ

ପଲ ଆସି ବାଲିରେ ପୋତି ହୋଇପଡ଼ନ୍ତି, ପୁଣି ତରଙ୍ଗ ଆସିଲେ ସମୁଦ୍ର ମଧ୍ୟକୁ ବାହାରିଯାନ୍ତି । ମାଛୁଆମାନେ ଦାଆଦ୍ୱାରା ଏମାନଙ୍କୁ କାଟି ପକାନ୍ତି । ଏହି ସାପ ସେମାନଙ୍କର ଖାଦ୍ୟ ।

ଏପରି ଭାବରେ ଦୁଇ ମାସ ଅତିବାହିତ କଲି । ଆମୋଦ ପ୍ରିୟ ଦୁଇ ଚାରି ଜଣ ଗଳ୍ପ ସାଗର ନେଇ ଦିନ କଟାଇବା ଅପେକ୍ଷା ଏପରି ଭାବରେ ଦିନ କଟାଇବା ବଡ଼ ସୁଖକର ଓ ଶିକ୍ଷାପ୍ରଦ ।

ଇତି ମଧ୍ୟରେ ସୀମାଚଳମ୍ ଯାଇଥିଲି । ଏହା ଗୋଟିଏ ତୀର୍ଥସ୍ଥାନ । ମୋ ବସାଠାରୁ ସାତ ମାଇଲ୍ ଦୂର । ଘୋଡ଼ାଗାଡ଼ି ଦ୍ୱାରା ବା ବଳଦଗାଡ଼ିଦ୍ୱାରା ଯିବାକୁ ହୁଏ । ପୂର୍ବଘାଟ ପର୍ବତ ଶ୍ରେଣୀର ଏକ ପର୍ବତର ନାମ ସୀମାଚଳମ୍ । ଏହାର ଉଚ୍ଚତା ପ୍ରାୟ ୮୦୦ ଫୁଟ୍ । ଏହି ପର୍ବତର ଅପ୍ରଶସ୍ତ ଅଧିତ୍ୟକାରେ ବରାହ ନୃସିଂହ ନାମକ ଦେବତାଙ୍କର ପ୍ରାଚୀନ ମନ୍ଦିର ଅଛି । ଛଅ ଶହ ବର୍ଷ ହେଲା ଏହି ମନ୍ଦିର ନିର୍ମିତ ହୋଇଅଛି । କେହି କେହି ଏହାକୁ ରାମାନନ୍ଦଙ୍କ ମଠ ବୋଲି ପ୍ରକାଶ କରନ୍ତି । ମନ୍ଦିରଟି କ୍ଷୁଦ୍ର, ତଥାପି ଦର୍ଶନଯୋଗ୍ୟ । ଯାତ୍ରାମଣ୍ଡପରେ ବାଉନ ଗୋଟି ମୁଗୁନିପ୍ରସ୍ତରର ସ୍ତମ୍ଭ ଅଛି– ସ୍ଥାପତ୍ୟ ପରାକାଷ୍ଠାର ବିଶେଷ ପରିଚୟ ଦେଉଅଛି । ଉପରକୁ ଯିବାକୁ ପ୍ରାୟ ନଅ ଶହ ପାବଚ୍ଛ ଅଛି । ପ୍ରବାଦ ଅଛି, ବରାହରୂପୀ ବିଷ୍ଣୁ ଅରଣ୍ୟରେ ଭ୍ରମଣ କରୁଥିବାବେଳେ ବାଣବିଦ୍ଧ ହୋଇ ବ୍ୟାଧକୁ ନୃସିଂହରୂପ ଦେଖାଇଥିଲେ । ଯେଉଁ ମୂର୍ତ୍ତି ଦେଖାଇଲେ ସେହି ମୂର୍ତ୍ତି ସ୍ଥାପିତ ହୋଇ ପୂଜା ପାଉଛନ୍ତି । ମୂର୍ତ୍ତିର ପେଟରେ ପୁଣି ଅଦ୍ୟାପି ଘା ଚିହ୍ନ ଅଛି ଓ ପୂଜା ମଧ୍ୟ ନିର୍ଗତ ହୁଏ । ମନ୍ଦିରଟି ପାର୍ବତ୍ୟ କନ୍ଦରାରେ ଥାଇ ସୁଦ୍ଧା ମୁସଲମାନ ହାତୁଡ଼ିରୁ ରକ୍ଷାପାଇ ନାହିଁ । ମନ୍ଦିରର ଅନେକ ମୂର୍ତ୍ତି ଭଗ୍ନ ହୋଇଅଛି ।

ବରାହ ନୃସିଂହମ୍ ବହଳ ଚନ୍ଦନାମୃତ, ସୁତରାଂ ତାଙ୍କର କୌଣସି ଅଙ୍ଗ ଦୃଷ୍ଟ ହୁଏ ନାହିଁ । ଏହାର କାରଣ ପଚାରିବାରୁ ପଣ୍ଡାମାନେ କହିଲେ ଯେ, ପ୍ରଭୁଙ୍କର ପରିଶ୍ରମଜନିତ ଯେ ଜ୍ୱାଳା ଉତ୍ପନ୍ନ ହେଉଥିଲା, ତାହା ଉପଶମ ହେବାର ନୁହେଁ । ଏଣୁ ସର୍ବଦା ଚନ୍ଦନ ଲେପନ କରି ଶୀତଳ କରିବାକୁ ହୁଏ । କେବଳ ଅକ୍ଷୟ-ତୃତୀୟା ଦିନ କବାଟ ବନ୍ଦ କରାଯାଇ ଆବରଣ ଖୋଲା ଯାଏ ଓ ତତ୍‌କ୍ଷଣାତ୍ ନୂତନ ଚନ୍ଦନ ଲେପନ କରାଯାଏ । ସେ ଦିନ ଦେଉଳ ଭିତିମାନ ଏତେ ଉତ୍ତପ୍ତ ହୁଏ ଯେ, ସ୍ପର୍ଶ କରାଯାଇପାରେ ନାହିଁ । ଏପରିସ୍ଥଳେ ସର୍ବଦା ଖୋଲା ଶରୀରରେ ପ୍ରଭୁଙ୍କୁ ରଖିଲେ ଏହି ଜ୍ୱାଳା ସହ୍ୟ ହେବ କିପରି ?

ମୁଁ ମନେ କଲି, ଏ ଜ୍ୱାଳା ଅନ୍ୟ କିଛି ନୁହେଁ– ମୁସଲମାନର କର୍କଶ ହାତୁଡ଼ିଜନିତ ବିଷମ ଜ୍ୱାଳା । ଅନୁମାନ ହୁଏ, ବିଗ୍ରହ ବିକଳାଙ୍ଗ, ଏଣୁ ଦର୍ଶକମାନଙ୍କୁ ବଞ୍ଚନା କରିବା ନିମନ୍ତେ ଚନ୍ଦନାବରଣ ଧାରଣ କରିଅଛନ୍ତି । ଏହାର ନିଦର୍ଶନ ସ୍ୱରୂପ ପଶ୍ଚିମ ମୁଖ ହୋଇ ଦେଉଳରେ ଥିବା ବରାହ ମୂର୍ତ୍ତିଙ୍କର ହସ୍ତ ପଦ ଭଗ୍ନ ହୋଇଥିବାରୁ ଚନ୍ଦନ ଆବରଣ ଦେଇ ଘୋଡ଼ାଇବାର ଉପାୟ ନ ଥିବାରୁ ବସ୍ତ୍ରାବୃତ ହୋଇ ଅପୂଜ୍ୟ ହୋଇଅଛନ୍ତି । ମହାପ୍ରଭୁ ତୈଳ ଭକ୍ଷଣ କରନ୍ତି । ଫୁଲଙ୍ଗଡ଼ା ପୁଳିହାରା ଭୋଗର ନାମ । ନାମବଡ଼ା ଦର୍ଶନ ଥୋଡ଼ା– ଅଖାଦ୍ୟ ବୋଇଲେ ଚଳେ ।

ଏ ସ୍ଥାନର ଝରଣା ଜଳ ସୁପାନୀୟ ଓ ସର୍ବତ୍ର ଯିବାର ବନ୍ଦୋବସ୍ତ ହୋଇଅଛି । ଏଠାରେ ଯେତେ ସପୁରୀ ପଣସ ମିଳେ, ଭାରତର ଅନ୍ୟତ୍ର ମିଳେ କି ନାହିଁ ସନ୍ଦେହ ।

ଉଆଲଟେୟରରେ ଦୁଇମାସ କାଳ ଅତିବାହିତ କଲି । ବନ୍ଧୁ ସମାଗମରେ ଯେ ସୁଖ ନାହିଁ, ନିର୍ଜନରେ ଏକାକୀ ସେହି ସୁଖ ଅନୁଭବ କଲି । ଶାରୀରିକ ସୁସ୍ଥତା ଲାଭ କରି ଦେଶ ପର୍ଯ୍ୟଟନରେ ବାହାରିଲି ।

× × ×

ଦିବା ୩ ଘଣ୍ଟା ୪୯ ମିନିଟ୍ ସମୟରେ ମାନ୍ଦ୍ରାଜ ମେଲ୍ ଷ୍ଟେସନରେ ଉପସ୍ଥିତ ହେଲା । ସେକେଣ୍ଡ କ୍ଲାସ୍ ଗାଡ଼ିଗୁଡ଼ିକ ଲୋକପୂର୍ଣ୍ଣ ଥିଲା । ଗୋଟିଏ କୋଠରିରେ କେବଳ ଜଣେ ସାହେବ ଉପବେଶନ କରିଥିଲେ । ସେଠାରେ ଅନ୍ୟ କେହି ନ ଥିଲେ । ମୁଁ ସେହି କୋଠରୀରେ ନିରାପଦରେ ସ୍ଥାନ ଅଧିକାର କରି ବସିଲି । ମୁଁ ସାହେବମାନଙ୍କ ସହିତ ଭ୍ରମଣ କରିବାକୁ ପସନ୍ଦ କରେଁ । ଏଥିରେ ସୁବିଧା ଅନେକ । ଜଣେ ଦୁଇଜଣ ସାହେବ ଯାତ୍ରୀ ଥିଲେ ଭିଡ଼ ହୁଏ ନାହିଁ । ଆମ୍ଭ ଦେଶୀୟ ଲୋକଙ୍କର ନିୟମ ଏହି ଯେ, ଗାଡ଼ିଟି ଯାତ୍ରୀ ପୂର୍ଣ୍ଣ ଥିଲେ ସୁଦ୍ଧା ତାହାକୁ ଆହୁରି ଭିଡ଼ କରିବାକୁ ଯିବେ ପଛକେ ସାହେବ ଥିବା ଗାଡ଼ିରେ ଉଠିବେ ନାହିଁ । ସାହେବ ଓ ଦେଶୀୟ ଲୋକ ଏକତ୍ର ବସିଲେ ଗୋଳମାଳ ନାହିଁ । ସମ୍ଭବ ବୋଲି ଅନେକ କହନ୍ତି । ଦୁଇ ଚାରିଟା ବଡ଼ ବଡ଼ ଘଟଣାର କଥା ମଧ୍ୟ ଶୁଣାଯାଇଥାଏ । ସାହେବଙ୍କ ମଧ୍ୟରେ ଯେମନ୍ତ ଜଣ କେତେ ନେଟିଭ୍ ବିଦ୍ୱେଷୀ ଅଛନ୍ତି, ଦେଶୀୟ ଲୋକଙ୍କ ମଧ୍ୟରେ ତେମନ୍ତ ସାହେବ-ବିଦ୍ୱେଷୀ ଅଛନ୍ତି । ସମୟ ସମୟରେ ବିବାଦ ଉପସ୍ଥିତ ହେବା ଅସମ୍ଭବ ନୁହେଁ । ଏହା ବୋଲି ଯେ ସାହେବଙ୍କ ସଙ୍ଗରେ ଭ୍ରମଣ କଲେ ଅସୁବିଧାରେ ଓ କଷ୍ଟରେ ପଡ଼ିବାକୁ ହେବ, ଏହା କୌଣସି କାର୍ଯ୍ୟର କଥା ନୁହେଁ ।

ଏଥର ସହଯାତ୍ରୀଟି ଜଣେ ସୈନିକ ଯୁବା ପୁରୁଷ। କଲିକତାରୁ ହାଇଦ୍ରାବାଦକୁ ଯାଉଥିଲେ। ରାତ୍ରୀ ଏକ ଘଣ୍ଟା ପର୍ଯ୍ୟନ୍ତ ଏକତ୍ର ଥିଲୁଁ। ଇତିମଧରେ କୌଣସି ଯାତ୍ରୀ ଆମ ଗାଡ଼ିରେ ଉଠି ନ ଥିଲେ। ଲୋକଟି ଭଦ୍ର ଓ ସଦାଳାପୀ। ଶିକାର ଗଳ୍ପରେ ଅଧିକ କାଳ ଅତିବାହିତ ହୋଇଥିଲା। ଇତିମଧରେ ଏକ ରହସ୍ୟ ହେଲା। ଟୁନି ଷ୍ଟେସନରେ ଉଭୟେ ପ୍ଲାଟଫର୍ମରେ ବିଚରଣ କରୁଥିଲୁ। ସେ ଗାର୍ଡ଼ିକୁ ଆଗ ଆସିଲେ। ସେତେବେଳେ ମୋହର ଚାକର ବାକ୍ସ ଖୋଲୁଥିବାର ଦେଖିଲେ। ଚୋର ବୋଲି ମନେ କରି ତାକୁ ଗିରଫଦାର କରିବାକୁ ଉଦ୍ୟତ, ମୁଁ ଉପସ୍ଥିତ ହେଲାରୁ ପ୍ରକୃତ କଥା ଜାଣିପାରି କ୍ଷମା ପ୍ରାର୍ଥନା କଲେ। କ୍ଷମା ପ୍ରାର୍ଥନା ତ ସାହେବଙ୍କ ମୁଖରେ ବଡ଼ ଶସ୍ତା।

ଉଆଲଟେୟାର ଷ୍ଟେସନ ତ୍ୟାଗ କଲାରୁ କେବଳ ବିସ୍ତୀର୍ଣ୍ଣ ଧାନ୍ୟକ୍ଷେତ୍ର ଓ ମଧେ ମଧେ ତାଳବନ ଦୃଷ୍ଟିଗୋଚର ହେଉଥିଲା। ସ୍ଥାନେ ସ୍ଥାନେ ପୂର୍ବଘାଟ ପର୍ବତଶ୍ରେଣୀର ଏକ ଏକ ଅଂଶ ଚକ୍ଷୁର ବିଷୟୀଭୂତ ହେଉଥିଲା। ପଶ୍ଚିମ ଦିଗ୍‌ବଳୟ ନାନାବର୍ଣ୍ଣରେ ରଞ୍ଜିତ ହେଲା। କ୍ରମେ ଅନ୍ଧକାର ମାଡ଼ି ଆସିଲା। ଶୁକ୍ଳପକ୍ଷ ଥିଲେ ସୁଦ୍ଧା ଆକାଶ ମେଘାଚ୍ଛନ୍ନ ଥିବାରୁ ଚନ୍ଦ୍ର ନିଷ୍ପ୍ରଭ ହୋଇଥିଲେ। କ୍ଷୀଣ ତୈଳାଲୋକ ଆମ୍ଭମାନଙ୍କ ପ୍ରକୋଷ୍ଠକୁ ଆଲୋକିତ କଲା। ଆମ୍ଭେମାନେ ପ୍ରାକୃତିକ ଦୃଶ୍ୟ ଦର୍ଶନରୁ ବଞ୍ଚିତ ହେଲୁଁ। ରାତ୍ର ପ୍ରାୟ ୯ ଘଣ୍ଟା ବେଳେ ଗାଡ଼ି ଗୋଦାବରୀ ଷ୍ଟେସନରେ ପହଞ୍ଚିଲା। ପୂର୍ଣ୍ଣଗର୍ଭା ଗୋଦାବରୀର ଦୃଶ୍ୟ ଦେଖିବାକୁ ମନ ବଡ଼ ଉଦ୍‌ବିଗ୍ନ ହୋଇଥିଲା। ବାତାୟନ ବାଟେ ମୁଖ ବୁଡ଼ାଇ ରହିଲି, ମାତ୍ର ଅନ୍ଧକାର ହେତୁରୁ ଦୃଶ୍ୟ ଦେଖି ମନ ତୃପ୍ତ ହେଲା ନାହିଁ।

ଗୋଦାବରୀର ଓସାର ପ୍ରାୟ ଦେଢ଼ ମାଇଲ। ସୋନ ନଦୀର ପୋଲ ଛଡ଼ା ଏତେ ପ୍ରଶସ୍ତ ପୋଲ ଭାରତରେ ଆଉ ନାହିଁ। ପୋଲ ଦୁଇ ପାଖରେ ବାଡ଼ ନ ଥିବାରୁ ଭୟାନକ ଦେଖାଯାଉଥାଏ।

ପଶ୍ଚିମ ସମୁଦ୍ରର ଅନତିଦୂରବର୍ତ୍ତୀ ପଶ୍ଚିମଘାଟ ପର୍ବତଶ୍ରେଣୀର ତ୍ର୍ୟମ୍ବକ ପଦସମ୍ଭୂତା ସ୍ୱଚ୍ଛନୀରା ଗୋଦାବରୀ ନଦୀର ଦୃଶ୍ୟ ନାସିକଠାରେ ବହୁବର୍ଷ ପୂର୍ବେ ଦେଖିଥିଲି। ଏହି ଗୋଦାବରୀ ମାତ୍ର ସେଠାରେ ବନ୍ଧୁର ପାଷଣ ସଞ୍ଚାରିଣୀ ନିର୍ଝରିଣୀ, ଏଠାରେ ସାଗରସ୍ପର୍ଶିନୀ କଲ୍ଲୋଳିନୀ।

ଗୋଦାବରୀ ଅତିକ୍ରମ କଲାରୁ ଶୟନର ବ୍ୟବସ୍ଥା କରାଗଲା। କେବଳ ମାତ୍ର ବେଜବାଡ଼ାଠାରେ ସୈନିକ ଯୁବକଙ୍କୁ ବିଦାୟ ଦେବାକୁ ଥରେ ଉଠିବାକୁ ହେଲା। ଏଠାରୁ ପୁଣି ଜଣେ ପୋଲିସ ସାହେବ ଗାଡ଼ିରେ ଆରୋହଣ କଲେ। ଏତାଦୃଶ ପ୍ରହରୀ ପାଇଲାରୁ ଆଉ ଚିନ୍ତା କ'ଣ? ନିଶ୍ଚିନ୍ତ ମନରେ ସକାଳଯାଏ ଶୋଇପଡ଼ିଲି। ବେସିନ୍‌ବ୍ରିଜ୍ ଷ୍ଟେସନରେ ପହଞ୍ଚିବା ଆଗରୁ ପ୍ରାତଃକୃତ୍ୟ ଓ ସ୍ନାନ ମଧ ଶେଷ କରିଥିଲି। ଏଠାରେ ପ୍ଲେଗ ପରୀକ୍ଷା ହୁଏ। ପ୍ଲେଗ୍ ପରୀକ୍ଷା ପରେ ମାଲପତ୍ର ଠିକ୍ କରୁ କରୁ ୧ ଘଣ୍ଟା ୩୫ ମିନିଟ୍‌ରେ ଗାଡ଼ି ମାନ୍ଦ୍ରାଜ ସେଣ୍ଟ୍ରାଲ ଷ୍ଟେସନ୍‌ରେ ପହଞ୍ଚିଲା। ପୂର୍ବରେ ଟକାର କୋମ୍ପାନୀର ଉଦ୍ୟାନରେ ରହିବାର ବନ୍ଦୋବସ୍ତ ହୋଇଥିଲା। ସେଠାକୁ ଜିନିଷ ଓ ଚାକରକୁ ପଠାଇଦେଇ ମୁଁ ଏକାବେଳକେ ସହର ଅଭିମୁଖରେ ପ୍ରସ୍ଥାନ କଲି।

ମାନ୍ଦ୍ରାଜ ଭାରତର ତୃତୀୟ ସହର। ବସ୍ତୁତଃ ବଡ଼ ସହରମାନଙ୍କ ମଧରେ ତୃତୀୟ ସ୍ଥାନୀୟ। ସହରଟି ସୁସଜ୍ଜିତ ଓ ସୁଦୃଶ୍ୟ ନୁହେଁ। ଅଦ୍ୟାପି ଜଳ ନିର୍ଗମନର ସୁବନ୍ଦୋବସ୍ତ ହୋଇ ନାହିଁ। ସମସ୍ତ ରାସ୍ତାର ଉଭୟ ପାର୍ଶ୍ୱରେ ସୁସଜ୍ଜିତ ଭାବରେ ଘର ନାହିଁ। କଲିକତା ବା ବୋମ୍ବାଇ ସହିତ ଏହା ତୁଳନୀୟ ନୁହେଁ ବୋଇଲେ ଚଳେ।

ମୁଁ ପ୍ରଥମେ ଚିଡ଼ିଆଖାନା ଦେଖିବାକୁ ଗଲି। କଲିକତା ଚିଡ଼ିଆଖାନା ତୁଳନାରେ ଏହା ନିତାନ୍ତ ଛୋଟ। ସିଂହ ଆଦୌ ନାହିଁ। ଗୋଟିଏ ମାତ୍ର ବାଘ। ଗୋଟାଏ ଗଣ୍ଡା ବିଚାରା ଅନ୍ଧ ହେବାକୁ ବସିଅଛି। ମାଙ୍କଡ଼ଗୁଡ଼ିକ ପିଞ୍ଜରାରେ ରଖା ନ ଯାଇ ଅଣ୍ଟାରେ ଶିକୁଳିଦ୍ୱାରା ବନ୍ଧା ହୋଇଅଛନ୍ତି। ଦର୍ଶନଯୋଗ୍ୟ ଜୀବ ମଧରେ ଗୋଟାଏ ଟାପିର, ଗୋଟିଏ ଆଲପକା ଲାମା- ଏହି ଜନ୍ତୁ କଲିକତାରେ ନାହିଁ। ଗୋଟାଏ ପ୍ରକାଣ୍ଡ ନୋଡ଼ା ସାପ, ଦୁଇ ଗୋଟି ଶିଶୁ ମେଣ୍ଡ୍ରିଲ। ଏ ଦିନ ମୁସଲମାନ ପର୍ବ ଥିଲା, ସୁତରାଂ ବହୁସଂଖ୍ୟକ ମୁସଲମାନ ଦର୍ଶକ ପୋଷାକ ପରିଚ୍ଛଦ ପିନ୍ଧି ଚିଡ଼ିଆଖାନା ଦେଖିବାକୁ ଆସିଥିଲେ। ହିନ୍ଦୁ ବା ଅନ୍ୟ ଦର୍ଶକ ନ ଥିଲେ ବୋଇଲେ ଚଳେ। ଦର୍ଶକଗଣ ଜୀବମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରୁଥିଲେ। ଅନେକ ନିରୀହ ଜୀବର ଶରୀର ଛେପପୂର୍ଣ୍ଣ ହୋଇଥିଲା। ଟାପିରଟି ପଥର ଆଘାତରେ ମୁଖ ଉତ୍ତୋଳନ କରିପାରୁ ନ ଥିଲା, ପାଣି ଭିତରେ ମୁହଁ ଲୁଚାଇ ରହିଥିଲା। ଆଲପକା ପରି ଭୟାଳୁ ଓ ଚଞ୍ଚଳ ଜୀବ ତ ନାହିଁ। ଚିତ୍କାର ଧ୍ୱନିରେ ଓ ଇଷ୍ଟକାଘାତରେ ବେଦମ ହେଉଥିଲା। ଯେଉଁଠାକୁ ଗଲେ ଏହି କାଣ୍ଡ। ମେଣ୍ଡ୍ରିଲ ଶିଶୁ ଉପରେ ଅଧିକ ଅତ୍ୟାଚାର, ଯେହେତୁ ସେ ଶିଶୁ ଓ ନିରୀହ, ଛେପ ଓ ବାଲିଦ୍ୱାରା ବିଚରାର ଶରୀର ଆଚ୍ଛାଦିତ ହୋଇଯାଇଥିଲା। ମୁଖଟି ରେଲିଙ୍ଗରେ ଲୁଚାଇ ରଖିଥିଲା। ଏ ଅତ୍ୟାଚାର ସହ୍ୟ ହେଲା ନାହିଁ। ଅନେକଙ୍କୁ ଧମକ ଦେଇ

ନିବାରଣ କଲି, ପୁଣି ଆସି ଦ୍ୱାର ରକ୍ଷକଙ୍କଠାରେ କହିଲି । ଏ ବ୍ୟକ୍ତି ପଇସା ଗଣିବାକୁ ମଜଭୁତ । ଖାଣ୍ଟି ତାମିଲୀ, ଇଂରାଜୀ କମ୍ ବୁଝିପାରେ । ମୋହର କଥାରେ କର୍ଣ୍ଣପାତ ନ କରି ବାହାରି ଯିବାକୁ ଇଙ୍ଗିତ କଲା । ନିକଟରେ ଜଣେ ପୋଲିସ୍ କର୍ମଚାରୀଙ୍କୁ ସମସ୍ତ କହିବାରୁ ଓ ତତ୍‌କ୍ଷଣାତ୍ ଏହାର ପ୍ରତିକାର ନ କଲେ ଚିଡ଼ିଆଖାନାର ହାକିମଠାରେ ରିପୋର୍ଟ ଦେବି ବୋଲିବାରୁ ସେ ଭିତରକୁ ଅଗ୍ରସର ହେଲା । ଅନ୍ୟ କୌଣସି ଚିଡ଼ିଆଖାନାରେ ପଶୁଙ୍କ ପ୍ରତି ଏ ଅତ୍ୟାଚାର ଦେଖାଯାଏ ନାହିଁ, ଏହା ବେବନ୍ଦୋବସ୍ତର ଫଳ ବ୍ୟତୀତ କିଛି ନୁହେଁ । ରୋଜା ସମୟରେ ଛେପ ଢୋକିବା ମୁସଲମାନ ଧର୍ମରେ ବଡ଼ ପାପ । ଏଣୁ ଭୂମିରେ ନ ପକାଇ ଅପର ଜୀବର ଦେହରେ ତାହା ନିକ୍ଷେପ କରି ଦୁଇ ଗୁଣ ଧର୍ମ ଉପାର୍ଜନ କରନ୍ତି ।

ମେଡ୍ରାସ୍ ମାର୍କେଟ– କଲିକତାର ମ୍ୟୁନିସିପାଲ ମାର୍କେଟ କିମ୍ବା ବୋୟାଇର କ୍ରଫୋର୍ଡ ମାର୍କେଟ ତୁଳନାରେ ଏହା ନଗଣ୍ୟ, ଲୋକ ଭିଡ଼ ନାହିଁ, ପଣ୍ୟସାମଗ୍ରୀରେ ପରିପୂର୍ଣ୍ଣ ନୁହେଁ । ଯେମନ୍ତ ସହର, ତେମନ୍ତ ମାର୍କେଟ୍ । ଏଥିଉତ୍ତାରୁ କେତେକ ଦର୍ଶନୀୟ ସ୍ଥାନମାନ ଦେଖି ବସାକୁ ଫେରିଲି । ସେଦିନ ମାନ୍ଦ୍ରାଜ ତ୍ୟାଗ କରିବାର ବନ୍ଦୋବସ୍ତ କରିଥିଲି, ଏଣୁ ଫେରିଲା ବେଳେ ମିଉଜିୟମ୍ ପ୍ରଭୃତି ଦେଖିବାକୁ ବାକି ରହିଲା ।

ସନ୍ଧ୍ୟା ପୂର୍ବରୁ ଏରାମୋର ଷ୍ଟେସନକୁ ଗଲି । ଏହା ସାଉଥ୍ ଇଣ୍ଡିୟାନ୍ ରେଲଓଏର ପ୍ରଧାନ ଷ୍ଟେସନ । ଗୃହଟି ଅତି ସୁନ୍ଦର ଓ ସୁସଜ୍ଜିତ । ମୁଁ ପହଞ୍ଚିଲା ବେଳକୁ ଅନେକ ଯାତ୍ରୀ ସ୍ଥାନ ଅଧିକାର କରି ବସିଥିଲେ । ଅତି କଷ୍ଟରେ ଗୋଟିଏ କୋଠରି ପାଇଲି । ଏହି ଗାଡ଼ିରେ ଲଙ୍କାର ଡାକ ଯାଏ । ଏହାକୁ ଏଣୁ କଲମ୍ବୋ ବୋଟ୍‌ମେଲ୍ ବୋଲନ୍ତି । ଗାଡ଼ିଟିମାନ ଯେମନ୍ତ ସୁନ୍ଦର, ବନ୍ଦୋବସ୍ତ ତେମନ୍ତ ପରିପାଟି । ପ୍ରତ୍ୟେକ ଗାଡ଼ିରେ ବାରନ୍ଦା ଅଛି । ପ୍ରତ୍ୟେକ ଗାଡ଼ି ଅନେକ ଗୁଡ଼ିଏ କୋଠରିରେ ବିଭକ୍ତ । ପ୍ରତ୍ୟେକ କୋଠରିରେ ଦୁଇ ଜଣରୁ ଅଧିକ ଯାତ୍ରୀଙ୍କୁ ବସିବାକୁ ଅନୁମତି ଦିଆଯାଏ ନାହିଁ । ପାଇଖାନା ସ୍ୱତନ୍ତ୍ର । ପ୍ରତ୍ୟେକ କୋଠରିରେ ମୁଖହାତ ଧୋଇବାର ବନ୍ଦୋବସ୍ତ ଅଛି । ପ୍ରତି ଗାଡ଼ିରେ ଜଣେ ଲେଖାଏଁ ଆଜ୍ଞାକାରୀ ଭୃତ୍ୟ (Waiter) ଥା'ନ୍ତି । ତାହାର ବସିବା ସ୍ଥାନ ସହିତ ପ୍ରତ୍ୟେକ କୋଠରିରୁ ବୈଦ୍ୟୁତିକ ସଂଯୋଗ ଅଛି । ଯେଉଁ କୋଠରି ଯାତ୍ରୀ ତାହାକୁ ଡାକନ୍ତି, ସେ ତାହା ବୁଝିପାରି ଉପସ୍ଥିତ ହୁଏ, ପ୍ରୟୋଜନୀୟ କାର୍ଯ୍ୟ କରେ । ପ୍ରତ୍ୟେକ କୋଠରିରେ ବୈଦ୍ୟୁତିକ ଆଲୋକ ଓ ପଙ୍ଖାର ବନ୍ଦୋବସ୍ତ ହୋଇଅଛି । ଗାଡ଼ିର ଏକ ପ୍ରାନ୍ତରୁ ଅପର ପ୍ରାନ୍ତକୁ ଯିବାର ବନ୍ଦୋବସ୍ତ ଅଛି । ଗାଡ଼ିରେ ଦେଶୀ ଓ ବିଲାତି ହୋଟେଲ ଅଛି; ପ୍ରୟୋଜନୀୟ ଖାଦ୍ୟ ଅନାୟାସରେ ମିଳେ । ଆମ୍ଭେମାନେ ନିରାପଦରେ ଉପବେଶନ କଲାରୁ ୬ ଘଣ୍ଟା ୪୦ ମିନିଟ୍‌ରେ ଗାଡ଼ି ଷ୍ଟେସନ ତ୍ୟାଗ କଲା; ଗାଡ଼ି ଦ୍ରୁତବେଗରେ ଧାବମାନ ହେବାକୁ ଲାଗିଲା; ବାରନ୍ଦାରେ ଦଣ୍ଡାୟମାନ ହୋଇ ବହୁ କ୍ଷଣଯାଏ ଚନ୍ଦ୍ର କିରଣଦ୍ୱାରା ଆଲୋକିତ ଭୂତଳଦୃଶ୍ୟ ଦେଖୁଥିଲି । ୯ ଘଣ୍ଟା ଉତ୍ତାରୁ ନିଶ୍ଚିନ୍ତ ଭାବରେ ଆପଣା କୋଠରିରେ ନିଦ୍ରା ଗଲି ।

ତାଞ୍ଜୋର ଷ୍ଟେସନରେ ନିଦ୍ରାଭଙ୍ଗ ହେଲା । ପ୍ରାତଃକୃତ୍ୟ ଉତ୍ତାରୁ କଣ୍ଟକମୟ ଛାୟାକାର ଦ୍ରୁମ ବିମଣ୍ଡିତ ପର୍ବତଶ୍ରେଣୀର ଦୃଶ୍ୟ ଦେଖୁଥିଲି ଏବଂ ଆମ୍ଭ ଦେଶର ଦୃଶ୍ୟ ସହିତ ତୁଳନା କରିବାରେ ପ୍ରବୃତ୍ତ ହୋଇଥିଲି । ଦେଶଟା କି ନିଷ୍ଠୁର । ପର୍ବତରେ ମାଟି ନାହିଁ, ଗଛରେ ପତ୍ର ନାହିଁ । ଗଛ ବୁଦାସବୁ କଣ୍ଟାମୟ । ମନେହୁଏ ଜୀବନ ସଂଗ୍ରାମରେ ସମସ୍ତେ ବ୍ୟସ୍ତ, ପରକୁ ଆଶ୍ରୟ ଦେବା ଭଳି କେହି ନୁହନ୍ତି । ଦେଖୁ ଦେଖୁ ସୂର୍ଯ୍ୟ କିରଣ ଅତ୍ୟନ୍ତ ପ୍ରଖର ହେବାକୁ ଲାଗିଲା । ବୈଦ୍ୟୁତିକ ପଙ୍ଖା ନ ଥିଲେ କି କଷ୍ଟ ହୁଅନ୍ତା ତାହା ବର୍ଣ୍ଣନାତୀତ ।

୧୧ ଘଣ୍ଟା ବେଳେ ଗାଡ଼ି ମଦୁରା ଷ୍ଟେସନରେ ପହଞ୍ଚିଲା । ରାମେଶ୍ୱର ଯିବା ଉଦ୍ଦେଶ୍ୟରେ ମୁଁ ସେଠାରେ ଓହ୍ଲାଇଲି । ୧ ଘଣ୍ଟା ବେଳେ ରାମେଶ୍ୱର ଗାଡ଼ି ଛାଡ଼େ । ସୁତରାଂ ୨ ଘଣ୍ଟା ନିମନ୍ତେ ଅନ୍ୟତ୍ର ବସା ବନ୍ଦୋବସ୍ତ କରିବାର ଅନାବଶ୍ୟକ ବୋଲି ଷ୍ଟେସନ୍‌ରେ ରହିଲି । ସର୍ବତ୍ର ପାସେଞ୍ଜର ଗାଡ଼ିର ସମାନ ଦଶା । ବୈଦ୍ୟୁତିକ ପଙ୍ଖା ନାହିଁ ବା ଆଲୋକ ନାହିଁ । ଖରାରେ ଗାଡ଼ିଗୁଡ଼ିକ ତାତିକରି ଥିଲା । ଭାରତର ଦକ୍ଷିଣପ୍ରାନ୍ତ, ଆଶ୍ୱିନମାସ, ଠିକ୍ ମଧ୍ୟାହ୍ନ, ଏ ସମୟରେ ରେଲଗାଡ଼ିରେ ଚଢ଼ିବା କି ସୁଖ, ଅନୁଭବୀ ମାତ୍ରେ ବୁଝିପାରିବେ । ପାସେଞ୍ଜର ଗାଡ଼ି ଅଧଘଣ୍ଟା ସ୍ଥଳରେ ୪୫ ମିନିଟ୍ ଷ୍ଟେସନରେ ଠିଆ ହୋଇ ରହିଲେ ଦୋଷ ନାହିଁ । ଆମ୍ଭମାନଙ୍କର ତ କଷ୍ଟର ସୀମା ନ ଥିଲା । ଯାହାହେଉ ନିର୍ଦ୍ଦିଷ୍ଟ ସମୟର ୧୫ ମିନିଟ୍ ଉତ୍ତାରୁ ଗାଡ଼ି ଛାଡ଼ିଲା । ଷ୍ଟେସନ୍‌ର ଅଳ୍ପଦୂରରେ ଗୋଟିଏ ଛୋଟ ପାହାଡ଼, ପାହାଡ଼, ତଳରେ ଗୋଟିଏ ସୁନ୍ଦର ମନ୍ଦିର । ପ୍ରଥମେ ଏହିଠାରୁ ଦାକ୍ଷିଣାତ୍ୟ ମନ୍ଦିର ଓ ଗୋପପୁରମ୍‌ର ଆଭାଷ ମିଳିଲା । ମଦୁରା ତ୍ୟାଗ କଲା ଉତ୍ତାରୁ ନିକଟବର୍ତ୍ତୀ କେତେକ ଗ୍ରାମର ପାନବରଜ ଦେଖାଯାଉଥିଲା । ପ୍ରଥମେ ମୁଁ ପାନବରଜ ବୋଲି ସ୍ଥିର କରିପାରି ନ ଥିଲି । କୌଣସି ପଟକ୍ଷେତ ବୋଲି ଅନୁମାନ କରିଥିଲି । ଆମ୍ଭମାନଙ୍କ ଦେଶର ପାନବରଜକୁ ଛଣ ବଣ ଘେରାନ୍ତି, ପୁଣି ଛାୟା ନିମନ୍ତେ ଉପର ଛଣର ଛାଉଣି କରନ୍ତି । ଏ ଦେଶରେ ତାହା

କରନ୍ତି ନାହିଁ। ପ୍ରଥମେ କ୍ଷେତକୁ ଚାଷ କରି ହୁଡ଼ା ଦିଅନ୍ତି। ହୁଡ଼ା ଉପରେ ଅର୍ଦ୍ଧହାତ ଅନ୍ତରରେ ଗୋଟିଏ ଗୋଟିଏ ଅଗସ୍ତି ମଞ୍ଜି ରୋପଣ କରନ୍ତି। ଅଗସ୍ତି ଗଛର ବୟସ ପ୍ରାୟ ଏକ ବର୍ଷ ହେଲାରୁ ପାନ ରୋପଣ କରନ୍ତି। ଅଗସ୍ତି ଗଛ ପାନଲତାକୁ ଛାୟା ଦିଏ ଏବଂ ପାନ ତାହା ଦେହରେ ମାଡ଼େ। ତିନି ଚାରି ବର୍ଷପରେ ପାନ କ୍ଷେତ ଭଙ୍ଗା ହୁଏ। ସେତେବେଳକୁ ଅଗସ୍ତି ଗଛ ଖୁବ୍ ବଡ଼ ହୋଇଥାଏ। ଏଣୁ ଗୃହ ନିର୍ମାଣରେ ଓ ଜାଳକାଠ ରୂପେ ବ୍ୟବହୃତ ହୁଏ। ଏହି ପ୍ରଥା ଆମ ଦେଶରେ ପ୍ରଚଳିତ ହେବା ବାଞ୍ଛନୀୟ।

ଗାଡ଼ି କ୍ରମେ ପୂର୍ବାଭିମୁଖୀନ ହେଲା। ଏଣୁ ପୂର୍ବଘାଟ ପର୍ବତଶ୍ରେଣୀ ଦୃଷ୍ଟିବହିର୍ଭୂତ ହେଲା। ଅଧିକାଂଶ ସ୍ଥାନ ବୃକ୍ଷଲତା ବିବର୍ଜିତ ବିସ୍ତୀର୍ଣ୍ଣ ଅନୁର୍ବର ଭୂମି, ସ୍ଥାନେ ସ୍ଥାନେ କେତେଗୁଡ଼ିଏ କଣ୍ଟାଗଛ ଦୃଷ୍ଟିଗୋଚର ହୁଏ। କୃଷିକ୍ଷେତ୍ର ଅତି କମ୍ ବୋଇଲେ ଚଳେ। ଉର୍ବର ଭୂମି ମଧ୍ୟରେ ଗୋଟାଏ ଗୋଟାଏ ଗ୍ରାମ, ଗ୍ରାମଗୁଡ଼ିକରେ ନଡ଼ିଆଗଛ ଅଧିକ, ତାଳଗଛ ପ୍ରାୟ ଦେଖାଯାଏ ନାହିଁ। ପ୍ରାୟ ନଡ଼ିଆ ବଗିଚାମାନଙ୍କରେ କେତେଗୁଡ଼ିଏ ବଡ଼ ବଡ଼ ମାଟିର ଘୋଡ଼ା। ଏଥିରେ କାରଣ ସ୍ଥିର କରିବାକୁ ମୋତେ ବହୁତ ଚିନ୍ତା କରିବାକୁ ପଡ଼ିଥିଲା। ପରେ ଜାଣି ପାରିଲି ଯେ ଗ୍ରାମବାସୀମାନେ ଗ୍ରାମ୍ୟ ପୂଜାରେ େ ଘୋଡ଼ା ଉତ୍ସର୍ଗ କରନ୍ତି। ଏ ଅଞ୍ଚଳରେ ପ୍ରାୟ ବଡ଼ ବଡ଼ ଗ୍ରାମମାନଙ୍କରେ ମନ୍ଦିର ଅଛି। ହିନ୍ଦୁମନ୍ଦିର ପାଖେ ପାଖେ ଗିରିଜାଘର ମଧ୍ୟ ଦେଖାଯାଏ।

ପରମାକୁଡ଼ି ଷ୍ଟେସନରେ ଗୋଟିଏ ବଡ଼ ହିନ୍ଦୁ ମନ୍ଦିର ଅନତିଦୂରରେ ଗୋଟିଏ ଗିରିଜାଘର ପ୍ରତିଦ୍ୱନ୍ଦ୍ୱୀ ରୂପେ ଦଣ୍ଡାୟମାନ ହୋଇଥିବାର ଦେଖିଲି। ଏକ ହୀନଚୂଡ଼ ମନ୍ଦିରଗାତ୍ର କାଞ୍ଚନିକ ଜୀବର ବିକଟ ବଦନ-ବ୍ୟାଦାନରେ ବିକୃତ, ଅପର ସୁଚିକ୍କଣ ସୂଚ୍ୟଗ୍ର ଚୂଡ଼ୋପରି ଶାନ୍ତି ଚିହ୍ନସ୍ୱରୂପ କ୍ଷୁଦ୍ର କ୍ରସ୍ ସୁଶୋଭିତ। ପାଠକଗଣ! ଏଥିରେ ପକ୍ଷପାତିତା ନାହିଁ, ପ୍ରକୃତ ଭାବି ଦେଖନ୍ତୁ, କେଉଁଟି ଶାନ୍ତି ପ୍ରଦ ଓ ସୁଦୃଶ୍ୟ? ଏହି ଦୃଶ୍ୟ ଦେଖି ଭାବିଲି, ଆର୍ଯ୍ୟ ଭ୍ରାତାଗଣ! ତୁମ୍ଭର ଦେଉଳ ଓ ଗୋପୁରମ୍ ସମକ୍ଷରେ ବୌଦ୍ଧମାନଙ୍କରେ ଧାତୁଗର୍ଭ ଆରାମ ଓ ଦଣ୍ଡାୟମାନ ରହିଲେ ତୁମ୍ଭମାନଙ୍କର ଧର୍ମନାଶ ଓ ସମ୍ମାନନାଶ ହେବାର କି ଆଶଙ୍କା କରି ନ ଥିଲ ଏବଂ ସେଥି ନିମନ୍ତେ କି ବିଦ୍ୱେଷ କରି ନ ଥିଲ? ସେମାନଙ୍କର ଯାବତୀୟ ଅନିଷ୍ଟ କଲ, ଦେଶରୁ ନିର୍ବାସିତ କଲ, ସେମାନଙ୍କ ମନ୍ଦିରକୁ ନିଜ ମନ୍ଦିରରେ ପରିଣତ କଲ। କିନ୍ତୁ ସେହି ପାପର କୁଫଳ ଶୀଘ୍ର ଦେଖାଗଲା। ମୁସଲମାନଙ୍କର ଅର୍ଦ୍ଧଚନ୍ଦ୍ର ଚିହ୍ନାଙ୍କିତ ମସ୍‌ଜିଦ ସକଳ ତୁମ୍ଭର ମନ୍ଦିରର ପ୍ରତିଦ୍ୱନ୍ଦ୍ୱୀ ହୋଇ ସ୍ଥାନେ ସ୍ଥାନେ ଦଣ୍ଡାୟମାନ ହେଲେ। କଠିନ ହାତୁଡ଼ି ଆଘାତରେ ବିଗ୍ରହମାନଙ୍କର ହସ୍ତପଦାଦି ଚୂର୍ଣ୍ଣୀଭୂତ ହେଲା। ମାତ୍ର ଏ ନୀତି ଧର୍ମନୀତି ନୁହେଁ, ଏଣୁ ଅଚିରେ ପତନ ହେଲା। ଶାନ୍ତି ଅବତାର ଖ୍ରୀଷ୍ଟଙ୍କ ମନ୍ଦିର ଆଜି ସ୍ଥାନେ ସ୍ଥାନେ ବିଦ୍ୟମାନ। ଗିରିଜା ନିର୍ମାଣ ନିମନ୍ତେ ଭଗ୍ନ ମନ୍ଦିରର ପ୍ରସ୍ତର ଆବଶ୍ୟକ ହେବାକୁ ନାହିଁ। ଶାନ୍ତିଖଡ୍ଗ ଦ୍ୱାରା ଧର୍ମାଭିମାନ କ୍ରମେ ଖଣ୍ଡିତ ହେଉଅଛି। ଯେତେବେଳେ ଦେବାଳୟର ଘୃଣତ୍ତ ବଳିତା ନିର୍ବାପିତ ହେବ, ସେତେବେଳେ ଗିରିଜା ଘରେ ମହମବତି ଧପ୍ ଧପ୍ ହୋଇ ଜଳି ଉଠିବ। ଯେତେବେଳେ ଗିରିଜାର ଘଣ୍ଟା ଟଣ ଟଣ ଶବ୍ଦ କରି ଗ୍ରାମବାସୀଙ୍କୁ ସନ୍ଧ୍ୟା ଆଗମନର ସୂଚନା ଦେବ, ସେତେବେଳେ ଦେବ ମନ୍ଦିରର ସନ୍ଧ୍ୟା ଧୂପର ଘଣ୍ଟା ଶବ୍ଦ ଭାବୀବଂଶଧରମାନଙ୍କର ସ୍ମରଣରେ ମଧ୍ୟ ନ ଥିବ। ଶାନ୍ତିର ପୂର୍ଣ୍ଣାବତାର ବୁଦ୍ଧଦେବଙ୍କ ଧର୍ମ ଭାରତବାସୀଙ୍କ ହୃଦୟରୁ 'ମୁଁ'ର ମୂଳୋତ୍ପାଟନ କରିପାରି ନ ଥିଲା, ଭାରତକୁ ଶାନ୍ତି ଆନୟନ କରିପାରି ନ ଥିଲା। ମାତ୍ର ଶାନ୍ତିର ଅଂଶାବତାର ଖ୍ରୀଷ୍ଟ ପ୍ରବର୍ତ୍ତିତ ଧର୍ମ ଓ ନୀତି ଆଜି ପୁଣି ଭାରତକୁ ଶାନ୍ତିର ରାଜ୍ୟ କରିବାକୁ ବସିଅଛି। ଶାନ୍ତି ଆସୁ, ଶାନ୍ତି ଆସୁ, ଭାରତବାସୀ ପୂର୍ବପୁରୁଷଙ୍କ କୃତପାପ ନିମନ୍ତେ ଅନୁତାପ କରିବେ ଏବଂ ସେହି ଜ୍ଞାନସିନ୍ଧୁ ବୁଦ୍ଧଦେବଙ୍କର ଶରଣାଗତ ହେବେ। ପ୍ରସଙ୍ଗକ୍ରମେ ଭିନ୍ନକଥାର ଉତ୍ଥାପନ ହୋଇପଡ଼ିଲା। ଭାବନା କରୁଁ କରୁଁ ରେଳଗାଡ଼ି ବହୁଦୂର ଅଗ୍ରସର ହୋଇଥିଲା। ଏହି ବାଲୁକାମୟ ବୃକ୍ଷଶୂନ୍ୟ କେତେକ ସ୍ଥାନ ଦେଖି ସମୁଦ୍ରର ନିକଟବର୍ତ୍ତୀ ହେଉଥିବାର ଅନୁମାନ ହେଲା। ୪ ଘଣ୍ଟା ୩୫ ମିନିଟ୍ ବେଳେ ଗାଡ଼ି ମଣ୍ଡପମ୍ ଷ୍ଟେସନରେ ପହଞ୍ଚିଲା। ଏଠାରୁ ରାମେଶ୍ୱର ଦ୍ୱୀପ ପାଞ୍ଚମାଇଲ। ଛୋଟ ଷ୍ଟିମରଦ୍ୱାରା ପାରି ହେବାକୁ ପଡ଼େ। ଗାଡ଼ି ପହଞ୍ଚିବା ମାତ୍ରେ ଆମ୍ଭେମାନେ ଷ୍ଟିମରକୁ ଗଲୁଁ। ସେତୁର ପୂର୍ବପାଖ ଉନ୍ମୁକ୍ତ ଥିଲେ ମଧ୍ୟ ଏହା ଗୋଟିଏ ପ୍ରକାଣ୍ଡ ହ୍ରଦତୁଲ୍ୟ ଦେଖାଯାଉଥିଲା। ସୂର୍ଯ୍ୟ ଅସ୍ତାଚଳ ଚୂଡ଼ ସ୍ପର୍ଶ କଲେ ଏବଂ ଆମ୍ଭେମାନେ ରାମେଶ୍ୱର ଦ୍ୱୀପରେ ପହଞ୍ଚିଲୁଁ। ପ୍ରଥମ ଷ୍ଟେସନର ନାମ ପମ୍ବନ। ଏଠାରୁ ଖାସ୍ ରାମେଶ୍ୱର ୮ ମାଇଲ୍।

ଏହି ଦ୍ୱୀପର ଦୈର୍ଘ୍ୟ ୧୧ ମାଇଲ ଓ ପ୍ରସ୍ଥ ପ୍ରାୟ ୬ ମାଇଲ। ଅନୁମାନ ହୁଏ ବହୁବର୍ଷ ପୂର୍ବରେ ଏହା ଭାରତବର୍ଷ ସହିତ ସଂଲଗ୍ନ ଥିଲା। ଭାରତବର୍ଷ ଓ ରାମେଶ୍ୱର ମଧ୍ୟବର୍ତ୍ତୀ

ସଂକୀର୍ଣ୍ଣ ଭୂଖଣ୍ଡ ସମୁଦ୍ର ତରଙ୍ଗଦ୍ୱାରା ବିଧୌତ ହୋଇ କେବଳ ଅସ୍ଥି ପ୍ରାୟ କଠିନ ପ୍ରସ୍ତରଶ୍ରେଣୀ ସମୁଦ୍ର ପୃଷ୍ଠରୁ ଈଷତ୍ ଉନ୍ନତ ହୋଇ ରହିଅଛି ।

ରାମ ଲଙ୍କା ଯିବାବେଳକୁ ଅନ୍ତତଃ ରାମାୟଣ ରଚନା ବେଳକୁ ରାମେଶ୍ୱର ଯାଏ ଚାଲିଯିବାର ବାଟ ଥିଲା ବୋଲି ଅନୁମାନ ହୁଏ । ବର୍ତ୍ତମାନ ରାମେଶ୍ୱର ଦେଇ ଲଙ୍କା ଯିବାର ସୁବନ୍ଦୋବସ୍ତ ହେଉଅଛି । ଏଣୁ ରାମେଶ୍ୱର ଛାଡ଼ି କେତେଦୂର ପର୍ଯ୍ୟନ୍ତ ରେଳଯିବ, ତେଣୁ ମାନାଠାରୁ କେତେଦୂର ଏ ଆଡ଼କୁ ଆସିବ, ମଧରେ କେବଳ ୬୦ କି ୭୦ ମାଇଲ ବ୍ୟବଧାନ ରହିବ, ତାହା ଷ୍ଟିମରଦ୍ୱାରା ପାର ହେବାକୁ ପଡ଼ିବ । ପ୍ରତି ପଥର ଉପରେ ସ୍ତମ୍ଭ ନିର୍ମାଣ ହୋଇ ପୋଲ ପ୍ରସ୍ତୁତ ହେବ । ଆଦମ ପୋଲର ନାମ ଆଦମ ବଂଶଧରମାନେ ସାର୍ଥକ କରିବେ ।

ରାମେଶ୍ୱର ଦ୍ୱୀପଟି ବାଲୁକାମୟ ଭୂମି, ସ୍ଥାନେ ସ୍ଥାନେ ମାତ୍ର ଉର୍ବର ଭୂମି ଅଛି । ନଡ଼ିଆ ଗଛ ଅତ୍ୟଧିକ । ଶୁଣାଯାଏ, ନଡ଼ିଆ ଗଛର ମାସୁଲ ପ୍ରାୟ ୯ ହଜାର ଟଙ୍କା । ପ୍ରତି ବୃକ୍ଷ ନିମନ୍ତେ ଏକ ଅଣା ମାସୁଲ ଧାର୍ଯ୍ୟ ହୋଇଅଛି । ଆମ୍ବଗଛ ଓ ଜାମୁଗଛ ଅଛି । ଅଧିକାଂଶ ସ୍ଥଳ ଛତ୍ରାକାର କଣ୍ଟା ଗଛରେ ପରିପୂର୍ଣ୍ଣ ।

ରାମେଶ୍ୱର ଗୋଟିଏ ସୁନ୍ଦର ଗ୍ରାମ । ପୂଜକ ଓ ସେବକମାନଙ୍କର ଘର ବ୍ୟତୀତ କେତେଗୁଡ଼ିଏ ଦୋକାନ ଘର ମଧ ଅଛି । ଗୋଟାଏ ପୋଷ୍ଟଅଫିସ୍ ମଧ ଅଛି । ସମୁଦ୍ର କୂଳରେ ଥିବାରୁ ସ୍ୱାସ୍ଥ୍ୟକର ବୋଲି ଅନୁମାନ ହୁଏ । ମଧ୍ୟାହ୍ନ କାଳରେ ବଡ଼ ଗ୍ରୀଷ୍ମ ହୁଏ, ମାତ୍ର ରାତ୍ରି ଥଣ୍ଡା । ଖାଦ୍ୟପଦାର୍ଥ ସୁଲଭ । ରାମ, ଲକ୍ଷ୍ମଣ ଓ ସୀତାଙ୍କ ନାମର ତିନି ଗୋଟି କୁଣ୍ଡ ଅଛି । ମାତ୍ର ଜଳ ଦୂଷିତ ଓ ଅବ୍ୟବହାର୍ଯ୍ୟ । ଗ୍ରାମ ମଧରେ ଗୋଟା କେତେ କୂପ ଅଛି । ପ୍ରାୟ କୂପର ଜଳ ଖାରିଆ, ମନ୍ଦିରର କୂପ ଜଳ ଅତି ଉତ୍ତମ । ରାମେଶ୍ୱର ଯେ ଗୋଟାଏ ପ୍ରସିଦ୍ଧ ମନ୍ଦିର ଏହା ବୋଲିବା ବାହୁଲ୍ୟ ମାତ୍ର । ଏହା ସମୁଦ୍ର କୂଳରେ ସ୍ଥାପିତ । ଗୋପୁରର ଉଚ୍ଚତା ପ୍ରାୟ ୧୨୦ ଫୁଟ । ଗୋପୁରରେ ବଡ଼ ବଡ଼ ମନୁଷ୍ୟ, ଦେବତା ମୂର୍ତ୍ତି ଓ କେତେକ ପଶୁ ମୂର୍ତ୍ତି ଅଛି । ମନ୍ଦିରର ଚାରି ପାଖରେ ଗୋଟାଏ ପ୍ରକାଣ୍ଡ ବାରନ୍ଦା ଅଛି । ପ୍ରସ୍ତରଗୁଡ଼ିକ ଅତି ଉଚ୍ଚ ଓ ସୁଦୃଶ୍ୟ । ବେଢ଼ାରେ ଦେବତା ଅଧିକ ନାହାନ୍ତି, ଗୋଟାଏ ପ୍ରକାଣ୍ଡ ବୃଷଭ ଅଛି ।

ରବି, ସୋମ ପ୍ରଭୃତି ନବଗ୍ରହଙ୍କର ବିଗ୍ରହ ଅଛି । ଶିବଲିଙ୍ଗ କଳା ମୁଗୁନି ପ୍ରସ୍ତର ଦ୍ୱାରା ନିର୍ମିତ । ଊର୍ଦ୍ଧ୍ୱ ଭାଗରେ ଗୋଟିଏ ରୌପ୍ୟ ତ୍ରିପୁଣ୍ଡ୍ରକ ଚିତା । ଶିବଲିଙ୍ଗର ଅତି ନିକଟକୁ ପୂଜକ ଭିନ୍ନ ଅପର କେହି ଯିବାକୁ ଅନୁମତି ପା'ନ୍ତି ନାହିଁ । ଶିବଙ୍କୁ ଯାହା ଦିଆଯାଏ ତାହା ପଣ୍ଡାଙ୍କର ପ୍ରାପ୍ୟ ନୁହେଁ । ମନ୍ଦିର ବ୍ୟୟ ନିମନ୍ତେ ରକ୍ଷିତ ହୁଏ । ଜଣେ ଚେଟୀ ରାମେଶ୍ୱରଙ୍କ ନୂତନ ମନ୍ଦିର ନିର୍ମାଣ ନିମନ୍ତେ ଆଠ ଲକ୍ଷ ଟଙ୍କା ଦେଇ ଅଛନ୍ତି । କୃଷ୍ଣବର୍ଣ୍ଣ ମୁଗୁନି ପଥରରେ ଏହି ମନ୍ଦିର ନିର୍ମାଣ ହେଉଅଛି । ମୂଳଭିତ୍ତି ନିର୍ମାଣ ହୋଇଅଛି, ଦୁଆରବନ୍ଧ ତିଆର ହୋଇଅଛି ଓ ଏହାଛଡ଼ା କେତେକ ପ୍ରସ୍ତର ସଂଗ୍ରହ ଅଛି । ଏଥିରେ ପ୍ରାୟ ଚାରି ଲକ୍ଷ ଟଙ୍କା ବ୍ୟୟ ହୋଇଥିବାର ଶୁଣିଲି । ଏହି ପଥର ପାଲିସ୍ କରିବା କି କଷ୍ଟକର ଓ ବ୍ୟୟସାଧ ତାହା ଦେଖିଲେ ଏହି ଟଙ୍କା ବ୍ୟୟ ହୋଇଥିବ ବୋଲି ଅସମ୍ଭବ ମନେ ହୁଏ ନାହିଁ । ପ୍ରସ୍ତର ଭାରତବର୍ଷରୁ ନୀତ ହେଉଅଛି । ପୂର୍ବ ଗୋପୁର ପ୍ରଭୃତି Stand Stone (ବାଲି ପ୍ରସ୍ତର) ନିର୍ମିତ । ବର୍ତ୍ତମାନ ନିର୍ମାଣ ହୋଇଥିବା ମନ୍ଦିର ନିର୍ବିଘ୍ନରେ ଶେଷ ପାଇଲେ ସୁଦୃଶ୍ୟ ଓ ଚିରସ୍ଥାୟୀ ହେବ, ସନ୍ଦେହ ନାହିଁ । ରାମେଶ୍ୱର ଦ୍ୱୀପର ଶେଷ ଷ୍ଟେସନ୍ ନାମ ଧନୁସ୍ କୋଡ଼ି । ଏହାକୁ ଧନୁତୀର୍ଥ ମଧ କହନ୍ତି । ରାମ ଏଠାରେ ବନ୍ଧକୁ ଧନୁ ହୁଳରେ ଭାଙ୍ଗିଥିଲେ ପରା ? ଏଣୁ ଏହାର ଏହି ନାମ ।

ସୂର୍ଯ୍ୟୋଦୟ ବେଳେ ରାମେଶ୍ୱର ଦ୍ୱୀପ ତ୍ୟାଗ କରି ପୂର୍ବାହ୍ନ ୧୧ ଘଣ୍ଟା ବେଳେ ମଦୁରାରେ ପହଞ୍ଚିଲୁଁ । ଏ ଦିନ ମହାଷ୍ଟମୀ । ଏଣୁ ଯାତ୍ରୀର ଭାରି ଭିଡ଼ ଥିଲା । ଷ୍ଟେସନର ଅତି ନିକଟରେ ବସା ଘର, ଜଣେ ଗାଇଡ଼ ମୋତେ ସେଠାକୁ ନେଇ ଗଲେ ଏବଂ ବସାର ସୁବନ୍ଦୋବସ୍ତ କରିଦେଲେ । ରେଲ କୋମ୍ପାନୀକର୍ତ୍ତୃକ କେତେଗୁଡ଼ିଏ ଲୋକ ମନ୍ଦିର ପ୍ରଭୃତି ଦେଖାଇବା ନିମନ୍ତେ ନିଯୁକ୍ତ ହୋଇଅଛନ୍ତି । ସେମାନେ ଯାତ୍ରୀମାନଙ୍କୁ ଅନେକ ସାହାଯ୍ୟ କରନ୍ତି । ମୁଁ ଜଣେ ଭଲ ଗାଇଡ୍ ପାଇଥିଲି । ଏ ଜଣେ ପଣ୍ଡା ଅଥଚ ଭଲ ଇଂରାଜୀ କହିପାରନ୍ତି । ଇଉରୋପୀୟମାନଙ୍କୁ ମନ୍ଦିର ଦେଖାଇବା ନିମନ୍ତେ କେତେଗୁଡ଼ିଏ ଲୋକ ନିଯୁକ୍ତ ଅଛନ୍ତି, ତନ୍ମଧ୍ୟରୁ ଏ ଜଣେ ବ୍ୟକ୍ତି । ସେଦିନ କୌଣସି ସାହେବ ଦର୍ଶକ ନ ଥିବାରୁ ମୋହ ଭାଗ୍ୟରେ ମିଳି ଯାଇଥିଲେ । ସାହେବମାନେ ମନ୍ଦିର ଦେଖିବାକୁ ଅନୁମତି ପା'ନ୍ତି । ଏକଥା ଶୁଣି ବୋଧହୁଏ ଅନେକ ପାଠକ ଆଶ୍ଚର୍ଯ୍ୟାନ୍ୱିତ ହେବେ, କାରଣ ବଡ଼ ଦେଉଳର ଅରୁଣସ୍ତମ୍ଭ ଡେଇଁବାକୁ ହିନ୍ଦୁ ଭିନ୍ନ ଅପର ଜାତିର ଅଧିକାର ନାହିଁ । ଭୁବନେଶ୍ୱର ବେଢ଼ା ମଧକୁ ଯାଇ ମନ୍ଦିର ପରିଦର୍ଶନ କରିବାକୁ ବଡ଼ଲାଟ ମଧ ଅନୁମତି ପାଇ ନ ଥିଲେ । ମଦୁରାମିନାକ୍ଷୀ ମନ୍ଦିରର ବେଢ଼ା ମଧକୁ ଯାଇ ସ୍ଥାପତ୍ୟ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବାକୁ ସାହେବମାନେ ଅନୁମତି ପାଇଅଛନ୍ତି । କେବଳ ମନ୍ଦିର ଭିତରକୁ ପଶିବାର ଅନୁମତି ନାହିଁ, ପ୍ରୟୋଜନ ମଧ ନାହିଁ । ଯାହା ଦର୍ଶନଯୋଗ୍ୟ, ତାହା ମନ୍ଦିର ବାହାରେ ।

ପ୍ରଥମେ ମନ୍ଦିର ଦେଖିବାକୁ ଗଲୁଁ। ଗୋପୁରଗୁଡ଼ିକ ରାମେଶ୍ୱରର ଗୋପୁରତୁଲ୍ୟ। ଏହି ମନ୍ଦିରଗୁଡ଼ିକର ନିର୍ମାଣ ପ୍ରକ୍ରିୟା ଓ ଢଙ୍ଗ ଭାରତର ଅପର ଦେଶର ମନ୍ଦିରମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ। ଅନ୍ୟ ଦେଶର ସିଂହଦ୍ୱାରା ଅପେକ୍ଷା ଦେଉଳଟିମାନ ବଡ଼। ଏ ଦେଶର ଗୋପୁର ଉନ୍ନତ ଓ ସୁନ୍ଦର, ତାହା ତୁଳନାରେ ଦେଉଳ ନଗଣ୍ୟ। ପ୍ରତ୍ୟେକ ଦରଜାରେ ଥିବା ଚତୁଷ୍କୋଣ ନିମ୍ନ ବିସ୍ତୃତ ଓ ଊର୍ଦ୍ଧ୍ୱସଂକୀର୍ଣ୍ଣ ଗୃହର ନାମ ଗୋପୁର। ଏହା ଦେଉଳପରି ସୂଚ୍ୟଗ୍ର ନୁହେଁ କିମ୍ବା ଅଟ୍ଟାଳିକା ପରି ଏହାର ସମାନ୍ତରାଳ ଭିତ୍ତି ନାହିଁ। ପ୍ରତ୍ୟେକ କାନ୍ଥ ପ୍ରସ୍ତର ନିର୍ମିତ ଏବଂ ତହିଁରେ ଦେବତା ଓ ପଶୁ ଆଦିର ବଡ଼ ବଡ଼ ପ୍ରତିମୂର୍ତ୍ତି ଖୋଦିତ। କୌଣସିଠାରେ ଅଶ୍ଳୀଳ ବା ଦର୍ଶନ-ଅଯୋଗ୍ୟ ବୀଭତ୍ସ ନରନାରୀର ମୂର୍ତ୍ତିଥିବାର ସ୍ମରଣ ହେଉ ନାହିଁ। ଏହି ମନ୍ଦିରରେ ୯ ଗୋଟି ଗୋପୁର ଅଛି, ତନ୍ମଧ୍ୟରୁ ଗୋଟିଏ ଗୋପୁର ୧୫୨ ଫୁଟ ଉଚ୍ଚ। ବେଢ଼ାର ଆୟତନ ଦୈର୍ଘ୍ୟରେ ୫୬୪ ହାତ ଓ ପ୍ରସ୍ଥରେ ୪୯୬ ହାତ। ବେଢ଼ା ଭିତରେ ମୀନାକ୍ଷୀ ଓ ସୁନ୍ଦରଙ୍କର ମନ୍ଦିର ଅଛି। ମନ୍ଦିରର ଉପର ଅଂଶ ସ୍ୱର୍ଣ୍ଣ ମଣ୍ଡିତ। ମଧ୍ୟରେ ଗୋଟାଏ ପ୍ରସ୍ତର ପାବଚ୍ଛ ବେଷ୍ଟିତ ପୁଷ୍କରିଣୀ। ଗୋଟାଏ ପ୍ରକାଣ୍ଡ ଦଲାଣି ଅଛି। ଏହି ଦଲାଣ ଏକ ହଜାର ପ୍ରସ୍ତର ସ୍ତମ୍ଭରେ ନିର୍ମିତ। ପ୍ରତ୍ୟେକ ସ୍ତମ୍ଭରେ କାରିଗରୀର ପରାକାଷ୍ଠା ପ୍ରଦର୍ଶିତ ହୋଇଅଛି। ଏହି ମନ୍ଦିରର ନାନାସ୍ଥାନରେ ଏତେ ଦେବଦେବୀଙ୍କର ମୂର୍ତ୍ତି, ସିଂହ, ହାତୀ, ଅଶ୍ୱ, ଅଶ୍ୱାରୋହୀଙ୍କର ମୂର୍ତ୍ତି ଖୋଦିତ ହୋଇଅଛି ଯେ ତାହା ବର୍ଣ୍ଣନାତୀତ। ଏହି ମନ୍ଦିରର ସମଗ୍ର ଅଂଶ ତନ୍ନ ତନ୍ନ କରି ଦେଖିବାକୁ ଅନେକ ଦିନ ଲାଗନ୍ତା। ଶିବଙ୍କର ଯାବତୀୟ କୃତ୍ୟ ଏହି ପ୍ରସ୍ତର କାନ୍ଥମାନଙ୍କରେ ଉତ୍କୀର୍ଣ୍ଣ ହୋଇଅଛି। ଏଥିରୁ ଭଲ ମନ୍ଦ ଛାଡ଼ିବା ବଡ଼ ଦୁରୂହ ବ୍ୟାପାର, କିନ୍ତୁ ମୋହର ଗାଇଡ୍ ଅତି ବିଚକ୍ଷଣ ବ୍ୟକ୍ତି। ଅତି ଅଳ୍ପ ସମୟ ମଧ୍ୟରେ ଯାହା ଉତ୍କୃଷ୍ଟ ତାହା ଦେଖାଇଦେବାକୁ ସମର୍ଥ ହୋଇଥିଲେ। ମୁଁ ଅନୁମାନ କଲି ଇଉରୋପୀୟମାନଙ୍କ ସଙ୍ଗରେ ମନ୍ଦିର ଦେଖୁଥିବାରୁ ତାଙ୍କର ଏ ବିଚକ୍ଷଣତା ଜନ୍ମ ଅଛି। ଶିବଙ୍କର ଚିଦମ୍ବର ମୂର୍ତ୍ତି ଅତୀବ ବିଚିତ୍ର। ଚିତ୍ ଆକାଶକୁ ଆକାରରେ ପରିସ୍ଫୁଟ କରାଯାଇପାରେ କି ? ତଥାପି କଳ୍ପନାଦ୍ୱାରା ଗୋଟିଏ ବିଗ୍ରହ ଠିଆ କରିବାର କଥା। ବାମପାଦର ଅଙ୍ଗୁଷ୍ଠରେ ପ୍ରକାଶ ମୂର୍ତ୍ତି ଦଣ୍ଡାୟମାନ୍, ଦକ୍ଷିଣପାଦ ମସ୍ତକୋପରି ଉତ୍ତୋଳିତ, ହସ୍ତଗୁଡ଼ିକ ଇତସ୍ତତଃ ଯଥାଯୋଗ୍ୟ ବିନ୍ୟସ୍ତ, କାରିଗରର ବାହାଦୁରି ଯଥେଷ୍ଟ। ତାଣ୍ଡବ ନୃତ୍ୟ ଦୃଶ୍ୟ ତତୋଽଧିକ ସୁନ୍ଦର। ଶିବଙ୍କର ଆକୃତି ଚିଦମ୍ବର ମୂର୍ତ୍ତି ସଦୃଶ୍ୟ, ମାତ୍ର ଭୂତ ପ୍ରେତଙ୍କର ଆକୃତି ତତୋଽଧିକ ଆଶ୍ଚର୍ଯ୍ୟଜନକ। ମାର୍କଣ୍ଡେୟଙ୍କର ଜୀବନଦାନ ମଧ୍ୟ ତଦ୍ରୂପ ବିସ୍ମୟୋତ୍ପାଦକ। ଏପରି ଅନେକ ମୂର୍ତ୍ତି ଅଛନ୍ତି।

ଏ ଦେଶରେ ଶିବଙ୍କର କିପରି ଆଦର ଏବଂ ଦେଶବାସୀମାନେ କିପରି ଶିବଭକ୍ତ ତାହା ମନ୍ଦିରର ମୂର୍ତ୍ତି ଦର୍ଶନରୁ ଅନାୟାସରେ ଉପଲବ୍ଧ ହୁଏ। ଏହା ଦେଖିଲେ ଅନୁମାନ ହୁଏ ଯେ ପ୍ରଥମରୁ ଶିବାରାଧନା ଦାକ୍ଷିଣାତ୍ୟରେ ଆରମ୍ଭ ହୋଇ ଭାରତବ୍ୟାପୀ ହୋଇଅଛି। ଗୋଟିଏ ପ୍ରକାଣ୍ଡ ଗଣେଶ ମୂର୍ତ୍ତି ଅଳ୍ପଦିନ ପୂର୍ବେ ମଦୁରାର ନିକଟବର୍ତ୍ତୀ ଏକ ଗ୍ରାମରେ ଜଳାଶୟରେ ମିଳିଥିଲା। ତାହା ଏହିଠାରେ ରଖା ହୋଇଅଛି। ବିଗ୍ରହଟି ଯେମନ୍ତ ବଡ଼, ତେମନ୍ତ ସୁନ୍ଦର। ବେଢ଼ାର ଏକ ପାର୍ଶ୍ୱରେ ଗୋଟିଏ ମୁଗୁନି ପ୍ରସ୍ତର ନିର୍ମିତ ବାଦ୍ୟଯନ୍ତ୍ର ଅଛି। ଗୋଟିଏ ପ୍ରସ୍ତର ମଧ୍ୟଭାଗ ଭେଦନ ଦ୍ୱାରା ସାତ ଗୋଟି କ୍ଷୁଦ୍ର ସ୍ତମ୍ଭରେ ବିଭକ୍ତ କରାଯାଇଅଛି। ଏହି କ୍ଷୁଦ୍ର ସ୍ତମ୍ଭଗୁଡ଼ିକ ଏପରି କୌଶଳରେ ନିର୍ମିତ ହୋଇଅଛି ଯେ ଏମାନଙ୍କୁ ଆଘାତ କଲେ ଜଳତରଙ୍ଗ ବାଦ୍ୟର ଶବ୍ଦ ପ୍ରାୟ ସା, ରେ, ଗା, ମା, ପା, ଧା, ନି, ସା, ସ୍ୱର– ସପ୍ତକ ନିର୍ଗତ ହୁଏ। ଏଥିରେ ନିର୍ମାଣକର୍ତ୍ତାର ଯେମନ୍ତ ପାଣ୍ଡିତ୍ୟ ତେମନ୍ତ ସହିଷ୍ଣୁତାର ପରିଚୟ ମିଳେ। ଆରତି ବେଳେ ମନ୍ଦିରାଭ୍ୟନ୍ତର ଦେଖିବାର ଉପଯୁକ୍ତ ସମୟ ମନେକରି ଅପରସ୍ଥାନମାନ ଦେଖିବାକୁ ଗଲୁଁ। ଟିରୁମଲ୍ ନାୟକଙ୍କ ଗୃହ ମଧ୍ୟ ଗୋଟିଏ ଦର୍ଶନ ଯୋଗ୍ୟ ବିଷୟ ଅଟେ। ଗୃହଟି ଆଧୁନିକ ଧରଣର, ପୁରୁଣାକାଳିଆ ଘରରେ ଏପରି ଉନ୍ନତ ଓ ମୋଟା ସ୍ତମ୍ଭ ଦେଖାଯାଏ ନାହିଁ, ଖିଲାଣ ମଧ୍ୟ ଖୁବ୍ ଉଚ୍ଚ ଓ ପ୍ରଶସ୍ତ। ଏହି ଗୃହ ବର୍ତ୍ତମାନ ମରାମତ ହୋଇଅଛି। ତାହାଙ୍କର ନାଟ୍ୟାଗାର ସିଭିଲ୍ ଜଜ୍‌ଙ୍କ ଅଫିସ୍ ରୂପେ ବ୍ୟବହୃତ ହେଉଅଛି। ଏହିଠାରୁ ପ୍ରାୟ ଏକମାଇଲ ଅନ୍ତରରେ ଟେପାକୁଲମ୍। ଏହା ଗୋଟିଏ ଚାରିକୋଣିଆ ପୁଷ୍କରିଣୀ। ଚାରି ପାଖ ମୁଗୁନି ପ୍ରସ୍ତର ପାବଚ୍ଛ ଦ୍ୱାରା ସୁଶୋଭିତ। ମଧ୍ୟରେ ଗୋଟିଏ କ୍ଷୁଦ୍ର ଚାରିକୋଣିଆ ଦ୍ୱୀପ ଅଛି। ବୃକ୍ଷାନ୍ତରାଳରେ ଗୋଟିଏ ବଡ଼ ଦେଉଳ ଓ ଚାରି କୋଣରେ ଚାରି ଗୋଟି ଛୋଟ ଛୋଟ ଦେଉଳ। ଉତ୍ସବ ସମୟରେ ପାବଚ୍ଛ ଓ ଦେଉଳରେ ଏକ ଲକ୍ଷ ପ୍ରଦୀପ ଜଳାହୁଏ ଏବଂ ଭେଳାରେ ଦେବତାଙ୍କୁ ବସାଇ ଯାତ୍ରା କରନ୍ତି। ଭେଳାରେ ଯାତ୍ରା ହୁଏ ବୋଲି ଏହି ପୁଷ୍କରିଣୀର ନାମ ଟେପାକୁଲମ୍। ସନ୍ଧ୍ୟାବେଳେ ମୀନାକ୍ଷୀଙ୍କ ମନ୍ଦିର ଦେଖିବାକୁ ଗଲୁଁ। ମନ୍ଦିରାଭ୍ୟନ୍ତର ଆଲୋକମାଳାଦ୍ୱାରା ସୁଶୋଭିତ ହୋଇଥିଲା। ଯାତ୍ରୀମାନଙ୍କପାଇଁ ମନ୍ଦିର ମଧ୍ୟକୁ ଯିବା ଓ ବାହାରକୁ ଆସିବାର ଅତି ସୁବନ୍ଦୋବସ୍ତ ହୋଇଅଛି। ଯିବା ବାଟ ଏକ ପାଖରେ ଓ ଆସିବା ବାଟ ଏକ ପାଖରେ,

ମଧ୍ୟରେ ତୋର ବନ୍ଧା ହୋଇଅଛି ଓ ପ୍ରହରୀଗଣ ଜଗି ଅଛନ୍ତି। ମନ୍ଦିର ଭିତରେ ପର୍ଯ୍ୟନ୍ତ ବାୟୁ ଗମନର ସୁବିଧା ଅଛି। ଏଣୁ ଲୋକ ଭିଡ଼ରେ ମଧ୍ୟ ସମୟ ସମୟରେ ଥଣ୍ଡା ପବନ ମିଳେ। ମୀନାକ୍ଷୀ କୃଷ୍ଣବର୍ଣ୍ଣ ପାଷାଣ ମୂର୍ତ୍ତି, ପୀତାମ୍ବର ପରିହିତା ଏବଂ ନାସାରେ ଗୋଟିଏ ହୀରକ ଦଣ୍ଡି। ମହାଷ୍ଟମୀ ହେତୁରୁ ଲୋକଙ୍କର ଭାରି ଭିଡ଼। କ୍ଷଣକାଳ ମନ୍ଦିର ଭିତରେ ରହି କିଛି ଦେଖିବାର ଅବସର ନ ଥିଲା। ବାରନ୍ଦାରେ କି ପୈଶାଚିକ କାଣ୍ଡ। ଶତାଧିକ ଭୂତପ୍ରାପ୍ତ ସ୍ତ୍ରୀ ପୁରୁଷଙ୍କର ବିକଟ ଚିତ୍କାର, ଗୁଣିଆମାନଙ୍କର ଗୁଣୁ ଗୁଣୁ ମନ୍ତ୍ରଧ୍ୱନି ଏକତ୍ର ମିଳିତ ହୋଇ ବାରନ୍ଦାଟାକୁ ପ୍ରତିଧ୍ୱନିତ କରୁଥିଲା। ଗୁଣିଆମାନେ ଭୂତପ୍ରାପ୍ତ ସ୍ତ୍ରୀ, ପୁରୁଷଙ୍କଠାରୁ (ଅଧିକାଂଶ ସ୍ତ୍ରୀ) ଭୂତ ଛଡ଼ାଇଥାନ୍ତି। ଏ ଦୃଶ୍ୟ କେବେ ଦେଖା ନ ଥିଲା। ଝୁଣା ଓ ଅନ୍ୟାନ୍ୟ ଧୂପଗନ୍ଧ ସ୍ଥାନଟିକୁ ଅଧିକ ବିଭୀଷିକାମୟ କରୁଥିଲା। ଶୁଣିଲି, ପ୍ରତିବର୍ଷ ମହାଷ୍ଟମୀ ଦିନ ଏହି କାଣ୍ଡ ସଂଘଟିତ ହୁଏ। ଆମ ଦେଶ ଅପେକ୍ଷା ଏ ଦେଶରେ ଭୂତ ବିଶ୍ୱାସ ଅତ୍ୟଧିକ। ଭୂତ ଛଡ଼ାଇବା ପ୍ରଥା ଏ ଦେଶରୁ ଆମ ଦେଶକୁ ଆସିଥିବ ପରା ? ଖୁବ୍ ଏକ ଅସରା ବୃଷ୍ଟି ହେଲା, ଏଣୁ ଅଧଘଣ୍ଟାଏ ମନ୍ଦିରରେ ରହିବାକୁ ହେଲା। ରାତ୍ର ଆଠ ଘଣ୍ଟା ବେଳେ ବସାକୁ ଫେରିଲି। ମଦୁରା ଦାକ୍ଷିଣାତ୍ୟର ବିଦ୍ୟାନଗରୀମନ୍ଦିରରେ ବେଦ ଶିକ୍ଷା ଦିଆଯାଉଥିବାର ଦେଖିଲି। କେବଳ ମନ୍ତ୍ରଶିକ୍ଷା। ବୋଧହୁଏ ସମସ୍ତେ ପୂଜକ ଶ୍ରେଣୀର ଲୋକ। ମଦୁରାର ସୂକ୍ଷ୍ମବସ୍ତ୍ର ଭାରତ ବିଦିତ, ଏହି କହିବା ବାହୁଲ୍ୟ ମାତ୍ର। ଅନେକଗୁଡ଼ିଏ ବସ୍ତ୍ର ବୟନଶାଳା ପରିଦର୍ଶନ କରିଥିଲି। ସୂତ୍ରରଞ୍ଜନ ଓ ବୟବୟନ ପ୍ରକ୍ରିୟା ଅତି ପ୍ରଶଂସନୀୟ।

ରାତ୍ରିରେ ଖୁବ୍ ଏକ ଅସରା ବୃଷ୍ଟି ହେଲା, ଏଣୁ ଖୁବ୍ ସୁଖନିଦ୍ରା ହେଲା। ପ୍ରାତଃକାଳରୁ ଉଠି ନିତ୍ୟ କ୍ରିୟା ସମାପନାନ୍ତେ ଲଙ୍କା ଯାତ୍ରାର ଆୟୋଜନରେ ପ୍ରବୃତ୍ତ ହେଲି। ଜିନିଷପତ୍ର ସଜାଡ଼ିଲା ବେଳେ ଜାଣିପାରିଲି ଯେ ମୋର ମୂଲ୍ୟବାନ୍ (ଅତ୍ୟାବଶ୍ୟକ) ପ୍ରତି ଚକ୍ଷୁଟି ନାହିଁ। ଷ୍ଟେସନକୁ ଯିବାକୁ ଅଳ୍ପ ସମୟ ଥିଲା, ପୂର୍ବଦିନ ନାନାସ୍ଥାନକୁ ଯାଇଥିଲି। କେଉଁଠାରେ ଏହାର ଅନୁସନ୍ଧାନ କରିବି, ସ୍ଥିର କରିପାରିଲି ନାହିଁ। ଅବଶେଷରେ ଜଣେ ପ୍ରଧାନ ବସ୍ତ୍ରବିକ୍ରେତାଙ୍କ ଦୋକାନରେ ତାହା ଛାଡ଼ିଥିବାର ସ୍ମରଣ କଲି। ଜଣେ କୁଲି ହାତରେ ଖଣ୍ଡେ ପତ୍ର ଦେଇ ଉକ୍ତ ଦୋକାନକୁ ପଠାଇଲି। ଦୋକାନଦାର ମୋର ପତ୍ର ପ୍ରାପ୍ତି ମାତ୍ରେ ତାହା ପଠାଇଲି। ଦୋକାନ୍‌ଦାର ମୋର ପତ୍ର ପ୍ରାପ୍ତି ମାତ୍ରେ ତାହା ପଠାଇଦେଲେ। ପତ୍ରରେ ଯେଉଁ ସ୍ଥାନ ନିର୍ଦ୍ଦେଶ କରିଥିଲି, ଠିକ୍ ସେହି ସ୍ଥାନରେ ଥିଲା। ଏହା ପାଇଁ ତାଙ୍କୁ ମୋର ଧନ୍ୟବାଦ ଓ କୃତଜ୍ଞତା ଜ୍ଞାପନ କଲି, ଷ୍ଟେସନ୍‌କୁ ଯାଇ ଗାଡ଼ିର ଅପେକ୍ଷାରେ ରହିଲି। ୧୧ ଘଣ୍ଟା ବେଳେ ଗାଡ଼ି ଷ୍ଟେସନ୍‌ରେ ଉପସ୍ଥିତ ହେଲା। ଏ ଗାଡ଼ିର Waiter (ଭୃତ୍ୟ) ମୋର ପୂର୍ବ ପରିଚିତ। ଆଗ୍ରହ ସହକାରେ ମୋତେ ଗୋଟିଏ କୋଠରିରେ ସ୍ଥାନ ଦେଲା। ନିରାପଦରେ ବୈଦ୍ୟୁତିକ ପଙ୍ଖା ତଳେ ବସି ରହିଲି। ଏହି ଗାଡ଼ିରେ ବିଲାତ ଯାତ୍ରୀ ଅନେକ ଓ ଲଙ୍କା ଯାତ୍ରୀ ୨ ଜଣ ସାହେବ ଥିଲେ। ଗାଡ଼ି ଠିକ୍ ସମୟରେ ଷ୍ଟେସନ୍ ତ୍ୟାଗ କଲା। ଏ ବାଟରେ କେତେକ ପାର୍ବତୀୟ ଦୃଶ୍ୟ ଦେଖାଯାଏ। ଏହି ପର୍ବତମାନଙ୍କରୁ ପ୍ରସ୍ତର ଅଣାଯାଇ ମନ୍ଦିର ନିର୍ମାଣ କରିଥିବାର ନିଦର୍ଶନ ମିଳେ। କେତେକ ଷ୍ଟେସନ୍ ପାରି ହେଲାରୁ ଟ୍ୟୁଟିକୋରିନ୍ ଅଭିମୁଖରେ ଖଣ୍ଡିଏ କୃଷ୍ଣବର୍ଣ୍ଣ ମେଘ ଦେଖାଗଲା। ବମ୍ବେ ଭ୍ରମଣ ସମୟରେ ଏଲିଫେଣ୍ଟା କେଭ୍ (ଘାରାପୁରୀ) ଦେଖିବାକୁ ଯାଇଥିଲୁଁ। ଫେରିଲା ବେଳେ ସାମାନ୍ୟ ଝଡ଼ ହେତୁରୁ ଷ୍ଟିମାର ବୁଡ଼ିଯିବାର ମହାଭୟ ହୋଇଥିଲା। ସେହି ବାଲ୍ୟସ୍ମୃତି ହୃଦୟରେ ଜାଗି ଉଠିଲା। ଏଲିଫେଣ୍ଟା ଦ୍ୱୀପ ବମ୍ବେ ସହରରୁ କେବଳ ପାଞ୍ଚ ମାଇଲ୍, କଲମ୍ବୋ ତ ୧୭୫ ମାଇଲ। ଯାହାହେଉ ଟ୍ୟୁଟିକୋରିନ୍‌ରେ ପହଞ୍ଚିଲା ବେଳେ ଆକାଶ ନିର୍ମଳ ଥିବାର ଦେଖାଗଲା। ନୀଳ ତରଙ୍ଗାବଳୀ ଲଙ୍କା ଯାତ୍ରୀଗଣଙ୍କୁ ଆହ୍ୱାନ କରିବା ନିମନ୍ତେ ଶାନ୍ତଭାବ ଧାରଣ କରି କଳକଳନାଦରେ କୂଳଯାଏ ପାଛୋଟି ଆସୁଥିଲା। ଏହି ଦୃଶ୍ୟ ଦେଖି ମନ ଶାନ୍ତଭାବ ଧାରଣ କଲା- ସମସ୍ତ ଭୟ ଦୂରୀଭୂତ ହେଲା। - ଲଙ୍କା ଦର୍ଶନ ଆଶା ବଳବତୀ ହେଲା।

ସମୁଦ୍ର କୂଳରେ ଷ୍ଟେସନ। ଗାଡ଼ି ଛିଡ଼ା ହେବା ମାତ୍ରେ ଜଣେ ଡାକ୍ତର ସାହେବ ପ୍ରତ୍ୟେକ କୋଠରିରେ ଉପସ୍ଥିତ ହୋଇ ଟିକଟ୍ ପରୀକ୍ଷା କଲେ ଓ କେତେକ ବିଷୟର ସମ୍ବାଦ ନେଲେ। ମୁଁ ଓଆଲଟେୟାରଠାରୁ ଟିକଟ୍ କିଣି ନେଇଥିଲି। ବାଟରେ ଛଅ ଦିନ ଲାଗିଥିଲା। ମୋତେ କହିଲେ ଯେ, ତୁମ୍ଭେ ବହୁଦିନ ମାନ୍ଦ୍ରାଜରେ ରହିଅଛ, ଏଣୁ ତୁମ୍ଭଙ୍କୁ ଟ୍ୟୁଟିକୋରିନ୍‌ରେ ରହିବାକୁ ହେବ। ମୁଁ କହିଲି, ମୁଁ ମାନ୍ଦ୍ରାଜରେ ୬ ଘଣ୍ଟାରୁ ଅଧିକ କାଳ ରହି ନାହିଁ। ଏତାବତ୍ କାଳ ମଦୁରା ଓ ରାମେଶ୍ୱରରେ ଅତିବାହିତ ହୋଇଅଛି। ପୁଣି ଚାକର ନେଇ ଟଣାଟଣି। କହିଲେ ଯେ, ଚାକରମାନେ ଯାବତୀୟ ଲୋକଙ୍କ ସଙ୍ଗରେ ମିଶନ୍ତି। ସୁତରାଂ ତାହାକୁ ଯିବାକୁ ଅନୁମତି ଦେବା ସଙ୍ଗତ ନୁହେଁ। ମୁଁ ଅନେକ ପ୍ରତିବାଦ କରିବାରୁ ଆମ୍ଭମାନଙ୍କୁ ଲଙ୍କା ଯିବାର ଛାଡ଼ ଦେଲେ। ଷ୍ଟିମରକୁ ଯିବାକୁ ଅତି ଅଳ୍ପ ସମୟ ଥିଲା। ଏ ମଧ୍ୟରେ ଟିକଟ୍ କ୍ରୟ କରିବା ସମୟ ନ ଥିଲା। ଜଣେ

ଷ୍ଟିମର୍ କର୍ମଚାରୀ ଆମ୍ଭମାନଙ୍କଠାରୁ ଟିକଟ୍‌ର ମୂଲ୍ୟ ଗ୍ରହଣ କଲେ ଏବଂ ଜାହାଜ ଉପରେ ଟିକଟ୍ ଏବଂ ପାସ୍ ମିଳିବ ବୋଲି କହିଲେ। ଆମ୍ଭେମାନେ ବିନା ବିଳମ୍ବରେ ଷ୍ଟିମର୍‌କୁ ଚାଲୁଁ।

ଟ୍ୟୁଟିକୋରିନ୍‌ରେ ବନ୍ଦର ନାହିଁ। ଏଣୁ କୂଳରୁ ପାଞ୍ଚ ମାଇଲ ଦୂରରେ ବଡ଼ ଜାହାଜ ରହେ। ଏହି ପାଞ୍ଚ ମାଇଲ୍ ଛୋଟ ଷ୍ଟିମର୍ ଯୋଗେ ଯିବାକୁ ହୁଏ। ଷ୍ଟିମର୍ ଖଣ୍ଡ ଛୋଟ। ତିନି ଖଣ୍ଡ ବେଞ୍ଚ। ପନ୍ଦର ଜଣ ସାହେବ, ସେମାନଙ୍କ ମଧ୍ୟରେ ଜଣେ ଆୟା ଓ ମୁଁ କେବଳ ଭାରତବାସୀ। ମେମ୍ ଓ ସାହେବଙ୍କଦ୍ୱାରା ବେଷ୍ଟିତ ହୋଇ 'ହଂସ ମଧ୍ୟେ ବକୋ ଯଥା' ବସି ରହିଲି। ସ୍ଥାନ ଅଭାବ ଥିଲେ ମଧ୍ୟ ସାହେବଗଣ ଦୟା ବହି ସ୍ଥାନ ଛାଡ଼ି ଦେଇଥିଲେ। ସମସ୍ତେ ଉପବେଶନ କଲାରୁ ଷ୍ଟିମର ଛାଡ଼ିଲା। ସୂର୍ଯ୍ୟଦେବ ମଧ୍ୟ ଅସ୍ତ ଯିବାକୁ ଆରମ୍ଭ କଲେ। ଷ୍ଟିମର କିଛିଦୂର ଅଗ୍ରସର ହୁଅନ୍ତେ, ଦୋଳାୟିତ ହେବାକୁ ଲାଗିଲା। ଜିନିଷପତ୍ର ସବୁ ତିନ୍ତିବାକୁ ଆରମ୍ଭ ହେଲା। ଆୟାର କୋଳରେ ଥିବା ଅଳ୍ପ ବୟସ୍କ ଶିଶୁର ବମନ ହେଲା। –ଶିଶୁ ଅର୍ଦ୍ଧ ମୂର୍ଚ୍ଛିତ ହୋଇ ରହିଲା। ବାକ୍ସରୁ ୟୁଡ଼ିକୋଲନ୍ କାଢ଼ିବା ନିମନ୍ତେ ହୁଲସ୍ଥୂଲ ଲାଗିଗଲା। ଆୟାଙ୍କ ମଧ୍ୟ ସେହି ଅବସ୍ଥା। ସାହାଯ୍ୟ କର୍ଗିବା ନିମନ୍ତେ ଯାହାର ଯେ ସାଧ୍ୟ ତାହା କରିବାରେ ଆମ୍ଭେ ତ୍ରୁଟି କରି ନାହୁଁ। ରାମେଶ୍ୱର ଯିବାବେଳେ ଷ୍ଟିମର ଆମ୍ଭମାନଙ୍କୁ ଏ କଷ୍ଟ ଦେଇ ନ ଥିଲା। ଦୂରରୁ ଦେଖାଗଲା ଜାହାଜର ନାମ ପେଣ୍ଡାକୋଟା। ଗୋଟିଏ ପ୍ରକାଣ୍ଡ ଜାହାଜ। କୌଣସି ପ୍ରକାରେ ସନ୍ଧ୍ୟା ପୂର୍ବରୁ ଜାହାଜ ନିକଟରେ ପହଞ୍ଚିଲୁ। ଡେକ୍ ଉପରୁ ଗୋଟାଏ କାଠ ସିଡ଼ି ଲମ୍ବାଇ ଦିଆଗଲା। ସାହେବ ନାବିକ ଦୁଇଜଣ ସିଡ଼ିର ପ୍ରାନ୍ତରେ ଦଣ୍ଡାୟମାନ ହୋଇ ଗୋଟିଏ ଗୋଟିଏ ଯାତ୍ରୀଙ୍କି ଉତ୍ତୋଳନ କରିବାକୁ ଲାଗିଲେ। କି ଡେଉ। ଛୋଟ ଷ୍ଟିମର ଖଣ୍ଡ ଅନ୍ତତଃ ଚାରି ପାଞ୍ଚ ଫୁଟ ତଳକୁ ଉପରକୁ ହେଉଥାଏ। ଠିକ୍ ସିଡ଼ି ପାଖକୁ ଲାଗିଲାକ୍ଷଣି ବକ ମାଛ ଧରିଲା ପରି ନାବିକମାନେ ଯାତ୍ରୀ ଉତ୍ତୋଳନ କରୁଥାନ୍ତି। ପ୍ରଥମେ ଶିଶୁ ଓ ବାଳକ ବାଳିକମାନେ ଯାତ୍ରୀ ଉତ୍ତୋଳନ କରୁଥାନ୍ତି। ପ୍ରଥମେ ଶିଶୁ ଓ ବାଳକ ବାଳିକାମାନେ, ତତ୍‌ପରେ ମେମ୍‌ମାନେ ଉପରକୁ ଗଲେ। ମୁଁ ମନେକରିଥିଲି, ସର୍ବଶେଷରେ ଉତ୍ତୋଳିତ ହେବି। କିନ୍ତୁ ଆମ୍ଭ ସହଯାତ୍ରୀ ମଧ୍ୟରୁ ଦୁଇ ଜଣ ସାହେବ ମୋତେ ଆଗକୁ ଠେଲି ଦେଲେ। ଏଠାରେ ବିଲାତି, ଦେଶୀ କ୍ରମ ଭଙ୍ଗ ହେଲା କାହିଁକି ? ବିଚାରିଲି ବିଲାତି ଓ ଦେଶୀ ବିଚାର ଏଠାରେ ନାହିଁ। ଅଭ୍ୟସ୍ତ ଅନଭ୍ୟସ୍ତର ବିଚାର ନୋହିଲେ ସାହେବ ବାକି ଥାଉଁ ଥାଉଁ ମୁଁ ଆଗ ଉପରକୁ ଯିବାଟା କେଉଁ ବ୍ୟବସ୍ଥା ଅନୁସାରେ। ମାଲ ଓ ଚାକରମାନେ ଅପର ବାଟରେ ଉତ୍ତୋଳିତ ହେଲେ। ରାତ୍ରର ବ୍ୟବହାରଉପଯୋଗୀ ମାଲମତା ନେଇ ନିଜ ନିଜ ପ୍ରକୋଷ୍ଠକୁ ଗଲୁଁ। ଅପର ମାଲ ଜାହାଜର ଭଣ୍ଡାରରେ ରହିଲା। ଷ୍ଟିମାର ଫେରିବା ପୂର୍ବରୁ ଜଣେ ସାହେବ ମୋର ଟିକଟ୍ ଓ ପାସ୍ ଦେଲେ। ମୁଁ ତାହା ଦେଖିବା ଅନାବଶ୍ୟକ ମନେକରି ପାସ୍ ପକେଟସାତ୍ କଲି। ଟିକ୍‌ଟ ଖଣ୍ଡ ଜଣେ କର୍ମଚାରୀକୁ ଦେଲି। ଷ୍ଟିମର ଭାରତ ଅଭିମୁଖରେ ଫେରିଲା।

ମୁଁ ଅପର ଡେକ୍‌ରେ ଦଣ୍ଡାୟମାନ ହୋଇ ପଶ୍ଚିମାକାଶକୁ ଦୃଷ୍ଟି ଦେଲି। ସନ୍ଧ୍ୟାରାଗ କ୍ରମେ ଅନ୍ଧକାରରେ ପରିଣତ ହେବାକୁ ଲାଗିଲା। ଭାରତମାତାଙ୍କ ଆଡ଼କୁ ସତୃଷ୍ଣ ନୟନରେ ଚାହିଁ ରହିଲି। କବି ବାଇରନ୍‌ଙ୍କର କଳ୍ପନା ପ୍ରସୂତ ହେଉ ବା ଘଟଣା ସତ୍ୟ ହେଉ Childe Harold ନିଜ ମାତୃଭୂମିଠାରୁ ବିଦାୟ ନେଲାବେଳେ 'My native land,'– 'Good night' ବୋଲି କହିଥିଲେ। ମାଇକେଲ୍ ''ରେଖୋ ମା ଦାସେରେ ମନେ, ଏ ମିନତି କରି ପଦେ, ସାଧିତେ ମନେର ସାଧ, ଘଟେ ଯଦି ପରମାଦ, ମଧୁହୀନ କରନା ଗୋ ତବ ମନ କୋକନଦେ' ଏହି ହୃଦୟସ୍ପର୍ଶୀ ହୃଦଗତଭାବ ବ୍ୟକ୍ତ କରିଥିଲେ। ରାଜା ରାମମୋହନ ରାୟ 'ଆମାୟ କୋଥାୟ ଆନିଲେ' ଏହି ସୁମଧୁର ସଙ୍ଗୀତ ଗାୟନ କରିଥିଲେ। ଜଣେ ଆତ୍ମୀୟବର୍ଗଙ୍କର ପ୍ରତି ବିରକ୍ତ ହୋଇ ବୈରାଗ୍ୟରେ ମାତୃଭୂମିଠାରୁ ବିଦାୟ ଗ୍ରହଣ କରୁଥିଲେ। ଜଣେ ମହତ୍ତର ଆଶା ପୂରଣ ନିମନ୍ତେ କିଛିଦିନ ପାଇଁ ସ୍ୱଦେଶ ତ୍ୟାଗ କରୁଥିଲେ। ପୁଣି ଜଣେ ମାତୃଭୂମିର କଲ୍ୟାଣ କାମନାରେ ଜାଣି ଶୁଣି ବିପଦସଙ୍କୁଳ ସମୁଦ୍ର ଯାତ୍ରାରେ ବ୍ରତୀ ହୋଇଥିଲେ। କବିତାରେ ପ୍ରତ୍ୟେକଙ୍କର ହୃଦ୍‌ଗତଭାବ ସ୍ପଷ୍ଟ ରୂପେ ପ୍ରକଟିତ ହେଉଅଛି। ଭାବିଲି ଅଳ୍ପଦିନପାଇଁ ହେଲେ ମଧ୍ୟ ମାତୃଭୂମି ତ୍ୟାଗକଲେ ହୃଦୟରେ ଏତାଦୃଶ ବେଦନା ଅନୁଭୂତ ହେବା ସ୍ୱାଭାବିକ। କେବଳ କବିର ଯେ ଏତାଦୃଶ ଆବେଗ ଜାତ ହୁଏ, ତାହା ନୁହେଁ– କି କବି, କି ବିଦ୍ୱାନ୍, କି ମୂର୍ଖ ସମସ୍ତଙ୍କ ହୃଦୟରେ ଗୋଟିଏ ଅନିର୍ବଚନୀୟ ଭାବର ବିକାଶ ହୁଏ। କବି ତାହା ବ୍ୟକ୍ତ କରିପାରନ୍ତି, ଲେଖିପାରନ୍ତି, ମୂର୍ଖର ଭାବ ହୃଦୟରେ ବିଲୀନ ହୁଏ। ରେଲିଂ ଆଗକୁ ମୁଖ ବଢ଼ାଇ ଭାରତବର୍ଷ ଆଡ଼କୁ ଚାହିଁ ରହିଲି। ମନେ ମନେ ମାତୃଭୂମିଠାରୁ କିଛିଦିନ ନିମନ୍ତେ ବିଦାୟ ନେଲି। ମୋର ଆତ୍ମୀୟସ୍ୱଜନଙ୍କୁ ଚିନ୍ତା କଲି। ପରଲୋକଗତା ମାତୃଦେବୀଙ୍କର ଚରଣଯୁଗଳ ଧ୍ୟାନ କଲି। ତାଙ୍କ ପରିହିତ ଯେଉଁ କୌଷେୟ ବସ୍ତ୍ର ମୁଁ ଅନୁକୂଳ ସମୟରେ ମସ୍ତକରେ ଧାରଣ କରି ଯାତ୍ରା କରିଥିଲି, ତାହା

ଆଜି ଇଚ୍ଛାପୂର୍ବକ ମସ୍ତକରେ ଉଷ୍ଣୀଶ ରୂପେ ଧାରଣ କରିଥିଲା । ତାହା ମୋର ହୃଦୟରେ ଅନେକ ସୁଖ ସ୍ମୃତି ଜାଗରୂକ କଲା । ଦିନେ ମୁଁ ଗିରିନଦୀର ପ୍ରଖର ସ୍ରୋତରେ ଭାସି ଯାଇ କିଛିକ୍ଷଣ ନିରୁଦ୍ଦେଶ୍ୟ ହୋଇଥିବାରୁ ମା'ଙ୍କର ଓ ଆତ୍ମୀୟବର୍ଗଙ୍କ ହୃଦୟରେ ଯେଉଁ ଆତଙ୍କ ଉପସ୍ଥିତ କରିଥିଲି, ପୁଣି ସେଠାରୁ ମୁକ୍ତି ଲାଭ କରି ଗୃହକୁ ଆସିଲାରୁ ମା'ଙ୍କର ବାତ୍ସଲ୍ୟ-ପ୍ରେମାଶ୍ରୁ ପରିପ୍ଳୁତମୁଖନିଃସୃତ, କୋମଳ-ତିରସ୍କାର-ଯୁକ୍ତ ଉପଦେଶାବଳୀ ଯେପରି ମା' ହୃଦୟକୁ ତରଳ କରି ନୟନରୁ ଲୋତକ ବର୍ଷଣ କରାଇଥିଲା, ସେହି ଘଟଣା ଆଜି ମନେ ପଡ଼ିବା ସ୍ୱାଭାବିକ । ନୟନବାରିପୂର୍ଣ୍ଣ ହେଲା । ଲବଣାକ୍ତ ଅଶ୍ରୁବିନ୍ଦୁ ଅନନ୍ତ ସିନ୍ଧୁବକ୍ଷରେ ପତିତ ହୋଇ ବିଲୀନ ହୋଇଗଲା ।

ବୈଦ୍ୟୁତିକ ଆଲୋକ ଧପ୍ କରି ଉପର ଡେକ୍‌କୁ ଆଲୋକିତ କଲା । ମୁଁ ଚିନ୍ତା ତ୍ୟାଗ କରି ବେଞ୍ଚ ଉପରେ ବସିଲି । ଅଳ୍ପକ୍ଷଣ ପରେ ନିଜ ପ୍ରକୋଷ୍ଠକୁ ଆସିଲି । ଯଥାଯୋଗ୍ୟ ଆହାରାନ୍ତେ ପୁଣି ଉପର ଡେକ୍‌ରେ ଯାଇ ଅଧିବେଶନ କଲି । କେତେଜଣ ସାହେବ ସେଠାରେ ଉପବେଶନ କରିଥିଲେ । ସେମାନେ ଅଳ୍ପକ୍ଷଣ ପରେ ଆପଣା ଆପଣା କୋଠରିକୁ ଗଲେ । କେବଳ ଜଣେ ଫରାସୀ ପର୍ଯ୍ୟଟକ ବହୁକ୍ଷଣ ମୋ ସଙ୍ଗରେ ରହିଲେ । ସେ ଇଂରାଜୀ ଅତି କମ୍ ଜାଣନ୍ତି । ମନୋଗତ ଭାବ ବ୍ୟକ୍ତି କରିବାକୁ ଅକ୍ଷମ, ତଥାପି ଆଳାପ କରିବାର ଇଚ୍ଛା ଅତ୍ୟଧିକ । ତାଙ୍କ ବାକ୍ୟାଳାପରେ ଯଦିବା ତୃପ୍ତ ହୋଇ ନ ଥିଲି ତଥାପି ତାଙ୍କର ସୌଜନ୍ୟ ଓ ଭଦ୍ରତାଦ୍ୱାରା ମୋହିତ ହୋଇଥିଲି । ଏ ବ୍ୟକ୍ତି ମଧ ମୋଠାରୁ ବିଦାୟ ନେଲେ । ଜାହାଜର ପ୍ରଧାନ କର୍ମଚାରୀଙ୍କ ଗୋଟିଏ ଛୋଟ କୁକୁର (Fox Terrir) ସାହେବଙ୍କ ଉପର କେବିନ୍‌କୁ ଉଠିବାକୁ ଅକ୍ଷମ ହୋଇ ମୋ ନିକଟରେ ଉପବେଶନ କଲା ଏବଂ ତାହାର ଦକ୍ଷିଣ ପାଦ ମୋ କ୍ରୋଡ଼ ଉପରେ ରଖି ମୁହଁକୁ ଚାହିଁ ରହିଥିଲା । ତାହାର ପ୍ରଭୁକୁ କିଛିକାଳ ନ ପାଇ ମୋତେ ଆପଣା ସଙ୍ଗୀ ବୋଲି ମନେ କରିଥିଲା । ଏହିପରି ଭାବରେ ଉଭୟେ ଆଳାପବିହୀନ ଆମୋଦରେ କିଛିକ୍ଷଣ ଅତିବାହିତ କଲୁଁ ।

କିଛିକ୍ଷଣ ପରେ ତାହାର ପ୍ରଭୁ ତାହାକୁ କ୍ରୋଡ଼ରେ ଧରି ନେଇଗଲେ । ମୁଁ ଏକାକୀ ବସି ରହିଲି । ଶାରଦ ଶୁକ୍ଳପକ୍ଷ ଦଶମୀ, ଚନ୍ଦ୍ର, ଜ୍ୟୋତ୍ସ୍ନା ଦ୍ୱାରା ସମଗ୍ର ସାଗରବକ୍ଷ ଧବଳିତ ହୋଇଥିଲା । ଊର୍ଦ୍ଧ୍ୱନିସ୍ତବ୍ଧ, ଦିଗ୍‌ବଳୟବ୍ୟାପୀ ଅନନ୍ତ ଜଳରାଶି ନିସ୍ତବ୍ଧ । ସମୁଦ୍ର ବକ୍ଷରେ ଗୋଟିଏ ଜାହାଜ, ଢେଉର ଘୁ ଘୁ ଶବ୍ଦ ନାହିଁ । –ଘାତ ପ୍ରତିଘାତଜନିତ ଫେନିଳ ତରଙ୍ଗ ନାହିଁ । କେବଳ ଇଞ୍ଜିନର ଘଡ଼ ଘଡ଼ ଶବ୍ଦ ଏକ ସୁଶ୍ରାବ୍ୟ ବାଦ୍ୟତାଳ ପ୍ରାୟ ନିସ୍ତବ୍ଧତାକୁ ଭେଦ କରୁଥିଲା । ଏ ଶୋଭାର ପଟାନ୍ତର ନାହିଁ । ଏ ଦୃଶ୍ୟ କି ମହିମାପୂର୍ଣ୍ଣ କି ଚିତ୍ତହ୍ଲାଦକ ଅଥଚ ଭୟୋତ୍ପାଦକ, ତାହା ବର୍ଣ୍ଣନାତୀତ । ଏହି ପ୍ରକୃତ ପ୍ରାକୃତିକ ଭୀଷଣ ଶୋଭା, ବର୍ଣ୍ଣନା କରିବାର ସାଧ ନାହିଁ । ହୃଦ୍‌ଗତ ଭାବ ବ୍ୟକ୍ତି କରିବାକୁ କାହାରି ଶକ୍ତି ନାହିଁ । ସେତେବେଳକୁ ଜାହାଜ ଅନ୍ତତଃ ଘଣ୍ଟାକୁ ୧୫ ମାଇଲ ଗତି କରୁଥାଏ । ତଥାପି ସେହି ସ୍ଥାନରେ ରହି ତରଙ୍ଗଦ୍ୱାରା ଦୋଳାୟିତ ହେଉଥିବା ପରି ବୋଧ ହେଉଥିଲା । ପ୍ରକାଣ୍ଡ ଢେଉ ଉଠୁଅଛି ପଡୁଅଛି ତାହା ସଙ୍ଗେ ସଙ୍ଗେ ଜାହାଜ ଉଠୁଅଛି ପଡୁଅଛି । ଉପକୂଳରେ ଥାଇ ସମୁଦ୍ର ମଧ୍ୟର ତରଙ୍ଗ ଶୋଭା ହୃଦୟଙ୍ଗମ କରାଯାଇପାରିବ ନାହିଁ ।

ରାତ୍ରି ପ୍ରାୟ ୧୧ ଘଣ୍ଟା ବେଳେ ନିଜ ପ୍ରକୋଷ୍ଠକୁ ଯାଇ ବିଶ୍ରାମ ନେଲି । ଭୋର ୪ ଘଣ୍ଟା ବେଳେ ନିଦ୍ରାଭଙ୍ଗ ହେଲା, ନିତ୍ୟକ୍ରିୟା ଶେଷକରି ପୁଣି ଉପର ଡେକ୍‌କୁ ଗଲି । ଅପର ଯାତ୍ରୀମାନଙ୍କର ନିଦ୍ରାଭଙ୍ଗ ହୋଇ ନ ଥିଲା । ସେହି ନିସ୍ତବ୍ଧତା ରାଜତ୍ୱ କରୁଥିଲା । ଚନ୍ଦ୍ର ଅସ୍ତ ଯାଇଥିଲେ । ଅଧିକନ୍ତୁ ସମସ୍ତ ସମୁଦ୍ର ଅନ୍ଧକାରାବୃତ ହୋଇଥିଲା । ଜାହାଜ କାନ୍ଥରେ ତରଙ୍ଗର ଆଘାତ ଯୋଗୁଁ କ୍ଷୁଦ୍ର କ୍ଷୁଦ୍ର ସମୁଦ୍ରକୀଟ ଦେହ ଜଳି ଉଠୁଥିଲା । ସମୁଦ୍ର ଜଳରେ ଆଘାତ କଲେ ଏପରି ଜଳି ଉଠେ– ଏମନ୍ତ କି ମୁଖରେ ସମୁଦ୍ରଜଳ ନେଇ କୁଳି କରି ପକାଇଦେଲେ ସ୍ଫୁଲିଙ୍ଗ ତୁଲ୍ୟ ଅନେକ ଆଲୋକକଣା ଦେଖାଯାଏ । ଉଷାର ଶୋଭା ଓ ସୂର୍ଯ୍ୟୋଦୟ ଦେଖିବା ଲାଳସାରେ ପୂର୍ବଦିଗକୁ ଅନାଇ ରହିଲି, ମାତ୍ର ସୂର୍ଯ୍ୟୋଦୟ ପୂର୍ବରୁ ଜାହାଜ କଲମ୍ବୋର ନିକଟବର୍ତ୍ତୀ ହୋଇଥିଲା । ସୁତରାଂ ଏ କାମନା ପୂର୍ଣ୍ଣ ହେଲା ନାହିଁ । ପ୍ରାୟ ୫ ଘଣ୍ଟା ବେଳେ ଜାହାଜ କଲମ୍ବୋ ବନ୍ଦରରେ ପ୍ରବେଶ କଲା । ନଙ୍ଗର କରିବା ମାତ୍ରେ ଜଣେ ଡାକ୍ତର ସାହେବ ଓ ଜଣେ ପୋଲିସ୍ ସାହେବ ଜାହାଜ ଉପରକୁ ଉଠିଲେ ଏବଂ କି ବିଲାତି କି ଦେଶୀ ସମସ୍ତ ଯାତ୍ରୀଙ୍କି ପରୀକ୍ଷା କରିବାକୁ ଲାଗିଲେ । ଟ୍ୟୁଟିକୋରିନ୍‌ର ପାସ୍ ଦେଖିଲେ ଏବଂ ବସନ୍ତ ଚିହ୍ନ ମଧ ଦେଖିଲେ । ଜିନିଷପତ୍ର ସବୁ ତନ୍ନ ତନ୍ନ କରି ଦେଖିଲେ । ବିଲାତ ଯିବା ଜାହାଜ ନିକଟରେ ଥିଲା । ସେଠାକୁ ପ୍ରଥମେ ବିଲାତ ଯାତ୍ରୀଗଣ ନୌକା ଯୋଗେ ଗଲେ । ଜଣେ ସାହେବ 'ତୁମ୍ଭେ ବିଲାତ ଯିବ କି' ବୋଲି ମୋତେ ପଚାରିଲେ । ଆଜିଯାଏ ଏ ସୁଯୋଗ ମୋ ପକ୍ଷରେ ଘଟି ନାହିଁ ବୋଲି କହିଲି ।

ତାହାଙ୍କୁ ସାହେବୀ ଧରଣରେ ଧନ୍ୟବାଦ ଦେଲି । ପୋଲିସ୍ ସାହେବ ଲଙ୍କାଯାତ୍ରୀ ଦୁଇ ଜଣ ସାହେବଙ୍କୁ ଓ ମୋତେ ସଙ୍ଗରେ ନେଇ ନୌକାରେ ବସିଲେ ଓ କଲମ୍ବୋ

ଅଭିମୁଖରେ ନୌକା ଛାଡ଼ିଲେ । ସେଠାରେ ପହଞ୍ଚ୍ ମୋ ସଙ୍ଗରେ ଆସ ବୋଲି ଏକ ଘରକୁ ନେଇଗଲେ ଏବଂ ସେଠାରେ ଉପସ୍ଥିତ ହେବାରୁ କହିଲେ, ଆପଣଙ୍କୁ ଟିକା ଗ୍ରହଣ କରିବାକୁ ହେବ । ଏ କି ଉତ୍‌ପାତ । ଏହା ମୁଁ ସ୍ୱପ୍ନରେ ମଧ ଭାବି ନ ଥିଲି । ମୁଁ ପ୍ରତିବାଦ କରିବାରୁ କହିଲେ, କି ବିଲାତ କି ଦେଶୀ ଯାହାର ଟିକା ନ ନେଲେ ଚୁକ୍ତିପତ୍ର ଦେଇ ସାତ ଦିନ କଲମ୍ବୋ ପୋର୍ଟରେ ରହିବାକୁ ହେବ । –ତାହା ନ ହେଲେ ଅଦାଲତରେ ଦଣ୍ଡନୀୟ ହେବାକୁ ହେବ । ମୁଁ କହିଲି, ମୁଁ ବସନ୍ତ ଦୂଷିତ ସ୍ଥାନରୁ ଆସି ନାହିଁ । ମୋର ଟିକା ଚିହ୍ନ ବିଦ୍ୟମାନ ଅଛି । ଜାହାଜକୁ ଯାଇଥିବା ସାହେବ ଦେଖିଅଛନ୍ତି । ତାଙ୍କୁ ଡାକ, ସେ ତହିଁର ସାକ୍ଷ୍ୟ ଦେବେ । ଉକ୍ତ ସାହେବ ଉପସ୍ଥିତ ହୋଇ କହିଲେ, ତୁମ୍ଭର ଟିକା ଚିହ୍ନ ସ୍ପଷ୍ଟ ନାହିଁ । ଏଣୁ ଟିକା ଗ୍ରହଣ କରିବାକୁ ହେବ । ମୁଁ କହିଲି, ମୁଁ ଫେରିଯିବ ପଛକେ ଟିକା ଗ୍ରହଣ କରିବି ନାହିଁ କିମ୍ବା ପୁନର୍ବାର ତୁମ୍ଭଙ୍କୁ ଚିହ୍ନ ଦେଖାଇବି ନାହିଁ, ତୁମ୍ଭର ଯାହା କରିବାର ଅଛି କର । ଏହା ଶୁଣି ସାହେବ କିଛି ସ୍ଥିର କରି ନ ପାରି ମତେ ପ୍ରଧାନ ସାହେବଙ୍କଠାକୁ ପଠାଇଲେ । ମୁଁ ସେଠାକୁ ଗଲି । ସାହେବ ମତେ ଉପବେଶନ କରିବାକୁ ଇଙ୍ଗିତ କଲେ । ମୁଁ ଧନ୍ୟବାଦ ଦେଇ ଉପବେଶନ କଲି । ସାହେବ କହିଲେ, ଆପଣ ଟିକା ଘେନିବାକୁ ବାଧା ଦେବାର କାରଣ କ'ଣ ? ମୁଁ କହିଲି, କି ନିମନ୍ତେ ଟିକା ଘେନିବି ? ମୁଁ ଯେଉଁ ସ୍ଥାନରୁ ଆସିଅଛି ସେ ସ୍ଥାନରେ ବସନ୍ତର ପ୍ରାଦୁର୍ଭାବ ନ ଥିଲା । ସେ କହିଲେ ଯେ, ମୋର ପ୍ରାଥମିକ ଓ ଦୋବରା ଟିକା ଚିହ୍ନ ସ୍ପଷ୍ଟ ନାହିଁ ବୋଲି ଲେଖାଅଛି, ଆଉ ଟିକା ଚିହ୍ନ ସ୍ପଷ୍ଟ ନାହିଁ ବୋଲି ପରୀକ୍ଷକ ମଧ ଲେଖୁଅଛନ୍ତି । ମୁଁ ସଦମ୍ଭରେ କହିଲି, ଉଭୟ ବ୍ୟକ୍ତି ମିଥ୍ୟା ଲେଖିଅଛନ୍ତି । ପାସ୍‌ଖଣ୍ଡ ଫେରସ୍ତ ଦିଅନ୍ତୁ, ମୁଁ ଏଥିର ପ୍ରତିବାଦ ଭାରତବର୍ଷରେ କରିବି । ନତୁବା ତାର ଯୋଗେ ଏଥିର ପ୍ରକୃତ ତଥ୍ୟ ଅନୁସନ୍ଧାନ କରନ୍ତୁ । ଏଥିରେ ଆପଣ ସମ୍ମତ ନ ହେଲେ ମୋତେ ଅଦାଲତକୁ ପଠାନ୍ତୁ । ମୁଁ ସେଥିକି ପ୍ରସ୍ତୁତ ଅଛି । ଏହା ଶୁଣି ସେ ପରୀକ୍ଷକ ସାହେବଙ୍କୁ ଡକାଇଲେ, ସେ ଉପସ୍ଥିତ ହୋଇ ନିଜ ମତ ବ୍ୟକ୍ତ କଲେ ଏବଂ କି କାରଣରୁ କହିପାରିବି ନାହିଁ କହିଲେ ଯେ ଏହାଙ୍କୁ Disinfect କରିବାକୁ ଏବଂ ତାଙ୍କ ଚାକରକୁ ଟିକା ଗ୍ରହଣ କରିବାକୁ ଅନୁମତି ଦିଆଯାଉ । ବଡ଼ ସାହେବ କହିଲେ, ଆପଣ ଏଥିରେ ଅନଭିମତ କରିବା ଭଲ ନୁହେଁ । ଫେରିଗଲେ ଆସିବାର କି ପ୍ରୟୋଜନ ହେଲା ? ଚୁକ୍ତିପତ୍ର ଦେଇ କଲମ୍ବୋରେ ରହିଲେ ଆପଣଙ୍କର କ୍ଷତି । ଏହି କଥା ସ୍ୱୀକାର କରିଯାଆନ୍ତୁ । ଚାକରର ମତ ନେଇ ତହିଁରେ ସ୍ୱୀକୃତ ହେଲି । ସାହେବ ପୁଣି କହିଲେ, ପାସ୍‌ର ଏକ କୋଣରେ ଯେ ଲାଲ୍ S.P.I.A.* ଚାରି ଗୋଟି ଅକ୍ଷର ଲେଖା ଅଛି ତାହା ଆପଣ ଦେଖି ନ ଥିଲେ କି ? ମୁଁ କହିଲି ଜାହାଜରେ ଏହି ପାସ୍ ମତେ ମିଳିଲା, ମୁଁ ତାହା ନ ଦେଖି ପକେଟରେ ରଖିଥିଲି, ସକାଳୁ ଡାକ୍ତରଙ୍କୁ ଦେଲି । ସେ କହିଲେ, ଆପଣଙ୍କ ଦେଶର ଡାକ୍ତର ଯେତେବେଳେ ଏପରି ଲେଖିଅଛନ୍ତି, ସେଥିରେ ଆମ୍ଭେମାନେ ଦାୟୀ କି ? ମୁଁ ସାହେବଙ୍କୁ ବହୁ ଧନ୍ୟବାଦ ଦେଇ ସେଠାରୁ ଆସିଲି । ରାବଣ ପାଳିତ ଲଙ୍କାକୁ ପ୍ରବେଶ କଲାବେଳେ ଗୋଟାଏ ପରୀକ୍ଷା ହେଉଥିଲା । ଆଜିକାଲି ଲଙ୍କା ପ୍ରବେଶ ପୂର୍ବରୁ ତିନି ସ୍ଥାନରେ ପରୀକ୍ଷା ହୁଏ । ଭାରତ ପ୍ରାନ୍ତରେ, ସମୁଦ୍ରରେ ଓ ଲଙ୍କାକୂଳରେ । ତିନି ଗୋଟି ପରୀକ୍ଷା ଉତ୍ତୀର୍ଣ୍ଣ ହେବା ବଡ଼ ଦୁରୂହ କଥା । ସୈନିକମାନଙ୍କର ରକ୍ତ ବିନିମୟରେ ସୈନ୍ୟାଧକ୍ଷ ରକ୍ଷାପାନ୍ତି, ଭୃତ୍ୟର ସ୍ୱାର୍ଥତ୍ୟାଗରେ ପ୍ରଭୁର ରକ୍ଷା, ଏହା ଚିର ପ୍ରଚଳିତ ନିୟମ । ମୁଁ ନିୟମ ଭଙ୍ଗ କରି ନାହିଁ । ଚାକର ସ୍ୱାର୍ଥତ୍ୟାଗ କରିବାରୁ ପ୍ରଭୁ ଓ ଭୃତ୍ୟ ଲଙ୍କା ଦର୍ଶନ କରିପାରିଲୁ । ମୁଁ ଟିକା ନେବାରୁ ଅବ୍ୟାହତି ପାଇଲି । ଚାକରକୁ ରକ୍ଷା କରିପାରିଲି ନାହିଁ । ଏଥିରେ ଯେ ମୋର ଅପାରଗତା ପରିଲକ୍ଷିତ ହେଉଅଛି, ଆଶାକରେ ସେଥିନିମନ୍ତେ ପାଠକଗଣ ଅବଶ୍ୟ କ୍ଷମା ଦେବେ । ଏଥିଉତ୍ତାରୁ ନିର୍ବିବାଦରେ ଲଙ୍କା ଦ୍ୱୀପରେ ବିଚରଣ କରିବାକୁ ସ୍ୱାଧୀନତା ଲାଭ କରି କଲମ୍ବୋ ସହରରେ ପ୍ରବେଶ କଲୁଁ ।

କଲମ୍ବୋ ବନ୍ଦର ଅତି ସୁନ୍ଦର । ଏହାର କ୍ଷେତ୍ରଫଳ ପ୍ରାୟ ୬୦୦ ମାଣ । କାନ୍ଥ ବାହାରେ ସମୁଦ୍ର ଘୁ, ଘୁ, କରୁଅଛି, କାନ୍ଥରେ ମୁଣ୍ଡ ପିଟି ଛିନ୍ନ ବିଛିନ୍ନ ହେଉଅଛି । ବନ୍ଧ ଭିତର ଜଳ ବନ୍ଧ ପାଣି ପରି ସ୍ଥିର ଓ ଶାନ୍ତି । ନାନା ଦେଶର ଅନେକ ଜାହାଜ ନିରାପଦରେ ଲଙ୍ଗର କରି ରହିଅଛନ୍ତି । ନାନା ଦେଶର ଅସଂଖ୍ୟ ଜାହାଜ ଗନ୍ତବ୍ୟ ସ୍ଥାନକୁ ଯିବାବେଳେ ଏହି ବନ୍ଦରକୁ ସ୍ପର୍ଶ କରନ୍ତି । କ୍ଷୁଦ୍ର ହେଲେ ମଧ ଏହା ବାଣିଜ୍ୟର ପ୍ରଧାନ ସ୍ଥଳ ବୋଲିବାକୁ ହେବ ।

**ପାଦଟୀକା :** * Small pox infected area ପ୍ରତିବାଦ କରିଥିବାରୁ ଟ୍ୟୁଟିକୋରନ୍‌ର ସାହେବ ବୃଥାରେ ଏପରି ଲେଖି ଦେଲେ ।

ସମୁଦ୍ର କୂଳରେ କଲମ୍ବୋ ସହର । ସମୁଦ୍ର କାନ୍ଥରେ ସଡ଼କ ମଧରେ ବାଲି ସ୍ତୁପ ନାହିଁ । ଲୋକସଂଖ୍ୟା ଦେଢ଼ ଲକ୍ଷ୍ୟରୁ ଅଧିକ । ପୃଥିବୀର ନାନା ସ୍ଥାନର ଲୋକ ଦେଖାଯାନ୍ତି । ରାସ୍ତା ପରିଷ୍କୃତ, ଗୃହ ଗୁଡ଼ିକ ସୁନ୍ଦର ଓ ରାସ୍ତା କାନ୍ଥରେ ସୁସଜ୍ଜିତ ଭାବରେ ନିର୍ମିତ, ମୋଟରେ ସହରଟି ନିର୍ମଳ, ଦର୍ଶନଯୋଗ୍ୟ ଓ ସ୍ୱାସ୍ଥ୍ୟକର । ଇଲେକଟ୍ରିକ୍ ଟ୍ରାମ୍ ଗାଡ଼ି ଚଳୁଅଛି । ଘୋଡ଼ା

ଗାଡ଼ିର ଅଭାବ ନାହିଁ । ମାତ୍ର ମନୁଷ୍ୟ ଟଣା ରିକ୍ସା ଗାଡ଼ିର ଚଳନ ଅଧିକ; ସୁବିଧାଜନକ ଓ ଶସ୍ତା ।

ଭାରତୀୟ କୌଣସି ଛୋଟ ସହର ଏହାର ସମକକ୍ଷ ନୁହେଁ ବୋଲି ଅନୁମାନ ହୁଏ । ଦେଶୀ ଓ ବିଲାତୀ ଦୋକାନର ଅଭାବ ନାହିଁ । ଅନେକ ଗୁଡ଼ିଏ ଛାପାଖାନା ଅଛି । ସମ୍ବାଦପତ୍ର ମଧ୍ୟରେ ସାପ୍ତାହିକ ଓ ମାସିକ ଛଡ଼ା ଚାରି ଖଣ୍ଡ ଇଂରାଜୀ ଦୈନିକ ପତ୍ର ପରିଚାଳିତ ହେଉଅଛି । ଦୁଇ ଖଣ୍ଡ ଇଂରାଜୀଙ୍କଦ୍ୱାରା, ଦୁଇ ଖଣ୍ଡ ଦେଶୀୟ ଲୋକଙ୍କଦ୍ୱାରା ।

ପୋଷାକ ପରିଚ୍ଛଦ ଏ ଦେଶରେ ଭିନ୍ନ । ପୁରୁଷମାନେ ଲୁଙ୍ଗି ଓ କୋଟ କିମ୍ବା କୋଟ୍ ଓ ପେଣ୍ଟଲୁନ୍ ଓ ହ୍ୟାଟ୍ ବ୍ୟବହାର କରନ୍ତି । ସାଧାରଣ ଲୋକେ ମୁଣ୍ଡରେ ଟୋପି ବା ପଗଡ଼ି ବ୍ୟବହାର କରନ୍ତି ନାହିଁ । ନବ୍ୟଶିକ୍ଷିତ ଛଡ଼ା ପ୍ରାୟ ସମସ୍ତେ ଜୁଡ଼ା ରଖି ଅଛନ୍ତି । ମସ୍ତକରେ ଗୋଟାଏ ଅର୍ଦ୍ଧଚନ୍ଦ୍ରାକାର ପାନିଆ ବ୍ୟବହାର କରନ୍ତି । ପ୍ରାୟ ଶିକ୍ଷିତା ସ୍ତ୍ରୀମାନେ ମେମ୍ ପରି ଗାଉନ୍ ପିନ୍ଧନ୍ତି । ସାଧାରଣ ସ୍ତ୍ରୀମାନେ ଲୁଙ୍ଗି ଓ ଜାକେଟ୍ ପିନ୍ଧନ୍ତି । ଆମ୍ଭ ଦେଶ ପରି ଶାଢ଼ି ପିନ୍ଧନ୍ତି ନାହିଁ । ବହୁଦିନ ଡଚ୍ ଓ ପର୍ତ୍ତୁଗୀଜ ଶାସନାଧୀନ ଥିବାରୁ ଏ ପରିବର୍ତ୍ତନ ଘଟିଅଛି ।

ଭାରତୀୟ ମୁଦ୍ରା ଚଳନରେ ବାଧା ନାହିଁ । ଟଙ୍କା, ଅଧୁଲି, ସୁକିର କୌଣସି ପାର୍ଥକ୍ୟ ନାହିଁ, ମାତ୍ର ଦୋଅଣି, ଅଣି, ପଇସାର ପାର୍ଥକ୍ୟ ଅଛି । ଏ ଦେଶରେ ଟଙ୍କାକୁ ୬୪ ପଇସା, ସେ ଦେଶରେ ଟଙ୍କାକୁ ୧୦୦ ସେଣ୍ଟ । ଏଣୁ ପ୍ରତ୍ୟେକ ସେଣ୍ଟ ଏ ଦେଶ ପଇସା ଅପେକ୍ଷା ଛୋଟ । ୫୦ ସେଣ୍ଟରେ ଆଠ ଅଣି ଓ ୨୫ ସେଣ୍ଟରେ ସୁଉକି । ୧୦ ସେଣ୍ଟ ଓ ୫ ସେଣ୍ଟ ଏ ଦେଶର ଦୋଅଣି ଓ ଏକ ଅଣି ଅପେକ୍ଷା ଛୋଟ । ହିସାବ ପକ୍ଷରେ ବଡ଼ ସୁବିଧା । ସମସ୍ତ ପଦାର୍ଥ ସୁଲଭ; ମାତ୍ର ଦାମ ଚଢ଼ା ବୋଲି ଅନୁମାନ ହୁଏ ।

ଉଦ୍ୟାନ, ଖେଳପଡ଼ିଆ, ଘୋଡ଼ାଦଉଡ଼ ପଡ଼ିଆ ପ୍ରଭୃତି ଯାହା ଇଉରୋପୀୟମାନଙ୍କର ଆବଶ୍ୟକ, ତାହା ଯଥେଷ୍ଟ ଅଛି । ଗୋଟାଏ ପ୍ରକାଣ୍ଡ ଡାଲଚିନି ବଗିଚା ଅଛି ।

ଚିଡ଼ିଆଖାନା ନାହିଁ, ଗୋଟାଏ ମିଉଜିଅମ୍ ଅଛି । ଗୃହଟି ଛୋଟ, କିନ୍ତୁ ଅତି ସୁନ୍ଦର । ପଦାର୍ଥଗୁଡ଼ିକ ଅତ୍ୟନ୍ତ ପରିଷ୍କୃତ ଓ ପରିଚ୍ଛନ୍ନ ଭାବରେ ସଂରକ୍ଷିତ । ସିଂହଳର ଯାବତୀୟ ପଶୁପକ୍ଷୀଙ୍କର ଅସ୍ଥି ବିଶେଷତଃ ଚର୍ମାବୃତ ପ୍ରତିକୃତି କାଚ ଆଲମାରି ମଧ୍ୟରେ ରକ୍ଷିତ । ପୁଣି ଯେଉଁ ପଶୁ ଯେପରି ଭାବରେ ଅରଣ୍ୟରେ ଥା'ନ୍ତି, ତାହାର ଆଭାସ ଜଣା ପଡ଼ିବା ଭଳି ଘାସ ଓ ଗଛ ଦିଆଯାଇଅଛି । ଏ ବନ୍ଦୋବସ୍ତ କଲିକତା ମିଉଜିଅମ୍‌ରେ ମଧ୍ୟ ନାହିଁ । ସିଂହଳଜାତ କାଷ୍ଠ, ପ୍ରସ୍ତର ଓ ମୂଲ୍ୟବାନ୍ ଧାତୁ ପ୍ରଭୃତିର ନମୁନା ମଧ୍ୟ ଅଛି । ପ୍ରାଚୀନ ମୁଦ୍ରା, ଶିଳାଲିପି, ଧାତୁଫଳକ ଲିପି ଯଥେଷ୍ଟ ଅଛି । ଏହାଛଡ଼ା ସିଂହଳର ଯାବତୀୟ ବିଷୟର ନମୁନା ରଖା ହୋଇଅଛି । ଦ୍ୱୀପମୟ ବୌଦ୍ଧ ଧର୍ମାବଲମ୍ବୀ, ସୁତରାଂ ବୌଦ୍ଧ ଶିଳାଲିପି ପ୍ରଭୃତି ଏବଂ ବୌଦ୍ଧ ମହାତ୍ମାମାନଙ୍କର ପ୍ରତିମୂର୍ତ୍ତି ଏଠାରେ ଥିବା ସ୍ୱାଭାବିକ, ତତ୍ ସମ୍ବନ୍ଧରେ ବିବରଣ ଦେବା ନିଷ୍ପ୍ରୟୋଜନ । ମାତ୍ର ହିନ୍ଦୁ ଧର୍ମ ଏହି ଦ୍ୱୀପରେ କିଦୃଶ୍ ଆଧିପତ୍ୟ କରିଥିଲା, ତାହା ଜ୍ଞାତ ହେବା ନିମନ୍ତେ ହିନ୍ଦୁ ଦେବତାମାନଙ୍କର ପ୍ରତିମୂର୍ତ୍ତି ଅନ୍ୱେଷଣ କରିଥିଲି । ରାମ ବା ଅପର ବୈଷ୍ଣବ ଦେବତାମାନଙ୍କର ପ୍ରତିମୂର୍ତ୍ତି ନାହିଁ । ଶିବ ପାର୍ବତୀଙ୍କର ପ୍ରତିମା ଯଥେଷ୍ଟ ଅଛି । ତନ୍ମଧ୍ୟରୁ ଶିବ ପାର୍ବତୀଙ୍କର ଯୁଗଳମୂର୍ତ୍ତି, ଶିବଙ୍କର ନଟରାଜ ମୂର୍ତ୍ତି, ସୁଖାସନରେ ଉପବିଷ୍ଟ ଶିବ, ଶିବକାମୀ ମୂର୍ତ୍ତି ଉଲ୍ଲେଖଯୋଗ୍ୟ । ଶିବକାମୀ ଅର୍ଥ ଆଦିଶକ୍ତି ଓ ସୃଷ୍ଟିକାରିଣୀ ବୋଲି ବିବେଚିତ ହୋଇଅଛି । ସେହି ମୂର୍ତ୍ତିର ପରିଚାୟକ ଏହି ପଦ୍ୟଟି ଲିଖିତ ଅଛି–

Mother of millons of world clusters.
Yet virgin by the Vedas called.

ଶିବକାମୀ ଶବ୍ଦର ବ୍ୟବହାର ଏ ଦେଶରେ ନାହିଁ । ଗୋଟିଏ ଉଲଙ୍ଗ କୃଷ୍ଣ ମୂର୍ତ୍ତିର ଭଗ୍ନ ହସ୍ତ ପଦ ଓ ଦେହର କେତେକାଂଶ ଅଛି । ଗୋଟିଏ ସୂର୍ଯ୍ୟ ମୂର୍ତ୍ତି ଅଛି । ଏହା ଡ଼ା କେତେକ ଗୁଡ଼ିଏ ଦାକ୍ଷିଣାତ୍ୟର ଶୈବ ସ୍ୱାମୀମାନଙ୍କର ମୂର୍ତ୍ତି ଦେଖାଯାଏ, (ସୁନ୍ଦର ମୂର୍ତ୍ତିସ୍ୱାମୀ, ମାନିକ୍ ବାଚକ ସ୍ୱାମୀ, ତ୍ରିଗୁଣ ସମ୍ବନ୍ଧ ସ୍ୱାମୀ) । ସ୍ୱସ୍ତିକ ନାମକ କେତେଗୁଡ଼ିଏ ତାନ୍ତ୍ରିକ ଯନ୍ତ୍ରର ଛାଞ୍ଚ ଦେଖାଯାଏ । ଗୋଟିଏ କାଷ୍ଠଫଳକରେ ସୂର୍ଯ୍ୟର ରୂପ ଖୋଦିତ ହୋଇଅଛି । ସୂର୍ଯ୍ୟର ଚାରି ପାଖରେ ଚାରି ଗୋଟି ନରାକୃତି ଶାୟିତ ଅବସ୍ଥାରେ ଅଛନ୍ତି । ପ୍ରତ୍ୟେକଙ୍କର ମସ୍ତକ ଆଡ଼କୁ ଅପରର ଗୋଡ଼ । ପ୍ରତ୍ୟେକେ ଅପରର ବୃଦ୍ଧାଙ୍ଗୁଷ୍ଠ ଧରିବା ନିମନ୍ତେ ଦକ୍ଷିଣ ହସ୍ତ ବଢ଼ାଇ ଅଛନ୍ତି । ସୂର୍ଯ୍ୟକୁ ପ୍ରଦକ୍ଷିଣ କରିବାର ଛଟା ଦେଖା ହୋଇଅଛି । ଏହାର ନାମ ହତରାବଣାଦି ବିଯୋ । ଚାରି ଦିଗର ପରିଚାୟକ ଚାରି ଗୋଟି ଦିଗ୍‌ପାଳ ମୂର୍ତ୍ତି ଅଛି । ଯଥା- ପୂର୍ବ ଦିଗ୍‌ପାଳ ହସ୍ତୀ, ନାମ ଧୃତରାଷ୍ଟ୍ର, ପଶ୍ଚିମର ଗାଭୀ, ନାମ ବିରୂପାକ୍ଷ, ଉତ୍ତରର ବ୍ୟାଘ୍ର, ନାମ ବୈଶ୍ରବଣ, ଦକ୍ଷିଣର ଘୋଟକ, ନାମ ବିରୁଧ । ଏହା କୌଣସି ପୌରାଣିକ ଦିଗ୍‌ପାଳ ମୂର୍ତ୍ତି ବୋଲି ଅନୁମାନ ହୁଏ ନାହିଁ । ସମ୍ଭବତଃ ବୌଦ୍ଧ ଗ୍ରନ୍ଥ ସମ୍ମତ ହେବ । ଅନେକ ଗୁଡ଼ିଏ ପ୍ରାଚୀନ ମୁଦ୍ରା ଅଛି । ତନ୍ମଧ୍ୟରୁ ବିଜୟବାହୁଙ୍କର ଲଙ୍କେଶ୍ୱର ସ୍ୱର୍ଣ୍ଣ ମୁଦ୍ରା ଉଲ୍ଲେଖଯୋଗ୍ୟ ଅଟେ । ଏ ସମସ୍ତ ମୂର୍ତ୍ତି ପ୍ରୋତ୍‌ଥିତ ନଗର ଅନୁରାଧାପୁର ଓ ପୁଲସ୍ତିପୁରରୁ ମିଳିଅଛି । ଗୃହର ଏକ କୋଣରେ ଗୋଟାଏ କାଚ ଆଲମାରିରେ Flying leaf

insects ରକ୍ଷା ହୋଇଅଛନ୍ତି। ଏଗୁଡ଼ିକ ଗୋଟାଏ ଜୀବନ୍ତ ଟମରସ୍ (ପେୟାରା) ଗଛରେ ଅଛନ୍ତି। ପତଙ୍ଗଗୁଡ଼ିକ ଦେଖିବାକୁ ଠିକ୍ ଗଛର ପତ୍ର ପରି। ସ୍ଥିର ହୋଇଥିବା ବେଳେ ଧରିବା ବଡ଼ କଷ୍ଟ। ଆମ୍ଭ ଦେଶର ନାନା ପ୍ରକାର ପତ୍ରର ରୂପ ଅନୁକରଣକାରୀ କୀଟପତଙ୍ଗ ଦେଖାଯାନ୍ତି। ମାତ୍ର ଏଗୁଡ଼ିକ ନାମର ସାର୍ଥକତା କରୁଅଛନ୍ତି।

ମିଉଜିୟମ ସଙ୍ଗରେ ଗୋଟିଏ ଲାଇବ୍ରେରୀ ଓ ପାଠାଗାର ଅଛି। ପଢ଼ିବାକୁ ସର୍ବସାଧାରଣ ଅନୁମତି ପାଆନ୍ତି। ସହକାରୀ ଲାଇବ୍ରେରିୟାନ୍ ଭଦ୍ର ସଦାଳାପୀ। ମୋ ସଙ୍ଗେ ଏ ଦେଶର ଅନେକ କଥାବାର୍ତ୍ତା ହେଲା। ଇଂରେଜୀ ଓ ଅପରାପର ଭାଷାର ପୁସ୍ତକ ଛଡ଼ା ତାଳପତ୍ରରେ ଲିଖିତ ଅନେକ ସଂସ୍କୃତ ଓ ପାଲୀ ପୁସ୍ତକ ଅଛି। ବହୁକ୍ଷଣ ପୁସ୍ତକ ଦେଖିବାରେ ଅତିବାହିତ କଲି। କୁମାର ଦାସଙ୍କ ବିରଚିତ ଜାନକୀହରଣ କାବ୍ୟ ଦେଖିବାକୁ ମୋର ବିଶେଷ ଆଗ୍ରହ ଥିଲା। ତାହା ପାଇଲି। ମାତ୍ର ସିଂହଳୀ ଅକ୍ଷରରେ ଲିଖିତ ହୋଇଥିବାରୁ ବର୍ଣ୍ଣଗ୍ରହ ହେଲା ନାହିଁ। ସେଠାରେ ଥିବା ଭଦ୍ରଲୋକଙ୍କୁ ପଢ଼ିବାକୁ ଅନୁରୋଧ କରିପାରିଲି ନାହିଁ। କାରଣ ପୁସ୍ତକ ସଂସ୍କୃତ, ସେମାନେ ତାହା ଜାଣୁ ନ ଥିଲେ, ପୁଣି ମୋର ଆବଶ୍ୟକ ଅଂଶ ପଢ଼ିଦେବା ଅଧିକ ସମୟସାପେକ୍ଷ। ଏପରି ଅସଙ୍ଗତ ଅନୁରୋଧ ଭଦ୍ରତା ବିରୋଧ ବୋଲି ମନେକଲି। ଜାନକୀହରଣ ପୁସ୍ତକ ଅଧ୍ୟୟନ କରିବା ନିମନ୍ତେ ଏତେ ଆଗ୍ରହ ବଢ଼ିବାର କାରଣ କ'ଣ? ଅନେକେ ପଚାରି ପାରନ୍ତି। ତାହା ଏହି– ପ୍ରଥମତଃ ଏହି କାବ୍ୟ ଜଣେ ବୌଦ୍ଧରାଜାଙ୍କ ରଚିତ। ଏଣୁ ମନେ କରିଥିଲି ଯେ ରାମ ଓ ସୀତାଙ୍କ ଚରିତ ଏଥିରେ ରାମାୟଣଠାରୁ ଭିନ୍ନ ଭାବରେ ଲିଖିତ ହୋଇଥିବ। ଦ୍ୱିତୀୟତଃ– ଏହାର ରଚକ ରାଜା କୁମାର ଦାସ କାଳିଦାସଙ୍କର ପରିଚିତ ଓ ବନ୍ଧୁ। କୁମାର ଦାସ ସୁଲେଖକ ଓ ସୁଶାସକ ବୋଲି ପରିଚିତ। ଏ ସିଂହଳରେ ୯ ବର୍ଷ ରାଜତ୍ୱ କରିଥିଲେ। କଥିତ ଅଛି ଯେ ସିଂହଳର ମତରା ନାମକ ନଗରର ଏକ ଗୃହର କାନ୍ଥରେ କୁମାର ଦାସ ଗୋଟାଏ ଶ୍ଳୋକର ପ୍ରଥମ ଦୁଇ ପାଦ ଲେଖି ଦେଇଥିଲେ। ଅପର ଦୁଇ ପାଦ ପୂରଣ କରିବା ବ୍ୟକ୍ତିଙ୍କୁ ପ୍ରଭୂତ ପୁରସ୍କାର ଦେବାର ଘୋଷଣା କରିଥିଲେ। ସେଠାରେ ଜଣେ ବେଶ୍ୟା ଏହା ଜ୍ଞାତ ଥିଲା। କାଳିଦାସ ଏହା ପୂରଣ କଲାରୁ ତାଙ୍କୁ ଛଳନାକ୍ରମେ ହତ କରି ନିଜେ ପୁରସ୍କାର ପ୍ରାର୍ଥନା କଲା। କୁମାର ଦାସଙ୍କର ସନ୍ଦେହ ହେବାରୁ ସେ ତାହା ତଦନ୍ତ କଲେ ଏବଂ ପ୍ରକୃତ ବିଷୟ ଜାଣିପାରି କାଳିଦାସଙ୍କର ଶବ ଦାହ କରାଇଲେ ଏବଂ ଗଭୀର ଶୋକରେ ଅଭିଭୂତ ହୋଇ ସେହି ଚିତାରେ ଆତ୍ମବିସର୍ଜନ କଲେ। ୫୨୪ ଖ୍ରୀଷ୍ଟାବ୍ଦରେ ଏହି ଘଟଣା ହୋଇଥିଲା।

ଏହି କାଳିଦାସ ଭାରତୀୟ କବି କାଳିଦାସ, କି ସିଂହଳବାସୀ ଅପର କୌଣସି ବ୍ୟକ୍ତି? ପାଠକମାନଙ୍କର ଏହା ବିଚାର୍ଯ୍ୟ। ତେବେ କବି କାଳିଦାସ ଯେ କୁମାର ଦାସଙ୍କ ସମସାମୟିକ ଲୋକ ଏଥିରେ ସନ୍ଦେହ ନାହିଁ। କାଳିଦାସ ଲଙ୍କା ଦର୍ଶନ କରିଥିବା ଖୁବ୍ ସମ୍ଭବ। ରଘୁବଂଶ ବର୍ଣ୍ଣନାରୁ ଏଥିର କିଞ୍ଚିତ୍ ଆଭାଷ ମିଳୁଅଛି। ପାଦପୂରଣ ପୁରସ୍କାର ଲାଳସୀ ବେଶ୍ୟା ଦ୍ୱାରା କାଳିଦାସ ହତ ହୋଇଥିବାର ପ୍ରବାଦ ଏ ଦେଶରେ ମଧ୍ୟ ପ୍ରଚଳିତ ଅଛି– କେହି କହନ୍ତି ବିଦ୍ୟାନଗରୀରେ, କେହି କହନ୍ତି ମଥୁରାରେ। ମଥୁରାକୁ ମଥୁରା ବୋଲିବା ଅସମ୍ଭବ କ'ଣ?

ସହକାରୀ ଲାଇବ୍ରେରିଆନ୍ କହିଲେ, ଏହି ପୁସ୍ତକ ବମ୍ବେଇରେ ମୁଦ୍ରିତ ହୋଇଅଛି, ଶୀଘ୍ର ଏଠାକୁ ଆସିବ। ମୁଁ କହିଲି, ତାହାହେଲେ ମୁଁ ଭାରତରେ ଏହି ପୁସ୍ତକ ଦେଖିପାରିବି। ତାଙ୍କୁ ଧନ୍ୟବାଦ ଦେଇ ବିଦାୟ ଗ୍ରହଣ କଲି।

ଏଥିଉତ୍ତାରୁ କଲମ୍ବୋର ପ୍ରଧାନ ବୌଦ୍ଧବିହାର ମାଲିଗାକାଣ୍ଡ ଦେଖିବା ନିମନ୍ତେ ଗଲି। ସଡ଼କ କାନ୍ଥରେ ଗାଡ଼ି ରଖିଲି। ଏହି ବିହାରର ପ୍ରଧାନ ଧର୍ମଯାଜକଙ୍କ ଦେଖା ମିଳିବ କି ନାହିଁ କିପରି ଭାବରେ ଦେଖା କରିବି, ତାହା ଚିନ୍ତା କଲି। ମନେ ପଡ଼ିଲା ୧୮୯୧ ଖ୍ରୀଷ୍ଟାବ୍ଦରେ ଆମ୍ଭେମାନେ ବନାରସକୁ ଯାଇଥିଲୁଁ। ଭାରତ ବିଖ୍ୟାତ ଭାସ୍କରାନନ୍ଦ ସ୍ୱାମୀଙ୍କୁ ଦେଖିବା ନିମନ୍ତେ ତାଙ୍କ ଆଶ୍ରମକୁ ଗଲୁଁ। ସେତେବେଳେ ସେ ଅନ୍ନପୂର୍ଣ୍ଣା ମନ୍ଦିର ନିକଟବର୍ତ୍ତୀ ଏକ ଉଦ୍ୟାନରେ ଥିଲେ। ଏହି ମହାତ୍ମାଙ୍କ ଦର୍ଶନ ପାଇବା ନିମନ୍ତେ ଦୁଇ ଥର ଯାଇ ଭଗ୍ନ ମନୋରଥ ହୋଇ ଫେରିଆସିଲୁଁ। ଦରୋଜାରେ ପ୍ରହରୀ, ଅନୁମତି ବ୍ୟତୀତ ଭିତରକୁ ଯିବାର କାହାରି ଅଧିକାର ନାହିଁ। ଶୁଣିପାରିଲୁଁ, ସେହି ଉଦ୍ୟାନ ଓ ଗୃହ ଜଣେ ରାଜାଙ୍କର। ରାଜା ସ୍ୱାମୀଙ୍କର ଯାବତୀୟ ବ୍ୟୟଭାର ଗ୍ରହଣ କରିଅଛନ୍ତି। ତାଙ୍କ ତରଫରୁ ପ୍ରହରୀ ନିଯୁକ୍ତ ଅଛନ୍ତି। ବିନାନୁମତିରେ ଭିତରକୁ ଛାଡ଼ି ଦିଆଯାଏ ନାହିଁ। ଦୁଇଥର ଯାକ ଅବସର ମିଳିଲା ନାହିଁ, ତେଣିକି ଆଗ୍ରହ ମଧ୍ୟ ବଳିଲା ନାହିଁ। ଯେଉଁ ଲୋକ ସଂସାର ବିରାଗୀ, ନିଜର ଶରୀରକୁ ତୁଚ୍ଛ ଜ୍ଞାନ କରିଅଛନ୍ତି, ସମସ୍ତ ସୁଖ ଭୋଗ ଲାଳସା ତ୍ୟାଗ କରିଅଛନ୍ତି, ଏତାଦୃଶ ସଂସାରବନ୍ଧ ବିମୁକ୍ତ ବ୍ୟକ୍ତିଙ୍କୁ ଆବଦ୍ଧ କରି ରଖିବା ଏବଂ ତାହାଙ୍କ ଦର୍ଶନରୁ ସର୍ବସାଧାରଣଙ୍କୁ ବଞ୍ଚିତ କରିବା ବିଧେୟ ନୁହେଁ ବୋଲି

କର୍ମଚାରୀଙ୍କୁ କହିଲୁଁ। ସେ କହିଲେ, ବହୁତ ଲୋକ ଆସି [illegible] ବିରକ୍ତି କରନ୍ତି ବୋଲି ଏହି ପନ୍ଥା ଅବଲମ୍ବନ [illegible]ଯାଇଅଛି। ଯାହାହେଉ ମହାତ୍ମାଙ୍କ ସମ୍ବନ୍ଧରେ ଅନ୍ୟ କେହି [illegible] ବ୍ୟକ୍ତ କରିବା ବିଧେୟ ନୁହେଁ। ସୁଯୋଗ ନ ଥିବାରୁ ଦର୍ଶନ [illegible]ଲା ନାହିଁ। ବର୍ତ୍ତମାନ ସଂସାରବନ୍ଧ ବିମୁକ୍ତ ବୌଦ୍ଧ ସ୍ଥବିରଙ୍କର ଦର୍ଶନ ମିଳିବ କି ନାହିଁ ଦେଖାଯାଉ ବୋଲି ଗାଡ଼ିରୁ ତେଇଁପଡ଼ିଲି। ଦେଖିଲି, ଗୃହ ସମ୍ମୁଖ ପଡ଼ିଆରେ କେତେଗୁଡ଼ିଏ ମୁଣ୍ଡିତ ମସ୍ତକ ପୀତପଟଧାରୀ ଯୁବକ ବିଚରଣ କରୁଅଛନ୍ତି। ସେମାନଙ୍କ ନିକଟକୁ ଗଲି; ସେମାନେ ନମ୍ରଭାବରେ ମୋର ଆସିବାର କାରଣ ପଚାରିଲେ। ମୁଁ ତାହା ଜ୍ଞାପନ କରିବାରୁ ନିକଟରେ ଥିବା ଜଣେ ପ୍ରୌଢ଼ ବ୍ୟକ୍ତିଙ୍କୁ ଡାକିଲେ। ସେ ଆସି ମୋତେ କହିଲେ, ଆପଣ ହାଇ ପ୍ରିଷ୍ଟଙ୍କ ସହିତ ସାକ୍ଷାତ୍ କରିବାକୁ ଆସିଅଛନ୍ତି ? ଆସନ୍ତୁ। ମୁଁ ତାଙ୍କ ପଛେ ପଛେ ଗଲି। ଗୃହାଭ୍ୟନ୍ତରକୁ ଜୋତା ନେବାକୁ ହେବ କି ନା ଏହା ପଚାରିବା ପୂର୍ବରୁ ଦରୋଜାରେ ଛିଡ଼ା ହୋଇ କଷ୍ଟରେ ବୁଟ୍ ଜୋତା ଖୋଲିଲି। ମନ୍ଦିରକୁ ଓ ମହନ୍ତମାନଙ୍କ ମଠକୁ ପ୍ରବେଶ କଲାବେଳେ ଜୋତା ଖୋଲିବାର ବିଲକ୍ଷଣ ଅଭ୍ୟାସ ଅଛି। ଏଣୁ ନ ପଚାରି ସ୍ୱେଚ୍ଛାପୂର୍ବକ ଖୋଲିଲି। ସେ କହିଲେ ଜୋତା ଆଣିବାକୁ ନିଷେଧ ନାହିଁ, ଜୋତା ଆଣନ୍ତୁ। ମୁଁ ତ ଜୋତା ଖୋଲି ସାରିଥିଲି, ଏଣୁ କହିଲି ହିନ୍ଦୁ ମନ୍ଦିର ମୂର୍ତ୍ତି କିମ୍ବା ମହନ୍ତମାନଙ୍କୁ ଆମ୍ଭେ ଯେଉଁ ସମ୍ମାନ ଦେଖାଉଁ, ଏହାଙ୍କୁ ସମ୍ମାନ କରିବା କର୍ତ୍ତବ୍ୟ ମନେ କରୁଅଛି। ଅନ୍ତତଃ ପ୍ରଥମ ସାକ୍ଷାତ୍‌ରେ ଏହା କରିବା ବିଧେୟ। ବିଧି ନ ଥିଲେ ଭବିଷ୍ୟତରେ ଆଉ ଖୋଲିବି ନାହିଁ। ଏହା ଶୁଣି ସେ ଅତ୍ୟନ୍ତ ପ୍ରୀତ ହେଲେ। ଗୃହ ମଧ୍ୟରେ ପ୍ରବେଶ କଲି। ଗୃହଟି ଇଂରେଜୀ ଧରଣରେ ସଜ୍ଜିତ, ଅନେକ ଗୁଡ଼ିଏ ଚୌକି ପଡ଼ିଅଛି। ଗୋଟିଏ ଆରାମ ଚେୟାରରେ ସ୍ଥବିର ଅର୍ଦ୍ଧଶାୟିତ ଅବସ୍ଥାରେ ଥିଲେ। ମୋତେ ଦେଖି ବସିଲେ। ମୁଁ ତାହାଙ୍କୁ ଅଭିବାଦନ କଲି। ସହାସ୍ୟମୁଖରେ ତାହା ଗ୍ରହଣ କଲେ ଏବଂ ନିକଟରେ ବସିବାକୁ କହିଲେ। ଏହାଙ୍କର ନାମ ଶ୍ରୀସୁମଙ୍ଗଳମ୍, ବୟସ ଅଶୀ ବର୍ଷରୁ ନିମ୍ନ ହେବ ନାହିଁ। କ୍ଷୀଣକାୟ ଓ ଜରାଜୀର୍ଣ୍ଣ। କ୍ଷୀଣ ସ୍ୱରରେ ମୋର ଆସିବାର କାରଣ ପଚାରିଲେ। ବୌଦ୍ଧଧର୍ମରେ ଆସ୍ଥା କିପରି, କେଉଁ କେଉଁ ବୌଦ୍ଧ ଗ୍ରନ୍ଥ ଅଧ୍ୟୟନ କରିଅଛି ଇତ୍ୟାଦି କେତେକ କଥା ପଚାରିଲେ। ମୁଁ ତାଙ୍କ ପ୍ରଶ୍ନର ଯଥାଯୋଗ୍ୟ ଉତ୍ତର ଦେଲାରୁ କହିଲେ ବୁଦ୍ଧ ଧର୍ମ ସମ୍ବନ୍ଧରେ ଆପଣଙ୍କର ଯାହା ଜିଜ୍ଞାସ୍ୟ ତାହା ପଚାରନ୍ତୁ। ମୁଁ କହିଲି, ମୁଁ କିଛିଦିନ ଏଠାରେ ରହିବି, ଆପଣ ଅନୁମତି ଦେଲେ ମୋର ଯାହା ଜିଜ୍ଞାସ୍ୟ ଆପଣଙ୍କର ଶିଷ୍ୟମାନଙ୍କଠାରୁ ବୁଝିପାରିବି। ଆପଣଙ୍କୁ କଷ୍ଟ ଦେବାକୁ ମୁଁ ଇଚ୍ଛୁକ ନୁହେଁ। ଭଲ ସୁଯୋଗ ପାଇଲି। ମାତ୍ର ତାହାଙ୍କର ଅବସ୍ଥା ଓ କଥା କହିବାର କଷ୍ଟ ଦେଖି କୌଣସି ପ୍ରଶ୍ନ କରିବାକୁ ମନ ବଳିଲା ନାହିଁ। ଜଣେ ବଙ୍ଗାଳୀ ବୌଦ୍ଧ ଏଠାରେ ଅଛନ୍ତି, ସେ ଆପଣଙ୍କୁ ବୌଦ୍ଧ ଧର୍ମର କଥା କହିବେ। ନୋହିଲେ ମୋଠାରୁ ବୁଝି ଆପଣଙ୍କୁ ବୁଝାଇ ଦେବେ ବୋଲି କହିଲେ ଏବଂ ସେହି ବଙ୍ଗାଳୀ ଯୁବକଙ୍କୁ ଡକାଇ ମୋ ସହିତ ପରିଚିତ କରାଇଦେଲେ। ଆଶ୍ରମର ସମସ୍ତ ସ୍ଥାନ ଦେଖାଇବାକୁ ଆଦେଶ କଲେ। ମୁଁ ଆସିଲା ବେଳେ କହିଲେ, ଇତି ମଧ୍ୟରେ ଆପଣ 'The Gospel of Buddha' ଅଧ୍ୟୟନ କରନ୍ତୁ। ଅତି ନିକଟରେ ବୁଦ୍ଧଦେବଙ୍କ ମନ୍ଦିର। ମୁଁ ମନ୍ଦିରକୁ ପ୍ରବେଶ କଲାବେଳେ ବୃଦ୍ଧ ସନ୍ଧ୍ୟା ଉପାସନା ନିମନ୍ତେ ସେଠାକୁ ଆସିଲେ। ମନ୍ଦିର ମଧ୍ୟରେ ପୂର୍ଣ୍ଣ ନିରାକାର ଗୋଟିଏ ଅତି ସୁନ୍ଦର ବୌଦ୍ଧମୂର୍ତ୍ତି– ଦକ୍ଷିଣ ହସ୍ତ ଉପରେ ମସ୍ତକରଖି ଶାୟିତ ଅବସ୍ଥାରେ ଅଛନ୍ତି। ଏହା ବୁଦ୍ଧଦେବଙ୍କର ଅନ୍ତିମ ଅବସ୍ଥାର ଦୃଶ୍ୟ। ମୂର୍ତ୍ତି ସମ୍ମୁଖରେ ଗୋଟିଏ ବତି ଜଳୁଥିଲା ଓ ସୁଗନ୍ଧ ଧୂପାମୋଦ ଉଠୁଥିଲା। ଜଣେ ବାଳକ କେତେକଗୁଡ଼ିଏ ସୁଗନ୍ଧ ଶୁକ୍ଳ ପୁଷ୍ପ ଧରି ଦଣ୍ଡାୟମାନ ହେଲା। ବୃଦ୍ଧ ସେଥିରୁ କିଛି ପୁଷ୍ପ ନେଇ ସମ୍ମୁଖରେ ରଖିଦେଲେ, ଏବଂ 'ବୁଦ୍ଧ ଶରଣଂ ଗଚ୍ଛାମି', 'ଧର୍ମ ଶରଣଂ ଗଚ୍ଛାମି' ଇତ୍ୟାଦି ମନ୍ତ୍ର ଉଚ୍ଚାରଣ କଲେ। ସେତେବେଳେ ବଙ୍ଗାଳୀ ଯୁବକ ମୋତେ କହିଲେ, ଆପଣ ପୁଷ୍ପାଞ୍ଜଳି ଦେବାକୁ ଦୋଷାବହ ମନେ କରନ୍ତି କି ? ମୁଁ କହିଲି, ଆଜି ମୋର ସୁଦିବସ ବୋଲି ମନେ କରୁଅଛି। ଯଦ୍ୟପି ଭାରତୀୟ ଦେବତାମାନଙ୍କୁ ପୂଜା କରିପାରେ, ତେବେ ବୁଦ୍ଧଦେବଙ୍କ ଗୁଣ ସ୍ମରଣପୂର୍ବକ ତାଙ୍କ ମୂର୍ତ୍ତି ସମକ୍ଷରେ ନିଷ୍କାମ ଭାବରେ କେତେଗୁଡ଼ିଏ ପୁଷ୍ପ ରଖିବାକୁ ମୋର ଆପତ୍ତି କ'ଣ ?

ବୌଦ୍ଧମାନଙ୍କର ପ୍ରଧାନ ପୁରୋହିତଙ୍କ ସହିତ ମୁଁ ଆଜି ବୁଦ୍ଧଦେବଙ୍କ ଉଦ୍ଦେଶ୍ୟରେ ପୁଷ୍ପାଞ୍ଜଳି ଦେବି, ଏଥିରୁ ବଳି ସୌଭାଗ୍ୟର କଥା କ'ଣ ଅଛି ? ସେମାନେ ଯେଉଁ ରୀତିରେ ପୁଷ୍ପ ରଖିଲେ, ମୁଁ ମଧ୍ୟ ସେହିପରି କଲି। ବୃଦ୍ଧ ଗୃହରୁ ଫେରିଲା ବେଳେ କାନ୍ଥର ଚିତ୍ର ପରିଚୟ କରାଇ ଦେବାକୁ କହି ଆସିଥିଲେ। ବୁଦ୍ଧଦେବଙ୍କର ଜୀବନଚରିତ କାନ୍ଥରେ ସ୍ପଷ୍ଟଭାବରେ ଚିତ୍ରିତ ହୋଇଅଛି। ଏ ଦେଶରେ ବଡ଼ ଲୋକଙ୍କ ଘର କାନ୍ଥରେ ଯେପରି ରାମ ଚରିତର ଚିତ୍ର ଥାଏ, ସେହିପରି ମାତ୍ର ଚିତ୍ରଗୁଡ଼ିକ ତେଲ ରଙ୍ଗରେ ଚିତ୍ରିତ ବଡ଼ ଓ ସୁନ୍ଦର।

ଗୋଟିଏ ପୁସ୍ତକାଗାର ଅଛି । ଏଥିରେ ଅତି ପ୍ରାଚୀନ ପୁସ୍ତକମାନ ତାଳ ପତ୍ରରେ ଲିଖିତ ହୋଇଅଛି, ଅନେକ ପୁସ୍ତକର ପଟା ରୌପ୍ୟ ନିର୍ମିତ । ପୁସ୍ତକାଗାର ତନ୍ନ ତନ୍ନ କରି ଦେଖାଇଲେ । ମନ୍ଦିରକୁ ଆଉ କେତେଥର ଯାଇ ଏହି ବଙ୍ଗାଳୀ ଓ ଅପର ସନ୍ନ୍ୟାସୀଙ୍କ ସହିତ ବାକ୍ୟାଳାପ କରିଥିଲି । ତାହା ଏଠାରେ ବିବୃତ କରିବାର ପ୍ରୟୋଜନ ନାହିଁ । କିମ୍ବା ସିଂହଳରେ ପ୍ରଚଳିତ ବୌଦ୍ଧଧର୍ମର ବିବରଣ ଦେବାର ଏହା ସ୍ଥଳ ନୁହେଁ । ଏହି ବଙ୍ଗାଳୀ ଯୁବକଙ୍କର ପୂର୍ବପୁରୁଷଗଣ ବୌଦ୍ଧ ଥିଲେ । ଏହାଙ୍କର ନାମ ପିଅତିସା । ବିଦ୍ୟୋଦୟ କଲେଜରେ ଅଧ୍ୟାପକ କାର୍ଯ୍ୟ କରନ୍ତି ।

ଦୁଃଖର କଥା ମୋର ଡାୟରୀ ପ୍ରକାଶ ନ ହେଉଣୁ ମହାତ୍ମା ଶ୍ରୀସୁମଙ୍ଗଳମ୍ ଦେହତ୍ୟାଗ କରିଅଛନ୍ତି । ଏ ଜଣେ ପ୍ରଧାନ ପାଲୀ ଭାଷାବିତ୍ ଓ ବୌଦ୍ଧଧର୍ମର ବ୍ୟବସ୍ଥାପକ ବୋଲି ଜଗତ୍ ବିଖ୍ୟାତ ଥିଲେ । ମୋତେ ବିଦାୟ ଦେଲାବେଳେ କମ୍ପିତ ସ୍ୱରରେ ଯେଉଁ Good bye କରିଥିଲେ, ତାହା ଅଦ୍ୟାପି କର୍ଣ୍ଣପଟହରେ ଆଘାତ କରୁଅଛି ।

ଦିନେ ରାତ୍ର ଭୋଜନାନ୍ତେ ଖଟରେ ଶୋଇ ଚିନ୍ତା କରିବାକୁ ଲାଗିଲି । ଭାବିଲି ଲଙ୍କାକୁ ଆସିଅଛି, ଦେଶକୁ ଫେରିଗଲେ ଅନେକ ପ୍ରଶ୍ନର ଉତ୍ତର ଦେବାକୁ ହେବ । ବୋଧହୁଏ ବିଲାତ ବା ଆମେରିକା ଦେଖି ଫେରିଆସିଲେ ଏତେ କୈଫିୟତ ଦେବାକୁ ହୁଅନ୍ତା ନାହିଁ । ପ୍ରଥମ ପ୍ରଶ୍ନ ବିଭୀଷଣକୁ ଦେଖିଲ କି ନା ? ସୁବର୍ଣ୍ଣ ନିର୍ମିତ ଲଙ୍କାଗଡ଼, ରାବଣର ଜଗତି କିପରି ଇତ୍ୟାଦି, ଇତ୍ୟାଦି । ଏ ସବୁ ପ୍ରଶ୍ନର କି ଉତ୍ତର ଦେବାକୁ ହେବ, ସ୍ଥିର କରିପାରିଲି ନାହିଁ । ଯେବେ କହିବି ବିଭୀଷଣ ନାହିଁ, ସୁନାର ଅଟ୍ଟାଳିକା ନାହିଁ, ବିଶେଷତଃ ରାବଣର ଜଗତିଟା ନାହିଁ, ତାହାହେଲେ ସମସ୍ତେ କହିବେ ଯେ ''ତୁମ୍ଭେ ନିଶ୍ଚୟ ଲଙ୍କାକୁ ଯାଇ ନାହିଁ ।'' ଏ କି ବିଷମ ସମସ୍ୟା । ଯାହାହେଉ ପ୍ରକୃତ କଥା କହିବାକୁ ହେବ, ଏଣୁ ମନ ମଧ୍ୟରେ ସ୍ଥିର କଲି ଯେ କଲମ୍ବୋରୁ ଫେରି ନ ଯାଇ ଲଙ୍କାର ପ୍ରଧାନ ପ୍ରଧାନ ସ୍ଥାନଗୁଡ଼ିକ ଦେଖିବି ଏବଂ ପ୍ରଶ୍ନ ହେବା ଆଗରୁ ଲଙ୍କାର ଏବଂ ସେହି ସେହି ସ୍ଥାନମାନଙ୍କର ଯତ୍‌ସାମାନ୍ୟ ବିବରଣ ଲେଖିବି । ଏଣୁ ଡାୟରୀ ମଧ୍ୟରେ ପ୍ରଥମେ ଲଙ୍କାଦ୍ୱୀପର ଟିକିଏ ବିବରଣୀ ଦେବାକୁ ପ୍ରବୃତ୍ତି ବଳିଅଛି । ଇଚ୍ଛା ନୋହିଲେ ପାଠକଗଣ ପଢ଼ିବାକୁ ବାଦ ଦେବେ । ମୋହର ଭବିଷ୍ୟତ ସଫାଇ ପାଇଁ ଲେଖିଲେ କ୍ଷତି କ'ଣ ?

ବର୍ତ୍ତମାନ ସିଲୋନ (Ceylon) ଯେ ସୁପ୍ରସିଦ୍ଧ ସିଂହଳ ଦ୍ୱୀପ ଏବଂ ରାମାୟଣ ବର୍ଣ୍ଣିତ ଲଙ୍କାଦ୍ୱୀପ ଏଥିରେ ଆମ୍ଭମାନଙ୍କର କୌଣସି ସନ୍ଦେହ ନାହିଁ । ଯେଉଁମାନେ ବଲିଭିୟାକୁ ବଳି ନଗର ବୋଲିବାକୁ କୁଣ୍ଠିତ ନୁହନ୍ତି ସେମାନେ ସୁମାତ୍ରା ଦ୍ୱୀପକୁ ଲଙ୍କା ବୋଲି ପାରନ୍ତି । ମାତ୍ର ତାହା ଆମ୍ଭେମାନେ କୌଣସି ପ୍ରକାରେ ସ୍ୱୀକାର କରିବାକୁ ପ୍ରସ୍ତୁତ ନୋହୁଁ । ପୌରାଣିକ ନୂତନ ତତ୍ତ୍ୱର ଆବିଷ୍କର୍ତ୍ତାଗଣ ଆଜିକାଲି ପୁରାଣୋକ୍ତ ଭୌଗୋଳିକ ସ୍ଥାନ ସମୂହକୁ ଦୂରତାନୁସାରେ ନିର୍ଦ୍ଦେଶ କରୁଅଛନ୍ତି । ରାମେଶ୍ୱର ବରଂ ମିଥ୍ୟା ହେଉ, ସେତୁବନ୍ଧର ଚିହ୍ନ ବରଂ ଉଠିଯାଉ– ଦକ୍ଷିଣ ଦିଗ ନ ହୋଇ ବରଂ ପୂର୍ବ ଦିଗ ହେଉ, ଶତ ଯୋଜନଟା ବଜାୟ ରହିବା ନିଶ୍ଚୟ । ସିଲୋନ ତ ଶତ ଯୋଜନ ନୁହେଁ । ଏଣୁ ସୁମାତ୍ରାକୁ ଲଙ୍କା ବୋଲି ଆପଣା ମତ ବଜାୟ ରଖିବାକୁ ବଦ୍ଧପରିକର । ଆମ୍ଭମାନଙ୍କ ମତରେ ଦୂରତାର ଇତର ବିଶେଷ ହେବା ଅସମ୍ଭବ ନୁହେଁ, ମାତ୍ର ସ୍ଥାନ ଭିନ୍ନ ହେବା ଅସମ୍ଭବ । ଦଶ ଯୋଜନକୁ ଶତ ଯୋଜନ କରିବା ତ କବିର ବାହାଦୁରି । ଏହି ଦ୍ୱୀପରେ ମଗଧବାସିଗଣ ପ୍ରାୟ ୨୫୦୦ ବର୍ଷ ହେଲା ଉପନିବେଶ ସ୍ଥାପନ କରିଅଛନ୍ତି । ସେମାନେ ଉପନିବେଶ ସ୍ଥାପନ କଲାବେଳେ ଏହି ଦ୍ୱୀପର ନାମ ଲଙ୍କା ଥିବାର ସେମାନଙ୍କ ଇତିହାସରେ ଲିଖିତ ଅଛି ।

ରାମାୟଣ ବର୍ଣ୍ଣିତ ଲଙ୍କାର ବିବରଣ ସମସ୍ତଙ୍କୁ ଜଣା, ଏଣୁ ତାହାର ପୁନରୁକ୍ତି ନିଷ୍ପ୍ରୟୋଜନ । ମଗଧବାସୀଙ୍କ ଉପନିବେଶ ସ୍ଥାପନାବଧି ସଂକ୍ଷିପ୍ତ ବିବରଣ ଦେଲେ ଯଥେଷ୍ଟ ହେବ ।

ଖ୍ରୀଷ୍ଟପୂର୍ବ ୫୦୦ ବର୍ଷ ପୂର୍ବେ ମଗଧ ଦେଶାନ୍ତର୍ଗତ ଲଲ ନାମକ ରାଜ୍ୟରେ ସିଂହବାହୁ ରାଜତ୍ୱ କରୁଥିଲେ । ତାହାଙ୍କ ଜ୍ୟେଷ୍ଠପୁତ୍ର ବିଜୟ ସିଂହ ପ୍ରଜାପୀଡ଼କ ଓ ଦୁର୍ଦ୍ଧର୍ଷ ଥିଲେ । ଏଣୁ ପ୍ରଜାମାନଙ୍କ ପ୍ରାର୍ଥନାକ୍ରମେ ଓ ସେମାନଙ୍କ ମନରକ୍ଷା ନିମନ୍ତେ ସିଂହବାହୁ ବିଜୟଙ୍କୁ ଓ ତାଙ୍କ ଅନୁଚରବର୍ଗଙ୍କୁ ନିର୍ବାସିତ କଲେ । ବିଜୟ ଲଙ୍କା ଦ୍ୱୀପରେ ଉପସ୍ଥିତ ହେଲେ । ସେତେବେଳେ ଏହି ଦ୍ୱୀପରେ ନାଗ ଯକ୍ଷ ନାମରେ ଦୁଇ ଜାତିର ବସତି ଥିଲା । ନାଗମାନେ ଉତ୍ତର ପଶ୍ଚିମ ମାଳରେ ବାସ କରୁଥିଲେ, ଏଣୁ ଏହି ଅଂଶର ନାମ ନାଗଦ୍ୱୀପ ଥିଲା । ଯକ୍ଷମାନେ ଏହି ଦ୍ୱୀପର ମଧ୍ୟ ଅଂଶରେ ବାସ କରୁଥିଲେ ଏବଂ ଏହି ଅଂଶର ନାମ ଲଙ୍କାପୁର ବୋଲି ବିଦିତ ଥିଲା । ଲିଖିତ ଅଛି ଯେ ଏହି ଲଙ୍କାପୁରରେ କୁବେଣୀ ନାମ୍ନୀ ଜଣେ ପ୍ରତାପଶାଳିନୀ ଯକ୍ଷ ରମଣୀ ଥିଲା । ଏକ ସୁରମ୍ୟ କ୍ଷୁଦ୍ର ହ୍ରଦର ଉପକୂଳରେ ସେ ତପସ୍ୱିନୀ ରୂପ ଧାରଣ କରି ତପସ୍ୟାରେ ନିମଗ୍ନ ଥାଏ । ଜଳ ଆହରଣ ନିମନ୍ତେ ବିଜୟଙ୍କ ଅନୁଚରମାନଙ୍କ ମଧ୍ୟରୁ ଗୋଟିଏ

ଗୋଟିଏ ଏହି ହ୍ରଦକୁ ଯାନ୍ତି। କୁବେଣୀ ସେମାନଙ୍କୁ ଧରି ଗୋଟାଏ ଗୁହା ମଧ୍ୟରେ ଆବଦ୍ଧ କରି ରଖେ। କ୍ରମେ ସ୍ୱୟଂ ବିଜୟ ସେଠାକୁ ଗଲେ। କୂଳକୁ ପାଦଚିହ୍ନ ଯିବାର ଦେଖି ପାରିଲେ, ମାତ୍ର ଗୋଟାଏ ମଧ୍ୟ ଫେରିବା ଚିହ୍ନ ଦେଖିଲେ ନାହିଁ। ଏଣୁ ଶଙ୍କିତ ହେଲେ ଏବଂ ସାବଧାନତା ସହକାରେ ତପସ୍ୱିନୀ ନିକଟକୁ ଯାଇ ତାହାର ଗଳଦେଶ ଧରିଲେ ଏବଂ ତାହାକୁ ପରାସ୍ତ କଲେ। ସେ ବିଜୟଙ୍କ ସହିତ ସନ୍ଧି ସ୍ଥାପନ କଲା ଏବଂ ଅନୁଚରମାନଙ୍କୁ ମୁକ୍ତ କରିଦେଲା। ବିଜୟ ତାହାର ପାଣି ଗ୍ରହଣ କଲେ। ବିଜୟଙ୍କ ଔରସରେ ତାହାଙ୍କର ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଜାତ ହେଲେ, ଅଦ୍ୟପି କଥିତ ହୁଏ ଯେ ଆଧୁନିକ ବେଦା ଜାତି କୁବେଣୀର ବଂଶଧର। କୁବେଣୀର ପ୍ରଭାବରୁ ବିଜୟ ସମସ୍ତ ଯକ୍ଷମାନଙ୍କ ଉପରେ ଆଧିପତ୍ୟ ସ୍ଥାପନ କଲେ। ବିଜୟ ସିଂହ ଏହି ଦ୍ୱୀପର ଅଧିପତି ହେବାରୁ ତାଙ୍କର ବଂଶର ନାମ ଅନୁସାରେ ଏହି ଦ୍ୱୀପର ନାମ ସିଂହ ଦ୍ୱୀପ ହେଲା। କ୍ରମେ ପରିବର୍ତ୍ତିତ ହୋଇ ସିଂହଳ ଓ ସିଲୋନ ହୋଇଅଛି।

ବିଜୟ ସିଂହ ଅବଶେଷରେ ମଦୁରାଧିପତିଙ୍କ କନ୍ୟାକୁ ବିବାହ ହେଲେ ଏବଂ ତାହାଙ୍କ ଅନୁଚରବର୍ଗ ମଧ୍ୟ ଦକ୍ଷିଣ ଭାରତର ନାନା ସ୍ଥାନରୁ ବିବାହ କଲେ। ବିଜୟଙ୍କ ବିବାହିତ ରାଣୀଙ୍କ ଗର୍ଭରୁ ସନ୍ତାନ ନୋହିବାରୁ ସେ ମୃତ୍ୟୁ ପୂର୍ବରୁ ତାହାଙ୍କର ଭାଇ ସୁମିତଙ୍କୁ ରାଜ୍ୟଭାର ଗ୍ରହଣ କରିବାକୁ ଆହ୍ୱାନ କଲେ। ପିତାଙ୍କ ମୃତ୍ୟୁପରେ ସୁମିତ ଜଳ ଦେଶର ରାଜତ୍ୱ ପ୍ରାପ୍ତ ହୋଇଥିଲେ, ଏଣୁ ତାହାଙ୍କ କନିଷ୍ଠ ପୁତ୍ର ପଣ୍ଡୁବାସଙ୍କୁ ପଠାଇଲେ। ପଣ୍ଡୁବାସ ଲଙ୍କାର ରାଜା ହେଲେ। ପଣ୍ଡୁବାସ ଗୌତମ ବୁଦ୍ଧ ବଂଶୀୟ କୌଣସି ରାଜପୁତ୍ରୀଙ୍କର ପାଣିଗ୍ରହଣ କରିଥିଲେ। ଏହି ସମୟରେ ଲଙ୍କା ଦ୍ୱୀପ ପ୍ରଧାନ ତିନି ଭାଗରେ ବିଭକ୍ତ ହୋଇଥିଲା, ଯଥା– ରାଜରାତ, ମାୟାରାଓ ଓ ରହୁଣ।

ବୁଦ୍ଧଦେବ ଇତିମଧ୍ୟରେ ଏହି ଦ୍ୱୀପକୁ ତିନି ଥର ଆସିଥିବାର ପ୍ରବାଦ ଅଛି।

ଖ୍ରୀଷ୍ଟପୂର୍ବ ୩୦୭ ଠାରୁ ୨୭୬ ପର୍ଯ୍ୟନ୍ତ ତିସା ଲଙ୍କା ଦ୍ୱୀପରେ ରାଜତ୍ୱ କରିଥିଲେ। ଅଶୋକଙ୍କ ସହିତ ଏହାଙ୍କର ସୌହାର୍ଦ୍ଦ୍ୟ ସ୍ଥାପିତ ହୋଇଥିଲା। ସୌହାର୍ଦ୍ଦ୍ୟ ବୃଦ୍ଧି କରିବା ନିମନ୍ତେ ତିସା ବହୁ ମୂଲ୍ୟ ଉପଢୌକନ ସହିତ ଅଶୋକଙ୍କ ପାଖକୁ ଦୂତ ପ୍ରେରଣ କରିଥିଲେ। ଅଶୋକ ଦୂତମାନଙ୍କୁ ଅଭ୍ୟର୍ଥନା କଲେ ଏବଂ ତିସାଙ୍କ ପ୍ରେରିତ ଉପଢୌକନ ସକଳ ସାଦରେ ଗ୍ରହଣ କଲେ। ଅଶୋକ ପୁଣି ଆପଣା ପକ୍ଷରୁ ଦୂତ ପ୍ରେରଣ କଲେ ଏବଂ ମହାମୂଲ୍ୟ ଉପଢୌକନ ପଠାଇଲେ ଏବଂ ବୌଦ୍ଧ ଧର୍ମର ଆଶ୍ରୟ ଗ୍ରହଣ କରିବା ନିମନ୍ତେ ତିସାଙ୍କୁ ବିଶେଷ ଅନୁରୋଧ କରିଥିଲେ। ତିସା ତାହା ସ୍ୱୀକାର କଲେ। ଖ୍ରୀଷ୍ଟପୂର୍ବ ୩୦୭ ଅବ୍ଦରେ ତିସାଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରିବା ନିମନ୍ତେ ମିହୀନ୍ଦ୍ର ଅଶୋକଙ୍କ କର୍ତ୍ତୃକ ପ୍ରେରିତ ହୋଇ ଲଙ୍କାରେ ଉପନୀତ ହେଲେ। ମିହୀନ୍ଦ୍ର ଅନୁରାଧାପୁର ନିକଟବର୍ତ୍ତୀ ମିହିନ୍ତାଳ ପର୍ବତରେ ତିସାଙ୍କ ସହିତ ପ୍ରଥମ ସାକ୍ଷାତ୍ କଲେ। ଅନୁରାଧାପୁରରେ ତିସାଙ୍କୁ ମିହୀନ୍ଦ୍ର ବୌଦ୍ଧ ଧର୍ମରେ ଦୀକ୍ଷିତ କଲେ। ତିସା ଏହି ଘଟଣାର ସ୍ମାରକ ସ୍ୱରୂପ ବୌଦ୍ଧମାନଙ୍କ ଆଶ୍ରମ ସକାଶେ ମେଘନାମକ ଉଦ୍ୟାନକୁ ଉତ୍ସର୍ଗ କଲେ। ଏହାଙ୍କ ଉତ୍ତାରୁ ସିଂହଳବାସୀମାନେ ବୌଦ୍ଧଧର୍ମାବଲମ୍ବୀ ହେଲେ। ଖ୍ରୀଷ୍ଟପୂର୍ବ ୫୪୩ ଅବ୍ଦଠାରୁ ୩୦୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମହାବଂଶୀୟ ୫୩ ଜଣ ରାଜା ରାଜତ୍ୱ କଲେ। ତତ୍ପରେ ସୁଲ୍ଲବଂଶୀୟ ୧୧୯ ଜଣ ରାଜା ୧୮୧୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କଲେ। ୧୮୧୫ ଖ୍ରୀଷ୍ଟାବ୍ଦରେ ସୁଲ୍ଲ ବଂଶୀୟ ଶେଷ ନରପତି ଶ୍ରୀ ବିକ୍ରମ ରାଜସିଂହ ସିଂହାସନ ଚ୍ୟୁତ ହେଲେ ଏବଂ ଲଙ୍କା ଦ୍ୱୀପ ବ୍ରିଟିଶ୍ ହସ୍ତଗତ ହେଲା।

ଇତି ମଧ୍ୟରେ ତାମିଲ ରାଜ ଗଣ ବହୁବାର ସିଂହଳ ଆକ୍ରମଣ କରିଥିଲେ ଏବଂ ଆଧିପତ୍ୟ ବିସ୍ତାରର ଚେଷ୍ଟା କରିଥିଲେ। କେତେକାଂଶରେ କୃତକାର୍ଯ୍ୟ ମଧ୍ୟ ହୋଇଥିଲେ, ମାତ୍ର ସିଂହଳରାଜାଗଣ ସେମାନଙ୍କୁ ପରାସ୍ତ କରି ଓ ତଡ଼ିଦେଇ ନିଷ୍କଣ୍ଟକରେ ରାଜତ୍ୱ କରିବାକୁ ସମର୍ଥ ହୋଇଥିଲେ। ଏହି ରାଜାମାନେ ଦେଶର ସମ୍ୟକ୍ ପ୍ରକାର ଉନ୍ନତି ସାଧନ କରିଥିଲେ, ଅନେକ ରାଜପଥ ଓ ସମୃଦ୍ଧିଶାଳୀ ନଗର ନିର୍ମାଣ କରିଥିଲେ, ଭାଷା, ବାଣିଜ୍ୟ ଓ ସାହିତ୍ୟର ମଧ୍ୟ ସମ୍ୟକ୍ ପ୍ରକାର ଉନ୍ନତି ସାଧନ କରିଥିଲେ।

୧୫୦୫ ଖ୍ରୀଷ୍ଟାବ୍ଦରେ ଧର୍ମପରାକ୍ରମବାହୁଙ୍କ ରାଜତ୍ୱ ସମୟରେ ପର୍ତ୍ତୁଗୀଜମାନେ ପ୍ରଥମେ ବାଣିଜ୍ୟର ସୂତ୍ରପାତ କଲେ। କ୍ରମେ ଉପକୂଳ ଓ ତନ୍ନିକଟବର୍ତ୍ତୀ ପ୍ରଦେଶମାନଙ୍କରେ ଆଧିପତ୍ୟ ସ୍ଥାପନ କଲେ। ପର୍ତ୍ତୁଗୀଜମାନେ ଏକାଦିକ୍ରମେ ୧୫୩ ବର୍ଷ ଆଧିପତ୍ୟ ବିସ୍ତାର କରିବାକୁ ସମର୍ଥ ହୋଇଥିଲେ। ଏମାନେ ରାଜ୍ୟବିସ୍ତାର ନିମନ୍ତେ ଯେମନ୍ତ ଲାଳାୟିତ ଥିଲେ, ସିଂହଳବାସୀଙ୍କୁ ସ୍ୱଧର୍ମରେ ଦୀକ୍ଷିତ କରିବା ନିମନ୍ତେ ତେମନ୍ତ ଯତ୍ନଶୀଳ ଥିଲେ। କୌଣସି ରାଜା ଏମାନଙ୍କ ସାହାଯ୍ୟ ଲୋଡ଼ିଲେ ତାହାଙ୍କୁ ସ୍ୱଧର୍ମରେ ଦୀକ୍ଷିତ ନ କରି ସାହାଯ୍ୟ ଦେଉ ନ ଥିଲେ। ଏଥି ନିମନ୍ତେ ବିସ୍ତର ସିଂହଳବାସୀ କ୍ୟାଥଲିକ୍ ହୋଇଅଛନ୍ତି।

ଏଥିଉତ୍ତାରୁ ଓଲନ୍ଦାଜମାନଙ୍କର ପାଳି । ଓଲନ୍ଦାଜମାନେ ୧୩୮ ବର୍ଷ ଆଧିପତ୍ୟ କରିଥିଲେ । ଏମାନେ ମଧ୍ୟ ସ୍ୱଧର୍ମ ସଂସ୍ଥାପନପାଇଁ ବିଶେଷ ଯତ୍ନଶୀଳ ଥିଲେ । ମାତ୍ର ଧର୍ମପ୍ରଚାର ଅପେକ୍ଷା ଧନଲାଳସା ଏମାନଙ୍କର ଅଧିକ ଥିଲା । ଏମାନଙ୍କ ସମୟରେ କେହି ପ୍ରୋଟେଷ୍ଟାଣ୍ଟ ଧର୍ମ ଗ୍ରହଣ ନ କରି କୌଣସି ବଡ଼ ଚାକିରି କରି ପାରୁ ନ ଥିଲେ । ଏଣୁ ଅନେକ ଲୋକ ବିଶ୍ୱାସଶୂନ୍ୟ ଖ୍ରୀଷ୍ଟିୟାନ୍ ହେଉଥିଲେ । ଏମାନେ ଦେଶ ମଧ୍ୟରେ ନିଜ ଭାଷା ପ୍ରଚଳନ କରିବା ନିମନ୍ତେ ଯଥାସାଧ୍ୟ ଚେଷ୍ଟିତ ଥିଲେ । ଓଲନ୍ଦାଜମାନଙ୍କ ଉତ୍ତାରୁ ୧୭୯୬ ଖ୍ରୀଷ୍ଟାବ୍ଦଠାରୁ ଲଙ୍କା ଇଂରାଜ ରାଜ୍ୟାନ୍ତର୍ଭୁତ ହୋଇଅଛି । ସିଂହଳର କ୍ଷେତ୍ରଫଳ ୨୫୩୩୨ ବର୍ଗ ମାଇଲ, ଦ୍ୱୀପଟି ତ୍ରିକୋଣାକାରମଧ୍ୟବର୍ତ୍ତୀ ଯେକୌଣସି ସ୍ଥାନ ସମୁଦ୍ରଠାରୁ ୭୦ ମାଇଲରୁ ଅଧିକ ଦୂରବର୍ତ୍ତୀ ନୁହେଁ । ସୁତରାଂ ବିଷୁବରେଖାର ନିକଟବର୍ତ୍ତୀ ହୋଇଥିଲେ ସୁଦ୍ଧା ତାଦୃଶ ଉଷ୍ଣ ନୁହେଁ । ବିଶେଷତଃ ଖୁବ୍ ଉନ୍ନତ ପର୍ବତ ଓ ଉଚ୍ଚ ଅଧିତ୍ୟକା ଥିବା ହେତୁରୁ ମଧ୍ୟଭାଗରେ ପ୍ରଚୁର ବୃଷ୍ଟି ହୁଏ । ପ୍ରଚୁର ବୃଷ୍ଟି ହେତୁରୁ ଏବଂ ସାମୁଦ୍ରିକ ଆର୍ଦ୍ର ଓ ଶୀତଳ ପବନ ପ୍ରବାହ ହେତୁରୁ ଭୂମି ଅତ୍ୟନ୍ତ ଉର୍ବର ଓ ବର୍ଷତମାମ୍ ସବୁଜ ବୃକ୍ଷ ଲତା ଓ ତୃଣ ଦ୍ୱାରା ଶୁଭୋଭିତ । ଅନାବୃଷ୍ଟି ବା ଦୁର୍ଭିକ୍ଷ ଦେଖା ନାହିଁ । ସଂକ୍ରାମକ ରୋଗର (ବିସୂଚିକା ଓ ବସନ୍ତ) ପ୍ରାଦୁର୍ଭାବ କେବେ ନାହିଁ ।

ଲଙ୍କା ନାରିକେଳ ଓ ଗୁବାକର ପ୍ରଧାନ ସ୍ଥଳ । ମୋଟ ନଡ଼ିଆ ଚାଷର ଜମି ୭୫୦୦୦ ମାଣ ଓ ବାର୍ଷିକ ଉତ୍ପନ୍ନ ୧୨୦୦୦୦୦୦୦୦ ନଡ଼ିଆ । ବର୍ତ୍ତମାନ ସମସ୍ତ ପାର୍ବତୀୟ ଆର୍ଦ୍ରଭୂମି ଚା' ବଗିଚାରେ ପରିପୂର୍ଣ୍ଣ ହୋଇଅଛି । ଡାଳଚିନି, ଗୋଲମରିଚ, ଜାଇଫଳ ପ୍ରଭୃତି ମସଲାର ଚାଷ ମଧ୍ୟ ହୁଏ । ମୁକ୍ତା ନିମନ୍ତେ ଲଙ୍କା ଚିର ପ୍ରସିଦ୍ଧ । ଏହାଛଡ଼ା ମାଣିକ୍ୟ ପ୍ରଭୃତି କେତେକ ବହୁମୂଲ୍ୟ ପ୍ରସ୍ତର ମଧ୍ୟ ମିଳେ । ସିଂହଳ ହସ୍ତୀ ନିମନ୍ତେ ବିଖ୍ୟାତ । ବର୍ତ୍ତମାନ ମଧ୍ୟ ହାତୀ ଅଛନ୍ତି ।

ବ୍ୟାଘ୍ର ଏ ଦ୍ୱୀପରେ ନାହାନ୍ତି । ହିଂସ୍ରଜନ୍ତୁ ମଧ୍ୟରେ ଚିତାବାଘ ଓ ଭାଲୁ । ଭାରତ ପରି ଲଙ୍କା ସର୍ପ ପରିପୂର୍ଣ୍ଣ । ୧୯୦୧ ସାଲର ଲୋକସଂଖ୍ୟା ୩୫୬୫୯୫୪ ଜଣ ଏବଂ ପ୍ରାଚୀନ ଅସଭ୍ୟ ବେଦା ୩୯୭୧ ଜଣ ମାତ୍ର । ସମସ୍ତ ବିଷୟ ପର୍ଯ୍ୟାଲୋଚନା କରି ଦେଖିଲେ କବିଗଣ ଲଙ୍କା ଦ୍ୱୀପକୁ ସ୍ୱର୍ଣ୍ଣମୟ ବୋଲିବା ଅଯୌକ୍ତିକ ନୁହେଁ । ଏ ଦେଶର ସାଧାରଣ ଲୋକେ ଭାତ ହାଣ୍ଡିକୁ ମଧ୍ୟ ରତ୍ନହାଣ୍ଡି ବୋଲନ୍ତି ।

ଡାୟରୀର ପାଠକମାନଙ୍କୁ ଆଉ ବାଜେ କଥା କହି ଅଟକାଇବା ଭଲ ନୁହେଁ । ପ୍ରସ୍ତାବିତ କଥାର ଅନୁସରଣ କରାଯାଉ ।

କଲମ୍ବୋରେ ଅଳ୍ପଦିନ ଅବସ୍ଥାନ କଲା ଉତ୍ତାରୁ କାଣ୍ଡି ଯିବାର ପ୍ରୟୋଜନ ମନେକଲି । ଭୋର ପାଞ୍ଚଘଣ୍ଟାରେ ବସା ତ୍ୟାଗ କରି ଷ୍ଟେସନ୍‌କୁ ଗଲି । ରେଳ ୬ ଘଣ୍ଟାରେ ଛାଡ଼େ । ତଥାପି ପ୍ରାୟ ଏକ ଘଣ୍ଟା ପୂର୍ବରୁ ଷ୍ଟେସନ୍‌ରେ ପହଞ୍ଚିଲି । ନୂତନ ଦେଶର ନୂତନ ରେଲଓୟେ । ଆଗରୁ ଯାଇ ସମସ୍ତ ବିଷୟ ଜାଣି ରଖିବା ଉଚିତ ମନେ କଲି । ଷ୍ଟେସନ୍‌ଟି ନୂତନ ଧରଣର ଏବଂ ସୁନ୍ଦର । ଟିକଟ୍ ବନ୍ଦୋବସ୍ତ ଭଲ । ଟିକଟ୍ ଶୀଘ୍ର ମିଳେ । ଟିକଟ୍ କ୍ରୟ କଲା ଉତ୍ତାରୁ ଷ୍ଟେସନ୍‌ରେ ସମଗ୍ର ଅଂଶ ଦେଖିଲି ଏବଂ ଷ୍ଟେସନ୍‌ର ପୁସ୍ତକ ଦୋକାନରୁ ରାସ୍ତାରେ ପଢ଼ିବା ଭଳି ଖଣ୍ଡେ ଦୁଇଖଣ୍ଡ ପୁସ୍ତକ ସଂଗ୍ରହ କରୁ କରୁ ଷ୍ଟେସନ୍‌ରେ ଗାଡ଼ି ପହଞ୍ଚିଗଲା । ଗାଡ଼ିଗୁଡ଼ିକ ଆମ୍ଭ ଦେଶର ଗାଡ଼ିପରି । ବଡ଼ ଗାଡ଼ିର ପ୍ରଚଳନ ଆଜିଯାଏ ହୋଇ ନାହିଁ, ଶୋଇବା ଗାଡ଼ି ସ୍ୱତନ୍ତ୍ର । ଏଣୁ ଦିନରେ ଚଳିବା ଗାଡ଼ି ଏ ଦେଶ ଗାଡ଼ିପରି ଦୁଇ ଗୋଟି କୋଠରିରେ ବିଭକ୍ତ ନୁହେଁ କିମ୍ୱା ଶୋଇବା ଭଳି ଲମ୍ୱ ପ୍ରଶସ୍ତ ବେଞ୍ଚ ନାହିଁ । ଅନେକ ଲୋକ ବସିବା ଉପଯୁକ୍ତ ଗଦିଦିଆ ବେଞ୍ଚ କୁରୁଚି ଅଛି । ପ୍ରତ୍ୟେକ ପାଇଖାନା କୋଠରିରେ ଖଣ୍ଡିଏ ତଉଲିଆ ଓ ସାବୁନ ରଖା ଯାଇଥାଏ । ଏ ଦେଶର ରେଳପଥ ସବୁ ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ପରିଚାଳିତ । ଏଣୁ ସମଗ୍ର ରେଳପଥର ନାମ ସିଲୋନ ଗଭର୍ଣ୍ଣମେଣ୍ଟ ରେଲଓୟେ । ଯାତ୍ରୀଗଣ ଆରୋହଣ କଲାରୁ ଗାଡ଼ି ଛାଡ଼ିଲା । ମୋହର ସହଯାତ୍ରୀ ଦୁଇ ଜଣ, ଜଣେ ସିଂହଳବାସୀ ଭଦ୍ରଲୋକ, ଅପର ଜଣକ ରେଳ କର୍ମଚାରୀ ସାହେବ । ଗାଡ଼ି ଷ୍ଟେସନରେ ଛାଡ଼ିବାର ଅଳ୍ପକ୍ଷଣପରେ ଗୋଟିଏ କ୍ଷୁଦ୍ର ନଦୀ ଅତିକ୍ରମ କଲା । ଏହି ନଦୀର ନାମ କୋଲାନି ଗଙ୍ଗା ।

ଅଳ୍ପକ୍ଷଣ ପରେ ଗୋଟାଏ ଷ୍ଟେସନ୍‌ରେ ରହିଲା । ଷ୍ଟେସନ୍‌ର ନାମ କେଲାନିଆଁ, ଏହି ଷ୍ଟେସନ କଲମ୍ବୋଠାରୁ ସାଢ଼େ ତିନିମାଇଲ ଦୂର ମାତ୍ର । ଷ୍ଟେସନ୍ ନିକଟରେ ଗୋଟାଏ କାରଖାନ ଘର । ଏହି କାରଖାନାରେ କୃତ୍ରିମ ଉପାୟରେ କୃଷି କ୍ଷେତ୍ରପାଇଁ ସାର ପ୍ରସ୍ତୁତ ହୁଏ ଏଠାରୁ ଚାଷୀମାନେ ସାର କ୍ରୟ କରି ଆପଣା ଆପଣା କ୍ଷେତ୍ରରେ ବ୍ୟବହାର କରନ୍ତି । ଏହି ସ୍ଥାନଟି ବୌଦ୍ଧମାନଙ୍କର ବିଶେଷ ସମ୍ମାନର ସ୍ଥଳ ବୋଲି ପରିଚିତ । ବୁଦ୍ଧ ଦେବ ସ୍ୱୟଂ ଏହି ସ୍ଥାନରେ ପଦାର୍ପଣ କରିଥିବାର ପ୍ରବାଦ ଅଛି । ଏଥିର ସ୍ମାରକ ସ୍ୱରୂପ ଗୋଟାଏ ପ୍ରାଚୀନ ମନ୍ଦିର ବିଦ୍ୟମାନ ଅଛି । ଗାଡ଼ି ଷ୍ଟେସନ ତ୍ୟାଗ କରି

ଧାନ୍ୟକ୍ଷେତ୍ର ମଧ ଦେଇ ଧାବମାନ ହେବାକୁ ଲାଗିଲା। ଧାନ୍ୟକ୍ଷେତ୍ରଗୁଡ଼ିକ ସଂକୀର୍ଣ୍ଣ ଓ ଉନ୍ନତାନ୍ନତ। ମଧ୍ୟେ ମଧ୍ୟେ କ୍ଷୁଦ୍ର କ୍ଷୁଦ୍ର ବେତଳଟି। ବେତଳଟି ମଧରେ ଗୋଟାଏ ଯୋଡ଼ାଏ ନଡ଼ିଆ ବା ଗୁଆ ଗଛ ଅଛି। ଏହି ଗଛଗୁଡ଼ିକ ଅଯତ୍ନବର୍ଦ୍ଧିତ। ସ୍ଥାନେ ସ୍ଥାନେ ପୁଣି ପୁଷ୍ପପୂର୍ଣ୍ଣ ବନ୍ୟଲତା ଓ ଗୁଳ୍ମରେ ଆଚ୍ଛାଦିତ, ଅକର୍ଷିତ ଭୂମି, ଅଯତ୍ନସମ୍ଭୂତ ହେଲେ ମଧ ଚିତ୍ତାକର୍ଷକ। ମଧ୍ୟେ ମଧ୍ୟେ ଅସଂଖ୍ୟ ନାରିକେଳ, ଗୁଆ, କଦଳୀ, ପଣସ ଓ ରୋଟି ବୃକ୍ଷରେ (Bread fruit) ପରିବେଷ୍ଟିତ କ୍ଷୁଦ୍ର ଗ୍ରାମ। କେଉଁଠାରେ ପ୍ରକାଣ୍ଡ ନଡ଼ିଆ ବାଡ଼ିର ସୀମା କଳନା ହୋଇପାରୁ ନାହିଁ, ପୁଣି ମଧ୍ୟେ ମଧ୍ୟେ ଦୂରସ୍ଥ ପାର୍ବତୀୟ ଦୃଶ୍ୟ ଦୃଷ୍ଟିପଥରେ ପଡ଼ି ଯାଉଥାଏ। ପ୍ରକାଣ୍ଡ ଓ ବିସ୍ତୀର୍ଣ୍ଣ ଗୋଟାଏ ଦୃଶ୍ୟ ଏକାବେଳେକେ ଦେଖାଯିବାକୁ ନାହିଁ। ପୁଣି ରେଳଗାଡ଼ି ଦ୍ରୁତବେଗରେ ଅମଣା ବକ୍ରୀଭୂତ ନିର୍ଦ୍ଦିଷ୍ଟ ପନ୍ଥାରେ ଯିବାବେଳେ ଦୃଶ୍ୟଗୁଡ଼ିକ ଆହୁରି କ୍ଷୁଦ୍ର ଓ କ୍ଷୀଣସ୍ଥାୟୀ କରିବାଦ୍ୱାରା ମନରେ ଅତ୍ୟନ୍ତ ଆଗ୍ରହ ବଢ଼ାଉଥାଏ। ରାଗମା ଷ୍ଟେସନ୍ ତ୍ୟାଗକଲାରୁ ପ୍ରସିଦ୍ଧ ଏଡ଼ମପିକ ପର୍ବତର ଦୃଶ୍ୟ ଦେଖାଯାଏ। ତାହା ଦେଖିବା ନିମନ୍ତେ ଦକ୍ଷିଣ ପାର୍ଶ୍ୱରେ ମୁଖ ବଢ଼ାଇଥିଲି। ଅନେକ ଗୁଡ଼ିଏ ନୀଳ ଉଚ୍ଚ ପର୍ବତ ଶଷତ୍ ନୀଳ ନିର୍ମଳ ଦକ୍ଷିଣ ଗଗନପଥରେ ଉଦ୍‌ଗତ ହେଲା ପ୍ରାୟ ଅପୂର୍ବ ଶୋଭା ଧାରଣା କରିଥିଲେ।

କେତେକ ଷ୍ଟେସନ୍ ଛାଡ଼ିଲା ଉତ୍ତାରୁ ରେଳକାନୁରେ କୋକା ବୃକ୍ଷ, କାଫି ବୃକ୍ଷ ଓ ରବର ବୃକ୍ଷର ଚାଷ ଦେଖାଗଲା। ଗାଢ଼ଶ୍ୟାମପତ୍ର ଗୁଚ୍ଛ ମଧସ୍ଥ ରକ୍ତାଭ ଫଳପୂର୍ଣ୍ଣ କୋକା ବୃକ୍ଷଗୁଡ଼ିକ ନେତ୍ର ପ୍ରୀତିକର। ପୂର୍ବେ ଏ ଅଞ୍ଚଳରେ କାଫି ଚାଷ ହେଉଥିଲା। ମାତ୍ର କାଫି ପତ୍ର କୀଟଦଷ୍ଟ ହେବାରୁ ବିଶେଷ ଲାଭଜନକ ହେଲା ନାହିଁ। ଏଣୁ କୋକା ଚାଷର ଆରମ୍ଭ ହୋଇଅଛି। ରବର ଚାଷ ଅଳ୍ପଦିନ ହେଲା ଆରମ୍ଭ ହୋଇଅଛି। ମାତ୍ର ଏହା ବିଶେଷ ଲାଭଜନକ ହେବାର ଆଶା କରାଯାଉଅଛି। ଅଳ୍ପଦିନ ମଧରେ ରବର ଚାଷ ଏତେ ବଢ଼ିଅଛି ଯେ, ବର୍ତ୍ତମାନ ରବର ଚାଷ ଭୂମିର ପରିମାଣ ଦେଢ଼ଲକ୍ଷ ମାଣରୁ ଅଧିକ ଅଟେ। ରେଳ ଯେତିକି ଅଗ୍ରସର ହେବାକୁ ଲାଗିଲା ନଡ଼ିଆ, ଗୁଆ ଓ ତାଳ ବଗିଚା ତେତିକି ଅଧିକ ଦେଖାପଡ଼ିଲା। କେବେ କେବେ ଗୋଟାଏ ଗୋଟାଏ ତାଡ଼ି ବୃକ୍ଷ (Talipot palm) ଚିତ୍ତାକର୍ଷକ କରୁଥିଲା। ମାଲଓ୍ୱାର ଉପକୂଳ ଭିନ୍ନ ଭାରତବର୍ଷରେ ଅନ୍ୟତ୍ର ଏ ବୃକ୍ଷ ନାହିଁ। ଏ ବୃକ୍ଷ ଲଙ୍କାର ଶୋଭା ସମ୍ପଦ ବୋଇଲେ ଅତ୍ୟୁକ୍ତି ହେବ ନାହିଁ। ଏହି ବୃକ୍ଷ ୬୦, ୭୦ ଫୁଟ ଉଚ୍ଚ ହୁଏ। ଦେଖିବାକୁ ଠିକ୍ ତାଳଗଛ ପରି , ମାତ୍ର ପତ୍ରଗୁଡ଼ିକ ଅତ୍ୟନ୍ତ ବଡ଼। ବିସ୍ତୃତ ପତ୍ରର ଦୈର୍ଘ୍ୟ ୧୪ ଫୁଟରୁ କମ୍ ନୁହେଁ। ପ୍ରାୟ ଅଶୀବର୍ଷ ଉତ୍ତାରୁ ଏହି ବୃକ୍ଷରେ ଫୁଲ ଫୁଟେ। ବୃକ୍ଷର ଅଗ୍ରଭାଗରେ ଗୋଟାଏ ପ୍ରକାଣ୍ଡ ପୁଷ୍ପଗୁଚ୍ଛ ପ୍ରସ୍ଫୁଟିତ ହୁଏ। ପୁଷ୍ପଗୁଚ୍ଛର ଉଚ୍ଚତା ପ୍ରାୟ ୧୫, ୨୦ ଫୁଟରୁ କମ୍ ନୁହେଁ। ପୁଷ୍ପ ଶୁକ୍ଳବର୍ଣ୍ଣ, ଫଳପକ୍ୱ ହେଲାରୁ ବୃକ୍ଷଟି ମୃତ୍ୟୁ ମୁଖରେ ପତିତ ହୁଏ। ପ୍ରସ୍ଫୁଟିତ ତାଡ଼ି ବୃକ୍ଷର ଶୋଭା ବର୍ଣ୍ଣନାତୀତ। ବକୁଳ ବିମଣ୍ଡିତ ଚ୍ୟୁତ ବୃକ୍ଷ, ପ୍ରସ୍ଫୁଟିତ ଶାଳ ବୃକ୍ଷ, ତିଳକ ବୃକ୍ଷର ଶୋଭା ଏହା ସହିତ ତୁଳନା ହେବାର ଯୋଗ୍ୟ ନୁହେଁ।

ନୂତନ ଦେଶର ନୂତନ ଦୃଶ୍ୟ ଦେଖିବାକୁ ଆଗ୍ରହ ବେଶି। ବାମ ପାଖ ଦରଜାକୁ ଥରେ, ଦକ୍ଷିଣ ପାଖ ଦରଜାକୁ ଥରେ ଯିବା ଆସିବା କରୁ କରୁ ଅନେକ ଦୃଶ୍ୟ ଆଖିରେ ପଡ଼ିଲା। ହୁଏତ ଅନେକ ସୁନ୍ଦର ଦୃଶ୍ୟ ଆଖିରେ ପଡ଼ିଲା ନାହିଁ। ଛୋଟ ବଡ଼ ଦଶ ଗୋଟି ଷ୍ଟେସନ୍ ଅତିକ୍ରମ କରି ଗାଡ଼ି ୯ ଘଣ୍ଟାରେ ଫୁଲଗାହାବେଲା ଷ୍ଟେସନ୍‌ରେ ଉପନୀତ ହେଲା। ଏହି ଷ୍ଟେସନ୍‌ଟି ଉତ୍ତରାଞ୍ଚଳ ଲାଇନ୍ ଓ ଦକ୍ଷିଣପୂର୍ବ ଲାଇନ୍‌ର ସନ୍ଧି ଷ୍ଟେସନ୍ (Junction) ଅଟେ। ଏଠାରୁ ଗାଡ଼ି ପୂର୍ବାଭିମୁଖୀନ ହେଲା। ପଛରେ ଗ୍ରାମ, ଧାନ୍ୟକ୍ଷେତ୍ର, ନଡ଼ିଆ ବଗିଚା ସମ୍ମୁଖରେ ବୃକ୍ଷଲତା ବିମଣ୍ଡିତ ଉନ୍ନତ ପର୍ବତ ଶ୍ରେଣୀ ଅଭେଦ୍ୟ ପ୍ରାଚୀର ରୂପେ ଦଣ୍ଡାୟମାନ। ଏହି ପର୍ବତଶ୍ରେଣୀ ଅତିକ୍ରମ ନ କରି କାଣ୍ଡୀ ପ୍ରବେଶ କରିବାର ଅନ୍ୟ ପନ୍ଥା ନାହିଁ। ଗାଡ଼ି ୭ ମାଇଲ ବାଟ ଯାଇ ଚମକିତ ହେଲା ପରି ଦଣ୍ଡାୟମାନ ହୋଇ ରହିଲା। ଏହି ଷ୍ଟେସନ୍‌ର ନାମ ରମ୍ବୁକଣା। ଗାଡ଼ି କଲମ୍ବୋଠାରୁ ଏତେବେଳଯାଏ ୨୯୯ ଫୁଟ୍ ମାତ୍ର ଆରୋହଣ କରିଥିଲା। କାଣ୍ଡୀଯିବା ନିମନ୍ତେ ଆହୁରି ୧୩୦୩ ଫୁଟ୍ ଆରୋହଣ କରିବାକୁ ହେବ। ଗୋଟାଏ ଇଞ୍ଜିନ୍ ଏତେ ବଡ଼ ବୋଝ ନେଇ ଆରୋହଣ କରିବାର ବଡ଼ ବିଷମ ବ୍ୟାପାର, ଏଣୁ ଆଉ ଗୋଟିଏ ସହକାରୀ ଇଞ୍ଜିନ୍ ଆବଶ୍ୟକ ହେଲା। ଗାଡ଼ିରେ ଦୁଇ ଗୋଟି ଅତ୍ୟନ୍ତ ଶକ୍ତିଶାଳୀ ଇଞ୍ଜିନ୍ ଯୋଡ଼ା ହେଲା। ଗାଡ଼ି ପୂର୍ବାପେକ୍ଷା ମନ୍ଦ ଗତିରେ ଅଗ୍ରସର ହେବାକୁ ଲାଗିଲା, ଏଣିକି ଲଙ୍କାର ପାର୍ବତୀୟ ଦୃଶ୍ୟ। କୃତ୍ରିମ ଉଦ୍ୟାନ ଓ କୃଷିକ୍ଷେତ୍ରରେ ପରିଣତ କରିବା ନିମନ୍ତେ ବୃକ୍ଷକର୍ତ୍ତନ-ରୂପ ଧ୍ୱଂସ ରୀତି ଅବଲମ୍ବିତ ହୋଇଥିଲେ ମଧ ଅନେକ ପର୍ବତ ପାର୍ଶ୍ୱ ନିବିଡ଼ ଅରଣ୍ୟପୂର୍ଣ୍ଣ ହୋଇରହିଅଛି। ନଡ଼ିଆ, ତାଳ ବା ତାଡ଼ି ବୃକ୍ଷ ମସ୍ତକ ଉତ୍ତୋଳନ କରି ଅରଣ୍ୟର ବୃକ୍ଷଲତାକୁ ପରାଭବ ଦେବାକୁ ଚେଷ୍ଟିତ ଥିଲେ ସୁଦ୍ଧା ସେମାନେ ପରାଭବ ସ୍ୱୀକାର କରିବାକୁ ରାଜି ନୁହନ୍ତି। ପରସ୍ପର ଜଡ଼ିତ ହୋଇ ଅସ୍ୱାଭାବିକ ରୂପେ ବକ୍ର ଓ ଅବନତ ହୋଇ ରହିଅଛନ୍ତି। ଗ୍ରାମଗୁଡ଼ିକ ବନ୍ୟ

ବୃକ୍ଷଲତା ସହବାସରେ ବନ୍ୟଭାବ ଧାରଣ କରିଅଛନ୍ତି । ବୃକ୍ଷଲତା ସବୁ ସତେଜ ଓ ସବୁଜ । ଜଳ କିମ୍ବା ଜଳୀୟ ବାଷ୍ପ ଅଭାବରୁ କେହି କ୍ଲିଷ୍ଟ ବା ଶୀର୍ଣ୍ଣ ନୁହନ୍ତି ।

ରେଲଓୟେ ପାର୍ଶ୍ୱରେ ପତ୍ର ପୁଷ୍ପ ବିମଣ୍ଡିତ ଉନ୍ନତ ବୃକ୍ଷ ସମୂହ ପରିଶ୍ରାନ୍ତ ଘର୍ମାକ୍ତ ପଥିକକୁ ଛାୟାଦାନ ନିମନ୍ତେ ଦଣ୍ଡାୟମାନ ଥିଲେ । ସ୍ୱଚ୍ଛ ନିର୍ଝରଣୀ ସମୂହ ତୃଷାର୍ତ୍ତ ପଥିକକୁ ଜଳଦାନ କରି ତୃଷା ନିବାରଣ କରିବାକୁ ପ୍ରବାହିତ ହେଉଥିଲେ । ପଥଶ୍ରାନ୍ତ ପଥିକ ଫଁ ଫଁ ନିଃଶ୍ୱାସ ତ୍ୟାଗ କରି ଅତି କଷ୍ଟରେ ପର୍ବତାରୋହଣ କରୁଥିଲେ ସୁଦ୍ଧା ଥରେ ମଧ କୌଣସିଠାରେ ଦଣ୍ଡାୟମାନ ହେଲା ନାହିଁ । ନିବିଡ଼ଛାୟା, ସୁବାସିତ ସମୀରଣ, ନିର୍ମଳ ଜଳ, ମନୋହର ଦୃଶ୍ୟ ତାହାକୁ ତିଳେ ମାତ୍ର ଅଟକାଇ ପାରି ନ ଥିଲେ । ନିର୍ଦ୍ଦିଷ୍ଟ ସ୍ଥଳକୁ ନ ଯାଇ ବିଶ୍ରାମ କରିବ ନାହିଁ, ଜଳ ଗ୍ରହଣ କରିବ ନାହିଁ । ଆମ୍ଭେମାନେ ତାହାର ସହଯାତ୍ରୀ, ତାହାର ଅଧୀନ । ଦଣ୍ଡେ ଠିଆ ହୋଇ ଏହି ଦୃଶ୍ୟାବଳୀ ଦେଖିବାକୁ ମନ ଟାଣି ହେଉଥିଲେ ମଧ ତାହାର ପନ୍ଥା ଆଶ୍ରୟ କରିବାକୁ ବାଧ ହୋଇଥିଲୁଁ ।

କ୍ରମେ ରେଲଗାଡ଼ି ଯେତିକି ପର୍ବତାରୋହଣରେ ଅଗ୍ରସର ହେଲା, ଦୃଶ୍ୟାବଳୀ ତେତିକି ଅଭିନବ ବୋଲି ବୋଧ ହେଉଥିଲା । ରେଲପଥ ବିସ୍ତାର ପୂର୍ବରୁ କାଣ୍ଡୀ ପର୍ଯ୍ୟନ୍ତ ଯେଉଁ ଶକଟ ଗମନ ଉପଯୋଗୀ ପଥ ନିର୍ମିତ ହୋଇଥିଲା, ତାହା ଅଦ୍ୟାପି ସୁରକ୍ଷିତ ହୋଇଅଛି । ନାତିପ୍ରଶସ୍ତ ଈଷତ୍ ଧୂସର ବର୍ଣ୍ଣ ଚକ୍ରୀଭୂତ ପଥଟି ସବୁଜ ବୃକ୍ଷ ଓ ଉନ୍ନତ ତୃଣାନ୍ତରାଳରେ ଥାଇ ଗୋଟାଏ ପ୍ରକାଣ୍ଡ ସର୍ପ ନିଦ୍ରାଭିଭୂତ ହୋଇଥିବା ପରି ଦେଖାଯାଉଥିଲା । ଏହି ସ୍ଥାନରେ ପର୍ବତର ସାନୁଠାରୁ ଆରମ୍ଭ କରି ନିମ୍ନସ୍ଥ ଉପତ୍ୟକା ପର୍ଯ୍ୟନ୍ତ ପର୍ବତର ପାର୍ଶ୍ୱଦେଶ ସଂଖ୍ୟାତୀତ ଧାନ୍ୟକ୍ଷେତ୍ରରେ ପରିଣତ ହୋଇଅଛି । ପ୍ରତ୍ୟେକ କ୍ଷେତ୍ର ଏକ ବା ଦୁଇ ଫୁଟରୁ ପ୍ରଶସ୍ତ ନୁହେଁ । ପ୍ରତ୍ୟେକ କ୍ଷେତ୍ର କୋମଳ ଧାନ ଗଛରେ ପରିପୂର୍ଣ୍ଣ ଥିଲା, ଏଣୁ କ୍ଷେତ୍ରଗୁଡ଼ିକ ସବୁଜ ମଖମଲ– ଆଚ୍ଛାଦିତ ଅସଂଖ୍ୟ ପାବଚ୍ଛ ଶ୍ରେଣୀ ପରି ଦେଖାଯାଉଥିଲା । ଧାନ୍ୟକ୍ଷେତ୍ରଗୁଡ଼ିକରେ ଝରଣାଜଳ ପ୍ରବାହିତ ହୋଇ ଧାନଗଛଗୁଡ଼ିକୁ ବଞ୍ଚାଇ ରଖିଥିଲା । ଆମ୍ଭଦେଶରେ ଏପରି ଧାନ୍ୟକ୍ଷେତ୍ର ନାହିଁ । ଏହା ସିଂହଳବାସୀ କୃଷକମାନଙ୍କର ଅଧ୍ୟବସାୟ ଓ ପରିଶ୍ରମର ପରିଚାୟକ । ରେଲପଥ ଉନ୍ନତ ପର୍ବତ ଦେହରେ ନିର୍ମିତ । ଶିଖରଦେଶ ସ୍ଥାନେ ସ୍ଥାନେ ବୃକ୍ଷଲତା ବିବର୍ଜିତ । ପଥରେ ଅନେକ ଗୁଡ଼ିଏ ଟନେଲ । କୌଣସି କୌଣସି ସ୍ଥାନରେ ମନେହୁଏ ସତେ କି ନାଗରାଜ ରେଲଗାଡ଼ିଟିକୁ ଉଦରସାତ୍ କରିବା ନିମନ୍ତେ ବଦନ ବ୍ୟାଦନ କରି ରହିଅଛି । ପୁଣି ସ୍ଥାନ ବିଶେଷରେ ମନେହୁଏ ଯେ, ସେ ରେଲଗାଡ଼ି ପ୍ରତି ବିରକ୍ତ ହୋଇ ସହସ୍ର ଫୁଟ ଗଭୀର ନିମ୍ନଦେଶକୁ ନିକ୍ଷେପ କରିବାକୁ ଭ୍ରୂକୁଟି ପ୍ରଦର୍ଶନ କରୁଅଛି ଏବଂ ରେଲଗାଡ଼ି ଏଥିରେ ଭୀତ ହୋଇ ଆତ୍ମରକ୍ଷା ନିମନ୍ତେ ଶଙ୍କିତ ଓ ସଙ୍କୁଚିତ ଭାବରେ ତାହାକୁ ବେଢ଼ାଇ ରହିବାର ଚେଷ୍ଟା କରୁଅଛି । କି ଭୀଷଣ ଦୃଶ୍ୟ । ଊର୍ଦ୍ଧ୍ୱରେ ଉନ୍ନତ ପାହାଡ଼, ନିମ୍ନରେ ମସ୍ତକ ଘୂର୍ଣ୍ଣନକାରୀ ଗଭୀର ଗର୍ତ୍ତ । କେବଳ ୧୨।୧୪ ଫୁଟ ପ୍ରଶସ୍ତ ସଂକୀର୍ଣ୍ଣ ପଥରେ ରେଲଗାଡ଼ି ଯାଉଅଛି । ଏହି ପର୍ବତର ନାମ ଆଲଗଲା । ଏହାର ଏକ ଉନ୍ନତ ଶୃଙ୍ଗ ବୃକ୍ଷଲତା ବିବର୍ଜିତ । କାଣ୍ଡୀର ରାଜାଗଣ ପୂର୍ବେ ପ୍ରାଣଦଣ୍ଡରେ ଦଣ୍ଡିତ ବ୍ୟକ୍ତିମାନଙ୍କୁ ଏହି ଶୃଙ୍ଗ ଉପରୁ ନିମ୍ନଦେଶକୁ ନିକ୍ଷେପ କରାଉଥିଲେ । ଏହି ଶୃଙ୍ଗ ପ୍ରତି ଦୃଷ୍ଟିପାତ କରି ଏହି ନୃଶଂସ ବ୍ୟାପାର ଚିନ୍ତା କଲେ ଦେହ ଶିହରି ଉଠେ । ନିର୍ଦ୍ଦିଷ୍ଟ ସମୟରେ ଗାଡ଼ି ଗନ୍ତବ୍ୟ ପଥରେ ଉଚ୍ଚତମ ସ୍ଥାନରେ ଉପସ୍ଥିତ ହେଲା । ସ୍ଥାନଟି ଅତି ରମଣୀୟ । ପଥର ଉଭୟପାର୍ଶ୍ୱ ବନ୍ୟ ଓ ଗ୍ରାମ୍ୟ ପୁଷ୍ପ ପରିପୂର୍ଣ୍ଣ । ଏଠାରୁ କାଣ୍ଡୀ ୯୬ ଫୁଟ ନିମ୍ନ । ଏଣୁ ଏଠାରୁ ସହକାରୀ ଇଞ୍ଜିନ୍‌ଟି ଖଲାସ ହେଲା । ଏଠାରୁ କାଣ୍ଡୀ ୯ ମାଇଲ ମାତ୍ର, ୫ ମାଇଲ ଯାଇ ଗାଡ଼ି ପୁଣି ଦଣ୍ଡାୟମାନ ହେଲା । ଷ୍ଟେସନ୍‌ର ନାମ ପେରିଡ଼ାନିଆଁ । ଏହା ଗୋଟିଏ ସନ୍ଧି ଷ୍ଟେସନ୍ (Junction) । ଏଠାରେ ଜଗତ୍ ବିଖ୍ୟାତ ବଟାନିକାଲ ଗାର୍ଡ଼ନ ଅଛି । ଷ୍ଟେସନ୍ ତ୍ୟାଗ କଲାରୁ ଗୋଟାଏ ନଦୀ ଅତିକ୍ରମ କରିବାକୁ ହେଲା । ଏହି ନଦୀର ନାମ ମହାବେଲି ଗଙ୍ଗା । ଏହା ଲଙ୍କାର ପ୍ରଧାନ ନଦୀ, ଓସାର ୨୦୬ ଫୁଟ ମାତ୍ର । ଭାରତବର୍ଷରେ ଥିଲେ ଭୂଗୋଳରେ ସ୍ଥାନ ପାଇ ନ ଥାନ୍ତା । 'ଯସ୍ମିନ୍ ଦେଶେ ଦ୍ରୁମ ନାସ୍ତି, ଏରଣ୍ଡୋଽପି ଦ୍ରୁମାୟତେ' । ୧୧ ଘଣ୍ଟା ବେଳେ କାଣ୍ଡୀରେ ଉପସ୍ଥିତ ହେଲୁଁ । ଆକାଶ ମେଘାଚ୍ଛନ୍ନ ହେଲା, ଅଳ୍ପ ଅଳ୍ପ ବୃଷ୍ଟି ହେଉଥିଲା । ରିକ୍ସା ଗାଡ଼ି ଚଢ଼ି ବସା ଅନ୍ୱେଷଣ କରିବାରେ ପ୍ରବୃତ୍ତ ହେଲୁଁ ।

କାଣ୍ଡୀ ପର୍ବତ ବେଷ୍ଟିତ କ୍ଷୁଦ୍ର ପ୍ରାଚୀନ ନଗର । ଏହାର ପ୍ରାଚୀନ ନାମ ଶ୍ରୀବର୍ଦ୍ଧନପୁର । ନାମାନୁଯାୟୀ ଏହା ପୂର୍ବକାଳରେ ସମୃଦ୍ଧିଶାଳୀ ନଗର ଥିଲା କି ନାହିଁ ତାହା କୁହାଯାଇ ନ ପାରେ । ତେବେ ବର୍ତ୍ତମାନ ସିଂହଳବାସୀମାନେ ଏହାକୁ ମହାନୁଓଆରା (ମହାନଗର) ବୋଲନ୍ତି । ସହରଟି ନତାନତ ଭୂମି ଉପରେ ସ୍ଥାପିତ । ସହରର ମଧରେ ୨।୩ ଗୋଟି ଛୋଟ ପାହାଡ଼ ମଧ ଅଛି । ମହାବେଲି ଗଙ୍ଗା ସହରର ଅତି ନିକଟରେ ପ୍ରବାହିତ ହେଉଅଛି । କାଣ୍ଡୀ ସୁଲ୍ୱବଂଶୀୟ ରାଜାମାନଙ୍କର ରାଜଧାନୀ ଥିଲା । ଶ୍ରୀ ବିକ୍ରମବାହୁଙ୍କ

ଶାସନରେ ୧୮୧୫ ଖ୍ରୀଷ୍ଟାବ୍ଦରେ ଏହା ଇଂରେଜମାନଙ୍କ କରଗତ ହୋଇଅଛି । ରାଜପ୍ରାସାଦ ପ୍ରଭୃତି ଅନେକ ଅଟ୍ଟାଳିକା ବିଦ୍ୟମାନ ଅଛି । କେତେକ ଗୁଡ଼ିଏ ଗୃହ ସରକାରୀ ଅଫିସ୍ ରୂପେ ବ୍ୟବହୃତ ହେଉଅଛି । ଦୋକାନ ଘର, ପ୍ରମୋଦଉଦ୍ୟାନ, ଫୋଆରା, ବ୍ରୋଞ୍ଜ ପ୍ରତିମୂର୍ତ୍ତି ପ୍ରଭୃତି ସହର ତୁଳନାରେ ଯଥେଷ୍ଟ । କଲମ୍ବୋ ଅପେକ୍ଷା କାଣ୍ଡୀର ଉତ୍ତାପ ୫ ଡିଗ୍ରୀ ଊଣା, ଏଣୁ ଅନେକ କଲମ୍ବୋବାସୀ ଏଠାରେ ଗ୍ରୀଷ୍ମକାଳରେ ବାସ କରିଥାନ୍ତି ।

ସହରର ଦକ୍ଷିଣାଂଶରେ ଗୋଟିଏ ପ୍ରକାଣ୍ଡ ପୁଷ୍କରିଣୀ (କୃତ୍ରିମ ହ୍ରଦ) । ପୁଷ୍କରିଣୀ ମଧ୍ୟରେ ଦ୍ୱୀପ, ତହିଁରେ ଗୋଟିଏ ଇଷ୍ଟକ ଗୃହ । ଜଳ ଅତି ନିର୍ମଳ । ପୁଷ୍କରିଣୀ ଚତୁଃପାର୍ଶ୍ୱରେ ସୁନ୍ଦର ପଥ, ପଥ ପାର୍ଶ୍ୱ ଅତି ସୁନ୍ଦର ତାଡ଼ି ଓ ଅନ୍ୟାନ୍ୟ ବୃକ୍ଷ ଦ୍ୱାରା ସୁଶୋଭିତ । ଏହି ପୁଷ୍କରିଣୀଟି ସହରର ଶୋଭା ବର୍ଦ୍ଧନ କରୁଅଛି । ଏହି ପୁଷ୍କରିଣୀ କି ଦେଖିଲେ ମନ ଯେପରି ପୁଲକିତ ହୁଏ ତାହାର ଖନନ ପ୍ରଥା ଶ୍ରବଣ କଲେ ମନ ତେତିକି ଦୁଃଖାଭିଭୂତ ହୁଏ । ଏହି ଶ୍ରୀବିକ୍ରମ ସିଂହଙ୍କର ଯେମନ୍ତ ସୌନ୍ଦର୍ଯ୍ୟ ଲିପ୍‌ସାର ପରିଚୟ ଦେଉଅଛି, ତେମନ୍ତ ତାଙ୍କର କ୍ରୂରତା ଓ ନିର୍ଦ୍ଦୟତାର ପରିଚୟ ଦେଉଅଛି । ଶ୍ରୀବିକ୍ରମ ସିଂହ ନିଜର ବିଳାସ ସାମଗ୍ରୀ କରିବା ନିମନ୍ତେ ଏହି ହ୍ରଦ ବିନା ବ୍ୟୟରେ ଖନନ କରିଥିଲେ । ପ୍ରଜାମାନଙ୍କର ଘର୍ମବିନ୍ଦୁ ଏହି ପୁଷ୍କରିଣୀର ନିର୍ମଳ ଜଳରେ ପରିଣତ ହୋଇଅଛି । କେବଳ ଯେ ଏତିକି, ତାହା ନୁହେଁ । ଯେଉଁମାନେ ରାଜକୀୟ ଅସନ୍ତୋଷ ଭାଜନ, ସେମାନେ ଛଳନାକ୍ରମେ ପ୍ରମୋଦ ଭବନକୁ ଆହୂତ ହୋଇ ଜଳ ମଧ୍ୟରେ ଜୀବନ ବିସର୍ଜନ ଦେଉଥିଲେ । ସୁତରାଂ ଏହି ହ୍ରଦ ମଧ୍ୟରେ ଅନେକ ନିରପରାଧ ବ୍ୟକ୍ତିଙ୍କ ଅସ୍ଥି ପଙ୍କ ପ୍ରୋତ୍‌ଥିତ ହୋଇ ଅଦ୍ୟାପି ରହିଅଛି । ହ୍ରଦ ନିକଟରେ ଗୋଟିଏ କ୍ଷୁଦ୍ର ଯାଦୁଘର ଅଛି । ଏଠାରେ ପ୍ରତ୍ନତତ୍ତ୍ୱ ଅନୁସନ୍ଧାନକାରିମାନଙ୍କର ପ୍ରୟୋଜନୀୟ ଅନେକ ଭଗ୍ନମୂର୍ତ୍ତି, ପ୍ରାଚୀନ ମୁଦ୍ରା ପ୍ରଭୃତି ସଂରକ୍ଷିତ ହୋଇଅଛି । ଏଠାରେ ଗୋଟାଏ ତାମ୍ରମୁଦ୍ରା ଦେଖିଲି । ଏହି ମୁଦ୍ରାର ଆକାର ପ୍ରାୟ ଆମ ଦେଶର ପ୍ରଚଳିତ ପଇସାଠାରୁ କିଞ୍ଚିତ୍ ଛୋଟ । ମୁଦ୍ରାରେ ଗୋଟିଏ ଦଣ୍ଡାୟମାନ ପୁରୁଷର ଆକୃତି ଅଙ୍କିତ ହୋଇଅଛି । ଛବିଟି ଅସ୍ପଷ୍ଟ କୌଣସି ଅକ୍ଷର ନାହିଁ । ଏହି ମୁଦ୍ରା ତଳେ ଖଣ୍ଡେ ଟିକଟ୍ ଥିଲା । ତହିଁରେ ଲିଖିତ ଅଛି... 'ଚୋଡ଼ଗଙ୍ଗଦେବ ୧୨୦୭ ଖ୍ରୀଷ୍ଟାବ୍ଦ' । ଚୋଡ଼ଗଙ୍ଗ କର୍ଣ୍ଣାଟରେ ଶାସନ କରୁଥିବାବେଳେ ସମ୍ଭବତଃ ଏହି ମୁଦ୍ରାର ପ୍ରଚଳନ କରିଥିଲେ ଏବଂ ସେହି ମୁଦ୍ରା ଲଙ୍କାକୁ ନୀତ ହେବା ଅସମ୍ଭବ ନୁହେଁ । ଏହି ମୁଦ୍ରା ପର୍ଯ୍ୟବେକ୍ଷଣରେ ମୋର ବିଶେଷ ଆଗ୍ରହ ଦେଖି ଜଣେ କର୍ମଚାରୀ ମୋତେ କହିଲେ, ଯେବେ ଆପଣ ଇଚ୍ଛା କରନ୍ତି, ଟ ୧ ୧ ଦେଲେ ଆରମ୍ଭ ଠିକ୍ ଏହିପରି ଗୋଟିଏ ମୁଦ୍ରା ତୟାର କରି ଦେବୁଁ । ଦେଖିଲି, ପ୍ରାଚୀନ ମୁଦ୍ରା ସବୁ ସେଠାରେ ତୟାର ହେଉଅଛି, ମାତ୍ର ଏକ ଟଙ୍କା ବ୍ୟୟ କରି ଗୋଟିଏ ନକଲ ନୂତନ ମୁଦ୍ରା ଆଣିବା, ଆବଶ୍ୟକ ମନେ କଲି ନାହିଁ । ମୋର ନୋଟ୍‌ବୁକ୍‌ରେ ସେହି ମୁଦ୍ରାର ଏବଂ ଗଜ ସିଂହ ପ୍ରଭୃତି କେତେଗୋଟି କାଳ୍ପନିକ ଜୀବର ଚିତ୍ର ଅଙ୍କନ କରି ଆଣିଲି ।

ସନ୍ଧ୍ୟା ସମୟରେ ଦଲଦମାଲି ଗାବା ବା ବୁଦ୍ଧ ଦନ୍ତମନ୍ଦିର ଦେଖିବା ନିମନ୍ତେ ଗଲି । ମନ୍ଦିର ଚାରିପାଖରେ ନାତି ପ୍ରଶସ୍ତ ଗୋଟିଏ ଖାଇ । ଖାଇଟି ଜଳପୂର୍ଣ୍ଣ ଓ ସେଠାରେ ଅନେକ କଚ୍ଛପ । ମନ୍ଦିର ଅଭ୍ୟନ୍ତରକୁ ପ୍ରବେଶ କଲାବେଳେ କେତେଗୁଡ଼ିଏ କାନ୍ଥଚିତ୍ର ଦୃଷ୍ଟିଗୋଚର ହୁଏ । ଏଥିରେ ସ୍ୱକୃତ ପାପ ନିମନ୍ତେ କି ପ୍ରକାର କଠୋର ଯନ୍ତ୍ରଣା ଭୋଗ କରିବାକୁ ହୁଏ, ତାହା ପ୍ରଦର୍ଶିତ ହୋଇଅଛି । ଚିତ୍ର ଦେଖୁ ଦେଖୁ ମନ୍ଦିରର ପ୍ରଧାନ ପୁରୋହିତ ଉପସ୍ଥିତ ହେଲେ । ସେ ମୋର ପରିଚୟ ନେଇ ତାହାଙ୍କ ସଙ୍ଗରେ ଯିବାକୁ କହିଲେ । ମନ୍ଦିରର ଏକ ପାର୍ଶ୍ୱରେ ଗୋଟିଏ ଜଳକୁଣ୍ଡ ଅଛି । ସେଠାରେ ହାତ ଧୋଇବାକୁ କହିଲେ । ସେ ନିଜେ ହାତ ଧୋଇଲେ, ମୁଁ ମଧ୍ୟ ହାତ ଧୋଇଲି । ଏହି କୁଣ୍ଡରେ ହାତ ନ ଧୋଇ ଦନ୍ତ ଧାତୁକୁ ପୂଜା କରିବାର ବିଧି ନାହିଁ । ମୁଁ ଦୁଇ ପଇସାର ପୁଷ୍ପ କ୍ରୟ କରି ଦନ୍ତ ଧାତୁ ସମ୍ମୁଖରେ ଯଥାରୀତିରେ ରଖିଦେଲି । ରୌପ୍ୟ ଟେବୁଲ ସହିତ ଗୋଟିଏ ଉଚ୍ଚ କାଚ ବାକ୍ସ ଦୃଢ଼ଭାବରେ ଆବଦ୍ଧ ହୋଇଅଛି । ପୁରୋହିତ ପର୍ଦ୍ଦା ଉତ୍ତୋଳନ କରି ତାହା ଦେଖାଇଦେଲେ । ଦନ୍ତ ଧାତୁର ଆବରଣ ସୁବର୍ଣ୍ଣ ନିର୍ମିତ । ଦେଖିବାକୁ ଏ ଦେଶର ପୂଜାଘଣ୍ଟା ତୁଲ୍ୟ । ଛଅ ଗୋଟି ଆବରଣର ତଳରେ ଦନ୍ତଧାତୁ ଗୋଟିଏ ପଦ୍ମ ପୁଷ୍ପ ଉପରେ ରଖାଯାଇଅଛି । ବହିରାବରଣର ଉଚ୍ଚତା ପ୍ରାୟ ୩ ଫୁଟ । ଏହି ଆବରଣଟି ମଣିମୁକ୍ତା ଜଡ଼ିତ ବହୁମୂଲ୍ୟ ଅଳଙ୍କାର ଦ୍ୱାରା ସୁଶୋଭିତ । ଆବରଣର ମଧ୍ୟଭାଗରେ ଥିବା ମୟୂରାଙ୍କିତ ବଡ଼ ପଦକ ଅତୀବ ରମଣୀୟ । ଯେତେବେଳେ ଶ୍ରୀ ବିକ୍ରମରାଜ ସିଂହ ସିଂହାସନଚ୍ୟୁତ ହୋଇ ଦେଶାନ୍ତରିତ ହେଲେ, ସେତେବେଳେ ତାହାଙ୍କର ସମସ୍ତ ଆଭରଣ ଓ ଅଳଙ୍କାରଦ୍ୱାରା ଏହି ଆଭରଣକୁ ଭୂଷିତ କରିଗଲେ । ପୁରୋହିତ କହିଲେ ଯେ ଆବରଣ ମାତ୍ର ଦେଖାଇ ପାରିବାର ଅଧିକାର ତାଙ୍କର, ଦନ୍ତଧାତୁ ଦେଖିବାକୁ ହେଲେ ଗଭର୍ଣ୍ଣମେଣ୍ଟଙ୍କ ଅନୁମତି ଆବଶ୍ୟକ ଏବଂ ଅନୁମତି ସହଜରେ ମିଳିପାରେ । ଆମ୍ଭ ଦେଶର ପଣ୍ଡାମାନେ ଯେପରି

ପୂଜା କରିବାକୁ ଜାଣନ୍ତି, ଧର୍ମର ମୂଳ ଅଗ କିଛି ଜାଣନ୍ତି ନାହିଁ, ଏହି ପୁରୋହିତ ମଧ ତଦ୍ରୂପ କେବଳ ପୂଜକ ଓ ରକ୍ଷକ ବୋଲି ଅନୁମାନ ହେଲା।

ମନ୍ଦିର ମଧରେ ଗୋଟିଏ ପୁସ୍ତକାଗାର। ଏଥିରେ ଅନେକ ବୌଦ୍ଧଗ୍ରନ୍ଥ ଅଛି। ପ୍ରାୟ ଅଧିକାଂଶ ପୁସ୍ତକରେ ରୂପାପଟା ଲାଗିଅଛି। ଆଲମାରି ମଧରେ ଅନେକ ଗୁଡ଼ିଏ ବୁଦ୍ଧମୂର୍ତ୍ତି ଅଛନ୍ତି। ସେଥିମଧରୁ ଗୋଟିଏ ସ୍ୱଚ୍ଛସ୍ଫଟିକ ନିର୍ମିତ। ମୂର୍ତ୍ତିଟି ଅତି ସୁନ୍ଦର। ମୂର୍ତ୍ତିର ଏକ ପାର୍ଶ୍ୱରେ ବା ଆଗରେ ବା ପଛରେ ଦୀପ ଧଇଲେ ମୂର୍ତ୍ତିର ବକ୍ଷ ମଧରେ ଦୀପଶିଖା ପ୍ରତିଫଳିତ ହୁଏ। ବୌଦ୍ଧମାନେ କହନ୍ତି ଯେ ବୁଦ୍ଧଙ୍କର ଜ୍ଞାନଶିଖା ପ୍ରତିଫଳିତ ହେଉଅଛି। ବୌଦ୍ଧମାନଙ୍କର ମଧ ପୌତ୍ତଳିକତାରେ ବିଶ୍ୱାସ ଅଛି। ନିକଟରେ ଆଉ କେତେକ ମନ୍ଦିର ଅଛି; ମାତ୍ର ସେପରି ବିଶେଷତ୍ୱ ନାହିଁ। ଗୋଟିଏ ମନ୍ଦିରର ନାମ ମହାବିଷ୍ଣୁ ମନ୍ଦିର।

ପୁଷ୍କରିଣୀର ପଶ୍ଚିମ ପାଖରେ ଗୋଟାଏ ବୌଦ୍ଧାଶ୍ରମ। ଏହାର ନାମ ମାଲବତ୍ ବିହାର। ଏଥିରେ ଅନେକ ବୌଦ୍ଧ ସନ୍ନ୍ୟାସୀ ଅଛନ୍ତି। ଆଶ୍ରମ ସହିତ ଗୋଟିଏ ଛାତ୍ରାବାସ ମଧ ସଂଲଗ୍ନ ଅଛି। ଏହି ବିହାରର ପ୍ରଧାନ ପୁରୋହିତଙ୍କ ନାମ– ନାୟକ ହାମଦୁଲ। ବୟସ ୭୫/୭୬ ହେବ। ବୃଦ୍ଧ ଅତି ନମ୍ର, ଭଦ୍ର ଓ ସହାସ୍ୟମୁଖ। ପାଲୀଭାଷାରେ ଯଥେଷ୍ଟ ବ୍ୟୁତ୍ପତ୍ତି ଅଛି। ବଡ଼ ଗୋଁଡ଼ା ବୋଲି ବୋଧ ହେଲା। ମୋର କେତୋଟି ପ୍ରଶ୍ନର ସଦୁତ୍ତର ଦେଇପାରିଲେ ନାହିଁ। ଯୁକ୍ତିତର୍କର ପକ୍ଷପାତୀ ନୁହନ୍ତି। ମୋତେ କହିଲେ ଯେ ଆପଣ ଯେତେବେଳେ ଅନୁରାଧାପୁର ଯିବେ, ସେଠାରେ ହରିଶ୍ଚନ୍ଦ୍ର ଓ ସୁମନ ରତ୍ନପାଳଙ୍କୁ ପ୍ରଶ୍ନ କଲେ ସେମାନେ ଆପଣଙ୍କ ପ୍ରଶ୍ନର ସଦୁତ୍ତର ଦେଇପାରିବେ।

କାଣ୍ଡୀର ପଶ୍ଚିମଦିଗରେ ରୟଲ ବୋଟାନିକେଲ୍ ଗାର୍ଡ଼ନ। ଏହି ଉଦ୍ୟାନ ଶୋଭା ନିମନ୍ତେ ଓ ମୂଲ୍ୟବାନ୍ ବୃକ୍ଷ ନିମନ୍ତେ ଜଗତବିଖ୍ୟାତ। ଏହି ଉଦ୍ୟାନ ଉଷ୍ଣକଟିବନ୍ଧର କୌଣସି ବୃକ୍ଷର ଯେ ଅଭାବ ଅଛି, ଏମନ୍ତ ନୁହେଁ। ଉଦ୍ୟାନଟି ସୁନ୍ଦର ଓ ସୁନିର୍ମଳ। ପ୍ରତ୍ୟେକ ବୃକ୍ଷର ଦେହରେ ବୃକ୍ଷର ପରିଚାୟକ ନିଦର୍ଶନ ପତ୍ର ଲଗାଯାଇଅଛି। ଏହା ଛଡ଼ା ଉଦ୍ୟାନରେ ଅତି ଉପଯୁକ୍ତ ଗାଇଡ୍ ଅଛନ୍ତି। ସେମାନେ ଅଳ୍ପକ୍ଷଣ ମଧରେ ଦର୍ଶନୀୟ ବୃକ୍ଷାଦିର ପରିଚୟ କରାଇ ଦିଅନ୍ତି ଏବଂ ଦର୍ଶକର ଈପ୍‌ସିତ ବୃକ୍ଷ ଲତାଦି ଚିହ୍ନାଇ ଦିଅନ୍ତି। ଏଠାରେ ମୁଁ ଅନେକ ବୃକ୍ଷ ଦେଖିବାକୁ ପାଇଲି, ଯାହା ଭାରତୀୟ କୌଣସି ବୋଟାନିକ୍ ଗାର୍ଡ଼ନରେ ଦେଖାଯିବା ସମ୍ଭବପର ନୁହେଁ। ଅନ୍ୟ ନିଷୟ ବାଦିଦେଲେ ମଧ ଏହି ଉଦ୍ୟାନ ଦର୍ଶନରେ କେବଳ ଯେଉଁ ଆନନ୍ଦ ଅନୁଭୂତ ହେଲା, ତାହା ଲଙ୍କାଯାତ୍ରାର ବ୍ୟୟ ଓ ପରିଶ୍ରମ ତୁଳନାରେ ଯଥେଷ୍ଟ ବୋଇଲେ ଅତ୍ୟୁକ୍ତି ହେବ ନାହିଁ।

କାଣ୍ଡୀର ପିରାହେରା ପର୍ବ ଆମ୍ଭମାନଙ୍କର ରଥଯାତ୍ରା ତୁଲ୍ୟ। ଆଷାଢ଼ କୃଷ୍ଣ ପ୍ରତିପଦ୍ ଦିନ ଏହି ଯାତ୍ରାର ଆରମ୍ଭ ହୁଏ। ଏହି ଯାତ୍ରା ସଙ୍ଗେ ଆମ୍ଭମାନଙ୍କର ଜଗନ୍ନାଥଙ୍କ ରଥଯାତ୍ରାର ସାମ୍ୟ ଅଛି, ଏହା ବୋଲିବା ବାହୁଲ୍ୟ ମାତ୍ର। ରୂପାନ୍ତରିତ ବୋଲିବା ଅଯୌକ୍ତିକ ନୁହେଁ। ଏହି ପର୍ବ ସମୟରେ ହାତୀର ଶୋଭାଯାତ୍ରା ହୁଏ। ଏହି ହାତୀଶାଳ ବୋଲାନୀ ଗଙ୍ଗାକୂଳରେ। ଜଣେ ବ୍ୟକ୍ତିଠାରୁ ଏଥିର ସମ୍ବାଦ ଶୁଣି ତାହା ଦେଖିବାକୁ ଯାଇଥିଲି। ୮୧୦ ଗୋଟି ରୁଗ୍‌ଣ ହାତୀ। ସିଂହଳର ହାତୀ ଦର୍ଶନ ସୁଖରୁ ବଞ୍ଚିତ ହୋଇଥିଲେ ସୁଦ୍ଧା ପରିଶ୍ରମ ନିମନ୍ତେ ଯଥେଷ୍ଟ ପୁରସ୍କୃତ ହୋଇଥିଲି। କାରଣ ସିଂହଳର କୃଷକ ରମଣୀମାନେ ପଥର ଉଭୟ ପାର୍ଶ୍ୱରେ ଧାନ୍ୟରୋପଣ ଓ ବେଉଷଣ କରୁଥିବାର ଦେଖିଲି। କାଣ୍ଡୀ ସହରକୁ ଗୋଟାଏ ଉଦ୍ୟାନ ଏବଂ ବୋଟାନିକେଲ ଗାର୍ଡନକୁ ତହିଁର ପୁଷ୍ପବାଟିକା ବୋଲାଯାଇପାରେ।

ଏଥି ଉତ୍ତାରୁ ନୁଓଆରା ଇଲାୟା। ଏହା ସିଂହଳର ପ୍ରଧାନ ସ୍ୱାସ୍ଥ୍ୟନିବାସ। ଗ୍ରୀଷ୍ମକାଳରେ ଗଭର୍ଣ୍ଣର ଏହି ସ୍ଥାନରେ ବାସ କରନ୍ତି। ଏହି ସ୍ଥାନର ଉଚ୍ଚତା ୬୦୯୩ ଫୁଟ। ସକାଳୁ କାଣ୍ଡୀ ତ୍ୟାଗ କରିବାକୁ ହେଲା। ଆକାଶ ନିର୍ମଳ ଥିଲା। ସୂର୍ଯ୍ୟକିରଣ ଦ୍ୱାରା ପର୍ବତ ଶୃଙ୍ଗ ସମୂହ ସୁଶୋଭିତ କରିଥିଲେ। ମୁଁ କାଣ୍ଡୀ ଷ୍ଟେସନ୍ ତ୍ୟାଗ କଲି। ମୋ ସାଙ୍ଗରେ ଜଣେ ଭଦ୍ରଲୋକ ଗାଡ଼ିରେ ଉଠିଲେ। ତାଙ୍କ ସହିତ ଆଳାପ କରି ଜାଣି ପାରିଲି ଯେ ସେ ଟ୍ରିନିଟି କଲେଜର ଜଣେ ଅଧାପକ। ନିକଟରେ ତାଙ୍କର ଗୋଟିଏ ନଡ଼ିଆ ବଗିଚା। ତାହା ଦେଖିବା ନିମନ୍ତେ ସେ ଯାଉଥିଲେ। ମିଃ ମଧୁସୂଦନ ଦାସଙ୍କ ସହିତ ତାହାଙ୍କର ବିଶେଷ ପରିଚୟ ଅଛି। ତାଙ୍କର ପିତା ଥରେ କଲିକତା ଆସିବାବେଳେ ମଧୁବାବୁଙ୍କ ଗୃହରେ ଥିଲେ ଏବଂ ମଧୁବାବୁ ବିଲାତ ଯିବାବେଳେ ତାଙ୍କ ଗୃହରେ ଆତିଥ୍ୟ ଗ୍ରହଣ କରିଥିବାର ପ୍ରକାଶ କଲେ। ମୋତେ ତାଙ୍କର ଉଦ୍ୟାନ ଦେଖିବା ନିମନ୍ତେ ଆହ୍ୱାନ କଲେ, ମାତ୍ର ସମୟର ଅଭାବ ହେତୁରୁ ଅନୁରୋଧ ରକ୍ଷା କରିପାରିଲି ନାହିଁ। ବିଦାୟ ନେବାବେଳେ ମୋର ପକେଟ୍ ବୁକ୍‌ରେ ନିଜ ହାତରେ ତାଙ୍କ ନାମ ଓ ଠିକଣା ଲେଖି ଦେଇଗଲେ ଏବଂ ତାଙ୍କ ପକେଟ୍ ବୁକ୍‌ରେ ମୋର ନାମ ଓ ଠିକଣା ଲେଖି ଦେବାକୁ ମୋତେ ଅନୁରୋଧ କଲେ। ନାମ ଇ.ଏ.ଡ଼ି. ଏଲଉଇସ୍। ସେ ସିଂହଳୀ, ମାତ୍ର ଖ୍ରୀଷ୍ଟଧର୍ମାବଲମ୍ବୀ। ଭଦ୍ରଲୋକ ଗମ୍ପୋଲା ଷ୍ଟେସନ୍‌ଠାରେ ଅବତରଣ କଲେ। ଗାଡ଼ି

ଅଗ୍ରସର ହେଲା । କାଣ୍ଡୀ ଛାଡ଼ିବାବେଳେ ସୂର୍ଯ୍ୟକିରଣ ବିଧୌତ ପାର୍ବତୀୟ ଦୃଶ୍ୟାବଳୀ ଦେଖିବାର ବଡ଼ ଆଶା ହୋଇଥିଲା, ତାହା ନିର୍ମୂଳ ହେଲା । କାରଣ କ୍ରମେ କୁହୁଡ଼ି ଓ ମେଘ ଦେଖା ଦେଲା ଏବଂ ନଓଆଳର ପିଟିଆ ଷ୍ଟେସନ୍‌ରେ ପହଞ୍ଚିବା ବେଳେ ଆକାଶ ସମାଚ୍ଛନ୍ନ ଏବଂ ବୃଷ୍ଟି ପଡ଼ିବାକୁ ଆରମ୍ଭ କଲା । ଦୃଶ୍ୟାବଳୀ ଅତି ରମଣୀୟ– ଦାର୍ଜିଲିଙ୍ଗ ରେଲପଥର ଦୃଶ୍ୟ ଅପେକ୍ଷା ଏହି ଦୃଶ୍ୟ କୌଣସି ଅଂଶରେ ନିକୃଷ୍ଟ ନୁହେଁ ବରଂ ସ୍ଥାନେ ସ୍ଥାନେ ତଦ୍‌ପେକ୍ଷା ଉତ୍କୃଷ୍ଟ ବୋଲି ମନେ ହୁଏ । ରାସ୍ତାରେ ଅନେକ ଜଳପ୍ରପାତ ଦେଖାଗଲା, ଦାର୍ଜିଲିଙ୍ଗ ବାଟରେ ଜଳପ୍ରପାତ ଏମାନଙ୍କ ତୁଳନାରେ ନଗଣ୍ୟ । ପର୍ବତମାନ ବୃକ୍ଷ ଲତା ପୂର୍ଣ୍ଣ ନୁହନ୍ତି, ଚା' ଗଛ ସେ ସ୍ଥାନ ଅଧିକାର କରିଅଛନ୍ତି । ଚା' ବଗିଚାର ସଂକୀର୍ଣ୍ଣ ପଥ- ପଥର ଉଭୟ ପାର୍ଶ୍ୱରେ ସାଟିନ ବୃକ୍ଷ ବା ଇଉକାଲିପଟସ୍ ବୃକ୍ଷ ଅତ୍ୟନ୍ତ ଚିତ୍ତାକର୍ଷକ । ଏଡାମପିକ୍ ପର୍ବତ ଏହି ରେଲପଥର ଅତି ନିକଟବର୍ତ୍ତୀ-ହେଟନ୍ ଷ୍ଟେସନ୍‌ଠାରୁ ଯିବାର ସୁବନ୍ଦୋବସ୍ତ ଅଛି, ମାତ୍ର ଦୁର୍ଦ୍ଦିନ ହେତୁରୁ ଏବଂ ମୋର ଶରୀର କିଞ୍ଚିତ୍ ଅସୁସ୍ଥ ଥିବାରୁ ସେଠାକୁ ଯିବାରୁ କ୍ଷାନ୍ତ ହେଲି । ନାନଓୟା ଷ୍ଟେସନ୍‌ରେ ଗାଡ଼ି ପରିବର୍ତ୍ତନ କରିବାକୁ ହେଲା । ଏଠାରୁ ନୁଓଆରା ଇଲାୟାକୁ ଛୋଟ ରେଲଗାଡ଼ି ଯାତାୟାତ କରେ । ନାନୁଓୟା ଏକ ସମୟରେ ଅତି ଭୀଷଣ ଜଙ୍ଗଲ ଥିଲା, ବର୍ତ୍ତମାନ ଇଞ୍ଜିନିୟରିଂ କୌଶଳ ଦର୍ଶନର ରଙ୍ଗମଞ୍ଚ ହୋଇଅଛି । ଏଠାରୁ ନୂଅଆରା ଇଲାୟା ୬ ମାଇଲ ମାତ୍ର । ଏହି ଅଳ୍ପପଥ ଯିବାବେଳେ କି ଅପୂର୍ବ ପ୍ରାକୃତିକ ଦୃଶ୍ୟ ଦୃଷ୍ଟିପଥାରୂଢ଼ ହୁଏ, ତାହା ବର୍ଣ୍ଣନାତୀତ । ନୁଓଆରା ଗୋଟିଏ କ୍ଷୁଦ୍ର ସହର-ଅତ୍ୟୁଚ୍ଚ ପର୍ବତ ବେଷ୍ଟିତ ଗୋଟିଏ ପ୍ରକାଣ୍ଡ ଉପତ୍ୟକାର ଏକ ପାର୍ଶ୍ୱରେ ସ୍ଥାପିତ । ଆବାହାଓଆ ଦାର୍ଜିଲିଙ୍ଗ ସମତୁଲ୍ୟ ବୋଲି ଅନୁମାନ ହେଲା । ଦାର୍ଜିଲିଙ୍ଗ ସହର ପର୍ବତ ଦେହରେ ନୁଓୟାର ଇଲାୟା ଉପତ୍ୟକାରେ, ଦାର୍ଜିଲିଙ୍ଗର ଉତ୍ତର ଦିଗ୍‌ବଳୟରେ ଅନନ୍ତ ତୁଷାର ମଣ୍ଡିତ ଧବଳଗିରି, ଏହାର ଦିଗ୍‌ବଳୟ ବୃକ୍ଷଲତା ବିମଣ୍ଡିତ କ୍ଷୁଦ୍ର ନିର୍ଝରିଣୀ, ସୁଶୋଭିତ ଉଚ୍ଚ ପର୍ବତ ଶ୍ରେଣୀ । ଅନ୍ୟାନ୍ୟ କେତେକ ବିଷୟରେ ଉଭୟ ସ୍ଥାନ ତୁଳନାଯୋଗ୍ୟ ହେଲେ ସୁଦ୍ଧା ହିମାଳୟ ସମକକ୍ଷ ଅନ୍ୟ ଦୃଶ୍ୟ କାହିଁ ହୋଇପାରିବ ? ଏହା ସହିତ ଅନ୍ୟ ଦୃଶ୍ୟର ତୁଳନା କରିବାକୁ ଯିବାଟା ମୂର୍ଖତା ମାତ୍ର । ପ୍ରକୃତି ଭାରତର ଲଲାଟରେ ଯେଉଁ ଶୋଭାସମ୍ଭାର ରଖିଅଛି, ତାହା ପୃଥିବୀର ଅନ୍ୟ ସ୍ଥାନରେ ନାହିଁ, ଲଙ୍କାରେ ବା କାହୁଁ ଆସିବ ? ଦୁଇ ଦିନ ଏହି ସ୍ଥାନରେ ଅତିବାହିତ କଲି । ଆକାଶ ମେଘାଚ୍ଛନ୍ନ ଥିବାରୁ ଓ ସମୟ ସମୟରେ ବୃଷ୍ଟି ହେତୁରୁ ସ୍ୱଚ୍ଛନ୍ଦରେ ଭ୍ରମଣ କରିବାର ବାଧା ଘଟିଲା । ଜଙ୍ଗଲ, ପଡ଼ିଆ, ଏଣେ ତେଣେ ସବୁଆଡ଼ ପୁଷ୍ପପୂର୍ଣ୍ଣ– ଗୋଟାଏ ଘର ନାହିଁ, ଯାହା ସଙ୍ଗରେ ଖଣ୍ଡେ କ୍ଷୁଦ୍ର ଉଦ୍ୟାନ ନାହିଁ ଏବଂ ଗୋଟାଏ ଉଦ୍ୟାନ ନାହିଁ, ଯହିଁରେ ପ୍ରଚୁର ପୁଷ୍ପ ନାହିଁ । ଏହା ଗୋଟିଏ ଶାନ୍ତିବିଧାୟକ ସ୍ଥାନ– ଜାଣିଶୁଣି ଏହାକୁ ଲଙ୍କାର ସ୍ୱାସ୍ଥ୍ୟନିବାସ କରାଯାଇଅଛି ।

ଏଥି ଉତ୍ତାରୁ ଅନୁରାଧାପୁର ଯିବାକୁ ହେବ । ପ୍ରତ୍ୟୁଷରୁ ଉଠି ଯିବାର ଆୟୋଜନ କଲି । ନୂଆରା ଇଲାୟାର ଅବହାଓୟା ବଡ଼ ପରିବର୍ତ୍ତନଶୀଳ । ପାହାନ୍ତାରୁ ଉଠି ଦେଖିଲି, ଆକାଶ ମେଘାଚ୍ଛନ୍ନ, ବଡ଼ ଶୀତ, ଯାତ୍ରା ସୁଖକର ହେବ ବୋଲି ଆଦୌ ମନେ ହେଲା ନାହିଁ । ଯାହାହେଉ ନିତ୍ୟକର୍ମ ସମାପନାନ୍ତେ ଷ୍ଟେସନ୍ ଅଭିମୁଖରେ ଅଗ୍ରସର ହେଲି । ହିରଣ୍ମୟ ସୂର୍ଯ୍ୟକର ଲାଗି ମେଘ ଓ କୁହୁଡ଼ି କ୍ରମେ ଅପସାରିତ ହେବାକୁ ଲାଗିଲା । ପିଦ୍ରୁରୁତଲଗଲା ପର୍ବତ ଶୃଙ୍ଗ ସୂର୍ଯ୍ୟ-ରଶ୍ମିଦ୍ୱାରା ରଞ୍ଜିତ ହୋଇ ଅପୂର୍ବ ଶୋଭା ଧାରଣ କଲା । ଏହି ପର୍ବତ ୮୨୯୬ ଫୁଟ ଉଚ୍ଚ । ଏହା ଲଙ୍କାର ଅତ୍ୟୁଚ୍ଚ ଶୃଙ୍ଗ । କ୍ରମେ ଆକାଶ ପରିଷ୍କୃତ ହେବାର ଦେଖି ମନରେ ସୁଖାନୁଭବ ହେଲା । ନିର୍ଦ୍ଦିଷ୍ଟ ସମୟ ଆଗରୁ ଷ୍ଟେସନ୍‌ରେ ପହଞ୍ଚିଲି । ଷ୍ଟେସନ୍‌ରେ ମାଲମତା ରଖି ଦେଇ ଜଙ୍ଗଲୀ ପୁଷ୍ପ, ବୀଜ ଓ କ୍ଷୁଦ୍ର କ୍ଷୁଦ୍ର ଚାରା ସଂଗ୍ରହ କରିବାରେ ନିଯୁକ୍ତ ହେଲି । ଖାଇବା ବାସନ ଗ୍ଲାସ୍ ପ୍ରଭୃତିରେ ମାଟି ଭରି ଅନେକ ପ୍ରକାର ଚାରା ନେଇ ଆସିଥିଲି । ଶତମ୍ୱଳା ନାମକ ଗୋଟିଏ ବୃକ୍ଷ ଅଛି, ତାହାର ଫୁଲ ସୁବାସପୂର୍ଣ୍ଣ ରକ୍ତବର୍ଣ୍ଣ ଓ ଅତି ସୁନ୍ଦର । ରାବଣାପହୃତ ପାରିଜାତ ପରା ? ଏ ଦେଶରେ ଏ ବୃକ୍ଷ ନାହିଁ । ଓଡ଼ିଶା ପର୍ଯ୍ୟନ୍ତ ଆଣିଥିଲି, ମାତ୍ର ବଞ୍ଚିଲା ନାହିଁ । ଷ୍ଟେସନ୍‌ରେ ଅନେକ କ୍ଷଣ ଅପେକ୍ଷା କରିବାକୁ ହେଲା । ଅନେକ ୟୁରୋପୀୟ ସ୍ତ୍ରୀ ପୁରୁଷ ଟ୍ରେନ୍ ଅପେକ୍ଷାରେ ବସି ରହିଲେ । ଜଣେ ଅଠର କି ଊଣିଶ ବର୍ଷ ବୟସ୍କା ୟୁରୋପୀୟା ଯୁବତୀର ମୁଖରେ ଅତି ସୁନ୍ଦର ନିଶ ଦେଖିଲି । ଅନୁମାନ ହେଲା, ଯୁବତୀର ତହିଁରେ ଘୃଣା ନାହିଁ, କାରଣ ତାହା କ୍ଷୌର କରି ପକାଇବାକୁ ନାହିଁ । ଅସ୍ୱାଭାବିକ ବୋଲି ମନେ ହୁଏ କାହିଁକି ? ଯୁବତୀର ନିଶ ପଛକୁ କେତେ ବଡ଼ ହେବ, କୁହାଯାଇ ନ ପାରେ । ତେବେ ବର୍ତ୍ତମାନ ସେହି ବୟସର ଜଣେ ପୁରୁଷର ନିଶ ଯେପରି ହେବା ସମ୍ଭବ, ଏହାଙ୍କର ନିଶ ସେପରି ହୋଇଅଛି । ଲଙ୍କାର ସବୁ ଅଦ୍ଭୁତ । Mr. Haeckle ଜଣେ ପୁରୁଷର ସ୍ତନ ଦେଖିଥିଲେ; ସେ ପୁଣି ଶିଶୁମାନଙ୍କୁ ସ୍ତନପାନ କରାଉଥିଲା । ବିବେଚନା କଲେ ଏକାବେଳେକେ ଅସ୍ୱାଭାବିକ ନୁହେଁ । ପ୍ରତ୍ୟେକ ସ୍ତ୍ରୀର ନିଶ ଅଛି । ପୁରୁଷମାନଙ୍କର ଲମ୍ବ ଓ କୃଷ୍ଣବର୍ଣ୍ଣ, ସ୍ତ୍ରୀମାନଙ୍କର ସେପରି ନୁହେଁ, ତାହା ଅତି କ୍ଷୁଦ୍ର–

ସାଧାରଣ ଚକ୍ଷୁକୁ ଦିଶେ ନାହିଁ। ସ୍ଥୂଳ ମଧ୍ୟ କାଚରେ (Magnifying Glass) ଦେଖିଲେ ପ୍ରତ୍ୟେକ ସ୍ତ୍ରୀର ମୁଖରେ ନିଶ ଥିବାର ଦେଖାପଡ଼ିବ। ପୁରୁଷ ବକ୍ଷରେ ଯେପରି ମୌଳିକ (rudimentary) ସ୍ତନ ଅଛି, ସ୍ତ୍ରୀର ମଧ୍ୟ ସେହିପରି ନିଶ ଅଛି। ତାରତମ୍ୟ ରହିବା ଐନ୍ଦ୍ରିୟିକ ନିର୍ବାଚନର ଫଳ। ପୁରୁଷର ପୁରୁଷତ୍ୱ ଥାଇ ଯେବେ ମାଖୁନା ବା ନିଶଶୂନ୍ୟ ହୋଇପାରେ ତେବେ କୌଣସି ସ୍ତ୍ରୀର ନିଶ ଟିକିଏ ଲମ୍ବ ହେବା କିଛି ବିଚିତ୍ର ନୁହେଁ। ଯାହାହେଉ ଏ ଅଭିବ୍ୟକ୍ତି ଆଲୋଚନାର ସ୍ଥଳ ନୁହେଁ। ଯାହା ଦୃଷ୍ଟିରେ ପଡ଼ିଥିଲା, ତାହା ଲେଖିଲି। ପାଠକେ ବିଦ୍ରୂପ ନ କଲେ ରକ୍ଷା।

ଗାଡ଼ି ଷ୍ଟେସନ୍‌ରେ ପହଞ୍ଚିଗଲା। ମନର ଆଗ୍ରହରେ ମାଲମତା ଉଠାଇ ବସିଗଲି। ବସିସାରିଲା ଉତ୍ତାରୁ ସେହି କୋଠରିକୁ ଜଣେ ଇଉରୋପୀୟ 'ଲେଡ଼ି' ଉଠିଲେ ଓ ଉପବେଶନ କଲେ। ବସି ସାରି ମୋତେ ପଚାରିଲେ, ତୁମେ କେଉଁଠାକୁ ଯିବ? ମୁଁ କହିଲି, ଅନୁରାଧାପୁର। 'ଲେଡ଼ି' କହିଲେ– ଶୀଘ୍ର ଓହ୍ଲାଅ ଓହ୍ଲାଅ ଏ ଗାଡ଼ି ବନ୍ଦର ବେଳାଯିବ। ପ୍ରଥମ ମନରେ ଟିକିଏ ସନ୍ଦେହ ଜାତ ହେଲା। ବୋଧହୁଏ ମହିଳା ଅସୁବିଧା ନିରାକରଣ ନିମନ୍ତେ ଏ ସହାନୁଭୂତି ଦେଖାଉଅଛନ୍ତି। ଯାହାହେଉ ଜଣେ ଭଦ୍ରମହିଳା ଏପରି ମିଥ୍ୟା କହି ନିଜର ସ୍ୱାର୍ଥସିଦ୍ଧି କରିବେ, ଏ ବିଶ୍ୱାସ ନ ଥିଲା। ଏଣୁ ତାଙ୍କ କଥାରେ ହଠାତ୍ ଗାଡ଼ିରୁ ଓହ୍ଲାଇ ପଡ଼ିଲି। ସେ ମୋତେ ଏଥିରେ କିଞ୍ଚିତ୍ ସାହାଯ୍ୟ କଲେ। ମୁଁ ମୋର ଧନ୍ୟବାଦ ଦେବାର ଶେଷ କରି ନାହିଁ; ଗାଡ଼ି ସିଟି ଦେଇ ଦକ୍ଷିଣାଭିମୁଖରେ ଅଗ୍ରସର ହେଲା। ଏ ଉପକାର ଚିରଜୀବନ ଭୁଲି ହେବ ନାହିଁ। ପାଠକେ କହିପାରନ୍ତି, ଏ ବିଷମ ଦିଗ୍‌ଭ୍ରମ, ମାତ୍ର ଏପରି ଭ୍ରମ ସମସ୍ତଙ୍କର ହୋଇପାରେ। ଠିକ୍ ସମୟରେ ଗାଡ଼ି ଷ୍ଟେସନ୍‌ରେ ପହଞ୍ଚିଥିଲା। ଗାଡ଼ିର ଉତ୍ତର ତରଫରେ ଇଞ୍ଜିନ୍ ଲାଗିଗଲା। ଦକ୍ଷିଣ ପାଖରେ ଇଞ୍ଜିନ୍ ଲଗାଇ ଗାଡ଼ି ଫେରାଇ ନେବ ଏହା ମୁଁ କିପରି ଜାଣିବି? କିଛିକ୍ଷଣ ବାଦ ଗାଡ଼ିରେ ଚଢ଼ିଲୁଁ। ଗାଡ଼ି ଅବତରଣ କରିବାକୁ ଲାଗିଲା। ଦୁଇ ଦିନ ଆଗରୁ ଏ ବାଟରେ ଯାଇଥିଲି, ଆଜିକ ଫେରୁଅଛି, ବର୍ଣ୍ଣନାଯୋଗ୍ୟ ଆଉ ତ କିଛି ନାହିଁ। ସେହି ବକ୍ରପଥ, ସେହି ପର୍ବତ, ବୃକ୍ଷଲତା, ସେହି ଜଳପ୍ରପାତ, ସେହି ଭୃଗୁ, ସେହି ଗିରିନଦୀ ସବୁ ତ ପୁରୁଣା। ତେବେ ଆଖିକୁ ଟିକିଏ ନୂତନ ଦେଖାଗଲା– ସେଦିନ ମେଘଘଟା ଓ କୁହୁଡ଼ିର ଅନ୍ଧକାରରେ ମଳିନ, ଆଜି ସୂର୍ଯ୍ୟକରଦ୍ୱାରା ବିଧୌତ, ଏଣୁ ସତେଜ ଓ ସୁଶ୍ରୀଯୁକ୍ତ। ଆଜି ଆକାଶ ନିର୍ମଳ ଥିବାରୁ ଆଡାମସ୍ ପିକ୍ ଓ କିରିଗଲ ପୋତା ପର୍ବତଶ୍ରେଣୀ ଫିଟି ଦିଶୁଥିଲେ। ଗଲାଦିନ ଏ ସୁଦୃଶ୍ୟ ଦେଖିପାରି ନ ଥିଲି। ଅଡ଼ାମସ୍‌ପିକ୍ ନାମ ସମ୍ଭବତଃ ମୁସଲମାନମାନେ ଦେଇଅଛନ୍ତି। ଏଥିରେ ଗୋଟିଏ ପାଦ ଚିହ୍ନ ଅଛି। –ଅବଶ୍ୟ କୃତ୍ରିମ ହୋଇଥିବ। ବୌଦ୍ଧମାନେ ବୁଦ୍ଧଦେବଙ୍କ ପାଦ ବୋଲି କହନ୍ତି। ଶୈବମାନ ଶିବପାଦ ଏବଂ ମୁସଲମାନମାନେ ଆଦମର ପାଦଚିହ୍ନ ବୋଲି କହନ୍ତି। ପରସ୍ପର ଧର୍ମବିଦ୍ୱେଷୀଙ୍କ ପକ୍ଷରେ ଏହା ବିଭିନ୍ନ ବ୍ୟକ୍ତିଙ୍କ ପାଦ ବୋଲି ପରିଚିତ ହେଉଥିବ। ନିରପେକ୍ଷ ବ୍ୟକ୍ତି ପକ୍ଷରେ ଏହା ଗୋଟିଏ ହସ୍ତନିର୍ମିତ ପଦଚିହ୍ନ। ରେଳର ଦୁଇ ପାର୍ଶ୍ୱରେ ପାହାଡ଼। ପାହାଡ଼ ଦେହରେ ଖାଲି ବା ବଗିଚା, ପାହାଡ଼ଗୁଡ଼ିକ ମାଟିର, ଦାର୍ଜିଲିଙ୍ଗ ପାହାଡ଼ ମଧ୍ୟ ଏହିପରି ମାଟିର। ପାହାଡ଼ର କଟା ସ୍ଥାନମାନ ଦେଖିଲେ ମନେହୁଏ, ଏହି ପର୍ବତଗୁଡ଼ିକ ଆଗ୍ନେୟ ଉତ୍ପାତ ହେତୁରୁ ଉଦ୍ଧୃତ ହୋଇଅଛି। ଏଣୁ ମାଟି ଧୋଇ ଯାଇ ଶେଷ ପାଇ ନାହିଁ। କ୍ରମେ ଚା' ବଗିଚା ଦେଖୁ ଦେଖୁ ଆଖିରେ ଧାନବିଲର ଶ୍ୟାମଳ ଛବି ପଡ଼ିଗଲା। ମନେହେଲା ସମତଳ ଭୂମିକୁ ଅବତରଣ କରିବାର ଆଉ ଅଳ୍ପ ସମୟ ଅଛି। ତିନିଟା ସମୟରେ ଫୁଲଗାହାବେଲ୍ ଷ୍ଟେସନ୍‌ରେ ଉପସ୍ଥିତ ହେଲୁଁ। ଆଜି ରବିବାର, ଅନୁରାଧାପୁରକୁ ଯିବାର ସମସାମୟିକ ଗାଡ଼ି ନାହିଁ, ଏଣୁ ଅଗତ୍ୟା ପନ୍ଦର ଘଣ୍ଟା ଅପେକ୍ଷା କରିବାକୁ ହେବ। ବୃଥା କାଳକ୍ଷେପ। ପୂର୍ବରୁ ଟିକିଏ ବିବେଚନା କରିଥିଲେ ଏପରି ଘଟି ନ ଥାନ୍ତା; ଅନାୟସରେ ଆଉ ଦିନେ ନୁଓଆରା ଇଲାୟରେ ରହିପାରିଥାନ୍ତି। ମନକୁ ପ୍ରବୋଧ ଦେଲି, ଏହି ସୁଯୋଗରେ ଲଙ୍କାର ଗ୍ରାମ୍ୟ ଦୃଶ୍ୟ ଦେଖି ନେବି। ଡାକବଙ୍ଗଳାରେ ଆଶ୍ରୟ ନେଲି। ଗ୍ରାମଟି ଯେ ଖୁବ୍ ବଡ଼ ତାହା ନୁହେଁ– ଗ୍ରାମଟି ନଡ଼ିଆ ଗଛରେ ପୂର୍ଣ୍ଣ– ଚାରିପାଖରେ ଧାନ୍ୟକ୍ଷେତ୍ର। ରାସ୍ତା ପକ୍କା ନୁହେଁ କିମ୍ବା ପ୍ରଶସ୍ତ ନୁହେଁ– କର୍ଦ୍ଦମପୂର୍ଣ୍ଣ– ଏ ଦେଶର ସେତିକି ଗ୍ରାମ ଅପେକ୍ଷା ଏହା କୌଣସି ଅଂଶରେ ଉତ୍କୃଷ୍ଟ ବୋଲି ମନେ ହେଲା ନାହିଁ। ଗ୍ରାମରେ ବୁଲୁ ବୁଲୁ ସନ୍ଧ୍ୟା ହେବାକୁ ଆରମ୍ଭ ହେଲା। ଜଣେ କହିଲେ ଯେ ସାପ ଓ ଯୋକର ବଡ଼ ଭୟ। ଏଣୁ ବସାକୁ ଫେରିଆସି ଅଧ୍ୟୟନ ଓ ଶୟନରେ ଅବଶିଷ୍ଟ ସମୟ ଅତିବାହିତ କଲି।

ସୋମବାର ସକାଳ ୯ ଘଣ୍ଟା ୨୫ ମିନିଟ୍‌ରେ ଅନୁରାଧାପୁର ଗାଡ଼ିରେ ବସିଲୁଁ। ଗାଡ଼ିଟି ଯାତ୍ରୀ ପୂର୍ଣ୍ଣ ଥିଲା। ସୌଭାଗ୍ୟକ୍ରମେ ମତେ ଗୋଟିଏ ଚେୟାର ମିଳିଲା। ଦିନରେ ଚାଲିବା ଗାଡ଼ିରେ କେତେଗୁଡ଼ିଏ କୁରୁଚି ମଧ୍ୟରେ ଏବଂ ଖଣ୍ଡ କେତେ ବେଞ୍ଚ କାନ୍ଥରେ ଥାଏ। ଶୋଇବାର ଅନୁମତି ନାହିଁ।

କୁରୁଚିଟା ଏକ ରକମ ସୁବିଧା କାହାରି ସଙ୍ଗରେ ଠେସା ଠେସି ହୋଇ ବସିବାକୁ ହୁଏ ନାହିଁ, ଗୋଟିଏ ଆସନରେ ଜଣେ ଲୋକ। ଗାଡ଼ି ଯାତ୍ରୀ ନେଇ ଅଗ୍ରସର ହେଲା ପ୍ରଥମେ ନାରିକେଳ ପୂର୍ଣ୍ଣ ଗ୍ରାମ ମଧ ଦେଇ ଗତି କରିବାକୁ ଲାଗିଲା। ପରେ ବିସ୍ତୀର୍ଣ୍ଣ ବୁଦା ଓ ଜଙ୍ଗଲ ମଧ ଦେଇ ଗତି କଲା, ମନେ ହେଲା, ପୂର୍ବେ ଏହି ଜଙ୍ଗଲ ସବୁ ଆବାଦୀ ଥିଲା। ମାତ୍ର କୌଣସି କାରଣରୁ ବସତି ଭାଙ୍ଗିଯାଇ ଜଙ୍ଗଲରେ ପରିଣତ ହୋଇଅଛି। କ୍ରମେ ଅଗ୍ରସର ହେବାରୁ ପଡ଼ିଆ ଶସ୍ୟକ୍ଷେତ୍ର ଦୃଷ୍ଟିଗୋଚର ହେଲା। ଏହା ମଧ ପ୍ରାକୃତିକ ପ୍ରତିକୂଳତା ହେତୁରୁ ଲୋକ ପରିତ୍ୟକ୍ତ ବୋଲି ଅନୁମିତ ହେଲା। ସ୍ଥାନେ ସ୍ଥାନେ ପ୍ରକାଣ୍ଡ ଜଳାଧାର ଦେଖାଯାଉଥିଲା– କେଉଁଟା ଶୁଷ୍କ କେଉଁଟା ବା ଜଳପୂର୍ଣ୍ଣ। କେତୋଟି ଜଳାଧାର ନିକଟରେ ଗ୍ରାମ ଥିବାର ଦେଖାଗଲା। ରେଳ ଅତିକ୍ରମ କରିଥିବା ଅଧିକାଂଶ ସ୍ଥଳ ପତିତ ଓ ଲୋକଶୂନ୍ୟ। ଅନୁରାଧାପୁର ଆଡ଼କୁ ଯେତିକି ଅଗ୍ରସର ହେଲୁଁ ଓ ଏତାଦୃଶ ସ୍ଥାନ ତେତେ ଅଧିକ ଦେଖିବାକୁ ପାଇଲୁ। ଏ ଅଞ୍ଚଳରେ ବହୁଦିନରୁ ବୃଷ୍ଟି ହୋଇ ନ ଥିବାର ଅନୁମାନ ହେଉଥିଲା, ଏଣୁ ଘାସ ସବୁ ଶୁଷ୍କ ହୋଇଥିଲା। ଏକସ୍ଥାନରେ ଗୋଟାଏ ପ୍ରକାଣ୍ଡ ସର୍ପ ଶୀତଳ ପବନ ସେବନ କରୁଥିବାର ଦେଖିଲି। ସର୍ପର ଆକୃତିରୁ ତାହା ବିଷଧର ସର୍ପ ବୋଲି ଅନୁମାନ କଲି। ଶକୁନ ଶାସ୍ତ୍ରରେ ବିଶ୍ୱାସ ମୋଟେ ନାହିଁ। ଏଣୁ ଅହି 'ସର୍ବତ୍ର ବାଧତେ'। ଏଥିରେ କୌଣସି ଆସ୍ଥା ନ ରଖି ଆପଣା ନୋଟ୍ ବୁକ୍‌ରେ ତାହା ଟିପି ରଖିଲି।

ଦେଢ଼ଟା ବେଳେ ଗାଡ଼ି ଅନୁରାଧାପୁରରେ ପହଞ୍ଚିଲା। ଅଳ୍ପ ଅଳ୍ପ ବୃଷ୍ଟି ହେଉଥିଲା ଓ ଥଣ୍ଡା ପବନ ବୋହୁଥିଲା; ଭ୍ରମଣରେ ବାଧା ହେବ ବୋଲି ହେଉଥିଲେ ସୁଦ୍ଧା ବଡ଼ ସୁଖକର ହୋଇଥିଲା। ଷ୍ଟେସନ୍‌ରୁ ସହର ବୋଲ ବା ଗ୍ରାମ ବୋଲ ଅନୁରାଧାପୁର ପ୍ରାୟ ଚାରି ମାଇଲ।

ଅନୁରାଧାପୁରର ବର୍ତ୍ତମାନ ଲୋକସଂଖ୍ୟା ୪ ହଜାର। ପ୍ରକୃତ ହିସାବରେ ଗୋଟାଏ କ୍ଷୁଦ୍ର ନଗଣ୍ୟ ସହର। ଲଙ୍କାର ଉତ୍ତର ମଧ୍ୟପ୍ରଦେଶର ଏହା ପ୍ରଧାନ ନଗର। ଏଠାରେ ଗଭର୍ଣ୍ଣମେଣ୍ଟ ଏଜେଣ୍ଟ ଏବଂ ଡିଷ୍ଟ୍ରିକ ଜଜ ବାସ କରନ୍ତି। ସହରଟି ତାଦୃଶ ଦର୍ଶନଯୋଗ୍ୟ ନୁହେଁ। ଏ ତ ଗଲା ଆଧୁନିକ ଅନୁରାଧାପୁର। ପ୍ରାଚୀନ କାଳର ଅନୁରାଧାପୁର କିପରି ? ଅନୁରାଧାପୁର ଲଙ୍କାର ବୌଦ୍ଧ ରାଜାମାନଙ୍କର ଲୀଳା କ୍ଷେତ୍ର ଥିଲା। ଏହି ନଗର ଖ୍ରୀଷ୍ଟପୂର୍ବ ଚତୁର୍ଦ୍ଦଶ ଶତାବ୍ଦୀଠାରୁ ଆରମ୍ଭି ବହୁଶତ ବର୍ଷ ଏକ ସଭ୍ୟ ଜାତିର ସଭ୍ୟତା, ସମୃଦ୍ଧି, ବାଣିଜ୍ୟ, ଶିଳ୍ପନୈପୁଣ୍ୟ ଦେଖିଅଛି। ଆଜିଯାଏ ଏହି ସ୍ଥାନ ସେହି ସଭ୍ୟତାର ଚିହ୍ନସ୍ୱରୂପ ମହାନଗରୀର ଭଗ୍ନାବଶେଷ ଆପଣା ଗର୍ଭରେ ପ୍ରୋତ୍‌ଥିତ କରି ରଖିଅଛି। ଲଙ୍କାର ବୌଦ୍ଧ ଧର୍ମର ଚରମ ଉନ୍ନତି ସମୟରେ ଏହି ମହାନଗରୀ କେଡ଼େ ପ୍ରକାଣ୍ଡ ଥିଲା, ତାହା ଠିକ୍ କରାଯାଇ ନ ପାରେ ତେବେ କୌଣସି. କୌଣସି ପୁସ୍ତକରୁ ପ୍ରକାଶ ପାଏ ଯେ ଏହାର କ୍ଷେତ୍ରଫଳ ୧୦୦ ବର୍ଗ ମାଇଲରୁ କମ୍ ନ ଥିଲା। ନଗର ଦୁଇ ଭାଗରେ ବିଭକ୍ତ ଥିଲା, ମଧରେ ବୌଦ୍ଧ ପୁରୋହିତ ସନ୍ନ୍ୟାସୀ ଓ ଭିକ୍ଷୁଗଣ ବାସ କରୁଥିଲେ ଏବଂ ବାସାର ଅଂଶରେ ରାଜା ଧନିକ ଓ ସର୍ବସାଧାରଣ ଲୋକେ ବାସ କରୁଥିଲେ। ଅବଶ୍ୟ ନଗରର କ୍ଷେତ୍ରଫଳ ମଧରେ ଉଦ୍ୟାନ, ଶସ୍ୟକ୍ଷେତ୍ର ଅନ୍ତର୍ଭୁକ୍ତ ଥିବାର ଅନୁମାନ କରାଯାଏ। ନଗରର କ୍ଷେତ୍ରଫଳ ସ୍ଥିର ନ ହେଉଣୁ ଏହାର ଲୋକସଂଖ୍ୟା କିପରି ସ୍ଥିର କରାଯାଇପାରେ ? ତେବେ ଏହି ନଗରର ବିହାରମାନଙ୍କରେ ୯୬ ହଜାର ବୌଦ୍ଧ ସନ୍ନ୍ୟାସୀ ଭିକ୍ଷୁ ପ୍ରଭୃତି ବାସ କରୁଥିବାର ଉଲ୍ଲେଖ ଅଛି। ଯେଉଁ ନଗରରେ କେବଳ ପରାନ୍ନଭୋଜୀ ପ୍ରାୟ ଏକଲକ୍ଷ, ସେ ନଗରର ପୋଷଣକର୍ତ୍ତା ଓ ପରିଶ୍ରମଜୀବୀ କେତେ ଥିବେ ତାହା ସହଜରେ ଅନୁମାନ କରାଯାଇପାରେ। ବୌଦ୍ଧ ଧର୍ମର ଆଗମନରେ ତତ୍‌ଦେଶୀୟ ରାଜାଗଣ ଉତ୍ସାହିତ ହୋଇ ନିଜ ନିଜର ନାମରକ୍ଷା କରିବା ଅଭିପ୍ରାୟରେ ଆରାମ, ବିହାର, ଧାତୁଗର୍ଭ ନିର୍ମାଣ କରିଥିଲେ, ଏବଂ ଅନ୍ୟଠାରୁ ଯଶସ୍ୱୀ ହେବା କଳ୍ପନାରେ ଉତ୍ତରୋତ୍ତର ସହରର ଉନ୍ନତି କରିଥିଲେ। ସିଂହଳବାସୀଙ୍କର ସଭ୍ୟତା ନିଦର୍ଶନ ଦେଖି ଯେମନ୍ତ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ ବୌଦ୍ଧ ଧର୍ମଦ୍ୱେଷୀ ହିନ୍ଦୁଙ୍କ କର୍ତ୍ତୃକ ଏହି ନଗର ଧ୍ୱଂସ ହୋଇଥିବା କଥା ଶୁଣି ତେମନ୍ତ ଦୁଃଖିତ ହେବାକୁ ହୁଏ। ମୁସଲମାନଗଣ ହିନ୍ଦୁଧର୍ମ ବିଦ୍ୱେଷୀ ହୋଇ ହିନ୍ଦୁମାନଙ୍କର ମନ୍ଦିର ଓ ପ୍ରତିମୂର୍ତ୍ତି ଭଗ୍ନ କରିଅଛନ୍ତି। ହିନ୍ଦୁଗଣ ବୌଦ୍ଧମାନଙ୍କର ଆରାମ, ବିହାର ପ୍ରଭୃତି ନଷ୍ଟ କରିଅଛନ୍ତି। କି ଜଘନ୍ୟ ଧର୍ମ ବିଦ୍ୱେଷ। ପ୍ରକୃତରେ ମନ୍ଦିର ଭଗ୍ନକାରୀ ମୁସଲମାନଗଣ ଫରଦୌସକୁ ଯିବେ କି ? ଆଉ ବୌଦ୍ଧ ଆରାମ ବିହାର ପ୍ରଭୃତିର ଧ୍ୱଂସକର୍ତ୍ତା ହିନ୍ଦୁଗଣ ବୈକୁଣ୍ଠବାସୀ ହେବେ କି ?

ପ୍ରାଚୀନ ଅନୁରାଧାପୁର ଉପରେ ଆଧୁନିକ ଅନୁରାଧାପୁର। ମୋର ବସା ତଳରେ ଭଗ୍ନାବଶେଷ, ଯେଉଁଆଡ଼େ ଦୃଷ୍ଟିନିକ୍ଷେପ କଲେ ଗୃହ ଅଟ୍ଟାଳିକାର ଭଗ୍ନାଂଶ, କେଉଁଠାରେ ଗୋଟାଏ ସ୍ତମ୍ଭ, କେଉଁଠାରେ ଗୋଟାଏ ପ୍ରତିମୂର୍ତ୍ତି, କେଉଁଠାରେ ବା ଆଉ କିଛି। ଗଭର୍ଣ୍ଣମେଣ୍ଟଙ୍କର ବହୁଯତ୍ନସତ୍ତ୍ୱେ ଅନୁରାଧାପୁର ଯେ ଭୂଗର୍ଭରୁ ପୁନରୁତ୍‌ଥିତ ହୋଇପାରିବ, ଏ

ଆଶା ବୃଥା । ଯାହା ବାହାରିଅଛି ବା ଯାହା ପୂର୍ବରୁ ଦଣ୍ଡାୟମାନ ରହିଅଛି ତାହା ତନ୍ନ ତନ୍ନ କରି ଦେଖିବାକୁ ବହୁଦିବସର ପ୍ରୟୋଜନ । ମୋର ସମୟ ଅଳ୍ପ, ଇତିମଧ୍ୟରେ ଯେତେଦୂର ସମ୍ଭବ ଦେଖି ନେବାର ଆବଶ୍ୟକ ମନେ କରି କାଳବିଳମ୍ବ କଲି ନାହିଁ, ତତ୍‌କ୍ଷଣାତ୍ ବସାରୁ ବାହାରିଲି । ଏଠାରେ ଗାଡ଼ି ସୁଲଭ ନୁହେଁ । ଯାହାହେଉ କୌଣସିପ୍ରକାରେ ଖଣ୍ଡେ ଗାଡ଼ି ଯୋଗାଡ଼ କଲି । ଗାଡ଼ିବାଲା କାମଚଳିବା ଭଳି ଇଂରାଜୀ ଜାଣୁଥିଲା ।

ପ୍ରଥମେ ଈଶ୍ୱରମୁନି ଡୋଗୋବା ଦେଖିବାକୁ ଗଲି । ଗୋଟିଏ କ୍ଷୁଦ୍ର ପାହାଡ଼ ଦେହ ଖୋଦିତ ହୋଇ ଏହି ବିହାର ନିର୍ମିତ ହୋଇଅଛି । ଏଠାରେ ବୁଦ୍ଧ ମୂର୍ତ୍ତି ଅଛି ଏବଂ ପଥର କାନ୍ଥରେ ପ୍ରସିଦ୍ଧ କପିଳ ମୁନିଙ୍କର ପ୍ରତିମୂର୍ତ୍ତି ଅଛି । ଏହି ଆଶ୍ରମ ନିକଟରେ ତିଶାବେବୀ ପ୍ରକାଣ୍ଡ ଜଳାଧାର, ବର୍ଗଫଳ ଆନୁମାନିକ ୪୦୦ ମାଣ । ବର୍ତ୍ତମାନ ଏହା ଜଳପୂର୍ଣ୍ଣ ଅଟେ, ଜଳ ନିର୍ମଳ ଏବଂ ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ସୁରକ୍ଷିତ । ଏଠାରୁ ବେଶାଗିରି ପ୍ରାୟ ଏକ ମାଇଲ । ବେଶାଗିରି କ୍ଷୁଦ୍ର ପାହାଡ଼ ଦେହରେ ଖୋଦିତ କ୍ଷୁଦ୍ର ଗୁହା । ପାହାଡ଼ ନିକଟରେ ପ୍ରକାଣ୍ଡ ଅଟ୍ଟାଳିକାର ଭଗ୍ନାବଶେଷ । ଭୂଗର୍ଭରୁ ଖୋଦିତ ହୋଇଥିବା ଭିତ୍ତି ଠିକ୍ ରୂପେ ରକ୍ଷିତ ହୋଇଅଛି । ଗୃହଗୁଡ଼ିକ କି କୌଶଳରେ ନିର୍ମିତ ଓ କି ଅଭିପ୍ରାୟୋପଯୋଗୀ, ତାହା ଦେଖିବା ଲୋକ କେବଳ ଅନୁମାନ କରିପାରେ, ବର୍ଣ୍ଣନା କରିବା ସୁକଠିନ । ସୁନ୍ଦର ସୁନ୍ଦର ପାଷାଣ ପ୍ରତିମୂର୍ତ୍ତି କେତେଗୁଡ଼ିଏ ମଧ୍ୟ ପଡ଼ି ରହିଅଛନ୍ତି । ଗୁହା ଗୃହ ମଧ୍ୟକୁ ପ୍ରବେଶ କଲାବେଳେ ମୋର ଚାକର ଗୋଟିଏ ସାପ ଦେଖି ମୋତେ ସତର୍କ କରାଇଦେଲା । ଦେଖିଲି ଗୋଟାଏ ବିଷଧର ସର୍ପ (Viper Russelli) । ସନ୍ଧ୍ୟା ପୂର୍ବ ମୁଖରେ ଆଉ ବିପତ୍ତି ପସରା ଇଚ୍ଛାପୂର୍ବକ ଆଣିବାକୁ ଇଚ୍ଛା ନ କରି ପ୍ରତ୍ୟାବୃତ୍ତ ହେଲି । ଫେରିବାବେଳେ ଦୁଇ ଗୋଟି ଉଚ୍ଚ ଡେଗୋବା ଉପରକୁ ଉଠିଥିଲି ।

କେଦାରାମ ବିହାରର ପାବଚ୍ଛ ଅତି ସୁନ୍ଦର । ୟୁରୋପ ଓ ଆମେରିକାର ଅନେକ ଦର୍ଶକ ଏହି ପାବଚ୍ଛକୁ ଦେଖି ବିଶେଷ ପ୍ରଶଂସା କରିଅଛନ୍ତି । ପାବଚ୍ଛ ମାତ୍ର ଅଛି, ଗୃହର ଆଉ କୌଣସି ଅଂଶ ନାହିଁ । ପ୍ରତ୍ୟେକ ଗୃହର ପାବଚ୍ଛକୁ ଆରମ୍ଭରେ କିମ୍ବା ସ୍ନାନ ଘାଟ ଉପରେ ଅର୍ଦ୍ଧଚନ୍ଦ୍ରାକୃତି ପ୍ରସ୍ତର ଫଳକ ଗୋଟିଏ ସ୍ଥାପିତ ହୋଇଥାଏ । ଏହି ପ୍ରସ୍ତରର କାରୁକାର୍ଯ୍ୟ ଅତି ରମଣୀୟ । ଏହି ପ୍ରସ୍ତର ଫଳକରେ ହାତୀ, ଷଣ୍ଢ, ହଂସ, ପଦ୍ମ ଓ ନାନାଦି ଲତାପତ୍ର ଖୋଦିତ ହୋଇଥାଏ ।

ସନ୍ଧ୍ୟା ସମୟରେ ବିଖ୍ୟାତ ବୋଧିଦ୍ରୁମ ଦେଖିବା ନିମନ୍ତେ ଏବଂ ଅନୁରାଧାପୁରର ପ୍ରଧାନ ପୁରୋହିତଙ୍କ ସାକ୍ଷାତ୍ ଆଶାରେ ଗଲି । ବୋଧିଦ୍ରୁମର ଅତି ନିକଟରେ ପୁରୋହିତଙ୍କ ଆଶ୍ରମ– ଏକ ହତା ମଧ୍ୟରେ । କାନ୍ଥଦ୍ୱାରା ବେଷ୍ଟିତ ଗୋଟିଏ ପ୍ରକାଣ୍ଡ ଅଗଣା ମଧ୍ୟରେ ଏହି ବୃକ୍ଷ । ପ୍ରାଙ୍ଗଣ ମଧ୍ୟକୁ ଯିବା ଆଗରୁ କେତେଗୁଡ଼ିଏ ପାବଚ୍ଛ ଉଠିବାକୁ ହୁଏ । ପାବଚ୍ଛର ଉଭୟ ପାର୍ଶ୍ୱରେ ଶୁକ୍ଳପଦ୍ମ, ଚାଳ ଓ ଡାଡ଼ିଫୁଲ ଓ ଅନ୍ୟାନ୍ୟ ପ୍ରକାର ଶୁକ୍ଳଫୁଲ କେବଳ ବିକ୍ରିତ ହେଉଥାଏ । ମୁଁ ଆଗରୁ ବାହାରି ଗଲି । ମୋର ଚାକର ଏକ ଡାଲା ଫୁଲ କ୍ରୟ କରି ମୋ ନିକଟରେ ପହଞ୍ଚିଲା । କୌଣସି ମନ୍ଦିର ନିକଟରେ ଫୁଲ ଦେଖିଲେ ଚାକର ମୋର ବିନାନୁମତିରେ ଅଣାଏ ପାଞ୍ଚ ପଇସା ଖର୍ଚ୍ଚ କରିବାରେ ତ୍ରୁଟି କରେ ନାହିଁ । ପ୍ରଭୁର କିଛି ଧର୍ମଲାଭ ହେବା ଆଶାରେ ସେ ଏହିପରି କରିଥାଏ । ତାକୁ ତ ଜଣା ନାହିଁ ଯେ ବୌଦ୍ଧଧର୍ମ ହିନ୍ଦୁର ଧର୍ମ ନୁହେଁ ଏବଂ ଏହା ମଧ୍ୟ ତ ତାହାର ଧାରଣା ନାହିଁ ଯେ ''ହସ୍ତିନା ତାଡ଼୍ୟମାନୋଽପି ନ ଗଚ୍ଛେତ୍ ଜୈନମନ୍ଦିରଂ ।''

ବୋଧିଦ୍ରୁମ– ମଗଧରାଜ୍ୟାନ୍ତର୍ଗତ ନିରଞ୍ଜନା ନଦୀ କୂଳବର୍ତ୍ତୀ କୌଣସି ପ୍ରକାଣ୍ଡ ପିପ୍‌ଳ ବୃକ୍ଷ ମୂଳରେ ଶାକ୍ୟସିଂହ ବୁଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ । ଏଣୁ ସେହି ବୋଧିଦ୍ରୁମକୁ ବୌଦ୍ଧମାନେ ଅତ୍ୟନ୍ତ ପବିତ୍ର ଓ ପୂଜନୀୟ ଜ୍ଞାନ କରୁଥିଲେ । ଏହି ବୃକ୍ଷ ବହୁକାଳ ଜୀବିତ ଥାଇ ବୌଦ୍ଧମାନଙ୍କଦ୍ୱାରା ପୂଜିତ ହେଉଥିଲା । ସପ୍ତମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନ୍‌ସେଙ୍ଗ୍ ଏହି ବୃକ୍ଷକୁ ଦେଖିଥିବାର ଆପଣା ଗ୍ରନ୍ଥରେ ଲେଖି ଯାଇଅଛନ୍ତି । ସେ ଯାହାହେଉ, ଯେତେବେଳେ ଅଶୋକ ଏ ଦେଶ ଶାସନ କରୁଥିଲେ, ସେହି ସମୟରେ ସିଂହଳର ନରପତି ତିଶା ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ତିଶାଙ୍କ ଅନୁରୋଧକ୍ରମେ ଅଶୋକ ଏହି ବୋଧିଦ୍ରୁମର ଗୋଟିଏ ଶାଖା କଲମ କରି ସିଂହଳକୁ ପଠାଇଥିଲେ । ମହୀନ୍ଦ୍ରଙ୍କ କନିଷ୍ଠା ଭଗିନୀ ସଂଘମିତ୍ରା ଏହି ଶାଖାକୁ ନେଇ ଅନୁରାଧାପୁରର ମହାମେଘ ଉଦ୍ୟାନରେ ରୋପଣ କରିଥିଲେ । ସେହି ବୃକ୍ଷ ଅଦ୍ୟାପି ଜୀବିତ ଥିବାର ପ୍ରକାଶ ପାଏ । ବୃକ୍ଷଟି ଅତି ପ୍ରକାଣ୍ଡ, ବୟସ ଅନ୍ତତଃ ୨୨୧୮ ବର୍ଷ ହେବାର କଥା, କାରଣ ଏହି ବୃକ୍ଷ ଖ୍ରୀଷ୍ଟପୂର୍ବ ୩୦୬ ଅବ୍ଦରେ ଲଙ୍କାକୁ ଆନିତ ହୋଇଥିଲା । ବୃକ୍ଷମାନେ ଦୀର୍ଘାୟୁ, ମାତ୍ର ଯେତେବେଳ ଯାଏ କୌଣସି ଉଦ୍ଭିଦ ତତ୍ତ୍ୱବିତ୍ ଏଥିରେ ସାର୍ଟିଫିକେଟ୍ ଦେଇ ନାହାନ୍ତି, ଏହା ସେହି ବୃକ୍ଷ, କି ତା'ର ବୀଜରୁ ଉତ୍ପନ୍ନ ଅନ୍ୟ ବୃକ୍ଷ ତାହା ସନ୍ଦେହ ଗର୍ଭରେ ନିହିତ । ଯେବେ କ୍ଷୁଦ୍ରକାୟ ବଂଶାବଟର ବୟସ ଛ' ସାତ ହଜାର ବୋଲି

ହିନ୍ଦୁଗଣ ବିଶ୍ୱାସ କରିପାରନ୍ତି ତେବେ ବୌଦ୍ଧଗଣ ବୋଧିଦ୍ରୁମର ବୟସ ୨୨୧୮ ବର୍ଷ ବୋଲିବା ଆଶ୍ଚର୍ଯ୍ୟ କ'ଣ ? ଅନ୍ୟାନ୍ୟ ଧର୍ମ ବିଶ୍ୱାସ ତୁଲ୍ୟ, ଏହା ମଧ୍ୟ ମିଥ୍ୟା ହୋଇପାରେ। ମାତ୍ର ଚୀନ୍ ପରିବ୍ରାଜକ ଫାୟିୟାନ ଚତୁର୍ଥ ଖ୍ରୀଷ୍ଟାବ୍ଦରେ ଅନୁରାଧାପୁରଠାରେ ଏହି ବୃକ୍ଷକୁ ଦର୍ଶନ କରିଥିବାର ଲେଖିଅଛନ୍ତି। ଏହି ବୃକ୍ଷକୁ ବୌଦ୍ଧଗଣ ଶ୍ରଦ୍ଧା ଓ ଭକ୍ତି ସହ ପୂଜା କରୁଅଛନ୍ତି।

ଅଦ୍ୟ ଶୁକ୍ଳ ଚତୁର୍ଦ୍ଦଶୀ ରାତ୍ର। କାଲି ପୂର୍ଣ୍ଣିମା ହେବ, ଏଣୁ ଅସଂଖ୍ୟ ଯାତ୍ରୀ ଆଜି ଅନୁରାଧାପୁରରେ ସମବେତ। ଏହି ବୃକ୍ଷମୂଳରେ ଅସଂଖ୍ୟ ସ୍ତ୍ରୀ, ପୁରୁଷ ଜାନୁପାତି ''ବୁଦ୍ଧଂ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି, ସଂଘଂ ଶରଣଂ ଗଚ୍ଛାମି'' ବୋଲି ପ୍ରାର୍ଥନା କରୁଥିଲେ। ସ୍ତ୍ରୀ ପୁରୁଷର ଭେଦ ବିଚାର ନାହିଁ। ସମସ୍ତଙ୍କ ହାତରେ ଶୁକ୍ଳ ପୁଷ୍ପ, କାହା ହାତରେ ତେଲ ବୋତଲ, କାହା ହାତରେ ମହମବତି, କାହା ହାତରେ ଧୂପକାଠି। ଦୀପମାନଙ୍କରେ ସମସ୍ତେ ଟିକିଏ ଟିକିଏ ତେଲ ଢାଳୁଅଛନ୍ତି, କେହି ବତି ଜାଳୁଅଛନ୍ତି, କେହି ସୁବାସିତ ଧୂପକାଠି ଜାଳୁଅଛନ୍ତି । ଏହି ପ୍ରକାରେ ପ୍ରତ୍ୟେକ ମନ୍ଦିରରେ ଅଖଣ୍ଡ ଦିବାରାତ୍ରୀ ଆଲୋକ ଜଳୁଅଛି ଓ ଚତୁର୍ଦ୍ଦିଗ ଧୂପାମୋଦିତ ହେଉଅଛି । ପଣ୍ଡାର ଭିଡ଼ ନାହିଁ, କେହି କାହାକୁ କିଛି ଉପଦେଶ ଦେଉନାହାନ୍ତି, ପ୍ରସାଦ ବିତରଣ ନାହିଁ । ଭକ୍ତିତଦ୍‌ଗତଚିତ୍ତରେ ଭକ୍ତିପ୍ରସାଦ ଲାଭ କରି ସମସ୍ତେ ଚାଲିଯାଉଅଛନ୍ତି । ଯାହାର ଯାହା ଦେୟ, ତାଲା ବନ୍ଦ ଥିବା ଲୁହାବାକ୍ସରେ ପକାଇ ଦେଉଅଛନ୍ତି । ଦକ୍ଷିଣ ହସ୍ତର ଦାନ ବାମ ହସ୍ତ ଜାଣୁ ନାହିଁ । ମହାବୋଧିଦ୍ରୁମର ଛାୟାର ଏକ ପାର୍ଶ୍ୱରେ କିଛିକ୍ଷଣ ଦଣ୍ଡାୟମାନ ହୋଇ ସ୍ଥାନ ଯେମନ୍ତ ପବିତ୍ର, ଉପାସନା ମଧ୍ୟ ତଦ୍ରୂପ । ନିଷ୍କାମ ବୋଲି ଅନୁଭବ କଲି । ଏହି ଦ୍ରୁମର ଅତି ନିକଟରେ ଗୋଟିଏ ମନ୍ଦିର । ମନ୍ଦିରରେ ପ୍ରକାଣ୍ଡ ଗୋଟିଏ ହଲ, ହଲ୍ ମଧ୍ୟରେ ଅତି ସୁନ୍ଦର ଏକ ବୌଦ୍ଧମୂର୍ତ୍ତି । ମନ୍ଦିର ଓ ହଲ୍ ଆଧୁନିକ ଧରଣରେ ନିର୍ମିତ । ମୂର୍ତ୍ତିର ଉଚ୍ଚତା ୧୦ ହାତରୁ କମ୍ ନୁହେଁ । ଧ୍ୟାନୀ ବୁଦ୍ଧ । ଲାଳିତ୍ୟପୂର୍ଣ୍ଣ ମୂର୍ତ୍ତିରେ ବୁଦ୍ଧଦେବଙ୍କର ସାମ୍ୟ ପରା ଅଛି । ମନ୍ଦିରର ପଛପାଖରେ ପୁରୋହିତଙ୍କ ବସା । ଏହାଙ୍କର ନାମ— ରେଭରେଣ୍ଡ ପି : ଧମ୍ମନ ରତ୍ନପାଳ, ଭାରି ପଣ୍ଡିତ, ବୟସ ପ୍ରାୟ ୫୦ ବର୍ଷ । ନାମ ଆଗରେ ରେଭରେଣ୍ଡ ଶବ୍ଦ ଦେଖି ଭଲ ବୋଧହୁଏ କି ? ତେବେ ଆଜିକାଲି ଏ ଗୋଟିଏ ରୀତି ହୋଇଅଛି । ଧର୍ମଯାଜକମାନେ ଏହା ଲେଖିବାକୁ ଆରମ୍ଭ କରିଅଛନ୍ତି । ମାତ୍ର ମୁସଲମାନମାନେ ଏ ଅନୁକରଣ କରୁ ନାହାନ୍ତି । ମୁଁ ସିଂହଳରେ ପ୍ରଚଳିତ ବୁଦ୍ଧଙ୍କ ମୂର୍ତ୍ତି ପୂଜା ବିରୋଧରେ ଆପତ୍ତି ଉତ୍‌ଥାପନ୍ କଲି । ସେ କହିଲେ, ବୁଦ୍ଧଦେବ ତାଙ୍କର ପୂଜା କରିବା ନିମନ୍ତେ ଶିଷ୍ୟମାନଙ୍କ ଉପଦେଶ ଦେଇ ନାହାନ୍ତି ସତ୍ୟ, କିମ୍ବା ସେ ପୂଜା କରିବାକୁ କଦାପି ଆଗ୍ରହାନ୍ୱିତ ନ ଥିଲେ ସତ୍ୟ, ମାତ୍ର ତାଙ୍କର ଶିଷ୍ୟଗଣ ତାଙ୍କର ସ୍ମୃତିରକ୍ଷା ନିମନ୍ତେ ଏହା କରିଅଛନ୍ତି । ସିଂହଳବାସୀ ପ୍ରାଚୀନ ବୌଦ୍ଧଗଣ ଏ ରୀତିର ବିଶେଷ ପକ୍ଷପାତୀ । ଆପଣ କର୍ମନିଦାନ ସୂତ୍ର; ସ୍ତୂପରତ୍ନ ଓ ଅଭିଧର୍ମାର୍ଥ ସଂଗ୍ରହ ଅଧ୍ୟୟନ କଲେ ବୁଦ୍ଧଙ୍କ ପୂଜାର ପ୍ରୟୋଜନୀୟତା ଉପଲବ୍ଧ କରିପାରିବେ । ଆହୁରି କହିଲେ ଯେ କାହାରି ସ୍ମୃତିରକ୍ଷା କରିବାକୁ ହେଲେ ତିନି କଥାର ପ୍ରୟୋଜନ । — ତାହାଙ୍କର ଗୁଣର ଚିନ୍ତା; ତାହାଙ୍କ ଶାରୀରିକ କୌଣସି ପଦାର୍ଥର ଦର୍ଶନ ଓ ଚିନ୍ତା, ତାହାଙ୍କର ପ୍ରତିମୂର୍ତ୍ତିର ପୂଜା । ବୁଦ୍ଧଙ୍କୁ ଦେଖିଥିବା ଲୋକେ ତାହାଙ୍କର ପ୍ରତିମୂର୍ତ୍ତି ପ୍ରସ୍ତୁତ କରିଥିଲେ, ସେହି ମୂର୍ତ୍ତିର ଅନୁକରଣରେ ଏ ସବୁ ମୂର୍ତ୍ତି ନିର୍ମିତ ହୋଇଅଛନ୍ତି; ଏଣୁ ବୁଦ୍ଧଙ୍କର ଠିକ୍ ପ୍ରତିମୂର୍ତ୍ତି ବୋଲି ଆମ୍ଭମାନଙ୍କର ବିଶ୍ୱାସ। ଆପଣଙ୍କର ଜଗନ୍ନାଥ ବୁଦ୍ଧାବତାର ହେଲେ ମଧ୍ୟ ସେପରି ନୁହନ୍ତି । (ତର୍କ ବେଳେ ମୁଁ ଜଗନ୍ନାଥଙ୍କ ରୂପ ଇତ୍ୟାଦିର ବର୍ଣ୍ଣନା କରିଥିଲି, ତାଙ୍କୁ ଜଣା ନ ଥିଲା ।) ଆହୁରି ଅନେକ ତର୍କବିତର୍କ ପରେ ବିଦାୟ ଗ୍ରହଣ କଲି । ବିଦାୟ ବେଳେ ନିଜର କାର୍ଡ଼ ଦେଲେ ଏବଂ ପୁସ୍ତକ ଅଧ୍ୟୟନ କରି ମତ ବ୍ୟକ୍ତ କରିବାକୁ କହିଥିଲେ । କୌଣସି ସନ୍ଦେହ ଉପସ୍ଥିତ ହେଲେ ପତ୍ରଦ୍ୱାରା ଜଣାଇବାକୁ ଅନୁରୋଧ କରିଥିଲେ । ମୋର ପୁସ୍ତକ ଅଧ୍ୟୟନ ସେହିଠାରେ ଶେଷ । ନୋଟ୍ ବୁକ୍‌ରେ ଟିପି ନ ଥିଲେ ପୁସ୍ତକର ନାମ ପର୍ଯ୍ୟନ୍ତ ମନେ ନ ଥାନ୍ତା।

ପରଦିନ ସକାଳୁ ଅନ୍ୟାନ୍ୟ ଭଗ୍ନାବଶେଷ ଦେଖିବା ନିମନ୍ତେ ବାହାରିଲି । ରାସ୍ତାରେ ଦଳ ଦଳ ନରନାରୀ । ପୂର୍ଣ୍ଣିମା ହେତୁରୁ ଏପରି ଜନଗହଳି । ପୂର୍ଣ୍ଣିମା ବୌଦ୍ଧମାନଙ୍କର ଗୋଟିଏ ପୁଣ୍ୟ ଦିବସ । ଏହିଦିନ ବୌଦ୍ଧଧର୍ମାବଲମ୍ବୀମାନେ ସମବେତ ହୋଇ ସ୍ୱକୃତ ପାପ ଉଚ୍ଚସ୍ୱରରେ ସର୍ବସମକ୍ଷରେ ବ୍ୟକ୍ତ କରିବାର ପ୍ରଥା ଥିଲା । ଏବେ ତାହା ଠିକ୍‌ରୂପେ ପାଳିତ ହେଉ ବା ନ ହେଉ ପ୍ରତି ପୂର୍ଣ୍ଣିମାରେ ସରଳବିଶ୍ୱାସୀ ଗ୍ରାମ୍ୟ ନରନାରୀଗଣ ପ୍ରଧାନ ବୌଦ୍ଧମନ୍ଦିରକୁ ଯାଇ ଥରେ ଦର୍ଶନ କରି ଆସନ୍ତି । ଅନୁରାଧାପୁର ଏଥି ନିମନ୍ତେ ଅଦ୍ୟ ଲୋକପୂର୍ଣ୍ଣ । ସେମାନଙ୍କ କାର୍ଯ୍ୟ ଭିନ୍ନ, ମୋ କାର୍ଯ୍ୟ ଭିନ୍ନ । ତେବେ ସ୍ଥାନ ବିଶେଷରେ ମୋତେ ଛବି ଅଙ୍କନ କରୁଥିବାର ଦେଖି କିମ୍ବା କିଛି ନୋଟ୍ କରୁଥିବାର ଦେଖି ଦଳେ ଦଳେ କ୍ଷଣେ ଦଣ୍ଡାୟମାନ ହୋଇରହନ୍ତି । ସେଥିରେ ମୋର କୌଣସି ବାଧା

ହୁଏ ନାହିଁ ବରଂ ଇରାନୀ ଜାଣିବା ଲୋକ ଥିଲେ ଟିକିଏ ଉପକାର ମିଳେ ।

ଅନୁରାଧାପୁରର ଭଗ୍ନାବଶେଷର କେତେକାଂଶ ମାତ୍ର ପର୍ଯ୍ୟବେକ୍ଷଣ କଲେ ସିଂହଳିମାନେ ଏକ ସମୟରେ ସଭ୍ୟତାର କୀଦୃଶ ଉଚ୍ଚ ସୋପାନରେ ଅଧିରୋହଣ କରିଥିଲେ, ତାହା ଅନାୟସରେ ହୃଦୟଙ୍ଗମ କରାଯାଇପାରେ । ଉତ୍ତର ମଧ୍ୟପ୍ରଦେଶର ମଧ୍ୟଭାଗରେ ଅନୁରାଧାପୁର । ଜଳର ସୁବିଧା ସେପରି ନ ଥିଲେ ମଧ୍ୟ ବିସ୍ତୃତ ପଡ଼ିଆ ସହର ନିର୍ମାଣ କରିବାରେ ଉପଯୁକ୍ତ ସ୍ଥଳ, ଏଣୁ ଏହାକୁ ନଗର ଓ ରାଜଧାନୀ କରିଥିଲେ । ନିକଟରେ ଜଳ ନ ଥିବାରୁ ପ୍ରାୟ ୪୦ ମାଇଲ ଦୂରବର୍ତ୍ତୀ ଜଳସ୍ରୋତକୁ ନିବଦ୍ଧ କରି ଅନୁରାଧାପୁର ପର୍ଯ୍ୟନ୍ତ କୁଲ୍ୟା ପ୍ରସ୍ତୁତ କରି ଜଳ ଆନୟନର ସୁବନ୍ଦୋବସ୍ତ କରିଥିଲେ । ଅନୁରାଧାପୁର ନିକଟରେ ଗୋଟିଏ ବୃହତ୍ ଜଳାଧାର କରି ଅନ୍ତତଃ ସହରବାସୀଙ୍କୁ ଆଠ ମାସ କାଳ ଜଳ ଯୋଗାଇବାଭଳି ଉପଯୁକ୍ତ ଜଳ ସଂଗ୍ରହକରି ରଖୁଥିଲେ । ଏହି ଜଳଧାରରୁ କ୍ଷୁଦ୍ର କ୍ଷୁଦ୍ର ବଡ଼ ନଳ ପ୍ରତ୍ୟେକ ଗୃହସ୍ଥର ପ୍ରସ୍ତର ନିର୍ମିତ ବାମ୍ପୀ ସହିତ ସଂଯୋଗ କରିଥିଲେ । ନଳ ବୋଇଲେ ଅବଶ୍ୟ ଲୁହା ନଳ ନୁହେଁ । ପକା ନର୍ଦ୍ଦା ସଦୃଶ୍ୟ ପ୍ରସ୍ତର ନର୍ଦ୍ଦା । ପ୍ରୟୋଜନାନୁସାରେ ଜଳ ଛାଡ଼ିବା ବା ବନ୍ଦ କରିବା ନିମନ୍ତେ ପ୍ରତ୍ୟେକ ନର୍ଦ୍ଦାର ସ୍ଥାନେ ସ୍ଥାନେ କବାଟ ବସାଇଥିଲେ । ଏ ସବୁ ବର୍ତ୍ତମାନ ପର୍ଯ୍ୟନ୍ତ ବିଦ୍ୟମାନ ଅଛି । ବୌଦ୍ଧ ସନ୍ନ୍ୟାସୀ ଗଣଙ୍କ ନିମନ୍ତେ ବିହାର ଆରାମ ପ୍ରଭୃତି ନିର୍ମିତ ହୋଇଥିଲା । ବୁଦ୍ଧଙ୍କର ବା ଅନ୍ୟ କୌଣସି ପ୍ରସିଦ୍ଧ ବ୍ୟକ୍ତିଙ୍କର ଶାରୀରିକ କୌଣସି ଅଂଶ ରକ୍ଷା ନିମନ୍ତେ ଧାତୁଗର୍ଭ ବା ଡେଗୋବା ପ୍ରସ୍ତୁତ ହୋଇଥିଲା । ଭାରତବର୍ଷରେ ଅନେକ ସ୍ତୂପ ଅଛି, ମାତ୍ର ଏତେ ଉଚ୍ଚ ଧାତୁଗର୍ଭ ଅଛି କି ନାହିଁ ସନ୍ଦେହ । ମଥୁରାରେ ଯାହାକୁ କଂସର ମଞ୍ଚ ବୋଲନ୍ତି ମୁଁ ଅନୁମାନ କରେ ତାହା ବୌଦ୍ଧ ସ୍ତୂପ । ଲଙ୍କାର ଡେଗୋବା ତୁଳନାରେ ଏ ସବୁ ନଗଣ୍ୟ । ଅଭୟଗିରି ଡେଗୋବା ଉଚ୍ଚତମ । ଏହାର ଉଚ୍ଚତା ୪୧୨ ଫୁଟ । ଡେଗୋବା ପ୍ରାୟ ଇଷ୍ଟକ ନିର୍ମିତ । ଲଙ୍କାର ଉତ୍ତାପ ଯେମନ୍ତ ଅଧିକ ବୃଷ୍ଟି ମଧ୍ୟ ତେମନ୍ତ ଅଧିକ ଓ ପ୍ରବଳ, ଏଣୁ କାଳକ୍ରମେ ଏ ସବୁ ଫାଟି ଯାଇଅଛି ଏବଂ ପକ୍ଷୀମାନଙ୍କ ମଳରୁ ଫାଟମାନଙ୍କରେ ବୃକ୍ଷ ଜନ୍ମି ଡେଗୋବାର ଚୂନକାମ ସବୁ ନଷ୍ଟ କରିଅଛି । ଅଭୟଗିରି ଡେଗୋବାଟି ବର୍ତ୍ତମାନ ପାହାଡ଼ ତୁଲ୍ୟ—ଘନ ବୃକ୍ଷଲତାପୂର୍ଣ୍ଣ । ସର୍ପମାନଙ୍କର ଅମୂଲ୍ୟ ବାସ ସ୍ଥାନ ହୋଇଅଛି । ଯାତ୍ରୀଗଣ ପ୍ରାୟ ଏହା ଉପରକୁ ଉଠନ୍ତି ନାହିଁ । ତଳେ ପୂଜାଦେଇ ଫେରି ଆସନ୍ତି । ମୋତେ ଉପରକୁ ଉଠିବାର ଦେଖି ଜଣେ କହିଲେ, ସର୍ପସଙ୍କୁଳ ବିପତ୍ତିପୂର୍ଣ୍ଣ ସ୍ଥାନକୁ ଉଠିବାର ଫଳ କ'ଣ ? ତଳେ ପୂଜା ଦେଇ ଫେରିଯାଅ । ମୁଁ କହିଲି ମୋର କାର୍ଯ୍ୟ ଭିନ୍ନ । ଅଭୟଗିରିଠାରୁ ଅନେକ ଗୁଣ ଉଚ୍ଚ ପାହାଡ଼କୁ ଉଠିବାରେ ମୋର ତିଳେ ଭୟ ନାହିଁ । ଏଠାରେ ତ କେବଳ ସାପ, ଯେଉଁ ପାହାଡ଼ ସାପ ବାଘରେ ପରିପୂର୍ଣ୍ଣ, ସେଠାରେ ଉଠିବାକୁ ଭୟ ନାହିଁ, ଏଠାରେ କି ଭୟ ଅଛି ? ସେମାନେ ଫେରିଗଲେ, ମୁଁ ଉପରକୁ ଚାକର ସହିତ ଉଠିଲି । ପାବଚ୍ଛ ନାହିଁ । ଉଠିବାବେଳକୁ ପାହାଡ଼କୁ ଉଠିଲା ପରି ବୋଧ ହେଉଥିଲା, ଏହା ଯେ ମନୁଷ୍ୟ ନିର୍ମିତ, ତାହା ବୋଧ ହେଉ ନ ଥିଲା । ଉପରେ ଗୋଟାଏ ବେଦୀ, ବେଦୀ ଉପରେ ମନୁମେଣ୍ଟ ପରି ତୟାରି ବୁଲା ପାହାଚ୍ ୯୦ ଗୋଟି— ଉପର ଅଂଶ ବନ୍ଦ ହୋଇ ନାହିଁ । ଏହି ଅଂଶ ପ୍ରାଚୀନ କୀର୍ତ୍ତିରକ୍ଷଣଶୀଳ ସମାଜ ଦ୍ୱାରା ନିର୍ମିତ । ଉପରୁ ଗୋଟିଏ ପ୍ରକାଣ୍ଡ ଦୃଶ୍ୟ ଦେଖାଗଲା । କିଛି ଦୂରରେ ମିହିନ୍ତାଳ ପର୍ବତ— ପର୍ବତର ପାଦଦେଶରେ ନୁଆରା ବେବା ନାମକ ପ୍ରକାଣ୍ଡ କୃତ୍ରିମ ହ୍ରଦ । ଏହି ହ୍ରଦରୁ ଜଳ ଆନୀତ ହୋଇ ଅନୁରାଧାପୁରବାସୀଙ୍କି ଯୋଗାଯାଉଥିଲା । ଗଭର୍ଣ୍ଣମେଣ୍ଟଙ୍କ ଯତ୍ନରୁ ହ୍ରଦଟି ବର୍ତ୍ତମାନ ଜଳପୂର୍ଣ୍ଣ । ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଯେକୌଣସି ଆଡ଼କୁ, ଦୃଷ୍ଟି ନିକ୍ଷେପ କଲେ ବିସ୍ତୃତ ପଡ଼ିଆ ଏବଂ ସ୍ଥାନେ ସ୍ଥାନେ ପର୍ବତାକାର ଭଗ୍ନାବଶେଷ ଚକ୍ଷୁର ବିଷୟୀଭୂତ ହେଉଥିଲା । ଅଭୟଗିରିର ଅତ୍ୟୁଚ୍ଚ ସ୍ଥାନକୁ ଆରୋହଣ କଲାରୁ ଅତ୍ୟନ୍ତ ସୁଶୀତଳ ବାୟୁ ଶରୀରର ଯାବତୀୟ କ୍ଳେଶ ଦୂର କଲା । କିଛି କ୍ଷଣ ନିଶ୍ଚିନ୍ତରେ ବସି ଅନୁରାଧାପୁରବାସୀଙ୍କର ଅତୀତ ସଭ୍ୟତା କଥା ଚିନ୍ତା କରୁଥିଲି, ମୋ ଚାକର କହିଲା, ''ଏହିଟା ରାବଣର ଜଗତୀ, ଆଉ ଏହି ପର୍ବତ ସୁବଳୟା ।'' ମୋଠାରୁ କିଛି ଉତ୍ତର ନ ପାଇ 'ମୌନ ସମ୍ମତି ଲକ୍ଷଣ' ଭାବି ନେଲା । ଅଳ୍ପକ୍ଷଣ ପରେ କାନ୍ଥରେ ଲୋକଙ୍କର ନାମ ଲେଖା ଦେଖି ସେ ନାମ ଲେଖିବାକୁ ଆଗ୍ରହାନ୍ୱିତ ହେଲା । ତାହାର ଅନୁରୋଧକ୍ରମେ ଚାକୁଦ୍ୱାରା ଉତ୍କଳାକ୍ଷରରେ ମୋର ନାମ ଲେଖିଲି— ସେ ତା'ର ନାମ ଲେଖିଲା । ଏଥିଉତ୍ତାରୁ ତଳକୁ ଓହ୍ଲାଇଲୁ । ତଳେ ଭଗ୍ନ ପ୍ରାଚୀର ଦେହରେ ପ୍ରାଚୀନ ଚିତ୍ରର ଅଂଶ ଥିବାର ଦେଖାଗଲା ଏବଂ କେତେଗୁଡ଼ିଏ ମୂର୍ତ୍ତି ଏବଂ ଗୋଟିଏ କାରିଗରି ପୂର୍ଣ୍ଣ ସପ୍ତଫେଣ ନାଗର ଉତ୍କୀର୍ଣ୍ଣ ପ୍ରତିରୂପ ଦେଖାଗଲା । ଅନତିଦୂରରେ ଗୋଟିଏ ପ୍ରାଚୀନ ଉଦ୍ୟାନ ଜଙ୍ଗଲରେ ପରିଣତ ହୋଇଥିବାର ଦୃଷ୍ଟିଗୋଚର ହେଲା । ତାହା ନିକଟରେ ଲୌବ ମହୋପାୟ ବା ଲଙ୍କା ରାମ ବିହାର । ଏହା ଗୋଟିଏ ଅତି ଚମତ୍କାର ଗୃହ । କାରିଗରିପୂର୍ଣ୍ଣ ଷୋହଳହ ମୁଗୁନି ପ୍ରସ୍ତର ସ୍ତମ୍ଭ

ଦ୍ୱାରା ଏହି ଗୃହଟି ନିର୍ମିତ ହୋଇଥିଲା । ବହୁସଂଖ୍ୟକ ସ୍ତମ୍ଭ ଅଦ୍ୟାପି ପୋତା ହୋଇରହିଅଛି । ଏହି ଗୃହଟି ନଅତାଲା ଥିବା ଏବଂ ପିତ୍ତଳପଟାଦ୍ୱାରା ଆଚ୍ଛାଦିତ ହୋଇଥିବାର କଥିତ ହୁଏ । ଏହି ଗୃହ ଦତ୍ତୁଯେମୁନୁଙ୍କଦ୍ୱାରା ନିର୍ମିତ ହୋଇଥିଲା । ଏହା ନିକଟରେ ଧୂପାରାମ ଡେଗୋବା । ଏହି ଧାତୁ ଗର୍ଭରେ ବୁଦ୍ଧଦେବଙ୍କ ଗଳଦେଶର ଅସ୍ଥି ସଂରକ୍ଷିତ ହୋଇଥିବାର ପ୍ରବାଦ ଅଛି । ଏହି ଡେଗୋବା ଜୀର୍ଣ୍ଣ ସଂସ୍କାର ହୋଇଅଛି । ଏହାଛଡ଼ା ଆଉ କେତେ ଗୋଟି ଡେଗୋବା ମରାମତି ହୋଇଅଛି । ରାଓନ ବୋଲି ଡେଗୋବାର ଜୀର୍ଣ୍ଣ ସଂସ୍କାର ହେଉଅଛି । ଏହି ଡେଗୋବାର କାନ୍ଥରେ ଏକ ହଜାର ପ୍ରସ୍ତର ନିର୍ମିତ ହସ୍ତୀପୂର୍ଣ୍ଣ ବସାଯାଇଥିଲା— କାରିଗରି ଅତି ସୁନ୍ଦର ।

ଅନୁରାଧାପୁର ସମୃଦ୍ଧିଶାଳୀ ଥିଲା ବେଳେ ଅସଂଖ୍ୟ ବୌଦ୍ଧ ଭିକ୍ଷୁ ଭିକ୍ଷା ନିମନ୍ତେ ଏକତ୍ରିତ ହେଉଥିଲେ । ଏମାନଙ୍କୁ ଜଣ ଜଣ କରି ଭାତ ଓ ପେଜ ଦେବା ଅସମ୍ଭବ; ଏଣୁ ଏକ ସ୍ଥାନରେ ପ୍ରକାଣ୍ଡ ପ୍ରକାଣ୍ଡ ପ୍ରସ୍ତର ନିର୍ମିତ ଡଙ୍ଗା ରଖାଯାଇଥାଏ, ତହିଁରେ ଭାତ ପେଜ ଦିଆଯାଇଥାଏ । ଭିକ୍ଷୁଗଣ ନିଜେ ନିଜେ ଆପଣା ଅଂଶ ନେଇ ଭକ୍ଷଣ କରନ୍ତି । ଗୋଟାଏ ଡଙ୍ଗାର ଆୟତନ ୬୦ ଫୁଟ ଲମ୍ବ, ୪ ଫୁଟ ଗଭୀର ଓ ଚାରି ଫୁଟ ଓସାର । ଏହା ୧୩ ଖଣ୍ଡ ପ୍ରସ୍ତରଦ୍ୱାରା ନିର୍ମିତ, ନିର୍ମାଣ କୌଶଳ ଚମତ୍କାର । ଏହା କୁମ୍ଭକର୍ଣ୍ଣର ଖାଦ୍ୟ ପାତ୍ର ନୁହେଁ ତ । ଆଉ ଗୋଟିଏ ୧୦ ଫୁଟ ଲମ୍ବ, ୪ଫୁଟ ଓସାର ଓ ୩ ଫୁଟ ଗଭୀର ଖଣ୍ଡିଏ ପ୍ରସ୍ତରରେ ନିର୍ମିତ । ଏପରି ଅନେକ ପାତ୍ର ଇତସ୍ତତଃ ପଡ଼ିଅଛି ।

ହରିଶ୍ଚନ୍ଦ୍ର ଲଙ୍କାର ଜଣେ ଉନ୍ନତିଶୀଳ ବ୍ୟକ୍ତି । ସିଂହଳବାସୀଙ୍କ ମଧ୍ୟରେ ଜଣେ ଅଗ୍ରଗଣ୍ୟ । ଏହାଙ୍କର ଯତ୍ନ ଓ ଉତ୍ସାହରେ ଅନେକ ସତ୍‌କାର୍ଯ୍ୟ ସାଧିତ ହୋଇଅଛି । ଏହାଙ୍କ ଗୃହ ଅନୁରାଧାପୁରରେ । ସାକ୍ଷାତ୍ ନିମନ୍ତେ ତାଙ୍କ ଗୃହକୁ ଯାଇଥିଲି । ସେ ଆପଣା ଗ୍ରାମକୁ ଯାଇଥିଲେ, ଏଣୁ ହତାଶ ହୋଇ ଫେରି ଆସିଲି, ଗୋଟାଏ ଆକ୍ଷେପ ମନରେ ରହିଗଲା ।

ସେଦିନ ବସାକୁ ଫେରିଲାରୁ ମନରେ ଗୋଟାଏ ଚିନ୍ତା ଉପସ୍ଥିତ ହେଲା । ସିଂହଳର ଇତିହାସାନଭିଜ୍ଞ ଜଣେ ବ୍ୟକ୍ତି ଅନୁରାଧାପୁରକୁ ଆସି ଏହି ଭଗ୍ନାବଶେଷ ଦେଖି କ'ଣ ଭାବିବ ? ମୁଁ ଏହି ଭାବନା ନେଇ ବ୍ୟସ୍ତ ଥିଲି, ମୋ ଚାକର ଅପୂର୍ବାନନ୍ଦ ଅନୁଭବ କରୁଥିଲା । ଲଙ୍କା ଦେଖି ସେ ସାର୍ଥକମନେ କରୁଥିଲା । ରାମାୟଣରୁ ଶୁଣି ଅଛି ଲଙ୍କାପୁରର ବର୍ଣ୍ଣନା, ରାବଣ ଓ ଇନ୍ଦ୍ରଜିତ୍‌ର ଜଗତୀ, ଅଶୋକବନ । ଶୁଣିଅଛି ତହିଁର ଯୁଦ୍ଧକଥା, ଭଗ୍ନାବଶେଷ କଥା, ଆଜି ପ୍ରତ୍ୟକ୍ଷ କଲା । ଏଥିଉତ୍ତାରୁ ତାହାର ଆନନ୍ଦର ସୀମା ନାହିଁ ? ଦେଶକୁ ଗଲେ ବେଶ ଗଳ୍ପ କରିବ, ଲୋକେ ତା' କଥା ବିଶ୍ୱାସ କରିବେ । ମୋତେ ପଚାରିଲେ ମୁଁ କହିବି, ହଁ ଭଗ୍ନାବଶେଷ ଅଛି ଯେ ତାହା ରାବଣର ଲଙ୍କାର ନୁହେଁ, ଏଗୁଡ଼ିକ ବୌଦ୍ଧନଗରର ଭଗ୍ନାବଶେଷ। ଏକ ଯାତ୍ରାର ଭିନ୍ନ ଫଳ ବସ୍ତୁତଃ ତାହାହିଁ। ଅଭୟଗିରି ଉପରେ ଠିଆ ହୋଇ ମୋର ଚାକର ତାକୁ ରାବଣର ଜଗତୀ ଭାବିଥିଲା, ଲଙ୍କା ରାମ ବିହାରର ପାବଚ୍ଛରେ ଜଣେ ଜନ୍ମାନ୍ଧ ଅତି ସୁଶ୍ରାବ୍ୟ ଗୀତ ଗାୟନ କରୁଥିଲା— ସେହି ଗୀତ ମଧ୍ୟରେ ସେ ତିନି ଚାରି ଥର ଲଙ୍କାଦେବୀଙ୍କ ନାମ ଶୁଣିଥିଲା, ନିକଟରେ ଗୋଟିଏ ପ୍ରକାଣ୍ଡ ନଷ୍ଟ ଉଦ୍ୟାନ ଦେଖିଥିଲା, ଦୂରରେ ମିହିନ୍ତାଳ ପର୍ବତ ଦେଖିଥିଲା । ସୁତରାଂ ଅନୁରାଧାପୁରକୁ ରାବଣପୁର ବୋଲି ଭାବିବା ତା' ପକ୍ଷରେ ଅସଙ୍ଗତ ନୁହେଁ । ମୁଁ ବୌଦ୍ଧ ଇତିହାସ ଟିକେ ପଢ଼ିଥିବାରୁ ଏପରି ବିଶ୍ୱାସକୁ ନଷ୍ଟ କରିବାକୁ ବସିଅଛି । ପ୍ରକୃତ ଅନୁରାଧାପୁର କି ଲଙ୍କାପୁର ? ବାରବାର ମନରେ ଏହି ପ୍ରଶ୍ନ ଉଠିଲା । ରାମାୟଣ ସମ୍ବନ୍ଧରେ ଦୁଇ ଚାରି କଥା ଲେଖିବି ବୋଲି ଭାବିଲି । 'ଅଦା ବେପାରୀର ଜାହାଜର ଖବର ।' ଡାୟରୀ ଭିତରେ ରାମାୟଣର ଆଲୋଚ୍‌ନା ବଡ଼ ଅପ୍ରାସଙ୍ଗିକ, ବଡ଼ ଅସଙ୍ଗତ, ଏହା କଦାପି କ୍ଷମାର ଯୋଗ୍ୟ ନୁହେଁ । ଲଙ୍କା ଦେଖା ସରିଲା । ଲଙ୍କାପୁରର ପତନାବସ୍ଥା ଦେଖା ସରିଲା । ଲଙ୍କାରେ ଆଉ କି କାର୍ଯ୍ୟ ? ଅସୁରପୁରରେ ଆଉ କି ପ୍ରୟୋଜନ । ଶୀଘ୍ର ସମୁଦ୍ର ଲଙ୍ଘନ କରି ନର ଓ ବାନରଙ୍କ ଦେଶ ଭାରତକୁ ଫେରିବା, ବାନରପୁର ତ୍ରିଚିନାପଲ୍ଲୀରେ ଉପସ୍ଥିତ ହୋଇ ଶ୍ରୀରାମଙ୍କୁ ବା ଶ୍ରୀରଙ୍ଗମ୍‌ଙ୍କୁ ଦେଖିବା, ଏହା ସ୍ଥିର କରି ପ୍ରତ୍ୟାବର୍ତ୍ତନ ନିମନ୍ତେ ଜିନିଷପତ୍ର ସଜାଡ଼ିଲି । କାଳବିଳମ୍ବ ନ କରି ଯଥା ସମୟରେ ଯାତ୍ରା କଲି ।

ଏ ଦେଶର କଥା ନେଇ ଆଉ ଦୁଇ ଚାରି ପୃଷ୍ଠା ଡାୟରୀ ଲେଖି ପ୍ରବନ୍ଧର କଳେବର ବଢ଼ାଇବାକୁ ମନ ବଳୁ ନାହିଁ, ଏଣୁ ପାଠକମାନଙ୍କଠାରୁ ବିଦାୟ ଗ୍ରହଣ କଲି । ତ୍ରୁଟିଥିଲେ ସୁହୃଦୟ ପାଠକଗଣ କ୍ଷମା ଦେବେ ।

●

# ତାଳଚେର ଭ୍ରମଣ

ଜୁଲାଇ ୯ ତାରିଖ ତାଳଚେର ପଟ୍ଟାୟତ ଆୟୁଷ୍ମାନ୍ ପ୍ରମୋଦପ୍ରସାଦଙ୍କ ବିବାହ । ଆଷାଢ଼ମାସ, ବର୍ଷା ଦିନ, ବିବାହ ନିର୍ବିଘ୍ନରେ ସମାପନ ହୋଇପାରିବ କି ନାହିଁ ବୋଲି ସମସ୍ତେ ଚିନ୍ତିତ ଥିଲେ । ୮ ତାରିଖରେ ବାରାତ ୯ ତାରିଖରେ ବିବାହ ନିର୍ବିଘ୍ନରେ ସମାପନ ହେଲା । ୧୧ ତାରିଖ ସକାଳେ କନ୍ୟାବିଦାୟ । ତାଳଚେର ରାଜାଙ୍କ ଅନୁରୋଧକ୍ରମେ ତାଙ୍କ ସହିତ ତାଳଚେର ଯାତ୍ରା କରିବାର ଥିଲା । ମାତ୍ର କୌଣସି ପ୍ରତିବନ୍ଧକହେତୁ ମୋର ଯିବାର ହେଲା ନାହିଁ ଏବଂ ସଙ୍ଗେ ସଙ୍ଗେ ରାଜଅତିଥି ଡାକ୍ତର ଆନନ୍ଦମୋହନ ବସୁଙ୍କୁ ମଧ ମୋ ସଙ୍ଗରେ ରହିବାକୁ ପଡ଼ିଲା । ଆମ୍ଭ ଦୁଇ ଜଣ ପରେ ଯିବାର ସ୍ଥିର ହେଲା । ଆମ୍ଭେମାନେ କନ୍ୟାବିଦାୟଜନିତ ଶୋକାଶ୍ରୁ ତ୍ୟାଗ କଲାବେଳେ ଇନ୍ଦ୍ରଦେବ ଟୋପାଏ ଟୋପାଏ ଆନନ୍ଦାଶ୍ରୁ ତ୍ୟାଗ କରିବାକୁ ଲାଗିଲେ । ତାଙ୍କର ଆନନ୍ଦାଶ୍ରୁ ଏତେ ପଡ଼ିବାକୁ ଲାଗିଲା ଯେ, ଆମ୍ଭେମାନେ ମନେ କଲୁଁ, ତାଳଚେର ରାଜାଙ୍କ ମଟରଯାନ ନିରାପଦରେ ନଦୀ ନାଳ ଡେଇଁ ତାଳଚେରରେ ପହଞ୍ଚି ପାରିବ ନାହିଁ । ବସ୍ତୁତଃ ତାହାହିଁ ଘଟିଲା; ଚାରିଖଣ୍ଡ ମଟର ସେଦିନ ତାଳଚେରରେ ପହଞ୍ଚିଲା, ଅନ୍ୟଗୁଡ଼ିକ ରାସ୍ତାର ନାନା ସ୍ଥାନରେ ଅଟକି ରହିଲେ ।

ଆମ୍ଭେମାନେ ୧୨ ତାରିଖ ସକାଳେ ପ୍ରସ୍ଥାନ କରି ସନ୍ଧ୍ୟାରେ ତାଳଚେରଠାରେ ନବଦମ୍ପତିଙ୍କର ଗୃହପ୍ରବେଶ ଉତ୍ସବ ଦେଖିବାର ସ୍ଥିର କଲୁଁ । ମାତ୍ର ରାତ୍ରରେ ପ୍ରବଳ ବୃଷ୍ଟି ହେଲା । ବୃଷ୍ଟି ଦେଖି ଆନନ୍ଦବାବୁ ମନେ କଲେ, ଆଉ ତାଳଚେର ଯିବାର ଉପାୟ ନାହିଁ, ରେଲପଥରେ କଟକ ଯିବାକୁ ହେବ । ୧୨ ତାରିଖ ସକାଳେ ବର୍ଷା ଛାଡ଼ିଲା— ଉପରଓଳି ଦୁଇଟାବେଳେ ଆମ୍ଭେମାନେ ବାହାରିଲୁଁ । ଦେବଗଡ଼ ଛାଡ଼ି ୭।୮ ମାଇଲ ବାଟ ଯିବା ଉତ୍ତାରୁ ବୃଷ୍ଟି ହେବାକୁ ଆରମ୍ଭ କଲା । ପ୍ରବଳ ବୃଷ୍ଟି । ଗୋହିରା ନଦୀରେ ପାରି ହେବା ନିମନ୍ତେ ଚାପ ନ ଥିଲା । ଚାପ ବନ୍ଦୋବସ୍ତ କରି ନଦୀ ପାରି ହେଲାବେଳକୁ ପ୍ରାୟ ରାତ୍ର ୧୦ ଘଣ୍ଟା । ଗୋଗୁଆ ଗ୍ରାମରେ ରାତ୍ର ଅତିବାହିତ କରିବାକୁ କେତେଜଣଙ୍କର ଇଚ୍ଛା ହେଲା । ମୁଁ ଭାବିଲି, 'ଶନୈଃ ପନ୍ଥା' କିଛି ବାଟ ଚାଲିବା ଭଲ । ଏଣୁ ନଣ୍ଡକୂଳଯାଏ ଯିବାର ସ୍ଥିର କଲୁଁ । ତାଳଚେରରେ ରୋଶର୍ଣି ହେଲାବେଳେ ଆମ୍ଭେମାନେ ଓଦାଲୁଗା ପିନ୍ଧି ଥରି ଥରି ଓ କ୍ଷୁଧାରେ କ୍ଳାନ୍ତ ହୋଇ ନଣ୍ଡକୂଳ ଗ୍ରାମରେ ପହଞ୍ଚିଲୁଁ । ରନ୍ଧନ କରାଇବାର ବେଳ ନ ଥିଲା, ଏଣୁ ସାମାନ୍ୟ ଜଳଯୋଗ କରି ନିଦ୍ରାଦେବୀଙ୍କର ଆଶ୍ରୟ ନେଲୁ । ଆମ୍ଭମାନଙ୍କୁ ବାଟରେ କଷ୍ଟ ଦେବାକୁ ବୋଧହୁଏ ବର୍ଷାର ଆଟୋପ । ଆମ୍ଭେମାନେ ନଣ୍ଡକୂଳ ଛାଡ଼ିଲୁଁ, ମେଘ ମଧ ଛାଡ଼ିଲା । ନିରାପଦରେ ୧୩ ତାରିଖ ସକାଳ ପ୍ରାୟ ୧୦ ଘଣ୍ଟା ବେଳେ ତାଳଚେରରେ ପହଞ୍ଚିଲୁଁ ।

ଆଠ ଦିନ ଉତ୍ସବ ହେବାର ପ୍ରୋଗ୍ରାମ । ଗୋଟାଏ ଦିନ ମାତ୍ର ହରାଇଲୁଁ, ଏଥିରେ ଦୁଃଖ କ'ଣ ?

କହନ୍ତି, ବହୁ ସୁକୃତ ଥିଲେ ରାଜଦର୍ଶନ ମିଳେ । ଜଣେ ରାଜା ନୁହନ୍ତି । ଢେଙ୍କାନାଳ, ହିନ୍ଦୋଳ, ପାଲଲହଡ଼ା, କନିକା, ପାରିକୁଦ, ବରଗଡ଼ ରାଜାମାନଙ୍କର ଦର୍ଶନ ମିଳିଲା । ଏତେ ଜଣ ରାଜାଙ୍କୁ ଏକତ୍ର ଦେଖିବା କମ ଭାଗ୍ୟର କଥା ନୁହେଁ ।

ଢେଙ୍କାନାଳ ରାଜା ତାଙ୍କର ଛଉନାଟ ଦଳକ ସଙ୍ଗରେ ନେଇ ଆସିଥିଲେ । ୧୩ ତାରିଖ ରାତ୍ରରେ ଛଉନାଟ ହେଲା । ବାମଣ୍ଡାରେ ପୂର୍ବେ ଛଉନାଟ ହେଉଥିଲା । ମାତ୍ର ଢେଙ୍କାନାଳର ଛଉନାଟର ଧରଣ ଓ ବାଦ୍ୟ ଭିନ୍ନ ପ୍ରକାର । ପୂର୍ବ ଛଉନାଟ ଅପେକ୍ଷା ଅନେକ ଭଲ । ହାତ ଓ ଗୋଡ଼ର ତାଳ-ଅନେକ ଗୁଡ଼ିଏ ଲୋକ ଏକସଙ୍ଗରେ ମିଳାଇ ନାଚିବା ସୁଶିକ୍ଷାର ପରିଚାୟକ । ମହାଭାରତ ଓ ପୁରାଣର ବିଷୟ ଏହି ଛଉନାଟରେ ଦେଖା ହୋଇଥିଲା । ବାକ୍ୟବିହୀନ ଅଭିନୟ ଚିତ୍ତାକର୍ଷକ ସନ୍ଦେହ ନାହିଁ । ଢେଙ୍କାନାଳରେ ଏହି ନାଟ ସ୍ୱର୍ଗୀୟ ରାଜାଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଅଳ୍ପଦିନ ମଧ୍ୟରେ ଯଥେଷ୍ଟ ଉନ୍ନତିଲାଭ କରିଅଛି, ସନ୍ଦେହ ନାହିଁ । ସିଂହଭୂମି ଓ ମୟୂରଭଞ୍ଜ ଛଉନାଟର ଜନ୍ମସ୍ଥଳ । ବୋଧହୁଏ ଉକ୍ତ ଦୁଇ ସ୍ଥାନରେ ଏତାଦୃଶ ନାଟ ଏବେ ହେଉଥିବ । ଛଉନାଟ ଏକରାତ୍ର ମାତ୍ର ହୋଇଥିଲା । କଟକୀ ସଙ୍ଗୀତ, ନାଟ, ତାଳଚେର, ଅନୁଗୋଳ ଓ ଢେଙ୍କାନାଳର ସଙ୍ଗୀତ ଓ ଲୀଳା

ନାଟ ଦିନାକେତେ ଚାଲିଲା । ଆତସବାଜି, ବାୟସ୍କୋପ, ଘୋଡ଼ାଦଉଡ଼, ପୋଲୋ ଖେଳ ପ୍ରଭୃତି ପ୍ରୋଗ୍ରାମ ଅନୁସାରେ ଦିନାକେତେ ଚାଲିଲା । ଉତ୍ସବ ମଧ୍ୟରେ ପୁରୀନିବାସୀ ମୋହନ ଗୋସ୍ୱାମୀଙ୍କର ଥିଏଟର । ତାଳଚେର ରଙ୍ଗମଞ୍ଚରେ ଚାରି ଗୋଟି ନାଟକ ଅଭିନୀତ ହୋଇଥିଲା । ମୋହନ ଗୋସ୍ୱାମୀଙ୍କୁ ବୋଧହୁଏ ଅନେକେ ଜାଣନ୍ତି । ଅନ୍ତତଃ ଯେଉଁମାନଙ୍କର ଗ୍ରାମଫୋନ ଅଛି, ସେମାନେ ଏହାଙ୍କୁ ନିଶ୍ଚୟ ଜାଣନ୍ତି । ଏ ଜଣେ ଉଚ୍ଚଦରର ଗାୟକ । ତାଙ୍କର ଅଭିନୟ ମଧ୍ୟ ତଦ୍ରୂପ । କେତେଗୁଡ଼ିଏ ଅଳ୍ପବୟସ୍କ ଅଶିକ୍ଷିତ ବାଳକ ନେଇ ଏତେ ସୁନ୍ଦର ଅଭିନୟ ଦେଖାଇବା ଗୋସ୍ୱାମୀଙ୍କର ଦକ୍ଷତାର ପରିଚାୟକ । ନାମରୁ କୃଷ୍ଣରସବିନୋଦୀ ବୋଲି ଅନୁମାନ କରାଯାଇପାରେ । ଏହାଙ୍କର ଅଭିନୟରେ କୃଷ୍ଣରସ ଭିନ୍ନ କିଛି ନାହିଁ— ବାଲ୍ୟଲୀଳା, ବୃନ୍ଦାବନ ଲୀଳା, ଗୀତଗୋବିନ୍ଦ, ବିଦଗ୍ଧମାଧବ । ଆଦିରସ ଘଡ଼ା ଘଡ଼ା, ଅନ୍ୟ ରସ ବହୁତ ଥୋଡ଼ା । ମାତ୍ର ଅଶ୍ଳୀଳ ଓ ରୁଚିବିକାର ନାହିଁ ବୋଇଲେ ଚଳେ । ସାଜସଜ୍ଜାରେ ଓ ସିନ୍ ସଜାଇବାରେ ଗୋସ୍ୱାମୀଙ୍କର କିଛି ବିଶେଷତ୍ୱ ଅଛି । ତାଙ୍କରି ନିଜ ରଚିତ କେତେକ ସଙ୍ଗୀତ ଛଡ଼ା ଅଧିକାଂଶ ଉତ୍କଳୀୟ ଲବ୍ଧପ୍ରତିଷ୍ଠ କବିମାନଙ୍କ ରଚିତ ସଙ୍ଗୀତ ପ୍ରତ୍ୟେକ ନାଟକରେ ଯଥେଷ୍ଟ ରଖିଅଛନ୍ତି ।

ଏହିସବୁ ଉତ୍ସବ ଛଡ଼ା ବ୍ରାହ୍ମଣୀ ନଦୀର ତାଣ୍ଡବ ଦୃଷ୍ଟିଗୋଚର ହେଉଥାଏ । ଏହି ତାଣ୍ଡବ କଟକ ଅଞ୍ଚଳର ସହସ୍ର ସହସ୍ର ପ୍ରାଣୀଙ୍କର ଆତଙ୍କ ଉପସ୍ଥିତ କଲା ଏବଂ ଘର ବାଡ଼ି ଭସାଇ ଗ୍ରାମମାନଙ୍କୁ ଶ୍ମଶାନରେ ପରିଣତ କଲା, ବହୁସଂଖ୍ୟକ ପ୍ରାଣୀନାଶ କଲା ।

୨୬ ତାରିଖ ସନ୍ଧ୍ୟାରେ ପ୍ରମୋଦପ୍ରସାଦ କ୍ଲବ୍‌ର ମେମ୍ବରମାନେ ପଟ୍ଟାୟତଙ୍କୁ ଅଭିନନ୍ଦନପତ୍ର ଦେବାର ସ୍ଥିର କରିଥିଲେ ଏବଂ ଏହି ସଭାରେ କିଛି କହିବାକୁ ମୋତେ ଅନୁରୋଧ କରିଥିଲେ । ସନ୍ଧ୍ୟା ସାତ ଘଣ୍ଟାରେ ସଭା ହେବାର ସ୍ଥିର ହୋଇଥିଲା । ଠିକ୍ ସୂର୍ଯ୍ୟାସ୍ତ ବେଳେ ତାଳଚେର ଯୁବରାଜଙ୍କ ତୃତୀୟ କୁମାର ଜନ୍ମଗ୍ରହଣ କଲେ । ଆମ୍ଭେମାନେ ଘଣ୍ଟାଏ ଦୁଇଘଣ୍ଟାକାଳ ଏହି ଉତ୍ସବରେ ମତ୍ତ ଥିଲୁଁ । ସଭାର କଥା ମନେ ନ ଥିଲା । ଡାକ ପଡ଼ିଲା, ସଭାରେ ଉପସ୍ଥିତ ହେଲୁଁ । ସଭାରେ ମୁଁ କ'ଣ କହିବି, ତହିଁର ଚିନ୍ତା ମଧ୍ୟ ଥରେ କରିପାରି ନ ଥିଲି ।

ସଭାରେ ରାଜା, ଯୁବରାଜ, ପଟ୍ଟାୟତ ଏବଂ ଭଦ୍ରବ୍ୟକ୍ତିମାନେ ଉପସ୍ଥିତ ଥିଲେ । ଅଭିନନ୍ଦନପତ୍ର ତାଳଚେରରେ ମୁଦ୍ରିତ । ଅଭିନନ୍ଦନପତ୍ରର ଆଧାର (କ୍ୟାସ୍‌କେଟ) ମଧ୍ୟ ତାଳଚେର କାରିଗରଙ୍କଦ୍ୱାରା ନିର୍ମିତ । ହାତୀଦାନ୍ତ ନିର୍ମିତ ଚାରି ଗୋଟି ସଙ୍ଗିନଲଗା ବନ୍ଧୁକ ଉପରେ ରୌପ୍ୟ ନିର୍ମିତ କ୍ୟାସ୍‌କେଟଟି ଲମ୍ବଭାବରେ ରଖା ହୋଇଥିଲା । ନିର୍ମାଣ କୌଶଳରେ କାରିଗର ନିଜର ଶିଳ୍ପନୈପୁଣ୍ୟର ଯଥେଷ୍ଟ ପରିଚୟ ଦେଇଥିଲା ।

ଅଭିନନ୍ଦନପତ୍ର ପଠିତ ହେଲା ପରେ ମୋର ବକ୍ତବ୍ୟର ପାଳି ଆସିଲା । ଦଣ୍ଡାୟମାନ ହେଲି । ନବଦମ୍ପତିଙ୍କୁ ଓ ନବଜାତ କୁମାରଙ୍କୁ ଶୁଭାଶୀର୍ବାଦ ଦେଲାପରେ ସମ୍ମୁଖରେ ତାଳଚେର ରାଜାଙ୍କୁ ଦେଖି ତାଙ୍କର ଆତ୍ମନିର୍ଭରଶୀଳତା ଓ ଅଧ୍ୟବସାୟର ଫଳସ୍ୱରୂପ ଅଧୁନା ତାଳଚେରର ଉନ୍ନତି ଓ ପୁତ୍ର ଦୁହିତାଙ୍କର ସୁଶିକ୍ଷା ଓ ତାଳଚେରର ଉଜ୍ଜ୍ୱଳ ଭବିଷ୍ୟତ୍ ଇତ୍ୟାଦି କଥା ମନେ ହେଲା ଏବଂ ତାହା ସଂକ୍ଷେପରେ ବ୍ୟକ୍ତ କଲା ପରେ ହଠାତ୍ ମନେ ପଡ଼ିଗଲା ଯେ, ତାଳଚେର ଯୁବରାଜ୍ ଓ ତାଳଚେର ପଟ୍ଟାୟତ ମଦ୍ୟ ଓ ମାଦକଦ୍ରବ୍ୟର ବିଦ୍ୱେଷୀ ମୋ ପକ୍ଷରେ ଏଥିରୁ ବଳି ସୁଖର କଥା ଆଉ କିଛି ନାହିଁ । ଏଣୁ ସେମାନଙ୍କର ଏହି ଗୁଣ ନିମନ୍ତେ ପ୍ରକୃତି ପ୍ରଶଂସା କରିବାକୁ ହେଲା ଏବଂ ସଙ୍ଗେ ସଙ୍ଗେ ଧୂମପାନ ଅର୍ଥାତ୍ ସିଗାରେଟ୍, ସିଗାର, ଚୁରୁଟ, ଗୁଡ଼ାଖୁ ପ୍ରଭୃତି ପାନରୁ ବିରତ ହୋଇ ସମବୟସ୍କ ରାଜା, ଯୁବରାଜ ଓ ଭଦ୍ରସନ୍ତାନମାନଙ୍କର ଆଦର୍ଶ ସ୍ଥଳ ହେବାକୁ ଅନୁରୋଧ କଲି । ଏ ତୁଚ୍ଛ କୁଅଭ୍ୟାସକୁ ତ୍ୟାଗ କରିବାକୁ କିଏ ଅନିଚ୍ଛୁକ ହେବେ କାହିଁକି ? ସମ୍ମୁଖରେ କେତେଗୁଡ଼ିଏ ଉଜ୍ଜ୍ୱଳମୁଖ ଯୁବକଙ୍କୁ ଦେଖି ହଠାତ୍ ମନେ ପଡ଼ିଗଲା ଭାରବିଙ୍କ ଗୋଟିଏ ଶ୍ଳୋକ—

'ସ କିଂ ସଖା ସାଧୁନ ଶାସ୍ତି ଯୋଧିପଂ
ହିତାନ୍ନ ଯଃ ସଂଶୃଣୁତେ ସ କିଂ ପ୍ରଭୁଃ ।'

ଯେଉଁ ବ୍ୟକ୍ତି ରାଜାଙ୍କୁ ଶାସନ ଭଳି ଯୋଗ୍ୟତା ଉପାର୍ଜନ କରି ନାହିଁ, ସେ ରାଜାଙ୍କର ସଖା ହେବାର ଉପଯୁକ୍ତ ନୁହେଁ, ଯେ ହିତବାକ୍ୟ ନ ଶୁଣନ୍ତି ସେ କି ପ୍ରଭୁ । ଏପରି ରାଜନୀତିଗର୍ଭକ ଓ ନୀତିମୂଳକ ଉପଦେଶ ଅନ୍ୟ ଶାସ୍ତ୍ରରେ ବିରଳ । ଏକ ସମୟରେ ଭାରତବର୍ଷରେ ଏପ୍ରକାର ରାଜସଖା ଓ ଏପ୍ରକାର ପ୍ରଭୁ ଥିଲେ ବୋଲି କବିମୁଖରୁ ଏତାଦୃଶ ଉଚ୍ଚଭାବର ଶ୍ଳୋକ ନିଃସୃତ ହୋଇଥିଲା । ଅଧୁନା କାଳରେ

ଅନେକ ପ୍ରଭୁ ନିଜ ଅପେକ୍ଷା ସୁଶିକ୍ଷିତ ସଖା ରଖିବା ବିପଜ୍ଜନକ ବୋଲି ମନେ କରନ୍ତି । ଅନେକ ରାଜା ନିଜର ପ୍ରଜାଙ୍କୁ ସୁଶିକ୍ଷିତ କରିବାକୁ ମଧ ଶଙ୍କାକୁଳ । ଯାହାହେଉ ପ୍ରଜାମାନେ ଉକ୍ତ ନୀତି ଅନୁସରଣ କରି ସୁଶିକ୍ଷିତ ହେବାକୁ ଓ ସୁଚରିତ୍ର ଗଠନ କରିବାକୁ ଚେଷ୍ଟା କରିବା ଉଚିତ— ଇତି ଗଳଗର୍ଜନ।

ଏଥି ଉତ୍ତାରୁ Flash light ଫଟୋଗ୍ରାଫ୍ କଟକର କୁଦୁସ ମିଆଁ ତୋଳିଲେ । ସଭାଭଙ୍ଗ ହେଲା, ସମସ୍ତେ ସ୍ୱଗୃହକୁ ପ୍ରସ୍ଥାନ କଲେ ।

ଭୋଜନାନ୍ତେ ସ୍ୱକକ୍ଷରେ ପ୍ରବେଶ କରି ବିଦ୍ୟୁତାଲୋକ ନିର୍ବାପିତ କରି ଶଯ୍ୟାର ଆଶ୍ରୟ ନେଲି ସତ, ମାତ୍ର ନିଦ୍ରାର ଭେଟ ନାହିଁ। ସନ୍ଧ୍ୟାର ବକ୍ତୃତାର ବିଷୟ ମସ୍ତିଷ୍କକୁ ବିଚଳିତ କରିଥିଲା। ମନରେ ନାନାପ୍ରକାର ଅସଂଲଗ୍ନ ଚିନ୍ତାର ଉଦୟ ହେଲା । ଆମ୍ଭେମାନେ ଗଡ଼ଜାତବାସୀ । ରାଜ୍ୟରେ ଜଣେ ରାଜା-ରାଜଭ୍ରାତା ହେଉନ୍ତୁ, ରାଜଜ୍ଞାତି ହେଉନ୍ତୁ, ରାଜ୍ୟର ଅନ୍ୟ ସମସ୍ତେ ପ୍ରଜା । ରାଜାଙ୍କ ମଙ୍ଗଳରେ ରାଜ୍ୟର, ତଥା ପ୍ରଜାର ମଙ୍ଗଳ । ରାଜା ସୁଶିକ୍ଷିତ ଓ ସୁନୀତିପରାୟଣ ହେଲେ ପ୍ରଜାମାନେ ମଧ ସୁଶିକ୍ଷିତ ହେବେ ଓ ରାଜାଙ୍କଠାରୁ ସୁଶାସନର ଫଳ ପାଇବାର ଆଶା କରିପାରିବେ। ପ୍ରଜାର ଏକମାତ୍ର ପ୍ରାର୍ଥନା 'ରାଜ୍ଞଃ ପ୍ରଜାନାଂ ଶାନ୍ତିର୍ଭବତୁ'; ସକାଳୁ ଉଠି ପ୍ରଜା ଏହି କାମନାକରେ । ଏହି ଶାନ୍ତି ମିଳିବ କିପରି ? ରାଜା ଶିକ୍ଷିତ ଓ ନୀତିପରାୟଣ ହେଲେ ଓ ସୁଶାସକ ହେଲେ । ରାଜା ନୀତିଭ୍ରଷ୍ଟ ହେଲେ, ମଦ୍ୟପ ହେଲେ, ବ୍ୟସନାସକ୍ତ ହେଲେ, ବିଳାସୀ ହେଲେ ଏବଂ ଅର୍ଥଲୋଭୀ ହେଲେ ପ୍ରଜାର ଶାନ୍ତି ଆଶା ସୁଦୂରପରାହତ । ରାଜା ପରା ପ୍ରଜାର ଦର୍ପଣ ।

ସେକ୍ସପିୟର କହିଅଛନ୍ତି:— .

For princes are the glass,
the school, the book.
Where subject's eyes do learn,
do read, do look.

ଯେଉଁ ବ୍ୟକ୍ତି ଲକ୍ଷ ଲକ୍ଷ ପ୍ରାଣୀଙ୍କ ଉପରେ ଆଧିପତ୍ୟ କରିବେ, ଯାହାଙ୍କର ମୁଖାପେକ୍ଷୀ ହୋଇ ଲକ୍ଷ ଲକ୍ଷ ପ୍ରାଣୀ ସୁଖ ଆଶା ପୋଷଣ କରନ୍ତି, ସେହି ବ୍ୟକ୍ତି ନିଜ ଚରିତ୍ରକୁ କଳଙ୍କଶୂନ୍ୟ କରିବାକୁ ଚେଷ୍ଟା କରିବା, ଜଘନ୍ୟ ଅଭ୍ୟାସ ସବୁ ତ୍ୟାଗ କରିବା ଉଚିତ ନୁହେଁ କି ? ମାତ୍ର କେତେଜଣ ରାଜା ଏଥି ନିମନ୍ତେ ଚିନ୍ତାକୁଳ ?

ଉତ୍କଳ ଦେଶର ଦୁର୍ଭାଗ୍ୟ ଯେ, ଅଳ୍ପକାଳ ମଧରେ କେତେଗୁଡ଼ିଏ ରାଜା ଅଳ୍ପ ବୟସରେ ଇହଧାମ ତ୍ୟାଗ କରିଅଛନ୍ତି । ଅଧିକାଂଶ ସ୍ଥଳରେ ଦେଖାଯିବ ସେ ସଂଯମ ଅଭାବରୁ ଏହି ଅକାଳବିୟୋଗ ଘଟିଅଛି । ନିରୁଗ୍‌ଣତା ଓ ଦୀର୍ଘଜୀବନ ମନୁଷ୍ୟଜନ୍ମର ପରମ ଲାଭ । ଅସଂଯମ ଓ ଅତ୍ୟାଚାରଦ୍ୱାରା ଆୟୁଷ କ୍ଷୟ କରିବା ଆତ୍ମହତ୍ୟା ପରି ମହାପାପ । ମାତ୍ର ଆଧୁନିକ ଯୁବକମାନେ ମଦ୍ୟପାନ, ଧୂମପାନ, ଅମିତାଚାର ଓ ସମୟର ଅପବ୍ୟବହାରଦ୍ୱାରା ଆତ୍ମହତ୍ୟାର ଚେଷ୍ଟା କରୁଅଛନ୍ତି, ଏହାଠାରୁ ବଳି ଦୁଃଖର କଥା କ'ଣ ଅଛି ?

ପ୍ରଜା ରାଜାଙ୍କର ଅନୁକରଣ କରେ ଏବଂ ରାଜାଙ୍କର ଅନୁକରଣ କରିବାକୁ କୁଣ୍ଠିତ ହୁଏ ନାହିଁ, ମାତ୍ର ରାଜା ପ୍ରଜାର ଅନୁକରଣ କରିବାକୁ ଘୃଣା ଓ କୁଣ୍ଠାବୋଧ କରନ୍ତି । ରାଜା ରାଜାର ଅନୁକରଣ କରିବା ନିମନ୍ତେ ଯେତେ ଆଗ୍ରହାନ୍ୱିତ ହୋଇପାରନ୍ତି, ପ୍ରଜାର ଶତ ସହସ୍ର ସଦ୍‌ଗୁଣ ଥିଲେ ମଧ ତାହା ଅନୁକରଣ କରିବାକୁ ଲଜ୍ଜାବୋଧ କରିବେ । ଏଣୁ ରାଜାମାନେ ପରବର୍ତ୍ତୀ ରାଜାମାନଙ୍କର ଆଦର୍ଶ ହେବାକୁ ଚେଷ୍ଟା କରିବା ଉଚିତ ନୁହେଁ କି ? ଏଥି ନିମନ୍ତେ ଟିକିଏ ସ୍ୱାର୍ଥତ୍ୟାଗୀ ହେବା ପ୍ରୟୋଜନ।

ତାଳଚେର ରାଜାଙ୍କ ପାଠ୍ୟାବସ୍ଥା କଥା ସ୍ମରଣ ହେଲା । ସଙ୍ଗେ ସଙ୍ଗେ ତାଙ୍କ ଶିକ୍ଷକ ସାଧୁବାବୁଙ୍କ ସ୍ପଷ୍ଟବାଦିତା ଓ ନିର୍ଭୀକତା କଥା ସ୍ମରଣ ହେଲା । ଏକ ଦଳ ଭଦ୍ରବ୍ୟକ୍ତି ନାବାଳକ ରାଜାମାନେ ବେଶ୍ୟାଦ୍ୱାରା ଅଭିନୀତ ଥିଏଟର ଦେଖିବା ଯୁକ୍ତିଯୁକ୍ତ ବିବେଚନାରେ ମତଦେବା ବେଳେ ସାଧୁବାବୁ ତୀବ୍ର ପ୍ରତିବାଦ ଉତ୍‌ଥାନ କରିଥିଲେ । ସାଧୁବାବୁଙ୍କର ବିପକ୍ଷ ଦଳ ପ୍ରତିପତ୍ତିଶାଳୀ, ଏଥିରେ ସନ୍ଦେହ ନାହିଁ, ମାତ୍ର ସେମାନଙ୍କ ପ୍ରତିଦ୍ୱନ୍ଦ୍ୱିତାରେ ସାଧୁବାବୁ ଯେଉଁ ନିର୍ଭୀକତାର ପରିଚୟ ଦେଇଥିଲେ, ତାହା ଚିରପ୍ରଶଂସାଯୋଗ୍ୟ । ଏପ୍ରକାର ଶିକ୍ଷକ କମ୍ ଲୋକଙ୍କ ଭାଗ୍ୟରେ ମିଳେ ।

ତାଳଚେର ରାଜାଙ୍କର ସହପାଠୀ ଓ ସମବୟସ୍କ ଜଣ କେତେ ରାଜା ଇହଧାମ ତ୍ୟାଗ କରିଅଛନ୍ତି । ସେମାନଙ୍କର ଜୀବନରହସ୍ୟ ଭାବିଲେ ହୃଦୟ ବିଦୀର୍ଣ୍ଣ ହୁଏ । ଯୁବକାବସ୍ଥାରେ ମରଣକୁ ବରଣ କରିବାକୁ ସେମାନଙ୍କର ଜନ୍ମ । ତାଳଚେର ରାଜା ଯେଉଁ ଶିକ୍ଷାଲାଭ କରି ଓ ଯେଉଁ

ଆଦର୍ଶର ଅନୁସରଣରେ ନିଜ ଜୀବନକୁ ଗଢ଼ିବାକୁ ଚେଷ୍ଟା କଲେ ଏବଂ ଆତ୍ମୋନ୍ନତି ଓ ଦେଶର ଉନ୍ନତି କରିବାକୁ ସମର୍ଥ ହୋଇଅଛନ୍ତି, ତାହା ଯେ ତାଙ୍କର ସହପାଠୀ ରାଜାଙ୍କୁ ମିଳି ନ ଥିଲା, ତାହା ନୁହେଁ, ମାତ୍ର ସେମାନେ ତାହା ନିଜର ଚରିତ୍ରଦୋଷ ହେତୁରୁ ଗ୍ରହଣ କରି ପାରିଲେ ନାହିଁ, ଜୀବନର କାର୍ଯ୍ୟରେ ଲଗାଇ ପାରିଲେ ନାହିଁ ।

ଜୀବନବ୍ୟାପୀ ଏହି ଚିନ୍ତା— ରାଜାମାନଙ୍କର ମଙ୍ଗଳ ହେଉ, ରାଜାମାନେ ଚରିତ୍ରବାନ୍, ହେଉନ୍ତୁ—ପ୍ରଜାର ସୁଖସ୍ୱାଚ୍ଛନ୍ଦ୍ୟ ବୃଦ୍ଧି କରନ୍ତୁ, ଦେଶର ମୁଖ ଉଜ୍ଜ୍ୱଳ କରନ୍ତୁ । ଥରେ ଥରେ ମନେ ହୁଏ, ଏ ଅରଣ୍ୟରୋଦନ କିଏ ଶୁଣିବ । ଶୁଣାଇ କାନ୍ଦିବାର ତ ଶକ୍ତି ନାହିଁ।

ରାଜାମାନଙ୍କ ଶାସନ ପ୍ରଣାଳୀର ସମାଲୋଚନା ବା ସେମାନଙ୍କ ଦୋଷ ଗୁଣ ଆଲୋଚନା, ନିନ୍ଦାବାଦ ଓ ପ୍ରଶଂସା ଏ ଲେଖାର ଉଦ୍ଦେଶ୍ୟ ନୁହେଁ । ଚିନ୍ତାସ୍ରୋତ ଅବିରାମ ଚାଲିଅଛି । ଭୂତ ଭବିଷ୍ୟତ୍ ବର୍ତ୍ତମାନ ଚିନ୍ତାଶୂନ୍ୟ ଓ ଦୁଃଖଶୂନ୍ୟ ନୁହେଁ । ଶ୍ରୀରାମଚନ୍ଦ୍ର ଭଞ୍ଜ, ସୁଢଳଦେବ ପ୍ରଭୃତିଙ୍କ ବିଷୟ ଭାବିଲେ ହୃଦୟ ବିଦୀର୍ଣ୍ଣ ହେଉଅଛି । ବର୍ତ୍ତମାନ ଯୁବକ ରାଜାମାନେ ପୁଣି କେଉଁ ନୀତି ଅବଲମ୍ବନ କରି, କିପରି ନାମ ବା ଦୁର୍ନାମ, ଯଶ ବା ଅପଯଶ ଅର୍ଜିବେ, ଏହି ଚିନ୍ତା ମନକୁ ବିଷଣ୍ଣ କରୁଅଛି । ଦେଶ ଓ କାଳର ଗତି ଦେଖିଲେ ପରବର୍ତ୍ତୀ ରାଜାମାନେ କେଉଁ ପନ୍ଥା ଅବଲମ୍ବନ କରିବେ, କେଉଁ ଆଦର୍ଶ ଗ୍ରହଣ କରିବେ, ତାହା ଭାବି ଭାବି ପ୍ରାଣ ଆକୁଳ ହେଉଅଛି । ଆଦର୍ଶ ହିଁ ଚରିତ୍ର ଗଠନ ନିମନ୍ତେ ପ୍ରଧାନ ଉପାଦାନ । ଯେଉଁ କେତେ ଜଣ ଆଦର୍ଶ ସ୍ଥାନୀୟ ଅଛନ୍ତି, ସେମାନେ ଉଦାସୀନ ।

ଅନେକ ରାଜା ଅଛନ୍ତି, ଯେଉଁମାନେ ରାଜା ପ୍ରଜା ମଧ୍ୟରେ କି ଦାୟିତ୍ୱ ଅଛି, ତାହା ଜାଣନ୍ତି ନାହିଁ, କିମ୍ବା ସେଥିନିମନ୍ତେ ଥରେ ମଥା ଘୂରାନ୍ତି ନାହିଁ । ପୁଣି ରାଜା ଓ ଗଭର୍ଣ୍ଣମେଣ୍ଟଙ୍କ ମଧ୍ୟରେ କି ସର୍ତ୍ତ ଓ କି ଚୁକ୍ତି ଅଛି, ତାହା ମଧ୍ୟ ଦେଖନ୍ତି ନାହିଁ । ତାହା ଅଧ୍ୟୟନ ଓ ହୃଦୟଙ୍ଗମ କରି ରଖିବାର ଚେଷ୍ଟା ପର୍ଯ୍ୟନ୍ତ କରନ୍ତି ନାହିଁ । ବର୍ତ୍ତମାନ ସମୟ ବଡ଼ ବିଷମ, ଏଥିରେ କେଉଁ ଚିନ୍ତାଶୀଳ ବ୍ୟକ୍ତି ଚିନ୍ତିତ ନ ହେବ—ବ୍ୟଥିତ ନ ହେବ ।

ଆଜି ୨୧ ବର୍ଷର କଥା ମନେ ପଡ଼ିଗଲା ୧୯୦୬ ଇଷବୀର କଥା–ଗଡ଼ଜାତର କଥା । ସମ୍ବଲପୁର ଗଡ଼ଜାତ, ଛୋଟନାଗପୁର ରାଜ୍ୟ ଛଡ଼ା ଓ ଓଡ଼ିଶା ଗଡ଼ଜାତର ମୟୂରଭଞ୍ଜ ଓ କେନ୍ଦୁଝର ଛଡ଼ା ଗଡ଼ଜାତର ସମସ୍ତ ରାଜ୍ୟରେ ଓ ଦାକ୍ଷିଣାତ୍ୟର ସମସ୍ତ ରାଜ୍ୟରେ ରାଜଗୃହରେ ପରିବ୍ୱାରୀ ରଖିବାର ପ୍ରଥା ଥିଲା ଏବଂ ଅଦ୍ୟାପି ଅନେକ ରାଜ୍ୟରେ ଏ ପ୍ରଥା ଥିବାର ଅନୁମାନ ହୁଏ । ରାଜଗୃହରେ କାର୍ଯ୍ୟ କରିବେ ବୋଲି ଛୋଟ ଛୋଟ ବାଳିକାମାନଙ୍କୁ ପ୍ରତିପାଳନ କରାଯାଏ । ବାଳିକାଗୁଡ଼ିକ ସଂଗୃହୀତ ହୁଅନ୍ତି କିମ୍ବା ବାଳିକାମାନଙ୍କ ପିତା ବା ଅଭିଭାବକମାନେ ବାଳିକାମାନଙ୍କ ମଙ୍ଗଳ ଇଚ୍ଛାରେ ବା ଧନଲୋଭରେ ରାଜଗୃହରେ ଦେଇଯାନ୍ତି । ଭଲ କଥା । ରାଜା ପାଳନକର୍ତ୍ତା । ବାଳିକାଗୁଡ଼ିକଙ୍କୁ ପାଳନ କରି ବୟସ୍ଥ ହେବା ପରେ ବିବାହ କରିଦେଉଥିଲେ ବିଶେଷ ଧର୍ମ ହେଉଥାନ୍ତା । ବାଳିକାଗୁଡ଼ିକ ଆପଣା ଆପଣା ଅବସ୍ଥା ଅନୁସାରେ ସୁଖ ଶାନ୍ତିରେ ବାସ କରୁଥାନ୍ତେ । ମାତ୍ର ରାଜାମାନେ ତାହା କରନ୍ତି ନାହିଁ । ଥରେ ରାଜନବରର ଦେହଳୀ ମଧ୍ୟକୁ ଯେଉଁ ବାଳିକାର ପାଦ ଗଲା, ସେ ଆଉ ବାହାରକୁ ଆସିବ ନାହିଁ । ସେ ଚିରଜୀବନ ରାଜନବରରେ କଟାଇବ। ଏକ ଏକ ରାଜନବରରେ ଅବିବାହିତା ଅନେକ ବୃଦ୍ଧା, ପ୍ରୌଢ଼ା, ଯୁବତୀ, ବାଳିକା ଓ ଦୁଗ୍ଧପୋଷ୍ୟା ଥାନ୍ତି । ଅଧୁନା ମଧ୍ୟ ଅନେକ ରାଜଗୃହରେ ଏପ୍ରକାର ନାନା ବୟସର ସ୍ତ୍ରୀମାନେ ବାସ କରୁଅଛନ୍ତି । ଯେବେ ଅନ୍ନ ବସ୍ତ୍ର ଏବଂ ଦୁଇ ଚାରିଟା ସ୍ୱର୍ଣ୍ଣ ଓ ରୌପ୍ୟ ଅଳଙ୍କାର ଜୀବନର ଏକମାତ୍ର ସୁଖସାମଗ୍ରୀ, ତେବେ ଏହି ପରିବାରୀଗଣ ମହାସୁଖୀ । ଯେବେ ରାଜା ଓ ରାଜପୁତ୍ରମାନଙ୍କର ସଙ୍ଗଲିପ୍ସା ଏତାଦୃଶ ନାରୀଜନ୍ମର ମୁଖ୍ୟ ଉଦ୍ଦେଶ୍ୟ, ତେବେ ଏହି ସ୍ତ୍ରୀଗୁଡ଼ିକ ପରମ ଚରିତାର୍ଥତା ଲାଭ କରନ୍ତି ଏବଂ ରକ୍ଷକମାନେ ଧର୍ମୋପାର୍ଜନ କରନ୍ତି ସନ୍ଦେହ ନାହିଁ। କିନ୍ତୁ ଯେବେ ଏତାଦୃଶ ଅବରୋଧଦ୍ୱାରା ସେମାନଙ୍କର ମନକଷ୍ଟ ହୁଏ ଏବଂ କାରାଗାରସ୍ଥ କଏଦୀ ଅପେକ୍ଷା ମଧ୍ୟ ସେମାନେ ଏତାଦୃଶ ବାମନ୍ କଷ୍ଟବୋଧ କରନ୍ତି, ତେବେ ଏମାନଙ୍କଠାରୁ ବଳି ଦୁଃଖିନୀ କିଏ ଏବଂ ଏମାନଙ୍କୁ ଚିରଦିନ ପୁରୁଷ ସଙ୍ଗସୁଖରୁ ବଞ୍ଚିତା କରି ରଖିବାଠାରୁ ବଳି ପାପ ଆଉ କ'ଣ ଅଛି ?

ପୂର୍ବପ୍ରଚଳିତ ପ୍ରଥାକୁ କେହି ଦୋଷାବହ ମନେ କରନ୍ତି ନାହିଁ, ସୁତରାଂ ଏ ଜଘନ୍ୟ ରୀତି ଚଳି ଆସୁଅଛି । ତାଳଚେରରେ ଏ ରୀତି ଥିଲା । ତାଳଚେର ରାଜା ଏ କୁପ୍ରଥାର ମନ୍ଦଫଳ କ'ଣ ତାହା ଅନୁଭବ କରିପାରିଥିଲେ । ବିବେକବୁଦ୍ଧିର ଆଶ୍ରୟ ନେଲେ । ରାଜପରିବାରସ୍ଥ ବୃଦ୍ଧ ଓ

ବୃଦ୍ଧା ଗୁରୁଜନମାନଙ୍କ ନିଷେଧ ସତ୍ତ୍ୱେ ୧୯୦୨ ଇଷବୀରେ ଏହି କୁପ୍ରଥାର ମୂଳୋତ୍ପାଟନ କଲେ । ଆଜି ରାଜଗୃହରେ ଅବିବାହିତା ପ୍ରୌଢ଼ା ଓ ଯୁବତୀ ନାହାନ୍ତି । ଏହା କମ୍ ସାହସର କାର୍ଯ୍ୟ ନୁହେଁ । ମୁଁ ଏହାକୁ ଗୋଟିଏ ଅସାଧାରଣ ଘଟନା ବୋଲି ମନେ କରେଁ ଏବଂ ଏଥି ନିମନ୍ତେ ତାଳଚେର ରାଜାଙ୍କୁ ଶତ ଶତ ଆନ୍ତରିକ ଧନ୍ୟବାଦ ଓ ଆଶୀର୍ବାଦ ଦିଏଁ । ଏ ଉଦାହରଣ ଅନ୍ୟାନ୍ୟ ରାଜାମାନେ ଅନୁକରଣ କରିବା ଉଚିତ ନୁହେଁ କି ?

ଆମ୍ଭେମାନେ ରାଜନୀତିଜ୍ଞ ନୋହୁଁ । ଆଧୁନିକ ଯୁଗରେ ରାଜନୀତିର ଆଲୋଚନା କରିବା ବିପଜ୍ଜନକ. । ଏ ସମ୍ବନ୍ଧରେ ଯାହା କିଛି ମନରେ ଉଦିତ ହୁଏ, ତାହା ସଙ୍ଗେ ସଙ୍ଗେ ନିର୍ବାପିତ ହୁଏ । ଜଗତରେ ସମସ୍ତେ ସର୍ବଗୁଣସମ୍ପନ୍ନ ନୁହନ୍ତି। କାହାରି କାହାରିଠାରେ ଏପରି କିଛି ହେଲେ ଗୁଣ ଥାଏ, ଯାହା ଅନ୍ୟର ଅନୁକରଣୀୟ । ରାଜାମାନଙ୍କ ମଧ୍ୟରେ ଜଣକେତେ ଅନୁକରଣଯୋଗ୍ୟ ରାଜା ଅଛନ୍ତି । ଯୁବକ ରାଜାମାନେ ସେମାନଙ୍କ ପନ୍ଥାର ଅନୁସରଣ କରିବା ଉଚିତ ।

କେହି କହିଥିଲେ, 'ଉତ୍କଳେ ରାମଚନ୍ଦ୍ରଃ' ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କୁ ଲକ୍ଷ୍ୟ କରି ଏହି କଥା କହିଥିଲେ । କେତେ ଜଣ ରାଜାଙ୍କ ଭାଗ୍ୟରେ ଏ ପ୍ରଶଂସା ଘଟିବ ଆମ୍ଭେମାନେ କହି ନ ପାରୁଁ । ଏହାଙ୍କ ସହିତ ଘନିଷ୍ଠତା ନ ଥିଲା, ମୁଁ ସ୍ତାବକ ନୁହେଁ; ମାତ୍ର ତାଙ୍କ କାର୍ଯ୍ୟକଳାପର ଆଲୋଚନା କଲେ ଏବଂ ତାଙ୍କର ଉଦାର ନୀତି ଦେଖିବାକୁ ଗଲେ ମନେ ହୁଏ 'ଉତ୍କଳେ ରାମଚନ୍ଦ୍ରଃ' ଏ ବାକ୍ୟଟି ସତ୍ୟ।

ସୁଢଳଦେବଙ୍କ ଶିଷ୍ୟ, ତାଙ୍କରି ପଦାଙ୍କ ଅନୁସରଣ କରି ଏବଂ ତାଙ୍କରି ପାଦମୂଳରେ ବସି ନିଜ ଜୀବନ ଗଠନ କରିଅଛି, ସୁତରାଂ ରାଜନୀତି ଆଲୋଚନାରେ ତାଙ୍କ ନାମ ନ ପକାଇବା ମୋ ପକ୍ଷରେ ଦୋଷାବହ ମନେ କରେଁ । ନବୀନ ରାଜାମାନଙ୍କ ପକ୍ଷରେ ଏତାଦୃଶ ଜୀବନ୍ତ ଆଦର୍ଶ ବିରଳ । ସେ ଅଳ୍ପ ଦିନ ହେଲା ଜୀବନଲୀଳା ସାଙ୍ଗ କରିଅଛନ୍ତି । ତାଙ୍କର ରୂପ, ଚାଲିଚଳନ, ଉଦାରତା, ସୌଜନ୍ୟ ପ୍ରଭୃତି ଗୁଣାବଳୀ ଅଦ୍ୟାପି ଉତ୍କଳର ଲବ୍ଧପ୍ରତିଷ୍ଠ ବହୁ ବ୍ୟକ୍ତିଙ୍କ ହୃଦୟରେ ଅଙ୍କିତ ରହିଅଛି । ନବୀନ ରାଜାମାନେ ଲୋକମୁଖରୁ ତାହା ଶୁଣିବାକୁ ଉତ୍ସାହିତ ହେବେ କି ?

ଏଠାରେ ତାଙ୍କର ଜୀବନଚରିତ ଲେଖିବା ମୋର ଉଦ୍ଦେଶ୍ୟ ନୁହେଁ କିମ୍ବା ତାଙ୍କର ପ୍ରଶଂସା କରିବା ମୋର ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । ତେବେ ନବୀନ ରାଜାମାନେ ତାଙ୍କ ଜୀବନରୁ କିଛି ଶିକ୍ଷା କରିବେ ବୋଲି ଆଶା ରଖି କେତୋଟି ବିଷୟ ଉଲ୍ଲେଖ କଲି ।

ସୁଢଳଦେବ ଯେ ରାଜନୀତିଜ୍ଞ ଓ ସୁଶାସକ ଥିଲେ, ଏହା କହିବା ବାହୁଲ୍ୟ ମାତ୍ର । ସୁଢଳଦେବଙ୍କର ସାହିତ୍ୟସେବା ଓ ମାତୃଭାଷା ପ୍ରତି ଭକ୍ତି ଏବଂ ଓଡ଼ିଆଭାଷା ପ୍ରଚଳନ ସମ୍ବନ୍ଧରେ ପ୍ରଚେଷ୍ଟା ସମସ୍ତଙ୍କୁ ଜଣା-ସାହିତ୍ୟସେବୀ ମାତ୍ରେ ଏଥିରେ ସାକ୍ଷ୍ୟ ଦେବେ । ଦେଶର ଦଲିଲ ଦସ୍ତାବିଜ ସମସ୍ତ ଓଡ଼ିଆ-କଚେରିରେ ଓଡ଼ିଆ ଭିନ୍ନ ଅନ୍ୟ ଭାଷାର ପ୍ରଚଳନ ନ ଥିଲା । ଏମନ୍ତ କି, ଗଭର୍ଣ୍ଣମେଣ୍ଟଙ୍କ ସହିତ ତାଙ୍କର ଯେ ଚିଠିପତ୍ର ଚଳୁଥିଲା, ତାହା ମଧ୍ୟ ଓଡ଼ିଆରେ ଲିଖିତ ହେଉଥିଲା । ୧୮୯୩ ଠାରୁ ପତ୍ରର ଆଦାନ ପ୍ରଦାନ ଇଂରାଜୀରେ ଚଳିଅଛି ।

ପ୍ରଜାଙ୍କ ଉପକାରକଳ୍ପେ ଅବକାରି ବିଭାଗରେ କ୍ଷତି ସହ୍ୟ କରୁଥିଲେ । ମଦ୍ୟପ ତାହାଙ୍କର ଚକ୍ଷୁଃଶୂଳ । ଅଫିମସେବୀ ଷ୍ଟେଟରେ ଚାକିରି ପାଇପାରିବ ନାହିଁ ବୋଲି ସାର୍କୁଲାର ପ୍ରଚାର କରିଅଛନ୍ତି । କେତେକ ଅଫିମସେବୀ ଲାଞ୍ଛିତ ହୋଇ କାର୍ଯ୍ୟତ୍ୟାଗ କରିଥିଲେ । ୧୮୯୩ରେ ଗଭର୍ଣ୍ଣମେଣ୍ଟ ଅଫିମ ସମ୍ବନ୍ଧରେ କେତେକ ପ୍ରଶ୍ନ କରିଥିଲେ । ସେଥିରେ ସୁଢଳଦେବ ନିର୍ଭୀକ ଭାବରେ ଏହି ମତ ଦେଇଥିଲେ ଯେ, ଔଷଧ ଭିନ୍ନ ଅଫିମ ସାଧାରଣଙ୍କର ମାଦକରୂପେ ବ୍ୟବହୃତ ହେବା ବାଞ୍ଛନୀୟ ନୁହେଁ । ଆଧୁନିକ କେତେକ ବଡ଼ ବଡ଼ ରାଜା ପ୍ରକାଶ କରନ୍ତି ଯେ, ଅଫିମ ଗରିବ ପ୍ରଜାଙ୍କ ପକ୍ଷରେ ଶାନ୍ତିଦାୟକ ।

ମଫସଲ ଅପେକ୍ଷା ସହରରେ ନବ୍ୟ ଓ ଶିକ୍ଷିତ ଲୋକଙ୍କର ବାସ ଅଧିକ । ପାଶ୍ଚାତ୍ୟ ଶିକ୍ଷାର ଆନୁଷଙ୍ଗିକ ଫଳରୂପେ ଭଦ୍ରସନ୍ତାନମାନେ ମଦ୍ୟାଭ୍ୟାସ କରିପାରନ୍ତି, ଏହି ଆଶଙ୍କାରେ ଦେବଗଡ଼ ଟାଉନର ଦଶ ମାଇଲ ମଧ୍ୟକୁ କେହି ମଦ୍ୟ ଆଣିଲେ ଦଣ୍ଡିତ ହେବାର ସାର୍କୁଲାର କରିଯାଇଅଛନ୍ତି, ଅଦ୍ୟାପି ତାହା ପ୍ରଚଳିତ ଅଛି।

ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ଦିଆଯିବାର ସେ ନିତାନ୍ତ ପକ୍ଷପାତୀ । ଶିକ୍ଷାଦ୍ୱାରା ଦେଶର ଉନ୍ନତି, ଏହା ସେ ବିଶେଷ ଭାବରେ ହୃଦୟଙ୍ଗମ କରିପାରିଥିଲେ । ପ୍ରାଚୀନ ରୀତି ଓ ପଦ୍ଧତି ସହ ଆଧୁନିକ ଶାସନର ସମନ୍ୱୟ କରି ଆପଣାର ରାଜ୍ୟ ଚଳାଉଥିଲେ । ପ୍ରଜାମାନଙ୍କ ମଧ୍ୟରେ ମାଲିମୋକଦ୍ଦମା ଯେପରି କମ୍ ହୁଏ ଏବଂ ଗରିବ ପ୍ରଜା କ୍ଷତିଗ୍ରସ୍ତ ନ ହୁଅନ୍ତି, ତତ୍‌ପ୍ରତି ତାଙ୍କର ବିଶେଷ ଦୃଷ୍ଟି ଥିଲା । ପଞ୍ଚଦ୍ୱାରା ଅଧର୍ତବ୍ୟ

ସାଧାରଣ ମୋକଦ୍ଦମା ଏବଂ ଦେଓ୍ୱାନୀ ମୋକଦ୍ଦମା ନିଷ୍ପତ୍ତି ହେବାର ବ୍ୟବସ୍ଥା କରିଥିଲେ । ଦେବଗଡ଼ରେ ପାଞ୍ଚ ଗୋଟି ସାହିପଞ୍ଚ ନିଯୁକ୍ତ କରିଯାଇଅଛନ୍ତି । ଅଧିକ କଥା ନ ଲେଖି ଗଭର୍ଣ୍ଣମେଣ୍ଟଙ୍କ ବାର୍ଷିକ ରିପୋର୍ଟରୁ କେତୋଟି ମନ୍ତବ୍ୟ ଉଦ୍ଧୃତ କଲେ ତାଙ୍କ ଶାସନ ପଦ୍ଧତିର ପରିଚୟ ମିଳିଯିବ—

**ADMINISTRATION REPORT OF C.P. FOR THE YEAR 1893.**

This State is undoubtedly the most interesting of all the Chhattisgarh Feudatory States. It is the only one of which the administration has preserved any originality and character of its own, owing to its never having fallen under the management of the British Government and having (partly perhaps, owing to its remoteness) been subjected to a very little interference at the hands of the Government Officers. It seems a pity that so little is known beyond the limits of the State, of the details of the Raja's administration. This example of the results which can be attained by a native cheif governing according to his own methods, without assistance from without, and studying British institutions rather for the sake of comparision and judicion adoption than of servile imitation seems worthy of the careful attention not only of his brother Chiefs but of British administrators of native state, who seem apt at times to ignore the fundamental distinction between the condition prevailing in British Territory and in that of a small State under native rule."

ସୁତଳଦେବଙ୍କ ଶାସନପଦ୍ଧତିର ପ୍ରଶଂସା ଏଥିରୁ ବଳି କ'ଣ ହୋଇପାରେ ?

ସୁତଳଦେବଙ୍କର କେ.ସି. ଆଇ.ଇ. ଉପାଧି ପ୍ରାପ୍ତିରେ ଚିଫ୍ କମିସନର ଲେଖନ୍ତି—

"It is the more gratifying as being a recognition, not of any conspicuous accidents of rank, position or wealth, but purely of personal merit."

ଉପାଧି ଟାଇଟଲ, ତୋପ ରାଜାମାନଙ୍କୁ ଭାଗ୍ୟରେ ଘଟିପାରେ, ମାତ୍ର ଉତ୍କଳମାତାର କୌଣସି ସୁଯୋଗ୍ୟ ରାଜାର ଭାଗ୍ୟରେ ଉକ୍ତ ପ୍ରକାର ପ୍ରଶଂସା ମିଳିବ ବୋଲି ଆଶା ନାହିଁ ।



# ପୁରୀ ଭ୍ରମଣ

ଭାବନାର ବିରାମ ନାହିଁ । କୌଣସି ବିଷୟରେ ଚିନ୍ତା ଉପସ୍ଥିତ ହେଲେ ଚିନ୍ତାସ୍ରୋତକୁ ବନ୍ଦ କରିବା ବଡ଼ କଠିନ । ଘଣ୍ଟାକ ମଧ୍ୟରେ ଯେତେ ବିଷୟ ଚିନ୍ତା କରାଯାଇପାରେ, ତାହା ଦିନକ ମଧ୍ୟରେ ବା ସପ୍ତାହ ମଧ୍ୟରେ ଦେଖିପାରିବା ଅସମ୍ଭବ । ଚିନ୍ତା, ଚିନ୍ତା, ଚିନ୍ତା । ଚିତାରେ ଚିନ୍ତାର ବିରାମ ହେବ, ତତ୍‌ପୂର୍ବେ ଏହାର ବିରାମ ହେବାର ଆଶା ଆଦୌ ଦେଖାଯାଏ ନାହିଁ । ଘର,ଦ୍ୱାର, କୋଠା, ବଗିଚା, ଜମି ବାଡ଼ି, ଧନସଞ୍ଚୟ କାହା ନିମନ୍ତେ ? ବଂଶଧରମାନଙ୍କପାଇଁ, ପୁତ୍ର ପାଇଁ ତ ? କଥାଟିଏ ଅଛି— ''ଧନ ସଞ୍ଚୁ କାହିଁକି ଯେବେ ପୁଅଟି ଭଲ । ଧନ ସଞ୍ଚୁ କାହିଁକି ଯେବେ ପୁଅଟି ଅଭଲ ।'' ଏହାର ତାତ୍ପର୍ଯ୍ୟ ଅତି ସ୍ପଷ୍ଟ । ତଥାପି ଲୋକେ ପୁତ୍ର ପୌତ୍ରାଦିଙ୍କ ନିମନ୍ତେ ସୁଆଦର୍ଶ ରଖିଯିବାକୁ ଚେଷ୍ଟା କରନ୍ତି ନାହିଁ। ଧନ ସଞ୍ଚୟ କରିବାକୁ ବ୍ୟସ୍ତ, ମାତ୍ର ସଦାଚରଣ ସଞ୍ଚୟ କରିବାକୁ ନିତାନ୍ତ କାତର, ନିତାନ୍ତ ଅମନୋଯୋଗୀ । ସାମାନ୍ୟ ସାମୟିକ, ଅକଲ୍ୟାଣକର ସୁଖରେ ମତ୍ତ ହୋଇ ପୁତ୍ର କନ୍ୟାମାନଙ୍କ ଭବିଷ୍ୟତ୍ ମଙ୍ଗଳରେ ଜଳାଞ୍ଜଳି ଦିଅନ୍ତି ।

Shelly ଏକ ସ୍ଥାନରେ କହିଅଛନ୍ତି— Sons of rich men are heirs to their vices.

ତେବେ ମଦ୍ୟପ ତାମ୍ରକୂଟସେବୀ ଭାରତବାସୀ ଧନିକଗଣ କେଉଁ ଆଶାରେ ଭାରତର ଭବିଷ୍ୟତ୍ ଉଜ୍ଜ୍ୱଳ ବୋଲି ମନେ କରନ୍ତି ?

୪ ତାରିଖରେ ତା[illegible]ର ଛାତ୍ରମାନେ ମୋତେ ଛାତ୍ରସମିତିକୁ ନିମନ୍ତ୍ରଣ କରିଥିଲେ । ମୋର ବକ୍ତବ୍ୟର ପୁନରାବୃତ୍ତି ଏଠାରେ କରିବା ନିଷ୍ପ୍ରୟୋଜନ । ତେବେ ମଦ୍ୟ ଓ ଧୂମପାନର ସମ୍ପୂର୍ଣ୍ଣ ବିଦ୍ୱେଷୀ ହେବାକୁ ଏବଂ ନିରର୍ଥକ ତାମ୍ବୂଳ ଚର୍ବଣରୁ ବିରତ ହେବାକୁ ଅନୁରୋଧ କରିଥିଲି । ଛାତ୍ର ଓ କେତେଜଣ ଶିକ୍ଷକ ମୋର ବକ୍ତବ୍ୟକୁ ଆଗ୍ରହ ସହକାରେ ଶୁଣିଥିଲେ ଏବଂ ମାଦକଦ୍ରବ୍ୟର ଅପକାରିତା ଏବଂ ତାମ୍ବୂଳ ଅଭ୍ୟାସର ନିଷ୍ପ୍ରୟୋଜନୀୟତାକୁ ହୃଦୟଙ୍ଗମ କରିଥିଲେ। ପରେ ଶୁଣି ସୁଖୀ ହେଲି ଯେ, ଜଣକେତେ ତାମ୍ବୂଳଚର୍ବଣ ଅଭ୍ୟାସକୁ ଛାଡ଼ିଅଛନ୍ତି । ଭାରତର ନାନାସ୍ଥାନରେ—ସର୍ବତ୍ର କହିଲେ ଚଳେ, ପାନ ଚୋବାଇବା ଅଭ୍ୟାସ ଅଛି। ଉତ୍କଳର ବିଶେଷତ୍ୱ ଏହି ଯେ, ଅତିମାତ୍ରାରେ ଗୁଣ୍ଡି ବ୍ୟବହାର ହୁଏ । ସୁତରାଂ ଛେପ ପକାଇବାକୁ ଚର୍ବଣକାରୀ ସର୍ବଦା ବ୍ୟସ୍ତ । ଏଣୁ ସୁଧାଧବଳ ଗୃହକାନ୍ଥ, ମର୍ମରଶୋଭିତ ରାଜସଦନ, ପ୍ରାସାଦ, ଦେବାଳୟ ପର୍ଯ୍ୟନ୍ତ ଚର୍ବଣକାରୀର ରକ୍ତବର୍ଣ୍ଣ ଛେପରୁ ରକ୍ଷାପାଆନ୍ତି ନାହିଁ । ଏହା ଓଡ଼ିଆ ଜାତିର ଗୋଟିଏ କଳଙ୍କ ।

୮ ତାରିଖ ଦିନ ବାରଘଣ୍ଟା ବେଳେ ପୁରୀ ଗାଡ଼ିରେ ପୁରୀ ଯିବା ଅଭିପ୍ରାୟରେ ତାଳଚେର ରାଜପ୍ରାସାଦ ଛାଡ଼ି ଷ୍ଟେସନ ଅଭିମୁଖରେ ବାହାରିଲି । ଭୋଜନ ସାରି ମଟର ଚଢ଼ିଲା ବେଳେ ଖରା କାଟୁଥିଲା, ଆକାଶ ପରିଷ୍କାର ଥିଲା । ଆଃ ଦୁର୍ଯୋଗ । ଷ୍ଟେସନରେ ପହଞ୍ଚିଲା ବେଳେ ଦମ୍‌କା ବୃଷ୍ଟି । ଲୁଗାପଟା ସବୁ ତିନ୍ତିଲା—ରେଳଗାଡ଼ି ଡବାଟି ପାଣି ଓ କାଦୁଅରେ ପୂର୍ଣ୍ଣ । ଗାଡ଼ିରେ ବସିବାମାତ୍ରେ ଟ୍ରେନ୍ ଛାଡ଼ିଲା । ତାଳଚେର-ପୁରୀ ଲାଇନ ମୋର ନୂତନ ଦେଖା । ପୂର୍ବେ ଘୋଡ଼ାଗାଡ଼ିରେ ଓ ମୋଟରରେ ଦୁଇ ତିନି ଥର ତାଳଚେରରୁ କଟକକୁ ଯାଇଥିଲି; ମାତ୍ର ରେଳ ରାସ୍ତାରେ ଯିବା ଏଥର ପ୍ରଥମ । କେତେଟା ଷ୍ଟେସନ ପୂର୍ବ ପରିଚିତ, କେତେଟା ସମ୍ପୂର୍ଣ୍ଣ ନୂତନ । ମହାନଦୀ ପାରି ହୋଇ ଗାଡ଼ି କଟକ ଷ୍ଟେସନରେ ଯଥାସମୟରେ ପହଞ୍ଚିଲା । ଷ୍ଟେସନରେ ଲୋକସମାଗମ ବେଶି ନ ଥିଲା । କୌଣସି ପରିଚିତ ମୁଖାବଲୋକନ ହେଲା ନାହିଁ । ମ୍ରିୟମାଣ ହୋଇ ନିଜ ଗାଡ଼ିର ଆଶ୍ରୟ ନେଲି ।

ଖୋରଧାରେ କିଛି ସମୟ ଅତିବାହିତ କରିବାକୁ ପଡ଼ିଲା । ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ଯାଏ ମନ ବଡ଼ ଉଦ୍‌ବିଗ୍ନ ଥାଏ, ଏଣୁ ମଧ୍ୟବର୍ତ୍ତୀ ସ୍ଥାନରେ ଅଳ୍ପକାଳ ଅଟକିଲେ ମଧ୍ୟ ଦୀର୍ଘକାଳ ବୋଲି ମନେ ହୁଏ । କେଜାଣି କେତେ ସମୟ ପରେ ଗାଡ଼ି ଛାଡ଼ିଲା, ମଶକ ଦଂଶନରୁ ରକ୍ଷା ମିଳିଲା । କ୍ରମେ ନାରିକେଳ ବନର ଶୋଭା ଦୃଷ୍ଟିଗୋଚର ହେଲା— ତହିଁ ଉତ୍ତାରୁ ମାଳତୀପାଟର ନୈଶ ଦୃଶ୍ୟ— ସମୁଦ୍ରର ଘୋ ଘୋ ଗର୍ଜନ ସଙ୍ଗେ ସଙ୍ଗେ ପୁରୀ ଷ୍ଟେସନରେ ପ୍ରବେଶ । ଷ୍ଟେସନରେ ପୁରୀ ରାଜାଙ୍କ ଲୋକ ଓ ମୋଟର ଉପସ୍ଥିତ ଥାଇ ଅପେକ୍ଷା କରୁଥିଲେ । ଗାଡ଼ିରୁ ଉତୁରିଲା ବେଳେ ଆକାଶ ନିର୍ମଳ ଥିଲା । ମୋଟର ଆରୋହଣ କରି ନୀଳାଚଳ ନାୟକଙ୍କ ମନ୍ଦିରାଭିମୁଖରେ ପ୍ରସ୍ଥାନ କଲୁଁ । ମୋଟର ନହର ସମ୍ମୁଖରେ ରହିଲା— ଅବତରଣ କଲା ବେଳେ ସିଂହଦ୍ୱାରରେ ପୁରୀ ରାଜାଙ୍କୁ ଦେଖି ଅପୂର୍ବ ଆନନ୍ଦ ଅନୁଭବ କଲି । ତାଙ୍କର

ମୋହନ ରୂପ ଦେଖିବା ମାତ୍ରକେ ତାଙ୍କ ପିତାମହ ବାସୁଦେବଙ୍କ ପ୍ରଦତ୍ତ 'ମୋହିନୀ ମୋହନ' ଶ୍ରଦ୍ଧା ନାମ ହୃଦୟରେ ଜାଗିଉଠିଲା । ଏହି ନାମରେ ଥରେ ଡାକିପାରିଲେ ମନରେ କି ଆନନ୍ଦ ଅନୁଭୂତ ହୁଏ, ତାହା ଅକଥନୀୟ । ମାତ୍ର ସାମାଜିକ ବିଧି ଖାତିରରେ ତାହା ଉଚ୍ଚାରଣ କରିବାକୁ ମନା । କର୍ଣ୍ଣ ପର୍ଯ୍ୟନ୍ତ ଆସିଲେ ମଧ ବାଧା ଦେଇ ବନ୍ଦ କରିବାକୁ ହୁଏ । ଆଜି ପୁରୀ ରାଜା ବହୁଦୂରରେ ଅବସ୍ଥାନ କରୁଥିଲେ ସୁଦ୍ଧା ତାଙ୍କ ସହିତ ଏ ଜୀବନ ବର୍ଦ୍ଧନଶୀଳ ସ୍ନେହଶୃଙ୍ଖଳିତ । ତାଙ୍କ ପକ୍ଷରେ ଶ୍ରଦ୍ଧା ଭକ୍ତିର ତ୍ରୁଟି ନାହିଁ । ତାଙ୍କର ଅଭ୍ୟୁଦୟ ଏ ଜୀବନର କାମନା । ଯଥାଯୋଗ୍ୟ ସମ୍ବର୍ଦ୍ଧିତ ହୋଇ ନବରରେ ପ୍ରବେଶ କଲୁଁ । ଜୀବନରେ ପୁରୀ ରାଜନବରର ସିଂହଦ୍ୱାର ଅତିକ୍ରମ କରିବାର ସୁଯୋଗ କେବେ ଘଟି ନ ଥିଲା । ଆଜି ବ୍ୟବହାରରେ ନିଜର କୁଟୀର ଓ ପୁରୀ ରାଜପ୍ରାସାଦ ମଧରେ କୌଣସି ପାର୍ଥକ୍ୟ ଥିବାର ଅନୁଭୂତ ହେଲା ନାହିଁ ।

ଆଜି ଝୁଲଣ ଉତ୍ସବ, ଏଣୁ ପ୍ରାଙ୍ଗଣରେ ଦକ୍ଷିଣୀ ସଙ୍ଗୀତ ନାଟ ହେଉଥିଲା । ଦେବତା ଦର୍ଶନ, ସଙ୍ଗୀତ ଶ୍ରବଣ ଏବଂ ଉପସ୍ଥିତ ପରିଚିତ ଓ ଅପରିଚିତ ଭଦ୍ରବ୍ୟକ୍ତିଙ୍କ ସହିତ କଥୋପକଥନରେ ରାତ୍ର ପ୍ରାୟ ଦୁଇ ଘଣ୍ଟା କାଳ ଅତିବାହିତ କରି ରାଜାଙ୍କ ବୈଠକ ନିକଟବର୍ତ୍ତୀ ନିର୍ଦ୍ଦିଷ୍ଟ କୋଠରିରେ ଆଶ୍ରୟ ନେଲି ।

ପୁରୀରେ ଅବସ୍ଥାନ ପୂର୍ଣ୍ଣ ଏକ ମାସ । ଦୈନନ୍ଦିନ କାର୍ଯ୍ୟ ମଧରେ ସୂର୍ଯ୍ୟୋଦୟ ପୂର୍ବରୁ ସମୁଦ୍ରକୂଳରେ ଭ୍ରମଣ ଓ ସମୁଦ୍ରର ଭୀଷଣ ମାଧୁରୀ ଦର୍ଶନ । ଉର୍ଦ୍ଧ୍ୱରେ ଅନନ୍ତ— ତଳରେ ଅନନ୍ତ—ଦୁଇ ଅନନ୍ତର ସମାବେଶ— ଅନନ୍ତରେ କ୍ରୀଡ଼ାକାରୀ 'ପ୍ରସବାନାଂ ଅଧିପତି' ସବିତାର ଦୈନିକ ଜନ୍ମୋତ୍ସବ ଦେଖିଲେ କାହାର ମନ ମୁଗ୍ଧ ନ ହେବ ? ଭାବୁକ ତନ୍ମନସ୍କ ହୋଇ ନିଜକୁ ମୁହୂର୍ତ୍ତକାଳ ଅନନ୍ତରେ ମିଶାଇ ଦେଇ ଆତ୍ମବିସ୍ମୃତି ଆନୟନ କରିପାରେ । ମାତ୍ର ମାନବର ଭାବନା ଭିନ୍ନରୂପ । ପ୍ରକୃତ ପକ୍ଷେ କୃତ୍ରିମକୁ ତା'ର ବେଶି ଆଦର ।

ବସାକୁ ଫେରି ସ୍ନାନ ଭୋଜନାନନ୍ତର ଦିନତମାମ ସ୍ୱକକ୍ଷରୁ ଦେବାଳୟର ଶୋଭା ଦର୍ଶନ, ବଡ଼ଦାଣ୍ଡରେ ପଣ୍ଡା ଓ ଯାତ୍ରୀଙ୍କର ଟଣାଓଟରା ଏବଂ ତୀର୍ଥଗୌ ସାହାଯ୍ୟରେ ବାଉରୁଣୀମାନଙ୍କର ଘାସ ବିକ୍ରୟର କୌତୁକ ଦେଖିବାରେ ସମୟ ଅତିବାହିତ ହୁଏ । ଏହାଛଡ଼ା ପୁରୀ ରାଜାଙ୍କ ସହିତ ସକାଳେ ଥରେ ଓ ସନ୍ଧ୍ୟାରେ ଥରେ ମୋଟରଗାଡ଼ିରେ ଘେରାଏ ବୁଲିବାକୁ ପଡ଼େ । ଭ୍ରମଣର ପ୍ରଧାନ ଲକ୍ଷ୍ୟ ସହରରୁ ବାହାରି ସ୍ୱାସ୍ଥ୍ୟକର ଓ ନିର୍ମଳ ବାୟୁ ସେବନ, ମାଳତୀ ପାଟର ଦୈନିକ ହ୍ରାସ ବୃଦ୍ଧି ଦର୍ଶନ ଏବଂ ଅନ୍ଧକାରରେ ଓ ଚନ୍ଦ୍ରନିଶାରେ ସମୁଦ୍ରର ଶୋଭା ଦର୍ଶନ । ଏହାଛଡ଼ା ଉତ୍କଳ ରାଜନ୍ୟଚୂଡ଼ାମଣିଙ୍କର ନୀଳଚକ୍ରଶୋଭିତ ସୌଧକୀର୍ତ୍ତିର ଚିନ୍ତା ଏବଂ ବର୍ତ୍ତମାନ ହେୟ ଓଡ଼ିଶାବାସୀଙ୍କର ଅମର କୀର୍ତ୍ତି ଜଗନ୍ନାଥମାହାତ୍ମ୍ୟ ବିଷୟ ଭାବୁ ଭାବୁ ମନରେ ଅବସାଦ ଘଟୁଥାଏ । ଆମେରିକାର ଜଣେ କବି ନାଏଗରା ପ୍ରପାତର ବର୍ଣ୍ଣନା କରିବାକୁ ଯାଇ ତାହାର ଶୋଭାରେ ଏତେ ମୁଗ୍ଧ ହୋଇପଡ଼ିଲେ ଯେ ଏବଂ ତାହାର ସମ୍ମୋହନ ଓ ଭୟସୂଚକ ମହତ୍ତ୍ୱରେ ଏଡ଼େ ଅଧୀର ହୋଇପଡ଼ିଲେ ଯେ, ସେଠାରେ ନିଜର ସମାଧି ରଚନା କଲେ । ତତ୍‌ପୂର୍ବରୁ କେବଳ ଏକ ଧାଡ଼ି 'Naigra, Naigra, thou art staggerer' ଲେଖିଗଲେ । ଜଗନ୍ନାଥ ମନ୍ଦିର ଦେଖି ବିସ୍ମୟାଭିଭୂତ ହେଲେ ମଧ ତତ୍‌ସମ୍ବନ୍ଧରେ ଲେଖିପାରିବାର ସାମର୍ଥ୍ୟ ନାହିଁ । ପ୍ରାଣ ହରାଇବା ମାଫିକ ଭାବୁକତ୍ୱ ମଧ ନାହିଁ । ଭାବୁ ଭାବୁ ଏହାହିଁ କହିବାକୁ ପଡ଼େ— "ହାୟ ସେ ଦିନର କଳିଙ୍ଗବାସୀ, ହାୟ ଆଜି କାଲିର ଓଡ଼ିଆ ପୁଅ ।"

ପୂର୍ଣ୍ଣ ଏକ ମାସ କାଳର ଘନୀଭୂତ ଚିନ୍ତାକୁ ବିଶ୍ଳେଷଣ କରି ଡାଏରୀ ଅନୁସାରେ ଲେଖିବା ସମ୍ଭବପର ନୁହେଁ, ବିଶେଷତଃ ପାଠକମାନଙ୍କ ଧୈର୍ଯ୍ୟଚ୍ୟୁତି ଅବଶ୍ୟମ୍ଭାବୀ । ତଥାପି କେବଳ ଗୋଟିଏ ଚିନ୍ତା— ପ୍ରଧାନ ଚିନ୍ତାର କଥା ନ ଲେଖି ରହି ହେବ ନାହିଁ । ପ୍ରତିବାଦ, ତୀବ୍ର ବାକ୍ୟବାଣ, ତିରସ୍କାର ଏଥି ନିମନ୍ତେ ଥୁଆ । ମାତ୍ର ଭରସା କେବଳ ଏତିକି ଯେ, ଆମ୍ଭେମାନେ ଆର୍ଯ୍ୟସନ୍ତାନ । ଭାରତୀୟ ଆର୍ଯ୍ୟଗଣଙ୍କର ସ୍ୱାଧୀନ ଚିନ୍ତା କରିବାର, ସ୍ୱାଧୀନ ମତ ପ୍ରକାଶ କରିବାର ଯେ ଅଧିକାର ଅଛି, ଅନ୍ୟ ଧର୍ମାବଲମ୍ବୀମାନଙ୍କର ସେ ଅଧିକାର ନାହିଁ । ଭାରତବାସୀ ବହୁମତାବଲମ୍ବୀ ହୋଇ ମଧ ହିନ୍ଦୁ ଆଖ୍ୟାରେ ପରିଚିତ । ସ୍ୱାଧୀନ ମତ ପ୍ରକାଶ କରିବାଦ୍ୱାରା ଭାରତବାସୀର ମୁକ୍ତିମାର୍ଗ ରୁଦ୍ଧ ହୁଏ ନାହିଁ । ହିନ୍ଦୁର ସ୍ୱର୍ଗଦ୍ୱାରର କଞ୍ଚି ଧର୍ମଯାଜକ ବା ପୁରୋହିତ ହାତରେ ନାହିଁ । ପୁଣି ଭାରତର ନାମ କର୍ମଭୂମି । କର୍ମଦ୍ୱାରା ଦେବତ୍ୱ, କର୍ମ ଦ୍ୱାରା ମନୁଷ୍ୟତ୍ୱ । ବିଷ୍ଣୁ କର୍ମ ଦ୍ୱାରା ଶ୍ରେଷ୍ଠତ୍ୱ ଲାଭ କରିଥିଲେ । ଯେତେବେଳେ ପୃଥିବୀର ସମସ୍ତ ଜାତି ଅଜ୍ଞାନାନ୍ଧକାରରେ ବୁଡ଼ି ରହିଥିଲେ, ସେତେବେଳେ ଆର୍ଯ୍ୟ ଋଷିଗଣ କର୍ମ ମତର ପ୍ରଚାର କରି ବୀରପୂଜାର ପ୍ରତିଷ୍ଠା ପ୍ରତିପାଦନ କରିଥିଲେ ।

"ଅଥ ଖଳୁ କ୍ରତୁମୟଃ ପୁରୁଷୋ ଯଥା କ୍ରତୁରସ୍ମିନ୍ ଲୋକେ ପୁରୁଷୋ ଭବତି । ତଥେତଃ ପ୍ରେତ୍ୟ ଭବତି । ସ କ୍ରତୁଂ କୁର୍ବୀତ ।"

ଏହା ଉପନିଷତ୍‌ପ୍ରତୀକ, ଅନୁଶାସନ । ଏହି ଇଙ୍ଗିତ ଭାରତବାସୀଙ୍କ ହୃଦୟରେ ଯୁଗ ଯୁଗାନ୍ତରରୁ କାର୍ଯ୍ୟ କରି ଆସୁଥିଲା । ବୀରପୂଜା ଆର୍ଯ୍ୟର ଶ୍ରେଷ୍ଠଧର୍ମ । ହିନ୍ଦୁଭ୍ରମରେ ପଡ଼ି ଏହି ମହାମନ୍ତ୍ର ଭୁଲି ଯାଇଅଛି—ଭୁଲିଯିବାକୁ ଚେଷ୍ଟା କରୁଅଛି ।

ପିତା ପରମ ବୈଷ୍ଣବ, ରାମଭକ୍ତ । ଶୈଶବ କାଳରେ ଯେତେବେଳେ ଧର୍ମର ଜଟିଳତା, ଭେଦବୁଦ୍ଧି ଅଙ୍କୁରିତ ହୋଇ ନ ଥିଲା, ପିତାଙ୍କ ଅନୁକରଣରେ ମୂର୍ତ୍ତି ଓ ପୂଜାସାମଗ୍ରୀ ରଖି ପିତାଙ୍କ ମୁଖରୁ ଉଚ୍ଚାରିତ ମନ୍ତ୍ରାଦି ମୁଖସ୍ଥ କରି ଦେବତାପୂଜାରେ ତତ୍‌ପର ଥିଲି । ସେତେବେଳେ ତିନି ଗୋଟି ଆର୍ଯ୍ୟ ସନ୍ତାନ, ବୀର ଓ ଦେବତାଙ୍କ ନାମ ଶ୍ରବଣ କରିଥିଲି । ମୃଭାଣ୍ଡର ରେଖା ପରି ହୃଦୟରେ ସେହି ତିନି ଗୋଟି ନାମ ଅଙ୍କିତ ଅଛି; ଯଥା– ରାମ, କୃଷ୍ଣ ଓ ବୁଦ୍ଧ । ରାମଙ୍କ ପ୍ରତି ଶ୍ରଦ୍ଧା ଭକ୍ତି ଅକ୍ଷୁଣ୍ଣ ଅଛି । କୃଷ୍ଣଙ୍କ ସମ୍ବନ୍ଧରେ ସମୟ ସମୟରେ ମତଦ୍ୱୈଧ ଘଟେ । ବୈଷ୍ଣବ ଗ୍ରନ୍ଥସମୂହକୁ ଆପଣା ମତାନୁସାରେ କାଟି ଛାଟି ନେଇ ସମୟ ସମୟରେ କୃଷ୍ଣଙ୍କୁ ଆଦର୍ଶ କ୍ଷତ୍ରିୟ ବୀର ଓ ଧର୍ମୋପଦେଷ୍ଟାରୂପରେ ଦଣ୍ଡାୟମାନ କରାଯାଏ । ସେତେବେଳେ ହୃଦୟରେ ଶ୍ରେଷ୍ଠ ସ୍ଥାନ ଦେବାକୁ ଦ୍ୱିଧା ବୋଧ ହୁଏ ନାହିଁ– କହିବାକୁ ମନ କରେ—

''ଭାର୍ଯ୍ୟାପୁତ୍ରୈର୍ବନ୍ଧୁବର୍ଗୈଃ ସମେତୋ
ବିକ୍ରୀତୋଽହଂ କୃଷ୍ଣପଦ ରବିନ୍ଦେ ।
କିଂ କୁର୍ଯ୍ୟାନ୍‌ମାଂ ଭାନୁପୁତ୍ରୋ ବରାକଃ
ସିଂହଦ୍ରବ୍ୟୋନୈବ ଫେରୋଃ ପ୍ରଭୁତ୍ୱଂ ।''

ବାଲ୍ୟକାଳରେ ଜଗନ୍ନାଥଙ୍କୁ ବୁଦ୍ଧାବତାର ବୋଲି ଶୁଣିଥିଲି । ବୁଦ୍ଧ ହିନ୍ଦୁର ପରମ ଦେବତା ବୋଲି ମନେ କରିଥିଲି । ତାହା ବଦ୍ଧମୂଳଧାରଣା । ଯୌବନାବସ୍ଥାରେ ଏବଂ ଏବେ ସ୍ମାର୍ତ୍ତ ଓ ବୌଦ୍ଧ ବିଦ୍ୱେଷ କଥା ବାରମ୍ବାର ଆଲୋଚ଼ନା କଲେ ସୁଦ୍ଧା, ବୁଦ୍ଧବିଦ୍ୱେଷମୂଳକ ସମାଲୋଚ଼ନାମାନ ପାଠ କଲେ ସୁଦ୍ଧା, ଭାବାନ୍ତର ଉପସ୍ଥିତ ହେବାର ତେଣେ ଥାଉ, ପ୍ରେମ, ଶ୍ରଦ୍ଧା, ଭକ୍ତି ଉତ୍ତରୋତ୍ତର ବୃଦ୍ଧି ପାଉଅଛି । ବୁଦ୍ଧ ଯୁଗାଚାର୍ଯ୍ୟ, ଆର୍ଯ୍ୟ ଧର୍ମବୀର, ଶ୍ରେଷ୍ଠ ଦେବତା ବୋଲି ଦ୍ୱାରେ ଦ୍ୱାରେ ଘୋଷଣା କରିବାକୁ ମନ ବଳୁଅଛି । ଜଗନ୍ନାଥ ପଟି ଦେଖି ଥରେ ମା'ଙ୍କୁ ପଚ଼ାରିଲି, ''ମା' ! ସବୁ ଦେବତାଙ୍କର ହାତ ଗୋଡ଼ ଅଛି, ସୁନ୍ଦର ମୁହଁ ଅଛି, ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ପାଦ ହାତ ନାହିଁ କାହିଁକି ?'' ମା' ଦଶଅବତାର କଥା କହି ଆଣିଲେ । ରାମ କୃଷ୍ଣ ଅବତାର ପରେ ବିଷ୍ଣୁ ବୁଦ୍ଧ ଅବତାର ଧାରଣ କରି ନୀଳାଚ଼ଳରେ ଅଛନ୍ତି, କଳିଯୁଗରେ ଧର୍ମର ସଙ୍କୋଚ଼ ଦେଖି ପ୍ରଭୁ ନିଜେ ହସ୍ତପଦ ସଙ୍କୋଚ଼ କରି ମୌନ ହୋଇ ରହିଅଛନ୍ତି ବୋଲି କହିଲେ । ଏତେ କଥା ବୁଝିବାର ସାମର୍ଥ୍ୟ ନ ଥିଲା । ସାର ଉଦ୍ଧାର କରି ଧରିନେଲି— ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ବୁଦ୍ଧାବତାର । ସେହି ଧାରଣା ଅଦ୍ୟାପି ଅଛି ଏବଂ ଏଥିର ତଥ୍ୟ ନିର୍ଦ୍ଧାରଣ ନିମନ୍ତେ ସର୍ବଦା ମନ ବ୍ୟାପୃତ ଅଛି ।

ପ୍ରସଙ୍ଗକ୍ରମେ ଦଶାବତାର ଚିନ୍ତା ଓ ଆଲୋଚ଼ନା ମନକୁ ଆସିଯାଏ । ପାଠକଗଣ ହସିବେ ସନ୍ଦେହ ନାହିଁ, ମାତ୍ର ଅବତାର ରଚକଙ୍କ ମନରେ ନିଶ୍ଚୟ ବିବର୍ତ୍ତନବାଦ (Evolution theory) ଉଦ୍ଭୂତ ହୋଇଥିଲା । ଶତପଥ ବ୍ରାହ୍ମଣରେ ମୀନାବତାରର ସୂଚ଼ନା ଅଛି, ଅନ୍ୟ ଅବତାରର କଥା ତଦପେକ୍ଷା ଅର୍ବାଚ଼ୀନ । ଏମନ୍ତ କି ମାନବଧର୍ମଶାସ୍ତ୍ର ପ୍ରଣୟନ ବେଳେ ସମସ୍ତ ଅବତାର ସୂଚ଼ନା ହୋଇ ନ ଥିଲା । ଅବଶ୍ୟ ମୁଁ ଏହା କହୁ ନାହିଁ ଯେ, ଇଉରୋପୀୟ ମତ ପାଠ କରି କୌଣସି ହିନ୍ଦୁ ଅବତାରବାଦ ରଚ଼ନା କଲେ । ଇଉରୋପୀୟ ପଣ୍ଡିତଗଣଙ୍କ ମସ୍ତିଷ୍କରେ ବିବର୍ତ୍ତନବାଦ ପ୍ରବେଶ କରିବାର ବହୁ ଶତାବ୍ଦୀ ପୂର୍ବରୁ ଭାରତବାସୀ ଏହା ହୃଦୟଙ୍ଗମ କରିଥିଲେ । ପ୍ରଥମେ ମତ୍ସ୍ୟ ଯୁଗ । (୨) ସରୀସୃପ ବା କୂର୍ମ ଯୁଗ । (୩) ପଶୁର ବାସଯୋଗ୍ୟା ହେଲା ପୃଥିବୀ ଜଳ ଓ ସ୍ଥଳର ସମ୍ପୂର୍ଣ୍ଣ ପାର୍ଥକ୍ୟ ଘଟିଲା, ବରାହାଦି ପଶୁ ଏହି ଯୁଗରେ ପ୍ରାଧାନ୍ୟ ଲାଭ କରିଥିଲେ, ଏଣୁ ବରାହାବତାର ଯୁଗ । (୪) ପଶୁଭାବାପନ୍ନ ମନୁଷ୍ୟ ପଶୁବଳରୁ ଶ୍ରେଷ୍ଠତା ଲାଭ କଲା ଯେଉଁ ଯୁଗରେ, ତାହା ନରହରି ଯୁଗ । (୫) ମନୁଷ୍ୟତ୍ୱର ପ୍ରଥମ ଉନ୍ମେଷ-ପରବର୍ତ୍ତୀ ତୁଳନାରେ ସାମାନ୍ୟ, ଏଣୁ ଖର୍ବ, ସୁତରାଂ ବାମନାବତାର । (୬) ମାନବ ଜାତି ପ୍ରଥମେ ଯେଉଁ ଯୁଗରେ ଲୌହାସ୍ତ୍ର ବ୍ୟବହାର କରିବାକୁ ଶିକ୍ଷା କଲା, ତାହା ପରଶୁ ଯୁଗ । ସେତେବେଳେ ନିକ୍ଷେପାସ୍ତ୍ରର ବ୍ୟବହାର ଜଣା ନ ଥିଲା । (୭) ରାମାବତାରରେ ଧନୁଶର ବ୍ୟବହାରର ପରାକାଷ୍ଠା । ସଙ୍ଗେ ସଙ୍ଗେ ଆର୍ଯ୍ୟାବର୍ତ୍ତରୁ ଦାକ୍ଷିଣାତ୍ୟକୁ ଆର୍ଯ୍ୟସଭ୍ୟତାର ବିସ୍ତାର । (୮) କୃଷ୍ଣ ବା ବଳରାମ ଅବତାର ବେଳକୁ କୃଷି ଓ ଶିଳ୍ପର ଉନ୍ନତି, ଧର୍ମପ୍ରଚ଼ାରର ଆରମ୍ଭ । (୯) ବୁଦ୍ଧାବତାର ବେଳେ ଭାରତବାସୀଙ୍କର ସର୍ବପ୍ରକାର ଉନ୍ନତି ସଂସାଧିତ ହୋଇଥିଲା । ଭାରତବାସୀ ସଭ୍ୟତାର ଚୂଡ଼ାନ୍ତ ସ୍ତରରେ ଉପନୀତ ହୋଇଥିଲେ ସୁଦ୍ଧା ହିଂସାମୂଳକ ନୀତି ଅବଲମ୍ବନ କରୁଥିବାରୁ ପରମକାରୁଣିକ ବୁଦ୍ଧଦେବଙ୍କର ଅବତାର । (୧୦) କଳ୍‌କି ଅବତାର ସ୍ମାର୍ତ୍ତଗଣଙ୍କର କପୋଳକଳ୍ପନା-ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ପରାସ୍ତ ଓ

ଅପଦସ୍ଥ କରଣର ସ୍ମାରକସ୍ୱରୂପ ଓ ବୌଦ୍ଧ ଧର୍ମବିଦ୍ୱେଷକୁ ଜାଗରୂକ ରଖିବା ନିମନ୍ତେ ଏହା ଗୋଟିଏ ମିଥ୍ୟା କଳ୍ପନା । ପ୍ରତ୍ୟେକ ଐତିହାସିକ ଏଥିର ପ୍ରମାଣ ଦେବେ । ପ୍ରସଙ୍ଗକ୍ରମେ ଅବତାର କଥା ଲେଖିବାକୁ ପଡ଼ିଲେ ମଧ ଏହା ଅନୁମାନ ବୋଲି ସ୍ୱୀକାର କରିବାକୁ ହେବ । ତେବେ ଏହା ଅବଶ୍ୟ ସମସ୍ତେ ସ୍ୱୀକାର କରିବେ ଯେ, ତିନିଗୋଟି କ୍ଷତ୍ରିୟସନ୍ତାନ ଭାରତର ଭାଗ୍ୟନିୟାମକ, ଧର୍ମପ୍ରବର୍ତ୍ତକ । ରାମ, କୃଷ୍ଣ ଓ ବୁଦ୍ଧ । ଦୁଇ ଜଣ ଅବିସମ୍ବାଦିତରୂପେ ସ୍ମାର୍ତ୍ତ ହିନ୍ଦୁମାନଙ୍କର ପୂଜ୍ୟ ହୋଇଅଛନ୍ତି । କେବଳ ବୁଦ୍ଧଦେବ ହିନ୍ଦୁମାନଙ୍କର ଦେବତାରୂପେ ଗୃହୀତ ହୋଇ ସୁଦ୍ଧା ପୁଣି ପରିତ୍ୟକ୍ତ ହେବା କଥା ଅତ୍ୟନ୍ତ ବିସ୍ମୟଜନକ । ତାହାହିଁ ବର୍ତ୍ତମାନର ଆଲୋଚ୍ୟ ବିଷୟ ।

ବୁଦ୍ଧ ହିନ୍ଦୁ ଗୃହରେ ଜନ୍ମଗ୍ରହଣ କରିଥିଲେ । ହିନ୍ଦୁର ଗୃହ୍ୟସୂତ୍ରନିୟମାନୁସାରେ ଜନ୍ମଠାରୁ ଆରମ୍ଭି ବିବାହ ପର୍ଯ୍ୟନ୍ତ ସମସ୍ତ ସଂସ୍କାର ହିନ୍ଦୁମତରେ ସମ୍ପାଦିତ ହୋଇଥିଲା । ତପସ୍ୟାଚରଣଦ୍ୱାରା ସେ ଯେଉଁ ଧର୍ମମତ ପ୍ରଚାର କଲେ, ତାହା ଭାରତୀୟ ଧର୍ମରୂପେ ଗୃହୀତ ହୋଇଥିଲା । ତାହାଙ୍କର ରୂପରେ ଗୁଣରେ ସମସ୍ତେ ମୁଗ୍ଧ । ପୁରାଣ ତାହାଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ସ୍ୱୀକାର କରିଗଲେ । ସହସ୍ରାଧିକ ବର୍ଷକାଳ ବୁଦ୍ଧ ହିନ୍ଦୁର ଉପାସ୍ୟ ଦେବତା । ଏହି କାଳ ମଧରେ ଭାରତର ସମ୍ୟକ୍ ପ୍ରକାର ଉନ୍ନତି ।

ଭଗବଦ୍‌ଗୀତାରେ ଲିଖିତ ଅଛି– ''ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।'' ଏହାହିଁ ଅବତାରବାଦର ଭିତ୍ତି । ଦେଶରେ କୌଣସି ବିପ୍ଳବ ଉପସ୍ଥିତ ହେଲେ— ସେହି ବିପ୍ଳବ ଦେଶବିପ୍ଳବ ହେଉ ବା ଧର୍ମବିପ୍ଳବ ହେଉ—ଯେଉଁ ମହାପୁରୁଷ ଜନସମୂହକୁ ସେହି ବିପ୍ଳବରୁ ରକ୍ଷା କରନ୍ତି, ତାହାଙ୍କୁ ଲୋକେ ନଗର ତ୍ରାଣକର୍ତ୍ତା ବା ନାରାୟଣ ବା ଈଶ୍ୱରଙ୍କର ଅବତାର ବୋଲି ସ୍ୱୀକାର କରନ୍ତି । ବୀରପୂଜକ, ଭାରତବାସୀଙ୍କର ଏ ଅଭ୍ୟାସ ବୈଦିକ ଯୁଗରୁ ଚାଲି ଆସିଥିଲା । ସେତେବେଳେ ଭାରତବାସୀ ବିଦ୍ୟାବୁଦ୍ଧିରେ ପୃଥିବୀର ଶୀର୍ଷସ୍ଥାନ ଅଧିକାର କରିଥିଲେ । ଯେଉଁ ଦିନରୁ ଭାରତବାସୀ ବୀରପୂଜାର ମହତ୍ତ୍ୱ ହରାଇ ସ୍ୱାର୍ଥଜଡ଼ିତ ହେଲେ, ସ୍ୱାର୍ଥପରତା ସ୍ୱାର୍ଥତ୍ୟାଗର ସ୍ଥାନ ଅଧିକାର କଲା, ହିଂସା, ଦ୍ୱେଷ, ଖଳବୁଦ୍ଧି ପବିତ୍ର ମନକୁ କଳଙ୍କିତ କଲା, ସେହି ଦିନରୁ ଭାରତର ଅବନତି, ପତନ, ପରାଧୀନତା । ଯେଉଁ ଭାରତବାସୀର ହୃଦୟରେ ସ୍ୱାଧୀନ ଚିନ୍ତା ସର୍ବଦା ଖେଳା କରୁଥିଲା, ସେହି ଭାରତବାସୀଙ୍କ ହୃଦୟରେ ଧର୍ମବିଦ୍ୱେଷ ବହ୍ନି ପ୍ରଜ୍ୱଳିତ ହୋଇ ଚକ୍ଷୁ ମନ ଓ ମସ୍ତିଷ୍କକୁ ଧୂମାୟମାନ କରି-ଧର୍ମାନ୍ଧ କରି ରଖିଲା । ଜାତିଦ୍ୱେଷ ଓ ଜାତିନିନ୍ଦା ସାମ୍ୟ ଓ ମୈତ୍ରୀର ଅନ୍ତରାୟ ହେଲା । ଆଉ ଭାରତବାସୀର ଆଜି ଏ ଦୁର୍ଦ୍ଦଶା । ଅବାନ୍ତର କଥା ଛାଡ଼ି ଆଲୋଚ୍ୟ ବିଷୟର ଅବତାରଣା କରାଯାଉ ।

ବୁଦ୍ଧ, ରାମ ଓ କୃଷ୍ଣଙ୍କ ପରି ଈଶ୍ୱରଙ୍କର ଅବତାର ବୋଲି ଭାରତବାସୀ ସ୍ୱୀକାର କରିଥିଲେ । ପୁରାଣମାନେ ବୁଦ୍ଧ ଅବତାର ବୋଲି ସ୍ପଷ୍ଟାକ୍ଷରରେ ପ୍ରକାଶ କରିଅଛନ୍ତି ।

ତତଃ କଳୌ ସଂପ୍ରବୃତ୍ତେ ସଂମୋହାୟ ସୁରଦ୍ୱିଷାଂ ।
ବୁଦ୍ଧୋ ନାମ୍ନା ଜିନସୁତଃ ନିକଟେଷୁ ଭବିଷ୍ୟତି ॥

ଭାଗବତ

ମତ୍ସ୍ୟ କୂର୍ମୋ ବରାହଶ୍ଚ ନୃସିଂହୋଽଥ ବାମନଃ ।
ରାମୋ ରମଶ୍ଚ କୃଷ୍ଣଶ୍ଚ ବୁଦ୍ଧଃ କଲ୍‌କୀ ମହାତ୍ମବାନ୍ ॥

ବରାହପୁରାଣ

ଧର୍ମସଂରକ୍ଷଣାର୍ଥାୟ ଅଧର୍ମାଦିବିନଷ୍ଟୟେ ।
ଦୈତ୍ୟରାକ୍ଷସନାଶାର୍ଥଂ ମତ୍ସ୍ୟଃ ପୂର୍ବଂ ଯଥାଽଭବତ୍ ॥
କୂର୍ମୋବରାହୋ ନୃହରିର୍ବାମନୋ ରାମ ଉର୍ଜ୍ଜିତଃ ।
ଯଥା ଦାଶରଥୀ ରାମଃ କୃଷ୍ଣ ବୁଦ୍ଧୋଽଥ କଳ୍କ୍ୟପି ॥

ଗରୁଡ଼ପୁରାଣ

ଆଉ ପୁରାଣ ବଚନ ଉଦ୍ଧୃତ କରିବାର ପ୍ରୟୋଜନ ନାହିଁ । ଗୀତଗୋବିନ୍ଦର ପୟାରଟି ବୋଧହୁଏ ପାଠକଗଣଙ୍କୁ ଅବିଦିତ ନାହିଁ—

ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତଂ
ସଦୟହୃଦୟଦର୍ଶିତପଶୁଘାତଂ
କେଶବ ଧୃତବୁଦ୍ଧଶରୀର
ଜୟ ଜଗଦୀଶ ହରେ ॥

ଗୀତଗୋବିନ୍ଦ ।

ଲୋକଙ୍କର ବିଶ୍ୱାସ ଯେ, ଶଙ୍କରାଚାର୍ଯ୍ୟ ବୌଦ୍ଧ ଧର୍ମର ଉଚ୍ଛେଦ ସାଧନ କଲେ । ହୋଇପାରେ, ମାତ୍ର ତାଙ୍କର ଦଶାବତାର ସ୍ତୋତ୍ରରେ ଅଛି—

ଧରାବଦ୍ଧପଦ୍ମାସନସ୍ଥାଙ୍ଗଯଷ୍ଟି
ର୍ନିଯମ୍ୟାନିଳଂ ନ୍ୟସ୍ତନାସାଗ୍ରଦୃଷ୍ଟିଃ ।
ଯ ଆସ୍ତେ କଳୌ ଯୋଗିନାଂ ଚକ୍ରବର୍ତ୍ତୀ
ସ ବୁଦ୍ଧଃ ପ୍ରବୁଦ୍ଧୋଽସ୍ତୁ ମଚ୍ଚିତ୍ତବର୍ତ୍ତୀ ।

ଶଙ୍କରାଚାର୍ଯ୍ୟଙ୍କ ପରି ଲୋକ ବୁଦ୍ଧଙ୍କର ସ୍ତୁତି ନ କରି ରହିବା ଅସମ୍ଭବ । ସୁତରାଂ ବୁଦ୍ଧଙ୍କୁ ସେ ଅବତାର ସ୍ୱୀକାର କରି ହୃଦୟରେ ଉଚ୍ଚ ସ୍ଥାନ ଦେଇଅଛନ୍ତି ।

ତାଙ୍କର ସମସାମୟିକ ବୌଦ୍ଧଗଣଙ୍କ ମତ ସହିତ ତାଙ୍କର ମତର ଅନୈକ୍ୟ ଘଟିବା ହେତୁ ବିବାଦ ଉପସ୍ଥିତ ହେବା ଅସମ୍ଭବ ନୁହେଁ।

ପ୍ରାଚୀନ ହିନ୍ଦୁଶାସ୍ତ୍ରରୁ ଉପରୋକ୍ତ ପ୍ରକାର ଅସଂଖ୍ୟ ପ୍ରମାଣ ଉଦ୍ଧୃତ କରାଯାଇପାରେ । ବର୍ତ୍ତମାନ ଏତିକି ଯଥେଷ୍ଟ । ଏତିକି କେବଳ ନୁହେଁ, ହିନ୍ଦୁ ଶାସ୍ତ୍ରରେ ବୁଦ୍ଧଙ୍କର ବ୍ରତ ପୂଜା; ବିଧାନ ମଧ୍ୟ ଲିଖିତ ହୋଇଅଛି । ମହାଭାରତ, ଭାଗବତ, ପଦ୍ମ, ଭବିଷ୍ୟ, ଗରୁଡ଼, ଅଗ୍ନି, ବରାହ ପୁରାଣମାନ ଏଥିର ସାକ୍ଷ୍ୟପ୍ରଦାନ କରୁଅଛନ୍ତି । ନିର୍ଣ୍ଣୟସିନ୍ଧୁରେ ଲେଖା ଅଛି—

ପୌଷଶୁକ୍ଳସ୍ୟ ସପ୍ତମ୍ୟାଂ
କୁର୍ଯ୍ୟାଦ୍ ବୁଦ୍ଧସ୍ୟ ପୂଜନଂ ।

ସୁବର୍ଣ୍ଣ ବୁଦ୍ଧମୂର୍ତ୍ତି ନିର୍ମାଣ କରି ପୂଜାନ୍ତେ ବ୍ରାହ୍ମଣକୁ ଦାନ କରିବା ନିମନ୍ତେ ହେମାଦ୍ରି ବ୍ରତଖଣ୍ଡରେ ଲେଖା ଅଛି । ଆଧୁନିକ ରାଜା ବା ଧନୀ ଲୋକେ ସୁବର୍ଣ୍ଣ ବୁଦ୍ଧ ନିର୍ମାଣ କରି ବ୍ରାହ୍ମଣଙ୍କୁ ଦାନ କଲେ ବୋଧହୁଏ ବୌଦ୍ଧନିନ୍ଦୁକ ବ୍ରାହ୍ମଣମାନେ ଏକାଳରେ ମଧ୍ୟ ଦାନ ଗ୍ରହଣ କରିବାକୁ କୁଣ୍ଠିତ ହୁଅନ୍ତେ ନାହିଁ ପରା । ବ୍ୟବସ୍ଥାଟି ଏହି-

ସ୍ଥାପୟେଉ ସୌବର୍ଣ୍ଣଂ ବୁଦ୍ଧଂ
କୃତ୍ୱା ବିଚକ୍ଷଣଃ ।
ତମପ୍ୟେବଂ ତୁ ସମ୍ପୂଜ୍ୟ ବ୍ରହ୍ମଣାୟ
ନିବେଦୟେତ୍ ।

ହେମାଦ୍ରି ଦ୍ୱାଦଶ ଶତାବ୍ଦୀର ଲେଖକ । ସେତେବେଳେ ମଧ୍ୟ ବୁଦ୍ଧପୂଜାର ବ୍ୟବସ୍ଥା ସ୍ଥାନେ ସ୍ଥାନେ ଥିଲା ।

ହିନ୍ଦୁମାନେ କେବଳ ଶାଳଗ୍ରାମ ପୂଜା କରନ୍ତି । ଶାଳଗ୍ରାମ ନାନା ପ୍ରକାର, ଯଥା— ଲକ୍ଷ୍ମୀନାରାୟଣ, ରଘୁନାଥ, ପଦ୍ମନାଭ, ଇତ୍ୟାଦି । ସେହିପରି ବୁଦ୍ଧ ଶାଳଗ୍ରାମର ମଧ୍ୟ ଉଲ୍ଲେଖ ଅଛି—

''ଅଣୁଗହ୍ୱରସଂଯୁକ୍ତଂ ଚକ୍ରହୀନଂ
ଯଥା ଭବେତ୍ ।
ନିବିଡ଼ୋ ବୁଦ୍ଧସଂଜ୍ଞଃ ସ୍ୟାଦଦାତି
ପରମଂ ପଦଂ ॥''

ଉପରୋକ୍ତ ପ୍ରମାଣରୁ ଏବଂ ଏହା ଛଡ଼ା ପୁରାଣାଦିର ଅନ୍ୟାନ୍ୟ ପ୍ରସଙ୍ଗରୁ ବୁଦ୍ଧ ହିନ୍ଦୁର ଆରାଧ୍ୟ ଦେବତା ଥିଲେ ବୋଲି ସ୍ପଷ୍ଟ ପ୍ରମାଣ ମିଳୁଅଛି । ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ବୁଦ୍ଧଦେବ ହିନ୍ଦୁ ହୃଦୟରେ ପୂର୍ଣ୍ଣ ମାତ୍ରାରେ ନାରାୟଣ ବୋଲି ସ୍ଥାନ ପାଇଥିଲେ ।

ବୌଦ୍ଧ ଧର୍ମର ନିଦର୍ଶନ ଭାରତର ସର୍ବତ୍ର ଅଦ୍ୟାପି ବିଦ୍ୟମାନ । ବୌଦ୍ଧ ଅକ୍ଷୟ କୀର୍ତ୍ତିସ୍ତମ୍ଭ ଉପରେ ବୌଦ୍ଧବିଦ୍ୱେଷିଗଣ ଚୂନ ବାଲିର ପ୍ରଲେପ ଦେଇ କୀର୍ତ୍ତିଲୋପର ଚେଷ୍ଟା କରିଅଛନ୍ତି । ମାତ୍ର ଯାହା ସତ୍ୟ, ତାହା କାଳକ୍ରମେ ନିଶ୍ଚୟ ପ୍ରକାଶ ହୋଇପଡ଼ିବ । ଅନ୍ୟ ଦେଶ ତୁଳନାରେ ଆମ୍ଭମାନଙ୍କ ଜନ୍ମଭୂମି ଉତ୍କଳ ଦେଶ ନିଜ ବକ୍ଷରେ କମ୍ ବୌଦ୍ଧକୀର୍ତ୍ତି ରଖି ନାହିଁ । କଳିଙ୍ଗବାସୀମାନେ ବୌଦ୍ଧ ଧର୍ମକୁ ରୂପାନ୍ତରିତ କରି ଭାରତୀୟ ଜାତୀୟ ଧର୍ମ କରି ରଖିଥିବାର ପ୍ରତ୍ୟକ୍ଷ ପ୍ରମାଣ ଅଛି ବୋଲି ମୋର ବିଶ୍ୱାସ । ପୁରୀ ଅବସ୍ଥାନକାଳୀନ ଗବେଷଣା ଏହି ବିଶ୍ୱାସକୁ ଦୃଢ଼ୀଭୂତ କରିଅଛି ।

ଜଗନ୍ନାଥ ବୁଦ୍ଧ ପ୍ରତୀକ ବୋଲି କହିଲେ ଅନେକେ ଖଡ୍ଗହସ୍ତ ହେବେ ସନ୍ଦେହ ନାହିଁ । ମାତ୍ର ଜଗନ୍ନାଥଙ୍କୁ ବୁଦ୍ଧ ପ୍ରତୀକ ବୋଲିବା ଆମ୍ଭର କପୋଳକଳ୍ପିତ ନୁହେଁ କିମ୍ବା ଅଳୀକ ଅନୁମାନ ନୁହେଁ । ଉତ୍କଳ ମାତାର ଗ୍ରାମ୍ୟ ସନ୍ତାନଗଣ, ଅଳ୍ପ ଶିକ୍ଷିତ ଓ ଅଶିକ୍ଷିତ ସନ୍ତାନଗଣ ଜଗନ୍ନାଥ ବୁଦ୍ଧାବତାର ବୋଲି ଜାଣନ୍ତି । ଯୁଗଯୁଗାନ୍ତରରୁ ଏହି ବିଶ୍ୱାସ ଉତ୍ତରାଧିକାରସୂତ୍ରରେ ବଂଶ ପରମ୍ପରାକ୍ରମେ ଚାଲି ଆସୁଅଛି । ଅବଶ୍ୟ ଆଧୁନିକ ଯୁବକମାନେ ପୂର୍ବ ନିୟମରେ ଶିକ୍ଷା ପାଉ ନାହାନ୍ତି ଏବଂ ଗ୍ରାମ୍ୟ ବୃଦ୍ଧ ବୃଦ୍ଧାମାନଙ୍କ କାହାଣୀ ଶୁଣିବାଟା ଅସଭ୍ୟତାର ପରିଚାୟକ ବୋଲି ଘୃଣା କରନ୍ତି; ଏଣୁ ନିଜ ଦେଶର କଥା, କାହାଣୀ, ଲୋକମତ ଓ ଲୋକବିଶ୍ୱାସ ଲୋପ ପାଉଅଛି । ଆମ୍ଭେମାନେ ପ୍ରଥମେ ଚାଟଶାଳୀରେ ଶିକ୍ଷା ପାଇଥିଲୁଁ । କୋଇଲି, କମଳଲୋଚନ, ରାମରତନଗୀତା ପ୍ରଭୃତି ଭୂଇଁପାଠ ପଢ଼ିବା ପରେ ପାଠ କରିଥିଲୁଁ । ତହିଁରୁ ଗୋଟିଏ ପଦ ସ୍ମରଣ ଅଛି—

''ବୁଦ୍ଧ ରୂପେ ନୀଳଗିରି
ମହୋଦଧି ତୀରେ
ଯୋଗଳୟ କରନ୍ତି ସେ
କଳ୍ପବଟ ମୂଳେ ।
ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରେ
ଶଙ୍ଖଚକ୍ରଧାରୀ ।
ତୋଷେ ବର ଦ୍ୟନ୍ତୁ ସ୍ୱାମୀ
ଦେବ ନରହରି ॥''

ଏତାଦୃଶ ପୁରୁଣା ଗୀତରେ, ହଳୁଆ ଗୀତରେ, ଅନ୍ୟାନ୍ୟ ଗ୍ରାମ୍ୟ ଗୀତରେ ଜଗନ୍ନାଥ ବୁଦ୍ଧାବତାର ବୋଲି ବାଲ୍ୟକାଳରୁ ଶୁଣି ଆସିଅଛୁଁ । ବାହୁଲ୍ୟ ଭୟରେ ଉଲ୍ଲେଖ କରାଗଲା ନାହିଁ । ଏଥିରୁ କି ପ୍ରମାଣ ହେଉ ନାହିଁ ଯେ, ଜଗନ୍ନାଥ ଓ ବୁଦ୍ଧ ଏକ ବୋଲି ଓଡ଼ିଶାବାସୀର ବଦ୍ଧମୂଳ ବିଶ୍ୱାସ ଥିଲା ?

ଜଗନ୍ନାଥ ଆମ୍ଭମାନଙ୍କର ଦେବତା— ଆମ୍ଭ ଦେଶର ଦେବତା, ସୁତରାଂ ତାଙ୍କ ସମ୍ବନ୍ଧରେ ଆମ୍ଭ ଦେଶବାସୀଙ୍କୁ ଯେତେ ଜଣାଥିବା ସମ୍ଭବ, ଅନ୍ୟ ଦେଶବାସୀ ଓ ବୈଦେଶିକମାନଙ୍କୁ ସେପରି ଜଣାଯିବା ସମ୍ଭବ ନୁହେଁ । ସୁତରାଂ ଆମ୍ଭ ଦେଶଲିଖିତ ପୁସ୍ତକରୁ, ଲୋକମୁଖରୁ, ମନ୍ଦିରାଦି ଓ ଲିପି ଦର୍ଶନରୁ ତଥ୍ୟ ଉଦ୍ଧାର କରିବାକୁ ହେବ ।

ଗଣେଶ, ରାମ, କୃଷ୍ଣ ପ୍ରଭୃତି ଦେବତାଙ୍କ ପରି ଜଗନ୍ନାଥ ଭାରତର ନାନା ସ୍ଥାନରେ ନାହାନ୍ତି । ଓଡ଼ିଆ ଏ ମୂର୍ତ୍ତି ଅନ୍ୟର ଅନୁକରଣରେ ନିର୍ମାଣ କରି ନାହିଁ । ସୁତରାଂ ଜଗନ୍ନାଥ ଉତ୍କଳର ଉଦ୍ଭାବନ ଓ ନିଜସ୍ୱ । ଜଗନ୍ନାଥ ଉତ୍କଳବାସୀର ଦେବତା— କ୍ରମେ ସମଗ୍ର ଭାରତବାସୀଙ୍କର ଦେବତା ହୋଇଅଛନ୍ତି ।

ପୂର୍ବେ ପ୍ରକାଶ କରିଅଛି ଯେ, ବାଲ୍ୟକାଳରେ ଜଗନ୍ନାଥ ବୁଦ୍ଧ ବୋଲି ଗୁରୁଜନ ମୁଖରୁ ଶୁଣିଥିଲି । ଚାଟଶାଳୀରେ ପଠିତ ପୁସ୍ତକ ଏହି ବିଶ୍ୱାସକୁ ବଢ଼ାଇ ଦେଇଥିଲା । ବାଲ୍ୟକାଳରୁ ବଦ୍ଧମୂଳ ଏହି ବିଶ୍ୱାସ ସତ୍ୟ ବା ଭିତ୍ତିଶୂନ୍ୟ, ଏହା ନିର୍ଦ୍ଧାରଣ କରିବା ନିମନ୍ତେ ଏହି ଗବେଷଣା ଓ ପ୍ରମାଣସଂଗ୍ରହ । ଏହା Research ନୁହେଁ ।

ଟିକିଏ ପୁନରାବୃତ୍ତିର ପ୍ରୟୋଜନ । ଏହା ଉଲ୍ଲେଖଯୋଗ୍ୟ ଯେ, ସିଦ୍ଧାର୍ଥ ବୁଦ୍ଧ ଆଖ୍ୟା ଧାରଣ କରି ଭାରତରେ ଧର୍ମପ୍ରଚାର କଲେ । ସେତେବେଳେ ଏ ଦେଶରେ ଲୋକେ ଉପନିଷଦର ଅନୁଶାସନକୁ ଛାଡ଼ି ଯଜ୍ଞାଦିରେ ରତ ଥିଲେ । ଠିକ୍ ବୈଦିକ ଯଜ୍ଞ ନୁହେଁ, କେବଳ ପଶୁପ୍ରୋକ୍ଷଣ ରୂପ ହିଂସାରେ ରତ ଥିଲେ ଏବଂ ଏହି ହିଂସାକୁ ବିଧିଜାତ ହିଂସା ବୋଲି ପ୍ରଚାର କରୁଥିଲେ । ବୁଦ୍ଧଦେବଙ୍କ ଉପଦେଶ ମନ୍ତ୍ର ପରି କାର୍ଯ୍ୟ କଲା, ଲୋକେ ହିଂସା ଛାଡ଼ି ନୀତିପରାୟଣ ହେଲେ । ଅବଶ୍ୟ ସମସ୍ତେ ଏକାବେଳକେ ବୁଦ୍ଧଙ୍କ ମତ ଗ୍ରହଣ କଲେ, ତାହା ନୁହେଁ । ତେବେ ତାହାର ମହତ୍ତ୍ୱ ବୁଝିପାରି ଗୋଟିଏ ସୁପନ୍ଥା ବୋଲି ସ୍ୱୀକାର କରିନେଲେ । ବର୍ତ୍ତମାନ ଯେପରି ବିଭିନ୍ନ ମତାବଲମ୍ବୀମାନେ ମଧ୍ୟ ହିନ୍ଦୁ ଆଖ୍ୟାରେ ପରସ୍ପର ବିଦ୍ୱେଷୀ ନୁହନ୍ତି, ସେତେବେଳେ ମଧ୍ୟ ବୌଦ୍ଧମତ ହିନ୍ଦୁର ମତ ବୋଲି ଗୃହୀତ ହୋଇଥିଲା । ଆଜିକାଲି ଯେପରି ସ୍ମାର୍ତ୍ତ, ରାମାଉତ, ନିମାଉତ, ଶ୍ରୀବୈଷ୍ଣବ, ଗଉଡ଼ିଆ ପ୍ରଭୃତି ସମ୍ପ୍ରଦାୟ ହିନ୍ଦୁ ବୋଲି ପରିଚିତ, ମତଦ୍ୱୈଧ ଥିଲେ ମଧ୍ୟ ଏକ ସମ୍ପ୍ରଦାୟ ଅନ୍ୟର ମନ୍ଦିରାଦିକୁ ଯାତାୟାତ କରନ୍ତି, ସାଧାରଣ ସହାନୁଭୂତି କରନ୍ତି– ପୁଣି ଜିଦ୍ ବଢ଼ିଗଲେ ବାଡ଼ିଆପିଟା ମଧ୍ୟ କରନ୍ତି, ବହୁ ପୂର୍ବରେ ସ୍ମାର୍ତ୍ତ ଓ ବୌଦ୍ଧ ମଧ୍ୟରେ ସେହିପରି ସହାନୁଭୂତି ଥିଲା । ଏଥିର ନିଦର୍ଶନ ଆମ୍ଭେମାନେ ପ୍ରାଚୀନ ପୁସ୍ତକାଦିରୁ ପାଉଁ । ରାଜତରଙ୍ଗିଣୀ ପାଠକଗଣ ଅବଶ୍ୟ ଜାଣି ପାରିଥିବେ ଯେ, କାଶ୍ମୀର ରାଜଗଣ କେତେବେଳେ ସ୍ମାର୍ତ୍ତ ଓ କେତେବେଳେ ବୌଦ୍ଧ ଥିଲେ । ବୌଦ୍ଧ ରାଜାମାନେ ହିନ୍ଦୁ ସନ୍ନ୍ୟାସୀ ଓ ବ୍ରାହ୍ମଣମାନଙ୍କୁ ଯେପରି ସମ୍ମାନ କରୁଥିଲେ, ବୌଦ୍ଧମାନଙ୍କୁ ମଧ୍ୟ ତଦ୍ରୂପ ସମ୍ମାନ କରୁଥିଲେ । ଅଗ୍ରହାର ନିର୍ମାଣ କରି ବ୍ରାହ୍ମଣମାନଙ୍କୁ ଦେଉଥିଲେ ଏବଂ ବିହାର ନିର୍ମାଣ କରି ବୌଦ୍ଧମାନଙ୍କୁ ଦାନ କରୁଥିଲେ । ସ୍ମାର୍ତ୍ତ ଓ ବୌଦ୍ଧମାନଙ୍କ ମଧ୍ୟରେ ଏହି କାଶ୍ମୀର ରାଜାମାନଙ୍କର ଭେଦଜ୍ଞାନ ନ ଥିଲା । ଉଦାହରଣ ଗୋଟିଏ ଲେଖାଯାଉ— କାଶ୍ମୀର ରାଜା ଅଶୋକ (ମଗଧ ସମ୍ରାଟ୍ ନୁହନ୍ତି) ବୌଦ୍ଧ ଥିଲେ । କିନ୍ତୁ ପୁତ୍ରକାମନାରେ ତପସ୍ୟା କରି ମହାଦେବଙ୍କୁ ପ୍ରସନ୍ନ କଲେ ଏବଂ ମହାଦେବଙ୍କ ବରରେ ଜଲୌକ ନାମକ ଗୋଟିଏ ପୁତ୍ର ପ୍ରାପ୍ତ ହେଲେ । ଜଲୌକ ପରମ ଶୈବ ଥିଲେ । ସେ ବୌଦ୍ଧମାନଙ୍କୁ ଉତ୍ପୀଡ଼ିତ କରୁଥିଲେ, ପରେ ଲୋକାଲୋକ ପର୍ବତପାର୍ଶ୍ୱବାସିନୀ ତାମସୀକୃତିକାଙ୍କ ଉପଦେଶ ଅନୁସାରେ ବୌଦ୍ଧମାନଙ୍କ ନିମନ୍ତେ ବିହାର ନିର୍ମାଣ କରିଦେଲେ । ବହୁସଂଖ୍ୟକ ଏତାଦୃଶ ପ୍ରମାଣ ରାଜତରଙ୍ଗିଣୀରୁ ମିଳେ ।

ସପ୍ତମ ଖ୍ରୀଷ୍ଟାବ୍ଦରେ ଚୈନିକ ବୌଦ୍ଧ ସନ୍ନ୍ୟାସୀ ଭାରତକୁ ଆସି ଏଠାରେ ପୂର୍ଣ୍ଣ ଷୋଳ ବର୍ଷ ଅଧ୍ୟୟନ ଓ ପର୍ଯ୍ୟଟନ କଲେ । ତାହାଙ୍କ ଲିଖିତ ବିବରଣୀରୁ ଜଣାଯାଏ ଯେ, ସେତେବେଳେ ସ୍ମାର୍ତ୍ତାଦିଧର୍ମାବଲମ୍ବୀ ଓ ବୌଦ୍ଧଧର୍ମାବଲମ୍ବୀଙ୍କ ମଧ୍ୟରେ ପ୍ରକାଶ୍ୟ ଶତ୍ରୁତା ନ ଥିଲା ।

ଏକ ରାଜ୍ୟରେ ଏକ ଦେଶରେ ଏକ ନଗରରେ ଉଭୟପନ୍ଥୀ ସୁଖସ୍ୱାଚ୍ଛନ୍ଦ୍ୟରେ ବାସ କରୁଥିଲେ । ରାଜାମାନେ ଦେବତାମନ୍ଦିର ଓ ବୌଦ୍ଧ ବିହାରାଦି ନିର୍ମାଣ କରାଇ ଦେଉଥିଲେ । ମାଳବ ରାଜଧାନୀରେ ଏକଶତ ସଂଘାରାମ ଥିଲା ଏବଂ ସେଥିରେ ପ୍ରାୟ ଦୁଇ ସହସ୍ର ବୌଦ୍ଧ ଥିଲେ । ଆଉ ସେହି ରାଜଧାନୀରେ ଏକଶତ ଦେବମନ୍ଦିର ମଧ୍ୟ ଥିଲା । ଏହିପରି ନାନାସ୍ଥାନରେ ସେ ବୌଦ୍ଧ ସ୍ତୂପ, ସଂଘାରାମ ଓ ଦେବମନ୍ଦିର ଦେଖି ପାରିଥିଲେ— ଉତ୍କଳ ଓ କଳିଙ୍ଗରେ ମଧ୍ୟ ଏକତ୍ର ଦେବମନ୍ଦିର ଓ ସଂଘାରାମ ଦେଖି ପାରିଥିଲେ । ସେ ଏହା ମଧ୍ୟ ବର୍ଣ୍ଣନା କରିଅଛନ୍ତି ଯେ, ରାଜାମାନେ ସେମାନଙ୍କର ଦାନ ସମାନାଂଶରେ ବୌଦ୍ଧ ଓ ବ୍ରାହ୍ମଣମାନଙ୍କୁ ଦେଉଥିଲେ । ଏହି ରୀତି ସହସ୍ରାଧିକ ବର୍ଷ ଚାଲି ଆସିଥିଲା । ଏହାଛଡ଼ା ନେପାଳରେ ଅଦ୍ୟାପି ବୌଦ୍ଧ ଓ ହିନ୍ଦୁ ଏକତ୍ର ସୁଖସ୍ୱାଚ୍ଛନ୍ଦ୍ୟରେ ବାସ କରୁଅଛନ୍ତି, ବିଦ୍ୱେଷ ନାହିଁ । କିଏ ଶିବ, ବିଷ୍ଣୁ, କିଏ ବା

ବୁଦ୍ଧ ମୂର୍ତ୍ତି, ଏହାର ଭେଦଜ୍ଞାନ ସେମାନଙ୍କର ନାହିଁ । ଏ ସମ୍ବନ୍ଧରେ ପଶ୍ଚାତ୍ କିଛି ଲେଖାଯିବ ।

ପୁରୀ ଜଗନ୍ନାଥ ବୁଦ୍ଧ । ପୁରୀ ଜଗନ୍ନାଥ ହିନ୍ଦୁର ଉପାସ୍ୟ ଦେବତା— ବୁଦ୍ଧ ମଧ୍ୟ ହିନ୍ଦୁର ଉପାସ୍ୟ ଦେବତା । ପୂର୍ବେ ତାହାର କେତେକ ପ୍ରମାଣ ଦେଇଥିଲେ ମଧ୍ୟ ପୁଣି ଦିଆଯାଉ;—

''ନମୋ ବୁଦ୍ଧାୟ ଶୁଦ୍ଧାୟ ଦୈତ୍ୟଦାନବମୋହିନେ ।''

ଭାଗବତ

''ତସ୍ମୈ ବୁଦ୍ଧାୟ ତେ ନମଃ ।'' ପଦ୍ମପୁରାଣ

''ନମୋ ବୁଦ୍ଧାୟ ଶୁଦ୍ଧାୟ ନମସ୍ତେ
ଜ୍ଞାନରୂପିଣେ ।''

କୂର୍ମପୁରାଣ ।

ଜଟିଳ ପୁରାଣ ମତ ଓ କେତେକ ଲୋକମତ (ସ୍ୱାର୍ଥପର ଲୋକମତ) ଉପରେ ବିଶ୍ୱାସ ସ୍ଥାପନ କରି ଲୋକେ ପ୍ରକୃତ ଜଗନ୍ନାଥତତ୍ତ୍ୱ ଓ ମନ୍ଦିର ନିର୍ମାଣ ବିଷୟ ଭୁଲି ଯାଉଅଛନ୍ତି । କିମ୍ବଦନ୍ତୀ ଓ ପୁରାଣରେ ମଧ୍ୟ ଲେଖା ଅଛି ଯେ, ଇନ୍ଦ୍ରଦ୍ୟୁମ୍ନ ଏହି ମନ୍ଦିର ନିର୍ମାଣ କରି ଜଗନ୍ନାଥ ସ୍ଥାପନ କରିଥିଲେ । ଇନ୍ଦ୍ରଦ୍ୟୁମ୍ନ କିଏ ? ସେ ସତ୍ୟଯୁଗର ରାଜା ଥିଲେ ଓ ସହସ୍ର ଅଶ୍ୱମେଧ ଯଜ୍ଞ କରିଥିଲେ ବୋଲି ଲେଖା ଅଛି । ସେ ମାଳବ ଦେଶରୁ ଆସି ପୁରୁଷୋତ୍ତମରେ ସହସ୍ର ଅଶ୍ୱମେଧ ଯଜ୍ଞ କଲେ । ତାଙ୍କର ଦାନ ଗୌକ୍ଷୁରାଘାତରେ ଇନ୍ଦ୍ରଦ୍ୟୁମ୍ନ ପୋଖରୀଟି ହୋଇ ପଡ଼ିଲା ଏବଂ ତାହା ଦାନବାରିଦ୍ୱାରା ପୂର୍ଣ୍ଣ ହୋଇଅଛି । କ୍ରତୁ ଅର୍ଥ କର୍ମ ଓ ଯଜ୍ଞ । ଶହେଗୋଟି (ଅସାଧାରଣ ସତ୍‌କର୍ମ ହେଉ ବା ଯଜ୍ଞ ହେଉ) କ୍ରତୁ କରି ଇନ୍ଦ୍ରଙ୍କର ନାମ ଶତକ୍ରତୁ । ଏକଶତ କ୍ରତୁ କଲେ ଇନ୍ଦ୍ରତ୍ୱ ମିଳେ, ଏଣୁ ଇନ୍ଦ୍ର ଅନ୍ୟର ଯଜ୍ଞ ଭଙ୍ଗ କରିବାକୁ ସର୍ବଦା ଚେଷ୍ଟିତ, ଏହା ସମସ୍ତେ ଜାଣନ୍ତି । ଇନ୍ଦ୍ର ଥାଉଁ ଥାଉଁ ଇନ୍ଦ୍ରଦ୍ୟୁମ୍ନ ଗଣି ଗଣି ଏକହଜାର ଅଶ୍ୱମେଧ ଯଜ୍ଞ କିପରି କଲେ ଏବଂ ଇନ୍ଦ୍ର କିପରି ସହିଲେ, ଏହା ବିବେଚନାର ବିଷୟ ନୁହେଁ କି ? ଏହା ସ୍କନ୍ଦ ପୁରାଣର ଅଭୁକ୍ତି ।

ଚାରି ଗୋଟି ଯୁଗ— ସତ୍ୟ, ତ୍ରେତା, ଦ୍ୱାପର ଓ କଳି । ଇନ୍ଦ୍ରଦ୍ୟୁମ୍ନ ସତ୍ୟ ଯୁଗର ରାଜା ଥିଲେ ତାଙ୍କ ନାମ ବୈଦିକ ଗ୍ରନ୍ଥରେ ଅବଶ୍ୟ ମିଳନ୍ତା, ରାମାୟଣ, ମହାଭାରତରେ ଥାଆନ୍ତା, ଯେହେତୁ ସେ ସହସ୍ରକ୍ରତୁ । ମାତ୍ର ରାମାୟଣ ମହାଭାରତରେ ତାଙ୍କର ନାମ ନାହିଁ । ଶତପଥ ବ୍ରାହ୍ମଣରେ ଇନ୍ଦ୍ରଦ୍ୟୁମ୍ନ ଭାଲ୍ଲବେୟ ବୈୟାଘ୍ର-ଗଦ୍ୟ ନାମକ ଜଣେ ଋଷିଙ୍କ ନାମ ଦେଖାଯାଏ । ଏ ଜଣକ ଅବଶ୍ୟ ମନ୍ଦିର ନିର୍ମାତା ନୁହନ୍ତି । ଏହାଛଡ଼ା ବୈଦିକ ଗ୍ରନ୍ଥରେ ଇନ୍ଦ୍ରଦ୍ୟୁମ୍ନ ନାମ ଆଦୌ ନାହିଁ ।

ରଘୁ ତ୍ରେତା ଯୁଗର ରାଜା ଏବଂ ରଘୁ କାବ୍ୟଲେଖକ କାଳିଦାସ ଘୋର କଳିଯୁଗର ଲୋକ । କାଳିଦାସଙ୍କ ସମୟରେ ଯେବେ ଜଗନ୍ନାଥ ମନ୍ଦିରର ଏ ପ୍ରାଶସ୍ତ୍ୟ ଥାଆନ୍ତା ଏବଂ ଜଗନ୍ନାଥଙ୍କ ମାହାତ୍ମ୍ୟ ଭାରତବ୍ୟାପୀ ହୋଇଥାନ୍ତା, ତେବେ ଉତ୍କଳୀମାନେ ରଘୁଙ୍କୁ ସିଧା କଳିଙ୍ଗ ବାଟ ଦେଖାଇ ନ ଥାନ୍ତେ ଏବଂ ଯେଉଁ କାଳିଦାସ ଦର୍ଶନୀୟ ସ୍ଥାନ ବର୍ଣ୍ଣନା କରିବାରେ ସୁଦକ୍ଷ, ସେ ଲେଖି ନ ଥାନ୍ତେ 'ଉତ୍କଳାଦର୍ଶିତପଥଃ କଳିଙ୍ଗାଭିମୁଖଂ ଯଯୌ' । ପୁଣି ପୁରୀ ସହର ମର୍କଟବହୁଳ, ତ୍ରେତାଯୁଗରେ ଏଥିରୁ ଅଧିକ ଥିବା ସମ୍ଭବ, ମାତ୍ର ସୁଗ୍ରୀବ କପି ସୈନ୍ୟ ପ୍ରସ୍ତୁତ କରିବା ନିମନ୍ତେ ପୁରୀରୁ ମାଙ୍କଡ଼ ଡକାଇଥିବାର ରାମାୟଣରେ ଦେଖାଯାଏ ନାହିଁ । ଯୁଧିଷ୍ଠିର ସମୁଦ୍ର ଉପକୂଳରେ ଦାକ୍ଷିଣାତ୍ୟକୁ ପ୍ରସ୍ଥାନ କରିଥିଲେ, ମାତ୍ର ଜଗନ୍ନାଥଙ୍କୁ ମୁଣ୍ଡିଆ ମାରି ମହାପ୍ରସାଦ ଭକ୍ଷଣ କରିଥିବାର ଉଲ୍ଲେଖ ନାହିଁ । ଜଗନ୍ନାଥଙ୍କର ଏ ମାହାତ୍ମ୍ୟ ସେତେବେଳେ ଜଣାଥିଲେ ମହାଭାରତ ରଚକ ଅବଶ୍ୟ ଭଲ ଭାବରେ ବର୍ଣ୍ଣନା କରିଥାନ୍ତେ । ଇତ୍ୟାଦି ଇତ୍ୟାଦି କାରଣ ଦେଖିଲେ ସ୍ପଷ୍ଟ ଜଣାଯାଏ ଯେ, ମନ୍ଦିର ସତ୍ୟଯୁଗରେ ପ୍ରତିଷ୍ଠିତ ହୋଇ ନାହିଁ। ଆମ୍ଭମାନଙ୍କୁ ଘୋର କଳିର ଆଭ୍ୟନ୍ତରରେ ଏଥିରେ ତତ୍ତ୍ୱ ଅନୁସନ୍ଧାନ କରିବାକୁ ହେବ । ଖ୍ରୀଷ୍ଟ ସପ୍ତମ ଶତାବ୍ଦୀରେ ହୁଏନସାଁ ଉତ୍କଳକୁ ଆସିଥିଲେ । ତୁଷାଳି ବର୍ତ୍ତମାନ ଧୌଳିକୁ ଆସିଥିବାର ପ୍ରକାଶ ପାଏ । ଉତ୍କଳରେ ପଞ୍ଚାଶ ଗୋଟି ଦେବତାମନ୍ଦିର ଥିବାର ସେ ଲେଖି ଯାଇଅଛନ୍ତି । ପୁରୀ ସେତେବେଳେ ବିଦ୍ୟମାନ ଥିଲେ ଏବଂ ମହାପ୍ରସାଦ ଭୋଜନର ଏ ବ୍ୟବସ୍ଥା ଥିଲେ ସେ ଅବଶ୍ୟ ଏହା ଲେଖି ନ ଥାନ୍ତେ କି ?

ସ୍କନ୍ଦପୁରାଣ ପୁରୁଷୋତ୍ତମ ଖଣ୍ଡ, ନାରଦ ପୁରାଣ ଏବଂ ନୀଳାଦ୍ରି ମହୋଦୟରେ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବିଶେଷଭାବରେ ବର୍ଣ୍ଣିତ ଅଛି । ନୀଳାଦ୍ରିମହୋଦୟର ଆଲୋଚନା କରାଯାଇ ଦେଖାଯାଉ ଏଥିରୁ କି ତଥ୍ୟ ମିଳିବ । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ହସ୍ତପଦଶୂନ୍ୟ ଦେଖି ଲୋକେ କାରଣ ପଚାରିବା ସ୍ୱାଭାବିକ । ଏଥିକି ପୂର୍ବରୁ ଉତ୍ତର ସ୍ଥିର କରି ରଖାଯାଇଅଛି । ବିଶ୍ୱକର୍ମା ମନ୍ଦିର ଭିତରେ ମୂର୍ତ୍ତି ନିର୍ମାଣ କଲାବେଳେ ଦ୍ୱାରୋଦ୍ଘାଟନ କରିବାକୁ ନିଷେଧ କରିଥିଲେ । ରାଣୀଙ୍କ ଅନୁରୋଧରେ ରାଜା ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ କବାଟ ଖୋଲିଲେ, ଏଣୁ ତିନିମୂର୍ତ୍ତି ଅସମ୍ପୂର୍ଣ୍ଣ-ଅବୟବ ହୋଇ ରହିଅଛନ୍ତି । ପଣ୍ଡା ପଡ଼ିଆରିମାନେ ମଧ୍ୟ ଲୋକଙ୍କୁ

ଏପରି ବୁଝାଇ ଦିଅନ୍ତି । ମାତ୍ର ନୀଳାଦ୍ରିମହୋଦୟ ଲେଖନ୍ତି, ଯେ ପନ୍ଦର ଦିନରେ କବାଟ ଖୋଲିବାର ନିର୍ଦ୍ଦିଷ୍ଟ ଥିଲା । ନିର୍ଦ୍ଦିଷ୍ଟ ଦିନରେ କବାଟ ଖୋଲି ଏହି ମୂର୍ତ୍ତି ଦେଖିଲେ ।

ଦାରୁ ଦର୍ଶନ, ଦାରୁ ଆନୟନ, ବର୍ଷ କି ନିଯୁକ୍ତି ବିଷୟ ସ୍କନ୍ଦପୁରାଣ, ନାରଦୀୟ ପୁରାଣ ଓ ନୀଳାଦ୍ରି ମହୋଦୟରେ ବର୍ଣ୍ଣିତ ଅଛି । ମାତ୍ର ବର୍ଣ୍ଣନାରେ ବହୁ ଅମେଳ ଦେଖାଯାଏ । ଯାହା ହେଉ ଗ୍ରନ୍ଥ ସମାଲୋଚନା ନିଷ୍ପ୍ରୟୋଜନ ।

ନୀଳାଦ୍ରିମହୋଦୟରୁ ଜଣାଯାଏ ଯେ, ନିର୍ମାତା ନିଜର ମନମାଫିକ ଏହି ମୂର୍ତ୍ତିମାନ ନିର୍ମାଣ କଲେ । ଏପରି ମୂର୍ତ୍ତି ନିର୍ମାଣ କରିବାର ପୂର୍ବ କଳ୍ପନା ହୋଇସାରିଥିଲା । ମାଗୁଣି ଦାସଙ୍କ ଗୀତାରେ ମଧ ଲେଖା ଅଛି—

ଦେଖିଲେ ସିଂହାସନୋପରେ
ବିଜୟେ ବଉଦ୍ଧ ରୂପରେ ।
ପାଦ ଆଙ୍ଗୁଳି ନାହିଁ ହାତ,
ଶ୍ରୀ ଦାରୁବ୍ରହ୍ମ ଜଗନ୍ନାଥ ।

ଏହି ତିନିମୂର୍ତ୍ତି ସ୍ମାର୍ତ୍ତସମ୍ମତ କୌଣସି ପ୍ରାଚୀନ ମୂର୍ତ୍ତି ଅନୁକରଣରେ ନିର୍ମିତ ନୁହନ୍ତି । ଆନୀତ ଦାରୁରେ କିପରି ମୂର୍ତ୍ତି ନିର୍ମାଣ କରାଯିବ ବୋଲି ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କୁ ପଚାରିଲେ । ନାରଦ କହିଲେ—

କସ୍ୟାଃ ଶ୍ରୁତେର୍ମତେ ବାସ୍ୟା
ଉନ୍ନେ ବକ୍ତୁଂ ନ ଶକ୍ୟତେ ।

ଅଶରୀରୀ ବାଣୀ ସେତେବେଳେ ହେଲା ଯେ,

ଶୂନ୍ୟାୟାଂ ଜଗତାମୀଶଃ
ସ୍ୱେଚ୍ଛୟାବତରିଷ୍ୟତି ।

ଏବଂ ଅତି ଗୁପ୍ତ କରି ଦ୍ୱାର ସୁଦୃଢ଼ କରି ମନ୍ଦିର ବନ୍ଦ କରି ବାହାରେ ଗୀତବାଦ୍ୟଧ୍ୱନି ଅହୋରାତ୍ର କରିବ, ପନ୍ଦର ଦିନରେ ମନ୍ଦିର ଦ୍ୱାର ଖୋଲିଲେ ଦେବତା ଦର୍ଶନ ମିଳିବ । ଏହାହିଁ ସ୍ପଷ୍ଟାକ୍ଷରରେ ପ୍ରକାଶ କରୁଅଛି ଯେ, ଏହି ତିନି ମୂର୍ତ୍ତି ପୂର୍ବରୁ କୌଣସି ଦେବତା ବା ମହାପୁରୁଷଙ୍କ ମୂର୍ତ୍ତି ନୁହନ୍ତି କିମ୍ବା ସ୍ମାର୍ତ୍ତ ଶାସ୍ତ୍ରସମ୍ମତ ପ୍ରତିମା ନୁହନ୍ତି । ବିଶ୍ୱକର୍ମା ନିର୍ମାଣ କରନ୍ତୁ ବା ଅନ୍ୟ କେହି ନିର୍ମାଣ କରନ୍ତୁ, ଏହି ତିନି ମୂର୍ତ୍ତି ନବ ଉଦ୍ଭାବିତ ଓ କଳ୍ପନାପ୍ରସୂତ । ଶବରର ମୂର୍ତ୍ତି ଦର୍ଶନରେ ଏହି ମୂର୍ତ୍ତି ନିର୍ମାଣ ହୋଇଅଛନ୍ତି ବୋଲି ଯାହା ଲୋକେ ଓ କେତେକ ପ୍ରତ୍ନତତ୍ତ୍ୱବିତ୍ ଭାବନ୍ତି, ତାହା ଏତଦ୍ୱାରା ନିରାକୃତ ହେଉଅଛି । ଜଗନ୍ନାଥ ଅସଭ୍ୟର ଛାଞ୍ଚରେ ଗଢ଼ା ନୁହନ୍ତି । ସୁସଭ୍ୟ ଭାରତବାସୀ ବା ଉତ୍କଳବାସୀଙ୍କର ସ୍ଥିର ମସ୍ତିଷ୍କର ଚିନ୍ତାପ୍ରସୂତ ଉଜ୍ଜ୍ୱଳ ତ୍ରିରତ୍ନର ପ୍ରତିମା ।

ବିଶ୍ୱାବସୁ ନୀଳମାଧବ ପୂଜା କରୁଥିଲେ । ମାଳବରାଜ ପୁରୁଷୋତ୍ତମକୁ ଆସିବା ଆଗରୁ ସେ ପାତାଳଗାମୀ ହେଲେ । ଏହି ମୂର୍ତ୍ତି ନୀଳ ପ୍ରସ୍ତରରେ ନିର୍ମିତ ଏବଂ ଗୋଟିଏ ମୂର୍ତ୍ତି । ନୀଳ ସୁନ୍ଦର ମୂର୍ତ୍ତି ପାତାଳଗାମୀ ହେବାର ତାତ୍ପର୍ଯ୍ୟ ବଡ଼ ଗୂଢ଼ ।

ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ନିର୍ମାଣ କରାଇ ମୂର୍ତ୍ତିତ୍ରୟ ବିଦ୍ୟାପତି ଜିମା ଦେଇ ବ୍ରହ୍ମଲୋକକୁ ଗଲେ । ଗାଳବ ସେହି ମନ୍ଦିରରେ ପୁଣି ମାଧବଙ୍କୁ ସ୍ଥାପନ କଲେ । ଇନ୍ଦ୍ରଦ୍ୟୁମ୍ନ ଫେରିଆସି ଗାଳବ ସ୍ଥାପିତ ମାଧବଙ୍କୁ ପଶ୍ଚିମ ଦ୍ୱାରରେ ନିଷ୍କାସିତ କରି ଦାରୁବ୍ରହ୍ମଙ୍କୁ ସ୍ଥାପନ କଲେ । ଗାଳବଦ୍ୱାରା ମନ୍ଦିରସଂସ୍କାର ହୋଇଥିଲା ଓ ବେଷ୍ଟନୀ ନିର୍ମାଣ ହୋଇଥିଲା । ଯେଉଁ ମାଧବ ଦର୍ଶନ ଆଶାରେ ଇନ୍ଦ୍ରଦ୍ୟୁମ୍ନ ମାଳବରୁ ଆସିଥିଲେ, ଗାଳବ ପ୍ରତିଷ୍ଠିତ ମାଧବ ମୂର୍ତ୍ତିକୁ ଅବମାନନା ସହ ପଶ୍ଚିମ ଦିଗକୁ ନିଷ୍କାସିତ କଲେ କାହିଁକି ? ଦାରୁବ୍ରହ୍ମ ସହିତ ମାଧବ ଥିଲେ କି ଲୋକଙ୍କର ବିରକ୍ତି ବା ଅଭକ୍ତି ହୁଅନ୍ତା ? ଏହା ମଧ ଗୋଟିଏ ବିବେଚନାର ବିଷୟ ।

ଲୋକଙ୍କର ଧାରଣା ଓ କିମ୍ୱଦନ୍ତୀ ଅଛି ଯେ ଜଗନ୍ନାଥଙ୍କ ଗର୍ଭରେ କୃଷ୍ଣଙ୍କ ଶରୀରର ଦହନାବଶେଷ ରକ୍ଷିତ ହୋଇଅଛି ଏବଂ ନୂତନ କଳେବର ସମୟରେ ପୁରୁଣା ମୂର୍ତ୍ତି ଗର୍ଭରୁ ବହିଷ୍କୃତ କରି ନବୀନ ମୂର୍ତ୍ତି ଗର୍ଭରେ ନିହିତ କରାଯାଏ । ମାତ୍ର ଉଲ୍ଲିଖିତ ଗ୍ରନ୍ଥମାନଙ୍କରେ ଏ ବିଷୟରେ କିଛିହିଁ ଲିଖିତ ହୋଇ ନାହିଁ । ଦେହାବଶେଷ ଦନ୍ତ, ଅସ୍ଥି ପ୍ରଭୃତି ରକ୍ଷା କରି ତାହା ପୁଣି ପୂଜା କରିବା ବିଧି ବୋଧହୁଏ ସ୍ମାର୍ତ୍ତମାନଙ୍କର ନାହିଁ । ମହାପୁରୁଷମାନଙ୍କର, ଯଥା— ରାମ, କୃଷ୍ଣ, ବଳରାମ ବା ତତ୍ ପୂର୍ବ ପୂର୍ବ ମହାପୁରୁଷମାନଙ୍କର ଅସ୍ଥି, କେଶ, ବା ଦନ୍ତ ରକ୍ଷା କରିବାର ପ୍ରଥା ଥିବାର କୌଣସି ପୁସ୍ତକାଦିରେ ମିଳେ ନାହିଁ । ତେବେ ବୌଦ୍ଧମାନେ ବୋଧ ହୁଏ ପ୍ରଥମେ ଭକ୍ତିପରବଶ ହୋଇ ବୁଦ୍ଧଙ୍କ ଦନ୍ତ, ଅସ୍ଥି ଓ କେଶ ସ୍ମାରକସ୍ୱରୂପ ରକ୍ଷା କରିଥିଲେ ।

ଉତ୍କଳବାସୀଙ୍କର ଅକ୍ଷୟ କୀର୍ତ୍ତି ଜଗନ୍ନାଥ ପ୍ରତିଷ୍ଠା ଓ ମନ୍ଦିରନିର୍ମାଣର ତତ୍ତ୍ୱ ଆଲୋଚନା କରିବାର ପ୍ରୟୋଜନୀୟ ଉପକରଣ ଦେଶରେ ଯଥେଷ୍ଟ ଅଛି, ମାତ୍ର ବହୁକାଳରୁ ଧାରାବାହିକରୂପେ ଏଥିରେ ଆଲୋଚନା ହେଉ ନ ଥିବାରୁ ଲୋକଙ୍କ ମନରେ, ତଥା ପ୍ରତ୍ନତତ୍ତ୍ୱ-ଅନୁସନ୍ଧିତ୍ସୁମାନଙ୍କ ମନରେ ଭିନ୍ନ ଭାବ ଉପସ୍ଥିତ ହୋଇଅଛି । ଏଣୁ ଯାହା ପ୍ରକାଶ କରାଯିବ, ତାହା ଲୋକେ ଅନୁମାନ ବୋଲି ଉଡ଼ାଇ ଦେବାକୁ

ଚେଷ୍ଟା କରିବେ । ଭଗବାନ୍ ବୁଦ୍ଧଙ୍କ କୃପାଦୃଷ୍ଟି ଏ ଦେଶ ପ୍ରତି ଯଥେଷ୍ଟ ଥିଲା । ଉତ୍କଳ ପକ୍ଷରେ ଏହା ଅତ୍ୟନ୍ତ ଗୌରବର ବିଷୟ ଯେ, ବୁଦ୍ଧଦେବଙ୍କ ତପସ୍ୟାଭଙ୍ଗର ପରକ୍ଷଣରେ ଉତ୍କଳ ଦେଶର ତପ୍ପସ ଓ ଭଲ୍ଲିକ ତାହାଙ୍କୁ ମଧୁପିଣ୍ଡିକ (ମୁଆଁ) ଭକ୍ଷଣ କରାଇଥିଲେ ଏବଂ ଏହି ଦୁଇ ବ୍ୟକ୍ତିଙ୍କୁ ପ୍ରଥମେ ଦୀକ୍ଷିତ କରି ସ୍ମାରକ ସ୍ୱରୂପ ବୁଦ୍ଧଦେବ ନିଜର ଗୋଟିଏ କେଶ ଅର୍ପଣ କରିଥିଲେ । ଉତ୍କଳରେ ବୌଦ୍ଧଧର୍ମ ପ୍ରଚାରର ଏହା ପ୍ରଥମ ଭିତ୍ତିସ୍ଥାପନ । ବୌଦ୍ଧଧର୍ମ ଏ ଦେଶରେ କି ଭାବରେ ପ୍ରଚାରିତ ହୋଇଥିଲା ଏବଂ ଲୋକେ ତାହା କିପରି ଭାବରେ ଗ୍ରହଣ କରିଥିଲେ, ତାହା ଲେଖିବା ନିଷ୍ପ୍ରୟୋଜନ । ଏ ଦେଶର ପର୍ବତ, ପାହାଡ଼, ନଈ, ପୋଖରୀ, ରାସ୍ତା, ଘାଟ, ମନ୍ଦିର, ଆଚାର ବ୍ୟବହାର, ରୀତି ନୀତିରେ ସେହି ଧର୍ମର ନିଦର୍ଶନ ରହି ଯାଇଅଛି । ତନ୍ନ ତନ୍ନ କରି ତାହା ଫିଟାଇ ଦେଖାଇବା ବଡ଼ କଠିନ ବ୍ୟାପାର । ଗୀତାରେ ନାଟରେ ବୌଦ୍ଧ ଧର୍ମର ଛାୟା— ତଥାପି ଏ ଦେଶର ଲୋକେ ଏବେ ଏଡ଼େ ବୌଦ୍ଧବିଦ୍ୱେଷୀ । ଉତ୍କଳର ସୁଯୋଗ୍ୟ ପୁତ୍ର ଓ କବି ଅଚ୍ୟୁତାନନ୍ଦ, ବଳରାମ, ଜଗନ୍ନାଥ, ଅନନ୍ତ ଓ ଯଶୋବନ୍ତ ପ୍ରଚ୍ଛନ୍ନ ବୌଦ୍ଧ । ଏମାନଙ୍କ ପୁସ୍ତକମାନ ବୌଦ୍ଧମତସମ୍ବଳିତ । ଭାଗବତରେ ମଧ୍ୟ ବୌଦ୍ଧ ଧର୍ମର ଉପଦେଶ ଯଥେଷ୍ଟ ରହିଅଛି । ସଂସ୍କୃତ ଭାରତର ଭାଷା, ମାତ୍ର ଓଡ଼ିଆ କେବଳ ଓଡ଼ିଶାର ଭାଷା । ଓଡ଼ିଆ ସାହିତ୍ୟର ପ୍ରଥମ ପଥପ୍ରଦର୍ଶକଗଣ ଓଡ଼ିଆଭାଷୀଙ୍କ ହୃଦୟରେ ଉଚ୍ଚ ସ୍ଥାନ ପାଇବାର ଯୋଗ୍ୟ । ଜଗନ୍ନାଥ ଦାସ ଏଥି ମଧ୍ୟରେ ଜଣେ ପ୍ରଧାନ । ଜଗନ୍ନାଥ ଦାସଙ୍କ ଭାଗବତ ଉତ୍କଳରେ ଯେଉଁ ପରିବର୍ତ୍ତନ ଉପସ୍ଥିତ କରିଅଛି, ଅନ୍ୟ ଗ୍ରନ୍ଥ ସେପରି କରିପାରିଅଛି କି ନାହିଁ ସନ୍ଦେହ । ଭାଗବତ ସଂସ୍କୃତ ଭାଗବତର ଆକ୍ଷରିକ ତର୍ଜମା ନ ହେଉ, ସଂସ୍କୃତଜ୍ଞ ପଣ୍ଡିତଗଣ ଶତ ମୁଖରେ ତାହାର ନିନ୍ଦା କରନ୍ତୁ ପଛକେ, ଏହା ଉତ୍କଳଭାଷୀର ଅମୂଲ୍ୟ ଗ୍ରନ୍ଥ । ଏହାର ସୁମଧୁର ହୃଦୟଦ୍ରବକାରୀ ପଦାବଳୀ ଓଡ଼ିଆଭାଷୀ ପ୍ରତି ବିଜ୍ଞପଣ୍ଡିତଙ୍କ ସଂସ୍କୃତ ଭାଗବତ ବ୍ୟାଖ୍ୟା ଅପେକ୍ଷା ଅତି ମନୋମୁଗ୍ଧକର । ଏହାର ଆକର୍ଷଣୀ ଶକ୍ତି ବେଶି । ଉତ୍କଳରେ ଯେବେ କିଛିହିଁ ଧର୍ମଭାବ ବିସ୍ତୃତ ଲାଭ କରିଅଛି, ତାହା ଏହି ଜଗନ୍ନାଥ ଦାସଙ୍କ ଭାଗବତଦ୍ୱାରା । ମୁଷ୍ଟିମେୟ ସ୍ମାର୍ତ୍ତ ପଣ୍ଡିତ ଏହି ପୁସ୍ତକ ଅଶୁଦ୍ଧି ବୋଲି ନିନ୍ଦାବାଦ କରନ୍ତି ସତ୍ୟ, କିନ୍ତୁ ଶତ ଶତ ସ୍ମାର୍ତ୍ତ ବ୍ରାହ୍ମଣ ପୁରାଣପଣ୍ଡ ଆଖ୍ୟା ଧରି 'ବାରସ୍କନ୍ଦ' ପାଠ କରିବାଦ୍ୱାରା ଜୀବିକା ନିର୍ବାହ କରୁଅଛନ୍ତି । ଜଗନ୍ନାଥ ଦାସ ନିନ୍ଦ୍ୟ ନୁହନ୍ତି, ଉପାସ୍ୟ, ନମସ୍ୟ । ଜଗନ୍ନାଥ ଦାସ ପୁରୀ ଜଗନ୍ନାଥଙ୍କର ପ୍ରକୃତ ଦାସ । ସେ ଦାରୁବ୍ରହ୍ମଙ୍କର ଯଥାର୍ଥ ପରିଚୟ ଲାଭ କରିଥିଲେ । କେବଳ ସେ ନୁହନ୍ତି, ତାଙ୍କର ସହଧର୍ମୀ ବୈଷ୍ଣବଗଣ ମଧ୍ୟ ଉତ୍ତମରୂପେ ଜଗନ୍ନାଥଙ୍କୁ ଜ୍ଞାତ ଥିଲେ । ମହାଭାରତରଚକ ସାରଳା ଦାସ ଦାରୁବ୍ରହ୍ମଙ୍କୁ ସ୍ୱୟଂ ବୁଦ୍ଧ ବୋଲି ମାନିଥିଲେ ।

''ନବମେ ବନ୍ଦଇ ଶ୍ରୀବୁଦ୍ଧ ଅବତାର ।
ବୁଦ୍ଧରୂପେ ବିଜେ କଲେ ଶ୍ରୀନୀଳ କନ୍ଦର ।''

ଦାରୁବ୍ରହ୍ମ ଶବ୍ଦଟି ଅତି ଉପାଦେୟ ଶବ୍ଦ । କାଷ୍ଠରେ ବ୍ରହ୍ମଜ୍ଞାନ ହିନ୍ଦୁ ଧର୍ମାବଲମ୍ବୀର ଚୂଡ଼ାନ୍ତ ଜ୍ଞାନ ପରେ ଉଦୟ ହୁଏ । ଆଶ୍ରମ ଧର୍ମ ବ୍ୟତିରେକେ ଏବଂ ଧର୍ମସୋପାନ ଧୀରେ ଧୀରେ ଆରୋହଣ ନ କଲେ ବ୍ରହ୍ମଜ୍ଞାନ ଅସମ୍ଭବ ବୋଲି ଶାସ୍ତ୍ର କହି ଆସୁଅଛି, ପଣ୍ଡିତଗଣ ଏବେ କହୁଅଛନ୍ତି । ଏପରିସ୍ଥଳେ ଦାରୁରେ ବ୍ରହ୍ମଜ୍ଞାନ ହେବା ସ୍ମାର୍ତ୍ତ ଶାସ୍ତ୍ରସମ୍ମତ କି ? ଜଗନ୍ନାଥ ଦାସ ଅବଶ୍ୟ ଏକସ୍ଥଳରେ ଲେଖିଅଛନ୍ତି—

''ଏହି ସ୍ତମ୍ଭରେ ଦେଲେ ମନ,
ଏହି ସ୍ତମ୍ଭରେ ଭଗବାନ୍ ।''

ମାତ୍ର ଏହା ଆଶ୍ରମ ଧର୍ମର ମତ ନୁହେଁ । ବିନା ସ୍ନାନରେ ବେଦ ପଢ଼ିଲେ, ଈଶ୍ୱରଙ୍କୁ ଡାକିଲେ, ସ୍ତୁତିପାଠ କଲେ ବେଦ ମାରା ପଡ଼ିବ, ଈଶ୍ୱର ଛୁଆଁ ହେବେ ବୋଲି ଯେଉଁମାନଙ୍କର ଜ୍ଞାନ, ସେମାନଙ୍କର ଏ ମତ ନୁହେଁ । ଯେଉଁମାନେ ନିଜକୁ ସଦା ଶୁଚି ମନେ କରନ୍ତି, ସେମାନେ ଇଚ୍ଛାନୁସାରେ ସ୍ତବ ପାଠ କରି ପାରନ୍ତି, ଈଶ୍ୱରଙ୍କୁ ଡାକି ପାରନ୍ତି । ସେମାନଙ୍କର ଦାରୁରେ ବ୍ରହ୍ମଜ୍ଞାନ ହୋଇପାରେ । ଏହା ସମ୍ପୂର୍ଣ୍ଣ ବିଶ୍ୱାସମୂଳକ ଧର୍ମ, ବିଧିବଦ୍ଧ ଧର୍ମ ନୁହେଁ ।

ଦାରୁବ୍ରହ୍ମ ଶବ୍ଦଟି ନବଉଦ୍ଭାବିତ— ଅର୍ଥାତ୍ ଆର୍ଯ୍ୟଗଣଙ୍କର ପ୍ରାଚୀନ ବେଦ, ବ୍ରାହ୍ମଣ, ଉପନିଷଦର ଶବ୍ଦ ନୁହେଁ । ପୁରାଣମାନଙ୍କରେ ମଧ୍ୟ ବ୍ୟବହୃତ ନୁହେଁ । କେତେଟା ବୈଷ୍ଣବ, ପୁରାଣରେ ମାତ୍ର ଅଛି । ଜଗନ୍ନାଥ ମୂର୍ତ୍ତି ନିର୍ମାଣ ସଙ୍ଗେ ସଙ୍ଗେ ଏହି ଶବ୍ଦର ସୃଷ୍ଟି । ବ୍ରହ୍ମା ଜଗନ୍ନାଥଙ୍କ ପୂଜା ସମାପନ କରି ସ୍ତୁତି ପାଠ କଲେ । ନୃସିଂହ, ବାମନ, ରାମ, ପରଶୁରାମ, ବଳରାମ, ବୁଦ୍ଧ, କଳ୍କିଙ୍କ ନାମରେ ଗୋଟିଏ ଗୋଟିଏ ଶ୍ଳୋକ ପାଠ କଲେ । ବାମନଙ୍କୁ ତ୍ରିବିକ୍ରମାୟ, ରାମଙ୍କୁ ରାମାୟ, ପରଶୁରାମଙ୍କୁ ଜାମଦଗ୍ନ୍ୟାୟ, ବଳରାମଙ୍କୁ ରୋହିଣ୍ୟାନନ୍ଦବର୍ଦ୍ଧନେ ବଳାୟ; କଳ୍କିଙ୍କି କଳ୍କିନେ ବୋଲି ସମ୍ବୋଧନ କଲେ; ମାତ୍ର ବୁଦ୍ଧଙ୍କୁ ଦାରୁବ୍ରହ୍ମସ୍ୱରୂପାୟ ବୋଲି ସ୍ତୁତି କଲେ କାହିଁକି ? ଯଦି ବ୍ରହ୍ମାଙ୍କର ଏପରି ଜ୍ଞାନ ଥିଲା ଯେ, ନୃସିଂହ ଏହି ଦାରୁବ୍ରହ୍ମ, ରାମ ଏହି ଦାରୁବ୍ରହ୍ମ, ବାମନ ଏହି ଦାରୁବ୍ରହ୍ମ ବା କଳ୍କି ଏହି ଦାରୁବ୍ରହ୍ମ, ତେବେ

ପ୍ରତ୍ୟେକ ସ୍ତୁତିରେ ଦାରୁବ୍ରହ୍ମ ଶବ୍ଦ ବ୍ୟବହାର ନ କରି କେବଳ ବୁଦ୍ଧଙ୍କ ସ୍ତୁତିରେ ଦାରୁବ୍ରହ୍ମ ଶବ୍ଦ ବ୍ୟବହାର କଲେ କାହିଁକି ? ଏଥିରୁ ସ୍ପଷ୍ଟ ପ୍ରକାଶ ପାଉଅଛି ଯେ, ବୁଦ୍ଧହିଁ କେବଳ ଦାରୁବ୍ରହ୍ମସ୍ୱରୂପ । ସ୍ତୁତିଟି ଏହି—

''ଅଦ୍ୱିତୀୟ ପରାର୍ଦ୍ଧସ୍ୟ ପ୍ରମାପୂରଣକାରିଣେ ।
ଦାରୁବ୍ରହ୍ମସ୍ୱରୂପାୟ ତସ୍ମୈ ବୁଦ୍ଧାତ୍ମନେ ନମଃ ॥''

ସ୍ୱସଂସ୍କୃତଜ୍ଞ ନୋହିଲେ ମଧ୍ୟ ଗୋଟିକାତେ ସ୍ତୁତି ଲେଖି ପକାଇଲି । ଅଶୁଦ୍ଧ ଥିଲେ ଶୁଦ୍ଧ କରି ପାଠ କରାଯିବ ଏବଂ ମୋର କ୍ଷମାଭିକ୍ଷା ମଞ୍ଜୁର ହେବ ।

୧ । ଜନ୍ମାଭିଷେକୋ ଯସ୍ୟାଭୂତ୍
ରୋହିଣୀକୁଣ୍ଡବାରିଣା ।
ଦାରୁବ୍ରହ୍ମସ୍ୱରୂପାୟ
ତସ୍ମୈ ବୁଦ୍ଧାତ୍ମନେ ନମଃ ।

୨ । ସତ୍ୟଧର୍ମପ୍ରଚାରାର୍ଥଂ
ନ୍ୟଗ୍ରୋଧଢଳମାଶ୍ରିତଃ ।
ଦାରୁବ୍ରହ୍ମସ୍ୱରୂପାୟ
ତସ୍ମୈ ବୁଦ୍ଧାତ୍ମନେ ନମଃ ।

୩ । ଯସ୍ୟ କଲ୍ୟାଣଧର୍ମସ୍ୟ
ସ୍ମାରକୌ ରୋହିଣୀବଟୌ ।
ଦାରୁବ୍ରହ୍ମସ୍ୱରୂପାୟ
ତସ୍ମୈ ବୁଦ୍ଧାତ୍ମନେ ନମଃ ।

୪ । ନାସ୍ତି ଜାତିଭେଦବୁଦ୍ଧି
ର୍ଯସ୍ୟ ମନ୍ଦିରପ୍ରାଙ୍ଗଣେ ।
ଦାରୁବ୍ରହ୍ମସ୍ୱରୂପାୟ
ତସ୍ମୈ ବୁଦ୍ଧାତ୍ମନେ ନମଃ ।

୫ । ସ୍ମାର୍ତ୍ତବୌଦ୍ଧାଦିଧର୍ମାଣାଂ
ସମନ୍ୱୟଂ କରୋତି ଯଃ ।
ଦାରୁବ୍ରହ୍ମସ୍ୱରୂପାୟ
ତସ୍ମୈ ବୁଦ୍ଧାତ୍ମନେ ନମଃ ।

୬ । ପତିତାନାଂ ପାବନାୟ
ପୁରୁଷୋତ୍ତମମାଶ୍ରିତଃ ।
ଦାରୁବ୍ରହ୍ମସ୍ୱରୂପାୟ
ତସ୍ମୈ ବୁଦ୍ଧାତ୍ମନେ ନମଃ ।

୭ । ଯସ୍ୟ କ୍ଷେତ୍ରେପ୍ୟାଦ୍ରିୟନ୍ତେ
ଉଚ୍ଛିଷ୍ଟା ବ୍ରାହ୍ମଣାଦିଭିଃ ।
ଦାରୁବ୍ରହ୍ମସ୍ୱରୂପାୟ
ତସ୍ମୈ ବୁଦ୍ଧାତ୍ମନେ ନମଃ ।

୮ । ତ୍ରିରତ୍ନଂ ଯସ୍ୟ ଧର୍ମସ୍ୟ
ତ୍ରିଧାରୂପୈ ର୍ବିରାଜତେ ।
ଦାରୁବ୍ରହ୍ମସ୍ୱରୂପାୟ
ତସ୍ମୈ ବୁଦ୍ଧାତ୍ମନେ ନମଃ ।

ରୋହିଣୀକୁଣ୍ଡର ପ୍ରଶସ୍ତି ଅତି ବଡ଼ । ଏହା ଭୁବନେଶ୍ୱରର ମରିଚ୍‌କୁଣ୍ଡ ବା କେଦାରଗୌରୀ କୁଣ୍ଡ ପରି ସ୍ୱାଭାବିକ ଜଳାଧାର କି ? କିମ୍ବା ନଦୀ ସ୍ରୋତ, ଜୋର, ନାଳ କି ପୋଖରୀ ତ ନୁହେଁ । ଗୋଟାଏ ଅତି କ୍ଷୁଦ୍ର ପ୍ରସ୍ତରନିର୍ମିତ ଜଳାଧାର । ସ୍ୱାଭାବିକ ଜଳାଧାର ହୋଇଥିଲେ ଲୋକେ ମନେ କରନ୍ତେ ଯେ, ମନ୍ଦିର ନିର୍ମାଣ ପୂର୍ବରୁ ଥିଲା, ଏଣୁ ଏହା ରହିଯାଅଛି, ଏହା ଗୋଟିଏ ତୀର୍ଥ । ତାହା ମଧ୍ୟ ନୁହେଁ । ଏଲାହାବାଦ ଗଙ୍ଗା ଯମୁନାର ମିଳନ ସ୍ଥଳ, ଏହି ସ୍ଥାନରେ ସରସ୍ୱତୀ ନଦୀର କଳ୍ପନା କରି ଗୋଟିଏ କୁଣ୍ଡ କରାଯାଇଅଛି । ଯେହେତୁ ଗଙ୍ଗା ଯମୁନା ସରସ୍ୱତୀ ହିନ୍ଦୁର ପବିତ୍ର ନଦୀ । ସରସ୍ୱତୀ ନଦୀ ଅଛି, ଏଣୁ ତା'ର କଳ୍ପନା । ମାତ୍ର ରୋହିଣୀ ନାମରେ ହିନ୍ଦୁର କୌଣସି ତୀର୍ଥ ଅଛି କି ? ନାହିଁ । ଅତିଗୂଢ଼ ଅନୁସନ୍ଧାନ କଲେ ଜଣାଯାଏ ଯେ, କପିଳବାସ୍ତୁର ଲୁମ୍ବିନୀ ଉପବନ ନିକଟବର୍ତ୍ତୀ ନଦୀର ନାମ ରୋହିଣୀ । ଏହି ଉପବନରେ ସିଦ୍ଧାର୍ଥ ଜନ୍ମଗ୍ରହଣ କରିଥିଲେ । ଏହି ରୋହିଣୀ ନଦୀ ବାରିଦ୍ୱାରା ତାଙ୍କର ପ୍ରଥମ ସ୍ନାନ ହୋଇଥିଲା । ସୁତରାଂ ସେହି ରୋହିଣୀ କୁଣ୍ଡର ସ୍ମରଣାର୍ଥ କୃତ୍ରିମ ରୋହିଣୀକୁଣ୍ଡର ପ୍ରତିଷ୍ଠା ପୁରୀ ଧାମରେ ହୋଇଅଛି ।

ଅଶ୍ୱତ୍‌ଥ ବୃକ୍ଷ ମୂଳରେ ସିଦ୍ଧାର୍ଥ ଧ୍ୟାନମଗ୍ନ ରହି ବୁଦ୍ଧତ୍ୱ ପ୍ରାପ୍ତ ହେଲେ, ଏଣୁ ଅଶ୍ୱତ୍‌ଥ ବୃକ୍ଷ ବୌଦ୍ଧମାନଙ୍କର ଅତୀବ ପବିତ୍ର ବୃକ୍ଷ । ନ୍ୟଗ୍ରୋଧ (ବଟ) ମଧ୍ୟ ସେହିପରି ପବିତ୍ର ବୃକ୍ଷ ଅଟେ । ବୁଦ୍ଧଦେବ ବଟବୃକ୍ଷ ମୂଳରେ ଉପବେଶନ କରି ପ୍ରଥମେ ଧର୍ମଚକ୍ର ପ୍ରବର୍ତ୍ତିତ କଲେ । ନ୍ୟଗ୍ରୋଧ ବୃକ୍ଷ ନିକଟରେ ଜଗନ୍ନାଥ ମନ୍ଦିର ନିର୍ମାଣର ବ୍ୟବସ୍ଥା ହୋଇଥିଲା ।

ନାନା ଦେବତାର ମୂର୍ତ୍ତି ପାଷାଣରେ, ଧାତୁରେ ଓ କାଷ୍ଠରେ ନିର୍ମିତ ହୁଏ । ମୂର୍ତ୍ତିର ଆକାର ଭଙ୍ଗୀ ଦେଖି ଦେବତାର ପରିଚୟ କରାଯାଏ । ଜଗନ୍ନାଥ କେବଳ କାଷ୍ଠରେ ନିର୍ମିତ । ରାମ, କୃଷ୍ଣ, ବାମନ, ନୃସିଂହ, ବୁଦ୍ଧ ଈଶ୍ୱରଙ୍କର ଅବତାର ହୋଇଥିଲେ ସୁଦ୍ଧା ରାମମୂର୍ତ୍ତିକୁ ବାମନମୂର୍ତ୍ତି ବା ନୃସିଂହମୂର୍ତ୍ତିକୁ କୃଷ୍ଣ ମୂର୍ତ୍ତି ବୋଲାଯାଇ ନ ପାରେ । ସେହିପରି ଜଗନ୍ନାଥ ଜନାର୍ଦ୍ଦନଙ୍କର ପରିକଳ୍ପିତ ମୂର୍ତ୍ତି ହୋଇଥିଲେ ମଧ୍ୟ ଜଗନ୍ନାଥଙ୍କୁ ରାମମୂର୍ତ୍ତି ବା ନୃସିଂହ ବା କୃଷ୍ଣ ମୂର୍ତ୍ତି ବୋଲାଯାଇ ନ ପାରେ— ଜଗନ୍ନାଥଙ୍କୁ ବଳଦେବ ମଧ୍ୟ ବୋଲାଯାଇ ନ

ପାରେ । ଜଗନ୍ନାଥ ଜଗନ୍ନାଥ— କିମ୍ବା ଦାରୁବ୍ରହ୍ମ । ଉପରୋକ୍ତ ପ୍ରମାଣମାନଙ୍କରୁ ଓ ଲୋକମାନଙ୍କର ପ୍ରାଚୀନ ବଦ୍ଧମୂଳ ବିଶ୍ୱାସରୁ ନୀଳାଚଳନାୟକ ବୁଦ୍ଧ, ଜଗନ୍ନାଥ ଓ ଦାରୁବ୍ରହ୍ମ ଅଭିନ୍ନ ବୋଲି ପ୍ରତିପନ୍ନ ହେଉଅଛି ।

ବୌଦ୍ଧଦ୍ୱେଷୀମାନେ ପ୍ରକୃତ କଣ୍ଟକୁ ଉଡ଼ାଇ ଦେବା ଇଚ୍ଛାରେ ପୁରୀ ମନ୍ଦିରରେ ବୌଦ୍ଧ ଧର୍ମର ଲେଶମାତ୍ର ନ ଥିବାର ପତିପନ୍ନ କରିବାକୁ ଯଥାଶକ୍ତି ଚେଷ୍ଟା କରିଅଛନ୍ତି । ମନ୍ଦିରର ତିନି ମୂର୍ତ୍ତିଙ୍କୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଆଖ୍ୟା ଦେଇଅଛନ୍ତି । ଜଗନ୍ନାଥ ଯେବେ କୃଷ୍ଣ ଏବଂ ବଳଭଦ୍ର ତାଙ୍କର ଭାଇ ଓ ସୁଭଦ୍ରା ଭଗିନୀ, ତେବେ ଏମାନଙ୍କର ମୂର୍ତ୍ତିଗୁଡ଼ିକୁ ରାମ, ଲକ୍ଷ୍ମଣ, ସୀତା ବା ରାଧାକୃଷ୍ଣଙ୍କ ପରି ସୌଷ୍ଠବାନ୍ୱିତ ନ କରି ବିକଳାଙ୍ଗ କରାଗଲା କାହିଁକି ? ପୂର୍ବେ ଦେଖାଇ ଦିଆଯାଇଅଛି, ନିର୍ମାତା ସ୍ଥିର ମସ୍ତିଷ୍କରେ ଏହି ମୂର୍ତ୍ତିତ୍ରୟର କଳ୍ପନା କରି ନିର୍ମାଣ କରିଅଛନ୍ତି । ଏହି ତିନି ମୂର୍ତ୍ତି ବୁଦ୍ଧ, ଧର୍ମ ଓ ସଂଘ । ଜଗନ୍ନାଥ ବୁଦ୍ଧ, ସୁଭଦ୍ରା ଧର୍ମ ଓ ବଳଭଦ୍ର ସଂଘ। ପାଠକେ ପଚାରି ପାରନ୍ତି— ବୁଦ୍ଧ, ଧର୍ମ ଓ ସଂଘର ଏପରି ଆକାର ହେବାର କାରଣ କ'ଣ ? ଏହାର ଠିକ୍ କାରଣ ନିର୍ଦ୍ଦେଶ କରିବା ବଡ଼ ସହଜ ନୁହେଁ । ବୁଦ୍ଧଙ୍କର ନିର୍ବାଣପ୍ରାପ୍ତିର କେତେକ ଶତାବ୍ଦୀ ପରେ ଏହି ଧର୍ମର ଏତେ ଶାଖା ପ୍ରଶାଖା ହୋଇପଡ଼ିଲା ଏବଂ ମତର ଏତେ ପରିବର୍ତ୍ତନ ଘଟିଲା ଯେ, ତାହା ଅକଥନୀୟ । ମାତ୍ର ଏତାଦୃଶ ପରିବର୍ତ୍ତନ ଓ ପରିବର୍ଦ୍ଧନ ସତ୍ତ୍ୱେ ସେହି ତ୍ରିରତ୍ନ ବୌଦ୍ଧଧର୍ମର ଭିତ୍ତି ହୋଇରହିଲା । ସେହି ତ୍ରିରତ୍ନର ଶରଣାପନ୍ନ ଥାଇ ସହଜ ଉପାୟରେ ନିର୍ବାଣପ୍ରାପ୍ତିର ଆକାଙ୍କ୍ଷା ବଳବତୀ ହୋଇଉଠିଲା । ତନ୍ତ୍ର ମନ୍ତ୍ର ଓ ଯନ୍ତ୍ରର ମଧ୍ୟ ସୃଷ୍ଟି ହେଲା । ସେହି ସମୟରେ ବୌଦ୍ଧ ତ୍ରିରତ୍ନର ଆକାର କଳ୍ପନା କରାଯାଇ ପୂଜା ଆରମ୍ଭ କରାଯାଇଅଛି । ଏହା ଅବଶ୍ୟ ସମସ୍ତେ ସ୍ୱୀକାର କରିବେ ଯେ, କାଳୀ, ତାରା ପ୍ରଭୃତି ଦେବୀଙ୍କର ରୂପ କଳ୍ପନା କରାଯାଇଅଛି ଏବଂ ସେମାନଙ୍କର ଯନ୍ତ୍ର ମଧ୍ୟ ଅଛି । ଅନେକଙ୍କର ବିଶ୍ୱାସ ଯେ, ମୂର୍ତ୍ତି ଅପେକ୍ଷା ଯନ୍ତ୍ରପୂଜା ଅଧିକ ଅଭୀଷ୍ଟଫଳଦାୟକ । ବୃତ୍ତ ମଧ୍ୟଗତ ଅଷ୍ଟଦଳ ପଦ୍ମ ମଧ୍ୟସ୍ଥ ଓଲଟା ତ୍ରିକୋଣର କେନ୍ଦ୍ରଗତ ହୁଁ ଲିଖିତ ଯନ୍ତ୍ରର ନାମ ତାରା ଯନ୍ତ୍ର। ଏହି ଯନ୍ତ୍ରରେ ତାରାଙ୍କର କିଛି ପରିଚୟ ଅଛି, ନା ରୂପ ଗୁଣର ପରିଚୟ ମିଳୁଅଛି ? ତଥାପି ଏହାର ନାମ ତାରାଯନ୍ତ୍ର । ସାଧକ ବିଶ୍ୱାସ କରେ ଯେ, ଏହି ଯନ୍ତ୍ର ପୂଜା କଲେ ସେ ଅଶେଷ ଫଳ ଲାଭ କରିବ । ସେହିପରି ତ୍ରିରତ୍ନର ଯନ୍ତ୍ର ଓ ଆକାର କଳ୍ପନା କରି ପୂଜା କରୁଥିଲେ । ସେଥିରୁ ପୁଣି ଆକାର କଳ୍ପନା କରି, ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତିର ନିର୍ମାଣ । କହିବା ବାହୁଲ୍ୟ ଯେ, ଏହି ତ୍ରିରତ୍ନ ନାନା ସ୍ଥାନରେ ନାନା ଆକାରରେ ପୂଜିତ ହେଉଥିଲେ ଓ ହେଉଅଛନ୍ତି, ଯଥା— ନେପାଳରେ ଆଦି ବୁଦ୍ଧ ଆତ୍ମା ରୂପରେ, ଧର୍ମ ବସ୍ତୁ ବା ପ୍ରକୃତି ରୂପରେ, ସଂଘ ପରିଦୃଶ୍ୟମାନ ସଂସାର ରୂପରେ ।

ନେପାଳର ପ୍ରସିଦ୍ଧ ଶମ୍ଭୁନାଥ ମନ୍ଦିରର ଅଧିଷ୍ଠାତ୍ରୀ ଦେବତା ଆଦି ବୁଦ୍ଧ । ଏହି ମନ୍ଦିରରେ ବୁଦ୍ଧ, ଧର୍ମ ଓ ସଂଘ ମୂର୍ତ୍ତି ପୂଜିତ ହୁଅନ୍ତି । ତିନିଗୋଟି ମୂର୍ତ୍ତି ପଦ୍ମପତ୍ର ଉପରେ ପଦ୍ମାସନ ହୋଇ ଉପବିଷ୍ଟ । ବୁଦ୍ଧ ଦ୍ୱିଭୁଜ, ଧର୍ମ ଓ ସଂଘ ଚତୁର୍ଭୁଜ । ଧର୍ମ ମାତ୍ର ସ୍ତ୍ରୀ ରୂପରେ ବିରାଜମାନ । ଏହି ତିନି ମୂର୍ତ୍ତି ନେପାଳର ଶ୍ରେଷ୍ଠ ଦେବତା— ଏମାନଙ୍କ ଉତ୍ତାରୁ ଶିବଙ୍କର ଅବତାର ମହାକାଳ, ଶିବପତ୍ନୀ କାଳୀ, ଇନ୍ଦ୍ର, ଗରୁଡ଼ ଓ ଗଣେଶଙ୍କର ସ୍ଥାନ । ଏଥିରୁ କି ସ୍ପଷ୍ଟ ବୁଝା ଯାଉ ନାହିଁ ଯେ, ପୁରୀରେ ପୂଜିତ ବୁଦ୍ଧ, ଧର୍ମ, ସଂଘ ଏବଂ ନେପାଳରେ ପୂଜିତ ବୁଦ୍ଧ, ଧର୍ମ ଓ ସଂଘ ମଧ୍ୟରେ ପାର୍ଥକ୍ୟ ନାହିଁ ? ପାର୍ଥକ୍ୟ ମାତ୍ର ଏତିକି ଯେ, ଏଠା ମୂର୍ତ୍ତିଗୁଡ଼ିକ ହସ୍ତପଦବିହୀନ ଓ ନରାକୃତି ନୁହନ୍ତି, ନେପାଳର ମୂର୍ତ୍ତିଗୁଡ଼ିକ ନରାକୃତି ଓ ସୌମ୍ୟ ।

ବୁଦ୍ଧଶିଷ୍ୟମାନଙ୍କ ଭ୍ରାତୃତ୍ୱର ନାମ ଓ ବୌଦ୍ଧଧର୍ମ ସମିତିର ନାମ ସଂଘ । ପ୍ରତ୍ୟେକ ଧର୍ମବିଶ୍ୱାସୀ ବୌଦ୍ଧ ଧର୍ମର ବ୍ୟଷ୍ଟିଶକ୍ତିବାଚକ । ସଂଘ ଅର୍ଥ ପ୍ରତ୍ୟେକ ଧର୍ମବିଶ୍ୱାସୀଙ୍କ ସମ୍ମିଳିତ ବଳ ବା ବଳସମଷ୍ଟିବାଚକ ସମୂହ । ସମୂହ ଓ ସମଷ୍ଟିର ପ୍ରତିଶବ୍ଦ ଭଦ୍ର— ଅତଏବ ସଂଘର ନାମ ବଳଭଦ୍ର ହେବା ସ୍ୱାଭାବିକ । ଏହା କପୋଳକଳ୍ପିତ ନୁହେଁ । ଅଭିଧାନ ଅନୁସନ୍ଧାନ କଲେ ସ୍ପଷ୍ଟ ଜଣାଯିବ । ବୌଦ୍ଧ ତ୍ରିରତ୍ନର ସଂଘ ବା ବଳଭଦ୍ରକୁ ବଳରାମ, ବଳଦେବ ବୋଲି ପରିଚୟ ଦେବାକୁ ହିନ୍ଦୁଗଣଙ୍କୁ ସହଜ ପଡ଼ିଲା ।

ଆଜିକାଲି ସ୍ୱସ୍ତିକ ଶବ୍ଦର ଅର୍ଥ ସମସ୍ତଙ୍କୁ ଜଣା, ତାହାର ବ୍ୟାଖ୍ୟା କରିବା ନିଷ୍ପ୍ରୟୋଜନ। ଏହା ବୌଦ୍ଧମାନଙ୍କର ଅତି ପବିତ୍ର ଚିହ୍ନ ଓ ଶୁଭପ୍ରଦ । ଏହି ଚିହ୍ନ ପୃଥିବୀର ସମସ୍ତଙ୍କର ଶୁଭପ୍ରଦ ଓ ଶୋଭାପ୍ରଦ ହୋଇଅଛି । ଇଉରୋପୀୟମାନଙ୍କର ଲକେଟରେ, ବ୍ରୁଚରୂପରେ ଲେଡ଼ିମାନଙ୍କର ବକ୍ଷସ୍ଥଳରେ ଆଜି ସ୍ୱସ୍ତିକ ଶୋଭା ପାଉଅଛି । ସ୍ୱସ୍ତିକ ଚିଠି କାଗଜ, ସ୍ୱସ୍ତିକ ଲଫାଫା, ସ୍ୱସ୍ତିକ ଛାପ କପଡ଼ା ଭଲ ଦାମରେ ବିକ୍ରୟ ହେଉଅଛି । ସ୍ୱସ୍ତିକ ଛାପଟି ଯେ ବୌଦ୍ଧ ଛାପ, ଏଥିରେ ସନ୍ଦେହ ଅଛି କି ? ନାରଦୀୟ ପୁରାଣ ଲେଖକ ଏହି ସ୍ୱସ୍ତିକ ଛାପ

ନନ୍ଦଦେବଙ୍କ ମସ୍ତକରେ ଲଗାଇଲେ କିପରି ? ସେ ଲେଖନ୍ତି—

''ଗୌରାଂ ଗୋକ୍ଷୀରବର୍ଣ୍ଣାଙ୍ଗ
ଦ୍ୱିତୀୟଂ ସ୍ୱସ୍ତିକାଙ୍କିତଂ ।।''

କୃଷ୍ଣଙ୍କ ଭଗିନୀ ସୁଭଦ୍ରା ପୂଜା ପାଇବାର କିଛି ହିଁ କାରଣ ନାହିଁ । କୌଣସି ପୁରାଣରେ ଏଥିରେ ନିର୍ଦ୍ଦେଶ ନାହିଁ । କାହିଁଗଲେ କୃଷ୍ଣଜନନୀ ଦେବକୀ, ପିତା ବାସୁଦେବ, ପଟ୍ଟମହିଷୀ ରୁକ୍ମିଣୀ, ପ୍ରିୟା ସତ୍ୟଭାମା, ଅଥଚ୍ ପୂଜା ପାଇଲେ ସୁଭଦ୍ରା । ସୁଭଦ୍ରା ପାଇଲେ ପୂଜା— ତାଙ୍କ ପୂଜ୍ୟ ସ୍ୱାମୀ, ଦ୍ୱିତୀୟ କୃଷ୍ଣ, କୃଷ୍ଣସଖା, ଭାରତଯୁଦ୍ଧ-ବିଜେତା, ବୈଷ୍ଣବ ଧର୍ମପ୍ରଚ୍ାରର ସହାୟକ ଅର୍ଜୁନ ଗଲେ କେଣେ ? ଏ ସବୁ ଭାବିଲେ ସୁଭଦ୍ରାଙ୍କ ମୂର୍ତ୍ତି କଳ୍ପନାଟା ଆଦୌ ଅତୁଆ ବୋଲି ମନେ ହୁଏ । ଏହି ନାମଟି ମଧ ବୌଦ୍ଧଶାସ୍ତ୍ରରୁ ଆନୀତ ବୋଲି ମନେ ହୁଏ । ଧର୍ମ ଯେ ସ୍ତ୍ରୀରୂପିଣୀ, ଏହା ପୂର୍ବେ ଲେଖାଯାଇଅଛି । ସ୍ତ୍ରୀବେଶଧାରିଣୀ ସ୍ତ୍ରୀ, ଏଣୁ ଶୁକ୍ଳବର୍ଣ୍ଣ । ବୌଦ୍ଧଶାସ୍ତ୍ରରେ ସୁଭଦ୍ରା ଅର୍ଥ ସୁଗୌରବାନ୍ୱିତା ଓ ସୁମହିମାନ୍ୱିତା । ବୌଦ୍ଧ ଗ୍ରନ୍ଥରେ ସୁ ଶବ୍ଦଟି ବଡ଼ ସୁଲଭ । ଭଦ୍ଦ, ସୁଭଦ୍ଦ ବା ଭଦ୍ରା, ସୁଭଦ୍ରା ନାମର ତ ଅଭାବ ନାହିଁ, ଯଥା— ରେବତ ବୁଦ୍ଧଙ୍କ (ପୂର୍ବ ବୁଦ୍ଧ ମଧରୁ ଜଣେ) ଶିଷ୍ୟାର ନାମ ଭଦ୍ରା ଓ ସୁଭଦ୍ରା । ଅଶୋକଙ୍କ ମାତାଙ୍କ ନାମ ସୁଭଦ୍ରାଙ୍ଗୀ । ଏହା ଛଡ଼ା ମହା ସୁଦର୍ଶନ (ସୁଦର୍ଶନ) ଜାତକ ପାଠରୁ ଜଣାଯାଏ ଯେ, ବୁଦ୍ଧ ଏକଜନ୍ମରେ ସୁଦର୍ଶନ ନାମକ ମହାରାଜ ଥିଲେ ଏବଂ ତାଙ୍କ ମହାରାଣୀଙ୍କ ନାମ ସୁଭଦ୍ରା ଥିଲା । ଉଲ୍ଲିଖିତ କାରଣରୁ ଧର୍ମ ଦେବତାର ନାମ ସ୍ୱତଃ ସୁଭଦ୍ରା ହୋଇପଡୁଅଛି । ଧର୍ମର ନାମ ବୁଦ୍ଧଙ୍କ ସହଧର୍ମିଣୀ ସୁଭଦ୍ରା ନାମ ଅନୁସାରେ କିମ୍ବା ରେବତ ବୁଦ୍ଧଙ୍କ ଶିଷ୍ୟା ସୁଭଦ୍ରା ନାମ ଅନୁସାରେ ହୋଇଅଛି ବୋଲି ବିଶ୍ୱାସ ନ କରି ଅଭିମନ୍ୟୁ ଜନନୀ ସୁଭଦ୍ରା ନାମରେ ନାମକରଣ ହୋଇଅଛି ବୋଲି ଭାବିବା କିଆଁ ?

ଏହି ତ୍ରିରତ୍ନ ତ୍ରିମୂର୍ତ୍ତି ସଙ୍ଗରେ ସୁଦର୍ଶନ ଅଛନ୍ତି । ଏହାର ବର୍ଣ୍ଣନା ନିଷ୍ପ୍ରୟୋଜନ । ଲୋକେ ସୁଦର୍ଶନ ଚକ୍ର କହନ୍ତି । ବିଷ୍ଣୁ ଆୟୁଧ ସୁଦର୍ଶନ ଚକ୍ରର ଆକାର ରଥଚ୍କ୍ର ନ୍ୟାୟ । ବିଷ୍ଣୁପ୍ରତିମାଙ୍କ ହସ୍ତରେ ରହୁଥିବା ଚକ୍ର ଠିକ ବଡ଼ଦେଉଳ ଉପରେ ଥିବା ଚକ୍ର ତୁଲ୍ୟ । ମାତ୍ର ଜଗନ୍ନାଥଙ୍କ ବାମ ପାର୍ଶ୍ୱରେ ଥିବା ସୁଦର୍ଶନ ସହିତ ଚକ୍ରର କୌଣସି ସାଦୃଶ୍ୟ ଅଛି କି ? ତେବେ ସୁଦର୍ଶନ ଚକ୍ର ବୋଲିବାର ତାତ୍ପର୍ଯ୍ୟ କ'ଣ ? ସାଧାରଣତଃ ଦେଖିଲେ ଏଥିରେ ସଞ୍ଚିତ ଧାତୁଗର୍ଭର ସାମଞ୍ଜସ୍ୟ ଅଛି ବୋଲି ବୋଧହୁଏ । ଦାର୍ଜିଲିଙ୍ଗ ଭ୍ରମଣକାରୀମାନଙ୍କର ଅବଶ୍ୟ ସ୍ମରଣ ଥାଇପାରେ ଯେ, ସେଠାରେ ବୌଦ୍ଧ ମନ୍ଦିରମାନଙ୍କରେ ଗୋଟିଏ ଗୋଟିଏ ଧର୍ମଚକ୍ର ଅଛି । ଦେଖିବାକୁ ଅତି ବୃହତ୍ ଢୋଲ ପରି । ଏଥିମଧରେ ବୁଦ୍ଧ, ସ୍ତୁତି, ବୁଦ୍ଧଙ୍କ ଧାନ ପ୍ରଭୃତି ରଖାଯାଇଅଛି । ଏହି କାଷ୍ଠଟିକୁ ଥରେ ବୁଲାଇଦେଲେ ଯେ ଫଳ ଭିତରେ ଥିବା ସମସ୍ତ ସବ ସ୍ତୁତିପାଠ କଲେ ସେହି ଫଳ । ଧର୍ମବିଶ୍ୱାସୀମାନେ ପଇସା ଦେଇ ତାହା ବୁଲାନ୍ତି, ପୁରୋହିତମାନଙ୍କର ବେଶ୍ ରୋଜଗାର ହୁଏ । ଆମ୍ଭ ସୁଦର୍ଶନ ଆକାରରେ ଅତି ଛୋଟ, ନୋହିଲେ ଦେଖିବାକୁ ସେହିପରି ଗୋଲ । ବିଷ୍ଣୁଙ୍କ ଆୟୁଧ ହେଲେ ଗୋଟାଏ ଚକ୍ର ରଖାଯାଇଥାନ୍ତା । ଗୋଲାକାର କାଷ୍ଠ ହେତୁରୁ ମନେ ହୁଏ, ଏହା ଧର୍ମଚକ୍ର ଏବଂ ଏଥିମଧରେ କୌଣସି ଯନ୍ତ୍ର ବା ମନ୍ତ୍ର ରକ୍ଷିତ ଅଛି । ତିବ୍ବତର ଧର୍ମଚ୍କ୍ର ବୁଲାଇଦେଲେ ଯେଉଁ ଲାଭ, ଆମ୍ଭ ସୁଦର୍ଶନ ଚକ୍ରକୁ ଦେଖିଦେଲେ ସେହି ଲାଭ । ଯେତେବେଳେ ବୁଦ୍ଧଦେବଙ୍କର ନିର୍ବାଣ ଲାଭ କରିବାର ସମୟ ଉପସ୍ଥିତ ହେଲା, ସେତେବେଳେ ସେ ଯୁଗ୍ମ ଶାଳତରୁମୂଳରେ ବିଶ୍ରାମ ନେଲେ । ପ୍ରିୟ ଶିଷ୍ୟ ଆନନ୍ଦ କହିଲେ, ଏହି ସାମାନ୍ୟ ସ୍ଥାନ ଆପଣଙ୍କ ଯୋଗ୍ୟ ନୁହେଁ । ବୁଦ୍ଧଦେବ କହିଲେ, ଏହି ସ୍ଥାନ ଅତି ପୁଣ୍ୟମୟ, ପୂର୍ବେ ଏହି ସ୍ଥାନରେ ମୁଁ ମହାରାଜାଧିରାଜ ହୋଇଥିଲି, ସେତେବେଳେ ମୋର ନାମ ସୁଦର୍ଶନ ଥିଲା ଏବଂ ମୋର ମହିଷୀର ନାମ ସୁଭଦ୍ରା ଥିଲା । ଯେ ବୁଦ୍ଧ ସେ ସୁଦର୍ଶନ—ବୁଦ୍ଧଙ୍କ ଧର୍ମଚକ୍ର ବା ବୁଦ୍ଧଚକ୍ର ନ ବୋଲି ସୁଦର୍ଶନ ଚକ୍ର ଆଖ୍ୟା ଦେଲେ ଉଭୟ ଆଡ଼ ବଜାଏ ରହିଲା । ହିନ୍ଦୁର ଛତ୍ର ବୁଝାଇଲା, ବୌଦ୍ଧର ଚକ୍ର ମଧ ବୁଝାଇଲା । ଧର୍ମର ସମନ୍ୱୟ ରଖିବା ନିମନ୍ତେ ଅତି ବୁଦ୍ଧିମତ୍ତା ସହିତ ଏହିପରି ନାମଗୁଡ଼ିକ ଦିଆଯାଇଥିବାର ମନେ ହୁଏ ।

ନୀଳାଦ୍ରି ମହୋଦୟ, ସ୍କନ୍ଦପୁରାଣ, ନାରଦୀୟ ପୁରାଣ ମଧରେ ପରସ୍ପର ବିରୋଧୀ ମତ ଅଛି । ଦିଓଟି ଗୋଟିଏ ପ୍ରକାଶ କରିବାର ପ୍ରୟୋଜନ । ନୀଳାଦ୍ରି ମହୋଦୟ ମତରେ ପନ୍ଦର ଦିନରେ ରୁଦ୍ଧ ଗୃହାଭ୍ୟନ୍ତରରେ ମୂର୍ତ୍ତିନିର୍ମାଣ ହେଲା । ନାରଦୀୟ ପୁରାଣ ଅନୁସାରେ ସମୁଦ୍ରରୁ ଅଦୂରବର୍ତ୍ତୀ ବୃକ୍ଷମୂଳରେ କ୍ଷଣକ ମଧରେ ମୂର୍ତ୍ତିନିର୍ମାଣ କରାହେଲା । ଗୁଣ୍ଡିଚ୍ା ମନ୍ଦିର ମୂର୍ତ୍ତିନିର୍ମାଣର ସ୍ଥଳ—ମନ୍ଦିର ପଛେ ନିର୍ମିତ ହେଲା । ଏହିହେତୁରୁ ପ୍ରତିବର୍ଷ ମୂର୍ତ୍ତିମାନଙ୍କୁ ସେମାନଙ୍କ ଜନ୍ମସ୍ଥଳ ଗୁଣ୍ଡିଚ୍ାମନ୍ଦିରକୁ ନିଆଯାଏ ।

ବିଶ୍ୱାବସୁ ଶବର ଏବଂ ବିଦ୍ୟାପତି ବ୍ରାହ୍ମଣ ଏମାନଙ୍କ ବଂଶଧରଙ୍କ ଉପରେ ପୂଜାର ଭାର ନ୍ୟସ୍ତ ରହିଲା । ଶବର ଉପରେ ଦାରୁବ୍ରହ୍ମଙ୍କ ପୂଜାଭାର ଦିଆଗଲା କାହିଁକି ? ଶବରପୂଜିତ ନୀଳମାଧବ ପରା ପାତାଳଗାମୀ ହେଲେ ? ଏହି ଶବରବଂଶୀୟଙ୍କଦ୍ୱାରା ପ୍ରସ୍ତୁତ ଅନ୍ନ ବ୍ୟଞ୍ଜନ ଶ୍ରୋତ୍ରିୟ ବ୍ରାହ୍ମଣଙ୍କର ସେବା । ଏହା କାହିଁକି ? ଯେଉଁ ବ୍ରାହ୍ମଣମାନେ ଭୋଜନ କଲାବେଳେ ନିଜର ପୁତ୍ର ମଧ ସ୍ପର୍ଶ କଲେ ଅନ୍ନ ତ୍ୟାଗ କରନ୍ତି, ସେମାନେ ଅସ୍ପୃଶ୍ୟ ଜାତିର ଉଚ୍ଛିଷ୍ଟ ଭକ୍ଷଣ କରିବାକୁ ଦ୍ୱିଧା ବୋଧ କରନ୍ତି ନାହିଁ କାହିଁକି ? ମଥୁରାରେ କୃଷ୍ଣ ନିଜ ଜନ୍ମସ୍ଥାନରେ ଅଛନ୍ତି । ରାମ ନିଜ ଜନ୍ମସ୍ଥାନ ଅଯୋଧାରେ ଅଛନ୍ତି । ସାକ୍ଷାତ୍ ଶିବ କାଶୀ ବୈଦ୍ୟନାଥରେ ଅଛନ୍ତି । କାହିଁ, କୌଣସିଠାରେ ତ ଏପରି ମହାପ୍ରସାଦର ବ୍ୟବହାର ନାହିଁ ? ବୈଷ୍ଣବପ୍ରଧାନ ତୀର୍ଥ ସୀମାଚଳ ଓ ଶ୍ରୀରଙ୍ଗମରେ ଯଥାକ୍ରମେ ପୋଲଙ୍ଗାଡ଼ା ଓ ଦଧ୍ୟନ୍ନମ ମହାପ୍ରସାଦ ପରି ବ୍ୟବହୃତ ହୁଏ, ମାତ୍ର ତାହା କେବଳ ବୈଷ୍ଣବସମ୍ପ୍ରଦାୟରେ ଚଳେ, ସର୍ବବାଦିସମ୍ମତ ନୁହେଁ । ଜଗନ୍ନାଥ ମୂର୍ତ୍ତି ନାନା ସ୍ଥାନରେ ଅଛନ୍ତି, ମାତ୍ର ମହାପ୍ରସାଦ ଚଳେ ନାହିଁ । ଏହା କେବଳ ପୁରୀର ମାହାତ୍ମ୍ୟ । ମହାପ୍ରସାଦ କି ହିନ୍ଦୁଶାସ୍ତ୍ରସମ୍ମତ— ବର୍ଣ୍ଣାଶ୍ରମଧର୍ମୀମାନଙ୍କର ଗ୍ରହଣୀୟ ? କାହାର ମାହାତ୍ମ୍ୟ ଜାତିଭେଦକୁ ଏକାବେଳକେ ଏ କ୍ଷେତ୍ରରୁ ଉନ୍ମୂଳିତ କରିଅଛି ? ସ୍ମାର୍ତ୍ତଦେବତାର କି ? କଦାପି ନୁହେଁ। ଏହା ବୁଦ୍ଧଦେବଙ୍କ ମାହାତ୍ମ୍ୟ, ବୌଦ୍ଧଧର୍ମର ପ୍ରଭାବ ।

ଆଉ ଗୋଟିଏ କଥା- ମୂର୍ତ୍ତିପ୍ରତିଷ୍ଠାବେଳେ ବ୍ରହ୍ମା କହିଲେ, ଲୋକେ ଅବିଶ୍ୱାସ କରିବେ, ଏଣୁ ସପ୍ତଧା ମୂର୍ତ୍ତି କରାଗଲା । ଏ କଥାର ତାତ୍ପର୍ଯ୍ୟ କ'ଣ ? ଲକ୍ଷ୍ମୀ, ଭୂଦେବୀ, ମାଧବ ଓ ସୁଦର୍ଶନ ବସାଇବାଦ୍ୱାରା ଲୋକେ ବିଶ୍ୱାସ କରିବେ କାହିଁକି, ଆଉ କେବଳ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଥିଲେ ଅବିଶ୍ୱାସ କରନ୍ତେ ବା କାହିଁକି ? ଏଥିରୁ କି ସ୍ପଷ୍ଟ ପ୍ରକାଶ ପାଉ ନାହିଁ ଯେ, ଗୋଟିକାତେ ହିନ୍ଦୁ ଦେବତା ତ୍ରିମୂର୍ତ୍ତି ସଙ୍ଗରେ ରଖିଦେଲେ ଲୋକଙ୍କର ଅବିଶ୍ୱାସ ଦୂରୀଭୂତ ହେବ ?

ଶୋଭାଯାତ୍ରା ଅଶୋକଙ୍କଦ୍ୱାରା ପ୍ରଚଳିତ ହୋଇଥିବାର ଏବଂ ମୂର୍ତ୍ତିପୂଜା ମଧ ପ୍ରଚଳିତ ହୋଇଥିବାର ଗିରିନାର ଶିଳାଲିପିରୁ ପ୍ରକାଶ ପାଏ । ଦନ୍ତପୁରରୁ ଦନ୍ତକୁମାର ଓ ହେମମାଳା ବୁଦ୍ଧଙ୍କର ଦନ୍ତଧାତୁ ସିଂହଳକୁ ନେବାରୁ ଲଙ୍କାର ରାଜା ଶ୍ରୀ କୀର୍ତ୍ତିମେଘ ଏହି ଦନ୍ତଧାତୁକୁ ରଥରେ ବସାଇ ଶୋଭାଯାତ୍ରା କରିଥିଲେ ଏବଂ ସେହି ପର୍ବର ସ୍ମାରକସ୍ୱରୂପ ପ୍ରତି ବର୍ଷା ଯାତ୍ରା କରିବାର ବିଧାନ କଲେ । ଚୀନ ପରିବ୍ରାଜକ ଫାହିୟାନ୍ ଚୀନଦେଶରୁ ଭାରତକୁ ଆସିଲାବେଳେ ଖୋଟାନଠାରେ ରଥଯାତ୍ରା ଦେଖିବା ନିମନ୍ତେ ତିନି ମାସ ଓ କିଛି ଦିନ ଅବସ୍ଥାନ କରିଥିଲେ, ଏହା ୪୦୦ ଖ୍ରୀଷ୍ଟାବ୍ଦର କଥା । ତାହାଙ୍କର ବର୍ଣ୍ଣନାରୁ ଜଣାଯାଏ ଯେ, ଏହି ଯାତ୍ରା ଆଷାଢ଼ର ପ୍ରଥମ ଦିନରେ (ଶୁକ୍ଳପକ୍ଷ) ଆରମ୍ଭ ହୁଏ । ଚନ୍ଦ୍ରାତପ ଓ ପତାକାରେ ଶୋଭିତ ବିଂଶତି ହସ୍ତ ଉଚ୍ଚ ଚାରି ଚକର ଗୋଟିଏ ରଥ ନିର୍ମିତ ହୁଏ । ବୁଦ୍ଧମୂର୍ତ୍ତି ଏବଂ ଦୁଇ ଗୋଟି ବୋଧିସତ୍ତ୍ୱ ମୂର୍ତ୍ତି ରଥରେ ବସନ୍ତି ଏବଂ ଅନ୍ୟ ଦେବତାମାନେ ତାଙ୍କର ସହଚରରୂପେ ରହନ୍ତି । ଏହି ରଥ ପ୍ରାୟ ଏକ ମାଇଲ ଟଣା ହୁଏ । ରାଜପ୍ରାସାଦର ନିକଟବର୍ତ୍ତୀ ହେଲାବେଳେ ରାଜା ନବ ବସ୍ତ୍ର ପରିଧାନ କରି ଉଷ୍ଣୀଷ ତ୍ୟାଗ କରି ନଗ୍ନପାଦରେ ରଥ ନିକଟକୁ ଯାଇ ପୁଷ୍ପଧୂପଦୀପଦ୍ୱାରା ଆରାଧନା କରନ୍ତି ଓ ଦଣ୍ଡ ପ୍ରଣାମ କରନ୍ତି । ରାଣୀ ଓ ପୁରବଧୂମାନେ ପ୍ରାସାଦ ତୋରଣ ଉପରୁ ଅଜସ୍ର ପୁଷ୍ପ ବୃଷ୍ଟି କରନ୍ତି। ଖୋଟାନର ଏହି ରଥଯାତ୍ରା ଓ ପୁରୀ ରଥଯାତ୍ରା ମଧରେ କି ପ୍ରଭେଦ ଅଛି ? କେବଳ ଏଠାରେ ତିନିଗୋଟା ରଥ । ଏହା ପନ୍ଦର ଶତ ବର୍ଷ ପୂର୍ବର ବର୍ଣ୍ଣନା ।

ଇତିମଧରେ ମୋତେ ସିଂହଳର ଦାଠବଂସ (ଦନ୍ତବଂଶ) ଅଧ୍ୟୟନ କରିବାକୁ ପଡ଼ିଥିଲା । ଏହି ପୁସ୍ତକରେ ବୁଦ୍ଧଙ୍କର ଦନ୍ତଧାତୁ କଳିଙ୍ଗରୁ ସିଂହଳକୁ ନୀତ ହେବା ବିଷୟ ବର୍ଣ୍ଣିତ ହୋଇଅଛି । କ୍ଷେମ ବୁଦ୍ଧଙ୍କର ବାମ ଦନ୍ତ ଗୋଟିଏ ଆଣି କଳିଙ୍ଗ ରାଜା ବ୍ରହ୍ମଦତ୍ତଙ୍କୁ ଦେଲେ । ବ୍ରହ୍ମଦତ୍ତଙ୍କ ପରେ ତାଙ୍କ ପୁତ୍ର କାଶୀରାଜ, କାଶୀରାଜଙ୍କ ପୁତ୍ର ସୁନନ୍ଦ, ସୁନନ୍ଦଙ୍କ ପୁତ୍ର ଗୁହଶିବ କ୍ରମାନ୍ୱୟରେ ଏହି ଦନ୍ତଧାତୁର ପୂଜା କରୁଥିଲେ । ଉଜ୍ଜୟିନୀ ରାଜପୁତ୍ର ଦନ୍ତଧାତୁର ମାହାତ୍ମ୍ୟ ଶ୍ରବଣ କରି କଳିଙ୍ଗକୁ ଆସି ଗୁହଶିବଙ୍କ ସହିତ ବନ୍ଧୁତା ସ୍ଥାପନ କଲେ । ଗୁହଶିବ ଆପଣା କନ୍ୟାକୁ ରାଜକୁମାରଙ୍କୁ ଅର୍ପଣ କଲେ । କ୍ଷୀରଧାର ନାମକ ରାଜା ଗୁହଶିବଙ୍କ ରାଜ୍ୟ ଆକ୍ରମଣ କରିବାରୁ ଗୁହଶିବ ନିଜ କନ୍ୟା ଓ ଜାମାତାଙ୍କ ହସ୍ତରେ ଏହି ଦନ୍ତଧାତୁକୁ ସିଂହଳାଧିପତି ମହାଦି ସେନଙ୍କ ନିକଟକୁ ପଠାଇଦେଲେ। ଦନ୍ତକୁମାର ଓ ହେମମାଳା ଦନ୍ତଧାତୁ ସହିତ ତାମ୍ରଲିପ୍ତିଠାରେ ଜାହାଜ ଚଢ଼ି ସିଂହଳକୁ ଗଲେ । 'ଦାଠବଂସ'ର ଏହା ହେଲା ମୂଳ ବିଷୟ। ଏହା ୩୧୩ ଖ୍ରୀଷ୍ଟାବ୍ଦର ଘଟନା । ଦନ୍ତଧାତୁକୁ ସିଂହଳ ପ୍ରେରଣ ଏବଂ ନୀଳମାଧବଙ୍କ ପାତାଳପ୍ରବେଶ ମଧରେ ସମ୍ବନ୍ଧ ଥିଲା ପରି ଅନୁମାନ ହୁଏ । ପାଠକେ ବୁଝିବେ।

ଜଗନ୍ନାଥ ମନ୍ଦିର ଓଡ଼ିଆମାନଙ୍କର ଅକ୍ଷୟ କୀର୍ତ୍ତି । ଏଥିର ଆଲୋଚ଼ନା ବର୍ତ୍ତମାନ ବନ୍ଦ କରିବାର ପ୍ରୟୋଜନ— ପ୍ରବନ୍ଧ ଦୀର୍ଘ ହୋଇ ପଡ଼ିବ ଏବଂ ପାଠକମାନଙ୍କର ଧୈର୍ଯ୍ୟଚ୍ୟୁତି ଅବଶ୍ୟ ଘଟିବ । ସୁଖର ବିଷୟ, ମନ୍ଦିର ନିର୍ମାଣାବଧି ପୁରୀ ରାଜାମାନେ ଏହି କୀର୍ତ୍ତିକୁ ରକ୍ଷା କରିବାରେ ତ୍ରୁଟି କରି ନାହାନ୍ତି । ବିଶ୍ୱାବସୁ ଓ ବିଦ୍ୟାପତିଙ୍କ ବଂଶଧରଗଣ ଏହି ଦେବତାଙ୍କର ପୂଜକ ଓ ସେବକ, ଏମାନେ ଦେବତାଙ୍କ ସେବାରେ କୌଣସି ପ୍ରକାର ତ୍ରୁଟି ନ କରି ପ୍ରଥମ ପ୍ରଚ଼ଳିତ ପଦ୍ଧତିକୁ ବରାବର ଅନୁସରଣ କରି ଆସୁଅଛନ୍ତି । ଏହାହିଁ ଓଡ଼ିଆ ଜାତିର ବୈଶିଷ୍ଟ୍ୟ— ଏତକ କେବଳ ପୂଜକ ଓ ସେବକମାନେ ରକ୍ଷା କରିବାକୁ ସମର୍ଥ ହୋଇଅଛନ୍ତି । ଏଣୁ ଏମାନେ ଧନ୍ୟବାଦାର୍ହ । ରାଜାମାନେ କେବେ କେବେ ବାହାରିଆ ଉପଦେଶଦ୍ୱାରା ବିଚ଼ଳିତ ହୋଇଥିବାର ପ୍ରବାଦ ଅଛି । ମାତ୍ର ଏମାନେ କେବେ ବିଚ଼ଳିତ ହୋଇ ନାହାନ୍ତି । ଘଣ୍ଟା ପ୍ରମାଣେ ଧାରାବାହିକ ନୀତି ଭାରତର ଅନ୍ୟ କୌଣସି ଦେବାଳୟରେ ଦେଖାଯାଏ ନାହିଁ। ଭାରତର ଅନ୍ୟାନ୍ୟ ତୀର୍ଥ ଅପେକ୍ଷା ପୁରୀର ଯାତ୍ରୀସଂଖ୍ୟା ଅତ୍ୟଧିକ, ତଥାପି ନୀତିରେ ବିପର୍ଯ୍ୟୟ ନାହିଁ । ଆହୁରି ବିଶିଷ୍ଟତା ଯେ, ଭାରତର ଅନ୍ୟ ଦେବଦେବୀମାନେ ଟିକିଏ ବିଦେଶୀ ପଦାର୍ଥ ଗ୍ରହଣରେ ପରାଙ୍‌ମୁଖ ନୁହନ୍ତି, ମାତ୍ର ଆମ ଜଗନ୍ନାଥ ଖାଣ୍ଟି ସ୍ୱଦେଶୀ । ତେବେ ଉତ୍କଳ ଦେଶ ବର୍ତ୍ତମାନ ଘୃତଦରିଦ୍ର, ଏଣୁ ଜଗନ୍ନାଥଙ୍କ ପାଇଁ ଉତ୍କଳ ବାହାରୁ ଘିଅ ସରବରାହ କରିବାକୁ ପଡୁଅଛି । ଗଡ଼ଜାତ ରାଜାମାନେ ଓ ଉତ୍କଳର ଗୋଧନସମ୍ପନ୍ନ ବ୍ୟକ୍ତିମାନେ ଘିଅ ସରବରାହ କରିପାରନ୍ତେ ଅନାୟାସରେ । ଅନ୍ୟତ୍ର ବାସିନ୍ଦାମାନେ ଯାହା ଖାଆନ୍ତି, ଦେବତାମାନେ ତାହା ଖାଆନ୍ତି । ଜଗନ୍ନାଥଙ୍କ ଭୋଗ ତାଙ୍କ ନିଜର । ରନ୍ଧନପ୍ରଣାଳୀ ସ୍ୱତନ୍ତ୍ର,—ହାଣ୍ଡି ଆଟିକା ସ୍ୱତନ୍ତ୍ର, ସେହି ପାଇଁ, ଖମ୍ବଆଳୁ, କଦଳୀ, ବାଇଗଣ, ଓଉ, ଶାଗ, ହରଡ଼ ଡାଲି, ଭୋଗ ହୁଏ । ମିଷ୍ଟାନ୍ନ ମଧ୍ୟ ନିଜର । ରସଗୋଲା, ପାନ୍ତୋଆ, ସନ୍ଦେଶ, ବରଫି ଆଜିଯାଏ ଭୋଗ ହୋଇ ନାହିଁ । ଅନ୍ୟ ଦେଶର ଦେବତାମାନେ ବାହାରିଆ ମିଷ୍ଟାନ୍ନ ଭକ୍ଷଣଲାଳସା ବର୍ଜନ କରିପାରି ନାହାନ୍ତି । ଜଗନ୍ନାଥଙ୍କ ଭୋଗ ଖାଣ୍ଟି ଓଡ଼ିଆ । ପଖାଳ ଏଥିର ବୈଶିଷ୍ଟ୍ୟ । ଏଥିରୁ ବଳି ଗୌରବର ବିଷୟ ଆଉ କ'ଣ ଅଛି ? ଚିନି ଅପେକ୍ଷା କନ୍ଦ ଅତୀବ ମୁଖରୋଚ଼କ । ନିଜର ରସନା ପରିତୃପ୍ତ୍ୟର୍ଥ ଯେଉଁମାନେ ନୂତନ ଓ ଅନ୍ୟ ଦେଶର ମିଷ୍ଟାନ୍ନ ପ୍ରଭୃତି ଭୋଗ ଖରିଦ କରିବେ ବା କରିବାର ଚେଷ୍ଟା କରିବେ, ସେମାନେ ଦେଶଦ୍ରୋହୀ । ଦେବମନ୍ଦିରର ପବିତ୍ରତା ରକ୍ଷା କରିବାକୁ ହେଲେ 'ଯାହା ଅଛି ତାହା ଥାଉ' ଏହି ନୀତି ଅବଲମ୍ବନ କରିବା ଉଚ଼ିତ । ନିଜେ ସଭ୍ୟ ହେବା ସଙ୍ଗେ ସଙ୍ଗେ ଦେବତାଙ୍କୁ ସଭ୍ୟ କରି ବସିଲେ, ନିଜ ନିଜ ରୁଚ଼ି ଅନୁସାରେ ଦେବତାର ରୁଚ଼ି ପରିବର୍ତ୍ତନ କରିବାକୁ ଯତ୍ନ କଲେ, ପ୍ରାଚ଼ୀନତ୍ୱ ଓ ପବିତ୍ରତା ନଷ୍ଟ ହେବା ସ୍ୱାଭାବିକ । ବାଲ୍ୟକାଳରୁ ମତ୍ସ୍ୟମାଂସପ୍ରିୟ ହେଲେ ମଧ୍ୟ ମହାପ୍ରସାଦର ଉପାଦେୟତା ଅନାୟାସରେ ସେଥିରୁ ବିରତ କରେ ।

ପୁରୀ ସହର ଓ ମନ୍ଦିରାଦି ସମ୍ବନ୍ଧରେ ପାଠକଗଣ ମୋ ଅପେକ୍ଷା ଏତେ ଅଭିଜ୍ଞ ଯେ ମୋ ପକ୍ଷରେ ଡାଏରି ଫିଟାଇବା ଅନାବଶ୍ୟକ ।

ଇତିମଧ୍ୟରେ ରାମାନୁଜଙ୍କ ଜୀବନଚ଼ରିତ ମନୋଯୋଗ ସହିତ ପାଠ କରିଥିଲି । ପ୍ରସଙ୍ଗକ୍ରମେ ଚୈତନ୍ୟ, ଦୟାନନ୍ଦ ଓ ଅନ୍ୟ ମହାତ୍ମାମାନଙ୍କ ଜୀବନଚ଼ରିତ ଆଲୋଚ଼ନା କରିବାକୁ ପଡ଼ିଥିଲା । ଅନେକ ସମୟରେ ଆମ୍ଭେମାନେ ଏହି ମହାତ୍ମାମାନଙ୍କର ଦୋଷ ଦର୍ଶନ କରୁଁ; କାରଣ ଆମ୍ଭେମାନେ ସେମାନଙ୍କର ଓ ଆମ୍ଭମାନଙ୍କର ମତରେ ଅନୈକ୍ୟ ଦେଖୁଁ । ମତର ଅନୈକ୍ୟ ହେବା ସ୍ୱାଭାବିକ । ଏହା ବୋଲି ସେମାନେ ଆମ୍ଭମାନଙ୍କର ପୂଜ୍ୟ ଓ ନମସ୍ୟ ନୁହନ୍ତି ବୋଲି ବିବେଚ଼ନା କରିବା ଧୃଷ୍ଟତା । ଏହି ମହାତ୍ମାମାନେ ଯୁଗାଚ଼ାର୍ଯ୍ୟ । ଦେଶହିତ ନିମନ୍ତେ ଏମାନଙ୍କର ସାଧନା ଭାରତବାସୀଙ୍କର ମଙ୍ଗଳ ନିମନ୍ତେ । ଜଣକ ମତ ଅନ୍ୟ ପ୍ରତି ଭ୍ରାନ୍ତ ବୋଲି ବିବେଚ଼ିତ ହୋଇପାରେ, ମାତ୍ର ପ୍ରବର୍ତ୍ତନା ଯେ ମହତ୍ ଓ ମହତ୍ ଲକ୍ଷ୍ୟାନୁଗାମୀ, ଏଥି ନିମନ୍ତେ ସେମାନେ ପୂଜାର୍ହ । ପ୍ରତ୍ୟେକ ଧର୍ମ ଓ ମତ ଓ ପନ୍ଥାର ପ୍ରବର୍ତ୍ତକମାନଙ୍କର ଜୀବନଚ଼ରିତ ଆଲୋଚ଼ନା କଲେ ସ୍ପଷ୍ଟ ଜଣାଯାଏ ଯେ, ପ୍ରତ୍ୟେକଙ୍କର ଏକ ଲକ୍ଷ୍ୟ ଜାତିଭେଦ ନିବାରଣ ।

ପୁରୀ ରାଜମାତା, ରାଜା ଓ ରାଣୀଙ୍କ ସ୍ନେହରୁ ଓ ଅନୁରୋଧକ୍ରମେ ସୁନିଆଁ ପର୍ବ ଶେଷ ହେବାତକ ପୁରୀରେ ରହିବାର ସ୍ଥିର କରାଗଲା । ପିଲାବେଳେ ପାଞ୍ଜିର ଚିତ୍ର ଦେଖିବାକୁ ପତ୍ର ଓଲଟାଇଲା ବେଳେ ବଡ଼ ଅକ୍ଷରରେ ଛାପା 'ସୁନିଆଁ' ଅକ୍ଷର ତିନିଟା ଦୃଷ୍ଟିରେ ପଡ଼େ । ଚିନ୍ତା କରିବାକୁ ପଡ଼େ । ଦେଖ ତ, ଫଗୁଣ ପୂର୍ଣ୍ଣିମା, ଆଷାଢ଼ ଯାତ୍ରା, ପୌଷ ପୂର୍ଣ୍ଣିମା, ଦଶହରା ପରି ପର୍ବଦିନମାନ ଓ ଛୁଟିଦିନମାନଙ୍କର ନାମ ବଡ଼ ଅକ୍ଷରରେ ଲେଖା ନାହିଁ । ପାଞ୍ଜିକାରର ଦୋଷ ନା ଭ୍ରମ ବୋଲି ମନେ କରି ନେବାକୁ ହେଉଥିଲା । ପରେ ଜାଣିବାକୁ ହେଲା ଯେ, ମେଷ ସଂକ୍ରାନ୍ତିରେ ନୂଆ ପାଞ୍ଜି ବଦଳେ; ସେହିପରି ସୁନିଆରେ ଅଙ୍କ ବଦଳ ହୁଏ । ଏହି ପର୍ବ ବୋଧ ହୁଏ ଗଡ଼ଜାତ ରାଜାମାନଙ୍କ ଗୃହରେ ମଧ୍ୟ ପାଳିତ ହୁଏ ।

ବାମଣ୍ଡାରେ ଏହାକୁ ସୁନିଆଁ କାଟ ବୋଲି କହନ୍ତି । ଏଦିନ ପ୍ରାୟ ଦଶ ବାଜିବା ବେଳେ ବରୁଣ ପୂଜା, ଦେବତା ପୂଜା, ହୋମ ହେଲା ପରେ ଖଣ୍ଡିଏ ତାଳପତ୍ରରେ ପୁରୁଣା ଅବ୍ଦଟି ଲେଖାଯାଏ । ରାଜା ଲେଖନ ଧର୍ମ୍ମ ସେହି ତାଳପତ୍ରକୁ କାଟି ଦିଅନ୍ତି ଏବଂ ଅନ୍ୟତ୍ର ନୂତନ ଅବ୍ଦକୁ ଲେଖି ଦିଅନ୍ତି । ଏଥି ଉତ୍ତାରୁ ମଙ୍ଗଳାରୋପଣ ହୋଇ କର୍ମ ସମାପ୍ତି ହୁଏ । ସୁନିଆଁ କାଟ ବା ସନକାଟ । ପ୍ରଚଳିତ ଅବ୍ଦ ଶେଷ ହେଲା, ନୂତନ ଅବ୍ଦ ଆରମ୍ଭ ହେଲା— ଏହାହିଁ ଏଥିରେ ଅଭିପ୍ରାୟ । ଅନ୍ୟ ଗଡ଼ଜାତର ରୀତି ଜଣା ନାହିଁ । ଏଥର ସ୍ୱଚକ୍ଷୁରେ ପୁରୀର ସୁନିଆଁ ଅଙ୍କକଟା ଦେଖିଲି ।

ଏହି ପର୍ବ ପୁରୀ ରାଜଗୃହର ପ୍ରଧାନ ପର୍ବ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଏଥି ନିମନ୍ତେ ଅନେକ ସମ୍ଭାର ମଧ ହୁଏ । ରୋଷନାଇ ଆତସବାଜି ହୁଏ । ମହନ୍ତ, ପଣ୍ଡିତ, ବ୍ରାହ୍ମଣ, ଭଦ୍ରବ୍ୟକ୍ତିମାନେ ନିମନ୍ତ୍ରିତ ହୋଇ ମହାପ୍ରସାଦ ସେବନ କରନ୍ତି । ଆୟୋଜନରେ ତ୍ରୁଟି ନ ଥିଲା । କାର୍ଯ୍ୟ ଅତି ସମାରୋହ ସହକାରେ ସମ୍ପନ୍ନ ହେଲା । ଏହି ଉତ୍ସବ ଦର୍ଶନ କରି ଚରିତାର୍ଥ ହୋଇଅଛି । ତା'ର କାରଣ ଅଛି । ଏହା ଦେଖିବା ମୋ ପକ୍ଷରେ ଏହି ସର୍ବପ୍ରଥମ । ଦ୍ୱିତୀୟତଃ, ଯେଉଁ ପୁରୀ ରାଜାଙ୍କୁ ଜନ୍ମରୁ ଲାଳନପାଳନ କରିବାରେ ନିଜର ସୁଖସ୍ୱାଚ୍ଛନ୍ଦ୍ୟ ହରାଇଥିଲି, ତାହାଙ୍କୁ ଆଜି ପୁରୀ ରାଜଗାଦିରେ ଅଙ୍କ କାଟିବାର ଦେଖିଲି । ଏହି ସୁନିଆଁ ଅଙ୍କ ଗୋଟିଏ ଅଦ୍ୱିତୀୟ ବ୍ୟାପାର । ଭାରତର ଅନ୍ୟତ୍ର ଏ ପ୍ରଥା ଅଛି କି ନାହିଁ ଜଣା ନାହିଁ । ବୋଧହୁଏ ନାହିଁ । ପୃଥିବୀରେ ଅନ୍ୟତ୍ର ଏ ରୀତିର ଅଙ୍କ ମଧ ନାହିଁ । ଏହା ଓଡ଼ିଶା ପକ୍ଷରେ କମ୍ ଗୌରବର କଥା ନୁହେଁ । ସେଦିନ ଏ କଥା ଭାବୁ ଭାବୁ ମୋର ହୃଦୟ ସ୍ଫୀତ ହୋଇଉଠିଲା, ଚକ୍ଷୁରୁ ଲୋତକ ବହିଲା । ଦିନେ ଉତ୍କଳ ସମ୍ରାଟ୍‌ଙ୍କର କି ଆଧିପତ୍ୟ ଥିଲା ଏବଂ ଉତ୍କଳବାସୀ ସେହି ସମ୍ରାଟ୍‌ଙ୍କୁ କି ସମ୍ମାନ ଦାନ କରୁଥିଲେ ଯେ, ପ୍ରତ୍ୟେକ ରାଜାଙ୍କର ଜୀବିତ କାଳର ବର୍ଷଗୁଡ଼ିକୁ ଅଙ୍କ ନାମ ଦେଇ ପ୍ରତି ବର୍ଷ ତହିଁ ନିମନ୍ତେ ଉତ୍ସବ ଭିଆଣ କଲେ । ଶକାବ୍ଦ, ସମ୍ବତ୍, ଦିଲ୍ଲୀଶ୍ୱରାବ୍ଦ, ଖ୍ରୀଷ୍ଟାବ୍ଦ ଅଛି । ମାତ୍ର ପ୍ରତ୍ୟେକ ରାଜାର ସ୍ୱତନ୍ତ୍ର ଅବ୍ଦ ତାହାଙ୍କ ଜୀବିତାବସ୍ଥାରେ ପାଳିତ ହେବା ଅତି ମହତ୍ ବିଧି । ଏହା କେଉଁଠାରେ ଅଛି ? ଏ ବିଧି ଓଡ଼ିଶାର ଉଦ୍ଭାବନ— ରାଜା ଓ ପ୍ରଭୁ ପ୍ରତି ଅତି ଭକ୍ତିର ନିଦର୍ଶନ । ଆଜି ସେହି ରାଜତ୍ୱ ନାହିଁ, ସେ ପ୍ରଭୁତ୍ୱ ନାହିଁ, ତଥାପି ସେହି ପୁରୀ ରାଜାଙ୍କର ଅଙ୍କ ଓଡ଼ିଶାବାସୀ ଓ ଓଡ଼ିଆଭାଷୀଙ୍କର ବ୍ୟବହାର । ଅଦ୍ୟାପି ଗଡ଼ଜାତରେ ଏପରି ଲୋକ ଦେଖାଯାଆନ୍ତି, ଯେଉଁମାନେ ନିଜର ବୟସ ଓ କୌଣସି ଘଟନାକୁ ଖ୍ରୀଷ୍ଟାବ୍ଦ ବା ଅନ୍ୟ ଅବ୍ଦଦ୍ୱାରା ପ୍ରକାଶ ନ କରି ପୁରୀ ରାଜାଙ୍କ ଅଙ୍କଦ୍ୱାରା ପ୍ରକାଶ କରନ୍ତି । ଏହା କି କମ୍ ଜାତୀୟ ଗୌରବ ? ଓଡ଼ିଆ କି କେବଳ ଏହି କଥା ଘେନି ପ୍ରଭୂତ ଗର୍ବ କରି ନ ପାରେ ? ଏହି କେତେଟା ବିଷୟରେ ଓଡ଼ିଆର ଅସାଧାରଣ ନିଜତ୍ୱ ଅଛି ।

ଆଜିର ଖାଦ୍ୟ କେବଳ ମହାପ୍ରସାଦ । ସନ୍ଧ୍ୟାରେ ପୁରୀରାଜା ତାଙ୍କର ରାଜକୀୟ ପୋଷାକ ପରିଧାନ କରି ସ୍ୱର୍ଣ୍ଣରୌପ୍ୟଜଡ଼ିତ ସିଂହାସନରେ ଉପବେଶନ କଲେ । ଏ ପୋଷାକରେ ମଧ ନିଜତ୍ୱ ଅଛି । ଏହି ପୋଷାକ ପୂର୍ବେ ରାଜାମାନେ ବ୍ୟବହାର କରୁଥିଲେ । ସମସ୍ତେ ଛାଡ଼ିଲେଣି, କେବଳ ପୁରୀ ଗାଦିରେ ଏହା ବ୍ୟବହୃତ ହେଉଅଛି । ପୂଜା ଓ ମଙ୍ଗଳାରୋପଣ ହେଲାରୁ ସୁନିଆଁ ଅଙ୍କ ହେଲା । ସତାଇଶ କି ଅଠାଇଶ ଗୋଟି ମୁଦ୍ରାଯନ୍ତ୍ର ଅଛି । ଏଥିରେ ଦେବଦେବୀଙ୍କର ମୂର୍ତ୍ତି ଅଙ୍କିତ । ଦୋଅଣୀ ଆକାର ସୁନା ଚକି ଉପରେ ଏହି ଚିହ୍ନ ଅଙ୍କିତ କରାଯାଇ ରାଜାଙ୍କ ମସ୍ତକରେ ସ୍ପର୍ଶ କରାଯାଏ । ଏଥି ଉତ୍ତାରୁ ନାମ ଦେଇ ହକରା ହେଲା । ଉପସ୍ଥିତ ପ୍ରଧାନ ଓ ପ୍ରଜା ଓ କେତେକ ଭଦ୍ରଲୋକ ନଜର ଦେଲେ । ତହିଁ ଉତ୍ତାରୁ ଉପାଧି ବିତରଣ ହେଲା । ଉପାଧି ସହିତ ଖଣ୍ଡେ ଖଣ୍ଡେ ପଗଡ଼ି ଦିଆଗଲା । ଏହି ପଗଡ଼ିଗୁଡ଼ିକ ମଧ ପୁରୀରେ ନିର୍ମିତ ସ୍ୱଦେଶୀ ବସ୍ତ୍ର । ପୂର୍ବ ପୂର୍ବ ରାଜାମାନେ ଏହା କରି ଯାଇଅଛନ୍ତି । ଅଦ୍ୟାପି ଚାଲିଅଛି । ତତ୍ପରେ ପଟୁଆରରେ ରାଜା ଜଗନ୍ନାଥ ଦର୍ଶନକୁ ଗଲେ । ସେବା ଓ ଦର୍ଶନ ପରେ ପୁରୁଣା ନହରକୁ ଯାଇ ସେଠାର ଦେବତାମାନଙ୍କୁ ଦର୍ଶନ କରି ନହରକୁ ଫେରିଲେ । ଇତି ରାମଚନ୍ଦ୍ର ଦେବଙ୍କର ଦ୍ୱିତୀୟ ଅଙ୍କ । ମୋର ପୁରୀ ଅବସ୍ଥାନର ଅବଧି ଏତିକି ।

●

## ଦାକ୍ଷିଣାତ୍ୟ ଭ୍ରମଣ

୯ ତାରିଖ ସକାଳୁ ଉଠି ଅନନ୍ତ ଦର୍ଶନକୁ ଗଲି । ସେଠାରୁ ବିଦାୟ ଗ୍ରହଣ କରି ଆସିଲି । ଗତ ରାତ୍ରରେ ତ ପୁରୀ ରାଜାଙ୍କ ସମଭିବ୍ୟାହାରରେ ଯାଇ ଧର୍ମରାଜାଙ୍କଠାରୁ ବିଦାୟ ନେଇଥିଲି, ଏଣୁ ପ୍ରସ୍ଥାନର ଉଦ୍ୟୋଗରେ ଲାଗିଲି । ବୃଷ୍ଟି ଆରମ୍ଭ ହେଲା, ଦିନତମାମ ଛାଡ଼ିଲା ନାହିଁ । ରେଳରେ ଯିବି, ବର୍ଷାକୁ କି ଡର ? ରାଜାଙ୍କଠାରୁ ବିଦାୟ ଗ୍ରହଣ କରି ଅଜନ୍ତା ଓ ଇଲୋରା ଗୁହା ଦେଖିବା ଅଭିପ୍ରାୟରେ ହାଇଦ୍ରାବାଦ ଅଭିମୁଖରେ ପ୍ରସ୍ଥାନ କଲି ।

ପୁଣି ସେହି ଖୋରଧା । ମାନ୍ଦ୍ରାଜ ମେଲ ନିମନ୍ତେ ପ୍ରାୟ ତିନି ଘଣ୍ଟା ଅପେକ୍ଷା କରିବାକୁ ପଡ଼ିଲା । ଏଠାରେ ବର୍ଷା ନ ଥିଲା, ଅତିଶୟ ଗରମ । ଷ୍ଟେସନମାଷ୍ଟରଙ୍କ ସୌଜନ୍ୟରୁ ଖଟ ଖଣ୍ଡିକ ଆଣି ବାହାରେ ପକାଇ ବିଶ୍ରାମର ଯୋଗାଡ଼ କଲି ସତ, ମାତ୍ର ମଶକଦଂଶନ ନିବାରଣର ଉପାୟ କ'ଣ ? ଏଥିରେ ତ ଷ୍ଟେସନମାଷ୍ଟରଙ୍କର ହାତ ନାହିଁ । ଛଟପଟ ହେବା, ଏଣେ ତେଣେ ହାତ ପିଟିବା ଭିନ୍ନ ଉପାୟାନ୍ତର ଥିଲା କ'ଣ ? ମାତ୍ର ଯଥାସମୟରେ ମେଲ ପହଞ୍ଚି କଷ୍ଟରୁ ରକ୍ଷା କଲା । ଯାତ୍ରୀ ଅତି କମ୍, ଏଣୁ ସମ୍ପୂର୍ଣ୍ଣ ଗୋଟିଏ କୋଠରି ମୋ ଭାଗରେ ପଡ଼ିଲା । ନିଦ୍ରାଦେବୀଙ୍କର କୋମଳ ସ୍ପର୍ଶ ଆଗରୁ ଅନୁଭୂତ ହୋଇଥିଲା । ଷ୍ଟେସନ ଛାଡ଼ିଲା ବେଳେ ମୁଁ ଜାଗ୍ରତ କି ନିଦ୍ରିତ, ତାହା ସ୍ମରଣ ନାହିଁ । ସକାଳୁ ସବିତାଙ୍କର ଈଷଦୁଷ୍ଣ କରସ୍ପର୍ଶଦ୍ୱାରା ନିଦ୍ରାଭଙ୍ଗ ହେଲା । ଘରେ ଥାଅ, ଅରଣ୍ୟରେ ଥାଅ, ରେଲ୍‌ରେ ଥାଅ, ପେଟ ଅଛି ସଙ୍ଗରେ । ଏଣୁ ପେଟଚ଼ିନ୍ତା ଆଗ, ସବୁ ଚିନ୍ତା ପଛ । 'ଶତଂ ବିହାୟ ଭୋକ୍ତବ୍ୟଂ ସହସ୍ରଂ ସ୍ନାନମାଚ଼ରେତ୍' ଏଇଟି ଗୋଟିଏ ଅତି ଉପାଦେୟ ନୀତିବାକ୍ୟ । ପାଶ୍ଚାତ୍ୟ ନବ୍ୟଶିକ୍ଷିତଙ୍କ ମତରେ ଶ୍ଳୋକଟି ଏପରି ହେବା ଉଚ଼ିତ— 'ସହସ୍ରଂ ବିହାୟ ଭୋକ୍ତବ୍ୟଂ ଶତଂ ଚ ସ୍ନାନମାଚ଼ରେତ୍' । ଭାରତବାସୀ ସ୍ନାନ ନ କରି ଭୋଜନ କରନ୍ତି ନାହିଁ, ଏଣୁ ସ୍ନାନଟାକୁ ଏତେ ପ୍ରାଧାନ୍ୟ ଦିଆଯାଇଅଛି । ଆଜିକାଲି ପ୍ରାତଃଭୋଜନଟା ପ୍ରଧାନ । ମୁଁ ପ୍ରାତଃସାୟୀ, ଏଣୁ ଯଥାଲଭ୍ୟ ରେଳଗାଡ଼ିର ଜଳଦ୍ୱାରା ସ୍ନାନ ସମାପନ କରି ପୁରୀରାଣୀଙ୍କ ପ୍ରଦତ୍ତ ମିଷ୍ଟାନ୍ନ ଓ ମହାପ୍ରସାଦଦ୍ୱାରା ପ୍ରାତଃକାଳୀନ ଉଦରଜ୍ୱାଳା ଦୂର କଲି । ଅମୃତବଜାର ପତ୍ରିକା କ୍ରୟ କରି ପାଠକଲି । ମିସ୍ ମେଓଙ୍କର 'ଭାରତ ମାତା' ପ୍ରତିବାଦ ସଭାରେ ବିପିନ୍ ପାଲଙ୍କ ବକ୍ତୃତା । ବିପିନ ପାଲ ଓଜସ୍ୱୀ ବକ୍ତା କି କୁସାବର୍ଷଣ, କି ଜାତିର ନିନ୍ଦା ଉଦ୍ଗୀରଣ । ମିସ୍ ମେଓଙ୍କ ପୁସ୍ତକ ବକ୍ତା ଓ ଶ୍ରୋତାମାନଙ୍କ ମନରେ ଏତେ ମର୍ମବେଦନା ଉପସ୍ଥିତ କଲା ଯେ, ସେମାନେ ପ୍ରତିବାଦ ସଭା ନ କରି ରହିପାରିଲେ ନାହିଁ । ମିସ୍ ମେଓଙ୍କ ଜାତୀୟ ଦୋଷ କଳଙ୍କ ଉଦ୍‌ଘାଟନ ନ କରି ରହିପାରିଲେ ନାହିଁ । ଅବଶ୍ୟ ଏଥିରେ କିଛି ଥିବ । ପୁସ୍ତକ ପଢ଼ିବାକୁ ଆଗ୍ରହ ବଳିବା ସ୍ୱାଭାବିକ । ମାତ୍ର ଏହି ପ୍ରତିବାଦ ପାଠରୁ ମନରେ ଏପରି ଘୃଣାର ଉଦ୍ରେକ ହେଲା ଯେ, ମୁଁ ପ୍ରତିଜ୍ଞା କଲି ଯେ ଟଙ୍କା ଦେଇ ବହି କିଣିବା ତ ତେଣେ ଥାଉ, କେହି ପୁସ୍ତକ ପଢ଼ିବାକୁ ଅନୁରୋଧ କଲେ ମଧ ତାହା ଫିଟାଇ ଦେଖିବି ନାହିଁ । ପ୍ରତିବାଦଗୁଡ଼ିକ ମଧ ଘୃଣାସ୍ପଦ ମନେ ହେଲା । ବିଗ୍ରହ ଓ ଦ୍ୱନ୍ଦ୍ୱର ସୂତ୍ରପାତ । କାଗଜ ଫିଙ୍ଗି ଦେଇ ଦୃଶ୍ୟ ଦେଖି ମନ ଭୁଲାଇବାକୁ ଇଚ୍ଛା କଲି । କ୍ରମେ କ୍ରମେ ପୂର୍ବପରିଚ଼ିତ ଷ୍ଟେସନଗୁଡ଼ିକ ଗୋଟି ଗୋଟି ହୋଇ ପଛକୁ ରହିଆସିଲା । ବ୍ୟବସାୟ ବର୍ଦ୍ଧିଷ୍ଣୁ । ବ୍ୟବସାୟର ବୃଦ୍ଧି ସଙ୍ଗେ ସଙ୍ଗେ ଷ୍ଟେସନମାନଙ୍କର ଉନ୍ନତି; ଅନେକ ସ୍ଥଳରେ ଏହା ଦେଖାଗଲା । ଗୋଟାକେତେ ନୂତନ ମିଲ ସ୍ଥାପିତ ହୋଇଅଛି । ଭାରତର ମାଲ ଦେଶାନ୍ତରକୁ ନେବାକୁ ବନ୍ଦର ନିର୍ମାଣ ହେଉଅଛି କିମ୍ବା ଭବିଷ୍ୟତରେ ପ୍ରୟୋଜନାନୁସାରେ ଯୁଦ୍ଧ ଜାହାଜ ପ୍ରଭୃତିର ଆଶ୍ରୟସ୍ଥଳ ହୋଇପାରିବା ଆଶାରେ ଭାଇଜାଗ ବନ୍ଦରର ସୃଷ୍ଟି । ଭାରତର ମାଲ ଯାଉଅଛି, ଭାରତକୁ ମାଲ ଆସୁଅଛି । ରେଲଲାଇନ ଦୁଇ ପାଖରେ ଘର୍ମାକ୍ତ କୃଷକମାନେ ମାଣ୍ଡିଆ ରୋପଣ— ବିଶେଷତଃ ଲଙ୍କାମରିଚ଼ ରୋପଣରେ ବ୍ୟସ୍ତ । କୃଷକର ପରିଶ୍ରମହିଁ ସାର, ମଜା ମାରୁଅଛନ୍ତି ବ୍ୟବସାୟୀ । ଭାରତ ଭାଗ୍ୟରେ ବେଢ଼େ ଯାଚ୍ଛେ ଛେଲେ ମେୟେ ଧନ ଦୌଲତ ବାଢ଼େ ନା ।''

ରେଳଗାଡ଼ି ବଖରାଟିରେ ମୋର ଏକାଧିପତ୍ୟ । ଉଆଲଟେୟାର ପର୍ଯ୍ୟନ୍ତ କେହି ନ ଥିଲେ । ସେଠାରୁ ଜଣେ ମାନ୍ଦ୍ରାଜୀ ଭଦ୍ରଲୋକ ମୋ ଗାଡ଼ିରେ ବସିଲେ । ତାଙ୍କ ସଙ୍ଗରେ ଆସବାବ କିଛି ନ ଥିଲା, ମୁଁ ମନେ କଲି, ଅଳ୍ପଦୂରରେ ଉତୁରିବେ । ତାହାହିଁ ଘଟିଲା । ଆଳାପ କଲାବେଳେ ମୋଠାରୁ ପୁରୀର ବିବରଣ ଶୁଣିଲେ । ତାଙ୍କ ଭାଗରେ ପୁରୀଦର୍ଶନ ଘଟି

ନାହିଁ । ପୁରନ୍ଦରପୁର ଦେଖିବାକୁ ମୋତେ ଉପଦେଶ ଦେଲେ । ତାଙ୍କଠାରୁ ଗୋଟିଏ ନୂତନ ଧରଣର କଥା ଶୁଣିଲି । ସେ କହିଲେ, ଭାରତବର୍ଷରେ ତିନିଗୋଟି ବ୍ରହ୍ମ ଅଛନ୍ତି । ଅନ୍ନ ବ୍ରହ୍ମ, ଶବ୍ଦ ବ୍ରହ୍ମ ଓ ପରଂବ୍ରହ୍ମ । ଅନ୍ନବ୍ରହ୍ମ ଜଗନ୍ନାଥ, ପ୍ରଧାନପୁରର ପୁଣ୍ଡରୀକାକ୍ଷ ଶବ୍ଦବ୍ରହ୍ମ ଓ ତିରୁପତିରେ ପରଂବ୍ରହ୍ମ । ଏହା କହିଲେ ସତ, ମାତ୍ର ତହିଁର ବ୍ୟାଖ୍ୟା କରିବାକୁ ତାଙ୍କର ପାଣ୍ଡିତ୍ୟ ନ ଥିଲା । ମୁଁ ବୁଝିପାରିଲି, ଅନ୍ନଭକ୍ଷଣରେ ଜାତିଭେଦ ବିଚ଼ାର ନ ଥିବାରୁ ଜଗନ୍ନାଥଙ୍କୁ ଅନ୍ନବ୍ରହ୍ମ ବୋଲି କହିଅଛନ୍ତି । ବୋଧହୁଏ ପୁଣ୍ଡରୀକାକ୍ଷଙ୍କ ନିକଟରେ ନାମ କୀର୍ତ୍ତନ କଲାବେଳେ ଜାତିଭେଦ ବିଚ଼ାର ଥାଏ, ଏଣୁ ତାଙ୍କୁ ଶବ୍ଦବ୍ରହ୍ମ ବୋଲାଯାଇଅଛି । ମାତ୍ର ତିରୁପତି କିପରି ପରଂବ୍ରହ୍ମ ହେଲେ, ଏହା ବୁଝା ଯାଉ ନାହିଁ । ଯେଉଁ ଦେଶରେ ଅସ୍ପୃଶ୍ୟ ଜାତିର ଛାୟାସ୍ପର୍ଶରେ ବ୍ରାହ୍ମଣୀ ନଷ୍ଟ ହୁଏ, ସେ ଦେଶରେ ବ୍ରହ୍ମଜ୍ଞାନ ଅସମ୍ଭବ । ତେବେ ଧୋବ ଓ ରଙ୍ଗ ବଡ଼ ବଡ଼ ଚିତାରେ ଯେବେ ପରଂବ୍ରହ୍ମଙ୍କର ଆବିର୍ଭାବ ହେବା ସମ୍ଭବ, ତେବେ ହୋଇପାରେ । କଥାଟା ସନ୍ଦେହଗର୍ଭରେ ରହିଲା, ତତ୍ତ୍ୱାନ୍ୱେଷଣ କରିବାର ବାସନାଟା ମନରେ ରହିଲା ମଧ୍ୟ ।

ଠିକ୍ ସାୟଂ ସନ୍ଧ୍ୟାବେଳେ ଗୋଦାବରୀର ଶୁଭ ଦର୍ଶନ ମିଳିଲା । ଯେଉଁ ଗୋଦାବରୀ ରାବଣାକୃଷ୍ଟା ସୀତା ଦେବୀଙ୍କ ଲୋତକବାରି ବହନ କରି ଅଦ୍ୟାପି ଦର୍ଶକମାନଙ୍କୁ କରୁଣାରସାପ୍ଲୁତ କରୁଅଛି, ଯେଉଁ ଗୋଦାବରୀ ତୀରଭୂମି ଏକସମୟରେ ତ୍ରିକଳିଙ୍ଗାଧିପତି ଓ ଉତ୍କଳ ସମ୍ରାଟ୍ ଗଙ୍ଗାବଂଶାବତଂଶମାନଙ୍କର ଲୀଳାଭୂମି ଥିଲା, ମାତୃରୂପିଣୀ ସେହି ଗୋଦାବରୀ ମୋର ପୂର୍ବ ପୁରୁଷମାନଙ୍କ ବାରିପାନଦ୍ୱାରା ପୁଷ୍ଟାଙ୍ଗ ଏବଂ ବଳବୀର୍ଯ୍ୟସମନ୍ୱିତ କରି ଦେଶଜୟ ଓ ରାଜ୍ୟସ୍ଥାପନ କରିବା ନିମନ୍ତେ ମହାରଣ୍ୟମୟ ଦୂର ଦେଶଦେଶାନ୍ତରକୁ ପ୍ରେରଣ କରିଥିଲା । ତା'ର ସେହି ଦେବୋପମ ବୀର୍ଯ୍ୟଶାଳୀ ପୁତ୍ରଗଣ କେଉଁଠାରେ ? ମୁଁ ସେହି ବଂଶସମ୍ଭୂତ ବୋଲି ଭାବିଲି ବୋଲି କି ଆଜି ଗୋଦାବରୀ ବାରି ଆବିଳ ହୋଇଉଠିଲା ? ଗୋଦାବରୀର ବାରିପ୍ରବାହ ଆଜି ଅତ୍ୟନ୍ତ ଗୋଳିଆ । ପୂର୍ବ କଥା ଭାବି ଭାବି ଦୁଃଖରେ ଓ ଲଜ୍ଜାରେ ମୋର ମନ ମଧ୍ୟ ଆବିଳ ହେଲା । ଉଦକ ସ୍ପର୍ଶ କରିବାର ଉପାୟ ନ ଥିଲା । ଲୋତକବାରିଦ୍ୱାରା ସେହି ମହାନୁଭବମାନଙ୍କ ଉଦ୍ଦେଶ୍ୟରେ ତର୍ପଣ କଲି । ଦୁଃଖଛାୟା ସଙ୍ଗେ ସଙ୍ଗେ ଅନ୍ଧାର ମାଡ଼ି ଆସିଲା ।

ଗାଡ଼ିରେ ତିନି ଜଣ ଯାତ୍ରୀ ଉଠିଥିଲେ । ଟିକିଏ ଅସୁବିଧା ହେଲା । ମନରେ ଚିନ୍ତା ଉପସ୍ଥିତ ହେଲେ କିଛି ହିଁ ଭଲ ଲାଗେ ନାହିଁ । ନାନା କଥା ଭାବୁଁ ଭାବୁଁ ଗାଡ଼ି ରାତ୍ର ନଅଘଣ୍ଟା ବେଳେ ବେଜବାଡ଼ାରେ ପହଞ୍ଚିଲା । ମେଡ୍ରାସ ମେଲ ତ୍ୟାଗ କରି ନାଇଜାମ୍ ଷ୍ଟେଟ ରେଳଗାଡ଼ିର ଚଢ଼ିଲି । ଗାଡ଼ି ଅନେକକ୍ଷଣ ରହେ । ନୈଶଭୋଜନ ସମାପନ କରି ଶୟନ କଲି । ଇଞ୍ଜିନ କେତେବେଳେ ଗାଡ଼ିକୁ ଟାଣି ଘେନି ଚାଲିଲା, ମୋତେ ଜଣା ନାହିଁ ।

ବେଜବାଡ଼ା ଗୋଟିଏ କ୍ଷୁଦ୍ର ସହର ଓ ବ୍ୟବସାୟର ସ୍ଥଳ । ଏଠାରେ ଗୋଟିଏ ବୁଦ୍ଧ ଗୁମ୍ଫା ଅଛି, ମାତ୍ର ତାଦୃଶ ପ୍ରସିଦ୍ଧ ନୁହେଁ । ଆଉ ପ୍ରତ୍ୟେକ ସ୍ଥାନ ଦେଖିବାକୁ ଭ୍ରମଣକାରୀର ଅବସର ନାହିଁ ? ସକାଳୁ ଉଠି ଦେଖେଁ, ରେଳ ଅନୁର୍ବର ଭୂମି ଓ ବୃକ୍ଷଲତାଶୂନ୍ୟ ପାହାଡ଼ ପାଖ ଦେଇ ଆପଣା ଗନ୍ତବ୍ୟ ପଥରେ ଚାଲିଅଛି । ଦୃଶ୍ୟ ଆଦୌ ମନୋମୁଗ୍ଧକର ନୁହେଁ । ମାତୃଭୂମିର ଶସ୍ୟତୃଣଶ୍ୟାମଳାୟିତ କ୍ଷେତ୍ର, ବୃକ୍ଷଲତାମଣ୍ଡିତ ପାହାଡ଼ର ଦୃଶ୍ୟ ନାହିଁ । ଧାନ୍ୟକ୍ଷେତ୍ର ଅତି ବିରଳ, ମାଣ୍ଡିଆ କ୍ଷେତ, ମକା, ଗଙ୍ଗାଇ କ୍ଷେତ ମାତ୍ର ସ୍ଥାନେ ସ୍ଥାନେ ଦୃଷ୍ଟ ହୁଏ ।

ଆମ ଗଡ଼ଜାତ ମୃଦୁହାସିନୀ, କୋମଳହୃଦୟା, ସ୍ନେହଶୀଳା ମାତା ସଦୃଶ; ଆଉ ହାଇଦ୍ରାବାଦ ରୁକ୍ଷା, କଟୁଭାଷିଣୀ ବିମର୍ଷମୁଖୀ, କଳହପ୍ରିୟା ବିମାତା ସଦୃଶ । ବାସ୍ତବିକ ଉଭୟ ଦେଶର ଦୃଶ୍ୟର ତୁଳନା କଲେ ଏହାହିଁ ହୃଦୟରେ ଆଭାସିଯାଏ ।

ସକାଳ ନଅଘଣ୍ଟା ବେଳେ ଗାଡ଼ି ସିକନ୍ଦ୍ରାବାଦରେ ପହଞ୍ଚିଲା । ସିକନ୍ଦ୍ରାବାଦ ଦର୍ଶନଯୋଗ୍ୟ ସହର, ମାତ୍ର ଏଠାରେ ପ୍ଲେଗର ପ୍ରକୋପ ଥିବାଯୋଗୁଁ ନ ରହି ଏକାବେଳକେ ହାଇଦ୍ରାବାଦ ଯିବାକୁ ହେଲା । ଷ୍ଟେସନରୁ ଉତୁରି ଦାନଗଦୀକୁ (Custom house) ଯିବାକୁ ହୁଏ । ନବାଗତ ବ୍ୟକ୍ତିଙ୍କର ମାଲ ଯାଞ୍ଚ କରାଯାଏ, ନୂତନ ଦ୍ରବ୍ୟ ଥିଲେ ସେଥିନିମନ୍ତେ ମାସୁଲ ନିଅନ୍ତି । ମୋ ନିକଟରେ ଟ ୧୬୧ ମୂଲ୍ୟର ଖଣ୍ଡେ ଏଣ୍ଡୀ ଥାନ ଥିଲା । ସେଥି ନିମନ୍ତେ ଟ ୧୦୪ ଜରିମାନା ଦେବାକୁ ପଡ଼ିଲା । ଯେଉଁଠାରେ ଯେ ବିଧି ।

ହାଇଦ୍ରାବାଦ ନାଇଜାମଙ୍କର ରାଜଧାନୀ । ଭାରତରେ ଅଦ୍ୱିତୀୟ ବଡ଼ ରାଜ୍ୟ । ଧନ, ଜନ, ମାନରେ ପରିପୂର୍ଣ୍ଣ, ଏହା କହିବା ବାହୁଲ୍ୟ ମାତ୍ର । ନାଇଜାମ ରାଜଧାନୀ ବଡ଼ ବୋଇଲେ

ବଡ଼, ଏହାର କ୍ଷେତ୍ରଫଳ ପରା ୮୩୦୦୦ ବର୍ଗ ମାଇଲ ଏବଂ ଲୋକସଂଖ୍ୟା ମଧ କମ୍ ନୁହେଁ;— ୧୨୮୭୧୭୭୦ ଜଣ । ରାଜଧାନୀର ନାମ— ହାଇଦ୍ରାବାଦ, ଅନେକ ଦିନର ପୁରୁଣା ସହର । ପୁରୁଣା ନୂଆ ମିଶି ଗୋଟିଏ ପ୍ରକାଣ୍ଡ ସହର ହୋଇଅଛି । ଭାରତବର୍ଷର ପରା ଏହା ଚତୁର୍ଥ ସହର । ହାଇଦ୍ରାବାଦ ସହର ମଧରେ ମୁସି ନଦୀ ପ୍ରବାହିତ ହେଉଅଛି । ନଦୀର ଓସାର ପ୍ରାୟ ୪୦୦ ହାତକୁ କିଛି ବେଶି, ମାତ୍ର ଜଳପୂର୍ଣ୍ଣ ନୁହେଁ । ଗୋଟିଏ କ୍ଷୀଣ ସ୍ରୋତ ମଧରେ ଥିବା ଦହମାନଙ୍କୁ ସଂଯୋଗ କରୁଅଛି, ପୋଷା ହଂସ, ମହିଷମାନଙ୍କ କ୍ରୀଡ଼ାସ୍ଥଳ ଏବଂ ରଜକମାନଙ୍କର ରଜତ ଉପାର୍ଜନର ଉପାୟ ହୋଇଅଛି । ପୂର୍ଣ୍ଣତୋୟା ହୋଇଥିଲେ ସହରର ରମଣୀୟତା ବୃଦ୍ଧି କରୁଥାନ୍ତା, ମାତ୍ର ଜଳଦରିଦ୍ରା ଥିବାରୁ ବରଂ ଶୋଭାର ହ୍ରାସ କରୁଅଛି ବୋଲି ମୋର ଧାରଣା । ପୁଣି ବର୍ଷା କାଳରେ ପରା ଖରସ୍ରୋତା । ପୂର୍ବେ ଦୁଇ ଥର ବୃଦ୍ଧିଲାଭ କରି ସହରବାସୀଙ୍କର ଆତଙ୍କ ଉପସ୍ଥିତ କରିଥିଲା । ଏଣୁ ଦୁଇ ତୀରରେ ପ୍ରସ୍ତର କାନ୍ଥଦ୍ୱାରା ତା'ର ଉନ୍ନତତା ନଷ୍ଟ କରିବାର ଉପାୟ କରାଯାଇଅଛି । ଲୋକଙ୍କ ଗମନାଗମନ ନିମନ୍ତେ ଗୋଟିଏ ଖିଲାଣ ପୋଲ ଅଛି । ପୋଲର ଦକ୍ଷିଣ ପ୍ରାନ୍ତରେ ଗୋଟିଏ ଗେଟ୍ ଅଛି । ଏହାର ନାମ ଅଫଜଲ୍ ଗେଟ୍ । ଏହା ଅତିକ୍ରମ କଲେ ପୁରୁଣା ସହରକୁ ପ୍ରବେଶ କରିବାକୁ ହୁଏ । ଅଫଜଲ ଗେଟରେ ପହଞ୍ଚିବାବେଳେ ଏହି ଗେଟ୍‌ର ବାମ ଆଡ଼କୁ ଗୋଟିଏ କର୍କଶ ପଥର କାନ୍ଥ ଦେଖାଯାଏ । ଏହା ଦେଖିଲେ ସ୍ୱଭାବତଃ ଦର୍ଶନ ପ୍ରଶ୍ନ କରେ, ଏଇଟା କ'ଣ ? ନାମ ଶୁଣିଲେ ପ୍ରାଣ କମ୍ପିଉଠେ । ଏହାର ନାମ ସତୀମଞ୍ଚ । ପୂର୍ବେ ହିନ୍ଦୁ ରମଣୀମାନେ ପତି ଉଦ୍ଦେଶ୍ୟରେ ଏଠାରେ ଆତ୍ମବଳି ଦେଉଥିଲେ ।

ପୁରୁଣା ସହରର (ପ୍ରଧାନ ସହର) ପ୍ରବେଶ ଦ୍ୱାର ସ୍ୱରୂପ 'ଚାରମିନାର' ବିଦ୍ୟମାନ । ସହରର ଚାରିଆଡ଼କୁ ଚାରି ଗୋଟି ରାସ୍ତା ଏଠାରୁ ଯାଇଅଛି । ଚୌକ ମଧରେ ଏହି ଘରଟି ଅଛି, ଚାରି ଗୋଟି ଖିଲଣ ଅଛି, ପ୍ରତ୍ୟେକ ଖିଲଣର ଉଚ୍ଚତା ପଞ୍ଚାଶ ଫୁଟ । ମଧରେ ଗମନାଗମନର ରାସ୍ତା ନାହିଁ । ଏଠାରେ ପହରାବାଲାମାନେ ପହରା କରନ୍ତି ଏବଂ ଗାର୍ଡ଼ ସର୍ବଦା ମୁତୟନ ଥାଏ । ଗୃହର ଚାରି କୋଣରେ ଚାରି ଗୋଟି 'ମିନାର' ଅଛି । ଏହାର ଉଚ୍ଚତା ୧୮୪ ଫୁଟ୍ । ବଡ଼ ବଜାର । ବଜାର ସର୍ବତ୍ର ସମାନ । ଫଳ ଫୁଲ ଖଜା ମିଠାଇ ଓ ଅନ୍ୟାନ୍ୟ ପଦାର୍ଥ ଅପର୍ଯ୍ୟାପ୍ତ ।

ମକ୍କା ମସଜିଦ୍ ଗୋଟିଏ ଦେଖିବା ଯୋଗ୍ୟ ଭଜନାଳୟ । ମକ୍କାର ମସ୍‌ଜିଦର ଅନୁକରଣରେ ନିର୍ମିତ ହୋଇଥିବାରୁ ଏହାର ନାମ ମକ୍କା ମସ୍‌ଜିଦ୍ । ଲମ୍ବ ୨୨୫ ଫୁଟ୍, ପ୍ରସ୍ଥ ୧୮୦ ଫୁଟ୍ ଓ ଉଚ୍ଚ ୭୫ ଫୁଟ । ପନ୍ଦର ଗୋଟି ଖିଲଣଦ୍ୱାରା ଏହା ନିର୍ମିତ । ଉତ୍ତର ଓ ଦକ୍ଷିଣ କୋଣରେ ଦୁଇ ଗୋଟି ଗୁମ୍ବଜ ଅଛି । ଗୁମ୍ବଜର ଅଗ୍ରଭାଗ ଛାଦରୁ ୧୦୦ ଫୁଟ ଉଚ୍ଚ । ଏହି ଉପାସନା ମନ୍ଦିରରେ ୧୦୦୦୦ ଉପାସକ ବସିବାର ସ୍ଥାନ ଅଛି । ନିଜାମ ଏଠାରେ ଆସି ନିମାଜ ପଢ଼ନ୍ତି । ନିଜାମଙ୍କ ଗୃହରୁ ଏଠାକୁ ଗୁପ୍ତ ବାଟ ଅଛି, କେହି ମୃତ ହେଲେ ଶବ ଏହି ବାଟେ ଆସେ । ଏହି ସ୍ଥାନରେ ପୂର୍ବେ ହିନ୍ଦୁ ମନ୍ଦିର ଥିଲା । ନିଦର୍ଶନ ସ୍ୱରୂପ ତହିଁର ଦୁଇ ଖଣ୍ଡ ଲମ୍ବ ଓ ଚିକ୍କଣ ଶିଳାଫଳକ ଲୋକଙ୍କର ଆସନରୂପେ ବ୍ୟବହୃତ ହେଉଅଛି । ମସଜିଦ୍‌ର ଦ୍ୱାରର ଦକ୍ଷିଣାଂଶକୁ ନିଜାମମାନଙ୍କର କବରଖାନା ଅଛି । କବରରକ୍ଷୀ କବରଗୁଡ଼ିକର ପରିଚୟ କରାଇ ଦର୍ଶକମାନଙ୍କଠାରୁ କିଛି କିଛି ପାଏ ।

ପାଞ୍ଚ ମାଇଲ ଦୂରରେ ଫଲକନାମା ପ୍ରାସାଦ । ଏହା ପର୍ବତ ଉପରେ ନିର୍ମିତ, ଏଠାରୁ ଉତ୍ତରକୁ ସମଗ୍ର ସହରର ଦୃଶ୍ୟ ଦେଖାଯାଏ । ଏହା ନିଜାମଙ୍କର ଅତିଥିଶାଳା । ଆମ ତୁମ ପରି ଅତିଥି କି । ତାହା ନୁହେଁ । ବଡ଼ଲାଟ ଓ ତାଙ୍କଠାରୁ ଉଚ୍ଚ ଦରର ଅତିଥିମାନଙ୍କପାଇଁ ରକ୍ଷିତ । ବୋଧହୁଏ ସମ୍ରାଟ୍‌ଙ୍କ ପଦରଜଦ୍ୱାରା ପବିତ୍ରୀକୃତ । ଏବେ ନିଜାମଙ୍କ ସମ୍ପତ୍ତିରେ ନିର୍ମିତ, ଭାରତରେ ଶ୍ରେଷ୍ଠ ଯିଏ, ତାଙ୍କର ଅଭ୍ୟର୍ଥନା ନିମନ୍ତେ ନିଜାମ ମୁକ୍ତହସ୍ତ, ସେଥିର ଶୋଭା ସମ୍ଭାର, ସେଥିର ଆଡ଼ମ୍ବର, ସେଥିର ବ୍ୟୟ ଲେଖକର ବର୍ଣ୍ଣନାର ବହିର୍ଭୂତ ବ୍ୟାପାର ।

ନୂଆ ସହରରେ ରେସିଡେଣ୍ଟଙ୍କର ପ୍ରାସାଦ ଅଛି । ଏହି ଅଞ୍ଚଳରେ କଲେଜ ପ୍ରଭୃତି ଅଛି । ହାଇକୋଟ, ମେଡ଼ିକେଲ କଲେଜ ପ୍ରଭୃତି ପାଶ୍ଚାତ୍ୟ ମାଲ ମସଲା ଓ ଇଞ୍ଜିନିୟରଙ୍କ ବୁଦ୍ଧିରେ ନିର୍ମିତ ହୋଇଥିଲେ ସୁଦ୍ଧା ପ୍ରାଚ୍ୟ ଧରଣର ଗୁମ୍ବଜ ଓ ମିନାରେଟ ପ୍ରତ୍ୟେକ ବଡ଼ ବଡ଼ ଗୃହରେ ଦିଆଯାଇଅଛି । ଅଦାଲତ ସିରସ୍ତା ସବୁ ଉର୍ଦ୍ଦୁରେ; ଏମନ୍ତ କି ହାଇକୋଟରେ ମଧ ଉର୍ଦ୍ଦୁ ଚଳେ । ଉସମାନିଆ କଲେଜ ଓ ମେଡ଼ିକାଲ କଲେଜ ଅଧି[illegible] ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଅଛି ।

ହିନ୍ଦୁ ମୁସଲମାନଙ୍କ ମଧରେ ବିବାଦ ଥିବାର ପ୍ରକାଶ ପାଏ ନାହିଁ । ମୁସଲମାନ ରାଜ୍ୟ ହେଲେ ମଧ ହିନ୍ଦୁ ସଂଖ୍ୟା ଅତ୍ୟଧିକ ।

ସହରଟି ସମତଳ ଭୂମି ନୁହେଁ । ନତାନତ ଭୂମି— ମଧ୍ୟରେ ଛୋଟ ପାହାଡ଼ ମଧ୍ୟ ଅଛି । ଉଦ୍ୟାନ ଶୋଭା ଚମତ୍କାର—ଏଠାର ଉଦ୍ୟାନ ଶୋଭା କୌଣସି ବଡ଼ ସହରର ଉଦ୍ୟାନଶୋଭାରୁ ନ୍ୟୂନ ନୁହେଁ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ସହରତମାମ ବିଦ୍ୟୁତ୍ ଆଲୋକ ଦିଆଯାଇଅଛି । ଏବଂ ଜଳର ସୁବନ୍ଦୋବସ୍ତ ଅଛି । ସହରଟି ସୁପରିଚ୍ଛନ୍ନ ବୋଲାଯାଇପାରେ । ହୋସେନ ସାଗର ବୋଲି ଗୋଟିଏ ପ୍ରକାଣ୍ଡ ପୋଖରୀ ବୋଲି ବା ସରୋବର ବୋଲି ହାଇଦ୍ରାବାଦ ଓ ସିକନ୍ଦ୍ରାବାଦକୁ ଯୋଗ କରୁଅଛି । ଅତି ପ୍ରକାଣ୍ଡ, ଏଣୁ ହ୍ରଦ ବୋଲିବା ଉଚିତ । ଏହାର ଶୋଭା ଚମତ୍କାର, ଏହା ୧୬୦୦ ଖ୍ରୀଷ୍ଟାବ୍ଦରେ ନିର୍ମିତ । ମୋ ପରି ଭ୍ରମଣକାରୀ ପକ୍ଷରେ ଏଥିରୁ ଅଧିକ ଲେଖିବା ଉଚିତ ନୁହେଁ । ନୀରସ ବର୍ଣ୍ଣନାରେ ପାଠକଙ୍କ ଧୈର୍ଯ୍ୟଚ୍ୟୁତି ସ୍ୱତଃସିଦ୍ଧ । ତେବେ ଗୋଲକୁଣ୍ଡା କଥାଟା ରହିଅଛି, ପଦେ ଅଧେ ଲେଖିବା ଉଚିତ । ସହର ତ ଭାରତମୟ, କେଉଁଟା ଛୋଟ, କେଉଁଟା ବା ବଡ଼, ମାଲମତା ସବୁ ଏକ ଧରଣର, କେଉଁଠାରେ ବେଶି, କେଉଁଠାରେ କମ୍, କେଉଁଠାରେ ଶସ୍ତା, କେଉଁଠାରେ ମହର୍ଗ । ମାତ୍ର ଗୋଲକୁଣ୍ଡା ଦୁର୍ଗତ ସର୍ବତ୍ର ନାହିଁ ।

ଗୋଲକୁଣ୍ଡା ଦେଖିବାକୁ ହେଲେ ପାସ୍ ଦରକାର । ଏହା ପୁଣି କମାଣ୍ଡରଙ୍କଠାରୁ ମିଳେ । ଏହା ହୋଟେଲ ମେନେଜର କହିଲେ । ମୁଁ ଭାବୁଥାଏଁ, ନିଜାମଙ୍କ କମାଣ୍ଡର ଶାନ୍ତ କି କଡ଼ା, ପାସ୍ ଦେବେ କି ଗଳହସ୍ତ କରି ଗେଟ ପ୍ରହରୀ ତଡ଼ିବ ? ପରାମର୍ଶଦାତା ଗାଡ଼ିବାଲା । ମୋର ଭାବନା ଦେଖି ସେ କହିଲା, ''କୁଛ ପରୱା ନାହିଁ ସାହେବ, ଆପ୍ ଚଲିଏ । ଆପକା ମାଫିକ ନବାବକୋ ପାସ୍ ନାହିଁ ଦେଙ୍ଗେ ତୋ କିସ୍‌କୋ ଦେଙ୍ଗେ ।'' ଏହା ଶୁଣି ମନ ଟିକିଏ ଦମ୍ଭ ଧଇଲା । ଗାଡ଼ିବାଲା ମୋଠାରେ ଟିକିଏ କୃତଜ୍ଞ ଥିଲା, କାରଣ କାଲି ମୁଁ ତାକୁ ହାଇଦ୍ରାବାଦର ଟଙ୍କା ନ ଦେଇ ଆମ ଟଙ୍କା ଭଡ଼ା ଦେଇଥିଲି । ତାର ପ୍ରାପ୍ୟ ହାଲି ମୁଦ୍ରା ୨୧ ଟଙ୍କା, ମୁଁ ତାକୁ ଆମ ଟଙ୍କା ଯୋଡ଼ିଏ ଓ ବକସିସ୍ ଟଙ୍କା ଦେଇଥିଲି । ତାର ଅର୍ଥ, ତାର ନ୍ୟାଯ୍ୟ ପ୍ରାପ୍ୟ ଅପେକ୍ଷା ତାକୁ ଟଙ୍କା ୪୨ ଅଧିକ ଦେଇଥିଲି । ନିଜାମଙ୍କ ଟଙ୍କାକୁ ହାଲି କହନ୍ତି । ଆକାରରେ ଆମ ଟଙ୍କାରୁ ଟିକିଏ ବଡ଼, ରୁପା ଓଜନରେ ମଧ୍ୟ ଟିକିଏ ବେଶି; ମାତ୍ର କି ଦୁର୍ଭାଗ୍ୟରୁ ବଟା ହିସାବରେ ବ୍ରିଟିଶ୍ ମୁଦ୍ରା ଅପେକ୍ଷା ତାର ମୂଲ୍ୟ ଟଙ୍କା ୬ କମ୍ । ଅର୍ଥାତ୍ ହାଲି ଟ ୧୨୮ ବ୍ରିଟିଶ୍ ଟ୧୦୦ର ସମାନ । ଯାହା ଯାହାର ପ୍ରାପ୍ୟ, ମୁଁ ତାହା ଆମ ଟଙ୍କାରେ ଦେଇ ଯାଉଅଛି । ସେମାନେ ମୋତେ ଅଜ୍ଞ ନ ବୋଲି ବଡ଼ଲୋକ ବୋଲି ଧନ୍ୟବାଦ ଦେଇ ଚାଲିଅଛନ୍ତି । ପ୍ରଥମେ ରେଲକୁଲିମାନଙ୍କୁ ଯାହା ଦେଲି, ସେମାନେ ତାହା ପାଇ ଟିକିଏ ମଧ୍ୟ ବେଶି ପାଇବାକୁ ପ୍ରାର୍ଥନା କଲେ ନାହିଁ । ମୁଁ ମନେକଲି, ହାଇଦ୍ରାବାଦର କୁଲିଗୁଡ଼ିକ ବଡ଼ ତୃପ୍ତଚିତ୍ତ । ଗାଡ଼ିବାଲା ତଥୈବଚ । ଓଲ୍ଲୁପଣିଆରେ କିଛି ବଡ଼ଲୋକୀ କମାଇ ନେଲି, ପାଠକେ ଈର୍ଷାନ୍ୱିତ ହେବେ ନାହିଁ ।

ଭୀତତ୍ରସ୍ତ ହୋଇ କମାଣ୍ଡରଙ୍କ ଦ୍ୱାରରେ ଉପସ୍ଥିତ ହେଲି । ଉଦ୍ୟାନ ଗେଟରେ ଦୁଇ ଜଣ ସଙ୍ଗିନବାଲା ପ୍ରହରୀ, ମନେ କରୁଥିଲି ଏହିକ୍ଷଣି ତଡ଼ିଦେବେ । ଦ୍ୱାର ଉନ୍ମୁକ୍ତ— ଅବାଧରେ ଗାଡ଼ିଟି ଭିତରକୁ ଛାଡ଼ି ଦେଲେ । ଦେଖିଲି, ବରନ୍ଦାରେ ମହାମୂଲ୍ୟ କାର୍ପେଟ ଉପରେ କୁର୍ଚ୍ଚି ଟେବୁଲ୍ ପଡ଼ିଅଛି ଏବଂ ଜଣକେତେ ଖୁବ୍ ବଡ଼ଲୋକ ଦଣ୍ଡାୟମାନ । ପିଅନଦ୍ୱାରା ଖବର ଦେଲାବେଳେ ମୋ ରୂପ ଉପରେ କମାଣ୍ଡରଙ୍କର ଶୁଭଦୃଷ୍ଟି ପଡ଼ିଲା । ତାଙ୍କ ନିକଟର ଜଣେ ଲୋକକୁ ମୋ ନିକଟକୁ ପଠାଇ ଦେଲେ । ସେ ମୋର ଅଭିପ୍ରାୟ ବୁଝି ମୋତେ ଉପରକୁ ଡାକି ନେଲେ । ମୁଁ ଗୋଟାଏ ଗୁଡ୍‌ମର୍ଣ୍ଣିଂ କଲା ମାତ୍ରକେ ସ୍ୱୟଂ କମାଣ୍ଡର ହସ୍ତ ପ୍ରସାରଣ କରି ହାତ ମିଳାଇଲେ । ମୋର ଅଭିପ୍ରାୟ ବୁଝି ଜଣେ ବଡ଼ିଗାର୍ଡ଼କୁ ତତ୍‌କ୍ଷଣାତ୍ ପାସ୍ ଲେଖି ଆଣିବାକୁ କହିଲେ । ପାସ୍‌ରେ ଦସ୍ତଖତ ଦେଇ ମୋତେ ଦେଲେ । ବାସ୍ତବିକ ଏପ୍ରକାର ସୌଜନ୍ୟ ମୁଁ କଦାପି ଆଶା କରି ନ ଥିଲି । ଯଥାର୍ଥରେ ଏହାହିଁ ବଡ଼ଲୋକର ବଡ଼ଚାଲ, ଗର୍ବରେ ସ୍ଫୀତ ହୋଇ ସମସ୍ତଙ୍କୁ ଦୂର କରିବା ବଡ଼ଲୋକର ଛୋଟ ଓ ନୀଚ୍ ଚାଲ । ଶତସହସ୍ର ଆନ୍ତରିକ ଧନ୍ୟବାଦ ଓ ସଲାମ ଦେଇ ଗୋଲକୁଣ୍ଡା ଦୁର୍ଗ ଆକ୍ରମଣ ନିମନ୍ତେ ଧାବମାନ ହେଲି ।

ଗୋଲକୁଣ୍ଡା ନାମଟି ପୃଥିବୀ ପ୍ରସିଦ୍ଧ । ଏବେ ନୁହେଁ, ସେ ଇଂରାଜମାନେ ଏଠାକୁ ଆସିବା ଆଗରୁ । ଏହାର ପ୍ରସିଦ୍ଧି କିଲ୍ଲା ନିମନ୍ତେ ନୁହେଁ, ହୀରା ନିମନ୍ତେ । ଏହି ହୀରା ଆଶାରେ କେତେ ବଣିକ୍ କେତେ ସୈନିକ ଭାରତ ଓଜାଡ଼ କରିବାକୁ ଆସିଅଛନ୍ତି । ଯୋଦ୍ଧା ବିଲାତ ତ୍ୟାଗ କଲାବେଳେ ପ୍ରିୟବତୀକୁ ଗୋଲକୁଣ୍ଡା ହାର ପିନ୍ଧାଇବ ବୋଲି କେତେ ଆଶା ଭରସା ଦେଇ ଆସିଅଛି । ମାତ୍ର ହୁଏ ତ ସେ ପଲାସୀ କ୍ଷେତ୍ରରେ, ନୋହିଲେ ଲଖ୍‌ନୋରେ, ନୋହିଲେ ଆଉ କୌଣସି ସ୍ଥାନରେ ତାର ସମାଧି ରଚନା କରିଅଛି । ତାର ପ୍ରିୟବତୀର ତ ଆଶା ତୁଟି ନାହିଁ, ପୁଣି ତାର ବିନିମୟରେ ଗୋଲକୁଣ୍ଡା ହାର କ୍ରୟ

କରିବାକୁ ପଠାଇଅଛି । ରମଣୀର ହୀରକ ମଧରେ ଜୀବନ । ଗୋଲକୁଣ୍ଡା ହୀରକ ଭାରତର ମଙ୍ଗଳପ୍ରଦ ନୁହେଁ, ନିତାନ୍ତ ଅନିଷ୍ଟକର । ଭାରତ ରତ୍ନପ୍ରସୂ । ଗୋଲକୁଣ୍ଡା ଗୋଟିଏ ପ୍ରଧାନ କେନ୍ଦ୍ରଥିଲା । ମାତ୍ର ଗୋଲକୁଣ୍ଡା ସହରରେ ହୀରକ ମିଳୁ ନ ଥିଲା । ହୀରା ହାଇଦ୍ରାବାଦ ଦକ୍ଷିଣାଞ୍ଚଳ କୃଷ୍ଣା ଜିଲା ପରିଆଳ ନାମକ ସ୍ଥାନରେ ମିଳୁଥିଲା । ସେହି ହୀରକ ଆସି ଗୋଲକୁଣ୍ଡାଠାରେ ପରିଷ୍କୃତ ଓ କଟା ହୋଇ ପୃଥିବୀର ନାନା ସ୍ଥାନକୁ ପ୍ରେରିତ ହେଉଥିଲା ।

ଗୋଲକୁଣ୍ଡା ପ୍ରଥମେ ହିନ୍ଦୁ ରାଜାଙ୍କ ଅଧିକୃତ ଥିଲା । କ୍ରମେ ବାହାମନୀ ବଂଶଙ୍କ ହସ୍ତଗତ ହେଲା । ତହିଁ ଉତ୍ତାରୁ ଆଓରଙ୍ଗଜେବ ଏହା ଅଧିକାର କଲେ ।

ଗୋଲକୁଣ୍ଡା ହାଇଦ୍ରାବାଦରୁ ୬ ମାଇଲ ଦୂର, ହାଇଦ୍ରାବାଦର ପଶ୍ଚିମ-ଦକ୍ଷିଣ କୋଣରେ ଅବସ୍ଥିତ । ଏହା ଗୋଟିଏ ପୂର୍ବକାଳର ପ୍ରସିଦ୍ଧ କିଲ୍ଲା, ପର୍ବତ ଉପରେ ନିର୍ମିତ । ପର୍ବତ ୪୦୦ ଫୁଟ ଉଚ୍ଚ । ଏହା ପ୍ରକାଣ୍ଡ ମଇଦାନ ମଧରେ ଅଛି । କେବଳ ଉତ୍ତର ଆଡ଼େ ଗୋଟିଏ କ୍ଷୁଦ୍ର ପର୍ବତ ସହିତ ସଂଯୋଗ । ଏହା ପୂର୍ବକାଳର କିଲ୍ଲା ନିମନ୍ତେ ଅତି ଉପଯୁକ୍ତ ସ୍ଥଳ । ଉପରେ ଦଣ୍ଡାୟମାନ ହୋଇ ଦୃଷ୍ଟି କଲେ ବହୁଦୂର ପର୍ଯ୍ୟନ୍ତ ଦେଖାଯାଏ । ଶତ୍ରୁ ଛପି କରି ଆସିବାର ଉପାୟ ନାହିଁ । ଯେଉଁ ସମୟରେ ଯୋଦ୍ଧାମାନେ ତରବାରୀ ଓ ଧନୁଶର ଉପରେ ନିର୍ଭର କରୁଥିଲେ, ବନ୍ଧୁକ ତୋପ ଆଧୁନିକ ବନ୍ଧୁକ ତୋପ ପରି କ୍ଷମତାଶାଳୀ ନ ଥିଲା, ସେତେବେଳେ ଏହି କି । ଦୁର୍ଜେୟ । ଅଧୁନା କାଳରେ ପର୍ବତର କିଲ୍ଲା ଅପେକ୍ଷା ଭୂମିତଳର କିଲ୍ଲା ନିରାପଦ । କିଲ୍ଲାତଳରେ ସହର ଓ ଜଳାଶୟ- ଏହା ଦୃଢ଼ ପ୍ରସ୍ତର କାନ୍ଥଦ୍ୱାରା ବେଷ୍ଟିତ । ସ୍ଥାନେ ସ୍ଥାନେ ପ୍ରକାଣ୍ଡ କାଷ୍ଠନିର୍ମିତ ଓ ଲୁହା ପଟା ମରା କବାଟ । କବାଟ ଦେହରେ ଏକଫୁଟ ଲମ୍ବ ବହୁସଂଖ୍ୟକ ମୋଟ କଣ୍ଟା ଝିଙ୍କ ପକ୍ଷୀ ପରି ମରାଯାଇଅଛି । କବାଟକୁ ହସ୍ତିଦ୍ୱାରା ମଧ ଭାଙ୍ଗି ହେବ ନାହିଁ ବୋଲି ଏ ଉପାୟ କରାଯାଇଅଛି । ଦୁର୍ଗ ଅତି କଠିନ ଚଉଡ଼ା ପ୍ରସ୍ତର କାନ୍ଥଦ୍ୱାରା ନିର୍ମିତ । ଏଥିରେ ଯେ କେତେ ଘର ଅଛି, ତାହା ବର୍ତ୍ତମାନ କହିବା ସମ୍ଭବପର ନୁହେଁ । କିଲ୍ଲାଟି ଭଗ୍ନାବସ୍ଥାରେ ପଡ଼ିଅଛି । ମରାମତିର ଆବଶ୍ୟକତା ନାହିଁ । ଏଗୁଡ଼ିକ ଭାଙ୍ଗିଲେ ଭଲ, ବୋଧହୁଏ ଏହି ଅଭିପ୍ରାୟ। ମରାମତ ବା କରିବ କିଏ ? ଏବଂ କି ନିମନ୍ତେ ? କେବଳ ଜଙ୍ଗଲପୂର୍ଣ୍ଣ । ଭାଗ୍ୟରେ ଏହି କିଲ୍ଲା ସହିତ କୌଣସି ଜଙ୍ଗଲର ସଂଯୋଗ ନାହିଁ, ଯୋଗ ଥିଲେ,ବ୍ୟାଘ୍ର ଭଲ୍ଲୁକଙ୍କ ବାସଯୋଗ୍ୟ ହୁଅନ୍ତା । ଯେଉଁ କିଲ୍ଲା ଏକ ସମୟରେ ରାଜା ମହାରାଜାଙ୍କର ବାସଯୋଗ୍ୟ ଥିଲା ଓ ଜୀବନରକ୍ଷାର ଏକମାତ୍ର ଉପାୟ ଥିଲା, ଆଜି ଜଙ୍ଗଲ ଓ ଆବର୍ଜନାପୂର୍ଣ୍ଣ ଏବଂ ନବାବ ଓ ବେଗମ, ସୈନ୍ୟ ଓ ସୈନ୍ୟସୀମନ୍ତିନୀଙ୍କ ସ୍ଥଳରେ ଶତ ଶତ ଚେମଣୀ ପକ୍ଷୀ ଓ ପେଚ୍ଚକ କ୍ରୀଡ଼ା କରୁଅଛନ୍ତି । ତଳେ ବହୁସଂଖ୍ୟକ ପ୍ରସ୍ତରଗୋଳକ ଏଣେ ତେଣେ ଜମା ଅଛି । ପୂର୍ବେ ଏଗୁଡ଼ିକ ତୋପ ଗୋଳାରୂପେ ବ୍ୟବହୃତ ହେଉଥିଲା। ପଥର କାନ୍ଥରେ ମୁଣ୍ଡ ଗୁଞ୍ଜି କି ମନୁଷ୍ୟ କାଳକବଳରୁ ରକ୍ଷା ପାଏ ? ଭାରତର ଏହି କିଲ୍ଲାମାନ ଦେଖିଲେ ମନେ ହୁଏ, ରାଜାମାନେ ଭାବିଥିଲେ ପଥର କାନ୍ଥ ଭିତରେ ନିଜେ ଓ ପାଖ ଲୋକ କେତେକଙ୍କ ଜୀବନ ବଞ୍ଚାଇ ପାରିଲେ ଦେଶ ଜୟ ହେଲା । କାନ୍ଥ ଦୃଢ଼ କଲେ କ'ଣ ହେଲା, ମନ ତ ଦୃଢ଼ ନ ଥିଲା। ପଥର ଯୋଡ଼ିଲେ କ'ଣ ହେଲା, ମନ ତ ଯୋଡ଼ି ପାରିଲେ ନାହିଁ। ଏସବୁ ସ୍ଥାନ ଦେଖିବା ଅର୍ଥ ମନରେ କୁଚିନ୍ତା ପୋଷଣ କରିବା, ଏଥିରେ ଆନନ୍ଦ ନାହିଁ ବା ଶାନ୍ତି ନାହିଁ । ପ୍ରଚଣ୍ଡ ଖରା, ଦିନ ଦୁଇ ଘଣ୍ଟା ବେଳେ ବସାକୁ ଫେରିଲି ।

ସକାଳ ସାତ ଘଣ୍ଟା ବେଳେ ବସା ଛାଡ଼ି ଷ୍ଟେସନକୁ ଗଲି । ପହଞ୍ଚିଲାବେଳେ ଗାଡ଼ି ପ୍ଲାଟଫର୍ମରେ ଦଣ୍ଡାୟମାନ ଥିଲା । ଟିକିଏ ବିଳମ୍ବ ହୋଇଥିଲେ ଗାଡ଼ି ମିଳି ନ ଥାନ୍ତା । ଅନେକ ଯାତ୍ରୀ । ମୁଁ ଯେଉଁ ଡବାରେ ଉଠିଲି, ତାହା ଆଗରୁ ପୂର୍ଣ୍ଣ ହୋଇଥିଲା । କୌଣସି ପ୍ରକାରେ ସ୍ଥାନ ଅଧିକାର ନ କଲେ ଯିବାର ଆଶା ନ ଥିଲା । ଗାଡ଼ି ଛାଡ଼ିଲା । ୧୧ ଘଣ୍ଟାଯାଏ ଏ ଭିଡ଼ ବରାବର ରହିଲା । ଗାଡ଼ିରେ ଅନେକଗୁଡ଼ିଏ ଇଞ୍ଜିନିୟର, କଣ୍ଟ୍ରାକ୍ଟର ଓ ଅନ୍ୟାନ୍ୟ କର୍ମଚାରୀ ଯାଉଥିଲେ । କାରଣ ଗୋଦାବରୀର ଗୋଟିଏ ଶାଖାନଦୀ ପ୍ରାୟ ଏକ କୋଟି ଟଙ୍କା ବ୍ୟୟରେ ବନ୍ଧା ଯାଉଅଛି । ଏତଦ୍ୱାରା ଗୋଟାଏ ଡିଷ୍ଟ୍ରିକଟ୍‌ର ଜଳ ସରବରାହ ହେବ ଏବଂ ଚାଷର ବିଶେଷ ସୁବିଧା ହେବ । ଏପ୍ରକାର ଗୋଟିଏ ପ୍ରଧାନ କାର୍ଯ୍ୟ ଦେଖିବାକୁ ମନ ବଳୁଥିଲେ ମଧ ଷ୍ଟେସନରୁ ଯାତାୟତର ସୁବିଧା ନ ଥିଲା । ବନ୍ଧ ତିଆରି ସ୍ଥାନକୁ ରେଲ ସଂଯୋଗ ହୋଇ ନାହିଁ । ଏଗାର ଘଣ୍ଟାରେ ସମସ୍ତେ ଓହ୍ଲାଇଲେ, କେବଳ ଜଣେ ସାହେବ ମୋର ସହଯାତ୍ରୀ ରହିଲେ । ସେ ଇଷ୍ଟ ଇଣ୍ଡିଆ ରେଲର ଜଣେ କର୍ମଚାରୀ । ସେ ମୋ ସହିତ ସନ୍ଧ୍ୟା ପର୍ଯ୍ୟନ୍ତ ଥିଲେ । ସେ କହିଲେ, ଚାରି ବର୍ଷ ମଧରେ ନାଇଜାମ ଗଭର୍ଣ୍ଣମେଣ୍ଟ ରେଲଓ୍ୱେ କମ୍ପାନୀ ହାତରୁ ନାଇଜାମ ଗଭର୍ଣ୍ଣମେଣ୍ଟ ହାତକୁ ଯିବ । ଏଣୁ ତତ୍‌ପୂର୍ବରୁ ଏହି

ରେଲଓୟେକୁ ଠିକ୍ ଇଷ୍ଟ ଇଣ୍ଡିଆ ରେଲଓୟେ ପରି କରିବାକୁ ହେବ । ସେଥିର ବନ୍ଦୋବସ୍ତ କରିବା ନିମନ୍ତେ କେତେକ ଜଣ କର୍ମଚାରୀ ହାଇଦ୍ରାବାଦକୁ ଆସିଥିଲେ। ସେଥି ମଧ୍ୟରୁ ମୋର ସହଯାତ୍ରୀ ଜଣେ।

ହାଇଦ୍ରାବାଦଠାରୁ ଔରଙ୍ଗାବାଦ ଯିବା ରାସ୍ତାରେ ଧାନ ବିଲ ଓ କପା କ୍ଷେତ ଦେଖାଯାଏ। ଗୋଦାବରୀକୁ ପୁଣି ପାରି ହେବାକୁ ପଡ଼ିଲା । ସ୍ଥାନେ ସ୍ଥାନେ ବୃକ୍ଷଲତାଶୋଭିତ ଛୋଟ ଛୋଟ ପାହାଡ଼ ମଧ୍ୟ ଦୃଷ୍ଟିଗୋଚର ହୁଏ । ବେଜବାଡ଼ାଠାରୁ ହାଇଦ୍ରାବାଦଯାଏ ଜମି ଯେପରି ଅନୁର୍ବର ଓ ବୃକ୍ଷଲତାଶୂନ୍ୟ ଦେଖାଯାଉଥିଲା, ଏ ଅଞ୍ଚଳ ସେପରି ନୁହେଁ । ରାତ୍ର ୯ଘଣ୍ଟା ବେଳେ ଔରଙ୍ଗାବାଦରେ ପହଞ୍ଚିଲୁଁ । ଷ୍ଟେସନମାଷ୍ଟର ଜଣେ ମୁସଲମାନ, ଅତି ଭଦ୍ରଲୋକ । ତାଙ୍କୁ ମୋର ଭ୍ରମଣର ଉଦ୍ଦେଶ୍ୟ ଜ୍ଞାପନ କରିବାରୁ ସମସ୍ତ ବିଷୟ ସୁବିଧା କରିଦେବାକୁ କହିଲେ । ଷ୍ଟେସନ ପାନ୍ଥଶାଳାରେ ଆଶ୍ରୟ ନେବାକୁ ହେଲା । ଆର ଦିନ ସକାଳୁ ଉଠି ଷ୍ଟେସନ ନିକଟବର୍ତ୍ତୀ ସହରତଳିଟି ପଦବ୍ରଜରେ ଘେରାଏ ବୁଲି ଆସି ସ୍ନାନ କରିନେଲି । ଇତି ମଧ୍ୟରେ ମୋଟର ଗାଡ଼ି ଆସି ଉପସ୍ଥିତ ଥିଲା। ଇଲୋରା ଅଭିମୁଖରେ ପ୍ରସ୍ଥାନ କଲି ।

ଇଲୋରା ଔରଙ୍ଗାବାଦରୁ ୧୬ ମାଇଲ । ରାସ୍ତାରେ ଔରଙ୍ଗାବାଦ ସହର କିଲ୍ଲା, ଛାଉଣୀ ଏବଂ ଦଉଲତାବାଦ ସହର ପଡ଼େ । ମୂଳ ଲକ୍ଷ୍ୟ ଇଲୋରା, ଏଣୁ ଇଲୋରା ଦେଖି ଫେରିଲା ବେଳେ ଔରଙ୍ଗାବାଦ ଓ ଦୌଲତାବାଦ ଦେଖିବାର ଇଚ୍ଛା ରହିଲା ।

ଦୌଲତାବାଦ ତ୍ୟାଗ କଲାରୁ ଧୀରେ ଧୀରେ ପର୍ବତାରୋହଣ କରିବାକୁ ହୁଏ । ସଡ଼କର ପୂର୍ବକୁ ଗୁମ୍ଫାମାନ ବିଦ୍ୟମାନ । ରାସ୍ତାର ନିକଟରେ ଗୁମ୍ଫାଗୁଡ଼ାକ ଥିଲେ ମଧ୍ୟ ରାସ୍ତାରୁ ସୁସ୍ପଷ୍ଟରୂପେ ଦେଖାଯାଏ ନାହିଁ । ପର୍ବତଟି ଦକ୍ଷିଣ-ଉତ୍ତର ହୋଇ ଅବସ୍ଥିତ । ଏହି ପର୍ବତରେ ୩୪ ଗୋଟି ଗୁମ୍ଫା ଅଛି । ପ୍ରଥମ ୧୨ ଗୋଟି ବୌଦ୍ଧ ଗୁମ୍ଫା, ଦ୍ୱିତୀୟ ୧୭ ଗୋଟି ସ୍ମାର୍ତ୍ତଧର୍ମର ଏବଂ ଶେଷ ପାଞ୍ଚଗୋଟି ଜୈନ ଗୁମ୍ଫା । ଗୋଟିଏ ପର୍ବତରେ ଶ୍ରେଣୀବଦ୍ଧଭାବରେ ଏକତ୍ର ପରସ୍ପର ସଂଲଗ୍ନ ୩୪ ଗୋଟି ଗୁମ୍ଫା କୌଣସି ସହରର ଏକ ରାସ୍ତାର ଏକ ପାର୍ଶ୍ୱରେ ୩୪ ଗୋଟି ବିଭିନ୍ନ ସମ୍ପ୍ରଦାୟର ଲୋକମାନଙ୍କର ଗୃହ ଲଗାଲଗି ହୋଇ ରହିଲା ଭଳି ରହିଅଛି । ଏହା ବୌଦ୍ଧ, ହିନ୍ଦୁ ଓ ଜୈନ ଧର୍ମାବଲମ୍ବୀମାନଙ୍କର ବିଦ୍ୱେଷପରିଚାୟକ, କି ସହାନୁଭୂତିସୂଚକ ? ଭାରତବର୍ଷର ନାନା ସ୍ଥାନରେ ଗୁମ୍ଫା ଅଛି, ମାତ୍ର ଏକ ପର୍ବତରେ ଏପ୍ରକାର ତିନି ଧର୍ମର ଗୁମ୍ଫା ଏକତ୍ର ଦେଖାଯାଏ ନାହିଁ । ଏଣୁ ଅନୁମାନ ହୁଏ, ପ୍ରତିଦ୍ୱନ୍ଦ୍ୱିତା ହେତୁ ଧର୍ମର ଆଧିକ୍ୟ ଦେଖାଇବାକୁ ଧର୍ମବିଶ୍ୱାସୀମାନେ ଅର୍ଥ ବ୍ୟୟ କରିବାକୁ ତ୍ରୁଟି କରି ନାହାନ୍ତି ।

ଖଣ୍ଡଗିରି ଉଦୟଗିରିର ଗୁମ୍ଫା ଇଲୋରାର ଗୁମ୍ଫା ସହିତ ଆଦୌ ତୁଳନାଯୋଗ୍ୟ ନୁହେଁ । କାରୁକାର୍ଯ୍ୟ ଯେମନ୍ତ ଚମତ୍କାର, ଗୃହର ଆକାର ତେମନ୍ତ ପ୍ରକାଣ୍ଡ । ଗୃହର ବରନ୍ଦା ଓ କୋଠରି ଛଡ଼ା ମଧ୍ୟବର୍ତ୍ତୀ ବୈଠକର ଦୀର୍ଘ ଓ ପ୍ରତି ପ୍ରାୟ ୪୦।୫୦ ହାତ । ପୁଣି ଦ୍ୱିତଳ ଓ ତ୍ରିତଳ ଗୃହ ଅଛି । ବୌଦ୍ଧଗୁମ୍ଫା ମଧ୍ୟରୁ ୧୧ ଗୋଟି ବିହାର ଓ ଗୋଟିଏ ଚୈତ୍ୟଗୃହ । ବିହାରରେ ଉପାସନାଗୃହ ଓ ସଭାଗୃହ ଛଡ଼ା ବୌଦ୍ଧ ଭିକ୍ଷୁ ଓ ଅତିଥିମାନଙ୍କ ନିମନ୍ତେ କୋଠରି ଅଛି । ଚୈତ୍ୟଗୃହରେ କେବଳ ଉପାସନା ହୁଏ । ଚୈତ୍ୟଗୃହଟି ଖିଲାଣ ହୋଇଅଛି ଏବଂ ବିହାରମାନ ପକ୍କା ଗୃହର ଛାତ ଭଳି ତିଆରି ହୋଇଅଛି । ବିହାର ଗୃହର ଏକ ପାର୍ଶ୍ୱରେ ଜଳାଧାର ଅଛି । ଏହି ଜଳ କୂପଜଳ ପରି ସବୁ ଅଛି ଓ ସର୍ବଦା ପୂର୍ଣ୍ଣ ରହିଅଛି । ଜଳ ସ୍ୱଚ୍ଛ ଓ ନିର୍ମଳ । ବୌଦ୍ଧ ଗୃହମାନଙ୍କରେ ବୁଦ୍ଧଦେବଙ୍କ ପ୍ରତିମୂର୍ତ୍ତି, ତାଙ୍କ ଜୀବନର ଘଟନାବଳୀ ଓ ଜାତକ ଗ୍ରନ୍ଥର ରୂପମାନ ଉତ୍କୀର୍ଣ୍ଣ ହୋଇଅଛନ୍ତି । ଦେବତା ଯକ୍ଷ କିନ୍ନର ଗନ୍ଧର୍ବ ପ୍ରଭୃତିଙ୍କର ଓ ପଶୁପକ୍ଷୀମାନଙ୍କର ପ୍ରତିକୃତିଦ୍ୱାରା କାନ୍ଥମାନ ପୂର୍ଣ୍ଣ । ସ୍ତମ୍ଭ, ତୋରଣମାନ ଲତା ପୁଷ୍ପ ପ୍ରଭୃତିଦ୍ୱାରା ଅଳଙ୍କୃତ ।

ଚୈତ୍ୟଗୃହର ମଧ୍ୟଭାଗରେ ଗୋଟିଏ ମନ୍ଦିର ନିର୍ମିତ ହୋଇଅଛି । ଏହା କୌଣସି କାନ୍ଥ ସହିତ ସଂଯୁକ୍ତ ନୁହେଁ— ମଧ୍ୟରେ ଧ୍ୟାନମଗ୍ନ ବୁଦ୍ଧ ମୂର୍ତ୍ତି । କାନ୍ଥ ଓ ମନ୍ଦିର ମଧ୍ୟରେ ଯଥେଷ୍ଟ ବ୍ୟବଧାନ ଅଛି । ବୌଦ୍ଧମାନେ ଏହି ମୂର୍ତ୍ତିକୁ ପ୍ରଦକ୍ଷିଣ କରନ୍ତି । ଏହି ଗୃହର କାରୁକାର୍ଯ୍ୟ ଚମତ୍କାର । ଏହି ଚୈତ୍ୟ ଗୃହକୁ ସେଠାର ଲୋକେ 'ସୁତାରକା ଝୋପରା' ଏବଂ 'ଦୁଖିଆ ଘର' ବୋଲି କହନ୍ତି । ଭଗ୍ନାଙ୍ଗୁଷ୍ଠ ବୁଦ୍ଧ ମୂର୍ତ୍ତିକୁ ସେମାନେ ବିଶ୍ୱକର୍ମା ବୋଲି ମନେ କରନ୍ତି । ଏଣୁ ସୂତାର ବା ପ୍ରସ୍ତରଶିଳ୍ପୀମାନେ ସମୟ ସମୟରେ ଏହାଙ୍କର ପୂଜା କରନ୍ତି । ପ୍ରବାଦ ଅଛି ଯେ, ବିଶ୍ୱକର୍ମା ଏହି ଗୁମ୍ଫାମାନ ନିର୍ମାଣ କରୁ କରୁ ତାଙ୍କର ଅଙ୍ଗୁଳିଗୁଡ଼ିକ ଛିଡ଼ି ପଡ଼ିଲା, ଏଣୁ ଦୁଇ ହସ୍ତର ଅଙ୍ଗୁଳି ଏକତ୍ର ଯୋଗ କରି ଦୁଃଖିତ ମନରେ ଚିନ୍ତା କରୁଅଛନ୍ତି । ଦୁଃଖିତ ବିଶ୍ୱକର୍ମାର ଘର ବା ଦୁଖିଆ ଘର ହେଲା ଚୈତ୍ୟଗୃହର ନାମ ଏବଂ ଧ୍ୟାନମଗ୍ନ ବୁଦ୍ଧଦେବ ହେଲେ

ଛିନ୍ନାଙ୍ଗୁଷ୍ଠ ବିଶ୍ୱକର୍ମା । ଏପ୍ରକାର ଅନେକ ପ୍ରବାଦ ଓ କିମ୍ବଦନ୍ତୀ ଲୋକମୁଖରୁ ଶୁଣାଯାଏ । ବୌଦ୍ଧଗୃହଗୁଡ଼ିକୁ ୩୫୦ ଖ୍ରୀଷ୍ଟାବ୍ଦ ଓ ୫୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ମିତ ହୋଇଥିବାର ପ୍ରକାଶ ପାଏ । ବ୍ରାହ୍ମଣ୍ୟ ଧର୍ମର ସତର ଗୋଟି ଗୃହ ମଧ୍ୟରୁ କୈଳାସର ନିର୍ମାଣକୌଶଳ ଓ କାରୁକାର୍ଯ୍ୟ ସର୍ବାପେକ୍ଷା ଶ୍ରେଷ୍ଠ । ବୌଦ୍ଧଗୃହ ନିର୍ମାଣ ଉତ୍ତାରୁ ବ୍ରାହ୍ମଣ୍ୟ ଧର୍ମର ଗୃହମାନ ନିର୍ମିତ । ଉଭୟ ସମ୍ପ୍ରଦାୟର ଗୃହନିର୍ମାଣକୌଶଳ ଦେଖି ପ୍ରତ୍ନତାତ୍ତ୍ୱିକମାନେ ଅନୁମାନ କରନ୍ତି ଯେ, ଇଲୋରାରେ ବୌଦ୍ଧ ସ୍ଥାପତ୍ୟ ହିନ୍ଦୁସ୍ଥାପତ୍ୟ ଆଡ଼କୁ କ୍ରମେ ଅଗ୍ରସର ହୋଇଥିବାର ସ୍ପଷ୍ଟ ନିଦର୍ଶନ ଏଠାରେ ମିଳେ । ଇଲୋରା ବିଭିନ୍ନ କାଳର ଓ ବିଭିନ୍ନ ସମ୍ପ୍ରଦାୟର ସ୍ଥାପତ୍ୟ ତୁଳନାର ପ୍ରଧାନ ସ୍ଥଳ । କୈଳାସ ଛଡ଼ା ମଧ୍ୟ ଅନ୍ୟାନ୍ୟ ଗୃହଗୁଡ଼ିକ ଆକାରରେ ଓ କାରୁକାର୍ଯ୍ୟରେ ବୌଦ୍ଧଗୃହମାନଙ୍କ ସହିତ ତୁଳନାଯୋଗ୍ୟ । ଏହି ଗୃହମାନଙ୍କରେ ପ୍ରଧାନତଃ ଦୁର୍ଗା, ଶିବ, ପାର୍ବତୀ, ଗଣେଶ, ଭବାନୀ, ବିଷ୍ଣୁଙ୍କ ଦଶାବତାର ଓ ଇନ୍ଦ୍ରାଦି ଦେବତା ମୂର୍ତ୍ତିମାନ ଉତ୍କୀର୍ଣ୍ଣ ହୋଇଅଛନ୍ତି । ମୂର୍ତ୍ତିମାନଙ୍କର ବର୍ଣ୍ଣନା କରିବା ଅସମ୍ଭବ । ତାଣ୍ଡବ ନୃତ୍ୟ ଅତ୍ୟୁତ୍କୃଟ । ହସ୍ତିଚର୍ମଧାରୀ ଭୈରବ ମୂର୍ତ୍ତି, ନୃମୁଣ୍ଡମାଳୀ, ବଦନବ୍ୟାଦାନଦ୍ୱାରା ଦନ୍ତଦର୍ଶନ ଓ ଲେଲିହାନ ଜିହ୍ୱା; କୁଣ୍ଡଳାକାର ନାଗସର୍ପବେଷ୍ଟିତ । ତ୍ରିଶୂଳରେ ନର ଶବ ଲଗ୍ନ । ବାମହସ୍ତରେ ଗୋଟିଏ ନରଦେହ ମୁଷ୍ଟିମଧ୍ୟଗତ, ଆସୁରିକ ତୃଷା ନିବାରଣ ନିମନ୍ତେ ନର ଗଳାରୁ ଉତ୍‌କ୍ଷିପ୍ତ ରୁଧିରଧାରାକୁ ପାତ୍ରରେ ଧାରଣ, ନିକଟରେ ଭୈରବଙ୍କର ତୃଷାନିବାରକ ନରରକ୍ତର ଅଂଶ ପ୍ରାପ୍ତ୍ୟାଶାନ୍ୱିତା କଙ୍କାଳସାରା କାଳୀମୂର୍ତ୍ତି । 'ଯୋଗ୍ୟଂ ଯୋଗ୍ୟେନ ଯୋଜୟତ୍' । କି ଭୟାନକ ଦୃଶ୍ୟ, କି ଭୟାନକ କଳ୍ପନା । ଆଉ ଗୋଟିଏ କଙ୍କାଳସାର କାଳୀମୂର୍ତ୍ତିର ବକ୍ଷସ୍ଥଳରେ ଗୋଟିଏ ବୃଶ୍ଚିକ ଦଂଶନ କରୁଅଛି । ଏ କଳ୍ପନା କାହିଁକି ? ବୃଶ୍ଚିକଦଂଶନର ଜ୍ୱାଳା ନରହିଂସା ପ୍ରବୃତ୍ତିକୁ ବୃଦ୍ଧି କରିବା ପାଇଁ କି ? ଧୀରଲଳିତ ସୌମ୍ୟ ବୁଦ୍ଧମୂର୍ତ୍ତି ନିକଟରେ ଏଭଳି ଚଣ୍ଡିମୂର୍ତ୍ତି ଧର୍ମବିଦ୍ୱେଷ ଉତ୍ପାଦନର ପଥ ।

ବରାହମୂର୍ତ୍ତି ଓ ବରାହମୂର୍ତ୍ତିର ଚିତ୍ର ଅନେକ ସ୍ଥାନରେ ଦେଖିଅଛି, ମାତ୍ର ଇଲୋରାରେ ଗୋଟିଏ ବରାହ ମୂର୍ତ୍ତି ଦେଖିଲି, ଯାହା ଅନ୍ୟତ୍ର ଦେଖି ନାହିଁ। ବରାହ ମୂର୍ତ୍ତିଟି ବୀର ଠାଣିରେ ବାମ ପାଦ ଶିଳା ଉପରେ ରଖି ଦଣ୍ଡାୟମାନ, ବରାହର ବା ଜାନୁ ଉପରେ ଗୋଟିଏ ପରମ ରୂପବତୀ ରମଣୀ ବରାହର ନାସିକା ଉପରେ ନିଜର ଦକ୍ଷିଣ ହସ୍ତର ଭାର ଦେଇ ଦଣ୍ଡାୟମାନ । ମୂର୍ତ୍ତିଟି ଅତି ଚମତ୍କାର— କଳ୍ପନା ମଧ୍ୟ ଚମତ୍କାର । ବରାହଦଂଷ୍ଟ୍ରାଗ୍ରେ 'ସୁପ୍ଲେବ ବିଶ୍ୱୟରା' ଅପେକ୍ଷା ଏହି କଳ୍ପନା ଅତ୍ୟନ୍ତ କବିତ୍ୱପୂର୍ଣ୍ଣ ।

ଇଲୋରାର କୈଳାସ ମନ୍ଦିର ଭାରତର ଶିଳ୍ପର ଚରମ ଉନ୍ନତି ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଏହି ମନ୍ଦିର ଇଟା ବା ପଥର ଓ ଚୂନ ବାଲି ଗୁନ୍ଥା ମନ୍ଦିର ନୁହେଁ । ପଥର ଚୂନର ମନ୍ଦିର ଭାରତ କାହିଁକି, ପୃଥିବୀର ସର୍ବତ୍ର ଅଛି । ମାତ୍ର ପର୍ବତର କଠିନ ପ୍ରସ୍ତର କର୍ତ୍ତନ କରି ଗୋଟିଏ ପ୍ରକାଣ୍ଡ ମନ୍ଦିର ଉଦ୍ଧୃତ କରିବା କଳ୍ପନା କେହି ପୂର୍ବେ କରି ନ ଥିଲେ । କୈଳାସନିର୍ମାତା ଏ ମନ୍ଦିର ନିର୍ମାଣ କରାଇ ପୃଥିବୀର ଶ୍ରେଷ୍ଠ ଶିଳ୍ପୀମାନଙ୍କୁ ବିସ୍ମିତ ଓ ମୁଗ୍ଧ କରିଅଛନ୍ତି । ଏହାର ଠିକ୍ ବର୍ଣ୍ଣନା କରିବା ଅସମ୍ଭବ ଏବଂ ପାଠକମାନଙ୍କର ହୃଦୟଙ୍ଗମ କରାଇବା ତତୋଽଧିକ ଅସମ୍ଭବ । କୈଳାସ ମନ୍ଦିର ୧୦୦ ଫୁଟ ଉଚ୍ଚ, ମୁଖଶାଳା ସହିତ ଲମ୍ବ ପ୍ରାୟ ୧୪୫ ଫୁଟ ଏବଂ ପ୍ରସ୍ଥ ୬୨ ଫୁଟ । ମନ୍ଦିର ଚାରିଆଡ଼େ ଦୁଆର ଅଛି । ପୂର୍ବ ଓ ପଶ୍ଚିମ ଦୁଆରର ଓସାର ୬୫ ଫୁଟ ଏବଂ ଉତ୍ତର ଦକ୍ଷିଣ ଦୁଆରର ଓସାର ୪୫ ଫୁଟ । ଦୁଆର ଉତ୍ତାରୁ ପର୍ବତ ଦେହରୁ ଖୋଦିତ ଦ୍ୱିତଳ ଗୃହ । ଗୃହଗୁଡ଼ିକ ଖୋଦିତ ସୁନ୍ଦର ସ୍ତମ୍ଭଦ୍ୱାରା ଶୋଭିତ । କାନ୍ଥମାନ ଦେବଦେବୀଙ୍କ ମୂର୍ତ୍ତିରେ ପୂର୍ଣ୍ଣ— ରାମାୟଣ, ମହାଭାରତ ଚରିତ, ଶିବ ପାର୍ବତୀଙ୍କର ବିବାହ, ଇତ୍ୟାଦି ।

ମନ୍ଦିରଟି ଆନୁମାନିକ ୩୬ ଗୋଟି ପ୍ରକାଣ୍ଡ ହସ୍ତିପୃଷ୍ଠରେ ନିର୍ମିତ, ଅର୍ଥାତ୍ ହସ୍ତିମାନେ ଏହି ବିମାନକୁ ପୃଷ୍ଠରେ ବହନ କରିଅଛନ୍ତି । ଅଧିକାଂଶ ହସ୍ତିଙ୍କର ଶୁଣ୍ଢ ଓ କର୍ଣ୍ଣ ଭଗ୍ନ ହୋଇଥିଲେ ସୁଦ୍ଧା ସେମାନଙ୍କର ଆକାର, ଭଙ୍ଗୀ ଶିଳ୍ପିର ହସ୍ତିନିର୍ମାଣ କୌଶଳକୁ ସ୍ପଷ୍ଟରୂପେ ବ୍ୟକ୍ତ କରୁଅଛି । ଏଠାର ହସ୍ତିର ଫୋଟଗ୍ରାଫ ଦେଖିଲେ ସ୍ୱାଭାବିକ ଜୀବିତ ହସ୍ତିର ଛବି ବୋଲି ଭ୍ରମ ହେବ । ମନ୍ଦିରର ଅନ୍ୟ କାରିଗରି ବର୍ଣ୍ଣନାତୀତ । ଏକ ପାର୍ଶ୍ୱରେ ରାବଣ ଏହି ମନ୍ଦିରକୁ ଉତ୍ତୋଳନ କରିବାକୁ ଯତ୍ପରୋନାସ୍ତି ଚେଷ୍ଟା କରୁଅଛି ।

ଏହା ନିର୍ମାଣ କଲାବେଳେ ଶିଳ୍ପୀମାନେ ପର୍ବତର ସାନୁଦେଶକୁ ଉଠି ଅସଂଲଗ୍ନ ସ୍ତମ୍ଭର ଓ ମାଟି ଫିଙ୍ଗି ୬୦୦୦୦ ବର୍ଗ ଫୁଟ କଠିନ ପ୍ରସ୍ତରକୁ ସମତଳ କରିଥିବେ ଏବଂ ତହିଁ ଉପରେ ନକସା କାଟି ଖନନ କାର୍ଯ୍ୟ ଆରମ୍ଭ କରିଥିବେ । ମନ୍ଦିର ନିକଟରେ ଗୋଟିଏ ଦୀପସ୍ତମ୍ଭ ଅଛି, ସେଥି ନିମନ୍ତେ ମଧ୍ୟ ଗୋଟିଏ ପ୍ରସ୍ତର ସ୍ତମ୍ଭ ଉପରୁ ତଳଯାଏ କାଟି ଆଣିଥିବେ ।

ତହିଁ ଉତ୍ତାରୁ ମନ୍ଦିର, ଦୀପସ୍ତମ୍ଭର ଓ ଗୃହମାନଙ୍କର ମୂର୍ତ୍ତି ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିବା କଥା ମୁଁ ଲେଖିଛି । ପାଠକଗଣ ଇଚ୍ଛା କଲେ ପଢ଼ିବେ । ମାତ୍ର ଏ ମନ୍ଦିରର କାର୍ଯ୍ୟ ବର୍ଣ୍ଣନା କରିବା କି ମୋର ସାଧ୍ୟ । ଏହାର ଛାଞ୍ଚରେ ଅନ୍ୟ କିଛି ନ ଥିବାରୁ ଏଥିର ଯଥାଯଥ ବର୍ଣ୍ଣନା ଅସମ୍ଭବ । ଦର୍ଶକ ହିଁ କିଛି ମହତ୍ତ୍ୱ ବୁଝିପାରେ, ମାତ୍ର ତାହା ବର୍ଣ୍ଣନା କରିବା ତାହାର କ୍ଷମତାତୀତ । ଦର୍ଶକ କିନ୍ତୁ ଭାବୁକ ହେଲେ ବିସ୍ମିତ ଓ ବିହ୍ୱଳ ହୋଇ ଏକ ଦୃଷ୍ଟିରେ ତାକୁ ଅନାଇ ରହେ ।

ଅଷ୍ଟମ ଶତାବ୍ଦୀରେ ଏହି ମନ୍ଦିର ରାଷ୍ଟ୍ରକୁଟ ରାଜା ପ୍ରଥମ କୃଷ୍ଣଙ୍କ ରାଜତ୍ୱରେ ନିର୍ମିତ ହୋଇଥିଲା । ଏହି ଗୁମ୍ଫା ଓ ମନ୍ଦିରମାନ ତୃତୀୟ ଖ୍ରୀଷ୍ଟଶତାବ୍ଦୀ ଓ ନବମ ଶତାବ୍ଦୀ ମଧ୍ୟରେ ନିର୍ମିତ ବୋଲି ଅନୁମାନ କରାଯାଏ । ବୌଦ୍ଧ ମନ୍ଦିରଗୁଡ଼ିକ ଯେପରି ପରିତ୍ୟକ୍ତ ହୋଇଅଛି, ସ୍ମାର୍ତ୍ତ ମନ୍ଦିରଗୁଡ଼ିକ ମଧ୍ୟ ତଦ୍ରୂପ । ଗ୍ରାମର କ୍ଷୁଦ୍ର ଓ ନଗଣ୍ୟ ମନ୍ଦିରର ଶିବ ପୂଜା ପାଉଅଛନ୍ତି, ମାତ୍ର କୈଳାସର ଶିବଙ୍କ ମସ୍ତକରେ ଦିନେ ହେଲେ ଫୁଲ ବେଲପତ୍ର ଚଢ଼ୁ ନାହିଁ । କେହି ଭକ୍ତିରେ ପ୍ରଣାମ ମଧ୍ୟ କରୁନାହାନ୍ତି । ଏଥିର କାରଣ ନିର୍ଦ୍ଦେଶ କରିବା କଠିନ । ମନ୍ଦିରର ଅନେକ ମୂର୍ତ୍ତି ଭଗ୍ନ ହୋଇଅଛନ୍ତି । ଏହି ସ୍ଥାନ ଲୋକସମାଗମର ଟିକିଏ ଦୂରରେ ଏବଂ ଏଥି ପ୍ରତି ଭାରତବାସୀଙ୍କର ବିଶେଷ ଆସ୍ଥା ନ ଦେଖି ହିନ୍ଦୁଦ୍ୱେଷୀମାନେ ଏହାକୁ ସମ୍ପୂର୍ଣ୍ଣ ନଷ୍ଟ କରିବାର ଚେଷ୍ଟା କରି ନାହାନ୍ତି । ଯାହାଅଛି, ତାହା ରକ୍ଷା କରିବାକୁ ନାଇଜାମ ଗଭର୍ଣ୍ଣମେଣ୍ଟ ଅତି ଯତ୍ନଶୀଳ । ଗୃହଗୁଡ଼ିକ ପରିଷ୍କୃତ ପରିଚ୍ଛନ୍ନ ହୋଇଅଛି, ଭଗ୍ନ ସ୍ତମ୍ଭ ପ୍ରଭୃତି ମରାମତ ହେବାରେ ତ୍ରୁଟି ନାହିଁ । ଏଥି ନିମନ୍ତେ ନାଇଜାମ ଗଭର୍ଣ୍ଣମେଣ୍ଟ ସମସ୍ତଙ୍କର ଧନ୍ୟବାଦାର୍ହ ।

ଦିନତମାମ ଏହା ଦେଖିବାରେ ଅତିବାହିତ ହେଲେ ମଧ୍ୟ ମଧ୍ୟରେ ଭୋଜନର ପ୍ରୟୋଜନ ହୋଇଉଠିଲା । ସଙ୍ଗରେ ସେ ସମ୍ବଳ ଥିଲା, ତାହା ପ୍ରାତଃଭୋଜନରେ ଶେଷ ପାଇଲା । ସୁତରାଂ ଉଦରଜ୍ୱାଳା ନିବାରଣ ନିମନ୍ତେ ଗୋଟିଏ ନୂତନ ପନ୍ଥା ଉଦ୍ଭାବନ କରାଗଲା । ନିକଟରେ ଇଲୋରା ଗ୍ରାମ, କେଭଠାରୁ ପ୍ରାୟ ଏକ ମାଇଲ । ଗ୍ରାମଟି ଅତି ପ୍ରାଚୀନ । ମରହଟ୍ଟା ବ୍ରାହ୍ମଣଙ୍କର ବସତି । ଅନେକଗୁଡ଼ିଏ ଗୃହ ଅଛି, ଯାହା ଦେଖିଲେ ଛୋଟ ଛୋଟ କିଲ୍ଲା ବୋଲି ମନେ ହୁଏ । ଗ୍ରାମ ମଧ୍ୟରେ ଅହଲ୍ୟା ବାଈଙ୍କ ନିର୍ମିତ ଶିବମନ୍ଦିର ଏବଂ ଅଷ୍ଟଶମ୍ଭୁ ବାପୀ । ଏହି ବାପୀଟି ଦେଖିବାରୁ କାଳିଦାସଙ୍କ ବର୍ଣ୍ଣନା 'ବାପୀ ଚାସ୍ମିନ୍ ମରକତଶିଳାବେଦୀସୋପାନମାର୍ଗା' ପଦଟି ମନେ ପଡ଼ିଲା । ବର୍ଣ୍ଣନାଟି ଠିକ୍, ମାତ୍ର 'ମରକତଶିଳା' ସ୍ଥଳରେ ଏ ବାପୀରେ ମର୍କଟଶିଳା ବା ମାଙ୍କଡ଼ା ପଥର ଲାଗିଅଛି । ଏଥିରେ ପଦ୍ମ ନାହିଁ । ଜଳ ଆଣିବାକୁ ହେଲେ ୧୬ ଗୋଟି ପାବଚ୍ଛ ଅବତରଣ କରିବାକୁ ପଡ଼େ । ଏହାର ନାମ ଶିବଗଙ୍ଗା । ଜଳ ଅତି ପବିତ୍ର ଓ ରୋଗନାଶକ ଓ ପାପଘ୍ନ ବୋଲି ବ୍ରାହ୍ମଣମାନେ କହିଲେ । ମାତ୍ର ଜଳକୁ ଦେଖି ଏହା ରୋଗ ଉତ୍ପାଦକ— ଅନ୍ତତଃ ଚର୍ମରୋଗ ଉତ୍ପାଦକ ବୋଲି ମନେ ହେଲା । ସ୍ପର୍ଶ କରିବାର ମଧ୍ୟ ଆବଶ୍ୟକ ନ ଥିଲା । ସୋପାନର ଚାରିକୋଣରେ ଚାରିଗୋଟି ଶିବମନ୍ଦିର ଅଛି । ଏହି ବାପୀ ଓ ମନ୍ଦିର ମହ୍ଲାର ରାଓଙ୍କ ପୁତ୍ରବଧୂ ବିଖ୍ୟାତ ଶାସନକର୍ତ୍ତ୍ରୀ ଅହଲ୍ୟାବାଈଙ୍କ ଦ୍ୱାରା ନିର୍ମିତ । ସେ ଯାହାହେଉ, ପେଟ ଖବର ବୁଝାଯାଉ । ବାପୀର ପୂର୍ବ କୋଣରେ ଗୋଟିଏ ବଟବୃକ୍ଷର ନିବିଡ଼ ଛାୟା ତଳେ ଜଣେ ବୃଦ୍ଧ ବ୍ରାହ୍ମଣ ନିବିଷ୍ଟ ଚିତ୍ତରେ ଶିବସ୍ତୋତ୍ର ପାଠ କରୁଥିଲେ । ସାହେବ ବେଶଧାରୀ ମୁଁ ତାଙ୍କ ନିକଟରେ ଉପସ୍ଥିତ ହେବାରୁ ବୃଦ୍ଧ ସସମ୍ଭ୍ରମରେ ଗାତ୍ରୋତ୍ଥାନ କଲେ । ମୁଁ ପ୍ରଣାମ କରିବାରୁ ବୋଧ ହୁଏ ମନେ କଲେ ପ୍ରୟୋଜନାକାଙ୍କ୍ଷୀ । ଆଳାପ କରିବାକୁ ଉଭୟେ ଉପବେଶନ କଲାରୁ ମୁଁ ମୋର ଅଭିପ୍ରାୟ ବ୍ୟକ୍ତ କଲି । ମୁଁ କହିଲି, ଇଲୋରା ଦେଖିବାକୁ ଆସିଥିଲି, ଇଲୋରାରେ ଖାଦ୍ୟାଦି ମିଳିବାର ସମ୍ଭବ ମନେ କରିଥିଲି, ମାତ୍ର ତାହା ଦେଖି ପାରୁ ନାହିଁ । ଏଠାରେ କେହି ବ୍ରାହ୍ମଣ ମୋ ନିମନ୍ତେ କିଛି ଭାତ ତରକାରି ବା ରୋଟି ତରକାରି ବନାଇ ଦେଇପାରିବେ କି ? ବୃଦ୍ଧ କହିଲେ, ଆପତ୍ତି ନ ଥିଲେ ମୋ ଗୃହରେ ଅତି ସତ୍ୱର ଏଥିର ଯୋଗାଡ଼ ହୋଇପାରେ ? ମୁଁ ତଥାସ୍ତୁ ବୋଲି କହିଲି । ବୃଦ୍ଧ ତାଙ୍କର ପୁସ୍ତକ ଖଣ୍ଡ ମୋ ହାତକୁ ଦେଇ ବାହାରିଗଲେ । ମୁଁ ସ୍ୱୀକୃତ ହେବା ଆଗରୁ ଗ୍ରାମରେ କୌଣସି ସଂକ୍ରାମକ ରୋଗର ପ୍ରାଦୁର୍ଭାବ ଅଛି କି ନା ବୁଝି ନେଲି । ବୃଦ୍ଧ କହିଲେ, ଶିବ କୃପାରେ ଏ ଗ୍ରାମରେ କୌଣସି ଭୟ ନାହିଁ । ନିଶ୍ଚିନ୍ତ ହୋଇ ଅଧ୍ୟୟନ ଆରମ୍ଭ କଲି । ପେଟ କହିଲା, ଭୋକବେଳେ କି ପାଠ ? ଅନ୍ତତଃ କିଛି ଖାଦ୍ୟର ପ୍ରୟୋଜନ । ନିକଟରେ ମକା ବାଡ଼ି, ସେଠାରେ ଅଗ୍ନି ମଧ୍ୟ ଥିଲା । ଦୁଇଗଣ୍ଡା ପଇସା ପାଇ କୃଷକ ବିଚାରା ମକା ଓ ଅଗ୍ନିର ଯୋଗାଡ଼ କରିଦେଲା । ମକା ଚର୍ବଣ ଓ ସ୍ତୋଦ ପାଠ କରୁ କରୁ ବ୍ରାହ୍ମଣଗୃହରୁ ନିମନ୍ତ୍ରଣ ପହଞ୍ଚିଲା । ସାହେବୀ ପୋଷାକ ଛାଡ଼ି, ଧୋତି ଚାଦର ପିନ୍ଧି ଭୋଜନକୁ ଅଗ୍ରସର ହେଲୁଁ । ବୃଦ୍ଧ ଗୃହାଭ୍ୟନ୍ତରକୁ ନେଇ ବସାଇଲେ । କଦଳୀପାତ୍ର ଓ ଏକ ଗ୍ଲାସ ପାଣି ରଖାଥିଲା । ବୃଦ୍ଧ ଓ ତାଙ୍କର ପୁତ୍ର ମୋ ନିକଟରେ ବସିଲେ । ମୁଁ ଭାବୁଥିଲି

ଭାତ ଆଣିବ କିଏ ? ଇତି ମଧ୍ୟରେ ଜଣେ ଯୁବତୀ ତରକାରି ଦେଇଗଲେ, ତହିଁ ଉତ୍ତାରୁ ଭାତ । ଖାଇବାକୁ ଆରମ୍ଭ କଲାବେଳେ ଘୃତ ଆଣି ଭାତରେ ଦେବାକୁ ଚେଷ୍ଟା କଲେ । ମୁଁ କହିଲି, ମୁଁ ଭାତରେ ଘିଅ ଖାଏ ନାହିଁ । କହିଲେ, ଗୃହର ଗବ୍ୟଘୃତ, ଦୋକାନୀ ଘିଅ ନୁହେଁ । ମୁଁ ଉତ୍ତର ଦେବା ଆଗରୁ କିଛି ଅଜାଡ଼ି ଦେଲେ । ହରଡ଼ ଡାଲି, ଭାତ, ଗବ୍ୟଘୃତ ଓ ଦଧି ଏହାହିଁ ଭୋଜନସାମଗ୍ରୀ । ପରିତୋଷ ସହିତ ଗୋଟାଏ ଭୋଜନ ହେଲା । ଯୁବତୀ ଅମ୍ଳାନବଦନରେ ସ୍ୱାମୀ, ଶ୍ୱଶୁର ଓ ଅପରିଚିତ ବ୍ୟକ୍ତି ସମ୍ମୁଖରେ ଅତିଥିସତ୍କାରବ୍ରତ ପାଳନ କରିବାକୁ କୁଣ୍ଠିତା ନ ହେବାର ଦେଖି ବଡ଼ ଆନନ୍ଦ ଅନୁଭୂତ ହେଲା । ଆମ ଦେଶର କଥା ଓ ସେ ଦେଶର କଥା ଅନେକ ଫରକ । ପଣ୍ଡା କହିଲେ, ଅତିଥିସତ୍କାରିଣୀ ରମଣୀ ତାହାଙ୍କର ପୁତ୍ରବଧୂ । ଗୃହରେ ଅନ୍ୟ ବୃଦ୍ଧା ବା ଯୁବତୀଙ୍କର ପୁତ୍ର କନ୍ୟା ଥିବାର ଜଣାଗଲା ନାହିଁ । ବୃଦ୍ଧଙ୍କୁ ଯଥାଯୋଗ୍ୟ ଦକ୍ଷିଣା ପ୍ରଦାନଦ୍ୱାରା ସନ୍ତୁଷ୍ଟ କରି ମଟରଯୋଗେ ପୁଣି କେଭ୍ ଦର୍ଶନ କରିବାକୁ ପ୍ରତ୍ୟାବୃତ୍ତ ହେଲି । ଅବଶିଷ୍ଟ କେତେଟା ମନ୍ଦିର ଦେଖି ଫେରିଲି । କେଭ୍ ଦେଖୁଥିଲା ବେଳେ ମେଘାଡ଼ମ୍ବର ଦେଖାଗଲା । ମନେ ହେଲା, ପ୍ରକାଣ୍ଡ ଝଡ଼ ଓ ବର୍ଷା ହେବ । ଭିତର ହୋଇ ବସାକୁ ଫେରିବାର ଚେଷ୍ଟା କରାଗଲା । ଦେଖାଗଲା ଏଠାର ଅପରାହ୍ଣ କାଳର ମେଘାଡ଼ମ୍ବର ମଧ୍ୟ ଅଜାଯୁଦ୍ଧ, ଋଷିଶ୍ରାଦ୍ଧ ଓ ଦାମ୍ପତ୍ୟ କଳହ ପରି 'ବହ୍ୱାଡ଼ମ୍ବର ଲଘୁକ୍ରିୟା' । ଯାହାହେଉ ଟୋପା କେତେ ପଡ଼ି ଉପକାର ହେଲା । ଧୂଳି କମିଲା ଏବଂ ଖରା ତାପର ଉପଶମ ହେଲା ।

ରାସ୍ତାରେ ଦୌଲତାବାଦ । ଏହି ସ୍ଥାନର ଦୁର୍ଗଟି ଅଜେୟ ବୋଲି ମନେ ହୁଏ, କାରଣ ଦୁର୍ଗଟି ଗୋଟିଏ ପାହାଡ଼ ଉପରେ ଅବସ୍ଥିତ, ଯେଉଁ ପାହାଡ଼ ସହିତ ଅନ୍ୟ ପାହାଡ଼ର ଯୋଗ ନାହିଁ । ପୁଣି ପାହାଡ଼ର ଚାରିପାଖ କାନ୍ଥ ପରି ସମାନ ଭାବରେ ଠିଆ । ଗୋଟିଏ ମାତ୍ର ବାଟ ଭିନ୍ନ ଉପରକୁ ଯିବାର କୌଣସି ଉପାୟ ନାହିଁ । ଦୁର୍ଗନିର୍ମାତା ମନେ କରିଥିଲେ ଯେ, ଦୁର୍ଗ ଉପରକୁ ଶତ୍ରୁ ଉଠି ପାରିବାର ଉପାୟ ନ ଥିଲେ ତାହା ଅଜେୟ । ମାତ୍ର ପ୍ରବଳ ଶତ୍ରୁ ବହୁକାଳ ତାହା ଅବରୋଧ କରି ରଖିଲେ ଏବଂ ଉପରକୁ ଖାଦ୍ୟାଦି ଯିବାର ବନ୍ଦ କଲେ ଦୁର୍ଗବାସିମାନେ ପବନ ଆହାର କରି ବଞ୍ଚିବେ କି ? ଅନେକ ପାର୍ବତୀୟ ଦୁର୍ଗର ପତନ ଘଟିଥିଲା ଅବରୋଧଦ୍ୱାରା । ଏହି କିଲ୍ଲାର ପତନ ମଧ୍ୟ ସେହିପରି ଘଟିଅଛି । ଦୌଲତାବାଦର ପୂର୍ବ ନାମ ଦେଓଗିରି । ଏହା ଯାଦବ ବଂଶର ରାଜ୍ୟ । ୧୨୯୪ ଖ୍ରୀଷ୍ଟାବ୍ଦରେ ଆଲ୍ଲାଉଦ୍ଦିନ ଏହି ହିନ୍ଦୁରାଜ୍ୟର ଉଚ୍ଛେଦସାଧନ କଲେ । ସହରଟି ଛୋଟ, ଉଚ୍ଚ ନୀଚ ଭୂମି ଉପରେ ସ୍ଥାପିତ । ପ୍ରାଚୀନ ପଥରକାନ୍ଥ, ତୋରଣ, ହିନ୍ଦୁମନ୍ଦିର ଓ ମୁସଲମାନମାନଙ୍କର ମସ୍ଜିଦ୍, ମିନାର ଓ ଭଗ୍ନ ଗୃହମାନ ବିଦ୍ୟମାନ ଅଛି ।

ଔରଙ୍ଗାବାଦ ଜିଲ୍ଲାର ପ୍ରଧାନ ନଗରର ନାମ ଔରଙ୍ଗାବାଦ । ସହର ନିତାନ୍ତ ଛୋଟ ନୁହେଁ । ଲୋକସଂଖ୍ୟା ପ୍ରାୟ ୪୦୦୦୦ । ସହରର ଚାରିଆଡ଼ରେ କାନ୍ଥ । ସହରକୁ ପ୍ରବେଶ କରିବାକୁ ଚାରିଗୋଟି ତୋରଣ ଅଛି । ଏହି ସହର ଔରଙ୍ଗଜେବଙ୍କଦ୍ୱାରା ନିର୍ମିତ । ଏଠାରେ ନାଇଜାମଙ୍କର ସୈନ୍ୟ ଅଛନ୍ତି । ଏହି ସୈନ୍ୟମାନେ ଅବଶ୍ୟ ବ୍ରିଟିଶ ଅଫିସରଙ୍କଦ୍ୱାରା ଶିକ୍ଷିତ ଓ ଚାଳିତ । ଏଠାରେ ଔରଙ୍ଗଜେବଙ୍କର ପ୍ରାସାଦ, ଭଜନାଳୟ ଓ ଅନେକ ମୁସଲମାନ ସମାଧି ଅଛି । ରୁବିୟା ଦୌରାନୀଙ୍କର ସମାଧି ସବୁଠାରୁ ବଳି ଦର୍ଶନୀୟ । ଏହି କବର ଗୃହ ଆଗ୍ରାର ପ୍ରସିଦ୍ଧ ତାଜମହଲ ଅନୁକରଣରେ ନିର୍ମିତ । ଏହି ସମାଧି ଗୃହଟି ଗୋଟିଏ ପ୍ରକାଣ୍ଡ ଉଦ୍ୟାନ ମଧ୍ୟରେ ଅବସ୍ଥିତ । ଏହା ଔରଙ୍ଗଜେବଙ୍କର ଜଣେ ପ୍ରିୟତମା ମହିଷୀଙ୍କର କବର । ଏହି କବର ଔରଙ୍ଗଜେବଙ୍କଦ୍ୱାରା ନିର୍ମିତ ନୁହେଁ । ଔରଙ୍ଗଜେବଙ୍କର ପୁତ୍ର ଆଜିମ-ଉସ-ସାହା ତାହାଙ୍କର ମାତୃଭକ୍ତିର ନିଦର୍ଶନ ରକ୍ଷା ନିମନ୍ତେ ନିର୍ମାଣ କରିଯାଇଅଛନ୍ତି । ଏହି ଗୃହଟିର ନିର୍ମାଣବ୍ୟୟ ଟ ୧୮୦୦୦୦୦୧ । ଗୃହଟି ସମ୍ପୂର୍ଣ୍ଣ ମାର୍ବଲନିର୍ମିତ ନୁହେଁ, କେତେକ ଚୂନ କାମ ମଧ୍ୟ ଅଛି । ଛାତ ଉପରକୁ ଯିବା ନିମନ୍ତେ ପାବଚ୍ଛ ଅଛି । ଛାତ ଉପରୁ ମାର୍ବଲ ଗୁମ୍ବଜ ମସ୍ତକୋତ୍ତୋଳନ କରିଅଛି । ଗୁମ୍ବଜର ପାଦଦେଶରେ ପାଞ୍ଚଗୋଟି ଖୋଲା ଜଳାକବାଟି ଅଛି । ବର୍ଷା ବାରି କବର ଉପରେ ପଡ଼ିବା ଅଭିପ୍ରାୟରେ ଏହା ନିର୍ମିତ । ମୁସଲମାନ ଧର୍ମରୀତ୍ୟନୁସାରେ ସମାଧି ଉପରେ ବର୍ଷାବାରିପାତ ହେବା ବାଞ୍ଛନୀୟ । ସମାଧିଟି ଗୋଟିଏ ସବୁଜ ମଖମଲ ଚାଦରଦ୍ୱାରା ଆବୃତ । ବର୍ଷାବେଳେ ତାହା ଉଠାଇ ନିଆଯାଏ । ଜଳାକବାଟିଗୁଡ଼ିକ ଏପରି ତାର୍ଯ୍ୟକ୍‌ଭାବରେ ନିର୍ମିତ ଯେ, ଉପରୁ ପୁଷ୍ପ ପ୍ରଭୃତି ନିକ୍ଷେପ କଲେ ତାହା ଯାଇ ସମାଧି ଉପରେ ପଡ଼େ । ଗୋଲାପ ଫୁଲ ପକାଇ ଦେଖିଲି, ଠିକ୍ ମଧ୍ୟସ୍ଥଳରେ ପଡ଼ିଲା ।

ଏହାକୁ ଦକ୍ଷିଣାତ୍ୟର ତାଜ ବୋଲା ଯାଇପାରେ । ତାଜମହଲ ନକ୍ଷତ୍ର, ଏହା ଖଦ୍ୟୋତ । ତାଜ ପ୍ରେୟସୀ ନିମନ୍ତେ ସ୍ୱାମୀଦ୍ୱାରା ନିର୍ମିତ । ଏହା ମାତା ନିମନ୍ତେ ମାତୃଭକ୍ତ

ପୁତ୍ରଦ୍ୱାରା ନିର୍ମିତ । ଭାରତ ସମ୍ରାଟ୍—ଯାହାଙ୍କର ଐଶ୍ୱର୍ଯ୍ୟର ତୁଳନା ନାହିଁ, ସେ ତାଜନିର୍ମାତା; ଆଜିମ ସମ୍ରାଟ୍ ପୁତ୍ର, ମାତ୍ର ସାମ୍ରାଜ୍ୟର ଐଶ୍ୱର୍ଯ୍ୟ ସ୍ୱଚ୍ଛନ୍ଦ ଭାବରେ ବ୍ୟୟ କରିବାକୁ ତାଙ୍କର ହାତ ନାହିଁ ? ତାଜ ଅତ୍ୟୁଜ୍ଜ୍ୱଳ ବସରି ଗୋଲାପଗୁଚ୍ଛ ହେଉ, ମାତ୍ର ଦାକ୍ଷିଣାତ୍ୟର ତାଜ ଯେ ଆଜିମର ମାତୃଭକ୍ତିର ତୁଳସୀଗୁଚ୍ଛ, ଏଥିରେ ସନ୍ଦେହ ନାହିଁ । ତୁଳସୀର ଉପମା ଦେଲି । ମୁସଲମାନମାନେ କହିବେ, ମୁସଲମାନର ପବିତ୍ର ମାତୃଭକ୍ତି ସହିତ କାଫେରର ତୁଳସୀଗୁଚ୍ଛର ଉପମା ନିତାନ୍ତ ଅସହନୀୟ । ହିନ୍ଦୁ କହିବେ, ତୁଳସୀପରି ପବିତ୍ର ଓ ପୂଜ୍ୟ ପଦାର୍ଥର ତୁଳନା ମୁସଲମାନ ମାତୃଭକ୍ତି ସହିତ ନିତାନ୍ତ ଅପ୍ରଯୋଜ୍ୟ । ମାତ୍ର ମାତୃଭକ୍ତି ସର୍ବତ୍ର ସମାନ । ଏଥିରେ ଇତର ବିଶେଷ ଅଛି କି ? ଯାହା କାଳ୍ପନିକ, ତାହା ବିଶ୍ୱାସ ଅନୁସାରେ ସ୍ୱତନ୍ତ୍ର, ମାତ୍ର ଯାହା ପ୍ରକୃତ ସ୍ଥିର ଓ ସତ୍ୟ, ସେଥିରେ ପାର୍ଥକ୍ୟ କାହିଁ ? ମାତୃଭକ୍ତମାନଙ୍କ ନିମନ୍ତେ ଦାକ୍ଷିଣାତ୍ୟର ତାଜ ମହାନ୍ ଆଦର୍ଶ । ଆଜିମର ଅତୁଳନୀୟ ମାତୃଭକ୍ତିର ନିଦର୍ଶନ ଓ ଅମୂଲ୍ୟ ଉପହାର ସହିତ ତା'ର ଉଦ୍ୟାନର ମୂଲ୍ୟଶୂନ୍ୟ ଗୋଲାପ ଫୁଲ ଯୋଗ କରିବା ଦ୍ୱାରା ବୋଧ ହୁଏ ମୁଁ ଅପରାଧ କରି ନାହିଁ ।

ସେହି ପବିତ୍ର ଦ୍ୱିତଳ ଉପରୁ ଓହ୍ଲାଇ ଆସିଲାବେଳେ ପାବଚ୍ଛର ସ୍ଥାନେ ସ୍ଥାନେ ତାମ୍ବୂଳ ଚର୍ବଣର ରକ୍ତ ଛେପ ଚିହ୍ନ ଦେଖି ଦେହ କମ୍ପି ଉଠିଲା । ମୋର ଜାତି ଭାଇଙ୍କର ଏହା ଅପକୀର୍ତ୍ତି କି ବୋଲି ଚିନ୍ତା କଲି । କୌଣସି ଓଡ଼ିଆ ଏଠାକୁ ଇତିପୂର୍ବେ ଆସି ଏହି ଜାତୀୟ ଚିହ୍ନ ରଖି ଯାଇଅଛନ୍ତି କି ବୋଲି ଭାବିଲି । କିନ୍ତୁ ପୁଣି ମନେ ହେଲା ଯେ, ମୁସଲମାନମାନେ ମଧ ତ ତାମ୍ବୂଳପ୍ରିୟ, ସେମାନଙ୍କର ବା ଏ ଅପକର୍ମ ନୋହିବ କାହିଁକି ? ଭାରତବାସୀର ଏହା ସୌନ୍ଦର୍ଯ୍ୟପ୍ରିୟତାର ନିଦର୍ଶନ । ଧର୍ମାଳୟ ଓ ପବିତ୍ର ସ୍ଥାନ ପ୍ରତି ଏହା ଶ୍ରଦ୍ଧା ଓ ଭକ୍ତିର ଚିହ୍ନ । ଯେଉଁମାନେ ଲକ୍ଷ ଲକ୍ଷ ମୁଦ୍ରା ବ୍ୟୟରେ ନିର୍ମିତ ପବିତ୍ର ମାତୃମନ୍ଦିରକୁ ଏପ୍ରକାର ଛେପଦ୍ୱାରା ଅପବିତ୍ର କରନ୍ତି, ସେମାନଙ୍କୁ ଶତଧିକ୍ ।

ଏହି ଗୃହ ଦେଖି ସାରିଲାବେଳକୁ ସୂର୍ଯ୍ୟ ଅସ୍ତାଚଳଚୂଡ଼ାକୁ ସ୍ପର୍ଶ କରୁଥିଲେ, ଏଣୁ ଆଉ କାଳବିଳମ୍ବ ନ କରି ସହର ଆଡ଼କୁ ଅଗ୍ରସର ହେଲି । ସହରତମାମ ଘେରାଏ ବୁଲି ଏବଂ ଗୋଟାକେତେ ଦର୍ଶନୀୟ ସ୍ଥାନ ଦେଖି ଷ୍ଟେସନକୁ ଫେରିଲି ।

ସାମାନ୍ୟ ଜଳଯୋଗ କରି ରାତ୍ର ନଅ ଘଣ୍ଟାରେ ଗାଡ଼ି ଚଢ଼ିଲି । ରାତ୍ର ପ୍ରାୟ ଏଗାର ଘଣ୍ଟା ବେଳେ ମନମାଡ଼ ଷ୍ଟେସନରେ ପହଞ୍ଚି ନାଇଜାମ ଷ୍ଟେଟ ଗାଡ଼ି ଛାଡ଼ିବାକୁ ହେଲା । ନାଗପୁର ପାସେଞ୍ଜର ଦଣ୍ଡାୟମାନ ଥିଲା । ଯାତ୍ରୀ ଚଢ଼ିବା ମାତ୍ରକେ ପୂର୍ବାଭିମୁଖରେ ଧାବିତ ହେଲା । ରାତ୍ର ପ୍ରାୟ ଏକ ଘଣ୍ଟା ବେଳେ ଜଳଗାଓଁ ଷ୍ଟେସନରେ ଉପସ୍ଥିତ ହେଲା । ଏଠାରେ ଉତୁରି Waiting Room ରେ ନିଦ୍ରା ଯିବାର ବଡ଼ ଇଚ୍ଛା ଥିଲା । ଚେଷ୍ଟା କରାଗଲା, ମାତ୍ର ଗାଡ଼ିର ଘଡ଼ ଘଡ଼ି ଶବ୍ଦ, ମଶକର ବୀଣା ଝଙ୍କାର ଏବଂ ଅସହ୍ୟ ଗରମ ନିଦ୍ରାର ନିତାନ୍ତ ବ୍ୟାଘାତ ହୋଇଉଠିଲେ । କୌଣସି ପ୍ରକାରେ କେତେଟା ଘଣ୍ଟା ଅତିବାହିତ ହେଲା । ସୂର୍ଯ୍ୟୋଦୟ ପୂର୍ବରୁ ମୋଟର ଅନୁସନ୍ଧାନରେ ସହର ପର୍ଯ୍ୟନ୍ତ ଯାଇ ଗୋଟାଏ ମଟର ନେଇ ଆସିଲି । ଅଜନ୍ତା କେଭ୍ ନିକଟରେ ନିର୍ମଳ ଜଳ ମିଳିପାରିବ ବୋଲି ଶୁଣିଲି । ଏଣୁ ରେଳ କୁଲିର ଦୁଇ ବାଲତି ଜଳରେ ସ୍ପୃହା ନ ରଖି ତତ୍‌କ୍ଷଣାତ୍ ଅଜନ୍ତା ଅଭିମୁଖରେ ପ୍ରସ୍ଥାନ କଲି ।

ଜଳଗାଓଁ ଗୋଟିଏ ସବ୍‌ଡ଼ିଭିଜନ, ଗୋଟିଏ ଛୋଟ ସହର, ଅନେକ ଗୁଡ଼ିଏ ଗଭର୍ଣ୍ଣମେଣ୍ଟ ଅଫିସ ଅଛି ଏବଂ ସୈନ୍ୟ ଛାଉଣୀ ମଧ ଅଛି । ଏହାର ନାମ ଜଳଗାଓଁ । ମାତ୍ର ନିର୍ଜଳ ସ୍ଥାନ ବୋଲିବା ଅତ୍ୟୁକ୍ତି ନୁହେଁ । ଏହାର ନାମ ଅଜଳଗାଓଁ ହେବା ଉଚିତ ଥିଲା ।

ଏଠାରୁ ଅଜନ୍ତା ୩୫ ମାଇଲ । ଆନୁମାନିକ ୧୬ ମାଇଲ ବ୍ରିଟିଶ ରାଜ୍ୟ, ବାକିତକ ନାଇଜାମଙ୍କର ରାଜ୍ୟ । ବ୍ରିଟିଶ ମାଇଲ ପୋଷ୍ଟଗୁଡ଼ିକ ସାଦା ଏବଂ ନାଇଜାମଙ୍କର ମାଇଲ ପୋଷ୍ଟଗୁଡ଼ିକ ହଳଦିଆ ରଙ୍ଗରେ ରଞ୍ଜିତ । ପଥିକକୁ ଏହି ମାଇଲ ପୋଷ୍ଟ ଉଭୟ ରାଜ୍ୟର ସୀମା ସହିତ ପରିଚିତ କରାଇଦିଏ । ୩୦ ମାଇଲ ପରେ ଫରଦାପୁର ଗ୍ରାମ । ଏଠାରେ ଡାକବଙ୍ଗଳା ଅଛି, ଅଜନ୍ତା ଦର୍ଶକମାନଙ୍କ ପାଇଁ ଏଠାରେ ରହିବାର ସୁବନ୍ଦୋବସ୍ତ ଅଛି । ଏଠାରେ ନାଇଜାମ ଗଭର୍ଣ୍ଣମେଣ୍ଟଙ୍କର Archaeological Department ର ଗୋଟିଏ ଅଫିସ ଅଛି । ଦର୍ଶକମାନଙ୍କର ସୁବିଧା ଓ ଅଧୟନ ନିମନ୍ତେ ଅଜନ୍ତା କେଭ୍ ସମ୍ବନ୍ଧୀୟ ଅନେକ ଗୁଡ଼ିଏ ପୁସ୍ତକ ଅଛି । ଏହାଛଡ଼ା କେଭ୍‌ର ଫଟୋଗ୍ରାଫ୍ ଓ Guide ବିକ୍ରୟାର୍ଥ ପ୍ରସ୍ତୁତ ଅଛି । ଏହା ଗୋଟିଏ ଅତି ସୁନ୍ଦର ବନ୍ଦୋବସ୍ତ । ପ୍ରାୟ ନଅ ଘଣ୍ଟା ବେଳେ ଅଜନ୍ତା କେଭ୍ ପାଦଦେଶରେ ଉପସ୍ଥିତ ହେଲି ।

ଇନ୍ଧ୍ୟାଦ୍ରି ଗିରିମାଳା ମଧ୍ୟଗତ ଏକ ଗ୍ରାମର ନାମ ଅଜନ୍ତା । ଅଜନ୍ତାରୁ ପ୍ରାୟ ଦୁଇ ମାଇଲ ଦୂରବର୍ତ୍ତୀ ଏକ ପାହାଡ଼ରେ ଏହି ଗୁମ୍ଫାମାନ ଖୋଦିତ ହୋଇଅଛି । ଗ୍ରାମର ନାମରୁ ଏହି କେଭ୍‌ମାନ ଅଜନ୍ତା ଗୁହା ନାମରେ ପରିଚିତ କି ଗିରିର ନାମ ଅଜନ୍ତା ଏବଂ ତଦନୁକରଣରେ ଗ୍ରାମର ନାମକରଣ ହୋଇଅଛି, ତାହା କହିବା କଠିନ । ମାତ୍ର ଗ୍ରାମ ସହିତ ଅଜନ୍ତା କେଭର ବିଶେଷ ସମ୍ବନ୍ଧ ନାହିଁ ।

ଇନ୍ଧ୍ୟାଦ୍ରି ପର୍ବତମାଳାର ଦୃଶ୍ୟ ଅତି ରମଣୀୟ । ନିତ୍ୟ ଶ୍ୟାମଳ ବୃକ୍ଷଲତାପୂର୍ଣ୍ଣ—କ୍ଷୁଦ୍ର ଗିରିନଦୀ ଓ ପ୍ରପାତର ଜଳରାଶି ଉପତ୍ୟକାମାନଙ୍କରେ ପ୍ରବାହିତ । ତପସ୍ୟାର ଉପଯୁକ୍ତ ସ୍ଥଳ ।

ମଟରରୁ ଅବତରଣ କରି ସ୍ନାନ ନିମନ୍ତେ ବାଘୋରା ନଦୀଗର୍ଭକୁ ଅବତରଣ କଲି । ଜଳସ୍ରୋତ ମଧ୍ୟସ୍ଥ ଗୋଟିଏ ଶିଳା ଉପରେ ପୂର୍ବାଭିମୁଖୀନ ହୋଇ ଦଣ୍ଡାୟମାନ ହେଲି । ଦକ୍ଷିଣ ଓ ସମ୍ମୁଖରେ ଗୁମ୍ଫା, ପୂର୍ବ ଉତ୍ତର ଆଡ଼କୁ ଝରଝରନାଦୀ ବାଘୋରା ଜଳପ୍ରପାତ । ବାମ ପାର୍ଶ୍ୱରେ ଶ୍ୟାମଳକାୟ ଗିରିବର ମସ୍ତକ ଉତ୍ତୋଳନ କରି ଯୁଗଯୁଗାନ୍ତରରୁ ଅଦ୍ୟାପି ଗୋଟିଏ ଜାତିର, ଗୋଟିଏ ଧର୍ମର ଅଭ୍ୟୁତ୍‌ଥାନ ଓ ପତନ ଅବଲୋକନ କରି ଆସୁଅଛି । ମୂକସାକ୍ଷୀ । ତାହାର କହିବାର ଶକ୍ତି ଥିଲେ ଆଧୁନିକ ପ୍ରତ୍ନତତ୍ତ୍ୱଜ୍ଞମାନଙ୍କ ଅପଲାପକୁ ମିଛ ମିଛ ବୋଲି ହସୁଥାନ୍ତା ।

ପ୍ରାକୃତିକ ଦୃଶ୍ୟ ସହିତ ପ୍ରପାତକୁ ଦେଖିଲାକ୍ଷଣି ମନେ ପଡ଼ିଗଲା ସେହି—

''ପ୍ରଧାନପାଟର ପ୍ରପାତ ଭୀଷଣ<br>
ନିର୍ଜନ ଗହନେ ଗର୍ଜେ ଅନୁକ୍ଷଣ ।<br>
ନୀର ଆସ୍ତରଣ ଭୃଗୁ ପ୍ରସ୍ଥେ ଯାର<br>
ହୀରକକୁ ଦିଏ ସହସ୍ର ଧିକ୍କାର ।<br>
ନିରନ୍ତର ରତ୍ନ ସୀମନ୍ତ ପରାଏ<br>
ଇନ୍ଦ୍ରଧନୁ ଯାର ଶିରେ ଶୋଭାପାଏ ।''

ପୃଥିବୀ ଶୋଭାର ଭଣ୍ଡାର । ପ୍ରାକୃତିକ ଦୃଶ୍ୟ ଏକ ସହିତ ଅପର ତୁଳନୀୟ ନୁହେଁ । ପ୍ରତ୍ୟେକର ଶୋଭା ଭିନ୍ନ, ମାତ୍ର ବାଲ୍ୟକାଳରୁ ଯାହାର ଶୋଭା ହୃଦୟରେ ପଥର ଗାର ପରି ଅଙ୍କିତ, ତାକୁ ଭୁଲି ଯିବାକୁ ସାଧ କାହାର ? ବାଲ୍ୟକାଳର ମୁଖସ୍ଥ କବିତାଟି, ଗ୍ରାମ୍ୟ ଦୃଶ୍ୟଟି, ମାତୃସ୍ନେହଟି, ମାତୃଭୂମିଟି ହୃଦୟରେ ଅତି ଉଚ୍ଚ ସ୍ଥାନ ଅଧିକାର କରି ବସିଅଛି । ଯେଉଁଠାକୁ ଯାଅ, ଯେଉଁ ଦୃଶ୍ୟ ଦେଖ, ଯେଉଁ ସ୍ନେହ ପାଅ, ସମସ୍ତ ଏମାନଙ୍କ ତଳେ, ଏଣୁ କବି ଗାଇଅଛନ୍ତି—

Where'er I roam whatever<br>
realms to see<br>
My heart untravelled fondly<br>
turns to thee.

ସ୍ୱଚ୍ଛନୀରା, ଅନତିଗଭୀରା, ବାଘୋରାର ଜଳମଧ୍ୟସ୍ଥ ପାଷାଣ ଉପରେ ଉପବେଶନ କରି ଭାବିଲି, ସହସ୍ର ସହସ୍ର ବର୍ଷ ହେଲା ଅବିରାମଗତିରେ ଏହି ବାଘୋରା ସ୍ରୋତ ଚାଲିଅଛି । ମୁଁ ଅଧମ ଆଜ ଏ ପାଷାଣ ଉପରେ ଉପବିଷ୍ଟ । ହୁଏ ତ ଦୁଇ ସହସ୍ର ବର୍ଷ ପୂର୍ବେ ସେହି ସ୍ୱାର୍ଥତ୍ୟାଗୀ ମହାତ୍ମା ଉପବେଶନ କରି ପରହିତକାମନାରେ ଏହି ଶିଳାଗୃହମାନଙ୍କର ପ୍ରଥମ କଳ୍ପନା କରିଥିଲେ । ସ୍ୱାର୍ଥତ୍ୟାଗୀ ବୌଦ୍ଧ ଅଧ୍ୟାପକମାନଙ୍କ ପଦରଜଦ୍ୱାରା ଏହି ଶିଳାଖଣ୍ଡ ପବିତ୍ର ହୋଇଥିଲା । ସେହି ପୁଣ୍ୟ ସ୍ରୋତ ତ ପ୍ରବାହିତ ହେଉଅଛି— ସେହି ଶିଳାମାନ ତ ସେହିପରି ଭାବରେ ବିଦ୍ୟମାନ ଅଛନ୍ତି, ଭାରତୀୟ ସାଧକଦଳ କାହିଁ ? ନାହିଁ, ନାହିଁ।

ଗୃହତ୍ୟାଗ କଲା ଦିନରୁ ତିନିମାସ କାଳ ଝରଣା ଜଳ ସ୍ନାନ ପାନ ନିମନ୍ତେ ମୋ ଭାଗ୍ୟରେ ଘଟି ନ ଥିଲା । ପ୍ରଚୁର ସ୍ନାନ କଲି, ଭୋଜନାନ୍ତେ ଯଥେଷ୍ଟ ପାନ କଲି, ତରତର ହୋଇ ଏକାକୀ ଗୁମ୍ଫା ଦେଖିବାକୁ ପର୍ବତାରୋହଣ କଲି ।

କ୍ଲାନ୍ତ, ଶ୍ରାନ୍ତ ଓ ଘର୍ମାକ୍ତ କଳେବର ହୋଇ ଯେତେବେଳେ ପ୍ରଥମ ଗୁମ୍ଫାର ସୁଶୀତଳ ଛାୟାର ଆଶ୍ରୟ ଗ୍ରହଣ କଲି, ସେତେବେଳେ ହୃଦୟରେ କି ଭାବ ଜାତ ହେଲା ଏବଂ ଦେହ ମନରେ କି ସୁଖ ଅନୁଭବ କଲି, ତାହା ବର୍ଣ୍ଣନାତୀତ । 'ଓଁ ବୁଦ୍ଧ ସଂବୁଦ୍ଧସ୍‌ସ, ଓଁ ବୁଦ୍ଧ ସଂବୁଦ୍ଧସ୍‌ସ' ବୋଲିବା ସଙ୍ଗେ ସଙ୍ଗେ ନିଃସଙ୍କୋଚ୍‌ ଚିତ୍ତରେ ଅତି ଉଚ୍ଚସ୍ୱରରେ ଗାଇଲି— 'ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତଂ । ସଦୟ ହୃଦୟ ଦର୍ଶିତପଶୁଘାତଂ କେଶବ ଧୃତବୁଦ୍ଧଶରୀର ଜୟ ଜଗଦୀଶ ହରେ ।' ମୋର ପୟାର ଶେଷ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ କାନ୍ଥରୁ ପ୍ରତିଧ୍ୱନି ଆସିଲା— ''ଈଶ ହରେ ।'' ଶରୀର ରୋମାଞ୍ଚିତ ହେଲା । ଅନାଇ ଦେଖେଁ, କେହି ନାହିଁ । ଈଷତ୍ ଅନ୍ଧକାର, ପ୍ରକାଣ୍ଡ ଗୃହ ମଧ୍ୟରେ ଏକାକୀ, ମୁଁ ସମ୍ମୁଖରେ ପ୍ରକାଣ୍ଡ ଧ୍ୟାନମଗ୍ନ ବୁଦ୍ଧମୂର୍ତ୍ତି ।

ପ୍ରଥମ ଗୁମ୍ଫା ଦେଖିସାରି ଦ୍ୱିତୀୟ ଗୁମ୍ଫାରେ ପ୍ରବେଶ କଲା ବେଳେ ମନରେ ଟିକିଏ ଭୟ ଜାତ ହେଲା । କୋଡ଼ିଏ

ବାଇଶ ବର୍ଷ ପୂର୍ବେ ଅଜନ୍ତାର ଗୋଟିଏ ତୈଳଚିତ୍ର ଦେଖିଥିଲି, ତାହା ମନରେ ପଡ଼ିଲା । ଜଣେ ଦସ୍ୟୁ ଗୁହାରେ ଥିବାବେଳେ ଦୁଇ ଗୋଟି ବ୍ୟାଘ୍ର ଆଗପଛ ହୋଇ ଗୁହା ମଧ୍ୟକୁ ପ୍ରବେଶ କଲେ । ସେତେବେଳେ ଦସ୍ୟୁ ଗୋଟିଏ ସ୍ତମ୍ଭର ଏକପାର୍ଶ୍ୱରେ ଛୁରିକା ଉତ୍ତୋଳନ କରି ଛପି ରହିଲା । ବ୍ୟାଘ୍ରମାନେ ଲକ୍ଷ୍ୟ ନ କରି ଗୁହା ଭିତରକୁ ପ୍ରବେଶ କଲେ । ଦସ୍ୟୁର ଭୀତିପୂର୍ଣ୍ଣମୁଖ, ସଙ୍କଟାପନ୍ନ ଅବସ୍ଥା ବାସ୍ତବିକ ଭୟପ୍ରଦ । ଏ ଦୃଶ୍ୟ ଏତେବେଳେ ମନକୁ ଆସିଲା କାହିଁକି ? ଏହି କାଳ୍ପନିକ ଛବିର ଭୟ କି ମୋତେ ଗୁମ୍ଫା ଦେଖିବାରୁ ନିରସ୍ତ କରିବ ? କଦାପି ନୁହେଁ । ତନ୍ନ ତନ୍ନ କରି ପ୍ରାୟ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ସମସ୍ତ ଗୁମ୍ଫା ଦେଖିଲି ।

ଏହି ପର୍ବତରେ ଊନବିଂଶ ଗୋଟି ଗୁମ୍ଫା ଅଛି । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀଠାରୁ ଆରମ୍ଭି ସପ୍ତମ ଶତାବ୍ଦୀଯାଏ ଏଠାର ଗୁମ୍ଫାମାନ ନିର୍ମିତ ହୋଇଅଛି । ପ୍ରତ୍ନତତ୍ତ୍ୱବିତ୍‌ଗଣ ଅନୁମାନ କରନ୍ତି ଯେ, ଏଠାରେ ତିନି ଶ୍ରେଣୀର ଗୁମ୍ଫା ଅଛି । ପ୍ରଥମ ଶ୍ରେଣୀର ଗୁମ୍ଫା ଖ୍ରୀ.ପୂ. ୨୦୦ ଠାରୁ ଖ୍ରୀଷ୍ଟାବ୍ଦ ୨୦୦ ମଧ୍ୟରେ ନିର୍ମିତ । ଦ୍ୱିତୀୟ ଶ୍ରେଣୀର ଗୁମ୍ଫା ଷଷ୍ଠ ଶତାବ୍ଦୀରେ ନିର୍ମିତ । ଆଉ ତୃତୀୟ ଶ୍ରେଣୀର ଗୁମ୍ଫା ସପ୍ତମ ଶତାବ୍ଦୀରେ ନିର୍ମିତ । ଅଜନ୍ତା ଏଡ଼େ ପ୍ରସିଦ୍ଧି ଲାଭ କରିବାର କାରଣ ଏହି ଯେ, ଏଠାରେ ଗୃହନିର୍ମାଣକୌଶଳ, ମୂର୍ତ୍ତିନିର୍ମାଣକୌଶଳ ଓ ଚିତ୍ରକଳାର ଏକତ୍ର ସମାବେଶ ଦେଖାଯାଏ । ଅନ୍ୟ କୌଣସି ସ୍ଥଳରେ ଚିତ୍ରକଳାର ଏତାଦୃଶ ଉତ୍କର୍ଷ ନାହିଁ । ବୌଦ୍ଧ ଯୁଗରେ ଭାରତୀୟ ଚିତ୍ରକାରଗଣ ଚିତ୍ରବିଦ୍ୟାର ଯେଉଁ ପରାକାଷ୍ଠା ଦେଖାଇଥିଲେ, ତାହା ପୃଥିବୀ ମଧ୍ୟରେ ଅତୁଳନୀୟ । ତିନି ତିବ୍ବତ, ପୂର୍ବଭାରତ, ଏମନ୍ତ କି ମଧ୍ୟ ଆସିଆର ମରୁଭୂମିରେ ତହିଁର ନିଦର୍ଶନ ଅଦ୍ୟାପି ରହିଅଛି । ଅନୁସନ୍ଧିତ୍ସୁଗଣ ଯେତିକି ଆବିଷ୍କାର ନିମନ୍ତେ ତତ୍ପର, ତେତିକି ଭାରତର ପ୍ରାଚୀନ ଗୌରବ କାହାଣୀ ଚିତ୍ର ଓ ମୂର୍ତ୍ତିଦ୍ୱାରା ପ୍ରକାଶ ପାଉଅଛି । ଅଜନ୍ତା ଏହି ଯୁଗର ଚିତ୍ରସୌନ୍ଦର୍ଯ୍ୟର ହାଟ । ଏ ପଣ୍ୟ ଦ୍ରବ୍ୟର ବେପାରୀ ଭାରତବାସୀ ନୁହନ୍ତି । ମୂଲ୍ୟ ନିର୍ଦ୍ଧାରଣକର୍ତ୍ତା, କ୍ରେତା ଅଛନ୍ତି ଇଂଲଣ୍ଡରେ, ଇଟାଲୀରେ, ଡେନ୍‌ମାର୍କରେ, ଫ୍ରାନ୍‌ସରେ, ଜର୍ମେନିରେ । ଇଂଲଣ୍ଡର ଯେଉଁମାନେ କଳାବିଦ୍ୟାର ପ୍ରକୃତ ସେବକ, ଭାରତର ଗୌରବ ଖର୍ବ କରିବାଦ୍ୱାରା ଯେଉଁମାନେ ନିଜକୁ ଲାଭବାନ୍ ବୋଲି ମନେ କରନ୍ତି ନାହିଁ, ଏପରି ଜଣକେତେ ବ୍ୟକ୍ତି ଏହାର ଅଜସ୍ର ପ୍ରଶଂସା କରିଅଛନ୍ତି । ଅନେକେ ୟୁରୋପର ଚିତ୍ର ସହିତ ଅଜନ୍ତାର ଚିତ୍ରକୁ ତୁଳନା କରିଅଛନ୍ତି । ଅନେକେ ପୁଣି ଅଜନ୍ତା ଚିତ୍ରକୁ ଉଚ୍ଚ ସ୍ଥାନ ଦେବାକୁ କୁଣ୍ଠା ବୋଧ କରି ନାହାନ୍ତି । ସେମାନଙ୍କର ... ବା ସେମାନଙ୍କର ସମାଲୋଚନା ଲେଖି ପ୍ରବନ୍ଧର କଳେବର ବୃଦ୍ଧି କରିବା ନିଷ୍ପ୍ରୟୋଜନ । ଅଜନ୍ତାର ଚିତ୍ର ମ୍ଳାନ ହେବାକୁ ବସିଲା— ନଷ୍ଟ ହେବାକୁ ବସିଲା ଭାରତବାସୀଙ୍କ ତ୍ରୁଟିରୁ । ଯେତେବେଳେ ଭାରତବର୍ଷର ଏହି କୀର୍ତ୍ତି ଲୁପ୍ତ ହେବ, ୟୁରୋପର ଯାଦୁଘରମାନଙ୍କରେ ସେ ଦେଶର ପଣ୍ଡିତଗଣ ଏଥିର ଆଲୋଚନାରେ ତତ୍ପର ଥିବେ ।

୧୮୧୭ ପର୍ଯ୍ୟନ୍ତ ଏହାର ନାମ ଭାରତବାସୀଙ୍କୁ ଜଣା ନ ଥିଲା । (ଏବେ ବା କେତେ ଲୋକଙ୍କୁ ଜଣା ?) ୧୮୧୭ ରେ ବମ୍ବେର ଏକଦଳ ସୈନ୍ୟ ଇନ୍ଧ୍ୟାଦ୍ରିରେ ଛାଉଣି କରି ରହୁଥିଲେ । ସେମାନେ ଏହି ଗୁମ୍ଫାମାନ ଆବିଷ୍କାର କରି ରିପୋର୍ଟ ଦେଲେ । ମାତ୍ର ସେତେବେଳେ ଭାରତର ଅନ୍ୟ ସମ୍ପତ୍ତି ଆଡ଼କୁ ଦୃଷ୍ଟି ନ ଦେଇ ଶାସକଗଣ ଏଥିପ୍ରତି ଯତ୍ନଶୀଳ ହେବାର କିଛିହିଁ କାରଣ ନ ଥିଲା । ଯାହା ହେଉ ଧୀରେ ଧୀରେ ଏଥି ପ୍ରତି ସଭ୍ୟ ଜଗତର (ୟୁରୋପର) ଦୃଷ୍ଟି ପଡ଼ିଲା । ପ୍ରଥମ ଆବିଷ୍କାର ବେଳେ ଏ ଚିତ୍ରଗୁଡ଼ିକ ଅବିକୃତ ଭାବରେ ଅନେକ ସ୍ଥଳରେ ଥିବାର ପ୍ରକାଶ ପାଇଲା । ଏହି ଏକଶତ ବର୍ଷ ମଧ୍ୟରେ କି କାରଣରୁ କେଜାଣି ଅଧିକାଂଶ ନଷ୍ଟ ହୋଇଅଛି । ରନ୍ଧନ ଧୂମଦ୍ୱାରା ନଷ୍ଟ ହୋଇଥିବାର ଅନୁମାନ କରାଯାଏ । ଦସ୍ୟୁ ଓ ପଳାତକମାନଙ୍କର ଆଶ୍ରୟସ୍ଥଳ ହେବାରୁ ଏହାର ଏହି ଦଶା ।

ଅଜନ୍ତା ବୌଦ୍ଧ ସନ୍ନ୍ୟାସୀମାନଙ୍କର ମଠ ବୋଲି Anglo-Indian ମାନେ ପ୍ରଚାର କରିଥିଲେ । ତଦନୁସାରେ ପ୍ରାୟ ସମସ୍ତଙ୍କର ଏହି ଧାରଣା ବଦ୍ଧମୂଳ ହୋଇଅଛି । କିନ୍ତୁ ଏହା ସ୍ଥିରୀକୃତ ହୋଇଅଛି ଯେ, ଏହା ବୌଦ୍ଧ Residential College । ଅଧ୍ୟାପକ ଓ ବିଦ୍ୟାର୍ଥୀଗଣ ଏଠାରେ ବାସ କରି ନିଶ୍ଚିନ୍ତ ଭାବରେ ବିଦ୍ୟାଚର୍ଚ୍ଚା କରୁଥିଲେ । ଏଠାରେ କେବଳ ନୁହେଁ, ଅନ୍ୟାନ୍ୟ ସ୍ଥଳରେ ମଧ୍ୟ ଏପ୍ରକାର ପ୍ରଧାନ ବିଦ୍ୟାଳୟ ଥିଲା । ନାଳନ୍ଦା ବିଶ୍ୱବିଦ୍ୟାଳୟର ଖ୍ୟାତି କାହାକୁ ଅବିଦିତ ? ଆଜି ଭାରତବାସୀ ପାଠଶାଳା ଚଳାଇବାକୁ ଅସମର୍ଥ, ଅଯୋଗ୍ୟ; ଏକ ସମୟରେ ସେହି ଭାରତବାସୀ ନାଳନ୍ଦାପରି ବିଶ୍ୱବିଦ୍ୟାଳୟ ସୁଚାରୁରୂପେ ପରିଚାଳନା କରୁଥିଲେ । ଏଥିର ସୁମଧୁର ରସ ଓ ସୌରଭରେ ଭ୍ରମର ଓ ମଧୁମକ୍ଷିକା ତୁଲ୍ୟ ଆକୃଷ୍ଟ ହୋଇ ଦେଶ ଦେଶ ଦେଶାନ୍ତରରୁ- ଏମନ୍ତ କି ସୁଦୂର ଚୀନ ଦେଶରୁ ମଧ୍ୟ ପଣ୍ଡିତ ଓ ବିଦ୍ୟାର୍ଥୀଗଣ ଏଠାକୁ ଆସୁଥିଲେ । ସେ ବହୁ ଶତାବ୍ଦୀ ପୂର୍ବର କଥା ।

୨୯ ଗୋଟି ଗୁମ୍ଫା ମଧ୍ୟରୁ ପାଞ୍ଚଗୋଟି ଚୈତ୍ୟ ଏବଂ ଚବିଶ ଗୋଟି ବିହାର । ଏଗୁଡ଼ିକ ବୃହଦାକାର—ଗୁମ୍ଫା ବୋଲିବାର କିଛିହିଁ କାରଣ ନାହିଁ। ପ୍ରଥମ ଗୃହଟିର ବରନ୍ଦା ଓ କୋଠରି ଛଡ଼ା ସଭା-ହଲଟି ୬୪ ଫୁଟ ଦୀର୍ଘ ଓ ୬୪ ଫୁଟ ଓସାର ଏବଂ ୧୪ ଫୁଟ ଉଚ୍ଚ । ପ୍ରତ୍ୟେକ ବିହାରରେ ଏହିପ୍ରକାର ସଭା-ହଲ ଅଛି, ତାହାଛଡ଼ା ବରନ୍ଦା, ରହିବା ନିମନ୍ତେ କୋଠରି ଅଛି । ୨ । ୪ଟା ଘର ପ୍ରଥମ ଘର ଅପେକ୍ଷା ମଧ ବଡ଼ । ପ୍ରାୟ ସମସ୍ତ ଗୃହର ଛାତ ଓ କାନ୍ଥରେ ଚିତ୍ର ଥିଲା ବୋଲି ଅନୁମାନ ହୁଏ । ବର୍ତ୍ତମାନ କେବଳ ତେର ଗୋଟି ଗୃହରେ ଚିତ୍ର ଅଛି । ୧, ୨, ୯, ୧୦, ୧୬, ୧୭ ନମ୍ବର ଗୃହମାନଙ୍କର ଚିତ୍ର କେବଳ ବର୍ତ୍ତମାନ ମ୍ଲାନ ହୋଇଥିଲେ ମଧ ଚିତ୍ତାକର୍ଷକ । ଅତି ସୁନ୍ଦର ବୃକ୍ଷ, ଲତା, ଫଳ, ପୁଷ୍ପ, ପଶୁପକ୍ଷୀଙ୍କର ଚିତ୍ର ଛଡ଼ା କାନ୍ଥମାନଙ୍କରେ ବୁଦ୍ଧଙ୍କର ଜୀବନଚରିତ ଏବଂ ବୁଦ୍ଧଙ୍କ ପୂର୍ବଜନ୍ମର ଚରିତ ଅଙ୍କିତ ହୋଇଅଛି । ଏହି ଚିତ୍ରମାନଙ୍କରୁ ସେକାଳର ଲୋକଙ୍କର ବେଶଭୂଷା, ରୀତି ନୀତି, ଆଚାର ବ୍ୟବହାର ଅନାୟାସରେ ହୃଦୟଙ୍ଗମ କରାଯାଇପାରେ ।

ଚିତ୍ରଗୁଡ଼ିକ ପ୍ରାୟ ମ୍ଳାନ ଏବଂ କୋଠରିଗୁଡ଼ିକ ଅନ୍ଧାରିଆ, ଏଣୁ ଅଳ୍ପ ସମୟ ମଧ୍ୟରେ ସମସ୍ତ ଦେଖି ପରିଚୟ କରିବା କଠିନ । ତେବେ ୨ ନମ୍ବର କୋଠରିର ଚିତ୍ରଗୁଡ଼ିକ ମରାମତ କରାଯାଉଥିବାରୁ ଏହା ଭଲ ଭାବରେ ଦେଖିବାର ସୁବିଧା ମିଳିଥିଲା । ଗୋଟିଏ ପ୍ରକାଣ୍ଡ ଦର୍ପଣରେ ସୂର୍ଯ୍ୟାଲୋକ ପ୍ରତିଫଳିତ କରି ଚିତ୍ର ଉପରେ ଆଲୋକପାତ କରାଯାଇଥିଲା । ଜଣେ ମୁସଲମାନ ମିସ୍ତ୍ରୀ ଚିତ୍ରର ନଷ୍ଟ ସ୍ଥାନମାନଙ୍କରେ ସିମେଣ୍ଟ ଲଗାଇ ପାଲିସ୍ କରି ଦେଉଥିଲା; ତାହାର ଅଭିପ୍ରାୟ ଏହି ଯେ, ନଷ୍ଟ ସ୍ଥଳ ବିସ୍ତୃତି ଲାଭ କରି ଚିତ୍ରକୁ ଅଧିକ ନଷ୍ଟ କରିପାରିବ ନାହିଁ । ମୁଁ ଏହି ସୁଯୋଗରେ ଗୃହର ପ୍ରତ୍ୟେକ କାନ୍ଥରେ ଆଲୋକପାତ କରାଇ ଚିତ୍ରଗୁଡ଼ିକୁ ତନ୍ନ ତନ୍ନ କରି ଦେଖି ନେଲି ।

ପ୍ରଥମ ଗୃହରେ ଛଅ ଗୋଟି ଜାତକ ଚରିତ ଚିତ୍ରିତ ହୋଇଅଛି, ଯଥା— ଶିବିଜାତକ ଓ ଅନ୍ୟ ଆଠଗୋଟି ଚରିତ । ଦ୍ୱିତୀୟ ଗୃହରେ ବୁଦ୍ଧଙ୍କ ଜନ୍ମବୃତ୍ତାନ୍ତ ଓ ପାଞ୍ଚଗୋଟି ଜାତକ ଚରିତ । ୧୬ ନମ୍ବର ଗୃହରେ ବୁଦ୍ଧଦେବଙ୍କର ଜୀବନଚରିତ ଓ ତିନି ଗୋଟି ଜାତକ ଚରିତ । ୧୭ ନମ୍ବର ଗୃହରେ ବୁଦ୍ଧଙ୍କ ଜୀବନର କେତେକ ଘଟନାର ଚିତ୍ର ଛଡ଼ା ବାର ଗୋଟି ଜାତକ ଚରିତ୍ର ଚିତ୍ରିତ ହୋଇଅଛି । ୧୬ ନମ୍ବର ଗୃହର ଦକ୍ଷିଣ କାନ୍ଥରେ ଆମ୍ଭମାନଙ୍କର ଓଡ଼ିଆ ଭାଇ ତପୁସ ଓ ଭଲ୍ଲିକ ବୁଦ୍ଧଦେବଙ୍କୁ ମଧୁ ପିଣ୍ଡିକ ଭକ୍ଷଣ କରାଉଥିବା ଚିତ୍ର ମ୍ଲାନ ହୋଇ ରହିଅଛି ।

ଜାତକ ଚରିତ ପଢ଼ିବାକୁ ପାଠକମାନଙ୍କର କୌତୂହଳ ହେବ କି ନାହିଁ ଜଣା ନ ଥିବାରୁ ବୃଥା ସମୟ ନଷ୍ଟ କରିବାର ଉଚିତ ବୋଧ ହେଉ ନାହିଁ । ତେବେ ଉଦାହରଣସ୍ୱରୂପ ଗୋଟିଏ ଲେଖିଲେ ବୋଧ ହୁଏ ପଢ଼ିବାକୁ ପାଠକଙ୍କର ଅରୁଚି ହେବ ନାହିଁ। ଚରିତଟି ଶିବି ଜାତକ । ଏ ଉପାଖ୍ୟାନଟି ଉତ୍କଳବାସୀଙ୍କୁ ଭଲରୂପେ ଜଣା । ଆଧୁନିକ କେବଳ ଇଂରାଜୀ ବିଦ୍ୟା ପଢ଼ା ଯୁବକଙ୍କୁ ଜଣାଥିବ କି ନାହିଁ ସନ୍ଦେହ । ତେବେ ପୁରୁଣା ଧରଣର ପାଠୁଆଙ୍କୁ ଏବଂ ଗ୍ରାମ୍ୟ ପୁରାଣଶ୍ରୋତାଙ୍କୁ ଏ ଚରିତ ଭଲରୂପେ ଜଣା। ପୁରୁଷୋତ୍ତମ ଦେବଙ୍କ ରଚିତ ଇତିହାସର ଚତୁର୍ଥ ଅଧାୟରେ ଏହି ଶିବି ଚରିତ ସ୍ପଷ୍ଟରୂପେ ଲିଖିତ ଅଛି । ପୂର୍ବକାଳରେ ବୋଧିସତ୍ତ୍ୱ ଶିବି ନାମକ ଧର୍ମପରାୟଣ ନ୍ୟାୟଶୀଳ ଓ ଦାନଶୀଳ ରାଜା ଥିଲେ । ଦିନେ ଗୋଟିଏ କପୋତ ଶ୍ୟେନପକ୍ଷିଦ୍ୱାରା ପଶ୍ଚାଦ୍ଧାବିତ ହୋଇ ଶିବି ରାଜାଙ୍କର ଶରଣାଗତ ହେଲା । ଶ୍ୟେନ ମଧ ରାଜାଙ୍କ ନିକଟରେ ଉପସ୍ଥିତ ହୋଇ ତାହାର ଖାଦ୍ୟଦ୍ରବ୍ୟ କପୋତକୁ ମାଗିଲା । ରାଜା କପୋତକୁ ଅଭୟ ଦେଇଥିବାରୁ ତ୍ୟାଗ କରିପାରିଲେ ନାହିଁ ଏବଂ ତତ୍‌ପରିବର୍ତ୍ତରେ ନିଜର ଶରୀରର ମାଂସ ଦେବାକୁ ଅଙ୍ଗୀକାର କଲେ । ଶ୍ୟେନ ସ୍ୱୀକୃତ ହେବାରୁ ନିକିତିର ଏକଆଡ଼େ କପୋତକୁ ବସାଇ କପୋତର ସମାନ ଓଜନ ମାଂସ ନିଜ ବକ୍ଷସ୍ଥଳରୁ କାଟି ଶ୍ୟେନକୁ ଦେଲେ । ନିଜ ଶରୀରର ମାଂସ ବିନିମୟରେ କପୋତର ପ୍ରାଣ ରକ୍ଷା କଲେ ଏବଂ ଶ୍ୟେନକୁ ତୁଷ୍ଟ କଲେ । ସ୍ୱାର୍ଥତ୍ୟାଗ ଜୀବନର ମୂଳ ଲକ୍ଷ୍ୟ । ପୂର୍ବ ପୂର୍ବ ଜନ୍ମରେ ବୋଧିସତ୍ତ୍ୱଗଣଙ୍କର ଏପ୍ରକାର ସ୍ୱାର୍ଥତ୍ୟାଗ ହିଁ ଜାତକମାଳାର ମୂଳ ବିଷୟ । ପୁରାଣଲିଖିତ୍ ସ୍ୱାର୍ଥତ୍ୟାଗୀ ଶିବି ରାଜା ଯେ ବୋଧିସତ୍ତ୍ୱ ବା ପୂର୍ବ ବୁଦ୍ଧ, ତାହା ଚିତ୍ରରେ ପ୍ରକଟିତ ହୋଇଅଛି । କେବଳ ବୋଧିସତ୍ତ୍ୱ ଯେ ନର ରୂପରେ ପୂର୍ବେ ଜନ୍ମ ଗ୍ରହଣ କରିଥିଲେ, ଏପରି ନୁହେଁ, ପଶୁ ପକ୍ଷୀ ରୂପରେ ଜନ୍ମ ହୋଇ ସୁଦ୍ଧା ପରୋପକାର କରିଥିଲେ । ହଂସ ଜାତକ ଅନୁସାରେ ବୋଧିସତ୍ତ୍ୱ ହଂସ ଜନ୍ମ ହୋଇଥିଲେ। ରୁରୁ ଜାତକ ଅନୁସାରେ ମୃଗ, ଛଦନ୍ତ ଜାତକ ଅନୁସାରେ ହସ୍ତୀ, ଇତ୍ୟାଦି । ଗଳ୍ପ ଛଳରେ ପରୋପକାର ବ୍ରତ ଓ ସ୍ୱାର୍ଥତ୍ୟାଗ ଶିକ୍ଷା ଦେବା ଉଦ୍ଦେଶ୍ୟରେ ଏହି ଜାତକମାଳାର କଳ୍ପନା ବୋଲି ଅନୁମାନ ହୁଏ । ଅନେକ ପୌରାଣିକ ଉପାଖ୍ୟାନ ଓ ବୌଦ୍ଧ ଜାତକର ଐକ୍ୟ ଦେଖାଯାଏ ।

ଚିତ୍ରଗୁଡ଼ିକ ଆଉ ଅଧିକ ନଷ୍ଟ ନ ହେବା ଉଦ୍ଦେଶ୍ୟରେ ନାଇଜାମ ଗଭର୍ଣ୍ଣମେଣ୍ଟ ଦକ୍ଷ କାରିଗରଦ୍ୱାରା ମରାମତ କରାଉଅଛନ୍ତି ଏବଂ ଚିତ୍ରମାନଙ୍କର ଅବିକଳ ପ୍ରତିଲିପି ରକ୍ଷା କରିବା ନିମନ୍ତେ ଜଣେ ସୁଦକ୍ଷ Colour Photographer ନିଯୁକ୍ତ କରିଅଛନ୍ତି । ଗୁମ୍ଫାଗୁଡ଼ିକ ପରିଷ୍କୃତ ପରିଚ୍ଛନ୍ନ ରଖିବା ନିମନ୍ତେ, ଭଗ୍ନସ୍ଥାନମାନ ମରାମତ କରିବା ନିମନ୍ତେ ଅର୍ଥ ବ୍ୟୟ କରିବାରେ ମୁକ୍ତହସ୍ତ । ଏଠାରେ ଗୋଟିଏ କ୍ଷୁଦ୍ର ବୈଦ୍ୟୁତିକ ଆଲୋକର ସରଞ୍ଜାମ ଅଛି । କେହି ପ୍ରଧାନ ଦର୍ଶକ ଇଚ୍ଛା କଲେ ଏହି ଆଲୋକ ସାହାଯ୍ୟରେ ଚିତ୍ର ପର୍ଯ୍ୟବେକ୍ଷଣ କରିପାରିବେ, ଏହାହିଁ ଏଥିର ମୂଳ ଉଦ୍ଦେଶ୍ୟ । ନାଇଜାମ ଗଭର୍ଣ୍ଣମେଣ୍ଟଙ୍କର ଲୁପ୍ତପ୍ରାୟ ପ୍ରାଚୀନ କୀର୍ତ୍ତି ରକ୍ଷା କରିବା ଉଦ୍ଦେଶ୍ୟ ସାଧୁ ଓ ପ୍ରଶଂସାର୍ହ, ଏଥିରେ ସନ୍ଦେହ ନାହିଁ ।

ଦର୍ଶକମାନେ ଦର୍ଶକାଭିପ୍ରାୟ ବହିରେ ଆପଣାର ମନ୍ତବ୍ୟ ଲେଖିବାର ବିଧି ଅଛି । ମନ୍ତବ୍ୟ ଲେଖିବା ଅଭିପ୍ରାୟରେ ବହିର ପତ୍ର ଓଲଟାଇବା ବେଳେ ଅନେକ ଲୋକଙ୍କର ମନ୍ତବ୍ୟ ନଜରରେ ପଡ଼ିଲା । ଏଥି ମଧ୍ୟରେ ପୁନାର ଜଣେ ପ୍ରଧାନ ସିଭିଲିୟାନଙ୍କ ମନ୍ତବ୍ୟ ନଜରରେ ପଡ଼ିଲା, ତାହା ଏହି— This is a work of huge skill, time, labour and money, but misdirected, though stupendous. ଏହି ମନ୍ତବ୍ୟ ପଢ଼ି ବିସ୍ମିତ ହେଲି । ତାତ୍ପର୍ଯ୍ୟ କ'ଣ ? ଏ ସ୍ଥଳରେ misdirected ଶବ୍ଦଟି ବଡ଼ ମର୍ମନ୍ତୁଦ । ଯେବେ ଇଜିପ୍ଟ , ଗ୍ରୀସ୍, ରୋମର ସ୍ଥାପତ୍ୟ ଓ ପ୍ରାଚୀନ କୀର୍ତ୍ତିଗୁଡ଼ିକ misdirected ନୁହେଁ, ଯେବେ ୟୁରୋପର ପ୍ରାଚୀନ ଗିର୍ଜା ଓ ଆଧୁନିକ ଗିର୍ଜା ନିର୍ମାଣ misdirected ନୁହେଁ, ତେବେ ଅଜନ୍ତା ପ୍ରତି ଏ ଅପ୍ରଯୋଜ୍ୟ ଶବ୍ଦ ବ୍ୟବହାର ହେଲା କାହିଁକି ? ଭାରତର ପ୍ରାଚୀନ ଗୌରବ, ସଭ୍ୟତା ଯେଉଁମାନଙ୍କ ହୃଦୟକୁ ପୋଡ଼ୁଅଛି, ସେମାନଙ୍କ ମୁଖରୁ ଏପରି ଶବ୍ଦ ବାହାରିବା ଆଶ୍ଚର୍ଯ୍ୟ କ'ଣ ? ଆଜି ଭାରତରେ ଯେବେ ବେଦ ନ ଥାନ୍ତା, ତେବେ ଭାରତୀୟ ସଭ୍ୟତା ନିତାନ୍ତ ଅର୍ବାଚୀନ ବା ପାଶ୍ଚାତ୍ୟ ସଭ୍ୟତାର ଅନୁକରଣ ବୋଲି କହିବାକୁ ଓ ପ୍ରମାଣ କରିବାକୁ ଛାଡ଼ନ୍ତେ କି ? ଅଜନ୍ତାର ଚିତ୍ରସମ୍ଭାର ନ ଥିଲେ ଭାରତୀୟ ଚିତ୍ରକଳାର ସ୍ଥାନ କେଉଁଠାରେ ଥିଲା । ଧର୍ମାନୁପ୍ରାଣିତ ସ୍ୱାର୍ଥତ୍ୟାଗୀ ବ୍ୟକ୍ତିଙ୍କର ସାଧୁକାର୍ଯ୍ୟ ସ୍ୱାର୍ଥପର ବ୍ୟକ୍ତିର ବିଦ୍ରୂପର ସାମଗ୍ରୀ । ଭାରତବର୍ଷରେ ୩ଟା ସ୍ଥାନରେ ଗୁମ୍ଫା ଅଛି, ସେଥିମଧ୍ୟରୁ ଅଧିକାଂଶ ବମ୍ବେ ଅଞ୍ଚଳରେ । ପୂର୍ବେ ସମୁଦ୍ର ମଧ୍ୟବର୍ତ୍ତୀ ଘାରାପୁରୀ (ପାଣ୍ଡବଗୁମ୍ଫା), ନାସିକର ଗୁମ୍ଫା, ଖଣ୍ଡଗିରି ଉଦୟଗିରି ଦେଖିଥିଲି । ଇଲୋରା, ଅଜନ୍ତା ଦେଖିବାର ବାସନା ଥିଲା, ଏଥର ପୂର୍ଣ୍ଣ ହେଲା । ସୂର୍ଯ୍ୟ ପର୍ବତଚୂଡ଼ାକୁ ସ୍ପର୍ଶ କଲେ, ମୁଁ ଅଜନ୍ତା ଗୁହା ତ୍ୟାଗ କଲି । ଏଥର ଡାଏରୀ ଏତିକି ।





ପ୍ରଥମ ସ୍ୱାଧୀନତାଦିବସକୁ ଦସାଲଇଠାରେ ପତାକା ଉତ୍ତୋଳନ କରି ପାଳନ କରୁଛନ୍ତି ଜଳନ୍ଧରଦେବ

# ଗଳ୍ପ ବିଭାଗ

## ପ୍ରାକ୍ ସୂଚନା

ଫକୀରମୋହନ ପ୍ରବର୍ତ୍ତିତ ଗଳ୍ପଧାରାର ଜଣେ ସମର୍ଥ ଶିଳ୍ପୀ ଜଳନ୍ଧରଦେବ । ତାଙ୍କର ଗଳ୍ପସମୂହ ନାରୀଶିକ୍ଷା, ଆଦିବାସୀ ଜନଜୀବନର ଚିତ୍ର ଜାତୀୟତାବାଦୀ ଚେତନା, ପ୍ରକୃତିପ୍ରାଣତା, ଅନ୍ଧବିଶ୍ୱାସ ଓ କୁସଂସ୍କାର ଉନ୍ମୂଳନ ଦିଗରେ କ୍ରାନ୍ତିକାରୀ ଭୂମିକା ସମ୍ପାଦନ କରିଛି । ୧୯୧୪ରେ ପ୍ରକାଶିତ 'ଗୋଟିଏ କଥା'ଠାରୁ ୧୯୪୦ରେ ପ୍ରକାଶିତ 'ଗରିବର ମୃତ୍ୟୁକାଳୀନ ଚିନ୍ତା' ପର୍ଯ୍ୟନ୍ତ କୋଡ଼ିଏଟି ଗଳ୍ପ ଉତ୍କଳ ସାହିତ୍ୟ ଓ ସହକାର ପୃଷ୍ଠାରେ ପ୍ରକାଶିତ । ଏତଦ୍‌ବ୍ୟତୀତ ବାଳକୃଷ୍ଣ କର ସମ୍ପାଦିତ ଜହ୍ନମାମୁଁ ପତ୍ରିକାର ୧୯୩୨-୩୩ ସଂଖ୍ୟାରେ ଜଳନ୍ଧରଙ୍କ ପାଞ୍ଚୋଟି ଶିଶୁ ଗଳ୍ପ ପ୍ରକାଶିତ ।

ଜଳନ୍ଧରଙ୍କ କୋଡ଼ିଏଟି କ୍ଷୁଦ୍ରଗଳ୍ପ ମଧ୍ୟରୁ ଏହାକି ଆତ୍ମହତ୍ୟା, ଅଶ୍ରୁଧାରା, ଭିକ୍ଷୁକସଭା ଓ ଗରିବର ମୃତ୍ୟୁକାଳୀନ ଚିନ୍ତା ସହକାରରେ ପ୍ରକାଶିତ ଏବଂ ଅନ୍ୟ ସମସ୍ତ ଗଳ୍ପ ଉତ୍କଳ ସାହିତ୍ୟରେ ପ୍ରକାଶିତ । ଏଥିମଧ୍ୟରୁ ଗୋଟିଏ କଥା, ମିଥ୍ୟା ଅଭିଯୋଗ, ବାୟା, ସାନ୍ଧ୍ୟ ଗଗନ, ଅତିଥିସତ୍କାର, ଗୌରୀ ଓ କାହ୍ନୁ, ଭିନ୍ନଗତି-ଭିନ୍ନମତି, ଆଇନାତୁଣୀ, ମାଷ୍ଟରାମର ମୁକ୍ତି, ସନ୍ତାନ ସ୍ନେହ, ଏହାକି ଆତ୍ମହତ୍ୟା, ପତିତପାବନ ଡୋରି କ୍ଷୁଦ୍ରଗଳ୍ପଗୁଡ଼ିକ ଜଳନ୍ଧର ରଚନାବଳୀ (୧୯୭୭)ରେ ସ୍ଥାନିତ ହୋଇଥିଲା ।

ଜଳନ୍ଧରଙ୍କ ଗଳ୍ପରେ ପ୍ରଥମେ ଶିକାର ପ୍ରସଙ୍ଗ, ଆଦିବାସୀ ଜନଜୀବନର ଚିତ୍ର ଓ ବିଧବାର ପୁନଃବିବାହ ସଂଯୋଜିତ ହୋଇଛି । ଜଳନ୍ଧରଙ୍କ ଗଳ୍ପ ଗୌରୀ ଓ କାହ୍ନୁ, ଅତିଥିସତ୍କାର, ବିବାହଭୋଜି ପ୍ରଭୃତି ଆଦିବାସୀ ଜନଜୀବନ ଓ ନିମ୍ନବର୍ଗର ଚିତ୍ର ପ୍ରଦାନରେ ଓଡ଼ିଶାରେ ପ୍ରଥମ କ୍ଷୁଦ୍ରଗଳ୍ପ । ସୁରେନ୍ଦ୍ର ମହାନ୍ତିଙ୍କ ବୌଦ୍ଧ ଗଳ୍ପ ଆଧାରିତ କ୍ଷୁଦ୍ରଗଳ୍ପରେ ନିର୍ବାଣ ଅପେକ୍ଷା ଜୀବନକୁ ମହତ୍ତର ବୋଲି ସୂଚାଇବାର ବହୁ ପୂର୍ବରୁ ଜଳନ୍ଧରଙ୍କ 'ଘନିଷ୍ଠତା କ୍ଷଣସ୍ଥାୟୀ' ଗଳ୍ପରେ ଏହି ପ୍ରସଙ୍ଗ କଳାତ୍ମକ ଭାବେ ପ୍ରଦର୍ଶିତ ।

ସୁ-ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ ଜଳନ୍ଧରଙ୍କ ଗଳ୍ପ ସମ୍ପର୍କରେ ଦେଇଥିବା ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ''ଓଡ଼ିଆର ନିପଟ ଚାଲିଚଳନ ବେଶଭୂଷାର ଖାଣ୍ଟି ନମୁନା ମିଳିଥାଏ । ଏଇଠାରେ-ନବ ସଭ୍ୟତା ସଙ୍ଗେ ବନ୍ୟସଭ୍ୟତାର ଅପୂର୍ବ ସମିଶ୍ରଣ । ସର୍ବାଧୁନିକ ସହିତ ସର୍ବପ୍ରାଚୀନର ସଂଯୋଗ । × × × ସେଥି ସଙ୍ଗେ ସଙ୍ଗେ ସମାଜ କିଭଳି ପନ୍ଥା ଅନୁସରଣ କଲେ ସବୁ ଅସ୍ୱାଭାବିକ ଅନ୍ୟାୟ ଅତ୍ୟାଚାରରୁ ମୁକ୍ତ ହୋଇ ସୁସ୍ଥ ସୁନ୍ଦର ନିର୍ଦ୍ଦୋଷ ନିରାମୟ ହୋଇପାରିବ, ତାହାର ପରୋକ୍ଷ ସୂଚନା ହିଁ ଗଳ୍ପଗୁଡ଼ିକୁ କଳାର ନୈପୁଣ୍ୟ ଭିତରେ ଶକ୍ତିଶାଳୀ କରିପାରିଛି ।'' ଜଳନ୍ଧରଙ୍କ କେତୋଟି ଶିଶୁଗଳ୍ପ ଜହ୍ନମାମୁ ପତ୍ରିକାରେ ପ୍ରକାଶିତ । ଏହି ଗଳ୍ପଗୁଡ଼ିକୁ ସ୍ୱତନ୍ତ୍ର ବିଭାଗରେ ନ ଦେଇ ଅଧ୍ୟୟନର ସୁବିଧାକଳ୍ପେ ଗଳ୍ପବିଭାଗରେ ସ୍ଥାନିତ କରାଗଲା । ଶିଶୁଶିକ୍ଷା ଦିଗରେ ବାମଣ୍ଡାରେ ଜଳନ୍ଧର ଯୁଗାନ୍ତକାରୀ ପଦକ୍ଷେପ ଗ୍ରହଣ କରିଥିଲେ । ଏହି ପର୍ଯ୍ୟାୟରେ ସଙ୍କଳିତ ଗଳ୍ପଗୁଡ଼ିକ ତାଙ୍କର ଶିଶୁପ୍ରେମର ଅପୂର୍ବ ଦୃଷ୍ଟାନ୍ତ ।

ଜଳନ୍ଧରଙ୍କ ଗଳ୍ପ ଉପରେ ଆଶାନୁରୂପ ଆଲୋଚନା ଓ ପ୍ରକୃଷ୍ଟ ମୂଲ୍ୟାୟନ ହୋଇପାରି ନାହିଁ । ତା'ର ପ୍ରଧାନ କାରଣ ଗଳ୍ପଗୁଡ଼ିକର ଦୁର୍ଲଭ୍ୟତା । ଏହି ଅଭାବକୁ ପୂରଣ କରିବାରେ ସଂସିତ ଗ୍ରନ୍ଥାବଳୀ ସଫଳ ହେବ ଏଥିରେ ସନ୍ଦେହ ନାହିଁ ।

**-ସମ୍ପାଦକ**

## ଗୋଟିଏ କଥା

କାର୍ତ୍ତିକ ମାସ, ଶୀତର ପ୍ରକୋପ ହୋଇ ନ ଥିଲା, ତଥାପି ଅପରାହ୍ଣର ସୂର୍ଯ୍ୟକିରଣ ସୁଖପ୍ରଦ ହେଉଥିଲା । ବେଳା ପ୍ରାୟ ତିନିଘଣ୍ଟା ସମୟରେ ଜଣେ ଯୁବକ ଗ୍ରାମ ନିକଟବର୍ତ୍ତୀ ପର୍ବତ ଅଭିମୁଖରେ ଗମନ କରୁଥିଲେ । ମସ୍ତକରେ କୌଣସି ଆବରଣ ନ ଥିଲା । ଖରା ସୁଖକର ବୋଧ ହେଉଥିବାରୁ ହାତରେ ଛତା ନ ଥିଲା । ଦେହରେ ଖଣ୍ଡେ କୋଟ, ପାଦରେ ଏକ ହଳ ଜୋତା, ସ୍କନ୍ଧରେ ଗୋଟିଏ ବନ୍ଧୁକ । ଗୋଟିଏ କୁକୁର ଯୁବକଙ୍କର ଆଗେ ଆଗେ ଯାଉଥିଲା । ଯୁବକଙ୍କ ଦୃଷ୍ଟି ପର୍ବତ ଆଡ଼କୁ ବେଶି । କେତେ କେତେ ବେଳେ ମୁହଁରୁ ଅସ୍ପଷ୍ଟ ସ୍ୱରରେ ଗୋଟାଏ ଗୀତ ବା ସିଟିର ଶବ୍ଦ ଶୁଣାଯାଉଥିଲା ।

ଗ୍ରାମରୁ ଏକ ମାଇଲ ଦୂରରେ ଗୋଟାଏ ପର୍ବତ । ପର୍ବତ ବୃକ୍ଷଲତାରେ ପରିପୂର୍ଣ୍ଣ । ଶୀତର ଆଗମନ ହେତୁରୁ ବୃକ୍ଷମାନଙ୍କର ଗୋଟାଏ ଗୋଟାଏ ପତ୍ର ପୀତାଭ ହୋଇଥିଲେ ସୁଦ୍ଧା ବନାନୀର ଶ୍ୟାମଳ ଶୋଭା ସମ୍ପୂର୍ଣ୍ଣ ଲୁପ୍ତ ହୋଇ ନ ଥିଲା । ଦୃଶ୍ୟ ଅତ୍ୟନ୍ତ ମନୋହାରୀ ଥିଲା ବୋଲିବାକୁ ହେବ । ପର୍ବତ ଦେହରେ ସୁନ୍ଦର ଜଳପ୍ରପାତ । ଦୁଗ୍ଧଫେନନିଭ ଶୁକ୍ଳ ଜଳଧାର ପ୍ରପାତର ଗଦ୍‌ଗଦ ଶବ୍ଦ ଅଛଦୂର ବ୍ୟାପୀ ଓ ସୁ-ଶ୍ରାବ୍ୟ ଥିଲା । ଯୁବକ ଯେତିକି ପ୍ରପାତର ନିକଟବର୍ତ୍ତୀ ହେଉଥିଲେ, ତାଙ୍କର ମୁଖ ତେତିକି ସତେଜ ଓ ଉତ୍ସାହପୂର୍ଣ୍ଣ ହେଉଥିଲା । ଦେଖିଲେ ମନେ ହେଉଥିଲା, ଯୁବକ ଏହି ଦୃଶ୍ୟାବଳୀର ଚିରଭକ୍ତ, ପର୍ବତ ବିଚ୍ଚରଣରେ ଚିରାଭ୍ୟସ୍ତ । ହିଂସ୍ର ଜୀବଜନ୍ତୁ ପ୍ରତି ତାଦୃଶ ଭୟଯୁକ୍ତ ନ ଥିଲେ । ନୋହିଲେ ସନ୍ଧ୍ୟାମୁଖରେ ଏକାକୀ କିଏ ପର୍ବତ ବିଚ୍ଚରଣପାଇଁ ବହିର୍ଗତ ହୁଏ ।

ଗ୍ରାମ ତ୍ୟାଗ କରି ପର୍ବତ ନିକଟବର୍ତ୍ତୀ ହେଲାବେଳେ ତାଙ୍କର କର୍ଣ୍ଣରେ ଗୋଟାଏ ଶବ୍ଦ ପ୍ରବିଷ୍ଟ ହେଲା । ବଟବୃକ୍ଷ ମୂଳରେ ବେଦୀ ଉପରେ ଚାରି ଜଣ ସନ୍ନ୍ୟାସୀ ଉପବେଶନ କରି 'ଶ୍ରୀରାମ ଜୟ ରାମ ଜୟ ଜୟ ରାମ' ବୋଲୁ ଅଛନ୍ତି । ପଥର ଅତି ନିକଟରେ ବଟ ବୃକ୍ଷ । ଯୁବକ ସେଠାକୁ ଗଲେ, ସନ୍ନ୍ୟାସୀମାନଙ୍କୁ ପ୍ରଣାମ କଲେ, ଏବଂ ବେଦୀର ଏକ ପାର୍ଶ୍ୱରେ ବନ୍ଧୁକ ରଖିଦେଇ ଉପବେଶନ କଲେ । କୁକୁରଟି ପର୍ବତ ଭ୍ରମଣ ସୁଖରୁ ବଞ୍ଚିତ ହୋଇଥିବାରୁ ଅନୁମାନ କରି ଜୋତା ନିକଟରେ ଦୁନି ହୋଇଶୋଇଲା । ପ୍ରଧାନ ସନ୍ନ୍ୟାସୀ ଯୁବକଙ୍କର ପୂର୍ବ ପରିଚ୍ଚିତ, ଯୁବକଙ୍କ କୁଶଳ ସମାଚ୍ଚାର ଓ ଅନ୍ୟାନ୍ୟ କେତେକ ଜ୍ଞାତବ୍ୟ ବିଷୟ ପଚ୍ଚାରିଲେ, ଯୁବକଙ୍କର ନମ୍ର ଓ ଶାନ୍ତ ସ୍ୱଭାବ ଦେଖି ସନ୍ତୁଷ୍ଟ ହେଲେ ଏବଂ ତାଙ୍କର ଶିଷ୍ୟମାନଙ୍କୁ ଯୁବକଙ୍କ ସମ୍ବନ୍ଧରେ ଅନେକ କଥା କହିଲେ, ବାଲ୍ୟକାଳରୁ ତାଙ୍କର ଦେବତା ଓ ବୈଷ୍ଣବ ପ୍ରତି କିପରି ଭକ୍ତି, ତାହା ବୁଝାଇ ଦେଲେ । ପରେ ନାନା ଧର୍ମୋପଦେଶ ଦେବାକୁ ଲାଗିଲେ । ସନ୍ନ୍ୟାସୀ ପଚ୍ଚାରିଲେ 'ବାବା ! କୁଆଡ଼େ ଯାଉଛ ? ପ୍ରପାତ ଦର୍ଶନ କରିବାକୁ । ବନ୍ଧୁକ ସଙ୍ଗରେ ନେବାର କାରଣ କ'ଣ ?' ଯୁବକ କହିଲେ ଶିକାର କରିବାକୁ, ପ୍ରୟୋଜନ ହେଲେ ଆତ୍ମରକ୍ଷା କରିବାକୁ । କଥା ପ୍ରସଙ୍ଗରେ ସନ୍ନ୍ୟାସୀ ପୁଣି କହିଲେ, ''ପୂର୍ବେ ଲୋକେ କୁକୁରକୁ ବଡ଼ ଘୃଣା କରୁଥିଲେ, ନବ୍ୟଶିକ୍ଷିତମାନେ କୁକୁରକୁ ଟିକିଏ ମଧ ଘୃଣା କରନ୍ତି ନାହିଁ । ଦେଖ ତ କୁକୁର ଜୋତା ଉପରେ ମୁଣ୍ଡ ରଖିଶୋଇଛି, କେତେବେଳେ ଗୋଡ଼ ଉପରେ, କେତେବେଳେ ବିଛଣା ଉପରେ ଶୋଉ ନ ଥିବ ? କିଛି ଘୃଣା ତ ନାହିଁ । ଯୁବକ ଉତ୍ତର ନ ଦେଇ ନୀରବ ହୋଇରହିଲେ । ଏହିପରି କିଛିକ୍ଷଣ କଥପୋକଥନ ହେଲାରୁ ଯୁବକ ବିଦାୟ ନେଇ ପ୍ରପାତ ଅଭିମୁଖେ ଗମନ କଲେ । ସନ୍ଧ୍ୟାରେ ଗୃହକୁ ଫେରିଆସି ସନ୍ନ୍ୟାସୀମାନଙ୍କ ନିମନ୍ତେ ଖାଦ୍ୟସାମଗ୍ରୀ ପଠାଇଦେଲେ ।

ଯୁବକ ପ୍ରତ୍ୟହ ସନ୍ନ୍ୟାସୀମାନଙ୍କ ନିକଟକୁ ଯାଆନ୍ତି ଏବଂ ସେମାନଙ୍କଠାରୁ ନାନା ବିଷୟ ଶ୍ରବଣ କରି ଗୃହକୁ ଫେରନ୍ତି । ଦିନେ ସାଧୁ ଦୁଇ ଖଣ୍ଡ ମୃଗଚର୍ମ ମାଗିଲେ । ଯୁବକ କହିଲେ 'ବାବା, ମୃଗ ଚର୍ମ ନାହିଁ, ଆପଣ ତ କିଛି ଦିନ ଅଛନ୍ତି ଶିକାର କଲେ ଦେବା ।' ରବିବାର ଦିନ ଶିକାରକୁ ଯାଇ ଯୁବକ ଦୁଇ ଗୋଟା ମୃଗ ବଧ କଲେ । ଯତ୍ନ ସହକାରେ ଚମଡ଼ା ଶୁଖାଇ ଦେଲେ । ଉପର ଓଳି, ଏହି ସମ୍ବାଦ ଦେବାକୁ ସାଧୁଙ୍କ ନିକଟକୁ ଗଲେ । ସାଧୁ ମହାଖୁସି, ଆଉଥରେ ଆସିଲେ ଚାରିପାଞ୍ଚ ଖଣ୍ଡ ନେଇ ଯିବାର ଆଶା ପ୍ରକାଶ କଲେ । ସେ ଦିନ ତାଙ୍କ ବସାରେ ଭୋଜନ କରିବାକୁ ସନ୍ନ୍ୟାସୀ ଯୁବକଙ୍କୁ ଅନୁରୋଧ କଲେ । ଯୁବକ ଅମ୍ଳାନ ବଦନରେ ତାହା ସ୍ୱୀକାର କଲେ । ସୂର୍ଯ୍ୟ ଅସ୍ତ ହେଲେ ଯୁବକ ପଶ୍ଚିମ ଦିଗରୁ ସିନ୍ଦୂରବୋଳା ସନ୍ଧ୍ୟା ଛବିକୁ ଅନାଇ ରହିଲେ । କ୍ରମେ ଅନ୍ଧକାର ମାଡ଼ି ଆସିଲା, ଗୋଟି ଗୋଟି ନକ୍ଷତ୍ର ଦେଖାଦେଲେ । ଦେବତାଙ୍କର ସାନ୍ଧ୍ୟ ଶଙ୍ଖ ବାଜିଲା । ସାଧୁମାନେ ଆରତି କଲେ । ପରେ ସାଧୁ ଓ ଯୁବକ ଏକତ୍ର ଉପବେଶନ କଲେ । ସାଧୁ ନାନା ଉପଦେଶ ଦେବାକୁ ଲାଗିଲେ । ଆକାଶ ପରିଷ୍କାର

ଜ୍ୟୋତ୍ସ୍ନା ମଣ୍ଡଳର ଅପୂର୍ବ ଜ୍ୟୋତି ଯୁବକଙ୍କ ମନକୁ ଆକର୍ଷଣ କଲା । ଯୁବକ ଅନ୍ୟମନସ୍କ ହୋଇ ନକ୍ଷତ୍ରଆଡ଼କୁ ଅନାଇ ରହିଲେ । ସାଧୁଙ୍କର ଉପଦେଶ ତାଙ୍କ କର୍ଣ୍ଣକୁହରରେ ପ୍ରବେଶ କରୁଥିବାର ଅନୁମାନ ହେଲା ନାହିଁ । ସାଧୁ କହିଲେ 'ବାବା ! ମୁଁ ଧର୍ମ ଉପଦେଶ ଦେଉଅଛି, ରାମ ଚରିତ୍ର ଶୁଣାଉ ଅଛି, ତୁମ୍ଭେ ଅମନୋଯୋଗୀ ହୋଇ ଆକାଶ ଆଡ଼କୁ ଅନାଉଅଛ କାହିଁକି ? ଅନେକ ସମୟରେ ମୁଁ ତୁମ୍ଭଙ୍କୁ ଏପରି ଅନ୍ୟମନସ୍କ ଦେଖେ । ଆକାଶ ଯେପରିକି ବିଷ୍ଣୁ ଚରିତ୍ରଠାରୁ ଭଲ । ପ୍ରପାତର କଳ କଳ ଧ୍ୱନି ତୁମ୍ଭଙ୍କୁ ଭଜନଠାରୁ ସୁଶ୍ରାବ୍ୟ ବୋଧହୁଏ । ରାମନାମଠାରୁ ବାବା ମଧୁର ସଙ୍ଗୀତ ଆଉ କାହିଁ ? ବିଷ୍ଣୁଙ୍କ ମୁଖାରବିନ୍ଦଠାରୁ ବଳି ସଂସାରରେ ଆଉ ସୁନ୍ଦର ବସ୍ତୁ କ'ଣ ଅଛି ? ତାକୁ ଛାଡ଼ି ଆକାଶକୁ, ତାରାକୁ, ଝରଣାକୁ ଅନାଇବା ଅସଙ୍ଗତ । ରାମରସ ତ ରାମରସ । *ରାମରସ ବିନା ଯେମନ୍ତ କୌଣସି ତରକାରି ସୁସ୍ୱାଦୁ ନୁହେଁ, ତେମନ୍ତ ରାମରସ ବିନା କୌଣସି କୌଣସି ଗ୍ରନ୍ଥ ସୁଶ୍ରାବ୍ୟ ନୁହେଁ । ବାବା ! ଏପରି ଆଉ କେବେ କରିବ ନାହିଁ । ଯୁବକ ଅପ୍ରତିଭ ହୋଇ ନତମସ୍ତକରେ ସବୁ ଗ୍ରହଣ କଲେ । ଭୋଜନାନ୍ତେ ଗୃହକୁ ପ୍ରତ୍ୟାବୃତ୍ତ ହେଲେ ।

ପୁଣି ଦିନେ ଯୁବକ ପ୍ରପାତ ନିକଟରେ ଗୋଟିଏ ପ୍ରସ୍ତର ଉପରେ ଶୋଇଅଛନ୍ତି । ତାଙ୍କ ଗୋଡ଼ ଉପରେ ମୁଣ୍ଡଦେଇ ତାଙ୍କର ପ୍ରିୟ କୁକୁର ଶୋଇଅଛି । ଯୁବକ ତନ୍ମୟ ହୋଇ ପ୍ରପାତକୁ ଦୃଷ୍ଟି କରି ରହିଅଛନ୍ତି । ଇତ୍ୟବସରେ ସନ୍ନ୍ୟାସୀମାନେ ସେଠାରେ ଉପସ୍ଥିତ ହେଲେ । ଯୁବକ ଏଡ଼େ ତନ୍ମୟ ଥିଲେ ଯେ, ସେମାନଙ୍କର ପ୍ରବେଶ ପ୍ରତି ତାଙ୍କର ଲକ୍ଷ୍ୟ ନ ଥିଲା । ସନ୍ନ୍ୟାସୀମାନେ ଦୂରରେ ଦଣ୍ଡାୟମାନ ହୋଇ ଏହା ଦେଖୁଥିଲେ । ହଠାତ୍ ଗୋଟିଏ ପକ୍ଷୀର ସୁଶ୍ରାବ୍ୟ ସଙ୍ଗୀତ ଶୁଣାଗଲା । ଯୁବକ ଏହା ଶୁଣିବାମାତ୍ରେ ବଙ୍ଗଳା ଭାଷାରେ ଗାଇଲେ—

ଓହେ ବିହଙ୍ଗମଗନ ଆଂନନ୍ଦେ ହୟେମଗନ
କାର ଗୁନ ଗାଇତେଛ
ପ୍ରବେଶିଲେ ବୃକ୍ଷୋପରେ ବସେ ସୁମଧୁର ସ୍ୱରେ
ଅବିରତ ପ୍ରେମଭରେ, ବଲ କାରେ ଡାକିତେଛ ।

''ବାବା ! ବୋଲି ସନ୍ନ୍ୟାସୀ ଡାକି ଦେଲେ । ଯୁବକ ଚମକିତ ହୋଇ ଦଣ୍ଡାୟମାନ ହେଲେ । ପୁଣି ସମସ୍ତେ ଉପବେଶନ କଲେ । ସନ୍ନ୍ୟାସୀ କହିଲେ, ''ବାବା ! ମୁଁ ଏହି ପ୍ରପାତକୁ ବହୁଦିନରୁ ଦେଖି ଆସୁଅଛି । ଏହା ମୁନିଋଷିଙ୍କ ବାସଯୋଗ୍ୟ ସ୍ଥାନ । କି ଗୀତ ଗାଇଲ ବାବା ?'' ଯୁବକ ଇତସ୍ତତଃ ହୋଇ ମୁଣ୍ଡ ଆଉଁସି ଗୀତଟିର ପୁନରାବୃତ୍ତି କଲେ । ସନ୍ନ୍ୟାସୀ କହିଲେ, 'ଆଜିକାଲି ମୁଁ ଦେଖିଲି, ଯୁବକମାନେ ଏହି ଧରଣର ଗୀତ ଗାଆନ୍ତି । ଆମ୍ଭେମାନେ ଏହାର ମର୍ମ କିଛି ବୁଝିପାରୁ ନାହୁଁ । ଆଜିକାଲି ରାମକୃଷ୍ଣଙ୍କ ଭଜନ କେଉଁଆଡ଼େ ଗଲା, ଯେଉଁଠାରେ ଶୁଣ ଇଦୃଶ ପାଷଣ୍ଡ ସଙ୍ଗୀତ ।'' ଯୁବକ କିଛି ଉତ୍ତର ଦେଲେ ନାହିଁ । ସନ୍ନ୍ୟାସୀ ନାନା ଉପଦେଶ ଦେଲେ । କିଛିକ୍ଷଣ ପରେ ସମସ୍ତେ ପ୍ରପାତ ତ୍ୟାଗ କଲେ ।

ତହିଁ ଆରଦିନ ସନ୍ନ୍ୟାସୀମାନେ ପୂଜା ଅର୍ଚ୍ଚନା ଶେଷକରି ଯୁବକଙ୍କ ଗୃହକୁ ଗଲେ, ସେଠାରୁ ବିଦାୟ ଗ୍ରହଣ କରି ଆପଣା ଗନ୍ତବ୍ୟପଥରେ ଅଗ୍ରସର ହେଲେ । ଯୁବକ ମଧ୍ୟ ଆପଣା ପୋଷାକ ପିନ୍ଧି ପ୍ରାୟ କୁକୁରକୁ ସାଙ୍ଗରେ ନେଇ ଶିକାର କରିବା ଇଚ୍ଛାରେ ସାଧୁମାନେ ଯାଉଥିବା ବାଟରେ ଗମନ କଲେ । ଗ୍ରାମ ଅତିକ୍ରମ କରି ଅଳ୍ପଦୂର ଗଲା ଉତ୍ତାରୁ ଯୁବକ ଦେଖିପାରିଲେ, ଗୋଟିଏ କୁକୁରଛୁଆ ରାସ୍ତାରେ ପଡ଼ି ଚିତ୍କାର କରୁଅଛି । ତାହାର ଗୋଟାଏ ଗୋଡ଼ ଭଗ୍ନ, ସେ ଉତ୍‌ଥାନ ଶକ୍ତିରହିତ । ସମ୍ଭବତଃ ଗୋଟାଏ ଶଗଡ଼ ମାଡ଼ିଯିବାକୁ ଗୋଡ଼ ଭାଙ୍ଗିଯାଇଅଛି, ଏଣୁ ଛଟପଟ ହେଉଅଛି । ଯୁବକ ତାହାକୁ ଉତ୍ତୋଳନ କଲେ; ତାହାର ସର୍ବାଙ୍ଗ ପରୀକ୍ଷା କଲେ । ଦେଖିଲେ, ସନ୍ନ୍ୟାସୀଗଣ କୁକୁର ଶିଶୁକୁ ଏତାଦୃଶ ଦୁରବସ୍ଥା ଦେଖି ସୁଦ୍ଧା ତାହା ପ୍ରତି ଭ୍ରୂକ୍ଷେପ କଲେ ନାହିଁ; ଚାଲିଗଲେ । ଯୁବକ ମନେ ମନେ କ'ଣ ଚିନ୍ତାକଲେ, ଶିକାର ସୁଖ ତ୍ୟାଗକରି କୁକୁରକୁ କୋଳରେ ନେଇ ଆପଣା ଗୃହକୁ ଫେରି ଆସିଲେ । ତାଙ୍କର ଯତ୍ନରେ କୁକୁର ଶିଶୁଟି ବଞ୍ଚିଲା, ମାତ୍ର ତାହାର ଗୋଡ଼ ସମ୍ପୂର୍ଣ୍ଣ ଭଲ ହେଲା ନାହିଁ । ଛୋଟେଇ ଛୋଟେଇ ଚାଲି ପାରୁଥାଏ, ମାତ୍ର ପ୍ରଭୁର ସଙ୍ଗ କେବେ ଛାଡ଼େ ନାହିଁ ।

ପୁଣି ଶରତକାଳ ଆସିଲା । ସନ୍ନ୍ୟାସୀମାନେ ପୁରୀ ଜଗନ୍ନାଥ ଦର୍ଶନରୁ ସ୍ୱ ସ୍ୱ ମଠ ଅଭିମୁଖରେ ଫେରିବାକୁ ଆରମ୍ଭ କଲେ । ଆଶ୍ୱିନ ମାସ । ଚିରାଭ୍ୟାସାନୁସାରେ ଯୁବକ କୁକୁର ଦିଓଟିଙ୍କୁ ସଙ୍ଗରେ ନେଇ ପ୍ରପାତ ଦେଖିବାକୁ ବାହାରିଲେ । ସେହି ବଟମୂଳରେ ସନ୍ନ୍ୟାସୀମାନଙ୍କର ସେହି ଶ୍ରୀରାମ ଜୟରାମ ଜୟ ଜୟ ରାମ ଶବ୍ଦ ଶୁଣିବାକୁ ପାଇଲେ । ଯୁବକ ସେଠାକୁ ଯାଇ ସାଧୁମାନଙ୍କୁ ଅଭିବାଦନ କଲେ । ସାଧୁ ନାନା ପ୍ରସଙ୍ଗ ଉତ୍‌ଥାପନ କଲେ । ଜଗନ୍ନାଥଙ୍କର ନୂତନ କଳେବର

---

* ସନ୍ନ୍ୟାସୀଙ୍କ କଥାରେ ରାମରସ ଅର୍ଥ ଲବଣ ।

ଆଶାରେ ଯାଇଥିଲେ, ମାତ୍ର ତାହା ନୋହିବାରୁ ଅସଂଖ୍ୟ ସାଧୁ ହତାଶ ହୋଇଥିବାର ଏବଂ ଏହା ଦେଉଳ ପରିଚାଳକମାନଙ୍କର ନିତାନ୍ତ ଅମୂଳକ ଭ୍ରମ ବୋଲି ପ୍ରକାଶ କଲେ । ସାଧୁଙ୍କର ଈଦୃଶ ଆଗ୍ରହଯୋଗ୍ୟ କଥାରେ ମଧ ଯୁବକଙ୍କ ମନ ଆକୃଷ୍ଟ ନ ଦେଖି ସାଧୁ ପଚାରିଲେ, 'ବାବା ! ପୂର୍ବେ ମୁଁ ଯେପରି ତୁମ୍ଭଙ୍କୁ ଭକ୍ତିପୂର୍ଣ୍ଣ ଦେଖୁଥିଲି, ଏବଂ ମୋର କଥା ଶୁଣିବାକୁ ଯେପରି ଆଗ୍ରହାନ୍ୱିତ ଓ ତନ୍ମୟ ହେବାର ଦେଖୁଥିଲି, ଆଜି ସେପରି ନ ଦେଖିବାର କାରଣ କ'ଣ ?'ଯୁବକ ନୀରବ ହୋଇ ରହିଲେ । ସନ୍ନ୍ୟାସୀ ପୁନଃ ପୁନଃ ପଚାରିବାରୁ କହିଲେ, ''ବାବା ! ଆପଣ ମୋର ଗୁରୁଜନ, ବାଲ୍ୟକାଳରୁ ଆପଣଙ୍କୁ ଦେଖି ଆସୁଅଛି, ଆପଣଙ୍କୁ ପିତା ତୁଲ୍ୟ ସ୍ନେହ ଓ ଭକ୍ତି କରେ । ମୋର ହୃଦଗତ ଭାବ କିପରି ପ୍ରକାଶ କରିବି କିଛି ବୁଝିପାରୁ ନାହିଁ । ମନରେ କିଞ୍ଚିତ ଭିନ୍ନଭାବର ଆବେଶ ହୋଇଅଛି, କ୍ଷମା ଦେଲେ କହିବି ।'' ସନ୍ନ୍ୟାସୀ କହିଲେ, ''କହ ବାବା ! କହ, ତୁମ୍ଭେ ଯାହା କହିବ ତହିଁରେ ମୁଁ ଅସନ୍ତୁଷ୍ଟ ହେବି ନାହିଁ ।'' ଯୁବକ କହିଲେ ''ବାବା ! ଅନେକ ସନ୍ନ୍ୟାସୀଙ୍କଠାରୁ ଓ ଆପଣଙ୍କଠାରୁ ଅନେକ ଉପଦେଶ ମୁଁ ଶ୍ରବଣ କରିଅଛି । ଆପଣଙ୍କ ଉପଦେଶ ମୋର କର୍ଣ୍ଣକୁ ବଡ଼ ମଧୁର ଲାଗେ । ଆପଣଙ୍କ ଅନେକ ଉପଦେଶ ମଧ୍ୟରୁ 'ଜୀବକୁ ଦୟା କରିବ' ଏହା ଗୋଟିଏ ଅମୂଲ୍ୟ ଉପଦେଶ । ଏହା ଶୁଣି ମନେ ହୁଏ ଆପଣମାନେ ପ୍ରକୃତ ପରୋପକାରୀ, ଦୟାଳୁ ଓ ହିଂସାରହିତ । ମାତ୍ରଗତ ବର୍ଷ ଗୋଟିଏ ଘଟଣା ମୋର ହୃଦୟରେ ଭାବାନ୍ତର ଉପସ୍ଥିତ କରିଅଛି । ଆପଣମାନେ ଇତର ଜୀବ ପ୍ରତି ଦୟାଶୂନ୍ୟ, ତହିଁର ପ୍ରତ୍ୟକ୍ଷ ସାକ୍ଷୀ ମୋର ଏହି ଛୋଟା କୁକୁର । ସ୍ମରଣ ଅଛି କି ଆପଣମାନେ ଗତବର୍ଷ ଏଠାରୁ ଯିବାବେଳେ ଆପଣଙ୍କ ରାସ୍ତାରେ ଗୋଟିଏ ନିଃସହାୟ କୁକୁରଛୁଆ ଭଗ୍ନପଦ ହୋଇ ଚିତ୍କାର କରୁଥିଲା ? ଆପଣମାନେ ତାହା ପ୍ରତି ଭ୍ରୂକ୍ଷେପ ନ କରି ଚାଲିଗଲେ । ତାହାର କରୁଣ ଧ୍ୱନି ଆପଣଙ୍କ ହୃଦୟକୁ ବିଚଳିତ କରିପାରିଲା ନାହିଁ । ତିଳେ ମାତ୍ର ଅଟକାଇ ପାରିଲା ନାହିଁ । ଏହାକି ଦୟାପରତାର ପରିଚାୟକ ? ମୁଁ ମନେକଲି ଆପଣଙ୍କ ହୃଦୟ ଗୃହସ୍ଥର ହୃଦୟ ଅପେକ୍ଷା କଠୋରତର-କୋମଳତାର ଲେଶମାତ୍ର ନାହିଁ । ଗୃହସ୍ଥ ପରୋପକାରୀ, ତାହାର ହୃଦୟରେ ଦୟା ଅଛି; ପରସ୍ପର ପ୍ରତି ପ୍ରେମ ଅଛି, ଆପଣମାନଙ୍କର ତାହା ନାହିଁ । କାମ, କ୍ରୋଧ, ଲୋଭ, ମୋହ ପ୍ରଭୃତି ମନୁଷ୍ୟ ସାଧାରଣରେ ବିଦ୍ୟମାନ । ଆପଣମାନେ ଗୃହତ୍ୟାଗୀ ହୋଇଥିଲେ ସୁଦ୍ଧା ତହିଁରୁ ରକ୍ଷା ପାଇ ନାହାନ୍ତି । ସୁତରାଂ ଆପଣମାନେ କୌଣସି ଅଂଶରେ ଗୃହସ୍ଥଠାରୁ ଶ୍ରେଷ୍ଠ ନୁହନ୍ତି । ଆହୁରି କହିବାର ଥିଲେ ସୁଦ୍ଧା ବର୍ତ୍ତମାନ ଘଟଣାରେ ଏତିକି ଯଥେଷ୍ଟ । ଯୁବକ ତୁନି ହେଲେ । ସନ୍ନ୍ୟାସୀ ଊର୍ଦ୍ଧ୍ୱକୁ ମୁଖକରି କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଲେ । ଶିଷ୍ୟଗଣ ଯୁକ୍ତିତର୍କ କରିବାକୁ ବାଧ ହେଉଥିଲେ । ମାତ୍ର ସନ୍ନ୍ୟାସୀ ନିଷେଧ କଲେ ଏବଂ କହିଲେ, ''ବାବା ! ଗତବର୍ଷ ଆମ୍ଭେମାନେ ଯିବାବେଳେ ଏହି କୁକ୍‌କୁରଟି ଭଗ୍ନପଦ ହୋଇ ରାସ୍ତାରେ ପଡ଼ିଥିଲା । ଆମ୍ଭେମାନେ ତା' ପ୍ରତି ଲକ୍ଷ୍ୟ ନ କରି ଚାଲିଗଲୁଁ । ଯୁବକ ହଁ କଲେ । ପୁଣି ସନ୍ନ୍ୟାସୀ କହିଲେ, ''ବାବା ! ଆଜି ଦିବା ଅବସାନ ପ୍ରାୟ, ଘରକୁ ଯାଅ, କାଲି ପ୍ରପାତଠାକୁ ଆସିବ । ମୋର ଯାହା ବକ୍ତବ୍ୟ, ତାହା ଇତିମଧ୍ୟରେ ଚିନ୍ତା କରିବି, କାଲି ତାହା ନିଷ୍କପଟଭାବରେ ତୁମ୍ଭଙ୍କୁ କହିବି । ମୋତେ ଏକଥା କହିଲ ବୋଲି ମନରେ ଚିନ୍ତା କରିବ ନାହିଁ ।'' ଯୁବକ ସନ୍ନ୍ୟାସୀଙ୍କର ପଦଧୂଳି ମସ୍ତକରେ ଗ୍ରହଣ କର ଗୃହକୁ ଫେରିଲେ ।

ପୂର୍ବଦିନ ଦିବା ଦୁଇଘଣ୍ଟା ବେଳେ ପୂର୍ବାଭ୍ୟାସ ଅନୁସାରେ ବନ୍ଧୁକ ଓ ଦୁଇ କୁକୁରଙ୍କୁ ସଙ୍ଗରେ ନେଇ ଯୁବକ ପ୍ରପାତଠାକୁ ଗଲେ । ସେଠାରେ ସନ୍ନ୍ୟାସୀଙ୍କ ଆଗମନ ପ୍ରତୀକ୍ଷା କରୁଥିଲେ । ସନ୍ନ୍ୟାସୀ ଅଳ୍ପକ୍ଷଣ ପରେ ସେଠାରେ ପହଞ୍ଚିଲେ । ସନ୍ନ୍ୟାସୀଙ୍କ ମୁଖ ପୂର୍ବାପେକ୍ଷା ହର୍ଷପୂର୍ଣ୍ଣ ଦେଖି ଯୁବକ ମନରୁ ଚିନ୍ତା ଦୂର କଲେ, ଦଣ୍ଡାୟମାନ ହୋଇ ଅଭିବାଦନ କଲେ । ସାଧୁ ଆଶୀର୍ବାଦ କଲାରୁ ଉଭୟେ ଉପବେଶନ କଲେ । ସାଧୁ ଛୋଟ କୁକୁର ମଣ୍ଡରେ ହାତବୁଲାଇ କହିଲେ, ''ବାବା !ଏହି କୁକୁର ଆମ୍ଭ ଦୁହିଁଙ୍କ ମଧ୍ୟରେ ଚିର ମନାନ୍ତର ଉପସ୍ଥିତ କରିବ କିମ୍ବା ଆଜିଠାରୁ ଦୁହିଁଙ୍କୁ ଏକମତ କରିବ । ଏହି କହି କୁକୁର ଦେହ ଆଉଁସିବାକୁ ଲାଗିଲେ । କୁକୁର ଲାଞ୍ଜ ହଲାଇ ଏକାଗ୍ରଭାବେ ସନ୍ନ୍ୟାସୀଙ୍କ ମୁଖଆଡ଼କୁ ଅନାଇଁରହିଲା । ସନ୍ନ୍ୟାସୀ କହିଲେ, ''ବାବା ! ଶୁଣ, ଏଥିରୁ ତୁମ୍ଭର ପ୍ରଶ୍ନର ଉତ୍ତର ପାଇବ, ଏବଂ ମୋର ଜୀବନ ବୃତ୍ତାନ୍ତ ଜାଣିପାରିବ । ଯୁବକ ନିବିଷ୍ଟଚିତ୍ତରେ ଶୁଣିଲେ । ସନ୍ନ୍ୟାସୀ ଅମ୍ଳାନ ବଦନରେ ପ୍ରକାଶ କଲେ— ବାବା, ମୁଁ ବ୍ରାହ୍ମଣ ସନ୍ତାନ, ଗୋପାଳନ ଓ ଗୋଦୋହନ ଆମ୍ଭର ବ୍ୟବସାୟ । ଅଳ୍ପ ବୟସରେ ପିତାଙ୍କ ମୃତ୍ୟୁହେଲା । ବଡ଼ଭାଇ ଘରର ମୁରବୀ । ଗ୍ରାମ୍ୟ ପାଠଶାଳାରେ ମୁଁ କିଛି ଦିନ ଅଧ୍ୟୟନ କରିଥିଲି । କେବଳ ମାତ୍ର ରାମାୟଣ ପାଠ କରିପାରୁଥିଲି । ୧୮।୧୯ ବର୍ଷରେ ବିବାହ କଲି । ଗୃହସ୍ଥାଶ୍ରମରେ ଦୁଇ ବର୍ଷ ଅତିବାହିତ ହେଲାରୁ ମୋର ସ୍ତ୍ରୀ କାଳଗ୍ରାସରେ ପତିତ ହେଲେ । ମୋର କୌଣସି ପୁତ୍ରକନ୍ୟା ହୋଇ ନ ଥିଲେ । ସ୍ତ୍ରୀ ବିୟୋଗ ଦୁଃଖପାଇଁ ଅତିକଷ୍ଟରେ

ଜୀବନଯାପନ କରିବାକୁ ହେଉଥିଲା । ପୁନର୍ବାର ବିବାହ କରିବାର ସଙ୍ଗତି ନ ଥିଲା । ମନରେ ନାନା ଚିନ୍ତା ଉପସ୍ଥିତ ହେଲା । ଆମ୍ଭଗ୍ରାମର ଅନେକ ଲୋକ ବୈଷ୍ଣବ ହୋଇ ଗୃହତ୍ୟାଗୀ ହୋଇଥିଲେ । ଆମ୍ଭ ଗ୍ରାମକୁ ପ୍ରତିବର୍ଷ ବୈଷ୍ଣବ ଆସନ୍ତି । ବାଲ୍ୟକାଳରୁ ବୈଷ୍ଣବମାନଙ୍କ ଉପରେ ମୋର ଭାରି ଭକ୍ତି ଥାଏ, ବିଶେଷତଃ ରାମାୟଣ ପଢ଼ିବା ସକାଶେ ସେମାନଙ୍କ ନିକଟକୁ ଯା' ଆସ କରେ । ସ୍ତ୍ରୀ ବିୟୋଗ ଉତ୍ତାରୁ ବୈଷ୍ଣବ ହେବାର ଭାବ ହୃଦୟରେ ଜାଗରିତ ହେଲା । ଏହି ଚିନ୍ତା କରୁ କରୁ ଆମ୍ଭ ଗ୍ରାମକୁ ଏକ ଯମାଉତ ଆସିଲେ । ସେମାନଙ୍କ ସଙ୍ଗରେ ଯିବାକୁ ଚେଷ୍ଟା କଲି । ମା'ଙ୍କ ମନରେ ସନ୍ଦେହ ଛୁଇଁବାରୁ ସେ ମୋତେ କେତେ ନିଷେଧ କଲେ । ମୁଁ ତାଙ୍କଠାରେ ଛଳନା କରି ଭିତରେ ଭିତରେ ଯୋଗାଡ଼ କରୁଥାଏ । ଯମାଉତର ଜଣେ ଦୁଇ ଜଣ ବୈଷ୍ଣବଙ୍କଠାରେ ମୋର ମତ ପ୍ରକାଶ କଲି । ସେମାନେ ମୋତେ ଖୁବ୍ ଉତ୍ସାହିତ କଲେ । ବୈଷ୍ଣବ ହେବାରେ ଯେତେ ସୁଖ ତାହା ସବୁ ପ୍ରକାଶ କଲେ, ମହନ୍ତଙ୍କଠାରେ ପରିଚିତ କରାଇଦେଲେ । ମହନ୍ତଙ୍କଠାରୁ ଅନେକ ଉପଦେଶ ପାଇଲି । କିପରି ଗୃହଶୃଙ୍ଖଳା ଛିଣ୍ଡାଇବାକୁ ହେବ, ତାହା ସେ ବେଶ୍ ବୁଝାଇ ଦେଲେ । ମୁଁ ତାଙ୍କ ସଙ୍ଗରେ ଗଲି ନାହିଁ । ପରେ ଗୃହରୁ ବାହାରି ତାଙ୍କ ସହିତ ମିଶିଲି । ସୁଖ ଦୁଃଖରେ ନାନା ତୀର୍ଥ ପର୍ଯ୍ୟଟନ କଲି, ମଧ୍ୟରେ ଥରେ ଦୁଇ ଥର ଗୃହକୁ ଫେରିବାର ଇଚ୍ଛା ବଳବତୀ ହେଲା । ମୋର ଭାବାନ୍ତର ଦେଖି ସଙ୍ଗୀଗଣ ନାନା ପରାମର୍ଶ ଦେବାକୁ ଲାଗିଲେ । ଦୁଇ ବର୍ଷ ପରେ ଆମ୍ଭ ଗ୍ରାମଦେଇ ଯିବାକୁ ପଡ଼ିଲା । ମୋର ସଙ୍ଗୀମାନେ ମୋତେ ଭୁଲାଇ ଅନ୍ୟ ବାଟରେ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ଯୋଗ ହେବାକୁ ଉପାୟ ଉଦ୍ଭାବନ କରିଥିଲେ । ମୁଁ ତଦନୁସାରେ କାର୍ଯ୍ୟକଲି । ଶୁଣିଲି, ବୈଷ୍ଣବମାନଙ୍କୁ ମୋର ମାତା ଓ ଭାଇ ମୋ କଥା ଅନେକ ପଚାରିଲେ । ବୈଷ୍ଣବମାନେ ମୋର ନିରୁଦ୍ଦେଶ କଥା ଜ୍ଞାପନ କରିବାରୁ ନିରାଶ ହେଲେ । ପୁଣି କେତେ ବର୍ଷଉତ୍ତାରୁ ଆମ୍ଭ ଗ୍ରାମ ଦେଇ ଯିବାକୁ ହେଲା, ଶୁଣିଲି ମୋର ମା' ମୋର ଦୁଃଖରେ ଅଧୀରା ହୋଇ ମୃତ୍ୟୁ ମୁଖରେ ପତିତ ହୋଇଥିଲେ । ମୋର ଭ୍ରାତୃଷ୍ପୁତ୍ରମାନେ ମୋତେ ଅନେକ ଅନୁରୋଧ କଲେ, ମୁଁ ତାହା ଶୁଣିଲି ନାହିଁ । ପୁଣି ବୈଷ୍ଣବମାନଙ୍କ ସଙ୍ଗରେ ବାହାରିଗଲି । ଏହା କହୁ କହୁ ସନ୍ନ୍ୟାସୀଙ୍କର ନୟନରୁ ଲୋତକ ଦୁଇବିନ୍ଦୁ ଗଡ଼ିପଡ଼ିଲା । ସନ୍ନ୍ୟାସୀ କହିଲେ, "ମୁଁ ଜନନୀଙ୍କ ବୃଦ୍ଧାବସ୍ଥାରେ କ'ଣ କଷ୍ଟ ଦେଇ ନାହିଁ ? ଏଥିରେ ମୋର ସଦ୍‌ଗତି ହେବ ମୁଁ ବୁଝିପାରୁ ନାହିଁ । ପୁତ୍ରବତ୍ସଳା ଜନନୀ ମୋର ଦୁଃଖରେ ଅଧୀରା ହୋଇ ମୃତ୍ୟୁମୁଖରେ ପତିତ ହେଲେ । ମୁଁ ଅଧମ ସ୍ୱର୍ଗସୁଖାଶା କରୁଛି । ଆହା ! ଜନନୀକି କାହୁଁ ପାଇବି ? ସ୍ୱର୍ଗ ସୁଖ ବା ମୋ ଭାଗ୍ୟରେ କାହିଁ ? ଗ୍ରାମରୁ ଫେରିବା ଉତ୍ତାରୁ ସଂସାର ପ୍ରତି ଆହୁରି ବିରାଗ ହେଲା, ଗୃହ ପ୍ରତି ଯେ କିଞ୍ଚିତ ମମତା ଥିଲା ତାହା ଏକାବେଳକେ ଅନ୍ତରିତ ହେଲା । ତଦବଧି ଆଉ ନିଜ ଗ୍ରାମକୁ ଯାଇ ନାହିଁ । ଭ୍ରାତୃଷ୍ପୁତ୍ରମାନଙ୍କର କି ଗତି ହେଲା ତାହା ମୋତେ ଜଣା ନାହିଁ । ସଂସାରରେ ମୁଁ କାହାର ନୁହେଁ, ମୋର କେହି ନାହାନ୍ତି । ଭାରତର ନାନା ସ୍ଥଳ ଦେଖିଅଛି । ନାନା ତୀର୍ଥ ପର୍ଯ୍ୟଟନ କରିଅଛି, ନାନା ଲୋକଙ୍କ ସହ ବାସ କରିଅଛି । ଏବେ ତୁମ୍ଭର ପ୍ରଶ୍ନସମୂହର ଉତ୍ତର ଶୁଣ । ତୁମ୍ଭେ ଯାହା କହିଲ ଆମ୍ଭମାନଙ୍କଠାରେ ସ୍ନେହ, ପ୍ରେମ, ଦୟା, ମମତା, ନାହିଁ, ତାହା ମିଥ୍ୟା ନୁହେଁ । ସଂସାର ସହିତ ଗାଢ଼ ସମ୍ପର୍କ ନ ରଖିବାରୁ ଏବଂ ସମସ୍ତଙ୍କୁ ବିରକ୍ତି ଚକ୍ଷୁରେ ଦେଖିଥିବାରୁ ହୃଦୟ କଠିନ ହୋଇଅଛି । ଏଣୁ ଶିଶୁର ସହାସ୍ୟ ମୁଖ ମଧୁର କଥା ମନକୁ କିଛିହିଁ ଆକର୍ଷଣ କରେ ନାହିଁ; ସମସ୍ତ ନିଜର ବୋଧ ହୁଏ । ଗୃହସ୍ଥର କରୁଣ କ୍ରନ୍ଦନ ଧ୍ୱନି ଆମ୍ଭମାନଙ୍କ ହୃଦୟରେ ପ୍ରବେଶ କରେ ନାହିଁ । ମୁଁ ଏହା ଅହରହ ଦେଖିଅଛି । ଆମ୍ଭେମାନେ ନିଜେ ଭିକ୍ଷାବୃତ୍ତି ଅବଲମ୍ବନ କରିଅଛୁଁ । ଆମ୍ଭମାନଙ୍କୁ ଭିକ୍ଷୁକ ଦେଖି ଅନ୍ୟ କୌଣସି ଭିକ୍ଷୁକ ଆମ୍ଭମାନଙ୍କୁ କେବେ କିଛି ମାଗନ୍ତି ନାହିଁ । କ୍ରମେ ଦେବା ଅଭ୍ୟାସ ଚାଲିଯାଏ । ଏଣୁ ଜଣେ କ୍ଷୁଧାର୍ତ୍ତର କ୍ଷୁଧା, ତୃଷାର୍ତ୍ତର ତୃଷାର କଷ୍ଟ ଆମ୍ଭେମାନେ ବୁଝିପାରୁ ନାହିଁ । କାହାରିକୁ ସାହାଯ୍ୟ କରିବା ପ୍ରବୃତ୍ତି ଭାବ ହୃଦୟରୁ ତିରୋହିତ ହୁଏ । ଏଣୁ ଆମ୍ଭମାନଙ୍କଠାରୁ କାହାରି ତିଳେ ହେଲେ ଉପକାର ଆଶା ନାହିଁ । ଆଜିଯାଏ କୌଣସି କ୍ଷୁଧାର୍ତ୍ତକୁ ବା ତୃଷାର୍ତ୍ତକୁ ଖାଦ୍ୟ ପାନ ଦେଇ ପରିତୋଷ କରିଅଛୁ ବୋଲି ସ୍ମରଣ ହେଉ ନାହିଁ । କିମ୍ବା ପରକୁ ତୃପ୍ତ କଲି ବୋଲି ଆନନ୍ଦ ଅନୁଭବ କରି ନାହିଁ । ଜୀବଜନ୍ତୁ ପ୍ରତି ଦୟା କରିବା ତ ତେଣେ ଥାଉ, ପଶୁ ପକ୍ଷୀ ସହିତ କୌଣସି ସମ୍ପର୍କ ନାହିଁ । ଏଣୁ ସେମାନଙ୍କ ପ୍ରତି ଗୋଟାଏ ସ୍ୱାଭାବିକ ଘୃଣାର ଭାବ ଆସେ । ସେମାନଙ୍କ ଦୁଃଖ କଷ୍ଟରେ ଆମ୍ଭମାନଙ୍କ ହୃଦୟରେ କୌଣସି ବେଦନା ହୁଏ ନାହିଁ । ପ୍ରାକୃତିକ ସୌନ୍ଦର୍ଯ୍ୟରେ ଆମ୍ଭେମାନେ ବିମୁଗ୍ଧ ନୋହୁଁ । ବାବା, ଅନେକଥର ତୁମ୍ଭଙ୍କୁ ଆକାଶ ଆଡ଼କୁ, ନକ୍ଷତ୍ରମାନଙ୍କୁ ଅନାଇ ଅନାଇ ରହିବାର ଦେଖିଅଛି । ମୁଁ ତାହା ବୁଝିପାରେ ନାହିଁ । ବାଲ୍ୟକାଳରେ ନକ୍ଷତ୍ରକୁ ଚନ୍ଦ୍ରକୁ ସୂର୍ଯ୍ୟକୁ ଦେଖି ଯେ ଆନନ୍ଦ ଅନୁଭୂତ ହେଉଥିଲା ଏବେ ତାହା ହୁଏ ନାହିଁ । ତୁମ୍ଭଙ୍କୁ କେବେ କେବେ ସେପରି

ଅନାଇବାର ଦେଖି ମନେ କରେ ଯେ ତୁମ୍ଭେ ବାଲ୍ୟ ସଂସ୍କାର ସମ୍ପୂର୍ଣ୍ଣ ରୂପେ ତିରୋହିତ ହୋଇ ନାହିଁ । ଏଣୁ ବୁଝିଲି, ତାହା ନୁହେଁ, ତୁମ୍ଭେ ପ୍ରକୃତିର ଆରାଧନାରେ ବ୍ୟାପୃତ— ଆମ୍ଭେମାନେ ପ୍ରକୃତି ବିରୋଧ କାର୍ଯ୍ୟ କରିବାରୁ ପ୍ରକୃତି ମଧ ଆମ୍ଭମାନଙ୍କ ପ୍ରତି ବିରକ୍ତ । ଏଣୁ ଏହି ସ୍ୱଚ୍ଛ ଜଳଧାର, ଶ୍ୟାମଳ ତୃଣଲତା, କୋମଳ ପୁଷ୍ପ, ଅନନ୍ତନଭ ମଣ୍ଡଳ, ଅସଂଖ୍ୟ ନକ୍ଷତ୍ର, ପୂର୍ଣ୍ଣଚନ୍ଦ୍ର, ବାଳସୂର୍ଯ୍ୟ କେହି ଆମ୍ଭମାନଙ୍କ ମନକୁ ଆକର୍ଷଣ କରିପାରନ୍ତି ନାହିଁ । ଯେଉଁମାନେ ପ୍ରକୃତି ମହିମାରେ ମୁଗ୍ଧ, ସେମାନେ ଧନ୍ୟ । ବାବା । କି ଅମୂଲ୍ୟ ଆରାଧନା ହରାଇ ବସିଅଛି । ଲୋକେ ଆମ୍ଭମାନଙ୍କୁ ନିର୍ଲୋଭ ବୋଲନ୍ତି । ବାବା, ମୁଁ ନିର୍ଲୋଭ ନୁହେଁ, ଲୋଭ ଯଥେଷ୍ଟ ଅଛି । ଯେ ଯାହା ଦେଲା ତାହା ଅମ୍ଳାନ ବଦନରେ ଗ୍ରହଣ କରିଅଛି । ପ୍ରୟୋଜନ ଥାଉ ବା ନ ଥାଉ ଅନେକ ସମୟରେ ଅନେକ ପଦାର୍ଥ ମାଗି ନେଇଅଛି । ଯଦିବା ମୁଁ ଲେଙ୍ଗୁଟି ପିନ୍ଧିଅଛି, ତଥାପି ମୋଠାରେ ଯେ କିଛି ନାହିଁ ଏବଂ ତାହା ଯେ ନିତାନ୍ତ କମ୍ ତାହା ନୁହେଁ । ଏହାଛଡ଼ା ମୋର ମହାପ୍ରଭୁ ନିମନ୍ତେ ଅନେକ ଅଳଙ୍କାର ଓ ବାସନ ପ୍ରଭୃତି ସଂଗ୍ରହ କରିଅଛି । କାହାରି ଭରଣ ପୋଷଣ କରିବାକୁ ହେବ ନାହିଁ ତଥାପି ଭିକ୍ଷା ଦ୍ୱାରା ଅର୍ଥ ଓ ପଦାର୍ଥ ସଂଗ୍ରହ କରିଅଛି । କ୍ରୋଧରତ ସୀମା ନାହିଁ । ବୋଧ ହୁଏ ଗୃହସ୍ଥମାନେ ମଧ ଏପରି କ୍ରୋଧୀ ନ ଥିବେ । ଆମ୍ଭମାନଙ୍କର ବୃଥା କ୍ରୋଧ, କେହି ଖାଇବାକୁ ନ ଦେଲେ କ୍ରୋଧ ଓ ଅଭିଶାପ । ଯଦି କଥାର ମୂଲ୍ୟ ଥାନ୍ତା, ତା'ହେଲେ ମୋର କ୍ରୋଧରେ କେତେ ଲୋକ ନିର୍ବଂଶ ହୋଇଥାନ୍ତେ । କେତେ ଲୋକର ଗୃହଦାହ ହୋଇଥାନ୍ତା । ତାହା କହିପାରିବି ନାହିଁ । କେବଳ ତାହା ନୁହେଁ, ସମୟ ସମୟରେ ଆପଣା ଇଷ୍ଟଦେବତାକୁ ମଧ କୁତ୍ସିତ ଗାଳି ଦେଇଅଛି । ଆଜି ମୋ କଥା ନ ଫଳିଲେ ଶଳା ନାରାୟଣ ଠାକୁରକୁ ବିଷ୍ଠାରେ ପକାଇ ଦେବି ବୋଲି କହିଅଛି । ବାବା ଏଥିରୁ ବଳ ଆଉ କ୍ରୋଧୀ କିଏ ଅଛି ? ମୁଁ କେବଳ ନୁହେଁ, ଆମ୍ଭ ଦଳର ପ୍ରାୟ ସମସ୍ତେ ଏହିପରି କ୍ରୋଧୀ । ନିଜ ଦଳ ମଧରେ ଦଙ୍ଗା ହେଙ୍ଗାମା ତ ପ୍ରାୟ ସର୍ବଦା ଘଟିଥାଏ । ମମତା ଲୋକ ପ୍ରତି ନାହିଁ । ଆପଣା ଜାତି ପ୍ରତି ନାହିଁ, ମାତ୍ର ଶାଳଗ୍ରାମ ପ୍ରତି, ରାମଙ୍କ ପ୍ରତି, ଗୋପାଳଜୀ ପ୍ରତି । ତାଙ୍କ ନିମନ୍ତେ ମାଳି, ପାଟ, ଧନୁ, ଏଣୁ ତେଣୁ ନାନା ପଦାର୍ଥ ସଂଗ୍ରହ କରିବା, କ୍ରୟ କରିବା, ଯାହା ଯେଉଁଠାରେ ମାଗିବା, ତାହା ମାଗିବାର ବେଶ ଅଭ୍ୟାସ ଅଛି । ଦୈବକ୍ରମେ କେବେ କିଛି ହଜିଗଲେ ବା ଚୋର ନେଲେ ଲୋତକବର୍ଷଣ କରି ନାହିଁ, ବା ପ୍ରତିକାର ଅନ୍ୱେଷଣ କରି ନାହିଁ, ଏପରି ନୁହେଁ । ଗୃହ ତ୍ୟାଗକଲା ମାତ୍ରକେ ବା ବୈଷ୍ଣବ ବୋଲି ପରିଚୟ ଦେଲା ମାତ୍ରକେ ଯେ କାମ ପ୍ରବୃତ୍ତି ଅନ୍ତର ହୋଇଥିଲା ତାହା ନୁହେଁ । ଦେଶ ପର୍ଯ୍ୟଟନ ପ୍ରଭୃତି ଦ୍ୱାରା ସେ ଆଶକରୁ ଅନ୍ତର ରହିବାକୁ ପଡ଼ିଲା । କ୍ରମେ ତାହାର ଚିନ୍ତା ଦୂରହେଲା । ତେବେ କେବେ କେବେ ଯେ ସେ ପ୍ରବୃତ୍ତିର ଉଦ୍ରେକ ହୋଇ ନ ଥାଏ ଏମନ୍ତ ନୁହେଁ ଅବସର ଓ ସୁବିଧା ମିଳିଲେ ସେ ପ୍ରବୃତ୍ତିର ଚରିତାର୍ଥ ନିମନ୍ତେ ଅଗ୍ରସର ହୋଇ ନ ଥାନ୍ତି— ଏପରି କହିପାରୁ ନାହିଁ କିନ୍ତୁ ଯାହା ହେଉ ଭାଗ୍ୟକ୍ରମେ ମୁଁ ସେ ଦୋଷରେ କଳଙ୍କିତ ହୋଇ ନାହିଁ । ଜୀବନରେ ନିଜେ ଜୀବ ହତ୍ୟା କରି ନାହିଁ । ତେବେ କହିବାକୁ ଗଲେ ତହିଁରୁ ମଧ ନିଷ୍କୃତି ପାଇ ନାହିଁ । ମୃଗଚର୍ମ୍ମ ଅନେକ ସଂଗ୍ରହ କରିଅଛି, ଅନେକ ଲୋକଙ୍କୁ ମୃଗ ମାରିବାକୁ ପ୍ରବୃତ୍ତ ଦେଇଅଛି । ସୁତରାଂ କହିବାକୁ ଗଲେ ଏହାହିଁ ଜୀବହିଂସା । ତେବେ ରାମଚନ୍ଦ୍ର ପ୍ରଭୃତି ମୃଗ ମାରୁଥିଲେ, ଏହି ଧାରଣା ଥିବାରୁ ମୃଗ ମାରିବା ଦୋଷାବହ ନୁହେଁ ବୋଲି ମନେକରୁଁ । ଏକା କାର୍ଯ୍ୟ ସଂସ୍କାରାଧୀନ ହୋଇ ପାପ ଶୂନ୍ୟ ବୋଲି ମନେ କରୁଅଛୁଁ । ବାବା ଗୃହତ୍ୟାଗୀ ହୋଇ ସୁଦ୍ଧା ଅଧିକତର ରୂପେ ମୋହ ମମତାରେ ଜଡ଼ିତ ହୋଇଅଛି । ଦୟା ପ୍ରେମ ପ୍ରଭୃତି ପ୍ରାକୃତିକ ସଦ୍‌ଗୁଣନିଚୟ ହୃଦୟରୁ ବିସର୍ଜନ ଦେଇଅଛି, କର୍ତ୍ତବ୍ୟ କାର୍ଯ୍ୟରୁ ଭ୍ରଷ୍ଟ ହୋଇଅଛି; ସ୍ୱାର୍ଥପର ହୋଇ କାର୍ଯ୍ୟ କରୁଅଛି । କେବଳ ସାଧୁସଙ୍ଗ କଲେ ରାମନାମ ନେଲେ ବୈକୁଣ୍ଠରେ ବସିବି, ଏହି ଆକାଶ କୁସୁମ ତୋଳିବାକୁ ଯାଇ କର୍ତ୍ତବ୍ୟ ପଥ ଭୁଲିଅଛି । ଆଜି ବୁଝିପାରିଲି, ଆମ୍ଭମାନଙ୍କ ଅବଲମ୍ବିତ ପନ୍ଥା ନିରର୍ଥକ ଓ ସ୍ୱାର୍ଥପରତାପୂର୍ଣ୍ଣ । ଆପଣା ପେଟ ପାଇଁ ଓ ଭବିଷ୍ୟତ ବୃଥା ଆଶା ଉପରେ ନିର୍ଭର ରଖି ଘାଣ୍ଟି ହେଉଅଛି । ମୁଁ ଆଜି ଯାଏ ଅନ୍ଧବିଶ୍ୱାସରେ ଜଡ଼ିତ ଥିଲି । ବେଶ ଶିକ୍ଷା ପାଇଲି ଆଜିଠାରୁ ଅନ୍ୟ ପନ୍ଥା ଅବଲମ୍ବନ କରିବି । ମୋର ଶିଷ୍ୟଗଣଙ୍କଠାରୁ ବିଦାୟ ନେବି, ମୋର ଧର୍ମଠାରୁ ବିଦାୟ ନେବି । ବାବା ମନରେ କିଛି ବିଚାର କରିବ ନାହିଁ । ଆରବର୍ଷ ଏଠାକୁ ଆସିଲେ ମୋର ବିଶେଷ ପରିବର୍ତ୍ତନ ଦେଖିପାରିବ । ବାବା ତୁମ୍ଭର ବୁଦ୍ଧି ସନ୍ମାର୍ଗରେ ପ୍ରଧାବିତ ହେଉ, ପରୋପକାର ବ୍ରତରେ ବ୍ରତୀ ହେଉ ଏବଂ ତୁମ୍ଭେ ସମାଜର ଉପକାର କର । ତୁମ୍ଭଠାରୁ ବିଦାୟ ହେଲି ।

ଏହି କହି ସନ୍ନ୍ୟାସୀ ଗାତ୍ରୋତ୍ତଳନ କଲେ । ଯୁବକ ଅଶ୍ରୁପୂର୍ଣ୍ଣ ଲୋଚନରେ କ୍ଷମା ପ୍ରାର୍ଥନା କଲେ— ସନ୍ନ୍ୟାସୀଙ୍କ ପଦ ଧାରଣ କରି ପ୍ରଣାମ କଲେ । ସନ୍ନ୍ୟାସୀ ଯୁବକଙ୍କ ମୁଖ ଚୁମ୍ବନ କଲେ ଏବଂ କୁକୁର ମସ୍ତକରେ ହସ୍ତ ବୁଲାଇ ସେଠାରୁ

ପ୍ରସ୍ଥାନ କଲେ । ଯୁବକ ପ୍ରପାତ ଆଡ଼କୁ ଅନାଇ ରହିଲେ । ନୟନରୁ ଲୋତକଧାରା ପ୍ରପାତର ଧାରା ପ୍ରାୟ ବୋହିବାକୁ ଲାଗିଲା । କୁକୁର ଦିଓଟି ପ୍ରଭୁର କାରୁଣ୍ୟପୂର୍ଣ୍ଣ ମୁଖ ଦେଖି ବିଷଣ୍ଣହେଲେ । ଯୁବକ ଗୃହକୁ ଫେରିଲେ । ଆଉ ଦିନ ଯୁବକ ସନ୍ନ୍ୟାସୀଙ୍କର ଆଉ ଦେଖାପାଇଲେ ନାହିଁ ।

•

## ମିଥ୍ୟା ଅଭିଯୋଗ

ଆଜି ରାତି ନ ପାହୁଣୁ ନିଦ ଭାଙ୍ଗିଗଲା । କ୍ରମେ ନକ୍ଷତ୍ରଗୁଡ଼ିକ ନିଷ୍ପ୍ରଭ ହେଲେ । କ୍ରମେ ପୂର୍ବାକାଶ ରକ୍ତାଭ ଧାରଣ କଲା । ମୁଁ ଗୃହ ତ୍ୟାଗ କରି ପୋଖରୀକି ସ୍ନାନ କରିବାକୁ ଗଲି । ସ୍ନାନ ଓ ସନ୍ଧ୍ୟା ଶେଷକରି ପୋଖରୀରୁ ତୋଳିଥିବା ପଦ୍ମପୁଷ୍ପଗୁଡ଼ିକ ଧରି ପୋଖରୀ ନିକଟସ୍ଥ ଉଦ୍ୟାନରୁ ପୁଷ୍ପ ତୋଳି ବସିଲି । ଆଜି ଜନ୍ମାଷ୍ଟମୀ, ଶ୍ରୀକୃଷ୍ଣଙ୍କ ଜନ୍ମ, ଏଣୁ ବେଶି ଫୁଲ ଲୋଡ଼ା । ବାଛି ବାଛି ଫୁଲ ତୋଳିବାକୁ ଆରମ୍ଭ କଲି । ମୁଁ ଯେତିକି ଫୁଲ ତୋଳିଲି ମନ ତେତିକି ବଳିଲା । ବଗିଚା ଛାଡ଼ିଯିବାକୁ ମନ ବଳିଲା ନାହିଁ । ଫୁଲ ତୋଳୁଅଛି, ପଛ ଆଡୁ ଉମାକାନ୍ତବାବୁ ଡାକଦେଲେ ''ପଣ୍ଡିତେ ପଣ୍ଡିତେ ଏ କ'ଣ ? ଜୀବହତ୍ୟା, ଭ୍ରୂଣହତ୍ୟା, ଶିଶୁହତ୍ୟା ।'' ମୁଁ କହିଲି ''ରାମ ରାମ, ଏକି କଥା ବାବୁ ! ଆଜି ଜନ୍ମାଷ୍ଟମୀ, ମୋର ଉପବାସ, ଆଜି କି ଦୁର୍ଯୋଗ, ମୁଁ ଏପରି କଥା ଆପଣଙ୍କ ମୁଖରୁ ଶୁଣିଲି । ଆପଣ କାହିଁକି ଏପରି କଥା ମୁହଁକୁ ଆଣିଲେ ? ମୁଁ ବୃଦ୍ଧ, ପଣ୍ଡିତ ବ୍ରାହ୍ମଣ । ମୁଁ ଏ ପାପରେ କାହିଁକି ଲିପ୍ତ ହେବି ? ବୁଝାଇ କହ ବାବୁ, ବୁଝାଇ କହ ।

ଉମା— ପଣ୍ଡିତେ ଅନେକ ଫୁଲ ସଂଗ୍ରହ କରିଅଛନ୍ତି ଯେ ? ଏତେ ଫୁଲର ପ୍ରୟୋଜନ କଣ ?

ମୁଁ କହିଲି ଆଜି ଶ୍ରୀକୃଷ୍ଣ ଜନ୍ମ । ଏଣୁ ମନ ସନ୍ତୋଷରେ ପୂଜା କରିବି । ଗୋପାଳଙ୍କୁ ଫୁଲ ଚଢ଼ାଇବି, ଏଣୁ ପଦ୍ମଫୁଲ ଆଣିଅଛି, ଏ ବଗିଚାରୁ ଫୁଲ ନେଉଅଛି । ପୁଣ୍ୟ ସଂଗ୍ରହ ନିମନ୍ତେ ଫୁଲ ସଂଗ୍ରହ ।

ଉମା— କାଳ୍ପନିକ ପୁଣ୍ୟ ଅର୍ଜନ ନିମନ୍ତେ ଗୋଟିଏ ପାପ ଅର୍ଜନରେ ଫଳ କଣ ? ଚୋରି ନ କରି ପୂଜା କରାଯାଇ ପାରନ୍ତା ନାହିଁକି ?

ଏହା ଶୁଣି ମୋର ଆପାଦମସ୍ତକରେ ଶତ ବୃଶ୍ଚିକ ଦଂଶନର ଯନ୍ତ୍ରଣା ଅନୁଭୂତ ହେବାକୁ ଲାଗିଲା । ମୁଁ କହିଲି ''ଏକି ଅନ୍ୟାୟ କଥା । ପୁଣ୍ୟ ଅର୍ଜନ ନିମନ୍ତେ ମୁଁ କେଉଁ ପାପ କଲି ? ମୁଁ କେବେ ଚୋରିକଲି ? ଆପଣ ବିଜ୍ଞଲୋକ ହୋଇ ଏପରି ଅଯଥା ତିରସ୍କାର କରୁଅଛନ୍ତି ?''

ଉମାକାନ୍ତବାବୁ କହିଲେ— 'ପଣ୍ଡିତେ' ରାଗ କାହିଁକି ? ଆଜି ପରା ପୁଣ୍ୟ ଦିବସ ଉପବାସ, କ୍ରୋଧ କଲେ ଯେ ଦୋଷ, ପାପ ତାହା ଭୁଲିଗଲେ କି ?

ପଣ୍ଡିତ— ବାବୁ ! ଆପଣ ମୋତେ ଚୋର ବୋଲି ଯେ ଅପବାଦ ଦେଲେ ମୁଁ ରାଗିବି ନାହିଁ କିପରି ? ମୁଁ କେବେ ଚୋରି କଲି ?

ଉମା— ପଣ୍ଡିତେ, ଏ ବଗିଚା କାହାର ? ଏ ଫୁଲ କାହାର ? ଆପଣ କାହା ଅନୁମତିରେ ଫୁଲ ତୋଳୁଅଛନ୍ତି ?

ପଣ୍ଡିତ— ଏଥିକି ମୁଁ ଚୋର ! ରମଣୀମାନଙ୍କ କେଶପାଶ ସୁଶୋଭିତ କରିବା ନିମନ୍ତେ, ବକ୍ଷସ୍ଥଳରେ ମାଳ ଲମ୍ୱାଇବା ନିମନ୍ତେ, ରସିକରାଜମାନେ କେତେ କେତେ ଫୁଲ ନେଉନାହାନ୍ତି ? ସେମାନେ ଚୋର ନୋହିଲେ, ମୁଁ ମହାପ୍ରଭୁଙ୍କ ପୂଜା ନିମନ୍ତେ କିଛି ଫୁଲ ନେଲି ବୋଲି ମୁଁ ହେଲି ଚୋର । ଧନ୍ୟ ବିଚାର । କାଳର ବିଚିତ୍ର ଗତି ।

ଉମା— ହେଲା, ଯେଉଁମାନେ ଉଦ୍ୟାନାଧିକାରୀର ବିନାନୁମତିରେ ରମଣୀଙ୍କ ମନ ତୁଷ୍ଟି ନିମନ୍ତେ ପୁଷ୍ପ ନିଅନ୍ତି, ସେମାନେ ଚୋର, ଏହା କହିଲେ ତ ଆପଣ ଅପରାଧରୁ ଅବ୍ୟାହତି ପାଇବେ ନାହିଁ ? ହେଲବା ସେମାନେ ଫୁଲ ନ ନେଲେ ସେମାନଙ୍କର ଅଭୀଷ୍ଟସିଦ୍ଧି ହେବାର ଉପାୟାନ୍ତର ନାହିଁ । ସୁତରାଂ ସେମାନେ ଏ କାର୍ଯ୍ୟ ସାଧନ ନିମନ୍ତେ ଚୋରି କଲେ, ମାତ୍ର ଆପଣ ଯେ ନିଷ୍ପ୍ରୟୋଜନରେ ଦେବତାଙ୍କ ଦୁହାଇ ଦେଇ ଚୋରି କରୁଅଛନ୍ତି । ଫୁଲ ନୋହିଲେ ଆପଣଙ୍କ ଦେବତା ଅସନ୍ତୁଷ୍ଟ ହେବେ କି ? ସ୍ୱତ୍ୱାଧିକାରୀର ବିନାନୁମତିରେ କୌଣସି ସ୍ଥାନର ପଦାର୍ଥ ସ୍ଥାନାନ୍ତର କଲେ ଚୋରି ବୋଲାଯାଏ, ଏହା କ'ଣ ଆପଣଙ୍କୁ ଜଣାନାହିଁ ?

ପଣ୍ଡିତ— ଆଧୁନିକ ଆଇନର ଧାରାରେ ଆମ୍ଭମାନଙ୍କର ଯାଏ ଆସେ କେତେ ? ଈଶ୍ୱରାଧନା ନିମନ୍ତେ ଫୁଲ ନେଲେ କୌଣସି ଦୋଷ ନାହିଁ । ଏଥିରେ ସ୍ୱତ୍ୱାଧିକାରୀଙ୍କର ଅନୁମତି ଅଛି ।

ଉମା— କି ମିଥ୍ୟା କଥା ଏପରି ମିଥ୍ୟାବାଦୀ ?

ମୁଁ କହିଲି, ମୁଁ କେବେ କାହାକୁ ପଞ୍ଚରେ କି କଚେରିରେ ମିଥ୍ୟା କଥା କହି ବୁଡ଼ାଇ ଅଛି ଯେ, ଆପଣ ମୋତେ ମିଥ୍ୟାବାଦୀ ବୋଲି ଅଛନ୍ତି ?

ଉମା— ପଣ୍ଡିତେ, ରାଗିଲେ କ'ଣ ହେବ ? ଛୋଟ ହେଉ ବା ବଡ଼ ହେଉ ମିଥ୍ୟା ତ । ଆପଣ ସତ୍ୟ ସତ୍ୟ କି ସ୍ୱତ୍ୱାଧିକାରୀଙ୍କ ଅନୁମତି ପାଇଅଛନ୍ତି ? ବୃଥା କାର୍ଯ୍ୟରେ ପିଲା ଖେଳପରି ପର ପଦାର୍ଥ କି ନଷ୍ଟ କରିବା କି ବୁଦ୍ଧିମାନ୍‌ର କାର୍ଯ୍ୟ ?

ପଣ୍ଡିତ—ଓହୋ, ଫୁଲ ପୁଣି ପଦାର୍ଥ । ଆମ୍ଭର ଦେବତା ପୂଜା ପୁଣି ପିଲାଖେଳ । ଧନ୍ୟ ଧନ୍ୟ ତୁମ୍ଭର ବୁଦ୍ଧି । ଧନ୍ୟ ଧନ୍ୟ ତୁମ୍ଭର ଶିକ୍ଷା ।

ପୁଣି ଉମାକାନ୍ତବାବୁ କହିଲେ ଏତେଗୁଡ଼ାଏ ଫୁଲରେ କ'ଣ ହେବ ?

ପଣ୍ଡିତ—କୃଷ୍ଣ ପୂଜା । ଶାଳଗ୍ରାମ ପୂଜା ।

ଉମା— ଏଗୁଡ଼ିକ କାହିଁରେ ନିର୍ମିତ ?

ପଣ୍ଡିତ— ହିନ୍ଦୁର ସନ୍ତାନ, ଏହା ମଧ ଜଣା ନାହିଁ । ରାଧାକୃଷ୍ଣ ଧାତବ ମୂର୍ତ୍ତି ଅର୍ଥାତ୍ ପିତଳ ପ୍ରତିମା; ଶାଳଗ୍ରାମ ତ ଶିଳା ।

ଉମା— ମାଟି, ପିତଳ, ପଥର ପୂଜା ନ କରି କି ଅନ୍ୟ ପ୍ରକାର ପୂଜା ହୋଇ ନ ପାରେ ? ପିତଳ, ପଥର ପୂଜା କ'ଣ ମୁକ୍ତିର ପନ୍ଥା ?

ମୁଁ କହିଲି ସନାତନ ଧର୍ମ ଉଚ୍ଛନ୍ନ ହେବାକୁ ବସିଲା । ପୂର୍ବପୁରୁଷଗଣ ଯେଉଁ ପନ୍ଥା ଉଦ୍‌ଭାବନ କରିଥିଲେ ତାହା ଆପଣମାନଙ୍କ ପରି ଲୋକେ ଉଚ୍ଛନ୍ନ କରିବାକୁ ବସିଅଛନ୍ତି । ଆପଣମାନେ ଧର୍ମର କଥା କ'ଣ ଜାଣନ୍ତି ? ଆମ୍ଭମାନଙ୍କର ମୂର୍ତ୍ତିର ପୂଜା ମୁକ୍ତିର ପନ୍ଥା ନୁହେଁ— ଆପଣମାନଙ୍କର ନାସ୍ତିକତା ମୁକ୍ତିର ପନ୍ଥା । ଆମ୍ଭମାନଙ୍କ ଶାସ୍ତ୍ର କ'ଣ ନାହିଁ । ଏ ଧର୍ମରୁ ବଳି କି ଧର୍ମ ଅଛି ? ମୁକ୍ତି କି ସୁନ୍ଦର ସୋପାନ । କ୍ରମେ କ୍ରମେ ଆରୋହଣ କରି ସେହି ପରଂବ୍ରହ୍ମରେ ଲୀନ ହେବାର ଉପାୟ କି ଅନ୍ୟ ଧର୍ମରେ ଅଛି ? ଅଚିନ୍ତ୍ୟ ଅବ୍ୟକ୍ତ ସନାତନକୁ ପ୍ରଥମରୁ ଧାରଣା କରିପାରିବା ଅସମ୍ଭବ । ଏଣୁ ପ୍ରତିମା ପୂଜା ଦ୍ୱାରା ଉତ୍ତରୋତ୍ତର ସୋପାନ ଆରୋହଣ କରିବା ଉଚିତ । ଏ ପନ୍ଥାରେ ପଥିକ ହୁଅ, ଧର୍ମ ଆଲୋଚନା କର, ସବୁ ଜାଣିପାରିବ ।

ଉମା— ଭଲ କଥା ପଣ୍ଡିତେ । ପ୍ରତ୍ୟହ ଆପଣ କାହାର ପୂଜା କରନ୍ତି, କାହାର ଧାନ କରନ୍ତି ?

ମୁଁ କହିଲି ପରମବ୍ରହ୍ମଙ୍କର ।

ଉମା— ଧାନଟି ଅନୁଗ୍ରହ କରି ଆବୃତ୍ତି କରିବେ କି ? ଏବଂ ପୂଜାର ଗୋଟିଏ ଯୋଡ଼ିଏ ମନ୍ତ୍ର ବୋଲିବେ କି ?

ପଣ୍ଡିତ— ଉଦ୍ୟତ୍ ପ୍ରଦ୍ୟୋତ ନଶତରୁଚିଂ ତପ୍ତହେମା ବଦାତଂ
ପାର୍ଶ୍ୱଦ୍ୱନ୍ଦେ, ଜଳଧିସୁତୟା ବିଶ୍ୱଧାତ୍ର୍ୟାଚ ଜୁଷ୍ଟଂ ।
ନାନାରତ୍ନୋଲ୍ଲସିତବିବିଧା କଳ୍ପମାପୀତ ବସ୍ତ୍ରଂ
ବିଷ୍ଣୁ ବନ୍ଦେ ଦରକମଳ କୌମୋଦକୀ ଚକ୍ରପାଣିଂ
ଶାଲ୍ୟାନ୍ନଂ ସଘୃତଂ ପୟୋଦଧି ଯୁତଂ ରମ୍ଭାଫଳଂ ପାୟସଂ ।

ଉମା— ପଣ୍ଡିତେ, ଓହୋ । କି ପ୍ରବଞ୍ଚନା, କି ଠକପଣିଆ । ମୁହଁରେ କହୁଅଛନ୍ତି ପରମବ୍ରହ୍ମଙ୍କ ଉପାସନା କରେ ବୋଲି, ଧାନ କରେ ବୋଲି, ଯାହାଙ୍କୁ ଦେବତା ବୋଲି ସମ୍ମୁଖରେ ରଖି ଆରାଧନା କରୁଅଛନ୍ତି, ତାଙ୍କର ରୂପଗୁଣ କି ପ୍ରକାରେ ? ନୈବେଦ୍ୟ ତ ଟିକିଏ ଗୁଡ଼,ନୋହିଲେ ଗଣ୍ଡିଏ ଉଖୁଡ଼ା, କିମ୍ବା ଚୌପଦିଏ ଉସୁନା ଭାତ । ଶାଲ୍ୟନ୍ନ କାହିଁ ଘିଅ, ଦହି, ଦୁଧ କାହିଁ ? ଓ ହୋ । ଦେବତାଙ୍କୁ ମଧ ଠକିବାକୁ ଛାଡୁନାହାନ୍ତି । ହେଉ ହେଉ ଆପଣଙ୍କର ବୟସ କେତେ ?

ପଣ୍ଡିତ— ପ୍ରାୟ ୫୦ ବର୍ଷ ।

ଉମା— ଆପଣ କେତେ ବର୍ଷ ବଞ୍ଚିବାର ଆଶା କରନ୍ତି ?

ପଣ୍ଡିତ— କଳିଷଠା ଷାଠିଏ ଆଉ କେତେ ?

ଉମା— ତେବେ ବୋଧହୁଏ, ଆପଣ ମୁକ୍ତିର ଶେଷ ସୋପାନକୁ ଆରୋହଣ କରିବାକୁ ଆଉ ଅଳ୍ପ ବାକି ରଖିଅଛନ୍ତି । ଆପଣ କେତେ ପାହଚ ଉଠିଲେଣି ?

ପଣ୍ଡିତ— ପାହାଚ କ'ଣ ?

ଉମା— ଆପଣ ଯେ ପୂର୍ବେ କହିଲେ, କ୍ରମେ କ୍ରମେ ଧର୍ମର ସୋପାନ ଆରୋହଣ କରାଯାଏ ଏବଂ ମୂର୍ତ୍ତିପୂଜା ମୁକ୍ତିର ସୋପାନ । ଆପଣ ଯେବେ ୫୦ ବର୍ଷରେ ମୁକ୍ତି ପାହାଚର ଏକ ପଞ୍ଚମାଂଶ ଆରୋହଣ କରି ନାହାନ୍ତି, ତା'ହେଲେ ଏହି ଧାତବ ଓ ମୂର୍ତ୍ତିପୂଜା କରୁ କରୁ ପ୍ରାଣ ଯିବ । ପରମ ବ୍ରହ୍ମ କାହିଁ ? ଆଉ ଆପଣ କାହାନ୍ତି ?

ମୁଁ ତ ମୁଣ୍ଡ ଆଉଁସୁ ଥିଲି, ପୁଣି ଉମାକାନ୍ତବାବୁ କହିଲେ— ପଣ୍ଡିତେ ଗ୍ରାମର ଛୋଟ ପାହାଡ଼ ଦେଖି ଆପଣ ତୁଷାରଧବଳ ହିମାଳୟର ଧାରଣା କରିପାରନ୍ତି କି ? ଗ୍ରାମ ପୁଷ୍କରିଣୀରୁ ଅନନ୍ତ ସାଗର କଳ୍ପନା ହୃଦୟରେ ସ୍ଥାନ ପାଏ କି ? ବିସ୍ତୃତ ବନାନୀ, ଅନନ୍ତ ଜଳରାଶି, ଅସଂଖ୍ୟ ତାରକା, ଅନନ୍ତ ଆକାଶରୁ ଯେବେ ମହୀୟସୀ ଶକ୍ତି ଅନୁଭବ କରିପାରୁ ନାହାନ୍ତି, ସାମାନ୍ୟ ଜଡ଼ ପ୍ରତିମାକୁ ବୃଦ୍ଧି କରି କରି କେବେ

ହେଲେ ଅନ୍ତରରେ ମିଶାଇ ପାରିବେ କି ? ଏହି ମହାଭ୍ରମ ଆପଣଙ୍କର ଇହଜୀବନରେ ଦୂର ହେବ ନାହିଁ ।

ପଣ୍ଡିତ— ତେବେ କ'ଣ ବାବୁ ଚକ୍ଷୁ ମୁଦ୍ରିତ କରି ଈଶ୍ୱର ଈଶ୍ୱର ବୋଲି ଡାକିଲେ ମୁକ୍ତି ପାଇବି ?

ଉମା— ଏହା ଶତ ଗୁଣେ ଭଲ । ଏଥିରେ ମୁକ୍ତି ହେବ କି ନୋହିବ ମୁଁ କହି ନ ପାରେ । ତେବେ ଏଥିରେ ତ ଠକପଣିଆ କି ପ୍ରତାରଣା କିଛି ନାହିଁ । ଆଚ୍ଛା ଏହା ନୋହିଲେ ଆପଣ ଯେବେ କୃଷ୍ଣରସାପ୍ଲୁତ, ତେବେ ଆପଣ ଅନ୍ୟ ପ୍ରକାରେ କୃଷ୍ଣଙ୍କୁ ଆରାଧନା କରିପାରନ୍ତି ନାହିଁ କି ?

ପଣ୍ଡିତ— ଆପଣ ପୁଣି ଧର୍ମୋପଦେଷ୍ଟା ହେଲେଣି ଏହା ତ ମୋତେ ଜଣା ନାହିଁ । କହ ହେଲେ ଶୁଣିବ ।

ଉମା—ଏହି ପୁଷ୍ପୋଦ୍ୟାନକୁ ଯଦି ବୃନ୍ଦାବନ ଭାବିନିଅନ୍ତେ ଆପଣଙ୍କର ପୁସ୍ତକର ବର୍ଣ୍ଣନା ଅନୁସାରେ ଗୋଟିଏ କୃଷ୍ଣ ଓ ରାଧା ଭାବି ନିଅନ୍ତୁ, ଆପଣ ନିଜକୁ ଶ୍ରୀଦାମ ବା ସୁଦାମ ପ୍ରାୟ ଭକ୍ତ ଭାବି ନିଅନ୍ତୁ, ଏବଂ ବୃକ୍ଷାନ୍ତରାଳରେ ଦଣ୍ଡାୟମାନ ରହି ସେହି ରାଧା କୃଷ୍ଣଙ୍କର ବୃନ୍ଦାବନ ଲୀଳା ଅବଲୋକନ କରନ୍ତୁ । କୃଷ୍ଣଙ୍କ ସମୟରେ ଗୋଲାପ ଫୁଲ ନ ଥିଲା, ଗୋଲାପ ଫୁଲ ପାଇଲେ କୃଷ୍ଣ ଅଶୋକ, ମାଧବୀ, ଏମନ୍ତ କି ପଦ୍ମକୁ ମଧ ଭଲପାନ୍ତେ ନାହିଁ । ଭଲ ଗୋଲାପ ଫୁଲ ନିମନ୍ତେ ରାଧା କୃଷ୍ଣଙ୍କୁ ଅନୁରୋଧ କଲେ ବଛା ବଛା ଫୁଲ ତୋଳିବାରେ ବ୍ୟସ୍ତ ରହନ୍ତେ ଏବଂ କୃଷ୍ଣ ଟିକିଏ ଅନ୍ତର ହେଲେ, ରାଧା କୌତୁକ ଦେଖିବାକୁ ବୃକ୍ଷାନ୍ତରାଳରେ ଲୁଚିଯାନ୍ତେ । ଏଣେ କୃଷ୍ଣ ଫୁଲ ତୋଳିଆଣି ରାଧାଙ୍କୁ ନ ଦେଖି ଅସ୍ତ ବ୍ୟସ୍ତ ହୋଇ ଖୋଜିଲା ବେଳେ ରାଧା ପୁଣି ଏକ ବୃକ୍ଷାନ୍ତରାଳରୁ ଅନ୍ୟ ବୃକ୍ଷାନ୍ତରାଳକୁ ପଳାଇଥାନ୍ତେ । କୃଷ୍ଣ ରାଧା ବିରହରେ କାତର ଭାବରେ ଡାକୁଥାନ୍ତେ । ଆପଣ ଭକ୍ତ, ଆପଣ ମଧ ରାଧା ଅନ୍ୱେଷଣରେ ବ୍ୟସ୍ତ ରହନ୍ତେ ଇତ୍ୟାଦି । ପ୍ରତିମା ପୂଜା ଅପେକ୍ଷା ଏହା ସୁନ୍ଦର ନୁହେଁ କି ? ଆପଣ ପର ଦ୍ରବ୍ୟ ଅପହରଣ ବିନା ଏହି ଆରାଧନାରେ ବେଶୀ ସୁଖ ଅନୁଭବ କରନ୍ତେ ଏବଂ ବେଶୀ ସୁଫଳ ଲାଭ କରନ୍ତେ ।

ପଣ୍ଡିତ— ଶୁଣିଲି ବାବୁ ଶୁଣିଲି । କଥା ବଡ଼ ମଧୁର, ବଡ଼ ସହଜ ବୋଲି ବିଚାରୁ ଅଛି, ମାତ୍ର କଥା ଓ ପ୍ରକୃତ କାର୍ଯ୍ୟ ମଧରେ ତାଳ ତିଳ ପ୍ରଭେଦ । ବୃଦ୍ଧ ବୟସରେ ପୁଣି ଆପଣଙ୍କୁ ଗୁରୁ କରି ଗୋଟିଏ ନୂତନ ମୁକ୍ତିପନ୍ଥା ଅନ୍ୱେଷଣ କରିବି । ଏଥିରୁ ମୋର ମରଣ ଭଲ । ମୁକ୍ତି ହେଉ ବା ନ ହେଉ ମୋର ପୂର୍ବପୁରୁଷଗଣ ଯେଉଁ ପନ୍ଥା ଅବଲମ୍ବନ କରି ଇହସଂସାର ତ୍ୟାଗ କରିଅଛନ୍ତି, ମୁଁ ସେହି ପନ୍ଥାରେ ଯିବି । ତାକୁ ମୁଁ କେବେ ଶିଶୁହତ୍ୟା ଭ୍ରୂଣହତ୍ୟା କଲି, କହ ତ ?

ଉମାକାନ୍ତବାବୁ ନିକଟବର୍ତ୍ତୀ ଗୋଟିଏ ମନ୍ଦାର ଗଛର ଅଗକୁ ଛିଣ୍ଡାଇ ଦେଲେ । ଖଣ୍ଡିତ ସ୍ଥାନରେ ମୋତେ ହାତ ଦେବାକୁ କହିଲେ, ମୁଁ ହାତ ଦେଲି । ''ଏ କ'ଣ ପଣ୍ଡିତେ'' ବୋଲି ପଚାରିଲେ ମୁଁ କହିଲି ଟିକିଏ ରସ ।

ଉମା— ଆପଣଙ୍କ ଅଙ୍ଗୁଳିକୁ କାଟିଦେଲେ କ'ଣ ବାହାରିବ ?

ପଣ୍ଡିତ— ରକ୍ତ ।

ଉମା— ଗୋଟିଏ ଝିଣ୍ଟିକାର ଗୋଡ଼ ଛିଣ୍ଡାଇ ଦେଲେ କ'ଣ ବାହାରିବ ?

ପଣ୍ଡିତ— ରକ୍ତ, ନା ନା ରସ ।

ଉମା— ଆପଣ କଷ୍ଟ ଅନୁଭବ କରନ୍ତି କି ?

ପଣ୍ଡିତ— ରକ୍ତ ବାହାରିବାରୁ କିଏ କଷ୍ଟ ଅନୁଭବ ନ କରେ ।

ଉମା— ଝିଣ୍ଟିକା କଷ୍ଟ ଅନୁଭବ କରେ କି ?

ପଣ୍ଡିତ— ନିଶ୍ଚୟ ।

ଉମା— ତେବେ ମନ୍ଦାରବୃକ୍ଷଟି କଷ୍ଟ ଅନୁଭବ କରୁ ନାହିଁକି ?

ପଣ୍ଡିତ— ଏହା କୁହାଯାଇ ନ ପାରେ ।

ଉମା— ଆପଣ କଷ୍ଟ ଅନୁଭବ କଲେ, ଝିଣ୍ଟିକା କଷ୍ଟ ଅନୁଭବ କଲା, ସେହିପରି ଗଛର ଅଗ୍ରଭାଗ ଛେଦନ କରିବାରୁ ତା'ର ରସ ବାହାରିଲା ଅଥଚ ସେ କଷ୍ଟ ଅନୁଭବ କଲା ନାହିଁ, ଏହା କିପରି କଥା ?

ପଣ୍ଡିତ— ବୃକ୍ଷର ଅନୁଭବ କରିବାର ଶକ୍ତି ନାହିଁ ।

ଉମା— ବୃକ୍ଷଟି ବଞ୍ଚିଅଛି କି ନାହିଁ ? ମୁଁ କହିଲି ବଞ୍ଚି ଅଛି, ଉମାକାନ୍ତବାବୁ କହିଲେ ଯେବେ ବଞ୍ଚିଅଛି, ତେବେ ଜୀବନ ଅଛି, ଯେବେ ଜୀବନ ଅଛି, ତେବେ ନିଶ୍ଚୟ କିଛି ହେଲେ ଅନୁଭବ କରି ପାରିବାର ଶକ୍ତି ଥିବ । ବୃକ୍ଷର ନାମ ପରା ପାଦପ ? ଯେ ପାନ କରେ ସେ କ'ଣ ବଞ୍ଚି ନ ଥାଇ ପାନ କରେ ? ହଜମ କଲେ ମଳ ମୂତ୍ର ଓ ଝାଳ ପରି କୌଣସି ପଦାର୍ଥ ତ୍ୟାଗ କରେ, ବୃକ୍ଷର ଯେବେ ଏ ସମସ୍ତ ଶକ୍ତି ବିଦ୍ୟମାନ ଥିବାର ଦେଖୁଅଛନ୍ତି, ତେବେ ତାହାର ଅନୁଭବ ଶକ୍ତି ନାହିଁ ବୋଲି କିପରି କହିବେ ?

ପଣ୍ଡିତ— ହଁ ଅନୁଭବ ଶକ୍ତି ଥିବ, ତେବେ ମନୁଷ୍ୟ, ପଶୁ ଓ କୀଟପତଙ୍ଗ ପରି ନୁହେଁ ?

ଉମା— ତାହା ନିଶ୍ଚୟ, ମନୁଷ୍ୟ ହତ୍ୟା କଲେ ନରହତ୍ୟା, ଗୋଟିଏ ପଶୁ କୀଟ ବା ପତଙ୍ଗ ନାଶ କଲେ ଜୀବହତ୍ୟା, ବୃକ୍ଷର ଜୀବନ ଅଛି, ଏଣୁ ଗୋଟାଏ ବୃକ୍ଷ ନାଶ କଲେ, ଏକ ପ୍ରକାର ଜୀବହତ୍ୟା । ଗୋଟିଏ ସ୍ତ୍ରୀର ଦୁଇ ମାସର ଗର୍ଭ ନଷ୍ଟ କଲେ ଭ୍ରୂଣ ହତ୍ୟା, ଗୋଟିଏ ପକ୍ଷୀର ଡିମ୍ବ ନଷ୍ଟ କଲେ ମଧ ତଦ୍ରୂପ ଭ୍ରୂଣ ହତ୍ୟା, ତଦ୍ରୂପ ପୁଷ୍ପାଣ୍ଡ ନଷ୍ଟ କଲେ ମଧ ଭ୍ରୂଣ ହତ୍ୟା ବୋଲିବା ଅସଙ୍ଗତ କି ?

ପଣ୍ଡିତ— ପୁଷ୍ପର ଗର୍ଭ କାହିଁ, ଭ୍ରୂଣ କାହିଁ ?

ଉମା— ବେଶ ବେଶ ପଣ୍ଡିତେ ଦେଖନ୍ତୁ ।

ଏହା କହି ଉମାକାନ୍ତବାବୁ ମନ୍ଦାର ପୁଷ୍ପଟିଏ ଛେଦନ କରିବାକୁ ଲାଗିଲେ, ଏବଂ ସ୍ତ୍ରୀ ଓ ପୁଂ ପୁଷ୍ପର କିପରି ସଙ୍ଗ ହୁଏ ଏବଂ କିପରି ଗର୍ଭ ହୁଏ, ତାହା ବୁଝାଇବାକୁ ଲାଗିଲେ । ପ୍ରଥମ ଅବସ୍ଥାରୁ ଫଳୋତ୍ପତ୍ତି ପର୍ଯ୍ୟନ୍ତ ସମସ୍ତ ଅବସ୍ଥା ତନ୍ନ ତନ୍ନ କରି ବୁଝାଇଲେ । ମୁଁ ତୋଳିଥିବା ଫୁଲ ମଧ୍ୟରୁ ଗୋଟିଏ ଗୋଟିଏ ଫୁଲ ଉଠାଇ ଆଣି କହିଲେ ଏଇଟି ତୋଳିବା ଦ୍ୱାରା ଭ୍ରୂଣ ହତ୍ୟା, ଏଇଟି ତୋଳିବାଦ୍ୱାରା ଶିଶୁ ହତ୍ୟା କରିଅଛନ୍ତି । ମୁଁ ଏହା ଦେଖି ଅବାକ୍ ହୋଇଗଲି । କଥାଗୁଡ଼ାକ ସତ୍ୟ ବୋଲି ମନ ମାନିଗଲା । ପୁଣି ବାବୁ କହିଲେ ପଣ୍ଡିତେ ବୁଝିଲେ ତ ?

ପଣ୍ଡିତ— ନାରାୟଣ ନାରାୟଣ, ମହା ମହା ଋଷିମାନେ ଆବାହମାନ କାଳରୁ ଫଳ ପୁଷ୍ପ ଦେଇ ଦେବାରାଧନା କରୁଛନ୍ତି । ଦୋଷାବହ କାର୍ଯ୍ୟ ବୋଲି ତ କେହି କହି ନାହାନ୍ତି । ଆପଣଙ୍କ ପରି ନବଶିକ୍ଷିତଙ୍କ କଥା ମାନି ମୁଁ ନିଜକୁ ପାତକୀ ମନେ କରିବି । 'ମହାଜନେ ଯେନ ଗତଃସ ପନ୍ଥାଃ' । ଆପଣଙ୍କର ଏ ସମସ୍ତ ଅଭିଯୋଗ ମିଥ୍ୟା ।

•

## ସାନ୍ଧ୍ୟ ଗଗନ

ଶରତ କାଳ, ଆଶ୍ୱିନ ମାସ । ସୂର୍ଯ୍ୟ ଅସ୍ତ ହେଲେ । ଆକାଶ ନିର୍ମଳ, ଗାଢ଼ନୀଳ କେବଳ ପଶ୍ଚିମଗଗନ ଲାଲ, ନଳଦିଆ, ବାଇଗଣିଆ, କଳା, ଧଳା ଓ କେତେ ରଙ୍ଗରେ ଛବି ଆଙ୍କିଲା । ଦୃଶ୍ୟ ଅତି ମନୋରମ । ପିତା ଘାସ ପଡ଼ିଆରେ ବସି ଆକାଶକୁ ଏକ ଦୃଷ୍ଟିରେ ଚାହିଁ ଅସ୍ତଗତ ରବି ସମ୍ବନ୍ଧରେ କି ଚିନ୍ତାମଗ୍ନ । ପିତାର କୋଳରେ ଦୁଇ କହୁଣି ରଖି ନିଜ ହାତରେ ମୁଖ ରଖି କନ୍ୟା ସେହି ସନ୍ଧ୍ୟା ଗଗନର ଦୃଶ୍ୟ ଦେଖୁଅଛି । ସେ ଏକ ମନରେ ଦେଖୁଅଛି ରଙ୍ଗର ପରିବର୍ତ୍ତନ, ଚିତ୍ରର ପରିବର୍ତ୍ତନ । ଆହା କେଡ଼େ ସୁନ୍ଦରଘୋଡ଼ା । ଦେଖ ଦେଖ ହାତୀଟିଏ ପାନ କରି ଉପରକୁ ଫିଙ୍ଗି ଦେଉଛି । ତା' ପାଖରେ ଗଛ । ଓହୋ । କେତେ ହାତୀ ଘୋଡ଼ା ମନୁଷ୍ୟ ବରଯାତ୍ରୀ ଯାଉଛନ୍ତି । ଆହା କେଡ଼େ ସୁନ୍ଦର ଛବିଗୁଡ଼ିକ । ପୁଣି ମିଳାଇ ଯାଏ କାହିଁକି ? କନ୍ୟାର ଏହି କଥାରେ ପିତାର ହୃଦୟରେ କି ଭାବନା ଉପସ୍ଥିତ ହେଲା । ଆକାଶକୁ ଚାହୁଁ ଚାହୁଁ ଦୁଇ ଧାର ଅଶ୍ରୁ ଗଡ଼ି ପଡ଼ିଲା । ହେମନଳିନୀର ଗଣ୍ଡ ଦେଶରେ ଦୁଇଟୋପା ଲୁହ ଗଳିପଡ଼ିଲା । ''ବାବା ! ମୋ ଗାଲରେ ପାଣି ପଡ଼ିଲା କେଉଁଠାରୁ ?'' ଉପରକୁ ଅନାଇ ଦେଖେ, ପିତାର ଚକ୍ଷୁରୁ ଲୋତକ ଗଡୁଅଛି । ''କାନ୍ଦୁଛ କାହିଁକି ବାବା, କି ଦୁଃଖ ହେଲା ?''

ପିତା— ଏହି ମେଘକୁ ଅନାଇ ଗୋଟିଏ ଚିନ୍ତା ହୃଦୟରେ ପ୍ରବେଶ କଲା, ଏଣୁ ଲୁହ ପଡ଼ିଲା ।

ହେମ— କି ଚିନ୍ତା ବାବା, କି ଚିନ୍ତା ? ସୁନ୍ଦର ମେଘକୁ ଦେଖିଲେ ହସ ମାଡୁଛି, ଖୁସିଲାଗୁଛି । ତୁମେ ଏହା ଦେଖି କାନ୍ଦୁଛ ।

ପିତା— ସେ କିଛି ନୁହେଁ, ତୁ ଦେଖ ।

ହେମ— ନା ନା, ସତ କରି କୁହ ।

ପିତା— ତୋ ବଡ଼ ଭଉଣୀ ଏହି ମେଘ ପରି ମିଶି ଗଲା, ମିଳାଇ ଗଲା । ଏହା ମନରେ ପଡ଼ିବାରୁ ଲୋତକ ସମ୍ଭାଳି ପାରିଲି ନାହିଁ ।

ହେମ— ମୋ ଅପା, ତା' ଶ୍ୱଶୁର ଘରେ ଥିଲା । ସେ ଅଳ୍ପ ଦିନ ହେଲା ମରିଯାଇଛି । ସେ କେଉଁ ଆଡ଼େ ଗଲା ବାବା ? ତାକୁ ଆଉ ଦେଖିବା ନାହିଁ । ସେ କ'ଣ ଆଉ ମା' ପାଖକୁ ପତ୍ର ଲେଖିବ ନାହିଁ ।

ପିତା କିଂକର୍ତ୍ତବ୍ୟବିମୂଢ଼ । ଉତ୍ତର ଦେବେ କ'ଣ ? ଉତ୍ତର ନ ଦେଲେ ଛୁଆ ଛାଡ଼ିବା ନାହିଁ, ସେ ଛାଡ଼ିବାର ପାତ୍ରୀ ନୁହେଁ ।

ପିତା— ସେ ମରିଯାଇଛି, ଆମ୍ଭମାନଙ୍କୁ ଛାଡ଼ିଯାଇଛି । ତୋ ମା'ଠାକୁ ଆଉ ପତ୍ର ଲେଖିବ ନାହିଁ ।

ହେମ— ହଁ ବାବା, ଆକାଶରେ ମେଘରେ ଆଜି ଯେଉଁପରି ଛବି ଦେଖାଗଲା, ପୁଣି ଠିକ୍ ସେଇ ଛବି କାଲି ବା ଆଉ କେବେ ଦେଖାଯିବ କି ?

ପିତା— ନା, ଠିକ୍ ସେହି ଛବି ସେହି ସ୍ଥାନରେ ଆଉ କେବେ ବାହାରିବ ନାହିଁ ।

ହେମ— ତୁମେ କହିଲ, ଅପା ମରିଯାଇଛି । ଗଲା, ମିଳାଇ ଗଲା ମିଶି ଗଲା । ତେବେ ସେ ଆଉ କେବେ ଦେଖା ଦେବ ନାହିଁ ? ତା'ର ଛବି ରୂପ ଆଉ ଆମକୁ ଦେଖାଯିବ ନାହିଁ ?

ପିତା— ତାହା ଦେଖା ଗଲେ ଏତେ ଭାବନା କାହିଁକି ?

ହେମ— ଆମ ଘରର ଶୁଆଟି ଭଲ ପଢୁଥିଲା । ମା ମା' ବୋଲି ଡାକୁଥିଲା । ଦିନେ କିଛି ଖାଇଲା ନାହିଁ । ବେମାର ହେଲା, ଔଷଧ ଦେଲୁ ହଳଦି ପାଣି ଢାଳିଲୁ । ପାଣି ଦେଲୁ କିଛି ଖାଇଲା ନାହିଁ । ତୁନି ହୋଇ ପଞ୍ଜୁରିରୁ ଖସି ପଡ଼ିଲା, ଆଉ ବସିଲା ନାହିଁ । ମା' କହିଲେ ମରିଗଲା, ପକାଇଦିଅ । ପକାଇ ଦେବାକୁ ମନ ବଳିଲା ନାହିଁ । କିଛି କ୍ଷଣ ତାକୁ ଧରି ବୁଲିଲୁ, ଟିକିଏ କାନ୍ଦିଲୁ । ଛୋଟ ଦାଦା କହିଲେ ଏଡ଼େ ସୁନ୍ଦର ଶୁଆଟି, ତାକୁ ପକାଇବା ନାହିଁ । ସାନ ଇଟା ମାଟିରେ ସାନ ଘର କଲୁ ସେଥିରେ ତାକୁ ରଖି ଦେଲୁ । ସେହିପରି ସେହି ଘର ଭିତରେ ଅଛି । ମନୁଷ୍ୟ ହେଲେ ମଧ ଏହିପରି ରଖନ୍ତି ?

ପିତା— ନା ନା ପୋଡ଼ି ଦିଅନ୍ତି ।

ହେମ— କାହିଁକି ବାବା, ତାକୁ ଯତ୍ନକରି ରଖନ୍ତି ନାହିଁ । ପୋଡ଼ି ଦେବାକୁ ମନ ବଳେ କିପରି ?

ପିତା— ରଖିଲେ କ'ଣ ହେବ ପଚ଼ି ଯିବ ତ ।

ହେମ— ତେବେ ଆମ ଶୁଆଟି ପଚ଼ି ଯାଇଥିବ । ଅନେକ ଦିନ ହେଲାଣି ।

ପିତା— ହଁ ମା' ! ତାର କିଛି ନ ଥିବ ।

ହେମ— ତେବେ ପୋଡ଼ିଲେ ଯାହା, ପୋତିଲେ ତାହା ।

ପିତା— ହଁ, ପ୍ରାଣ ଗଲାରୁ ଆଉ ରଖିଲେ କ'ଣ ହେବ ? ଏଣୁ ପୋଡ଼ି ଦିଅନ୍ତି ।

ହେମ— ଯେବେ କେହି ନ ମରନ୍ତେ, ତେବେ କେଡ଼େ ସୁଖ ହୁଅନ୍ତା ।

ପିତା— ଅବଶ୍ୟ ।

ହେମ— ଆମର ଶୁଆଟି ମଲା, ଦିନେ ମିଳି କୁକୁରର ଛୁଆଟି ମଲା, ଶୁଣିଲି, ମୋ ଅପା ମଲା । ଦିନେ ମୁଁ ମରିବି, ତୁମେ ଦିନେ ମରିବ, ମା' ମଧ ମରିବ । ଆଚ୍ଛା ମୁଁ ମଲେ ତୁମେ କାନ୍ଦିବ, ଖୁବ୍ ବେଶିନା ? ଶୁଆ ମଲା ଯେ କାନ୍ଦିଲି, ମିଳିର ଝିଅ ମଲା ଯେ, କାନ୍ଦିଲି । ସେଦିନ ମୋ ସାଙ୍ଗରେ ଖୁବ କାନ୍ଦିଲି ।

ପିତା— ଜଙ୍ଗଲରେ ଅନେକ ଶୁଆ ଅଛନ୍ତି, ସେମାନେ ମଧ ମରୁଅଛନ୍ତି । ତାଙ୍କ ପାଇଁ ତୁ କେବେ କାନ୍ଦୁକି ? ତୋର ପଡ଼ିଶା ଘରର ଶୁଆ ମଲେ ତୁ କାନ୍ଦୁ କି ?

ହେମ— ନାହିଁ ।

ପିତା— ଗାଁରେ ଅନେକ କୁକୁର ଅଛନ୍ତି । ଆମ ଘରକୁ ଆସି ଭାତ ଖାଇ ଯିବି । ସେଥିରୁ ଗୋଟିଏ ମଲା ତୁ କାନ୍ଦିଲୁ କି ?

ହେମ— ନାହିଁ ।

ପିତା— ତେବେ ଘରର ଶୁଆ ମରିଯିବାରୁ, ମିଳିର ଛୁଆ ମରିଯିବାରୁ ତୁ କାନ୍ଦିଲୁ କାହିଁକି ? ଯାହାକୁ ଯେତିକି ପାଖରେ ରଖିବାକୁ ହୁଏ; ତା' ଉପରେ ତେତିକି ସ୍ନେହ ଜାତ ହୁଏ । ଯାହାକୁ ବେଶି ଗେଲ କରିବାକୁ ହୁଏ, ତା'ପାଇଁ ବେଶି କାନ୍ଦିବାକୁ ହୁଏ । ଯାହାକୁ ପାଳିବାକୁ ଯେତିକି କଷ୍ଟ ପାଇବାକୁ ହୁଏ, ତା' ନିମନ୍ତେ ତେତିକି କାନ୍ଦିବାକୁ ହୁଏ ।

ହେମ— ସମସ୍ତଙ୍କ ଅପେକ୍ଷା ଅପା ନିମନ୍ତେ ମା' ବେଶି କାନ୍ଦିଲେ କାହିଁକି ?

ପିତା— ମା' ଅତି କଷ୍ଟରେ ଛୁଆକୁ ପାଳନ କରନ୍ତି । ଛୁଆର ସମସ୍ତ ଜଞ୍ଜାଳ ସହନ୍ତି । ଦଶମାସ ଗର୍ଭ ଧାରଣ କରନ୍ତି । ମା' ପାଇଁକି ଛୁଆ । ମା' ଯେତେ ଯନ୍ତ୍ରଣା, ଅପମାନ, କଷ୍ଟ ଛୁଆ ନିମନ୍ତେ ସହନ୍ତି, ବାପା ଭାଇ କେହି ସେପରି ସହନ୍ତି ନାହିଁ । ତେଣୁ ମା'କୁ ସବୁଠାରୁ ବେଶି କଷ୍ଟ ଲାଗେ । ଏଣୁ ବେଶି କାନ୍ଦନ୍ତି ।

ହେମ— ଦେଖିଛି ମୁଁ ବେମାର ଥିବା ବେଳେ ମା' ସର୍ବଦା ମୋ ପାଖରେ ବସିଥାନ୍ତି । କେତେ ସେବା କେତେ ଉପାୟ କରୁଥାନ୍ତି । ରାତ୍ରରେ ନିଦ ଭାଙ୍ଗିଗଲେ ଦେଖେ, ମା' ମୋ ଆଡ଼କୁ ଅନାଇ ବସିଛନ୍ତି । ମା' କ'ଣ ମୋ ନିମନ୍ତେ ଶୁଅନ୍ତି ନାହିଁ ? ତୁମେ କ'ଣ ବାବା ମୋ ନିମନ୍ତେ ଏତେ କରିଛି ?

ପିତା— ନାହିଁ ।

ହେମ— ତେବେ ମା' କ'ଣ ଛୁଆକୁ ପିତାଠାରୁ ବଳି ସ୍ନେହ କରେ ?

ପିତା— ଅବଶ୍ୟ ।

ହେମ— ମା' ତେବେ ତୁମଠାରୁ ବଡ଼ ।

ପିତା— ହଁ ।

ହେମ— ତେବେ ତୁମକୁ ମା'ଠାରୁ ଅଧିକ ସ୍ନେହ କରିବାର କାରଣ କ'ଣ ?

ପିତା— ସ୍ନେହ ମା' ଅପେକ୍ଷା ଅଧିକ ନୁହେଁ, ତେବେ ପିତା ଉପରେ ଭୟ ଅଛି, ଭୟରୁ ଭକ୍ତି ହୁଏ । ମା' ମୋତେ ଭକ୍ତି କରନ୍ତି, ସ୍ନେହ କରନ୍ତି, ତାହା ଦେଖି ତୁମ୍ଭେମାନେ ମଧ ଭକ୍ତି ଓ ସ୍ନେହ କର । ପିତା ମଧ ସ୍ନେହର ପାତ୍ର; ଏଣୁ ପିତା ଉପରେ ସ୍ନେହ ବେଶି ଥିବାର ଅନୁମାନ ହୁଏ ।

ହେମ— ଜଣେ ଜଣେ ମା'କୁ କଷ୍ଟ ଦିଅନ୍ତି କାହିଁକି ? ବିଶେଷତଃ ପୁଅମାନେ; ଏହା ଅନ୍ୟାୟ ନୁହେଁ କି ?

ପିତା— ବଡ଼ ଅନ୍ୟାୟ । ମା' ସବୁଠାରୁ ବଡ଼, ମା ସବୁଠାରୁ ଶ୍ରେଷ୍ଠ, ମା'ଠାରୁ ବଳି ଦେବତା ନାହିଁ ।

ହେମ— ଦେବତା କ'ଣ ବାବା ? ଆମେ ତ କେବେ ଦେଖି ନାହୁଁ । ସେମାନେ କ'ଣ କେବେ ଦେଖା ଦିଅନ୍ତି ନାହିଁ ?

ପିତା— ନାହିଁ ।

ହେମ— ଅଛନ୍ତି ।

ପିତା— ନାହିଁ ।

ହେମ— ଦେବତା କ'ଣ ତେବେ ।

ପିତା— ମନୁଷ୍ୟ ଯେଉଁଗୁଡ଼ିକର ଅଧିକାରୀ ହେଲେ ଆପଣାକୁ ଅନ୍ୟଙ୍କଠାରୁ ଶ୍ରେଷ୍ଠ ଓ ବଡ଼ ବୋଲି ମନେକରି ପାରିବ, ଏପରି କେତେକ ଗୁଣ ଯୁକ୍ତ ପୁରୁଷ ଓ ସ୍ତ୍ରୀର କଳ୍ପନା କରିଅଛି, ସେହି କାଳ୍ପନିକ ପୁରୁଷ ଓ ସ୍ତ୍ରୀମାନଙ୍କୁ ଦେବତା ବୋଲନ୍ତି ।

ହେମ— ବୁଝିପାରିଲି ନାହିଁ । ଯେବେ ମା' ସବୁଠାରୁ ବଡ଼ ତେବେ ମା'କୁ ଏବଂ ମା' ପରି ଯେ ତାକୁ ଦେବତା ବୋଲନ୍ତି ? କିନ୍ତୁ ଦେବତା ପୂଜା କରିବାକୁ ପୁରାଣ ଶୁଣିବାକୁ ବଡ଼ ଭଲ ଲାଗେ ।

ପିତା— ହଁ ।

ହେମ—ଅପା ମରିଯାଇଛି । ମୁଁ ମଧ ମରିବି । ମଲେ ପୋଡ଼ି ଦିଅନ୍ତି, ମୁଁ ମଲେ ପୋଡ଼ି ଦେବେ । ବାବା, ମୁଁ ମଲେ ତୁମ ସଙ୍ଗରେ ଆଉ କି ସମ୍ବନ୍ଧ ? ମଲାରୁ ଗଲା, ଆଉ କିଛି ନାହିଁ ।

ପିତା ପ୍ରତି ଏହା ବିଷମ ସମସ୍ୟା । ଲୋତକବର୍ଷଣ ଭିନ୍ନ କି ଉତ୍ତର ଅଛି ? ସେହି ହୃଦୟବିଦାରକ ଶୋକ ଉପରେ ପୁଣି ଶୋକର ଛାୟା— ଅପା ମରିଯାଇଛି, ମୁଁ ମରିବି, ଅପା ସହିତ କି ସମ୍ବନ୍ଧ ଅଛି ? ମୁଁ ମଲେ ମୋ ସହିତ କି ସମ୍ବନ୍ଧ ରହିବ ? ଏହା ପିତା ପ୍ରତି କଠୋର ପରୀକ୍ଷା, ଅତି କଠୋର ପ୍ରଶ୍ନ । ମହା ସ୍ଥିରମତି ପ୍ରଜ୍ଞାବାନ୍ ବ୍ୟକ୍ତିର ମଧ ମତି ବିଚଳିତ ହେବା ସ୍ୱାଭାବିକ । କଥା ସତ, ମାତ୍ର ମନୁଷ୍ୟ ମାୟାଛନ୍ନ । ତାହାର ପ୍ରତ୍ୟେକ ଉତ୍ତର କପଟତାପୂର୍ଣ୍ଣ । ମାତ୍ର ଶିଶୁର ପ୍ରଶ୍ନ ସରଳ ଓ ସ୍ୱାଭାବିକ । ତାକୁ ଠିକ୍ ଉତ୍ତର ନ ଦେବା ଯାଏ ସେ ପ୍ରଶ୍ନ କରିବାକୁ କୁଣ୍ଠିତ ନୁହେଁ । ତାହାର ଭୟଭ୍ରାନ୍ତି ନାହିଁ, ତାହାର ସ୍ୱର୍ଗ ନରକ ଯମଦ୍ୱାରା କାହାକୁ ଭୟ ନାହିଁ । ମୃତ୍ୟୁ ଭୟାନକ ବୋଲି ମଧ ତାହାର ଭୀତି ନାହିଁ । ସୁତରାଂ ଯଥାର୍ଥ ଉତ୍ତର ଦେବାକୁ ହେବ ଯେଉଁ ସମସ୍ୟା ସମସ୍ତ ଜଗତକୁ ଭ୍ରାନ୍ତକରି ରଖି ଅଛି, ସ୍ୱାଧୀନ ଭାବରେ ଯେଉଁ ପ୍ରଶ୍ନର ଉତ୍ତର ଦେବାକୁ ସମସ୍ତେ ଶଙ୍କିତ, କୁଣ୍ଠିତ ସେହି ପ୍ରଶ୍ନର ଉତ୍ତର ଅଜ୍ଞଙ୍କ ପିତାଙ୍କ ମୁଖରୁ ସରଳା ବାଳିକା ବାହାର କରିବାକୁ ପ୍ରୟାସୀ । ବାଳକ ବାଳିକାମାନେ ଏତାଦୃଶ ପ୍ରଶ୍ନଦ୍ୱାରା ଅହରହ ପିତାମାତାଙ୍କୁ ବ୍ୟତିବ୍ୟସ୍ତ କରନ୍ତି । ବିଜ୍ଞ ହୁଅନ୍ତୁ ବା ମୂର୍ଖ ହୁଅନ୍ତୁ ପିତା ମାତାମାନେ କେତେବେଳେ ଆପଣା ବିଶ୍ୱାସ ମତେ କେତେବେଳେ ଶାସ୍ତ୍ରର ଆଶ୍ରୟ ଗ୍ରହଣ କରି, କେତେବେଳେ ତର୍ଜନ କରି ପ୍ରଶ୍ନକର୍ତ୍ତାମାନଙ୍କୁ ନିରସ୍ତ କରନ୍ତି । ପିତା ଭାବିଲେ ଉତ୍ତର ଦେବାକୁ ହେବ, ନୋହିଲେ କି ବାଳିକା ଛାଡ଼ିବ ?

ପିତା— ତୋ ଅପା ମରିଛି ସତ, କିନ୍ତୁ, ତୁ ମା', ମରିବୁ କାହିଁକି ?

ହେମ— ବାବା, ଡରୁଛ କାହିଁକି ? ଅପା ମଲେ, ମୁଁ ମରିବି । ସମସ୍ତେ ମରିବେ ବୋଲି ତୁମେ ତ କହିଛ । ସୁତରାଂ ମୁଁ ମରିବି, ଏକଥା ତୁମ୍ଭର ଏତେ କଷ୍ଟ କାହିଁକି ? ଏହା ସତ କି ମିଛ ? ଯେବେ ସତ ତେବେ ଭୟର କାରଣ କ'ଣ ? ଅବଶ୍ୟ ଘଟିବ । ମଲା ଉତ୍ତାରୁ କ'ଣ ହେବ କୁହ ।

ପିତା— ମଲା ଉତ୍ତାରୁ କ'ଣ ହୁଏ ମୁଁ କହିପାରିବି ନାହିଁ । ଏହା ମୁଁ ଜାଣି ନାହିଁ କେହି ଜାଣି ନାହିଁ ।

ହେମ— ସେଦିନ ଦାଦାକୁ ବୁଝାଉଥିଲ 'ପୁନର୍ବାର ସ୍ୱର୍ଗରେ ଦେଖା ହେବ' ବୋଲି ସେ କ'ଣ ? ସ୍ୱର୍ଗରେ ଦେଖା ହେବା କଥା କ'ଣ ?

ପିତା— ମୁଁ ଜାଣି ନାହିଁ ।

ହେମ— ତେବେ ଦାଦାକୁ ପଢ଼ାଇଲ କାହିଁକି ?

ପିତା— ପୁସ୍ତକରେ ଅଛି ତାହା ପଢ଼ାଉଥିଲି ।

ହେମ— ତେବେ ମୁଁ ମଲେ ଅପା ସହିତ ଦେଖା ହେବ ନାହିଁ ? କଥା ହେବୁ ନାହିଁ ? ଜଣେ ଜଣକୁ ଚିହ୍ନି ପାରିବୁ ନାହିଁ ?

ପିତା— ନାହିଁ ।

ହେମ— ତେବେ ସ୍ୱର୍ଗ ନାହିଁ, ପୁନର୍ମିଳନ ନାହିଁ ?

ପିତା— ନାହିଁ ।

ହେମ— ବାବା! ଅପା ତ ଅନେକ ଦିନ ହେଲା ମଲାଣି । ସେ କ'ଣ କେବେ ଆମ୍ଭମାନଙ୍କୁ ଦେଖିବାକୁ ଆସେ ? ଆମର ଖବର ନିଏ ? ଆହା । ସେ ତ ଆମ୍ଭମାନଙ୍କୁ କେତେ ସୁଖ ପାଉଥିଲା, ସ୍ନେହ କରୁଥିଲା, ସେ କୌଣସି ରୂପରେ ଥିଲେ, ତୁମ୍ଭଙ୍କୁ ବାବା ବୋଲି, ମୋତେ ଭଉଣୀ ବୋଲି ଜାଣିପାରୁଥିଲେ ଦେଖା ଦିଅନ୍ତା ନାହିଁ ? ପଚାରନ୍ତା ନାହିଁ ? ମରିଛି ସତ ଏବଂ ଆମ୍ଭମାନଙ୍କୁ ଏକାବେଳକେ ଛାଡ଼ିଯାଇଛି ସତ, ମୁଁ ମଧ ସେହିପରି ଛାଡ଼ିଯିବି, ତୁମ୍ଭମାନଙ୍କ ସହିତ କୌଣସି ସମ୍ବନ୍ଧ ରହିବ ନାହିଁ, ଏହା ଠିକ୍ । ମୃତ୍ୟୁକୁ କି ଭୟ ? ଭୟ ନାହିଁ । କିନ୍ତୁ ତୁମର ସ୍ନେହରୁ ବଞ୍ଚିତ ହେବି । ମା'ର ସ୍ନେହରୁ ବଞ୍ଚିତ ହେବି । ତୁମ୍ଭମାନଙ୍କର କୌଣସି ଉପକାର କରିପାରିବି ନାହିଁ । ଏହା ମନକୁ ବ୍ୟାକୁଳ କରୁଛି ।

ପିତା— ଏଥି ନିମନ୍ତେ ମନୁଷ୍ୟର ଏତେ କଷ୍ଟ, ଶୋକ, ଯାତନା । ଦୁଇ ଭାଇ ଭଉଣୀ ଖେଳୁଥାଅ । ଭାଇ ଟିକିଏ ଛାଡ଼ିଗଲେ, ଭାଇ କାହିଁ ବୋଲି ଖୋଜୁ ଓ କାନ୍ଦୁ । ମା'କୁ କ୍ଷଣେ ନ ଦେଖିଲେ କାନ୍ଦୁ । ପୁଣି ପାଇବାର ଆଶାରେ ଖୋଜୁ । ପାଇଗଲେ କାନ୍ଦିବା ଛାଡ଼ି ମହାସୁଖ ଅନୁଭବ କରୁ । ମଲାଠାରୁ ପୁଣି ମିଳିବା ଆଶା ନ ଥାଏ, ଏଣୁ ମଲେ ମନ ଏତେ ବ୍ୟାକୁଳ ହୁଏ । ସନ୍ତାନ ମା'କୁ ଖୋଜୁଥିଲା ବେଳେ, ମା' ଆସିବ, ତୁ କାନ୍ଦନା, ଏହି ପ୍ରବୋଧ ଦିଆଯାଏ । ଛୁଆ ତୁନି ହୁଏ । ସେହିପରି ମୃତବ୍ୟକ୍ତିର ପରିବାର ଓ ସନ୍ତାନମାନେ କ୍ରନ୍ଦନ କଲାବେଳେ ଛୁଆକୁ ବୁଝାଇଲା ପରି ଲୋକେ ଓ ଧର୍ମଯାଜକମାନେ ସାନ୍ତ୍ୱନା ଦିଅନ୍ତି । ତୋର ମା' ତୋର ଭଉଣୀ । ଆରପୁରକୁ ଯାଇଅଛନ୍ତି, ସ୍ୱର୍ଗକୁ ଯାଇଛନ୍ତି, ପୁଣି ଦେଖାହେବ । ପିତୃଲୋକରେ ଅଛନ୍ତି, ତୁମ୍ଭର ମଙ୍ଗଳ କାମନା କରୁଛନ୍ତି । ଏହା କେବଳ ସାନ୍ତ୍ୱନା ବାକ୍ୟ । ମନୁଷ୍ୟ ଏହି ସାନ୍ତ୍ୱନା ବାକ୍ୟରେ ତୁଷ୍ଟ ହୋଇ ରହିବ ଭାବି ସ୍ୱର୍ଗର କଳ୍ପନା କରାଯାଇଅଛି । ମଲାରୁ ସେହି ରୂପରେ ବା ଅନ୍ୟ ରୂପରେ ବାକ୍ୟ ଦ୍ୱାରା, ଇଙ୍ଗିତଦ୍ୱାରା ପରସ୍ପର ମିଳନର ବା ଭାବ ଆଦାନ ପ୍ରଦାନର ସମ୍ଭାବନା ନାହିଁ । ଏଣୁ ଆତ୍ମୀୟମାନେ ଏତେ ବ୍ୟାକୁଳ ହୁଅନ୍ତି । ଧର୍ମର ଛଳନା ଓ ପ୍ରତାରଣା ଶୋକ ଆଗରେ ଚୂର୍ଣ୍ଣୀଭୂତ ହୁଏ ।

ହେମ— ତେବେ ଏହିଠାରେ ସବୁ ।

ପିତା— ଏହିଠାରେ ସ୍ୱର୍ଗ, ଏହିଠାରେ ନରକ ।

ହେମ— ତେବେ କାଳ୍ପନିକ ସ୍ୱର୍ଗ ଓ କାଳ୍ପନିକ ମିଳନରେ ଆସ୍ଥାରଖି ଏଠାରେ ଯେଉଁମାନେ କର୍ତ୍ତବ୍ୟ ପଥରେ ଭ୍ରାନ୍ତ ଏବଂ କେବଳ ସ୍ୱର୍ଗ କାମନାରେ ବ୍ୟସ୍ତ, ସେମାନେ ଉଭୟ ଫଳରୁ ବଞ୍ଚିତ ।

ପିତା— ଏଥିରେ ସନ୍ଦେହ ନାହିଁ ।

ହେମ— ମା' କହନ୍ତି ଘଡ଼ି ଯେପରି ଚଳୁଅଛି, ଦେହ ସେହିପରି ଚଳୁଅଛି । ଟିକିଏ ଅଚଳ ହେଲେ ଦମ୍ ନ ଦେଲେ ଘଡ଼ି ବନ୍ଦ ହୋଇଯାଏ । କୌଣସି ରୋଗ ହେଲେ ମଧ ଦେହର ଦମ୍ ଛାଡ଼ିଯାଏ, ପ୍ରାଣ ଯାଏ । ଏହା କ'ଣ ସତ ?

ପିତା— ହଁ ।

ହେମ— ଆତ୍ମା କ'ଣ ବାବା, ଆତ୍ମା କ'ଣ ମଲା ଉତ୍ତାରୁ ଥାଏ ?

ପିତା— କେଉଁଠାରେ ରହିବ ?

ହେମ— କେଜାଣି, ଦେହ ଗଲେ ମଧ ଆତ୍ମା ରହେ ବୋଲି କହନ୍ତି, ଶୁଣିଛି । ମିଲି କୁକୁର ଆମ ସଙ୍ଗେ ଖେଳୁଥିଲା । ମୁଁ ତାକୁ କେତେ ସୁଖ ପାଏଁ, ସେ ମୋତେ କେତେ ସ୍ନେହକରେ । ସେ ମରିଗଲା । ତା'ର ଯେବେ ଆତ୍ମା ଥାନ୍ତା ଆମ ପାଖକୁ ଆସନ୍ତା ନାହିଁ ? ମନୁଷ୍ୟର ଆତ୍ମାଥିଲେ କୁକୁରର ମଧ ଥିବ । ମନୁଷ୍ୟର ଆତ୍ମା କଥା କହିପାରୁଥିବ । କୁକୁର ଆତ୍ମା କଥା କହିପାରୁ ନ ଥିବ । ଏତିକି ସିନା ନୋହିଲେ, ମଲାରୁ ଯେବେ ଆତ୍ମାର କେବେ କଥା କହିବାର ଶକ୍ତି ନ ଥାଏ, ତେବେ ମନୁଷ୍ୟର ଆତ୍ମା କୁକୁର ଆତ୍ମା ଏକ ।

ପିତା— ନା, ନା, ଆତ୍ମା ସେପରି ନୁହେଁ ।

ହେମ— ତେବେ କ'ଣ ?

ପିତା— ତାହା କେହି ବୁଝିନାହାନ୍ତି, କେହି ଦେଖିନାହାନ୍ତି । ଗୋଟିଏ ଏପରି ନାମ କରି ରଖିଅଛନ୍ତି; ଯାହାକୁ କେହି ବୁଝି ନ ପାରିଲେ ମଧ, ଜାଣି ନ ଥିଲେ ମଧ ଅଛି ବୋଲି ସ୍ୱୀକାର କରିବାକୁ ବାଧ ହୋଇଅଛନ୍ତି ।

ହେମ— ମୁଁ ମଲାପରେ ଯେବେ ସେ ଆତ୍ମା ଆସି ତୁମ୍ଭମାନଙ୍କୁ ମୋ ପରି କିଛି ନ କହିବ, ତୁମ୍ଭମାନଙ୍କର ବା

ଜଗତର ହିତସାଧନରେ ନ ଲାଗିବ, ତେବେ ମୋର ସେ ଆତ୍ମାରେ ବିଶ୍ୱାସ କରିବାର କୌଣସି ପ୍ରୟୋଜନ ନାହିଁ । ମୁଁ ଜୀବିତ ଥିବାଯାଏ ତୁମ୍ଭର ସେବାକଲେ, ତୁମ୍ଭର ନିଯୁକ୍ତି କାର୍ଯ୍ୟ ଗ୍ଲାନିଶୂନ୍ୟ ହୋଇ ସମାଧାନ କଲେ, ତୁମ୍ଭର ମନ ସନ୍ତୁଷ୍ଟ ହେଲେ ମୋର ଯଥେଷ୍ଟ । ମୋର ଆତ୍ମାରେ ବିଶ୍ୱାସ କରିବା, ମୋର ଆତ୍ମାର ସଦ୍‌ଗତି ହେଉ, ଏ କାମନା କରିବାର ପ୍ରୟୋଜନ କ'ଣ ? ତେବେ ମାତା ପିତାହିଁ ପରମ ଦେବତା, ଜଗତର ଜନସାଧାରଣଙ୍କ ସେବାହିଁ ମନୁଷ୍ୟର ଏକମାତ୍ର କର୍ତ୍ତବ୍ୟ, ପରହିତ କାମନାହିଁ ଜୀବନର ଚରିତାର୍ଥ ? ସୁଖ ଦୁଃଖ ନିଜ ହାତରେ । ଏଠାରେ ତା'ର ସ୍ୱର୍ଗ, ଏଠାରେ ତାହାର ନରକ ଯନ୍ତ୍ରଣା । ସେବାହିଁ ସାର ଧର୍ମ । ଆତ୍ମପ୍ରସାଦହିଁ ମହାସୁଖ ଓ ମୋକ୍ଷ ।

ପିତା—ହଁ ।

ହେମ— ତେବେ ମୃତ୍ୟୁକୁ ଭୟ କରିବାର କାରଣ ନାହିଁ ।

ପିତା— ଭୟର କାରଣ ଅଛି । ମରଣ ବିଚ୍ଛେଦ ବି କଷ୍ଟଦାୟକ । ପୁନର୍ମିଳନ ନାହିଁ, ଏହି ଚିନ୍ତା ଜୀବିତର ପ୍ରାଣକୁ କର୍ତ୍ତନ କରେ ।

ହେମ— ଗଛର ମଧ ପ୍ରାଣ ଅଛି ?

ପିତା— ଅଛି ।

ହେମ— ଗଛ ମରେ ?

ପିତା— ହଁ ।

ହେମ— ଘର ଭାଙ୍ଗେ ?

ପିତା— ହଁ ।

ହେମ— ଦେଖ ବାବା, ହେଇ ଚନ୍ଦ୍ର ବାହାରିଲାଣି । ଚନ୍ଦ୍ର ସବୁ ଦିନେ ଥିବ ?

ପିତା— ନାହିଁ ।

ହେମ— କ'ଣ ହେବ ?

ପିତା— ସେ ମଧ କାଳକ୍ରମେ ବିନଷ୍ଟ ହେବ ।

ହେମ— ସୂର୍ଯ୍ୟ ମଧ ବିନଷ୍ଟ ହେବ ?

ପିତା— ହେବ ।

ହେମ— ଛୋଟ ଛୋଟ ନକ୍ଷତ୍ରଟିମାନ ବିନଷ୍ଟ ହେବ ?

ପିତା— ହେବେ ।

ହେମ— ପୃଥିବୀ କିନ୍ତୁ ଥିବ, ନା ?

ପିତା— ନା, ନା, ପୃଥିବୀ ମଧ ନାଶ ଯିବ, ପୃଥିବୀ ତ ସୂର୍ଯ୍ୟଠାରୁ ସାନ ଏବଂ ସୂର୍ଯ୍ୟର ଆଲୋକ ଉତ୍ତାପରେ ଏହାର ଅଭ୍ୟୁଦୟ ।

ହେମ— ତେବେ ପୃଥିବୀ ଚନ୍ଦ୍ର ସୂର୍ଯ୍ୟ ନକ୍ଷତ୍ର ପଶୁ ପକ୍ଷୀ ମନୁଷ୍ୟ ସମସ୍ତେ ନାଶ ଯିବେ, ଏଥିରେ ଭୁଲ ନାହିଁ ? ମରଣଟା ତେବେ ଧ୍ରୁବ ସତ୍ୟ, ଆଉ ସବୁ ମିଛ ?

ପିତା— ମରଣ ଧ୍ରୁବ ସତ୍ୟ ।

ହେମ— ତେବେ ଡର କାହିଁକି ? ସମସ୍ତଙ୍କର ତ ଏକ ଅବସ୍ଥା ଏକ ଗତି, ଏକ ଦଶା । ନାଶ ଉତ୍ତାରୁ ଯିବେ କେଉଁଠାକୁ କେଉଁ ଆଡ଼େ ?

ପିତା— ରହିବେ, ଏକ ପରମାଣୁ ମଧ ନଷ୍ଟ ହୁଏ ନାହିଁ । ଏ ବିଶ୍ୱବ୍ରହ୍ମାଣ୍ଡର ପଦାର୍ଥ ବିଶ୍ୱ ବ୍ରହ୍ମାଣ୍ଡରେ ରହିବ । କେବଳ ଆକାରର ପରିବର୍ତ୍ତନ ।

ହେମ— ତେବେ ଏହାହିଁ ତ ମିଳନ, ପୁନର୍ମିଳନ ଆଜି ହେଉବା ଯୁଗ ଯୁଗାନ୍ତରେ ହେଉ । ମୋର ଅପାର ଯେଉଁ ଗତି, ମୋର ସେହି ଗତି । ତାହାର ଉପାଦାନ ମୋର ଉପାଦାନ ଏକ । ଏହି ଜଗତର ଉପାଦାନ ଏକ । ଏକତ୍ର ମିଳିତ ହୋଇ ପୁନଃ ପୁନଃ ସୃଷ୍ଟି ପ୍ରକ୍ରିୟାରେ ଲାଗିଥିବ । ଯିବାଟା ଠିକ୍ କିଏ ଆଗରେ, କିଏ ପଛରେ । ଅଳ୍ପ ଦିନ ବେଶି ଦିନ ବଞ୍ଚିବାରେ କିଛି ବେଶି ଯାଏ ଆସେ ନାହିଁ । ଯିଏ ଯେତିକି ଜଗତର ହିତସାଧନରେ ବ୍ରତୀ ହେଲା, ଆପଣାର କର୍ତ୍ତବ୍ୟ ସାଧନା କଲା ଦୈନିକ କାର୍ଯ୍ୟର ତୁଳନା କରି ଆପଣା ସୁକୃତ ନିମନ୍ତେ ପରମ ଆପ୍ୟାୟିତ ହେଲା, ସେହି ସୁକୃତ ପୁଞ୍ଜକୁ ସଙ୍ଗରେ ଘେନି ମହାନିଦ୍ରାରେ ଅଭିଭୂତ ହେଲା, ତାହାଠାରୁ ବଳି ଆଉ ସୁଖୀ କେହି ନାହିଁ । ମୃତ୍ୟୁ ତ ମହାନିଦ୍ରା । ମନ ସୁଖରେ ନିଶ୍ଚିନ୍ତ ହୋଇ ଶୋଇବାକୁଗଲେ ସୁଖ ନିଦ୍ରା ହୁଏ । ତେମନ୍ତ ଜୀବର ସୁକୃତ ପୁଞ୍ଜିର ସ୍ମରଣରେ ମହାନିଦ୍ରା ଭୋଗ କରିବା ମନୁଷ୍ୟ ଜୀବନର ଚରିତାର୍ଥତା ।

ବାବା ! ଆଶୀର୍ବାଦ କର । ମୁଁ ଯେଉଁ କର୍ମ ନିମନ୍ତେ ଆସିଅଛି, ତାହା ସାଧନ କରେଁ । ପିତା ମାତାଙ୍କ ଉପରେ ଭକ୍ତି ଓ ସ୍ନେହ ରଖି ସେମାନଙ୍କର ମନ କଷ୍ଟର କାରଣ ନ ହୋଇ ସେମାନଙ୍କ ଆଦେଶ ପାଳନରେ ତ୍ରୁଟି ନ କରି ମହାସୁଖରେ ପ୍ରାଣ ତ୍ୟାଗ କରେଁ, ମୋର ଅଗ୍ରଗାମିନୀ ଭଗିନୀର ସହଯାତ୍ରୀ ହୁଏଁ । ସ୍ୱାର୍ଥତ୍ୟାଗୀ, ପରହିତ ସାଧନ, ଜଗତର ହିତ କାମନା ମହାସୁଖ, ମହାପୁଣ୍ୟ, ମହାସ୍ୱର୍ଗ ।

•

## ବାୟା

ବାୟାର କି ମନ୍ତର, କଢ଼ାର କି କଳନ୍ତର । ଏ ପ୍ରବାଦଟି ସର୍ବତ୍ର ପ୍ରଚ଼ଳିତ ଅଛି ଏବଂ ଯଥାର୍ଥ ବୋଲି ଅନୁମାନ ହୁଏ । ବାୟା ନାନା ପ୍ରକାରର, କେତେକ ବାୟା ଯେକୌଣସି ବିଷୟର ଚିନ୍ତା କରନ୍ତି ନାହିଁ ଏବଂ ସେମାନଙ୍କର ଚିନ୍ତା ଯେ, ଅଯୌକ୍ତିକ ଏପରି ନୁହେଁ। ସମୟ ସମୟରେ ସେମାନେ ଯୁକ୍ତିପୂର୍ଣ୍ଣ ଚିନ୍ତାର ଅନୁସରଣ କରନ୍ତି, ମାତ୍ର ସ୍ଥିରମସ୍ତିଷ୍କ ବ୍ୟକ୍ତିମାନେ ତାକୁ ବାୟାର ଚିନ୍ତା, ବାୟାର ଉକ୍ତି ବୋଲି ହସି ଉଡ଼ାଇ ଦିଅନ୍ତି । ମୁଁ ଜଣେ ବାୟାର କେତେଗୁଡ଼ିଏ ଚିନ୍ତାର ବିଷୟ ଲେଖିବି । ଏଥିରେ ମୋର ନିଜସ୍ୱ କିଛି ନାହିଁ । ଦୋଷଗୁଣ ପରଲୋକଗତ ବାୟାର । ବାୟାଟି କି ଧରଣର ଥିଲା, ତାହା ପାଠକଗଣ ଜାଣିବା ଆବଶ୍ୟକ; ଏଣୁ ପ୍ରଥମରୁ ତାହାର ପରିଚ଼ୟ ଦେବାକୁ ଅଗ୍ରସର ହୋଇଅଛି। ନଗଣ୍ୟ ବ୍ୟକ୍ତିର ଜୀବନଚରିତ ବୋଲି ଉପେକ୍ଷିତ ହେବ ନାହିଁ, ଏହି ଆଶା ।

ନାମ ଭୁବନ ମହାକୁଳ ଓରଫ ଭୁବନ ଦରଜୀ, ଭୂବନ ବା ଦରଜୀ ମହାରାଜ ଇତ୍ୟାଦି। ସେ ଆପଣାର ପରିଚ଼ୟ ଦିଏ— ଭୁବନ ଦରଜୀ, ଧରିଥାଏ ସୂଚୀ । ମାରି ଦେଲେ ଛୁଞ୍ଚ୍ ହାତଯାଏ ଘୁଞ୍ଚ୍ ।'' କେ କହିପାରେ ପ୍ରତିଜ୍ଞା ତା'ର । ଛୁଞ୍ଚ୍ ଧରିବାର ସତ, ମାତ୍ର ଛୁଞ୍ଚ୍ ପ୍ରୟୋଗରେ ହାତୀ ଘୁଞ୍ଚ୍ଯାନ୍ତା କି ନାହିଁ, ତାହା ସନ୍ଦେହ ଗର୍ଭରେ ନିହିତ ।

ଭୁବନ ରାଜା ସୁତଳଦେବଙ୍କର ବାଲ୍ୟ ଭୃତ୍ୟ । ସୁତଳଦେବ ବିଦ୍ୟାଧ୍ୟୟନ କଲାବେଳେ ନିକଟରେ ବସି ସେ ଅନେକ ଗୁଡ଼ିଏ ଶ୍ଲୋକ, ବ୍ୟାକରଣ ସୂତ୍ର ମୁଖସ୍ଥ କରିଥିଲା । ଅନେକ ଶ୍ଲୋକର ଭାବାର୍ଥ ଶିକ୍ଷା କରିଥିଲା । ଭୁବନର କାର୍ଯ୍ୟ ସେବାକରିବା । ମାତ୍ର ସେ ନିରକ୍ଷର ନ ଥିଲା । କାହାଣୀ କହିବାରେ ପଟୁ। ହିତୋପଦେଶଟି ପୁସ୍ତକର ଭାଷାରେ ପ୍ରାୟ ମୁଖସ୍ଥ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଭୁବନ କହେ ''ନା ପଣ୍ଡିତ, ଗାଁ ପଣ୍ଡିତ, ପଣ୍ଡିତ ପାଖରେ ଥାଇ ପଣ୍ଡିତ ।'' ଅର୍ଥାତ୍ ପ୍ରକୃତ ପଣ୍ଡିତ ଛଡ଼ା ତିନିପ୍ରକାର ପଣ୍ଡିତ ଅଛନ୍ତି; ସେଥି ମଧ୍ୟରୁ ଭୁବନ ନିଜକୁ ପଣ୍ଡିତ ପାଖରେ ଥାଇ ପଣ୍ଡିତ ବୋଲି ପରିଚ଼ୟ ଦିଏ । ସୁତଳଦେବଙ୍କ ସହିତ ଅନେକ ଦେଶ ପର୍ଯ୍ୟଟନ କରିଥିଲା, ଏବଂ ଦେଶ ଭ୍ରମଣଜନିତ ଜ୍ଞାନ ମଧ ଉପାର୍ଜନ କରିଥିଲା । ସର୍ବଦା ନିର୍ଭୀକ, ତା'ର ବୁଦ୍ଧି ବିଦ୍ୟା ଅନୁସାରେ ବ୍ୟଙ୍ଗୋକ୍ତି ଓ ଟକରିଆ କଥା କହିବାରେ ମଜଭୁତ ।

ବ୍ରାହ୍ମଣୀ ନଦୀର ବନ୍ଧୁର ଶଯ୍ୟାରେ ମୁଣ୍ଡିକାଠ ଦେବାର ଅସୁବିଧା ଦେଖି ସୁତଳଦେବ କେତେଟା ପ୍ରସ୍ତର ଘାଟି ଭାଙ୍ଗିବାର ଚେଷ୍ଟା କଲେ । ବୈଶାଖ ମାସରେ ଢିଆଁଳିଭଙ୍ଗାନ ଘାଟି ଭଙ୍ଗା ଯାଉଥିଲା । ପ୍ରସ୍ତର ଉପରେ ସ୍ତୂପାକାର ଅଗ୍ନି ପ୍ରଜ୍ୱଳିତ କରାଯାଏ, ପରେ କୋଳଥ ପାଣି ଅଜାଡ଼ିଲେ ପ୍ରସ୍ତର ଫାଟେ । ଭୁବନ ଏହି କାର୍ଯ୍ୟର ତତ୍ତ୍ୱାବଧାନରେ ଅନ୍ୟମାନଙ୍କ ସଙ୍ଗରେ କାର୍ଯ୍ୟପଟୁତା ଯୋଗୁଁ ଯଶ ଲାଭ କରିଥିଲା । ଭୁବନ ଦିନେ ହଠାତ୍ ପାଗଳ ହେଲା ବୋଲି ଶୁଣାଗଲା । ଲୋକେ କହିଲେ, ଅପର୍ଯ୍ୟାପ୍ତ ମାଛ, ମାଂସ ଖାଏ, ଖରାରେ ଦିନତମାମ ଠିଆ ହୋଇ ପରିଶ୍ରମ କରେ, ମନହେଲେ ପାଣିକୁ ଡେଇଁ ପଡ଼ି ଦେହ ଶୀତଳ କରେ, ଏପରି ଲୋକ ପାଗଳ ନ ହେବ ତ ହେବ କିଏ ? ଯାହା ହେଉ, ଭୁବନ ଲୌହ ବଳୟଭୂଷିତ ହୋଇ ଦେବଗଡ଼କୁ ଆନୀତ ହେଲେ । ଶ୍ରୀମନ୍ଦିରରେ (ଜେଲଖାନା) ବାସ ଦିଆଗଲା । ବହୁ ଯତ୍ନ ଔଷଧ ଶୁଶ୍ରୂଷାରେ କିଛିହିଁ ଉପକାର ହେଲା ନାହିଁ । ଭୁବନ ଚିର ପାଗଳ ହୋଇରହିଲା । ଭୁବନ ଜେଲରୁ ମୁକ୍ତିଲାଭ କରି ପ୍ରାୟ ୨୫ ବର୍ଷ ଜୀବିତ ଥିଲା । ଭୁବନ ପାଗଳ ମାତ୍ର କାହାରି ପ୍ରତି ଅତ୍ୟାଚ଼ାର କରେ ନାହିଁ । ଭୁବନ ପାଗଳ ମାତ୍ର ତାହା ନିମନ୍ତେ ତାହାର ପ୍ରତିବେଶୀମାନେ କୌଣସି ପ୍ରକାର ଅଶାନ୍ତି ବା କଷ୍ଟ ଭୋଗ କରି ନ ଥିଲା ।

ଭୁବନ ଶ୍ରୀମନ୍ଦିର ତ୍ୟାଗ କଲା ପରେ ଦେଖାଗଲା ତାହାର କୌଣସି ଔଦ୍ଧତ୍ୟ ନାହିଁ । ସେ ସମସ୍ତ ବସ୍ତ୍ର ତ୍ୟାଗ କରି କେବଳ ଖଣ୍ଡିଏ କୌପୀନ ଧାରଣ କଲା । ଅଫିମ ସେବନ କରିବାର ଅଭ୍ୟାସ ଆଗରୁ ଥିଲା । ଜେଲରୁ ଫେରି ମାତ୍ରା ବୃଦ୍ଧି କଲା । ଦୈନିକ ଦୁଇ ଅଣା ଅଫିମ, ଟିକିଏ ଗଞ୍ଜାଇ, ଚାରି ଛଟା ପିକା ତା'ର ଆବଶ୍ୟକ । ଏଥି ନିମନ୍ତେ ଭିକ୍ଷାବୃତ୍ତି ଅବଲମ୍ବନ କରିବାକୁ ପଡ଼ିଲା । ପ୍ରାତଃକାଳରୁ ସନ୍ଧ୍ୟାଯାଏ ଭୁବନ ଦ୍ୱାର ଦ୍ୱାର ଭିକ୍ଷାକରେ । ପ୍ରୟୋଜନୀୟ ଅର୍ଥ ପାଇଯାଏ । ହାତରେ ଗୋଟାଏ ଟୋକେଇ, ସେଥିରେ କେତେଗୁଡ଼ିଏ ଲେଙ୍ଗଡ଼ା ଛିଣ୍ଡା କନା । ଭୁବନ ଏହି ଅବସ୍ଥାରେ ଶୀତ ଗ୍ରୀଷ୍ମ ଓ ବର୍ଷାରେ ରାଜମାର୍ଗରେ ଭ୍ରମଣ କରୁଥିବାର ସମସ୍ତେ ଦେଖିଅଛନ୍ତି । ସୂର୍ଯ୍ୟଦେବ ପ୍ରଚ଼ଣ୍ଡ କିରଣଦ୍ୱାରା ବା ଇନ୍ଦ୍ର ଅଜସ୍ର ଧାରାପାତଦ୍ୱାରା କେବେହେଁ ଭୁବନକୁ ପରାସ୍ତ କରି ନାହାଁନ୍ତି । ଅତି ପ୍ରତ୍ୟୁଷରୁ କେଉଁସ୍ଥାନକୁ ଯାଇ କିପରି ସ୍ନାନକରେ କାହାକୁ ହିଁ ଜଣା ନାହିଁ । ସ୍ୱୟଂ ବୈଶ୍ୱାନର ତାହାର କ୍ଷୌରକର୍ମ ସମ୍ପାଦନ କରନ୍ତି । ଭଣ୍ଡାରିର କ୍ଷୁର ତା'ର କେଶ ଶ୍ମଶ୍ରୁକୁ କେବେ ସ୍ପର୍ଶ କରି ନାହିଁ । ପ୍ରତି ଆଠ ଦିନରେ ଭୁବନ ଅଗ୍ନିଦେବଙ୍କୁ ତାହାର କ୍ଷୌର କର୍ମରେ ନିଯୁକ୍ତି କରେ—

ଅର୍ଦ୍ଧଦଗ୍ଧ କାଷ୍ଠ ଖଣ୍ଡ ନେଇ ମସ୍ତକ ଶ୍ମଶ୍ରୁ ଉପରେ ନିୟୋଜିତ କରେ, ଅଗ୍ନି ଆପଣା କାର୍ଯ୍ୟ ସମାଧାନ କରନ୍ତି । ଏଣେ ଭୁବନ ଅତି ସୁନ୍ଦର 'ପେରିସିଆନ' ଫେସନରେ ବାହାରି ପଡ଼େ । ଭୁବନର ଅଭିଧାନ ଅନୁସାରେ ଏତାଦୃଶ କ୍ଷୌରକର୍ମର ନାମ 'ଉପନିଷଦ ।'

ଭୁବନ ଗୀତ ଗାଇବାଦ୍ୱାରା, ଗଳ୍ପ କହିବାଦ୍ୱାରା, ବାୟାଗିରି କଥା କହିବା ଦ୍ୱାରା ଅନେକ ଲୋକଙ୍କୁ ମୁଗ୍ଧ କରେ । ସେ ମୋର ଖୁବ୍ ଅନୁଗତ ଥିଲା, ମୋଠାକୁ ଆସିବା ତାହାର ନିତ୍ୟ କାର୍ଯ୍ୟ ।

ବୈଶାଖ ମାସ, ନିର୍ଦ୍ଧୂମ ଖରା, ସମ୍ଭବତଃ ପଣାସଂକ୍ରାନ୍ତି ଦିନ ପ୍ରାୟ ବାର ବାଜିବା ସମୟରେ ଭୁବନ ଗୀତ ଗାଇ ଗାଇ ନାଚି ନାଚି ଆସୁଛି । ନାଚିବାଟା ପ୍ରେମରେ, କି ଭୂତଳର ଉତାପ ଯୋଗୁଁ ତାହା ଠିକ୍ କହି ହେବ ନାହିଁ । ଗୀତଟି ଏହି—

'ଭାଲା ବିରାଜେ ବୈଦ୍ୟନାଥ ଜଙ୍ଗଲ ମୋ ଧ୍ରୁବ ।
ଭୋଲା ମୋର ଦହି ଦୁଧ ଖାଏନା ଗୋ
ଖାୟ ସୁଦୁ ଭାଙ୍ଗ ଦୁଦୁରାର ପାତା
ଭୋଲା ମୋର ହାତୀ ଘୋଡ଼ା ଚଢ଼େନା ଗୋ
ଚଢ଼େ କେବଳ ଷାଁଢ଼ ବଳଦେର ମାଥା ।।'

ମୁଁ କହିଲି-ଦରଜି ମହାରାଜ ଆଜି କାହାର ପ୍ରେମରେ ଉନ୍ମତ୍ତ ? ଭୁବନ କହିଲା ଗୁରୁଦେବଙ୍କର । ତୁମ୍ଭର ଗୁରୁ କିଏ ? ବଇଦ ନାଥ । ମୁଁ ତ ଦେଖିଛି ବାବା ବୈଦ୍ୟନାଥ ଛଅ ଆଙ୍ଗୁଳିର ଉଚ୍ଚ, କୃଷ୍ଣ ପ୍ରସ୍ତର ଲିଙ୍ଗ, ସେ କେବେ ପୁଣି ଭାଙ୍ଗ ଦୁଦୁରା ଖାଉଥିଲେ ? ବୋଧ ହୁଏ ଜଣେ ବୈଦ୍ୟନାଥ ନାମକ କୌଣସି ନିଶା ଖୋର ଆମ୍ଭର ଗୁରୁ । ନିଶାର ଆଶ୍ରୟ ନେଇଛୁ, ଏଣୁ ତାଙ୍କର ନାମ ନେବାକୁ ହୁଏ । ମୁଁ କହିଲି-ତୁମ୍ଭର ଗୁରୁଙ୍କର ଶିଷ୍ୟ ସଂଖ୍ୟା ବଢ଼ାଇବ କି ? ମୁଁ ତୁମ୍ଭର ଗୁରୁଙ୍କର ଶିଷ୍ୟ ହେଲେ କିପରି ହୁଅନ୍ତା ? ଅତି ଭଲ ହୁଅନ୍ତା । —ଅବଶ୍ୟ କିଛିଦିନ ମୋର ଖୁବ୍ ଉପକାର ହୁଅନ୍ତା । ମାତ୍ର କେତେ ଦିନ, ଦିନାକେତେ ପରେ ଯେ, ପୁଣି ତମେ ମୋର ଭାଗ୍ୟରୁ ଭାଗ ନେବ । ଦରକାର ନାହିଁ, ତୁମ୍ଭେ ଯେପରି ଅଛ ସେପରି ଥାଅ । ଆମ୍ଭର ଲକ୍ଷ୍ମୀଛଡ଼ା ଗୁରୁଙ୍କର ଶିଷ୍ୟ ହେବାକୁ କେବେ ହେଁ ଆଶା କରିବ ନାହିଁ ।

ଭୁବନ ମାଦକଦ୍ରବ୍ୟର ଅପକାରିତା ବିଲକ୍ଷଣ ଜାଣେ, ମାତ୍ର ଅଭ୍ୟାସର ଦାସ ହୋଇ ପଡ଼ିଅଛି । ଭାବିଲ ପାଗଳ ଯାହାର ଅପକାରିତା ବୁଝି ପାରିଅଛି ଭଲ ଲୋକେ କିପରି ବୁଝିପାରନ୍ତି ନାହିଁ ।

ଠିକ୍ ମନେ ଅଛି ଆଷାଢ଼ ଶୁକ୍ଳ ପକ୍ଷ ସପ୍ତମୀ । ମୁଁ ଚୌକିରେ ବସି ଅଧ୍ୟୟନ କରୁଥିଲି । ଭୁବନ ମୋ ନିକଟରେ ବସି ମୋତେ ଉପଢୌକନ ଦେବାନିମନ୍ତେ ଗୋଟିଏ ବଟୁଆ ଅତି ମନୋଯୋଗ ସହିତ ଟିପୁ ଥିଲା । ଉଭୟଙ୍କ ମଧ୍ୟରେ କୌଣସି କଥାବାର୍ତ୍ତା ନାହିଁ । ପ୍ରଥମେ ମେଘ ଟୁପୁ ଟୁପୁ ବର୍ଷୁଥିଲା । ଗୁଣ୍ଡିଚା ମଣ୍ଡପରେ ଜଗନ୍ନାଥ ଥିଲେ । ଜଗନ୍ନାଥଙ୍କ ଭୋଗ ନିମନ୍ତେ ପିଠା ଯିବାକୁ ବାରଣ୍ଡାରେ ପଦାର୍ଥ ସଂଗ୍ରହ ହେଉଥିଲା । ମୂଷଳ ଧାରାରେ ବୃଷ୍ଟି ଆରମ୍ଭ ହେଲା । ସଙ୍ଗେ ସଙ୍ଗେ ମେଘ ଗର୍ଜନ ଓ ବଜ୍ରନାଦ । ମୁଁ ଏକ ଦୃଷ୍ଟିରେ ଧାରାକୁ ଅନାଇ ଥିଲି । କୌଣସି ଆଡ଼କୁ ମୋର ଲକ୍ଷ୍ୟ ନାହିଁ । ହଠାତ୍ ଭୁବନ ଅଟ୍ଟହାସ୍ୟ କଲା । ମୁଁ ଚମକି ଉଠିଲି, ବିରକ୍ତି ସଙ୍ଗେ କୌତୂହଳ ମଧ୍ୟ ଜନ୍ମିଲା । ମୁଁ ଭାବିଲି ବାୟାର କୌଣସି ଚିନ୍ତାର ଫଳ ଏହା ।

ଭୁବନ କହିଲା 'କହିଲ ସବୁଠାରୁ ମୂକ କିଏ ?' ମୋର ମସ୍ତିଷ୍କ ଘୂରିଗଲା । ଏ ପ୍ରଶ୍ନର ଉତ୍ତର ସହଜ ନୁହେଁ । ଭୁବନର ମନ ମାଫିକ ଉତ୍ତର ନ ଦେଲେ ସହସା ଅପ୍ରସ୍ତୁତ କରିଦେବ । ଜୀବଜନ୍ତୁ କୀଟପତଙ୍ଗ ମଧ୍ୟରେ ଖୋଜିଲି । ଉପଯୁକ୍ତ ଉତ୍ତର ନାହିଁ । ଭୁବନ ଆପଣା ସୀବନ କାର୍ଯ୍ୟରେ ଲାଗିଅଛି । ବାକ୍ୟବ୍ୟୟ ନାହିଁ । ମୁଁ କହିଲି- ତୁମ୍ଭ ପ୍ରଶ୍ନର ଉତ୍ତର ଦେଇପାରିଲି ନାହିଁ । ମୁଁ ହାରିଲି । ଭୁବନ ଆହ୍ଲାଦରେ ହସି ହସି କହିଲା, ଅତି ସହଜ ଉତ୍ତର- ଜଗନ୍ନାଥ । ଜଗନ୍ନାଥ । ମୁଁ କହିଲି ତୁମ୍ଭ ବିଚାରରେ ବଧିର ଓ ଅନ୍ଧ ମଧ୍ୟ । ଭୁବନ କହିଲା ତାହା ନୁହେଁ ତାହା ନୁହେଁ । ତୁମ୍ଭର ବୁଝିବାର ଭ୍ରମ । ଜଗନ୍ନାଥଙ୍କର ଚକ୍ଷୁ ଅଛି । କଳା ଡୋଳା ଅଛି । ଅନ୍ଧ କିପରି ? ବଧିର, ଜଗନ୍ନାଥ ବଧିର ନୁହନ୍ତି । ବଧିର ତ ତମର ସ୍ତବ ସ୍ତୁତି ଶୁଣନ୍ତି କିପରି ? ଯଦି ନ ଶୁଣନ୍ତି ତେବେ ତୁମେମାନେ ସ୍ତୁତିପାଠ କର କାହିଁକି ? ତାଙ୍କର ଶ୍ରବଣ ଶକ୍ତି ଅଛି କି ନାହିଁ, ଏକଥା କହିବାର ତୁମ୍ଭର ଅଧିକାର ନାହିଁ । ମୁଖ ଅଛି ଏକଥା ତୁମ୍ଭେ ଅସ୍ୱୀକାର କରି ନ ପାର । ଯେବେ ନ ଖାନ୍ତି ତେବେ ଏତେ ଭୋଗର ବନ୍ଦୋବସ୍ତ କାହିଁକି ? ହାଣ୍ଡି ହାଣ୍ଡି ଅମୃତ କୁଣ୍ଡ କଦଳୀ ନଡ଼ିଆ ସବୁ ଚାଲିଯାଉଛି । ଯେବେ ନ ଖାଆନ୍ତି ବୋଲି ତୁମ୍ଭମାନଙ୍କର ବିଶ୍ୱାସ, ତେବେ ଏତେ ପଦାର୍ଥ ପଠାଇବାର କାରଣ କ'ଣ ? ଅଲବତ ତୁମ୍ଭର ବିଶ୍ୱାସ ଅଛି, ଜଗନ୍ନାଥଙ୍କର ପାଟି ଅଛି, ସେ ସବୁ ନିଶ୍ଚୟ ଖାଆନ୍ତି, ମାତ୍ର କେହି ହେଲେ ଜଗନ୍ନାଥ ପାଟି ଫିଟାଇ କଥା କହିବାର ଶୁଣିଛନ୍ତି ? ନାହିଁ । ଏଣୁ ଜଗନ୍ନାଥ ମହାମୂକ କିମ୍ବା ତୁମ୍ଭେମାନେ ମହାମୂର୍ଖ ଯେ, ଯାହାର ପାଟି ନାହିଁ, ତାକୁ ଖାଇବାକୁ ଦେଉଛ ।

ମୁଁ କହିଲି-ତେବେ ତୁମର ନିଷ୍ପତ୍ତି ଏହି ହେଲାଯେ, ଜଗନ୍ନାଥ ମହାମୂର୍ଖ ନତୁବା ଆମ୍ଭେମାନେ ମହାମୂର୍ଖ ।

ଭୁବନ— ଅବଶ୍ୟ ଏଥିରେ ପ୍ରତିବାଦ କରିବାର କାହାରି ଅଧିକାର ନାହିଁ । ମୋର ନିଷ୍ପତ୍ତି ଠିକ୍ । ତୁମ୍ଭେମାନେ ମୂର୍ଖ, ମୂର୍ଖ-ଶହେବାର ମୂର୍ଖ ।

ଭୁବନର ସ୍ୱର ଟିକିଏ ତେଜରେ ବାହାରିଲା । ମୁଁ ମନେ ମନେ ଭାବିଲି ବାୟାର କି ମନ୍ତର, କଡ଼ାର କି କଳନ୍ତର ।

କଟକ ତରଫରୁ ଜଣେ ବଙ୍ଗାଳୀ ଦରଜୀ ଦେବଗଡ଼କୁ ଆସିଲା । ତାକୁ ଖୋରାକି ସହିତ ଟଙ୍କା ୨୫ରେ ନିଯୁକ୍ତ କରାଗଲା । ଆସି ଭୁବନକୁ କହିଲି ଦର୍ଜି ମହାରାଜ, ବୃଥାରେ ତୁମ୍ଭଙ୍କୁ ମୁଁ ଦର୍ଜି ମହାରାଜ ବୋଲି ଡାକେ । ଆଜି ଜଣେ ବଙ୍ଗାଳୀ ଦର୍ଜି ଆସି ଖର୍ଚ୍ଚ ସହ ୨୫ ଟଙ୍କାରେ ନିଯୁକ୍ତ ହେଲା । ତମେ ବାୟା ହେବାରୁ ଏ ଦୁର୍ଦ୍ଦଶା ।

ଭୁବନ କ୍ରୋଧାନ୍ୱିତ ହୋଇ ରକ୍ତ ଦୃଷ୍ଟିରେ ମୋତେ ଅନାଇ କହିଲା, ରଖ ତୁମ୍ଭର ସହାନୁଭୂତି, 'ଆମ୍ଭେ ଗାଁ କନିଆ ସିଙ୍ଘାଣିନାକୀ । ବଙ୍ଗାଳୀ ଦର୍ଜି ସଙ୍ଗରେ ମୋର ତୁଳନା ନା ? ବଙ୍ଗାଳୀ ଦେଖିଲେ ସେ କୁଲି ହେଉ ଦର୍ଜୀ ହେଉ ଯାହା ତାହା ହେଉ ଧୋବ ଧୋତି ଥିବ, ଭଲ କାମିଜ ଖଣ୍ଡେ ଲଗାଇ ଥିବ, ଦେଖିଲେ କହିବ— ''ଆସୁନ ମଶାୟ, ବସୁନ ମଶାୟ ।'' ରହିମ ଖାଁକୁ ଦେଖିଲେ ''ଆଇୟେ ଖଲିଫା ସାହେବ । ବୈଠିଏ,'' ବୋଲି କେତେ ଆପ୍ୟାୟିତ କରିବ । ଭୁବନ ୨୦ ବର୍ଷ ଦର୍ଜୀ କାମ କଲା କେତେ ଟଙ୍କାରେ ? କେବେ ଏଡ଼େ ଆଦର ସମ୍ଭାଷଣ କରିଥିଲ ? ଦର୍ଜୀ ମହାରାଜ ବୋଲି ଡାକିବାଟା ତୁମ୍ଭର ବିଦ୍ରୂପ ସିନା । ଆମେ ତୟାର କରୁଥିଲୁ କରୁଣା, ଚପକନ, ଏଚ୍‌କନ, ଚୋଖା, ନିମାସ୍ତିନ, ପାଇଜାମା । ସେଦିନ ଗଲା । ଡାଇମଣ୍ଡ କଟା ଶାର୍ଟ ଫାଟ, ଟାଇଟ, କୋଟ ଆମକୁ ଜଣା ନାହିଁ । ଆମର ଆଦର କାହିଁ ? ତୁମର ସହାନୁଭୂତି ରଖ । ଆମେ ଗାଁ କନିଆ । ବିଦେଶରୁ ନ ଆସିଲେ କି ଆଦର ଅଛି ? ରହିମ ଖାଁ, କାଶିବାବୁ ନ ହେଲେ ରଜା କୋଡ଼ିଏ ପଚ଼ିଶ ଟଙ୍କା ଗଣି ଦେବେ ? ମୋର ବାପ ଫକୀରା ନାମ ଦେଇଛି— ଭୁବନ ମହାକୁଳ । ନାମଟା ତ ତୁମକୁ ଅତୁଆ ଲାଗୁଥିବ । ଟଙ୍କା ଦେବ କୁଆଡୁ ? ଭିକ୍ଷା ଆମକୁ ଭଲ । ଆମେ କାହାର ସେବା କରୁ ନାହିଁ । ବେଶି ଟଙ୍କାକୁ ଆଶା ରଖୁ ନାହିଁ । ଆପଣଙ୍କ ବୁଦ୍ଧିର ପରିଚ଼ୟ ଖୁବ୍ ମିଳିଛି ।

ତୁମେ କହିଲ ମୁଁ ବାୟା ନା ? ସଂସାରରେ ବାୟା ଅଛନ୍ତି । ତୁମ୍ଭେ ବାୟା ନୁହଁ ?

ମୁଁ କହିଲି ଭଲ କାମନା କରୁଛୁ ।

ଭୁବନ— ତୁମ୍ଭେ କହିପାର, ତୁମ୍ଭଙ୍କୁ କେହି ବାୟା ବୋଲନ୍ତି ନାହିଁ ? ତୁମ୍ଭର କଥା ଯାହାର ପସନ୍ଦ ନ ହୁଏ, ସେ ତୁମ୍ଭଙ୍କୁ ବାୟା ବୋଲେ । ଶୀତକାଳ ସନ୍ଧ୍ୟାରେ ଯେବେ ରାଜା କହିବେ, ''ଭୁବନ, ଏବେ ପାଣିରେ ଦଶବୁଡ଼ ଦେ, ତୋତେ ତିନି ଟଙ୍କା ଦିଆଯିବ ।'' ମୋର ଇଚ୍ଛା ନାହିଁ ମୁଁ କହିବି, ମୁଁ ବୁଡ଼ ଦେଇପାରିବି ନାହିଁ । ପାରିଷଦମାନେ କହିବେ, ଆରେ ବାୟା, ରାଜାନୁଗ୍ରହ ଛାଡ଼ୁଛୁ କିଯାଁ ? ତୋତେ ବାଇ ଝାଙ୍କିଲାଣି ? ଭୁବନ ଯେତେବେଳେ ରାଜାଙ୍କୁ ସଲାମ ନ କରି ବାଟରେ ଚାଲିଯାଏ, ଲୋକମାନେ କହନ୍ତି ଭୁବନ ବାୟା କି ନା ? ଏହି ତ ବାୟାର ଲକ୍ଷଣ । ତୁମ୍ଭଙ୍କୁ କେହି ବାୟା ବୋଲି କହିନାହାନ୍ତି । ଆଚ୍ଛା ବୁଢ଼ା ପାଞ୍ଚ ଜଣଙ୍କ ଆଗରେ କହିବ ତ— ରାବଣର ଦଶମୁଣ୍ଡ ଥିବା କଥା ମିଛ । ତତ୍‌କ୍ଷଣାତ୍ ତୁମ୍ଭଙ୍କୁ ବାୟା ବୋଲି କହିବେ । ବଡ଼ଲୋକ ବୋଲି ଆଗରେ ନ କହିବେ; ପଛରେ ତ କହିବେ । ମୋ ବିବେଚ଼ନାରେ ବାୟା ହେବା ଉଚ଼ିତ । ବାୟା ନ ହେଲେ ମନୁଷ୍ୟ ସ୍ୱାଧୀନ ହୋଇ ନ ପାରେ, ସ୍ୱାଧୀନ ମତ ଦେଇ ନ ପାରେ । ଯେତେ ଲୋକ ବାୟା ନୁହନ୍ତି, ସମସ୍ତେ ଖୋସାମତିଆ କାପୁରୁଷ । ତୁମ ବିବେଚ଼ନାରେ ମୁଁ ବାୟା, ଅନ୍ୟର ବିବେଚ଼ନାରେ ତୁମେ ବାୟା । ସଂସାରରେ ବାୟା ଅର୍ଥ କିଛି ନୁହେଁ । ମତର ଅମେଳ ହେଲେ ଜଣେ ଜଣକୁ ବାୟା ବୋଲେ ।

ମୁଁ ଭାବିଲି ଏଥିର କିଛି ଉତ୍ତର ନାହିଁ ।

ଦିନେ ବଡ଼ ସକାଳୁ ଭିତିରିଆ ସାହିରେ ବାଦ୍ୟ ଶବ୍ଦ ଶୁଣା ଯାଉଥିଲା । ମୁଁ ଭୁବନକୁ ପଚ଼ାରିଲି ତୁମ ସାହିରେ କି ବାଦ୍ୟ ?

ଭୁବନ କହିଲା— ଆଜି ଆମ ସାହିରେ କୁଣ୍ଢାଇ ବିବାହ । ମୁଁ କହିଲି, ତୁମ ସାହିରେ ଏପରି ଧନୀ ବ୍ୟକ୍ତି କିଏ ଅଛି ଯେ, କୁଣ୍ଢେଇ ବିବାହ ନିମନ୍ତେ ବାଦ୍ୟର ଯୋଗାଡ଼ କରିବ ?

ଭୁବନ— ପାଞ୍ଚ ବର୍ଷର ପୁଅକୁ ଚାରି ବର୍ଷର ଝିଅ କୁଣ୍ଢାଇ ବିବାହ ନୁହେଁ ତ ଆଉ କ'ଣ ? ଛୁଆମାନେ କୁଣ୍ଢାଇ ବିବାହ କରନ୍ତି, ଭୋଜି କରନ୍ତି, କନିଆ ଛାଡ଼ିଲା— ବେଙ୍କେ କାନ୍ଦନ୍ତି । ଠିକ୍ ବିବାହର ଅନୁକରଣ କରନ୍ତି । ଟିକିଏ କିଛି ବେଠିକ ହେଲେ ଦୁଇ ଦଳ ମାଡ଼ ପିଟି କରନ୍ତି । ଏ ବିବାହ

ଠିକ୍ ସେହିପରି । ଢୀଗ ଥାଇଁ ଥାଉଁ ଛୁଆଙ୍କର ମଙ୍ଗଳ ଦେଖିବୁ ଭାବି ଛୁଆ ବର ଛୁଆ କନିଆ ବିବାହ କରନ୍ତି, ଯେତେ ଅଳ୍ପ ବୟସ, ତେତେ ଆନନ୍ଦ । ଡଲା ବିବାହ ଶୁଣିଛ ? ବର ଓ କନିଆ ବସିବାକୁ ଅସମର୍ଥ ଥିଲେ, ଡଲାରେ ରଖି ବିବାହ ଦିଅନ୍ତି । ଅଦ୍ୟାପି ଲୋକମାନେ ଅଛନ୍ତି ଯେଉଁମାନେ ଡଲା ବିବାହର ପ୍ରଶଂସା କରନ୍ତି । ପୋଡ଼ି ଯାଉ ତାଙ୍କର ପ୍ରଶଂସା । ବିବାହ କରିବେ; କନ୍ୟା ରହିବ ବାପ ଘରେ । ଇତି ମଧରେ ଗୋଟିଏ ମରିଗଲେ ଦେଖ ମଜା ।

ଏହା କହିଲା ବେଳେ ଭୁବନର ବିଦ୍ରୂପାତ୍ମକ ହାସ୍ୟ ମୁଖଭଙ୍ଗୀ ଦେଖିବାକୁ ଚମତ୍କାର ।

ପୁଣି କହିଲା, ଠିକ୍ ଛୁଆମାନଙ୍କର ତକରାର କଲାପରି ଧୂମ ଧାମ । କିଏ କ'ଣ ଦେଇଥିଲା, ତାହା ଅସୁଲ ନେବାର ବ୍ୟବସ୍ଥା । କନ୍ୟାଟି ବଞ୍ଚିଥିଲେ ଛୋଟ ଜାତିରେ ଦିଅର ନିମନ୍ତେ ଦାବି, ତହିଁ ନିମନ୍ତେ ମାମଲା ମୋକଦ୍ଦମା । ସେ ଗୋଟିଏ ରହସ୍ୟ । ଏ ଅଧମମାନଙ୍କର କାର୍ଯ୍ୟକଳାପ ଦେଖିବାକୁ ଯେତିକି ମଜା ତେତିକି ଦୁଃଖ ଓ ମନସ୍ତାପ ହୁଏ ।

ବ୍ରାହ୍ମଣଙ୍କ କଥା ତ ନେଇ ଆଣି ଥୋଇ ନ ହୁଏ । ଏହିପରି କେତେ ଗର୍ଭପାତ, ଭ୍ରୂଣ ହତ୍ୟା ହେଉଛି, କ'ଣ କହିବି । ଭୁବନ ଏହି ସବୁ ଦେଖି ଦେଖି ଥକିଲାଣି । ଏମାନଙ୍କର ଭାବନା ନାହିଁ, ଚିନ୍ତା ନାହିଁ। ସାମାନ୍ୟ ଆମୋଦ ନିମନ୍ତେ, ସାମାନ୍ୟ ଦାୟିତ୍ୱରୁ ରକ୍ଷା ପାଇବା ନିମନ୍ତେ, ଏପରି ମହତ୍ ଅନିଷ୍ଟ । ଜାତି ବୁଝୁ ନାହାନ୍ତି । ସମାଜ ବୁଝୁ ।ହାନ୍ତି । ଏଥିରେ ବ୍ରାହ୍ମଣମାନେ ବେଶୀ ଦୋଷୀ । ଏ ।ପରେ ବ୍ରାହ୍ମଣଙ୍କର କ୍ଷୟ ହେବ । କୁଣ୍ଡାଇ ବାହା ବୋଲିବାରୁ ଆପ ହସି ଉଡ଼ାଇ ଦେଲେ ।□ମୁଁ କହିଲି ଯାହା ହେଉ ଆଜି ମ୍ଭଙ୍କୁ ଭୋଜି ମିଳିବ ।

ଭୁବନ କହିଲା ମୁଁ କେବେ କୁଣ୍ଡାଇ ବିବାହରେ ଭୋଜି ଖାଏ ?

ମୁଁ କହିଲି ତୁମକୁ କିଏ ସମାଜରେ ବସାଇବ ? ତୁମ୍ଭେ ତ ବାୟା ଥିବାରୁ ତୁମର ଜାତି ବିଚାର ନ ଥିବ ବୋଲି ଅନ୍ୟ ଜାତିରୁ ଭାତ ଖାଇଥିବ ବୋଲି ତୁମ ସଙ୍ଗରେ ଖାଇବାକୁ ସମାଜର ରୁଚି ନ ଥିବ ।

ଏହା ଶୁଣି ଭୁବନ ଅଗ୍ନିଶର୍ମା ହୋଇଗଲା । ପୁଣି ହାଃ ହାଃ ହାସ୍ୟ କରି କହିଲା— ଆପଣଙ୍କ କଥା ଅତି ଉତ୍ତମ । ଭୁବନର ଜାତି ନାହିଁ, ଯେହେତୁ ଭୁବନ ବାୟା ବୋଲି ଜେଲରେ ରଖାଯାଇଥିବା ବେଳେ ରାଜଗୃହର ଅନ୍ନ ଭିନ୍ନ ଅନ୍ୟର ସ୍ପୃଷ୍ଟ ଅନ୍ନ ଭକ୍ଷଣ କରି ନାହିଁ । ଭୁବନ କାରାମୁକ୍ତ ହେଲା ପରେ ଆପଣା ପରିବାରରୁ ମଧ ମୁକ୍ତିଲାଭ କଲା । ନିଜେ ରାନ୍ଧି ଖାଇବା ଭିନ୍ନ ଅନ୍ୟର ରନ୍ଧା ଭାତ, ତରକାରି କେବେ ଖାଏ ନାହିଁ । କି ବ୍ରାହ୍ମଣ, କି କ୍ଷତ୍ରିୟ କିମ୍ବା ଜାତି, କାହାରି ରନ୍ଧାଭାତ ଭୁବନ ଖାଏ ନାହିଁ । ତଥାପି ଭୁବନ ବାୟା ଥିବାରୁ ଅଜାତି । ଭୁବନର ଅପରାଧ କ'ଣ ? ସେମାନେ ଡାକିଲେ ପ୍ରାର୍ଥନା କଲେ ମୁଁ କାହିଁକି ଯିବି ? ସମାଜ ତ ଭାରି । ସମାଜର ଅର୍ଥ କ'ଣ ? ଆମ ସମାଜର କେତେ ଜଣ ଅସ୍ପୃଶ୍ୟା ସ୍ତ୍ରୀ ରଖି ସେମାନଙ୍କ ହାତରୁ ଖାଇ ବର୍ଷେ ଛଅ ମାସ ସେମାନଙ୍କ ସହିତ ସହବାସ କରି ମନ ଫାଟି ଗଲାରୁ ପୁଣି ଜାତିରେ ମିଶିବାକୁ ଇଚ୍ଛା କଲେ । କିମ୍ବା ବାପ ଭାଇ ମିଶାଇ ନେବାକୁ ଇଚ୍ଛା କଲେ, ମିଶାଇ ନେଲେ । ସେହି ଅସ୍ପୃଶ୍ୟାନ୍ନ ଭୋଜିଗୁଡ଼ାକ ଜାତିରେ ଶ୍ରେଷ୍ଠସ୍ଥାନ ଅଧିକାର କରି ବସିଅଛନ୍ତି । ପ୍ରତି ବିବାହରେ, ଶୁଭ କାମରେ ଦୁଇ ଚାରି ଜଣ ଗୋଟାଏ ଭୋଜି ଦେଇ ମିଶି ଯାଉଛନ୍ତି । ଶୂଦ୍ରଙ୍କ କଥା କାହିଁକି ? ବ୍ରାହ୍ମଣ କେତେ ଜଣ ଅଗମ୍ୟା ସମ୍ଭୋଗ କଲେ । × × × ଧରା ପଡ଼ିଲେ ଶାସ୍ତ୍ର ଫିଟିଲା । ତୀର୍ଥ କଲେ କିଛି ଗାୟତ୍ରୀ ଜପ କଲେ, କିମ୍ବା ଅନୁକଳ୍ପ ଦେଇ ସମାଜରେ ଶ୍ରେଷ୍ଠ ସ୍ଥାନ ଅଧିକାର କଲେ, ଏହି ତ ତୁମ୍ଭର ଜାତିର ବ୍ୟବସ୍ଥା । ଏହି ତ ତୁମ୍ଭର ଶାସ୍ତ୍ରର ବ୍ୟବସ୍ଥା । ଏହି ତ ତୁମ୍ଭର ସମାଜ ଶୃଙ୍ଖଳା । କେବଳ ଭୁବନ ବାୟା ହେ ।ରୁ ତାକୁ ସମାଜରେ ନେଇ ବସାଇଲେ ସମାଜର ଜାତିପାତ ହବ, ଅପମାନ ହେବ, ନିରୟବାସ ହେବ, ଧନ୍ୟ ତୁମ୍ଭ ବ ବେଚ଼ନା ।□ଯେଉଁ ଜାତି ଏକ ଦୋଷ ନିମନ୍ତେ ସ୍ତ୍ରୀ ପ୍ରତି ଏ ଦଣ୍ଡ, ପୁରୁଷ ପ୍ରତି ଏକ ଦଣ୍ଡ ଦିଏ, ସେ ପୁଣି କ ଜାତି, ସେ ପୁଣି ସମାଜ । ପୋଡ଼ି ଯାଉ ସେ ଜାତି, ପୋଡ଼ିଯାଉ ସେ ସମାଜ । ଯେବେ ପୁରୁଷକୁ ସମାଜରେ ମିଶାଇପାର, ତେବେ ସ୍ତ୍ରୀକୁ ନିଅ ନାହିଁ କାହିଁକି ? ଦୋଷ ଅଧିକ କାହାର ? ସ୍ତ୍ରୀର, ନା ପୁରୁଷର ? ତଥାପି ପୁରୁଷ ବୋଲି ସେ ଜାତିରେ ମିଶିବ, ସ୍ତ୍ରୀ ବୋଲି ପଡ଼ି ରହିବ । ପୁରୁଷମାନଙ୍କୁ ସ୍ତ୍ରୀଙ୍କୁ ପରି ପତିତ କରି ରଖ ତ, ଜାତିରେ କେତେ ବିଶୃଙ୍ଖଳା ଘଟିବ ଯେ ? ଏ ବିଧାନରେ ପୁରୁଷର ଭୟ ନାହିଁ; ସୁତରାଂ ପୁରୁଷ ସ୍ତ୍ରୀର ସତୀତ୍ୱ ନଷ୍ଟ, ଚରିତ୍ର ନଷ୍ଟ କରିବାରେ ପୁଣି କୁଣ୍ଠିତ ନୁହେଁ । ଏକ ରକ୍ତ ମାଂସ ଗଢ଼ା ଶରୀର ସ୍ତ୍ରୀ ପ୍ରତି ଭିନ୍ନ ବ୍ୟବସ୍ଥା, ପୁରୁଷ ପ୍ରତି ଭିନ୍ନ ବ୍ୟବସ୍ଥା, ଏ କି ରୀତି, ଏ କି ବିଧି ବ୍ୟବସ୍ଥା ?

ମୁଁ କହିଲି ଧର୍ମ ଆଲୋଚ଼ନା କରିବାର ତୁମ୍ଭର ଅଧିକାର ନାହିଁ । ତୁମେ ଶୂଦ୍ର । ପୂର୍ବାଚାର୍ଯ୍ୟମାନେ, ଋଷିମାନେ ଯେଉଁ

ଧର୍ମ ପ୍ରବର୍ତ୍ତାଇ ଅଛନ୍ତି, ତାହା ମାନି ହିନ୍ଦୁଗଣ ଚାଲି ଅଛନ୍ତି, ଚାଲିବେ । ତୁମର ବ୍ୟବସ୍ଥାରେ ତ କେହି ଚାଲିବେ ନାହିଁ ।

ଭୁବନ— ଆଲୋଚ୍ନା କରିବାର ଅଧିକାର ସମସ୍ତଙ୍କର ଅଛି । ମାନିବାକୁ କେହି କହୁ ନାହିଁ । ଧର୍ମ, ଧର୍ମଶାସ୍ତ୍ରସବୁ ସ୍ୱାର୍ଥମୂଳକ । ପୂର୍ବ ଋଷିମାନଙ୍କ ଦ୍ୱାହି ଦେଲେ ନମସ୍କାର । ଏଥିରେ ଯୁକ୍ତି ନାହିଁ । ଏକ ମାତ୍ର ପାପ ନିମନ୍ତେ ଯେଉଁ ଶାସ୍ତ୍ର, ଯେଉଁ ଧର୍ମ ଭିନ୍ନ ବ୍ୟବସ୍ଥା ଦିଏ, ତାକୁ ମୁଁ ଧର୍ମଶାସ୍ତ୍ର ବୋଲି ସ୍ୱୀକାର କରି ନ ପାରେ । ଆପଣମାନେ ଧର୍ମର ଦାସ । ଅନ୍ଧ ବିଶ୍ୱାସ ଆପଣମାନଙ୍କୁ ଜଡ଼ୀଭୂତ କରି ରଖିଛି । ନ୍ୟାୟାନ୍ୟାୟ ବିବେଚ୍ନା କରିବାର କାହାରି ଅଧିକାର ନାହିଁ ? କି ଦୁଃଖର କଥା ।

ମୁଁ କହିଲି ସମାଜ ରକ୍ଷା କରିବାକୁ ହେଲେ ବିଶ୍ୱାସ ଥାଉ ବା ନ ଥାଉ ଧର୍ମଶାସ୍ତ୍ର ମାନିବାକୁ ହେବ । ମାନି ଆସୁଅଛି ଓ ମାନି ଚାଲିବୁ ।

ଭୁବନ— ତୁମ ଧର୍ମଶାସ୍ତ୍ର । ଭାଗ୍ୟ କ୍ରମେ ମୁଁ ଧର୍ମଶାସ୍ତ୍ରର ବାହାରେ । ଏଥିରେ ମୋର ଯାଏ ଆସେ କେତେ ? ତୁମ୍ଭେମାନେ ଅବଶ୍ୟ ଏଥିର କୁଫଳ ଭୋଗ କରିବ ।

ଭୁବନ ବହୁ ବର୍ଷ ହେଲା ମୃତ ହୋଇଅଛି । ଏହିପରି ତା'ର ବାୟାଗିରି କଥା ଅନେକ ଅଛି । ପ୍ରକାଶ କରି ତାକୁ ପାଠକମାନଙ୍କଠାରୁ ଗାଳି ଖୋଇବା ଉଚ୍ତି ନୁହେଁ । ବିଶେଷତଃ ପାଠକମାନେ ବା ପାଗଳର କଥା ପଢ଼ିବାକୁ ଆଗ୍ରହାନ୍ୱିତ ହେବେ କାହିଁକି ? ଏଣୁ ଏତିକି ।

•

## ଗୌରୀ ଓ କାହ୍ନୁ

॥ ୧ ॥

ଗୌରୀ ଓ ନିରାଶ ଶଙ୍ଖାରୀ ଯୋଡ଼ ମଝି ଦାହରେ ମୁହଁ ଗୋଡ଼ ଧୋଇଲେ, ପୋଛିପୋଛି ହେଲେ, ଅଶୋକ ବୃକ୍ଷର ନିବିଡ଼ ଛାୟାରେ ବସିଲେ । ଏହି ସ୍ଥାନଟି ମହାଗ୍ରାମରୁ ପାହାଡ଼କୁ ଯିବା ବାଟରୁ କିଛି ଦୂରରେ । ପ୍ରାୟ ଲୋକେ ଏଠାକୁ ଯାଆନ୍ତି ନାହିଁ । ପାହାଡ଼କୁ ଯିବା ଲୋକେ ଏହି ନାଳ ଉପର ହ୍ରଦରୁ ପାଣି ପିଅନ୍ତି । ସ୍ଥାନଟି ନିର୍ଜନ । ଗୋଟିଏ କ୍ଷୁଦ୍ର ପ୍ରପାତ, ତଳରେ କୁଣ୍ଡ । କୁଣ୍ଡ ପ୍ରାୟ ତିନି ଚାରି ହାତ ଗଭୀର । ଏକ ବିଶ୍ୱା ପରିମାଣ ଜଳ ଅତି ସ୍ୱଚ୍ଛ ଓ ନିର୍ମଳ, ମାତ୍ର ବନ୍ୟ ପୁଷ୍ପଦ୍ୱାରା ଆବୃତ । ଫୁଲ ଆଡ଼େଇ ଦେଲେ ଭିତରେ କାଚ୍ଧାର ପରି ସ୍ୱଚ୍ଛ ଓ ଶୀତଳ ଜଳ ପଥିକ ଓ ତୃଷାର୍ତ୍ତମାନଙ୍କ ମନପ୍ରାଣକୁ ଶୀତଳ କରେ । କୁଣ୍ଡର ଉଭୟତୀର ଅଶୋକ ବୃକ୍ଷରେ ପୂର୍ଣ୍ଣ । ଏଠାରେ ଏତେ ଅଶୋକ ଅଛି ଯେ ଗଣାଯାଇ ନ ପାରେ; ଅଶୋକ ବନ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଅରଣ୍ୟରେ ନ ଥାଇ କୌଣସି ସହର ନିକଟରେ ଥିଲେ କବିରାଜମାନଙ୍କର ବିସ୍ତାର ଅର୍ଥଲାଭ ଆଶା ଥିଲା ? ମନୁଷ୍ୟ ସିନା ପଦାର୍ଥକୁ ଆପଣାର ପ୍ରୟୋଜନ ଲଗାଇବାକୁ ବାଛି ନିଏ— ଅନ୍ୱେଷଣ କରେ; ପଦାର୍ଥ ପ୍ରୟୋଜନରେ ଲାଗିବ ବୋଲି ମନୁଷ୍ୟ ନିକଟକୁ ଯାଏ ନାହିଁ, ଅଶୋକ ଅରଣ୍ୟର ବୃକ୍ଷ, ଅରଣ୍ୟରେ ଅଛି । ପାଣି କାହୁରେ ଏଣୁ ବିସ୍ତର ଭାବରେ ଜନ୍ମିଅଛି ଓ ସୁନ୍ଦର ବଢ଼ିଅଛି । ତୁମ୍ଭର ଆଶ୍ରୟ ନେବାର ପ୍ରୟୋଜନ, ନିଅ । ଗ୍ରୀଷ୍ମକାଳୀନ ପ୍ରଚ୍ଣ୍ଡ ସୂର୍ଯ୍ୟରଶ୍ମିରୁ ରକ୍ଷା କରିବାକୁ ସେ ଶାଖା ପ୍ରଶାଖା ବିସ୍ତାର କରି ନିଜେ ଖରାତାପ ସହ୍ୟ କର ତୁମ୍ଭଙ୍କୁ ରକ୍ଷା କରିବାକୁ ପ୍ରସ୍ତୁତ ଅଛି ।

ଗୌରୀ ଓ ନିରାଶ ବହୁକ୍ଷଣ ନିମଗ୍ନ ଚିତ୍ତରେ ନିଶ୍ଚିନ୍ତରେ ଛାୟାର ଆଶ୍ରୟ ନେଲେ । କଥା ବାର୍ତ୍ତା ଆଦୌ ନାହିଁ । ପର୍ବତ ଉଠିବା ଓ ଉତୁରିବା ବାଧା ଦୂର କରିବାକୁ ସେମାନେ ସଂଯତ ହୋଇ ପ୍ରାୟ ଅର୍ଦ୍ଧଘଣ୍ଟା କାଳ ଅତିବାହିତ କଲେ । ବେଳ ପ୍ରାୟ ଏଗାରଟା, ଚୈତ୍ର ମାସ । ଏ ବର୍ଷ ମାସକୁ ମାସ ବର୍ଷା ହୋଇ ନ ଥିବାରୁ ଖରାର ତାପ ଅତି ତୀକ୍ଷ୍ଣ ଥିଲା । ପଥର ବାଟ ଅତି ଶୀଘ୍ର ତାତି ଯାଇ ଗ୍ରୀଷ୍ମବାଧାକୁ ଦ୍ୱିଗୁଣିତ କରୁଥିଲା । ଏପରି ସମୟରେ ଜଳ ନିକଟବର୍ତ୍ତୀ ନିବିଡ଼ ଛାୟାପ୍ରଦ ବୃକ୍ଷମୂଳକୁ ତ୍ୟାଗ କରିବାକୁ କାହାର ଇଚ୍ଛା ଚଳେ ?

ଗୌରୀ ଓ ନିରାଶ ସମବୟସ୍କା— ଉଭୟଙ୍କ ବୟସ ପ୍ରାୟ ଷୋହଳ ସତର, ଏଥିରୁ କମ୍ ନୁହେଁ । ଉଭୟେ ମହାଗ୍ରାମବାସିନୀ-ପାଉଡ଼ିଆ ଭୂୟାଁ । ଉଭୟେ ଅନୂଢ଼ା, ସକାଳୁ ଉଠି ଫଳ ଅନ୍ୱେଷଣରେ ପାହାଡ଼କୁ ଯା'ନ୍ତି, ବେଳ ହେଲେ ଗୃହକୁ ଫେରନ୍ତି । ଏହା ଏମାନଙ୍କର ଦୈନନ୍ଦିନ କାର୍ଯ୍ୟ, ମହୁଲ ଏ ବର୍ଷ ଟିକିଏ ପଛରେ ଆସିଥିଲା, କାହିଁକି କେଜାଣି, ବର୍ତ୍ତମାନ ଯାଏ ମହୁଲ ପଡୁଥାଏ । କେନ୍ଦୁ ଗୋଟିଏ ଗୋଟିଏ ପାଚ୍ଚିବାକୁ ଆରମ୍ଭ କରିଅଛି । ଚାର ମଧ ପାଚୁଅଛି । ଗ୍ରୀଷ୍ମକାଳରେ ଏହି ତିନିଗୋଟି ପଦାର୍ଥର ଅନ୍ୱେଷଣ ଓ ସଂଗ୍ରହ ପାର୍ବତୀୟ ଗ୍ରାମ୍ୟ ଗରିବମାନଙ୍କର ନିତାନ୍ତ ଆବଶ୍ୟକ । ଯେଉଁ ବ୍ୟକ୍ତି ବଡ଼ିଭୋରରୁ ପର୍ବତ ଚଢ଼ିପାରିଲା, ତା'ର ବେଶି ଲାଭ । ଏଣୁ ପ୍ରତ୍ୟେକ ପ୍ରତ୍ୟୁଷରୁ ଗୃହ ତ୍ୟାଗ କରିଥାନ୍ତି, ଗୌରୀ ଓ ନିରାଶ ମଧ ବଡ଼ିଭୋରରୁ ଯାଇଥିଲେ । ଚାର, ମହୁଲ, କେନ୍ଦୁ ବୋଝେ ବୋଝେ ତୋଳି ଏଠାକୁ

ଫେରିଥିଲେ ଏବଂ ଗୋଡ଼ ହାତ ମୁହଁ ଧୋଇ ପେଟେ ଲେଖାଏଁ ପାଣି ପିଇ ବିଶ୍ରାମ ନେଲେ । ବିଶ୍ରାମ ଯଥେଷ୍ଟ ହେଲା ବୋଲି ନିରାଶ ମନେ କଲା, କହିଲା, ''ଗୌରୀ, ଉଠ ଯିବା, ଗାଁ ଅଧକୋଶ ବାଟ ଅଛି । ଖରା ବଢ଼ିଆସୁଛି । ସବୁ ସୁଖ ଯାକ ବାହାରି ଯିବଟି ।''

ଗୌରୀ— ମୁଁ ତ ଆଜି ଯିବି ନାହିଁ ।

ନିରାଶ— କାହିଁକି ? କ'ଣ ଖାଇବୁ ଏଠି, କ'ଣ କରିବୁ ?

ଗୌରୀ— ସକାଳେ ତୁ ପରା ଟିକିଏ ଆଗରୁ ଆସିଲୁ । ମୁଁ ଘରୁ ଭାତ ଆଣି ଏହି ପଥର ତଳେ ରଖି ଦେଇଛି । ଏଠି ଗାଧୋଇବି, ଭାତ ଖାଇବି, ନିଶ୍ଚିନ୍ତରେ ଶୋଇବି । ମହୁଲ, କେନ୍ଦୁ, ଚାର ପଥର ଉପରେ ଶୁଖାଇ ଦେବି, ବେଳ ବୁଡ଼କୁ ଘରକୁ ଯିବି । ମା' ଓ ସାନଭାଇ ଇତି ଗାଁକୁ ଧାନ ଆଣିବାକୁ ଯାଇଛନ୍ତି, ସନ୍ଧ୍ୟାକୁ ଘରକୁ ଫେରିବେ । ଘରେ ଥାଉ ମୋର କି କାମ ? ଏହାଠାରୁ କ'ଣ ଘରେ ବେଶି ସୁଖ ?

ନିରାଶ— ମତେ କହିଲୁ ନାହିଁ, ମୁଁ ମଧ ଭାତ ଆଣିଥାନ୍ତି । ମୋର ଘରେ କାମ ଅଛି, ମୁଁ ଯିବି । ତୁ ତେବେ ଥା ।

ନିରାଶ ବୋଝ ମୁଣ୍ଡେଇ ଏକାକିନୀ ଗ୍ରାମ ଅଭିମୁଖରେ ଗମନ କଲା । ଗୌରୀ ମହୁଲ, ଚାର, କେନ୍ଦୁତକ ପଥର ଉପରେ ପରିପାଟୀ ସହ ଶୁଖାଇଦେଲା । କୁଣ୍ଡରେ ସ୍ନାନ କଲା, ଭାତ ଖାଇଲା, ପଥର ଉପରେ ଟିକିଏ ବସିଲା । କାଉ ଗୋଟିଏ ଅଶୋକ ଶାଖାରେ ବସି କାଆ, କାଆ ରାବ ଦେଲା ।

ଗୌରୀ କହିଲା— କି ସୁଖ କଥା କହିବୁରେ କାଉ, ମୋ ଆଗରେ ଆସି ବୋବାଉଛୁ ? ଅନ୍ନଲୋଲୁପ କାଉ ଶୁଭ ସମ୍ବାଦ ଦେବାକୁ ତ ଆସି ନାହିଁ, ଭାତ କେତୋଟିର ଆଶାରେ ବୋବାଉଥିଲା । ଗୌରୀ ଟିକିଏ ଅନ୍ତର ହେଲେ, ନିଦ୍ରାଗଲେ ତା'ର ସ୍ୱାର୍ଥ ସିଦ୍ଧ ହେବ । ଗୌରୀର ଉଠିବାର ବିଳମ୍ବ ଦେଖି କା, କା କରୁଥିଲା । ଗୌରୀ କୁଣ୍ଡ ନିକଟରେ ଗୋଟିଏ ପ୍ରଶସ୍ତ ସମତଳ ପଥର ଉପରେ ଶୋଇଲା । ନିଜର ବାମ ବାହୁକୁ ଉପାଧାନ କରି ଅଣେଇ ହୋଇ ସେ ପ୍ରପାତର ଶୋଭା ଦେଖୁଥିଲା । କଳ କଳ ଧ୍ୱନି କରି କ୍ଷୁଦ୍ର ପ୍ରସ୍ରବଣ ପଡ଼ୁଥିଲା । ସମୟ ସମୟରେ ଗୋଟିଏ ଗୋଟିଏ ପଳାସ ଫୁଲ ସ୍ରୋତରେ ଭାସି ଆସି କୁଣ୍ଡରେ ପଡ଼େ, ଭିତରକୁ ବୁଡ଼ିଯାଇ ଡବ ଡବ ଶବ୍ଦ କରେ, ସଙ୍ଗେ ସଙ୍ଗେ ନିକଟବର୍ତ୍ତୀ କ୍ଷୁଦ୍ର ଫୁଲଗୁଡ଼ିକୁ ପ୍ରପାତ ତଳକୁ ଟାଣି ଆଣେ । ଏହି ଦୃଶ୍ୟ ଗୌରୀ ଏକ ଦୃଷ୍ଟିରେ ଦେଖୁଥିଲା । ଏହି ଶବ୍ଦ ତାକୁ ମୁଗ୍ଧ କରୁଥିଲା । ଶୋଇଥିଲା, କି ଚେତା ଥିଲା, ଥରେ କି ଶବ୍ଦକୁ ଲକ୍ଷ୍ୟ କରି ସେ ଉଠି କାନେଇଲା, ପୁଣି ଶୋଇଲା । ଶୀତଳ ବାୟୁ ନିଦ୍ରାଘେନି ଆସିଲା । ଗୌରୀ ଏକାବେଳେକେ ନିଦ୍ରାମଗ୍ନା । ପ୍ରାୟ ଅଧଘଣ୍ଟା ଅତୀତ ହେଲା । ଅତି ଦୂରରେ ଟିକିଏ ବଂଶୀ ଧ୍ୱନି ଶୁଣାଗଲା । କ୍ରମେ ମଇଁଷି ଗଳ ଘଣ୍ଟାର ଗୁରୁଗୁରୁ ଶବ୍ଦ ଶୁଣାଗଲା । ଗୌରୀ ନିଦ୍ରିତା ।

କାହ୍ନୁ ତଳ ଦହକୁ ମଇଁଷି ଆଣି ପାଣିରେ ପକାଇ ଦେଲା । ମଇଁଷିମାନଙ୍କୁ ଗାଧୋଇବା ସଙ୍ଗେ ସଙ୍ଗେ ନିଜେ ଗାଧୋଇଲା । ପୋଛିପାଛି ହୋଇ ନିଜର ଭାତ ଧରି ଉପର ଦହକୁ ଖାଇବା ନିମନ୍ତେ ଗଲା । ଏ କ'ଣ ? ପଥର ଉପରେ ଜଣେ ସ୍ତ୍ରୀଲୋକ ଶୋଇଛି । ପାଣି ପାଖରେ ଭାତ ରଖି ଦେଇ ସେ ତା' ନିକଟକୁ ଗଲା । ଗୌରୀ ତ । ଦେହରେ ଆନନ୍ଦସ୍ରୋତ ବହିଗଲା । ମନରେ ସେ ଅପୂର୍ବ ଆନନ୍ଦ ଅନୁଭବ କଲା । ତା'ର ବାଲ୍ୟ ସହଚରୀ ଗୌରୀ । ଗୌରୀର ଏହା କପଟନିଦ୍ରା ନା ପ୍ରକୃତରେ ଶୋଇପଡ଼ିଛି । ତୁନି ହୋଇ ସେ ଅନେକଗୁଡ଼ିଏ ଅଶୋକ ଫୁଲ, ତିଳ ଫୁଲ, ଭୂଇଁକୁରୁଆ ଆଉ କେତେ ଫୁଲ ତୋଳିଲା । ଗୌରୀର ଚାରି ପାଖରେ ଫୁଲ ସବୁ ଗଦାଇଦେଲା । ପୁଣି ଗୋଟିଏ ତିଳ ଫୁଲର ସ୍ତବକଧରି ଗୌରୀର କପାଳରେ ଅଳ୍ପ ସ୍ପର୍ଶ କଲା । ଗୌରୀ ହାତରେ ଆଡ଼େଇ ଦେଲା । ପୁଣି ଦେଲା, ପୁଣି ଏଡ଼ାଇ ଦେଲା, ''ଆଃ, ମାଛିଗୁଡ଼ାକ ବଡ଼ ଦୁଃଖ ଦେଲେ ।'' ପୁଣି ଶୋଇଲା, କାହ୍ନୁ ତା' କାନରେ ଫୁଲଗୁଚ୍ଛ ପିନ୍ଧାଇ ଦେଲା, ଗୌରୀ ଉଠି ପଡ଼ିଲା । କାହ୍ନୁପଥର ତଳେ ଲୁଚି ରହିଲା । ଗୌରୀ ଉଠି ଦେଖେ, ଚାରି ଆଡ଼େ ଫୁଲ । କିଏ ଏତେ ଫୁଲ ରଖିଲା ? ପଛ ପଟରେ ଦେଖେ, ପଥର ତଳେ କାହ୍ନୁ ।.''ତୁ ଏଠିକି କାହୁଁ ଆସିଲୁ ମୋର ନିଦ ଭାଙ୍ଗିବାକୁ ?'' କାହ୍ନୁ କହିଲା, '' ତୁ କ'ଣ ଭାତ ଖାଇଲୁଣି, ଆଜି ଏଠି କାହିଁକି ?'' ଗୌରୀ ତା'ର ସକାଳ ଭ୍ରମଣ, ଫଳ ସଞ୍ଚୟ କଥା ଯଥାଯଥ ରୂପେ ବର୍ଣ୍ଣନା କଲା । କାହ୍ନୁ ନିକଟରେ ବସିଲା, ଗୌରୀର ହାତଧରି କହିଲା, ''ଆଜି ବଡ଼ ସୁଯୋଗରେ ଏଠାରେ ଦେଖା ହେଲା । ହୃଦୟ ଫିଟାଇ କଥା ହେବା ।''

ଗୌରୀ କହିଲା, ''କେବେ କଥା ହେଉ ନାହିଁ ଯେ ଆଜି କଥା ହେବାର ସୁଯୋଗ ମିଳିଲା ?'' କାହ୍ନୁ କହିଲା, ''ଏ ସୁଯୋଗ କେବେ ମିଳି ନ ଥିଲା ବୋଲି ବିଚାରି ।''

ଗୌରୀ— ତେବେ ତୋର ମନ ଫିଟାଇ କହ ।

କାହ୍ନୁ— ତୁ କ'ଣ ମୋର ମନ କଥା ଜାଣୁ ନାହୁଁ ଯେ, ମୁଁ କହିବି ?

ଗୌରୀ— ମୁଁ ତୋର ମନ କଥା ଜାଣେ, ତେବେ ତୁ ନିଜ ମୁହଁରେ ସ୍ପଷ୍ଟ କରି କହ ।

କାହ୍ନୁ— ଦିହେଁ ଯାକ ଏକ ଗ୍ରାମର । ତୁ ବାଲ୍ୟକାଳର ସହଚରୀ, ଖେଳର ସଙ୍ଗିନୀ ବାଲ୍ୟକାଳରୁ ମୁଁ ତେତେ କେତେ ସୁଖପାଏଁ— ଯେପରି ତୁ ମୋତେ ସୁଖ ପାଉ, ସେହିପରି, ତୋ ହୃଦୟର କଥା ମୋତେ ଗୁପ୍ତ ନୁହେଁ । ମୁଁ ଆଶା କରିଛି ତୁ ମୋର ଘରଣୀ ହେବୁ । ମୁଁ ଏଥି ନିମନ୍ତେ ଆଜିଯାଏ ବିବାହ କରି ନାହିଁ । ତୋ ମନର କଥା କହ ।

ଗୌରୀ— ଯାହା କହିବ ସତ । ପିଲାଦିନରୁ ଆଜିଯାଏ ଭାଇଭଉଣୀ ପରି ଖେଳା କରି ଦିନ ନେଲେ । ଏବେ ସେପରି ସ୍ୱଚ୍ଛନ୍ଦରେ କଥାବାର୍ତ୍ତା ହେଲେ, ଦଣ୍ଡେ ଏକାଠି ବସିଲେ ଲୋକହସା ହେବା ସତ । ଆମ୍ଭମାନଙ୍କ ମଧ୍ୟରେ ସେହିପରି ସ୍ନେହ ଥାଉ । ତୁ ଗୌଡୁଣୀ ବିବାହ କର । ମୁଁ ମୋର ଜାତିପୁଅ ପାଇଲେ ବିଭାହେବି ।

କାହ୍ନୁ— ଗୌଡ଼ମାନେ ଛୁଆ କନିଆ ବିବାହ କରନ୍ତି । ଅନ୍ୟ ବିବାହିରେ ମୋର ଇଚ୍ଛାଥିଲେ କେତେ କାଳରୁ ବିବାହ କରିସାରନ୍ତି ଣି । ତୋରି ଆଶାରେ ବସି ରହିଛି । ତୁ ଏବେ ନିରାଶ କରୁଛୁ ।

ଗୌରୀ— ସତ, ତୁ ମୋରି ଆଶାରେ ଅଛୁ, ମାତ୍ର ଏ ଆଶା ବୃଥା, ତୁ ଗୌଡ଼, ମୁଁ ପାଉଡ଼ିଆ, ତୋର ମୋର ବିବାହ ହେବ କିପରି ? ତୁ ଜାତିରୁ ଯିବୁ, ମୁଁ ଜାତିରୁ ଯିବି, ପଛକୁ କିଛି ଭଲ ହେବ ନାହିଁ । ଏ ଆଶା ଛାଡ଼ କାହ୍ନୁ, ଏ ଆଶା ଛାଡ଼ ।

କାହ୍ନୁ— ଜାତିରେ ମୋର ପ୍ରୟୋଜନ ନାହିଁ । ତୋର ଯେଉଁ ଜାତି ମୋର ସେହି ଜାତି । ତୋର ଗତିରେ ମୋର ଗତି । ମୁଁ ତୋ ଭିନ୍ନ ଅନ୍ୟ କାହାକୁ ଦେଖିବି ନାହିଁ, ରଖିବି ନାହିଁ । ଦିହେଁଯାକ ଘର କରି ରହିବା । ଜାତିରେ ନ ମିଶିଲେ କ୍ଷତି କ'ଣ ?

ଗୌରୀ— ଦେଖ, ଏତେବେଳେ ବୁଝିବାକୁ ନାହିଁ; ପଛେ ମନରେ କଷ୍ଟ ପାଇବୁ, ମତେ ଛାଡ଼ିବୁ, ମୁଁ ଅନାସ୍ତ ହେବି ।

''ନା, ନା, ତୋର ଭୟର କୌଣସି କାରଣ ନାହିଁ ।'' ଏହା କହି କାହ୍ନୁ ତଳକୁ ଓହ୍ଲାଇ ପଡ଼ିଲା, ପାଣି ଆଞ୍ଜୁଳାଏ ଧରି ଶପଥ କଲା । ଗୌରୀ କହିଲା, ''ଶପଥରେ କି କାମ ?'' ତୋର ଯେବେ କଥା ସତ, ତେବେ ହେଲା । ମୋର ଅନିଷ୍ଟ ହେଲେ ପଛେ ହେଉ ତୋ କଥା ରଖିବି ।'' କାହ୍ନୁର ଗଳାରେ ଗୋଟିଏ ପୋହଳାମାଳ ଥିଲା, ତାହା ସେ ଫିଟାଇ ଗୌରୀ ବେକରେ ପିନ୍ଧାଇ ଦେଲା । ଗୌରୀ ତା' ହାତର ପିତଳ ମୁଦିଟି କାହ୍ନୁକୁ ପିନ୍ଧାଇ ଦେଲା ।

॥ ୨ ॥

ବିଞ୍ଜାବାହାଳ ପ୍ରକାଣ୍ଡ ପାଉଡ଼ିଆ ଗ୍ରାମ । ନିକଟବର୍ତ୍ତୀ ପାହାଡ଼ରେ ପାଉଡ଼ିଆମାନେ ରମା କାଟି ପୋଡ଼ାଇ ସେଠାରେ ଟୁଲୁଙ୍ଗା, ମକା, କାକୁଡ଼ି, ମାଣ୍ଡିଆ, କୁଶଳା ପ୍ରଭୃତି ଫସଲ ରୋପଣ କରିବାରେ ବ୍ୟସ୍ତ । ବର୍ଷକ ମଧ୍ୟରେ ଏପରି ପରିଶ୍ରମର ଦିନ ପାଉଡ଼ିଆମାନଙ୍କର ଆଉ ନାହିଁ । ଯେଉଁ ଆତ୍ମୀୟ, ଆତ୍ମୀୟା ବନ୍ଧୁମାନେ ନିଜେ ରମା କାଟି ନ ଥାନ୍ତି, ସେମାନେ ଯାଇ ଆପଣାର ଆତ୍ମୀୟମାନଙ୍କୁ ସାହାଯ୍ୟ କରନ୍ତି । ଆଦିମ ବାସୀମାନଙ୍କର ଈଦୃଶ ସହାନୁଭୂତି ସ୍ୱାଭାବିକ । ସେମାନେ ବନ୍ଧୁ ଦ୍ୱାରକୁ ଯାଇ କେବଳ ଅନ୍ନଧ୍ୱଂସ କରନ୍ତି ନାହିଁ, ସେମାନେ ଯେତିକି ଖାଆନ୍ତି, ତହିଁରୁ ବଳି ପରିଶ୍ରମ କରି ଗୃହସ୍ଥର ସାହାଯ୍ୟ କରନ୍ତି ।

ଗୌରୀର ମାମୁଁଘର ବିଞ୍ଜାବାହାଳ ଗ୍ରାମରେ । ମାତାର ଅନୁମତି କ୍ରମେ ଗୌରୀ ଏହି ଗ୍ରାମକୁ ଗଲା । କାର୍ତ୍ତିକ, ମାର୍ଗଶିର ଯାଏ ମାମୁଁଘରେ ରହିବ । ଗ୍ରାମଟି ବଡ଼, ସେଠାରେ ଅନେକ ପାଉଡ଼ିଆଙ୍କର ବସତି, ଅନେକ ଯୁବକ ଯୁବତୀ ଅଛନ୍ତି । ବଡ଼ ନାଚ଼ଘର ଅଛି, ପ୍ରତି ରାତ୍ରରେ ଚାଙ୍ଗୁ ନାଚ ହୁଏ । ନିକଟବର୍ତ୍ତୀ ଗ୍ରାମମାନଙ୍କର ଯୁବକମାନେ ମଧ୍ୟ କେବେ କେବେ ଚାଙ୍ଗୁନାଚ କରିବାକୁ ଆସନ୍ତି । ଯୁବକମାନଙ୍କ ସହିତ ଚାରି ଛଅ ମାସ ଗୌରୀ ଚାଙ୍ଗୁ ନାଚ କରିବ । ଅନେକଙ୍କ ସହିତ ଦେଖା ସାକ୍ଷାତ ହେବ । ଗୌରୀର ଗୋଟିଏ ଭଲ ସ୍ୱାମୀ ମିଳିବାର ଖୁବ୍ ସମ୍ଭବ । ମହାଗ୍ରାମରେ ନାଚ଼ଘର ନାହିଁ, ଯୁବକ ଯୁବତୀ ଚାଙ୍ଗୁନାଚ କରିବାର ବିଶେଷ ସୁବିଧା ନାହିଁ, ଗୌରୀର ମା' ଭାବିଲା, ମହାଗ୍ରାମରେ ଗୌରୀ ସବୁଦିନେ ଥିଲେ ଭଲ ବର ମିଳିବା ଆଶା କମ୍ । ମାମୁଁ ଘରକୁ ଯାଇ ଛ'ମାସ ରହିଲେ, ଦୈନିକ ଚାଙ୍ଗୁନାଚ କଲେ ଗୌରୀ ପକ୍ଷରେ ମଙ୍ଗଳଜନକ । ଗୌରୀ ମାତୁଳାଳୟକୁ ଗଲା । ଗୌରୀର ମା' ନିଶ୍ଚିନ୍ତରେ ରହିଲା ।

॥ ୩ ॥

ଜ୍ୟେଷ୍ଠ ମାସ ହେଲା । ପାଣି ଦୁଇ ଚାରି ଅସରା ବର୍ଷିଲା । ନାଳମାନଙ୍କରେ କିଛି କିଛି ପାଣି ଜମା ହେଲା । ନୂଆ ଘାସ କଅଁଳିଲା । ମଇଁଷିମାନଙ୍କୁ ପାହାଡ଼ିଆ ବାଉଁଶବଣକୁ

ନେଲେ, କଅଁଳ ବାଉଁଶପତ୍ର, ଲେପେଇ ବା ପନାସି, କରିଡ଼ିଖାଇ ପୁଷ୍ଟ ହେବେ, ବେଶି ଦୁଧ ଦେବେ । ମଇଁଷି କଅଁଳାଇବା ସମୟ ହେବା ଆଗରୁ କାହ୍ନୁ ତା'ର ମଇଁଷି ପଲକ ବିଞ୍ଚବାହାଳ ନିକଟବର୍ତ୍ତୀ ହନୁଚୁଆ ଜଙ୍ଗଲରେ ନେଇ ରଖିଲା । ଗୋଟିଏ ନାରିଘର ତୟାର କରିରହିଲା । ତା'ର ଗ୍ରାମରୁ କୌଣସି ସହକାରୀ ଗୌଡ଼ ନେଇ ନାହିଁ । ସେ ମନେକଲା ବିଞ୍ଚବାହାଳର କୌଣସି ଗଉଡ଼କୁ ନିଯୁକ୍ତ କଲେ ଭଲ ହେବ । ତା'ର ସହକାରୀ ଗୌଡ଼ ନିମନ୍ତେ ମଧ ଦୁଇ ବଖରା ଘର ବନାଇଲା । ଗୌରୀ ତା'ର ମାମୁ ଘରେ ଥିଲା । ବିରିଙ୍ଗା କାମ ସରିଲା ପରେ ଗୌରୀ ସ୍ୱଗୃହକୁ ଯିବାର ଇଚ୍ଛା ତା'ର ମାମୁକୁ ଜଣାଇଲା, ଗୌରୀର ମାମୁ, ସ୍ୱୀକୃତ ହେଲା, କହିଲ, ''ଗୌରୀ ନିଜ ଘରକୁ ଯାଉ, ପୁଣି ଶୀତକାଳରେ ଆସିବ ।'' ବୁଣା ବୁଣି ବେଳେ ତା' ଘରେ ଗୌରୀ ରହିବାରୁ ତା'ର ବିଶେଷ ଉପକାର ହୋଇଥିଲା ବୋଲି ସେ ମନେକଲା । ପୁଣି ଫସଲ ତୋଳିଲା ବେଳେ ଗୌରୀ ଅବଶ୍ୟ ଆସିବ ବୋଲି ତା'ର ଧାରଣା ଏବଂ ସେତେବେଳେ ଗୌରୀ ନିମନ୍ତେ ଗୋଟିଏ ଭଲ ବର ଖଞ୍ଜି ପାରିବ ବୋଲି ତା'ର ଆଶା । ଗୌରୀର ଶାରୀରିକ ପରିଶ୍ରମ ଦେଖି ଏବଂ ତା'ର ଆଚରଣରେ ତା'ର ମାମୁଁ ବଡ଼ ସନ୍ତୁଷ୍ଟ । ଗଲାବେଳେ ଖଣ୍ଡେ ଲୁଗା ଦେଲା, ଆଉ କିଛି ଚାଉଳ, କିଛି ବିରି, କିଛି ମାଣ୍ଡିଆ ଦେଇ ପଠାଇଲା । ଏକ ଗ୍ରାମରୁ ଅନ୍ୟ ଗ୍ରାମକୁ ଯିବାବେଳେ ସର୍ବଦା ସଙ୍ଗୀର ଦରକାର, ଏପରି ନୁହେଁ । କି ସ୍ତ୍ରୀ, କି ପୁରୁଷ ଏକାକୀ ମହାରଣ୍ୟରେ ଚାରି ପାଞ୍ଚ କ୍ରୋଶବର୍ତ୍ତୀ ଗ୍ରାମକୁ ଚାଲିଯାନ୍ତି । ଗୌରୀ ମାମୁଁ ତା' ସଙ୍ଗରେ ଯିବାକୁ କାହାକୁ ନିଯୁକ୍ତ କଲା ନାହିଁ । ମନେକଲା, ଗୌରୀ କାହାରି ସଙ୍ଗରେ ଯିବ, ଏକାକିନୀ ମଧ ଯାଇପାରିବ । ତା'ର ଧାରଣା ଗୌରୀ ଖୁବ୍ ଭୟ ଶୂନ୍ୟ, ତା'ର ଶାରୀରିକ ବଳ ଯଥେଷ୍ଟ । ତା' ପକ୍ଷରେ ଗ୍ରାମରୁ ଗ୍ରାମାନ୍ତରକୁ ଯିବା କିଛି ଅସମ୍ଭବ ନୁହେଁ । ଗୌରୀ ଗଲା । ପାଞ୍ଚ ମାସ ଅତୀତ ହେଲା । ଚୂଲୁଙ୍ଗା ତୋଳିବା ବେଳେ ଗୌରୀ ଆସିଲା ନାହିଁ । ତା' ମାମୁ ଭାବିଲା— ଗୌରୀ ଆଉ କେଉଁ ଆଡ଼େ ଗଲା, ଆସି ପାରିଲା ନାହିଁ ।

କାହ୍ନୁ ଓ ଗୌରୀ ଗୋଟିଏ ନାରିଘରେ ବାସ କଲେ । ତାଙ୍କର ବିବାହ ତ ଶଙ୍ଖାରୀ ଜଳ ନିକଟରେ ସମାପନ ହୋଇଥିଲା । ଉଭୟ ବଡ଼ ସୁଖରେ ପତିପତ୍ନୀ ଭାବରେ ବାସ କଲେ । ଗୌରୀ ପାଉଡ଼ିଆ ଝିଅ ହେଲେ ମଧ ଗଉଡ଼ଙ୍କ ସଙ୍ଗରେ ରହି ଖତ ପକାଇବା, ଗୁହାଳ ସାଫ କରିବା ତା'ର ଅଭ୍ୟାସ ଥିଲା । ସେ ସୁନ୍ଦର ରୂପେ ଗୋଠର କାମ ନିର୍ବାହ କରୁଥାଏ । କାହ୍ନୁର ସହକାରୀ ଓ ତା'ର ସ୍ତ୍ରୀ ଦୁହେଁ ମଧ ଗୋଟିଏ ନାରି ଘରେ ରହିଲେ । ଯଦୁର ସ୍ତ୍ରୀ ଗୌରୀକୁ ଭୂୟାଁଣୀ ବୋଲି ଜାଣିବାରୁ କହିଲା, ''ଯେବେ ଗୌରୀ ଦହି ବସାଇବ, ତେବେ କେହି ଖାଇବେ ନାହିଁ, ସେ ମଧ ଖାଇବ ନାହିଁ । ଏଣୁ ଗୌରୀ ଦୁଧତକ ଯଦୁର ସ୍ତ୍ରୀକୁ ଦିଏ । ସେ ଦହି ବସାଇ ଘିଅ କରେ, ଦହି ନେଇ ଗ୍ରାମରେ ବିକ୍ରି କରେ । ଦୁହେଁ ଭାଗକରି ନିଅନ୍ତି, ମାତ୍ର ଘିଅତକ ଗୌରୀ ଆପଣା ଘରେ ରଖେ । ମାର୍ଗଶିର ମାସରେ ଗୌରୀର ଭାଇ ନନ୍ଦମାମୁଁ ଘରକୁ ଗଲା । ଜାଣିଲା, ଗୌରୀ ମାମୁଁଘରେ ନାହିଁ ଆଷାଢ଼ ମାସରୁ ଚାଲି ଯାଇଅଛି । ସେମାନେ ଅନୁସନ୍ଧାନ କରି ଜାଣିଲେ, ଗୌରୀ ଓ କାହ୍ନୁ ପତିପତ୍ନୀ ଭାବରେ ବାସ କରୁଛନ୍ତି । ଗୌରୀର ପାଞ୍ଚ ମାସର ଗର୍ଭ । ମାମୁଁ, ଭାଇ ଚିନ୍ତାକଲେ, କ'ଣ କରିବେ । ଭାବିଲେ ବିବାଦ ନିଷ୍ପ୍ରୟୋଜନ । କାହ୍ନୁ ଓ ଗୌରୀ ଅରଣ୍ୟରେ ମଇଁଷି ଧରି ନିର୍ବିବାଦରେ ରହିଲେ । କାହ୍ନୁର ବଖରାକ ଅଲଗା, ତା'ର ପାଳିଆର ବଖରାକ ଅଲଗା । ଦୁଇ ପରିବାର ମଇଁଷି ଚରାଇ ସୁଖରେ ବାସ କଲେ । କାହ୍ନୁ ନ ଥାଏ । ଗୌରୀ ପ୍ରସବକଲା । ସାହାଯ୍ୟ କରିବାକୁ କେହି ନାହିଁ । ପାଳିଆର ସ୍ତ୍ରୀ ଦୁଃଖୀ କହିଲା, ଭୂୟାଁଣୀ ଛୁଆଳୀକୁ ସେ କିପରି ଛୁଇଁବ । ଗୌରୀ ନୂତନ ପ୍ରସୂତି, ପୂର୍ବରୁ ଜାଣି ପାରିଲା ନାହିଁ । କୌଣସି ଗ୍ରାମକୁ ଯାଇଥିଲେ ସାହାଯ୍ୟ ପାଇଥାନ୍ତା, ତାହା ସେ କଲା ନାହିଁ । ଗୌରୀ ପୁତ୍ର ମୁଖ ଦର୍ଶନ କଲା । ତା'ର ସମସ୍ତ ଗର୍ଭଯନ୍ତ୍ରଣା ପାସୋରି ଦେଲା । ପୁତ୍ର ତା'ର ଅମୂଲ୍ୟ ନିଧି, ତାହା ପାଇଲା । ଗତ ଦୁଃଖକୁ କିଏ ସ୍ମରଣ କରେ ? କାହ୍ନୁ ଆସିଲା । ପୁଅକୁ ଦେଖି ବଡ଼ ଆନନ୍ଦିତ ହେଲା । ଭାବିଲା, ଜଗତରେ ଜାତି ଜାତି ବୋଲି ଲୋକେ କହନ୍ତି, ଏଥିରେ କ'ଣ ଅଛି ? ମୁଁ ଭୂୟାଁଣୀ ରଖିଲି, ମୋର କି ପେଟପୋଷା ଯାଉ ନାହିଁ ? ମୋତେ କି ମୋର ଗୌରୀ ଭାତ ମୁଠାଏ ରାନ୍ଧି କରି ଖୁଆଉ ନାହିଁ । ହାତ-ପା କରୁ ନାହିଁ ? ଘର ରକ୍ଷା କରୁ ନାହିଁ ? ଗୌରୀପରି ସୁଘରଣୀ ମିଳିବ ନାହିଁ । ପୁଣି ପଙ୍କରୁ ଜାତ ହେଲା ପଦ୍ମଫୁଲ ସେ । ମୋର ଆଉ କି ଦୁଃଖ ଅଛି ? ମୋ ଭଳିଆ ଗଉଡ଼ପିଲା ମୋଠାରୁ ବଳି କିଏ ସୁଖରେ ଅଛି ? ଗଉଡୁଣୀଟାଏ ବିଭା ହୋଇଥିଲେ କି ମୋର ଅଧିକ ସୁଖ ହୁଅନ୍ତା ? ବଡ଼ ସୁଖରେ କାହ୍ନୁ ଓ ଗୌରୀ ନବଜାତ ଶିଶୁକୁ ସଙ୍ଗରେ ଘେନି ମହାରଣ୍ୟରେ ମଇଁଷି ଚରାଇ ଦିନ ଯାପନ କରୁଥିଲେ । କିନ୍ତୁ ଗୌରୀର ସୁଖରେ, ଗୌରୀର ସଦ୍‌ଗୁଣରେ ଦୁଃଖୀର ମନ ବିରସ । ଗଉଡୁଣୀ ଭୂୟାଁଣୀ ସମତୁଲ୍ୟ ନୁହେଁ ବୋଲି କାହ୍ନୁ କହେ । ହେଲେ, ଗଉଡ଼ପିଲା— କେତେଦିନ

ଭୂୟାଁଣି ପ୍ରେମରେ ବନ୍ଧା ଥିବ । ଦେଖିବା ତ, ବୋଲି ଦୁଃଖୀ ଦିନେ ଦିନେ ଭାବେ । କାହ୍ନୁ, ଦୁଧ ଦୁହିଁ ଦୁଃଖୀ ଆଗରେ ମାପି ଦିଏ । କେବେ ଦୁଖୀର ବେଶୀ ନିକଟକୁ ଗଲେ ଦୁଃଖୀ କହେ, "ରହ, ଛୁଆଁ ହେବ ।" ଦିନେ ନୂଆ ଆଟିକାଟିଏ ଦୁଃଖୀ ମାରାକରି ଦେଲା, ପକାଇ ଦେଲା, କାରଣ ଦୁଧ ନ ଅଜାଡ଼ି କାହ୍ନୁ ଆଗରୁ ପାଣିରେ ଧୋଇ ପକାଇଲା । ଦୁଃଖୀ କହିଲା, "ପ୍ରଥମରୁ ଦୁଧ ଦେଇଥିଲେ ଆଟିକାମାରା ହୁଅନ୍ତା ନାହିଁ । ନୂଆ ଆଟିକାରେ ପାଣି ଅଜାଡ଼ିଲେ ମାରା ହେବ ନାହିଁ ? ତୁମେ ତ ଗଉଡ଼ ନୁହଁ— ଭୂୟାଁ ଯେ ।" କାହ୍ନୁ ମୁହଁ ଶୁଖାଇ ତୁନି ହୋଇରହିଲା । ଦୁଃଖୀଠାରୁ କାହ୍ନୁ ଅନେକ ଥର ଏପରି ଲାଞ୍ଛନା ଭୋଗ କରେ । ଗୌରୀ ଗ୍ରାମାନ୍ତରକୁ ଗଲେ ଦୁଃଖୀ କାହ୍ନୁ ନିମନ୍ତେ ଭାତ ରାନ୍ଧି ଦିଏ, ଦ୍ୱାରରେ ଖାଇବାକୁ ଦିଏ । କାହ୍ନୁକୁ ଭୋଜନ ସ୍ଥାନ ପରିଷ୍କାର କରିବାକୁ ପଡ଼େ, ବାସନ ମାଜିବାକୁ ପଡ଼େ । ଦୁଃଖୀ ନ ଥିଲେ କାହ୍ନୁକୁ ଏ କାର୍ଯ୍ୟ ଅବଶ୍ୟ କରିବାକୁ ପଡ଼ନ୍ତା; ଅଧିକନ୍ତୁ ରାନ୍ଧିବାକୁ ମଧ ହୁଅନ୍ତା । କିନ୍ତୁ ବାସନ ମାଜିଲା ବେଳେ ଦିନେ କାହ୍ନୁ ମନଦୁଃଖ କରେ । ସମୟ ଜାଣି ଦୁଃଖୀ କହେ, "ତୁମେ ଜାତିରେ ଥିଲେ ମୁଁ ତୁମର ଲିତା ଲଗାନ୍ତି, ବାସନ ମାଜନ୍ତି । ତମେ ତ ଭୂୟାଁ ।" କାହ୍ନୁର ମନ ଅଧିକତର ବିଷଣ୍ଣ ହୁଏ ।

॥ ୪ ॥

"ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନିଚ଼ ସୁଖାନିଚ଼—"

ସବୁ ଦିନ ଏକ ଭାବରେ ଯାଏ ନାହିଁ । ଗୌରୀର ସୁଖ ସ୍ୱପ୍ନ ଭାଙ୍ଗିଲା । କାହ୍ନୁ ପାଞ୍ଚ ସାତ ଦିନ ନିମନ୍ତେ ଗ୍ରାମାନ୍ତରକୁ ଯାଇଥିଲା । ଦିନେ ହଠାତ୍ ଗୌରୀର ପୁଅକୁ ଜର ହେଲା । ଗ୍ରାମରୁ ଗୋଠ ଛଅ ସାତ ମାଇଲ । ଔଷଧପତ୍ରର ବ୍ୟବସ୍ଥା କିଏ କରିବ ? କାହାର ଆଶ୍ରୟ ନେବ ? ମନେକଲା, ସେ ଛୁଆକୁ ଦୁଃଖୀ ଜିମା ଦେଇ ଔଷଧ ଆଣିବାକୁ ଯିବ। ଦୁଃଖୀ କହିଲା ସେ ଛୁଆକୁ ଦେଖିବ ମାତ୍ର ଛୁଇଁବ ନାହିଁ କିମ୍ବା ଖୁଆଇ ପାରିବ ନାହିଁ । ଗୌରୀ ଅଗତ୍ୟା ଛୁଆକୁ ଧରି ଏକାକିନୀ ନିଜର ପିତ୍ରାଳୟକୁ ଗଲା, ସେଠାରେ ଯାଇ ପୁତ୍ରର ଚିକିତ୍ସା କରାଇଲା; ମାତ୍ର କିଛି ଉପକାର ହେଲା ନାହିଁ । ଶିଶୁର କ୍ଷୀଣ ପ୍ରାଣବାୟୁ ଅନ୍ତର୍ହିତ ହେଲା ଗୌରୀର ଆଶା ଭରସା ସବୁ ବୁଡ଼ିଗଲା, ସେ ଦୁସ୍ତର ଶୋକ ସାଗରରେ ଭାସମାନ ହେଲା । ପୁତ୍ରଶୋକ ହେତୁ ଗୌରୀ ତା'ର ପିତ୍ରାଳୟରେ ଅନେକ ଦିନ ରହିଲା । କାହ୍ନୁ ଗୋଠରେ ଥାଏ, ମଝିରେ ମଝିରେ ଗୌରୀକୁ ଦେଖିବାକୁ ଆସେ । ଅନେକ ଦିନପରେ ଗୌରୀ ପୁଣି ଗୋଠକୁ ଗଲା । ସେତେବେଳେ କାହ୍ନୁ ଦୁଃଖୀ ଘରୁ ଭାତ ଖାଉଥାଏ । କିଛି ଦିନ ଗୌରୀ ମଧ ଦୁଃଖୀ ଘରୁ ଭାତ ଖାଇଲା । ଗୌରୀ ପୁଣି ନିଜର ଗୃହସ୍ଥାଳୀ ଆରମ୍ଭ କଲାବେଳେ କାହ୍ନୁ କହିଲା, "ଦୁଃଖୀ ତ ଭାତ ରାନ୍ଧି ଦେଉଛି, ସ୍ୱତନ୍ତ୍ର ରନ୍ଧା କରିବାର କି ଦରକାର ?" ସରଳ ବିଶ୍ୱାସରେ ଗୌରୀ ସ୍ୱୀକାର କଲା । ଅନେକ ଦିନ ଚାଲିଗଲା ।

॥ ୫ ॥

ଇତି ଗ୍ରାମରେ ଗଉଡ଼ଙ୍କର ଜାତୀୟସଭା ହେବାର ସ୍ଥିର ହେଲା । ଚାରି ଛଅ ଦିନ ସଭା ହେବ, ଦୈନିକ ଭୋଜି ହେବ । କିଏ ଜାତିରେ ମିଶିବ, କିଏ ଜାତିରୁ ଅନ୍ତର ହେବ, କେତେଟା ରାଣ୍ଡ ଅନ୍ୟ ପତି କରିବେ, କେତେଟଙ୍କା ମହାକୁଳ ଖାଇଲା, କେତେଟଙ୍କା ଖୁଣ୍ଟିଆ ଛପାଇ ରଖିଛି, ଏଥିର ବିଚ଼ାର ହେବ, ଇତ୍ୟାଦି । କାହ୍ନୁର ଆଗ୍ରହ ବଳିଲା, ସେ ଦେଖିବାକୁ ଯିବ । ଗୌରୀ ସ୍ୱୀକୃତ ହେଲା କାହ୍ନୁ ଗଉଡ଼ ସଭା ଦେଖିବାକୁ ଗଲା, ଗୌରୀ ପିତ୍ରାଳୟକୁ ଗଲା । ପାଳିଆ ଜିମା ମଇଁଷି ରହିଲେ । ଦହି, ଘିଅ ଦୁଃଖୀ ରଖିବାର ସ୍ଥିର ହେଲା ।

କାହ୍ନୁର ଭାଇ ଓ ପିତା ପ୍ରଭୃତି କାହ୍ନୁକୁ ଜାତିରେ ମିଶାଇବାକୁ ପ୍ରସ୍ତାବ କଲେ । କାହ୍ନୁ ରାଜିହେଲା । ଗଉଡ଼ ସଭାରେ ଏ କଥା ପଡ଼ିବ, ବ୍ରାହ୍ମଣ ବ୍ୟବସ୍ଥା ଦେଲେ କାହ୍ନୁ ଜାତିରେ ମିଶିବ— ଏହା ସ୍ଥିର ହେଲା । ଗୌରୀକୁ ଜଣା ନାହିଁ, ସେ ଆପଣା ପିତ୍ରାଳୟରେ ଅଛି । ଗଉଡ଼ ସଭା ଓ ଭୋଜି ଚାଲିଛି । କାହ୍ନୁ ଜାତିରେ ମିଶିବାର ସ୍ଥିର ହେଲା । ସେ ତିନିଦିନ ଉପବାସ କରିବ, ମସ୍ତକ ମୁଣ୍ଡାଇବ, ପଞ୍ଚଗବ୍ୟ ପାନ କରିବ, ଗୋ ଦାନ କରିବ, ଦୀର୍ଘକାଳ ଅସ୍ପୃଶ୍ୟା-ସହବାସରେ ଥିଲେ ମଧ ଆଉ ଗୋଟାଏ ଗୋଦାନରେ ମୁକ୍ତି ଲାଭ କରିବ, ତୀର୍ଥଯାତ୍ରା ନିଷ୍ପ୍ରୟୋଜନ, ଇତ୍ୟାଦି ଇତ୍ୟାଦି । ପୁଣି ଜାତି ଭୋଜି ଗୋଟାଏ ଭଲ ଭାବରେ ଦେବ, ଗୌରୀକୁ ଏକାବେଳକେ ତ୍ୟାଗ କରିବ । ଏ କାନରୁ ସେ କାନ, ଗୌରୀର ଭାଇ ନନ୍ଦ ଏହା ଶୁଣିପାରିଲା; ତା'ର ମା' ଓ ଗୌରୀକୁ କହିଲା । ଗୌରୀ, ନନ୍ଦ ଓ ତାର ମା ଗଉଡ଼ ସଭାକୁ ଯାଇ ତାଙ୍କର ଅଭିଯୋଗ ଜଣାଇବାର ବିଚ଼ାର କଲେ । ଗୌରୀର ମା' କହିଲା "ଗୌରୀ, ତୁ ନ ବୁଝି ଅନ୍ୟ ଜାତିରେ ପଶିଲୁ, ଏବେ ଗଉଡ଼ରେ ନ ଗଲୁ କି ପାଉଡ଼ିଆରେ ନ ଗଲୁ— ତୋର କି ଗତି ହେବ ? ବୁଢ଼ୀ ଦିନକୁ ମୋର ଏଇଆ ହେଲା ।" ଗୌରୀ କହିଲା, "କାହ୍ନୁ ଏପରି କରିବ ବୋଲି ମୋର ବିଶ୍ୱାସ ନ ଥିଲା । ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ।

ପୁରୁଷ ଜାତି ଏଡ଼େ ଅବିଶ୍ୱାସୀ, ନିଷ୍ଠୁର, କପଟୀ, ଏହା ମୁଁ କିପରି ଜାଣିବି ? ସେ ଶପଥ କଲା। ଏତେବେଳେ ଭସାଇ ଦେବାକୁ ବସିଛି । ଯାହା ହେବାର ହେଉ, ଦୁଃଖ ଧନ୍ଦା କରି ଖାଇବି, ତା'ରି ନାମରେ ମୋର କାଚ୍ ମୁଠାକ ଥାଉ ।'' ଅନେକ କାନ୍ଦିଲା ।

ରାତି ପାହିଲା, ତିନି ଜଣ ବାହାରିଲେ । ନନ୍ଦ ଭୂୟାଁ— ତା' ହାତରେ ସବୁବେଳେ ଧନୁଶର । ଆଜି ମଧ ସେ ଧନୁଶର ଧରି ମା' ଭଉଣୀ ଆଗରେ ଚାଲିଲା । ଗଉଡ଼ ସଭାରେ ପହଞ୍ଚିଲା । ଜଣ କେତେ ଗୌରୀକୁ ଦେଖି ଅଯଥା ତିରସ୍କାର କରିବାକୁ ଲାଗିଲେ; କହିଲେ, ''କାହ୍ନୁ ପିଲାଟି ଭୁଲିଯାଇଥିଲା । ଭ୍ରମ ବୁଝିପାରି ତା'ର ନିଜ ଜାତିରେ ମିଶୁଛି, ତୁ ଏଠାକୁ ପୁଣି କାହିଁକି ଆସିଲୁ ?'' ଗୌରୀ କହିଲା, ''କାହ୍ନୁ ମୋଠାରୁ ଭାତ ଖାଇ ସହବାସ କରି ଦୁଇ ବର୍ଷ କାଳ କଟାଇଲା। ଯେବେ ସେ ଗଉଡ଼, ଗଉଡ଼ ଜାତିରେ ମିଶିବ, ମୁଁ କାହିଁକି ମିଶିବି ନାହିଁ ? କାହ୍ନୁର ଗତିରେ ମୋର ଗତି । ମୁଁ ଗଉଡ଼ଙ୍କ ଭାତ ରାନ୍ଧିବାକୁ ଆସିଛି, ରନ୍ଧା ଘରେ ପଶି ଭାତ ରାନ୍ଧିବି ।'' ବାକେ ଜଣେ କେତେ ଗଉଡ଼ଙ୍କ କଥା ଭ୍ରୂକ୍ଷେପ ନ କରି ମଝି ଆଡ଼କୁ ଗଲେ, ଦେଖିଲେ କାହ୍ନୁର କେଶ ମୁଣ୍ଡ ନ ହୋଇଯାଇଛି । ଗାଧୋଇଲେ ପଞ୍ଚଗବ୍ୟ ପାନ କରିବ । ପୁରୋହିତକୁ ଦେଖି ଗୌରୀ କହିଲା, ''ଯେବେ କାହ୍ନୁକୁ ପୁଣି ଗଉଡ଼ କରି ନେବାକୁ ତୁମ ମନ୍ତ୍ର ବଳଅଛି, ତେବେ ମୋତେ ମିଶାଇବାକୁ ତୁମର ମନ୍ତ୍ରବଳ ନାହିଁ ? ନୋହିଲେ ପାଉଡ଼ିଆ ଜାତିରେ ମିଶାଇ ଦିଅ । ଯେବେ କାହ୍ନୁଠାରୁ ପାଣି ପିଇବ ତେବେ ମୋଠାରୁ ମଧ ପିଅ ।'' ଏ ଉକ୍ତିରେ ପୁରୋହିତକୁ ମହା ଧନ୍ଦା ଲାଗିଲା। ଗଉଡ଼ମାନେ ଭାବିଲେ— ଯେବେ ପ୍ରକୃତରେ ରନ୍ଧାଘରେ ପ୍ରବେଶ କରେ ତେବେ ସବୁ ନଷ୍ଟ ହେବ । ସମସ୍ତେ ଗର୍ଜନ କରିବାକୁ ଲାଗିଲେ । ଗୌରୀର ଏଥିରେ ଭୟ ନାହିଁ— ସେ ନ୍ୟାୟପ୍ରାର୍ଥିନୀ। ପୁରୋହିତ ଶାସ୍ତ୍ରର ଦୋହି ଦେଇ ବୁଝାଇ ବସିଲେ । କାହ୍ନୁ ମୁଣ୍ଡ ପୋତି ବସିଥାଏ । ଗୌରୀ କାନ୍ଦି କାନ୍ଦି କାହ୍ନୁର ଶପଥ ଓ ପ୍ରତିଜ୍ଞା କଥା କହିଲା । ଗୌରୀର ଭାଇ ତୁନି ହୋଇ ସବୁକଥା ଶୁଣିଲା ।

ଭୂୟାଁ— ସେ ଶାସ୍ତ୍ର ଓ ଜାତି କଥା ବୁଝେ ନାହିଁ, ବୁଝିବାର ଦରକାର ନାହିଁ, ସେ ମନେକରେ ପୁରୁଷର ଯେଉଁ ଜାତି ସ୍ତ୍ରୀର ସେହି ଜାତି । ଗୌରୀ ଗଉଡ଼ ହାତ ଧରିଲା ସେ ଗଉଡୁଣୀ, ଉଭୟ ସୁଖ ଦୁଃଖରେ ରୁହନ୍ତୁ । ସେଥିରେ ଅନ୍ୟର ହସ୍ତକ୍ଷେପ କରିବାର—ସ୍ତ୍ରୀ ପୁରୁଷଙ୍କୁ ବିନା କାରଣରେ ଅନ୍ତର କରାଇବାର କି ଦରକାର ? ହିନ୍ଦୁ ଜାତିଗତ ଜଟିଳତା ତା'ର ବୋଧଗମ୍ୟ ନୁହେଁ । ଅବଶେଷରେ ନନ୍ଦ କହିଲେ, ''ପୁରୋହିତ, ଶୁଣ ଯେବେ କାହ୍ନୁକୁ ଜାତିରେ ମିଶାଉଛ ତେବେ ଗୌରୀକୁ ମଧ ମିଶାଇବେ । ଯେବେ ଶାସ୍ତ୍ରର ବଳ ଅଛି ତ ଦୁହିଁଙ୍କ ହାତରୁ ପାଣି ଖା । ନୋହିଲେ ଗୌରୀକୁ ଆମ ଜାତିରେ ମିଶାଇ ଦେ । ଏହା ନ କରି ଯେବେ ଟଙ୍କା ଓ ଗାଈ ଲୋଭରେ କାହ୍ନୁକୁ ଗଉଡ଼ କରୁ ଓ ଗୌରୀକୁ ଅନାସ୍ଥ କରୁ, ତେବେ ନିଶ୍ଚୟ ଜାଣ, ଏହି ଧନୁ କାଣ୍ଡରେ ଦିନେ ତୋର ପ୍ରାଣଯିବ ।'' କାହ୍ନୁକୁ ଲକ୍ଷ୍ୟ କରି କହିଲା, ''ଭାଇ କାହ୍ନୁ, ଦୁଇ ବର୍ଷ ଭୂୟାଁଣିର ଭାତଭଲ ଲାଗିଲା, ଏବେ ପୁଣି ଗଉଡୁଣୀର ଭାତ ଖାଇବାକୁ ମନ ବଳାଉଛୁ । ମୋର ଭଉଣୀ ଦୁଃଖ ପାଇବ, ତୁ ସୁଖରେ ରହିବୁ— ଏହା କେବେ ହେବ ନାହିଁ ଭାଇ, ହେବ ନାହିଁ । ଗୌରୀକୁ ଛାଡ଼ିଲେ ଏ କାଣ୍ଡରେ ତୋର ପ୍ରାଣ ନିଶ୍ଚୟ ନେବି ।'' ଗୌରୀ କହିଲା, ''ଭାଇ, ଅନ୍ୟାର୍ଥରେ କାର୍ଯ୍ୟ ନାହିଁ, ତା'ର ଇଚ୍ଛା ସେ କରୁ, ମୁଁ ମଜୁରି ଲାଗି ବଞ୍ଚିବି, ଆସ ଯିବା ।'' ନନ୍ଦ ଶୁଣିବାର ପାତ୍ର ନୁହେଁ, କହିଲା, ''ମୁଁ ଏଥିରେ ଉତ୍ତର ନ ପାଇଲେ ଯିବି ନାହିଁ । ଦିନେ ଜନ୍ମ, ଦିନେ ମରଣ ।'' ପୁରୋହିତ ଭାବିଲେ, ଏଥିର ବ୍ୟବସ୍ଥା ତାଙ୍କ ଶାସ୍ତ୍ରରେ ନାହିଁ । ଗୋ ପ୍ରାପ୍ତି ଅପେକ୍ଷା ପ୍ରାଣରକ୍ଷା ଶ୍ରେୟସ୍କର ମଣି ସେ ସ୍ଥାନ ତ୍ୟାଗର ଉଦ୍‌ଯୋଗ କଲେ । କାହ୍ନୁର ଜାତି ଅପେକ୍ଷା ପ୍ରାଣର ମମତା ବେଶି । ପ୍ରାଣ ଭୟରେ ତାହାର ପୁଣି ପୂର୍ବ କଥା ମାନ ମନେପଡ଼ିଲା । ସଭା ତ୍ୟାଗ କରି ଏକାବେଳେକେ ସେ ଗୋଠକୁ ପ୍ରସ୍ଥାନ କଲା ।

•

## ଭିନ୍ନ ଗତି - ଭିନ୍ନ ମତି

'ବାବା ଧନୀଇଇ ପୁତ୍ର ଏକଟି ପଏଏସା ଦାଓ' । କି କରୁଣା ବ୍ୟଞ୍ଜକ ହୃଦୟସ୍ପର୍ଶୀ ସୁମଧୁର । ଭାଦ୍ରମାସ । ସକାଳ ପ୍ରାୟ ଦଶଘଣ୍ଟା । ମେଘ ଟପ ଟପ ବର୍ଷୁ ଅଛି । କର୍ଣ୍ଣଉଆଲିସ ଷ୍ଟ୍ରିଟର ୨୪ ନମ୍ବର ଫୁଟପାଥ ଉପର ଛାତ ତଳେ ଜଣ କେତେ ଲୋକ ଦଣ୍ଡାୟମାନ । ସମସ୍ତେ ହାଇକୋଟ୍ ଟ୍ରାମକୁ ଅପେକ୍ଷା କରୁଥିଲେ । କେଜାଣି କି ନିମନ୍ତେ ଟ୍ରାମ ଯଥା ସମୟରେ ଆସି ନ ଥିଲା । ଜଣ କେତେ ହାଇକୋଟ ଯାତ୍ରୀ । ଜଣେ ଶୁକ୍ଳ ପେଣ୍ଟଲୁନ୍ ଏବଂ ଚପକନ-ପ[illegible]-ସମ୍ଭବତଃ ଓକିଲ । ଅନ୍ୟ ସ୍ଥାନକୁ ଯିବା ଲୋକ ମଧ୍ୟରେ ଜଣେ ଗୌରବର୍ଣ୍ଣ, ସୁପୁରୁଷ, ଶୁକ୍ଳପଟ ବସ୍ତ୍ରଧାରୀ, ଲମ୍ବ କୁଞ୍ଚିତ କେଶ— ପରିପାଟୀ ସହିତ ବିନ୍ୟସ୍ତ କପୋଳରେ ତିଳକ । ସମ୍ଭବତଃ ଗୋସ୍ୱାମୀ— କଥକ ଠାକୁର । ସମସ୍ତଙ୍କର ଧ୍ୟାନ ଟ୍ରାମ

ଉପରେ ଟ୍ରାମ ପହଞ୍ଚିଲେ ଯିବେ। ମାତ୍ର ''ଧନୀଇଇ ପୁତ୍ର ଏକଟି ପଏଏସା ଦାଓ'' ଏହି ହୃଦୟସ୍ପର୍ଶୀ ଶବ୍ଦ ସମସ୍ତଙ୍କ ମନକୁ ଏକାବେଳେକେ ଆକର୍ଷଣ କଲା । ସମସ୍ତେ କ୍ଷଣକ ନିମନ୍ତେ ଟ୍ରାମର ଧ୍ୟାନ ଛାଡ଼ି ଏହି ଶବ୍ଦ ପ୍ରତି ଲକ୍ଷ୍ୟ କଲେ । ଏହା ଜଣେ ଚକ୍ଷୁହୀନା ଯୁବତୀର କାତରୋକ୍ତି । ଅନ୍ଧୁଣୀ ଫୁଟପାଥର ଗୃହ ଭିତ୍ତିକୁ ଆଶ୍ରୟ କରି ଦକ୍ଷିଣ ହସ୍ତ ପ୍ରସାରିତ କରି ''ବାବା ଧନୀଇଇ ପୁତ୍ର ଏକଟି ପଏଏସା ଦାଓ'' ଏହି କଥା ପୁନଃ ପୁନଃ ଉଚ୍ଚାରଣ କରି ଅଗ୍ରସର ହେଉଥିଲା । ସମସ୍ତେ ତାହାରି ଆଡ଼କୁ ଅନାଇ ରହିଲେ । ଇତି ମଧ୍ୟରେ ଗୋଟିଏ ଗାଭୀ ଆସି ମଝିରେ ଦଣ୍ଡାୟମାନ ହୋଇଅଛି, କାହାରି ଲକ୍ଷ୍ୟକୁ ଆସି ନାହିଁ । ଗାଭୀ ଏକାବେଳକେ ମଳ ମୂତ୍ର ତ୍ୟାଗକଲା । ତାହାର ମଳ ମୂତ୍ରର ଛିଟା ଯେ, ଅଳ୍ପ ବହୁତ କାହାରି ଲୁଗାରେ ନ ଲାଗିଲା ଏପରି ନୁହେଁ । ମଳ ମୂତ୍ରର ଦାଗ ଦେଖି ଶୁକ୍ଳ ପେଣ୍ଟୁଲୁନଧାରୀ ଯୁବକ କହିଲେ, 'କି ସର୍ବନାଶ!' ଏହା ଶୁଣିଲା ମାତ୍ରେ ଶୁକ୍ଳପଟ୍ଟବସ୍ତ୍ରଧାରୀ ବ୍ୟକ୍ତି କହିଲେ, କ'ଣ କହିଲେ ବାବୁ, ଗୌ ମଳ ମୂତ୍ର ତ୍ୟାଗ କଲା ମାତ୍ରକେ ତାହା ଦିହରେ ପଡ଼ିବା କାହା ଭାଗ୍ୟରେ ଅଛି । 'ଯସ୍ୟାଃ କ୍ଷୁରନ୍ୟାସ ପବିତ୍ର ପାଂଶୁଃ' ଯାହାର ପଦ ଧୂଳି ଲାଗିଲେ ମନୁଷ୍ୟ ଶରୀର ପବିତ୍ର ହୁଏ, ତା'ର ଟିକିଏ ମୂତ୍ର ଲାଗିବାରୁ ଆପଣ ସର୍ବନାଶ ବୋଲି କହିଲେ ଆହା । ପ୍ରଥମୋକ୍ତ ବ୍ୟକ୍ତି କହିଲେ, ଯେଉଁମାନେ ଶରୀର ଚିତ୍ର ବିଚିତ୍ର କରିବାଦ୍ୱାରା ଜୀବିକା ନିର୍ବାହ କରନ୍ତି, ତାଙ୍କ ପକ୍ଷରେ ଗୋମୟ ଗୋମୂତ୍ର ମଙ୍ଗଳ-ଜନକ ଓ ଶ୍ରୀବୃଦ୍ଧିକାରକ ହୋଇପାରେ, ମାତ୍ର ହାଇକୋର୍ଟ ଯିବାକୁ ଟ୍ରାମ ଅପେକ୍ଷାରେ ଉଦ୍‌ଗ୍ରୀବ ହୋଇ ରହିଥିବା ବ୍ୟକ୍ତିର ଗୋମୟ ଓ ଗୋମୂତ୍ରର ଛିଟା ଯେକି ଅଶୁଭ ଅନିଷ୍ଟକର ତାହା କହିବା ନିଷ୍ପ୍ରୟୋଜନ । ଯାହା ଲାଗିଲା ତହିଁରୁ ଆଉ ଅଧିକ କିଛି ଲାଗିଥିଲେ ମୋର ଯେ ଆଜି କି ଅନିଷ୍ଟ ହୁଅନ୍ତା, ତାହା ମୁଁ ଜାଣେ କେବଳ । ଠିକ ଏହି ସମୟରେ ଟ୍ରାମ ଆସିଗଲା । ସମସ୍ତେ ଅସ୍ତବ୍ୟସ୍ତ ହୋଇ ଟ୍ରାମ ଚଢ଼ିଲେ । ଅନ୍ଧୁଣୀ ହସ୍ତ ପ୍ରସାରଣ କରି 'ବାବା ଧନୀ ପୁତ୍ର ଏକଟି ପଏସା ଦାଓ' କହି କହି ଅଗ୍ରସର ହେଲା । ଟ୍ରାମ କିଛି ଦୂର ଯିବା ଯାଏ ତା'ର କାତରୋକ୍ତି ଶୁଣା ଯାଉଥିଲା ।

•

## ଅତିଥି ସତ୍କାର

''ଦାଦୂ, ବଡୁ, ବଡୁ, ଏଡ଼େ ସକାଳୁ ଝାରବାଟେ କେଉଁଠାରୁ ଏକାକୀ ଆସିଲୁ ?''—ଆଜି ସକାଳୁ ତିନି ଜଣ ମଷିଣିତା ପର୍ବତକୁ ଶିକାର କରିବାକୁ ଯାଇଥିଲୁ । ଜନ୍ତୁର ଅନ୍ୱେଷଣରେ ମୁଁ ଏ ବାଟକୁ ଚାଲିଆସିଲି, ବୋଧହୁଏ ସେ ଦୁହେଁ ନୁନୀଖୋଲ ଦେଇ ଘରକୁ ଚାଲିଗଲେ ।

ଲୁନ୍ଦା—ବାବା, ତୁ ବଡ଼ ଲୋକ, ତତେ କ'ଣ ମିଳୁ ନାହିଁ, ଜନ୍ତୁ ମାଇଲେ କ'ଣ ମାଂସ ବିକି ପେଟ ପୋଷିବୁ ? ଏତେ ସକାଳୁ ଏକାକୀ ମହାଅରଣ୍ୟରେ ବୁଲୁଛୁ । ଯେବେ ଶିକାର ସୌକ ହେଲା, ଲୋକ ସଙ୍ଗରେ ଆଣନ୍ତୁ କିମ୍ବା ମତେ ଖବର ଦେଲେ ମୁଁ କେତେ ଝାର ଜଙ୍ଗଲ ବୁଲାଇ ଜନ୍ତୁ ଦେଖାଇ ଦିଅନ୍ତି, ନୋହିଲେ ତୋର ଦୁଇଜଣ ଭାଇ ଅଛନ୍ତି । ସେମାନଙ୍କୁ ଖବର ଦେଲେ ତୋ ସାଙ୍ଗରେ ଛାଇ ପରି ବୁଲୁଥାନ୍ତେ । ଏକା ମହାଅରଣ୍ୟରେ ବୁଲିବା କେବେ ଭଲ ନୁହେଁ ।

ଜ୍ୟେଷ୍ଠ ମାସ ସକାଳ, ବେଳ ପ୍ରାୟ ନଅ ଘଣ୍ଟା ବେଳେ ଜଣେ ଯୁବକ ନଳବନ୍ଧ ଗ୍ରାମରେ ଉପସ୍ଥିତ ହେଲେ । ସଙ୍ଗରେ କେହି ନାହିଁ, ସହାୟ ଗୋଟିଏ ମାତ୍ର ବନ୍ଧୁକ । ଲୁନ୍ଦାକୋହ୍ଲ ବୃକ୍ଷ ଛେଦନ କରୁଥିବା ବେଳେ ଯୁବକଙ୍କୁ ଦେଖିଲା ଏବଂ ବାତ୍ସଲ୍ୟପୂର୍ଣ୍ଣ ଉପଦେଶ ଦେଲା ।

ନଳବନ୍ଧ ଗୋଟିଏ କ୍ଷୁଦ୍ର ଗ୍ରାମ— କ୍ଷୁଦ୍ର ଉପତ୍ୟକା ମଧ୍ୟବର୍ତ୍ତୀ । ଗ୍ରାମର ଉତ୍ତରପାର୍ଶ୍ୱରେ ଗୋଟିଏ ଚିର ପ୍ରବାହିତା—ସ୍ୱଚ୍ଛତୋୟା ନିର୍ଝରିଣୀ ଗ୍ରାମବାସୀଙ୍କର ଜୀବନ ତୋଷିଣୀ । ଗ୍ରାମରେ ଦୁଇ ଗୋଟି ଘର। ଦୂରରେ ଦୁଇ-ଚାରୋଟି ଧାନ୍ୟ କ୍ଷେତ୍ରଅଛି । ଏଣେତେଣେ ଖଣ୍ଡ କେତେ ଗୋଡ଼ା ଜମି ଅଛି । ଜଙ୍ଗଲ ଘରଯାଏ ମାଡ଼ି ରହିଅଛି । ଲୋକସଂଖ୍ୟା ପ୍ରାୟ ପାଞ୍ଚ ଛଅଜଣ। ସମସ୍ତେ ପାର୍ବତୀୟ ମୁଣ୍ଡା କୋହ୍ଲ। ଚାଷ ସେମାନଙ୍କର ପ୍ରଧାନ ବ୍ୟବସାୟ ନୁହେଁ । ବନଜାତ କନ୍ଦ, ମୂଳ ଫଳ ଓ ପଶୁମାଂସଦ୍ୱାରା ଜୀବନଯାତ୍ରା ନିର୍ବାହ କରନ୍ତି। ବର୍ଷକ ମଧ୍ୟରେ ଚାରି ଛଅ ଗୋଟା ଜନ୍ତୁ ମାରିପାରିଲେ ତାହା ବିକ୍ରୟକରି ଯେଉଁ ପଇସା, ଚାଉଳ ବା ଧାନ ପାଆନ୍ତି, ତଦ୍ୱାରା ସେମାନଙ୍କର ଖାଦ୍ୟ ଓ ପରିଧାନର ସଂସ୍ଥାନ ହୁଏ । ସେହି ଆଦିମ ଅବସ୍ଥା ତ୍ୟାଗକରି ନାହାନ୍ତି । ଏମାନେ ବହୁକାଳରୁ ଏହି ଗ୍ରାମରେ ବାସ କରୁଅଛନ୍ତି । ସଭ୍ୟତାର କଠୋର ନିୟମ ପ୍ରବଳ ହୋଇ ନ ଥିବା ଯାଏ ପୂର୍ବ ଧାରଣା ରକ୍ଷାକରି 'ମାଟିଚାବି' ରହିଅଛନ୍ତି । ଯୁବକ କ୍ଷତ୍ରିୟ—ଲୁନ୍ଦା ମୁଣ୍ଡା କୋହ୍ଲ ଉଭୟଙ୍କ ମଧ୍ୟରେ ସମ୍ବନ୍ଧ କିନ୍ତୁ ପିତୃବ୍ୟ ଓ ଭ୍ରାତୃଷ୍ପୁତ୍ର । ପିତାର ବଡ଼ଭାଇକୁ ବଡୁ କହନ୍ତି ଏବଂ ବାତ୍ସଲ୍ୟ ଭାବରେ ଭ୍ରାତୃଷ୍ପୁତ୍ରକୁ ମଧ୍ୟ ବଡୁ ବୋଲି ଡାକନ୍ତି । ଆଦିମବାସୀମାନେ ଗ୍ରାମବାସୀମାନଙ୍କ ସହିତ ଗୋଟାଏ ସମ୍ପର୍କ ବରାବର ଯୋଖି ରଖନ୍ତି ଏବଂ ସମ୍ପର୍କ ଅନୁସାରେ ସମ୍ମାନ

କରନ୍ତି । ଅରଣ୍ୟବାସୀ ଆର୍ଯ୍ୟ ଅନାର୍ଯ୍ୟମାନଙ୍କର ଏତାଦୃଶ ସମ୍ପର୍କ ଅଯଥା ବୋଲି ମନେ ହେଲେ ମଧ୍ୟ ଏ ସମ୍ବନ୍ଧ ସୌହାର୍ଦ୍ଦ୍ୟ ବୃଦ୍ଧି କରେ ଏବଂ ଏ ହେତୁରୁ ଅନେକ ସମୟରେ ବିବାଦ ବନ୍ଦ ହୋଇଯାଏ । ପୂର୍ବକାଳରେ ଅନ୍ୟମାନେ ସମ୍ବନ୍ଧ ରଖିବା ତେଣେ ଥାଉ, ରାଜାମାନେ ମଧ୍ୟ ପ୍ରଜାଙ୍କ ସଙ୍ଗରେ ଭାଇ, ଦାଦା ସମ୍ପର୍କ ରଖିଥିଲେ । କ୍ରମେ କ୍ରମେ ଏ ସମ୍ବନ୍ଧ ଘୃଣ୍ୟ ଓ ନିନ୍ଦ୍ୟ ବୋଲି ବିବେଚିତ ହେଉଅଛି । ସେ ଯାହା ହେଉ, ଲୁନ୍ଦାର ବୟସ ପ୍ରାୟ ପଚାଶ ବର୍ଷ । ଯୁବକର ପିତା ଅପେକ୍ଷା ବଡ଼ । ଯୁବକର ପିତା ଅପେକ୍ଷା ବଡ଼ । ଯୁବକର ପିତା ଲୁନ୍ଦାକୁ ଦାଦା ବୋଲି ଡାକନ୍ତି । ଏଣୁ ଲୁନ୍ଦା ଯୁବକର ବୁଢ଼ା । ଆଧୁନିକ ଯୁବକଙ୍କ ପକ୍ଷରେ ଏହା ଗୋଟିଏ ହାସ୍ୟାସ୍ପଦ ବିଷୟ । ତୁମେ, ଆପଣ ଇତ୍ୟାଦି ଶବ୍ଦ ଏମାନଙ୍କ ଅଭିଧାନରେ ନାହିଁ । ତୁ ବୋଲି ରାଜା ପ୍ରଜା ସମସ୍ତଙ୍କୁ କହନ୍ତି । ଏହା ସରଳତାର ଚରମ । ତେଣୁ ଏତାଦୃଶ ଶବ୍ଦ ସେମାନଙ୍କ ମୁଖରେ ସୁଖଶ୍ରାବ୍ୟ । ଲୁନ୍ଦା କହିଲା, ''ବତ୍ସ, ମୁହଁ ହାତ ଧୋଇପକା, ମୋ ଘରେ ଯାହାଅଛି ଖାଇବୁ । ମୁଁ ଯାଉଛି ଆଣିବି ।''

ଯୁବକ ପର୍ବତ ଚଢ଼ି ଉତୁରି ଶ୍ରାନ୍ତ କ୍ଲାନ୍ତ । ସ୍ରୋତ ନିକଟରେ ପଥର ଉପରେ ବସି ଏବଂ ପାଣିରେ ଗୋଡ଼ ଯୋଡ଼ିକ ରଖି ଅନ୍ୟମନସ୍କ ଭାବରେ ଏଣେ ତେଣେ ପାଣି ଫିଙ୍ଗୁ ଅଛନ୍ତି ଓ ଜଳର ପ୍ରବାହକୁ ଏକ ଦୃଷ୍ଟିରେ ଚାହିଁ ଅଛନ୍ତି । କିଛି ସମୟ ଚାଲିଗଲା ।

''ଦାଦା, ଦାଦା'' ଶବ୍ଦ ଶୁଣି ଯୁବକ ଚମକିପଡ଼ି ପଛକୁ ଅନାଇଲେ ଜିଲିଙ୍ଗ କ'ଣ ଧରି ତାଙ୍କ ଆଡ଼କୁ ଆସୁଅଛି । ଯୁବକଙ୍କ ନିମନ୍ତେ ଆଣିଥିବା ଖାଦ୍ୟ ସାମଗ୍ରୀ ରଖିଦେଇ ଯୁବକଙ୍କୁ ଜୁହାର କଲା । କହିଲା, ''ଦାଦା, ପାଣି ଖେଳୁଛୁ, ଭୋକ ଲାଗୁଥିବ, ଉଠ ଖା ।''

ଯୁବକ— କ'ଣ ଆଣିଛି ଜିଲିଙ୍ଗି ?

ଜିଲିଙ୍ଗି— ଘରେ ଯାହା ଥିଲା । କୋହ୍ଲ ଘରେ ଚୂଡ଼ା କି ଗୁଡ଼ ଅଛି ? ଆମ୍ବ ଆଣିଛି । ଶୁଖା କେନ୍ଦୁ ଆଣିଛି । ବିଛଣା ମହୁ ଖଣ୍ଡେ ଆଣିଛି । ଆଉ ଚାର ମଞ୍ଜି ଦୁଇଟା ଆଣିଛି ।

ଯୁବକ— ମୋ ଘରେ ଯା'ଠୁ ବଳି କ'ଣ ମିଳନ୍ତା ଜିଲିଙ୍ଗି ।

ଜିଲିଙ୍ଗି— ମୁଁ ସିନା ଝରଣା ଆମ୍ବ ଆଣିଛି, ତୋ ଘରେ ବଡ଼ ବଡ଼ ତୋଟା ଆମ୍ବ ଥିବ, ଖଜା ମିଠେଇ ଥିବ ।

ଯୁବକ— ଆମ୍ବ ସୁଆଦ କି ଆମ୍ବିଳା ?

ଜିଲିଙ୍ଗି— ଖାଇଲେ ସିନା ଜାଣିବୁ, ଆଗତ ଖା ।

ଯୁବକ ଜଳଯୋଗର ଆୟୋଜନରେ ବସିଲେ ।

ଯୁବକ— ଜିଲିଙ୍ଗ, ପ୍ରଥମରୁ ମହୁଖଣ୍ଡ ଖାଏଁ । ମହୁ ତ ସବୁଦିନେ ମିଳେ ନାହିଁ ।

ଜିଲିଙ୍ଗି— ନା ଦାଦା । ଆଗ ମହୁ ଖାଇଲେ ପାଟିମିଠା ହୋଇଯିବ । ଆମ୍ବତକ ଆମ୍ବିଳା ଲାଗିବ । ପଛେ କହିବୁ ମୋର ଭଉଣୀ ଆମ୍ବିଳା ଆମ୍ବ ଖୁଆଇଲା । ଆଗରେ ଖା ଆମ୍ବ, ତହୁଁ ଖାଇବୁ କେନ୍ଦୁ; ପଛେ ଖାଇବୁ ମହୁ ।

ଯୁବକ— ଆଚ୍ଛା ଦେ । ତୁ କ'ଣ ଜାଣୁ କେଉଁ ଆମ୍ବ ମିଠା, କେଉଁ ଆମ୍ବ ଖଟା ?

ଜିଲିଙ୍ଗି— ହଁ । ଯୁବକ ଅତି ଆନନ୍ଦରେ ଆମ୍ବ ଖାଇବାକୁ ଆରମ୍ଭ କଲେ । ଆମ୍ବ ଖାଇଲା ବେଳେ ରାମ ଓ ଶବରୀ ଉପାଖ୍ୟାନ ସ୍ମରଣ ହେଲା । ଶବରୀ ରାମଙ୍କ ନିମନ୍ତେ ଚାଖି ଚାଖି ଭଲ ଆମ୍ବ ସଂଗ୍ରହ କରି ରଖିଥିଲା । ସତେ କ'ଣ ପ୍ରତ୍ୟେକ ଆମ୍ବ ଆସ୍ୱାଦନ କରି ରାମଙ୍କ ନିମନ୍ତେ ଉଚ୍ଛିଷ୍ଟ କରି ରଖିଥିଲା ? ତାହା ନୁହେଁ । ପ୍ରତିଗଛର ଆମ୍ବ ଗୋଟିଏ ଆସ୍ୱାଦନ କରେ । ଯେଉଁ ଗଛର ଆମ୍ବଟି ମିଠା, ସେହି ଗଛର ଆମ୍ବ ଆଣି ରଖିଥାଏ । ଗୋଟିଏ ଗଛର ପ୍ରତ୍ୟେକ ଆମ୍ବର ସ୍ୱାଦ ଭିନ୍ନ, ଏପରି ତ ନୁହେଁ । ଜିଲିଙ୍ଗି ମଧ୍ୟ ସେହିପରି କେଉଁ ଗଛର ଆମ୍ବ ମିଠା କେଉଁ ଗଛର ଖଟା ତାହା ଜାଣେ । ଏମନ୍ତ କି, ନଳବନ୍ଧ ଝରଣାର ପ୍ରତ୍ୟେକ ଗଛର ଫଳ ଆସ୍ୱାଦନ କରି ଚିହ୍ନି ରଖିଛି ବୋଲି ସେ ପ୍ରକାଶ କଲା, ତୋଟା ଆମ୍ବ ଓ ଝରଣା ଆମ୍ବ ଭିତରେ ପାର୍ଥକ୍ୟ ଅତ୍ୟଧିକ । ଆମ୍ବ ଭାରତବର୍ଷର ନିଜସ୍ୱ । ଏ ବୃକ୍ଷ ପୃଥିବୀର ଅନ୍ୟତ୍ର ନ ଥିଲା । ଏବେ ସର୍ବତ୍ର ବିସ୍ତୃତି ଲାଭ କରିଅଛି । ଭିନ୍ନ ଭିନ୍ନ ସ୍ଥାନରେ ଜନ୍ମିବାରୁ ଭିନ୍ନ ଭିନ୍ନ ଅସ୍ୱାଦ ହୋଇଅଛି । ଆକାର ମଧ୍ୟ ଛୋଟ ବଡ଼ ହୋଇଅଛି । ପାର୍ବତ୍ୟ ଝରଣାରେ ଯେଉଁ ଆମ୍ବ ଜନ୍ମେ, ତାକୁ ଝରଣା ଆମ୍ବ କହନ୍ତି । ଏହା ଆମ୍ବର ସ୍ୱାଭାବିକ ଅବସ୍ଥା, ତଥାପି ଝରଣା ବିଶେଷରେ ସ୍ୱାଦ ଓ ଆକାରର ଇତର ବିଶେଷ ଦେଖାଯାଏ । ତୋଟା ଆମ୍ବ ବଡ଼ ଓ ସୁସ୍ୱାଦୁ । କିନ୍ତୁ ଆମ୍ବର ଯେ ସ୍ୱାଭାବିକ ସୁବାସନା, ସେ କେବଳ ଝରଣା ଆମ୍ବରେ ଅଛି ବୋଲି ଅନେକଙ୍କର ମତ, ଯୁବକ ଭୋଜନ କରିସାରି ନବୀନ ଶାଳପଲ୍ଲବଦ୍ୱାରା ନିର୍ଝରିଣୀର ନିର୍ମଳ ଜଳପାନ କରି ତୃପ୍ତି ଲାଭ କଲେ, ନବପଲ୍ଲବରେ ଜଳପାନ କରିବାରେ ଯେଉଁ ଆନନ୍ଦ ମିଳେ ତାହା ଅରଣ୍ୟବାସୀ କେବଳ ଜାଣନ୍ତି । ସମୟ ସମୟରେ କାଚ ଓ ଧାତବ ପାତ୍ରରେ ପିଇବା ଅପେକ୍ଷା ନବ

ପଲ୍ଲବରେ ପାଣିପିଇବା ଓ ନବ ପଲ୍ଲବ ନିର୍ମିତ ଦନାରେ ପଖାଳ ଖାଇବାକୁ ଆଗ୍ରହ ବଳେ, ଯୁବକ ହାତଧୋଇ ପଥର ଉପରେ ବସିଲେ । ଜିଲିଙ୍ଗି ନିକଟକୁ ଆସି ଛିଡ଼ା ହେଲା । କହିଲା, ''ଦାଦା, ତୁ ଟିକିଏ ବସିଥା, ମୁଁ ଯାଇ ଘରୁ ଚାଉଳ ହେରିକା ଯୋଗାଡ଼ କରି ଆଣେ, ତୁ ରାନ୍ଧିବୁ ।'' ଯୁବକଙ୍କୁ ଉତ୍ତର ଦେବାକୁ ଅବସର ନ ଦେଇ ନିମେଷ ମଧ୍ୟରେ ଯୁବକଙ୍କ ନେତ୍ରରୁ ଅନ୍ତର ହୋଇଗଲା । ଯୁବକ ଏକ ଦୃଷ୍ଟିରେ ଅନାଇ ରହିଲେ ତାହାର ଯିବା ବାଟଆଡ଼େ ।

ଜିଲିଙ୍ଗି ଲୁନ୍ଦା କୋହ୍ଲର କନିଷ୍ଠାକନ୍ୟା, ଅବିବାହିତା, ବୟସ ପ୍ରାୟ ଷୋହଳ ଯୁବକ ଅପେକ୍ଷା ଚାରି ବର୍ଷ ସାନ । ଜିଲିଙ୍ଗି ଯୁବତୀ, ରୂପବତୀ କି ନା, ତାହା କିଏ ଠିକ କରି କହିପାରିବ ? ସୌନ୍ଦର୍ଯ୍ୟର ନିକଷ ରୁଚି । ଜଣକୁ ଯାହା ସୁନ୍ଦର, ଅନ୍ୟକୁ ତାହା ଅସୁନ୍ଦର । ତେବେ ଦୁଗ୍ଧଫେନନିଭବର୍ଣ୍ଣା ନୁହେଁ । ସଂସାରରେ କିଏ ଦୁଗ୍ଧପରି ଧଳା ? ଭାରତବର୍ଷୀୟା ରମଣୀଙ୍କୁ ଛାଡ଼ିଦେଲେ ବି ଇଉରୋପୀୟ ଶ୍ୱେତାଙ୍ଗ ରମଣୀମାନେ ମଧ୍ୟ ନୁହନ୍ତି । ତେବେ ସେମାନଙ୍କୁ ଏ ଉପମା ଦିଆଯାଇପାରେ । ଜିଲିଙ୍ଗି କାନକିଳତା ନୁହେଁ ବା କେତକୀ ସ୍ୱର୍ଣ୍ଣବର୍ଣ୍ଣା ନୁହେଁ । ଚୀନା ଓ ଜାପାନବାସୀଙ୍କୁ ପୀତବର୍ଣ୍ଣ ଜାତି (yellow race) ବୋଲନ୍ତି, ମାତ୍ର ଚୀନ ରମଣୀମାନେ କ'ଣ ସ୍ୱର୍ଣ୍ଣବର୍ଣ୍ଣା ? କେବଳ ଶୁଭ୍ରବର୍ଣ୍ଣା ମହିଳାମାନେ ହଳଦୀ ଜର୍ଜରିତା । ହେଲେ କେତକୀ ଆଭାକୁ ପାଆନ୍ତି । ଜିଲିଙ୍ଗି ଶୁଭ୍ରା ନୁହେଁ ଏବଂ ଜନ୍ମାବଧି କେବେ ହଳଦୀ ଲେପନ କରି ନାହିଁ । ତାହାର ବର୍ଣ୍ଣ ଶ୍ୟାମ । ଶିରୀଷ ମୃଦୁଳା ଲବଣୀ ପିତୁଳା ନୁହେଁ । ତେବେ ସୌନ୍ଦର୍ଯ୍ୟ ଆଉ କେଉଁଠାରେ ? ଜିଲିଙ୍ଗି ଦୁଇ ଚାରି ଘଣ୍ଟା ଛାୟା ତଳେ ନିଶ୍ଚିନ୍ତ ଭାବରେ ବସିଥିଲେ ଯାହା, ଦୁଇ ଚାରି ଘଣ୍ଟା ଖରାରେ ପର୍ବତ ପାହାଡ଼ ବୁଲି ଆସିଲେ ତାହା । ମାଙ୍ଗ ଭାଙ୍ଗ ମଧ୍ୟରେ ସିନ୍ଦୂର ଶିରୀ ଚଢ଼ାଇ ନାହିଁ, ଜୀବନ ମଧ୍ୟରେ ଦିନେ କେବଳ ତା'ର ସ୍ୱାମୀ ବିବାହ ବେଳେ ସୀମନ୍ତରେ ସିନ୍ଦୂର ଶିରୀ ଚଢ଼ାଇବ । ତୈଳାଭାବରୁ ରୁକ୍ଷକେଶା । କଜ୍ଜଳ ଲାଞ୍ଛ ଦ୍ୱାରା ମାନସିକ ବିଶିଖ ବନାଇ ନାହିଁ। କଜ୍ଜଳ ଯେ କି ପଦାର୍ଥ ତାକୁ ଜଣା ନାହିଁ । କାମକୋଦଣ୍ଡ ବୋଲି, ଯାହା ବୋଲ, ତା'ର ସୁଭ୍ରୂଯୁଗଳ ବିଦ୍ୟମାନ । ଯେହେତୁ ଏହା ସ୍ୱାଭାବିକ । ନାକଟି ତିଳଫୁଲ ପରି, କି ଶୁକଚଞ୍ଚୁ ପରି, ତାହା କହିବା କଠିନ । ତେବେ ଦେଖିବାକୁ ସୁନ୍ଦର । ପଦ୍ମ ପଳାଶ ଲୋଚ୍ନା ଏଥିରେ ସନ୍ଦେହ ନାହିଁ, ଏମାନଙ୍କର ଆଖି ଟିକିଏ ରକ୍ତାଭ ହୁଏ । ଆୟତ ଲୋଚ୍ନା ମଧ୍ୟ, ଓଷ୍ଠାଧର ମନ୍ଦ ନୁହେଁ, ତେବେ ପକ୍ୱ ବିମ୍ବଧରୋଷ୍ଠୀ ନୁହେଁ— ସେ ତ ଜନ୍ମରେ କେବେ ହେଲେ ପାନ ଖାଇ ନାହିଁ । ଅଳଙ୍କାର ତଥୈବ ଚ । ବେଶଭୂଷା କ'ଣ ? କେଶରେ ସପଲ୍ଲବ କୁଟଜ ପୁଷ୍ପ ଓ ନିଆଳୀ ପୁଷ୍ପ । କାନରେ ଛୋଟ ଛୋଟ ତିଳେଇ ଫୁଲ ଦୁଇ ଖଣ୍ଡ ଆଠହାତୀ ମୋଟ ଦେଶୀ ଲୁଗା ଖଣ୍ଡେ ଖଣ୍ଡେ ତାର ଶରୀର ଆବୃତ କରୁଥିଲା । ଆକାର ତୁଳନାରେ ଅଙ୍ଗପ୍ରତ୍ୟଙ୍ଗ ଯଥା ନ୍ୟସ୍ତ ଯୋଗ୍ୟ ନିର୍ମିତ ଓ ସୁଶ୍ରୀସମ୍ପନ୍ନ । କଣା ଏଣୀନୟନ ସତ, ମାତ୍ର ତାହା ପୁରୁଷ ମନ ଆକର୍ଷଣ କରିବାକୁ ଶିକ୍ଷା କରି ନାହିଁ । ତାହାର ଚାହାଁଣି ସେହିପରି । ଲବଣି ପିତୁଳା ନାଗରର ଚାଟୁ ଉକ୍ତି ଶୁଣି ଜବସ୍ଥବ ହୋଇ ଆତ୍ମରକ୍ଷା ନିମନ୍ତେ କାନ୍ଥ ବା ବୃକ୍ଷରେ ଲାଗିଯିବେ ଏବଂ ଲଜ୍ଜାରେ କମଳ ଘୋଡ଼ାଇ କିଂକର୍ତ୍ତବ୍ୟବିମୂଢ଼ ହେବେ । ଜିଲିଙ୍ଗି ଏପରି ନାଗରକୁ ଗଳହସ୍ତ କରି ଦଶହସ୍ତ ଦୂରରେ ନିକ୍ଷେପ କରି ଦେବାର ଶକ୍ତି ସଞ୍ଚୟ କରିଅଛି । ବର୍ଣ୍ଣହିଁ ଯେବେ ସୌନ୍ଦର୍ଯ୍ୟର ପରିଚ୍ଛାୟକ ତେବେ ଜିଲିଙ୍ଗି ନିତାନ୍ତ ଅସୁନ୍ଦରୀ, ଅଙ୍ଗସୌଷ୍ଠବରେ ଯେବେ ସୌନ୍ଦର୍ଯ୍ୟର ଆଭାସ ମିଳେ, ତେବେ ଜିଲିଙ୍ଗିକୁ ଅସୁନ୍ଦରୀ ବୋଲିବାର କିଛି ହିଁ କାରଣ ନାହିଁ ।

ଲୁନ୍ଦା ଓ ଜିଲିଙ୍ଗି ରନ୍ଧନ ସାମଗ୍ରୀ ଧରି ଆସିଲେ । ଲୁନ୍ଦା କହିଲା, ''ବନ୍ଧୁ, ଆମର ଗ୍ରାମରେ ଆଜି କେହିନାହାନ୍ତି, ସମସ୍ତେ ସମ୍ବର ମାଂସ ବିକ୍ରି କରିବାକୁ ଗ୍ରାମମାନଙ୍କୁ ଯାଇଛନ୍ତି, କାଲି ଡେବରା ଗୋଟାଏ ସମ୍ବର ମାରିଥିଲା, ମୁଁ ମୂଷାଗୁଡ଼ି ଗ୍ରାମକୁ ଦଉଡ଼ି ଯାଇ ସେଠାରୁ ଗୋଟିଏ ଲୋକ ତୋ ଘରକୁ ପଠାଇ ଦେଲି, ତୁ ସନ୍ଧ୍ୟାରେ ଘରକୁ ଫେରିବୁ ବୋଲି ଖବର ଦେଇ ଆସିବ । ଘରେ ଖବର ନ ଦେଲେ ସମସ୍ତେ ଖୋଜନ୍ତେ ଯେ । ଗାଧୋଇ ପଡ଼, ଭାତ ରାନ୍ଧ, ଖାଇସାରି ନିଶ୍ଚିନ୍ତରେ ଶୋଇବୁ । ବେଳବୁଡ଼କୁ ଘରକୁ ଯିବୁ । ଇତି ମଧ୍ୟରେ ଜିଲିଙ୍ଗି କାଠ ଯୋଗାଡ଼ କରିବାରେ ବ୍ୟସ୍ତ । ଯୁବକ ତାକୁ ସାହାଯ୍ୟ କରିବାକୁ ଗଲେ । ଲୁନ୍ଦା ପାଣି କାନ୍ଥ ଛାୟାରେ ଚୁଲି ବନାଇବାକୁ ଲାଗିଲା । ରନ୍ଧନ ସାମଗ୍ରୀ ଗୋଟିଏ ଆଟିକା, ମୋଟା ଚାଉଳ, ପ୍ରାୟ ଗଅଁଠ ସେରେ, ଲୁଣ, ସମ୍ବର ମାଂସ କିଛି । ଜିଲିଙ୍ଗି କହିଲା, ''ଦାଦା, ମୋଟା ଚାଉଳ କିପରି ଖାଇବୁ ?''

ଯୁବକ— ମୋଟା ଭାତ ଯେବେ ଗଳାରେ ନ ଯାଏ, ତେବେ ମାଂସ ଖଣ୍ଡମାନ କିପରି ଯାଏ ? ମୁଢ଼ି କିପରି ଯାଏ ? ନଡ଼ିଆ ତ ଦେଖିଛୁ ଜିଲିଙ୍ଗି, ତା'ଠାରୁ ଆଉ କ'ଣ ମୋଟା ଭାତ ? ଯେବେ ନ ଗଲେ ତେବେ ବଡ଼ ଲୋକମାନେ ନଡ଼ିଆ

ଖାଆନ୍ତି କିପରି ? ଭୋକ କଲେ ସବୁ ରୁଚେ । ଦେଖିବୁ, ମୁଁ ଆଜି କେତେ ଭାତ ଖାଇବି । ବତୁ, ତୁ ଓ ଜିଲିଙ୍ଗି ଆଜି ଏଠାରେ ଖାଇବ ।

ଲୁନ୍ଦା— ନା ବତୁ, ତତେ ଏଡ଼େ କଷ୍ଟ ଦେବାର ଦରକାର ନାହିଁ । ତୁ ଖାଇବୁ, ଭାତ ବଳିଲେ ଜିଲିଙ୍ଗି ଖାଇବ, ମୋର ଘରେ ବାସି ଭାତଅଛି, ମୁଁ ତାହା ଖାଇବିକ, ନୋହିଲେ ସେଗୁଡ଼ିକ ନଷ୍ଟ ହେବ ।

ଯୁବକ ରନ୍ଧନ ପଟୁ । ମାତ୍ର ଆଜି ବାସନବର୍ତ୍ତନ ନାହିଁ । ଚଟୁ ନାହିଁ, ଏଣୁ ଜଳ ନିକଟରେ ରନ୍ଧନର ଯୋଗାଡ଼ ହେଲା । ଚଟୁ ନ ଥିବାରୁ ଆଟିକାକୁ ପଥର ଦ୍ୱାରା ଫୋଡ଼ କରି ଫେନ ନିଷ୍କାସିତ କରିବାର ବ୍ୟବସ୍ଥା ହେଲା, ଯୁବକ ପୂର୍ବେ ଏପରି ରନ୍ଧନ କରିଥିଲେ । ମସଲା ନାହିଁ, ଘିଅ ନାହିଁ, ଲୁନ୍ଦାର ପରାମର୍ଶ ଅନୁସାରେ ଗୋଟିଏ ବାଉଁଶ ନଳରେ ମାଂସଗୁଡ଼ିକ ଭର୍ତ୍ତି କରିଦେଲେ, ସେ ନଳ ଉପରେ ମାଟି ଲେପନ କରିଦେଇ ମୁଖ ବନ୍ଦ କଲେ ଏବଂ ସେହି ନଳକୁ ଜ୍ୱଳନ୍ତ ଅଙ୍ଗାରରେ ରଖିଦେଲେ । ଜିଲିଙ୍ଗି ଯେ ତୁନି ହୋଇ ବସିଥିଲା ତାହା ନୁହେଁ, ଝରଣା ଚିଙ୍ଗୁଡ଼ି ଓ କଙ୍କଡ଼ା କିଛି ଧରିଆଣି ନିକଟରେ ରଖିଦେଲା ।

ଯୁବକ କହିଲା— ଏହାକୁ କାହିଁରେ କିପରି ରାନ୍ଧିବି ?

ଜିଲିଙ୍ଗି— ମୁଁ ତତେ ଶିଖାଇବି ?

ଯୁବକ— ତୁ ଯେପରି ବତାଇବୁ, ମୁଁ ସେହିପରି ରାନ୍ଧିବି । କହ ।

ଜିଲିଙ୍ଗି— କଞ୍ଚା ଆମ୍ବଫଡ଼ା କେତେ ମିଶାଇ ଦେ, ଲୁଣ ଟିକିଏ ଦେ, ପତର ଚଉତିରେ ଦେଇ ପୋଡ଼ି ଦେ ।

ଯୁବକ ତାହାହିଁ କଲେ । ଭାତ, ମାଛ ଓ ମାଂସ ତୟାର ହେଲା । ପକ୍ୱ ଆମ୍ବ ତ ଯଥେଷ୍ଟ । ଜିଲିଙ୍ଗିକୁ ଏକ ଭାଗ ଦେଲେ ଏବଂ ନିଜେ ଏକ ଭାଗ ପରିତୋଷ ସହିତ ଭୋଜନ କଲେ । ଜିଲିଙ୍ଗି ଯୁବକଙ୍କ ଶୟନ ନିମନ୍ତେ ଜାମୁ ମୂଳର ନିବିଡ଼ ଛାୟାରେ ଶଯ୍ୟା ରଚ଼ନା କରିଦେଇଥିଲା । ତଳରେ କେତେଗୁଡ଼ିଏ କୋମଳ ଡାମୁଡାଳ, ତା ଉପରେ କଅଁଳ ଶିଆରିପତ୍ରଦ୍ୱାରା ନିର୍ମିତ ତିନି ହାତ ଲମ୍ବ ଓ ପ୍ରାୟ ଦେଢ଼ ହାତ ଓସାର ଗୋଟିଏ ପଲଙ୍ଗ ଅତି ପରିପାଟୀ ସହିତ ନିର୍ମାଣ କରି ବିଛାଇ ଦେଇଥିଲା । ଜିଲିଙ୍ଗି କହିଲା, ''ଦାଦା, ତୁ ନିଶ୍ଚିନ୍ତରେ ଯା ଶୋଇବୁ । ମୁଁ ତଳ ତୁଭାରେ ଭାତ ଖାଇବି ।'' ଯୁବକ ଶୟନ କଲେ, ଶୀତଳ ପବନ ତାଙ୍କର ନିଦ୍ରାର ସହାୟତା କଲା । ଯୁବକ ନିଦ୍ରାଭିଭୂତ ହୋଇପଡ଼ିଲେ ।

ବହୁକ୍ଷଣ ପରେ ନିଦ୍ରାଭଙ୍ଗ ହେଲା, ଦେଖନ୍ତି-ନିକଟରେ ଲୁନ୍ଦା ନିବିଷ୍ଟ ଚିତ୍ତରେ ଗାଲରେ ହାତ ଦେଇ ବସିଅଛି ।

ଯୁବକ— ବତୁ, ତୁ ଏଠାରେ ବସିଛୁ, ଆଉ ମୁଁ ନିଶ୍ଚିନ୍ତରେ ଶୋଇଛି ।

ଲୁନ୍ଦା— ତୋତେ ଜଙ୍ଗଲରେ ଛାଡ଼ି ଆମେ ଘରେ ଥାନ୍ତୁ, ଏହା ଗୋଟାଏ କଥା । ଜିଲିଙ୍ଗି ତୋତେ ଜଗି ବସିଥିଲା । ମୁଁ ଆସିବାରୁ ସେ ଗଲା ।

ଯୁବକ— ମୋତେ ଜିଲିଙ୍ଗି ଜଗି ବସିଥିଲା । ସେ କ'ଣ କରନ୍ତି କିଛି ବିପତ୍ତି ପଡ଼ିଲେ ?

ଲୁନ୍ଦା— ଜଣେ ଥିଲେ କିଛି ହେଲେ ତ ସାହାଯ୍ୟ ମିଳିଥାନ୍ତା; ନୋହିଲେ ତୋ ଲାଗି ପଛେ ପ୍ରାଣ ଦିଅନ୍ତା; ତତେ ତ ରକ୍ଷା କରନ୍ତା; ସେ ବସିକରି ଦେଖୁଥିଲା ବେଳେ ବିପତ୍ତିର କି ଆଶଙ୍କା ?

ଯୁବକ ଭାବିଲେ, କୋହ୍ଲ ଯୁବତୀ ପକ୍ଷରେ ପ୍ରାଣ ଦେଇ ଅନ୍ୟକୁ ରକ୍ଷା କରିବା ଅସମ୍ଭବ ନୁହେଁ । ଯୁବକ ଲୁନ୍ଦା ସହିତ, ଅନେକ କଥାବାର୍ତ୍ତା ଆରମ୍ଭ କଲେ । ପ୍ରଥମେ ଶିକାର କଥା, ଦେବତୀ, ଭୂତ, ପିଶାଚ୍, ଇତ୍ୟାଦି କଥା, ଯାହା ତାଙ୍କ ମନକୁ ଆସିଲା ପଚ଼ାରିଲେ ।

ଯୁବକ— ତୁମର ବଡ଼ ଦେବତା କିଏ ?

ଲୁନ୍ଦା— ସିଂ ବୁଙ୍ଗା ।

ଯୁବକ— କେଉଁଠି ଥାଏ ?

ଲୁନ୍ଦା— ସବୁଠି ଅଛି, ସବୁ ଦେଖୁଛି ।

ଯୁବକ— ଆଉ କି କି ଦେବତା ଅଛନ୍ତି ?

ଲୁନ୍ଦା— ଆମର ଦେବତା କଥା କ'ଣ ପଚ଼ାରୁଛୁ ବତୁ । କୋହ୍ଲ ଜାତିରେ ଗଛ ଗୋଟାକୁ ଦେବତାଟାଏ, ପଥର ଗୋଟାକୁ ଦେବତାଟାଏ, କେତେ ନାମ କହିବି, କିଏ ଏତେ ନାମ ଦେଇଛି ।

ଯୁବକ— ତୋର ବାପ ମଲା ଯେ କେଉଁଆଡ଼େ ଗଲା ?

ଲୁନ୍ଦା— ମଲା ସିନା ଅଛି ତ । ପ୍ରେତ ହୋଇ ଅଛି ।

ଯୁବକ— ପ୍ରେତ କିପରି ?

ଲୁନ୍ଦା— କେଜାଣି ।

ଯୁବକ— ଅଛି ବୋଲି କିପରି ଜାଣିଲୁ ?

ଲୁନ୍ଦା ପୂର୍ବରୁ ତ ବୁଢ଼ା ବୁଢ଼ୀମାନେ କହି ଆସୁଛନ୍ତି ଯେ ମଲେ ମଧ୍ୟ ଜୀବନଟା ପ୍ରେତ ହୋଇଯାଏ । ତା'ର ବଂଶର ଲୋକମାନଙ୍କର ଭଲମନ୍ଦ ଦେଖୁଥାଏ ।

ଯୁବକ— ବଢ଼ୁ, ତୋର ବାପ, ମା'କୁ କେବେ ଦେଖିଛୁ ?

ଲୁନ୍ଦା— ନାହିଁ ଛାଇଟାକୁ କିପରି ଦେଖିବି ?

ଯୁବକ— ତୋର ନିଜର ଛାଇଟା ତତେ ଦିଶେ ତ ? ମୋର ଛାଇଟା ତତେ ଦେଖୁଛି ତ ?

ଲୁନ୍ଦା— ଛାଇର ଛାଇ କିପରି ଦିଶିବ ? ଦିଶେ ନାହିଁ । ଅଛି ଅଛି ବୋଲି ଲୋକେ କହନ୍ତି ।

ଯୁବକ— ଭଲ ମନ୍ଦ ଦେଖେ ବୋଲିଛୁ ଯେ ?

ଲୁନ୍ଦା— ଲୋକ ଭଲ କରୁଥିଲେ ସେ ଆନନ୍ଦରେ ଥାଏ । ଅସାର କଥା କଲେ ଲାଗେ । ତୁ ଭଲ କାମ କଲେ ତୋର ମା କିଛି କହେ କି ? ଆଜି ଏଠାରେ ରହିଛୁ ଯେ ତତେ ତୋର ମା ଦୁଇପଦ ଗାଳି ଦେବ କି ନାହିଁ ?

ଯୁବକ— ହଁ, କିଛି କହିବେ ।

ଲୁନ୍ଦା— ହଁ, ସେହିପରି ବୋହୁ, ଝିଅ କୌଣସି ଅସାର କାମ କଲେ ପ୍ରେତମାନେ ଲାଗନ୍ତି । ଆମେ ସେମାନଙ୍କୁ ସନ୍ତୋଷ କରିବାକୁ ବଳି ଦେଉଁ, ପୂଜା କରୁଁ ।

ଯୁବକ— ଛଣ ଦେଖିଲେ ଦେବତା ଦିଶେ କି ବଢ଼ୁ ?

ଲୁନ୍ଦା— ମୁଁ ଗୁଣିଆ ନୁହେଁ ବଢ଼ୁ, ଏଣୁ ଦିଶେକି ନା କହିପାରିବି ନାହିଁ । ଯେ ଯାହା କହିଲା ମୁଁ ବିଶ୍ୱାସ କରେଁ । ମୁଁ ଜାଣେ ମୋର ଘରକାମ କଥା, ଆଉ ଶିକାର କଥା ।

ଯୁବକ ଆଉ ଲୁନ୍ଦା ମଧ୍ୟରେ ଏତାଦୃଶ ଆଧ୍ୟାତ୍ମ ଚର୍ଚ୍ଚା ପଡ଼ିଥିଲା ବେଳେ ଜିଲିଙ୍ଗି ପୁଣି ଜଳଖିଆ ସାମଗ୍ରୀ ଧରି ଉପସ୍ଥିତ ହେଲା । କହିଲା, ଦାଦା, ତୋଲାଗି ନୂଆ ଫଳ ଆଣିଛି ।

ଯୁବକ— କି ନୂଆ ଫଳ ?

ଜିଲିଙ୍ଗି— ଜାମୁ

ଯୁବକ— ଏଃ, ଆଜହୁଁ ଜାମୁ ପାଚିଲାଣି ।

ଜିଲିଙ୍ଗି— ସତେ, ଖରଡ଼ି ଜାମୁ, ଆମର ଏ ଗାଁରେ ଗୋଟିଏ ଜାମୁ ଅଛି ସବୁଠୁ ଆଗ ପାଚେ । ନୂଆ ଫଳ ଭେଟିଲି । କ'ଣ ଦେବୁ ଦାଦା ?

ଯୁବକ— ତୁ ଯାହା ମାଗିବୁ ।

ଜିଲିଙ୍ଗି— ମୁଁ ମାଗିବି ? ତୋର ମନ ଯାହା ତୁ ଦେବୁ ।

ଯୁବକ— ଆଚ୍ଛା, ଯେବେ ମୋ ଘରକୁ ଯିବୁ ତେବେ ଦେବି । ଆଉ କ'ଣ ଆଣିଛୁ ?

ଜିଲିଙ୍ଗି— ପୃଢ଼େଇ, ସପକରା, ଆମ୍ବ ।

ଯୁବକ— ଝାରରେ ଏକୁଟିଆ ବୁଲୁଥାଏ, ଡର ନାହିଁ ?

ଜିଲିଙ୍ଗି— ମାଈ ମୃଗ, ମାଈ ସମ୍ବର ଝାରରେ ଅଛନ୍ତି । ସେମାନେ ଡରନ୍ତି କି ? ତେବେ ମୁଁ କାହିଁକି ଡରିବି ? ସେମାନଙ୍କ ପରି ଝାରରେ ଜନ୍ମ ଝାରରେ ବଢ଼ିଛି । ଦିନେ ଜନ୍ମିଛି, ଦିନେ ମରିବି । ବାଘ, ଭାଲୁ ଦେଖିଲେ ଅଲଗା ହୋଇଯାଉଁ । ଯେବେ ଖାଇବାର ଥିବ ତ ଖାଇବ । ଡରିଲେ ଝାର ଛାଡ଼ି କେଉଁଠି କି ଯିବୁଁ ।

ଯୁବକ— ତୁ ମତେ ପହରା ଦେଉଥିଲୁ ?

ଜିଲିଙ୍ଗି— ହଁ ।

ଯୁବକ— ବାଘ ଆସିଲେ କ'ଣ କରନ୍ତୁ ?

ଜିଲିଙ୍ଗି— ତତେ ପଛକୁ ରଖିଦେଇ ପାଟିକରନ୍ତି । ତୁ ଉଠି ବସନ୍ତୁ । ବାଘ ଉଠାଇ ଆଣିଲେ ଦୁହିଁଙ୍କି ଦେଖି ପଳାଇଯାନ୍ତା ।

ଯୁବକ— ତୋର ଏତେ ଭରସା ?

ଜିଲିଙ୍ଗି— ଏତିକି ଭରସା ନ ଥିଲେ ଝାରରେ ରହିଛି, ଆଉ ପାହାଡ଼ ପର୍ବତ ଏକା ବୁଲୁଛି ।

ଲୁନ୍ଦା ଗୃହକୁ ଗଲା । ଜିଲିଙ୍ଗି ପୁଣି ଯୁବକଙ୍କୁ ତାହାର ସାଦରେ ଆନୀତ ଫଳଗୁଡ଼ିକ ଭୋଜନ କରାଇଲା । ଉଭୟ ଏକ ସଙ୍ଗରେ ଗ୍ରାମ ବାଟେ ଆସିଲେ । ଜିଲିଙ୍ଗି କହିଲା, ''ଦାଦା, ତୁ ପୁଣି କେବେ ଆସିବୁ ?'' ଯୁବକ କହିଲେ, ''ତୋର ବିବାହ ବେଳେ ଡାକିବୁ, ଭୋଜି ଖାଇ ଆସିବି ।'' ''ମିଛ କହ ନାହିଁ ଦାଦା, ମୋର ବିବାହ ଦେଖିବାକୁ ତୋ ପରି ବଡ଼ ଲୋକ ଆସେ ଯେ ତୁ ଆସିବୁ ? ସେ କଥା ଛାଡ଼ । ପୁଣି ଆମ ଗାଁର ସମ୍ବର ମାଇଲେ ମୁଁ ତତେ ଡାକିଯିବି, ଘିଅ ମସଲା ବାସନ ବର୍ତ୍ତନ ତୋ ଘରୁ ଆଣିବି, ଭଲ କରି ଭୋଜି କରିବା, ହେଲା ।''

ଯୁବକ— ଭଉଣୀ, ଆଜିର ଭୋଜିପରି ଭଲ ବଣଭୋଜି ମୁଁ ଆଉ କେବେ ଖାଇ ନାହିଁ । ବଞ୍ଚି ଥିବାଯାଏ ଏ କଥା କେବେ ଭୁଲିବି ନାହିଁ । ଆଜି ତୁ ମୋତେ ସନ୍ତୋଷ କରି ଖୁଆଇଛୁ ।

ଲୁନ୍ଦା କାନ୍ଧରେ ଖଣ୍ଡେ ଟାଙ୍ଗିଆ ଧରି ଉପସ୍ଥିତ ହେଲା । ତିନି ଜଣ କିଛିଦୂର ଅଗ୍ରସର ହେଲେ । ନଳବନ୍ଧ ଗ୍ରାମ ସୀମା

ଯାଏ ଜିଲିଙ୍ଗି ଆସି କହିଲା, ''ଯା ଦାଦା ଯା ।'' ଯୁବକ ଏହି ସ୍ନେହପୂର୍ଣ୍ଣ, କୋମଳ ବିଦାୟ ବାଣୀ ମନରେ ଗୁଣି ଗୁଣି ନିଜ ଗ୍ରାମ ଆଡ଼କୁ ଅଗ୍ରସର ହେଲେ ।

•

## ଘନିଷ୍ଠତା କ୍ଷଣସ୍ଥାୟୀ

ସୂର୍ଯ୍ୟ ଅସ୍ତ ହେଲେ । ଛଣବଙ୍ଗଳାର ପଶ୍ଚିମ ପିଣ୍ଡାରେ ଉତ୍ତରମୁଖ ହୋଇ ସଦାନନ୍ଦ ଭାରତୀ ଧ୍ୟାନମଗ୍ନ । ପିଣ୍ଡାତଳରେ ଯୁବକ ଜୟନ୍ତ ନିଃଶବ୍ଦରେ ଦଣ୍ଡାୟମାନ । ନିକଟରେ ଆଉ କେହି ନାହିଁ । ଉତ୍ତର ଆଡ଼କୁ ଦୂରରେ ଗ୍ରାମ । ବଙ୍ଗଳାର ଚାରିପାଖରେ ପଡ଼ିଆ ଓ ଧାନବିଲ । ଦକ୍ଷିଣକୁ ଦୂରରେ ଆମ୍ବତୋଟା ଓ ଶ୍ମଶାନ । ଶ୍ମଶାନ ଦେଇ ଗୋଟିଏ ଗିରି-ନଦୀ ପ୍ରବାହିତ ହେଉଅଛି । ନଦୀଟି ନିର୍ଜଳା ନୁହେଁ । କ୍ଷୀଣ ସ୍ରୋତଟି ପ୍ରଚଣ୍ଡ ନିଦାଘ କାଳରେ ମଧ ଶୁଷ୍କ ହୁଏ ନାହିଁ । ତହିଁ ଉତାରୁ ଜଙ୍ଗଲ ପରେ ପାହାଡ଼— ପୂର୍ବ ପଶ୍ଚିମ ଦିଗ୍‌ବଳୟକୁ ସ୍ପର୍ଶ କରି ପରିଦୃଶ୍ୟମାନ ଭୂମିଖଣ୍ଡର ମାନଦଣ୍ଡ ପରି ଦଣ୍ଡାୟମାନ ରହିଅଛି । ଜ୍ୟେଷ୍ଠ ମାସ, ନିଦାଘ କାଳ, ପାହାଡ଼ର ବୃକ୍ଷମାନଙ୍କରେ ଘଞ୍ଚ ସୁସଞ୍ଚପତ୍ରାବଳୀ ଦେଖାଯିବା ତ ସ୍ୱପ୍ନରାଜ୍ୟର କଥା । ତୃଷାକ୍ଲିଷ୍ଟ, ଉପବାସୀ, ପ୍ରକାଣ୍ଡ ଦ୍ରୁମନିଚୟ ତପସ୍ୟାରତ ଊର୍ଦ୍ଧ୍ୱବାହୁ ତୁଲ୍ୟ ଆକାଶକୁ ଅଙ୍ଗୁଳି ବଢ଼ାଇ ରହିଅଛନ୍ତି । ମୃତପ୍ରାୟ କ୍ଷୁଦ୍ର ବୃକ୍ଷଲତା ଓ ଗୁଳମାନେ ସେହି ଊର୍ଦ୍ଧ୍ୱବାହୁ ମହାଦ୍ରୁମମାନଙ୍କର ପଦାନତ ହୋଇ ରହିଅଛନ୍ତି । ସତେ କି ପର୍ଜନ୍ୟ ମହାଦ୍ରୁମମାନଙ୍କର ଗୁହାରି ଶୁଣି ବାରି ଦାନ କରିବେ ଏବଂ ସେହି ବାରିଦାନଦ୍ୱାରା ମହାଦ୍ରୁମମାନେ ଏବଂ ତାଙ୍କ ସଙ୍ଗେ ବୃକ୍ଷଲତା ଗୁଳ୍ମମାନେ ଅଂଶ ପ୍ରାପ୍ତ ହୋଇ ଚରିତାର୍ଥ ହେବେ । ପତ୍ରଶୂନ୍ୟ ବୃକ୍ଷପୂର୍ଣ୍ଣ ପାହାଡ଼ ଯେପରି ଶିରାଳ ଓ କଙ୍କାଳମୟ । ଧରିତ୍ରୀର ସେ ସୁସ୍ନିଗ୍ଧ ଶ୍ୟାମଳ ମନୋମୁଗ୍ଧକର ଶୋଭା ନାହିଁ । ସେ ଛବି ବର୍ତ୍ତମାନ ସ୍ୱପ୍ନର ଅତୀତ । ଆଜି ଶୁଷ୍କଚର୍ମା, ପଳିତକେଶା, ଓଷ୍ଠାଗତପ୍ରାଣା, ଊର୍ଦ୍ଧ୍ୱନିଶ୍ୱସିତା, ମଳିନ ଗୈରିକବସନା ବସୁନ୍ଧରା । ତାହାର ଉତ୍ତପ୍ତ ଖର ନିଶ୍ୱାସ ସ୍ଥାବର ଜଙ୍ଗମ ଜୀବଜ କୁ ଆକୁଳ ଓ ବ୍ୟଥିତ କରୁଅଛି । ଆଜି ବୋଧ ହୁଏ ନିଦା ର ଶେଷ ରାଜତ୍ୱ, ଶେଷ ଆଧିପତ୍ୟ, ଶେଷ ଔଦ୍ଧତ୍ୟ ଓ ଶେଷ ଅତ୍ୟାଚାର । ସର୍ବତ୍ର ହା, ହା, ହା, ହା ।

ଜୟନ୍ତ ଦକ୍ଷିଣମୁଖ ହୋଇ ଥରେ ଏହି ଭୀଷଣ ଦୃଶ୍ୟ ଆଡ଼କୁ, ଥରେ ଧ୍ୟାନମଗ୍ନ ଗୁରୁଦେବଙ୍କ ମୁଖାରବିନ୍ଦକୁ ଅନାଉଁ ଅନାଉଁ ସଦାନନ୍ଦ ଭାରତୀଙ୍କର ଧ୍ୟାନଭଙ୍ଗ ହେଲା । ଜୟନ୍ତ ସାଷ୍ଟାଙ୍ଗ ପ୍ରଣିପାତ ହେଲେ ।

ସଦାନନ୍ଦ ଭାରତୀ ସନ୍ନ୍ୟାସୀ— ଶାନ୍ତ, ଶିଷ୍ଟ, ଶାସ୍ତ୍ରଜ୍ଞ । ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା ଏବଂ ତାହା ବିତରଣ କରିବା ନିମନ୍ତେ ସେ ସର୍ବଦା ସମୁତ୍ସୁକ ଥିଲେ । ବିଦ୍ୟା ଓ ଜ୍ଞାନ ଦାନରେ ସେ ଆଦୌ କୃପଣ ନ ଥିଲେ । ଜୟନ୍ତ ଶିକ୍ଷିତ ଯୁବକ, ଜ୍ଞାନପିପାସୁ, ଶାନ୍ତଶିଷ୍ଟ, ସଦାଚାରୀ, ଗୁରୁଭକ୍ତ— ସଦାନନ୍ଦଙ୍କର ପ୍ରିୟଶିଷ୍ୟ ।

ସଦାନନ୍ଦ ଜୟନ୍ତକୁ ଆଶୀର୍ବାଦ କଲେ ଏବଂ ନିକଟରେ ଉପବେଶନ କରିବାକୁ କହିଲେ ।

ଜୟନ୍ତ ଉପବେଶନ କରି ସାରି କହିଲେ, ''ଗୁରୁଦେବ, ଘନିଷ୍ଠତା କ୍ଷଣସ୍ଥାୟୀ ।'' ସଦାନନ୍ଦ ଏହା ଶୁଣି ପ୍ରଶ୍ନଗର୍ଭିତ ଦୃଷ୍ଟିରେ ଜୟନ୍ତ ଆଡ଼କୁ ଅନାଇ ରହିଲେ । ଯେପରି କି ସେ ଏ କଥାର ତାତ୍ପର୍ଯ୍ୟ, ଭାବାର୍ଥ ହୃଦୟଙ୍ଗମ କରିପାରିଲେ ନାହିଁ । ଜୟନ୍ତ କହିଲେ, ''ଗୁରୋ, ଆଜି ଆପଣଙ୍କ ବସାକୁ ଆସିଲା ବେଳେ ବାଟରେ ସୂର୍ଯ୍ୟାସ୍ତ ଦେଖିଲି । ପର୍ବତ, ପର୍ବତ ଶିରୋଦେଶରେ ଗାଢ଼ କୃଷ୍ଣ ମେଘଖଣ୍ଡ, ମେଘଖଣ୍ଡ ମଧ୍ୟରେ ନିମଜ୍ଜମାନ ସିନ୍ଦୂର ଛବି ସବିତା । ଯେତେବେଳେ ସୂର୍ଯ୍ୟାବୟବର ଅର୍ଦ୍ଧେକ ମେଘ ଭିତରେ ନିମଜ୍ଜିତ ହେଲା, ସେତେବେଳେ ରକ୍ତିମା ଦ୍ୱିଗୁଣିତ ହେଲା ଏବଂ ଅପୂର୍ବ ପାଟଳବର୍ଣ୍ଣରେ ବିଶ୍ୱ ଚରାଚର ରଞ୍ଜିତ ହୋଇଗଲା । ଏ ଶୋଭା, ଏ ଆଭା ବର୍ଣ୍ଣନାତୀତ । ଏ ଶୋଭା ବର୍ଣ୍ଣନା କରିବାକୁ କବିର ସାମର୍ଥ୍ୟ ନାହିଁ । ଏ ଆଭା ଫଳାଇବାକୁ ଚିତ୍ରକରର ରଙ୍ଗ ନାହିଁ । ମୁଁ ତନ୍ମୟ ହୋଇ ଅନାଇ ରହିଅଛି, ଯେତେବେଳେ ସୂର୍ଯ୍ୟାବୟବର ପ୍ରାୟ ତିନିଭାଗ ଘୋଡ଼ାଇ ହେଲା, ଠିକ୍ ସେତେବେଳେ ମେଘର କେତେକାଂଶ ପୁଣି ଅପସାରିତ ହେଲା । ଅହୋ ! ସୂର୍ଯ୍ୟଦେହରୁ ସହସ୍ର ସହସ୍ର ଗଳିତ ହାଟକବର୍ଣ୍ଣ କରି ହଠାତ୍ ପ୍ରସାରିତ ହୋଇ ପୂର୍ବ ଦିଗ୍‌ବଳୟ ପର୍ଯ୍ୟନ୍ତ ବିସ୍ତୃତ ହେଲା ଏବଂ ସମସ୍ତ ପଦାର୍ଥ— ବୃକ୍ଷ, ଲତା, ପାହାଡ଼, ପର୍ବତ, ମନୁଷ୍ୟ, ପଶୁ, ଜଳସ୍ଥଳ ସମସ୍ତଙ୍କୁ ସ୍ପର୍ଶ କଲା । ସୂର୍ଯ୍ୟାସ୍ତ ସଙ୍ଗେ କ୍ରମେ କ୍ରମେ ସେହି କରଜାଳ ସଙ୍କୁଚିତ ହେବାକୁ ଲାଗିଲା । ମନେ ହେଲା, ସବିତା ଚରାଚର, ଜୀବ ଜଡ଼ ସମସ୍ତଙ୍କ ମସ୍ତକ ଆଉଁସି ଆଶୀର୍ବାଦ ଦେଇ ଅସ୍ତ ହେଉଅଛନ୍ତି ଏବଂ ଯେପରି କି କହୁଅଛନ୍ତି, ମୁଁ ଉଦୟ ହୋଇ ସମସ୍ତଙ୍କୁ ଜାଗ୍ରତ, ଉଦ୍‌ବୁଦ୍ଧ ଓ କାର୍ଯ୍ୟରତ କରିଥିଲି । ସମସ୍ତେ ପରିଶ୍ରମରେ କ୍ଳାନ୍ତ ଓ ଶ୍ରାନ୍ତ, ବର୍ତ୍ତମାନ ବିଶ୍ରାମର

ସମୟ, ସମସ୍ତେ ବିଶ୍ରାମ କର । ମୋର ଦିବା ରାତ୍ର ନାହିଁ, ବିଶ୍ରାମର ସମୟ ନାହିଁ। ପୃଥିବୀର କି ଜଡ଼, କି ଚେତନ ସମସ୍ତଙ୍କର ବିଶ୍ରାମର ସମୟ ଅଛି, ମୋର ତାହା ନାହିଁ, ଅନନ୍ତ କାଳ ଜଗତକୁ ଜାଗ୍ରତ ରଖିବା ମୋର କର୍ତ୍ତବ୍ୟ । ଏ କର୍ତ୍ତବ୍ୟର ତ୍ରୁଟି ନାହିଁ । ତ୍ରୁଟି ହେଲେ ଜଗତ୍ ଭାଙ୍ଗିବ । ବାବା, ଏକଦୃଷ୍ଟିରେ ଏହି ଶୋଭାକୁ ନିରୀକ୍ଷଣ କରୁଥିଲି, ଏସବୁ କଥା ଭାବୁଥିଲି । ଯେତେବେଳେ ସୂର୍ଯ୍ୟଙ୍କର ମୋର ମସ୍ତକ ଆଉଁସି ଦେଇ ଚାଲିଗଲା, ସେତେବେଳେ ଦେହ ରୋମାଞ୍ଚିତ ହେଲା, ଚକ୍ଷୁ ମୁଦ୍ରିତ ହେଲା, ଲୋତକ ଗଡ଼ିଲା । ଦଣ୍ଡାୟମାନ ଅବସ୍ଥାରେ ମୁଁ ମୂର୍ଚ୍ଛିତ, କି ନିଦ୍ରିତ, କି ଜାଗ୍ରତ କିଛି ବୁଝିପାରିଲି ନାହିଁ । ମୋର ମନ ପ୍ରାଣ, ନା, ଶରୀର ମଧ୍ୟ ସୂର୍ଯ୍ୟ ସହିତ ଏକୀଭୂତ ହେଲା । କ୍ଷଣକାଳ ମୋର ଅସ୍ତିତ୍ୱ ନ ଥିଲା । ସହସା ଅନାଇଲି, ମୁଁ ସଶରୀରରେ ଦଣ୍ଡାୟମାନ । ସୂର୍ଯ୍ୟ କାହିଁ ? ଅହୋ । ଘନିଷ୍ଠତା କି କ୍ଷଣସ୍ଥାୟୀ ?

'ତରତର ହୋଇ ଏ ବସାଆଡ଼କୁ ଆସିଲି । ଦେଖେଁ, ଆପଣ ଏହି ପିଣ୍ଡାରେ ଉତ୍ତରମୁଖ ହୋଇ ଧରାବଦ୍ଧ ପଦ୍ମାସନରେ ଉପବିଷ୍ଟ, ଧ୍ୟାନମଗ୍ନ, ଯୋଗଯୁକ୍ତ, କାଷାୟବାସପରିହିତ, କାଷାୟ ଉତ୍ତରୀୟ ବାମ ସ୍କନ୍ଧୋପରି ଲମ୍ବିତ । ସାବଧାନରେ, ସନ୍ତର୍ପଣରେ ଉପସ୍ଥିତ ହେଲି । ଆପଣଙ୍କୁ ତାହା ଅବିଦିତ । ପ୍ରବେଶ ହେଲା ବେଳେ ସୂର୍ଯ୍ୟାସ୍ତ ହୋଇଥିଲେ ହେଁ ସୂର୍ଯ୍ୟାସ୍ତର ଅବ୍ୟବହିତ ପରବର୍ତ୍ତୀ ପ୍ରତିଫଳିତ ଦୀପ୍ତି ଆକାଶ ଓ ଧାରାକୁ ସ୍ୱର୍ଣ୍ଣରେଣୁରେ ରଞ୍ଜିତ କରୁଥିଲା । ଏ ଆଲୋକ କ୍ୱଚିତ୍ ଦେଖାଯାଏ, ମାତ୍ର ମୋ ଭାଗ୍ୟକୁ ତାହା ଆଜି ବିଦ୍ୟମାନ ଥିଲା । ସେହି ଦୀପ୍ତି ତେତେବେଳେ ଆପଣଙ୍କର ସର୍ବାବୟବକୁ ରଞ୍ଜିତ କରିଥିଲା । ସେତେବେଳେ ଆପଣଙ୍କର ଦୈହିକ ଶୋଭା ଓ ଦୀପ୍ତି ମୋର ମନ ପ୍ରାଣକୁ ଅପୂର୍ବ ଭକ୍ତି ଓ ପ୍ରେମରସରେ ଆପ୍ଲୁତ କଲା । ସିଦ୍ଧହସ୍ତ ଚିତ୍ରକରର ଚିତ୍ରିତ ଧ୍ୟାନୀ ବୁଦ୍ଧ ରୂପ ହୃଦୟରେ ଜାଗ୍ରତ ହୋଇଉଠିଲା । ଚକ୍ଷୁ ମୁଦିତ ହେଲା, ଭକ୍ତିଦଦ୍ଗତଚିତ୍ତରେ ଆନ୍ତରିକ ପ୍ରଣାମ କଲି । ମୁଁ ଚକ୍ଷୁ ଖୋଲିବା ସଙ୍ଗେ ସଙ୍ଗେ ଆପଣଙ୍କର ଧ୍ୟାନଭଙ୍ଗ ହେଲା । ସହସା ଦଣ୍ଡବତ ପ୍ରଣାମ କଲି । ବାବା, ଆଶୀର୍ବାଦ ପ୍ରାପ୍ତ୍ୟାଶାରେ ଦୈନିକ ଦଣ୍ଡବତ ପ୍ରଣିପାତ ହେଉଅଛି, ମାତ୍ର ଆଜିର ଆନ୍ତରିକ ପ୍ରଣାମ ତୁଳନାରେ ଏ ସବୁ କୃତ୍ରିମ ବୋଲି ମନେ ହୁଏ । ଆପଣ ଅଛନ୍ତି, ମୁଁ ଅଛି, ମାତ୍ର ସେ ସାମୟିକ ଘନିଷ୍ଠତା କାହିଁ ?

''ଆଜିଠାରୁ ପାଞ୍ଚ ସାତ ଦିନ ତଳେ ଏହି ପିଣ୍ଡାରେ ଶୟନ କରିଥିଲି । ରାତ୍ର ପାହି ନ ଥିଲା ତାରକାମାନେ ନିଷ୍ପ୍ରଭ ହୋଇ ନ ଥିଲେ, ପୂର୍ବାଶା ଉଷାଲୋକରେ ଦୀପ୍ତ ହୋଇ ନ ଥିଲା— ପକ୍ଷୀମାନେ ପ୍ରାତଃସଙ୍ଗୀତ ଆରମ୍ଭ କରି ନ ଥିଲେ। ଆପଣଙ୍କର ନିଦ୍ରାଭଙ୍ଗ ହୋଇ ନ ଥିଲା । ମୋର ନିଦ୍ରାଭଙ୍ଗ ହେଲା, ମାତ୍ର ବିଛଣାରେ ପଡ଼ି ରହିଲି । ମୋର କର୍ଣ୍ଣକୁହରରେ ଦୂରରୁ, ବହୁ ଦୂରରୁ ମଧୁର ଧ୍ୱନି ପ୍ରବେଶ କଲା । ଗୀତ କିନ୍ତୁ ଅବ୍ୟକ୍ତ, ଅସ୍ପଷ୍ଟ । ଏହି ଧ୍ୱନି କର୍ଣ୍ଣକୁହରରେ ପ୍ରବେଶ କରି ହୃଦୟକୁ ଏକାବେଳକେ ଆଲୋଡ଼ିତ କଲା । ମୁଁ ଦୁଃଖସିନ୍ଧୁରେ ନିମଜ୍ଜିତ ହେଉଥିଲି, କି ଅଜଣା ସୁଖରାଜ୍ୟର ଆଧିପତ୍ୟ ଭୋଗ କରୁଥିଲି, ତାହା ମୋର ମନେ ନାହିଁ । ବେଳେ ବେଳେ ମନେହେଲା— ମୁଁ ସେହି ଧ୍ୱନିରେ ମୁଗ୍ଧ— ମୋର ଭାଇ ବନ୍ଧୁ, ପିତା ମାତା, ସ୍ୱଜନ, ଗ୍ରାମବାସୀ, ଦେଶବାସୀ, ସମସ୍ତେ ଧୀରେ ଧୀରେ ମୋତେ ତ୍ୟାଗ କରି ଛାଡ଼ିଯାଉଅଛନ୍ତି— ଦୂରରୁ ଦୂରକୁ । ମୁଁ ଏକାକୀ ସେହି କରୁଣ ସଙ୍ଗୀତଧ୍ୱନି ଶ୍ରବଣରେ ମୁଗ୍ଧ ହୋଇ ରହିଅଛି । ଆଗକୁ ପଛକୁ କେହି ନାହିଁ, ଏକାକୀ—ଅନ୍ଧକାର—ଅନ୍ଧକାର । ଆକୁଳ ହୋଇ ଡାକିଲେ ଶୁଣିବାକୁ କେହି ନାହିଁ । ଏତାଦୃଶ ଅନନ୍ତ ହତାଶା, କି ଅପାର ଆନନ୍ଦ ଏହି ସଙ୍ଗୀତ, ଏହି ଧ୍ୱନି ହୃଦୟରେ ଜନ୍ମାଉଥିଲା, ତାହା ମୋର ସ୍ମରଣ ନାହିଁ। ତନ୍ଦ୍ରା ଉପସ୍ଥିତ ହେଲା । ମନେ କରୁଥିଲି, ଅନନ୍ତ ଦୁଃଖ ହେଉ ବା ଅନନ୍ତ ସୁଖ ହେଉ ଏହି ମୋହନିଦ୍ରା ନ ଭାଙ୍ଗିଲେ ମୁଁ ସୁଖୀ । ଏହି ଧ୍ୱନିର ମୋହ ମୋତେ ଅନନ୍ତ ରାଜ୍ୟକୁ ନେଇଯାଉ । ତନ୍ମୟ ହୋଇଗଲି, ଚକ୍ଷୁ ମୁଦ୍ରିତ ହେଲା । ମନେ କରିଥିଲି, ଏ ନିଦ୍ରା ଆଉ ଭାଙ୍ଗିବ ନାହିଁ । ମୋହ ଭାଙ୍ଗିଲା, ଜାଗ୍ରତ ହୋଇ ବସିଲି— ଜାଣିଲି, କେଉଁ ଧ୍ୱନି ଏପରି ଭାବ ଜାତ କଲା। କିଛି ନୁହେଁ, ଦୂରରେ ଜଣେ ହଳୁଆର ଗୀତ । ଗୁରୁଦେବ, ଓସ୍ତାଦମାନଙ୍କର ବୀଣାର ଝଙ୍କାର ଶୁଣିଅଛି, ଗାୟକମାନଙ୍କର ସଙ୍ଗୀତ ଶୁଣିଅଛି, ଆପଣଙ୍କର ବେଦପାଠ ଶ୍ରବଣ କରିଅଛି, ମାତ୍ର ସେ ଦିନର ଉଷା କାଳର ହଳୁଆ ଗୀତଧ୍ୱନି ମୋର ହୃଦୟରେ ଯେଉଁ ଭାବ ଜନ୍ମାଇଥିଲା, ସେପରି ଭାବ କୌଣସି ଗୀତ ବାଦ୍ୟଦ୍ୱାରା କେବେ ଜାତ ହୋଇ ନାହିଁ । ଗୁରୁଦେବ, ଚେତନ ମଧ୍ୟରେ ଓ ଜଡ଼ ଓ ଚେତନ ମଧ୍ୟରେ କୌଣସି ଅଲକ୍ଷ୍ୟ ସମ୍ବନ୍ଧ ଅଛି, ଯାହା ସମୟରେ ଘନିଷ୍ଠତା ଆନୟନ କରେ। ସେ ଘନିଷ୍ଠତା କ୍ଷଣସ୍ଥାୟୀ । ଏହା ସାଧନାର କାର୍ଯ୍ୟ ନୁହେଁ, ଏହା ସ୍ୱାଭାବିକ ।''

ଭାରତୀ ପୁଣି ଅନାଇ ରହିଲେ । ଜୟନ୍ତ ନିସ୍ତବ୍ଧ । ଭାରତୀ କହିଲେ, ''ପରମାତ୍ମାଙ୍କର ଜଟିଳ ମାୟାର ଖେଳ । ତୁମ୍ଭର କଥିତ ଘନିଷ୍ଠତା କ୍ଷଣସ୍ଥାୟୀ ହୋଇପାରେ, ମାତ୍ର ଆତ୍ମା ପରମାତ୍ମାଙ୍କ ସମ୍ବନ୍ଧ ଓ ଘନିଷ୍ଠତା ନିତ୍ୟ ଓ ଚିରସ୍ଥାୟୀ ।''

''ବାବା, କ୍ଷମା ଦେବେ, ମୋର ମନ ମାନୁ ନାହିଁ । ସମୟର ଖେଳ । ଧ୍ୟାନଦ୍ୱାରା ଈଶ୍ୱର ସହିତ ମନର ସଂଯୋଗ କେତେଦୂର ଘଟେ, ତାହା କହିବାର ମୋର ଯୋଗ୍ୟତା ନାହିଁ । ଯଦିବା ଘଟେ, ତାହା ମଧ୍ୟ କ୍ଷଣସ୍ଥାୟୀ ।''

''ଜୟନ୍ତ, ତୁମ୍ଭର ବୁଦ୍ଧି ଉତ୍ତମ, ସ୍ମରଣଶକ୍ତି ପ୍ରଖର, ବିଦ୍ୟାରେ ସ୍ପୃହା ଯଥେଷ୍ଟ, ବହୁ ଶାସ୍ତ୍ର ଶିକ୍ଷା କରିଅଛି ମାତ୍ର ତୁମ୍ଭର ଚିନ୍ତାସ୍ରୋତ ଶାସ୍ତ୍ରାନୁବର୍ତ୍ତୀ ନୁହେଁ । ସ୍ୱାଧୀନ ଚିନ୍ତା ଅନେକ ସମୟରେ ମନକୁ ନାସ୍ତିକ୍ୟବାଦ ଆଡ଼କୁ ଆକର୍ଷଣ କରେ । ଧର୍ମ ଓ ଈଶ୍ୱର ସମ୍ବନ୍ଧରେ ଆପ୍ତ ବାକ୍ୟ ହିଁ ପ୍ରମାଣ, ଗୁରୁ ଉପଦେଶ ହିଁ ଗ୍ରହଣୀୟ ଓ ବିଶ୍ୱାସ୍ୟ । ଯୋଗଦ୍ୱାରା ନିତ୍ୟ ସମ୍ବନ୍ଧ ସ୍ଥାପନ କରାଯାଇପାରେ । ତୁମ୍ଭର ସ୍ୱାଧୀନ ଚିନ୍ତାଜନିତ ଭାବମାନଙ୍କୁ ତ୍ୟାଗ କରି ଶାସ୍ତ୍ରାନୁସାରେ ଓ ଆମ୍ଭର ଉପଦେଶାନୁସାରେ ଚିତ୍ତନିରୋଧଦ୍ୱାରା ଯୋଗ ଅଭ୍ୟାସ କର ।

'ସଙ୍କଳ୍ପପ୍ରଭବାନ୍ କାମାଂ
ସ୍ତ୍ୟକ୍ତ୍ୱାସର୍ବାନଶେଷତଃ ।
ମନସୈବେନ୍ଦ୍ରିୟଗ୍ରାମଂ
ବିନିୟମ୍ୟ ସମନ୍ତତଃ ॥
ଶନୈଃ ଶନୈରୁପରମେଦ୍
ବୁଦ୍ଧ୍ୟା ଧୃତିଗୃହୀତୟା ।
ଆତ୍ମସଂସ୍ଥଂ ମନଃ କୃତ୍ୱା
ନ କିଞ୍ଚିଦପି ଚିନ୍ତୟେତ୍ ॥'

ବାବା, ଈଶ୍ୱର ଚିନ୍ତାରେ ଯୋଗସ୍ଥ ହେଲାବେଳେ ସଂସାରର କିଛିହିଁ ଯେପରି ମନକୁ ଆକର୍ଷଣ କରି ନ ପାରେ, ସେଥି ପ୍ରତି ଯତ୍ନଶୀଳ ହେବ ।''

ଜୟନ୍ତ ନତମସ୍ତକରେ ଗୁରୁଦେବଙ୍କ ଉପଦେଶ ଶ୍ରବଣ କରୁଥିଲେ । ତାଙ୍କ ମନ ଗୁରୁଙ୍କ କଥାରେ ମାନିଲା କି ନା, ସେ ତାହା ପ୍ରକାଶ କଲେ ନାହିଁ । ଉପଦେଶ ଅନୁସାରେ ଯୋଗ ଶିକ୍ଷା କରିବାକୁ ତାଙ୍କର ମନ ବଳିଲା । ପରୀକ୍ଷା ହିଁ ତାଙ୍କ ଜୀବନର ମୂଳ ଲକ୍ଷ୍ୟ ।

କିଛିକ୍ଷଣ ଚାଲିଗଲା । ଅନ୍ଧାର ହୋଇଆସିଲା । ପଶ୍ଚିମ ଦିଗର ପାହାଡ଼ର ଚୂଡ଼ାସଂଲଗ୍ନ କୃଷ୍ଣ ମେଘଖଣ୍ଡ ଗାଢ଼ତର କୃଷ୍ଣବର୍ଣ୍ଣ ଦେଖାଗଲା । ସାମାନ୍ୟ ବିଦ୍ୟୁତ୍ ଆଭା ଦେଖାଗଲା, ସୁଲୁ ସୁଲୁ ପବନ ବହିଲା । ସଦାନନ୍ଦ କହିଲେ, ''ଆଜି ନିଶ୍ଚୟ ପ୍ରବଳ ଝଡ଼ ବୃଷ୍ଟି ହେବ, ଶୀଘ୍ର ହେବ । ଚାଲ ବାବା, ଗୃହ ଭିତରେ ବସି ଯୋଗ ଶିକ୍ଷାର ଅଧ୍ୟାରମ୍ଭ କରିବା ।''

ଉଭୟେ ଗୃହାଭ୍ୟନ୍ତରକୁ ଗଲେ । ବାସ୍ତବିକ ଅଳ୍ପକ୍ଷଣ ପରେ ପ୍ରବଳ ପବନ ବହିଲା । କ୍ଷୀଣତୈଳ ଦୀପ ନିଭିଯିବା ଭୟରେ କବାଟ ଆଉଯାଇ ଦେଲେ । ପୂର୍ବମୁଖ ହୋଇ ଜୟନ୍ତ ଏବଂ ଉତ୍ତରମୁଖ ହୋଇ ସଦାନନ୍ଦ ବସିଲେ । ପ୍ରଥମେ ଭାରତୀ ମନ ସ୍ଥିର କିପରି କରିବାକୁ ହୁଏ, ତହିଁର ଉପଦେଶ ଦେଲେ । ଭୂତଶୁଦ୍ଧି, ଆସନଶୁଦ୍ଧି ଶିକ୍ଷା ଦେଲେ । ଯୋଗାସନରେ ବସାଇଲେ, ଚକ୍ଷୁ ଈଷନ୍ମୁଦ୍ରିତ କରି ନାସାଗ୍ରରେ ଦୃଷ୍ଟି ନିକ୍ଷେପ କରିବାକୁ କହିଲେ ଏବଂ ମୃଦୁ ଗମ୍ଭୀର ସ୍ୱରରେ ବାରମ୍ବାର ପ୍ରଣବ ଉଚ୍ଚାରଣଦ୍ୱାରା ମନ ନିରୋଧ କରିବାକୁ ଓ ଏକାଗ୍ରଚିତ୍ତ ହେବାକୁ ଆଦେଶ କଲେ । ଜୟନ୍ତ ଠିକ ସେହିପରି କରିବାକୁ ଆରମ୍ଭ କଲେ । ଜୟନ୍ତ ଧ୍ୟାନମଗ୍ନ ଭାରତୀ ତାଙ୍କୁ ଏକ ଦୃଷ୍ଟିରେ ଚାହିଁଅଛନ୍ତି ଏବଂ ଉପଯୁକ୍ତ ଶିଷ୍ୟ ବୋଲି ବେଳେ ବେଳେ ଆନନ୍ଦ ଅନୁଭବ କରୁଅଛନ୍ତି । ବାହାରେ ପ୍ରବଳ ଝଡ଼ ବୃଷ୍ଟି, ମନ୍ଦ୍ରନାଦ, ବିଦ୍ୟୁତ୍‌ପାତ ଚାଲିଅଛି । ଜୟନ୍ତ ନିଶ୍ଚଳ ଓ ନିମଗ୍ନ । ଭାରତୀ ଦେଖୁଅଛନ୍ତି । ଜୟନ୍ତର ଦେହ ଚମକି ଉଠିଲା । ଭାରତୀ ଦେଖିଲେ । ଜୟନ୍ତ ଭାରତୀଙ୍କ ଆଡ଼କୁ ମୁଖ ଫେରାଇ ମଟ ମଟ ଚାହିଁଲେ । ଭାରତୀ କହିଲେ, ''ଏ କ'ଣ ? ଧ୍ୟାନଭଙ୍ଗର କାରଣ କ'ଣ ?''

''ଦୂରରେ କ୍ରନ୍ଦନଧ୍ୱନି ।''

''ଯେବେ ସତ୍ୟ ବା କାଳ୍ପନିକ କ୍ରନ୍ଦନଧ୍ୱନିରେ ତୁମ୍ଭର ଧ୍ୟାନଭଙ୍ଗ ହେଲା, ତେବେ ସଂଯତ ହୋଇ ଉପବେଶନ କରି ନାହଁ । ପୁଣି ଚେଷ୍ଟା କର ।''

ଜୟନ୍ତ ପୁଣି ଅଧିକତର ଦୃଢ଼ ସଂକଳ୍ପ କରି ଧ୍ୟାନରେ ବସିଲେ । କ୍ରନ୍ଦନଧ୍ୱନି ବୋଧହୁଏ ବାୟୁରେ ମିଶିଗଲା, ଆଉ ଶୁଣାଗଲା ନାହିଁ । ମୁହୂର୍ତ୍ତ ମାତ୍ର ଅତିବାହିତ ନ ହେଉଣୁ ଜୟନ୍ତ ଚମକିତ ହେବା, ଅନାଇବା ଛଡ଼ା ''ବାବା, ବାବା'' ବୋଲି ଡାକିଲେ । ସଦାନନ୍ଦ କହିଲେ, ''କଥା କ'ଣ— ତୁମ୍ଭର ଏତାଦୃଶ ଅସଂଯମ, ଅଭୂତପୂର୍ବ ଅବାଧ ଆଚରଣର କାରଣ କ'ଣ ? ମନକୁ ସ୍ଥିର କର— କର୍ମେନ୍ଦ୍ରିୟ ନିରୋଧ କର । ମହତ୍ କାର୍ଯ୍ୟରେ ବାଧାବିଘ୍ନ ପଦେ ପଦେ । ତପସ୍ୟାରେ ଏପରି ଅନ୍ତରାୟ ଉପସ୍ଥିତ ହୁଏ । ଜାଣି ଶୁଣି ବିଚ୍‌ଳିତ ହେବା ସ୍ଥିତପ୍ରଜ୍ଞର କାର୍ଯ୍ୟ ନୁହେଁ ।''

''ଗୁରୁଦେବ, ଅସହ୍ୟ, ଅସହ୍ୟ, ସ୍ୱାର୍ଥସିଦ୍ଧି କାମନାରେ ମୁଁ ଯୋଗତପ୍ର ରହିବି । ଆତୁରର ଆର୍ତ୍ତନାଦ କର୍ଣ୍ଣରେ ପ୍ରବେଶ କରିବ ବୋଲି ଶ୍ରବଣେନ୍ଦ୍ରିୟକୁ ନିରୋଧ କରିବି । ଶୁଣନ୍ତୁ, ପୁଣି କ୍ରନ୍ଦନଧ୍ୱନି— ସ୍ତ୍ରୀର କ୍ରନ୍ଦନଧ୍ୱନି ।''

''ପିଶାଚୀ କି ପେତିନୀ ହୋଇପାରେ ।''

''ଏଥିରେ ମୋର ବିଶ୍ୱାସ ନାହିଁ, ଏହା ବିପଦ୍‌ଗ୍ରସ୍ତା ସ୍ତ୍ରୀର କାତର କ୍ରନ୍ଦନ । ବାବା, ମଙ୍ଗ ଓ ବୀଣା ଛଡ଼— ଉଭୟର ସ୍ୱର ମିଳିଥିଲେ ଅଙ୍ଗରେ ଆଘାତ କଲେ ଦୂରବର୍ତ୍ତୀ ବୀଣା ମଧ୍ୟ ସୂଚାଇ ଦିଏ । ମୁଁ ନର, ମୁଁ ଗୃହୀ— ଅନ୍ୟର ମନ କି ମୋର ହୃଦୟତନ୍ତ୍ରୀରେ ଆଘାତ କରିବ ନାହିଁ— ମୋର ହୃଦୟ କି ବେସୁରା ବୀଣା ପରି ମନ୍ତ ହୋଇରହିବ ? କଦାପି ନୁହେଁ । କ୍ଷମା ଦିଅ, ପ୍ରଭୋ । ହୃଦୟରେ ଥରକୁଥର ସେହି କ୍ରନ୍ଦନ କରି ଆଘାତ କରୁଛି ।''

ଏହା କହି ଜୟନ୍ତ ସଦାନନ୍ଦଙ୍କ ଗୋଡ଼ତଳେ ପଡ଼ି ପଦଧୂଳି ଗ୍ରହଣ କଲେ ଏବଂ ଚିଦାନନ୍ଦଙ୍କ ଉତ୍ତରକୁ ଅପେକ୍ଷା ନ କରି କବାଟ ଖୋଲି ଦେଇ ପିଣ୍ଡାକୁ ବାହାରି ପଡ଼ିଲେ । ସଙ୍ଗେ ସଙ୍ଗେ ପ୍ରଦୀପଶିଖା ନିର୍ବାପିତ ହେଲା ।

ଜୟନ୍ତ ପିଣ୍ଡାରେ ଦଣ୍ଡାୟମାନ ହେଲେ, ଦକ୍ଷିଣ ଆଡ଼କୁ ମୁଖ କରି ଶବ୍ଦକୁ ଲକ୍ଷ୍ୟ କଲେ । ଦେଖିଲେ ଯେ, ବିଶ୍ୱ ଚରାଚର ସମାନ, ଇତର ବିଶେଷ କିଛି ନାହିଁ, ସମସ୍ତ ମହା ଅନ୍ଧକାରାବୃତ । ଏ ଅନ୍ଧକାରର ଉପମା ନାହିଁ । 'ମୁଁ ଅଛି' ଏ ଶବ୍ଦ ଭିନ୍ନ ନିଜର ଶରୀରର ଅସ୍ତିତ୍ୱ ମଧ୍ୟ ଗୋଚରାତୀତ । କେବଳ ପ୍ରଳୟ ପ୍ରାକ୍‌କାଳୀନ ପ୍ରଚଣ୍ଡ ବତାସର କର୍ଣ୍ଣବଧିରକାରୀ ହୁ ହୁ ଶବ୍ଦ । ପୁଣି ବଜ୍ରନିର୍ଘୋଷ, ଭୂମିଖଣ୍ଡ କମ୍ପି ଉଠିଲା ପରି ମନେ ହେଲା, ଏହି ଭୂମିକମ୍ପରେ ପାଦତଳର ପୃଥିବୀ ବିଦୀର୍ଣ୍ଣ ହୋଇ ଜୟନ୍ତକୁ ଉର୍ଦ୍ଧ୍ୱକୁ ଘେନିଯାଇ ଅଣୁ ପରମାଣୁରେ ପରିଣତ କରିବ । ଜୟନ୍ତର ହୃଦୟ ମଧ୍ୟ କମ୍ପିଉଠିଲା । ପ୍ରଭଞ୍ଜନରେ ମହା ମହା ଦ୍ରୁମ, ବୃକ୍ଷଶାଖାମାନେ ଉନ୍ମୂଳିତ, ଭଗ୍ନ, ତତ୍‌କ୍ଷିପ୍ତ ଓ ବିକ୍ଷିପ୍ତ ହେଉଥିଲେ । ମୂଷଳ ଧାରାରେ ବୃଷ୍ଟି । ଏ ପ୍ରଳୟ କାଣ୍ଡ ମଧ୍ୟରେ ଜୟନ୍ତ ଏକାକୀ ପିଣ୍ଡାରେ ଦଣ୍ଡାୟମାନ ହୋଇ ଗୋଟିଏ କ୍ଷୀଣ ଆର୍ତ୍ତନାଦ ଶ୍ରବଣ ଆଶାରେ କାନ ଡେରି ରହିଥିଲେ । ମୁହୂର୍ତ୍ତ ମାତ୍ର ଅତୀତ ହେଲା । ପଶ୍ଚିମରୁ ଦମକା ଝଡ଼ ପୂର୍ବ ଆଡ଼କୁ ଚାଲିଗଲା । ସଙ୍ଗେ ସଙ୍ଗେ ଆର୍ତ୍ତନାଦ ଜୟନ୍ତ ଶୁଣି ପାରିଲେ । ଝଡ଼ ତୋଫାନକୁ ଲକ୍ଷ୍ୟ ନାହିଁ, ନିଜର ଜୀବନ ପ୍ରତି ମମତା ନାହିଁ, ସାପ ଓ ହିଂସ୍ରଜନ୍ତୁକୁ ଭୟ ନାହିଁ, ଜୟନ୍ତ ସେହି ଶବ୍ଦକୁ ଲକ୍ଷ୍ୟ କରି ଶ୍ମଶାନ ଆଡ଼କୁ ଚାଲିଲେ ।

ସଦାନନ୍ଦ ଭାରତୀ ଅନ୍ଧକାରରେ ମୌନ ହୋଇ ବସିଥିଲେ । ଭାବିଲେ, ''ଜୟନ୍ତ ମୋର ପ୍ରିୟ ଭକ୍ତ ଓ ବାଧ୍ୟ ଶିଷ୍ୟ, ତା'ର ପିତା ଜୟନ୍ତର ଭାର ମୋ ଉପରେ ଅର୍ପଣ କରିଅଛନ୍ତି । ଏହି ଭୀଷଣ ସମୟରେ ମଧ୍ୟ ଜୟନ୍ତର ପିତା ମାତା ଜୟନ୍ତ ମୋ ନିକଟରେ ନିରାପଦରେ ଅଛି ଭାବି ନିଶ୍ଚିନ୍ତ ଥିବେ । ମୁଁ ଗୃହ ଭିତରେ ବସିଅଛି, ଜୟନ୍ତ ଜୀବନର ମମତା ତ୍ୟାଗ କରି ପର ନିମନ୍ତେ ପିଣ୍ଡା ତଳକୁ ଡେଇଁପଡ଼ିଲା । ସେ ଶ୍ମଶାନକୁ ଏକାକୀ ଏ ଦୁଃସମୟରେ ଯିବ, ମୁଁ ନିରାପଦରେ ଗୃହ ଭିତରେ ରହିବି ? ନା ।'' ଏହା କହି ସହସା ଗାତ୍ରୋତ୍‌ଥାନ କଲେ, ଜୟନ୍ତଙ୍କ ଅଲକ୍ଷ୍ୟରେ ତାଙ୍କ ପଛେ ପଛେ ଚାଲିଲେ । କ୍ଷଣପ୍ରଭା ସେମାନଙ୍କର ପଥପ୍ରଦର୍ଶକ ହେଲା ।

ଶ୍ମଶାନର ଆମ୍ବତୋଟାରେ ଜୟନ୍ତ ଚମକିପଡ଼ି ଦଣ୍ଡାୟମାନ ହେଲେ । ଝଡ଼ଦ୍ୱାରା ବୃକ୍ଷ ଶାଖାଗ୍ରମାନେ ଖଣ୍ଡ ଖଣ୍ଡ ହୋଇ ଇତସ୍ତତଃ ବିକ୍ଷିପ୍ତ ହେଉଥିଲେ । ଘନ ଘନ ବିଜୁଳୀ ଖେଳାରେ ଆମ୍ବଗଛ ଓ ଛାୟାମାନେ ଅସଂଖ୍ୟ ଭୂତପ୍ରେତର ତାଣ୍ଡବଲୀଳା ଦେଖାଉଥିଲେ । ଏଣେତେଣେ ଦୁଇ ଚାରିଟା ଖଟ ଓଟଲପାଲଟ ହୋଇ ପଡ଼ିଅଛି । ଖଟର ଛିଦ୍ରଗୁଡ଼ିକ ପିଶାଚଙ୍କର ଅସଂଖ୍ୟ ଚକ୍ଷୁ ଏକ ଦୃଷ୍ଟିରେ ଜୟନ୍ତ ଆଡ଼କୁ ଅନାଇ ରହିଲା ପରି ବିଦ୍ୟୁତ୍ ଆଲୋକରେ ପ୍ରତିଭାତ ହେଉଅଛି । ଦରପୋଡ଼ା ଖଣ୍ଡକେତେ କାଠ ଗଣ୍ଡି, ଚାରି ଛଅଟା କୁଲା, ମାଠିଆ ଆଲୁଅ ଓ ଅନ୍ଧାରର ଖେଳାରେ ଶ୍ମଶାନର ବିଭୀଷିକା ଓ ବୀଭତ୍ସତାକୁ ଜୟନ୍ତର ହୃଦୟରେ ଅଙ୍କନ କରୁଥିଲେ ।

ବିପନ୍ନାର ଶବ୍ଦ ନାହିଁ । ଜୟନ୍ତ ବିସ୍ମିତ ହେଲେ । ଶ୍ମଶାନ ନିକଟବର୍ତ୍ତୀ ଧାନବିଲ ଆଡ଼କୁ ବିଦ୍ୟୁତ୍ ଝଟକରେ ଚଞ୍ଚଳ ନେତ୍ରରେ ଏଣେ ତେଣେ ଅନାଇଲେ ଏବଂ ଅତି ଉଚ୍ଚ ସ୍ୱରରେ 'କିଏ, କିଏ ଡାକିଲ'' ବୋଲି ଚିତ୍କାର କଲେ । ସେହି ଶବ୍ଦ ଆମ୍ବ ତୋଟାରେ, ଜୋର ଗଣ୍ଡରେ ପ୍ରତିଧ୍ୱନିତ ହୋଇ ସ୍ୱୟଂ ଜୟନ୍ତକୁ ଓ ସଦାନନ୍ଦଙ୍କୁ ଚମକିତ କଲା ଏବଂ ପ୍ରବଳ ବାୟୁସ୍ରୋତରେ ମିଶିଗଲା । ମାତ୍ର ଜୟନ୍ତ ପ୍ରତ୍ୟୁତ୍ତର ପାଇଲେ ନାହିଁ । ତୁହାଇ ତୁହାଇ ଡାକିଲେ, ଉତ୍ତର ନାହିଁ । ପୁଣି ଅଗ୍ରସର ହେଲେ ବିଦ୍ୟୁତ୍ ଆଲୋକରେ ଅନତିଦୂରରେ ଶୁକ୍ଳ ବର୍ଣ୍ଣର କୌଣସି ବସ୍ତୁ ନେତ୍ରରେ ପଡ଼ିଲା । ତାହା ଶବ ହୋଇପାରେ, ଶବର ବସ୍ତ୍ର ହୋଇପାରେ ବା ଅନ୍ୟ କିଛି ହୋଇପାରେ, ଏହା ଜୟନ୍ତ ଭାବିଲେ ନାହିଁ । ସହସା ଦଉଡ଼ି ଯାଇ ଧରି ପକାଇଲେ । ସିକ୍ତବସ୍ତ୍ରାବୃତ ସିକ୍ତ କେଶଗୁଚ୍ଛ ଉପରେ ତାଙ୍କର ହାତ ପଡ଼ିଲା । ସାପଦେହ ପରି ଥଣ୍ଡା । ହାତ

ଆପେ ଘୁଞ୍ଚି ଆସିଲା । ଶିତ୍କାର ଜାତ ହେଲା । ପୁଣି ସ୍ପର୍ଶ କଲେ ହାତ କଡ଼ଚିରେ ବାଜିଲା । ହାତରେ ଚୁଡ଼ି ବା ଅନ୍ୟ କିଛି ଅଳଙ୍କାର ନାହିଁ । ବିଧବା ବୋଲି ଅନୁମାନ କଲେ । ହିଡ଼ ଉପରେ ଦୁଇ ହାତ ରଖି ତହିଁ ଉପରେ ମୁଣ୍ଡ ଦେଇ ମୂର୍ଚ୍ଛିତା ହୋଇ ପଡ଼ିଥିଲା । ମୁଣ୍ଡକୁ ହଲାଇ ହଲାଇ ଡାକିଲେ । ବିପନ୍ନା ଚେତା ପାଇଲା । ଜୟନ୍ତ ଦଣ୍ଡାୟମାନ ହେଲେ । ବିପନ୍ନା ତଦବସ୍ଥାରେ ଥାଇ କହିଲା, 'ଅନ୍ଧକାର କି ମୋର ଚକ୍ଷୁର ଦୋଷ ? ମୁଁ କିଛି ଦେଖି ପାରିବାକୁ ନାହିଁ । ମହାତ୍ମା, ମୁଁ ଦୁଃଖିନୀ ବିଧବା ଯୁବତୀ । ତୁମେ ମୋର ପିତା କି ଭାଇ ? ଏପରି ବେଳରେ ଏଠାକୁ ତୁମେ କିପରି ଆସି ମୋର ମୂର୍ଚ୍ଛା ଭାଙ୍ଗିଲ ?'' ଜୟନ୍ତ କହିଲେ, ''ମୁଁ ଯୁବକ, ନାମ ଜୟନ୍ତ, ମୁଁ ତୁମର ଭାଇ । ତୁମର କ୍ରନ୍ଦନ ଶବ୍ଦ ଶୁଣି ଏଠାକୁ ଆସିଲି ।'' ଏ ବାକ୍ୟାଳାପ ସୂଚୀ-ଅଭେଦ୍ୟ ଅନ୍ଧକାରରେ ଚାଲିଅଛି । କେହି କାହାରି ମୁଖ ବଲୋକନ କରିପାରୁ ନାହାନ୍ତି । ଜୟନ୍ତ ବି ନାହାନ୍ତି ଯେ ସଦାନନ୍ଦ ଛାୟା ପରି ତାଙ୍କର ଅନୁଧାନ କରି ନିକଟରେ ଦଣ୍ଡାୟମାନ ଅଛନ୍ତି । ସେ ମଧ ତାଙ୍କ କଥା, ପିତା ମାତାଙ୍କ କଥା, ଯୋଗସାଧନାର କଥା ଭାବିବାକୁ ନାହିଁ । ତାଙ୍କର କର୍ତ୍ତବ୍ୟ ବିପନ୍ନା ଯୁବତୀର ଉଦ୍ଧାର ।

ସଦାନନ୍ଦ ଅଳ୍ପ ଦୂରରେ ନିଃଶବ୍ଦରେ ଦଣ୍ଡାୟମାନ ହୋଇ ଯୁବତୀର ଓ ଜୟନ୍ତର କଥା ଶୁଣିଲେ । ଭାବିଲେ, ''ଯୁବତୀ, ଏ ରାତ୍ରିକାଳରେ ଗ୍ରାମରୁ ବହୁଦୂରରେ, ଏଥିର କାରଣ କ'ଣ ? ଜୟନ୍ତ ଯୁବକ, ଚଞ୍ଚଳମତି, ଯୋଗଭଙ୍ଗ କରି ଏଠାକୁ ଦଉଡ଼ି ଆସିଅଛି । ବିଷମ ସମସ୍ୟା, ଦେଖାଯାଉ, ପରମାତ୍ମାଙ୍କର କି ଇଚ୍ଛା । ମୁଁ ଏମାନଙ୍କ ଅଲକ୍ଷ୍ୟରେ ଛାୟା ପରି ରହିଥାଏଁ ।''

ଯୁବତୀ କହିଲେ, ''ମୋର ନାମ ରେବତୀ । ମୋ ଘର ଗୋବିନ୍ଦପୁର ଗ୍ରାମରେ । ମୁଁ ସେଠାକୁ ଯାଉଥିଲି, ଅନ୍ଧାର ମାଡ଼ି ଆସିଲା, ପ୍ରବଳ ଝଡ଼ ବୃଷ୍ଟି ହେଲା, ଏଣୁ ବାଟବଣା ହେଲି । ବୃଷ୍ଟିକରକାପାତ, ଶୀତରେ ଅସମ୍ଭାଳ ହୋଇ ଚିତ୍କାର କଲି । ସେ କଷ୍ଟର କଥା କହିବାର ପ୍ରୟୋଜନ ନାହିଁ । ଭାଇ, ମୋତେ ଗୋବିନ୍ଦପୁର ଯିବାର ବାଟ ଦେଖାଇ ଦିଅ । ତୁମେ ଗୃହକୁ ଯାଅ । ମୋ ନିମନ୍ତେ ବହୁ କଷ୍ଟ ପାଇଲ ।''

ଜୟନ୍ତ— 'ଗୋବିନ୍ଦପୁର । ଏଠାରୁ ପୂର୍ଣ୍ଣ ଏକକ୍ରୋଶ ବାଟ । ଜଙ୍ଗଲ, ମହା ଅନ୍ଧକାର, ବୃଷ୍ଟି ଚାଲିଛି । ଓଦା ଲୁଗା, ବନ୍ୟଜନ୍ତୁର ଭୟ ମଧ ଅଛି । ତୁମେ ଏକାକୀ କିପରି ଯିବ ? ଚାଲ ଆମ ଗ୍ରାମରେ ରହିବ, କାଲି ସକାଳୁ ଯିବ ।''

''ଭାଇ, ମୋର ଯେବେ ଖରା ବରଷାକୁ ଭୟ ଥାନ୍ତା, ବାଘ ଭାଲୁକୁ ଡର ଥାନ୍ତା, ତେବେ କି ମୁଁ ଏଠାକୁ ଆସିଥାନ୍ତି । ମୋର ସେ ଭୟ ନାହିଁ । ମୋର ନିଜର ସୁଖ ପ୍ରତି ଲକ୍ଷ୍ୟ ଥିଲେ ଏହି ପ୍ରଚଣ୍ଡ ଖରାରେ ଶିବାଳୟକୁ ଆସି ଧାରଣା ଦେଇ ସନ୍ଧ୍ୟାରେ ଗୃହକୁ ଫେରୁଥାନ୍ତି । ତାହା ନୁହେଁ । ସଳଖ ବାଟ କେତେ ଦୂରରେ ?''

''ଶିବାଳୟକୁ ଧାରଣା ଦେବାକୁ ଆସିଲ କାହିଁକି ?''

''ଭାଇ, ସବୁ ଫିଟାଇ କହିବାର ଅବସର ନାହିଁ । ମୋର ପୁତ୍ର କଣ୍ଠାଗତ ରୋଗପୀଡ଼ିତ । ତାହା ନିମନ୍ତେ ଶିବପୂଜା ଦେବାକୁ ଆସିଥିଲି । ନିର୍ମାଲ୍ୟ ବେଲପତ୍ର ଧରିଛି । ତାହା ନେଇ ମୋର ପୁତ୍ରର ମସ୍ତକରେ ଛୁଆଁଇ ଦେଲେ ସେ ରୋଗମୁକ୍ତ ହେବ । ବଡ଼ ବିଳମ୍ବ ହୋଇଯାଇଛି । ଶୀଘ୍ର ମତେ ବାଟ କହି ଦିଅ ।''

ଜୟନ୍ତ କହିଲେ, ''ଭଗିନୀ, ଏହା ଅସମ୍ଭବ, ତୁମେ ଏକାକିନୀ ଗୋବିନ୍ଦପୁର ଯିବ, ମୁଁ ଯାଇ ନିଶ୍ଚିନ୍ତରେ ଆଶ୍ରମରେ ନିଦ୍ରାଯିବି । ଚାଲ, ମୁଁ ତୁମକୁ ଛାଡ଼ି ଆସିବି ।' ଏହା କହି ପାଦତଳରେ ପଡ଼ିଥିବା ଆମ୍ବ ଡାଳ ଖଣ୍ଡେ ହସ୍ତରେ ଧାରଣା କଲେ ଏବଂ ଗୋବିନ୍ଦପୁର ଆଡ଼କୁ ଅଗ୍ରସର ହେଲେ ।

ଝଡ଼ ଏକାବେଳକେ ବନ୍ଦ ହୋଇଥିଲା । ଅନ୍ଧକାର ସେହିପରି ଏବଂ ଟୋପାଏ ଟୋପାଏ ବୃଷ୍ଟି ପଡୁଥିଲା । ମଝିରେ ମଝିରେ ବିଜୁଳି ଦେଖାଦେଉଥିଲା । ଆଗ ପଛ ହୋଇ ଜୟନ୍ତ ଓ ରେବତୀ ଚାଲିଅଛନ୍ତି । ସଦାନନ୍ଦ ମଧ ପଛେ ପଛେ ଚାଲିଅଛନ୍ତି ।

ବିପତ୍ତି ବନ୍ଧୁତାକୁ ଗାଢ଼ତର କରେ । କେହି କାହାର ସ୍ପଷ୍ଟରୂପେ ମୁଖାବଲୋକନ କରିପାରୁ ନ ଥିଲେ । ଅନ୍ଧାର ରୂପରେଖ ଘୋଡ଼ାଇ ରଖିଥିଲେ ମଧ ସୌହାର୍ଦ୍ଦ୍ୟ ଇତିମଧରେ ଉଭୟଙ୍କ ଅନ୍ତରକୁ ଅଧିକାର କରି ବସିଥିଲା । ଲଜ୍ଜା, ସଙ୍କୋଚ୍, ଭୟ ଉଭୟଙ୍କ ମନରୁ ଚାଲିଗଲା । ବିକାରଶୂନ୍ୟଚିତ୍ତରେ ଉଭୟେ ସହୋଦର ଭାଇ ଭଗିନୀ ପରି କଥାବାର୍ତ୍ତା ଆରମ୍ଭ କଲେ । ଜୟନ୍ତ କହିଲେ,''କଥା ହେଲେ ବାଟ ଛିଡ଼େ । ଅନ୍ଧାର, ତୁନି ହୋଇଯିବା ଠିକ୍ ନୁହେଁ । କଥା ଶୁଣିଲେ ବନ୍ୟଜନ୍ତୁମାନେ ଆଡ଼େଇ ହୋଇଯିବେ । ରେବତୀ, କି ନିମନ୍ତେ ତୁ ଏ ବିପତ୍ତିକୁ ନିଜେ ଡାକି ଆଣିଲୁ ?''

''ସେ କଥା କ'ଣ କହିବି ଭାଇ, ମୋ ପରି ଦୁଃଖିନୀ କି ଜଗତରେ କିଏ ଅଛି ? ସବୁ କହିବି ଭାଇ, ମୋର ପୁଅ ଚିନ୍ତା ତ ମୋତେ ଖାଉଛି । ଦୁଇ ବରଷର ପୁଅ, ତାକୁ ସାତ ବରଷର ଝିଅ ମାଳତୀ ଜିମା ଦେଇ ଶିବମନ୍ଦିରକୁ ଆସିଥିଲି ।

ଆଜି ଜ୍ୱର ଟିକିଏ କମ୍ ଥିଲା । ଭାଇ, ମୋ ପୁଅର କ'ଣ ହେବ ?''

''ଚିନ୍ତା କର ନାହିଁ । ଘରେ ପହଞ୍ଚିଲେ ତା'ର ଚିକିତ୍ସାର ସୁବ୍ୟବସ୍ଥା କରିବା । ତୋର କ'ଣ ଅନ୍ୟ କେହି ନାହିଁ, କେବଳ ଗୋଟିଏ ଝିଅ ଓ ଗୋଟିଏ ପୁଅ ?''

''ହଁ, ପୂର୍ଣ୍ଣଚନ୍ଦ୍ର ଓ ମାଳତୀ ଭିନ୍ନ ଏ ଜଗତରେ ମୋର ଆଉ କେହି ନାହିଁ । ମୁଁ ନିତାନ୍ତ ସହାୟହୀନା ।''

ଏହା କହିଲାବେଳେ ରେବତୀର ଚକ୍ଷୁ ଜଳପୂର୍ଣ୍ଣ ହେଲା, କଣ୍ଠ ରୁଦ୍ଧ ହେଲା । ଜୟନ୍ତ ତାହା ବୁଝିପାରିଲେ । ଜୟନ୍ତ କହିଲେ, ''ତୋର ମନରେ ବଡ଼ କଷ୍ଟ ହେଉଛି, ତୋର ନିଜ କଥା ପରେ ଶୁଣିବି, ଏବେ ତୁନି ହୁଅ ।''

ରେବତୀ କହିଲା, ''ଯେ ଚିରଦୁଃଖିନୀ, ତା'ର ଏବେ ତେବେ କ'ଣ ? ଶୁଣ ଭାଇ, ଶୁଣ ।'' ଏହା କହି ନିଜର ଜୀବନକାହାଣୀ ଆରମ୍ଭ କଲା ।

''ମୋର ପିତାଙ୍କ ନାମ ପରମାନନ୍ଦ ମହାପାତ୍ର, ଜମି ଚାଷ କରି ଚଳନ୍ତି, ପୌରୋହିତ୍ୟ ମଧ୍ୟ ଥିଲା । ଗ୍ରାମରେ ଗଣ୍ୟ ମାନ୍ୟ ଲୋକ । ଘର ଏକପ୍ରକାର ବେଶ୍ ଚଳୁଥିଲା । ମୁଁ ତାଙ୍କର ଏକମାତ୍ର ସ୍ନେହପାଳିତା କନ୍ୟା । ଗ୍ରାମ ଲୋକଙ୍କ ପ୍ରବର୍ତ୍ତନାରେ, କି ନିଜ ଇଚ୍ଛାରେ ମୋର ପିତା ମୋତେ ଅତି ଅଳ୍ପ ବୟସରେ ବିବାହ କରିଦେଲେ, ମୋର ମନେ ନାହିଁ ବୋଇଲେ ଚଳେ । ଭଲ ପାତ୍ରରେ ଓ ଭଲ ଘରରେ ପରା ଦେଇଥିଲେ । ଯାହାହେଉ ବିବାହର ଅଳ୍ପ ଦିନରେ ବିଧବା ହେଲି । ତାହା ମଧ୍ୟ ମୋର ସ୍ପଷ୍ଟ ସ୍ମରଣ ନାହିଁ । ତେବେ ଏତିକି ଜାଣେ ଯେ, ଗ୍ରାମର ଅନ୍ୟାନ୍ୟ ବାଳିକାମାନଙ୍କ ପରି ମୋ ହାତରେ ଚୂଡ଼ି, ନାକ କାନରେ ଗହଣା ନ ଥିଲା । ସେମାନେ ରଙ୍ଗଲୁଗା ପିନ୍ଧୁଥିଲେ, ମୁଁ ଧୋବଲୁଗା ପିନ୍ଧୁଥିଲି । ମା'ଙ୍କୁ ପଚାରିଲେ ମା' କହନ୍ତି, ଯାହା କପାଳରେ ଯାହା ଅଛି, ଯାହା ଘରେ ଯାହା ଅଛି । ତୁ କ'ଣ ଧୋବଲୁଗା ପିନ୍ଧି ଭଲ ଦିଶୁ ନାହୁଁ ? ମୋର ସେଥିରେ ଚିନ୍ତା ନ ଥାଏ । ଖେଳରେ କଟାଇ ଦେଉଥାଏଁ । ମୁଁ ବିଧବା ହେବା ସଙ୍ଗେ ସଙ୍ଗେ ମୋର ପିତା ମାତା ମାଛ ମାଂସ ଛାଡ଼ିଲେ । ଏକାଦଶୀ ଦିନ ତିନିଜଣଯାକ ଉପବାସ କରୁଁ । ତେବେ ମଧ୍ୟ ସାଇପଡ଼ିଶାର ବିଧବାମାନେ, ବୃଦ୍ଧାମାନେ ସନ୍ଦେହ କରି ଆସି ଦେଖନ୍ତି । କେତେ କଥା ଦେଖାଇ ଦେଖାଇ କହନ୍ତି । ମୋତେ ନିନ୍ଦାରୁ ରକ୍ଷା କରିବା ନିମନ୍ତେ ପିତା ମାତା ସବୁ ସ୍ୱାର୍ଥ ତ୍ୟାଗ କରୁଥାନ୍ତି । ତଥାପି ଶତ୍ରୁଙ୍କର ସନ୍ଦେହ ଯାଏ ନାହିଁ । ମୋର ବୟସବୃଦ୍ଧି ସଙ୍ଗେ ସଙ୍ଗେ ପିତାମାତାଙ୍କର ଚିନ୍ତାର ମାତ୍ରା ବୃଦ୍ଧି ପାଉଥାଏ । ସେମାନଙ୍କ ଅନ୍ତେ ମୋର କି ଦୁର୍ଗତି ହେବ, ଏହି ଚିନ୍ତାକୀଟ ସର୍ବଦା ସେ ଦୁହିଁଙ୍କ ହୃଦୟକୁ ଖଣ୍ଡ ଖଣ୍ଡ କରି କାଟୁଥାଏ—ବିଶେଷତଃ ମା'ଙ୍କର । ମା' ସ୍ତ୍ରୀ ହେଲେ କ'ଣ ହେବ, ବୋଧ ହୁଏ ଅତିଶୟ ସ୍ନେହ ହେତୁରୁ ଦିନେ ଅଦ୍ଭୁତ ପ୍ରସ୍ତାବ କଲେ । ପିତା ପୁରୁଷ ହେଲେ ମଧ୍ୟ ତାହା ସହସା ସ୍ୱୀକାର କରିପାରିଲେ ନାହିଁ । ମା' କହିଲେ, 'ରୂପବତୀ ରେବତୀକୁ ଆମେ ଦୁହେଁ ଛାଡ଼ିଗଲେ କାହାର ଆଶ୍ରୟରେ ସେ ଦିନଯାପନ କରିବ ? ଶତ୍ରୁ ମଧ୍ୟରେ ତା'ର ଉପାୟ କ'ଣ ? ଆମ୍ଭମାନଙ୍କୁ ନିନ୍ଦା ଦେବା ନିମନ୍ତେ ତା'ର ଚରିତ୍ର ନଷ୍ଟ କରିବାକୁ ଚେଷ୍ଟା କରିବେ । ପଛେ ଭ୍ରଷ୍ଟା ହେବ ସିନା ? ଗୋଟିଏ ପାତ୍ର ଦେଖି ଦେଇ ପକାଇଲେ କ୍ଷତି କ'ଣ ? ଆମେ ତ ଯିବା, ସେ ତ ସୁଖରେ ଘରଦ୍ୱାର କରି ରହିବ । ଜାତିପତିର କଥା ପଚାରେ କିଏ ।' ଏହା ଚିନ୍ତା କରି ଉତ୍ତର ଦେବାକୁ ପିତାଙ୍କୁ ବହୁତ ଦିନ ଲାଗିଲା । ଅବଶେଷରେ ପିତା ସମ୍ମତ ହେଲେ । ଆମ ଗ୍ରାମରେ ଗୋଟିଏ ଚାଟଶାଳୀ ଥିଲା । ଶିକ୍ଷକ ଥିଲେ ଜଣେ ବ୍ରାହ୍ମଣ ଯୁବକ—ମୋଠାରୁ ପାଞ୍ଚ ଛଅ ବର୍ଷର ବଡ଼ । ଶିକ୍ଷିତ ଓ ଭଦ୍ର, ମୋର ପିତାଙ୍କର ବଶ୍ୟ ଓ ଅନୁଗତ । ଆମ୍ଭ ଘରର ହିସାବପତ୍ର କରନ୍ତି, ତମସୁକ ଲେଖନ୍ତି । ପ୍ରାୟ ଆମ ଘରକୁ ଆସନ୍ତି, ମୁଁ ତାଙ୍କୁ ଭାଇନା ବୋଲି ଡାକେଁ । ସେଥି ନିମନ୍ତେ ଲୋକମୁଖରେ କେତେ କଥା । ମୋର ଦୁର୍ଦ୍ଦଶାରେ ସେ ବଡ଼ ଦୁଃଖିତ ଥାଆନ୍ତି । ଦିନେ ଦିନେ ମା' ତାଙ୍କୁ କହନ୍ତି, 'ବାବୁ, ସମସ୍ତଙ୍କ ଭାଗ୍ୟରେ ସୁଖ ଲେଖା ଅଛି, ମୋ ରେବତୀ ଭାଗ୍ୟରେ ଅପାର ଦୁଃଖ । ତାକୁ କିଏ ପଚାରିବ ? ଆମେ ଜୀଇଛୁଁ ବୋଲି ତୁ ଏ ଘରକୁ ଆସୁଛୁ, ଆମେ ମଲାରୁ ତୁ ଏ ଘର ପିଣ୍ଡା ମାଡ଼ିଲେ ଲୋକେ କେତେ କଥା କହିବେ, ତୁ ବା କାହିଁକି ଆସିବୁ ? ତୁ କିଏ ରେବତୀ କିଏ ? ହା ବିଧାତା ।'' ଏହା ଶୁଣି ଭାଇନା କହନ୍ତି, ''ଚିନ୍ତା କରୁଛ କାହିଁକି, ତୁମେ ତ ଏବେ ମରୁ ନାହଁ ।'' ଏପରି କଥା ହେଉଁ ହେଉଁ ଦିନେ ମା' କହିଲେ, ''ବାବୁ, ତୁ ଯେବେ ରେବତୀର ଭାର ନେବୁ, ତେବେ ମୁଁ ସୁଖରେ ଆଖି ମୁଦିବି । ମୁଁ ଆଉ କେତେ ଦିନ ।'' ସେ କହିଲେ, 'ତୁମେ ଚିନ୍ତା କର ନାହିଁ, ତୁମମାନଙ୍କ ଅନୁରୋଧ ରକ୍ଷା କରିବି, ମୁଁ ରେବତୀକୁ ବିବାହ ହେବି । ମୋର ପିତାଙ୍କର ଚାରି ପୁତ୍ର, ମୁଁ ତୃତୀୟ । ମୋତେ ଗୃହରୁ ତଡ଼ି ଦେବେ, ଜାତିରୁ ଅନ୍ତର କରିବେ, ଏହା ମୁଁ ଜାଣୁଛି । ତୁମମାନଙ୍କ ନିମନ୍ତେ, ରେବତୀ ନିମନ୍ତେ ଗୃହରୁ ତଡ଼ା ହେବାକୁ, ଜାତିରୁ ଯିବାକୁ ମୋର ଭୟ ନାହିଁ ।'' ପିତାଙ୍କ ଅଗୋଚରରେ ଏକଥା । କିଛିଦିନ ଚାଲିଗଲା । ପୁଣି ଦୁର୍ଦ୍ଦଶା ଉପସ୍ଥିତ ହେଲା । ମା' ଶକ୍ତ ରୋଗାକ୍ରାନ୍ତ ହେଲେ । ବଞ୍ଚିବାର ଆଶା

ନାହିଁ । ଦିନେ ମୁଁ ଖଟତଳରେ ବସି ମାଙ୍କର ଦୁଇ ପାଦ ଉପରେ ମସ୍ତକ ରଖି କ୍ରନ୍ଦନ କରୁଛି, ମା' ପିତାଙ୍କୁ ନିକଟକୁ ଡାକିଲେ, ଦୁଇ ହାତ ଧରି କହିଲେ— ''ଦେଖ, ମୋର ଅନ୍ତିମ ଦଶା ଉପସ୍ଥିତ, ରେବତୀକୁ ସମୁଦ୍ରରେ ଭସାଇ ଦେଇଯାଉଛି । ତାକୁ ତୁମେ ଉଦ୍ଧାର କରିବ । ମୋ ପକ୍ଷରେ ମୋର ସନ୍ତାନର ରକ୍ଷଣାବେକ୍ଷଣ ଜାତି କୁଳ ଅପେକ୍ଷା ବଡ଼ ବୋଲି ମନେ ହେଉଛି । ମୋର ଅନୁରୋଧ, ତୁମେ ଏହା ନିମନ୍ତେ ଜାତି କୁଳରେ ଜଳାଞ୍ଜଳି ଦେଇ ଚାଟଶାଳୀର ଶିକ୍ଷକ ସହିତ ଏହାର ବିବାହ ଦେବ । ତୁମ ମୁଖରୁ ଏହା ଶୁଣିଲେ ମୁଁ ସୁଖରେ ମରିବି ।'' ପିତା କହିଲେ, ''ଏହା ବଡ଼ ବିଷମ ପ୍ରସ୍ତାବ, ସାହସ ହେଉ ନାହିଁ ।'' ମା' କହିଲେ, ''ଯେବେ ତୁମର ଅସାଧ, ତେବେ କହ, ମୁଁ ବର୍ତ୍ତମାନ ଡାକି ରେବତୀର ହାତ ଧରାଇ ଦେବି । ତୁମେ ଜାତି କୁଳ ନେଇ ସୁଖରେ ଥାଅ । ମୁଁ ତ ଚାଲିଯିବି, ମୋର ଚିନ୍ତା କ'ଣ ?'' ପିତା ଅଗତ୍ୟା ସ୍ୱୀକାର କଲେ । ମୋର ସ୍ନେହମୟୀ ମାତା ମୋତେ ଛାଡ଼ି ଦେଇ ଚାଲିଗଲେ ।'' ରେବତୀ ଭୋ ଭୋ କରି କାନ୍ଦିଲା । ''କିଛିଦିନ ଚାଲିଗଲା । ପିତା ମାତାଙ୍କ ଅନୁରୋଧ ରକ୍ଷା ନିମନ୍ତେ ଦୃଢ଼ ପ୍ରତିଜ୍ଞା ହେଲେ । ଗ୍ରାମର ମୁଖ୍ୟ ମୁଖ୍ୟ ଲୋକଙ୍କ ଆଗରେ କଥା ପକାଇଲେ । ସମସ୍ତେ ଧିକ୍କାର ଦେଲେ, ଛି ଛି କଲେ । ସେଥିରେ ପିତା ଅଧିକ ଜିଦ୍ ବାନ୍ଧିଲେ । କକା ଆମର ପରମଶତ୍ରୁ, ନାନା ଅନିଷ୍ଟର ଚେଷ୍ଟା କଲେ। ପିତା କାହାରି କଥା ନ ଶୁଣି, ବାଧା ବିଘ୍ନ ନ ମାନି ପଦ୍ଧତି ଅନୁସାରେ ମୋର ବିବାହ ନିଜେ ସମାପନ କଲେ । ଆମେ ଦୁହେଁ ଗୃହସ୍ଥାଲୀ ଆରମ୍ଭ କଲୁଁ, ଘର ଚଳାଇ ପିତାଙ୍କର ସେବା କଲୁଁ । ମାଳତୀର ଜନ୍ମର ଅଳ୍ପ ଦିନ ପରେ ପିତା ନିଶ୍ଚିନ୍ତରେ ଇହଲୀଳା ସମ୍ବରଣ କଲେ । ଆମେ ଦୁହେଁ ନିର୍ବିବାଦରେ ସୁଖଶାନ୍ତିରେ କାଳାତିପାତ କରୁଥିଲୁଁ । ସ୍ୱାମୀଙ୍କର ସ୍ନେହ ସୌଜନ୍ୟ ମମତାର ତୁଳନା ନାହିଁ । ପୂର୍ଣ୍ଣ ଛଅ ବର୍ଷ କାଳ ସୁଖସ୍ୱାଚ୍ଛନ୍ଦ୍ୟରେ ଚାଲିଗଲା । ମୋର ପୁତ୍ର ଜନ୍ମର ଏକବର୍ଷ ପରେ ମୋତେ ସେ ଦୁଃଖସାଗରରେ ଭସାଇ ଦେଇ ଚାଲିଗଲେ । ଫଟା କପାଳ, ଦୋଷ ଦେବି କାହାକୁ । ଶୋକ ଦୁଃଖ ଲାଞ୍ଛନା ଭୋଗ ତ ମୋର କପାଳଲିଖନ । ଯେଉଁ କଷ୍ଟରେ ଏହି ଗ୍ରାମରେ ଘର କରି ରହିଛି, ତାହା ମୋତେ ହିଁ ଜଣା । ପୂର୍ଣ୍ଣଚନ୍ଦ୍ରକୁ ଜୀବନର ଏକମାତ୍ର ପସରା କରି ସୁଖ-ଆଶା କରିଛି । ତା'ର ରୋଗ ମୋର ହୃଦୟକୁ ବିଦୀର୍ଣ୍ଣ କରୁଛି । ବଳା ମୋର କି ଅବସ୍ଥାରେ ଥିବ । ପ୍ରଭୁ କ'ଣ ତାକୁ ଦୀର୍ଘ ଜୀବନ ଦେବେ ନାହିଁ ?''

ଏହା କହି ରେବତୀ ଅଜସ୍ର କ୍ରନ୍ଦନ କରିବାକୁ ଲାଗିଲା । ଜୟନ୍ତ କହିଲେ, ''ଭଗିନୀ, ଅଧୀରା ହୁଅ ନାହିଁ, ଆଉ ଅଳ୍ପ ବାଟ ଗଲେ ତ ଘରେ ପହଞ୍ଚିବା ।''

''ମୋର ସ୍ୱାମୀଙ୍କୁ ମୋର ପିତୃଗୃହରେ ଗ୍ରାମରେ ରଖାଇ ନ ଦେବେ ବୋଲି କେତେ ଛଳ କୌଶଳ କଲେ । ସବୁ ବୃଥା ହେଲା । ପିତା ପୂର୍ବରୁ ଘରଦ୍ୱାର ଜମିବାଡ଼ି ସମ୍ବନ୍ଧରେ ପକ୍କା କାଗଜପତ୍ର କରି ରଖିଥିଲେ । ଏକଘରିଆ କରି ରଖିଲେ । ଗ୍ରାମର ଚାଟଶାଳୀର ଶିକ୍ଷକତା କାର୍ଯ୍ୟରୁ ଅନ୍ତର କରିବାକୁ ଚେଷ୍ଟା କଲେ । ସେଥିରେ ବିଫଳ ମନୋରଥ ହେଲେ । ଜଣକେତେ ଆପଣା ଆପଣା ପୁଅ ଝିଅମାନଙ୍କୁ ଛଡ଼ାଇ ନେଲେ । ଜଣକେତେ କହିଲେ, 'କି ହୋ, ବିଦ୍ୟାଟା କଣ ମାରା ହେଲା କି ଯେ ପିଲାମାନଙ୍କୁ ଚାଟଶାଳୀରୁ ଛଡ଼ାଇ ନେବୁଁ ? ଭଦ୍ରଲୋକ କେତେ ସ୍ନେହରେ ଓ ମନୋଯୋଗ ଦେଇ ପଢ଼ାଉଛି ।' ଚାଟଶାଳୀ ସେହିପରି ଚାଲିଲା । ଘରେ ଯେ ଖାଇବାକୁ ନ ଥିଲା, ପାଠ ପଢ଼ାଇ ପେଟ ପୋଷିବା କଥା, ଏପରି ନୁହେଁ; ମାତ୍ର ପାଠ ପଢ଼ାଇବା ସ୍ପୃହା ମୋର ସ୍ୱାମୀଙ୍କର ଅତ୍ୟଧିକ । ଲୋକେ ପାଠ ନିମନ୍ତେ ଝିଅ ପୁଅଙ୍କୁ ଚାଟଶାଳୀକୁ ପଠାନ୍ତି ସତ, କିନ୍ତୁ ସହାନୁଭୂତି ଆଦୌ ନ ଥାଏ, ବିଶେଷତଃ ଆମ ଜାତିର ଲୋକଙ୍କର । ଆମ ଘରେ କେହି ପୀଡ଼ିତ ହେଲେ ଦେଖି ଆସିବେ ନାହିଁ, କାମ ପଡ଼ିଲେ ଆସିବେ ନାହିଁ, ମାତ୍ର ସେମାନଙ୍କର ପ୍ରୟୋଜନ ହେଲେ ଚାଟଶାଳୀକୁ ଆସି ସବୁ କରାଇ ନେବେ । କିଏ ସୁଧ କଷୋଟ କରାଇବାକୁ ଆସିବ, କିଏ ନିଜର ହିସାବ ବୁଝିବାକୁ ଆସିବ । ସବୁ ସେ ଅମ୍ଳାନବଦନରେ କରିଦେବେ, କାହାକୁ କିଛି କହିବେ ନାହିଁ ଏଣେ ଛୁଇଁଲାବେଳକୁ ପାପ ହେବ ବୋଲି କହୁଥିବେ, ଛାଇ ମାଡ଼ିଲେ ପ୍ରାୟଶ୍ଚିତ୍ତ ହେବ ବୋଲି କହୁଥିବେ, ଯେତେବେଳେ ଗୃହରେ କୌଣସି ରୋଗ ଉପସ୍ଥିତ ହେବ, ସେତେବେଳେ ଲଜ୍ଜା ଛାଡ଼ି ଆସି ଔଷଧ ମାଗିବେ, ଘରକୁ ଡାକି ନେବେ । ମୋ ସ୍ୱାମୀ ନିଜେ ନିଜେ କବିରାଜୀ ଶିଖିଥିଲେ । ଗ୍ରାମରେ ଅନ୍ୟ ବୈଦ୍ୟ ନାହିଁ । ବିନା ପଇସାରେ ଅନ୍ୟ ଗ୍ରାମ୍ୟ ବୈଦ୍ୟ ଆସିବେ କାହିଁକି ? ଔଷଧ ଦେବେ କାହିଁକି ? ଅଗତ୍ୟା ମୋ ସ୍ୱାମୀଙ୍କର ପଦାନତ ହୁଅନ୍ତି । ଥରେ ଗ୍ରାମରେ କଲେରା ଲାଗିଲା । ସେ ଘର ଘର ବୁଲି ବୁଲି ଚିକିତ୍ସା କଲେ । ଦିନରାତି ଅବସର ନାହିଁ । ମୁଁ ବରଂ ବେଳେ ବେଳେ କହେଁ, ତୁମେ ନିଜ ଶରୀରକୁ ନ ଦେଖି, ଛୁଆପିଲାଙ୍କୁ ନ ଦେଖି ଶତ୍ରୁମାନଙ୍କୁ ଚିକିତ୍ସା କରି ବୁଲୁଥାଅ, ତୁମେ ପଡ଼ିଲେ କିଏ ଦେଖିବ, ତାର ତ ଠିକଣା ନାହିଁ । ମୋତେ କେତେ ବୁଝାଇ ସୁଝାଇ କହନ୍ତି । ମୋ ମନ

ମାନିଯାଏ । ଗ୍ରାମବାସୀଙ୍କ ପାଇଁ ସେ କେତେ ସ୍ୱାର୍ଥତ୍ୟାଗ କରିଥିଲେ, କିପରି ଆତ୍ମୋତ୍ସର୍ଗ କରୁଥିଲେ, କିନ୍ତୁ ଗ୍ରାମବାସୀ ତା' ବଦଳରେ ଲାଞ୍ଛନା ଅପମାନ ଦେବାକୁ ଛାଡୁ ନ ଥିଲେ । ଅପରାଧ, ମୋର ସ୍ୱାମୀ ମୋର ହାତ ଧଇଲେ । ବିଧବାଟାକୁ ବିବାହ ହୋଇ ଗ୍ରାମରେ ସୁଖଶାନ୍ତିରେ ରହିଲେ । ଏ ପାପ ନିମନ୍ତେ କିଛି ଦଇବଦଣ୍ଡ ନୋହିଲା। ଏହି ଚିନ୍ତା ସେମାନଙ୍କ ହୃଦୟକୁ ଜାଳୁଥାଏ । ଜଣେ ଦୁଇଜଣ ଉପକୃତ ବ୍ରାହ୍ମଣ କହନ୍ତି, 'କି ହେ, ଲୋକଟା ଆମ୍ଭମାନଙ୍କର ଏତେ ଉପକାର କରୁଛି, ତା' ପ୍ରତି ଆମ୍ଭମାନଙ୍କର ଶତ୍ରୁତା କରିବା ଉଚିତ ନୁହେଁ । ଗ୍ରାମରେ କେତେ ବ୍ରାହ୍ମଣୀ ଭ୍ରଷ୍ଟା ହୋଇ ବାପ ଭାଇଙ୍କ ଆଶ୍ରୟ ନେଇ ରହିଛନ୍ତି । ରକ୍ଷକମାନେ ସେମାନଙ୍କ ହାତରୁ ଖାଇଲେ ପିଇଲେ ବା କିଏ ଖବର ନେଉଛି । ସେଥିରେ ତ କେହି ଆପତ୍ତି କରୁ ନାହିଁ, ଏ ଦୁଇ ଜଣ ବିଭା ହୋଇ ସୁଖରେ ରହିଲେ, ଏଥିନିମନ୍ତେ ତୁମ୍ଭେମାନେ ଏତେ ବିମୁଖ କାହିଁକି ? ମଧୁ ବାରିକ ତ ଗୋଟିଏ ବ୍ରାହ୍ମଣୀ ରଖି ଗ୍ରାମରେ ଅଛି, ତାକୁ ତୁମ୍ଭମାନଙ୍କର କିଛି ଘୃଣା ନାହିଁ, ଶିକ୍ଷକ ବିଚ଼ରାକୁ ଏତେ ଘୃଣା କାହିଁକି ?' ତାଙ୍କ କଥା ଶୁଣେ କିଏ ? ତାଙ୍କୁ ଅପମାନ ଦେଲେ, ଗାଳି ଦେଲେ । ଭାଇ, ଆମ ଜାତିଟା ବଡ଼ ହିଂସ୍ରକ । ପ୍ରକୃତରେ ଜାତିରେ ତେତେ, ମମତା ନାହିଁ, ଟେକଟା ହିଂସାରେ । ସେ କଥା ଛାଡ଼ । ଦୁଃଖ ତ ମୋର କପାଳର ଗାର । ଛଅବର୍ଷ ପରେ ମୋର ସ୍ୱାମୀ କଠିନ ରୋଗ କ୍ରାନ୍ତ ହେଲେ । କାହାରି ସହାନୁଭୂତି ନାହିଁ, ସାହାଯ୍ୟ ନାହିଁ । ତଥାପି ମୁଁ ଚିକିତ୍ସାରେ ତ୍ରୁଟି କରି ନାହିଁ । ଗ୍ରାମାନ୍ତରରୁ ବୈଦ୍ୟ ଅଣାଇ ଚିକିତ୍ସା କରାଇଲି । ସବୁ ପାଣି ଫାଟିଗଲା । ଏ ନିଃସହାୟା ଉପରେ ପୂର୍ଣ୍ଣଚନ୍ଦ୍ର ଓ ମାଳତୀର ଭାର ଦେଇ ସେ ଚାଲିଗଲେ । ସେ ଗଲେ ଚାଲି, ମୁଁ ପୁଣି ବିଧବା । ଦୁଃଖ, ଲାଞ୍ଛନା, ଅପମାନ କାହା ନିମନ୍ତେ, ଯେବେ ତାଙ୍କ ଆଗରେ ମୋର ମରଣ ହୁଅନ୍ତା । ତାଙ୍କର ସଂସ୍କାର ନିମନ୍ତେ କି ଉପାୟ କରିବି, କିଛି ବୁଝି ପାରିଲି ନାହିଁ । କାହାର ଦ୍ୱାରସ୍ଥ ହେବି, କାହାର ପଦାନତ ହେବି ? ମୋର ସ୍ୱାମୀଙ୍କର ଅନ୍ତିମ ଅବସ୍ଥା ଉପସ୍ଥିତ ହେଉଣୁ ତ ଗାଁରେ ଆନନ୍ଦର ଚହଳ ପଡ଼ିଗଲାଣି, ମୋତେ ସାହାଯ୍ୟ ଦେବ କିଏ ? ଯାହା ହେଉ, ଚାଟଶାଳୀର ଜଣକେତେ ଛାତ୍ର ସେତେବେଳ ଯାଏ ଗୁରୁଭକ୍ତି ପାସୋରି ନ ଥିଲେ । ମୋର ଅନୁରୋଧକ୍ରମେ ସେମାନେ ଗ୍ରାମବାସୀଙ୍କ ଅଜଣାରେ ଶବ ନେଇ ସଂସ୍କାର କରି ଆସିଲେ । ସେଥି ନିମନ୍ତେ ମୋତେ ଯେତେ ଗଞ୍ଜଣା, ତାହା କହିବି କ'ଣ । ସେମାନଙ୍କର ତ ଅପମାନର, ଗ୍ଲାନିର ସୀମା ନାହିଁ । ପ୍ରାୟଶ୍ଚିତ୍ତ ପଞ୍ଚଗବ୍ୟ, ଆଉ କ'ଣ କେତେ କରାଇଲେ । ସେମାନଙ୍କର ଚାରା କ'ଣ । ଗୁରୁଙ୍କ ସଙ୍ଗେ ସଙ୍ଗେ ସେମାନଙ୍କର ଗୁରୁଭକ୍ତି ମଧ୍ୟ ଅଦୃଶ୍ୟ ହେଲା । ମୁଁ ଗ୍ରାମରେ ଏକାକିନୀ ପୁତ୍ର କନ୍ୟା ନେଇ ନିଃସହାୟ ଅବସ୍ଥାରେ ରହିଛି । ଛୋଟ ଜାତିର ଜଣକେତେ ଲୋକଙ୍କ ଭିନ୍ନ ଗ୍ରାମରେ ମୋତେ କେହି ଦେଖି କହିପାରନ୍ତି ନାହିଁ । ଦିହ ପଥର କରି ରହିଛି । ପୂର୍ଣ୍ଣଚନ୍ଦ୍ର ବେମାର, ଚିକିତ୍ସା କରାଇଲି । ସମ୍ପୂର୍ଣ୍ଣ ଆରୋଗ୍ୟ ହେଲା ନାହିଁ । ଜଣେ କହିଲା, ଔଷଧରେ କିଛି ଫଳ ନାହିଁ, ତୁମେ ଶିବଙ୍କଠାରେ ନଡ଼ିଆ ବସାଅ, ଧାରଣା ଦିଅ, ବାବାଙ୍କ କୃପାରୁ ପୁଅ ଭଲ ହୋଇଯିବ । ଏଣୁ ଆଜି ପ୍ରଚଣ୍ଡ ଖରାରେ ମୁଣ୍ଡରେ ଲୁଗା ନ ଦେଇ ଗୋଡ଼ ପୋଡ଼ି ଯାଉଥାଏ, ଶିବଙ୍କ ଧାମ କରି କରି ସୋମେଶ୍ୱରବାବାଙ୍କ ମନ୍ଦିରକୁ ଆସିଥିଲି । କିଛି ସମୟ ଧାରଣା ଦେଇ ନଡ଼ିଆ ବସାଇ ଘରକୁ ଫେରିବା ବେଳେ ଏ ଦୁର୍ଦ୍ଦଶା । ଏତେ ବିଳମ୍ବ ହେବ ବୋଲି ମୁଁ ଜାଣି ନ ଥିଲି । ଏତେଦୂର ବାଟ, ପୁଣି ଝଡ଼ ବରଷାର କଥା ତ ଆଦୌ ଭାବି ନ ଥିଲା ମୋର ଭାଗ୍ୟକୁ ସବୁ ପ୍ରତିବନ୍ଧକ । ପୁଅର ଅବସ୍ଥା କିପରି କେଜାଣି। ହେ ପ୍ରଭୁ । ଭାଇ, ଅନ୍ଧାରରେ କିଛି ଦିଶୁ ନାହିଁ, ଗ୍ରାମ ଆଉ କେତେଦୂର ହେବ ?'' ଜୟନ୍ତ କହିଲେ, 'ବୋଧ ହୁଏ ଆଉ ଅଳ୍ପ ଦୂର ଥିବ ।' ଜୟନ୍ତ ତରତର ହୋଇ ଚାଲିଅଛନ୍ତି, ରେବତୀ ମଧ୍ୟ ପଛଛାଡୁ ନାହିଁ । ଗ୍ରାମ ସମୀପବର୍ତ୍ତୀ ଯୋଡ଼ର ଘୋ ଘୋ ଶବ୍ଦ ଶୁଣାଗଲା । ରେବତୀ କହିଲା, 'ଭାଇ, ମୁଁ ଆସିଲା ବେଳେ ଯୋଡ଼ ଶୁଖିଲା ପଡ଼ିଥିଲା । ଏବେ ବଢ଼ିଛି । ବେଶି ବଢ଼ିଥିଲେ ଉପାୟ କ'ଣ ? ପୁଣି ଅନ୍ଧାର ।' ପୂର୍ଣ୍ଣଚନ୍ଦ୍ରକୁ ଦେଖିବାକୁ ଜୟନ୍ତଙ୍କ ମନ ଉତ୍ସନ୍ନ ହେଲାଣି । ଜୟନ୍ତ କହିଲେ 'ଚିନ୍ତା ନାହିଁ, ନାଳ ଯେତେ ବଢ଼ିଥିଲେ ମଧ୍ୟ ମୁଁ ପାରି ହୋଇପାରିବ, ତୋତେ ମଧ୍ୟ ପାରି କରିନେବି ।' ଏହା କହି ଜୟନ୍ତ ରେବତୀର ବାମ ବାହୁକୁ ଧରି ପାଣି ଭିତରକୁ ଓହ୍ଲାରି ହେଲେ । ଅଣ୍ଟାଏ ପାଣି, ଖରସ୍ରୋତ, ଛୋଟ ବଡ଼ ପଥର । ଅତି ସାବଧାନରେ, ଅତି କଷ୍ଟରେ ନିଜକୁ ରକ୍ଷା କରି ରେବତୀକୁ ରକ୍ଷା କରି ଜୟନ୍ତ ନାଳର ପୂର୍ବ କୂଳରେ ପହଞ୍ଚିଲେ । ମନର ଆବେଗ, ଚିନ୍ତା ଦୂର ହେଲା । ପୁଣି ତରତର ହୋଇ ଗ୍ରାମ ଆଡ଼କୁ ଚାଲିଲେ ।

ସଦାନନ୍ଦ କୂଳରେ ଦଣ୍ଡାୟମାନ ହୋଇ ଦେଖିଲେ, ରେବତୀ ଓ ଜୟନ୍ତ ନାଳ ପାରି ହୋଇ ଅଗ୍ରସର ହେବାକୁ ଲାଗିଲେ । ଥରେ ଭାବିଲେ ଯେ ଜୟନ୍ତର ସାହାଯ୍ୟ ଲୋଡ଼ିବେ । ପୁଣି ଭାବିଲେ 'ନା, ତା'ର ବ୍ରତଭଙ୍ଗ ହେବ, ତା'ର କାର୍ଯ୍ୟରେ ବିଘ୍ନ ଉପସ୍ଥିତ ହେବ, ରେବତୀ ଚମକିତ

ହେବ— ଏଥିରେ କାଳବିଳମ୍ବ ହୋଇ ବାଳକର ଚିକିତ୍ସାରେ ବାଧା ଘଟିବ । ଜୟନ୍ତ ଜଣେ ସ୍ତ୍ରୀକୁ ନେଇ ନାଳ ପାରି ହୋଇଗଲା, ମୁଁ କ'ଣ ପାରିବି ନାହିଁ ? ଯାହା ହେବାର ହେଉ।' କଷ୍ଟରେ ସଦାନନ୍ଦ ମଧ ନାଳ ଅତିକ୍ରମ କଲେ ଏବଂ ସେ ଦୁହିଁଙ୍କର ପଶ୍ଚାଦ୍ଧାପନ କଲେ । ଗ୍ରାମରେ ପହଞ୍ଚିଲେ । ରେବତୀ ଆଗ ଚାଲିଲା । ଗୃହ ନିକଟରେ ପହଞ୍ଚିଲା ବେଳେ ରେବତୀର ମନ ଛନ ଛନ ହେଲା । ଗୃହ ଭିତରକୁ ସହସା ପ୍ରବେଶ କରିପାରିଲା ନାହିଁ। ଗୃହ ଭିତରୁ କ୍ଷୀଣ ଦୀପଶିଖାର ଆଲୋକ ଦୃଷ୍ଟିଗୋଚ଼ର ହେଉଥାଏ । ରେବତୀ ଡାକିଲା, ''ମାଳତୀ, ମା' ମାଳତୀ, ମା', ମା', ଶୋଇ ପଡ଼ିଛୁ ?'' ମାଳତୀ ହଠାତ୍ ଉଠି ପଡ଼ି ଉତ୍ତର ଦେଲା, ''ମା' ଆସିଲୁ, ଏ ବରଷାରେ ଏତେ ରାତିଯାଏ କେଉଁଠି ଥିଲୁ ? ମୁଁ ତୋ ନିମନ୍ତେ କାନ୍ଦି କାନ୍ଦି ଶୋଇ ପଡ଼ିଲି ।'' ରେବତୀ କହିଲା, ''ଆହା ରେ ମା', ତୋ ଭାଗ୍ୟରେ ସବୁ କଷ୍ଟ । ପୂର୍ଣ୍ଣ କିପରି, ମା' ?'' ମାଳତୀ କହିଲା, ''ତୁ ଔଷଧ, ଦୁଧ ଖୁଆଇ ଗଲୁ, ତିନିଘଣ୍ଟା ତୁନି ହୋଇ ଶୋଇଥିଲା । ବେଳବୁଡ଼କୁ ଉଠିଲା, ତୋତେ ଡାକିଲା । ବହୁତ କାନ୍ଦିଲା, ପୁଣି ତୁନି ହୋଇ ଶୋଇଲା । ତାକୁ ଶୁଆଇ ଦେଇ ମୁଁ ଏଠାରେ ତୋତେ ଅନାଇ ବସିଛି ।'' ରେବତୀ କହିଲା, ''ପାଣୁଆମା' ବୁଢ଼ୀ କାହିଁ ଗଲା ?'' ମାଳତୀ କହିଲା, ''ବେଳବୁଡ଼ରେ ତା' ଘରକୁ ଗଲା, ଆଉ ଆସି କାହିଁ, ମୁଁ ଏକୁଟିଆ ଅଛି ।'' ରେବତୀ ସନ୍ତର୍ପଣରେ ଗୃହରେ ପ୍ରବେଶ କଲା । ପୂର୍ଣ୍ଣଚନ୍ଦ୍ର ଶୋଇ ପଡ଼ିଅଛି । ଶିବପ୍ରସାଦ ତା' ମୁଣ୍ଡ ଉପରେ ରଖି ଦେଇ 'ଦୀର୍ଘଜୀବୀ କର, ପ୍ରଭୁ' ବୋଲି ପ୍ରାର୍ଥନା କଲା । ପୂର୍ଣ୍ଣଚନ୍ଦ୍ରର ଦେହ ସ୍ପର୍ଶ କଲା । ଥଣ୍ଡା ହାତ ଉଠାଇଲା; ହାତ କଠିନ ସେ ନମନୀୟତା, ସେ କୋମଳତା ନାହିଁ । ରେବତୀର ହୃଦୟ ଧଡ଼୍ ପଡ଼୍ ହୋଇଉଠିଲା । ଚକ୍ଷୁରୁ ଲୋତକ ପଡ଼ିଲା । ''ବାପ, ବାପ ପୂର୍ଣ୍ଣଚନ୍ଦ୍ର, ପୂର୍ଣ୍ଣ, ମୋର ହୃଦୟସର୍ବସ୍ୱ, ଉଠ ବାପ, ଦେଖ ବାପ'' ବୋଲି ହଲାଇଲା । ଜୟନ୍ତ ଅପେକ୍ଷା ନ କରି ଗୃହାଭ୍ୟନ୍ତରକୁ ପ୍ରବେଶ କରି ପୂର୍ଣ୍ଣଚନ୍ଦ୍ରକୁ ଦେଖିଲେ । ସାହସ ତାଙ୍କର ହୃଦୟ ମଧ ଧକ୍ ଧକ୍ କରି ଉଠିଲା । ବିଛଣା ନିକଟରେ ଉପବେଶନ କରି ନାଡ଼ି ଦେଖିଲେ । ନାସିକାରେ ହାତ ଦେଲେ, ଚକ୍ଷୁ ଦେଖିଲେ । ଚକ୍ଷୁ ସ୍ଥିର । ରେବତୀ କହିଲା, 'ଭାଇ, କଥା କହୁ ନାହୁଁ, ମତେ ଦେଖୁ ନାହୁଁ, ତଳେ ମୁହଁ ପୋତି ରହିଲୁଁ, ପୂର୍ଣ୍ଣ କ'ଣ ଛାଡ଼ିଗଲା ? କହ ଭାଇ କହ । ମୁଁ ତୋତେ ଏହା ଦେଖାଇବାକୁ ଏଠାକୁ ଆଣିଲି, ଏତେ କଷ୍ଟ ଦେଲି । ମୁଁ ତ ଅଭାଗୀ, ତୋତେ ମଧ ଏ କଷ୍ଟ ସହିବାକୁ ପଡ଼ିଲା । କଷ୍ଟ ସହିବୁ ନାହିଁ କାହିଁକି, ତୁ ପରା ମୋର ଭାଇ । ଭାଇ, କଥା କହ । ପୂର୍ଣ୍ଣକୁ ଧର, ମୋ କୋଳରେ ଦେ, ଉପାୟ ଥିଲେ କହ ।'' ଜୟନ୍ତ କଳଚାଳିତ ପୁତ୍ତଳିକା ପ୍ରାୟ ଶବକୁ ଉତ୍ତୋଳନ କରି ନିଜର ବକ୍ଷସ୍ଥଳରେ ରଖି ପରୀକ୍ଷା କଲେ— କିଛି ନ କହି ରେବତୀର କୋଳରେ ଶୁଆଇ ଦେଲେ । ରେବତୀ ମୁଖକୁ ଅନାଇ କହିଲେ, ''ଭଉଣୀ, ପୂର୍ଣ୍ଣ ଆମ୍ଭମାନଙ୍କୁ ଠକି ଦେଇ ଚାଲିଗଲା । ତାକୁ ପାଳନ କରିବା ମୋ କପାଳରେ ନାହିଁ । ମୁଁ ହତଭାଗ୍ୟ ।'' ରେବତୀ, ମାଳତୀ ବାହୁନି ବାହୁନି କାନ୍ଦିଲେ । ପୂର୍ଣ୍ଣ ମାତୃକ୍ରୋଡ଼ରେ ଅନନ୍ତ ନିଦ୍ରାରେ ଅଭିଭୂତ । ଜୟନ୍ତ ନିକଟରେ ବସି କିଂକର୍ତ୍ତବ୍ୟବିମୂଢ଼ ହୋଇ ଅଜସ୍ର ଅଶ୍ରୁ ଗଡ଼ାଇବାକୁ ଲାଗିଲେ ।

ଦ୍ୱାରରେ ସର୍ବବ୍ୟାପୀ ସନ୍ନ୍ୟାସୀ ସଦାନନ୍ଦ କାଷ୍ଠପୁତ୍ତଳିକା ପ୍ରାୟ ନିର୍ବାକ୍ ହୋଇ ଦଣ୍ଡାୟମାନ ଅଛନ୍ତି । ମସ୍ତକରେ ଟୋପାଏ ଟୋପାଏ ଜଳ ପଡୁଅଛି ଏବଂ ଚକ୍ଷୁରୁ ମଧ ଟୋପାଏ ଟୋପାଏ ଲୁହ ପଡୁଅଛି ।

କାନ୍ଦୁ କାନ୍ଦୁ ରେବତୀ କହିଲା, ''ଭାଇ, ତୁମେ କାନ୍ଦୁଛ । ମୋର ଚକ୍ଷୁରେ ଲୋତକ ନାହିଁ, ସବୁ ସରିଗଲା । ମୋର ହୃଦୟ ପାଷାଣ, ନା, ପାଷାଣରୁ କଠିନ—ସ୍ନେହମୟୀ ଜନନୀ ଗଲେ । ପିତା ଗଲେ, ସ୍ୱାମୀ ଗଲେ । ସବୁ ସହିଛି ଏ ପ୍ରାଣ । ଆଶା ଭରସା ଥିଲା ଏହି କ୍ଷୁଦ୍ର କ୍ଷୀଣ ପ୍ରାଣ ଉପରେ । ସେ ମଧ ଛାଡ଼ିଗଲା । ଭାଇ, ବୋଧହୁଏ ଏହା ପ୍ରଥମ ଦୁଃଖ । ଉଠ ଭାଇ, ଏହାଙ୍କ ଉପାୟ କର ।'' ଜୟନ୍ତଙ୍କର ମୋହନିଦ୍ରା ଭାଙ୍ଗିବ ସେ ରେବତୀକୁ କହିଲେ, ''ଗ୍ରାମରେ କେହି ମୋର ପରିଚିତ ନାହିଁ । କାହାକୁ ଡାକିବି, କ'ଣ କରିବି କହ । ଆଉ ବୃଥା ବିଳମ୍ବରେ ଫଳ ନାହିଁ । ଯଦି ହେବାର ହେଲା, ଶୋକ ତ୍ୟାଗ କର ।'' ରେବତୀ କହିଲା, ''ଭାଇ, ତୋ ଭିନ୍ନ ମୋର ଜଗତରେ କେହି ନାହିଁ । କାହାକୁ କହିବି, କାହାକୁ ଡାକିବି ?' ରେବତୀ ଶୋକ ସମ୍ବରଣ କରି ଜୟନ୍ତ କୋଳରେ ଶବକୁ ଦେଇ ପେଡ଼ି ଫିଟାଇ ପକାଇଲା । ପାଟଲୁଗା ଅଳଙ୍କାର ଯାହା ଥିଲା, ବାହାର କରି ପୂର୍ଣ୍ଣକୁ ସଜ୍ଜିତ କଲା । ଶିବପ୍ରସାଦ, ଫୁଲମାଳା ପିନ୍ଧାଇ ଦେଲା ଜୟନ୍ତକୁ କହିଲା, ''ପୂର୍ଣ୍ଣକୁ ନେଇ ଛାଡ଼ି ଆସ ।'' ପୁଣି ବାହୁନି ବାହୁନି କାନ୍ଦିଲା । ଜୟନ୍ତ ଧୀରେ ଧୀରେ ଗାତ୍ରୋତ୍‌ଥାନ କଲେ— ଶବକୁ ଗୃହର ପିଣ୍ଡାରେ ରଖି ଦେଇ କୋଡ଼ି ଆଣିବାକୁ ଗଲେ ଫେରି ଦେଖିଲେ, ଶବ ନାହିଁ । ଜୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଡାକିଲେ, ''କିଏ, କିଏ, ଶବ କିଏ ନେଲା ?'' ସଦାନନ୍ଦ ଦ୍ୱାରରେ ଦଣ୍ଡାୟମାନ ଅବସ୍ଥାରେ ଶବକୁ ବକ୍ଷୋପରି ଧାରଣା କରି କହିଲେ ''ବାବା ଜୟନ୍ତ !''

ଜୟନ୍ତ ଅଧିକତର ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, ''ବାବା, ଗୁରୁଦେବ, ଆପଣ ସ୍ପର୍ଶ କଲେ । ମୋତେ ଦିଅନ୍ତୁ, ବାବା, ଦିଅନ୍ତୁ ।'' ସଦାନନ୍ଦ କହିଲେ, ''ବାବା ଜୟନ୍ତ, ଘନିଷ୍ଠତା କ୍ଷଣସ୍ଥାୟୀ । ପୂର୍ଣ୍ଣଚନ୍ଦ୍ର ମୋର ହୃଦୟଚନ୍ଦ୍ର । ମୋଠାରୁ ତାକୁ ନିଅ ନା, ବାବା, ମୁଁ ତାକୁ କିଛିକାଳ ହୃଦୟରେ ଲଗାଇ ରଖେଁ । ଯେତେବେଳେ ତୁମେ ଏହି ଶବକୁ ପିଣ୍ଡାରେ ରଖିଦେଇ ଗଲ, ସେତେବେଳେ ଅପୂର୍ବ ଘନିଷ୍ଠତା ଜାତ ହେଲା । ଉତ୍ତୋଳନ କରି ହୃଦୟରେ ଲଗାଇଲି । ଦେହ ମନ ପ୍ରାଣ ଶୀତଳ ହୋଇଗଲା । ଚନ୍ଦନଲେପନ ଅପେକ୍ଷା ଶୀତଳ ଲାଗିଲା । ପୂର୍ଣ୍ଣଚନ୍ଦ୍ର ମୋର ହୃଦୟସ୍ଥଳରେ ବସି ମୋତେ ଅନନ୍ତ ଦୁଃଖସାଗରରେ ନିମଗ୍ନ କଲା କି ଅନନ୍ତ ସୁଖସାଗରରେ ଭାସମାନ କଲା, ମୁଁ ତାହା ବୁଝିପାରିଲି ନାହିଁ । ଚକ୍ଷୁ ମୁଦ୍ରିତ ହେଲା, ଲୋତକ ଗଡ଼ିଲା, ମୁଁ କ୍ଷଣକ ନିମନ୍ତେ ମୂର୍ଚ୍ଛିତ ଥିଲି । ତୁମେ ଆସି ମୋର ଚେତନା ଆଣିଲ । ବାବା, ସେ ଘନିଷ୍ଠତା ନାହିଁ । ତଥାପି ପୂର୍ଣ୍ଣଚନ୍ଦ୍ରକୁ ମୋର ବକ୍ଷସ୍ଥଳରୁ ଓହ୍ଲାଇବି ନାହିଁ । ଯେତେ କ୍ଷଣ ଥିବାର ଥାଉ; ତୁମେ ମୋତେ ଏ ଗୃହକର୍ତ୍ତବ୍ୟରୁ, ଧର୍ମପଥରୁ ବଞ୍ଚିତ କର ନାହିଁ । ତୁମେ ମୋର ଭକ୍ତ ଓ ଉପକାରୀ ଶିଷ୍ୟ ।'' ଜୟନ୍ତ କିଂକର୍ତ୍ତବ୍ୟବିମୂଢ଼ ହୋଇ ଶୁଣୁଥିଲେ । ''ରେବତୀ, ରେବତୀ'' ବୋଲି ଡାକିଲେ । ରେବତୀ ଧାଇଁ ଆସିଲା । ଜୟନ୍ତ କହିଲେ, ''ମୋର ଗୁରୁଦେବ । ଆମ ପଛେ ପଛେ ଆସି ପୂର୍ଣ୍ଣଚନ୍ଦ୍ରକୁ ବକ୍ଷସ୍ଥଳରେ ଧରିଛନ୍ତି ।''

ରେବତୀ ସାଷ୍ଟାଙ୍ଗ ପ୍ରଣିପାତ ହୋଇ ସଦାନନ୍ଦଙ୍କ ଗୋଡ଼ଯୋଡ଼ିକ ଧରି କହିଲା, ''ପିତା, ତୁମେ ସନ୍ନ୍ୟାସୀ, ଦେବତା ତୁଲ୍ୟ ତୁମର ଶକ୍ତି । ତୁମର ହୃଦୟରେ ପୂର୍ଣ୍ଣଚନ୍ଦ୍ର ଅଛି । ସେ ଜୀବିତ କି ? ମୋର ସଂଖାଳିକି ପ୍ରାଣଦାନ ଦିଅ । ମୁଁ ତାକୁ ତୁମକୁ ଦେଲି ।''

ସଦାନନ୍ଦ ଶବକୁ ବକ୍ଷସ୍ଥଳରେ ଅଧିକତର ଦୃଢ଼ଭାବରେ ବାମ ହସ୍ତରେ ଚିପି ଧରି ଦକ୍ଷିଣ ହସ୍ତରେ ରେବତୀର ଆଲୁଳାୟିତ କେଶକୁ ସ୍ପର୍ଶ କଲେ । ବାମ ହସ୍ତ ଧରି ଉଠାଇ ବସାଇଲେ । ନିଜେ ନିକଟରେ ବସି କହିଲେ, ''ମା' ! ତୁ କହିଲୁ ପୂର୍ଣ୍ଣଚନ୍ଦ୍ରକୁ ତୁ ମୋତେ ଦେଲୁ । ପୂର୍ଣ୍ଣଚନ୍ଦ୍ର ମୋର, ତାଠାରେ ତୋର ଲୋଭ ମୋହ ନାହିଁ । ସେ ମୋର, ମୁଁ ତାକୁ ନେଉଛି । ମା' ! ବିଶ୍ୱ ସଂସାରରେ ଦେବତା, ମନୁଷ୍ୟ କେହି ନାହାନ୍ତି, ଯେ ପୁଣି ପୂର୍ଣ୍ଣଚନ୍ଦ୍ରକୁ ପୂର୍ବ ଅବସ୍ଥାରେ ତୋ କୋଳକୁ ଫେରାଇ ଦେବେ । ସେ ଆସିଥିଲା, ଚାଲିଗଲା । ଆମେମାନେ ମଧ୍ୟ ଚାଲିଯିବା । ମୁଁ ପଛେ ପଛେ ଆସି ସବୁ ଶୁଣିଛି । ତୁ ବଡ଼ ଦୁଃଖିନୀ, ତଥାପି ଦେବୀ । ତୋର ଅଚଳା ପିତୃମାତୃଭକ୍ତି, ତୋର ଅଚଳା ସ୍ୱାମୀଭକ୍ତି, ପାତିବ୍ରତ୍ୟ, ପ୍ରେମ, ସ୍ନେହ, ଅତୁଳନୀୟ ବାତ୍ସଲ୍ୟ— ମାତାର କର୍ତ୍ତବ୍ୟ ଦେଖିଲି । ଜୀବନର ଶ୍ରେଷ୍ଠ କାର୍ଯ୍ୟତକ ତୁ କରିଛୁ । ପୂର୍ଣ୍ଣଚନ୍ଦ୍ର ତୋର ବାତ୍ସଲ୍ୟ ପ୍ରେମର ପରାକାଷ୍ଠା ଦେଖାଇବାକୁ ଜନ୍ମ ହୋଇଥିଲା । ତାହା ପୂର୍ଣ୍ଣ ହେଲା, ସେ ରହିବ କାହିଁକି ? ଶୋକ ସମ୍ବରଣ କର । ପୂର୍ଣ୍ଣକୁ ଦେଇ ଆଜିଠାରୁ ମୋତେ ପୁତ୍ର କରି ପାଇଲୁ । ଜୟନ୍ତ ଆଜିଠାରୁ ତୋର ସହୋଦର ଭାଇ । ପୂର୍ଣ୍ଣ ଆଜି ଆମ ଦୁହିଁଙ୍କ ତୋ ଜିମା ଦେଇଗଲା । ତୋତେ ସେ ନିଃସହାୟା ରଖି ଯାଇ ନାହିଁ । ତୋର ଦୁଃଖ ସୁଖରେ ଆମେ ଦୁହେଁ ଅଂଶୀଦାର । ଜୀବନ ଥିବାଯାଏ ତୋର ସାହାଯ୍ୟ କରିବୁଁ । ମୁଁ ତୋର ପୂର୍ଣ୍ଣଚନ୍ଦ୍ର, ଜୟନ୍ତ ତୋର ଭାଇ । ଛାଡ଼, ମା' ! ଛାଡ଼ । ଆମେ କର୍ତ୍ତବ୍ୟ କାର୍ଯ୍ୟ କରୁଁ ।''

ରେବତୀ ନତଜାନୁ ହୋଇ ଏକଦୃଷ୍ଟିରେ ସଦାନନ୍ଦଙ୍କ ବକ୍ଷଶୋଭୀ ପୂର୍ଣ୍ଣଚନ୍ଦ୍ରକୁ ଓ ସଦାନନ୍ଦଙ୍କୁ ଅନାଇ ରହିଅଛି । କ୍ରନ୍ଦନ ନାହିଁ, ବାକ୍ୟ ନାହିଁ, ଧୀର ଓ ସ୍ଥିର ଦୃଷ୍ଟି । ସଦାନନ୍ଦ ପୂର୍ଣ୍ଣଚନ୍ଦ୍ରକୁ ବକ୍ଷସ୍ଥଳରେ ଧାରଣା କରି ଆଗରେ ଚାଲିଲେ ଏବଂ ଜୟନ୍ତ ତାଙ୍କ ପଛେ ପଛେ ଚାଲିଲେ । ଘୋର ଅନ୍ଧକାର ।

•

## ଆଈ ନାତୁଣୀ

ଗୋପାଳପୁରକୁ ଅନେକ ଦିନରୁ ଯାଇ ନ ଥିଲି । ପ୍ରାୟ ଚାରି ବର୍ଷ । ଗୋପାଳପୁରରେ ମୋର ସାନ ମାଉସୀଙ୍କ ଘର । ଆମ ଗ୍ରାମରୁ ପ୍ରାୟ ପାଞ୍ଚ କୋଶ ଦୂର । ଏ ଗ୍ରାମକୁ ମୁଁ ପ୍ରାୟ ଯାଏଁ । ମାଉସୀ ମୋତେ ଖୁବ୍ ସ୍ନେହ କରନ୍ତି ।

ମୋର ଅଠର ବର୍ଷ ବୟସରେ ମୁଁ ପ୍ରବେଶିକା ପରୀକ୍ଷା ପାଶ୍ କଲି । କଲେଜରେ ଭର୍ତ୍ତି ହେଲାବେଳେ ପ୍ରତିଜ୍ଞା କଲି ଯେ, ବି.ଏ. ପରୀକ୍ଷା ନ ଦେବାଯାଏ ଗୃହମୁଖ ଦେଖିବି ନାହିଁ, ଚାରି ବର୍ଷ ବିଦେଶରେ ରହିଲି । ବି.ଏ. ପରୀକ୍ଷା ଦେଇ ବୈଶାଖ ମାସରେ ଘରକୁ ଫେରିଲି । ଗୃହରେ କିଛି ଦିନ ଅବସ୍ଥାନ କରି ବନ୍ଧୁବାନ୍ଧବଙ୍କ ଖୋଜା ପଡ଼ିଲା । ପ୍ରଥମରେ ସାନ ମାଉସୀଙ୍କ ଘର ଗୋପାଳପୁରକୁ ଚାଲିଲି ।

ବୈଶାଖ ମାସର ଶେଷ, ପ୍ରଚଣ୍ଡ ଖରା, ବାଟରେ ବସି ବସି ଚାଲୁ ଚାଲୁ ଦଶ ଘଣ୍ଟା ବେଳେ ଗୋପାଳପୁରରେ ପହୁଞ୍ଚିଲି । ଗ୍ରାମର ପଶ୍ଚିମରେ ଗୋଟାଏ ବଡ଼ ପୁଷ୍କରିଣୀ ।

ପୁଷ୍କରିଣୀ ନିକଟ ଦେଇ ଗ୍ରାମର ରାସ୍ତା । ରାସ୍ତାର ନିକଟକୁ ପୂର୍ବରେ ଚାରି ଛଅଟା ଆମ୍ବଗଛ । ମୁଁ ସେଠାରେ ପହଞ୍ଚିଲା ବେଳେ ଗ୍ରାମରୁ ଜଣେ ବୃଦ୍ଧା ଓ ଜଣେ ଯୁବତୀ ସେଠାରେ ଉପସ୍ଥିତ ହେଲେ । ମୁଁ ବୃଦ୍ଧାଙ୍କୁ ଦେଖି ପ୍ରଣାମ କଲି । ବୃଦ୍ଧା କହିଲେ, ''ବାପା, ଚାରି ବର୍ଷରେ ଗ୍ରାମରେ ପାଦ ପଡ଼ିଲା, ଆଜି ଆମ୍ଭେମାନେ ମନରେ ପଡ଼ିଲୁ ? ତୁମ୍ଭେ ବଡ଼ ନିଷ୍ଠୁର ପିତାର ପୁତ୍ର । ଯାଅ ବାପା ଯାଅ, ତୁମ୍ଭ ମାଉସୀର ଆଖି ଫୁଟିଯାଉଛି, ତୁମ୍ଭକୁ କେତେ ଖୋଜୁଛି, ମନେ କରୁଛି ।'' ତାଙ୍କ ସାଙ୍ଗରେ ଥିବା ଯୁବତୀ ମୋତେ ଦେଖି ମୁହଁରେ ଲୁଗା ଘୋଡ଼ାଇ କାନ୍ଦିବାକୁ ଲାଗିଲା । ମୁଁ ତାହାର ମୁହଁ ଦେଖିପାରିଲି ନାହିଁ, ଚିହ୍ନି ପାରିଲି ନାହିଁ, ପଚାରିଲି ଏ କିଏ ଗୋ ମାଉସୀ ? ବୃଦ୍ଧା କହିଲେ, ଚିହ୍ନିପାରିଲେ ନାହିଁ ବାପା, କାହୁଁ ଚିହ୍ନିବ, ତା'ର ସେ ରୂପ, ବେଶ ଭୂଷଣ ଅଛି ଯେ ଚିହ୍ନିବ । ତା'ର ପରା କପାଳ ଫାଟିଲା । ପରମାନନ୍ଦ ମିଶ୍ରଙ୍କ ନାତୁଣୀ ଅହଲ୍ୟା । ଏହା ଶୁଣି କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଲି । ଅହଲ୍ୟା ମୁଖରୁ ବସ୍ତ୍ର ଅପସାରିତ କଲା । ଚକ୍ଷୁରୁ ଦରଦର ଲୋତକଧାରା ଗଣ୍ଡ ଦେଶ ଦେଇ ବହି ଯାଉଥିଲା । ଗଣ୍ଡଦେଶ ଓ ମୁଖ ମଣ୍ଡଳ ରକ୍ତାଭା ଧାରଣ କରିଥିଲା, ହସ୍ତରେ କଙ୍କଣ ନାହିଁ, ନାକ କାନରେ ଅଳଙ୍କାର ନାହିଁ, କପାଳରେ ସିନ୍ଦୂର ନାହିଁ । ରୁକ୍ଷକେଶା— ଶୁକ୍ଳବସନ ପରିହିତା । ଏତାଦୃଶ ବିଧବା ଲକ୍ଷଣ ଦେଖିଲି । କ'ଣ ପଚାରିବି ? କି ପ୍ରବୋଧ ଦେବି ? ବାକ୍ୟ ସ୍ଫୁରିଲା ନାହିଁ । ଚକ୍ଷୁରୁ ଦୁଇ ଧାର ଲୋତକ ବହିଗଲା । ପାଦ ଚଳିଲା ନାହିଁ । କ'ଣ କହି ସେମାନଙ୍କଠାରୁ ବିଦାୟ ନେବି, ତାହା ମଧ୍ୟ ଭାବି ପାରିଲି ନାହିଁ । ବୃଦ୍ଧା କହିଲେ, ''ଯାଅ, ବାପା ଯାଅ'', ଅହଲ୍ୟା କହିଲା 'ଭାଇ ! ଆମ ଘରକୁ ଆସିବ ନାହିଁ କି ?'' ଉପରଓଳି ଆସିବି ବୋଲି ସ୍ଥାନ ତ୍ୟାଗ କଲି ।

ଅହଲ୍ୟା ଅତି ଦୂର ସମ୍ପର୍କରେ ମୋର ସାନ ମାଉସୀଙ୍କ ଝିଆରୀ । ସୁତରାଂ ସମ୍ପର୍କରେ ମୋର ଭଗିନୀ । ବାଲ୍ୟ କାଳରେ ମୁଁ କଲେଜକୁ ଯିବାଯାଏ ଉଭୟେ ସହୋଦର ଭାଇ ଭଉଣୀ ପରି ଖେଳ କଉତୁକ ବାକ୍ୟାଳାପ କରୁଥାଉଁ । ଆମ୍ଭ ଦୁହିଁଙ୍କ ମଧ୍ୟରେ ଖୁବ୍ ଆତ୍ମୀୟତା ଜନ୍ମିଥିଲା । ଗ୍ରାମର ଅନ୍ୟ କୌଣସି ବାଳକ ବାଳିକା ସହିତ ମୋର ଏତାଦୃଶ ଘନିଷ୍ଠତା ହୋଇ ନ ଥିଲା । ଚାରି ବର୍ଷ ଦେଖାସାକ୍ଷାତ୍ ନାହିଁ । ଇତି ମଧ୍ୟରେ କି ବିପର୍ଯ୍ୟୟ କି ପରିବର୍ତ୍ତନ । ମୁଁ ଉନ୍ନତି ମାର୍ଗରେ ଚାଲିଅଛି । ଅହଲ୍ୟାର ଦୁର୍ଗତିର ତ ସୀମା ନାହିଁ । ମୋର ଆଶାଲତା ଫଳବତୀ ହୋଇ ମୋତେ ତଥା ମୋର ପିତା ମାତା ଓ ସ୍ୱଜନମାନଙ୍କୁ ସୁଖୀ କରିବ । ଅହଲ୍ୟାର ଆଶାଲତା ଉନ୍ମୂଳିତ ହୋଇଅଛି । ତା' ନିମନ୍ତେ ସଂସାରରେ ସୁଖ ବୋଲି କିଛି ହିଁ ନାହିଁ । ସମ୍ମାନ ନାହିଁ । ସହାନୁଭୂତି ନାହିଁ । ସାହାଯ୍ୟ ନାହିଁ, କେବଳ ତା'ର ମନ୍ଦ ଭାଗ୍ୟକୁ ଛି, ଛି, ଧିକ୍‌କାର ଓ ଲାଞ୍ଛନା । ''କାଳସ୍ୟ କୁଟିଳ ଗତିଃ ।''

ଅହଲ୍ୟାକୁ ଚାରି ବର୍ଷ ପୂର୍ବେ ଦେଖିଥିଲି, ସେତେବେଳେ ତା'ର ବୟସ ବାର, ତେର ବୟଃପ୍ରାପ୍ତ ହୋଇ ନ ଥିଲା । ତା'ର ବାଲ୍ୟ ଚାପଲ୍ୟ ଭାଙ୍ଗି ନ ଥିଲା । ଗୌରବର୍ଣ୍ଣ, ଦୈହିକ ଗଠନ ପାତଳ । ଅବଶ୍ୟ ସୁନ୍ଦରୀ, ମାତ୍ର ଆଜି ତା'ର ରୂପ ଯାହା ଦେଖିଲି ତା' ସହିତ ପୂର୍ବ ରୂପ ତୁଳନା କରାଯାଇ ନ ପାରେ । ଶରୀର ହୃଷ୍ଟପୁଷ୍ଟ ହୋଇଅଛି । ଗଣ୍ଡସ୍ଥଳ ପୂର୍ଣ୍ଣ ହୋଇଅଛି, ଅଧରର ଗଠନ ପୂର୍ବାପେକ୍ଷା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ବର୍ଣ୍ଣର ଗୋଟାଏ ସ୍ୱତନ୍ତ୍ର ମାଧୁରୀ ଫିଟି ପଡ଼ିଅଛି । ଚାରି ବର୍ଷ ପୂର୍ବର କନ୍ୟା ଅହଲ୍ୟା ଏବଂ ଆଜି ବିଧବା ଅହଲ୍ୟା ମଧ୍ୟରେ ଜମିନ ଆସମାନ ଫରକ । ଅହଲ୍ୟା ବିଧବା ହେଲା । ସମାଜ ତା' ହାତରୁ ଚୁଡ଼ି କଙ୍କଣ କାଢ଼ି ନେଲା । ତାଡ଼ି, ବିଦ, ବାହାସୂତା କାଢ଼ି ନେଲା । ଏହି ଅନାବଶ୍ୟକ ସ୍ଥାନାବରୋଧକାରୀ ପଦାର୍ଥଗୁଡ଼ିକ ବାହୁ କଟୀର ଯଥାଯଥ ମାଂସପେଶୀ ବୃଦ୍ଧିର ସମାବେଶର ଅନ୍ତରାୟ ଥିଲେ । ସେଗୁଡ଼ିକ କାଢ଼ି ନେବାରୁ ତା'ର ବାହୁ ଓ ହସ୍ତ ଏଡ଼େ ସୁନ୍ଦର ଦିଶୁଅଛି କି ? ତା'ର ରଙ୍ଗ ଲୁଗା ଓ ପାଟ ଶାଢ଼ି ଛଡ଼ାଇ ନେଇଅଛନ୍ତି, ଖଣ୍ଡେ ଧୋବ ଲୁଗା ଦେଇଅଛନ୍ତି । ଲୁଗାଖଣ୍ଡ ତା'ର ରୂପଛଟାକୁ ବିକଶିତ କରୁଅଛି; ମୂଲ୍ୟବାନ୍ ପାଟ ଶାଢ଼ି ରୂପଛଟାକୁ ଛପାଇ ରଖେ— ମୂଲ୍ୟବାନ୍ ବସ୍ତ୍ରଦ୍ୱାରା ପରିଧାନକାରିଣୀ ସୁନ୍ଦରୀ ବୋଲି ପରିଚିତା ହୁଏ । ଏଥିରେ ପ୍ରକୃତ ସୌନ୍ଦର୍ଯ୍ୟର ଉପଲବ୍ଧ ହୁଏ ନାହିଁ । ଆଜି ଅହଲ୍ୟା ଧୋବ ଲୁଗା ପିନ୍ଧିଥିବାରୁ ତା'ର ପ୍ରକୃତ ରୂପ ଦିଶିଲା ସିନା ? ସେ ପୂର୍ବାପେକ୍ଷା ଅନେକ ଗୁଣରେ ସୁନ୍ଦରୀ ଦେଖାଯାଉଥିଲା । ସୀମନ୍ତରେ ସିନ୍ଦୂର ରେଖା ଦେବାକୁ ନିଷେଧ କରିଅଛନ୍ତି । ତୈଳ ବ୍ୟବହାରଦ୍ୱାରା ମାଙ୍ଗ ଭାଙ୍ଗ ବଞ୍ଚିତ କରିଅଛନ୍ତି ସତ ମାତ୍ର ପରସ୍ପର ଅସଂଲଗ୍ନ ଚୂର୍ଣ୍ଣକୁନ୍ତଳଗୁଡ଼ିକ ଯେ କପୋଳର କେତେକାଂଶ ଆବୃତ କରି ଅସାଧାରଣ ପ୍ରକୃତ ଶୋଭା ବଢ଼ାଇ ଅଛି ତାହା କିଏ ନିଷେଧ କରିବ ? ନାକରେ ଫୁଲଦଣ୍ଡି ଗୁଣା ବସୁଣୀ, ନାହିଁ, କର୍ଣ୍ଣରେ କର୍ଣ୍ଣଫୁଲ ନାହିଁ, ତଥାପି ତା'ର ଶୋଭା ଯେ ଦ୍ୱିଗୁଣ ବୃଦ୍ଧି ପାଉଛି । ମୁଁ ବୁଝିପାରିଲି, ସମାଜ ବଳାତ୍କାରରେ ବେଶଭୂଷା ପରିଧେୟ ବସନାଦି କାଢ଼ିନିଏ, ମାତ୍ର ରୂପଛଟାର ସୌନ୍ଦର୍ଯ୍ୟର ଟିକିଏ ହେଲେ ହ୍ରାସ କରିପାରେ

ନାହିଁ । ପ୍ରକୃତିଗତ ରୂପଲାବଣ୍ୟ ବୃଦ୍ଧି ହେବାକୁ ଲାଗିବ, ତାହା କେହି ବନ୍ଦ କରିପାରିବେ ନାହିଁ । ଏ ସମ୍ବନ୍ଧରେ ସଧବା ବିଧବା ମଧରେ କୌଣସି ସମ୍ବନ୍ଧ ନାହିଁ। ଉଭୟଙ୍କର କାଳ ଅନୁଗତ ରୂପ ଯୌବନ ଧୀରେ ଧୀରେ ବଢ଼ିବ, ପୁଣି ଧୀରେ ଧୀରେ ମଉଳି ଆସୁଥିବ । ତେବେ ସମାଜ ବିଧବା ପ୍ରତି ଏ ପ୍ରକାର କଠୋର ବିଧାନ କରିଅଛି କାହିଁକି ? କଠୋର ବିଧାନଦ୍ୱାରା ତା'ର ରୂପରେଖରେ ହ୍ରାସ ହେଉ ନାହିଁ, ବରଂ ସ୍ୱାଭାବିକ ସୌନ୍ଦର୍ଯ୍ୟ ବଢୁଅଛି । ଅଳଙ୍କାରାଦି ବାହ୍ୟ କୃତ୍ରିମ ଉପକରଣଗୁଡ଼ିକ ପୁରୁଷର ଚିତ୍ତାକର୍ଷକ ନା ପ୍ରକୃତ ରୂପ ? ରୂପହିଁ ମନୋମୁଗ୍ଧକର ଚିତ୍ତାକର୍ଷକ । ବିଧବାକୁ ଯେତେବେଳେ ରୂପଛଟାରୁ ବଞ୍ଚିତ କରିବାର ଅଧିକାର ନାହିଁ, ସେତେବେଳେ ସାମାନ୍ୟ ଭୂଷଣାଦିରୁ ବଞ୍ଚିତ କରିବାଟା କେବଳ ନିଷ୍ଠୁରତାର ପରିଚାୟକ । ଏହିପରି ନାନା କଥା ଭାବୁ ଭାବୁ ମୋ ମାଉସୀ ଘରେ ଉପସ୍ଥିତ ହେଲି । ବହୁକାଳ ବିଚ୍ଛେଦ ପରେ ଆଗତ ପୁତ୍ର ଓ ଭଗିନୀ ପୁତ୍ର ପ୍ରତି ମାତା ଓ ମାଉସୀଙ୍କର ସ୍ନେହ ଓ ଆଦର ସମ୍ଭାଷଣ ଅଶ୍ରୁବର୍ଷଣ ସସ୍ନେହ ଚୁମ୍ବନଦାନ ଅତି ସ୍ୱାଭାବିକ । ଆଗନ୍ତୁକ ହୃଷ୍ଟପୁଷ୍ଟ ଓ ସବଳକାୟ ହୋଇ ଫେରିଥିଲେ ମଧ ଆରୋପିତ ଦୁର୍ବଳତାର କାରଣ ଜିଜ୍ଞାସା ସ୍ଥିରନିଶ୍ଚିତ । ତାହାହିଁ ଘଟିଲା । ମାଉସୀଙ୍କ ଠାରୁ ମାତୃସ୍ନେହର ନିଦର୍ଶନ ପାଇ ଆପ୍ୟାୟିତ ହେଲି । ମାଉସୀଙ୍କ ପୁତ୍ର କନ୍ୟାଙ୍କ ନିମନ୍ତେ ଯାହାକିଛି ସଙ୍ଗରେ ନେଇ ଯାଇଥିଲି, ତାହା ବଣ୍ଟନ କରିଦେଇ ସେମାନଙ୍କ ସହିତ ସହସା ବନ୍ଧୁତା ସ୍ଥାପନ କରିନେଲି । ମାଉସୀ ଓ ସାଇ ପଡ଼ିଶାର ଜଣ କେତେ ବୃଦ୍ଧା ଓ ଯୁବତୀଙ୍କ ଆଗରେ ବିଦେଶ ବାସର ଚାରି ବର୍ଷର କାହାଣୀ ଏକ ନିଶ୍ୱାସରେ ଗାଇଯିବାକୁ ଲାଗିଲି । କିନ୍ତୁ ଶ୍ରୋତାମାନଙ୍କ ମଧରେ ଥିବା ଦୁଇ ତିନି ଜଣ ବାଳବିଧବାଙ୍କ ଉପରେ ଦୃଷ୍ଟି ପଡ଼ି ଯାଉଥିବା ବେଳେ ଅହଲ୍ୟାର ଭାବନା ମନକୁ ବିଷଣ୍ଣ କରୁଥାଏ । ଯାହାହେଉ ଗଳ୍ପ ଶେଷ ନ ହେଉଣୁ ରନ୍ଧନାଦି ଶେଷ ହେଲା । ସ୍ନାନ ଆହାର ଶେଷ କଲି । ବିଶ୍ରାମ କରିବାକୁ ମାଉସୀ କହିଲେ। ମୁଁ କହିଲି ବିଶ୍ରାମ କରିବା ଅପେକ୍ଷା ପରିଚିତ ଲୋକଙ୍କୁ ଦେଖି ଆସିବା ଭଲ । ହାତରେ ଛତା ନେଇ ବାହାରିଲି । ନିର୍ଦ୍ଧୂମଖରା, ମାଉସୀଙ୍କ ଘରଠାରୁ ପରମାନନ୍ଦ ମିଶ୍ରଙ୍କ ଘର ଟିକିଏ ଦୂରରେ । ଅନେକ ଗୁଡ଼ିଏ ଘର ପାରି ହୋଇଯିବାକୁ ପଡ଼ିଲା । ବୋଧହୁଏ ସମସ୍ତେ ବିଶ୍ରାମ କରୁଥିଲେ, ଏଣୁ କେହି ମୋତେ ଡାକିଲେ ନାହିଁ । ମୁଁ ସିଧା ପରମାନନ୍ଦ ମିଶ୍ରଙ୍କ ଘରକୁ ଚାଲିଗଲି । ଘର ମୋର ପୂର୍ବ ପରିଚିତ । କିଛିମାତ୍ର ପରିବର୍ତ୍ତନ ହୋଇ ନାହିଁ । ଘର ବାଡ଼ି ପରିଷ୍କୃତ ପରିଚ୍ଛନ୍ନ । ମୁଁ ବାହାର ଘର ନ ଡେଉଣୁ ଅହଲ୍ୟା ଆସି ଉପସ୍ଥିତ । ବୋଧ ହୁଏ ମୋ ଅପେକ୍ଷାରେ ବାଟ ଅନାଇ ରହିଥିଲା । ମୋ ହାତ ଧରି ଡାକିନେଲା— ଚାରି ବର୍ଷ ପୂର୍ବେ ଯେପରି ହାତ ଧରି ଡାକି ନେଉଥାଏ । ତା'ର ମନେ ନାହିଁ ଯେ ମୁଁ ବାଇଶ ବର୍ଷର ଯୁବକ, ସେ ଷୋହଳ ବର୍ଷର ଯୁବତୀ ଓ ବିଧବା । ତାଙ୍କ ସ୍ମୃତି ଓ ବାଲ୍ୟ ବନ୍ଧୁତା ତା'ର ହୃଦୟରେ ରାଜତ୍ୱ କରୁଥିଲା । ଆଟୁଘର ପିଣ୍ଡାରେ ଢାଳେ ପାଣିଥିଲା । ମୋ ଆଡ଼କୁ ବଢ଼ାଇ ଦେଇ, କହିଲା, ''ଗୋଡ଼ ଧୁଅ ।'' ମୁଁ କହିଲି 'ଦରକାର ନାହିଁ ।' ଭିତରକୁ ପଶିଲା ବେଳେ କହିଲା ''ଭିତରେ ତୁମର ଆଈ ଅଛନ୍ତି ପ୍ରଣାମ କରିବ ।'' ଭିତରକୁ ପଶି ଦେଖେଁ ଜଣେ ବିଧବା ଯୁବତୀ ଘରର ଏକ କୋଣକୁ ଆଉଜି ଠିଆ ହୋଇଛନ୍ତି । ପୁଣି ଅହଲ୍ୟା କହିଲା, 'ପ୍ରଣାମ କର ।' ମୁଁ ପ୍ରଣାମ କଲି । ଖଣ୍ଡେ ଆସନ ପଡ଼ିଥିଲା। ମୁଁ ଆସନରେ ବସିଲି । ସମ୍ମୁଖରେ ଅହଲ୍ୟା ବସିଲା, ଆଉ ବିଧବାଟି ଅହଲ୍ୟାର ପଛ ପାଖରେ ତା' ପିଠିର ଆଶ୍ରୟ ନେଇ ମୁହଁ ପୋତି ବସିଲେ । ମୁଁ କହିଲି ଅଜା କାହାନ୍ତି ? ଅହଲ୍ୟା— ଅଜାଙ୍କ ବଦଳରେ ଏହି ଠାକୁରାଣୀ ଗୃହକର୍ତ୍ତ୍ରୀ ହୋଇଛନ୍ତି । ଏ କି ତାମାସା—ସତ କହନା । ମୁଁ କ'ଣ ସତ ନ କହି ମିଛ କହୁଛି ? ଏହାଙ୍କୁ ଅଜା ବୋଲ ଆଈ ବୋଲ ଏହି ଘରର ମାଲିକ । ଦେଖିଲି ଅହଲ୍ୟାର ପ୍ରଗଲ୍‌ଭତା ବଢ଼ିଅଛି । ବୋଧହୁଏ ବିଧବା ହେଲେ ପ୍ରଗଲ୍‌ଭତା ବୃଦ୍ଧିପାଏ । — ଟିକିଏ ସ୍ୱାଧୀନତା ଓ ସ୍ୱଚ୍ଛନ୍ଦତା ମିଳେ । ନିଜ ଉପରେ ଦାୟିତ୍ୱ ଆସି ପଡ଼େ, ଏଣୁ ବାକ୍‌ପଟୁତା ଜାତ ହୁଏ । ପୁଣି କହିଲା ତୁମ୍ଭ ଅଜା ଇହଧାମରେ ନାହାନ୍ତି । ଏ ଠାକୁରାଣୀଙ୍କର ପାଣିଗ୍ରହଣ କଲେ ମୋର ସଙ୍ଗିନୀ କରିବାକୁ । ଏହାଙ୍କୁ ଘରକୁ ଆଣି ମୋତେ ଏହାଙ୍କୁ ଜିମା ଦେଇ ଚାଲିଗଲେ । ସତ ମିଛ ଧୀରେ ଧୀରେ ଶୁଣିବ । ମୁଁ ଦେଖିଲି, ଆଈଙ୍କର ନୟନରୁ ଦୁଇ ଟୋପା ଲୁହ ଗଡ଼ି ପଡ଼ିଲା । ମୁଁ ଦୀର୍ଘ ନିଶ୍ୱାସ ତ୍ୟାଗ କଲି, ତୁନି ହୋଇ ରହିଲି ।

ଅହଲ୍ୟା— ମୁହଁ ପୋତି ତୁନି ହୋଇରହିଲ ଯେ ।

—କ'ଣ କରିବି ମୁଁ ତୁମ୍ଭମାନଙ୍କୁ ଦେଖି କୂଳକିନାରା ପାଇବାକୁ ନାହିଁ ।

ଆମ ଦୁହିଁଙ୍କର ତ କୂଳ କିନାରା ନାହିଁ, ତୁମେ ତାହା ପାଇବ କିପରି ? ପୁଣି ପୂରା ଚାରି ବର୍ଷ ଆମ୍ଭମାନଙ୍କୁ ଛାଡ଼ିକରି ଥିଲି, ଖୋଜ ନାହିଁ ଖବର ନାହିଁ । ପୂର୍ବ କାହାଣୀଟକ ଶୁଣ । ଅହଲ୍ୟା ଆରମ୍ଭ କଲା; ମୋର ଶୈଶବାବସ୍ଥାରେ ମୋର

ପିତାଙ୍କର ମୃତ୍ୟୁ ହେଲା ତାହା ତୁମ୍ଭେ ଜାଣିଛ । ମୋର ପିତାଙ୍କର ସହୋଦର ଭାଇ ଭଉଣୀ କେହି ନ ଥିଲେ । ମୋର ମା' ଅତି ଯତ୍ନରେ ମୋତେ ଲାଳନ ପାଳନ କଲେ । ମୋର ଆଠବର୍ଷ ବୟସ ହେଲାରୁ ତୁମ ଅଜା ମୋର ବିବାହର ଯୋଗାଡ଼ କରିବସିଲେ। ନଅ ବର୍ଷରେ ବିବାହ ଦେଲେ ପରା ରୋହିଣୀ ଦାନର ଫଳ ମିଳେ । ସେହି ଫଳ ଲାଭ ନିମନ୍ତେ ଅଜାଙ୍କର ବଡ଼ ଆଗ୍ରହ । ମାତ୍ର ସେ ବର୍ଷ ମୋ ମା'ଙ୍କର ବିୟୋଗ ହେଲା । ବୁଢ଼ାଙ୍କୁ ଦାନ ଫଳ ମିଳିଲା ନାହିଁ । ଦଶ ବର୍ଷରେ କନ୍ୟାଦାନ ଦେଲେ । ତୁମେ ତ ଜାଣ ଘରେ ଅଜା, ଆଈ ଓ ମୁଁ । ଅନ୍ୟ କେହି ନ ଥିଲେ । ମୋତେ ବାର ବର୍ଷ ହେଲା । ମୁଁ ଘରଯୋଗ୍ୟା ନୋହିଲି, ଏଥିପାଇଁ ହୁଲସ୍ଥୁଲ କାଣ୍ଡ । ଶାଶୁ ଘର ଲୋକେ ଆସି ଥରକୁଥର ଦେଖିଯିବା, ଉପଚାର କରିବା, ଔଷଧ ଖୁଆଇବା ଲାଗିଥାଏ । ସେତେବେଳେ ତୁମେ ଆସୁଥାଅ, ମାତ୍ର ତୁମକୁ ଏ କାଣ୍ଡ ଜଣା ନାହିଁ । ତେର ମଧ ଚାଲିଗଲା । ଚଉଦ ବର୍ଷରେ ଘରଯୋଗ୍ୟା ହେଲି—ଶ୍ରାବଣ ମାସରେ । ମାର୍ଗଶିରରେ ସ୍ୱାମୀଘରକୁ ପଠାଇବାର ସ୍ଥିର ହେଲା । ଆଶ୍ୱିନ ମାସରେ ସ୍ୱାମୀଙ୍କର ପରଲୋକ ପ୍ରାପ୍ତିର ଖବର ଆସିଲା । ଅଳଙ୍କାର ପତ୍ର କାଢ଼ି ପକାଇଲେ, ମୁଁ ବିଧବା ହେଲି । ମୁଁ କ'ଣ ସ୍ୱାମୀ ସୁଖ ଜାଣେ ନା ଶାଶୂ ଶ୍ୱଶୁରଙ୍କୁ ଜାଣେ ସେ, ବାହୁନି ବାହୁନି କାନ୍ଦନ୍ତି । ଜବରଦସ୍ତି ଯେତେଦିନ କନ୍ଦାଇବାର କନ୍ଦାଇଲେ । କ୍ରିୟାକର୍ମ ସରିଲା ମୋ କାନ୍ଦଣା ମଧ ସରିଲା, ଏ ଘରର ଯେଉଁ ଅହଲ୍ୟାକୁ ସେହି ଅହଲ୍ୟା । ତେବେ ଗହଣା ପାଟ ପ୍ରଭୃତି ସବୁ ଗଲା । ଯେଉଁ ମାର୍ଗଶିରରେ ମୋର ଶାଶୂଘରକୁ ଯିବାର ଥିଲା ମୋ ପରିବର୍ତ୍ତରେ ବୁଢ଼ୀ ଆଈ ଆମ୍ଭମାନଙ୍କୁ ଛାଡ଼ି ପରଲୋକର ଶାଶୂ ଘରକୁ ଗଲେ। ଏଥି ନିମନ୍ତେ ମୋର କାନ୍ଦିବାର ଓ ଦୁଃଖର ସୀମା ନ ଥିଲା। ସେତ ମୋତେ ଆବାଲ୍ୟରୁ ପାଳନ କରିଥିଲେ । ସେ ଯିବାରୁ ସବୁ ଆଶା ଭରସା ତୁଟିଲା । ଗୃହରେ ରହିବାକୁ ବୁଢ଼ା ଅଜା ଓ ମୁଁ । ପ୍ରାୟ ମାସେ ପର୍ଯ୍ୟନ୍ତ ଗ୍ରାମରୁ ଜଣେ ଦୁଇ ଜଣ ବୁଢ଼ୀ ଆସି ସହାନୁଭୂତି ଦେଖାନ୍ତି, ରାନ୍ଧି ବାଢ଼ି ଦେଇଯାନ୍ତି, ପୁଣି ସମୟ ସମୟରେ ମୋତେ କହନ୍ତି— ଜନ୍ମରୁ ବାପକୁ ଖାଇଲା, ସ୍ୱାମୀକୁ ଖାଇଲା ପୁଣି ଆଈକୁ ଖାଇଲା । ଆଉ ବୁଢ଼ାଟିକୁ ଖାଇଲେ ଏହାର ପେଟ ପୂରିବ। ହୀନ କପାଳୀ ଅଲକ୍ଷଣୀ ଇତ୍ୟାଦି । ହର ଭାଇ, ମୁଁ ମୁଁ ପରା ସମସ୍ତଙ୍କୁ ଖାଇଲି । କହିଲେ କହନ୍ତୁ, ସେଥିରେ ମୋର ଶୋଚ଼ନା ନ ଥାଏ । ଦୁଃଖ ଶୋକ ଛାଡ଼ି ଅଜାଙ୍କର ଯତ୍ନ ନେଉଥାଏ, ଘର ଚଳାଉଥାଏଁ, ମାଘ ଆସିଲା । ଦିନେ ଗୋପୀନାଥ ପୁରର ଆନନ୍ଦ ଶତପଥୀ ଆସି ସକାଳ ଦଶ ଘଣ୍ଟା ବେଳେ ପହଞ୍ଚଗଲେ । ଆମ ବୁଢ଼ାଙ୍କ ସହିତ ତାଙ୍କ ଭାଇ ସମ୍ପର୍କ । ମୋତେ ନାତୁଣୀବୋଲି ଡାକନ୍ତି । ଭାତ ଡିଉଣ ରାନ୍ଧି ଅତିଥି ସତ୍କାର କଲି । ଦୁଇ ବୁଢ଼ା ଖାଇଲେ । ମୁଁ ଖାଇସାରି ବାଡ଼ିଆଡ଼କୁ ଗଲି । ଫେରି ଆସି ମୋ ବଖରାରେ ତୁନି ହୋଇ ଶୋଇଲି । ଚେତିଥାଏ । ଆନନ୍ଦ କଥା ଆରମ୍ଭ କଲେ, କହିଲେ ଭାଇ ସେ ପ୍ରସଙ୍ଗ ନେଇ ଆସିଲି ।

ଅହଲ୍ୟା ଶୁଣିବଟି ।

ନାହିଁ ଅହଲ୍ୟା ବାଡ଼ି ପଟେ ସାହିକୁ ଗଲାଣି ।

ଅହଲ୍ୟା ବିଧବା ହୋଇ ଘରେ ଅଛି, ମୁଁ ପୁଣି ବିବାହ କଲେ ଲୋକେ କ'ଣ କହିବେ, ଏହି କଥା ଭାବୁଛି ।

ବିବାହ କଲେ ଲୋକେ କ'ଣ କହିବେ ବୋଲି ଭାବୁଛି । ତୁମେ ବିବାହ ନ ହୋଇ ଯୁବତୀ ନାତୁଣୀ ସହିତ ଏକାକୀ ଘରେ ରହୁଛ, ଏକଥା ଲୋକେ କ'ଣ ଭାବିବେ, ତାହା କେବେ ଚିନ୍ତା କଲଣି କି ? ବର୍ଷ ବାଉନ ଚଉବନ ସିନା ହୋଇଛି, ତୁମେ ତ ବୁଢ଼ା ନୁହଁ।

ତା ସତ । ଏ ଯୁଗର ବାଇଶି ବର୍ଷୀୟା ଭେଣ୍ଡା ଆମପରି ବାଉନ ବର୍ଷୀୟା ବୁଢ଼ାର ସମକକ୍ଷ ନୁହନ୍ତି ।

ତେବେ ଜାଣିଶୁଣି ଶୀଘ୍ର ଉଦ୍ୟୋଗ କରୁ ନାହଁ, ବଡ଼ ଆଶ୍ଚର୍ଯ୍ୟର କଥା ।

ମୁଁ ସେ କଥା ବରାବର ଚିନ୍ତା କରୁଛି ।

ଆରେ ତୁମ ଅନ୍ତେ ଯେ ତୁମ ଘର ଶୂନ୍ୟ । ଭଲା ପୁଅଟିଏ ହେଲେ ପାଣି ଆଞ୍ଜୁଳାକର ଆଶା ରହିବ । ଅହଲ୍ୟା ତ ପର ତା'ପାଇଁ ଚିନ୍ତା କ'ଣ ? ତୁମର ମନ ଜାଣି ମୁଁ ସବୁ ଠିକ୍ କରିଛି. । ତୁମ୍ଭର ସମ୍ମତି ହେଲେ ଶୀଘ୍ର ବିବାହ ହେବ ।

ପାତ୍ରୀ କେଉଁଠାରେ, ବୟସ କେତେ ?

ଯଦୁ ମିଶ୍ରଙ୍କ ଝିଅ, ବୟସ ତେର ଚଉଦ । ଗରିବ ଏଣୁ ବିବାହ ଦେଇପାରି ନାହିଁ । ବିବାହର ଅଳ୍ପ ଦିନରେ ଘରକୁ ଆସିବ । ତୁମ ଜାତକ ନେଇ ତ ମେଳକ କରିଛି, ସବୁ ବିଷୟ ଠିକ୍ । ଗରିବ କିନା, କିଛି ଟଙ୍କା ଦେଲେ ଦଶ ଦିନ ମଧରେ ବିବାହ । ତୁମେ ତ ନିଜେ ଜ୍ୟୋତିଷ, ଥରେ ପରୀକ୍ଷା କରି ନିଅ ।

ବୁଢ଼ା ତ ବୋଧହୁଏ ନିଜର ତାଙ୍କ ନୂଆ ବହୂର ଜାତକ ମେଳନ କରି ବସିଲେ । କିଛିକ୍ଷଣ ପରେ କହିଲେ, 'ହଇହୋ ସତେ । ଏ ବିବାହରେ ଆମ ଦୁହିଁଙ୍କର ପୁତ୍ର ଲାଭ ଅଛି । ପାତ୍ରୀର ବି ବୈଧବ୍ୟ ଯୋଗ ନାହିଁ । ଭଲ କଥା ତେବେ

ବିବାହର ଯୋଗାଡ଼ କର । ଶୁଣ ଭାଇ ତେବେ ଗୋପନରେ ସବୁ ଚାଲୁ । ଦିନେ ଅହଲ୍ୟାକୁ ପଛେ କହିବ । ମୁଁ ଯାଇ ଏକାକୀ ବିବାହ ହୋଇଆସିବି । ଧୂମଧାମରେ ଦରକାର ନାହିଁ । ଅସଲ କଥା ଟଙ୍କା କେତେ ?

ଯଦୁ ମିଶ୍ର ଦୁଇଶତ ଟଙ୍କାରୁ କମ ହେଲେ କନ୍ୟା ସମ୍ପ୍ରଦାନ କରିପାରିବ ନାହିଁ । ମୁଁ ଅନେକ ହଲାଝୁଲା କରି ଦୁଇ ଶହରେ ତୁଟାଇଛି । ଏ ସୁଯୋଗ ଛାଡ଼ିବାର ନୁହେଁ । ତୁମର ବା ଟଙ୍କାର କି ଅଭାବ ? ପୁଅଟିଏ ପାଇଲେ ଏ ଟଙ୍କା ଲକ୍ଷ ଗୁଣରେ ପରିଶୋଧ ହେବ । ଭାବୁଛ କ'ଣ, ବାକ୍ସ କାଢ଼ି ଦିଅ, ହେଳା କରନା, ହେଳାରେ ଭେଳା ବୁଡ଼ିବଟି ।

ବିନା ବାକ୍ୟବ୍ୟୟରେ ବୁଢ଼ା ତ ଟଙ୍କା ଗଣିବାକୁ ଲାଗିଲେ । ଟଙ୍କା ଗଣାର ଝଣ ଝଣ ଶବ୍ଦ ଶୁଣି ମୁଁ ଅବାକ୍ । ଆନନ୍ଦ ଟଙ୍କା ଧରି ପ୍ରସ୍ଥାନ କଲେ । ଚାରି ଛଅ ଦିନ ପରେ ଆନନ୍ଦ ଶତପଥୀ ପୁଣି ଆସି ମୋତେ ଡାକିଲେ ଓ ପ୍ରବୋଧ ଦେଇ ବିବାହ କଥା କହିଲେ । ମୁଁ ଅମ୍ଳାନ ବଦନରେ ସ୍ୱୀକାର କଲି । ସ୍ୱୀକାର ନ କରନ୍ତି ବା କାହିଁକି ? ଅଜାର ବିବାହ ନିମନ୍ତେ ନାତୁଣୀର ମତ ନେବାର ଦରକାର ନାହିଁ ।

ଦେଖୁଁ ଦେଖୁଁ ବିବାହ ଦିନ ନିକଟ ହେଲା । ମୁଁ ଖୁବ୍ ଉତ୍ସାହରେ ବିବାହର ଯୋଗାଡ଼ରେ ଲାଗିଲି । ବୁଢ଼ା ଗୋପନରେ ବିବାହ ହେବେ କ'ଣ— ଖୁବ୍ ଧୂମ୍‌ଧାମ୍ ସହିତ ପାଗ ମକୁଟ ବାନ୍ଧ ବାଦ୍ୟ ବଜାଇ ବିବାହ ହୋଇ ଘରକୁ ଏହି ଘରଣୀକୁ ଆଣିଲେ । ବିଧାତାର ଅଦ୍ଭୁତ ବିଚାର, ମୁଁ ନାତୁଣୀ ହୋଇ ଅଜା ଆଈଙ୍କ ବିବାହ ସାମଗ୍ରୀର ଯୋଗାଡ଼ କଲି ।

ଚାରି ଛଅ ମାସ ଚାଲିଗଲା । ଆଈ ଘରଯୋଗ୍ୟା ହୋଇଥିବାର ହଳଦିଆ ପତ୍ର ଆସିଲା । ସେତେବେଳେ ମୁଁ ବୁଢ଼ାଙ୍କର ଜ୍ୱର ଓ କାଶ ଚିକିତ୍ସାରେ ବ୍ୟସ୍ତ ଥାଏଁ । ପତ୍ର ନେଇ ପଢ଼ି ଦେଲି । ବୁଢ଼ା କହିଲେ ମୁଁ ଭଲ ହୁଏଁ ତ । ମୁଁ କହିଲି ଶୀଘ୍ର ନେଇ ଆସିଲେ ଭଲ, ତୁମର ଉପକାର ହେବ ଓ ମୋତେ ସାହାଯ୍ୟ ମିଳିବ । କିଛିଦିନ ପରେ ଆନନ୍ଦ ଆସି ଉପସ୍ଥିତ । କହିଲେ କିଛି ଚିନ୍ତା କର ନାହିଁ, ଶୀଘ୍ର ନେଇଆସ ନବବଧୂ, ଆସିଲେ ସବୁ ଦୁଃଖ ଚିନ୍ତା ଦୂର ହେବ ।

ଚମ୍ପାବତୀ ଆସିଲେ, ଶୁଭଲଗ୍ନରେ ଦୂର୍ବାକ୍ଷତ ବଢ଼ିଲା । କିନ୍ତୁ ସେତେବେଳେ ମଧ୍ୟ ବୁଢ଼ାଙ୍କ ଦିହ ସମ୍ପୂର୍ଣ୍ଣ ଭଲ ହୋଇ ନ ଥାଏ । ଦେଖୁଁ ଦେଖୁଁ ଅଳ୍ପଦିନ ପରେ ବୁଢ଼ା ସେହି ରୋଗରୁ ଓ ସଂସାରରୁ ବନ୍ଧନ ମୁକ୍ତି ପାଇଲେ । ସଙ୍ଗେ ସଙ୍ଗେ ଚମ୍ପାବତୀ ଅଳଙ୍କାର ଓ ସଧବାର ଆଭରଣତକ ବିସର୍ଜନ ଦେଇ ମୋ ଗତିକି ପାଇଲେ । ଶୁଣିଲ ଆମ ଆଈ ନାତୁଣୀଙ୍କ କାହାଣୀ ।

ଆମ୍ଭେମାନେ ଆଟୁଘର ମଧ୍ୟରେ ବସି ତିନିଜଣ ଏ ସବୁ କଥା ହେଉଥାଉଁ । ଇତି ମଧ୍ୟରେ ବୃଦ୍ଧା ଦନେଇ ମା' ଆସି ଠିଆହେଲେ । କହିଲେ 'କିଲୋ ଦୁଇ ସଉତୁଣୀ କାହା ସଙ୍ଗେ ଗାଲୁରୁ ଗାଲୁରୁ କଥା ହେଉଛ ?'' ମୋତେ ଦେଖିପାରି କହିଲେ 'ଓହୋ ଚାରି ବର୍ଷ ପରେ ଗାଁକୁ ପାଦ ପଡ଼ିଲା, ଗାଁରେ ପରା ଚିହ୍ନାଜଣା ବନ୍ଧୁ ବାନ୍ଧବ କେହି ନାହାନ୍ତି, କେବଳ ଅହଲ୍ୟା ସୁନ୍ଦରୀ ତୁମର ସବୁ । ଦି'ପହରଟା ଯାକ ଏଠି କଟାଇଦେଲ । ଆମ୍ଭମାନଙ୍କ ଘରକୁ ପାଦ ପଡ଼ିଲା ନାହିଁ । ହଉ ଯାର ମନ ଯାହାକୁ ରସେ । ଆମ୍ଭର ତ ବଳ ବୟସ ଗଲା ପଚ୍ଛାରେ କିଏ । ବୃଦ୍ଧା ଏକ ନିଃଶ୍ୱାସରେ ଏତକ ଗାଇଗଲେ । ମୋତେ କହିବାକୁ ଅବସର ଦେଲେ ନାହିଁ । ମୁଁ ଠିଆ ହୋଇରହିଛି । ମୁଁ କହିଲି ସକାଳ ଓଳିତ ଆସିଲି ଖାଇସାରି ଅହଲ୍ୟା ଘରକୁ ଆଗ ବାହାରି ଆସିଲି । ତୁମ୍ଭେମାନେ ବିଶ୍ରାମ କରୁଥିଲ । ଏବେ କ'ଣ ଯିବି ନାହିଁ କି ? ଆଜି କ'ଣ ଏଠାରୁ ମୁଁ ଫେରିଯାଉଛି ।

ହେଲେ କି ହେଲା— ଚମ୍ପା, ଅହଲ୍ୟାଙ୍କଠାରେ ତ ତମର ବେଶି ଆଦର ନୋହିଲେ ଆଗ ଏଠାକୁ ଆସନ୍ତି, ଦିନ ଦି'ପହରଟା କଟାଇ ଦିଅନ୍ତି ? ଅହଲ୍ୟା ତୋର ବା କି ବିଚାର, ଟିକିଏ ଦେଖା କରିସାରି ସାଇପଡ଼ିଶାର ଲୋକଙ୍କୁ ଦେଖା କରିବାକୁ ପଠାଇ ଦିଅନ୍ତୁ, ନା ଓଳିଟା ଯାକ ଘର ଭିତରେ ବସାଇ ରଖିଛୁ ? ଏହା କହି ବୁଢ଼ୀ ପ୍ରସ୍ଥାନ କଲେ ।

ପୁଣି ଜଣେ ବତିଶ ତେତିଶ ବର୍ଷ ବୟସର ବିଧବା ଧପ ଧପ ହୋଇ ଘରବାଟ ଯାଏ ଚାଲିଆସି, ଚମ୍ପା, ଚମ୍ପାକିଲୋ ବୋଲି ଡାକିଲେ । ମୋତେ ଦେଖି ଜିଭକାମୁଡ଼ି ପକାଇ ଓଢ଼ଣାକୁ ଟିକିଏ କପାଳକୁ ଟାଣିଆଣିଲେ । ଫେରି ପଳାଉଥିଲେ, ଅହଲ୍ୟା ଡାକିଲା, 'ମାଳତୀ ଅପା, ଯାଉଛ କାହିଁକି, ଆସ ଆସ ।' ସେ କହିଲେ ମୁଁ ସିନା ଚମ୍ପା ପାଖକୁ ଆସିଥିଲି । ତୁମେ କାହା ସଙ୍ଗରେ ଘରେ ବସି କଥା ହେଉଛ; ମୁଁ କ'ଣ ଜାଣିଥିଲି ? ଜାଣିଥିଲେ ଆସନ୍ତି କିଆଁ ? ନ ଜାଣି ନ ଶୁଣି ଏପରି ଆସିଲେ ଅପ୍ରସ୍ତୁତ ହେବା କଥା ।

ଅହଲ୍ୟା କହିଲା-ଚମ୍ପା ତ ଏଠି ଅଛି ଆସ ।

ଅଜଣା ଲୋକ ପାଖକୁ ଯିବି, ମୋର କ'ଣ ଲାଜ ମହତ ନାହିଁ ? ଚମ୍ପା ଥିଲେ ଥାଉ ।

ଅହଲ୍ୟା କହିଲା ଚମ୍ପା ଯାଉଛି ରୁହ, କ'ଣ ତାକୁ କହିଯିବ ।

ପୁଣି ସେ କହିଲେ ଚମ୍ପା ତ ଗମ୍ଭାରି ଭିତରେ ପଶିଛି,' ମୋ ପାଖକୁ ଆସିବ କାହିଁକି ? ତା' ମନ ଥିଲେ କ'ଣ ଆସି

ନ ଥାନ୍ତା ? ମୋଠାରେ ତା'ର ଗରଜ କେତେ ? କେହି ନ ଥିଲେ ସିନା ମାଳତୀଅପା, ଆପଣା ପାଇଲେ ପରକୁ ପଚାରେ କିଏ ? ହେଲା ହେଲା ମୁଁ ଯାଉଛି, ତମ ସୁଆଗ ଜାଣିଲି । ଏହା କହି ତର ତର ହୋଇ ମାଳତୀ ଦେବୀ ଆପଣା ଗନ୍ତବ୍ୟ ପଥରେ ଚାଲିଲେ ।

ଅହଲ୍ୟା ମୋତେ ଅନାଇ କହିଲା— ଭାଇ ଦେଖିଲ ତ ? ଏମାନଙ୍କ ପାଦ ଆମ ଦୁଆରେ କ୍ୱଚିତ୍ ପଡ଼େ, ଆଜି ତୁମେ ଆସିଛ କି ନା, ଏକଥା ଜାଣି ଅନୁସନ୍ଧାନରେ ଆସିଛନ୍ତି । କିଏ ଆସିଲା, କାହିଁକି ଆସିଲା, ଯୁବା କି ବୁଢ଼ା ଏସବୁ ଜାଣିବାକୁ ଆଉ କେତେ ଜଣ ଆସିବେ । ତୁମେ ଆଉ ଦୁଇଘଣ୍ଟା ବସ ଦେଖିବ । ଭାଇ ଏତିକି ଦିନ ରାତି ଆମ୍ଭମାନଙ୍କ ଉପରେ ପହରା ଚାଲିଛି । କେତେ କହିବି ପୋଥିଏ ପାଠ । ଆମ୍ବ ଦୁଇଗଛ ଅଛି, ପଣସ ଦୁଇ ଗଛ, ନଡ଼ିଆ ପାଞ୍ଚ ଗଛ ଅଛି । ଫଳ ଫଳିଛି । ଏଗୁଡ଼ିକ ଚୋର ଖାଇବେ, ଆମେ କ'ଣ ଦେଖିବୁ ନାହିଁ ? ଦିନେ ସନ୍ଧ୍ୟାରେ ଜଣେ କିଏ କଣ ନେବାକୁ ଆସିଥିବ ସିନା, ଆମକୁ ଜଣା ନାହିଁ, କିଏ ଜଣେ ଡାକ ଦେଲା— ଦେଖ ହେ ଦେଖ ହେ କିଏ ଜଣେ ଧୋବଧାଉଳିଆ ହୋଇ ଝପଟୁଛି । ଏହାଶୁଣି ଚମ୍ପା ବାହାରିଲା, ତାକୁ ଦେଖି ଆମ ପଡ଼ିଶା ଘରୁ ବାହାରି ଜଣେ କହୁଛି— ଚମ୍ପା ତ ବାଡ଼ିରେ ଠିଆ ପଳାଇଲା କିଏ ? ଆଉ ଦିନ କେତେ ଟାପି ଟପା । ସହାନୁଭୂତି ଦେଖାଇବାକୁ ଉପଦେଶ ଦେବାକୁ ଜଣକେତେ ଆସିଲେ । କିଏ ଜଣେ କହିଲା ଫଳ ଚୋର କି କି ଚୋର, ତାହା ଦଇବ ଘରକୁ ଜଣା । କିଏ ଜଣେ କହିଲା— ଆମ୍ବ ପଣସ ଚୋରି କରିବାକୁ କିଏ ଧୋବ ଲୁଗା ପିନ୍ଧି ଆସେ, ଇତ୍ୟାଦି । ଗ୍ରାମରେ ଏତେ ବୃଦ୍ଧ ବୃଦ୍ଧା ଅଛନ୍ତି, କେହି ଯେ ଆସି କେବେ ଦୁଇପଦ ଉପଦେଶ ଦେବେ, କିଛି ଶିକ୍ଷା ଦେବେ ତାହା ନୁହେଁ । କେବଳ ଆମର କିପରି ନିନ୍ଦା ହୁଅନ୍ତା, କିଏ ଆମକୁ ଅପବାଦ ଦିଅନ୍ତା, ସେହିକଥା ଶୁଣିବାକୁ କାନ ଡେରି ବସିଛନ୍ତି । ଘରେ ଧନସମ୍ପତ୍ତି ଅଛି, ଗାଈ ଚାରି ଛଅଟି ଅଛନ୍ତି । ଏସବୁ ଦେଖିବାକୁ ଲୋକ ଦରକାର, କାହାକୁ ଜଣେ ନିଯୁକ୍ତ କରିବାକୁ ଡର । ନ କଲେ ନ ଚଳେ । ଲୋକଟି ଯୁବା କି ବୃଦ୍ଧା ସେଥିର ସମାଲୋଚନା କରିବେ । ମାଇକିନିଆଟିଏ ରଖିଲେ ତାର ଆଚରଣ ନେଇ ସମାଲୋଚନା । ଆମେ ଦୁହେଁ କିପରି ଅଛୁଁ, କ'ଣ ଖାଉଛୁଁ, କାହା ସଙ୍ଗରେ କଥା ହେଉଁ ଏକଥା ନେଇ ଦିନରାତି ଫୁସର ଫାସର ଚାଲିଛି । ଦିହପଥର କରି ରହିଛୁଁ । ତମସୁକ ପତ୍ର କିଛି ଅଛି, ତହିଁର ହିସାବ କରାଇବାକୁ କୌଣସି ଲୋକକୁ ଡାକିଲେ ତାକୁ କହିବେ କିହେ ଆଜିକାଲି ତ ପରମା ମିଶ୍ରଙ୍କ ଘରେ ତୁମର ଲେଖାପଢ଼ା ବହୁତ ଲାଗିଛି, କାନରେ କଲମ ଖୋସି ହରଦମ ଚାଲିଛ । ଏକଥା ଶୁଣିଲେ କିଏ ବା ଆସିବ ?' ମୁଁ କାହାରି କାହାରି ଠାକୁ ହିସାବ କରାଇବାକୁ ଯାଏଁ, ତେବେ କହନ୍ତି କିଲୋ ଚମ୍ପା ଘରଦ୍ୱାର ଧନସମ୍ପତ୍ତି ତୋର । ଅହଲ୍ୟା କିଏ ? ତୁ ଏସବୁ କିଆଁ ଦେଖୁ ନାହୁଁ ? ଅହଲ୍ୟା ଘର ଘର ବୁଲି ଟଙ୍କା ହିସାବ କରାଉଛି । ଚମ୍ପା କହେ ମୁଁ ଏଠିକି ଆସିବାର ଅଳ୍ପ ଦିନରେ କପାଳ ଫାଟିଲା, ମୋତେ ଚିହ୍ନେ କିଏ ଯେ ମୁଁ କାହା ଦ୍ୱାରକୁ ଯିବି ? କେଉଁ ମୁହଁରେ ଯିବି ? ଅହଲ୍ୟା ଗାଁର ଝିଅ ସବୁଜାଣେ, ସମସ୍ତଙ୍କୁ ଜାଣେ । ମୋର ଧନ କ'ଣ ତାର ଧନ କ'ଣ । ସେ ନ କରିବ ତ କରିବ କିଏ ? ଏହିପରି ନାନାଦି କୁମନ୍ତ୍ରଣା ଚାଲିଛି, ଗାଁରେ ଦୁଇ ଚାରିଟା ରାଣ୍ଡ ଇଜତ ହରାଇ ଦେଇ ଜାତିରୁ ଅନ୍ତର ହୋଇ ରହିଛନ୍ତି; ସେମାନେ ମନେ କରନ୍ତି, ଆମ୍ଭେମାନେ ମଧ୍ୟ ସେହି ଦଶାରେ ପଡ଼ିଲେ ଗୋଟାଏ ପଡ଼ା ହୁଅନ୍ତା ।

ଭାଇ, ଆଉ ଗୋଟାଏ କଥା ଶୁଣ— ଚମ୍ପା ଆଇ ତ ଥରେ ଭାରି ଜ୍ୱର ଓ କାଶ ରୋଗରେ ପଡ଼ିଲେ କରେ କ'ଣ ? ଲୋକେଇ କବିରାଜଙ୍କୁ ଡାକିଲି । ରୋଗ ଟିକିଏ କଠିନ ହୋଇଗଲା । ଅନେକ ଦିନ ଚିକିତ୍ସା କରିବାକୁ ପଡ଼ିଲା । ବିଚାରା ଦୁଇ ବେଳା ଦୁଇ ଥର ଆସି ଦେଖିଯାନ୍ତି । ପ୍ରୟୋଜନ ହେଲେ ତିନି ଚାରି ଥର ମଧ୍ୟ ଆସନ୍ତି । ଲୋକେ କହିଲେ କ'ଣ- କି ହେ କବିରାଜେ ଆଜି କାଲି ତ ଚିକିତ୍ସା ନିମନ୍ତେ ଦିନରାତି ଧପଟ ଲାଗିଛି । ରୋଗ ବି କମୁ ନାହିଁ । ଏ ଧପଟ ରୋଗିଣୀ ଲାଗି ନା ରୋଗୀଣୀର ନାତୁଣୀ ଲାଗି ? ପ୍ରକୃତରେ ଲୋକେଇ କବିରାଜଙ୍କୁ ଆମ ଘରେ ଶୋଇବାକୁ ପଡ଼ିଥିଲା । ଗ୍ରାମର ପ୍ରଧାନ ପଣ୍ଡିତ ଲୋକନାଥଙ୍କୁ କହିଲେ, 'କିହୋ ରାତ୍ରରେ ନ ଶୋଇଲେ ପରା ରୋଗ ଉପଶମ ହେଉ ନାହିଁ- ରୋଗ କ'ଣ ଉନ୍ମାଦ କି ?' ବିଧବା ଯୁବତୀଗୁଡ଼ାଙ୍କ ସଙ୍ଗରେ ଏଡ଼େ ଘନିଷ୍ଠତା କରି ସେଠାରେ ଶୋଇ ବସି ଚିକିତ୍ସା କରିବା ଭଲ ନୁହେଁ— ବିଶେଷତଃ ତୁମ ପରି ଯୁବକ ପକ୍ଷରେ । ଲୋକନାଥ ଏହା ଶୁଣି ଅବାକ । ମୋତେ ଆସି କହିଲେ । ମୁଁ କହିଲି ଯେବେ ଲୋକଙ୍କ କଥାରେ ମାତି, ଯେବେ ଚିକିତ୍ସା ନ କର ରୋଗିଣୀର ପ୍ରାଣଗଲେ ତୁମ ମୁଣ୍ଡରେ । ମୋର ତ ଉପାୟ ନାହିଁ, ତୁମ ଇଚ୍ଛା । ସେ କହିଲେ, ମୁଁ ବ୍ୟବସାୟୀ, ଲୋକଙ୍କ କଥାରେ ବିଚଳିତ ହେଲେ ଚଳିବ କିପରି ? ଯାର ମୁହଁ ଅଛି ସେ କହୁ । ମୁଁ ଚିକିତ୍ସାରେ ତ୍ରୁଟି କରିବି ନାହିଁ । ଚିକିତ୍ସା ଓ ଯତ୍ନ କରି ଏହାଙ୍କୁ ଭଲ କଲେ । କେତେ ଶୁଣିବ ଭାଇ ଆମ ଦୁର୍ଦ୍ଦଶା କଥା ।

ଆମେ ଯୋଡ଼ିଏ ବିଧବା, ବୟସ ସତର, ପନ୍ଦର, ରୂପ ଅଛି ଧନସମ୍ପତ୍ତି ଅଛି । ରକ୍ଷା କରିବାକୁ କେହି ନାହିଁ, ଉପଦେଶ ଦେବାକୁ କେହି ନାହିଁ, ସହାନୁଭୂତି କରିବାକୁ କେହି ନାହିଁ । ସମସ୍ତେ ଅନିଷ୍ଟକୁ ଚାହିଁ ବସିଛନ୍ତି । ନିନ୍ଦା ଅପବାଦ ଶୁଣିବାକୁ କାନ ଡେରି ରହିଛନ୍ତି । ଭ୍ରଷ୍ଟା ହେଲେ କହିବେ ଏହା ହେବାର କଥା । ସହାୟହୀନ ରାଣ୍ଡମାନଙ୍କ ଅବସ୍ଥା ଯାହା ହୁଏ ତାହା ହେଲା । ଯେବେ ଭଲରେ ରହିଲୁଁ, ତେବେ ମଧ କ'ଣ ମନରୁ ସନ୍ଦେହ ଦୂର କରିବେ ? ନାହିଁ । କହିବେ କାହା ମନକଥା କିଏ ଜାଣେ, ଯେତେ ଦିନ ଯାଏ ଧରା ପଡ଼ି ନାହିଁ ଭଲ ଭଲ । ଭଲ ମନ୍ଦ ଜଗନ୍ନାଥଙ୍କୁ ଜଣା । ଧର୍ମ ବୋଇଲେ ଜାଣୁ ଯେ, ସ୍ନାନ କରିବା, ତୁଳସୀ ପୂଜା କରିବା, ଉପବାସ ବ୍ରତ, ଏକାଦଶୀ କରିବା, ଦେବତା ଦର୍ଶନ କରିବା । ଏଥିରେ ନିଜେ ନିଜେ ଜ୍ଞାନ ଉପାର୍ଜନ କରିବୁ, ଆମେ ଗୁରୁ ଆମେ ଶିଷ୍ୟ । ସମାଜ ଆମ ନିମନ୍ତେ କ'ଣ କରୁଛନ୍ତି ? ଆମର ଐହିକ ବା ପାରତ୍ରିକ ଉନ୍ନତିରେ ସାହାଯ୍ୟ କରୁଛନ୍ତି କି ? ସ୍ତ୍ରୀ ବୋଲି ଆମେ ଧୈର୍ଯ୍ୟ ଚରିତ୍ର ରକ୍ଷା କରିପାରିଛୁଁ, ଆମ ପରି ଯୁବାମାନଙ୍କ ଅବସ୍ଥା ବିବେଚ୍ନା କରି ଦେଖ ତ ? ସ୍ତ୍ରୀ ଜନ୍ମ ହେବାଠୁଁ ବଳି ଦୁଃଖ ଆଉ କିଛି ନାହିଁ।

ମୁଁ ଯଦି ନିର୍ବାକ୍ ହୋଇ ବସି ରହନ୍ତି, ଅହଲ୍ୟାର ବାକ୍ୟ ସ୍ରୋତ ଅନର୍ଗଳ ଚାଲିଥାନ୍ତା । ମୁଁ କହିଲି ଏଥର ଯାଏଁ।

—କ'ଣ ଡର ମାଡ଼ିଲା କି ?

—ନା, ଡର ନୁହେଁ ।

—ତେବେ ଏତେ ତର ତର କାହିଁକି ?

—ତୋର କଥା ତ ସରିବ ନାହିଁ । ଅନ୍ୟ ଲୋକଙ୍କୁ ତ ଦେଖିବାକୁ ହେବ । ତାହା ଛଡ଼ା ତ ଏଠାରେ କିଛି ଦିନ ରହିବି । ପ୍ରତିଦିନ ଥରେ ଥରେ ଆସିବି।

ଲୋକ ନିଷେଧକୁ ଏଡ଼ାଇ ପାରିବ ତ ? କିଛି ଖାଇ ଯାଅ ।

ଅଗତ୍ୟା ସ୍ୱୀକାର କଲି । ଅହଲ୍ୟାର ଇଙ୍ଗିତରେ ଆଈ କିଛି ଫଳ ଆଣି ସମ୍ମୁଖରେ ରଖିଦେଲେ । ତାହା ଭୋଜନ କଲି ।

ଚମ୍ପାବତୀଙ୍କର ରୂପରେଖ ଦେଖିଲି । ଉଭୟଙ୍କର ବୟସର ତଫାତ୍ କେବଳ ଦୁଇ ବର୍ଷ । ଉଭୟେ ପୂର୍ଣ୍ଣଯୌବନା । ଉଭୟେ ରୂପବତୀ, କିନ୍ତୁ ଦୁହିଁଙ୍କ ମଧ୍ୟରୁ କିଏ ଅଧିକ ସୁନ୍ଦରୀ ତାହା ତୁଳନା କରିବା ମୋର ସାଧ୍ୟାତୀତ, ତେବେ ଏ ଗ୍ରାମରେ ଏ ଦିହିଙ୍କ ପରି ଆଉ ରୂପବତୀ ଥିଲେ କି ନାହିଁ ସନ୍ଦେହ । ଭୋଜନ କରୁ କରୁ ମନେ ପଡ଼ିଗଲା—

Full many a gem of purest ray serene
The dark unfathomed caves of ocea.. bear
Full many a flower is born to blush unseen
And waste its sweetness on the desert air.

ମୁଖ ଧୋଇ ଘର ଛାଡ଼ିଲା ବେଳେ କେଜାଣି ମୁଖରୁ କିପରି ଗୁଣୁ ଗୁଣୁ ହୋଇ ବାହାରିଲା— ବନର ମାଳତୀ ଫୁଲ ବନେ ଫୁଟି ଝଡ଼ିଲାରେ । ଅହଲ୍ୟା ହଠାତ୍ ଶୁଣିପାରି ପଚାରିଲା— କାନ୍ଦୁଛ ଭାଇ ?

କାନ୍ଦିବାର କଥା, ତେବେ କାନ୍ଦୁ ନାହିଁ । ''ବନର ମାଳତୀ ବନେ ଫୁଟି ଝଡ଼ିଲାରେ'' ଏହି ପଦଟି ମନରେ ପଡ଼ିଗଲା ।

ମାଳତୀ କାହିଁକି, ଚମ୍ପାଫୁଲ ବୋଲି କହ ।

ଅହଲ୍ୟା, ତୋତେ କଥାରେ ଜିତିବା ଅସମ୍ଭବ ଆଗେ ଯେପରି ଥିଲୁ ଆଜି ମଧ ସେହିପରି ।

ସେହି ଅହଲ୍ୟା ମୁଁ, ସେହି ଭାଇ ତୁମେ, ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ କ'ଣ ? ଆଚ୍ଛା ଯାଅ ଯାଅ ବୋଲି ଠୋ ଠୋ ହସିଲା । ମୁଁ ଗୃହତ୍ୟାଗ କଲି ।

× × ×

ଗଲି ସାବିତ୍ରୀ ଘରକୁ । ସାବିତ୍ରୀ ମଧ ଜଣେ ବାଳ ବିଧବା । ଘରେ ଅନ୍ୟ କେହି ନ ଥିଲେ । ସାବିତ୍ରୀ ସମ୍ମୁଖରେ ଦଣ୍ଡାୟମାନ ହେଲେ । ମୁଁ ପ୍ରଣାମ କଲି । କହିଲେ, ''ମୁଁ ପତିତା, ମୋତେ ପ୍ରଣାମ କରୁଛ ?'' କାନ୍ଦିଲେ। ମୁଁ ଅବାକ୍ । ସାବିତ୍ରୀ ପତିତା, ଯେଉଁ ସାବିତ୍ରୀଙ୍କୁ ଯମ ଦେଖି ଥର ଥର, ଯାହାଙ୍କ ସତୀତ୍ୱ ଓ ପାତିବ୍ରତ୍ୟ ହେତୁରୁ ଯମ ମଧ ସ୍ୱାମୀଙ୍କୁ ଯମପୁରରୁ ଫେରାଇ ଦେଲା ସେହି ସତୀ ସାଧ୍ୱୀ ନାମ ଧାରିଣୀ ସାବିତ୍ରୀ ପତିତା, ଅସତୀ ।

ମତେ ଯେ ତୁମେ ଅବାକ କରି ଦେଇ ।

ସତ କଥା କହିବାରେ ଲଜ୍ଜା କ'ଣ ? ଯାହା ହେବାର ତ ହୋଇଛି । ତୁମେ ସଦାଚାରୀ ବ୍ରାହ୍ମଣ କାନ୍ଧରେ ପଇତା ଅଛି, ତୁମେ ମୋତେ ପ୍ରଣାମ କରିବ କାହିଁକି ?

ଆପତ୍ତି ନ ଥିଲେ କହ, ଶୁଣେ । ଏହା କହି ବସିପଡ଼ିଲି । ସାବିତ୍ରୀ ମଧ ନିକଟରେ ବସି ଆପଣାର ପାପ କାହାଣୀ ନିଃସଙ୍କୋଚ୍ ଚିତ୍ତରେ ପ୍ରକାଶ କଲେ ।

ମୋର ଦେଢ଼ଶୁର ଓ ମୋର ସ୍ୱାମୀ ଦୁଇ ଭାଇ ଜାଣ । ଦୁହେଁ ଦୁଇ ବର୍ଷର ବଡ଼ ସାନ ମୁଁ ଏଠାକୁ ଆସିବାର ବର୍ଷକ ପରେ ତୁମର ଦେଖା ନାହିଁ । ତୁମେ ଏଠାରୁ ଯିବାର ଚାରି ପାଞ୍ଚ ମାସ ପରେ ସ୍ୱାମୀଙ୍କର କାଳ ହେଲା । ମୋର ଦେଢ଼ଶୁରଙ୍କର ମଧ ପୁତ୍ର କନ୍ୟା ନାହିଁ। ମୋର ସ୍ୱାମୀଙ୍କ ମୃତ୍ୟୁର କେତେକ ମାସ ପରେ ମୋର ଯାଆଙ୍କର ମୃତ୍ୟୁ ହେଲା । ଘରେ ମୁଁ ରହିଲି ଏକାକିନୀ। ଗୃହର ସମସ୍ତ ଭାର ମୋ ଉପରେ । ଭାଇବୋହୂ ଦେଢ଼ଶୂର ଏକଗୃହରେ ଏକାକୀ ରହିବାର କି ଅସୁବିଧା ତାହା ଅବଶ୍ୟ ତୁମ୍ଭଙ୍କୁ ଜଣାଥିବ। କେତେକ ଦିନ ବଡ଼ ଅସୁବିଧାରେ ଚଳିବାକୁ ହେଲା। ଆମ ଦେଢ଼ଶୂର ପୁଣି ବିବାହର ଯୋଗାଡ଼ କଲେ । ଗୋଟିଏ ଅଳ୍ପବୟସ୍କା ବାଳିକାର ପାଣିଗ୍ରହଣ କଲେ । ସମସ୍ତେ ଜାଣିଲେ ଆମ ଦେଢ଼ଶୂର ବଡ଼ ନିଷ୍ଠାପର। ଗୃହର ଅସୁବିଧା ନିବାରଣ ନିମନ୍ତେ ଶୀଘ୍ର ବିବାହ ହୋଇପଡ଼ିଲେ । କ୍ରମେ କ୍ରମେ ଆମ ଘର ଚଳାଇବାର ଯେ ଅସୁବିଧା ଥିଲା ତାହା ଅଜଣା ଭାବରେ ଘୁଞ୍ଚିଗଲା । ଅତର୍କିତ ଭାବରେ ଦୁହିଁଙ୍କର ଦେଖା ସାକ୍ଷାତ ହୋଇପଡ଼େ । ତାହା ମଧ ଅଭ୍ୟାସ ହୋଇପଡ଼ିଲା, ଆଉ ତେବେ ବାରଣ ହେଲା ନାହିଁ । କିଛି କାଳ ପରେ ଗ୍ରାମର ସ୍ତ୍ରୀ ମହଲରେ ମୋର କଳଙ୍କ ରଟିଗଲା । କଥାଟା ଉଡ଼ାଇ ଦେବାର ଉପାୟ ନ ଥିଲା । ମୁଁ ସେହିଦିନ ଠାରୁ ପତିତା । ମୋର ଦେଢ଼ଶୁର ଅଳ୍ପଦିନ ହେଲା ତାଙ୍କର ନୂଆ ଭାର୍ଯ୍ୟାକୁ ଆଣି ସୁଖରେ ଘର କରୁଛନ୍ତି ।

କୁନ୍ଦଲତାକୁ ଜାଣ ତ, ସେ ମଧ ମୋ ପରି ନଷ୍ଟା ଓ ପତିତା । ମାତ୍ର ତା'ର ଗୁଣଧର ଦେବର ସମାଜରେ ସାନପୁଅ ହୋଇ ଛାତି ଫୁଲାଇ ବୁଲୁଛି, କୁନ୍ଦ ମୋରି ପରି ବଡ଼ ଦୁଃଖରେ ବାସ କରୁଛି।

ଆଉ ଜଣକୁ ତୁମେ ଜାଣ ନାହିଁ । ସେ ଏହି ଗ୍ରାମର ଝିଅ। ବିଧବା ହୋଇ ଭାଇ ଘରେ ଥିଲା । ଗ୍ରାମର ଜଣେ ବିଶିଷ୍ଟ ଲୋକ ସଂସ୍ପର୍ଶରେ ସେ ଭ୍ରଷ୍ଟାହେଲା । ଗ୍ରାମରେ ପଞ୍ଚ କରାଇଲେ, ଶିକ୍ଷାରେ ପଡ଼ି ପଞ୍ଚ ସମକ୍ଷରେ ଗୋଟିଏ ଅଳ୍ପବୟସ୍କ ଯୁବକର ନାମ ପ୍ରକାଶ କରିଦେଲା । ଯୁବକ ନାମରେ ଅଦାଲତରେ ନାଲିସ କଲା । ପ୍ରମାଣ କରାଇ ପାରିଲା ନାହିଁ। ଅଦାଲତ ମଧ ପିଲାକୁ ଦେଖି ବିଶ୍ୱାସ କଲେ ନାହିଁ । ଲଳିତା ଦଣ୍ଡ ପାଇଲା । ଏହି ଗ୍ରାମରେ ଆମେ ତିନିଗୋଟି ପ୍ରାୟ ତିନି ବର୍ଷ ମଧରେ ନଷ୍ଟ ହୋଇଛୁଁ । ଦିନ କାଳ ତ ଅଛି, ଭଗବାନ୍ ଆମ୍ଭମାନଙ୍କ କପାଳରେ ଦୁର୍ଗତି ଲେଖିଛନ୍ତି, କିଏ କହିପାରିବ ?

ଯେଉଁମାନଙ୍କ ହେତୁରୁ ତୁମ୍ଭମାନଙ୍କର ଏ ଦୁର୍ଗତି ସେମାନଙ୍କର କ'ଣ ହେଲା ?

କିଛି ନାହିଁ ?

କ'ଣ ?

ଏହାପରା ତୁମେ ଜାଣ ନାହିଁ । ଗୋତ୍ରୀୟ ବ୍ରାହ୍ମଣ ପୁତ୍ର ହୋଇ ଏହା ତୁମ୍ଭଙ୍କୁ ଜଣା ନାହିଁ, ବଡ଼ ଆଶ୍ଚର୍ଯ୍ୟ କଥା । ତୁମେ ବା ଜାଣିବ କିପରି ଇଂରାଜୀ ପାଠ ପଢୁଛ ପରା ! ସ୍ତ୍ରୀମାନଙ୍କର ସବୁ ଦୋଷ । ପୁରୁଷ ଏଣୁ ନିଷ୍କଳଙ୍କ । ତାଙ୍କଠାରେ କଳଙ୍କ ବା ଲାଗିବ କିପରି ? ସେମାନଙ୍କର ତ ଗର୍ଭୋଦୟ ହୁଏ ନାହିଁ, ଏପରି ପାପ ନିମନ୍ତେ ଲୋକେ ଜାଣିପାରିବା ଭଳି କୌଣସି ଚିହ୍ନ ରହେ ନାହିଁ । ଏଣୁ ଶାସ୍ତ୍ର ଅନୁସାରେ ସେମାନେ ପାପକୁ ଧୋଇପାରନ୍ତି । ସ୍ତ୍ରୀଙ୍କର ସେ ଅଧିକାର ବା କ୍ଷମତା ନାହିଁ। ଜାଣିଲି ଜିଇଁଥିଲେ କେତେ କଥା ଦେଖିବ, ଶୁଣିବ, ଜାଣିବ । ଏତିକି କ'ଣ ?

ସାବିତ୍ରୀ ମୋ'ଠାରୁ ବୟସରେ ବଡ଼ । ସ୍ତ୍ରୀ ହେଲେ କ'ଣ ହେବ, ସେ ଏହି କଥାଗୁଡ଼ିକ ଯେପରି ଭାବରେ ବର୍ଣ୍ଣନା କରିଗଲେ, ମୁଁ ପୁରୁଷ ହୋଇ ମଧ, ସେପରି ଭାବରେ କହି ପାରନ୍ତି କି ନାହିଁ ସନ୍ଦେହ । ସବୁ ଶୁଣି ଗୋଟିଏ ଦୀର୍ଘ ନିଶ୍ୱାସ ପକାଇଲି, ଉଠିବାକୁ ମନକଲି । ସାବିତ୍ରୀ କହିଲେ 'ମୁଁ ପାପିନୀ-ତୁମକୁ କିଛି ଯାଚିବାର ଅଧିକାର ନାହିଁ। ମୋର ଜଳରେ ତୁମେ ଗୋଡ଼ ଧୋଇଲେ ମଧ ଅପବିତ୍ର ହେବ, ଖାଇବା ପିଇବା ତ ଦୂରର କଥା । ଯାଅ ଯାଅ। ବଡ଼ ଦୟା ଯେ, ମୋତେ ଦେଖିବାକୁ ଆସିଲ ।

ମୁଁ ଉତ୍ତର ଦେଇ ପାରିଲି ନାହିଁ, ଚାଲିଆସିଲି ।

ସନ୍ଧ୍ୟାବେଳେ ଗ୍ରାମର ଗଣ୍ୟମାନ୍ୟ ଶାସ୍ତ୍ରଜ୍ଞ ପଣ୍ଡିତ ବୃଦ୍ଧ ଲକ୍ଷଣ ମିଶ୍ରଙ୍କ ଘରକୁ ଗଲି । ବଉଳଗଛ ମୂଳରେ ଦୁଇଖଣ୍ଡ ସପ ପଡ଼ିଛି । ପଣ୍ଡିତେ ଓ ଆଉ ଦୁଇ ତିନି ଜଣ ବସିଅଛନ୍ତି । ମୁଁ ଯିବାରୁ ନାନା କଥାର ଆଲୋଚନା ଚାଲିଲା । ପ୍ରସଙ୍ଗକ୍ରମେ ମୁଁ ବିଧବାମାନଙ୍କ କଥା ଉତ୍‌ଥାପନ କଲି । ମୁଁ କହିଲି ମୁଁ ଆଜି ପରମାନନ୍ଦ ମିଶ୍ରଙ୍କ ଘରକୁ ଯାଇ ତାଙ୍କ ପତ୍ନୀ ଓ ନାତୁଣୀର ଦୁରାବସ୍ଥା ଦେଖିଲି, ପୁଣି ସାବିତ୍ରୀ ଘରକୁ ଯାଇ ତା ଠାରୁ ତାର ଓ ଅନ୍ୟ ଦୁଇ ଜଣଙ୍କର ଅବସ୍ଥା ଶୁଣିଲି । ଏ ସବୁ ବଡ଼ ଦୁଃଖମୟ ଘଟଣା । ଏଥିପ୍ରତି ଆପଣମାନଙ୍କର ଉପାୟ ଉଦ୍ଭାବନ କରିବା ଉଚିତ ନୁହେଁ କି ?

—କ'ଣ ? ନୂତନ ଶିକ୍ଷା କରି ଆସି ବିଧବା ଉଦ୍ଧାର ବ୍ରତରେ ମାତିଛି କି ?

—ନା, ତାହା ନୁହେଁ, ଆପଣମାନଙ୍କ ପରି ବିଜ୍ଞ ବ୍ୟକ୍ତିମାନଙ୍କର ସହାନୁଭୂତି, ସାହାଯ୍ୟ ଓ ଉପଦେଶ ଭିନ୍ନ ସେମାନଙ୍କର ତ ସଦଗତିର ଉପାୟ ନାହିଁ । ଶ୍ରେୟସ୍କର ପନ୍ଥା ନାହିଁ ।

ଶ୍ରେୟସ୍କର ପନ୍ଥା ମରଣ । ପୂର୍ବ ଜନ୍ମର ଅର୍ଜିତ ଓ ସଞ୍ଚିତ ପାପର ପରିଣାମ ବୈଧବ୍ୟ । ଶାସ୍ତ୍ର ବିଧାନାନୁସାରେ ସଂଯମ ନ ହେଲେ ପୁଣି ଦୁର୍ଗତି ଓ ପାପ ସଞ୍ଚୟ ହୁଏ । ଦୁଷ୍ଟ ହେଲେ କିଏ ରକ୍ଷା କରିପାରିବ । ଏଣୁ ମରଣ ହିଁ ଶ୍ରେୟସ୍କର।

ମରଣ ଯେବେ ଈଶ୍ୱରକୃତ ବ୍ୟବସ୍ଥା ହୋଇଥାନ୍ତା, ତେବେ ଚିନ୍ତା କ'ଣ ଥିଲା ? ସ୍ୱାମୀର ମୃତ୍ୟୁ ସଙ୍ଗେ ସଙ୍ଗେ ତ ସ୍ତ୍ରୀମାନେ ମଧ ମରୁଥାନ୍ତେ ।

ବିଧି ବ୍ୟବସ୍ଥା ନ ଥିଲା କ'ଣ ? ଦେଶର କୁଳାଙ୍ଗାରମାନଙ୍କ ପ୍ରାର୍ଥନା କ୍ରମେ ଏହା ଉଠିଯାଇଛି । ଏତାଦୃଶ ରାଣ୍ଡମାନଙ୍କ ନିମନ୍ତେ ଏହା ଉତ୍କୃଷ୍ଟ ଉପାୟ ଥିଲା । ଭ୍ରୂଣ ହତ୍ୟା ଦ୍ୱାରା ସମାଜ ଭ୍ରଷ୍ଟ କଲେଣି ।

ଆପଣ କ'ଣ ସତୀଦାହକୁ ବିଧି ବ୍ୟବସ୍ଥା କହୁଛନ୍ତି ? ଏକଥା ଦ୍ୱାରା ଆପଣଙ୍କର କଠୋର ହୃଦୟ ଓ ନିଷ୍ଠୁର ପ୍ରକୃତିର ପରିଚୟ ଦେଉଛନ୍ତି । ବିଜ୍ଞ ପଣ୍ଡିତ ଓ ଜ୍ଞାନୀବୋଲି ଯେଉଁମାନେ ଲୋକରେ ପରିଚିତ ସେମାନଙ୍କ ହୃଦୟ ଏଡ଼େ ଦୟାଶୂନ୍ୟ ଓ କ୍ରୂର ହୋଇପାରେ, ଆଜିଯାଏ ମୋର ଧାରଣା ନ ଥିଲା ।

ବୃଦ୍ଧ ପଣ୍ଡିତ ମୋର ସମ୍ମାନାସ୍ପଦ ବ୍ୟକ୍ତି, ସନ୍ଦେହ ନାହିଁ; ମାତ୍ର ତାଙ୍କର ବଚନ ଭଙ୍ଗୀ, କର୍କଶ ସ୍ୱର ଓ କ୍ରୂର ବାକ୍ୟ ମୋତେ ବିଚଳିତ କରିଦେଲା । ପ୍ରଣାମ କରି ସ୍ଥାନ ତ୍ୟାଗ କଲି । ଏହା ମୋର ଅବିମୃଶ୍ୟକାରିତା ବୋଲି ବିବେଚିତ ହୋଇପାରେ। ମାତ୍ର ମୁଁ ଏତାଦୃଶ ବାକ୍ୟାଳାପରେ ଅଭ୍ୟସ୍ତ ନୁହେଁ। ସମାଜର ନେତାମାନଙ୍କର ଏ ପ୍ରକାର କର୍କଶ ଓ କ୍ରୂର ସ୍ୱଭାବ ଥାଏ ବୋଲି ମୋର ଧାରଣା ନ ଥିଲା । ଏଣୁ ଟିକିଏ ଔଦ୍ଧତ୍ୟର ପରିଚୟ ଦେଇଥିଲି ।

ଘରକୁ ଫେରିଆସି ଭୋଜନାନ୍ତେ ସେହି ଚିନ୍ତା । ମୁଁ ବ୍ରାହ୍ମଣ ସନ୍ତାନ, ବିଦ୍ୟା ଶିକ୍ଷାରେ ଜୀବନର ପ୍ରାୟ ଏକ ତୃତୀୟାଂଶକାଳ ଅତିବାହିତ କରିସାରିଲି । ବୈଦେଶିକ ଇତିହାସ ମନୋବିଜ୍ଞାନରେ ଖୁବ୍ ପାଣ୍ଡିତ୍ୟ ଲାଭ କଲି, ମାତ୍ର ଘରେ, ସମାଜର ଜାତିର କିଛିହିଁ ଜାଣିଲି ନାହିଁ । ଆମ ଜାତୀର ସ୍ତ୍ରୀ ପୁରୁଷଙ୍କର ସମ୍ମାନରେ ମର୍ଯ୍ୟାଦାରେ ଏତେ ପାର୍ଥକ୍ୟ ଅଛି, ତାହା ଦିନେ ହେଲେ ଚିନ୍ତା କଲି ନାହିଁ, ହୃଦୟଙ୍ଗମ କରିପାରିଲି ନାହିଁ। ସମାଜ ନେତାଙ୍କର ନିର୍ମମ ଓ କ୍ରୂର ମନୋବୃତ୍ତି ଏବଂ ନିର୍ଯାତନା ପ୍ରାପ୍ତ ବିଧବାମାନଙ୍କର ହା-ହୁତାଶ ହୃଦଗତ ଭାବ ମଧରେ ସାମଞ୍ଜସ୍ୟ କାହିଁ ? ତାହା ଖୋଜି ପାଇବା ମୋର ସାଧାତୀତ।

ଭାବିଲି ପାଶ୍ଚାତ୍ୟ ଶିକ୍ଷିତ ମୁଁ । ଏକାକୀ ମୋ ନିଜ ଜାତିର ନିରାଶ୍ରୟା ବିଧବାମାନଙ୍କର କରୁଣ କ୍ରନ୍ଦନ ପ୍ରତି ବଧୀର ନା ସମସ୍ତେ ? ସମସ୍ତେ । ସ୍ତ୍ରୀର ଯାତନା, ସ୍ତ୍ରୀର ଅପମାନ, ସ୍ତ୍ରୀର ଲାଞ୍ଛନା, ପୁରୁଷର ଯାତନା, ଅପମାନ ନୁହେଁ, ଲାଞ୍ଛନା ନୁହେଁ । ସ୍ତ୍ରୀର ଦୁଃଖ ଦୁର୍ଦ୍ଦଶା ପ୍ରତି ପୁରୁଷ ଅମନୋପଯୋଗୀ। ହା ନବ୍ୟଶିକ୍ଷାପ୍ରାପ୍ତ ଯୁବକଦଳ । ଆମ୍ଭେମାନେ ସାମାଜିକ ଆବର୍ଜନା ସମ୍ବନ୍ଧରେ ଏଡ଼େ ଅଜ୍ଞ । ଆମ୍ଭମାନଙ୍କ ହୃଦୟ ମଧ ଗୋପାଳପୁର ବିଜ୍ଞ ପଣ୍ଡିତଙ୍କ ହୃଦୟ ପରି କ୍ରୂର ଓ କଠିନ ନୋହିଲେ ବିଧବାମାନଙ୍କର ଉଦ୍ଧାର କଳ୍ପେ ଆଳସ୍ୟ କାହିଁକି ? ସେମାନଙ୍କ ଉତ୍ତପ୍ତ ନିଶ୍ୱାସ ଆମ୍ଭମାନଙ୍କୁ ଜାଗ୍ରତ କରୁ ନାହିଁ କାହିଁକି ? ଯୁବକମାନଙ୍କ ହସ୍ତରେ ଏମାନଙ୍କ ଉଦ୍ଧାର । ଆମ ପୂର୍ବ ପୁରୁଷଙ୍କ ପରି ପ୍ରତ୍ୟେକ ବ୍ରାହ୍ମଣ ସନ୍ତାନ ପାଠଦଶାରେ ବ୍ରହ୍ମଚର୍ଯ୍ୟ କରିବାକୁ ବସିଲେ ଏବଂ ବୟସ ପଚିଶ ନ ହେବା ଯାଏ ବିବାହ ନୋହିବାକୁ ପ୍ରତିଜ୍ଞା କଲେ ଏବଂ ଷୋଳବର୍ଷରୁ ନ୍ୟୂନ ବୟସ୍କା କନ୍ୟା ବିବାହ ନ କରିବାକୁ ଦୃଢ଼ ପ୍ରତିଜ୍ଞା ହେଲେ ଭବିଷ୍ୟତରେ ବାଳ ବିଧବା ହେବେ କିପରି ? ଏ ତ ଯୁବକମାନଙ୍କର ହାତର କଥା— ସମାଜ ନେତାଙ୍କ ମତର ପ୍ରୟୋଜନ କ'ଣ ? ବ୍ୟବସ୍ଥାର ପ୍ରୟୋଜନ କ'ଣ ? ଆଇନର ବା ପ୍ରୟୋଜନ କ'ଣ ? ବାଳ ବିଧବା କେତେଟାଙ୍କୁ ଉଦ୍ଧାର କରିବାକୁ ଦେଶରେ କ'ଣ ସାହସିକ ଯୁବକ ନାହାନ୍ତି ? ଯୁବକଦଳ ଇଚ୍ଛାକଲେ ଏକଦିନରେ ଏହା ସମ୍ଭବ ହୋଇପାରେ । ହାୟ, ଆମ ଦେଶର ଯୁବକଙ୍କ ହୃଦୟରେ ଏ ନ୍ୟାୟ ଓ ଧର୍ମବଳ ଅଛି କି ? ସେ ଅଜଣା ଅତୀତର ବୀର୍ଯ୍ୟ ସାହସ କାହିଁ ?'' ଯେବେ ଥାନ୍ତା, ହା-ହୁତାଶ କାହିଁକି ? ଏ କାର୍ପଣ୍ୟ କାହିଁକି ? ଏହିପରି ଚିନ୍ତା କରୁ କରୁ ଦୁଃଖରେ ଅବସନ୍ନ ହୋଇ ଶୋଇପଡ଼ିଲି ।

•

## ପତିତ ପାବନ ଡୋରି

ପୁରୀ ସହର । ପଞ୍ଚୁଦୋଳ ଶେଷ ହେଲା । ଚୈତ୍ରମାସ-ଗ୍ରୀଷ୍ମର ମୃଦୁ ନିଃଶ୍ୱାସ ବୋହିଲାଣି । ମଧୁପଣ୍ଡାଙ୍କ ଉଚପକ୍କା ପିଣ୍ଡାରେ ଦୁଇଜଣ ଯାତ୍ରୀ ବୁନି ହୋଇ ବସି ଆପଣା ଆପଣା ଲୁଗାକାନିରେ ବିଞ୍ଚୁ ହେଉଛନ୍ତି । ବାଲି, ସାହି, ଘର ଛେକ ପଡ଼ିଛି, ଏଣୁ ସମୁଦ୍ର ହାଉଆ ଆସୁ ନାହିଁ, ଏ ଦୁହେଁ

ପୁରୀବାସୀ ନୁହନ୍ତି, ବିଦେଶାଗତ ଯାତ୍ରୀ । ବୋଧହୁଏ ତୀର୍ଥସ୍ଥାନ ବୁଲି ବୁଲି ଅସ୍ତବ୍ୟସ୍ତ ଘର୍ମାକ୍ତ ଶରୀର । ଦିନ ଦୁଇ ପ୍ରହର । ପେଟରେ ଅନ୍ନ ନାହିଁ, ମହାପ୍ରସାଦ ପ୍ରତ୍ୟାଶାରେ ବସି ରହିଛନ୍ତି ।

ଉଭୟେ ଯଜ୍ଞୋପବୀତଧାରୀ । ଜଣକ କପାଳରେ ଓ ନାସିକାରେ ଶୁକ୍ଳ ଚନ୍ଦନଚିତା । ମୁଣ୍ଡର ଚୂଟି ଓ କେଶ ଏବଂ କପୋଳର ଚିତା ଉଭୟଙ୍କୁ ପୃଥକ୍ ଜାତି ବୋଲି ପରିଚୟ କରାଇ ଦେଉଥିଲା । ଜଣେ ବ୍ରାହ୍ମଣ, ଜଣେ କ୍ଷତ୍ରିୟ ।

କିଛିକ୍ଷଣ ଚାଲିଗଲା । ପଣ୍ଡାଙ୍କର ଜଣେ ଲୋକ ମହାପ୍ରସାଦ ଧରି ଉପସ୍ଥିତ ହେଲା । ଗଦେଇବାବୁ ପାବଚ୍ଛ ନିକଟରେ ବସିଥିଲେ । ମୁଣ୍ଡରୁ ମହାପ୍ରସାଦ ବେତା ଓହ୍ଲାଇ ଦେଲେ ଏବଂ ଗୋଟି ଗୋଟିକରି କୁଡୁଆତକ ତଳେ ରଖିବାକୁ ଲାଗିଲେ । ଏହା ଦେଖି ମିଛୁ ମିଶ୍ରେ ଅଗ୍ନିଶର୍ମା, ଉଠିପଡ଼ି ଅଣ୍ଟାରେ ହାତ ଦେଇ ଗଦେଇବାବୁଙ୍କ ନିକଟକୁ ଆସି କହିଲେ, ''ଏ ତୁମର କି ଆଚରଣ ? ତୁମେ ମହାପ୍ରସାଦ ଗୁଡ଼ାକ ଛୁଇଁଲ । ତୁମେ ଛୁଇଁଲା ଭାତ ମୁଁ ଖାଇବି ? ମଧାହ୍ନ କାଳରେ ଭୋକୀ ବ୍ରାହ୍ମଣକୁ ଉପବାସୀ ରଖିବା ବଡ଼ ଛାଁନିପଣ । ଛି ! ଛି ! ଛି ! ବାବୁ କହିଲେ- ମହାପ୍ରସାଦ, ଏଥିରେ ଦୋଷ କ'ଣ ? ଏଠାରେ ଗୋପାଳ, ଭଣ୍ଡାରୀ, ଛୁଆଁ ଅଛୁଆଁ ସମସ୍ତେ ମହାପ୍ରସାଦ ଛୁଇଁଥାନ୍ତି । ମହାପ୍ରସାଦରେ କୌଣସି ଦୋଷ ନାହିଁ । ମୁଁ ଏଠାରେ ସାତ ଆଠ ଦିନ ରହି ସବୁ ଦେଖୁଛି । ମୁଁ ଛୁଇଁବାକୁ ମହାପ୍ରସାଦ ମାରା ହେଲା ?

ମିଛୁ ମିଶ୍ରଙ୍କର କ୍ରୋଧ ଦ୍ୱିଗୁଣିତ ହେଲା । ''ଲଜ୍ଜା ନାହିଁ । ମୁଁ ଶ୍ରୋତୀୟ ବ୍ରାହ୍ମଣ, ତୁମ ଛୁଆଁ ପଦାର୍ଥ ଖାଇବି ? କି ଦୁର୍ଭାଗ୍ୟ, ଏଠାକୁ ଆସିପରା ତୁମେ ଜାତି ଶ୍ରେଷ୍ଠ ହେଲ । ତୁମେ ନାମକୁ କ୍ଷତ୍ରିୟ, ତୁମେ ବର୍ଣ୍ଣଶଙ୍କର, ତୁମେ ଅସ୍ପୃଶ୍ୟ । ତୁମ ସଙ୍ଗରେ ଆସିଲିବୋଲି ପରା ଜାତି ଧର୍ମ ବୁଡ଼ାଇ ଘରକୁ ଫେରିବି ?''

ଏତାଦୃଶ କଟୂକ୍ତି ଶୁଣି କେହି ହେଲେ ସହ୍ୟ କରିପାରିବା ଅସମ୍ଭବ । ତେବେ ଗଦେଇବାବୁ ଧୀର ପ୍ରକୃତିର ଲୋକ, ବୁଝି ବିଚାରି କାର୍ଯ୍ୟ କରନ୍ତି । ଭାବିଲେ, ତୀର୍ଥସ୍ଥଳ, ବ୍ରାହ୍ମଣ, କେଜାଣିଅବା ମହାପ୍ରସାଦ ହାତ ଦେଇ କାଢ଼ିବା ତାଙ୍କ ପକ୍ଷରେ ଉଚିତ ନ ଥିଲା । କହିଲେ, ''ହେଉ, ତୁମକୁ ସାହାଯ୍ୟ ଦେଇ ଏଠାକୁ ଆଣିବାର ଫଳ ପାଇଲି । ଆଜିଠାରୁ ତୁମ ଆମ ସଙ୍ଗ ତ୍ୟାଗହେଲା । ଭଜନା, ମାଲମତା ଧରି ଶୀଘ୍ର ଯିବା ।''

ଭଜନା ଗଦେଇବାବୁଙ୍କର ଗଉଡ଼ ଚାକର ଓ ବିଶ୍ୱାସୀ ଲୋକ। ଭଜନା କହିଲା, ''ବାବୁ; ମହାପ୍ରସାଦ ତ ବ୍ରାହ୍ମଣର ନୁହେଁ, ତୁମ ପଇସାରେ କିଣା । ବ୍ରାହ୍ମଣ ନ ଖାଇଲେ ନ ଖାଉ, ତୁମେ ଥୋଡ଼ା ପାଇ ନିଅ, ମୁଁ ଥୋଡ଼ା ଖାଇସାରିଲାରୁ ଚାଲିବା, ବ୍ରାହ୍ମଣ ପଡ଼ିଥାଉ । ପୁଣି ଧୁନ୍ଦିଆ ବେହେରା ଆସି ନାହିଁ, ତାକୁ କ'ଣ ଛାଡ଼ି ଦେଇଯିବା ?

ଗଦେଇବାବୁ କହିଲେ, ''ମୋର ସବୁ କାର୍ଯ୍ୟ ଶେଷ ପାଇଛି । ପଣ୍ଡାକୁ ବିଦାୟ ଦେଇ ସୁଫଳ ଘେନିଛି । ଆଉ ଦଣ୍ଡେ ରହିବି ନାହିଁ । ମହାପ୍ରସାଦ ଏଠାରେ ଥାଉ । ଚାଲ, ତୋତେ ବାଟରେ ଖୁଆଇବି । ଧୁନ୍ଦିଆ ବେହେରା ଯେବେ ମିଶି ପାରେ ତ ଭଲ, ନୋହିଲେ ଆମେ ଦୁହେଁ ଚାଲଯିବା ।'' ଭଜନା ଆଉକିଛି ନ କହି ବୋକାଚ଼ା ସଜାଡ଼ିବାକୁ ଲାଗିଲା । ପଣ୍ଡାଙ୍କ ଲୋକଟି ଆଁ କରି ଚାହିଁଥିଲା । ଗଦେଇବାବୁ ତାକୁ ବକ୍‌ସିସ ଦେଲେ, ତାହା ଅଣ୍ଟାରେ ଗୁଞ୍ଜି କହିଲା, ''କିପରି ଲୋକକୁ କିପରି କଥା ଦେଖ ତ, ପଇସା ପତ୍ର ଖର୍ଚ୍ଚକରି ବାବୁ ତୀର୍ଥକୁ ଆଣିଲେ, ତାଙ୍କପ୍ରତି ଏ ଭର୍ତ୍ସନା । ଏ ବ୍ରାହ୍ମଣ କି କୁକୁର ଲୋମ। । ବାବୁ, ଉପାସରେ ଯିବ କିଆଁ, ଚାଲ ମୁଁ ବଡ଼ଦାଣ୍ଡଠାକୁ ମହାପ୍ରସାଦ ଆଣି ଯୋଗାଇବି । ଏତେଦିନ ତୁମଠାରୁ ଖାଇଛି, ଏତିକି କରିବି ନାହିଁ'' ବୋଲି ଆଗରେ ଚାଲିଗଲା । ମିଛୁ ମିଶ୍ରେ ଊର୍ଦ୍ଧ୍ୱଦୃଷ୍ଟି ହୋଇ ରହିଲେ । ମହାପ୍ରସାଦତକ ସେହିପରି ରହିଲା । କିଛିକ୍ଷଣ ପରେ ମିଛୁ ମିଶ୍ରେ ଭାବିଲେ ବାବୁତ ଛାଡ଼ିଗଲେ, ଧୁନ୍ଦିଆ ବେହେରା ଆସିବ କି ନାହିଁ କେଜାଣି । ଅନେକଗୁଡ଼ିଏ ମହାପ୍ରସାଦ, ବିକ୍ରୟ କରିଦେବା ଉଚିତ । ଚିନିଦେଇ ଆଉ କିଛି କିଣିକରି ଭୋଜନ କଲେ; ପିଣ୍ଡାରେ ଡୁନି ହୋଇ ଶୋଇଲେ । ଦୁଇ ତିନି ଘଣ୍ଟାପରେ ଧୁନ୍ଦିଆ ବେହେରା ହସ ହସ ହୋଇ ଉପସ୍ଥିତ ହେଲା। ''କିହୋ ନନା ଶୋଇଛି ? ମହାପ୍ରଭୁଙ୍କ ଶ୍ରୀମୁଖ ଦର୍ଶନ ମିଳିଲା ।'' ମିଛୁ ମିଶ୍ରେ ଚମକି ପଡ଼ି କହିଲେ, ''କ'ଣ ? ଶ୍ରୀମୁଖ ଦର୍ଶନ ? ବାହାରରୁ ସେହି ପତିତପାବନ ଲେଖାରୂପ ଦେଖିଥିବୁ, ତୁ କିଏ, ଜଗନ୍ନାଥ କିଏ ।''

''ନାଇଁ ହେ, ସତ କଥା, ମୁଁ ଯାହାକୁ ଦେଖିବାକୁ ଆସିଥିଲି ତାକୁ ଦେଖିଲି । ଶ୍ରୀମୁଖ ନ ଦେଖି ମୁଁ କ'ଣ ଫେରୁଥିଲି ?'' ଏତ ତୁମ ଗ୍ରାମ ଜଗନ୍ନାଥ ନୁହନ୍ତି ଯେ ମୁଁ ଭିତରକୁ ପଶିବାକୁ ଥରହର ହେବି, କି ତୁମେ ବା ତୁମ ପରି, ଦୁଇ ଚାରି ଜଣ ବ୍ରାହ୍ମଣ ବାଡ଼ି ଧରି ତଡ଼ିବେ ? ଏ ଯେ ବୁଦ୍ଧାବତାର ଜଗନ୍ନାଥ ସ୍ୱାମୀ, ପତିତପାବନ ଏହାଙ୍କ ନାମ ।

ଏହାଙ୍କୁ ଦେଖିଲେ, ଛୁଇଁଲେ ମୁଁ ଦୋଷୀ ହେବି ନାହିଁ ବୋଲି ମୋର ବିଶ୍ୱାସ, ଏଣୁ ପଇସା ଖର୍ଚ୍ଚ କରି ଭିତରକୁ ଯାଇ ଦେଖି ଆସିଲି । ଜୀବନ ସାର୍ଥକ କଲି । ଏହାଙ୍କଠାରେ ତୁମେ ମୁଁ ସମାନ ।''

ପ୍ରଜ୍ୱଳିତ ବହ୍ନିରେ ଘୃତାହୁତି ପଡ଼ିଲା । ମିଛୁ ମିଶ୍ରେ କ୍ରୋଧାନ୍ୱିତ ହୋଇ କହିଲେ, ''ଧୋବା, ଜଗନ୍ନାଥଙ୍କ ଦୃଷ୍ଟିରେ ଧୋବା ବ୍ରାହ୍ମଣ ସମାନ । ମୁଁ ଶ୍ରୋତ୍ରିୟ ବାହ୍ମଣ, ତୁ ଶ୍ମଶାନ ଚଣ୍ଡାଳ, ମୁଁ ଆଉ ତୁ ? ଯା, ଯା, ଯା ।''

''ନା, ନା, ରାଗୁଛ କାହିଁକି ? ତୁମେ ମୁଁ ସମାନ କି ନା, ପରୀକ୍ଷା କରୁଛି କିଏ ? ଜଗନ୍ନାଥ ତ ଚଣ୍ଡାଳ ବୋଲି ସିଂହଦ୍ୱାରରୁ ଫେରାଇ ନାହାନ୍ତି, ତୁମ କଥାର ମୂଲ୍ୟ କେତେ ? ତୁନି ହୁଅ, ନାନା । ଗଲା କଥା ତ ଗଲା । ଗଦେଇବାବୁ କୁଆଡ଼େ ଗଲେ ? ଭଜନା ମଧ ନାହିଁ, ତାଙ୍କ ଲୁଗାପଟା ମଧ ନାହିଁ ।''

''ସେ କଥା କ'ଣ କହିବି, ପ୍ରକୃତ କଥା କହିବାରୁ କ୍ରୋଧ ହୋଇ ମତେ ଛାଡ଼ି ପଳାଇଲେ— ପ୍ରାୟ ତିନି ଘଣ୍ଟା ହେଲା ।''

''କ'ଣ କହିଲି ? ତାଙ୍କ ପରି ଲୋକ ତୁମ ସଙ୍ଗରେ ରହିବା ଅସମ୍ଭବ; ତେବେ ଆଜିଯାଏ ଯେ ଥିଲେ ବଡ଼ ଆଶ୍ଚର୍ଯ୍ୟ । ତୁମର ଦୁଷ୍ଟ ପ୍ରକୃତି ଯୋଗୁଁ ଏ ଘଟଣା । ତୁମର ମୁହଁରେ ଲଗାମ ନାହିଁ।''

''କ'ଣ କହିଲ ? ଛୋଟ ମୁହଁରେ ବଡ଼ କଥା ।''

''ହେଲେ ହେଲା, ଗଦେଇବାବୁ ଚାଲିଗଲେ, ମୁଁ ଚାଲିଯିବି । ମୁଁ ସିନା ତାଙ୍କ ସଙ୍ଗରେ ଆସିଥିଲି, ତୁମ ସଙ୍ଗରେ ତ ଆସି ନାହିଁ।''

ମିଛୁ ମିଶ୍ରେ କହିବାକୁ ଯାଉଥିଲେ, ''ତୁ ଗଲେ କେତେ, ଥିଲେ କେତେ, ଧୋବା ସଙ୍ଗରେ ବ୍ରାହ୍ମଣର କି ସଙ୍ଗ।'' ମାତ୍ର କ'ଣ ଭାବିଲେ, ତାହା କହିଲେ ନାହିଁ, ତୁନି ହୋଇ ରହିଲେ। କିଛି କ୍ଷଣ ପରେ କହିଲେ, ''ଧୃନ୍ଦିଆ, ଆଉ କ'ଣ, କାଲି ସକାଳୁ ଗ୍ରାମକୁ ଫେରିବା ।''

ଗ୍ରାମକୁ ନ ଫେରି ଏଠାରେ ଆଉ ରହିବା କି ? ହେଲେ କିପରି ନିର୍ବିବାଦରେ ଘରକୁ ଫେରିବି ଏହା ଚିନ୍ତା ?''

ଗଦେଇବାବୁ ବଡ଼ ଦାଣ୍ଡରେ ଭୋଜନ ଶେଷକରି ଭାବିଲେ, ମୁଁ ଏପରି ରାସ୍ତାରେ ଯିବି, ଯେପରିକି ଆଉ ସ୍ୱଗୃହକୁ ଯିବାଯାଏ ମିଛୁ ସହିତ ପୁନର୍ବାର ବାଟରେ ଦେଖା ନ ହୁଏ। ଖୋରଧା, ନୂଆଁଗଡ଼ ଦେଇ ଯିବାର ପ୍ରସ୍ତାବ ପୂର୍ବରେ କରିଥିଲେ । ଏଣୁ ଗଦେଇବାବୁ ସେ ବାଟରେ ନ ଯାଇ ଭୁବନେଶ୍ୱର ଦର୍ଶନ ପରେ ଧବଳେଶ୍ୱର ଓ କପିଳାସ ଦର୍ଶନ କରିବା ଅଭିପ୍ରାୟରେ ବଡ଼ ରାସ୍ତା ଧରି ଅନେକ ଗୁଡ଼ାଏ ବାଟ ସେଦିନ ଚାଲି ଆସିଲେ।

ଆରଦିନ ପ୍ରତ୍ୟୁଷରୁ ମିଛୁ ମିଶ୍ର ଓ ଧୃନ୍ଦିଆ ବାହାରିଲେ । ବାହାରିବା ଆଗରୁ ମିଛୁ ମିଶ୍ର କହିଲେ, ''ଭୁବନେଶ୍ୱର ଦର୍ଶନ କରି ଫେରିଲେ ଭଲ ହୁଅନ୍ତା, ସେ ବାଟେ ଯିବା କି ?''

''ସେ ବାଟେ ଗଲେ ମୋର ଲାଭ କ'ଣ ? ଜଗନ୍ନାଥଙ୍କ ପରି ଭୁବନେଶ୍ୱର ଦର୍ଶନ ମିଳିବ କି ? ବିଶେଷତଃ ତୁମେ ଅଛ, ଆଗରୁ ଧୋବା ଧୋବା ବୋଲି ହୁରି ପକାଇବ । ଯାହାକୁ ଦେଖିବାକୁ ଆସିଥିଲି ତାକୁ ଦେଖିଲି, ଆଉ କୌଣସି ଦେବତା ଦେଖିବାର ପ୍ରୟୋଜନ ନାହିଁ । ସେମାନେ ମୋତେ ଦେଖା ଦେବେ ନାହିଁ । ସିଧା ସଳଖ ଯେଉଁ ବାଟରେ ଦେବତା ନାହାଁନ୍ତି, ସେହି ବାଟରେ ଯିବା । ଆଉ ଗୋଟିଏ କଥା, ତୁମେ ବ୍ରାହ୍ମଣ ବୃତ୍ତି ଆରମ୍ଭକଲେ ମୁଁ କିନ୍ତୁ ଛାଡ଼ି ପଳାଇବି ।'' ''ହେଉ, ତୋ କଥା ହେଉ ।'' ଉଭୟେ ଖୋରଧା ବାଟ ଧଇଲେ ।

ବଡ଼ଦାଣ୍ଡକୁ ଆସିଲାକ୍ଷଣି ଧୃନ୍ଦିଆ ଖଣ୍ଡିଏ ପିଢ଼ଳ କିଣିଲା, ତାହା ଦେଖି ମିଛୁ ମିଶ୍ରେ କହିଲେ, ''ତୁ ତ ଖଣ୍ଡେ ପିଢ଼ଳ କିଣିଲି, ବଡ଼ କରି ଖଣ୍ଡେ କିଣିଥିଲେ ଦୁହିଁଙ୍କ ପାଇଁ ଭାତରନ୍ଧା ଚଳିଥାନ୍ତା ।''

''ନନା, ବୁଝି ବିଚାରି କାର୍ଯ୍ୟ କଲେ, ପ୍ରମାଦ ନ ପଡ଼ଇ ଭଲେ ।'' ତୁମେ ରାଗୀ ଲୋକ, ବାଟରେ କେବେ କହି ବସନ୍ତି— ମୁଁ କ'ଣ ଧୋବାର ରାନ୍ଧୁଣିଆ ଯେ ତୋ ଲାଗି ଭାତ ରାନ୍ଧୁଥିବି । ମୁଁ ତ ପଇସାବାଲା ନୁହେଁ ଯେ ଦୁଇଜଣଙ୍କ ଭଳି ପିତଳ କିଣନ୍ତି । ମୁଁ ଧୋବା, ତୁମକୁ କଷ୍ଟ ଦେବି କାହିଁକି ? ମୋ ପାଇଁ ମୁଁ ନିଜେ ରାନ୍ଧି ନେବି ।''

ଉଭୟ ଆଗ ପଛ ହୋଇ ଚାଲିଲେ । ଖୋରଧା ଆମ୍ବ ତୋଟାରେ ଆର ଦିନ ସନ୍ଧ୍ୟାରେ ଆସି ପହଞ୍ଚିଲେ । ଧୃନ୍ଦିଆ ଭାତ ରାନ୍ଧି ଖାଇଲା । ମିଛୁ ମିଶ୍ରେ କିଛି ଜଳଖିଆ କିଣି ଖାଇ ଶୋଇଲେ । ରାତ୍ର ଅଧ ସରିଛି ମିଛୁ ମିଶ୍ରଙ୍କୁ ପୋଖରୀ ତଳବ ଦେଲା । ଝାଡ଼ା ଫେରି ଆସି ଶୋଇଛନ୍ତି, ବାନ୍ତି, ପୁଣି ଝାଡ଼ା । ଧୃନ୍ଦିଆକୁ ଉଠାଇଲେ । ତା'ଠାରେ ନାନା ପ୍ରକାର ଔଷଧ ଥାଏ । ଗୋଟିଏ କର୍ପୂର ବଟିନେଲା, ମିଛୁ ମିଶ୍ର ପାନ କଲେ । ପୁଣି ଝାଡ଼ା, ପୁଣି ବାନ୍ତି । ମିଛୁ ମିଶ୍ର କହିଲେ, ''ଭାଇ ଧୃନ୍ଦିଆ, ରକ୍ଷାକର, ହାତଗୋଡ଼ ଘିଞ୍ଚି ନେଉଛି ।''

''ଘଷିବ କି ?''

''କ'ଣ ପଚାରୁଛୁ, ଜୀବନ ଗଲାବେଳେ ଭାଇ, କି ଜାତି ବିଚାର, ଘଷି ଦେ ଭାଇ, ଜୀଇବାର ଆଶା ନାହିଁ ।''

ଚିନ୍ତା କର ନାହିଁ, ସାମାନ୍ୟ ଝାଡ଼ା ସିନା, ଆଉ ଗୋଟାଏ ବଟିକା ଖାଇଲେ ଭଲ ହୋଇଯିବ ।''

ଗୋଟିଏ ବଟିକା ଖାଇଲେ, ଧୃନ୍ଦିଆ ଘଷୁଛି, ଆଉ ତେଣିକି ଉଠିକରି ଝାଡ଼ା ଯାଇପାରିଲେ ନାହିଁ । ସେହିଠାରେ ଝାଡ଼ା, ବାନ୍ତି । ଧୃନ୍ଦିଆ ସଫା କରୁଥାଏ ଏବଂ ବରାବର ଘଷୁଥାଏ । ଥରେ ମିଛୁ ମିଶ୍ର କହିଲେ, ''ଭାଇ । ବଡ଼ ତୃଷା, କଣ୍ଠ ଶୁଖି ଯାଉଛି । ଟିକିଏ ପାଣି ଦେ ।''

''ନନା, ଏ ବଡ଼ ବିଷମ କଥା । ମୁଁ ଧୋବା, ଜାଣୁ ଜାଣୁ ତୁମକୁ ପାଣି ଦେବି କିପରି ?''

''ସେ କଥା କହନା ଭାଇ, କଷ୍ଟ ଦେନା, ମଲି ମଲି ।'' ଧୃନ୍ଦିଆ ଭାବିଲା, ''ଭଗବାନ୍, ମୋର ଛାଇ ମାଡ଼ିବାକୁ ଘୃଣା କରୁଥିଲେ, ଆଜି ବିପତ୍ତି ପଡ଼ିବାରୁ ପାଣି ମାଗୁଛନ୍ତି । ଦେଲେ ଦୋଷ, ନ ଦେଲେ ପ୍ରାଣୀର ପ୍ରାଣ ଯିବ । ଭଗବାନ୍, ତୁ ଏଥର ସାକ୍ଷୀ । ନନା, ମୋର ଦୋଷ ନାହିଁ, ତୁମର ଅନୁରୋଧରୁ ମୁଁ ଏହା କରୁଛି; ପାଣି ନିଅ, ପିଅ ।''

ଧୃନ୍ଦିଆ ହାତରୁ ପାଣି ନେଇ ମିଛୁ ମିଶ୍ର ଗଳ ଗଳ କରି ପିଇ ପକାଇଲେ । ପୁଣି ଗୋଟାଏ ବଟିକା, କିଛିକ୍ଷଣ ପରେ ନିଦ୍ରା ହେଉ ବା ତନ୍ଦ୍ରା ହେଉ— ମିଛୁ ମିଶ୍ର ତୁନି ହୋଇ ପଡ଼ିରହିଲେ ।

ଧୃନ୍ଦିଆ ଭାବିଲା, ବଡ଼ ବିଷମ ସମସ୍ୟା ହେଲା । ଏହାଙ୍କୁ ଶୁଶ୍ରୂଷା କରିବା ମୋ ପକ୍ଷରେ ଅସମ୍ଭବ । ଏ ବ୍ରାହ୍ମଣ, ମୁଁ ଧୋବା, ପାଣି ପିଇବାକୁ ଦେଲି । ହୁଏତ ପୁଣି ଭାତ ଖାଇବାକୁ ଦେବାକୁ ହେବ । ଏ ବଡ଼ ଅନ୍ୟାୟ । ଜାଣୁ ଜାଣୁ ଏପରି କାର୍ଯ୍ୟ କରିବି କିପରି ? ଏଥର ଗୋଟାଏ ଉପାୟ କରିବ ବୋଲି ଭାବିଲା । ସେତେବେଳକୁ ପାହାନ୍ତା ହେଲାଣି । ଦାନ୍ତପତ୍ର ଘଷିଲା, ଗାଧୋଇ ପଡ଼ିଲା, ପିତଳରେ ଭାତ ରାନ୍ଧିଲା । ଭାବିଲା, ମିଛୁ ମିଶ୍ରଙ୍କୁ ଡାକ୍ତରଖାନାରେ ରଖାଇ ଦେଇ ଏଠାରୁ ଚାଲିଯିବ । ଭାତ ରନ୍ଧା ସରିଲା, ସକାଳ ମଧ ହେଲା । ଭାତକୁ ଘୋଡ଼ାଇ ଦେଇ ପୋଲିସ ଥାନାକୁ ଗଲା । ସେଠାରେ ଖବର ଦେଇ ଡାକ୍ତରଖାନାରୁ ଲୋକ ନେଇ ଆସିଲା । ବସାରେ ପହଞ୍ଚି ଧୃନ୍ଦିଆ ଦେଖେ ଯେ ମିଛୁ ମିଶ୍ର ତା' ଚୂଲି ପାଖରେ ଶୋଇଛନ୍ତି । ପିତଳରୁ ପେଜତକ ନିଃଶେଷ ।

''ନନା, ଏ କ'ଣ କଲ, ମୋର ରନ୍ଧା ଭାତ ପେଜ ଖାଇଲ । ସେ ଯାହାହେଉ ତୁମ ପକ୍ଷରେ ଏହା ପଥ୍ୟ ନୁହେଁ ।''

ଭାଇ ମୁଁ କ'ଣ ଆଉ ଜୀଇଁବି ? ତାତିଲା ପେଜକୁ ମନ ଡାକିଲା, ପିଇ ପକାଇଲି ଭଲ ଲାଗୁଛି । ଏବେ କି ବିଚାର ଭାଇ ।''

''ମୁଁ ଡାକ୍ତରଖାନାରୁ ଲୋକ ଆଣିଛି । ସେମାନେ ତୁମକୁ ନେଇଯିବେ, ସେଠାରେ ରଖି ଚିକିତ୍ସା କରିବେ । କିଛି ଚିନ୍ତା କର ନାହିଁ । ଭଲ ହୋଇଯିବ ।''

ମିଛୁ ମିଶ୍ରଙ୍କୁ ନେଇଗଲେ । ଧୃନ୍ଦିଆ ଭାତତକ ପକାଇ ଦେଲା, ପିତଳକୁ ପରିଷ୍କାର କରି ମାଜି ପକାଇଲା । ଆପଣାର ଗଣ୍ଠିରୀ ଧରି ସଙ୍ଗେ ସଙ୍ଗେ ଚାଲିଲା । ମିଛୁ ମିଶ୍ରଙ୍କୁ ଡାକ୍ତରଖାନାରେ ରଖିଲେ ।

ଧୃନ୍ଦିଆ କହିଲା, ମୁଁ ଭାଇ ଯାଉଛି, ତୁମେ ଭଲ ହେଲେ ଯିବ, କିଛି ଚିନ୍ତା କରିବ ନାହିଁ ।''

''ତୁ ମତେ ଛାଡ଼ିକରି ଯାନା ଭାଇ ।''

''ମୁଁ ଏଠାରେ ରହିବା ଅସମ୍ଭବ— ତୁମେ ତ ଡାକ୍ତରଖାନାରେ ରହିବ । ସେମାନେ ତୁମର ଚିକିତ୍ସା କରିବେ, ଖାଇବାକୁ ଦେବେ, ମୁଁ ଥାଇ କରିବି କ'ଣ ? ପୁଣି ମୁଁ କେଉଁଠାରେ ରହିବି ? ମୋତେ ଖାଇବାକୁ ଦେବ କିଏ ? କେତେ ଦିନରେ ତୁମେ ଭଲ ହେବ, ତା'ର ଠିକଣା ନାହିଁ, ମୋର ଯିବା ଭଲ ।'' ମିଛୁ ମିଶ୍ରଙ୍କର ତନ୍ଦ୍ରା ଉପସ୍ଥିତ ହେଲା, କିଛି କହି ପାରିଲେ ନାହିଁ । ଧୃନ୍ଦିଆ ପ୍ରସ୍ଥାନ କଲା ।

କେତେଦିନ ଉତ୍ତାରୁ ଅପରାହ୍ନ ତିନି ଚାରି ଘଣ୍ଟା ବେଳେ ଧୃନ୍ଦିଆ ଗ୍ରାମରେ ପହୁଞ୍ଚିଲା । ଗ୍ରାମକୁ ତିନି ମାଇଲ ଦୂରବର୍ତ୍ତୀ ଯୋଡ଼ ନିକଟ ଆମ୍ବ ତୋଟାରେ ଘଡ଼ିଏ ବିଶ୍ରାମ ନେଲା । ଗୋଡ଼ ହାତ ମୁହଁ ଧୋଇଲା, ଗଣ୍ଠିରି ଖୋଲି ପିପିଲି ନିର୍ମିତ ଚକ୍ର ଚିହ୍ନିତ ଲାଲ କୁରୁତାଟି, କାନ ଖାଇ ଟୋପିଟି ଖୋଲିଲା, ପିନ୍ଧିଲା । ଦୁଇଟା ତୁଳସୀ କାଠ ମାଳ, ତିନିଖଣ୍ଡ ଶ୍ରୀକପଡ଼ା ଗଳାରେ ଲମ୍ବାଇଲା । ଚୈତ୍ର ମାସର ଖରା, ଭାରି ଗରମ, ଏ ସମୟରେ ରୁଇନ୍ଦାର କୁରୁତା ଲଗାଇବାର ଆଦୌ ପ୍ରୟୋଜନ ନ ଥିଲେ ସୁଦ୍ଧା ତୀର୍ଥଯାତ୍ରୀ ପରିଚୟ ନିମନ୍ତେ ଧୃନ୍ଦିଆ ଏପରି କଲା । ସାଧାରଣତଃ ପୂର୍ବକାଳିଆ ତୀର୍ଥଯାତ୍ରୀମାନେ ଏପରି ବେଶରେ ଗ୍ରାମକୁ ପ୍ରବେଶ କରନ୍ତି । ଏଥିରେ ଧୃନ୍ଦିଆର ଅପରାଧ କ'ଣ ? ବୋକଚ୍ଛାକୁ ମୁଣ୍ଡାଇଲା । ଲାଲ ଗୌରୀ ବେତ ସଂଯୋଜିତ ତାଳପତ୍ର ଛତାକୁ ଧରି ଦକ୍ଷିଣ ହସ୍ତରେ ନିଜର ବାଉଁଶ ବାଡ଼ିକୁ ଧରି ଧୃନ୍ଦିଆ ଗ୍ରାମରେ ପ୍ରବେଶ କଲା ।

ପରିଚିତ ବାଳକମାନେ ଦେଖି ଚିତ୍କାର କଲେ । ଲୋକେ ଆସି ପହଞ୍ଚିଗଲେ । କାହାକୁ ନମସ୍କାର, କାହାକୁ ଆଶିଷ ଦେଇ ଦେଇ ଚାଲିଛି, ଉତ୍ତର ଦେବାର ସମୟ ନାହିଁ । ଗୃହ ପର୍ଯ୍ୟନ୍ତ ଅନେକ ଲୋକ ଚାଲିଲେ । ଯେଉଁମାନେ ଧୋବା ଘରକୁ ଯାନ୍ତି ସେମାନେ ଘର ଅଗଣାକୁ ଗଲେ । ଯେଉଁମାନଙ୍କ ପ୍ରତି ଧୋବାଘର ନିଷେଧ ସେମାନେ ବାଟରେ ରହିଲେ । ଗୋଡ଼ ହାତ ଧୋଇ ଧୃନ୍ଦିଆ ବସିଲା । ନାତି ନାତୁଣୀମାନେ ଗଣ୍ଠିରି ଖୋଲିବାକୁ ଅସ୍ତବ୍ୟସ୍ତ କଲେ । ବେଳ ବୁଡ଼ିଲା, ଧୃନ୍ଦିଆ ଗଦେଇବାବୁ ଘରକୁ ଯାଇ ଦେଖେ ଯେ ସେ ଫେରି ନାହାନ୍ତି । ତାଙ୍କ ଖବରସବୁ ଜଣାଇଦେଲା । ପୁଣି ମିନ୍ଧୁ ମିଶ୍ରଙ୍କ ଘରକୁ ଯାଇ କହିଲା ଯେ ମିନ୍ଧୁ ମିଶ୍ର ବେମାର ହେବାରୁ ଖୋରଧା ଡାକ୍ତରଖାନାରେ ଚିକିତ୍ସିତ ହେଉଛନ୍ତି । ଚିନ୍ତା ନାହିଁ, ଅଳ୍ପ ଦିନରେ ଫେରି ଆସିବେ । ଉପାୟାନ୍ତର ନ ଦେଖି ସେ ଫେରି ଆସିଲା, କେହି କେହି କହିଲେ, ଏକ ସଙ୍ଗରେ ଯାଇ ଜଣ ଜଣ ହୋଇ ଆଗ ପଛ ବାହାରି ଆସିବା ଠିକ୍ ନୁହେଁ । କେହି କହିଲେ ସୁବିଧା ଅସୁବିଧା ନେଇ କଥା । ଆମେ ଘରେ ଥାଇ ସେଥିର ଆଲୋଚନା କଲେ କ'ଣ ହେବ । ଧୃନ୍ଦିଆ ସଜ୍ଜନ ଲୋକ । ତା' କଥା ଅବିଶ୍ୱାସ କରିବାର ନୁହେଁ ।

ମିନ୍ଧୁ ମିଶ୍ରଙ୍କ ସମ୍ବନ୍ଧରେ ତାଙ୍କର ଭାଇ ଓ ଅନ୍ୟାନ୍ୟ ଲୋକେ ବାରମ୍ବାର ଅନେକ ପ୍ରଶ୍ନ କଲେ । ସମସ୍ତ କଥା ଠିକ୍‌ରୂପେ ପ୍ରକାଶ କଲା, ମାତ୍ର ସେବା କଥା, ତା'ର ପାଣି ଓ ପେଜ ମିନ୍ଧୁ ମିଶ୍ର ପିଇଥିବା କଥା ଆଦୌ ପ୍ରକାଶ କଲା ନାହିଁ । ଧୃନ୍ଦିଆ ଭାବିଲା, ଏହା ପ୍ରକାଶ କରି ଲାଭ କ'ଣ ? ମୋର କିଛି ମହତ୍ତ୍ୱ ବଢ଼ିବ ? ମୁଁ ଯେଉଁ ଧୋବାକୁ ସେଇ ଧୋବା, ମିନ୍ଧୁ ମିଶ୍ର ଯେଉଁ ବ୍ରାହ୍ମଣକୁ ସେହି ବ୍ରାହ୍ମଣ । ଅଧିକନ୍ତୁ ଅନ୍ୟର ଅପମାନ କଥା ପ୍ରକାଶ କଲେ କେବଳ ଶତ୍ରୁତା ବୃଦ୍ଧି ହେବ । ଜୀବନ ଯିବାଯାଏ ଏହା ମୁଁ ପ୍ରକାଶ କରିବି ନାହିଁ । ମିନ୍ଧୁ ମିଶ୍ର ଯେବେ ନିଜେ ପ୍ରକାଶ କରନ୍ତି, ସେ କଥା ସେ ଜାଣନ୍ତି ।

ଅନେକ ଦିନଯାଏ ଧୃନ୍ଦିଆର ତୀର୍ଥ ଦର୍ଶନର ତାଏରି ଚାଲିଲା । ଦିନେ ଦୁଇ ଚାରି ଜଣ ବ୍ରାହ୍ମଣଙ୍କ ଆଗରେ ଗରୁଡ଼ସ୍ତମ୍ଭ, ଚନ୍ଦନ ଅର୍ଗଳ ଓ ଜଗନ୍ନାଥଙ୍କ ମୁଖାରବିନ୍ଦର ବର୍ଣ୍ଣନା କରି ବସିଲା । ଆପଣା ଦେଶର ଜଗନ୍ନାଥ ମୂର୍ତ୍ତି ପୁରୀର ମୂର୍ତ୍ତି ମଧ୍ୟରେ କି ପ୍ରଭେଦ, ତାହା ବର୍ଣ୍ଣନା କରିବସିଲା । ବ୍ରାହ୍ମଣମାନେ ତାହା ଶୁଣି ପ୍ରଥମେ ଅସମ୍ଭବ ବୋଲି ମନେକଲେ । କିଏ କିଏ କହିଲେ ଯେ ଶୁଣା କଥା କହୁଅଛି । ଭିତରକୁ ଧୋବା ପ୍ରବେଶ କରିବା ଅସମ୍ଭବ । ଧୃନ୍ଦିଆ କହିଲା, ''ମୋତେ ଜଗନ୍ନାଥଙ୍କ ଡୋରି ଲାଗିଲା, ଏଣୁ ଏଠାରୁ ଗଲି । ଜଗନ୍ନାଥ ଦର୍ଶନ ଦେବାକୁ ଡୋରି ଲଗାଇଲେ । ତାଙ୍କର ଶ୍ରୀମୁଖ ଦର୍ଶନପାଇଁ ଅର୍ଥ ବ୍ୟୟ କଲି, ଏତେବାଟ ଚାଲିଲି । ସେଠାକୁ ଯାଇ ଦେଖିଲି ଯେ ପୁରୀର ଜାତି ବିଚାରର ବେଶି ଧରାବନ୍ଧା ନାହିଁ । ଅରୁଣସ୍ତମ୍ଭ ନିକଟରେ ଠିଆ ହୋଇ ପତିତପାବନ ଚିତ୍ର ଦେଖି ମନ ତୃପ୍ତି ହେଲା ନାହିଁ । ଭିତରକୁ ଯାଇ ଶ୍ରୀମୁଖ ଦେଖିବାର ଆଗ୍ରହ ବଳିଲା, କଳିହା ମିନ୍ଧୁ ମିଶ୍ର ମୋର ସାଥୀ । ତାଙ୍କ ସଙ୍ଗରେ ଗଲେ ବା ତାଙ୍କ ସାହାଯ୍ୟ ଲୋଡ଼ିଲେ ସେ ଦ୍ୱନ୍ଦ୍ୱ ଉପସ୍ଥିତ କରିବେ । ମାଡ଼ ମରାଇବେ, ଜେଲ ଦିଆଇବେ, ନା, ଅନ୍ୟ ଉପାୟ ଦେଖିବା ଭଲ । ଦିନେ ବଡ଼ଦାଣ୍ଡରେ ବୁଲୁ ବୁଲୁ ଜଣେ ପଣ୍ଡା ମତେ ଦେଖି ପଚାରିଲେ, ''ଜଗନ୍ନାଥ ଦର୍ଶନ ହେଲାଣି ?'' ମୁଁ କହିଲି ''ନା ।'' ''ତୁମର ପଣ୍ଡା କିଏ ?'' ମୁଁ କହିଲି, ''ଯେ ଶ୍ରୀମୁଖ ଦେଖାଇଲା, ସେହି ମୋର ପଣ୍ଡା ।''

''ସେ ମୋତେ ସଙ୍ଗରେ ନେଇଗଲେ, ମୋର ଜାତି ସମ୍ବନ୍ଧରେ କିଛି ପଚାରିଲେ ନାହିଁ । ମୁଁ ନିର୍ବିକଳ୍ପ ଚିତ୍ତରେ ଚାଲିଗଲି, ତାଙ୍କୁ ଉତ୍ତମ ଦକ୍ଷିଣା ଦେଲି ।''

ଜଣେ ବ୍ରାହ୍ମଣ କହିଲେ, ''ତୁ ଧୋବା, ତୋର ଏଡ଼େ ଗର୍ବ, ତୁ ମନ୍ଦିର ଭିତରେ ପଶି ପ୍ରଭୁଙ୍କୁ ଅପ୍ରତିଷ୍ଠା କଲୁ ?''

''ପ୍ରଭୁ ଅପ୍ରତିଷ୍ଠା ହୋଇ ନାହାନ୍ତି, ହୋଇଥିଲେ ଜଣାପଡ଼ିଥାନ୍ତା । ମୋର ଦଣ୍ଡ ହୋଇଥାନ୍ତା । ପ୍ରଭୁ ଆଗରେ ତୁମେ ଯେପରି, ମୁଁ ସେପରି । ଏଠାରେ ମୁଁ ଧୋବା, ତୁମେ ବ୍ରାହ୍ମଣ ।

''ତୋ ମୁଣ୍ଡରେ ବଜ୍ରବାଡ଼ି ପଡ଼ୁ, ତୋର ଭାରି ଗର୍ବ ହେଲାଣି ।''

''ନନା, ଠିକ୍ ଏହି କଥା ଦିନେ ମିନ୍ଧୁ ମିଶ୍ରେ କହିଥିଲେ, ଆଜି ତୁମେ ମଧ୍ୟ କହୁଛ । ମରଣ ତ ଅବଶ୍ୟ ଆସିବ, ସେଥିରେ ଚିନ୍ତା କ'ଣ ?''

ସୁ-ଚିକିତ୍ସାଦ୍ୱାରା ପ୍ରାୟ ତିନି ସପ୍ତାହ ପରେ ମିନ୍ଧୁ ମିଶ୍ର ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କଲେ । ଗତ କଥା ମାନ ତାଙ୍କର ମନରେ ପଡ଼ିଲା, ଧୃନ୍ଦିଆର ସେବା ଶୁଶ୍ରୂଷା, ତା'ର ଜଳପାନ, ତା'ର ଅନ୍ନ ଭକ୍ଷଣ, ଧୋବାର ସ୍ପର୍ଶ, ଧୋବାର ଜଳ; ଧୋବାର ଅନ୍ନ; ଶ୍ରୋତ୍ରିୟ ବ୍ରାହ୍ମଣ ପକ୍ଷରେ ବି ଗର୍ହିତ କାର୍ଯ୍ୟ । ଜାତି ନାଶ, ଧର୍ମ ନାଶ । ଜଗନ୍ନାଥ ଦର୍ଶନର ଏହି ଫଳ ? ଅହୋ ! ଚଣ୍ଡାଳ ପ୍ରଥମେ ଜଗନ୍ନାଥ ମନ୍ଦିରରେ ପ୍ରବେଶ କଲା । ପରେ ବ୍ରାହ୍ମଣକୁ ମଧ୍ୟ ଅପ୍ରତିଷ୍ଠା କଲା । ତା' ମୁଣ୍ଡରେ ବଜ୍ର ପଡ଼ିଲା ନାହିଁ, ତାକୁ ଡାକୁଣୀ ସ୍ପର୍ଶ କଲା ନାହିଁ, ମଡ଼କ ଧଇଲା ମୋତେ । ଯେବେ ନିର୍ବିଘ୍ନରେ ଘରେ ପହଞ୍ଚିଥାଏ ତେବେ କିଏ

କଥା କହିବାକୁ ପରାଙ୍ମୁଖ ହୋଇଥିବ ? ମୁଁ ମଧ ମୁହଁ ଦେଖାଇବି କିପରି ? ଧୁନ୍ଦିଆ ମଲା ନାହିଁ କିଆଁ ? ନିଶ୍ଚୟ ମରିଥିବି, ଏ ଅଧର୍ମ କେବେ ସହିବ ନାହିଁ ।''

ମିଚ୍ଛୁ ମିଶ୍ର ଧୁନ୍ଦିଆର ମହତ୍ତ୍ୱ ଓ ଉପକାରିତାକୁ ଭୁଲିଯାଇ କେବଳ ଈର୍ଷାରେ ପ୍ରଜ୍ୱଳିତ ହେବାକୁ ଲାଗିଲେ । ଡାକ୍ତରଖାନାରୁ ବାହାରି କିଛିଦିନ ଭିକ୍ଷାଟନ କଲେ । ବ୍ରାହ୍ମଣ ସମାଜରୁ ଡାକ୍ତରଖାନାରେ ରହିଥିବା ହେତୁ ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ନେଲେ, ଧୁନ୍ଦିଆର ଅନ୍ନ ଜଳ କଥା ଗୋପନ କଲେ, ବ୍ୟବସ୍ଥା ଅନୁସାରେ ହଟକେଶ୍ୱର ମନ୍ଦିରରେ କିଛିଦିନ ଜପ କରି ଶୁଦ୍ଧିଲାଭ କଲେ— ଗୃହକୁ ପ୍ରତ୍ୟାବୃତ୍ତ ହେଲେ । ଗ୍ରାମରେ ଧୁନ୍ଦିଆ ତାଙ୍କ କଥା କିଛି କହି ନାହିଁ । ଏହା ସେ ବିଶ୍ୱାସ କଲେ, ତଥାପି ଧୁନ୍ଦିଆ ତାଙ୍କର ଚକ୍ଷୁଶୂଳ ହୋଇରହିଲା । ଯେହେତୁ ସେ ବ୍ରାହ୍ମଣର ଉପକାରି କରି ମୃତ୍ୟୁ ମୁଖରେ ପଡ଼ିଲା ନାହିଁ ।

ଧୁନ୍ଦିଆ ଔଷଧ ବିତରଣଦ୍ୱାରା ପରୋପକାରରେ ଲାଗିଛି । ମିଚ୍ଛୁ ମିଶ୍ରଙ୍କର ଅପକର୍ମ କଥା ସେ ବିସ୍ମୃତ ହୋଇଲେ ଚଳେ । କିନ୍ତୁ ମିଚ୍ଛୁ ମିଶ୍ର ପ୍ରତ୍ୟହ ଦେବ ପଠାରେ ଧୁନ୍ଦିଆର ମୃତ୍ୟୁ କାମନା କରି ଚାଲିଛନ୍ତି । ସେ ଜୀବିତ ଥିବାଯାଏ ତାଙ୍କର ଶାନ୍ତି ନାହିଁ, ତାଙ୍କ ଜୀବନର କଳଙ୍କ ରଖି ଜଣେ ଲୋକ ଏ ସଂସାରରେ ତାଙ୍କ ଆଗରେ ବାଟ ଚାଲୁଥିବ କାହିଁକି ? ଉପକୃତ ବ୍ୟକ୍ତି ଉପକାରୀର ମୃତ୍ୟୁ କାମନା କରେ । ସେ ଭାବେ ଯେ, ଉପକାରୀ ବ୍ୟକ୍ତି ଜୀବିତ ଥିବାଯାଏ ତାର ମୁଣ୍ଡ ଟେକିବାର ଉପାୟ ନାହିଁ । ଧନ୍ୟ ସଂସାର ।

ମିଚ୍ଛୁ ମିଶ୍ରଙ୍କର ଭର୍ତ୍ସନା ଅଭିଶାପ ଧୁନ୍ଦିଆ ଅମ୍ଳାନ ବଦନରେ ସହ୍ୟ କରି ଯାଇଅଛି, ଭୃକ୍ଷେପ କରି ନାହିଁ । କେବେହେଲେ ତାହାର ଉପକାର ରୂପ ରହସ୍ୟଟି ହୃଦୟର ନିଭୃତ ସ୍ଥଳରୁ ବାହାର କରି ନାହିଁ ।

ବର୍ଷ କେତେ ଚାଲିଗଲା, ବୃଦ୍ଧ ଧୁନ୍ଦିଆ ଆପଣା କର୍ତ୍ତବ୍ୟ ପଥରୁ ଭ୍ରଷ୍ଟ ହୋଇ ନାହିଁ । ଚୈତ୍ର ମାସ, ଧୁନ୍ଦିଆ ଜ୍ୱର ପୀଡ଼ିତ ହେଲା, ବିକାର ଜ୍ୱର । ବଞ୍ଚିବାର ଆଶା କମ୍ । ଗ୍ରାମବାସୀ ପ୍ରାୟ ସମସ୍ତେ ଧୁନ୍ଦିଆ ନିମନ୍ତେ ଚିନ୍ତିତ । ଆହା, ବଡ଼ ଉପକାରୀ, ବଡ଼ ସଦାଶୟ, ପ୍ରକୃତବାଦୀ, ବିଚ଼ରା ବଞ୍ଚିବ କି ନାହିଁ ସନ୍ଦେହ । ଆବାଳ ବୃଦ୍ଧବନିତାଙ୍କ ମୁଖରେ କେବଳ ଏହି କଥା, ଅଳ୍ପଦିନ ମଧରେ ଧୁନ୍ଦିଆ ମୃତ୍ୟୁ ଶଯ୍ୟାରେ ଶୋଇରହିଲା । ମୃତ୍ୟୁର ପୂର୍ବକ୍ଷଣରେ ଭାବିଲା, ''ଜଣେ ଲୋକର ଅପମାନଜନକ କଥା ଗୋପନ ରଖିବାକୁ ପ୍ରତିଜ୍ଞା କରିଥିଲି, ତାହା ମୋର ହୃଦୟର ନିଭୃତ ସ୍ଥାନରେ ଧରିଯାଉଛି । ମୋର ପ୍ରତିଜ୍ଞା ରହିଲା, ଏଠୁ ବଳି ଆନନ୍ଦର କଥା ଆଉ କ'ଣ ଅଛି ?'' ଭାବିଲା, ଟିକିଏ ହସିଲା, ଅନ୍ତିମ ଶୟନରେ ଚକ୍ଷୁ ମୁଦ୍ରିତ ହେଲା । ଅନେକ ଲୋକଙ୍କ ସ୍ନେହ, ସହାନୁଭୂତି ନେଇ ଧୁନ୍ଦିଆ ଚାଲିଗଲା । ମିଚ୍ଛୁ ମିଶ୍ରଙ୍କର ଈର୍ଷାନଳର ତାପ କିଞ୍ଚିତ ଉପଶମ ହେଲା ସେ କହିଲେ, ''ଧୁନ୍ଦିଆ ମଲା, ପାପ ଗଲା ।''

•

## ମସ୍ତରାମର ମୁକ୍ତି

ମସ୍ତରାମ ଜଣେ ସାଧୁ । ଜନ୍ମସ୍ଥାନ କାଶ୍ମୀର, ଅଳ୍ପ ବୟସରୁ ଗୃହତ୍ୟାଗୀ । ସାଧୁସନ୍ନ୍ୟାସୀମାନଙ୍କ ସହିତ ଅନେକ ତୀର୍ଥ ପର୍ଯ୍ୟଟନ କରିଥିଲା । ବିଦ୍ୱାନ୍ ବା ଶାସ୍ତ୍ରଜ୍ଞ ନ ଥିଲା । ଅନେକ ସାଧୁସଜ୍ଜନଙ୍କ ସଙ୍ଗରୁ ଯେ ଜ୍ଞାନ ମିଳିବା ସମ୍ଭବ, ତାହା ସେ ପ୍ରାପ୍ତ ହୋଇଥିଲା । ତାକୁ ଗୀତ, ଶ୍ଳୋକ, ଭଜନ ଅନେକ ଜଣା । ତୁଳସୀ ଦାସ, ନାନକ, କବିର, ମିରାବାଈ ପ୍ରଭୃତି ନାନା ସମ୍ପ୍ରଦାୟର ଭକ୍ତମାନଙ୍କର ଭଜନମାନ ଆବୃତ୍ତି କରି ସୁଖାନୁଭବ କରେ । ଏମନ୍ତ କି ''ରାମ ରହିମ ନଯୁଦା କରୋଜି, ଦିଲକୁ ସଚ୍ଚା ରଖୋଜି'' ଭଜନଟା ପ୍ରାୟ ପ୍ରତ୍ୟହ ଉଚ୍ଚାରଣ କରେ । କେହି କେହି ଏହାଶୁଣି ତା'ର ଧର୍ମମତର ସମାଲୋଚ଼ନା କରିବାକୁ ବସିଲେ । ମସ୍ତରାମ ପ୍ରକାଶ କରେ ଯେ, ସେ ବିଦ୍ୱାନ ନୁହେଁ ଯେ ତର୍କ କରି ନିଜ ମତ ସମର୍ଥନ କରିବାକୁ ଚେଷ୍ଟା କରିବ । ସେ ଭକ୍ତ, ମୌଜ ଅନୁସାରେ ଯେଉଁ ଭଜନ ଯେତେବେଳେ ସ୍ମରଣ ହୁଏ, ତାହା ଆବୃତ୍ତି କରି ସୁଖାନୁଭବ କରେ, ଏଥିରେ ତାର ଆନନ୍ଦ । ଏ ଉତ୍ତରରେ ତାର୍କିକର ଯୁକ୍ତି ନିରସ୍ତ ।

ମସ୍ତରାମ ଚରିତ୍ରବାନ୍ । ସାଧାରଣ ସାଧୁସନ୍ନ୍ୟାସୀଙ୍କ ପରି ଲୋଭୀ ଓ ଅର୍ଥଗୃଧ୍ନୁ ନ ଥିଲା, ଧର୍ମଧ୍ୱଜୀ ନ ଥିଲା । ନମ୍ର, ବାକ୍ୟାଳାପ ଦ୍ୱାରା ସମସ୍ତଙ୍କୁ ଆପ୍ୟାୟିତ କରିବାକୁ ସଦା ଚେଷ୍ଟିତ ।

ମସ୍ତରାମର ଗୋଟିଏ ଖଟୁଲୀ ଥିଲା । ସେଥିରେ ଗୋଟିଏ ଶାଳଗ୍ରାମ, ଗୋଟିଏ ବାଣ ଲିଙ୍ଗ, ଗୋଟିଏ ପିତଳ ନିର୍ମିତ ଗୁରୁଣ୍ଡ ଗୋପାଳ, ତିନିଗୋଟି ଚୀନାମାଟିର ପିତୁଳା ।

ଏଗୁଡ଼ିକ ତା'ର ଦେବତା । ଏମାନଙ୍କର ବେଶଭୂଷା ନିମନ୍ତେ ମସ୍ତରାମର ପ୍ରତ୍ୟହ ଏକ ଘଣ୍ଟା କାଳ ଅତିବାହିତ ହୁଏ । ଫୁଲ ପତ୍ରଦ୍ୱାରା ଦେବତାମାନଙ୍କୁ ଏବଂ ଖଟୁଲୀକୁ ଏପରି ସୁନ୍ଦର କରି ସଜ୍ଜିତ କରେ ଯେ ଲୋକେ ଦେଖି ତାକୁ ଧନ୍ୟବାଦ ଦିଅନ୍ତି । ପିଲାମାନେ ବେଶକଲା ବେଳେ ନିକଟରେ ବସି

ଦେଖନ୍ତି, ବଡ଼ ଆମୋଦ ଅନୁଭବ କରନ୍ତି । ମସ୍ତରାମଠାକୁ କୌଣସି କୌଣସି ପିଲା ନାନା ସ୍ଥାନରୁ ଭଲ ଭଲ ଫୁଲ, ତୁଳସୀ ସଂଗ୍ରହ କରି ଆଣି ଦିଅନ୍ତି । ମସ୍ତରାମ ଭାରି ଆନନ୍ଦରେ ଗ୍ରହଣ କରି ଶୁଭାଶୀର୍ବାଦ ଦିଏ । ବେଶଭୂଷା ସରିଲାରୁ ମସ୍ତରାମ ଆପଣା ଆସନରେ ବସେ। ବାଳକମାନେ ଏକ ଲୟରେ ଖଟୁଲି ଆଡ଼କୁ ଅନାଇ ରହନ୍ତି । ମସ୍ତରାମ ଆପଣା ଆସନରେ ଥାଇ ଥରେ ଦେବତା ଆଡ଼କୁ ଥରେ ବାଳକମାନଙ୍କ ପ୍ରତି ଦୃଷ୍ଟିନିକ୍ଷେପ କରି ଆହ୍ଲାଦିତ ହୁଏ, ସୁଖାନୁଭବ କରେ ।

ମସ୍ତରାମ ଦେବତାଙ୍କୁ ଯଞ୍ଚୋପଚାର ବା ଷୋଡ଼ଶୋପଚାରରେ ଯେ ପୂଜା କରେ, ତାହା ନୁହେଁ । ସମ୍ମୁଖରେ ଗୁଡ଼, କଦଳୀ, ଉଖୁଡ଼ା, ଚିନି, ଫଳ ଯାହା ଯେଉଁଦିନ ମିଳିଲା । ତାହା ରଖିଦିଏ । କିଛିକ୍ଷଣ ଗଲା ଉତ୍ତାରୁ ବାଳକମାନଙ୍କୁ ଭୋଗତକ ବିତରଣ କରିଦିଏ । ବୋଧହୁଏ ମସ୍ତରାମକୁ ଶାସ୍ତ୍ରୋକ୍ତ ପୂଜାବିଧି ଜଣା ନ ଥିଲା । ତାହା ଶିଖିବାକୁ ସେ ଚେଷ୍ଟା କରି ନାହିଁ । ବେଶ ମୌଜରେ ମସ୍ତରାମର ଦିନ ଚାଲି ଯାଉଥାଏ ।

ମସ୍ତରାମ ମନେକରେ, ତାର ଦେବତାମାନେ ରାତ୍ରରେ କଥାବାର୍ତ୍ତା ଚଳାନ୍ତି, ଖେଳା କରନ୍ତି; ହସନ୍ତି, ଆମୋଦପ୍ରମୋଦ କରନ୍ତି । ଏକଥା କାହାରି କାହାରିକି କହେ । କହନ୍ତେ ଏ କଥା ଶୁଣିଲା ଲୋକ ମସ୍ତରାମକୁ ବିକୃତ ମସ୍ତିଷ୍କ ବୋଲି ମନେକରନ୍ତି । ଖଟୁଲିରେ ଚୀନା ମାଟିର ପିତୁଳା ଦେଖି କେହି କେହି ନାସିକା କୁଞ୍ଚିତ କଲେ; ମସ୍ତରାମ କହେ' ଯେବେ ଖଟୁଲିରେ ବସି ପୂଜା ପାଇଲେ ପିତଳ ପ୍ରତିମା ଜୀବନ ପାନ୍ତି, ତେବେ ଚୀନା ପିତୁଳାମାନେ ଜୀବନ ପାଇବେ ନାହିଁ କାହିଁକି ? ଏକ ଜାତି ମନୁଷ୍ୟ ସାଙ୍ଗରେ ଅନ୍ୟଜାତିର ମନୁଷ୍ୟର ଯେଉଁପରି ସମ୍ବନ୍ଧ, ସେହିପରି ଭିନ୍ନ ଭିନ୍ନ ସମ୍ପ୍ରଦାୟ ପିତୁଳାମାନଙ୍କ ମଧ୍ୟରେ ସମ୍ବନ୍ଧ ରକ୍ଷା ହୁଏ କି ନା, ତାହା ଦେଖିବାର ତାର ଇଚ୍ଛା । ଏ ଅଦ୍ଭୁତ କଳ୍ପନାର କୌଣସି ପ୍ରତିବାଦ କରିବା ଅସମ୍ଭବ ।

ମସ୍ତରାମର ପୂଜାପଦ୍ଧତି, ମନ୍ତ୍ର ସ୍ତୁତି, ଭଜନ ସବୁ ହିନ୍ଦୁଶାସ୍ତ୍ରର ଓଲଟା । ଅଥଚ ସେ ପୌତଳିକ, ଭକ୍ତ । ମନତ, 'ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ' ।

ଗ୍ରାମବାସୀଙ୍କ ସହିତ ମସ୍ତରାମ ପ୍ରୀତି, ସଦ୍ଭାବ ରଖି ଅନେକ ଦିନ ଅତିବାହିତ କଲା ।

ଚୈତ୍ର ମାସ । ଦିନେ ପ୍ରତ୍ୟୁଷରୁ ଗାତ୍ରୋତ୍ଥାନ କରି ସ୍ନାନାଦି ଶେଷ କରି ଆପଣା ଲୁଗାପଟା ବାନ୍ଧି ମସ୍ତରାମ ସ୍ଥାନ ତ୍ୟାଗ କରିବାକୁ ଉଦ୍ୟତ । କେବଳ ତା'ର ଅନ୍ତରଙ୍ଗ ବନ୍ଧୁ ଓ ସାହାଯ୍ୟ କର୍ତ୍ତାର ଅପେକ୍ଷା କରୁଥାଏ । ବନ୍ଧୁ ଆସି ଉପସ୍ଥିତ । ମସ୍ତରାମ କହିଲେ ।

''ବାବା, ଆଜି ଏ ସ୍ଥାନ ତ୍ୟାଗ କରିବାକୁ ବାଧ ହେଲି । ''ହଠାତ୍ ଏଥିର କାରଣ କ'ଣ ? ପୂର୍ବରୁ ଏଥିରେ କୌଣସି ପ୍ରସ୍ତାବ ନ ଥିଲା । ହଠାତ୍ କୌଣସି ଅପମାନ ପାଇଲ ନା ଅସୁବିଧା ଦେଖିଲ ? ରାତ୍ର ମଧ୍ୟରେ ଏ ଅଦ୍ଭୁତ ଇଚ୍ଛା ମନ ମଧ୍ୟରେ ଜାଗରୂକ ହେଲା କିପରି ? ମାଲମତା ବନ୍ଧାଛନ୍ଦା କରି ଚାଲିଯିବାକୁ ପ୍ରସ୍ତୁତ । ଯେବେ ନିଶ୍ଚୟ ଯିବ, ତେବେ ମତେ ଏଥିର କାରଣ କହିବାକୁ କୌଣସି ଆପତ୍ତି ଅଛି କି ?''

''ନା ବାବା, ମୋର ଯିବାର କାରଣ ତୁମକୁ କହିବାକୁ ବାକି ରହିଛି । ତୁମକୁ ସବୁକଥା କହିବି ଏବଂ ମୋର ବାଳକ ସଖାଗଣଙ୍କୁ ଆଶୀର୍ବାଦ ଦେଇ ଚାଲିବି ।

ଶୁଣ— ମୁଁ ତୁମକୁ ଅନେକଥର କହିଛି ଯେ, ମୋ ଖଟୁଲିରେ ଦେବତାମାନେ କଥାବାର୍ତ୍ତା ହୁଅନ୍ତି ।''

''କହିଛ ସତ, ମାତ୍ର ତାହା ତୁମର ମନର ଭ୍ରମ ।'' ଯୁକ୍ତି ଦ୍ୱାରା ଉକ୍ତିର ସମର୍ଥନ କରିବାର ମୋର କ୍ଷମତା ନାହିଁ । ମୋର ବିଶ୍ୱାସ ଅନୁସାରେ କହିଥାଏ ।

''ତେବେ କହ ।''

''ଆଜି ରାତି ପ୍ରାୟ ତିନିଟା ବେଳେ ମୋ ମୁଣ୍ଡ ଆଡ଼େ କିଏ ଠିଆ ହୋଇ ଡାକିଲା— ଏ ମସ୍ତରାମ, ମସ୍ତରାମ, ମସ୍ତରାମ ।''

''କିଏ ?''

''ମୁଁ ନାରାୟଣଠାକୁର । ମୁଁ ତୋ ଖଟୁଲିରେ ଅଛି ।''

ମୋ ଖଟୁଲିରେ ତ ନାରାୟଣ ଠାକୁର ନାହାନ୍ତି । ହଁ, ମୁଁ ତୋର ଶାଳଗ୍ରାମ, ବଙ୍ଗ ଦେଶରେ ମୋତେ ନାରାୟଣ ଠାକୁର ବୋଲି କହନ୍ତି ।''

''କ'ଣ ହେଲା ?''

''ପ୍ରଥମରୁ ତୁ ମୋତେ ଭୁଟାନ ଦେଶରୁ ଆଣିଲୁ । ବଙ୍ଗ ଦେଶରୁ ଗୋଟିଏ ବାଳଗୋପାଳ ସଂଗ୍ରହ କଲୁ । ପୁଣି ଗୋଟିଏ ବାଣ ଲିଙ୍ଗ ସଂଗ୍ରହ କଲୁ । ଏଥିରେ ତୋର ମନ ତୃପ୍ତ ନ ହେଲା । ତିନି ଗୋଟି ଚୀନାମାଟିର ପ୍ରତିମା ସଂଗ୍ରହ କଲୁ । ଏଠାରେ ଗୋଟିଏ ଉତ୍ତମ ଖଟୁଲି ନିର୍ମାଣ କରି ଛଅ ଗୋଟି ପ୍ରତିମାକୁ ଏକତ୍ର ରଖି ପୂଜା କରୁଛୁ ।'' ''କ'ଣ ହେଲା, ପୂଜାରେ କି ମୁଁ ତ୍ରୁଟି କରିଛି ?

''ନା, ମୁଁ ତାହା କହୁ ନାହିଁ। ତତେ ପରା ଆଉଦିନେ କହିଥିଲି ଯେ, ଚୀନା ପିତୁଳାମାନେ ରାତ୍ରରେ ଖେଳା କରନ୍ତି ?

''କହିଥିଲ, ଭଲକଥା, ସେମାନେ ଖେଳିଲେ ବୁଲିଲେ ସେଥିରେ କ୍ଷତି କ'ଣ ?

ତୁ ବୁଝିଲୁ ନାହିଁ, ସେଥିରେ ଆମ୍ଭମାନଙ୍କୁ କଷ୍ଟ ହେଲା ।''

''ତୁମର କଷ୍ଟ କାହିଁକି ? ତୁମେ ତୁନି ହୋଇଥାଅ ?''
''ଚୁପ୍ ହୋଇ ରହିବାର କି ଗତି ଅଛି ? ସେମାନେ ମୋତେ ଗୋଟିଏ ସୁନ୍ଦର ଗୋଲପଥର ପାଇ ପ୍ରତି ରାତ୍ରିରେ ଗଡ଼ାଇ ଗଡ଼ାଇ ଖେଳନ୍ତି । ମୋର କଥା କହିବାର ଯୁ ନାହିଁ । ସେମାନେ ମୋତେ ନାରାୟଣ ବୋଲି ମନେ କରିବେ ନାହିଁ ବା ବିଶ୍ୱାସ କରିବେ ନାହିଁ । ଭୂତ ବୋଲି ବିଶ୍ୱାସ କରିହୁଏ ତ ପ୍ରହାର କରିବେ ବା କେଉଁଆଡ଼େ ଫିଙ୍ଗି ଦେବେ, ଏ ଭୟରେ କଥା କହିବାକୁ ସାହସ ହୁଏ ନାହିଁ । ବାଣଲିଙ୍ଗଟି ସଫେଦ ଫୁଲ ଭିତରେ ଲୁଚି ରହିଥାଏ, ବାହାରକୁ ଦେଖାଦିଏ ନାହିଁ । ସେମାନେ ତାକୁ ଦେଖିପାରି ନାହାନ୍ତି, ନୋହିଲେ ଡିମ୍ବ ବୋଲି ଭାଙ୍ଗ ପକାନ୍ତେଣି।

''ମୁଁ ଦିନେ ବାଳଗୋପାଳକୁ କହିଲି, ତୁମେ ତ ମୂର୍ତ୍ତି, ସେମାନଙ୍କ ସହିତ ସମକକ୍ଷ ହୋଇ ଖେଳ ଏବଂ ମୋ ପ୍ରତି ଅତ୍ୟାଚାର ନ କରିବାକୁ ଟିକିଏ ଅନୁରୋଧ କର ।'' ସେ କହିଲେ, ''କିହୋ । ମୁଁ ତ ପିଲା ମୂର୍ତ୍ତିଟିଏ, ମୁଁ ତାଙ୍କ ସହିତ ସମକକ୍ଷ କିପରି ? ମୁଁ ଗୁରୁଣ୍ଡି ଗୁରୁଣ୍ଡି ଚାଲିଲା ବେଳେ ମୋ ପିଠି ଉପରେ ଚଢ଼ିବେ, ହାତୀ ଘୋଡ଼ା ପରି ବ୍ୟବହାର କରିବେ । ମୁଁ ଖେଳିବି ନାହିଁ ବା ପାଟି ଫିଟାଇବି ନାହିଁ ।'' ଦିନେ ବାଳଗୋପାଳର ବାମହାତରେ ଖଣ୍ଡେ ଡୋରବାନ୍ଧି ଘୋଷାଡ଼ି ଘୋଷାଡ଼ି ଖେଳିଲେ, ତଥାପି ସେ ବାକ୍ୟ ବ୍ୟୟ କଲେ ନାହିଁ।

''ଆମେ ଦୁହେଁ ବିଚାରିଲୁ, ମସ୍ତରାମ ତ ଏ ଅନିଷ୍ଟ କରିଛି, ଆମ ଅନୁରୋଧ ତ ରକ୍ଷା କରିବ ନାହିଁ । ଯେତେ ଦିନ ପାରେ ସହିବା । ଧାତୁ ପଥର ତ, ସହନଶୀଳତା ହିଁ ଆମର ଗୁଣ । ମସ୍ତରାମ, ଅନେକ ସହିଲୁ, ତୁ ପ୍ରତିକାର ନ କଲେ ଆଉ ଅନେକ ସହିବୁ । ତୋ ଇଚ୍ଛା ।''

''ତୁମର ଇଚ୍ଛା କ'ଣ ?''

''ବାବା, ତୁ ମୋତେ ଭୁଟାନରୁ ଆଣିଥିଲୁ, ସେଠାରେ ନେଇ ଛାଡ଼ିଆ ।''

''ମୋର ପୂଜା ସେବା କି ତୁମକୁ ସୁଖକର ହେଲା ନାହିଁ ? ଭୂଟାନ ଦେଶର ନଦୀରେ ପଡ଼ି ରହିବାଟା ଭଲ ମନେ କଲ ?''

''ହିମାଳୟରେ ମୋର ଜନ୍ମ, ତୁଷାର ନଦୀ ମୋତେ ଗଢ଼ିଛି । ସେଠାରେ ମୋର ଜାତି ଭାଇଙ୍କ ସହିତ ମାତୃ କ୍ରୋଡ଼ରେ, ମାତୃଭୂମିରେ ରହିବି, ଏଥିରୁ ବଳ ଆଉ ସୁଖ କ'ଣ ? ତୋର ଫୁଲ ଅପେକ୍ଷା ନଦୀର ପଥର ଓ ଜଳର ଛେଚ଼ା କୁଟା ମୋ ପ୍ରତି ସୁଖକର । ମୋତେ ନେଇ ଛାଡ଼ିଆ । ଆଦରରେ ଆଣିଥିଲୁ, ଆଦରରେ ନେଇ ଛାଡ଼ିଆ । ଅନ୍ୟର ହସ୍ତରେ ଦେ ନାହିଁ ।''

''ଅନ୍ୟ ଦେବତାଙ୍କ ସମ୍ବନ୍ଧରେ ତୁମର କି ଉପଦେଶ ? ସେମାନଙ୍କୁ ବି ତୁମ ସଙ୍ଗରେ ଭୁଟାନକୁ ନେଇଯିବି ?''

''ନା, ନା, ତା କେବେ କର ନାହିଁ, ମୋତେ କେବଳ ନେଇ ଛାଡ଼ । ସେମାନଙ୍କ ସମ୍ବନ୍ଧରେ ତୋର ଯାହା ବିଚାର ତାହାହିଁ କର ।''

''ମୋର ଏତେ ଆଦର, ପ୍ରେମ, ମମତା ଯତ୍ନ ସବୁ ତୁଚ୍ଛ କରିଦେଇ ସ୍ୱସ୍ଥାନକୁ ଚାଲିଯିବାକୁ ଇଚ୍ଛା କଲ । ଆଚ୍ଛା, ତୁମ ଅନୁରୋଧ କ୍ରମେ ତୁମକୁ ନେଇ ଛାଡ଼ି ଆସିବି, ମାତ୍ର ଅନ୍ୟଟିମାନଙ୍କୁ ମୁଁ ରଖିବି । ପ୍ରତିମା ଗୁଡ଼ିଏ ରଖି ସେମାନଙ୍କ ସେବା ଯତ୍ନ କରିବାକୁ ମୋର ବଡ଼ ଇଚ୍ଛା । ମୁଁ ଏଥିରେ ବଡ଼ ସୁଖ ଅନୁଭବ କରେଁ । ତୁମ ସଙ୍ଗରେ ନେବି । ପୁଣି ଫେରାଇ ଆଣିବି । ''ନା, ନା, ତାହା କରନା, ମୁଁ ଅନୁରୋଧ କରୁଛି । ଏହାଛଡ଼ା ମୁଁ ଗୋଟିଏ ତଥ୍ୟ ଉପଦେଶ ଦେବି । ତୁ କ'ଣ ଶୁଣିବୁ ଓ ମାନିବୁ, ମସ୍ତରାମ ?''

''ହଁ, ନିଶ୍ଚୟ ।''

''ତେବେ ଶୁଣ । ତୁ ଗୃହ ତ୍ୟାଗ କଲୁ କାହିଁକି ? ସଂସାର ବନ୍ଧନରୁ ମୁକ୍ତି ହେବା ନିମନ୍ତେ ନୁହେଁ କି ?

''ହଁ ।''

''ପିତାମାତା ଭାଇ ଧନ ସମ୍ପତ୍ତି ଛାଡ଼ିଲୁ, ମନେକଲୁ ସଂସାରରୁ ମୁକ୍ତ ହେଲୁ । ସେମାନଙ୍କ ଚିନ୍ତାରୁ ରକ୍ଷା ପାଇଲୁ । କିଛିଦିନ ଦେଶ ପର୍ଯ୍ୟଟନ କଲାଉତ୍ତାରୁ ଆଉ ଗୋଟିଏ ବନ୍ଧନରେ ପଡ଼ିଲୁ ।''

''କେଉଁ ବନ୍ଧନ ?''

''ତୋ ସଙ୍ଗୀମାନେ ଭୁଟାନ ଦେଶରେ ଶାଳଗ୍ରାମ ସଂଗ୍ରହ କଲାବେଳେ ଲୋଭାସକ୍ତ ହେଲୁ । ମୋତେ ପାଇଲୁ । ମୁଁ ତୋର ବନ୍ଧନର ସୂତ୍ରପାତ । କ୍ରମେ ପାଞ୍ଚଗୋଟି ମୂର୍ତ୍ତି ସଂଗ୍ରହ

କଲୁ । ସେମାନଙ୍କର ରକ୍ଷା ନିମନ୍ତେ ଗୋଟିଏ ଖଟୁଲି ନିର୍ମାଣ କରାଇଲୁ ବା ଗୋଟିଏ ଗୃହ ନିର୍ମାଣ କଲୁ । ସେହି ଖଟୁଲିକୁ ମଣ୍ଡିବାକୁ କେତେ ଯତ୍ନ ଓ କେତେ ପରିଶ୍ରମ କଲୁ ଓ ପ୍ରତିଦିନ କରୁଛୁ । ଦେବତାମାନଙ୍କ ନିମନ୍ତେ ନାଲି, ନୀଳ, ସବୁଜ ରଙ୍ଗର ପାଟକନା ସଂଗ୍ରହ କଲୁ, ମାଳ, ମୁକୁଟ କିଣିଲୁ । ଯେମନ୍ତ ପୁତ୍ର କନ୍ୟା ନିମନ୍ତେ ଲୋକେ ଭଲ କପଡ଼ା ଅଳଙ୍କାର ଦେଖିଲେ ତାହା କ୍ରୟ କରିବାକୁ ଇଚ୍ଛା କରନ୍ତି, ତୁ ଆମ୍ଭମାନଙ୍କ ପାଇଁ କପଡ଼ା, ମାଳୀ, ଅଳଙ୍କାର କ୍ରୟ କରିବାକୁ, ମାଗିବାକୁ ସର୍ବଦା ଯତ୍ନ କରୁଛୁ । ଓଳିଟାଏ ଏଣେ ତେଣେ ବୁଲି ଫୁଲ ସଂଗ୍ରହ କରୁଛୁ । ପ୍ରତ୍ୟହ ଚିନ୍ତା କରିବାକୁ ପଡୁଛି, ଭିକ୍ଷା କରିବାକୁ ପଡୁଛି । ଦିନେ  କୌଣସି କାରଣରୁ ନିର୍ଦ୍ଦିଷ୍ଟ ସମୟରେ ମ୍ଲାନ ନ ହେଲେ କେତେ ବ୍ୟାକୁଳ ହୋଇ କହୁ, ''ଆହା ଆଜି ଏତେ ବେଳଯାଏ ମୋ ଦେବତା ଅଗାଧୁଆ ରହିଲେ । ଆଜି କିଛି ବାଳଭୋଗ ସଂଗ୍ରହ ହେଲା ନାହିଁ । ମୋ ଜୀବନକୁ ଧିକ୍ । ମୋ ଦେବତାମାନେ କଷ୍ଟ ପାଇଲେ, ଇତ୍ୟାଦି ।''

•

## ସନ୍ତାନ ସ୍ନେହ

ଅହୋ । କି ଭୀଷଣ ବୃଷ୍ଟି । କେବଳ ବୃଷ୍ଟି ନୁହେଁ, ପ୍ରବଳ ବାତ୍ୟା ଘଡ଼ଘଡ଼ି, ମେଘ ଗର୍ଜନ, ବଜ୍ରପାତ ଓ କରକାବୃଷ୍ଟି । ପ୍ରଳୟଙ୍କର କାଣ୍ଡ । ସତେ ବା ମରୁଦ୍‌ଗଣ ରୁଦ୍ରରୂପ ଧାରଣ କରି ଏ ଧରାଟାକୁ ଜଳମଗ୍ନ କରିବାକୁ ଚେଷ୍ଟିତ; ଏଣୁ ଆଗରୁ ଗର୍ବରେ ମସ୍ତକୋତ୍ତୋଳନକାରୀ ମହୀରୁହନିଚୟକୁ ଭୂଲୁଣ୍ଠିତ କରିବାକୁ ବ୍ୟସ୍ତ । ପଶୁପକ୍ଷୀ ପଥିକଙ୍କର ବଡ଼ ବିପଦର ସମୟ ।

ସନ୍ଧ୍ୟା ସାତଘଣ୍ଟା । ଘୋର ଅନ୍ଧକାର । ଅନ୍ୟ କଥା ତେଣେ ଥାଉ, ନିଜର ବସ୍ତ୍ର ମଧ୍ୟ ଦୃଶ୍ୟ ହେଉ ନାହିଁ । ବାଟ କଥା ପଚାରେ କିଏ ? କେବଳ ଅନୁଭବ ଦ୍ୱାରା ଅତି ସାବଧାନରେ ପରିଚିତ ପଥରେ ପଦକ୍ଷେପ କରି ପାଦେ ପାଦେ ଚାଲିବା କଥା ।

ଦୁଇ ଜଣ ବ୍ୟକ୍ତି ଏତାଦୃଶ ଦୁଃସମୟରେ ଆପଣା ଗ୍ରାମ ଆଡ଼କୁ ଅଗ୍ରସର ହେଉଥିଲେ । ଏ ଦୁହିଁଙ୍କି ଜଳସିକ୍ତ କରିବା ନିମନ୍ତେ ଓ କରକାପାତ ସହିବାକୁ ହେବ ବୋଲି ପ୍ରଭଞ୍ଜନ ଆଗରୁ ଛତା ଯୋଡ଼ିକ ଓଲଟ ପାଲଟ କରି ଭାଙ୍ଗି ପକାଇଥିଲା । ଅଜସ୍ର ଜଳ ଧାରାପାତ ସହି ବାଟରେ ଚାଲିବା ପଥିକ ପକ୍ଷରେ ଯେପରି କଷ୍ଟକର ଓ ଭୟପ୍ରଦ, ବୃକ୍ଷମୂଳରେ ଆଶ୍ରୟ ନେବା ସେହିପରି ବିପଜ୍ଜନକ ଓ ଭୟପ୍ରଦ । ଚାରିଆଡ଼େ ରଡ଼ ରଡ଼ ହୋଇ ଗଛର ଶାଖା ପ୍ରଶାଖା ଭାଙ୍ଗି ପଡୁଅଛି । ଆକାଶରେ ବିଦ୍ୟୁତ୍ ଖେଳୁଅଛି, କିଏ କହିପାରେ କେଉଁ ଗଛ ଉପରେ କେତେବେଳେ ବଜ୍ରପାତ ହେବ ? ଅତ୍ୟୁଚ୍ଚ ବୃକ୍ଷମାନଙ୍କଠାରୁ ଦୂରବର୍ତ୍ତୀ କୌଣସି ଘନ ପତ୍ର ମଣ୍ଡିତ ଅନୁଚ୍ଚ ବୃକ୍ଷର ଆଶ୍ରୟ ମିଳିଲେ କଥଞ୍ଚିତ୍ ଭୟ, ଉପଦ୍ରବ ଓ କଷ୍ଟରୁ ରକ୍ଷା ମିଳିବା ସମ୍ଭବ । ମାତ୍ର ଗାଢ଼ ଅନ୍ଧକାରରେ ଏତାଦୃଶ ଗୋଟିଏ ବୃକ୍ଷର ଦର୍ଶନ ମିଳିବା ସହଜ ନୁହେଁ । ବାଟ ଚାଲି ଅଛନ୍ତି, ବିଦ୍ୟୁତ୍ - ଝଲକରେ ସଡ଼କ ନିକଟରେ ଗୋଟିଏ ଇଚ୍ଛାନୁରୂପ ବୃକ୍ଷ ନଜରରେ ପଡ଼ିଲା । ଦୁହେଁ ସେଠାକୁ ଗଲେ । ବୃକ୍ଷଟି ଯେ କେବଳ ଶାଖା ଓ ପତ୍ରରେ ସାନ୍ଦ୍ର ଏପରି ନୁହେଁ, ବୃକ୍ଷ ତଳେ ଗୋଟିଏ ସମତଳ ଚଟାଣ ଥିଲା । ଏହା ଦେଖି ସେ ଦୁହିଁଙ୍କର ଆନନ୍ଦର ସୀମା ରହିଲା ନାହିଁ, ତଳେ ଶୁଷ୍କ ପଥର, ଉପରେ ସାନ୍ଦ୍ର ଛତ୍ରାକାର ବୃକ୍ଷତଳରୁ ଉପରଯାଏ ଶାଖା-ପ୍ରଶାଖା-କୌଣସି ଭୟ ଉପସ୍ଥିତ ହେଲେ ବୃକ୍ଷ ଉପରକୁ ଯିବାର ଅନ୍ତରାୟ ଆଦୌ ନାହିଁ । ଉଭୟେ ଭାବିଲେ, ଯେବେ ଝଡ଼ର ପ୍ରକୋପ ନ କମେ, ତା'ହେଲେ ହୁଏତ ରାତ୍ରଟାଯାକ ସେଠାରେ ଅତିବାହିତ କରିବାକୁ ହେବ । ଲୁଗା ଚିପୁଡ଼ି ତୁନି ହୋଇ ବସିଲେ ।

ଏଠାରୁ ଗ୍ରାମ ପ୍ରାୟ ଏକ ମାଇଲ । ଅଧମାଇଲ କେବଳ ଜଙ୍ଗଲ । ଏ ସ୍ଥାନଟି ନିରାପଦ ନୁହେଁ । ବନ୍ୟଜନ୍ତୁ ଯିବା ଆସିବା କରନ୍ତି, ଏତାଦୃଶ ବୃଷ୍ଟିବେଳେ ଭଲ୍ଲୁକ ଓ ବନ୍ୟ ବରାହ ଏ ସ୍ଥଳରେ ବିଚରଣ କରନ୍ତି । ବ୍ୟାଘ୍ର ମଧ୍ୟ ସମୟ ସମୟରେ, ବିଶେଷତଃ ଏପରି ବୃଷ୍ଟି ବେଳେ ବାଟେ ବାଟେ ଏକସ୍ଥାନରୁ ଅନ୍ୟସ୍ଥାନକୁ ଯାଏ । ଚିତାବାଘ ? ଚିତାବାଘ ତ ଗ୍ରାମ ଭିତରେ ପ୍ରବେଶ କରୁଅଛି, ଏ ଅରଣ୍ୟରେ ରହିବା କଥା ପଚାରେ କିଏ ? ମନୁଷ୍ୟ ଆସନ୍ନ ବିପଦକୁ ଦୁରୂହ କରି ମଣେ । ବୃଷ୍ଟି ଭୟଟା ଶ୍ୱାପଦ ଭୟରୁ ମଧ୍ୟ ଅତ୍ୟଧିକ ବୋଲି ମନେ ହେଲା, ବର୍ଷା ପବନ ଚାଲିଅଛି । ଦୁଇ ସଙ୍ଗୀ ତୁନିହୋଇ ବସିଲେ । ଅନ୍ଧାର, ଏଣୁ ଆଖି ଥାଉଁ ଥାଉଁ ଅନ୍ଧ, ମାତ୍ର ଶବ୍ଦ ଗ୍ରହଣ କରିବାକୁ କାନ ଡେରି ରହିଥିଲେ । କିଛିକ୍ଷଣ ଚାଲିଗଲା । ନିକଟରେ ଥିବା ଗୋଟାଏ ବୃକ୍ଷମୂଳରୁ ଶୀତରେ କମ୍ପୁଥିବା କୌଣସି ବ୍ୟକ୍ତିର ଉହୁ ଉହୁ ଶବ୍ଦ କର୍ଣ୍ଣରେ ପ୍ରବେଶ କଲା, ପୁଣି ବାୟୁରେ ଉଭେଇଗଲା । ସଙ୍ଗୀ ଦୁହେଁ ଏହା ନ ଶୁଣିଲା ପରି ରହିଲେ । ପୁଣି ଉହୁ ସହିତ ''ମାଗୋ'' ଏହି ଆର୍ତ୍ତସ୍ୱର ସେମାନଙ୍କର କର୍ଣ୍ଣଗୋଚର ହେଲା । ଜଣେ କହିଲେ, ''ବାମ

ଆଡ଼େ ଜଣେ ମନୁଷ୍ୟର ଶବ୍ଦ ଶୁଣାଗଲା ପରା ?'' ଆରଜ— ''ଭୂତ ପ୍ରେତର ଶବ୍ଦ ନୁହେଁ ବୋଲି କିଏ କହିପାରେ ?'' ଏ ସ୍ଥାନଟା ବା ଏ ସ୍ଥାନରୁ ଅଳ୍ପ ଦୂରରେ ତ କୋହ୍ଲମାନଙ୍କର ମଶାଣି ଭୂମି ।''

ଉଭୟେ ତୁନି ହୋଇ କାନେଇଲେ, ପୁଣି ପୂର୍ବବତ୍ ଅସ୍ପଷ୍ଟ ଆର୍ତ୍ତନାଦ ଶୁଣାଗଲା ।

''ଡାକିବି କି ?''

''ଉହୁଁ, ରହନା, ଟିକିଏ ଠଉରାଇ ନେଉଁ ।''

ପୁଣି ସେହି ଆର୍ତ୍ତନାଦ ଶୁଣାଗଲା । ମନୁଷ୍ୟ ବୋଲି ଏମାନଙ୍କର ହୃଦ୍‌ବୋଧ ହେବାରୁ ଡାକଦେଲେ, ''ତୁମେ କିଏ, କେଉଁଠାରେ ଅଛ ?''

''ମୁଁ ଦୁଃଖିନୀ, ଏଠି ବିପଦରେ ପଡ଼ିଛି ।''

ଏହା କହି ବିଚ୍ଚାରୀ ଭାବିଲା ଯେ, ଏ ଦୁର୍ଯୋଗ ବେଳେ ଏଠାକୁ ମନୁଷ୍ୟ ଆସିଲେ କାହୁଁ ? ତା'ର ଭାଗ୍ୟ ସୁପ୍ରସନ୍ନ, ସଙ୍ଗ ପାଇଲେ ଅନାୟାସରେ ଗ୍ରାମକୁ ଯାଇ ପ୍ରାଣ ରକ୍ଷା କରିପାରିବ । ଯୁବକ ଦୁହେଁ ଏତାଦୃଶ ଦୁଃସମୟରେ ଜଣେ ସ୍ତ୍ରୀଲୋକ ଏକାକିନୀ ଅରଣ୍ୟରେ ବିପଦଗ୍ରସ୍ତ ହୋଇ ପଡ଼ିଥିବା କଥା ଭାବି ବିସ୍ମିତ ହେଲେ ଏବଂ ସେମାନଙ୍କର କ୍ଷଣିକ ବିପତ୍ତି କେବଳ ଦୁଃଖିନୀର ସାହାଯ୍ୟ ନିମନ୍ତେ ଉପସ୍ଥିତ ହୋଇଥିଲା ବୋଲି ସେମାନେ ଭାବିନେଲେ । ଉଭୟେ ଅଗ୍ରସର ହୋଇ କହିଲେ, କୌଣସି ଭୟ ନାହିଁ ଆମ୍ଭ ନିକଟକୁ ଆସ ।''

ରମଣୀ ଆପଣା ବୋକଚ୍ଚାଧରି ସେ ଦୁହିଁଙ୍କ ସଙ୍ଗରେ ପଥର ଉପରକୁ ଆସିଲେ । ଘୋର ଅନ୍ଧକାର । କେହି କାହାରି ରୂପରେଖ ଦେଖିବା ସମ୍ଭବ ନ ଥିଲା । ବୟସର ପରିଚ୍ଚୟ ପାଇବା ମଧ ସମ୍ଭବ ନ ଥିଲା । ବିପତ୍ତି ବେଳେ ବୟସ, ଜାତି, ବର୍ଣ୍ଣର ବିଚ୍ଚାର ରହେ ନାହିଁ । ସମ୍ମୁଖୀନ ବିପତ୍ତିରୁ ରକ୍ଷା ପାଇବା ହିଁ ମୂଳ ଉଦ୍ଦେଶ୍ୟ ଥାଏ । ତିନି ଜଣ ପଥର ଉପରେ ଉପବେଶନ କଲେ ।

''ତୁମେ ଏକାକିନୀ ଏଠାକୁ ଆସିଲ କିପରି ଓ କି ନିମନ୍ତେ ?'' ''ମୁଁ ସାମାନ୍ୟ ବୃଷ୍ଟି ହେଲାବେଳେ ଆସିଲି, ବର୍ଷାରୁ ରକ୍ଷା ମିଳିବ ବୋଲି ଗୋଟିଏ ବଡ଼ ଗଛମୂଳରେ ଠିଆ ହୋଇଥିଲି, ବେଶି ବର୍ଷା ପବନରେ ଗୋଟିଏ ଶାଖା ଭାଙ୍ଗି ପଡ଼ିବାରୁ ଗୋଟିଏ ପଳାସ ଗଛ ମୂଳରେ ବସିରହିଥିଲି । ବର୍ଷା ପବନ ବେଳକୁବେଳ ବଢ଼ିବାକୁ ଲାଗିଲା । ଏଣୁ ସେହି ଗଛମୂଳରୁ ଅନ୍ୟତ୍ର ଯାଇପାରିଲି ନାହିଁ । ତିନ୍ତୁଛି, ଶୀତରେ କମ୍ପୁଛି— ମୋର ଲୁଗା ଦୁଇଖଣ୍ଡ ପତ୍ର ଘୋଡ଼ାଇ ରଖିଛି । ଲୁଗା ପାଲଟିଲେ ଫଳ କ'ଣ ? ପୁଣି ତ ତିନ୍ତିଯାନ୍ତା । ମୁଁ ଥିବା ସ୍ଥାନରେ ଗୋଇଠିଏ ପାଣି, ଏ ସ୍ଥାନଟି ଶୁଖିଲା । ତୁମେମାନେ ଆସି ନ ଥିଲେ ମୋର ଆଜି ଜୀବନ ରହି ନ ଥାନ୍ତା । ଗ୍ରାମକୁ ଯାଆନ୍ତି କିପରି ? ବାଟ ତ ମୋତେ ଜଣା ନାହିଁ ।''

''ତୁମେ ଏଠାକୁ ଆସିଲ କିପରି ? ତୁମଘର କେଉଁ ଗ୍ରାମରେ ?''

''ମୁଁ ଏ ସ୍ଥାନର ନୁହେଁ । ମୋର ଦୁଃଖୀ କାହାଣୀ ଅନେକ ଅଛି । ଏବେ କହିବାକୁ ସମୟ ନାହିଁ । ତୁମମାନଙ୍କ ଦୟାରୁ ମୋର ପ୍ରାଣ ରହୁ, ଯେବେ ଦୟାକରି ମୋର ଦୁଃଖ କଥା ଶୁଣିବାକୁ ଇଚ୍ଛା କରିବ, ତେବେ ନିଷ୍କପଟରେ ସବୁ କହିବି । ମୁଁ ଦୁଃଖିନୀ, ପତିତା, ମୋତେ ଆହା କରିବାକୁ ଜଗତରେ କେହି ନାହିଁ । ତୁମେ ମୋ କଥା ଶୁଣି ନ ଥିବାରୁ ନିକଟରେ ସ୍ଥାନ ଦେଇଛ । କେଜାଣି ମୋ କଥା ଶୁଣିଲେ ଘୃଣା କରି ମୋତେ ତଡ଼ି ଦେବେ । ତୁମ ପଛେ ପଛେ ମୋତେ ଗ୍ରାମକୁ ଯିବାକୁ ଅନୁମତି ଦିଅ, ମୋର ଏତିକି ଭିକ୍ଷା । ମୋର ପ୍ରାଣ ରକ୍ଷାକର । ମୋର ବଞ୍ଚିବାକୁ ବଡ଼ ଇଚ୍ଛା ।'' ବିଚ୍ଚାରୀ କଇଁ କଇଁ ହୋଇ କାନ୍ଦି ଉଠିଲା । ଏ କରୁଣ କ୍ରନ୍ଦନ ଶୁଣି ଯୁବକ ଦୁହେଁ ଭାବିଲେ, ଏପରି ସମୟରେ ଏହାକୁ ଜୀବନ କାହାଣୀ ପଚ୍ଚାରି ବ୍ୟତିବ୍ୟସ୍ତ କରିବା ଉଚିତ ନୁହେଁ । ଏହାକୁ ସାହାଯ୍ୟ ଦେଇ ଗ୍ରାମରେ ପହଞ୍ଚାଇ ଦେବାହିଁ କର୍ତ୍ତବ୍ୟ । କହିଲେ, ''ତୁମର କୌଣସି ଚିନ୍ତା ନାହିଁ, ଆମ ସହିତ ଗ୍ରାମକୁ ନିର୍ଭୟ ଚିତ୍ତରେ ଯିବ । ଗ୍ରାମରେ ତୁମର କେହି ପରିଚ୍ଚିତ ବ୍ୟକ୍ତି ଅଛନ୍ତି କି ?

''ନାହିଁ ।''

''କେଉଁଠାରେ ରହିବ ?''

''ଜାଣେନା, ଗ୍ରାମରେ ପହଞ୍ଚିଲେ କାହାରି ଓଳିତଳ ଖୋଜିବି ।''

ତିନି ଜଣ ନିର୍ବାକ ହୋଇ ଅନେକକ୍ଷଣ ବସି ରହିଲେ ।

କିଛିକ୍ଷଣ ଅତିବାହିତ ହେବାରୁ ଝଡ଼ର ପ୍ରକୋପ ବନ୍ଦ ହେଲା । କେବଳ ବୃଷ୍ଟି ଏକାବେଳେକେ ବନ୍ଦ ହୋଇ ନ ଥାଏ । ଯୁବକ ଦୁହେଁ ଭାବିଲେ, ଏହି ସମୟରେ ଏଠାରୁ ଯିବା ଭଲ, ପଛକୁ ବେଶି ରାତ୍ର ହେବ, କେଜାଣି ପୁନର୍ବାର ଝଡ଼ ହୋଇପାରେ । ପାଦେ ପାଦେ ଚାଲିବା ଭଲ । ରମଣୀକୁ ଲକ୍ଷ୍ୟକରି କହିଲେ, ''ଉଠ, ଆମ ସଙ୍ଗରେ ଗ୍ରାମକୁ ଯିବ । କୌଣସି ଭୟ ନାହିଁ । ଆମ ସଙ୍ଗରେ ବନ୍ଧୁକ ଅଛି । ଏ

ସ୍ଥାନଟିରେ ହିଂସ୍ର ପଶୁର ଭୟ ଥିଲେ ମଧ ଆମ ଦୁହିଁଙ୍କର ପ୍ରାଣ ଥିବାଯାଏ ତୁମେ ନିରାପଦ ।

ଆମେ ଦୁହେଁ ଆଗ ପଛ ହୋଇ ଚାଲିବୁଁ, ତୁମେ ମଧରେ ଚାଲ ।''

''ନା, ନା, ମୁଁ ତୁମ ଦୁହିଙ୍କ ପଛରେ ଚାଲିବି, ତୁମ୍ଭେମାନେ ନିକଟରେ ଥାଉଁ ଥାଉଁ କି ଡର ଅଛି ?''

''ତୁମେ ଜଙ୍ଗଲର କଥା ଜାଣ ନାହିଁ, ପଛରେ ଥିବା ଲୋକପ୍ରତି ଭୟ ବେଶି । ବ୍ୟାଘ୍ର କେବଳ ପଛ ବ୍ୟକ୍ତିକୁ ଆକ୍ରମଣ କରେ । ଏ ଅନ୍ଧାରରେ ଜଙ୍ଗଲ ବାଟରେ ତୁମକୁ ପଛରେ ରଖି ଆମେ ଆପଣା ପ୍ରାଣଧରି ଆଗ ଚାଲିବୁଁ, ସେ କଥା ଉଚିତ ନୁହେଁ। ତୁମେ ମଝିରେ ଚାଲ ।''

ରମଣୀ ସ୍ୱୀକୃତା ହେଲେ। ତିନିଜଣ ଆଗପଛ ହୋଇ ବାଟ ଚାଲିଲେ । ବର୍ଷା ଟପର ଟପର ପଡୁଅଛି, ଅନ୍ଧକାର ପୂର୍ବବତ୍ । ଆଗ ପଛ କିଛି ଦିଶୁ ନାହିଁ, ନିକଟରେ କୌଣସି ବନ୍ୟଜନ୍ତୁ ଠିଆ ହୋଇଥିଲେ ମଧ ଜାଣିବାର ଉପାୟ ନାହିଁ । ବର୍ଷାର ଟପଟପ ଶବ୍ଦ ହେତୁରୁ ଅନ୍ୟ ଶବ୍ଦ ମଧ କର୍ଣ୍ଣଗୋଚର ହେଉ ନ ଥାଏ । ଅଭ୍ୟସ୍ତ ପଥ ଏବଂ ବିଜୁଳିର ଝଲକ ମଧରେ ମଧରେ ବାଟ ଦେଖାଇ ଦେଉଥାଏ, ଏଣୁ ଯେକୌଣସି ପ୍ରକାରେ ଶଙ୍କିତ ଚିତ୍ତରେ ସତର୍କତା ଅବଲମ୍ବନ କରି ବାଟ ଚାଲିଥାନ୍ତି । କଥାବାର୍ତ୍ତା ବନ୍ଦ ହୋଇଗଲେ ଚଳେ; ତେବେ ପାଟି ଫିଟାଇ ବନ୍ୟଜନ୍ତୁଙ୍କୁ ଭୟ ଦେଖାଇବା ଅଭିପ୍ରାୟରେ ମଝିରେ ଥରେ ଥରେ ''ଆଉ କେତେ ଦୂର ?'' ବୋଧେ ଅଳ୍ପ ଦୂର ଅଛି, ଏଣିକି ଭୟର କାରଣ ଗଲା'' ଇତ୍ୟାଦି କଥା ଉଚ୍ଚାରଣ ହେଉଥାଏ ଏବଂ କେତେବେଳେ କେତେବେଳେ କଣ୍ଠ ପରିଷ୍କାର କରିବା ଛଳନାରେ କାଟନ୍ତି । ଜଙ୍ଗଲରେ କୌଣସି ଜନ୍ତୁ ଦେଖାଗଲା ନାହିଁ ବା ଭୟପ୍ରଦ କୌଣସି ଶବ୍ଦ ଶୁଣାଗଲା ନାହିଁ, ନିରାପଦରେ ଗ୍ରାମରେ ପହଞ୍ଚିଲେ । ଆଗ ବ୍ୟକ୍ତି ରମଣୀକୁ ପଚାରିଲେ ତୁମେ ଆମ ଘରେ ରହିବ ?

''ମୁଁ ନିଜର ପରିଚୟ ନ ଦେବାଯାଏ କାହାରି ଘର ଭିତରକୁ ପଶିବି ନାହିଁ । କୌଣସି ବାହାରିଆ ଘରେ ରଖାଇ ଦେଲେ ମୋର ବିଶେଷ ଉପକାର ହେବ । କୌଣସି ପଡ଼ିଆ ଘର ବା ଗୁହାଳରେ ରହିବାକୁ ମୋର ଆପତ୍ତି ନାହିଁ, ତୁମେ ଦୁହେଁ ମୋର ଜୀବନରକ୍ଷା କରିଛ, ଏହାହିଁ ଯଥେଷ୍ଟ । ତୁମେମାନେ ନ ଥିଲେ ମୁଁ ଆଜି ଅରଣ୍ୟରେ ମରିଥାନ୍ତି । ମୋର ମୃତ୍ୟୁକୁ ଭୟ ନାହିଁ । ମାତ୍ର ମୋର ଗର୍ଭରେ ଯେ ଶିଶୁ ଅଛି, ତାକୁ ବଞ୍ଚାଇବା ନିମନ୍ତେ ମୋର ନିଜ ଜୀବନ ପ୍ରତି ଏତେ ମମତା । ତୁମ୍ଭମାନଙ୍କ ଦୟାରୁ ବଞ୍ଚିଲି, ଯଥେଷ୍ଟ । ପତର ଘୋଡ଼ାଇ ଲୁଗା ଧରିଅଛି, ଚିନ୍ତି ନାହିଁ । ରାତ୍ରରେ କିଛି ଆଉ ଦରକାର ନାହିଁ, କାହାରି ଓଳି ତଳରେ ଶୋଇପଡ଼ିବି ।''

''ନା, ନା, ସେ କି କଥା, ଆମ ଘର ଭିତରକୁ ଯିବାର ଆପତ୍ତି ଥିଲେ ବାହାରେ ଯଥେଷ୍ଟ ସ୍ଥାନ ଅଛି, ଚାଲ ନିର୍ଭୟ ଚିତ୍ତରେ ରାତିଟା କଟାଇବ । କାଲି ସକାଳେ ପୁଣି ଦେଖାଯିବ ।''

ଜଣେ କହିଲେ, ''ତୁମ ନିମନ୍ତେ କିଛି ଖାଦ୍ୟଦ୍ରବ୍ୟ ଓ ଢାଳେ ପାଣି ଆଣିଦେବି । ଜଳଖିଆ କରି ନିଶ୍ଚିନ୍ତରେ ଏଠାରେ ଶୋଇପଡ଼ିବ, କିଛି ଭୟ ନାହିଁ, କେହି ମଧ କିଛି ଜାଣିବେ ନାହିଁ ।

''ନା, ନା, କ୍ଷମାକର, ଆଜି ଆଉ ମୁଁ କିଛି ଖାଇବି ନାହିଁ । ସୂର୍ଯ୍ୟାସ୍ତ ବେଳେ ଜଳଖିଆ ଖାଇଛି । ବଡ଼ କ୍ଳାନ୍ତି ବୋଧ ହେଉଛି, ତୁନି ହୋଇ ଶୋଇପଡ଼ିବି । ଶୀଘ୍ର ଶୋଇବି । ଯାହା ହେଲା ତାହା ଯଥେଷ୍ଟ, ଆଉ ଆୟୋଜନ କଲେ ମୋର ବିଶେଷ କଷ୍ଟ ହେବ, କ୍ଷମାଦିଅ ।''

''ଆଚ୍ଛା ତୁମର ଯେବେ ଇଚ୍ଛା ନାହିଁ, ବଳାଇବା ଦରକାର କ'ଣ ?''

ବନ୍ଧୁ ଦୁହେଁ ଯିବାକୁ ଉଦ୍ୟତ ହେଲାବେଳେ ରମଣୀ ପୁଣି କରୁଣ ସ୍ୱରରେ କହିଲେ—

''ମୋର ଆଉ ଗୋଟିଏ ଜଣାଣ ।''

''କ'ଣ କହିବାର ଅଛି ନିର୍ଭୟରେ କୁହ ।''

ମୁଁ ଏଠାରେ କାଲି ସକାଳଯାଏ ନା ପାହାନ୍ତା ଯାଏ ଶୋଇବି । ମୋତେ ଗୋଟିଏ ସ୍ଥାନ କହିଦିଅ । ମୁଁ ବଡ଼ିଭୋରରୁ ଉଠି ସେଠାକୁ ଯିବି, ତୁମ ଦୁହିଁଙ୍କି ମୋର ଜୀବନ କାହାଣୀ କହିବି । ତାହା ପ୍ରକାଶ କଲେ ମୋର ଅନେକ ଦୁଃଖ ଲାଘବ ହେବ । ତୁମେ ମୋର ଦୁଃଖ କାହାଣୀ ଶୁଣି ସାରିଲାରୁ ମୋତେ ଯେଉଁ ଉପଦେଶ ଦେବ, ତାହା ମୋର ଶିରୋଧାର୍ଯ୍ୟ । ତୁମେ ଦୁହେଁ ତ ମୋର ଜୀବନ ରକ୍ଷା କରିଛ, ତୁମଠାରେ ମୋର ଗୋପନ କରିବାର କ'ଣ ଅଛି ?'' ତୁମେମାନେ ମୋ କଥା ନ ଶୁଣିଲେ ମୁଁ ଏଠାରୁ ଅନ୍ୟ ସ୍ଥାନକୁ ଚାଲିଥିବି ।''

''ତୁମର ଦୁଃଖପୂର୍ଣ୍ଣ କଥା ଶୁଣି ସମଗ୍ର ବିଷୟ ଜାଣିବାକୁ ମନ ବ୍ୟାକୁଳ ହେଉଅଛି । କାଲିକି କାହିଁକି ଆଜି ତୁମେ କ୍ଳାନ୍ତ ହୋଇ ନ ଥିଲେ ରାତ୍ର ଉଜାଗର ହୋଇ ତୁମ କଥା ଶୁଣିବାକୁ ଆମର ଆପତ୍ତି ନ ଥିଲା । ଆମର ଯେତେ

ଗୁରୁତର କାର୍ଯ୍ୟ ଥିଲେ ମଧ୍ୟ ତୁମ କଥା ନ ଶୁଣି ଅନ୍ୟତ୍ର ଯିବୁ ନାହିଁ । କିମ୍ବା ଅନ୍ୟ କାର୍ଯ୍ୟରେ ହାତ ଦେବୁ ନାହିଁ ।'' ଏହା କହି ସେହି ଘରଠାରୁ ଉତ୍ତର ଦିଗକୁ ଅଳ୍ପ ଦୂରରେ ଥିବା କ୍ଷୁଦ୍ର ଜଙ୍ଗଲ ଓ ଯୋଡ଼କୁ ଯାଇ ସେଠାରେ ଅପେକ୍ଷା କରିବାକୁ ସମଝାଇ ଦେଲେ ଏବଂ କହିଲେ ।

''ସାମାନ୍ୟ ଜଙ୍ଗଲ ଥିଲେ ମଧ୍ୟ କୌଣସି ଭୟର କାରଣ ନାହିଁ । ଜୋଡ଼ ଖଣ୍ଡିରେ ବଡ଼ ବଡ଼ ପଥର ଅଛି । ଗଛ ଅଛି, ଗଛ ତଳେ ଅପେକ୍ଷା କରୁଥିବ । ସେ ସ୍ଥାନଟି ନିର୍ଜନ ବୋଇଲେ ଚଳେ । ସକାଳେ ସେଠାକୁ ସାଧାରଣତଃ କେହି ଯାନ୍ତି ନାହିଁ । ସେଠାରେ ଯାଇ ଅପେକ୍ଷା କରୁଥିବ, ଆମେ ଯଥା ସମୟରେ ଉପସ୍ଥିତ ହେବୁଁ ।''

ଦୁଇ ବନ୍ଧୁ ସେଠାକୁ ଚାଲିଗଲେ । ରମଣୀ ଝଡ଼ ବର୍ଷା ଏବଂ ଦୁଇବନ୍ଧୁଙ୍କ ଦୟା ଓ ସାହାଯ୍ୟ କଥା ଭାବୁଭାବୁ ଶୋଇପଡ଼ିଲେ ।

॥ ୨ ॥

ଦୁଇ ବନ୍ଧୁ ରମଣୀକୁ ଆଶ୍ରୟ ଦେଇ ସେ ସ୍ଥାନ ତ୍ୟାଗ କଲେ ସତ, ମାତ୍ର ନିଶ୍ଚିତ ମନରେ ନୁହେଁ । ଘୋର ବର୍ଷାରେ; ଅରଣ୍ୟରେ, ରାତ୍ରରେ ଅପରିଚିତା ଜଣେ ଭଦ୍ରରମଣୀକୁ ଅସହାୟ ଓ ବିପଦଗ୍ରସ୍ତ ଦେଖିଲାବେଳୁ ସେ ଦୁହିଁଙ୍କ ମନ ସନ୍ଦେହ ଦୋଳାରେ ଆନ୍ଦୋଳିତ ହେଉଥିଲା । ନିଶ୍ଚୟ ଭଲ ଘର ଝିଅ, ଅଶିକ୍ଷିତା ମଧ୍ୟ ନୁହନ୍ତି । କଥାବାର୍ତ୍ତା ସରଳ ଓ ନିଷ୍କପଟ । ସହାନୁଭୂତିଶୀଳା ଭିକାରୁଣୀ, ସହୃଦୟତାର ପରିଚୟ ପାଇଲେ ଆପଣାର ହୃଦୟ ଖୋଲି ସମସ୍ତ ଆତ୍ମବୃତ୍ତାନ୍ତ ବ୍ୟକ୍ତ କରି ହୃଦୟର ଦୁଃଖଜ୍ୱାଳାରୁ ମୁକ୍ତିଲାଭ କରିବାକୁ ତତ୍ପରା । ଏ ରମଣୀଟି କିଏ ? କି ହେତୁରୁ ବିପତ୍ତି ପସରା ମୁଣ୍ଡରେ ବୋହି ଗୃହତ୍ୟାଗିନୀ ହୋଇଅଛି ? ଏହି ଚିନ୍ତା ଦୁଇବନ୍ଧୁଙ୍କ ହୃଦୟକୁ ଆନ୍ଦୋଳିତ କରିବାକୁ ଲାଗିଲା । ସେହି ସ୍ଥାନ ତ୍ୟାଗ କଲେ ସତ, ପୁଣି ଏକ ସ୍ଥାନରେ ଆନ୍ଦୋଳିତ କରିବାକୁ ଲାଗିଲା । ସେହି ସ୍ଥାନ ତ୍ୟାଗ କଲେ ସତ, ପୁଣି ଏକ ସ୍ଥାନରେ ବସି ଏ ବିଷୟର ଆଲୋଚନା କରିବାକୁ ଇଚ୍ଛାକଲେ । ଦୁହିଁଙ୍କ ଘରବାଡ଼ି ଯୋଡ଼ିକ ପରସ୍ପର ସଂଲଗ୍ନ ବୋଇଲେ ଚଳେ । ଦୁହେଁ ଘରକୁ ଯାଇ ଲୁଗାପାଲଟି ପୁଣି ଏକାଠି ଆସି ବସିଲେ ଏବଂ ଗତ ଘଟଣାଗୁଡ଼ିକର ଆଲୋଚନା କରିବାକୁ ଲାଗିଲେ । ଦୁହେଁ ବାଲ୍ୟ ସହଚର ବନ୍ଧୁ, ଆତ୍ମୀୟ, ଶିକ୍ଷିତ, ସମବୟସ୍କ, ଭଦ୍ରସନ୍ତାନ । ଖାଇବା ପିନ୍ଧିବାକୁ ଅଛି । ଜମିବାଡ଼ି ଅଛି । ଉଭୟେ ଅଭାବଗ୍ରସ୍ତ ନୁହନ୍ତି, ପାଠପଢ଼ା ଛାଡ଼ି ଗୃହକର୍ମ ଶିକ୍ଷାରେ ବ୍ୟସ୍ତ । ଖମାର, ଚାଷ ବ୍ୟବସାୟ ଦେଖନ୍ତି । ପିତାମାତାଙ୍କ ସାହାଯ୍ୟ ନିମନ୍ତେ ଯାହା ପ୍ରୟୋଜନ, ତାହା କରିବାରେ ତ୍ରୁଟି ନାହିଁ ଏଣୁ ପିତାମାତାଙ୍କର କଲ୍ୟାଣ ଭାଜନ । ଗ୍ରାମର ଲୋକେ ମଧ୍ୟ ଏ ଦୁହିଁଙ୍କୁ ସ୍ନେହ କରନ୍ତି ।

ଦୁହେଁ ଯୁବକ, ଅବିବାହିତ । ଅବିବାହିତ ଯୁବକମାନଙ୍କୁ କୌଣସି ଗୋଟାଏ ହେଲେ ଦୋଷ ଦେବାକୁ ଖଳମାନଙ୍କ ଜିହ୍ୱା ହଲଚଲ ହେଉଥାଏ । ଅବିବାହିତ ଯୁବକମାନଙ୍କ ଚରିତ୍ରଘଟିତ ଦୋଷ, କଳଙ୍କ ଶ୍ରବଣ କରିବାକୁ ଖଳମାନେ କାନ ଡେରି ରହିଥାନ୍ତି । ମାତ୍ର ଏ ଦୁଇ ବନ୍ଧୁଙ୍କ ଦୋଷ ବା କଳଙ୍କ କୌଣସି ଖଳ ବ୍ୟକ୍ତିର ମୁଖ ଉଦ୍‌ଗିରଣ କରିପାରି ନାହିଁ କିମ୍ବା କୌଣସି କର୍ଣ୍ଣ ଏହାଙ୍କର ଦୋଷ ଶ୍ରବଣ କରି ନାହିଁ ।

ଅବିବାହିତ ଯୁବକ ନିର୍ଭୀକ, ନିର୍ଭୟ ଚିତ୍ତରେ ଆତ୍ମମତ ପ୍ରକାଶ କରିବାକୁ ଯେପରି ପଟୁ, ପ୍ରୟୋଜନାନୁସାରେ ପରହିତ ନିମନ୍ତେ ଶାରୀରିକ ଶକ୍ତି ବ୍ୟୟ କରିବାରେ କୁଣ୍ଠିତ ନ ଥିଲେ । ଦୁଇ ବନ୍ଧୁ ଭୟ ଶୂନ୍ୟ । ଅନ୍ଧକାର, ଶ୍ମଶାନ, ଅରଣ୍ୟ ଏ ଦୁହିଁଙ୍କ ହୃଦୟକୁ ଟିକିଏ ହେଲେ ଦବାଇ ଦେଇପାରନ୍ତି ନାହିଁ । ଏ ଦୁହିଁଙ୍କ ପ୍ରତି ପଶା, ତାସ ପ୍ରଭୃତି ଅଳସୁଆଙ୍କ ଖେଳ ଅପେକ୍ଷା ବନ ଭ୍ରମଣ ଓ ଶିକାର ବେଶି ଆମୋଦଜନକ ଓ ସୁଖପ୍ରଦ ବୋଲି ମନେ ହୁଏ । ଜୀବହିଂସାଟାକୁ ଯେଉଁମାନେ ଘୃଣା କରନ୍ତି, ସେମାନେ ମୃଗୟାକୁ ନିନ୍ଦା କରନ୍ତି ସନ୍ଦେହ ନାହିଁ । ମାତ୍ର ଏ ଦୁହେଁ ମନୁଷ୍ୟ ପ୍ରତି ମନୁଷ୍ୟର ହିଂସାଟାକୁ ବଡ଼ ଜଘନ୍ୟ ଓ ଘୃଣା ବୋଲି ମନେ କରନ୍ତି । ମାତ୍ର ମନୁଷ୍ୟର ପ୍ରୟୋଜନୀୟ ମୃଗୟା ଯେ ଦୂଷଣୀୟ, ଏହା ସେମାନଙ୍କ ହୃଦୟରେ ସ୍ଥାନ ପାଇ ନ ଥିଲା । ଗୃହରେ ତୁନି ହୋଇ ବସି ପରକୁତ୍ସା, ପରନିନ୍ଦା କରିବା ବା ଶୁଣିବା ଅପେକ୍ଷା ଅରଣ୍ୟରେ ଘେରାଏ ବୁଲିଆସିବା, ଗୋଟାଏ ଖାଦ୍ୟ ପଦାର୍ଥ ସଂଗ୍ରହ କରି ଆଣିବାଟା ସତ୍‌କାର୍ଯ୍ୟ ବୋଲି ମନେ କରନ୍ତି । କେହି କେହି ମୃଗୟାର ନିନ୍ଦା କଲେ ଶକୁନ୍ତଳାରୁ ପଦେ ଶ୍ଳୋକ ଉଚ୍ଚାରଣ କରି ମୃଗୟାର ପ୍ରଶଂସା କରନ୍ତି ଓ କହନ୍ତି—

''ମୈଥ୍ୟୈବ ବ୍ୟସନଂ ବଦନ୍ତି ମୃଗୟା ମୀଦୃଗ୍‌ବିନୋଦଃ କୁତଃ ।'' ଅବସର ପାଇଲେ ବନ୍ଧୁକ ଧରି ଘେରାଏ ବନ ଭ୍ରମଣ କରି ଆସନ୍ତି । ଆଜି ଶିକାର ଉଦ୍ଦେଶ୍ୟରେ ଟିକିଏ ଦୂରକୁ ଚାଲି ଯାଇଥିଲେ । ଫେରୁ ଫେରୁ ବିଳମ୍ବ ହେଲା । ଫେରିଲା ବେଳେ ଝଡ଼ ବୃଷ୍ଟିର ବାଧା ପାଇ ବୃକ୍ଷ ମୂଳରେ ଆଶ୍ରୟ ନେଲେ ଏବଂ ବିପନ୍ନା ରମଣୀକୁ ସାହାଯ୍ୟ ଦେଇ ଗ୍ରାମକୁ ନେଇ ଆସି ଗୃହର ନିଭୃତ ସ୍ଥାନରେ ଆଶ୍ରୟ

ଦେଲେ । ଏ ଦୁହିଁଙ୍କର ଗୋଟାଏ ଦିନର କାର୍ଯ୍ୟ ଶେଷ ହେଲା । ଦୁଇ ବନ୍ଧୁ, ଗୃହ ପିଣ୍ଡାରେ ବସି ଗତ କଥାମାନଙ୍କର ଆଲୋଚନାରେ ବ୍ୟସ୍ତ । ଗତ ବିପତ୍ତିଟା ସେମାନଙ୍କୁ ସୁଖାବହ ମନେ ହେଉଥିଲା । ବାସ୍ତବିକ କାପୁରୁଷ ପ୍ରତି ଗତ ବିପତ୍ତି ଯେପରି ହୃତ୍‌କମ୍ପପ୍ରଦ ଏବଂ ଭବିଷ୍ୟତ ବିପତ୍ତି ଚିନ୍ତା ତଦପେକ୍ଷା ଭୀତିପ୍ରଦ ଓ ଦୁର୍ବହ, ବୀର ପ୍ରତି ବିପତ୍ତି ଅନିବାର୍ଯ୍ୟ ନିତ୍ୟ ଘଟଣା । ସେଥିରେ ସେ ଭୀତ ହୁଏ ନାହିଁ ବରଂ ସେଥିରୁ ଉଦ୍ଧାର ପାଇବା ଚେଷ୍ଟା ସୁଖକର ମଣେ ଏବଂ ଉଦ୍ଧାର ଉତ୍ତାରୁ ତା'ର ଆହ୍ଲାଦର ସୀମା ନ ଥାଏ । ଜୀବନରେ କାପୁରୁଷ ଅନେକ ଥର ମରେ, କିନ୍ତୁ ବୀର ମରେ ଥରେ । ଏ କଥାଟା ମିଥ୍ୟା ବୋଲି ଉଡ଼ାଇ ଦିଆଯାଇ ନ ପାରେ । ଭୀରୁ ମନେ କରନ୍ତ, ''ଆରେ ବାପରେ, କାଳ ବୈଶାଖରେ ଉପରବେଳା ମୁଁ ଆଉ କେବେ ବାହାରିବି ନାହିଁ । ଯେଉଁ ଝଡ଼ ବୃଷ୍ଟି, ଅନ୍ଧାର୍, ଭାଗ୍ୟକ୍ରମେ ବଜ୍ର ମୋ ମୁଣ୍ଡରେ ନ ପଡ଼ିଲା— ଗଛ ମାଡ଼ି ନ ବସିଲା । ଆଜି ପୈତୃକ ଜୀବନ ଅନାୟାସରେ ଯାଇଥିଲା ତ । କାନ ମୋଡ଼ି ହେଲି, ଆଉ କେବେ ଏପରି କରିବି ନାହିଁ ।'' ମାତ୍ର ବନ୍ଧୁ ଦୁହେଁ ଅନ୍ଧାରରେ ତୁନି ତୁନି ବଡ଼ ଆହ୍ଲାଦରେ ଏହି ଝଡ଼ ବୃଷ୍ଟି, ବଜ୍ରପାତ, କରକା ବୃଷ୍ଟିକଥା ଭାବୁଅଛନ୍ତି । ସେମାନେ ଭାବିଲେ, ଘଟଣା କ୍ରମେ ବିଳମ୍ବ ହୋଇ ନ ଥିଲେ ପ୍ରବଳ ଝଡ଼ ବୃଷ୍ଟି ସେମାନଙ୍କ ଗତିରେ ବାଧା ଦେଇ ନ ଥିଲେ— ସେମାନେ ଘଟଣାକ୍ରମେ ସେହି ବୃକ୍ଷର ଆଶ୍ରୟ ନେଇ ନ ଥିଲେ, ସେହି ଅସହାୟା ରମଣୀର କି ଦୁର୍ଦ୍ଦଶା ହୋଇ ନ ଥାନ୍ତା ? ଅନ୍ଧକାର, ବାଟ ଜଣା ନାହିଁ, ଗ୍ରାମର ଦିଗ ଜଣା ନାହିଁ, ଅରଣ୍ୟ ହିଂସ୍ରଜନ୍ତୁର ଭୟ, ନିଶ୍ଚୟ ପ୍ରାଣ ହରାଇଥାନ୍ତା । ଶୀତରେ ଥରି ଥରି ଭୟରେ ଆକୁଳ ହୋଇ ପ୍ରାଣ ହରାଇଥାନ୍ତା । ମନୁଷ୍ୟ ଉପରେ ଏପରି ଘୋର ବିପତ୍ତି ମଧ୍ୟ ଉପସ୍ଥିତ ହୁଏ । ଜଣେ କହିଲେ, ''ଆହା, ଆମେ ଦୁହେଁ ସେଠାରେ ଉପସ୍ଥିତ ହୋଇ ନ ଥିଲେ, ଗୋଟିଏ ନାରୀର ପ୍ରାଣ ଯାଇଥାନ୍ତା ତାହା କେବଳ ନୁହେଁ, ସେହି ନାରୀ ପୁଣି ଗର୍ଭବତୀ ଥିବାର ସେ ପ୍ରକାଶ କଲା, ତେବେ ଯୋଡ଼ିଏ ପ୍ରାଣୀର ବିନାଶ ଘଟିଥାନ୍ତା । ଆମର ସାମାନ୍ୟ କଷ୍ଟ ତହିଁର ତୁଳନାରେ ତ କିଛି ନୁହେଁ ।''

''ଭାଇ, ଆମ ଜୀବନରେ ତ ଏପରି ଝଡ଼ ବର୍ଷା । କେତେ ଘଟିଅଛି, ମାତ୍ର ଆଜିର ଝଡ଼ ବର୍ଷା ଆମ ଜୀବନର ଗୋଟିଏ ପ୍ରଧାନ ଘଟଣା । ଏପରି ଦୁଃଖଗ୍ରସ୍ତ ବ୍ୟକ୍ତିକୁ ବଞ୍ଚାଇବା ନିମନ୍ତେ ଏପରି ବା ଏହାଠାରୁ ଅଧିକ କଷ୍ଟ ଓ ବିପତ୍ତି ପଡ଼ିଲେ ମଧ୍ୟ ପରୁଆଏ କରେ କିଏ ?

ବିଚାରୀକୁ ଜଙ୍ଗଲରୁ ଉଦ୍ଧାର କରି ଆଣିଲେ ସତ, ମାତ୍ର ତା'ର ଦୁଃଖ ଆହୁରି ଅଛି ବୋଲି ମନେ ହୁଏ । ତା' କଥାରୁ ସ୍ପଷ୍ଟ ଜଣାଯାଇଛି । ତା'ର ବୃତ୍ତାନ୍ତ ଆମେ କିଛିହିଁ ଜାଣିପାରି ନାହୁଁ, ତଥାପି ସେ ଯେ ଅତ୍ୟାଚାରିତା, ଏଥିରେ ମୋର ସନ୍ଦେହ ନାହିଁ । ତା'ଠାରୁ ସବୁକଥା ଶୁଣି ତା'ର ଉପଯୁକ୍ତ ସାହାଯ୍ୟ କରି ନ ପାରିଲେ ତାକୁ ଅରଣ୍ୟରୁ ଉଦ୍ଧାର କରିବାର ଅର୍ଥ କିଛି ନୁହେଁ ।''

''କାଲି ସକାଳେ ତା' ମୁହଁରୁ ସମସ୍ତ ବୃତ୍ତାନ୍ତ ଶୁଣିଲାରୁ ଯଥାଯୋଗ୍ୟ ବ୍ୟବସ୍ଥା ଅବଶ୍ୟ କରାଯିବ । ଦେଖୁଛ, ଆମେ ତା'ର ବୃତ୍ତାନ୍ତ ଓ ରହସ୍ୟ ନ ଜାଣିବା ଯାଏ ଘର ଭିତରକୁ ଯିବ ନାହିଁ କିମ୍ବା ଆମେ ଯାଚିଲା ପଦାର୍ଥ ମଧ ଗ୍ରହଣ କରିବ ନାହିଁ । ନିଶ୍ଚୟ ମନରେ ତା'ର ଦୃଢ଼ତା ଅଛି ।''

''ରାତ୍ର ଅଧିକ ହେଲା, ଶୋଇବାର ବ୍ୟବସ୍ଥା କରାଯାଉ ।'' ଉଭୟେ ଆପଣା ଆପଣା ଗୃହାଭ୍ୟନ୍ତରକୁ ପ୍ରସ୍ଥାନ କଲେ ।

॥ ୩ ॥

ରମଣୀ ଶ୍ରାନ୍ତ କ୍ଲାନ୍ତ ହୋଇ ପଡ଼ିଥିଲା । ବିଚାରୀ ଏକାକିନୀ ଅନ୍ଧାର ନିର୍ଜନ ବଖରାଟିରେ ନିଶ୍ଚିନ୍ତ ହୋଇ ଶୋଇପଡ଼ିଲା । ରାତ୍ର ଥିଲା, ପାହାନ୍ତା ପୂର୍ବରୁ ସହସା ତା'ର ନିଦ୍ରାଭଙ୍ଗ ହେଲା । ସକାଳ ହେବାକୁ କେତେ ବାକି ଅଛି ତହିଁର ବିଚାର ନାହିଁ । ଅନ୍ଧାରରେ ଝରଣାକୁ ଯିବାଟା ନିରାପଦ କି ନୁହେଁ, ସେଥିର ବିଚାର ନାହିଁ । ମନେ ଥିଲା ସକାଳୁ ଯାଇ ଝରଣାଠାରେ ଦୁଇ ବନ୍ଧୁଙ୍କୁ ଅପେକ୍ଷା କରିବାକୁ ହେବ। ଚରତର ହୋଇ ଲୁଗା ଦୁଇଖଣ୍ଡ ବୋକଚା ବାନ୍ଧି ଗୃହତ୍ୟାଗ କଲା । ନିର୍ଦ୍ଦିଷ୍ଟ ସ୍ଥଳ ଅଭିମୁଖରେ ପ୍ରସ୍ଥାନ କଲା । ଅରଣ୍ୟରେ ପ୍ରବେଶ କଲା, ତଥାପି ମନରେ ଶଙ୍କା ନାହିଁ । ଯେହେତୁ ଗତକାଲି ଶୁଣିଥିଲା ଯେ, ଝରଣା ନିକଟ ଜଙ୍ଗଲରେ କୌଣସି ଆଶଙ୍କାର କାରଣ ନ ଥିଲା । ତା'ର ବିଶ୍ୱାସ, ଯେଉଁମାନେ ତାକୁ ମହାବିପତ୍ତିରୁ ରକ୍ଷା କରିଅଛନ୍ତି, ସେମାନେ ତାକୁ ପୁଣି ବିପତ୍ତିଜନକ ସ୍ଥାନକୁ ଠେଲି ଦେବେ ନାହିଁ । ନିର୍ଭୟରେ ଚାଲିଲା ।

ନିର୍ଦ୍ଦିଷ୍ଟ ସ୍ଥଳ ଗୃହଠାରୁ ଆନୁମାନିକ ଅଧମାଇଲ ବା କିଛି କମ । ବାଟରେ ଓ ଝରଣା ନିକଟରେ ଜଙ୍ଗଲ । ସାଧାରଣତଃ ହିଂସ୍ରଜନ୍ତୁ ଦେଖାଯାଆନ୍ତି ନାହିଁ ସତ, ତାହା ବୋଲି ଯେ ଏକାବେଳକେ ନିରାପଦ ,ତାହା ବୋଲା ଯାଇ ନ ପାରେ । ସ୍ଥାନଟି ମନୋରମ । ଦୂରରେ ପ୍ରପାତ, ପ୍ରପାତ ବାରି

କଳକଳ ନାଦରେ ଶିଳାବନ୍ଧୁର ଶଯ୍ୟାରେ ବୋହି ଯାଉଅଛି ।

ବିଚ୍ହାରୀ ସ୍ନାନାଦି ନିତ୍ୟକର୍ମ ସମାପନାନ୍ତେ ପୂର୍ବ ଆଡ଼କୁ ମୁଖ କରି ଗୋଟିଏ ପଥର ଉପରେ ତୁନି ହୋଇ ବସିଅଛି । ପାହାନ୍ତା ହେଲା, ସମସ୍ତ ନିସ୍ତବ୍ଧ । ବୃକ୍ଷଟିମାନ ଗୋଟି ଗୋଟି ହୋଇ ଦେଖା ପଡୁଅଛନ୍ତି । ଗତକାଲି ବୃଷ୍ଟିଦ୍ୱାରା ସମସ୍ତେ ପରିତୃପ୍ତ ଓ ଆହ୍ଲାଦିତ ହେଲାପରି ଦେଖାଯାଉଅଛନ୍ତି । ଅରଣ୍ୟକୁ ପୁଷ୍ପସୌରଭ ଆମୋଦିତ କରୁଅଛି । ପକ୍ଷୀମାନେ ଗାନ ଆରମ୍ଭ କଲେ । ପ୍ରାକୃତିକ ସୁଶ୍ରାବ୍ୟ ଧ୍ୱନି ବନ୍ୟପୁଷ୍ପ ସୌରଭ ଉଷାକାଳରେ ନିର୍ଜନ ଗହନରେ କେଉଁ ବ୍ୟକ୍ତିର ମନକୁ ଅପୂର୍ବ ଭାବରସରେ ଆପ୍ଲୁତ ନ କରେ ? ମାତ୍ର ଯାହାର ହୃଦୟ ଶୋକାନଳରେ ପ୍ରଜ୍ୱଳିତ ହେଉଥାଏ, ତା ପ୍ରତି ସବୁ ପିତା । ବିଚ୍ହାରୀ ତୁନି ହୋଇ ବସିଥିଲା । କେଜାଣି ଏହି ଦୃଶ୍ୟ, ଧ୍ୱନି ଓ ସୌରଭ ତା ମନକୁ କେତେଦିନ କେତେଦୂର ଆକର୍ଷଣ ଓ ମୁଗ୍ଧ କରୁଥିଲା, କୁହାଯାଇ ନ ପାରେ । ଜଳ ଆଞ୍ଜୁଳାଏ ଧରି କହିଲା— ''ମା'! କଳୁଷନାଶିନୀ ନିର୍ଝରିଣୀ, ସମସ୍ତେ ମୋତେ ତ୍ୟାଗକଲେ ମଧ ତୁ କି ମୋତେ ତ୍ୟାଗ କରିବୁ— ମୁଁ ପାପିନୀ ବୋଲି ମୋତେ କି ତୁ ତୋର ଦୟାରୁ ବଞ୍ଚିତ କରିବୁ ? କେବେ ନୁହେଁ ।'' ଟିକିଏ ଜଳପାନ କଲା, ପୁଣି ତୁନି ହୋଇ ବସିଲା ।

ପୂର୍ବାକାଶ ରକ୍ତାଭ ଧାରଣ କଲା । ଦେଖୁ ଦେଖୁ ସାନ୍ଦ୍ର ସିନ୍ଦୂର ବର୍ଣ୍ଣ ବାଳଭାନୁର ଉଦୟ । କେବଳ ରକ୍ତାଭ ବୋଇଲେ ଯଥେଷ୍ଟ ନୁହେଁ । ସ୍ୱର୍ଣ୍ଣକାର ବିଶୁଦ୍ଧ ହାଟକ କୋଇରେ ତରଳ କଲାବେଳେ ଟାଙ୍ଗଣା ପ୍ରକ୍ଷେପ କରି ଯେଉଁ ଗୋଲାକାର ତରଳ ହାଟକ ଦର୍ଶନ କରେ, ସେହି ତରଳ ଛବି ଦର୍ଶନ କଲା; ହାତ ଯୋଡ଼ି ମୁଣ୍ଡରେ ଲଗାଇ ପ୍ରଣାମ କଲା ଏବଂ କହିଲା— ''ପ୍ରଭୁ, ତୋତେ ଧର୍ମରାଜ ବୋଲି କହନ୍ତି । ତୁ ପାପ ପୁଣ୍ୟର ସାକ୍ଷୀ, ତୋତେ କିଛି ହିଁ ଅଗୋଚ୍ହର ନାହିଁ । ମୁଁ ପାପିନୀ ବୋଲି ମୋତେ, ପ୍ରଭୁ ତୁ ତ୍ୟାଗ କରି ନାହୁଁ, କରିବୁ ନାହିଁ, ପ୍ରଭୁ, ବର ଦେ, ମୋର ଗର୍ଭସ୍ଥ ଶିଶୁ ତୋହର ତୁଲ୍ୟ ତେଜୀୟାନ୍ ଓ ବଳଶାଳୀ ହେଉ, ମୋର ପାପଭାର ନାଶକରୁ ।'' ଏକ ଦୃଷ୍ଟିରେ ଚାହିଁଥିଲା— ବିମ୍ବ ଝଟଝଟ ଘୂର୍ଣ୍ଣାୟମାନ ହେବାପରି ଦୃଶ୍ୟ ହେଲା, ଆଉ ଅନାଇ ପାରିଲା ନାହିଁ । ପୁଣି ନମସ୍କାର କରି ଚିନ୍ତାମଗ୍ନ ହୋଇ ବସିରହିଲା ।

ଯୁବକ ଦୁହେଁ ଦେଖିଲେ, ରମଣୀ ପୂର୍ବକୁ ମୁଖକରି ଧ୍ୟାନ ମଗ୍ନ ହୋଇ ବସିଅଛି । କବରୀ ଭାର ଉନ୍ମୁକ୍ତ, ସ୍ନାନ ଜଳ ଶୁଷ୍କ ହୋଇ ନ ଥିବାରୁ ବନ୍ଧନ କରି ନାହିଁ କିମ୍ବା ଓଢ଼ଣା ପକାଇ ନାହିଁ । କେଶ ବିନ୍ୟାସ ହୋଇ ନାହିଁ । କେଶରାଶି ଅର୍ଦ୍ଧ କପୋଳ ଆବୃତ କରିଛି । ମୁଖରେ ଦୁଃଖ ଓ ଚିନ୍ତାର ଛାୟାପାତ ପଲକେ ପଲକେ ଦେଖାଯାଉଥିଲେ ମଧ ରମଣୀର ଶୁଭ୍ର ଲାବଣ୍ୟ ଜ୍ୟୋତିକୁ ନିଷ୍ପ୍ରଭ କରି ପାରୁ ନାହିଁ । ରମଣୀ ସୁନ୍ଦରୀ ଯୁବତୀ। ବୟସ ଅଠର ଊଣେଇଶରୁ ଅଧିକ ନୁହେଁ, ମୁଖରେ ଅବୟବରେ ଅଳଙ୍କାର ନ ଥିଲା । ଏଣୁ ଦୁଇ ବନ୍ଧୁ ତାକୁ ବିଧବା ଜାଣିଲେ । ଦୁହେଁ ତା' ନିକଟରେ ଉପସ୍ଥିତ ହେଲେ । ରମଣୀ ଗାତ୍ରୋତ୍ତୋଳନ କରି ନତମସ୍ତକରେ ଦଣ୍ଡାୟମାନ ହେଲା । ଯୁବକ ଦୁହେଁ ତା'ର ଦୁରବସ୍ଥାଗ୍ରସ୍ତ ମୁଖଛବିକୁ ଅନାଇ ରହିଲେ । କାହାରିଠାରୁ କିଛି କ୍ଷଣ ବାକ୍ୟ ସ୍ଫୁରିଲା ନାହିଁ । କିଏ ପ୍ରଥମେ ବାକ୍ୟାଳାପ ଆରମ୍ଭ କରିବେ, ଏହି ଚିନ୍ତା ପ୍ରତ୍ୟେକଙ୍କ ମନକୁ ଆନ୍ଦୋଳିତ କରୁଥିଲା । ଜଣେ ଯୁବକ କହି ପକାଇଲେ, ''ଆଉ ଟିକିଏ ଉପର ଆଡ଼କୁ ଯିବା ।'' ଉତ୍ତର ଅପେକ୍ଷା ନ କରି ଉତ୍ତର ମୁଖରେ ଅଗ୍ରସର ହେଲେ । ଅନ୍ୟ ଯୁବକ ମଧ ବିନା ବାକ୍ୟବ୍ୟୟରେ ପଛ ଧଇଲେ । ରମଣୀ ମଧ ବିନା ଆପତ୍ତିରେ ଯନ୍ତ୍ରଚ୍ହାଳିତ ପିତୁଳାପରି ସେ ଦୁହିଁଙ୍କର ଅନୁସରଣ କଲା । ଅଳ୍ପଦୂରରେ ଘନଛାୟା ବିଶିଷ୍ଟ ଶିଆରୀ ଲତା ତଳରେ ଯୁବକ ଦୁହେଁ ବସିପଡ଼ିଲେ । ରମଣୀକୁ ବସିବା ନିମନ୍ତେ ଇଙ୍ଗିତ କଲେ ଏବଂ ବିନା ଭୂମିକାରେ କହି ପକାଇଲେ, ''ତୁମ ବକ୍ତବ୍ୟ ପ୍ରକାଶ କର, ଆମେ ଦୁହେଁ ଅବହିତ ହୋଇ ଶୁଣିବୁଁ ଏବଂ ଯାହା ଆମର କର୍ତ୍ତବ୍ୟ ତାହା ନିଶ୍ଚୟ କରିବୁଁ । ରମଣୀ ଏହି ବାକ୍ୟରେ ଆଶ୍ୱସ୍ତ ହୋଇ ନିଜର ଜୀବନ କାହାଣୀ ଆରମ୍ଭ କଲେ । ଆତ୍ମୀୟ ସହିତ, ବନ୍ଧୁ ସହିତ, ପରିଚ୍ହିତ, ବହୁ ପରିଚ୍ହିତ ବ୍ୟକ୍ତିକୁ ଯେପରି ଲୋକ ମନଫିଟାଇ ଆପଣା କଥା କହିପାରେ, ରମଣୀ ସେହିପରି କହିବାକୁ ଲାଗିଲେ । ଭୟ, ସଙ୍କୋଚ୍ହ, ଲଜ୍ଜା କିଛି ନାହିଁ, ଯେପରିକି ସେ ନିଜ ଭାଇ ଆଗରେ ସମସ୍ତ ଆତ୍ମରହସ୍ୟ ବ୍ୟକ୍ତ କରୁଅଛନ୍ତି । କହିଲେ, ''ମୋତେ ତୁମେ ଦୁହେଁ ଚିହ୍ନି ନାହିଁ-ମୁଁ ତୁମ ଦୁହିଙ୍କି ଚିହ୍ନି ନାହିଁ । ତୁମ ଘର ଏଠାରେ, ମୋ ଘର ବହୁ ଦୂରରେ । ତୁମମାନଙ୍କ ପରି ଦୁଇ ଜଣ ବ୍ୟକ୍ତି ପାଇ ମୋର ଦୁଃଖ କଥା କହି ଦୁଃଖ ଭାର ଲାଘବ କରିବାର ଆଶା ମୁଁ କରିପାରି ନ ଥିଲି । ଘରୁ ବାହାରିଲା ବେଳେ ମୋର ଦଦରା ଜୀବନ ତରୀକୁ ଦୁଃଖ ସାଗରରେ ଭସାଇ ଦେଇଥିଲି । ଅତଳ ସାଗରରେ ତାହା ବୁଡ଼ିବ କି କୂଳରେ ଲାଗିବ, ଏହା ସ୍ଥିର କରି ନ ଥିଲି । ମୁଁ ଜଳରେ ନ ବୁଡ଼ି ନ ମରି ଦଦରା ତରୀ ଆରୋହଣ କରିବାର କାରଣ ମୋର ଗର୍ଭସ୍ଥ ଶିଶୁର ଜୀବନ ରକ୍ଷା । କାଲି ତୁମମାନଙ୍କର ଦୁର୍ଦ୍ଦଶା ମୋର ସୁଦଶା ଆନୟନ

କଲା, ତୁମେ ଦୁହେଁ ମୋର ଜୀବନ ରକ୍ଷାକର୍ତ୍ତା ଅଗ୍ରଜଭାଇ । ତୁମମାନଙ୍କଠାରେ କହିବାକୁ ମୋର ଲଜ୍ଜା ଭୟ କିଛି ନାହିଁ । ଅନେକ କଥା ଅଛି; ତୁମେ ଅବଶ୍ୟ ଶୁଣିବ । ଅନେକ ସମୟ ଲାଗିବ । ମାତ୍ର ଆଜି ଶେଷକଲେ ତୁମ ଦୁହିଁଙ୍କ ଉପଦେଶ ନେଇ ମୁଁ ଖାଦ୍ୟ ଗ୍ରହଣ କରିବି, ନତୁବା ନାହିଁ । ପୁରୁଷ ପ୍ରତି ସ୍ତ୍ରୀ ନିନ୍ଦ୍ୟ ଓ ଘୃଣ୍ୟ । ମାତ୍ର ପିତା ପ୍ରତି କନ୍ୟା ଓ ଭାଇ ପ୍ରତି ଭଗିନୀ ଘୃଣ୍ୟ ନୁହେଁ, ନିନ୍ଦ୍ୟ ହୋଇପାରେ । ଏଣୁ ମୁଁ ଆଶାକରେ, ମୋ କଥା ଶୁଣୁ ଶୁଣୁ ତୁମେ ମୋତେ ଘୃଣା ଧିକ୍କାର ଦେବ ନାହିଁ । ମୁଁ ତମର ଶରଣାଗତ, ଉପେକ୍ଷିତ ନୁହେଁ । ଭାଇ ବୋଲି ଡାକିଲେ ଘୃଣା କରିବ କି ?'' ଦୁଇ ବନ୍ଧୁ ଏକା ବାକ୍ୟରେ କହିଲେ, ''ସେ କି କଥା ? ତୁମେ ଆମର ଭଗିନୀ, ଆମ ଦୁହିଁଙ୍କ ଭାଇ ବୋଲି ସମ୍ବୋଧନ କର । ତୁମର କାର୍ଯ୍ୟ ଯେତେଦୂର ନିନ୍ଦ୍ୟ ହୋଇଥାଉ ପଛକେ ଆମେ ତୁମକୁ ସହୋଦରା ଭଗିନୀପରି କ୍ଷମା ଦେଇ ସାହାଯ୍ୟ କରିବୁଁ । ତୁମେ ନିଶ୍ଚିନ୍ତ ରୁହ'' ।

ଆଉ ଗୋଟିଏ କଥା— ''ମୋର ଜୀବନଯାତ୍ରା ସହିତ ଯେଉଁମାନଙ୍କ ନାମ ସଂଶ୍ଳିଷ୍ଟ ସେମାନଙ୍କ ନାମ, ବାସସ୍ଥାନ ଗୋପନ ରଖିବାକୁ ଚେଷ୍ଟା କରିବି । ତାହା ଜାଣିବା ତୁମର ପ୍ରୟୋଜନ କ'ଣ ? ମୋର ଦୁର୍ଦ୍ଦଶାର କଥା ଶୁଣି ତୁମେ ପ୍ରତିକାର ଲୋଡ଼ିବାକୁ ଚେଷ୍ଟା କରିପାର । ସେଥିରେ ଲାଭ ନାହିଁ । ଏହା ମୁଁ ଜାଣେ । ତୁମର ସାହାଯ୍ୟ ଓ ସହାନୁଭୂତି ମୋର ଲୋଡ଼ା । ପ୍ରତିହିଂସା ନେବାରେ ପ୍ରତିକାର କରିବାରେ ମୋର ସୁଖ ନାହିଁ, ଲାଭ ନାହିଁ, ମନକଷ୍ଟ ହିଁ ସାର । ମୁଁ ଗୋପନରେ ରହିବାକୁ ଇଚ୍ଛା କରେଁ । ନିତାନ୍ତ ପ୍ରୟୋଜନ ହେଲେ ଗୋପନରେ କାହାରି କାହାରି ନାମ କହିପାରେଁ, ମାତ୍ର ତାହା ମଧ୍ୟ ପ୍ରୟୋଜନ ହେବ ନାହିଁ । କେମନ୍ତ ।''

''ନାମ ଜାଣିବାର ଆମ୍ଭମାନଙ୍କର କିଛି ଦରକାର ନାହିଁ ।'' ''ତେବେ ଶୁଣ ।''

॥ ୪ ॥

ମୁଁ ବ୍ରାହ୍ମଣ କନ୍ୟା । ପିତାମାତା ଦରିଦ୍ର, କିନ୍ତୁ ସ୍ୱରୂପ ଥିଲେ । ମୁଁ ଏକମାତ୍ର କନ୍ୟା । ମୁଁ ଅତି ସୁନ୍ଦରୀ ବୋଲି ବାଲ୍ୟକାଳରୁ ଗ୍ରାମରେ ମୋର ଖ୍ୟାତି ଥିଲା । ଶୈଶବାବସ୍ଥାରେ ମାତୃବିୟୋଗ ଘଟିଥିଲା । ମୋର ଭାଇ ଓ ପିତାଙ୍କ ପ୍ରତି ଦୁର୍ବହ ହୋଇପଡ଼ିଲା । ଆମ ଗ୍ରାମରୁ ଅଳ୍ପ ଦୂରବର୍ତ୍ତୀ ଗୋଟିଏ ସମୃଦ୍ଧିଶାଳୀ ଗ୍ରାମର ଭୂମ୍ୟଧିକାରୀ ଧନିକ ବ୍ରାହ୍ମଣର ଦୁଇ ଗୋଟି ସନ୍ତାନ ଥିଲେ । ମୋର ଶ୍ୱଶୁର ମୋର ରୂପଲାବଣ୍ୟରେ ମୁଗ୍ଧ ହୋଇ ତାଙ୍କ ଜ୍ୟେଷ୍ଠପୁତ୍ରର ଅନୁରୂପ ପତ୍ନୀ ହେବି ବୋଲି ଭାବିଲେ । ମୋ ପିତାଙ୍କ ପ୍ରତି ଏ [illegible] କଳ୍ପନାତୀତ ସୁଯୋଗ-ନିଧିପ୍ରାପ୍ତି ସ୍ୱରୂପ ହେଲା । କନ୍ୟାର ଭବିଷ୍ୟତ୍ ମଙ୍ଗଳ ସଙ୍ଗେ ସଙ୍ଗେ ଧନ ଓ ସ୍ୱର୍ଗ [illegible]ପ୍ତି କି ଛାଡ଼େ ? ପିତା ଗୌରୀଦାନ ଦେଇ ପକାଇଲେ । ଏ ଦାନ ଏକ ବିଶେଷ ଦାନ । ପୁଣି ପିତୃ ମୁଖ ବା ପିତୃ ଗୃହ ଦେଖିଲେ ଦାନଗ୍ରହୀତାର ସ୍ୱର୍ଗାଂଶ କ୍ଷତି ହେବାର ଆଶଙ୍କା ଶ୍ୱଶୁରଙ୍କ ମନରେ ଜାଗରୂକ ହୋଇଥିଲା । ଏଣୁ ବିବାହ ପରେ ପିତୃ ଗୃହ ବା ପିତୃ ମୁଖ ମୋ ଦୃଷ୍ଟିରେ ପଡ଼ି ନାହିଁ । ମୁଁ ଧନବନ୍ତ ଭୂମ୍ୟାଧିକାରୀଙ୍କର ଜ୍ୟେଷ୍ଠା ବଧୂ ହୋଇ ରହିଲି ।

ଗୃହରେ ଶାଶୂ, ଶ୍ୱଶୁର, ସ୍ୱାମୀ, ଦେବର ଓ ମୁଁ । ଏହାଛଡ଼ା ଚାକର ଚାକରାଣୀ ମଧ୍ୟ ଥିଲେ । ଦେବର ଓ ମୁଁ ସମବୟସ୍କ ବୋଇଲେ ଚଳେ, ହେଲେ ସେ ବର୍ଷେ ଦେଢ଼ବର୍ଷ ବଡ଼ ହୋଇପାରନ୍ତି । ଆମେ ଦୁହେଁ ଭାଇ ଭଉଣୀ ପରି ଖେଳିବୁଲି ଦିନ କଟାଉଥାଉଁ । ସ୍ୱାମୀ ସହିତ ସାକ୍ଷାତ୍ ତ ବିଧି ନାହିଁ, ତୁମେ ଜାଣ । କ୍ରମେ ଦେବରଙ୍କର ବିବାହ ହେଲା, ମାତ୍ର ଧନୀ ଗୃହରେ । ସୁତରାଂ ଦେବରଙ୍କ ସହଧର୍ମିଣୀ ମୋ ପରି ପିତୃ ଗୃହରୁ ଶ୍ୱଶୁର ଗୃହକୁ ଶର ନିର୍ବାସିତା ହୋଇପାରିଲେ ନାହିଁ । ଧନିକ ପୁତ୍ରୀ ସତ୍ୟ, ମାତ୍ର ଧନ ତୁଳନାରେ ତାଙ୍କର ରୂପରେଖ ନ ଥିଲା । ସେ ଆପଣା ପିତ୍ରାଳୟକୁ ଫେରିଗଲେ । ମୁଁ ଶ୍ୱଶୁର ଗୃହରେ ଏକମାତ୍ର ରୂପସୀ ସ୍ନେହ ପାତ୍ରୀ ।

''ବିପତ୍ତି ଏକାକୀ ଆସେ ନାହିଁ, ସଙ୍ଗ ବାନ୍ଧି ଆସେ । ସେତେବେଳେ ମୋର ବୟସ ହେଲାଣି ବାର ବର୍ଷ । ସାମାନ୍ୟ ରୋଗଗ୍ରସ୍ତ ହୋଇ ମୋର ଶ୍ୱଶୁର ଅଳ୍ପଦିନ ମଧ୍ୟରେ ଆମ୍ଭମାନଙ୍କୁ ଶୋକ ସାଗରରେ ଭସାଇ ଚାଲିଗଲେ । ଏ ଶୋକାଗ୍ନି ନିର୍ବାପିତ ହୋଇ ନ ଥାଏ, ମୋର ସ୍ୱାମୀଙ୍କର ଅକାଳ ବିୟୋଗ ହେଲା । ଶୋକ ଉପରେ ଶୋକ, ଦୁଃଖ ଉପରେ ଦୁଃଖ । ଏ ହତଭାଗିନୀର ଚୁଡ଼ି ଅଳଙ୍କାର ବେଶଭୂଷା ସବୁ ଚିତା ସଙ୍ଗେ ସଙ୍ଗେ ଗଲା । ମୁଁ ମନେ କରୁଥାଏ, ମୋରି ପୋଡ଼ା କପାଳରେ ସବୁ ଦୋଷ । ପିଲାଟି ଦିନରୁ ମା' ଗଲେ, ପିତା କେଉଁଆଡ଼େ ଦେଶତ୍ୟାଗ କରି ଚାଲିଗଲେ । ଶ୍ୱଶୁର ଘରକୁ ପାଦ ଦେଲି, ଶ୍ୱଶୁର ମଲେ, ସ୍ୱାମୀ ମଲେ । ଜୀବନର ସୁଖସାମଗ୍ରୀ ସବୁ ଗଲା । ମୁଁ ହତଭାଗୀ ନୁହେଁ ଯେବେ, ତେବେ ହତଭାଗୀ କିଏ ? ମୋର ଦେବରଙ୍କର ବିବାହିତା ପତ୍ନୀକୁ ଲକ୍ଷ୍ୟକରି ଲୋକେ କହନ୍ତି, ''ଧନୀ ଘର ଝିଅ ବୋଲି କହିଲେ କ'ଣ ହେଲା, ସେ କୁସିତାର ହାତ ଧରିଲାକ୍ଷଣି ଏ ଗୃହରେ ଅମଙ୍ଗଳ ଘଟିଲା, ବାପ ମଲେ, ଭାଇ ମଲେ ।''

ମୋତେ କେହି ନିନ୍ଦା କରନ୍ତି ନାହିଁ ବା ଧିକ୍କାର ଦିଅନ୍ତି ନାହିଁ । ସ୍ୱାମୀଙ୍କ ମୃତ୍ୟୁ ହେଲାବେଳେ ମୁଁ ବୟଃପ୍ରାପ୍ତା ହୋଇ ନ ଥାଏଁ । ଏବେ ବୟଃପ୍ରାପ୍ତା ହେଲି । ମୋତେ ନିନ୍ଦା ବା ଘୃଣା କରିବା ଦୂରେ ଥାଉ, ଶାଶୂ ଓ ଦେବର ପୂର୍ବପରି ସ୍ନେହ ଚକ୍ଷୁରେ ଦେଖୁଥାନ୍ତି, ମୁଁ ମଧ ସେ ଦୁହିଁଙ୍କର ବିଶେଷ ଅନୁଗତ । ଦୁଇ ତିନିବର୍ଷ ସୁଖରେ ନିର୍ବିଘ୍ନରେ ଚାଲିଗଲା । ପୁଣି ନୂଆ ଦୁର୍ଯୋଗ । ମୋର ଦେବରଙ୍କ ବିବାହିତା ସ୍ତ୍ରୀ ଆପଣା ପିତୃଗୃହରେ ପ୍ରାଣତ୍ୟାଗ କଲେ । ଏହା କମ୍ ବିପରି ଓ ଦୁଃଖର କଥା ନୁହେଁ । ମାତ୍ର ଶ୍ୱଶୁରଙ୍କର ବା ଦେବରଙ୍କର ମନରେ ଯେ ଦାରୁଣ ମନସ୍ତାପ ଉପସ୍ଥିତ ହୋଇଥିଲା, ତହିଁର କୌଣସି ଲକ୍ଷଣ ମୁଁ ଦେଖିପାରିଲି ନାହିଁ । ବରଂ କିଛିଦିନ ଗଲା ଉତ୍ତାରୁ ଦିନେ ଦେବର ମୋର ଶାଶୂକୁ କହୁଥିବାର ଅନ୍ତରାଳରୁ ଶୁଣିଲି ଯେ, ''ଅଲକ୍ଷଣୀ ମଲା ପାପ ଗଲା ।'' ଶାଶୂ କହିଲେ, ''ହଁ ବାପ, ତୋର ଧନ ଅଛି, ରୂପ ଅଛି । ଘର କରିବାର ବୟସ ଯାଇ ନାହିଁ, କେତେ ସୁନ୍ଦରୀ କନ୍ୟା ମିଳିବେ । ଭଲ ଦେଖି ଗୋଟିଏ ବିବାହ ହେବୁ । ଯେ ଗଲା ତା' ଲାଗି ଦୁଃଖ କ'ଣ ?'' ମୋର ଦେବର କୌଣସି ଉତ୍ତର ଦେଲେ ନାହିଁ ।

''ଦିନେ ମୁଁ କହିଲି, ଶୀଘ୍ର ବିବାହ ହୋଇପଡ଼ । ଘରେ ଏକମାତ୍ର ପୁରୁଷ ତୁମେ । ବିବାହ ନ ହେଲେ ବଂଶ ରକ୍ଷା ହେବ କିପରି ? ତୁମରି ପୁଅଠାରେ ତ ଏ ବଂଶର ପାଣି ଓ ପିଣ୍ଡର ଆଶା । ବିପତ୍ନୀକ ହୋଇ ରହିବା ଉଚିତ ନୁହେଁ ।'' ମୋର ଦେବର କହିଲେ, ''ସତ କହିଲି, ମାତ୍ର ଜୀବନର କେଉଁ ସ୍ଥିରତା-ବାପ ଗଲେ, ଭାଇ ଗଲେ, ମୁଁ ବଞ୍ଚିବି ଏଥିର କି ପ୍ରମାଣ ? ପୁଅକଥା ପଚାରେ କିଏ ? ଆହା । ମୁଁ ଅଭାର୍ଯ୍ୟା ହୋଇ କିଛି ଦିନ ରହିପାରିବି ନାହିଁ; ତେବେ ତୁମେ ଆଜୀବନ ବିଧବା ହୋଇ ରହିବ କିପରି ?'' ''ମୁଁ କହିଲି, ସ୍ତ୍ରୀ କଥା ଛାଡ଼ । ଏହା ବିଧି ବିଧାନ । ସ୍ୱାମୀ ମଲେ ବ୍ରାହ୍ମଣୀ ତ ଅନ୍ୟ ପତି କରି ନ ପାରେ । ସୁତରାଂ ଆମେ ସ୍ତ୍ରୀ ଜାତି କପାଳ ଆଦରି ରହିପାରୁ । ତୁମପାଇଁ ସେ ବିଧି ନାହିଁ, ପୁରୁଷ ଜାତି ରହିପାରନ୍ତି ନାହିଁ, ଏହା ଦେଖାଯାଉଛି । ତୁମେ ଘରର ମୁରବୀ, ଚାଳକ, ତୁମେ ଏ କଥା କହିଲେ ଚଳିବ କିପରି ?'' ସେ କହିଲେ, ''ତୁମର ଦୁର୍ଦ୍ଦଶା ଦେଖି ମୋର ଆଉ ବିବାହ ହେବାର ଇଚ୍ଛା ନାହିଁ । ଦେଖାଯାଉ, ବର୍ତ୍ତମାନ ତ ତାହା ବିଚାର୍ଯ୍ୟ ନୁହେଁ ।'' ମୁଁ ଭାବିଲି ମୋର ଦେବର ମୋ ପ୍ରତି ଏଡ଼େ ଅନୁରକ୍ତ ଯେ, ମୋର ଏ ଦୁର୍ଦ୍ଦଶା ଦେଖି ସେ ମୋ ପରି ବ୍ରହ୍ମଚର୍ଯ୍ୟ ଧରି ଜୀବନଯାପନ କରିବାକୁ ଇଚ୍ଛା କରନ୍ତି । ଆପଣାର ବଂଶରକ୍ଷା କରିବାକୁ ମଧ ନାରାଜ । ଧନ୍ୟ ସ୍ୱାର୍ଥତ୍ୟାଗ । ଧନ୍ୟ ସହାନୁଭୂତି ।''

॥ ୫ ॥

ଦୁଃଖତ ସବୁଦିନେ ରହେ ନାହିଁ, ସାନବୋହୂର ବିୟୋଗ ଦୁଃଖ ବେଶିଦିନ ରହିବ କିପରି ? ସେ ପୁଣି ଗୃହକୁ ଆସି ନ ଥିଲା, ଏଣୁ ସ୍ନେହ ସୌହାର୍ଦ୍ଦ୍ୟ ଘଟି ନ ଥିଲା । କେବଳ କୁଟୁମ୍ବିତା ତ ସ୍ନେହବର୍ଦ୍ଧକ ନୁହେଁ, ଏକତ୍ରାବସ୍ଥାନ ଓ ଭାବ ବିନିମୟ ସ୍ନେହ ଓ ମମତାକୁ ବଢ଼ାଏ । ବାପଘରୁ ଯେ ଆସି ନାହିଁ, ତା'ଠାରେ ସ୍ନେହ ମମତା ନାହିଁ । ସାନ ବୋହୂଙ୍କର ଅନ୍ତର୍ଦ୍ଧାନ ଦୁଃଖ ସ୍ୱପ୍ନପରି ଉଭେଇ ଗଲା, ବିଧବା ହେଲେ ମଧ ମୁଁ ଘରର ବହୂ । ମୋ ପ୍ରତି ସ୍ନେହ ସହାନୁଭୂତି ଦ୍ୱିଗୁଣିତ ହେଲା । ଆହ୍ଲାଦର ସୀମା ନାହିଁ । ସ୍ୱାମୀ ସହବାସ ସୁଖରେ ଅନଭ୍ୟସ୍ତା ଅପରିଚିତା । ଘରେ ଯେପରି ଥିଲି ସେହିପରି ଅଛି । ଶାଶୂ ଓ ଦେବରଙ୍କର ସ୍ନେହ ଆଦରର ତ୍ରୁଟି ନାହିଁ । ବିଧବାର ଖାଦ୍ୟ ପରିଧାନର ଯାହା ପ୍ରୟୋଜନ, ତହିଁର ତ ଅପ୍ରତୁଳତା ନ ଥିଲା । ଦୁଃଖ ବା ଅଶାନ୍ତି ଆସିବ କାହିଁକି ? ବେଶ ସୁଖ ସ୍ୱାଚ୍ଛନ୍ଦ୍ୟରେ କାଳାତିପାତ କରୁଥାଏଁ ।

''ଶାଶୂଘରର ମୁରବୀ ସତ; ମାତ୍ର ମୁଁ ଗୃହ ପରିଚାଳିକା । ପଦାର୍ଥ ଦେବା, ନେବା ଥୋଇବା ଭାର ମୋ ଉପରେ । ଗୃହର ଅର୍ଥ ରକ୍ଷା କରିବା ଭାର ମୋ ଉପରେ । ଶାଶୂ ଓ ଦେବରଙ୍କର ତିଳେମାତ୍ର ଅବିଶ୍ୱାସ ମୋ ଉପରେ ନ ଥିଲା । ଅବିଶ୍ୱାସ ରହିବ କି ହେତୁରୁ ? ମୋର ତ ସଂସାରରେ ଅନ୍ୟ କେହି ସ୍ନେହୀ ବା ବନ୍ଧୁବାନ୍ଧବ ଥିଲେ ଯେ ମୁଁ ସେମାନଙ୍କୁ ଘରର ଧନ ବୋହି ଦେବି ? ମୋର ପିତା ମାତା କ'ଣ ଥିଲେ ଯେ, ମୁଁ ସେମାନଙ୍କର ଭରଣ ପୋଷଣ ନିମନ୍ତେ ଇଚ୍ଛାନୁସାରେ ସାହାଯ୍ୟ କରନ୍ତି ? ଜଗତରେ ମୋ'ର ଏକମାତ୍ର ଶାଶୂ ଓ ଦେବର ଭିନ୍ନ କେହି ନ ଥିଲେ । ସେ ଦୁହେଁ ତାହା ଭଲଭାବରେ ଜାଣନ୍ତି । ମୋର ରୀତି, ଗତି, ପ୍ରକୃତି ମଧ ଭଲ ଭାବରେ ଜାଣନ୍ତି । ଏଣୁ ଗୃହର ସମଗ୍ର ଧନସମ୍ପତ୍ତି ରାମାଜିମା ଦେବାକୁ ସେମାନଙ୍କର କୌଣସି ସନ୍ଦେହ ଓ ଶଙ୍କା ନ ଥିଲା । କହିବାକୁ ଗଲେ ଗୃହଚାଳନା ସମ୍ବନ୍ଧରେ ଶାଶୂଙ୍କ ଅପେକ୍ଷା ମୋଠାରେ ମୋର ଦେବରଙ୍କର ବେଶି ପରାମର୍ଶ ଚାଲିଥାଏ । ଶାଶୂ ଗୃହକର୍ତ୍ତ୍ରୀ, ମାତ୍ର ମୋର କାର୍ଯ୍ୟ କୁଶଳତା ଯୋଗୁଁ ସେ ସବୁ କର୍ମରେ ନିଃସମ୍ପର୍କ ଭାବ ଅବଲମ୍ବନ କରିଥାଆନ୍ତି । ମୋଟ କଥା ମୁଁ ବିଧବା ବଧୂ ହେଲେ ମଧ ଆମ ଘରର ସବୁ । ଚାକର ଚାକରାଣୀ, ଧନସମ୍ପତ୍ତି ମୋର ଅଧୀନ ।

ଦେବର ମୋର ବାଲ୍ୟ ବନ୍ଧୁ, ସୁହୃଦ୍। ମୋର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ତାଙ୍କର ଶୁଭ ଦୃଷ୍ଟି ଥାଏ। ବାଲ୍ୟକାଳରୁ ପରସ୍ପର ମଧ୍ୟରେ ଯେ ସ୍ନେହ ସୌହାର୍ଦ୍ଦ୍ୟ ଥିଲା ତାହା ସେହିପରି ଅକ୍ଷୁଣ୍ଣ ଥାଏ । ପବିତ୍ର ଭାବରେ ଆମ୍ଭେମାନେ ଜୀବନଯାପନ କରୁଁଥାଉଁ । ପାପ ଓ ସନ୍ଦେହ କାହାରି ହୃଦୟକୁ କେବେ ସ୍ପର୍ଶ କରିପାରି ନ ଥିଲା । ଆମ ଦୁହିଁଙ୍କ ଆଚ଼ରଣରେ ଶାଶୂ ସନ୍ତୁଷ୍ଟ, ସେ କେବେହେଲେ ଆମ ଆଚ଼ାର ବ୍ୟବହାର ପ୍ରତି ସନ୍ଦିଗ୍ଧମନା ହୋଇ ନ ଥିଲେ । ହେବେ କିପରି ? ଆମେ ଦୁହେଁ ନିର୍ମଳ ଜୀବନ ଅତିବାହିତ କରୁଥିଲୁଁ । ଗ୍ରାମର ସ୍ତ୍ରୀ ପୁରୁଷ ସମସ୍ତେ ମୋର ଆଚ଼ରଣ ଓ କାର୍ଯ୍ୟ ଦେଖି ତୁଷ୍ଟ ଥିଲେ ଏବଂ ଆମ ଦୁହିଁଙ୍କର ଗୃହ ଚାଳନ କୌଶଳ ଦେଖି ଭୂରି ଭୂରି ପ୍ରଶଂସା କରୁଥିଲେ ।

''କେତେଦିନ ଚାଲିଗଲା । ଉଭୟେ ଯୌବନ ରାଜ୍ୟରେ ପଦାର୍ପଣ କଲୁଁ, ତଥାପି ସେହି ପବିତ୍ରଭାବ ।''

''ମୋର ରୋଗ ଉପସ୍ଥିତ ହେଲେ ମୋର ଦେବର ଯେପରି ଯତ୍ନ ଓ ଚିକିତ୍ସାରେ ତ୍ରୁଟି କରନ୍ତି ନାହିଁ, ତାଙ୍କର ଶରୀର ଅସୁସ୍ଥ ହେଲେ ମୁଁ ତାଙ୍କର ଯତ୍ନ ଶୁଶ୍ରୂଷାରେ ତିଳେମାତ୍ର ତ୍ରୁଟି କରେ ନାହିଁ ।''

''ଥରେ ମୋତେ ଭାରି ଜ୍ୱର ହେଲା । ସନ୍ତତ ଜ୍ୱର । ଅନେକ ଦିନ ଭୋଗିବାକୁ ପଡ଼ିଲା । ମୋତେ ଏହି ରୋଗରୁ ମୁକ୍ତ କରିବାକୁ ମୋର ଦେବରଙ୍କର କି ଉତ୍କଣ୍ଠା, କି ପରିଶ୍ରମ, ତାହା ଭାବିଲେ ତାଙ୍କୁ ପ୍ରଶଂସା ନ କରି ରହିବା ଅସମ୍ଭବ। ବେଳେ ବେଳେ ମୋର ମୂର୍ଚ୍ଛା ମଧ୍ୟ ହେଉଥାଏ । ମୋ ନିକଟରେ ସର୍ବଦା ବସିଥାଆନ୍ତି। ତାଙ୍କର ଭୋଜନାଦି ନିତ୍ୟକର୍ମ କରିବା ନିମନ୍ତେ କେତେବେଳେ ଯେ ଯାଆନ୍ତି ଓ କେତେବେଳେ ଫେରିଆସି ବସନ୍ତି, ତାହା ମୁଁ ନିଶ୍ଚୟ କରିପାରୁ ନ ଥାଏଁ । ମୁଁ ମନେ କରୁଥାଏଁ ଯେ, ସେ ଦିନ ରାତି ମୋ ନିକଟରେ ବସିଅଛନ୍ତି, ତାଙ୍କର ଭୋଜନ ଶୟନ ତ୍ୟାଗ କରିଅଛନ୍ତି । ବେଳେ ବେଳେ ଭାବେଁ, ଆହା ମୋ ନିମନ୍ତେ ଏହାଙ୍କର ଏପରି କଷ୍ଟ ସହିବା ବୃଥା— ମୁଁ ତାଙ୍କର ତ କହିବାକୁ ଗଲେ କେହି ନୁହେଁ । ମୋ ଦ୍ୱାରା ତାଙ୍କର କିଛି ଉପକାର ଏବେ ବା ଭବିଷ୍ୟତରେ ତ ହେବ ନାହିଁ । ମୋ ନିମନ୍ତେ ନିଜର ସ୍ୱାସ୍ଥ୍ୟହାନି କରି ଆୟୁଷ କ୍ଷୟ କରିବାର ପ୍ରୟୋଜନ କ'ଣ ? ମୋର ଜୀବନରେ ସୁଖର ଆଶା ନାହିଁ । ଏପରି ହତଭାଗୀ ନିମନ୍ତେ ମୂଲ୍ୟବାନ୍ ପ୍ରାଣ କଷ୍ଟ ଭୋଗ କରିବା ବାଞ୍ଛନୀୟ ନୁହେଁ । ମୁଁ ମଲେ ପରା ଏହାଙ୍କର ମଙ୍ଗଳ ହୁଅନ୍ତା ।'' ବେଳେ ବେଳେ ଶାଶୂଙ୍କୁ କହେଁ, ''ମା', ମା' ନିମନ୍ତେ ଏତେ କଷ୍ଟ ସହିବାକୁ ଏହାଙ୍କୁ ବାରଣ କର ।'' ଶାଶୂ କହନ୍ତି, '' ସେ ତୁମର ଚିକିତ୍ସା ନ କଲେ ଆଉ କିଏ କରିବ ?'' ତାଙ୍କୁ ନିଜେ କହିଲେ ତାଙ୍କର କିଛି କଷ୍ଟ ନ ଥିବାର କହି ହସି ଦିଅନ୍ତି । ତାଙ୍କର ଏ ସହାନୁଭୂତି ଓ କଷ୍ଟ ଦେଖି ମୋ'ର ହୃଦୟ ଫାଟି ଯାଉଥାଏ ।

''କେବଳ ଉତ୍ତାପ ଦେଖୁଅଛନ୍ତି, ନାଡ଼ି ଦେଖୁଅଛନ୍ତି, କପାଳ ସ୍ପର୍ଶ କରୁଅଛନ୍ତି । ଶୀତଳ ଜଳ କନା କପାଳରେ ଦେଉଅଛନ୍ତି । କିପରି ଅଛ, କିପରି ବୋଧ ହେଉଛି, କେବଳ ଥରକୁଥର ଏହି ପ୍ରଶ୍ନ। ସେହି ପ୍ରଶ୍ନଗୁଡ଼ିକ ଯେପରିକି ମୋତେ ଜାଗ୍ରତ ରଖିବ ଏବଂ ଅନନ୍ତ ନିଦ୍ରାରେ ଶୁଆଇ ଦେବ ନାହିଁ । ମୋ ଦେହ ପୋଡ଼ି ଯାଉଥାଏ। ଗଣ୍ଡ ଦେଶରେ ଉତ୍ତପ୍ତ ଅଙ୍ଗାରର ତାପ ବୋଧ ହେଉଥାଏ, ମାତ୍ର ଯେତେବେଳେ ଦେବର ମୋ ମୁଖ ନିକଟକୁ ତାଙ୍କର ମୁଖ ଆଣି ପ୍ରଶ୍ନ କରନ୍ତି, ସେତେବେଳେ ତାଙ୍କର ନିଃଶ୍ୱାସ ମୋର ଗଣ୍ଡ ଦେଶରେ ଲାଗେ । ମୋର ଗଣ୍ଡ ଦେଶର ଉତ୍ତାପ କମିଯାଏ । ମୁଁ ମନେକରେ ଓଃ ମୋର ଶରୀର କି ଉତ୍ତାପ ପୂର୍ଣ୍ଣ ଯେ, ତାଙ୍କର ଉତ୍ତପ୍ତ ପ୍ରଶ୍ୱାସ ମଧ୍ୟ ମୋତେ ଶୀତଳପବନ ପରି ସୁଖକର ହେଉଅଛି । ରାତ୍ରରେ ମୋ ନିକଟରେ ବସି ଢୁଳାଉଥାନ୍ତି। କେତେ କେତେ ବେଳେ ତାଙ୍କର ମସ୍ତକ ଆସି ମୋର ଆଲୁଳାୟିତ କେଶ ଗୁଚ୍ଛରେ ବାଜି ଯାଉଥାଏ । ମୁଁ ଜାଗ୍ରତ ହୋଇ କହେ, ''ଏ କଷ୍ଟର ପ୍ରୟୋଜନ କ'ଣ ? ମୁଁ ତ ଏତେ ବେଗ ମରି ଯାଉ ନାହିଁ, ତୁମେ ଯାଇ ବିଶ୍ରାମ ନେଲେ ମୋର କି ଅନିଷ୍ଟ ହେବ ? ସେ ମାନନ୍ତି ନାହିଁ। ଥରେ ଥରେ ମୋର ମୁଚୁଳାରେ ତାଙ୍କ ମୁଣ୍ଡଲାଗିଯାଏ । ଘୁମାଇ ପଡ଼ନ୍ତି। ମୁଁ ଜାଗ୍ରତ ହେଲେ ଭାବେଁ— ଦେହ କେତେ ସହିବ ? ଅବସନ୍ନ ହୋଇ ଶୋଇ ପଡ଼ିଲେ । ଶୋଇଥାନ୍ତି, ମୋର ଘୁଞ୍ଚିବାର ଶକ୍ତି ନାହିଁ. ତାଙ୍କ ମୁଣ୍ଡ ମୋ ମୁଣ୍ଡ ଏକାଠି ଲାଗି ରହିଥାଏ । ତାଙ୍କର ପ୍ରଶ୍ୱାସ ମୋ କପାଳକୁ ସ୍ପର୍ଶ କରି ସମୟୋପଯୋଗୀ ଜୀବନର ତୃପ୍ତି ଆନୟନ କରୁଥାଏ । ଥରେ ମୋ ଉତ୍ତପ୍ତ ଗଣ୍ଡ ଉପରେ ତାଙ୍କର ଶୀତଳ ଗଣ୍ଡ ରଖି ଶୋଇପଡ଼ିଅଛନ୍ତି । ସେ ସ୍ପର୍ଶ ଶୀତଳ ଲାଗିବାରୁ ଉଠି ପଡ଼ିଲି, ମାତ୍ର ଯେ ମୋ ନିମନ୍ତେ ଆହାର ନିଦ୍ରା ତ୍ୟାଗ କରିଅଛନ୍ତି, ତାଙ୍କର କ୍ଳାନ୍ତିଜନିତ ନିଦ୍ରାଭଙ୍ଗ କରିବା କି ମହାପାପ ନୁହେଁ ? ତାଙ୍କର କ୍ଳାନ୍ତ ଗଣ୍ଡର ଭାର ମୋର ଗଣ୍ଡ ସହ୍ୟ କରିପାରିବ ନାହିଁ ? ଏହା ଭାବି ତୁନି ହୋଇରହିଲି । ଏପରି ଭାବରେ ଉଭୟେ କେତେବେଳଯାଏ ଶୋଇ ରହିଲୁଁ, ମୋର ଠିକ୍ ସ୍ମରଣ ନାହିଁ ।

''ବିପରି ସହାନୁଭୂତି ଆଣେ । ରୋଗ ଚିକିତ୍ସାରେ ସ୍ନେହ ଓ ସହାନୁଭୂତି ମଧ୍ୟ ବେଶି ବଢ଼େ । ପରସ୍ପରର ସହାନୁଭୂତି ଏହି ରୋଗ ସମୟରେ ଅତି ମାତ୍ରାରେ ବଢ଼ିଲା । ମୁଁ କ୍ରମେ କ୍ରମେ ଆରୋଗ୍ୟ ହେଲି । ମୁଁ ରୋଗ ମୁକ୍ତ ହେଲାବେଳକୁ ସ୍ନେହ ସହାନୁଭୂତି କେବଳ ଅତି ପ୍ରବଳ ଭାବରେ ବଢ଼ିଲା, ଏପରି ନୁହେଁ । ଭିନ୍ନ ରୂପ ଧାରଣ କଲା । ଏ ସ୍ନେହ ପୂର୍ବ ସ୍ନେହ ଅପେକ୍ଷା ଭିନ୍ନ । ଏ ସ୍ନେହ ନିଷ୍କପଟ ପବିତ୍ର ନୁହେଁ । ଲଜ୍ଜାମିଶ୍ରିତ ସ୍ୱାର୍ଥ ଜଡ଼ିତ ସ୍ନେହ ।

ରୋଗରୁ ମୁକ୍ତି ପାଇଲି । ସେହି ଗୃହ, ସେହି ଦେବର, ସେହି ସବୁ, ମାତ୍ର ସମ୍ବନ୍ଧ ଟିକିଏ ଭିନ୍ନ ହୋଇପଡ଼ିଲା । ଆମେ ଦୁହେଁ ଦେବର ଭାଉଜ କି ସ୍ୱାମୀ ସ୍ତ୍ରୀ, ତାହା ଆଉ ବୁଝିପାରିଲୁ ନାହିଁ । ଗୃହ କର୍ମ ସେହିପରି ଚାଲିଅଛି । ଶାଶୂ ସନ୍ଦେହଶୂନ୍ୟା । ଗ୍ରାମବାସୀଙ୍କର ପ୍ରଶଂସା, ଚିକିତ୍ସା ନିମନ୍ତେ ଦେବରଙ୍କ ଉପରେ ସୁନାମ ବର୍ଷିତ ହେଉଅଛି । ଲୋକଲୋଚନକୁ ଆମେ ଦୁହେଁ ପୂର୍ବବତ୍ 'ନିର୍ମଳ ଓ ପବିତ୍ର, ମାତ୍ର ଆମ ଦୁହିଁଙ୍କ ମନ କହିଲା, ''ତୁମେ ଦୁହେଁ ଲୋକଙ୍କ ବିଚାରାନୁସାରେ ଦେବର ଭାଉଜ ହେଲେ ସୁଦ୍ଧା ତୁମେ ଦୁହେଁ ସ୍ୱାମୀ ସ୍ତ୍ରୀ ।'' ଆମ ଦୁହିଁଙ୍କୁ ନୂତନ ପ୍ରଣୟ ପ୍ରକାର ସୂତ୍ରରେ ଆବଦ୍ଧ କରି ଦେଇଗଲା । ହାୟରେ ମୋ କପାଳ ।''

ଏହି କହିଲାବେଳେ ରମଣୀର ଚକ୍ଷୁରୁ ଦର ଦର ଲୋତକ ଧାର ଗଡ଼ି ପଡ଼ିଲା । ମନ ଅସ୍ଥିର ହୋଇଉଠିଲା । ତାହା ଦେଖି ଯୁବକ ଦୁହେଁ ମଧ୍ୟ ବିଚଳିତ ହୋଇପଡ଼ିଲେ । ଜଣେ କହିଲେ, ''ଅଧୀର ହେବାର କାରଣ କ'ଣ ? ନିଜର ଦୁଃଖ କାହାଣୀ ପ୍ରକାଶ କରି ହୃଦୟଭାର ଲାଘବ କର ।''

ରମଣୀ ପୁଣି ଆରମ୍ଭ କଲେ । ''ଶାଶୂଙ୍କର ପ୍ରକୃତି ଅତି ନିର୍ମଳ । ସନ୍ଦେହ ତାଙ୍କ ମନକୁ କେବେ ସ୍ପର୍ଶ କରିପାରି ନ ଥିଲା । ଆମ ଦୁହିଁଙ୍କ ଉପରେ ତାଙ୍କର ପ୍ରଧାନ ବିଶ୍ୱାସ । ସେ ମନେ କରୁଥିଲେ ଯେ, ଆମେ ଦୁହେଁ ବାଲ୍ୟାବସ୍ଥାରେ ଯେପରି ପବିତ୍ର ସମ୍ବନ୍ଧ ରକ୍ଷାକରି କାଳ କଟାଇଥିଲୁଁ, ଯୌବନାବସ୍ଥାରେ ମଧ୍ୟ ତଦ୍ରୂପ ବା ତତୋଽଧିକ ପବିତ୍ର ଭାବରେ କାଳ ଅତିବାହିତ କରୁଅଛୁଁ । ଏହି ସନ୍ଦେହଶୂନ୍ୟ ଧାରଣା ଆମ ଦୁହିଙ୍କର ମହା ସୁଯୋଗ । ତାଙ୍କର ସରଳ ବିଶ୍ୱାସ ବେଷ୍ଟନୀ ମଧ୍ୟରେ ନିର୍ଭୟ ମନରେ ରହି ଆମେ ପାପ କାର୍ଯ୍ୟ କରିବାକୁ ନିରାପଦ ମନେକଲୁଁ । ପ୍ରକୃତରେ ନିରାପଦ, ଶାଶୂ ଗୃହରେ ଥିବାଯାଏ ଏବଂ ଆମ ଦୁହିଁଙ୍କ କପଟତାପୂର୍ଣ୍ଣ ବାହ୍ୟ କାର୍ଯ୍ୟକଳାପ ଦେଖି ଆମ ଉପରେ ସନ୍ଦେହ କରିବାର କାହାରି ଉପାୟ ବା ସାହସ ନ ଥିଲା । ଏହିପରି କିଛିଦିନ ଗତ ହେଲା ।

''ମୁଁ ସ୍ତ୍ରୀ ଏବଂ ଦେବର ଅପେକ୍ଷା ଅଶିକ୍ଷିତା, ତଥାପି ଭାଉଜ ତ । ମୋର କଥାର ଉପଦେଶର ଯେ ମୂଲ୍ୟ ନ ଥାଏ, ଏପରି ନୁହେଁ । ମୁଁ ଦିନେ ମନେକଲି ଏ ଅବସ୍ଥା, ଏ ସୁଖଭୋଗ ଚିରସ୍ଥାୟୀ ହେବା ଅସମ୍ଭବ । ବିଶେଷତଃ ଦେବରଙ୍କର ପୁତ୍ର ନ ହେଲେ କୁଳନାଶ ହେବ । ଏ ମୋ ରୂପ ଗୁଣରେ ମୁଗ୍ଧ ହୋଇ ଚିର ଅଭାର୍ଯ୍ୟା ରହିବା ଉଚିତ ନୁହେଁ । ବିବାହ ହେବା ଏବଂ ଶୀଘ୍ର ବିବାହ ହେବା ଉଚିତ । ଦିନେ ତାଙ୍କୁ କହିଲି, ତୁମେ ବିବାହ ନ ହେଲେ ବଂଶ ନାଶ ହେବ, ଲୋକେ କହିବେ କ'ଣ ?''

ସେ କହିଲେ, ''ମୁଁ ତ ତୁମକୁ ପୂର୍ବରୁ କହିଅଛି, ତୁମେ ଯେପରି ବଡ଼ ଭାଇଙ୍କର ବଂଶ ରଖି ଦେଇଗଲା ମୋର ସ୍ତ୍ରୀ ମଧ୍ୟ ତ ସେହିପରି ବଂଶ ରକ୍ଷା କରିପାରେ । ମୋର ବିବାହିତା ସ୍ତ୍ରୀ ମଲା, ତା ପରିବର୍ତ୍ତେ ମୁଁ ମରିଥିଲେ ବର୍ତ୍ତମାନ ଦୁଇ ଜଣ ବିଧବା ଏ ଘରେ ଥାଆନ୍ତେ ସିନା; ବିବାହରେ ମୋର ଇଚ୍ଛା ନାହିଁ ।''

''ବିବାହରେ ଇଚ୍ଛା ନ ଥାଇ ପାରେ, ମାତ୍ର ତୁମର ମା'ଙ୍କ ପ୍ରତି ତ ଦୃଷ୍ଟି ଦେବା ଉଚିତ । ସେ ଯେ ନାତି ଦେଖିବି ଦେଖିବି ହେଉଛନ୍ତି, ଆଜି ଅଛନ୍ତି କାଲି ନାହିଁ, ତାଙ୍କର ମନସ୍ତୁଷ୍ଟି କରିବା ତ ତୁମର କର୍ତ୍ତବ୍ୟ । ତୁମେ ତାଙ୍କର ଏକମାତ୍ର ପୁଅ ।''

''ତୁମ ଗର୍ଭରୁ ପୁତ୍ର ଜନ୍ମ ହେଲେ ସେ କ'ଣ ନାତି ନୁହେଁ କି ?''

''ରାମ, ରାମ, ସେ କଥା କହ ନାହିଁ । ମୋର ପୁତ୍ର ନ ହେଉ... ମୋର ପୁତ୍ର ହେଲେ ସେ ସିନା ବଂଶ ମୁଖ ମଳିନ କରିବ, ସେ କ'ଣ ବଂଶ ଉଜ୍ଜ୍ୱଳ କରିବ, ନା ଲୋକେ ତାକୁ ତୁମର ପୁତ୍ର ବୋଲି ଗ୍ରହଣ କରିବେ ? ଏପରି ଅସଙ୍ଗତ ଆଲୋଚନା କର କାହିଁକି ? ଏ ଲୋକହସା କଥା କହ କାହିଁକି ? ବିଶେଷତଃ ମା'ଙ୍କ ବିଷୟ ଭାବିବା ତୁମର ଉଚିତ, ଶୀଘ୍ର ବିବାହ ହୁଅ ଏବଂ ଗୋଟିଏ ଉପଯୁକ୍ତା ପାତ୍ରୀ— ଯେ କି ଶୀଘ୍ର ଘର ଯୋଗ୍ୟା ହେବ, ତାକୁ ବିବାହ ହୁଅ । ମା' ସନ୍ତୁଷ୍ଟ ହେବେ ଏବଂ ଆମ ଦୁହିଁଙ୍କ ଉପରେ ଲୋକଙ୍କର ଆଉ କେବେ କୌଣସି ସନ୍ଦେହ ଜାତ ହେବ ନାହିଁ । ତମେ ଶୀଘ୍ର ବିବାହ ନ ହେଲେ ଲୋକେ ଅବଶ୍ୟ ଆମ ଆଚରଣରେ ସନ୍ଦିଗ୍ଧ ହେବେ ।''

''ମୋର ସବୁକଥା ପାଣି ଫାଟି ଯାଉଥିଲା, ମାତ୍ର ଶେଷ କଥାଟି ତାଙ୍କ ମନକୁ ପାଇଲା ଏବଂ ଉତ୍ତମ ରୂପେ ମନକୁ ପାଇଲା ।'' କହିଲେ, ''ସତ କହିଲ, ଆମ୍ଭମାନଙ୍କ ଦୋଷ

ଘୋଡ଼ାଇ ରଖିବାକୁ ଏହା ଗୋଟିଏ ଉତ୍ତମ ଉପାୟ । ମୁଁ ଶୀଘ୍ର ବିବାହ ହେବି । ଯାଅ, ମା'ଙ୍କଠାରେ ପ୍ରସ୍ତାବ କର ।''

''ମୋର ଆନନ୍ଦର ସୀମା ରହିଲା ନାହିଁ । ମୁଁ ଯାଇ ଶାଶୂଙ୍କଠାରେ ଏ ପ୍ରସ୍ତାବ କଲି, ଶାଶୂଙ୍କର ମଧ ଆହ୍ଲାଦର ସୀମା ରହିଲା ନାହିଁ । ପୁତ୍ରକୁ ଯେତିକି ପ୍ରଶଂସା, ମୋତେ ତତୋଽଧିକ ପ୍ରଶଂସା କରି କହିଲେ—

''ମା' ! ବିଧବା ହେବା ତୋ'ର ଦୁର୍ଭାଗ୍ୟ । ହେଲେ କ'ଣ ହେଲା, ତୋର ବୁଦ୍ଧି ଓ ଗୁଣର ସୀମା ନାହିଁ, ମୋର ଜ୍ୟେଷ୍ଠ ପୁତ୍ର ପରିବର୍ତ୍ତେ ତୁ ମୋର ଘର ଚଳାଉଛୁ, ମୋର ପୁତ୍ରର ଯତ୍ନ କରୁଛୁ, ତା'ର ମଙ୍ଗଳ ନିମନ୍ତେ ସର୍ବଦା ଯତ୍ନଶୀଳା,ଏପରି ବଧୂ ମୋତେ ଭାଗ୍ୟରେ ମିଳିଥିଲା । ହେଲେ ମୋର ପୁତ୍ର ଗଲା ଏତିକି ସିନା ଦୁଃଖ । ଅନ୍ୟ ବୋହୂ ଘରେ ଥିଲେ ପୁଣି ତୋ ପରି ରୂପବତୀ ହୋଇଥିଲେ ମୋ କୁଳରେ କେତେ କଳଙ୍କ ଲଗାନ୍ତା, ତାହା କିଏ କହିପାରିବ ? ତୋ କଥା ମାନି ଯେ ପୁଅ ବିବାହ ହେବାକୁ ରାଜି ହେଲା, ବଡ଼ ସୁଖର କଥା, ଶୀଘ୍ର ବନ୍ଦୋବସ୍ତ କରିବି । ତୁ ମୋର ସୁଲକ୍ଷଣୀ ବୋହୂ ।'' ଶାଶୂଙ୍କର ଏତାଦୃଶ କୋମଳ ପ୍ରଶଂସା ବାକ୍ୟ ମୋର ହୃଦୟରେ କୁନ୍ତ ପରି ଆଘାତ କରୁଥାଏ, ଶରୀରରେ ଶତ ବୃଶ୍ଚିକ ଦଂଶନର ପୀଡ଼ା ଜନ୍ମାଉଥାଏ । ଆହା ! କିପରି ସରଳ ପ୍ରକୃତି ଦେବୀଙ୍କୁ ଆମେ ଦୁହେଁ ପ୍ରତାରିତ କରି ଦୁଷ୍କାର୍ଯ୍ୟ ରତ ହୋଇଅଛୁଁ । ମନ ଦୁଃଖାଭିଭୂତ ହେଲା । ଅନେକଥର ମନକୁ ଧିକ୍‌କାର ଦିଏଁ, ଅନୁତାପ ପାଏଁ। ତ୍ୟାଗ କରିବାକୁ ଇଚ୍ଛା କରେଁ, କିନ୍ତୁ ସେ ପାଶବିକ ମୋହ, ସେହି ଶୁଚିତାର ଅଭାବ— ସେହି ଅଦମ୍ୟ ପାପ ପଙ୍କର ଜଡ଼ିତ କରେ ।''

॥ ୬ ॥

ଦେବରଙ୍କର ବିବାହର ଆୟୋଜନ ଲାଗିଲା । ଲୋକଯାଇ କନ୍ୟା ସ୍ଥିରକରି ଆସିଲେ । ବିବାହ ଯୋଗାଡ଼ କର୍ତ୍ତ୍ରୀ ମୁଁ ବୋଇଲେ ଚଳେ । ମୁକ୍ତହସ୍ତ ନ ହେଲେ ନ ଚଳେ । ବ୍ୟୟ କରିବାକୁ କୁଣ୍ଠାବୋଧ କରିବାର କାରଣ କ'ଣ ? ଶାଶୂଙ୍କର ଗୋଟିଏ ମାତ୍ର ପୁଅ, ତାଙ୍କ ବିବାହରେ ଗୃହର ସମ୍ପତ୍ତି ବ୍ୟୟ ନ ହେବତ କାହା ନିମନ୍ତେ ହେବ ? ମୁଁ ସିନା ସଞ୍ଚୟ କରି ରଖିବା ଲୋକ, ମୋର ତ ଏ ସମ୍ପତ୍ତି ଭୋଗ୍ୟ ନୁହେଁ ବୋଇଲେ ଚଳେ । ଯେଉଁଠାରେ ଦେବରଙ୍କର ପ୍ରସ୍ତାବ ଅନୁସାରେ ପାଞ୍ଚ ଟଙ୍କା ବ୍ୟୟ ହୁଅନ୍ତା, ମୁଁ ସେ ସ୍ଥଳରେ ଦଶ ଟଙ୍କାର ପ୍ରସ୍ତାବ କରିବାକୁ ତ୍ରୁଟି କରୁ ନ ଥିଲି । ବିଶେଷତଃ କନ୍ୟାର ଅଳଙ୍କାର ସମ୍ବନ୍ଧରେ ମୋତେ ବିଶେଷ ମୁକ୍ତହସ୍ତ ଓ ପ୍ରଫୁଲ୍ଲମନା ଦେଖି ଶାଶୂଙ୍କ ମନରେ ଭାରି ଆନନ୍ଦ ଜାତ ହେଉଥାଏ । ଆଖ ପାଖ ଲୋକେ ମଧ ଲାଗିପଡ଼ି ମୋର ପ୍ରଶଂସା କରୁଥାନ୍ତି । ଅତି ଉତ୍କୃଷ୍ଟ ରୂପେ ସମସ୍ତ ଯୋଗାଡ଼ ହେଲା । ଶୁଭ ଲଗ୍ନ ଧରି ଦେବର ବିବାହ ହେବାକୁ ଗଲେ । ବନ୍ଧୁବାନ୍ଧବ ସାଇ ପଡ଼ିଶାଙ୍କୁ ଅଭ୍ୟର୍ଥନା କରିବା ଭାର ମୋ ଉପରେ । ସମସ୍ତଙ୍କୁ ଆପ୍ୟାୟିତ କରୁଥାଏଁ । ସମସ୍ତେ ମୋ ଆଚରଣରେ ମୁଗ୍ଧ । ଆଠ ଦଶ ଦିନ ପରେ କନ୍ୟା ସଙ୍ଗରେ ଘେନି ବର ଉପସ୍ଥିତ ହେଲେ । ରୋଶଣି ପ୍ରଭୃତିରେ ଆଟୋପର ତ୍ରୁଟି ନାହିଁ । ଜ୍ଞାତି ଭୋଜନ, ବ୍ରାହ୍ମଣ ଭୋଜନ, କାଙ୍ଗାଳି ଭୋଜନର ତ୍ରୁଟି ନାହିଁ । ସମସ୍ତେ ଏତାଦୃଶ ସୁପରିଚାଳିତ ବିବାହ କାର୍ଯ୍ୟ ଦେଖି ମୋ ଉପରେ ପ୍ରଶଂସା ଅଜାଡୁଛନ୍ତି । ବର-ବଧୂଙ୍କୁ ଘରକୁ ନେଲୁ, ଏ କ'ଣ ? ମୁଁ ମନେ କରିଥିଲି, ଅନ୍ତତଃ ବାର ବର୍ଷର କନ୍ୟାଟିଏ ଆଣିବେ, ଯେ କି ଅଳ୍ପ ଦିନ ପରେ ଘର ଯୋଗ୍ୟା ହୋଇପାରିବ; କିନ୍ତୁ ନବ ବଧୂଟି ଆଠ ନଅ ବର୍ଷରୁ ବେଶି ବୟସର ନ ଥିଲା, ମୁଁ ତ ଦେଖି ଅବାକ୍ । ଭାବିଲି, ଏଥିରେ ମଧ ଦେବରଙ୍କର ଚାତୁରୀ ଅଛି । କନ୍ୟାଟି ସୁନ୍ଦରୀ ଗୌରୀବର୍ଣ୍ଣା— ମାତ୍ର ଶରୀର କ୍ଷୀଣ, ତାକୁ ଦେଖିଲେ କେବଳ ଦୟାଭାବ ହୃଦୟରେ ଜାତ ହେଉଥାଏ । ଏପରି କନ୍ୟା ଶୀଘ୍ର ଘରଯୋଗ୍ୟା ହେବା ତେଣେ ଥାଉ, ପାଞ୍ଚ ଛଅ ବର୍ଷରେ ଯେ, ଘରକୁ ଆସିବ, ଏପରି ଆଶା ମଧ ନ ଥିଲା । ତାକୁ ସ୍ନେହ ଆଦର କରି ରଖିଲି । ଯେ କେତଟା ଦିନ ସେ ଆମ ଘରେ ରହିଲା, ମୁଁ ତା'ର ଯତ୍ନ କରି ଆସୁଥାଏ । ସେ ମୋ ପ୍ରତି ଏହି ଅଳ୍ପଦିନରେ ଏତେ ଅନୁରକ୍ତା ହେଲା ଯେ, ତା'ର ପିତ୍ରାଳୟକୁ ମଧ ଫେରି ଯିବାକୁ ମନ ବଳାଇଲା ନାହିଁ । ମୁଁ ମଧ ତାକୁ ସଙ୍ଗରେ ରଖିବାକୁ ଆଗ୍ରହାନ୍ୱିତ ହେଲି । ଯାଆ ସମ୍ବନ୍ଧ ଥିଲେ ମଧ ମୋର ହୃଦୟରେ ମାତୃଭାବର ସଞ୍ଚାର ହେଲା । ସେଇଟି ଗୃହରେ ରହିଲେ ତା'ର ମାତାପରି ବା ତତୋଽଧିକ ସ୍ନେହରେ ପାଳନ କରି ଯୁବତୀ ହେଲାରୁ ଦେବରଙ୍କ ହସ୍ତରେ ଅର୍ପଣ କରନ୍ତି । ଏହି ଇଚ୍ଛା ବାର ବାର ଉଦୟ ହେଉଥାଏ । ଏପରି ପ୍ରସ୍ତାବ ମଧ କଲି, ମାତ୍ର ମୋର ସେ ଆବେଦନ ଶୁଣାଯାଆନ୍ତା କାହିଁକି ? ତା' ପିତା ତ ମୋ ପିତାପରି ନିଃସ୍ୱ ନ ଥିଲେ । ସେ ଧନୀ ବ୍ୟକ୍ତିର କନ୍ୟା । ସେମାନେ ସ୍ୱାମୀ ଘରେ ଛାଡ଼ିଯିବେ କାହିଁକି ? ନେବାର ପ୍ରସ୍ତାବ କଲେ । ତଥାପି ମୁଁ କହି ପୋଛି ଆଉ ଦୁଇ ଚାରିଦିନ ରଖିଲି । ଘର ଲୋକେ ଓ ତା'ର ଯେଉଁ ଭାଇଟି ତା' ସଙ୍ଗରେ ଆସିଥିଲେ, ସମସ୍ତେ ମୋର ଅମାୟିକ ଭାବ ଅବଲୋକନ କରି ବଡ଼ ସୁଖାନୁଭବ କଲେ ଏବଂ ଭାବିଲେ ଏ ଗୃହରେ ମୋର ଯତ୍ନ ଓ ମମତା ହେତୁରୁ

ନୂଆ ବୋହୂଟି ବଡ଼ ସୁଖରେ ଦିନ କଟାଇପାରିବ । ତା' ବାପ ଘରକୁ ନୂଆ ବହୂଟି ଗଲା । ଆମ ଘର ପୂର୍ବପରି ଚାଲିଲା । ମୁଁ ଦେବରଙ୍କୁ ପଚ୍ାରିଲି ବିବାହ ହେଲ ସତ; ମାତ୍ର ଏ ଯେ ପାଞ୍ଚ ବର୍ଷ ମଧରେ ତୁମ ଘରକୁ ଆସିବ ନାହିଁ, ଏପରି ନାବାଳିକାଟିଏ ବିବାହ ହେଲ କାହିଁକି ? ବଡ଼ ଦୁଃଖର କଥା ।

ଦେବର ହସି ହସି କହିଲେ, ବିବାହ ହେବାକୁ ତୁମର ଆଦେଶ, ବିବାହ କଲି, କେତେ ବର୍ଷର କନ୍ୟା ବିବାହ ହେବାର ଉଚ଼ିତ ତାହା ତ ମୋତେ କେହି କହି ନ ଥିଲେ, ଏଣୁ ମୋ ଇଚ୍ଛାନୁରୂପ ଗୋଟିଏ ଶିଶୁ ବିବାହକଲି । ଏଥିରେ କ୍ଷତି କାହାର ? କାହାରି ତ ନାହିଁ, ତୁମ କଥା ତ ମଧ ମୋର ଦେଖିବା ଉଚ଼ିତ ।''

ଏହାଶୁଣି ମୋର ଦୁଃଖ ଓ କ୍ରୋଧଜାତ ହେଲା । କିଛିକ୍ଷଣ କଥା କହି ପାରିଲି ନାହିଁ, ତୁନି ହୋଇ ରହିଲି । ଚକ୍ଷୁରେ ଲୋତକ ଦେଖାଗଲା । ଥମ ଥମ ହୋଇ କହିଲି—

''ଏପରି କଥା ତୁମର କହିବା ଉଚ଼ିତ ନୁହେଁ, ଏ ପାପ ପ୍ରଣୟରୁ କେତେବେଳେ କି ଘଟଣା ଘଟିବ, ସେଥିପ୍ରତି ତୁମର ଟିକିଏ ହେଲେ ଦୃଷ୍ଟି ନାହିଁ, ବିଚ଼ାର ନାହିଁ । ପାପ ପୁଣ୍ୟ କଥା ପଛେ ତେଣେ ଥାଉଁ, ମୁଁ ଅଭାଗିନୀ ତୁମ ଘରକୁ ଆସି ତୁମର ଭାଇ କି ଖାଇଲି, ତୁମର ଚରିତ୍ରକୁ ଖାଇଲି, ମାନ ମହତ୍ତ୍ୱ ମଧ ଖାଇବି । ଏହିଠାରୁ ମୋର ମରଣ ଭଲ । ତୁମେ ପୁରୁଷ ଜାତି କିଛି ବିଚ଼ାର ନାହିଁ । ବେଳେ ବେଳେ ମୋ କାର୍ଯ୍ୟ ଭାବନା କରି ମୁଁ ମର୍ମାହତ ହେଉଛି । ତୁମେ ତାହା ଜାଣିବ କିପରି ।''

ଏହା କହି ମୁଣ୍ଡରେ ହାତ ଦେଇ ବିଷଣ୍ଣ ବଦନରେ ବସି ରହିଲି । ମୋର ଦୁଃଖ ତାଙ୍କୁ ଦୁଃଖ ଦିଅନ୍ତା କ'ଣ— ମୋ ପ୍ରତି ଅଧିକ ସହାନୁଭୂତି ଆକର୍ଷଣ କଲା । ମୋର ହୃଦୟ ଦେବତାଙ୍କ ପ୍ରତି ମୋର ମାନ ବୋଲି ମନେ ହେଲା, ସେ ମୋ ପ୍ରତି ଅଧିକତର ଅନୁରକ୍ତ ହେଲେ । ଆଉ ସ୍ନେହ ସୌହାର୍ଦ୍ଦ୍ୟର ସୀମା ରହିଲା ନାହିଁ । ଏଥିରୁ ପରେ ବିଷମ ଫଳ ଫଳିବ ବୋଲି ମୁଁ ଭାବୁଥାଏ । କିଛିଦିନ ଚାଲିଗଲା ।

ମୁଁ ଦିନେ ତାଙ୍କୁ କହିଲି, ପାପକାର୍ଯ୍ୟ ସବୁଦିନେ ଛପି ରହିବ ନାହିଁ, ପ୍ରକାଶ ହୋଇପାରେ, ଏଥିରୁ ଆମେ ଦୁହେଁ ନିରସ୍ତ ହେବା ଉଚ଼ିତ ।'' ସେ କହିଲେ ଆମ କଥା କଦାପି ଜଣାଯିବ ନାହିଁ, ତୁମେ ନିଶ୍ଚିନ୍ତ ଥାଅ । ବିବାହ ହେବାଦ୍ୱାରା ମୁଁ ଗୋଟାଏ ଶକ୍ତ ବାଡ଼ ପକାଇ ଦେଇଛି । ଆମ ରହସ୍ୟ ଭେଦ ହେବାର ଉପାୟ ନାହିଁ ।''

''ମୁଁ ସେ କଥା କହୁ ନାହିଁ କେବଳ । ପୁରୁଷର ବ୍ୟଭିଚ଼ାର ଜଣା ପଡ଼ି ନ ପାରେ, ମାତ୍ର ସ୍ତ୍ରୀର କଥା ସ୍ୱତନ୍ତ୍ର । ମୁଁ ଅନ୍ତଃସତ୍ତ୍ୱା ହେଲେ ଉପାୟ ?''

''ସେଥିକି ଉପାୟ ଅଛି''

''କି ଉପାୟ ?''

''ସେଥି ନିମନ୍ତେ ଚିନ୍ତା କାହିଁକି ? ଆମର ପ୍ରଣୟ ଅସଙ୍ଗତ ନୁହେଁ । ତୁମେ କ'ଣ ପୁରାଣ ପଢ଼ି ନାହଁ, ଏପରି ଘଟଣା କି କେବେ ହୋଇ ନ ଥିଲା ?''

''ସେତେବେଳର କଥା ଛାଡ଼ । ସେ ରୀତି ଏବେ ନାହିଁ । ତାହା ଗୁପ୍ତ ପ୍ରଣୟ ବା ବ୍ୟଭିଚ଼ାର ନ ଥିଲା । ବଂଶରକ୍ଷା କରିବାକୁ ବିଧବା ନିଜ ଦେବର ଦ୍ୱାରା ପୁତ୍ର ଉତ୍ପାଦନ କରାଉଥିଲା । ତୁମେ କି ପ୍ରକାଶ୍ୟରେ ବନ୍ଧୁବର୍ଗ ଓ ସମାଜର ଅନୁମତି ନେଇ ମୋତେ ଗ୍ରହଣ କରିଅଛ ?''

''ତାହା କରି ନାହିଁ, ତଥାପି ଯେବେ ତୁମ ଗର୍ଭରୁ ପୁତ୍ର ଜାତ ହୁଏ, ମୁଁ ତାକୁ ମୋର ପୁତ୍ର ବୋଲି ଗ୍ରହଣ କରିବି । ଜାତି ମହତ୍ତ୍ୱରେ ଜଳାଞ୍ଜଳି ଦେବି ହେଲା ?''

''ମିଛ କଥା— ଏ ପ୍ରତିଜ୍ଞା ସବୁଦିନେ ମନରେ ନ ଥିବ । ଯଦି ଏ ଭାବ ଥିଲା ତ ବିବାହ ହେଲ କାହିଁକି, ସେ ବିଚ଼ାରୀର ଗତି କ'ଣ ହେବ ?''

''ତାକୁ ମଧ ସହଧର୍ମିଣୀ କରି ରଖିବି ।''

''ସବୁ ମିଛ । ଏ ସାହସ ତୁମର ବା କୌଣସି ପୁରୁଷର ନାହିଁ । ତୁମେ ଏକଥା ପୂର୍ବେ ମୋତେ କହିଥିଲ; ମୁଁ ସେଥିରେ ଆଶା ନ ରଖି ତୁମର ବିବାହ ଯୋଗାଡ଼ କଲ । ଏତେବେଳେ ପୁଣି ସେହିକଥା । ତୁମେ ଏ ଅଭ୍ୟାସ, ନୋହିଲେ ମୁଁ ଗୃହତ୍ୟାଗିନୀ ହେବି ।''

ମୋର ଏହିକଥା ଶୁଣି ହାତ ଧରି ପକାଇଲେ । କେତେ ଅନୁନୟ ବିନୟ କଲେ, ମୋର ଭାବ କେଉଁଆଡ଼େ ଉଭେଇଗଲା, ଯଥା ପୂର୍ବଂ ତଥା ପରଂ ।

॥ ୭ ॥

କୁଅଭ୍ୟାସ ତ୍ୟାଗ କରିବାକୁ ମନସ୍ୱିତା ଆବଶ୍ୟକ । ଯାହାର ମନ ଆଣ୍ଟ ନୁହେଁ; ସେ ସବୁ କଥାରେ ଲଡ଼ବଡ଼ । ଯାହାର ହୃଦୟରେ ବଳ ନାହିଁ ସେ ଆଜି କଥାଏ ହେଲେ କାଲି କଥାଏ କରେ । ଆଜି ଯାହାକୁ ଘୃଣା କରେ, କାଲି ତାକୁ ସୁଖ ପାଏ । ଆଜି ଯାହା ଛାଡ଼ିବି ବୋଲି ପ୍ରତିଜ୍ଞା କରେ, କାଲି ତାକୁ

ଆଦର କରି ଟାଣି ଆଣେ । ମାନସିକ ଦୃଢ଼ତାର ଅଭାବରୁ ଏପରି ଘଟେ; ଏହା କିଏ ଅସ୍ୱୀକାର କରିବ ? ମୋର ମାନସିକ ବଳ ଗୋଟିଏ ପାଣି ଫୋଟକା ପରି । ମୁଁ ଏକାକିନୀ ଥିବା ବେଳେ ଯାହା କରିବାକୁ ଭାବିଥାଏଁ, ଦେବର ତାହା ଗୋଟିଏ ଫୁଟୁକିରେ ଉଡ଼ାଇ ଦିଅନ୍ତି । ମୋର ପ୍ରତିଜ୍ଞା, ମୋର ମାନସିକ ବଳ ଏକାବେଳେ ଭାଙ୍ଗିଯାଏ । ଦୁର୍ଦ୍ଦଶା ବାଟ କଢ଼ାଇ ଥାଏ । ମୁଁ ତାଙ୍କ କଥା ମାନି ଯେମନ୍ତ ତାଙ୍କର ସାଦର ଅନୁନୟ ବିନୟର ବଶବର୍ତ୍ତିନୀ ହେବାକୁ ଲାଗିଲା, ତାଙ୍କର ସ୍ନେହ ମମତା ସଙ୍ଗରେ ଟିକିଏ ପ୍ରଭୁତ୍ୱ ମଧ୍ୟ ମିଶିବାକୁ ଲାଗିଲା ।

ନିଃସହାୟା, ଅବଳା । ସବୁ ମାନିନେବାକୁ ପଡୁଥାଏ । ମୋର ଉପାୟ ହରାଇ ବସିଲି । ତାଙ୍କର କୌଣସି କାର୍ଯ୍ୟର ପ୍ରତିବାଦ କରିବାକୁ ଆଉ ଅବସର ମିଳିଲା ନାହିଁ । ମନକୁ କେତେ ଥର ଧିକ୍‌କାର ଦେଇଛି । ନିଭୃତରେ ବସି କାନ୍ଦିଅଛି । ଗୃହରୁ ଗଲେ ଶାଶୂ ଦେବରଙ୍କର ମଙ୍ଗଳ ହୁଅନ୍ତା ବୋଲି ଭାବେଁ । ମାତ୍ର ଯିବି କିପରି ? ଯିବି କୁଆଡ଼େ ? କିଛି ସ୍ଥିର କରିପାରେ ନାହିଁ— ତୁନି ହୋଇ ରହେ । ଥରେ ଥରେ ଭାବେଁ, ଯେବେ ଅନ୍ତଃସତ୍ତ୍ୱା ହୋଇପଡ଼େଁ, ତେବେ ଉପାୟ କ'ଣ ? ଦେବର କି ଆଉ ରଖିବେ ନା ପଚାରିବେ ? ବ୍ୟଭିଚାରିଣୀ ବୋଲି ଗୃହରୁ ତଡ଼ି ଦେବେ । ନିଜ ଦୋଷକ୍ଷାଳନ ନିମନ୍ତେ ଅନ୍ୟର ଉପରେ ଦୋଷାରୋପ କରିବେ । ଏ ଚିନ୍ତା ଥରେ ଥରେ ଆତ୍ମହତ୍ୟା କରିବାକୁ ପ୍ରବୃତ୍ତି ଦିଏ । କିନ୍ତୁ ଜୀବନଟା ଏଡ଼େ ଶସ୍ତା ଓ ତୁଚ୍ଛ ବୋଲି ମନ ମାନେ ନାହିଁ, ଆତ୍ମହତ୍ୟା ସଙ୍କଳ୍ପ ତ୍ୟାଗକରେ ।

ଗୃହକର୍ମ ନିର୍ବିଘ୍ନରେ ଚଳାଉଥାଏଁ । ଶାଶୂଙ୍କ ପ୍ରତି ସ୍ନେହ ଓ ଭକ୍ତିର ତ୍ରୁଟି ନାହିଁ । ତାଙ୍କର ଶୁଭ କାମନାର ଅଭାବ ନାହିଁ । ଦେବରଙ୍କ ସ୍ୱଭାବ ପୂର୍ବପରି— କେବେ କେବେ ତତୋଽଧିକ । ସବୁ ଚିନ୍ତା ଅନୁତାପ ଉଭେଇ ଯାଏ । ମୁଁ ଗୃହକର୍ତ୍ତ୍ରୀ, ଦେବର ମୋର ଭର୍ତ୍ତା, ଏ ଭାବରେ ପୁଣି କିଛି ଦିନ ଚାଲିଗଲା ।

ସୁଖ ଚିରସ୍ଥାୟୀ ନୁହେଁ । ପୁଣି ମୋର କାଳ୍ପନିକ ସୁଖ ପାପ ଜନିତ । ଏଣୁ ସେବା ବହୁ ଦିନ ରହିବ କିପରି ? କେତେ ଦିନ ଲୋକ ଚକ୍ଷୁରେ ଧୂଳି ପକାଉଥିବି । ନାମ ମାତ୍ର ସୁଖର ଅବସାନ ହୋଇ ଆସିଲା । ମୁଁ ଅନ୍ତଃସତ୍ତ୍ୱା ହୋଇଥିବାର ଜାଣିପାରିଲି । ବ୍ୟଭିଚାରିଣୀ ପାପ ଗର୍ଭକୁ ଗୋପନ କରେ । ମୁଁ ମଧ୍ୟ ଗୋପନ କଲି । କପଟରେ କେତେକ ମାସ ଚଳାଇ ନେଲି, ପ୍ରକାଶ କଲି ନାହିଁ । ଯେତେବେଳେ ମୋର ସମ୍ପୂର୍ଣ୍ଣ ବିଶ୍ୱାସ ଜନ୍ମିଲା ଯେ, ମୋର ଗର୍ଭରେ ସନ୍ତାନ ରହିଲା, ସେତେବେଳେ ମୋ'ର ହୃଦୟରେ ଭିନ୍ନଭାବ ଜାତହେଲା । ମାତୃଭାବ ମନକୁ ଅଧିକାର କରି ବସିଲା । ଗର୍ଭସ୍ଥ ସନ୍ତାନକୁ ଯେକୌଣସି ପ୍ରକାରେ ବଞ୍ଚାଇ ରଖିବାକୁ ମନ ବ୍ୟାକୁଳ ହେଲା । ଦେବର ସହବାସ ପାପ ବ୍ୟଭିଚାର ବୋଲି ଜାଣୁଥିଲେ ମଧ୍ୟ ତାହା ସେତେବେଳେ ପାପ ଓ ଦୋଷାବହ ବୋଲି ମନେ ହେଲା ନାହିଁ । ଗର୍ଭସ୍ଥ ସନ୍ତାନର ଜୀବନ ରକ୍ଷା ପାପ କ୍ଷାଳନର ପ୍ରାୟଶ୍ଚିତ୍ତ ବୋଲି ମନ ବାର ବାର କହିବାକୁ ଲାଗିଲା । ପ୍ରତିଜ୍ଞା କଲି, ସନ୍ତାନର ଜୀବନ ରକ୍ଷା କରିବି । ନିଜକୁ କଳଙ୍କିନୀ ବୋଲି ପରିଚୟ ଦେବି, ଏଥିରେ ଲଜ୍ଜା ନାହିଁ । ମନେ କଲି, ସନ୍ତାନ ପ୍ରାପ୍ତି ନିମନ୍ତେ ମୋର ଦେବର ସଙ୍ଗ— ସୁଖ ନିମନ୍ତେ ନୁହେଁ ।

ଦେବରଙ୍କୁ କହିବା ଉଚିତ କିନା, କଥା ହୃଦୟରେ ନାଚିଲା । ସେ ଶୁଣିଲେ ତାଙ୍କର ପୂର୍ବ ପ୍ରତିଜ୍ଞା ପାଳନ କରି ମୋର ଗର୍ଭରୁ ଜାତ ଶିଶୁଟିକୁ ପୁତ୍ରବତ୍ ପାଳିବେ ଓ ଲୋକରେ ମୁହଁ ଦେଖାଇବେ, ଏ ସାହସ ତାଙ୍କର ନାହିଁ । ଗର୍ଭ ନଷ୍ଟ କରିବାର ଅବଶ୍ୟ ଚେଷ୍ଟା କରିବେ । ମୋର ଗର୍ଭଜାତ ପୁତ୍ରକୁ ଆତ୍ମଜ ବୋଲି ପରିଚୟ ଦେବା ତାଙ୍କର ବଳ କାହିଁ ? କେବଳ ମୋର ସତୀତ୍ୱ ନଷ୍ଟ କରିବା ନିମନ୍ତେ— ମୋ ସହିତ କାମନା ଲାଳସା ତୃପ୍ତି କରିବା ନିମନ୍ତେ ସିନା ମୋତେ ଏପରି ପ୍ରତାରଣା କରିଥିଲେ । ସେ ଜାତି ଓ ସମାଜର ମୁହଁ ଦେଖିବେ, ନା ମୋର ପୁତ୍ରର ଜୀବନକୁ ଦେଖିବେ ? ହା ବିଧାତଃ । ମୁଁ କି କୁହକରେ ପଡ଼ି ଏ ପାପ ପଙ୍କରେ ଲିପ୍ତ ହେଲି । ତାଙ୍କ ବିବେଚନାରେ ମୋର ଗର୍ଭସ୍ଥ ଶିଶୁ ତାଙ୍କର କିଛି ନୁହେଁ । ମୋର ତ ସନ୍ତାନ, ମୁଁ ଏହାକୁ ନଷ୍ଟ କରିବି କେଉଁ କାରଣରେ ? ମା ସହିତ ସନ୍ତାନର ଯେଉଁ ଘନିଷ୍ଠତା, ପିତା ସହିତ ତ ସେ ଘନିଷ୍ଠତା ନାହିଁ । ବାପ ସିନା ନିଜର ଔରସ ପୁତ୍ରକୁ ନିଜ ସ୍ୱାର୍ଥରେ ଛଡ଼ାଇ ଘେନିଯାଏ, ମାତ୍ର ଯେଉଁ ପୁତ୍ରକୁ ବ୍ୟଭିଚାରୀ ଜନିତ ବୋଲି ମନେ କରେ, ତାକୁ ତ ମା'ଠାରୁ ଛଡ଼ାଇ ନିଏ ନାହିଁ, ସେ ତ ମା'ର ହୋଇ ରହେ । ମୋର ଗର୍ଭସ୍ଥ ଶିଶୁ ତ ମୋର ନିଜସ୍ୱ । ତାକୁ ତ ମୋଠାରୁ କେହି ଛଡ଼ାଇ ପାରିବେ ନାହିଁ । ତେବେ ତାକୁ ମୁଁ ନଷ୍ଟ କରିବି କାହିଁକି ? ତାକୁ ବଞ୍ଚାଇବାକୁ ମୋର ପ୍ରାଣ ପଣ କରିବି । ଯେତେଦିନ ପାରିଲି ଗର୍ଭଗୋପନ କରି ରଖିଲି ।

ଦେବର କାର୍ଯ୍ୟବଶତଃ ସ୍ଥାନାନ୍ତରକୁ ଯାତାୟାତ କରନ୍ତି । ଏମନ୍ତ କି ଦୀର୍ଘକାଳ ମଧ୍ୟ ପ୍ରବାସରେ ରହିଯାଆନ୍ତି । ଏହା ମୋ ପ୍ରତି ଅତି ସୁଯୋଗର କାରଣ ହେଲା । ମୁଁ ମୋର ସନ୍ତାନର ଅନୁଧ୍ୟାନରେ ଥାଏ । ଅନ୍ୟ କେହି ଜାଣିପାରନ୍ତି

ନାହିଁ । ଏହା ମୋର ସୁଯୋଗ । ମୋର ଶାରୀରିକ ଗଠନ ଏଥି ନିମନ୍ତେ କେତେକାଂଶରେ ମୋର ମନୋଭାବର ସହାୟ ଥିଲା । ସମସ୍ତଙ୍କ ଅଜ୍ଞାତରେ ଗର୍ଭ ଗୋପନ କରି ଯାଉଥାଏଁ । ଦିନେ ଦେବର ପଚାରିଲେ, ଅଗତ୍ୟା ତାଙ୍କଠାରେ ପ୍ରକାଶ କରିବାକୁ ବାଧ ହେଲି । ମୋ କଥା ଶୁଣି ସେ ବିଷଣ୍ଣ ହୋଇ ପଡ଼ିଲେ । ମୁଖ ଶୁଖିଗଲା । ମୁଁ ହସ ହସ ହେବା ଦେଖି ସେ କହିଲେ, ''ତୁମେ ହସୁଛ, ଆମର ଯେ ସର୍ବନାଶ ହେବାକୁ ବସିଲା । ଜାତି ମହତ୍ତ୍ୱ ମର୍ଯ୍ୟାଦା ବୁଡ଼ିବାକୁ ବସିଲା ।''

ମୁଁ କହିଲି, ''ଜାଣିଶୁଣି ଯାହା କରିଛ, ସେଥି ନିମନ୍ତେ ଚିନ୍ତା କ'ଣ ? ମୋ ଗର୍ଭରୁ ଯେ ଜନ୍ମିବ ତାକୁ ନିଜର ପୁତ୍ର ବୋଲି ପରିଚୟ ଦେବ । ପୂର୍ବେ ତ ଏହି ପ୍ରତିଜ୍ଞା କରିଛ । ତୁମ କଥା ଅନୁସାରେ ଫଳ ପାଇଲ, ମୋ କଥା ମାନିଲ ନାହିଁ ।''

''ଏତେଦିନ ଯାଏ ମୋତେ ନ କହି ଗୋପନ କଲ କାହିଁକି ?''

''ମୁଁ ତ ପ୍ରବୀଣା ନୁହେଁ, ମୁଁ ବା ଜାଣିବି କିପରି ? ଯେତେବେଳେ ଠିକ୍‌ରୂପେ ଜାଣିପାରିଲି, ସେତେବେଳେ କହିଲି ।''

''ଉପାୟ ?''

''ଉପାୟ ଆଉ କ'ଣ, ଗର୍ଭ ରକ୍ଷାକରି ପୁତ୍ରକୁ ପାଳନ କରିବା ।''

''ଏ କ'ଣ ସମ୍ଭବ ?''

''ଅସମ୍ଭବ କାହିଁକି ? ଏହାହିଁ ତ ତୁମର ଓ ମୋର ଇଚ୍ଛା । ଉଭୟଙ୍କ ପରାମର୍ଶରେ ଓ ମତରେ ସନ୍ତାନ ମୋର ଗର୍ଭସ୍ଥ ।''

''ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ, ତୁମେ ମୋର ସର୍ବନାଶ କରିବାକୁ ବସିଲ ।''

''ତୁମେ ଏଥିରେ ଦୋଷୀ, ନା ମୁଁ ? ତୁମ କଥା ଯେବେ ନ ରଖ, ତେବେ ମୋର ତ ସର୍ବନାଶ ହୋଇରହିଛି । ସନ୍ତାନ ରକ୍ଷା କଲେ ମୋର ରକ୍ଷା ।''

''ଅସମ୍ଭବ, ସନ୍ତାନ ରକ୍ଷାଦ୍ୱାରା ତୁମ ରକ୍ଷା ଅସମ୍ଭବ । ସନ୍ତାନର ନାଶ ହେଲେ ତୁମର ରକ୍ଷା ଓ ପୂର୍ବବତ୍ ସୁଖ ସ୍ୱାଚ୍ଛନ୍ଦ୍ୟ । ଏହା ଭିନ୍ନ ତୁମର ଗତି ଆଉ ନାହିଁ ।''

''ମୁଁ ପଛେ କଳଙ୍କିନୀ, ବ୍ୟଭିଚାରିଣୀ ଅପବାଦ ମୁଣ୍ଡରେ ବୋହିବି, ମାତ୍ର ମୋର ସନ୍ତାନ ନଷ୍ଟ କରିବି ନାହିଁ । ମୁଁ ସନ୍ତାନ ନଷ୍ଟ କରିଦି ବୋଲି ତୁମ ସଙ୍ଗରେ ସହବାସ କରି ନାହିଁ । ତୁମେ କହିଥିଲ ପରା ମୋ ଗର୍ଭରୁ ପୁତ୍ର ଜନ୍ମିଲେ— ତୁମେ ତାକୁ ନିଜର ପୁତ୍ର ବୋଲି ପରିଚୟ ଦେବ, ଜାତି ମର୍ଯ୍ୟାଦା ତ୍ୟାଗ କରିବ । ଏବେ ମୋର ଗର୍ଭସ୍ଥ ସନ୍ତାନଦ୍ୱାରା ତୁମର ଓ ମୋର ଅମଙ୍ଗଳ ହେବ ବୋଲି ଭାବୁଛ ? ସେହି ସନ୍ତାନକୁ ନାଶ କରିବାକୁ ଇଚ୍ଛା କରୁଛ ? ଗର୍ଭଧାରଣ ହିଁ ସ୍ତ୍ରୀର ଧର୍ମ— ଭୋଗ ଲାଳସାରେ ହେଉ ବା କାମ ପରବଶରୁ ହେଉ, ଆମ ଦୁହିଁଙ୍କ ପ୍ରଣୟର ଫଳରୁ ଗୋଟିଏ ଜୀବର ସୃଷ୍ଟି ହୋଇଛି । ସ୍ତ୍ରୀ ପୁରୁଷର ଧର୍ମ ରକ୍ଷା ହୋଇଛି । ପାପ ପ୍ରବୃତ୍ତିରୁ ଅବଶେଷରେ ପୁଣ୍ୟ ଫଳର ଉଦୟ ହୋଇଛି । ଏହି ସନ୍ତାନ ଦ୍ୱାରା ଲୋକହସା ହୋଇପାରେ, ମାତ୍ର ଆମ ଦୁହିଁଙ୍କ ପାପକ୍ଷୟ ହେବ । ଏହାକୁ ନଷ୍ଟ କରିବାର ଆମର ଅଧିକାର ନାହିଁ । ସେ ଇଚ୍ଛା ତ୍ୟାଗ କର । ମହାପାତକରେ ପ୍ରବୃତ୍ତ ହୁଅ ନାହିଁ ।

ଏହାଶୁଣି ମୋର ଦେବର ତୁନିହୋଇ ବସିରହିଲେ । ଅନେକ କ୍ଷଣ ମ୍ରିୟମାଣ ହୋଇ ବସିରହିଲେ । ପରେ 'ଆଚ୍ଛା' କହି ମୋ ନିକଟରୁ ଚାଲିଗଲେ । ମୁଁ ଭାବିଲି ମୋର କଥା ତାଙ୍କ ମନକୁ ପାଇଲା । ବୋଧହୁଏ ଆଉ ଗର୍ଭନାଶର ଚେଷ୍ଟା କରିବେ ନାହିଁ ।

ଦୁଇ ତିନି ଦିନ ଗ୍ରାମାନ୍ତରକୁ ଚାଲିଗଲେ । ସେଠାରୁ ଫେରିଲେ । ପୂର୍ବ ପ୍ରସଙ୍ଗରେ ଆଉ ଆଲୋଚନା କଲେ ନାହିଁ । ମାତ୍ର ମୋ ସହିତ ଘନିଷ୍ଠତା ବଢ଼ାଇବାକୁ ଲାଗିଲେ । ମୁଁ ପୂର୍ବାପେକ୍ଷା ବଡ଼ ସୁଖ ଓ ଶାନ୍ତି ପାଇଲି । ଏ ପ୍ରକାର ଅଭିନବ ପ୍ରେମାଳାପ ଓ ଗାଢ଼ ସ୍ନେହ ମଧ୍ୟରେ ଯେ ଗୂଢ଼ ଅଭିସନ୍ଧି ଥିଲା, ତାହା ମୁଁ ବୁଝିପାରି ନ ଥିଲି । ସେ ମନେ ମନେ ଭାବି ନେଲେ ଯେ, ସ୍ନେହ ଦ୍ୱାରା ମୋତେ କରାୟତ୍ତ କରି ଅଛନ୍ତି ଏବଂ ସେ ଯାହା କହିବେ ବା ଆଦେଶ ଦେବେ, ତାହା ମୁଁ ଅମ୍ଳାନ ବଦନରେ ମାନିନେବି, ଏଣୁ ଦିନେ ପୁଣି ପୂର୍ବ କଥାର ଅବତାରଣା କଲେ ଏବଂ ଔଷଧ ସେବନ କରିବାକୁ ଅନୁରୋଧ କଲେ । ମୁଁ ଭାବିଲି ତାଙ୍କ ସଙ୍ଗରେ ଜୋର ଜବରଦସ୍ତି ବା ତର୍କ ବିତର୍କ ଚଳିବ ନାହିଁ । ଶଠତା ହିଁ ଏଥିର ପ୍ରତିକାର । ତାଙ୍କ ପ୍ରସ୍ତାବରେ ମୁଁ ସମ୍ମତା ଥିବାର ତାଙ୍କର ବିଶ୍ୱାସ ଜନ୍ମାଇଲି ଏବଂ ତାଙ୍କ ପ୍ରଦତ୍ତ ଔଷଧ ପାନ କରିବାକୁ ସ୍ୱୀକୃତ ହୋଇ ତାହା ଗ୍ରହଣ କଲି । ସେ ଭାରି ଖୁସି । ତିନି ମାତ୍ରା ଔଷଧ ଦେଇଥିଲେ । ସେ ସନ୍ଧ୍ୟାରେ ଏକ ମାତ୍ରା ପାନ କରିଥିବାର କହିଲି, ବାକି ଦୁଇ ମାତ୍ରା ତାଙ୍କୁ ଦେଖାଇ ଦେଲି । ତାଙ୍କର ପ୍ରତୀତୁ ଜନ୍ମିଲା, ଆରଦିନ ସକାଳେ ପୁଣି ତାଙ୍କୁ ଏକ ମାତ୍ରା

ଔଷଧ ଦେଖାଇ ଦେଲି । ସେ କହିଲେ ଯେ, ତିନି ମାତ୍ରା ଔଷଧ ସେବନ କଲେ ନିଶ୍ଚୟ ଫଳ ଦର୍ଶିବ; ଏହା ଅମୋଘ ଔଷଧ । ସେଦିନ ସକାଳୁ ପ୍ରକୃତରେ ମୋର ସାମାନ୍ୟ ଜ୍ୱର ବାନ୍ତି ହେଲା । ଏହା ଦେଖି ତାଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଜନ୍ମିଲା ଯେ, ମୁଁ ଔଷଧ ଦୁଇ ମାତ୍ରା ଭକ୍ଷଣ କରିସାରିଥିଲି, ଆଉ ଏକ ମାତ୍ରା ଭକ୍ଷଣ କଲେ ତାଙ୍କର କଳଙ୍କ ମୋଚନ ହେବ ଏବଂ ସେ ସୁଖ ସ୍ୱଚ୍ଛନ୍ଦ୍ୟରେ ସଂସାରରେ ପାପଶୂନ୍ୟ ପୁରୁଷ ବୋଲି ପରିଚୟ ଦେଇପାରିବେ । ମୁଁ ଖଟରେ ତୁନିହୋଇ ଶୋଇଥାଏଁ । ଆହାରାନ୍ତେ ମୋ ନିକଟକୁ ଆସି କହିଲେ—

''ଦେଖ, ବିଶେଷ ପ୍ରୟୋଜନ ଥିବାରୁ ମୁଁ ଚାରି ଛଅ ଦିନ ସକାଶେ ସ୍ଥାନାନ୍ତରକୁ ଯାଉଅଛି । ଆଉ ପାନକ ଆଜି ସନ୍ଧ୍ୟାରେ ପିଇବ । ଆଉ ଚିନ୍ତାର କାରଣ ନାହିଁ । ମୁଁ ଯାହାଠାରୁ ଔଷଧ ଆଣିଥିଲି, ସେ କହିଲା, ତିନି ପାନ ଖାଇ ସାରିଲାରୁ ନିଶ୍ଚୟ ଫଳ ମିଳିବ । ସାମାନ୍ୟ ଜ୍ୱର ଓ ବାନ୍ତି ତା'ର ପୂର୍ବ ଲକ୍ଷଣ ହୋଇପାରେ । ଚିନ୍ତା କରିବ ନାହିଁ । ଭୟର କାରଣ ନାହିଁ । ପ୍ରଭୁଙ୍କ କୃପାରୁ ଆମ ଦୁହିଁଙ୍କର ମଙ୍ଗଳ ହେବ, ମୁଁ ଯାଉଛି ।''

ଏହା କହି ଚାଲିଗଲେ । ମୁଁ ସ୍ୱସ୍ତ ବୋଧ କଲି । ମୁଁ ଭାବିଲି, ଗର୍ଭସ୍ଥ ଶିଶୁର ପ୍ରାଣ ନାଶକୁ ପ୍ରଭୁଙ୍କ କୃପା ବୋଲି ଭାବିବା କେଡ଼େ ହୀନ ପ୍ରକୃତିର ପରିଚାୟକ । ତାହା ଛଡ଼ା ଈଶ୍ୱର ମଧ ଏତାଦୃଶ ଷଡ଼ଯନ୍ତ୍ରରେ ସଂଶ୍ଳିଷ୍ଟ ବୋଲି ମନୁଷ୍ୟ ଭାବେ ? ଅଥଚ ମନୁଷ୍ୟ ଈଶ୍ୱର ବିଶ୍ୱାସୀ ବୋଲି ଢକ୍କା ବଜାଇ ବୁଲେ । ଏହା ଭାବି ମନକୁ ଶତ ଧିକ୍କାର ଦେଲି । ମୋର ସାମାନ୍ୟ ଅସୁସ୍ଥତା କେଉଁଆଡ଼େ ଚାଲିଗଲା । ଦେବରଙ୍କ ସ୍ଥାନାନ୍ତର ଗମନ ମୋ ପକ୍ଷରେ ମଙ୍ଗଳଜନକ ହେଲା । ପୁଣି କିଛିଦିନ ଚାଲିଗଲା ।

ଦେବର ଫେରିଲେ । ତାଙ୍କର ବିଶ୍ୱାସ ଥିଲା ଯେ, ତାଙ୍କର ଔଷଧ ଦ୍ୱାରା ଗର୍ଭ ନଷ୍ଟ ହୋଇଥିବ, ମାତ୍ର ମୋଠାରୁ ଯେତେବେଳେ ଶୁଣିଲେ ଯେ, ଔଷଧ ଦ୍ୱାରା କୌଣସି ଫଳ ଦର୍ଶିଲା ନାହିଁ, ସେତେବେଳେ ଅଧୀର ହୋଇ ନିଜ ଅଦୃଷ୍ଟକୁ ନିନ୍ଦା କରିବାକୁ ଲାଗିଲେ । ମାତ୍ର ମୋ ପ୍ରତି ତାଙ୍କର ବିରକ୍ତ ଭାବ ଥିବାର ଜଣାଗଲା ନାହିଁ । କହିଲେ, ''ନିଶ୍ଚେଷ୍ଟ ହୋଇ ରହିଲେ ତ ଚଳିବ ନାହିଁ । ଅନ୍ୟ ଔଷଧ ପ୍ରୟୋଗ କରିବା କିମ୍ବା ଅନ୍ୟ ଉପାୟ ଅବଲମ୍ବନ କରିବାକୁ ହେବ ।''

ଶେଷୋକ୍ତ କଥା ଶୁଣି ମୋର ପ୍ରାଣ ଦୁକ୍ କରି ଉଠିଲା । ବିଜାତୀୟ ଘୃଣା ଓ ଭୟର ଉଦୟ ହେଲା । ମୁଁ କହିଲି, ''ଔଷଧ ମାତ୍ରା ପ୍ରୟୋଗ ଦ୍ୱାରା ପାପ ମାତ୍ରା ବୃଦ୍ଧି କରିବାର ଫଳ କ'ଣ ? ଅବ୍ୟର୍ଥ ଔଷଧ ପ୍ରୟୋଗ କରି ଯେତେବେଳେ ବ୍ୟର୍ଥ ମନୋରଥ ହେଲ, ପୁଣି ଔଷଧ ବ୍ୟବହାର କରିବାର କଳ୍ପନା ଦ୍ୱାରା ପାପର ମାତ୍ରା ବୃଦ୍ଧିକରୁଛ କାହିଁକି ? ଯାହା ହେବାର ହେଉ— ବୃଥା ଯତ୍ନ କର ନାହିଁ ।'' ସେ କହିଲେ, 'ସତ୍ୟ' । ମାତ୍ର ଏ 'ସତ୍ୟ'ର ଅର୍ଥ ମୁଁ ହୃଦୟଙ୍ଗମ କରି ପାରିଲି ନାହିଁ । ତାଙ୍କର ମୁଖଭଙ୍ଗୀ କଠୋର ହୋଇଉଠିଲା । ସେ ମୁଖଭଙ୍ଗୀରେ ଦୃଢ଼ ସଙ୍କଳ୍ପର ପରିଚୟ ପାଇଲି । ତାଙ୍କ ସହିତ ତର୍କ ବିତର୍କ କରିବାକୁ ମନ ବଳିଲା ନାହିଁ । ମୋ ମନକୁ ଆଣ୍ଟ କଲି । ସ୍ଥିର ସଙ୍କଳ୍ପ କଲି ଯେ, ତାଙ୍କର ସମସ୍ତ ଚେଷ୍ଟାକୁ ବିଫଳ କରି ମୋର ଗର୍ଭସ୍ଥ ସନ୍ତାନର ପ୍ରାଣ ରକ୍ଷା କରିବି ।

ଦିନେ ଆସି ପ୍ରକାଶ କଲେ ଯେ, ସାତ ମାସ ଉତ୍ତୀର୍ଣ୍ଣ ହୋଇଥିବାରୁ ଔଷଧ ଦ୍ୱାରା ଗର୍ଭପାତର ସମ୍ଭାବନା ନାହିଁ । ମୁଁ ଗୋଟାଏ ଚିନ୍ତାରୁ ରକ୍ଷା ପାଇଲି ।

॥ ୮ ॥

ଶାଶୂ ବୃଦ୍ଧା, ତାଙ୍କର ତୀର୍ଥ କରିବାର ବାସନା ଅନେକ ଦିନରୁ ବଳବତୀ । ଦେବରଙ୍କଠାରେ ଏ ପ୍ରସ୍ତାବ କଲେ । ସେ ''ଆଉ କିଛି ଦିନ ଯାଉଁ'' ବୋଲି ଭଣ୍ଡି ଦେଉଥାନ୍ତି । ଶାଶୂ ମୋଠାରେ ଏ ପ୍ରସ୍ତାବ ଅନେକ ଥର କରିଥିଲେ, ମୁଁ ମଧ ଦେବରଙ୍କୁ ଅନୁରୋଧ କରି ସେହି ଉତ୍ତର ପାଇଥାଏ । ଦିନେ ଅବସର ବୁଝି କହିଲି, ''ଦେଖ ତୁମ ମୋ ତୀର୍ଥ କରି ଯିବାକୁ ଏତେଥର ଅନୁରୋଧ କରୁ ଅଛନ୍ତି, ତାହା ରକ୍ଷା କରୁ ନାହଁ, ଏହା କି ଭଲ କଥା ? ସେ ବୃଦ୍ଧା, କେଉଁଦିନ ତାଙ୍କ ପ୍ରାଣ ଚାଲିଯିବ । ମନରେ ଆଶା ରଖି ମରିବେ, ଏ ପାପ ତ ତୁମକୁ ଲାଗିବ । ତାଙ୍କର ଏ ଅନୁରୋଧ ରକ୍ଷା କରିବା ଉଚିତ । ତା'ଛଡ଼ା ମୋର ମଧ ତୀର୍ଥ ଦେଖିବାର ଇଚ୍ଛା ହେଉଅଛି । ଆମ ଦୁହିଁଙ୍କି ନେଇ ଘେରାଏ ବୁଲାଇ ଆଣ ।''

ସେ ବିଦ୍ରୂପ କରି କହିଲେ, ''ଆଃ, ତୁମର ପୁଣି ତୀର୍ଥ ?''

''ପାପ କଳଙ୍କ ବୋହିଲି ବୋଲି କି ତୀର୍ଥ ବ୍ରତ ମଧ ମନା ? ତୀର୍ଥ କଲେ କିଛି ପାପ ତ ଦୂର ହେବ । ତୀର୍ଥ ପରା ପାପନାଶକ ?

''ତୁମକୁ ଆସନ୍ନପ୍ରସବା ବୋଇଲେ ଚଳେ, ବିଦେଶରେ ସେ ଦୁର୍ଘଟଣା ଘଟିଲେ ଯେ ମହାବିପଦର କଥା । ମା' ଜାଣିବେ, ଆଉ କି ଉତ୍ପାତ ଘଟିବ, କିଏ କହିପାରେ ?

''ତୁମେ କି ମନେ କରିଛ ଯେ, ଘରେ ପ୍ରସବ ହେଲେ ଭଲ ? ତାହା ନୁହେଁ । ସେତେବେଳେ ବିଦେଶରେ ଥିଲେ ଅନେକ ସୁବିଧା ।''

ମୋର ଏପରି ପ୍ରସ୍ତାବର କାରଣ ଥିଲା । ଇତି ପୂର୍ବେ ମୋର ଦେବର ଗୋଟିଏ ପ୍ରୌଢ଼ା ବିଧବାକୁ ମୋର ସେବା ଶୁଶ୍ରୂଷା ନିମନ୍ତେ ନିଯୁକ୍ତ କରିଥିଲେ । ସେ ଆମ ଗ୍ରାମର ସ୍ତ୍ରୀ ନୁହେଁ । ତାକୁ ଅନ୍ୟ ଗ୍ରାମରୁ ଆଣିଥିଲେ । ପ୍ରସବ କରାଇବାରେ ତା'ର ପଟୁତା ଥିଲା । ଏ ନବାନୁଗ୍ରହରେ ଗୋଟାଏ ଦୁରଭିସନ୍ଧି ଥିବାର ମୁଁ ସନ୍ଦେହ କରିଥିଲି । ମୁଁ ଖୁବ୍ ସାବଧାନ ଥାଏଁ, ଦିନେ ତା' ସହିତ ମୋର ଦେବର ମୋ ସମ୍ବନ୍ଧରେ ଅତ୍ୟନ୍ତ ହୃଦୟ ବିଦାରକ ପ୍ରସ୍ତାବ କରୁଥିବାର ମୁଁ ଲୁଚିକରି ଶୁଣି ପାରିଥିଲି । ଘର ବାଡ଼ି ଆଡ଼େ ନିସ୍ତବ୍ଧ ଅନ୍ଧକାର ରାତ୍ରରେ କଥାବାର୍ତ୍ତା କରୁଥିଲେ। ସେ ପିଶାଚୀ ମୋ ଘରକୁ ଆସିଲାଦିନୁ ମୁଁ ତା'ର ଓ ଦେବରଙ୍କର ଗତି ବିଧି ଦେଖୁଥାଏଁ । ରାତିରେ ନିଦ ନ ଥାଏ । ସେ ଶୟନ ଗୃହରୁ ଚାଲିଗଲେ ମୁଁ ଗୋପନରେ ତା' ପଛେ ପଛେ ଯାଏଁ । ଦେବର ତା' ସଙ୍ଗରେ କୌଣସି କଥା ହେଲେ ମୁଁ ଅନ୍ତରାଳରେ ଥାଇ କାନ ଡେରିଥାଏ । ଅନେକ ଦିନ ସେ ଦୁହେଁ ମୋ ସମ୍ବନ୍ଧରେ ଯେଉଁ ପରାମର୍ଶ କରନ୍ତି, ତାହା ମୁଁ ଶୁଣିବାକୁ ପାଉଥାଏଁ। ମାତ୍ର ସେ ରାତ୍ରିର ଗୁପ୍ତ ପରାମର୍ଶ ମୋର ହୃଦୟକୁ ଦଗ୍ଧ କଲା । ମୋର ଶ୍ୱାସ ପ୍ରଶ୍ୱାସ ରୁଦ୍ଧ ହେଲା ପରି ଲାଗିଲା । ମୋର ରକ୍ତ ଥଣ୍ଡା ହୋଇଗଲା । ହାତ ଗୋଡ଼ ଚଳିଲା ନାହିଁ । ମୃତପ୍ରାୟ ଦଣ୍ଡାୟମାନ ହୋଇ ରହିଲି । ସେ ନୃଶଂସ ଜଘନ୍ୟ ପ୍ରସ୍ତାବ ତୁମମାନଙ୍କଠାରେ ନ କହିବା ଭଲ । ମୁଁ ଯାହାର ଜନନୀ ହେବି, ତା'ର ଏ ଅମଙ୍ଗଳ କଥା ମୁଖରେ ଉଚ୍ଚାରଣ କରିବି କିପରି ?

ସେହି ରାତ୍ରିରେ ସେ ଦୁହିଁଙ୍କର ମନ୍ତ୍ରଣା ସ୍ଥାନରୁ ଅତି ସନ୍ତର୍ପଣରେ ଆପଣା ଶୟନାଗାରକୁ ଆସି ଶୋଇଲି । ନିଦ୍ରା ହେବାର ତ କଥା ନୁହେଁ । ତଥାପି ନିଦ୍ରାର ଛଳନା କଲି । ପିଶାଚୀ ଆସି ଆପଣା ଶେଯରେ ଶୋଇଲା । ମୁଁ ରାତି ସାରା ଏ ଚିନ୍ତାରେ ନିମଗ୍ନ ରହିଲି । ଶାଶୂଙ୍କ ସହିତ ତୀର୍ଥଯାତ୍ରା କଲେ ବାଟରୁ ପଳାୟନ କରିବା ଭିନ୍ନ ଉପାୟାନ୍ତର ନାହିଁ ବୋଲି ସ୍ଥିର କଲି । ଏଣୁ ଦେବରଙ୍କ ନିକଟରେ ଶାଶୂଙ୍କ ତୀର୍ଥଯାତ୍ରା ପ୍ରସ୍ତାବ ଉପସ୍ଥାପିତ କଲି ।

ତୀର୍ଥ ଦର୍ଶନକୁ ଯିବାର ସ୍ଥିର ହେଲା । ଦେବର ଭାବିଲେ, ତାଙ୍କର ଦୁରଭିସନ୍ଧି ତୀର୍ଥ ସ୍ଥାନରେ ନିରାପଦରେ ପୂର୍ଣ୍ଣ ହେବ । ତୀର୍ଥ ଦର୍ଶନ ସଙ୍ଗେ ସଙ୍ଗେ ପାପ ପଙ୍କ ଧୋଇଯିବ ଭାବି ମହାଆନନ୍ଦ । ଶାଶୂ ତୀର୍ଥ ଦର୍ଶନ କରି ପୁଣ୍ୟ ଅର୍ଜନ କରିବେ ବୋଲି ମହାଖୁସି ଏବଂ ଏଥି ନିମନ୍ତେ ମୋତେ ଘନ ଘନ ଆଶୀର୍ବାଦ ଓ ପ୍ରଶଂସା । ମୁଁ ମନେ ମନେ ମଧ ଆହ୍ଲାଦିତ ଓ ଆଶ୍ୱସ୍ତ ଯେ, ବାଟରୁ ଦେବରଙ୍କ ଚକ୍ଷୁରେ ଧୂଳିଦେଇ ପଳାୟନ କରି ମୋର ଶିଶୁର ପ୍ରାଣ ବଞ୍ଚାଇବି ।

ଯୋଗାଡ଼ପାତି କରିବାରେ ଏବଂ ଶୁଭ ଦିନ ଗଣାଗଣି କରିବାରେ କିଛି ଦିନ ଚାଲିଗଲା । ଦିନ ସ୍ଥିର ହେଲା । ଘରର ତିନିଜଣ ତିନୋଟି ସ୍ୱତନ୍ତ୍ର ଅଭୀଷ୍ଟ ସିଦ୍ଧିକଳ୍ପନା କରି ଅନୁକୂଳ କଲୁ । କିଛିବାଟ ଚାଲିଲୁଁ, ପରେ ରେଳ ଚଢ଼ିଲୁ । ଏହା ମୋର ପ୍ରଥମ ରେଳ ଦେଖା । ରେଳ ସମ୍ବନ୍ଧରେ ମୋର କିଛି ଜ୍ଞାନ ନ ଥିଲା । ରେଳରେ ଚଢ଼ି ଯାତ୍ରା କଲୁଁ ।

ବାଟରୁ ପଳାଇବାର ଇଚ୍ଛା କରିଥିଲି, ମାତ୍ର କେଉଁ ସ୍ଥାନରୁ କିପରି ଭାବରେ ପଳାଇଲେ ଦେବର ମୋର ସନ୍ଧାନ ପାଇବେ ନାହିଁ, ଏଥିର ସିଦ୍ଧାନ୍ତ କରି ନ ଥିଲି । କରନ୍ତି ବା କିପରି ? ମୋର ତ ରେଳ ବାଟରେ ଅଭିଜ୍ଞତା ନ ଥିଲା । ରେଳ ଚଢ଼ି କେତେକ ଷ୍ଟେସନ ଅତିକ୍ରମ କଲା ପରେ ଜାଣିପାରିଲି ଯେ, ଷ୍ଟେସନମାନଙ୍କରେ ଗାଡ଼ି ରହିବା ବେଳେ ଲୋକେ ଉତୁରନ୍ତି ଓ ଚଢ଼ନ୍ତି । କି ଦିନ, କି ରାତି ଏହିପରି ଲାଗିଅଛି । ଏକ ଷ୍ଟେସନଠାରୁ ଆଉ ଏକ ଷ୍ଟେସନ କମ୍ ଦୂର ନୁହେଁ । ମନେ କଲି, କୌଣସି ଷ୍ଟେସନରେ ଦେବରାଦିଙ୍କ ଅଜ୍ଞାତରେ ଉତୁରି ପଡ଼ି ପଳାୟନ କଲେ ସେମାନଙ୍କ ଜାଣିଲା ବେଳକୁ ମୁଁ ଅନେକ ଦୂର ଚାଲିଯାଇଥିବି । ତାହାଛଡ଼ା ମୁଁ କେଉଁ ଷ୍ଟେସନରେ ଉତୁରିଲି, ତାହା ସେମାନଙ୍କୁ ଜଣାପଡ଼ିବ ବା କିପରି ? କେତେଟା ଷ୍ଟେସନ ପାର ହେଲାରୁ ମୋର ଅଭିଜ୍ଞତା ଜାତ ହେଲା । ମୁଁ ଘର ଆସିଲା ଆଗରୁ ଖଣ୍ଡ କେତେ ଲୁଗା ଏବଂ କିଛି ଟଙ୍କା ଗୋପନରେ ସ୍ୱତନ୍ତ୍ର ଭାବରେ ରଖିଥିଲି । ଆମୋଦରେ ରେଳରେ ବସି ଚାଲିଅଛୁଁ । ସନ୍ଧ୍ୟା ହେଲା । ଦେଖୁ ଦେଖୁ ରାତ୍ରି । ଶାଶୂ ଓ ମୁଁ ବିଧବା । ରେଳରେ ଖାଇବା କଥା ତେଣେ ଥାଉ, ଜଳ ଗ୍ରହଣ ବା କରିବୁ କିପରି ? ଦେବର ତ ଅଲଗା ଗାଡ଼ିରେ ଥିଲେ। ରାତ୍ରି ଶୋଇବା ବେଳ ହେଲା । ଦେବର ଆସି ଆମ୍ଭମାନଙ୍କୁ ସାବଧାନ କରାଇ ଗଲେ ଏବଂ ସେ ରାତିରେ ଆଉ ଆସିବେ ନାହିଁ ବୋଲି କହିଗଲେ । ମୁଁ ଭାବିଥିଲି, ଏ ମହାସୁଯୋଗ। ରାତ୍ରିରେ ରେଳ ତ୍ୟାଗ କଲେ ଅନାୟାସରେ କାର୍ଯ୍ୟସିଦ୍ଧି ହେବ । ପ୍ରଥମ ରାତ୍ରିରେ ପଳାଇବାର ଚେଷ୍ଟା କଲି ନାହିଁ। ମନେ କଲି, କେଜାଣି ବା

ଆପଣା ଘର ନିକଟରେ ଉତୁରି ପଡ଼ିଲେ କେହି ଜାଣିପାରିବେ ବା ଦେବର ଅନୁସନ୍ଧାନ କରି ପାରିବେ ।

ପ୍ରଥମ ରାତ୍ରି ତୁନି ହୋଇ ଶୋଇରହିଲି । ପରଦିନ ସକାଳେ ଏକ ସ୍ଥାନରେ ଉତୁରି ସ୍ନାନ ଭୋଜନାଦି କରି ଅପେକ୍ଷା କରିଥିଲୁ । ଉପରଓଳି ରେଲଗାଡ଼ି ଚଢ଼ିଲୁଁ । ରେଳ ଚାଲିଅଛି, ମୁଁ ରାତ୍ରିରେ ପଳାୟନ କରିବା କଳ୍ପନା ମନରେ ସ୍ଥିର କରୁଅଛି । ସନ୍ଧ୍ୟା ହେଲା, ରାତ୍ରି ହେଲା, ପୂର୍ବପରି ଦେବର ଆସି ସତର୍କ କରାଇଗଲେ । ଶାଶୂ ପ୍ରଭୃତିଙ୍କ ସହିତ ମୁଁ ମଧ ଶୋଇଲି, ମାତ୍ର ନିଦ ନାହିଁ । ରେଳ ଚାଲିଅଛି । ସେତେବେଳେ ରାତି ଅଧରୁ ବଳିଲାଣି । ଏକ ଷ୍ଟେସନରେ ଗାଡ଼ି ଠିଆହେଲା । ମୁଁ ଜାଣେ ନାହିଁ, କେଉଁ ଷ୍ଟେସନ । ରେଳ ଠିଆହେବା ମାତ୍ରକେ ମୋର ବୋକଚ୍ୱା ଧରି ଉତୁରି ପଡ଼ିଲି । ସଙ୍ଗେ ସଙ୍ଗେ ରେଳଗାଡ଼ି ଚାଲିଗଲା । ମୁଁ ଯାଇ ଗ୍ରାମରେ ଆଶ୍ରୟ ନେଲି । ସକାଳେ ଗ୍ରାମରୁ ପ୍ରସ୍ଥାନ କଲି । ରେଳ ଚାଲିଅଛି ପଶ୍ଚିମକୁ, ମୁଁ ଦକ୍ଷିଣ ମୁଖରେ ଚାଲିଲି । ଜଙ୍ଗଲ ବାଟ, ବାଘ ଭାଲୁର ଭୟ କେଉଁଆଡ଼େ ମନରୁ ଚାଲିଗଲା । ଏକାକିନୀ କେତେଦୂର ଚାଲିଆସି କ୍ଳାନ୍ତହୋଇ ପଡ଼ି ରହିଲି । ସେ ଓଳି କେତେବାଟ ଚାଲିଲି ଜଣା ନାହିଁ । ସାଙ୍ଗ ପାଇ ଗୋଟାଏ ଗ୍ରାମକୁ ଯାଇ ରହିଲି । ଆର ଦିନ ଗାଡ଼ି କରି କିଛି ଦୂର ଆସିଲି, ପୁଣି ଚାଲି ଚାଲି ତିନି ଦିନରେ ଏଠାକୁ ଆସିଅଛି । ତତ୍ତ୍ୱକରି ଜାଣିଅଛି ଯେ, ମୋର ବାସସ୍ଥାନ ସମ୍ବନ୍ଧରେ ଏ ଅଞ୍ଚଳର ଲୋକେ କିଛି ଜାଣନ୍ତି ନାହିଁ । ସୁତରାଂ ମୁଁ ବର୍ତ୍ତମାନ ନିଜକୁ ନିରାପଦ ଭାବିଅଛି । ସେ ସମ୍ବନ୍ଧରେ କିଏ ବା ଅନୁସନ୍ଧାନ କରିବାକୁ ଯିବ ? ସମସ୍ତେ ଭାବିବେ ଗୋଟିଏ ଗର୍ଭବତୀ ବିଧବା ବ୍ରାହ୍ମଣୀ ଏବଂ ନିଃସହାୟା । ଦେବର ମୋର ସନ୍ଧାନ ପାଇବା ଅସମ୍ଭବ । ମୁଁ ଗର୍ଭବତୀ ହୋଇ ନ ଥିଲେ, ମୋ ପ୍ରତି ଆସକ୍ତ ହୋଇ ମୋର ଅନୁସନ୍ଧାନ କରନ୍ତେ । ମାତ୍ର ମୋତେ ଉଦ୍ଧାର କରି ପୁଣି କଳଙ୍କ କାଳିମା ବୋଳି ହେବେ କାହିଁକି ? ଭାବିବେ, ଗଲା ଭଲା ହେଲା । ବ୍ୟଭିଚାରିଣୀ, ଦୁଶ୍ଚରିତ୍ରା, କୁଳତ୍ୟାଗିନୀ ପ୍ରଭୃତି ଅପବାଦ ଦେଇ ନିଜେ ବିଶୁଦ୍ଧ ବ୍ରାହ୍ମଣତ୍ୱ ଦେଖାଇବେ । କେବଳ ଶାଶୂ କାନ୍ଦିବେ, ମୋ ଗୁଣ ସ୍ମରଣ କରିବେ । ରେଳରେ ପଡ଼ିଗଲା ବୋଲି ଭାବିବେ, ଦୁଃଖ କରିବେ । ସେ ତ ମୋର ଦୁର୍ଦ୍ଦଶା କଥା ଜାଣିନାହାନ୍ତି ବା ଆଉ ଜାଣି ପାରିବେ ନାହିଁ । ତାଙ୍କ ନିମନ୍ତେ ମାତ୍ର ମୋର ହୃଦୟରେ ଦୁଃଖ ଜାତ ହେଉଅଛି । ମାତ୍ର ମୋର ସନ୍ତାନର ଜୀବନ ରକ୍ଷା କରିବା ମୋର କର୍ତ୍ତବ୍ୟ । ତାଙ୍କ କଥା ତାଙ୍କ ପୁଅ ବୁଝିବେ । ମୁଁ ମୋର ଗର୍ଭସ୍ଥ ଶିଶୁର ଜୀବନ ଗୋଟିଏ ପିଶାଚ୍ ଓ ଗୋଟିଏ ପିଶାଚୀ ହସ୍ତରୁ ରକ୍ଷା କରିବାକୁ ସମର୍ଥ ହୋଇଅଛି । ଏଥି ନିମନ୍ତେ ପ୍ରଭୁଙ୍କଠାରେ ମୁଁ କୃତଜ୍ଞ ।

କାଲି ତୁମେ ଦୁହେଁ ମୋର ପ୍ରାଣ ରକ୍ଷାକରି ମୋତେ ଆଶ୍ରୟ ଦେଇଅଛ, ତୁମେ ଦୁହେଁ ମୋର ଧର୍ମର ଭାଇ ।

ମୁଁ ସମସ୍ତ କଥା ନିଷ୍କପଟରେ ତୁମମାନଙ୍କଠାରେ ପ୍ରକାଶ କଲି । ଏଥିରେ ମିଥ୍ୟାକଥା କିଛି ନାହିଁ । ତୁମର ଯାହା ଉପଦେଶ ଦେବାର ତାହା ଦିଅ, ମୁଁ ପାଳନ କରିବି । ମୋତେ ରଖ ବା ପାଦରେ ଠେଲିଦିଅ, ତୁମ ଇଚ୍ଛା ।

ଶିଶୁର ପ୍ରାଣରକ୍ଷା ହିଁ ମୋର ଜୀବନର ଲକ୍ଷ୍ୟ । ଗର୍ଭ ସଞ୍ଚାର ହେବା ଦିନଠାରୁ ମାତୃ ସ୍ନେହ ମୋ ହୃଦୟରେ ଜାତ ହୋଇଅଛି । ପ୍ରାଣ ପଣକରି ମୁଁ ସନ୍ତାନର ମୁଖାବଲୋକନ କରିବାକୁ ଦୃଢ଼ ପ୍ରତିଜ୍ଞା କରିଅଛି । ଦେଖିବି, ନିଶ୍ଚୟ ଦେଖିବି । ହୃଦୟରେ ଆଉ ଭୟ ନାହିଁ । ଯାହାର ପ୍ରାଣକୁ ମୁଁ ହନ୍ତକର ଷଡ଼ଯନ୍ତ୍ରରୁ ରକ୍ଷା କରିବାକୁ ସମର୍ଥ ହୋଇଅଛି, ସେ ଯେ ନିଶ୍ଚୟ ଜନ୍ମ ଗ୍ରହଣ କରି ଦୀର୍ଘଜୀବୀ ହେବ, ଏଥିରେ ମୋର ସନ୍ଦେହ ନାହିଁ । ତୁମ୍ଭେ ଦୁହେଁ ତା'ର ସାହାଯ୍ୟ କରି ତାକୁ ମନୁଷ୍ୟ କରିବ, ଏହା ମୋର ଏକମାତ୍ର ଆନ୍ତରିକ ଇଚ୍ଛା, ଆଶା ଓ ଭରସା ।

ଉପାୟହୀନା ସ୍ତ୍ରୀ ଜାତି ପୁରୁଷର ପ୍ରତାରଣାରେ, ପ୍ରଲୋଭନରେ ପଡ଼ି ଆତ୍ମମର୍ଯ୍ୟାଦା ଭୁଲିଯାନ୍ତି । ଭାଇ, କିଛି ମନେ କରିବ ନାହିଁ । ବାସ୍ତ୍‌ବିକ୍ ପୁରୁଷ ପ୍ରତାରକ, ସ୍ତ୍ରୀର ସର୍ବନାଶ କରିବାକୁ ପୁରୁଷର ତିଳେମାତ୍ର ପାପ ଭୟ ନାହିଁ । ସୁଖର ପ୍ରଲୋଭନ ଦେଖାଇ ପାପ ପଙ୍କକୁ କଡ଼ାଇ ନିଅନ୍ତି । କେବଳ ତାହା ନୁହେଁ, ନିଜେ ନିରାପଦ ସ୍ଥାନରେ ଦଣ୍ଡାୟମାନ ରହି ସ୍ତ୍ରୀର ପାପ ମାତ୍ରାର ବୃଦ୍ଧି କରୁଥାନ୍ତି । ଘଟନା କ୍ରମେ ନିଜେ କଳଙ୍କିତ ହେବାର ଆଭାସ ପାଇଲା ମାତ୍ରକେ ତାହା ଉପରେ ଆହୁରି ପାପ ଓ କଳଙ୍କର ଭରା ଦେଇ ନିମଜ୍ଜିତ କରନ୍ତି । ପୁରୁଷ ପାପଶୂନ୍ୟ ଓ ନିଷ୍କଳଙ୍କ । ସ୍ତ୍ରୀ କଳଙ୍କିନୀ । ଯେଉଁ ପୁରୁଷ ସ୍ତ୍ରୀର ସର୍ବନାଶ କରେ, ସେହି ସ୍ତ୍ରୀ ପୁଣି ସେହି ପୁରୁଷକୁ ସାହାଯ୍ୟ କରେ । ପୁରୁଷ ନିଷ୍କଳଙ୍କ ହେବବୋଲି ତା ନିମନ୍ତେ ବିଷ ପାନକରି ଗର୍ଭସ୍ଥ ଭ୍ରୂଣକୁ ନାଶ କରିବାକୁ କୁଣ୍ଠାବୋଧ କରେ ନାହିଁ । ପାପ ମାତ୍ର ବୃଦ୍ଧି କରେ । କୃତକାର୍ଯ୍ୟ ହେଲେ ଭ୍ରୂଣହତ୍ୟା ରୂପ ମହାପାପ ଅର୍ଜନ କରେ । ଜଣାପଡ଼ିଲେ ଅପମାନ, ଦଣ୍ଡ, ଜାତିଚ୍ୟୁତି ଏବଂ ଯାବତୀୟ ଅନିଷ୍ଟ । ପୁରୁଷ ନିର୍ଲିପ୍ତ ନିଷ୍କଳଙ୍କ, ଯେବେ ପୁରୁଷ ଉପରେ ଏତାଦୃଶ ଦୋଷର ପ୍ରମାଣ ହୁଏ, ସେ ସାଧାରଣ ପ୍ରାୟଶ୍ଚିତ୍ତ ଦ୍ୱାରା ନିଷ୍କୃତି ପାଇ ସୁଖରେ ବାସ

କରେ । ହାଃ ବିଧାତାଃ । ଏକ ଦୋଷ ଲାଗି ସ୍ତ୍ରୀ ଓ ପୁରୁଷ ପାଇଁ ଭିନ୍ନ ବିଚାର, ବିଭିନ୍ନ ଦଣ୍ଡ ।

ଭାଇ, ମୁଁ ସଂଯମ ଅଭାବରୁ ପ୍ରତାରଣାରେ ପଡ଼ିଲି । ସାମାନ୍ୟ ସୁଖ ଲାଳସାରେ ସତୀତ୍ୱ ହରାଇଲି, ମୁଁ ପାପିନୀ, କଳଙ୍କିନୀ । କଷ୍ଟ ପାଇଅଛି, ଅନୁତାପାନଳରେ ଦଗ୍ଧ ହେଉଅଛି । ତଥାପି ମୋର ପାପ କ୍ଷୟ ହେବାର ଆଶା କରି ନ ପାରେ। ମାତ୍ର ମୋର ଗର୍ଭସ୍ଥ ସନ୍ତାନର ଅପରାଧ କ'ଣ ? ତା'ର ପ୍ରାଣନାଶ କରିବାର ତ କାହାରି ଅଧିକାର ନାହିଁ। ସେହି ନିରୀହ ପ୍ରାଣୀ ତ ଏ ଜଗତରେ ଜଣେ ଶ୍ରେଷ୍ଠ ମନୁଷ୍ୟ ହୋଇପାରେ, ତା' ଉପରେ ଏ ଜଗତରେ କାହାର ଶତ୍ରୁତା ଅଛି ? କେବଳ ସେହି ନର ପିଶାଚ ମୋର ଦେବର ନିଜର କଳଙ୍କ ମୋଚନ କରି ମୋତେ ରକ୍ଷିତା ଭାବରେ ରଖିବାକୁ ସିନା ତା'ର ପ୍ରାଣ ନାଶର ଚେଷ୍ଟା କରୁଥିଲା । ତା'ଠାରୁ ତ ମୁଁ ଏହି ପ୍ରାଣୀକୁ ବଞ୍ଚାଇ ଘେନି ଆସିଅଛି— ଆଉ କି ଭୟ ? ମୁଁ ତାହାର ମୁଖ ଦର୍ଶନ କରି ପ୍ରାଣତ୍ୟାଗ କଲେ ସୁଖୀ ହେବି । ତୁମେ ଦୁହେଁ ତା'ର ପ୍ରାଣ ରକ୍ଷାକରି ତାହାକୁ ମନୁଷ୍ୟ କରିବ, ଏହି ମୋର ପ୍ରାର୍ଥନା ।'' ଏହା କହୁ କହୁ ରମଣୀର ଚକ୍ଷୁ ଦ୍ୱୟ ବାରିପୂର୍ଣ୍ଣ ହେଲା । ସମ୍ଭାଳି ନ ପାରି ରୋଦନ କରିବାକୁ ଲାଗିଲା । ଯୁବକ ଦୁହେଁ ମଧ ବିଚଳିତ ହୋଇ ଅଶ୍ରୁବର୍ଷଣ କରିବାକୁ ଲାଗିଲେ ଏବଂ କହିଲେ, ''ତୁମ୍ଭର ଅତୁଳନୀୟ ମାତୃସ୍ନେହର ପରିଚୟ ଆମ୍ଭମାନଙ୍କୁ ବିଚଳିତ କରିଅଛି । ତୁମର ଗର୍ଭ ବୈଧ କି ଅବୈଧ, ତାହା ଆଲୋଚନା କରିବାର ଆମର ପ୍ରୟୋଜନ ନ ଥିଲା । ତୁମେ ସରଳ ଭାବରେ ଯାହା କହିଲ, ତାହାହିଁ ମାତ୍ର ଶୁଣିଲୁ । ଏ ସମ୍ବନ୍ଧରେ ଅଧିକ ଆଲୋଚନା କରିବା ଆମମାନଙ୍କର ପ୍ରୟୋଜନ କ'ଣ ? ତୁମେ ନିର୍ଯାତିତା, ତୁମେ ଗୋଟିକର ପ୍ରାଣରକ୍ଷା କରିବା ନିମନ୍ତେ ଯାବତୀୟ ସୁଖ ସୁବିଧାରେ ଜଳାଞ୍ଜଳି ଦେଇଅଛି, ଶାରୀରିକ ମାନସିକ କଷ୍ଟ ସହିଅଛି । ତୁମର ସ୍ୱାର୍ଥତ୍ୟାଗ ଅସାଧାରଣ । ମାତା କେବଳ ସନ୍ତାନ ନିମନ୍ତେ ଏପରି ସ୍ୱାର୍ଥ ତ୍ୟାଗ କରିବା ସମ୍ଭବ । ତୁମକୁ କେଉଁ ଅପରାଧରେ ଆମେ ତ୍ୟାଗ କରିବୁଁ ? ତୁମେ ଆମର ଶରଣାପନ୍ନ। ଭାଇ ଭଗିନୀ ପ୍ରତି ଯେଉଁପରି ସ୍ନେହ ମମତା ଦେଖାଏ, ସେହି ସ୍ନେହ ମମତା ତୁମଠାରେ ରଖିବୁଁ ବୋଲି ପୂର୍ବେ କହିଅଛୁଁ, ଏବେ କି ତାହା ପ୍ରତ୍ୟାହାର କରିବୁଁ ? କେବେ ନୁହେଁ । ତୁମକୁ ରକ୍ଷା କରିବୁ ଏବଂ ତୁମର ସନ୍ତାନକୁ ମଧ ପାଳନ କରିବାରେ ଓ ଶିକ୍ଷା ଦେବାରେ ତ୍ରୁଟି କରିବୁ ନାହିଁ। ତୁମେ ନିଶ୍ଚିନ୍ତ ଥାଅ ।

ରମଣୀ ବାକ୍ୟ ବ୍ୟୟ ନ କରି ଅନ୍ତରରେ କୃତଜ୍ଞତା ସ୍ୱୀକାର କଲେ । ଅନର୍ଗଳ ଲୋତକ ଧାରା ତା'ର ନିଦର୍ଶନ। ଏହି କଥୋପକଥନର ଓ ଯୁବକ ଦୁହିଁଙ୍କର ପ୍ରତିଜ୍ଞାର ମୂକସାକ୍ଷୀ ସେହି ପର୍ବତ, ବୃକ୍ଷରାଜି, ପ୍ରପାତ ଓ କଳ କଳ ନାଦିନୀ ସ୍ୱଚ୍ଛସଳିଳା ସ୍ରୋତସ୍ୱତୀ ।

•

## ବିବାହ ଭୋଜି

ଅନେକ ଶୀତକାଳରେ ସକାଳବେଳେ ଖରାକୁ ପିଠି ଦେଖାଇ ଘଣ୍ଟାଏ ଅଧେ ବସିବାକୁ ବଡ଼ ଭଲପାଆନ୍ତି । ମାର୍ଗଶିର ମାସ, ଭାରି ଶୀତ ଆପଣା ଚୂନବେଦୀ ଉପରେ ଯୁବକ ଖରାକୁ ପିଠି ଦେଖାଇ ବସିଥିଲେ । ଶାଲ ଖଣ୍ଡ ପିଠି ଉପରୁ ଅଣ୍ଟାତଳକୁ ଖସି ପଡ଼ିଥିଲା । ଦକ୍ଷିଣ କର ଉପରେ ଗଣ୍ଡକୁ ରଖି ବକ୍ରଭାବରେ ବାମଜାନୁ ଉପରିସ୍ଥିତା ପୁସ୍ତକ ପାଠରେ ନିମଗ୍ନ ଥିଲେ । ଅନ୍ୟ ଆଡ଼େ ତାଙ୍କର ଆଦୌ ଲକ୍ଷ୍ୟ ନ ଥିଲା।

ଦକ୍ଷିଣ ପାଖରେ ଅଳ୍ପ ଦୂରରେ ଜଣେ ଯୁବତୀ ଆସି ନିଃଶବ୍ଦରେ ଦଣ୍ଡାୟମାନ ହେଲା । ପରିଧାନ ଖଣ୍ଡେ ନୂତନ ହଳଦିଆ ମୋଟ ଲୁଗା, ବର୍ଣ୍ଣ ଶ୍ୟାମ, ନାକରେ କୌଣସି ଅଳଙ୍କାର ନାହିଁ, ଦୁଇ କାନରେ ଦୁଇଗୋଟି କଂସାର ତରପତ୍ । ଦୁଇ କାନର ଉପର ଅଂଶରୁ ଦୁଇ ଗୋଟା ବାଳୀଗୁଣାରୁ ଦୁଇ କେରା ରୁପାଶିକୁଳି କାନ ତଳଯାଏ ଓହଳିଥିଲା । ଅଳଙ୍କାର ମଧ୍ୟରେ ଏତିକି । ଗଳାରେ ଅନେକଗୁଡ଼ିଏ କାଚମାଳୀ, ମୁଣ୍ଡରେ ଓଢ଼ଣା ନାହିଁ । ମୁଣ୍ଡରେ ଗୋଟିଏ ଖୋସା । ବିଶେଷ ପରିପାଟି ସହିତ କେଶବିନ୍ୟାସ କରି ନ ଥିଲା । ମାଙ୍ଗ ମଧ୍ୟରେ ଘୃତ କିମ୍ବା ତୈଳମିଶ୍ରିତ ଦୀର୍ଘ ସିନ୍ଦୂରର ଶିରା । ସିନ୍ଦୂର ରାହୁର ରସନା ତୁଲ୍ୟ । ଏଣୁ ଯୁବତୀର ମୁଖଶ୍ରୀକୁ ମ୍ଲାନ କରୁଥିଲା ବେଳାଯିବ। ଏହି ଗିରାଟି ବ ଥିଲେ ତା'ର ପ୍ରକୃତ ଉଦ୍ଦାମ ଯୌବନସୁଲଭ । ପାର୍ବତୀୟ ରମଣୀର ପ୍ରାକୃତିକ ଶୋଭା ଫୁଟି ପଡୁଥାନ୍ତି । ବାଧ ହୋଇ ଗିରା କଟିଥିବାର ଅନୁମାନ ହେଉଥିଲା । ଶରୀର ହୃଷ୍ଟପୁଷ୍ଟ ଓ ସୁଗଠିତ। ଯୁବତୀ ନିଃଶବ୍ଦରେ କିଛିକ୍ଷଣ ରହିଲା । ବାବୁଙ୍କ ଧ୍ୟାନଭଙ୍ଗ କରିବାକୁ ତା'ର ଆଦୌ ଇଚ୍ଛା ନ ଥିଲା । ବାବୁ ମୁଖ ଟେକି ତାକୁ ପଚାରିବା ଯାଏ ସେ ସ୍ଥିରଭାବରେ ଅପେକ୍ଷା କରିବାକୁ ପ୍ରସ୍ତୁତ ହୋଇଥିଲା । ବାବୁ ପୁସ୍ତକର ପତ୍ର ଓଲଟାଇଲା ବେଳେ ମୁଖ ଟେକି ତା' ଆଡ଼କୁ ଅନାଇଲେ । ଯୁବତୀ ବେଦୀ କାନ୍ଥରେ ମୁଣ୍ଡ ଲଗାଇଲା । ଉଭୟଙ୍କ ମୁଖ ପ୍ରଫୁଲ୍ଲ ହେଲା । ବାବୁ

ପଚାରିଲେ, ''କିରେ ଜିଲିଙ୍ଗି, ଏତେ ଦିନରେ ଆସିଲୁ, ଭଲ ଅଛୁ ତ ?

''ହଁ ଦାଦା, ଭଲ ଅଛି ।''

''ଆଜି ସକାଳୁ କେଉଁଆଡ଼େରେ ।''

''ତତେ ଡାକିବାକୁ ଆସିଛି ।''

''ମତେ କାହିଁକି ?''

''କି ବିବାହ ଭୋଜି ଖାଇବା ନିମନ୍ତେ ।''

''କାହାର ବିବାହ ଭୋଜି ?''

'' ନ ଜାଣିଲା ପରି ପଚାରୁଛୁ ।''

'' ମୁଁ କିପରି ଜାଣିଲି, ମତେ କିଏ କହିଥିଲା କି ?''

''କେହି କେହି ନାହିଁ, ତେବେ ଦେଖି କରି କ'ଣ ଜାଣିପାରୁ ନାହୁଁ ?''

ଯୁବକ ଅବଶ୍ୟ ଜାଣିପାରୁଥିଲେ ଯେ, ବିବାହ ଜିଲିଙ୍ଗିର । ତା'ର ବେଶ ତହିଁର ପରିଚୟ ହେଉଥିଲା । କୋହ୍ଲ ରମଣୀ ଜୀବନରେ ଦିନେ ମାତ୍ର ସିନ୍ଦୂର ଲଗାଏ, ତାହା ବିବାହର ପୂର୍ବେ । ତାହା ପୋଛାଯାଏ ନାହିଁ । ଯେତେ ଦିନ ରହିପାରେ ମସ୍ତକରେ ଥାଏ । ସିନ୍ଦୂର, ହଳଦିଆ ଲୁଗା ବିବାହର ପରିଚାୟକ । ଯୁବକ କହିଲେ, ''ତୋର ବିବାହ, ଜିଲିଙ୍ଗି ?''

''ହଁ ।''

''କେବେ ବିବାହ ହେଲା ?''

''ପାଞ୍ଚ ଦିନ ହେଲା ।''

''ମୋତେ କାହିଁକି ଡାକି ଆସିଲୁ ?''

''ଭୋଜି ଖାଇବାକୁ ।''

''କାହିଁକି ?''

''ବଡ଼-ଲୋକମାନେ କଥା ମନରେ ରଖ ନାହିଁ, ପାସୋରି ଦିଅ । ଆମେ କ'ଣ ତାହା ପାସୋରି ପାରୁଁ ? ଖଲା ଖରାକାଳରେ ପରା ତୁ ଆମ ଗାଁକୁ ଯାଇଥିଲୁ । ଫେରିଲାବେଳେ ମୁଁ ପଚାରିଲି, ଦାଦା, ପୁଣି କେବେ ଆସିବୁ ? ତୁ କହିଥିଲୁ । ତୋର ବିବାହକୁ ଡାକିବୁ ମୁଁ ଭୋଜି ଖାଇବାକୁ ଆସିବି । ଏଣୁ ମୁଁ ଡାକିବାକୁ ଆସିଛି ।''

''ବିବାହ ସରିଲା, ଆଉ କି ଭୋଜି ?''

''ଦେଖ ଦାଦାର କଥା । ବିବାହ ସରିଲେ ସିନା ଭୋଜି, ଆଗରୁ କିଏ ଭୋଜି ଦିଏ ଦାଦା ?''

''ଜିଲିଙ୍ଗି, ତୁ ମତେ କଥାରେ ହରାଇଲୁ, ଭୋଜି ଖାଇବାକୁ ଯିବି କେବେ ?''

''ଆଜି, ମୋ ସଙ୍ଗରେ ।''

''ଏବେ ? ଆଉ ବେଳ କାହିଁ ?'' ଚାକର ବ୍ରାହ୍ମଣ ଡାକି ଜିନିଷପତ୍ର ଧରି ଯିବାକୁ ବିଳମ୍ବ ଲାଗିବ, ପୁଣି ଦୁଇ କୋଶ ବାଟ ଯିବାକୁ ହେବ । ରନ୍ଧା ହେବ କେବେ, ମୁଁ ଖାଇବି କେବେ ? ଉପରଓଳି ଯିବି । ଯା, ଘରଆଡ଼େ ସମସ୍ତଙ୍କଠାରେ ଦେଖା କରିବୁ । ଆଜି ତୁ ଏଠାରେ ଖାଇବୁ ।''

''ପୁଣି ଗୋଟାଏ ବିଷମ କଥା କହେ । ମୁଁ ପରା ବିବାହ ହେଲି, ତୋ' ଘରେ ଭାତ ଖାଇବି କିପରି ?''

''ଅହୋ ଜାଣିଲି, ଜାଣିଲି, ବିବାହ ନୋହିବାଯାଏ ସମସ୍ତେ ତୁମଠୁ ବଡ଼ ଜାତି, ବିବାହ ହେଲା ଉତାରୁ ତୁମେ ସମସ୍ତଙ୍କଠାରୁ ବଡ଼ ଜାତି । ବିବାହ ଆଗରୁ ଆମ ହାତରୁ ଭାତ ଖାଉଥିଲୁ-ପାଞ୍ଚ ଦିନ ହେଲା ବିବାହ ହେଲୁ ବୋଲି ଆଉ ଖାଇବୁ ନାହିଁ । ଆଚ୍ଛା ଜିଲିଙ୍ଗି, ଆମ ଘରର ଭାତ ଖାଇବାକୁ ଘୃଣା ଲାଗିବ କି ?''

''ନା ଦାଦା, ଜାତିର ଗୋଟିଏ ବିଧି ଅଛି ବୋଲି ଖାଉ ନାହିଁ । ନୋହିଲେ କାଲି ଯାହାର ଭାତ ଆଦରରେ ଖାଉଥିଲି, ବାହାହେଲା ମାତ୍ରେ ତାହା ଘୃଣା ବୋଧ ହେବ କାହିଁକି ? ଭୁଜା, ଚୂଡ଼ା ଖାଇବି, ଭାତ ଖାଇବି ନାହିଁ ।''

''ହେଉ ହେଉ । ତୁ ଜଳଖିଆ କରି ବାହାରିଯିବୁ; ମୁଁ ଠିକ୍ ସନ୍ଧ୍ୟାବେଳେ ତୋ ଗାଆଁରେ ପହଞ୍ଚିବି । ଡେରା ଘର ବନାଇଛି ତ ?''

''ଦୁଇ ବଖରା ଡାଳଘର ନିବୁଜ କରି ବନାଇ ଉପରେ ଛଣ ଛାଇଛୁଁ । ଘର ବାଟରେ ଗୋଟିଏ ବଡ଼ ଛାମୁଣ୍ଡିଆ ତିଆରି କରିଛୁଁ ନିଆଁ ଅନ୍ତରା ନିମନ୍ତେ । ରନ୍ଧାଘର ଓ ଚାକରଙ୍କ ରହିବା ଘର ବନାଇଛୁଁ । ନାଳ କାନ୍ଥରେ ଯେଉଁଠାରେ ତୋର ପସନ୍ଦ ହେବ, ତୁ ଗଲେ ସେଠାରେ ଶିକାର କରିବୁ ବୋଲି ଆମର ଜାତିଲୋକମାନଙ୍କୁ ରଖାଇଛୁଁ ।''

''ଭଲାରେ ଜିଲିଙ୍ଗି, ମୋ ନିମନ୍ତେ ତୋର ଏତେ ବନ୍ଦୋବସ୍ତ । ଅସଲ କଥା, ତୋ ବରଟି କିପରି ? ସେ ଆସିଲା ନାହିଁ କାହିଁକି ?''

''ତୁ ନିଜେ ଦେଖିବୁ, ମୁଁ ଆଉ କହିବି କାହିଁକି ? ନୂଆ ଲୋକ, ଲାଜ କଲା, ଆସିଲା ନାହିଁ ।''

''ତୋ ସାଙ୍ଗରେ ଆସିବାକୁ ଲାଜ କଲା''

''ଗାଉଁଲିଆ ଲୋକର ଲାଜ ଅଛି, ଡର ଅଛି । ଭରସିଲାରୁ ଯା ଆସ କରିବ ।''

''ଆଚ୍ଛା ତୁ ଯା, ବେଳବୁଡ଼ିକୁ ବାଟ ଦେଖୁଥିବୁ ।''

''ଝିଲିଙ୍ଗି ବିନା ବାକ୍ୟବ୍ୟୟରେ ଘର ଭିତର ଆଡ଼କୁ ଗଲା । ବେଶି କଥାରେ ତା'ର ପ୍ରୟୋଜନ କ'ଣ ? ତା'ର କାର୍ଯ୍ୟସିଦ୍ଧି କଲା, ଚାଲିଗଲା । ଦିନ ଦୁଇଟାବେଳେ ଯୁବକ ଆପଣାର ବନ୍ଧୁକ ଧରି ନଳବନ୍ଧ ଅଭିମୁଖରେ ଏକାକୀ ପ୍ରସ୍ଥାନ କଲେ । ଘଣ୍ଟାକ ଆଗରୁ ଚାକର ବ୍ରାହ୍ମଣ ଚାଲି ଯାଇଥିଲେ । ନଳବନ୍ଧ ବାଟରେ କୃଷ୍ଣମନାଳୀ ଅତି ଛୋଟ ଗ୍ରାମ । ଗ୍ରାମ ପ୍ରାନ୍ତରେ ଗୋଟିଏ ବଡ଼ ଜାମୁଗଛ । ସେହି ଗଛମୂଳରେ ଗୋଟିଏ ପଥର ଉପରେ ଝିଲିଙ୍ଗି ବସି ବାଟ ଅନାଉଛି । ଯୁବକ ତାକୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, ''କିରେ ଝିଲିଙ୍ଗି, ତୁ ସକାଳେ ନଳବନ୍ଧ ଯିବାର କଥା । ଏଠାରେ ଏକାକୀ ବସିଛୁ ?''

''ମୁଁ ତ ସକାଳେ ନଳବନ୍ଧ ଯାଇ ନାହିଁ, ତୋ ଘରୁ ଚୁଡ଼ା ଆଣିଥିଲି, ଏଠି ଖାଇଲି ଆଉ ତୋତେ ଅନାଇ ବସିଛି ।''

''ଭଲ କଥା; ଆସ ତେବେ ଯିବା । ଦୁହେଁ ଆଗପଛ ହୋଇ ଚାଲିଲେ । ଅଳ୍ପ ଦୂର ଯାଇ ପାହାଡ଼ ଚଢ଼ିଲେ । ଯୁବକ ଗୋଟିଏ କପୋତ ଶିକାର କଲେ । ଝିଲିଙ୍ଗି ତାହା ଆଣି ଧରିଲା । ପୁଣି କିଛି ଦୂର ଗଲାରୁ ପୁଣି ଗୋଟିଏ କପୋତ ଶିକାର କଲେ । ତାହା ମଧ୍ୟ ଝିଲିଙ୍ଗି ଧରିଲା । ଯୁବକ କହିଲେ, ''ଝିଲିଙ୍ଗି, ତୁ ବନ୍ଧୁକଟା ଧରିପାରିବୁ ? ମୁଁ କପୋତ ଯୋଡ଼ିକ ଧରି ଚାଲିବି ।''

''କି କଥା କହୁ ଦାଦା— ମୁଁ ସ୍ତ୍ରୀଲୋକ, ତୋର ପୂଜା ବନ୍ଧୁକ ଛୁଇଁବି । ମୋ ବାପ କହିଛି; ପୂଜା ବନ୍ଧୁକ, ପୂଜା ଧୂଣ, କାଣ୍ଡ ସ୍ତ୍ରୀମାନେ ଛୁଇଁଲେ ଗୁଳି କିମ୍ବା କାଣ୍ଡ ଜନ୍ତୁକୁ ବାଜେ ନାହିଁ । ମୁଁ ତୋ ବନ୍ଧୁକ ଛୁଇଁଲେ ତୁ ଆଉ କେବେ ଜନ୍ତୁ ମାରି ପାରିବୁ ନାହିଁ।''

''ମୁଁ ଆଉ ବନ୍ଧୁକ ବୋହି ପାରିବି ନାହିଁ । ପର୍ବତ ଚଢ଼ିବାରେ ମୋର କଷ୍ଟ ହେଉଛି । ତୁ ବନ୍ଧୁକ ନ ବୋହିଲେ ମୁଁ ଛାଡ଼ିଯିବି, ନୋହିଲେ ଅଧଘଣ୍ଟାଏ ବସିବି ।''

''ବନ୍ଧୁକ ବୋହିବାକୁ ମୋର ଆପତ୍ତି ନାହିଁ, ତେବେ ତୋର ବହୁ ଏହା ଜାଣିଲେ ମତେ ଗାଳିଦେବ ।''

''ଯୁବକ କ୍ଳାନ୍ତ ଯୋଗୁଁ ବନ୍ଧୁକ ତା' ହସ୍ତରେ ଦେଉ ନ ଥିଲେ, ତା'ର କୁସଂସ୍କାର ଦୂର କରିବା ନିମନ୍ତେ ଏତେ ଜିଦ୍ । ଯୁବକ ବସି ପଡ଼ିଲେ । ଝିଲିଙ୍ଗି ଅଗତ୍ୟା ବନ୍ଧୁକ ଧରି ଚାଲିଲା । କିଛିଦୂର ଗଲା ଉତ୍ତାରୁ ଗଛରେ ଗୋଟିଏ କୋଚିଲାଖାଇ ଦେଖି ଝିଲିଙ୍ଗିଠାରୁ ବନ୍ଧୁକଟି ଛଡ଼ାଇ ନେଇ ପକ୍ଷୀକୁ ଲକ୍ଷ୍ୟ କଲେ । କିନ୍ତୁ ଲକ୍ଷ୍ୟଭ୍ରଷ୍ଟ ହେଲା । ପକ୍ଷୀଟି ଉଡ଼ିଗଲା। ଏହା ଦେଖି ଝିଲିଙ୍ଗି କହିଲା, ''ଦାଦା, ତୁ ମାନିଲୁ ନାହିଁ, ଫଳ ଦେଖିଲୁ ? ଏବେ ଉପାୟ କ'ଣ ? ସମସ୍ତେ କ'ଣ କହିବେ ? କାଲି ତୁ ଭଲ ଜନ୍ତୁ ଶିକାର କରିବୁ ?''

''କି କରାଯାଏ, ଯାହା ହେବାର ତ ହେଲା, ବନ୍ଧୁକ ଧରି ଚାଲ।''

ଉଭୟେ ଚାଲିଲେ । ପୁଣି ଗୋଟାଏ କପୋତ । ବନ୍ଧୁକ ଚଳାଇଲେ, କପୋତଟି ପଡ଼ିଲା ।

''କି ରେ ଝିଲିଙ୍ଗି, କପୋତଟି ପଡ଼ିଲା ଯେ । କାହିଁ ବନ୍ଧୁକ ତ ବିଗଡ଼ି ନାହିଁ ।''

''ଆଗ ଚୋଟଟା ତେବେ ତୁଁ ଜାଣି ଶୁଣି ଉଡ଼ାଇ ଦେଲୁ ?''

''ହଁ'' ।

''ସ୍ତ୍ରୀ ବନ୍ଧୁକ ଛୁଇଁଲେ ତାହା ବିଗିଡ଼ିଯିବା କଥା ତେବେ ସତ ନୁହେଁ ?''

''ସତ ନୁହେଁ । ସ୍ତ୍ରୀର ହାତ ଯାହା, ପୁରୁଷର ହାତ ତାହା। ସ୍ତ୍ରୀ ଛୁଇଁଲେ ତାହା ବିଗିଡ଼ିବ କାହିଁକି ? ଦେଖିଲୁ ତ, ଏଣିକି ଯେତେ ଚୋଟ ମାରିବି, ଦେଖିବୁ, ତେତିକିଟି ପକ୍ଷୀ ପକାଇବି, ହରଡ଼ କେଉଁଠାରେ ମିଳିବେ ?''

''ହରଡ଼ ମାରିବୁ ? ଏହି ହୁଳି ତଳ ନାଳ ପାଖରେ ଗୋଟିଏ କଣିଗଛ ଅଛି । ସେଠି ବେଳବୁଡ଼କୁ ବୋଝ ବୋଝ ହରଡ଼ ବସନ୍ତି ଯିବା ?''

''ଚାଲ୍ ଚାଲ୍, ହରଡ଼ ମାରିବାକୁ ମୋର ବଡ଼ ଇଚ୍ଛା ।''

ଉଭୟେ ତଳକୁ ଉତୁରିଲେ । ବାସ୍ତବିକ ଗୋଟାଏ କଣି ଗଛରେ ଅନେକ ହରଡ଼ । ଏକ ଚୋଟରେ ପାଞ୍ଚଗୋଟି ହରଡ଼ ପଡ଼ିଲେ । ଝିଲିଙ୍ଗି ମହା ଆନନ୍ଦରେ ଗୋଟାଇଲା । କହିଲା, ''ଆଉ ଅଳ୍ପଦୂରରେ ଏଠାରୁ ବଳି ବଡ଼ ଗଛଟାଏ ଅଛି, ସେଠି ଏଠୁଁ ଯାଇଥିବା ହରଡ଼ମାନେ ବସିଥିବେ, ଚାଲ ମାରିବା ।''

ପୁଣି ସେଠାକୁ ଗଲେ । ପକ୍ଷୀଗୁଡ଼ିକ ଟିକିଏ ସତର୍କ ହୋଇଥିଲେ । ତଥାପି ଏକ ଚୋଟରେ ଦୁଇଟା ପଡ଼ିଲେ । ବେଳ ବୁଡ଼ିବାକୁ ଅଳ୍ପ ଅବଶିଷ୍ଟ ଥିଲା । ଗଛମୂଳଟି ଛାୟାବିଶିଷ୍ଟ ପର୍ବତ କାନ୍ଥି, ଏଣୁ ଟିକିଏ ଅନ୍ଧାରିଆ ଦିଶୁଥାଏ । ଯୁବକ ଗୋଟାଏ ପଥର ଉପରେ ବସିଲେ ଏବଂ ଦୁଇ ଖଣ୍ଡ ଏକ ହାତ ଲମ୍ବ ପରିମିତ ସଳଖ କାଠି ଭାଙ୍ଗି ଆଣିବାକୁ ଝିଲିଙ୍ଗିକୁ କହିଲେ । ପୁଣି ନିଜେ ଉଠିଯାଇ ପଟ ସଂଗ୍ରହ କଲେ । ଦୁଇ

କାଠି ମଧ୍ୟରେ ପକ୍ଷୀମାନଙ୍କ ଗଳାଟିମାନ ଦେଇ କାଠିର ଉଭୟ ପାଖ ବାନ୍ଧିଲେ, ପୁଣି ଓହଳାଇ ଧରିବା ନିମନ୍ତେ କାଠିର ପ୍ରତ୍ୟେକ ଅଗ୍ରଭାଗକୁ ଗୋଟିଏ ଡୋରରେ ବାନ୍ଧି ଦେଇ ଜ୍ଞିଲିଙ୍ଗିକୁ ଧରାଇ ଦେଲେ । ''ବେଳ ବୁଡ଼ି ଆସିଲା, ମୁଁ ବନ୍ଧୁକ ଧରିବି, ତୁ ପକ୍ଷୀତକ ଧର'' ବୋଲି କହିଲେ। ଜ୍ଞିଲିଙ୍ଗି ଠିଆ ହୋଇଥାଏ, ଯୁବକ ବସିଲା ସ୍ଥାନରୁ ନ ଉଠି କହିଲେ,

''ଜିଲିଙ୍ଗି, ମୁଁ ଯୁବକ, ତୁ ଯୁବତୀ, ମୋ ସାଙ୍ଗରେ ଏକାକୀ ଏପରି ନିର୍ଜନ ଅରଣ୍ୟରେ ବୁଲିବାକୁ ଭୟ କରୁ ନାହୁଁ ?''

''କି ଭୟ, ସଙ୍ଗରେ ବନ୍ଧୁକ ଅଛି । ମୁଁ ତ ଏକା ଏ ସବୁ ଜଙ୍ଗଲରେ ବୁଲେଁ । ଆଜି ସକାଳେ ଏକଲା ତୋତେ ଡାକିଗଲି ।''

''ନାହିଁରେ ସେ ଭୟ ନାହିଁ । ମୋ ସଙ୍ଗରେ ଏକଲା ରହିବାକୁ ଭୟ ନାହିଁ ତ ? ଯୁବକ କାଳେ ଧରି ପକାଇବ ବା କିଛି କହିବ କି ଅତ୍ୟାଚାର କରିବ ବୋଲି ଡର ନାହିଁ କି ?''

''କି କଥା କହିଲୁ ଦାଦା, ମୋର ବାପା ତୋର ବନ୍ଧୁ, ମୁଁ ତା'ର ଝିଅ, ତୋର ଭଉଣୀ । କେବଳ ଗୋଟିଏ ମା' ପେଟରୁ ଜନ୍ମହେଲେ କ'ଣ ଭାଇ ଭଉଣୀ । ସଂସାରରେ ମାନ୍ୟ ଧର୍ମ ନାହିଁ କି ? ପିଲା କାଳରୁ ତୁ ଡାକୁଛୁ ମତେ ଭଉଣୀ ବୋଲି, ମୁଁ ଡାକୁଛି ତତେ ଦାଦା ବୋଲି, ଏଥରୁ ବଳି ସମ୍ବନ୍ଧ ଆଉ କ'ଣ ଅଛି ? ତୁ ଏପରି କଥା ମତେ କହିବୁ କିପରି ବା ମତେ ଧରି ପକାଇବୁ କିପରି ? ଏଥିରେ ମୋର ବିଶ୍ୱାସ ନାହିଁ । ଏଣୁ ତୋ ସାଙ୍ଗରେ ଏକଲା ରହିବାକୁ ଡର ନାହିଁ । ରାତିରେ ମଧ୍ୟ ରହିବାକୁ ଶଙ୍କା ନାହିଁ । ପୂର୍ବେ ଥରେ ଦୁଇ ଥର ତୋ ସାଙ୍ଗରେ ଏକଲା ରହିଥିଲି, ଏବେ ମଧ୍ୟ ଅଛି । ଏକା ମା ପେଟରୁ ଜନ୍ମ ଭାଇଭଉଣୀ ଏକାକୀ ଏକା ଘରେ ରହୁଛନ୍ତି । ଯେବେ କୌଣସି ଦୁଷ୍ଟ ଭାଇ ଭଉଣୀକି ଧରି ପକାଏ, ତେବେ ସେଇଟା ସଂସାର ବାହାର କଥା । ଏପରି ତ କେବେ ଘଟେ ନାହିଁ । ତେବେ ତୁ ତ ମୋ ମା ପେଟର ଭାଇଠାରୁ ଅଧିକ, ଧର୍ମର ଭାଇ, ତୁ ଏପରି କରିବୁ ବୋଲି ମୋର ବିଶ୍ୱାସ ନାହିଁ । ମନ ବିଢ଼ିବାକୁ ଏପରି କଥା କହୁଛୁ । ତୋର ଖରାପ ଇଚ୍ଛା ଥିଲେ ତୋ ଉପରେ ମୋର ଏଡ଼େ ବିଶ୍ୱାସ ଜନ୍ମ ହୁଅନ୍ତା କି ? ତୋ ଦ୍ୱାରା ମୋର ତିଳେ ହେଲେ ଅନିଷ୍ଟ ହେବ ବୋଲି ମୋର ବିଶ୍ୱାସ ନାହିଁ ।''

''ମୁଁ ଏପରି ନିର୍ଜନ ସ୍ଥାନରେ ଏପରି କଥାଟିଏ କହିଲା ଉତ୍ତାରୁ ମଧ୍ୟ ତୋର ମୋ ପ୍ରତି ଅବିଶ୍ୱାସ ନାହିଁ ।''

''ନାହିଁ ।''

''ଏପରି ସ୍ଥଳରେ ଅନ୍ୟ କେହି ଯୁବକ ଏପରି କଥା କହିଥିଲେ ?''

''ମୁଁ ଅନ୍ୟ ଯୁବକ ସଙ୍ଗରେ ଏପରି ସ୍ଥଳକୁ ଆସନ୍ତି କାହିଁକି, ଯାହା ସଙ୍ଗରେ ମୋର ସମ୍ବନ୍ଧ ନ ଥାନ୍ତା । କିମ୍ବା ଯାହାପ୍ରତି ବିଶ୍ୱାସ ନ ଥାନ୍ତା ?''

''କେହି ବିଶ୍ୱାସ ଦେଖାଇ ଏପରି କଲେ ?''

''ସେତେବେଳେ ତା'ର ଉପାୟ ଦେଖନ୍ତି । ମିଛ କଥା ଉପରେ କଳ୍ପନା କରିବାର ଫଳ କ'ଣ ? ଯାହାର ମନରେ ବଳ ଅଛି, ତାକୁ କିଏ କ'ଣ କରିପାରେ ? ତା'ଛଡ଼ା ମୋର ଦେହରେ ଏପରି ବଳ ଅଛି ଯେ, ତୋ ପରି ଦୁଇ ଜଣ ଲୋକଙ୍କୁ ମୁଁ ପରାସ୍ତ କରିପାରେଁ । ମୁଁ ପରା ତୋର ଭଉଣୀ, ମୋର ବୁଦ୍ଧି ନାହିଁ କି ବଳ ନାହିଁ ବୋଲି ତୁ ଭାବିଚୁ କି ?''

''ମୁଁ ଯଦି ଆଜି ଏଠାରୁ ନ ଯାଏଁ ?''

''ମୁଁ ମଧ୍ୟ ଯିବି ନାହିଁ।''

''ରାତିରେ ରହିବୁ ?''

''ହଁ ।''

''କିଛି ଉପାୟ ନାହିଁ ?''

''ନାହିଁ । ତୋର ଯେ ଦଶା ହେବ, ମୋର ସେହି ଦଶା ।

''ଜ୍ଞିଲିଙ୍ଗି, ତୋର, ମନରେ ଏତେ ବଳ ଏବଂ ମୋ ଉପରେ ଏତେ ବିଶ୍ୱାସ ତାହା ଦେଖି ମୁଁ ନିଜକୁ ଧନ୍ୟ ମଣୁଛି । ସ୍ତ୍ରୀ ପୁରୁଷ ମଧ୍ୟରେ ଏପରି ବିଶ୍ୱାସ ଥିଲେ ସଂସାର ଅନ୍ୟ ପ୍ରକାର ହୁଅନ୍ତା । ଜ୍ଞିଲିଙ୍ଗି, ତୁ ସରଳା ପାର୍ବତୀୟ ବାଳିକା ସଭ୍ୟନାମଧାରୀ ଯୁବକମାନଙ୍କ ଗୁଣ ଓ ଚରିତ୍ର କଥା ତୋତେ ଜଣା ନାହିଁ । ଏଣୁ ତୋର ମୋ ପ୍ରତି ମଧ୍ୟ ଏତେ ବିଶ୍ୱାସ । ଆମେ ଦୁହେଁ ଭାଇ ଭଉଣୀ ଏବଂ ଆମର ସମ୍ବନ୍ଧ ଅତି ପବିତ୍ର ।

''ଆଚ୍ଛା, ତୁ ମୋ ସାଙ୍ଗରେ ଥିବାରୁ ତୋ ସ୍ୱାମୀ ସନ୍ଦେହ କରିବ ନାହିଁ ତ ?''

''ପୁଣି କଥାଟାଏ ବାହାର କଲା । ସନ୍ଦେହ କରିବ କାହିଁକି ? ସେ କି ମୋର କୌଣସି ଦୋଷ ଦେଖିଛି ? ମୋର ମନ ନିର୍ମଳ ଥିବାଯାଏ ମୋର ସ୍ୱାମୀ ମୋ ପ୍ରତି ସନ୍ଦେହ କରିବ ବୋଲି ମୋର ବିଶ୍ୱାସ ନାହିଁ । ବୃଥା ସନ୍ଦେହ କଲେ ସେଥିରେ ମୋର ଭୟ ନାହିଁ । ଅନ୍ୟ ଜାତିଲୋକ ଏପରି ସନ୍ଦେହ କରନ୍ତି

ନାହିଁ । ନ ଦେଖି ଦଣ୍ଡ ଦିଅନ୍ତି ନାହିଁ । ଦୋଷ ଦେଖିଲେ କ୍ଷମା ଦେବେ ନାହିଁ । କେତେ ନୂଆଁ କଥା ବାହାର କରୁଛୁ ? ଚାଲ ଯିବା, ବେଳ ବୁଡ଼ି ଆସୁଛି, ଶୀତ ମାଡ଼ିଆସିଲାଣି; ବାଟରେ ଭାଲୁ ଭେଟିବାଟି ।''

''ଭାଲୁ ଦେଖିଲେ ତ ଭଲ ଶିକାର କରିବା ।''

ଏହା କହି ଯୁବକ ଗାତ୍ରୋତ୍ଥାନ କଲେ, ଉଭୟେ ପୁଣି ଆଗ ପଛ ହୋଇ ଚାଲିଲେ । ଯୁବକ ଧରିଛନ୍ତି ବନ୍ଧୁକ ଏବଂ ଯୁବତୀ ଧରିଛି ପକ୍ଷୀଗୁଡ଼ିକ । ଦୁଇ ଭାଇ ଭଉଣୀ ପବିତ୍ର ହାସ୍ୟାଳାପ କରି ଚାଲିଲେ । ଗ୍ରାମରେ ପହଞ୍ଚିଲା ବେଳେ ମାଛି ଅନ୍ଧାର । କିଛିଦୂରଯାଏ ଲୁନ୍ଦା ଓ କେତେଜଣ ଲୋକ ଆସି ଅପେକ୍ଷା କରୁଥିଲେ । ଢିଲିଙ୍ଗିର ସ୍ୱାମୀ ଆସି ନ ଥିଲା । ଲୁନ୍ଦା ଯୁବକଙ୍କୁ ଦେଖିବାରୁ ତା'ର ଆନନ୍ଦର ସୀମା ରହିଲା ନାହିଁ । ବହୁଦିନ ପରେ ବିଦେଶାଗତ ପୁତ୍ରକୁ ଦେଖିଲେ ପିତାର ଯେଉଁ ଆନନ୍ଦ, ତାହା ଲୁନ୍ଦା ଅନୁଭବ କରୁଥିଲା । ଯୁବକ ମଧ୍ୟ ଲୁନ୍ଦାର ବାତ୍ସଲ୍ୟ ଦେଖି ନିଜକୁ ଚରିତାର୍ଥ ମନେ କରୁଥିଲେ । ଢିଲିଙ୍ଗି ଲୁନ୍ଦା ହାତରେ ପକ୍ଷୀତକ ଦେଇ ଘର ଆଡ଼କୁ ଚାଲିଗଲା ।

ଯୁବକ ଆପଣା ଡେରା ଆଡ଼କୁ ଚାଲିଲେ । ଗ୍ରାମର ସମସ୍ତ ବୁଢ଼ା, ପିଲା, ଯୁବକ ଏବଂ ବିବାହକୁ ନିମନ୍ତ୍ରିତ ସମସ୍ତ କୋହ୍ଲ ଯୁବକଙ୍କ ପିଛା ଧରିଲେ ।

ଅନ୍ଧାର ହେଲାଣି, ଖୁବ୍ ଶୀତ, ଛାମୁଣ୍ଡିଆତଳେ ନିଆଁ ଅନ୍ତରା ଦୁର୍ ଦୁର୍ ଜଳୁଛି । ସମସ୍ତେ ଛାମୁଁଣ୍ଡିଆ ତଳେ ଠିଆ ହେଲେ । ଯୁବକ ତାଳ କୁଡ଼ିଆ ଭିତରେ ପଶିଲେ, ଲୁଗା ପାଲଟିଲେ, ମୁହଁ ହାତ ଧୋଇଲେ, ସମ୍ଭବତଃ କିଛି ଜଳଖିଆ ସାରି ଚଟପଟ ବାହାରି ଆସିଲେ । ପରିଚିତ ଗୋଟିଏ କୋହ୍ଲ ''ପିଲାକୁ ଡାକି କହିଲେ, ପାଞ୍ଚ ଗୋଟି ପକ୍ଷୀ ଢିଲିଙ୍ଗିର ଭାଗ। ଏଥିରୁ ପାଞ୍ଚ ଗୋଟା ପକ୍ଷୀ ତାକୁ ଦେଇଆସ।'' ବାଳକ ପକ୍ଷୀମାନ ଧରି ଚାଲିଗଲା । ଯୁବକ ଖଟିଆ ଉପରେ ବସିଲେ । ସମସ୍ତେ ତଳେ ପୁଆଳ ଉପରେ ବସିଲେ । ନାନା କଥାର ଆଲୋଚନା ପଡ଼ିଲା । ଧାନ ଫସଲ କଥା, ଢିଲିଙ୍ଗିର ବିବାହ ବର୍ଣ୍ଣନା, ଭୋଜିଭାତ କଥା ଇତ୍ୟାଦି । ଯୁବକ ଲୁନ୍ଦାକୁ ଲକ୍ଷ୍ୟ କରି ପଚାରିଲେ, ''ବଡ୍ଡୁ, ଢିଲିଙ୍ଗି ଶାଶୂଘରକୁ କେବେ ଯିବ ?''

''ଢିଲିଙ୍ଗି ଶାଶୂଖାଇ, ତା'ର ଶାଶୂ ମଲାଣି । ସେ ଶାଶୂଘରକୁ ଯିବ ନାହିଁ । ଜ୍ୱାଁଇର ଜମିବାଡ଼ି ନାହିଁ କିମ୍ୱା ବାପ ମା' ନାହାନ୍ତି, ଏଣୁ ମୁଁ ଘରଜ୍ୱାଁଇ କରି ରଖିଲି । ଏଠି ଚାଷବାସ କରି, ବଞ୍ଚିବ, ତୋର ନୌକରି କରିବ । ପିଲାଟି ଖୁବ୍ ଶିକାର ଜାଣେ ।''

''ଭଲ କଥା ବଡ୍ଡୁ, ତୋର ଜ୍ୱାଁଇ ଲୁଚିଛି କୁଆଡ଼େ ?

''ଏତେ ଲୋକଙ୍କ ଆଗରେ ତତେ ଦେଖା କରିବାକୁ ଲାଜ କଲା, ଆମେ ଗଲେ ଆସିବକ ଯେ ।''

''ଆଚ୍ଛା ବଡ୍ଡୁ, କାଲି ଶିକାର କରିବା ତ ?''

''ହଁ ସେଥିନିମନ୍ତେ ତ ସମସ୍ତଙ୍କୁ ରଖିଛି । ଗୟଳମାଂସ କି ସମ୍ବରମାଂସ ନ ହେଲେ କୋହ୍ଲମାନଙ୍କର ପେଟ ଭରେ ନାହିଁ । ମୁଁ ସିନା ଖାସୁ ମାଂସ ଟିକିଏ ଖୁଆଇଛ ।''

''ଜନ୍ତୁ ମିଳିବେ ତ ?''

''ଗୋଡ଼ାରୁ ମୁଗ କୋଳଥ ଉଠି ନାହିଁ। ଫସଲ ଖାଇବାକୁ ଲମ୍ୱ ଦୁଳାରେ ଜନ୍ତୁତକ ଜମା। ସେଇଟାକୁ କାଳିବା ଏବଂ ବଡ଼ ପର୍ବତକୁ ମଧ୍ୟ କାଳିବା, ଅବଶ୍ୟ ଦୁଇ ଚାରିପଟ ସମ୍ବର ମିଳିବେ ।''

''ହେଲା, ତେବେ ତୁମେମାନେ ଯାଅ ଶୋଇବ, ମୁଁ ମଧ୍ୟ ଖାଇକରି ଶୋଇବି । କ୍ଳାନ୍ତ ଲାଗୁଛି।''

ସମସ୍ତେ ଉଠିଲେ, ଯୁବକ ଉଠି ନ ଥିଲେ । ଢିଲିଙ୍ଗି ତା'ର ସ୍ୱାମୀ ସହିତ ଉପସ୍ଥିତ ହେଲା । ଅମ୍ଳାନ ବଦନରେ ତା'ର ସ୍ୱାମୀର ପରିଚୟ କରାଇଦେଲା। କୋହ୍ଲ ଯୁବକର ଶରୀରର ଗଠନ ଦେଖି ଯୁବକ ଖୁସି ହେଲେ । ଢିଲିଙ୍ଗି ସହିତ କଥାବାର୍ତ୍ତା ହେଲାବେଳେ ସେ ମୁଚ୍‌କି ମୁଚ୍‌କି ହସୁଛି । ଯୁବକ ଢିଲିଙ୍ଗି କି ପଚାରିଲେ, ଏ ତା'ର ନାମ କ'ଣ ?''

''ତାକୁ ପଚାର, ମୁଁ ତା'ର ନାମଟା କିପରି କହିବି ?''

ସେ ଧୀର ନମ୍ରଭାବରେ କହିଲା ''ବିରଷା'। ଅନେକେ ପଚାରି ପାରନ୍ତି। ଏ ନାମର କୌଣସି ଅର୍ଥ ଅଛି କି ? ନାହିଁ। ହିନ୍ଦୁମାନଙ୍କର ଅନେକ ଗୁଡ଼ିଏ ଦେବତା, ଏଣୁ ଦେବତାଙ୍କ ଅନୁଗ୍ରହ ପାଇବା ଆଶାରେ ପୁତ୍ରାଦିଙ୍କର ନାମ ରଖନ୍ତି, ଦେବତାର ଦାସ, ଚରଣ ଇତ୍ୟାଦି। କେବେ କେବେ ଦେବତାର ନାମ ମଧ୍ୟ ରଖନ୍ତି। ଆଦିବାସୀଙ୍କର ଏତେ ଦେବତା ନାହାନ୍ତି, ଏଣୁ ସେମାନେ ଦାସ, ଚରଣ ହେବାକୁ ତା' ଇଚ୍ଛା କରନ୍ତି ନାହିଁ। ପୂର୍ବ ପୁରୁଷଙ୍କ ନାମ ଦିଅନ୍ତି । ଢିଲିଙ୍ଗିର ବର ପିତାମହର ନାମ 'ବିରଷା ଥିଲା । ଏଣୁ ତଦନୁସାରେ ତା'ର ନାମକରଣ । ନାମର କାଳ୍ପନିକ ଅର୍ଥ ଥିଲେ ନ ଥିଲେ କେତେ ? ହିନ୍ଦୁମାନଙ୍କର ଗୁଡ଼ାଏ ଦେବତା ସୃଷ୍ଟି ହେବା ପୂର୍ବରୁ ଯେଉଁ ଋଷି ପ୍ରଭୃତି ଥିଲେ, ସେମାନଙ୍କ ନାମର ମଧ୍ୟ କୌଣସି ଅର୍ଥ ନ ଥିଲା, ଯଥା— ଅଙ୍ଗିରା, ପୁଲହ, ଇତ୍ୟାଦି । ତେବେ ଅନେକ ପ୍ରାଚୀନ ନାମର ଅର୍ଥ ବୃଥାରେ ବୈୟାକରଣମାନେ

ଟାଣିଟୁଣି କରିଅଛନ୍ତି । ସେ ଅର୍ଥ ନିରର୍ଥକ । ଲୁଦା, ଲିଲିଙ୍ଗି ଦରଷାର ଅର୍ଥ ନାହିଁ । ଏ ନାମଗୁଡ଼ାକ ବଂଶାନୁକ୍ରମ ରହିବ, ଲୋପ ପାଇବ ନାହିଁ ।

ଯୁବକ କହିଲେ, ବିରଷା, ତୁ ଭଲ ଶିକାର କରିପାରୁ, ମୁଁ ଜିଲିଙ୍ଗିଠାରୁ ଶୁଣିଲି ।''

''ହଁ, ସେ ମଧ ଶୁଣିଛି; ଦେଖି ନାହିଁ । ଧୁଣକାଣ୍ଡିଆ ଶିକାରୀ, ତୋର ସାଙ୍ଗରେ ସମାନ ହେବି କି ? ପଟକେତେ ସମ୍ବର, ଗୟଳ ମାରିଛି । ବିରଷା ବିନୀତ ଭାବରେ ଏହା କହିଲା ।

ଜିଲିଙ୍ଗି ଟିକିଏ ମୁରବୀପଣିଆ ଦେଖାଇ କହିଲା— ''ଦାଦା; ତୁ ଏହାକୁ ପାଇଲୁ, ଏ ତୋର ପଜୁଆ ହେବ, ଏହାକୁ ଶିଖାଇବୁ । ଦାଦା, ତୁ କୋହ୍ଲମାନଙ୍କୁ ମଦ ଖାଇବାକୁ ମନା କରୁ । ତୋର ଭଉଣୀଜୁଆଇଁ ମଦ ଖାଏ ନାହିଁ । ତୁ ଖୁସି ହେବୁ । ଆମ ଜାତିକାମରେ ହାଣ୍ଡିଆ ପିଇବାର ବିଧି ଅଛି । ମୋର ବାହାରେ ତୋର ଭଉଣୀଜୁଆଇଁ ବୟସର ପିଲାମାନେ ଖୁବ୍ ହାଣ୍ଡିଆ ପିଇଲେ । ଏ ପିଇଲା ନାହିଁ । ତୁଣ୍ଡରେ ଟିକିଏ ଛୁଆଁଇ ଦେଲା । ମୁଁ ଦେଖି ବଡ଼ ଖୁସି ହେଲି, ମୁଁ ଭାବିଲି, ମୋର ବର ଦାଦାର ଯୋଡ଼ି ।''

''ଜାତି କାମରେ ଯେବେ ବିରଷା ତା ତୁଣ୍ଡରେ ମଧ ହାଣ୍ଡିଆମଦ ଲଗାଇବାକୁ ନାରାଜ ହେବ, ତେବେ ସିନା ତୋର ଦାଦାର ଯୋଡ଼ି ।''

''ବୁଢ଼ା, ବୁଢ଼ାମାନେ କହନ୍ତି, ଜାତି କାମରେ ଯେଉଁଲୋକ ହାଣ୍ଡିଆ ନ ପିଏ କିମ୍ବା ତୁଣ୍ଡରେ ନ ଲଗାଏ, ତାକୁ ପୂର୍ବପୁରୁଷମାନେ ଅଭିଶାପ ଦିଅନ୍ତି । ଏଥିପାଇଁ ଇଚ୍ଛା ନ ଥିଲେ ମଧ କେହି କେହି ପିଅନ୍ତି । କେହି କେହି ନିୟମ ରକ୍ଷା ନିମନ୍ତେ ତୁଣ୍ଡରେ ଲଗାଇ ଦିଅନ୍ତି ।''

''ଜିଲିଙ୍ଗି, ସ୍ତ୍ରୀ ବନ୍ଧୁକ ଛୁଇଁଲେ ବନ୍ଧୁକ ବିଗିଡ଼ିଯାଏ, ବାଜେ ନାହିଁ ବୋଲି ମଧ ବୁଢ଼ା ବୁଢ଼ାମାନେ କହନ୍ତି । ଦେଖିଲୁ ତୁ, ତୁ ବନ୍ଧୁକ ଛୁଇଁଲା ଉତ୍ତାରେ ମୋ ବନ୍ଧୁକ କିପରି ବାଜୁଛି । ପୁଣି କାଲି ସମ୍ବର ଶିକାର କରିବି । ବୁଢ଼ାମାନଙ୍କର ସବୁକଥା ସତ ନୁହେଁ । ବିରଷା ମଦ ଛାଡ଼ିଲେ ତାର ଭଲ ହେବ ।''

ଜିଲିଙ୍ଗି ବିରଷାକୁ ଲକ୍ଷ୍ୟକରି ଉପଦେଶ ଦେଲା ପରି କହିଲା, ''ଦେଖ, ଦାଦା ସବୁ ଜାଣେ । ତା' କଥା ମାନିଲେ ଭଲ ।''

''ଭଲ ବରଟିଏ ପାଇଲୁ ଜିଲିଙ୍ଗି, ଖୁବ୍ ସୁଖରେ ଘରଦ୍ୱାର କରି ରହିବ । ରାତି ହେଲାଣି, ଖାଅ ଶୋଅ । ମଧ ଖାଇସାରି ଶୋଇବି । କାଲି ସକାଳୁ ତୁ ପର୍ବତ ଚଢ଼ିବାକୁ ପଡ଼ିବ ।''

''ଯାଉଛୁଁ, ଖାଇସାରିଲେ ତୋର ଭଉଣୀଜୁଆଇଁକୁ ପଠାଇଦେବି, ସେ ଛାମୁଣ୍ଡିଆ ତଳେ ଶୋଇବ ।''

''ଦରକାର କ'ଣ ?''

''ଦେଖ, ତୁ ଘରରେ ଶୋଇବୁ, ସେ ପରେ ଶୋଇବ ? ପହରା ଦେବ ନାହିଁ କି ? ଦୁଇ ଶ୍ୱଶୁର ଜୁଆଇଁ ଆସିବେ ।''

''ନା, ନା, ବଡୁକୁ ପଠାଇବୁ ନାହିଁ, ବିରଷା ଆସିଲେ ହେଲା ।''

ଉଭୟେ ପ୍ରସ୍ଥାନ କଲେ ।

ରାତି ପାହିଲା । ସୂର୍ଯ୍ୟୋଦୟ ନ ହେଉଣୁ ଜିଲିଙ୍ଗି ଦୁଧ ଲୋଟାଏ ଧରି ଛାମୁଣ୍ଡିଆ ତଳେ ହାଜର । ଯୁବକଙ୍କର ନିଦ ଭାଙ୍ଗିଥିଲା ।

ଜିଲିଙ୍ଗି ଯୁବକଙ୍କୁ ଡାକି କହିଲା— ''ଦାଦା, ତୁ ଏତେବେଳଯାଏ ଉଠି ନାହୁଁ । ହାକାବାଲାଏ ଭାତ ଖାଇଲେଣି ।''

''ମୁଁ କେତେବେଳୁ ଉଠି ଦାନ୍ତ ଘଷିଲିଣି, ପାଣି ଗରମ ହେଉଛି, ଗାଧୋଇବି, ଜଳଖିଆ କରିବି । ଦୁଧ କିଏ ଦୁହିଁଲା ।''

''ମୋର ବର ।''

''ଜିଲିଙ୍ଗି, ଯା ତୋର ବରକୁ ବନ୍ଦାଇ କରି ଉଠାଇଦେବୁ ।''

''ଓହୋ, ପଜୁଆଟାକୁ କିଏ ବନ୍ଦାଏ । ତୋତେ ସିନା ବନ୍ଦାଇଲେ ହେବ— ତୁ ବାହାରିଲା ବେଳକୁ ହୁଳୁହୁଳି ଦେବି ଯେ । ଆମ ଘର ବାଟରେ ତ ଯିବ ।'' ହସି ହସି ଜିଲିଙ୍ଗି ଚାଲିଗଲା ।

କୋହ୍ଲତକ ଛାମୁଣ୍ଡିଆ ତଳେ ଜମା ହେଲେ । ଚାରି ପାଞ୍ଚ ଜଣ ପ୍ରକୃତି ଶିକାରୀ, ସେମାନଙ୍କ ହାତରେ ଧନୁଶର ଥିଲା । ବିରଷା ଦେଖିବାକୁ ଯେମନ୍ତ ହୃଷ୍ଟପୁଷ୍ଟ ଓ ମଜଭୁତ୍, ତା'ର ଧନୁକାଣ୍ଡ ମଧ ତଦ୍ରୂପ । ଧୋତିଖଣ୍ଡ ଲେଙ୍ଗୁଟି ପରି ଅଣ୍ଟାରେ ଭିଡ଼ି ପିନ୍ଧିଛି । ପଛ ପାଖରେ ଖଣ୍ଡିଏ ଟାଙ୍ଗି ଖୋସିଛି ।

ଅଣ୍ଟାଭାଗ ଛଡ଼ା ଶରୀରର ସମସ୍ତ ଅଂଶ ଅନାବୃତ । ଯୁବକ ବିରଷାର ଶରୀରର ଗଠନ ଦେଖି ଭାରି ଆନନ୍ଦ ଅନୁଭବ କଲେ । ତାର ବାହୁ ହାତ ଚିପି ଚିପି ମାଂସପେଶୀର ଗଠନ ଦେଖିଲେ । ପିଠି ଉପରେ ସ୍ନେହରେ ଚାପୁଡ଼ାଇଲେ । ଧନୁକାଣ୍ଡ ହାତରୁ ଛଡ଼ାଇ ଆଣିଲେ । ଧନୁରେ ଗୁଣ ବତାଇଲେ । ଧନୁର ଗୁଣ କମ୍ ନ ଥିଲା । କହିଲେ, ''ବିରଷା ତୋର ଉପଯୁକ୍ତ ଏ ଧୃଣ ।'' ଅନ୍ୟ ଯୁବକମାନଙ୍କୁ ଲକ୍ଷ୍ୟ କରି କହିଲେ, ''ତୁମମାନଙ୍କ ଧୃଣ ଏହା, ସମାନ ନୁହେଁରେ ପିଲେ ।'' ସେମାନେ ସ୍ୱୀକାର କଲେ । ଜଣକ ହାତରୁ ଗୋଟିଏ ଦୁଇଟା କାଣ୍ଡ ଛଡ଼ାଇ ଆଣି ଗୋଟାଏ ଛୋଟ ଶାଳଗଛ ଉପରକୁ ଲକ୍ଷ୍ୟଭେଦ କଲେ । ବାଜିଲା ନାହିଁ । କହିଲେ, ''ବିରଷା, ବାଲ୍ୟାବସ୍ଥାରେ ଅଳ୍ପ ଦିନ ଧୃଣ କାଣ୍ଡ ଧରୁଥିଲି । ଛାଡ଼ିଦେଲି। ଆଉ ବିନ୍ଧି ପାରିବି କିପରି ? ତୁ ମାର ତ ।'' ବିରଷା ସେହି ଶାଳଗଛ ଉପରକୁ ଲକ୍ଷ୍ୟ କରି ମାରିଲା । ଥରେ ନୁହେଁ, ଦୁଇ ଥର ନୁହେଁ, ତିନି ଥର, ପ୍ରତ୍ୟେକ ଥର ବାଜିଲା । ଶେଷ ଥର ବଟାଟି ଫାଟିଗଲା । ଯୁବକ ବିରଷାର ପିଠିରେ ହାତ ଦେଇ ବାହା ବା ଦେଲେ । ଲୁଦା ଦୂରରେ ଥାଇ ଦେଖୁଥିଲା । ତାକୁ ଡାକି କହିଲେ, ''ବଢୁ, ଦେଖିଲୁ ତୋ ଜୁଆଇଁର କରାମତି, ଭଲ କାଣ୍ଡ ମାରିପାରେ । ଆଜି କିପରି ଜନ୍ତୁ ଶିକାର କରିବ ଦେଖିବା । ଏହାକୁ ମୁଁ ସଙ୍ଗରେ ରଖିବି । ମୋ ଘାଟକୁ ଗୟଳ ଆସିଲେ ମୁଁ ବନ୍ଧୁକରେ ମାରିବି, ସମ୍ବର ବା ଅନ୍ୟ ଜନ୍ତୁ ଆସିଲେ ବିରଷା ମାରିବ ।''

ହାକାବାଲା ଥିଲେ ପ୍ରାୟ କୋଡ଼ିଏ ଜଣ । ଯେଉଁମାନେ ବଡ଼ଲୋକମାନଙ୍କ ସଙ୍ଗରେ ହାକା କରିଅଛନ୍ତି ବା ଦେଖିଅଛନ୍ତି କିମ୍ବା ରାଜାଙ୍କ ହାକା ବା ଉଚ୍ଚ ଗୋରା ହାକିମଙ୍କ ହାକା, ସେମାନେ ମନେ କରିପାରନ୍ତି ଯେ, କୋଡ଼ିଏ ଜଣରେ ପୁଣି ହାକା ? ଲାଟଙ୍କ ହାକାରେ ଚାରି ପାଞ୍ଚ ହଜାର ଲୋକ ସିପାହୀ ସନ୍ତ୍ରୀ, ଢୋଲ ନିଶାଣ ମହୁରୀ ବିଗୁଲା । ଯେତେ ଗୋଟ ହାକା ହେଲେ ମଧ୍ୟ ବାଦ୍ୟ ସହିତ ଶହେ ଦୁଇ ଶହ, ଲୋକରୁ କମ୍ ହେଲେ ଜନ୍ତୁ ଆସିବେ କିପରି ? ମାତ୍ର ପାର୍ବତୀୟ କୋହ୍ଲମାନେ କହନ୍ତି, ''ବେଶି ଲୋକରେ ମୂଷା ମରେ ନାହିଁ ।'' ଅନେକ ଲୋକରେ ବେଶି ଗୋଳମାଳ, ଜନ୍ତୁ ଏଣେତେଣେ ପଳାଇ ଯାଆନ୍ତି । ସେମାନେ ଅଳ୍ପ ଲୋକରେ ଗୁଳି କରିବାକୁ ପସନ୍ଦ କରନ୍ତି । ସେମାନଙ୍କୁ ଜନ୍ତୁଙ୍କ ଘାଟ ଜଣା, ବେଶି ହଲ୍ଲା ନ କରି ଜନ୍ତୁର ପିଛା ଧରନ୍ତି । ଜନ୍ତୁ ଠିକ୍ ଘାଟ ମୁଣ୍ଡକୁ ଯାଏ, ଘାଟବଲା ଅନାୟାସରେ ଶିକାର କରିପାରେ । ଲୁଦା କୋହ୍ଲ ପ୍ରାଚୀନ ଶିକାରୀ । ସେ ଠିକ୍ ଲକ୍ଷ୍ୟରେ ଲୋକ ସଂଗ୍ରହ କରିଥିଲା । ଏବଂ ବୃଦ୍ଧ ହେଲେ ମଧ୍ୟ ତାର ଉତ୍ସାହ ଯଥେଷ୍ଟ । ମଲାଯାଏ କୋହ୍ଲର ଶିକାର କରିବାରେ ଆଳସ୍ୟ ନ ଥାଏ ।

ସମସ୍ତେ ଚାଲିଲେ । ଜିଲିଙ୍ଗି ହୁଳହୁଳି ଦେବାରେ ତ୍ରୁଟି କଲା ନାହିଁ ।

ସମସ୍ତେ ହସି ହସି ଆନନ୍ଦ ମନରେ ଚାଲିଲେ । ଆନନ୍ଦିତ ହେବେ ନାହିଁ କାହିଁକି ? ପାର୍ବତୀୟ କୋହ୍ଲଜାତି ମାଂସପ୍ରିୟ । ସମ୍ବର ଗୟଳ ବଡ଼ ଜନ୍ତୁ । ଗୋଟାଏ ଜନ୍ତୁର ଅନେକ ମାଂସ । ଦୁଇ ଚାରିଟା ମରା ପଡ଼ିଲେ ତ ଅପର୍ଯ୍ୟାପ୍ତ ମାଂସ ମିଳିବ । ମିଳିବାର ଆଶା ଅଛି, ଏଣୁ ଭାରି ଖୁସି । ସ୍ତ୍ରୀମାନଙ୍କର ମଙ୍ଗଳ ହୁଳହୁଳି ସେ ଆନନ୍ଦର ଉଦ୍ଦୀପକ ।

ନିର୍ଦ୍ଦିଷ୍ଟ ପର୍ବତରେ ଶୀଘ୍ର ପହଞ୍ଚିଗଲେ । ଶିକାରୀମାନେ ଗୋଟାଏ ଗୋଟାଏ ଘାଟରେ ବସିଲେ । ଯୁବକ ଓ ବିରଷା ଏକ ଘାଟରେ ବସିଲେ। ଯୁବକ ଗୋଟାଏ ପଥର ଉପରେ ବସିଲେ। ସେ ପଥର ତଳେ ବସିଲା । ସର୍ତ୍ତ ହେଲା ଯେ, ଗୟଳ ଆସିଲେ ଯୁବକ ମାରିବେ । ସମ୍ବର ଆସିଲେ ବିରଷା ମାରିବ କଥା ସ୍ଥିର ହେଲା। ଉଭୟେ ତତ୍ପର ରହିଲେ । ହାକାବାଲା ଏ ଚାଲିବାକୁ ଗଲେ । କିଛିକ୍ଷଣ ଗତ ହେଲା, ବିରଷା ଧନୁରେ ଗୁଣ ଚଢ଼ାଇଲା ଏବଂ ଗୋଟାଏ ଚିଆଳ କାଣ୍ଡ ବାଛି ଦକ୍ଷିଣ ହାତରେ ଧରି ଦଣ୍ଡାୟମାନ ହେଲା । ଦୂରରେ ବହୁ ଦୂରରେ କି ଶବ୍ଦ ଶୁଣାଗଲା । ଯୁବକଙ୍କୁ ଶବ୍ଦ ଲକ୍ଷ୍ୟ କରିବାକୁ ଇସାରା ଦେଲା । ନିକଟରେ ଥିବା ଗୋଟାଏ ବଡ଼ ଶାଳ ମୂଳକୁ ଯାଇ ଦଣ୍ଡାୟମାନ ହେଲା । ସେ ସ୍ପଷ୍ଟ ବୁଝିପାରିଥିଲା ଯେ, ଶବ୍ଦଟା ସମ୍ବରର ପଦ ଶବ୍ଦ-ଗୟଳର ନୁହେଁ ବା ହିଂସ୍ର ପଶୁର ନୁହେଁ । ଯୁବକ ମଧ୍ୟ ଉଦ୍ୟତ ହୋଇ ରହିଥିଲେ । ଯୁବକ ବିରଷାର ତତ୍‌ପରତା ପ୍ରତି ଲକ୍ଷ୍ୟ ରଖିଥିଲେ । ଗୋଟାଏ ଶିଙ୍ଗାଳ ଦୃଷ୍ଟିପଥରେ ପଡ଼ିଲା । ବିରଷା ବୃକ୍ଷାନ୍ତରାଳରେ ଥାଇ ବାମପା ଉପରେ ଭାର ଦେଇ ଶରୀରର ଉପରିଭାଗକୁ ଆଗ ଆଡ଼କୁ ଦେଲା ଏବଂ ଧନୁଗୁଣ । ଆକର୍ଣ୍ଣ ଟାଣି ଶର ନିକ୍ଷେପ କଲା । ସମ୍ବର ଦୁଇକୁଦା ଦେଇ ଭୂମିରେ ପଡ଼ିଗଲା । ମୁହୂର୍ତ୍ତର କାର୍ଯ୍ୟ । ବିରଷା ଯଥାସ୍ଥାନରେ ସଳଖ ହୋଇ ଦଣ୍ଡାୟମାନ ହେଲା । ଯୁବକଙ୍କ ଆଡ଼କୁ ଉଲ୍ଲାସ ଦୃଷ୍ଟି ନାହିଁ କିମ୍ବା ଆନନ୍ଦ ମନରେ ପଶୁ ଆଡ଼କୁ ଗତି କଲା ନାହିଁ । ଦଣ୍ଡାୟମାନ ରହିଲା, ଯେପରି କି କୌଣସି ଘଟଣା ହେବ ନାହିଁ । ପୁଣି ଅନ୍ୟ ଜନ୍ତୁ ଆସିପାରେ, ଏହି ଆଶାରେ ରହିଲା । ଯୁବକ ପଥର ଉପରେ ଥାଇ ଯାବତୀୟ ବ୍ୟାପାର ଲକ୍ଷ୍ୟ କରୁଥିଲେ । ବିରଷାର କ୍ଷିପ୍ରଣ, ଶର ନିକ୍ଷେପ କରିବାରେ ଶାରୀରିକ ବଳ,

ଲକ୍ଷ୍ୟଭେଦ, ଧନୁଶରର କ୍ଷମତା । ପଶୁର ପ୍ରାଣତ୍ୟାଗ, ସର୍ବୋପରି ବିରଷାର ଅସ୍ପର୍ଦ୍ଧାର ଓ ଗର୍ବର ଅଭାବ ପୁଣି ସଂଯମ ଓ ଏକାଗ୍ରତା । ଯୁବକ ଆଦିମବାସୀର ଏତାଦୃଶ ଗୁଣର ପ୍ରଶଂସା କରୁ କରୁ ଭାବିଲେ । ଧନ୍ୟ ତାର ଶାରୀରିକ ଗଠନ, ଧନ୍ୟ ତାର ଶିକ୍ଷା । ଏତିକି କେବଳ ନୁହେଁ, ଭାବିଲେ ବନ୍ଧୁକ ବାରୁଦର ସୃଷ୍ଟି ପୂର୍ବରେ ପୃଥିବୀର ସମସ୍ତ ଜାତି ଏହି ଶସ୍ତ୍ରଦ୍ୱାରା ଆତ୍ମରକ୍ଷା କରୁଥିଲେ ଓ ଶତ୍ରୁ ଜୟ କରୁଥିଲେ । ଭାରତୀୟ ବୀରମାନଙ୍କର ପ୍ରାଶସ୍ତ୍ୟ ଏହି ଧନୁକାଣ୍ଡ ହେତୁରୁ । ଆଜି ବନ୍ଧୁକ ଶାରୀରିକ ବଳ, ପୌରୁଷ ନାଶ କରଅଛି । ଧନୁକାଣ୍ଡ ନିଜ ଦେଶର ପଦାର୍ଥ, ବନ୍ଧୁକ ଓ ତହିଁର ସରଞ୍ଜାମ ପର ଦେଶର । ଆମେ ପର ଧନ ଗ୍ରହଣ କରି କେବଳ ପଶୁ ପ୍ରାଣ ନଷ୍ଟ କରୁଅଛୁଁ । ''ପର ଧନରେ ଲହର ପହର, ଛଡ଼ାଇ ନେଲେ ଲାଜେ ମର ।''

ଆଉ ଜନ୍ତୁ ଆସିବାର ସମ୍ଭାବନା ନ ଦେଖି ଯୁବକ ପଥରରୁ ଓହ୍ଲାଇ ସନ୍ତର୍ପଣରେ ବିରଷା ଆଡ଼କୁ ଗଲେ । ତା'ର ସ୍କନ୍ଧରେ ତାଙ୍କ ଦୁଇ ହାତ ରଖି ଜୋରରେ ହଲାଇ ଦେଇ କହିଲେ, ''ବାହାଦୁର ଭାଇ ବିରଷା, ତୋର ଧନୁଶର ତୁଳନାରେ ମୋର ବନ୍ଧୁକ କିଛି ନୁହେଁ । ତୋତେ ଧନ୍ୟବାଦ ।'' ବିରଷା ନତମସ୍ତକରେ ଟିକିଏ ସ୍ମିତ ହାସ କଲା ସିନା, ଯୁବକଙ୍କୁ ଆପ୍ୟାୟିତ କରିବା ନିମନ୍ତେ ପଦେ ଅଧେ କିଛି କହିଲା ନାହିଁ । ବିରଷା ଅସଭ୍ୟ । ସଭ୍ୟତାର ପ୍ରଶଂସାବାଦ, ରୀତିରକ୍ଷା, ବାକ୍ୟରେ ଆଦାନ ପ୍ରଦାନର ମୂଲ୍ୟ ତାକୁ ଜଣା ନାହିଁ ।

ଉଭୟେ ଯାଇ ସମ୍ବରକୁ ଦେଖିଲେ, କାଣ୍ଡଟି ଠିକ୍ ବକ୍ଷସ୍ଥଳରେ ଭେଦ କରିଥିଲା ଏବଂ ଆର ପାଖ ଚମଡ଼ାରେ ମୁନାଇଥିଲା । ଯୁବକ ଦେଖିଲେ, ଘା' ବଡ଼ ସାଙ୍ଘାତିକ, ପଶୁର ପ୍ରାଣ ଯିବାର କଥା । ହାକାବାଲାଏ ଉପସ୍ଥିତ ହେଲେ । ବିଚାର ପଡ଼ିଲା ଯେ, ସମ୍ବରକୁ ଘରକୁ ପଠାଇ ଦିଆଯିବ । ବା ଫେରିଲା ଉଭାରୁ ନେବାକୁ ହେବ । ନାନା ଲୋକେ ନାନା କଥା ପ୍ରସ୍ତାବ କଲେ । ଲୁନ୍ଦା କହିଲା, ସମ୍ବର ସେହିଠାରେ ପଡ଼ିଥିବ, ଫେରିଲାବେଳେ ନେବାକୁ ହେବ । ଅଳ୍ପଲୋକ ମଧ୍ୟରୁ କେତେଜଣ ଗଲେ, ବଡ଼ ପର୍ବତ ଚଳାଯିବ କିପରି ? ବୃଦ୍ଧ, ତା କଥା ସମସ୍ତଙ୍କର ଗ୍ରାହ୍ୟ । ସମ୍ବରକୁ ଟିକିଏ ପଦାସ୍ଥାନକୁ ଆଣି ରଖିଦେଲେ ଏବଂ ଅନେକଗୁଡ଼ିଏ ଡାଳ ଆଣି ତାକୁ ଘୋଡ଼ାଇ ଦେଲେ । ଭଲକରି ଘୋଡ଼ାଇ ଦେଲେ । ପୁଣି ବଡ଼ ପର୍ବତ ଅଭିମୁଖରେ ସମସ୍ତେ ଆହ୍ଲାଦରେ ଚାଲିଲେ । ଶିକାରୀମାନେ ଗୋଟାଏ ଗୋଟାଏ ଘାଟ୍‌ରେ ବସିଲେ । ବିରଷା ଓ ଯୁବକ ଏକ ଘାଟରେ ପୂର୍ବପରି ବସିଲେ । ହାକା ଆରମ୍ଭ ହେଲା । ଯୁବକଙ୍କ ଘାଟକୁ ଗୋଟାଏ ସମ୍ବର ଆସିଲା, ତା ପଛେ ପଛେ ଆଉ ଗୋଟାଏ । ବିରଷ ପ୍ରଥମଟାକୁ ବିନ୍ଧିଲା । ଯୁବକ ଦ୍ୱିତୀୟଟାକୁ ଗୁଳି ମାଇଲେ । ଯୁ... ମାରିବାର କଥା । ଯେହେତୁ ବିରଷା ପ୍ରଥମକୁ ମାରିଲା ପରେ ଦ୍ୱିତୀୟକୁ ମାରିବାର ଅବସର ପାଇ ନ ଥିଲା । ସମ୍ବର ଦୁଇଟା ପଡ଼ିଲେ । ଆଉ ଜଣେ କୋହ୍ଲ ଯୁବକ, ଗୋଟାଏ ସମ୍ବର ଖଣ୍ଡିଆ କଲା । ଏଣୁ ସମସ୍ତେ ତାକୁ ଖୋଜିବାକୁ ଗଲେ । ପାଇବାକୁ ଟିକିଏ ବିଳମ୍ବ ହେଲା । ଦୂରରେ ମାରିଥିବା ବେଳେ ତା ଉପରେ ଯୁବକ ଗୁଳି ଚଳାଇଲେ, ସମ୍ବର ପଡ଼ିଗଲା । ବଡ଼ ପର୍ବତରେ ସମ୍ବର ତିନି ଗୋଟା ତିନିଟା ଶିଙ୍ଘାଳ ବଡ଼ ଏବଂ ଚର୍ବିଦାର ।

ନିକଟରେ ଗୋଟାଏ ଯୋଡ଼, ସେଠାରେ ଯୁବକ ବସିଲେ, ଅନ୍ୟମାନେ ଫେରି ତିନିଟା ସମ୍ବର ସେଠାକୁ ଆଣିଲେ । ମାର୍ଗଶିର ମାସ ସେତେବେଳେ ପ୍ରାୟ ଦିନ ଦୁଇଟା । ଭୋକରେ ସମସ୍ତେ ବ୍ୟସ୍ତ । ଯୁବକ ଲୁନ୍ଦାକୁ ଲକ୍ଷ୍ୟ କରି କହିଲେ, ''ବନ୍ଧୁ, ଏଠାରୁ ଡେରା କେତେ ଦୂର ? ବଡ଼ ଭୋକ ଲାଗୁଛି ।''

''ଦେଡ଼ କୋଶ ହେବ ।''

''ପାର୍ବତିଆ କୋଶ ତ ?''

''ତୁମର ନୂଆଁ ହିସାବ ପୁରୁଷା କାଳିଆ ବୁଢ଼ାକୁ ବି ଜଣା ?'' ''ଧର ଆମ ହିସାବରେ ଅଢ଼େଇ କୋଶ । ବନ୍ଧୁ; ପହଞ୍ଚିବା ବେଳକୁ ପର୍ବତ କାନ୍ଥକୁ ବେଳ ଯିବନି । ଏଠାରେ ମାଂସ ପୋଡ଼ି ଖାଇଲେ ହୁଅନ୍ତା ।''

''କୋହ୍ଲମାନେ ସେଟା ଖୋଜୁଥାଉଁ, ତୁ ସୁକୁମାର; ବଡ଼ ଲୋକ, ତୁ ଖାଇ ପାରିବୁ ତ ?''

''ହଁ ବନ୍ଧୁ, ଖାଇବି, ଆଜି କୋହ୍ଲଙ୍କ ସଙ୍ଗରେ ଜିଲିଙ୍ଗିର ଦ୍ୱିତୀୟ ବିବାହ ଭୋଜି ଖାଇବି, ବନ୍ଦୋବସ୍ତ କର ।''

ଲୁନ୍ଦାର ଆଦେଶରେ କେତେଜଣା ଶୁଷ୍କ କାଠ ସଂଗ୍ରହ କରିବାରେ ଲାଗିଗଲେ, କେତେଜଣ ଓ ନିଜେ ଲୁନ୍ଦା ମାଂସ ତୟାର କରିବାକୁ ବସିଲେ । କାଷ୍ଠର ଅଭାବ କ'ଣ ? ଦୁଇ ଗଦା କାଷ୍ଠରେ ଅଗ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲା । ଗୋଟିଏ ସମସ୍ତ କୋହ୍ଲଙ୍କ ନିମନ୍ତେ ଗୋଟିଏ ଯୁବକଙ୍କ ନିମନ୍ତେ । ଯୁବକଙ୍କ ନିମନ୍ତେ, ତିନି ପ୍ରକାର ଉପାଦେୟ ପାଗ ପ୍ରସ୍ତୁତ ହେବାର ଯୋଗାଡ଼ କରାଗଲା । ଜୋଡ଼ ବାଲିରେ ଗୋଟାଏ ଗର୍ତ୍ତ କରାଗଲା, ସେଠାରେ ପ୍ରକାଣ୍ଡ ଅଗ୍ନି ଜଳାଗଲା, ସେଥିରେ

ଛୋଟ ଛୋଟ ପଥର ମଧ୍ୟ କିଛି ଦିଆଗଲା । ନିଆଁ ଜଳୁ-ଜଳୁ ଲୁନ୍ଦା ଗୋଟାଏ ତାତ୍ପର୍ଯ୍ୟ ଶିଆରି ପତ୍ରର ପୁଡ଼ା ତୟାର କଲା; ସେଥିରେ ଗୋଟାକେତେ ବନହଳଦୀପତ୍ର ଦିଆଗଲା । ତହିଁରେ କୋମଳ ମାଂସ କିଛି ରଖାଯାଇ ପୁଡ଼ାଟିକୁ ଅତି ଯତ୍ନରେ ବନ୍ଧାଗଲା । ଉତପ୍ତ ଗର୍ତ୍ତ ମଧ୍ୟରେ ସେହି ପୁଡ଼ାକୁ ଦିଆଯାଇ ତହିଁ ଉପରେ ଉତପ୍ତ ବାଲି ଦିଆଗଲା, ତହିଁ ଉପରେ ଅଙ୍ଗାର ରଖାଗଲା । ଗୋଟାଏ ବାଉଁଶ ନଳରେ କେତେକ ମାଂସ ଭରାଗଲା ବାଉଁଶ ନଳ ଉପରେ ମାଟି ଲିପାଯାଇ ତାକୁ ମଧ୍ୟ ଅଙ୍ଗାର ଉପରେ ଦିଆଯାଇ ଘୋଡ଼ାଇ ଦିଆଗଲା । ଏହାଛଡ଼ା ଯୁବକ ଗୋଟାଏ ବିନା ମସଲାର ଶଳାକା କବାବ ତୟାର କଲେ । କୋହ୍ଲମାନେ ଅନେକ ସ୍ଥାନରେ ନିଆଁ ଜାଳି ନାନା ଉପାୟରେ ମାଂସ ପୋଡ଼ିବାକୁ ଲାଗିଲେ । ବେଶି ବିଳମ୍ବ ହେଲା ନାହିଁ । ଆନୁମାନିକ ଏକ ଘଣ୍ଟା ମଧ୍ୟରେ ମାଂସ ତୟାର ହେଲା ।

''ବଡୁ, ଏ ଭୋଜିରେ ଜିଲିଙ୍ଗି ନାହିଁ । ତାକୁ ଥୋଡ଼େ ପୁଡ଼ା ମାଂସ ନେଇ ଦେଲେ ହୁଅନ୍ତା । ମୋର ତୟାର ମାଂସ ସେ ଖାଇବ ?''

''ଖାଇବ ନାହିଁ କାହିଁକି ? ଭାତ ସିନା ଖାଇବ ନାହିଁ, ମାଂସ କି ପିଠା ଖାଇବାରେ ତ ଦୋଷ ନାହିଁ ।''

ଲୁନ୍ଦାର ବାକ୍ୟ ଏଠାରେ କୋହ୍ଲଙ୍କର ମାନବ ଧର୍ମଶାସ୍ତ୍ର । ଯୁବକ ଆପଣା ନିମନ୍ତେ ପ୍ରତ୍ୟେକ ପାଖରୁ ଉପଯୁକ୍ତ ପରିମାଣ ରଖି ବାକିତକ ସେହି ପୁଡ଼ାରେ ନଳରେ ଦେଲେ ।

''ଅଳ୍ପ ମାଂସରୁ ତାକୁ ଏତେ ଦେଲେ ତୁ ଖାଇବୁ କ'ଣ ?''

''ମୋ ନିମନ୍ତେ ମୁଁ ଯଥେଷ୍ଟ ରଖିଛି ।''

ସମସ୍ତେ ବସି ଭୋଜନ କଲେ । ଏ ପ୍ରକାର ମାଂସ ଯେ ଅରୁଚିକର, ତାହା ନୁହେଁ । ତାହାଛଡ଼ା ଭୋକ ଥିଲେ ସବୁ ସ୍ୱାଦୁ ଲାଗେ । ଅନ୍ୟ ପଦାର୍ଥ ବିନା ଲୁଣରେ ଖାଇ ହୁଏ ନାହିଁ, ମାତ୍ର ମାଂସରେ ଲୁଣ ବେଶି ଦରକାର ହୁଏ ନାହିଁ । ମାଂସ ପୋଡ଼ିଲେ ଏବଂ ଭୋକବେଳେ ଖାଇଲେ । ଯୁବକଙ୍କର ଏପରି ଅଭ୍ୟାସ ଥିଲା, ଏହା ନୂତନ ନୁହେଁ । ମାଂସ ସଙ୍ଗେ ଦୁଇ ଚାରି ରକମ ବନ୍ୟ ଆଳୁ ଯେ ପୋଡ଼ାଯାଇ ନ ଥିଲା ତାହା ନୁହେଁ। ସଇଗା ଓ ଖଣିଆଳୁ କୌଣସି ଅଂଶରେ ବିଲାତିଆଳୁ ଅପେକ୍ଷା ମନ୍ଦ ନୁହନ୍ତି ।

ସମସ୍ତେ ଭୋଜନ ଶେଷ କରି ଜୋଡ଼ର ନିର୍ମଳ ଜଳ ପେଟେ ପେଟେ ପିଇ ସମ୍ବରମାଂସ ଧରି ଗ୍ରାମଆଡ଼କୁ ଚାଲିଲେ । ଡେରାରେ ପହଞ୍ଚିଲାବେଳେ ସୂର୍ଯ୍ୟାସ୍ତ ।

ସନ୍ଧ୍ୟାଉତ୍ତାରେ ଛାମୁଣ୍ଡିଆ ତଳେ ପୁଣି ସଭା ବସିଲା, କେତେଜଣ ବୁଢ଼ା, ପିଲା ଆସି ବସିଲେ । ସେଦିନର ଶିକାର କଥା ମାଂସଖିଆ କଥା ପଡ଼ିଲା । ଲୁନ୍ଦା ମନ ଖେଦରେ କହିଲା, ''ବାବା, ମୋର ବୟସ କେତେ ଜଣା ନାହିଁ, ତେବେ ମୋ ସାଙ୍ଗର ଲୋକ ଆଉ କେହି ନାହାନ୍ତି । ମୋ ଭାଗ୍ୟରେ ଥିଲା ଯେ, ଆଜି ତୋ ସଙ୍ଗରେ ଭୋଜି ଖାଇଲି । ଏ ଭାଗ୍ୟ କି କୋହ୍ଲମାନଙ୍କର ଆଉ ଘଟିବ ? ତୁମର ବୁଢ଼ା ବୁଢ଼ାମାନେ ଆମ୍ଭମାନଙ୍କୁ ଯେଉଁ ଦୟା କରୁଥିଲେ ଓ ଭାବ ରଖୁଥିଲେ, ତୋର ପୁଅମାନେ କି ଜିଲିଙ୍ଗିର ପୁଅ ସଙ୍ଗରେ ସେ ଭାବ ରଖିବେ ? କେବେ ନୁହେଁ । ଦିନକୁ ଦିନ ରୀତି ବଦଳୁଛି । କେଜାଣି ତୁ ଥିବାଯାଏ ଜିଲିଙ୍ଗିକୁ ଦୟା କରୁଥିବ । ମୁଁ ଆଜି ଅଛି, କାଲି ନାହିଁ । ଆଜିଠାରୁ ମୋର ବଡ଼ଲୋକର ସ୍ନେହ ସରିଲା ।''

''ବଡୁ, ତୋର ଖୁବ୍ ବଳ ଅଛି, ଆଉ ବର୍ଷ କେତେ ବଞ୍ଚିବୁ ।'' ମୁଁ ବଞ୍ଚିବା କଥା ପଡ଼ି ନାହିଁରେ ବାବୁ, ତୁମ୍ଭମାନଙ୍କର ଦୟା, ସ୍ନେହ, ଭାବ ଦିନକୁଦିନ କମୁଛି, ଆମେ ଜାଣୁ । ଲୁନ୍ଦାର ସେ ସମ୍ମାନ ଆଉ ରହିବ କି ? ମଲେ ଭଲ ।

''ମୋର କେଉଁ ପୁରୁଖା ଲୋକେ ଏଠାକୁ ଆସି ଏହି ସ୍ଥାନରେ ଗଛ କାଟି ବାସ ବନାଇଥିଲେ, ମୋତେ ଜଣା ନାହିଁ । ଅନେକ ବର୍ଷରୁ ଏହି ଗ୍ରାମରେ ଅଛୁଁ । ମାଟି ଚାଷି ପଡ଼ିଛୁ । କଷ୍ଟ ପଡ଼ିବାରୁ ତା'ର ଘର ହୋଇ ଅନ୍ୟ ସ୍ଥାନକୁ ଉଠିଗଲେଣି । ପିତୃ ଅର୍ଜିତ ମାଟି ମୁଁ ଛାଡ଼ି ନାହିଁ । ବାପ ଅଜା ମଲେ ଏଠାରେ । ମୁଁ ମରିବି ଏଠାରେ । ତୁମ ପୂର୍ବପୁରୁଷ ସହିତ ମୋର ପୂର୍ବପୁରୁଷ ସଦ୍ଭାବ ଥିଲା । ଏକା ଭାଇ ଦାଦା ପରି ସେମାନେ କାଳ କଟାଇଥିଲେ । ତୁ ତାଙ୍କର ବାଟରେ ଚାଲି ମୋତେ ବଡୁ ବୋଲି ଡାକିଲୁ । ତୋର ପୁଅ ହେଲେ ଜିଲିଙ୍ଗିକୁ ଅଜା ବୋଲି ସମ୍ମାନ କରିବେ କି ? ନାହିଁ । ଏଣିକି ଛୋଟ ବଡ଼ର ବହୁତ ପ୍ରଭେଦ ଦେଖାଯାଉଛିକ । ତା'ଛଡ଼ା ଆମ ଜାତିର ଅବସ୍ଥା ବଡ଼ ମନ୍ଦ ହେଉଛି । ବଣ ଜନ୍ତୁମାନଙ୍କର ଜଙ୍ଗଲରେ ଯେଉଁପରି ଅଧିକାର, ଆମର ମଧ୍ୟ ସେହିପରି ଅଧିକାର ଥିବାର ଭାବିଥିଲୁଁ । ବାଘ ଜନ୍ତୁ ଧରି ପେଟ ପୋଷେ, ଆମେ ମଧ୍ୟ ଜନ୍ତୁ ମାରି ପେଟ ପୋଷୁଥିଲୁଁ । ଆମଠାରୁ ସେ ଅଧିକାର ଧୀରେ ଧୀରେ ଯାଉଛି । ଜନ୍ତୁମାରି ଖାଉଥିଲୁଁ ଓ ବିକୁଥିଲୁଁ, ଦୁଇପଇସା ରୋଜଗାର କରୁଥିଲୁଁ । ଆମର ପ୍ରଧାନ ଜୀଉଣିପନ୍ଥା ବନ୍ଦ ହେଲା । ତାହି କାଟି ବିରିଙ୍ଗା ମାରି ଫସଲ କମାଉଥିଲୁଁ, ତାହା ବନ୍ଦ ହେଲା । ବାକି ଚାଷ-ଚାଷ ବଡ଼ ବ୍ୟୟସାଧ୍ୟ । ହଳ ବିହନ ଯୋଗାଡ଼ କରିବା ବଡ଼ କଷ୍ଟ ।

ଲୋକେ ଦେବେ କାହିଁକି ? କ'ଣ ଦେଖି ଦେବେ ? କେବେ କେବେ କେହି ଋଣ ଆଣି ପରିଶୋଧ ନ କରି ଅନ୍ୟ ସ୍ଥାନକୁ ପଳାଇ ଯାଆନ୍ତି । ଏଣୁ କୋହ୍ଲ ଉପରେ ଲୋକଙ୍କର ବିଶ୍ୱାସ ନାହିଁ, ଋଣ ଦେଉଛି କିଏ ? ପୂର୍ବେ ଆମେ ଯାହା ଉପାର୍ଜନ କରୁଥିଲୁଁ; ସେଥିରୁ କିଛି ରାଜାମାନଙ୍କୁ ଦେଉଥିଲୁଁ, ତାହା ଆମର କର ମାଲଗୁଜାରି ହୋଇଥିଲା । ରୀତିମତ ମାଲଗୁଜାରି ଦେବାକୁ ବଳ ନାହିଁ, ଏଣୁ ଧୀରେ ଧୀରେ ଜମି ଉଠିଯିବ । ଜଙ୍ଗଲ କାଟି ପୂର୍ବପୁରୁଷମାନେ ଜମି ବନାଇଥିଲେ ବୋଲି ପୁଅ ତାହା ରକ୍ଷା କରିବାକୁ ଯୋଗ୍ୟ ବୋଲି ବିଚାର ହେଉ ନାହିଁ । ମାଲଗୁଜାରି ନ ହେଲେ ଜପ୍ତି ଓ ନିଲାମ । ଭଲ ଜାତିମାନେ ନିଲାମରେ ଗ୍ରାମ ଧରିବାକୁ ଟାକି ରହିଥାନ୍ତି । ଟଙ୍କାର ଲୋଭ ସମସ୍ତଙ୍କୁ ଧରିରଖିଛି । ରଜାମାନେ ଛାଡ଼ିବେ କାହିଁକି ? ହାତରୁ ଆମ୍ଭମାନଙ୍କ ପୂର୍ବ ପୁରୁଷମାନଙ୍କ ତିଆର ଗ୍ରାମଟିମାନ ଚାଲିଯାଉଛି । ଏ ଜାତିର ଚୋରି ଡକାଇତି ବା ଜଙ୍ଗଲରେ ଲୁଚି ଶିକାର କରିବା ଭିନ୍ନ ଉପାୟ ନାହିଁ । ଦଣ୍ଡ ତ ଅଛି । ଜଣେ ଦୁଇଜଣ ଚୋରି ଡକାୟତିରେ ଧରାପଡ଼ିଲେ ସମସ୍ତ କୋହ୍ଲ ଜାତିର ନିନ୍ଦା, କେବଳ ତାହା ନୁହେଁ, ନିର୍ଦ୍ଦୋଷ ଉପରେ ମଧ୍ୟ ଅତ୍ୟାଚାର । ବାବା, ଆମ ଜାତିର ସରଳତା ଓ ସତ୍ୟବାଦିତାର ମୂଲ୍ୟ ଏଣିକି କିଛି ନାହିଁ । ଆମେମାନେ ଆଦିମବାସୀ, ଆମର ବିଶ୍ୱାସ ଯେ, ପ୍ରଥମେ ଏ ଦେଶମାନଙ୍କୁ ଆମେମାନେ ଆସି ଆପଣା ପ୍ରାଣ ବିନିମୟରେ ଜଙ୍ଗଲ କାଟି ଗ୍ରାମ ବସାଇଥିଲୁଁ । ଆମମାନଙ୍କୁ ରକ୍ଷା କରିବା କି ରାଜାର କର୍ତ୍ତବ୍ୟ ନୁହେଁ । ପୂର୍ବକାଳର ରୀତି ସବୁ ଓଲଟିଗଲା । ଏଣିକି ସବୁଠାରେ ପଇସା ହେଲାଣି ମୂଳ । ଏହା ମୋର ମାଟି, ଏହା ମୋର ଗ୍ରାମ ବୋଲି ମନ କହୁଛି । ଏଥିରେ ମୋର ବି ମମତା ଓ ସ୍ନେହ ଅଛି, ତାହା କିଏ ବୁଝିବ ? ଏହାକୁ ଛଡ଼ାଇ ନେଲେ ମନରେ କି ଦୁଃଖ ହେବ, କିଏ ବୁଝିବ ? ବାବା, ବାପ ଅଜାର ମାଟି ମୁଁ ରଖିଛି, ଛାଡ଼ି ନାହିଁ । ତୋର ଦୟା ଥାଉ, ମଲାଯାଏ ମୋଠାରୁ ଏ ମାଟି ଯିବ ନାହିଁ ।

''ବାବା, ଅମଲାମାନେ, ଭଲ ଲୋକମାନେ ଅନେକ ଉପଦେଶ ଦିଅନ୍ତି, ମାତ୍ର ସାହାଯ୍ୟ ତ କେହି ଦିଅନ୍ତି ନାହିଁ । ଆମ ଜାତିଟା କିପରି ରହି ଆସିବେ, ତା'ର ଉପାୟ ତ କେହି କରନ୍ତି ନାହିଁ । ଶୁଖିଲା ଶିକ୍ଷା ଦେଲେ ସେଥିରେ ଲାଭ କ'ଣ ? ମୁଁ ଜାଣୁଛି, ଆମ ଜାତିର ନାଶ ଘଟିବ । ଘଟୁ । ଚୋର ଡକାଇତ ହୋଇ ବଞ୍ଚିବା ଅପେକ୍ଷା ମଲେ କ୍ଷତି କ'ଣ ?

''ବାବା, ତୁ ଆମ ଜାତି ଲୋକଟିଏ ଦେଖିଲେ ମଦ ଖାଉ କି ନା ବୋଲି ପଚାରୁ । ମଦ ଖାଇବେ ନାହିଁ ବୋଲି ଉପଦେଶ ଦେଉ । ଆମ ପୂର୍ବପୁରୁଷର ଲୋକମାନେ ଅରଖି ମଦ ପିଉଥିଲେ କି ନା ସନ୍ଦେହ । ଏ ଦେଶମାନଙ୍କରେ କିଏ ମଦ ଗାଳୁଥିଲା ? ହାଣ୍ଡିଆ ପିଉଥିଲେ ସତ । ତାହା ମଧ୍ୟ ସବୁଦିନେ ନୁହେଁ । ଜାତିକାମ ପଡ଼ିଲେ ପିଅନ୍ତି । ସେଇଟା ଗୋଟାଏ ଖାଦ୍ୟ ପରି । ଅନେକଗୁଡ଼ାଏ ନ ପିଇଲେ ନିଶା ହୁଏ ନାହିଁ । ଏବେ ତ ମଦଦୋକାନ କେତେ ଯେ, ତା'ର ହିସାବ ନାହିଁ । ଆମ ଜାତି ତ ମଦୁଆ ଜାତି, ତାଙ୍କ ଆଗରେ ମଦ ରଖିଦେଇ ସେମାନେ ପିଇବେ ନାହିଁ କି ? ଗାଈ ବଳଦ ଆଗରେ କୁଣ୍ଡାଗୁଡ଼ିଏ ରଖିଦେଇ ବଳଦକୁ ଖାଇବ ନାହିଁ, ଖାଇବ ନାହିଁ ବୋଲି ଉପଦେଶ ଦେଲେ ସେମାନେ ଟକ ଛାଡ଼ିବେ ? ମୁଁ ତ ବିଚାର କରେଁ, ଯେ ମଦଦୋକାନ ବସାଇଲା ସେ ଦୋଷୀ । ମଦ ପିଇବା ଲୋକର ଦୋଷ କ'ଣ ? ଲୋଭ ଛାଡ଼ିବାକୁ କେତେ ଲୋକଙ୍କର ବଳ ଅଛି, ବାବା, କହ ତ ?

''ପାଠ ପଢ଼ ବୋଲି କହିବ । ଛୁଆ ପିଲାଏ ତ ପାଠ ପଢ଼ିଯିବେ । ତାଙ୍କୁ ଖାଇବାକୁ ଦେବ କିଏ ? ଖାଇବାକୁ ଦାନା ନାହିଁ, ପାଠ ପଢ଼ିବେ କିପରି ? ମଦଦୋକାନ ଉଠାଇ ଦିଅ, ମଦ ପିଇବାକୁ ମନା କର । ଖାଇବାର ବନ୍ଦୋବସ୍ତ କର, ପାଠ ପଢ଼ାଅ । ଯାବତୀୟ ଜାତିମାନଙ୍କର ଉଠିବାକୁ ଉପାୟ ନାହିଁ, ତାଙ୍କ ଉପରେ କାହାରି ସହାନୁଭୂତି ନାହିଁ । ସେମାନେ ବଞ୍ଚି ପାରିବେ ନାହିଁ । ଏହା ନିଶ୍ଚିତ କଥା । ମୁଁ ବୁଢ଼ାଲୋକ, ଅନୁଭବ ଦ୍ୱାରା ଜାଣିଛି ।

''ତୁ ମୋର ପୁଅ ପରି, ଏଣୁ ମନ ଫିଟାଇ ସବୁ କହିଲି, ମନରେ ଦୁଃଖ କରିବୁ ନାହିଁ ? ବେଶି ରାତି ହେଲାଣି । ଯା ଖାଇ ପିଇ ଶୋଇବୁ । ଆମେ ଯାଉଛୁ ।''

ସମସ୍ତେ ପ୍ରସ୍ଥାନ କଲେ । ଅନ୍ତରା ଶାଳରୁ ଲୁନ୍ଦା କୋହ୍ଲ ଗଲା । ମାତ୍ର କଥାତକ ଯୁବକଙ୍କ ମନରୁ ଗଲା ନାହିଁ । ଭୋଜନ କଲେ । ଭୋଜନରେ ତୃପ୍ତି ନାହିଁ । ଶୋଇଲେ, ନିଦ ପଡ଼ିଲା ନାହିଁ । ଲୁନ୍ଦାର କଥା, ଲୁନ୍ଦାର କଥା । ଝିଅ ଡାକି ଆଣିଲା ଭୋଜି ଖାଇବାକୁ, ଆଜି ବାପ ଯେ ଅମୂଲ୍ୟ ଭୋଜି ଦେଲା, ତାହା ଜୀବନରେ ଭୁଲି ହେବ ନାହିଁ । ଏ ଭୋଜନରେ ତୃପ୍ତି ଅଛି, ଅଜୀର୍ଣ୍ଣ ନାହିଁ । ପୁନଃ ପୁନଃ ଖାଇବାକୁ ଇଚ୍ଛା, ମାତ୍ର ମିଳିବ କାହୁଁ ? ଯୁବକ ଭାବିଲେ, ''ମୁଁ ଭଦ୍ର ସନ୍ତାନ, ସଭ୍ୟ, ଲୁନ୍ଦା କୋହ୍ଲ ଆଦିବାସୀ ଅସଭ୍ୟ । ଆମେମାନେ ଶିକ୍ଷାର ଗର୍ବରେ ଗର୍ବିତ, ମହାଗର୍ବିତ । ନିଜକୁ ଜ୍ଞାନୀ, ବିବେଚକ ବୋଲି କେତେ ଆସ୍ପର୍ଦ୍ଧା କରୁଁ, କିନ୍ତୁ ଦେଖିବାକୁ ଗଲେ ଲୁନ୍ଦା ଯେ ମାନବତତ୍ତ୍ୱ, ମାନବ ଇତିହାସକୁ ଆପେ

ଆପେ ଆୟତ୍ତ କରିଅଛି ଏବଂ ନିଜ ଜାତିର ଭବିଷ୍ୟତ ସମ୍ବନ୍ଧରେ ଯାହା ଆଲୋଚ୍‌ନା କରିଅଛି, ତାହା କେତେଜଣ ଆଧୁନିକ ରାଜନୈତିକ ଆଲୋଚ୍‌ନା କରୁଅଛନ୍ତି ଏବଂ ଜାତିର ଉପକାର ନିମନ୍ତେ ଉପାୟ ଉଦ୍ଭାବନ କରୁଅଛନ୍ତି । ତାହା ମୋର ବୁଦ୍ଧିର ଅଗୋଚ୍‌ର । ଆମ୍ଭେମାନେ ଯେଉଁ ଉପଦେଶ ଦେଉଁ-ଯେଉଁ ଉପଦେଶ ଆମ୍ଭେମାନେ ଆମ ଗୁରୁଙ୍କଠାରୁ ଶିକ୍ଷା କରିଅଛୁଁ, ତାହା ଯେ କାର୍ଯ୍ୟକାରୀ ନୁହେଁ, ତାହା ଲୁନ୍ଦା ପ୍ରମାଣ କରାଇଦେଲା । ଆମ ଉପଦେଶର ମୂଳଦୁଆ ଠିକ୍ ନ ଥିବାରୁ ଲୁନ୍ଦା ଦୁଇ କଥାରେ ତାହା ଚୂର୍ଣ୍ଣବିଚୂର୍ଣ୍ଣ କରିଦେଲା । କାହାର ଉପଦେଶରେ ଆମ ପୂର୍ବ ପୁରୁଷସ୍ଥାପିତ ଆଦିମ ଓ ଆର୍ଯ୍ୟଜାତିର ସମ୍ବନ୍ଧକୁ ଛିନ୍ନ କରିବାକୁ ବସିଲୁଁ । କିଏ କହି ପାରିବ କି ? କେବଳ ଉପଦେଶ ଏ ଜାତିର ଉଠାଇପାରିବ କି ? ନା । ଆର୍ଯ୍ୟ ଅନାର୍ଯ୍ୟ ମଧ୍ୟରେ ଘୋର ଶତ୍ରୁତା । କଳା ଗୋରା ମଧ୍ୟରେ ଶତ୍ରୁତା । କଳାର ଉତ୍‌ଥାନ ହେବାର ସମ୍ଭାବନା କମ୍ । ଆଦିମ ଜାତିର ପତନ ଅବଶ୍ୟମ୍ଭାବୀ । ଲୁନ୍ଦା ଠିକ୍ କହିଲା । ଏ ଜାତିର ନାଶ ଘଟିବ । ପର୍ବତିଆ ମୁଣ୍ଡା ଥାଇ ସେମାନେ ମୁଖଟେକି ପାରିବେ ନାହିଁ । କେତେ ଜାତି ଗଲେଣି, ଏ ଜାତି ମଧ୍ୟ ଯିବେ ଯାଆନ୍ତୁ ।

ପୂର୍ବରେ କ'ଣ ଅନଟନ ନ ଥିଲା ? ଏବେ ସମସ୍ତଙ୍କର ଅନଟନ ହେଲା । ସଭ୍ୟତାର ନାମାନ୍ତର କି ଅନଟନ ? ସଭ୍ୟତାର ଅନ୍ୟ ନାମ ଅଭାବ । ଅଭାବ ପରା ଉଦ୍ଭାବନୀ ଶକ୍ତିର ଜନକ ? ହୋଇପାରେ । ଏ ଦେଶର ସଭ୍ୟମାନଙ୍କର ଅଭାବ ପୂରଣ ହୁଏ-ଗରିବଙ୍କର କପାଳ ପୋଡ଼ା ଧନୁର, ମା' ମାଟିର ଦାନରୁ । ସଭ୍ୟଙ୍କର ଅଭାବ ବୁଝି ମାଟିର ଉର୍ବରତା ତ ବୃଦ୍ଧି ପାଉ ନାହୁଁ । ଗରିବଙ୍କ ଉପରେ ସୁତରାଂ ଚାପ ପଡୁଅଛି । ସେମାନଙ୍କର ଉଠିବାର କ୍ଷମତା ନାହିଁ । ମଦ୍ୟ ସମ୍ବନ୍ଧରେ ଲୁନ୍ଦା ଯାହା କହିଲା, ତାହା ମିଛ କି ? ଯେଉଁମାନେ ସଂଯମ ଶିକ୍ଷା କରି ନାହାନ୍ତି, ତାଙ୍କ ନିକଟରେ ମଦଦୋକାନ ଖୋଲିଲେ ସେମାନେ ତାହା ପାନ ନ କରିବେ କାହିଁକି ? ପରର ଆର୍ଥିକ କ୍ଷତିରେ ଓ ନୈତିକ ଚରିତ୍ର ହାନିରେ ଜଣଙ୍କର ଲାଭ ଦୋଷାବହ ନୁହେଁ କି ? ଏତାଦୃଶ ଲାଭର ନାମ ସଭ୍ୟତାର ଅଭାବ ପୂରଣ କି ?''

ଏହା ଭାବୁ ଭାବୁ ଯୁବକ ଶୋଇପଡ଼ିଲେ, କେତେଜଣ ଶୋଇଲେ କେଜାଣି । ଜିଲିଙ୍ଗି ଆସି ଡାକିଲା, ''ଦାଦା, ଉଠିଲୁଣି କି ? ଯୁବକଙ୍କର ନିଦ୍ରାଭଙ୍ଗ ହେଲା । ନିତ୍ୟକ୍ରିୟା ସମାପନାନ୍ତେ ଘରକୁ ଫେରିବାର ବନ୍ଦୋବସ୍ତ କଲେ । ତାହା ଦେଖି ଜିଲିଙ୍ଗି କହିଲା, ''ଦାଦା. ଆଉ ଦିନେ ଦୁଇ ଦିନ ରହ ।''

''ଯଥେଷ୍ଟ ହେଲା ଜିଲିଙ୍ଗି, .ଥେଷ୍ଟ ହେଲା, ତୋର ବିବାହଭୋଜି ଖୁବ୍ ମିଳିଲା, ଖୁବ୍ ଖାଇଲି । ପ୍ରୟୋଜନ ଅଛି ଘରକୁ ଯିବି, ପୁଣି ତ କେତେଥର ଆସିବି । ତୁ ସୁଖରେ ଥା ଇଚ୍ଛା ହେଲେ ଡାକିବୁ ।''

''ଲୁନ୍ଦା ବିରଷା ଉପସ୍ଥିତ ହେଲେ । ଯୁବକ କହିଲେ, ''ବନ୍ଧୁ, ଯାଉଛି, ତୁ ଯିବାର ଦରକାର ନାହିଁ, ବିରଷା ମୋ ସଙ୍ଗରେ ଯାଉ ।''

ଜିଲିଙ୍ଗି ଓ ଲୁନ୍ଦା କିଛିଦୂର ଆସିଲେ ।

ଲୁନ୍ଦା କହିଲା, ''ବାବା, କାଲି ରାତିରେ ମୁଁ ତୋତେ କେତେ କଥା କହି ପକାଇଲି, ରାଗ କରିବୁ ନାହିଁ । ''ବନ୍ଧୁ, ରାଗ କରିବି ? ତୋର ଉପଦେଶ ଯେ ଅମୂଲ୍ୟ । ପ୍ରତ୍ୟେହ ଶୁଣିବାକୁ ପାଉଥିଲେ କୃତାର୍ଥ ମନେ କରୁଥାନ୍ତି ।''

ଜିଲିଙ୍ଗି ସରଳା ବାଳିକା, ସେ ଏ କଥା-ବାର୍ତ୍ତାର ମର୍ମ କ'ଣ ବୁଝିବ ? ହସି ହସି କହିଲା, ''ଦାଦା ତୁ ମୋର କଥା ରକ୍ଷା କରି ଭୋଜି ଖାଇବାକୁ ଆସିଲୁ, ତୋର ବଡ଼ ଦୟା । ଯା ଦାଦା ବାଟେ ବାଟେ, ମନେ ରଖିଥିବୁ ।''

ଏ ସ୍ନେହପୂର୍ଣ୍ଣ ବିଦାୟ ବାକ୍ୟ ଯୁବକଙ୍କର ଅମୂଲ୍ୟ ପାଥେୟ । ହସି ହସି ଯୁବକ ବିରଷା ସହିତ ପଛକୁ ଅନାଇ ଅନାଇ ପ୍ରସ୍ଥାନ କଲେ ।

•

## ମୁକ୍ତିର ଇସାରା

''ମା ଗୋ ଖାଇବାକୁ ଦିଅ, ଖାଇବାକୁ ଦିଅ ।'' ପିଞ୍ଜରା ମଧ୍ୟରେ ଥାଇ ସାରି ଡାକ ଦେଲା ।

ଜ୍ୟେଷ୍ଠ ମାସର ଅସହ୍ୟ ଉତ୍ତାପ । ଜୀବଜନ୍ତୁ କୀଟପତଙ୍ଗ ବୃକ୍ଷଲତା ସମସ୍ତେ ଗ୍ରୀଷ୍ମ ପୀଡ଼ାରେ ସନ୍ତପ୍ତ ଥିଲେ । ମାତ୍ର ପୂର୍ବଦିନ ଅପରାହ୍ଣରେ ଏକ ଅସରା ବୃଷ୍ଟି ହୋଇଥିବାରୁ ଆଜି ସମସ୍ତେ ତୃପ୍ତ ଶାନ୍ତ । ଇନ୍ଦ୍ର ଗୋଟାଏ ସୁବୃଷ୍ଟିଦ୍ୱାରା ଭୂପୃଷ୍ଠରେ ଐନ୍ଦ୍ରଜାଲିକର ଅଭିନୟ ଦେଖାଇଲେ । ବିଲ ପଡ଼ିଆ ପ୍ରାନ୍ତର ଶସ୍ୟାଚ୍ଛାଦିତ ହେଲା । ବୃକ୍ଷ ଲତା ଗୁଳ୍ମ ହରିଦାଚ୍ଛାଦନଦ୍ୱାରା ନେତ୍ରପ୍ରୀତିକର ହେବାକୁ ଲାଗିଲେ । ମନୁଷ୍ୟଗଣ ବ୍ୟାକୁଳତା ତ୍ୟାଗ କରି ସୁଖନିଦ୍ରାରେ ରାତ୍ର ଅତିବାହିତ କଲେ । ଆଜି ପ୍ରକୃତିର ଅଭିନବ ଦୃଶ୍ୟରେ

ସମସ୍ତେ ମୁଗ୍ଧ । ଶୀତଳ ଧୀର ସମୀରଦ୍ୱାରା ସମସ୍ତେ ପରିତୃପ୍ତ ।

ଗୃହକର୍ତ୍ତ୍ରୀଙ୍କର ନିଦ୍ରାଭଙ୍ଗ ହୋଇ ନ ଥିଲା । ସାରିକା ପୁଣି ଡାକିଲା, ''ମା ଗୋ, ମା' ।'' ଗୃହକର୍ତ୍ତ୍ରୀ ଜାଗ୍ରତା ହୋଇ କହିଲେ, ''ରାଧା, ବେଶି ଶୋଇ ପଡ଼ିଲି, ନା ?'' ଗୃହକର୍ତ୍ତ୍ରୀ ଗାତ୍ରୋତ୍‌ଥାନ କରି ପିଞ୍ଜରାକୁ ନେଇ ଧୋଇ ପକାଇଲେ, ରାଧାର ସ୍ନାନ ନିମନ୍ତେ ଜଳ ଦେଲେ । ତୁଳସୀପତ୍ର ଦୁଇଟା ଦେବାରୁ ରାଧା ଆଦରରେ ତାହା ଖାଇଲା । ସରାରେ କିଛି ଚାଉଳ ଓ ଜଳ ଦେଲେ । ପ୍ରାଙ୍ଗଣସ୍ଥ ଆମ୍ର ବୃକ୍ଷର ଶାଖାରେ ପିଞ୍ଜରାକୁ ଓହଳାଇ ଦେଇ କହିଲେ, ''ରାଧା, ଏବେ ପାଣି ଚାଉଳ ଖାଉଥା, ଦୁଧ ଦୁହାଁ ହେଲେ ସିଦ୍ଧ କରି ଦେବି ।'' ଗୃହକର୍ତ୍ତ୍ରୀ ଗୃହକର୍ମ କରିବାକୁ ଗଲେ ।

ଆନନ୍ଦମନରେ ଚିରାଭ୍ୟସ୍ତ 'ରାଧାକୃଷ୍ଣ ସୀତାରାମ' ବୋଲି ପଢ଼ିବାକୁ ଲାଗିଲା ଏବଂ ପିଞ୍ଜରା ଭିତରେ ଖେଳା କରିବାକୁ ଲାଗିଲା ।

ଦିବାକର ଉଦୟାଚଳରେ ଦଣ୍ଡାୟମାନ ହୋଇ ହରିତ୍ ବସନଧାରିଣୀ ପ୍ରକୃତି ଦେବୀଙ୍କୁ ସୁବର୍ଣ୍ଣାଚ୍ଛାଦନ ପରିଧାନ କରାଇଲେ । ଭୂପୃଷ୍ଠରେ ଚହଳ ପଡ଼ିଗଲା । ସମସ୍ତେ ଏହି ଶୁଭ ମୁହୂର୍ତ୍ତର ଆଗମନରେ ଅଶେଷ ସୁଖାନୁଭବ କଲେ ।

ଦୂରବର୍ତ୍ତୀ ପର୍ବତର ଶିଖରଦେଶରୁ ଅବ୍ୟକ୍ତ ମଧୁର ବୂତୁଁ ବୂତୁଁ ଧ୍ୱନି ସହକାରେ ଆକାଶମାର୍ଗରେ ଦଳ ଦଳ ହୋଇ ସାରିକାମାନେ ଆମ୍ରଗଛ ନିକଟସ୍ଥ ଜାମୁଗଛରୁ ଜାମୁ ଖାଇବାକୁ ଆସିଲେ । ପିଞ୍ଜରାବଦ୍ଧ ସାରିକା ପ୍ରତି ଏ ଦୃଶ୍ୟ ଅଭିନବ । ନବାଗତ ସାରିକାମାନେ ଜାମୁଗଛ ଶାଖାମାନଙ୍କରେ ବସି ଜାମୁ ଖାଇବାକୁ ଲାଗିଲେ । ସାରିକାମାନଙ୍କର ଏଁ ଏଁ ଶବ୍ଦ ସହିତ ଶାଖାରୁ ଶାଖାନ୍ତରକୁ ଉଡ଼ିବା ଶବ୍ଦ ଏବଂ ଅଜସ୍ର ଜମ୍ବୁପତନର ଶବ୍ଦ ଏକ ସଙ୍ଗରେ ରାଧାର କର୍ଣ୍ଣକୁହରକୁ ପବିତ୍ର ଉପଦେଶପୂର୍ଣ୍ଣ ସଙ୍ଗୀତ ପରି ଜଣାଗଲା । ଏ ଅମୂଲ୍ୟ ସଙ୍ଗୀତ ସେ ଜନ୍ମାବଧି ଶୁଣି ନ ଥିଲା । ରାଧା ବଣ୍ୟସାରିକାମାନଙ୍କ ଶବ୍ଦକୁ ଅନୁକରଣ କରିବାକୁ ଚେଷ୍ଟା କଲା, ପାରିଲା ନାହିଁ । 'ରାଧାକୃଷ୍ଣ' 'ରାଧାକୃଷ୍ଣ' ବୋଲି ଦୁଇ ଚାରି ଥର ପଢ଼ିଲା । ବୃକ୍ଷସ୍ଥ ସାରିକାମାନେ ରାଧାକୁ ଦେଖି ବିସ୍ମୟାଭିଭୂତ ହେଲେ । କି ଆଶ୍ଚର୍ଯ୍ୟ । ତାଙ୍କ ଜାତୀୟ ଗୋଟିଏ ପକ୍ଷୀ ଜମ୍ବୁବୃକ୍ଷରେ ସେମାନଙ୍କ ସହିତ ପ୍ରୀତିଭୋଜନରେ ଯୋଗ ନ ଦେଇ ଫଳବିହୀନ ଆମ୍ରଗଛର ଏକ ଶାଖାରେ ରହିଅଛି । ଚାରି ଛଅ ଗୋଟି ପକ୍ଷୀ ସତେକି ତଥ୍ୟ ବୁଝିବା ଅଭିପ୍ରାୟରେ ବାହାରିଲେ । ସେମାନେ ଆମ୍ର ବୃକ୍ଷର ଶାଖାରେ ଆସି ବସିଲେ, ରାଧାର ପିଞ୍ଜରା ନିକଟକୁ ଗଲେ । ରାଧା ଆହ୍ଲାଦରେ ସେମାନଙ୍କ ସହିତ ଆଳାପ କରିବା ଇଚ୍ଛାରେ 'ରାଧାକୃଷ୍ଣ' ଶବ୍ଦ ଉଚ୍ଚାରଣ କଲା । ପିଞ୍ଜରାରୁ ବାହାରିବାକୁ ଏଣେତେଣେ ଥଣ୍ଟ ଠୁଙ୍କିଲା । ଏତାଦୃଶ ଆଚରଣ ନବାଗତମାନଙ୍କ ପ୍ରତି ସମ୍ପୂର୍ଣ୍ଣ ଅର୍ଥଶୂନ୍ୟ । ସେମାନେ ଆପଣା ଭାଷାରେ ରାଧାକୁ ବାରମ୍ବାର ସେମାନଙ୍କର ଅନୁସରଣ କରିବାକୁ ଇସାରା ଦେଲେ । ରାଧା ଉପାୟଶୂନ୍ୟ ହୋଇ 'ସୁମତି, ସୁମତି' ବୋଲି ଡାକ ଦେଲା । ସୁମତି ଗୃହର ଏକମାତ୍ର କନ୍ୟା । ବୟସ ଦ୍ୱାଦଶ ବର୍ଷ । ରାଧାର ସଖୀ, ରାଧାର ଶୁଶ୍ରୂଷାରେ ସଦା ତତ୍ପରା । ଅବସର ମିଳିଲେ ରାଧା ସହିତ ବାକ୍ୟାଳାପ କରୁଥାଏ । ରାଧାକୁ ଶିକ୍ଷା ଦିଏ । ଏଣୁ ରାଧା ନିର୍ଭୟ ଚିତ୍ତରେ ତା' ହାତରୁ ଖାଦ୍ୟ ଗ୍ରହଣ କରେ । ସୁମତିର ନାମ ଅନୁସାରେ ତା'ର ଗୁଣ । ଗୃହର ମନୁଷ୍ୟ ପଶୁପକ୍ଷୀ ସମସ୍ତେ ତାକୁ ସ୍ନେହ କରନ୍ତି ।

ରାଧାର ଡାକ ଶୁଣି ସୁମତି ତା ପାଖକୁ ଗଲା । ଦେଖେ ଯେ, ଚାରି ଛଅଟା ସାରି ଆମ୍ରଶାଖାରେ ବସି ଶବ୍ଦ କରୁଅଛନ୍ତି, ରାଧା ପିଞ୍ଜରାରେ ମୁଣ୍ଡ ବାଡ଼ାଉଅଛି । ସୁମତି ସନ୍ତର୍ପଣରେ ରାଧାର ପିଞ୍ଜରା ନିକଟକୁ ଗଲା । ସାରୀମାନେ ତାକୁ ଦେଖି ଜାମୁଗଛକୁ ଉଡ଼ିଗଲେ । ସୁମତି ରାଧାକୁ ଡାକି କହିଲା, ''ରାଧା, ତୋ ଜାତୀୟ ପକ୍ଷୀମାନେ ଆସି ଜାମୁ ଖାଉଥିବାର ଦେଖି ଅସ୍ତବ୍ୟସ୍ତ ହେଉଅଛୁ ? ସ୍ଥିର ହୋଇ ରହ । ମୁଁ କ'ଣ ତତେ ଜାମୁ ଦେଇପାରିବି ନାହିଁ ?'' ଏହା କହି ଜାମୁ ମୂଳକୁ ଯାଇ ସାରୀମାନଙ୍କର ଅର୍ଦ୍ଧଭକ୍ଷିତ ଗୋଟାକେତେ ଜାମୁ ଆଣି ରାଧାକୁ ଦେଲା । ରାଧା ସୁମତିଦତ୍ତ ପଦାର୍ଥକୁ ଅସ୍ୱୀକାର କରି ନ ପାରେ । ଆସ୍ୱାଦନ କଲା । ମାତ୍ର ବଣ୍ୟ ସାରୀମାନଙ୍କ ଉଚ୍ଛିଷ୍ଟ ଜାମୁ ତା'ର ତୃପ୍ତି ଆନୟନ କରିବାର ତେଣେ ଥାଉ, ତା' ମନକୁ ଅଧିକ ଉଚ୍ଛନ୍ନ କଲା । ସୁମତି ତା'ର ବାଲ୍ୟୋଚିତ ଭାଷାରେ କେତେ ଉପଦେଶ, କେତେ ସାନ୍ତ୍ୱନା ଦେବାକୁ ଲାଗିଲା । ରାଧାର ମନ ଥରେ ସୁମତି ଆଡ଼କୁ ଆକୃଷ୍ଟ ହେଲେ ଥରେ ସ୍ୱଚ୍ଛନ୍ଦବିହାରୀ ସାରୀମାନଙ୍କ ଆଡ଼କୁ ଆକୃଷ୍ଟ ହେଉଥାଏ ।

କିଛିକ୍ଷଣ ଉତ୍ତାରେ ସାରିକାମାନେ ଆକାଶ ମାର୍ଗରେ ତାଙ୍କର ଗନ୍ତବ୍ୟ ସ୍ଥାନାଭିମୁଖରେ ଉଡ୍ଡୀୟମାନ ହେଲେ । ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ଉଠିଲେ, ସଙ୍ଗେ ସଙ୍ଗେ ବୂତୁଁ ବୂତୁଁ ଓ ଏଁ ଏଁ ଶବ୍ଦଦ୍ୱାରା ଆକାଶ ମୁଖରିତ ହେଲା । ସେମାନଙ୍କର ଗତି ଦୂରରୁ ଦୂରତର ହେଲା । ରାଧା ଏକଦୃଷ୍ଟିରେ ଅନାଇଥିଲା— ନିର୍ମଳ ନୀଳ ଗଗନରେ ସ୍ୱଜାତିମାନଙ୍କର ଅବାଧ ଗତି ଆଜି

ରାଧା ହୃଦୟରେ ଦୂରତାର ଏବଂ ଅନନ୍ତ ଅସୀମ ଆକାଶର ଛାପ ମାରିଗଲା । ରାଧା ବୁଝିପାରିଲା ଯେ, ବାଉଁଶ ପିଞ୍ଜରା ତା'ର ନୀଡ଼ ନୁହେଁ କିମ୍ବା ତା'ର କ୍ରୀଡ଼ାସ୍ଥଳ ନୁହେଁ । ଆକାଶ ତା'ର କ୍ରୀଡ଼ାସ୍ଥଳ, ବୃକ୍ଷ ତା'ର ବାସଯୋଗ୍ୟ ସ୍ଥାନ । ସ୍ୱଜାତିମାନେ ଯେଉଁ ଉପାୟରେ ଜୀବନଯାତ୍ରା ନିର୍ବାହ କରୁଅଛନ୍ତି, ଯେଉଁ ସ୍ଥାନରେ ବିଚରଣ କରୁଅଛନ୍ତି ଏବଂ ଯେପରି ଭାବରେ ବିଚରଣ କରୁଅଛନ୍ତି ଓ ବାସ କରୁଅଛନ୍ତି, ତାହାହିଁ ତାର ଜନ୍ମଗତ ଜୀବନୋପାୟ ଓ ସାମଗ୍ରୀ । ପକ୍ଷୀମାନେ ଗଲା ଉତ୍ତାରୁ ରାଧା ଶାନ୍ତ ହେବାର ତେଣେ ଥାଉ, ଅତ୍ୟଧିକ ଉଦ୍‌ବିଗ୍ନ ହେବାକୁ ଲାଗିଲା । ସୁମତିଦତ୍ତ ଖାଦ୍ୟ ପାନ ବର୍ତ୍ତମାନ ତାକୁ ପିତା । ସୁମତି କହିଲା,''ରାଧା, ତୁ କାତର ହୁଅ ନା, ସାରୀମାନେ ପୁଣି କାଲି ଆସିବେ, ତୁ ସେମାନଙ୍କୁ ଦେଖି ପାରିବୁ।'' ସୁମତି ଆଉ କ'ଣ କହିବାକୁ ଯାଉଥିଲା । ପାଠ ପଢ଼ିଯିବାକୁ ଡାକ ପଡ଼ିଲା ସୁମତି ରାଧାକୁ ତଦବସ୍ଥାରେ ଛାଡ଼ିଯିବାକୁ ବାଧ ହେଲା ।

ଆରଦିନ ସକାଳେ ପୁଣି ସେହି ସାରୀଦଳ ଆସି ପୂର୍ବଦିନ ପରି ଜାମୁ ଭକ୍ଷଣ କଲେ, ଯଥା ସମୟରେ ବୃକ୍ଷ ତ୍ୟାଗ କରି ଗନ୍ତବ୍ୟ ମାର୍ଗରେ ଚାଲିଲେ । ରାଧାର ଅବସ୍ଥା ସେହିପରି ବା ତହିଁରୁ ମନ୍ଦ । ପୂର୍ବପରି ଦୁଧ ଚାଉଳରେ ତା'ର ତୃପ୍ତି ନାହିଁ । ସୁମତିର କଥାରେ କର୍ଣ୍ଣପାତ ନାହିଁ । ଥଣ୍ଟ ମୁଣ୍ଡ ପିଞ୍ଜରାରେ ବାଜି କ୍ଷତବିକ୍ଷତ ହେଲା । ଏ ଦୃଶ୍ୟ ସୁମତି ପ୍ରତି ଅସହ୍ୟ । ସୁମତି ଆସି ତା'ର ମାତା ନିକଟରେ ସମସ୍ତ ବୃତ୍ତାନ୍ତ ଆମୂଳ ଜଣାଇଲା ଏବଂ ରାଧାକୁ ମୁକ୍ତିଦେବାକୁ ଅନୁରୋଧ କଲା । କହିଲା,''ମା' ! ରାଧା ତ ଆଉ ବଞ୍ଚିବ ନାହିଁ, ତାକୁ ପିଞ୍ଜରାରେ ଆବଦ୍ଧ କରି ରଖିବାର ଫଳ କ'ଣ ? ଛାଡ଼ିଦେଲେ ତାର ଜୀବନରକ୍ଷା ହେବ । ବର୍ଷକେ ଥରେ ହେଲେ ଆମ ଜାମୁଗଛକୁ ଫଳ ଖାଇବାକୁ ଆସିଲେ ତାକୁ ଦେଖି ପାରୁଥିବା । ଛାଡ଼ିଦିଅ, ମା' ! ସେ ଯାଉ ନୋହିଲେ କ୍ଷତବିକ୍ଷତ ହୋଇ କିଛି ନ ଖାଇ ନ ପିଇ ନିଶ୍ଚୟ ମରିଯିବ ।''

ମା' କହିଲେ, ''ତୋର ପିତା ତାକୁ ଏତେ ଯତ୍ନରେ ଓ ଆଦରରେ ରଖିଅଛନ୍ତି, ସେ ଆସିଲେ ତାଙ୍କୁ କହିବୁ, ଇଚ୍ଛା ହେଲେ ଛାଡ଼ିଦେବେ । ମୁଁ କିପରି ଛାଡ଼ିଦେବିକ ? ବୋଧହୁଏ ଦିନେ ଦୁଇଦିନ ଗଲେ ରାଧା ସାରୀମାନଙ୍କ କଥା ଭୁଲିଯିବ, ପୂର୍ବ ପରି ଖାଇବ ଓ ପଢ଼ିବ ।''

ଏପରି ସମୟରେ ସୁମତିର ବଡ଼ଭାଇ ଦମନକ ସେଠାରେ ଉପସ୍ଥିତ ହେଲା । ସୁମତି ଅତି ଆହ୍ଲାଦରେ ଆମୂଳ ସମସ୍ତ ବିଷୟ ପ୍ରକାଶ କଲା । ଦମନକ କହିଲା, ''ରାଧାକୁ ଛାଡ଼ିଦେବି କାହିଁକି ? କେତେ କଷ୍ଟରେ ତାକୁ ପାଳିଛୁଁ, ତା'ପାଇଁ କେତେ ଦୁଧ ଚାଉଳ ସାରିଛୁଁ କ'ଣ ତାକୁ ଛାଡ଼ିଦେବାକୁ ? ପକ୍ଷୀଟାଏ ତ, ଯେବେ ତାକୁ ସବୁ ପିତା ଲାଗିଲା, ତେବେ ମଲେ ମରିବ, ଛାଡ଼ିବୁଁ ନାହିଁ । ସାରୀମାନେ ଆସି ତାକୁ ଏହା ଶିକ୍ଷା ଦେଲେ, କାଲି ସକାଳେ ପୁଣି ଜାମୁଗଛକୁ ଆସିଲେ ବନ୍ଧୁକ ଦ୍ୱାରା ଛଅ ସାତଟା ମାରିଦେଲେ ସେମାନଙ୍କର ଆସିବାଟା ବନ୍ଦ ହେବ ଏବଂ ସ୍ୱଜାତି ମଧ୍ୟରୁ ଛଅ ସାତଟାଙ୍କର ମରଣ ଦେଖିଲେ । ରାଧାର ମନ ଥଣ୍ଡା ହୋଇଯିବ, ଏ ଉତ୍ପାତ ଆଉ କେବେ କରିବ ନାହିଁ।''

ସୁମତି ଏହା ଶୁଣି ଦୁଇ ଧାର ଲୋତକ ବୁହାଇ ଦେଲା । ସୁମତିର ମାତା ଶିକ୍ଷିତା ଓ ବୁଦ୍ଧିମତୀ । ସେ କହିଲେ, ''ଶୁଣ ଦମନକ, ସାରୀମାନଙ୍କର ଏଥିରେ କି ଦୋଷ ଯେ, ତୁ ସେମାନଙ୍କୁ ବନ୍ଧୁକରେ ମାରିବାକୁ ଯିବୁ ? ସ୍ୱାଧୀନ ଜୀବ, ଫଳାନ୍ୱେଷଣଦ୍ୱାରା ଜୀବନଧାରଣ କରନ୍ତି । ଯେଉଁଠାରେ ଫଳ ଦେଖିଲେ ସେଠାକୁ ଆସି ଫଳ ଭକ୍ଷଣ କଲେ । ସେ ତ ରାଧାକୁ କୁଶିକ୍ଷା ଦେବା ଉଦ୍ଦେଶ୍ୟରେ ଆସି ନ ଥିଲେ । ନିରୀହ ପ୍ରାଣୀଙ୍କୁ ବଧ କରିବୁ କାହିଁକି ? ରାଧା ଦେଖିଲା, ସ୍ୱଜାତୀୟ କେତେକ ସାରି ଯେବେ ଅବାଧରେ ଆକାଶମାର୍ଗରେ ବିଚରଣ କରୁଅଛନ୍ତି, ଇଚ୍ଛାନୁସାରେ ଗମନାଗମନ କରିପାରୁଅଛନ୍ତି, ସେ ଆବଦ୍ଧ ହୋଇ ରହିବ କାହିଁକି ? ସେମାନଙ୍କ ପରି ସ୍ୱାଧୀନ ହେବାର ତା'ର ଜନ୍ମଗତ ଅଧିକାର ନୁହେଁ କି ? ଆମ୍ଭେମାନେ ସିନା ତାକୁ ଅନ୍ୟାୟରେ ଆବଦ୍ଧ କରି ରଖିଅଛୁଁ ? ସ୍ୱାବଲମ୍ବନ ଜୀବର ପ୍ରାକୃତିକ ଅଧିକାର । ତୋତେ ମୁଁ ଲୁଗା ପିନ୍ଧାଇ ଦେଲେ ମଧ୍ୟ ତୁ ବାଲ୍ୟକାଳରେ ନିଜେ ପିନ୍ଧିବାକୁ ଯତ୍ନ କରୁଥିଲୁ । ତୋତେ ଖାଇବାକୁ ନାନାପ୍ରକାର ଫଳ ଦେଲେ ସୁଦ୍ଧା ତୁ ନିଜେ ବୃକ୍ଷରୁ ଫଳ ପାରିବାକୁ ଯତ୍ନ କରି ମୋର ଅଜ୍ଞାତରେ ବୃକ୍ଷରେ ଚଢୁଥାଉ । କୌଣସି କାରଣବଶତଃ ତୋର ସଙ୍ଗିମାନଙ୍କ ସହିତ ଖେଳା କରିବାକୁ ଛାଡ଼ି ନ ଦେଲେ ତୁ କେତେ ଉତ୍ପାତ କରୁଥାଉ । ଆଜି ତୋର ଇଚ୍ଛାବିରୋଧ ଓ ରୁଚିବିରୋଧ କୌଣସି କଥା କହିଲେ ବା ପ୍ରତିବନ୍ଧକ ଦେଲେ ଆମ୍ଭମାନଙ୍କ ପ୍ରତି ବିରକ୍ତ ହେଉ । ରାଧାର ସ୍ୱାଧୀନତା ହରଣ କରିଅଛୁଁ । ତାକୁ ଆବଦ୍ଧ କରି ରଖିଅଛୁଁ। ସେ ମୁକ୍ତ ହେବାକୁ ଇଚ୍ଛା କରିବା ସ୍ୱାଭାବିକ । ଏଥିରେ ରାଧାର ଅନ୍ୟାୟ କିଛି ନାହିଁ କିମ୍ବା ନବାଗତ ସାରିମାନଙ୍କର ଅପରାଧ କିଛି ନାହିଁ। ଏଥିର ମୀମାଂସା ତୋର ପିତା କରିବେ । ସୁମତିର ଅନୁରୋଧକ୍ରେ ତୋର ପିତାଙ୍କ ଅବର୍ତ୍ତମାନରେ ଓ ତାଙ୍କ ଅନୁମତି ନ ନେଇ

ରାଧାକୁ ମୁକ୍ତି ଦେବା ମୋର କର୍ତ୍ତବ୍ୟ ନୁହେଁ। ସାରୀମାନଙ୍କୁ ବନ୍ଧୁକରେ ବଧ କରିବା ତୋର ବିଧେୟ ନୁହେଁ । ସୁମତି, କାନ୍ଦୁଛ କାହିଁକି ? ଦମନକ ସାରୀ ମାରିବ ନାହିଁ । ତୋର ପିତା ଆସିବାଯାଏ ରାଧାର ଶୁଶ୍ରୂଷା କରୁଥା ।

ସୁମତି ଆଉ କରିବ କ'ଣ ? ଅବସରକ୍ରମେ ରାଧାର ଯତ୍ନରେ ଥାଏ । ମାତ୍ର ରାଧା ସ୍ୱାଧୀନତାର ହାଉଆ ପାଇଅଛି, ସେ କି ଛାର ଚାଉଳ ଦୁଧ ବିନିମୟରେ ସ୍ୱାଧୀନତା ବିକ୍ରୟ କରିବାକୁ ଯିବ ? ସୁମତି ମନରେ ଆଗାମୀ ପ୍ରତ୍ୟୁଷର ଘଟନା ଉଦ୍‌ବେଳିତ ହେଉଥାଏ । କିନ୍ତୁ ପ୍ରତ୍ୟୁଷରୁ ଉଠି ଦେଖେ ଯେ, ଆଉ ସାରିମାନେ ଜାମୁ ଖାଇବାକୁ ଆସିଲେ ନାହିଁ, ଦମନ କରି ସାରିବଧ ବ୍ୟାପାର ଘଟିଲା ନାହିଁ। ଆବଦ୍ଧ ଅବସ୍ଥାରେ ରାଧା ଅଛି । ଦିନ ତମାମ ମୁକ୍ତିବାଟ ଖୋଜୁଅଛି । ରାଧା ମଲେ କେତେ, ଜୀଇଥିଲେ କେତେ ? ସ୍ୱାଧୀନ ଜୀବର ଆବଦ୍ଧାବସ୍ଥା ଜୀବନ୍ତ ସମାଧି ।

•

## ପ୍ରକୃତିର ପ୍ରତିଶୋଧ

ସେ ବର୍ଷ ସେ ଅଞ୍ଚଳରେ ଦୁର୍ଭିକ୍ଷ ହୋଇଥିଲା । ଦୁଃଖ ଯନ୍ତ୍ରଣା ଏବଂ ମୃତ୍ୟୁ ତୁଳନାରେ ଦୁର୍ଭିକ୍ଷ ଶବ୍ଦଟା ଅତି ମୃଦୁ । ଦୁର୍ଭିକ୍ଷ ଶବ୍ଦଦ୍ୱାରା ସେ ହୃଦୟବିଦାରକ ଯନ୍ତ୍ରଣାର, ସେ ଆର୍ତ୍ତନାଦର, ସେ ହତାଶାର, ସେ ବିଭୀଷିକାର ଚିତ୍ର ହୃଦୟରେ ଅଙ୍କିତ ହୋଇପାରେ ନାହିଁ । ସେହି ବର୍ଣ୍ଣନାତୀତ ହାହାକାରାଭିନୟବ୍ୟଞ୍ଜକ ଶବ୍ଦ କୌଣସି କୋଷରେ ନାହିଁ । ଏଣୁ ସମସ୍ତେ ଦୁର୍ଭିକ୍ଷ ଶବ୍ଦର ବ୍ୟବହାର କରନ୍ତି । ମାତ୍ର ଏପରି ସ୍ଥଳ ଅଛି, ଯେଉଁ ସ୍ଥାନର ଲୋକେ ଭିକ୍ଷା ମାଗନ୍ତି ନାହିଁ ବା ଲୋକେ ଭିକ୍ଷା ଦିଅନ୍ତି ନାହିଁ । ସହର ବା ବଡ଼ ଗ୍ରାମର ବହୁଦୂରବର୍ତ୍ତୀ ପାର୍ବତୀୟ କ୍ଷୁଦ୍ର କ୍ଷୁଦ୍ର ଗ୍ରାମବାସୀମାନଙ୍କ ପକ୍ଷରେ ଏହା ବିରଳ ନୁହେଁ । ଅକାଳ ଉପସ୍ଥିତ ହେଲେ ଏମାନଙ୍କର ଯନ୍ତ୍ରଣାର ପରିସୀମା ନ ଥାଏ । ସ୍ୱସ୍ଥାନ ତ୍ୟାଗ କରନ୍ତି ନାହିଁ ଏବଂ ସ୍ଥାନାନ୍ତରକୁ ଯାଇ ଭିକ୍ଷା କଲେ ଭିକ୍ଷା ମିଳିବ, ଏ ଜ୍ଞାନ ସେମାନଙ୍କର ନାହିଁ । ଆଶ୍ଚର୍ଯ୍ୟ କଥା, ପରମୁଖାପେକ୍ଷୀ ଭୃତ୍ୟଦଳଙ୍କ ଅପେକ୍ଷା ପରପାଳନକର୍ତ୍ତା କୃଷକଦଳଙ୍କ ପ୍ରତି ଦୁର୍ଭିକ୍ଷର ଅତ୍ୟାଚାର ଅତ୍ୟନ୍ତ ଉତ୍କଟ । ଦୁର୍ଭିକ୍ଷର ବିଭୀଷିକା ପ୍ରକାଶ ପାଏ ଆଷାଢ଼ ମାସ ଓ ତେଣିକି ଅର୍ଥାତ୍ ଆଷାଢ଼, ଶ୍ରାବଣ ଓ ଭାଦ୍ର । ଏ କଷ୍ଟ ଯେ ଅନ୍ୟ ରୋଗ ପରି ଆକସ୍ମିକ, ତାହା ନୁହେଁ । ପୂର୍ବ ବର୍ଷ ବର୍ଷା ପ୍ରାରମ୍ଭରୁ ଅନିବାର୍ଯ୍ୟ ଦୁଶ୍ଚିନ୍ତାର ରାଜତ୍ୱ ଆରମ୍ଭ ହୁଏ। ପୌଷ ମାଘରେ କୃଷକ ଫସଲ ଆଦାୟ ପରେ ଆପଣାର ପରିବାରବର୍ଗର ବସ୍ତୁତଃ ନିଜର ଅବସ୍ଥାର ବିପର୍ଯ୍ୟୟ ଅନୁଭବ କରି ଚିନ୍ତାସାଗରରେ ସନ୍ତରଣ କରେ। ମିତବ୍ୟୟୀ ହେବାକୁ ଚେଷ୍ଟା କରେ । ମିତବ୍ୟୟ କ'ଣ ? ନିତାନ୍ତ ପ୍ରୟୋଜନୀୟ ଦୈନିକ ଆହାର୍ଯ୍ୟ ଅପେକ୍ଷା ଅଳ୍ପ ପରିମାଣ ଭୋଜନରେ ମଧ୍ୟ ପରିବାରବର୍ଗ ସନ୍ତୁଷ୍ଟ ରହିବାକୁ ବାଧ୍ୟ ହୁଅନ୍ତି । ଜ୍ୟେଷ୍ଠ ମାସ ସହିତ ଅସରାଏ ବୃଷ୍ଟି ଆସିଲେ ଗୃହସ୍ଥର ଚିନ୍ତା ଦ୍ୱିଗୁଣିତ ହୁଏ, ଭବିଷ୍ୟତ୍ ଚିନ୍ତା ମାଡ଼ି ବସେ । ଧାନ ପ୍ରଭୃତି ବିହନ ଯାହା ଗୃହରେ ସଞ୍ଚିତ ଥାଏ, ତାହା ଜମିରେ ବିଞ୍ଛି ଦିଆଯାଏ । ଆଷାଢ଼ ସରିକି ଆମ୍ବ ଜାମୁ ମହୁଲ କେନ୍ଦୁ ପ୍ରଭୃତି ଫଳ ନିଃଶେଷ ହୁଏ । ଏଣୁ କ୍ଷୁଧାର ମାତ୍ରା ବୃଦ୍ଧି ସଙ୍ଗେ ସଙ୍ଗେ ଅନ୍ନର ମାତ୍ରା କ୍ରମେ ହ୍ରାସ ପାଏ । ଦୁର୍ଭିକ୍ଷର ଅଗ୍ରଦୂତ ଜଳାଭାବ । ଜୋଡ଼ ପୋଖରୀ ସମସ୍ତେ ଶୁଷ୍କ ହୋଇ ରହିଥାଆନ୍ତି । ବର୍ଷା ହେଲାରୁ କର୍ଦ୍ଦମାକ୍ତ ଜଳ ପୂର୍ଣ୍ଣ ହୁଏ। ନୂତନ କର୍ଦ୍ଦମାକ୍ତ ଜଳପାନ ରୋଗର ମୂଳ କାରଣ । ଭୋକ କି ଜାଣେ କଷା ପିତା । ଦୁର୍ଭିକ୍ଷର କ୍ଷୁଧା ରାକ୍ଷସୀ କ୍ଷୁଧା। ପଥ୍ୟାପଥ୍ୟର ଆଚାର ବା ଭଲ ମନ୍ଦ ପଦାର୍ଥର ବିଚାର କାହିଁ। ଉଦର ଜ୍ୱାଳା ଦୂର କରିବାକୁ ଛତୁ ଶାଗ ଯାହାକିଛି ମିଳେ ତାହା ଉଦରସାତ୍ ନ କରି ରହି ହୁଏ ନାହିଁ। ବିସୂଚୀକା ଦୁର୍ଭିକ୍ଷର ସହଚର । ଯେଉଁସ୍ଥାନରେ ଦୁର୍ଭିକ୍ଷର ପ୍ରାଦୁର୍ଭାବ, ସେହି ସ୍ଥାନରେ କଲେରାର ଆବିର୍ଭାବ । ଉଭୟେ ମିଳିତ ନ ହେଲେ ସଂହାରଲୀଳା ସାଙ୍ଗ ହୁଏ ନାହିଁ । ପ୍ରକୃତିର ସଂହାରଲୀଳା । ମନୁଷ୍ୟ ଏଥିରେ ପ୍ରତୀକାର ବିଷୟରେ ପଟୁତା ଉପାର୍ଜନ କରିପାରି ନାହିଁ।

ଆଷାଢ଼ ଶୁକ୍ଳପକ୍ଷ ରାତ୍ରି । ଶୁକ୍ଳପକ୍ଷ ହେଲେ ମଧ୍ୟ ଆକାଶ ଗାଢ଼ କୃଷ୍ଣ ମେଘଦ୍ୱାରା ସମାଛନ୍ନ, ଏଣୁ ଅମାନିଶାରୁ ବଳି ଅନ୍ଧାର ସୁଲୁ ସୁଲୁ ପବନ ବହୁଅଛି । ଟୋପାଏ ଟୋପାଏ ପଡୁଅଛି । ଐକତାନିକ ଭେକରବ ଏବଂ ଭଲ୍ଲୁକର ସାମୟିକ ହୁଙ୍କାର ରାତ୍ରିର ବିଭୀଷିକାର ପରିଚୟ କରାଉଥିଲା । ପର୍ବତ ନିକଟରେ ବୃକ୍ଷାନ୍ତରାଳରେ ଘୋର ଅନ୍ଧକାରାବୃତ ଗୋଟିଏ ଘର । ଏହି ଘର ଭିତରେ ଗଦାଏ ନିଆଁ ଜଳୁଅଛି । ଗୃହର ପଶ୍ଚିମ କୋଣରେ ଗୋଟିଏ ଜଡ଼ାତେଲ ଦୀପ ମିଞ୍ଜିମିଞ୍ଜି ହୋଇ ଜଳୁଅଛି । ନିଆଁ ଓ ଦୀପର ମଧ୍ୟସ୍ଥାନରେ କାନ୍ଥଆଡ଼କୁ ମୁଣ୍ଡ କରି ଗୋଟିଏ ଚାରିବର୍ଷ ବୟସର ରୁଗ୍ଣ ଶିଶୁ ଶାୟିତ । ନିକଟରେ ଆଲୁଳାୟିତକେଶା ଜନନୀ ହସ୍ତ ଉପରେ ଗଣ୍ଡ ଦେଇ ସେହି କ୍ଷୀଣପ୍ରାଣ ଶିଶୁ ଆଡ଼କୁ ଏକଦୃଷ୍ଟିରେ ଅନାଇ ବସିଅଛି । ପ୍ରାଣପ୍ରତିମାର ଧ୍ୟାନରେ ନିବିଷ୍ଟଚିତ୍ତା, ଏଣୁ ବାହାରର ବିଭୀଷିକା ତାହାର ଏକଗ୍ରତା ଉପରେ ହସ୍ତକ୍ଷେପ କରିପାରୁ

ନାହିଁ । ସେହି ରାତ୍ରିଟା ମଧରେ ପ୍ରବଳ ଝଡ଼ ଅରଣ୍ୟର କେତେ ବୃକ୍ଷ ଉତ୍ପାଟନ କରି ଚାଲିଯାଇଅଛି । ତାହାର ବାସଗୃହଟି ଉଡ଼ାଇ ନେଇଯିବାର ଭୟ ଦେଖାଇଅଛି । ଭୀଷଣ ବଜ୍ରପାତ ମନୁଷ୍ୟ ଓ ପଶୁପ୍ରାଣରେ ଆତଙ୍କ ଉପସ୍ଥିତ କରିଅଛି । ପୁତ୍ରବତ୍ସଳା ଜନନୀର ଭୟ ନାହିଁ । ପୁତ୍ର କାଳେ ତାକୁ ଛାଡ଼ିଯିବ, ଏହି ମାତ୍ର ତା'ର ଭୟ । ପୁତ୍ର ଥିବାଯାଏ ପୃଥିବୀର ବିପର୍ଯ୍ୟୟରେ ସେ ଭୀତା ନୁହେଁ । ତା' ଜୀବନରେ ପ୍ରାକୃତିର ରୁଦ୍ରରୂପ ବହୁବାର ସେ ଦେଖିଅଛି, ଅନୁଭବ କରିଅଛି ।

ଆଜି କି ଚାରିଦିନ ହେଲା ତା'ର ପ୍ରାଣପ୍ରିୟ ପୁତ୍ର କଲେରା ରୋଗରେ ଆକ୍ରାନ୍ତ । ଚିକିତ୍ସକ ନାହିଁ, ଔଷଧ ନାହିଁ, ସୁପଥ୍ୟ ନାହିଁ, ତଥାପି ସେ ହତାଶ ହୋଇ ବସି ରହିବ । ଶିଶୁକୁ ଛାଡ଼ି ଦୂରବର୍ତ୍ତୀ ଗ୍ରାମକୁ ଔଷଧ ନିମନ୍ତେ ଗଲେ ତା'ର ଅନୁପସ୍ଥିତିରେ ଶିଶୁର ଶୁଶ୍ରୂଷା କରିବ କିଏ ? ଗ୍ରାମରେ ଜନମାନବ କେହି ନାହିଁ । ଗ୍ରାମ ଏତେବେଳେ ମହାଶ୍ମଶାନ । ଯେଉଁ ଜଣେ ଜଣେ କଲେରାରୁ ରକ୍ଷା ପାଇଥିଲେ, ସେମାନେ ଗୃହ ତ୍ୟାଗ କରି ଯାଇଅଛନ୍ତି । ଏତେବେଳେ ଏକମାତ୍ର ଗ୍ରାମବାସିନୀ ସେହି ଚିନ୍ତାକୁଳା ଜନନୀ । ଏତେବେଳେ ସେ ଏକାକିନୀ ଗୃହକର୍ତ୍ତ୍ରୀ, ଗ୍ରାମର ଅଧିଷ୍ଠାତ୍ରୀ, ପୁତ୍ରର ପାଳନକର୍ତ୍ତ୍ରୀ । କ୍ଷୀଣ ଦୀପଶିଖା ଦୀପ୍ତ ପ୍ରକୋଷ୍ଠ ବ୍ୟତୀତ ଘୋର ଅନ୍ଧକାର । ତାକୁ ସମସ୍ତ ଜଗତରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ କରିଅଛି । ସେ ପୁତ୍ର ନିମନ୍ତେ ସମସ୍ତ ସ୍ୱାର୍ଥ ତ୍ୟାଗ କରିଅଛି ଏମନ୍ତ କି ନିଜର ଜୀବନ ପଣ କରି ବସିଅଛି । ତା'ର ଭୟ କାହାକୁ ?

ରାତ୍ର ଦୁଇପ୍ରହର ଅତୀତ ହେଲା । ଶିଶୁର ନିଦ୍ରାଭଙ୍ଗ ହେଲା, ମା'କୁ ନିକଟରେ ବସିଥିବାର ଦେଖି ସେ କହିଲା, ''ମା'! ବସିଛୁ, କେତେ ଚେଇଁଥିବୁ, ଶୋଇପଡ଼ ।''

''ଶୋଇବିରେ ବାପ, ତୁ ପୁଣି ଶୋଇପଡ଼ିଲେ ମୁଁ ଶୋଇବି ।'' ''ମା'! ଶୋଷ କଲା ।''

ନିକଟରେ ଥିବା ପଥୁରିରୁ ଟିକିଏ ଜଳ ପିଇବାକୁ ଦେଲା । ଅନ୍ୟ ଗୋଟିଏ ପଥୁରିରେ ଆମ୍ବଛାଲି, ଜାମୁଛାଲି ଓ ଅଁଳାଛାଲି ରସ ମିଶାଇ ରଖିଥିଲା । ସେଥିରୁ ଟିକିଏ ମଧ ପିଆଇ ଦେଲା । ଲୁଗାକାନିରେ ବିଞ୍ଚିବାକୁ ଲାଗିଲା । ଅଳ୍ପ କ୍ଷଣ ପରେ ଶିଶୁର ନିଦ୍ରା ଆସିଲା । ଆଜି ରାତ୍ରିରେ ତାହାର ପ୍ରାଣପ୍ରତିମା ତନୟର ଏତାଦୃଶ ସୁସ୍ପଷ୍ଟ ବାକ୍ୟ ଶୁଣି ହୃଦୟରେ ଟିକିଏ ଆଶ୍ୱାସ ପାଇଲା, ଭାବିଲା, ବୋଧହୁଏ ତା'ର ସନ୍ତାନର ବିପତ୍ତି କେତେକାଂଶରେ ଦୂର ହେଲା । ତିନି ଦିନଯାଏ ବାଳକ ଏକପ୍ରକାର ଅର୍ଦ୍ଧ ମୂର୍ଚ୍ଛିତ ଅବସ୍ଥାରେ ଥିଲା । କଥା କହିବାର ଶକ୍ତି ନ ଥିଲା । ଆଜି ଏତେ ରାତ୍ରିରେ ଏତାଦୃଶ ମୃଦୁମଧୁର ସ୍ପଷ୍ଟ ବାଣୀ ପ୍ରକାଶ ହେବାରୁ ମାତାର ହୃଦୟରେ ଅପୂର୍ବ ଆଶାର ସଞ୍ଚାର ହେଲା ।

କିଛିକ୍ଷଣ ଚାଲିଗଲା । ଜନନୀ ଜାଗ୍ରତ ହୋଇ ଅର୍ଦ୍ଧଶାୟିତାବସ୍ଥାରେ ଅଛି । ବାହାରେ ପଦଶବ୍ଦ ଶୁଣାଗଲା । ଏତେ ରାତ୍ରିରେ ପଦ ଶବ୍ଦ ? ଏ କ'ଣ ? ସତର୍କ ହୋଇ ବସିଲା । କାନ ଦେଇ ଶୁଣିଲା । ମନୁଷ୍ୟର ପଦଶବ୍ଦ କ୍ରମେ ତା'ର ଘର ବାଟ ଆଡ଼କୁ ଅଗ୍ରସର ହେଉଥିବାର ଜଣାଗଲା । ବିଜାତୀୟ ଶଙ୍କା ଉପସ୍ଥିତ ହେଲା । ଛାତି ଦୂର ଦୂର କମ୍ପିଲା । କାହାର ବା ଭୟ ନ ହେବ ? ସେ ଜାଣେ, ତାହା ଛଡ଼ା ଗ୍ରାମରେ ଜନମାନବ କେହି ନ ଥିଲେ । ଅନ୍ଧକାର ରାତ୍ରିରେ ଅରଣ୍ୟ ଭେଦକରି ସେ ଗ୍ରାମକୁ କିଏ ବା କାହିଁକି ଆସିବ ? ଚୋର ବା ଡକାୟତ କି ? ତା'ର କି ଭୟ ? ମାତ୍ର ମ୍ରିୟମାଣ ତନୟ ଯେ ନିଦ୍ରିତ । ସେ ଆଘାତ ପାଇଲେ କିମ୍ବା ମୃତ୍ୟୁମୁଖରେ ପତିତ ହେଲେ ପୁତ୍ରର ଦଶା କ'ଣ ହେବ ? ହେଉ, ଦେଖାଯାଉ । ହଠାତ୍ ଗୃହକୋଣକୁ ଅନାଇ ଦେଖିଲା । ତାହାର ସ୍ୱାମୀ ସପ୍ତାହ ପୂର୍ବରୁ କଲେରା ରୋଗରେ ଆକ୍ରାନ୍ତ ହୋଇ ତାକୁ ଓ ତା'ର ସନ୍ତାନକୁ ଛାଡ଼ି ଯାଇଅଛି, ମାତ୍ର ତା'ର ଧନୁଶର ଓ ଟାଙ୍ଗି ଗୃହକୋଣରେ ରଖି ଯାଇଅଛି । ସ୍ତ୍ରୀ ପ୍ରାଣୀ, ଧନୁଶର ଚଳାଇବାକୁ ଅଭ୍ୟସ୍ତ ନୁହେଁ, ମାତ୍ର ପ୍ରୟୋଜନ ହେଲେ ଟାଙ୍ଗି ଚଳାଇ ଆତ୍ମରକ୍ଷା କରିପାରିବ । ଏହି ଆଶାରେ ଟାଙ୍ଗିକୁ ଆଣି ନିକଟରେ ରଖି ତୁନି ହୋଇବସିଲା ।

ହଠାତ୍ ବାଟ ତାଟି ଫିଟିଗଲା । ବାଟରେ ଜଣେ ବଳିଷ୍ଠ ପୁରୁଷର ମୁଖ ଦୀପାଲୋକରେ ସ୍ପଷ୍ଟ ଦେଖାଗଲା । ସେ ବ୍ୟକ୍ତି ସମ୍ପୂର୍ଣ୍ଣ ଅପରିଚିତ । ହାତରେ ଧନୁ କାଣ୍ଡ ଓ ଟାଙ୍ଗି ମଧ ଅଛି । ତା' ପଛରେ କେହିଥିବାର ଜଣାଗଲା ନାହିଁ ବା ଅପର ପଦ ଶବ୍ଦ ଶୁଣାଗଲା ନାହିଁ । ପୁତ୍ରବତ୍ସଳା ନବାଗତକୁ ଗୃହପ୍ରବେଶ କରିବାକୁ ଅବସର ନ ଦେଇ ହଠାତ୍ ତା'ର ସମ୍ମୁଖୀନ ହେଲା ଏବଂ କିଏ କି ନିମନ୍ତେ ଆସିଅଛି ବୋଲି ପଚାରିଲା । ନବାଗତ କହିଲା, ''ମୁଁ ଡକାୟତ ଦଳର ଜଣେ, ଏ ଗ୍ରାମକୁ ଡକାୟତି କରିବା ନିମନ୍ତେ ଆସିଅଛି । ତୋ ଘରେ ଯାହା କିଛି ସମ୍ପତ୍ତି ଅଛି, ମୋତେ ବିନା ବାଧାରେ ଦେଖାଇ ଦେ । ମୁଁ ଇଚ୍ଛା ଅନୁସାରେ ନେଇଯିବି । ଯଦି କିଛି ନ ଦେଉ ଏବଂ ମୋର ଗତିରେ ବାଧା ଦେଉ, ତେବେ ତୋତେ ଏହି ଟାଙ୍ଗିଦ୍ୱାରା ବଧ କରିବି ।

''ଭଲ କଥା, ତୋର ଯାହା ଇଚ୍ଛା ତାହା କର । ଏ ବଖରାରେ ମୋର ପୁତ୍ର କଲେରା ରୋଗରେ ଆକ୍ରାନ୍ତ ହୋଇ ଶୟନ କରିଅଛି, ମୁଁ ତା'ର ଶୁଶ୍ରୂଷା କରୁଅଛି, ଏଠାରେ ମୋର କୌଣସି ମାଲମତା ନାହିଁ । ଅନ୍ୟ ବଖରାରେ ଖୋଜି ଯାହା ପାଇବୁ ତୁ ନେଇଯାଇପାରୁଁ ।'' ''କ'ଣ ପଦାର୍ଥ ତୋ ଘରେ ଅଛି କହ ?'' ''ମୋ କଥାରେ ତୁ କ'ଣ ବିଶ୍ୱାସ କରିବୁ ? ମୋତେ ପଚାରିବା ଅପେକ୍ଷା ତୁ ନିଜେ ଖୋଜି ଦେଖିଲେ ଭଲ ।''

''ସେ କଥା କିଛି ନୁହେଁ, ତୁ କହ କ'ଣ ଅଛି ।'' ''ମୋର ପ୍ରଧାନ ସମ୍ପତ୍ତି ମୋର ପୁତ୍ର, ତା' ପରେ ହଳେ ବଳଦ ଅଛନ୍ତି । ଗୋଟିଏ ଗର୍ଭିଣୀ ଗାଈ ଅଛି । ଧାନ, ମକା ପ୍ରଭୃତି ମୋର ସ୍ୱାମୀ ଜମିରେ ବୁଣି ଦେଇ ମୃତ ହୋଇଅଛନ୍ତି । ଧାନ ପନ୍ଦର ତାମ୍ବି ଅଛି। ଚାଉଳ ଦୁଇ ତାମ୍ବି ଅଛି । ଏହି ଚାଉଳ ମୋର ପୁଅର ପଥ୍ୟ ହେବ ବୋଲି ସାଇତି ରଖିଅଛି । ଲୁଣ ଅଧଡ଼େ, ଗୁଡ଼ ପ୍ରାୟ ଏକମାଣ ଅଛି, ଏ ଭିନ୍ନ ଆଉ କିଛି ନାହିଁ । ପୁରୁଣା ଲୁଗା ଛଅ ସାତ ଖଣ୍ଡ ଥାଇପାରେ । ଆଉ ମୋର ଗଳାରେ ସୁକି ମାଳଟିଏ ଅଛି । ପଇସା ପାଞ୍ଚ ଅଣା ଅଛି । ଏହାଛଡ଼ା ଆଉ କୌଣସି ପଦାର୍ଥ ନାହିଁ । ସ୍ୱାମୀ ମୋର ତମ ପରି ହୃଷ୍ଟପୁଷ୍ଟ ସବଳକାୟ ଥିଲେ । ତୁମ ପରି ଧନୁକାଣ୍ଡ ଓ ଟାଙ୍ଗି ଧରୁଥିଲେ । ଦେଖ, ଘର କୋଣରେ ରଖା ହୋଇଅଛି । ଟାଙ୍ଗି ମୋ ନିକଟରେ ପଡ଼ିଥିଲା। ଆଜିକି ଆଠ ଦିନ ହେଲା ସେ କଲେରା ରୋଗରେ ପ୍ରାଣତ୍ୟାଗ କଲେ । ମୋତେ ଓ ମୋର ପୁତ୍ରକୁ ଶୋକସାଗରରେ ଭସାଇ ଦେଇଗଲେ ।'' ଏହା କହିଲାବେଳେ ନୟନବାରି ଗଣ୍ଡ ଦେଶ ଦେଇ ବହିଯାଉଥିଲା । ''ତହିଁର ଚାରି ଦିନ ପରେ ମୋର ପୁଅର କଲେରା ରୋଗ ହେଲା । ଗ୍ରାମର ଅନେକ ବୃଦ୍ଧ ଯୁବକ ଯୁବତୀ ଅନ୍ନାଭାବରେ ଓ କଲେରାରେ ମରିଗଲେ। ଯେଉଁ କେତେଜଣ ବଞ୍ଚିଥିଲେ, ସେମାନେ ଆଜି କି ତିନି ଦିନ ହେଲା ଏହି ଗ୍ରାମ ଛାଡ଼ି ପଳାଇଗଲେ । ମୋତେ ସଙ୍ଗରେ ଯିବାକୁ କହିଲେ । ସେଦିନ ପୁଅର ବେମାରି ଅତ୍ୟନ୍ତ ବେଶି ହୋଇଥିଲା। ମୁଁ କହିଲି, ରୁଗ୍ଣ ଛୁଆକୁ ଧରି କିପରି ବର୍ଷା ଖରାରେ ଯିବି ? ସେମାନେ କହିଲେ, ଛୁଆର ବଞ୍ଚିବାର ଆଶା ନାହିଁ । ଅନ୍ୟ ସ୍ଥାନକୁ ଯିବାଦ୍ୱାରା ଛୁଆ ବଞ୍ଚିଯାଏ ତ, ତୋ କପାଳ ଭଲ । ଯେବେ ମରିଯାଏ ତାହାହେଲେ ଫିଙ୍ଗିଦେବୁ । ଏଠାରେ ଥିଲେ ଯେ ଦୁହେଁ ନିଶ୍ଚୟ ମରିବ । ଏ ଗ୍ରାମରେ ଯେତେ ଲୋକଙ୍କୁ କଲେରା ଧଇଲା କେହି ତ ବଞ୍ଚିଲେ ନାହିଁ ।

'ମରିଗଲେ ତୋ ଛୁଆକୁ ଫିଙ୍ଗିଦେବୁ' ଏ କଥା ଶୁଣି ମୋ ମନରେ ଘୃଣା ଜାତ ହେଲା । ଯେଉଁମାନଙ୍କ ସଙ୍ଗରେ ଯିବାକୁ ହେବ, ସେମାନଙ୍କର ମାୟା ମମତା ନାହିଁ ବା ସେମାନଙ୍କଠାରୁ ସାହାଯ୍ୟ ସହାନୁଭୂତି ମିଳିବାର ଆଶା ନାହିଁ ବୋଲି ଭାବିଲି ଏବଂ ସେମାନଙ୍କୁ କହିଲି, ''ଏଠାରେ ରହିଲେ ମୋର ପୁଅର କିଛି କ୍ଷତି ହେବ ନାହିଁ । ଘର ଛାଡ଼ି କେଉଁଆଡ଼େ ଯିବି ? ରୁଗ୍ଣ ଓ ଦୁର୍ବଳ ବାଳକ, ଖରାର ତାପ ପାଇଲେ କିମ୍ବା ବର୍ଷାରେ ଭିଜିଲେ ତା'ର ଅନିଷ୍ଟ ହେବ । ତାକୁ କେଉଁଠାରେ ପଥ୍ୟ ଦେବି, କେଉଁଠାରେ ରଖି ଶୁଶ୍ରୂଷା କରିବି ? ତାକୁ ନେଇ ମୁଁ ଯିବି ନାହିଁ । ତା'ର ଯେବେ ମୃତ୍ୟୁ ହୁଏ ତେବେ ମୁଁ ଜୀଇଁଥିଲେ କେତେ ମଲେ କେତେ ? ଯେବେ ମୋର ଅଦୃଷ୍ଟ ଏଡ଼େ ମନ୍ଦ ଯେ ସେ ମରିଯାଏ, ତେବେ ତାକୁ ଏଣେ ତେଣେ ଫିଙ୍ଗିଦେବା ଅପେକ୍ଷା ତା'ର ବାପ ଅଜା ଯେଉଁ ସ୍ଥାନରେ ପୋତା ହୋଇଅଛନ୍ତି । ସେହି ସ୍ଥାନରେ ପୋତିଦେବି ଓ ମୁଁ ମରିବି ।'' ଏହା କହି ସେମାନଙ୍କୁ ବିଦାୟ ଦେଲି । ଗ୍ରାମରେ ଆଉ କେହି ନାହାନ୍ତି, ମୁଁ ଓ ମୋର ପୁଅ। ତା'ର ମୁଖ ଦେଖି ମୁଁ ଭୂତ, ପ୍ରେତ, ଭାଲୁ, ବାଘ, ଚୋର, ଡକାୟତ କାହାକୁ ଭୟ ନ କରି ରହିଅଛି।

ବର୍ତ୍ତମାନ ତୁମ ହାବୁଡ଼ରେ ପଡ଼ିଅଛି । ତୁମେ ଡକାୟତ, ଲୁଣ୍ଠନ କରିବା, ପ୍ରାଣନାଶ କରିବା ତୁମର ଅଭ୍ୟାସ, ମୋତେ ମାରିବ । ଆଚ୍ଛା, ମୁଁ ତୁମକୁ ଗୋଟିଏ କଥା ପଚାରେଁ । ତୁମର କି ସ୍ତ୍ରୀ ନାହିଁ ? ମୋ ବୟସର ସ୍ତ୍ରୀ ତୁମ ଘରେ ଅବଶ୍ୟ ଥିବ, ତୁମର ପୁତ୍ର କନ୍ୟା ଅବଶ୍ୟ ଥିବେ । ଭାବି ଦେଖ, ତୁମର ବର୍ତ୍ତମାନରେ ତୁମର ଚାରି ବର୍ଷର ରୁଗ୍ଣ ଶିଶୁକୁ ନେଇ ତୁମ ସ୍ତ୍ରୀର ଅବସ୍ଥା । ଧନଲୋଭରେ ତୁମେ ବି ଦୟା ଧର୍ମ ସ୍ନେହ ମମତା ସବୁ ହରାଇଅଛ । ତୁଚ୍ଛ ଧନ ଆଶାରେ ମୋତେ ଓ ସଙ୍ଗେ ସଙ୍ଗେ ମୋର ପୁତ୍ରକୁ ମଧ ନାଶ କରିବାକୁ ବସିଅଛି । ତୁମେ ମାରିଦେଇଗଲେ ଆମ ଦୁହିଁଙ୍କି ପୋତିବାକୁ କେହି ନାହିଁ । ଶରୀର ଯୋଡ଼ିକ ପୋକ ମାଛିଦ୍ୱାରା ଅପବିତ୍ର ହେବ ସିନା ! କିଛି ଚାଉଳ ଛାଡ଼ି ଯାହା ଅଛି, ଗାଈ ବଳଦ ସହିତ ସବୁ ନେଇଯାଅ, ମାତ୍ର ମୋତେ ବଧ କର ନାହିଁ। ଯେବେ ବଧ କରିବାର ନିତାନ୍ତ ଇଚ୍ଛା ଥାଏ, ତେବେ ଅପେକ୍ଷା କର, ମୋର ପୁତ୍ରର ମୃତ୍ୟୁ ହେଲେ ମୋତେ ବଧ କରିବ, ନତୁବା ସେ ସମ୍ପୂର୍ଣ୍ଣ ଆରୋଗ୍ୟ ହେଲେ ତା'ର ପୋଷଣ ଭାର ଗ୍ରହଣ କରି ମତେ ବଧ କରିବ, ସେଥିରେ ମୋର ଆପତ୍ତି ନାହିଁ ।''

''ମା !' କାହା ସଙ୍ଗରେ କଥା ହେଉଛୁ, ବାବା ଆସିଲା କି ?'' ମ୍ରିୟମାଣ ଶିଶୁ ରୋଗଶଯ୍ୟାରେ ଏହି କଥା ପଚ଼ାରିଲା । ଜନନୀ ପ୍ରତ୍ୟୁତ୍ତର ଦେବା ପୂର୍ବରୁ ଶିଶୁ ଶୋଇପଡ଼ିଲା ।

ଏହା ଶୁଣି ଡକାୟତର ହସ୍ତରୁ ଧନୁ କାଣ୍ଡ ଅତର୍କିତ ଭାବରେ ଖସି ପଡ଼ିଲା। ସେ ବସିପଡ଼ିଲା ଏବଂ କ୍ରନ୍ଦନଶୀଳା ଜନନୀକୁ ନିକଟରେ ବସିବାକୁ ଇଙ୍ଗିତ କଲା। ଜନନୀ ବସିଲାରୁ ଡକାୟତ କହିଲା, ''ମୁଁ ଡକାୟତ, କ୍ରୂର ନରପଶୁ, ମାତ୍ର ଆଉ ନାହିଁ, ଆଉ ନାହିଁ । ପ୍ରତିଶୋଧ ମିଳିଲା । ଆଜିଠାରୁ ପୈଶାଚ଼ିକ ବୃତ୍ତି ଛାଡ଼ିଲି । ମୋତେ କ୍ଷମା ଦିଅ । ତୁମର ପୁତ୍ର ମୋର ପୁତ୍ର ଅଟେ । ତା'ର ସେବା କରିବାକୁ ମୋତେ ଆଦେଶ ଦିଅ, ମୁଁ ଅମ୍ଳାନବଦନରେ ତାହା କରିବି ଏବଂ ତାକୁ ସୁସ୍ଥ କରି ମୋର ଜୀବନକୁ ଧନ୍ୟ ମଣିବି । ମୁଁ ଡକାୟତ, ତୁମର ଅପରିଚ଼ିତ, ମୋ ଉପରେ ତୁମର ବିଶ୍ୱାସ ହେବା ସମ୍ଭବ ନୁହେଁ । ମୋର ଜୀବନକାହାଣୀ ଶୁଣିବ କି ? ଶୁଣିଲେ କେଜାଣି ବିଶ୍ୱାସ କରି ପାର ଓ ଦୟା କରି ପାର । ତେବେ ଶୁଣ ।

''ଡକାୟତି ମୋର ବୃତ୍ତି ନ ଥିଲା । ମୁଁ ତୁମମାନଙ୍କ ପରି ଘର କରୁଥିଲି । ମୁଁ ମଧ ଜଣେ ଗରିବ ପ୍ରଜା । ଚାଷ କରି ବଞ୍ଚୁଥିଲି । ଦୁଇ ବର୍ଷ ଭଲ ଫସଲ ହେଲା ନାହିଁ । ବାକିଦାର ହେଲି । ଧାନ ବଳଦ ଜବତ୍ ହୋଇ ମୋ ହାତରୁ ଗଲା । ଦୁର୍ଭିକ୍ଷ ଉପସ୍ଥିତ ହେଲା । ଅତି କଷ୍ଟରେ ଫଳ ମୂଳ ଖାଇ ବଞ୍ଚୁଥିଲି । ଅନ୍ନ କଦାଚ଼ିତ୍ ମିଳେ । ଗୃହରେ ମୋର ସ୍ତ୍ରୀ, ଗୋଟିଏ ଚାରି ବର୍ଷ ବୟସର ପୁତ୍ର ଓ ମୁଁ । ଧାନ ଚାଉଳ ଯାହା ମିଳେ, ତାହା ପୁତ୍ର ନିମନ୍ତେ ସଞ୍ଚୟ କରି ରଖିଥାଉଁ । ଆମେ ଦୁହେଁ କୌଣସି ପ୍ରକାରେ ଉଦରଜ୍ୱାଳା ନିବାରଣ କରୁଁ । ଗ୍ରାମରେ କଲେରା ଉପସ୍ଥିତ ହେଲା । ଗ୍ରାମବାସୀ ଅନେକ ମଲେ, ସଙ୍ଗେ ସଙ୍ଗେ ମୋର ସ୍ତ୍ରୀର କଲେରା ହେଲା । ସେବା ଶୁଶ୍ରୂଷା କରି ବଞ୍ଚାଇ ପାରିଲି ନାହିଁ । ମଲାବେଳେ ଶିଶୁର ହାତ ଧରାଇ ଦେଇ ଚାଲିଗଲା । ତା'ର ଅପତ୍ୟ ସ୍ନେହର ଦୃଷ୍ଟାନ୍ତ ବିରଳ । ଲୋକେ ଗ୍ରାମ ଛାଡ଼ି ପଳାଇଲେ, ମୋତେ କହିବାରୁ ମୁଁ ମଧ ଗ୍ରାମ ତ୍ୟାଗ କଲି । ପୁତ୍ର ବ୍ୟତୀତ ଗ୍ରାମରେ ମୋତେ ଅଟକାଇ ରଖିବା ଯୋଗ୍ୟ ପଦାର୍ଥ କ'ଣ ଥିଲା ? ଭାବିଲି ତୁଚ୍ଛା ଗୃହରେ ଥିଲେ କେତେ ନ ଥିଲେ କେତେ । ପୁତ୍ରକୁ ଧରି ଗ୍ରାମାନ୍ତରକୁ ବାହାରିଲି ଚାରି ପାଞ୍ଚ କ୍ରୋଶ ଯିବାକୁ ହେଲା । ବାଟରେ ପୁଅର କଲେରା ଆରମ୍ଭ ହେଲା । ସଙ୍ଗୀମାନେ ଆପଣା ଆପଣା ଗନ୍ତବ୍ୟ ପଥରେ ଗଲେ, ମୁଁ ପୁତ୍ରକୁ ଧରି ଗ୍ରାମ ବାହାର ବୃକ୍ଷ ଛାୟାର ଆଶ୍ରୟ ନେଲି । କଲେରା ରୋଗୀକୁ ଅପରିଚ଼ିତ ଗ୍ରାମବାସୀମାନେ ବା ଆଶ୍ରୟ ଦେବେ କାହିଁକି ? ବୃକ୍ଷହିଁ ମୋର ଆଶ୍ରୟଦାତା ହେଲା । ଔଷଧ ନାହିଁ, ପଥ୍ୟ ନାହିଁ, କୌଣସି ସାହାଯ୍ୟ ନାହିଁ, ମୁଁ ଓ ମୋର ମୁମୂର୍ଷୁ ପୁତ୍ର । କ୍ଷଣେ ମାତ୍ର ଛାଡ଼ି ଯିବାର ଉପାୟ ନ ଥିଲା । ପୁଅ ଶୋଇଛି, ମୁଁ ବସିଛି । ରୋଗର ବେଦନା, କ୍ଷୁଧା ତୃଷାର ଯନ୍ତ୍ରଣା ଅତ୍ୟନ୍ତ ଅସହ୍ୟ । ତିଳେ ତିଳେ ବାଳକର ଜୀବନୀଶକ୍ତି ହ୍ରାସ ପାଉଅଛି । ମୁଁ ପିତା ହୋଇ ଦେଖୁଅଛି । ତୃଷାରେ ଛଟପଟ ହେବାରୁ ନିକଟବର୍ତ୍ତୀ ଡୋବାରୁ ଦୂଷିତ ଜଳ ଆଣି ଅଳ୍ପ ପିଆଇଲି । ସେ ଦୃଶ୍ୟ ବର୍ଣ୍ଣନା କରିବାର ମୋର ଶକ୍ତି ନାହିଁ । ଜଳ ପାନ କରି ଟିକିଏ ଶାନ୍ତ ହେଲା, କହିଲା, ''ବାବା, ମତେ କାହିଁକି ଘରୁ ଘେନି ଆସିଲୁ ? ମା' ତ ସେଠାରେ ଅଛି, ମୋତେ ସେଠାକୁ ନେଇ ଯା।'' ଏହା ଅଲଙ୍ଘନୀୟ ଆଦେଶ ବୋଲି ପ୍ରତୀତ ହେଲା । ବାକ୍ୟବ୍ୟୟ ନ କରି ଚକ୍ଷୁରୁ ଲୋତକ ପୋଛିଦେଇ ପୁତ୍ରକୁ କୋଳରେ ଧରିଲି । ଛାତି ଉପରେ ରଖି ସ୍ୱଗ୍ରାମ ଅଭିମୁଖରେ ଫେରିଲି, ସେତେବେଳେ ପ୍ରାୟ ସୂର୍ଯ୍ୟାସ୍ତ । ଅନ୍ଧକାର ମାଡ଼ି ଆସିଲା । ଅରଣ୍ୟ ପଥ ଅନ୍ଧକାର ଦ୍ୱିଗୁଣିତ ହେଲା । ହେଉ, ମହାନ୍ଧକାର ମାଡ଼ି ଆସୁ, ବଜ୍ରପାତ ହେଉ, ପ୍ରଭଞ୍ଜନ ବୃକ୍ଷ ଲତା ଉତ୍ପାଟନ କରୁ, ବ୍ୟାଘ୍ର ଭଲ୍ଲୁକ ପଥ ଓଗାଳନ୍ତୁ, ଚିନ୍ତା ନାହିଁ, ଭୟ ନାହିଁ, ମୋର ଗୃହ ବ୍ୟତୀତ ଏ ପୃଥିବୀରେ ମୋର ପୁତ୍ର ନିମନ୍ତେ ଅନ୍ୟ ସ୍ଥାନ ନାହିଁ । ସୁତରାଂ ସମସ୍ତ ବାଧା ବିଘ୍ନକୁ ନ ମାନି ଗୃହକୁ ଯିବାକୁ ହେବ । ଚାଲୁଅଛି, ପୁତ୍ର ଅଛି ମୋର ବକ୍ଷରେ। ତା'ର ସେ ଜୀବନ ଅଛି, ଏହା କେବଳ ଜଣାଯାଉଥାଏ । ତା'ର ଉତ୍ତପ୍ତ ପ୍ରଶ୍ୱାସ ବାୟୁରୁ । ଅନେକ ରାତ୍ରରେ ଗୃହରେ ପହଞ୍ଚିଲି, ତା'ର ନିଜ ସ୍ଥାନରେ ତାକୁ ଶୁଆଇ ଦେଲି । ଟିକିଏ ଜଳ ପିଆଇଲି । ଚେତନା ପାଇ ପୁଅ କହିଲା, ''ବାବା, ମତେ ତ ଘରକୁ ଆଣିଲୁ, ମା କେଉଁଠାରେ ?'' ଏହା କହି ତୁନି ହୋଇ ରହିଲା । ମୁଁ ନିଆଁ ଜାଳିଲି ଓ ନିକଟରେ ବସି ରହିଲି । ତୁମେ ଯେପରି ତୁମର ପୁତ୍ରକୁ ଦେଖୁଥିଲ ସେହିପରି । ଭାବୁଥାଏଁ, ମୋ ପରିବର୍ତ୍ତରେ ତା'ର ମା' ଯେବେ ବଞ୍ଚିଥାଆନ୍ତା, ତାହାହେଲେ ବୋଧହୁଏ ମୋର ପୁତ୍ରର ସେବା ଶୁଶ୍ରୂଷା ଭଲ ହୋଇଥାଆନ୍ତା, ବୋଧହୁଏ ସେ ଏହାର ଜୀବନରକ୍ଷା କରିପାରିଥାଆନ୍ତା । ମୁଁ ଏପରି ଭାବୁଛି, ପୁଅ ପୁଣି ଛଟପଟ ହେବାକୁ ଲାଗିଲା । ଦୁଇ ଥର ମା' ମା' କହି ତୁନି ହେଲା । ପ୍ରାଣବାୟୁ ଉଡ଼ିଗଲା । ସେହି ଜନଶୂନ୍ୟ ଗ୍ରାମର ଗୃହରେ ଏକାକୀ ତା'ର ଜନକ ମୁଁ ଅଶ୍ରୁବିଗଳିତ ନେତ୍ରରେ ସଂସାରର ବିଭୀଷିକା ଦେଖିବାକୁ ଲାଗିଲି । ମୋ ନିମନ୍ତେ ସଂସାରର ଯାବତୀୟ ବନ୍ଧନ ଛିନ୍ନ ହେଲା । ପୁତ୍ରର ଶବକୁ

ନେଇ ତା'ର ମାତୃକ୍ରୋଡ଼ରେ ଶୁଆଇଦେଲି । ରାତ୍ର ନ ପାହୁଣୁ ଧନୁ କାଣ୍ଡ ଓ ଟାଙ୍ଗି ଧରି ଗ୍ରାମ ତ୍ୟାଗ କଲି । ଦୁଇ ଚାରି ଦିନ କୌଣସି ପ୍ରକାରେ ଅତିବାହିତ କଲି । ଘଟନାକ୍ରମେ କେତେ ଜଣ ଡକାୟତଙ୍କ ସହିତ ମୋର ସାକ୍ଷାତ୍ ହେଲା । ସେମାନଙ୍କ ଶିକ୍ଷାରେ ପଡ଼ି ଏହା ଉଦରପୋଷଣର ଉପାୟ ବୋଲି ଭାବିଲି । ସେହିଦିନୁ ଡକାୟତିଦ୍ୱାରା ଉଦରପୋଷଣ କରୁଅଛି, ମାତ୍ର ମୋଠାରେ କୌଣସି ଧନ ସମ୍ପତ୍ତି ନାହିଁ । ସମୟ ସମୟରେ ମୋର ସ୍ତ୍ରୀପୁତ୍ରଙ୍କ କଥା ସ୍ମରଣ କରି ବିସ୍ମିତ ହୁଏଁ, ମାତ୍ର ସଙ୍ଗୀମାନଙ୍କ ଶିକ୍ଷା ଏବଂ ପୋଲିସର ଭୟ ମୋତେ ଉପାୟାନ୍ତର ଗ୍ରହଣର ସାହସ ଦିଏ ନାହିଁ । ଏଣୁ ମୁଁ ଡକାୟତ । ଆଜି ଆମ୍ଭମାନଙ୍କୁ ୪।୫ କ୍ରୋଶ ଯିବାକୁ ଥିଲା, ନ ଗଲେ ଗତି ନାହିଁ । ଅତ୍ୟନ୍ତ ବୃଷ୍ଟି ହେବାରୁ ଏବଂ ମୋର ଉପଯୁକ୍ତ ବସ୍ତ୍ରାଭାବରୁ ବିଶେଷ ଶୀତ ହେଲା । ମୁଁ କ୍ଳାନ୍ତ ହୋଇପଡ଼ିଲି । ସଙ୍ଗୀମାନେ ଆଗରେ ଚାଲିଗଲେ, ଗୋଡ଼ାଇ ପାରିଲି ନାହିଁ, ଏଣୁ ଏଠାକୁ ଆସିଲି । ତୁମ ଘରେ ଡକାୟତି କରି କିଛି ନେବାର ବାସନା କରିଥିଲି । ଗ୍ରାମ ଶୂନ୍ୟ ଦେଖି ସଙ୍ଗୀମାନେ ଏ ଗ୍ରାମରେ ରହିଲେ ନାହିଁ । ସେମାନେ ଏଠାକୁ ଫେରିବାର ଭୟ ନାହିଁ । ମୁଁ ଡକାୟତି, ମାତ୍ର ନିଷ୍ଠୁର ନୁହେଁ । ତୁମର ଯେଉଁ ଦଶା, ମୋର ସେହି ଦଶା-ତୁମ କଥା ଶୁଣି ମୋର ଜ୍ଞାନୋଦୟ ହେଲା । ତୁମ ପୁତ୍ରର ଡାକ ଶୁଣି ମୋର ପୁତ୍ରର କଥା ସ୍ମରଣ ହେଲା । ତୁମେ ଜନନୀ ବୋଲି ତୁମର ପୁତ୍ରକୁ ବଞ୍ଚାଇ ରଖି ପାରିଅଛି । ମୁଁ ପୁରୁଷ, ତେଣୁ ମୋର ପୁତ୍ରକୁ ବଞ୍ଚାଇ ପାରିଲି ନାହିଁ । ମୁଁ ଯେବେ ସ୍ଥାନାନ୍ତରକୁ ମୋର ପୁତ୍ରକୁ ନେଇ ନ ଥାନ୍ତି, ସେ ମରି ନ ଥାନ୍ତା । ତୁମ ପରି ମୋର ଧୈର୍ଯ୍ୟ ନ ଥିଲା । ଏଣୁ ମୋର ଏ ଦୁର୍ଦ୍ଦଶା । ତୁମ ପୁତ୍ରର ପିତା ଡାକ ମତେ କୁବୃତ୍ତିରୁ ରକ୍ଷା କରିଅଛି । ପୋଲିସ ମତେ ଜେଲ ଦେଉ, ଫାଶୀ ଦେଉ, ମୁଁ ଡକାୟତି ବୃତ୍ତି ଛାଡ଼ି ଏଠାରେ ରହି ତୁମର ସାହାଯ୍ୟ କରିବି । ତୁମ ପୁତ୍ର ସମ୍ପୂର୍ଣ୍ଣ ରୋଗମୁକ୍ତ ହେଲେ ମୁଁ ବିଦାୟ ନେଇ ଦେଶାନ୍ତରକୁ ଚାଲିଯିବି । ଇତି ମଧ୍ୟରେ ଯାହା ଘଟିବାର ଘଟୁ । ମୁଁ ତୁମର ସାହାଯ୍ୟରେ ରହିଲି । ତୁମ ପୁତ୍ର ଅବଶ୍ୟ ଭଲ ହେବ ।''

ପାହାନ୍ତା ହେଲା— ବାଳକ ଡାକଦେଲା, ''ମା'! ଭଲ ଲାଗୁଛି । ତୁ ଶୋଇ ନାହୁଁ ଯେ ।'' ଏହା ଶୁଣି ଜନନୀର ଏବଂ ଡକାୟତର ନୟନରୁ ଆନନ୍ଦାଶ୍ରୁ ବିଗଳିତ ହେଲା । ବାଳକ ପୁଣି ଶୋଇପଡ଼ିଲା ।

•

# ମେଷବଳି

ଶାରଦୀୟ ଶୁକ୍ଳା ଷଷ୍ଠୀ । ଆକାଶ ମେଘଶୂନ୍ୟ । ଦିଗ୍‌ବଳୟରେ ମଧ୍ୟ ମେଘର ଲେଶ ନାହିଁ । ନଭୋମଣ୍ଡଳ ନିର୍ମଳ । ନିର୍ମଳ ନୀଳ ସରୋବରରେ ଅଦ୍ୱିତୀୟ ଶୁକ୍ଳ ରାଜହଂସ କ୍ରୀଡ଼ା କଲା ପରି ନିର୍ମଳ ନୀଳ ଆକାଶରେ ଚନ୍ଦ୍ର ଭାସମାନ । ପୂର୍ଣ୍ଣ ହେବାକୁ ତ ବହୁତ ବିଳମ୍ବ, ଅଷ୍ଟମ କଳା ପ୍ରାପ୍ତ ନ ହୋଇ ସୁଦ୍ଧା ଆଜି କଳାକାର ଚନ୍ଦ୍ରିକାସ୍ରୋତରେ ଜଗତକୁ ଧୌତ କରିବାକୁ ସମର୍ଥ । ବର୍ଷା ଅବସାନ । ଶୀତ ନାହିଁ— ତାପ ନାହିଁ । ସନ୍ଧ୍ୟା ସୁଖକର । ସାନ୍ଧ୍ୟ ସମୀରଣ ଆହ୍ଲାଦକର । ଆଜି ସନ୍ଧ୍ୟାରେ ସମସ୍ତେ ଅବାଧ, ମୁକ୍ତ ।

ବାଳକ ବାଳିକାଗଣ ଖେଳରେ ରତ । ସେମାନଙ୍କ କୋଳାହଳ ବାତ୍ସଲ୍ୟପ୍ରେମାପ୍ଳୁତ ଜନକ ଜନନୀଙ୍କୁ ସୁଶ୍ରାବ୍ୟ ସଙ୍ଗୀତ । ଜନନୀମାନେ ଆପଣା ଆପଣା ସାନ ସାନ ସନ୍ତାନମାନଙ୍କୁ ବକ୍ଷୋପରି ଆସୀନ କରାଇ ଆକାଶବିହାରୀ ଆତ୍ମୀୟର ପରିଚୟ କରାଇବାରେ ବ୍ୟସ୍ତ । ଜହ୍ନମାମୁଁ ବାଳକ ବାଳିକାମାନଙ୍କର ବଡ଼ ସ୍ନେହ ଓ ଆଦରର ପାତ୍ର, ଯେହେତୁ ମାର ଭାଇ । କେଉଁ ଜନନୀ ମାମୁଁର ପ୍ରଥମ ପରିଚୟ କରାଉଥିଲେ, କେହି ବା ଚନ୍ଦ୍ର କେଉଁ ସୂତ୍ରରେ ମାମୁ ହେଲା, ତହିଁର ବିବରଣ ପ୍ରକାଶ କରୁଥିଲେ । କେହି କ୍ଷୁଦ୍ର ଶିଶୁକୁ ବକ୍ଷୋପରି ରଖି ସରଗ ଶଶୀକୁ କିପରି ଡାକିବାକୁ ହୁଏ, ତହିଁର ଶିକ୍ଷା ଦେଉଥିଲେ । ଶିଶୁ ଶଶୀକୁ ଡାକିବାକୁ ମାତାଙ୍କର ଅନୁକରଣରେ ଆପଣାର କ୍ଷୁଦ୍ର ହସ୍ତାଙ୍ଗୁଳିମାନଙ୍କର ଆକୁଞ୍ଚନ ପ୍ରସାରଣ କରୁଥିଲେ । ସତେ କି ଶଶୀ ତା' ହାତରେ କିମ୍ବା ମାତୃବକ୍ଷରେ ଆସି ବିରାଜମାନ କରିବେ, ଏହି ଆଶାରେ ସେ ହସ ହସ ହେଲାବେଳେ ଜନନୀ ସନ୍ତାନର ମୁଖ ସହିତ ଚନ୍ଦ୍ରର ତୁଳନା କରୁଥିଲେ ଏବଂ ସନ୍ତାନର ମୁଖଶୋଭାରେ ପରିତୃପ୍ତ ହୋଇ ଘନ ଘନ ଚୁମ୍ବନ ଦାନ କରୁଥିଲେ । ଆଉ 'ନରାଣାଂ ମାତୁଳାକୃତିଃ' ଏହି ପ୍ରବାଦ ସତ୍ୟ ବୋଲି ଅନୁଭବ କରୁଥିଲେ । ଏ ପ୍ରେମର ତୁଳନା ନାହିଁ । ସ୍ପୃହାଶୂନ୍ୟ ଜହ୍ନମାମୁଁ ଦୂର ଆକାଶରେ ଥାଇ ଭଗିନୀ ଓ ଭଣଜା ଭାଣିଜୀଙ୍କ ସ୍ନେହାଭିନୟ ଦେଖୁଥିଲେ । ଦଶହରା ପର୍ବର କୋଳାହଳ ଶବ୍ଦ ମେଦିନୀକୁ କମ୍ପାଉଥିଲା । ପୂଜା ଆଉ ଦୁଇ ଦିନ । ଶଙ୍ଖଧ୍ୱନି ଓ ହୁଳହୁଳି ଧ୍ୱନି ସମସ୍ତଙ୍କୁ ଦେବୀପୂଜାର ସାମୀପ୍ୟ ସୂଚାଉଥିଲା । ସବୁଆଡ଼େ ଚହଳ । ସମସ୍ତେ ଆନନ୍ଦସାଗରରେ ଉଦ୍‌ବେଳିତ । ରୂପେଇମା'ର ମନ ଏଡ଼େ ବିରସ କାହିଁକି ? ଆଜି ସେ ଚନ୍ଦ୍ରାଲୋକରେ ଠିଆ ହୋଇ ନାହିଁ । କୋଳାହଳ ପ୍ରତି

ତା'ର ଲକ୍ଷ୍ୟ ନାହିଁ । ବାଦ୍ୟଧ୍ୱନିରେ ତା'ର ଉତ୍ସାହ ଜାତ ହେଉ ନାହିଁ । ପିଣ୍ଡା ଉପରେ ହାତଟି ଉପରେ ଗଣ୍ଡକୁ ରଖି ଶୋଇଛି । ଦ୍ୱାର ଆଡ଼କୁ ଚାହିଁଛି । ଆଜି ଚାରି ବର୍ଷ ଆଗରେ ସେ ତା'ର ଚାନ୍ଦମୁହଁ ରୂପେଇର ଭାଇକୁ ଛାତି ଉପରେ ବସାଇ ତା'ର ଜହ୍ନମାମୁର କି ପରିଚୟ କରାଉ ନ ଥିଲା । ତା' କାହ୍ନୁ ହାତରେ ଖସି ବସିବାକୁ ସରଗ ଶଶୀକୁ କି ଡାକି ନ ଥିଲା ? "ଆହା, ତା' ରୂପକାନ୍ତି ଦେଖି ତା' ଜହ୍ନମାମୁଁ ତାକୁ ନେଇଗଲା । ମୁଁ ଆଜି କାହାକୁ କାଖରେ ଧରି ଚାନ୍ଦନି ରାତିରେ ଠିଆ ହେବି, ହସ କଉତୁକ କରିବି ।" ରୂପେଇ ମା'ର ଦୁଇ ଚକ୍ଷୁକୁ ଦୁଇ ଧାର ଲୋତକ ଖସି ପଡ଼ିଲା । "ଜହ୍ନମାମୁଁ ସଭିଙ୍କର, ସେ କ'ଣ କେବଳ ବ୍ରାହ୍ମଣ, ରାଜପୁତ ବା କରଣର ମାମୁଁ— ବାଉରି କଣ୍ଡରାର କି ମାମୁଁ ନୁହେଁ ? ମୋ ବଳା ତାକୁ ମାମୁଁ ବୋଲି ଡାକୁଥିଲା । ମୋ ରୂପେଇ ତାକୁ ମାମୁଁ ବୋଲି ଡାକେ । ସେ ସଭିଙ୍କରି । ଗେଲ କରିବା ଛୁଆ ତ ଚାଲିଗଲା । ରୂପେଇ ତ ବାର ବରଷର ଝିଅ, ତାକୁ ଧରି ମୁଁ କି ଗେଲ କରିବି ? ମୋ କପାଳରେ ଏହା ଥିଲା ।" ରୂପେଇ ମା' ଆଖିରୁ ପୁଣି ଲୁହଧାର ଗଡ଼ି ପଡ଼ିଲା । ଲୁହ ପୋଛିଦେଇ ପୁଣି ବାଟ ଆଡ଼କୁ ଅନାଇ ରହିଲା । "ରୂପେଇ ଏତେ ବେଳଯାଏ ଗଲା କାହିଁ, ଏତେ ବେଳକୁ ତ ଆସେ ସେ ।" କିଛିକ୍ଷଣ ଚାଲିଗଲା ।

"ମାଲୋ, ମା' ! ସଞ୍ଜ ମୁହଁଟାରେ ଶୋଇଛୁ କାହିଁକି ପିଣ୍ଡାଟାରେ, କେଡ଼େ ସୁନ୍ଦର ଚାନ୍ଦନିରାତି, ଦୁଆରେ ହେଂସକ ପକାଇ ଶୋଇଥାନ୍ତୁ କି ବୁଲୁ ଥାନ୍ତୁ କି ପର୍ବ ଦେଖି ଯାଇଥାନ୍ତୁ ।" ରୂପେଇ ଦାଣ୍ଡ ଦୁଆରେ ପହଞ୍ଚି ପାଟି କରି କହିଲା । ରୂପେଇ ମା' ଚମକି ଉଠି କହିଲା, ଏତେ ଉଛୁରଯାଏ କେଉଁଠି ଥିଲୁରେ ମା, ମୁଁ ବାଟ ଚାହିଁ ଚାହିଁ ଦୁଇ ଅସରା କାନ୍ଦିଲିଣି ।" "କାହିଁକି, ମୁଁ କ'ଣ ହଜି ଯାଉଥିଲି ନ ମୋତେ କିଏ ନେଇ ଯାଉଥିଲା ? ମୁଁ ମହା ସୁଖରେ ଚାନ୍ଦନିରାତିରେ ବୁଲି ବୁଲି ଦେଖୁଥିଲି । ଉଠ, ଭାତ ଖାଇବା ।" "ନାହିଁରେ ମୋର ଆଜି ଦିହସୁଖ ନାହିଁ, ମୁଁ ଖାଇବି ନାହିଁ, ତୁ ଯା ଖାଇବୁ ।" "ତୁଚ୍ଛା କଥା, ମିଛ, ଦିହ ତ ତାତି ନାହିଁ, ଅସୁଖ ହେଲା କେମିତି ? ଜାଣିଲି ଜାଣିଲି, ହାଣ୍ଡିରେ ଅଳ୍ପ ଭାତ ଥିବ, ଏଣୁ ମୋ ପେଟ ପୂରିବ ନାହିଁ ବୋଲି ତୁ ଖାଇବାକୁ ନାରାଜ । ଉଠ, ଖାଇବା, ଯାହାକିଛି ଭାଗ କରି ଖାଇବା ।" "ନା, ନା, ସତେ, ମତେ ଭଲ ଲାଗୁ ନାହିଁ । କେବଳ ଦିହ ଗରମ ହେଲେ ଅସୁଖ ? ମୁଣ୍ଡବଥା ଅଛି, ପେଟବଥା ଅଛି, ମନର ଅସୁଖ ଅଛି । ଯା, ତୁ ଭାତ ଆଣି ଦୁଆରେ ବସି ଖା । ମୁଁ ଏଇଠି ଶୋଇଥାଏଁ ।" ଘର ବଖରା ଭିତରୁ ଭେଁ ଭେଁ ଶବ୍ଦ ଶୁଭିଲା । ରୂପେଇ କହିଲା, "ଆହାରେ ମୋର ଲାଲା, ଆହାରେ ମୋର ଧନ, ତୁ ମୋତେ ଖୋଜୁଥିବୁ, ମୁଁ ବାଜା ଶୁଣି ଯାଇଥିଲି, ତୁ କ'ଣ ଶୁଣନ୍ତୁ ଯେ ତତେ ନିଅନ୍ତି ? ମା' ତ ଭାତ ଖାଇବ ନାହିଁ, ଆମେ ଦୁହେଁ ଜହ୍ନ ଆଲୁଅରେ ଭାତ ଖାଇବା ।" କହି ଘର ଭିତରକୁ ପଶି ତା'ର ପାଳିତ ମେଷ ଶାବକକୁ ବହୁତ ଗେଲ କଲା, ଚୁମା ଦେଲା । ପୁଣି ଭାତ ବାଢ଼ି ଆଣି ଦୁଆରେ ରଖିଲା, ତା'ର ଲାଲାକୁ ଆଣି ନିକଟରେ ବାନ୍ଧିଦେଲା । ଗୋଟିଏ ପଲମରେ ତାକୁ ପେଜ ଭାତ ଦେଲା, ଆପେ ଖାଇବାକୁ ବସିଲା । ରୂପେଇ ମା' ଏ ଦୃଶ୍ୟ ଦେଖୁଛି ଏବଂ ତା'ର ଅସୁଖ ଓ ଅଶାନ୍ତି କମୁଛି ।

ରୂପେଇର ଭାତଖିଆ ସାରିଲା । ମା' ଝିଅ ପିଣ୍ଡାରେ ବସିଲେ, ଲାଲା ଦ୍ୱାରରେ ଶୋଇଲା । ରୂପେଇ ମା' ରୂପେଇ ମୁଣ୍ଡ ଆଉଁସି ଆଉଁସି କହିଲା, "ମା'ରେ, ଗୋଟିଏ କଥା କହିବି ମାନିବୁ ।" "ମୁଁ, ତୋର କଥା କ'ଣ ମାନେ ନାହିଁ ?" "ହଁରେ ମା', ତୁ ମୋ ସୁନାଝିଅ, ତୋ ନା ସିନା ରୂପେଇ ।" ରୂପେଇ ତା' ମା' ବକ୍ଷରେ ମୁଣ୍ଡ ରଖି ଆନନ୍ଦରେ ହସିବାକୁ ଲାଗିଲା । ପୁଣି ତା' ମା' କହିଲା, "ରୂପେଇ, ହାତ ଯୋଡ଼ି ମା' ଦୁର୍ଗାଙ୍କୁ ଜୁହାର କର ।" ରୂପେଇ ତାହା କଲା ।

ରୂପେଇ ମା' କହିଲା, "କି କଥା କି ରୂପେଇ, ଅଷ୍ଟମୀ ରାତିରେ ମା'ଠାରେ ବଳି ଦେବାକୁ ମେଣ୍ଢା ମିଳୁ ନାହାନ୍ତି, ଆମ ଲାଲାକୁ ମା'ଠାରେ ବଳି ଦେବାକୁ ମୁଁ କହୁଛି । ରାଜି ହେବୁ ତ ?" ରୂପେଇ ଚମକି ଉଠିଲା, ତା ଗୋଡ଼ ଲାଲା ଦିହରେ ବାଜିଲା, ଲାଲା ଭେଁ ଭେଁ କରି ଡାକିଲା । ରୂପେଇ ଲାଲାକୁ ହାତରେ ଆଉଁସୁ ଆଉଁସୁ କହିଲା, "କି କଥା କହିଲୁ ମା' । ମୋର ଲାଲାକୁ ହଣାଇବ କି ? ଆହା, ମୁଁ ତାକୁ କେତେ ଯତ୍ନରେ ପାଳିଛି । ତାକୁ ଜନ୍ମ କରି ତ ତା' ମା' ମରିଗଲା । ଲାଲା ଜୀଇବାର ଆଶା ନ ଥିଲା । ଉମା ସାହୁ ତାକୁ ରଖି ନ ପାରି ମୋତେ ଦେଲା, ମୁଁ ତାକୁ ପେଜ ପିଆଇ, ଚରାଇଲାବେଳେ ଅନ୍ୟ ମେଣ୍ଢାମାନଙ୍କଠାରୁ ଦୁଧ ପିଆଇ ବଞ୍ଚାଇଛି । ଛୁଆ ହୋଇଥିଲାବେଳେ ଛେଳି ମେଣ୍ଢା ଚରାଇବାବେଳେ ବୋହି ବୋହି ବୁଲିଛି । ଆଜି ତାକୁ ହଣାଇବି । ସେ କଥା ହେବ ନାହିଁ ।" "ମେଣ୍ଢା ତ ମେଣ୍ଢା, ଏପରି ତ କେତେ ଲୋକେ ମା'କୁ ଛେଳି ମେଣ୍ଢା ବଳି ଦେଉଛନ୍ତି, ଆମେ ଦେଇ ପାରିଲେ ତ ଭାଗ୍ୟର କଥା ।" "ଥାଉ ଥାଉ, ଯେ ମୋର ଲାଲାର ରକ୍ତ ଖାଇବ, ସେ କି ମା' । ଲାଲାକୁ ଖାଇଲେ ମୋତେ ଖାଇବ ନାହିଁ ?" "କି କଥା କହୁ ତୁ, ମଣିଷ କାହିଁ, ଲାଲା ମେଣ୍ଢାଟା କାହିଁ ?"

''ମା' କ'ଣ ରକ୍ତ ପିଏ ? ତୁ କ'ଣ ମୋ ରକ୍ତ ଖାଇବୁ ?''

''ଅବୁଝା ଝିଅ, ମୋ କଥା ଆଉ ମା କାଳୀ କଥା କ'ଣ ଏକା ? ଦେଖୁ ନାହୁଁ ଲୋକେ ମା'ର ପୂଜା ପାଇଁ କେତେ ବାଜା ବଜାଉଛନ୍ତି, ଉତ୍ସବ କରୁଛନ୍ତି, ସାମଗ୍ରୀ ଦେଉଛନ୍ତି, ବଳି ଦେଉଛନ୍ତି । ସେମାନଙ୍କ ସଙ୍ଗରେ ଆମେ ସମାନ କି ରେ ଅବୁଝା ଝିଅ ।''

''ମୁଁ ଏତେ କଥା ଜାଣେ ନାହିଁ, ଯେ ମୋର ଲାଲାର ରକ୍ତ ଖାଇବ, ସେ ମୋର ମା' ନୁହେଁ, ମୁଁ ଲାଲାକୁ କେବେ ଦେବି ନାହିଁ ।''

ରୁପେଇ ମା' ମନେ ମନେ ମା'ଙ୍କର ଧ୍ୟାନ କଲା, ତା' ଝିଅଟିର ଦୋଷ ନ ଧରିବାକୁ ପ୍ରାର୍ଥନା କଲା । କିଛିକ୍ଷଣ ତୁନି ହୋଇ ରହିଲା ।

ପୁଣି କହିଲା, ''ରୁପେଇ, ବୁଝିଲେ ସିନା ହେବ, ଅବୁଝା ହେଲେ ତ ସବୁ ସରିଲା । ମୋ କଥାଟି ମନ ଦେଇ ଶୁଣ, ଆମମାନଙ୍କର ଭଲ ଦଶା ହେବ ।'' ରୁପେଇ ତୁନି ।

ରୁପେଇ ମା' କହିଲା, ''ଆମେ ଜମିଦାରର ପ୍ରଜା— ଏହା ଡିହ ବାଡ଼ି ଜମିଦାରଙ୍କର—ସେ ଆମର ମା' ବାପ । ରହ ବୋଇଲେ ଅଛୁଁ, ଏଠାରୁ ଯାଅ ବୋଇଲେ ପଳାଇବାକୁ ହେବ ।''

''ମା', ତୁ ପରା କର ଦେଉ ?''

''କର ଦେଲେ କ'ଣ ହେଲା, ଭୂମି ତ ତାଙ୍କର ।''

''ଆମେ ତ କିଛି ଦୋଷ କରି ନାହୁଁ, ତଡ଼ିଦେବେ କାହିଁକି ?''

''ତାଙ୍କୁ କଥା ନ ରଖିଲେ ରୋଷ ବହି ତଡ଼ିଦେବେ ।''

''ତଡ଼ିଦେଲେ ପଳାଇ ଯାଇ ଅନ୍ୟ ସ୍ଥାନରେ ରହିବା । ଏଠି ଯେପରି ମୂଲଲାଗି ବଞ୍ଚୁଛୁଁ ସେହିପରି ବଞ୍ଚିବା ।''

''ଆଜି ଜମିଦାରଙ୍କ ପିଆଦା ଆସିଥିଲା ଲାଲାକୁ ନେବାକୁ । ସେ ବଡ଼ଲୋକ, ତାଙ୍କୁ କେତେ ବୋଦା ଗାରଡ଼ ମିଳୁ ନାହାନ୍ତି କି । ଏଥର କିପରି ହେଲା ଯେ, ଗୋଟିଏ ଭଲ ଗାରଡ଼ ମିଳିଲା ନାହିଁ । ତାଙ୍କର କି ମାନସିକ ଅଛି । ଏଣୁ ଲାଲାକୁ ନେବେ ।''

''ଦେବୀଠାରେ ହାଣିବାକୁ ?''

''ହଁରେ ହଁ, ମା' ଠାରେ ବଳିଦେବେ ।''

''ମୁଁ ଦେବି ନାହିଁ ।''

''ଦେବୁ ନାହିଁ ? ତୋତେ ମଧ୍ୟ ବାନ୍ଧି ନେଇ ଶାସ୍ତି ଦେବେ, ମୁଁ ତୋ ଲାଗି କାନ୍ଦୁଥିବି ।''

''ମୋତେ ସିନା ଶାସ୍ତି ଦେବେ, ଲାଲାକୁ ଯେ ବୃଥାଟାରେ ହାଣି ପକାଇବେ ।''

''ବୃଥାଟାରେ କାହିଁକି ? ମା' ଲାଲାର ରକ୍ତ ଖାଇ ଖୁସି ହେବେ, ଜମିଦାରର ଭଲ କରିବେ— ଜମିଦାର ଆମକୁ ଟଙ୍କା ଦେବେ, ଆମେ ଟଙ୍କା ନେଇ ପୁଣି କିଣିବା ନାହିଁ କି ?

ମୁଁ ଲାଲାକୁ ବିକିବି ନାହିଁ । ଯେ ରକ୍ତ ଖାଏ, ସେ ମା' ନୁହେଁ । ମୁଁ ଲାଲାକୁ ଦେବି ନାହିଁ, ଯାହା ହେବାର ହେଉ ।''

ରୁପେଇ ମା' ଦେଖିଲା, ବାଳିକା ନିତାନ୍ତ ଅବୁଝା । ସାମାନ୍ୟ ମେଣ୍ଢାଟି ନିମନ୍ତେ ଏତେ ଜିଦ୍ । ରୁପେଇ ମା' ଆଉ ବାକ୍ୟବ୍ୟୟ ନ କରି ମା'ଙ୍କ ଉଦ୍ଦେଶ୍ୟରେ ତିନି ଥର ପିଣ୍ଡାରେ ମୁଣ୍ଡ ବାଡ଼େଇଲା ଏବଂ ତା'ର ଦୋଷ କ୍ଷମା କରିବାକୁ ଜଣାଇଲା, ଆଉ ଭାବିଲା, ଯେବେ ଲାଲା ପ୍ରତି ମାର ଇଚ୍ଛା ବଳବତୀ ହୋଇଥାଏ, ତେବେ ତାକୁ ଯେ କୌଣସି ପ୍ରକାରେ ନେଇଯିବ ଏବଂ ରୁପେଇକୁ ଶାନ୍ତ କରାଇବ । ତା'ର ଏତେ କହିବାର ପ୍ରୟୋଜନ କ'ଣ ? ପୁଣି ମୁଣ୍ଡ ଲଗାଇ କହିଲା, ''ମା', ତୁ ଲାଲାକୁ ନେଇ ଯା, ମୋ ରୁପେଇର ଦୋଷ କ୍ଷମା କର ।''

ରୁପେଇ ଲାଲା ସହିତ ଘର ଭିତରକୁ ଯାଇ ଶୋଇଲା, ତା'ର ମା' ପ୍ରତି ଭ୍ରୂକ୍ଷେପ କଲା ନାହିଁ ।

ଆରଦିନ ସକାଳୁ ଆସି ପିଆଦା ଉପସ୍ଥିତ । ରୁପେଇ ଲାଲାକୁ ଦେବାକୁ ଅସ୍ୱୀକାର କରିବାରୁ ଲାଲା ସହିତ ରୁପେଇକୁ କଚେରିଠାକୁ ଘେନି ଗଲା । ରୁପେଇ ମା' ଘରେ ବସି କାନ୍ଦୁଛି ।

କଚେରି ଦ୍ୱାରରେ ଲାଲା ଓ ରୁପେଇ ଦଣ୍ଡାୟମାନ । ପିଆଦା ଦେବାନଙ୍କୁ ଡାକିବାକୁ ଗଲା । ଦେବାନ ଆସି ଦେଖିଲାବେଳକୁ ଲାଲାର ଦକ୍ଷିଣ କର୍ଣ୍ଣରୁ ଅର୍ଦ୍ଧେକ ନାହିଁ, ଅଜସ୍ର ରକ୍ତସ୍ରାବ ହେଉଛି । ଆଉ ରୁପେଇର ବାମ ହାତର ବୃଦ୍ଧ ଓ ତର୍ଜନୀ ଆଙ୍ଗୁଳୀରୁ ମଧ୍ୟ ଅଜସ୍ର ରକ୍ତସ୍ରାବ ହେଉଛି । ସମସ୍ତେ ଦେଖି ଅବାକ୍ । ମେଷଟି ବଳିର ଯୋଗ୍ୟ ନୁହେଁ ବୋଲି ମନ୍ତବ୍ୟ ଦେଲେ ।

ରୁପେଇ ଲାଲା ପ୍ରତି ସହାନୁଭୂତିରେ ଇଚ୍ଛାପୂର୍ବକ ଆପଣାର ଶରୀରରୁ ରକ୍ତପାତ କଲା ।

●

## ଏହା କି ଆତ୍ମହତ୍ୟା ?

ଅନୁଚ ଅଧିତ୍ୟକାରେ ଗୋଟିଏ କ୍ଷୁଦ୍ର ଗ୍ରାମ । କନ୍ଧମାନଙ୍କର ବସତି, କେହି ଚାଷୀ ନୁହନ୍ତି । ଏ କଥା ଅବଶ୍ୟ ଠିକ୍ ନୁହେଁ, ତେବେ ଜମି ଚାଷ କରନ୍ତି ନାହିଁ, ବିରଙ୍ଗା ଚାଷ କରନ୍ତି । ଗ୍ରୀଷ୍ମ କାଳରେ ଜଙ୍ଗଲ କାଟି ଶୁଷ୍କ ବୃକ୍ଷଲତା ସମୂହକୁ ଅଗ୍ନିଦ୍ୱାରା ଦଗ୍ଧ କରନ୍ତି । ବୃଷ୍ଟି ଆରମ୍ଭ ହେଲେ ସେଥିରେ ମକା, ରୁଁମା, କାକୁଡ଼ି, ଜଡ଼ା ପ୍ରଭୃତି ନାନା ଫସଲ ଉତ୍ପନ୍ନ କରି ଆପଣାର ଭରଣ ପୋଷଣ କରନ୍ତି । ଶୀତ କାଳରେ ନାନାପ୍ରକାର କନ୍ଧା ଖାଇ ବଞ୍ଚନ୍ତି । ଗ୍ରୀଷ୍ମ କାଳରେ ମହୁଲ, କେନ୍ଦୁ, ଚାରା ଆମ୍ବ, ଜାମୁ ପ୍ରଭୃତି ଖାଇ ବଞ୍ଚନ୍ତି । ବର୍ଷା କାଳରେ ପାର୍ବତୀୟ ଛତୁ ଏବଂ ନାନା ପ୍ରକାର ଶାକ ସେମାନଙ୍କର ପ୍ରଧାନ ଖାଦ୍ୟ । ବିରିଙ୍ଗାରୁ ଉତ୍ପନ୍ନ ପଦାର୍ଥ ମଧ୍ୟରୁ ଯାହା ଉଦ୍‌ବୃତ୍ତ ଥାଏ, ତହିଁର ବିନିମୟରେ ଲୁଣ; ତେଲ ଓ ପରିଧେୟ ସଂଗ୍ରହ କରନ୍ତି । ବାଉଁଶର ବୋଝ, ଡାଲା, ପ୍ରଭୃତି ପ୍ରସ୍ତୁତ କରି ତାହା ବିକ୍ରୟ କରନ୍ତି ଏବଂ ସେହି ପଇସାରୁ ମଧ ଦୈନନ୍ଦିନ ଜୀବନ ଯାତ୍ରା ନିର୍ବାହଯୋଗ୍ୟ ସାମାନ୍ୟ ସାମଗ୍ରୀ କ୍ରୟକରନ୍ତି । ଗ୍ରାମଟି କ୍ଷୁଦ୍ର, ନିର୍ମଳ । ଗ୍ରାମରେ ପୁଷ୍କରିଣୀ ବା ବନ୍ଧ ଆସିବ କାହୁଁ ? ଗ୍ରାମ ତ ଅଧିତ୍ୟକାରେ । ଗ୍ରାମରୁ ଅଧମାଇଲ ଦୂରରେ କମଳା ଝରଣା ନାମକ ଅତି ଉଚ୍ଚ ପ୍ରପାତ, ପ୍ରପାତ ତଳେ ବିସ୍ତୃତ ଅଥଚ୍ ଗଭୀର କୁଣ୍ଡ । ଏ ଜଳଧାର କେବେ ଶୁଖେ ନାହିଁ । ଏହି ଜଳ କୁଣ୍ଡର ଆଶ୍ରୟରେ ଗ୍ରାମର ସ୍ଥାପନା । ତେବେ ନିକଟରେ ସମଭୂମି ନ ଥିବାରୁ କୁଣ୍ଡଠାରୁ ଅଧମାଇଲରେ ଗ୍ରାମର ବସତି । ଗ୍ରାମ ବସତି ତୁଳନାରେ ଝିଅ ଭୁଆସୁଣୀ ସଂଖ୍ୟା କମ୍ ନ ଥିଲା ।

ଖାରୁ କନ୍ଧର ସ୍ତ୍ରୀର ନାମ ବାଇଗିଣୀ, ତାର ଝିଅର ନାମ ରାଣୀ । ନାମ ସହିତ ବ୍ୟକ୍ତିତ୍ୱ ଓ ଜାତିରତ କୌଣସି ସମ୍ବନ୍ଧ ନାହିଁ। ସୁତରାଂ ଯେଉଁମାନଙ୍କର ପୁତ୍ର କନ୍ୟା ଜନ୍ମରେ ଜ୍ୟୋତିଷ ଜାତକ ପ୍ରସ୍ତୁତ କରେ ନାହିଁ, ବ୍ରାହ୍ମଣ ନାମକରଣ କରେ ନାହିଁ, ସେମାନେ ପୁତ୍ର କନ୍ୟାର ରୂପବର୍ଣ୍ଣ ଦେଖି ନାମ ଦେଇଥାନ୍ତି । ଗୌର ବର୍ଣ୍ଣ କନ୍ୟାର ନାମ ଗୌରୀ, ସାହେବାଣୀ, ସୁନ୍ଦରୀ କନ୍ୟାର ନାମ ରାଣୀ, ଜେମା ଇତ୍ୟାଦି । ଏଥିରେ ଯାଏ ବା ଆସେ କେତେ ? ଗ୍ରାମରୁ ବାଳିକାମାନଙ୍କ ମଧ୍ୟରେ ଖାରୁର ଝିଅ ଯେ ଅତି ସୁନ୍ଦରୀ ଥିଲା, ତାହା କହିବା ନିଷ୍ପ୍ରୟୋଜନ । ଏଣୁ ବାପ ମା' ଆଦରରେ ତା' ନାମ ରଖିଥିଲେ ରାଣୀ । ରାଣୀର ଅନେକ ଗୁଣ ଥିଲା । ପିତା ମାତାଙ୍କର ସେ ଏକମାତ୍ର କନ୍ୟା । ଖାରୁର ପୁତ୍ର ନ ଥିଲେ । ଗ୍ରାମର ଲୋକେ କହନ୍ତି— ଖାରୁ ତୋର ପୁତ୍ର ହେଲା ନାହିଁ, ଆଉ ଗୋଟିଏ ବିବାହ କର । ବୃଦ୍ଧ ବୟସରେ ତୋତେ ପୋଷିବ କିଏ ? ଖାରୁ କହେ, ପୋଷିବା କଥା ପଚ୍ଛାରେ କିଏ ? ପୁତ୍ର ପୋଷିବା ଭଳି ହେବା ଆଗରୁ ମୁଁ ମଲେ ପୁଅକୁ ପୋଷିବ କିଏ ? ଘରେ ଦ୍ୱନ୍ଦ୍ୱ ଲଗାଇବାକୁ ଯୋଡ଼ିଏ ସ୍ତ୍ରୀ ରଖି ଦୁଃଖ ଭୋଗ କରୁଥିବି ସିନା । ବାଇଗିଣୀ ପରି ସ୍ତ୍ରୀ କାହା ଭାଗ୍ୟରେ ଅଛି ? ପୁଣି ରାଣୀ ପରି କନ୍ୟା କାହା କପାଳକୁ ମିଳୁଛି ? ମୁଁ କେବେ ଆଉ ବିବାହ ହେବି ନାହିଁ । ରାଣୀ ନିମନ୍ତେ ଉପଯୁକ୍ତ ବରଟିଏ ଖୋଜି ପାରିଲେ ହେଲା । ରାଣୀ ମୋତେ ପ୍ରତିପୋଷଣ କରିବ; ମୋ ମଲାପରେ ଘରେ ଖଣ୍ଡେ ଅଧିକାର କରିବ । ବିଲ ବାଡ଼ି ତ ନାହିଁ, ଚିନ୍ତା କାହିଁକି ? ମୁଁ ବେଶ ଭଲ ଅଛି । ରାଣୀର ବୟସ ପନ୍ଦର ଷୋହଳ । ଯେମନ୍ତ ସୁନ୍ଦରୀ, ତେମନ୍ତ କାର୍ଯ୍ୟକ୍ଷମ । ତା' ନିମନ୍ତେ ତା'ର ମା'କୁ ଗୃହକାର୍ଯ୍ୟ କରିବାକୁ ପଡ଼େ ନାହିଁ । ଆଉ ସମସ୍ତ କାର୍ଯ୍ୟରେ ପିତା ଓ ମାତାର ଯଥେଷ୍ଟ ସାହାଯ୍ୟ କରେ । ବାପ ପର୍ବତରେ ଗଛ, ବାଉଁଶ କାଟେ; ରାଣୀ ତାହା ଦାହ କରିବାକୁ ସଞ୍ଚିତ କରେ । ବିରିଙ୍ଗାରେ ବୀଜ ବପନ ବେଳେ ସେ ଯାହା କରିପାରେ ତା'ର ବାପ ମଧ ତାହା କରିପାରେ ନାହିଁ । ଅରଣ୍ୟରେ ଫଳମୂଳ ସଂଗ୍ରହ କରି ପିତା ମାତାଙ୍କର ତୃପ୍ତିସାଧନ କରେ। ବାପ ବୋଝ, କୁଲା ତିଆରି କରିବା ନିମନ୍ତେ ପର୍ବତରୁ ଜଙ୍ଗୀ ବାଉଁଶ କାଟି ବହିଆଣେ, କୃଷିଜାତ ଦ୍ରବ୍ୟ ଏବଂ ସେ ବୋଝ କୁଲା ପ୍ରଭୃତି ଦୂର ଗ୍ରାମକୁ, ହାଟକୁ ନେଇ ବିକ୍ରୟ କରିଆଣେ । ସେ ସମୟରେ ତା'ର ମା' ଆପଣା ଗୃହ କର୍ମ ଦେଖୁଥାଏ । କନ୍ଧ ଘରର ଝିଅ— ଏହାଠାରୁ ବଳି ପିତା ମାତାର ଆଉ ବେଶି ସାହାଯ୍ୟ କରନ୍ତା କ'ଣ ? କନ୍ୟାର ଏତାଦୃଶ କାର୍ଯ୍ୟପଟୁତା ଦେଖି ଖାରୁ ଓ ବାଇଗିଣୀର ଆନନ୍ଦର ସୀମା ନ ଥାଏ । ଦୁଇ ପ୍ରାଣୀ ଦିନେ ଦିନେ ଭାବନ୍ତି, ଏପରି ଝିଅ ଯାର, ଘରେ ତା'ର ପୁଣି ପୁଅର ଲୋଡ଼ା କ'ଣ । ଏକଥା ସତ ହେଉ ବା ନ ହେଉଏ ଖାରୁ, ବାଇଗିଣୀ ଓ ରାଣୀ ବଡ଼ ସୁଖରେ ଦିନପାତ କରୁଥାନ୍ତି । ଖାରୁ ଜାମାତାର ଅନ୍ୱେଷଣରେ ଥାଏ ସତ; ମାତ୍ର ବିଶେଷ ଭାବରେ ଉଦ୍ୟୋଗୀ ନ ଥାଏ । ରାଣୀର ମଧ ଆଗ୍ରହ ନାହିଁ । ସେ ପିତା ମାତାର ସେବା ଶୁଶ୍ରୂଷା କରି ଏବଂ ଗ୍ରାମର ସଙ୍ଗିନୀମାନଙ୍କର ସ୍ନେହ ସୌହାର୍ଦ୍ଦ୍ୟ ପାଇ ମହା ସୁଖରେ କାଳ କଟାଇ ଦେଉଥାଏ । ଜଙ୍ଗଲ ବୁଲିଲାବେଳେ ସଙ୍ଗିନୀଙ୍କ ସଙ୍ଗେ ତାଳଖାଇ ଗୀତ ଗାଉ ରାତ୍ରରେ କେବେ ଚାଙ୍ଗୁ ନାଚ, କେବେ ଦୋଳା ଝୁଲି ସୁଖାନୁଭବ କରୁଥାଏ । ସଙ୍ଗିନୀମାନଙ୍କ ସହିତ ତା'ର ସକଳ ପ୍ରକାର ଆନନ୍ଦ ଉପଭୋଗ କରିବାର ଅବସର ଥିଲେ ମଧ ଏକ ସଙ୍ଗରେ କମଳା ଝରଣା କୁଣ୍ଡର ସ୍ୱଚ୍ଛ ଜଳରେ କ୍ରୀଡ଼ା କରିବାର

ସୁଖରୁ ସେ ବଞ୍ଚିତା । ଗ୍ରାମର ଝିଅ ଭୁଆସୁଣୀମାନେ ଯେଉଁ ସମୟରେ କୁଣ୍ଡକୁ ଗାଧୋଇବା ନିମନ୍ତେ ଯାଆନ୍ତି, ସେତେବେଳେ ରାଣୀ ଗ୍ରାମାନ୍ତରକୁ କିଛି ନା କିଛି ବିକ୍ରୟ କରିବାକୁ ଯାଇଥାଏ । ଏହା ତା'ର ଦୈନନ୍ଦିନ କାର୍ଯ୍ୟ । ସେ ଫେରିଲାବେଳେ ସମସ୍ତେ ସ୍ନାନ ଶେଷ କରି ଗୃହକୁ ଫେରୁଥାନ୍ତି । ରାଣୀ ପ୍ରତ୍ୟହ ଏକାକିନୀ ସ୍ନାନ କରିବାକୁ ଯାଏ । ସେଥିରେ ମଧ୍ୟ ତା'ର ସୁଖ; କାରଣ ସେ ଯଥେଷ୍ଟ ରୂପେ ସ୍ୱାଧୀନ ଭାବରେ ସ୍ନାନ କରେ; ସନ୍ତରଣ କରେ । କାହାରି ଅପେକ୍ଷା ନାହିଁ । ଫେରିବାକୁ କାହାରି ଅନୁରୋଧ ଉପରୋଧ ଶୁଣିବାକୁ ପଡ଼େ ନାହିଁ ।

ବୈଶାଖ ମାସ— ନିର୍ଧୂମ ଖରା । ପ୍ରାୟ ଏଗାର ବାଜିଲା । ଖାରୁ ସ୍ନାନରୁ ଫେରି ବାଇଗିଣୀକୁ ପଚାରିଲା, 'ରାଣୀ ଏତେବେଳ ଯାଏ ଫେରି ନାହିଁ ?'

ବାଇଗିଣୀ କହିଲା, 'ଫେରି ନାହିଁ ବୋଧହୁଏ । ବୋଝ କୁଲା ବିକ୍ରୀ ହେଲା ନାହିଁ, ଏଣୁ ଗାଁ, ଗାଁ ବୁଲୁଥିବ— ବିକ୍ରୀ କରି ସାରିଲେ ଆସିବ । ଯେତେ କହିଲେ ତୁ ବୁଝେ ନାହିଁ ।

ଖାରୁ ତୁନି ହେଲା । ବାଇଗିଣୀ ଭାତ ବାଢ଼ିଦେଲା । ଖାରୁ ଭୋଜନ କରି ଶୋଇଲା । ବାଇଗିଣୀ ବାଟ ଚାହିଁ ବସିଛି । କିଛିକ୍ଷଣ ପରେ ରାଣୀ ଫେରିଲା । ବାଇଗିଣୀ ତାକୁ ଧରିଆଣି ଘରେ ବସାଇଲା । ରାଣୀର ଘର୍ମାକ୍ତ ଲାଲ ବର୍ଣ୍ଣ ମୁଖ ଆପଣା କାନି ପଣତରେ ପୋଛି କହିଲା, 'ମା'! ତୁ ଏତେ ଖରାରେ ପ୍ରତିଦିନ ବୁଲୁଥାଉ କାହିଁକି ? ବିକ୍ରୀ ହେଲା ତ ନାହିଁ, ବେଗି ଆସିଲେ ହୁଅନ୍ତା ନାହିଁ ? ଦେଖ ତ ଦିନକୁ ଦିନ ଦେହ ଶୁଖି ଯାଉଛି, ମୁହଁ କଳା ପଡ଼ି ଆସୁଛି । ପୁଣି ଅଧକୋଶେ ବାଟ ଗାଧୋଇ ଯିବାକୁ ହେବ ।''

ମା' ଝିଅ କ୍ଷଣକାଳ ଏକତ୍ର ବସିଲେ । ବାଇଗିଣୀ ଆପଣା କାନୀରେ ବିଞ୍ଚିଦେଉଥାଏ । କିଛିକ୍ଷଣ ପରେ ରାଣୀ ଗାଧୋଇବାକୁ ବାହାରିଲା ।

କମଳା କୁଣ୍ଡର ଜଳ କି ନିର୍ମଳ— କି ପବିତ୍ର । ଦେଖିଲା ମାତ୍ରେ ମନ ନେତ୍ର ତୃପ୍ତିଲାଭ କରେ । ନିଦାଘ କାଳରେ ମଧ୍ୟ ଘାଟଟି ଛାୟାପୂର୍ଣ୍ଣ । ରାଣୀ ଯାଇ ଗୋଟାଏ ପଥରରେ ବସି ଶାନ୍ତିଲାଭ କଲା । ଭୟଶୂନ୍ୟ ଚିତ୍ତରେ ସ୍ୱଚ୍ଛନ୍ଦରେ ଦେହରେ ତେଲ ମର୍ଦ୍ଦନ କରି ଜଳରେ ନିମଜ୍ଜମାନ ହେଲା ।

ଭୟ କାହିଁକି ? ଏଠାକୁ ତ ପର୍ବତର ବାଟ ରହିଲା କିଛି ଦୂରରେ । ଗ୍ରୀଷ୍ମ କାଳ ବାର ବାଜିଲେ କିଏ ବା କୁଣ୍ଡକୁ ଆସୁଛି ? ରାଣୀ ନାନା ପ୍ରକାର ସନ୍ତରଣରେ ଅଭ୍ୟସ୍ତା- ନିର୍ଭୟରେ ସ୍ନାନ କରୁଛି । ଯେତେ ସ୍ନାନ କଲେ ତା'ର ତୃପ୍ତି ନାହିଁ । ତାର ଶରୀରରୁ ଯେ ପରିଧେୟ ବସ୍ତ୍ର କେତେବେଳେ ଅଲଗା ହୋଇ ପାଣିରେ ଭାସୁଛି, ତା' ପ୍ରତି ମଧ୍ୟ ଲକ୍ଷ୍ୟ ନାହିଁ ।

ପର୍ବତରୁ ଜଣେ ଧନୀ ଯୁବକ ଆପଣାର ଦୁଇ ଜଣ ଅନୁଚର ସହିତ ଶିକାରରୁ ଅକୃତକାର୍ଯ୍ୟ ହୋଇ ଫେରୁଥିଲେ । ଦୂରରେ ଜଳକ୍ରୀଡ଼ାର ଶବ୍ଦ ଶୁଣି କୌତୂହଳ ନିବାରଣ ନିମନ୍ତେ କୁଣ୍ଡ ଆଡ଼କୁ ଅଗ୍ରସର ହେଲେ । ଅନୁଚରମାନେ ବାଟରେ ଅପେକ୍ଷା କଲେ । ଯୁବକ ସନ୍ତର୍ପଣରେ ଯାଇ ପ୍ରସ୍ତରାନ୍ତରାଳରେ ବସିଲେ ଏବଂ ଜଳ କ୍ରୀଡ଼ାରତା ସୁନ୍ଦରୀର ଅଙ୍ଗପ୍ରତ୍ୟଙ୍ଗ ଦେଖିଲେ ଏବଂ ଯୁବତୀ ଏକାକିନୀ ନିର୍ଜନ ପ୍ରଦେଶରେ ଥିବାର ଦେଖି ମନ ଉତ୍‌ଫୁଲ୍ଲ ହେଲା । ଯୁବକ କାଳ ଓ ସ୍ଥଳ ଯୁବକ ଯୁବତୀର ମିଳନର ଅତି ଉପଯୁକ୍ତ ଭାବି ପ୍ରସ୍ତର ଉପରେ ଦଣ୍ଡାୟମାନ ହୋଇ ପ୍ରେମାହ୍ୱାନ କଲେ । ସଙ୍ଗେ ସଙ୍ଗେ ରାଣୀର ଗଳଦେଶଠାରୁ ନିମ୍ନ ଭାଗ ନିମଜ୍ଜମାନ ହେଲା । ଏତାଦୃଶ ଅସହାୟାବସ୍ଥାରେ ଭୟ ଲଜ୍ଜା ପୂର୍ବରୁ ମୁଖରେ ସ୍ମିତହାସ୍ୟ ଦେଖାଦିଏ । ରାଣୀର ମୁଖରେ ସ୍ମିତ ହାସ୍ୟ ଦେଖାଗଲା । ଯୁବକ ଭାବିଲେ, ଏହା ପ୍ରଣୟ ସ୍ୱୀକୃତିର ପୂର୍ବାଙ୍ଗ । ରାଣୀ ଅବନତ ମୁଖରେ ନିଶ୍ଚଳ ହୋଇ ରହିଲା । ତଦ୍ରୂପ ନିମଜ୍ଜମାନ ଅବସ୍ଥାରେ ରହି ଆପଣାର ବସ୍ତ୍ର ସମ୍ଭାଳି ନେଲା । ରାଣୀ ଜଳ ଭିତରେ କ'ଣ କରୁଛି ତାହା ଜଣା ନାହିଁ । ଯୁବକ ଆପଣା ଅଭୀଷ୍ଟସିଦ୍ଧି ଆଶାରେ ନାନା ଭାବ ଭଙ୍ଗି ଓ ନିଜର ପରିଚୟ ଦେବାରେ ତ୍ରୁଟି କରୁନାହାନ୍ତି । ଅଳ୍ପକ୍ଷଣ ପରେ ରାଣୀ ଯୁବକ ଆଡ଼କୁ ଅଗ୍ରସର ହେଲା । ଯୁବକର ଆନନ୍ଦର ସୀମା ନାହିଁ; ମାତ୍ର ଯୁବକ ଓ ରାଣୀର ମଧ୍ୟରେ ଯେ ଅତି ଗଭୀର ଜଳର ବ୍ୟବଧାନ, ତାହା ଯୁବକକୁ ଜଣା ନାହିଁ ।

ରାଣୀ ଧୀରେ ଧୀରେ ଅଗ୍ରସର ହେଉ ହେଉ ଓଷ୍ଠାଧାର ଅଦୃଶ୍ୟ ହେଲା । ପରେ ଆଉ କିଛି ଦୃଶ୍ୟ ହେଲା ନାହିଁ । ରାଣୀର ମସ୍ତକ ଉପରୁ ଗୋଟିଏ କ୍ଷୁଦ୍ର ଜଳଚକ୍ର ଉତ୍ପନ୍ନ ହୋଇ କ୍ରମେ ବିସ୍ତୃତ ଲାଭ କରି କୁଣ୍ଡର ସମଗ୍ର ତଟକୁ ସ୍ପର୍ଶ କଲା । ଦୁଇ ଗୋଟି ବୁଦ୍ ବୁଦ୍ କୁଣ୍ଡ ଭିତରୁ ଊର୍ଦ୍ଧ୍ୱକୁ ଉଠି ଜଳଚକ୍ରର ପଶ୍ଚାତ୍‌ଧାବନ କଲେ । ସ୍ୱାର୍ଥପର ଯୁବକ ଭଗ୍ନ ମନୋରଥ ହୋଇ ରାଣୀକୁ 'ହତଭାଗିନୀ' ଆଖ୍ୟା ଦେଇ ସ୍ଥାନ ତ୍ୟାଗ କଲେ । ଅର୍ଜୁନ ବୃକ୍ଷର ଉଚ୍ଚ ଶାଖାରେ ଦୁଇ ଗୋଟି କପୋତ ଉଦ୍‌ଗ୍ରୀବ ହୋଇ ଏହି ଘଟଣା ଦେଖୁଥିଲେ ।

•

# ଅଶ୍ରୁଧାରା

ସତ୍ୟପ୍ରିୟ କହିଲେ— ''ପ୍ରବାଦ ଅଛି, ସୁଖ ଉତ୍ତାରୁ ଦୁଃଖ. ଦୁଃଖ ଉତ୍ତାରୁ ସୁଖ ଚକ୍ରବତ ପରିଭ୍ରମଣ କରନ୍ତି । ମନୁଷ୍ୟ ମାତ୍ରେ ହିଁ ସୁଖଦୁଃଖର ବଶବର୍ତ୍ତୀ । ମନୁଷ୍ୟର ସୁଖ ଓ ଦୁଃଖ ଘଟେ । କେହି ସଦା ସୁଖୀ ନୁହେଁ କିମ୍ବା କେହି ସଦା ଦୁଃଖୀ ନୁହେଁ ସତ; ମାତ୍ର ସୁଖଦୁଃଖ ଯେ ଚକ୍ରବତ୍ ଭ୍ରମଣ କରେ, ଏହା ଠିକ୍ ରୂପେ ହୃଦୟଙ୍ଗମ ହୁଏ ନାହିଁ । ଚକ୍ରଭ୍ରମଣ ସହିତ ସୁଖଦୁଃଖର ସାମଞ୍ଜସ୍ୟ କେଉଁଠାରେ ? ଚକ୍ରର ଭ୍ରମଣ ଓ ଗତି ଅନିର୍ଦ୍ଦିଷ୍ଟ ନୁହେଁ; ମାତ୍ର ସୁଖ ଓ ଦୁଖର ଗମନାଗମନର କୌଣସି ସ୍ଥିରତା ଅଛି କି ? ଦୁଃଖ ପରେ ଯେ ସୁଖ ଆସିବ କିମ୍ବା ସୁଖ ପରେ ଯେ ଦୁଃଖ ହେବ, ଏହା ସ୍ୱଭାବସିଦ୍ଧ ନୁହେଁ । ପୁଣି କୌଣସି ସୁଖ କୌଣସି ଦୁଃଖର ଅବସାନ କରି ନ ପାରେ କିମ୍ବା କୌଣସି ସୁଖକୁ କୌଣସି ଦୁଃଖ ନାଶ କରି ନ ପାରେ । ସୁଖ ଦୁଃଖର ଗମନାଗମନ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ସୁଖ ପାଇଲେ ମନୁଷ୍ୟ ଦୁଃଖକୁ ପାସୋରି ପାରେ; ମାତ୍ର ସେଥି ନିମନ୍ତେ ବା ଦୁଃଖର ଅବସାନ ନିମନ୍ତେ ସୁଖର ଉତ୍ପତ୍ତି କି ? ଉଭୟର ଉତ୍ସ ଏକ ନୁହେଁ। ପିତାମାତାର ବିୟୋଗଜନିତ ଦୁଃଖ ପୁତ୍ର ବା କନ୍ୟା ଜନ୍ମରେ ନାଶ ହୁଏ କି ? ପୁତ୍ର ବା କନ୍ୟା ଜନ୍ମରେ ଆନନ୍ଦ ମିଳେ ସତ; ମାତ୍ର ପୁତ୍ର ବା କନ୍ୟା ଜନ୍ମ ଯେ ପିତୃମାତୃବିୟୋଗଜନିତ ଦୁଃଖର ଅପନୋଦନ ନିମନ୍ତେ ହୁଏ, ତାହା ନୁହେଁ । ମନୁଷ୍ୟ ସମୟରେ ସୁଖ ପାଏ, ସମୟରେ ଦୁଃଖ ଭୋଗ କରେ । ଏହା ମନୁଷ୍ୟ ଜୀବନରେ ଅନିବାର୍ଯ୍ୟ ଦୁଇ ଗୋଟି ସ୍ୱତନ୍ତ୍ର ଘଟଣା । ଏକର ସଙ୍ଗେ ଅନ୍ୟର ସମ୍ପର୍କ ନାହିଁ । ଏ ଯୋଡ଼ିକ ଶୃଙ୍ଖଳାବଦ୍ଧ ନୁହନ୍ତି । ଏଣୁ ସୁଖ ପରେ ଯେ ନିଶ୍ଚୟ ସୁଖାନୁପାତରେ ଦୁଃଖ ଆସିବ କିମ୍ବା ଦୁଃଖ ପରେ ଯେ ତଦନୁପାତରେ ସୁଖ ଆସିବ, ଏହା ନୁହେଁ । କେତେକ ଦୁଃଖ ଜୀବନବ୍ୟାପୀ ଲାଗିରହିଥାଏ । ସମୟ ସମୟରେ କୌଣସି ସୁଖ ଉପସ୍ଥିତ ହେଲେ ମଧ୍ୟ ସେ ଦୁଃଖର ଅବସାନ ହୁଏ ନାହିଁ— ଯେମନ୍ତ ବାଳବୈଧବ୍ୟ ଦୁଃଖ । ଆମରଣ ଏ ଦୁଃଖର ତ ଅବସାନ ନାହିଁ । ଏ ସ୍ଥଳରେ ଦୁଃଖ ସୁଖର ଚକ୍ରବତ୍ ପରିଭ୍ରମଣ କାହିଁ ? ସ୍ତ୍ରୀଜାତିର ସ୍ୱାଧୀନ ଆକାଙ୍କ୍ଷା କେବେ ତ ପୂରଣ ହେବାର ନୁହେଁ । ବିବାହିତା ସ୍ତ୍ରୀ ଯେ କି, ନ୍ୟାୟତଃ ସ୍ୱାମୀ ଅତ୍ୟାଚାରରୁ ମୁକ୍ତିଲାଭର ପ୍ରୟାସିନୀ, ତାକୁ କେଉଁ ସୁଖ ଏ ଯନ୍ତ୍ରଣାରୁ ରକ୍ଷା କରିବ ? କେଉଁ ସୁଖାନୁଭବ ଏ ଦୁଃଖକୁ ବିସ୍ମୃତି ଗର୍ଭରେ ଲୀନ କରିବ ? ସୁଖ ଅପେକ୍ଷା ଦୁଃଖ ମନୁଷ୍ୟ ହୃଦୟରେ ସ୍ଥାୟୀ ଭାବରେ ରହେ, ଯାହାର ସାମୟିକ ସ୍ମରଣରେ ହୃଦୟ ବିଦୀର୍ଣ୍ଣ ହୁଏ । ପୁତ୍ରଶୋକାତୁରା 'ଜନନୀ କାନ୍ଦେରେ ଯୁଗ ଯୁଗାନ୍ତର' । ଗତ ଦୁଃଖର ଉଦ୍ରେକ ହୋଇ ମନକୁ ବାରମ୍ବାର ବ୍ୟାକୁଳିତ କରେ; ମାତ୍ର ଦୁଃଖ ବିଦ୍ୟମାନ ସତ୍ତ୍ୱେ ଗତ ସୁଖର ସ୍ମରଣ କଦାପି ମନକୁ ପ୍ରଫୁଲ୍ଲିତ କରିପାରେ ନାହିଁ । ଏଣୁ ଦୁଃଖର ଅବସାନ ହେଉ ଦୁଃଖ ବୃଦ୍ଧି ପ୍ରାପ୍ତ ନ ହେଉ, ଏହାହିଁ ମନୁଷ୍ୟର ପ୍ରଧାନ କଳ୍ପନା ଏବଂ ଏଥିନିମନ୍ତେ ମନୁଷ୍ୟ ଯତ୍ନଶୀଳ । ମାତ୍ର ତାହା ହେବାର ନୁହେଁ ।

ଏ ଜଗତରେ ଦୁଃଖର ଛାପ ଚାରିଆଡ଼େ । ସୁତରାଂ ଅନ୍ୟର ଦୁଃଖ ଦେଖିଲେ, ଅନ୍ୟର ଦୁଃଖ କଥା ଶୁଣିଲେ ନିଜ ଦୁଃଖର ସ୍ମରଣ ହୁଏ । ଏଣୁ ଦୁଃଖର ଅନୁପାତାନୁସାରେ କେତେବେଳେ ମୁଖ ଶୁଖିଯାଏ, କେତେବେଳେ ମନ ଉତ୍କଣ୍ଠିତ ହୁଏ, କେତେବେଳେ ଚକ୍ଷୁରୁ ଲୋତକ ଧାର ବହିଯାଏ । ସୁଖରେ ସୁଖୀର ସହାନୁଭୂତି ଅପେକ୍ଷା ଦୁଃଖରେ ଦୁଃଖୀର ସହାନୁଭୂତି ଅଧିକ ।

ଗୋଟାଏ ପ୍ରକୃତ ଘଟଣା ଉତ୍‌ଥାପନ କରିବାକୁ ଯାଇ ଉପରେ ଯେ ମୁଁ କେତେକ କଥାର ଉତ୍‌ଥାପନ କଲି, ସେଥିରେ ମତଦ୍ୱୈଧ ଥାଇପାରେ; ମାତ୍ର ଦୁଃଖୀ ଅନ୍ୟର ଦୁଃଖ କାହାଣୀ ଶୁଣିଲେ ଯେ ଦୁଃଖରେ ବୁଡ଼ି ସଢ଼ିଯାଏ, ଏଥିର ପ୍ରତ୍ୟକ୍ଷ ଉଦାହରଣ ଆମ୍ଭେମାନେ ଦେଖିଥାଉଁ । ମାତ୍ର ନିଜର ମାନସିକ ଅବସ୍ଥା ଅନୁସାରେ ତାହା ହୃଦୟରେ ସ୍ଥାନ ପାଏ ନାହିଁ ଏବଂ ଅନେକ ସମୟରେ ଦୁଃଖୀର ମନୋବେଦନା ଅନୁଭବ ଓ ଗ୍ରହଣ କରିବାକୁ ଆମମାନଙ୍କର ହୃଦୟଯୋଗ୍ୟ ହୁଏ ନାହିଁ ।

ଗୋଟିଏ ସାମାନ୍ୟ ଘଟଣା । ମୁଁ ଗୋଟିଏ କ୍ଷୁଦ୍ର ଗ୍ରାମରେ ଉପସ୍ଥିତ ଥିଲି । ଗ୍ରାମର ବସତି ଦଶ ବାର ଘରରୁ ଅଧିକ ନୁହେଁ । କନ୍ଧ, କୋହ୍ଲ ଓ ଗୌଡ଼ଙ୍କର ବସତି । ସମସ୍ତେ ମୂଲିଆ କିମ୍ବା ନାମମାତ୍ର ଚାଷୀ । କହିବାକୁ ଗଲେ ସମସ୍ତେ ଦରିଦ୍ର; ଦୁଃଖରେ ଉଦର ପୋଷଣ କରନ୍ତି । ତଥାପି ସମସ୍ତଙ୍କ ମନ ପ୍ରଫୁଲ୍ଲ କହିଲେ ଚଳେ । ସେମାନଙ୍କ ମଧ୍ୟରେ ବିରୋଧ ବା କଳହ ନାହିଁ । ସମସ୍ତେ ମିଳିମିଶି ଚଳନ୍ତି ।

ସେ ଦିନ ଗ୍ରାମକୁ ଏକ ଦଳ ପାଲାବାଲା ଆସିଲେ। ପାଲା ଦେଖିବାକୁ ସମସ୍ତଙ୍କର ଇଚ୍ଛା । ଅର୍ଥର ତ ପ୍ରୟୋଜନ । ଯେ କୌଣସି ପ୍ରକାରେ ଅର୍ଥର ଯୋଗାଡ଼ ହେଲା । ସନ୍ଧ୍ୟାବେଳେ ପାଲା ଆରମ୍ଭ ହେଲା। ଆଲୋକର ଅଭାବ । ଯେକୌଣସି ପ୍ରକାରେ ଦୁଇଗୋଟା ଲନ୍‌ଟନ୍‌ର ମଧ୍ୟ ଯୋଗାଡ଼ ହେଲା । ଚୈତ୍ର ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ; ଶୁଭ୍ର ଚନ୍ଦ୍ରାଲୋକ । ଦିନବେଳେ ଆକାଶରେ ମେଘ ଦେଖା

ଦେଇଥିଲେ ମଧ୍ୟ ସନ୍ଧ୍ୟା ଅତି ନିର୍ମଳ ହେଲା । ଏଥି ନିମନ୍ତେ ଦର୍ଶକମଣ୍ଡଳୀ ଗ୍ରାମ୍ୟ ଚନ୍ଦ୍ରମାମୁଁକୁ ଶତ ଶତ ଧନ୍ୟବାଦ ଦେଇ ପାଲା ଶୁଣିବାକୁ ମନୋଯୋଗ ଦେଲେ । ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ଲୋକେ ଆସି ଦର୍ଶକସଂଖ୍ୟା ବୃଦ୍ଧି କରିଥିଲେ । ପୁଲିସ୍ ପ୍ରହରୀର ପ୍ରୟୋଜନ ନାହିଁ । ସ୍ତ୍ରୀମାନେ ଏକ ପାର୍ଶ୍ୱରେ, ପୁରୁଷମାନେ ଅନ୍ୟ ପାର୍ଶ୍ୱରେ ସଜ୍ଜିତ ହୋଇ ବସିଲେ । ଗ୍ରାମ୍ୟନାରୀ; ସେମାନଙ୍କର ସ୍ୱାଭାବିକ ଲଜ୍ଜା ଥିଲେ ମଧ୍ୟ କୃତ୍ରିମ ଲଜ୍ଜା ନାହିଁ । ସୁତରାଂ ପାଲାବାଲା ନିକଟରେ ସ୍ୱଚ୍ଛନ୍ଦରେ ବସିଲେ । ପାଲା ଆରମ୍ଭ ହେଲା— ହରି ଅର୍ଜୁନ ପାଲା । ପୂଜା ଚରିତ୍ର ସଙ୍ଗେ ସଙ୍ଗେ ଗୀତ, ଦ୍ରୌପଦୀ ରଙ୍ଗରହସ୍ୟ ଚାଲିଛି । ସମସ୍ତେ ତନ୍ମୟ ହୋଇ ଦେଖୁଛନ୍ତି । ହାସ୍ୟରସ କଥା ପଡ଼ିଲେ ସାମାନ୍ୟ ହସିବା ଭିନ୍ନ ଅନ୍ୟ କୌଣସି ଗୋଳମାଳ କେହି କରୁନାହାନ୍ତି । ପାଲା ଭଲ ଭାବରେ ଚାଲିଛି । ଚଅଁରବାଲା ସ୍ତ୍ରୀମାନଙ୍କ ଆଡ଼କୁ ଅଗ୍ରସର ହୋଇ ସେମାନଙ୍କ ଆଡ଼କୁ ମୁଖ ଫେରାଇ ଅତି କରୁଣ ସ୍ୱରରେ ଗାଇଲା—

''କିପାଁ ଗଢ଼ିଲୁ ନାରୀ ରୂପ, ଦଇବରେ !
ପୁରୁଷେ ବାନ୍ଧି ପରାଣେ,
ରଖିଲୁ କବାଟ କଣେ,
ଦୁଃଖ ମୁଁ ସହୁଛି ଅମାପ ।''

ନାଟୁଆମାନେ ଘୋଷାଟି ବାରମ୍ବାର ଆବୃତ୍ତି କରୁଅଛନ୍ତି । ଆଉ କେତେ ଜଣ ସ୍ତ୍ରୀଙ୍କ ମୁଖରେ ବିଷାଦ ଛାୟା ଘନୀଭୂତ ହେଉଅଛି । ଜଣେ ଅଷ୍ଟାଦଶବର୍ଷୀୟା ସୁନ୍ଦରୀ ଗଣ୍ଡରେ ହସ୍ତ ରଖି ଊର୍ଦ୍ଧ୍ୱଦୃଷ୍ଟିରେ ପାଲାବାଲାକୁ ଚାହିଁଅଛି ଏବଂ ଏହି କରୁଣରସପୂରିତ ଗୀତଦ୍ୱାରା ଆପଣାର ହୃଦୟର ଦୁଃଖାନଳକୁ ଉଦ୍ଦୀପିତ କରୁଅଛି । ପାଲାବାଲା ମଧ୍ୟ ଗୀତରସ ଗ୍ରହଣ କରାଇବା ନିମନ୍ତେ କରୁଣରୁ କରୁଣତର କରି ନାନା ଭଙ୍ଗୀରେ ଗୀତର ଆବୃତ୍ତି କରୁଅଛି । ଯୁବତୀର ଦୁଃଖର ମାତ୍ରା ବଢ଼ିଲା— ପୂର୍ଣ୍ଣ ହେଲା । ଦୁଃଖ ଧରିବାକୁ ହୃଦୟରେ ସ୍ଥାନ ନାହିଁ; ଉଚ୍ଛୁଳି ପଡ଼ିଲା । ଦୁଇ ଚକ୍ଷୁରୁ ଅବିରଳ ଦୁଇ ଧାର ଅଶ୍ରୁ ଗଣ୍ଡଦେଶ ଦେଇ ବହିପଡ଼ିଲା । ଗୀତ ଶେଷ ହେଲା; ତଥାପି ଅଶ୍ରୁଧାରା ଗଡ଼ୁଛି । ଗଣ୍ଡଦେଶରେ ହାତ ଅଛି; ସେହି ଊର୍ଦ୍ଧ୍ୱ ଦୃଷ୍ଟି । ପାଲାବାଲାଙ୍କ ଦୃଷ୍ଟି ପଡ଼ିଲା, କେତେକ ଦର୍ଶକଙ୍କର ଦୃଷ୍ଟି ପଡ଼ିଲା । ନିଜର ଅଜସ୍ର ଲୋତକ ବାରି ଏବଂ ଦର୍ଶକଙ୍କର ମାନସିକ ସହାନୁଭୂତି ଯୁବତୀର ଦୁଃଖାନଳକୁ କିଛି କାଳଯାଏ ନିର୍ବାପିତ କରିପାରିଲେ ନାହିଁ । ଦର୍ଶକବୃନ୍ଦରେ ଏତାଦୃଶ ମୂର୍ତ୍ତି ଦେଖିଲେ କାହାର ମନ ବିଚଳିତ ନ ହେବ ? ରମଣୀ ସ୍ତ୍ରୀଜାତିର ଦୁଃଖାନୁଶୋଚନା କରି ଏତେ କାତର ହେଲା କିମ୍ବା ସ୍ତ୍ରୀଜାତିର ଦୁଃଖ ସହିତ ନିଜର ମର୍ମାନ୍ତିକ ଦୁଃଖମାତ୍ରାକୁ ମିଶ୍ରିତ କରି ସର୍ବସାଧାରଣଙ୍କ ସମକ୍ଷରେ ଏହି କାରୁଣ୍ୟ ମୂର୍ତ୍ତି ଗଢ଼ିଲା ?

ଯୁବତୀ କେବେ ପର୍ଦ୍ଦାନ୍ତରାଳରେ ରହି ନାହିଁ; ସୁତରାଂ ଏଥିରେ ସୁଖ ଅଛି, କି ଦୁଃଖ ଅଛି, ତାକୁ ତ ଜଣା ନାହିଁ । କବାଟ କଣରେ ମଧ୍ୟ ତ ଅନବରତ ରହି ନାହିଁ । ଗ୍ରାମ୍ୟା ନାରୀ; ଗରିବ- ମୂଲ ଲାଗି ବଞ୍ଚେ । ଗ୍ରାମର ସାହିପଡ଼ିଶାଙ୍କ ଘରକୁ ଯାଏ । ଗ୍ରାମବାସିନୀଙ୍କ ସହିତ ଅବାଧରେ ହସକୌତୁକ କରେ । ପୁରୁଷଙ୍କ ସହିତ ଯଥାମାନ୍ୟ କଥାବାର୍ତ୍ତା କରିବାରେ ତା'ର ବାଧା ନାହିଁ । ଜଙ୍ଗଲକୁ ଚାର, ମହୁଲ, କେନ୍ଦୁ ପ୍ରଭୃତି ଫଳ ଓ ଶାକ ଆହରଣ କରିଯିବାକୁ ତ କେହି ବାଧା ଦିଅନ୍ତି ନାହିଁ । ପୁରୁଷଙ୍କ ସମକ୍ଷରେ ବନ୍ଧ ଘାଟରୁ ପାଣି ଆଣେ; କେହି ତ ନିଷେଧ କରନ୍ତି ନାହିଁ । ନିର୍ବାଧରେ ଇତସ୍ତତଃ ବୁଲିବା, ସ୍ୱେଚ୍ଛାକ୍ରମେ ଆପଣା କର୍ତ୍ତବ୍ୟ ସାଧନ କରିବାର ନାମ ଯେବେ ସ୍ତ୍ରୀ ସ୍ୱାଧୀନତା, ତେବେ ଏ ଯୁବତୀର ଅଶ୍ରୁବର୍ଷଣ କରିବା ଭଳି ଦୁଃଖ କେଉଁଠାରେ ? ଖାଇବା ପିନ୍ଧିବା କଷ୍ଟ ? ତାହା ତ ଜଣାଯାଉ ନାହିଁ । ସେ କଷ୍ଟ ତ ପୁରୁଷର ମଧ୍ୟ ଅଛି; ସ୍ତ୍ରୀର ମଧ୍ୟ ଅଛି । ସେ ପ୍ରକାର ଦୁଃଖାନୁଚିନ୍ତା ଯେବେ ଅଶ୍ରୁବର୍ଷଣର କାରଣ, ତେବେ କୌଣସି ପୁରୁଷ ନେତ୍ରରୁ ତ ଏ ଗୀତ ଲୋତକଧାର କାଢ଼ି ପାରିଲା ନାହିଁ । ଅନ୍ୟ ସ୍ତ୍ରୀମାନଙ୍କ ମଧ୍ୟରୁ କେତେକଙ୍କ ମୁଖ ମ୍ଳାନ ହେଲା ସିନା, କାହାରି ନେତ୍ରରୁ ତ ଲୋତକ ଧାର ବହିଲା ନାହିଁ । ପୁରୁଷର ଅତ୍ୟାଚାର ? ଏ ଜାତୀୟ ସ୍ତ୍ରୀମାନେ ଅବଲୀଳାକ୍ରମେ ସମୟ ବିଶେଷରେ ଚାପୁଡ଼େ ବାଡ଼ିଏ ସ୍ୱାମୀଠାରୁ ପାଇଥାନ୍ତି; ପୁଣି ସ୍ନେହ ଆଦର ମଧ୍ୟ ଯଥେଷ୍ଟ ପାଇଥାନ୍ତି । ଏପରି ଘଟଣା ସ୍ମରଣରୁ ଯେ ଯୁବତୀର ଆଖି ଝରିଲା, ତାହା ଅନୁମାନ ହେଲା ନାହିଁ । ଅନୁମାନ ହେଲା, ଯୁବତୀର ମର୍ମନ୍ତୁଦ ବେଦନା, ଯାହା ଅପ୍ରକାଶ୍ୟ ଏବଂ ନାରୀମାନଙ୍କ ମଧ୍ୟରୁ ଅନେକେ ଏପରି ଅପ୍ରକାଶ୍ୟ ମର୍ମବେଦନା ପାଉଥିବେ, ଏହା ଭାବି ଯୁବତୀ ଦୁଃଖ-ସାଗରରେ ଭାସିଲା । ନିଜର ଦୁଃଖ ନାରୀ ଜାତିର ଦୁଃଖାନୁଭୂତିକୁ ହୃଦୟରେ ସ୍ଥାନ ଦେଲା । ବୋଧହୁଏ ରମଣୀ ଭାବିଲା, ତା' ପରି ନାରୀରୂପ ଗଠନ କେବଳ ମର୍ମବେଦନା ନିମନ୍ତେ । ଅନେକ ନାରୀ ତ ତା' ପରି ଅବସ୍ଥାରେ ପଡ଼ି ଅପ୍ରକାଶ୍ୟ ଅମାପ ଦୁଃଖ ଭୋଗ କରୁଥିବେ ।

ମୁଁ ଏଥି ନିମନ୍ତେ କମ୍ ମାନସିକ ଯନ୍ତ୍ରଣା ଭୋଗ କରି ନାହିଁ । କାରଣ ଜାଣିବାକୁ ମନ ବାରମ୍ବାର ଉତ୍କଣ୍ଠିତ ହେଲା । ଯୁବତୀ ଆତ୍ମସମ୍ବରଣ କରି କିଂକର୍ତ୍ତବ୍ୟବିମୂଢ଼ବତ୍ ପାଲା ଶେଷ ଯାଏ ବସି ରହିଲା । ମୁଁ ପାଲା ଶେଷରେ ଆପଣା ଶଯ୍ୟା ଗ୍ରହଣ କରି କେବଳ 'କିପାଁ ଗଢ଼ିଲୁ ନାରୀ ରୂପ' ଏହି ପଦକ ଥରକୁ ଥର ଆବୃତ୍ତ କରି ଅଧିକ ରାତ୍ରରେ ଚକ୍ଷୁ ମୁଦ୍ରିତ କଲି । ସକାଳୁ ନିଦ ଭାଙ୍ଗିଲା । ଗତ ରାତ୍ରର ଯବନିକା ଆଖି ଫିଟିବା ସଙ୍ଗେ ଉତ୍ତୋଳିତ ହେଲା । ଯୁବତୀର ଅଶ୍ରୁପୂର୍ଣ୍ଣ ମୁଖ ଝଟ ଝଟ ଦିଶିବା ସଙ୍ଗେ ସଙ୍ଗେ ମୁଖରୁ ଅବାଧରେ 'କିପାଁ ଗଢ଼ିଲୁ ନାରୀ ରୂପ ଦଇବରେ'' ଏହି ପଦକ ବାହାରିଲା । ଯୁବତୀର ଦୁଃଖର କାରଣ ଅନୁସନ୍ଧାନରେ ପ୍ରବୃତ୍ତ ହେଲି । ଜାଣିପାରିଲି, ଲୋତକ ଝରାଇବାର କାରଣ ଯଥେଷ୍ଟ ।

ଦାମ୍ପତ୍ୟ ବନ୍ଧନରେ ମଧ୍ୟ ପୁରୁଷ ସ୍ତ୍ରୀର ଅଧିକାର ଓ ସ୍ୱାଚ୍ଛନ୍ଦ୍ୟର ଇତର ବିଶେଷ ଅଛି । ପ୍ରେମହିଁ ବିବାହର ମୂଳ ଉଦ୍ଦେଶ୍ୟ । ସନ୍ତାନ ଜନ୍ମ ଚରମ ଲକ୍ଷ୍ୟ । ପ୍ରେମବିହୀନ ବିବାହ ନାମ ମାତ୍ର ବିବାହ । ଏତାଦୃଶ ନାମ ମାତ୍ର ବିବାହ ଭଙ୍ଗ କରିବାକୁ ପୁରୁଷର ଯେଉଁ ଅଧିକାର, ସ୍ତ୍ରୀର ସେ ଅଧିକାର ନାହିଁ । ପିତାମାତାର ଅବିମୃଶ୍ୟକାରିତା ଓ ଜିଦ୍ ନିମନ୍ତେ ଯେଉଁ ବିବାହ ବନ୍ଧନ ଘଟେ, ସେଥିରେ ଅଧିକାଂଶ ସ୍ଥଳରେ ସ୍ତ୍ରୀକୁ ହିଁ ମନକଷ୍ଟ ଭୋଗ କରିବାକୁ ପଡ଼େ । ପୁରୁଷ ନିର୍ଲଜ୍ଜ ଭାବରେ ଯେପରି ସ୍ତ୍ରୀର ଦୋଷ ବ୍ୟକ୍ତ କରି ଆପଣାର ସ୍ୱାର୍ଥ ସିଦ୍ଧି କରିପାରେ, ସ୍ତ୍ରୀ ପକ୍ଷରେ ତାହା ସମ୍ଭବ ନୁହେଁ । ସ୍ତ୍ରୀ ରୁଗ୍ଣା ହେଲେ, ପଙ୍ଗୁ ହେଲେ, ଅକର୍ମଣ୍ୟ ହେଲେ, ପୁରୁଷ ଯେତେ ସହଜରେ ଅନ୍ୟ ସ୍ତ୍ରୀ ଗ୍ରହଣ କରିବାର ସୁଯୋଗ ପାଇ ଅସମର୍ଥା ସ୍ତ୍ରୀକୁ ଆଜୀବନ ଦୁଃଖ-ସାଗରରେ ଭସାଇପାରେ, ସ୍ତ୍ରୀ ସେପରି କରିପାରେ ନାହିଁ । ସ୍ତ୍ରୀ ପ୍ରତି ପୁରୁଷର ବାହ୍ୟ ଅତ୍ୟାଚାର ଲୋକଲୋଚନରେ ପଡ଼େ; ମାତ୍ର ପୁରୁଷର ଆଭ୍ୟନ୍ତରିକ ଦୁର୍ବଳତା, ଅକର୍ମଣ୍ୟତା, ଯାହା ପ୍ରଣୟର ଅନ୍ତରାୟ, ଯାହା ସ୍ତ୍ରୀ ଭିନ୍ନ ଅନ୍ୟ କେହି ଜାଣିବାର ଉପାୟ ନାହିଁ, ତାହା ବିଦ୍ୟମାନ ସତ୍ତ୍ୱେ ଯେଉଁ ସ୍ତ୍ରୀ ସ୍ୱାମୀର ସେବା ଶୁଶ୍ରୂଷାରେ ତ୍ରୁଟି ନ କରି ରାତ୍ରରେ ଲୋତକଦ୍ୱାରା ଆପଣା ଶଯ୍ୟା ଆର୍ଦ୍ର କରେ, ଅଥଚ ସମୟ ସମୟରେ ଅସମର୍ଥ ସ୍ୱାମୀଠାରୁ ଅସତୀତ୍ୱର ଲାଞ୍ଛନା ପାଏ, ଏପରି ରମଣୀର ମନୋବେଦନା ଯେ କେଡ଼େ ଗଭୀର ଓ ହୃଦୟବିଦାରକ, ତାହା କି ପୁରୁଷ ବୁଝିପାରେ ? ଉଚ୍ଚ ଜାତିରେ ଏତାଦୃଶ ଯନ୍ତ୍ରଣାର ମୁକ୍ତି ନାହିଁ; ଅନାର୍ଯ୍ୟ ଓ ନୀଚ ଜାତିର ମୁକ୍ତି ପନ୍ଥା ଥିଲେ ସୁଦ୍ଧା ସ୍ତ୍ରୀର ଲଜ୍ଜା, ଅପ୍ରଗଲ୍‌ଭତା, ସମାଜର ଅତ୍ୟାଚାର ଓ ଭୟ, ତଦୁପରି ଆଇନର ଦୃଢ଼ ବନ୍ଧନ ହେତୁରୁ ତାକୁ ମୁକ୍ତି ପନ୍ଥା ଦୃଶ୍ୟ ହୁଏ ନାହିଁ ।

ଯେଉଁ ନାରୀ ମୁକ୍ତିପନ୍ଥା ନ ପାଇ ଦିନେ ଅଧେ ନୁହେଁ, ମାସେ ନୁହେଁ, ବର୍ଷବ୍ୟାପୀ ଏ ଯନ୍ତ୍ରଣା ଭୋଗ କରିବାକୁ ବାଧ୍ୟ ହେବ, ମୁକ୍ତି ପନ୍ଥା ଖୋଜୁଥିବା ହେତୁ ତାକୁ ବନ୍ଧୁବାନ୍ଧବ ଓ ସମାଜଠାରୁ ତିରସ୍କାର ଓ ଲାଞ୍ଛନା ଭୋଗ କରିବାକୁ ପଡୁଥିବ, ତା'ର ଏ ଦୁଃଖ ଉତ୍ତାରୁ କେଉଁ ସୁଖ ପାଇବାର ଆଶା ରଖିବ କିମ୍ବା ଏ ଦୁଃଖର ସ୍ଥାନ କେଉଁ ସୁଖ ଅଧିକାର କରିବ ? ଯେଉଁ ଯୁବତୀ ଏତାଦୃଶ ଦୁଃଖଭାଜନୀ, ସେ ଯେ ପାଲାବାଲାର ଗୀତ ଶୁଣି ଲୋତକବର୍ଷଣ କରିବ, ଏଥିରେ ବିଚିତ୍ରତା କ'ଣ ?

ନର ଓ ନାରୀ ମନୁଷ୍ୟ; ମାତ୍ର ଉଭୟର ଦୁଃଖାନୁଭୂତି ଏକ ନୁହେଁ । ନର ନାରୀର ଦୁଃଖ ଓ ଅନୁତାପକୁ ନିଜର ଦୁଃଖ ଓ ଅନୁତାପ ତୁଳନାରେ ନଗଣ୍ୟ ବୋଲି ମନେକରେ କିମ୍ବା ଚିରାଭ୍ୟାସ ହେତୁରୁ ପୁରୁଷ ହୃଦୟ ନାରୀ ଦୁଃଖ ଗ୍ରହଣ ପ୍ରତି ଅନୁର୍ବର । ସଂସାରରେ ନାନା ପରିବର୍ତ୍ତନ ଘଟୁଛି; ନାରୀ ପ୍ରତି ପୁରୁଷ ହୃଦୟର ପରିବର୍ତ୍ତନ ଘଟିବ ନାହିଁ କି ?

•

## ଭିକ୍ଷୁକ ସଭା

ବୁଢ଼ୁ କୋହ୍ଲଣୀ କାନ୍ଥର ପଶ୍ଚିମ ପାର୍ଶ୍ୱରେ ଆଉଜି ହୋଇ ବସିଲା— ନିଶ୍ଚିନ୍ତରେ ବସିଲା । ଦେଖିଲେ ମନେ ହେଲା, ଯେପରି କି ଏ ଜଗତରେ ଆଉ କାହିଁରେ ହିଁ ତା'ର ପ୍ରୟୋଜନ ନ ଥିଲା; ଥିଲା କେବଳ ଛାୟାରେ । ବୁଢ଼ୁର ବୟସ ପ୍ରାୟ ପଞ୍ଚଷଠି । ବର୍ଣ୍ଣ କୃଷ୍ଣ । ମୁଖରେ ଉଦ୍ଦାମ ଯୌବନର ଅପବ୍ୟବହାରର ଚିହ୍ନ ବିଦ୍ୟମାନ- ପୀନସ ରୋଗ ହେତୁରୁ ନାକ ବସି ଯାଇଅଛି । ଖନେଇ ଖନେଇ କଥା କହେ; କଥା ସ୍ପଷ୍ଟ ବୁଝି ହୁଏ ନାହିଁ । ଏକ ସମୟରେ ବୁଢ଼ୁର ରୂପ ଥିଲା, ଯୌବନ ଥିଲା, ସ୍ୱାମୀ ଥିଲା, ଦୁଇ ଗୋଟି ପୁତ୍ରକନ୍ୟା ଥିଲେ । ଏତେବେଳେ ସ୍ୱାମୀ, ସନ୍ତାନ, ରୂପ, ଯୌବନ ସମସ୍ତେ ଛାଡ଼ିଗଲେ; ରହିଲା ମାତ୍ର ଚର୍ମାବୃତ କଙ୍କାଳ ଏବଂ କଷ୍ଟ ଭୋଗ କରିବାକୁ ଜୀବନ । ଅନ୍ୟର ଆଶ୍ରୟ ପାଇବାର ସମୟ ନାହିଁ; ଏଣୁ ଭିକ୍ଷାବୃତ୍ତି ତା'ର ଏକମାତ୍ର ଅବଲମ୍ବନ । ବୈଶାଖ ମାସ ସକାଳ ପ୍ରାୟ ନଅ ଘଣ୍ଟା; ତଥାପି ଉତ୍ତାପବାଧା ଅତ୍ୟଧିକ । ଏ ଘର ସେ ଘର ଅନାବୃତ ମସ୍ତକରେ ବୁଲି ବୁଲି ସେ କ୍ଲାନ୍ତ, ଶ୍ରାନ୍ତ, ଘର୍ମାକ୍ତ । ଛାୟା ଭିନ୍ନ ଏ ଆସନ୍ନ କଷ୍ଟରୁ ତାକୁ ରକ୍ଷା କରିବ କିଏ ? ଏଣୁ ବୁଢ଼ୁ ନିଶ୍ଚିନ୍ତରେ ବସିଲା । ଭିଖ ମିଳୁ ବୋଲି ଡାକିଲା ନାହିଁ । ଘର ଭିତରୁ କେହି

ବାହାରିଲେ ତାକୁ ଦେଖି ଭିଖ ଦେବେ ବୋଲି ଭାବିଲା । ଅପେକ୍ଷା କରିବା ହିଁ ତା'ର ଭିଖମଗା ରୀତି ।

ଚିନ୍ତା ଗୌଡ଼ ଉପସ୍ଥିତ ହେଲା । ବୟସ ଅନ୍ଦାଜ ପଚାଶ । ସେ ଅନ୍ଧ; ଅନ୍ଧର ନଉଡ଼ି ତା'ର ଛଅ ବର୍ଷର ପୁଅ ପାଣୁ । ଉଭୟେ ସେହି କାନ୍ଥ ଛାଇରେ ବସିଲେ । ଚିନ୍ତା ଭାଲୁର ଶବ୍ଦ ଅନୁକରଣ କରିପାରେ, ଏଣୁ ତାକୁ ପିଲାମାନେ ଭାଲୁକଣା ବୋଲି ମଧ କହନ୍ତି । ହାତରେ ଗୋଟିଏ ଲମ୍ବ ଭାଲୁ ବଂଶୀ । ପାର୍ବତୀୟ ମହିଷାଳମାନେ ଏ ବଂଶୀ ବ୍ୟବହାର କରନ୍ତି । କୃଷ୍ଣଙ୍କର ମୁରଲୀ ସହିତ ଏହାର କୌଣସି ସାଦୃଶ୍ୟ ବା ତାପରି ସୁସ୍ୱର ନାହିଁ; ତଥାପି ସୁଶ୍ରାବ୍ୟ । ଚିନ୍ତା ପ୍ରବେଶମାତ୍ରେ ବଂଶୀଧ୍ୱନି କଲେ ପିଲାମାନେ ଜମା ହୁଅନ୍ତି ଏବଂ ଭାଲୁ ପରି ଶବ୍ଦ କରିବାକୁ ଅନୁରୋଧ କରନ୍ତି । ବଂଶୀଧ୍ୱନି ଓ ଭାଲୁ ଶବ୍ଦଦ୍ୱାରା ତା'ର ଭିକ୍ଷାବୃତ୍ତିର ସାମୟିକ ଚରିତାର୍ଥତା । ଚିନ୍ତା ସେ ଯେ ଅଳସୁଆ ହୋଇ ଏ ବୃତ୍ତି ଅବଲମ୍ବନ କରିଅଛି, ତାହା ନୁହେଁ । ମହିଷ ଚରାଇବା ଥିଲା ତା'ର ବୃତ୍ତି । ଖରାରେ ବୁଲି ବୁଲି ବା ଅନ୍ୟ କୌଣସି କାରଣରୁ ଚକ୍ଷୁଯୋଡ଼ିକ ଗଲା ଫୁଟି । କିଛି ଦିନ ପରେ ତା'ର ସ୍ତ୍ରୀ ତାକୁ ଓ ଏ ଇହଧାମକୁ ତ୍ୟାଗ କଲା । ସାଙ୍ଗରେ ରହିଲେ ଯୋଡ଼ିଏ ପୁତ୍ର— ବଡ଼ଟି ଅନ୍ଧର ପଥପ୍ରଦର୍ଶକ, ସାନଟି ଘରେ ଥାଏ । ଭିକ୍ଷାବୃତ୍ତି ଅବଲମ୍ବନ ଭିନ୍ନ ଚିନ୍ତାର ଉପାୟାନ୍ତର କଅଣ ?

ଗଜ ପାଣର ବୟସ ଆନୁମାନିକ ପଇଁଚାଳିଶ । ପିଲାଦିନରୁ ସେ ଅନ୍ଧ । କାହିଁକି ଅନ୍ଧ ହେଲା, ତାହା ତତ୍ତ୍ୱ କରିବାକୁ ଯାଉଛି କିଏ ? ତେବେ ଚକ୍ଷୁରେ ଭଲ ଦୃଶ୍ୟ ହୁଏ ନାହିଁ, ଏହା ସତ୍ୟ । ପ୍ରଥମେ ନିଜେ ଗୋଟାଏ ବାଉଁଶ ବାଡ଼ି ସାହାଯ୍ୟରେ ଲୋକଙ୍କୁ ପଚାରି ପଚାରି ବାଟ ଚାଲୁଥିଲା ଓ ଭିକ୍ଷା କରୁଥିଲା । କିଛି ଦିନ ହେଲା ଜଣେ ପଥପ୍ରଦର୍ଶକ ପାଇଅଛି । ସ୍ତ୍ରୀଟି ଚିରସଧବା, ଅର୍ଥାତ୍ ତା'ର ହାତରୁ କେବେ ଚୁଡ଼ି ଲାଖ ଯାଇ ନାହିଁ । ସ୍ଥୂଳକାୟା; ବୟସରେ ଗଜ ପାଣ ଠାରୁ ଛୋଟ । ସେ ଗଜର ବାଉଁଶବାଡ଼ିର ଅଗ୍ରଭାଗ ଧରି ଆଗେ ଆଗ ଚାଲେ । ପଚାରିଲେ ଗଜ ପ୍ରକାଶ କରେ— ''ଏଣିକି ଆଖିକି ବେଶି ଅଦୃଶ୍ୟ ହେଲା । ଜଣେ ପଥ ଦେଖାଇବା ସଙ୍ଗୀର ଦର୍କାର । ଏଣୁ ଏହାର ଆଶ୍ରୟ ନେଇଛି ।'' କସ୍ତୁରୀ ପାଲୁଣୀ ଗଜର ବାନ୍ଧବୀଭାବରେ ବାଟ ଦେଖାଏ, କି ସ୍ତ୍ରୀଭାବରେ ବାଟ ଦେଖାଏ, ଏହା କେହି ଅନୁସନ୍ଧାନ କରି ନାହାନ୍ତି । ଗୃହସ୍ଥ ଘରୁ ଉଭୟେ ଦୁଇ ମୁଠା ଭିକ ପାଆନ୍ତି । ଗଜ ପ୍ରଥମେ ଭିଖ ଦିଅ, ଭିଖ ଦିଅ ବୋଲି ଚିତ୍କାର କରୁଥିଲା । ଏବେ ତା'ର ସଙ୍ଗିନୀର ଶିକ୍ଷାକ୍ରମେ ଗୋଟିଏ ଖଞ୍ଜଣୀ ସଂଗ୍ରହ କରି ତାହା ବଜାଏ ଏବଂ ଦୁଇ ଚାରି ପଦ ଭଜନ ଶିକ୍ଷା କରିଅଛି, ତାହା ଗାଏ । ବାଦ୍ୟ ଓ ଗୀତର ପରସ୍ପର ସମ୍ବନ୍ଧ ନ ଥିଲେ ମଧ ଗଜର ଅଭୀଷ୍ଟସିଦ୍ଧି ନିମନ୍ତେ ତାହା ଯଥେଷ୍ଟ ।

ଏଥିଉତ୍ତାରୁ ଦୁଇ ତିନି ଗୋଟି ପିତା କିମ୍ବା ମାତା ପ୍ରେରିତ ଅଳସୁଆ ପାଣ ବାଳକଭିକ୍ଷାର୍ଥୀ ଉପସ୍ଥିତ ହୋଇ ଭିକ୍ଷୁକସଭାର ସଭ୍ୟସଂଖ୍ୟା ବୃଦ୍ଧି କଲେ ।

ଉପସ୍ଥିତ ହେଲା ମହୀ ବକଳୀ । ବୟସ ପଞ୍ଚାଶରୁ ଊର୍ଦ୍ଧ୍ୱ; ବର୍ଣ୍ଣ ଗୌର । ଦୁଇ ଖଣ୍ଡ କଷା ଧୋତି— ଖଣ୍ଡେ ଅଣ୍ଟାରେ, ଖଣ୍ଡେ ମୁଣ୍ଡରେ । ସୁଶ୍ରାବ୍ୟ ଭଜନ ଗାଇ ଶ୍ରୋତାର ମନକୁ ମୁଗ୍ଧ କରିପାରେ ସେ । କଥା କହିବାର ଚାତୁରୀ ଅଛି ତା'ର । ବୁଦ୍ଧି ଅନୁସାରେ ଓ ଦୀକ୍ଷାନୁସାରେ ତର୍କବିତର୍କ କରେ ସେ । ହେଲେ କଅଣ ହେବ, ଜାତିରେ ସେ ପାଣ । ଯୌବନ କାଳରେ ସୁପୁରୁଷ ଥିଲା ବୋଇଲେ ଅସଙ୍ଗତ ନୁହେଁ । ଘର କରି ଚାଷ କରୁଥିଲା । ସ୍ତ୍ରୀ ଛାଡ଼ିଗଲା; ପୁତ୍ର ବୟସ୍କ ହେବାରୁ ଗ୍ରାମାନ୍ତରକୁ ଜୀବିକା ଉପାର୍ଜନ ନିମନ୍ତେ ଚାଲିଗଲା । ଚକ୍ଷୁଯୋଡ଼ିକ ଫୁଟିଯିବାରୁ ମହୀ ଭିକ୍ଷାବୃତ୍ତି ଅବଲମ୍ବନ କଲା । ମହୀ ଉପସ୍ଥିତ ହୋଇ କହିଲା, ''ମା, ଧନୀଘର ଭିକ୍ଷା ମୁଠେ ମିଳୁ'' ଏତିକି ମାତ୍ର । ସେ ମଧ ଛାୟାର ଆଶ୍ରୟ ନେଲା ।

ଉପସ୍ଥିତ ହେଲେ ଜଣେ ଦେଶାନ୍ତରର ଯୁବକ ଜ୍ୟୋତିଷୀ । ସୁସ୍ଥ ଓ ସବଳକାୟ; କାଖରେ ପଞ୍ଜିକା । କହିଲେ, ''ମୁଁ ଜଣେ ବିଦେଶୀ ଜ୍ୟୋତିଷ । ଗୋଟିଏ ଉତ୍ତମ ସଞ୍ଚା ଓ ଦୁଇ ଗଣ୍ଡା ପଇସା ଧର୍ମଦ୍ୱାରରୁ ମିଳୁ ।'' ଏହା ଶୁଣି ମହୀର ମନ ଅସ୍ଥିର । କହିଲା– ''ମହାପ୍ରଭୁ, ଆପଣ ଜ୍ୟୋତିଷ ? ବର୍ଣ୍ଣରେ ?''

''ଓଲୁ, ଜ୍ୟୋତିଷ ପୁଣି ବର୍ଣ୍ଣରେ କଅଣ ? ବ୍ରହ୍ମପୁତ୍ର ନାହାକ ।''— ''ମୁଁ ତାହା ଜାଣିଲି କିପରି, ବ୍ରାହ୍ମଣ ମଧ ତ ବିଦ୍ୟା ପଢ଼ି ଜ୍ୟୋତିଷ ହୁଅନ୍ତି । ଆପଣଙ୍କର ଅର୍ଥ ଉପାର୍ଜନର ପନ୍ଥା ଥାଉଁ ଥାଉଁ ଭିକ୍ଷା କାହିଁକି ?''

—''ଆରେ, କଅଣ ସେ କାଳ ଅଛି ? ଏବେ କର କପାଳ-କୋଷ୍ଠୀ ଦେଖାଇ ପଇସା ଦେଉଛି କିଏ ?''

—''ତା' ଯେବେ ନ ହେଲା, ତେବେ ଅନ୍ୟ ବୃତ୍ତି ଧଇଲେ ହୁଅନ୍ତା ନାହିଁ କି ? ଆପଣ ଅନ୍ଧ, କି ଛୋଟା, କି କେମ୍ପା ତ ନୁହନ୍ତି ?''

—''ଯା, ଯା, ଯା, ତୁ ଗୋଟାଏ ଏତେ କଥା ଶୁଣାଇବାକୁ କିଏ ? ଜାତିରେ ପାଣ ହୋଇଛୁ, ବକ ନା ?''

—''ଆପଣଙ୍କର ବୃତ୍ତି ଥାଉଁ ଥାଉଁ, ଗୋଡ଼ ହାତ ଓ ଆଖି ଭଲ ଥାଉଁ ଥାଉଁ ଆମ ପରି ୧୦ ଜଣ ଅକର୍ମଣ୍ୟ ଅନ୍ଧ ଖଞ୍ଜର ପ୍ରାପ୍ୟ ଯେତିକି, ତହିଁ ଅଧିକ ଦେବାକୁ ବସିଛନ୍ତି କି ନା, ସେଥିପାଇଁ କହିଲି । ପୁଣି ଆପଣ ବିଦେଶୀ । କଅଣ ଆପଣଙ୍କ ଦେଶରେ ଭିକ ମିଳେ ନାହିଁ ?''

—''ଚୋର ପାଜି, ତୁନି ହୋ; ନୋହିଲେ ଦେଖିବୁ ।''

—''ଆଜ୍ଞା, ତୁନି ହେଲି; ଆପଣ ଦଶ ଜଣଙ୍କର ପେଟ ମାରି ଦାତା ଯାହା ଦେବେ ନିଅନ୍ତୁ, ମୁଁ କଅଣ ମନା କରୁଛି ।''

ଇତ୍ୟବସରରେ ଜଣେ ଯୁବକ ବ୍ରାହ୍ମଣ ଉପସ୍ଥିତ ହୋଇ ଚିତ୍କାର କରି କହିଲେ— ''ଆଜି ଦ୍ୱାଦଶୀ, ବିଦେଶୀ ବ୍ରାହ୍ମଣ କାଲି ଉପବାସରେ ଥିଲା । ଗୋଟାଏ ଭଲ ଜଳଖିଆ ସଙ୍ଖା ଏବଂ ଚାରିଗଣ୍ଡା ପଇସା ମିଳୁ ।''

ଏହା ଶୁଣି ବକଳି କହିଲା— ''ବା, ବା, କିହେ ଜ୍ୟୋତିଷ ଆପଣେ, ଶୁଣିଲେ ତ । ଆମ ସମସ୍ତଙ୍କର ଅନ୍ନ ମାରିବାକୁ ଗୋସାଇଁ ବିଜେ କଲେ । ଆଜ୍ଞା, ଆପଣଙ୍କ ନିବାସ ?''

—''ପୁରୀ ଜିଲ୍ଲା ।''

—''ଠିକ୍ ବୁଝିପାରିଲି । ବର୍ଣ୍ଣରେ ?''

—''ମୁଁ ବକଳି । ବର୍ଣ୍ଣ ପଚାରିବାକୁ ସମସ୍ତଙ୍କର ଅଧିକାର ଅଛି । କହିଲେ ଦୋଷ କଅଣ ?''

—''ବ୍ରାହ୍ମଣ ।''

—''ବ୍ରାହ୍ମଣ ବୋଲି ଏତେ ଦାବି । ଆମର ଦାବି ମୁଠାଏ ଚାଉଳ ।''

—''ବ୍ରାହ୍ମଣ ସିନା ଭିକ୍ଷା ମାଗିବାର ଅଧିକାରୀ । ଆଜି ପାଣ କଣ୍ଡରା ସମସ୍ତେ ଭିଖାରି । ବିଧିର ବିଧାନ ଓଲଟିଲା ପରା । ବ୍ରାହ୍ମଣଙ୍କର ଏବେ ସମ୍ମାନ କାହିଁ ?''

—''ହଁ, ବ୍ରାହ୍ମଣ ହେଲେ ଭିଖାରି, ସେ ସବଳ ହେଉ, ଧନୀ ହେଉ । ଆଉ ଅନ୍ଧ, ପଙ୍ଗୁ, ଛୋଟା, କେମ୍ପାକୁ ଭିକ୍ଷା ଦେଲେ ଅଧର୍ମ । ଏହା ପରା ବିଧି ବ୍ୟବସ୍ଥା । ହଉ, ଆପଣ କିଛି ପାଠଶାଠ ବା ବେଦ ପଢ଼ିଛନ୍ତି ?''

— ''ତୁ ଗୋଟାଏ ପାଣ ବୁଢ଼ା, ଏ ସବୁ ପଚାରି ବାର ତାର କି ଅଧିକାର ? ବିଦ୍ୟା ପଢ଼ିଥିଲେ ମୁଁ ବ୍ରାହ୍ମଣ, ମୂର୍ଖ ହେଲେ ମଧ ମୁଁ ବ୍ରାହ୍ମଣ । ମୋର ଶିଖା ପଇତା ଥିଲେ ସମସ୍ତେ ସମ୍ମାନ କରିବେ— ବାଧ ହୋଇ କିଛି ଦେବେ । ଯାର ଧର୍ମରେ ବିଶ୍ୱାସ, ସେ ମତେ ନ ଦେଇ ପାଣକୁ ଦେବ ?''

—''ଆଜ୍ଞା, ଆପଣ ବ୍ରହ୍ମକୁ ଜାଣନ୍ତି ?''

''ଚୋର, ବ୍ରହ୍ମ କଅଣରେ ? ତୁ ପୁଣି ତା' ନାମ ଜାଣିଲୁ କେଉଁଠାରୁ ?''

—''ମୁଁ ଅନ୍ଧ ବହୁତ ବ୍ରହ୍ମ ଓ ବେଦର କଥା ଜାଣିଛି; ଏଣୁ ତ ପଚାରିଲି । ଆପଣ ଯେବେ ବ୍ରହ୍ମର ପରିଚୟ ପାଇ ନାହାନ୍ତି, ତେବେ ଆପଣ ବ୍ରାହ୍ମଣ ନୁହନ୍ତି ।

—''ଶଳା, ଚୋର, ତୁ ଆଜି ଦାତାଦ୍ୱାରରେ ମୋତେ ଅପମାନ କରୁଅଛୁ ? ତୋର ଜନ୍ମେ ଜନ୍ମେ ବ୍ରାହ୍ମଣ ହୋଇ ମୋର ଜୀବିକା ଅର୍ଜନ କରୁଥାଏଁ । ଯାହା ଦ୍ୱାରରେ ପାଣ ଏତେ ଅପମାନ ଦେଲା, ସେ ଦ୍ୱାରରେ ଭିକ ମିଳିବ ବୋଲି କେଉଁ ଆଶା ?''

ଏହା କହି ଚୁଟି ଉନ୍ମୁକ୍ତ କରି ବ୍ରାହ୍ମଣ ସ୍ଥାନତ୍ୟାଗର ଉଦ୍‌ଯୋଗ କଲେ । ବକଳି କହିଲା— ''ଏହା ଜ୍ଞାନୀଲୋକର ଉଚିତ କି ? ଅନ୍ୟର କଥାରେ କ୍ରୋଧାନ୍ଧ ହୋଇ ଦାତାଦ୍ୱାରରୁ ଫେରିଯିବେ ?''

— ''ପୁଣି ଶଳା ମତେ ଅନ୍ଧ ବୋଲି ଗାଳି ଦେଉଛି, ଶୁଣ ହେ ।''

—''ଆଜ୍ଞା ମୋର ଏଡ଼େ ଭାଗ୍ୟ ହେଲା କେବେ ଯେ, ମୁଁ ବ୍ରାହ୍ମଣର ଶଳା ହେଲି । ଯାହା ଥିଲା ଏତିକି; ଆପଣ ତୁନି ହୋଇ ରହନ୍ତୁ; ଯାହା କପାଳରେ ଯାହା ଥିବ, ମିଳିବ ଯେ ।''

ସମସ୍ତେ ଚୁପ୍‌ଚାପ । ଭିକ୍ଷୁକମାନେ ଅବାକ୍ ହୋଇ ବ୍ରାହ୍ମଣ-ବକଳି ସମ୍ବାଦ ଶୁଣୁଥିଲେ । ବକଳି ପୁଣି ଚିନ୍ତା ଗୌଡ଼କୁ ଲକ୍ଷ୍ୟ କରି କହିଲା, ''ଭାଇ ଚିନ୍ତା, ଆମେ ଅନ୍ଧ, ପଙ୍ଗୁ ଓ ଅକର୍ମଣ୍ୟ ହେଲେ ମଧ ଆମ କପାଳକୁ ଚାଉଳ ମୁଠେ । ଏଥିରେ ମଧ ଆମ୍ଭେ ସନ୍ତୁଷ୍ଟ । ବ୍ରାହ୍ମଣ, ଜ୍ୟୋତିଷ କର୍ମକ୍ଷମ ହେଲେ ମଧ ତାଙ୍କ ପାଇଁ ବି ସଙ୍ଖା ପଇସା, କପଡ଼ା ବା ଆଉ କିଛି । ଏହା ପରା ଦେଶର ରୀତି । କର୍ମକ୍ଷମ ଭିକ୍ଷୁକସଂଖ୍ୟା ବଢ଼ୁଛନ୍ତି— ଅନ୍ଧ ପଙ୍ଗୁଙ୍କର ଦୁଃଖର ଖବର କିଏ ନିଏ ?''

ବକଳି ତା'ର ପ୍ରାପ୍ୟ ପାଇ ଗଲାବେଳେ ଗୋସାଇଁ ପ୍ରଣାମ ବୋଲି କରଯୋଡ଼ କଲା । ଗୋସାଇଁ ମୁହଁ ଫୁଲାଇ ବସି ରହିଥିଲେ ।



## ଗରିବର ମୃତ୍ୟୁକାଳୀନ ଚିନ୍ତା

କିଏ, ତୁ କିଏ ?

ଛିଦୁ;

ଛିଦୁ ମିସ୍ତ୍ରୀ ?

ଛିଦୁ ମିସ୍ତ୍ରୀ ଯେ ଚାରିଦିନ ହେଲା ମରିଛି ।

ହଁ, କେତେଦିନ ହେଲା ଗୋଟାଏ ପୁରୁଣା ଡିବା ଘରର ଦ୍ୱାରବନ୍ଧ ବଦଳାଇବା ନିମନ୍ତେ ନିଯୁକ୍ତ ଥିଲା । ଦ୍ୱାରବନ୍ଧ ଖୋଲିବା ବେଳେ ତାହା ମୋ ପିଠି ଉପରେ ପଡ଼ିଗଲା । ମେରୁଦଣ୍ଡ ଭାଙ୍ଗିଗଲା, ମୂର୍ଚ୍ଛିତ ହୋଇ ପଡ଼ିଗଲି । ମୋର ଚେତା ନ ଥିଲା । ଚେତନା ଆସିଲାରୁ ଦେଖେ ଯେ ମୁଁ ପକ୍କାଘର ପଲଙ୍କ ଉପରେ ଶୋଇଛି, ଧୀରେ ଧୀରେ ସମସ୍ତ ମନେ ପଡ଼ିଲା । ଡାକ୍ତରଖାନାକୁ ଚିକିତ୍ସିତ ହେବାକୁ ଆସିଥିଲି । ଓହୋ କି ଯନ୍ତ୍ରଣା, ଅକଥନୀୟ । ଚିକିତ୍ସକମାନେ ଆରୋଗ୍ୟ କରିବାକୁ ଯଥାସାଧ ଚେଷ୍ଟା କରୁଥିଲେ, ମାତ୍ର ମୋର ଜୀବନ ଯେ ସଙ୍କଟାପନ୍ନ, ବଞ୍ଚିବାର ଆଶା ନାହିଁ, ଏହା ମୁଁ ଜାଣିପାରିଲି ।

ଭାବିଲି କୁଲି ମଜୁରିଆ ପ୍ରଭୃତିଙ୍କର ଆକସ୍ମିକ ମୃତ୍ୟୁ ଘଟେ । ମୁଁ ସେହି ଶ୍ରେଣୀର ଲୋକ । ମୋର ମଧ ମୃତ୍ୟୁ ଘଟିବ । ଡାକ୍ତରମାନେ ଆରୋଗ୍ୟ କରିପାରିଲେ ନାହିଁ, ମରିବି । ତେବେ ଡାକ୍ତରଖାନାର ପଲଙ୍କରେ ମରିବି କାହିଁକି, ମୋ କୁଟୀରର ଭୂମି ଶଯ୍ୟା ଶତଗୁଣ ଭଲ । ମୋ ଛଣ କୁଟୀରର ଖୁଣ୍ଟି, ଶ୍ରେଣୀ ରୁଅ, ବତାରେ ମୋର ପିତାମାତାଙ୍କ ସ୍ମୃତି ଜଡ଼ିତ । ଯେଉଁ ଗୃହରେ ମୋର ଜନ୍ମ, ଅନ୍ତୁଡ଼ିଶାଳ ସେ ରେମେ

ର ମରଣ ଘଟୁ, ଏହା ଭାବି ଚିକିତ୍ସକମାନଙ୍କର ନିଷେଧ ସତ୍ତ୍ୱେ ଆପଣା ଘରକୁ ଗଲି ।

ଘରେ ମୋର ସ୍ତ୍ରୀ, ପୁତ୍ର ଓ କନ୍ୟାଙ୍କୁ ନିକଟରେ ପାଇ କ୍ଷଣକେ ମୃତ୍ୟୁ ଯନ୍ତ୍ରଣା ଭୁଲିଗଲି । ଗୋଟିଏ ଚିନ୍ତା ମନକୁ ମୃତ୍ୟୁ ଚିନ୍ତା ଅପେକ୍ଷା ଅଧିକ ଆନ୍ଦୋଳନ କଲା । ତମେ ଅବଶ୍ୟ ଜାଣ ଯେ, ଆମମାନଙ୍କର ଦୈନିକ ଉପାର୍ଜନଦ୍ୱାରା ଉଦର ପୋଷଣ ହୁଏ । ସଞ୍ଚୟର ଉପାୟ ନାହିଁ । ଭାବି ଦେଖିଲି ଜୀବନବ୍ୟାପୀ ପରିଶ୍ରମରେ ସୁଦ୍ଧା ସ୍ତ୍ରୀ ପୁତ୍ରଙ୍କ ନିମନ୍ତେ କିଛି ସଂଗ୍ରହ କରି ରଖି ଯାଉ ନାହିଁ । ସ୍ମରଣ କରି ଦେଖେ ତ ସେମାନଙ୍କ ଉପରେ କୌଣସି ପ୍ରକାର ଋଣଭାର ଲଦିଦେଇ ଯାଉଅଛି କି ନା ? ଅଳ୍ପ ହେଉ ଅଧିକ ହେଉ ଋଣ ତ । ସ୍ମରଣ ହେଲା, ତମର ପଇସା ମୋ ଉପରେ ବାକି ଅଛି— ପଥର ଯୋଗାଇବାକୁ ଦାଦନ ନେଇଥିଲି । ଅଧିକାଂଶ ପରିଶୋଧ ହୋଇଅଛି, ଅଳ୍ପ କିଛି ବାକି ଅଛି । ତମର ମନେ ଥାଇ ନ ପାରେ; ମୋର ମନେ ଅଛି । ''ଥିଲେ ଅତି ସାମାନ୍ୟ । ସେଥି ନିମନ୍ତେ ଚିନ୍ତା କାହିଁକି ?''

ସାମାନ୍ୟ ହେଲେ ମଧ ବିଧବା ଓ ନାବାଳକ ପୁତ୍ର କନ୍ୟା ଉପରେ ତ ଭାର । ବିଧବା ପରିଶ୍ରମ କରି ପୁତ୍ର କନ୍ୟାର ଉଦର ପୋଷଣ କରିବ କି ତମର ଋଣ ପରିଶୋଧ କରିବ, ଗରିବର ପ୍ରଧାନ ଚିନ୍ତା ଏହାହିଁ । ଦୟାଶୀଳ ଲୋକ ଅବସ୍ଥା ବିବେଚନାରେ ଅବ୍ୟାହତି ଦେଇପାରେ; ମାତ୍ର ଏ ସଂସାରରେ ସେପରି ଲୋକ କେତେ କ'ଣ ?

ଆହୁରି ଗୋଟିଏ କଥା, ଗରିବ ଓ ନିର୍ଦ୍ଧନ ଉପରେ ଲୋକଙ୍କର ଅବିଶ୍ୱାସ ଅତ୍ୟଧିକ । ବଡ଼ଲୋକ ମିଆଦ ପୂରଣ କଲେ ତାକୁ ତିରସ୍କାର ଓ ଲୁବାକ୍ୟ ଶୁଣିବାକୁ ପଡ଼େ ନାହିଁ; କିନ୍ତୁ ଗରିବର ସାମାନ୍ୟ ତ୍ରୁଟି ହେଲେ ତାକୁ ଅଯଥା ତିରସ୍କାର ଓ ଅପମାନ ସହ୍ୟ କରିବାକୁ ପଡ଼େ । ଚୋର ଠକ ବଞ୍ଚକ ଟଙ୍କା ପଇସା ଖାଇ ମୁହଁ ପୋଛି ଦେବାକୁ ବସିଛି ଇତ୍ୟାଦି ଗାଳି ଦେବାକୁ ସାହୁକାର ତ୍ରୁଟି କରେ ନାହିଁ । ସେ ଲାଞ୍ଛନା ଅସହ୍ୟ । ବଡ଼ଲୋକର ଲଜ୍ଜା ଓ ସମ୍ମାନଜ୍ଞାନ ଅଛି, ଗରିବ ଦୁଃଖୀର କି ନାହିଁ ? ମୋର ଦାଦନ ନେବା କଥା ହୁଏ ତ ମୋର ସ୍ତ୍ରୀକୁ ଜଣା ନାହିଁ । ତମେ ଯଦି ଦିନେ ତାକୁ କହିବ ଯେ, ତୋର ସ୍ୱାମୀ ମୋର ପଇସା ଖାଇଥିଲା, ପରିଶୋଧ ନ କରି ମଲା ଓ ମତେ ଠକିଗଲା, ଏ କଥା ଶୁଣିଲେ ବିଧବାର କି କଷ୍ଟ ହେବ ? ଶିଶୁ ସନ୍ତାନର ପେଟ ମାରି ତମର ଦୁଇ ଗଣ୍ଡା ପରିଶୋଧ ସେ କରିବ ନିଶ୍ଚୟ ଏବଂ ମତେ ପ୍ରତାରକ ବୋଲି ମନେ କରିବ ନାହିଁ ସତ; ମାତ୍ର ତମର ବାକ୍ୟବାଣ ତାକୁ ମର୍ମାହତ କରିବ ।

ନିର୍ଦ୍ଧନ ହବାର ଯେ ଲାଞ୍ଛନା, ତାହା ଲାଞ୍ଛନା ହେଲା ବୋଲି ଧନିକ ଓ ଋଣଦାତାମାନେ ବୁଝିପାରନ୍ତି ନାହିଁ ।

ବଡ଼ଲୋକର ବିବେକ ଆଉ ସମ୍ମାନ ଅଛି, ଗରିବର କ'ଣ ନାହିଁ ?

''ନାହିଁ ବୋଲି କିଏ କହିଲା ?''

ତମେ ଏହା କହିଅଛ; ମାତ୍ର ଅଧିକାଂଶ ଲୋକଙ୍କର ଏ ଧାରଣା ନାହିଁ । ସେମାନଙ୍କ ମତରେ ଯାର ଧନ ନାହିଁ, ତା'ର ସମ୍ମାନ ନାହିଁ। ଏକ ଆତ୍ମସମ୍ମାନ ମଧ ନାହିଁ । ନିଃସ୍ୱ ଏ କଟାକ୍ଷର ଲକ୍ଷ୍ୟ ସ୍ଥଳ ।

ହେଉ ଆଜି ମୁଁ ନିଶ୍ଚିନ୍ତ, ତମଦ୍ୱାରା ମୋର ସ୍ତ୍ରୀ ସନ୍ତାନ ଅବମାନିତ, ଲାଞ୍ଛିତ ହେବ ନାହିଁ । ଘଟିବ । ଡାକ୍ତରମାନେ ଆରୋଗ୍ୟ କରିପାରିବେ ନାହିଁ, ମରିବି । ତେବେ ଡାକ୍ତରଖାନାର ପଲଙ୍କରେ ମରିବି କାହିଁକି, ମୋ କୁଟୀରର ଭୂମି ଶଯ୍ୟା ଶତଗୁଣ ଭଲ । ମୋ ଛଣ କୁଟୀରର ଖୁଣ୍ଟ, ଶେଣୀ, ରୁଅ, ନଡ଼ାରେ ମୋର ପିତାମାତାଙ୍କ ସ୍ମୃତି ଜଡ଼ିତା । ଯେଉଁ ଗୃହରେ ମୋର ଜନ୍ମ, ଅନ୍ତୁଡ଼ିଶାଳ ସେଠାରେ ମୋର ମରଣ ଘଟୁ, ଏହା ଭାବି ଚିକିତ୍ସକମାନଙ୍କର ନିଷେଧ ସତ୍ତ୍ୱେ ଆପଣା ଘରକୁ ଗଲି ।

ଘରେ ମୋର ସ୍ତ୍ରୀ, ପୁତ୍ର ଓ କନ୍ୟାଙ୍କୁ ନିକଟରେ ପାଇ କ୍ଷଣକେ ମୃତ୍ୟୁ ଯନ୍ତ୍ରଣା ଭୁଲିଗଲି । ଗୋଟିଏ ଚିନ୍ତା ମନକୁ ମୃତ୍ୟୁ ଚିନ୍ତା ଅପେକ୍ଷା ଅଧିକ ଆନ୍ଦୋଳନ କଲା । ତମେ ଅବଶ୍ୟ ଜାଣ ଯେ, ଆମମାନଙ୍କର ଦୈନିକ ଉପାର୍ଜନଦ୍ୱାରା ଉଦର ପୋଷଣ ହୁଏ । ସଞ୍ଚୟର ଉପାୟ ନାହିଁ । ଭାବି ଦେଖିଲି ଜୀବନବ୍ୟାପୀ ପରିଶ୍ରମରେ ସୁଦ୍ଧା ସ୍ତ୍ରୀ ପୁତ୍ରଙ୍କ ନିମନ୍ତେ କିଛି ସଂଗ୍ରହ କରି ରଖି ଯାଉ ନାହିଁ । ସ୍ମରଣ କରି ଦେଖେ ତ ସେମାନଙ୍କ ଉପରେ କୌଣସି ପ୍ରକାର ଋଣଭାର ଲଦିଦେଇ ଯାଉଅଛି କି ନା ? ଅଳ୍ପ ହେଉ ଅଧିକ ହେଉ ଋଣ ତ । ସ୍ମରଣ ହେଲା, ତମର ପଇସା ମୋ ଉପରେ ବାକି ଅଛି— ପଥର ଯୋଗାଇବାକୁ ଦାଦାନ ନେଇଥିଲି । ଅଧିକାଂଶ ପରିଶୋଧ ହୋଇଅଛି, ଅଳ୍ପ କିଛି ବାକି ଅଛି । ତମର ମନେ ଥାଇ ନ ପାରେ; ମୋର ମନେ ଅଛି । ''ଥିଲେ ଅତି ସାମାନ୍ୟ । ସେଥି ନିମନ୍ତେ ଚିନ୍ତା କାହିଁକି ?''

ସାମାନ୍ୟ ହେଲେ ମଧ ବିଧବା ଓ ନାବାଳକ ପୁତ୍ର କନ୍ୟା ଉପରେ ତ ଭାର । ବିଧବା ପରିଶ୍ରମ କରି ପୁତ୍ର କନ୍ୟାର ଉଦର ପୋଷଣ କରିବ କି ତମର ଋଣ ପରିଶୋଧ କରିବ, ଗରିବର ପ୍ରଧାନ ଚିନ୍ତା ଏହା ହିଁ । ଦୟାଶୀଳ ଲୋକ ଅବସ୍ଥା ବିବେଚ୍ନାରେ ଅବ୍ୟାହତ ଦେଇପାରେ; ମାତ୍ର ଏ ସଂସାରରେ ସେପରି ଲୋକ କେତେ କ'ଣ ?

ଆହୁରି ଗୋଟିଏ କଥା, ଗରିବ ଓ ନିର୍ଦ୍ଧନ ଉପରେ ଲୋକଙ୍କର ଅବିଶ୍ୱାସ ଅତ୍ୟଧିକ । ବଡ଼ଲୋକ ମିଆଦ ପୂରଣ କଲେ ତାକୁ ତିରସ୍କାର ଓ କୁବାକ୍ୟ ଶୁଣିବାକୁ ପଡ଼େ ନାହିଁ; କିନ୍ତୁ ଗରିବର ସାମାନ୍ୟ ତ୍ରୁଟି ହେଲେ ତାକୁ ଅଯଥା ତିରସ୍କାର ଓ ଅପମାନ ସହ୍ୟ କରିବାକୁ ପଡ଼େ । ଚୋର ଠକ ବଞ୍ଚକ ଟଙ୍କ ପଇସା ଖାଇ ମୁହଁ ପୋଛି ଦେବାକୁ ଆସିଛି ଇତ୍ୟାଦି ଗାଳି ଦେବାକୁ ସାହୁକାର ତ୍ରୁଟି କରେ ନାହିଁ । ସେ ଲାଞ୍ଛନା ଅସହ୍ୟ । ବଡ଼ଲୋକର ଲଜ୍ଜା ଓ ସମ୍ମାନଜ୍ଞାନ ଅଛି, ଗରିବ ଦୁଃଖୀର କି ନାହିଁ ? ମୋର ଦାଦାନ ନେବା କଥା ହୁଏ ତ ମୋର ସ୍ତ୍ରୀକୁ ଜଣା ନାହିଁ । ତମେ ଯଦି ଦିନେ ତାକୁ କହିବ ଯେ, ତା'ର ସ୍ୱାମୀ ମୋର ପଇସା ଖାଇଥିଲା, ପରିଶୋଧ ନ କରି ମଲା ଓ ମତେ ଠକିଗଲା, ଏ କଥା ଶୁଣିଲେ ବିଧବାର କି କଷ୍ଟ ହେବ ? ଶିଶୁ ସନ୍ତାନର ପେଟ ମାରି ତମର ଦୁଇ ଗଣ୍ଡା ପରିଶୋଧ ସେ କରିବ ନିଶ୍ଚୟ ଏବଂ ମତେ ପ୍ରତାରକ ବୋଲି ମନେ କରିବ ନାହିଁ ସତ; ମାତ୍ର ତମର ବାକ୍ୟବାଣ ତାକୁ ମର୍ମାହତ କରିବ ।

ନିର୍ଧନ ହବାର ଯେ ଲାଞ୍ଛନା, ତାହା ଲାଞ୍ଛନା ହେଲା ବୋଲି ଧନିକ ଓ ଋଣଦାତାମାନେ ବୁଝିପାରନ୍ତି ନାହିଁ ।

ବଡ଼ଲୋକର ବିବେକ ଆଉ ସମ୍ମାନ ଅଛି, ଗରିବର କ'ଣ ନାହିଁ ?

''ନାହିଁ ବୋଲି କିଏ କହିଲା ?''

ତମେ ଏହା କହିଅଛ; ମାତ୍ର ଅଧିକାଂଶ ଲୋକଙ୍କର ଏ ଧାରଣା ନାହିଁ । ସେମାନଙ୍କ ମତରେ ଯାର ଧନ ନାହିଁ, ତାର ସମ୍ମାନ ନାହିଁ। ଏକ ଆତ୍ମସମ୍ମାନ ମଧ ନାହିଁ । ନିଃସ୍ୱ ଏ କଟାକ୍ଷର ଲକ୍ଷ୍ୟ ସ୍ଥଳ ।

ହେଉ ଆଜି ମୁଁ ନିଶ୍ଚିନ୍ତ, ତମଦ୍ୱାରା ମୋର ସ୍ତ୍ରୀ ସନ୍ତାନ ଅବମାନିତ, ଲାଞ୍ଛିତ ହେବ ନାହିଁ ।

●

## ଜହ୍ନମାମୁ ହେଲା କିପରି ?

ପୃଥିବୀ ମା', ଚନ୍ଦ୍ର ମାମୁ । ପୃଥିବୀ ଓ ଚନ୍ଦ୍ର ଏକପିଣ୍ଡରୁ ଜନ୍ମ ହୋଇଥିଲେ । ପୃଥିବୀ ବଡ଼, ଚନ୍ଦ୍ର ସାନ ।

ପୂର୍ବେ ଗୋଟିଏ ତତଲା ମାଟି ପିଣ୍ଡ ସୂର୍ଯ୍ୟର ଚାରିପାଖରେ ବୁଲୁଥିଲା । ସେହି ପିଣ୍ଡଟି କୁମ୍ଭାର ମାଟିଠାରୁ ମଧ କଅଁଳ ଥିଲା । ଅତି ବେଗରେ ବୁଲୁ ବୁଲୁ ସେହି ତତଲା, କଅଁଳ ପିଣ୍ଡରୁ ଖଣ୍ଡିଏ ଦୂରକୁ ଛିଡ଼ିକି ପଡ଼ିଲା । ଯେଉଁ ବଡ଼ ଖଣ୍ଡ ରହିଲା, ସେ ହେଲା ପୃଥିବୀ । ଯେଉଁ ଖଣ୍ଡ ଛିଡ଼ିକି ପଡ଼ିଲା, ସେ ଖଣ୍ଡ ହେଲା ଚନ୍ଦ୍ର । ପୃଥିବୀରୁ ଆମ୍ଭମାନଙ୍କର ଜନ୍ମ । ଏଣୁ ପୃଥିବୀ ଆମ୍ଭମାନଙ୍କର ମା' । ଚନ୍ଦ୍ର ପୃଥିବୀ ସାଙ୍ଗରେ ଏକା ପିଣ୍ଡରୁ ଜନ୍ମ; ଏଣୁ ଜହ୍ନ ଆମ୍ଭମାନଙ୍କର ମାମୁ ।

ପିଣ୍ଡଟି ଅତି ବେଗରେ ବୁଲୁଥିଲା; ଏଣୁ ଛିଡ଼ିକି ପଡ଼ିବା ଖଣ୍ଡକ ବହୁତ ଦୂରକୁ ଚାଲିଗଲା । ଆଉ ଫେରିବ କିପରି ? ଏଣୁ ସେ ତା' ଭଉଣୀ ପୃଥିବୀର ଚାରିପାଖରେ ବୁଲୁଚି । ତା'ର ବିଶ୍ରାମ ନାହିଁ ।

ଖରା ପୃଥିବୀରେ ପଡ଼େ ଓ ଚନ୍ଦ୍ର ଦିହରେ ପଡ଼େ । ଯେଉଁ ପାଖରେ ଖରା ପଡ଼େ, ସେ ପାଖଟା ଦିନ- ଆର ପାଖଟା ରାତି । ପୁନେଇରେ ଚନ୍ଦ୍ରର ଯେଉଁ ପାଖଟାରେ ଖରା ପଡ଼ିଥାଏ, ସେହି ପାଖଟା ଆମମାନଙ୍କୁ ଦେଖାଯାଏ । ଏଣୁ ପୁନେଇ ରାତିରେ ମାମୁ ଏଡ଼େ ସୁନ୍ଦର ଦିଶେ ଏବଂ ଆମ୍ଭମାନଙ୍କୁ ଏଡ଼େ ଆନନ୍ଦ ଦିଏ । ଜହ୍ନମାମୁଁ ଟିକେ ମଠୁଆ, ଉଦୟ ହେବାକୁ ମଠ କରେ । ଏଣୁ ତା' ଉପରେ ଖରା ପଡ଼ିବା ସବୁ ଅଂଶଟା ଆମକୁ ଦେଖାଯାଏ ନାହିଁ । ମାମୁ କ୍ରମେ ଛିଡ଼ି ଛିଡ଼ି ଯାଉଥାଏ। ଉଆଁସ ଦିନକୁ ଖରା ପଡ଼ିବା ପାଗଟା ସୂର୍ଯ୍ୟ ଆଡ଼କୁ ଥାଏ । ଆମ ଆଡ଼କୁ ତା' ଅନ୍ଧାରିଆ ଅଂଶଟା ଥାଏ; ଏଣୁ କିଛି ଦିଶେ ନାହିଁ । ଉଜ୍ଜ୍ୱଳ ପକ୍ଷ ପ୍ରଥମ ଦିନ ଭଣଜା-ଭାଣିଜୀମାନେ ଦେଖିବେ ବୋଲି ବାହାରି ପଡ଼େ; ମାତ୍ର ତା'ର ଦିହରେ ଅଳ୍ପଟିକେ ଖରା ପଡ଼ିଥାଏ । ଏଣୁ ଆମମାନଙ୍କୁ ଦିଶେ ନାହିଁ । ଦ୍ୱିତୀୟ ଦିନ ଟିକେ ବେଶି ଅଂଶରେ ଖରା ପଡ଼େ; ଏଣୁ ଦେଖାଯାଏ । ମାମୁ ସେ ଦିନ ପଶ୍ଚିମ ଆକାଶର ଦ୍ୱିତୀୟା ଚାନ୍ଦ । ପିଲାମାନେ ମାମୁକୁ ନୂଆ ରୂପରେ ଦେଖି ବଡ଼ ଆନନ୍ଦ ଲାଭ କରନ୍ତି । ମାମୁ କ୍ରମେ ବଢ଼େ । ଏହିପରି ମାମୁର ବଢ଼ା-ଛିଡ଼ା । ଏହି ବଢ଼ା ଛିଡ଼ା କଥା ବୁଝିବା ସହଜ ନୁହେଁ । ବେଶି ପାଠ ପଢ଼ିଲେ ସହଜରେ ଜଣା ପଡ଼ିବ । ପୃଥିବୀରେ ନଦୀ, ସମୁଦ୍ର, ବୃକ୍ଷଲତା, ପଶୁପକ୍ଷୀ ଓ ମନୁଷ୍ୟ ଅଛନ୍ତି । ଆମ୍ଭେମାନେ ଚନ୍ଦ୍ର ବା ମାମୁର କଥା ଭାବୁଁ । ମାମୁ ଦିହରେ ଏବେ କୌଣସି ଜୀବଜନ୍ତୁ ନାହାନ୍ତି । ଏଣୁ ଭଉଣୀର କଥା ବା ଆମ କଥା ଆଉ ଭାବିବ କିଏ ? ମାମୁର ତ ଦିହରୁ ମନ ପାଷାଣ ହୋଇଅଛି ।

ମା', ପିଠିରେ ମାମୁର ଜନ୍ମ— ମା', ମାମୁଁ ଏକ ମାର ପେଟରୁ ଜନ୍ମ । ଏଣୁ ମାମୁ ଖୁବ୍ ନିକଟ ସମ୍ପର୍କ । ଭଣଜା ଭାଣିଜୀ ମାମୁ ସମ୍ବନ୍ଧରେ ଯେତେ ଜାଣନ୍ତି, ଅନ୍ୟ ସମ୍ବନ୍ଧରେ ତେତେ ଜାଣନ୍ତି ନାହିଁ । ଜହ୍ନ ଆମର ମାମୁଁ; ଏଣୁ ଆମ୍ଭମାନଙ୍କର ନିକଟ ସମ୍ପର୍କ ତାଙ୍କ ସାଙ୍ଗରେ ଅଛି । ଆକାଶରେ ଯେତେ ଗ୍ରହନକ୍ଷତ୍ର ଅଛନ୍ତି, ମାମୁଁ ସବୁଠାରୁ ଆମ୍ଭ ନିକଟରେ; ତା'ଠାରୁ ବଳି ଆମ ନିକଟରେ ଆଉ କେହି ନାହିଁ ।

ଆମଠାରୁ ମାମୁ ୨୪୦୦୦ ମାଇଲ ଦୂରରେ ଅଛି । ଗ୍ରହ, ସୂର୍ଯ୍ୟ, ନକ୍ଷତ୍ର ତା'ଠାରୁ ବେଶି ଦୂରରେ ଅଛନ୍ତି ।

ଖୁବ୍ ମନୋଯୋଗ ଦେଇ ପାଠ ପଢ଼ିଲେ ଓ ବେଶି ପାଠ ପଢ଼ିଲେ ମାମୁର ସବୁକଥା ଧରା ପଡ଼ିବ । ଏତିକି ନୁହେ, ଆକାଶକୁ ପ୍ରତି ରାତିରେ ଅନାଇ ଅନାଇ ମାମୁର ଗତିବିଧି ଏବଂ ସଙ୍ଗେ ସଙ୍ଗେ ତାରାମାନଙ୍କୁ ଦେଖୁଥିବାକୁ ହେବ ।




ଛବିରୁ ମା' ଓ ମାମୁର ଆକାରରେ କି ପ୍ରଭେଦ ଅଛି, ତାହା ବୁଝିପାରିବ ଏବଂ କ ଚିହ୍ନିତ ସରଳରେଖା ମାପରେ ଦଶ ଖଣ୍ଡ କାଠି ତିଆରି କରି ଖଞ୍ଜିଲେ ଦୂରତାର ଅନୁମାନ କରି ପାରିବ ।

ଖ ଚିହ୍ନିତ ସରଳରେଖା ମାପରେ ଖଣ୍ଡେ ବାଉଁଶ କାଠି ତିଆରି କର । ଗ ଚିହ୍ନିତ ସରଳରେଖା ମାପରେ ଆଉ ଖଣ୍ଡେ ବାଉଁଶ କାଠି ତିଆରି କର । କୁମ୍ଭାର ମାଟିରେ ଏହି କାଠିଯୋଡ଼ିକ ମଝିରେ ରଖି ଦୁଇ ଗୋଟି ଗୋଲକ ବା ବାଟୁଳି ତିଆରି କର । ବଡ଼ ବାଟୁଳିଟି ମା ବା ପୃଥିବୀ- ଛୋଟ ବାଟୁଳିଟି ମାମୁ ବା ଚନ୍ଦ୍ର । କ ମାପର ୧୦ ଖଣ୍ଡ କାଠି ଖଞ୍ଜି ରଖ । ଖଞ୍ଜା କାଠିର ଏକ ପ୍ରାନ୍ତରେ ବଡ଼ ଗୋଲକଟି ରଖି ଅପର ପ୍ରାନ୍ତରେ ସାନ ଗୋଳକଟି ରଖ । ତେବେ ପୃଥିବୀ ଓ ଚନ୍ଦ୍ରର ଆକାର ଓ ଦୂରତାକୁ କଥା ବୁଝି ପାରିବ ।

●

## ବାଳକ ମନୁଷ୍ୟର ବାପ

କଥାଟା ବୁଝିବାକୁ ବଡ଼ ଅଡୁଆ ନା ? କିନ୍ତୁ ମନ ଦେଇ ବୁଝିଲେ ବଡ଼ ସହଜ ଓ ସତ୍ୟ ।

ଦ୍ୱିତୀୟା ଚାନ୍ଦ ବଢ଼ି ବଢ଼ି ହୁଏ ପୁନେଇଁ ରାତିର ଜହ୍ନମାମୁ । ସେହିପରି ବାଳକ ବଢ଼ି ବଢ଼ି ପଚିଶ ବର୍ଷରେ ହୁଏ ମନୁଷ୍ୟ । ବାଳକର ଦିହ ବଢ଼ି ବଢ଼ି ହୁଏ ମନୁଷ୍ୟ ଦିହ । ବାଳକର ବୁଦ୍ଧି ବଢ଼ି ବଢ଼ି ହୁଏ ମନୁଷ୍ୟ ବୁଦ୍ଧି । ସେହିପରି ବାଳକର ଅଭ୍ୟାସ ହୁଏ ମନୁଷ୍ୟର ଅଭ୍ୟାସ । ବାଳକ ଯାହା ଶିଖି ପଢ଼ି ସାଇତି ରଖିଥାଏ, ତାହା ମନୁଷ୍ୟ ହେବାବେଳେ କାମରେ ଲାଗେ । ବାଳକ ମନୁଷ୍ୟର ଦିହ ଗଢ଼ିଲା-ବୁଦ୍ଧି, ଅଭ୍ୟାସ, ବିଦ୍ୟା ବଢ଼ାଇଲା; ଏଣୁ ବାଳକ ମନୁଷ୍ୟର ବାପ ବୋଲି ପାଠୁଆ ଲୋକେ କହିଅଛନ୍ତି । ପୁଣି ପାଠୁଆ ଲୋକେ କହିଅଛନ୍ତି— ''ଯାହା ନ ହେବ ବାଳକାଳେ, ତାହା ନ ହେବ କାଳେ କାଳେ।''

ପିଲାବେଳେ ବଡ଼ ଭୋରରୁ ଉଠି ଘେରାଏ ଦଉଡ଼ି ନ ଆସିଲେ, ପୁଞ୍ଜାଏ ଦି ପୁଞ୍ଜା ଦଣ୍ଡ ବୈଠକ ନ କଲେ ଦିହରେ ବଳ ହେବ ନାହିଁ । ଯେଉଁ ବାଳକ ଏହିପରି କସରତ କରିବ, ସେ ମନୁଷ୍ୟ ହେଲା ବେଳକୁ ତା' ଦିହରେ କେତେ ବଳ ଥିବ, ସେ ଧାଁ ଧପଟ କରିପାରିବ, ପରିଶ୍ରମ କରିପାରିବ, ସେ କାମିକା ଲୋକ ହେବ । ଆଉ ଯେଉଁ ବାଳକ ବେଳ ଘଡ଼ିକେ ଉଠିବ—ଦଉଡ଼ିବ ନାହିଁ, କସରତ କରିବ ନାହିଁ, ସେ ମନୁଷ୍ୟ ହେଲାବେଳେ ଗୋଟାଏ ଅଳସୁଆ ହେବ, କାମ ଦାମ କରିପାରିବ ନାହିଁ। ଲୋକେ ତାକୁ ଅଳସୁଆ ବୋଲି କହିବେ। ପରିଶ୍ରମ କରିବାକୁ, କସରତ କରିବାକୁ ପିଲାଦିନେ ଅଭ୍ୟାସ ନ କଲେ ବଡ଼ ଦିନକୁ ତାହା କରି ହୁଏ ନାହିଁ । ପିଲାବେଳେ ହାଡ଼ କଅଁଳ ଥାଏ, ମାଂସ ବେଶି କଅଁଳ ଥାଏ; ଏଣୁ ବାଳ କାଳଟା ବ୍ୟାୟାମ କରିବାର ସମୟ । ବଡ଼ ହେଲେ ହାଡ଼ ଶକ୍ତ ହୋଇଯାଏ, ମାଂସପେଶୀ ଶକ୍ତ ହୋଇଯାଏ, ଶିରା ମୋଟାଇ ଯାଏ; ଏଣୁ ହାତ ଗୋଡ଼ ଭଲ ଖେଳେ ନାହିଁ । ଏଣୁ ବ୍ୟାୟାମ କେବଳ ବାଳ କାଳରେ ହେଇପାରେ—ବାଳକାଳରୁ ଅଭ୍ୟାସ ନ କଲେ କାଳେ କାଳେ ତାହା ହେବ ନାହିଁ।

ମାତା, ପିତା, ଗୁରୁ ଶିକ୍ଷା ଦେବେ; ମାତ୍ର ଅଭ୍ୟାସ କରିବ ବାଳକ । କହିବାକୁ ଗଲେ ବାଳକ ନିଜକୁ ଗଢୁ ଗଢୁ ମନୁଷ୍ୟ ଗଢ଼େ । ଯେପରି କୁମ୍ଭାର ନୂଆ ହାଣ୍ଡିରେ ଗୋଟିଏ ଅକ୍ଷର ଲେଖି ହାଣ୍ଡିଟି ପୋଡ଼ାଇ ଦେଲେ ହାଣ୍ଡିର ଅକ୍ଷର ଲିଭେ ନାହିଁ, ସେହିପରି ବାଳକର ଅଭ୍ୟାସ, ଶିକ୍ଷା କେବେ ନାଶ ହୁଏ ନାହିଁ । ବାଲ୍ୟକାଳ ଶିକ୍ଷାର ସମୟ । ବାଲ୍ୟ କାଳରେ ଯେଉଁମାନେ ଅଳସୁଆ ହେବେ, ସେମାନେ ସବୁ ଦିନେ ଅଳସୁଆ। ବାଳ କାଳରେ ଯେଉଁମାନେ ମନ ଦେଇ ପାଠ ନ ପଢ଼ିବେ, ସେମାନେ ମନୁଷ୍ୟ ହେବାବେଳେ ମୂର୍ଖ ହେବେ ।

ଆଜି ତୁମେମାନେ ପାଠ ପଢୁଛ, ମନ ଦେଇ ଶିଖିଲେ କିଛିଦିନ ଗଲେ ତୁମେମାନେ ପାଠ ପଢ଼ାଇବ । ଏବେ ହାକିମଙ୍କୁ ଦେଖିଲେ ତୁମେମାନେ ଡରୁଛ— ପାଠୁଆ ହେଲେ ତୁମେମାନେ ହାକିମ ହୋଇ ଯେଉଁମାନଙ୍କୁ ଡରୁଛ ସେମାନଙ୍କୁ ଡରାଇବ । ହାକିମମାନେ ତୁମକୁ ଭୟ କରିବେ । ଡାକ୍ତର ହୋଇ ଲୋକଙ୍କର ଚିକିତ୍ସା କରିବ, ଉପକାର କରିବ । ଇଞ୍ଜିନିୟର ହୋଇ ବଡ଼ ବଡ଼ ଘର, ପୋଲ, ରେଲଗାଡ଼ି, ରେଲବାଟ ବନାଇବ—ତୁମପରି ବାଳକମାନେ ସିନା ଭଲ ଶିକ୍ଷା କରି, ଭଲ ଅଭ୍ୟାସ କରି ଏସବୁ କରିଛନ୍ତି । ତୁମେମାନେ ଭଲ ଶିକ୍ଷା କଲେ ସେପରି ହେବ ନାହିଁ କାହିଁକି । ତୁମର ବୁଦ୍ଧି, ବଳ, ଜ୍ଞାନ, କ୍ଷମତା କେହି କଳନା କରିପାରି ନାହିଁ । ପିତା, ମାତା, ଗୁରୁ ମଧ ତୁମର କ୍ଷମତାର କଳନା କରିପାରି ନାହାନ୍ତି । ତୁମ ଭିତରେ ଯେତେ ଗୁଣ ଅଛି, ତାହା ତୁମ ପାଖ ମନୁଷ୍ୟମାନଙ୍କ ଅଗୋଚ଼ର— ଯେପରି ଗଛ ଭିତରେ ଗୋଟିଏ ଫୁଲ ଥିବା କଥା ଲୋକଙ୍କୁ ଅଗୋଚ଼ର ।

ତୁମ ଭିତର ଗୁଣ ନ ବୁଝି ଲୋକେ ପିଲା ପିଲା ବୋଲି ଉଡ଼ାଇ ଦିଅନ୍ତି । ଯେବେ ତୁମର ଗୁଣ ବୁଝିବେ, ସେତେବେଳେ ସମସ୍ତେ ପ୍ରଶଂସା କରିବେ, ବାହାବା ଦେବେ । କେତେ ଲୋକ ତୁମର ଗୁଣ, କ୍ଷମତା ଦେଖି ଡରିବେ ।

ତୁମେମାନେ ଆମମାନଙ୍କଠାରୁ ବଡ଼, ତୁମର ଗୁଣ, କ୍ଷମତା ଆମମାନଙ୍କ ଠାରୁ ବହୁତ, ତୁମମାନଙ୍କ ଉପରେ ଆମମାନଙ୍କର ଆଶା, ଭରସା, ତୁମେମାନେ ଦେଶର ମୁଖ ଉଜ୍ଜ୍ୱଳ କରିବ । ଆମେମାନେ ଯାହା କରିପାରିଲୁ ନାହିଁ,

ତୁମେମାନେ ତାହା ବଡ଼ ସହଜରେ କରିପାରିବ । ଏପରି ଅନ୍ୟାନ୍ୟ ଦେଶର ବାଳକମାନେ କରିଅଛନ୍ତି ଓ କରିବାକୁ ଚେଷ୍ଟା କରୁଅଛନ୍ତି । ପିତା, ମାତା, ଶିକ୍ଷକ, ଗୁରୁଜନମାନେ ବାଟ ଦେଖାଇବେ, ସାହାଯ୍ୟ କରିବେ; ମାତ୍ର ତୁମେମାନେ ନିଜେ ନିଜକୁ ଗଢ଼ିବ ।

କେବଳ ସ୍କୁଲ ପାଠ ପଢ଼ି କେହି ବଡ଼ ହୋଇ ନାହାନ୍ତି, ବଡ଼ ହେବା ବାଟ ଭିନ୍ନେ । ସ୍କୁଲ ଛଡ଼ା ବାହାରୁ ଅନେକ ଶିଖିବାକୁ ହୁଏ । ତୁମର ଚାରିଆଡ଼େ ଅନେକ ଶିଖିବାର କଥା ରହିଛି । ଆଖି ଫିଟାଇ ଦେଖିବାର ଓ ମନ ଦେଇ ଶିଖିବାର କ୍ଷମତା ତୁମର ଅଛି । ଆଖି ଫିଟାଇ ଦେଖ, ମନ ଦେଇ ଶିଖ, ମୁଁ ସତ୍ ହେବି, ମୁଁ ମହତ୍ ହେବି, ମୁଁ ବଡ଼ ହେବି, ମୁଁ ଦେଶର ଭଲ କରିବି, ମୁଁ ଜାତିଭାଇଙ୍କ ଭଲ କରିବି ଏ କଥାଗୁଡ଼ିକ ମନରେ ରଖ । ତେବେ ତମେ ନିଶ୍ଚୟ ମହତ୍ ଲୋକ ହେବ, ଦେଶରେ ବିଦେଶରେ ପ୍ରଶଂସା ପାଇବ ।

ତୁମଠାରୁ ଗରିବ, ତୁମଠାରୁ ଅଳପପାଠୁଆ ବାଳକମାନେ କିପରି ପରିଶ୍ରମ, ବାହାରିଆ ପଢ଼ା ଓ ଭଲ ଅଭ୍ୟାସ ଦ୍ୱାରା ବଡ଼ ହୋଇଅଛନ୍ତି ତହିଁର ଗୋଟିଏ ଯୋଡ଼ିଏ ବିବରଣ ଆର ଥରକୁ ଲେଖିବାର ଇଚ୍ଛା ରହିଲା ।

•

## ଦରିଦ୍ର ବାଳକ ରାଜମନ୍ତ୍ରୀ

ଆମ ଏ ଦେଶରେ ଜାତିର ପୂଜା ଓ ଆଦର ବେଶି । ଏ ପୃଥିବୀରେ ଅନ୍ୟାନ୍ୟ ଦେଶ ଅଛି, ଯେଉଁଠାରେ ଗୁଣର ପୂଜା ଓ ଆଦର ବେଶି । ଯେଉଁ ଦେଶରେ କେବଳ ଗୁଣର ଆଦର, ସେ ଦେଶର ସର୍ବସାଧାରଣ ଲୋକେ ଗୁଣୀ ହେବାକୁ ଇଚ୍ଛା ଓ ଚେଷ୍ଟା କରନ୍ତି । ସେ ଦେଶର ବାଳକମାନେ ପଢ଼ିବା ଦିନୁ କିପରି ବଡ଼ ହେବେ, ମନରେ ଭାବିଥାନ୍ତି । କିଏ ଭାବେ ମୁଁ ବଡ଼ ହାକିମ ହେବି, କିଏ ଭାବେ ମୁଁ ବଡ଼ ଡାକ୍ତର ହେବି, କିଏ ଭାବେ ମୁଁ ବଡ଼ ଇଞ୍ଜିନିୟର ହେବି, କିଏ ଭାବେ ମୁଁ ବଡ଼ ଯୋଦ୍ଧା ହେବି । ଏହି କଥା ମନରେ ରଖି ସେମାନେ ପାଠ ପଢୁଥାନ୍ତି । ପୁଣି କେହି କେହି ବିଦ୍ୟା ପଢ଼ନ୍ତି- ବଡ଼ ବ୍ୟବସାୟୀ ହୋଇ ବହୁତ ଧନ ଉପାର୍ଜନ କରିବାପାଇଁ ।

ଆମ ଦେଶର ବାଳକମାନଙ୍କ ମନରେ ଏସବୁ ଭାବନା କିଛି ନ ଥାଏ । ସେମାନେ ଅନ୍ଧଭଳି ପାଠ ପଢ଼ିବାକୁ ଚାଲିଯାନ୍ତି, ପାଠ ପଢ଼ି ଚାଲି ଆସନ୍ତି; ବାପ ମା ସେମାନଙ୍କର ମଧ୍ୟ ସେମାନଙ୍କୁ ସେ ବିଷୟରେ କିଛି ଉପଦେଶ ଦିଅନ୍ତି ନାହିଁ । ପାଠ ପଢ଼ି ସାରିଲାରୁ କ'ଣ କରିବି, କ'ଣ କରିବି ବୋଲି ଦରାଣ୍ଡି ହୁଅନ୍ତି । ବେଶି ବେତନରେ ହେଉ, କମ୍ ବେତନରେ ହେଉ, ଚାକିରି ଖଣ୍ଡେ ମିଳିଗଲେ ଏମାନଙ୍କର ମନ ସ୍ଥିର ହୁଏ । ବଡ଼ ଚାକିରି ଖଣ୍ଡେ ଯାହା କପାଳକୁ ମିଳିଯାଏ, ସେ ବଡ଼ଲୋକ ବୋଲାଏ । ଏଣୁ ଏ ଦେଶର ଲୋକଙ୍କର ବଡ଼ଲୋକ ହେବା ଅଧିକାଂଶ ସ୍ଥଳରେ ପରର ଅନୁଗ୍ରହ ଉପରେ ନିର୍ଭର କରେ । ଏଣୁ ଅଳ୍ପ ଲୋକ ଆମ ଦେଶରେ ନାମ କମାଇ ପାରନ୍ତି ।

ମାତ୍ର ଅନ୍ୟ ଦେଶର ବାଳକମାନେ ଆପଣା ବଳରେ ଏପରି କି ପରର ସାହାଯ୍ୟ ଓ ଅନୁଗ୍ରହ ଆଶା ନ କରି ବଡ଼ଲୋକ ହେବାକୁ ଚେଷ୍ଟା କରନ୍ତି । ଛୋଟ ଲୋକ ବା ଗରିବ ଲୋକର ପିଲା କିପରି ବଡ଼ ହୋଇ ଧନ ଓ ମାନ ଅର୍ଜନ କରିପାରିଛନ୍ତି, ତାହାର ଉଦାହରଣ ଅନେକ ଅଛି । ଦରିଦ୍ର ବାଳକ ମୂଲିଆ ପିତା ମାତାଙ୍କ କୋଳରେ ପାଳିତ ହୋଇ ଏ ଜଗତରେ କିପରି ଉଚ୍ଚ ସ୍ଥାନ ଓ ଉଚ୍ଚ ସମ୍ମାନ ପାଇଅଛନ୍ତି, ସେଥିର ଗୋଟିଏ ଉଦାହରଣ ଇଂଲଣ୍ଡର ବର୍ତ୍ତମାନ ରାଜମନ୍ତ୍ରୀ । ତାଙ୍କରି କଥା ଆଜି କହିବା ।

ମୂଲିଆପୁଅ ରାଜମନ୍ତ୍ରୀ— ଏ କଥା ଶୁଣିବାକୁ କଥା ପରି ନୁହେଁ କି ? ବତିଶସିଂହାସନର ଛେଳିଆ ପିଲାଙ୍କ ବୁଝାମଣା କଥା ଶୁଣିଥିବ ତ । ସେଟା ପୁରୁଣା କାଳର କଥା ସିନା; କିନ୍ତୁ ଆଜି ଯେଉଁ କଥା ଏଠି ଲେଖାଯାଉଛି, ତାହା ଆଜିକାଲିର କଥା ।

ଯେଉଁ ଗୋରା ହାକିମମାନେ ଆମମାନଙ୍କୁ ଶାସନ କରୁଅଛନ୍ତି, ସେମାନଙ୍କ ଘର ଇଂଲଣ୍ଡରେ । ଇଂଲଣ୍ଡ ଆମ ଦେଶରୁ ପାଞ୍ଚ ହଜାର ମାଇଲ ଦୂରରେ । ପୂର୍ବେ ଏମାନେ ଏ ଦେଶକୁ ସମୁଦ୍ର ଦେଇ ଛଅ ମାସରେ ଯା ଆସ କରୁଥିଲେ । ବୁଦ୍ଧିବଳରେ ଦୁଇ ସମୁଦ୍ର ମଝିରେ ଖାଲ କାଟି ଏ ଦେଶକୁ ଆସିବା ଛଅ ମାସର ବାଟକୁ ଏକ ମାସର ବାଟ କଲେ । କ୍ରମେ ଡାକ ଜାହାଜରେ ପହଞ୍ଚିଲେ ତେର ଦିନରେ । ଏବେ ଉଡ଼ାଜାହାଜରେ ଇଂଲଣ୍ଡରୁ ପାଞ୍ଚ ଦିନରେ ଆସୁଛନ୍ତି ।

ଭାରତ ସମ୍ରାଟ୍ ବାସ କରନ୍ତି ଇଂଲଣ୍ଡରେ । ଭାରତ ସମ୍ରାଟଙ୍କର ପ୍ରଧାନମନ୍ତ୍ରୀଙ୍କ ନାମ ତୁମେ ଶୁଣିଥିବ । ତାଙ୍କ ନାମଟା ବଡ଼ ଲମ୍ବା । ରାମ୍‌ଜେ ମ୍ୟାକ୍‌ଡ଼ୋନଲ୍ଡ ନାମଟା ବଡ଼; କିନ୍ତୁ ବଡ଼ ଗରିବର ପୁଅ ଥିଲେ ସେ । ଏଣୁ ମୂଲ ଲାଗି ପେଟ ପୋଷିବାକୁ ପଡୁଥିଲା । ଆମ ଦେଶର ମୂଲିଆ ପିଲେ ପଢ଼ନ୍ତି କି ? ନାହିଁ । ସେ ଦେଶର ମୂଲିଆ ପିଲେ ପାଠ ପଢ଼ନ୍ତି । ଦିନ ତମାମ ମୂଲ ଖଟନ୍ତି, ରାତିରେ ପାଠ ପଢ଼ନ୍ତି । ଗରିବ

ମୂଲିଆ ପିଲାଙ୍କ ପାଇଁ ରାତି ସ୍କୁଲ ଅଛି । ମାକଡ଼ୋନାଲ୍ଡ ରାତି ସ୍କୁଲରେ ପାଠ ପଢୁଥିଲେ । ଅଳ୍ପ ଦିନ ମାତ୍ର ସ୍କୁଲରେ ପଢ଼ିଥିଲେ-ପେଟ ବିକଳରେ କାମ ଖୋଜିବାକୁ ଲାଗିଲେ । ଦିନମଜୁରି କରୁଥିଲାବେଳେ ତାଙ୍କ ଅବସ୍ଥା ବଡ଼ ଖରାପ ଥିଲା । ଦିନ୍ କେତେ ଜଣେ କୃଷକର ଆଳୁ ଠୁଳାଇବା କାମ କରୁଥିଲେ । ଦିନେ ସକାଳୁ ଭାରି ଶୀତ, ଦିହ କନ କନ ମାରି ଯାଉଥାଏ, ଗରମ ଲୁଗା ବେଶି ନ ଥାଏ । ମ୍ୟାକଡ଼ୋନାଲ୍ଡ ଶୀତରେ ଥର ଥର ହେଉଥାଆନ୍ତି; ଏଣୁ କାମରେ ଟିକେ ହେଳା ହେଲା । ଆଳୁ ଖେତର ମାଲିକ ଏହା ଦେଖି ତାଙ୍କ ଗାଲରେ ଗୋଟାଏ ଚଟକଣି ପକାଇଲା । ବାଳକ ମ୍ୟାକଡ଼ୋନାଲ୍ଡ କାନ୍ଦି କାନ୍ଦି କାମ ଶେଷ କଲେ । ଆମ ଦେଶର କୌଣସି ବଡ଼ ଲୋକର ବାଲ୍ୟକାଳରେ ଏପରି ଘଟଣା ଘଟିଥିଲେ ତାହା ପ୍ରାଣପଣରେ ଲୁଚ଼ାଇବାର ଚେଷ୍ଟା କରନ୍ତେ; ମାତ୍ର ରାଜମନ୍ତ୍ରୀ ଏ ଘଟଣାକୁ ବଡ଼ ଗୌରବ ମନେ କରି ବଡ଼ ବଡ଼ ସଭାରେ ଏ କଥା କହନ୍ତି । ଛୋଟରୁ ବଡ଼ ହେବା ବଡ଼ ଗୌରବର କଥା ।

ଏଥି ଉତ୍ତାରୁ ସେ ଲଣ୍ଡନ ସହରକୁ ଆସି ଅତି ଅଳ୍ପ ବେତନରେ ଗୋଟିଏ ଦୋକାନରେ ଲଫାଫା ଉପରେ ଠିକଣା ଲେଖିବା କାମ ପାଇଲେ । ସେଠାରେ କାମ କରୁଥିବା ବେଳେ ଦିନେ ଦେଖିଲେ ଯେ, ଜଣେ ମାଂସବିକାଳି ଠେଲା ଗାଡ଼ିରେ ମାଂସ ନେଇ ବିକୁଛି ଏବଂ ସମୟ ପାଇଲେ ତା ହାତରେ ଥିବା କିତାବ ପଢୁଛି । ସେ କିତାବ ପଢ଼ି ବୁଝିବା ବଡ଼ କଠିଣ । ମ୍ୟାକଡୋନାଲ୍ଡ ଏହା ଦେଖି ଆଶ୍ଚର୍ଯ୍ୟ ହେଲେ । ମାଂସବିକାଳି ତାଙ୍କୁ ଖଣ୍ଡେ କିତାବ ଦେଲା । ସେ ବୁଝିଲେ ଯେ, ସ୍କୁଲରେ ନ ପଢ଼ି ମଧ ଘରେ ମନ ଦେଇ ପଢ଼ିଲେ ଲୋକ ବିଦ୍ୱାନ୍ ଓ ଜ୍ଞାନୀ ହୋଇପାରେ । ମନ ଦେଇ ଖୁବ୍ ପଢୁଥାନ୍ତି, ଏଣେ ପେଟ ପାଇଁ ରୋଜଗାର କରୁଥାନ୍ତି । ସେ ତ ମୂଲିଆ ଦଳର ଲୋକ । ଯେତେବେଳେ ପାଠୁଆ ହେଲେ, ସେତେବେଳେ ମୂଲିଆମାନଙ୍କ ଉପକାରପାଇଁ ସେମାନଙ୍କ ଦଳରେ ମିଶି ସେମାନଙ୍କର ଦଳପତି ହେବାର ଚେଷ୍ଟା କଲେ ।

ସାମାନ୍ୟ ମୂଲିଆଟିଏ ହେଉଁ ହେଉଁ ହଜାର ହଜାର ମୂଲିଆଙ୍କର ଦଳପତି ହେଲେ । ମୂଲିଆମାନେ କିପରି ବେଶି ରୋଜଗାର କରିବେ, କଳମାଲିକମାନଙ୍କ ଅତ୍ୟାଚାରରୁ କିପରି ତ୍ରାହି ପାଇବେ, ଏହି ବିଷୟରେ ସେ ଖବରକାଗଜମାନଙ୍କରେ ଓ ସରକାରଙ୍କ ପାଖରେ ଲେଖା ଲେଖି କଲେ ।

ସେ ଦେଶରେ ଦେଶର ଭଲ ମନ୍ଦ ବିଚାର କରିବାପାଇଁ ଗୋଟିଏ ବଡ଼ ସଭା ଅଛି । ବେଶି ଲୋକ ଯେଉଁମାନଙ୍କ ତରଫ ନେବେ, ସେହିମାନେ ସେ ସଭାକୁ ଆସିବେ । ମୂଲିଆମାନେ ମାକ୍‌ଡୋନାଲ୍ଡଙ୍କ ତରଫ ନେଲେ; ଏଣୁ ସେ ସେ ସଭାକୁ ଆସିଲେ ।

ସେହି ବଡ଼ ସଭାରୁ କେତେ ଜଣ ସଭ୍ୟ ବଛା ହୁଅନ୍ତି । ସେହିମାନଙ୍କ ହାତରେ ରାଜ୍ୟର ସବୁ ଭାର ଦିଆଯାଏ । ସେମାନେ ସମସ୍ତେ ଗୋଟିଏ ଗୋଟିଏ ରାଜମନ୍ତ୍ରୀ । ମୋଟରେ ଇଂଲଣ୍ଡ ରାଜାଙ୍କ ପାଇଁ ୨୨ ଜଣ ମନ୍ତ୍ରୀ ଅଛନ୍ତି । ସେହି ୨୨ ଜଣଙ୍କ ଉପରେ ଜଣେ ଅଛନ୍ତି, ସେ ସବୁଠାରୁ ବଡ଼ । ସେ ଯାହା କହିବେ, ଆଉ ସମସ୍ତେ ତାହା ମାନିବେ-ରାଜା ମଧ ମାନିବେ ।

ତୁମେ ଶୁଣି ଆଶ୍ଚର୍ଯ୍ୟ ହୋଇଯିବ-ମୂଲିଆପୁଅ ମାକ୍‌ଡୋନାଲ୍ଡ ଏକ୍ଷଣି ଇଂଲଣ୍ଡର ସେହି ପ୍ରଧାନମନ୍ତ୍ରୀ ।

•

## ଜହ୍ନମାମୁ ଓ ବାଳକ

ବାଳକ— ମାମୁ, ମୁଁ ଶୁଣିଲି ତୁ ଦିନରାତି ବୁଲୁଚ୍ଛୁ, ଆଉ ପୃଥିବୀ ଚୁନି ହୋଇ ରହିଛି ।

ଜହ୍ନ— ନା'ରେ ବାବୁ, ନା, ମୁଁ ବୁଲୁଛି, ପୃଥିବୀ ମଧ ବୁଲୁଛି ।

ବାଳକ— କେମିତି ?

ଜହ୍ନ— ହଁ, ମୁଁ ପୃଥିବୀ ଚାରି ପାଖେ ବୁଲୁଛି, ଆଉ ପୃଥିବୀ ସୂର୍ଯ୍ୟ ଚାରିପାଖେ ବୁଲୁଛି ।

ବାଳକ— ଯେବେ ପୃଥିବୀ ବୁଲୁଛି, ତେବେ ଆମେ ତାହା ବୁଝିପାରୁ ନାହିଁ କାହିଁକି ?

ଜହ୍ନ— ତୁମେସବୁ ପୃଥିବୀରେ ଅଛ, ପୃଥିବୀ ସଙ୍ଗରେ ବୁଲୁଛ— ତା'ର ଗତି ଜାଣିବ କିପରି ? ଯେବେ ମୋଠାକୁ ଆସି ଦେଖନ୍ତ, ତାହା ହେଲେ ବୁଝି ପାରନ୍ତ ଯେ, ପୃଥିବୀ ବୁଲୁଛି । ତୁମେମାନେ ପୃଥିବୀରେ ଥାଇ ମଧ ମନ ଦେଇ ବୁଝିଲେ ଜାଣି ପାରିବ ଯେ, ପୃଥିବୀ ବୁଲୁଛି ।

ବାଳକ— ମାମୁ, ତୁ ପୂର୍ବରେ ଉଇଁ ପଶ୍ଚିମରେ ବୁଡୁ ନା ?

ଜହ୍ନ— ନା, ପଶ୍ଚିମ ଦିଗରୁ ପୂର୍ବ ଆଡ଼କୁ ବରାବର ଯାଏ । ପୃଥିବୀ ମଧ ପଶ୍ଚିମରୁ ପୂର୍ବ ଆଡ଼କୁ ଯାଏ । ସେହିପରି ମଙ୍ଗଳ, ବୁଧ, ବୃହସ୍ପତି, ଶନି ମଧ ପଶ୍ଚିମ ଆଡୁ ପୂର୍ବକୁ ଯାଆନ୍ତି । ଏମାନେ ସମସ୍ତେ ସୂର୍ଯ୍ୟ ଚାରି ପାଖେ ବୁଲୁଥିବାରୁ ଏମାନଙ୍କୁ ଗ୍ରହ ବୋଲାଯାଏ ।

ବାଳକ— ସୂର୍ଯ୍ୟ କ'ଣ ଥୁନି ହୋଇ ରହିଛି ?

ଜହ୍ନ— ନା, ଆକାଶରେ କେହି ଥୁନି ହୋଇ ରହିବାର ନିୟମ ନାହିଁ। ସମସ୍ତେ ଚାଲୁଛନ୍ତି। ସୂର୍ଯ୍ୟ କାହାରି ଚାରି ପାଖେ ବୁଲିବାକୁ ନାହିଁ। ପିଲାଏ ଚକା ଚକା ଭଉଁରୀ ବୁଲିଲାପରି ଆପେ ଆପେ ବୁଲୁଛି। ତା'ର ଚାରିପାଖେ ପୃଥିବୀ ଓ ଗ୍ରହମାନେ ବୁଲୁଛନ୍ତି।

ବାଳକ— ଆଉ ତୁ ?

ଜହ୍ନ— ମୁଁ ପୃଥିବୀ ଚାରିପାଖେ ବୁଲୁଛୁ ଏବଂ ପୃଥିବୀ ସଙ୍ଗେ ସଙ୍ଗେ ସୂର୍ଯ୍ୟକୁ ମଧ ବୁଲୁଛି।

ବାଳକ— ପୃଥିବୀ ଆଉ ତୁ ଚକା ଚକା ଭଉଁରୀ ପରି ବୁଲୁଛ କି ନାହିଁ?

ଜହ୍ନ— ପୃଥିବୀ ଚକା ଚକା ଭଉଁରୀ ବୁଲୁଛି, ଆଉ ସୂର୍ଯ୍ୟ ଚାରି ପାଖେ ବୁଲୁଛି। ମୁଁ ପୃଥିବୀର ପିଠିର ଭାଇ, ତାକୁ ତିଳେ ନ ଦେଖି ରହିପାରେ ନାହିଁ। ଏଣୁ ମୁଁ ତା' ଆଡ଼କୁ ସବୁବେଳେ ଅନାଇଥାଏ। ଏଥିପାଇଁ ତୁମେମାନେ ମୋର ଗୋଟାଏ ପାଖ ସବୁବେଳେ ଦେଖିପାରୁଛ। ମୋର ପଛ ପାଖ ତୁମମାନଙ୍କୁ ଦିଶେ ନାହିଁ। ମୁଁ ମୁହଁ ଫେରାଇଲେ ଯାଇ ତ ମୋ ପଛ ପାଖ ଦିଶିବ ? କିନ୍ତୁ ମୁଁ ତାହା କରିବି ନାହିଁ। ମୁଁ ପୃଥିବୀକୁ ଏକ ଦୃଷ୍ଟିରେ ଅନାଇଥିବି, ଆଉ ତା' ଚାରିପାଖେ ବୁଲୁଥିବି। ପୃଥିବୀ ସୂର୍ଯ୍ୟକୁ ଏକ ଦୃଷ୍ଟିରେ ଅନାଏ ନାହିଁ-ଚକା ଚକା ଭଉଁରୀ ବୁଲେ; ଏଣୁ ତାହା ଦିହ ଅନ୍ଧାର ଉଜ୍ଜ୍ୱଳ ହୁଏ। ସୂର୍ଯ୍ୟ ଆଡ଼କୁ ଯେଉଁ ପାଖଟା ହୁଏ, ତାହା ଉଜ୍ଜ୍ୱଳ ହୁଏ-ଆର ପାଖଟା ଅନ୍ଧାର ହୁଏ। ତୁମେ ତାକୁ ଦିନ ରାତି କହ। ତୁମେ ଚକା ଚକା ଭଉଁରୀ ବୁଲିବାକୁ ନିମିଷେ ଲାଗେ। ପୃଥିବୀ ଅତି ବଡ଼ କି ନା, ତେଣୁ ସେ ଘେରାଏ ବୁଲିବାକୁ ଚବିଶ ଘଣ୍ଟା ଲାଗେ। ପୃଥିବୀର ଚକା ଚକା ଭଉଁରୀ ବୁଲା ହେତୁରୁ ମୁଁ ପୂର୍ବ ଦିଗରେ ଉଦୟ ହୋଇ ପଶ୍ଚିମରେ ଅସ୍ତ ହେଲାପରି ତୁମମାନଙ୍କୁ ଜଣାପଡ଼େ।

ବାଳକ— ତରାମାନେ ତ ପୂର୍ବରେ ଉଇଁ ପଶ୍ଚିମରେ ବୁଡ଼ନ୍ତି- ଏହା ତ ଆମେମାନେ ପ୍ରତି ରାତିରେ ଦେଖୁଛୁଁ ।

ଜହ୍ନ— ନାରେ ବାପ, ନା, ତରାମାନେ ବୁଲନ୍ତି ନାହିଁ। ପୃଥିବୀ ଚକା ଚକା ଭଉଁରୀପରି ବୁଲୁଥିବାରୁ ତାରାମାନେ ଉଦୟ ଓ ଅସ୍ତ ହେଉଥିବାର ତୁମମାନଙ୍କୁ ଜଣାଯାଏ ।

ବାଳକ— ସେ କଥା ଛାଡ଼, ତୁମ ନିଜ କଥା ବୁଝେଇ କହ ତ।

ଜହ୍ନ— ଆଚ୍ଛା, ଯେବେ ମୋ ଗତି କଥା ଜାଣିବାକୁ ଇଚ୍ଛାକର, ଚଉଦଟି ସନ୍ଧ୍ୟା ମନ ଦେଇ ମୋତେ ଦେଖିବ । ଜ୍ୟେଷ୍ଠ ଶୁକ୍ଳପକ୍ଷ ଦ୍ୱିତୀୟା ଦିନ ବେଳ ବୁଡ଼ିଲା ଉତ୍ତାରୁ ମୋତେ ପଶ୍ଚିମ ଆକାଶରେ ଦେଖିପାରିବ । ସେ ଦିନ ମୁଁ ପରା ଦ୍ୱିତୀୟା ଚାନ୍ଦ । ସେ ଦିନ ମୁଁ ଥିବି ମୃଗଶିରା ନକ୍ଷତ୍ରରେ । ତୁମେ ଦେଖିବା ପରେ ପ୍ରାୟ ଏକ ଘଣ୍ଟାରେ ମୃଗଶିରା ନକ୍ଷତ୍ର ସହିତ ମୁଁ ବୁଡ଼ିବି। ଆରଦିନ ସନ୍ଧ୍ୟାବେଳେ ଦେଖିବ ମୃଗଶିରା ନକ୍ଷତ୍ରକୁ ଛାଡ଼ି ପୂର୍ବ ଆଡ଼କୁ ପ୍ରାୟ ବାର ହାତ ଚାଲି ଆସିଥିବି । ସେ ଦିନ ରହିବି ଆର୍ଦ୍ରାନକ୍ଷତ୍ରରେ ଏବଂ ତାହା ସହିତ ଅସ୍ତ ଯିବି। ପ୍ରତି ସନ୍ଧ୍ୟାରେ ଦେଖି ପାରୁଥିବ ଯେ, ମୁଁ ପ୍ରତିଦିନ ପ୍ରାୟ ବାର ହାତ ପୂର୍ବଆଡ଼କୁ ଆସୁଥିବି ଏବଂ ଯେଉଁ ନକ୍ଷତ୍ରଠାକୁ ଆସୁଥିବି ତା' ସହିତ ଅସ୍ତ ଯାଉଥିବି । ତେବେ ମୋର ନିଜ ଗତି ପଶ୍ଚିମରୁ ପୂର୍ବକୁ ନୁହେଁ କି ? ତୁମେ ଯେପରି ଗ୍ରାମର ପଶ୍ଚିମ ଆଡ଼ରୁ ପୂର୍ବଆଡ଼କୁ ଗଲାବେଳେ ଗୋଟିଏ ଗୋଟିଏ ଘର ଛାଡ଼ି ଆଗକୁ ଯାଉଥାଅ, ମୁଁ ମଧ ପ୍ରତିଦିନ ଗୋଟିଏ ନକ୍ଷତ୍ର ଛାଡ଼ି ଗୋଟିଏ ନକ୍ଷତ୍ରକୁ ସେହିପରି ଯାଉଥାଏ । ପୂର୍ବ ଆକାଶରେ ପହଞ୍ଚିବାକୁ ପ୍ରାୟ ଚଉଦ ଦିନ ଲାଗେ- ପୂର୍ବ ଆକାଶରେ ପହଞ୍ଚିଲେ ମୁଁ ପୁନେଇଁ ଜହ୍ନ । ପୁନେଇଁ ଆର ଦିନ ପୁଣି ଆଗକୁ ବାର ହାତ ଚାଲିଯାଏଁ । ଏଣୁ ଠିକ୍ ସଞ୍ଜରେ ମୋର ଦେଖା ମିଳେ ନାହିଁ । ପୃଥିବୀର ଗତି ହେତୁରୁ ମୋର ଉଦୟ ହୁଏ ପୁନେଇଁ ସଞ୍ଜଠାରୁ ପ୍ରାୟ ପଚାଶ ମିନିଟ୍ ପରେ । ଏହିପରି ଦିନକୁ ଦିନ ଲାଗିଛି । ଘାସ ପଡ଼ିଆରେ ଗୋଟାଏ ବାଡ଼ି ପୋତିଦିଅ; ବାଡ଼ି ଉପରେ ଗୋଟାଏ ବଡ଼ ପାଗ ବାନ୍ଧିଦିଅ । ବାଡ଼ିର ଚାରିପାଖେ ଗୋଟାଏ ବଡ଼ ମଣ୍ଡଳ ଟାଣ । ଏହି ମଣ୍ଡଳଗାର ଉପରେ ଠିଆ ହୋଇ ପାଗକୁ ଅନାଅ । ପାଗକୁ ମନେ କର ପୃଥିବୀ ଏବଂ ନିଜକୁ ମନେ କର ଜହ୍ନ । ପାଗ ଉପରେ ନଜର ରଖି ମଣ୍ଡଳ ଗାରରେ ଘେରାଏ ବୁଲିଆସ । ସବୁବେଳେ ପାଗ ଉପରେ ନଜର ରଖିଥିବ। ତାହା ହେଲେ ମୁଁ ପୃଥିବୀ ଆଡ଼କୁ ମୁହଁ ରଖି କିପରି ବୁଲୁଛି, ତାହା ଜାଣିପାରିବ ।

ପୁଣି ମନେକର ପାଗଟା ସୂର୍ଯ୍ୟ, ତୁମେ ନିଜେ ପୃଥିବୀ । ଚକା ଚକା ଭଉଁରୀ ବୁଲି ବୁଲି ମଣ୍ଡଳ ଗାରରେ ବୁଲି ଆସ । ତା'ହେଲେ ବୁଝିପାରିବ ପୃଥିବୀର ଗତି । ଗୋଟାଏ ଚକା ଭଉଁରୀ ବୁଲିଲେ ଥରେ ପାଗ ଦିଶିବ, ଥରେ ଦିଶିବ ନାହିଁ । ପାଗ ଆଡ଼କୁ ତୁମ ମୁହଁ ଥିବାବେଳେ ଦିନ, ପିଠି ପାଖଟା ରାତି- ପୁଣି ପିଠିଟା ପାଗ ଆଡ଼କୁ ଥିଲାବେଳେ ପିଠି ପାଖଟା ଦିନ, ତୁମ ମୁହଁ ପାଖଟା ରାତି । ପାଖେ ଦିନ ହେଲେ ଆର ପାଖଟା

ରାତି, ଏହିରୂପେ ଦିନ ରାତି ହୁଏ । ଏପରି ଘେରାଏ ବୁଲିବାଟା ପୃଥିବୀର ଦୈନିକ ଗତ । ଚକା ଚକା ଭଉଁରୀ ବୁଲି ବୁଲି ମଣ୍ଡଳଟାରେ ଘେରାଏ ବୁଲି ଆସିଲେ ବରଷେ ।

ବାଳକ— ଆଉ ଅନେକ କଥା ବୁଝିବାର ଅଛି ମାମୁଁ । ଆଜି ଥାଉ ।

ଜହ୍ନ— ଆଚ୍ଛା ।

ବାଳକ— ମାମୁ, ତୁ ଦେଖିବାକୁ ବଡ଼ ସୁନ୍ଦର; ମାତ୍ର ତୁ ବଡ଼ ଦୁଷ୍ଟ ।

ଜହ୍ନ— କିପରି ?

ବାଳକ— ତୁ ଅକାରଣରେ ବାଳକମାନଙ୍କୁ ପୀଡ଼ା ଦେଉ । ତୋ ପାଇଁ ଦାନ ଦେଲେ, ହୋମ କଲେ ତୁ ପୁଣି ପୀଡ଼ାରୁ ଭଲ କରୁ ।

ଜହ୍ନ— ଏହା ତୁ କାହୁଁ ଜାଣିଲୁ ।

ବାଳକ— ବାଃ, ମୁଁ ଜାଣେ ନାହିଁ ? ସେ ଦିନ ଜମିଦାରଙ୍କ ସାନ ପୁଅର ଭାରି ଜ୍ୱର । ଜଉତିଷ ଆସ କହିଲା ଚନ୍ଦ୍ରମହାଗ୍ରହର ପୀଡ଼ା— ହୋମ ନ କଲେ, ଦାନ ନ ଦେଲେ ପିଲା ବଞ୍ଚିବାର କଷ୍ଟ । ହୋମ କଲେ, ଦାନ ଦେଲେ ତେବେ ଯାଇ ପିଲା ବଞ୍ଚିଲା । ଏଟା ତ ମିଛ ନୁହେଁ— ମୁଁ ଦେଖିଛି । ବଡ଼ଲୋକ ବୋଲି ସିନା ଖରଚ୍ କରି ପାରିଲେ- ଗରିବ ହୋଇଥିଲେ ପିଲାର କି ଦଶା ହୋଇଥାନ୍ତା ଟି ?

ଜହ୍ନ— ଏସବୁ ମିଛରେ ବାବୁ । ମୋର କ'ଣ ହାତ ଅଛି ନା ଗୋଡ଼ ଅଛି ନା ମୁହଁ ଅଛି ଯେ ମୁଁ ପୀଡ଼ା ଦେବି ? ଧନରେ ମୋର କି ଲାଭ ଯେ ମୁଁ ଧନ ପାଇବାକୁ ପୀଡ଼ା ଦେବି ? ମୋଠାରେ ଧନୀ ଓ ଗରିବ ସମସ୍ତେ ସମାନ । ସମସ୍ତେ ମୋତେ ଦେଖି ସୁଖୀ ହୁଅନ୍ତି । ଜଉତିଷ ଗଣି ମୋ ଉପରେ ଦୋଷ ଚପାଇଲା, ବ୍ରାହ୍ମଣ ଦାନ ନେଲା- ଏଥିପାଇଁ କ'ଣ ମୁଁ ଦୋଷୀ ? ମୁଁ ମହାଗ୍ରହ ହେବାର ତ ତେଣେ ଥାଉ, ଗ୍ରହ ମଧ୍ୟ ନୁହେଁ— ମୁଁ ଗୋଟିଏ ଉପଗ୍ରହ । ମୁଁ କାହାକୁ ପୀଡ଼ା ଦିଏ ନାହିଁ । ଏ ସବୁ ମିଛ ଓ ଖାଲି କଳ୍ପନା ।

ବାଳକ— ଆଚ୍ଛା ମାମୁ, ହୋମର ଗନ୍ଧ ତୋ'ଠାକୁ ପହଞ୍ଚେ କି ?

ଜହ୍ନ— ମୁଁ ତୁମମାନଙ୍କଠାରୁ ୨୪୦୦୦୦ ମାଇଲ ଦୂରରେ ଅଛି- ମୋ'ଠାକୁ ହୋମ ଧୂଆଁ ଆସିବ କିପରି ? ମାଇଲେ ଦୁଇ ମାଇଲ ଉପରକୁ ଉଠିବାର ତ ସମ୍ଭବ ନୁହେଁ । ମଣିଷମାନେ ମୋତେ କି ବଦନାମ ଦିଅନ୍ତି, ମୋ ପାଇଁ କି କି ଦାନ ଦିଅନ୍ତି, ହୋମ କରନ୍ତି, ତାହା ମତେ ଆଦୌ ଜଣା ନାହିଁ ।

ବାଳକ— ମାମୁ, ଉପଗ୍ରହ କ'ଣ ?

ଜହ୍ନ— ଯେଉଁମାନେ ସୂର୍ଯ୍ୟ ଚାରିପାଖେ ବୁଲନ୍ତି, ସେମାନେ ଗ୍ରହ । ଗ୍ରହ ଚାରିପାଖେ ଯେଉଁମାନେ ବୁଲନ୍ତି, ସେମାନେ ଉପଗ୍ରହ । ପୃଥିବୀ ଗ୍ରହ- ମୁଁ ପୃଥିବୀ ଚାରିପାଖରେ ବୁଲେ; ଏଣୁ ମୁଁ ଉପଗ୍ରହ ।

ବାଳକ— ଆଉ ଉପଗ୍ରହ ଅଛନ୍ତି ନା ?

ଜହ୍ନ— ଢେର୍ ଅଛନ୍ତି । ସେ କଥା ପରେ ଶିଖିବ । ଆଜି ଏତିକି ।

## ଚଷା ପୁଅର ହୁନ୍ଦର

ଆମ ଦେଶକୁ କୃଷିଜୀବୀ ଦେଶ ବୋଲି ଲୋକେ କହନ୍ତି ଅର୍ଥାତ୍ ଚାଷଦ୍ୱାରା ଆମେମାନେ ପେଟ ପୋଷୁଁ, ଏହା ପୃଥିବୀର ସମସ୍ତ ଜାତି କହନ୍ତି । ଏହା ସତ କଥା । ଏ ଦେଶର କେତେ ଲୋକ ଚାକିରି ବା ବ୍ୟବସାୟ ଦ୍ୱାରା ବଞ୍ଚୁଛନ୍ତି । ଏ ଦେଶର ବ୍ୟବସାୟ ବୋଲ; ଚାକିରି ବୋଲ, ସମସ୍ତଙ୍କ ମୂଳରେ ଚାଷ । ଚଷାବାପୁଡ଼ା ପରିଶ୍ରମ କରି କପାଳରୁ ଝାଳ ବୁହାଇ ଯାହା କରି ଦିଏ, ସେଥିରୁ ସିନା ଶାସକମାନେ ଚାକିରିଆମାନଙ୍କୁ ଦରମା ଦେଇ ପୋଷନ୍ତି । ଚଷାର ଅର୍ଜିଥିବା ଧାନ ଚାଉଳ ଠକି ଭଣ୍ଡିନେଇ ମହାଜନମାନେ ସିନା ଧନୀ ହୁଅନ୍ତି । ବିଚାର କଲେ ଏ ଦେଶର ଗରିବ ଚଷା ସିନା ସମସ୍ତଙ୍କର ପେଟ ପୋଷିବା ଲୋକ । ତା' ପେଟକୁ ନଅଣ୍ଟ ହେଲେ ସୁଦ୍ଧା ସେ ପରକୁ ପୋଷୁଛି । ଚଷା ପର ପେଟ ପୋଷୁଛି ସତ; ମାତ୍ର ତା'ର କାମରେ କେହି ସାହାଯ୍ୟ କରୁ ନାହାନ୍ତି । ତା' ପ୍ରତି ଶିକ୍ଷିତ ଲୋକଙ୍କ ସହାନୁଭୂତି କମ୍ । ଏଣୁ ସେ ଆପଣା ମନକୁ ଆପଣା କାମରେ ଲାଗିଛି । ପାଠ ପଢ଼ା ନାହିଁ; ଏଣୁ ସେ ଚାଷର ଉନ୍ନତି କରି ପାରୁ ନାହିଁ । ପୂର୍ବପୁରୁଷଙ୍କ ଅମଳରୁ ଯେଉଁ ଲଙ୍ଗଳ, ଯୁଆଳି, ଶଗଡ଼ ତା' ବାପ ଅଜା ଦେଖି ଓ ବ୍ୟବହାର କରି ଆସୁଥିଲେ, ତାହା ସେ ବ୍ୟବହାର କରୁଛି । ତା' ବାପ ଅଜା ଯେଉଁ ରୀତିରେ ଚାଷ କରୁଥିଲେ, ସେହି ରୀତିରେ ସେ ଚାଷ କରୁଛି । ଟିକିଏ ହେଲେ ଉନ୍ନତି କରିପାରୁ ନାହିଁ; କାରଣ ଏ ଦେଶର ଯେଉଁମାନେ ପାଠୁଆ, ଯେଉଁମାନେ ବୁଦ୍ଧିମାନ୍, ସେମାନେ ଚାଷ କାମକୁ ଘୃଣା କରନ୍ତି—ଲଙ୍ଗଳ ଯୁଆଳି ବା ଦେଖିବେ କାହୁଁ ? କୃଷି (ଚାଷ) ବହି ସେମାନେ ପଢ଼ନ୍ତି ନାହିଁ । ଚଷା ପାଖକୁ ଆସିଲେ ସେମାନଙ୍କୁ ଲାଜ ମାଡ଼େ । ଏଣୁ ସେମାନେ ଚାଷ କଥା ଜାଣିବେ କାହୁଁ ବା

ଚାଷକାମର ଉନ୍ନତିପାଇଁ ଚଷାଙ୍କୁ ଉପଦେଶ ଦେବେ କିପରି ? ବ୍ରାହ୍ମଣ କ୍ଷତ୍ରିୟ ତ ଲଙ୍ଗଳ ଛୁଇଁଲେ ଅଜାତି । ଏଣୁ ଆମ ଦେଶରେ ଚାଷର ଉନ୍ନତି ଉତ୍ତମରୂପେ ହୋଇପାରୁନାହିଁ । ଫଳମୂଳକ ମଧ ସେହି ଦଶା । ଆମ ଦେଶ ଆମ୍ବ ପଣସର ଦେଶ । ଆମ ପୂର୍ବପୁରୁଷମାନେ ଯେଉଁ ଆମ୍ବ ପଣସ ଖାଉଥିଲେ, ଆମେମାନେ ମଧ ତାହା ଖାଉଅଛୁଁ । ଫଳର ଉନ୍ନତି କିପରି କରିବାକୁ ହୁଏ, ତାହା ଚଷାକୁ ଜଣା ନ ଥିବାରୁ ଏପରି ଘଟୁଛି । ଚଷା କେଉଁଠାରୁ ଗୋଟିଏ ଆମ୍ବଟାକୁଆ ପାଇଲେ ନେଇ ପୋତିଦିଏ; ପଣସ ମଞ୍ଜିଟିଏ ପାଇଲେ ନେଇ ପୋତିଦିଏ । ଗଛ ହେଲାରୁ ତାକୁ ବଞ୍ଚାଏ । ଗଛ ଫଳିଲେ ତା'ର ଆନନ୍ଦର ସୀମା ନ ଥାଏ । ଫଳ ଭଲ ହେଲେ ଉତ୍ତମ-ମନ୍ଦ ହେଲେ ମଧ ଗଛକୁ ମାରିଦେବାକୁ ତା' ମନ ବଳେ ନାହିଁ । ଏ ଦେଶରେ ଗୋଟିଏ କଥା ଅଛି–

''ଆପେ ରୋପିଲା ବୃକ୍ଷର କାଟୁଅଛ ମୂଳକୁ
ଦାଣ୍ଡେ ହେବ ଅପବାଦ, ନିନ୍ଦା ହେବ ତୁମ୍ଭକୁ ।''

ଆପେ ରୋପଣ କରିଥିବା, ଯତ୍ନରେ ବଢ଼ାଇଥିବା ଗଛକୁ କାଟି ପକାଇବାକୁ କିପରି ମନ ବଳିବ ? ଏଣୁ ଭଲ ହେଉ, ମନ୍ଦ ହେଉ, ଗଛଟି ରହିଯାଏ । ପୁଅ ନାତି ସେହି ଗଛର ଫଳ ଖାଆନ୍ତି । ତୁମେମାନେ ଦେଖିପାରିବ, ଗ୍ରାମମାନଙ୍କରେ ଅନେକ ଆମ୍ବଗଛ ଅଛି, ଯାହାର ଫଳ ଆମ୍ବିଳା ଓ ଛୋଟ । ଏହା ବାପଅଜା ଅମଳର ଅଭ୍ୟାସ । ଚଷା ଫଳବୃକ୍ଷର ଉନ୍ନତି କରିବାକୁ ଶିକ୍ଷା କରି ନାହିଁ । ଏବେ ମଧ ଗଛ ରୋଇବା ପୂର୍ବ ମାମୁଲିକ୍ରମେ ଚାଲିଛି । ଶିକ୍ଷିତ ଲୋକେ ମନ ଦେଲେ ଫଳଫୁଲର ଉନ୍ନତି ହୁଅନ୍ତା ।

ଅନ୍ୟ ଦେଶମାନଙ୍କର କୃଷକମାନେ ଶିକ୍ଷିତ । ଅନେକେ ଚାଷବିଦ୍ୟାରେ ପଣ୍ଡିତ । ଆମ ଦେଶର ରକ୍ଷା ଗୋଟିଏ ଛବି, ଗୋଟିଏ ଭଲ ଘର ଦେଖିଲେ ଆଶ୍ଚର୍ଯ୍ୟ ବୋଧକରେ; ଘଡ଼ିଏ ଅନାଇ ରହେ । ସେ ଦେଶର ରକ୍ଷା ଗୋଟିଏ ଭଲ ଗଛ ଦେଖିଲେ, ନୂଆ ରକମର ଗଛ କି ଫଳ କି ଫୁଲ ଦେଖିଲେ ଆନନ୍ଦିତ ହୁଏ । ତାହା ନେଇ ଆପଣା ଘରବାଡ଼ିରେ ବା ବଗିଚାରେ ଲଗାଇ ଯେପରି ସେହିପରି ଗଛଟିଏ କରିପାରିବ, ସେହିପରି ଫଳ କି ଫୁଲ ପାଇବ— ସେଥିପାଇଁ ଯତ୍ନ କରେ । ଏଣୁ ସେ ଦେଶମାନଙ୍କରେ ଚାଷର ଏତେ ଉନ୍ନତି, ଆଉ ଆମ ଦେଶରେ ପୂର୍ବେ ଯେପରି ଥିଲା, ଏବେ ବି ସେହିପରି ।

କୃଷି ସମ୍ବନ୍ଧରେ ଢେର କଥା କହିବାର ଅଛି— କ୍ରମେ ତୁମେମାନେ ଜାଣି ପାରିବ । ଆଜି ଆମେରିକାର ଜଣେ କୃଷକର କଥା ଲେଖୁଛି । ମନ ଦେଇ ପଢ଼ିବ କି ?

ଏହି ଚଷାର ନାମ ଲୁଥାର୍ ବୁର୍‌ବ୍ୟାଙ୍କ । ଏହାଙ୍କର ପିତା ମଧ ଜଣେ ଚାଷୀ ଥିଲେ, ବୁର୍‌ବ୍ୟାଙ୍କ ପିଲାଦିନରୁ କୃଷିପ୍ରିୟ ଥିଲେ । ସେ ଜଣେ ପ୍ରକୃତିର ଭକ୍ତ ଥିଲେ । ପ୍ରକୃତି ବୋଇଲେ ଏଠାରେ କ'ଣ କି— ବୃକ୍ଷଲତାଭରା ପାହାଡ଼ ପର୍ବତ, ସବୁଜ ଘାସ ପଡ଼ିଆ, ଧାନକ୍ଷେତ, ଛୋଟ ବଡ଼ ଗଛ ଲତା, ବଣଜଙ୍ଗଲ, ବଗିଚା, ଯୋଡ଼, ନଦୀ, ପ୍ରପାତ, ଝରଣା ସବୁ ମିଶି ପ୍ରକୃତି । ଗ୍ରାମ ବାହାରେ ଠିଆ ହୋଇ ଚାରି ପାଖକୁ ଅନାଇଲେ ଯାହା ଆଖିରେ ପଡ଼େ, ତାହା ପ୍ରକୃତି । ଯେ ଏହି ପ୍ରକୃତିର ଶୋଭାକୁ ଦେଖିବାକୁ ଭଲ ପାଏ, ତା କଥା ଜାଣିବାକୁ ସବୁବେଳେ ଚେଷ୍ଟା କରେ, ବୃକ୍ଷ, ଲତା ଓ ଘାସ ପ୍ରଭୃତି କିପରି ବଢ଼ନ୍ତି, ଫୁଲ କିପରି ହୁଏ, ଫୁଲରୁ ଫଳ, କ୍ରମେ ମଞ୍ଜି କିପରି ହୁଏ-ଇତ୍ୟାଦି ବିଷୟ ଜାଣିବାକୁ ଯେଉଁ ଲୋକ ଚେଷ୍ଟା କରେ, ସେ ପ୍ରକୃତିର ଭକ୍ତ ।

ବୁର୍‌ବ୍ୟାଙ୍କ ପିଲାଟି ଦିନରୁ ପ୍ରକୃତିର ଭକ୍ତ ଥିଲେ । ସେ ନିଜେ ଚଷାପୁଅ; ଏଣୁ ଶସ୍ୟ (ଗହମ ପ୍ରଭୃତି), ଫଳ, ମୂଳ, ଯାହା ମନୁଷ୍ୟ ଏବଂ ଗାଈ ଘୋଡ଼ା ପ୍ରଭୃତି ଗ୍ରାମ୍ୟ ପଶୁ ଖାଇ ବଞ୍ଚନ୍ତି, ତହିଁର ଉନ୍ନତି କରିବାରେ ମନ ବଳାଇଲେ ।

ତୁମେମାନେ ବିଲାତି ଆଳୁ ଅବଶ୍ୟ ଦେଖିଛ, ତା' ଗଛ ମଧ ଦେଖିଥିବ; ମାତ୍ର ବିଲାତି ଆଳୁ ଗଛର ଛୋଟ ଛୋଟ ଫଳ ହୁଏ, ତାହା ବୋଧହୁଏ ଦେଖି ନ ଥିବ । ଫଳଗୁଡ଼ିକ ଦେଖିବାକୁ ଅଙ୍କରାନ୍ତି ଫଳ ପରି । ଆମେରିକାର ଚାଷୀମାନେ ପୂର୍ବେ ଅନେକ ପ୍ରକାର ଆଳୁ ଚାଷ କରୁଥିଲେ; ମାତ୍ର ଆଳୁଗଛର ଫଳରେ ଯେ କିଛି ପ୍ରୟୋଜନ ଅଛି, ତା ସେମାନେ ଜାଣୁ ନ ଥିଲେ । ଗୋଟିଏ ଫଳ ବୁର୍‌ବ୍ୟାଙ୍କଙ୍କ ନଜରରେ ପଡ଼ିଲା । ସେଥିରେ ୨୩ ଗୋଟି ମଞ୍ଜି ଥିଲା । ସେ ମଞ୍ଜିତକ ରଖି ଆର ବର୍ଷ ଲଗାଇଲେ; ଆଳୁ ଗଛ ହେଲା । ଏହି ଗଛମାନଙ୍କରେ ଆଳୁ ଫଳିଲା । ସେ ଆଳୁତକ ସଂଗ୍ରହ କରି ବାଛିଲେ । ଯେଉଁ ଗଛର ଆଳୁତକ ବଡ଼, ଚିକ୍କଣ ଓ ଖୁବ ଭଲ ଦେଖାଗଲା, ତାହା ସେ ରଖିଲେ- ବାକିତକ ନଷ୍ଟ କରି ଦେଲେ; ଏହି ବଛା ଆଳୁକୁ ବିହନ କଲେ । ସେଥିରୁ ଯେ ଆଳୁ ହେଲା, ତାହା ଚାଷୀମାନଙ୍କୁ ବିହନ କରିବାକୁ ଦେଲେ । ଚାଷୀମାନେ ଏହି ଆଳୁ ଚାଷ କରି ଖୁବ୍ ଖୁସି ହେଲେ, ଖୁବ୍ ଲାଭ ପାଇଲେ ଏବଂ ଏହି ଆଳୁକୁ 'ବୁରବ୍ୟାଙ୍କ ଆଳୁ' ବୋଲି ନାମ ଦେଲେ । ଆମେରିକାରେ ଏହି ଆଳୁର (ବୁର୍‌ବ୍ୟାଙ୍କ ଆଳୁର) ବଡ଼ ଆଦର । ଏଥିରୁ ଲୋକେ ବହୁତ ଲାଭ ପାଉଛନ୍ତି ।

ପପି ଫୁଲ ହଳଦିଆ । ସେ ଦିନେ ଦେଖିଲେ ଯେ, ଗୋଟିଏ ଫୁଲର ପାଖୁଡ଼ାରେ ସରୁ ନାଲି ଗାର ଅଛି । ସେ ସେହି ଫୁଲଗଛଟି ରଖି ଆଉ ସବୁ ଗଛ ଓପାଡ଼ି ପକାଇଲେ । ଏହି ଗଛରୁ ଯେ ମଞ୍ଜି ହେଲା, ତାହା ଆର ବର୍ଷ ଲଗାଇଲେ । ସେଥିମଧ୍ୟରୁ ଯେଉଁ ଗଛର ଫୁଲରେ ବେଶି ନାଲି ଗାର ଦେଖାଗଲା ତାକୁ ରଖିଲେ । ଏପରି କରିବାଦ୍ୱାରା ଗୋଟିଏ ନାଲି ଫୁଲବାଲା ପପି ଗଛ ପାଇଲେ । ସେଥିରୁ ମଞ୍ଜି ନେଇ ସମସ୍ତେ ବୁଣିଲେ । ଏବେ ସବୁଆଡ଼େ ଲାଲ ପପି ଫୁଲ ମିଳୁଛି । ସେ ମଧ୍ୟ ଏହି ନିୟମରେ ନେଳି ପପି ଫୁଲ ବାହାର କରିଅଛନ୍ତି ।

ସେ ଯେତେ ଫଳର ଉନ୍ନତି କରିଅଛନ୍ତି, ତାହା କହି ହେବ ନାହିଁ; ମାତ୍ର ସେ ଫଳମାନ ଆମ ଦେଶର ଫଳ ନୁହେଁ । ବୁର୍‌ବ୍ୟାଙ୍କ ଆମ ଦେଶରେ ଜନ୍ମିଥିଲେ ଅନେକ ପ୍ରକାର ଆମ୍ବ ପଣସ କରିଥାନ୍ତେ କିମ୍ବା ତାଙ୍କ ଦେଶର ଫଳ ଆମ୍ବ ପଣସ ହୋଇଥିଲେ ସେଥିରୁ ଅନେକ ପ୍ରକାର ଫଳ ଜନ୍ମାଇଥାନ୍ତେ । ତାଙ୍କ ଦେଶର ଫଳ ଆପେଲା, ଉଆଲ୍‌ନଟ, କୁଇନ୍ସ,ଏପ୍ରିକଟ, ପ୍ଲାମ୍, ପୀଚ୍, ଚେରି ଇତ୍ୟାଦି । ସେ ପ୍ରତ୍ୟେକ ଫଳର ଉନ୍ନତି କରିଅଛନ୍ତି । ବଡ଼, ସ୍ୱାଦୁ ଓ ସୁଗନ୍ଧ ଆପେଲ ମଧ୍ୟ କରିଅଛନ୍ତି । ପ୍ଲାମର ମଞ୍ଜି ବଡ଼ । ସେ ଏପରି ପ୍ଲାମ୍ ଦେଇଅଛନ୍ତି, ଯାହାର ମଞ୍ଜି ଛୋଟ ଏବଂ ଯାହାର ମଞ୍ଜି ନାହିଁ । କୁଇନ୍ସ ଖାଇବାକୁ ଆମ୍ବିଳା । ସେ ଏପରି କୁଇନ୍ସ ଫଳ କରିଛନ୍ତି, ଯାହା ମଧୁର ଓ କଞ୍ଚା ଖାଇ ହୁଏ ।

ତୁମେମାନେ ନାଗଫେଣୀ ବା ସପ୍ତଫେଣୀ ଗଛ ଅବଶ୍ୟ ଦେଖିଥିବ । ଏହାର କଣ୍ଟା ଆଉ କୌଣସି ଗଛର କଣ୍ଟା ପରି ନୁହେଁ । ଦେହରେ ଗୋଡ଼ରେ ଲାଗିଲେ ବଥା କରେ ଏବଂ ସର୍‌ସର୍ ଲାଗେ । ବୁର୍‌ବ୍ୟାଙ୍କ ଦେଖିଲେ ଏହାର ଦେହରେ ଖୁବ୍ ରସ ଅଛି ଏବଂ ଏହା ଜଳ ନ ପାଇଲେ ମଧ୍ୟ ହୁଏ । ଏହା ବାର ମାସ ଜନ୍ମେ । ଏହାକୁ ମନୁଷ୍ୟର ପ୍ରୟୋଜନରେ ଆଣିପାରିଲେ ବଡ଼ ଉପକାର ହୁଅନ୍ତା । ଏହାର ହଳଦିଆ ଫୁଲ ହୁଏ, ଫଳ ମଧ୍ୟ ହୁଏ । ଏହା ଭାବି ସେ ଫଳ ସଂଗ୍ରହ କରି ତହିଁର ମଞ୍ଜିରୁ ନୂତନ ଗଛ କଲେ । ତାଙ୍କ ଯତ୍ନରେ ନାଗଫେଣୀ ଗଛର କଣ୍ଟା ଉଭେଇ ଗଲା । ଏବେ କଣ୍ଟାଶୂନ୍ୟ ନାଗଫେଣୀ ସବୁଆଡ଼େ ଲୋକେ ଆଦର କରି ଲଗାଉଛନ୍ତି ଏବଂ ଗାଈମାନଙ୍କୁ ଖାଇବାକୁ ଦେଉଛନ୍ତି । ଏହା ଆମ ଦେଶକୁ ମଧ୍ୟ ଆସିଲାଣି । ବୁର୍‌ବ୍ୟାଙ୍କ ଏହାଛଡ଼ା ଆଉ ଅନେକ ଶସ୍ୟ ଓ ଫଳର ଉନ୍ନତି କରି ଆପଣା ଦେଶର ଉପକାର କରିଅଛନ୍ତି । ଆମ ଦେଶର ଚଷାମାନେ ଏ କଥା ବିଶ୍ୱାସ କରିବେ କି କିମ୍ବା ତୁମମାନଙ୍କ ମଧ୍ୟରୁ କେହି ପ୍ରକୃତ ଭକ୍ତ ହୋଇ ବୁର୍‌ବ୍ୟାଙ୍କଙ୍କ ପରି ହେବାକୁ ଚେଷ୍ଟା କରିବ କି ? ନୂଆ ଜାତିର ଆମ୍ବ ପଣସ କଦଳୀ ... ଜନ୍ମାଇ ଦେଶବାସୀଙ୍କୁ ଧନ୍ୟ କରିବ କି ? ବୁର୍‌ବ୍ୟାଙ୍କ ଅସାଧ୍ୟ ସାଧନ କରିଅଛନ୍ତି । ଏପରି ଆଉ ଅନେକ କୃଷକ ... ଓ ଫଳର ଉନ୍ନତି କରିଅଛନ୍ତି— କ୍ରମେ ତାହା ତୁମେମାନେ ଜାଣିବ । ଏ ସାଧନାର ମୂଳରେ ଅଛି ପ୍ରକୃତିଠାରେ ଭକ୍ତି, ମନୋଯୋଗ, ମଞ୍ଜି ସଂଗ୍ରହ ଏବଂ ନାନା ପ୍ରକାର କଲମ ବାନ୍ଧିବାର ଉପାୟ ।

•

## ମୂଲିଆ ପୁଅର ଦାନ

ଆମ ଦେଶବାସୀ ବଡ଼ ଗରିବ-ନୁହେଁ କି ? ଧନୀ ଯେ ନାହାନ୍ତି, ଏପରି ନୁହେଁ, ତେବେ ଗରିବ ତୁଳନାରେ ଧନୀଙ୍କ ସଂଖ୍ୟା ଅତି କମ୍ । ନାମଜାଦା ଧନୀ ଲକ୍ଷକରେ ଗୋଟିଏ ଥିଲେ ଥାଇପାରନ୍ତି । ଅନ୍ୟ ଦେଶରେ ଯେ ଗରିବ ନାହାନ୍ତି, ସମସ୍ତେ ଧନୀ, ତାହା ବି ନୁହେ- ଗରିବ ବି ଅଛନ୍ତି, ଧନୀ ବି ଅଛନ୍ତି; ମାତ୍ର ଅନ୍ୟ ଦେଶମାନଙ୍କରେ ନାମଜାଦା ଧନୀସଂଖ୍ୟା ଆମ ଦେଶଠାରୁ ଅଧିକ ।

ତୁମେମାନେ ମନେ କରିଥାଅ ଯେ, ରାଜା ଓ ଜମିଦାରମାନେ କେବଳ ଧନୀ । ଏ ଦେଶରେ ଏ କଥା ସତ ହୋଇପାରେ; ମାତ୍ର ଇଉରୋପ, ଆମେରିକା ପ୍ରଭୃତି ଦେଶରେ ଏପରି ଧନୀମାନେ ଅଛନ୍ତି, ଯେଉଁମାନେ ଏ ଦେଶର ରାଜା ଜମିଦାରମାନଙ୍କର ସମ୍ପତ୍ତିକୁ ଅନାୟାସରେ କିଣିନେଇ ପାରନ୍ତେ ।

ତୁମେମାନେ ଏହା ମଧ୍ୟ ମନେ କରିଥାଅ ଯେ, ଧନୀର ପୁଅ ସିନା ଧନୀ ହୋଇପାରେ, ଗରିବର ପୁଅ ଧନୀ ହେବ କିପରି ? ଚାକିରି କଲେ ବା ଲୋକ ଧନୀ ହୋଇପାରେ; ମାତ୍ର ମୂଲିଆ, ମଜୁରିଦାରର ପୁଅ ଯେ ଧନୀ ହୋଇପାରେ, ଏ ଧାରଣା ତୁମମାନଙ୍କର ମନରେ ନାହିଁ । ତୁମେମାନେ କାହିଁକି, ଏ ଦେଶର ପାଠୁଆ ଲୋକଙ୍କର ମଧ୍ୟ ଏହି ଧାରଣା । ଏଣୁ ଏ ଦେଶର ଲୋକେ ଚାକିରିଦ୍ୱାରା ଧନୀ ହେବାକୁ ଇଚ୍ଛା କରନ୍ତି । ସେମାନଙ୍କୁ ଧନ ଅର୍ଜିବାର ଅନ୍ୟ ଉପାୟ ଦିଶେ ନାହିଁ । ଆମ ଦେଶର ଲୋକେ ଅଧ୍ୟବସାୟଦ୍ୱାରା ଧନ ଉପାର୍ଜନର ଉପାୟ ଜାଣନ୍ତି ନାହିଁ । ଅଧ୍ୟବସାୟ କ'ଣ କି, ଆପଣା ହିତପାଇଁ କି କିମ୍ବା ଆପଣା ଜାତିର ହିତପାଇଁ କି ବା ଜନହିତପାଇଁ କି କୌଣସି ସତ୍କାର୍ଯ୍ୟରେ ପ୍ରାଣପଣ କରି ଲାଗିବା କିମ୍ବା ଧନ ଅର୍ଜନ କରିବା । ଅଧ୍ୟବସାୟଦ୍ୱାରା ଯେଉଁ ଲୋକ ଧନ ଉପାର୍ଜନ

କରେ, ସେ ଲୋକମୁଖରୁ ପ୍ରଶଂସା ପାଏ । ଆମ ଦେଶର ଲୋକେ ଯେ ଅଧ୍ୟବସାୟଦ୍ୱାରା ଧନ ଅର୍ଜନ କରୁ ନାହାନ୍ତି ଏପରି ନୁହେଁ; ମାତ୍ର ନାନା କାରଣରୁ, ଯାହା ତୁମେମାନେ ବଡ଼ ହେଲେ ଜାଣିପାରିବ, ସେମାନେ ଅନ୍ୟ ଦେଶବାସୀଙ୍କ ପରି ଅଧ୍ୟବସାୟୀ ହୋଇପାରୁ ନାହାନ୍ତି ।

ଇଉରୋପ, ଆମେରିକା ପ୍ରଭୃତି ଦେଶର ଅତି ଗରିବ ଘରର ପୁଅମାନେ ଅଧ୍ୟବସାୟଦ୍ୱାରା ଅନେକ ଧନ ଉପାର୍ଜନ କରୁଥିବାର ଜଣାଯାଏ । ସେମାନେ ଯେପରି ଧନ ଉପାର୍ଜନ କରନ୍ତି, ସେହିପରି ଦାନ ମଧ କରନ୍ତି । ଜଣେ ଜଣେ ମନୁଷ୍ୟମାନଙ୍କର ଉପକାର ଇଚ୍ଛାରେ କିପରି ଓ କେତେ ଦାନ କରିଅଛନ୍ତି, ତାହା ତୁମେମାନେ ଶୁଣିଲେ ଅବାକ୍ ହୋଇଯିବ । କହିବ, ଜଣେ ମଣିଷ ଦିହକରେ ଏତେ ଟଙ୍କା ଅର୍ଜିଲା କିପରି ଏବଂ ଏତେ ଟଙ୍କା ଦେଇ ପକାଇଲା କିପରି ?

ସେହି ଅଧ୍ୟବସାୟୀଙ୍କ ମଧ୍ୟରୁ ଜଣକର କଥା ଆଜି ଶୁଣିବ ? ତାଙ୍କ ନାମ 'ଏଣ୍ଡ୍ରୁ କାର୍ଣ୍ଣେଗୀ ।' ଏହାଙ୍କର ଜନ୍ମ ସ୍କଟ୍‌ଲ୍ୟାଣ୍ଡରେ । ଏହାଙ୍କର ପିତାମାତା ବଡ଼ ଗରିବ । ସ୍କଟ୍‌ଲ୍ୟାଣ୍ଡରେ ପେଟ ପୋଷିବାର ଉପାୟ ନ ଦେଖି ସେ ଆମେରିକାକୁ ଯିବାପାଇଁ ଇଚ୍ଛା କଲେ; ମାତ୍ର ବାଟଖରଚକୁ ଟଙ୍କା କାହିଁ ? ଜଣେ ବନ୍ଧୁଙ୍କଠାରୁ ଋଣ ଆଣି ସ୍ତ୍ରୀ ଓ ଦୁଇ ପୁତ୍ରଙ୍କୁ ଧରି ଆମେରିକା ଗଲେ । ସେଠାରେ ପେଟ ପୋଷିବାପାଇଁ ପ୍ରତ୍ୟେକ ଚାକିରି କଲେ । କାର୍ଣ୍ଣେଗୀ ଗୋଟିଏ କାରଖାନାରେ କାର୍ଯ୍ୟ ଗ୍ରହଣ କଲେ । ସେତେବେଳେ ତାଙ୍କ ଦରମା ଥିଲା ପ୍ରାୟ ପନ୍ଦର କି ଷୋହଳ ଟଙ୍କା । ଏଥିରେ ସେ ମହାଖୁସି । ଉନ୍ନତି ଆଶାରେ କଠିଣ ପରିଶ୍ରମ କରିବାକୁ ଲାଗିଲେ; ବୁଦ୍ଧିବଳରେ ଅନେକ ଧନ ଉପାର୍ଜନ କଲେ । କ୍ରମେ ସେ ଗୋଟିଏ ବଡ଼ ଲୁହାକାରଖାନାର ମାଲିକ ହେଲେ। ସେତେବେଳେ ତାଙ୍କ ହାତକୁ କେତେ ଯେ ଟଙ୍କା ଆସିଲା ତାହା କହି ହେବ ନାହିଁ । ଏତେ ଟଙ୍କା ସେ କଲେ କ'ଣ ? ପୋତି ରଖିଲେ ନା ସିନ୍ଦୁକରେ ଭରି ରଖିଲେ ? ନାହିଁ । ମନୁଷ୍ୟମାନଙ୍କ ହିତ ନିମନ୍ତେ ଦାନ କଲେ । ସେ କହିଛନ୍ତି— ଧନୀ ବ୍ୟକ୍ତି ଆପଣା ଖାଇବା ପିନ୍ଧିବା ନିମନ୍ତେ ଅଳ୍ପ ଖର୍ଚ୍ଚ କରିବ, ନିଜର ପରିବାର ଓ ନୌକର ଚାକରମାନଙ୍କର ଯାହା ନ୍ୟାୟ ଅନୁସାରେ ଦରକାର ତାହା ଦେବ- ଏଥି ଉତ୍ତାରୁ ଯାହା ବଳିବ, ତାହା ଜନହିତରେ ବ୍ୟୟ କରିବ । ମନୁଷ୍ୟମାନଙ୍କର ହିତପାଇଁ ବି ସେ ବହୁତ ଟଙ୍କା ବ୍ୟୟ କରିଅଛନ୍ତି । ନିଜେ ଗରିବ ଘରର ବାଳକ ଥିବାରୁ ଗରିବମାନଙ୍କ ପ୍ରତି ତାଙ୍କର ଭାରି ଦୟା । ମନୁଷ୍ୟମାନଙ୍କର ଶିକ୍ଷା ନିମନ୍ତେ ସେ ଏକଶହ କୋଟି ଟଙ୍କା (ଟ ୧୦୦୦୦୦୦୦୦୦୦) ଦାନ କରିଅଛନ୍ତି । ଏହି ଟଙ୍କାରୁ ନାନା ଦେଶରେ ଶିକ୍ଷାବିସ୍ତାରପାଇଁ ପୁସ୍ତକାଳୟ (ଲାଇବ୍ରେରୀ) ସ୍ଥାପିତ ହେଉଅଛି ଓ ପୁସ୍ତକ ରଖା ଯାଉଅଛି । ଯେଉଁ ମଜୁରିଦାରର ଦୈନିକ ଆୟ ଏକ ସମୟରେ ଆଠଅଣାରୁ କମ୍ ଥିଲା, ସେ ଆପଣା ବୁଦ୍ଧିବଳରେ ଟଙ୍କା ଉପାର୍ଜନ କରି ଜନହିତ ଲାଗି ଶହେ କୋଟି ଟଙ୍କା ଦାନ କଲା । ଏହା ବଡ଼ ଆଶ୍ଚର୍ଯ୍ୟ କଥା ନୁହେଁ କି ? ଆମ ଦେଶର କେହି ଏତେ ଟଙ୍କା ଦେଇ ପାରି ନାହିଁ । ଏହା ଛଡ଼ା ଭଲ କାମରେ ସେ ଆଉ କେତେ ଟଙ୍କା ଦାନ କରିଅଛନ୍ତି, ତାହା କିଏ କହିପାରିବ ?

ରାଜାମାନେ ଓ ରାଜ୍ୟମାନଙ୍କ ପ୍ରତିନିଧିମାନେ ଯୁଦ୍ଧ ନିମନ୍ତେ ଯେ ଖର୍ଚ୍ଚ କରନ୍ତି, ତାହା ଗରିବ ପ୍ରଜାମାନଙ୍କ ଉପରେ ପଡ଼େ । ଏ ଭାବନା ଗରିବବନ୍ଧୁ କାର୍ଣ୍ଣେଗୀଙ୍କ ମନରେ ବଡ଼ କଷ୍ଟ ଦେଲା ଏବଂ ଆଉ କେତେ ଜଣ ହୃଦୟବାନ୍ ବ୍ୟକ୍ତି ମଧ ଏହି ଚିନ୍ତା କରୁଥିଲେ। ମାତ୍ର ଯୁଦ୍ଧ ବନ୍ଦ କରିବାର ଉପାୟ କ'ଣ ? ସେମାନେ ଚିନ୍ତା କଲେ ଯେ, ଯେବେ କୌଣସି ଥାନାରେ ଗୋଟିଏ ସଭାଗୃହ ତିଆରି ହେବ ଏବଂ ସେଠାରେ ସବୁ ଦେଶର ପ୍ରତିନିଧିମାନେ ବସି ନ୍ୟାୟ ଅନ୍ୟାୟର ବିଚାର କରିବେ- ରାଜା ଓ ରାଜ୍ୟର ପ୍ରତିନିଧିମାନଙ୍କର ଦୋଷ ଗୁଣ ବାଛି ଦେବେ, ତେବେ ଆଉ ଯୁଦ୍ଧ ହେବ ନାହିଁ । ବିଚାର ତ ହେଲା । ଘର ବନାଇବାକୁ ଟଙ୍କା ଦେଉଛି କିଏ ? ଦାନବୀର କାର୍ଣ୍ଣେଗୀ ବାହାରିଲେ । ନେଦାରଲ୍ୟାଣ୍ଡର 'ହେଗ'ଠାରେ ଗୋଟିଏ ସଭାଘର ପ୍ରସ୍ତୁତ ହେଲା । ଏହି ସଭାଘର ବନାଇବା ଖରଚ ପ୍ରାୟ ପଚାଶ ଲକ୍ଷ ଟଙ୍କା କାର୍ଣ୍ଣେଗୀ ଦେଲେ । ଘର ତିଆରି ହେଉଛି— ଏଣେ କେତେକ ଜାତିର ଯୁଦ୍ଧ ଆୟୋଜନ ଲାଗିଛି । ଘର ତିଆରି ହେଲା— ଏଣେ ଜର୍ମାନ ମହାଯୁଦ୍ଧ ଲାଗିଲା । ଜଣ କେତେ ଯୁଦ୍ଧ ବନ୍ଦ କରିବାକୁ ସଭାଘର ତୋଳିଲା ବେଳେ ଆଉ ଜଣ କେତେ ଯୁଦ୍ଧ କରିବାକୁ ହତିଆରରେ ଶାଣ ଦେଇ ବସିଲେ, ତୋପ ବନ୍ଧୁକ ତିଆରି କଲେ । ପରଦୁଃଖକାତର କାର୍ଣ୍ଣେଗୀଙ୍କ ସହିତ ଲୋଭୀ ଯୋଦ୍ଧାମାନଙ୍କର କି ପ୍ରଭେଦ । ଜଣେ ମୂଲିଆ ଦିହକ ଭିତରେ ଅଧ୍ୟବସାୟଦ୍ୱାରା ବହୁଧନ ଉପାର୍ଜନ କରି ଏକଶତ କୋଟି ଟଙ୍କାରୁ ଅଧିକ ଦାନ କରିଥିବା କଥା ତୁମେମାନେ ବେଳେବେଳେ ଚିନ୍ତା କରିବ କି ?

●

# ରମ୍ୟରଚନା ବିଭାଗ

## ସୂଚୀପତ୍ର

# ପ୍ରାକ୍‌ସୂଚନା

ଜଳନ୍ଧରଙ୍କ କିଛି ରଚନା ପ୍ରବନ୍ଧର ଭାବ ଗାମ୍ଭୀର୍ଯ୍ୟ ଅପେକ୍ଷା ଆନନ୍ଦଧର୍ମୀ ଲାଳିତ୍ୟର ପକ୍ଷ ସମର୍ଥନ କରେ। ଏଗୁଡ଼ିକରେ ପ୍ରଜ୍ଞା ଅପେକ୍ଷା ରସବୋଧର ଆଧିକ୍ୟ ପରିଲକ୍ଷିତ ହୁଏ। ଆବେଗସିକ୍ତ ଅନୁଭୂତିରେ ରସାଣିତ ଏହି କୃତିଗୁଡ଼ିକରେ ସ୍ରଷ୍ଟା ପ୍ରାଣର ଲଳିତ କଳାବିଭବ ସୁରକ୍ଷିତ। ଏଣୁ ଏଗୁଡ଼ିକୁ ରମ୍ୟରଚନା ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରାଯାଇଛି।

'ଭୂତପ୍ରେତ' ରଚନାଟି ଉତ୍କଳ ସାହିତ୍ୟ ୧୮/୧୨ ସଂଖ୍ୟାରେ ପ୍ରକାଶିତ। ଏଥିରେ Marie Coreli ଙ୍କ Ziska ଉପନ୍ୟାସରେ ବର୍ଣ୍ଣିତ ଭୂତପ୍ରେତ ପ୍ରସଙ୍ଗକୁ ଅଳୀକରୂପେ ବର୍ଣ୍ଣନା କରାଯାଇଛି। ଜଳନ୍ଧର ନିଜର ଅନୁଭୂତି ବର୍ଣ୍ଣନା ଛଳରେ ଭୂତପ୍ରେତର ଅସ୍ତିତ୍ୱକୁ ଅସ୍ୱୀକାର କରିଛନ୍ତି। 'ଅନୁତପ୍ତର ସାନ୍ତ୍ୱନା' ଉତ୍କଳ ସାହିତ୍ୟ ୧୯।୫ରେ ପ୍ରକାଶିତ। ନିଜର ଜ୍ୟେଷ୍ଠା କନ୍ୟାର ମୃତ୍ୟୁରେ ସ୍ରଷ୍ଟା ହୃଦୟର ଦୀର୍ଘଶ୍ୱାସ ରମ୍ୟରଚନାର ରୂପ ନେଇଛି। 'ସ୍ୱଗତ' ଉତ୍କଳ ସାହିତ୍ୟ ୨୦।୭ ସଂଖ୍ୟାରେ ପ୍ରକାଶିତ। ଏଥିରେ ମନ ଅଭ୍ୟନ୍ତରର ଭାବନାରାଜି ସ୍ୱଗତ ରୂପେ ପ୍ରକାଶ ପାଏ ବୋଲି ସୂଚିତ କରାଯାଇଛି। 'କଠିନ ସମସ୍ୟା' ଉତ୍କଳ ସାହିତ୍ୟ ୩୭।୨ରେ ପ୍ରକାଶିତ। ଏଥିରେ ଜାତିଭେଦକୁ କଠିନ ସମସ୍ୟା ଓ ଜାତୀୟ ଉନ୍ନତିର ପ୍ରଧାନ ଅନ୍ତରାୟ ରୂପେ ବର୍ଣ୍ଣନା କରାଯାଇଛି। 'ମରଣରେ ତୁ ମୋହର ଜୀବନ ସାଥୀ' ସହକାର ୧୭।୬ରେ ପ୍ରକାଶିତ। ଏଥିରେ ମରଣକୁ ଜୀବନର ପ୍ରିୟତମ ସାଥୀରୂପେ ସ୍ୱୀକାର କରାଯାଇଛି। 'ମନ' ସହକାର ୧୭।୧୧ରେ ପ୍ରକାଶିତ। ଏହି ରଚନାରେ ମନ ସହିତ ବିଭିନ୍ନ ଇନ୍ଦ୍ରିୟର ସମ୍ପର୍କ ଉଦାହରଣ ସହ ଜଳନ୍ଧର ବର୍ଣ୍ଣନା କରିଛନ୍ତି। 'ମୂଢ଼ ଧାର୍ମିକତା' ଭଞ୍ଜପ୍ରଦୀପ ୬।୩ ସଂଖ୍ୟାରେ ପ୍ରକାଶିତ। ଧର୍ମ ଅନ୍ତରାଳରେ ବୃଦ୍ଧି ପାଉଥିବା ସାମ୍ପ୍ରଦାୟିକ ଚିନ୍ତାଧାରାକୁ ଜଳନ୍ଧର ମୂଢ଼ ଧାର୍ମିକତା ରୂପେ ଅଭିହିତ କରିଛନ୍ତି। 'ତିନି ଗୋଟି ସତ୍ୟ' ଶଙ୍ଖ ୨।୪ ସଂଖ୍ୟାରେ ପ୍ରକାଶିତ। ଏଥିରେ ମା', ମାତୃଭୂମି ଓ ମୃତ୍ୟୁକୁ ତିନି ଗୋଟି ସତ୍ୟ ରୂପେ ଅବତାରଣା କରାଯାଇଛି। 'ବ୍ରହ୍ମଜାଲ' ଶଂଖ ୩।୮ ସଂଖ୍ୟାରେ ପ୍ରକାଶିତ। ଜଟିଳ ଅମୀମାଂସ୍ୟ ସମସ୍ୟା, ମିଥ୍ୟା, ସ୍ୱାର୍ଥପରତା ରୂପକ ବ୍ରହ୍ମଜାଲ ମଣିଷକୁ କିପରି ଯୁଗଯୁଗ ଧରି ବିପଥଗାମୀ କରିଛି ତାହାହିଁ ଏହାର ପ୍ରତିପାଦ୍ୟ ବିଷୟ। 'ପୁନର୍ଜନ୍ମ' ଶଙ୍ଖ ୩।୧୨ ସଂଖ୍ୟାରେ ପ୍ରକାଶିତ। ଏଥିରେ ପୁନର୍ଜନ୍ମର ଭ୍ରାନ୍ତି ଉନ୍ମୋଚିତ ହୋଇଛି।

ରମ୍ୟ ରଚନା ବିଭାଗରେ ସ୍ଥାନିତ କୃତିଗୁଡ଼ିକ ଜଳନ୍ଧରଙ୍କ ସମ୍ବେଦନଶୀଳ ପ୍ରତିଭାର ଉତ୍କୃଷ୍ଟ ରସବୋଧର ପରିଚୟ ଦିଏ। ତାଙ୍କର ଯୁକ୍ତିବାଦୀ ଦୃଷ୍ଟିଭଙ୍ଗୀ ଏଠାରେ ଅଧିକ ରୁଚିଶୀଳ ଓ ମାର୍ମିକ ହୋଇଉଠିଛି। ଲଳିତ କଳା ବିଭବରେ ଉର୍ଜସ୍ୱଳ ଏହି ରଚନାଗୁଡ଼ିକରେ ସ୍ରଷ୍ଟା ପ୍ରାଣର ମର୍ମବାଣୀ ଅଧିକ ନିବିଡ଼ ଓ ମାଧୁର୍ଯ୍ୟମୟ।

**ସମ୍ପାଦକ**

## ଭୂତପ୍ରେତ

ଗୋଟାଏ ଡାକବଙ୍ଗଳାରେ ବସିଥିଲି । ମାଘ ମାସ କୃଷ୍ଣପକ୍ଷ ପ୍ରାୟ ତୃତୀୟା କି ଚତୁର୍ଥୀ; ଠିକ୍ ଅର୍ଦ୍ଧରାତ୍ରବେଳେ ସୁଲେଖିକା Marie Coreliଙ୍କୁ Ziska ନାମକ ଉପନ୍ୟାସ ପାଠ ଶେଷ କଲି । ମାଘ ମାସ, ଭାରି ଶୀତ ହେବାର କଥା, ମାତ୍ର କି କାରଣରୁ କହିପାରିବି ନାହିଁ, ଭାରି ଗରମ ବୋଧ ହେଲା । ଏଣୁ ବରନ୍ଦାରେ ବିଚରଣ କରିବାକୁ ଲାଗିଲି । ସମ୍ମୁଖରେ ପ୍ରକାଣ୍ଡ ସୁନ୍ଦର ଉଦ୍ୟାନ । ଚନ୍ଦ୍ର ପ୍ରାୟ ମସ୍ତକ ଉପରେ ଥିଲେ । ପୁଷ୍ପମାନେ ପ୍ରସ୍ଫୁଟିତ ହୋଇ ସୁବାସ ବିତରଣ କରୁଥିଲେ । ଅର୍ଦ୍ଧରାତ୍ର ଝାଇଁ ଝାଇଁ କରୁଥିଲା, ମଧ୍ୟରେ ମଧ୍ୟରେ ପେଚକର ଶବ୍ଦ ଶୁଣାଯାଉଥିଲା । ଏହି ଶବ୍ଦ ରାତ୍ରର ନିସ୍ତବ୍ଧତାକୁ ଭଙ୍ଗ କରି ସୁଦ୍ଧା ଆହୁରି ଭୀତିପୂର୍ଣ୍ଣ କରୁଥିଲା । ମୁଁ ଏକାକୀ ରହିବାକୁ ସୁଖ ପାଏଁ, ଏଣୁ ମୋ ନିକଟରେ ଚାକର ପ୍ରଭୃତି କେହି ନ ଥିଲେ— ସେମାନେ ଦୂରରେ ଅନ୍ୟ ଘରେ ଥିଲେ । ଏକରକମ ନିର୍ଜନ । ଭୂତ-ପିଶାଚମାନଙ୍କର କ୍ରୀଡ଼ାର ସମୟ । କି କଳ୍ପନା । ଆଜି କାଲି ଅନେକ ଲେଖକ ଲେଖିକାଙ୍କ ମନରେ ଏ ଭାବ ସ୍ଥାନ ପାଇଲା କିପରି ? ଭୂତ କଥା, ପିଶାଚ କଥା, ପୁନର୍ଜନ୍ମ କଥା ! ଲେଖିବା, ଧନ୍ୟ ତୁମ୍ଭର କଳ୍ପନା । ତୁମ୍ଭର ଏହା ବଦ୍ଧମୂଳ ବିଶ୍ୱାସ, ବି ଲୋକଙ୍କୁ ପ୍ରତାରିତ କରିବା ନିମନ୍ତେ ଇଚ୍ଛାପୂର୍ବକ ଏପରି ଗଳ୍ପର ସୃଷ୍ଟି କରିଅଛ ? ମନରେ ଯେତିକି ଚିନ୍ତା କରିବାକୁ ଲାଗିଲି, ଶୀତ ତେତିକି ଅପସାରିତ ହେବାକୁ ଲାଗିଲା ।

ଭୌତିକ ଶରୀର ଓ ଜଡ଼ ପଦାର୍ଥର ପାର୍ଥକ୍ୟ ଏକାବେଳକେ ନାହିଁ । ବହୁ ଯୁଗ ପୂର୍ବରୁ ଜିସ୍କାର ମୃତ୍ୟୁ ଘଟିଅଛି । ତାହାର ଭୌତିକ ଶରୀର ଏରାଜେସ୍‌କୁ ପ୍ରତି ଜନ୍ମରେ ପୁନଃପୁନଃ ପ୍ରତାରିତ କରୁଅଛି । ଭୌତିକ ଶରୀର ଇନ୍ଦ୍ରିୟଗ୍ରାହ୍ୟ ହେବା ନିତାନ୍ତ ଅସମ୍ଭବ, ନିତାନ୍ତ କାଳ୍ପନିକ । ସମସ୍ତେ ମୃତ ଜିସ୍କାର ମୂର୍ତ୍ତିକୁ ଦେଖୁଅଛନ୍ତି, ତାହାର ରୂପରେ ମୋହିତ ହେଉଅଛନ୍ତି, ତାହାର ଗୀତ ଶ୍ରବଣ କରୁଅଛନ୍ତି, ନା, ତାହାର ଅଙ୍ଗ ସ୍ପର୍ଶ କରୁଅଛନ୍ତି । ଜିସ୍କା ପ୍ରଭୃତି ମନୁଷ୍ୟ ନା ଭୂତ ? ଜିସ୍କା କିଏ ? ସହସ୍ରାଧିକ ବର୍ଷ ପୂର୍ବର ଜଣେ ସ୍ତ୍ରୀ । ତାହାର ପ୍ରେତାତ୍ମା ଅଦ୍ୟାପି ଏରାଜେସ୍‌କୁ ମୋହିତ କରିବାକୁ, ଭ୍ରାନ୍ତ କରିବାକୁ ଶରୀରୀରୂପରେ ଆବିର୍ଭୂତ ହୋଇ ସମସ୍ତଙ୍କ ସମକ୍ଷରେ ନୃତ୍ୟ କରୁଅଛି । କିପରି ସମ୍ଭବ ହୋଇପାରେ ? ନା, ନା, ଏହା ସମ୍ପୂର୍ଣ୍ଣ ମିଥ୍ୟା, କଳ୍ପନା । ଯୁକ୍ତିଦ୍ୱାରା କୌଣସି ପ୍ରକାରେ ସିଦ୍ଧ ହେଉ ନାହିଁ । ଭୂତ କାହିଁ, ପ୍ରେତ କାହିଁ । ନିଶାକାଳ ବିଭୀଷିକାମୟ । ପେଚକର ଶବ୍ଦ କ୍ଷଣେ କ୍ଷଣେ ଚମକିତ କରୁଅଛି । ପତ୍ରର ପତନ ଶବ୍ଦ ଚକିତ କରୁଅଛି । କ୍ଷଣେ କ୍ଷଣେ ଅତର୍କିତ ଭାବରେ ରୋମାଞ୍ଚ ଜାତ ହେଉଅଛି । ମାତ୍ର କାହିଁ କିଛି ନାହିଁ । ପୃଥିବୀ ଯେବେ ଅସଂଖ୍ୟ ଭୂତ ପ୍ରେତଦ୍ୱାରା ପରିପୂର୍ଣ୍ଣ, ତେବେ ମତେ ଦେଖା ଦେଉ ନାହାନ୍ତି କାହିଁକି ? ସେମାନଙ୍କର କି ମନୁଷ୍ୟକୁ ଭୟ ଅଛି ? ନିର୍ଜନରେ ରାତ୍ରରେ ଶ୍ମଶାନରେ ମୁଁ ଏକାକୀ ରହିଅଛି । ଘୋର ଅରଣ୍ୟରେ ଏକାକୀ ରାତ୍ର ଅତିବାହିତ କରିଅଛି । କେବେ ତ ଭୂତ ପିଶାଚ ଦେଖିଲି ନାହିଁ ? ଯେବେ ପୂର୍ବଜନ୍ମ ଥିଲା, ମୁଁ କି କେବେ କୌଣସି ଜନ୍ମରେ କାହାକୁ ପ୍ରତାରିତ କରି ନାହିଁ, କାହାରି ଅନିଷ୍ଟ କରିନାହିଁ ? ତାହାର ତ ପ୍ରତିଶୋଧ ନେବାର ବର୍ତ୍ତମାନ ଉପଯୁକ୍ତ ସମୟ । କାହିଁ ? ଆସୁ, ପ୍ରତିଶୋଧ ନେଉ । ନିର୍ଭୟଚିତ୍ତରେ ବହୁକ୍ଷଣ ଏହି ଚିନ୍ତାରେ ମଗ୍ନ ରହିଲି । କେତେ ମୃତବ୍ୟକ୍ତିଙ୍କ ସ୍ମରଣ କଲି, କିଛି ତ ଦେଖିବାକୁ ପାଇଲି ନାହିଁ, ଶୁଣିବାକୁ ପାଇଲି ନାହିଁ । କେବେ କି ଲୋକଙ୍କର ଭୂତ ଦେଖିବା କଥା ମିଥ୍ୟା, ଭୂତର କଥା ଶୁଣିବା କଥା ମିଥ୍ୟା ? ତାହା ଭିନ୍ନ ଆଉ କ'ଣ ? ଟାଇଟାନିକ୍ ଜାହାଜରେ ମୃତ ଷ୍ଟେଡ ସାହେବଙ୍କ ପ୍ରେତାତ୍ମା ବିଲାତରେ ଆବିର୍ଭୂତ ହୋଇ ସମ୍ବାଦ ଦେଉଅଛି । ଆମ୍ଭ ଦେଶର କେତେ ଜଣ Theosophist ପ୍ରେତାତ୍ମାଙ୍କୁ ଦେଖୁଅଛନ୍ତି, ତାଙ୍କ ସଙ୍ଗରେ କଥା କହୁଅଛନ୍ତି । ଅବଶ୍ୟ ପୂର୍ବଜନ୍ମରେ ମୋର କେହି ଶତ୍ରୁ ବା ମିତ୍ର ନ ଥିଲେ କି ? ପ୍ରକୃତ ଚିନ୍ତାନ୍ୱିତ ହୋଇ ଆକୁଳ ହୋଇ ଭୟଭ୍ରାନ୍ତି ତ୍ୟାଗକରି ଡାକିଲି । କିଛି ନାହିଁ—ସବୁ ମିଥ୍ୟା । ଆଜିକାଲି ପୈଶାଚିକ ଯୁଗ ପଡ଼ିଅଛି, ନୋହିଲେ ଲୋକେ ଏପରି ମୋହରେ ପଡ଼ିବେ କାହିଁକି ? ଏ ଚିନ୍ତାରେ କେତେକ୍ଷଣ ଅତିବାହିତ କଲି, କହିପାରିବି ନାହିଁ । ଏହି ବିଷୟରେ ମନ ବ୍ୟାପୃତ ରହିଅଛି, ଅଭ୍ୟାସ ଯୋଗୁଁ ସ୍ୱଭାବତଃ ପଦକ୍ଷେପ ହେଉଅଛି, ସଂସାର ସହିତ ସମ୍ବନ୍ଧଶୂନ୍ୟ ହେଲା ପରି ଅନ୍ୟମନସ୍କ ହୋଇ ରହିଅଛି, ହଠାତ୍ ଗୋଟାଏ ସଙ୍ଗୀତଧ୍ୱନି କର୍ଣ୍ଣକୁହରରେ ପ୍ରବେଶ କଲା । ଦଣ୍ଡାୟମାନ ହୋଇ ଶୁଣିଲି—

''ଚନ୍ଦ୍ର ନିଶାରେ ।
କୁନ୍ଦରଦନା ଏ ଦଣ୍ଡେ ନାହିଁ ମୋ କୋଳରେ ।''

ଏହି ତ ଏକ ଭୂତର ଶବ୍ଦ ! ମୁଁ ତ ଏକ ଭୂତ ଦଣ୍ଡାୟମାନ ! Marie Coreli ଏକ ଭୂତ– କିମ୍ବା ଏକ ଭୂତ । ସଂସାର ଭୂତମୟ । ନାଗରଚୂଡ଼ାମଣି ବୋଧହୁଏ ତାହାର ମାନସିକ ଭିକ୍ଷା କୁନ୍ଦରଦନାକୁ କୋଳରେ ନ ପାଇ ଆଦିରସାତ୍ମକ ସଙ୍ଗୀତ ଲେଖକ ଭୂତଙ୍କ ମନ୍ତ୍ର ଉପାସନା କରୁ କରୁ ଅର୍ଦ୍ଧରାତ୍ର ଶେଷ କଲାଣି । ମୁଁ ଉପନ୍ୟାସ ଲେଖିକାଙ୍କ ମିଥ୍ୟା କଳ୍ପନାରେ ପଡ଼ି ଏତେ ରାତ୍ର ଅତିବାହିତ କଲିଣି । ଉପନ୍ୟାସ ଲେଖିକା ଏହି ମିଥ୍ୟା କଳ୍ପନାରେ ପଡ଼ି ଏହିପରି କେତେ ସୁନ୍ଦର ନିଶା ଅତିବାହିତ କରି ନଥିବେ ! ଚନ୍ଦ୍ରଶୁଭ୍ର କିରଣଦ୍ୱାରା ଜଗତକୁ ଆଲୋକିତ କରୁଅଛନ୍ତି; ବୃକ୍ଷମାନେ ନିସ୍ତବ୍ଧଭାବରେ ଦଣ୍ଡାୟମାନ ହୋଇଅଛନ୍ତି, ଶୁକ୍ଳ ପୁଷ୍ପଗୁଡ଼ିକ ପ୍ରସ୍ଫୁଟିତ ହୋଇ ରାତ୍ରିଚର ପତଙ୍ଗମାନଙ୍କୁ ଆହ୍ୱାନ କରୁଅଛନ୍ତି । ଏହି ନୈଶ ଶୋଭା ଅତ୍ୟନ୍ତ ମନୋମୁଗ୍ଧକର । ସଙ୍ଗୀତପଟୁ ଭୂତ ନିମନ୍ତେ ଏ ଶୋଭା ଲୋଡ଼ା ନାହିଁ । ତା'ର ଲୋଡ଼ା କୁନ୍ଦରଦନା । ମୋର ଲୋଡ଼ା ଭୂତ ପ୍ରେତ । ବର୍ତ୍ତମାନ ଯେତେ ଭୂତ ଜାଗ୍ରତ ଥିବେ; ସେମାନଙ୍କର ଭିନ୍ନ ଭିନ୍ନ ବିଷୟ ଲୋଡ଼ା । ତେବେ ଏ ପ୍ରକୃତି-ବୈଚିତ୍ର୍ୟ— ଏ ଶୋଭାଭଣ୍ଡାର କାହାର ଲୋଡ଼ା ? କେବଳ ପେଚକ ନିମନ୍ତେ ଏହି ଶୋଭାର ସୃଷ୍ଟି କି ? ତେବେ ତାହା ପ୍ରତି ଲୋକଙ୍କର ଏତେ ବିରାଗ କାହିଁକି ? ତାହା ପ୍ରତି ଏତେ ଘୃଣା କାହିଁକି ? ତାହାର ଶବ୍ଦ ଶୁଣି ଛି ଛି କରନ୍ତି କାହିଁକି ? ସଂସ୍କାର, ସଂସ୍କାର । ମନୁଷ୍ୟ ସଂସ୍କାରାଧୀନ— ମନଗଢ଼ା ଗୁରୁର ଚେଲା ।

•

## ଅନୁତପ୍ତର ସାନ୍ତ୍ୱନା

୨୬ ତାରିଖରେ ମୋର ଜ୍ୟେଷ୍ଠା କନ୍ୟାର ମୃତ୍ୟୁ ହେଲା । ଏହି ସମ୍ବାଦ ତାରଯୋଗେ ପ୍ରାପ୍ତ ହେଲି । ରୋଦନ କରିବି କାହିଁକି ? ରୋଦନ କଲେ କି ଫେରିପାଇବି ? ମନକୁ ଖୁବ୍ ବୁଝାଇଲି, ଆଣ୍ଠ କରି ବସିଲି । କିନ୍ତୁ ବାରମ୍ବାର ସେହି ଚିନ୍ତା ଉପସ୍ଥିତ ହେଲା । ବାରମ୍ବାର ସେହି ମୂର୍ତ୍ତି ମୋର ସମକ୍ଷରେ ଦଣ୍ଡାୟମାନ ହେଲା । କାନ୍ଦିବାକୁ ନାହିଁ, ଅଥଚ ଲୋତକଧାରା ଅବିରଳ ଧାରାରେ ବହିବାକୁ ଲାଗିଲା । ତାହାର ମାତା ଅସ୍ତବ୍ୟସ୍ତ ହୋଇ କ୍ରନ୍ଦନ କରିବାକୁ ଲାଗିଲା । ତାହା ପ୍ରତି ଏହି ସଂସାର ତୁଚ୍ଛ ମନେ ହେଉଥିଲା । ମୁଁ ସିନା ପିତା, ସେ ଯେ ଗର୍ଭଧାରିଣୀ ମାତା, ସନ୍ତାନ-ଶୋକ–ସାଗର ତା ପ୍ରତି ଦୁସ୍ତର:—

''ମୁହୂର୍ତ୍ତ ମାତ୍ରଂ ଭବନିନ୍ଦୟାଦୟା
ସଖାସଖାୟଃ ସ୍ରବଦସ୍ରବୋ ମମ
ନିବୃତ୍ତିମେଷ୍ୟତି ପରଂ ଦୁରୁତ୍ତର
ସ୍ତ୍ୱୟୈବ ମାତ ସ୍ୱତ ଶୋକସାଗରଃ ।''

ଛୋଟ ଛୋଟ ଭାଇ ଭଉଣୀମାନେ ଭୂମିରେ ଗଡ଼ିବାକୁ ଲାଗିଲେ । ସେମାନଙ୍କ ନିମନ୍ତେ ସଂସାର ଯେପରି ତୁଚ୍ଛ । ଏମାନେ ଜଗତରେ ଆଉ କିଛି ଚାହାନ୍ତି ନାହିଁ । ମା' ତାହାର କନ୍ୟାକୁ ପାଇଲେ ତୁଷ୍ଟ ହେବ । ଭାଇଭଉଣୀମାନେ ସେହି ମୃତା ଭଗିନୀକୁ ଫେରିପାଇଲେ ସାନ୍ତ୍ୱନା ଲାଭ କରିବେ । କି ଉତ୍ପାତ୍ ! ଯେ ଗଲା, ସେ କି ଆଉ ଫେରିଆସିବ ? ତାହାତ ଜାଣେ । କିନ୍ତୁ ମନ ଯେ ବୁଝେ ନାହିଁ । ମୁଁ ମଧ କ୍ଷିପ୍ତ ପ୍ରାୟ ଅନେକ ଡାକିଲି । ମା' ମୋର ଶୁଣିଲା କାହିଁ ? ମା, ତୁ ଯେତେଦିନ ମୋ ଗୃହରେ ଥିଲୁ, ତୋର ମାତାକୁ ଦିନେ ମଧ କୌଣସି କଷ୍ଟ ଦେଇ ନ ଥିଲୁ । ଆଜି କାହିଁକି ଏତେ କଷ୍ଟ ଦେଉଅଛୁ ? ତୋର ଛୋଟ ଭାଇଟି ତୋ ବିହୁନରେ ଆଜି ଧୂଳିରେ ଲୋଟୁଅଛି । ତାକୁ ଦିନେ କନ୍ଦାଇ ନାହୁଁ, ଆଜି କାହିଁକି ତାକୁ ଦେଖୁନାହୁଁ ? କାହିଁ ? କିଛି ତ ଉତ୍ତର ପାଇଲି ନାହିଁ ? ଯେଉଁଆଡ଼େ ଦେଖେ, ସେହି ପୂର୍ବର ଛବି ମାତ୍ର । ବନ୍ଧୁ ଆତ୍ମୀୟଗଣ ଆସି କେତେ ବୁଝାଇବାକୁ ଲାଗିଲେ । ସେହି ପୁରୁଣା କଥା— ସେହି ପୁରୁଣା ସାନ୍ତ୍ୱନାବାକ୍ୟ— ସେହି ଚର୍ବିତ ଚର୍ବଣ । ଏଥିରେ ଫଳ କଣ ? ବିରକ୍ତ ହୋଇ ମା'ଙ୍କର ସମାଧିସ୍ଥଳକୁ ଗଲି । ଭାବିଲି, ମୋର ମା' ତାକୁ ପ୍ରାଣାଧିକ ଭଲ ପାଉଥିଲେ, ସେ ମଧ ମା'ଙ୍କୁ ସ୍ନେହ କରୁଥିଲା, ହୁଏତ ମା'ଙ୍କ ସମାଧିସ୍ଥଳରେ ତାହାର ଦେଖା ପାଇବି । ଦୁହିଙ୍କି ଡାକିଲି, କେହି ତ ଶୁଣିଲେ ନାହିଁ । ତେବେ କ'ଣ ହେଲା ? ବହୁକ୍ଷଣ ସେଠାରେ ଥିଲି, ଯେତେବେଳେ ସନ୍ଧ୍ୟା ହେବାକୁ ବସିଲା, ଶ୍ୱାପଦଭୟ ଚିନ୍ତା କରି ଗୃହକୁ ଫେରିଲି । ଘରେ ସେହି କ୍ରନ୍ଦନରୋଳ କମି ନଥିଲା । ରାତ୍ରି କେତେ ହେଲା । ଭୋଜନ ନ କରି ଖଟ ଉପରେ ଉତ୍ତାନଶାୟୀ ହୋଇପଡ଼ି ରହିଲି ଓ ଭାବିବାକୁ ଲାଗିଲି । ନୟନରୁ ବିନ୍ଦୁ ବିନ୍ଦୁ ଲୋତକ ପଡ଼ିବାକୁ ଲାଗିଲା, ଚକ୍ଷୁର ଅଗ୍ରରେ କିଛି ଦେଖା ଗଲା ନାହିଁ । ମନ ପରିବର୍ତ୍ତନ କରିବା ନିମନ୍ତେ ବହି ପଢ଼ିବାକୁ ଇଚ୍ଛା କଲି । ଚକ୍ଷୁ ବନ୍ଦ କରି ସେହି ଶୟନାବସ୍ଥାରେ ମୁଣ୍ଡଆଡ଼ରୁ ଖଣ୍ଡେ ବହି ଟାଣି ଆଣିଲି । ବହି ଖୋଲି ଦେଖିଲି, ପୁସ୍ତକର ନାମ ଏବଂ ଅଧ୍ୟାୟର ନାମ କ୍ରମାନ୍ୱୟରେ—

"Man and the Universe."

"The Presence of Personality."

କିଛିକ୍ଷଣ ପଢ଼ିଲି । ପଢ଼ିଲି, ମାତ୍ର କିଛି ବୁଝିଲି ନାହିଁ । କିଛିକ୍ଷଣ ପରେ ହାତରୁ ବହି ଛାତି ଉପରେ ଖସିପଡ଼ିଲା । ପଡ଼ିରହିଲା ।

ନିଦ୍ରା କି ତନ୍ଦ୍ରା, ସ୍ୱପ୍ନ କି ପ୍ରକୃତ, ମୋହ କି ଜାଗରଣ, କିଛି ତ ସ୍ଥିର କରିପାରୁ ନାହିଁ । ସ୍ୱପ୍ନ ଦେଖିଲି କି ? ମୋର ସେ ପ୍ରାଣାଧିକା କନ୍ୟା କହୁଅଛି— "ବାବା ! ଶୋକ କରୁଛ କାହିଁକି ? ଚିନ୍ତା କରୁଛ କାହିଁକି ? କାହାପାଇଁକି ଏତେ ଚିନ୍ତିତ, ଏତେ ବ୍ୟତିବ୍ୟସ୍ତ ? ମୋ ପାଇଁ କି ? ମୋତେ ଯେଉଁ ଦିନ ସ୍ୱାମୀଗୃହକୁ ପଠାଇଦେଲ, ସେଦିନ ଖୁବ୍ କାନ୍ଦିଥିଲ । ମୁଁ ମଧ ଖୁବ୍ କାନ୍ଦିଥିଲି । ମୋତେ ପଠାଇଦେବା ଉତ୍ତାରୁ ତମ୍ଭେ ଖୁବ୍ ନିଶ୍ଚିନ୍ତ ହେଲ । ମୁଣ୍ଡରୁ ଯେପରି ମହାବୋଝ ଖସିଗଲା । ତୁମ୍ଭେ ସେଦିନୁ ଅଦ୍ୟାପି ମହାସୁଖରେ ଓ ନିଶ୍ଚିନ୍ତ ଭାବରେ ଥିଲ, ମୋ ପାଇଁ ଆଉ ଟିକିଏ ମଧ ଚିନ୍ତା କରୁ ନ ଥିଲା । ତେବେ ଆଜି କାହିଁକି ଏତେ ଚିନ୍ତା ? ମନେ କର ନା କାହିଁକି ଯେ ମୁଁ ଅଛି ? ଯେବେ ଟେଲିଗ୍ରାଫର ସୃଷ୍ଟି ହୋଇ ନ ଥାନ୍ତା, ତେବେ କି ତୁମ୍ଭେ ଶୁଣି ପାରିଥାନ୍ତ ଯେ ମୁଁ ସଂସାର ତ୍ୟାଗ କରିଅଛ ? ପୂର୍ବ ପରି ହୋଇଥିଲେ ଆମ୍ଭ ଘରଠାରୁ ସମ୍ବାଦ ପହଞ୍ଚିବାକୁ ଅନ୍ତତଃ ଦଶଦିନ ଲାଗନ୍ତା । ତେତେଦିନଯାଏ ତ ତୁମ୍ଭେ ମୋ ନିମନ୍ତେ କୌଣସି ପ୍ରକାର ଶୋକ କରନ୍ତି ନାହିଁ ? ମୁଁ ନାହିଁ, ଅଥଚ ଅଛି ଭାବି ତୁମ୍ଭେ କେତେ ସୁଖାନୁଭବ କରୁଥାନ୍ତ । ମୋର ମୃତ୍ୟୁସମ୍ବାଦ ନ ପାଇଲେ ତୁମ୍ଭେ ତ ବହୁଦିନ ମହାସୁଖରେ ଥାନ୍ତ । ସେହି ପ୍ରକାର ମନେକରିନିଅ ଯେ ମୁଁ ଅଛି । ସ୍ପୃହାଶୂନ୍ୟ ହୋଇ ମନେକରିନିଅ ଯେ ମୁଁ ଅଛି; ଆଶା ତ୍ୟାଗ କରି ମନେକରିନିଅ ଯେ ମୁଁ ଅଛି । ତାହା ହେଲେ ତ କୌଣସି ଭାବନା ନ ଥିବ । ମୋ'ଠାରୁ ପତ୍ର ପାଇବାର ଆଶା ତ୍ୟାଗ କରି ଦିଅ, ଆଉ କିଛି ପାଇବାର ଆଶା ତ୍ୟାଗ କରିଦିଅ—ଯେତେ ସୁଖଆଶା ସୁଖସ୍ୱପ୍ନ ଥିଲା, ତାହା ତ୍ୟାଗ କର, ଆଉ ମନେକରିନିଅ ଯେ ମୁଁ ଅଛି । ମୁଁ ନ ଥିବା ସତ୍ତ୍ୱେ ଯଦି କେହି ବରାବର ସମ୍ବାଦ ଦେଉଥାନ୍ତା ଯେ ମୁଁ ଅଛି, ତାହାହେଲେ କି ତୁମ୍ଭେ କାନ୍ଦନ୍ତ ? ପୁଣି ମୁଁ ବଞ୍ଚିଥିବା ସତ୍ତ୍ୱେ ଯଦି କେହି ବିଶ୍ୱାସଯୋଗ୍ୟ ସମ୍ବାଦ ଦିଅନ୍ତା ଯେ ମୁଁ ମୃତ ହୋଇଅଛି, ତାହାହେଲେ କି ତୁମ୍ଭେ କାନ୍ଦନ୍ତ ନାହିଁ ? ତେବେ ଚିନ୍ତା କରିବା, ଶୋକ କରିବା, କାନ୍ଦିବା ତ କେବଳ ସଂସ୍କାରାଧୀନ ।

"ତୁମ୍ଭେ ମୋର ପ୍ରେତାତ୍ମାର ସାକ୍ଷାତ୍ ପାଇବାକୁ ଇଚ୍ଛା କରୁଅଛ । ମୋର ପ୍ରେତାତ୍ମା ସହିତ କଥା କହିବାକୁ ଇଚ୍ଛା କରୁଅଛ । ମୁଁ ମୃତ ହେଲାରୁ ମୋର ଶବକୁ ଦାହ କଲା ଉତ୍ତାରୁ ମୋର ଆଉ କଣ ରହିଲା ? ସବୁ ତ ବିଶ୍ଳେଷିତ ହୋଇଗଲା । ମୋର ବ୍ୟଷ୍ଟି ଶରୀରର ପରମାଣୁ ସମଷ୍ଟି ବସ୍ତୁସମଷ୍ଟି ସହିତ ମିଳିତ ହେବାକୁ ଚାଲିଲା । ଶରୀର ନଥିଲେ ଦେଖାଯିବ କଣ ଏବଂ କି ପ୍ରକାରେ ? ସୁତରାଂ ମୃତର ରୂପଦର୍ଶନ ଅସମ୍ଭବ । ଶରୀର ଅଛି, ମୁଖ ଅଛି, ଜ୍ଞାନ ଅଛି, କିନ୍ତୁ ଜିହ୍ୱାର ଟିକିଏ ଦୋଷ ଥିଲେ କିମ୍ବା ଗଳନଳୀରେ ରୋଗ ହେଲେ କଥା ବାହାର ହୁଏ ନାହିଁ । ଶରୀର ନାହିଁ, ମୁଖ ନାହିଁ, ଶ୍ୱାସନଳୀ ନାହିଁ, କଥା ଶୂନ୍ୟରୁ ବାହାରିବ, ଏହା ନିତାନ୍ତ ଅସମ୍ଭବ ଓ ସୃଷ୍ଟିବିରୁଦ୍ଧ । ସୁତରାଂ, ମୃତର ଦର୍ଶନ, ବାକ୍ୟ ଶ୍ରବଣ ଯେମନ୍ତ ଅସମ୍ଭବ, ତେମନ୍ତ ଅଯୌକ୍ତିକ । ମୃତ ବ୍ୟକ୍ତିର ଭୌତିକ ଶରୀର ବା ପ୍ରେତାତ୍ମା ବୋଲି ଆଉ କିଛି ନଥାଏ ।

"ଅନେକଙ୍କର ବିଶ୍ୱାସ ଯେ, ଆତ୍ମା ଶରୀର ତ୍ୟାଗ କରି ସ୍ୱତନ୍ତ୍ର ଭାବରେ ଥାଏ । ଆତ୍ମାର ତ ଧ୍ୱଂସ ନାହିଁ, ସୁତରାଂ ଆତ୍ମା ଦର୍ଶନ ଦେବ, କଥା କହିବ । ଏହି ବିଶ୍ୱାସ ଉପରେ ନିର୍ଭର କରି ଲୋକେ ପ୍ରେତାତ୍ମା ନାମରେ କେତେ ଗଳ୍ପ, କେତେ ଉପନ୍ୟାସ ସୃଷ୍ଟି କରିଅଛନ୍ତି । ଆତ୍ମା କ'ଣ ? ଏହା କି ଶରୀରଠାରୁ ସ୍ୱତନ୍ତ୍ର ? ତେବେ ମୃତ୍ୟୁ ପରେ କେଉଁଆଡ଼େ ଯାଏ ? ଏହା ତରଳ, ବାୟବୀୟ କି ଇଥର ତୁଲ୍ୟ ପଦାର୍ଥ ? ଶରୀର ବ୍ୟତୀତ ଆତ୍ମାର ଉପଲବ୍ଧି ହୁଏ ନାହିଁ । ଆତ୍ମା ଜ୍ଞାନମୟ କିମ୍ବା ଶରୀରଚାଳନକ୍ଷମ, କିମ୍ବା ଶରୀରର ନିୟନ୍ତା ? ତାହା ତ ମନେହୁଏ ନାହିଁ । କାରଣ ଶରୀରର ବୃଦ୍ଧି ଓ ଶିକ୍ଷା ସଙ୍ଗେ ସଙ୍ଗେ ଜ୍ଞାନବୃଦ୍ଧି ହୁଏ । ଯଦି ସମସ୍ତଙ୍କ ଆତ୍ମା ସମାନ, ତାହାହେଲେ ଶିଶୁ ଓ ବୟୋବୃଦ୍ଧ ମଧ୍ୟରେ ପ୍ରଭେଦ ନ ଥାନ୍ତା । ବଧିର, ମୂକ, ଜଡ଼ର ତ ମଧ ଆତ୍ମା ଅଛି । ଯେବେ ସେମାନଙ୍କର ଆତ୍ମା ଜ୍ଞାନବାନ୍ ହୁଅନ୍ତା, ତାହାହେଲେ ସେମାନଙ୍କର କାର୍ଯ୍ୟକଳାପ ଜ୍ଞାନବାନ୍ ପରି ହୁଅନ୍ତା । ଯେତେ ତତ୍ତ୍ୱ କରି ଦେଖ, ଶରୀର ଭିନ୍ନ ଆତ୍ମାର ସ୍ୱାତନ୍ତ୍ର୍ୟ ନାହିଁ । ଯେତେ ଯାହା ବୋଲ, ବ୍ୟକ୍ତିଗତ ଆତ୍ମା ଶରୀର ଅତିରିକ୍ତ କୌଣସି ବସ୍ତୁ ନୁହେଁ ।

"ମୃତର ପୁନର୍ଜନ୍ମ ଅସମ୍ଭବ । କିଏ ଜନ୍ମ ହେବ ? ଶରୀର ? ତାହାର ତ ଧ୍ୱଂସ ହେଲା । ଆତ୍ମାର ପୁନର୍ଜନ୍ମ ହେବ ? ଆତ୍ମାର ଅସ୍ତିତ୍ୱ କାହିଁ ? ମନୁଷ୍ୟ ଯେପରି ସଂସାରରେ ସ୍ୱତନ୍ତ୍ର ଭାବରେ ରହି ବିଚରଣ କରୁଅଛି, ଆତ୍ମା ମଧ କି ଅନ୍ୟ ଆତ୍ମାଠାରୁ ସ୍ୱତନ୍ତ୍ର ଥାଏ ଏବଂ ଅପର ସ୍ଥାନରେ ଜନ୍ମଗ୍ରହଣ କରେ ? ଯେମନ୍ତ ମନୁଷ୍ୟମାନେ ଜଣ ଜଣ ହୋଇ ଅଛନ୍ତି, ଆତ୍ମା ମଧ ପୁନର୍ଜନ୍ମ ପୂର୍ବରୁ ଅଲଗା ଅଲଗା ହୋଇ ବାସ କରନ୍ତି କି ? ପାଞ୍ଚଗୋଟି ଇଷ୍ଟକ ଏକତ୍ର ଅଛି, ଏକତ୍ର ଥିଲେ ମଧ ସ୍ୱତନ୍ତ୍ର ବୋଲି ବୁଝା ଯାଉଅଛି । ପାଞ୍ଚଟି ଇଷ୍ଟକକୁ ଗୁଣ୍ଡ କରିଦେଲେ କେଉଁ ଗୁଣ୍ଡ କେଉଁ ଇଷ୍ଟକର ଗୁଣ୍ଡ ବୋଲି ବୁଝାଯାଏ କି ? ପୁଷ୍କରିଣୀରୁ ଏକ କଳଶ ଜଳ ପାତ୍ରରେ

ରଖି ମୋର ଜଳ— ମୋର ଜଳ ବୋଲି ଲୋକ କହୁଥାଏ, ତାହା ପଡ଼ି ପୁଷ୍କରିଣୀର ଜଳ ସହିତ ମିଶ୍ରିତ ହେଲେ ସେହି ଜଳର ସ୍ୱତନ୍ତ୍ର ପରିଚୟ ମିଳେ କି ? ଏବଂ ସେହି ଜଳକୁ ଲୋକ ପୁନରୁଦ୍ଧାର କରିପାରେ କି ? ମୋର ଏକ ବସ୍ତା ଲବଣ ସମୁଦ୍ର କୂଳରେ ରଖା ଥିଲା । ସମୁଦ୍ରର ଢେଉ ସେହି ବସ୍ତାକୁ ଧୌତ କରି ନେଲା, ସମୁଦ୍ରଲବଣ ମଧ୍ୟରୁ ମୋର ଲବଣ ସ୍ୱତନ୍ତ୍ର ରହିଲା କି ? ଶରୀରର ଫୁସ୍‌ଫୁସ୍ ମଧ୍ୟରେ ଥିବାଯାଏ ନିଶ୍ୱାସ ବାୟୁ ମୋର, ମାତ୍ର ପ୍ରଶ୍ୱାସରୂପେ ବହିର୍ଗତ ହେଲେ ଅନନ୍ତ ବାୟୁମଣ୍ଡଳରେ ମୋର ପ୍ରଶ୍ୱାସ ବାୟୁ ସ୍ୱତନ୍ତ୍ର ରହିଲା କି ? ପୁଷ୍କରିଣୀରେ ପତିତ ମୋର କଳସଜଳ ଯେବେ ମୋର ନୁହେଁ, ଅନନ୍ତ ସାଗରରେ ମିଶ୍ରିତ ମୋର ଲବଣ ଯେବେ ମୋର ନୁହେଁ, ଅନନ୍ତ ବାୟୁମଣ୍ଡଳରେ ମିଶ୍ରିତ ପ୍ରଶ୍ୱାସବାୟୁ ଯେବେ ମୋର ନୁହେଁ, ତତୋଽଧିକ ବ୍ୟାପକ ଆତ୍ମା ମୋର ସ୍ୱତନ୍ତ୍ର ଆତ୍ମା କିପରି ହେବ ? ଜଳ ଯେପରି ଜଳରେ ମିଶିଯାଏ, ବାୟୁ ଯେପରି ବାୟୁରେ ମିଶିଯାଏ, ଆତ୍ମା ତଦ୍ରୂପ ବିଶ୍ୱାତ୍ମାରେ ମିଶିଯିବ, ମାତ୍ର ସେ ସ୍ୱତନ୍ତ୍ର ହୋଇ ରହିପାରିବ ନାହିଁ । ସ୍ୱତନ୍ତ୍ର ହୋଇ ପୁନର୍ଜନ୍ମ ଲାଭ କରିପାରିବ ନାହିଁ । କଳସରେ ଜଳ ଥିବାଯାଏ କଳଶ ଦେଖି ବ୍ୟକ୍ତିଗତ ଭାବରେ ଜଳ କଳସଦ୍ୱାରା ପରିଚିତ ହେଉଥାଏ, ଗୋଟାଏ ଜଳାଧାରରେ ତାହା ସବୁ ପୂର୍ଣ୍ଣ କଲାରୁ ସ୍ୱତନ୍ତ୍ର ଭାବରେ କେଉଁ ଜଳ କାହାର ଚିହ୍ନାଯାଏ ନାହିଁ । ତଦ୍ରୂପ ଆତ୍ମା ଶରୀର ମଧ୍ୟରେ ଥିବାଯାଏ ସ୍ୱତନ୍ତ୍ର ନାମରେ ଅଭିହିତ ହେଉଥାଏ, ମୃତ୍ୟୁ ପରେ (ଶରୀର ନଷ୍ଟ ହେଲାରୁ) ବିଶ୍ୱାତ୍ମା ସହିତ ମିଶ୍ରିତ ହୁଏ, ମାତ୍ର ସ୍ୱତନ୍ତ୍ର ଭାବରେ ରହେ ନାହିଁ । ଯାହା ସ୍ୱତନ୍ତ୍ର ନୁହେଁ, ତାହା ସ୍ୱତନ୍ତ୍ର ଭାବରେ ଜନ୍ମି ନ ପାରେ । ବ୍ୟାପକ ବସ୍ତୁ ବ୍ୟାପ୍ତ ଅବସ୍ଥାରେ ସ୍ୱତନ୍ତ୍ର ନାମ ନେଇ ନପାରେ, ସ୍ୱତନ୍ତ୍ର ଭାବରେ ପରିଚିତ ହୋଇ ନ ପାରେ, ସ୍ୱତନ୍ତ୍ର ରହି ନ ପାରେ । ମୃତ୍ୟୁ ଉତ୍ତାରୁ ଆତ୍ମାର ବ୍ୟକ୍ତିଗତ ସତ୍ତା ସ୍ୱୀକାର କରିବା ବୃଥା— ପୁନର୍ଜନ୍ମ ମାନିବା ଭ୍ରମ ମାତ୍ର ।

''ମୁଁ ଥିଲି, ମୁଁ ନାହିଁ । ମୁଁ ମନୁଷ୍ୟରୂପରେ ନାହିଁ । ମାତ୍ର ମୋର ସତ୍ତା ନଷ୍ଟ ହୋଇନାହିଁ । ସଂସାରରେ ସମସ୍ତ ହିଁ ଅବିନଶ୍ୱର । କାଲି ଯେପରି ଥିଲି, ଆଜି ସେପରି ନାହିଁ । ମାତ୍ର ଯେ କୌଣସି ପ୍ରକାରେ ହେଉ, ଯେ କୌଣସି ଅବସ୍ଥାରେ ହେଉ, ମୁଁ ଅଛି । ମୋର ନାଶ ନାହିଁ, ମୋର ଆକାରର ନାଶ । ବସ୍ତୁ ଓ ଶକ୍ତିର ସମାବେଶରୁ ମୋର ଶରୀର ଧାରଣ, ବିଶ୍ଲେଷଣରୁ ମୋର ଶରୀରର ନାଶ—ଶରୀରର ନାଶ ସଙ୍ଗେ ସଙ୍ଗେ ଯାବତୀୟ କାର୍ଯ୍ୟକଳାପର ଅପଶମ । ମୋର ଶରୀରର ଯାବତୀୟ ପରମାଣୁ ସ୍ୱଜାତୀୟ ପରମାଣୁମାନଙ୍କ ସହିତ ମିଳିତ ହେବାକୁ ଅଗ୍ରସର ହେଲେ । ସେମାନଙ୍କର ମିଳନରୁ ମୋ ଅପେକ୍ଷା ମହତ୍ତର ସୃଷ୍ଟି ହୋଇପାରିବ । ମୋର ଶରୀରର ସାମୟିକ ଅଦର୍ଶନ ନୂତନ ସୃଷ୍ଟିର ସହାୟ ହେବ । ବସ୍ତୁ ଓ ଶକ୍ତି-ସମଷ୍ଟିର ଅଂଶ ଯାହା ମୋର ଶରୀର ରୂପରେ ବିଦ୍ୟମାନ ଥିଲା, ତାହା ସ୍ୱତନ୍ତ୍ର ହେବାରୁ ଏହି ସଂସାରର ବହୁ ଉପକାର ସାଧନ କରିପାରିବ, ଯାହା ମନୁଷ୍ୟ ଶକ୍ତିର ଚିନ୍ତାତୀତ ।

''ମୁଁ ତୁମ୍ଭ ପାଖରେ ନ ଥିଲି । ତୁମ୍ଭର ଅଦେଖା ସ୍ଥାନରେ ମୁଁ ଥିଲି, ଏହି ବିଶ୍ୱାସ ତୁମ୍ଭ ହୃଦୟରେ ସ୍ଥାନ ପାଇଥିବାରୁ ତୁମ୍ଭେ ମହାସୁଖରେ ଥିଲ । ସେତେବେଳେ ମୋତେ ନ ଦେଖି ତୁମ୍ଭେ ସୁଖୀ ଥିଲ । ଏବେ ମଧ୍ୟ ମୋତେ ଦେଖିପାରିବ ନାହିଁ । ମାତ୍ର ଅଛି ବୋଲି ଭାବି ନେଇ ସୁଖୀ ହେବ ନାହିଁ କାହିଁକି ? ମୁଁ ସ୍ୱାମୀ ଗୃହରେ ଥିଲି, ମାତ୍ର କି ଅବସ୍ଥାରେ ଥିଲି, କିପରି ଥିଲି, ତୁମ୍ଭକୁ ଜଣା ନ ଥିଲା । ଅଥଚ ଅଛି, ଏହି ବିଶ୍ୱାସରେ ସୁଖୀ ଥିଲ । ବର୍ତ୍ତମାନ ମଧ୍ୟ ମୋର ପ୍ରତ୍ୟେକ ପରମାଣୁ ଅକ୍ଷୁଣ୍ଣ ଭାବରେ ବିଦ୍ୟମାନ ଅଛନ୍ତି, ପୂର୍ବ ଅପେକ୍ଷା ନିଶ୍ଚିନ୍ତ ଭାବରେ ଅଛନ୍ତି, ଏହି ସୃଷ୍ଟିର ନାନାବିଧ ସହାୟତା କରିବାରେ ଅଗ୍ରସର ହୋଇଅଛନ୍ତି । ଅଥଚ ତୁମ୍ଭେ ଦୁଃଖ କରିବାର କାରଣ କଣ ? ସଂସାରର ସ୍ଥାବର ଜଙ୍ଗମର ଅନ୍ତିମ ଦଶା ଯାହା, ଜନ୍ମ ହେବା ମାତ୍ରେ ଜୀବ ଯେଉଁ ଅବସ୍ଥାକୁ ନିଶ୍ଚୟ ପ୍ରାପ୍ତ ହେବ, ଯାହା ଧ୍ରୁବ, ସେହି ଅବସ୍ଥାକୁ ମୁଁ ପ୍ରାପ୍ତ ହୋଇଅଛି । ଏଥି ନିମନ୍ତେ ଚିନ୍ତା କରିବାର କାରଣ କଣ ? ପ୍ରାତଃକାଳରୁ ସମସ୍ତେ କାର୍ଯ୍ୟରେ ଯାଇଥାନ୍ତି ! କେହି ରାତ୍ରରେ ଶୀଘ୍ର ଶୟନ କଲେ ଅନ୍ୟମାନେ ଦୁଃଖିତ ହୁଅନ୍ତି କି ? ଆମ୍ଭେମାନେ ସମସ୍ତେ ସଂସାରରୂପ କାର୍ଯ୍ୟକ୍ଷେତ୍ରରେ ଜନ୍ମଗ୍ରହଣ କରିଥାଉଁ, ଏଥିରୁ ଜଣେ କେହି ଆଗରୁ ମହା ନିଦ୍ରାରେ ଅଭିଭୂତ ହେଲେ ଅନ୍ୟମାନେ ତ ଦୁଃଖ କରିବାର କାରଣ ନାହିଁ । ମୁଁ ଆଗ ଶୟନ କଲି, ଏଥି ନିମନ୍ତେ ଦୁଃଖ କାହିଁକି ?

''ଭୂତପ୍ରେତ ସ୍ୱର୍ଗ ନରକ ବିଶ୍ୱାସ ସଂସ୍କାରାଧୀନ । ଏଣୁ ବିଭିନ୍ନ ଜାତି ମଧ୍ୟରେ ବିଭିନ୍ନ ଧର୍ମରେ ବିଭିନ୍ନ ପ୍ରକାର ବିଶ୍ୱାସ ଅଛି । ଯେଉଁମାନେ ଭୂତ ବିଶ୍ୱାସ କରନ୍ତି, ସେମାନେ ନିଜର ପ୍ରକୃତିକୁ ମୃତବ୍ୟକ୍ତିଠାରେ ଦେଖନ୍ତି । ମନୁଷ୍ୟ ଯେମନ୍ତ ଦର୍ପଣରେ ନିଜର ହର୍ଷପୂର୍ଣ୍ଣ ମୁଖ ଓ ବିକୃତ ମୁଖ ଦେଖେ, ଭୂତବିଶ୍ୱାସିଗଣ ମୃତବ୍ୟକ୍ତି ପ୍ରତି ସାଦୃଶ ଆଚରଣ କରିଥାନ୍ତି, ତାହା ଚିନ୍ତା କରି ନିଜର ପ୍ରକୃତିର ପ୍ରତିବିମ୍ବ ମାତ୍ର ଦେଖନ୍ତି । ମୃତବ୍ୟକ୍ତିର ଅସ୍ତିତ୍ୱ ନାହିଁ, ସୁତରାଂ ସେ କିଛି କରେ ନାହିଁ; ମାତ୍ର ତାହାର ଜୀବିତାବସ୍ଥାରେ ଯେଉଁମାନେ ତାହା ପ୍ରତି ଘୃଣା

ଅବମାନନା କରନ୍ତି, ତାହା ପ୍ରତି ଈର୍ଷାନ୍ୱିତ ହୋଇ ତାହାର ମନଃକଷ୍ଟ, ଯନ୍ତ୍ରଣାର କାରଣ ହୋଇଥାନ୍ତି, ସେହିମାନେ ମୃତବ୍ୟକ୍ତିର ପ୍ରତିହିଂସାକୁ ମନ ମଧ୍ୟରେ ଚିନ୍ତା କରି କରି ନିଜ ମନ୍‌ରେ ଗୋଟିଏ ଭୂତ କଳ୍ପନା କରି ଅଶାନ୍ତି ଭୋଗ କରନ୍ତି । ଯେଉଁମାନେ ନିଜକୁ କାହାରି ପ୍ରତିହିଂସା ବୋଲି ମନେ କରନ୍ତି ନାହିଁ, କାହାରି ପ୍ରତିହିଂସା ବୋଲି ମନେ କରନ୍ତି ନାହିଁ, କାହାରି ଅନିଷ୍ଟ ଚିନ୍ତା କରନ୍ତି ନାହିଁ, ସେମାନେ ଭୂତ-ଭୟ କରିବେ କାହିଁକି ? ତେବେ ବାଲ୍ୟକାଳରୁ ବନୁଷ୍ୟ ବୟସ୍କ ଲୋକଙ୍କଠାରୁ ଭୂତପ୍ରେତ କଥା ଶୁଣି ଶୁଣି ମନରେ କିଞ୍ଚିତ୍ ବିଶ୍ୱାସ ସଞ୍ଚୟ କରି ରଖେ ।

''ସ୍ୱର୍ଗ ବା ନରକ କି କେହି ଦେଖିଅଛି ? କେହି ନରକରୁ ସ୍ୱର୍ଗକୁ ଯାଇ ପୁଣି ମର୍ତ୍ତ୍ୟକୁ ଫେରିଆସି ଉଭୟ ସ୍ଥାନର ବର୍ଣ୍ଣନା କରିଅଛି ? ତାହା ତ ନୁହେଁ । ସୁତରାଂ ଏହା ଯେ ସମ୍ପୂର୍ଣ୍ଣ କଳ୍ପନା, ଏଥିରେ ତିଳେମାତ୍ର ସନ୍ଦେହର କାରଣ ନାହିଁ । ଅନେକଗୁଡ଼ିଏ ସ୍ୱର୍ଗ, ଅନେକଗୁଡ଼ିଏ ନରକ ନ ଥିବ । ଗୋଟାଏ ସଭ୍ୟ ଜାତିର ସ୍ୱର୍ଗ, ଗୋଟିଏ ଅସଭ୍ୟ ଜାତିର ସ୍ୱର୍ଗ ନ ଥିବ । ଗୋଟିଏ ହିନ୍ଦୁର ସ୍ୱର୍ଗ, ଗୋଟିଏ ମୁସଲମାନର ସ୍ୱର୍ଗ, ପୁଣି ଗୋଟାଏ ଖ୍ରୀଷ୍ଟିଆନର ସ୍ୱର୍ଗ ନଥିବ । ମାତ୍ର ସ୍ୱର୍ଗ ନରକର ଧାରଣା ବିଭିନ୍ନ ଧର୍ମରେ ବିଭିନ୍ନ ପ୍ରକାର । ସୁତରାଂ ଏହା କଳ୍ପନା ମାତ୍ର ଏବଂ ଏଥିର ବିଶ୍ୱାସ ସଂସ୍କାରାଧୀନ । ଲୋକେ ବୋଲନ୍ତି, ସ୍ୱର୍ଗସୁଖର ଧାରଣା ନ ଥିଲେ ମନୁଷ୍ୟ ହତାଶ୍ୱାସ ହେବ । ଏହା ମଧ୍ୟ ଗୋଟିଏ ଅମୂଳକ ବିଶ୍ୱାସ । ଯେହେତୁ କ'ଣ କଲେ ସ୍ୱର୍ଗଲାଭ ହେବ, ଏହା କାହାରିକୁ ଜଣା ନାହିଁ । ବିଭିନ୍ନ ଧର୍ମରେ ସ୍ୱର୍ଗସୁଖ ପାଇବାର ଉପାୟ ବିଭିନ୍ନ ପ୍ରକାର । ଏଥିରେ ଲୋକ ଆଶ୍ୱସ୍ତ ହେବାର କିଛି କାରଣ ନାହିଁ । ସ୍ୱର୍ଗସୁଖହିଁ ବା କି ସୁଖ, ତାହା ପୁଣି ଲାଭ ହେବ କି ନାହିଁ, ଏହା ସାଧକର ଅଜଣା— ଏପ୍ରକାର ଅଜଣା କାର୍ଯ୍ୟରେ ବ୍ରତୀ ହୋଇ ତାହାର ଫଳଲାଭ ହେଲା କି ନାହିଁ, ତାହା ପୁଣି ଫଳଭୋଗକାରିର ଅଜ୍ଞେୟ । ସୁତରାଂ ଏହି କଳ୍ପନା ଉପରେ ବୃଥା ଆସ୍ଥା ସ୍ଥାପନରେ ଫଳ କଣ ? ସ୍ୱର୍ଗସୁଖହିଁ ବା କି ସୁଖ ? ଖ୍ରୀଷ୍ଟିଆନର ଶବ ଅସଂଖ୍ୟ ବର୍ଷ କବର ଭିତରେ ପଡ଼ି ରହିବ, ଆତ୍ମା କେଉଁଠାରେ ବିଚରଣ କରୁଥିବ, ସେହି ଶେଷ ବିଚାର ଦିନରେ ଡକାଯିବ । ସେହି ବିଚାରରେ ତାହାର ସ୍ୱର୍ଗଲାଭ ହୋଇପାରେ କିମ୍ବା ଅନନ୍ତକାଳ ନରକଭୋଗ ହୋଇପାରେ । ଏ ଆଶାରେ ବା ଫଳ କଣ ? ଅପରାଧର ଧର୍ମବିହିତ ସ୍ୱର୍ଗସୁଖ ଆଶା ମଧ୍ୟ ଆଶ୍ୱାସପ୍ରଦ ନୁହେଁ । ମନୁଷ୍ୟ କଳ୍ପନାବଳରେ ସୁଖକୁ ଉତ୍ତରୋତ୍ତର ବୃଦ୍ଧି କରି ଚରମ ସୁଖକୁ ସ୍ୱର୍ଗସୁଖ ନାମରେ ଅଭିହିତ କରିଅଛି । ପ୍ରକୃତ ପକ୍ଷରେ ସେ ସୁଖ ସୁଖ ନୁହେଁ । ସେ ଆଶା ବୃଥା ଆଶା । ମାନବ ନିଜେ ନିଜର ସ୍ୱର୍ଗ ନରକ ସୃଷ୍ଟି କରେ ।

''ସେହି ବିଶ୍ୱଶକ୍ତିର, ବିଶ୍ୱବସ୍ତୁର ଆଂଶିକ ସଂଯୋଗରେ ମୋର ଶରୀରଧାରଣ ହୋଇଥିଲା । ଯଦି ମୋର ସମଜାତୀୟ ଶକ୍ତି ଓ ବସ୍ତୁର କିଞ୍ଚିତ୍ ସହାୟତା କରିବାରେ ମୁଁ ସମର୍ଥ ହୋଇଥାଏଁ, ତାହାହେଲେ ମୋର ମାନବଜନ୍ମ ସାର୍ଥକ ହେଲା । ମାନବଜାତିର ଉପକାର ହିଁ ମୋର କର୍ତ୍ତବ୍ୟ କାର୍ଯ୍ୟ, ତାହା କରିପାରିଥିଲେ ମୋର ଐହିକ କାର୍ଯ୍ୟ ସମ୍ପାଦନ କଲି । ଏହା ମୋର ଐହିକ ସୁଖ । ମୋର ପାରତ୍ରିକ ସୁଖ ଆଶା ସ୍ୱର୍ଗ ନୁହେଁ । ସ୍ୱର୍ଗସୁଖର ଆଶା ସ୍ୱାର୍ଥଜଡ଼ିତ । ମୋର ଆଶା ସ୍ୱାର୍ଥଜଡ଼ିତ ନୁହେଁ । ବିଶ୍ୱଶକ୍ତି ଯେଉଁ ପଥରେ ଧାବିତ, ମୋର ଶକ୍ତି ସେହି ପଥର ପଥିକ । ମୋର ଆଶାର ସୀମା ନାହିଁ । ଅସୀମ ମୋର ସ୍ୱର୍ଗ, କଳ୍ପିତ ସ୍ୱର୍ଗ ନୁହେଁ । ମୋର ଶରୀରରେ ବିଶ୍ୱଶକ୍ତି ବ୍ୟକ୍ତି ରୂପରେ ଆବଦ୍ଧ ଥିଲା । ଯେମନ୍ତ ବୃକ୍ଷ ବହୁବର୍ଷ ସୂର୍ଯ୍ୟର ତାପ ପାନ କରି ଉତ୍ତାପଶକ୍ତି କି ସଞ୍ଚୟ କରି ରଖିଥାଏ, ପୁଣି ନିଜେ ଦଗ୍ଧ ହେବାଦ୍ୱାରା ଅନେକଙ୍କର ଉପକାର ସାଧନ କରି ସେହି ବିଶ୍ୱଶକ୍ତି ସହିତ ମିଶିଯାଏ, ସେହିପରି ମୋର ଶରୀରସ୍ଥ ଶକ୍ତି ଓ ବସ୍ତୁସମୂହ ବର୍ତ୍ତମାନ ସ୍ୱାଧୀନତା ଲାଭ କରିଥାଆନ୍ତି । 'ମୁଁ' ଏକଦ୍ୱାରା ଯେଉଁ ଉପକାର ସାଧିତ ହେଉ ନ ଥିଲା, ମୋର ନାଶରେ ତଦପେକ୍ଷା ଲକ୍ଷ ଲକ୍ଷ ଗୁଣ ଉପକାର ସାଧିତ ହେବ । ମୋର କେତେକ ପରମାଣୁ ସମଜାତୀୟ କେତେକ ପରମାଣୁ ସହିତ ମିଳିତ ହୋଇ ଶ୍ୟାମଳ କୋମଳ ତୃଣକ୍ଷେତ୍ରମାନ ଉତ୍ପାଦନ କରିବେ । ତାହା ଅନେକ କ୍ଷୁଧିତ ପ୍ରାଣୀ ଭକ୍ଷଣ କରି ତୃପ୍ତିଲାଭ କରିବେ । ଏହା କି ସ୍ୱର୍ଗସୁଖ ଆଶାରୁ ଭଲ ନୁହେଁ ? ପୁଣି ମୋର ପରମାଣୁ ମଧ୍ୟରୁ କିଛି ମିଳିତ ହୋଇ କେତେ ମହାପୁରୁଷଙ୍କୁ ଜନ୍ମ ଦେଇପାରିବ, ଯେଉଁମାନଙ୍କ ଦ୍ୱାରା ବହୁ ଉପକାର ସାଧିତ ହେବ । ଏତିକି କାହିଁକି, ମୋର ସେହି ଶକ୍ତି କ୍ରମେ କ୍ରମେ ବିଶ୍ୱର ଈଦୃଶ ସହାୟତା କରୁ କରୁ ଅବଶେଷରେ ଉଚ୍ଚତର ଉନ୍ନତି ଆଡ଼କୁ ଅଗ୍ରସର ହେବ । ଏହି ପୃଥିବୀ ମୋପରି ନିଜ ଶରୀରର ଧ୍ୱଂସ ସାଧନ କରିବ, ସୌରଜଗତ୍ ସହିତ ମିଳିତ ହେବ । ଯେଉଁ ସୂର୍ଯ୍ୟ ଆଜି କୋଟି କୋଟି ମାଇଲ ଦୂରରେ ଅବସ୍ଥିତ, ସେ ମଧ୍ୟ ମୋ ସହିତ ମିଳିତ ହେବ । ସେ ଏକ ମହାମିଳନ—ଆଶାତୀତ ମିଳନ । ସେହି ମିଳନ ଉତ୍ତାରୁ ପୁଣି ସୃଷ୍ଟି— କୋଟି କୋଟି ବର୍ଷ ବ୍ୟୟିତ ହେବ । ସେହି କୋଟି କୋଟି ବର୍ଷ ମୁଁ ବିଦ୍ୟମାନ ଥିବି । ରୂପର ନାଶ, ମୋର ନାଶ ନୁହେଁ । ଏଥି ନିମନ୍ତେ ଚିନ୍ତା କାହିଁକି ?

''ଆତ୍ମାପ୍ରସାଦ ମୋର ସୁଖ । ମୃତ୍ୟୁ ପୂର୍ବରେ ବା ସମୟରେ ଯେ ନିଜର ଗତ ସୁକୃତମାନ ସ୍ମରଣ କରି ମୃତ ହେଲା, ସେହି ତ ସ୍ୱର୍ଗସୁଖ ଅନୁଭବ କରି ମୃତ ହେଲା । ମୁଁ ଅଳ୍ପକାଳ କେବଳ ସଂସାରରେ ଥିଲି । କାହାରି ଉପକାର କରିଥାଏଁ ବା ନ ଥାଏଁ, କିନ୍ତୁ କାହାରି ଅପକାର କରି ନାହିଁ । ଏହି ଭାବନା ତ ମୋର ଗୋଟିଏ ସ୍ୱର୍ଗସୁଖ । ମୁଁ କାହାରି ଅପକାର କରି ନାହିଁ, ଏହି ଚିନ୍ତା ଯେବେ ମୋର ହୃଦୟରେ ଅସାଧାରଣ ସୁଖ ଆନୟନ କଲା, ଯେଉଁମାନେ ପରର ଉପକାର ନିମନ୍ତେ ଆତ୍ମବଳି ଦେଇଅଛନ୍ତି, ନିଜର ଯାବତୀୟ ସୁଖସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିଅଛନ୍ତି, ସେମାନେ ଏହା ଭାବିଲେ କି ସୁଖ ଅନୁଭବ କରୁ ନ ଥିବେ ? ବାବା, ତୁମ୍ଭର ହୃଦୟ ମୋର ସ୍ୱର୍ଗ । ମୋର ମା'ର ହୃଦୟ ମୋର ସ୍ୱର୍ଗ । ମୁଁ ଭାବି ଦେଖିଅଛି ଯେ, ମୁଁ ଜୀବିତ ଥିଲା ବେଳେ ତୁମ୍ଭେ ଯେତିକି ସୁଖ ପାଉଥିଲ, ତଦପେକ୍ଷା ଅଧିକ ସୁଖ ପାଇବ. ମୋ ପ୍ରତି ଅଧିକ ସ୍ନେହଭାବ ବହିବ, ମୋର ଛବି ଦେଖି ଜୀବନବ୍ୟାପୀ ଲୋତକ ବର୍ଷଣ କରୁଥିବ । ଏହି ଚିନ୍ତା ତ ମୋର ସ୍ୱର୍ଗ । ତୁମ୍ଭମାନଙ୍କ ହୃଦୟରେ ମୁଁ ସ୍ୱର୍ଗସୁଖ ଭାବି ଏଡ଼େ ସୁଖୀ । ଯେଉଁମାନେ ପୃଥିବୀର ଅସଂଖ୍ୟ ଲୋକଙ୍କ ହୃଦୟରେ ତଦ୍ରୂପ ସ୍ୱର୍ଗ ଦେଖି ମୃତ ହୋଇଥିବେ, ସେମାନେ କେଡ଼େ ସୁଖରେ ଇହସଂସାର ତ୍ୟାଗ କରି ନ ଥିବେ ? ମୋ ନିମନ୍ତେ ତୁମ୍ଭେ ଜଣକେତେ ଲୋତକ ବର୍ଷଣ କରିବ, ଏହା ଭାବି ଯେବେ ମୁଁ ସୁଖୀ , ଯେଉଁମାନଙ୍କ ନିମନ୍ତେ ଏହି ସଂସାରର ଅସଂଖ୍ୟ ଲୋକ ଲୋତକ ବର୍ଷଣ କରିଅଛନ୍ତି ବା କରିବେ, ସେମାନେ କେଡ଼େ ସୁଖୀ ନୁହନ୍ତି ? ପରୋପକାର ମହାଧର୍ମ, ସ୍ୱାର୍ଥତ୍ୟାଗ ହିଁ ମହାଧର୍ମ, ସ୍ୱାର୍ଥଶୂନ୍ୟ କର୍ତ୍ତବ୍ୟପାଳନ ହିଁ ମହାଧର୍ମ ।

ମୋର ଶରୀର ସୂକ୍ଷ୍ମାବୟବରେ ପରିଣତ ହୋଇଅଛି । ମୋର ଶକ୍ତି ବା ଆତ୍ମା ବିଶ୍ୱଶକ୍ତି ବା ବିଶ୍ୱାତ୍ମା ସହିତ ମିଳିତ ହୋଇଅଛି । ମୋର ବ୍ୟକ୍ତିଗତ ରୂପ ନାହିଁ, ତଥାପି ମୋର ସତ୍ତାର ଧ୍ୱଂସ ହୋଇ ନାହିଁ । ମୁଁ (ଶକ୍ତି ଓ ବସ୍ତୁର ସମଷ୍ଟି) ବିଦ୍ୟମାନ ଅଛି । ଏହା ସମସ୍ତଙ୍କର ଅନ୍ତିମ ପରିମାଣ ।

''ଅବିନାଶି ତୁ ତଦ୍‌ବିଦ୍ଧି ଯେନ ସର୍ବବିଦଂ ତତମ୍ ।
ବିନାଶମବ୍ୟୟସ୍ୟାସ୍ୟନ କଶ୍ଚିତ୍ କର୍ତ୍ତୁମର୍ହତି ।''

ମୁଁ ଅଛି; ଏଣୁ ଚିନ୍ତା କର ନାହିଁ । ଚିନ୍ତା ତ୍ୟାଗ କର ଏବଂ ଏହି ଭାବରେ ଶରୀର ଆତ୍ମା ସ୍ୱର୍ଗ ନରକ ପୁନର୍ଜନ୍ମର ଭାବନା କରି ନିଜର କର୍ତ୍ତବ୍ୟ ପଥରେ ଅଗ୍ରସର ହୁଅ । ସ୍ୱାର୍ଥତ୍ୟାଗ କର, ସ୍ପୃହାଶୂନ୍ୟ ହୋଇ ମାନବଜାତିର ଉପକାର ସାଧନରେ ବ୍ରତୀ ହୁଅ । ଆତ୍ମଗ୍ଲାନିର ମୂଳୋତ୍ପାଟନ କର ଏବଂ ଦୁଃଖଧ୍ୱଂସର ଉପାୟ ଉଦ୍ଭାବନ କର ।''★

●

★ ମାର୍ଚ୍ଚ ମାସରେ ମୋର ଜ୍ୟେଷ୍ଠା କନ୍ୟାର ଜନ୍ମ । ୧୯୧୩ ନଭେମ୍ବର ମାସରେ ବିବାହ ଏବଂ ୧୯୧୪ ଫେବୃୟାରି ୨୭ ତାରିଖରେ ତାହାର ସ୍ୱାମୀ ଗୃହରେ ମୃତ୍ୟୁ । ମୁଁ ତାହାରି ଶୋକରେ ଅଧୀର ହୋଇ ଯେଉଁ ଭାବନା କରୁଥିଲି; ଏହା ତାହାର ଫଳ ବୋଲିବାକୁ ହେବ । ଏହା ୧।୩।୧୪ରେ ଲିଖିତ ହୋଇଥିଲା । ପ୍ରକାଶ କରିବା ଇଚ୍ଛାରେ ଲେଖି ନଥିଲି, ଏଣୁ ବସ୍ତାନୀରେ ପଡ଼ି ରହିଥିଲା । ମାତ୍ର ଥରକୁ ଥର ନଜରରେ ପଡ଼ିବାରୁ ପ୍ରକାଶ କରିବାକୁ ପ୍ରବୃତ୍ତ ହେଲା । ଏହା ପ୍ରକାଶ କରିବାର ଅନ୍ୟ ଉଦ୍ଦେଶ୍ୟ କିଛି ନାହିଁ, ତାହାରି ଶୋକରେ ଉଦ୍ଭାବାନୁପ୍ରାଣିତ ହୋଇ ଯାହା ଲେଖିଥିଲି, ତାହା ତାହାର । ଏହା ପ୍ରକାଶ ନ କଲେ ତାହାରି ଭାବ ଗୋପନ କରିବା ଦୋଷରେ ଲିପ୍ତ ହେବାକୁ ହେବ । ଏହି ପ୍ରବନ୍ଧରେ ଯଦି କିଛି ସାର କଥା ଥାଏ, ତାହା ମୋର ସେହି ସ୍ନେହମୟୀ କନ୍ୟାର ଏବଂ ଏହି ପ୍ରବନ୍ଧର ଯାବତୀୟ ଦୋଷ ତାହାର ଅନୁତପ୍ତ ମାତ୍ର ବର୍ତ୍ତମାନ ସାନ୍ତ୍ୱନାପ୍ରାପ୍ତ ପିତାର ।

## ସ୍ୱଗତ

ନାଟକରେ 'ସ୍ୱଗତ' ଶବ୍ଦର ବିଶେଷ ବ୍ୟବହାର ଦେଖାଯାଏ । ଯାହା ସଙ୍ଗରେ ଆଳାପ କରାଯାଉଥାଏ, ତଦ୍‌ଭିନ୍ନ ଦର୍ଶକମାନଙ୍କର ଶ୍ରବଣଯୋଗ୍ୟ କଥାର ନାମ ସ୍ୱଗତ । ଆମ୍ଭମାନଙ୍କ ମତରେ ସ୍ୱଗତ କେବଳ ନାଟକୀୟ ଶବ୍ଦ ନୁହେଁ । ଆପେ ଆପେ କଥା ହେବାର ନାମ ସ୍ୱଗତ । ମନେ ମନେ ନ୍ୟାୟ ନିଷ୍ପତ୍ତି କରିବାର ନାମ ସ୍ୱଗତ । ମନେ ମନେ ନ୍ୟାୟ ନିଷ୍ପତ୍ତି କରିବାର ନାମ ସ୍ୱଗତ । ମନୋଗତ ।ବ ଯାହା ସାଧାରଣରେ ବ୍ୟକ୍ତ କରାଯାଇ ନ ପାରେ, ତାହା ସ୍ୱଗତ । ମନେ ମନେ ଯୁକ୍ତି ତର୍କ କରିବାର ସ୍ୱଗତ ।

କର୍ମଠ ବ୍ୟକ୍ତି ମଧ୍ୟ ସମୟ ସମୟରେ ନିଷ୍କର୍ମା ହୋଇ କାଳକ୍ଷେପ କରନ୍ତି । ଏହି ସମୟଟିକ ସ୍ୱଗତର ସମୟ । ନିଜର ଚତୁଃଷଷ୍ଟି ବର୍ଗହସ୍ତ ପରିମିତ କ୍ଷୁଦ୍ର କୋଠରିରେ ନିଷ୍କର୍ମା ଭାବରେ ଗପି ବାତାୟନ ମାର୍ଗ ଦେଇ ଆକାଶକୁ ନିରୀକ୍ଷଣ କଲା ବେଳେ ପ୍ରତ୍ୟେକେ ମନେ କରନ୍ତି, "I am the monarch of all I survey". ବସ୍ତୁତଃ ତାହାହିଁ କୋଠରିଟି, ତହିଁରେ ଥିବା ମାଲମତା ତ ଭାବୁକର; ଆକାଶର ଅଧିକାରୀ ତ ସମସ୍ତେ ।

ହାତରେ ତୋପ ନାହିଁ, ବନ୍ଧୁକ ନାହିଁ, ଢାଲ ନାହିଁ, ତରବାରି ନାହିଁ, ତଥାପି ତୁମ୍ଭେ ମହାଯୋଦ୍ଧା, ସମରନୀତିଜ୍ଞ । ତୁମ୍ଭେ ଜାହାଜ ଦେଖି ନାହିଁ, ସମୁଦ୍ର ଦେଖି ନାହିଁ, ତଥାପି ତୁମ୍ଭେ ଜଳଯୁଦ୍ଧରେ ମନ୍ତବ୍ୟ ଦେଇପାର । ରାଜନୀତିର ପ୍ରକୃତ ସୀମା ସ୍ପର୍ଶ କରି ନାହିଁ, ଅଥଚ ତୁମ୍ଭେ ମହା ରାଜନୀତିଜ୍ଞ । ତୁମ୍ଭର ସ୍ୱଗତ ମଧ୍ୟରେ ଯୁଦ୍ଧର ଆଲୋଚନା, ରାଜନୀତିର ଆଲୋଚନା, କରିବାର ଆଲୋଚନା, ଲେଖାର ଆଲୋଚନା, ବିଜ୍ଞାନର ଆଲୋଚନା ଚାଲିଯାଏ । ତୁମ୍ଭର ସ୍ୱଗତ ମଧ୍ୟରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳର ଆଲୋଚନା ପଡ଼େ, ମାତ୍ର ତାହା ପ୍ରକାଶ କରିବାକୁ ତୁମ୍ଭର ସାହସ ନାହିଁ । ସ୍ୱଗତଃ, ଏଣୁ ମନରେ ଜାତ ହୋଇ ମନରେ ଲୟଥାଏ ।

ଲେଖକର ଆପେ ଆପେ କଥା ହେବାର ଖୁବ୍ ଅଭ୍ୟାସ ଅଛି । ନିଷ୍କର୍ମା ହୋଇ ବସିଥିଲାବେଳେ ସମ୍ମୁଖରେ ଯାହା ପଡ଼ିଥିବ, ତାହା ଓଲଟ ପାଲଟ କରି ଦେଖିବାର ଏବଂ ତତ୍‌ସମ୍ବନ୍ଧରେ ମନେ ମନେ ମନ୍ତବ୍ୟ ଦେବାର ଅଭ୍ୟାସ ମଧ୍ୟ ଅଛି । ସ୍ୱଗତ ବ୍ୟକ୍ତି କରିବା ବଡ଼ କଠିନ ଓ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ । ସ୍ୱଗତ ପରର କର୍ଣ୍ଣଗତ ହେଲେ କେବେ କେବେ ବିରକ୍ତିଜନକ, ହାସ୍ୟୋଦ୍ଦୀପକ ହୁଏ । ତଥାପି ଲେଖକ ଆପଣାର ସ୍ୱଗତ ମଧ୍ୟରୁ କେବେ କେବେ ଗୋଟିଏ ଯୋଡ଼ିଏ ସାହିତ୍ୟରେ ପ୍ରକାଶ କରିବାକୁ ସାହସ କରିଅଛି । ପ୍ରକାଶଯୋଗ୍ୟ କି ନା, ସେ ବିଚାର ସମ୍ପାଦକଙ୍କ ଉପରେ ଏବଂ ପଠନଯୋଗ୍ୟ କି ନା, ସେ ବିବେଚନାର ଭାର ପାଠକଙ୍କ ଉପରେ ।

॥୧॥

ଅଳ୍ପଦିନ ହେଲା ଟେବୁଲ ତଳେ ଖଣ୍ଡେ ଛିନ୍ନ ଅତି କ୍ଷୁଦ୍ରାୟତନ ଛପା କାଗଜ ପଡ଼ିଥିଲା । ଏହା ଛିନ୍ନ ସମ୍ବାଦପତ୍ର । ଏହାର ଅଗମୂଳ କିଛି ନାହିଁ । କ'ଣ ଲେଖା ଅଛି ? "Mr. Woodrow Wilson is Uriya by caste." ଉଡ୍‌ରୋ ଉଇଲସନ ଜାତିରେ ଓଡ଼ିଆ । ଆମେରିକା ଯୁକ୍ତରାଜ୍ୟର ପ୍ରେସିଡେଣ୍ଟ ଜାତିରେ ଓଡ଼ିଆ ! ସଭ୍ୟ ଉଇଲସନ, ବିଜ୍ଞ ଉଇଲସନ, ଦେଶହିତୈଷୀ ଉଇଲସନ, ଶାନ୍ତିପ୍ରିୟ ଉଇଲସନ ଜାତିର ଓଡ଼ିଆ ! ଓଡ଼ିଶାବାସୀ କି ଭାଗ୍ୟବାନ୍, ଯେବେ ସେମାନେ ଉଇଲସନଙ୍କ ପରି ସୁପୁତ୍ର ପାଇଅଛନ୍ତି । ଉଇଲସନଙ୍କ ପରି ସୁପୁତ୍ର ପାଇ ଉତ୍କଳମାତାର ଅଙ୍କ ପବିତ୍ର ହୋଇଅଛି କି ? ଉତ୍କଳମାତାର ଏଡ଼େ ଶୀଘ୍ର ଭାଗ୍ୟର ଉଦୟ ହେଲା କି ? ଉତ୍କଳର ଅଜ୍ଞାନାନ୍ଧକାର ଏଡ଼େ ଶୀଘ୍ର ତିରୋହିତ ହେଲା କି ? ଲେଖକର କଥା ସଫଳ ହେଉ । ଲେଖକର ତୁଣ୍ଡ ସୁତୁଣ୍ଡ ହେଉ । ଉତ୍କଳମାତା, ତୋର ଉଦୟୋନ୍ମୁଖ ପୁତ୍ରଗୁଡ଼ିକ ଉଇଲସନଙ୍କ ପରି ଯୋଗ୍ୟ ହେଉନ୍ତୁ । ସ୍ୱପ୍ନ ! ସ୍ୱପ୍ନ ! ଉଇଲସନ କାହିଁ ? ଓଡ଼ିଆ ଜାତି କାହିଁ ?

ସମ୍ବାଦପତ୍ରର ନାମ କ'ଣ ? ଲେଖକ କିଏ ? କେଉଁଠାରୁ ପ୍ରକାଶିତ ? ଲେଖକର ଅଭିପ୍ରାୟ କ'ଣ ? ଘୃଣାବ୍ୟଞ୍ଜକ, କି ସହାନୁଭୂତିସୂଚକ ? ଉଇଲସନଙ୍କର ସଦ୍‌ଗୁଣପ୍ରକର୍ଷରେ ଲେଖକ ମୋହିତ ହୋଇଥିଲେ ତାହାଙ୍କୁ ନିଜ ମାତାର କ୍ରୋଡ଼ାଭିଷିକ୍ତ ନ କରି ହତଭାଗିନୀ ଉତ୍କଳଜନନୀର କ୍ରୋଡ଼ରେ ବସାଇ ଦିଅନ୍ତେ କାହିଁକି ? ଉଇଲସନଙ୍କର କାର୍ଯ୍ୟକଳାପରରେ ହେଉ, ଆଚାର ବ୍ୟବହାରରେ ବା ପ୍ରଭୃତିରେ ହେଉ, ଲେଖକ ଏପରି କୌଣସି ଦୁର୍ଗୁଣ ଦେଖି ପାରିଅଛନ୍ତି, ଯାହା କେବଳ ଓଡ଼ିଆ ଜାତିରେ ଥିବା ସମ୍ଭବ— ଭାରତର ଅନ୍ୟ ଜାତିରେ ସମ୍ଭବ ନୁହେଁ ।

ଏଣୁ ଯୁକ୍ତରାଜ୍ୟର ପ୍ରେସିଡେଣ୍ଟଙ୍କୁ ଓଡ଼ିଆ ବୋଲିବାକୁ କୁଣ୍ଠିତ ହୋଇ ନାହାନ୍ତି । ଉଇଲସନଙ୍କ ପ୍ରଭୃତି ଓ ଓଡ଼ିଆ ପ୍ରଭୃତି ମଧ୍ୟରେ କି ସାମ୍ୟ ଅଛି, ତାହା କେହି ଜାଣନ୍ତି, ଅଥଚ ଓଡ଼ିଆରୁ ଭିନ୍ନ ଜାତି, ଭିନ୍ନ ଦେଶବାସୀ ତାହା ଲକ୍ଷ୍ୟ କରିଅଛନ୍ତି । ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ ନୁହେଁ କି ? ଓଡ଼ିଶାବାସୀ ଏଥିର ଅନୁସନ୍ଧାନରେ ପ୍ରବୃତ୍ତ ହେବେ କି ?

ଜାତିରେ ଓଡ଼ିଆ, ଏହାର ଅର୍ଥ, କ'ଣ, ତାତ୍ପର୍ଯ୍ୟ କ'ଣ ? ଓଡ଼ିଆ ବାସୀ, କି ଓଡ଼ିଆଭାଷୀ ? ପ୍ରାକୃତିକ ଓଡ଼ିଶାବାସୀ, କି ରାଜନୈତିକ ଓଡ଼ିଶାବାସୀ ? ଓଡ଼ିଶାବାସୀଙ୍କି ଯେବେ ଓଡ଼ିଆ ବୋଲାଯାଏ, ତେବେ ଏ ଦେଶରେ ତ ତ୍ରୈଲଙ୍ଗୀ, ବଙ୍ଗାଳୀ, ମହମ୍ମଦ, ମୁସଲମାନ ଏବଂ ଇରାନମାନେ ବାସ କରୁଅଛନ୍ତି । ଏ ସମସ୍ତେ ଓଡ଼ିଆ କି ? ଓଡ଼ିଶାରେ ପାଦ ଦେବା ମାତ୍ରେ ସମସ୍ତଙ୍କର ପ୍ରଭୃତି ଘୃଣ୍ୟ ଓ ନିନ୍ଦ୍ୟ ହୋଇ ପଡ଼େ କି ? ତାହା ତ ନୁହେଁ । ତେବେ ଓଡ଼ିଆଭାଷୀମାନଙ୍କ ପ୍ରତି ଲେଖକର ଏ କଟାକ୍ଷ କି ? ଉତ୍କଳମାତା, ତୁ କି ହତଭାଗିନୀ ! ତୋର ପୁତ୍ରଗୁଡ଼ିକ ଜଗତରେ ନିନ୍ଦନୀୟ ଏବଂ ତୋର ଆଶ୍ରୟ ନେବା ଲୋକମାନେ ମଧ୍ୟ ନିନ୍ଦନୀୟ ।

ମାତ ଉତ୍କଳ, ଦର୍ପଣ ବିନା ମୁଖ ଦେଖାଯାଇପାରେ ନାହିଁ । ତେମନ୍ତ ଅନ୍ୟ ଜଣେ ଦେଖାଇ ନ ଦେଲେ ନିଜ ଦୋଷ ଦେଖାଯାଇପାରେ ନାହିଁ । ତୋର ସନ୍ତାନମାନଙ୍କଠାରେ ଏପରି କୌଣସି ଦୋଷ ଅଛି, ଯାହା ସେମାନେ ଦେଖିପାରୁ ନାହାନ୍ତି, ମାତ୍ର ତୋର ପ୍ରତିବେଶିନୀ ପୁତ୍ରମାନେ ଦେଖିପାରୁଅଛନ୍ତି । ଓଡ଼ିଆ ଶବ୍ଦଟି ତାଚ୍ଛଲ୍ୟବ୍ୟଞ୍ଜକ କାହିଁକି ? ମା', ତୋର ପୁତ୍ରଗଣ ଏହି ଜାତିଗତ ମହଦୋଷରୁ ଉଦ୍ଧାର ପାଇବେ କି ? କେବେ ? ଭାରତୀୟ ଅନ୍ୟ ଜାତି ଅପେକ୍ଷା ନିକୃଷ୍ଟ ନ ଥିବାର ପରିଚୟ ଦେବେ କି ? କେବେ ?

ସାର୍ ! ଲେଖକ କେଉଁ ଦୋଷ ଦେଖି ଯୁକ୍ତରାଜ୍ୟର ପ୍ରେସିଡେଣ୍ଟଙ୍କୁ ତୋର ପୁତ୍ରମାନଙ୍କର ସମଜାତୀୟ ବୋଲି କହିଲେ, ତାହା ମୋତେ ଜଣା ନାହିଁ । ତୋର ପୁତ୍ରଗଣ କେଉଁ କାରଣରୁ ଭାରତୀୟ ଅନ୍ୟ ଜାତି ଅପେକ୍ଷା ଘୃଣ୍ୟ ଓ ନିନ୍ଦ୍ୟ, ତାହା ମୋତେ ଜଣା ନାହିଁ । ଦୋଷ ନ ଥିବ, ଏପରି କହିପାରୁ ନାହିଁ । ତଥାପି କର୍ଣ୍ଣକୁହରକୁ ଶୁଭୁଅଛି, ହୃଦୟତନ୍ତ୍ରୀରେ ବାଜୁଅଛି, 'ଜାତିରେ ଓଡ଼ିଆ' । ଏହା ବିଦ୍ୱେଷସୂଚକ ଈର୍ଷାକଳୁଷିତ ! ହେଲେ ମଧ୍ୟ ଏହା ଶୁଣି ରୋଷଯୁକ୍ତ ହେବା ଭଲ ନୁହେଁ, ଈର୍ଷାନ୍ୱିତ ହେବା ଭଲ ନୁହେଁ । ଆମ୍ଭମାନଙ୍କର ଦୁର୍ଗୁଣ ଯେଉଁ ବ୍ୟକ୍ତି ଦେଖାଇ ଦେବାକୁ ସମର୍ଥ, ସେ ତ ଆମ୍ଭମାନଙ୍କର ଧନ୍ୟବାଦର ପାତ୍ର । 'ଜାତିରେ ଓଡ଼ିଆ !' 'ଜାତିରେ ଓଡ଼ିଆ' 'Oriya by caste !'

॥୨॥

ପୂଜା, ପୂଜା, ପୂଜା ! ଶରତ୍‌କାଳ ଆସିଲା । ପାର୍ବଣ ଶ୍ରାଦ୍ଧ ଗଲା । ଅଳ୍ପଦିନ ପରେ ପର୍ବତ ରାଜପୁତ୍ରୀ ଅନ୍ନପୂର୍ଣ୍ଣାଙ୍କର ଜନ୍ମଦିବସ ହେବ । ଏହି ରାତ୍ରିର ନାମ କାଳରାତ୍ରି । ଏହି ରାତ୍ରିରେ ଅସଂଖ୍ୟ ପଶୁର ପ୍ରାଣନାଶ ହେବ । ଦେବୀଙ୍କର ତୃପ୍ତି ନିମନ୍ତେ, ନିଜର ଅଭୀଷ୍ଟସିଦ୍ଧି ନିମନ୍ତେ ଲୋକେ ବଳିଦାନ କରିବେ । ଭାରତରେ ସର୍ବତ୍ର ଏହି ଶାରଦୀୟା ପୂଜାରେ ଧୂମ । ଶତ ଶତ ବର୍ଷରୁ ହୋଇ ଆସୁଅଛି, ଅଳ୍ପଦିନ ପରେ ହେବ । 'ନର-ମହିଷୟୋଃ ଛାଗମପିବା !' ନରବଳି ମହିଷବଳି ଓ ଛାଗବଳିରେ ଦେବୀଙ୍କର ପ୍ରୀତି । ଧନ୍ୟ ଧାରଣା ! ଲୋକେ ନିଜର ସ୍ୱାର୍ଥସିଦ୍ଧି କାମନାରେ ଆପଣା ଜାତିର ଗୋଟିଏ ପ୍ରାଣୀକୁ ବଧ କରିବାକୁ କୁଣ୍ଠିତ ହେଉ ନ ଥିଲେ । ହଳଦୀର ରଙ୍ଗ ଫିଟିବ ବୋଲି ମେରିଆ ଦେଉଥିଲେ । ଦେନି ତ ତାରା, ତତ୍‌ସମ୍ବନ୍ଧରେ ଭାବନା କାହିଁକି ? ଧନ୍ୟ ଇଂରାଜ ! ତୁମ୍ଭର ପଦାର୍ପଣରେ ଭାରତରୁ ଏହି ନୃଶଂସ ବ୍ୟାପାର ତିରୋହିତ ହୋଇଅଛି । ଦେବୀ ଆଉ ନରରକ୍ତ ନିମନ୍ତେ ଲାଳାୟିତା ନୁହନ୍ତି । ଭାରତବାସୀ ପଶୁ ଅପେକ୍ଷା ହୀନ ପ୍ରକୃତିକୁ ପରିତ୍ୟାଗ କରିଅଛନ୍ତି । ଶ୍ରାବଣ ଅମାବାସ୍ୟାର ନାମ ଚିତାଉ ଅମାବାସ୍ୟା । ଏହି ଦିନରେ 'କନ୍ଦରିଅ' ମାନେ ନରବଳି ସଂଗ୍ରହ କରିବା ନିମନ୍ତେ ବହିର୍ଗତ ହୁଅନ୍ତି । ଯେଉଁମାନଙ୍କଠାରେ ଆଘାତଚିହ୍ନ ଥାଏ, ତାହାକୁ ବଳି ନିମନ୍ତେ ନିଅନ୍ତି ନାହିଁ । ବାଲ୍ୟକାଳରେ ଆମ୍ଭମାନଙ୍କୁ କନ୍ଦରିଆ ଉତ୍ପାତରୁ ରକ୍ଷା କରିବା ନିମନ୍ତେ ମା' ଚିତାଉ ଅମାବାସ୍ୟା ଦିନ ଯେଉଁ ଦାଗ ଦେଇଅଛନ୍ତି, ତାହା ଅଦ୍ୟାପି ବିସ୍ମୃତ ହୋଇନାହୁଁ । ଏହି ବ୍ୟାପାରକୁ ଭାବିଲେ ମନେ ହୁଏ, ନରବଳି ପ୍ରଥା କେବଳ ଅଳ୍ପଦିନ ହେଲା ଭାରତରୁ ଲୋପପ୍ରାପ୍ତ ହୋଇଅଛି ।

ମହିଷ ବଳିରେ ଦେବୀ ଭାରି ତୃପ୍ତିଲାଭ କରନ୍ତି । ଏଣୁ ମହିଷ ବଳିର ପ୍ରଚଳନ ଅଛି । ମହିଷକୁ ମହାପଶୁ କହନ୍ତି । ଯଥାର୍ଥରେ ମହାପଶୁ । ଗୋରୁ ଉତାରୁ ମହିଷ ଯେ ଭାରତବାସିର ବିଶେଷତ । ଉତ୍କଳବାସୀଙ୍କର ମହୋପକାରୀ ପଶୁ, ଏଥିରେ ସନ୍ଦେହ ନାହିଁ; ମାତ୍ର ଏହାର ବଧରେ ପାପ ନାହିଁ, ଦୋଷ ନାହିଁ । ଏଣୁ ହିନ୍ଦୁ ସନ୍ତାନଗଣ ଦୁର୍ଗାଙ୍କୁ ତୃପ୍ତି, ଫଳତଃ ନିଜର ଅଭୀଷ୍ଟସିଦ୍ଧି କାମନାରେ ମହିଷ ବଳି ଦିଅନ୍ତି ।

ଧନୀ ଲୋକମାନେ ରାଜାମାନେ ମହିଷ ଓ ଛାଗବଳି, ଗରିବ ଲୋକେ ମଧ୍ୟବିତ୍ତ ଲୋକେ ଛାଗବଳି, ଗରିବ ଲୋକେ ମଧ୍ୟବିତ୍ତ ଲୋକେ ଛାଗ ବଳି, ଅତି ନିର୍ଧନ କୁକୁଟ ବଳି ଦିଅନ୍ତି । ଏହି ମହାଷ୍ଟମୀ ଦିନରେ ଆମ୍ଭ ଉତ୍କଳ ଦେଶର ଅସଂଖ୍ୟ ମହିଷ ପ୍ରୋକ୍ଷଣ ହୋଇ ଦୁର୍ଗା ଖର୍ପରରେ ନିପାତ ହେବେ । କେହି ତ ଏଥିର ଔଚିତ୍ୟା-ଔଚିତ୍ୟ ବିଚାର କରି ନାହାନ୍ତି । ଏପରି ସମୟ କେବେ ଆସିବ, ଯେବେ ବଳିଦାତାମାନେ ସ୍ୱର୍ଗୀୟ ବାସୁଦେବ ସୁଢଳଦେବଙ୍କ ପରି ଚିନ୍ତା କରିବେ ! ବାସୁଦେବ, ତୁମ୍ଭେ ହିନ୍ଦୁ, ଶାସ୍ତ୍ରଜ୍ଞ, ଧର୍ମନିଷ୍ଠ, ଅଥଚ ଧର୍ମସଂସ୍କାରକ, ନୀତିସଂସ୍କାରକ, ସମାଜସଂସ୍କାରକ । ଆହା ! ଆଜି ୧୫ ବର୍ଷର କଥା, ଏହି ଶରତ୍‌କାଳ, ମହାଷ୍ଟମୀ ଅଷ୍ଟଦିନ ଥିଲା । ମୁଁ ସ୍ୱର୍ଗୀୟ ସଚ୍ଚିଦାନନ୍ଦଙ୍କ ସହିତ ତାଙ୍କ ବୈଠକଖାନାରେ ଥିଲି, ତୁମ୍ଭେ ଆସି କହିଲ, 'ଟିକାୟିତବାବୁ, ମହିଷ ବଳ ବନ୍ଦ କରିବାକୁ ମୁଁ ଇଚ୍ଛା କରେଁ । ତୁମ୍ଭମାନଙ୍କର ମତ କ'ଣ ? ଏଥିରେ ଧର୍ମାଧର୍ମ ବିବେଚନାର ପ୍ରୟୋଜନ ନାହିଁ । ଯେଉଁ ପଶୁ ଜୀବିତ ଥିଲେ ଜଣେ ଲୋକର ପରିବାରକୁ ପୋଷଣ କରିପାରେ, ନରଜାତିର ଏମନ୍ତ ଉପକାରୀ ପଶୁକୁ ପ୍ରୋକ୍ଷଣ କରିବାର ମୁଁ ପକ୍ଷପାତୀ ନୁହେଁ ।'' କି ମହତ୍ ଭାବ, କି ଉଦାରନୀତି, କି ଉଚ୍ଚାନ୍ତଃକରଣ । ବାମଣ୍ଡା ରାଜ୍ୟ ସ୍ଥାପିତ ହେଲା ଦିନରୁ ଯେଉଁ ପ୍ରଥା ଚାଲିଆସୁଥିଲା, ପୂର୍ବ ପୂର୍ବ ବିଷ୍ଣୁଭକ୍ତ ରାଜାମାନେ ମଧ୍ୟ ଯାହା ବନ୍ଦ କରିପାରି ନ ଥିଲେ, ତାହା ତୁମ୍ଭେ ଏକାବେଳକେ ଉଠାଇ ଦେଲ । ବିଚାର ନାହିଁ, ପରାମର୍ଶ ନାହିଁ । ଏ ସାହସ କାହାର ? ତୀବ୍ର ସମାଲୋଚନାକୁ ଭୟ ନାହିଁ, ନିନ୍ଦାକୁ ଭୟ ନାହିଁ । ନିଜର ଅଭିଜ୍ଞତା ଉପରେ, ନିଜର କର୍ତ୍ତବ୍ୟ ବୁଦ୍ଧି ଉପରେ ଭାର ଦେଇ ପ୍ରଚଳିତ କୁପ୍ରଥାର ପରିବର୍ତ୍ତନ କରିପାରିବ, ଉତ୍କଳମାତାର ଏପରି ପୁତ୍ର ତୁମ୍ଭଛଡ଼ା କେତେଜଣ ଅଛନ୍ତି ? ତୁମ୍ଭର ଏହି ପରିବର୍ତ୍ତନ ଦ୍ୱାରା ବାମଣ୍ଡାରେ ଶତାଧିକ ମହାପଶୁର ପ୍ରାଣରକ୍ଷା ହୋଇନାହିଁ କି ? ଏବଂ ଏହି ପଶୁମାନଙ୍କ ଦ୍ୱାରା କେତେଗୁଡ଼ିଏ ପରିବାର ପୋଷିତ ହୋଇ ନାହାନ୍ତି କି ? ଲର୍ଡ଼ ବେଣ୍ଟିଙ୍କ୍ ଇହଧାମରେ ନାହାନ୍ତି । ରାମମୋହନ ଇହଧାମରେ ନାହାନ୍ତି । ସେମାନଙ୍କର ସୁମହତ୍ ପରିବର୍ତ୍ତନର ଫଳ ହିନ୍ଦୁ ସନ୍ତାନଗଣ ସୁଖରେ ଭୋଗ କରୁନାହାନ୍ତି କି ? ବେଣ୍ଟିଙ୍କ୍ ଭାରତର ମାତୃହତ୍ୟା ନିବାରଣ କରିଥିଲେ । ତୁମ୍ଭେ ଭାରତ ତୁଳନାରେ କ୍ଷୁଦ୍ରାଦପିକ୍ଷୁଦ୍ର ବାମଣ୍ଡା ରାଜ୍ୟରେ ମହିଷ-ହତ୍ୟା ବନ୍ଦ କରିଅଛି । ମୋ ହିସାବରେ ବେଣ୍ଟିଙ୍କ୍ ଦାରୁ, ତୁମ୍ଭେ ଦୂର୍ବା । ତଥାପି ତୁମ୍ଭେ ମହତର ପଦାନୁସରଣକାରୀ ସଂସ୍କାରକ । ତୁମେ ଚାଲିଗଲ । ଶରତ୍‌କାଳ ଆସୁଅଛି, ଯାଉଅଛି । ଦୁର୍ଗାପୂଜା ହେଉଅଛି । ଦଶହରା ପର୍ବ ହେଉଅଛି । ମହାଷ୍ଟମୀ ଦିନ ଯେତେବେଳେ ରାଜଦ୍ୱାରରେ ଢକ୍କା ନିନାଦିତ ହୁଏ, ନିଶାକାଳରେ ପୂଜାର ଶଙ୍ଖ ଘଣ୍ଟା ବାଜି ଉଠେ, ଲୋକେ ଦେବୀ ଦର୍ଶନରେ ସମୁତ୍ସୁକ ହୁଅନ୍ତି, ଯେତେବେଳେ ଶଙ୍ଖଧ୍ୱନି କର୍ଣ୍ଣକୁହରରେ ପ୍ରବିଷ୍ଟ ହେଲାକ୍ଷଣି ତୁମ୍ଭର ପୂଜା ନିମନ୍ତେ ସ୍ୱତଃ ମସ୍ତକ ଅବନତ ହୁଏ । ଯେତେଦିନଯାଏ ଏହି ଜୀବନପ୍ରଦୀପ ଜଳୁଥିବ, ତାହା ତୁମ୍ଭର ମହତ୍ ଗୁଣର ଆରତିରେ ନିୟୋଜିତ ଥିବ ।

ମାତ ଉତ୍କଳ ! ବାମଣ୍ଡା ରାଜ୍ୟ ପରି ତୋର ଅନେକ ଗୁଡ଼ିଏ ରାଜ୍ୟ ଅଛି । ଏପରି ଦିନ କେବେ ଆସିବ, ଯେବେ ତୋର ସୁଯୋଗ୍ୟ ପୁତ୍ର ବାସୁଦେବ ପରି ଅନ୍ୟ ନରପତିମାନେ ସ୍ୱେଚ୍ଛାପୂର୍ବକ ଈଦୃଶ ପ୍ରଥାର ସଂସ୍କାର କରିବାରେ ପ୍ରବୃତ୍ତ ହେବେ ? ଜୀବନ ଥାଉଁ ଥାଉଁ ଏହା ଦେଖାଯିବ କି ?

॥ ୩ ॥

'Woodrow Wilson is Oriya by Caste'– ଉଡୋଉଇଲସନ୍ ଜାତିରେ ଓଡ଼ିଆ । ଏହା କେତେ ମାସର କଥା । ଗତସ୍ୟ ଶୋଚନା ନାସ୍ତି । ଭୁଲି ଯିବାକୁ ଚେଷ୍ଟା କଲେ ମଧ୍ୟ ଭୁଲି ହେଉ ନାହିଁ । କର୍ଣ୍ଣପଟହରେ ଆଘାତ ଦେଉଅଛି – ''ଜାତିରେ ଓଡ଼ିଆ ।'' ହୃଦୟତନ୍ତ୍ରୀରେ ବକ୍ରତସ୍ୱରରେ ବାଜୁଅଛି– ''ଜାତିର ଓଡ଼ିଆ'' । ନିୟମ ଭାଙ୍ଗିଲେ, ବିଧିବିଧାନ ମାନିଲେ ନାହିଁ । ଶାନ୍ତିଭଙ୍ଗ କଲେ, ନିରୀହ ଲୋକଙ୍କ ପ୍ରତି ଅତ୍ୟାଚାର କଲେ, ଯୁଦ୍ଧ କଲେ, ରାଷ୍ଟ୍ରଭଙ୍ଗ କଲେ, ଏଣୁ ହୁନ୍ ଜାତି ଜଗତରେ ନିନ୍ଦନୀୟ । ଇଂରାଜ, ଫରାସି, ବେଲ୍‌ଜିୟାନ ଜାତି ବା ସମସ୍ତ ସଭ୍ୟ ଜଗତ୍ ଜର୍ମାନ୍ ଜାତିକି ହୁନ୍, ହୁନ୍ ବୋଲି କହୁଅଛନ୍ତି । ଜାତୀୟ ବିବାଦ ପଡ଼ି ନ ଥିଲା– ଓଡ଼ିଶାବାସୀ କାହାରି ସ୍ୱାର୍ଥହାନି କରି ନ ଥିଲେ– କାହାରି ଅନ୍ନରେ ଧୂଳି ଦେଇ ନ ଥିଲେ, ତୁଚ୍ଛା କଥାରେ, ଥଟ୍ଟା ତାମାସାରେ କାହାରି କିଛି ଦୋଷ ଦେଖିଲେ, 'ଜାତିରେ ଓଡ଼ିଆ । ଜାତିରେ ଓଡ଼ିଆ !' ଓଡ଼ିଆ ଜାତିଟା କି ଅମନୁଷ୍ୟତାର ଉପମାସ୍ଥଳ ବୋଲି ବିଧିବିଧାନ ହୋଇଅଛି ? ଲେଖିବାକୁ ଯାହାର ଜୋର ଅଛି, ସେ ଲେଖିବ, କହିବାକୁ ଯାହାର ମନ ଅଛି, ସେ କହିବ । ଉତ୍କଳବାସୀ ଚିରକାଳ ସହି ଆସୁଅଛନ୍ତି, ସହିବେ, ସହିବେ । ମାତ୍ର ଉତ୍କଳଜନନୀର କେଉଁ ସପତ୍ନୀ ପୁତ୍ରମାନେ ଯୁକ୍ତରାଜ୍ୟର ପ୍ରେସିଡେଣ୍ଟ ଉଇଲ୍‌ସନଙ୍କର ପଦ ପ୍ରକ୍ଷାଳନ କରିବାକୁ ଦକ୍ଷତା ସମ୍ପାଦନ କରିଅଛନ୍ତି, ତାହା ଜଣାପଡୁ ନାହିଁ । କେଉଁ ସୁକୃତୀ ସନ୍ତାନ ଉଇଲସନ୍‌କୁ ଆପଣା ପାର୍ଶ୍ୱରେ ବସାଇବାକୁ ଲଜ୍ଜା ଓ ଘୃଣା କରନ୍ତି ଏବଂ ଆପଣ

ମାତୃକ୍ରୋଡ଼ରେ ବସିଲେ ତାହା ଅପବିତ୍ର ହେବ ଭାବି ଉତ୍କଳଜନନୀ କ୍ରୋଡ଼କୁ ଠେଲି ଦେବାକୁ ସାହସ କରନ୍ତୁ ? ଉତ୍କଳ ପକ୍ଷରେ ସମସ୍ତେ ବଡ଼, ସମସ୍ତେ ବିଜ୍ଞ, ସମସ୍ତେ ଆଦରଣୀୟ। ଉଇଲସନ୍‌ଙ୍କପାଇଁ ଉତ୍କଳ କାହିଁକି ଦୁଃଖିତ ହେବ ? ସେହିଦିନଠାରୁ ଉଡ୍ରୋ ଉଇଲ୍‌ସନ୍ ଓଡ୍ର ଉଇଲ୍‌ସନ୍। ସେ ତ ଛଅ ମାସ ପୂର୍ବର କଥା– ସେତେବେଳେ ଉଇଲସନ୍ ଘୃଣ୍ୟ, ନିନ୍ଦ୍ୟ–ଉଇଲ୍‌ସନ୍, 'ଜାତିରେ ଓଡ଼ିଆ'। ଆଜି ଉଇଲ୍‌ସନ୍ କିଏ ? ଆଜି ଯେ 'Wilson up holding the dignity and honour of the United States. 'Upholding the rights of humanity.' ଆଜି ଯେ ଉଇଲ୍‌ସନ୍ ମହା ସମରର ପଟ ପରିବର୍ତ୍ତନ କରିବାକୁ ବସିଅଛନ୍ତି। ରଙ୍ଗମଞ୍ଚରୁ ବଜ୍ରନିର୍ଘୋଷରେ ନିନାଦିତ ହେଲା– 'That all diplomatic relations between the United States and the Getman Empire are severed.' କରତାଳି ବାଜିଲା, ସଭ୍ୟ ଜଗତ୍ ଉନ୍ମତ୍ତ ହୋଇ ନାଚିଲା। ରଣାଭିନୟର ଶେଷ ଅଙ୍କର ଆରମ୍ଭ ହେଲା। ଆଜି ଉଇଲ୍‌ସନ୍ ଓଡ଼ିଆ ନୁହଁନ୍ତି, ଉଇଲ୍‌ସନ୍ ଜଗତର। ତାଙ୍କୁ ନେଇ ଆଜି ପୃଥିବୀ ନାଚୁଅଛି, ଇତିହାସ ଭବିଷ୍ୟତ୍ ବଂଶଧରଙ୍କୁ ନଚ୍ଚଇବ। ଉଇଲ୍‌ସନ୍‌ଙ୍କ ଉକ୍ତ ସ୍ୱର୍ଣ୍ଣାକ୍ଷରରେ ଲିଖିତ ହେବ। 'The speech will go down to history as a most memorable utterance.' ଉଇଲ୍‌ସନ୍ କର୍ତ୍ତବ୍ୟ ପାଳନ କରିବେ, ଏହି ଆଶା ଥିଲା। ତାହା ଘଟିଲା। ଉଇଲ୍‌ସନ୍ ପ୍ରଚୁର ଧନ ଜନ ଦେଇ ସାହାଯ୍ୟ କରିବାକୁ ପ୍ରସ୍ତୁତ। ଆଜି ଓଡ଼ିଶାବାସୀ ଜଗଦ୍‌ବାସୀଙ୍କ ସହିତ ମହାହ୍ଲାଦିତ। କିନ୍ତୁ ସେହି ସ୍ୱରାଜସ୍ୱପ୍ନଦ୍ରଷ୍ଟା ଉଇଲ୍‌ସନ୍-ନିନ୍ଦୁକ ଲେଖକଙ୍କ ମନରେ ନିଦାରୁଣ ବେଦନା ଅନୁଭୂତ ହେଉଥିବ। ଥରେ ଉଇଲ୍‌ସନ୍‌ଙ୍କ ଓଡ଼ିଆ କଲା ଉତାରୁ ପୁଣି ତାହାଙ୍କୁ ନିଜ ଜାତ୍ୟନ୍ତର୍ଭୁକ୍ତ କରିବାକୁ ଇଚ୍ଛା ଥିଲେ ମଧ ଉପାୟ ନାହିଁ। ଆଜି ଉଇଲ୍‌ସନ୍ ନିନ୍ଦନୀୟ ହୋଇ ସ୍ୱାଧୀ ଧର୍ମଯୋଦ୍ଧାମାନଙ୍କୁ ଯେଉଁ ସାହାଯ୍ୟ ଦେବାକୁ ପ୍ରସ୍ତୁତ, ତାହାର କେତେ ଅଂଶ ସାହାଯ୍ୟ ଲେଖକ ଦେଇଅଛନ୍ତି ? ବର୍ତ୍ତମାନ ସାହାଯ୍ୟ ନିମନ୍ତେ କି ଚେଷ୍ଟା କି ଯତ୍ନ କରୁଅଛନ୍ତି ? ଉଇଲସନ୍ କହିଲେ, ମୁଖରେ କିଛି ହୁଏ ନାହିଁ, ବାକ୍ୟବ୍ୟୟ ବୃଥା। 'We must all speak, act and serve together' ଯାହାର କ୍ଷମତା ଥାଏ, ସେ ଧୈର୍ଯ୍ୟାବଲମ୍ବନ କରିପାରେ, ସହି ପାରେ ଏବଂ ଉପଯୁକ୍ତ ସମୟର ଅପେକ୍ଷାରେ ଥାଏ। ସେହି ହେତୁରୁ ଉଇଲ୍‌ସନ୍ କଠୋର ବାକ୍ୟବାଣ ସହ୍ୟ କରୁଥିଲେ। ସମୟ ଆସିଲା, ଆଜି ନିଜର ମହତ୍ତ୍ୱ ଦେଖାଇବାକୁ, କ୍ଷମତାର ପରିଚୟ, ଦେବାକୁ ଦଣ୍ଡାୟମାନ– ନିର୍ଭୀକ, ନିଷ୍କମ୍ପ, ଧୀର ଓ ସ୍ଥିର।

''ଦୁଃଖେଷ୍ୱନୁଦ୍‌ବିଗ୍ନମନା ସୁଖେଷୁ ବିଗତସ୍ପୃହଃ। ବୀତରାଗଭୟକ୍ରୋଧଃ ସ୍ଥିତଧୀର୍ମୁନିରୁଚ୍ୟତେ।'' ମୁଁ ତଦବଧି ଭାବୁଅଛି। ଭାଇମାନେ ସମ୍ଭବତଃ ଭାବୁଥିବେ। ଉଇଲ୍‌ସନ୍ ଓ ଯୁଦ୍ଧପ୍ରସଙ୍ଗ ଏବଂ ଭାରତୀୟ କୃତୀସନ୍ତାନମାନଙ୍କର ବ୍ୟଙ୍ଗୋକ୍ତି ଓଡ଼ିଆ ଜାତିର ଶିକ୍ଷାସାମଗ୍ରୀ। ତଥାପି ମନରୁ ଯାଉ ନାହିଁ– 'ଜାତିରେ ଓଡ଼ିଆ, ଜାତିରେ ଓଡ଼ିଆ।'

•

## କଠିନ ସମସ୍ୟା

ଜାତିଭେଦ ପ୍ରଥା ଭାରତୀୟ ଆର୍ଯ୍ୟଜାତିର ନିଜସ୍ୱ । ଏହା ସେମାନେ ନିଜେ ନିଜେ ଗଢ଼ିଅଛନ୍ତି । କାହାରିଠାରୁ ଶିକ୍ଷା କରି ନାହାନ୍ତି, ଉଧାର ଆଣି ନାହାନ୍ତି । ନିଜସ୍ୱ ଓ ପୈତୃକ ସମ୍ପତ୍ତି କି ନା, ଏଣୁ ତାହା ଛାଡ଼ିବାକୁ ଏମାନେ ରାଜି ନୁହନ୍ତି । ବିଦେଶାଗତ ଜାତିମାନେ ଏ ଦେଶର ଧନରତ୍ନ ମାଟି ପିତୁଳା ସବୁ ଘେନିଗଲେ, ପାଞ୍ଜି ପୋଥି ଘେନି ଗଲେ । ଗଛ ପତ୍ର, ମନ୍ତ୍ର ମହୌଷଧି ଘେନିଗଲେ, ମାତ୍ର ଜାତିଭେଦକୁ କେହି ନେବାକୁ ବା ସ୍ପର୍ଶ କରିବାକୁ ରାଜି ହେଲେ ନାହିଁ । ପାଷାଣ ମନ୍ଦିର, ଅଟ୍ଟାଳିକା, ଦୃଢ଼ ପ୍ରାଚୀର ଧ୍ୱଂସ କଲେ, ମହାମହା ମହୀରୁହ ଉନ୍ମୂଳିତ କଲେ, ମାତ୍ର ଜାତିଭେଦକୁ ଧ୍ୱଂସ କରିବାକୁ କେହି ପ୍ରୟାସ ମଧ କଲେ ନାହିଁ । ହୁଏତ ସେମାନେ ଭାବିଲେ ଯେ, ଏହା ହିନ୍ଦୁର ନିଜସ୍ୱ, ଏଣୁ ତାଙ୍କ ଜିମା ଥାଉ, ଏଥିରେ ସେମାନଙ୍କର କୌଣସି କ୍ଷତି ନାହିଁ, ବରଂ ଲାଭ ଥାଇପାରେ । କିମ୍ବା ଏ ଆବର୍ଜନାକୁ ସ୍ପର୍ଶ କଲେ ଅପବିତ୍ରତା ଆସିବ ବୋଲି ଘୃଣା କଲେ। କିମ୍ବା ଏ ଜାତିଭେଦରୂପ ମହୀରୁହ ଏତେ ପାତାଳଗାମୀ ଯେ, ଏହାକୁ ଉନ୍ମୂଳିତ କରିବାର ପ୍ରୟାସ ବୃଥା ବୋଲି ଭାବିଲେ ।

ହିନ୍ଦୁ ଜାତି ପରାଧୀନ ହେଲା, ମାନ ମହତ୍ତ୍ୱ ହରାଇଲା, ଦାସ୍ୟ ସ୍ୱୀକାର କଲା, ଶକ୍ତି ହରାଇଲା । ଏତାଦୃଶ ଅସାଧାରଣ ପରିବର୍ତ୍ତନ ସତ୍ତ୍ୱେ ହିନ୍ଦୁ ନିଜସ୍ୱ ରକ୍ଷା କରିଅଛନ୍ତି । ତୃଣ ସମ ଶକ୍ତିବୈକ୍ଲବ୍ୟନମ୍ର ହିନ୍ଦୁଜାତି ଆଜି ପୃଥିବୀପୃଷ୍ଠରେ ସାଧୁ ବୋଲି ପରିଚିତ, ନିରୀହ ବୋଲି ପ୍ରଶଂସିତ । ଗୌରବର କଥା ନୁହେଁ କି ? ହିନ୍ଦୁର ଜାତିଭେଦ ଥାଉ, ନର୍ଦ୍ଦ୍ୱନ୍ଦ୍ୱର ବହୁକାଳ ଏହିପରି ଚାଲିଯିବ ।

ଅତି ପ୍ରାଚୀନ କାଳରେ ଆର୍ଯ୍ୟମାନଙ୍କ ମଧରେ ଜାତିଭେଦ ନ ଥିଲା । ଆର୍ଯ୍ୟର ପ୍ରଧାନ ଇତିହାସ ବେଦ

ତହିଁର ସାକ୍ଷ ଦିଏ । ଏପରି ସମୟ ଥିଲା, ଯେତେବେଳେ ଆର୍ଯ୍ୟ ଜାତି କାହାରି ଆଧିପତ୍ୟ ସ୍ୱୀକାର କରୁ ନ ଥିଲା । ପରିଦୃଶ୍ୟମାନ ଅନନ୍ତ ପ୍ରକୃତିର ଭୌତିକ ପଦାର୍ଥ ତାହାର ସ୍ୱାଧୀନ ଉପାସନାର ସାମଗ୍ରୀ ଥିଲା । ସେହିପରି ତା'ର ଗୃହର ପରିଚାଳକ ଥିଲା ତା'ର ପରିବାରର ବୟୋବୃଦ୍ଧ । ତା'ର ଆଖ୍ୟା ଥିଲା ଗୃହପତି, ଅଗ୍ନିର ନାମ ମଧ୍ୟ ଥିଲା ଗୃହପତି । ଗୃହପତି କ୍ଳାନ୍ତ ଶ୍ରାନ୍ତ ହତାଶ ଯୁବକ ଯୁବତୀମାନଙ୍କୁ ଉପଦେଶଦ୍ୱାରା, ଉତ୍ସାହଦ୍ୱାରା ସ୍ୱକର୍ମନିରତ ରଖୁଥିଲା । ଅଗ୍ନି ଶୀତଋତୁରେ ବର୍ଷାରେ କର୍ମକ୍ଳିଷ୍ଟ ଗୃହାଗତମାନଙ୍କୁ ଉତ୍ତାପ ଦାନ କରି ସୁସ୍ଥ କରୁଥିଲା । ସମାଜ ବୃଦ୍ଧିପ୍ରାପ୍ତ ହେବାରୁ ମଣ୍ଡଳେଶ୍ୱରର ପ୍ରୟୋଜନ ହୋଇଉଠିଲା । କ୍ରମେ ଆର୍ଯ୍ୟ ଜାତିର କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଏ ଦେଶରେ ଗଠିତ ହେଲା । କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଆପଣା ବଂଶରକ୍ଷା ବା ସମାଜରକ୍ଷା ନିମନ୍ତେ ଯଥେଷ୍ଟ ଥିଲେ ମଧ୍ୟ ପର ଆକ୍ରମଣରରୁ ଜାତିକୁ ରକ୍ଷା କରିବା ନିମନ୍ତେ ଜଣକର ଆଧିପତ୍ୟ ଓ ଆଦେଶର ପ୍ରୟୋଜନ ହେଲା । ମାତ୍ର ଏତାଦୃଶ ଆଧିପତ୍ୟ ପ୍ରଜା କର୍ତ୍ତୃକ ଅନୁମୋଦିତ ଥିଲା । ରାଜା ଅତ୍ୟାଚାରୀ ହେଲେ ତାଡ଼ିତ ହେଉଥିଲେ ବା ନିଜେ ନିଜକୁ ଅପାରଗ ମଣି ଦେଶ ଦେଶ ତ୍ୟାଗ କରୁଥିଲେ । ଏଥିରେ ମଧ୍ୟ ଉଦାହରଣର ଅଭାବ ନାହିଁ । ଏତାଦୃଶ ନିୟମରେ ବହୁକାଳ ଆର୍ଯ୍ୟ ଶାସନ ଚଳିଲା, କ୍ରମେ ଯେପରି ଶାସନ ସମସ୍ୟା ଓ ଧର୍ମସମସ୍ୟା ଜଟିଳ ହେଲା, ବ୍ୟବସାୟ ବଂଶଗତ ହେଲା । ସେତେବେଳେ ଏକାଧିପତ୍ୟ ବଢ଼ିଲା । ମର୍ତ୍ତ୍ୟରେ ଏକାଧିପତ୍ୟର ବୃଦ୍ଧି ସଙ୍ଗେ ସଙ୍ଗେ ଦେବତାମାନଙ୍କ ଉପରେ ଏକାଧିପତ୍ୟ କରିବାକୁ ଈଶ୍ୱରଙ୍କର ସୃଷ୍ଟି ହେଲା । ଈଶ୍ୱର ସ୍ୱର୍ଗ ମର୍ତ୍ତ୍ୟର ଏକାଧିପତି ହେଲେ । ସେତେବେଳକୁ ଆର୍ଯ୍ୟ ଆଖ୍ୟା ହିନ୍ଦୁ ଆଖ୍ୟା ପ୍ରାପ୍ତ ହେଲାଣି । ଯେତେବେଳେ ହିନ୍ଦୁଗଣ ଜାତିଭେଦର ଚୂଡ଼ାନ୍ତ ଅବସ୍ଥାରେ ଉପନୀତ, ସେତେବେଳେ ସ୍ୱୟଂ ଈଶ୍ୱର ମଧ୍ୟ ଏଥିରେ ସମାଧାନ କରିବାକୁ ଅକ୍ଷମ, ସୁଶାସନ କରି ପାରିବା ତ ଦୂରର କଥା । ଈଶ୍ୱର ଭାବିଲେ, ରସୁଲଙ୍କ ସାହାଯ୍ୟ ବ୍ୟତିରେକେ ଏ ଜାତିକୁ ଏକୁଟିଆ ଆୟତ୍ତ କରିବା ଅସମ୍ଭବ । ମହମ୍ମଦ ଏ ଦେଶକୁ ଆସି ବୁଦ୍ଧି କୌଶଳ ଖଟାଇଲେ । ଯଥା ପୂର୍ବଂ ତଥା ପରଂ ! ଜାତି ସମନ୍ୱୟ ହୋଇପାରିଲା ନାହିଁ । ମହମ୍ମଦ ଭକ୍ତମାନେ ମୁସଲମାନ ହୋଇ ଏ ଦେଶରେ ରହିଲେ, ଗୋଟିଏ ଜାତିର ଯୋଗ ହେଲା ।

ଈଶ୍ୱର ଭାବିଲେ, ସ୍ୱୟଂ ପ୍ରିୟପୁତ୍ର ଏ ଦେଶକୁ ନ ଆସିଲେ ଏ ଜାତୀୟ ସମାଧାନ କେବେ ହୋଇପାରିବ ନାହିଁ । ପୁତ୍ରଙ୍କର ଶୁଭାଗମନ ହେଲା । ପୁତ୍ର ଶାସନଭାର ଗ୍ରହଣ କରି ଦେଖିଲେ ଏବଂ ତାଙ୍କୁ ଚେଷ୍ଟା ସୁଫଳପ୍ରଦ ନୋହିବ ଭାବି ପିତାଙ୍କୁ କହିଲେ, ପିତା, ଏ ଦେଶର ଜାତିଭେଦ ଉନ୍ମୂଳିତ କରିବାର କ୍ଷମତା କାହାରି ନାହିଁ । ଏ ପ୍ରଥା ଥିଲେ ମୋର ଭକ୍ତମାନଙ୍କର ବିଶେଷ ଉପକାର ହେବ । ଏହା ଯେପରି ଅଛି, ସେହିପରି ଥାଉ । ଏ ଜାତିର ସାହାଯ୍ୟରେ ମୋର ଧର୍ମରାଜ୍ୟର ଅଭ୍ୟୁଦୟ ହେବ । ତାହା ଛଡ଼ା ହିନ୍ଦୁମାନେ ତୁମ୍ଭଙ୍କୁ ଏକାଧିପତ୍ୟ ଦେଇଥିବା କଥାରେ ଛଳନା ଅଛି । ଏମାନେ ବହୁ ଦେବତାଙ୍କ ଉପାସକ ଏବଂ ଘୋର ପୌତ୍ତଳିକ । ଏଠାରେ ମୋର ସ୍ଥାନ ନାହିଁ । ନ ଥାଉ, କ୍ଷତି ନାହିଁ । ଗୋଟାଏ ପ୍ରବାଦ ଏ ଦେଶରେ ଅଛି— 'ବିଷସ୍ୟ ବିଷ-ମୌଷଧଂ' । ମୋର ପରମ ଭକ୍ତମାନେ ଏଠାରେ ଆଧିପତ୍ୟ କରନ୍ତୁ, ତାହା ଛଡ଼ା ଏ ଦେଶର ଯେଉଁମାନେ ମୋର ଶରଣାପନ୍ନ ହେବେ, ସେମାନେ ମଧ୍ୟ ଗୋଟିଏ ସମ୍ପ୍ରଦାୟ ହୋଇ ରହନ୍ତୁ । ପୁଣି ଗୋରା କଳା ମିଶି ଗୋଟିଏ ଜାତିର ଗଠନ ହେଉ । ତାହା ହେଲେ ଭାରତୀୟ ବହୁ ଜାତି ସହିତ ମୋର ଭକ୍ତ ଓ ପରମ ସ୍ନେହପାତ୍ର ତିନି ଜାତିର ଯୋଗ ହେଉ । ମୋର ଭକ୍ତବତ୍ସଳ ବାନା ଉଡ଼ିବା ତ ତୁମ୍ଭର ଇଚ୍ଛା ? ତାହା ଅନାୟାସରେ ଓ ଅକ୍ଳେଶରେ ସାଧିତ ହେବ । ଉତ୍ତର ଆସିଲା— ତଥାସ୍ତୁ । ଭାରତୀୟ ଅସଂଖ୍ୟ ଜାତି ସହିତ ପୁଣି ତିନି ଜାତିର ସମ୍ମିଶ୍ରଣ ଜଗତର ଅଦ୍ୱିତୀୟ ଜାତି ପ୍ରଦର୍ଶନୀ ।

ଜାତିଭେଦ ଭାରତବାସିଙ୍କି କିପରି ନିଃସାର, ହୀନବଳ କରିଆଣିଲା, ତାହା କାହାରି ବୋଧଗମ୍ୟ ହୋଇପାରିଲା ନାହିଁ । ବିଜ୍ଞ ଲୋକେ ଈଶ୍ୱରତତ୍ତ୍ୱ ଓ ଅଧ୍ୟାତ୍ମଚିନ୍ତାରେ ସ୍ୱର୍ଗରାଜ୍ୟ ଖୋଜିବାକୁ ଲାଗିଲେ । ଦେଶରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଗଠିତ ହେବାରୁ ସ୍ୱାର୍ଥପର ରାଜାମାନଙ୍କ ମଧ୍ୟରେ ଯୁଦ୍ଧବିଗ୍ରହ ଲାଗି ରହିଲା । କ୍ରମେ ସମସ୍ତେ ବଳଶୂନ୍ୟ ହେଲେ । ବଳଶାଳୀ ବ୍ରିଟେନବାସୀ ଏତାଦୃଶ ଅବସ୍ଥା ଦେଖି ଏ ଦେଶର ରକ୍ଷଣାବେକ୍ଷଣ ଭାର ସ୍ୱେଚ୍ଛାକ୍ରମେ ଗ୍ରହଣ କଲେ । ଏ ଦେଶରେ ସେମାନଙ୍କର ଏକାଧିପତ୍ୟ ଚାଲିଲା । ଏଥିରେ କୌଣସି ସନ୍ଧି ନାହିଁ ବା ଚୁକ୍ତି ନାହିଁ । 'ବୀରଭୋଗ୍ୟା ବସୁନ୍ଧରା' । ଭାରତଭୂମି ଯେ ଜାତି ସନ୍ତାନମାନଙ୍କଠାକୁ ଅନାୟାସରେ ଆସିବ, ଏ ଆଶା ଦୁରାଶା ବୋଲି ଅନୁମାନ ହୁଏ । ତଥା ଦେଶବାସୀ ଅନେକେ ସ୍ୱାଧୀନତା ଲାଭ ବହୁ ସହଜସାଧ୍ୟ ବୋଲି ମନେ କରନ୍ତି । ଏହା ଭାବିଲେ ହସିବାକୁ ହୁଏ ।

ଯୋଗ୍ୟତମର ଅଭ୍ୟୁଦୟ, ଏହା ଅଭ୍ରାନ୍ତ ସତ୍ୟ । ଏଥି ସହିତ ଧର୍ମର ସମ୍ବନ୍ଧ ନାହିଁ । ଆଜି ଇଂରାଜୀ ଜାତି ଦେଶ ରକ୍ଷା କରିବାକୁ ଯୋଗ୍ୟ । ଭାରତବାସୀଠାରେ ସେ ଯୋଗ୍ୟତା ନାହିଁ । ସେ ଯୋଗ୍ୟତା ପାଇପାରିବେ କେବେ, ତାହା କାହାକୁ ହିଁ ଜଣା ନାହିଁ । ସେପରି ଯୋଗ୍ୟତା ଉପାର୍ଜନ କରିପାରିଲେ ଅଭ୍ୟୁଦୟ ହେବ । ଯୋଗ୍ୟତା ଉପାର୍ଜନ କରିବାର ପ୍ରଧାନ ଅନ୍ତରାୟ ଜାତିଭେଦ । ଯୋଗ୍ୟତା ଅର୍ଥ ଏକତା, ଜାତୀୟତା । ଏ ଦେଶବାସୀ ଦେଶପ୍ରେମରେ ଜଳାଞ୍ଜଳି ଦେଇଅଛନ୍ତି । ସ୍ୱାର୍ଥପରତା ଦେଶହିତୈଷିତାର ସ୍ଥଳାଭିଷିକ୍ତ । ବାବଦୂକତା ଦେଶହିତୈଷିତାର ପରିଚାୟକ ନୁହେଁ ।

ପରାଧୀନ ଜାତି ହିଂସାପରାୟଣ ହୁଏ କାହିଁକି ? ପାରାବତ ଏଥିରେ ଗୋଟିଏ ଉଦାହରଣ । ପରପୋଷିତ ପାରାବତ ସ୍ୱଜାତି ହିଂସକ । ପରସ୍ପର ମଧ୍ୟରେ ପାରାବତର ଯୁଦ୍ଧ ବିଗ୍ରହ ବରାବର ଲାଗି ରହିଥାଏ । ମାତ୍ର ଯେବେ କାକ ଆସି ଶାବକକୁ ତୀକ୍ଷ୍ଣ ଚଞ୍ଚୁ ଦ୍ୱାରା ଆଘାତ କରି ରକ୍ତାକ୍ତ କରୁଥାଏ, ସେତେବେଳେ ପାରାବତମାନେ କାକ ସହିତ ଯୁଦ୍ଧ କରିବା ତ ତେଣେ ଥାଉ, ତା' ନିକଟକୁ ମଧ୍ୟ ଆସନ୍ତି ନାହିଁ । ମାତ୍ର Young ones in her nest The wren will fight against the owl."

କ୍ଷୁଦ୍ର ଲିଟୀ ଚଢ଼େଇ ଯେ ପେଚକ ସହିତ ଯୁଦ୍ଧ କରିବାକୁ ପ୍ରବୃତ୍ତ ହୁଏ, କେବଳ ସ୍ୱାଧୀନ ବୋଲି ।

ଭାରତବାସୀ ପରାଧୀନ ହେଲା ଉତ୍ତାରୁ ଆପଣା ମଧ୍ୟରେ ,କଡା ବୃଦ୍ଧ କରିବାର ପ୍ରବୃତ୍ତିକୁ ଏକାବେଳକେ ତ୍ୟାଗ କରିଅଛନ୍ତି । ହିଂସାବୃତ୍ତିକୁ ପୋଷଣ କରିଅଛନ୍ତି । ଯେତେବେଳେ ନେତା ଜାତିଙ୍କଠାରେ ଶ୍ରେଷ୍ଠ ବୋଲି ପରିଗଣିତ ହେବାର ଆଶା ଦିଶିଲା ନାହିଁ, ସେତେବେଳେ ଆଭିଜାତ୍ୟକୁହିଁ ପରମ ପୁରୁଷାର୍ଥ ମଣିଲେ । ଏକ ଜାତି ଅପର ଜାତି ଅପେକ୍ଷା ଶ୍ରେଷ୍ଠ ବୋଲି ଭାବିଲେ । ଏଥି ନିମନ୍ତେ ଦ୍ୱନ୍ଦ୍ୱ, ସଂଘର୍ଷ ଚାଲିଲା । ଜାତିଭେଦଟା ବିଧିବଦ୍ଧ ହୋଇରହିଲା ।

ଆଧିପତ୍ୟରେ, ପ୍ରଭୁତ୍ୱରେ କ୍ଷତ୍ରିୟ ପ୍ରଧାନ, ଧନରେ ବୈଶ୍ୟମାନେ ପ୍ରଧାନ । ହେଲେ କ'ଣ ହେବ, ଧର୍ମଦ୍ୱାରର କଞ୍ଚି ଧରି ବ୍ରାହ୍ମଣଗଣ ଜାତିଶ୍ରେଷ୍ଠ । ଶୂଦ୍ର ସେବାବ୍ରତଦ୍ୱାରା ମୁକ୍ତି ପାଇବାର ବିଧିତ ଈଶ୍ୱରନିର୍ଦ୍ଦିଷ୍ଟ । ଯୁଦ୍ଧ, ବ୍ୟବସାୟ ଓ ପୌରୋହିତ୍ୟର ପ୍ରକାର ସେ ପ୍ରକାର ବହୁମୁଖୀ ନୁହେଁ, ଯେପରି କି ସେବାବୃତ୍ତିର । ସେବାର ପ୍ରକାର ଅସଂଖ୍ୟ, ଏଣୁ ସେବକ ସଂଖ୍ୟା ବହୁତ । ଫଳତଃ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଅପେକ୍ଷା ଶୂଦ୍ର ଜାତି ବହୁ ପ୍ରକାର । ସେବକ ଜାତି ନିଜ ଜୀବିକା ଅନୁସାରେ ଉଚ୍ଚ ଓ ନୀଚ ଶ୍ରେଣୀରେ ବିଭକ୍ତ ହେଲେ । ଏ ଉଚ୍ଚ ନୀଚ ପ୍ରବାହ ବଢ଼ିଲା, ଏବେ ମଧ୍ୟ ଯେ ବନ୍ଦ ନାହିଁ ତାହା ନୁହେଁ । ଉଚ୍ଚଙ୍କର ଜାତିଭେଦ ବିଚାର ଅପେକ୍ଷା ନୀଚଙ୍କର ଜାତିଭେଦ ବିଚାର ଅଧିକ ଜଟିଳ ।

ବେଦରଚକ କହିଲେ— ବ୍ୟବସାୟ ଅନୁସାରେ ଚାରି ଜାତିର ଗଠନ । ଭଗବଦ୍‌ଗୀତା ରଚକ କହିଲେ— "ଚାତୁର୍ବର୍ଣ୍ଣ୍ୟ ମୟା ସୃଷ୍ଟଂ ଗୁଣକର୍ମ ବିଭାଗଶଃ ।" ଗୁଣକର୍ମ ବିଭାଗ ଅନୁସାରେ ଚାରି ବର୍ଣ୍ଣର ସୃଷ୍ଟି । ଅସଂଖ୍ୟ ଜାତି ସୃଷ୍ଟି ହେଲା କିପରି ? ବେଦର ବାକ୍ୟକୁ ଓ ଗୀତାର ବାକ୍ୟକୁ ଯେଉଁମାନେ ଈଶ୍ୱରବାକ୍ୟ ବୋଲି ସମ୍ମାନ କରନ୍ତି, ସେମାନେ ସମଗ୍ର ଶୂଦ୍ର ଜାତିକୁ ଏକ କରିପକାଉ ନାହାନ୍ତି କାହିଁକି ?

ମାନବ ଅର୍ଥ କି ଭାରତବାସୀ ? ତେବେ ଭୃଗୁପ୍ରଣୀତ ମନୁ ସଂହିତାକୁ ମାନବ ଧର୍ମଶାସ୍ତ୍ର ବୋଲନ୍ତି କାହିଁକି ? ଜଗଜ୍ଜନ କି ଏହି ପୁସ୍ତକକୁ ମାନବ ଧର୍ମଶାସ୍ତ୍ର ବୋଲି ଗଣ୍ୟ କରନ୍ତି, ନା ମାନ୍ୟ କରନ୍ତି ? ଏହା ଗୋଟିଏ ଜଟିଳ ଓ କୁଟିଳ ଗ୍ରନ୍ଥ, ଉଚ୍ଚ ଜାତିର ସ୍ୱାର୍ଥରକ୍ଷା (Safeguard) ନିମନ୍ତେ ରଚିତ ଏବଂ ଏଥିରେ ପ୍ରଥମରୁ ଜାତିଭେଦ ଓ ଜାତିଗଣନାର ମୂଳ ସୂତ୍ର ରହିଲା । ବହୁ ଦିନ ଚାଲିଗଲା ଉତ୍ତାରୁ ଇଂରାଜ ବାହାଦୁରଙ୍କର ଜନସଂଖ୍ୟା (Census) ରିପୋର୍ଟରେ ଜାତି ଗଣନାର ଧାରାବାହିକ ନିୟମ ଓ ଜାତିର ସଂଖ୍ୟା ଲିପିବଦ୍ଧ ହେଲା । ଏହି ଜନସଂଖ୍ୟା ରିପୋର୍ଟ ଯେ ଜାତିଭେଦ ବୃଦ୍ଧି ବଢ଼ାଉଅଛି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ତିନିଟା ଜନସଂଖ୍ୟା ଉତ୍ତାରୁ ଲୋକଙ୍କର ଆଖି ଫିଟିଲା । ଚତୁର୍ଥ ଜନସଂଖ୍ୟାବେଳେ ଏକ ଜାତି ଅପର ଜାତି ଅପେକ୍ଷା କିପରି ଶ୍ରେଷ୍ଠ ଆସନ ଲାଭ କରିବେ, ଏଥିପାଇଁ ଚେଷ୍ଟିତ ହେଲେ । ଏଥି ନିମନ୍ତେ ସୌହାର୍ଦ୍ଦ୍ୟ ନଷ୍ଟ ହେବାର ଯେ ସମ୍ଭବ, ତାହା ସେମାନେ ଥରେ ହେଲେ ଭାବିଲେ ନାହିଁ । ବୋଧହୁଏ ୧୯୦୧ର ସେନସ୍ ପ୍ରଥମେ କାୟସ୍ଥମାନେ କ୍ଷତ୍ରିୟ ହେବାର ବାସନା କଲେ । ଯଜ୍ଞୋପବୀତାଦି ଧାରଣ କଲେ । ଏଥି ନିମନ୍ତେ କାୟସ୍ଥ ମଧ୍ୟରେ ଦୁଇ ଦଳ ହେଲେ । ତାହାଛଡ଼ା ଅମ୍ବଷ୍ଠମାନେ ନିଜକୁ ବ୍ରାହ୍ମଣ ବୋଲି ପରିଚୟ ଦେବାକୁ ଲାଗିଲେ । କାୟସ୍ଥ ଶ୍ରେଷ୍ଠ କି ଅମ୍ବଷ୍ଠ ଶ୍ରେଷ୍ଠ ? ମୀମାଂସା କରିବ କିଏ, ବିବାଦରେ ଲାଭ କାହାର, କ୍ଷତି କାହାର, କେହି ବୁଝିଲେ ନାହିଁ ।

ବ୍ରାହ୍ମଣ, ବୈଶ୍ୟ ବା ଶୂଦ୍ର ହେବା ଅପେକ୍ଷା ଅଧୁନା କ୍ଷତ୍ରିୟ ହେବା ବଡ଼ ସହଜ । ଯେହେତୁ ଚୋର ଡକାୟତ ଓ

ପର ହସ୍ତରୁ ଲୋକଙ୍କୁ ରକ୍ଷା କରିବା ଧର୍ମ ଥିଲା କ୍ଷତ୍ରିୟର । ଏବେ ଏ ଭାର ନେଇଅଛନ୍ତି ଦେଶରକ୍ଷକ ବ୍ରିଟିଶ ଗଭର୍ଣ୍ଣମେଣ୍ଟ । ବ୍ୟୁତ୍ପତ୍ତି ଅନୁସାରେ ବ୍ରାହ୍ମଣ (ବ୍ରହ୍ମଜ୍ଞ) ନ ଥିଲେ ସୁଦ୍ଧା ତାଙ୍କର ଜାତିଶ୍ରେଷ୍ଠତ୍ୱ ବଜାଏ ଅଛି । ଯାଜକ, ପୂଜକ, ପାଚକ ବୋଲି ଅନ୍ତତଃ ବ୍ରାହ୍ମଣ ଜାତି ଶ୍ରେଷ୍ଠ । ଏ ଅଧିକାର ଅନ୍ୟର କାହିଁ ? ବୈଶ୍ୟ ହେଲେ ମୋଟ ବୋହିବାକୁ, ଶୂଦ୍ର ହେଲେ ସେବା କରିବାକୁ ପଡ଼ିବ । ଏଣୁ ନାମକାବାସ୍ତେ କ୍ଷତ୍ରିୟ ବ୍ୟବସାୟ (ବା ଆଖ୍ୟା) ଗ୍ରହଣ କରିବା ଅନ୍ୟ ବ୍ୟବସାୟ ଅପେକ୍ଷା ବଡ଼ ସହଜ ଓ ସୁଖକର ନୁହେଁ କି ? ଏଣୁ ଆଜି ଗୋପାଳ ମାହିଷ୍ୟ ଚଣ୍ଡାଳ ମଧ କ୍ଷତ୍ରିୟ ବୋଲି ପରିଚୟ ଦେବାକୁ ଚେଷ୍ଟା କରୁଅଛନ୍ତି । କ୍ଷତ୍ରିୟ ଜାତିର ଏଥିରେ ଭ୍ରୂକ୍ଷେପ କରିବାର କିଛିହିଁ କାରଣ ନାହିଁ । କାରଣ କ୍ଷତ୍ରିୟ ଯେ ମିଶ୍ରିତ ଜାତି ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଶକ ହୁନ ପ୍ରଭୃତି ବୈଦେଶିକ ଜାତି ଯେବେ କ୍ଷତ୍ରିୟ ଆଖ୍ୟା ଧାରଣ କରି ରାଜପୁତାନାରେ ଶ୍ରେଷ୍ଠ କ୍ଷତ୍ରିୟ ବା ରାଜପୁତ ବୋଲି ପରିଚିତ ହେଉଅଛନ୍ତି, ତେବେ ଭାରତୀୟ ଦୁଇ ଚାରିଟା ଜାତି କ୍ଷତ୍ରିୟ ଆଖ୍ୟା ନେଇପାରିବେ ଏଥିରେ କ୍ଷତି କାହାର ? ମାତ୍ର ଏ ଅଦ୍ଭୁତ ପରିବର୍ତ୍ତନରେ ଲାଭ କ'ଣ ? ଏବେ ପୂର୍ବ ପ୍ରସିଦ୍ଧ ରାଜବଂଶମାନଙ୍କ ପ୍ରତି କ୍ଷତ୍ରିୟ ଆଖ୍ୟାଟା ଅଜାଗଳସ୍ତନ ନ୍ୟାୟ ପ୍ରୟୋଜନଶୂନ୍ୟ ଓ ନିରର୍ଥକ ଯେମନ୍ତ, ଅଶୋଭନୀୟ ମଧ ତେମନ୍ତ ।

ପୂର୍ବେ କ୍ଷତ୍ରିୟରହିଁ ରାଜନ୍ୟ ଓ ରାଜାଉପାଧି ଥିଲା । ଭୂମ୍ୟଧିକାରୀ କ୍ଷତ୍ରିୟମାନେହିଁ ରାଜା ବୋଲି ପରିଚିତ ହେଉଥିଲେ । ଏବେ ରାଜ୍ୟଶୂନ୍ୟ ରାଜାର ତ ଅଭାବ ନାହିଁ । ପୂର୍ବେ ଯେ ରାଜ୍ୟ ଓ ପ୍ରଜାଶାସନ କରୁଥିଲା, ସେ ରାଜା; ଏବେ ଯେ ମୁଦ୍ରା ଶାସନ କରିପାରିଲା ବା ତହିଁର ସଦ୍‌ବ୍ୟୟ କରି ପାରିଲା, ସେ ରାଜା । ଏବେ ରାଜା ଆଖ୍ୟା ଜାତିଗତ ନୁହେଁ । ଗଭର୍ଣ୍ଣମେଣ୍ଟଙ୍କ ପ୍ରସାଦରୁ ଯେ କୌଣସି ଜାତିର ଲୋକ ରାଜା ଉପାଧି ଲାଭ କରିପାରେ । ଏଥିରେ କାହାରି ଆପତ୍ତି କରିବାର କ୍ଷମତା ନାହିଁ । କେହି ଆପତ୍ତି କରି ନାହାନ୍ତି ବା କରିବେ ନାହିଁ । କୌଣସି ଜାତି ଯେବେ ରାଜା ଉପାଧି ପାଇବାକୁ ଅଧିକାରୀ; ତେବେ ତାଙ୍କ ବଂଶୀୟଗଣ କ୍ଷତ୍ରିୟ ବୋଲି ପରିଚୟ ଦେବାରେ ଦୋଷ କ'ଣ ? କୌଣସି ଦୋଷ ନାହିଁ ସତ, ମାତ୍ର ଏ ପରିବର୍ତ୍ତନ କରିବାରେ ଲାଭ କ'ଣ ? ଏଥିରେ ବି ଭାରତ ଉଦ୍ଧାର ହେବ, ନା ଏକତା ଆସିବ ? କେତେଟା ନୂତନ ଶ୍ରେଣୀର ଉଦ୍ଭବ ହେବ ସିନା !

ବର୍ତ୍ତମାନ କାୟସ୍ଥ ଓ ଯାତବ ପ୍ରଭୃତି କେତେଟା ଜାତିର କ୍ଷତ୍ରିୟକୁ ଲାଭ କରିବା ଆକାଙ୍କ୍ଷା ବା ଉଚ୍ଚାଭିଳାଷ [illegible] ଗୋଟିକେତେ ନୂତନ ଶ୍ରେଣୀର ସୃଷ୍ଟି ହେବ । ଏହି ପ୍ର[illegible] ଯେ ଭାରତବର୍ଷର ଜାତିସଂଖ୍ୟା ବୃଦ୍ଧିହେଉ ନାହିଁ ତାହା ନୁହେଁ । ଆମ୍ଭେମାନେ ତାହା ପ୍ରତ୍ୟକ୍ଷ କରୁଥିବା ସତ୍ତ୍ୱେ ବାଧା ଦେବାକୁ ଅକ୍ଷମ । ରାଜା ଏତାଦୃଶ ଉଚ୍ଛୃଙ୍ଖଳତାର ବାଧାଦାତା । ମାତ୍ର ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଏତାଦୃଶ କାର୍ଯ୍ୟରେ ବାଧା ଦେବେ କାହିଁକି ? ଏଥିରେ ତ ଶାସନପଦ୍ଧତିରେ କୌଣସି କ୍ଷତି ଘଟିବାର ସମ୍ଭାବନା ନାହିଁ । ମାତ୍ର ପରିତାପର ବିଷୟ ଏହି ଯେ, ଉଚ୍ଚ ଶିକ୍ଷିତ ଓ ସଭ୍ୟ ବ୍ୟକ୍ତିମାନେ ଏତାଦୃଶ ଅନିଷ୍ଟକାରୀ ପ୍ରସ୍ତାବକୁ ମଧ ଅନୁମୋଦନ କରୁଅଛନ୍ତି । ବର୍ଣ୍ଣାଶ୍ରମ ଧର୍ମ ଓ ଜାତିଭେଦ ଯେ ଭାରତବାସୀର ସମୂହ ଅନିଷ୍ଟର ହେତୁ, ଏହା କାହାକୁ ଅଜଣା ? ମାତ୍ର ଅନ୍ଧବିଶ୍ୱାସ ଓ ଚିରାଚରିତ ପ୍ରଥାର ମୋହ ତ୍ୟାଗ କରିବାକୁ କେହି ରାଜି ନୁହନ୍ତି ।

ବର୍ଣ୍ଣାଶ୍ରମ ଧର୍ମ ବେଦବିହିତ ନୁହେଁ । ତଥାପି ଏହା ବହୁକାଳରୁ ଏ ଦେଶରେ ବିଦ୍ୟମାନ ଅଛି । ମାତ୍ର ସ୍ପର୍ଶଦୋଷଟା ଏଭଳି ପୂର୍ବେ ଥିଲା ବୋଲି ଜଣାଯାଏ ନାହିଁ । ଯାହା ଥିଲା, ତାହା ନଗଣ୍ୟ ଏବଂ ତାକୁ ମଧ ସାମାଜିକ ରୋଗ ଭାବି ମହତ ବ୍ୟକ୍ତିମାନେ ଆରୋଗ୍ୟ ଚେଷ୍ଟା କରିଥିଲେ । ପୁରାଣବିଶ୍ୱାସୀଙ୍କ ପାଇଁ ଉଦାହରଣ ଦିଆଯାଇପାରେ ଯେ, ଅସ୍ପୃଶ୍ୟ କୈବର୍ତ୍ତ ରାମଙ୍କର ପାଦ ଧୌତ କରିଥିଲା । ଶବର ରାମ ଲକ୍ଷ୍ମଣ ସୀତାଙ୍କୁ ଆତିଥ୍ୟ ଦ୍ୱାରା ଆପ୍ୟାୟିତ କରିଥିଲା, ଶବରୀପ୍ରଦତ୍ତ ଉଚ୍ଛିଷ୍ଟ ଫଳ ପ୍ରେମରେ ରାମଭକ୍ଷଣ କରିଥିଲେ । ଅରଣ୍ୟବିହାରୀ କିଷ୍କିନ୍ଧ୍ୟାବାସୀ ରାମଙ୍କର ମିତ୍ର— ଭୃତ୍ୟ, ସେବକ, ଆଉ ବା କ'ଣ ହୋଇ ନ ଥିଲେ ! ରାମଙ୍କର ଏତାଦୃଶ ଉଦାର ଉଦାହରଣକୁ ଅନୁକରଣ କରିବାକୁ ରାମଭକ୍ତ ଭାରତବାସୀ ରାଜି କି ? କୃଷ୍ଣ କ୍ଷତ୍ରିୟ, ଦାସୀପୁତ୍ର ବିଦୁର ଗୃହରେ ତାହାଙ୍କର ଶାକାନ୍ନ ଭକ୍ଷଣ ଅଦ୍ୟାପି ଜନଶ୍ରୁତି ହୋଇ ରହିଅଛି । ବୈଷ୍ଣବ ଗ୍ରନ୍ଥରେ ଶ୍ୱପଚ ବାଲ୍ମୀକି (ଚଣ୍ଡାଳ ବାଲ୍ମୀକି) ପ୍ରଦତ୍ତ ଉଚ୍ଛିଷ୍ଟ କୃଷ୍ଣ ପ୍ରେମରେ ଭକ୍ଷଣ କରିଥିବାର ଉଲ୍ଲେଖ ଅଛି । ପୁରାଣରେ ଲେଖା ଅଛି—ଚାରି ବର୍ଣ୍ଣ ଏହା ପାଠ କରୁଅଛନ୍ତି । ସବୁ ଏ କାନରେ ପଡ଼ି ସେ କାନରେ ବାହାରି ଯାଉଅଛି । ଶାସ୍ତ୍ରମାନେ ଶିକ୍ଷା ଦେଲେ, ଆରେ, ରାମ କୃଷ୍ଣ ଯେ ଈଶ୍ୱରାବତାର, ସେମାନଙ୍କଠାରେ ସବୁ ପାଚ ଯାଏ । ତାଙ୍କ ପରି ତୁମେ କଣ ହେଲଣି ଯେ ସେ ଯାହା କରିଅଛନ୍ତି ତୁମେ ତାହା କରିବାକୁ ଯାଇ ନରକରେ ପଡ଼ିବ !

ରାମ ତ ସମୁଦ୍ରରେ ଗୋଟାଏ ସେତୁ ବାନ୍ଧିଥିଲେ, ତୁମେ ଗୋଟାଏ ବାନ୍ଧିଲ ? କୃଷ୍ଣ ତ ଗୋବର୍ଦ୍ଧନ ଗିରିଟାକୁ କାଣି ଆଙ୍ଗୁଳିରେ ଟେକି ଧରିଥିଲେ, ତୁମେ ଧରିଲ ? କେବଳ କ୍ଷୀର ନବନୀତ ଭକ୍ଷଣ କିମ୍ବା ଗୋପାଳୁଣୀମାନଙ୍କ ସଙ୍ଗେ ହସକୌତୁକ କରିବାକୁ ମନ, ନା ? ନାଚାର ! ସମୁଦ୍ର ନ ବାନ୍ଧିଲେ, ଗୋବର୍ଦ୍ଧନ ଧାରଣ ନ କଲେ ରାମ କୃଷ୍ଣଙ୍କର ଆଉ କୌଣସି ଗୁଣ ଅନୁକରଣୀୟ ନୁହେଁ ! ଈଶ୍ୱରବିଶ୍ୱାସ ଓ ଅବତାର ବିଶ୍ୱାସରେ ହିନ୍ଦୁ ବୁଡ଼ିଲେ ଓ ସଢ଼ିଲେ । ରାମ କୃଷ୍ଣଙ୍କୁ ଦେବାସନରୁ ସ୍ଖଳିତ କରି ପ୍ରକୃତ ନର ହୃଦୟର ଅଧୀଶ୍ୱର କରି ନ ପାରିବ ଯେଉଁ ବ୍ୟକ୍ତି, ସେ ଭାରତରେ, ଏକତା ଆନୟନ କରିବାକୁ ଅକ୍ଷମ, ଏହା ଧ୍ରୁବ ସତ୍ୟ ବୋଲି ଆମ୍ଭମାନଙ୍କର ଧାରଣା ।

ବୁଦ୍ଧଦେବଙ୍କ କଥା କହିବା କଣ ? ସେ ଅସାଧ୍ୟ ସାଧନ କରିଯାଇଥିଲେ । ଆଜି ପ୍ରାଚ୍ୟ ଖଣ୍ଡରେ ତାଙ୍କର ଆଧିପତ୍ୟ, ଏଣୁ ସେମାନେ ସ୍ୱାଧୀନ । ମାତ୍ର ମନୁଷ୍ୟର ମହତ୍ତ୍ୱ ଯେ ଭାରତବାସୀଙ୍କ ପ୍ରତି ଅସହ୍ୟ । ବୁଦ୍ଧ ନିଜକୁ ଦେବତା ବୋଲି ପ୍ରତାରଣା କରିପାରିଲେ ନାହିଁ, ଏଣୁ ତାଙ୍କୁ ଭାରତବାସୀ ହୃଦୟରାଜ୍ୟରୁ ତଥା ଭାରତରୁ ଅନ୍ତର କଲେ । ଏଥି ଉତ୍ତାରୁ ମଧ ରାମାନୁଜ, ଚୈତନ୍ୟ ପ୍ରଭୃତି ଏହି ଜାତିଭେଦ ପ୍ରଥାକୁ ଉନ୍ମୂଳିତ କରିବାର ବାସନା ରଖିଥିଲେ । ମାତ୍ର ସେହି ଧର୍ମପନ୍ଥାରେ ଭାରତବାସୀ ଗୋଟାଏ ଠକିବା ପନ୍ଥା ଆବିଷ୍କାର କରିଅଛନ୍ତି । ଏହା ଭାରତବାସୀଙ୍କର ଧର୍ମ । ଚୈତନ୍ୟ ଥିଲେ କୃଷ୍ଣପ୍ରେମିକ ଭକ୍ତ, ତାଙ୍କୁ କଲେ ସ୍ୱୟଂ ଈଶ୍ୱରାବତାର । ଚୈତନ୍ୟଙ୍କ ଅନ୍ତେ ବୈଷ୍ଣବ ସମ୍ପ୍ରଦାୟ ଯେ କି ପରିମାଣରେ ବୃଦ୍ଧିପ୍ରାପ୍ତ ହୋଇଅଛି ଏବଂ ଏହି ପ୍ରେମ ଧର୍ମାବ୍ଧିରେ ଯେ ବଙ୍ଗ ଉତ୍କଳ କି ପରିମାଣରେ ବୁଡ଼ିଅଛି ଓ ବୁଡୁଅଛି, ତାହା ଅନୁଧାବନଦ୍ୱାରା ହୃଦୟଙ୍ଗମ ହେବ । ରାମାନୁଜଙ୍କ ଉଦ୍ଧାର ଧର୍ମ ଅବଲମ୍ବନକାରୀ ଶ୍ରୀବୈଷ୍ଣବ ସମ୍ପ୍ରଦାୟକୁ ଏବେ ଶୁଚିବାର ଧରିଅଛି । ଏପ୍ରକାର ଅନେକ ଉଦାରହୃଦୟ ନରଦେବତା ଏହି ଭାରତ ଭୂମିରେ ଜନ୍ମଗ୍ରହଣ କରି ଦେଶର ଉନ୍ନତି ଓ ସ୍ୱାଧୀନତାପାଇଁ ନାନା ଉପାୟ ଉଦ୍ଭାବନ କରିଅଛନ୍ତି । ମାତ୍ର ପୌରାଣିକ ଧର୍ମଭୀରୁତା ସମସ୍ତଙ୍କର ଯତ୍ନକୁ ବ୍ୟର୍ଥ କରିଅଛି ।

ସମ୍ମାନାସ୍ପଦ ଗାନ୍ଧିପ୍ରମୁଖ ବ୍ୟକ୍ତିମାନେ ବର୍ତ୍ତମାନ ନୀଚଜାତିଙ୍କି ମନ୍ଦିର ପ୍ରବେଶ କରାଇ ସହାନୁଭୂତି ଦେଖାଇବାର ଚେଷ୍ଟା କରୁଅଛନ୍ତି । ଉଚ୍ଚଜାତି ହିନ୍ଦୁଗଣ ଏଥିରେ ରାଜି ନୁହନ୍ତି । ଏଣୁ ଆଇନର ଆଶ୍ରୟ ନେବାର ମଧ ଚେଷ୍ଟା ଚଳୁଅଛି । ମାତ୍ର ଏ ଚେଷ୍ଟା ଫଳବତୀ ହେବାର ଆଶା ଦେଖାଯାଉ ନାହିଁ ।

ନୀଚ ଜାତିଙ୍କର ଆଖ୍ୟା ବର୍ତ୍ତମାନ 'ହରିଜନ' । ହରିଜନମାନେ ମନ୍ଦିର ପ୍ରବେଶ କରିପାରିଲେ ଯେ କି ଇଷ୍ଟ ସାଧିତ ହେବ, ତାହା ବୁଝାଯାଉ ନାହିଁ । ଏହାଦ୍ୱାରା ଏକତା ଆସିବାର ତେଣେ ଥାଉ ବରଂ ବିଦ୍ୱେଷବହ୍ନି ପ୍ରଜ୍ୱଳିତ ହେବ, ଏହା ଚିନ୍ତାଶୀଳ ବ୍ୟକ୍ତିଙ୍କର ବୋଧଗମ୍ୟ ହେଉ ନାହିଁ ? ତାହା କିପରି କହିବା ? ମାତ୍ର ନୀଚ ଜାତିଙ୍କୁ ବଶୀଭୂତ କରିବା ନିମନ୍ତେ ଯେଉଁ ଉଚ୍ଚ ଜାତି ଏତେ ସାଧସାଧନା କରିଅଛନ୍ତି, ଉପାୟ ଉଦ୍ଭାବନ କରିଅଛନ୍ତି ଏବଂ ଏତେ ଧର୍ମଶାସ୍ତ୍ର ପୁରାଣ ନିତ୍ୟାଚାର ପ୍ରଣୟନ କରିଅଛନ୍ତି, ସେମାନେ କି ତାହା ସହଜରେ ତ୍ୟାଗ କରିବେ ? ପାର୍ଲିଆମେଣ୍ଟ ଯେମନ୍ତ ଭାରତବାସୀଙ୍କି ସ୍ୱରାଜ୍ୟ ଦାନରେ ବିମୁଖ, ଉଚ୍ଚ ଜାତି ନୀଚ ଜାତିକୁ ସମାନ ଅଧିକାର ଦେବାକୁ ତେମନ୍ତ ବା ତତୋଽଧିକ ବିମୁଖ, ଏହା କି ବିଜ୍ଞବ୍ୟକ୍ତିଙ୍କର ହୃଦୟରେ ସ୍ଥାନ ପାଉ ନାହିଁ ? ଯେଉଁ ଉପାୟରେ ଉଚ୍ଚ ନୀଚ ମଧ୍ୟରେ ଏକତା ଆନୟନର ଚେଷ୍ଟା ହେଉଅଛି, ତାହା ଅସାଧ ସାଧନା ଚେଷ୍ଟା ବୋଲି ବୋଧହୁଏ ଏବଂ ଏହି ଚେଷ୍ଟା ସମ୍ମାନାସ୍ପଦ ଗାନ୍ଧିଙ୍କର ପଞ୍ଚମ ଭ୍ରାନ୍ତି ।

ଏ ଆନ୍ଦୋଳନ ଆଜି ଯେପରି ପ୍ରବଳ ଭାବରେ ଚଳାଇବାର ଚେଷ୍ଟା ଲାଗିଅଛି, ପୂର୍ବେ କି କେବେ ଏଥିରେ ସୂତ୍ରପାତ ହୋଇଥିଲା ? ଭାରତର ଅସ୍ପୃଶ୍ୟତା ଦୂରୀଭୂତ ହେଲେ ଦେଶର ମଙ୍ଗଳ ହେବ, ଏହା ଭାରତର ଶୁଭଚିନ୍ତକମାନଙ୍କ ମସ୍ତିଷ୍କ ଆଲୋଡ଼ନ କରେ, ମାତ୍ର ପନ୍ଥା ଦିଶେ ନାହିଁ ।

ଅଧସ୍ତନ ଜାତିମାନଙ୍କୁ ଯେବେ ଉପଯୁକ୍ତ ଶିକ୍ଷା ଦେବାର ପର୍ଯ୍ୟାପ୍ତ ବନ୍ଦୋବସ୍ତ କରାଯାଇଥାନ୍ତା ଏବଂ ସେମାନେ ଉପଯୁକ୍ତ ଶିକ୍ଷା ଦୀକ୍ଷା ପାଇଥାନ୍ତେ, ତାହାହେଲେ ସେମାନେ ଦାବି ଓ ସ୍ୱତ୍ୱ ସାବ୍ୟସ୍ତ କରିପାରନ୍ତେ ଓ ଉଚିତ ପ୍ରାପ୍ୟ ଆଦାୟ କରିପାରନ୍ତେ । ମାତ୍ର ଏଥିନିମନ୍ତେ ଶାସକମାନେ ବା ଦେଶବାସୀ ଆନ୍ତରିକତା ସହିତ କୌଣସି ଚେଷ୍ଟା କରିଅଛନ୍ତି କି ? ଆଜି ପ୍ରାୟ ଦଶ ବର୍ଷକାଳ ଆଇନ ଅମାନ୍ୟ ନିମନ୍ତେ ଯେଉଁ ପରିମାଣ ଜାତୀୟ ଅର୍ଥ ବ୍ୟୟିତ ହୋଇଅଛି, ତାହା ଯଦି ହରିଜନମାନଙ୍କ ଶିକ୍ଷା ନିମନ୍ତେ ବ୍ୟୟିତ ହୋଇଥାନ୍ତା କିମ୍ବା ହିନ୍ଦୁ ବିଶ୍ୱବିଦ୍ୟାଳୟ ନିମନ୍ତେ ଯେଉଁ ଅର୍ଥ ବ୍ୟୟିତ ହୋଇଅଛି, ତାହା ଯେବେ ହରିଜନ ବିଦ୍ୟାଳୟ ପାଇଁ ବ୍ୟୟିତ ହୋଇଥାନ୍ତା,

ଯେବେ ଶାନ୍ତିନିକେତନ ହରିଜନ-ନିକେତନ ହୋଇଥାନ୍ତା, ତାହାହେଲେ ଭାରତୀୟ ନେତାମାନଙ୍କ ହୃଦୟରେ ହରିଜନ-ପ୍ରେମ ଚିର ଜାଗ୍ରତ ବୋଲି ଆମ୍ଭେମାନେ ବିଶ୍ୱାସ କରିପାରନ୍ତୁ ।

ଯାବତୀୟ ସଦନୁଷ୍ଠାନ କେବଳ ଉଚ୍ଚ ଜାତି ପାଇଁ । ଆଜି ହରିଜନ ଭାଗ୍ୟରେ କେବଳ ମନ୍ଦିରପ୍ରବେଶହିଁ ମୁକ୍ତିର ପସରା ! ଏ ଦେଶର ଏକତା ଉପବାସ ଗ୍ରହଣରେ, "ଓଁ ନମୋ-ନାରାୟଣାୟ" ଦୀକ୍ଷାଦାନରେ, କବିତା ପ୍ରସ୍ରବଣରେ କିମ୍ବା ବକ୍ତୃତା ଦାନରେ ଘଟିପାରିବ ନାହିଁ ।

ସେବା ଓ ବୃତ୍ତିଦ୍ୱାରା ଶୂଦ୍ରଙ୍କର ମୁକ୍ତି ଏବଂ ଏହା ଈଶ୍ୱରାଦେଶ ବୋଲି ସହସ୍ର ସହସ୍ର ବର୍ଷ ହେଲା ଶୂଦ୍ରଙ୍କୁ ବା ନୀଚ ଜାତିଙ୍କି ଶିକ୍ଷା ଦିଆଯାଉଅଛି । ଏହା ଈଶ୍ୱରାଦେଶ ବୋଲି ମାନେ ମାନି ଆସିଅଛନ୍ତି ଓ ତଦନୁସାରେ ଅଭ୍ୟାସ କରୁଅଛନ୍ତି । ଏହି ବଦ୍ଧମୂଳ ସଂସ୍କାରକୁ ବି ନୀଚ ଜାତି ବର୍ଣ୍ଣାଶ୍ରମଧର୍ମରେ ବିଶ୍ୱାସ ରଖି ତ୍ୟାଗ କରିପାରିବେ ? ମନ୍ଦିର ପ୍ରବେଶ କଲେ ବି ଏହି ସଂସ୍କାର ଦୂର ହେବ ? ଏଥିନିମନ୍ତେ ନୂତନ ପନ୍ଥାର ପ୍ରୟୋଜନ । କେହି ନୂତନ ପନ୍ଥା ଜାଣିବାକୁ ଚେଷ୍ଟା କରିଅଛନ୍ତି କି ? ଜଣାଯାଏ ନାହିଁ !

ଉଚ୍ଚ ଜାତିଙ୍କ ମଧ୍ୟରେ ଥିବା ଭେଦଜ୍ଞାନ ଅପେକ୍ଷା / ଅଧସ୍ତନ ଜାତିଙ୍କର ଭେଦଜ୍ଞାନ ବେଶି । ଉଚ୍ଚ ଜାତି ନୀଚ ଜାତିକୁ ସ୍ପର୍ଶ କଲେ ଯେତେ ଦୋଷ ବୋଲି ଜ୍ଞାନ କରେ, ଜଣେ ନୀଚ ଜାତି ଅପର ନୀଚ ଜାତିକୁ ସ୍ପର୍ଶ କଲେ ସେହିପରି ବା ସ୍ଥଳବିଶେଷରେ ଅଧିକ ଦୋଷ ବୋଲି ମନେକରେ । ଆମ୍ଭେମାନେ ହାତୀ ଚଢ଼ିଲାବେଳେ ପାଣକୁ ସ୍ପର୍ଶ କରୁଅଛୁଁ, ଘୋଡ଼ା ଚଢ଼ିଲାବେଳେ ଘାସିକୁ ସ୍ପର୍ଶ କରୁଅଛୁଁ— କେବେ ବସ୍ତ୍ରତ୍ୟାଗ କରି ନାହୁଁ, ସ୍ନାନ କରି ନାହୁଁ କିମ୍ବା ଯଜ୍ଞୋପବୀତ ବଦଳାଇ ନାହୁଁ । ମାତ୍ର ଘାସି ଯେବେ ପାଣକୁ ସ୍ପର୍ଶ କରେ, ପାଣ କଦାପି ବସ୍ତ୍ର ପରିବର୍ତ୍ତନ ନ କରି ରହିପାରେ ନାହିଁ । ଆମ୍ଭେମାନେ ଏ କଥା ପ୍ରତ୍ୟହ ପ୍ରତ୍ୟକ୍ଷ କରୁଅଛୁଁ । ଅନ୍ୟାନ୍ୟ ନୀଚ ଜାତିମାନଙ୍କର ଆଚରଣ ମଧ୍ୟ ସେହିପରି । ଉଚ୍ଚ ଜାତିର ସମସ୍ତେ ଅସ୍ପୃଶ୍ୟ, ମାତ୍ର ନୀଚ ମଧ୍ୟରେ ଏ ଅସ୍ପୃଶ୍ୟତା ପ୍ରବେଶ କଲା କିପରି ? ଘାସିପାଣ ମନ୍ଦିର ପ୍ରବେଶ କରିପାରନ୍ତି; ମାତ୍ର ପାଣ, କେବେ ଘାସିର ଜଳ ସ୍ପର୍ଶ କରିବ ନାହିଁ ବା ଘାସିକୁ ସ୍ପର୍ଶ କରିବ ନାହିଁ । ଏଥିରେ ଉପାୟ କ'ଣ ? ମନ୍ଦିର ପ୍ରବେଶରେ ଲାଭ ବା କଣ ? ପ୍ରଥମରୁ ନୀଚମାନଙ୍କ ମଧ୍ୟରେ ଏକତା ଆନୟନ ଯେମନ୍ତ ପ୍ରୟୋଜନ, ଉଚ୍ଚମାନଙ୍କ ମଧ୍ୟରେ ମଧ୍ୟ ଏକତା ଆନୟନ ତେମନ୍ତ ପ୍ରୟୋଜନ । ଏ ସଂସ୍କାର ପୂର୍ବରୁ ନ କରି ଉଚ୍ଚ ନୀଚକୁ ଏକ କରିବା ଆକାଙ୍କ୍ଷା ଦୂରାକାଙ୍କ୍ଷା ମାତ୍ର ।

ନେତାମାନଙ୍କ ଅନୁରୋଧରେ ବା ଲାଭାଶାରେ ଅନେକ ମନ୍ଦିର ଦ୍ୱାର ହରିଜନଙ୍କପାଇଁ ଉନ୍ମୁକ୍ତ କରାଯାଇପାରେ; ମାତ୍ର ହରିଜନମାନଙ୍କ ପ୍ରସ୍ଥାନ ସଙ୍ଗେ ସଙ୍ଗେ ମହାସ୍ନାନ ଓ ପ୍ରତିଷ୍ଠାର ବ୍ୟବସ୍ଥା ଯେ ଶାସ୍ତ୍ରକାରଗଣ ଲେଖିଯାଇଅଛନ୍ତି ।

ଯେଉଁମାନେ ହରିଜନମାନଙ୍କ ଉନ୍ନତିକଳ୍ପେ ବଦ୍ଧପରିକର, ସେମାନଙ୍କର ଉଚିତ ଯେ, ସେମାନଙ୍କ ଶିକ୍ଷା ନିମନ୍ତେ ଯଥେଷ୍ଟ ବନ୍ଦୋବସ୍ତ କରନ୍ତୁ । ଉଚ୍ଚ ଜାତି ପାଇଁ ଭାରତରେ ବିଦ୍ୟାଳୟର ଅଭାବ ନାହିଁ । ସେହି ପରିମାଣରେ ନୀଚ ଜାତି ପାଇଁ ବିଦ୍ୟାଳୟ ହେଉ ।

ବାଧ୍ୟବାଧକତାଦ୍ୱାରା ହରିଜନଙ୍କୁ ମନ୍ଦିର ପ୍ରବେଶ କରାଇବା ଅପେକ୍ଷା ହରିଜନ ପ୍ରେମିକମାନେ ମନ୍ଦିରରେ ପ୍ରବେଶ କରିବାରୁ କ୍ଷାନ୍ତ ହେଉନ୍ତୁ । ଉଚ୍ଚ ଲୋକଙ୍କୁ ଆପଣା ପନ୍ଥାର ପଥିକ କରନ୍ତୁ । ନେତାମାନେ ମନ୍ଦିର ତ୍ୟାଗ କରି ହରିଜନ ସହିତ ମିଳିତ ହେଲେ ହରିଜନଙ୍କୁ ମନ୍ଦିର ପ୍ରବେଶ କରାଇବା ଅପେକ୍ଷା ଅଧିକ ଫଳ ମିଳିପାରେ ବୋଲି ଆମ୍ଭମାନଙ୍କର ଧାରଣା ।

•

## ମରଣରେ ତୁ ମୋହର ଜୀବନର ସାଥୀ

ମରଣ, ତୁ ମୋର ଜୀବନର ସାଥୀ । ମାତୃଗର୍ଭରେ ଥିଲାବେଳେ ତୁ ମୋର ସଙ୍ଗରେ ଥିଲୁ— ଦଶ ମାସ ଥିଲୁ । ମୋର ଜନ୍ମବେଳେ ତୁ ମୋ ସଙ୍ଗରେ ଜନ୍ମନେଲୁ । ତୁ ମୋର ସହଜନ୍ମା ସଙ୍ଗୀ । ମୁଁ ଗର୍ଭସ୍ଥ ହେବା ଦିନରୁ ତୋର ମୋର ତିଳେମାତ୍ର ଅନ୍ତର ଘଟି ନାହିଁ । ତୋ ପରି ଚିରସଙ୍ଗୀ କେହି ନୁହନ୍ତି; ପିତା, ମାତା, ପୁତ୍ର, ଭାଇ, ଭଗିନୀ, ସ୍ତ୍ରୀ, ବନ୍ଧୁବାନ୍ଧବ । ସେମାନଙ୍କ ସହିତ ବିଚ୍ଛେଦ ଘଟିବା ତ ଅନିବାର୍ଯ୍ୟ; ମାତ୍ର ତୋର ମୋର ବିଚ୍ଛେଦ କି କେବେ ଘଟିବ ? ଆମ ଦୁହିଁଙ୍କର ସାହଚର୍ଯ୍ୟ ଅବିଚ୍ଛେଦ୍ୟ ଓ ଅବିଭାଜ୍ୟ । ଯେତେବେଳେ ମାତୃଗର୍ଭରୁ ଜନ୍ମ ଲଭି ସହାୟତାଶୂନ୍ୟ ଅବସ୍ଥାରେ ଉତ୍ତାନପାଦ ହୋଇ ଅନ୍ତୁଡ଼ିଶାଳରେ ଶୋଇଥିଲି; ସେତେବେଳେ ତୁ ପରା ମୋ ସହିତ ଶୟନ କରିଥିଲୁ ? ଯେତେବେଳେ ଗୁରୁଣ୍ଡିବାକୁ ଶିକ୍ଷାକଲି, ସେତେବେଳେ ତୁ ମଧ୍ୟ ମୋ ସଙ୍ଗରେ ଗୁରୁଣ୍ଡୁଥିଲୁ । ସାବଧାନ ହେବାକୁ ତ ତୁଂ ଶିକ୍ଷାଦେଲୁ ।

ଚାଲି ଶିଖିଲି; ତୁ ମୋ ସଙ୍ଗରେ ଚାଲିଥାଉ । କାଳେ ପଡ଼ିଯିବି ବୋଲି ମାଆଙ୍କର ଯେତିକି ଭୟ, ତୁ ମୋତେ ତେତିକି ସାବଧାନ କରାଉଥାଉ । ମାଆଙ୍କ ଅଗୋଚରରେ ବୃକ୍ଷ ଉପରେ ଉଠେ, ସେତେବେଳେ ତୁ ମଧ୍ୟ ପରା ମୋ ସଙ୍ଗରେ ବୃକ୍ଷ ଉପରେ ଥାଉ ? ମୋର ଦୁର୍ଦ୍ଦଶା ଦେଖି ମା' ଯେତେବେଳେ ଭୟରେ ଥରହର, ସେତେବେଳେ ସାବଧାନରେ ବୃକ୍ଷକୁ ଧରି ରହିବାକୁ ତୁ ସତର୍କ କରାଉ । ସାହାଯ୍ୟ ପାଇ ଅବତରଣ କଲା ଉତ୍ତାରୁ ବୃକ୍ଷାରୋହଣରେ ବିପତ୍ତି ଅଛି ବୋଲି ଭୟ ଦେଖାଇଲୁ, ସାବଧାନ ହେବାକୁ ଶିକ୍ଷା ଦେଲୁ ତୁ ତ ! ବୃକ୍ଷାରୋହଣ କଲେ, ନଦୀ ସନ୍ତରଣ କଲେ, ଭୟ ଓ ବିପତ୍ତି ଅଛି ବୋଲି ଶିକ୍ଷା ଦେଲୁ ତୁ ତ । ସଙ୍ଗରେ ରହିଥାଉ ତୁ । ନଦୀବନ୍ୟାରେ ଭାସିଯାଉଥିଲା ବେଳେ ଭାଇବନ୍ଧୁ ପିତାମାତା କେହି ତ ନ ଥିଲେ, ତୁ ସିନା ଥିଲୁ ? ତୁ ସାବଧାନ କରାଇବାରୁ ସିନା ମୁଁ ଉଦ୍ଧାର ପାଇଲି । କଠିନ ରୋଗାକ୍ରାନ୍ତ ହୋଇ କେତେଥର ଶଯ୍ୟାଶାୟୀ ହୋଇ ପଡ଼ିଥାଏ— ଉତ୍‌ଥାନଶକ୍ତିରହିତ, ମୂର୍ଚ୍ଛିତ, କ୍ଳାନ୍ତଶ୍ରାନ୍ତ । ସମସ୍ତେ ମୋ ମୁଖକୁ ଅନାଇ ରହିଥାନ୍ତି । ଚିକିତ୍ସା କରିବାରେ ବ୍ୟସ୍ତ; ମାତ୍ର କେହି କି ମୋ ସହିତ ଶଯ୍ୟାରେ ଶୟନ କରିଥାନ୍ତି ? ତୁ ମୋ ସଙ୍ଗରେ ଏକା ଶଯ୍ୟାରେ ଥାଉ; ସମସ୍ତଙ୍କୁ ଓ ମୋତେ ସାବଧାନ କରାଉଥାଉ । ଯେତେବେଳେ ବନ୍ୟହସ୍ତୀ ଆକ୍ରମଣ କଲା, ସେତେବେଳେ କିଏ ମୋ ସଙ୍ଗରେ ଥାଇ ଇସାରା ଦେଲା—ଖବରଦାର, ପଛ ଫେରାଇ ପଳା ନା, ପ୍ରାଣ ଯିବ; ଶୀଘ୍ର ଗୁଳି ଚଳା । ତୋର ଶିକ୍ଷାରୁ ସିନା ବନ୍ଧୁକ ଚଳାଇଲି; ପ୍ରାଣ ବଞ୍ଚିଲା । ସେତେବେଳେ ତୋ ଭିନ୍ନ ଅନ୍ୟ କେହି କି ମୋର ସଙ୍ଗରେ ଥିଲେ ? କେତେଥର ବ୍ୟାଘ୍ର, ଭଲ୍ଲୁକ ସର୍ପ ଆକ୍ରମଣରୁ ରକ୍ଷା ପାଇଛି, କେବଳ ତୋ ସାହଚର୍ଯ୍ୟରୁ । ସମୁଦ୍ରଗର୍ଭରେ ବାତ୍ୟାବିତାଡ଼ିତ କ୍ଷୁଦ୍ର ନୌକା ଯେତେବେଳେ ବୁଡ଼ିବାକୁ ବସିଲା, ପ୍ରାଣ ଗଲା, ରକ୍ଷା ନାହିଁ, ରକ୍ଷା ନାହିଁ ବୋଲି ସହଯାତ୍ରୀମାନେ ଆର୍ତ୍ତନାଦ କରୁଥିଲେ, ତଟସ୍ଥ ଦର୍ଶକମାନେ ଏତେଗୁଡ଼ିଏ ଲୋକର ପ୍ରାଣ ଅନାୟାସରେ ନଷ୍ଟ ହେଲା ବୋଲି ତ୍ରାହି ଡାକ ଦେଉଥିଲେ, ପ୍ରାଣ ଗଲାବେଳେ କିଏ କାହାର ସଙ୍ଗୀ ବୋଲି ସହଯାତ୍ରୀମାନେ ସତର୍କତା ଅବଲମ୍ବନ କରୁଥିଲେ, ସେତେବେଳେ ମୋର ସହଚର କିଏ ? ତୁ ପରା ଧୀରସ୍ଥିର ହୋଇ ରହିବାକୁ ସାହସ ଦେଲୁ ? ଆସନ୍ନ ବିପତ୍ତିରୁ ରକ୍ଷାପାଇଲି ।

ଅସଂଖ୍ୟ ସଙ୍କଟାପନ୍ନ ଅବସ୍ଥାରେ ଯେତେବେଳେ ଆଗରେ, ପଛରେ, ପାର୍ଶ୍ୱରେ ଜନମାନବ ଆହା କରିବାକୁ ନ ଥାନ୍ତି, ହତାଶ ପ୍ରାଣ ତୋ ଭରସାରେ କେବଳ ରକ୍ଷା ପାଇଅଛି ।

ମାନବ ପ୍ରାକୃତିକ ବିପର୍ଯ୍ୟୟର କ୍ରୀଡ଼ନକ । ଏକ ଅବସ୍ଥା ମନୁଷ୍ୟର ଚିରକାଳ ଥାଏ ନାହିଁ । ଆଜି ସେ ସୁସ୍ଥ ଓ ସବଳ, କାଲି ଯେସେ ଅସୁସ୍ଥ ଓ ଦୁର୍ବଳ ନ ହେବ, ଏପରି ନୁହେଁ । ଯେ ଆଜି ସଂକ୍ରାମକ ରୋଗକୁ ଭୟ ଓ ଘୃଣା କରେ, କାଲି କେଉଁ ସୂତ୍ରରେ ତାକୁ ସେହି ଘୃଣ୍ୟ ସଂକ୍ରାମକ ରୋଗ କେଉଁ ଛଟକରେ ଆକ୍ରମଣ କରିବସିବ, ତାହା କିଏ କହିପାରେ ? ରୋଗ ଦେଖି ମୁଁ ଆଜି ଯାହାକୁ ଘୃଣା ଓ ହେଳା କରୁଅଛି, ମୋତେ କାଲି ଅନ୍ୟମାନେ ସଂକ୍ରାମକ ରୋଗାକ୍ରାନ୍ତ ଦେଖି ଘୃଣା ଓ ହେଳା କରିବେ—ଏହା ଜଣା କଥା; ମାତ୍ର ମରଣ, ତୁ କି ମତେ ତଦବସ୍ଥା ଦେଖି ଘୃଣାରେ ଓ ହେଳାରେ ଛାଡ଼ିଯିବୁ ? ଯେତେବେଳେ ଏପରି ବୀଭତ୍ସ ଘୃଣ୍ୟ ରୋଗ ଆକ୍ରମଣ କରିବ, ପୂଜ ରକ୍ତ ସ୍ରବିବ, ପୂତିଗନ୍ଧ ନିର୍ଗତ ହେବ, ଆତ୍ମୀୟବର୍ଗ ଘୃଣାରେ ନାକରେ କପଡ଼ା ଢାଙ୍କିବାର ଉଦ୍ୟୋଗ କରିବେ. ରୋଗଶଯ୍ୟା ନିକଟରୁ ବାହାରକୁ ଯାଇ ଥୁକ ପକାଇବେ, ସେତେବେଳେ ସାନ୍ତ୍ୱନା ଦେବାକୁ ରୋଗଶଯ୍ୟାରେ ତୋ ଭିନ୍ନ ଆଉ କିଏ ଥିବ ? ତୋର ଘୃଣା ନାହିଁ; ଏଣୁ ତୁ ପରମ ଆତ୍ମୀୟ ଓ ସହଚର ।

ଶେଷ ସମୟ ଉପସ୍ଥିତ ହେବାଯାଏ ତୋ ଭରସାରେ ମୁଁ ଇହଧାମରେ ଥିବି । ଅନ୍ତର୍ଜଳ ଦେଇ ଯେତେବେଳେ ଆତ୍ମୀୟବର୍ଗ କ୍ରନ୍ଦନ-ଚିତ୍କାରରେ ଗୃହ କମ୍ପିତ କରୁଥିବେ, ମୋର ପ୍ରାଣବାୟୁ ବହିର୍ଗତ ହୋଇ ନଥିବ, ସେତେବେଳଯାଏ ମଧ୍ୟ ତୁ ମୋ ସହିତ ଶୟନ କରିଥିବୁ । ମୋର ପ୍ରାଣବାୟୁ ବହିର୍ଗତ ହେଲାରୁ, ଘନ ଓ ବାୟବୀୟ ପଦାର୍ଥର ବିଚ୍ଛେଦ ଘଟିଲା ଉତ୍ତାରୁ ମୋର ଅସ୍ତିତ୍ୱ ଲୋପ ପାଇବ; ତୁ ମୋର ସଙ୍ଗ ତ୍ୟାଗ କରିବୁ ।

•

## ମନ

ମୁଁ ମନୋବିଜ୍ଞାନର ସୀମା ସ୍ପର୍ଶ କରି ନାହିଁ ବୋଇଲେ ଚଳେ; ଅଥଚ ମନ ସମ୍ବନ୍ଧରେ ପଦେ ଅଧେ ଲେଖିବାକୁ ବସିଛି । ହାସ୍ୟାସ୍ପଦ ହେବାର କଥା ନୁହେଁ କି ?

ଦୋହି ଦେବାଟା ଦୋଷାବହ । ଅନ୍ତତଃ ବାଇବଲ ଏ ମତ ବ୍ୟକ୍ତ କରେ । ଆମ ଦେଶରେ ରାଣ ପକାଇବାର ବାରଣ ନାହିଁ; ବରଂ ରାଣଦ୍ୱାରା ଆତ୍ମମତ ପୋଷଣ କରିବାକୁ ପ୍ରଶ୍ରୟ ଦିଆଯାଇଅଛି । ଆତ୍ମମତ ବଜାୟ ରଖିବା ନିମନ୍ତେ ଈଶ୍ୱର,

ପିତାମାତା ଓ ପୁତ୍ରର ମସ୍ତକରେ ହାତ ଦେବାକୁ ନିଷେଧ ନାହିଁ । ଅନୁଶାସନ, ରାଣ ପ୍ରମାଣ ପ୍ରଭୃତିକୁ ଏକ ପର୍ଯ୍ୟାୟଭୁକ୍ତ କରି ରଖାଯାଇଅଛି ବୋଇଲେ ଚଳେ—ଅନ୍ତତଃ ଜାତି ଧର୍ମ ବଜାୟ ରଖିବା ନିମନ୍ତେ । ଧର୍ମଶାସ୍ତ୍ର ଲେଖକଗଣ କେବଳ ଶପଥଦ୍ୱାରା ଆବହମାନ କାଳରୁ ବିଶ୍ୱାସକୁ ଆଜିଯାଏ ରକ୍ଷା କରିବାକୁ ସମର୍ଥ ହୋଇଅଛନ୍ତି । ଆଶ୍ଚର୍ଯ୍ୟର କଥା, ସ୍ୱାଧୀନ ମନୋବୃତ୍ତିକୁ ମଧ ବିଶ୍ୱାସର ଗଣ୍ଡିରେ ଆବଦ୍ଧ ରଖିବାକୁ ଚେଷ୍ଟା କରିଅଛନ୍ତି, ମନର ସ୍ୱାତନ୍ତ୍ର୍ୟ ନଷ୍ଟ କରିବାକୁ ଯତ୍ନ କରିଅଛନ୍ତି । କୃତକାର୍ଯ୍ୟ ହେବା ନ ହେବା ଏଠାରେ ବିଚାର୍ଯ୍ୟ ନୁହେଁ ।

ଜୀବମାନଙ୍କର ମନ ଅଛି, କି କେବଳ ମନୁଷ୍ୟର ମନ ବା ମନୋବୃତ୍ତି ଅଛି, ଏହା ଏକ କଠିନ ପ୍ରଶ୍ନ । ତେବେ ଜୀବମାନଙ୍କର ମନୋବୃତ୍ତି ନାହିଁ; ମନ ମନୁଷ୍ୟ ଜାତିର ନିଜସ୍ୱ ବୋଲିବା ସଙ୍ଗତ ନୁହେଁ । ଉତ୍କୃଷ୍ଟ ଜୀବମାତ୍ରର ହିଁ ମନ ଅଛି; ମାତ୍ର ମନୁଷ୍ୟର ମନ ସହିତ ପ୍ରସାରରେ ଇତର ବିଶେଷ ଅଛି । ଏଠାରେ ଉତ୍କୃଷ୍ଟ ଜୀବ ଓ ନିକୃଷ୍ଟ ଜୀବ ମଧରେ ସୀମା ନିର୍ଦ୍ଦେଶ କରିବାର ଅବସର ନାହିଁ ।

ଏଠାରେ କେବଳ ମନୁଷ୍ୟର ମନ ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କରାଯାଉ । ଆବହମାନ କାଳରୁ ମନୋବୃତ୍ତି ଏକ ଏବଂ ପୂର୍ଣ୍ଣତାପ୍ରାପ୍ତ ବୋଲାଯାଇ ନ ପାରେ; ଯେହେତୁ ଏହାର ହ୍ରାସ ସମୃଦ୍ଧି ପରିଲକ୍ଷିତ ହୁଏ । ମନ ଇନ୍ଦ୍ରିୟଘଟିତ ମସ୍ତିଷ୍କର କ୍ରିୟା । 'କ୍ଷିତ୍ୟପ୍‌ତେଜ-ମରୁତ୍‌ବ୍ୟୋମ କାଳାଦିକା ଦେହିନୋ ମନଃ ।'

ଏଠାରେ ମନକୁ ଗୋଟିଏ ସ୍ୱତନ୍ତ୍ର ତତ୍ତ୍ୱ ବୋଲି ଧରାଯାଇଅଛି । ମନକୁ ଚିରକାଳ ସ୍ଥିର ବୋଲି ସ୍ୱୀକାର ନ କଲେ ଗୋଟିଏ ସୃଷ୍ଟିକର୍ତ୍ତା ଦଣ୍ଡାୟମାନ କରିବାର ବିଘ୍ନ ଉପସ୍ଥିତ ହେବ । ତାର୍କିକମାନଙ୍କର ପ୍ରୟୋଜନ ନିମନ୍ତେ ମନ ଚିର ବିଦ୍ୟମାନ; ମାତ୍ର ତାହା ନୁହେଁ । କ୍ଷିତି ଅପ୍ ତେଜ ପ୍ରଭୃତିର ମୌଳିକତ୍ୱ ନାଶ ସଙ୍ଗେ ସଙ୍ଗେ ମନର ଚିରବିଦ୍ୟମାନତ୍ୱ ନଷ୍ଟ ହୋଇଅଛି ।

ଇନ୍ଦ୍ରିୟ ସହିତ ମନର ଦୃଢ଼ ସମ୍ବନ୍ଧ; ଇନ୍ଦ୍ରିୟ ବ୍ୟତିରେକେ ମନ ପଙ୍ଗୁ । ଯାହା ଇନ୍ଦ୍ରିୟଗ୍ରାହ୍ୟ ହୋଇ ନାହିଁ, ତାହା ମନ ସ୍ମରଣ କରି ନ ପାରେ, ତାହା ମନ ବର୍ଣ୍ଣନା କରି ନ ପାରେ, ତାହା ମନ ବର୍ଣ୍ଣନା କରି ନ ପାରେ । ଅତୀନ୍ଦ୍ରିୟ ଭାବନା ତ ଦୂରର କଥା ।

ବୁଦ୍ଧିବୃତ୍ତିର ବିକାଶ ନିମନ୍ତେ କେଉଁ ଇନ୍ଦ୍ରିୟର ପ୍ରାଧାନ୍ୟ ସ୍ୱୀକାର କରିବାକୁ ହେବ ? ପ୍ରତ୍ୟେକ ଇନ୍ଦ୍ରିୟ ମସ୍ତିଷ୍କକୁ ଜ୍ଞାନ ଖୋରାକ ଯୋଗାନ୍ତି । ତେବେ ଜ୍ଞାନବିକାଶରେ ଦର୍ଶନେନ୍ଦ୍ରିୟର ଆବଶ୍ୟକତା ଯେ ବେଶି, ଏହା କହିବା ବାହୁଲ୍ୟ ମାତ୍ର ।

ଦର୍ଶନେନ୍ଦ୍ରିୟଦ୍ୱାରା ବାହ୍ୟବସ୍ତୁର ପ୍ରତିବିମ୍ବ ମସ୍ତିଷ୍କକୁ ନୀତ ହୋଇ ବସ୍ତୁର ପ୍ରକୃତ ରୂପର ଉପଲବ୍ଧି କରାଏ । ଚକ୍ଷୁ ମୁଦ୍ରିତ ଥିଲେ ମସ୍ତିଷ୍କ କୌଣସି ବସ୍ତୁର ଅସ୍ତିତ୍ୱ ଉପଲବ୍ଧି କରିପାରେ ନାହିଁ, ମନ ତାହା ସ୍ମରଣ ବା ଭାବନା କରିପାରେ ନାହିଁ । ମସ୍ତିଷ୍କ ଓ ମନ ବିଦ୍ୟମାନ ସତ୍ତ୍ୱେ ଯେବେ ଚକ୍ଷୁ ନ ଥାନ୍ତା, ତାହା ହେଲେ ମନୁଷ୍ୟ ଦ୍ୱାରା ଏ ସଂସାରର ବୈଚିତ୍ର୍ୟ ଉପଲବ୍ଧି ହୁଅନ୍ତା ନାହିଁ । ଏ ସଭ୍ୟତା ବା ଉନ୍ନତିର ସ୍ଥାନ କାହିଁ ?

ଚକ୍ଷୁ ଯାହା ଦେଖେ, ମନ ତାହା ସ୍ମରଣ ଓ ଭାବନା କରିପାରେ । ଚକ୍ଷୁ ଏକାଥରକେ ଯେତିକି ଦେଖେ, ମନ କେବଳ ତେତିକି ମାତ୍ର ଭାବନା କରିପାରେ । ଧାନମଗ୍ନ ଧାର୍ମିକପ୍ରବର ସମ୍ମୁଖରେ କ୍ଷୁଦ୍ର କୃଷ୍ଣ ମୂର୍ତ୍ତିକୁ ରଖି ଯେତେ ଚେଷ୍ଟା କଲେ ସୁଦ୍ଧା ସେହି କ୍ଷୁଦ୍ର ମୂର୍ତ୍ତିର ଆଗପଛ ତଳ ଉପର ଏକ ସଙ୍ଗରେ ଧାନଚକ୍ଷୁରେ ଦେଖିପାରିବେ କି ? ନାହିଁ, କେବଳ ସମ୍ମୁଖ ଭାଗ ଦେଖିବେ । କାରଣ ତାଙ୍କ ଚକ୍ଷୁ ସେହି କ୍ଷୁଦ୍ର ମୂର୍ତ୍ତିର ସମଗ୍ର ଅଂଶ ଏକ ସଙ୍ଗରେ ଦେଖିବାକୁ କ୍ଷମ ହୋଇନାହିଁ । ପର୍ବତର ପାଦଦେଶରେ ଦଣ୍ଡାୟମାନ ହେଲେ ପର୍ବତର ଯେଉଁ ଅଂଶ ନେତ୍ରଦ୍ୱାରରେ ପ୍ରବେଶ କରିବ, ଦର୍ଶକ ସିନା ସେତିକି ଅଂଶ ନିଜ ମନଃଚକ୍ଷୁରେ ଭାବନା କରିପାରିବ; ସମଗ୍ର ପର୍ବତର ଦୃଶ୍ୟକୁ ଭାବିପାରିବ କାହୁଁ ?

ମନ ଅତି ବେଗଶାଳୀ; ତା'ଠାରୁ ବଳି ବେଗଶାଳୀ ଆଉ କେହି ନାହିଁ ବୋଲି କହନ୍ତି । ଏହା ପୂର୍ବକାଳର ମୁନିଋଷିଙ୍କର ଉକ୍ତି । ଆମ୍ଭେମାନେ ଅନ୍ଧବିଶ୍ୱାସରେ ତାହା ସ୍ୱୀକାର କରିଆସୁଛେ । କେବେ ଗତିର ତୁଳନା କରି ନାହୁଁ । ଯେଉଁ ବ୍ୟକ୍ତି ଆମେରିକା ଯାଇ ନାଏଗ୍ରା ପ୍ରପାତ ଦେଖିଅଛନ୍ତି, ସେ ଇଚ୍ଛା କଲାମାତ୍ରେ ତାଙ୍କର ମାନସ-ଚକ୍ଷୁରେ ନାଏଗ୍ରା ପ୍ରପାତର ଦୃଶ୍ୟ ସହସା ଦେଖିପାରନ୍ତି । ମାତ୍ର ଏହାକୁ ପ୍ରକୃତ ଗତି ବୋଲିବା ଯାହା, ପ୍ରତାରିତ ହେବା ଅର୍ଥ ତାହା । ଆଜିକାଲି ବିଦ୍ୟୁତ୍ ପୃଥିବୀକୁ ଏକ ସେକେଣ୍ଡରେ ସାତ ଥର ପ୍ରଦକ୍ଷିଣ କରିପାରେ । ଏହା ପ୍ରକୃତ ଗତି; ଯେହେତୁ ଥର ଥର ହୋଇ ସାତ ଥର ବିଦ୍ୟୁତ୍ ନଦୀ, ପର୍ବତ, ସାଗର, ଜନପଦ, ବନ, ଉପବନ ଅତିକ୍ରମ କରିଆସିବ । ମାନସଚକ୍ଷୁରେ ନାଏଗ୍ରା ପ୍ରପାତ ଦ୍ରଷ୍ଟା ଯେବେ ସମସ୍ତ ନଦୀ ପର୍ବତ, ସାଗର, ଜନପଦ, ବନ, ଉପବନର ଦୃଶ୍ୟ ମାନସପଟରେ ପକାଇଯିବେ, ତାହା

ହେଲେ ନାଏଗ୍ରାକୁ ପହଞ୍ଚିବାକୁ କେତେ ସେକେଣ୍ଡ ଲାଗିବ, ତାହା ପାଠକେ ବିଚାର କରନ୍ତୁ । ନିଜ ପ୍ରକୋଷ୍ଠ ମଧ୍ୟରେ ନାଏଗ୍ରାର ଛାପା ଦେଖିବା ଯାହା, ମନରେ ନାଏଗ୍ରାର ଭାବନା କରିବା ତାହା । ଗୋଟାଏ କାଗଜ ଉପରେ ଫଟୋଗ୍ରାଫ; ଅପରଟା ମସ୍ତିଷ୍କରେ ଫଟୋଗ୍ରାଫ ।

ମନ ଦୃଶ୍ୟ ସମ୍ବନ୍ଧରେ ଚକ୍ଷୁର ଅଧୀନ ।

ପଣ୍ଡିତ ଗଟ୍ଟୁଲାଲ ୧୮୯୧ରେ ଉତ୍କଳକୁ ଆସିଥିଲେ। ସେ ଚକ୍ଷୁହୀନ । ଶ୍ରବଣେନ୍ଦ୍ରିୟ ସାହାଯ୍ୟରେ ସେ ଯେ ପାଣ୍ଡିତ୍ୟ ଉପାର୍ଜନ କରିଥିଲେ, ତାହା ଭାବିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼େ । ଶ୍ରୁତିଧର ଅଷ୍ଟାବଧାନୀ । ତାଙ୍କର ପାଦ ପୂରଣ ପଣ୍ଡିତଗଣଙ୍କୁ ବିସ୍ମିତ କରିଥିଲା । ତାଙ୍କର କ'ଣ ମନ ନ ଥିଲା ? ଥିଲା । ଶ୍ରବଣେନ୍ଦ୍ରିୟ ସାହାଯ୍ୟରେ ମାନସିକ ସ୍ମରଣ ଶକ୍ତିର ଉତ୍କର୍ଷ ସଙ୍ଗେ ସଙ୍ଗେ ଦର୍ଶନେନ୍ଦ୍ରିୟର ସାହାଯ୍ୟାଭାବରୁ ଦୃଶ୍ୟ ବର୍ଣ୍ଣନା କରିବା ଶକ୍ତି ପଙ୍ଗୁ ହେଲା ।

ଦର୍ଶନେନ୍ଦ୍ରିୟ ଯେପରି ମସ୍ତିଷ୍କରେ ଫଟୋଗ୍ରାଫ ରଖେ, ଶ୍ରବଣେନ୍ଦ୍ରିୟ ମସ୍ତିଷ୍କରେ ସେପରି ଫଟୋଗ୍ରାଫ ରଖିପାରେ ନାହିଁ । ଅନ୍ୟ ଇନ୍ଦ୍ରିୟମାନେ ମଧ୍ୟ ସେପରି ସ୍ଥାୟୀ ଛାପ ରଖିପାରନ୍ତି ନାହିଁ । ଏଣୁ ମନ ସ୍ମରଣ କଲା ମାତ୍ରେ ଯେପରି ଗୋଟାଏ ପୂର୍ବଦୃଷ୍ଟ ଦୃଶ୍ୟର ଦର୍ଶନସୁଖ ଅନୁଭବ କରିପାରେ, ସେପରି ଶ୍ରବଣ ଓ ସ୍ପର୍ଶ ସୁଖ ଅନୁଭବ କରିପାରେ ନାହିଁ ।

ସ୍ମରଣ କରିବା ମନର ବା ମସ୍ତିଷ୍କର କାର୍ଯ୍ୟ; ମାତ୍ର ପରେ ଅନୁକରଣ କରିବାର କାର୍ଯ୍ୟ ନୁହେଁ । ଏଣୁ କେବଳ ଦୃଶ୍ୟହିଁ ପରେ ଠିକ୍‌ରୂପେ ଅନୁଭୂତ ହୁଏ ନାହିଁ । ଭାବୁକ କୌଣସି ପୂର୍ବଦୃଷ୍ଟ ଥିଏଟାରର ଦୃଶ୍ୟର ଭାବନା କଲେ ନର୍ତ୍ତକ ନର୍ତ୍ତକୀର ହାବଭାବ, ଭଙ୍ଗୀ, ମୁଖଭଙ୍ଗୀ, ହସ୍ତଚାଳନ ପ୍ରଭୃତି ମାନସପଟରେ ଦେଖିପାରିବ; ମାତ୍ର ଗୀତ ଓ ବାଦ୍ୟ ତା'ର କର୍ଣ୍ଣକୁ ଶୁଣାଯିବ ନାହିଁ । ସେହିପରି ସ୍ପର୍ଶେନ୍ଦ୍ରିୟର ପ୍ରକୃତ ସୁଖ ଅନୁଭୂତ ହୁଏ ନାହିଁ; କେବଳ ସ୍ମରଣ ମାତ୍ର ହୁଏ ।

ଚକ୍ଷୁର ପତା ଥିବାରୁ ଦର୍ଶନେନ୍ଦ୍ରିୟକୁ ନିରୋଧ କରାଯାଇପାରେ; ମାତ୍ର କର୍ଣ୍ଣେନ୍ଦ୍ରିୟକୁ ନିରୋଧ କରିବାର ଉପାୟ ନାହିଁ । ଧ୍ୟାନମଗ୍ନ ଥିଲେ ସୁଦ୍ଧା ଶବ୍ଦ ନିଶ୍ଚୟ କର୍ଣ୍ଣପଟହରେ ଆଘାତ କରିବ । ମାତ୍ର ଆଲୋକ ବା ଦୃଶ୍ୟ ଦର୍ଶନେନ୍ଦ୍ରିୟରେ ପ୍ରବେଶ କରି ମସ୍ତିଷ୍କରେ ଯେପରି ସ୍ଥାୟୀ ଛାପ ରଖିପାରେ, ଶବ୍ଦର ସହଜ ପ୍ରବେଶ ଦ୍ୱାରା ସେପରି ଥିଲେ ସୁଦ୍ଧା ମସ୍ତିଷ୍କରେ ସ୍ଥାୟୀ ଛାପ ରଖିପାରେ, ଶବ୍ଦର ସହଜ ପ୍ରବେଶ ଦ୍ୱାର ସେପରି ଥିଲେ ସୁଦ୍ଧା ମସ୍ତିଷ୍କରେ ସ୍ଥାୟୀ ଛାପ ରଖିପାରେ ନାହିଁ । ରସନା ଓ ନାସିକା ଆସ୍ୱାଦନ ଓ ଗନ୍ଧର ପ୍ରବେଶ ଦ୍ୱାର ହେଲେ ସୁଦ୍ଧା ଏବଂ ତ୍ୱକ୍ ସ୍ପର୍ଶର ଦ୍ୱାର ଥିଲେ ସୁଦ୍ଧା ମସ୍ତିଷ୍କରେ ସ୍ଥାୟୀ ଛାପ ରଖିପାରନ୍ତି ନାହିଁ, ଯଦ୍ଦ୍ୱାରା କି ପରେ ଠିକ୍ ଶ୍ରବଣ, ଆଘ୍ରାଣ, ଆସ୍ୱାଦନ ଓ ସ୍ପର୍ଶ ସୁଖ ବା ଦୁଃଖ ଠିକ୍‌ରୂପେ ଅନୁଭୂତ ହୋଇପାରେ ।

ଯାହା ହେଉ, ମନ କୌଣସି ସ୍ୱତନ୍ତ୍ର ସ୍ଥାୟୀ ତତ୍ତ୍ୱ ନୁହେଁ; ମନ ଇନ୍ଦ୍ରିୟବ୍ୟାପାରଜନିତ । ମନ ଚିର ବିଦ୍ୟମାନ ନ ଥିଲା କିମ୍ବା ଜଡ଼ ଜଗତରୁ ସ୍ୱତନ୍ତ୍ର ନୁହେଁ । ଏକ ସମୟରେ ସୂର୍ଯ୍ୟ ଗ୍ରହ ପୃଥିବୀ ସମସ୍ତେ ଗ୍ୟାସର ସମଷ୍ଟି ଥିଲା । ଏହାର ବିସ୍ତୃତି ପ୍ଲୁଟାସ ଗ୍ରହରୁ ବଳି ଲକ୍ଷ ଲକ୍ଷ ମାଇଲ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କ୍ରମେ ସଙ୍କୁଚିତ ହୋଇ ସୂର୍ଯ୍ୟ ଗ୍ରହ ଉପଗ୍ରହର ସୃଷ୍ଟି ହୋଇଅଛି । ପ୍ଲୁଟାସ, ନେପଚୁନ, ଇଉରେନାସି, ଶନି, ବୃହସ୍ପତି ଅନେକ କ୍ଷୁଦ୍ର ଗ୍ରହ, ମଙ୍ଗଳ, ପୃଥିବୀ, ଶୁକ୍ର, ବୁଧ ଓ ସୂର୍ଯ୍ୟର ଉତ୍ପତ୍ତି ସେହି ଗ୍ୟାସରୁ । ଏହା କୋଟି କୋଟି ବର୍ଷର ବ୍ୟାପାର; ଏଠାରେ ମନର ଅସ୍ତିତ୍ୱ କାହିଁ ?

ପୃଥିବୀ ଗ୍ୟାସ୍‌ରୁ ଘନୀଭୂତ ହେଲା । ତା'ର ଗତିର ଇୟତ୍ତା ଠିକ୍‌ରୂପେ କିଏ କହିପାରିବ ? କି ଉତ୍ପାତ ! ପ୍ରତି ମୁହୂର୍ତ୍ତରେ ଉଲ୍‌କା ଧୂମକେତୁ-ସୃଷ୍ଟିକଣା ସେହି ଭ୍ରାମ୍ୟମାଣ ପିଣ୍ଡରେ ପତିତ ହେଉଥିଲେ । ତା'ର ପ୍ରଚଣ୍ଡ ଗତି ହେତୁ ତା'ର ଶରୀରରୁ ପ୍ରକାଣ୍ଡ ପ୍ରକାଣ୍ଡ ପିଣ୍ଡ ଊର୍ଦ୍ଧ୍ୱକୁ ଉତ୍‌କ୍ଷିପ୍ତ ହୋଇ ପୁଣି ସଜୋରେ ଆସି ତାହା ଦେହରେ ପଡ଼ି ବିଲୀନ ହେଉଥିଲା। ଏହିରୂପେ କେତେ କାଳ ପୃଥିବୀର ଦେହର ଗଢ଼ା ଲାଗିଲା । ଜଡ଼ଜୀବର ପାର୍ଥକ୍ୟ ନାହିଁ; ସମସ୍ତ ହିଁ ଏକ । କ୍ରମେ ଘନ ଓ ତରଳ ବସ୍ତୁର ଉତ୍ପତ୍ତି ଯୌଗିକ ପଦାର୍ଥର ସ୍ୱାତନ୍ତ୍ର୍ୟ ଓ ଜୈବିକ ଅଣୁର ଉତ୍ପତ୍ତି । କେତେ କୋଟି ବର୍ଷର ଘଟଣା ! ଜୀବର ସୃଷ୍ଟି ପୁଣି କେତେ ବର୍ଷ ପରେ । ଉତ୍କୃଷ୍ଟ ଜୀବ ଓ କ୍ରମେ ମନୁଷ୍ୟର ଉଦ୍ଭବ ଓ ମନର ବିକାଶ । ଖ୍ରୀଷ୍ଟପୂର୍ବ ପ୍ରାୟ ୫୦୦୦ ବର୍ଷ ପୂର୍ବେ ଈଶ୍ୱର ମନୁଷ୍ୟର ବାସଯୋଗ୍ୟ କରି ଧରାକୁ ଗଢ଼ି ତହିଁରେ ଆଦାମ୍ ଇଭ୍‌କୁ ବିଚରଣ କରିବାକୁ ଛାଡ଼ିଦେଲେ ଏବଂ ସେ ଦୁହିଁଙ୍କି ସର୍ବାବୟବସମ୍ପନ୍ନ କରି ତାଙ୍କଠାରେ ମନକୁ ମଧ୍ୟ ନିହିତ କରିଥିଲେ ବୋଲି ଯେ ବିଶ୍ୱାସ ଥିଲା, ତାହା ଅମୂଳକ ବୋଲି ପ୍ରତିପନ୍ନ ହୋଇସାରିଅଛି । ଅନ୍ୟାନ୍ୟ ଧର୍ମର ଏତାଦୃଶ ଅମୂଳକ ମତ ମଧ୍ୟ ଅଧୁନା ଗ୍ରାହ୍ୟ ହୋଇଅଛି । ମନ ସ୍ୱତନ୍ତ୍ର ଓ ଚିର ବିଦ୍ୟମାନ ନୁହେଁ ।



# ମୂଢ଼ ଧାର୍ମିକତା

ସର୍ବସାଧାରଣ ଯେଉଁ ଅର୍ଥରେ ଧର୍ମକୁ ବୁଝନ୍ତି, ତହିଁରୁ କିନ୍ତୁ ବହୁ ଊର୍ଦ୍ଧ୍ୱରେ ଧର୍ମର ଅର୍ଥ । ତତ୍‌ପର୍ଯ୍ୟାୟ ବିଶ୍ୱାସ (Faith) କି ଧର୍ମର ପ୍ରତିଶବ୍ଦ ? କଦାପି ନୁହେଁ । Religion କି ଧର୍ମର ପ୍ରତିଶବ୍ଦ ? ତାହା ମଧ୍ୟ ନୁହେଁ ବୋଲି ମନେହୁଏ । ତଥାପି ଆମେମାନେ ବିଶ୍ୱାସ ମତ (Faith, Religion) ପ୍ରଭୃତିକୁ ଅଭ୍ୟାସବଶତଃ ଏକ ପର୍ଯ୍ୟାୟଭୁକ୍ତ କରିବାକୁ ବାଧ ହୋଇଅଛୁଁ । ବ୍ୟଷ୍ଟି, ସମଷ୍ଟିରେ ଯେଉଁ ପ୍ରଭେଦ ବିଦ୍ୟମାନ, Faith ଏବଂ ଧର୍ମ ମଧ୍ୟରେ ସେହି ବ୍ୟବଧାନ । ଯାହା ସମଷ୍ଟିରେ ଆଦରଣୀୟ ନୁହେଁ ତାହା ଧର୍ମ ନୁହେଁ, ତାହା Faith ହୋଇପାରେ । କ୍ରିଷ୍ଟ୍ୟାନିଟି ସମଷ୍ଟିର ଆଦରଣୀୟ ନୁହେଁ; ହିନ୍ଦୁତ୍ୱ ସମଷ୍ଟିର ଗ୍ରହଣୀୟ ନୁହେଁ; ସେହିପରି ଇସଲାମ୍ ସମଷ୍ଟିର ଆଦରଣୀୟ ବା ଗ୍ରହଣୀୟ ନୁହେଁ । ତଥାପି ଆମ୍ଭେମାନେ ଉପରୋକ୍ତ କ୍ରିଷ୍ଟ୍ୟାନ, ହିନ୍ଦୁ ଓ ଇସଲାମ ଶବ୍ଦର ପଛରେ ଧର୍ମ ଶବ୍ଦ ଯୋଜନାକରି ଧର୍ମ ଶବ୍ଦର ଅପବ୍ୟବହାର କରୁଅଛୁଁ । ଯାହା ସମଷ୍ଟିକୁ ଆବଦ୍ଧ କରି ରଖିବାକୁ ସମର୍ଥ, ତାହା ଯେବେ ଧର୍ମ ଶବ୍ଦର ପ୍ରକୃତ ଅର୍ଥ, ତେବେ ଉପରୋକ୍ତ କୌଣସି ଧର୍ମତତ୍ତ୍ୱ ସମଷ୍ଟିକୁ ଏକ ଧର୍ମଗଣ୍ଡି ମଧ୍ୟରେ ରଖିପାରୁ ନାହିଁ । ହିନ୍ଦୁ ହିନ୍ଦୁକୁ ଧର୍ମଭାଇ ବୋଲିପାରେ, ମୁସଲମାନ୍ ମୁସଲମାନକୁ ଏବଂ ଖ୍ରୀଷ୍ଟିୟାନ ଖ୍ରୀଷ୍ଟିୟାନକୁ ଧର୍ମଭାଇ ବୋଲିପାରେ; ମାତ୍ର ଏପରି ବ୍ୟବହାରରେ ସମଷ୍ଟିର ଗନ୍ଧ ନାହିଁ, ବରଂ ବିରୋଧର ଗନ୍ଧ ଅତି ମାତ୍ରାରେ ପ୍ରକଟିତ ହୁଏ ।

ଧର୍ମ ଆଲୋକ, ଉତ୍ତାପ ଏବଂ ବାୟୁ ପରି ସ୍ୱାଭାବଜ ନୁହେଁ । ଏହା କୃତ୍ରିମ— ଏଣୁ ସମସ୍ତଙ୍କର ପ୍ରାପ୍ୟ ନୁହେଁ । ଏହା ସମଷ୍ଟିର ପ୍ରାପ୍ୟ ନୁହେଁ, ବ୍ୟଷ୍ଟିର ପ୍ରାପ୍ୟ । ଏଠାରେ ଧର୍ମ ଶବ୍ଦ ବିଶ୍ୱାସର ପ୍ରତିଶବ୍ଦ ରୂପେ ବ୍ୟବହାର କରାଯାଉଅଛି, କାରଣ ଉପାୟାନ୍ତର ନାହିଁ । ପ୍ରକୃତ ବସ୍ତୁର ରୂପରେ, ରସରେ ଓ ଶବ୍ଦରେ ମଧ୍ୟ ବ୍ୟକ୍ତିଗତ ଭ୍ରମହୁଏ । ସୁତରାଂ ଶୁଣିବା କଥାରେ ଯେ ଭ୍ରମ ରହିବ ଏଥିରେ ଆଶ୍ଚର୍ଯ୍ୟ କ'ଣ ? ଜାଗତିକ ଧର୍ମ ତ ଏକ ବ୍ୟକ୍ତି କର୍ତ୍ତୃକ ପ୍ରଚାରିତ ନୁହେଁ । ଆର୍ଯ୍ୟର ଧର୍ମ ଅଛି, ଅନାର୍ଯ୍ୟର ଧର୍ମ ଅଛି । ପୁଣି ଆର୍ଯ୍ୟ ମଧ୍ୟରେ ଧର୍ମ ମତରେ ଭେଦ ଅଛି । ଏପରି ଘଟେ କାହିଁକି ? ବ୍ୟଷ୍ଟିର ବିଶ୍ୱାସକୁ ବ୍ୟଷ୍ଟି ନିଜ ସ୍ୱାର୍ଥରେ ଗ୍ରହଣ କରିଅଛି । ଏକ ବିଶ୍ୱାସର ଅନୁସରଣକାରୀ ଅନେକ ମିଳି ଗୋଟାଏ ଦଳ ଗଠିତ ହୋଇଅଛି । ମାତ୍ର ଏତାଦୃଶ ବିଶ୍ୱାସକୁ ସମଷ୍ଟିର ସମଷ୍ଟିର ଧର୍ମ ବୋଲାଯାଏ ନାହିଁ । ଖ୍ରୀଷ୍ଟ ପ୍ରଚାରିତ ବିଶ୍ୱାସ ମହମ୍ମଦ ଭକ୍ତମାନଙ୍କର ଗ୍ରାହ୍ୟ ନୁହେଁ । ଇହୁଦୀ-ମାନଙ୍କର ଖ୍ରୀଷ୍ଟ ବା ମହମ୍ମଦ ଧର୍ମରେ ଆସ୍ଥା ନାହିଁ । ପୁରାଣ-ଧର୍ମୀମାନେ ଜଗତର ସମସ୍ତ ଧର୍ମକୁ ଘୃଣା ଚକ୍ଷୁରେ ଦେଖନ୍ତି ।

ଏତାଦୃଶ ଧର୍ମ-ମତର ବା ବିଶ୍ୱାସର ବିରୋଧ ବିଦ୍ୟମାନ ସତ୍ତ୍ୱେ ପ୍ରତ୍ୟେକ ଧର୍ମର ଶରଣାପନ୍ନ ଦଳ ବା ବ୍ୟକ୍ତିମାନଙ୍କର ଜିଦ୍ ସହ ପରସ୍ପର ମଧ୍ୟରେ ହାନିକର ବିରୋଧ ଉତ୍ପନ୍ନ କରିବା ଚେଷ୍ଟା ମୂଢ଼ ଧାର୍ମିକତା ମାତ୍ର । ଏହି ମୂଢ଼ ଧାର୍ମିକତା ନିମନ୍ତେ ଦାୟୀ କିଏ ? ପ୍ରାଚୀନ ମୁନି ଋଷିମାନେ ? ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ ? ନା–ନା, ଏମାନଙ୍କୁ ଦାୟୀ କରିବାକୁ ମାନବ ଜାତିର କ୍ଷମତା ନାହିଁ । ପଲ୍ଲବଗ୍ରାହୀ ଶିଷ୍ୟ ପ୍ରଶିଷ୍ୟଗଣ ଏଥିନିମନ୍ତେ ଦାୟୀ । ଆଉ ବିଶ୍ୱାସର ଶରଣାପନ୍ନ ସ୍ୱାର୍ଥପର ବ୍ୟକ୍ତିମାନେ ଦାୟୀ । ଅବଲୀଳାକ୍ରମେ ଏହି ମୂଢ଼ ଧାର୍ମିକତାର ଖେଳ ପ୍ରତ୍ୟହ ପ୍ରତ୍ୟକ୍ଷ ହେଉଅଛି ମାତ୍ର । ମାନବ ମୂଢ଼ ଧାର୍ମିକତାର ଅନ୍ତରାଳରେ ଆପଣା ସ୍ୱାର୍ଥସିଦ୍ଧିର ପନ୍ଥା ଅନ୍ୱେଷଣରେ ତତ୍ପର । ବିଂଶ ଶତାବ୍ଦୀର ସାହିତ୍ୟ ଓ ବିଜ୍ଞାନର ବୃଦ୍ଧି ସଙ୍ଗେ ସଙ୍ଗେ ମୂଢ଼ ଧାର୍ମିକତା କ୍ରମେ କ୍ଷୟପ୍ରାପ୍ତ ହେବ ବୋଲି ଆଶା କରିବା ସ୍ୱାଭାବିକ । ମାତ୍ର ମୂଢ଼ ଧାର୍ମିକତା ନାଶ ହେବାର ତ ଦୃଷ୍ଟିଗୋଚର ହୁଏ ନାହିଁ । ବରଂ ଅନିବାର୍ଯ୍ୟ ଚନ୍ଦ୍ରକଳା ପରି ବୃଦ୍ଧିପ୍ରାପ୍ତ ହେଉଥିବାର ସ୍ପଷ୍ଟ ଲକ୍ଷଣ ଦୃଷ୍ଟିଗୋଚର ହୁଏ ।

ମୂଢ଼ ଧାର୍ମିକତା ନିମନ୍ତେ ବି ବୁଦ୍ଧ ଗୃହତ୍ୟାଗ କଲେ । ଖ୍ରୀଷ୍ଟ ପ୍ରାଣ ଦେଲେ । ଚୈତନ୍ୟ ସନ୍ନ୍ୟାସୀ ହେଲେ । ଆଜି ବୌଦ୍ଧମାନଙ୍କ ମଧ୍ୟରେ ମହାଯୁଦ୍ଧ— ବାକ୍‌ଯୁଦ୍ଧ ନୁହେଁ— ରୀତିମତ ଗୋଳାବାରୁଦ, ଜାହାଜ, ଏରୋପ୍ଲେନ ଓ ବୋମାଯୁଦ୍ଧ । କ୍ରିଷ୍ଟ୍ୟାନମାନଙ୍କର ଯୁଦ୍ଧ ତ ବରାବର ଲାଗିଛି । ଖ୍ରୀଷ୍ଟଙ୍କର ତିରୋଧାନ ସଙ୍ଗେ ସଙ୍ଗେ ମହାସମରାନଳ ଜଳୁଛି । କେବେ ଶାନ୍ତି ଆହୁତି ପଡ଼ିବ କିଏ ଜାଣେ ? ଚୈତନ୍ୟ ସ୍ୱପ୍ନରେ ମଧ୍ୟ ଭାବି ନ ଥିଲେ ଯେ ତାଙ୍କ ଅନ୍ତେ ଏ ଭୂଭାରତ ଖଣ୍ଡରେ ଅସଂଖ୍ୟ ସ୍ୱାମୀର ଆବିର୍ଭାବଦ୍ୱାରା ପ୍ରେମ-ଧର୍ମ ଲଣ୍ଡଭଣ୍ଡ ହେବ ।

ଧର୍ମର ସାର, ଯାହା ମାନବକୁ ସୁଖ ଶାନ୍ତି ଦେଇପାରେ, ବିରୋଧ ଘୁଞ୍ଚାଇପାରେ; ତାକୁ ତ୍ୟାଗ କରି ସ୍ୱାର୍ଥାନ୍ଧ ଧର୍ମଧ୍ୱଜୀମାନଙ୍କର ପଦାଙ୍କ ଅନୁସରଣ କରି ମାନବ-ସମାଜରେ ବିଶୃଙ୍ଖଳା ଘଟାଇବାର ଚେଷ୍ଟା ମୂଢ଼ ଧାର୍ମିକତା ନୁହେଁ କି ? ମୂଢ଼ ଧାର୍ମିକତାର ବୃଦ୍ଧି ସଙ୍ଗେ ସଙ୍ଗେ ଜଗତରେ ଅଶାନ୍ତିର ମାତ୍ରା ବୃଦ୍ଧି ପାଉଅଛି ।

ବୁଦ୍ଧଙ୍କର ସାଂସାରିକ ଅଷ୍ଟବିଧ ଦୁଃଖ ଓ ତନ୍ନିରୋଧର ଉପାୟ ପୃଥିବୀରେ ଆବଦ୍ଧ ହୋଇ ରହିଲା । ଖ୍ରୀଷ୍ଟଙ୍କର ଦଶ ଅନୁଶାସନ (Ten commandments) ପାଦ୍ରିମାନଙ୍କ ମୁଖରେ କେବଳ । ଏବେ ରାଜ୍ୟ ଲାଳସାରେ ବୌଦ୍ଧ ବୌଦ୍ଧ ମଧ୍ୟରେ ଯୁଦ୍ଧ, ଖ୍ରୀଷ୍ଟିୟାନ୍ ଖ୍ରୀଷ୍ଟିୟାନ୍‌ମାନଙ୍କ ମଧ୍ୟରେ ଯୁଦ୍ଧ ଏବଂ କ୍ରମେ ଦୁଇ ଶାନ୍ତଧର୍ମୀମାନଙ୍କ ମଧ୍ୟରେ ଯୁଦ୍ଧ ବ୍ୟାପାର ଲାଗିବ ।

ହିନ୍ଦୁ ମୁସଲମାନମାନଙ୍କର ବିବାଦ ଆଉ କିଛି ନୁହେଁ, ଧାର୍ମିକତା ମାତ୍ର । ଦେଶ ଉଚ୍ଛନ୍ନ ଯିବ ପଛକେ କେହି ତାହା ତ୍ୟାଗ କରିବାକୁ ରାଜି ହେବେ ନାହିଁ ।

ହିନ୍ଦୁର ଆର୍ଥିକ ଓ ସାମାଜିକ ଅବନତିର ଜନକ ମୂଢ଼ ଧାର୍ମିକତା । ଅଶିକ୍ଷିତଙ୍କ ମଧ୍ୟରେ ମୂଢ଼ ଧାର୍ମିକତା ଥିବାର ବିଚିତ୍ର ନୁହେଁ, ମାତ୍ର ଶିକ୍ଷିତମାନେ ମଧ୍ୟ ମୂଢ଼ ଧାର୍ମିକତାର ଆଶ୍ରୟ ନିଅନ୍ତି— ଏଥିଁ ବଳି ଆଶ୍ଚର୍ଯ୍ୟର ବିଷୟ କ'ଣ ? ସେତିକି କେବଳ ନୁହେଁ, ଏହି ଶିକ୍ଷିତ ସମ୍ପ୍ରଦାୟ ତାହାକୁ ପ୍ରଶ୍ରୟ ମଧ୍ୟ ଦେବାକୁ କୁଣ୍ଠିତ ନୁହନ୍ତି ।

ମନୁ କେଉଁ ଯୁଗର ଧର୍ମଶାସ୍ତ୍ର, ସ୍ୱାର୍ଥ-ସିଦ୍ଧି ନିମନ୍ତେ କେବଳ ଅଧୁନା ତାହାର ପ୍ରୟୋଗ ନିନ୍ଦାଯୋଗ୍ୟ ନୁହେଁ କି ?

ଯେଉଁ ବ୍ୟବସ୍ଥା ଅନୁସାରେ ଅଧୁନା ଚଳି ହେଉ ନାହିଁ, ତାହାକୁ ନତମସ୍ତକରେ ମାନି ମନସ୍ତାପ ଭୋଗ କରିବାର ପ୍ରୟୋଜନ କ'ଣ ? ପ୍ରକୃତ ପକ୍ଷରେ କେହି ପ୍ରାଚୀନ ବ୍ୟବସ୍ଥାର ପକ୍ଷପାତୀ ନୁହନ୍ତି । ନିଜର ସୁବିଧା ଅନୁସାରେ ପ୍ରତ୍ୟେକେ ତାକୁ ଅପମାନ କରୁଅଛନ୍ତି କିନ୍ତୁ ମୂଢ଼ ଧାର୍ମିକତାର ପକ୍ଷପାତୀ ହୋଇ ଅନ୍ୟର ଅସୁବିଧା ଘଟାଇବାକୁ ଛାଡୁ ନାହାନ୍ତି । ବ୍ୟବସ୍ଥାର ଚାପ ପଡୁଛି ଦୁଃଖୀ ଓ ନିରକ୍ଷରଙ୍କ ଉପରେ । ବୃଦ୍ଧ ବ୍ରାହ୍ମଣଗଣ ଗାୟତ୍ରୀ ଉପାସନା ମଧ୍ୟ କରୁଅଛନ୍ତି, ଉପନିଷଦର ବ୍ରହ୍ମ ଭାବନା ସଙ୍ଗେ ସଙ୍ଗେ 'ମହିଷୟୋଛାଗମପିବା' ବଳିର ବ୍ୟବସ୍ଥା କରିବାକୁ ପଞ୍ଚଦେବତା ଉପାସନାର ଦୋହି ଦେଇ ସ୍ୱାର୍ଥସିଦ୍ଧ କରୁଅଛନ୍ତି । ଉପନିଷଦର ବ୍ରହ୍ମୋପାସନା ଓ ପାରମାର୍ଥିକ ସାତ୍ତ୍ୱିକ ଉପାସନା ସହିତ ମହିଷ ଓ ଛାଗବଳୀର ଆସୁରୀ କ୍ରିୟାର ସାମ୍ୟ କେଉଁଠାରେ ? ସାମ୍ୟ ଅଛି ବୋଲି ଗୁରୁମାନେ ଉପଦେଶ ଦେବାକୁ ଲଜ୍ଜିତ ନୁହନ୍ତି ଏବଂ ଶିଷ୍ୟଗଣ ନତ ମସ୍ତକରେ ଉଭୟ ମତ ରକ୍ଷା କରିବାକୁ ସର୍ବଦା ରାଜି । ଅଳ୍ପଦିନ ତଳେ ଅସଂଖ୍ୟ ମହିଷ ଓ ଛାଗର ରକ୍ତ କାଞ୍ଚନିକ ଦେବୀ ଖର୍ପରରେ ପ୍ରବାହିତ ହୋଇଅଛି ଓ ପୁଣି ହେବ । କିନ୍ତୁ ଭାରତବାସୀର ମୂଢ଼ ଧାର୍ମିକତା ଅପସାରିତ ହେବାର ନୁହେଁ ।

●

## ତିନି ଗୋଟି ସତ୍ୟ

ମା', ମାତୃଭୂମି, ମୃତ୍ୟୁ । ମା' ସତ୍ୟ, ମାତୃଭୂମି ସତ୍ୟ, ମୃତ୍ୟୁ ସତ୍ୟ—

ମରଣ, ନିଗୂଢ଼ ସତ୍ୟ । ଏଥିରେ କାହାରି କୌଣସି ସନ୍ଦେହ ନାହିଁ । ଯାହାର ଜନ୍ମ ତା'ର ମରଣ । ଦେହଧାରୀର ମୃତ୍ୟୁ ଅବଶ୍ୟ ଘଟିବ ଏହା ଅବିସମ୍ବାଦିତ ସତ୍ୟ । ଲେଖିବା ବାହୁଲ୍ୟ ମାତ୍ର । ମରଣ ଜୀବର ଚିରସଙ୍ଗୀ । ତିଳେମାତ୍ର ବିଚ୍ଛେଦ ନାହିଁ । ଜୀବନ ଥିଲେ ହିଁ ସଙ୍ଗେ ସଙ୍ଗେ ମରଣ ରହିଅଛି । ଜୀବର ପ୍ରାଣବାୟୁ ସହିତ ଅତ୍ୟନ୍ତ ବିଚ୍ଛେଦ ଘଟିଲେ ଜୀବର ମୃତ୍ୟୁ ଘଟିଲା ବୋଲାଯାଏ । ମରଣ ସମ୍ବନ୍ଧେ ମନୁଷ୍ୟର ଭ୍ରାନ୍ତ ଧାରଣା ରହିଅଛି । ଏଣୁ ମରଣ ନାମରେ ନର ଭୟବିହ୍ୱଳିତ, କାତର ।

ବହୁଦିନର କଥା ଦିନେ ଘଟଣା କ୍ରମେ ଦୁଇ ଜଣ ଲୋକ ମତେ ଅରଣ୍ୟରେ ଏକାକୀ ଦେଖି ପ୍ରଶ୍ନ କଲେ । ଏ ବିପଜ୍ଜନକ ସ୍ଥାନରେ ଆପଣ ଯେ ଏକାକୀ ? ମୁଁ କହିଲି ମୋର ଚିରସଙ୍ଗୀ ସଙ୍ଗରେ ଅଛି ତ । ସେ ଦିହେଁ କହିଲେ କାହିଁ ? ମୁଁ କହିଲି ମରଣ । ସେ ଦିହେଁ କହିଲେ ରାମ, ରାମ, ଯାର ନାମ ମୁଖରେ ଉଚ୍ଚାରଣ କରିବାର ଦୋଷ, ଯାର ନାମ ଶୁଣିଲେ ଭୟ ହୁଏ, ରୋମାଞ୍ଚିତ ହୁଏ ସେ ପୁଣି ଆପଣଙ୍କ ସାଥୀ । ବଡ଼ ଦୁଃଖର କଥା ଆଜି ଶୁଣିଲୁ । ମୁଁ କହିଲି, ଏହା ଅତି ସତ୍ୟ କଥା । ଏଥିରେ ଦ୍ୱିରୁକ୍ତି କରିବାର କାହାରି ଉପାୟ ନାହିଁ । ମୁଁ କହିଲି, ମୋ ସହିତ ମରଣ ଅଛି ସେହିପରି ତମ ଦୁହିଁଙ୍କ ସହିତ ମରଣ ଅଛି । ମରଣ ଜୀବ ଦେହରେ ବ୍ୟାପି ରହିଅଛି । ମରଣ ଆମମାନଙ୍କ ସାଥୀ ଏଣୁ ଆମେମାନେ ଜୀଇଁ ଥାଇ ।

ମରଣ କି ମନୁଷ୍ୟକୁ ମାରେ ? ତା'ର ହାତ ଅଛି କି ମୁହଁ ଅଛି ବା ରୂପରେଖ ଅଛି ? ମରଣ ଗୋଟାଏ କିମ୍ଭୂତ କିମାକାର ଅଜ୍ଞେୟ ଅବୋଧ୍ୟ ଅବସ୍ଥା । ଜୀବର ଜନ୍ମ ସଙ୍ଗେ ସଙ୍ଗେ ସେ ଅବସ୍ଥା ଜୀବର ସଙ୍ଗ ନିଏ । ମରଣ ପ୍ରକୃତ ସଙ୍ଗୀ । ତାକୁ ଭୟ କରିବାର କିଛି ହିଁ କାରଣ ନାହିଁ ।

ମରଣ ମନୁଷ୍ୟର ସଙ୍ଗରେ ଥାଇ ତାକୁ ସର୍ବଦା ସତର୍କ କରାଉଅଛି । ପର୍ବତ ଶିଖର ଦେଶରେ ଅଗ୍ରସର ହେଉଁ ହେଉଁ ପତନର ସମ୍ଭାବନା ହେଲେ ମରଣ ସତର୍କ କରେ "ଆଉ ପଦେ ମଧ୍ୟ ଅଗ୍ରସର ହୁଅ ନାହିଁ, ଅଗ୍ରସର ହେଲେ ପଡ଼ିଯାଇ ପ୍ରାଣ ହରାଇବୁ" । ଲୋକ ନିରସ୍ତ ହୁଏ । ପ୍ରବଳ ନଦୀସ୍ରୋତରେ ସନ୍ତରଣ କରିବାକୁ ମନୁଷ୍ୟ ପ୍ରସ୍ତୁତ ହେଲେ ମରଣର ସତର୍କତାରୁ ସେ ନଦୀ ସନ୍ତରଣରୁ କ୍ଷାନ୍ତ ହୋଇ ପ୍ରାଣ

ରକ୍ଷା କରେ । ନାନା ବିପଦରୁ ମନୁଷ୍ୟ ରକ୍ଷାପାଏ ମରଣର ସତର୍କତାରୁ ।

ମରଣ କି ମନୁଷ୍ୟକୁ ମାରେ ? ନା, ନା । ମନୁଷ୍ୟ ମରେ ବା ପ୍ରାଣ ହରାଏ କ୍ରୋଧରୁ, କ୍ଷୁଧାରୁ, ଦୁଃସାହସିକତାରୁ, ପୂର୍ବପୁରୁଷର ସଂକ୍ରମିତ ରୋଗରୁ, ସଂକ୍ରାମକ ରୋଗରୁ ଅମିତାଚାରରୁ । ମରଣର ସତର୍କବାଣୀରେ ସାବଧାନ ହେଲେ ଏବଂ ଅହମିକା ତ୍ୟାଗକଲେ ମନୁଷ୍ୟ ନିର୍ଦ୍ଦିଷ୍ଟ ଆୟୁଷ କାଳ ଅବଶ୍ୟ ଭୋଗ କରିପାରିବ ।

ମରଣ ନାଶ କରେ ନାହିଁ ଏଣୁ ତାକୁ ଡରିବାର ଉଚିତ ନୁହେଁ ବରଂ ମରଣକୁ 'ତୁ ମୋହର ଜୀବନର ସାଥୀ' ବୋଲିବା ଯୁକ୍ତିଯୁକ୍ତ । ମରଣ କହେ ''ଭାଇ, ଦୁଃସାହସିକତାରେ, ରୋଗରେ, ଶୋକରେ ପ୍ରାଣ ହରାଇବା ଅପେକ୍ଷା ପରାର୍ଥେ, ସତ୍‌କାର୍ଯ୍ୟରେ, ଦେଶ ଓ ଜନସେବାରେ ପ୍ରାଣଦେବା ଉଚିତ ।''

ମା' ସତ୍ୟ—

—ମା', ମା', ମା', ମା'ଠାରୁ ବଳି ଏ ପୃଥିବୀରେ ଅନ୍ୟ କେହି ପୂଜ୍ୟ ଓ ସମ୍ମାନିତ ନୁହନ୍ତି । ମା' ସହିତ ସନ୍ତାନର ଯେ ସମ୍ବନ୍ଧ ଅନ୍ୟ କାହାରି ସହିତ ସେ ସମ୍ବନ୍ଧ ନାହିଁ । ମନୁଷ୍ୟେତର ଜୀବମାନଙ୍କର ଏକମାତ୍ର ମାତା ସହିତ । ଆତ୍ମରକ୍ଷା ଓ ପ୍ରତିପୋଷଣକ୍ଷମ ହେବାଯାଏ ସନ୍ତାନମାନେ ମାତା ଦ୍ୱାରା ଲାଳିତ ପାଳିତ ହୁଅନ୍ତି । କ୍ଷମ ହେଲାରୁ ସେ ମାତା ଉପରେ ନିଜ ଭାର ଲଦିବେ କାହିଁକି ? ଏଣୁ ସ୍ୱତନ୍ତ୍ର ହୋଇ ରହନ୍ତି ।

ମନୁଷ୍ୟ ଜାତିର କଥା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ମନୁଷ୍ୟ ସନ୍ତାନ ପିତାର ପକ୍ଷପାତୀ । କିନ୍ତୁ ମାତା ଯେ ପରମ ସତ୍ୟ ତାହା ସେମାନେ ଭୁଲିଯାନ୍ତି । ମାତା ଯେ ଗର୍ଭସ୍ଥ ଆଣବିକ, ଜୈବିକ ପଦାର୍ଥକୁ ନିଜ ରକ୍ତଦ୍ୱାରା ନରାକାର ଗଠନ କରି ଜଗତ୍‌ବାସୀଙ୍କି ଦେଲା ସେ କଥା ବଡ଼ ବେଶି ମନେ ପଡ଼େ ନାହିଁ । ଗର୍ଭରେ ଧରି ଦଶମାସ କାଳ ଏକ ଜୀବନ କରି ରଖି, ନିଜର ଶରୀର କ୍ଷୟ ସତ୍ତ୍ୱେ ରକ୍ତଦ୍ୱାରା ପୋଷଣ କଲା । ଏକସମୟରେ ମା' ଓ ସନ୍ତାନର ହୃତ୍‌ପିଣ୍ଡ ଦପ୍‌ଦପ୍ କରୁଥିଲା ତାହା କିଏ ବା ମନେ ରଖେ । ଗୁର୍ବୀ ପ୍ରସବ ବେଦନାର କଥା ମା' ଭିନ୍ନ ଆଉ କିଏ ଜାଣେ ? ସନ୍ତାନ ପ୍ରସବ ହେଲେ ପରିବାର ବର୍ଗର, ପିତାର ଆନନ୍ଦର ସୀମା ନ ଥାଏ । କିନ୍ତୁ ମା' ଯେ ଶିଶୁକୁ ଗର୍ଭରେ ରଖି ପ୍ରସବ କଲା ଏହାତ ଅକାଟ୍ୟ ସତ୍ୟ । ଏଥିରେ କି କୌଣସି ଦ୍ୱିରୁକ୍ତି ଅଛି ? ଏଣୁ ମା' ଯେ ସମସ୍ତଙ୍କ ଅପେକ୍ଷା ଶ୍ରେଷ୍ଠସ୍ଥାନ ପାଇବ ଏଥିରେ ଆଉ ସନ୍ଦେହ କ'ଣ ? ପ୍ରସବ ଉତ୍ତାରୁ ମଧ୍ୟ ସନ୍ତାନର ଲାଳନପାଳନରେ ମା' ଯେ କି କଷ୍ଟଭୋଗ କରେ ଓ ଚିନ୍ତାର ବଶବର୍ତ୍ତିନୀ ହୁଏ ତାହା ବିସ୍ମୟକର କଥା । ଆପଣା ଶରୀର କ୍ଷୟରେ ଶିଶୁକୁ ଦୁଗ୍ଧ ଦାନ କରେ, ତା' ନିମନ୍ତେ ଦିନରାତି ବ୍ୟସ୍ତଥାଏ ଏହା କିଏ ନ ଜାଣେ ? ଏହି ନିସ୍ୱାର୍ଥପର ବାତ୍ସଲ୍ୟ ପ୍ରେମର ପ୍ରତିଦାନ କେବଳ ପ୍ରେମ, ସ୍ନେହ, ସୁବଚନ ତା'ର ନ୍ୟାଯ୍ୟ ପ୍ରାପ୍ୟ । ତାହା ଯଦି ପୁତ୍ରମାନେ ଦେବାରେ କୁଣ୍ଠିତ ତେବେ ଅମନୁଷ୍ୟତ୍ୱ ଆଉ କେଉଁଠାରେ ?

ବାଲ୍ୟକାଳରେ ପଢ଼ିଥିଲି—

Who fed me from her gentle breast,
And hushed me in her arm to rest
And on my cheek sweet kisses prest,
My mother.

କବିର ନାମ ଭୁଲିଯାଇଛି ପୁସ୍ତକର ନାମ ଭୁଲିଯାଇଛି । କିନ୍ତୁ ଏହି କବିତାଂଶଟି ମନରେ ବଦ୍ଧମୂଳ ହୋଇ ରହିଯାଇଅଛି । କି ଶୁଭ ମୁହୂର୍ତ୍ତରେ ଯେ ମନରେ ପ୍ରବେଶ କଲା ତାହା ପାସୋରା ଯାଉ ନାହିଁ । ଶୁଭସୂଚକ । ଏ କବି ସେଲି, ମିଲଟନ, ସେକ୍‌ସପିୟର ନୁହନ୍ତି ତଥାପି ତାଙ୍କର କବିତା ହୃଦୟସ୍ପର୍ଶୀ ମାତୃଭକ୍ତିର ପ୍ରକାଶ ଏବଂ ପ୍ରକୃତ ବାତ୍ସଲ୍ୟ ପ୍ରେମର ମୂର୍ତ୍ତିମାନ ଚିତ୍ର । କବିଙ୍କୁ ମୋର ହୃଦୟରେ ମୁଁ ଜୀବିତ ଥିବାଯାଏ ଉଚ୍ଚସ୍ଥାନ ଦେଇରଖିବି । ଏ କବିଙ୍କୁ ମୋର ବାରମ୍ବାର ନମସ୍କାର ।

ମା' ସତ୍ୟ, ତା' ପ୍ରତି ତାଚ୍ଛଲ୍ୟ, ତା' ପ୍ରତି ଅବଜ୍ଞାସୂଚକ ବାକ୍ୟ ପ୍ରୟୋଗ ତା' ପ୍ରତି ଅଯତ୍ନ-ତା'ର ଅବମାନନା ଯେଉଁ ସନ୍ତାନ କରେ ସେ ପଶୁଠାରୁ ହୀନ, ଅତିହୀନ । କାଳଚକ୍ରରେ ପଡ଼ି ମନୁଷ୍ୟ ଦୋଷ କରେ, ପଥଭ୍ରଷ୍ଟ ହୁଏ । ମା' ପଥଭ୍ରଷ୍ଟ ହେଲେ ମଧ୍ୟ ପୁତ୍ରର ତିରସ୍କାରର ପାତ୍ରୀ ନୁହେଁ । ତାକୁ ସ୍ନେହଦ୍ୱାରା—ସୁପରାମର୍ଶଦ୍ୱାରା ସୁପଥକୁ ଆଣିବାକୁ ଚେଷ୍ଟା କରିବା ପୁତ୍ରର କର୍ତ୍ତବ୍ୟ । ସୁପନ୍ଥାକୁ ଆଣିବାର ଉପାୟ ନ ଥିଲେ ମଧ୍ୟ ତା' ପ୍ରତି ତାଚ୍ଛଲ୍ୟ ବ୍ୟବହାର ନ କରି ସେ ଜୀବିତ ଥିବାଯାଏ ଯେପରି ସୁଖରେ କାଳାତିପାତ କରି ପାରିବ ତତ୍‌ପ୍ରତି ଦୃଷ୍ଟିଦେବା ଓ ସାହାଯ୍ୟ କରିବା କର୍ତ୍ତବ୍ୟ । ପ୍ରତ୍ୟେକ ପୁତ୍ରର ସ୍ମରଣ ରଖିବା ଉଚିତ ଯେ, ମାତା ପୁତ୍ରର ସମ୍ବନ୍ଧ ଗର୍ଭାବସ୍ଥାରୁ ଆରମ୍ଭି ଅବିଚ୍ଛେଦ୍ୟ ।

ଶିଶୁକାଳରେ ଶୟନ କଲାବେଳେ କେବଳ ମା'କୁ ଲୋଡ଼ା ହୁଏ ଏବଂ ମା', ମା' ବୋଲି ଥରକୁ ଥର ଡାକିବାକୁ

ହୁଏ । ସକାଳୁ ନିଦ ଭାଙ୍ଗିବାକ୍ଷଣି ପୁଣି ସେହି ମା' ଡାକ । ବଡ଼ ହେଲାକ୍ଷଣି ସେହି ମା' ଡାକ ରାତ୍ରରେ ସକାଳରେ ଉଚ୍ଚାରଣ କରିବାକୁ ଭୁଲିଯାଉ କାହିଁକି ? ଏହି ଡାକରେ କି କୁଶଳତା ଓ ସଫଳତା ନାହିଁ ? ରାତ୍ରଶଯ୍ୟା ଗ୍ରହଣ କରି ଚକ୍ଷୁ ମୁଦ୍ରିତ କରିବା ବେଳେ ମା', ମା', ମା', ତିନି ଥର ଉଚ୍ଚାରଣ କରି ନିଦ୍ରାଯିବା କର୍ତ୍ତବ୍ୟ ପୁଣି ସକାଳୁ ଚକ୍ଷୁ ଉନ୍ମୀଳିତ କଲାବେଳେ ତିନିଥର ମା', ମା', ମା', ବୋଲି ଉଚ୍ଚାରଣ କରି ଗାତ୍ରୋତ୍‌ଥାନ କରିବା ଶ୍ରେୟସ୍କର । ଏବଂ ବ୍ରତପତି, ପ୍ରାଣଦାତା ସୂର୍ଯ୍ୟଆଡ଼କୁ ଅନାଇ ନିଜର କର୍ମରେ ଅଗ୍ରସର ହେବା ଉଚିତ । ଏତଦ୍ୱାରା ମଙ୍ଗଳ ଅବଶ୍ୟ ହେବ, ଏହି ଧାରଣାରେ ଆହ୍ଲାଦିତ ହେଲେ ଦୁଃଖ ନାହିଁ ।

**ମାତୃଭୂମି ସତ୍ୟ—**

ଯେଉଁ ଦେଶରେ ଆମମାନଙ୍କର ଜନ୍ମ, ଯେଉଁ ଦେଶର ଅନ୍ନରେ ଆମମାନଙ୍କର ଶରୀର ରକ୍ଷାହୁଏ ଯେଉଁ ଦେଶର ସ୍ୱଚ୍ଛସଲିଳ ମା'ର କ୍ଷୀର ସଦୃଶ ଆମମାନଙ୍କର ଜୀବନ ରକ୍ଷାକରେ, ଯେଉଁ ଦେଶ ଆମମାନଙ୍କର ଖେଳଘର, ଯେଉଁ ଦେଶ ଆମମାନଙ୍କର କର୍ମଭୂମି—ଆମମାନଙ୍କର ନଶ୍ୱର ଦେହ ଶେଷରେ ଯେଉଁ ମାଟିରେ ମିଶିବ ସେ ଆମମାନଙ୍କର ମାତୃଭୂମି । ଜନ୍ମଭୂମିର ଏଥିରୁ ଅଧିକ ବ୍ୟାଖ୍ୟା ଅନାବଶ୍ୟକ । କେଉଁ ଦେଶବାସୀ ବା ତା'ର ମହତ୍ତ୍ୱ ମର୍ଯ୍ୟାଦା ନ ଜାଣନ୍ତି । ଯେଉଁ ଦେଶବାସୀ ମାତୃଭୂମି ଭକ୍ତ ସେ ଦେଶବାସୀ ସ୍ୱାଧୀନ ଓ ମହତ୍ । ଯେଉଁମାନଙ୍କର ମାତୃଭୂମି ସହିତ ପରିଚୟ ନାହିଁ, ଯେଉଁ ଜାତି ମାତୃଭୂମିର ନାମପର୍ଯ୍ୟନ୍ତ ବିସ୍ମୃତ, ସେମାନଙ୍କର ଅଧୋଗତି ଅନିବାର୍ଯ୍ୟ । ଆମ ଦେଶବାସୀ କି ଅବସ୍ଥାରେ ଉପନୀତ ତାହାକି ବୁଝାଇ ଦେବାକୁ ହେବ ? ଆମ ଦେଶବାସୀଙ୍କୁ ମାତୃଭୂମିର ନାମ ପଚାର— ଅସମ୍ଭବ ଉତ୍ତର ପାଇବ । ଇଂରାଜୀରେ ପଚାର ଉତ୍ତର ପାଇବ ଇଣ୍ଡିଆ ତ ? କାହିଁକି ଇଂରାଜୀ ଶିକ୍ଷିତମାନଙ୍କୁ ସ୍ୱଦେଶ ଭାଷାରେ ପଚାରିଲେ ମଧ ଉତ୍ତର ପାଇବ ଇଣ୍ଡିଆ । ଆମ ପ୍ରିୟ ମାତୃଭୂମିର ନାମ କ୍ରମେ ଇଣ୍ଡିଆରେ ପରିଣତ ହେଉଅଛି । ମନେହୁଏ ଭବିଷ୍ୟତରେ ଆବାଳବୃଦ୍ଧ ପଣ୍ଡିତ ମୂର୍ଖ ସମସ୍ତେ ନିଜ ମାତୃଭୂମିକୁ ଇଣ୍ଡିଆ ଆଖ୍ୟାରେ ଅଭିନନ୍ଦିତ କରିବେ, ଗର୍ବର ସହିତ । କି ପରିତାପର ବିଷୟ ? ଆମ ଦେଶ କି କାଲିର ଗଢ଼ା ? ଏହାକି ମହାସାଗରର ଅଜ୍ଞାତ ଦ୍ୱୀପ ଯେ ଏହାର ନାମ ଆବିଷ୍କର୍ତ୍ତାମାନେ ସ୍ୱେଚ୍ଛାଚାର ମତେ ଘୋଷଣା କରିବେ । ଏ ଦେଶର ନାମ କି ପୃଥିବୀର ସମଗ୍ର ଦେଶ ଅପେକ୍ଷା ପ୍ରାଚୀନ ନୁହେଁ ? ଏହାର କି ନାମ ନ ଥିଲା ? ଏହାର ଏ କଦର୍ଯ୍ୟ ନାମକରଣ ହେଲା କାହିଁକି, କାହାଦ୍ୱାରା ? ଆମ ଦେଶବାସୀ ଏହି ବିଦ୍ରୂପାତ୍ମକ, କଦର୍ଯ୍ୟ ନାମରେ ନିଜ ମାତାକୁ, ଜନ୍ମଦାତ୍ରୀ ପୋଷଣ କର୍ତ୍ତ୍ରୀକୁ ଡାକିବାକୁ ସଂକୁଚିତ ଓ ଲଜ୍ଜିତ ହେଲେ ନାହିଁ କାହିଁକି ? ଚଉରାଳିଶ କୋଟି ପୁତ୍ରକନ୍ୟା ନିଜ ମାତୃଭୂମିର ନାମ ବିସ୍ମୃତ ରହିଲେ ଦାସତ୍ୱ ଶୃଙ୍ଖଳ ଛିଡ଼ିବାର ଆଶା ସୁଦୂରପରାହତ ନୁହେଁ କି ? ପାଶ୍ଚାତ୍ୟ ଦେଶର ଧନିକମାନଙ୍କର ମାଲଗାଡ଼ିର ଚକରେ କଠିନଇସ୍ପାତ ଶୃଙ୍ଖଳରେ ଆବଦ୍ଧ ମାତୃଭୂମିକୁ ମୁକ୍ତ କରିବା ପ୍ରୟାସ ସଫଳ ହେବା ସମ୍ଭବ ନୁହେଁ ଯାବତ ଚୌରାଳିଶ କୋଟି ମନୁଷ୍ୟଙ୍କୁ ମାତୃଭୂମିର ପ୍ରକୃତ ନାମ ସହିତ ପରିଚିତ କରାଇ ଦିଆ ନ ଯାଏ । ମାତୃଭୂମିର ନାମ କଲ୍ୟାଣରୁ କେବଳ ଏକତା ଆସିପାରେ ଅନ୍ୟଥା ନାହିଁ । ଏହାକି ନେତାମାନଙ୍କୁ ଜଣା ନାହିଁ ? ତଥାପି ମା'ର ନାମ ପରିବର୍ତ୍ତେ ଇଣ୍ଡିଆ ନାମରେ ସମସ୍ତେ ମୁଗ୍ଧ ।

ଆମ ମାତୃଭୂମିର ନାମ କ'ଣ ? ଭାରତବର୍ଷ ନୁହେଁ କି ? କେବେ ଏହି ନାମକରଣ ହେଲା, ଠିକ୍‌ରୂପେ କେହି କହିପାରିବ ନାହିଁ । ମାତ୍ର ଏ ନାମରେ କେତେଜଣ ପରିଚିତ ଏବଂ କେଉଁ କେଉଁ ଦେଶବାସୀମାନେ ପରିଚିତ । ଚୀନ, ଜାପାନ, ରୁଷିଆ, ଜର୍ମାନ, ଇଂଲଣ୍ଡ, ଯେଉଁ ଦେଶର ନାମ ପୂର୍ବରୁ ଭାରତର ନାମ ଖ୍ୟାତି ତା'ର ନାମ ପରିବର୍ତ୍ତନ ହେଲା, ମାତ୍ର ଉକ୍ତଦେଶମାନଙ୍କର ନାମ ବରାବର ରହିଅଛି । ଏହାଠାରୁ ବଳି ଦୁଃଖର ଓ ଲଜ୍ଜାର ବିଷୟ କ'ଣ ହୋଇପାରେ ?

ଦିନେ ମୋ ନାତିମାନେ ଛବି ଦେଖୁ ଦେଖୁ- ବହିଟାକୁ ମେଲାଇ ରଖିଥିଲେ । ମୁଁ କୁର୍ସିରେ ବସିବା ମାତ୍ରେ ବହିର ନିମ୍ନୋକ୍ତ ଲେଖାରେ ଦୃଷ୍ଟି ପଡ଼ିଲା—

This victory Enabled General William Henry Harrison to defeat the British and Indians and recapture Detroit, ଇଣ୍ଡିଆନ୍ ? କେଉଁ ଇଣ୍ଡିଆନ ? Red Indian ଆମେରିକାରେ ରେଡ଼ ଇଣ୍ଡିଆନ ଜାତି ଅଛନ୍ତି । ଯୁକ୍ତରାଜ୍ୟର ଠିକ୍ ବିପରୀତ ଭାଗରେ ଆମ୍ଭେମାନେ ବ୍ଲାକ୍ ଇଣ୍ଡିଆନ ବାସ କରୁଅଛୁଁ । ଶ୍ୱେତଜାତିର ସ୍ୱାର୍ଥ ରକ୍ଷାର୍ଥ ପୃଥିବୀର ଦୁଇ ଅଂଶରେ ଦୁଇ ଲାଲ ଓ କଳା ଇଣ୍ଡିଆନଙ୍କର ବାସ । ଚମତ୍କାର !

ଭାରତ ଅପେକ୍ଷା ଇଣ୍ଡିଆ କି ମଧୁର କର୍ଣ୍ଣରସାୟନ ? ଏବଂ ଭାରତବାସୀ ଶବ୍ଦଟି କି ହେୟ ଓ ଘୃଣାସୂଚକ ଯେ ଏ ଦେଶବାସୀ ନିଜକୁ ଇଣ୍ଡିଆନ ବୋଲି, ଜଗତବାସିଙ୍କଠାରେ ପରିଚୟ ଦିଏ ?

ନେତାମାନେ ଏ ଦେଶର କେତେ ଉନ୍ନତି, କେତେ ଅୟୋଜନର ଆସର୍ଦ୍ଧା ରଖନ୍ତି ମାତ୍ର ଜନ୍ମଭୂମିର ନାମଟା ପରିବର୍ତ୍ତନ କରିବାର ପ୍ରୟୋଜନୀୟତା ସେମାନଙ୍କ ହୃଦୟରେ ସ୍ଥାନ ପାଏ ନାହିଁ ? କିମ୍ବା ଭାବନ୍ତି ଯେ ଭାରତବାସୀ ଆଖ୍ୟାଟି ନିନ୍ଦନୀୟ ଏଣୁ ଯଶସ୍କର ନୁହେଁ ?

ଭାରତର ପ୍ରାଥମିକ ସନ୍ତାନ କେଉଁମାନେ ଇତିହାସ ତହିଁର ନିଦର୍ଶନ ଦେଇପାରିବ ନାହିଁ । ତେବେ ଏହି ଭାରତଭୂମି ପ୍ରଥମେ ଅଷ୍ଟ୍ରେରିକ, ମୁଣ୍ଡା ପ୍ରଭୃତି ଆଦିମବାସୀମାନଙ୍କଦ୍ୱାରା ଅଧ୍ୟୁଷିତ ହେଲା । କାଳ କ୍ରମେ ଡ୍ରାଭିଡ଼ିଏନ୍‌ମାନେ ଆସିଲେ, ତହିଁ ଉତ୍ତାରୁ ଆର୍ଯ୍ୟମାନେ ଆସି ହିମାଳୟ ଓ ବିନ୍ଧ୍ୟ ମଧବର୍ତ୍ତୀ ସ୍ଥାନରେ ବାସକଲେ । କ୍ରମେ ରାଜପୁତ ଓ ମାରଓ୍ୱାଡ଼ି ପ୍ରଭୃତି ଆସିଲେ । ପାରସିକମାନେ ଓ ମହମେଡ଼ନମାନେ ଆସିଲେ । ଏହି ସମସ୍ତ ଜାତି ଆସି ଭାରତମାତାର ଆଶ୍ରୟ ନେଲେ, ଏମାନେ ସମସ୍ତେ ଭାରତବାସୀ । ଅନ୍ୟ ଦେଶରେ ଦେଶର ନାମ ଅନୁସାରେ ବାସିନ୍ଦାମାନଙ୍କର ନାମହୁଏ । ଏହା ସର୍ବତ୍ର ଦେଖାଯାଏ । ମାତ୍ର ଧର୍ମ ଅନୁସାରେ ଜାତିର ପରିଚୟ କୌଣସିଠାରେ ନାହିଁ । ଆରବ ଦେଶର ମୁସଲମାନ ଆରବୀ, ସେହିପରି, ଇଜିପ୍ଟବାସୀ ପାରସ୍ୟବାସୀ, ଇରାକ ଇତ୍ୟାଦି । ଭାରତରେ ପାଦ ପକାଇଲାକ୍ଷଣି ମହମ୍ମଦଙ୍କର ଧର୍ମାବଲମ୍ବୀମାନେ ମୁସଲମାନ ଆଖ୍ୟାରେ ଅଭିହିତ ହେବେ ଏବଂ ଏକ ଦେଶବାସୀ ଜାତିଭାଇଙ୍କ ବିରୁଦ୍ଧେ ଦ୍ୱନ୍ଦ୍ୱ ଲଗାଇବେ, ଏ ଭିଆଣ କାହାର ? ଭାରତମାତାର ଦୁର୍ଭାଗ୍ୟ !

ଜାତ, ଜାତି ଏକାର୍ଥବୋଧକ । ଏକ ମା'ଠାରୁ ଜାତ ବା ଜନ୍ମ ସନ୍ତାନମାନେ ପୂର୍ବରୁ ଭାଇ ଆଖ୍ୟାରେ ପରିଚିତ ହୁଅନ୍ତି । ଏକ ମାତୃଭୂମିରେ ଜନ୍ମ ସମସ୍ତେ, ଜାତି ଆଖ୍ୟାରେ ପରିଚିତ ହୁଅନ୍ତି । ଏହା ସ୍ୱତଃସିଦ୍ଧ । ପୃଥିବୀମୟ ଏ ରୀତି ଚାଲିଆସିଅଛି । ଭାରତରେ କେବଳ ଏଥିର ବିପରୀତ ନିୟମ ପ୍ରବର୍ତ୍ତିତ । ଧର୍ମଦ୍ୱାରା ବ୍ୟବସାୟ ଦ୍ୱାରା ସମସ୍ତେ ପରିଚିତ ହେବେ ଏବଂ ଏକତା ଭାଙ୍ଗିବେ । ଅଦାଲତରେ ଏହି ଭେଦମୂଳକ ଜାତିପ୍ରଥା ପ୍ରବର୍ତ୍ତିତ କରାଯାଇଅଛି । ନାମ, ଜାତି, ବୟସ, ବ୍ୟବସାୟ ଲେଖାହୁଏ । ଅନ୍ୟ ଦେଶବାସୀ ଏଥିରୁ ଯଥାର୍ଥ ଉତ୍ତର ଦିଅନ୍ତି । ମାତ୍ର ଏ ଦେଶବାସୀ ମାନଧାତା ଅମଳର ବ୍ୟବସାୟ ଓ ଧର୍ମର ଦୋହାଇ ଦେଇ ଆପଣା ଜାତିର ପରିଚୟ ଦିଅନ୍ତି ଯଥା- ବ୍ରାହ୍ମଣ, କ୍ଷତ୍ରିୟ, ମୁସଲମାନ, ମେଥର, ଧାଙ୍ଗର ଇତ୍ୟାଦି ଇତ୍ୟାଦି । ବାସ୍ତବିକ ଏସବୁ ଜାତିର ପରିଚାୟକ ନୁହେଁ । କିନ୍ତୁ ଏହା ଲେଖି ରଖିବାର ବିଧି ଅଛି କାରଣ ଏଥିରେ ବି ଭେଦମୂଳକ ନୀତି ରହିଅଛି ଏବଂ ଲୋକେ କ୍ରମଶଃ ଅଭ୍ୟସ୍ତ ହୋଇଯାଇଛନ୍ତି । ବ୍ରାହ୍ମଣଠାରୁ ଆରମ୍ଭି ମେଥର ପର୍ଯ୍ୟନ୍ତ ଯଦି ସମସ୍ତେ କି ଜାତି ବୋଲି ପଚାରିବାମାତ୍ରେ ଭାରତବାସୀ ବୋଲି ଉତ୍ତର ଦିଅନ୍ତେ କେବେ କି କାହାରି ଆପତ୍ତିର କାରଣ ଥାଆନ୍ତା ? ଜାତିର ଅନୁବାଦ Caste କିଏ କଲା ? ଏହି ତର୍ଜମାଟିକୁ ବିନା ଉଦ୍ଦେଶ୍ୟରେ କରାଯାଇଅଛି । ଆମେ ସମସ୍ତେ ଅନ୍ଧ ।

ଆଜି ନୀଚ ଉଚ୍ଚ ସମସ୍ତେ ଯେବେ ନିଜକୁ ଭାରତବାସୀ ବୋଲି ଖୁବ୍ ଜୋର ସହିତ ପ୍ରକାଶ କରିବାକୁ ଶିଖନ୍ତେ, ଏଥିର ଅନ୍ୟଥା ହେଲେ ଅସହଯୋଗର ଆରମ୍ଭ କରନ୍ତେ, ତାହା ହେଲେ, ବିଭେଦମୂଳକ ଜାତି ସମସ୍ୟାର ମୀମାଂସା ହେବାର ବାଟ ଫିଟିବା ସମ୍ଭାବନା ଏହାକି ବୁଝାଇବାର ପ୍ରୟୋଜନ ଅଛି ? ନୀଚ ଜାତି ବୋଲି ଯାହାକୁ ଆମେମାନେ କହୁଅଛୁଁ ଏବଂ ଏଥି ଭିତରେ ଶାସନକର୍ତ୍ତା ଏକତା ଭଙ୍ଗର ପ୍ରଧାନ ଉପାୟ ଦେଖୁଅଛନ୍ତି ଏବଂ ତାହା ରକ୍ଷା କରିବାର ପ୍ରବଳ ଚେଷ୍ଟା କରୁଅଛନ୍ତି ତାହାକି ଅଚିରେ ମିଥ୍ୟାରେ ପରିଣତ ହୁଅନ୍ତା ନାହିଁ ? ଯେବେ ପ୍ରତ୍ୟେକ ନୀଚଜାତି-ଆପଣାକୁ ନୀଚ ବୋଲି ପରିଚୟ ନ ଦେଇ କେବଳ ଭାରତବାସୀ ବୋଲି ପ୍ରକାଶ କରନ୍ତେ, ଗାନ୍ଧିଜୀଙ୍କି ହରିଜନ ନାମକ ଆଉ ଗୋଟିଏ ଅସ୍ପୃଶ୍ୟ ଜାତିର ସୃଷ୍ଟି ପ୍ରଯତ୍ନ କରିବାକୁ ପଡ଼ନ୍ତା ନାହିଁ । ହରିଜନ ସୃଷ୍ଟି ଭାରତୀୟ ଅସଂଖ୍ୟ ନୀଚ ଜାତିଙ୍କ ସହିତ ଆଉ ଗୋଟିଏ ଜାତି ଯୋଗ କରାଗଲା ମାତ୍ର ।

ଯଦି ମାତୃଭୂମି ପ୍ରତି ଶ୍ରଦ୍ଧା ଥାଏ, ଯେବେ ମାତୃଭୂମିର ମୁଖୋଜ୍ଜ୍ୱଳ କରିବାର ବାସନା ଥାଏ ତେବେ ଇଣ୍ଡିଆ ପରିବର୍ତ୍ତେ ଭାରତର ନାମ ଜଗତବାସୀ ସମସ୍ତ ଜାତିଙ୍କଠାରେ ଅତି ଜୋର ସହିତ ପ୍ରଚାର କରାଯାଉ । ଏ ଦେଶର ପ୍ରଚଳିତ ପାଠ୍ୟପୁସ୍ତକରୁ ଇଣ୍ଡିଆ ଶବ୍ଦକୁ କାଟିଦେଇ ଭାରତ ଶବ୍ଦର ଉଲ୍ଲେଖ କରାଯାଉ । କାରଣ ଛାତ୍ର ମାନେହିଁ ଏ ଦେଶର ମୁଖୋଜ୍ଜ୍ୱଳ କରିବାର ସମ୍ପୂର୍ଣ୍ଣ ଭରସା ଅଛି । ସେମାନଙ୍କ ମନରୁ ଇଣ୍ଡିଆ ନାମ ପୋଛି ଦିଆଯାଉ ଏବଂ ଭାରତ ନାମ ପ୍ରତି କେବଳ ସ୍ନେହ ଓ ଭକ୍ତି ଉଦ୍ରେକ କରିବାର ଚେଷ୍ଟା କରାଯାଉ-ଏ ଦେଶର ପାଠ୍ୟପୁସ୍ତକରେ ଏଣିକି ଇଣ୍ଡିଆର ସ୍ଥାନ ନାହିଁ । ଯେଉଁମାନେ ଏହା ଅଗ୍ରାହ୍ୟ କରି ପୁସ୍ତକ ଲେଖିବେ ସେମାନଙ୍କର ପାଠ୍ୟପୁସ୍ତକ ରଦ ଓ ଅଗ୍ରାହ୍ୟ କରାଯାଉ । ଇଣ୍ଡିଆ ସ୍ଥାନରେ ଭାରତ ଏବଂ ଇଣ୍ଡିଆନ ସ୍ଥାନରେ ଭାରତବାସୀ ଏହି ପରିବର୍ତ୍ତନ ନିଶ୍ଚୟ ଏକତା ଆନୟନ କରିବା ଏହା ସମସ୍ତଙ୍କର ସ୍ମରଣ ରଖିବା ଉଚିତ ।

ଇଂରାଜୀ ପତ୍ରିକାମାନ ମଧ ଏହି ପରିବର୍ତ୍ତନକୁ ଦେଶର ପ୍ରୟୋଜନ ବୋଲି ମନେ କରିବା ଉଚିତ । ସମ୍ପାଦକ ମାନେ ଏହି ପରିବର୍ତ୍ତନ ପକ୍ଷପାତୀ ହେଲେ ପ୍ରଭୂତ ଉପକାର ସାଧିତ ହେବ । ଏହି ପଥାନୁସରଣ ଯେଉଁ ପତ୍ରିକାମାନେ କରିବେ ନାହିଁ ସେମାନଙ୍କର କାଗଜ ଛାତ୍ରମାନଙ୍କର ପାଠଯୋଗ୍ୟ ନୁହେଁ । ଏହି କାଗଜମାନ ବୟକଟଯୋଗ୍ୟ ବୋଲି ପରିଗଣିତ ହେବ ।

ଅନେକ କଥା ଲେଖିବାକୁ ଥିଲେ ମଧ ଏଥର ଏତିକିରେ ଉପସଂହାର କରାଯାଉ ! ଏହି ଉପସଂହାରରେ ପୁନଃପ୍ରକାଶ କରିବାର ପ୍ରୟୋଜନ ଯେ, ଇଣ୍ଡିଆ ଓ ଇଣ୍ଡିଆନ ନାମ ଯୋଡ଼ିକୁ ଅଦାଲତରୁ, ପାଠ୍ୟପୁସ୍ତକରୁ ଉଠାଇ ଦିଆଯାଉ । ନେତାମାନେ ପୃଥିବୀର ସବୁ ଦେଶରେ ଏହା ପ୍ରଚାର କରନ୍ତୁ । ଆନ୍ତର୍ଜାତିକ ଭାଷାପତ୍ରରେ ଏହି ଦୁଇ ଘୃଣ୍ୟ ଶବ୍ଦ ସ୍ଥାନ ପାଉ ନାହିଁ । ଯାହାଙ୍କୁ ଦେଶବାସୀ ଘୃଣା ସହକାରେ ନୀଚ ବୋଲି ପ୍ରକାଶ କରନ୍ତି ସେମାନେ ଏଣିକି ଭାରତବାସୀ ବୋଲି ନିଜକୁ ପରିଚୟ ଦେବାକୁ ଜୋର ସହିତ ଶିକ୍ଷା ଦିଆଯାଉ ଏବଂ ଉଚ୍ଚ ଜାତିମାନେ ମଧ ଭାରତବାସୀ ବୋଲି ପରିଚୟ ଦେବାର ପ୍ରୟାସ ରଖନ୍ତୁ ଏହି ପ୍ରାର୍ଥନା । ଦେଶବାସୀ ଶୁଣିବେ କି ? ଆଶା କମ ବା ନାହିଁ ।

•

## ବ୍ରହ୍ମଜାଲ

ଜାଲ ଦ୍ୱାରା ମାଛ ଧରାଯାଏ । ମୃଗ ଧରିବାର ଜାଲ ଅଛି, ପକ୍ଷୀ ଧରିବାର ମଧ ଜାଲ ଅଛି । ଜାଲ ମଧରେ ପଡ଼ିଲେ ପ୍ରାଣୀର ଉଦ୍ଧାରର ଉପାୟ ନାହିଁ । ଭୋଗ ନିମନ୍ତେ ମନୁଷ୍ୟ ଅନେକ ପ୍ରକାର ଜାଲ ପ୍ରସ୍ତୁତ କରିଅଛି । ଅନେକ ପ୍ରକାର ଜାଲ ଅଛି—କୁଣ୍ଡଳୀଜାଲ, ଗିରାଜାଲ, ଦଣ୍ଡାଜାଲ, କାଠିଜାଲ, ମହାଜାଲ ଇତ୍ୟାଦି ଇତ୍ୟାଦି । ମାଛ ବା ପକ୍ଷୀ ଥରେ ଜାଲ ମଧକୁ ପ୍ରବେଶ କଲେ ଆଉ ନିଷ୍କୃତିର ଉପାୟ ନାହିଁ । ସୂକ୍ଷ୍ମ ସୂତ୍ରଦ୍ୱାରା ଗ୍ରଥିତ ହୋଇଥିଲେ ମଧ ଜାଲକୁ ଛିଣ୍ଡାଇବା ସହଜ ନୁହେଁ । ରସନା ତୃପ୍ତି ଓ ଉଦର ପୂର୍ତ୍ତି ନିମନ୍ତେ ମନୁଷ୍ୟର ଏହା ଅଦ୍ଭୁତ ସୃଷ୍ଟି । ଭୋଗ ନିମିତ୍ତରେ ସ୍ୱାର୍ଥସାଧନପାଇଁ ମାନବ ଆଉ ଅନେକ ପ୍ରକାର ଜାଲ ତୟାର କରିଅଛି । ସେଗୁଡ଼ିକ ସୂତ୍ର ନିର୍ମିତ ନୁହେଁ, ହାତଗୁନ୍ଥା ନୁହେଁ, ମାନସଗୁନ୍ଥା । ଏଣୁ ତାହା ଅଭେଦ୍ୟ ଅଚ୍ଛେଦ୍ୟ ବୋଇଲେ ଅତ୍ୟୁକ୍ତି ନୁହେଁ । ପଣ୍ଡିତମାନେ ତର୍କରେ ପରାସ୍ତ ହେଲେ କହନ୍ତି ଏ ତର୍କଜାଲ ଛିନ୍ନ କରିବା ଅସାଧ । କଥାରେ କଥାରେ ଏପରି ଅନେକ ଜାଲର କଥା ଶୁଣାଯାଇଥାଏ । ଶିରୋନାମରେ ଥିବା ବ୍ରହ୍ମଜାଲ ନାମ ମୋର ବାଲ୍ୟସ୍ମୃତି । ପଣ୍ଡିତ ବା ବିଦ୍ୱାନ୍ ମୁଖରୁ ଯେ ଶୁଣିଥିଲି ତାହା ନୁହେଁ, ଗ୍ରାମ ଅଶିକ୍ଷିତ ଲୋକ ମୁଖରୁ ଶୁଣିଥିଲି । ଜଟିଳ ଅମୀମାଂସ୍ୟ ସମସ୍ୟାକୁ ବ୍ରହ୍ମଜାଲ କୁହନ୍ତି । ତା'ଛଡ଼ା ଲୋକର ପ୍ରତାରଣାପୂର୍ଣ୍ଣ କିମ୍ବା ମିଥ୍ୟା ସ୍ୱାର୍ଥପରତାକୁ ମଧ ବ୍ରହ୍ମଜାଲ କହନ୍ତି । ଏହା ରୂଢ଼ିଶବ୍ଦ ହୋଇଯାଇଅଛି । ଏ ଭୂମିକାର ପ୍ରୟୋଜନ କ'ଣ ? ବାଲ୍ୟକାଳର ସ୍ମୃତି ଜାଗରୂକ ହେଲା କିପରି ? ତହିଁର ବିବରଣ ନିମ୍ନ ଲେଖାରୁ ଜଣାପଡ଼ିବ ।

ଗତ ପୌଷ ମାସର ବଙ୍ଗୀୟ ମାସିକ 'ବସୁମତୀ' କାଗଜ ଓଲଟପାଲଟ କରୁ କରୁ ସହସା ପ୍ରବାହଣ ପ୍ରବନ୍ଧରେ ଦୃଷ୍ଟିପାତ ହେଲା । ଲେଖକ ମହାପଣ୍ଡିତ ରାହୁଲ ସାଂସ୍କୃତ୍ୟାୟଣ । ପ୍ରବନ୍ଧ ନାମରୁ ହେଉ ବା ନ ହେଉ, ଲେଖକଙ୍କର ନାମ ଦେଖି ପାଠ କରିବାକୁ ଆଗ୍ରହ ଜନ୍ମିଲା । ପ୍ରବନ୍ଧ ପାଠ ପରେ କିଛି ଲେଖିବାକୁ ମନ ବଳିଲା । ଲେଖାର ନାମ ଦେବି କ'ଣ ଏହା ଭାବୁ ଭାବୁ ବାଲ୍ୟକାଳର ଶୁଣା ବ୍ରହ୍ମଜାଲ ଶବ୍ଦ ମନରେ ଉଦୟ ହେଲା । ତାହାହିଁ ଶୀର୍ଷ ସ୍ଥାନରେ ସ୍ଥାପନ କଲି ।

ମହାପଣ୍ଡିତ ଖ୍ରୀ:ପୂ: ୭୦୦ ବର୍ଷର ଘଟଣା କାହାଣୀ ଆକାରରେ ବର୍ଣ୍ଣନା କରିଅଛନ୍ତି । ପଞ୍ଚାଳର ରାଜା ପ୍ରବାହଣ । ପ୍ରବାହଣ ଜୈବଳଙ୍କ ପୁତ୍ର । ଜୈବଳଙ୍କର ଅନେକ ରାଣୀ ଥିଲେ ଏବଂ ସେହି ରାଣୀମାନଙ୍କ ଗର୍ଭରୁ ଦଶ ଗୋଟି ପୁତ୍ର ଜନ୍ମଗ୍ରହଣ କରିଥିଲେ ।

ପ୍ରବାହଣ କନିଷ୍ଠ । ପ୍ରବାହଣଙ୍କର ମାତା ଆପଣା ପୁତ୍ର ପ୍ରବାହଣକୁ ସୁଶିକ୍ଷିତ କରିବା ଅଭିପ୍ରାୟରେ ସ୍ୱଭ୍ରାତା ଗାର୍ଗ୍ୟଙ୍କୁ ଅର୍ପଣ କଲେ । ସେତେବେଳେ ପ୍ରବାହଣଙ୍କ ବୟସ ମାତ୍ର ଛଅ ବର୍ଷ । ପ୍ରବାହଣଙ୍କର ମାତୁଳ କନ୍ୟା ଲୋପାର ବୟସ ମାତ୍ର ଚାରି ବର୍ଷ ଥିଲା । ପ୍ରବାହଣଙ୍କ ଭାଗ୍ୟରେ ରାଜ୍ୟ ମିଳିବା ଆଶା ଆଦୌ ନଥିଲା । ଏଣୁ ସେ ଜଣେ ମହାବ୍ରାହ୍ମଣ ହେବା ଅଭିପ୍ରାୟରେ ବିଶେଷ ଯତ୍ନ ସହକାରେ ସମସ୍ତ ବିଦ୍ୟା ଅଧୟନ କଲେ ଏବଂ ବେଦବେଦାଙ୍ଗରେ ବିଶେଷ ପାରଦର୍ଶିତା ଲାଭ କଲେ । ସେ ଲୋପାଙ୍କର ପାଣିଗ୍ରହଣ କଲେ । ପ୍ରବାହଣଙ୍କର ଜ୍ୟେଷ୍ଠ ଭାଇମାନେ ମୃତ ହେବାରୁ ସେ ପାଞ୍ଚାଳର ରାଜା ହେଲେ ଏବଂ ବ୍ରହ୍ମବାଦୀ ହେଲେ । ପ୍ରବାହଣ ଜନକ ବୈଦେହ ଓ ଯାଜ୍ଞବଲ୍କ୍ୟ ପ୍ରଭୃତିଙ୍କ ଗୁରୁ ସ୍ଥାନୀୟ ବ୍ରହ୍ମଜ୍ଞ । ବ୍ରହ୍ମଜ୍ଞ ବୋଲି ବୈଦିକ ଗ୍ରନ୍ଥରେ ଏହାଙ୍କର ବିଶେଷ ପ୍ରଖ୍ୟାତି ଅଛି । ପ୍ରଖ୍ୟାତି ଥିଲେ ମଧ ପ୍ରବାହଣଙ୍କର ସହଧର୍ମିଣୀ ଲୋପା ସହିତ ତାଙ୍କର

ମତରେ ଅମେଳ, ତଥାପି ଉଭୟଙ୍କର ଦାମ୍ପତ୍ୟ ପ୍ରେମ ଅତୁଳନୀୟ । ମହାପଣ୍ଡିତ ଉଭୟଙ୍କର କଥୋପକଥନ ଛଳରେ ବ୍ରହ୍ମବାଦର ଅସାରତା ଏବଂ ଏହା ଭୋଗ ଓ ସ୍ୱାର୍ଥର ଉପାୟ ଥିବାର ପ୍ରତିପନ୍ନ କରାଇଅଛନ୍ତି ।

ବ୍ରହ୍ମଚର୍ଯ୍ୟାବସ୍ଥାରେ ପଲାଶଦଣ୍ଡ ଏବଂ ରୁକ୍ଷକେଶ ସତ୍ତ୍ୱେ ଓ ପ୍ରବାହଣ ଅବିବାହିତା ଲୋପାଙ୍କର ଅଧର ଚୁମ୍ବନ କରିଅଛନ୍ତି । ''ଏ ଛଳନାର ପ୍ରୟୋଜନ କ'ଣ ? ଲୋପାଙ୍କର ପ୍ରଶ୍ନରେ ପ୍ରବାହଣ କହିଲେ, ''ଏ ସମସ୍ତ ସମ୍ମାନ ପ୍ରତିଷ୍ଠା ନିମନ୍ତେ ପ୍ରୟୋଜନ ଏବଂ ଏତାଦୃଶ ବେଶକୁ ଲୋକେ ବ୍ରହ୍ମକୁମାରମାନଙ୍କର କଠିନ ତପସ୍ୟା ବୋଲି ମନେ କରନ୍ତି ।''

ବ୍ରହ୍ମବେତ୍ତାମାନେ ଯେ ଦାସ ପ୍ରଥାର ପକ୍ଷପାତୀ ସେଥିନିମନ୍ତେ ଲୋପା ବ୍ୟଥିତା ହୋଇ ପ୍ରବାହଣଙ୍କୁ ଦିନେ କହିଲେ, ପ୍ରବାହଣ, ଦେଖ କୁରୁରାଜ ମୋର ପିତାଙ୍କୁ ଅନେକ ଗ୍ରାମ, ହିରଣ୍ୟ, ଦାସଦାସୀ ଓ ଘୋଟକ ରଥ ଦେଇଥିଲେ । ଘରେ ଅନେକ ଦାସଦାସୀ ସତ୍ତ୍ୱେ କୁରୁରାଜା ପୁଣି ତିନି ଜଣ ଦାସୀ ପଠାଇଅଛନ୍ତି । ତାଙ୍କ ନିମନ୍ତେ ଯେକୌଣସି କାର୍ଯ୍ୟ ନାହିଁ । ଏହା ଶୁଣି ବ୍ରହ୍ମଚାରୀ ପ୍ରବାହଣ କହିଲେ, ''ବିକ୍ରୀ କରିଦିଅ ।'' ଦାସୀଟି ମାନ ତରୁଣୀ, ଏଣୁ ପ୍ରତ୍ୟେକଙ୍କ ନିମନ୍ତେ ତିନି ଶତ ନିଷ୍କ (ସ୍ୱର୍ଣ୍ଣ ମୁଦ୍ରାଙ୍କ) ପାଇବ। ଲୋପା ଉତ୍ତରରେ କହିଲେ, ''ପ୍ରବାହଣ, ମନରେ ବଡ଼ ଦୁଃଖ ଜାତ ହୁଏ, ଆମେମାନେ ବ୍ରାହ୍ମଣ ସୁଶିକ୍ଷିତ ଓ ଜ୍ଞାନୀ, ଆମ୍ଭମାନଙ୍କର ଜ୍ଞାନାର୍ଜନର ସୁଯୋଗ ଅଛି, କିନ୍ତୁ ଯେତେବେଳେ ମୁଁ ଏହି ଦାସମାନଙ୍କର କଥା ଭାବେ ସେତେବେଳେ ବ୍ରହ୍ମା, ଇନ୍ଦ୍ର, ବରୁଣ ଏମନ୍ତ କି ସ୍ୱୀୟ ଦେବକୁଳ ବଶିଷ୍ଠ ଭରଦ୍ୱାଜ, ଭୃଗୁ, ଅଙ୍ଗିରା ଏ ସମସ୍ତ ଋଷି ଏବଂ ମୋର ପିତାଙ୍କ ପରି ସମସ୍ତ ଶ୍ରୋତ୍ରୀୟ ବ୍ରାହ୍ମଣ ମହାଶାଳ (ଧନିକ) ମାନବ ପ୍ରତି ମୋର ଘୃଣାଜାତ ହୁଏ । ସର୍ବତ୍ର ଦେଖିବାକୁ ପାଏ ଯେ ଲାଭ ତ ଲୋଭ । ପୁଣି ଲୋପା କହିଲେ, ''ମୋର ପିତା ସେଦିନ କାଳୀ କାମ୍ବୀ ଦାସୀର ସ୍ୱାମୀକୁ ଜଣେ କୋଶଳ ଦେଶୀୟ ବଣିକଠାରେ ପଞ୍ଚାଶ ନିଷ୍କରେ ବିକ୍ରୟ କରିଦେଲେ । କାଳୀର କ୍ରନ୍ଦନ ଶୁଣି ମୁଁ ପିତାଙ୍କୁ ଅନେକ କହିଲି, ପିତା କହିଲେ, ''ଯଦି ଦାସ-ଧର୍ମର ପଥ ବନ୍ଦ କରିଦିଆଯାଏ ତେବେ ସ୍ଥାନ ଆଉ ରହିବ ନାହିଁ । ଆଉ ଯେବେ ଦାସ ବୃତ୍ତିର ପଥ ବନ୍ଦ କରାଯାଏ ତେବେ ଧନ ବା କି ନିମନ୍ତେ ।''

''କାଳୀର ସ୍ୱାମୀ ଯିବାବେଳେ ସେମାନଙ୍କର ଯେ ଦୁଃଖ ତାହା ଅକଥନୀୟ, କିନ୍ତୁ ତାକୁ ବିକ୍ରୟ କରାଗଲା ଯେପରି କି ସେ ଗୋଟିଏ ପଶୁ । ପ୍ରବାହଣ, ମୁଁ ଏହା ସ୍ୱୀକାର କରିବାକୁ ରାଜି ନୁହେଁ ଯେ ବ୍ରହ୍ମା ଦାସମାନଙ୍କୁ ବିକ୍ରୀ କରିବାକୁ ସୃଷ୍ଟି କରିଅଛନ୍ତି ।'' ପ୍ରବାହଣ-ବ୍ରହ୍ମଚାରୀ—ଏଥିରେ ଉତ୍ତର ନ ଦେଇ ସସ୍ନେହରେ ଚୁମ୍ବନମାତ୍ର ଦେଲେ । ସୁତରାଂ ବୋଲାଯିବ ଯେ, ପ୍ରବାହଣ ତାଙ୍କର ଶ୍ୱଶୁରଙ୍କର କାର୍ଯ୍ୟକୁ ସମର୍ଥନ କଲେ ।

ଇତି ମଧ୍ୟରେ ପ୍ରବାହଣ ଯେ କି ମହାବ୍ରାହ୍ମଣ ହେବାର ଚେଷ୍ଟାରେ ଥିଲେ ସେ ଭ୍ରାତା ବିୟୋଗ ପରେ ପଞ୍ଚାଳର ଉତ୍ତରାଧିକାରୀ ହେଲେ । ପ୍ରବାହଣଙ୍କର ଲୋପା ପ୍ରତି ପ୍ରେମ ଓ ସୌହାର୍ଦ୍ଦ୍ୟ ବୃଦ୍ଧିପ୍ରାପ୍ତ ହୋଇଥିଲେ ମଧ୍ୟ ଲୋପା ପ୍ରବାହଣଙ୍କର ଆଚରଣରେ ପରିବର୍ତ୍ତନର ସମାଲୋଚନା କରିବାରେ କଦାପି ଭୀତା ନ ଥିଲେ ଏବଂ ପ୍ରବାହଣ ସେଥି ନିମନ୍ତେ ବ୍ୟଥିତ ନ ଥିଲେ ।

ଲୋପା ପ୍ରବାହଣଙ୍କୁ କହିଲେ, ତୁମେ ରାଜା, ରାଜକାର୍ଯ୍ୟ କର; ମାତ୍ର ଅନ୍ୟ କାର୍ଯ୍ୟରେ ହାତ ଦେଉଅଛ କାହିଁକି ? ଅର୍ଥାତ୍ ବ୍ରହ୍ମବାଦ ସୃଷ୍ଟି କରି ଲୋକଙ୍କୁ ଭ୍ରାନ୍ତ କରିବାର ଚେଷ୍ଟା କରୁଛ କାହିଁକି ? ପ୍ରବାହଣ କହିଲେ, ''ଲୋପା, ଏ ତ ରାଜକାର୍ଯ୍ୟଠାରୁ ପୃଥକ୍ ନୁହେଁ, ପୂର୍ବତନ ରାଜାମାନେ ବଶିଷ୍ଠ, ବିଶ୍ୱାମିତ୍ର ପ୍ରଭୃତିଙ୍କ ବ୍ୟବସ୍ଥାନୁସାରେ ଇନ୍ଦ୍ର, ବରୁଣ ପ୍ରଭୃତି ଦେବତାମାନଙ୍କ ନାମରେ ଆଦେଶ ମାନି ନେବାକୁ ଲୋକମାନଙ୍କୁ କହନ୍ତି । ରାଜାମାନେ ଲୋକମାନ୍ୟ ଓ ବିଶ୍ୱାସଭାଜନ ହେବା ନିମନ୍ତେ ବଡ଼ ବ୍ୟୟସାଧ ଯଜ୍ଞ କରନ୍ତି । ଏବେ ମଧ୍ୟ ଆମ୍ଭେମାନେ କରିଥାଉଁ । ଏହା ଦେଖି ସାଧାରଣ ଲୋକେ ମନେ କରିଥାନ୍ତି ଯେ ଯଜ୍ଞ ହେତୁ ଦେବତାର ତୁଷ୍ଟିରୁ ରାଜାମାନେ ମହାବ୍ରାହ୍ମଣମାନେ ସୁଗନ୍ଧିତ ତଣ୍ଡୁଳର ଅନ୍ନ ଓ ବସତରୀର ସୁମିଷ୍ଟ ମାଂସର ସୁପ୍ ଖାଇବାକୁ ପାଆନ୍ତି ଏବଂ ସୂକ୍ଷ୍ମବସ୍ତ୍ର ଓ ମୁକ୍ତାଦି ବହୁମୂଲ୍ୟ ଅଳଙ୍କାରାଦିର ବ୍ୟବହାର କରନ୍ତି । ଏ ସମସ୍ତ ଦେବତାର କୃପା ବୋଲି ଲୋକଧାରଣ ।''

ଲୋପା କହିଲେ, ''ଯେବେ ପୂର୍ବେ ଅସଂଖ୍ୟ ଦେବତା ଥିଲେ ଏବଂ ସେମାନଙ୍କର ନାମରେ ରାଜା ଓ ବ୍ରାହ୍ମଣର ଉପକାର ହେଉଥିଲା, ଏବେ ପୁଣି ତମେ ନୂତନ ଦେବତା ବ୍ରହ୍ମର ସୃଷ୍ଟି କଲେ କାହିଁକି ?'' ପ୍ରବାହଣ କହିଲେ, ''ଯୁଗ ଯୁଗ ଧରି ଲୋକେ ଇନ୍ଦ୍ର ବରୁଣ ଉପରେ ବିଶ୍ୱାସ କରୁଥିଲେ

ମଧ କେହି ଦେଖି ନାହାନ୍ତି । ଏଣୁ କ୍ରମେ ସନ୍ଦେହ ଜାତ ହେଉଛି ।'' ଲୋପା କହିଲେ ତେବେ ବ୍ରହ୍ମରେ କାହିଁକି ଅବିଶ୍ୱାସ ହେବ ନାହିଁ ? ପ୍ରବାହଣ କହିଲେ, ''ମୁଁ ଯେଉଁ ଭାବେ ବ୍ରହ୍ମର ସ୍ୱରୂପ ବ୍ୟାଖ୍ୟାନ କରିଅଛି ତହିଁରେ କେହି ଦେଖିବାର ବାସନା କରିବେ ନାହିଁ । ଯେମନ୍ତ ଆକାଶର ରୂପ ଦେଖିବା ବସ୍ତୁ ନୁହେଁ କାରଣ ତାହା ସର୍ବତ୍ର ଅଥଚ ରୂପହୀନ । ସାକାର ଦେବତାମାନଙ୍କର ରୂପ ଦେଖିବାର ପ୍ରଶ୍ନ ଉଠିପାରେ; ମାତ୍ର ନିରାକାରର ଦେଖିବେ କ'ଣ ?

ପୁଣି ଲୋପା କହିଲେ, ''ତମେ ଯେ ଆକାଶ ଆକାଶ କରୁଅଛ, ତାହା ତ ସାଧାରଣ ନୁହେଁ । ଉଦ୍ଦାଳକ ଆରୁଣି ପରି ବ୍ରାହ୍ମଣମାନଙ୍କର ମଧ ମତିଚ୍ଛନ୍ନ ଘଟେ । ଏ ସମସ୍ତ କି ପ୍ରଜାମାନଙ୍କୁ ଭ୍ରମାଚ୍ଛନ୍ନ କରିବାର ଉପାୟ ?''

ପ୍ରବାହଣ କହିଲେ, ''ଲୋପା! ତମେ ମୋତେ ଭଲଭାବେ ଚିହ୍ନିଅଛି । ତମଠାରେ କିଛି ଗୋପନ କରିବାର ନାହିଁ । ଏହି ରାଜଭୋଗ ରକ୍ଷା କରିବା ନିମନ୍ତେ ଏତାଦୃଶ ଆବିଷ୍କାରର ପ୍ରୟୋଜନ । ସନ୍ଦେହକାରୀମାନଙ୍କର ବିଦ୍ୟାବୁଦ୍ଧିକୁ କୁଣ୍ଠିତ କରିବା ନିମନ୍ତେ ଏତାଦୃଶ ଅସ୍ତ୍ର ରଖିବା ନିତାନ୍ତ ପ୍ରୟୋଜନ କାରଣ ଯେଉଁମାନେ ଯଜ୍ଞ, ଦେବତା ଓ ପୂଜା ପ୍ରତି ସନ୍ଦେହ କରନ୍ତି ସେମାନେ ଆମର ଶତ୍ରୁ । ପୁଣି ବ୍ରହ୍ମର ସତ୍ତା ଅଛି ବୋଲି ମୁଁ ସ୍ୱୀକାର କରିଅଛି । ମାତ୍ର ସତ୍ତା ଦର୍ଶନଯୋଗ୍ୟ ଏବଂ ଲୋକେ ବ୍ରହ୍ମକୁ ଦେଖିବାକୁ ଇଚ୍ଛା କରିବା ମାତ୍ରେ କହିଅଛି ଯେ ଏ ସତ୍ତାର ଦର୍ଶନ ନିମନ୍ତେ ସ୍ୱତନ୍ତ୍ର ସୂକ୍ଷ୍ମ ଇନ୍ଦ୍ରିୟ ଅଛି ଏବଂ ସେ ଇନ୍ଦ୍ରିୟ ଲାଭ କରିବା ନିମନ୍ତେ ବିଶେଷ ସାଧନାର ପ୍ରୟୋଜନ । ଏଥିରେ ଲୋକେ ଛପନ ପୁରୁଷ ପର୍ଯ୍ୟନ୍ତ ଭ୍ରମାଚ୍ଛନ୍ନ ଥିବେ ଅଥଚ ବିଶ୍ୱାସ ହଜାଇବେ ନାହିଁ । ବ୍ରାହ୍ମଣମାନଙ୍କର ଦେବତା ଯଜ୍ଞ ରୂପ ସ୍ଥୂଳ ହତିଆର କ୍ରମେ ନିଷ୍ଫଳ ମନେକରି ଏହି ବ୍ରହ୍ମ ସୂକ୍ଷ୍ମ-ହତିଆର ଆବିଷ୍କାର କରିଅଛି ।'' ଲୋପା କହିଲେ, ପଣ୍ଡିତ ବ୍ରାହ୍ମଣମାନେ କି ତମର ଏହି ବ୍ରହ୍ମରହସ୍ୟ ବୁଝିବେ ନାହିଁ ? ପ୍ରବାହଣ କହିଲେ, ''ବୁଝିବେ, ମାତ୍ର ମୋର ପ୍ରଚାରିତ ବ୍ରହ୍ମ-ରହସ୍ୟଦ୍ୱାରା ସେମାନଙ୍କର ଲାଭ । ସେମାନେ ଭୋଗ ଓ ଲାଭର ବିଷୟ ଜାଣିପାରିଲେ ମୋର ମତାବଲମ୍ବୀ ହେବେ ।'' ପୁଣି ଲୋପା କହିଲେ, ''ଏ ତ ଗୋଟାଏ ବ୍ୟବସାୟ, ଏ ମୁକ୍ତିର ବାଟ ତ ନୁହେଁ ।'' ପ୍ରବାହଣ କହିଲେ, ''ନିଶ୍ଚୟ, ଏ ବ୍ୟବସାୟ ମାତ୍ର, ଏଥିରେ ଲୋକସାନ ନାହିଁ । ଏଣୁ ଉଦ୍ଦାଳକଙ୍କ ପରି ଜ୍ଞାନୀ ସମିଧା ହାତରେ ମୋ ନିକଟକୁ ଶିଷ୍ୟ ହେବାକୁ ଆସନ୍ତି । ମୁଁ ବ୍ରାହ୍ମଣମାନଙ୍କୁ ଅବାଧରେ ଏହି ବ୍ରହ୍ମଜ୍ଞାନ ଶିକ୍ଷା ଦିଏଁ । ପୂର୍ବ ପ୍ରଚଳିତ ନୌକା ଅଦୃଢ଼ ବୋଲି ମୁଁ ମନେକରେ । ଏ ନୌକା ସୁଦୃଢ଼, ମୁଁ ନିର୍ମାଣ କରିଅଛି । ଏତଦ୍ୱାରା ବ୍ରାହ୍ମଣ, କ୍ଷତ୍ରିୟ ମିଳିତଭାବେ ଐଶ୍ୱର୍ଯ୍ୟ ଭୋଗ କରିପାରିବେ । କିନ୍ତୁ ବ୍ରହ୍ମଠାରୁ ମଧ ବଡ଼ ଆକାଶ ମୋର ଦ୍ୱିତୀୟ ଆବିଷ୍କାର ।''

ଲୋପା ପଚାରିଲେ— ''ସେ କ'ଣ ?''

ପ୍ରବାହଣ କହିଲେ, ''ମଲା ଉତ୍ତାରୁ ପୁନର୍ବାର ଏ ପୃଥିବୀକୁ ପ୍ରତ୍ୟାବର୍ତ୍ତନ ପୁନର୍ଜନ୍ମ ।'' ଏହା ଶୁଣି ଲୋପା କହିଲେ— ''ଏହା ସବୁଠାରୁ ବଡ଼ ଜାଲ ।'' ପ୍ରବାହଣ କହିଲେ— ''ସବୁଠାରୁ କାର୍ଯ୍ୟକାରୀ ମଧ । ପୁଣି ସ୍ୱର୍ଗ ନର୍କ ତ ଅଛି । ପୂର୍ବକୃତ ସୁକୃତ ଦୁଷ୍କୃତର ଫଳ ହେତୁରୁ ଏ ସଂସାରରେ ଉଚ୍ଚ ଓ ସୁଖ ଏବଂ ଦୁଷ୍କୃତ ହେତୁରୁ ନୀଚ ଓ ଦୁଃଖ । କେହି ସ୍ୱର୍ଗକୁ ଯାଇ କିଛି ଦେଖି ନାହିଁ । ଅଥଚ ଏ ସଂସାରର କାର୍ଯ୍ୟକଳାପରୁ ସେମାନଙ୍କୁ ଭ୍ରାନ୍ତ କରିବାର ତ ଏହା ଗୋଟିଏ ପ୍ରଶସ୍ତ ପନ୍ଥା । ସତ୍ୟ ମିଥ୍ୟାର କଥା ଚିନ୍ତା କରିବାର ପ୍ରୟୋଜନ କ'ଣ ? କାର୍ଯ୍ୟକାରିତା କେତେଦୂର, ତାହା ଦେଖିବା ପ୍ରୟୋଜନ । ଏ ଉପାୟଦ୍ୱାରା ବ୍ରାହ୍ମଣ କ୍ଷତ୍ରିୟ ସୁଖ ଭୋଗ ପାଇବେ ଏବଂ ଅନ୍ୟମାନେ ଭ୍ରାନ୍ତ ହେଉଥିବେ ।

ପ୍ରବାହଣଙ୍କ ଉତ୍ତାରୁ ଏହି ବ୍ରହ୍ମବାଦ ସ୍ୱର୍ଗ, ନର୍କ, ପୁନର୍ଜନ୍ମ ବିସ୍ତୃତି ଲାଭକଲା । କ୍ଷତ୍ରିୟର ଏହି ମନୋବିଜ୍ଞାନ ବ୍ରାହ୍ମଣମାନେ ଆଦର ସହିତ ଗ୍ରହଣ କରି ପ୍ରଚାର କରିବାକୁ ଲାଗିଲେ । କୁରୁ, ପଞ୍ଚାଳ ଏମନ୍ତ କି ବିଦେହ ପର୍ଯ୍ୟନ୍ତ ବ୍ୟାପିଲା । ରାଜାମାନେ ବ୍ରହ୍ମସଭା ଆହ୍ୱାନ କରି ତର୍କବିତର୍କ ଶୁଣୁଥିଲେ ଏବଂ ତହିଁରେ ଜୟଯୁକ୍ତ ବ୍ୟକ୍ତିଙ୍କୁ ଅଜସ୍ର ଧନରତ୍ନ ଦେଉଥିଲେ । ଏପରି ସେ ବ୍ରହ୍ମବାଦର ପ୍ରସାର ବଢ଼ିଲା । ଯଜ୍ଞର ଯେଉଁ ଫଳ, ବ୍ରହ୍ମସଭାର ସେହି ଫଳ ।

ପ୍ରବାହଣ ମୃତ ହୋଇଥିଲେ ମଧ ତାଙ୍କର ସହଧର୍ମିଣୀ ଲୋପା ବହୁକାଳ ଜୀବିତା ଥିଲେ । ପଞ୍ଚାଳ ରାଜପ୍ରାସାଦ ନିକଟସ୍ଥ ଉଦ୍ୟାନରେ ବାସ କରୁଥିଲେ । ଦିନେ ତାଙ୍କର ପିତୃକୁଳର ପଣନାତୁଣୀ ଗାର୍ଗୀ ଲୋପାଙ୍କୁ ଦେଖିବାକୁ ଆସିଥିଲେ । ଗାର୍ଗୀ ବ୍ରହ୍ମବାଦିନୀ । ଏଣୁ ସେ ଜନକଙ୍କର ବ୍ରହ୍ମସଭାକୁ ଯାଇଥିଲେ । ସଭା ଶେଷରେ ଲୋପାଙ୍କ ନିକଟକୁ ଆସି ସମସ୍ତ ବୃତ୍ତାନ୍ତ ପ୍ରକାଶ କଲେ । ଗାର୍ଗୀ କହିଲେ— ''ଯାଜ୍ଞବଲ୍କ୍ୟ ସମସ୍ତଙ୍କୁ ପରାସ୍ତ କରି ଜୟଯୁକ୍ତ ହେଲେ ଏବଂ ପ୍ରଶ୍ନକର୍ତ୍ତାମାନଙ୍କୁ ନିରସ୍ତ କରିଥିଲେ ।'' ଲୋପା କହିଲେ— ''ତୋତେ ମଧ ।'' ଗାର୍ଗୀ କହିଲେ ଯୁକ୍ତିରେ ନୁହେଁ— ଭୟ

ଦେଖାଇବାଦ୍ୱାରା, ଯେତେବେଳେ ମୁଁ ବ୍ରହ୍ମ ସମ୍ବନ୍ଧରେ ତାଙ୍କୁ ପ୍ରଶ୍ନକରି ବ୍ୟତିବ୍ୟସ୍ତ କଲି, ସେତେବେଳେ ସେ କ'ଣ କହିଲେ ଜାଣ କି ପିଉସୀମା' ?''

''ଗାର୍ଗୀ ମାତି ପ୍ରାକ୍ଷୀର୍ମାତେୟର୍ଦ୍ଧା ବ୍ୟାପପ୍ତଦନତି ପ୍ରଶ୍ନ୍ୟାଂ ।'' ନ୍ୟାୟଗମ ସିଦ୍ଧାନ୍ତ ଅତିକ୍ରମ କରି ପ୍ରଶ୍ନ କଲେ ତମର ଶିର ପତନ ହେବ ।'' ଏଥିରେ ମୁଁ ନିରସ୍ତ ହୋଇ ରହିଲି । ଲୋପା କହିଲେ, ''ମୁଁ ଜାଣୁଛି ମା' ! ଯେ ତୁ ଆଉ ପ୍ରଶ୍ନ କଲୁ ନାହିଁ ? ଗାର୍ଗୀ କହିଲେ, ''ତମେ କିପରି ଜାଣିଲ ?'' ଲୋପା କହିଲେ, ''ଯେହେତୁ ତୋର ସ୍କନ୍ଧ ଦେଶରେ ମୁଣ୍ଡ ଅଦ୍ୟାପି ରହିଛି ।'' ପିଉସୀମା' ! ତାହାହେଲେ କି ତମେ ବିଶ୍ୱାସ କର ଯେ ମୋର ଶିରଚ୍ଛେଦ ହୋଇଥା'ନ୍ତା ? ଲୋପା କହିଲେ, ନିଶ୍ଚୟ, ମାତ୍ର ଯାଜ୍ଞବଲ୍‌କ୍ୟର ବ୍ରହ୍ମ ବଳରେ ନୁହେଁ, ଲୋକଙ୍କର ମଥା ଯେପରି କଟାହୁଏ ସେହିପରି । ଲୋପା କହିଲେ, ଗାର୍ଗୀ ତୁ ଅଦ୍ୟାପି ଶିଶୁ, ଯେତେବେଳେ ଏହି ବ୍ରହ୍ମବାଦ ଜନ୍ମଲାଭ କଲା ସେତେବେଳେ ବ୍ରହ୍ମବାଦର ଜନ୍ମଦାତା ମୋ ପାଖରେ ଶୟନ କରୁଥିଲେ । ଏହି ବ୍ରହ୍ମବାଦର ଯେ କଳ୍ପନା ତା'ର ପଶ୍ଚାତ୍‌ରେ ରାଜା ଓ ବ୍ରାହ୍ମଣମାନଙ୍କର ସ୍ୱାର୍ଥ ଲୁକ୍‌କାୟିତ । ରାଜସଭା ଓ ବ୍ରାହ୍ମଣସଭାକୁ ବଡ଼ କରିବାର ଏହା ଗୋଟିଏ ପ୍ରଶସ୍ତ ଉପାୟ ।''

ଗାର୍ଗୀ କହିଲେ, ''ପିଉସୀମା' ! ମୁଁ ତ ଏହା ବୁଝି ନାହିଁ ।'' ଲୋପା କହିଲେ, ''ତୁ କାହିଁକି ଅନେକେ ତ ଏହା ବୁଝନ୍ତି ନାହିଁ । ତେବେ ମୁଁ କହୁ ନାହିଁ ଯେ ଜନକ ବୈଦେହ ଏ ରହସ୍ୟ ବୁଝନ୍ତି ନାହିଁ । ମାତ୍ର ଯାଜ୍ଞବଲ୍‌କ୍ୟ ଏକଥା ମୋର ସ୍ୱାମୀଙ୍କ ପରି ବୁଝନ୍ତି । ଯାଜ୍ଞବଲ୍‌କ୍ୟ ମୋର ସ୍ୱାମୀଙ୍କର ଉପଯୁକ୍ତ ଶିଷ୍ୟ । ପ୍ରବାହଣଙ୍କର ଦେବତା, ଦେବଲୋକ, ପିତୃଲୋକ, ଯଜ୍ଞ ଓ ବ୍ରହ୍ମବାଦରେ ମଧ ବିଶ୍ୱାସ ଥିଲା ନାହିଁ । ବିଶ୍ୱାସ ଥିଲା କେବଳ ଭୋଗରେ । ଏହି ଭୋଗରେ ସେ ସାରାଜୀବନ ଅତିବାହିତ କରିଥିଲେ । ମୃତ୍ୟୁର ତିନିଦିନ ପୂର୍ବେ କୁଳୀନ ବ୍ରାହ୍ମଣ ବିଶ୍ୱାମିତ୍ର କନ୍ୟା ସୁବର୍ଣ୍ଣକେଶୀ ତାହାଙ୍କ ଅନ୍ତଃପୁରକୁ ଆସିଥିଲେ । ପ୍ରବାହଣଙ୍କର ବଞ୍ଚିବା ଆଶା ନ ଥିବା ସ୍ଥଳେ ମଧ ସେ କୋଡ଼ିଏ ବର୍ଷର ଯୁବତୀ ସହିତ ପ୍ରେମ କରୁଥିଲେ ।'' ଗାର୍ଗୀ କହିଲେ ''ପିଉସୀମା', ଯାଜ୍ଞବଲ୍‌କ୍ୟ ଜନକବୈଦେହଠାରୁ ପାଇଥିବା ଗାଭୀତକ ଦାନ କରିଦେଲେ; ମାତ୍ର ସୁନ୍ଦରୀଦାସୀତକ ତାଙ୍କ ସଙ୍ଗରେ ଆଣିଲେ ।''

''ରାଜଗୃହର ଦାସୀଗୁଡ଼ିକ ପରମା ସୁନ୍ଦରୀ କି ନା, ଏଣୁ ଯାଜ୍ଞବଲ୍‌କ୍ୟ ନେଇ ଆସିଲେ । ପ୍ରବାହଣର ଉପଯୁକ୍ତ ଶିଷ୍ୟ । ବହୁ ଶତାବ୍ଦୀ ପରେ ବ୍ରାହ୍ମଣଙ୍କର ବ୍ରହ୍ମବାଦ ଉପଯୁକ୍ତ ସମାଲୋଚକ ହାତରେ ବିଚିତ୍ର ରୂପ ଧାରଣ କଲା ।

ଉପସଂହାରରେ କିଛି କହିବାର ପ୍ରୟୋଜନ । ବହୁକାଳରୁ ମୋର ଦୃଢ଼ବିଶ୍ୱାସ ଏହି ଯେ, ଯାବତୀୟ ଧର୍ମ ବିଶ୍ୱାସ ପ୍ରାଚୀନ କାଳର ବିଜ୍ଞ ଲୋକଙ୍କର କଳ୍ପନା ପ୍ରସୂତ । ମୁଁ ଅନେକଥର ଏ ବିଷୟରେ ଲେଖିଅଛି ।

ସୂର୍ଯ୍ୟ ହିଁ ପ୍ରଥମେ ମନୁଷ୍ୟ ମନରେ ଏକ ସମ୍ମାନ ଭୟ ଓ ଭକ୍ତିର ଉଦ୍ରେକ କଲା । ତହିଁ ଉତ୍ତାରୁ ଦେବତା ଓ ଧର୍ମର ସୃଷ୍ଟି । ବୈଦିକ ଋଷିମାନେ ପ୍ରକୃତିପୂଜକ ଥିଲେ ।

ସ୍ତୁତିଦ୍ୱାରା ସ୍ନେହରେ କାତରରେ ଡାକିବାଦ୍ୱାରା ଅଭୀଷ୍ଟସିଦ୍ଧିର ଆଶା ସେମାନେ କରିଥିଲେ । ବେଦରେ ଏପରି ଅନେକ ସ୍ତୁତି ଆମେମାନେ ଦେଖିବାକୁ ପାଉଁ । କ୍ରମେ ଋଷିମାନେ ସ୍ୱାର୍ଥପର ହୋଇ ସରଳ ବିଶ୍ୱାସ ମଧରେ ଯଜ୍ଞ ଓ କ୍ରତୁର ଉଲ୍ଲେଖ କଲେ ଅର୍ଥାତ୍ ଯଜ୍ଞଦ୍ୱାରା ସିଦ୍ଧି ଏକଥା ପ୍ରଚାର କଲେ । ଋକ୍‌ବେଦରେ ଯଜ୍ଞର ଉଲ୍ଲେଖ ଥିଲେ ସୁଦ୍ଧା ଯଜ୍ଞର ବିଧି ବ୍ୟବସ୍ଥା ନ ଥିଲା । ବ୍ରାହ୍ମଣ ଗ୍ରନ୍ଥରେ ଯଜ୍ଞର ଜଟିଳ ବିଧି ବ୍ୟବସ୍ଥା ପ୍ରଚାର କରାଗଲା । ରାଜାମାନେ ଯଜ୍ଞ କରିବେ ଏଥିରେ ପ୍ରଜାମାନେ ସୁଖୀ ହେବେ—ଧରା ଶାନ୍ତି ଲାଭ କରିବ, ବ୍ରାହ୍ମଣମାନଙ୍କ ଉଦର ପୂରଣ ହେବ, ଜନ ସମୂହର କ୍ଷତି ହେଲେ ହେଉ । ସେ ଯୁଗରେ ସୃଷ୍ଟିକର୍ତ୍ତା ଓ ଈଶ୍ୱରର ସମ୍ବନ୍ଧ ନ ଥିଲା । କୌଣସି ବୈଦିକ ଗ୍ରନ୍ଥରେ ଏ କଥାର ଉଲ୍ଲେଖ ପର୍ଯ୍ୟନ୍ତ ନାହିଁ । କିଛିଦିନ ଗଲା ପରେ ଏକ ଦଳ ଜ୍ଞାନୀ ଜନ୍ମଗ୍ରହଣ କଲେ ଯେଉଁମାନଙ୍କର ବିଶ୍ୱାସ ସ୍ତୁତିରେ ଓ ଯଜ୍ଞରେ ଆବଦ୍ଧ ରହିପାରିଲା ନାହିଁ । ପ୍ରଥମ ବିପ୍ଳବ ଉପସ୍ଥିତ କଲେ, ଏହି ବାକ୍ୟ ଦ୍ୱାରା—

ଅନ୍ଧତମଃ ପ୍ରବିଶନ୍ତି ଯେ ଅବିଦ୍ୟା ମୁପାସତେ ।'' ଯେ ଅବିଦ୍ୟା ବା ବୈଦିକ ଅଗ୍ନିହୋତ୍ରାଦି ଉପାସନା କରନ୍ତି ସେମାନେ ଅନ୍ଧ । କ୍ରମେ ଏହା ମଧ କହିଲେ ଯେ, ''ନ୍ୟାୟ ଆତ୍ମା ପ୍ରବଚନେନ ଲଭ୍ୟ ।'' ଅର୍ଥାତ୍ ଆତ୍ମା ବେଦରୁ ଲଭ୍ୟ ନୁହେଁ । ଏଣିକି ସୃଷ୍ଟିକର୍ତ୍ତା ଈଶ୍ୱର, ବ୍ରହ୍ମ ଉପରେ ଲୋକଙ୍କର ଆସ୍ଥା ଜନ୍ମାଇବାର ଚେଷ୍ଟା ଚାଲିଲା । ଆତ୍ମା, ଈଶ୍ୱର ଓ ବ୍ରହ୍ମ ଯାହା ଅଜ୍ଞାତ, ଅଜ୍ଞେୟ ଓ ଧାରଣାତୀତ । ଅଦୃଶ୍ୟ, ଅଜ୍ଞେୟ, ଅଜ୍ଞାତ ଓ ଧାରଣାତୀତ ହେଲେ ମଧ ଲୋକଙ୍କର ବିଶ୍ୱାସ ଜନ୍ମାଇବା ନିମନ୍ତେ ନାନା ଯୁକ୍ତିତର୍କ ଓ ଉପାୟ ଉଦ୍ଭାବନ କରାଗଲା । ସତମିଛ କଥା ପଣ୍ଡିତମାନେ ଜାଣନ୍ତି ମାତ୍ର ସାଧାରଣ ଲୋକେ ବିଶ୍ୱାସର ବଶବର୍ତ୍ତୀ । କ୍ରମେ ସ୍ୱର୍ଗ, ନରକ, ପୁନର୍ଜନ୍ମ, ଦେବଯାନ, ପିତୃଯାନ ଇତ୍ୟାଦି ଅତି ଜଟିଳ

ପ୍ରଶ୍ନମାନଙ୍କର ଅବତାରଣା କରି ଲୋକସମୂହକୁ ଭ୍ରାନ୍ତ କରିବାର ଚେଷ୍ଟା କରାଗଲା, ବିଜ୍ଞ ଲୋକର କଳ୍ପନା ଅଜ୍ଞ ଲୋକଙ୍କୁ ଧନ୍ଦା । କେବଳ ଧନ୍ଦା ନୁହେଁ, ସମସ୍ତେ ବ୍ରହ୍ମଜାଲରେ ଆବଦ୍ଧ । ପ୍ରକୃତି ଉପାସନା ଛାଡ଼ି ଐହିକ ପାରତ୍ରିକ ମୁକ୍ତିପଥର ଭ୍ରାନ୍ତ ପଥିକ । ତଥାପି ଲୋକେ ଭାରତୀୟ ଧର୍ମ ବୈଦିକ ଧର୍ମ ବୋଲି କହନ୍ତି । ସେ ଧର୍ମ ସହିତ ଆଧୁନିକ ହିନ୍ଦୁ ଧର୍ମର ସାମଞ୍ଜସ୍ୟ ଅତି କମ୍ । ସମୟେ ସମୟେ ଧର୍ମ ସଂସ୍କାରକଗଣ ଜନ୍ମ ହୋଇ ସଂସ୍କାର ଚେଷ୍ଟାରେ ଅଗ୍ରସର ହେଲେ ମଧ ସେହି ବ୍ରହ୍ମଜାଲରୁ ଅବ୍ୟାହତି ପାଇପାରନ୍ତି ନାହିଁ । କିଛି ନୂତନ ମତ କିବା ଗୋଟିଏ ଯୋଡ଼ିଏ ନୂତନ ସୂତ୍ର ଯୋଗକରି ଜାଲକୁ ସୁଦୃଢ଼ କରନ୍ତି । ଶଙ୍କରାଚାର୍ଯ୍ୟ ପ୍ରବାହଣଙ୍କର ବ୍ରହ୍ମର ଉପାସକ । ତାଙ୍କର ସ୍ୱରୂପ ନିଶ୍ଚୟ କରିବାକୁ ଯାଇ ଲେଖିଲେ 'ସତ୍ୟଶୁଦ୍ଧ ବୁଦ୍ଧ ସ୍ୱଭାବ' । ଲୋକଙ୍କ ପ୍ରତି ଏ ବ୍ରହ୍ମ ବ୍ୟାଖ୍ୟା ଆହୁରି ଅବୋଧ । କେବଳ ପ୍ରାଚୀନତ୍ୱର ରକ୍ଷା ନିମନ୍ତେ ବ୍ରହ୍ମଚାରୀ ଅଥଚ ଆଶ୍ରମ ଧର୍ମର ପକ୍ଷପାତୀ—ମୂର୍ତ୍ତି ପୂଜକ ନ ଥିଲେ ଅଥଚ ଲୋକେ ମୂର୍ତ୍ତିପୂଜା କରିବାକୁ ନାନା ସ୍ଥାନରେ ମୂର୍ତ୍ତି ସ୍ଥାପନ କଲେ । ତାଙ୍କର ଶିଷ୍ୟମାନେ ଜଗନ୍ନାଥଙ୍କୁ ଦର୍ଶନ କରନ୍ତି ନାହିଁ, ଅଥଚ ସେମାନେ ଜଗନ୍ନାଥ ମନ୍ଦିରର ବ୍ୟବସ୍ଥାପକ ଦଣ୍ଡ ଓ କମଣ୍ଡଳୁ ଅଛି— ଅନ୍ୟର ଆସନରେ ବସିବେ ନାହିଁ । ଏଣୁ ଖଣ୍ଡେ ଲୋଖା ଆସନ କାଖରେ ଜାକି ବୁଲିବେ । ପାନ, ଗୁଣ୍ଡି, ଅଫିମ ବ୍ରହ୍ମଚାରୀର ବାଧକ ନୁହେଁ । କେଜାଣି ଲାଭ, ଭୋଗର କଥା; ତେବେ ଏମାନେ ଯେ ଲୋକଙ୍କୁ ଭ୍ରାନ୍ତକରି ନିଜେ ଅଭ୍ରାନ୍ତ ରହିବାର ଚେଷ୍ଟାରେ ଥାଆନ୍ତି ସେଥିରେ ସନ୍ଦେହ ନାହିଁ । ପ୍ରକୃତି ଉପାସନା ସହିତ ବ୍ରହ୍ମବାଦ ଏକ ଅପୂର୍ବ ସମନ୍ୱୟ ଯାହା ଲୋକ ଭ୍ରାନ୍ତି ନିମନ୍ତେ ଚତୁରତା ସହିତ ଗଠିତ ହେଲା ।

ସନାତନ ଅର୍ଥ - ଯାହା ଅନାଦି କାଳରୁ ଲାଗି ଆସିଅଛି । ଧର୍ମ କି କେବେ ଅନାଦି ହୋଇପାରେ ଯାହା ଲୋକର ଜ୍ଞାନ ପିପାସା ବୃଦ୍ଧି ସଙ୍ଗେ ପରିବର୍ତ୍ତନ ଲାଭ କରୁଛି । ତଥାପି ଲୋକେ ଧର୍ମକୁ ସନାତନ କୁହନ୍ତି । 'ଆଚାର ପ୍ରଭବୋଧର୍ମଃ'— ଆଚାରରୁ ଯେବେ ଧର୍ମର ଜନ୍ମ, ତାହା ସନାତନ ହେବ କିପରି ? ପୁଣି ଅଛି, 'ଯୁକ୍ତିହୀନ ବିଚାରେଣ ଧର୍ମହାନି ପ୍ରଜାୟତେ' । ଧର୍ମ ଯେବେ ଯୁକ୍ତିସାପେକ୍ଷ ତାକୁ ସନାତନ ବୋଲିବା ସଙ୍ଗତ କି ?

ହିନ୍ଦୁ ଶବ୍ଦ ବେଦରେ ଧର୍ମ ଶାସ୍ତ୍ରରେ ପୁରାଣରେ ନାହିଁ । ଏ ନାମଟି ପରବର୍ତ୍ତୀ । ଏ ଦେଶବାସୀ କେଉଁ ସ୍ୱାର୍ଥରେ ଏ ନାମ ଆପଣାର କରିନେଲେ ତାହା ଜାଣିବା ଅସମ୍ଭବ । ଏହି ନାମ ଆଜି ଭାରତବ୍ୟାପୀ । ହିନ୍ଦୁଧର୍ମ ଓ ପୌତ୍ତଳିକତା ବେଦ, ବେଦାନ୍ତ ଧର୍ମରୁ ବଳି ଏ ଦେଶବାସୀଙ୍କ ମନରେ ପ୍ରତିପତ୍ତି ଜନ୍ମାଇଅଛି । ହିନ୍ଦୁଧର୍ମ ଯେ କି ଅତି ଅର୍ବାଚୀନ ସେ ମଧ ବର୍ତ୍ତମାନ ସନାତନ । ଗାନ୍ଧିଜୀଙ୍କର ମୃତ୍ୟୁର ଅଳ୍ପଦିନ ପୂର୍ବେ ସାନ୍ଧ୍ୟ ପ୍ରାର୍ଥନା ସଭାରେ ସେ ନିଜକୁ ସନାତନୀ ହିନ୍ଦୁ ବୋଲି ଘୋଷଣା କରିଥିଲେ । ଏହା ଶୁଣି ହସ ମାଡ଼ିଲା—ହସି ପକାଇଲି । ଏପରି ବିଜ୍ଞ ଲୋକଙ୍କ ମୁହଁରେ ହିନ୍ଦୁଧର୍ମ ସନାତନ ହେଲା ଏବଂ ଯେକି ହିନ୍ଦୁଧର୍ମ ମାନନ୍ତି ନାହିଁ କହିଲେ ଚଳେ, ସେ କିପରି ନିଜକୁ ସନାତନ ହିନ୍ଦୁ ବୋଲି ପରିଚୟ ଦିଅନ୍ତି । ତାଙ୍କର କି ଏହି ଅଭିପ୍ରାୟ ଯେ ତାଙ୍କପରି ସମସ୍ତେ ହୁଅନ୍ତୁ ତାହାହେଲେ ସେମାନେ ସନାତନୀ ହିନ୍ଦୁ ଆଖ୍ୟା ପାଇବେ ?

ପାଶ୍ଚାତ୍ୟ ଶିକ୍ଷିତମାନଙ୍କ ମଧରେ ୰ ମଦନ ମୋହନ ମାଳବ୍ୟଙ୍କୁ ହିନ୍ଦୁ ବୋଲାଯାଇପାରେ । ଜଜ୍ ଗୁରୁଦାସ ଚଟ୍ଟୋପାଧ୍ୟାୟଙ୍କୁ ହିନ୍ଦୁ ବୋଲାଯାଇପାରେ ଏବଂ ଏମାନଙ୍କ ପରି ମୁଷ୍ଟିମେୟ ଲୋକଙ୍କୁ ହିନ୍ଦୁ ବୋଲାଯାଇପାରେ; ମାତ୍ର କେଉଁ ବିଧି ଅନୁସାରେ ଗାନ୍ଧିଜୀ କିମ୍ବା ଜହରଲାଲ ପ୍ରଭୃତିଙ୍କୁ ସନାତନୀ ହିନ୍ଦୁ ବୋଲାଯିବ, ତାହା ଆମ୍ଭମାନଙ୍କର ବୋଧଗମ୍ୟ ନୁହେଁ । ମୁଁ ନିଜକୁ ହିନ୍ଦୁ ବୋଲି ପରିଚୟ ଦେବାକୁ ଅସଙ୍ଗତ ମନେକରେ, କାରଣ ହିନ୍ଦୁ ପାଇଁକି ଯେ ବିଧି ବ୍ୟବସ୍ଥା ଅଛି, ଯେଉଁ ଆଚାର ନିର୍ଦ୍ଦିଷ୍ଟ ଅଛି ତାହା ମୁଁ ରକ୍ଷା କରିପାରୁ ନାହିଁ । ଏପରି ସ୍ଥଳେ ହିନ୍ଦୁ ବୋଲି ପରିଚୟ ଦେବାଟା କପଟତା ଭିନ୍ନ ଆଉ କ'ଣ ? ଶେଷକଥା ଏହି ଯେ ପାଠକ ନିଷ୍କପଟ ଭାବେ ଚିନ୍ତାକଲେ ଜାଣିପାରିବେ ଯେ, ଧର୍ମ ସନାତନ ନୁହେଁ । ନବଧର୍ମ ପୂର୍ବବର୍ତ୍ତୀ ଧର୍ମକୁ ଅତିକ୍ରମ କରୁଥିଲେ ହେଁ ସାମାଜିକ ସ୍ୱାର୍ଥ ବଜାୟ ରଖିବାକୁ ସଂସ୍କାରକମାନେ ବରାବର ଚେଷ୍ଟା କରିଅଛନ୍ତି । ଉଚ୍ଚନୀଚ ଭେଦ, ଜ୍ଞାନୀ ଅଜ୍ଞାନୀଭେଦ ବୈଶିଷ୍ଟ୍ୟ ଉଠିଯିବା ଭୟରେ ପୂର୍ବଧର୍ମର କାପଟ୍ୟକୁ ମାନି ଯାଆନ୍ତି ।

ପ୍ରବାହଣ ରାଜା ଓ ବ୍ରହ୍ମବାଦୀ— ବ୍ରହ୍ମବାଦ ସୃଷ୍ଟି କଲେ । କିନ୍ତୁ ଭିତରେ ଅନ୍ତର୍ନିହିତ ରହିଲା ଲୋଭ, ଲାଭ ଓ ଭୋଗ । ଭାରତୀୟ ଅନ୍ୟାନ୍ୟ ଧର୍ମରେ ଏହି ସ୍ୱାର୍ଥଜଡ଼ିତ, ମାତ୍ର ସର୍ବତ୍ୟାଗୀ ବୁଦ୍ଧଦେବ ଯେଉଁ ଧର୍ମ ବା ପନ୍ଥା ପ୍ରକାଶ କଲେ ସେଥିରେ ଲାଭ, ଲୋଭ ଓ ଭୋଗର ଲେଶମାତ୍ର ନାହିଁ । ତାଙ୍କୁ ଭାରତ ତ୍ୟାଗକଲା । ଆଜି ତାଙ୍କର ମତକୁ ନେଇ କେହି କେହି ପ୍ରଚାରକରି ଖ୍ୟାତି ଅର୍ଜିବାର ଚେଷ୍ଟା କରନ୍ତି; ମାତ୍ର ବୁଦ୍ଧଙ୍କର ନାମ କେହି ଉଚ୍ଚାରଣ କରନ୍ତି ନାହିଁ । ଜାତିପାତ ଭୟରେ ସିନା !

●

# ପୁନର୍ଜନ୍ମ

ପ୍ରବନ୍ଧର ନାମ ଦେଖି ଅନେକେ କହିବେ— ବ୍ରହ୍ମସ୍ୱରେ ହସ୍ତକ୍ଷେପ କାହିଁକି ? କଥାଟା ଏକବାରିକ ଅସତ୍ୟ ନୁହେଁ । ମୃତାଷ୍ଟକ, ଦଶଦାନ, ଷୋଡ଼ଶପାଥେୟ, ଗାବପୃଥ୍ୱୀ ସରସ୍ୱତୀ ଇତ୍ୟାଦି ଇତ୍ୟାଦି ଦାନ ପରି ପୁନର୍ଜନ୍ମ ମଧ ବ୍ରାହ୍ମଣର ଲାଭର ଉପାୟ । ପୁନର୍ଜନ୍ମରେ ଅବିଶ୍ୱାସ ଜନ୍ମାଇବା ଚେଷ୍ଟା ବ୍ରହ୍ମସ୍ୱରେ ହସ୍ତକ୍ଷେପ ନୁହେଁ କ'ଣ ? ତେବେ ଗାନ୍ଧିଙ୍କର ହରିଜନ ଯୁଗରେ ବ୍ରାହ୍ମଣମାନେ ଆମମାନଙ୍କ ହସ୍ତକ୍ଷେପକୁ ସହନୀୟ ମନେ କରିବେ ବୋଲି ଆଶା ପୋଷଣ ଅନାୟାସରେ କରାଯାଇପାରେ ।

ଜୀବ ଓ ଜନ୍ମ, ପରସ୍ପର ଅବିଚ୍ଛିନ୍ନ ସମ୍ବନ୍ଧ । ଜନ୍ମରୁ ଜୀବ, ଜୀବର ଜନ୍ମ ଏହା ସ୍ୱତଃ ମନରେ ଉଦୟ ହୁଏ । ଏହା ପ୍ରତ୍ୟକ୍ଷ ପ୍ରାମାଣ୍ୟ, ସତ୍ୟ ଓ ନିତ୍ୟ । ଲକ୍ଷ ଲକ୍ଷ ବର୍ଷ ପୂର୍ବରୁ ଜଡ଼ରୁ ଜୈବିକଅଣୁର ଉତ୍ପତ୍ତି । କ୍ରମେ ଏହି ଜୈବିକ ଅଣୁରୁ ଏହି ଧରାପୃଷ୍ଠର ଜୀବ ଲୀଳା । ଯାହାର ଜନ୍ମ, ଅସ୍ତିତ୍ୱ ପରିଣାମ ଓ ନାଶ ଅଛି ସେ ଜୀବ । ଏଣୁ ନିକୃଷ୍ଟ ଜଳୀୟ ଜୈବିକ ପରମାଣୁଠାରୁ ଆରମ୍ଭି ଜଳଜ ସ୍ଥଳଜ, ତୃଣ ଓ ଔଷଧି, ବୃକ୍ଷ ଲତା, କୀଟପତଙ୍ଗ, ପଶୁ, ମନୁଷ୍ୟ ସମସ୍ତେ ଜୀବ ବାଚ୍ୟ । ଜୀବଜଗତରେ ଜୀବ ବିଶେଷର ମହତ୍ତ୍ୱ ତୁଳନା କରିବା ଅଯୌକ୍ତିକ । ମନୁଷ୍ୟର ଘୃଣ୍ୟ କେଞ୍ଚୁଆ ବା ତଦ୍‌ନିମ୍ନ ସ୍ତରର କୀଟ ଏବଂ ମନୁଷ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ ଯେହେତୁ ସମସ୍ତେ ଏକ ଜୀବ ପର୍ଯ୍ୟାୟଭୁକ୍ତ । ଏବଂ ଜନ୍ମ ମରଣରେ ଉଭୟେ ସମାନ । ଉଭୟେ ଏକ ଜୈବିକ ଫଳରୁ ପରିଣତି ଲାଭ କରିଅଛନ୍ତି ।

ଏହା ଅବିସମ୍ବାଦିତ ସତ୍ୟ ଯେ ଜୀବ ମାତ୍ରେ ହିଁ ଜନ୍ମ ଲାଭ କରିଅଛନ୍ତି । ସମସ୍ତ ଜୀବ ଅଣ୍ଡଜ ଯଦ୍ୟପି ଆମେମାନେ କେବଳ ବର୍ଷା ସରୀସୃପ ପ୍ରଭୃତିକୁ ଅଣ୍ଡଜ ଆଖ୍ୟା ଦେଇଅଛୁଁ । ଏଥିରେ ମତଦ୍ୱୈଧ ଥାଇପାରେ, ମାତ୍ର ପଶୁ, ମନୁଷ୍ୟ ମଧ ଯେ ଅଣ୍ଡଜ ଏଥିରେ ସନ୍ଦେହ ନାହିଁ । ଜୀବ ଜନ୍ମ ପୂର୍ବରୁ ଯେଉଁଠାରେ ରହି ଜନ୍ମ ହେବା ଉପଯୁକ୍ତ ଅବସ୍ଥା ଲାଭକରେ ତାହାକୁ ଅଣ୍ଡ କହିବାକୁ ହେବ । ଯାହା ଭ୍ରୂଣକୁ ଆବୃତ କରି ରଖେ ତାହା ଅଣ୍ଡ, ତାହା କୋମଳ ହେଉ ବା କଠିଣ ହେଉ । ଏ ଦୃଷ୍ଟିରୁ ମନୁଷ୍ୟ ଅଣ୍ଡଜ, କୁକ୍‌କୁଟ ମଧ ଅଣ୍ଡଜ । ଗର୍ଭଧାରଣ ଉତ୍ତାରୁ ଗର୍ଭରେ ଭ୍ରୂଣ ବା ଶିଶୁର ରହିବାର ସମୟର ଇତର ବିଶେଷ ଅଛି, ଜୀବର ଅବୟବ ତୁଳନା ଅନୁସାରେ, ଯଥା– ହାତୀଛୁଆ ଜନ୍ମହୁଏ ଅଠର ଠାରୁ ବାଇଶ ମାସ ମଧ୍ୟରେ । ଘୋଟକଛୁଆ ଜନ୍ମହୁଏ ବାର ମାସରେ, ବାଛୁରୀ ଦଶ ମାସରେ । ମନୁଷ୍ୟ ଛୁଆ ଜନ୍ମହୁଏ ପ୍ରାୟ ଦଶ ମାସରେ କୁକ୍‌କୁଟ ଜନ୍ମ ହୁଏ ତିନି ସପ୍ତାହରେ । ଅଣ୍ଡ ମଧ୍ୟରେ ଶିଶୁର ଜୀବନ ଧାରଣ ପ୍ରକ୍ରିୟା ଏକ । ମନୁଷ୍ୟ, ହାତୀ, ଘୋଡ଼ା ଓ କୁକ୍‌କୁରର ଜନ୍ମ ପ୍ରଣାଳୀ ଏକ । ଜୀବର ଜନ୍ମରେ ପାର୍ଥକ୍ୟ କିଛି ନାହିଁ । ମାତୃ ଗର୍ଭରୁ ପୃଥକ ହେଲାରୁ ବା ଅଣ୍ଡରୁ ପୃଥକ ହେଲାରୁ ଭିନ୍ନ ଭିନ୍ନ ଜୀବର ଜୀବନ ରକ୍ଷଣ ପ୍ରକ୍ରିୟା ସ୍ୱତନ୍ତ୍ର ପ୍ରକାର । କେହିବା ଭାତ ଖାଇ ବଞ୍ଚେ, କିଏ ତାଳପତ୍ର କିଏ କୀଟପତଙ୍ଗ ଖାଇ ବଞ୍ଚେ । ଅସ୍ତିତ୍ୱ ଓ ବଞ୍ଚିବା କାଳର ତାରତମ୍ୟ ଅଛି । କୌଣସି ଜୀବ ଅଳ୍ପକ୍ଷଣଜୀବୀ, କେହି ବର୍ଷଜୀବୀ କେହି ବା ଶତବର୍ଷଜୀବୀ କେହି ଶତାଧିକ ବର୍ଷଜୀବୀ ।

ପ୍ରତ୍ୟେକ ଜୀବର ଜନ୍ମ ଉତ୍ତାରୁ ଶୈଶବଅବସ୍ଥା, ଯୌବନାବସ୍ଥା କ୍ରମେ ଜରାବସ୍ଥା ଆସେ । ପ୍ରତ୍ୟେକ ଜୀବର ଏହି ତିନି ଅବସ୍ଥା ଘଟେ । ତାହା ଅଳ୍ପକାଳ ସ୍ଥାୟୀ ହେଉ ବା ଦୀର୍ଘକାଳ ସ୍ଥାୟୀ ହେଉ । ଏହି ଅବସ୍ଥା ଉତ୍ତାରୁ ଜୀବର ଚରମାବସ୍ଥା ବା ଶେଷ ଅବସ୍ଥା— ମୃତ୍ୟୁ । ଏହା ଜୀବ ଜନ୍ମର ଶେଷ ଅବସ୍ଥା ବା ଚତୁର୍ଥାବସ୍ଥା । ଏଥିରେ କୌଣସି ସନ୍ଦେହ ନାହିଁ । କୌଣସି ଭ୍ରମ ନାହିଁ ।

ଉପରୋକ୍ତ ଲେଖାରୁ ଆମେମାନେ ଅବଗତ ହେଲୁଁ ଯେ ଜୀବର ଜନ୍ମ- ଏବଂ ଜନ୍ମର ମୃତ୍ୟୁ । ଏହା ଯେ କେବଳ ମନୁଷ୍ୟର ଘଟୁଅଛି ତାହା ନୁହେଁ, କଲେରା ମେଲେରିଆର କୀଟ ଠାରୁ ଆରମ୍ଭି ହାତୀ, ଗାଈ, ମନୁଷ୍ୟ, ବାଘ ଓ କୁକୁର, ମହାମହୀରୁହର ମଧ ଘଟୁଅଛି । ଜନ୍ମ ଯାର ମୃତ୍ୟୁ ତା'ର ।

ଆମର ପ୍ରାଚୀନ ଶାସ୍ତ୍ରକାରମାନେ ଜନ୍ମ ଶବ୍ଦ ପୂର୍ବରେ ପୁନଃ ଶବ୍ଦ ଯୋଜନା କରି ଗୋଟିଏ ପୁନର୍ଜନ୍ମ ଶବ୍ଦର ସୃଷ୍ଟିକରି ଲୋକଙ୍କୁ ଭ୍ରାନ୍ତ କଲେ ଓ କରୁଅଛନ୍ତି । ଶାସ୍ତ୍ର ଥିବାଯାଏ, ଲୋକେ ଅନ୍ଧବିଶ୍ୱାସକୁ ଛିନ୍ନ କରିପାରିବା ଯାଏ ଏହି ଜାଲରେ ପଡ଼ି ଘାଣ୍ଟି ହେଉଥିବେ ।

ପୁନର୍ଜନ୍ମ କ'ଣ ? ଏ ଶବ୍ଦର ଠିକ୍ ଅର୍ଥାବଗତି ହୁଏ ନାହିଁ ଅଥଚ ଲୋକେ ବିଶ୍ୱାସ କରନ୍ତି । ଗୋଟାଏ କଥାକୁ ଥର ଥର କରି କହିଲେ ପୁନରୁକ୍ତି କୁହାଯାଏ । ଏହି ନିୟମରେ ଜନ୍ମଟା ଥର ଥର ହେଲେ ପୁନର୍ଜନ୍ମ ବୋଲାଯାଇପାରେ । ମାତ୍ର ଜନ୍ମଟା ଥର ଥର ହେବାର ବୋଧଗମ୍ୟ କି, ଦର୍ଶନଯୋଗ୍ୟ କି ? ତେବେ ଲୋକେ ପୁନର୍ଜନ୍ମ ଘେନି ଘାଣ୍ଟି ହୁଅନ୍ତି କାହିଁକି ? ବାଲ୍ୟକାଳରୁ ମୋର ପୁନର୍ଜନ୍ମରେ ବିଶ୍ୱାସ ନାହିଁ । ଏହା ଗୋଟିଏ ମିଥ୍ୟା କଳ୍ପନା ବୋଲି ହୃଦ୍‌ବୋଧ ହୋଇଅଛି ।

ବାଲ୍ୟକାଳରୁ ଅବିଶ୍ୱାସ ମୋର ମୂଳମନ୍ତ୍ର । ଅନେକ ଗୁରୁସ୍ଥାନୀୟ ବ୍ୟକ୍ତି ମୋର ଯୁକ୍ତିତର୍କ ଶୁଣି କହନ୍ତି ଏହା ମୋର ନାମର ଗୁଣ— ଅର୍ଥାତ୍ ଜଳନ୍ଧର ରାକ୍ଷସର ନାମ, ରାକ୍ଷସ ଦେବ-ଦ୍ୱେଷୀ ଓ ଶାସ୍ତ୍ରଦ୍ୱେଷୀ, ଏଣୁ ଶାସ୍ତ୍ର ବିରୋଧ କଥା ମୁଖରୁ ବାହାରେ । ହେଉ ପଛକେ ମୁଁ ଅନ୍ଧବିଶ୍ୱାସୀ ନୁହେଁ । ଗୋଟିଏ ପ୍ରକୃତ ଘଟଣାର ଉଲ୍ଲେଖ କରାଯାଉ । ଷାଠିଏ ପଞ୍ଚଷଠି ବର୍ଷ ପୂର୍ବେ ଆମମାନଙ୍କ ଘରେ ପୂଜା ଅର୍ଚ୍ଚନା ଓ ପୁରାଣ ପାଠ ନିତ୍ୟ ବ୍ୟାପାର ଥିଲା ବୋଇଲେ ଚଳେ । ଅନୁକରଣପ୍ରିୟ ବାଳକ ମୁଁ ମଧ୍ୟ ଦେବ ଓ ପୁରାଣ ଭକ୍ତ ଥିଲି । ବାର ବର୍ଷରେ ଯଜ୍ଞୋପବୀତ ଗ୍ରହଣ କଲାରୁ ବର୍ଷ କେତେ ପୂଜା ପାଠ ସାନ୍ଧ୍ୟୋପାସନାଦି କରୁଥିଲି । ଏପରି କରୁଥିବାବେଳେ ଗୁରୁଜନମାନଙ୍କଠାରୁ ଖୁବ୍ ପ୍ରଶଂସା ମଧ୍ୟ ପାଉଥିଲି କିନ୍ତୁ କେବେ କେବେ ସହସା ପୁରାଣ ଭକ୍ତିରେ ଅବିଶ୍ୱାସ ପ୍ରକାଶ କରି ତିରସ୍କାର ମଧ୍ୟ ପାଏଁ ଏବଂ ଏହା ନାମର ଗୁଣ ବୋଲି ଶୁଣିବାକୁ ପାଏଁ । ଏପରି ଅନେକ ପ୍ରସଙ୍ଗ ଅଛି, ତେବେ ପୁନର୍ଜନ୍ମ ବିଷୟ ନେଇ ଗୋଟିଏ ଘଟଣାର କଥା ଏଠାରେ ପ୍ରକାଶ କରିବାର ଯୁକ୍ତିସଙ୍ଗତ ମନେକଲି ।

ଆମ ଘରେ ଦ୍ରୌପଦୀ ନାମ୍ନୀ ଜଣେ ବିଧବା ବ୍ରାହ୍ମଣୀ ଥିଲେ । ସେ ପାଚିକା କାର୍ଯ୍ୟ କରୁଥିଲେ, ଆମରଣ ସେହି କାର୍ଯ୍ୟ କରିଥିଲେ । ମୋ ଅପେକ୍ଷା ପ୍ରାୟ ତିରିଶ ବର୍ଷର ବଡ଼ ହୋଇପାରନ୍ତି । ପୁରାଣାଦି ଶୁଣି ଶୁଣି ଆପଣା ଭାଷାରେ ପୁରାଣର ବ୍ୟାଖ୍ୟା କରିବାରେ ବେଶ ବ୍ୟୁତ୍ପତ୍ତି ଜନ୍ମିଥିଲା । ମା'ଙ୍କ ସଙ୍ଗରେ ପୌରାଣିକ ଆଲୋଚନା କଲାବେଳେ ମୁଁ ତାହା ଶୁଣିବାକୁ ବଡ଼ ସୁଖ ପାଏଁ । ଗ୍ରୀଷ୍ମକାଳରେ ପ୍ରାୟ ଅପରାହ୍ଣ ଦୁଇ ତିନିଘଣ୍ଟା ବେଳେ ଏହି ପୁରାଣ ଚର୍ଚ୍ଚା ପଡ଼ିଥାଏ । ମୁଁ ଖଣ୍ଡିଏ ସପ ଉପରେ ଗଡ଼ି ଗଡ଼ି ଆନନ୍ଦରେ ସବୁ ଶୁଣୁଥାଏଁ । ସେଦିନ ପୁନର୍ଜନ୍ମ କଥା ପଡ଼ିଥାଏ, ପାପକଲେ କିପରି ଜନ୍ମ ଏବଂ ପୁଣ୍ୟ ଦ୍ୱାରା ମନୁଷ୍ୟ କିପରି ଜନ୍ମ ଲାଭକରେ ଏଥର ଚର୍ଚ୍ଚା ପଡ଼ିଥିଲା । କିଏ ଝିଣ୍ଟିକା ମାରି କ'ଣ ହେଲା-କିଏ ବ୍ରାହ୍ମଣକୁ ସର୍ବସ୍ୱ ଦାନ କରି କି ଫଳ ପାଇଲା ଇତ୍ୟାଦି କଥା ଜଳସ୍ରୋତ ପରି ଚାଲିଛି, ମନରେ ଗୋଟାଏ ପ୍ରଶ୍ନ ହଠାତ୍ ଉଦୟ ହେଲା । ପଚାରିଲି— ''ଆଚ୍ଛା ନାନୀ, ଯେ ଜନ୍ମହୁଏ ସେ ତାର ଆଗ ଜନ୍ମର କଥା ଜାଣେ କି ନା ? ଆଉ ନାନୀ ତମେ ଆଗ ଜନ୍ମରେ କ'ଣ ଥିଲ ତମକୁ ଜଣାପଡୁଛି କି ?'' ଏ ପ୍ରଶ୍ନର ଉତ୍ତର ଦେବାକୁ ବେଚାରୀ ଅସମର୍ଥା । କହିଲେ ଏଥିର କଥା ପ୍ରଭୁ ହାତରେ, ମନୁଷ୍ୟ କିପରି ଜାଣିବ ? କରୁଣ ସ୍ୱରରେ କହିଲେ— ମୁଁ ଅଳ୍ପ ବୟସରେ ବିଧବା ହେଲି ଏଣୁ ମନେ କରୁଅଛି ଯେ ମୁଁ ନିଶ୍ଚୟ କିଛି ପାପ କରିଥିଲି । ଏହିପରି ଅନୁମାନ କରାଯାଏ ମାତ୍ର କେହି ପୂର୍ବକଥା ଜାଣି ପାରେ ନାହିଁ । ମୁଁ ନିଷ୍ପତ୍ତି କଲି ଯେବେ ପୂର୍ବ ଜନ୍ମର କଥା ଜାଣିବାର ଉପାୟ ନାହିଁ ତେବେ ବିଶ୍ୱାସ କରିବାର ପ୍ରୟୋଜନ ନାହିଁ । ଏଥି ନିମନ୍ତେ ମା' ମୋତେ ତିରସ୍କାର କଲେ ନାହିଁ କେବଳ କହିଲେ, ''ଏହା ମହା ଗହନ କଥା, ତୁ ବାରବରଷର ପୁଅ ବୁଝିବୁ କ'ଣ ? ପାଠ ପଢ଼ିଲେ ବୁଝିବୁ ଆମମାନଙ୍କଠାରୁ ମଧ୍ୟ ଭଲ ବୁଝିବୁ । ମୁଁ ତଦବଧି ପୁନର୍ଜନ୍ମ କଥା, ପଢୁଛି, ଆଲୋଚନା କରୁଛି, ଚିନ୍ତା କରୁଛି ମାତ୍ର ସେହି ବାରବରଷର ଚିନ୍ତାଧାରାରୁ ତିଳେମାତ୍ର ପୁନର୍ଜନ୍ମ ସପକ୍ଷରେ ଅଗ୍ରସର ହୋଇପାରିଲି ନାହିଁ । ବଡ଼ ବଡ଼ ପଣ୍ଡିତ ବିଦ୍ୱାନ୍‌ମାନଙ୍କ ସହିତ ତର୍କବିତର୍କ କଲି, ବୁଝାଇ ଦେବାକୁ ବିନୟ ଅନୁନୟ କଲି କେହି ବୁଝାଇ ପାରିଲେ ନାହିଁ । ତର୍କରେ ଅନେକ ପଣ୍ଡିତେ ଘର୍ମାକ୍ତ ହେଲେ ଅନେକ ଢେଳ ପୋଡ଼ିଲା ମାତ୍ର 'ଯଥାପୂର୍ବଂ ତଥା ପରଂ' ନାସ୍ତିକ ଆଖ୍ୟା କୌଣସି କୌଣସି ପଣ୍ଡିତଙ୍କଠାରୁ ପାଇଲି ମାତ୍ର ପୁନର୍ଜନ୍ମର ତଥ୍ୟ ପାଇଲି ନାହିଁ । ମୁଁ ସେହି ଅବିଶ୍ୱାସୀ ।

ପୂର୍ବେ କହିଅଛି ଯେ ଜନ୍ମସ୍ଥିତି ଓ ମୃତ୍ୟୁ ଘେନି ଜୀବମାତ୍ରେ ହିଁ ସମାନ । ଜୀବାଣୁ, କୀଟ, କେଞ୍ଚୁଅ, କୁକ୍‌କୁଟ, କୁକୁର, ମନୁଷ୍ୟ ଓ ବୃକ୍ଷ ମଧ୍ୟରେ ପାର୍ଥକ୍ୟ ନାହିଁ । ପୁନର୍ଜନ୍ମ ହେଲେ ସମସ୍ତଙ୍କର ହେବାର କଥା । ଜୀବ ଜଗତରେ ମନୁଷ୍ୟ କେଉଁ ହେତୁରୁ କେଞ୍ଚୁଆ ଉଇଠାରୁ ଶ୍ରେଷ୍ଠ ଯେ ମନୁଷ୍ୟର ପୁନର୍ଜନ୍ମର ଏତେ ଆଲୋଚନା, ଆଉ ଜୀବମାନଙ୍କର ସମ୍ବନ୍ଧେ ଶାସ୍ତ୍ରକାରମାନେ କିଛି ଲେଖିଲେ ନାହିଁ କାହିଁକି ? କେଞ୍ଚୁଆର ପୁନର୍ଜନ୍ମାଲୋଚନାରେ ଲାଭ ଓ ଭୋଗର ସ୍ଥାନ ନାହିଁ । ଲୋପା ଯାହା କହିଛନ୍ତି ଯେ ପୁନର୍ଜନ୍ମ ଗୋଟିଏ ମହାଜାଲ ତାହା ଠିକ୍, ଏଥିରେ ଲୋକ ଛନ୍ଦି ହୋଇ ରହିଛନ୍ତି ।

ଗୀତା ଲେଖକ ପୁନର୍ଜନ୍ମର ପକ୍ଷପାତୀ, ଏବଂ ଗୀତା ''ପଦ୍ମନାଭସ୍ୟ ମୁଖ ପଦ୍ମବିନିସ୍ମୃତା' ବୋଲି ଯେ ଗୋଟାଏ ଶପଥ ଦେଇ ଅଛନ୍ତି ତାହା ଲଂଘନ କରିବାକୁ ହିନ୍ଦୁ ପୁଅ କିଏ ? ମୁଁ ଗୀତା ସମାଲୋଚନାରେ ବିସ୍ତୃତ ଭାବରେ ପ୍ରମାଣ ସହ ବୁଝାଇ ଅଛି ଯେ— ଗୀତା ମହାଭାରତର ଅଂଶ ନୁହେଁ, ଏହା ପ୍ରକ୍ଷିପ୍ତ । ଗୀତାକୁ ଉଠାଇନେଲେ ମହାଭାରତ ବିଷୟ ପରମ୍ପରାର ବୈକ୍ଲବ୍ୟ ଘଟେ ନାହିଁ । ଗୀତା ସତେ କୃଷ୍ଣ କଥିତ ନୁହେଁ । ଗୀତା ଉପନିଷଦ ସଂଗ୍ରହ ଗ୍ରନ୍ଥ ମାତ୍ର । ପ୍ରାଚୀନ ଟୀକାକାରଗଣ ମତର ପିଷ୍ଟପେଷଣ କରିଅଛନ୍ତି । ଏବଂ ଭ୍ରାନ୍ତ ମତମାନ ଯୋଗକରି ଅଛନ୍ତି ମାତ୍ର କେହି ପରିଷ୍କାର କରିବାର ଚେଷ୍ଟା କରିନାହାନ୍ତି । ସମସ୍ତେ କୃଷ୍ଣଭକ୍ତି ବୋଲି ସ୍ୱୀକାର କରି

ଯାଇଅଛନ୍ତି । ଇଚ୍ଛାପୂର୍ବକ ଥିବା କଥା ଥାଉ ଏହାହିଁ ସେମାନଙ୍କର ମତ ।

ଆଧୁନିକ ପାଶ୍ଚାତ୍ୟ ଶିକ୍ଷିତମାନେ ମଧ ଏଥିର ଟୀକାଟିପପ୍ଣୀ କରିଅଛନ୍ତି କିନ୍ତୁ ସେଥିରେ ଦେଖିବାକୁ ମିଳେ ଯେ ନିଜର ମତ ପୋଷଣ ନିମନ୍ତେ ଯାହା ଦର୍କାର ତା'ର କିଞ୍ଚିତ୍ ବିସ୍ତୃତିକରି— ସେହି କୃଷ୍ଣ ଉପରେ ଆଶାଭରସା ଲଦି ଯାଇଅଛନ୍ତି । ଗାନ୍ଧିଜୀ ଗୋଟାଏ ଭାଷ୍ୟ କରିଅଛନ୍ତି । ଠିକ୍ ଭାଷ୍ୟ ନୁହେଁ ପ୍ରସ୍ତାବନାରେ ତାଙ୍କର ମତ ପ୍ରକାଶ କରିଅଛନ୍ତି । ଗୀତାନ୍ତର୍ଗତ ଶ୍ଳୋକ ବିଶେଷର ଟିପ୍‌ପଣୀ ଦେଇଅଛନ୍ତି । ସମସ୍ତ ଶ୍ଳୋକର ଟିପ୍‌ଣୀ କରି ନାହାନ୍ତି ।

ଗାନ୍ଧିଙ୍କ ମତରେ ମହାଭାରତ ଇତିହାସ ନୁହେଁ । ବ୍ୟାସ ''କେବଳ ଧର୍ମର ଦର୍ଶନ କରାଇବା ନିମନ୍ତେ ମହାଭାରତର ପାତ୍ରମାନଙ୍କର ବ୍ୟବହାର କରିଅଛନ୍ତି ।'' ମୋ ମତରେ ମହାଭାରତ ଧାରାବାହିକ ଐତିହାସିକ ସତ୍ୟ ଉପରେ ପ୍ରତିଷ୍ଠିତ ହୋଇ ନ ଥିଲେ ମଧ ଏହା ବିଚ୍ଛିନ୍ନ ଐତିହାସିକ ଓ ବୈଦିକ ଉପାଖ୍ୟାନ ମୂଳକ ଗ୍ରନ୍ଥ । କେବଳ ଧର୍ମଗ୍ରନ୍ଥ ବୋଲି ଇତିହାସକୁ ଉଡ଼ାଇ ଦିଆଯାଇ ନ ପାରେ । ପ୍ରାଚୀନ ଇତିହାସ ଉପାଖ୍ୟାନ ଲେଖୁଲେଖୁ ମଧରେ ଧର୍ମର ପ୍ରସଙ୍ଗ ଉପଦେଶ ଆସିବା ସ୍ୱାଭାବିକ । ତାହାହିଁ ଘଟିଅଛି ଏବଂ ଗୀତା ମହାଭାରତର ପ୍ରାସଙ୍ଗିକ ପ୍ରୟୋଜନୀୟ ସର୍ଗ ନୁହେଁ । ଏହା ପ୍ରକ୍ଷିପ୍ତ । ବୈଦିକ ଉପାଖ୍ୟାନ ବହୁଳ ଗ୍ରନ୍ଥରେ— ଉପନିଷଦର ଅଂଶ ରହିବାର ପ୍ରୟୋଜନ ଭାବନାରେ କୌଣସି ରଚକ ମହାଭାରତରେ ଏହା ପ୍ରବେଶ କରାଇଅଛନ୍ତି ମାତ୍ର—

ଗାନ୍ଧିଙ୍କ ମତରେ ''ଗୀତାର କୃଷ୍ଣମୂର୍ତ୍ତି ମନ୍ତ୍ର ଜ୍ଞାନ କିନ୍ତୁ କାଳ୍ପନିକ ।'' କୃଷ୍ଣ କାଳ୍ପନିକ ହେଲେ ଗୀତାର ମହତ୍ତ୍ୱ ଅନେକାଂଶରେ ଲାଘବ ହେଲା । ସେକ୍‌ସପିଅରଙ୍କର ହେମଲେଟ ନାଟକରେ ହେମଲେଟର ସ୍ୱଗତ ଯେଉଁ ସ୍ଥାନୀୟ, ଗୀତାରେ କୃଷ୍ଣଙ୍କର ଉକ୍ତି ବା ଉପଦେଶ ସେହି ସ୍ଥାନ ପାଇଲା ବୋଲାଯିବ । ଆଧୁନିକ ଗୀତା ବିଶ୍ୱାସୀ ଟୀକା ଓ ଟିପଣୀକାରମାନଙ୍କର ମତରେ ଗୀତାର କୃଷ୍ଣ ଓ ଅର୍ଜୁନ ଐତିହାସିକ ପୁରୁଷ ନୁହନ୍ତି ଏବଂ କୁରୁ-ପାଣ୍ଡବ ଯୁଦ୍ଧ ଐତିହାସିକ ଯୁଦ୍ଧ ନୁହେଁ, ଗୀତାର ଶିକ୍ଷା କେବଳ ଦୈହିକ ପ୍ରବୃତ୍ତ ବ୍ୟାପାର । ତାହାହେଲେ ଗୀତାକୁ ମହାଭାରତର ଅଂଶ ବୋଲି ସ୍ୱୀକାର କରିବା ଉଚିତ ନୁହେଁ । ଗୀତାର କୃଷ୍ଣ, ଅର୍ଜୁନ କାଳ୍ପନିକ ଏବଂ ଗୀତାର ଶିକ୍ଷା ଦୈହିକ ବ୍ୟାପାର ଓ ଆଧ୍ୟାତ୍ମିକତାରେ ବୋଲି ସ୍ୱୀକାର କରିବାକୁ ହେବ । ମହାଭାରତରେ କୃଷ୍ଣଙ୍କର ଧର୍ମରାଜ୍ୟ ପ୍ରତିଷ୍ଠା ହିଂସାମୂଳକ ଅଟେ । ଅସଂଖ୍ୟ ଧର୍ମମତ ଓ ଜ୍ଞାନର ମତ ଥିଲେ ମଧ–ମୂଳ ଜୟ ହିଂସା ଦ୍ୱାରା ସାଧିତ ତାହା ଦେଖାଇବାର ଚେଷ୍ଟା କରିବି । ଗୀତାରେ ଯୁଦ୍ଧ ବ୍ୟାପାର ନାହିଁ ତଥାପି ଯେ ଅର୍ଜୁନଙ୍କୁ ଅଶେଷ ଜ୍ଞାନଶିକ୍ଷା ଦିଆଯାଇ ଅଛି ତାହା ବିଶୁଦ୍ଧ ଅହିଂସା ନୁହେଁ । ସ୍ଥାନେ ସ୍ଥାନେ ହିଂସାର ଶିକ୍ଷା ଦିଆ ଯାଇଅଛି ତାହା ମଧ ଦେଖାଇବି ।

ବର୍ତ୍ତମାନ ମୂଳ ବିଷୟ ପୁନର୍ଜନ୍ମର ଆଲୋଚନା କରାଯାଉ । ଏ ପୃଥିବୀରେ ଯେତେ ଜୀବବୃକ୍ଷଲତା, କୀଟପତଙ୍ଗ ପକ୍ଷୀପଶୁ- ଯେଉଁମାନେ ଜନ୍ମଗ୍ରହଣ କରନ୍ତି ସେମାନଙ୍କର ଜ୍ଞାନ ନାହିଁ ଏଣୁ ପୁନର୍ଜନ୍ମ କଥା ସେମାନଙ୍କ ସମ୍ବନ୍ଧେ ଆଲୋଚ୍ୟ ନୁହେଁ । ମାତ୍ର ମନୁଷ୍ୟ ମାତ୍ରେ ହିଁ କି ଏହି ଧରାଧାମରେ ଉତ୍ପତ୍ତି ଲାଭ କଲାଉତ୍ତାରୁ ପୁନର୍ଜନ୍ମର ଆଲୋଚନା କରିଥିଲେ ଏବଂ ଏହି ପୁନର୍ଜନ୍ମରେ ବି ସେମାନଙ୍କର ବିଶ୍ୱାସ ଥିଲା । ଭୂପୃଷ୍ଠରେ ଅଧୁନା ବାସ କରୁଥିବା ସମସ୍ତ ମନୁଷ୍ୟ କି ପୁନର୍ଜନ୍ମ ବିଶ୍ୱାସୀ ? ଆବହମାନ କାଳରୁ ଜନ୍ମର କଥା ସମସ୍ତେ ଜାଣନ୍ତି ଏବଂ ମୃତ୍ୟୁର କଥା ସମସ୍ତେ ଜାଣନ୍ତି ମାତ୍ର ମଲା ଉତ୍ତାରୁ ମନୁଷ୍ୟର ଯାହା ଘଟେ ବା ନାହିଁ ତାହା ବିଭିନ୍ନ ଜାତି ବିଭିନ୍ନ ପ୍ରକାର ବିଶ୍ୱାସ କରନ୍ତି । ଏଣୁ ପୁନର୍ଜନ୍ମ ବିଶ୍ୱବ୍ୟାପୀ ବା ସାର୍ବଜନୀନ ବିଶ୍ୱାସ ନୁହେଁ । ହିନ୍ଦୁ ଆଖ୍ୟାଧାରୀ ଭାରତବାସୀଙ୍କର ପୁନର୍ଜନ୍ମ ଗୋଟିଏ ଥିବାର ଶାସ୍ତ୍ରରେ ଅଛି ଏବଂ ପୁନର୍ଜନ୍ମରେ ବିଶ୍ୱାସ ମଧ ଅଛି । ଏହା ଆର୍ଯ୍ୟ ଜାତିର ବିଶ୍ୱାସ କି ପରେ ସମାଜରେ ପ୍ରବିଷ୍ଟ ହୋଇଅଛି ତାହା ପରୀକ୍ଷାଦ୍ୱାରା ଜଣାପଡ଼ିବ । ବେଦରେ ପୁନର୍ଜନ୍ମ ଅଛି କି ? ଦେଖାଯାଉ । ବେଦରେ ପୁନର୍ଜନ୍ମ ନାମ ମଧ ନାହିଁ । ମୃତବ୍ୟକ୍ତି ପୁନର୍ବାର ଜନ୍ମହେବାର ଉଲ୍ଲେଖ ନାହିଁ । ମନୁଷ୍ୟ ମୃତ ହେଲା ଉତ୍ତାରୁ କ'ଣ ହୁଏ ଏଥିର ଆଲୋଚନା ମଧ ସେମାନେ କରିପାରି ନ ଥିଲେ । ତେବେ ମୃତବ୍ୟକ୍ତିମାନଙ୍କର କିଛି କିଛି ଘଟୁଥିବ ଏହି ଧାରଣା କୌଣସି କୌଣସି ଋଷିଙ୍କର ମସ୍ତିଷ୍କକୁ ସ୍ପର୍ଶ କରିଥିଲା ଏଣୁ ମୃତବ୍ୟକ୍ତିକୁ ଦାହକଲାବେଳେ ସ୍ତୁତି କରନ୍ତି ଏବଂ କହନ୍ତି ଯେ ପୂର୍ବପୁରୁଷଗଣ ଯେଉଁ ଗତିପ୍ରାପ୍ତ ହେଲେ ତୁମର ସେହି ଗତି ହେଉ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଲା ଯେ ବୈଦିକ ଆର୍ଯ୍ୟମାନେ ପୁନର୍ଜନ୍ମର ସ୍ୱପ୍ନ ମଧ ଦେଖି ନ ଥିଲେ । ଏବେ ମଧ ଏହି ଭାରତୀୟ ଅଶିକ୍ଷିତ ଜାତିମାନଙ୍କର ବିଶ୍ୱାସ ଯେ ମୃତବ୍ୟକ୍ତି ପୂର୍ବପୁରୁଷଙ୍କର ସହିତ ମିଳିତ ହୁଏ । ରାଞ୍ଚି ପ୍ରଭୃତିରେ ଥିବା ମୁଣ୍ଡା କୋହ୍ଲମାନେ ବାମହସ୍ତରେ ବଂଶ ନିୟମାନୁସାରେ ଦାଗ ଦିଅନ୍ତି । ତାହାହେଲେ ପିତୃପୁରୁଷମାନେ ହାତର ଦାଗ ଦେଖି ଆପଣା ମୃତ ଆତ୍ମୀୟକୁ

ଚିହ୍ନି ପାରନ୍ତି । ମାତ୍ର ପୁନର୍ଜନ୍ମ କଥା ବୈଦିକଯୁଗରେ ନ ଥିଲା ଏବଂ ଆଧୁନିକ ଅନେକ ଭାରତୀୟ ଅଶିକ୍ଷିତ ଜାତିଙ୍କ ମଧ୍ୟରେ ନାହିଁ । ଉପନିଷଦ ଯୁଗର ଏହି ଅଦ୍ଭୁତ କଳ୍ପନା ଋଷିମାନଙ୍କ ମନରେ ସ୍ଥାନ ପାଇଲା । ଏତଦ୍‌ଦ୍ୱାରା ଲୋକଙ୍କୁ ଭୀତିଗ୍ରସ୍ତ କରି ଓ ଆଶା ଦେଖାଇ ଲାଭର ଉପାୟ ବ୍ରାହ୍ମଣମାନେ କରିନେଲେ । କ୍ରମେ ତା'ର ଅତି ବୃଦ୍ଧି ହୋଇଅଛି ।

ଯୁଦ୍ଧ ବ୍ୟାପାରରେ ହେଉ ବା ଆଧ୍ୟାତ୍ମିକ ତତ୍ତ୍ୱ ହେଉ, ଗୀତାରେ ପୁନର୍ଜନ୍ମର ଉଲ୍ଲେଖ ଅତିମାତ୍ରାରେ ରହିଲା କାହିଁକି ? ପ୍ରକୃତ ମୁକ୍ତିକି ପୁନର୍ଜନ୍ମ ବିଶ୍ୱାସ ଓ ଆତ୍ମାରେ ପ୍ରତିଷ୍ଠିତ । ଏଣୁ ପୁନଃ ପୁନଃ ଏଥିର ଉଲ୍ଲେଖ । ଟୀକାକାରମାନେ ପ୍ରକାଶ କରନ୍ତି ଯେ ଏପରି ପୁନଃ ପୁନଃ ଉଲ୍ଲେଖ ଦୋଷଣୀୟ ନୁହେଁ । କଠିଣ ବିଷୟ ହେତୁ ପୁନଃ ପୁନଃ ଏବଂ ନାନା ଭାବରେ ପ୍ରକାଶ ନ କଲେ ଶିଷ୍ୟ ବା ଅର୍ଜୁନର ଦାର୍ଢ୍ୟତା ଜନ୍ମନ୍ତା ନାହିଁ । ହେଉ । ମାତ୍ର ଶିଷ୍ୟ କି ଏଡ଼େ ମୂର୍ଖ ଥିଲେ ଯେ ତାଙ୍କୁ ପୁନର୍ଜନ୍ମ କଥା ଜଣା ନ ଥିଲା, ଯେବେ ପୁନର୍ଜନ୍ମ ସର୍ବବାଦୀସମ୍ମତ ସରଳ ବିଶ୍ୱାସ ଥିଲା ।

ଗୀତା ଆଲୋଚନା ଓ ମହାଭାରତ ଆଲୋଚନା ଆଗରୁ କରାଯାଇଅଛି, ବର୍ତ୍ତମାନ କେବଳ ଆତ୍ମା ଓ ପୁନର୍ଜନ୍ମର ଆଲୋଚନା ପ୍ରୟୋଜନୀୟ । ଏବେ କୃଷ୍ଣାର୍ଜୁନ କାଳ୍ପନିକ ହେବାରୁ କୃଷ୍ଣ ଓ ଅର୍ଜୁନର ନାମ ନ ନେଇ ଗୁରୁଶିଷ୍ୟ ନାମରେ ଆରମ୍ଭ କରାଯାଉ ।

ଶିଷ୍ୟ କହିଲେ, ଯୁଦ୍ଧ ବ୍ୟାପାରରେ ପ୍ରବୃତ୍ତ ହେଲେ ପରପକ୍ଷ ଓ ସ୍ୱପକ୍ଷ ଲୋକ ଓ ଆତ୍ମୀୟମାନେ ନଷ୍ଟ ହେବେ, ଏପରି ଜନକ୍ଷୟ ଓ କୁଳକ୍ଷୟକାରୀ ଯୁଦ୍ଧରେ ପ୍ରବୃତ୍ତ ହେବି ନାହିଁ । ରୁଧିର ପ୍ରଦିଗ୍ଧ ଭୋଗ ଅପେକ୍ଷା ବନବାସ ଭଲ । ଶିଷ୍ୟର ଏତାଦୃଶ ଜ୍ଞାନଗର୍ଭକ ଉକ୍ତିରେ ଗୁରୁର ଉତ୍ତର ଯେ ଅଶୋଚ୍ୟ ମାନଙ୍କ ନିମନ୍ତେ ପଣ୍ଡିତମାନେ ଶୋକ କରନ୍ତି ନାହିଁ । ତୁମ୍ଭେ ଅଶୋଚ୍ୟମାନଙ୍କ ନିମନ୍ତେ ଶୋକ କରୁଅଛ । ଏହା କି ଉପଯୁକ୍ତ ଶିକ୍ଷା ?

ହିନ୍ଦୁ ଶାସ୍ତ୍ରାନୁସାରେ ମୋକ୍ଷହିଁ ଜୀବନର ପରମ ଲକ୍ଷ୍ୟ, କାର୍ଯ୍ୟତଃ ହେଉ ବା ନହେଉ ସାରା ଶାସ୍ତ୍ରର ଉପଦେଶତ ଏହି । ସଂସାରରୁ ନିରସ୍ତ ହେବା, ବୈରାଗ୍ୟ ଅବଲମ୍ବନ କରିବା ମୁକ୍ତି କାମନାରେ ଅରଣ୍ୟବାସ କରିବା ତ ଶାସ୍ତ୍ରର ଉପଦେଶ । ଏଥିର ବିପରୀତ ଉପଦେଶ ତ ଅନ୍ୟ କୌଣସି ଶାସ୍ତ୍ରରେ ଦେଖାଯାଏ ନାହିଁ । ତେବେ ଅର୍ଜୁନର ବୈରାଗ୍ୟ କି ଅଶାସ୍ତ୍ରୀୟ ? ରକ୍ତମାଂସ ଶରୀରଧାରୀ ଜୀବ ମନୁଷ୍ୟ ପରସ୍ପର ସମ୍ବନ୍ଧ ଶରୀରରେ ଓ ମନରେ । ସାଂସାରିକ ବ୍ୟାପାରରେ ଆତ୍ମାର କଥା ଭାବନ୍ତି ନାହିଁ କିମ୍ବା ଏହା ସ୍ୱାଭାବିକ ନୁହେଁ । ଅର୍ଜୁନ ଏତେଗୁଡ଼ିଏ ସ୍ୱଜନ ବାନ୍ଧବର ପ୍ରାଣନାଶର ନିଶ୍ଚୟତା ଆଶଙ୍କା କରି ବିମୂଢ଼ ହେବା ସ୍ୱାଭାବିକ । ତେବେ ଅର୍ଜୁନ ଆତ୍ମୀୟମାନଙ୍କର ପ୍ରାଣନାଶ ଏବଂ ଶରୀରରୁ ରକ୍ତପ୍ରବାହ ହେବ ଭାବି ଅସହ୍ୟ ମନ କଷ୍ଟରେ:—

'ଏତାନ୍‌ନହନ୍ତୁ ମିଚ୍ଛାମି ଘ୍ନତୋପି ମଧୁସୂଦନ' ବୋଲି କହିବା ସ୍ୱାଭାବିକ ନୁହେଁ କି ?

ତ୍ୟାଗହିଁ ମନୁଷ୍ୟ ଜୀବନର ପରମ ପୁରୁଷାର୍ଥ, ମୁକ୍ତିର ଚରମ ଉଦ୍ଦେଶ୍ୟ, ତେବେ ପାପକୁ ଭୟ କରିବା ଅର୍ଜୁନ ପକ୍ଷରେ ତ ସ୍ୱାଭାବିକ ଏଣୁ ଅର୍ଜୁନ କହିଲେ—

ଅହୋବତ ମହତପାପଂ କର୍ତ୍ତୁଂବ୍ୟବସିତା ବୟମା
ଯଦ୍ରାଜ୍ୟସୁଖ ଲୋଭେନ ହନ୍ତୁଂ ସ୍ୱଜନମୁଦ୍ୟତାଃ

କାହା ନିମନ୍ତେ ଏହି ଯୁଦ୍ଧ, କା ନିମନ୍ତେ ଏହି ଲୋକକ୍ଷୟ, କିଏ ମରିବ କିଏ ବଞ୍ଚିବ ଏଥିର ସ୍ଥିରତା କ'ଣ ? ଅର୍ଜୁନ ଯେ ଯୁଦ୍ଧରୁ ନିଷ୍କୃତି ପାଇବେ ଏଥିର ବା ନିଶ୍ଚୟତା କାହିଁ ? ଅର୍ଜୁନ କାହା ନିମନ୍ତେ ଯୁଦ୍ଧ କରିବେ ? ଯୁଧିଷ୍ଠିରଙ୍କ ପାଇଁ ତ ? ମୃତ୍ୟୁ ତ ସ୍ଥିରନିଶ୍ଚିତ— ଯେବେହେଲେ ତ ମରିବାକୁ ହେବ, କିଛିଦିନ ରାଜ୍ୟଭୋଗ କରିବାର ଆଡ଼ମ୍ବର ଓ ଲୋଭ ସମ୍ବରଣ କରି ହିମାଳୟରେ ତପସ୍ୟା କରି ଦେହତ୍ୟାଗ କଲେ ତ ପାରତ୍ରିକ ମୁକ୍ତି । ଚରମ ଲକ୍ଷ୍ୟ ଯାହା, ତାହା ଅର୍ଜୁନର ହୃଦୟକୁ ସ୍ପର୍ଶକଲା । ଏଣୁ ରୁଧିର ପ୍ରଦିଗ୍ଧ ଭୋଗ ଅପେକ୍ଷା ଭିକ୍ଷା ତ ଶ୍ରେୟ କହି ଅର୍ଜୁନ ତୁଷ୍ଣିଭାବ ଅବଲମ୍ବନ କଲେ । ଅର୍ଜୁନର ଉକ୍ତିଗୁଡ଼ିକ ଆମମାନଙ୍କ ବିବେଚନାରେ ଅକାର୍ଯ୍ୟ, ଦୁଷ୍ଟ, ଅସ୍ୱର୍ଗ୍ୟ ଅକୀର୍ତ୍ତିକର ମୋହ ନୁହେଁ ବରଂ ଶାସ୍ତ୍ରସମ୍ମତ ଜ୍ଞାନଗର୍ଭକ ମୁକ୍ତିପ୍ରଦ ଉକ୍ତି । ମାତ୍ର ଗ୍ରନ୍ଥଲେଖକ କୃଷ୍ଣ ମୁଖରେ ଏପରି ତିରସ୍କାର ବାକ୍ୟ ଉଚ୍ଚାରଣ କରାଇବା କାରଣ ଦେଖାଯାଉ ନାହିଁ । ସମଗ୍ର ଗୀତା ଆଲୋଚନା କଲେ ଦେଖାଯାଉଅଛି ଯେ କେତେଗୋଟିଏ ଶ୍ଳୋକ ପ୍ରବୃତ୍ତିମୂଳକ ଏବଂ ଅଧିକାଂଶ ନିବୃତ୍ତିମୂଳକ । ଯଦି ନିବୃତ୍ତିମୂଳକ ଉପଦେଶ ଦେବାର ଗୀତାର ଉଦ୍ଦେଶ୍ୟ ତେବେ ଅର୍ଜୁନ ତିରସ୍କୃତ ହେବାର କାରଣ କେଉଁଠାରେ ? ଯେବେ ଅର୍ଜୁନ ଯୁଦ୍ଧ କରିବାକୁ ପ୍ରତିଶ୍ରୁତ ହୋଇ ଠିକ୍ ସମୟରେ କାପୁରୁଷପଣ ଦେଖାଇ ଯୁଦ୍ଧବ୍ୟାପାରକୁ ପଣ୍ଡ କରିବାରେ ଚେଷ୍ଟିତ ତେବେ ତିରସ୍କାର ବାକ୍ୟ ସମୂହ ଉପଯୁକ୍ତ ଏବଂ ପ୍ରବୃତ୍ତିମୂଳକ ଉପଦେଶ ଗୋଟିକେତେ ଯଥେଷ୍ଟ । ତେବେ

ପ୍ରବୃତ୍ତି ଓ ନିବୃତ୍ତିମୂଳକ କେତେଗୁଡ଼ିଏ ପରସ୍ପର ବିରୋଧୀ ଉପଦେଶ ଅନ୍ୟ ଶାସ୍ତ୍ରରୁ ଉଦ୍ଧୃତ କରିବା ବା ଅନ୍ୟ ଶାସ୍ତ୍ରର ମର୍ମ ପ୍ରକାଶ କରିବାର ସାର୍ଥକତା କ'ଣ ?

ବର୍ତ୍ତମାନ ଗୀତାର ଆତ୍ମା ଓ ପୁନର୍ଜନ୍ମ କଥା ଆଲୋଚନା କରାଯାଉ । ଗୀତାର ଦ୍ୱିତୀୟ ଅଧ୍ୟାୟ ୧୧ ଶ୍ଳୋକରୁ ଉପଦେଶ ଆରମ୍ଭ ହେଲା ବଲାଯିବ ଯହିଁରେ କୃଷ୍ଣ କହିଲେ ଯେ ପଣ୍ଡିତମାନେ ମୃତ ଓ ଜୀବିତମାନଙ୍କ ନିମନ୍ତେ ଶୋକ କରନ୍ତି ନାହିଁ । ଯୋଦ୍ଧା ମଲା ଚିନ୍ତା କରେ ନାହିଁ—ଶୋକ କରେ ନାହିଁ, ଯୋଦ୍ଧାର ସ୍ତ୍ରୀ ଓ ଗୋଟିଏ ଶିଶୁ ସନ୍ତାନ ଅନାସ୍ତ ଓ ନିରାଶ୍ରୟ ହେଲେ ତାଙ୍କପାଇଁ କି ମଧ ଶୋକ କର ନାହିଁ ଯେବେ ପଣ୍ଡିତ ଆଖ୍ୟା ପାଇବା ଇଚ୍ଛା । ପଣ୍ଡିତ ମାଟି ନା ପଥର ? ଏ ଉପଦେଶ ଜଗତବାସୀ କେତେଜଣଙ୍କର ଗ୍ରାହ୍ୟ ? ଅଭିମନ୍ୟୁ ବଧରେ ଅର୍ଜୁନ ଓ ପାଣ୍ଡବବଂଶ ଏବଂ ସ୍ୱୟଂ କୃଷ୍ଣ ଗଡ଼ି ଗଡ଼ି କାନ୍ଦିଲେ କାହିଁକି ? ଭୀଷ୍ମ ପର୍ବର ଉପଦେଶ, ଦ୍ରୋଣପର୍ବରେ ଧୂଳିସାତ୍ ହେଲା । ପୁଣି କହିଲେ ଆମେମାନେ ଯେ ପୂର୍ବେ ନ ଥିଲେଁ ଏପରି ନୁହେଁ ଏବଂ ପରେ ଯେ ଆମ୍ଭେମାନେ ରହିବା ନାହିଁ ଏପରି ମଧ ନୁହେଁ । ଏହା ଗୋଟିଏ ପ୍ରମାଣ ଶୂନ୍ୟ ଅଳୀକ ବାକ୍ୟ ।

ପୁନର୍ଜନ୍ମର ଆରମ୍ଭ:—

ଦେହିନୋସ୍ମିନ ଯଥାଦେହେ କୌମାରଂ ଯୌବନଂ ଜରାଃ
ତଥା ଦେହାନ୍ତରପ୍ରାପ୍ତି ଧୀରସ୍ତତ୍ର ନମୁହ୍ୟତି ॥

ଦେହୀର ଏହି ଦେହରେ ଯେପରି ବାଲ୍ୟାବସ୍ଥା, ଯୌବନାବସ୍ଥା ଓ ବୃଦ୍ଧାବସ୍ଥା ହୋଇଥାଏ ସେହିପରି ଦେହାନ୍ତର ପ୍ରାପ୍ତି ହୁଏ । ବୁଦ୍ଧିମାନେ ପଣ୍ଡିତ, ଟୀକାକାରମାନେ ଏହି ଶ୍ଳୋକକୁ ଏତେଦୂର ଜଟିଳ କରିବାର ଚେଷ୍ଟା କରିଅଛନ୍ତି ଯେ ତାହା କଥନୀୟ ନୁହେଁ । ରଚକର ଅଭିପ୍ରାୟ ଏହି ଯେ ଜନ୍ମ ମୃତ୍ୟୁ ଅନିବାର୍ଯ୍ୟ ଏଥି ନିମନ୍ତେ ଶୋକର ପ୍ରୟୋଜନ କ'ଣ ? ଏହି ଦେହରେ ଏବଂ ଯଥା ତଥା ଶବ୍ଦକୁ ଅବଜ୍ଞା କରି— ଦେହାନ୍ତର ପ୍ରାପ୍ତି ଅର୍ଥେ ଅନ୍ୟ ଦେହଧାରଣ କରେ ଏହା ସିଦ୍ଧ କରିବାର ଚେଷ୍ଟାରେ ଅସ୍ତବ୍ୟସ୍ତ । ଦେହାନ୍ତର ପ୍ରାପ୍ତି ଅର୍ଥ ମୃତ୍ୟୁ । ଜୀବର ଜନ୍ମ ଉତ୍ତାରୁ ଚାରି ଅବସ୍ଥା, ଯଥା- ବାଲ୍ୟ, ଯୌବନ, ବାର୍ଦ୍ଧକ୍ୟ ଓ ମୃତ୍ୟୁ । କିମ୍ବା ଜୀବର ଜନ୍ମ ଓ ମୃତ୍ୟୁ ସ୍ୱାଭାବିକ । ଦେହାନ୍ତର ସହିତ ପ୍ରାପ୍ତି ଶବ୍ଦ ଥିବାରୁ ଟୀକାକାରମାନେ ପୁନର୍ଜନ୍ମର କଳ୍ପନା କଲେ । ପ୍ରାପ୍ତି ଓ ଲାଭ ଶବ୍ଦଯୋଡ଼ିକ ମୃତ୍ୟୁ ବୁଝାଇବାକୁ ବ୍ୟବହୃତ ହୁଏ । ଗଙ୍ଗାଲାଭ, ଗଙ୍ଗାପ୍ରାପ୍ତି, ସ୍ୱର୍ଗଲାଭ ସ୍ୱର୍ଗପ୍ରାପ୍ତି, ଅର୍ଥ ତ ମୃତ୍ୟୁ । ମୃତ୍ୟୁ ଉତ୍ତାରୁ ଯେବେ ଶରୀର ଯାଇ ସ୍ୱେଚ୍ଛାରେ ଗଙ୍ଗାରେ ନ ପଡ଼େ ତେବେ ଗଙ୍ଗାପ୍ରାପ୍ତି ହେଲା କାର ? ଶରୀରଟା ମୃତ୍ୟୁ ସଙ୍ଗେ ସଙ୍ଗେ ସ୍ୱର୍ଗକୁ ଯିବାର ତ କେହି ଦେଖି ନାହାନ୍ତି ସ୍ୱର୍ଗପ୍ରାପ୍ତି କହନ୍ତି କାହିଁକି ? ଦେହାନ୍ତର ପ୍ରାପ୍ତି, ସ୍ୱର୍ଗ ପ୍ରାପ୍ତି ଗଙ୍ଗାପ୍ରାପ୍ତି ମୃତ୍ୟୁ ଶବ୍ଦର ନାମାନ୍ତର ମାତ୍ର, ଏଥିରେ ପୁନର୍ଜନ୍ମର ଗନ୍ଧ ଲେଶ ନାହିଁ । ଛୋଟ ଲୋକଙ୍କର ମୃତ୍ୟୁ ଘଟିଲେ ମଲା କହନ୍ତି ବଡ଼ଲୋକ ମଲେ, ରାଜା ମଲେ ଦେହାନ୍ତର ପ୍ରାପ୍ତି, ଗଙ୍ଗାପ୍ରାପ୍ତି ସ୍ୱର୍ଗପ୍ରାପ୍ତି କହନ୍ତି । ହିନ୍ଦୀରେ କହନ୍ତି ଦେହାନ୍ତ ହୋ ଗୟା । ପୁନର୍ଜନ୍ମ ହେବ କା'ର ? ପ୍ରାଣବାୟୁ ଘଟରୁ ଚାଲିଗଲା । ମନୁଷ୍ୟ ମଲା । ସେହି ମୃତ ଶରୀରକୁ ନେଇ ଶ୍ମଶାନରେ ପୋଡ଼ି ପକାଇଲେ । ଦେହର ତ ପୁନର୍ଜନ୍ମ ହେଲା ନାହିଁ । ତେବେ ପୁନର୍ଜନ୍ମ କା'ର ? କାଳ୍ପନିକ ଆତ୍ମାର, ତାହା ତ ମଧ ନୁହେଁ । ଆତ୍ମା ଜନ୍ମହେବାର ସ୍ୱୀକାର କଲେ ସେହି ଗୀତା ଉକ୍ତିରେ ବିରୋଧ ଘଟୁ ନାହିଁ କି ?

ନା ଜାୟତେ ମ୍ରିୟତେ ବା କଦାଚିନ୍ନାୟଂ
ଭୂତ୍ୱାଂ ଭବିତା ବା ନ ଭୂୟଃ
ଚାଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ ।୨୦।

ଏହି ଆତ୍ମା ଜନ୍ମ ହୁଏ ନାହିଁ । ମରେ ନାହିଁ, ଉତ୍ପନ୍ନ ହୋଇ ଅସ୍ତିତ୍ୱ ଲାଭ କରେ ନାହିଁ । ଏହାର ଜନ୍ମ ନାହିଁ । ସର୍ବଦା ଏକରୂପ, ସଦାବିଦ୍ୟମାନ, ପରିଣାମଶୂନ୍ୟ ଶରୀର ନାଶରେ ତା'ର ନାଶ ନାହିଁ । ଶ୍ରୀଧରଙ୍କର ପ୍ରାଣବାୟୁ ଚାଲିଗଲା— କେହି ଦେଖିଲେ ନାହିଁ । ପିଣ୍ଡ ପଡ଼ି ରହିଲା । ତାକୁ ଖଣ୍ଡେ କାଠପରି ବନ୍ଧୁବାନ୍ଧବ ଆତ୍ମୀୟମାନେ ବହିନେଇ ଶ୍ମଶାନରେ ଭସ୍ମ କରିଦେଲେ । କିଏ ଗଲା କିଏ ପୁନର୍ଜନ୍ମ ଗ୍ରହଣ କଲା ? ଯିବା ପଦାର୍ଥକୁ କେହି ଦେଖିଲେ କି ? ନାହିଁ । ମୃତ୍ୟୁବେଳେ ବା ଦାହନ କାଳରେ ଯିବାର କେହି କିଛି ଦେଖିଲେ ନାହିଁ, ତେବେ ଗଲା କିଏ ଜନ୍ମଗ୍ରହଣ କଲା କିଏ ? ଆତ୍ମା ଆତ୍ମା ବୋଲି ବୃଥା ଚିତ୍କାର କାହିଁକି ? ପୁଣି ଉକ୍ତ ୨୦ ଶ୍ଳୋକରେ ଆତ୍ମା ଷଡ଼ବିକାରଶୂନ୍ୟ ଏଣୁ ତା'ର ଜନ୍ମ ମରଣ ନାହିଁ ବୋଲି ସ୍ୱୀକାର କଲେ, ଶ୍ରୀଧରଙ୍କର ଆତ୍ମା ଶରୀରରୁ ଯାଇ ନାହିଁ ଏବଂ ଆତ୍ମା ଅଜ ଏଣୁ ଜନ୍ମ ହୋଇ ନାହିଁ । ୨୦ ଶ୍ଳୋକ ସହିତ ୧୩ ଶ୍ଳୋକ ସଙ୍ଗତି କାହିଁ ? ଅଥଚ ଆତ୍ମା ଓ ଜନ୍ମ ମୃତ୍ୟୁନେଇ ବୃଥା ବାକ୍‌ବିତଣ୍ଡା କାହିଁକି ? ଏଘେନି ପରସ୍ପର ବିରୋଧ ଶ୍ଳୋକ ଅନେକ ଅଛି ସେସବୁ ଆଲୋଚନାର ନିଷ୍ପ୍ରୟୋଜନ ।*

●

* ଏହି ରଚନା ଶେଷରେ କ୍ରମଶଃ ଲେଖା ହୋଇଥିଲା କିନ୍ତୁ ଏହାର ପରବର୍ତ୍ତୀ ଅଂଶ ଶଙ୍ଖ ବା ଅନ୍ୟ ପତ୍ରିକାରେ ଦୃଷ୍ଟିଗୋଚର ହୁଏ ନାହିଁ– **ସମ୍ପାଦକ ।**

# ନାଟକ ବିଭାଗ

## ପ୍ରାକ୍‌ସୂଚନା

ବାମଣ୍ଡାରେ ନାଟ୍ୟ ସାହିତ୍ୟର ଏକ ପ୍ରମୁଖ ପରମ୍ପରା ସୃଷ୍ଟି ହୋଇସାରିଥିଲା । ବଙ୍ଗଳା ନାଟକର ଅନୁବାଦ ସହିତ ମୌଳିକ ନାଟକ ରଚନାର ଆଭିମୁଖ୍ୟ ପ୍ରକାଶ ପାଇଥିଲା । ୧୮୭୦ ବେଳକୁ ବାମଣ୍ଡାର ଯାତ୍ରା ଅଭୂତପୂର୍ବ ସଫଳତା ଲାଭ କରିଥାଏ । ଲୋକ ନାଟକର ଧାରା ସହିତ ଶିଷ୍ଟ ନାଟକର ଅପୂର୍ବ ସଙ୍ଗମ ଘଟିଥାଏ । ବିଶିଷ୍ଟ କବିମାନଙ୍କର କାବ୍ୟକୁ ନାଟ୍ୟରୂପ ପ୍ରଦାନ କରାଯାଇ ମଞ୍ଚସ୍ଥ କରାଯାଉଥିଲା ।

ଦୁଷ୍ମନ୍ତ ଦେବଙ୍କ ଯତ୍ନରେ ବାମଣ୍ଡା ଥିଏଟର ପାର୍ଟି ୧୯୧୦ରେ ଗଠନ ହୁଏ । ରାଜା ଦିବ୍ୟଶଙ୍କର ଦେବଙ୍କ ପ୍ରୋତ୍ସାହନ ଫଳରେ ୧୯୧୮ରେ ଗାଙ୍ଗେୟ ରଙ୍ଗମଞ୍ଚ ଆଧୁନିକ ବେଶଭୂଷା ଓ ମଞ୍ଚସଜ୍ଜା ସହିତ ପ୍ରତିଷ୍ଠିତ ହୁଏ । ଏପରି ଏକ କୁଳୀନ ନାଟ୍ୟ ପରମ୍ପରାକୁ ସମୃଦ୍ଧ କରିବାପାଇଁ ସଂସ୍କାରକ ଜଳନ୍ଧର ନାଟ୍ୟ ରଚନା କରନ୍ତି । ନାଟ୍ୟ ମାଧ୍ୟମରେ ସାହିତ୍ୟିକ ବାର୍ତ୍ତା ଶାଣିତ ହୁଏ । ଜଳନ୍ଧର ସମାଜ ସଂସ୍କାରର ବାର୍ତ୍ତା ସହିତ ଜାତୀୟବାଦୀ ଚେତନା ଉଦ୍ରେକ କରିବାପାଇଁ ନାଟକ ସୃଷ୍ଟି କଲେ ।

ଜଳନ୍ଧରଙ୍କ ସର୍ବମୋଟ ଦୁଇଟି ଏକାଙ୍କିକା 'ବିଚ୍ଛେଦ' ଓ 'ରାଣାସଙ୍ଗଙ୍କ ମହାପ୍ରୟାଣ' ଏବଂ ଦୁଇଟି ନାଟକ 'ଉଦୟସିଂହ' ଓ 'ଦେବସଭା' ସଂଗ୍ରହ ହୋଇପାରିଛି । 'ବିଚ୍ଛେଦ' ୧୯୩୨ ମସିହା ସହକାର ୧୩।୧୨ରେ, ରାଣାସଙ୍ଗଙ୍କ ମହାପ୍ରୟାଣ ୧୯୩୩ ସହକାର ୧୪।୫ ସଂଖ୍ୟାରେ 'ଦେବସଭା' ୧୯୩୦ ଉତ୍କଳ ସାହିତ୍ୟ ୩୩।୮ ସଂଖ୍ୟାରେ ଓ 'ଉଦୟ ସିଂହ' ୧୯୩୪ ଉତ୍କଳ ସାହିତ୍ୟ ୩୮ ବର୍ଷ ୪ର୍ଥ, ୫ମ, ୮ମ ଓ ୯ମ ସଂଖ୍ୟାରେ ପ୍ରକାଶିତ ।

ଜଳନ୍ଧର ଜଣେ ନାଟ୍ୟପ୍ରାଣ ବ୍ୟକ୍ତି ଥିଲେ । ସେ ନାଟକ ସହିତ ଜଡ଼ିତ ଥିଲେ । ନାଟ୍ୟ ରଚନା ସହିତ ନାଟ୍ୟ ନିର୍ଦ୍ଦେଶନା ମଧ୍ୟ ସେ ଦେଉଥିଲେ । ତାଙ୍କର ଅନେକ ଗଳ୍ପରେ ଅପ୍ରତ୍ୟାଶିତ ନାଟକୀୟତା ଏବଂ ନାଟ୍ୟଧର୍ମୀ ସଂଳାପ ପ୍ରୟୋଗର ଦୃଷ୍ଟାନ୍ତ ଦୃଷ୍ଟିଗୋଚର ହୁଏ ।

ସମ୍ପାଦକ

# ଦେବସଭା

(ଏକାଙ୍କ ନାଟକ)

***/ସୁସଜ୍ଜିତ ସଭାଗୃହ । ଉଚ୍ଚାସନରେ ଇନ୍ଦ୍ର, ବରୁଣ, ଯମ ଅଗ୍ନି, ମିତ୍ର, ତ୍ୱଷ୍ଟା, ଅଶ୍ୱିନୀକୁମାର ପ୍ରଭୃତି ଦେବତାଗଣ ଉପବିଷ୍ଟ । ପଟଉତ୍ତୋଳିତ ହେଲାରୁ ଦୌବାରିକ ଦିବ୍ୟ ପରିଚ୍ଛଦ ଅଳଙ୍କାର ଭୂଷିତ ଏବଂ ଖିଲାତଜମାଧାରୀ ଜଣ କେତେ ରାଜା ଓ ଜମିଦାରଙ୍କୁ ଏବଂ ଭାରତୀୟ ସମସ୍ତ ପ୍ରଦେଶୀୟ ପଣ୍ଡିତ କେତେଜଣଙ୍କୁ ନେଇ ସଭାସ୍ଥଳରେ ପ୍ରବେଶ କରାଇଲା । ହିନ୍ଦୁଗଣ ଦେବତାମାନଙ୍କ ସମ୍ମୁଖକୁ ଆସୁଥିବାବେଳେ ଦେବତାମାନେ ଏମାନଙ୍କୁ ଦେଖି ଆପଣା ଆପଣା ମଧ୍ୟରେ ଏମାନଙ୍କର ରୂପରେଖର, ଚାଲିଚଳଣର ସାମାନ୍ୟ ସମାଲୋଚନା କରୁଥିଲେ ।/***

ଅଗ୍ନି - ଏମାନଙ୍କ ଆହ୍ୱାନରେ ଆମ୍ଭେମାନେ ଏ ସଭାରେ ଉପସ୍ଥିତ, ନା ? ଏମାନେ କି ସେହି ଆର୍ଯ୍ୟମାନଙ୍କର ସନ୍ତାନ, ଯେଉଁମାନେ ଆମ୍ଭମାନଙ୍କ ପୂଜା ଓ ଧ୍ୟାନରେ ରତ ଥିଲେ ।

ଇନ୍ଦ୍ର - ତାହା କେତେ ଦିନର କଥା ଅଗ୍ନି ?

ଅଗ୍ନି - ଯୁଗ ଯୁଗାନ୍ତରର କଥା । ତେତେବେଳେ ପୁଣ୍ୟ ଶ୍ଳୋକ ଆର୍ଯ୍ୟ ସନ୍ତାନଗଣ ସରସ୍ୱତୀ ତୀରରେ ଏହି ବିଶ୍ୱ ଶକ୍ତିର ମହିମାରେ ମୋହିତ ହୋଇ ବେଦମନ୍ତ୍ର ଦ୍ୱାରା ସେହି ପ୍ରକୃତିର ଉପାସନା ଓ ସ୍ତବଗାନରେ ପ୍ରବୃତ୍ତ ହେଲେ, ତାହା ସ୍ମରଣ ହେଉଅଛି । ସେ ଶୁଭ୍ର, ଦୀର୍ଘ, ଅସାଧ ସାଧନକ୍ଷମବପୁ, ପ୍ରଶସ୍ତ ଲଲାଟ, ବିସ୍ତୃତ ବକ୍ଷ ବଳିଷ୍ଠ ବାହୁ ଅଦ୍ୟାପି ମନେ ପଡୁଅଛି । ଏମାନଙ୍କଠାରେ ସେ ସୌମ୍ୟ ସୁଦୃଶ୍ୟରୂପ ତ ଆଦୌ ନାହିଁ; ପୁରୁଷତ୍ୱର ତେଜ ମଧ୍ୟ ନାହିଁ । ସହିଷ୍ଣୁତାର ଓ ସଂଯମର ଚିହ୍ନ ଲେଶମାତ୍ର ଦେଖା ପଡୁ ନାହିଁ । ରୂପର ପରିବର୍ତ୍ତନ ଦେଖାଗଲା, ଗୁଣର କି ପରିବର୍ତ୍ତନ ଘଟିଅଛି, ଆଳାପରୁ ତହିଁର ପରିଚୟ ମିଳିବ ।

(ସମସ୍ତେ ଆସନ ସମୀପସ୍ଥ ହେବାରୁ ଯୁକ୍ତ କରରେ ନତମସ୍ତକ ହେଲେ । ଦାକ୍ଷିଣାତ୍ୟ ରାମାନୁଜ ଶାସ୍ତ୍ରୀ ସଗର୍ବରେ ଊର୍ଦ୍ଧ୍ୱମୁଖ ହୋଇ ଅନାଇ ରହିଲେ । ଦୌବାରିକର ରୌପ୍ୟବଳୟ ଭୂଷିତ ବେତାଗ୍ର ଶାସ୍ତ୍ରୀଙ୍କ କେଶବିହୀନ ମସ୍ତକୋପରେ ଚଟାସ କରି ବାଜିବାରୁ ଦଣ୍ଡବତ ହେଲେ । ସମସ୍ତେ ଯୁକ୍ତକର ହୋଇ ଦଣ୍ଡାୟମାନ ହେଲେ ।)

ଇନ୍ଦ୍ର - ଏ ଦେବସଭା ଆହ୍ୱାନର କାରଣ କ'ଣ ?

(କିଏ ଅଗ୍ରବକ୍ତା, ଏହା ଆଗରୁ ସ୍ଥିର ହୋଇ ନ ଥିଲା ଏଣୁ ପରସ୍ପର ମୁଖାବଲୋକନ କରିବାକୁ ଲାଗିଲେ ।)

ଗଙ୍ଗାଧର - ପ୍ରଭୁ, ଆମ୍ଭମାନଙ୍କ ପୂର୍ବପୁରୁଷଗଣ ଆପଣମାନଙ୍କ ସେବା କରି ଆପଣମାନଙ୍କ ଅନୁଗ୍ରହରୁ ଏ ଦେଶରେ ପ୍ରଭୁତ୍ୱ ଓ ପ୍ରତିପତ୍ତି ବିସ୍ତାର କରି ସୁଖ-ସ୍ୱାଚ୍ଛନ୍ଦ୍ୟରେ କାଳାତିପାତ କରୁଥିଲେ । ଆମ୍ଭେମାନେ ସେମାନଙ୍କର ବଂଶଧର । ଆମ୍ଭମାନଙ୍କର ଦୁଃଖ ଓ ଦୈନ୍ୟଦଶା ଉପସ୍ଥିତ ହେବାରୁ ଆପଣମାନଙ୍କ ପଦାନତ ହୋଇଅଛୁଁ । ଆମ୍ଭମାନଙ୍କର ସର୍ବବିଧ ଦୁଃଖ ଦୂର କରାଯାଉ, ଏହି ପ୍ରାର୍ଥନା ।

ଦେବତାମାନେ– ହୁଁ

ଶଶାଙ୍କ ଶେଖର ଭଟ୍ଟାଚାର୍ଯ୍ୟ - ହେ ଅମରଗଣ !

ଶୀତିକଣ୍ଠ ଦାଶ - ହେ ଇନ୍ଦ୍ରାଦି ସୁରଗଣ !

ରାମାନୁଜ ଶାସ୍ତ୍ରୀ- ହେ ବିବୁଧଗଣ !

ଯମ - ଏ କ'ଣ, ଏ କ'ଣ ? ସମସ୍ତେ ଯେ ଏକ ସଙ୍ଗରେ ଚିତ୍କାର କରିବାକୁ ଆରମ୍ଭ କଲ, ତୁମ୍ଭମାନଙ୍କ ମଧ୍ୟରୁ ଯେ ସବୁକଥା ବୁଝାଇ କହିପାରିବ, ଏପରି କେହି ନାହାନ୍ତି କି ? ଆଉ ତୁମ୍ଭେମାନେ ଜଣକୁ ଅଗ୍ରବକ୍ତା ଠିକ୍ ନ କରି ଏଠାକୁ ଆସିଅଛ । ଏହା ଦେବସଭା, ଏଠାରେ ବେଆଦବି କାହିଁକି ?

ଜଣେ ରାଜା- ସତ କଥା, ଜଣେ କହିବା ଉଚିତ । ତୁମ୍ଭେମାନେ ଏକା ବେଳକେ ହୁରି ଆରମ୍ଭ କଲଯେ । ଏ କ'ଣ ଶାସ୍ତ୍ରାଳାପ, ନା ଭୋଜି ? ମଦନ ସୁନ୍ଦର ଓଝା, ତୁମେ ସ୍ପଷ୍ଟାକ୍ଷରରେ ସବୁ କହିଯାଅ ଆଉ ସମସ୍ତେ ତୁନି ହୋଇ ଶୁଣ । ପ୍ରୟୋଜନ ହେଲେ ଦେବତାମାନଙ୍କର ଅନୁମତି ନେଇ କହିପାରିବ ।

ରାମାନୁଜ - (ସ୍ୱଗତ) ମୁଁ କହିଥିଲେ ପରା ଭଲ ହୋଇଥାଆନ୍ତା । ଏ ମୈଥିଳୀ, ସମସ୍ତଙ୍କର ଦୁଃଖ ବୁଝାଇ କହିବା ଏହାଙ୍କ ପକ୍ଷରେ ଅସମ୍ଭବ । ହେଉ, ଦେଖାଯାଉ ।

ଶଶାଙ୍କ - (ସ୍ୱଗତ) ଏହାଙ୍କଦ୍ୱାରା ବୋଧହୁଏ ବଙ୍ଗର ସ୍ୱାର୍ଥ ମାରାଯିବ ।

ଶୀତିକଣ୍ଠ - (ସ୍ୱଗତ) ଓଡ଼ିଆ ଓ ମୈଥିଳୀ ସ୍ୱାର୍ଥ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ।

ଇନ୍ଦ୍ର ଓ ଅଗ୍ନି- (ଆପଣା ମଧ୍ୟରେ) ଦେଢ, ଦୁଃଖ ଜଣାଇବାକୁ ଆସି ମଧ୍ୟ କ'ଣ କହିଲେ, କିଏ କହିବ, ଏଥିର ସ୍ଥିରତା ନାହିଁ । ଯାହାକୁ ମୁଖ୍ୟ ବ୍ୟକ୍ତି ବୋଲି ସ୍ଥିର କରାଗଲା, ସେକଥା କହିବାକୁ ଆରମ୍ଭ କଲା ବେଳେ ପରସ୍ପର ମଧ୍ୟରେ ଫୁସୁରଫାସର ଚାଲିଅଛି ଏବଂ ସ୍ୱଗତ ମଧ୍ୟ ଚାଲିଅଛି । ଦେଖିଲେ ହସମାଡ଼େ ।

ଗଣ ମଦନ- ବିବୁଧଗଣ, ଆପଣମାନେ ଆମ୍ଭମାନଙ୍କ ପୂର୍ବ ପୁରୁଷଗଣଙ୍କର ଆରାଧ୍ୟ ଦେବତା ।

ଇନ୍ଦ୍ର - ଯଥାର୍ଥ ।

ମଦନ - ଆଜି ଆପଣମାନେ ଭାରତବାସୀଙ୍କର ଆରାଧ୍ୟ ଓ ପୂଜ୍ୟ—

ଅଗ୍ନି - କିଏ କହିଲା ? ନାହିଁତ, ଆର୍ଯ୍ୟମାନେ ଆମ୍ଭମାନଙ୍କର ପୂଜକ ସତ, ମାତ୍ର ଆଧୁନିକ ଭାରତବାସୀ ଆମ୍ଭମାନଙ୍କର ପୂଜକ ନୁହନ୍ତି । ତୁମ୍ଭେ ଜଣ କେତେ ସମସ୍ତେ ଭାରତବାସୀଙ୍କର ପ୍ରତିନିଧି କି ?

ମଦନ - ହଁ, ନା । (ମୁଣ୍ଡ ଆଉଁସିବା)

ରାମାନୁଜ - ପ୍ରଭୁ, ମୋତେ କହିବାକୁ ଅନୁମତି ଦିଆଯାଉ । ଏଠାରେ ଅଧିକାଂଶ ବ୍ରାହ୍ମଣ ଓ କ୍ଷତ୍ରିୟ ଉପସ୍ଥିତ ଥିବାରୁ ଆମ୍ଭ ଭାରତବାସୀଙ୍କର ପ୍ରତିନିଧି ବୋଇଲେ ଦୋଷ ନାହିଁ । ବ୍ରାହ୍ମଣ କ୍ଷତ୍ରିୟ ନେଇ ତ ଭାରତବର୍ଷ, ଶୂଦ୍ରାଦି ଏମାନଙ୍କର ଦାସ । ସେମାନଙ୍କ ମତରେ ପ୍ରୟୋଜନ ନାହିଁ, ବ୍ରାହ୍ମଣ ବାକ୍ୟ ମାନିବାକୁ ସେମାନେ ବାଧ୍ୟଥିଲେ, ଏବେ ସେହି ଭାବରେ ମାନିବେ ବୋଲି ସେମାନଙ୍କୁ ବାଧ୍ୟ କରାଯାଉ, ଏହାହିଁ ଆମ୍ଭମାନଙ୍କର ପ୍ରାର୍ଥନାର ମଧ୍ୟ ଗୋଟିଏ ପ୍ରଧାନ ବିଷୟ । ବାକି ଯେ କେତେଟା ଜାତି ଅଛନ୍ତି, ସେମାନେ ଆମ୍ଭ ପୂର୍ବପୁରୁଷଙ୍କ ତୁଳନାରେ ନବାଗତ, ନବ ଔପନିବେଶକ ଜାତି ।

ଯମ - ଏ ଜଣେ ବେଆଦବ— ସ୍ୱାର୍ଥପର, ସଂଯତ ଭାବରେ କଥା କହିବାକୁ ଅକ୍ଷମ— ଏହାକୁ ବକ୍ ବକ୍ ହେବାରୁ ବନ୍ଦ କରାଯିବା ଉଚିତ ।

ଇନ୍ଦ୍ର - ତଥାସ୍ତୁ ।

ମଦନ - ଭାରତବର୍ଷ ହିନ୍ଦୁ ପ୍ରଧାନ ଦେଶ । ଏଠାରେ ମୁସଲମାନ, ଖ୍ରୀଷ୍ଟିୟାନ ମଧ୍ୟ ବାସ କରନ୍ତି, ସେମାନେ ବିଧର୍ମୀ । ହିନ୍ଦୁମାନଙ୍କ ଦେବତାଙ୍କୁ ପୂଜା କରିବା, ପ୍ରାର୍ଥନା କରିବା ତେଣେ ଥାଉ, ଦ୍ୱେଷ ଓ ଘୃଣା କରନ୍ତି ବୋଇଲେ ଚଳେ । ସୁତରାଂ ସେମାନେ ଆମ୍ଭ ସଙ୍ଗରେ ଆସି ନାହାନ୍ତି । ଆପଣମାନେ ଆମ୍ଭମାନଙ୍କର ପିତା, ମାତା, ତ୍ରାଣକର୍ତ୍ତା, ଅଭୟଦାତା, ଧର୍ମାବତାର, ଆଉ ବା କ'ଣ ନୁହନ୍ତି, ଏଣୁ ଆମ୍ଭେମାନେ ଶରଣାଗତ ହେଲୁଁ ।

ଇନ୍ଦ୍ର - ଭଲ କଥା । ତେବେ ଅନ୍ୟ ଧର୍ମାବଲମ୍ବୀମାନେ ସୁଖ ଶାନ୍ତି ଓ ସୁବିଚାର ପାଇବା ନିମନ୍ତେ କି ଉପାୟ ଅବଲମ୍ବନ କରୁଅଛନ୍ତି ଜାଣ କି ?

ମଦନ - ସେମାନଙ୍କ ସଙ୍ଗରେ ଏ ବିଷୟର ପରାମର୍ଶ କରି ନାହୁଁ ସତ, ତଥାପି ଅନୁମାନ କରୁଁ ଯେ, ମୁସଲମାନଗଣ ମହମ୍ମଦଙ୍କ ଜରିଆରେ ଖୋଦାଙ୍କୁ ଜଣାଇବେ ଏବଂ ଖ୍ରୀଷ୍ଟିୟାନମାନେ ଯିଶୁଖ୍ରୀଷ୍ଟଙ୍କ ଜରିଆରେ Godକୁ ଜଣାଇବେ ।

ରାମାନୁଜ - ଆଉ ଆମ୍ଭେମାନେ ଆପଣମାନଙ୍କ ଜରିଆରେ ବା ସାହାଯ୍ୟରେ ବିଷ୍ଣୁ—

ଦୌବାରିକ- ଚୁପ୍ ଚୁପ୍ !

ଇନ୍ଦ୍ର - (ତୁନି ତୁନି ଅଗ୍ନିଙ୍କୁ) ମହମ୍ମଦ, ଖ୍ରୀଷ୍ଟ ଓ ଆମ୍ଭମାନଙ୍କ ମଧ୍ୟରେ ଗୋଟାଏ ଅନ୍ତର୍ବିବାଦ ଘଟାଇବା କଳ୍ପନା ଏଥିର ମୂଳରେ। କି ଅସଙ୍ଗତ ! (ପ୍ରକାଶ୍ୟରେ) କହିଯାଅ ।

ମଦନ - ଆମ୍ଭମାନଙ୍କର ଦୁର୍ଭାଗ୍ୟ, ଆମ୍ଭମାନଙ୍କ ପୂର୍ବପୁରୁଷଗଣଙ୍କର ଅପରିଣାମଦର୍ଶିତା ହେତୁରୁ ଏ ଦେଶ ପ୍ରଥମେ ଭିନ୍ନ ଧର୍ମାବଲମ୍ବୀ ମୁସଲମାନଙ୍କ ହସ୍ତଗତ ହେଲା, ତହିଁ ଉତ୍ତାରୁ ପୁଣି ବର୍ତ୍ତମାନ ଶ୍ୱେତଦ୍ୱୀପନିବାସୀ ବ୍ରିଟିଶ ସମ୍ରାଟ୍‌ଙ୍କର ବାହୁ-ଛାୟାଶ୍ରିତ ।

(ଦେବତାମାନଙ୍କ ମଧ୍ୟରେ ମୃଦୁହାସ୍ୟ)

ଆମ୍ଭେମାନେ ବିଧିବିଧାନ ଲଙ୍ଘନ କରିବାକୁ ନାହିଁ । ନିଜ ନିଜ କପାଳକୁ ଆଦରି ଦିନାତିପାତ କରୁଅଛୁଁ, ଆମ୍ଭମାନଙ୍କ ଧର୍ମରେ ହସ୍ତକ୍ଷେପ ନୋହିଲେ ଆମ୍ଭମାନଙ୍କର ପ୍ରାପ୍ୟ ମିଳୁଥିଲେ ଆମ୍ଭେମାନେ ସର୍ବଦା ସନ୍ତୁଷ୍ଟ । ବିଧିବ୍ୟବସ୍ଥା ଅଛି ଯେ, ରାଜାମାନେ ପ୍ରଜାଙ୍କଠାରୁ କର ଗ୍ରହଣ କରି ନିଜେ ସୁଖ-ସ୍ୱାଚ୍ଛନ୍ଦ୍ୟରେ କାଳାତିପାତ କରିବେ, ଦେବତା ବ୍ରାହ୍ମଣଙ୍କୁ ବିଧିପୂର୍ବକ ଦାନ ଦେବେ, ଆଉ ପ୍ରଜାପାଳନ କରିବେ । ପୂର୍ବେ ଯୁଦ୍ଧ ବିଗ୍ରହ ଥିଲା, ଏବେ ଗଭର୍ଣ୍ଣମେଣ୍ଟଙ୍କ ସୁଶାସନରୁ ସେ ଝଞ୍ଝଟ ନାହିଁ । 'ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ'। ଅନ୍ୟ ବର୍ଣ୍ଣମାନେ ବ୍ରାହ୍ମଣଙ୍କୁ ଯଥାବିଧି ସମ୍ମାନ କରିବେ, ତାଙ୍କର ବ୍ୟବସ୍ଥାକୁ ଲଙ୍ଘନ କରିବେ ନାହିଁ । ଏହା ଯଥାଯଥ ରୂପେ ପାଳିତ ହେଲେ ଭାରତରେ ଶାନ୍ତି ବିରାଜମାନ କରିବ । ମନୁ ପ୍ରବର୍ତ୍ତିତ ଧର୍ମ ଅକ୍ଷୁଣ୍ଣ ରହିବ । ପାଶ୍ଚାତ୍ୟ ଶିକ୍ଷା ଦେବା ଶାସକଙ୍କର ଦୋଷ । ଏହି ଶିକ୍ଷା ପ୍ରଭାବରୁ ଆଜି ଶୂଦ୍ରଗୁଡ଼ାକ, ଏମନ୍ତ କି ଅସ୍ପୃଶ୍ୟଗୁଡ଼ାକ ମଧ୍ୟ ବ୍ରାହ୍ମଣର ସମକକ୍ଷ ହେବାକୁ ବସିଲେଣି । ବ୍ରାହ୍ମଣର ଶାସନ, ଜାତି, ଧର୍ମ, କୁଳାଚାର ମାନିବାକୁ ନାରାଜ, ଧର୍ମ ସହିବ କିପରି ? ଏଣୁ ଭାରତର ଅବନତି ଏବଂ ଆପଣମାନଙ୍କର ବିମୁଖତା। ଆପଣମାନେ ଆମ୍ଭମାନଙ୍କ ପ୍ରାର୍ଥନାନୁସାରେ ପ୍ରସନ୍ନ ମନରେ ବିଧି ବ୍ୟବସ୍ଥା କରିଦେଲେ ବ୍ରାହ୍ମଣ୍ୟ-ଧର୍ମର ଅଭ୍ୟୁତ୍‌ଥାନ ହେବ, ବର୍ଣ୍ଣାଶ୍ରମ ଧର୍ମର ପ୍ରବର୍ତ୍ତନ ହେବ ଏବଂ ଆପଣମାନଙ୍କର ହବ୍ୟାଂଶ ବରାବର ଅକ୍ଷୁଣ୍ଣ ରହିବ ।

ଯମ - ସତେ, ବଡ଼ ଉପାଦେୟ ପ୍ରସ୍ତାବ, ଏଥିଉତ୍ତାରୁ ଯେବେ ଦେବତାମାନେ ତୁମ୍ଭମାନଙ୍କର ପକ୍ଷ ସମର୍ଥନ ନ କରନ୍ତି ତେବେ ସେମାନଙ୍କ ଦୁର୍ଭାଗ୍ୟ । ଲୋଭନୀୟ ଉତ୍କୋଚ ।

ମଦନ— ନା ପ୍ରଭୁ ଦୁର୍ଭାଗ୍ୟ କାହିଁକି ?

ଶ୍ରୀମଦ୍‌ଭାଗବତ ଗୀତାରେ ଅଛି—

ଦେବାନ ଭାବୟତାନେନ
ତେ ଦେବାଭାବୟନ୍ତୁ ବଃ
ପରସ୍ପରଂ ଭାବୟନ୍ତଃ
ଶ୍ରେୟଃ ପରମବାପସ୍ୟଥ

ଆପଣମାନଙ୍କୁ ଆମ୍ଭେମାନେ ସମ୍ବର୍ଦ୍ଧିତ କଲେ ଆପଣମାନେ ଆମ୍ଭମାନଙ୍କୁ ଅର୍ଥାତ୍ ବ୍ରାହ୍ମଣମାନଙ୍କୁ ସମ୍ବର୍ଦ୍ଧିତ କରିବେ, ତାହା ହେଲେହିଁ ସବୁ ହେଲା ।

ଯମ - ଆହା, ଆମ୍ଭମାନଙ୍କୁ ଏ ବାକ୍ୟ ମଧ୍ୟ ମାନିବାକୁ ହେବ ? ଆଚ୍ଛା କହିଯାଅ ।

ମଦନ - ବେଦ, ଧର୍ମଶାସ୍ତ୍ର ବ୍ରାହ୍ମଣର ପୋଥି; ବିଧି ବ୍ୟବସ୍ଥା ବ୍ରାହ୍ମଣ ହାତରେ ଥିଲା । ବୈଶ୍ୟ ଶୂଦ୍ରାଦି ନତମସ୍ତକରେ ସ୍ୱୀକାର କରୁଥିଲେ, ପାଶ୍ଚାତ୍ୟଶିକ୍ଷା ପ୍ରଭାବରୁ ଏବଂ ସୁଲଭ ମୂଲ୍ୟରେ ସେହି ଗୁପ୍ତ ଓ ରହସ୍ୟମୟ ପୁସ୍ତକମାନ ପ୍ରଚାରିତ ହୋଇପଡ଼ିବାରୁ କ୍ରମେ ସମସ୍ତଙ୍କର ଆଖି ଫିଟୁ ଅଛି, ଲୋକେ କ୍ରମେ ସ୍ମାର୍ତ୍ତ ଧର୍ମର ଗୂଢ଼ ରହସ୍ୟ ଭେଦ କରିବାକୁ ଚେଷ୍ଟା କରୁଅଛନ୍ତି । ପାଶ୍ଚାତ୍ୟ ଶିକ୍ଷା ଓ ମୁଦ୍ରା ଯନ୍ତ୍ରର ଆବିଷ୍କାର ଏହି ଧର୍ମ ଉଚ୍ଛେଦ ନିମନ୍ତେ ଦାୟୀ । ତା' ଉପରେ ପୁଣି ପ୍ରଚାର କାର୍ଯ୍ୟ, ବକ୍ତୃତା ! ସ୍ମାର୍ତ୍ତଧର୍ମର ମୂଳୋଚ୍ଛେଦ ହେବାକୁ ବସିଅଛି । ଜଳ ଥାଉଁ ଥାଉଁ ବନ୍ଧ ବନ୍ଧାଯାଉ, ଧର୍ମାବତାର, ଆଉ ପଛେ କିଛି ନ ହେଉ— ଶୂଦ୍ର ଓ ଶୂଦ୍ରେତର ଜାତିଙ୍କର ଶିକ୍ଷାଟା ରହିତ

କରାଯାଉ । ତେବେ ଏକ ପ୍ରକାର ଚଳିପାରେ ।

ଯମ - ଦେବତାଙ୍କ ସଙ୍ଗରେ ଗୋଟାଏ ସାଲିସ ନିଷ୍ପତ୍ତିର ଇଚ୍ଛା ଅଛି । ବେଶ୍ ବେଶ୍ । ତେବେ ବ୍ରାହ୍ମଣମାନଙ୍କ ପାଶ୍ଚାତ୍ୟ ଶିକ୍ଷା ?

ମଦନ - ତହିଁରେ କିଛି କ୍ଷତି ନାହିଁ, ସେମାନେ ଯେ କୌଣସି ବିଦ୍ୟା ପଢ଼ନ୍ତୁ, ଯେ କୌଣସି ଉପଦେଶ ପାଉନ୍ତୁ, ପଛକେ ସେମାନେ ନିଜର କୁଳାଚରିତ ବ୍ୟବସାୟ ଛାଡ଼ିବେ କି ? ନା, ନା, ଆପଣମାନଙ୍କ ଚରଣ ସେବାରେ ଲାଗିଥିବେ, ଆପଣମାନଙ୍କ ଚରଣ ସେବା ଅତି ଭାଗ୍ୟର କଥା । ଆପଣମାନଙ୍କ ନାମରେ ପ୍ରତିଷ୍ଠିତ ପିତଳ ପଥର ମାଟି ନିର୍ମିତ ମୂର୍ତ୍ତି ପାଦ ତଳରେ ତ ବ୍ରାହ୍ମଣ ଜାତିର ମୁଣ୍ଡ ବାଡ଼େଇ ବାଡ଼େଇ ଦିନାତିପାତ ହେଉଅଛି । ଆପଣମାନଙ୍କ ନାମ ନେଇ ତ ଆମ୍ଭେମାନେ ବଞ୍ଚିଅଛୁଁ । କୃପାର ପାତ୍ର, ଦୟାର ଭିକାରୀ ।

ଅଗ୍ନି - ଆଚ୍ଛା ଶୂଦ୍ରାଦିମାନେ କଣ ତୁମ୍ଭମାନଙ୍କୁ ସମ୍ମାନ କରୁନାହାନ୍ତି କି ଦେବତା ପୂଜାରେ ରତ ନାହାଁନ୍ତି ?

ମଦନ - ପୂର୍ବପୁରୁଷରୁ ମାନି ଆସୁଅଛନ୍ତି । ଦେବତାମାନଙ୍କର ପୂଜା ନକରି ଯିବେ କୁଆଡ଼େ ? ଆମ୍ଭମାନଙ୍କ ପରି ଦେବତା ପାଦ ତଳରେ ମୁଣ୍ଡ ବାଡ଼େଇବାକୁ ମଜଭୁତ୍ । ଆମ୍ଭମାନଙ୍କୁ ସେ ସମ୍ମାନ ନ କରନ୍ତି, ଏପରି ନୁହେଁ, ମାତ୍ର ବାପ ଅଜାମାନେ ଯେପରି ସମ୍ମାନ କରୁଥିଲେ ବା ସ୍ୱଚ୍ଛ ମନରେ ବ୍ରାହ୍ମଣମାନଙ୍କୁ ଦାନ କରୁଥିଲେ, ଏବେ ଠିକ୍ ସେପରି ଭାବରେ ଚଳୁନାହିଁ, ସେମାନଙ୍କୁ ଧର୍ମ ମାର୍ଗରେ ଚଳାଇବାକୁ ବ୍ରାହ୍ମଣମାନେ ଦାୟୀ । ଏଣୁ ଉପଦେଶ ଦ୍ୱାରା, କେତେବେଳେ ବା ସାମାନ୍ୟ ଅଭିଶାପର ଭୟ ପ୍ରଦର୍ଶନଦ୍ୱାରା ସାମାନ୍ୟ ଉପାର୍ଜନ କରାଯାଉଅଛି ।

ଯମ - ଅଭିଶାପ ଓ କ୍ରୋଧାଗ୍ନିକୁ ସେମାନଙ୍କର ଭୟ ଅଛି ତ ?

ମଦନ - ପ୍ରଭୁ ସେତିକି ତ ରକ୍ଷା । ଏହା ନଥିଲେ ବ୍ରାହ୍ମଣମାନେ ଉପବାସରେ ମରନ୍ତେଣି, ଦୁର୍ବାସାଙ୍କ ପ୍ରତାପରେ ଦେବତାମାନେ (ଜିଭ କାମୁଡ଼ିବା) ବ୍ରାହ୍ମଣମାନେ ତ ସେହି ବ୍ରହ୍ମତେଜ ଅଦ୍ୟାପି ରଖି ଅଛନ୍ତି ।

(ଦେବତାମାନଙ୍କ ମଧ୍ୟରେ ଅଟ୍ଟହାସ୍ୟ)

ଇନ୍ଦ୍ର - ଆଉ କି ନିବେଦନ ଅଛି ?

ମଦନ - ପୂର୍ବେ ଜାତି ଓ ସମାଜର କଥା ବ୍ରାହ୍ମଣ ସଭାରେ ନିଷ୍ପତ୍ତି ହେଉଥିଲା । ଛୋଟ କଥାଗୁଡ଼ିକ ପୁରୋହିତ ବା ବିଦ୍ୱାନ ଲୋକେ ନିଷ୍ପତ୍ତି କରି ଦେଉଥିଲେ । ଧର୍ମ ଓ ସମାଜର କଥା ରାଜ କଚେରୀରେ ପଡୁ ନଥିଲା । ଏବେ କେତେଗୁଡ଼ିଏ ସଭା ପ୍ରତିଷ୍ଠିତ ହେଲାଣି– ପ୍ରାଦେଶିକ ଲାଟ ସଭା ଓ ବଡ଼ଲାଟ ସଭା, ଭୋଟ ନାମକ ଅବ୍ୟର୍ଥ ଉପାୟ ଦ୍ୱାରା କି ଶୂଦ୍ର କି ଦେବ ନିନ୍ଦୁକ ଓ ଧର୍ମ ଉଚ୍ଛେଦକାରୀ ବ୍ରାହ୍ମଣଗଣ ସଭ୍ୟ ନିର୍ବାଚିତ ହେଉଅଛନ୍ତି । ମୋ ପରି ବା ରାମାନୁଜ ପରି ଲୋକେ ସ୍ଥାନ ପାଉ ନାହାନ୍ତି । ପୂର୍ବ କାଳର ରାଜାମାନେ ଋଷିମାନଙ୍କ ବଚନକୁ ଲଘୁ ନ ଥିଲେ । ଏବେ ଗଭର୍ଣ୍ଣମେଣ୍ଟ ବଶିଷ୍ଠାଦିଙ୍କ ପରି ଉଚ୍ଚ ଆସନ ଆମ୍ଭମାନଙ୍କୁ ଦେଉ ନାହାନ୍ତି । ସୁତରାଂ ଧର୍ମର ଅବସାଦ ଘଟୁଅଛି ।

ଯମ - ସତେ ? କହି ପକାଅ, କହି ପକାଅ ।

ମଦନ - (ମହୋତ୍ସାହରେ) ସେକାଳ ତୁଳନାରେ ବଶିଷ୍ଠାଦି ଯେପରି, ଏକାଳ ତୁଳନାରେ ରାମାନୁଜ ଶାସ୍ତ୍ରୀ ପ୍ରଭୃତି ସେପରି ନୁହନ୍ତି କି ? 'କାଳସ୍ୟ କୁଟିଳତା ଗତିଃ' ପଚାରୁଛି କିଏ ? ସମ୍ମତି ଆଇନ ପାସ୍ ହେଲା । ସମାଜ ସଂସ୍କାର ସମ୍ବନ୍ଧରେ ଆଉ କେତେ କ'ଣ ହେବ । ଧର୍ମର ଉଚ୍ଛେଦ ହେବାକୁ ବସିଲା, ବ୍ରାହ୍ମଣ ଜାତିର ଗତି କ'ଣ ?

ଇନ୍ଦ୍ର - ଅଗ୍ନି, ତୁମେ କ'ଣ ବାଲ୍ୟ ବିବାହର ପକ୍ଷପାତୀ ?

ଅଗ୍ନି - ମୁଁ ତ ଯୁବତୀ ବିବାହ କରିଅଛ, ଏହାର ପକ୍ଷପାତୀ ହେବି କିପରି ?

ଇନ୍ଦ୍ର - ବିଶ୍ୱାବସୁ, ତୁମେ ?

ବିଶ୍ୱାବସୁ - ଅର୍ଯ୍ୟଗଣ ବା ପ୍ରାର୍ଥୀମାନଙ୍କ ପୂର୍ବପୁରୁଷଗଣ ପରା ମୋତେ ବୃହତ୍‌ନିତମ୍ବବତୀ ପ୍ରିୟ ବୋଲି ଆଖ୍ୟା ଦେଇଅଛନ୍ତି; ମୁଁ ବାଲ୍ୟ ବିବାହପ୍ରିୟ କିପରି ହୋଇପାରେ ? ଆପଣ ?

ଇନ୍ଦ୍ର - ମୋ କଥା ଛାଡ଼ । ମୋର ଭାର୍ଯ୍ୟା ତ ଶଚୀ, ମୁଁ ବାଲ୍ୟ ବିବାହର ପକ୍ଷପାତୀ ବୋଲି ପ୍ରକାଶ କରିବି କେଉଁ ମୁଖରେ ?

ମଦନ - ଧର୍ମାବତାର, ଦେବତାଙ୍କ କଥା ମନୁଷ୍ୟଙ୍କ କଥା କି ସମାନ ? ବ୍ରାହ୍ମଣମାନେ ଯେଉଁ ସୁଯୋଗରେ ସ୍ତ୍ରୀମାନଙ୍କ ଉପରେ ଏକାଧିପତ୍ୟ ଭୋଗ କରି ଆସିଅଛନ୍ତି, ତାହା ଛାଡ଼ିବେ କାହିଁକି ? ଆପଣମାନଙ୍କୁ ତ ବିଦିତ ଅଛି ଭାରତବର୍ଷର କୁଳାଚାର କଥା। କୁଳାଚାର ଉପରେ ଯେବେ ଲୋକଙ୍କର ସମ୍ମାନ ନ ରହିଲା, ତେବେ ବ୍ରାହ୍ମଣ କ'ଣ ଘେନି ଘର କରିବେ ? ଯେବେ କୁଳାଚାରକୁ ଅକ୍ଷୁଣ୍ଣ ରଖା ନ ଯାଏ, ତେବେ ହେ ଅଗ୍ନି, ବ୍ରାହ୍ମଣ ଜାତିକି ପୋଡ଼ି ପକାଅ । ହେ ଇନ୍ଦ୍ର ! ବଜ୍ରଦ୍ୱାରା ବ୍ରାହ୍ମଣ ଜାତିକୁ ଧ୍ୱଂସ କର । ହେ ଯମ ! (ଭୟ ବିହ୍ୱଳ ହୋଇ ଜିଭ କାମୁଡ଼ିବା)

ଯମ - ମୋ ନାମ ଧରି ତୁନି ହେଲ କାହିଁକି ? ଭୟ କଲ କି ? ଏଠାରେ ପ୍ରାଣନେବା କଥା ପଡ଼ିନାହିଁ । ତୁମ୍ଭେମାନେ ଦୁଃଖ ଜଣାଇବାକୁ ଆସିଅଛ, ଜଣାଅ । ମୋ ଅଜ୍ଞାତରେ ମୃତ୍ୟୁ ନାହିଁ, ତାହା ଜ୍ଞାତ ଥାଇ ବୋଧହୁଏ ଇନ୍ଦ୍ର ଓ ଅଗ୍ନିଙ୍କ ଠାରେ ସ୍ୱାର୍ଥତ୍ୟାଗର ସ୍ପର୍ଦ୍ଧା ଦେଖାଇଲ, ହଁ ଚାଲୁ ଚାଲୁ ।

ରାମାନୁଜ - (ସ୍ୱଗତ) ଆରେ ସାଇଲାରେ ମୁଁ ତ କହିଛି, ମଦନ କହି ନ ଜାଣି କିଛି ଗୋଟାଏ ଅନିଷ୍ଟ ଘଟାଇବ । ବାବା, ଯମ ଆଗରେ କି ଥଟାବାଜି ? (ପ୍ରକାଶ୍ୟରେ) ପ୍ରଭୋ, କ୍ଷମା କରାଯାଉ ।

ସମସ୍ତେ - (ଭୀତ ହୋଇ ଏକ ବାକ୍ୟରେ) ପ୍ରସୀଦ ଦେବେଶ ଚରାଚରସ୍ୟ ।

ଯମ - ଏଠାରେ କୌଣସି ଭୟ ନାହିଁ ।

ରାମାନୁଜ - (ମୁହଁ ଶୁଖାଇ ସ୍ୱଗତ) ଉଁ ହୁଁ, ଅଭୟ ତ ମିଳିଲା ନାହିଁ । ମଦନ ହିଁ ସବୁ ଅନିଷ୍ଟର ମୂଳୀଭୂତ କାରଣ ଯମ, ଯମ, ଯମ, (ମନେ ମନେ ଗୁଣିବା) ।

ମଦନ - ଅଭୟ ପାଇ ପୁନର୍ବାର ପ୍ରକାଶ କରିବାକୁ ସାହସୀ ହେଲି। ଅନୁଗ୍ରହ ପୁରଃସର କର୍ଣ୍ଣଗୋଚର କରାଯାଉ । ଆଉ ଅଧିକ ଦୁଃଖ କ'ଣ ଜଣାଇବୁଁ, ଆପଣମାନେ ତ ସୁବିଜ୍ଞ । ତେବେ ଉପସଂହାରରେ ଏହି ନିବେଦନ ଯେ, ଦେବତା ବ୍ରାହ୍ମଣଙ୍କ ପୂର୍ବ ସମ୍ବନ୍ଧ ସ୍ଥିରୀକୃତ ଓ ଦୃଢ଼ୀଭୂତ ହେଉ । ରାଜାମାନେ ଆପଣା ଆପଣା ନିର୍ଦ୍ଦିଷ୍ଟ ରାଜ୍ୟ ଶାସନ କରି ଦେବ ବ୍ରାହ୍ମଣ ସେବାରତ ରହନ୍ତୁ । ଶୂଦ୍ରଯାକ ବ୍ରାହ୍ମଣମାନଙ୍କର ପଦାନତ ରହନ୍ତୁ । ଶୂଦ୍ରତ ସେବା କରିବାକୁ ବିରାଟ ପୁରୁଷଙ୍କ ପାଦରୁ ଜନ୍ମ ହୋଇଅଛନ୍ତି, ସେବା କରିବାରେ ତାଙ୍କର ବା ଆପତ୍ତି କଣ ଥାଇପାରେ ? ପ୍ରଭୁମାନଙ୍କର ଦୃଢ଼ ଆଦେଶ ହେଲେ ଅକ୍ଲେଶରେ ତାହା ପାଳିତ ହେବ । ଶୂଦ୍ରେତର ଜାତିମାନେ ଦୂରରେ ଥାଇ ଆପଣା ବ୍ୟବସାୟ କରୁଥାଆନ୍ତୁ । ଏଥି ନିମନ୍ତେ ଦାୟୀ କିଏ ? ଏହା ସେମାନଙ୍କର ପୂର୍ବ ଜନ୍ମର ଦୁଷ୍କୃତ । ବ୍ରାହ୍ମଣେତର ଜାତିମାନେ ଶାସ୍ତ୍ର ଆଲୋଚନା କରିପାରିବେ ନାହିଁ । ନାମମାତ୍ର ଶିକ୍ଷିତଗଣ ବକ୍ତୃତା ଦ୍ୱାରା ସର୍ବସାଧାରଣଙ୍କୁ ଦେବ ବ୍ରାହ୍ମଣ ବିଦ୍ୱେଷୀ ହେବାକୁ ଉପଦେଶ ଦେଇପାରିବେ ନାହିଁ । ଲାଟ ସଭା କେବଳ ନୀତିଜ୍ଞ ଓ ଶାସ୍ତ୍ରଜ୍ଞ ପଣ୍ଡିତଙ୍କଦ୍ୱାରା ମଣ୍ଡିତ ହେଉ । ତାହା ହେଲେ ଧର୍ମର ଉଚ୍ଛେଦ ସାଧନ ହେବନାହିଁ । ସନାତନ ଧର୍ମ ଅକ୍ଷୁଣ୍ଣ ରହିବ । ଶାସ୍ତ୍ରର ଗଭୀର ଅର୍ଥାଭିଜ୍ଞ ଋଷିତୁଲ୍ୟ ଆଧୁନିକ ପଣ୍ଡିତବର୍ଗଙ୍କର ଏହି ସ୍ଥିରନିଶ୍ଚିତ ମତ।

(ଦେବତାମାନେ ମୁରୁକି ହସିବା)

ହଁ, ତେବେ ଖ୍ରୀଷ୍ଟଧର୍ମାବଲମ୍ବୀ ଓ ମୁସଲମାନ ମଧ ଅଛନ୍ତି । ଇଷା ମୂଷାଭାଇ; ସେମାନଙ୍କ

କଥା ସେମାନେ ବୁଝିବେ । ସେଥିରେ ହିନ୍ଦୁର ଯାଏ ଆସେ ବା କେତେ ? ହିନ୍ଦୁର ଧର୍ମ ବେଷ୍ଟନୀ ଠିକ୍ ରହିଲେ ସମାଜ ଦୃଢ଼ । ସମାଜ ଦୃଢ଼ ରହିଲେ ବ୍ରାହ୍ମଣ ଜାତି ନିର୍ଭୟ । ବ୍ରାହ୍ମଣ ଜାତି ନିର୍ଭୟ ହେଲେ, ଦେବାରାଧନାର ସ୍ରୋତ ଅନିବାର୍ଯ୍ୟ । ସୁତରାଂ ଦେଶୋପଦ୍ରବ ରହିତ ହେବ, ଏହା କିଏ ଅସ୍ୱୀକାର କରିପାରେ ? ଆମ୍ଭ ମନଦୁଃଖ ଜଣାଇ ବକ୍ତବ୍ୟ ଶେଷ କଲୁଁ । ଦୟାର୍ଦ୍ର ହୃଦୟ ଦେବଗଣ ଆମ୍ଭମାନଙ୍କର ଆଶା ଓ ପ୍ରାର୍ଥନା ପୂରଣ କରି ଅକ୍ଷୟ କୀର୍ତ୍ତି ରଖିବେ । ଏହି କାମନା । (ସମସ୍ତେ ଓଳଗିବା)

ଯମ - (ବ୍ୟଙ୍ଗୋକ୍ତିରେ) ବେଶ୍ ବେଶ୍ ।

ରାମାନୁଜ - (ଶିତିକଣ୍ଠଙ୍କ କାନରେ) ଯମ ଯେତେବେଳେ ପ୍ରାର୍ଥନା ଶୁଣି ବାହାବା ଦେଲେ, ସେତେବେଳେ ଆମ୍ଭେମାନେ ଯେ ସୁଫଳ ପାଇବା, ଏଥିରେ ସନ୍ଦେହ କ'ଣ ?

ଇନ୍ଦ୍ର - ଅଗ୍ନି ! ତୁମର ମତ ପ୍ରକାଶ କର ।

ଅଗ୍ନି - ପ୍ରାର୍ଥୀମାନେ, ତୁମମାନଙ୍କୁ କ'ଣ ବୋଲି ସମ୍ବୋଧନ କରିବି, ତାହା ମୋର ବୁଦ୍ଧିର ଅଗୋଚର । ମୁଁ ଅତି ବୃଦ୍ଧ, ମୋର ବୟସର ତ ସୀମା ନାହିଁ । ଆର୍ଯ୍ୟପୁତ୍ର ? ଉଁ ହୁଁ, ତାହା ଠିକ୍ ନୁହେଁ । ହିନ୍ଦୁ ଏ ଶବ୍ଦଟି ମୋ ପକ୍ଷରେ ନୂତନ, ତଥାପି ହେ ହିନ୍ଦୁଗଣ ବୋଲି ଡାକନ୍ତି, ମାତ୍ର ରୂପରେଖ, ପୋଷାକ ପରିଚ୍ଛଦ, ବିଶେଷତଃ ବିଭିନ୍ନ ଉପାସନାରେ ପରିଚାୟକ ଚିତା ଦେଖି ଅନୁମାନ ହେଉଅଛି ଯେ, ଏ ସଭାସ୍ଥଳରେ ଆଠ ଦଶ ଶ୍ରେଣୀର ବ୍ରାହ୍ମଣ ଅଛ ଏକ ଶ୍ରେଣୀର ହୃଦୟରେ ଅନ୍ୟ ଶ୍ରେଣୀ ପ୍ରତି ଘୃଣା ଓ ତାଚ୍ଛଲ୍ୟଭାବ ବଂଶଗତ ସଂକ୍ରାମକ ରୋଗପରି ବ୍ୟାପିରହିଅଛି, କ୍ଷତ୍ରିୟ ନାମମାତ୍ର, ଏଠାରେ ଉପସ୍ଥିତ ଛାତ୍ରମାନଙ୍କ ମଧ୍ୟରେ ଅନେକ ବଂଶ ବଡ଼ିମା ଓ ଜାତ୍ୟଭିମାନ ପୋଷଣ କରନ୍ତି । ଜଣ କେତେ ବୈଶ୍ୟ ଓ ଶୂଦ୍ର ଭୂମ୍ୟଧିକାରୀ ରାଜା, ମହାରାଜା ବା ମହାରାଜାଧିରାଜ ବା ଆଉ କିଛି ଉପାଧିପ୍ରାପ୍ତ ହୋଇ ଏଠାରେ ଉପସ୍ଥିତ ଅଛନ୍ତି । କେବଳ ଭୂମ୍ୟଧିକାରୀ ବୋଲି ସେମାନଙ୍କୁ ତୁମେମାନେ ଏଠାକୁ ଆଣିଅଛ । ବୈଶ୍ୟ ଶୂଦ୍ର ବୋଲି ଆଣି ନାହଁ । ସୁତରାଂ ହିନ୍ଦୁ ବୋଲି ସମ୍ବୋଧନ କରିବି କିପରି ? ଭାରତବାସୀ ବୋଲିବା ମଧ୍ୟ ଅସଙ୍ଗତ-ଯେହେତୁ ତୁମେମାନେ ମୁଷ୍ଟିମେୟ ମାତ୍ର, ଅସଂଖ୍ୟ ହିନ୍ଦୁ ଆଖ୍ୟାଧାରୀ ଶୂଦ୍ର ଓ ଶୂଦ୍ରେତର ଜାତି ଏଠାରେ ବାସ କରନ୍ତି । ଏହାଛଡ଼ା ମୁସଲମାନ, ଖ୍ରୀଷ୍ଟିୟାନ ଅଛନ୍ତି । ସମସ୍ତଙ୍କୁ ନେଇତ ଭାରତବର୍ଷର ଜନସଂଖ୍ୟା ।

ରାମାନୁଜ - ଧର୍ମାବତାର, ହିନ୍ଦୁ ଆଖ୍ୟାରେ ସମ୍ବୋଧନ କରିବାକୁ ଆଜ୍ଞା ହେଉ । ତାହା ହେଲେ ହେଲା । ଆର୍ଯ୍ୟ ଶବ୍ଦରେ ବଡ଼ ଗୋଳମାଳ ଏବଂ ଭାରତବାସୀ ବୋଇଲେତ ଆହୁରି ଗୋଳମାଳ ।

ଅଗ୍ନି - (ସହାସ୍ୟରେ) ଅଗତ୍ୟା, ଅଚ୍ଛା ତାହା ହେଉ । ତୁମ୍ଭମାନଙ୍କର ପୂର୍ବପୁରୁଷଗଣ ମୋର ଶକ୍ତିର ଆରାଧନା ଓ ସାଧନା କରୁଥିଲେ । ତୁମ୍ଭେମାନେ ତାହା କରୁ ନାହଁ ।

ମଦନ - ହଜୁରଙ୍କର ଦାସ ଏ ଜାତି ପୂଜା କରୁଅଛୁଁ । ଆଉ ସମସ୍ତ ଦେବତାଙ୍କ ଆଗରେ ଆପଣଙ୍କର ପୂଜା ।

'ଅଗ୍ନୟେ ସ୍ୱାହା' ନ ବୋଇଲେ ଆମ୍ଭମାନଙ୍କର ଗତ୍ୟନ୍ତର ନାହିଁ ।

ଅଗ୍ନି - ସେ ମୋର ପୂଜା ନୁହେଁ । ତୁନି ହୋଇ ଶୁଣ । ସୌରଶକ୍ତି ଆର୍ଯ୍ୟର ପ୍ରଧାନ ଦେବତା, ମୁଁ ସେହି ଶକ୍ତିର ରୂପାନ୍ତର ମାତ୍ର । ଯେଉଁ ମହାପୁରୁଷ ଆରଣିମନ୍ଥଦ୍ୱାରା ମୋର ପ୍ରଚ୍ଛନ୍ନ ରୂପ ଦର୍ଶନ କଲେ ଓ ଗୁଣ ବୁଝିପାରିଲେ ସେହି ମୋର ପ୍ରଥମ ଓ ପ୍ରଧାନ ଉପାସକ, ସାଧକ । ଜଗଦ୍‌ବାସୀ ମୋର ଆରାଧନା ଓ ଉପାସନା କଲେ । କ୍ରମେ ନାନା ସ୍ଥାନରୁ ନାନା ଉପାୟରେ ମୋର ସାଧନା କରି ଭିନ୍ନ ଭିନ୍ନ ବସ୍ତୁରେ ମୋର ଶକ୍ତି ଆବିଷ୍କାର କଲେ । ସେମାନେ ମୋର ପୂଜକ ଓ ଉପାସକ । ଭାରତବର୍ଷ ଅପେକ୍ଷା ମୋର ଏକନିଷ୍ଠ ଉପାସକ ଓ ପୂଜକ ଇଉରୋପୀୟ ଓ ଆମେରିକାରେ ଅଧିକ ପରିମାଣରେ ଅଛନ୍ତି । ତୁମ୍ଭେମାନେ ସାମାନ୍ୟ ଘୃତାହୁତିଦ୍ୱାରା ମୋର

ଉଦର ଜ୍ୱାଳାର ଉପଶମ କରିବାର ଅଭିମାନ କର । ଏତିକିରେ କି ମୋର ଉଦର ଜ୍ୱାଳାର ଉପଶମ ହେବ ? ଇଉରୋପ ଓ ଆମେରିକାରେ ମୋର ସେବା ତତ୍‌ପର ଭକ୍ତଗଣ ଲକ୍ଷ ଲକ୍ଷ ମହଣ କୋଇଲା (ଅଙ୍ଗାର) ଅର୍ପଣ କରୁଅଛନ୍ତି । ମୁଁ ସଦା ଅତୃପ୍ତ, ମୋର ଉଦର ଜ୍ୱାଳା ବଢୁଅଛି । ସେମାନେ ମୋର ଉଦର ଜ୍ୱାଳା ଦୂର କରିବାକୁ ମୁକ୍ତ ହସ୍ତ । ଏଣୁ ମୋର ଆଶୀର୍ବାଦଭାଜନ । ସେମାନେ ମୋତେ ଜାଗ୍ରତ ଓ ପ୍ରଜ୍ୱଳିତ ରଖିବାକୁ ଏଡ଼େ ତତ୍‌ପର ଯେ, ମୋର ମୁହୂର୍ତ୍ତକ କ୍ଷୁଧାରେ ବା ନିର୍ବାପଣରେ ସେମାନଙ୍କର ଲକ୍ଷ ଲକ୍ଷ ଟଙ୍କା କ୍ଷତି ହେବାର ସମ୍ଭାବନା ଦେଖନ୍ତି । ସେମାନଙ୍କର ହୋମ କୁଣ୍ଡରୁ କେତେବେଳେ ମୋର ଅଦର୍ଶନ ନାହିଁ । ମୁଁ ସଦା ଜାଗରୂକ, ସଦା ବିଦ୍ୟମାନ, ବହୁଦିନରୁ ମୋର ପରମ ଭକ୍ତ ପାଶ୍ଚାତ୍ୟ ଜାତିର ଆଶ୍ରୟ ଗ୍ରହଣ କରିଅଛି । ଏବେ ପ୍ରାଚ୍ୟ ଜାପାନର ହୋମକୁଣ୍ଡରେ ମଧ ଅବସ୍ଥାନ କଲିଣି ।

ବ୍ରାହ୍ମଣଗଣ, ଯଜମାନର ସାମାନ୍ୟ ଘୃତାହୁତିଦ୍ୱାରା ମୋର ଉଦର ଶାନ୍ତି ହେବ ବୋଲି ମୋତେ ଲୋଭ ଦେଖାଉଅଛ ? ଏଥିରେ ନା ଦାତାର ଉପକାର, ନା ମୋର ଉଦର ଶାନ୍ତି । ଏହା ମୋର ପ୍ରକୃତ ପୂଜା ନୁହେଁ । ମହାରଣ୍ୟଚାରିଣୀ କିରାତୀ ପରିବାରବର୍ଗର ଉଦର ଜ୍ୱାଳା ଉପଶମ କରିବା ଇଚ୍ଛାରେ ଶାକପାକ କରିବା ନିମନ୍ତେ ଦୁଇ ଖଣ୍ଡ ଶୁଷ୍କ କାଷ୍ଠ ଘର୍ଷଣଦ୍ୱାରା ମୋର ଅଭିନବ ଜନ୍ମୋତ୍ସବ ଅନୁଭବ କଲେ । ସେ କ'ଣ ମୋର ପ୍ରକୃତ ପୂଜାରିଣୀ ନୁହେଁ ? ତା'ର ପ୍ରେମାଶ୍ରୁସିକ୍ତ ହୃଦୟର ଭକ୍ତି ତୁଳନାରେ ତୁମ୍ଭର ବାଧତାମୂଳକ ପୂଜାରେ କେତେ ଅସଦୃଶ, ତାହା ଅକଥନୀୟ । କିରାତଜାୟା ଅଗ୍ନିରେ ଆଗ ମାଂସ ନିକ୍ଷେପ କରି ମୋର ପରିଚର୍ଯ୍ୟା କରେ ଏବଂ ମୋର ପରିତ୍ୟକ୍ତ ମାଂସ ଖଣ୍ଡ ଭକ୍ଷଣ କରି ଉଦର ଜ୍ୱାଳା ଉପଶମ କରେ ଓ ତୃପ୍ତିଲାଭ କରେ । ବ୍ରାହ୍ମଣଗଣ ! ତୁମ୍ଭର ପୂର୍ବ ପୁରୁଷଗଣ କେଉଁ ତୃପ୍ତିଲାଳସାରେ ପ୍ରଜ୍ୱଳିତ ଚିତାନଳରେ ନିରପରାଧା ବାଳିକାଗଣଙ୍କୁ ଓ ପତିବିୟୋଗ-ବିଧୁରା ବିଧବାମାନଙ୍କୁ ନିକ୍ଷେପ କରୁଥିଲେ ? ବାର ବାର ମୋର ହୁତାଶନ ନାମରେ କଳଙ୍କ ଲେପନ କରି ମୋତେ ଅପବିତ୍ର କରିଥିଲେ । ସଭ୍ୟଜାତିର ଧିକ୍‌କାରରେ ମୁଁ ମଧ ଲଜ୍ଜିତ । ଦୟାର୍ଦ୍ର ହୃଦୟ ପାଶ୍ଚାତ୍ୟ ଜାତି ତାହା ନିବାରଣ କଲେ । ମାତ୍ର ସ୍ତ୍ରୀ ପ୍ରତି ଯେ ତୁମ୍ଭମାନଙ୍କର ଜାତିଗତ ଘୃଣା, ତାହା 'ନାଦ୍ୟାପି ବିଶ୍ରାମ୍ୟତି' । ଗଭର୍ଣ୍ଣମେଣ୍ଟ ଚିତାନଳରୁ ସ୍ତ୍ରୀମାନଙ୍କୁ ରକ୍ଷା କଲେ ସତ, ମାତ୍ର ତୁମ୍ଭେମାନେ ତତୋଽଧିକ ଜ୍ୱାଳାମୟ ନିରପରାଧାଗୁଡ଼ିକୁ ଚିତାନଳରେ କ୍ଷଣେ ମାତ୍ର କଷ୍ଟ ଦେଇ ଭସ୍ମୀଭୂତ କରୁଥିଲ । ଏବେ ସେହି ହତଭାଗିନୀଗୁଡ଼ିକ ଜୀବନବ୍ୟାପୀ ସନ୍ତାପାନଳରେ ଦଗ୍ଧୀଭୂତ ହେଉଅଛନ୍ତି । ମୋର ଭକ୍ତର ଧ୍ୱଜା କି ସ୍ତ୍ରୀ ନିର୍ଯାତନ ? ସରସ୍ୱତୀ ତୀରରେ ଆର୍ଯ୍ୟମାନେ ମୋର ଶକ୍ତିର ଯେ ଆରାଧନା କରିଥିଲେ, ତାହା ଯୁଗଯୁଗାନ୍ତରର କଥା— ସେ ଭକ୍ତି, ସେ ଉପାସନାର ଲକ୍ଷଣ ତୁମ୍ଭମାନଙ୍କର ହୃଦୟଙ୍ଗମ ହେବା ଅସମ୍ଭବ । ତାହାଛଡ଼ା ତୁମ୍ଭେମାନେ ତ ଜାଣ, ମୋଠାରେ ପୁରୁଷ ସ୍ତ୍ରୀ, ବ୍ରାହ୍ମଣ ଚଣ୍ଡାଳ ସମସ୍ତେ ସମାନ । ମୋର ଭେଦଜ୍ଞାନ ନାହିଁ । ମୁଁ ଚଣ୍ଡାଳ କୁଟୀର ଚୁଲିରେ ଯେପରି ପ୍ରଜ୍ୱଳିତ ହୁଏ, ବ୍ରାହ୍ମଣ ଚୁଲିରେ ମଧ ସେହିପରି ପ୍ରଜ୍ୱଳିତ ହୁଏ । ଦନ୍ତୁରା ଅସୁନ୍ଦରୀ ଚଣ୍ଡାଳ ଘରଣୀର ଫୁତ୍‌କାର ଅପେକ୍ଷା ରୂପଲାବଣ୍ୟସମ୍ପନ୍ନା କୁନ୍ଦ-ରଦନା ବ୍ରାହ୍ମଣ ଲଳନାର ଫୁତ୍କାର ମୋପ୍ରତି ଯେ ଅଧିକ ପ୍ରୀତିକର, ଏପରି ତ ନୁହେଁ । ଉଭୟେ ସମାନ । ଯେଉଁ ଦେବତା ଏକାନ୍ତ ଭେଦଜ୍ଞାନଶୂନ୍ୟ, ତା'ଠାରେ ସ୍ତ୍ରୀ ଶୂଦ୍ର ନିର୍ଯାତନ ପ୍ରାର୍ଥନା ନିଷ୍ଫଳ ଅଟେ । ଆପାତତଃ ମୁଁ ତୁମ୍ଭମାନଙ୍କର କୌଣସି ଉପକାର କରିବାକୁ ପ୍ରସ୍ତୁତ ନୁହେଁ ।

ଯମ–ଅଗ୍ନି ଦୀର୍ଘବକ୍ତୃତା ଦେଲେ । ପ୍ରତ୍ୟେକେ ଏତିକି ଲେଖାଏଁ କହିବାକୁ ବସିଲେ ପେଟଜ୍ୱାଳା ସମ୍ଭାଳେ କିଏ ? ଏଠାରେ ଉପସ୍ଥିତ ସମସ୍ତ ଦେବତାମାନେ ପଦେ ପଦେ

କହିବେ କି ? ଇନ୍ଦ୍ର ତ ପ୍ରେସିଡେଣ୍ଟ, ସେ କହିବାକୁ ବାଧ । ଅଗ୍ନିଙ୍କ ପରି ଆଉ କାହାର ବକ୍ତୃତା ଦେବାକୁ ଇଚ୍ଛା ? ଇଚ୍ଛାଥିଲେ କହ, ମାତ୍ର ଧୈର୍ଯ୍ୟଚ୍ୟୁତି ହେବାଯାଏ ନୁହେଁ ।

ଅଶ୍ୱିନୀକୁମାର- ସମସ୍ତଙ୍କ କହିବା ଆବଶ୍ୟକ କ'ଣ ? ବରୁଣ ଯମ ଏବଂ ଶେଷରେ ଇନ୍ଦ୍ର କହିଲେ ଯଥେଷ୍ଟ । ନୁହେଁ କି ? କ'ଣ କହୁଛ ଦେବତାମାନେ ?

ସମସ୍ତ ଦେବତା— ଆମ ସମସ୍ତଙ୍କର ସେହିମତ ।

ଯମ - ତଥାସ୍ତୁ । ବରୁଣ, ଆରମ୍ଭ କର ।

ବରୁଣ - ତୁମ୍ଭମାନଙ୍କର ପ୍ରାର୍ଥନା ମୁଁ ଅବହିତ ହୋଇ ଶ୍ରବଣ କରିଅଛି । ମୁଁ ଆର୍ଯ୍ୟଙ୍କ ଠାରୁ ପୂଜା ପାଉଥିଲି । ସେମାନେ ମୋର ଭକ୍ତ । ସେମାନେ ମୋତେ ଅତି ଉଚ୍ଚ ସ୍ଥାନ ଦେଇଥିଲେ । ଏମନ୍ତ କି ମୋର ଉପାଧି କେବଳ ରାଜା ଥିଲା ।

ରାମାନୁଜ - (ସ୍ୱଗତଃ—ସତେ ରାଜା, ନୋହିଲେ ଏ କୋମଳ ବାକ୍ୟ ବାହାରନ୍ତା ? ଆମ୍ଭମାନଙ୍କର ଆଶା ସଫଳ ହେବ, କପାଳ ଖୋଲିଲା)

ସେତେବେଳେ ସଭ୍ୟତାର ଶୈଶବ, ନବୋନ୍ମେଷ କହିଲେ ଚଳେ ।

ରାମାନୁଜ - (ତୁନି ତୁନି ଶୀତିକଣ୍ଠଙ୍କ କାନରେ— ଆମ୍ଭମାନଙ୍କ ପ୍ରାର୍ଥନା ନିଶ୍ଚୟ ଶୁଣାଯିବ, ଆନନ୍ଦର କଥା ।)

ବରୁଣ - ସେତେବେଳେ ସେମାନେ ଯେ ବରୁଣାଳୟର ଏଡ଼େ ପ୍ରଶଂସା କରିବେ ଏବଂ ବରୁଣ ଦେବତାର ଏଡ଼େ ଭକ୍ତ ହେବେ, ଏହା ଭାବିଲେ ଆହ୍ଲାଦିତ ହେବାର କଥା । ସେହି ଆର୍ଯ୍ୟଗଣଙ୍କର ନିର୍ମଳ ଶୋଣିତ ତୁମ୍ଭମାନଙ୍କ ଧମନୀରେ ପ୍ରବାହିତ ହେଉଥିଲେ ସେମାନଙ୍କର କଳ୍ପନା ଓ ଭାବଧାରା ତୁମ୍ଭମାନଙ୍କ ହୃଦୟରେ ଉତ୍ତରାଧିକାରୀ ସ୍ୱତ୍ୱରେ ସ୍ଥାନ ପାଇଥିଲେ, ଆଜି ସେ ଭାବ ବିକାଶ ପ୍ରାପ୍ତ ହୋଇ କି ଅସାଧ ସାଧନ କରୁ ନ ଥାନ୍ତ ମୋର ତଦାନୀନ୍ତନ ପୂଜକ ଓ ଭକ୍ତଙ୍କ ସହିତ— ଯମ— ଟିକିଏ ସଂକ୍ଷେପ କର ।

ବରୁଣ - ଆଧୁନିକ ହିନ୍ଦୁଗଣଙ୍କର ତୁଳନା କଲେ ଅତୀବ ଶାନ୍ତ ଯେ ମୁଁ, ମୋର ମଧ ଟିକିଏ କ୍ରୋଧୋଦ୍ରେକ ହୁଏ । ଯାହା ଚକ୍ଷୁ ପ୍ରୀତିକର, ନୀଳ, ଅଗାଧ, ଅନନ୍ତ, ତହିଁରେ ହିଁ ବରୁଣର ଆଧିପତ୍ୟ ବୋଲି ଆର୍ଯ୍ୟଗଣଙ୍କର ଧାରଣା, ଜଳ ଶାରୀରିକ କଳୁଷ ନାଶ କରେ । ଏଣୁ ସରିତ ମଧ କଳୁଷ ଓ ପାପ ନାଶ କରେ । ସମୁଦ୍ର ସରିତମାନଙ୍କର ପତି ମହାନ୍ ପବିତ୍ର ବୋଲି ସେମାନେ କଳ୍ପନା କରିଥିଲେ । ସେହି ଅପାର ଅକୂପାରର ଅଧିଷ୍ଠାତା ଦେବତା ବରୁଣଙ୍କୁ ପାପ ନାଶକାରୀ ରାଜା ବୋଲି ସ୍ଥିର କରିଥିଲେ । ସେମାନେ ଓ ତାଙ୍କର ପୁତ୍ର ପୌତ୍ରାଦିଗଣ ରତ୍ନାକରରେ ବିଚରଣ କରି ରତ୍ନ ଆହରଣପୂର୍ବକ ଦେଶ ଓ ଜାତିର ମୁଖୋଜ୍ଜ୍ୱଳ କରିବେ ବୋଲି କି ମହତ୍ ଆଶା ପୋଷଣ କରିଥିଲେ । ସେ ସଭ୍ୟତାର ଆଶାଲତା ଉନ୍ମୂଳିତ ହେଲା । ମୋର ସେବା ଆରାଧନା ବନ୍ଦ ହେଲା ।

ରାମାନୁଜ - ପ୍ରଭୋ, ଆମ୍ଭେମାନେ ଅଦ୍ୟାପି ଭକ୍ତିଭରେ ପୂଜା କରୁଅଛୁଁ, ଆପଣଙ୍କ ପୂଜା ଅଗ୍ରରେ । କଳଶ ସ୍ଥାପନ କରି 'ପ୍ରଥମେ ବରୁଣାୟ ନମଃ' ନ ବୋଇଲେ ଚଳୁନାହିଁ ।

ମଦନ - ବରୁଣସ୍ୟୋତ୍ତମ୍ଭନମସି ।

ଶଶାଙ୍କ - ଉଦୁତ୍ତମଂ ବରୁଣ ପାଶମସ୍ମ ।

ଗଙ୍ଗାଧର - ଅବତେ ହେଳୋ ବରୁଣ ।

ଯମ - ହେଲା ହେଲା । ତୁମ୍ଭେମାନେ ଯେ ବେଦମନ୍ତ୍ର ପଦେ ଅଧେ ଜାଣ, ଏଥିରେ ସନ୍ଦେହ ନାହିଁ । ଆବୃତ୍ତି ନିଷ୍ପ୍ରୟୋଜନ, ତୁନି ହୁଅ ।

ବରୁଣ - ବରୁଣ ଜଳର ଦେବତା, ଏଣୁ କଳସରେ ଜଳ ଦେଇ ମୋର ଆହ୍ୱାନ କର, ଅନନ୍ତ ପାରାବାର ଯାହାର କ୍ରୀଡ଼ା ସ୍ଥଳ, ତାକୁ କଳସ ଭିତରେ ପୂରାଇ ରଖିବା ପ୍ରୟାସ କି ଅସଙ୍ଗତ । ଆର୍ଯ୍ୟମାନେ ସମୁଦ୍ର କୂଳରେ ଦଣ୍ଡାୟମାନ ହୋଇ ଦିନେ ଗାଇଥିଲେ— "ହେ ବରୁଣ ! ଆମ୍ଭମାନଙ୍କୁ ଅପାରପାରକୁ ଘେନି ଯାଅ, ସମୁଦ୍ର ରହସ୍ୟ ଉଦ୍‌ଘାଟନ କର ଭୀତିପ୍ରଦ ତରଙ୍ଗ

ସମୂହ ଯେପରି ଆମ୍ଭମାନଙ୍କ ପୋତକୁ ଗ୍ରାସ ନ କରନ୍ତି, ତହିଁର ଉପାୟ କର' । ସେହି ଆର୍ଯ୍ୟଗଣ ମୋର ଭକ୍ତ, ସେବକ, ସାଧକ । ସମୁଦ୍ର ଗର୍ଭରେ ସମୁଦ୍ରର ଅପର ପାରରେ ଅନେକ ଧନରତ୍ନ ଥିବାର ସେମାନେ ଯଥାର୍ଥ ଅନୁମାନ କରି ସମୁଦ୍ରର ନାମ ରତ୍ନାକର ଦେଇଥିଲେ । ଲକ୍ଷ୍ମୀ ରତ୍ନାକର ଦୁଲଣୀ ବୋଲି କଳ୍ପନା କରିଥିଲେ । ରତ୍ନାକରରେ ଅନ୍ୱେଷଣ କଲେ ଅଧିକ ଧନ ପ୍ରାପ୍ତ୍ୟାଶା, ସେମାନଙ୍କ ହୃଦୟରେ ସ୍ଥାନ ପାଇଥିଲା । ତୁମ୍ଭେମାନେ ରତ୍ନାକର ଦୁହିତା ଲକ୍ଷ୍ମୀଙ୍କୁ ଘରେ ପୂଜା କରିବାକୁ ଗଲା ମାତ୍ରେ ତା'ର ଜନ୍ମସ୍ଥାନଟି ଅପବିତ୍ର ବୋଲି ପ୍ରକାଶ କଲ । ତୁମ୍ଭମାନଙ୍କର ନିଜ ନିଜ ସ୍ତ୍ରୀମାନଙ୍କୁ ପର୍ଦାନସୀନ କରି ରଖିଲା ପରି ଲକ୍ଷ୍ମୀଙ୍କୁ ମଧ ବନ୍ଦ କରି ରଖିଲ, ତା'ର ପିତ୍ରାଳୟରେ ସ୍ୱଚ୍ଛନ୍ଦରେ, ଅବାଧରେ କ୍ରୀଡ଼ା କରିବାକୁ ଦେଲ ନାହିଁ । ଯାହାର ରାଜତ୍ୱ ଯାହାର ନିବାସ ଏଡ଼େ ଅପବିତ୍ର ବୋଲି ମନେ ହେଲା, ତାହାର ପୂଜା କରୁଅଛୁଁ ବୋଲି କହିବା କି କେବଳ ଛଳନା ନୁହେଁ ? ତୁମ୍ଭେମାନେ ମୋର ଭକ୍ତ ନୁହଁ । ମୋର ଭକ୍ତ ଥିଲେ ଆର୍ଯ୍ୟଗଣ, ଇଜିପ୍ଟବାସୀ ଜାତି ପ୍ରଭୃତି । ଆଧୁନିକ ପ୍ରଧାନ ଭକ୍ତ ଇଉରୋପବାସୀ, ଆମେରିକାବାସୀ, ଜାପାନବାସୀ । ସେମାନେ କେବଳ ମୋର ଭକ୍ତ ବୋଲି ଏଡ଼େ ସଙ୍ଗତିସମ୍ପନ୍ନ, ଧନବାନ୍, ମୋର ରାଜ୍ୟରେ ସେମାନେ ନିର୍ଭୟରେ କ୍ରୀଡ଼ା କରୁଅଛନ୍ତି । କେତେ ମହାପୁରୁଷ ମୋର ସେବା ତତ୍ପର ରହି ସମୁଦ୍ର ଗର୍ଭରେ ପ୍ରାଣ ବିସର୍ଜନ ଦେଇଅଛନ୍ତି । ସେମାନଙ୍କର ଅସ୍ଥିକୁ ମୁଁ ମୋର ହୃଦୟର ମାଳ କରି ରଖିଅଛି । ଅନନ୍ତକାଳ ରଖିବି । କଲମ୍ବସ, କୁକ୍ ପ୍ରଭୃତିଠାରୁ ବଳି କି ମୋର ଶ୍ରେଷ୍ଠ ପୂଜାରୀ କଳସପୂଜକ ? ''ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ'' । ତୁମ୍ଭେମାନେ କଳସ ବାରି ପୂଜା କରି କି ଅନନ୍ତ ବାରି ରାଶି ପୂଜକର ଫଳ ପାଇବାର ଇଚ୍ଛା କର ? ମୁଁ ତୁମ୍ଭମାନଙ୍କ ପୂଜା ଗ୍ରହଣ କରୁ ନାହିଁ । ପୂଜା ସେବା ବହୁକାଳ ମୋଠାରେ ପହଞ୍ଚିବାର ଆଶା ନାହିଁ । ପାଶ୍ଚାତ୍ୟ ଜାତି ବଳପୂଜକ ତାଙ୍କଠାରୁ ପୂଜାମନ୍ତ୍ର ଓ ଉପାୟ ଶିକ୍ଷାକର । ଏପରି ପ୍ରାର୍ଥନା ବୃଥା ।

ଯମ - ଅନେକ ଗୁଡ଼ାଏ କହିଲେ ବରୁଣ । ଆବଶ୍ୟକ ନ ଥିଲା । ମୋର କଥା କିନ୍ତୁ ସଂକ୍ଷିପ୍ତ ।

ହିନ୍ଦୁଗଣ, ମୁଁ ମୃତ୍ୟୁଦେବତା । ତୁମ୍ଭେମାନେ ମୋତେ ଖୁବ୍ ଭୟଙ୍କର ଏବଂ ଘୃଣାଚକ୍ଷୁରେ ଦେଖ । ସୁତରାଂ ମୁଁ ଦେବସଭାରେ ଉପସ୍ଥିତ ହେବା କଳ୍ପନା ତୁମ୍ଭମାନଙ୍କର ନ ଥିଲା । ମୋଠାରୁ ଉପଦେଶ ଶ୍ରବଣ କରିବାର ତୁମ୍ଭମାନଙ୍କର ଇଚ୍ଛା ବହିର୍ଭୂତ । ଇନ୍ଦ୍ରଙ୍କ ଆହ୍ୱାନରେ ଆସିଅଛି, ଯେହେତୁ ଏହା ଦେବସଭା । ଇନ୍ଦ୍ର ମୋତେ ଛାଡ଼ି ସଭା କରି ନ ପାରନ୍ତି ।

ଅଗ୍ନି - ସଂକ୍ଷେପ କରୁ କରୁ ଭୂମିକା ଯେ ଅତି ବଡ଼ ହେଲାଣି ।

ଯମ - ଭୂମିକାଟା ଟିକିଏ ବଡ଼ ସତ, ମାତ୍ର ବକ୍ତବ୍ୟ ଅତି ଅଳ୍ପ । ଆର୍ଯ୍ୟଗଣ ମୋତେ ନିଷ୍ପକ୍ଷପାତୀ ଧର୍ମରାଜ ଏବଂ ନ୍ୟାୟପରାୟଣ ବୋଲି ସ୍ତୁତି କରୁଥିଲେ । ଆର୍ଯ୍ୟମାନେ କର୍ତ୍ତବ୍ୟପରାୟଣ, ସ୍ୱାର୍ଥତ୍ୟାଗୀ ଓ ନିର୍ଭୀକ ଥିଲେ । ସୁତରାଂ ସେମାନେ ମୃତ୍ୟୁକୁ ଭୟ କରୁନଥିଲେ । ଏଣୁ ମୃତ୍ୟୁ ଦେବତା ମୋତେ ଅତି ଉଚ୍ଚାସନ ଦେଇ ମୋର ସ୍ତୁତିପାଠ କରୁଥିଲେ । ସେମାନେ ଭାବୁଥିଲେ, ଦିନବ୍ୟାପୀ କଠିନ ପରିଶ୍ରମର ଆରାମଦାୟିନୀ ନିଦ୍ରା ଯେପରି, ଜୀବନବ୍ୟାପୀ ମହା ପରିଶ୍ରମ, ଅଧ୍ୟବସାୟ ଓ ସ୍ୱାର୍ଥତ୍ୟାଗର ବିଶ୍ରାମ ଦାୟିନୀ ମହାନିଦ୍ରା ସେହିପରି । ମୃତ୍ୟୁକୁ ସେମାନଙ୍କର ଟିକେ ମାତ୍ର ଭୟ ନ ଥିଲା । ଏଣୁ ମୃତ୍ୟୁର ସମ୍ମୁଖୀନ ହେବାକୁ ଆଗରୁ ଶରୀର ମନକୁ ଅପାପବିଦ୍ଧ କରି ରଖୁଥିଲେ । ସେମାନେ ବୀର, ଏଣୁ ମୃତ୍ୟୁଦେବତାକୁ ସେମାନେ ନ୍ୟାୟନିଷ୍ଠ, ଦଣ୍ଡଧର ବୋଲି ମାନିଥିଲେ । ଆଧୁନିକ ହିନ୍ଦୁଗଣଙ୍କଠାରେ ମୁଁ ଘୃଣାର ପାତ୍ର । ମୋର ମୁଖ୍ୟ ଶରୀର ବିକଟ, ଗୋଡ଼ ଗୋଦରୀ ଓ ପୂଜଯୁକ୍ତ, ବୀଭତ୍ସ, ଭୟୋତ୍ପାଦକ । ମୋର ଅସ୍ତ୍ରଶସ୍ତ୍ର ବାହନ ସମସ୍ତ ଜଘନ୍ୟ ଓ ଭୀତିପ୍ରଦ । ବାଲ୍ୟକାଳରୁ ମୃତ୍ୟୁଭୟ ଜନ୍ମାଇ ହିନ୍ଦୁଗଣ

କେବଳ ଗୁଡ଼ାଏ କାପୁରୁଷ ଜନ୍ମ କରୁଅଛନ୍ତି । ଏଣୁ ଭାରତବର୍ଷ ବୀରଶୂନ୍ୟ । ଦେଶ ସମାଜ ଓ ପର ନିମନ୍ତେ ସ୍ୱାର୍ଥ ବଳିଦାନ ହିଁ ମନୁଷ୍ୟତ୍ୱ । ଏତଦ୍ୱାରା ହିଁ ଆତ୍ମପ୍ରସାଦ ଲାଭହୁଏ । ଯିଏ ଆତ୍ମପ୍ରସାଦ ଲାଭ କରିଅଛି, ସେ ମୋର ସମ୍ମୁଖୀନ ହେବାକୁ ତ୍ରସ୍ତ ହେବ କାହିଁକି ? ଆର୍ଯ୍ୟଗଣ ମୋତେ ବାୟୁଶକ୍ତି ଦେବତା ବୋଲି ସ୍ଥିର କରିଥିଲେ । ପ୍ରାଣବାୟୁ ଯମର ଅଧୀନ । ସେହି ପ୍ରାଣବାୟୁ କର୍ତ୍ତବ୍ୟନିଷ୍ଠ ବ୍ୟକ୍ତି କର୍ତ୍ତବ୍ୟ ଶେଷ କଲାରୁ ବା କର୍ତ୍ତବ୍ୟସାଧନ କଲାବେଳେ ବହିର୍ଗତ ହୋଇ ଅନନ୍ତ ବାୟୁରାଶିରେ ମିଶେ । ସେହି ମୃତ୍ୟୁ ସ୍ପୃହଣୀୟ ମୃତ୍ୟୁ । ମୁଁ ସେହି ମୃତ୍ୟୁର ଦେବତା । ଆତ୍ମହତ୍ୟା, ନରହତ୍ୟା ପ୍ରଭୃତି ମହାପାପର ମୁଁ ଦେବତା ନୁହେଁ । ଆର୍ଯ୍ୟମାନେ ମୋତେ ଏତାଦୃଶ ପାପ କାର୍ଯ୍ୟର ଦେବତାରୂପେ ପୂଜା କରୁ ନଥିଲେ । ଆତ୍ମହତ୍ୟା, ନରହତ୍ୟା ବିକୃତ ମନର କାର୍ଯ୍ୟ । ମାତ୍ର ଯେଉଁ ସମାଜ, ଯେଉଁ ଜାତି କୁଳମର୍ଯ୍ୟାଦାଭିମାନରେ ଅସଂଖ୍ୟ ବାଳିକା ଓ ବିଧବାଙ୍କୁ ଅଗ୍ନିରେ ନିକ୍ଷେପ କରି ଜ୍ଞାନକୃତ ନରହତ୍ୟା କରୁଥିଲେ, ସେମାନେ ମୃତ୍ୟୁଦେବତା ଯମର ପ୍ରତିଦ୍ୱନ୍ଦ୍ୱୀ, ଯମର ନ୍ୟାୟନିଷ୍ଠତାରେ କଳଙ୍କାରୋପଣକାରୀ । ହିଂସାକାରୀଙ୍କୁ ହିଂସା କରିବା ଯମର ଆଇନ ବହିର୍ଭୂତ, ନୋହିଲେ ଆଜି ଜୀବନ୍ତ ଶରୀର ଦହନକାରୀ ଜାତି ଧରା ପୃଷ୍ଠରେ କଦାପି ନଥାନ୍ତେ । ନିଦ୍ରା ଅପେକ୍ଷା ମହାନିଦ୍ରା ଶାନ୍ତିପୂର୍ଣ୍ଣ ବୋଲି ଆର୍ଯ୍ୟଗଣ ଭାବିଥିଲେ । ଚିନ୍ତାକୁଳ ହୋଇ ଶୋଇବାକୁ ଗଲେ ଛଟପଟ ହେବା ସାର, ନିଦ୍ରାଦେବୀର ଦୟା ହୁଏ ନାହିଁ । କର୍ତ୍ତବ୍ୟକର୍ମ ନିଷ୍ପନ୍ନ ନକରି ପାପଯୁକ୍ତ, କଳଙ୍କ-କାଳିମା ଲିପ୍ତ ହୋଇ ମୃତ୍ୟୁ ଶଯ୍ୟାରେ 'କି କଲି, କି ହେବ' ବୋଲି ଛଟପଟ ହେବା ବ୍ୟକ୍ତି ପ୍ରତି ମହାନିଦ୍ରା ଅତି ବିଭୀଷିକାମୟୀ । ଶାସ୍ତ୍ର ହିନ୍ଦୁଗଣଙ୍କୁ ମୃତ୍ୟୁର ସମ୍ମୁଖୀନ ହେବାକୁ ଭୟଶୂନ୍ୟ କରିବା ତେଣେ ଥାଉ; ମୃତ୍ୟୁର ଭୟ ପ୍ରଦର୍ଶନ ଦ୍ୱାରା, ଯମଗୃହର ବିଭତ୍ସ ବର୍ଣ୍ଣନା ଦ୍ୱାରା ଭୀତିଯୁକ୍ତ କରୁଅଛନ୍ତି । ଯମଦ୍ୱାର ତପ୍ତ ବୈତରଣୀ ନଦୀବେଷ୍ଟିତ, ମୃତବ୍ୟକ୍ତି ଏହି ତପ୍ତ ବୈତରଣୀ ପାରି ହେବାକୁ ଅଶେଷ ପ୍ରକାର କଷ୍ଟ ପାଏ; କେବଳ ସବତ୍ସା କୃଷ୍ଣ ଗୋଦାନ କଲେ ଏଥିରେ ସୁଖ ସନ୍ତରଣ କରି ଯମ-ଦ୍ୱାରରେ ଉପସ୍ଥିତ ହୁଏ । ଯମରାଜ୍ୟରେ ମୃତ ବ୍ୟକ୍ତିକୁ ମହାକ୍ଷୁଧା, ମହାତୃଷା ସହ୍ୟ କରିବାକୁ ହୁଏ । ମହା ଅନ୍ଧକାରରେ ବାସ କରିବାକୁ ହୁଏ । ମହାଉଲଙ୍ଗ ହୋଇବାସ କରିବାକୁ ହୁଏ । ଯେଉଁ କ୍ଷୁଧା ତୃଷା ଅନ୍ଧକାର ଓ ଲଜ୍ଜାକୁ ଲୋକ ଇହ ସଂସାରରେ ଭୟକରେ, ମୃତ୍ୟୁ ପରେ ଯମଗୃହରେ ସେହି ଅବସ୍ଥାମାନଙ୍କ ସହିତ ମହାଶବ୍ଦ ଯୋଗକରି ଶାସ୍ତ୍ରକାରଗଣ ଲୋକମନରେ କି ଅକଥନୀୟ ଭୟ ଜନ୍ମାଇ ଅଛନ୍ତି ! ପାପଯୁକ୍ତ ବ୍ୟକ୍ତି ଏଥିକି ଭୟ କରିବା ସ୍ୱାଭାବିକ । ମାତ୍ର ଏ ଭୟ ଶିକ୍ଷା ନିମନ୍ତେ ନୁହେଁ । ଯେହେତୁ ପାପୀ ବ୍ୟକ୍ତି ଗୋଟିଏ ଗୌ, ଗୋଟିଏ ଦୀପ, ଖଣ୍ଡିଏ ଲୁଗା, ଏକଘଟ ଜଳ, କିଛି ତଣ୍ଡୁଳ ଦାନକଲେ ତପ୍ତ ବୈତରଣୀ ସୁଖରେ ପାରି ହୋଇ ସମସ୍ତ କ୍ଲେଶରୁ ରକ୍ଷାପାଏ । ଆର୍ଯ୍ୟମାନେ ମୋତେ ବାୟୁଦେବତାରୂପେ କଳ୍ପନା କରି ମୋ ନିମନ୍ତେ ଦ୍ୟୁ ଓ ମଧ୍ୟସ୍ଥାନ ସ୍ଥିର କରିଥିଲେ । ସେଠାରେ ବା ବୈତରଣୀର ସ୍ଥାନ କାହିଁ ? ସେଠାରେ ପୁଣି କ୍ଷୁଧା, ତୃଷା କାହିଁ ? (ଅଗ୍ନିଙ୍କ ଆଡ଼କୁ ଅନାଇ) ଅଗ୍ନି, ତୁମେ ମୃତ୍ୟୁରୁ ରକ୍ଷା କରିବା ନିମନ୍ତେ ସମୟ ସମୟରେ ଘୃତାହୁତି ଉତ୍କୋଚ ପାଉଅଛ । ମାରକଯୋଗ ହଟାଇ ଦେବାକୁ ତୁମ୍ଭେ ଏବଂ ଅନ୍ୟାନ୍ୟ ଦେବତା ଓ ଗ୍ରହଗଣ ମଧ ଘୃତ ପାଞ୍ଚଆହୁତି ଲେଖାଏ ନିଅ ।

ଅଗ୍ନି - ନା, ନା । ମୃତ୍ୟୁକୁ ଯେଉଁ ଜାତି ପ୍ରତାରଣା କରିବାକୁ ପ୍ରୟାସୀ, ସେମାନଙ୍କ ପ୍ରାର୍ଥନା ଅନୁସାରେ ସେମାନଙ୍କୁ ନିଗ୍ରହକରଣ ଶକ୍ତି ଦେବା ମୋ ମତରେ ସଙ୍ଗତ ନୁହେଁ ।

ଇନ୍ଦ୍ର - ଆମ୍ଭେମାନେ ବିଶ୍ୱଶକ୍ତିର ଭେଦ ମାତ୍ର । ଆର୍ଯ୍ୟମାନେ ଆମ୍ଭମାନଙ୍କର ପୂଜା ଆରାଧନା ଓ ସାଧନା ଆରମ୍ଭ କରିଥିଲେ । ମାତ୍ର ସେମାନଙ୍କ ମାନସିକ ବୃତ୍ତି ପରିସ୍ଫୁଟ ହେବା ଆଗରୁ ଅନ୍ୟାନ୍ୟ ପ୍ରାଚୀନ ଜାତି ପରି କାଳଗର୍ଭରେ ଉଭାଇଗଲେ । ତୁମ୍ଭେମାନେ

ସେମାନଙ୍କର ବଂଶଧର ବୋଲି ଗର୍ବ କର । ଶକ୍ତି କୌଣସି ଜାତିର ବା ସମାଜର ଏକଚାଟିଆ ଅଧିକୃତ କିମ୍ବା ସେବ୍ୟ ହୋଇ ନ ପାରେ । ଶକ୍ତିର ଯେ ଆରାଧନା କଲା, ଶକ୍ତି ତାର ସେବ୍ୟ ଓ ପୂଜ୍ୟ । ଆର୍ଯ୍ୟଗଣ ମୋର ଶକ୍ତିଦ୍ୱାରା ଶତ୍ରୁ ଜୟ କରିବାକୁ ବଳୀୟାନ୍ ହେବାକୁ - ଅସାଧ ସାଧନ କରିବାକୁ କେଡ଼େ ଉତ୍ସାହୀ ହୋଇଥିଲେ । ସେମାନଙ୍କ ଦ୍ୱାରା ଉତ୍ସାହରେ ବାରବାର ଉଚ୍ଚାରିତ ସ୍ତନୟିତ୍ନୁ, ବିଦ୍ୟୁତ୍, ବଜ୍ର ପ୍ରଭୃତି ଶବ୍ଦଗୁଡ଼ିକ ଆଜି ତୁମ୍ଭମାନଙ୍କର ଭୀତିପ୍ରଦ ହୋଇଅଛି । ସେମାନେ ଯେଉଁ ବଜ୍ରଶକ୍ତିର ପୂଜା ଆରମ୍ଭ କରିଥିଲେ, ତାହାକୁ ତୁମ୍ଭେମାନେ ତ୍ୟାଗ କରିଅଛ । ମୋର ଶକ୍ତିକୁ ହେୟଜ୍ଞାନ ମୋ ପ୍ରତି ମଧ ହେୟଜ୍ଞାନ ନୁହେଁ କି ? ଯେଉଁମାନେ ଐନ୍ଦ୍ର ଶକ୍ତିର ଉପାସକ, ସେମାନେ ମୋର ଭକ୍ତ, ମୋର ସ୍ନେହ ପାତ୍ର ଓ କଲ୍ୟାଣ ଭାଜନ । ତୁମ୍ଭେମାନେ ମୋର ଶକ୍ତିପୂଜକ ନୁହଁ, ମୋର କାଳ୍ପନିକ ରୂପର ପୂଜକ । ମାତ୍ର ସେ ରୂପରେ ମଧ ହାସ୍ୟୋଦ୍ଦୀପକ ଓ ନିନ୍ଦାସୂଚକ ଚିହ୍ନ ଅଙ୍କିତ କଲ । ନିଜ ନିଜ ନୈତିକ ଚାରିତ୍ର୍ୟ ଦୋଷ କ୍ଷାଳନ ନିମନ୍ତେ ମୋଠାରେ ଗୋଟିଏ ଜାର ଦୋଷ ଆରୋପ କଲ । ମୋଠାରେ କେବଳ ନୁହେଁ, ଅନ୍ୟାନ୍ୟ ଦେବତାମାନଙ୍କୁ ମଧ ଚରିତ୍ରହୀନ କରି ଚିତ୍ରିତ କରିଅଛ । ଯେଉଁ ଜାତିର ଆଦର୍ଶ ପୁରୁଷ ବା ଦେବତା ଜଘନ୍ୟ ଚରିତ୍ର ଦୋଷଦୁଷ୍ଟ, ସେହିଜାତିର ନୈତିକ ଚରିତ୍ର ଜଘନ୍ୟ ଓ ଘୃଣ୍ୟ ବୋଲି ଅନ୍ୟ ଜାତି କର୍ତ୍ତୃକ ଉପହସିତ ହେବା ସ୍ୱାଭାବିକ ।

ଦେବତାମାନେ ଶକ୍ତିଧର ।

ଶକ୍ତିସାଧନ ଦ୍ୱାରା ଲୋକବର୍ଗ ଉପକୃତ ଓ ଉନ୍ନତିଶୀଳ ହେବେ ବୋଲି ଶକ୍ତି ସଂସାରରେ ବ୍ୟାପ୍ତ ହୋଇରହିଅଛି । ବିଦ୍ୟୁତର ସାଧନା ନକରି ଇନ୍ଦ୍ରାୟ ସ୍ୱାହା ବୋଲି ଘୃତାହୁତି ଦେଲେ କି ମୋର ତୃପ୍ତି ଅଛି ? ମୋର ଭକ୍ତ, ସେବକ ପାଶ୍ଚାତ୍ୟ ଜାତି, ମୋର ଉପାସନାଦ୍ୱାରା ସେହି ଜାତିକି ଅସାଧ ସାଧନ କରିଅଛନ୍ତି, ତାହା କି ତୁମ୍ଭେମାନେ ଦେଖ ନାହିଁ ? ଏହି ବୈଦ୍ୟୁତିକ ସାଧନା କରୁ କରୁ କେତେ ମହାପ୍ରାଣ ବ୍ୟକ୍ତି ପ୍ରାଣ ହରାଇ ଅଛନ୍ତି । ତଥାପି ତାଙ୍କ ଦେଶବାସୀ ହତୋତ୍ସାହ ନ ହୋଇ ମୃତ୍ୟୁ ପଣକରି ଲକ୍ଷ୍ୟ ସାଧନାରେ ଲାଗି ଅଛନ୍ତି, ପ୍ରଥମ ବିଦ୍ୟୁତ୍ ଶକ୍ତି ଆବିଷ୍କର୍ତ୍ତାଠାରୁ ଆରମ୍ଭି ଆଜିଯାଏ କି କଳ୍ପନାତୀତ ଆବିଷ୍କାର ମୋର ଭକ୍ତଗଣ କରି ଯାଇଅଛନ୍ତି । ଅନ୍ୟକଥା ଛାଡ଼, କେବଳ ମାର୍କନି ଆବିଷ୍କୃତ ବେତାର ଖବର ମାନବ ଜାତିର କି କଲ୍ୟାଣକର ହୋଇଅଛି । ସମୁଦ୍ର ଯାତ୍ରୀ ଓ ବିମାନଚାରୀମାନଙ୍କର ସଙ୍କଟ ମୋଚନ ନିମନ୍ତେ ଏପରି ଆବିଷ୍କାର ପୂର୍ବେ କେବେ ହୋଇନଥିଲା । ଏଡ଼ିସନ୍, ରଣ୍ଟଜେନ୍ ଏବଂ ମାର୍କନିଠାରୁ ବଳି ମୋର ଭକ୍ତ ଓ ସେବକ ଆଉ କିଏ ଅଛି ? ତୁମ ଦେଶର ଜଗଦୀଶ ଓ ରମଣ ସେହି ପାଶ୍ଚାତ୍ୟ ଶିକ୍ଷକଙ୍କ ପଦାନୁସରଣକରି ମୋର ସେବାରେ ମନ ଦେଇ ଅଛନ୍ତି । ମାତ୍ର ବାଲୁକାସ୍ତୂପ ମଧରେ ସେ ଦୁଇ ଜଣ ଦୁଇ ଗୋଟି ବାଲୁକା କଣା ମାତ୍ର । ଆଉ ଯାହା ବକ୍ତବ୍ୟ ଥିଲା, ତାହା ଅଗ୍ନି ପ୍ରଭୃତି ଦେବତାଗଣ ପ୍ରକାଶ କରି ସାରିଅଛନ୍ତି । ପିଷ୍ଟପେଷଣ ବୃଥା । ଯାବତ୍ ତୁମ୍ଭେମାନେ କାଳ ନିୟମକୁ ଓ ସଭ୍ୟତାର ଗତିକୁ ଅନୁସରଣ କରି ଶକ୍ତି ଆରାଧନା ନକର, ତାବତ୍ ତୁମ୍ଭମାନଙ୍କର ଉନ୍ନତି ଆଶା ସୁଦୂର ପରାହତ । ତୁମ୍ଭେମାନେ ନିଜ ଦୋଷଦର୍ଶୀ ନହୋଇ ମନର ଆବେଗରେ ଓ ପୂର୍ବପୁରୁଷଙ୍କର କାଳ୍ପନିକ ଗୌରବରେ ଗର୍ବିତ ହୋଇ ଦେବତାମାନଙ୍କର ଶରଣ ଲୋଡୁଅଛ, ଘୃତାହୁତି ଦ୍ୱାରା, ଉତ୍କୋଚ ଦ୍ୱାରା ଦେବତାଙ୍କ ପ୍ରସାଦଲାଭର କଳ୍ପନା କରୁଅଛ । ଯେବେ ସେବକର ପ୍ରଦତ୍ତ ପାରିତୋଷିକ ବା ଉତ୍କୋଚ ପ୍ରାପ୍ତି ନିମନ୍ତେ ଦେବତାମାନେ ଲାଳାୟିତ, ତେବେ ସେମାନଙ୍କ ନାମ ମନୁଷ୍ୟ ନହୋଇ ଦେବତା ହେଲା କାହିଁକି ? ଦେବତାମାନେ ଶକ୍ତିଧର, ଶକ୍ତିର ଆରାଧନା ଦେବାରାଧନା, ଏଣୁ ଶକ୍ତିର ଆରାଧନା କର । ପାଶ୍ଚାତ୍ୟ ଜାତିଠାରୁ ଏହା ଭକ୍ତି ସହକାରେ ଶିକ୍ଷାକର । ବହୁକାଳ ଅନୁତାପ ଓ ସାଧନା ନକଲେ ତୁମ୍ଭ ଜାତିର ପାପର ପ୍ରାୟଶ୍ଚିତ୍ତ ହେବ ନାହିଁ । ଯେଉଁ

କାଳ୍ପନିକ ଉପାୟରେ ସ୍ତ୍ରୀ ଓ ଶୂଦ୍ରାଦିଙ୍କୁ ଦମନ କରିବାର ଉପାୟ ଅନ୍ୱେଷଣ କରୁଅଛ, ସେ ଉପାୟ ଆଉ ମିଳିବ ନାହିଁ । ଚରିତ୍ର ସଂଶୋଧନ କର, ଅହମିକା ତ୍ୟାଗ କର, ଆଧୁନିକ ସଭ୍ୟ ଗଣନାରେ ତୁମ୍ଭମାନଙ୍କର ଗାର ପଡ଼ିବ ।

(ଦେବତାମାନେ ଗାତ୍ରୋତ୍‌ଥାନ କଲାବେଳେ)

ରାମାନୁଜ - (ପ୍ରଣାମପୂର୍ବକ) ଅମରଗଣ, ମୋର ଅପରାଧ କ୍ଷମାକରି ଗୋଟିଏ ମାତ୍ର ନିବେଦନ ଶ୍ରବଣ କରିବା ହେଉନ୍ତୁ ।

ଇନ୍ଦ୍ର - ଆଚ୍ଛା କହ ।

ରାମାନୁଜ - ପୂର୍ବେ ନରଗଣଙ୍କୁ ଦୈତ୍ୟାଦିମାନେ ପୀଡ଼ିତ କଲେ ଋଷିମାନେ ଅମରଗଣଙ୍କ ଶରଣାପନ୍ନ ହେଉଥିଲେ । ଏବେ ହିନ୍ଦୁଗଣଙ୍କର ସେହି ଦଶା ଉପସ୍ଥିତ ହେବାରୁ ଆପଣମାନଙ୍କର ଶରଣାପନ୍ନ ହୋଇଅଛୁଁ । ଆପଣମାନଙ୍କର ଉପଦେଶ ଶିରୋଧାର୍ଯ୍ୟ ହେଲେ ସୁଦ୍ଧା ଥରେ ପୂର୍ବାଚରିତ ପ୍ରଥାନୁସାରେ ବିଷ୍ଣୁଙ୍କର ପଦାନତ ହେବାକୁ ଆମ୍ଭେମାନେ ଇଚ୍ଛା କରିଅଛୁଁ । ପୂର୍ବେ ଋଷିମାନଙ୍କୁ ଘେନି ଅମରଗଣ ବ୍ରହ୍ମାଙ୍କଠାକୁ ଯାଉଥିଲେ । ବ୍ରହ୍ମା ସମସ୍ତଙ୍କ ସମଭିବ୍ୟାହାରରେ ବିଷ୍ଣୁଙ୍କଠାରେ ସବୁ ଜଣାଉଥିଲେ । ବର୍ତ୍ତମାନ ସାନୁନୟ ନିବେଦନ ଯେ, ଆପଣମାନେ ଆମ୍ଭମାନଙ୍କୁ ଘେନି ବ୍ରହ୍ମାଙ୍କଠାକୁ ଚାଲିବା ହେଉନ୍ତୁ । ବ୍ରହ୍ମା ଅନ୍ୟ ବ୍ୟବସ୍ଥା କରିବେ ।

ଯମ - ଭାରି ଆଶ୍ଚର୍ଯ୍ୟ ତ ! ତୁମ୍ଭେମାନେ ସେହି ଋଷିକଳ୍ପ ଏବଂ ଆମ୍ଭେମାନେ ତୁମ୍ଭମାନଙ୍କର କାଳ୍ପନିକ ଦେବତା, ନା ? ବିଷ୍ଣୁ ବୋଲି ସୂର୍ଯ୍ୟକୁ ଆମ୍ଭେମାନେ ଜାଣୁ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆମ୍ଭମାନଙ୍କ ସମୟରେ ସୃଷ୍ଟି ହୋଇ ନଥିଲେ । ସେମାନେ ଅର୍ବାଚୀନ । ସେମାନଙ୍କଠାରୁ ଆମ୍ଭେମାନେ ଯିବୁ ନାହିଁ ବା କେବେ ଯାଇନାହୁଁ । ତୁମ୍ଭେମାନେ ତାଙ୍କଠାକୁ ନିଜେ ନିଜେ ଯାଅ ।

(ଦେବତାମାନଙ୍କର ଅନ୍ତର୍ଦ୍ଧାନ, ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ)

ଜଣେ ରାଜା- ରାମାନୁଜ, ଆଶା ଭରସା ତ ନିର୍ମୂଳ ହେଲାପରି ମନେ ହେଉଅଛି ।

ରାମାନୁଜ - କି କରାଯାଏ । କହି ନ ଜାଣିବା ଦୋଷ. ମୋତେ ମୁଖ୍ୟ ବକ୍ତା କରିଥିଲେ ଅନ୍ତତଃ ମୁଁ ସୁଫଳକୁ ଆଣିଥାନ୍ତି ।

ମଦନ - ଆରେ, ପ୍ରଥମରୁ ତ ପ୍ରଣାମ ନ କରି ଅପମାନ କଲ, ମୁଣ୍ଡରେ ବେତବାଡ଼ି ବାଜିବାରୁ ପ୍ରଣାମ କଲ । ତୁମେ ପୁଣି କଥା କହୁଛ !

ରାମାନୁଜ - ଆହେ ଜାଣିଲୁ, ଏ ଦେବତାଗୁଡ଼ିକଙ୍କ ରୂପରେଖର ପ୍ରକୃତ ପରିଚୟ ଆମ୍ଭମାନଙ୍କୁ ମିଳି ନାହିଁ । ଏଣୁ ସହସା ଦେଖି ଚମକି ଗଲି । କିଏ କେଉଁ ଦେବତା ଚିହ୍ନି ପାରିଲି ନାହିଁ । ଏଣୁ ବେତଟା ଟିକିଏ ବାଜିଲା । ବ୍ରହ୍ମା ବିଷ୍ଣୁ ମହେଶ୍ୱର ତ ଆମ୍ଭମାନଙ୍କର ନିତ୍ୟ ପୂଜିତ ଗୃହ ଦେବତା, ସେମାନଙ୍କୁ କି ଚିହ୍ନିବାକୁ ମୋର କ୍ଷମତା ନାହିଁ ? ଦୈନିକ ମୁଣ୍ଡ ଲଗାଇ ଦେଖୁଛ, ମୋର କପାଳରେ ବିଣ୍ଡି ପଡ଼ିଗଲାଣି, ମୁଁ ସେମାନଙ୍କୁ ଚିହ୍ନି ନାହିଁ ? ଦେଖିଲାକ୍ଷଣି ଦଣ୍ଡବତ ହେବି । ଚିନ୍ତା କର ନାହିଁ, ମୋତେ କହିବାକୁ ଦେବ ।

ସମସ୍ତେ - ଆଚ୍ଛା ହେଉ, ଅତି ବିନୀତ ଭାବରେ ସବୁ ବୁଝାଇ କହିବ, ଯେପରି କି ସୁଫଳ ମିଳିବ ।

(ଦୂରରେ ସୁମଧୁର ସଙ୍ଗୀତ ଓ ବୀଣା ଧ୍ୱନି)

ରାମାନୁଜ - ନିଶ୍ଚୟ ନାରଦଙ୍କର ବୀଣାଧ୍ୱନି, ନାରଦ ସଙ୍ଗରେ ଅଛନ୍ତି । ଆମ୍ଭମାନଙ୍କର ଜାତିଭାଇ, ଅବଶ୍ୟ ଆମ ସପକ୍ଷରେ ଦୁଇପଦ କହିବେ ।

(ସହସା ସଭାମଞ୍ଚ ଆଲୋକିତ ହେଲା । ବ୍ରହ୍ମା ବିଷ୍ଣୁ ଓ ମହେଶ୍ୱର ସମାସୀନ, ଅନ୍ୟ କେହି ନାହିଁ । ସମସ୍ତେ ଦଣ୍ଡପ୍ରଣାମ କରିବା ଏବଂ ଉଠି କରଯୋଡ଼ି ଠିଆ ହେବା)

ବ୍ରହ୍ମା - ତୁମ୍ଭମାନଙ୍କର ଏଠାକୁ ଆସି ଆମ୍ଭମାନଙ୍କର ସାକ୍ଷାତ୍ ପାଇଁ ପ୍ରାର୍ଥନା କରିବାର ଅଭିପ୍ରାୟ କଣ ?

ସମସ୍ତେ - ଅସହ୍ୟ ଦୁଃଖ ଉପସ୍ଥିତ ହେବାରୁ ତାହାର ନିରାକରଣ ନିମନ୍ତେ ଆପଣମାନଙ୍କ ପଦାନତ

ହୋଇଅଛୁ । ଆମ୍ଭମାନଙ୍କର ଯାହା ପ୍ରାର୍ଥନା ଅଛି, ତାହା ରାମାନୁଜ ଶାସ୍ତ୍ରୀ ବିଶଦ ଭାବରେ ବୁଝାଇ କହିବେ ।

ବ୍ରହ୍ମା - ତଥାସ୍ତୁ ।

ରାମାନୁଜ - ଧର୍ମାବତାର, ଶାସ୍ତ୍ରାଧ୍ୟୟନରୁ ଆମ୍ଭେମାନେ ଜାଣିଅଛୁଁ ଯେ, ନରଗଣ ପ୍ରପୀଡ଼ିତ ହେଲେ ଇନ୍ଦ୍ରାଦି ଦେବତାଙ୍କଠାରେ ଦୁଃଖ ଜଣାନ୍ତି । ଇନ୍ଦ୍ରାଦିମାନେ ଋଷିଗଣଙ୍କ ସହିତ ଆପଣଙ୍କ ନିକଟକୁ ଆସି ବ୍ୟବସ୍ଥା କରାଇ ନିଅନ୍ତି । ଏହା ଚିରାନୁଚରିତ ପ୍ରଥା । ଋଷିମାନଙ୍କ ପ୍ରାର୍ଥନା କେବେ ଦେବତାମାନଙ୍କଦ୍ୱାରା ପ୍ରତ୍ୟାଖ୍ୟାତ ହୋଇ ନ ଥିଲା । କିନ୍ତୁ ଆମ୍ଭେମାନେ ଦେବତାମାନଙ୍କୁ ପୂର୍ବ ରୀତ୍ୟାନୁସାରେ ଏଠାକୁ ଆସିବାକୁ ପ୍ରାର୍ଥନା କରିବାରୁ ସେମାନେ କହିଲେ, ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଅର୍ବାଚୀନ ଦେବତା, ସେମାନଙ୍କ ନିକଟକୁ ଆମ୍ଭେମାନେ କେବେ ଯାଇନାହୁଁ, ଏଥର ଯିବୁ କିପରି ? ତୁମ୍ଭେମାନେ ଆପେ ଆପେ ଯାଅ । ଏଣୁ ନିଃସହାୟ ହୋଇ ଆସିଅଛୁଁ । ଯେପରି କି ବିଚାରପ୍ରାର୍ଥୀ ବିନା ଓକିଲ ସାହାଯ୍ୟରେ କୋଟରେ ଉପସ୍ଥିତ ହୁଏ । ଭରସା କେବଳ ଭବଦୀୟ ଚରଣାରବିନ୍ଦ ।

(ବିଷ୍ଣୁ ଶିବଙ୍କ କାନରେ— ସ୍ୱାର୍ଥସିଦ୍ଧି କାମନାରେ ଦେବତାଙ୍କ ନାମରେ ଦୁଇ ପଦ ଚୁଗୁଲି)

ବ୍ରହ୍ମା - ଦେବତାମାନେ ଯଥାର୍ଥ କହିଅଛନ୍ତି । ସେମାନଙ୍କ ଅନେକ ଦିନ ପରେ ଆମ୍ଭମାନଙ୍କର ରୂପ କଳ୍ପନା । ସେମାନେ ଋଷିଗଣଙ୍କୁ ନେଇ କେବେ ଆମ୍ଭମାନଙ୍କ ନିକଟକୁ ଆସି ନଥିଲେ । ତୁମ୍ଭେମାନେ ଋଷି ହୋଇଥିଲେ ଏପରି ଚୁଗୁଲି ଦୁଇପଦ କହି ନଥାନ୍ତ । ତୁମ୍ଭର ଦୁଃଖ ଜଣାଅ, ପରର ନିନ୍ଦାକରି ଏଠାରେ କୌଣସି ଫଳ ନାହିଁ ।

ରାମାନୁଜ - ତିନି ପିତା ଏଠାରେ ଉପସ୍ଥିତ, ସ୍ନେହମୟୀ ପୁତ୍ରବତ୍ସଳା ମାତାମାନେ ଉପସ୍ଥିତ ନାହାନ୍ତି, ଏଣୁ ହୃଦୟ କାନ୍ଦୁଅଛି ।

ବିଷ୍ଣୁ - ଶିବ ପ୍ରକାଶ କର, କାହିଁକି ଉମା ତୁମ୍ଭ ସଙ୍ଗରେ ଆସିଲେ ନାହିଁ ।

ଶିବ - (ସହାସ୍ୟରେ) ସେ କଥା କଣ କହିବି ? ମୁଁ କହିଲି, 'ଉମା, ମୋ ସଙ୍ଗରେ ସଭାକୁ ଚାଲ ।' ସେ କଣ କହିଲେ ଜାଣିଲ—

ବିଷ୍ଣୁ - ତୁନି ହୋଇ ରହିଲ ଯେ ? କଣ ଧ୍ୟାନମଗ୍ନ ହେଲ ?

ଶିବ - ନା, ଜାଣିଲ, ହିନ୍ଦୁମାନେ ମୋତେ ଗଞ୍ଜାଇ ନାମକ କିମ୍ଭୂତ ଗୋଟାଏ ନିଶାଦ୍ରବ୍ୟ ଭୋଗ ଦେଇ ଦେଇ ମୋତେ ଗଞ୍ଜାଡ଼ି କରିଦେଲେ । ଆସିବାବେଳେ ସିଦ୍ଧିପାନ କରି ଆସିଥିଲି, ଆଖି ବନ୍ଦ ହୋଇ ଯାଉଅଛି, ନିଶା ଛାଡ଼ି ନାହିଁ । ଉମା କହିଲେ କି, ''ମୁଁ ପୁରୁଷ ସଭାକୁ ଯିବି ନାହିଁ । ହିନ୍ଦୁଗଣ ସ୍ତ୍ରୀ ଚରିତ୍ରରେ କଳଙ୍କାରୋପ କରନ୍ତି, ସ୍ତ୍ରୀମାନଙ୍କ ପ୍ରତି ସେମାନଙ୍କର ଘୃଣା ଓ ତାଚ୍ଛଲ୍ୟ ବଡ଼ ବେଶି । ମୁଁ ତ ସ୍ତ୍ରୀ, ସଭାରେ ହୁଏତ ସ୍ତ୍ରୀ ନିନ୍ଦା କରିବେ, ସେତେବେଳେ ମୁଁ ନତୁବା ତୁମ୍ଭେ କ୍ରୋଧାନ୍ୱିତ ହେବା ସମ୍ଭବ, ଆଉ ଗୋଟିଏ କଥା—ସ୍ତ୍ରୀମାନେ ପତିପ୍ରାଣା, ମୁଁ ମଧ୍ୟ ପତିପ୍ରାଣା, ଏଣୁ ତୁମର ନିନ୍ଦା ଓ ଅପବାଦ ସହ୍ୟ ନ କରି ମୁଁ ଦେହତ୍ୟାଗ କରି ସତୀ ଆଖ୍ୟା ପାଇଥିଲି । ମୋର ଏହି ସତୀ ଆଖ୍ୟାର ବିଦ୍ରୂପ ସ୍ୱରୂପ ହିନ୍ଦୁଗଣ ବାଳିକା ଓ ବିଧବାମାନଙ୍କୁ ଅଗ୍ନିରେ ଜବରଦସ୍ତି ନିକ୍ଷେପ କରି ସେମାନଙ୍କୁ ସତୀ ଆଖ୍ୟା ଦେଲେ । ଏହାଠାରୁ ବଳି ମୋର ସତୀ ଆଖ୍ୟାର ନିନ୍ଦାବାଦ କ'ଣ ହୋଇପାରେ ? ଏହାଛଡ଼ା ଅବିବାହିତା ଯୁବତୀ ଓ ମୃତ ପତିକାମାନଙ୍କ ଉପରେ ଏମାନଙ୍କର ସର୍ବଦା ଅସତୀତ୍ୱର ଆଶଙ୍କା । ଏହି ବୃଥା ସନ୍ଦେହ ନାରୀ ଜାତିକୁ ଦଗ୍ଧ କରୁଅଛି । ମୋର ଜାତିର ନିନ୍ଦା, କଳଙ୍କ ଯେଉଁଠାରେ ଆଲୋଚିତ ହେବାର କଥା, ସେଠାକୁ ମୁଁ ଯିବି ନାହିଁ । ଏ କଥା କହି ଉମା ଆସିଲେ ନାହିଁ । ତୁମ ଲକ୍ଷ୍ମୀ ନ ଆସିବାର କାରଣ କ'ଣ, କହିଲ ।

ବିଷ୍ଣୁ - ଲକ୍ଷ୍ମୀ ଯାହା କହିଲେ, ତାହା ବିସ୍ତୃତ ଭାବରେ କ'ଣ କହିବି ? ତେବେ ସଂକ୍ଷେପରେ ଏହି ଯେ— ''ହିନ୍ଦୁମାନଙ୍କର ସ୍ତ୍ରୀ ପ୍ରତି ସମ୍ମାନ

ନାହିଁ । ସ୍ତ୍ରୀକୁ ଦାସୀ ବୋଲି ମନେ କରନ୍ତି । ମୋତେ ମଧ୍ୟ ତୁମ୍ଭର ଦାସୀ ବୋଲି କହନ୍ତି । ଦାସୀଟାଏ ସଭାକୁ ଯିବାର ଫଳ କ'ଣ ? ନାମକୁ ମୋତେ ପୂଜା କରୁଥିଲେ ସୁଦ୍ଧା ପଦେ ପଦେ ତିରସ୍କାର କରନ୍ତି । ନିଜ ନିଜ ସ୍ତ୍ରୀମାନଙ୍କୁ ଆବଦ୍ଧ କରି ରଖିଲା ପରି ମୋତେ ମଧ୍ୟ ଆବଦ୍ଧ କରିବାର ଚେଷ୍ଟା । ହିନ୍ଦୁଗଣ ସ୍ତ୍ରୀ ଧନଲୋଲୁପ, ସ୍ତ୍ରୀର ପିତା ଉପଯୁକ୍ତ ଯୌତୁକ ନ ଦେଲେ କିମ୍ବା ସଙ୍ଗରେ ମୂଲ୍ୟବାନ ଅଳଙ୍କାରାଦି ଆଣି ନଥିଲେ ପିତାର ତିରସ୍କାର ଅପମାନ ଆଜୀବନ ସ୍ତ୍ରୀକୁ ସହ୍ୟ କରିବାକୁ ପଡ଼େ । ଯେକୌଣସି କାରଣରୁ ହେଉ, ପିତାର ନିନ୍ଦା, ଜାତି ନିନ୍ଦା, ପିତାର ଗୃହ ନିନ୍ଦା କନ୍ୟା ପ୍ରତି ଅତୀବ ମର୍ମନ୍ତୁଦ । ମୋର ପିତୃ ଗୃହକୁ ଯେଉଁ ଜାତି ଅପବିତ୍ର ବୋଲି ଘୃଣା କରନ୍ତି, ତାଙ୍କ ସହିତ ମୋର ସମ୍ବନ୍ଧ କ'ଣ ? ତୁମ୍ଭେ ପୁରୁଷ, ମୋତେ ଡାକିବାର କାରଣ ପୁନଃପୁନଃ ଅପମାନ କରାଇବା ?'' ଶୁଣିଲ ଶିବ, କମଳାଙ୍କ କଥା ।

ଶିବ - ହୁଁ– ବ୍ରହ୍ମା, ତୁମ ସ୍ତ୍ରୀଙ୍କର ନ ଆସିବାର କାରଣ କଣ ?

ବ୍ରହ୍ମା - ସେ କଥା କଣ କହିବି । ସରସ୍ୱତୀ ସଂକ୍ଷେପରେ କହିଲେ ଯେ— ''ମୁଁ ଧୀଶକ୍ତି ସ୍ୱରୂପିଣୀ ବୋଲି ଆର୍ଯ୍ୟଗଣ ମୋର ପ୍ରଥମ ଆରାଧନା କରୁଥିଲେ । କାଳକ୍ରମେ ମୋର ରୂପ କଳ୍ପନା କରି ହିନ୍ଦୁଗଣ ଯେ ମୋତେ ଲାଞ୍ଛିତ ଓ ଅପମାନିତ କରିଅଛନ୍ତି, ତାହା ଅକଥନୀୟ । ତଥାପି ସ୍ନେହ ପରବଶ ହୋଇ ମୁଁ ସେମାନଙ୍କୁ ଆଶ୍ରୟ ଦେଉଥିଲି, ଯେଉଁ ଦିନଠାରୁ ମୋର ବିଦ୍ୟାରୂପ ଶକ୍ତିରୁ ସ୍ତ୍ରୀ ଜାତିଙ୍କି ବଞ୍ଚିତ କରି ମୋର ଘୋର ଅପମାନ କଲେ, ସେଦିନୁ ମୁଁ ହିନ୍ଦୁମାନଙ୍କୁ ତ୍ୟାଗ କରିଅଛି । ମୋର ଜାତି ଚିରକାଳ ମୂର୍ଖ ରହନ୍ତୁ ବୋଲି ଅନୁଶାସନ ପ୍ରକାଶ କରିବାକୁ ମୁଁ ପୁରୁଷ ସଭାକୁ ଯିବି ? କଦାପି ନୁହେଁ ।''

ସମସ୍ତେ - ଅହୋ ! ମା' ମାନଙ୍କଠାରୁ ଏକଥା ଶୁଣିଲା ଉତ୍ତାରୁ ଆଉ ଆମ୍ଭମାନଙ୍କର ଆଶା କେଉଁଠାରେ ? ପ୍ରଭୁମାନେ ଭରସା ।

ବ୍ରହ୍ମା - ଆଚ୍ଛା, କହି ଯାଅ ଶୁଣିବା ।

ରାମାନୁଜ - ଆପଣମାନଙ୍କୁ କିଛି ଅବିଦିତ ନାହିଁ । ଆପଣମାନଙ୍କ ମୁଖାରବିନ୍ଦରୁ ଆମ୍ଭେମାନେ ଅର୍ଥାତ୍ ବ୍ରାହ୍ମଣମାନେ ଜାତ ହୋଇଥିଲୁ । ବାହୁରୁ କ୍ଷତ୍ରିୟ, ଉରୁରୁ ବୈଶ୍ୟ ଏବଂ ପାଦରୁ ଶୂଦ୍ରମାନେ ଜନ୍ମ ଗ୍ରହଣ କରିଥିଲେ । ସନାତନ ହିନ୍ଦୁଧର୍ମ ଅନୁସାରେ ବ୍ରାହ୍ମଣ, କ୍ଷତ୍ରିୟ ଓ କହିବାକୁ ଗଲେ ବୈଶ୍ୟଗଣ ଆପଣା ଆପଣା ସାଧ୍ୟାନୁସାରେ ଧର୍ମ ପାଳନ କରୁଅଛନ୍ତି ।

(ବ୍ରହ୍ମା ବିଷ୍ଣୁ ଶିବଙ୍କର ମୃଦୁହାସ୍ୟ)

ମାତ୍ର ଶୂଦ୍ରଗୁଡ଼ାକ ବିଧିବ୍ୟବସ୍ଥା ଆଦୌ ମାନୁନାହାନ୍ତି । ପାଳନ କରୁ ନାହାନ୍ତି; ଆମ୍ଭମାନଙ୍କର ସମକକ୍ଷ ହେବାକୁ ବସିଲେଣି । ବିଧର୍ମୀ ଶାସନ ସେଥିର ସହାୟ ଭୂତ । ଏଥିର ସୁବ୍ୟବସ୍ଥା କରାଯାଉ । ଏହାହିଁ ପ୍ରଥମ ପ୍ରାର୍ଥନା ।

ବ୍ରହ୍ମା - ମୋର ମୁଖରୁ, ବାହୁରୁ, ଜଙ୍ଘରୁ ଓ ପାଦରୁ ଚାରି ଜାତି ଜାତ ହୋଇନାହାନ୍ତି । ତୁମ୍ଭମାନଙ୍କର ବୁଝିବାର ଭ୍ରମ । ପ୍ରାଣୀ ଜନନୀ ଜଠରରୁ ଜନ୍ମ ହୁଏ । ମୁଖ, ବାହୁ, ଉରୁ ଓ ପାଦରୁ ଜନ୍ମ ହୁଏନାହିଁ, ଗୁଣ କର୍ମ ଅନୁସାରେ ସେମାନେ ଉଚ୍ଚ ହେବାକୁ ଇଚ୍ଛା କରିବେ, ଏଥିରେ ଆଶ୍ଚର୍ଯ୍ୟ କଣ ?

ରାମାନୁଜ - ତେବେ ଆମ୍ଭମାନଙ୍କର ଅର୍ଥାତ୍ ଉଚ୍ଚଜାତିମାନଙ୍କର ଗତି କଣ ?

ବ୍ରହ୍ମା - ଗତି ତୁମ ହାତରେ, ଦେବତାମାନେ ତ ଜାତି ସୃଷ୍ଟି କରିନାହାନ୍ତି ।

ରାମାନୁଜ - ଦ୍ୱିତୀୟ ପ୍ରାର୍ଥନା ଏହିଯେ, ବର୍ତ୍ତମାନ ଲାଟସଭା ହୋଇଅଛି; ସେଠାରେ ହିନ୍ଦୁର ସମାଜଗତ ଓ ଜାତିଗତ କଥାମାନ ଅଶାସ୍ତ୍ରଜ୍ଞ ବା ଅଳ୍ପ ଶାସ୍ତ୍ରଜ୍ଞ ବ୍ରାହ୍ମଣ, ଶୂଦ୍ର, ମୁସଲମାନ, ଖ୍ରୀଷ୍ଟିଆନମାନଙ୍କ ଦ୍ୱାରା ନିଷ୍ପତ୍ତି ହୋଇଯାଉଅଛି । ମାଦୃଶ ଋଷି ତୁଲ୍ୟ ବ୍ୟକ୍ତିଙ୍କ ମତପ୍ରତି ଅବହେଳା କରାଯାଇଅଛି । (ଦେବତାମାନଙ୍କର ମୃଦୁହାସ୍ୟ) ଅଳ୍ପଦିନ ହେଲା ବାଲ୍ୟବିବାହ ନିରୋଧ ଆଇନ ପାସ୍ ହୋଇଗଲା । ବିଧବା

ବିବାହର ଆନ୍ଦୋଳନ ଲାଗିଅଛି । ସନାତନ ହିନ୍ଦୁଧର୍ମ ରକ୍ଷା ହେବ କିପରି ? ପୂର୍ବରୀତିର ଉଚ୍ଛେଦ ହେଲେ ଆପଣମାନେ ଆମ୍ଭମାନଙ୍କର ପୂଜା ଗ୍ରହଣ କରିବେ କି ? (ହାସ୍ୟ)

ବ୍ରହ୍ମା - ଦେବତାମାନଙ୍କୁ ବାଲ୍ୟବିବାହ ପ୍ରଥା ଜଣାନାହିଁ । ମୁଁ ଯୁବତୀ ବିବାହ କରିଥିଲି । ତୁମେ ବିଷ୍ଣୁ ? ତୁମେ ଶିବ ?

ବିଷ୍ଣୁ - ମୁଁ ତ ଯୁବତୀ ବିବାହ କରିଥିଲି ।

ଶିବ - ପାର୍ବତୀ ତ ଯୁବତୀ ଅବସ୍ଥାରେ ବହୁଦିନ ତପସ୍ୟା କଲାପରେ ମୋତେ ବିବାହ ହେଲେ ।

ରାମାନୁଜ - ତୃତୀୟ, ଜାତିଭେଦ ପ୍ରଥା ଓ ସ୍ତ୍ରୀ ପରାଧୀନତାର ଗୋଟାଏ କଡ଼ାକଡ଼ି ନିୟମ ବନ୍ଧାଯାଉ । (ହାସ୍ୟ) ଚତୁର୍ଥରେ ପୂଜାବିଧିଟା ଅକ୍ଷୁଣ୍ଣ ଭାବରେ ବଜାୟ ରହୁ, ଗ୍ରାମେ ଗ୍ରାମେ ମନ୍ଦିର ନିର୍ମାଣ ହେଉ, ବ୍ରାହ୍ମଣକୁ ସମସ୍ତେ ସମ୍ମାନ କରନ୍ତୁ । ତାହା ହେଲେ ଆପଣମାନଙ୍କର ଆରାଧନା ଅକ୍ଷୁଣ୍ଣ ରହିବ— ଭୋଗ ଖଞ୍ଜାରେ କେବେ ବାଧା ଘଟିବ ନାହିଁ । ଗୋ ବ୍ରାହ୍ମଣ ହିତ ନିମନ୍ତେ ଆପଣମାନଙ୍କର ଅଭ୍ୟୁଦୟ ।

ତ୍ରିମୂର୍ତ୍ତି - ବାଃ ! ବାଃ !

ରାମାନୁଜ - (ଆଶାନ୍ୱିତ ହୋଇ) ବ୍ରାହ୍ମଣ ଜାତିର ମଙ୍ଗଳ ହେଉ, ଜଗତର ସମସ୍ତ ମଙ୍ଗଳ । ଇତି

ରାଜାମାନେ- (ସ୍ୱଗତ) ବେଶ୍ ବକ୍ତା ନିଯୁକ୍ତ କଲୁଁ ତ ! କେବଳ ବ୍ରାହ୍ମଣର ସ୍ୱାର୍ଥ ନିମନ୍ତେ ଏହି ମହତ୍ ଆରମ୍ଭ ! କି ଦୁଃଖର କଥା ! ଆମ୍ଭମାନଙ୍କର କି ନିର୍ବୁଦ୍ଧିତା ?

(ବ୍ରହ୍ମା ଗାତ୍ରୋତ୍‌ଥାନ କଲାବେଳେ ସଭାସ୍ଥଳ ଘୋର ପାଟଳରଙ୍ଗରେ ରଞ୍ଜିତ ହେଲା । ବିଷ୍ଣୁ ଓ ଶିବଙ୍କର ରୂପ ଦୃଷ୍ଟିଗୋଚର ହେଲା ନାହିଁ । ବ୍ରହ୍ମାଙ୍କର ଦୀପ୍ତି ବାଳସୂର୍ଯ୍ୟ ପ୍ରାୟ ଦୃଷ୍ଟ ହେଲା)

ବ୍ରହ୍ମା - ମୁଁ ବ୍ରହ୍ମା, ମୁଁ ଉଷାକାଳର ବାଳଭାନୁର ଉଦୟ ସଙ୍ଗେ ସଙ୍ଗେ ଜୀବ ଦେହରେ ଗୋଟାଏ ଅଭୂତପୂର୍ବ ଜୀବନୀଶକ୍ତିର ସଞ୍ଚାର କରେ, ନବଶକ୍ତିର ଉନ୍ମେଷ ହୁଏ । ବିଶ୍ୱର ନିଦ୍ରିତାବସ୍ଥାରୁ ଜାଗରଣାବସ୍ଥା ଆର୍ଯ୍ୟମାନଙ୍କୁ ବିସ୍ମିତ ଓ ମୋହିତ କରିଥିଲା । ସେମାନେ ଗାଇଲେ, — ''ତମସୋ ମା ଜ୍ୟୋତିର୍ଗମୟ'' । କାର୍ଯ୍ୟ ନିମନ୍ତେ ଆଲୋକହିଁ ଜୀବର ପ୍ରୟୋଜନ; ଏହି ଜ୍ୟୋତି ପ୍ରକାଶ ଉଭାରୁ ମାନବ ଜାତିର ବାହ୍ୟାଭ୍ୟନ୍ତର ଆଲୋକିତ ହୁଏ । ଏହି ନବାଲୋକ ଦେଖି ସ୍ଥାବର ଜଙ୍ଗମ ଉଲ୍ଲସିତ ହୋଇଉଠନ୍ତି । ଭାବୁକମାନେ ସେହି ବାଳଭାନୁ ଆଡ଼କୁ ଅନାଇ ମୁଁ ସୃଷ୍ଟିକର୍ତ୍ତା, ଆଦିପୁରୁଷ, ବ୍ରହ୍ମା ବୋଲି ସ୍ତୁତି କରନ୍ତି । ମୁଁ ସେହିଦିନ ଠାରୁ ବ୍ରହ୍ମା । ଇନ୍ଦ୍ର ଅଗ୍ନି ପ୍ରଭୃତି ଶକ୍ତିଧର ସୌରଶକ୍ତି ରୂପେ ପୂଜିତ । ଆମ୍ଭେମାନେ ଭାବର ଦେବତା । ମନୁଷ୍ୟର ମାନସିକ ଉନ୍ନତି କଳ୍ପନାରେ ମନୀଷୀ ଓ କବିଗଣ ଆମ୍ଭମାନଙ୍କୁ ଦେବତା ରୂପେ କଳ୍ପନା କରି ଅସାଧାରଣ ଗୁଣାଧାର ବୋଲି ବର୍ଣ୍ଣନା କରି ଯାଇଅଛନ୍ତି । ମାତ୍ର ସେମାନଙ୍କର ଅଭିପ୍ରାୟ କ୍ରମେ ବିକୃତ ହୋଇ ଆମ୍ଭମାନଙ୍କର ରୂପ ଗୁଣ ମାଟି ପଥର ଓ ଚିତ୍ରପଟରେ ପର୍ଯ୍ୟବସିତ ହେଲା । ସେ ଭାବଧାରା ତୁମ୍ଭମାନଙ୍କଠାରେ ପ୍ରବାହିତ ହେଉନାହିଁ । ମୁଁ ସାତ୍ତ୍ୱିକ ଦେବତା—ପକ୍ଷ ସମର୍ଥନ ମୋର କାର୍ଯ୍ୟ ନୁହେଁ, ଡିକ୍ରୀ ଡିସ୍‌ମିସ୍ କରିବାକୁ ମୁଁ ଅଦାଲତର ମାଲିକ ନୁହେଁ । ପଶୁ, ପକ୍ଷୀ, କୀଟପତଙ୍ଗ, ମନୁଷ୍ୟ ଯେଉଁମାନେ ପ୍ରତ୍ୟୁଷରୁ ଗାତ୍ରୋତ୍‌ଥାନ କରି ମୁକ୍ତ ଆକାଶ ତଳରେ ବିଚରଣ କରନ୍ତି; ମୁଁ ଥରେ ମୋର ସୁକୋମଳ କର ସ୍ପର୍ଶ ଦ୍ୱାରା ସେମାନଙ୍କୁ ଆଉଁସି ଯାଏଁ । ଆଉଁସିଲା ବେଳେ ସ୍ତ୍ରୀ ପୁରୁଷ ଓ ବ୍ରାହ୍ମଣ ଚଣ୍ଡାଳର ଭେଦ ରଖେ ନାହିଁ । ମୁଁ ସେହି ବ୍ରହ୍ମା ।

(ବ୍ରହ୍ମାଙ୍କର ଅନ୍ତର୍ଦ୍ଧାନ, ସର୍ବତ୍ର ନୀଳ ଜ୍ୟୋତି ପ୍ରକାଶ ପାଇଲା, ସଙ୍ଗେ ସଙ୍ଗେ ମୃଦୁ ସୂର୍ଯ୍ୟଜ୍ୟୋତି ସହିତ ବିଷ୍ଣୁଙ୍କର ଆବିର୍ଭାବ । ବ୍ରହ୍ମା ଶିବ ଦେଖାଗଲେ ନାହିଁ ।)

ବିଷ୍ଣୁ - ବତ୍ସଗଣ, ମୁଁ ପାଳନକର୍ତ୍ତା, ସୃଷ୍ଟିକର୍ତ୍ତା ସୂର୍ଯ୍ୟ ବା ବ୍ରହ୍ମାଙ୍କର ମୁଁ ନାମାନ୍ତର । ସୃଷ୍ଟି କ୍ଷଣକର ବ୍ୟବସ୍ଥା, କ୍ରୀଡ଼ାକାଳ ଦୀର୍ଘ । ଏହି ଦୀର୍ଘକାଳର ନିୟାମକ ମୁଁ ପାଳନକର୍ତ୍ତା ରୂପେ ସମ୍ମାନିତ ହୋଇଅଛି । ଜୀବଗଣ ମୋର

କରସ୍ପର୍ଶରେ ଜୀବନ ଜୀବିକାରେ ରତ ହୁଅନ୍ତି । ପରିବାର, ସମାଜ ଜାତିର ରକ୍ଷଣବେକ୍ଷଣାର ଉପାୟ ଉଦ୍ଭାବନ କରନ୍ତି । ଉଷାଠାରୁ ଆରମ୍ଭକରି ପ୍ରଦୋଷ ପର୍ଯ୍ୟନ୍ତ ଜୀବଗଣର କ୍ରୀଡ଼ାକାଳ । ଏହି କ୍ରୀଡ଼ାକାଳରେ ଜୀବର ସମ୍ୟକ୍ ପ୍ରକାର ଅଭ୍ୟୁଦୟ ହୁଏ ବୋଲି ଏହାକୁ ପାଳନର ସମୟ ବୋଲି ନିର୍ଦ୍ଧାରଣ କରିଅଛନ୍ତି । ମୁଁ ସେହି ପାଳନକର୍ତ୍ତା ସବିତା, ବିଷ୍ଣୁ । ମନୁଷ୍ୟଗଣ ଭକ୍ତି ଗଦ୍‌ଗଦ୍ ଚିତ୍ତରେ ମୋତେ ସମସ୍ତଙ୍କଠାରୁ ଉଚ୍ଚାସନ ଦେଇ ଭାବଗ୍ରାହୀ ନାମ ଦେଇଅଛନ୍ତି । ମୁଁ ଭାବର ବଶ, ସୁତରାଂ ମୋଠାରେ ଭେଦାଭେଦ ଜ୍ଞାନ ନାହିଁ । ସ୍ପର୍ଶଦୋଷ ମୋଠାରେ ନାହିଁ, ମୋ ଦୃଷ୍ଟିରେ ସମସ୍ତେ ସମାନ । ମୁଁ ସ୍ତ୍ରୀ ପୁରୁଷର ଓ ଜାତି ସହିତ ଜାତିର ଭେଦ କରିବି କିପରି ? ବତ୍ସଗଣ, ସାଧନାରେ, ଭାବରେ ଜଗତ୍‌ବଶ । ସାଧନା କର, ଭାବ ଶିକ୍ଷା କର, ମମତାଶୂନ୍ୟ ହୁଅ ।

(ଅନ୍ତର୍ଦ୍ଧାନ ସଙ୍ଗେ ସଙ୍ଗେ ତୀକ୍ଷ୍ଣ ଜ୍ୟୋତି କ୍ରମେ ନିଷ୍ପ୍ରଭ ହୋଇଆସିଲା, ସହସା ଗାଢ଼ ରକ୍ତ ମେଘଖଣ୍ଡମାନ ଭାସମାନ ହେବାକୁ ଲାଗିଲା । କ୍ରମେ ରକ୍ତମେଘର ବର୍ଣ୍ଣ ପାଣ୍ଡୁର ହେବା ସଙ୍ଗେ କ୍ଷୀଣ ଶୁକ୍ଳଜ୍ୟୋତିରେ ମହେଶ୍ୱରଙ୍କର ଆବିର୍ଭାବ)

ଶିବ - ବତ୍ସଗଣ, ବ୍ରହ୍ମା ଓ ବିଷ୍ଣୁଙ୍କର ଲୀଳାଖେଳା ସରିଲା । ଗାଢ଼ରକ୍ତ ମେଘଖଣ୍ଡ ଦେଖିଲ, ତାହା ମୋର ଆର୍ଦ୍ର ନାଗାଜିନ, ରକ୍ତ ମିଶ୍ରିତ ପୀତ ମେଘ ଖଣ୍ଡମାନ ମୋର ବ୍ୟାଘ୍ରାମ୍ବର । ମୁଁ ଅସ୍ତଗାମୀ ସୂର୍ଯ୍ୟ, ମୋର ନାମ ମହେଶ୍ୱର । ମୁଁ ସଂସାରର ନାଶକର୍ତ୍ତା ନୁହେଁ । ମୁଁ ଜଗତର ଦୁଃଖ ଓ ଚିନ୍ତାରାଶି ସଂହରଣ କରି ଅଦୃଶ୍ୟ ହୁଏ ବୋଲି ମୁଁ ଦୁଃଖ ସଂହାରକାରୀ ଶଙ୍କର, ଶିବ । ମୁଁ ଦୁଃଖ ଜ୍ୱାଳାରୁ ହରଣ କରିନେଇ ଅଦୃଶ୍ୟ ହେଲେ ଜୀବଗଣ ସୁଖରେ ନିଦ୍ରାଭିଭୂତ ହୋଇ ମାନସିକ ଓ ଶାରୀରିକ ଶକ୍ତି ବୃଦ୍ଧି କରନ୍ତି । ମୁଁ ଗୋଟାଏ ଜାତିର ବା ଗୋଟାଏ ବର୍ଣ୍ଣର ସ୍ତୁତି ବନ୍ଦନାରେ ସନ୍ତୁଷ୍ଟ, ଏହା ନୁହେଁ । ମୁଁ ସମସ୍ତଙ୍କର ପାପ ଓ ଦୁଃଖ ନାଶ କରେ । ଯେଉଁ ବ୍ୟକ୍ତି ଦିନ ବ୍ୟାପୀ କାର୍ଯ୍ୟକଳାପର କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଦ୍ଧାରଣ କରିପାରେ, ମୋର ସଂହରଣ କାଳରେ ସେ ମହାସୁଖୀ । ସେହିପରି ଜୀବ ବ୍ୟାପୀ କାର୍ଯ୍ୟର ତୁଳନା ଅନ୍ତିମ କାଳରେ ସୁଖଦାୟକ ଅଟେ । ବିଶ୍ୱ ଶକ୍ତିର ଆରାଧନା କର୍ତ୍ତବ୍ୟ ପାଳନ ଓ ସ୍ୱାର୍ଥତ୍ୟାଗ । ଆଉ କିଛି ନୁହେଁ ।

ଈଶା ବାସ୍ୟମିଦଂ ସର୍ବଂ ଯତ୍‌କିଞ୍ଚଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥା ମାଗୃଧଃ କସ୍ୟସିଦ୍ଧନଂ ॥

**ସମସ୍ତ ଅନ୍ଧକାରାଚ୍ଛନ୍ନ ଓ ନିସ୍ତବ୍ଧ ।**



## ବିଚ୍ଛେଦ

*[ପାର୍ବତ୍ୟ ଗ୍ରାମ । ଆମ୍ବ ଓ ଜାମୁ ବୃକ୍ଷର ନିବିଡ଼ ଛାୟାତଳେ ଦୁଇ ବଖରା ଛାତଘର । ଘର ବଖରାର ବାଟ ପଶ୍ଚିମ ମୁଖ । ଦକ୍ଷିଣ ବଖରାର ବାଟ ବନ୍ଦ । ଉତ୍ତର ବଖରାର ବାଟ ଖୋଲା । ଉତ୍ତର ବଖରାର ବାୟୁ କୋଣରେ ଗୋଟିଏ ଚୁଲି । ଚୁଲିରେ ନିଆଁ ଦିଗ୍ ଦିଗ୍ ଜଳୁଛି । ଉତ୍ତର କାନ୍ଥଆଡ଼େ ବାଉଁଶ ଅଲଣା । ଅଲଣାରେ କେତେଗୁଡ଼ିଏ କପଡ଼ା । ଅଲଣା ତଳେ ଦୁଇ ଚାରିଖଣ୍ଡ କଂସାବାସନ । ଭିତରଟି ପରିଷ୍କୃତ ଓ ପରିଚ୍ଛନ୍ନ । ପୂର୍ବ ତରଫରେ ଦକ୍ଷିଣକୁ ମୁଣ୍ଡକରି ରାଣୁ ଶୋଇ ବାଟ ଆଡ଼କୁ ଅନାଇଅଛି । ମୁହଁ ଛଡ଼ା ସମଗ୍ର ଦେହ କପଡ଼ାରେ ଆବୃତ । କୃଷ୍ଣପକ୍ଷ - ରାତି ଦୁଇ ଘଡ଼ି ।]*

ରାଣୁ - (ସ୍ୱଗତ)...... ବିଷମ ଜର । ଏପରି ଜର ମୋ ଜୀବନରେ କେବେ ହୋଇ ନଥିଲା । କି ତାତି । ଦିହ ପୋଡ଼ି ଯାଉଛି । ଜିଭ ତଣ୍ଟି ଶୁଖି ଯାଉଛି । ନିଃଶ୍ୱାସ ନିଆଁହୁଳା ପରି ତାତିଲା । ଆଖି ତ ପୋଡ଼ିଯାଉଛି । ଏତେ ଜର ? ଆଉ ମୁଁ ବଞ୍ଚିବି ନାହିଁ । ଆଜି ଦିନ ଦିପହରୁ ଜର ଆସିଲା, କମିବ କ'ଣ ବଢୁଛି । କେତେ ପାଣି ପିଇବି ? ପାଣି ପିଇଲେ କଣ ଶୋଷ ଯାଉଛି ନା ସୁସ୍ଥ ଲାଗୁଛି ? ମୁଁ ଆଉ ବଞ୍ଚିବି ନାହିଁ । ଏ ଜର ମୋର କାଳ— ମତେ ନେବ । ରାତି ଦୁଇଘଡ଼ି ହେଲା, ମୋର ଛିଦୁ କାହିଁ ? ଆଜି ଏତେ ବିଳମ୍ବ ହେଲା କାହିଁକି ? ମୁଁ କି ତା ମୁହଁ ନ ଦେଖି ମରିବି । ତାକୁ ନ ଦେଖି ମଲେ ତ ମୋର ଦୁଃଖର ସୀମା ରହିବ ନାହିଁ । ମୋତେ ମୃତାବସ୍ଥାରେ ଦେଖିଲେ ତାର ବା କି ଦୁଃଖ ନ ହେବ ? ଜର ଯନ୍ତ୍ରଣାରୁ ଯେ ଏ ଯନ୍ତ୍ରଣା ବଳିଲା । ମୁଁ ମଲେ ତା'ର କି ଦଶା ହେବ ? ସେ ମୋର ପତି, ମାତ୍ର ତା'ର ଆଶା ଭରସା ମୋ ଉପରେ । ବାସ ନିର୍ମାଣ କରି ଦୁଇ ଗୋଟି ପକ୍ଷୀ ପରି ଦୁହେଁ ବାସ କରିଥିଲୁଁ । କଳହ ବିବାଦ ଆମ ଦୁହିଁଙ୍କି ଜଣା ନାହିଁ । ଦୁଃଖ କାହାକୁ ବୋଲନ୍ତି, ଆମେ ଦୁହେଁ ଜାଣୁ ନାହିଁ । ମୁଁ ମଲେ ଛିଦୁ ଦିହରେ ଦୁଃଖ ପଡ଼ିଲା । ସେ କି ସହିପାରିବ ? ତାର ଶୁଶ୍ରୂଷା କରିବ କିଏ ? ସେ ନ ଆସୁଣୁ ମୁଁ କି ମରିଯିବି ? ନା, ନା । କିନ୍ତୁ ମୋର ପ୍ରାଣ ଯେ ଆକୁଳ ହେଲା । ଛିଦୁ ଶିକାରରୁ ଏବେ ନିଶ୍ଚୟ ଫେରିବ । ବୋଧହୁଏ, ଅତି ଦୂରକୁ ଚାଲିଯାଇଛଅଛି, ଏଣୁ ବିଳମ୍ବ ହେଲା । ତାକୁ ଭୋକ କରିବଣି । ଗଲାବେଳେ କାନିରେ ଗଣ୍ଡେ ଭାତ ପତର ପଡ଼ାରେ ବାନ୍ଧି ଦେଇଥିଲି । ସକାଳେ ତ ତାହା ଖାଇ ଦେଇଥିବ । ଏଠାକୁ ଆସି ମୋତେ ଏ ଅବସ୍ଥାରେ ଦେଖିଲେ ସେ କି ଆଉ ଭାତ ବାଢ଼ି ଖାଇବ ? ତାକୁ ତ ତାଟକା ମାରିନେବ ।

ଆହା ମୋର ଛିଦୁ, ତୁ କହୁ ତୋର ବଳ ସାହସ ସବୁ ମୋ ଲାଗି । ମୁଁ ଗଲେ ତୁ କଣ କରିବୁ ? ଛିଦୁକୁ ସମସ୍ତେ ଦୁଃସାହସୀ କହନ୍ତି । ମୁଁ ସେଥି ନିମନ୍ତେ ତାକୁ ଅଧିକ ଭଲପାଏ । ରଜ ସଂକ୍ରାନ୍ତି ଦିନ ଗ୍ରାମର ସମସ୍ତ ଯୁବକ ଯୁବତୀ ଜଙ୍ଗଲକୁ ମହୁ ଖାଇବାକୁ ଗଲୁଁ । ଖୋଜି ଖୋଜି ହଇରାଣ । ମହୁ ମିଳିଲା ନାହିଁ । ସମସ୍ତେ ମନ ଦୁଃଖରେ ଫେରୁଥାଉଁ । ଜଣେ କିଏ କହିଲା— ହେଇ ଦେଖ, ଗଛ ଅଗରେ ମହୁମାଛି ଉଡୁଛନ୍ତି—ସତେ ଲୁକୁଡ଼ି ମହୁ । ସେତେ ଉପରକୁ ଉଠିବ କିଏ ? କେହି ସାହସ କଲେ ନାହିଁ । ଛିଦୁ ତାର ଧନୁକାଣ୍ଡ ତଳେ ରଖି ଦେଇ ଟାଙ୍ଗିଆକୁ ଅଣ୍ଟାରେ ଖୋସି ଗଛକୁ ଉଠିଗଲା । ମହୁ କାଟି ଆଣି ସମସ୍ତଙ୍କୁ ଖୁଆଇଲା । ପ୍ରାଣର ଆଶଙ୍କା, ଗୋଡ଼ହାତ ଖସିଲେ ପ୍ରାଣ ଯିବାର କଥା । ମାତ୍ର ତା'ର କ୍ଷମତାରେ ମୋର ଏପରି ବିଶ୍ୱାସ ଯେ, ମୁଁ ତାକୁ ଅନାଇଥାଏ—ସେ ନିଶ୍ଚୟ ମହୁ ଧରି ଆସିବ ବୋଲି ବିଶ୍ୱାସ କରିଥାଏ । ତାକୁ ବାହାବା ଦେଲି, ତା' ପିଠି ଆଉଁସିଲି । କହିଲା, ତୁ ଥିଲେ ମୋର ଭୟ ନାହିଁ । ଦିନେ ଦୁଇ ଜଣ ଯୁବତୀ ତା ସଙ୍ଗରେ ଆସୁଥିଲେ—ବାଘ ଛେକିଲା । ନିର୍ଭୟରେ ବାଘ

ଆଗରେ ଠିଆ ହୋଇ କାଣ୍ଡ ବିନ୍ଧି ବାଘକୁ ମାରି ସେମାନଙ୍କୁ ବଞ୍ଚାଇଲା । ପୁଣି କହିଲା, ତୁ ମୋ ସାଙ୍ଗରେ ଥିଲେ ମୁଁ କି ବାଘକୁ ଡରେ ? ଆଜି ମୁଁ ଚାଲିଗଲେ ଏପରି କଥା ଛିଦୁ କାହାକୁ କହିବ ?

ମୁଁ ଯେ ଉଠିପାରୁ ନାହିଁ ତାକୁ ଭାତ ଦେବି କିପରି ? ଦଣ୍ଡେ ଲୁଚି ରହିକି କି ? ନା, ନା, ସେତ ମତେ ନ ଦେଖି ଅଧୀର ହୋଇ ପଡ଼ିବ, ଏଣେ ତେଣେ ଖୋଜିବ – ପୁଣି ଏହି ଅନ୍ଧାର । ଭାତ ଖାଇବ କଣ ? ନା, ନା, କାନ୍ଥରେ ଆଉଜି ବସିଥିବି । ତାକୁ ଭାତ ଖାଇବାକୁ କହିବି, ସେ ଭାତ ଖାଇ ସାରିଲେ ମୋ ପାଖକୁ ଆସି ମୋତେ ଦେଖିବ, ଚାମୁଣ୍ଡିବ, ତେବେ ଜର ଆସିଛି ବୋଲି ଜାଣିବ ।—

ଶୋଷ ତ ଭାରି

(ନିକଟରେ ଥିବା ଜଳରୁ ଟିକିଏ ପିଇବା)

ଟିକେ ଗୋଳମାଳ ଶୁଭିଲା ପରା । ବୋଧହୁଏ ଆସୁଛି । ପାଦଶବ୍ଦ ଶୁଣାଗଲା, ଆସିଲା । ଉଠି ବସିବା ଭଲ ।

(ଅତି କଷ୍ଟରେ କାନ୍ଥରେ ଆଉଜି ବସିଲା)

ଛିଦୁ - (ନେପଥ୍ୟେ) ରାଣ୍ଡୁ, ରାଣ୍ଡୁ, ବାହାରକୁ ଆସ । ଦେଖିବୁ ଆଜି କେତେ ସୁନ୍ଦର ମାଂସ ଆଣିଛି । ବେଗି ଆସ, ଆସ ।... ବାଟ ଜଗିଥାଏ, ଦଉଡ଼ି ଆସେ, ଆନନ୍ଦରେ ମୋ ହାତରୁ ସବୁ ଛଡ଼ାଇ ନିଏ - ଆଜି କ'ଣ ହେଲା ?

(ଘର ପିଣ୍ଡାରେ ମାଂସ ଧନୁକାଣ୍ଡ ରଖିବା ଓ ଭିତରକୁ ପ୍ରବେଶ କରିବା । ରାଣ୍ଡୁର ତନ୍ଦ୍ରାଭାବ ।)

ଏ କ'ଣ ? ରାଣ୍ଡୁ ରାଣ୍ଡୁ— କାନ୍ଥରେ ଆଉଜିଛି କାହିଁକି ? ବେଗି ନ ଆସିବାରୁ ମନ ଦୁଃଖ କଲୁ କି ? ଦୁଃଖ ଚିନ୍ତା ଦୂର ହୋଇଯିବ । ଏ କ'ଣ ? କଥା କହୁ ନାହୁଁ ଯେ— କ'ଣ ହେଲା କି ?

(ରାଣ୍ଡୁର ନିକଟକୁ ଶୀଘ୍ର ଯାଇ କପାଳରେ ହାତ ଦେବା ଛିଦୁର ଥଣ୍ଡା ହାତ ଲାଗି ରାଣ୍ଡୁ ଚେତା ପାଇବା)

ରାଣ୍ଡୁ - ଆହା କି ଥଣ୍ଡା । ବଡ଼ ସୁଖ ଲାଗିଲା ଛିଦୁ, ଆସିଲୁ ? ଯାଅ ଭାତ ଖାଇବୁ । ତୋ ଲାଗି ମୁଁ ବସିଛି ।

ଛିଦୁ - ତୋ ଦିହ ଯେ ପୋଡ଼ିଯାଉଛି, ଜର କି ? ବାପରେ, ଏକି ଗରମ ? ମୁଁ ତ ଏପରି କେବେ ଦେଖି ନାହିଁ । ବସିଛୁ କାହିଁକି ? କାନ୍ଥରେ ଆଉଜି ମୂର୍ଚ୍ଛା ଯାଇଥିଲୁ କି ? ମୋ କଥା ଶୁଣିଲୁ ନାହିଁ ? ଆ' ଶୋଇପଡ଼ ।

(ଯତ୍ନ ସହ ଶୁଆଇବାର ଚେଷ୍ଟା କରିବା)

ରାଣ୍ଡୁ - ଛିଦୁ, ମୁଁ ବସିଥାଏ, ତୁ ଯାଇ ଭାତଗଣ୍ଡିଏ ଖାଇଆସ ଓ ମୁଁ ଶୋଇ ତୋର ଆଜିର ଶିକାର କଥା ଶୁଣିବି ? ଆଜି ଦିନତମାମ୍ ଭୋକରେ ମୁହଁ ଶୁଖିଯାଇଛି । ମୋ ସୁନା, ମୋ ବୋଲ କର ।

ଛିଦୁ - ତୋତେ ଆଗ ବିଛଣାରେ ଶୁଆଇଦିଏଁ, ପଛେ ମୋ ଖାଇବା କଥା । ଆ ମୋ ରାଣ୍ଡୁ, ମୁଁ ନ ଥିଲି କେତେ କଷ୍ଟ ପାଇଲୁ ।

(ଅତି ସାବଧାନରେ ଶୁଆଇଦେବା । ରାଣ୍ଡୁର ଦକ୍ଷିଣଆଡ଼େ ବସି କପାଳ ଆଉଁସିବା) ବେଶ୍, ଏହିପରି ମୋ କଥା ଶୁଣ । ତୁ ଭାବିଛୁ ମୁଁ ଭୋକରେ ଅଛି ? ନା, ନା, ଅନେକ ଦୂରକୁ ଯାଇଥିଲୁ, ଫେରିବାର ବିଳମ୍ବ ହେବାର ଜାଣି ସମସ୍ତେ ବିଚାରିଲୁଁ— ନ ଖାଇ ଏତେ ବାଟ ଫେରିପାରିବା ନାହିଁ । ଏଣୁ ଗୋଟାଏ ଗାଁରୁ ଚାଉଳ ଉଧାର ଆଣି ଭାତ ରାନ୍ଧିଲୁଁ, ସୁନ୍ଦର ମାଂସ ରାନ୍ଧିଲୁଁ, ଖାଇଲୁଁ । ତୁ ଭାବିଛୁ ମୁଁ ଭୋକରେ ଅଛି ନା, ନା । ତୋ ପାଇଁ ବି ମାଂସ ତରକାରି ଆଣିଥିଲି, ମୋ କପାଳ, ତୁ ତାହା ଖାଇପାରିଲୁ ନାହିଁ । ଭଲ ହେବୁ ନାହିଁକି ? କାଲି ସକାଳେ ଖାଇବୁ ।

ରାଣ୍ଡୁ - ଦିହଟା ବଡ଼ ତାତିଛି, ନା ? ନୋହିଲେ ତୋ ହାତ ମୋତେ ଏତେ ଶୀତଳ ଲାଗିବ କାହିଁକି ? ଟିକେ ପାଣି । ଆଉଟିକେ ପାଣି ଦେଇ ମୁହଁଟା ପୋଛି ଦେବୁକି ?

(ଥଣ୍ଡାପାଣି ପିଆଇ ଦେବା ଓ ମୁହଁରେ ପାଣି ଦେଇ ନିଜ କାନିରେ ପୋଛିଦେବା)

ଛିଦୁ - ଭଲ ଲାଗୁଛି ।

ରାଣ୍ଡୁ - ଭଲ ଲାଗିଲା, ତୁ ଆସିବାରୁ । ତୋତେ ନ ଦେଖିବାଯାଏ ମନରେ ଭାରି କଷ୍ଟ ହେଉଥିଲା । ଭାବୁଥିଲି ତୋତେ ନ ଦେଖି ମରିଯିବିକି ? ଏଣିକି ମଲେ ଚିନ୍ତା ନାହିଁ—ତୋ କୋଳରେ ମରିବି ମଲାବେଳେ ତୋ ମୁହଁକୁ ଅନାଇଥିବି ।

ଛିଦୁ - ଦିନକ ଜରରେ କିଏ ମଲାଣି । ତୁ ମଲା କଥା କାହିଁକି କହୁଛୁ ? ଭଲ ହେବୁ—କାଲି ସକାଳୁ ଯାଇ ଔଷଧ ଆଣି ଖୁଆଇବି । ଏଠାରେତ ବଇଦ ନାହିଁ । ଏବେ ମଧ ଔଷଧ ଆଣିବାକୁ ଯାଆନ୍ତି - ତୋତେ ଦେଖିବ କିଏ ?

ରାଣ୍ଡୁ - ନା, ନା, ଔଷଧର ଦରକାର ନାହିଁ । ତୁ ମୋ ପାଖରେ ବସିଥା— ମୋ କପାଳରେ ତୋ ହାତ ଥାଉ ।

ଛିଦୁ - ଛଟପଟ ହେଉଛୁ କାହିଁକି ?

ରାଣ୍ଡୁ - ତୁ କି ଭାବିଛୁ ମୁଁ ବଞ୍ଚିବି ? ନାହିଁ, ଏ ଜର ମୋର ପ୍ରାଣ ନେବ । ଉପରବେଳାରୁ ଦେଖି ଆସୁଛି ଜର ବଢ଼ିଛି— କ୍ରମେ ମନ ବିକଳ ହେଉଛି । ଚେତା ବୁଡ଼ିଯାଉଛି । ମୋ ଆଶା ଛାଡ଼ ।

ଛିଦୁ - ତୋ ଆଶା ଛାଡ଼ିବି ? ତେବେ ମୁଁ ବଞ୍ଚିବି କାହାଲାଗି ?

ରାଣ୍ଡୁ - ମରିବା ତ ସଂସାରର ବିଧି । ଜଣେ ମଲେ ତା ସାଙ୍ଗରେ ଆଉ ଜଣେ ମରେକି ଛିଦୁ ? ମୋ ନିୟତି ପୂରିଲା, ମୁଁ ଯିବି ।

ଛିଦୁ - ସେଇ କଥା ଥର ଥର କହୁଛୁ କାହିଁକି ? ମୁଁ ମୁଣ୍ଡ ଆଉଁସି ଦେଉଛି, ତୁନିହୋଇ ଘଡ଼ିଏ ଶୋଇପଡ଼ତ, ସୁସ୍ଥ ଲାଗିବ ।

ରାଣ୍ଡୁ - ଆଉ ଶୋଇବାର ବେଳ ନାହିଁ । ମରିବା ଆଗରୁ ତୋ ସାଙ୍ଗରେ ମନ ପୂରାଇ ଦୁଇ କଥା କହେ ।

ଛିଦୁ - ତୁ ଭାବୁଛୁ ତୁ ମଲେ ମୁଁ ବଞ୍ଚିବି ? କିଏ ମୋତେ ଭାତ ଦେବ ? ମୁଁ ଶିକାରରୁ ଡିନ୍ତି ଡିନ୍ତି ଫେରିଲେ ମୋର ମୁଣ୍ଡ କିଏ ପୋଛି ଦେବ ? ମୋର ଦିହ କିଏ ଆଉଁସିବ ? ଜର ହେଲେ ମୋତେ କିଏ ଶୁଶ୍ରୂଷା କରିବ ?

ରାଣ୍ଡୁ - ତୁ ଗୋଟିଏ ବିଭା ହେବୁ । ତୋର ଅଳ୍ପ ତା' ବୟସ ସାଙ୍ଗରେ ରହିବୁ, ସେ ତୋର ସେବା କରିବ, ସାହାଯ୍ୟ କରିବ । ଦେଖୁଛତ ଲୋକେ ଏପରି କରୁଛନ୍ତି, ତୁ କରିବୁ ନାହିଁ କାହିଁକି ? ମୁଁ ଏହା ଶୁଣିଲେ ଖୁସି ହୋଇ ମରିବି ।

ଛିଦୁ - କି କଥା କହିଲୁ ରାଣ୍ଡୁ ? ମୁଁ ବିଭା ହେବି । ମୁଁ କି ତୋତେ ଅନ୍ୟମାନଙ୍କ ପରି ବିଭା ହୋଇଛି । ବଡ଼ ହେବା ଅବସ୍ଥାରେ ତୋତେ ଅନ୍ୟ ଗ୍ରାମରୁ ଆଣିଛି, ତାହା ତ ନୁହେଁ । ଦୁହିଙ୍କ ବୟସ ଏକ । ଏଠାରେ ଦୁହିଁଙ୍କର ଘର । ପିଲାବେଳେ ଏକାଠି ଖେଳୁଥିଲେ । ବଡ଼ ହେଲେ ବାପ ମା' ଆମ ଦୁହିଙ୍କି ଏକତ୍ର କରିଦେଲେ । ପିଲାବେଳେ ଦିହେଁ ଛୋଟ ଛୋଟ ଘର ବନାଇ ଖେଳୁଥିଲେ । ଏବେ ବଡ଼ ଘର ବନାଇ ଦୁହେଁ ଖେଳୁଛେଁ । ତୁ କି ମନେକରୁ ଆଉ ଜଣେ ଆସିଲେ ତାର ମୋର ମନ ମିଳିବ ? ତୁ ମଲେ ମୁଁ ମରିବି । ବିଭା କଥା ଆଉ କହନା । ଆମ ଦୁଇଜଣ ଦୁଇଗୋଟି କପୋତ । ବସା ନିର୍ମାଣ କରି ରହିଛେ କଳି ଦ୍ୱନ୍ଦ୍ୱ ନାହିଁ । ମତେ କି ସୁଖ ମିଳିବ ? ମା ମରିଗଲା ଉତ୍ତାରୁ ତାର ସ୍ନେହ, ତାର ଯତ୍ନ ତୋଠାରୁ ପାଇ ମୁଁ ମା'ର ମରଣ ଦୁଃଖ ଭୁଲିଛି । ତୋ ଭିନ୍ନ ଏ ସଂସାରରେ ମୋର ଯେ ଆଉ କେହି ନାହିଁ ରାଣ୍ଡୁ । ତୋ ବିନା ଯେ ମୋତେ ଚାରିଆଡ଼ ଅନ୍ଧାର ଦିଶିବ ।

ରାଣ୍ଡୁ - ତୋ ହେତୁରୁ ମୁଁ ବଡ଼ ଦୁଃଖୀ ।— ଦିନେ ହେଲେ ମୋର ଦୁଃଖ ହୋଇନାହିଁ । ତୋର ଗୁଣ ଗୁଣି ଏବଂ ତୋ ମୁହଁ ଦେଖି ମୋ ପ୍ରାଣ ଯିବ, ଏଥି ନିମନ୍ତେ ମୋର ଚିନ୍ତା ନାହିଁ ମାତ୍ର ତୋ କଥା ଭାବି ମୋର ମନ ଘାଣ୍ଟି ହେଉଛି । ପାଣି ଟିକିଏ ପିଇବି ।

(ଏହା କହିଲାବେଳେ ରାଣ୍ଡୁର ଲୋତକ ଦୁଇଧାର ବହିଲା—ଛିଦୁର ନୟନରୁ ମଧ ଲୋତକ ବହିଲା; ଛିଦୁ ପାଣି ପିଆଇଲା)

ଛିଦୁ - ତୋଠାରୁ ବଳି ମୋ ପ୍ରାଣ ଘାଣ୍ଟି ହେଉଛି ।

ରାଣ୍ଡୁ - ଆଉ ବେଶି ସମୟ ନାହିଁ, ମୁଁ ଯିବି ।

ଛିଦୁ - କେଉଁ ବାଟେ ଯିବୁ ରାଣ୍ଡୁ ?

ରାଣୁ - ଯେଉଁ ବାଟରେ ତୋର ବାପ, ମା, ମୋର ବାପ, ମା ଗଲେ ସେହି ବାଟରେ ।

ଛିଦୁ - କେଉଁଠାକୁ ?

ରାଣୁ - ମୁଁ କି ଜାଣେ ?

ଛିଦୁ - ମୋତେ ଛାଡ଼ିଯିବୁ ?

ରାଣୁ - ମୋର ଆୟତ୍ତ କ'ଣ ? ମୋ ମୁଣ୍ଡକୁ ତୋ କୋଳରେ ରଖ ।

(ଛିଦୁ ଆଗ୍ରହ ଓ ଯତ୍ନରେ ନିଜ କୋଳରେ ରାଣୁର ମୁଣ୍ଡ ରଖି ଆଉଁସିଲା)

ଛିଦୁ - ମୁଁ ତୋ ସାଙ୍ଗରେ ଯିବି ।

ରାଣୁ - ଯାଇପାରିବୁ ନାହିଁ । ମୋ କଥା ଛାଡ଼ିଦେ । ମୋ ଲାଗି ଚିନ୍ତା କରିବୁ ନାହିଁ । ବଡ଼ ବିକଳ ଲାଗୁଛି— ଗୋଡ଼ହାତ ଘିଚି ନେଉଛି, ପାଣି ଦେ ।

(ପାଣି ପିଆଇବା)

ରାଣୁ - ତୁ ମୋ ଜୀବନ, ତୁ ମୋ ପ୍ରାଣ, ତୋ ଲାଗି ମହାସୁଖୀ । ମୁଁ ସୁଖରେ ଆନନ୍ଦରେ ଯାଉଛି ।

ଛିଦୁ - ଏ କଣ ହଠାତ୍ ଝାଳ ବହିଲା ଯେ । ଗରମ ତ କମି ଆସିଛି, ଜର ଛାଡ଼ିବ କି ? ନା, ନା, ବେଶି ଝାଳ । ରାଣୁ କିପରି ଲାଗୁଛି ?

ରାଣୁ - କ'ଣ, କ'ଣ...କିଛି ନାହିଁ ।

ଛଦୁ - ପାଟି ତ କ'ଣ..........କିପରି କଥା କହିଲା । ରାଣୁ, ମୋ ଧନ ।

ରାଣୁ - ଛିଦୁ ମୁଁ ଯାଉଛି ମନେ ରଖିଥିବୁ ।

ଛିଦୁ - କଥା ତ କହିଲା, ପୁଣି ହାତ ନଚାଉଛି କାହିଁକି ? ମୁଖ ବିକୃତ କରୁଛି କିପରି ? ଦିହ କରା ପରି ତ କାକର ହେଲା । ରାଣୁ, ରାଣୁ ! ମୋତେ ଏକ ଦୃଷ୍ଟିରେ ଚାହିଁଛି । ଆଖି ମାରୁ ନାହିଁ । କ'ଣ ହେଲା ? ରାଣୁ, ମୋତେ କ'ଣ ସତେ ଛାଡ଼ିଯିବୁ । ଅନାଥ କରିଯିବୁ ? ନା, ନା । ଆହା ! ଆଉ ତ ନିଃଶ୍ୱାସ ନାହିଁ । ତୁନି ହୋଇ ରହିଲା ! ସତେ କଣ ଛାଡ଼ିଗଲା । ରାଣୁ, ରାଣୁ, ମୋ ଧନ, ମୋ ଜୀବନ ! ରାଣୁ, କଥା କହ, ରାଣୁ, କଥା କହ, ରାଣୁ, ମୋ ରାଣୁ !



# ରାଣାସଙ୍ଗଙ୍କର ମହାପ୍ରୟାଣ

(ଏକାଙ୍କିକା ନାଟକ)

**ପ୍ରଥମ ଦୃଶ୍ୟ**

***[ଅଭେଦ୍ୟ ପର୍ବତମାଳା ବେଷ୍ଟିତ ବୁଶ୍ୱାଗ୍ରାମ । ଗ୍ରାମର ପୂର୍ବ ସୀମାରେ ଉନ୍ନତ ପର୍ବତ । ଶ୍ୟାମ ବୃକ୍ଷଲତାମଣ୍ଡିତ ପର୍ବତବକ୍ଷରୁ ସ୍ୱଚ୍ଛ ନୀରାଧାରସ୍ରାବୀ ପ୍ରପାତ । ପର୍ବତର ପାଦଦେଶରେ ଛତା ନିର୍ମିତ ସେନାନିବେଶ । ପ୍ରଶସ୍ତ ଗୃହର ମଧ୍ୟଭାଗରେ ଜଣେ ସର୍ଦ୍ଦାରର ବକ୍ଷ ଉପରେ ମସ୍ତକ ରଖି ରାଣାସଙ୍ଗ ଉପବିଷ୍ଟ । କେତେଜଣ ସର୍ଦ୍ଦାର, ପୁରୋହିତ, ଜ୍ୟୋତିଷୀ, ଅପର କେତେକ ବ୍ୟକ୍ତି ଉପବିଷ୍ଟ । ]***

ରାଣା - ବୋଧହୁଏ ଆଜି ମୋ ଜୀବନ-ନାଟକର ଶେଷ ଅଙ୍କ ସମାପ୍ତ ହେବ ।

ପୁରୋହିତ- ଏ ଭାବନା କାହିଁକି ? ଏ ଭାବନାକୁ ହୃଦୟରୁ ଦୂର କରନ୍ତୁ । ମେବାରବାସୀଙ୍କର ଆଶା-ଆପଣ ଦୀର୍ଘକାଳ ଜୀବିତର ହି ଦେଶର ମଙ୍ଗଳ ଓ ପ୍ରଜାପୁଞ୍ଜର ଉପକାର କରନ୍ତୁ ।

ରାଣା - ପ୍ରଜାର ଆଶା ଏବଂ ମୋର ଶାରୀରିକ ଓ ମାନସିକ ସାମର୍ଥ୍ୟର ତୁଳନା କରିବାକୁ ମୁଁ ଏକା ସିନା ସମର୍ଥ । ଜାଣୁ ଜାଣୁ ବୃଥା ଆଶାନ୍ୱିତ ହେବି କାହିଁକି ?

ଯୋଧସିଂହ-ତେବେ ଭଗ୍ନ ସ୍ୱାସ୍ଥ୍ୟ ନେଇ ଏଠାରେ ରହିବା ଉଚିତ କି ? ଚିତୋର ଦୁର୍ଗକୁ ଗଲେ ଆପଣଙ୍କ ସୁଚିକିତ୍ସା ହୋଇପାରିବ, ପ୍ରଜାକୁଳ ଆହ୍ଲାଦିତ ହେବେ । ଆପଣ ଆମ୍ଭମାନଙ୍କର ଅନୁରୋଧ ରକ୍ଷା କରନ୍ତୁ । ଆଦେଶ ଦେଲେ ଏଠାରୁ ପ୍ରସ୍ଥାନ କରିବାର ଆୟୋଜନ କରିବି ।

ରାଣା - (ସ୍ମିତହାସ୍ୟ କରି) ଯୋଧସିଂହ, ପ୍ରସ୍ଥାନ କରିବାଟା ସତ; ମାତ୍ର କେଉଁଠାକୁ ଓ କେତେବେଳେ, ତା'ର ସ୍ଥିର ହୋଇ ନାହିଁ । ଆହା ଚିତୋର—ପବିତ୍ର ଚିତୋର ଦୁର୍ଗ । ପରାଜିତ ମୁଁ ସେ ପବିତ୍ର ସ୍ଥାନକୁ କଳଙ୍କିତ କରିବି କି ?

(ନେପଥ୍ୟେ)

ନିୟତିର ଗତି ରୋଧିବାକୁ ଭବେ
ଅଛି କାହାର ଶକତି,
ତା'ର ପ୍ରତିକୂଳ ଗତି ଯେ ପାଞ୍ଚଇ
ସେହି ସିନା ମୂଢ଼ମତି ।
ଜନହିତ ଲାଗି ମନୁଷ୍ୟ ଜନମ
ଏଥିରେ ନାହିଁ ସଂଶୟ,
ପର ନିଜ ମଧ୍ୟେ ଯେ ଭେଦ ନ ଗଣେ
ସ୍ୱରାଜ୍ୟ ତା'ର ନିଶ୍ଚୟ ।
କର୍ମମୟ ଅଟେ ମନୁଷ୍ୟ ଜୀବନ
ତେଜ ବିଷାଦ ସୁଷୁପ୍ତି;
ମା' ମାତୃଭୂମି ପାଇଁ ଏ ପରାଣ
ସମ୍ପିଦେଇ ପାଅ ମୁକ୍ତି ।

(ଯୋଗିନୀର ପ୍ରବେଶ)

ରାଣା - ମା' ଭଗବତୀ ! ପ୍ରଣାମ । ଅହୋ ବହୁଦିନ, ବହୁଦିନ ପରେ ଆଜି ଦୟା ହେଲା । କି ହେତୁରୁ ମୋତେ ଏତେଦିନ ତ୍ୟାଗ କରିଥିଲ ?

ଯୋଗିନୀ- କେହି ତ କାହାକୁ ତ୍ୟାଗ କରିନାହିଁ ରାଣା ! ତୁମେ କି ମନେ କର ଯେ, ମୁଁ ତୁମ୍ଭକୁ ଏତେଦିନ ତ୍ୟାଗ କରିଥିଲି ? ଯାବତ ଉଭୟ ଏକ ପଥର ପଥିକ, ତାବତ କେହି କାହାକୁ ତ୍ୟାଗ କରିପାରେ, ଏହା ବୋଲା ଯିବନାହିଁ । ଯାବତ ଦୁଇଜଣଙ୍କ ଜୀବନର ଲକ୍ଷ୍ୟ ଏକ, ତାବତ କେହି କାହାକୁ ତ୍ୟାଗ କରିନାହିଁ । ଦେଖା ସାକ୍ଷାତ୍, ଆଳାପ ଏକାବେଳେକେ ସ୍ୱାର୍ଥ ରହିତ ନୁହେଁ । ତ୍ୟାଗ ଦ୍ୱାରା ଜୀବନର ଲକ୍ଷ୍ୟ ସାଧନ ପ୍ରକୃତ ମହାମିଳନ । ମନଃପ୍ରାଣ ସହିତ ଛାୟା ପରି ମୁଁ ତୁମ୍ଭର ଅନୁସରଣ କରିଅଛି, ରାଣା !

ରାଣା - ସାଧୁ, ସାଧୁ, ସାଧୁ ତୁମର ମହତ୍ତ୍ୱ, ସାଧୁ ତୁମ୍ଭର ଲକ୍ଷ୍ୟ, ତୁମ୍ଭର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ମୁଁ ଜୀବନରେ ଯାହା କିଛି କରିବାକୁ ସମର୍ଥ ହୋଇଅଛି । ତୁମ୍ଭର ମହତ୍ତ୍ୱ ଓ ଉଦାରତାକୁ ମୁଁ

କି କେବେ ବିସ୍ମୃତ ହୋଇପାରିବି ? ମୋ ଜୀବନର ଅନେକ ଘଟଣା ତୁମ୍ଭଙ୍କୁ କହିବାର ମୋର ଇଚ୍ଛା ଥିଲା । ମାତ୍ର ମୃତ୍ୟୁର ସନ୍ନିହିତ କାଳରେ ସେ କଥା କହିବାକୁ ଅବସର ବା କାହିଁ ?

ଯୋଗିନୀ- ତୁମ୍ଭର ସୁମଧୁର ବାକ୍ୟସୁଧା ପାନ କରିବାକୁ ମୋର କର୍ଣ୍ଣ ପିପାସିତ । ଉଦ୍ଦେଶ୍ୟ ତ୍ୟାଗ କରି ଦୁଇ କଥା କହ, ରାଣା !

ରାଣା - ମୋର ଜୀବନର କାହାଣୀ ଅତି ଦୀର୍ଘ ରହସ୍ୟପୂର୍ଣ୍ଣ । ମୋର ଦୁର୍ଦ୍ଦଶା, ମୋର ସୁଦଶାର କଥା ଅନେକଙ୍କୁ ଜଣାନାହିଁ । ତାହା ପ୍ରକାଶ କରି ହୃଦୟର ଗୁରୁଭାର ଦୂରକରି ପାରିବିତ ? ପ୍ରଥିତଯଶା ରାୟମଲ୍ଲଙ୍କର ପୁତ୍ର ଆଜି ଚିତୋର ଦୁର୍ଗ ତ୍ୟାଗ କରି ପାର୍ବତୀୟ ଗ୍ରାମରେ ପ୍ରାଣ ବିସର୍ଜନ କରିବାକୁ ବସିଅଛି । ଆହା ! ମୋ ଠାରୁ ଚିତୋର ପତନର ସୂତ୍ରପାତ ହେଲାପରା !

ପୁରୋହିତ- ଆପଣ ଏପରି କହୁଅଛନ୍ତି କାହିଁକି ? ଆପଣ ଏ ଦେଶ ନିମନ୍ତେ କଣ କରି ନାହାନ୍ତି ? ଗୋଟାଏ ଯୁଦ୍ଧରେ ପରାସ୍ତ ହେଲେ ବୋଲିକି ଚିତୋର ପତନର ସୂତ୍ରପାତ ହେଲା ? ଜୟ ପରାଜୟ କ୍ଷାତ୍ର କର୍ମର ଅନୁସଙ୍ଗିକ ଫଳ ।

ରାଣା - ସ୍ନେହମୟୀ ଜନନୀ ଦୁଇ ସହୋଦରଙ୍କର ଅଭ୍ୟୁଦୟ ଦେଖି କି ମହତ୍ ଆଶା ପୋଷଣ କରି ନଥିଲେ ? ଉଭୟଙ୍କର ସହଯୋଗରେ ଜନ୍ମଭୂମିର ମୁଖୋଜ୍ଜ୍ୱଳ ହେବ, ଭାରତଭୂମି ଚିର ସ୍ୱାଧୀନ ରହିବ ବୋଲି ପିତା ମାତା ଭାବିଥିଲେ, ତଦ୍‌ଉପଯୁକ୍ତ ଶିକ୍ଷା ଦେଉଥିଲେ, ମାତ୍ର ଆମ ଦୁହିଁଙ୍କର ବୟୋବୃଦ୍ଧି ସଙ୍ଗେ ସଙ୍ଗେ ଔଦ୍ଧତ୍ୟ ବଢ଼ିଲା, ସ୍ୱାର୍ଥାଗ୍ନି ପ୍ରଜ୍ୱଳିତ ହେଲା । ଜନକଜନନୀଙ୍କର ଆଶାର ମୂଳରେ କୁଠାରାଘାତ କରି ଉଭୟେ ଦେଶତ୍ୟାଗୀ ହେଲୁଁ । ବୈମାତ୍ରେୟ କନିଷ୍ଠ ଭାଇ ଜୟମଲ୍ଲର ସ୍ୱାର୍ଥାନ୍ଧତା ତତୋଽଧିକ । ସେ ଯେ କେବଳ ମୋର ପ୍ରାଣ ନାଶର ପ୍ରୟାସୀ ହୋଇ କ୍ଷାନ୍ତ ହେଲା ତାହା ନୁହେଁ, ପବିତ୍ର ହୃଦୟା ତାରାବାଈଙ୍କି ହରଣ କରିବାକୁ ଅବୈଧ ଉପାୟ ଅବଲମ୍ବନ କରିଥିଲା । ସତୀତ୍ୱ ରକ୍ଷାହିଁ ବୀର ଧର୍ମର ପରାକାଷ୍ଠା, ମାତ୍ର ଜୟମଲ୍ଲ ତହିଁର ବିପରୀତ ଧର୍ମ ଆଚରଣର ଚେଷ୍ଟା କରି ପବିତ୍ର ସୂର୍ଯ୍ୟବଂଶରେ କଳଙ୍କ-କାଳିମା ଲେପନ କରିବାକୁ ପ୍ରୟାସୀ ହୋଇଥିଲା । କି ଅଧଃପାତ, କି ଦୁଷ୍କାର୍ଯ୍ୟ; ଦୁଷ୍କାର୍ଯ୍ୟର ପ୍ରତିଫଳ ଦେବାର ତେଣେ ଥାଉ ଉପଯୁକ୍ତ ପୁରସ୍କାର ଦେଲେ—ବେଦନୋର ପ୍ରଦେଶ ପୁତ୍ର ପ୍ରାଣନାଶର ପୁରସ୍କାର ! ପିତାଙ୍କର କି ନ୍ୟାୟନିଷ୍ଠା, କି ଉଦାରତା ! ସହୋଦର ପୃଥ୍ୱୀରାଜ ରାଜ୍ୟଲିପ୍ସାରେ ତୁମ୍ଭ ସମକ୍ଷରେ ମୋ ଚକ୍ଷୁ ନଷ୍ଟ କରିଥିଲା— ଏ ପ୍ରାଣ ନେବାକୁ ବସିଥିଲା ।

ଯୋଗିନୀ- ହଁ ରାଣା, ମୁଁ ତାହା ପ୍ରତ୍ୟକ୍ଷ କରିଅଛି ।

ରାଣା - ମୁଁ ତା ନିମନ୍ତେ ଦେଶତ୍ୟାଗୀ ହେଲି । ବହୁ କଷ୍ଟଭୋଗ କରି ତାହା ଭୟରେ ମହା ଅରଣ୍ୟ ଗୋପ ଗ୍ରାମମାନଙ୍କରେ ଗୋଚାରଣ ବୃତ୍ତି ଅବଲମ୍ବନ କରି ଉଦର ପୋଷଣ କଲି । ରାଜଭବନର ସୁଖାଦ୍ୟ ମିଷ୍ଟାନ୍ନ ପରିବର୍ତ୍ତରେ ଗୋପାଳ ପଲ୍ଲୀର ମୋଟା କର୍କଶ ରୁଟି ହେଲା ମୋର ଖାଦ୍ୟ, ସ୍ୱର୍ଣ୍ଣ ପାତ୍ରର ପାନୀୟ ପରିବର୍ତ୍ତରେ ପାର୍ବତ୍ୟ ଝରଣାର ଜଳ ହେଲା ମୋର ପାନୀୟ, କୁଟୀର ହେଲା ମୋ ଭାଗ୍ୟରେ ରାଜପ୍ରାସାଦ । ପୃଥ୍ୱୀରାଜ ନିମନ୍ତେ ମୁଁ ଏତେ ଦୁର୍ଦ୍ଦଶାଗ୍ରସ୍ତ ଓ ହୀନାବସ୍ଥାପ୍ରାପ୍ତ ହୋଇଥିଲେ ସୁଦ୍ଧା ମୁଁ ତା'ର ମହତ୍ତ୍ୱ ଓ ବୀରତ୍ୱର ପ୍ରଶଂସା କରିବାକୁ ବାଧ୍ୟ । ରାମ ଯେପରି ଶିବଧନୁ ଭଙ୍ଗ କରି ସୀତାଙ୍କୁ ପ୍ରାପ୍ତ ହୋଇଥିଲେ, ମୋର ଭାଇ ପୃଥ୍ୱୀରାଜ ଟୋଡ଼ାଟଙ୍କ ଦୁର୍ଗ ଜୟକରି ଜୟଲକ୍ଷ୍ମୀ ସ୍ୱରୂପିଣୀ ତାରାବାଈଙ୍କୁ କୁଳଲକ୍ଷ୍ମୀ କରି ପାଇଥିଲା । ପୃଥ୍ୱୀରାଜର ଯଶୋରଶ୍ମି ଦିଗନ୍ତବ୍ୟାପୀ । ପୃଥ୍ୱୀରାଜ ମୋର ସହୋଦର । ସେ ଯଦି ମୋ ସହିତ ସହଯୋଗିତା କରିଥାନ୍ତା; ତାହାହେଲେ ଆଜି ମୋତେ ଅରଣ୍ୟରେ ମନସ୍ତାପ କରିବାକୁ ପଡ଼ିଥାନ୍ତା କି ? ଆଜି ଦେଶର ମୁଖୋଜ୍ଜ୍ୱଳ ହୋଇଥାନ୍ତା । ଧିକ୍ ଭ୍ରାତୃବିବାଦହିଁ ଭାରତ ପତନର କାରଣ । ମେବାର ରାଜ୍ୟର ଦୁର୍ଦ୍ଦଶା ବାପ୍‌ପା ବଂଶର ପତନ ଏତେ ଶୀଘ୍ର

ହେବ; କିଏ ଜାଣିଥିଲା ? ପ୍ରହେଳିକା ! ତୃଷା—ତୃଷା— !

(ଭୃତ୍ୟର ଜଳ ଆନୟନ, ଜଳପାନ)

ଯୋଗିନୀ- ରାଣା ! ଗତ କଥା ଭାବନା କରି ଅଧୀର ହେଉଅଛ । ବରଂ ଏ ସବୁ ଆଉ ଆଲୋଚନା ନ କରିବା ଭଲ ।

ରାଣା - ନା, ନା, ଜୀବନ ଯିବା ପୂର୍ବରୁ ହୃଦୟର ଜ୍ୱାଳା ଯାଉ । ଏପରି ଶ୍ରୋତା ଆଉ କାହୁଁ ପାଇବି ?

ଯୋଗିନୀ- ମୁଁ ତମ କଥା ଶୁଣିବାରେ ନିଜ କଥା ଭୁଲି ଯାଇଅଛି, ଗୁରୁଦେବ ତୁମ ଦର୍ଶନରେ ଆସି ପର୍ବତ ଗୁହାରେ ଅଛନ୍ତି ।

ରାଣା - ଅହୋ ଗୁରୁଦେବ ! ମୋର କି ଏଡ଼େ ଭାଗ୍ୟ ଅଛି ଯେ ମୁଁ ଗୁରୁଙ୍କର ଦର୍ଶନ ପାଇବି ? ମୋ ଜୀବନଟା ରହିବ କି ?

ଯୋଗିନୀ- ରାଣା ଅଧୀର ହୁଅନାହିଁ । ସେପରି ଅବସ୍ଥାତ ଘଟିନାହିଁ । ନିଶ୍ଚୟ ଗୁରୁ ଦର୍ଶନ ମିଳିବ । ମୁଁ ଅପରାହ୍ନରେ ତାଙ୍କୁ ସଙ୍ଗରେ ନେଇ ଆସିବି । ସୁପଥ୍ୟ କରି ବିଶ୍ରାମ କର ।

ରାଣା - ତୁମ ଇଚ୍ଛା ।

ଯୋଗିନୀ- ମୁଁ ତେବେ ବିଦାୟ ନେଲି ।

(ରାଣା ହାତ ଯୋଡ଼ିକରି କପାଳରେ ଲଗାଇବା)

ପ୍ରସ୍ଥାନ

## ଦ୍ୱିତୀୟ ଦୃଶ୍ୟ

***[ଗୃହ ସନ୍ମୁଖରେ ବୃହତ ବଟ ବୃକ୍ଷ । ବୃକ୍ଷ ଛାୟାରେ ଗୋଟିଏ ତକ୍ତପୋଷ ଉପରେ ବଡ଼ ବଡ଼ ଦୁଇ ଗୋଟା ମୁଚୁଳା ଉପରେ ମସ୍ତକ ରଖି ରାଣା ସଙ୍ଗ ଶାୟିତ । ସର୍ଦ୍ଦାରଗଣ, ପୁରୋହିତ ଓ ଭଦ୍ରବ୍ୟକ୍ତିମାନେ ଗାଲିଚାରେ ଉପବିଷ୍ଟ । ଯୋଗୀ ଓ ଚାରଣୀଙ୍କ ନିମନ୍ତେ ସ୍ୱତନ୍ତ୍ର ଦୁଇ ଗୋଟି ଆସନ ତକ୍ତପୋଷ ନିକଟରେ ରକ୍ଷିତ । ଶୀତକାଳ, ବେଳ ଦୁଇଟା । ରାଣା ବୃକ୍ଷକୁ ଅନାଇ ଧ୍ୟାନମଗ୍ନ, ନିସ୍ତବ୍ଧ । ]***

ଜଣେ ସର୍ଦ୍ଦାର- ଏଇତ ଗୁରୁଦେବ ଯୋଗିନୀଙ୍କ ସହିତ ଆସୁଛନ୍ତି ।

ରାଣା - (ଚମକିତ ହେଲାପରି) ମତେ ଟିକିଏ ଉଠାଇ ଦିଅ । ମୁଣ୍ଡ ତଳରେ ଆଉ ଗୋଟିଏ ମାଣ୍ଡି ଦିଅ (ତଥାକରଣ) ହଁ, ଠିକ୍ ହେଲା । ପୁରୋହିତ, ଶୀଘ୍ର ନେଇଆସ ।

ପୁରୋହିତ - ଯେ ଆଜ୍ଞା !

*[ଗୁରୁଦେବ ଓ ଚାରଣୀର ପ୍ରବେଶ । ଗୁରୁଙ୍କର ବୟସ ଅଶୀ ବର୍ଷ, ଶୁକ୍ଳକେଶ ଶ୍ମଶ୍ରୁ । ବୟସ ତୁଳନାରେ ଶାରୀରିକ ବଳ ବପୁ ଯଥେଷ୍ଟ । ଗୌରବର୍ଣ୍ଣ, ହାସ୍ୟମୁଖ, ପୁରୋହିତ ଅଗ୍ରସର ହୋଇ ଅଭ୍ୟର୍ଥନା କରି ଆଣିବା]*

ରାଣା - (କରଯୋଡ଼ି କପାଳରେ ଲଗାଇବା) ଗୁରୁଦେବ ! ପ୍ରଣାମ ।

ଯୋଗୀ - ଅଭ୍ୟୁଦୟୋସ୍ତୁ ।

ରାଣା - ଆପଣଙ୍କର ଶୁଭେଚ୍ଛା ମୋର ଶିରୋଧାର୍ଯ୍ୟ । ମାତ୍ର ମୋର ଅଭ୍ୟୁଦୟ ହେବାର ଆଉ ସମୟ ଅଛିକି ? ଆପଣଙ୍କ ଦର୍ଶନ ମୋର ଶେଷ ପୁରସ୍କାର, ଏହାହିଁ ଯଥେଷ୍ଟ । ଯବନ-ପରାଜିତ ମୁଁ, ମୋର ପୁଣି ଅଭ୍ୟୁଦୟ ?

ଯୋଗୀ - (ହସ ହସ ହୋଇ) ରାଣା, ମୋ ଆଶୀର୍ବାଦରେ କାହାରି ଐଶ୍ୱର୍ଯ୍ୟ ବୃଦ୍ଧି ହେବ ନାହିଁ ବା ମୋ କ୍ରୋଧରେ ତିଳେମାତ୍ର କାହାରି କ୍ଷତି ହେବ ନାହିଁ । ଏହା ସ୍ପଷ୍ଟ ରୂପରେ ଜାଣେ, ମାତ୍ର ପ୍ରଣାମ କଲେ ଗୋଟିଏ ଆଶୀର୍ବାଦ ଦେବାକୁ ହୁଏ— ଏହା ମାମୁଲି କଥା । ତୁମର କଠିଣ ପୀଡ଼ା କଥା ଶୁଣି ତୁମକୁ ମୁଁ ଆଶୀର୍ବାଦ ଦେବାକୁ ଆସିଲି । କିପରି ବୋଧ କରୁଛ ?

ରାଣା - ଆପଣଙ୍କୁ ଦେଖି ଚରିତାର୍ଥ ହେଲି । ଆପଣଙ୍କ ଦର୍ଶନ ମିଳି ନ ଥିଲେ ମନ କଷ୍ଟରେ ପ୍ରାଣ ଯାଇଥାନ୍ତା । ଏହା ଶେଷ ଦେଖା, ମୁଁ ଆଉ ବଞ୍ଚିବି ନାହିଁ।

ଯୋଗୀ - ମରଣ ଅନିବାର୍ଯ୍ୟ ନିୟମ । କେହି ରହି ନାହିଁ, କେହି ରହିବେ ନାହିଁ ସତ, ତଥାପି ଦେଶର ଦୁଃସମୟ, ତୁମର ଅବର୍ତ୍ତମାନତାରେ ଯେ ମିବାରର କି ଦୁର୍ଦ୍ଦଶା ହେବ, ତାହା ମୁଁ ବୁଝି ପାରୁ ନାହିଁ । ଆମମାନଙ୍କର ଅନେକ ଆଶା ଭରସା । ତୁମ ସଙ୍ଗେ ସଙ୍ଗେ ଲୟପ୍ରାପ୍ତ ହେବ ଯେ ରାଣା ! ଅହୋ, ଏ ବୃଦ୍ଧ ବୟସରେ ମୋତେ ଦେଖିବାକୁ ଓ ଶୁଣିବାକୁ ପଡ଼ିଲା ।

ରାଣା - ଗୁରୁଦେବ, ନେତ୍ରାଗ୍ରରେ କର୍ତ୍ତବ୍ୟ କର୍ମ ନୃତ୍ୟ କରୁଛି । ଗୋଟିଏ କର୍ତ୍ତବ୍ୟ କର୍ମ କରିବାକୁ ଯାଇ ଆଜି ମୋର ଏ ଦୁର୍ଦ୍ଦଶା । ଯବନ ଗୋଳାରେ ମୋର ଜାନୁଭଙ୍ଗ । ଜୀବନ ଥିଲେ ଏତାଦୃଶ ଶତ ସହସ୍ର ଦୁର୍ଦ୍ଦଶାକୁ ମୋର ଭ୍ରୂକ୍ଷେପ ନ ଥିଲା । ଦେଶମାତୃକାପାଇଁ ଏ ଜୀବନ ଉତ୍ସୃଷ୍ଟ । ଜୀବନ ଥିଲେ ବାର ବାର ଦୁର୍ଦ୍ଦଶାକୁ ବରଣ କରନ୍ତି, ମାତ୍ର ଗୁରୁଦେବ, ଜୀବିତ କାଳକୁ ତିଳେ ମାତ୍ର ହେଲେ ଅଟକାଇବାର କ୍ଷମତାତ ମନୁଷ୍ୟର ନାହିଁ । ପ୍ରଥିତଯଶା ବାପ୍ପା ବଂଶର ବୀରାଗ୍ରଣୀମାନଙ୍କର ତାଲିକାରେ ମୋର ନାମ ଅଙ୍କିତ ହେବାର ମୋର ଯୋଗ୍ୟତା ନାହିଁ, ମୁଁ ଜାଣେ । ତଥାପି ନିଜର ସ୍ୱାର୍ଥାନୁସାରେ ଯେବେ ମାତୃଭୂମିର ମଙ୍ଗଳ ନିମନ୍ତେ ଏ ଅକିଞ୍ଚନ କିଛି ହିଁ କରିଥିବାର ଆପଣମାନଙ୍କର ବିଶ୍ୱାସ, ତାହାହେଲେ ଏ ଅକିଞ୍ଚନର ଜୀବନ ସ୍ୱାର୍ଥ । ସୁଖରେ ଜୀବନ ବିସର୍ଜ୍ଜନ କରିବି ।

ଯୋଗୀ - ରାଣା, ମୁଁ କାହିଁକି ମିବାରର ଆବାଳବୃଦ୍ଧ ସମସ୍ତେ ତୁମ୍ଭ ଯଶୋଗାନ କରୁଛନ୍ତି; ଧନ୍ୟବାଦ ଦେଉଅଛନ୍ତି । ତୁମ୍ଭ କାର୍ଯ୍ୟରେ ସମସ୍ତେ ପରିତୃଷ୍ଟ । ତୁମ୍ଭର ଯଶ ଭାରତବ୍ୟାପୀ । ଭାରତମାତା ତୁମ୍ଭପରି କେତେଜଣକୁ କୋଳରେ ଧରିଅଛି ? ଏ କ୍ଷତି ପୂରଣ ହେବକି ?

ରାଣା - କ୍ଷତିପୂରଣ କରିବାକୁ କେତେ ବୀର ବାହାରିବେ ।

ଯୋଗୀ - ସମୟର ଫେର । ମୋ ଦହକରେ କେତେ ପରିବର୍ତ୍ତନ ଦେଖିପାରିଲି । ବୀର ଯେ ନାହାନ୍ତି, ବୀର ଯେ ଜନ୍ମ ନୋହିବେ, ଏ କଥା ମୁଁ କହୁନାହିଁ । ମାତୃଭକ୍ତି, ଦେଶପ୍ରୀତି, ସ୍ୱାର୍ଥତ୍ୟାଗ, ସ୍ୱାଧୀନତା ବୀରର ଧ୍ୱଜା । କେବଳ ଯୁଦ୍ଧଜୟ ବୀରତ୍ୱର ଚିହ୍ନ ନୁହେଁ । ଶତ୍ରୁ ପକ୍ଷ ଅବଲମ୍ବନକାରୀ ମହା ମହା ଯୋଦ୍ଧା ନାହାନ୍ତି କି ? ସ୍ୱବଂଶରୁ ସ୍ୱଦେଶର ନାଶ ଚେଷ୍ଟାରେ ଯେଉଁମାନେ ବ୍ରତୀ, ସେମାନେ କି ବୀର ପଦବାଚ୍ୟ ? ସେମାନେ ସ୍ୱାର୍ଥ ମୋହାଚ୍ଛନ୍ନ ହୋଇ ବଂଶଗୌରବ, ଦେଶ ଗୌରବ ଆଡ଼କୁ ଭ୍ରୂକ୍ଷେପ କରୁନାହାନ୍ତି । ଅର୍ଥ-ଅର୍ଥ, ସେମାନଙ୍କର ସର୍ବସ୍ୱ ।

ରାଣା - ଭଗବତୀ ସକାଳେ ଯେଉଁ ଗୀତଟି ଗାଉଥିଲେ ପୁନରାବୃତ୍ତି କରିବ କି ? ଶୁଣିବାକୁ ମୋର ଇଚ୍ଛା ।

ଚାରଣୀ -

ନିୟତିର ଗତି ରୋଧିବାକୁ ଭବେ
ଅଛି କାହାର ଶକତି,
ତା'ର ପ୍ରତିକୂଳ ଗତି ଯେ ପାଞ୍ଚଇ
ସେହି ସିନା ମୂଢ଼ମତି ।

ରାଣା - ହଁ ଗୁରୁଦେବ, ନିୟତି କ'ଣ ?

ଯୋଗୀ - ବଡ଼ ଜଟିଳ ! ବଡ଼ କଠିଣ । ନାନା ମୁନି ନାନା ଅର୍ଥରେ ଏହି ଶବ୍ଦକୁ ଗ୍ରହଣ କରିଅଛନ୍ତି । ସ୍ଥୂଳ ସୂକ୍ଷ୍ମ ସ୍ଥାବର ଜଙ୍ଗମ ସମସ୍ତଙ୍କର ଶେଷ ପରିଣତିର ନାମ ନିୟତି । ଅବଶ୍ୟ ଯାହା ଘଟିବ ତାହା ନିୟତି । ମନୁଷ୍ୟର ମୃତ୍ୟୁ ନିୟତି । ବୁଝାଯାଏ ନାହିଁ, ଦେଖାଯାଇ ପାରେ ନାହିଁ, ଏଣୁ ଅଦୃଷ୍ଟ । ଜୀବନର ଘଟଣାବଳୀକୁ, ସୁଖ ଦୁଃଖକୁ ଲୋକେ ଅଦୃଷ୍ଟ ଖେଳ ବୋଲି କହନ୍ତି, ମାତ୍ର ଖେଳୁଛି କିଏ, ଖେଳାଉଛି କିଏ ?

ନିୟତିହିଁ ମୃତ୍ୟୁ, ମାତ୍ର ଗତିବିଧି ଅଛି । ଗତିବିଧିର ଯେ ବିପର୍ଯ୍ୟୟ ନ ଘଟେ ଏପରି ନୁହେଁ, ମାତ୍ର ଯେଉଁମାନେ ଗତିର ଅନୁକୂଳରେ ଯାଆନ୍ତି, ସେହିମାନେ ହିଁ ଧନ୍ୟ । ଯୁଗ ଯୁଗାନ୍ତର ହେଲା ଏହି ଆର୍ଯ୍ୟଜାତି ଏହି ଭାରତବର୍ଷରେ ବସବାସ କରିଅଛନ୍ତି, ସେମାନଙ୍କ ଠାରେ ଜନନୀ ଜନ୍ମଭୂମି ସମାନ । ଜନ୍ମଭୂମିର ରକ୍ଷାହିଁ ସେମାନଙ୍କର ବ୍ରତ । ଏହାର ରକ୍ଷା କଳ୍ପେ ଯେଉଁମାନେ ଜୀବନ ଦିଅନ୍ତି ସେମାନେ ଧନ୍ୟ ସେମାନଙ୍କର ଜୀବନର ଗତି ନିୟତିର ଅନୁକୂଳ । ଯେଉଁମାନେ ସ୍ୱାର୍ଥପର ହୋଇ ସ୍ୱଦେଶରେ ପରସ୍ପର ରାଜ୍ୟ ଓ ଧନଲିପ୍ସାରେ ଯୁଦ୍ଧ ବିଗ୍ରହ ଘଟାନ୍ତି, ସେମାନେ ଦୁଃସାହସିକ, ଦେଶ

ଦ୍ରୋହୀ, ଆର୍ଯ୍ୟନୀତିର ବିରୁଦ୍ଧବାଦୀ ଏବଂ ମୂଢ଼ ।

ମୋଗଲ ଜାତିର ନିର୍ଦ୍ଦିଷ୍ଟ ବାସସ୍ଥାନ ନାହିଁ । ଏମାନେ ଯାଯାବର ଜାତି । ପରଦ୍ରବ୍ୟ ଲୁଣ୍ଠନ, ପରଦେଶ ଆକ୍ରମଣ ଏମାନଙ୍କର ଧର୍ମ । ଦୁଃସାହସିକତାଦ୍ୱାରା ଏମାନେ ନିୟତିର ପ୍ରତିକୂଳ ଗତି ଲୋଡ଼ନ୍ତି । ଲୁଣ୍ଠିତ ଧନଦ୍ୱାରା ଏମାନେ ନରହନ୍ତାମାନଙ୍କୁ କ୍ରୟ କରନ୍ତି । ଶାନ୍ତିପଦ ନିରପରାଧମାନଙ୍କର ଦେଶ ଓ ଧନ ସମ୍ପତ୍ତି ଲୁଣ୍ଠନ ଇଚ୍ଛାରେ ପ୍ରାଣ ନାଶ କରନ୍ତି । ଜନ୍ମଭୂମି ରକ୍ଷା କରୁଁ କରୁଁ ନିଜର ପ୍ରାଣନାଶ ଆର୍ଯ୍ୟ ଜାତିର ନିୟତି । ରାଣା, ତୁମ୍ଭର ଗତି ନିୟତିର ଅନୁକୂଳ । ଆତ୍ମପ୍ରସାଦ ଏଥିରେ ପୁରସ୍କାର ।

ରାଣା - ଗୁରୁଦେବ ! ଆପଣ ପ୍ରବୀଣ, ମୋ ପକ୍ଷରେ ଆପଣ ଢେର ଜ୍ଞାନୀ ଓ ଅନୁଭବୀ । ମୁଁ କାଲି ନା ଆଜି ଯିବି । ଆପଣଙ୍କ ଦୂରଦୃଷ୍ଟିରେ ଭାରତର ଭବିଷ୍ୟତ କିପରି ଜଣାଯାଉଅଛି, ପ୍ରକାଶ କରି ଚରିତାର୍ଥ କରନ୍ତୁ ତ । ତୃଷା (ରାଣାଙ୍କର ଜଳପାନ)

ଯୋଗୀ - ଦୂରଦୃଷ୍ଟିର ପ୍ରୟୋଜନ ନାହିଁ । ଆଜି ମୋ ପକ୍ଷରେ ଭାରତର ଭବିଷ୍ୟତ ହସ୍ତାମଳକବତ୍ ସହଜ କଳନାଯୋଗ୍ୟ । ବାବର ମୋତେ ଭାରତର ଭବିଷ୍ୟତ ଲିପି ପଢ଼ାଇ ଦେଲାଣି ।

ରାଣା - (ବାବର ନାମ ଶୁଣି ରାଣାଙ୍କର ପ୍ରଳାପାରମ୍ଭ) ବାବର, ବାବର, ବାବର, ନା ବର୍ବର ? ସେ ସମକ୍ଷରେ ରକ୍ତନଦୀ—ରକ୍ତନଦୀ ସନ୍ତରଣ କରି ମୋ ଆଡ଼କୁ ଅଗ୍ରସର ହେବାକୁ ପ୍ରୟାସୀ ? ହେଉ, ଅଗ୍ରସର ହେଉ, ମାତ୍ର ରକ୍ତନଦୀ କି ସନ୍ତରଣ କରାଯାଇପାରେ ? ଜଳସୋତ ନୁହେଁ, ରକ୍ତସ୍ରୋତ, ପ୍ରବଳ ରକ୍ତସ୍ରୋତ—ଯୁବା କ୍ଷତ୍ରିୟଗଣଙ୍କର ଉଷ୍ଣ ଶୋଣିତ । ବାବର ତୋର କି ସାଧ ଏହି ରକ୍ତନଦୀ ସନ୍ତରଣ କରି ମୋର ଚିତୋର ଦୁର୍ଗ ମୋଠାରୁ ଛଡ଼ାଇ ନେବୁ ? ଗୋଟାଏ ରକ୍ତନଦୀ ପାର ହୁଅ । ସମ୍ମୁଖରେ କେତେ ରକ୍ତନଦୀ ପ୍ରବାହିତ ହେବ । କେବଳ ପୁରୁଷ ଶୋଣିତ ନୁହେଁ । ସ୍ତ୍ରୀମାନଙ୍କର, କିଶୋର କିଶୋରୀମାନଙ୍କର, ଶିଶୁମାନଙ୍କର ଉଷ୍ଣ ଶୋଣିତ ରହିବ । ଉତ୍ତପ୍ତ ଅସହ୍ୟ ! ମୁଁ ଯାଉଛି ମୋଠାରୁ ଚିତୋର ନେଇପାରିଲୁ ନାହିଁ । ଚିତୋର ରକ୍ଷା କରିବାକୁ ମୁଁ ଅନେକ, ଅନେକ ବୀର, ସ୍ତ୍ରୀ ଓ ଯୁବକ ଛାଡ଼ି ଯାଉଅଛି । ତୋ ଦିହକରେ ଏ ଆଶା କେବେ ଫଳବତୀ ହେବ ନାହିଁ । ରକ୍ତନଦୀରେ ତୋର କେଶ ଶ୍ମଶ୍ରୁ ପରିଚ୍ଛଦ ଜର୍ଜରିତ ହେବ । ତୋର ନାସା ରନ୍ଧ୍ରରେ, ତୋର ମୁଖରେ ରକ୍ତପ୍ରବେଶ କରି ଶ୍ୱାସରୁଦ୍ଧ କରିବ । ପରସ୍ୱାପହାରୀ, ପରଦେଶ-ଲୋଭୀ, ଲୁଣ୍ଠନ ତୋର ବୃତ୍ତି । ସମ୍ରାଟ୍ ଆଖ୍ୟା ଅର୍ଥଶୂନ୍ୟ, କୁଆଚୋରି । ତୁ ମୋର ସମକକ୍ଷ ନୋହୁ । ତୁ ଏ ଯୁଦ୍ଧରେ ମୋତେ ପରାସ୍ତ କରିନାହୁଁ । ପରାସ୍ତ କଲେ ମୋର ଜାତିଭାଇ, ମୋର ଆତ୍ମୀୟଗଣ । ତୁ କ୍ରୟକଲୁ ସେମାନଙ୍କୁ ମୋର ପରାଜୟ ନିମନ୍ତେ । ହେଉ, ମା' ଭାରତଭୂମି ! ତୋର କ୍ରୋଡ଼ରେ ଇଦୃଶ ଧୂର୍ତ୍ତ ବିଶ୍ୱାସ ଘାତକମାନେ ସ୍ଥାନ ପାଇଲେ କିପରି ?

(ଅବସନ୍ନ ଓ ନୀରବ । ଭୃତ୍ୟମାନେ ଜଳସେଚନ କରିବା ଓ ବିଞ୍ଚିବା । ରାଣାଙ୍କର ଜଳପାନ କରିବା)

ଯୋଗୀ - ରାଣା, ଏପରି ବାକ୍ୟାଳାପରେ ତୁମ୍ଭର ମାନସିକ ଉତ୍ତେଜନା ବଢ଼ୁଛି—ତୁମ୍ଭର ଶାନ୍ତିରେ ବ୍ୟାଘାତ ଘଟୁଛି । ବିଶ୍ରାମ କର ।

ରାଣା - ଗୁରୁଦେବ, ଆଉ ବିଶ୍ରାମ କାହିଁକି ? ଆଉ ବା କେତେ ଘଣ୍ଟା ! ଚିର ବିଶ୍ରାମତ ମିଳିବ । ଆପଣଙ୍କ ସୁମଧୁର ବାକ୍ୟାଳାପ ଆଉ ଶୁଣି ପାରିବି କାହୁଁ ? ଗୁରୁଦେବ, ଭାରତର ପତନ କି ବିଧି ନିର୍ଦ୍ଦିଷ୍ଟ ?

ଯୋଗୀ - କିଛି ହିଁ ବିଧିନିର୍ଦ୍ଦିଷ୍ଟ ନୁହେଁ । ଜାତୀୟ ଅଭ୍ୟୁତ୍‌ଥାନ ଓ ପତନ ପ୍ରାକୃତିକ ନିୟମ ପରି ଚାଲିଛି । ମନୁଷ୍ୟହିଁ ତାହା କରୁଛି । ଅନେକ ସ୍ଥଳରେ ପ୍ରାକୃତିକ ବିପର୍ଯ୍ୟୟ ମଧ୍ୟ ଯେ ଦାୟୀ ନୁହେଁ ଏପରି ନୁହେଁ । ବ୍ରାହ୍ମଣ କ୍ଷତ୍ରିୟ ଦ୍ୱାରା ଏ ଦେଶର ଉନ୍ନତି । ସେହି ଦୁଇ ଜାତିଦ୍ୱାରା ଏହାର ପତନର ସୂତ୍ରପାତ । ପତନର ସୂତ୍ରପାତ ହେଲେ ତା'ର ଗତିରୋଧ କରିବା

ବଡ଼ କଠିନ । ରୋଗ ଆରମ୍ଭରୁ ଚିକିତ୍ସା ନ କରି ତାକୁ ବଢ଼ିବାକୁ ଦେଲେ ଶେଷରେ ଅସମ୍ଭାଳ ହୋଇପଡ଼େ । ବିଶ୍ୱାସଘାତକତା, ସ୍ୱାର୍ଥପରତା ଜାତୀୟତାର ରୋଗ। ଆରମ୍ଭରୁ ଦମନ ନ କଲେ ସର୍ବନାଶ ଘଟେ । ଅନେକ ଦିନରୁ ଏ ରୋଗ ଆର୍ଯ୍ୟ ସମାଜରେ ପ୍ରବେଶ କଲାଣି ।

ବ୍ରାହ୍ମଣ, କ୍ଷତ୍ରିୟର ପରାମର୍ଶରେ ଦେଶର ଧର୍ମଶାସ୍ତ୍ର ପ୍ରଣୟନ ହେଲା । ଏହି ଦୁଇ ଜାତି ଦ୍ୱାରା ଦେଶର ଭାଗ୍ୟ ନିୟନ୍ତ୍ରଣ ହେଲା । କ୍ଷତ୍ରିୟ ହେଲେ ଶାସକ ବ୍ରାହ୍ମଣ ହେଲେ ଉପଦେଷ୍ଟା ମନ୍ତ୍ରୀ । ବ୍ରାହ୍ମଣ ଯେଉଁ ମହତ୍ତ୍ୱ ଓ ଆଧିପତ୍ୟ ପାଇବା କଳ୍ପନାରେ ଏହି ବିଧି ବ୍ୟବସ୍ଥା କରିଥିଲେ, ତାହା କାଳକ୍ରମେ ଅକ୍ଷରେ ଅକ୍ଷରେ ପରମୁଖାପେକ୍ଷୀ । ଏଣୁ ସେମାନେ ଷଡ଼ଯନ୍ତ୍ର ଦ୍ୱାରା, ପ୍ରତାରଣା ଦ୍ୱାରା, ଭୋଜବାଜୀଦ୍ୱାରା, ଶାସ୍ତ୍ରର ଦୋହାଇ ଦେବା ଦ୍ୱାରା ଅର୍ଥାଗମର ପନ୍ଥା ଉଦ୍ଭାବନ କଲେ । ଅନ୍ୟ କଥା ତେଣେ ଥାଉ, ବ୍ରାହ୍ମଣ ବିଶ୍ୱାସଘାତକତା ହେତୁରୁ ଏହି ମିବାର ରାଜ୍ୟରେ ରାଣା ବଂଶରେ କି ଅନିଷ୍ଟ ସାଧିତ ହୋଇଅଛି, ତାହା କି ତୁମ୍ଭଙ୍କୁ ଜଣା ନାହିଁ ? ଭବିଷ୍ୟତରେ ଏଥିରୁ ବଳ ବଳି ବିଶ୍ୱାସଘାତକତା, ସ୍ୱାର୍ଥପରତା ଚାଲିବ ବୋଲି ମୋର ବିଶ୍ୱାସ ।

ପୂର୍ବେ ଯେଉଁମାନେ ଦେଶକୁ ନିରୁପଦ୍ରବ ରଖିବାକୁ ଚେଷ୍ଟା କରୁଥିଲେ, ଯେଉଁମାନେ ନିଃସହାୟକୁ, ପୀଡ଼ିତକୁ, ସ୍ତ୍ରୀ ଜାତିକୁ ଅତ୍ୟାଚାରୀ ଚୋର ଡକାୟତ ହସ୍ତରୁ ରକ୍ଷା କରିବାକୁ ଅସ୍ତ୍ରଶସ୍ତ୍ର ଧାରଣ କରୁଥିଲେ ସେହିମାନେ କ୍ଷତ୍ରିୟ ଆଖ୍ୟା ପାଉଥିଲେ । ବର୍ତ୍ତମାନ କେବଳ କ୍ଷତ୍ରିୟ ଜାତି ସେହି ଗୁରୁଭାର ଗ୍ରହଣ କରିଅଛନ୍ତି । ଦେଶରକ୍ଷା ଭାର ଅଳ୍ପ ସଂଖ୍ୟକ ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ । ପରସ୍ପର ମଧ୍ୟରେ ଯେ ଯୁଦ୍ଧ ବିଗ୍ରହ ଘଟୁଥିଲା, ସେଥି ନିମନ୍ତେ କ୍ଷତ୍ରିୟ ଜାତି ଉପରେ ନ୍ୟସ୍ତ । ଏହି ଗୁରୁଭାର ଯଥେଷ୍ଟ ବୋଲି ବିବେଚିତ ହେଉଥିଲା, ମାତ୍ର ବିଦେଶୀୟମାନଙ୍କର ଆକ୍ରମଣ—ଯେଉଁମାନଙ୍କର ଆକାଂକ୍ଷା ଗୋଟିଏ ରାଜ୍ୟରେ ପର୍ଯ୍ୟବସିତ ନୁହେଁ, ମାତ୍ର ସମଗ୍ର ଭାରତବ୍ୟାପୀ, ସେହି ପ୍ରବଳ ଆକ୍ରମଣକୁ, ସେହି ପ୍ରତିହିଂସା ସ୍ରୋତକୁ ବାଧା ଦେବାକୁ ଅଳ୍ପ ସଂଖ୍ୟକ ରାଜପୁତ କି ଯଥେଷ୍ଟ । ସମସ୍ତ ଜାତିକୁ ଏହି ଗୋଟାଏ ଜାତିକି ରକ୍ଷା କରିପାରିବ ? କଦାପି ନୁହେଁ । ଏ ବିଷୟରେ ଭାରତବାସୀର ମହାଭ୍ରମ ରହିଯାଇଅଛି । ଏ ଭ୍ରମ ସଂଶୋଧନ ନ ହେଲେ ଓ କି ବ୍ରାହ୍ମଣ କି ଅପର ଜାତି ଆତ୍ମରକ୍ଷା ନିମନ୍ତେ, ଦେଶରକ୍ଷା ନିମନ୍ତେ ଯୁଦ୍ଧବିଦ୍ୟାଭ୍ୟାସ ନ କଲେ ଅଚିରେ ଭାରତର ପତନ ହେବ .ଏହା ମୁଁ ସ୍ପଷ୍ଟ ଦେଖିପାରୁଅଛି ।

କ୍ରମେ କ୍ଷତ୍ରିୟ, ବ୍ରାହ୍ମଣ ଆତ୍ମବିକ୍ରୟ କରିବାକୁ ଲଜ୍ଜିତ ନୁହନ୍ତି । ବର୍ତ୍ତମାନ ତୁମ୍ଭର ପରାଜୟ କ୍ଷତ୍ରିୟର ଆତ୍ମବିକ୍ରୟ ଦ୍ୱାରା ଘଟି ନାହିଁ କି ?

ଆତ୍ମରକ୍ଷା, ଗୃହ ଓ ପରିବାର ରକ୍ଷା, ଗ୍ରାମ ରକ୍ଷା ଓ ଦେଶରକ୍ଷା—ଯେଉଁମାନେ ଆତ୍ମରକ୍ଷା କରିବାକୁ ଅସମର୍ଥ ସେମାନେ ଗୃହରକ୍ଷା ଓ ପରିବାର ରକ୍ଷା କରି ନ ପାରନ୍ତି । ଯେଉଁମାନେ ଗୃହ ପରିବାର ରକ୍ଷା କରିବାକୁ ଅସମର୍ଥ, ସେମାନେ ଗ୍ରାମ ଓ ଦେଶରକ୍ଷା ନିମନ୍ତେ ପ୍ରୟାସୀ ହେବେ କିପରି ? ଆଜି କ୍ଷତ୍ରିୟ ଜାତି ଭିନ୍ନ ଅନ୍ୟମାନେ ଆତ୍ମରକ୍ଷା ନିମନ୍ତେ ଅପଟୁ ଥିବାରୁ ନିଦର୍ଶନ ମୋ ନେତ୍ରାଗ୍ରରେ । ଭାରତର ପତନ ମୋର ନଖ-ଦର୍ପଣରେ ପ୍ରତିବିମ୍ବିତ ହେଉଅଛି ।

ପୁରୋହିତ - ଯୋଗୀଶ୍ୱର, ଏସବୁ ଆପଣଙ୍କର ଅନୁମାନ ସିନା ।

ଯୋଗୀ - ଅନୁମାନତ ଅନେକ ସମୟରେ ସତ୍ୟରେ ପରିଣତ ହୁଏ । ଅନୁମାନ ଅସତ୍ୟ ନୋହିବା ଯାଏ ଯେଉଁମାନେ ଅନୁମାନର ଅନୁଧାବନ କରନ୍ତି, ସେମାନଙ୍କର ପରାଜୟ ନାହିଁ । ଅନୁମାନର ବଶବର୍ତ୍ତୀ ହେବାଦ୍ୱାରା ଯେ କ୍ଷତି, ତାହା ନଗଣ୍ୟ ।

ପୁରୋହିତ - ବ୍ରାହ୍ମଣ, କ୍ଷତ୍ରିୟ ଉପରେ ଯେ ଆପଣ ଦୋଷାରୋପ କଲେ, ଏହା କି ଅଭ୍ରାନ୍ତ ସତ୍ୟ ?

ଯୋଗୀ - ମୋର ବିଶ୍ୱାସ, ମୁଁ ଜାଣେ, ବ୍ରାହ୍ମଣ କ୍ଷତ୍ରିୟଙ୍କ ସମକ୍ଷରେ ଏତାଦୃଶ ଅପ୍ରିୟ ସତ୍ୟ କହିବାଟା

ନିନ୍ଦନୀୟ ଓ ବିପଜ୍ଜନକ । ବିଶେଷତଃ ମୃତ୍ୟୁର ଆସନ୍ନ ସମୟରେ ରାଣାଙ୍କ ମନରେ କଷ୍ଟ ଦେବାଟା ମୋ ପକ୍ଷରେ ସମୀଚୀନ ହୋଇ ନପାରେ । ମାତ୍ର ରାଣାଙ୍କର ପ୍ରଶ୍ନର ପ୍ରକୃତ ଉତ୍ତର ନ ଦେବାଟା ସତ୍ୟଗୋପନ ନୁହେଁକି ?

ରାଣା - ଗୁରୁଦେବ, ପ୍ରକୃତବାଦୀ ପକ୍ଷରେ ସମୟର ଭେଦ ନାହିଁ । ଆପଣଙ୍କ କଥା ଶୁଣି ମୁଁ ପରମ ସନ୍ତୋଷ ଲାଭ କରି ସତ୍ୟର ଉପଲବ୍ଧି କରୁଅଛି । ପରିତାପର ବିଷୟ ଏ ଦୋଷ ନିରାକରଣ ନିମନ୍ତେ ଦେଶର ମୁଖ୍ୟ ଲୋକେ ସଂଘବଦ୍ଧ ହେବେ କି ? ମୋର ଏ ଚିନ୍ତା କରିବାର ସମୟ ଗଲା ।

ପୁରୋହିତ - ଯୋଗୀଶ୍ୱର ! ବ୍ରାହ୍ମଣ କ୍ଷତ୍ରିୟ କି ପ୍ରକୃତରେ ଏପରି ହୀନ ଓ ନୀଚ ଦଶା ପ୍ରାପ୍ତ ହେଲେଣି ?

ଯୋଗୀ - ଏ କଥା ପଚାରିବାକୁ ଅଛି ? ଯାହାର ହୃଦୟ ନିର୍ମଳ ସେ ତାହା ସ୍ପଷ୍ଟ ଅନୁଭବ କରିପାରେ । ଆଜି ରାଣା ସଙ୍ଗଙ୍କର ଦୁର୍ଦ୍ଦଶା କାହା ହେତୁରୁ ? କେବଳ ବାବର କି ପରାସ୍ତ କଲା ? ତାହା ନୁହେଁ । ତାଙ୍କ ଜାତିଭାଇ ମାନେ ବାବରର ଆନୁଗତ୍ୟ ସ୍ୱୀକାର କରି ରାଣାଙ୍କ ବିରୁଦ୍ଧରେ ଅସ୍ତ୍ର ଧାରଣ କଲେ । ଏତ କାଲିର କଥା । ଦେଖୁ ଦେଖୁ ମୋ କଥାରେ ଅବିଶ୍ୱାସ କରୁଛ କାହିଁକି ? ଏଥିରେ ବ୍ରାହ୍ମଣ ମଧ ଲିପ୍ତ ନୁହନ୍ତି କି ?

ରାଣା - ଗୁରୁଦେବ ! ଆଜି ମୋର ଆଖି ଫିଟିଲା । ମୁଁ ଧନ୍ୟ ଯେ ମୃତ୍ୟୁ ପୂର୍ବରୁ ଆପଣଙ୍କ ଚରଣ ଦର୍ଶନ କଲି ଆପଣଙ୍କର ବାକ୍ୟ-ସୁଧା ପାନ କରି ତୃପ୍ତିଲାଭ କଲି । ମରିବାଟା ସତ—କିଏ ଆଗେ, କିଏ ପଛେ । ଆପଣ ମୋ ପକ୍ଷରେ ବୟୋବୃଦ୍ଧ, ମାତ୍ର ଆପଣଙ୍କର କର୍ତ୍ତବ୍ୟ ବାକି ଅଛି । ଏଣୁ ଆପଣମାନଙ୍କୁ ବଞ୍ଚିବାକୁ ହେବ । ମୋର କର୍ତ୍ତବ୍ୟ ସରିଛି, ଶକ୍ତି ନିଃଶେଷ ହୋଇଛି, ଏଣୁ ମୁଁ ଯିବି । ମୋ ପୂର୍ବରେ ମୋ ସମୟରେ ଆପଣମାନେ ଯେପରି ଆମ୍ଭମାନଙ୍କୁ ଓ ଦେଶବାସୀଙ୍କୁ ପ୍ରବୁଦ୍ଧ କରିଥିଲେ, ସେହିପରି କରିବେ । ଆପଣମାନଙ୍କ କର୍ତ୍ତବ୍ୟ ବଡ଼ ଦାୟିତ୍ୱପୂର୍ଣ୍ଣ, ବଡ଼ ଗୁରୁତର । ମେବାରବାସୀ ଶିଥିଳ ହୋଇପଡ଼ନ୍ତି । ଆପଣମାନଙ୍କର ଉପଦେଶ ଓ ଉତ୍ତେଜନା ସେମାନଙ୍କୁ ଜାଗ୍ରତ କରେ । ତାହାହିଁ ଜୀବନ ଥିଲା ଯାଏ କରୁଥିବେ, ମୋର ଶେଷ ଓ ବିନୀତ ଅନୁରୋଧ । ଏହା ମୋର ଶେଷ ଦେଖା ।

ଯୋଗୀ - ତୁମ୍ଭେ ଉପଯୁକ୍ତ ପିତାର ଉପଯୁକ୍ତ ପୁତ୍ର । ମେବାରବାସୀ ତୁମ୍ଭଙ୍କୁ ଧନ୍ୟବାଦ ଦେଉଅଛନ୍ତି । ତୁମ୍ଭର ଜୀବନ ସାର୍ଥକ । ଏ ଦେଶର ଭବିଷ୍ୟତ କଥା ଭାବି ମନ କ୍ଷୁଣ୍ଣ କର ନାହିଁ । ଯାହା କରିଛ, ତାହା ଯଥେଷ୍ଟ; ଆତ୍ମପ୍ରସାଦ ଓ ଶାନ୍ତି ଲାଭ କର ।

(ସଜଳ ନୟନରେ ରାଣା ଦୁଇ କର ଯୋଡ଼ି କପୋଳରେ ଲଗାଇବା । ଉପସ୍ଥିତ ବ୍ୟକ୍ତିମାନଙ୍କର ମନ ଏ ଦୃଶ୍ୟ ଦେଖି ଚିନ୍ତାମଗ୍ନ ସମସ୍ତେ ସଜଳ ନୟନ, କିଛିକ୍ଷଣ ରାଣା ଧ୍ୟାନମଗ୍ନ । ଯୋଗୀ ଓ ଚାରଣୀର ପ୍ରସ୍ଥାନ)

ରାଣା - ଜଳ ଆଣ (ଭୃତ୍ୟ ଜଳ ଆଣିଲାରୁ ପାନ କରିବା ।)

ସର୍ଦ୍ଦାର ଭାଇମାନେ, ମୋର ପୁତ୍ରମାନେ ଏଠାରେ ନାହାନ୍ତି । ଉଦୟ ତ ଶିଶୁ । ରାଜା ଶାସକ; ଦେଶରକ୍ଷାର ଭାର କିନ୍ତୁ ତୁମ୍ଭମାନଙ୍କ ଉପରେ । ରାଜା ଦେଶର ନିୟନ୍ତା ହେଲେ ମଧ ତୁମ୍ଭମାନଙ୍କର ପ୍ରକୃତ ସାହାଯ୍ୟ ଓ ଉତ୍ସାହ ବ୍ୟତୀତ ସେ ପଙ୍ଗୁ । ସମସ୍ତଙ୍କର ମିଳିତ ଚେଷ୍ଟାରେ ଦେଶରକ୍ଷା ହୁଏ । ବାବରର ଆକ୍ରମଣର ଫଳ ଦେଖିଲ ତ ? ମୋର ପୁତ୍ରମାନଙ୍କୁ କହିବ, ଭାତୃବିବାଦର ଯେ କି ଅନିଷ୍ଟ ଘଟେ ତାହା ସେମାନେ ମୋର ନିଜ ଦୁର୍ଦ୍ଦଶାରୁ ବୁଝିନେବେ । ରତ୍ନକୁ କହିବ ଯେପରିକି ଭାଇଙ୍କ ପ୍ରତି ନିର୍ଦ୍ଦୟ ନ ହୁଏ ଓ ଦୁର୍ବ୍ୟବହାର ନ କରେ । ଦେଶ ସେବା, ଦେଶରକ୍ଷା ଓ ଚିତୋରରକ୍ଷା ତା ଜୀବନର ପ୍ରଧାନ ବ୍ରତ ; ରକ୍ତ ବିନିମୟରେ ମୋର ଅପମାନର ପ୍ରତିହିଂସା ନେବାକୁ କହିବ ।

(ଉତ୍ତେଜିତ ଏବଂ ସଙ୍ଗେ ସଙ୍ଗେ ଅବସନ୍ନ ଓ ତୁନିହେବା । ଭୃତ୍ୟ ଜଳପାନ କରାଇବା ।)

ସର୍ଦ୍ଦାରଗଣ- ରାଣା, ଆମ୍ଭେମାନେ ଯେପରି ତୁମ୍ଭର ସେବା କରିଅଛୁଁ, ତୁମ୍ଭ ପୁତ୍ରର ମଧ୍ୟ ସେହିପରି ସେବା ଓ ସାହାଯ୍ୟ କରିବୁଁ । ପ୍ରାଣ ଗଲେ ସୁଦ୍ଧା ବିଶ୍ୱାସଘାତକତା କରିବୁ ନାହିଁ । (ସମସ୍ତେ ତରବାରି ସ୍ପର୍ଶ କରିବା) ତରବାରି ସ୍ପର୍ଶ କରି ଶପଥ କରୁଅଛୁଁ, ତୁମ୍ଭେ ନିଶ୍ଚିନ୍ତ ହୁଅ ।

ରାଣା - ଧନ୍ୟ ହେଲି, ଶାନ୍ତିରେ ପ୍ରାଣ ବିସର୍ଜନ କରିପାରିବି । ପୁରୋହିତ, ମୋର ଭସ୍ମାବଶେଷ ଚିତୋର ଦୁର୍ଗକୁ କେବେ ନେବେ ନାହିଁ । ପରାଜିତଙ୍କ ପ୍ରତି ଏହା ଗୋଟିଏ ଉଦାହରଣ ହୋଇ ରହୁ । ସୂର୍ଯ୍ୟଦେବ ଅସ୍ତ ହେବାକୁ ବସିଲେ, ମୋର ଶ୍ୱାସରୁଦ୍ଧ ହୋଇ ଆସିଲାଣି । ଅଳ୍ପକ୍ଷଣ ପରେ ମାତୃଭୂମି, ଦୁର୍ଗ, ଦେଶ, ପୁତ୍ର ବନ୍ଧୁବାନ୍ଧବ ତ୍ୟାଗକରି ମାୟା ଡୋର କାଟିବି ।

ଯୋଧସିଂହ - ଗୃହ ଭିତରକୁ ଗଲେ ଭଲ ହୁଅନ୍ତା ।

ରାଣା - ନା, ନା, ରୁଦ୍ଧ ବାୟୁ ମୁକ୍ତ ବାୟୁରେ ମିଶିବାକୁ ପ୍ରୟାସୀ । ଅନନ୍ତକୁ ଅନାଉଁ ଅନାଉଁ ପ୍ରାଣବାୟୁ ଅନନ୍ତ ବାୟୁରେ ମିଶିବ । ଆଉ ଅଳ୍ପକ୍ଷଣ ପାଇଁ କାହିଁକି ଗୃହାଭ୍ୟନ୍ତରକୁ ନେବେ ? ଏହାହିଁ ମୋର ଅନ୍ତିମ ସ୍ଥାନ । ଶେଷ ସମୟତକ ଶାନ୍ତିରେ ଧ୍ୟାନରେ ଅତିବାହିତ କରିବି ।

ପୁରୋହିତ - ଅପ୍ରିୟ କଥା, ମାତ୍ର ମୋର କର୍ତ୍ତବ୍ୟ, ଏଣୁ କହିବାକୁ ବାଧ୍ୟ । ପାରତ୍ରିକ ସ୍ୱର୍ଗତି ନିମନ୍ତେ ସଂଜ୍ଞାନରେ ଦାନଧର୍ମ କରିବା ବିଧିଶାସ୍ତ୍ର ବିହିତ ।

ରାଣା - ଅନ୍ତିମ କାଳରେ ସଂଜ୍ଞାନରେ ତାଦୃଶ ଚିନ୍ତା କେବଳ ଶାନ୍ତି ନାଶ କରେ । ମୁଁ ଶାନ୍ତି ଇଚ୍ଛା କରେ । ଅଶାନ୍ତିର କାର୍ଯ୍ୟ କରିବାକୁ ମୋର ଇଚ୍ଛା ନୁହେଁ । ରାମସିଂହ ।

ରାମସିଂହ - ରାଣା ।

ରାଣା - ଦୁଇଶତ ମୁଦ୍ରା ଆଣ ।

(ରାମସିଂହ ମୁଦ୍ରା ଆଣି ରାଣାଙ୍କ ହସ୍ତରେ ଦେବା, ରାଣା ସେହି ମୁଦ୍ରା ପୁରୋହିତ ହସ୍ତରେ ଦେବା)

ପୁରୋହିତ, ଏହି ଟଙ୍କା ନେଇ ଏ ଗ୍ରାମର ଦୁଃଖୀ ଗରିବଙ୍କୁ ବିତରଣ କରିଦିଅ । ଏହା ରାଣାର ଶେଷ ଦାନ । ଯୋଧସିଂହ ।

ଯୋଧସିଂହ - ରାଣା !

ରାଣା - ମୁଁ ଶାନ୍ତିରେ ସମୟ ଅତିବାହିତ କରିବାକୁ ଇଚ୍ଛା କରେଁ । ମୋତେ ଆଉ କେହି ବିରକ୍ତ କରିବ ନାହିଁ । ମୋହଠାରୁ ଟିକେ ଦୂରରେ ସମସ୍ତେ ଥାଅ ।

ଯୋଧସିଂହ - ଯେ ଇଚ୍ଛା ।

(ସମସ୍ତେ ଆଦେଶ ଅନୁସାରେ ତୁନିହୋଇ ଦୂରରେ ବସିବା)

ରାଣା— ସୂର୍ଯ୍ୟଦେବ, ତୁମ୍ଭର ରଶ୍ମି ଅପସୃତ ହେବା ସଙ୍ଗେ ସଙ୍ଗେ ମୋର ଶକ୍ତି ଓ ପ୍ରାଣ ଅନନ୍ତରେ ମିଶୁ ।

ରାମାୟ, ରାମଚନ୍ଦ୍ରାୟ, ରାମଭଦ୍ରାୟ, ବେଧସେ—

ରଘୁନାଥାୟ ନାଥାୟ, ସୀତାୟାପତୟେ ନମଃ ।

ମା' ଗୋ ମା' ! (ବକ୍ଷୋପରି ହସ୍ତ ରଖି ଚକ୍ଷୁମୁଦ୍ରିତ କରି ଧ୍ୟାନମଗ୍ନ) ।

**ଯବନିକା ପତନ**

●

# ଉଦୟ ସିଂହ

(ନାଟକ)

ମେବାରର ରାଣା ସଙ୍ଗଙ୍କର ତିନିପୁତ୍ର ରତ୍ନ, ବିକ୍ରମାଜିତ ଓ ଉଦୟସିଂହ । ସଙ୍ଗଙ୍କର ବିୟୋଗ ଉତ୍ତାରୁ ରତ୍ନ ସିଂହାସନ ଆରୋହଣ କଲେ ।ଅକାଳରେ ତାଙ୍କର ମୃତ୍ୟୁ ଘଟିଲା । ତାଙ୍କର ସହୋଦର ବିକ୍ରମାଜିତ ରାଣା ହେଲେ । ତାଙ୍କର ରାଜ୍ୟ ଶାସନରେ ଓ ବୀରତ୍ୱରେ ମେବାରର ସର୍ଦ୍ଦାରଗଣ ଅସନ୍ତୁଷ୍ଟ ହୋଇ ତାଙ୍କୁ ରାଜ୍ୟଚ୍ୟୁତ କଲେ । ଉଦୟ ଶିଶୁ ହେତୁରୁ ପୃଥ୍ୱୀରାଜଙ୍କ ରକ୍ଷିତା ପୁତ୍ର ବନବୀରଙ୍କ ହସ୍ତରେ ଶାସନଭାର ଅର୍ପଣ କଲେ । ଏହା ନାଟକର ସଂକ୍ଷିପ୍ତ ପୂର୍ବ ବୃତ୍ତାନ୍ତ । ନାଟକୀୟ ପାତ୍ର-ପାତ୍ରୀମାନଙ୍କର ଲମ୍ବା ତାଲିକା ଏକ ସଙ୍ଗରେ ନ ଦେଇ ପ୍ରତ୍ୟେକ ଅଙ୍କରେ ଦିଆଯିବ ।

[ପ୍ରଥମ ଅଙ୍କର ପାତ୍ରଗଣ]

ବନବୀର — ରାଣା

ହୃଷୀକେଶ — ବ୍ରାହ୍ମଣ, ବନବୀରଙ୍କର ବାଲ୍ୟସଖା ଓ ଅନ୍ତରଙ୍ଗ ବନ୍ଧୁ ।

ମନ୍ତ୍ରୀ

ଦୌବାରିକ

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

*[ଚିତୋର ଦୁର୍ଗ । ରାଣାଙ୍କର ମଧ୍ୟାହ୍ନ ଶୟନକକ୍ଷ । ଗୃହର ଏକ ପାର୍ଶ୍ୱରେ ପଲ୍ୟଙ୍କ । ପ୍ରବେଶ ଦ୍ୱାରର ଏକପାର୍ଶ୍ୱରେ ରାଣାଙ୍କର ବସିବା ଆସନ । ଅପରପାର୍ଶ୍ୱରେ ଆଗନ୍ତୁକମାନଙ୍କପାଇଁ ଆସନ । ବନବୀର ବାମ କହୁଣୀକୁ ତକିଆ ଉପରେ ରଖି, ବାମହସ୍ତ ଉପରେ ଗଣ୍ଡ ରଖି ବାମଆଣ୍ଠୁ ଉପରେ ଦକ୍ଷିଣପାଦ ରଖି ଧ୍ୟାନମଗ୍ନ ଅବସ୍ଥାରେ ତାମ୍ବୁଳ ଚର୍ବଣ କରୁଥିବା । ସମୟ ମଧ୍ୟାହ୍ନ ହୃଷୀକେଶର ପ୍ରବେଶ ।]*

ବନବୀର - ଆଜି ଅସମୟରେ ଯେ ?

ହୃଷୀକେଶ - ଅନୁସରଣକାରୀର ସମୟ କଣ, ଅସମୟ କ'ଣ ।

ବନବୀର - ବାଲ୍ୟସଖା, ସୁହୃତ୍, ତୁମର ଅନୁସରଣ ଗୋଟାଏ କଣ ? ମୋର ଅବସରରେ ତ ତୁମର ଦାବି ଅଛି ।

ହୃଷୀକେଶ - ଥିଲା, ଯେତେବେଳେ ବନବୀର ରାଣା ହୋଇ ନ ଥିଲେ ।

ବନବୀର - ଏବେ କିଛି ପରିବର୍ତ୍ତନ ଦେଖିଲ କି ?

ହୃଷୀକେଶ - ଢେର୍, ଢେର୍ ।

ବନବୀର - କିପରି ?

ହୃଷୀକେଶ - ମନ୍ତ୍ରୀ, ପୁରୋହିତ, ସମର-ସଚିବ, ଅର୍ଥ-ସଚିବ, ସର୍ଦ୍ଦାର, ଭାଇବିରାଦର, ଆଉ କିଏ କେତେ ସବୁବେଳେ ଘେରି ରହିଛନ୍ତି । ମୋର ପ୍ରାପ୍ୟ ସମୟରେ ହସ୍ତକ୍ଷେପ କଲେଣି, ନା, ଅଧିକାର କଲେଣି । ବୟସ୍ୟର ସ୍ୱଚ୍ଛନ୍ଦ ଅଧିକାର ଆଉ କାହିଁ; ଏଃ ରାଜନୀତି ପରା !

ବନବୀର - ସତ, ମାତ୍ର ତୁମ ଲାଗି ତ ଅବାରିତ ଦ୍ୱାର । ଇଚ୍ଛାନୁସାରେ ତୁମ ଆସିବା ତ କେହି ମନା କରିନାହଁ ।

ହୃଷୀକେଶ - ଦ୍ୱାରଟା ଅବାରିତ, ମାତ୍ର ହୃଦୟଟା ଅବାରିତ ନୁହେଁ ପରା ! ରାଜନୀତି ଭାବନା ସହିତ ମିଶି ହୃଦୟରାଜ୍ୟକୁ ଅବରୁଦ୍ଧ କରି ରଖିଅଛ । ବିଦୂଷକ ସ୍ଥାନଭ୍ରଷ୍ଟ ।

ବନବୀର - ମେବାର ରାଜ୍ୟ ମିଳିବା ସଙ୍ଗେ ସଙ୍ଗେ ଯେ ଭାବନା ବଢ଼ିଲା, ଏହା କ'ଣ ତୁମକୁ ଅଜଣା ହେ ବ୍ରାହ୍ମଣ ?

ହୃଷୀକେଶ - ରାଜମୁକୁଟ ଓ ରାଜତ୍ୱ ଐଶ୍ୱର୍ଯ୍ୟ ସଙ୍ଗେ ସଙ୍ଗେ ଯେ ଚିନ୍ତା ଆଣେ ଏହା ମୋତେ ଜଣାଯିବ କିପରି ? ମୁଁ ତ କେବେ ଐଶ୍ୱର୍ଯ୍ୟର ଅଧିକାରୀ ହୋଇନାହିଁ । ରାଣା ହେବା ତ ଦୂରର କଥା, ଯେବେ ଜଣେ ସର୍ଦ୍ଦାରର ଐଶ୍ୱର୍ଯ୍ୟ ମିଳନ୍ତା, ତାହାହେଲେ ଦାସ ଦାସୀ ପାଚକ ପାଚିକା ରଖି ମହା ନିଶ୍ଚିନ୍ତରେ ବ୍ରାହ୍ମଣ ବ୍ରାହ୍ମଣୀ ଭୋଜନ ବ୍ୟାପାରରେ ଅର୍ଦ୍ଧେକ ଅର୍ଥ ବ୍ୟୟକରି ଦୁଗ୍ଧ

ଫେନନିଭ ଶଯ୍ୟାରେ ଦିବସର ଅଧିକାଂଶ ସମୟ ଅତିବାହିତ କରିପାରନ୍ତୁ ।

ବନବୀର - କେବଳ ଐଶ୍ୱର୍ଯ୍ୟ ମିଳିଲେ ସେପରି କରିପାରିବା ସମ୍ଭବ । ମାତ୍ର ଐଶ୍ୱର୍ଯ୍ୟ ଓ ରାଜତ୍ୱରେ ଯେ ବହୁତ ଫରକ, ତାହା ତୁମର ବୁଦ୍ଧିର ଅଗମ୍ୟ ।

ହୃଷୀକେଶ - ଅହୋ ! ରାଣା ହେବା ମାତ୍ରକେ ମୁଣ୍ଡଟା ଖୁବ୍ ବଡ଼ ହୋଇଯାଏ, ନା ? ସଙ୍ଗେ ସଙ୍ଗେ ବୁଦ୍ଧିଟା ମଧ ଯେ ଚତୁର୍ଗୁଣ ହୁଏ, ତାହା ମୋତେ ଜଣାହେବ କିପରି ? ମୁଁ ତୁମର କାଲିର ସଖା ତ ।

ବନବୀର - ନା, ହେ ନା, ତାହା ନୁହେଁ ଯେ, ତୁମେ ବୁଝୁଛ ଓଲଟା । ପେଟହିଁ ଯାହାର ସର୍ବେସର୍ବା, ତା ସହିତ ରାଜନୀତି ଆଲୋଚନା ନିଷ୍ଫଳ ନୁହେଁ କି ?

ହୃଷୀକେଶ - ବୁଦ୍ଧିର ଦୌଡ଼ ଯଥେଷ୍ଟ ! ନୋହିଲେ ରାଣା କାହିଁକି ? ପେଟ ମୋର ସର୍ବସ୍ୱ, ଏକଥା ଠିକ । ଅକ୍ଷରେ ଅକ୍ଷରେ ଠିକ୍ । ମାତ୍ର ପେଟ ପୋଷିବ କିଏ ? ତୁମେ ତ ?

ବନବୀର - ହଁ ।

ହୃଷୀକେଶ - ତୁମର ମଙ୍ଗଳ ହେଲେ ସିନା ମୋର ପେଟ ପୋଷାଯିବ, ତୁମେ ନିଶ୍ଚିନ୍ତରେ ଥିଲେ ସିନା ଆହ୍ଲାଦରେ ସୁଖାଦ୍ୟର ବ୍ୟବସ୍ଥା କରିବ । ଚିର ଭାବନାରୁ ତୁମର ଅଜୀର୍ଣ୍ଣ ରୋଗ ହେଲେ ମୋ ନିମନ୍ତେ ଚର୍ବ୍ୟ ଚୋଷ୍ୟ ଲେହ୍ୟ ପେୟର ବ୍ୟବସ୍ଥା ହେବନାହିଁ, ତାହା ତୁମକୁ ଜଣା, ମତେ ଭଲରୂପେ ଜଣା । ତୁମର ଭାବନା ଚିନ୍ତା ଦୂର କରିବାକୁ ବା ମୋର ପେଟ ପୋଷିବାକୁ ମୁଁ ଯେତେ ଯତ୍ନ କରିବି, ଉପାୟ ଖୋଜିବି, ଅନ୍ୟେ ତାହା କରିବେ କି ? ରାଜ୍ୟର ପାତ୍ର ମନ୍ତ୍ରୀ ପ୍ରଭୃତି ରାଣାଙ୍କ ମଙ୍ଗଳ କାମନା କରିପାରନ୍ତି, ମୁଁ ଯେ କେବଳ ବନବୀରଙ୍କ ମଙ୍ଗଳେଚ୍ଛୁ । ସେମାନେ ରାଣାଙ୍କ ଉପଦେଷ୍ଟା, ମୁଁ କିନ୍ତୁ ବନବୀରଙ୍କ ଉପଦେଷ୍ଟା ବୋଲି ସ୍ପର୍ଦ୍ଧା କରେ । ଏଣୁ ତୁମର ହୃଦଗତ ଭାବ, ଭାବନା, ଚିନ୍ତା ମୋଠାରେ ପ୍ରକାଶ କରିବା ଉଚିତ । ଆଉ ଯେବେ ତୁମେ ରାଜସିଂହାସନ ଲାଭ କଲାରୁ ମୋଠାରୁ ତୁମର ବିଶ୍ୱାସ, ଆତ୍ମୀୟତା ଦୂର ହୋଇଅଛି, ତେବେ କହ ।

ବନବୀର - ତୁମେ ଯେ ଅନ୍ୟ ବାଟରେ ଯିବାର ଚେଷ୍ଟା କରୁଅଛ ।

ହୃଷୀକେଶ - ମୁଁ ମୂର୍ଖ, ମୋର ବାଟ ସଳଖ । ମୁଁ ତ ରାଜନୀତିଜ୍ଞ ନୁହେଁ ଯେ, ବକ୍ର ପନ୍ଥାରେ ଘେନି ଯିବାର ଚେଷ୍ଟା କରିବି । ମୁଁ ତୁମର ବାଲ୍ୟସଖା, ସୁହୃତ୍, ଏଣୁ ତୁମର ଦୁଃଖ ସୁଖର ଅଂଶୀଦାର ହେବାର ଦାବୀ ରଖେଁ । ମନ ଫିଟାଇ କହ, ତୁମର ଚିନ୍ତାର ଲାଘବ ହେବ ।

ବନବୀର - ହୃଷୀକେଶ, ତୁମେ ମୋର ପରମ ବନ୍ଧୁ, ହିତାକାଙ୍‌କ୍ଷୀ, ତୁମଠାରେ ମୋର କେଉଁ କଥା ଅପ୍ରକାଶ୍ୟ ? ସମୟ ଆସିଲେ କହିବି ନାହିଁ କି ? ଦୌବାରିକର ପ୍ରବେଶ ।

ଦୌବାରିକ - ମନ୍ତ୍ରୀ ଏଠାକୁ ଆସିବାର ଅନୁମତି ପ୍ରାର୍ଥନା କରନ୍ତି ।

ବନବୀର - ଡାକ ।

ହୃଷୀକେଶ - ମନ୍ତ୍ରୀଙ୍କ ଶୁଭାଗମନର ଅର୍ଥ ଯାହା, ବୟସ୍ୟକୁ ଗଳହସ୍ତ ପ୍ରଦାନ ଅର୍ଥ ତାହା । ତେବେ ମୁଁ ବର୍ତ୍ତମାନ ଚାଲିଲି ।

ହୃଷିକେଶର ପ୍ରସ୍ଥାନ ।

ମନ୍ତ୍ରୀଙ୍କର ପ୍ରବେଶ ଓ ଉପବେଶନ ।

ବନବୀର - ଖବର କ'ଣ ?

ମନ୍ତ୍ରୀ - ଆଜି ବିକ୍ରମାଜିତଙ୍କ ନିକଟକୁ ଯାଇଥିଲି ।

ବନବୀର - ସେ କ'ଣ କହିଲେ ?

ମନ୍ତ୍ରୀ - ବିକ୍ରମାଜିତ୍ କହିଲେ କି, ମୁଁ ରାଣା ସଙ୍ଗଙ୍କର ପୁତ୍ର ହେତୁରୁ ଚିତୋର ସିଂହାସନ ପ୍ରାପ୍ତ ହୋଇଥିଲି । ରାଜ୍ୟର ପ୍ରଜାକୁଳ ଓ ସର୍ଦ୍ଦାରଗଣ ମତେ ଅନୁପଯୁକ୍ତ ବିବେଚନା କରି ରାଜ୍ୟଚ୍ୟୁତ କଲେ ଏବଂ ବନବୀରଙ୍କୁ ରାଜ୍ୟରକ୍ଷାର ଉପଯୁକ୍ତ ପାତ୍ର ଭାବି ମେବାରର ରାଜତ୍ୱ ଦେଲେ । ଏଥି ନିମନ୍ତେ ମୁଁ ସିନା ମୋର ଭାଗ୍ୟକୁ ଦୋଷ ଦେବି, ମୁଁ ତ ବନବୀରଙ୍କୁ ଦୋଷ ଦେଉ ନାହିଁ । ସେ ମୋର ଶତ୍ରୁ ନୁହନ୍ତି । ବନବୀର ମୋର ଭାଇ । ଆମ ବଂଶର ଯେ

କେହି ଜଣେ ରାଣା ହେବ, ରାଜ୍ୟ ରକ୍ଷା କରିବ । ମୁଁ ରାଣା ଥିବାବେଳେ ସେ ସର୍ଦ୍ଦାର ଭାଇରୂପେ କାର୍ଯ୍ୟ କରୁଥିଲେ, ଏବେ ମୁଁ ତାଙ୍କର ସର୍ଦ୍ଦାର ଭାଇରୂପେ କାର୍ଯ୍ୟକରିବି, ମୁଁ ରାଜ୍ୟଚ୍ୟୁତ ହେଲି ଭାବନା ନାହିଁ, ମାତ୍ର ମତେ ବନ୍ଦୀ କରି ରଖିବାର କାରଣ କ'ଣ ? ବନବୀରଙ୍କୁ ପ୍ରାର୍ଥନା କରି କହିବ ସେ ମୋତେ ମୁକ୍ତି ଦେଉନ୍ତୁ । ମୁଁ ତାଙ୍କର ବିରୁଦ୍ଧାଚରଣ କରିବି ବୋଲି ସ୍ୱପ୍ନରେ ଭାବିବେ ନାହିଁ ।

ବନବୀର - ମୁଁ ବି କେବେ ସ୍ୱପ୍ନରେ ହେଲେ ଭାବି ନଥିଲି ଯେ, ଦିନେ ମୁଁ ମେବାର ରାଜତ୍ୱ ପାଇବି । ପ୍ରଜାଗଣ ମୋ ଉପରେ ଏ ଗୁରୁ ଦାୟିତ୍ୱ ଲଦିଲେ । ମୁଁ ବାର ବାର ସେମାନଙ୍କ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲି, ସେମାନେ ମାନିଲେ ନାହିଁ । ବିକ୍ରମାଜିତଙ୍କୁ ମୁଁ ବନ୍ଦୀ କରି ନାହିଁ, ସେ ପ୍ରତିଦ୍ୱନ୍ଦ୍ୱୀ ହେବେ ଭାବି ସର୍ଦ୍ଦାରମାନେ ଏ ପ୍ରସ୍ତାବ କରି ଅଛନ୍ତି । ବର୍ତ୍ତମାନ ମୁକ୍ତି ଦେବାର ଅଧିକାର ମୋର କେବଳ ଅଛି କି ?

ମନ୍ତ୍ରୀ - ନା, ବର୍ତ୍ତମାନ ଅବସ୍ଥାରେ ମୁକ୍ତି ଦେବା ଉଚିତ ବିବେଚନା ହୁଏ ନାହିଁ ।

ବନବୀର - ରାଜ୍ୟର ଅବସ୍ଥା ପ୍ରତି ଦୃଷ୍ଟି ଦେବାକୁ ହେବ, ଲୋକମତ ବୁଝିବାକୁ ହେବ । ବିକ୍ରମାଜିତଙ୍କର ଭାବ ଅନୁସନ୍ଧାନ କରିବାକୁ ହେବ । ତେବେ ସିନା ଗୋଟାଏ ପନ୍ଥା କରାଯାଇପାରିବ । ତାଙ୍କୁ ରାଜ୍ୟଚ୍ୟୁତ କରି ମତେ କଲ ରାଣା, ପୁଣି ତାଙ୍କୁ ରାଣା କରି ମତେ ରାଜ୍ୟଚ୍ୟୁତ କରିବ— ତେବେ ଦେଶ ରକ୍ଷାର ଉପାୟ କଣ ? ବିକ୍ରମାଜିତଙ୍କୁ ବୁଝାଇ କହିବ, ତାଙ୍କୁ ମୁକ୍ତି ସମୟ ସାପେକ୍ଷ । ତାଙ୍କର ମୁକ୍ତି ଦେଶର ଅବସ୍ଥା, ସର୍ଦ୍ଦାର ଓ ପ୍ରଜାମାନଙ୍କର ମାନସିକ ଅବସ୍ଥା । ଉପରେ ନିର୍ଭର କରେ । ପ୍ରକୃତ କହିବାକୁ ଗଲେ ତାଙ୍କୁ ମୁକ୍ତ କରିବାର କ୍ଷମତା ମୋର ନାହିଁ । ମୋ ଇଚ୍ଛାରେ ମୁଁ ତାଙ୍କୁ କାରାରୁଦ୍ଧ କରି ନାହିଁ । ଏଥି ନିମନ୍ତେ ଦେଶବାସୀ ଦାୟୀ ବା ଦୋଷୀ ।

ମନ୍ତ୍ରୀ - ମୁଁ ଭଲରୂପେ ଭାବି ଦେଖିଛି ବିକ୍ରମାଜିତଙ୍କର ପ୍ରାର୍ଥନା ଅନୁମୋଦନୀୟ ନୁହେଁ । ସେ ମୁକ୍ତିଲାଭ କଲେ ଯେ ତାଙ୍କର ଦାବି ତ୍ୟାଗ କରିବେ, ଏହା କିଏ କହିପାରିବ ? ବର୍ତ୍ତମାନ ଅବସ୍ଥାରେ ତାଙ୍କର ମୁକ୍ତି ଆମ୍ଭମାନଙ୍କୁ ବିବ୍ରତ କରିବ ବୋଲି ମୁଁ ମନେ କରେ । ମୁଁ ତାଙ୍କୁ ସବୁ ସ୍ପଷ୍ଟରୂପେ ବୁଝାଇ କହିବି । ତେବେ ମୁଁ ଆସେ ।

—ପ୍ରସ୍ଥାନ—

## ଦ୍ୱିତୀୟ ଦୃଶ୍ୟ

*[ଶୟନକକ୍ଷର ବାହାର ବାରନ୍ଦାରେ ଚିନ୍ତାମଗ୍ନ ବନବୀର ବାହୁଦ୍ୱୟ ଛନ୍ଦି ନତ ମୁଖରେ ବିଚରଣ କରୁଥିବା । ହୃଷୀକେଶ ଉପସ୍ଥିତ ହେବାରୁ ଚମକିତ ହେବା ।]*

ବନବୀର - କି ବନ୍ଧୁ, ପୁଣି ଅସମୟରେ ଯେ ?

ହୃଷୀକେଶ - ଅଗତ୍ୟା । ଗୃହିଣୀ କହିଲେ, ବନବୀର ପୂର୍ବର ବନବୀର ନୁହନ୍ତି, ଏବେ ସେ ରାଣା । ପୂର୍ବେ ଯେତିକି ଅନୁସରଣରେ ଫଳ ମିଳୁଥିଲା, ଏବେ ସେତିକି ଅନୁସରଣରେ ଫଳ ମିଳିବ ନାହିଁ । ରାଣାଙ୍କର ଉପଯୁକ୍ତ ଅନୁସରଣ କର । ଥରକୁଥର ସେହି ଇଙ୍ଗିତ । ମୋର ସମୟ ନିର୍ବାଚନର ସମୟ କାହିଁ ? ମୁଁ ଗୃହିଣୀ ଇଚ୍ଛାରେ ଚାଳିତ, ଏଣୁ ଚାଲିଆସିଲି ।

ବନବୀର - ତେବେ ପୂର୍ବାପେକ୍ଷା ମୋ ପ୍ରତି ବ୍ରାହ୍ମଣୀଙ୍କର ବେଶି ଆଦର ?

ହୃଷୀକେଶ - ତାହା କହିବାକୁ ହେବ ? ବନ୍ଧୁର ଆଦର ଏବଂ ରାଣାଙ୍କର ଆଦର ।

ବନବୀର - ଆରେ ରାଣା ! ମୁଁ ସିନା ରାଜ୍ୟରକ୍ଷା କରିବାକୁ ରାଣା !

ହୃଷୀକେଶ - ତେବେ କ'ଣ ରାଣା ହୋଇ ଘାସ କାଟନ୍ତି, ନା ଘୋଡ଼ା ଚରାନ୍ତି ?

ବନବୀର - ମୂର୍ଖ, ଏତିକି ବୁଝିବାକୁ ଯାହାର ଶକ୍ତି ନାହିଁ, ସେ ପୁଣି ରାଜନୀତିର ଉପଦେଶ ଦେବାକୁ ମୁଣ୍ଡେଇ । ରାଜ୍ୟରକ୍ଷା କରିବାକୁ ରାଣା ଏବଂ

ସହଜ ରାଣା ମଧ୍ୟରେ କି ପ୍ରଭେଦ, ତାହା କ'ଣ ତୁମକୁ ଦିଶୁ ନାହିଁ ?

ହୃଷୀକେଶ - (ମୁଣ୍ଡ ଆଉଁସି ତଳକୁ ଉପରକୁ ଦେଖି) ଉଁ ହୁଁ । ମୁଁ ମୂର୍ଖ, ଏଡ଼େ ସହଜରେ ଏପରି ଗୋଟାଏ ପ୍ରଭେଦ ଜାଣିବାକୁ ବୁଦ୍ଧିପାଇଲି କାହୁଁ ? ସହଜ ରାଣା, ରାଜ୍ୟରକ୍ଷକ ରାଣା ? ଏପରି ଗୁପ୍ତକଥା ଛଅକର୍ଣ୍ଣ ହେବା ଉଚିତ ନୁହେଁ । ତେବେ ବ୍ରାହ୍ମଣୀ ତ ମୋର ଅର୍ଦ୍ଧାଙ୍ଗୀ, ତାଙ୍କୁ ପଚାରି ପାରେ କି ?

ବନବୀର - ବ୍ରାହ୍ମଣୀ ତ ମତେ ଉପଦେଶ ଦେବାକୁ ସ୍ପର୍ଦ୍ଧା କରନ୍ତି ନାହିଁ । ତାଙ୍କୁ ପଚାରିବ କାହିଁକି ?

ହୃଷୀକେଶ - ଅର୍ଥ ବୁଝିବା ନିମନ୍ତେ, ପ୍ରଭେଦ ବୁଝିବା ନିମନ୍ତେ ବ୍ରାହ୍ମଣୀଙ୍କୁ ପଚାରିବାରେ ଆପତ୍ତି ଥିଲେ ତେବେ ବୁଝାଇ କହ ।

ବନବୀର - ମୁଁ ରାଜ୍ୟରକ୍ଷକ ରାଣା, ବିକ୍ରମାଜିତ ଉପଯୁକ୍ତ ବିବେଚିତ ହେଲେ ସେ, ନୋହିଲେ ଉଦୟ ସହଜ ରାଣା । ସେ ଦୁହିଁଙ୍କ ମଧ୍ୟରୁ ଜଣେ ରାଜ୍ୟ ପାଇଲେ ମୁଁ ପୂର୍ବପରି ରାଜଭ୍ରାତା ।

ହୃଷୀକେଶ - ଭିତରେ ଏ ରହସ୍ୟ ଏବଂ ବନବୀରଙ୍କ ଦ୍ୱାରା ଏହା ଅମୀମାଂସ୍ୟ ଏବଂ ଏଥି ନିମନ୍ତେ ଭାବନା ?

ବନବୀର - ଭାବନାର ବିଷୟ ତ ଅନେକ । ଏହା ଗୋଟିଏ ଭାବନାର ବିଷୟ ନୁହେଁ କି ?

ହୃଷୀକେଶ - ଅବଶ୍ୟ, ଅବଶ୍ୟ ! ଭାବ, ଭାବ ଦିନ ରାତି ଭାବ ।

ବନବୀର - ମନକୁ ଆସିଲା ତ ?

ହୃଷୀକେଶ - ତୁମେ ରାଜ୍ୟ ପାଇଛ ଭାବିବାକୁ, ତୁମେ ଭାବନାରେ ବୁଡ଼ିବ, ସଢ଼ିବ, ମୋ ମନକୁ ଆସିଲେ କେତେ, ନ ଆସିଲେ କେତେ ? ତେବେ ବିକ୍ରମାଜିତଙ୍କୁ ସର୍ଦ୍ଦାରମାନେ ଅନୁପଯୁକ୍ତ ଭାବି ପଦଚ୍ୟୁତ କଲେ । ପୁଣି ଯେ ତାଙ୍କୁ ରାଜତ୍ୱ ଦେବେ ତାହା ନୁହେଁ, ତାଙ୍କୁ ରାଜ୍ୟ ଦେଲେ ରାଜ୍ୟଚ୍ୟୁତ କରିଥିବା ଲୋକଙ୍କର ଘୋର ଅମଙ୍ଗଳ । ଏହା ଜଣାଶୁଣା କଥା । ତେବେ ବିକ୍ରମାଜିତ ତୁମ ବିରୋଧରେ ଯୁଦ୍ଧକରି ରାଜ୍ୟ ନେଇପାରନ୍ତି ଏବଂ ସେ ଯୋଗ୍ୟ ହେଲେ ଓ ରାଜ୍ୟ ପାଇଲେ ତୁମେ ଯେ ଅବଶ୍ୟ ପୂର୍ବପରି ରାଜଭ୍ରାତା ହୋଇ ସୁଖ ସ୍ୱାଚ୍ଛନ୍ଦ୍ୟରେ ଆମୋଦ ପ୍ରମୋଦ କରି ପାରିବ ତାହା ନୁହେଁ । ତାଙ୍କ ପରି କାରାଗାରକୁ ଯିବ । ତୁମେ ଯୋଗ୍ୟ ହେବାରୁ ତାଙ୍କର ଯେଉଁ ଦଶା, ସେ ଉପଯୁକ୍ତ ହେଲେ ତୁମର ସେହି ଦଶା । ଓଲଟ ପାଲଟ, ଏଥିରେ ଭୁଲ ନାହିଁ । ଉଦୟସିଂହ ? ଛଅ ବର୍ଷର ଶିଶୁ ! ଉପଯୁକ୍ତ ହୋଇ ମେବାର ରକ୍ଷା କରିବାକୁ ଅନ୍ତତଃ ଆଉ ବାର ବର୍ଷର ଧକ୍କା । ବାର ବର୍ଷ ତୁମେ ରାଜ୍ୟ ପାଳିବ, ନିନ୍ଦା, ଅପଯଶ, ମାଡ଼ ଗାଳି ସହିବା ଉଦୟଯୋଗ୍ୟ ହେଲେ ଦ୍ୱାଦଶବର୍ଷାନ୍ତେ "ତ୍ୱଂ ପୁନର୍ମୂଷିକୋ ଭବ ।" ମୂଷିକ ତ ହେବ, ମାତ୍ର ସ୍ୱାଧୀନ ମୂଷିକ କି ? ଉଁ ହୁଁ ପିଞ୍ଜରାବଦ୍ଧ ! ମାର୍ଜାର ବାଟ ଜଗିଥିବ, ଉଁଚୁଁ ହେଲେ ଖପକିନା ମାଡ଼ି ବସି ପ୍ରାଣ ନେବ । ଭାବନାର ବିଷୟ-ଏକା. !

ବନବୀର - ବୁଝିଲ ତ ?

ହୃଷୀକେଶ - ବୁଝିଲି, ବୁଝିଲି, ତୁମଠାରୁ ବେଶି ବୁଝିଲି । ତୁମ ସହିତ ପିଞ୍ଜରାବଦ୍ଧ ହେବାକୁ ମୋର ମଧ ଯୋଗଟାଏ ଅଛି, ଏହା ମଧ ବୁଝିଲି । ଏକଥା ପୂର୍ବେ କହିଲ ନାହିଁ କିଆଁ ? ମୁଁ ଉପଦେଶ ଦେଇଥାନ୍ତି । ଦୁଇଦିନ ପାଇଁ ରାଜମୁକୁଟ ଦରକାର ନାହିଁ । ଯେଉଁପରି ଥିଲ ସେହିପରି ଥାଅ, ତୁମ ମୁଣ୍ଡ ରାଜମୁକୁଟର ଉପଯୁକ୍ତ ନୁହେଁ । କହତ, ଆପାତମଧୁର ପରିଣାମରେ କଷ୍ଟଦାୟକ ବ୍ୟାପାରର ଅନୁସରଣ କଲ କାହିଁକି ?

ବନବୀର - ଦେଶବାସୀଙ୍କ ଅନୁରୋଧରୁ ଦେଶରକ୍ଷା ନିମନ୍ତେ ଓ ମାତୃଭୂମିର ସେବା ନିମନ୍ତେ ।

ହୃଷୀକେଶ - ଯେବେ ଅନୁରୋଧରୁ ଏ ଗୁରୁଭାର ଗ୍ରହଣ କରିଥାଅ, ତେବେ ତୁମେ ଅପରିଣାମଦର୍ଶୀ । ଯେବେ ଦେଶରକ୍ଷା ନିମନ୍ତେ ରାଜତ୍ୱ ଗ୍ରହଣ କଲ, ତେବେ ତହିଁର ଉପଯୁକ୍ତ ନୁହ, ତୁମ ଦ୍ୱାରା

ଦେଶରକ୍ଷା ହେବ ନାହିଁ । ଯାହାର ନିଜ ନିମନ୍ତେ ଏତେ ଭାବନା, ସେ କି ଦେଶରକ୍ଷା ପାଇଁ ଅବସର ଦେଇପାରେ ? ଅସମ୍ଭବ ! ଗୋଟାଏ ବାଟଧର, ଏକ ଭାବନାର କାରଣ ନିର୍ମୂଳ କରି ରାଜ୍ୟ ଶାସନ କର, ନୋହିଲେ ସ୍ୱେଚ୍ଛାରେ ରାଣାପଦ ତ୍ୟାଗ କର । ତୁମେ ସାମାନ୍ୟ ଅଦା ବେପାରୀ, ଜାହାଜର ଖବର ନେବା ଦରକାର ନାହିଁ । ଚାଲ, ଦୁଇ ବନ୍ଧୁ ଦିନେ ଦିନେ ବଣ ଭୋଜି କରୁଥିବା ।

ବନବୀର - ତୁମର ଇଙ୍ଗିତ ବଡ଼ ଜଘନ୍ୟ ।

ହୃଷୀକେଶ - ନୁହେଁ କ'ଣ ? ଗୁରୁଭାର ଗ୍ରହଣ କରି ଭାବନାରେ ବୁଡ଼ି ରହିବା ବଡ଼ ମହତ୍ତ୍ୱର କାର୍ଯ୍ୟ ସିନା ! କର୍ତ୍ତବ୍ୟ ପରାଙ୍ମୁଖ ଦେଖି ଅର୍ଜୁନଙ୍କୁ କୃଷ୍ଣ କହିଲେ, "କୁତସ୍ତ୍ୱାକଶ୍ମଳମିଦଂ ବିଷମେସମୁପସ୍ଥିତଂ ।"

ବନବୀର - ମୁଁ ଅର୍ଜୁନ ନୁହେଁ, କି ତୁମେ କୃଷ୍ଣ ନୁହଁ । ଏ କୁରୁପାଣ୍ଡବ ଯୁଦ୍ଧ ନୁହେଁ ।

ହୃଷୀକେଶ - ଏହା ଛୋଟ ଆକାରରେ ତାଦୃଶ ଘଟନା ନୁହେଁ ବା କିପରି ? ଦେଶରକ୍ଷା ଓ ରାଜ୍ୟପାଳନ କର୍ତ୍ତବ୍ୟ ଏକ ଆଡ଼େ ଏବଂ ତହିଁର ବାଧା ପ୍ରତିବନ୍ଧକ ଅନ୍ୟ ଆଡ଼େ । ଭାବନା ଦ୍ୱାରା ତୁମର କର୍ତ୍ତବ୍ୟ ବାଧାପ୍ରାପ୍ତ । ସ୍କନ୍ଧରେ ଯେଉଁ ଭାର ଗ୍ରହଣ କରିଅଛି, ସେଥି ନିମନ୍ତେ କାତର ହେଲେ କାପୁରୁଷ ଆଖ୍ୟା ହିଁ ତୁମର ପ୍ରାପ୍ୟ । ମୋର ନାମାନ୍ତର ତ କୃଷ୍ଣ । କର୍ତ୍ତବ୍ୟ ପରାଙ୍ମୁଖ ତୁମେ ଅର୍ଜୁନ ନୋହିବ ବା କାହିଁକି ?

ବନବୀର - ମୁଁ କର୍ତ୍ତବ୍ୟ ପରାଙ୍ମୁଖ ନୁହେଁ । ତେବେ ଚିନ୍ତାର ବିଷୟ ମଧ ଅଛି । ସେ ଚିନ୍ତା ଦୂର ହେବା ବଡ଼ କଠିନ ।

ହୃଷୀକେଶ - ଯେଉଁ ବ୍ୟକ୍ତି ଏଡ଼େ ଚିନ୍ତାଗ୍ରସ୍ତ, ସେ ଚିତୋର ରକ୍ଷା କରିବାକୁ ଅସମର୍ଥ । ଏହା ସ୍ଥିରନିଶ୍ଚିତ କଥା । ଏଡ଼େ ଏଡ଼େ କୁହୁ କୁହୁ ହେବାର ଦରକାର କ'ଣ, ମନ ଫିଟାଇ କହି ପକାଅ, କର୍ତ୍ତବ୍ୟ ନିର୍ଦ୍ଧାରଣ କରିବା ।

ବନବୀର - ତୁମେ ବା ନ ଜାଣିଲା ଭଳି ଏଡ଼େ ଚାତୁରୀ କରୁଛ କାହିଁକି ?

ହୃଷୀକେଶ - ତୁମେ ଜାଣ, ମୁଁ ଜାଣେ, ମନ ଫିଟୀ କହୁଛି କିଏ ?

ବନବୀର - ବଡ଼ କ୍ରୁର କାର୍ଯ୍ୟ, କେତେ ଦିନ ପାଇଁ ନାମକୁ ପାପ ପଙ୍କରେ ଲିପ୍ତ କରିବି ।

ହୃଷୀକେଶ - ବାଃ ବାଃ ! ବେଶ ଯୁକ୍ତି ! ଭୀଷ୍ମ, ଦ୍ରୋଣଙ୍କୁ ଦେଖି, ବାକ ବୀରମାନଙ୍କୁ ଦେଖି ଅର୍ଜୁନ ଏହିପରି କଥା କହିଥିଲେ ! ରାଜ୍ୟଲାଭ ଆଶାଟା ଥିଲା ଏବଂ ଜ୍ଞାତିବଧ ଶଙ୍କାଟା ମଧ ଥିଲା । ତୁମର ସେହି ଦଶା ମୁଁ କଣ ବୁଝୁ ନାହିଁ ? କୃଷ୍ଣଙ୍କ ଉପଦେଶରେ ଅର୍ଜୁନ କଣ କଲେ, ଦେଖ, ତୁମକୁ ତାହାହିଁ କରିବାକୁ ହେବ । ଯେବେ କରିବାକୁ ନାରାଜ, ତେବେ ଝୁଲିମୁଣି ଧରି ଦେଶାନ୍ତର ହେବାକୁ ପଡ଼ିବ । ଶୀଘ୍ର ସ୍ଥିର କର, କେଉଁଟା ଶ୍ରେୟ ।

ବନବୀର - ଝୁଲିମୁଣି ଶ୍ରେୟ ବୋଲି ବୋଧ ହେଉଅଛି—ଭାବିବାକୁ ଦିଅ ।

ହୃଷୀକେଶ - ଭାବି ଭାବି ତ କେତେ ଦିନ ଗଲା, ଆଉ ଭାବନାରେ ଫଳ କ'ଣ ? କଷାୟ ବସ୍ତ୍ରଧାରଣ କରି ସମସ୍ତଙ୍କ ଅଜ୍ଞାତରେ ଦୁର୍ଗ ତ୍ୟାଗ କର । ବର୍ତ୍ତମାନ ଅନ୍ଧକାର ନିଶା, ଉପଯୁକ୍ତ ସମୟ । ଅରଣ୍ୟକୁ ଯାଅ । ଯାହାର ଭାଗ୍ୟରେ ଥିବ, ସେ ରାଣା ହେବ । ତୁମର ପୁତ୍ରକଳତ୍ର ବନ୍ଦୀ ହେଲେ ନିର୍ଯାତିତ ହେଲେ ତୁମର ଯାଏ ଆସେ କେତେ ? ବିଳମ୍ବ ନ କରି ପ୍ରସ୍ତୁତ ହୁଅ । ତେବେ ଜାଣିବି ତୁମର ମନର ବଳ—ନୋହିଲେ ଯେଉଁମାନେ ତୁମର ଭବିଷ୍ୟତ ଜୀବନର ଅନ୍ତରାୟ, ସେମାନଙ୍କୁ ନିର୍ମୂଳ କର, ତେବେ ଜାଣିବି ତୁମର ମନର ବଳ ।

ବନବୀର - ଆହା ! କି ନିର୍ଦ୍ଦୟ, କି କ୍ରୁର ଏହି ବ୍ରାହ୍ମଣର ପ୍ରାଣ ? ନୃଶଂସ, ତାପରେ ଭୟ କି ତିଳେ ହେଲେ ନାହିଁ ?

ହୃଷୀକେଶ - ତୁମର ପାପକୁ ଭାରି ଭୟ ? ସନ୍ନ୍ୟାସୀ ହେଲ ନାହିଁ କାହିଁକି ? ତୁମେ ନିର୍ଦ୍ଦୟ, ତୁମେ କ୍ରୁର, ସ୍ୱାର୍ଥସିଦ୍ଧିର ଉପାୟ ଦିଶୁ ନାହିଁ, ଏତିକି ସିନା !

(ଦୂରରେ ରାଜମାର୍ଗରେ ସଙ୍ଗୀତ ଧ୍ୱନି । ବନବୀର ଏକ ମନରେ ତାହା ଶ୍ରବଣ କରିବା ।)

ଦୁରାଶା ପରମ ଶତ୍ରୁ ଅଟେ ମାନବର,
ଅନୁରକ୍ତି ତା ପ୍ରତିକି ନୁହେଁ ହାସ୍ୟକର ।
ତଥାପି କେ ତା' ବୁଝୁଛି,
ଅଯଥା ଲାଭ ପାଇଁକି ବିବେକ ନାଶୁଛି ।
ଯାହା ଯାହା ପ୍ରାପ୍ୟ ତାହା ଘେନି ହୁଅ ସୁଖୀ
ପର ଧନେ ଈର୍ଷା ବହି କିପାଁ ହୁଅ ଦୁଃଖୀ,
ଲୋଭ ଅଟଇ ଅସାର,
ପଡ଼ିଲେ ତାହାର ମୋହେ ନିନ୍ଦା ହେବ ସାର
ପରବୁଦ୍ଧି ନିଜ ପ୍ରତି ହିତ ନ ବିଚାର,
ଆତ୍ମବିବେକ ହରାଇ ହେବ ନାରଖାର ।
ଗୋଡ଼ ଖସିଗଲେ ଭାଇ,
ପତନରୁ ଟେକି ଧରିବାକୁ କେହି ନାହିଁ ।

ବନବୀର - ହୃଷୀକେଶ, ଶୁଣିଲ ? କି ମଧୁର ଉପଦେଶପୂର୍ଣ୍ଣ ସଙ୍ଗୀତ । ମୋ ପ୍ରତି ଏ ଇଙ୍ଗିତ ବୋଲି ମନେ ହେଉଅଛି ।

ହୃଷୀକେଶ - ସାଧୁ ସାଧୁ, ପଥର ଭିକ୍ଷୁକ ତୁମର ଉପଦେଷ୍ଟା, ମୁଁ କେହି ନୁହେଁ । ହେଉ ଭଲ କଥା । ଯୋଡ଼ିକରୁ ତ ତିନି କଥା ନାହିଁ । ଦୃଢ଼ ମୁଷ୍ଟିରେ ବଦ୍ଧ ତରବାରି ସାହାଯ୍ୟରେ ଶତ୍ରୁନାଶ କରି, ଦେଶରକ୍ଷା କର, ନତୁବା ଗାୟକର ପଛରେ ଭିକ୍ଷାପାତ୍ର ଘେନି ଚାଲ ଅଧିକ ଆଲୋଚନାର ତ ପ୍ରୟୋଜନ ନାହିଁ ।

ବନବୀର - (ହୃଷୀକେଶର କାନ୍ଧରେ ହାତରଖି) ଭାଇ, ଜାଣୁ ଜାଣୁ ଏ କାର୍ଯ୍ୟ କରିବାକୁ ଯିବ କିଏ ?

ହୃଷୀକେଶ - ତୁମେ ନିଜେ । ଏ ତ ତୁମ ବଂଶରେ ଲାଗିଛି । ତୁମର ପିତା ଏହି ମେବାର ନିମନ୍ତେ ରାଣା ସଙ୍ଗଙ୍କର ବଧ ଚେଷ୍ଟା କରିଥିଲେ । ତୁମେ ଦୁହିଁଙ୍କୁ ତାଙ୍କର ପୁଅ, ସଙ୍ଗଙ୍କର ପୁତ୍ର, ଏହି ମେବାର ନିମନ୍ତେ ବଧ କରିବ, ଏହା ସ୍ଥିରନିଶ୍ଚିତ ଅନ୍ୟଦ୍ୱାରା ଏ କାର୍ଯ୍ୟ ପଣ୍ଡ ।

ବନବୀର - ନିଷ୍ଠୁର ବ୍ରାହ୍ମଣ, ଯାଅ, ଯାଅ, ମତେ ଭାବିବାକୁ ଦିଅ ।

ହୃଷୀକେଶ - ବାଟ ଦିଶିଲା । ଭାବିବ, ନା ସୁଖରେ ନିଦ୍ରା ଯିବ ? ଶୋଇପଡ଼ । ମନଟା ସ୍ଥିର ହେଲାରୁ ଉପାୟ ତା ଛାଏଁ ଦିଶିବ ଯେ । ମୁଁ ତେବେ ଆସେ ।

(ପ୍ରସ୍ଥାନ)

ବନବୀର - (ସ୍ୱଗତ) ବ୍ରାହ୍ମଣ ସବୁ ବୁଝିଛି । ବୁଝିବ ନାହିଁ କାହିଁକି ? ମୋର ବାଲ୍ୟବନ୍ଧୁତା । କର୍ତ୍ତବ୍ୟ କ'ଣ ? ରାଜ୍ୟ ପ୍ରଭୁତ୍ୱ ଏକଆଡ଼େ, ନୃଶଂସ ନରହତ୍ୟା, ଆତ୍ମୀୟ ବଧ ଅନ୍ୟଆଡ଼େ । ଗୋଟିଏ ହତ୍ୟା ? ନା ଯୋଡ଼ିଏ । ଏଥିରେ ଅନ୍ୟର ସାହାଯ୍ୟ ନାହିଁ, ନିଜେ କରିବାକୁ ପଡ଼ିବ । ଏ ପାପକାର୍ଯ୍ୟରେ ହାତ ଦେବି କି ? ବଡ଼ ଚିନ୍ତାର କଥା । ତଥାପି ହୃଷୀକେଶ କହେ, ଏଥିରେ ଭାବିବାର କିଛି ନାହିଁ । ବ୍ରାହ୍ମଣର ମନ ବଡ଼ ଦୃଢ଼, କ୍ରୂର ଓ କର୍କଶ । କିନ୍ତୁ ହୃଷୀକେଶ ଯେ ମୋର ପରମ ହିତାକାଙ୍କ୍ଷୀ, ଏଥିରେ ସନ୍ଦେହ ନାହିଁ । ମତେ ସେ ଏଥିରୁ ନିଷ୍କୃତି ଦେବ ନାହିଁ । ତା ଚକ୍ଷୁରେ ମୁଁ ଦୁର୍ବଳ, କାପୁରୁଷ । ମୁଁ ବା ଏଡ଼େ ଦୁର୍ବଳ ହେବାର କାରଣ କ'ଣ ? ମୁଁ ଏ ରାଜମୁକୁଟ ପାଇଲି କି ହେତୁରୁ ? ରକ୍ଷିତା ପୁତ୍ରର କି ଏହା ପ୍ରାପ୍ୟ ? ଯେଉଁ ସର୍ଦ୍ଦାରମାନେ ମୋତେ ଦାସୀପୁତ୍ର ବୋଲି ଘୃଣା ଚକ୍ଷୁରେ ଦେଖୁଥିଲେ, ସେମାନେ ଆଜି ମତେ ସମ୍ମାନ କରନ୍ତି । ଯେଉଁ ବିକ୍ରମାଜିତର ଚକ୍ଷୁରେ ମୁଁ ହେୟ ଓ ଘୃଣ୍ୟ, ସେ ଆଜି ମୋର ବନ୍ଦୀ । ମୁଁ କି ଏ ମହତ୍ତ୍ୱ ଆଭିଜାତ୍ୟ ହେତୁରୁ ପ୍ରାପ୍ତ ହୋଇଅଛି ? ନା, ନା, ସ୍ୱସାମର୍ଥ୍ୟରୁ— ଶିକ୍ଷା ବଳରୁ— ଆତ୍ମବୀର୍ଯ୍ୟ ଓ ଶୌର୍ଯ୍ୟ ହେତୁରୁ । ଆଜି ସମସ୍ତେ ମୋର ବଶବର୍ତ୍ତୀ । ଏ ସୁଯୋଗ ଛାଡ଼ିବି କାହିଁକି ? ଆଜି ମେବାରର ରାଣା କାଲିପଥର ଭିକାରି ? ନା, ଭବିଷ୍ୟତ ରାଣାର ବନ୍ଦୀ ହେବି କାହିଁକି ? ଭାଗ୍ୟଦେବୀ ମୋ ପ୍ରତି ସୁପ୍ରସନ୍ନା । ମୋର ତରବାରି ଉପରେ ନିର୍ଭର ରଖି ସମସ୍ତେ ମୋର ବଶବର୍ତ୍ତୀ ଆଜ୍ଞାକାରୀ । ସେ ତରବାରିର ମର୍ଯ୍ୟାଦା ରକ୍ଷା କରିବି ନାହିଁ କାହିଁକି ? ମୋର ଉନ୍ନତିମାର୍ଗ ପରିଷ୍କାର ରଖିବାକୁ ଯତ୍ନଶୀଳ ହେବା ଉଚିତ । ବାସ୍ତବିକ

ଏ ସୁଯୋଗ ଛାଡ଼ିବା କାପୁରୁଷତାର ଲକ୍ଷଣ । ବ୍ରାହ୍ମଣ କହିଛି ସତ । ମୋର ଦାବି ନ ଥିଲା ମୁଁ ପାଇଛି । ରଖିବାକୁ ଚେଷ୍ଟା ନ କଲେ ମୁଁ କାପୁରୁଷ, ମୁଁ ହତଭାଗା । ଭାଗ୍ୟ ମତେ ତିରସ୍କାର କରିବ, କଷାଘାତ କରିବ, ଭାବିଲେ କିଏ କାହାର ଆତ୍ମୀୟ, କିଏ କାହାର ବନ୍ଧୁ ।

ନୀଚ ସ୍ତରରୁ ଉଚ୍ଚ ସ୍ତରକୁ ଯାଇ ପୁଣି ନିଜ ଦୋଷରୁ ତଳକୁ ଖସିବା । ବଡ଼ ନିନ୍ଦାର କଥା । ଅସ୍ତ୍ରପ୍ରୟୋଗ କୌଶଳରୁ ମୁଁ ବଡ଼ ହୋଇଅଛି, ସେହି ପ୍ରୟୋଗ କୌଶଳରେ ଆପଣା ଅବସ୍ଥାକୁ ବଜାୟ ରଖିବି । ଯେବେ କେହି ମୋର ପ୍ରାଣ ସଂହାର କରି ରାଜ୍ୟ ନେଇପାରେ ତ ନେଉ । ଲଜ୍ଜା କଣ, ଭୟ କଣ ? ଜୟ ପରାଜୟତ ଲାଗିଛି । କେତେ ପ୍ରତିଦ୍ୱନ୍ଦିଙ୍କି ମୁଁ ଏହି ତରବାରି ଦ୍ୱାରା ବଧ କରିଅଛି । ମୋର ତ ତିଳେମାତ୍ର ଦୁଃଖ ହୋଇ ନାହିଁ— ଅନୁତାପ ହୋଇନାହିଁ । ମେବାରବାସୀ ମୋତେ ସିଂହାସନରେ ବସାଇ ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀ ରଖି ଦେଇଅଛନ୍ତି । ପ୍ରତିଦ୍ୱନ୍ଦ୍ୱୀଙ୍କ ପ୍ରତି ଦୟା ପରବଶ ହେବା ଦରକାର ? ବିକ୍ରମାଜିତ ପିଞ୍ଜରାବଦ୍ଧ ସିଂହ । ମୁକ୍ତ ହେଲେ ମୋତେ ଗୋଡ଼ାଇ ଗୋଡ଼ାଇ ନାଶ କରିବାକୁ ଖଣ୍ଡବିଖଣ୍ଡ କରିବାକୁ ଛାଡ଼ିବ କି ? ଉଦୟସିଂହ ଶିଶୁ, ମୁଁ ତାକୁ ବାର ବର୍ଷ ପାଳନ କରିବି ନିଜେ ତା'ର କ୍ରୋଧର ବଳ ହେବାକୁ ? କି ମୂର୍ଖ ମୁଁ । ଦୁର୍ଗରେ ଦୁଇ ଗୋଟି ପ୍ରବଳ ଶତ୍ରୁ ରଖି ରାଜ୍ୟ ଶାସନ କରିବାକୁ ଅଗ୍ରସର ! ନାଶ ନ କଲେ ରାଜ୍ୟଭାର ଗ୍ରହଣ ବୃଥା । ଋଣ, ବ୍ୟାଧି ଓ ଶତ୍ରୁର ଲେଶମାତ୍ର ରଖିବ ନାହିଁ । ଏହା ଚାଣକ୍ୟର ବଚନ—ଅକ୍ଷରେ ଅକ୍ଷରେ ସତ୍ୟ । ହୃଷୀକେଶ ମୋର ଚାଣକ୍ୟ, ତାର ଉପଦେଶ ମୋର ଶିରୋଧାର୍ଯ୍ୟ, ଶ୍ରେୟସ୍କର । ମନ, ସ୍ଥିର ହୁଅ, ମୋର ଉନ୍ନତିମାର୍ଗ ପ୍ରଶସ୍ତ, ମୋର ଭବିଷ୍ୟତ କଣ୍ଟକଶୂନ୍ୟ ।

ଏତେବେଳେ ମୋର ଲକ୍ଷ ଲକ୍ଷ ପ୍ରଜା ନିଦ୍ରାକ୍ରୋଡ଼ରେ ନିଶ୍ଚିନ୍ତ । ମୁଁ ରାଣା, ମୋ ଆଖିରେ ନିଦ ନାହିଁ । ଚିନ୍ତା, ଚିନ୍ତା, ଯେଉଁ ଚିନ୍ତା ନିଦ୍ରାକୁ ବାଧା ଦେଇପାରେ, ସେହି ଚିନ୍ତାକୁ ଦୂରକରି ନ ପାରିଲେ ପ୍ରଜାକୁଳର ମଙ୍ଗଳ କରିବା କାମନା ବୃଥା ସିନା ।

(ପଲଙ୍କରେ ଶୟନ କରିବା)

ନିଦ୍ରାଦେବୀ ! ଚକ୍ଷୁ ମୁଦ୍ରିତ କଲି, ସୁପ୍ରସନ୍ନା ହୁଅ, ଶାନ୍ତି ଆନୟନ କର ।

ଯବନିକା

## ଦ୍ୱିତୀୟ ଅଙ୍କ

### ପୁରୁଷ

ବନବୀର - ଚିତୋରର ରାଣା ।
ଉଦୟସିଂହ - ରାଣା ସଙ୍ଗଙ୍କ କନିଷ୍ଠ ପୁତ୍ର, ବୟସ ଛଅବର୍ଷ ।
ବିଜୟ - ଧାତ୍ରୀ ପାନ୍ନାର ପୁତ୍ର, ଉଦୟଙ୍କ ସମବୟସ୍କ ।
ଭଙ୍ଗଡ଼ ସିଂହ - ଦୁର୍ଗ ପ୍ରହରୀ କ୍ଷତ୍ରିୟ ।
ହକ ସିଂହ - ଦୁର୍ଗ ପ୍ରହରୀ କ୍ଷତ୍ରିୟ ।
ବଚ୍ଚା - ସଂଗ୍ରାମ ସିଂହଙ୍କ ପାଳିତ ଭଣ୍ଡାରି ଯୁବକ ।
ଭୂଖନ - କିଲ୍ଲାର ଶ୍ମଶାନ ରକ୍ଷକ ।

### ସ୍ତ୍ରୀ

ଯୋଗିନୀ - ବ୍ୟାସମେରୁର ଯୋଗିନୀ (ଚାରଣୀ)
ପାନ୍ନା - ଉଦୟ ସିଂହଙ୍କର ଧାତ୍ରୀ ।
ଦୁଲାରି - ଭୂଖନର ସ୍ତ୍ରୀ ।

### ପ୍ରଥମ ଦୃଶ୍ୟ

***[ଅନ୍ତଃପୁର ପ୍ରାଚୀର ସଂଲଗ୍ନ ନାତ୍ୟୁଚ୍ଚ ପକ୍କା ଗୃହ ସମ୍ମୁଖରେ ଗୋଟିଏ ସୁଦୃଢ଼ କାଷ୍ଠନିର୍ମିତ ଯୁଗଳ କବାଟ । ଗୋଟିଏ କବାଟ ଉନ୍ମୁକ୍ତ । କବାଟ ପଛରେ ଦୁଇଗୋଟି ଉଚ୍ଚ ପିଣ୍ଡା, ଭିତର ଆଡ଼ିକୁ ବିସ୍ତୃତ ଚତ୍ୱର । ତହିଁ ଉତ୍ତାରୁ ଅନ୍ତଃପୁରର ପ୍ରଥମ ଗୃହ । ପିଣ୍ଡାରେ ବଚ୍ଚା ଉପବିଷ୍ଟ ।]***

(ନେପଥ୍ୟେ)

ଯାର ମୁଠେ ଅନ୍ନ ଖାଇ, ତା'ର ପଦେ ଗୁଣ ଗାଇ
ଏ ଅଟଇ ଶିଷ୍ଟଙ୍କ ବଚନ ।
ଯେହୁ ଅନ୍ନେ ପୋଷିଥାଇ ତା'ର ପ୍ରାଣ ରକ୍ଷା ପାଇଁ
ଧନ୍ୟ ଧନ୍ୟ ଯେ ଦିଏ ଜୀବନ ।

(ଯୋଗିନୀର ପ୍ରବେଶ । ଦ୍ୱାର ସମ୍ମୁଖରେ ଦଣ୍ଡାୟମାନ ହୋଇ)

ଯୋଗିନୀ - ଦ୍ୱାର ଅର୍ଦ୍ଧମୁକ୍ତ, ଏଠାରେ ତ କେହି ଥିଲାପରି ଜଣାଯାଉ ନାହିଁ ।

ବଚ୍ଚା - ମୁଁ ଏଠାରେ ଅଛି । ମା' ! ପ୍ରଣାମ ।

ଯୋଗିନୀ - ଜିତା ରହୋ । ଏଠାରେ ତୁ କିଏରେ ବାବା ? ବୃଦ୍ଧ ଦୌବାରିକ ଏଠାରେ ନାହିଁ କି ?

ବଚ୍ଚା - ମୁଁ ଭଣ୍ଡାରିପିଲା, ନାମ ବଚ୍ଚା ।

(ବଚ୍ଚାର ସର୍ବାଙ୍ଗ ତଳ ଉପରକୁ ଅନାଇ)

ଯୋଗିନୀ - ଦୁର୍ଯୋଗ, ଆଜି ପ୍ରଥମରୁ ଭଣ୍ଡାରି ହାବୁଡ଼ରେ ପଡ଼ିଲି ।

ବଚ୍ଚା - କାହିଁକି ? ମୁଁ କି ଅପରାଧ କଲି ମା' ?

ଯୋଗିନୀ - ନରାଣାଂ ନାପିତୋ ଧୂର୍ତ୍ତଃ, ଅପରାଧ କ'ଣ ? ସ୍ୱଭାବ କେଉଁଆଡ଼େ ଯିବ । କେଉଁ ସୂତ୍ରରେ କାର୍ଯ୍ୟରେ ବିଘ୍ନ ଘଟାଇବୁ, ତାହା ଜାଣିବାକୁ ସାଧ୍ୟ କାହାର ।

ବଚ୍ଚା - ମତେ ନ ଜାଣି ନ ଚିହ୍ନି ଏପରି କଥା କହୁଛ କାହିଁକି ?

ଯୋଗିନୀ - ଚିହ୍ନିଛି, ଚିହ୍ନିଛି, ନାପିତ ପୁଣି ଯୁବକ । ଶାସ୍ତ୍ରରେ ଅଛି ଶିଙ୍ଗ ଥିଲା ଜନ୍ତୁକୁ, ନଖ ଥିଲା ଜନ୍ତୁକୁ, ଭଲ ହତିଆର ଧରିଥିବା ଲୋକକୁ କେବେ ବିଶ୍ୱାସ କରିବ ନାହିଁ, ଛୋରା ବଡ଼ ସାଂଘାତିକ ଅସ୍ତ୍ର ସବୁବେଳେ ତୋ ହାତରେ, ଆଉ ଚିହ୍ନିବି କ'ଣ ?

ବଚ୍ଚା - ମୁଁ ତ କାହାରି ଅନିଷ୍ଟ କରି ନାହିଁ, ଏପରି ଅଯଥା ଭର୍ତ୍ସନା କରୁଛ କାହିଁକି । ତୁମେ ପରା ସନ୍ନ୍ୟାସିନୀ ?

ଯୋଗିନୀ - ଅନିଷ୍ଟ କରିପାରୁ କି ନା, ସମୟ ଆସିଲେ ସିନା ଜଣା ପଡ଼ିବ ।

ବଚ୍ଚା - ହେଲା ତେବେ, ଯାଅ ।

(ଯୋଗିନୀ ଭିତରକୁ ପ୍ରବେଶ କରିବାର ଚେଷ୍ଟା)

ଯୋଗିନୀ - ମୁଁ ଭିତରକୁ ଯିବି ।

ବଚ୍ଚା - ରହ, ଭିତରକୁ ଯାଇପାରିବ ନାହିଁ ।

ଯୋଗିନୀ - କାହିଁକି ?

ବଚ୍ଚା - ବିଧି ନୁହେଁ ।

ଯୋଗିନୀ - ମୋ ପ୍ରତି କି ବିଧିରେ ? ତୁ ଏଠାକୁ କୌଣସି କାର୍ଯ୍ୟରେ ଆସି ଅନଧିକାର ଚର୍ଚ୍ଚା କରୁଛୁ ନା, ତୁ ଏ ଦ୍ୱାରର ଚାକର ?

ବଚ୍ଚା - ମୁଁ ରାଣା ଉଦୟ ସିଂହଙ୍କର ସେବକ ।

ଯୋଗିନୀ - ରାଣା ବନବୀରଙ୍କର ଆଜ୍ଞାକାରୀ କହ । ଉଦୟ ତ ନାବାଳକ, ଉଦୟର ଶୁଶ୍ରୂଷା ନିମନ୍ତେ ରାଣା ଉପଯୁକ୍ତ ଚାକର ରଖିଛନ୍ତି ।

ବଚ୍ଚା - କାହିଁକି ?

ଯୋଗିନୀ - ତୋ ପରି ଅସ୍ତ୍ରଧାରୀ ଚଞ୍ଚଳମତି ଯୁବକ ଦ୍ୱାରା ଅନେକ ଉପକାର ହୋଇପାରେ ।

ବଚ୍ଚା - ମୁଁ ପରା କହିଲି ମୁଁ ରାଣା ଉଦୟସିଂହଙ୍କ ଚାକର ।

ଯୋଗିନୀ - କ'ଣ ? ପୁଣି ଉଦୟ ରାଣା ହେଲେ କେବେ ?

ବଚ୍ଚା - ରାଣାର ପୁଅ ରାଣା, ଏହା ଅନ୍ୟଥା କରିବ କିଏ ?

ଯୋଗିନୀ - ଉଦୟ କାହାର ପୁଅ କି ?

ବଚ୍ଚା - ରାଣା ସଙ୍ଗଙ୍କର ।

ଯୋଗିନୀ - ଆରେ ମୂର୍ଖ, ମୃତ ବ୍ୟକ୍ତିକୁ କିଏ ରାଣା ବୋଲି କହେ ?

ବଚ୍ଚା - ଯେ ରାଣା, ସେ ଜୀଇଁଥିଲେ ରାଣା, ମଲେ ମଧ ରାଣା । ମୁଁ ତାଙ୍କ ଦ୍ୱାରା ପ୍ରତିପାଳିତ, ତାଙ୍କୁ ରାଣା ନ କହି କହିବି କାହାକୁ ?

ଯୋଗିନୀ - ବନବୀରଙ୍କୁ ।

ବଚ୍ଚା - ସତ, ମାତ୍ର ମୁଁ ତ ଉଦୟଙ୍କର ସେବକ ।

ଯୋଗିନୀ - ସତ, ମାତ୍ର ବନବୀର ତ ବର୍ତ୍ତନ ଦିଅନ୍ତି, ତାଙ୍କ ଆଦେଶ ଅନ୍ୟଥା କରିବାକୁ ତୁ କିଏ ? ସେ ଯାହା କହିବେ ତାହା କରିବ, ଭଣ୍ଡାରି କି ନା ? ତୋତେ ପାରିତୋଷିକ ଦେଇ ଉଦୟର ଅନିଷ୍ଟ କର ବୋଲି ଆଦେଶ ଦେଲେ କି ଛାଡ଼ିବୁ ! ତାହାହେଲେ ଯେ ତୋର ବୃତ୍ତି ଯିବ ଏବଂ ଗର୍ଦ୍ଦନ ମଧ ଯାଇପାରେ । ନାପିତ ପୁତ୍ର, ତୁ କ'ଣ ଲୋଭ ଛାଡ଼ିପାରୁ ?

ବଚ୍ଚା - ତୁମେ ଏଠାକୁ ଆସି ଏ ସବୁ କଥାର ଆଲୋଚନା କରୁଛ କାହିଁକି ? ପ୍ରୟୋଜନ ଅଛି

ତ କହ, ନୋହିଲେ ଏଠାରୁ ଶୀଘ୍ର ଯାଅ । ତୁମର ମତି ଗତି ଭଲ ନୁହେଁ ।

ଯୋଗିନୀ - ଭଲା ଜାଣିଲୁରେ ନାପିତ ପୁଅ । ପ୍ରୟୋଜନ କ'ଣ । ପ୍ରୟୋଜନ କ'ଣ ତାହା କ'ଣ ତୋ ଆଗରେ କହିବି ?

ବଚ୍ଚା - ତେବେ କାହାକୁ କହିବ ?

ଯୋଗିନୀ - ମୁଁ ଭିତରକୁ ଯିବି ।

ବଚ୍ଚା - ମୁଁ ଛାଡ଼ିବି ନାହିଁ, କାହା ସଙ୍ଗରେ ତୁମର ଦେଖା କରିବାର ଦରକାର ତାହା କହ ।

ଯୋଗିନୀ - ଧାତ୍ରୀ ସଙ୍ଗରେ ।

ବଚ୍ଚା - ସେ କ'ଣ ତୁମକୁ ଜାଣନ୍ତି ?

ଯୋଗିନୀ - ହଁ । ପଚାରିଲେ କହିବୁ ବ୍ୟାସ ମେରୁର ସନ୍ନ୍ୟାସିନୀ ।

ବଚ୍ଚା - ତେବେ ପିଣ୍ଡାରେ ବସ, ମୁଁ ବୁଝି ଆସେ ? ଖବରଦାର ଭିତରକୁ ପଶିବ ନାହିଁ ।

(ବଚ୍ଚାର ପ୍ରସ୍ଥାନ)

ଯୋଗିନୀ - (ସ୍ୱଗତ) ଜାଣିଲି ବଚ୍ଚା ଉଦୟର ବିଶ୍ୱାସୀ ସେବକ । ଧାତ୍ରୀକି ବୁଝି ଜାଣିବି ଯେ ।

ଯେହୁ ଅନ୍ନେ ପୋଷି ଥାଇ
ତା'ର ପ୍ରାଣ ରକ୍ଷା ପାଇଁ
ଧନ୍ୟ ଧନ୍ୟ ଯେ ଦିଏ ଜୀବନ ।

(ବଚ୍ଚାର ପ୍ରବେଶ)

ବଚ୍ଚା - କ'ଣ ଗାଉଛ, କ'ଣ କହୁଛ ?

ଯୋଗିନୀ - ଯେତେବେଳେ ଯାହା ଆସିଲା ।

ବଚ୍ଚା - ମୋର ପାଳନକର୍ତ୍ତା ରାଣା ସଙ୍ଗ, ତାଙ୍କ ପାଇଁ ତ ପ୍ରାଣ ଦେଇ ପାରିଲି ନାହିଁ, ତାଙ୍କ ପୁତ୍ର ଉଦୟ ନିମନ୍ତେ ମୋର ପ୍ରାଣପଣ ଜାଣିଲ ? ଧାତ୍ରୀ ଅନୁମତି ଦେଲେ "ମୋ ସଙ୍ଗରେ ଆସ ।"

### ଦ୍ୱିତୀୟ ଦୃଶ୍ୟ

*[ବାସଭବନର ବାରଣ୍ଡାରେ ପାନ୍ନା ଦଣ୍ଡାୟମାନ । ପ୍ରାଙ୍ଗଣର ଅନତି ଦୂରରେ ଉଦୟ ଓ ବିଜୟ କ୍ରୀଡ଼ାରତ ।]*

(ଯୋଗିନୀର ପ୍ରବେଶ)

ପାନ୍ନା ପ୍ରଣାମ, ବହୁ ଦିନ ପରେ ଶୁଭାଗମନ ହେଲା ।

ଯୋଗିନୀ - ରାଣା ସଙ୍ଗଙ୍କର ତିରୋଧାନ ଉତ୍ତାରୁ ତାଙ୍କର ଆଦେଶରେ ତାଙ୍କ ଶୁଭେଚ୍ଛା ପ୍ରଚାର କରୁଥିଲି । ଦେଶର ଦୁର୍ଦ୍ଦଶା କଣ କହିବି ? ଆଜି କାଲିର ରୀତି ନୀତି ଭିନ୍ନ । ଆମକୁ ବା ପଚାରେ କିଏ ?

ପାନ୍ନା - ତୁମେ ସମସ୍ତଙ୍କର । ତୁମକୁ ନ ପଚାରେ କିଏ ? ଅଳ୍ପ ଦିନ ଭିତରେ କି ପରିବର୍ତ୍ତନ, କି ଦୁର୍ଦ୍ଦଶା ! ଏହା ଦେଖିବାକୁ ସିନା ଜୀବନ ଅଛି ! ସଙ୍ଗଙ୍କ ମୃତ୍ୟୁ ବେଳେ ମୁଁ ଉପସ୍ଥିତ ଥିଲି । ତାଙ୍କର କନିଷ୍ଠ ପୁତ୍ର ଉଦୟ ନିମନ୍ତେ ବଡ଼ ଭାବନା । ଏ ଦୁର୍ଦ୍ଦିନରେ ଥରେ ତାକୁ ଦେଖିବାକୁ ଆସିଲି । ଉଦୟ କାହିଁ ?

ପାନ୍ନା - ବାବା ଉଦୟ ! ଏଠାକୁ ଆସ, ଭଗବତୀଙ୍କୁ ପ୍ରଣାମ କର ।

(ଉଦୟ ଓ ବିଜୟ ଦୌଡ଼ି ଆସି ପ୍ରଣାମ କରିବା, ଚାରିଣୀ ଉଭୟଙ୍କର ମୁଣ୍ଡ ହସ୍ତରେ ଆଉଁସି ଆଶୀର୍ବାଦ ଦେବା ।)

ଉଦୟ - ମା' ! ଏ କିଏ ?

ପାନ୍ନା - ସନ୍ନ୍ୟାସିନୀ, ତୁମକୁ ଦେଖିବାକୁ ଆସିଛନ୍ତି । ଏହାଙ୍କ କଥା ପଛେ ଜାଣିବ ଯେ । ଯାଅ ଖେଳିବ ।

ଯୋଗିନୀ - ଆହା, ସତେ କି ଯୋଡ଼ିକ ଯମଜ ଭାଇ । ଦୀର୍ଘଜୀବୀ ହୁଅନ୍ତୁ ଦେଶର ମୁଖୋଜ୍ଜ୍ୱଳ କରିବେ ।

ପାନ୍ନା - ତୁମର ଶୁଭେଚ୍ଛା ପୂର୍ଣ୍ଣ ହେଉ ।

ଯୋଗିନୀ - ବର୍ତ୍ତମାନ ଏ ସ୍ଥାନର ଅବସ୍ଥା କିପରି ?

ପାନ୍ନା - ଅବସ୍ଥା କଥା ପଚାରୁଛ କାହିଁକି ? ରାଣା ରତ୍ନର ଆକସ୍ମିକ ଓ ଦୁଃଖଜନକ ମୃତ୍ୟୁର କଥା ବୋଧ ହୁଏ ଜାଣ !

ଯୋଗିନୀ - ଜାଣେଁ ।

ପାନ୍ନା - ବିକ୍ରମାଜିତ ରାଣା ହେଲେ, କିନ୍ତୁ ତାଙ୍କୁ ଅନୁପଯୁକ୍ତ ଭାବି ସର୍ଦ୍ଦାର ଓ ପ୍ରଜାମାନେ

ବନବୀରଙ୍କୁ ରାଣା କଲେ । ବିକ୍ରମାଜିତ ବନ୍ଦୀ ।

ଯୋଗିନୀ - ଉଦୟ ପ୍ରତି ବନବୀରଙ୍କ ବ୍ୟବହାର କିପରି ?

ପାନ୍ନା - ତାଙ୍କ ମନରେ କ'ଣ ଅଛି, ସେ ଜାଣନ୍ତି । ଯେବେ ବିକ୍ରମାଜିତ ବନବୀରଙ୍କ ଶତ୍ରୁ ଓ ବନ୍ଦୀ, ତେବେ ବିକ୍ରମାଜିତଙ୍କର କନିଷ୍ଠ ଭାଇ ଉଦୟକୁ ବନବୀର କି ସ୍ନେହ ଚକ୍ଷୁରେ ଦେଖିବେ ? କହିବାକୁ ଗଲେ ଆମେ ମଧ ବନ୍ଦୀ । କେତେବେଳେ କଣ ଘଟିବ କିଏ କହିପାରେ ? ଦିନରାତି ମନ ଘାଣ୍ଟି ହେଉଛି ।

ଯୋଗିନୀ - ସହାୟ ?

ପାନ୍ନା - ସହାୟ କେହି ନାହିଁ । ବନବୀରଙ୍କ ଭୟରେ ଏଠାକୁ ଆସିବ କିଏ ? ଏଠାକୁ ଆସିବାକୁ ନିଷେଧ ଆଜ୍ଞା ଅଛି କି ନା ଜଣା ନାହିଁ । ମାତ୍ର କେହିତ କେବେ ଆସି ଉଦୟର ଖବର ନିଅନ୍ତି ନାହିଁ ।

ଯୋଗିନୀ - ପ୍ରୟୋଜନ ହେଲେ ଏଠାରୁ ପଳାୟନର କି ଉପାୟ ନାହିଁ ?

ପାନ୍ନା - ଅସମ୍ଭବ । ରାଣାର ସତର୍କ ଦୃଷ୍ଟି ଏଡ଼ିବାକୁ ମୁଁ ଅସହାୟା ବିଧବା କିଏ ?

ଯୋଗିନୀ - ବଡ଼ ଭାବନାର କଥା— ଉପାୟ କ'ଣ ?

ପାନ୍ନା - ଉପାୟ ମୋର ପ୍ରାଣ । ସିଂହୀ ଯେପରି ଅରଣ୍ୟରେ ଆପଣାର ସନ୍ତାନର ପ୍ରାଣରକ୍ଷା ନିମନ୍ତେ ପ୍ରାଣ ପଣ କରିଥାଏ, ମୁଁ ସେହିପରି ଉଦୟ ନିମନ୍ତେ ପ୍ରାଣପଣ କରିଛି । ସମୟ ଉପସ୍ଥିତ ହେଲେ ଦେଖିବି ।

ଯୋଗିନି - ଆଉ ତୁମର ବିଶ୍ୱାସୀ ଲୋକ କେହି ନାହାନ୍ତି ?

ପାନ୍ନା - ବଢା ଭିନ୍ନ ଅନ୍ୟ କେହି ଅଛି ବୋଲି ମୋତେ ଜଣାନାହିଁ ।

ଯୋଗିନୀ - ପରୀକ୍ଷା କରି ଜାଣିଲି, ବଢା ନିଶ୍ଚୟ ପରମ ବିଶ୍ୱାସୀ ଭୃତ୍ୟ । ଧନ୍ୟ ତୁମେ । ଏହି ଗୁରୁଭାର ନେଇ ଏକାକିନୀ ଏ ଗୃହରେ ଅଛ । ଉଦୟ ନିମନ୍ତେ ମୁଁ ମଧ ପ୍ରାଣ ଦେବାକୁ କୁଣ୍ଠିତ ହୁଅନ୍ତି ନାହିଁ । ତେବେ ମୁଁ ବୁଲି ବୁଲି ଗୁପ୍ତ ଅନୁସନ୍ଧାନ କରିବି, କିଏ ଉଦୟ ନିମନ୍ତେ ରାଣାର ରୋଷ ମୁଣ୍ଡରେ ବହିବାକୁ ସମର୍ଥ । ପରେ ଆସି ସାକ୍ଷାତ୍ କରିବି । ତୁମେ ବୁଦ୍ଧିମତୀ, ତୁମକୁ କହିବି କଣ, ସମୟ ବୁଝି କାର୍ଯ୍ୟ କରିବ । ଶୁଭାଶୀର୍ବାଦ ଭିନ୍ନ ବର୍ତ୍ତମାନ ଦେୟ ଆଉ କିଛି ନାହିଁ ।

ପାନ୍ନା - (ସାଶ୍ରୁ ନୟନରେ) ବାବା ଉଦୟ ? ଆସ, ଭଗବତୀଙ୍କୁ ପ୍ରଣାମ କରି ଯାଅ ।

(ଉଦୟ ଆସି ପ୍ରଣାମ କରିବା)

ଯୋଗିନୀ - ବାବା, ପିତାଙ୍କ ପରି ଯଶସ୍ୱୀ ହୁଅ । ଧାତ୍ରୀ, ଏଠାରୁ ଯିବାକୁ ମନ ବଳୁନାହିଁ । ତଥାପି ଯିବାକୁ ବାଧ । ରାଣା ସଙ୍ଗଙ୍କର ବଂଶରକ୍ଷା ଭାର ତୁମ ଉପରେ । ତୁମେ ଭାଗ୍ୟବତୀ, ତୁମ ଦ୍ୱାରା ଏ କାର୍ଯ୍ୟ ସିଦ୍ଧ ହେଉ । ଏହି କାମନା କରି ବିଦାୟ ନେଲି ।

(ଯୋଗିନୀର ପ୍ରସ୍ଥାନ)

(ବଢାର ପ୍ରବେଶ)

ବଢା - ମା' ! ଚାରଣୀ କାହିଁକି ଆସିଥିଲେ ?

ପାନ୍ନା - ଉଦୟକୁ ଆଶୀର୍ବାଦ ଦେବାକୁ, ମତେ ଦେଖିବାକୁ ।

ବଢା - ମୁଁ ତ ଏହାଙ୍କ କଥା ଶୁଣି ବିରକ୍ତିବୋଧ କଲି । ବନବୀର ଯେପରି କି ମତେ ଉଦୟର ପ୍ରାଣନାଶ ନିମନ୍ତେ ରଖି ଅଛନ୍ତି, ସେ ଏହି ଭଙ୍ଗିର ମଥାସବୁ କହିଲେ । ଏଥିରେ କିଏ ବିରକ୍ତ ନ ହେବ ?

ପାନ୍ନା - ହଁରେ, ମନ ବିଡ଼ିବାକୁ ସେପରି କହୁଥିଲେ । ଚାରଣୀ ରାଣା ସଙ୍ଗଙ୍କର ଉପଦେଶ ଦାତ୍ରୀ ଥିଲେ । ଏହାଙ୍କ ଦ୍ୱାରା ଉଦୟର ମଙ୍ଗଳ ହୋଇପାରେ । ଆମର ଆଉ ସହାୟ କିଏ ? ସମୟରେ ଏହାଙ୍କର ଉପଦେଶ ପାଇ ପାରୁଁ ।

ବଢା - ମୁଁ ତାଙ୍କୁ କଟୁ କଥା କହି ଅପରାଧ କରିଛି ।

ପାନ୍ନା - ସେ କି ସେଥି ନିମନ୍ତେ ଅସନ୍ତୁଷ୍ଟ ? ନାହିଁ ତୋ ଠାରେ ସେ ଭାରି ଖୁସି ।

(ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

*[ରାତ୍ରି । ଉଦୟସିଂହର ଶୟନକକ୍ଷ । ଉଦୟ ପଲଙ୍କ ଉପରେ ନିଦ୍ରିତ । ଅନ୍ୟ ପଲଙ୍କରେ ବିଜୟ ନିଦ୍ରିତ, ପାନ୍ନାଦ୍ୱାରା ନିକଟରେ ଉପବେଶନ କରି କ୍ଷୀଣ ସ୍ୱରରେ ଗୀତ ଗାଉଥିବା । ଅସ୍ତବ୍ୟସ୍ତ ହୋଇ ବଚ୍ଚାର ପ୍ରବେଶ ।]*

ବଚ୍ଚା - ମା ! ବଡ଼ ବିସ୍ମୟକର ଘଟଣା ଶୁଣିଲଣି ? ବନବୀର ବିକ୍ରମାଜିତଙ୍କୁ ସ୍ୱହସ୍ତରେ ବଧ କରିଅଛନ୍ତି ।

ପାନ୍ନା - କ'ଣ କହିଲୁ ?

ବଚ୍ଚା - ଏହା ନିଶ୍ଚିତ, ମୁଁ ଶୁଣି ଆସିଲି ।

ପାନ୍ନା - ବାବା ମୋର, ତୋ ଦ୍ୱାରା କେବଳ ଉଦୟର ପ୍ରାଣରକ୍ଷା ହୋଇପାରେ । ମୁଁ ଯାହା କହୁଛି କର ବାପ, କାଳ ବିଳମ୍ବରେ ସର୍ବନାଶ ।

ବଚ୍ଚା - ଯାହା କହିବ ତାହା କରିବି, ଶୀଘ୍ର କହ ।

(ଧାତ୍ରୀ ଫୁଲଡାଲା ଆଣି ନିଦ୍ରିତ ଉଦୟକୁ ସେଥିରେ ଶୁଆଇବା, ଉପରେ ଫୁଲ ବେଲପତ୍ର ଦେବା ଏବଂ ଦୁଇଗୋଟି ଅଫିମ ମିଶ୍ରିତ ମିଠାଇ ବଚ୍ଚା ହସ୍ତରେ ଦେବା ।)

ପାନ୍ନା - ଏହି ବୋଝଟି ନେଇଯା, ଉତ୍ତରପାର୍ଶ୍ୱର ଦ୍ୱାର ଉନ୍ମୁକ୍ତ କରି ଚାଲିଯିବୁ । ଶ୍ମଶାନର ଅନତିଦୂରବର୍ତ୍ତୀ ଶିବ ମନ୍ଦିରରେ ମତେ ଅପେକ୍ଷା କରୁଥିବୁ । ଯେବେ ଉଦୟର ନିଦ ଭାଙ୍ଗେ, ଏହି ମୋଦକରୁ ଗୋଟିଏ ଖାଇବାକୁ ଦେବୁ । ସେ ଶୋଇପଡ଼ିବ । କାଳ ବିଳମ୍ବ ନ କରି ଚାଲିଯା । ଉଦୟର ଜୀବନ ତୋ ହାତରେ ।

(ଡାଲା ଧରି ବଚ୍ଚାର ପ୍ରସ୍ଥାନ)

(ପାନ୍ନା ଉଦୟର ପଲଙ୍କରେ ଆପଣା ପୁତ୍ର ବିଜୟକୁ ଶୟନ କରାଇ ସର୍ବାଙ୍ଗ ଘୋଡ଼ାଇ ଦେବା ଏବଂ ଦୀପଶିଖା କ୍ଷୀଣକରି ଦେଇ ବାରନ୍ଦାରେ ଉପବେଶନ କରିବା । ଅଳ୍ପକ୍ଷଣ ପରେ ଶାଣିତ ଛୁରିକା ହସ୍ତରେ ବନବୀରଙ୍କର ପ୍ରବେଶ ।)

ବନବୀର - କିଏ, ଧାତ୍ରୀ ?

ପାନ୍ନା - ହଜୁର ।

ବନବୀର - ଉଦୟସିଂହ କେଉଁଠାରେ ?

(ଧାତ୍ରୀ ଅଙ୍ଗୁଳି ସଙ୍କେତ ଦ୍ୱାରା ଉଦୟ ପଲଙ୍କ ଦେଖାଇ ଦେବା, ବନବୀର ଛୁରିକା ! ଘାତରେ ଶିଶୁର ପ୍ରାଣସଂହାର କରି ବାରନ୍ଦାକୁ ବାହାରି ଆସିବା । ପାନ୍ନା ସକସକ କାନ୍ଦିବା) ।

ବନବୀର - ଦେଖ ଧାତ୍ରୀ, ମେବାର ରାଜ୍ୟ ରକ୍ଷା ନିମନ୍ତେ ଯାହାର ପ୍ରୟୋଜନ, ତାହା ମୁଁ କରିବାକୁ ବାଧ । ଏଣୁ ଉଦୟର ପ୍ରାଣ ସଂହାର କଲି । ଦୁର୍ଗାଧୀଶ୍ୱରୀଙ୍କର ତାହାହିଁ ଇଚ୍ଛା । ତୁମେ ଉଦୟର ପାଳନକର୍ତ୍ତ୍ରୀ, ଏଥି ନିମନ୍ତେ ତୁମର ଦୁଃଖ ହେବା ସ୍ୱାଭାବିକ । ତୁମ୍ଭେ ତ ଜାଣ ଯେ, ଏହି ଦୁର୍ଗରକ୍ଷା ନିମନ୍ତେ ମା' ମାନେ ନିଜ ନିଜ ପୁତ୍ରମାନଙ୍କୁ ଯୁଦ୍ଧ ବେଶରେ ସଜ୍ଜିତ କରି ଯୁଦ୍ଧ କ୍ଷେତ୍ରରେ ବଳି ଦେଇଛନ୍ତି । ତୁମେ ଆଜି ଉଦୟକୁ ସେହି ଦେଶ ନିମନ୍ତେ ବଳି ଦେଲ । କାତର ହୁଅ ନାହିଁ । ତୁମର ଯେ ଇଚ୍ଛା, ତାହା ପ୍ରକାଶ କର ।

(କାନ୍ଦି କାନ୍ଦି)

ପାନ୍ନା - ରାଣା, ମୋର ଆଉ କହିବାର କ'ଣ ଅଛି । ଆପଣ ରାଣାର କାର୍ଯ୍ୟକଲେ, ତାହା ମୁଁ ବୁଝିବି କିପରି ? ମୁଁ ଯାହା ନିମନ୍ତେ ଏଠାରେ ଥିଲି, ସେ ତ ଚାଲିଗଲା । ଏଣୁ ଏଠାରୁ ଯିବାପାଇଁ ମୁଁ ଅନୁମତି ମାଗେ । ଏଠାରେ ଥିଲେ ମନ କଷ୍ଟଭୋଗ କରିବି ।

ବନବୀର - ସତ କଥା, ଯାଇପାର । କୌଣସି ପ୍ରାର୍ଥନା ଅଛି ?

ପାନ୍ନା - ଯେଉଁଠାରେ ଥିଲେ ରାଣାଙ୍କ ଅନ୍ନଜଳରେ ପାଳିତା । ବର୍ତ୍ତମାନ କିଛି ପ୍ରୟୋଜନ ନାହିଁ । ତେବେ ମୋର ଗୋଟିଏ ଅନୁରୋଧ ଓ ଭିକ୍ଷା, ମୁଁ ଯାହାକୁ ଏତେଦିନ ପାଳିଥିଲି, ଯାହା ନିମନ୍ତେ ଏ କିଲ୍ଲାରେ ମୋର ବାସ, ସେ ତ ଗଲା । ତାର ସଂସ୍କାର ମୋ ହାତରେ ସମାଧାନ କରିବାକୁ ମୁଁ ଇଚ୍ଛା କରେ । ଶ୍ମଶାନରେ ତା'ର ସଂସ୍କାର କରି ତାର ସଦ୍‌ଗତି ନିମନ୍ତେ ଜଳାଞ୍ଜଳି ଦେବି । ଆଜି ରାତ୍ରିରେ ତା'ର ଅସ୍ତିତ୍ୱ ଲୋପ ହେବ । କେହି କିଛି ଜାଣିବେ ନାହିଁ ।

ବନବୀର - ଭଲ କଥା, କିଏ ଅଛି ?

[ନେପଥ୍ୟେ] ହଜୁର ମୁଁ ଭଙ୍ଗଡ଼ସିଂହ ।

ବନବୀର - ଆଉ କିଏ ଅଛି ?

(ନେପଥ୍ୟେ) ହକ ସିଂହ ।

(ଉଭୟଙ୍କର ପ୍ରବେଶ)

ବନବୀର - ଶୁଣ— ପାନ୍ନା ଧାତ୍ରୀ ଯେଉଁ ଆଦେଶ ଦେବେ, ତାହା ତୁମେ ଦୁହେଁ ପାଳନ କରିବ । ତ୍ରୁଟି କଲେ ଦଣ୍ଡ ପାଇବ । ଆଉ ଏହି ରାତ୍ରିର ଯାବତୀୟ ଘଟଣା ଗୁପ୍ତ ରଖିବ । ପ୍ରକାଶ ପାଇଲେ ଯେ ଶାସ୍ତି ମିଳିବ ତାହା ଜାଣ ତ ?

ଭଙ୍ଗଡ଼ସିଂହ- ହଜୁରଙ୍କ ଆଦେଶ ଶିରୋଧାର୍ଯ୍ୟ ।

(ବନବୀରଙ୍କର ପ୍ରସ୍ଥାନ)

ପାନ୍ନା - ଭଙ୍ଗଡ଼ସିଂହ, ଘଟଣା ଦେଖିଲ ତ । ଏହା ସମ୍ପୂର୍ଣ୍ଣ ଅପ୍ରକାଶ୍ୟ । ତୁମ ମଧ୍ୟରୁ ଜଣେ ଯାଇ ଶ୍ମଶାନରେ ଚିତାର ବନ୍ଦୋବସ୍ତ କର । ଜଣେ ଆସି ଏହି ଶବକୁ ଘେନି ମୋ ସଙ୍ଗରେ ଯିବ ।

ଭଙ୍ଗଡ଼ସିଂହ- ହକ୍ ସିଂହ, ତୁମେ ଆଗରେ ଯାଇ ଚିତାର ବନ୍ଦୋବସ୍ତ କରୁଥାଅ । ମୁଁ ଧାତ୍ରୀଙ୍କ ସଙ୍ଗରେ ଯାଉଛି ।

(ହକ୍‌ସିଂହର ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

[*ରାତ୍ରି ଅନ୍ଧକାର, ନଦୀ ତୀରରେ କ୍ଷୁଦ୍ର କୁଟୀର, ଅଳ୍ପ ଦୂରରେ ଶ୍ମଶାନ, ହକ୍‌ସିଂହର ପ୍ରବେଶ।*]

ହକ୍‌ସିଂହ— ଭୁଖନ୍, ଏ ଭୁଖନ୍ ।

ଭୁଖନ୍ - (ସ୍ୱଗତ) ଏ ଶୀତ ରାତିରେ କିଏ ପୁଣି ଡାକିଲାଣି । ବଡ଼ କଠିନ ପାଇଟି, କି ଦିନ, କି ରାତି କେହି ମଲାତ ଭୁଖନର ଡାକ ପଡ଼ିଲା । ସର୍କାରୀ କାମ, ନା ବାଜେ ଲୋକର ? ଦୁଲାରୀ ଉଠମ ।

ଦୁଲାରୀ - ତୁ ତ ଯାଇ ବୁଝି ଆସିବୁ, ମୁଁ ଉଠିବି କାହିଁକି ?

ଭୁଖନ୍ - ତେବେ ଦୀପଟି ଲଗା । ତୁମେ କିଏ କି ହୋ, ଏଡ଼େ ଟାଣ ଦେଖାଯାଉଛ ଯେ ? ଏହା କିଲ୍ଲାର ଶ୍ମଶାନ ଜାଣ ନାହିଁକି ?

ହକ୍‌ସିଂହ - କିରେ ଶାଳା, ଘର ଭିତରୁ ତୋର ତ ଭାରି ଟାଣ ? ମୁଁ କିଏ ତୁ ବାହାରକୁ ଆସିଲେ ଜାଣିବୁ ନା । ଜଲଦି ନିକଲ ।

ଭୁଖନ୍ - ଆରେ, ଏ ସରକାରୀ ଲୋକରେ, ତା ଗଳା ଆବାଜରୁ ଜାଣୁ ନାହୁଁ ? ହଜୁର୍ ବାହାରିଲି ।

(ଭୁଖନର ପ୍ରବେଶ)

ହକ୍‌ସିଂହ - ସରକାରୀ କାମରେ ତୋର ଏଡ଼େ ଗଫଲତି ।

ଭୁଖନ - ହଜୁର, ଦୀପଟା ପରା ଲଗାଉଥିଲି ।

ହକ୍‌ସିଂହ - ଶୀଘ୍ର ଗୋଟିଏ ଚିତା ପ୍ରସ୍ତୁତ କର ।

ଭୁଖନ - ଆଜ୍ଞା ଶବଟା କାହାର, ଏଥିର ଟଙ୍କା ଦେବ କିଏ ?

ହକ୍‌ସିଂହ - ଶବ କାହାର ଏହା ଜାଣିବାରେ ପ୍ରୟୋଜନ କ'ଣ ? ମୁଁ କିଲ୍ଲାର କିଏ, ତାହା କ'ଣ ତୁ ଜାଣୁ ନାହିଁ ? ଜଲଦି ହୁକୁମ ପାଳନ କରିବୁ, କି ଗୋଟାଏ ଯୋଡ଼ାଏ ଜୋତା ପାଇବାର ଇଚ୍ଛା କରୁ ।

ଭୁଖନ - ନା, ହଜୁର ! ମୋର ଦୋଷ ହୋଇଛି, ଆପଣ ଦେଖୁ ଦେଖୁ ସବୁ ବନ୍ଦୋବସ୍ତ କରିଦେଉଛି ।

(ଚିତା ପ୍ରସ୍ତୁତ ହେଉଁ ହେଉଁ ପାନ୍ନା ଓ ଭଙ୍ଗଡ଼ ସିଂହଙ୍କର ଶବ ସହିତ ପ୍ରବେଶ । ପାନ୍ନା ସାଶ୍ରୁ ନୟନରେ ଶବକୁ ସ୍ନାନ କରାଇ, ନୂତନ ବସ୍ତ୍ର ପରିଧାନ କରାଇ ଖଣ୍ଡିଏ ନୂତନ ବସ୍ତ୍ରରେ ଆବୃତ କରି ତା' ଉପରେ ସ୍ଥାପନ କରି ଅଗ୍ନି ସଂଯୋଗ କରିବା । ଅଳ୍ପ ଦୂରରେ ଭଙ୍ଗଡ଼ ସିଂହ ଓ ହକ୍‌ସିଂହ ଦଣ୍ଡାୟମାନ । ଅଗ୍ନି ପ୍ରଜ୍ୱଳିତ ହେଲାରୁ ପାନ୍ନା ଯାଇ ନଦୀଜଳ ନିକଟରେ ବସିବା ।)

ଜଳାଞ୍ଜଳି ଧରି କାନ୍ଦି କାନ୍ଦି

ପାନ୍ନା— (ସ୍ୱଗତ)

ବିଜୟରେ ହୃଦୟ-ନନ୍ଦନ,
ବିସର୍ଜିଲି ତୋତେ ଆଜି ବତ୍ସ,
ଚିରସ୍ରୋତା ବୀରା ନଦୀ ନୀରେ ।
ତୋର ଯୋଗ୍ୟ ବସ ସେହି ଗତି

ଯେଉଁ ଗତି ଆର୍ଯ୍ୟ ବୀରଗଣ
ଲଭିଛନ୍ତି ଦେଶସେବା ବ୍ରତେ,
ସ୍ୱାର୍ଥ ତ୍ୟାଗେ, ଆତ୍ମବଳି ଦାନେ ।
ଅନିବାର୍ଯ୍ୟ ଜୀବର ମରଣ ।
କ୍ଷତ୍ରିୟର ଅକାଳ ମରଣ—
ଦେଶ ଲାଗି ଶାସ୍ତ୍ରେ ଏହା ଲେଖା ।
ଏ ଦୁର୍ଗର କ୍ଷତ୍ରିୟ ଜନନୀ
ଚତୁର୍ଦ୍ଦଶ ବର୍ଷେ ନିଜ ପୁତ୍ରେ
ବୀରବେଶେ ପଠାନ୍ତି ସମରେ,
କେ ବଞ୍ଚେ କେ ମରେ ମହାହବେ ।
ଚତୁର୍ଦ୍ଦଶ ବର୍ଷ ବିନିମୟେ
ଛଅ ବର୍ଷ ବୟସରେ ତୋତେ
ପଠାଇଲି ନୈଶ ଦ୍ୱନ୍ଦ୍ୱ ଯୁଦ୍ଧେ ।
ପ୍ରତିଦ୍ୱନ୍ଦ୍ୱୀ ତୋର ବନବୀର
ମିଥ୍ୟା ରାଣା ଦୁର୍ଦ୍ଦାନ୍ତ କେଶରୀ ।
ଶିଶୁ ଉଷ୍ଣ–ରକ୍ତ ପାନତୃଷ୍ଣା
ରାଣା ସଙ୍ଗ ବଂଶଧ୍ୱଂସ ଆଶା
ନିବାରିଲୁ ନିଜ ଛାତି ପାତି ।
ଧାତ୍ରୀଗର୍ଭଜାତ ମହାବୀର
ପ୍ରାଣ ଦେଲୁ ପ୍ରଭୁ ପ୍ରାଣ ପାଇଁ ।
ବସାଇଲି ରାଣାର ଆସନେ,
ଶୁଆଇଲି ରାଣା ପଲଙ୍କରେ,
ପଶୁଧର୍ମୀ ଘେନିଲା ତୋ ପ୍ରାଣ ।
କ୍ଷଣକାଳ ହେଲେ ପଛେ ହେଉ
ଚିତୋରର ରାଣା ହୋଇ ତୁହି
ଉଦୟର ପ୍ରାଣ ବଞ୍ଚାଇଲୁ ।
ଏଥୁ ବଳି କି ଯଶ ସୌଭାଗ୍ୟ
ପାଇପାରେ ବୀର ? ଧନ୍ୟ ତୁହି ।
ଛଅ ବର୍ଷେ ଅର୍ଜିଲୁରେ ଯଶ
ଯେଉଁ ଯଶ ବୀର ସ୍ପୃହଣୀୟ ।
ଅଭିମନ୍ୟୁ ରୂପୀ ତୁହି ବଳା,
ତୋ ଜନନୀ ନୁହେଁ ମୁଁ ସୁଭଦ୍ରା
କୁରୁକ୍ଷେତ୍ରେ ଅକ୍ଷୟ କୀରତି
ପାର୍ଥପୁତ୍ର ରଖିଗଲା ଯାହା
ତୋ କୀରତି ସମୁଜ୍ଜ୍ୱଳ ତହୁଁ
ଅଯୋଗ୍ୟା ଜନନୀ ତୋର ମୁହିଁ
ନିନ୍ଦିବେ ଜଗତଜନେ ମତେ—
ପୁତ୍ରହନ୍ତୀ ପାନ୍ନା ଧାତ୍ରୀ ବୋଲି,
ସଙ୍ଗେ ସଙ୍ଗେ ତୋ ପାଇଁରେ ବତ୍ସ,
ପକାଇବେ ନେତ୍ରୁଁ ଅଶ୍ରୁ ଜଳ
ଆହା ଶବ୍ଦେ ତୋ ପ୍ରଶଂସାବାଦ
ମାନବ ଘୋଷିବେ ଚିରକାଳ ।
ଗଲୁ ବତ୍ସ ! ମହାକର୍ମ ସାଧି,
ଶୂନ୍ୟ ହେଲା ମାତୃ ହୃଦାସନ ?
ମିଶିଯାଅ ଶାଶ୍ୱତ ସିନ୍ଧୁରେ,
ବୀରାସ୍ରୋତ ଯଥା ସିନ୍ଧୁ ଜଳେ ।

(ଜଳାଞ୍ଜଳି ଦେଇ ସାଶ୍ରୁ ନେତ୍ରରେ ଚିତା ନିକଟକୁ ଯିବା)

ପାନ୍ନା - ଭଙ୍ଗଡ଼ ସିଂହ, ସବୁ ଶେଷ ହେଲା ତ ?

ଭଙ୍ଗଡ଼ ସିଂହ, ହଁ ମା' !

ପାନ୍ନା - ଚିତା ନିର୍ବାପିତ କରି ବୀରା ଜଳରେ ସବୁ ଭସାଇ ଦେବ ଯେପରିକି ଏ ଚିତାର ଚିହ୍ନ ମାତ୍ର ରହିବ ନାହିଁ । ଏଠାରେ କାର୍ଯ୍ୟ ଶେଷ କରି କିଲ୍ଲାକୁ ଯାଇ ଶୟନ କରିବ । ଆଉ ତୁମ ଦୁହିଁଙ୍କି ବୁଝାଇ କହୁଛି, ଯେବେ ରାଣାଙ୍କର ରୋଷରୁ ତୁମ ଦୁହିଁଙ୍କର ମୁଣ୍ଡ ବଞ୍ଚାଇବାର ଆଶା ଥାଏ, ତେବେ ଏ ଘଟଣା କାହାରିଠାରେ ପ୍ରକାଶ କରିବ ନାହିଁ । ତୁମେ ଦୁହେଁ ଏ ଘଟଣାର ସାକ୍ଷୀ ଅନ୍ୟ କେହି ନୁହନ୍ତି ।

ଉଭୟେ - ହଁ, ମା' ! ତୁମର ଯାହା ଉପଦେଶ, ତାହା ପାଳନ କରିବୁ ।

ପାନ୍ନା - ତେବେ ମୁଁ ଯାଉଛି । ପୁଣି କେବେ ଦେଖାହେବ ? ଦେଖା ହେବ କି ନାହିଁ କିଏ କହିପାରେ । ତମ ଦୁହିଁଙ୍କର ମଙ୍ଗଳ ହେଉ ।

ହକ୍‌ସିଂହ - ମା' ! ଏ ଅନ୍ଧକାର ରାତ୍ରିରେ ଏକାକିନୀ କେଉଁଆଡ଼େ ଯିବ ?

ପାନ୍ନା - ମୁଁ କେଉଁ ଆଡ଼େ ଯିବି ପଚାରୁଛ ? ମୋର ଆଉ ନିର୍ଦ୍ଦିଷ୍ଟ ସ୍ଥାନ କାହିଁ । ସଂସାର ବନ୍ଧନ ଛିନ୍ନ ହେଲା । ସନ୍ନ୍ୟାସିନୀ ହୋଇ ବୁଲିବି । ମୋ ପକ୍ଷରେ ଉଜ୍ଜ୍ୱଳ ରାତ୍ରି ଯାହା, ଅନ୍ଧାର ରାତି ତାହା । ମୋର ଭୟ ଆଉ କାହାକୁ ? କାହା ଲାଗି ?

ଭଙ୍ଗଡ଼ ସିଂହ- ମା' ! ଆଦେଶ ହେଲେ ଜଣେ ଯାଇ କୌଣସି ଗ୍ରାମରେ ପହଞ୍ଚାଇ ଦେଇଆସନ୍ତୁ ।

ପାନ୍ନା - ନା, ଭଙ୍ଗଡ଼ ସିଂହ ତାହା କରିବାର ଦରକାର ନାହିଁ । ତୁମ କର୍ତ୍ତବ୍ୟ ତୁମେ କରିଯାଅ । ମୋ ଚିନ୍ତା ଦୂର କର । ମୋତେ ପାସୋରି ଦିଅ ।

(ଉଭୟେ ସାଶ୍ରୁ ନୟନରେ ପ୍ରଣାମ କରିବା)

(ପାନ୍ନାର ପ୍ରସ୍ଥାନ)

—ଯବନିକା—

## ତୃତୀୟ ଅଙ୍କ

### ପୁରୁଷଗଣ

ଉଦୟସିଂହ

ବଚ୍ଚା

ଐଶକର୍ଣ୍ଣ - ଦୂଙ୍ଗର ପୁରର ସାମନ୍ତ ନୃପତି

ତାନ୍ତିଆ - ଭୀଲ୍ଲ ମାଲଗୁଜାର

ଲେଚା - ଭୀଲ୍ଲ ଯୁବକ

ଆଶା-ଶା - କମଳମୀର ପ୍ରଦେଶର ଶାସକ

ଭୀଲ ବାଳକ ଇତ୍ୟାଦି ।

### ସ୍ତ୍ରୀଗଣ

ପାନ୍ନା,

ଯୋଗିନୀ

ଅମୃତ କୁମାରୀ-ଆଶା-ଶାର ଜନନୀ

### ପ୍ରଥମ ଦୃଶ୍ୟ

**[ଦୁର୍ଗ ସମ୍ମୁଖରେ ଗୋଟିଏ ପ୍ରଶସ୍ତ ମଣ୍ଡପ । ମଣ୍ଡପରେ ଐଶକର୍ଣ୍ଣ କେତେକ ଭଦ୍ରବ୍ୟକ୍ତିଙ୍କ ସହିତ ଉପବିଷ୍ଟ । ଯୋଗୀ ବେଶରେ ଗୀତ ଗାଇ ଗାଇ ବଚ୍ଚାର ପ୍ରବେଶ ।]**

ବଚ୍ଚା - ପର ଉପକାରୀ ଅଟଇ ଯେ ଜନ
ନରରୂପୀ ନାରାୟଣ,
ଭକ୍ତି ଶ୍ରଦ୍ଧାଭରେ ଦୁଃଖୀଜନ ତା'ର
ଚରଣେ ନିଏ ଶରଣ ।
ସଜ୍ଜନଙ୍କଠାରେ ଦୁଃଖୀର ପ୍ରାର୍ଥନା
କେବେ ନୁହଇ ନିଷ୍ଫଳ,
ଉତ୍ତାପ-ପୀଡ଼ିତ ଛାୟା ବି ନ ପାଏ
ଆଶ୍ରା କଲେ ବୃକ୍ଷ ତଳ ।
ରକ୍ଷା କର୍ତ୍ତା ଭାବ ଦୁଃଖୀ ନିଜ ଦୁଃଖ
କହେ ନ କରି ଗୋପନ
ତା' କଥା ଗୋପନେ ହୃଦୟେ ଯେ ରଖେ
ସେହି ତ ବିଶ୍ୱେ ସଜ୍ଜନ ।
ନମସ୍ତେ ମହାରାଜ !

ଐଶକର୍ଣ୍ଣ - କି ଯୋଗୀ ହୋଇ ନମସ୍କାର କଲ ?

ବଚ୍ଚା - ହଁ, ମହାରାଜ, ମୁଁ ସିନା ଯୋଗୀ, ଆପଣ ଯେ ପାଳନ କର୍ତ୍ତା ପାଳନକର୍ତ୍ତାଙ୍କୁ ସମସ୍ତେ ଆନ୍ତରିକ ନମସ୍କାର କରନ୍ତି । ମୁଁ ଅନ୍ତର ଖୋଲି ମସ୍ତକରେ ହସ୍ତ ଲଗାଇଲି । ଏଥିରେ ଅଭିବାଦନ ଓ ମଙ୍ଗଳ କାମନା ଉଭୟ ପ୍ରକାଶ ପାଉଅଛି । ମୁଁ ଏଥି ନିମନ୍ତେ ଦୋଷୀ ନୁହେଁ ମହାରାଜ !

ଐଶକର୍ଣ୍ଣ - ବସ, ନିଜ ବକ୍ତବ୍ୟ ପ୍ରକାଶ କର ।

ବଚ୍ଚା - ମହାରାଜ, ଯେବେ ମୋର ସଙ୍ଗୀତ ଶ୍ରବଣ କରିଅଛନ୍ତି, ତାହା ହେଲେ ମୋର ଏଠାକୁ ଆସିବାର ଅଭିପ୍ରାୟ ମଧ୍ୟ ବୁଝି ପାରିଅଛନ୍ତି ।

ଐଶକର୍ଣ୍ଣ - ଶୁଣିଛି ଓ ବୁଝିଛି । ତେବେ କି ତୁମର ଦୁଃଖ-କାହାଣୀ ସମସ୍ତଙ୍କ ସମକ୍ଷରେ ପ୍ରକାଶ କରିବାକୁ ରାଜି ନୁହଁ !

ବଚ୍ଚା - ହଁ ମହାରାଜ ।

ଐଶକର୍ଣ୍ଣ - ତେବେ ମୋ ସହିତ ଆସ ।

(ଦୁର୍ଗର ବାହାର ଗୃହରେ ଉଭୟେ ଦଣ୍ଡାୟମାନ ହୋଇ)

ଐଶକର୍ଣ୍ଣ - ପ୍ରକାଶ କର ତୁମର କି ଦୁଃଖ । ଯଥାସାଧ୍ୟ ଦୂର କରିବାକୁ ଚେଷ୍ଟା କରିବି ।

ବଚ୍ଚା - ସେହି ଆଶା ପୋଷଣ କରି ତ ଏଠାକୁ ଆସିଅଛି । ତେବେ ମୋ ଦୁଃଖ ଅପେକ୍ଷା ଆଉ ଦୁଇ ଗୋଟି ପ୍ରାଣର ଦୁଃଖ ଅକଥନୀୟ । ସେ ଦୁଃଖ ଦୂର କରିବାକୁ ମହାରାଜ ଏକା ସମର୍ଥ ।

ଐଶକର୍ଣ୍ଣ - ତେବେ କହ ।

ବଚ୍ଚା - ମୋତେ କ୍ଷମା ଦିଆଯାଉ । ତାଙ୍କ ଦୁଃଖ କାହାଣୀ ତାଙ୍କ ମୁଖରୁ ଶୁଣିଲେ ଆପଣଙ୍କ ହୃଦୟ ଅବଶ୍ୟ ତରଳିବ । ମୁଁ ତାହା ଠିକ୍ ରୂପେ ବ୍ୟକ୍ତ କରି ପାରିବାକୁ ଅସମର୍ଥ । ମୋର ଏହି ପ୍ରାର୍ଥନା

ଯେ, ମୁଁ ଆପଣଙ୍କ ଆଦେଶ ପାଇଲେ ସେ ଦୁହିଁଙ୍କି ଏଠାକୁ ଡାକି ଆଣିବି । ଜଣେ ସମ୍ଭ୍ରାନ୍ତ ଗୃହର ଅନାଥା ନାରୀ । ଜଣେ ବାଳକ ତାହାଙ୍କର ପୁତ୍ର । କ୍ଷତ୍ରିୟ କୁଳ ନାରୀର ମର୍ଯ୍ୟାଦା ରକ୍ଷା ନିମନ୍ତେ ଆପଣ ଯୋଗ୍ୟ । ସମୟ ଓ ସ୍ଥାନ ନିର୍ଦ୍ଦେଶ କଲେ ଆପଣଙ୍କ ନିକଟରେ ଉପସ୍ଥିତ ହେବେ ।

(କିଛିକ୍ଷଣ ଭାବି)

ଐଶକର୍ଣ୍ଣ - ଆଚ୍ଛା, ଆଜି ସନ୍ଧ୍ୟା ସମୟରେ ଦେଖା ସାକ୍ଷାତ ହେବ । ତାଙ୍କର ମର୍ଯ୍ୟାଦା ଯେପରି କ୍ଷୁଣ୍ଣ ନ ହୁଏ, ସେଥି ନିମନ୍ତେ ମୋର ଯତ୍ନ କରିବା ଆବଶ୍ୟକ । ତାଙ୍କର ବର୍ତ୍ତମାନ ବାସ ଓ ଖାଦ୍ୟାଦିର ସୁବନ୍ଦୋବସ୍ତ କରିବି ।

ବଚ୍ଚା - ବର୍ତ୍ତମାନ କୌଣସି ବନ୍ଦୋବସ୍ତ କରିବାର ଆବଶ୍ୟକତା ନାହିଁ । ଆପଣଙ୍କର ସାକ୍ଷାତ ଲାଭ ନୋହିବା ଯାଏ ସେ ଗୋପନରେ ରହିବାକୁ ଇଚ୍ଛା କରନ୍ତି । ତାଙ୍କର ମଧ କୌଣସି ଅସୁବିଧା ନାହିଁ । ବିଧବା ଜଣେ, ଜଣେ ଶିଶୁ, ଜଣେ ଭୃତ୍ୟ ଏହି ତିନି ଜଣଙ୍କ ନିମନ୍ତେ କଣ ବା ପ୍ରୟୋଜନ ? ଖଣ୍ଡ କେତେ ରୁଟି, ହରଡ଼ ଡାଲି, ଅଳ୍ପ ଦୁଗ୍ଧ ମାତ୍ର ପ୍ରୟୋଜନ । ଆପଣଙ୍କ ରାଜ୍ୟକୁ ପ୍ରବେଶ କଲା ଦିନଠାରୁ ଆପଣଙ୍କର ସୁଶାସିତ ପ୍ରଜାମାନେ ଖାଦ୍ୟ ଯୋଗାଇବାରେ ଓ ସୌଜନ୍ୟ ପ୍ରକାଶରେ ତ୍ରୁଟି କରୁ ନାହାନ୍ତି । କହିବାକୁ ଗଲେ ଆମ୍ଭେମାନେ ଆପଣଙ୍କ ଭଣ୍ଡାରର ଆହାରାଦି ପାଇ ବେଶ୍ ସୁଖରେ ଅଛୁଁ । ସୁଖୀ, ସନ୍ତୁଷ୍ଟ ଓ ଧନୀ ପ୍ରଜାର ଗୃହ ତ ରାଜାର ଭଣ୍ଡାର । ଅନୁମତି ହେଲେ ମୁଁ ଯାଇ ସବୁ ଜଣାଇବି ।

ଐଶକର୍ଣ୍ଣ - ଆଚ୍ଛା, ଯାଇପାର ।

(ପ୍ରସ୍ଥାନ)

## ଦ୍ୱିତୀୟ ଦୃଶ୍ୟ

***[ଦୁର୍ଗର ଏକ ନିଭୃତ ଗୃହ । ପ୍ରଦୀପଦ୍ୱାରା ଆଲୋକିତ ଗୋଟାଏ ଆସନରେ ଐଶକର୍ଣ୍ଣ ଉପବିଷ୍ଟ । ଅଳ୍ପ ଦୂରରେ ଆଗନ୍ତୁକ ପାଇଁ ଗୋଟାଏ ଆସନ ।]***

ଦୌବାରିକ- ହଜୁର, ଆଗନ୍ତୁକମାନେ ଦୁର୍ଗ ଦ୍ୱାରରେ ଉପସ୍ଥିତ ହୋଇଅଛନ୍ତି ।

ଐଶକର୍ଣ୍ଣ - ଶୀଘ୍ର ଡାକିଆଣ, ସେମାନେ ଏଠାରେ ପ୍ରବେଶ କଲେ ତୁ ଯାଇ ଦ୍ୱାରରେ ଦଣ୍ଡାୟମାନ ରହିବୁ ଏବଂ ଏଠାକୁ କାହାକୁ ଛାଡ଼ିବୁ ନାହିଁ ।

ଦୌବାରିକ- ଯେ ଆଜ୍ଞା !

(ପାନ୍ନା, ଉଦୟ ସିଂହ ଓ ବଚ୍ଚାର ପ୍ରବେଶ । ପାନ୍ନା ଏବଂ ଉଦୟ ସିଂହ ଆସନ ଗ୍ରହଣ କଲା ଉତ୍ତାରୁ ବଚ୍ଚା ସ୍ୱେଚ୍ଛାକ୍ରମେ ସେ ସ୍ଥାନ ତ୍ୟାଗ କରି ଦୌବାରିକ ନିକଟରେ ଆସନ ଗ୍ରହଣ କରିବା ।)

ଐଶକର୍ଣ୍ଣ - ଶୁଣିଲି, ଆପଣ ସମ୍ଭ୍ରାନ୍ତ କ୍ଷତ୍ରିୟ ମହିଳା, ବିପତ୍ତି ପଡ଼ିବାରୁ ଏଠାକୁ ଆସି ଅଛନ୍ତି । ଆପଣଙ୍କର ଯାହା ବକ୍ତବ୍ୟ ତାହା ସ୍ୱଚ୍ଛନ୍ଦରେ ପ୍ରକାଶ କରିପାରନ୍ତି । ଆପଣଙ୍କର କଥା କାହାରି କର୍ଣ୍ଣଗୋଚର ହେବ ନାହିଁ ।

ପାନ୍ନା - ଦୁଃଖ ଜଣାଇବାକୁ ତ ଆସିଛି, ଜଣାଇବି । ତେବେ ମୋର ଦୁଃଖ କାହାଣୀ ଶୁଣିବା ଆଗରୁ ଆପଣଙ୍କୁ ଦୁଇଗୋଟି ପ୍ରତିଶ୍ରୁତି ଦେବାକୁ ହେବ, ଏହା ମୋର ପ୍ରଥମ ଅନୁରୋଧ । ମୁଁ ଯାହା ନିବେଦନ କରିବି, ତାହା ଯେପରି ପ୍ରକାଶ ନପାଏ । ଆମ୍ଭେମାନେ ଆପଣଙ୍କର ଶରଣାଗତ, ଏଣୁ ଆମମାନଙ୍କ ପ୍ରତି ଆପଣ ବିପକ୍ଷାଚରଣ କରିବେ ନାହିଁ ।

ଐଶକର୍ଣ୍ଣ - ଏ କି କଥା ! ମୁଁ କ୍ଷତ୍ରିୟ ହୋଇ ବିପନ୍ନା କ୍ଷତ୍ରିୟାର ଦୁଃଖଦୁର୍ଦ୍ଦଶା କଥା ଗୋପନ ରଖିପାରିବି ନାହିଁ ? ପୁଣି ତୁମ୍ଭେମାନେ ବିପନ୍ନ ଓ ମୋର ଶରଣାପନ୍ନ, ତୁମ୍ଭମାନଙ୍କ ବିପକ୍ଷାଚରଣ କରିବି ? ତେବେ ମୋର କ୍ଷତ୍ରିୟ ନାମ ବହିବା ଧିକ୍ । ତୁମେ ନିଶ୍ଚିନ୍ତ ଥାଅ ଏବଂ ବକ୍ତବ୍ୟ ପ୍ରକାଶ କର ।

ପାନ୍ନା - ବାବା, ତୁ ଯା ତ ବଚ୍ଚା ପାଖକୁ ।

(ଉଦୟ ଉଠି ବଚ୍ଚା ନିକଟକୁ ଯିବା)

ଐଶକର୍ଣ୍ଣ - ଏଇଟି କ'ଣ ଆପଣଙ୍କ ପୁତ୍ର ?

ପାନ୍ନା - ମୋର ପାଳିତ ପୁତ୍ର । ଆପଣ କି ଚିତୋରର ବିଷୟ ସବୁ ଅବଗତ ଅଛନ୍ତି ।

ଐଶକର୍ଣ୍ଣ - ହଁ । ମୋ ଠାକୁ ପତ୍ର ଆସିଥିଲା । ବିକ୍ରମାଜିତ ବନ୍ଦୀ ଅବସ୍ଥାରେ ଥାଇ ଆତ୍ମହତ୍ୟା କଲେ ଏବଂ ରାଣା ସଙ୍ଗଙ୍କର କନିଷ୍ଠ ପୁତ୍ର ଉତ୍କଟ ଶୋକରେ ପ୍ରାଣ ହରାଇଲେ ।

(ଦୀର୍ଘ ନିଃଶ୍ୱାସ ତ୍ୟାଗ କରି)

ପାନ୍ନା - ଆପଣ କି ଏକଥା ବିଶ୍ୱାସ କରନ୍ତି ?

ଐଶକର୍ଣ୍ଣ - ବିଶ୍ୱାସ ନ କରିବି କିପରି ? ମନ୍ତ୍ରୀଙ୍କର ସ୍ୱାକ୍ଷର-ସମ୍ବଳିତ ପତ୍ର ମୁଁ ପାଇଅଛି ।

ପାନ୍ନା - ମୋ କଥା ତେବେ ଶୁଣନ୍ତୁ । ମୁଁ ଚିତୋର ଦୁର୍ଗବାସିନୀ । ଏହି ଘଟଣା ଉତ୍ତାରୁ ମୁଁ ଦୁର୍ଗ ତ୍ୟାଗ କରି ଏଠାକୁ ଆସିଅଛି । ଦୁର୍ଗର ସମସ୍ତ ଘଟଣା ମତେ ଜଣା । ବନବୀର ମେବାରଗାଦୀ ନିଜ ନିମନ୍ତେ ଚିରକାଳ ନିଷ୍କଣ୍ଟକ ରଖିବା ଇଚ୍ଛାରେ ବିକ୍ରମାଜିତଙ୍କୁ ସ୍ୱହସ୍ତରେ ହତ୍ୟା କରିଅଛନ୍ତି । ବଜା ଏଥିରେ ସାକ୍ଷୀ ।

ମୁଁ ଏ ଘଟଣା ଶୁଣିବା ମାତ୍ରକେ ଭାବିଲି ଯେ, ବନବୀର ବିକ୍ରମାଜିତଙ୍କୁ ବଧ କରି କ୍ଷାନ୍ତ ହେବ ନାହିଁ । ସଂଗ୍ରାମ ସିଂହଙ୍କର କନିଷ୍ଠ ପୁତ୍ର ଉଦୟ ସିଂହକୁ ନିଶ୍ଚୟ ହତ୍ୟା କରିବ । ମୁଁ ଉଦୟର ଧାତ୍ରୀ ଏବଂ ବଜା ତା'ର ଚାକର । ଉଦୟର ପ୍ରାଣରକ୍ଷାର ଉପାୟାନ୍ତର ନ ଦେଖି ସହସା ତାକୁ ଗୋଟାଏ ଫୁଲ ଡାଲାରେ ଶୁଆଇ ଦେଲି, ତା' ଉପରେ ଫୁଲ ବେଲ ପତ୍ର ଦେଲି, ସେହି ଡାଲାଟି ବଜାଦ୍ୱାରା ଶିବମନ୍ଦିରକୁ ପଠାଇ ଦେଲି ଏବଂ ମୋର ନିଜ ପୁତ୍ର ବିଜୟକୁ ଉଦୟର ପଲଙ୍କରେ ଶୁଆଇଲି । ଅଳ୍ପକ୍ଷଣ ପରେ ବନବୀର ଉପସ୍ଥିତ ହୋଇ ବିଜୟର ପ୍ରାଣ ସଂହାର କଲେ । ବନବୀରଙ୍କର ଅନୁମତିରେ ବିଜୟର ଶବକୁ ଆଣି ଶ୍ମଶାନରେ ଦାହ କଲି । ସଂଗ୍ରାମ ସିଂହଙ୍କର କନିଷ୍ଠ ପୁତ୍ର ଉଦୟସିଂହ ପ୍ରାଣ ହରାଇ ନାହିଁ । ସେ ଜୀବିତ ଥାଇ ଆପଣଙ୍କ ସମ୍ମୁଖରେ କ୍ରୀଡ଼ା କରୁଅଛି । ମୁଁ ପ୍ରଭୁପୁତ୍ରର ପ୍ରାଣରକ୍ଷା ନିମନ୍ତେ ନିଜ ପୁତ୍ରର ପ୍ରାଣ ଦେଇଅଛି । ଆପଣ ସେହି ପ୍ରଭୁପୁତ୍ରକୁ ଆଶ୍ରୟ ଦେଉନ୍ତୁ ।

[ବିସ୍ମିତ ହୋଇ]

ଐଶକର୍ଣ୍ଣ - ହା ହରି, ବନବୀର ଏ କ'ଣ କଲେ ? ଧାତ୍ରୀ ! ତୁମ କଥା ସତ । ବନବୀରଙ୍କର ପ୍ରଚାରିତ କଥା ସମ୍ପୂର୍ଣ୍ଣ ମିଛ ଏହା ମୋର ହୃଦ୍‌ବୋଧ ହେଲା । ଯେଉଁ ବ୍ୟକ୍ତି ଦୁଇଗୋଟା ଖୁନ୍ କରିପାରେ, ସେ ଯେ ଗୋପନ ରଖିବାକୁ ମିଥ୍ୟା ଘୋଷଣା କରିପାରେ, ଏଥିରେ ଆଶ୍ଚର୍ଯ୍ୟର ବିଷୟ କଣ ଅଛି ? ଧାତ୍ରୀ ! ଧନ୍ୟ ତୁମର ପ୍ରଭୁ ଭକ୍ତି, ଧନ୍ୟ ତୁମର ସାହସ । ମୋର ସେ ସାହସ ନାହିଁ, ଏଣୁ ପ୍ରଭୁ ଭକ୍ତିର ନିଦର୍ଶନ ମଧ ଦେଖାଇ ପାରିବି ବୋଲି ଆଶା ହେଉ ନାହିଁ । ମୋ ଘର ଚିତୋରର ନିକଟବର୍ତ୍ତୀ ବୋଇଲେ ଚଳେ । ଏଠାକାର ସମ୍ବାଦ ବନବୀରଙ୍କୁ ଗୋପନ ରଖିବା ସମ୍ଭବ ନୁହେଁ । ମୁଁ ଜଣେ ସାମନ୍ତ ମାତ୍ର । ଯେବେ ସଂଗ୍ରାମ ସିଂହଙ୍କର କନିଷ୍ଠ ପୁତ୍ର ଜୀବିତ ଥିବାର ଏବଂ ମୋର ଆଶ୍ରୟରେ ଥିବାର ସମ୍ବାଦ ବନବୀରଙ୍କର କର୍ଣ୍ଣଗୋଚର ହୁଏ, ତାହା ହେଲେ ତାଙ୍କର ପ୍ରତିହିଂସାରୁ ରକ୍ଷା ପାଇବାର ଉପାୟ କ'ଣ ? ମୁଁ ବା ଏଥି ନିମନ୍ତେ ଦଣ୍ଡ ପାଇବି, ସେଥିପାଇଁ ଚିନ୍ତା ନାହିଁ । ମାତ୍ର ଉଦୟସିଂହ ତାଙ୍କ ହାତରେ ପଡ଼ିଲେ ତୁମର ସାହସ, ଅଧବସାୟ ଓ ସ୍ୱାର୍ଥତ୍ୟାଗ ଯେ ବୃଥା ହେବ ଧାତ୍ରୀ । ମୋ ଉପରେ ଏ ଗୁରୁ ଭାର ଦେବା ନିରାପଦ ନୁହେଁ । ଏ ସ୍ଥାନରୁ ବରି ନିରାପଦ ସ୍ଥାନକୁ ଘେନି ଯାଅ, ତୁମର ଧର୍ମ ରହିବ । ମୁଁ ହତଭାଗ୍ୟ, ଯେହେତୁ ମୋର ଭବିଷ୍ୟତ ପ୍ରଭୁକୁ ଆଶ୍ରୟ ଦେବାକୁ ଅସମର୍ଥ ହେଲି । ତୁମେ ମୋ ପ୍ରତି ଅସନ୍ତୁଷ୍ଟ ହୋଇପାର, ମୋତେ ଭୀରୁ ଓ କାପୁରୁଷ କ୍ଷତ୍ରିୟ କୁଳାଙ୍ଗାର ବୋଲି ପାର । ଏସବୁ ଲାଞ୍ଛନା ନତ ମସ୍ତକରେ ସ୍ୱୀକାର କରିନେବି; ମାତ୍ର ଉଦୟସିଂହକୁ କିଛିଦିନ ସ୍ଥାନ ଦେଇ

ବିଶ୍ୱାସଘାତକତାର କଳଙ୍କ କଦାପି ବହିପାରିବି ନାହିଁ । ମୁଁ ଅନୁରୋଧ କରୁଛି, ଏ ବିପଜ୍ଜନକ ସ୍ଥାନରୁ ଉଦୟସିଂହଙ୍କୁ ତୁମେ ଅତି ଶୀଘ୍ର ନେଇଯାଅ ।

ପାନ୍ନା - ମୁଁ ବଡ଼ ଆଶା କରି ଆପଣଙ୍କ ନିକଟକୁ ଆସିଥିଲି । ବିଫଳ ମନୋରଥ ହେଲି, ଏଥି ନିମନ୍ତେ ଦୁଃଖିତ ନୁହେଁ, ଯେହେତୁ ଆପଣ ଅପାରଗତାର କାରଣ ନିଷ୍କପଟ ହୃଦୟରେ ବ୍ୟକ୍ତ କଲେ, ଉଦୟ ମୋର ମସ୍ତକର ବୋଝ । ଆମରଣ ତାହା ବହନ କରିବି । କାଲି ପ୍ରତ୍ୟୁଷରୁ ଏ ସ୍ଥାନ ତ୍ୟାଗ କରିବୁଁ । ଆପଣଙ୍କୁ ମୋର ଏହି ଶେଷ ଭିକ୍ଷା ଯେ, ଆପଣ ଏ ବିଷୟ ଗୋପନ ରଖିବେ ।

(ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

*[ଘନ ବୃକ୍ଷବିମଣ୍ଡିତ ନାତିବିସ୍ତୃତ ଉପତ୍ୟକା ମଧ ଦେଇ ପାନ୍ନା, ଉଦୟ ଓ ବଚା ଯାଇଁ ଯାଇଁ ଭୀଲ ଗ୍ରାମର ଉପକଣ୍ଠରେ ଜଣେ ଧନୁଶରଧାରୀ ଭୀଲ ବାଳକ ସହିତ ସାକ୍ଷାତ ଓ ବାଟ ଚାଲୁ ଚାଲୁ କଥୋପକଥନ ।]*

ପାନ୍ନା - ଘୋର ଅରଣ୍ୟ ମଧରେ ଧନୁଶର ଧରି ତୁ କିଏରେ ବାବା, ଏକାକୀ ନିର୍ଭୟରେ ବିଚରଣ କରୁଅଛୁ ? ମୋ ପାଖକୁ ଆ ତ ବାପ ।

ଭୀଲ ବାଳକ- ଏ ତ ଘୋର ଅରଣ୍ୟ ନୁହେଁ ମା' ! ଏଇ ନିକଟରେ ତ ଗ୍ରାମ । ଆମ୍ଭେ ଭୀଲ ବାଳକ ମାନେତ ଏହି ଜଙ୍ଗଲରେ ନିତି ଶିକାର କରୁଁ ।

ପାନ୍ନା - ଗ୍ରାମ ନିକଟରେ ଭଲ ବୃକ୍ଷ ଓ ନିକଟରେ ପାଣି ଥିବା ସ୍ଥାନ ଅଛି ନା ବାପ, ଆଜି ରାତିରେ ଆମ୍ଭେମାନେ ରହିବୁଁ ।

ଭୀଲ ବାଳକ - କାହିଁକି ମା' ! ନିକଟରେ ତ ବଡ଼ ସୁନ୍ଦର ଓ ସଫା ବସାଘର ଅଛି । ପାଖରେ ଝରଣା ପାଣି, ସେଠାରେ ରହିବ । ଚାଲ ଦେଖାଇ ଦେବି ।

ପାନ୍ନା - ବସାଘରକୁ ଗ୍ରାମ କେତେ ଦୂର ? ଆମକୁ ତ ପୁଣି ଚାଉଳ, ଅଟା, ଡାଲି କିଣିବାକୁ ହେବ ।

ଭୀଲ ବାଳକ- ବସାଘର ଗ୍ରାମ ନିକଟରେ । ତୁମକୁ କିଛି କିଣିବାକୁ ହେବ ନାହିଁ । ଏଠାକୁ ଯେଉଁମାନେ ଆସନ୍ତି, ସେମାନଙ୍କୁ ସର୍ବରାକାର ଖାଦ୍ୟ ଦିଏ । ତୁମେତ ତିନି ଜଣ ମାତ୍ର । ହେଇଟି ବସାଘର, ସେଠାରେ ଯାଇ ବସ, ମୁଁ ତାନ୍ତିଆକୁ ଜଣାଇ ଦିଏଁ ।

[ଉଦୟ ଓ ବଚ୍ଚା ଝରଣା ନିକଟରେ ଖେଳୁଥିବା ବେଳେ ପାନ୍ନା ଗ୍ରାମ ରାସ୍ତାର ଗୋଟିଏ ପଥର ଉପରେ ବସିବା ।]

(ତାନ୍ତିଆର ପ୍ରବେଶ)

ପାନ୍ନା - ଆସ ଭାଇ । ତୁମେ କି ଗ୍ରାମର ସର୍ବରାକାର ?

ତାନ୍ତିଆ - ହଁ ! ତୁମେମାନେ କି ତିନିଜଣ ? ସ୍ତ୍ରୀ ବାଳକ ଏହି ଘୋର ଅରଣ୍ୟ ବାଟରେ କିପରି ଆସିଲ ?

ପାନ୍ନା - ବିପତ୍ତି ପଡ଼ିଲେ ଭାଇ କି ଅରଣ୍ୟ କି ପର୍ବତ ?

ତାନ୍ତିଆ - ଆହା ? ତୁମର କି ବିପତ୍ତି ପଡ଼ିଲା ଯେ, ଏହି ଭୀଲ ଗ୍ରାମକୁ ଆସିଲ ? ତୁମେ କି ଜାତି ?

ପାନ୍ନା - ବିପତ୍ତିର କଥା ତତେ ଜଣାଇବି ବୋଲି ଏହି ଭୀଲ ଗ୍ରାମକୁ ଆସିଲି, ମୁଁ କ୍ଷତ୍ରିୟ । କ୍ଷତ୍ରିୟମାନେ ମୋର ରକ୍ଷା କରିଥିଲେ ମୁଁ ତୋଠାକୁ ଆସନ୍ତି କାହିଁକିରେ ଭାଇ ?

ତାନ୍ତିଆ - କେଉଁଠାରୁ ଆସିଛୁ ?

ପାନ୍ନା - କହିବି ଯେ ତୁ ନିଶ୍ଚିନ୍ତ ହୋଇ ବସ ।

ତାନ୍ତିଆ - ବସିବି, ଆଗ ତୁମର ଖାଇବା ରହିବାର ବନ୍ଦୋବସ୍ତ କରେ ।

ପାନ୍ନା - ଅନ୍ୟ କାହାକୁ କହିଦେ, ସବୁ ହୋଇଯିବ । ତିନିଜଣଙ୍କ ପାଇଁ କିବା ବନ୍ଦୋବସ୍ତ ?

ତାନ୍ତିଆ - ଲେଚା, ସବୁ ନେଇ ଡେରାରେ ଦେ । ଆଉ ଯାହା ଦରକାର ସେହି ଲୋକଟିକୁ ପଚାରି ଗ୍ରାମରୁ ଆଣିଦେ । ହେଳା କରିବୁ ନାହିଁ । (ତାନ୍ତିଆ ଉପବେଶନ କରିବା)

ତାନ୍ତିଆ - ତୋ କଥା ଶୁଣି ମୋତେ ଆଶ୍ଚର୍ଯ୍ୟ ବୋଧ ହେଉଛି । ତୋ ଭଳି କ୍ଷତ୍ରିୟ ସ୍ତ୍ରୀ କେତେ ଜଣ ବା ଏଠାକୁ ଚାଲି ଚାଲି ଆସୁଛନ୍ତି ? ନିଶ୍ଚେ ତୋର ବଡ଼ ବିପତ୍ତି ଘଟିଛି ।

ପାନ୍ନା - ମୋର ବିପତ୍ତି ଭଗାରିକୁ ନ ହେଉ । ମୋ ଦୁଃଖ କହିବି ଭାଇ ? ତେବେ ଶପଥ କର ଯେ ତୁ ତାହା କାହାରିଠାରେ ପ୍ରକାଶ କରିବୁ ନାହିଁ ।

ଡାକିଆ - ତୁ ବଡ଼ ଘର ଝିଅ, ବୋହୂ, ତୁ ବିପତ୍ତିରେ ପଡ଼ି ମୋଠାକୁ ଶରଣ ପଶିବାକୁ ଆସିଲୁ ତୋର ଗୁପ୍ତ କଥା ମୁଁ ପ୍ରକାଶ କରିବି ? ମୁଁ ତେବେ ଭୀଲ ନୁହେଁ । (ଭୂମିରେ ତିନି ଥର ହାତ ମାରି) "ମା, ମାଟିକୁ ଛୁଇଁ ଶପଥ କରି କହୁଛି ଯେ, ମୁଁ ଯାହା ତୋଠାରୁ ଶୁଣିବି, ତାହା ମଲାଯାଏ ମୋ ପେଟରେ ରଖିବି । ମୁଁ ଏହା କେବେ କାହାରିଠାରେ ପ୍ରକାଶ କରିବି ନାହିଁ । ହେଲା ?''

ପାନ୍ନା - ହେଲାରେ ଭାଇ, ହେଲା । ତୁ ଚିତୋରର ଘଟଣା ଜାଣୁ କି ?

ଡାକିଆ - ଶୁଣିଛି, ରାଣା ସଙ୍ଗଙ୍କର ସବୁ ପୁଅ ମରିଗଲେ, ଏବେ ବନବୀର ରାଣା ହେଲା । ବନବୀରଟା କିଏରେ ଭଉଣୀ ?

ପାନ୍ନା - ବନବୀର ପରା ପୃଥ୍ୱୀରାଜଙ୍କ ରକ୍ଷିତାର ପୁଅ ।

ଡାକିଆ - ଆମ ଦେଶରେ ରଖଣୀର ପୁଅ ରାଣା ହେଲା, ଆଉ କି ଭାତବାଲା ଭାଇ ନଥିଲେ ।

ପାନ୍ନା - ଅଛନ୍ତି, ନିଜେ ତ ରାଣା ସଙ୍ଗଙ୍କର ସାନ ପୁଅ ଅଛି, ତାକୁ ରଖୁଛି କିଏ ? ଗାଦିରେ ବସାଉଛି କିଏ ?

ଡାକିଆ - ରାଣାଙ୍କର ଔରସ ପୁଅ ଥାଉଁ ଥାଉଁ ଅଜାତିଆଟାକୁ କିଏ ବସାଇଲା ?

ପାନ୍ନା - ଜୋର ଯାହାର, ମୁଲକ ତାର । ନାବାଳକର କି ବଳ ଅଛି । ସର୍ଦ୍ଦାରମାନେ ବନବୀରକୁ ବସାଇଲେ ।

ଡାକିଆ - ତେବେ ଯେଉଁମାନେ ବନବୀରକୁ ଗାଦି ଦେଲେ ସେମାନେ ସର୍ଦ୍ଦାର ନୁହନ୍ତି, ଶୃଗାଳ । ଗାଦିର ହକ୍‌ଦାର ତେବେ କେଉଁଠାରେ ଅଛି ?

ପାନ୍ନା - ତୋ ଆଗରେ ।

(ମୁଣ୍ଡରେ ଦୁଇ ହାତ ଲଗାଇ)

ଡାକିଆ - ଏହି ପିଲା ମୋର ରାଣା ? ଏହି ପିଲା ରାଣା ସଙ୍ଗଙ୍କର ପୁଅ ? ଏହାର ଗାଦିରେ ଅଜାତିଆ ବନବୀର ବସିଛି । ଛି, ଛି, ଭଉଣୀ ! ଏ ଦେଶରେ ଆଉ କ୍ଷତ୍ରିୟ ନାହିଁ । ତୁ ତାକୁ ଏଠାକୁ କିପରି ଆଣିଲୁ ?

ପାନ୍ନା - ସେ କଥା କଣ କହିବି ରେ ଭାଇ ! ବନବୀର ତ ଗାଦିରେ ବସିଲା । ଭାବିଲା ଯେ, ଯେବେ ରାଣା ସଙ୍ଗଙ୍କର ପୁଅ ଯୋଡ଼ାକ ବଞ୍ଚିଯିବେ, ତେବେ ଦିନେ ନା ଦିନେ ତା ହାତରୁ ମୁଲକ ଯିବ ଏଣୁ ସେ ଦୁହିଁଙ୍କି ମାରିବା ଭଲ । ବିକ୍ରମାଜିତ ତ ବନ୍ଦୀ ହୋଇଥିଲେ, ତାଙ୍କୁ ଯାଇ ନିଜ ହାତରେ ମାରି ପକାଇଲା । ମୁଁ ଏହା ଶୁଣିଲି । ଏହି ପିଲା ଶୋଇ ପଡ଼ିଥିଲା, ତାକୁ ଗୋଟାଏ ଫୁଲ ଡାଲାରେ ଶୁଆଇ ଦେଇ ବଜା ହାତରେ ଶିବ ମନ୍ଦିରକୁ ପଠାଇ ଦେଲି । ଆଉ ମୋର ପୁଅ ବିଜୟକୁ ଏହାର ପଲଙ୍କରେ ଶୁଆଇଦେଲି । ମୁଁ ବସି ଦେଖୁଛିରେ ଭାଇ, (ଅଶ୍ରୁମୋଚନ କରି) ବନବୀର ଛୁରି ଧରି ଆସିଲା । ଶୋଇଥିବା ମୋ ପୁଅ ଛାତିରେ ଭୁସି ଦେଲା । ମୋ ମୃତ ପୁଅକୁ ନେଇ ଆସି ଦାହ କରିଦେଲି । ଆଉ ଉଦୟକୁ ଧରି ଏହି ବଜା ସଙ୍ଗରେ ପଳାଇଲି । ଦୁର୍ଗାଧିପତିମାନଙ୍କଠାକୁ ଯାଇ ଏହାକୁ ରଖ ବୋଲି କହିଲି, କେହି ରାଜି ହେଲେ ନାହିଁ— ଏଣୁ ତୁମମାନଙ୍କର ସାହାଯ୍ୟ ନେବାକୁ ଆସିଲି । ତୋର ଯାହା ଇଚ୍ଛା ତୁ କର ।

ଡାକିଆ - ଏହି ପିଲା ପାଇଁ ତୁ ତୋର ପୁଅର ପ୍ରାଣଟା ଦେଇ ପାରିଲୁ, ମୁଁ ଏହି ପିଲା ପାଇଁକି ମୋର ପ୍ରାଣଟା, ମୋର ପୁଅର ପ୍ରାଣଟା ଦେଇପାରିବି ନାହିଁ ? ମୋର ରଜା, ତା'ର ରକ୍ଷା ପାଇଁ ମୋର ପ୍ରାଣଟା କି ଛାର ? କହ ଯେବେ ଲୁଚାଇ ରଖିବାର ଦରକାର, ତେବେ ବଡ଼ ହେବାଯାଏ ଏପରି ସ୍ଥାନରେ ରଖିବି ଯେ ବନବୀର ଯେତେ ଚେଷ୍ଟା କଲେ ମଧ ଏହାର ପତ୍ତା ପାଇପାରିବ ନାହିଁ । ଲଢ଼ାଇ କରିବାର ଇଚ୍ଛା ? ତେବେ କହ, ଅଳ୍ପ ଦିନରେ ଭୀଲତକ ଏକତ୍ର କରି ଚିତୋର ଆକ୍ରମଣ କରିବି ।

ପାନ୍ନା - ଭାଇ, ତୁମ ଜାତିର ପ୍ରଭୁ ଭକ୍ତିର କଥା ମୁଁ ଜାଣେ, ତୁ ଏହା ପାଇଁ ସବୁ କରିପାରୁ, ମାତ୍ର ବର୍ତ୍ତମାନ ଏସବୁ କରିବା ଭଲ ନୁହେଁ । ତୁ ଏହାକୁ ଲୁଚାଇ ରଖିପାରୁ, ମାତ୍ର ବର୍ତ୍ତମାନ ଏସବୁ କରିବା ଭଲ ନୁହେଁ । ତୁ ଏହାକୁ ଲୁଚାଇ ରଖିପାରୁ ମାତ୍ର ବଡ଼ ହେଲା ଉତ୍ତାରୁ ଉଦୟ ଚିତୋର ଗାଦିର ମାଲିକ, ଏହା ପ୍ରମାଣ ହେବ କିପରି ? ତା' ଛଡ଼ା ବନବୀର ବଡ଼ ଦୁର୍ଦ୍ଦାନ୍ତ, ଜାଣି ପାରିଲେ ନିର୍ଦ୍ଦୟ ଭାବରେ ତୁମର ସ୍ତ୍ରୀପୁତ୍ରକୁ ମାରିପକାଇବ । ତେବେ ଲାଭ କ'ଣ ? ମୋର ଇଚ୍ଛା ଯେ, କୌଣସି ବଡ଼ ରାଜା ବା ଦୁର୍ଗାଧିପତି ପାଖରେ ଏହାକୁ ରଖିଦେଲେ ଉଦୟ ପାଠ ପଢ଼ିବ, ଶାସନ କରିବାର କୌଶଳ ଶିଖିବ ଏବଂ ବଡ଼ ହେଲେ ସେହି ରାଜାମାନଙ୍କର ଓ ତୁମମାନଙ୍କର ସାହାଯ୍ୟ ନେଇ ଗାଦିରେ ବସିପାରିବ— ଏ କଥା ସତ ନୁହେଁ କି ?

ତାନ୍ତିଆ - ହଁ ।

ପାନ୍ନା - ତେବେ ଗୋଟାଏ ଯୋଡ଼ାଏ ଭଲ ସ୍ଥାନରେ ଚେଷ୍ଟା କରୁ । ନୋହିଲେ ଭୀଲମାନେ ଏହାକୁ ରଖି ରାଜା କରିବେ ।

ତାନ୍ତିଆ - ଭଲ କଥା । ତୁ ଯେଉଁଠାକୁ ଯିବୁ, ମୁଁ ତୋ ପଛେ ପଛେ ସେହିଠାକୁ ଯିବି । କେହି ନ ରଖିଲେ ଭୀଲମାନେ ତାର ରାଣାକୁ ରାଜା କରିବେ, ଏହା ସତ୍ୟ, ସତ୍ୟ । କମଳମୀରକୁ ଗଲେ ଆମମାନଙ୍କର ମନୋବାଞ୍ଛା ପୂର୍ଣ୍ଣ ହେବ ବୋଲି ମୋର ଆଶା । ଯାଅ, ନିଶ୍ଚିନ୍ତରେ ରହ । କାଲି ସକାଳୁ ଅନ୍ୟ ବିଚାର । (ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

*[କ୍ଷୁଦ୍ର ନଦୀତୀରରେ ପର୍ଣ୍ଣକୁଟୀର, କୁଟୀର ଦ୍ୱାରରେ ଯୋଗିନୀ ଉପବିଷ୍ଟ । ଉଦୟମାନ ସୂର୍ଯ୍ୟଆଡ଼କୁ ଅନାଇ ଯୋଗିନୀ ଗୀତ ଆବୃତ୍ତି କରୁଥିବାବେଳେ ବଚ୍ଚା ଅଳ୍ପ ଦୂରରେ ଦଣ୍ଡାୟମାନ ଥାଇ ଗୀତ ଶୁଣିବା]*

ଯୋଗିନୀ -

ଉଦୟ ଭାସ୍କର ସୁଖୀ ଚରାଚର
ସଦା ମୋ ଅନ୍ତର ପୋଡୁଛି ମା'
ବୟସ ସରିଲା ଆଶା ନ ପୂରିଲା
ଜୀବନ କାହିଁକି ରହୁଛି ମା' !
ଦେଶ ସେବା ଲାଗି ମୁଁ ଘର ଛାଡ଼ିଲି
ଏ ଦେଶବାସୀଙ୍କି ମୁଁ ଭାଇ ଭାବିଲି
ଏକତା ବିହୁନେ ଏ ଦେଶ ବୁଡୁଛି
ବୁଝାଇଲି କିଏ ବୁଝୁଛି, ମା' !
ମୁଠାଏ ବିଦେଶୀ କେଉଁ ଦେଶୁ ଆସି,
ଏ ଦେଶ ଗୋଟାକ ବସିଲେଣି ଗ୍ରାସି,
ଯବନ ଜଞ୍ଜାଳ ଏ ଦେଶକୁ କାଳ
ହେଲାଣି କେ ତାହା ଭାବୁଛି, ମା' ।
ବ୍ରାହ୍ମଣ କ୍ଷତ୍ରିୟ ହୋଇଲେ ସ୍ୱାର୍ଥାନ୍ଧ
ରାଜା ରାଜା ମଧ୍ୟେ ଲଗାଇଲେ ଦ୍ୱନ୍ଦ୍ୱ
ପୂର୍ବ ପୁରୁଷଙ୍କ ଜାତୀୟ ଗୌରବ
ଦିନୁ ଦିନୁ ଖର୍ବ ହେଉଛି, ମା' !
ଭାବି ଭାବି ଏହି ଦେଶର ଦୁର୍ଗତି
ବଞ୍ଚିବାକୁ ତିଳେ ବଳୁ ନାହିଁ ମତି
ଅନନ୍ତ କ୍ରୋଡ଼ରେ ଚିର ନିଦ୍ରା ପାଇଁ
କୃତାଞ୍ଜଳି ଭିକ୍ଷା ମାଗୁଛି, ମା' !

(ବଚ୍ଚାର ପ୍ରବେଶ)

ବଚ୍ଚା - (ପ୍ରଣିପାତପୂର୍ବକ) ମା' ! ପ୍ରଣାମ ।

ଯୋଗିନୀ - କିରେ ନାପିତ, ତୁ ଏଠାକୁ କିପରି ଆସିଲୁ ? ତୁ ଏକାକୀ ?

ବଚ୍ଚା - ନା ମା' ! ଧାଈମା, ଉଦୟ ସିଂହ ଓ ମୁଁ ଆସିଅଛୁ ।

ଯୋଗିନୀ - ଏ ମହା ଅରଣ୍ୟରେ ତିନି ଜଣ ?

ବଚ୍ଚା - ନା, ଚାରି ଜଣ ଭୀଲ ଆମ ସାଙ୍ଗରେ ଆସି ଅଛନ୍ତି ।

ଯୋଗିନୀ - ବନବୀର କ'ଣ ତୁମମାନଙ୍କୁ ରାଜ୍ୟରୁ ତଡ଼ି ଦେଲେ ?

ବଚ୍ଚା - ତାହା ହେଲେ ତ ସୌଭାଗ୍ୟ ମନେ କରିଥାନ୍ତୁ ।

ଯୋଗିନୀ - ତେବେ ?

ବଚ୍ଚା - ସେ କଥା ବର୍ତ୍ତମାନ ମୁଁ କଣ କହିବି ? ଆପଣ ଗଲେ ଧାଈମାଠାରୁ ଭଲ ରୂପେ ଶୁଣି ପାରିବେ । ଆମାନଙ୍କର ସୌଭାଗ୍ୟ ଯେ, ଏ ବିପତ୍ତି ବେଳେ ଆପଣଙ୍କର ସାକ୍ଷାତ୍ ପାଇଲୁଁ ।

ଆପଣଙ୍କର ସାହାଯ୍ୟରେ ଆମମାନଙ୍କର କାମନା ପୂର୍ଣ୍ଣ ହେବ ।

ଯୋଗିନୀ - ପାନ୍ନା ଓ ଉଦୟ କେଉଁଠାରେ ?

ବଢା - ଗ୍ରାମ-ପ୍ରାନ୍ତର ବସାଘରରେ ।

ଯୋଗିନୀ - ତୁ ତେବେ କେଉଁଆଡ଼େ ଯାଉଛୁ ?

ବଢା - ଉଦୟ ନିମନ୍ତେ ଦୁଧ ଆଣିବାକୁ । ମୁଁ ଫେରି ଆସେ, ଆପଣଙ୍କୁ ସଙ୍ଗରେ ନେଇଯିବି ।

ଯୋଗିନୀ - ଆଚ୍ଛା, ବେଗି ଆସିବୁ ।

(ପ୍ରସ୍ଥାନ)

### ପଞ୍ଚମ ଦୃଶ୍ୟ

***[କୁମ୍ଭମେରୁ ଦୁର୍ଗ-ଗୋଟିଏ ଆସନରେ ଆଶା-ଶା ଉପବିଷ୍ଟ ଏବଂ ଗୋଟିଏ ଆସନରେ ପାନ୍ନା ଉପବିଷ୍ଟା]***

ଆଶା-ଶା - ମୁଁ ଆଜି ଯୋଗିନୀଙ୍କ ମୁଖରୁ ଆପଣମାନଙ୍କର ଯାବତୀୟ ବିପତ୍ତିର କଥା ଶୁଣି ନିତାନ୍ତ ମର୍ମାହତ ହୋଇଅଛି । ରାଣା ସଂଗ୍ରାମ ସିଂହଙ୍କର ପବିତ୍ର ବଂଶରେ ଏପରି ଦୁର୍ଦ୍ଦଶା ଘଟିବ, ଏହା ସ୍ୱପ୍ନର ମଧ୍ୟ ଅଗୋଚର ।

ପାନ୍ନା - ମେବାର ରାଜ୍ୟରେ ଏତେ ନୃପତି ଓ ଦୁର୍ଗାଧିପତ ଥାଉଁ ଥାଉଁ ଆଜି ବାପ୍ପାରାଓଙ୍କର ପବିତ୍ର ସିଂହାସନରେ ଜଣେ ଦାସୀପୁତ୍ର ସମାସୀନ । ସେହି ପୁଣ୍ୟଶ୍ଳୋକ ବାପ୍ପାରାଓର ପ୍ରକୃତ ଉତ୍ତରାଧିକାରୀ ସାମନ୍ତ ନୃପତିମାନଙ୍କ ଦ୍ୱାରସ୍ଥ । ତାକୁ ଆଶ୍ରୟ ଦେବାକୁ କେହି ପ୍ରସ୍ତୁତ ନୁହନ୍ତି, ଏହାଠାରୁ ବଳି ଲଜ୍ଜାର ବିଷୟ କ'ଣ ଅଛି ? ଏହାଠାରୁ ବଳି ଦେଶର ଦୁର୍ଦ୍ଦଶା କ'ଣ ହୋଇପାରେ ? ମାନବ ପ୍ରକୃତିର ହୀନତାର ଚୂଡ଼ାନ୍ତ ନିଦର୍ଶନ ! ଅନେକ ଦ୍ୱାରରେ ମୋର ପ୍ରାର୍ଥନା ଜଣାଇଲି, ବିଫଳ ମନୋରଥ ହୋଇ ଶେଷରେ ଆପଣଙ୍କର ଦ୍ୱାରସ୍ଥ ହୋଇଅଛି, ଆଶା କରିଅଛୁ, ଆପଣ ମେବାରର ଭବିଷ୍ୟତ ରାଣାକୁ ସ୍ଥାନ ଦେଇ ଅକ୍ଷୟ ଯଶ ଉପାର୍ଜ୍ଜନ କରିବେ ଏବଂ ମୋତେ ଏହି ଗୁରୁଭାରରୁ ମୁକ୍ତି ଦେବେ ।

ଆଶା-ଶା - ଧାତ୍ରୀ, ବିଷମ ସମସ୍ୟା ! ସହସା ଏହାର ମୀମାଂସା କରିବାକୁ ମୋର ସାହସ ବଳୁନାହିଁ । ପ୍ରବଳପ୍ରତାପ ବନବୀର ଏକଆଡ଼େ, ବାପ୍ପା ବଂଶର ନିଃସହାୟ ଉତ୍ତରାଧିକାରୀ ଅନ୍ୟ ଆଡ଼େ । ରାଜ୍ୟଚ୍ୟୁତି, ପ୍ରାଣନାଶ ଭୟ । ସ୍ୱାର୍ଥତ୍ୟାଗ ଓ ଦୟା ହେତୁରୁ ଧର୍ମ ସଞ୍ଚୟ । କେଉଁ ବାଟ ଧରିବି ? ସନ୍ଦେହରେ ମନ ଘାଣ୍ଟି ହେଉଛି । ଧାତ୍ରି, ତୁମେ କ'ଣ ମନେ କର ଯେ, ଉଦୟ ସିଂହକୁ ଆମମାନଙ୍କ ପରି ବ୍ୟକ୍ତିଙ୍କ ଜିମା ଦେବା ନିରାପଦ ?

ପାନ୍ନା - ଯେବେ ନୃପତି, ଦୁର୍ଗାଧିପତି, ଶାସକ ଜିମାରେ ଉଦୟର ପ୍ରାଣ ନିରାପଦ ନୁହେଁ, ତେବେ ମୋ ପରି ନିଃସହାୟ ବିଧବା ଜିମାରେ ଉଦୟର ପ୍ରାଣ ନିରାପଦ ବୋଲି ଆପଣ ମନେ କରନ୍ତି କି ? ତାକୁ ପାଳନ କରିବି କେଉଁ ଉପାୟରେ ? ରଖିବି କେଉଁଠାରେ ? କୌଣସି ଭିଲ ଗ୍ରାମରେ ନେଇ ତାକୁ ରଖିପାରେ, ତାଙ୍କ ପ୍ରାଣ ବଞ୍ଚାଇ ପାରେଁ । ମାତ୍ର ମୁଁ ମଲେ ତାର କି ଦଶା ହେବ, ତାହା କି ଆପଣ ସ୍ଥିର ଚିତ୍ତରେ ବିଚାର କରିଅଛନ୍ତି ? ଆପଣ ଭୟ ଓ ସନ୍ଦେହ ଦୂର କରି ଆପଣଙ୍କର ପ୍ରଭୁପୁତ୍ରକୁ ରଖନ୍ତୁ । ଆପଣଙ୍କର ଯଶ ଓ ଧର୍ମ ହେବ ।

ଆଶା-ଶା - ମାଦୃଶ ବ୍ୟକ୍ତି ପ୍ରତି ଯଶ ଓ ଧର୍ମ ଏଡ଼େ ସୁଲଭ ନୁହେଁ, ଧାତ୍ରୀ ! ଗୋଟିଏ କାର୍ଯ୍ୟ ସହସା କରି ବସିଲେ ପଶ୍ଚାତ୍ତାପ କରିବାକୁ ପଡ଼େ ।

(ସହସା ଅମୃତକୁମାରୀଙ୍କର ପ୍ରବେଶ; ଆଶା-ଶା ଓ ପାନ୍ନା ଆସନ ତ୍ୟାଗ କରି ଦଣ୍ଡାୟମାନ ହେବା)

ଅମୃତକୁମାରୀ-ବାବା ଏ ବିଷୟରେ ତୁ ଏତେ ବେଳଯାଏ ସନ୍ଦେହାନ୍ୱିତ । ନ୍ୟାୟାନ୍ୟାୟର ବିଚାରକର୍ତ୍ତା ଆତ୍ମବିବେକ । ବନବୀରଙ୍କର ଆଧିପତ୍ୟ ତୋର ରାଜ୍ୟ ଉପରେ; ମାତ୍ର ତୋର ଆତ୍ମବିବେକ ଉପରେ ତ ତାଙ୍କର କୌଣସି ଅଧିକାର ନାହିଁ । ତୁ ନ୍ୟାୟ କାର୍ଯ୍ୟ କରିବାକୁ ଯାଇ ଯେବେ ଅପମାନିତ ବା ଲାଞ୍ଛିତ ହେବୁ,

ସେଥି ନିମନ୍ତେ ଚିନ୍ତା କ'ଣ ? ଧର୍ମ ଓ ଆତ୍ମବିବେକ ତୋର ସହାୟ ଏହି ବିଧବା ପ୍ରଭୁପୁତ୍ରର ପ୍ରାଣରକ୍ଷା ନିମନ୍ତେ ନିଜ ପୁତ୍ରର ପ୍ରାଣ ଦେଲା । ବାପ୍ପା ଙ୍କର ଉକ୍ତ ରକ୍ଷିବା ଆଶାରେ ଙ୍କର ଉତ୍ତରାଧିକାରୀଙ୍କୁ ସଙ୍ଗରେ ଘେନି ଦ୍ୱାରେ ଦ୍ୱାରେ ଭିକ୍ଷା କରୁଅଛି । ଘୋରତର ବିପତ୍ତିକୁ ମଧ ତାର ଭୟ ନାହିଁ । ତୁ ତା ଅପେକ୍ଷା ଶତ ସହସ୍ର ଗୁଣରେ କ୍ଷମତାପନ୍ନ, ସହାୟବାନ; ତଥାପି ଦେଶର ମର୍ଯ୍ୟାଦା; ପ୍ରଭୁ ଙ୍କର ମହତ୍ତ୍ୱ ରକ୍ଷିବାକୁ କୁଣ୍ଠିତ ? ବିପତ୍ତି ପର୍ବତ ପଡୁ ଦୁର୍ଦ୍ଦଶା ଘଟିବତ ଘଟୁ । ତୁ ଉଦୟସିଂହଙ୍କୁ ନିଜ ଗୃହରେ ଆଶ୍ରୟ ଦେଇ ଯଶ ଓ ଧର୍ମ ଉପାର୍ଜନ କର । ମୁଁ ତୋର ଜନନୀ, ମୋର ବାକ୍ୟ ପାଳନ କଲେ ତୋର ଭଲ ହେବ । ବୀରପୁରୁଷ ନ୍ୟାୟ କରିବାକୁ ଯାଇ ବିପତ୍ତିକୁ ଗ୍ରାହ୍ୟ କରେ ନାହିଁ ।

ଆଶା-ଶା - ମା' ! ଚିନ୍ତା ଦୁର୍ଭାବନା, ନ୍ୟାୟ, ଅନ୍ୟାୟ, ଧର୍ମ, ଅଧର୍ମ ବିଚାର ଏକ ଆଡ଼େ ତୋର ବାତ୍ସଲ୍ୟପୂର୍ଣ୍ଣ ଅନୁଶାସନ ଅନ୍ୟ ଆଡ଼େ । ବିବେଚନା କରିଦେଲେ ତୋର ଅନୁଶାନର ଗୁରୁତ୍ୱ ଓ ମର୍ଯ୍ୟାଦା ବେଶି । ତାକୁ କି ମୁଁ ଲଙ୍ଘନ କରିପାରେ ଅବଜ୍ଞା କରି ପାରେଁ ? ତୋ ଆଦେଶରେ ଆଜିଠାରୁ ମୋର ଭାଣିନେୟ ବୋଲି ପରିଚିତ ହେବ । ତା'ର ନାମ ପରିବର୍ତ୍ତନ କରିବାକୁ ହେବ ।

ପାନ୍ନା - ଆପଣଙ୍କର ମଙ୍ଗଳ ହେଉ, ଆପଣ ଉଦୟ ସହିତ ଦୀର୍ଘଜୀବୀ ହୋଇ ଅକ୍ଷୟ ଯଶ ଉପାର୍ଜନ କରନ୍ତୁ । ଆଗରୁ ମୁଁ ଉଦୟର ନାମ ପ୍ରଭାସିଂହ ରଖିଅଛି । ସେ ସେହି ନାମ ଦ୍ୱାରା ପରିଚିତ ହେଉ । ସେ ଏଥିରେ ଅଭ୍ୟସ୍ତ ଅଟେ ।

(ପ୍ରସ୍ଥାନ)

—ଯବନିକା—



# ପରିଶିଷ୍ଟ-୧

## ଜଳନ୍ଧରଦେବଙ୍କ ସୃଷ୍ଟି ସମ୍ଭାର

[ଜଳନ୍ଧରଦେବଙ୍କ ସାରସ୍ୱତ ସାଧନାର ନିରପେକ୍ଷ ମୂଲ୍ୟାୟନ କଳ୍ପେ ଏହି ସୃଷ୍ଟି ସମ୍ଭାର ପ୍ରସ୍ତୁତ। ପୂର୍ବରୁ ଡକ୍ଟର ଉପେନ୍ଦ୍ରନାଥ ମହାନ୍ତି (ଜଳନ୍ଧର ଦେବ-୧୯୯୫, ପୃ-୧୯,୨୦) ତାଙ୍କ ରଚିତ ପୁସ୍ତକରେ ଜଳନ୍ଧରଙ୍କ କୃତିର ଏକ ତାଲିକା ପ୍ରଦାନ କରିଛନ୍ତି। ଶ୍ରୀଯୁକ୍ତ ରାମଚନ୍ଦ୍ର ବ୍ରହ୍ମା ତାଙ୍କର ଜଳନ୍ଧରଦେବ (୧୯୯୯) ପୁସ୍ତକର ପରିଶିଷ୍ଟରେ 'ଜଳନ୍ଧରଦେବଙ୍କ ସମୟାନୁକ୍ରମିକ ରଚନାବଳୀ' ସଂଯୋଜିତ କରିଛନ୍ତି। ଜଳନ୍ଧର ସାହିତ୍ୟ ଅଧ୍ୟୟନ ଦିଗରେ ଉଲ୍ଲିଖିତ କୃତବିଦ୍ୟ ସାଧକଦ୍ୱୟଙ୍କ ସାଧୁଉଦ୍ୟମ ସ୍ମରଣଯୋଗ୍ୟ। ଡକ୍ଟର ମହାନ୍ତିଙ୍କ ତାଲିକା ଅସମ୍ପୂର୍ଣ୍ଣ କିନ୍ତୁ ଶ୍ରୀଯୁକ୍ତ ବ୍ରହ୍ମାଙ୍କ ତାଲିକା ଅପେକ୍ଷାକୃତ ବିଶାଳ ଓ ସ୍ୱୟଂସମ୍ପୂର୍ଣ୍ଣ। ଶ୍ରୀଯୁକ୍ତ ବ୍ରହ୍ମା ଭୁଲକ୍ରମେ 'ଭାରତୀୟ ରମଣୀମାନଙ୍କ ଦୁରବସ୍ଥା' ପ୍ରବନ୍ଧକୁ ଜଳନ୍ଧରଙ୍କ ରଚନା ରୂପେ ଗ୍ରହଣ କରିଛନ୍ତି। ଯଦିଓ ଉକ୍ତ ରଚନାଟି ଦାମୋଦର ମିଶ୍ରଙ୍କ ରଚିତ (ସମ୍ବଲପୁର ହିତୈଷିଣୀ-(୭/୨୩-୨୪, ୬-୧୩ ନଭେମ୍ବର-୧୮୯୫)। ଶ୍ରୀଯୁକ୍ତ ବ୍ରହ୍ମାଙ୍କ ଗଳ୍ପ ତାଲିକାରେ 'ପତିତପାବନ ଡୋରି, ମେଷବଳୀ ଓ 'ଭିକ୍ଷୁକସଭା' ସହିତ କୌଣସି ଶିଶୁ ଗଳ୍ପ ସ୍ଥାନ ପାଇ ନାହିଁ। ନାଟକରେ 'ଦେବସଭା' ଏବଂ କବିତାରେ ଅନେକ କବିତା ଅନ୍ତର୍ଭୁକ୍ତ ହୋଇ ନାହିଁ। ଏହି ତାଲିକାରେ ଶ୍ରୀଯୁକ୍ତ ବ୍ରହ୍ମାଙ୍କ ତାଲିକା ବାହାରେ ଅନେକ ଲେଖା ସନ୍ନିବେଶିତ। ଶ୍ରୀଯୁକ୍ତ ବ୍ରହ୍ମା 'ମରଣରେ ତୁ ମୋହର ଜୀବନସାଥୀ', 'ଭୂତପ୍ରେତ' ଓ 'ଅନୁତପ୍ତର ସାନ୍ତ୍ୱନା'କୁ ଗଳ୍ପରେ ଏବଂ 'ସ୍ୱଗତ', 'କଠିନ ସମସ୍ୟା', 'ମନ', 'ମୂଢ଼ ଧାର୍ମିକତା', ତିନି ଗୋଟି ସତ୍ୟ, ବ୍ରହ୍ମଜାଲ ଓ ପୁନର୍ଜନ୍ମକୁ ପ୍ରବନ୍ଧରେ ଅନ୍ତର୍ଭୁକ୍ତ କରିଥିବା ସ୍ଥଳେ ଏହି ତାଲିକାରେ ସେଗୁଡ଼ିକୁ 'ରମ୍ୟରଚନା' ବିଭାଗରେ ଗ୍ରହଣ କରାଯାଇଛି। ସଂସିତ ଗ୍ରନ୍ଥାବଳୀରେ ସମସ୍ତ ବିଭାଗର ସୃଷ୍ଟିଗୁଡ଼ିକର ସମୟାନୁକ୍ରମ ତାଲିକା ଅପେକ୍ଷାକୃତ ପୂର୍ଣ୍ଣାଙ୍ଗଭାବେ ପ୍ରଦତ୍ତ ହେଲା। ଭ୍ରମଣ ସାହିତ୍ୟ ବିଭାଗରେ ସ୍ଥାନିତ ଲଙ୍କାଭ୍ରମଣ, ତାଳଚେର ଭ୍ରମଣ, ପୁରୀ ଭ୍ରମଣ ଓ ଦାକ୍ଷିଣାତ୍ୟ ଭ୍ରମଣ ନାମକରଣ ଅଧ୍ୟୟନର ସୁବିଧା ଦୃଷ୍ଟିରୁ କରାଯାଇଛି କିନ୍ତୁ ଏହି ରଚନାଗୁଡ଼ିକ 'ଡାଏରୀର କିୟଦଂଶ' ଶୀର୍ଷକରେ ଧାରାବାହିକ ଭାବେ ଉତ୍କଳ ସାହିତ୍ୟରେ ପ୍ରକାଶ ଲଭିଥିଲା।]

କ : କବିତା

| | ସୃଷ୍ଟି | ରଚନାକାଳ | ପ୍ରକାଶନ ବିବରଣୀ |
|---|---|---|---|
| ୧. | ଗ୍ରୀଷ୍ମ | ୧୮୯୪ | ପାରିଜାତମାଳା ସଂକଳନ |
| ୨. | ଶିଶିର | ୧୮୯୪ | ବାମଣ୍ଡା, ଜଗନ୍ନାଥ ବଲ୍ଲଭ ପ୍ରେସ୍ |
| ୩. | ଉତ୍କଳ ଭାରତୀଙ୍କ କ୍ଷୋଭ | ୧୮୯୫ | ସମ୍ବଲପୁର ହିତୈଷିଣୀ ତା. ୬-୨-୧୮୯୫ |
| ୪. | ନିବେଦନ | ୧୮୯୫ | ସମ୍ବଲପୁର ହିତୈଷିଣୀ ତା. ୧୩-୨-୧୮୯୫ |
| ୫. | ଜହ୍ନମାମୁ | ୧୯୦୩ | ଜହ୍ନମାମୁ ସଂ : ବାସୁଦେବ ସୁଢ଼ଳଦେବ, ବାମଣ୍ଡା |
| ୬. | ବସନ୍ତ ନିବାସ | ୧୯୦୯ | ଦେବଗଡ଼, ବସନ୍ତ ନିବାସଠାରେ ମାର୍ବଲରେ ଖୋଦିତ |
| ୭. | ମେଘଭାବନା | ୧୯୩୩ | ଉତ୍କଳ ସାହିତ୍ୟ ୩୭/୨ |
| ୮. | ଅସ୍ପୃଶ୍ୟା | ୧୯୩୩ | ଉତ୍କଳ ସାହିତ୍ୟ ୩୭/୩ |
| ୯. | ସ୍ୱର୍ଗତ ବିଶ୍ୱନାଥଙ୍କ ପ୍ରତି | ୧୯୩୪ | ସହକାର-୧୫/୭ |
| ୧୦. | ଜହ୍ନମାମୁ (ଶିଶୁ କବିତା) | ୧୯୩୭ | ଜହ୍ନମାମୁ-୧/୧୦ |
| ୧୧. | ଶଙ୍ଖଧ୍ୱନି | ୧୯୪୭ | ଶଙ୍ଖ-୨/୧୦ |

| | ସୃଷ୍ଟି | ରଚନାକାଳ | ପ୍ରକାଶନ ବିବରଣୀ |
|---|---|---|---|
| ୧୨. | ଶୋକ ଗୀତି | ୧୯୪୭ | ଶଙ୍ଖ-୨/୧୨ |
| ୧୩. | ମୁକ୍ତି ପତାକା | ୧୯୪୭ | ଶଙ୍ଖ-୩/୨ |
| ୧୪. | ଦୟାଳୁ ପକ୍ଷୀ | ଜଣା ନାହିଁ | ପାଣ୍ଡୁଲିପି ଆକାରେ ପ୍ରାପ୍ତ |
| ୧୫. | ପ୍ରତୀକ୍ଷା | ଜଣା ନାହିଁ | ପାଣ୍ଡୁଲିପି ଆକାରେ ପ୍ରାପ୍ତ |
| ଖ : | **ପ୍ରବନ୍ଧ ଓ ଆଲୋଚନା** | | |
| ୧) | ଜାତିଭେଦ | ୧୮୯୫ | ସମ୍ବଲପୁର ହିତୈଷିଣୀ ୧୦.୭.୧୮୯୫, ୧୭.୭.୧୮୯୫, ୨୪.୭.୧୮୯୫, ୩୧.୭.୧୮୯୫ |
| ୨) | ବାଲ୍ୟ ବିବାହ | ୧୮୯୬ | ସମ୍ବଲପୁର ହିତୈଷିଣୀ ୮/୫, ୮/୬ |
| ୩) | ଗ୍ରହଣ ବିଚାର | ୧୮୯୬ | ସମ୍ବଲପୁର ହିତୈଷିଣୀ:୯.୯.୧୮୯୬, ୧୬.୯.୧୮୯୬ |
| ୪) | ବେଦ | ୧୯୦୮ | ସମ୍ବଲପୁର ହିତୈଷିଣୀ ୧୯/୧୭ (ଧାରାବାହିକ) |
| ୫) | ହେଲିର ଧୂମକେତୁ | ୧୯୦୯ | ସମ୍ବଲପୁର ହିତୈଷିଣୀ ୧୩.୧୧.୧୯୦୯ |
| ୬) | ବୈଦିକ ଓ ପୌରାଣିକ ଯତକିଞ୍ଚିତ | ୧୯୧୨ | ଉତ୍କଳ ସାହିତ୍ୟ ୧୬/୩ |
| ୭) | ବ୍ରାହ୍ମଣେଭ୍ୟୋ ନମୋ ନମଃ | ୧୯୧୨ | ଗଡଜାତ ବାସିନୀ ୭.୯.୧୯୧୨ |
| ୮) | ଭଗବତ ଗୀତା | ୧୯୧୪ | ଉତ୍କଳ ସାହିତ୍ୟ ୧୮/୩ |
| ୯) | ମହାଭାରତ | ୧୯୧୬ | ଉତ୍କଳ ସାହିତ୍ୟ ୧୯/୧ ରୁ ଧାରାବାହିକ |
| ୧୦) | ଆମ୍ଭମାନଙ୍କର ଯାନ ଓ ଅସ୍ତ୍ରଶସ୍ତ୍ର | ୧୯୧୬ | ଉତ୍କଳ ସାହିତ୍ୟ ୨୦/୫, ୨୦/୬ |
| ୧୧) | ଛାତ୍ରମାନଙ୍କୁ ଅନୁରୋଧ | ୧୯୧୬ | ସମ୍ବଲପୁର ହିତୈଷିଣୀ (୨୮/୧୧), ୩୦.୧୧.୧୯୧୬ |
| ୧୨) | ରାମାୟଣ | ୧୯୧୭ | ଉତ୍କଳ ସାହିତ୍ୟ ୨୦ଶ ଭାଗ /୧୧,୧୨, ୨୧/୧,୨,୩ |
| ୧୩) | ବାମଣ୍ଡା ଛାତ୍ର ସମିତି ଅଧିବେଶନରେ ଅଭିଭାଷଣ | ୧୯୧୭ | ସମ୍ବଲପୁର ହିତୈଷିଣୀ (୨୯/୮) ୨୯.୧୨.୧୯୧୭ |
| ୧୪) | ଭ୍ରମବିଶ୍ୱାସ | ୧୯୧୮ | ଉତ୍କଳ ସାହିତ୍ୟ ୨୧/୯ ପୌଷ -୧୩୨୫ |
| ୧୫) | ମେଘଦୂତ | ୧୯୨୧ | ଉତ୍କଳ ସାହିତ୍ୟ୨୫/୨ ଜ୍ୟେଷ୍ଠ, ଆଷାଢ଼ ୧୩୨୮ |
| ୧୬) | ବାର | ୧୯୨୧ | ଉତ୍କଳ ସାହିତ୍ୟ ୨୫/୭ |
| ୧୭) | ଶକ୍ତି ସମନ୍ୱିତ ବସ୍ତୁ ସମଷ୍ଟି ନିତ୍ୟ | ୧୯୨୧ | ଉତ୍କଳ ସାହିତ୍ୟ ୨୫/୧୦ |
| ୧୮) | ବସ୍ତୁ ଓ ଶକ୍ତି ଅବିନାଶୀ | ୧୯୨୪ | ଉତ୍କଳ ସାହିତ୍ୟ ୨୮/୧୧ |
| ୧୯) | ସ୍ୱାଧୀନ ଚିନ୍ତା | ୧୯୨୮ | ଉତ୍କଳ ସାହିତ୍ୟ (ଧାରାବାହିକ ପ୍ରକାଶିତ) |
| ୨୦) | ବିବାହ ବିଚାର (ପୁସ୍ତକ) | ୧୯୨୧ | ଉତ୍କଳ ସାହିତ୍ୟ ପ୍ରେସ, କଟକ |
| ୨୧) | ସାହିତ୍ୟ ଓ ଜାତି | ୧୯୨୯ | ଉତ୍କଳ ସାହିତ୍ୟ ୩୨/୭ କାର୍ତ୍ତିକ ୧୩୩୬ |
| ୨୨) | ଭାଷା | | ଉତ୍କଳ ସାହିତ୍ୟ |
| ୨୩) | ଜ୍ୟୋତିର୍ବିଦ୍ୟାର ଜୟ | ୧୯୩୦ | ଉତ୍କଳ ସାହିତ୍ୟ ୩୪/୨ |
| ୨୪) | ଧ୍ରୁବ | ୧୯୩୧ | ସହକାର ୧୨/୧ |
| ୨୫) | ବୁଦ୍ଧଦେବଙ୍କ ଜନ୍ମସ୍ଥାନ | ୧୯୩୨ | ଉତ୍କଳ ସାହିତ୍ୟ ୩୫/୪ |
| ୨୬) | ବେଦ ଓ ହିନ୍ଦୁଧର୍ମ | ୧୯୩୨-୩୩ | ଉତ୍କଳ ସାହିତ୍ୟ ୩୫/୧୧ ରୁ କ୍ରମଶଃ ଓ ସହକାର |

| | ସୃଷ୍ଟି | ରଚନାକାଳ | ପ୍ରକାଶନ ବିବରଣୀ |
|---|---|---|---|
| ୨୭) | ବର୍ଣ୍ଣ ଓ ଜାତି ବିଚାର | ୧୯୩୩ | ଉତ୍କଳ ସାହିତ୍ୟ ୩୭/୪,୬,୭ |
| ୨୮) | ରାଧାନାଥଙ୍କ କାବ୍ୟରେ ନାରୀର ସ୍ଥାନ | ୧୯୩୩ | ସହକାର- ୧୪/୫ |
| ୨୯) | ଉତ୍କଳ ସାହିତ୍ୟ ସମାଜର ଅଷ୍ଟାବିଂଶ ଅଧିବେଶନରେ ସଭାପତିଙ୍କ ଅଭିଭାଷଣ | ୧୯୩୩ | ସହକାର- ୧୪/୬ |
| ୩୦) | ନକ୍ଷତ୍ର | ୧୯୩୩ | ରସଚକ୍ର ୧ମ ଭାଗ ୯ମ ସଂଖ୍ୟା |
| ୩୧) | କଟକରେ ସାହିତ୍ୟ ଚର୍ଚ୍ଚା | ୧୯୩୩ | ସହକାର ୧୪/୯ |
| ୩୨) | ଭୂମିକମ୍ପ | ୧୯୩୪ | ସହକାର ୧୪/୧୧ |
| ୩୩) | ରାଜା ରାମମୋହନ | ୧୯୩୪ | ଉତ୍କଳ ସାହିତ୍ୟ ୩୭/୧୧ ଫାଲ୍‌ଗୁନ -୧୩୪୧ |
| ୩୪) | ଲଘୁ ସାହିତ୍ୟ ଓ ବଳିଷ୍ଠ ସାହିତ୍ୟ ସମ୍ବନ୍ଧେ ଦୁଇଚାରି କଥା | ୧୯୩୪ | ସହକାର -୧୫/୭ |
| ୩୫) | ସାହିତ୍ୟିକ ଅଭିଭାଷଣ | ୧୯୩୫ | ଭଞ୍ଜପ୍ରଦୀପ- ୪/୩ |
| ୩୬) | ନର ଓ ନାରୀ | ୧୯୩୫ | ଉତ୍କଳ ସାହିତ୍ୟ - ୩୯/୭, ୪୦/୫, ୪୦/୭ |
| ୩୭) | ଭାରତ ଇତିହାସ | ୧୯୩୫ | ସହକାର -୧୬/୬ |
| ୩୮) | ଶିକ୍ଷା ପଦ୍ଧତି | ୧୯୩୫ | ଉପହାର ଅଶୋକ ଓ ବିଜୟା ସଂଖ୍ୟା |
| ୩୯) | ସରୋଜନଳିନୀ | ୧୯୩୫ | ରସଚକ୍ର- ୨/୯, କାର୍ତ୍ତିକ - ୧୩୪୨ |
| ୪୦) | ଜିଜ୍ଞାସା | ୧୯୩୬ | ଭଞ୍ଜ ପ୍ରଦୀପ-୫/୧ |
| ୪୧) | କୁଶଳେଶ୍ୱର କାର୍ତ୍ତିକେୟ | ୧୯୩୬ | ସହକାର- ୧୮/୧ |
| ୪୨) | ସୂର୍ଯ୍ୟ | ୧୯୩୭ | ଉପହାର - ଅଶୋକ ସଂଖ୍ୟା, ଶଂଖ - ୨/୫ |
| ୪୩) | ଶୂଦ୍ର ଜାତି କେଉଁଠା | ୧୯୩୭ | ଉପହାର ଗୁଣ୍ଡିଚା ସଂଖ୍ୟା |
| ୪୪) | ନାରାୟଣ | ୧୯୩୭ | ଭଞ୍ଜପ୍ରଦୀପ - ୬/୧ ଆଶ୍ୱିନ ୧୩୪୪ |
| ୪୫) | ସୃଷ୍ଟି | ୧୯୩୭ | ଭଞ୍ଜପ୍ରଦୀପ - ୬/୨ |
| ୪୬) | କୃଷି | ୧୯୩୭ | ଭଞ୍ଜପ୍ରଦୀପ- ୬/୩, ଶଂଖ ୩/୫, ୭,୮ ଓ ୯ |
| ୪୭) | ସତ୍ୟଂପରଂ ଧୀମହି | ୧୯୩୮ | ଉପହାର- ବିଜୟା ସଂଖ୍ୟା |
| ୪୮) | ଅଭିବ୍ୟକ୍ତିବାଦର ଆଭାସ | ୧୯୩୯ | ଉପହାର- ବକୁଳ ସଂଖ୍ୟା |
| ୪୯) | ଆକୃତି ଅନାଦିକାଳରୁ ଅଛି କି ? | ୧୯୩୯ | ସହକାର - ୨୦/୨ |
| ୫୦) | ଆର୍ଯ୍ୟ ସଂସ୍କୃତିର କି ଏହି ପରିଣତି | ୧୯୩୯ | ସହକାର- ୨୦/୬ |
| ୫୧) | ବୁଦ୍ଧ | ୧୯୩୯ | ଉପହାର ବିଜୟା ସଂଖ୍ୟା |
| ୫୨) | ଯୁଦ୍ଧ ଓ ଗୀତା | ୧୯୪୦ | ଭଞ୍ଜପ୍ରଦୀପ- ୯/୧ |
| ୫୩) | ଭାରତୀୟ ସାହିତ୍ୟର ଅଭିବ୍ୟକ୍ତି ଓ ଗତି | ୧୯୪୪ | ସହକାର - ୨୪/୪ |
| ୫୪) | ନିବେଦନ | ୧୯୪୬ | ଶଂଖ- ୨/୩ |
| ୫୫) | ଧର୍ମପଦ | ୧୯୪୮ | ଶଂଖ - ୩/୮ |
| ୫୬) | ଉତ୍ତରାକାଣ୍ଡ ରାମାୟଣ ନୁହେଁ ଏବଂ ବାଲ୍ମିକୀ ରଚିତ ନୁହେଁ | ୧୯୪୮ | ବୀଣା-୧/୧୨, ଫାଲ୍‌ଗୁନ -୧୩୫୫ |

| ସୃଷ୍ଟି | ରଚନାକାଳ | ପ୍ରକାଶନ ବିବରଣୀ |
|---|---|---|
| ୫୭) ବିବିଧ ରଚନା ବିଭାଗ: | | |
| କ) ମହରମର ଇତିବୃତ୍ତ | ୧୮୯୬ | ସମ୍ବଲପୁର ହିତୈଷିଣୀ : ୭/୪୫ ରୁ ୮/୫ |
| ଖ) ପଣ୍ଡିତଙ୍କୁ ପ୍ରଶ୍ନ | ୧୮୯୭ | ସମ୍ବଲପୁର ହିତୈଷିଣୀ : ୮/୪୧, ୧୪.୩.୧୮୯୭ |
| ଗ) ଉତ୍ତରର ଆଲୋଚନା | ୧୮୯୭ | ସମ୍ବଲପୁର ହିତୈଷିଣୀ : ୮/୫୦, ୧୨.୫. ୧୮୯୭ |
| ଘ) ଆଲୋଚନା ବିଜ୍ଞାପନ | ୧୯୦୦ | ସମ୍ବଲପୁର ହିତୈଷିଣୀ : ୨୩.୫.୧୯୦୦ |
| ଙ) ପ୍ରାଜ୍ଞ ପରୀକ୍ଷା ପ୍ରଶ୍ନପତ୍ର | ୧୯୧୩ | ସମ୍ବଲପୁର ହିତୈଷିଣୀ : ୨୪/୧୪, ୧.୨.୧୯୧୩ |
| ଚ) ଉତ୍କଳ ସମ୍ମିଳନୀ ପ୍ରତି ଶୁଭେଚ୍ଛା ପତ୍ର | ୧୯୧୬ | ଉତ୍କଳ ସମ୍ମିଳନୀ ବିବରଣୀ - ୧୯୧୬ |
| ଛ) ବିଶ୍ୱନାଥ କରଙ୍କୁ ପତ୍ର | ୧୯୩୨ | ଉତ୍କଳ ସାହିତ୍ୟ,ନୂଆପ୍ରସ୍ଥ-କାର୍ତ୍ତିକ -୧୩୬୩ (ଅକ୍ଟୋବର ୧୯୫୫) |
| ଜ) ସାହିତ୍ୟ ସନ୍ଦର୍ଭର ମୁଖବନ୍ଧ | ୧୯୩୩ | ସାହିତ୍ୟ ସନ୍ଦର୍ଭ, ମୁକୁରପ୍ରେସ, କଟକ |
| ଝ) ଶଙ୍ଖ ସମ୍ପାଦକୀୟ | ୧୯୪୬ ରୁ ୧୯୪୮ | ଶଙ୍ଖ ୨/୩ ରୁ ୩/୧୨ |
| ଞ) ଓଡ଼ିଶା ବିଧାନସଭାରେ ପ୍ରଦତ୍ତ ଭାଷଣ | ୧୯୪୯ ରୁ ୧୯୫୧ | ଓଡ଼ିଶା ବିଧାନସଭା ବିବରଣୀ |
| ଗ : ଭ୍ରମଣ ସାହିତ୍ୟ ବିଭାଗ: (ଡାଏରୀର କିୟଦଂଶ) | | |
| ୧. ଲଙ୍କା ଭ୍ରମଣ | ୧୯୧୦ | ଉତ୍କଳ ସାହିତ୍ୟ ୧୪/୧୨, ୧୫/୧, ୩, ୪, ୮, ୧୬/୧ ଓ ୧୬/୫ |
| ୨. ତାଳଚେର ଭ୍ରମଣ | ୧୯୨୮ | ଉତ୍କଳ ସାହିତ୍ୟ-୩୧/୧୧ |
| ୩. ପୁରୀ ଭ୍ରମଣ | ୧୯୨୯ | ୩୧/୧୧, ୩୨/୧, ୩୨/୨ |
| ୪. ଦାକ୍ଷିଣାତ୍ୟ ଭ୍ରମଣ | | |
| ଘ : ଗଳ୍ପ | | |
| ୧. ଗୋଟିଏ କଥା | ୧୯୧୪ | ଉତ୍କଳ ସାହିତ୍ୟ-୧୮/୨ |
| ୨. ମିଥ୍ୟା ଅଭିଯୋଗ | ୧୯୨୦ | ଉତ୍କଳ ସାହିତ୍ୟ-୨୪/୩ |
| ୩. ସାନ୍ଧ୍ୟ ଗଗନ | ୧୯୨୫ | ଉତ୍କଳ ସାହିତ୍ୟ-୨୮/୮ |
| ୪. ବାୟା | ୧୯୨୫ | ଉତ୍କଳ ସାହିତ୍ୟ-୨୮/୧୨ |
| ୫. ଗୌରୀ ଓ କାହ୍ନୁ | ୧୯୨୮ | ଉତ୍କଳ ସାହିତ୍ୟ-୩୧/୮ |
| ୬. ଭିନ୍ନ ଗତି ଭିନ୍ନ ମତି | ୧୯୨୮ | ଉତ୍କଳ ସାହିତ୍ୟ-୩୧/୯ |
| ୭. ଅତିଥି ସତ୍କାର | ୧୯୨୮ | ଉତ୍କଳ ସାହିତ୍ୟ-୩୧/୧୨ |
| ୮. ଘନିଷ୍ଠତା କ୍ଷଣସ୍ଥାୟୀ | ୧୯୨୮ | ଉତ୍କଳ ସାହିତ୍ୟ-୩୨/୫ |
| ୯. ଆଉ ନାତୁଣୀ | ୧୯୨୯ | ଉତ୍କଳ ସାହିତ୍ୟ-୩୨/୯ |
| ୧୦. ପତିତପାବନ ଡୋରି | ୧୯୨୯ | ଉତ୍କଳ ସାହିତ୍ୟ-୩୩/୭ |
| ୧୧. ମନ୍ତରାମର ମୁକ୍ତି | ୧୯୩୧ | ଉତ୍କଳ ସାହିତ୍ୟ-୩୪/୮ |
| ୧୨. ସନ୍ତାନ ସ୍ନେହ | ୧୯୩୧ | ଉତ୍କଳ ସାହିତ୍ୟ-୩୫/୧, ୩୫/୩, ୩୫/୫, ୩୫/୬ |
| ୧୩. ବିବାହ ଭୋଜି | ୧୯୩୧ | ଉତ୍କଳ ସାହିତ୍ୟ-୩୫/୭, ୩୫/୮ |
| ୧୪. ମୁକ୍ତିର ଇସାରା | ୧୯୩୨ | ଉତ୍କଳ ସାହିତ୍ୟ-୩୬/୪ |
| ୧୫. ପ୍ରକୃତିର ପ୍ରତିଶୋଧ | ୧୯୩୨ | ଉତ୍କଳ ସାହିତ୍ୟ-୩୬/୬ |
| ୧୬. ମେଷବଳି | ୧୯୩୩ | ଉତ୍କଳ ସାହିତ୍ୟ-୩୬/୯ |

| | ସୃଷ୍ଟି | ରଚନାକାଳ | ପ୍ରକାଶନ ବିବରଣୀ |
|---|---|---|---|
| ୧୭. | ଏହା କି ଆତ୍ମହତ୍ୟା | ୧୯୩୬ | ସହକାର-୧୭/୩ |
| ୧୮. | ଅଶ୍ରୁଧାରା | ୧୯୩୬ | ସହକାର-୧୭/୪ |
| ୧୯. | ଭିକ୍ଷୁକ ସଭା | ୧୯୩୭ | ସହକାର-୧୭/୬ |
| ୨୦. | ଗରିବର ମୃତ୍ୟୁକାଳୀନ ଚିନ୍ତା | ୧୯୪୦ | ସହକାର-୨୦/୭ |
| ଙ. | **ଶିଶୁଗଳ୍ପ ବିଭାଗ** | | |
| ୧. | ଜହ୍ନମାମୁ ହେଲା କିପରି | ୧୯୩୩ | ଜହ୍ନମାମୁ ୧/୧୦ |
| ୨. | ବାଳକ ମନୁଷ୍ୟର ବାପ | ୧୯୩୩ | ଜହ୍ନମାମୁ ୧/୧୨ |
| ୩. | ଦରିଦ୍ର ବାଳକ ରାଜମନ୍ତ୍ରୀ | ୧୯୩୩ | ଜହ୍ନମାମୁ ୨/୧ |
| ୪. | ଜହ୍ନମାମୁ ଓ ବାଳକ | ୧୯୩୩ | ଜହ୍ନମାମୁ ୨/୩ |
| ୫. | ଚଷା ପୁଅର ହୃଦର | ୧୯୩୩ | ଜହ୍ନମାମୁ ୨/୬ |
| ୬. | ମୂଲିଆ ପୁଅର ଦାନ | ୧୯୩୩ | ଜହ୍ନମାମୁ ୨/୭ |
| ଚ. | **ରମ୍ୟରଚନା ବିଭାଗ** | | |
| ୧. | ଭୂତପ୍ରେତ | ୧୯୧୪ | ଉତ୍କଳ ସାହିତ୍ୟ ୧୮/୧୨ |
| ୨. | ଅନୁତପ୍ତର ସାନ୍ତ୍ୱନା | ୧୯୧୫ | ଉତ୍କଳ ସାହିତ୍ୟ ୧୯/୫ |
| ୩. | ସ୍ୱଗତ | ୧୯୧୭ | ଉତ୍କଳ ସାହିତ୍ୟ ୨୦/୭,୨୧/୨ |
| ୪. | କଠିନ ସମସ୍ୟା | ୧୯୩୩ | ଉତ୍କଳ ସାହିତ୍ୟ ୩୭/୨ |
| ୫. | ମରଣରେ ତୁ ମୋହର ଜୀବନ ସାଥୀ | ୧୯୩୭ | ସହକାର ୧୭/୧୧ |
| ୬. | ମନ | ୧୯୩୭ | ସହକାର ୧୭/୧୧ |
| ୭. | ମୂକ ଧାର୍ମିକତା | ୧୯୩୮ | ଭଞ୍ଜପ୍ରଦୀପ ୭/୧୧ |
| ୮. | ତିନିଗୋଟି ସତ୍ୟ | ୧୯୪୬ | ଶଙ୍ଖ ୨/୪ |
| ୯. | ବ୍ରହ୍ମଜ୍ଞାନ | ୧୯୪୮ | ଶଙ୍ଖ ୩/୯ |
| ୧୦. | ପୁନର୍ଜନ୍ମ | ୧୯୪୮ | ଶଙ୍ଖ ୩/୧୨ |
| ଛ. | **ନାଟକ ବିଭାଗ** | | |
| ୧. | ଦେବସଭା | ୧୯୩୦ | ଉତ୍କଳ ସାହିତ୍ୟ ୩୩/୮ |
| ୨. | ବିଚ୍ଛେଦ | ୧୯୩୨ | ସହକାର ୧୩/୧୨ |
| ୩. | ରାଣାସଙ୍ଗଙ୍କର ମହାପ୍ରୟାଣ | ୧୯୩୩ | ସହକାର ୧୪/୭ |
| ୪. | ଉଦୟ ସିଂହ | ୧୯୩୪ | ଉତ୍କଳ ସାହିତ୍ୟ ୩୮/୪,୫,୮,୯ |



# ପରିଶିଷ୍ଟ - ୨

## HOME DEPARTMENT
## NOTIFICATION

**The 16th September 1949**

**No.3654.C.**—The following order, dated the 9th September 1949 of the Governor-General of India, is republished for general information.

By order of the Governor

P. N. MAHANTI

*Additiional Secretary to Government*

New Delhi, 9th September 1949

In pursuance of paragraph (4) of Article 11 of the States' Merger (Governor's Provinces) Order, 1949, I, Chakravarti Rajagopalachari, Governor-General of India, hereby nominate the following persons to fill the additional seates in the Orissa Provincial Legislative Assembly created by paragraph (1) of the said Article and represent the people of the States or groups of States indicated below—

| Name of States | Names of members |
|---|---|
| | Sri Lal Mohan Pati<br>Sri Sarat Chandra Das<br>Sri Harish Chandra Das |
| Mayurbhanja | Sri Siris Chandra Das of Karanjia<br>Sri Mangobind Patri of Udala<br>Sri Gopinath Naik of Rairangpur |
| **Bamra** | **Sri Jallandhara Deb** |
| Dhenkanal | Sri Surendra Mohan Patnaik<br>Sri Maheswar Subahu Singh<br>Sri Utsabanand Pradhan<br>Sri Thataraja Rudra Pratap Singh Deo of Kashipur |
| Kalahandi | Sir Kaliprasad Babu<br>Sri Gajanan Nail |
| Nayagarh | Sri Sridhar Das<br>Sri Dibakar Bohidar<br>Sri Nimai Charan Panigrahi |

| | |
|---|---|
| Patna | Sri Kapileswar Prasad Nanda |
| | Sri Kapur Chand Naik |
| **Name of States** | **Names of members** |
| Bonai | Sri Narahair Dandpat of Bonai |
| Gangpur | Sri Ram Charan Patel |
| | Sri Shib Narayan Singh Mahapatra, Zamindar of Nagra |
| | Sri Manikram Mahanto of Champua |
| Keonjhar | Sri Laxminarayan Bhanj Deo, Chotrai of Keonjhar |
| Nilgiri | Sri Kirtan Behari Mahanti of Anandapur |
| | Sri Sarat Chandra Mahanti of Nilgiri |
| Athgarh | |
| Baramaba | |
| Daspalla | |
| Hindol | Sri Paitra Mohan Pradhan of Talcher |
| Khandpara | Sri Radhanath Rath of Athgarh |
| Narasingpur | Sri Antarjyami Sahu of Khandpara |
| Ranpur | |
| Tigiria | |
| Pal-Lahara | |
| Talcher | |
| Athamallik | |
| Baudh | Sri Dasaratha Pradhan of Boudh |
| Rairakhol | Sri Mohan Misra of Sonepur |
| Sonepur | Sri Sashibhusan Pradhan of Atamallik |

**C. RAJAGOPALACHARI**

*Governor-General*



# ପରିଶିଷ୍ଟ-୩

## ଓଡ଼ିଶା ବିଧାନସଭାରେ ଜଳନ୍ଧରଙ୍କ ତିରୋଧାନରେ ଶୋକପ୍ରସ୍ତାବ ୨୭ ଅକ୍ଟୋବର ୧୯୫୨

## CONDOLENCES ON THE DEATH OF SHRI JALANDHAR DEB OF BAMRA

Shri NABAKRUSHNA CHAUDHURI (Chief Minister) : ଅଧକ୍ଷ ମହାଶୟ, ଆଜି ଅନ୍ୟ କାର୍ଯ୍ୟ ଆରମ୍ଭ ହେବା ପୂର୍ବରୁ ମୋର ଗୋଟିଏ ଶୋକ ସମ୍ବାଦ ଦେବାର ଅଛି । ଆମ୍ଭମାନଙ୍କର ଶ୍ରଦ୍ଧେୟ ବାମଣ୍ଡାର ଶ୍ରୀ ଜଳନ୍ଧରଦେବଙ୍କର ମୃତ୍ୟୁ ଘଟିଛି । ସେ ଗତ ବ୍ୟବସ୍ଥାସଭାରେ ଜଣେ ସଭ୍ୟ ଥିଲେ, ଏବଂ ଏ ସଭାରେ ମାନ୍ୟବର ସଭ୍ୟମାନେ ତାଙ୍କୁ ଜାଣିଥିବେ । ତାଙ୍କର ସରଳ ଏବଂ କର୍ମନିଷ୍ଠ ସ୍ୱଭାବ ସମସ୍ତଙ୍କୁ ମୁଗ୍ଧ କରିଥିଲା । ତା'ଛଡ଼ା ଆମର ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କର ସ୍ଥାନ କେଉଁଠି ତାହା ସମସ୍ତଙ୍କୁ ଜଣା । ସେ ବିଷୟରେ ମୁଁ ବିଶେଷ କିଛି କହିବାକୁ ଚାହୁଁ ନାହିଁ । କେବଳ ଗୋଟିଏ ଗୁଣ କହୁଛି ଯାହା କି ମୋତେ ତାଙ୍କ ଆଡ଼କୁ ବହୁତ ଆକଷ୍ଟ କରିଥିଲା ଏବଂ ମୁଁ ମୁଗ୍ଧ ହୋଇଥିଲି । ତା ହେଉଛି ତାଙ୍କର କର୍ମନିଷ୍ଠା ଦୈହିକ ପରିଶ୍ରମ କରିବା ତାଙ୍କ ଜୀବନର ବିଶେଷତ୍ୱ ଥିଲା । ସେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦୈହିକ ପରିଶ୍ରମ କରୁଥିଲେ । ସେଥିପ୍ରତି ତାଙ୍କର ଘୃଣା ନ ଥିଲା । ବରଂ ସେଥିରେ ସେ ଆନନ୍ଦ ଅନୁଭବ କରୁଥିଲେ । ଚାଷକାମ ସେ ଉତ୍ସାହର ସହିତ କରୁଥିଲେ, ଯାହା କି ଆମ ସମସ୍ତଙ୍କର ଅନୁକରଣ କରିବାର କଥା । ତାଙ୍କର ଗୋଟିଏ ପୁତ୍ର ଏ ସଭାରେ ଜଣେ ସଭ୍ୟ । ମୃତ୍ୟୁ ସମୟରେ ସେ ତାଙ୍କ ପାଖେ ଉପସ୍ଥିତ ନ ଥିଲେ । ଖବର ପାଇ ସେ ଏଠାରୁ ଗଲେ । ତାଙ୍କର ଆଉ ଗୋଟିଏ ପୁତ୍ର ଜଣେ ସରକାରୀ କର୍ମଚାରୀ । ତାଙ୍କର ବୃଦ୍ଧା ସ୍ତ୍ରୀ ମଧ ଅସୁସ୍ଥ ଥିଲେ । ଶ୍ରୀଯୁକ୍ତ ଜଳନ୍ଧର ଦେବଙ୍କର ସ୍ୱାସ୍ଥ୍ୟ ଖୁବ୍ ଭଲ ଥିଲା । ହଠାତ୍ ବିଶେଷ କିଛି ରୋଗ ତାଙ୍କୁ ହୋଇ ନାହିଁ । ଦିନେ ଜର ହେଲା, ତା'ପରେ ତାଙ୍କର ମୃତ୍ୟୁ ଘଟିଲା । ମୁଁ ପ୍ରସ୍ତାବ କରୁଛି, ଆମର ବ୍ୟବସ୍ଥା ସଭା ତରଫରୁ ତାଙ୍କର ଶୋକସନ୍ତପ୍ତ ପରିବାରଙ୍କୁ ସମବେଦନା ଜଣାଇ ଦିଆଯାଉ । ମୁଁ ମୋର ଦଳ ତରଫରୁ ଏ ପ୍ରସ୍ତାବ ଆଗତ କରୁଛି ଏବଂ ଆଶା କରୁଛି ଏ ଗୃହ ତାକୁ ଗ୍ରହଣ କରିବ ।

**Shri SHRADDHAKAR SUPAKAR** : ମାନନୀୟ ଅଧକ୍ଷ ମହାଶୟ, ସ୍ୱର୍ଗତ ଜଳନ୍ଧରଦେବଙ୍କ ବିଷୟରେ ମୁଖ୍ୟମନ୍ତ୍ରୀ ଯେଉଁ ପ୍ରସ୍ତାବ ଆଗତ କଲେ ମୁଁ ତାକୁ ଆନ୍ତରିକତାର ସହିତ ଅନୁମୋଦନ କରୁଛି । ଶ୍ରୀଯୁକ୍ତ ଜଳନ୍ଧରଦେବ ଜଣେ ଉଚ୍ଚକୋଟୀର ସାହିତ୍ୟିକ ହିସାବରେ ଓଡ଼ିଶାରେ ଖ୍ୟାତିଲାଭ କରିଥିଲେ । ତାଙ୍କର ଯେଉଁ ଲେଖାମାନ ଉତ୍କଳସାହିତ୍ୟ ଏବଂ ଅନ୍ୟାନ୍ୟ ପତ୍ରପତ୍ରିକାମାନଙ୍କରେ ବାହାରୁଥିଲା, ତା'ର ସ୍ୱାଧୀନତା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ତାଙ୍କର ଭାଷା ଏବଂ ଭାବ ମଧ ଉଚ୍ଚକୋଟୀର ଥିଲା । ୧୯୪୮ ସାଲ୍ ଅକ୍ଟୋବର ମାସରେ ପୂର୍ବତନ ଗଡ଼ଜାତ ଅଞ୍ଚଳମାନଙ୍କରୁ ଯେଉଁ ୩୧ ଜଣ ସଭ୍ୟଙ୍କୁ ଏ ବ୍ୟବସ୍ଥା ସଭାକୁ ବଛାଯାଇଥିଲା, ସେମାନଙ୍କ ମଧରୁ ସେ ଜଣେ ଥିଲେ । ତତ୍କାଳୀନ ବ୍ୟବସ୍ଥାପକସଭାର ସଭ୍ୟମାନଙ୍କ ଭିତରେ ସେ ଯୋଗ୍ୟ ଥିବାରୁ ସେ ସମସ୍ତଙ୍କର ଭକ୍ତି ଓ ଶ୍ରଦ୍ଧାର ପାତ୍ର ହୋଇଥିଲେ । ଆମେ ଯୁବକମାନେ ତାଙ୍କୁ ଅଜା ବୋଲି ସମ୍ବୋଧନ କରୁଥିଲୁଁ ଏବଂ ସେ ମଧ ସମସ୍ତଙ୍କୁ ସ୍ନେହ-ବନ୍ଧନରେ ବାନ୍ଧି ରଖିପାରିଥିଲେ । ସେ ବ୍ୟବସ୍ଥାପକ ସଭାରୁ ବିଦାୟ ନେଲା ପରେ ବାମଣ୍ଡା ଗଣତନ୍ତ୍ର ପରିଷଦର ସଭାପତି ହୋଇଥିଲେ । ତାଙ୍କ ବିୟୋଗରେ ସେ ଅଞ୍ଚଳର ଅପୂରଣୀୟ କ୍ଷତି ହୋଇଛି । ମୁଖ୍ୟମନ୍ତ୍ରୀ ଯେଉଁ ପ୍ରସ୍ତାବ କରିଛନ୍ତି ମୁଁ ତାକୁ ଅନ୍ତରର ସହିତ ସମର୍ଥନ କରୁଛି ।

**Shri NILAKANTHA DAS** : ସଭାପତି ମହାଶୟ, ଏ ସମ୍ବାଦ ଓଡ଼ିଶାବାସୀଙ୍କ ପ୍ରତି ଯଥାର୍ଥରେ ଆକସ୍ମିକ । ଯଦିଓ ତାଙ୍କର ବୟସ ଖୁବ୍ ବେଶୀ ହୋଇଥିଲା । କାରଣ ମୁଁ ଏକଥା କହିପାରେ ଯେ ଓଡ଼ିଶାରେ ଆଉ ଯେତେ ସାହିତ୍ୟିକ ଅଛନ୍ତି ମୁଁ କାହାରି ଭିତରେ ତାଙ୍କ ସ୍ୱାଧୀନ ଚିନ୍ତା, ଆଉ ବିଷୟଟି ଦେଖିଗଲେ ତାକୁ ଗୋଟିଏ ନୂତନ ଚିନ୍ତା ଦେବ, ପ୍ରକାଶ କରିବା ମୁଁ ଅନ୍ୟତ୍ର ଦେଖିଛି କି ନା ସନ୍ଦେହ । ବୟସ ହୋଇଗଲେ ସାଧାରଣତଃ ଲୋକ ପଛକୁ ଚାହେଁ । କେତେଗୁଡ଼ିଏ ଚିନ୍ତା ଅଭ୍ୟାସରେ

ମଧ୍ୟ ପଡ଼ିଯାଏ ପରେ ଏହା ସେମାନଙ୍କର ଅଭ୍ୟାସ ହୋଇଯାଏ, ଯାହାକୁ ଇଂରାଜୀରେ କହନ୍ତି ଦ୍ୱିତୀୟ ଅଭ୍ୟାସ । କିନ୍ତୁ ମୁଁ ତାଙ୍କ ସହିତ ଅନ୍ତରଙ୍ଗ ସମ୍ପର୍କରେ ରହିବା ଭଳିଆ ସୁବିଧା ପାଇ ନାହିଁ । ତାଙ୍କ ସଂସ୍ପର୍ଶରେ ଅତି ଅଳ୍ପ ସମୟ ମୁଁ ଆସିଛି, କିନ୍ତୁ ମୁଁ ଦେଖିଛି ପ୍ରକୃତରେ ତାଙ୍କର ଶେଷ ପର୍ଯ୍ୟନ୍ତ ସ୍ୱାଧୀନ ଚିନ୍ତା ଜୀବନ୍ତ ଥିଲା । ତାଙ୍କର ଏତେ ବୟସ ହୋଇ ମଧ୍ୟ ସେ କେବେ ପଛକୁ ଚାହିଁ ନାହାନ୍ତି । ଉତ୍କଳସାହିତ୍ୟ ସମାଜରେ ସେ ଦିନେ ସଭାପତି ହୋଇଥିଲେ, ତାଙ୍କର ବକ୍ତୃତା ଯେଉଁମାନେ ପଢ଼ିଥିବେ ବା ଶୁଣିଥିବେ ସେମାନେ ଜାଣିଥିବେ କେତେ ନୂଆ ନୂଆ ଭାବର ନୂଆ ନୂଆ ଚିନ୍ତାର କଥା ସେ ଶୁଣାଉଥିଲେ । ଏ କଥାଟି ସମସ୍ତେ ଜାଣିଥିଲେ । ସେ ଆଜି ଚାଲିଗଲେ । ବାସ୍ତବିକ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିରୁ ଗୋଟିଏ ବଡ଼ ଖମ୍ବ ଖସିଗଲା । ମୋର ବଡ଼ ଦୁଃଖ ହେଉଛି । ତାଙ୍କ ପରିବାର ପ୍ରତି ସମବେଦନା ଜ୍ଞାପନ କରିବାକୁ ଯେଉଁ ପ୍ରସ୍ତାବ ଆସିଲା ତାକୁ ମୁଁ ସମର୍ଥନ କରୁଛି । ତା' ସଙ୍ଗେ ସଙ୍ଗେ ମଧ୍ୟ ମୁଁ ଜଣାଇ ଦେଉଛି ଯେ ତାଙ୍କ ତିରୋଧାନରେ ଓଡ଼ିଶାର ଗୋଟିଏ ବଡ଼ କ୍ଷତି ହେଲା ।

**The SPEAKER** : ମାନ୍ୟବର ପ୍ରଧାନମନ୍ତ୍ରୀ ଓ ବିରୋଧ ଦଳର ନେତା ସ୍ୱର୍ଗତ ଜଳନ୍ଧରଦେବଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ଉଦ୍ଦେଶ୍ୟରେ ଯାହା କହିଯାଇଛନ୍ତି ମୁଁ ମଧ୍ୟ ସେସବୁ ହୃଦୟଙ୍ଗମ କରୁଛି ଓ ମୋର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ଏ ଗୃହର ସଦସ୍ୟମାନେ କିଛିକ୍ଷଣ ନୀରବରେ ଛିଡ଼ା ହୋଇ ସ୍ୱର୍ଗତ ଆତ୍ମାର ସଦ୍‌ଗତିପାଇଁ ପ୍ରାର୍ଥନା କରନ୍ତୁ, ଏହା ମୁଁ ଆଶା କରୁଛି ।

(The members stood in silence for a few seconds.)



# ପରିଶିଷ୍ଟ-୪

## ଝଙ୍କାର ସମ୍ପାଦକଙ୍କ ଶୋକ ପ୍ରକାଶ

(ଝଙ୍କାର ୪।୪ ଜୁଲାଇ ୧୯୫୨ ସମ୍ପାଦକୀୟ)

### ଶ୍ରୀଯୁକ୍ତ ଜଳନ୍ଧରଦେବ

ଶ୍ରୀଯୁକ୍ତ ଜଳନ୍ଧରଦେବ ଏକ ସମୟରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ସୁପ୍ରସିଦ୍ଧ ଲେଖକ ରୂପେ ଖ୍ୟାତି ଅର୍ଜନ କରିଥିଲେ। ପୁରୁଣା 'ଉତ୍କଳ ସାହିତ୍ୟ' ବାହାର କଲେ ତାଙ୍କର ସାହିତ୍ୟ ଚର୍ଚ୍ଚାର ପ୍ରକୃତ ନିଦର୍ଶନ ମିଳିବ। କାଳକ୍ରମେ ସେ ସାହିତ୍ୟ କ୍ଷେତ୍ରରୁ ଅପସରି ଯାଇଛନ୍ତି। ଅତି ଆନନ୍ଦର ବିଷୟ ଯେ ତାଙ୍କର ସୁଯୋଗ୍ୟ ପୁତ୍ରମାନେ ତାଙ୍କର ଲେଖାଗୁଡ଼ିକୁ ପୁସ୍ତକାକାରେ ପ୍ରକାଶ କରିବାର ଉଦ୍ୟମ କରୁଛନ୍ତି। ଇତିମଧ୍ୟରେ ତାଙ୍କର 'ଡାଏରିର କିୟଦଂଶ' ସିଂହଳ ଭ୍ରମଣ ପ୍ରକାଶିତ ହୋଇସାରିଛି ଓ ଅନ୍ୟ ଲେଖାମାନ ପ୍ରକାଶିତ ହେବାର ବ୍ୟବସ୍ଥା କରାହୋଇଛି। ପ୍ରକାଶିତ ପୁସ୍ତକଟି ପାଠକଲେ ଶ୍ରୀ ଜଳନ୍ଧରଦେବଙ୍କର ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠା ସହଜରେ ଅନୁଭୂତ ହେବ। ଶ୍ରୀ ଜଳନ୍ଧରଦେବଙ୍କ ପରେ ଏକ ଯୁଗ ବିତିଗଲାଣି ମନେହୁଏ ଯେପରି ସେ ଯୁଗର ନିଷ୍ଠା ଆଉ ନାହିଁ। ହୁଏତ ବର୍ତ୍ତମାନ ଯୁଗ ଦରକାର କରୁଛି ଆହୁରି ବେଶି ଅଧ୍ୟବସାୟ ଓ ନିଷ୍ଠା। ଯାହାହେଉ ଶ୍ରୀ ଜଳନ୍ଧରଦେବଙ୍କ ଭଳି ପୂର୍ବଜମାନଙ୍କ ସାହିତ୍ୟିକ ନିଷ୍ଠା ଆଜି ନବୀନ ସାହିତ୍ୟିକମାନଙ୍କ ପଥପ୍ରଦର୍ଶକ ହେଉ, ଏହାହିଁ ଆମ୍ଭମାନଙ୍କର କାମନା।



# ପରିଶିଷ୍ଟ-୫

## ଚନ୍ଦ୍ରିକା ସମ୍ପାଦକଙ୍କ ଶୋକ ପ୍ରକାଶ (ଚନ୍ଦ୍ରିକା-୧/୭-୧୯୫୨ ସମ୍ପାଦକୀୟ)

## ଚନ୍ଦ୍ରିକା ପ୍ରଥମ ବର୍ଷ ୭ମ ସଂଖ୍ୟା ସମ୍ପାଦକୀୟରେ ଜଳନ୍ଧରଦେବଙ୍କ ତିରୋଧାନରେ ଶୋକପ୍ରକାଶ

ପ୍ରବୀଣ ଜଳନ୍ଧରଦେବ ଦେହତ୍ୟାଗ କରିଛନ୍ତି। ଦୀର୍ଘ ପଞ୍ଚାଅଶୀ ବର୍ଷର ଇତିହାସ ତାଙ୍କର ଜୀବନ। ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମ ଅଭ୍ୟୁତ୍‌ଥାନ ଓ ପ୍ରଗତି ସେ ଦେଖିଗଲେ। ଜଳନ୍ଧରଦେବ ନିଜେ ମଧ୍ୟ ଉଚ୍ଚକୋଟୀର ସାହିତ୍ୟସେବୀ ଥିଲେ। ଭ୍ରମଣବୃତ୍ତାନ୍ତ, ସମାଲୋଚନା, କଥା ସାହିତ୍ୟ ସବୁଥିରେ ତାଙ୍କର ଅସମ୍ଭବ ଦକ୍ଷତା ଥିଲା ତାଙ୍କର ସାହିତ୍ୟ ତାଙ୍କୁ ଏ ଜାତିର ହୃଦୟରେ ଅମର କରି ରଖିବ।

୧୯୩୪ ସାଲରେ ବାରିପଦା ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ସମ୍ମିଳନୀରେ ପୌରୋହିତ୍ୟ କରିବାକୁ ସେ ବାରିପଦାରେ ପଦାର୍ପଣ କରିଥିଲେ। ତାଙ୍କର ମତର ଉଦାରତା ଏଠା ଲୋକଙ୍କୁ ଏଭଳି ମୋହିତ କରିଥିଲା ଯେ ସମ୍ମିଳନୀ ମଣ୍ଡପରେ ବହୁ ଲୋକଙ୍କୁ ସ୍ଥାନ ଦେଇ ହୋଇ ନ ଥିଲା। ଉଦାରଚେତା ଏହି ନମସ୍ୟ ଆତ୍ମାର ସଦ୍‌ଗତି ଆମେ କାମନା କରୁଛୁଁ।



# ପରିଶିଷ୍ଟ-୬

## କେତେକ ଦୁଷ୍ପ୍ରାପ୍ୟ ଫୋଟୋ ଚିତ୍ର

### ଫୋଟୋ ଚିତ୍ର-୧



୧୯୩୫ରେ ବାରିପଦା ସାହିତ୍ୟ ସମାଜର ପ୍ରଥମ ସଭାରେ ସଭାପତି ଜଳନ୍ଧର ଦେବ

ଫୋଟୋ ଚିତ୍ର- ୨



ସାର ବାସୁଦେବ ସୁଢଳ ଦେବ ଜଳନ୍ଧର ଦେବଙ୍କ
ଉତ୍ସାହଦାତା



ସଚ୍ଚିଦାନନ୍ଦ ଦେବ ଜଳନ୍ଧରଙ୍କ ସହଧ୍ୟାୟୀ

ଫୋଟୋ ଚିତ୍ର-୫

୪ ଷଡ଼ଋତୁମାଳା ।

## ଗ୍ରୀଷ୍ମ ।

ଅଧିକ ମଧୁ ଶେଷେ ନିଦାଘ କାଳ
ପ୍ରଖର ହେଲା ରବି କିରଣ ଜାଲ ।
ଉତ୍ତପ୍ତ ହେଲା ଏବେ ଧରଣୀ ଅଙ୍ଗ
କୁସଙ୍ଗେ ସାଧୁ ଯଥା ହୁଏ ଆତଙ୍କ ।

ଉଡ଼ାଏ ଧୂଳି ବୃଷ୍ଟି ତପ୍ତ ପବନ
ଲମ୍ପଟ ହୃଦେ ପାପ, ସ୍ରୋତ ଯେସନ ।
ହୋଇଲେ ପଦସ୍ଥାନ ଛିନ୍ନ ବଳିଷ୍ଠ
ଦସ୍ୟୁ ଲୁଣ୍ଠିଲା ଗୃହ ଧନୀଙ୍କ ଘର ।

ଶ୍ରୀ ଜଳନ୍ଧର ଦେବ ପ୍ରଣୀତ ।

ଷଡ଼ଋତୁମାଳା । ୫

ଦାବାଗ୍ନି ବନେ ହେଲା ସଞ୍ଚାର
ଜାଳ ଜଙ୍ଗଲ କେଉ କହୁ ପ୍ରକାର ।
ଜଳ ବିନା ଥିଲେ ଜଗତ ପ୍ରାଣୀ
ହରି ଦର୍ଶନ ବିନା ଯଥା ମୁକ୍ତିନୀ ।

ଚନ୍ଦ୍ର ଚନ୍ଦନ ହେଲା ଲୋକ ଆଦର
ପୂଜ୍ୟ ଏପରି ବିନା ପଣ୍ଡିତ ନର ।
ଶୁଖିଲା ଦିନ ଦିନ ସର ସରିତ
ଅସତୀ ଦମ୍ଭ ଯଥା ନିଃଶେଷ ହେଉ ।

ସୁପକ୍ୱ ଫଳ ଦେଲେ ପାଦପ ଗଣ
ସ୍ୱାର୍ଥହୀନ ଦିଏ ଯଥା ଦାତା ସ୍ୱଧନ ।



ଜଳନ୍ଧରଙ୍କ ପ୍ରାସାଦ

ଫୋଟୋ ଚିତ୍ର-୮


ଜଗନ୍ନାଥବଲ୍ଲଭ ପ୍ରେସ୍ ବର୍ତ୍ତମାନ ସରକାରୀ ମୁଦ୍ରଣାଳୟ


ଉତ୍କଳ ମଧୁପ ପତ୍ରିକାର ପ୍ରଚ୍ଛଦ



କଳନ୍ଧର ଦେବଙ୍କ ଦ୍ୱାରା ନିର୍ମିତ କୁଚିଣ୍ଡାର ଝୁଲା ପୋଲ


ଉତ୍କଳ ମଧୁପ

ଉତ୍କଳ ମଧୁପ ପତ୍ରିକାର ପ୍ରଚ୍ଛଦ




ବେଦ ଓ ହିନ୍ଦୁଧର୍ମ ପୁସ୍ତକର ପ୍ରଚ୍ଛଦ



ଜଳନ୍ଧର ଦେବଙ୍କ ଦ୍ୱାରା ନିର୍ମିତ କୁଟିଶ୍ୱାର ଝୁଲା ପୋଲ ।



ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ (୧୯୫୯)-

ଓଡ଼ିଆ [illegible]ହିତ୍ୟର ଏକ ସଂଭାବନାମୟ ଉଚ୍ଚାରଣ। ତାଙ୍କର ସାରସ୍ୱତ ସ୍ୱାକ୍ଷର ଓଡ଼ିଶାର ପ୍ରତିଟି ପତ୍ରପତ୍ରିକାରେ ନିରବଚ୍ଛିନ୍ନ ପ୍ରକାଶିତ ଓ ପ୍ରଶଂସିତ । ବାମଣ୍ଡାର ଅନୁପମ ସାରସ୍ୱତ ପରଂପରାର ଅନାଲୋଚିତ ଦିଗ ଉପରେ ତାଙ୍କର ଅଧ୍ୟୟନ ଉଲ୍ଲେଖଯୋଗ୍ୟ । ଜଳନ୍ଧର ଦେବଙ୍କ ସାହିତ୍ୟ କୃତି ଉପରେ ଗବେଷଣାକରି ସମ୍ବଲପୁର ବିଶ୍ୱବି[illegible]ୟରୁ ୨୦୦୨ରେ ଡକ୍ଟରେଟ ଡିଗ୍ରୀ ପ୍ରାପ୍ତ । ତାଙ୍କର କବିତା, ଗଳ୍ପ ଓ ଗବେଷଣାତ୍ମକ ନିବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ଅନେକ ନାଟକ ଓଡ଼ିଶାର ବିଭିନ୍ନ ରଙ୍ଗମଞ୍ଚରେ ମ[illegible]ସ୍ଥ ଓ ପୁରସ୍କୃତ । ସେ ଦେବଗଡ ବାସୁଦେବ ସାହିତ୍ୟ ସଂସଦର ପ୍ରତିଷ୍ଠାତା ସଂପାଦକ ଓ ସମ୍ଭ୍ରାନ୍ତ ପତ୍ରିକା ପାଖୁଡ଼ାର ମୁଖ୍ୟ ସଂପାଦକ ।





ସାରସ୍ୱତ ଫସଲ:

ନିଶବ୍ଦ ଆକାଶର ଡାକ (କ[illegible]ବିତା ସଂକଳନ- ୧୯୯୩)
ଅରଣ୍ୟର ଡାକ ( କବିତା-[illegible]୦୦୦)
ସମ୍ବଲପୁର ହିତୈଷିଣୀ: ଏକ ଅଧ୍ୟୟନ (ଗବେଷଣା ପୁସ୍ତକ-୨୦୦୨)
ଶୂନ୍ୟବିନ୍ଦୁ (କବିତା- ୨୦୦୨)
ବଣ ରାଇଜ (ଶିଶୁ କବିତା-୨୦୦୨)
ପ୍ରଧାନପାଟ (ସଂପାଦନା-୨୦୦୩)
ବାସୁଦେବ ଗ୍ରନ୍ଥାବଳୀ (ସଂପାଦନା-୨୦୦୩)
ଶିଳାର ସ୍ୱପ୍ନ (ଗଳ୍ପ-୨୦୦୪)
ସଚ୍ଚିଦାନନ୍ଦ ତ୍ରିଭୁବନଦେବ. ଗ୍ରନ୍ଥାବଳୀ (ସଂପାଦନା-୨୦୦୫)
ମୌଲାନା ମୁସ୍ତକୀମ୍ ଖାଁ ଗ୍ରନ୍ଥାବଳୀ (ଯନ୍ତସ୍ଥ)
ପାଦନାହିଁ ବୋଲି (କବିତା -୨୦୦୯)
ଅନନ୍ୟ ଅନ୍ୱେଷା (ପ୍ରବନ୍ଧ-୨୦[illegible])
ଜଳନ୍ଧର ଦେବ ଗ୍ରନ୍ଥାବଳୀ (ସଂପାଦନା).

- ପ୍ରକାଶକ



